

**ଶ୍ରୀ ଅଶ୍ୱିନୀକୁମାର ଘୋଷ, ଏମ୍. ଏ., ପ୍ରଣୀତ**

ନାଟ୍ୟ-କଳାନିଧି (କଟକ), ନାଟ୍ୟ-ଭୂଷଣ (କଲିକତା), ନାଟ୍ୟ-ସମ୍ରାଟ (ବ୍ରହ୍ମପୁର)

# ଅଶ୍ୱିନୀକୁମାର ଗ୍ରନ୍ଥାବଳୀ

ପ୍ରଥମ ଖଣ୍ଡ

ପୌରାଣିକ

ଓ

ଐତିହାସିକ ନାଟକ

ପ୍ରକାଶକ—

**କଟକ ଟ୍ରେଡ଼ିଂ କମ୍ପାନୀ**

**ବାଲୁବଜାର, କଟକ-୨**

ପ୍ରଥମ ପ୍ରକାଶ—୧୯୬୩

ସଂଖ୍ୟା—ଦୁଇହଜାର

**ମୂଲ୍ୟ—ଚାଳିଶ ଟଙ୍କା**



ମୁଦ୍ରାକର—

**ଶ୍ରୀ ଅଜୟକୁମାର ଘୋଷ**

**ଶ୍ରୀହରନାଥ ପ୍ରେସ**

**କଟକ—୨**

# ଯେତିକି ଜାଣେ

'ଝାଲ୍ ଭରି ପଚପଟେ, ବର୍ଷ ଗୁଡ଼େ ତା ବାଟେ
ବାଟ-ଫେରି କରି ପଥୁକାରେ ତୁ ଯେ
ବସାଇ ପାଣୋଶ୍ରି ଘରେ,
ଗଢ ମଧୁ-ଧାର ଚଖାଇ, ରସାଜ୍
ସ୍ମୃତ ଦେଗ । ତେଣୁ ଜୁହାରେଁ'—

—ପାଣୋଶ୍ରି ପାଉନାହିଁ ତେଣୁ । ପଞ୍ଜାବୀଟା—ହୁଏତ ଦିନ ପନ୍ଦର ଆଗେ ଧୋବାଘରୁ ଆସିଥିବ, ଗଳାରେ ଗୋଟେ ଦି'ଟା ବୋତାମ ଅଛି, ସେ ପୁଣି କାଜରେ ଲାଗିନାହିଁ । ଗଳାଟା ତେଣୁ ଖୋଲାଏ ମୁକୁଳା । ଧୋତି ଖଣ୍ଡ ପଞ୍ଜାବୀର ଲାଗି । ବାଳଗୁଡ଼ି ତେଲ୍ ନାହିଁ କୁଣ୍ଡ । ମୁଣ୍ଡବାଳ ଫୁରୁ ଫୁରୁ । ଗୁମୁଦାନ୍ତ ବଡ଼ ହୋଇ ଆଗକୁ ବାହାରି ପଡ଼ୁଛି, ସେଥିରେ ପୁଣି ଦରହସା । ବାଦାମୀ ରଙ୍ଗର ହଳେ ହାଫ-ସୁ, ରଙ୍ଗ ବା ରୁହୁଣ ସମ୍ବନ୍ଧ ତାର ଚିହ୍ନାପଡ଼ୁନାହିଁ । ସେତେବେଳେଅ କଟକ ସହରର ନାଲି ଧୂଳିର ସାଙ୍ଗ-ଛଡ଼ା ହବାକୁ ଯେମିତ ସେ ରାଲ୍-କୁଲ୍ ନାରାଜ । ମନେହେଲା ଗୋଟାଏ ଧାଡ଼ି—

'ଅହୋରୂପ-ମହୋଧ୍ୱନି' ।

ହାତରେ କାଗଜ ଠୋଙ୍ଗାରେ ଚିନାବାଦାମ । ଆଗରୁ ମୁହଁ ଦେଖା ଚିହ୍ନା ନଥାଏ—ହଠାତ୍ ପ୍ରିଣ୍ଟିଂ-କୋମ୍ପାନୀ ଉପର ମହଲା ମୋ ବସିବା ଘରେ ନାଟକୀୟ ପ୍ରବେଶ ଏବଂ ବହୁକାଳର ଚିହ୍ନା ଭଳି ହସି ହସି—"ନମସ୍କାର କାଳୀବାବୁ", କହି ଚେୟାର ଟାଣି ଉପବେଶନ ଓ ପରମୁହୂର୍ତ୍ତରେ ସଠୋଙ୍ଗା-ଚିନାବାଦାମ ଅର୍ପଣ···

ସବୁ ଛା'ଲପରି ଆଜି ଆଗେ ଆଗେ ଭାସି ଉଠୁଛି । ସେଇଟି ଚିହ୍ନିଲି—ଏ ସେଇ ନାଟ୍ୟକାର 'ଅଶ୍ୱିନୀକୁମାର ଘୋଷ' । ତାଙ୍କ ପିତା ଅକ୍ଷୟ ବାବୁ ପ୍ରିଣ୍ଟିଂକୋମ୍ପାନୀର ବହି ଦୋକାନରେ କେତେକଗୁଡ଼ିଏ ସ୍ୱ-ପ୍ରକାଶିତ ବହି ଜମା ଦେଇଥିଲେ । ଅଶ୍ୱିନୀ ବାବୁ ସେଇଥିପାଇଁ ଆସିଛନ୍ତି । ଅକ୍ଷୟ ବାବୁ, 'ପୁରାଣ ପ୍ରକାଶିକା' ସଂସ୍ଥାର ଜଣେ ଥିଲେ ଭାଗୁଆଳୀ । ୧୯୧୪ରୁ ସେ ସ୍ୱର୍ଗବାସୀ ହୋଇଥାଆନ୍ତି ।

ବଡ଼ ଭାଗ୍ୟ । ନାଆଁ ତ ଢେର ଦିନୁ ଶୁଣିଛି । କିନ୍ତୁ କେଜାଣି କାହିଁକି ଦେଖା ସାକ୍ଷାତ ବା ଆଳାପ ପରିଚୟର ଯୋଗ ଜୁଟି ନଥିଲା । ଭେଟ ହେଲା ୧୯୨୧ ସାଲରେ ।

× × × × ×

ବ୍ରିଟିଶ୍ ସର୍କାର ଅମଳ । ୧୯୧୬ ସାଲ୍ । ସେତେବେଳର ଭାରତ ସମ୍ରାଟ ପଞ୍ଚମ ଜର୍ଜଙ୍କ ଶାସନ କାଳ । ପ୍ରଥମ ପୃଥିବୀ ଯୁଦ୍ଧ ଚାଲିଥିଲ୍, ମନେ ହେବ ନାହିଁ । ଜର୍ମାନୀ ଲଢ଼େଇ ପରେ Our Day ପାଳିତ ହେଉଥାଏ, ଭାରତରେ । ଏଣେ ଅଶ୍ୱିନୀବାବୁ ତାଙ୍କ ସାବିତ୍ରୀ ନାଟକ ଅଭିନୟ କରାଇ ବସିଲେ, କେତେକ ସୌଖୀନ ମଞ୍ଚଶିଳ୍ପୀଙ୍କ ସାହାଯ୍ୟରେ । Our Dayକୁ ନାଟକ ଅଭିନୀତ ହେବାର ଥିଲା । ହେଲେ, କେଜାଣି କି ଅସୁବିଧା ଘଟିଲା ଯେ ୧୯୧୬ ଡିସେମ୍ବର ୧୨ ତାରିଖ ବେଳକୁ ନ ହୋଇ, ମଞ୍ଚସ୍ଥ ହେଲା ୧୯୧୭ ବର୍ଷାରମ୍ଭରେ ପ୍ରାୟ । ଲୋକେ ପସନ୍ଦ କଲେ ଲେଖାକୁ—ଅଭିନୟକୁ ବି ।

ଏହାର ଆଗରୁ ତାଙ୍କ ନାଆଁ ଶୁଣିଥିଲି ମଧ୍ୟ । ତାଙ୍କ ଲିଖିତ ସ୍ୱପ୍ନ ( ପୌରାଣିକ ) ନାଟକ ରେଭେନ୍ସା କଲେଜରେ ୧୯୧୫ରେ ଅଭିନୀତ ହୋଇ ଯାଇଥାଏ ।

ଏଇ ସମୟର ଗୋଟେ କଥା କହେଁ—ଯହିଁରୁ ମୁଁ ଅଶ୍ୱିନୀବାବୁଙ୍କୁ ମନେ ମନେ ସମାଦର କଲି ।

କଟକରେ ସେତେବେଳେ ଯେଉଁ ସୌଖୀନ୍ ଦଳସବୁ ଅଭିନୟ ପ୍ରଦର୍ଶନ କରୁଥିଲେ, ସେମାନେ ପ୍ରାୟ ପନ୍ଦରଅଣା ତିନିପଇସା ବଙ୍ଗଳା ନାଟକମାନ କିମ୍ବା ବଙ୍ଗଳା ନାଟକର ତର୍ଜମାକୁ ଧରୁଥିଲେ । ୧୯୧୬ ରେ ମୁଁ ମଧ୍ୟ ଦୁଇଖଣ୍ଡି ପୌରାଣିକ ନାଟକ ଲେଖିଲି—ଧ୍ରୁବ, ହରିଶ୍ଚନ୍ଦ୍ର । ସେତେବେଳେ ପୌରାଣିକ ନାଟକ ଉପରେ ଲୋକଙ୍କର ବେଶ୍ ଝୁଙ୍କିଥିଲା । ଅଶ୍ୱିନୀବାବୁ ଯୁଗ-ଗୁଣ ସାଥିରେ ତାଳ ମିଶାଇ, ପୌରାଣିକ ନାଟକ ଲେଖିଲେ । ସତ କହିବାକୁ ଗଲେ ସେ ସମୟ ବାସ୍ତବିକ ଥିଲା ଦୋସରା । ଓଡ଼ିଆ ନାଟକର ସ୍ଥାନ ପଡ଼ିଲେ ନାକ ଟେକୁଥିଲା, ଥୋକେ ଲୋକଙ୍କର । ଏ କଥାଟା ମୋତେ ବଡ଼ ବାଧେ । ଯୋଗକୁ ମୋ ସାଥୀକୁ ଜୁଆଣ ଦେବାକୁ ମିଳିଗଲେ ଅଶ୍ୱିନୀବାବୁ । ଘଣ୍ଟି ଠିକଣା ହେଲାରୁ, ବୁକୁରେ ବହପ ଆସିଲା—ମନଟା ଆନନ୍ଦ ହୋଇଗଲା । ଏଇ ସୂତ୍ରରେ ତାଙ୍କ ସୁଖ ପାଇଲି ବେଶୀ । ସେଇଠୁ ଗୋଟାଏ ପେଡ଼ି ସାଇତା ଚନ୍ଦ୍ରିକା ମୋର ହେତୁ ହେଲା—

"ଯୁକ୍ତି ଯେବେ କର ବସିବ, ସଙ୍ଗେ ଥିବ ଭାଇ"

ଲୋକଙ୍କ ବଙ୍ଗଳା ନାଟକ ପ୍ରୀତି—ଓଡ଼ିଆ ନାଟକ ପ୍ରତି ନାକଟେକା—ଏଇ ଦୋସରାବେଳେ ଓଡ଼ିଆ ନାଟକକୁ ଜନପ୍ରିୟ କରିବାକୁ ଲଢ଼େଇ କରିବା ପାଇଁ କମର କଷି ଠିଆ ହେବାର ସୁଅଁଶ ଟାଣି ହେଲା ମୋର, ଅଶ୍ୱିନୀବାବୁଙ୍କ ପରି ସମାନଧର୍ମୀ ଭାଇଟିଏ ପାଇ । ତେଣୁ ଆଳାପର ଦିନ କେଇଟା ପରେ ଅଶ୍ୱିନୀବାବୁ—'ଆପଣ' ସମ୍ବୋଧନରୁ ତଳକୁ ଖସି ଯାଇ 'ତେମେ'ରେ ରହିଲେ, ଆଉ ତା ସଙ୍ଗେ ସଙ୍ଗେ 'ବାବୁ' ନହୋଇ, ହେଲେ 'ଦାଦା'—ଅର୍ଥାତ୍ 'ଅଶ୍ୱିନୀ ଦା'—ନମସ୍ୟ ।

ସ୍ୱପ୍ନର ପରବର୍ତ୍ତୀ ଲେଖା 'ସେଓଜୀ' । ୧୯୧୮ ମସିହାରେ କଟକ ମେଡ଼ିକାଲ୍ ସ୍କୁଲ୍ ( ସେତେବେଳେ ) ଛାତ୍ରମାନଙ୍କ ଦ୍ୱାରା ଅଭିନୀତ ହୋଇଥିଲା । ସେ ଦଳ ସର୍ବାଙ୍ଗ ସୁନ୍ଦର ଅଭିନୟ ଆଖିରେ ପଡ଼ିବା ବିରଳ ବୋଲି ଏବେ ମଧ୍ୟ ମୋର ଧାରଣା ।

ସେଓଜୀ ଅଭିନୟର ଦ୍ୱିତୀୟ ସଫଳ-ରଜନୀ ଅଶ୍ୱିନୀ ଦା'ଙ୍କ ଜୀବନର ଏକ ପରିବର୍ତ୍ତନ କାଳ ବୋଲି, ମୁଁ କହିବି । ଏଇ ରାତିର ଅଭିନୟ ପରେ ତାଙ୍କ ସଙ୍ଗେ ଦେଖା ହେଲା ପୁରୀଜିଲ୍ଲାର ବଲଙ୍ଗା ଗ୍ରାମ ରହଣି ସ୍ୱର୍ଗୀୟ ବନମାଳି ପଣ୍ଡାଙ୍କର ।

ପଣ୍ଡିତଙ୍କ କଥା ଠିକେ ଠିକେ କହୁଛି—ତାଙ୍କ ସଙ୍ଗରେ ମୋ'ର ବେଶ୍ ଆଲାପ ପରିଚୟ ଥିଲା, କିନ୍ତୁ କିଛି ଦିନ ପରେ । ସେ ଥିଲେ ଜମିଦାରଙ୍କ ନାଏବ, ବଲଙ୍ଗୀର ମାନ୍ୟଗଣ୍ୟ ବ୍ୟକ୍ତି । ଅର୍ଥ ଯେମିତି ଥିଲା ଖାତିର ବି ସେମିତି ଥିଲା । ଲୋକଟି ବଡ଼ ସଙ୍ଗୀତ-ରସିକ । ସେତେବେଳଯାଏ ଅଖଡ଼ା ପିଲା ଦଳ ସମ୍ପାଦବା ପ୍ରୀତି ଅଭିମାନୀ ସମାଜରୁ ଏକାବେଳେ ମୂଳପୋଛ ହୋଇନଥାଏ । ବଲଙ୍ଗୀ ପଣ୍ଡିଏ ଗୋଟିପୁଅ ଦଳର ପ୍ରତିପାଳକ, ପରିଚାଳକ । ସ୍ୱର୍ଗୀୟ ଶ୍ୟାମସୁନ୍ଦର ମହାପାତ୍ରେ ଏଇଠି ରାମଚନ୍ଦ୍ର ମାଣିଆ ଓ ବାଜଶ୍ରବନ୍ଧୁଙ୍କ ତାଲିମ ଦେଇ ଅଖଡ଼ା ଦଳ ଗଢ଼ି, ନାଆଁ କମେଇ ଥିଲେ । ଏଇ ଦଳରୁ ଧୀରେ ଧୀରେ ପଣ୍ଡିତଙ୍କ ମଥାରେ ଥିଏଟର ପାର୍ଟି ଗଢ଼ା ହୁଙ୍କ ଉଠିଲା । ସେ ଅନେକ କଥା । ଏଠି ଖାଲି ତାଙ୍କ ଥିଏଟର ଦଳ ସହିତ ଅଶ୍ୱିନୀବାବୁଙ୍କ ସମ୍ବନ୍ଧ ବାବଦରେ କହିବା ଥାନ ।

ପଣ୍ଡିତଙ୍କ ଥିଏଟର ଦଳର ନାମ "ରାଧାକୃଷ୍ଣ ଥିଏଟର" । ଏଇ ହେଲା ଓଡ଼ିଶାର ପହିଲି ବ୍ୟବସାୟୀ ଦଳ । ଏଭଳି ପ୍ରଚେଷ୍ଟା ଏକ ବଳିଷ୍ଠ ପଦକ୍ଷେପ ନିଶ୍ଚୟ । ଥିଏଟର ପାର୍ଟିରେ ସେତେବେଳର ବଡ଼ ବଡ଼ କଳାକାରମାନେ ଥିଲେ । ବାଲେଶ୍ୱରର ସୁଖ୍ୟାତ ସଙ୍ଗୀତଜ୍ଞ ସ୍ୱର୍ଗୀୟ ବୃନ୍ଦାବନ ବିହାରୀ ଦାସ, ପ୍ରସିଦ୍ଧ ନଟ ଯୁଗଳ ମଣିବାବୁ ( ଜ୍ୟୋତିନ୍ଦ୍ରନାଥ ମୁଖାର୍ଜୀ ) ଓ ଫଣିବାବୁ, ରାମ ମାଣିଆ, ଇତ୍ୟାଦି, ଇତ୍ୟାଦି ଅନେକ ଜଣାଶୁଣା ଶିଳ୍ପୀ ଘେନି ବଲଙ୍ଗୀ ଥିଏଟର ଗଢା ହୋଇଥାଏ ।

ସବୁ ସୁନ୍ଦର ଭାବେ ଅଭିନୀତ ହେଉଥାଏ ଯେ କିନ୍ତୁ ବଙ୍ଗଳାରୁ ଭାଷାନ୍ତରିତ ନାଟକମାନ । ପଣ୍ଡିଏ ସରସ ଆଉ ଚତୁର ଲୋକ । ସେ ଅଶ୍ୱିନୀବାବୁଙ୍କୁ ଅନୁରୋଧ କଲେ, ଦଳ ପାଇଁ ବହି ଲେଖିବାକୁ । ତାହା ମନକୁ କେମିତି ପାଇବ, ହେଲେ ମୁଁ କହିବି, ଏଇଠି ଦୁଇଟି କଥା ଘଟିଲା । ଏକ—ଅଶ୍ୱିନୀବାବୁଙ୍କ ନାଟ୍ୟକାର ଜୀବନରେ ନାଟକ ଲେଖିବାର ସୁଯୋଗ, ପ୍ରୟାସ ଓ ସୁବିଧା । ଦୁଇ—ଏଇଠୁ ଅଶ୍ୱିନୀବାବୁଙ୍କ ଭବିଷ୍ୟତର ମଙ୍ଗମୋଡ଼ ହୋଇଗଲା । ଏଇଦିନ, ମୋ ବିଚାରରେ—ଲକ୍ଷ୍ମୀ ତାଙ୍କୁ ମୁହଁ ମୋଡ଼ିଲେ, ସରସ୍ୱତୀ ତାଙ୍କ ମଥାରେ ହାତ ଦେଲେ ।

ଅଶ୍ୱିନୀବାବୁ ଏତେବେଳକୁ କଟକ ପ୍ୟାରିମୋହନ ଏକାଡେମୀର ଶିକ୍ଷକ—ଠିକ୍ ହେତୁ ହଉନାହିଁ—ବୋଧହୁଏ ପ୍ରଧାନ ଶିକ୍ଷକ । ନାଟକ ଲେଖି ଚାଲିଲେ ଅଶ୍ୱିନୀବାବୁ । ସେଓଜୀ ନାଟକକୁ ବଲଙ୍ଗୀ ଦଳ ମଧ୍ୟ ଅଭିନୀତ କଲେ, ବେଶ୍ ଖ୍ୟାତିର ସହିତ । ସେ କେବଳ ପୌରାଣିକ ନାଟକ ଲେଖି ହାତ ରୋକି ନାହାନ୍ତି । ଓଡ଼ିଶାର ବିସ୍ମୃତ ମନୀଷୀମାନଙ୍କ ଜୀବନୀ, ଇତିହାସ, ସମାଜ—ନାନା ଦିଗରୁ ଆଲୋଚନା କରିଛନ୍ତି ସେ, ନାଟକ ମାଧ୍ୟମରେ, ପରେ ପରେ ।

ତାଙ୍କ ନାଟକ ରଚନାରେ plot ସଜାଡ଼ିବାଟାକୁ ବିଚାର କଲେ ଅଭିନୟକୁ ଦର୍ଶକର ମନ ପାଇଲା ଭଳି ରଙ୍ଗ ଦେବାରେ ତାଙ୍କର ଯୋଗାପଣିଆ ଜଣାପଡ଼େ, ସହଜରେ । ମୋର ତ ବରାବର ମନେହୁଏ, ତାଙ୍କପରି plot ସଜାଡ଼ିବାରେ ମୁଁ ଅକ୍ଷମ । ମୁଁ ଏଠାରେ ତାଙ୍କ ନାଟକମାନଙ୍କର ସମାଲୋଚନା ଲେଖି ବସୁ-ନାହିଁ, ତେଣୁ ନାଟକର ଅଉ ଅଉ ଅଙ୍ଗ ମୋ ବିଚାର ତଳକୁ ଆଣିବ ଅବା କାହିଁକି ? ସମାଲୋଚନା କରିବ—କାଳ । ମୁଁ କେବଳ ଲେଖୁଛି ନାଟ୍ୟକାରଙ୍କ ଜୀବନର କେତୋଟି ମାତ୍ର କଥା, ଯାହା ବା ଯେତିକି ମୋତେ ଜଣାଅଛି । ମୁଁ ତାଙ୍କୁ ସୁଖପାଉଥିଲି, ତେଣୁ ହୁଏତ ତାଙ୍କ ନାଟକ ବାବଦ୍ ଆଲୋଚନାରେ ଏକତରଫା ହୋଇଯିବ—ଏ ଡର ଅଛି ମୋର ।

୧୯୨୦।୨୧ରେ ଅଶ୍ୱିନୀ ବାବୁଙ୍କ ନାଟକ କଳାପାହାଡ କଲିକତାର ମନମୋହନ ଓ ଷ୍ଟାର ଥିଏଟରରେ ଅଭିନୀତ ହେଲା । ସେତେବେଳେ କଲିକତାରେ ଅମର କେତେକ ଓଡ଼ିଆ ଛାତ୍ର ପାଠ ପଢ଼ୁଥିଲେ । ସେମାନଙ୍କ ମଧ୍ୟରେ ମୁଖିଆ ଓଡ଼ିଆ-ପ୍ରାଣ ବନୁବାବୁ ( ଡାକ୍ତର ବନବିହାରୀ ପଟ୍ଟନାୟକ ); ସେ ସବୁବେଳେ 'ଓଡ଼ିଆ' 'ଓଡ଼ିଆ' ହୁଅନ୍ତି, ହେଉଛନ୍ତି ମଧ୍ୟ । ସେ ଖଣ୍ଡିଏ ଓଡ଼ିଆ ନାଟକ ମହାନଗରୀର ବଙ୍ଗ-ରଙ୍ଗପୀଠରେ ପରଶିବା ଯୋଗାଡ଼ କଲେ । ବାଛି ହେଲା କଳାପାହାଡ଼ ବହି । କେତୋଟି ବିଶେଷ ଭୂମିକା କଥା କହେଁ —

ବୁଢ଼ୀ ( କଳାପାହାଡ଼ର ଜନନୀ ) — ଖୋଦ୍ ବନୁବାବୁ
କଳାପାହାଡ଼ — ସ୍ୱର୍ଗୀୟ ଡାଃ ଜନାର୍ଦ୍ଦନ ପୂଜାରୀ
ଅକବର — ,, ଡାଃ ବାଳମୁକୁନ୍ଦ ନାୟକ
ଦୁଲିଆ — ଦେବେନ୍ଦ୍ର ପ୍ରସାଦ ଦାସ ।

ଗୀତ ଲେଖିଲେ ଡାଃ ବନବିହାରୀ ପଟ୍ଟନାୟକ । ବେଶ୍ ଖ୍ୟାତି ଅର୍ଜନ କରିଥିଲା ବହି ଦିଗରୁ, ଅଭିନୟ ଦିଗରୁ ମଧ୍ୟ ।

ସେଇଠି ମଝିରେ କେତେ କାଳ ଅଶ୍ୱିନୀ ଦା' ଙ୍କର ମୋର ଦେଖା ସୁହାଁ ହୋଇପାରି ନଥିଲା । ହେଲେ ଦୁହେଁ ଖାଲି ଦୁହିଁଙ୍କ ଖବର ନେଉ ଥାଉଁ, ବେଳେ ବେଳେ ।

୧୯୨୪ ବେଳକୁ ମୁଁ ଥାଏଁ ପୁରୀରେ । ଅଶ୍ୱିନୀ ଦା'ଙ୍କ ସାନ ଭାଇ କାର୍ତ୍ତିକ ବଡ଼ ଦାଣ୍ଡରେ ଗୋଟିଏ ବହି ଦୋକାନ ଖୋଲି ଥାଆନ୍ତି । ଦୋକାନଟିର ନାଆଁ ଅକ୍ଷୟ ଭଣ୍ଡାର । ବାଲିବଜାର ଛକ ଉପରେ ( ଯେଉଁଠି ଏବେ Cuttack Students' Store ହୋଇଛି ) ଅକ୍ଷୟ ଭଣ୍ଡାରର ମୂଳ ଦୋକାନ ଥାଏ— ପରିଚାଳକ ଅକ୍ଷୟ ଘୋଷ (ହାଲିକୁ ଶ୍ରୀ ହରନାଥ ପ୍ରେସ ମାଲିକ—ଅଶ୍ୱିନୀବାବୁଙ୍କ ସାନଭାଇ) । ପୁରୀ ଶାଖା— ଅକ୍ଷୟ ଭଣ୍ଡାରରେ ଅଶ୍ୱିନୀ ବାବୁଙ୍କର ଦେଖା ମିଳିଲା । ଖୁସିରେ ଦୁହିଙ୍କ ମନ କୁରୁଳି ଉଠିଲା । ତାଙ୍କ ପ୍ରିୟ କଣସ ରବିଡ଼ି, ସରଭଜା ଓ ଚିନାବାଦାମ ଭଜା ଧରି ରୋଜ ତାଙ୍କୁ ଭେଟୁଥିଲି । ସେଠି ଆଲୋଚନା ହୁଏ ନାଟକ ଓ ମଞ୍ଚ ସମ୍ବନ୍ଧରେ ।

ବଳଙ୍ଗା ରାଧାକୃଷ୍ଣ ଥିଏଟରରେ ତାଙ୍କ ନାଟକ ମାନ ଅଭିନୀତ ହେଉଥାଏ । ୧୯୨୭ରେ ଅଭିନୀତ ହେଲା କୋଣାର୍କ ନାଟକ; କଟକରେ ରାଧାକୃଷ୍ଣ ଥିଏଟର ଥିବା ବେଳରେ । ନିର୍ଦ୍ଦେଶନା—ମୋର ସହପାଠୀ ବନ୍ଧୁ ସ୍ୱର୍ଗୀୟ ବଳାଇ ବାନାର୍ଜୀ । ସେ ନିଜେ ଜଣେ ଖ୍ୟାତ ଅଭିନେତା । ବିଶୁ ଭୂମିକାରେ ତାଙ୍କ ଅଭିନୟ ଦେଖିଥିବା ଲୋକେ ଏବେ ମଧ୍ୟ ତାଙ୍କୁ ମନପାଶୋରି କରିପାରି ନାହାଁନ୍ତି । କାଶୀନାଥ ସାହୁ—( ପିପିଲି ) ଧର୍ମା ହେଉଥାଏ । କଟକରେ ସେତେବେଳେ କୌଣସି ନାଟକ ରାତିଏ ଦି ରାତିରୁ ପ୍ରାୟ ବେଶୀ ଚାଲୁ ନଥାଏ ଭଲରେ, କିନ୍ତୁ କୋଣାର୍କ ସେ ନିୟମ ଭାଙ୍ଗି ଉପରେ ଉପରେ ଭରା ପ୍ରେକ୍ଷାଳୟରେ ରାତି ରାତି ଚାଲି ଏକ ଚହଳ ପକାଇ ଦେଇଥିଲା । ମନିବାବୁ ଥାଆନ୍ତି ରାଧାକୃଷ୍ଣ ଥିଏଟରର ପରିଚାଳକ । ବୃନ୍ଦାବନବାବୁ ସେତେବେଳକୁ ଦଳରୁ ଚାଲିଗଲେଣି । ବଳଙ୍ଗା ଥିଏଟରରେ ଅଶ୍ୱିନୀବାବୁଙ୍କର ଗୋଟିକ ପରେ ଗୋଟିଏ ନାଟକ ଅଭିନୀତ ହେଉଥାଏ । ଏଣିକି ବଙ୍ଗଳାରୁ ଭାଷାନ୍ତରିତ ନାଟକର ଚଳଣୀ ଉଣା ହୋଇଗଲା । ଏଥିରୁ ଅଶ୍ୱିନୀବାବୁଙ୍କ କଲମକୁ ଅବଶ୍ୟ ଏକାନ୍ତ ଧନ୍ୟ ଧନ୍ୟ କହିବା କଥା ।

ଆଗରୁ ମୁଁ କହୁଛି ପତିଙ୍କ ସାଙ୍ଗରେ ଅଶ୍ୱିନୀ ଘୋଷଙ୍କ ଦେଖା ସାକ୍ଷାତଟା ତାଙ୍କ ଭଲକୁ ଯେତିକି ଲୋକକୁ ସେତିକି । ଆସିଗଲା ସେଇ ସମୟ ।

ସନ ୧୯୨୮ ସାଲ୍ । ବଲଙ୍ଗା ପାର୍ଟି ଥାଏ ଯାଜପୁରରେ । ବନ୍ଧୁଇବାବୁ ସାଙ୍ଗରେ ଯାଉଥାନ୍ତି । ମୋର ଯେତେଦୂର ମନେ ହେଉଛି ଖେତରା ଦଣ୍ଡଟଙ୍କା ରୟାଲ୍‌ଟି କଡ଼ାରରେ ସେ ଯାଉଥିଲେ ନିର୍ଦ୍ଦେଶକ ରୂପେ ।

ପତି ଥିଲେ ତାଙ୍କ ଗାଆଁ ବଲଙ୍ଗାରେ । ହଠାତ୍, ପ୍ରାୟ ୧୧।୧୨ଟା ବେଳେ ସେ ଗାଧୋଇସାରି ଘରକୁ ଫେରିବା ବାଟରେ ଜଣେ ଆତତାୟୀ ହାତରେ ପ୍ରାଣହରାଇଲେ । ଏ ଦୁଃସଂବାଦ ପହଞ୍ଚିଲା ଯାଜପୁରରେ ପାର୍ଟିର ବୁଦ୍ଧି ବଣା ହୋଇଗଲା । କରିବେ କଅଣ ? ଭାଙ୍ଗିଯିବ କିନା !

ଦଳ୍ କଟକ ଫେରିଲା । ଅଶ୍ୱିନୀବାବୁ ପତି ମହାଶୟଙ୍କ ଜ୍ୱାଇଁ ବାଞ୍ଛାନିଧିବାବୁ (ଶ୍ରୀ ବାଞ୍ଛାନିଧି ମହାପାତ୍ର ଆଡ଼ଭୋକେଟ୍)ଙ୍କ ସହିତ କଥା ହୋଇ ପାର୍ଟିଟି କିଣିନେଲେ । ଯେତେଦୂର ମନେହେଉଛି ମୋର—ଚାରିହଜାର ଟଙ୍କାରେ ।

ଅଶ୍ୱିନୀ ବାବୁଙ୍କର କଥା—'ହାତରେ ନଥାଇ ଧନ—ପୁଅ ବାହାକରି ମନ' ।

ସବୁତକ ଟଙ୍କା ଏକକାଳୀନ ଦେବା ଦୂରରେ ଥାଉ, ମାତ୍ର ଗୁଡ଼ିଏ ଟଙ୍କା ଖରଚ କରିବାକୁ ଦେବାକୁ ଅଣ୍ଟାରେ ଦମ୍ଭ ନଥିଲା । ଏ ଟଙ୍କା ଯୋଗାଡ଼ ହେଲା ଆପଣା ରକ୍ତ ସମ୍ପର୍କୀୟ ଜଣକଠାରୁ ।

ପାର୍ଟିର ନାଆଁ ହେଲା—'ବଲଙ୍ଗା ଅର୍ଟ ଥିଏଟର' । ମାଲିକ ହେଲେ ଅଶ୍ୱିନୀ କୁମାର ଘୋଷ, ନାଟ୍ୟକାର । ମୋ କ୍ଷୁଦ୍ର ବୁଦ୍ଧିରେ, ମୁଁ କହୁଛି ଏଇ ଦିନରୁ ତାଙ୍କର ଭାଗ୍ୟ ପହିଲ୍ ମୋଡ଼ନେଲା ।

ଅଶ୍ୱିନୀବାବୁ ଥିଲେ ବଡ଼ ଲୋକ, ବୁନିଆଦୀ ଘରର ପୁଅ । ନିଜେ ଗଣିତ ବିଦ୍ୟାରେ ଏମ୍. ଏ. । ଏକାଡ଼େମୀରେ ପରେ ପ୍ରଧାନ ଶିକ୍ଷକ ହୋଇଥିଲେ । ସନ୍‌ସାଇନ୍ ଫିଲ୍ଡ ପାଖରେ ବିରାଟ ଅଟ୍ଟାଳିକା ଥିଲା ତାଙ୍କ ପିତାଙ୍କର । ପୁରୁଣା ପ୍ରକାଶ କମ୍ପାନୀରୁ ବେଶ୍ ଦି ପଇସା ମିଳୁଥିଲା ।

ଏକାଡ଼େମୀରେ ଶିକ୍ଷକ ଥିବାବେଳେ ପାଟଣାରୁ ଅଧ୍ୟାପକ ହେବାପାଇଁ ଡାକରା ପାଇଥିଲେ ସେ । ସେତେବେଳକୁ ବୈକୁଣ୍ଠ ବାବୁ ( ବୈକୁଣ୍ଠନାଥ ଦତ୍ତ ଓକିଲ ) ଥାଆନ୍ତି ସ୍କୁଲର ସେକ୍ରେଟେରୀ । ସେ ଅଶ୍ୱିନୀବାବୁଙ୍କୁ ଦେଶ-ପ୍ରାଣତାର ଚେତନା ଦେଲେ । ଫଳରେ ନିରୀହ ସରଳ-ପ୍ରାଣ ନାଟ୍ୟକାର ଅଧ୍ୟାପକତାରେ ଛାଡ଼ି ହେଡ୍‌ମାଷ୍ଟର ହୋଇ ପଡ଼ି ରହିଲେ ଏକାଡ଼େମୀରେ—'ଓଡ଼ିଶା, ଓଡ଼ିଆ' ବୋଲି ।

ତେଣେ ପାର୍ଟିର ମୋହ କମ୍ ନଥାଏ । କିଛିକାଳପରେ ଏକାଡ଼େମୀର ସେକ୍ରେଟେରୀଙ୍କ ପାଟ ବଦଳ ହେଲା । ମତ ଅମେଳ ହେଲାରୁ ଅଶ୍ୱିନୀବାବୁ ୧୯୩୨ ରେ ଚାକିରୀ ଛାଡ଼ିଲେ । ଏଥର ଏକାବେଳେ ଆସିଲା ତାଙ୍କର ଥିଏଟର ଦଳ ସହ ସମ୍ପୃକ୍ତି । ଚଳାଚଳ କରିବାପାଇଁ ବନ୍ଧୁଦୋକାନକୁ ହାତକୁ ନେଲେ—ସେଥିରେ ବି ଭାଗ୍ୟ ଫାଟିଲା । ବଲଙ୍ଗା ଥିଏଟର କିଣିବା ପାଇଁ ଋଣ କରିବା ଟଙ୍କା ସୁଝି ପାରିଲେ ନାହିଁ, ତେଣୁ ଖଣ୍ଡେ ଘର ଥିଲା ଅନ୍ୟକୁ—ତାକୁ ବିକି ଦେଲେ ।

ଗୁଳିକବାବାଙ୍କର ଗଳ୍ପ—ଘର ଖଣ୍ଡେ ଥିଲା ଯେ ସେ ଟିକି ଗଲା । ପାର୍ଟି ଆଜି ନାଟକ ଲେଖା ହେଲା ଅଶ୍ୱିନୀ ବାବୁଙ୍କର ଭଣ୍ଡାର ।

ଗୋଟାଏ ସତ ଘଟଣା କହୁଛି । ଆଜ ସେ କଥା ଭାବି ଦୁଃଖ ଯେତିକି ଲାଗୁଚି—ହସ ବି ଲାଗୁଚି ସେତିକି ।

କାହାରି ନାଆଁ କହିବି ନାହିଁ, ହେଲେ ଯାହା କଥା ସେ ବୁଝିବେ । ମୁଁ ଖାଲି ଘଟଣାଟା କହୁଛି—ପାର୍ଟି ଚଳାଇବାକୁ ତାଙ୍କ ଅଶେଷ ଅସୁବିଧା ଏବଂ ତାହା ଥାଇ ମଧ୍ୟ, ତାଙ୍କର ହୃଦୟ ଭିତରେ ସରଳ ସରସ ମଣିଷ ପଣିଆଁକୁ ବାରିବାକୁ ମାତ୍ର ।

ପାର୍ଟିର ଖରଚ ତୁଲାଇବା ମୋହରେ କୁଆଡ଼ୁ କିଛି ଟଙ୍କା ଯୋଗାଡ଼ ମତଲବ ଖେଳୁଥାଏ । ଦିନେ ତାଙ୍କର କେହି ବନ୍ଧୁ ତାଙ୍କୁ କହିଲେ କୋଣାର୍କ ଫଳ ବ୍ୟବସାୟରେ ପ୍ରଚୁର ଲାଭ ହେବ । ବିଚାରି ସରଳ—ଓଲ୍ଡ଼ ଲୋକ ସାଙ୍ଗେ ସାଙ୍ଗେ ମାତି ଉଠିଲେ । ମୂଳଧନ ତ ନାହିଁ ବା କେହି ଯୋଗାଡ଼ କରିବେ ନାହିଁ । କଟକ ବ୍ୟାଙ୍କରୁ ସହଜରେ (ଘରବାଡ଼ି ଥିବାରୁ) ହଜାରେ ଟଙ୍କା କରଜ ପାଇଲେ ଅଶ୍ୱିନୀବାବୁ । ବନ୍ଧୁମାନେ ବେପାର ଚଳାଇଲେ । ଟଙ୍କା କିନ୍ତୁ ସୁଝୁନ୍ତ ହେଉନାହିଁ । ବନ୍ଧୁ ମଧ୍ୟ ମୁହଁ ଲୁଚାଇ ଦେଲେ । ଯୋଗକୁ ଦିନେ ଅଶ୍ୱିନୀବାବୁ ଓ ତାଙ୍କ ସାନଭାଇ ଅଜୟବାବୁ ଅଷୟ ଭଣ୍ଡାରରେ ବସିଥିବା ବେଳେ ଅଳ୍ପ ଦୂର (ଛକ)ରୁ ସେହି ବନ୍ଧୁ ଆସୁଥିବାର ଦେଖି, ବିଛା କାମୁଡ଼ିଲା ପରି ହଠାତ୍ ଅଶ୍ୱିନୀବାବୁ ଉଠି ପାଲଡ଼ପଡ଼ା ଗଳି ଭିତରେ ପଶିଗଲେ ଏବଂ କିଛି ବେଳ ପରେ ନିମଚଉଡ଼ି ବାଟେ ବୁଲି ଭାଇ ଦୋକାନକୁ ଆସିଲେ । ଅଜୟବାବୁ ଜାଣେ ସେ ବନ୍ଧୁଙ୍କୁ ଅଶ୍ୱିନୀବାବୁଙ୍କ ଆଗରେ ଟଙ୍କା ତାଗଦା କରିବେ, ଅଦରେ ବନ୍ଧୁ ଜାଣେ ଅପମାନିତ ହେବେ, ଏଇ ଭୟରେ ଅଶ୍ୱିନୀବାବୁ ଥାନ ଛାଡ଼ି ପଳାଇଥିଲେ । ଫେରିଆସି ଅଜୟବାବୁଙ୍କୁ କହିଲେ 'ଏକ—ଯାଇଥିଲି ।' ବନ୍ଧୁଙ୍କ ଅସିବାକଥା ଓ ଟଙ୍କା କଥା ପଚାରିବାକୁ ସୁବିଧାଥିବା ବିଷୟ ଅଜୟବାବୁ କହନ୍ତେ ଓଲଟି ତାଙ୍କୁ ବିରକ୍ତ ହେଲେ ।

ଗୋଟିଏ ନୁହେଁ ଏମିତି ଅନେକ ଘଟଣା ମୁଁ ଜାଣିଛି । ବର୍ଣ୍ଣିବସିଲେ ମହାଭାରତ ବହିଟାଏ ହେବ ।

କଟକରେ ସେତେବେଳେ (୧୯୧୯।୨୦) ଚା ଦୋକାନ ନଥାଏ କହିଲେ ଚଳେ, ହୋଟେଲ ବି ନଥାଏ । କେଉଁଠି ଠାଏ ବସି ସଞ୍ଜବେଳେ ଚା, ଚପ, କଟଲେଟ କଲିକତା ପରି ଖିଆ ହୋଇ ପାରନ୍ତା, ଏଇ ଅଭିପ୍ରାୟରେ ଆଜିକାଲିକା ମ୍ୟୁନିସପାଲିଟି ପାର୍କ ସାମନା ଦୋତାଲା କୋଠା (ସେତେବେଳର ଠେକା ବାଇ କୋଠା) ଉପରେ ହୋଟେଲ ଖୋଲି ବସିଲେ । ଗିରୀଶ ଦେ, ପ୍ରିଣ୍ଟିଂ କୋମ୍ପାନୀର କଳ ଚଳାଉ ଚଳାଉ ଶ୍ରେଷ୍ଠ ହୋଇଥିଲେ । ତାଙ୍କୁ ହୋଟେଲର ଭାର ଦିଆଗଲା । ପଛକେ ସେଇ ହୋଟେଲ ନାନା ବାଟରେ ଯାଇ ଆଜିର 'ଦେ ହୋଟେଲ' । ଅଶ୍ୱିନୀବାବୁ ଆଉ କେହି ନୁହଁନ୍ତି ।

କେଉଁ ବାଟରୁ ହେଲେ ଦି ପଇସା ଉଆଇ ପାର୍ଟିରେ ଖଟାଇବା ଥିଲା ତାଙ୍କର ମତଲବ । ତା'ଛଡ଼ା ପ୍ରାୟ ସବୁ ସ୍ଥଳରେ ସରଳତା ହେତୁ ସେ ଠୋକର ଖାଇଛନ୍ତି ଓ ଦିନେ ହେଲେ ବନ୍ଧୁମାନଙ୍କୁ ଦୋଷ ଦେଇ ନାହାନ୍ତି ବା ଦେଇଥିବା କିମ୍ବା ଯୋଗାଡ଼ ଦେଇଥିବା କିମ୍ବା ମୁଣ୍ଡାମି ହୋଇଥିବା ଟଙ୍କା ମାଗି ନାହାନ୍ତି । ଅତି ସହଣିକ ହୋଇ ବୁଝିଛନ୍ତି ସେ ନିଜେ ।

ଏମିତିକି M. K. Tea Packet ତିଆରି କରି ବିକ୍ରୀ କରିବାରେ ମଧ୍ୟ ସେ ପଛାଇ ନାହାନ୍ତି

୧୯୩୦ ସାଲ୍ । ଆର୍ଟ ଥିଏଟର ଯାଉଥାଏ ରସଲକୁଣ୍ଡା ( ଆଜିର ଭଞ୍ଜନଗର ) । କୋଣାର୍କ ଅଭିନୟ ଚାଲିଥାଏ । ଲୋକେ ଦେଖିବାକୁ ଆଟ ପଟାଳି । ଟିକଟର ଦର ଟ୦।, ମଧ୍ୟାଳାସନ ଟ୦୷, ପିଲାଙ୍କର ଟ୦୵ ମାତ୍ର । ଟଙ୍କା ମହରଗ କାଳ । ଲୋକେ ପଇସା ବଦଳରେ ଧାନ ଦେଇ ଅଭିନୟ ଦେଖିବାକୁ ଆଜ୍ଞାକଲେ । ସେଇଆ ହେଲା, ଥରେ ଧାନବିକା କରନ୍ତେ ହେଲା ଅଠର ଟଙ୍କା । ସେତେବେଳେ ଅଠର ଟଙ୍କା ଅଳ୍ପ ନୁହେଁ । ମୋ ଅନୁଭୂତିରେ ଦେଖିଛି ୩୦।୪୦ ଜଣ ଲୋକ ଭଲରେ ଖାଇ ଚଳିବାକୁ ୪।୫ ଟଙ୍କା ଯଥେଷ୍ଟ । ସେ କାଳର ପଟିର ମେସ୍‌ଖର୍ଚ୍ଚ ଖାତା ଖଣ୍ଡେ ଅଧେ ଅଛି ମୋର । ତାକୁ ଦେଖିଲେ ଆଜି ନିଜକୁ ଅବିଶ୍ୱାସ ଆସେ । ଅନ୍ୟ କାହାକଥା ଅବା କଅଣ କହିବ ? ଧାନ ବିକା ଟଙ୍କା ସେଇଠି ଧାନରେ ବାଣ୍ଟି, ଅଶ୍ୱିନୀବାବୁ ନିଃସ୍ୱ ହୋଇ ଧାର କରି ବସିଲେ । ଏ ତାଙ୍କର ଚରିତ୍ରର ଗୁଣ ।

ଏଇଠି ଜଣେ ପାରଳାର ଜ୍ୟୋତିଷୀ କୋଣାର୍କ ନାଟକର ଗଞ୍ଜାମ-ବ୍ୟାପୀ ପ୍ରଶଂସା ଶୁଣି ଅଭିନୟ ଦେଖିବାକୁ ଆସି, ଆଗେ ଏଡ଼େ ଖ୍ୟାତିବାନ ନାଟ୍ୟକାରଙ୍କୁ ଭେଟିବାକୁ ଚାହିଁଲେ, ବଡ଼ ଉତ୍କଣ୍ଠାରେ । ଦେଖା ହେଲା । କୋଷ୍ଠୀ ତ ପାଖରେ ନ ଥିଲା । ପଣ୍ଡିତେ ତାଙ୍କ କପାଳଟିକୁ ଦେଖି, ବଡ଼ ଦୁଃଖରେ କହିଲେ—ଗାଆଁ ଭୂଇଁଲାଗି ଆପଣ ସବୁ ଦେଇଯିବେ । ବାସ୍ତବ ଆସନ ତ ମିଳିବ ନାହିଁ । ଉପରନ୍ତୁ ଆପଣ ଜନ୍ମଭୂମିରେ ରହି ପାରିବେ ନାହିଁ, କଦାପି ।

ତାଙ୍କର କଥା ଫଳିଲା ।

ଆର୍ଟ ଥିଏଟରର ଦୁର୍ଦ୍ଦିନ ଆସିଲା—ମୋର ଖୁବ୍ ହେତୁ ଅଛି । ୧୯୩୨ରେ ମୋର ରାସଦଳ ଥାଏ । ବାଙ୍କାବଜାରରେ ( ଯେଉଁଠି ପରେ ଓଡ଼ିଶା ଥିଏଟର୍ସ ମଞ୍ଚ ତୋଳାହେଲା ) ପାଲଟାଣି, ମଞ୍ଚକରି ମୋର ସାକ୍ଷୀଗୋପାଳ ନାଟ୍ୟସଙ୍ଘ ଅଭିନୟ ଦେଖାଉଥାଆନ୍ତି । ଯାଜପୁରରେ ଆଡ଼ମ୍ବରରେ ସରସ୍ୱତୀ ପୂଜା ହେଉଥାଏ । ମୋ ଦଳକୁ ଡାକରା ଆସିଲା ଚାରିଦିନ ଲାଗି । ଆର୍ଟ ଥିଏଟର ଦଳ ସେତେବେଳେ ବଡ଼ ଅସୁବିଧାରେ ପଡ଼ିଥାନ୍ତି । ବର୍ତ୍ତମାନ ଯେଉଁଠି ଭନ୍‌କ୍ୟାଭନ୍ ହୋଇଛି ( ଚଉଧୁରୀ ବଜାର ଛକ ) ତା'ର ପଛପଟେ ଗୋଟିଏ ଭଙ୍ଗା ପଥର କୋଠ ଥିଲା । ଆର୍ଟଥିଏଟର ଦଳ ସେଇଠି ରହିଥିଲେ । ଅଶ୍ୱିନୀବାବୁ ମୋ ଅନୁପସ୍ଥିତିରେ ମୋର ପାଲ୍ ବନ୍ଧା ପେଣ୍ଡାଲରେ, ଚାରିରାତି ଅଭିନୟ ଦେଖାଇବାକୁ ମୋତେ ଅନୁରୋଧ କଲେ ଏବଂ ନାଟକ ପ୍ରଦର୍ଶିତ ହୋଇଥିଲା ମଧ୍ୟ । କିନ୍ତୁ ବିଶେଷ ଆୟ ହେଲା ନାହିଁ ବୋଲି ଶୁଣିଲି ।

ସ୍ୱତନ୍ତ୍ର ଓଡ଼ିଶାର ଆନ୍ଦୋଳନ ବେଳ ପାରଳା ମହାରାଜା, ମି. ଓଡ଼ାୟାର ଓ ଡାଃ ଫୁକନ ( ଆସାମର ନେତା ) କଟକ ଆସି ଥାଆନ୍ତି । ସାହିତ୍ୟ ସମାଜ ଘରେ ଅଶ୍ୱିନୀବାବୁଙ୍କ କୋଣାର୍କ ନାଟକ ଅଭିନୀତ ହୋଇଥିଲା, ଏମାନଙ୍କୁ ଦେଖାଇବାକୁ । ନାଟକ ଦର୍ଶନରେ ମୁଗ୍ଧ ହୋଇ ଡାଃ ଫୁକନ ନାଟ୍ୟକାରଙ୍କୁ ଦେଖିବାକୁ ଚାହିଁଲେ । ଅଶ୍ୱିନୀବାବୁଙ୍କୁ ଉପସ୍ଥିତ କରାଗଲା । ଡା. ଫୁକନ ତାଙ୍କୁ ଦେଖି କହିଲେ—**You don't look to be a Dramatist** । ତା ପରେ ତାଙ୍କ ବିଦ୍ୟାର ପରିଚୟ ପାଇସାରି କହିଲେ—ଅଙ୍କ ଶାସ୍ତ୍ରରେ **M. A.** ହୋଇ ଏଭଳି ନାଟକ ଆପଣ ଲେଖିଛନ୍ତି ! ସାହିତ୍ୟରେ ମଧ୍ୟ ଏତେ ଅଧିକାର ? ଏଭଳି ଦେଶାତ୍ମବୋଧ ନାଟକ ଅଭିନୀତ ହେବାପରେ ବ୍ରିଟିଶ ସର୍କାର ଆପଣଙ୍କୁ ସ୍ୱଚ୍ଛନ୍ଦରେ ପଦାରେ ରଖିଛନ୍ତି ! ବନ୍ଦୀକରି ନାହାନ୍ତି ? ନିଜ ପକେଟରୁ 'ସିବ' ଓ 'ଧରମା' ଭୂମିକାରେ ଅଂଶ ଗ୍ରହିତାମାନଙ୍କୁ ଦଶ ଦଶ ଟଙ୍କା ପାରିତୋଷିକ ଦେଲେ । ସେ କହିଲେ ଦଳକୁ ଆସାମକୁ ନେଇ ନାଟ୍ୟକାରଙ୍କର

ସମୁଚିତ ସମ୍ବର୍ଦ୍ଧନା କରିବେ ଓ ସେହିଠାରେ କୋଣାର୍କ ନାଟକ ଅଭିନୀତକରିଇ ଅସାମର ଲୋକଙ୍କୁ ଦେଖାଇବେ । କିନ୍ତୁ ଏସବୁ କଅଣ ଅଶ୍ୱିନୀବାବୁଙ୍କ ଫଟାକପାଳରେ ସମ୍ଭବ ? ଡାଃ ଫୁଲନ ଅଳ୍ପଦିନ ପରେ ମରିଗଲେ ।

୧୯୩୬ ବେଳକୁ ଅର୍ଟଥିଏଟର ବାଲ୍ୟ ଭଟକଲା । ଅଶ୍ୱିନୀବାବୁ ସବୁଆଡ଼ୁ ହତାଶ ହୋଇ ଗୁଲିଗଲେ କଲିକତା । ପାରଳା ଜ୍ୟୋତିଷୀଙ୍କ ଭବିଷ୍ୟତ ବାଣୀ 'ସତ' ଫଳିଲା ।

କଟକରେ ଏକାଡେମୀରେ ଥିବାବେଳେ ଓ ଗୃହକର୍ତ୍ତା ଛାଡ଼ିବା ପରେ ବହୁତ ଜାଗାରେ ତାଙ୍କୁ ଗୃହଶିକ୍ଷକତା କରିବାକୁ ଅନୁରୋଧ ଆସିଛି । କିନ୍ତୁ ଅଶ୍ୱିନୀବାବୁ ତାହା ପସନ୍ଦ କରନ୍ତି ନାହିଁ, ଜୀବନରେ ତାଙ୍କର ।

କଲିକତାରେ ଭଡ଼ାଘର ଖୋଜି କାହାକୁ ଅଜଣା ? ଅଶ୍ୱିନୀବାବୁ ବହୁବଜାର ଆରପୁଲିଲେନରେ ଖଣ୍ଡିଏ ଘର ଭଡ଼ା କରି ରହିଲେ, ଯାହାର ଭଡ଼ା ମାସିକ ମାତ୍ର ଆଠଟଙ୍କା । ଘରର ଅବସ୍ଥା, ପରିବେଶର ଏଇଥିରୁ ସହଜ ଅନୁମେୟ । ସେଠି **Free Highschool** ରେ ହେଡ୍‌ମାଷ୍ଟର ହେଲେ—ଲେଖାକୁ ମାସିକ ବେତନ—ଦେଖାକୁ ମାତ୍ର ପଚିଶ ମୁଦ୍ରା । ସମୟ ଯାଉଛି—ଯେତେବେଳେ ନିଜ ପିଲାଙ୍କ ତୁଣ୍ଡରେ ମୁଠିଏ ମୁଢ଼ୀ ପର୍ଯ୍ୟନ୍ତ ଦେବାକୁ ମିଳନାହିଁ—ସେହି ଅଶ୍ୱିନୀବାବୁଙ୍କର, ଯେ ଓଡ଼ିଆ ଜାତିର ନାଟ୍ୟ ଜଗତରେ ଆଣିଛନ୍ତି ବିପ୍ଳବ । କଲିକତାରେ କିଛିଦିନ ଯାବତ୍ କୋଣାର୍କ, କଳାପାହାଡ଼ ଅଭିନୀତ ହୋଇଛି ସୌଖୀନ୍ ଦଳଙ୍କ ଦ୍ୱାରା, ଯାହାକୁ ଦେଖି ନଟସମ୍ରାଟ ଅହୀନ୍ଦ୍ର ଚୌଧୁରୀ, ଶଚୀନ ସେନ୍‌ଗୁପ୍ତ ପ୍ରମୁଖଙ୍କ ମୁଖରେ ପ୍ରଶଂସା ଭରିଉଠିଛି । ତାଙ୍କର 'ଶ୍ରୀମନ୍ଦିର'କୁ 'ପୁରୀ ମନ୍ଦିର' ନାମକରଣରେ ବଙ୍ଗଳା ଅନୁବାଦ କରି **Star Theatre** ବହୁଦିନ ଚଳାଇଲେ । ଅଶ୍ୱିନୀବାବୁ ଏଠାରେ **H M. V. Gramophone Co** ପାଇଁ କେତେଖଣ୍ଡି ନାଟିକା ଲେଖି ରେକର୍ଡ଼ କରାଇଲେ । କ୍ରମେ ଯଥାତଥା ଉତ୍କଳ ଉମୁଠା ଅନ୍ନର ସଂସ୍ଥାନ ହୋଇ ପାରିଲା, ବିଦେଶରେ ।

ଦ୍ୱିତୀୟ ମହାଯୁଦ୍ଧ କାଳ । ଗଢା ହେଲା **National War Front.** ଦେଶବତ୍ସଳ ସ୍ୱର୍ଗତ ବ୍ରଜସୁନ୍ଦର ଦାସ ଅଶ୍ୱିନୀବାବୁଙ୍କୁ ଡକାଇ ଆଣିଲେ । ମାତ୍ର ବର୍ଷକ ପରେ ଏଠାରେ ମଧ୍ୟ ନାନା ଅସୁବିଧା ଘଟାଇଲେ ଅସହଣୀ ବନ୍ଧୁମାନେ ତାଙ୍କର । ଏତିକିବେଳେ ସେକାଳର ଦେଶ ଅବସ୍ଥାକୁ ଗୁହିଁ, ସେ କେତେଖଣ୍ଡି ଛୋଟ ଛୋଟ ନାଟକ ଲେଖିଥିଲେ ଯାହା ସ୍ୱର୍ଗତ ବ୍ରଜସୁନ୍ଦରଙ୍କ ପଞ୍ଚନାୟକ (ବିଦ୍ରୋହୀୟ କର୍ମଗୃହୀ)ଙ୍କ ନିକଟରେ ଥିଲା । ସେଗୁଡ଼ିକ ପରେ ଆଉ ଅଶ୍ୱିନୀବାବୁଙ୍କ ହସ୍ତଗତ ହେଲାନାହିଁ ବୋଲି ଶୁଣିଛି ମୁଁ ।

ଓଡ଼ିଶାରେ, ଶିକ୍ଷାବିଭାଗରେ ତାଙ୍କୁ ନିଯୁକ୍ତି ଦେବାକୁ ତାଙ୍କର କେହି ବନ୍ଧୁ ଅପ୍ରାଣ ଚେଷ୍ଟା କରି ମଧ୍ୟ କିଛି ଫଳ ହେଲା ନାହିଁ ।

ସବୁ ଦିଗରୁ ହତାଶ ଅଶ୍ୱିନୀଦା' ଶେଷରେ କଲିକତାକୁ ନିଜର କର୍ମଭୂମି କଲେ । ଦେଖାହୁଏ କଲିକତାରେ । ଓଡ଼ିଶା—ମାତୃଭୂମି—ଓଡ଼ିଆକୁ ଛାଡ଼ି ସେଠାରେ ରହିବାର ଦୁଃଖ ବର୍ଣ୍ଣନା କରେ ତାଙ୍କର ଅଶ୍ରୁଝରା ପାଣି ।

୭ । ୪ । ୧୯୫୬ରେ ଉତ୍କଳ ସାହିତ୍ୟ ସମାଜ ଶ୍ରୀମତୀ ସରଳା ଦେବୀଙ୍କ ନେତୃତ୍ୱରେ ଅଶ୍ୱିନୀବାବୁଙ୍କୁ ସମ୍ମାନିତ କରିଥିଲେ 'ନାଟ୍ୟରତ୍ନାକର' ଉପାଧିରେ ।

କଲିକତା ଥିଏଟରର ମାଲିକ ସ୍ୱର୍ଗୀୟ ବନମାଳୀ ପତିଙ୍କ ସହ ସାକ୍ଷାତ, ଥିଏଟର ଦଳ ହାତକୁ ନେବା ଓ ସେଥିରେ ପାଗଳହେବା ଦିନରୁ ଅଶ୍ୱିନୀବାବୁଙ୍କର ଭାଗ୍ୟ ଫିଟିଲା କି ଫାଟିଲା—ପାଠକେ ବୁଝନ୍ତୁ ।

ଏ ଜାତିକି ତିଳତିଳ କରି ରକ୍ତ ଦେଇ ଯାଇଛନ୍ତି ସେ । 'ଦାନ' ତାଙ୍କ ଜୀବନର ଧର୍ମ୍ମ, 'ସରଳତା' ତାଙ୍କର ଢାଲ, 'ବିଶ୍ୱାସ' ତାଙ୍କର ନିର୍ବୋଧତା, 'ଭୁଲ୍ଲାବାଦ' ତାଙ୍କର ପୁରସ୍କାର ଓ 'ନିନ୍ଦା' ତାଙ୍କର ଭଣ୍ଡାର । ସବୁ ନେଇ, ସବୁ ପିନ୍ଧି, ସବୁ ଜାଣି—ସେ ସବୁବେଳେ ହସୁଥିଲେ—ସମସ୍ତଙ୍କୁ ଆଦର କରୁଥିଲେ । ଓଡ଼ିଶା ଗ୍ରନ୍ଥ କଲିକତା ରହଣି ବେଳରେ ପ୍ରଣି ବେଶୀ ଲେଖିଲେ,—ଏଇ ଓଡ଼ିଶାର ଇତିହାସ, ସମାଜ, ପୁରାଣ—ଥିଲା ତାଙ୍କ ଜୀବନର-ଜୀବିକା । ଦେଇଛନ୍ତି ଢେର୍—ପାଇନାହାନ୍ତି କିଛି ।

ଆଗରୁ ତ କହିଛି, ଅଶ୍ୱିନୀବାବୁଙ୍କ ନାଟକର ସମାଲୋଚନା ମୁଁ କରିବସୁ ନାହିଁ । ଠିକେ ଠିକେ କେତେଖଣ୍ଡି ନାଟକର ଆଲୋଚନା ମାନ୍ଦ କରୁଛି ଏଠି, ଖାଲି ତାଙ୍କ ମନର ମଣିପେଟିକୁ ଟିକିଏ ଖୋଲାଇ ଦେବାକୁ :—

ଅଶ୍ୱିନୀବାବୁଙ୍କ ପୌରାଣିକ ନାଟକ ଭିତରେ 'ଭୀଷ୍ମ'ରେ ଚରମତ୍ୟାଗ, 'ସାବିତ୍ରୀ'ରେ ଭାରତୀୟ ନାରୀର ଆଦର୍ଶ ଜୀବନ ଚରିତ, 'ବନ୍ଧୁ ମହାନ୍ତି'ରେ ଓଡ଼ିଶାର ରାଜା, ପ୍ରଜା—ସବୁରି ପାଇଁ ଜୀବନର ଅଦ୍ଭୁତ ଦାନର ପରାକାଷ୍ଠା, 'ଚଣ୍ଡାଳୁଣୀ'ରେ ଜଗନ୍ନାଥ ଧର୍ମ୍ମ ର ବାସ୍ତବ ତତ୍ତ୍ୱ ବିକଶି ଉଠିଛି ।

ପାଲାକୁ ସେ ଚାହୁଁଥିଲେ ଅଧିକ ଜନପ୍ରିୟ କରିବାକୁ, ତେଣୁ 'ସତ୍ୟନାରାୟଣ' ନାମ ଦେଇ ମନୋହର ଫାସିଅଛି ପାଲାକୁ ନାଟ୍ୟରୂପ ଦେଇଛନ୍ତି । 'ଜାନକୀ'ରେ ଯୁଗର ପ୍ରେରଣା, ନିରକ୍ଷରତା ଦୂରୀକରଣ, ଜାତୀୟ ପରଂପରା ଓ ମନସ୍ତତ୍ତ୍ୱର ବିଶ୍ଳେଷଣ ବାଢ଼ିଛନ୍ତି । ଇତିହାସ ଗୋବିନ୍ଦ ବିଦ୍ୟାଧରଙ୍କୁ ଯାହା କହେ ତାହାର ବିପରୀତ ପ୍ରମାଣ ଦୃଢଭାବରେ ଖଡ଼ା କରିଛନ୍ତି ସେ ନାଟକ ମାଧ୍ୟମରେ । ତାଙ୍କର 'କେଶରୀଗଙ୍ଗ' ନାଟକର ନର୍ତ୍ତକୀ ବାସ୍ତବରେ ପୂର୍ବ କଳ୍ପବର୍ଣ୍ଣିତ ମତେ କୁଳ-କଳଙ୍କିନୀ ନୁହନ୍ତି । ସ୍ୱଜପେମା ଯେ ତାଙ୍କ ନିଜର ଜୀବନ ଉତ୍ସର୍ଗ କରିଥିଲେ, ଦେଶ ଜାତି ପାଇଁ—ଅଶ୍ୱିନୀବାବୁଙ୍କ ଦେଶ-ପ୍ରାଣ ଲେଖନୀ ତାହାର ବିଶ୍ଳେଷଣ ପ୍ରମାଣ ଦିଏ ।

କୌଣସି ସ୍ଥାନରେ କୌଣସି ଚରିତ୍ରକୁ ସେ ଲଘୁ ଦୃଷ୍ଟିରେ ଚିତ୍ରି ନାହାନ୍ତି । ସେ କହନ୍ତି—"ଦେଇ ତ ପାରିଲି ନାହିଁ କିଛି, ନାଟକ ମାଧ୍ୟମରେ ଆଦର୍ଶ ଚରିତ୍ର ମାନ ଆଙ୍କିବା ଦ୍ୱାରା କେହି ହେଲେ ଲୋକ ଯେବେ ଟିକିଏ ଉଦ୍‌ବୁଦ୍ଧ ହେବେ, ସେଇତକ ହେବ ମୋର ଜଞ୍ଜାଳମୟ ଜୀବନର ଶାନ୍ତି, ସୁଖ ଓ ପୁରସ୍କାର ।"

କୋଣାର୍କ ତାଙ୍କର ବିଜୟ-ସୃଷ୍ଟି ।

ଏଇଠି ସେ ଦେଖିଛନ୍ତି—ଖୋଲା ଆଖି ଆଗରେ—ଅନବଦ୍ୟ ଶିଳ୍ପ ମନ୍ଦିର ଭାଙ୍ଗି ପଡ଼ିବାର,—କଳା ବିକଳା ହେବାର । ଧରମା ମନ୍ଦିରର ମୁଣ୍ଡି ମାରିଛି, ମରିଛି—ଆତ୍ମହତ୍ୟା କରି, ବାରଶ ବଢ଼େଇଙ୍କର କୁପାଙ୍କ ସାର୍ଥକ କରି ।

ପାଗଳ ଅଶ୍ୱିନୀ ଦାଦା—ଏଇ ଚିତ୍ର ଦେଖିଥିଲେ ଆଖିରେ ଲୁହ ଭରିଇ । ଶିଳ୍ପୀ ମରେ—ମଣ୍ଡପରେ ଲୋକ ତାଳି ଝୁରେ । ଜୀବନ୍ତରେ ସେ ପାଏ ଅବହେଳା, ଲାଞ୍ଛନା—ଏସବୁ ପ୍ରତିଭାର ଅସହଣୀ ଲୋକଙ୍କ ଅପକର୍ମ ଭିନ୍ନ ଆଉ କଅଣ ହୋଇପାରେ ?

ଅଶ୍ୱିନୀଦାଦାଙ୍କ କଳ୍ପନାର ଆଖି ଯାହା ଦେଖିଛି, ତାହା ତାଙ୍କ ବାସ୍ତବ ଜୀବନର ଅନୁଭୂତ ବୋଲି କହିଲେ ଅତ୍ୟୁକ୍ତି ହେବ କି ?

ନାଟ୍ୟଶିଳ୍ପୀ ଜୀବନର ଶେଷ ଲେଖା ନାଟକ 'ଭୁବନେଶ୍ୱର' ।

ଏତିକିବେଳେ ଅଶ୍ୱିନୀ ଦା' ଆସିଥାନ୍ତି ଶେଷ ଥର ପାଇଁ କଟକ ।

ମାଆ କୋଳର ଶେଷ ମାୟାର ବନ୍ଧନ ତୁଟାଇବାକୁ ତାଙ୍କୁ କିଏ ସତେ ଯେମିତି ଡାକରା ଦେଲା । ଉତାଳ ହୋଇ କଲିକତା ଛାଡ଼ି ଜନ୍ମମାଟିକି ଛୁଟି ପରି ଧାଇଁ ଆସିଲେ ସେ ।

ଶୁଣିଯିବା ଆଗରୁ ଦେଖା ହେଲା, ପାଲଟପଡ଼ା ବସାରେ । ଅତି ଅସୁସ୍ଥ ସେ ।

ସେଦିନ ତାଙ୍କର ଚିରସାଥୀ ହସ କିନ୍ତୁ ପାଶୋରି ଯାଇ ନଥାଏ । ମୋତେ ଭୁବନେଶ୍ୱର ନାଟକ କଥା କହି ବସିଲେ । ଇତିହାସର ଯୁକ୍ତି ବାଢ଼ି ମତ ଦେଲେ ଓଡ଼ିଶାର ରାଜଧାନୀ ପାଇଁ କେବଳ ଭୁବନେଶ୍ୱର ହିଁ ଉପଯୁକ୍ତ ସ୍ଥାନ । କହିଲେ—

—"କେତେ ବଡ଼ ବଡ଼ କୁବେର ସମ୍ପତ୍ତି-ଶାଳୀ ମରିହଜି ଗଲେଣି—ଶିଳ୍ପୀର କିନ୍ତୁ ମରଣ ନାହିଁ । ଅଗଣିତ ମୁଖ ଶିଳ୍ପୀର ନାମ ସ୍ମରଣ କରୁଛନ୍ତି—ଶିଳ୍ପୀକି ଜୀଆଇ ରଖିଛି, ରଖିବ—ଶିଳ୍ପୀ । ଯେତେ ଅପଚରା, ଅଲୋଡ଼ା ଲେଖଣୀ ହେଉ, ସେ ଶିଳ୍ପୀର ଗୁଣ ଗାଇ ଧନ୍ୟ । ସେଇଥିପାଇଁ "ଭୁବନେଶ୍ୱର" ନାଟକ ଲେଖିଛି ମୁଁ । ତୁମେ ( ମୋତେ କହିଲେ ) ବହିଟି ପଢ଼ି ଦେଖି ଦେବ । ଗୋଟେ ନୂଆ ଟେକ୍‌ନିକ୍ ରେ ଏ ନାଟକ ଲେଖା । ତମ ମନକୁ ପାଇଲେ, ମୋ କଳ୍ପନା ଟା ଠିକ୍ ବୋଲି ଜାଣିବି ।"

ସବୁବେଳେ ଅଶ୍ୱିନୀ ଦା' ଶିଳ୍ପୀକୁ ସମ୍ମାନ ଦେଇ ଆସୁଥିଲେ । ଭୁବନେଶ୍ୱର ନାଟକ ତାହାର ଏକ ନିଦର୍ଶନ—ନୂଆ ଢଙ୍ଗରେ ଲେଖା ହୋଇଥିବା ନାଟକ ଟି ।

କହିବା ତ ନାଟକର ସମାଲୋଚନା ଏ ଲେଖାରେ ଠାବ ପାଇବ ନାହିଁ । କହୁ କହୁ କଣ କହୁ ହୋଇଗଲା ।

ତାଙ୍କର ସାମାଜିକ ନାଟକ ଓ ଉପନ୍ୟାସ, ଶୁଣିଲି, ଦ୍ୱିତୀୟ ଖଣ୍ଡରେ ପ୍ରକାଶିତ ହେବ—ତେଣୁ ବୁଢ଼ୀମାଆ କାହାଣୀ କହିଲା ପରି—"ମୋ କଥାଟି ସରିଲା"—

ଏକଥା ହଉ-ନାହିଁ—ମୋ କୁହା ଆର ଖଣ୍ଡକୁ ବାକି ରହିଲା ।

ଅଶ୍ୱିନୀ ଦା' ଶିଳ୍ପୀଙ୍କୁ ପୂଜାକରି ଜୀଆଇ ରଖିବାକୁ ଜୀବନଯାକ ଲାଗିପଡ଼ିଛନ୍ତି । ତାଙ୍କୁ ଜୀଆଇ ରଖିବାର ଚେଷ୍ଟା କରିଛନ୍ତି ଯେଉଁ ପ୍ରକାଶକ, କଟକ ଟ୍ରେଡିଂ କମ୍ପାନୀ—ସେ ଶୁଷ୍କ ଧନ୍ୟବାଦର ପାତ୍ର ନୁହନ୍ତି—ସେ ସାଧୁବାଦ ଲାଭର ହକଦାର୍ ଓ ଏ ଜାତିର କୃତଜ୍ଞତା ଭାଜନ ମଧ୍ୟ ।

ବର୍ଷକ ତଳର କଥା—କାଲିପରି ଲାଗୁଛି । 'ମଞ୍ଚଶ୍ରୀ' ଅନୁଷ୍ଠାନ ଗଢ଼ାହେଲା । ତାଙ୍କୁ 'ମଞ୍ଚଶ୍ରୀ' ସମ୍ବର୍ଦ୍ଧନା ଜଣାଇବାକୁ ଆୟୋଜନ କରିଥାଏ । ସେତେବେଳେ ସେ କଟକ ଆସିଥାନ୍ତି; ନିଜେ କିନ୍ତୁ ଜନତା ରଙ୍ଗମଞ୍ଚକୁ ଆସିବାର ସାମର୍ଥ୍ୟ ନଥିଲା ତାଙ୍କର । ଶ୍ରୀ ସୁରେନ୍ଦ୍ରକୁମାର ଦାସ, ଶ୍ରୀ ଯୁଗଳକିଶୋର ପାଣିଗ୍ରାହୀ ଓ ଶ୍ରୀ ବ୍ରଜକେତନ ମଙ୍ଗରାଜଙ୍କ ସହିତ ମୁଁ ଗଲି ତାଙ୍କ ବସାକୁ । ଦେଖାହେଲା—ମନେ ପଡ଼ିଗଲା ମୋର ୧୯୬୧ର ସେଇ ହସମଖା ମୁହଁ । କୁଣ୍ଢାଇ ପକାଇଲେ । ଓଡ଼ିଶା—ଓଡ଼ିଆ—ସଂପର୍କରେ କେତେକଥା କହିଗଲେ—ସେତେବେଳେ ସତେ ଯେମିତି ତାଙ୍କ ଶରୀର ସଂପୂର୍ଣ୍ଣ ସୁସ୍ଥ । ଆଖି ଜଳି ଉଠିଥାଏ ।

ତା'ପରେ ?—

‘ଆଉ ପୋଡ଼ା ଭଅଣରେ କି ସୁଆଦ ?’

ଆଜି ଅଶ୍ୱିନୀ ଦା’ ନାହାନ୍ତି । ଆମେ ବା ଆମ ଜାତି ତାଙ୍କୁ ଦେଲେଁ କଅଣ—ନେଲେ କଅଣ ?

ଜୀବନନାଟ୍ୟାକର ନୀରବ, ନିରବଚ୍ଛିନ୍ନ ଦେଶପ୍ରାଣ ସାଧକ ।

ତୁମେ ଦାନୀ—ମହା ଦାନୀ ! ରାବଣ ବଢ଼େଇ ନାଆଁ ନେବା ଲାଗି ଯେଉଁଠି ଭାରତବର୍ଷର ବାକ୍ତିତ ଧରମାକୁ ମରଣ ମୁହଁରେ ଠେଲିଦେଇ ପାରିଥିଲେ, ମୁଁ ସେହି ଦେଶର ଜଣେ ହତଭାଗ୍ୟ ମଣିଷ । ମୁଁ ନେଇଛି—ଦେଇନାହିଁ କିଛି ତୁମକୁ ।

ନିର୍ଲଜ୍ଜ-ମଥା ନୁଆଁଇ ତୁମକୁ ପ୍ରଣାମ କରୁଛି ଆଜି । ହାତ ପାତି ମାଗୁଛି—କୃତଘ୍ନତାର ପ୍ରତିଦାନରେ—କ୍ଷମା;—ଯାହା ଥିଲା ତୁମ ଜୀବନର ଉଜ୍ଜ୍ୱଳ ଆଦର୍ଶ ।

ତା ୨୩ । ୭ । ୬୩
( ଖୀଗୁଣ୍ଡିରୁ )

ପ୍ରଣତ :—
**କାଳୀଚରଣ**

( ଲେଖକ :—କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ, ନାଟ୍ୟାଗୁରୁ, କଟକ )

---

# ଶ୍ରଦ୍ଧାଞ୍ଜଳି

ଭୂମିକା କିମ୍ବା ମୁଖବନ୍ଧ ଲେଖୁନି । ସେ ସୌଭାଗ୍ୟର ଅଧିକାରୀ ମୁଁ ନୁହେଁ । ଆଧୁନିକ ଓଡ଼ିଆ ନାଟକର ଜନକ ପରମ ଭକ୍ତି ଭାଜନ ନାଟ୍ୟରତ୍ନାକର ଅଶ୍ୱିନୀକୁମାରଙ୍କ ଗ୍ରନ୍ଥାବଳୀ ପ୍ରକାଶନର ଏହି ସ୍ମରଣୀୟ ମୁହୂର୍ତ୍ତ ମୋ' ମନରେ ଯେଉଁ ରେଖାପାତ କରିଛି, ତା'ର ଅବତାରଣା ମାତ୍ର ମୁଁ ଏଠି କରୁଛି ।

ଜଣେ କୃତବିଦ୍ୟ ଲେଖକଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହେବା ଏକ ସ୍ୱାଭାବିକ ଘଟଣା । ବ୍ୟକ୍ତିବିଶେଷଙ୍କ ପ୍ରଚେଷ୍ଟା କିମ୍ବା ଜାତିର ସାମୂହିକ କର୍ତ୍ତବ୍ୟ-ବୋଧ, କୌଣସି କ୍ଷେତ୍ରରେ ଏହା ଅପ୍ରତ୍ୟାଶିତ ନୁହେଁ । କିନ୍ତୁ ଅଶ୍ୱିନୀକୁମାରଙ୍କ ଗ୍ରନ୍ଥାବଳୀ ପ୍ରକାଶନର ଏକ ବିଶେଷ ସାର୍ଥକତା—ଏକ ନିର୍ଦ୍ଦିଷ୍ଟ ଉପଯୋଗିତା ରହିଛି, ଯାହା ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ ।...ଅଠର ଶହ ଅଶୀ ମସିହାକୁ ଯଦି ଓଡ଼ିଆ ମଞ୍ଚ—ନାଟକର ଜନ୍ମ ସମୟ ବୋଲି ଗ୍ରହଣ କରାଯାଏ, ତା'ହେଲେ ଏକ ସାଧାରଣ ଦୃଷ୍ଟିପାତରେ ଏହା ପ୍ରତୀୟମାନ ହେବ ଯେ କ୍ରମବର୍ଦ୍ଧିଷ୍ଣୁ ଓଡ଼ିଆ ନାଟ୍ୟ-ସାହିତ୍ୟ ପ୍ରାୟ ପ୍ରତ୍ୟେକ କୋଡ଼ିଏ ବର୍ଷ ଅନ୍ତରରେ ଏକ ଏକ ନୂତନ ବାର୍ତ୍ତା ବହନ କରି ଆସିଛି । ଏହି କ୍ରମରେ, ବିଂଶ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକ ହେଉଛି ଓଡ଼ିଆ ନାଟକର ଏକ ସ୍ୱର୍ଣ୍ଣଯୁଗ ଓ ଏହି ଯୁଗର ମୁଖ୍ୟ କାଣ୍ଡାରୀ, ବୋଧହୁଏ ଏକମାତ୍ର କୃତୀବିଧାୟୀ ହେଉଛନ୍ତି ନାଟ୍ୟରଥୀ ଅଶ୍ୱିନୀକୁମାର । ଏଇଠି ଅଶ୍ୱିନୀକୁମାରଙ୍କୁ ଅତି ଭାଗ୍ୟବାନ୍ ମଧ୍ୟ କୁହାଯିବ । କାରଣ ଏହି ସମୟ ଭିତରେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ଖୁବ୍ କମ୍ । ଅନ୍ୟ କଥାରେ, ଏହି ଦୀର୍ଘ ପନ୍ଦର କୋଡ଼ିଏ ବର୍ଷକାଳ ଅଶ୍ୱିନୀକୁମାର ଓଡ଼ିଆ ନାଟ୍ୟ-ରଚନା କ୍ଷେତ୍ରରେ ଏକ ଲୋଭନୀୟ ପ୍ରାଧାନ୍ୟ ବିସ୍ତାର କରି ପାରିଥିଲେ । ତାଙ୍କର ଶ୍ରେଷ୍ଠ ନାଟକ ମାନଙ୍କ ଭିତରୁ କେତୋଟି ଏହି ସମୟ ଭିତରେ ହିଁ ରଚିତ । ଅଶ୍ୱିନୀକୁମାର ଯଦି ଲେଖନୀ ଚାଳନା କରି ନ ଥା'ନ୍ତେ, ତା'ହେଲେ ଏହି ଦୁଇ ଦଶକ କାଳରେ ଓଡ଼ିଆ ନାଟକର ଅବସ୍ଥା କ'ଣ ହୋଇଥା'ନ୍ତା ?...“କ'ଣ ହୋଇଥା'ନ୍ତା” ଏ ପ୍ରଶ୍ନକୁ ପ୍ରତିହତ କରି ଆଜି ଅବଶ୍ୟ ଆମ ମନରେ “କ'ଣ ହୋଇଛି” ଏ ପ୍ରଶ୍ନ ଉଠୁଛି ; ଆଜି, ଯାହା ହୋଇଛି, ତା'ର ନିଜସ୍ୱ ମୂଲ୍ୟ ଅପେକ୍ଷା, ତାର ଐତିହାସିକ ସିଂହାବଲୋକନର ମୂଲ୍ୟ ବହୁତ ବେଶୀ । ଓଡ଼ିଆ ନାଟ୍ୟ ସାହିତ୍ୟ କ୍ଷେତ୍ରରେ ଯେଉଁମାନେ ଭାବୀକାଳର ଇତିହାସକାର, ଗବେଷକ ଓ ସମାଲୋଚକ—ସେମାନଙ୍କୁ ଏହା ଅତି ମୂଲ୍ୟବାନ ସାକ୍ଷ୍ୟ ଯୋଗାଇ ପାରିବ । ଏଇଠାରେ ହିଁ ନାଟ୍ୟ-ଭାରତୀ ଅଶ୍ୱିନୀକୁମାରଙ୍କ ରଚିତ ଗ୍ରନ୍ଥ ସଙ୍କଳନର ପରମ ଓ ଚରମ ସାର୍ଥକତା ।

ଆରମ୍ଭରୁ କହିଛି, ମୁଁ ଭୂମିକା କିମ୍ବା ମୁଖବନ୍ଧ ଲେଖୁନି । ସେଥିପାଇଁ ଅଶ୍ୱିନୀକୁମାରଙ୍କ ରଚନାବଳୀର ସାମୂହିକ ଆଲୋଚନାର ଅବକାଶ ମୋର ଏଠି ନାହିଁ । ନାଟକ ରଚନା କ୍ଷେତ୍ରରେ ସେ ମୋ'ର ସମ୍ମାନିତ ଗୁରୁଦେବ । ତାଙ୍କ ସହିତ ବ୍ୟକ୍ତିଗତ ସୌହାର୍ଦ୍ଦ୍ୟ ସ୍ଥାପନର ସୌଭାଗ୍ୟରୁ ସେ ମତେ ବଞ୍ଚିତ କରି ନଥିଲେ । ଅପ୍ରାସଙ୍ଗିକ ହେଲେ ମଧ୍ୟ ତାଙ୍କ ସହିତ ମୋ'ର ପ୍ରଥମ ସାକ୍ଷାତ୍‌ର କଥା ଏଠି ଉଲ୍ଲେଖ ନକରି ମୁଁ ରହିପାରୁନି । ମୋର ପ୍ରଥମ ନାଟକର ଅଭିନୟ ଚାଲିଥାଏ । ଦିନେ ଶୁଣିଲି —ଅଶ୍ୱିନୀ ବାବୁ ଅଭିନୟ ଦେଖିବାକୁ ଆସିଛନ୍ତି । ମନରେ ଯୁଗପତ୍ ଆନନ୍ଦ ଓ ଆଶଙ୍କା । ଆଶଙ୍କା ଏହି କାରଣରୁ ଯେ ଅଭିନୟ ଦେଖିସାରି ସେ କି ମତ ଦେବେ ! ଅଭିନୟ ଶେଷରେ ସାକ୍ଷାତ୍ ହେଲା । ସେ କହିଲେ—ମତାମତ ଚାହଁ ? ମୁଁ ସମାଲୋଚକ ହୋଇଥିଲେ ନିନ୍ଦା ବା ପ୍ରଶଂସା କରିଥା'ନ୍ତି । କିନ୍ତୁ ମୁଁ ତମର ସମଧର୍ମୀ । ତମକୁ ମୋର

ଉପଦେଶ : ପରିସ୍ଥିତି ବିମୁଖ ନ ହେବାଯାଏଁ ନାଟକ ଲେଖାରୁ କେବେ କ୍ଷାନ୍ତ ହେବ ନାହିଁ ।...ତାଙ୍କର ଏ ଉପଦେଶ ପାଳନ କରିବାରେ ମୁଁ ସମର୍ଥ ହେଉଛି କି ନା, ଜାଣେନା—କିନ୍ତୁ ତାଙ୍କର ମହାନୁଭବତା ମୋ' କର୍ତ୍ତବ୍ୟ ପାଳନରେ ମତେ ସବୁବେଳେ ଉଦ୍‌ବୁଦ୍ଧ କରି ଆସିଛି ।

ଯୋଗଜନ୍ମା ଅଶ୍ୱିନୀକୁମାର ତାଙ୍କ ଜୀବଦ୍ଦଶାରେ ତାଙ୍କ ଗ୍ରନ୍ଥାବଳୀର ସଙ୍କଳନ ଦେଖି ପାରିଲେ ନାହିଁ । ଉତ୍ତର କାଳରେ ଏଇ ପ୍ରଚେଷ୍ଟା ତାଙ୍କ ପବିତ୍ର ସ୍ମୃତି ରକ୍ଷାର ଏକ ଅଙ୍ଗ ବୋଲି ମୁଁ ଧରି ନେଉଛି । ସେଇ ଉଦ୍ଦେଶ୍ୟରେ ମୋର ଏ ଶ୍ରଦ୍ଧାଞ୍ଜଳି ।

ଆଲାମଚନ୍ଦ୍ ବଜାର୍, କଟକ
୧୨ । ୬ । ୬୩

ଗୋପାଳ ଛୋଟରାୟ

---

# ନାଟ୍ୟକାର ପ୍ରୟାଣେ

ଶରତର ଏକ କମ୍ର ପ୍ରଭାତୀ-ଲଗନେ,
ଆରକ୍ତ, ପୂର୍ବାଶାବଦନେ, ପୂଷାର ପରଶେ,
ଦିଗ୍‌ବଳୟ ଚୁମ୍ବି ହସି ଦେଖିଲେ ଅରୁଣ
ସଦ୍ୟ-ଜାତ ଶିଶୁ ଏକ ଧରଣୀ ଉରସେ ।
ବାଲାର୍କ ବୋଳିଲେ କର ଶିଶୁର ମସ୍ତକେ,
ଆଶୀର୍ବାଦ କଲେ—ହେବ ଜଗତ ବିଖ୍ୟାତ,
ଶିଶୁର ମସ୍ତକେ ଶୁଭେ ଝରିବ ସୁମନ,
ଜ୍ଞାନ ଓ ପ୍ରତିଭା ଦିନେ ହେବ ବିକଶିତ, ।।
ଦେବତାର ଆଶୀର୍ବାଦ ହେବ କି ଅନ୍ୟଥା ?
ଅସାମାନ୍ୟ ପ୍ରତିଭାର ଅପୂର୍ବ ବିକାଶ,
ନାଟକର ଯୁଗେ ଆଣି ଦେଲା ଯୁଗାନ୍ତର
ଯୁଗସ୍ରଷ୍ଟା ମନୀଷୀର ସଫଳ ଆୟାସ ।।
ନାଟକର ଅଭ୍ୟୁଦୟ, ମଞ୍ଚର ସର୍ଜନା,
ଜୀବନର ବ୍ରତ ହେଲା, ଶତବିଘ୍ନ ବଳି,
ବଳି ଦେଲେ ଧନୀକର ବିଳାସୀ ଜୀବନ,
ନିଃସ୍ୱ ହୋଇ ନିଜେ ଦେଲେ ସର୍ବସ୍ୱ ଅଜାଡ଼ି
ତେବେ ହେଲେ, ସର୍ବହରା ପ୍ରତିଜ୍ଞା ଟଳନ,
ସାଧକର ବ୍ରତ ହେଲା ଜୀବନ ପାଥେୟ,
ଅପବାଦ, ଉପହାସ କରିନ ହତାଶ,
ଲୋଡ଼ି ସେ ନାହାନ୍ତି ଖ୍ୟାତି, ମାନ, ବରାଭୟ ।।
ଲେଖନୀ ମୁନରେ ରଚି ନାଟକର ଭିଡ଼,
କଳାପ୍ରେମୀ ତରୁଣରେ ଦେଲେ ଉଦ୍ଦୀପନା,
"ଅଶ୍ୱିନୀ ଯୁଗ"ର ସୃଷ୍ଟି ଓଡ଼ିଆ ନାଟକେ,
ଓଡ଼ିଆର ବୁକେ ଆଣେ ସ୍ପନ୍ଦିତ କଳ୍ପନା ।।
ପୁରାତନ, ହଜଗଲା ନୂତନ ଆଗମେ,
ପାଶ୍ଚାତ୍ୟର ଭାବଧାରା ହେଲା ବହୁଭୂତ,
ନାଟକର ରୂପରେଖ ଲଳିତ, ମଧୁର—
ମନୋରମ ଶଇଳୀରେ ହେଲା ପ୍ରାଣବନ୍ତ ।।
ଓଡ଼ିଶାର ସୀମା ଲଙ୍ଘି ପଶ୍ଚିମ ବଙ୍ଗରେ,
ଅମଳ ତାଙ୍କର କୀର୍ତ୍ତି ହେଲା ସୁବିଖ୍ୟାତ,
ନାଟ୍ୟ-ରତ୍ନାକର ପୁଣି ନାଟକ-ସମ୍ରାଟ—
ନାଟ୍ୟ-ଭାରତୀ ପଦରେ ହେଲେ ବିମଣ୍ଡିତ ।।
ଆଜ ସେହି ନାଟ୍ୟକାର ଯାଇଛନ୍ତି ଫେରି,
ନିର୍ମମ ଏ ସୃଜନର ଡୋର ଛାଡ଼ି ବଳେ
ନଶ୍ୱର ଶରୀର ତାଙ୍କ ଯାଇଅଛି ମିଶି,
ଭଙ୍ଗୁର ଏ ଧୂସରିତ ଧୂଳି ଧରାତଳେ ।।
ଆହେ ନାଟ୍ୟ-ରତ୍ନାକର, ଆଜ କେଉଁ ଦେଶେ ?
ବିଶ୍ୱର ଏ ଧୂଳିକଣା ପାରିବକି କହି ?
ରତ୍ନହୀନ ନାଟକର ଶୂନ୍ୟ ଗର୍ଭାଧରେ
ସେହିଭଳି ରତ୍ନ ଏକ ପାରିବନି ଦେଇ ?
ଆହେ ପୂଜ୍ୟ, ନାଟ୍ୟରଥୀ ! ଅକ୍ଷୟ, ଅମର,
ଚରଣ କମଳେ ଏ ମୋ ପ୍ରଣିପାତ ଘେନ,
ତୁମରି ଜାତିର ନବ୍ୟ-ନାଟ୍ୟକାର ଶିରେ,
ବରଷନ କରୁ ତୁମ ଆଶିଷ-ସୁମନ ।।

ଆଦରର—'ରୀନା'

( ଲେଖିକା :—କୁମାରୀ କଳ୍ପନା ଘୋଷ, ବି. ଏ., କଟକ )

---

## ଉତ୍କଳ ସାହିତ୍ୟ ସମାଜ

# ପ୍ରଶଂସା ପତ୍ର

———✻———

ସାହିତ୍ୟ ସପ୍ତାହ, ୧୯୪୪

**ଶ୍ରୀ ଅଶ୍ୱିନୀକୁମାର ଘୋଷ ଏମ୍. ଏ ମହାଶୟଙ୍କୁ**

**"ନାଟ୍ୟ-ରତ୍ନାକର"**

ଉପାଧି ପ୍ରଦାନ ଉପଲକ୍ଷେ:—

———✻———

ଏ ଜାତିର ଇତିହାସ ଲେଖନୀ-ବଳରେ
ଭାସ୍ୱର କରିଛ ଶିଳ୍ପି । ମନୋଜ୍ଞ ନାଟକେ
ଚିତ୍ରି କରିଛ ଜୀବନ୍ତ
ସମାଜର ଚିତ୍ର ପୁଣି ଅତି ପ୍ରାଣବନ୍ତ ।

———

ଏ ଜାତି ପକ୍ଷରୁ ଆଜି ହେ ଶିଳ୍ପୀ କର୍ମଠ !
ଗୁଣେ ତୁମ୍ଭ ମୁଗ୍ଧ ହୋଇ ଏହି ବାଣୀ ପୀଠ

**"ନାଟ୍ୟ ରତ୍ନାକର" ପଦ—**

ଅରପଣ କରେ ଅହେ ଗଉରବାସ୍ପଦ ।

ଶ୍ରୀରାମଚନ୍ଦ୍ର ଭବନ,
କଟକ
ତା ୭ । ୮ । ୧୯୪୪

ସଭାପତି—ଶ୍ରୀ ବୀରକିଶୋର ରାୟ
ସମ୍ପାଦକ—ଶ୍ରୀମତୀ ସରଳା ଦେବୀ
ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ

# ଅଭିନନ୍ଦନ ପତ୍ର

## କଳା ସଂସଦ

### ଗଙ୍ଗାଧର ମେହେର କଲେଜ, ସମ୍ବଲପୁର ।

ନାଟ୍ୟରତ୍ନାକର ଶ୍ରୀଯୁକ୍ତ ଅଶ୍ୱିନୀକୁମାର ଘୋଷ ଏମ୍. ଏ. ମହୋଦୟ

ଶ୍ରୀଚରଣ କମଳେଷୁ—

ମହାଶୟ,

ଓଡ଼ିଆ ସାହିତ୍ୟର ଦିଗ୍‌ବଳୟରେ ଆପଣଙ୍କର ଅଭ୍ୟୁଦୟ ଏକ ଐତିହାସିକ ଘଟଣା । ଆପଣ ଏକାଧାରରେ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକ ପ୍ରଣୟନ କରି ଓଡ଼ିଆ ନାଟ୍ୟ-ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଆପଣଙ୍କର ବଳିଷ୍ଠ ପ୍ରତିଭାର ସୁପରିଚୟ ଦେଇ ପାରିଛନ୍ତି । ଦାର୍ଶନିକ-ଚିନ୍ତା ସମ୍ବଳିତ ଆପଣଙ୍କର ଅଭିନବ ଅବଦାନ "ଚଣାକାଳି" ଉପନ୍ୟାସ, ଓଡ଼ିଆ ସାହିତ୍ୟରେ ଏକ ଅପରୂପ ସୃଷ୍ଟି । ଜୀବନର ସାୟାହ୍ନରେ ସୁଦ୍ଧା ଓଡ଼ିଆ ସାହିତ୍ୟର ଉନ୍ନତି କଳ୍ପେ ଆପଣଙ୍କର ନିରବଚ୍ଛିନ୍ନ ସାଧନା ଓଡ଼ିଶାର ଯୁବ ସମ୍ପ୍ରଦାୟକୁ ଚିରଦିନ ଅନୁପ୍ରାଣିତ କରିବ ।

ସମ୍ବଲପୁରବାସୀ ଆପଣଙ୍କ ନିକଟରେ ଚିର କୃତଜ୍ଞ । ସମ୍ବଲପୁରର ଇଷ୍ଟଦେବୀ ସମଲେଇଠାକୁରାଣୀଙ୍କ ମାହାତ୍ମ୍ୟ ପ୍ରଖ୍ୟାପନ କରିବା ସଙ୍ଗେ ସଙ୍ଗେ ସମ୍ବଲପୁରର ଉଚ୍ଚ ପରମ୍ପରା ତଥା ଗୌରବମୟ ଐତିହ୍ୟକୁ ଆପଣ ସ୍ୱୀୟ "ସମଲେଶ୍ୱରୀ" ନାଟକରେ ପ୍ରଥମଥର ପାଇଁ ରୂପାୟିତ କରିଛନ୍ତି । ଏହି ସ୍ଥାନର ମର୍ଯ୍ୟାଦା ବୃଦ୍ଧିପାଇଁ ଅଜକୁ ପ୍ରାୟ ତିରିଶ ବର୍ଷ ତଳେ ଆପଣଙ୍କ ଉଲ୍ଲେଖଯୋଗ୍ୟ ପ୍ରୟାସ ସମ୍ବଲପୁର ବାସୀଙ୍କ ମନରେ ଚିରଦିନ ଅମ୍ଳାନ ହୋଇ ରହିଥିବ ।

ଆପଣଙ୍କ ପରି ଜଣେ ସରଳ, ସଦ୍‌ଗୁଣସମ୍ପନ୍ନ, ସୁନାମଧନ୍ୟ ଓ ନିଷ୍ଠାପର ସାଧକଙ୍କର ସାନ୍ନିଧ୍ୟ ପାଇ ଅମ୍ଭେମାନେ ଅଜି ନିଜକୁ ଗୌରବାନ୍ୱିତ ମଣୁଛୁଁ । ଆପଣ ଅମ୍ଭମାନଙ୍କୁ ଆପଣଙ୍କର ସାନ୍ନିଧ୍ୟଲାଭର ସୁଯୋଗ ଦେଇଥିବାରୁ ଆପଣଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛୁଁ ଯେ ଆପଣ ଅଧିକ ଦୀର୍ଘାୟୁ, ସୁସ୍ଥ ଓ ପ୍ରଫୁଲ୍ଲ ହୋଇ ଦେଶ-ମାତୃକା ତଥା ଜାତୀୟ-ସାହିତ୍ୟର ଉନ୍ନତି ବିଧାନ କରନ୍ତୁ ।

। ଇତି ।

| ସମ୍ବଲପୁର<br>ତା ୯ । ୧ । ୬୦ | ଆପଣଙ୍କର ବିନୟାବନତ<br>**ସମ୍ବଲପୁର ଗଙ୍ଗାଧର ମେହେର କଲେଜ**<br>କଳା ସଂସଦର ସଦସ୍ୟ ବର୍ଗ |
|---|---|

# ଅଭିନନ୍ଦନ ପତ୍ର

## ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

ମାନନୀୟ ଶ୍ରୀଯୁକ୍ତ ଅଶ୍ୱିନୀକୁମାର ଘୋଷ ମହୋଦୟ,

ଆପଣଙ୍କର ସମଗ୍ର ଜୀବନ ଉତ୍କଳ ଭାରତୀଙ୍କର ଆରାଧନାରେ ଯାପିତ ହୋଇଅଛି । କର୍ମମୟ ଜୀବନର ଆରମ୍ଭରୁ ଓଡ଼ିଆ ଭାଷା ଓ ସାହିତ୍ୟର ପୁଷ୍ଟି ବିଧାନ ଲାଗି ଆପଣଙ୍କର ଗଭୀର ଅନୁରାଗିତା ଯେପରି ପ୍ରକଟିତ ହୋଇଅଛି, ସେହିପରି ଆପଣ ଅନବରତ ଲେଖନୀ ଚାଳନା ବଳରେ ସେହି ଆନ୍ତରିକ ଅନୁରାଗର ସାର୍ଥକତା ବାସ୍ତବ କର୍ମକ୍ଷେତ୍ରରେ ପ୍ରଦର୍ଶନ କରିଅଛନ୍ତି । ଓଡ଼ିଶାର ନାଟ୍ୟ ସାହିତ୍ୟର ଯଥୋଚିତ ସମୃଦ୍ଧିର ଅଭାବ ଲକ୍ଷ୍ୟକରି ଆପଣ ସେହି ସାହିତ୍ୟର କଳେବରର ପୁଷ୍ଟିସାଧନ ନିମନ୍ତେ ପ୍ରଗାଢ଼ ଶ୍ରମ ସାଧନା ସ୍ୱୀକାର କରିଅଛନ୍ତି । ଆପଣ ଓଡ଼ିଆ ନାଟ୍ୟ-ସାହିତ୍ୟର ସମୃଦ୍ଧି-ସମ୍ପାଦନ କରିବାକୁ ପ୍ରବୃତ୍ତ ହୋଇ ଜାତୀୟ ଗଣ-ଚେତନାର ସହାୟକ ରୂପେ ଐତିହାସିକ ନାଟକର ସୁରମ୍ୟସୌଧ ନିର୍ମାଣରେ କୃତକାର୍ଯ୍ୟ ହୋଇଅଛନ୍ତି । ଆପଣଙ୍କ ପ୍ରଣୀତ କୋଣାର୍କ, ଉତ୍କଳ-ଗୌରବ, ସ୍ୱପ୍ନ, ଓଡ଼ିଆଝିଅ, କପିଳେନ୍ଦ୍ରଦେବ, ବନ୍ଧୁମହାନ୍ତି ପ୍ରଭୃତି ନାଟକ ଏକ ସମୟରେ ବହୁ ଜନପ୍ରିୟ ହୋଇ ଆପଣଙ୍କ ସାଧନାର ଗୌରବ ବିସ୍ତାର କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ରଙ୍ଗମଞ୍ଚ ରାଜ୍ୟରେ ନୂତନ ସ୍ପନ୍ଦନ ସଞ୍ଚାର କରିଥିଲା । ଐତିହାସିକ ଓ ସାମାଜିକ ନାଟକ ସଙ୍ଗେ ସଙ୍ଗେ ହାସ୍ୟ-ରସପୂର୍ଣ୍ଣ ପ୍ରହସନ ଠାରୁ ଆରମ୍ଭ କରି 'ଜାନକୀ' ପ୍ରଭୃତି ପୌରାଣିକ ଓ ଆଦର୍ଶ ଚରିତ୍ରମୂଳକ ନାଟକ ପ୍ରଣୟନ ପର୍ଯ୍ୟନ୍ତ ବିଭିନ୍ନ ପର୍ଯ୍ୟାୟରେ ଆପଣଙ୍କ ସାହିତ୍ୟିକ ଅଭିରୁଚି ଓ ଅଭିମୁଖ୍ୟ ପ୍ରକାଶ ଲାଭ କରିଅଛି । ଆଜି ଏହି ନିଖିଳ ଉତ୍କଳ ଲେଖକ ସମ୍ମେଳନରେ ଆପଣଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ସାହିତ୍ୟ ଏକାଡେମୀ ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

| | |
|---|---|
| **ଗୌରୀକୁମାର ବ୍ରହ୍ମା** | **ହରେକୃଷ୍ଣ ମହତାବ** |
| ସମ୍ପାଦକ | ସଭାପତି |
| ୨୫-୧୨-୭୧ | ୨୫-୧୨-୭୧ |

# ଅଶ୍ୱିନୀକୁମାର ଗ୍ରନ୍ଥାବଳୀର

## ସୂଚିପତ୍ର

### —ପୌରାଣିକ ବିଭାଗ—



### —ଐତିହାସିକ ବିଭାଗ—



ଆବିର୍ଭାବ
ଫାଲ୍ଗୁନ ୨୫, ୧୨୯୯ ସାଲ
ରବିବାର, ଶୁକ୍ଳାଷ୍ଟମୀ

ଅଶ୍ୱିନୀ କୁମାର ଘୋଷ

ତିରୋଧାନ
ଜ୍ୟେଷ୍ଠ ୭, ୧୩୬୯ ସାଲ
ଶନିବାର, ବୁଦ୍ଧ ପୂର୍ଣ୍ଣିମା

# ଭୂମିକା

'ଖ୍ରୀଷ୍ଟ' ଅଶ୍ୱିନୀ ବାବୁଙ୍କର ପ୍ରଥମ ନାଟ୍ୟ ରଚନା । ୧୯୧୫ ମସିହାରେ ରଚିତ ଏହି ନାଟକ କଟକ ରେଭେନ୍‌ସା କଲେଜରେ ସେହି ବର୍ଷ ପ୍ରଥମ ଥର ପାଇଁ ଅତି ସାଫଲ୍ୟର ସହିତ ଅଭିନୀତ ହୁଏ । ଓଡ଼ିଆରେ ଅମିତ୍ରାକ୍ଷର ଛନ୍ଦରେ ପ୍ରଥମ ରଚିତ ଏହି ନାଟକ ତତ୍‌କାଳୀନ ସର୍ବଶ୍ରେଣୀର ଦର୍ଶକଙ୍କ ମନରେ ବିସ୍ମୟ ଓ ପୁଲକ ସଞ୍ଚାର କରିଥିଲା । ସେମାନେ ଯୁବକ ନାଟ୍ୟକାରଙ୍କର ପ୍ରତିଭାରେ ମୁଗ୍ଧହୋଇ ତାଙ୍କୁ ଅକୁଣ୍ଠ ଆଶୀର୍ବାଦରେ ଭୂଷିତ କରିଥିଲେ । ସେହି ଆଶୀର୍ବାଦହିଁ ପରବର୍ତ୍ତୀ କାଳରେ ବିଭିନ୍ନ ଧରଣର ନାଟକ ରଚନାରେ ଅଶ୍ୱିନୀ ବାବୁଙ୍କୁ ପ୍ରବୃଦ୍ଧ କରିଥିଲା ।

ସେହି ସମୟର ଓଡ଼ିଶାର ଏକମାତ୍ର ବ୍ୟବସାୟୀ ନାଟ୍ୟ-ଦଳ, ପୁରୀର ଶ୍ରୀରାଧାକୃଷ୍ଣ ଥିଏଟର, ଯେଉଁ କେବଳ ବଙ୍ଗଳାରୁ ଅନୁବାଦ କରି ଅଭିନୟ କରୁଥିଲେ ସେମାନେ ମଧ୍ୟ 'ଖ୍ରୀଷ୍ଟ' ନାଟକର ସାଫଲ୍ୟ ଦେଖି ଏବଂ ନୂତନତ୍ୱରେ ମୁଗ୍ଧ ହୋଇ ତାକୁ ଧାରାବାହିକ ଭାବେ ମଞ୍ଚସ୍ଥ କରିବାରେ ବ୍ରତୀ ହୋଇଥିଲେ ।

**ପ୍ରକାଶକ**

---

# ଉତ୍ସର୍ଗ ପତ୍ର

ଏ ପୁସ୍ତକ ଖଣ୍ଡି
ପିତୃଭକ୍ତିର ପରାକାଷ୍ଠା ପ୍ରଦର୍ଶନ ହେତୁ ମୋର
ପରମାରାଧ୍ୟ ସ୍ୱର୍ଗତ ପିତୃଦେବ
ଅକ୍ଷୟକୁମାର ଘୋଷଙ୍କ
ଶ୍ରୀଚରଣକମଳୋଦ୍ଦେଶ୍ୟରେ
ସ୍ମୃତି ଓ ଭକ୍ତିନିଦର୍ଶନ ସ୍ୱରୂପ
ଉତ୍ସର୍ଗୀକୃତ
ହେଲା ।

ଅଯୋଗ୍ୟ ପୁତ୍ର
ଅଶ୍ୱିନୀକୁମାର

# —ଚରିତ୍ର ଲିପି—

**ପୁରୁଷ**

ଶାନ୍ତନୁ ... ହସ୍ତିନାର ରାଜା
ଲମ୍ବୋଦର ... ଶାନ୍ତନୁଙ୍କ ବୟସ୍ୟ
ଦେବବ୍ରତ (ଭୀଷ୍ମ) ... ଶାନ୍ତନୁଙ୍କ ପୁତ୍ର
ବଶିଷ୍ଠ ... ରାଜଗୁରୁ
ଦାସରାଜ ... କୈବର୍ତ୍ତରାଜ

ମନ୍ତ୍ରୀ, ସଭାସଦ୍‌ବର୍ଗ, ବ୍ରାହ୍ମଣଗଣ, ନାଗରିକଗଣ ଓ ଭୀଷ୍ମର ସହଚର ଗଣ ।

**ସ୍ତ୍ରୀ**

ଗଙ୍ଗାଦେବୀ
ଦାସରାଜ ପତ୍ନୀ ... କୈବର୍ତ୍ତରାଜ ପତ୍ନୀ
ସତ୍ୟବତୀ ... କୈବର୍ତ୍ତରାଜ କନ୍ୟା (ଶାନ୍ତନୁଙ୍କ ପତ୍ନୀ)
ସୁରୁଚି ... ଗଙ୍ଗାଙ୍କ ସହଚରୀ

ଜଳଦେବୀଗଣ, ସଖିଗଣ, ସତ୍ୟବତୀସଙ୍ଗିନୀଗଣ, ଲମ୍ବୋଦରପତ୍ନୀ ।

---

## ପ୍ରସ୍ତାବନା

ଆସ ଗୋ ଆନନ୍ଦେ ଗାଇବା ସେ ନାମ
ଯେ ନାମେ ଭୁବନ ମଣିଛି ଧନ୍ୟ !
ନାମର ମହିମା ଶ୍ରବଣେ ଦେଖ ଲୋ
ତାରକା ଉଜ୍ଜ୍ୱଳ ହୋଇଛି ମ୍ଳାନ ।
ସ୍ୱାର୍ଥ ବର୍ଜ୍ଜନ, ଇନ୍ଦ୍ରିୟ ଦମନ
ଭକତ ପ୍ରେମରେ ପୂରିତ ମନ,
ଦିବ୍ୟ ଆଲୋକେ ଆଲୋକି ଯାହାଙ୍କୁ
ଦେଇଛି ସ୍ୱଲୋକ-ଦୁର୍ଲଭ ସ୍ଥାନ ।
ବୀର ଅଗ୍ରଣୀ, ଧାର୍ମିକ ପ୍ରବର,
ଯା'ସମ ନୁହନ୍ତି ଅମରଗଣ,
ମର୍ତ୍ତ୍ୟ ଆଦର୍ଶ ପ୍ରେରିତ ଆଜ୍ଞା
ଯେ ଭାବେ ଗଢ଼ିବା ଆପଣା ପ୍ରାଣ ।

---

# ଭୀଷ୍ମ



## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ଗଙ୍ଗାତୀର )

ଶାନ୍ତନୁ ଓ ବୟସ୍ୟ ।

( ଶାନ୍ତନୁ ଧନୁର୍ବାଣହସ୍ତରେ ବୟସ୍ୟ ସହିତ ଗଙ୍ଗାତଟର ଏକ ଦେଶରେ ଛିଡ଼ା ହୋଇ ଗଙ୍ଗାଶୋଭା ପରିଦର୍ଶନ କରୁଥିବା )

ଶାନ୍ତନୁ—ଦେଖ ବନ୍ଧୋ !
କି ସୁନ୍ଦର ଏହି ହିମାଦ୍ରିନନ୍ଦିନୀ—
ତ୍ରିଲୋକପାବନୀ ନଦୀ ମନ୍ଦାକିନୀ,
ମନ୍ଦମନ୍ଦହିଲ୍ଲୋଳିତପୁଣ୍ୟତୋୟବକ୍ଷା,
ପ୍ରସାରିତା କୁଞ୍ଚିତ କୁନ୍ତଳସମ
ଦେବ-ପ୍ରସବିନୀ ଏ' ଭାରତ ପୃଷ୍ଠେ !
ଆସ ବନ୍ଧୋ ! ସିଞ୍ଚି ଏହି ପାପଗାତ୍ରେ,
ପୂତଜଳ ଜାହ୍ନବୀର,
ପ୍ରକ୍ଷାଳିବା ପାପରାଶି ବାହାରୁ ଅନ୍ତରୁ,
ଯେସନେ ପ୍ରକ୍ଷାଳିଥିଲେ ପୂର୍ବକାଳେ,
ଭସ୍ମମାତ୍ରଶେଷ ପିତୃପୁରୁଷ ଆମ୍ଭର ।

ବୟସ୍ୟ—ମହାରାଜ ! ଭବାନ୍‌ଗଙ୍ଗା—ଆମ୍ଭର ଦରକାର ନାହିଁ । ଦେହ ହାତ ତ ଟିକିଏ ମଇଳା ହୋଇ-ନାହିଁ ।—ଅନ୍ତର ମଇଳା କଣ ମୂଲେଇବାକୁ ଯିବୁଁ ?

ଶାନ୍ତନୁ—ଆହା ବନ୍ଧୋ ! କି କର, କି କର ?
ନ ନିନ୍ଦ, ନ ନିନ୍ଦ, ପୂଜ୍ୟଚରଣାରବିନ୍ଦା,
ପାପତାପହାରିଣୀ ବାରୁଣୀଙ୍କୁ ଏସନ ।
ବୁଝିଛି ମୁଁ,
ପଙ୍କିଳାବରଣ ଦରଶନେ ତବ,
ଭାବ ଉପୁଜେ ଅନ୍ତରେ;—
କିପରି କୁତ୍ସିତଦୃଶ୍ୟ ବସ୍ତୁ ଏହି,
କୁତ୍ସିତବିନାଶୀ ବୋଲି ବିଖ୍ୟାତ ଭୁବନେ ?

ବୟସ୍ୟ—ଆଜ୍ଞା, ମହାରାଜ ! ସେହି କଥା ।

ଶାନ୍ତନୁ—କିନ୍ତୁ, ଏହି ଦୀନହୀନଭାବ ବନ୍ଧୋ !
ଯାହା ଦେଖୁଛ ନୟନେ,
ମହତ୍ତ୍ୱର ପରିଚୟ ମାତ୍ର ଅଟଇ ଅନ୍ତରେ ।
ହୀରକ କି ଗର୍ବଭରେ କେବେ
ମୂଢ଼ମତି ଜନ ସମ ବିକାଶଇ ପ୍ରଭା ?—
ରହିଥାଏ ସଦା ଭସ୍ମଲିପ୍ତଯୋଗିସମ,
ଲୋଭମୋହାଦି-ଅନ୍ତରୁ ପାର୍ବତ୍ୟ ପ୍ରଦେଶେ,
ଯେହ୍ନେ ସାମାନ୍ୟ ଉପଲଖଣ୍ଡ;
ସେହି ଜ୍ଞାନେ,
ସାଧାରଣ ପ୍ରାଣେ ଯେବେ କରନ୍ତି ଉପେକ୍ଷା,
ହସୁଥାଏ ନରଶ୍ରେଷ୍ଠ ମୁରୁକ ମୁରୁକି;—
"ହାୟ ! କି ମୂଢ଼ମତି ଏ' ମନୁବଂଶଧର ।
ବାହ୍ୟାମୋଦେ ସର୍ବଦା ରହଣି ମାତ୍ର,
ଅନ୍ତର୍ଲିପ୍ତ ଗୂଢ଼ତଥ୍ୟ ନ ପାରନ୍ତି ବୁଝି ।"

ବୟସ୍ୟ—ଏଁ, ଆମେ କଣ ତେବେ ମୂଢ଼ ?

ଶାନ୍ତନୁ—( ସ୍ୱଗତ ) ଅଥବା ଅବଳ ବର୍ତ୍ତ ଏହି
ଲଭିଛନ୍ତି ସ୍ୱଚ୍ଛନୀର ଭାଗୀରଥୀ ଆଜି—
ଫଳ କି ଅଛି ସେ ମାତ୍ର ପାପସ୍ପର୍ଶର ଆମ୍ଭର—
ହାୟ ! କି ଅଧମ ତେବେ ମର୍ତ୍ତ୍ୟବାସୀ ଆମ୍ଭେ !
କରିପାରୁଁ, ସ୍ପର୍ଶ ମାତ୍ରେ, ପବନାପବନ ॥
ଅଲୋକାନ୍ଧକାର ! ସ୍ୱର୍ଗଖଣ୍ଡ ମୃତଖଣ୍ଡ ।

ବୟସ୍ୟ—(ସୋଦ୍‌ବେଗେ) ମହାରାଜ ! ଏଣେ ଥରେ ଅବଲୋକନ କରନ୍ତୁ ।

ଶାନ୍ତନୁ—( ଦେଖି ) ଏ କଣ ?

ବୟସ୍ୟ—ଆରେ ବାପ୍‌ରେ, ମହାରାଜ ! ଭବାନ୍ ଆଗେ ପଳାଇ ଆସନ୍ତୁ, ପଳାଇ ଆସନ୍ତୁ । ହେ ମା ଜାହ୍ନବୀ ! ଭାଗୀରଥି ! ଶତକୋଟି ପ୍ରମାଣ କରୁଛି ରାଗଂ ସମ୍ଭାଳଂ କରୁ, ରାଗଂ ସମ୍ଭାଳଂ କରୁ—ଆରେ ବାପ୍‌ରେ—

( ଦ୍ରୁତବେଗରେ ନିଷ୍କ୍ରାନ୍ତ )

ଶାନ୍ତନୁ—ଏ କି ଭୟଙ୍କର ଦୃଶ୍ୟ !

ଉଦ୍‌ବେଳିତ କାହିଁକି ସହସା,
ବାତ୍ୟାକ୍ଷୁବ୍‌ଧବାରିଧିସମାନ,
ଶାନ୍ତିର ନିଳୟ ଭାଗୀରଥୀ ଆଜ ?
( ଅଙ୍ଗୁଳି ବଢ଼ାଇ ) ଓଃ, କି ଭୀଷଣ ଭାବେ,
ଫେଣମଣ୍ଡିତସଲିଲସ୍ତୂପ ଏକ
ଆସୁଛି ଯେଉଁ କି ହିମ—ଶୈଳଖଣ୍ଡ !
ପୁଣି କ୍ରୋଧେ, ବେଗେ ଯଥା—
ଅବଜ୍ଞାପ୍ରି ପ୍ରକୃତିବିଧାନ,
ଭାଙ୍ଗି, ଉଡ଼ି ନେବ ନିଖିଳ ଭୂତଳଖଣ୍ଡ,
ଯାଏଁ ଘୁଞ୍ଚି ମୁହିଁ ପ୍ରଣମି ଚରଣେ ।
(ପୁନର୍ବାରଦେଖି) କଣ ଏ ?
କାହିଁ ସେ ସଲିଳ ସଞ୍ଚାର ?
କାହିଁ ବା ସେ ଉଚ୍ଛ୍ୱାସ ଭୀଷଣ ?
ପରିବର୍ତ୍ତେ,
ଅଲୌକିକ ଜ୍ୟୋତି
ଉଦ୍ଭାସିତ ଦେଖେଁ ଏବେ ଭାଗୀରଥୀବକ୍ଷେ ।
କି ଉଜ୍ଜ୍ୱଳ !
ପ୍ରଳୟାନ୍ତେ, ବିଶ୍ୱବିଧାନକରତା,
ନିବିଡ଼ଦୁର୍ଭେଦ୍ୟତାମସାନ୍ତକାରୀ—
ନବରବିପ୍ରସୂତ ପ୍ରଭା କି ଥାଇ,
ବିତରନ୍ତି ଉଦାର ହୃଦୟେ ?
ଅଥବା ଦେଖୁଛି,—
ଘୋରକୃଷ୍ଣଘନକ୍ରୀଡ଼ାମତ୍ତ—
କ୍ଷଣପ୍ରଭାପ୍ରତିଦ୍ୱନ୍ଦୀଭାବେ,
ସ୍ୱର୍ଗ, ମର୍ତ୍ତ୍ୟ ଆଚ୍ଛାଦ ଉଜ୍ଜ୍ୱଳ କରେ,
ବାରପ୍ରଭା ଉଦିତ ହୁଅନ୍ତି କିମ୍ବା ?

( ସାଶ୍ଚର୍ଯ୍ୟେଦେଖି ) ଏ ପୁଣି କି ଜ୍ୟୋତି-ସ୍ତମ୍ଭ !
( ଗଙ୍ଗା ଦେବୀଙ୍କର ଆବିର୍ଭାବ ) ଝଲସିଯାଏ
ଯେ ଅକ୍ଷିଯୁଗ୍ମ ମୋର,
ନ ପାରେ ମୁଁ ଚାହିଁ—ଯାଏଁ ଘୁଞ୍ଚି ଦୂରେ !
( ଆଖି ଫେରାଇ ବେଗେ ନିଷ୍କ୍ରାନ୍ତ )
( ଜଳଦେବୀମାନଙ୍କର ନାନାସ୍ଥାନରୁ ଉତ୍‌ଥାନ ପୂର୍ବକ କରଯୋଡ଼ି ସ୍ତୁତି )

ଜଃ ଦେଃ—　　　( ଗୀତ )

ଆସ ମା ସୁରଧୁନି ! ପତିତପାବନୀ,
　　ସୁରଧାମ ତ୍ୟଜି ଅସୁର ଲୋକେ,
କରୁଣା ସିନ୍ଧୁ, ବିତର ଶାନ୍ତି,
　　ଅନନ୍ତଲହରୀ ଉଚ୍ଛୁଳି ଶୋକେ !
ଦେଖ ଗୋ ଜନନି ! ଫେରାଇ ନୟନ,
　　ପୁଲକିତ କେଡ଼େ ଚରାଚର ଗଣ,
କେହୁ ବା ନାଚୁଛି, କେହୁ ବା ଗାଉଛି,
　　ସୁଧା ପିଇ କିବା ତବ ପୁଣ୍ୟଲୋକେ ।
ଅଧମ ସନ୍ତାନ, ସିଦା ଜ୍ଞାନହୀନ,
　　ନ ଜାଣେ ବିଧାନ, ପୂଜିବ ଚରଣ,
ଭକ୍ତି ପ୍ରେମସାର, ଡାଲି ଉପହାର,
　　ଭ୍ରମଇଁ ଉନ୍ମାଦେ ତବ ଚରଣଦରେ ।

ଗଙ୍ଗା—ଏହୁ କି ସେ ମର୍ତ୍ତ୍ୟପୁରୀ ?
ପ୍ରବାହିତ ଯହିଁ ମମ
ତୋୟରୂପୀ ତେଜପୁଞ୍ଜ, ଜୀବୋଦ୍ଧାର ଲାଗି ।
ତଥାପି ମୁଁ,
କି ଭମିରାଛନ୍ନ ! କି ଦୁର୍ଗନ୍ଧମୟ !—
ଦେଖୁଅଛି ଚତୁର୍ଦ୍ଦିଗ ।
ହାୟ ! କେମନ୍ତେ ଯାପିବି ଦୀର୍ଘକାଳ,
ଛାଡ଼ି ସେହି ନିର୍ମଳ ଆଲୋକ,
ପାରିଜାତ ଗନ୍ଧ ପୁଣି,
ଦୁଃସହ ନରକ ହୀନ ଏହି
ଦେବଶୂନ୍ୟ ବାସେ ?—
ଦଣ୍ଡେ ତିଷ୍ଠି ଯହିଁ,
ଶ୍ୱାସରୋଧେ ପ୍ରାଣ ମୋର ହେଉଛି ଅକୁଳ ।

( ଅନନ୍ତର ଗଙ୍ଗାଦେବୀ କୂଳକୁ ଆସି ବିଚରଣ କରିବାକୁ ଲାଗିଲେ ଓ ଶାନ୍ତନୁ ସାଶ୍ଚର୍ଯ୍ୟନୟନରେ ଧୀରେ ଧୀରେ ପ୍ରବେଶ କଲେ । )

ଶାନ୍ତନୁ—( ସ୍ୱଗତ ) କିଏ ଏହି ନାରୀ ?
ଅପ୍‌ସରୀ କି ଗନ୍ଧର୍ବୀ ସେ ?
ଅଥବା ଜାହ୍ନବୀ ନିଜେ ଶରୀରିଣୀ ଏବେ ।
ସେ କି ବିକାର ଚିତ୍ତର ମୋର ?
ଦୃଷ୍ଟିମାତ୍ରେ ଯେହ୍ନେ,
ସଂଯତ ଇନ୍ଦ୍ରିୟ ମୋର ଉନ୍ମୁକ୍ତ ସହସା !
କି କରିବି ? କେମନ୍ତେ ମୁଁ ସହିବି ଉଦ୍‌ବେଗ ?
( ପ୍ରକାଶ୍ୟେ )—ହେ ସୁନ୍ଦରି !
ଦେବୀ, ଗନ୍ଧର୍ବୀ, କିନ୍ନରୀ, ଅଥବା ମାନବୀ,
ଯେ ଅବା ସେ ହୁଅ ତୁମ୍ଭେ,
ଶାନ୍ତନୁ ଅଧମ,
ପାଦତଳେ ତବ, ପୂଜ୍ୟେ, ନେଉଛି ଶରଣ !

ଗଙ୍ଗା—( ସ୍ୱଗତ ) ଏହିତ,
ଧାର୍ମିକଶ୍ରେଷ୍ଠ ଶାନ୍ତନୁ ଭୂପତି !
(ପ୍ରକାଶ୍ୟେ)—ହେ ନୃପତି ! ଉଠ, ଉଠ—
ମୁହିଁ ତବ ଦର୍ଶନ ପ୍ରାର୍ଥିନୀ ।

ଶାନ୍ତନୁ—( ସାଶ୍ଚର୍ଯ୍ୟେ ) ମୋର ଦର୍ଶନ ପ୍ରାର୍ଥିନୀ

ଗଙ୍ଗା—ହଁ—ନୃପେନ୍ଦ୍ର ! ତବ ଦର୍ଶନ ପ୍ରାର୍ଥିନୀ ମୁହିଁ ।
ଶୁଣ ଏବେ—
ଧର୍ମଭାବେ ତବ ହୋଇଣ ସନ୍ତୁଷ୍ଟା,
ଆସିଅଛି ଅଭିସାରିକା ରୂପରେ,
ତବ ପତ୍ନୀ ହେବା ଆଶେ ।

ଶାନ୍ତନୁ —( ସ୍ୱଗତ ) ମୋର ପତ୍ନୀ !
ସତ୍ୟ ସତ୍ୟ କି ଏତେ ସୌଭାଗ୍ୟ ମୋର—
ଧରି ସ୍ଥିର ମାନବ ଶରୀର,
ପବିତ୍ର ଦେବତାବପୁ କରିବି ମୁଁ ଆଲିଙ୍ଗନ ?
ନା—ନା—ଛଳନା ମାତ୍ର !
( ପ୍ରକାଶ୍ୟେ )—ଦେବୀ !
କିପାଇଁ ଛଳନା ଏହି ପାପିର ସହିତେ ?

ଗଙ୍ଗା—ନା—ନୃପେନ୍ଦ୍ର ! ନୁହେଁ କଦାପି ଛଳନା,
ବାସ୍ତବରେ ଅନୁଗତା ହେବାକୁ ତୁମ୍ଭର,
ଆସିଛି ସ୍ୱେଚ୍ଛାରେ ମୁହିଁ ।

ଶାନ୍ତନୁ—( ସ୍ୱଗତ ) କି ଭାଗ୍ୟବାନ୍ ମୁଁ !
( ପ୍ରକାଶ୍ୟେ )—ଦେବୀ ! ପରିଚୟ ତବ— ?

ଗଙ୍ଗା—ନା—ରାଜେନ୍ଦ୍ର ! ସେ ପ୍ରଶ୍ନ ନ କର ମୋତେ;
କହିପାରେଁ ଏତିକି କେବଳ,
ତବ ଯୋଗ୍ୟା ମୁହିଁ ।

ଶାନ୍ତନୁ—(ସ୍ୱଗତ) ଆଜ କି ଆଶଙ୍କା ତେବେ ରହିଲା ମୋହର !

ଗଙ୍ଗା—ମହାରାଜ ! ଅଛି କିନ୍ତୁ ଏକ ଭିକ୍ଷା ମୋର—

ଶାନ୍ତନୁ—ଭିକ୍ଷା ତବ ! ମୋହଠାରେ ! ଅସମ୍ଭବ !—
ତେବେ ଆଦେଶନ୍ତୁ, ଆର୍ଯ୍ୟେ,
ଯେଉଁ କାର୍ଯ୍ୟେ ଅଭିରୁଚି ତବ,
ସାଧିବି ଅଚିରେ ଏହିକ୍ଷଣି ମୁହିଁ ।

ଗଙ୍ଗା—ଶୁଣନ୍ତୁ ରାଜେନ୍ଦ୍ର ! ନିବେଦନ କରେଁ ;—
ପରିଣୀତେ ମୋର ଯେବେ ଥାଏ ରୁଚି ତବ,
ଏହି ପ୍ରତିଜ୍ଞା କରନ୍ତୁ, ଏ'କ୍ଷଣି ଏଠାରେ,—
ପ୍ରିୟ କାର୍ଯ୍ୟେ କଦା ମୋର, ନାହିଁ ଦେବେ ବାଧା ।

ଶାନ୍ତନୁ—ସାନନ୍ଦରେ, ଆର୍ଯ୍ୟେ ! କରୁଛି ପ୍ରତିଜ୍ଞା !

ଗଙ୍ଗା—କିନ୍ତୁ, ନିଶ୍ଚେ ଜାଣ ପ୍ରିୟତମ !
ଯେଉଁ ମୁହୂର୍ତ୍ତିରେ ଏହି ପ୍ରତିଜ୍ଞା ବିଘ୍ନନୁ,
ହେବେ ବିଚଳିତ,
ମୋହର ଦର୍ଶନ ଆଉ ନ ଲଭିବେ କେବେ ।

ଶାନ୍ତନୁ—ପୁଣି କରୁଛି ପ୍ରତିଜ୍ଞା, ଅଗ୍ନି ସାକ୍ଷ୍ୟକରି,—
ଯାବତ ପିଣ୍ଡରେ ଏହି,
ପ୍ରାଣବାୟୁ ପ୍ରିୟେ ! ହେଉଥିବ ପ୍ରବାହିତ,
ପ୍ରିୟ କି ଅପ୍ରିୟ କାର୍ଯ୍ୟେ ତବ,
କଦାଚନ ନ ହେବି ବାଧକ ।

ଗଙ୍ଗା—ଚାଲ ଏବେ, ଯଥା ଇଚ୍ଛା ତବ ।

ଶାନ୍ତନୁ—( ସ୍ୱଗତ ) କି ଭାଗ୍ୟବାନ ମୁଁ !—
ପାଇଛି ଅମୂଲ୍ୟ ରତ୍ନ ଆଜ ଶିକାର ସନ୍ଧାନୁ !
କିନ୍ତୁ, ବଡ଼ ରହିଲା ଉଦ୍‌ବେଗ-କିଏ ଏହି ନାରୀ ?
ତ୍ୟଜିଗଲେ ଜାହ୍ନବୀ କି ଆଉ ମୋହର କାରଣ ?
( ପ୍ରକାଶ୍ୟେ )—ଆସ ପ୍ରିୟେ !

(ଉଭୟେ ନିଷ୍କ୍ରାନ୍ତ ହେବା ସମୟରେ ସାରଥି ଓ ପରିଜନଗଣଙ୍କର ପ୍ରବେଶ । ପରିଜନବର୍ଗ ରାଣୀଙ୍କୁ ଦେଖି ଆପଣା ମଧ୍ୟରେ ଠାରଠାରି ହେଉଥିବା)

ସାରଥି—ଏହି ଯେ ନୃପେନ୍ଦ୍ର ।

ଶାନ୍ତନୁ—ସାରଥି ! ବୟସ୍ୟ କାହାନ୍ତି ?

ସାରଥି—ମହାରାଜ ! ପଣ୍ଡିତେ ଏକାବେଳକେ କଣ୍ଠାଗ୍ରତପ୍ରାଣ; ଆପଣ ବିପଦରେ ପଡ଼ିଛନ୍ତି ବୋଲି ସେ ଆପଣ ଆମ୍ଭମାନଙ୍କୁ ଏଣେ ପଠାଇ ଦେଇ ରଥ କୋଣରେ ଯାଇ ଲୁଚି ରହିଛନ୍ତି ।

ଶାନ୍ତନୁ—[ ହୋଃ ହୋଃ କରି ହାସ୍ୟାନ୍ତର ] ଭାରି ସାହସୀ ତ ! ପରିଜନବର୍ଗ ! ତୁମ୍ଭେମାନେ ନଗରକୁ ଯାଇ ବର୍ତ୍ତମାନ ଘୋଷଣା କରିଦିଅ ଯେ, ରାଜା ଗାନ୍ଧର୍ବମତରେ ବିବାହିତ ହୋଇ ରାଣୀଙ୍କୁ ନେଇ ଆସୁଅଛନ୍ତି । ତାଙ୍କର ଯଥାଯୋଗ୍ୟ ଅଭ୍ୟର୍ଥନା ସକାଶେ ସମସ୍ତେ ଆସି ରାଜ୍ୟପ୍ରାନ୍ତରେ ଉପସ୍ଥିତ ହେବେ—ବିବାହୋତ୍ସବ ଆଜିଠାରୁ ୧୫ ଦିନ ପର୍ଯ୍ୟନ୍ତ ହେବ ।

(ରାଜାଙ୍କର ରାଣୀଙ୍କ ଅଗ୍ରେ ଅଗ୍ରେ ପ୍ରସ୍ଥାନ, ତତ୍ପର ଅନ୍ୟମାନଙ୍କ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ରାଜପଥ )

ଲମ୍ବୋଦରର ପ୍ରବେଶ ।

ଲମ୍ବୋଦର—ବାହାଘର, ବାହାଘର ଓଃ ହୋଃ ରେ ଗୁରୋଟି ଅକ୍ଷର ! ଏତ ନୁହେଁ, ଗୋଟିଏ ଗୋଟିଏ ଅକ୍ଷର—ଯେମନ୍ତ କି ମଣ୍ଡା ମିଠାଇର ଭଣ୍ଡାର, ମନେ କଲେ ରସନାରୁ ଟଂରେ ରସ ଟଂର ଟଂର—ଆମ୍ଭର ନାମ ତ ଲମ୍ବୋଦର—ବୟସ୍ୟ ଖୋଲିଦେଲେ ମିଷ୍ଟାନ୍ନଭଣ୍ଡାର—ରାଣୀ ମା ଦେଖି ହେଲେ ହରବର—କାର୍ଯ୍ୟରେ ବି ଆମ୍ଭେ ଲମ୍ବୋଦର । ଯାହାହେଉ ପିତୃପିତାମହଙ୍କ ନାମ ରଖିବାଟା ଆମ୍ଭର କର୍ମ ଗୁଣରେ ସାର୍ଥକ ହେଲା । ରାଣୀମା—ଆହା ! ସାକ୍ଷାତ୍ ଯେମନ୍ତ ଅନ୍ନପୂର୍ଣ୍ଣା । ତାଙ୍କର ଆସିବା ଦିନଠୁଁ ବିନା ବୋଝରେ ଘରକୁ ଆଉ ଫେରିବାକୁ ହେଉନି ନାହିଁ ।

[ ଦୁଇଜଣ ବ୍ରାହ୍ମଣଙ୍କ ପ୍ରବେଶ । ]

୧ମ ବ୍ରାହ୍ମଣ—ଓଲଟେ ଲମ୍ବୋଦର ମହାଶୟ !

୨ୟ ବ୍ରାହ୍ମଣ—ଓଁଲଟେଁ ଦଁର୍ଗଁଜ ମଁହାଁଶଁୟଁ !

ଲମ୍ବୋ—(ସ୍ୱଗତ) ଦେଖ ତ, ଈଶ୍ୱରଙ୍କର କି କପଟ ! ଯେଉଁମାନଙ୍କ ଉପରେ ଆମ୍ଭେ ବେଶି ବିରକ୍ତ, ସେହିମାନଙ୍କୁ ଆଣି ଆମ୍ଭ ସମ୍ମୁଖରେ ବେଶି ଶକ୍ତ କରି ଛିଡ଼ା କରାନ୍ତି; ଏଥିରେ ଭଲା ଈଶ୍ୱରଙ୍କ ଆରାଧନା କଣ କରିବା ?

୧ମ ବ୍ରାହ୍ମଣ—ପଣ୍ଡିତେ ! ଛିଡ଼ା ହୋଇ କରି କରି କଣ ଭାବୁଛନ୍ତି କି ?

ଲମ୍ବୋ—ନାହିଁ ହେ, ପେଟରେ ପଶ ନାହିଁ, ଆମ୍ଭେ ଖିରି କଥା କଣିକାଏ ସୁଦ୍ଧା ଭାବୁ ନାହୁଁ ।

୨ୟ ବ୍ରାହ୍ମଣ—ଖିଁରିଁ କଁଥାଁ ଭାଁବୁଁ ନାଁହଁ ଯେବେଁ ପାଁଟିଁରୁଁ ଲାଁଳଁ ବଁହୁଁଛିଁ କାହିଁକି ?

୧ମ ବ୍ରାହ୍ମଣ—ଦିଗ୍‌ଗଜ ! ବାହାଘର ଖିରି କଥା ମନେ ପଡ଼ି ଯାଉଛନ୍ତି କି ? ( ଲମ୍ବୋଦର ଅନ୍ୟ ଆଡ଼େ ମୁହଁ ଲାଳ ପୋଛିବା )

୨ୟ ବ୍ରାହ୍ମଣ—( ଟେରେଇ ମୁହଁ ) ଦେଁଖଁ ହେଁ ବଁଦ୍ୟାଁ ନଁନାଁ ! ପଁଣ୍ଡିଁତେଁ ଲୁଁଚେଇଁ ଲୁଁଚେଇଁ କଁଣଁ କଁରୁଁଚନ୍ତିଁ ।

୧ମ ବ୍ରାହ୍ମଣ—ଇଏ କଣ ପଣ୍ଡିତେ ? ଟିକିଏ ସମ୍ଭାଳି ପାରୁନାହାନ୍ତି !

ଲମ୍ବୋ—କଣ ସମ୍ଭାଳିବୁ ? ଆମ୍ଭେ କଣ କରୁଛୁଁ କି ? କହନ୍ତୁ ଆପଣମାନେ ସମ୍ଭାଳି ପାରୁନାହାନ୍ତି ?

୧ମ ବ୍ରାହ୍ମଣ—ଅଚ୍ଛା ଆମ୍ଭର ଭାଇଲ୍ ।

୨ୟ ବ୍ରାହ୍ମଣ—ଆଁମଁରିଁ କେଁମଁତିଁ ଭାଇଁଲ୍ଁ ବଁଦ୍ୟାଁ-ନଁନାଁ ?

୧ମ ବ୍ରାହ୍ମଣ—ରହ ହେ ! ଅଚ୍ଛା ପଣ୍ଡିତେ, ଗୋଟିଏ ପ୍ରଶ୍ନ କରିପାରିବି କି ?

ଲମ୍ବୋ—କି ପ୍ରଶ୍ନ ? କିନ୍ତୁ ସାବଧାନ, ଶାସ୍ତ୍ରନୟମାନୁ-ଯାୟୀ ଯେପରି ହୁଏ ।

୧ମ ବ୍ରାହ୍ମଣ—ପଣ୍ଡିତେ, ଆମେ ଯେତେହେଲେ ମୂର୍ଖ-ଲୋକ, ଦୋଷାଦୋଷ ଧରିଲେ କି ଆଉ ଚଳିବ ?

୨ୟ ବ୍ରାହ୍ମଣ—କାଁ, ଅାଁମେଁ ମୂର୍ଖଁ ।

ଲମ୍ବୋ—( ସହାସ୍ୟେ ) ଆଚ୍ଛା, କ ପ୍ରଶ୍ନ କରବେ କରନ୍ତୁ ?

୧ମ ବ୍ରାହ୍ମଣ—( ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ) କଛୁ ନାହିଁ, ଏହ ରାଜାଙ୍କର ଯେ ଦଅଁ ଅଛନ୍ତ, ତାଙ୍କର ପୂଜା କରନ୍ତ କଏ ?

ଲମ୍ବୋ—ହାଃ ହାଃ ହାଃ, ରାଜାଙ୍କର ଦେବପୂଜା ? ଶ୍ରୀମାନ୍ ଲମ୍ବୋଦର ଦାର୍‌ଗଜ ରଥ ଶର୍ମା-ସ୍ୱୟଂଙ୍କ ପର ନଷ୍ଠାପର ପଣ୍ଡିତ ଥାଉଁ ଥାଉଁ, ରାଜାଙ୍କର ଦେବାରାଧାନା କରବାର ଆଉ ସାଧ କାର ଅଛୁ ?

୧ମ ବ୍ରାହ୍ମଣ—( ମୁଣ୍ଡ କୁଣ୍ଡାଇ ୨ ) ଅମ୍ଭେ ଭାବୁଥିଲୁଁ, ଆଉ କେହ କରନ୍ତ ପର ।

ଲମ୍ବୋ—( ଈଷତ୍ କ୍ରୋଧସହତ ) କଣ ଭାବୁଥିଲେ ? ଅଉ କେହ କରନ୍ତ ! ଆପଣଙ୍କର ଏପର ଭାବବା କ ଅନ୍ୟାୟ ନୁହେଁ ? ଆମ୍ଭ ପର ସୂକ୍ଷ୍ମଦର୍ଶୀ ପଣ୍ଡିତଙ୍କ ପ୍ରତ ଏହା କଣ ଅବମାନନା ନୁହେଁ ?

୨ୟ ବ୍ରାହ୍ମଣ—ଯେଁ କ ପଁରଁ କଁଥାଁମଁ ?

୧ମ ବ୍ରାହ୍ମଣ—( କ୍ରୋଧାଭନୟ କର ) ଆପଣଙ୍କପର ସୂକ୍ଷ୍ମଦର୍ଶୀପଣ୍ଡିତଙ୍କର ଦେବପୂଜା କରବା କ ଆମ୍ଭମାନଙ୍କପର ସ୍ଥୂଳଦର୍ଶୀ ମୂର୍ଖଙ୍କ ପ୍ରତ ଅବମାନନା ନୁହେଁ ?—ଆଉ ପବାନଭୋଗୀ ଦେବଙ୍କ ପ୍ରତ ଅବମାନନା ନୁହେଁ ?

ଲମ୍ବୋ—ହାଃ ହାଃ ହାଃ—ଅଗ୍ରୁଯେଁ ! ଏ, କଥା କ କୌଣସି ତର୍କଶାସ୍ତ୍ରାନୁମୋଦତ ?

୨ୟ ବ୍ରାହ୍ମଣ—ତଁର୍କଁ କଁଥାଁ କଁଣଁ ପଁଢ଼ଁଲଁ ମଁ—ଅାଁଜଁ ଭୋଁଜଁ ହେଁବଁକଁ ନାଁହିଁ ଜଁଣାଁଗଁଲଁ ନାଁହିଁ ।

୧ମ ବ୍ରାହ୍ମଣ—ଅଚ୍ଛା ଦାର୍‌ଗଜେ ! ଲାଳ ବୋହବା କ କୌଣସି ତର୍କଶାସ୍ତ୍ରାନୁମୋଦତ ?

ଲମ୍ବୋ—ଲାଳବୋହବା ! ଲାଳ କଣ ? ତୁମ୍ଭର ଦେହରୁ କଣ ଝାଳ ବୋହୁ ନାହିଁ ?

୧ମ ବ୍ରାହ୍ମଣ—ଦେହରୁ କାର ଝାଳ ନ ବହେ କ ?

ଲମ୍ବୋ—ଅମ୍ଭର ଧର ଅଧିକା ପାଟିରୁ ବୋହଲା, ଏଥିରେ ଶାସ୍ତ୍ରାଶାସ୍ତ୍ରକଥା କଣ ରହଲା ?

୨ୟ ବ୍ରାହ୍ମଣ—ବଁଦଁୟାଁନଁ ! ଏଁ ହାଁ ବୁଝିଁ ପାଁରୁଁ ନାଁ, ଅାଁଧିଁ କଁଣଁ ଯେଁ ବୋଁହିଁଲଁ ପଁଣ୍ଡିଁତେଁ କଁ ନାଁ—ବଁଦଁୟାଁନଁନାଁ ! ପଁରୁଁ ରଁ ମଁ, ଅାଁଜଁ କଁଣଁ ଭୋଁଜଁ ହେଁବଁନାଁହିଁ ?

୧ମ ବ୍ରାହ୍ମଣ—ରହ ହେ ! ଭୋଁଜଁ ଭୋଁଜଁ ବୋଲ ମରଯାଉଛ ଏକାବେଳେ ! ଅଚ୍ଛା ପଣ୍ଡିତେ ! ଝାଳ ବୋହବାର ଜନ୍ମ ଗୋଟାଏ କାରଣ ଅଛୁ ଆପଣଙ୍କର ଲାଳ ବୋହବାର ତ ସେହପର ଗୋଟାଏ କଛୁ କାରଣ ଥିବ ।

ଲମ୍ବୋ—ଝାଳବୋହବାର କାରଣ ଅଛୁ ବୋଲ କହଦେଇ ଚୁପ୍‌କର ଛୁଡ଼ା ହେଲେ ହେଲ ଆଉ କଣ ? କଣ କାରଣ ଅଛୁ ଆଗେ ଦର୍ଶାଅ, ଅମ୍ଭେ ତ ଆଉ ଅଷ୍ଟମବର୍ଷୀୟ ଶିଶୁ ନୋହୁଁ ।

୨ୟ ବ୍ରାହ୍ମଣ—( ସ୍ୱଗତ ) ଅାଁଷ୍ଟଁମଁ ବଁର୍ଷଁୀୟଁ ଶିଁଶୁଁ ! ହାଁଃ ହାଁଃ ହାଁଃ ଅାଁଷ୍ଟଁମଁ ବଁର୍ଷୀ ପଁରଁ ଅାଁଶି ବଁର୍ଷଁ ! ଅାଁଶିଁ ବର୍ଷଁରଁ ଶିଁଶୁଁ କେଁମଁତଁ ହେଁଲଁ ମଁ ? ରଁହଁ, ମୁଁ ପଁଣ୍ଡିଁତଁଙ୍କୁଁ କାଁଇଲଁ କଁରଁ ଦେଁଉଁଛଁ ।

୧ମ ବ୍ରାହ୍ମଣ—ହାଃ ହାଃ ହାଃ—ସୂକ୍ଷ୍ମଦର୍ଶୀ ପଣ୍ଡିତେ ! ଏତକବ ଆପଣଙ୍କ ଦାର୍‌ଗଜମୁଣ୍ଡରେ ପ୍ରବେଶ କଲା ନାହିଁ । ଅଧିକ ପରଶ୍ରମ କ ଗୋଟାଏ କାରଣ ନୁହେଁ ? ଗ୍ରୀଷ୍ମାଧିକ୍ୟ କ ଗୋଟାଏ କାରଣ ନୁହେଁ ? ସେହପର ଅଶା କରେଁ ଆପଣଙ୍କର ଲାଳ ବୋହବାର ବ କୌଣସି କାରଣ ଥିବ ।

୨ୟ ବ୍ରାହ୍ମଣ—ମୁଁ ଜାଁଣେଁ ସେଁ କାଁରଁଣଁ ବଁଦଁୟାଁନଁନାଁ ! ମୁଁ ନଁକେଁ ଅାଁନୁଁଭଁବଁ କଁରଁଚିଁ ପଁରଁ । କଁଚ୍ଛୁଁ ଭଁଲଁ ଖାଁଇଁବାଁର କଁଥାଁ ମଁନେଁ ପଁଡ଼ଁଲେଁ ବଁହେଁ ।

୧ମ ବ୍ରାହ୍ମଣ—( ସହାସ୍ୟେ ) ପଣ୍ଡିତେ, ଏହ ଠିକ୍ କାରଣ ?

ଲମ୍ବୋ—( ସକ୍ରୋଧେ ) ହେଲ ତ ହେଲା, ଭାସିଗଲ କଣ ?

୧ମ ବ୍ରାହ୍ମଣ—(ମୁଣ୍ଡ କୁଣ୍ଡାଇ ୨) ଭାସିଗଲା ଅଉ କଣ, ତେବେ ସେଟା ଠିକ୍ କାରଣ ସ୍ୱୀକାର କଲେ ତ ?

୨ୟ ବ୍ରାହ୍ମଣ—ମୋଁରିଁବି ଗୋଁଟିଁଏ ସ୍ୱୀଁକାଁରିଁ କଁରିଁଇଁବାଁକୁଁ ଅଁଛିଁ; ପଁଣ୍ଡିତେ ! ଆଁଚ୍ଛାଁ—

ଲମ୍ବୋ—ରହ ହେ ନାସିକାବାଲ ! ଅଚ୍ଛା ସ୍ୱୀକାର କଲି !

୨ୟ ବ୍ରାହ୍ମଣ—ମୋଁତେଁ ଆଁବିଁମାଁନଁନାଁ କଁରୁଁଛିଁ, ତୁଁଟିଁ ଭିଁମଁରିଁ ମୋଁ ମୁଁଠାଁକୁଁ ଆଁସିଁଲାଁଣିଁ ଯେଁ !

ଲମ୍ବୋ—ତେବେ ଆମ୍ଭର ତର୍କ ବିଷୟର ସହିତ ଏହାର ସମ୍ପର୍କ ରହିଲା କଣ ?

୧ମ ବ୍ରାହ୍ମଣ—ଅନୁଗ୍ରହ କରି ମୋତେ ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଦିଅନ୍ତୁ, ତେବେ କହିବି ?

ଲମ୍ବୋ—କି ପ୍ରଶ୍ନ ? ଆପଣଙ୍କ ପ୍ରଶ୍ନ ଭାରି ନିୟମବହିର୍ଭୂତ ହେଉଛି । ପଣ୍ଡିତ ସମାଜରେ ଏପରି ପ୍ରଶ୍ନ ଅଚଳନୀୟ ।

୧ମ ବ୍ରାହ୍ମଣ—ଅମେ ପରା ମୂର୍ଖ ବୋଲି ଆଗରୁ କହି ରଖିଛୁଁ !

ଲମ୍ବୋ—ଅଚ୍ଛା କି ପ୍ରଶ୍ନ ? ଶୀଘ୍ର କରନ୍ତୁ, ଆମ୍ଭର ବିଳମ୍ବ ହେଉଛି ।

୧ମ ବ୍ରାହ୍ମଣ—ଅଚ୍ଛା ପଣ୍ଡିତେ ! ରାଜାଙ୍କ ଦିଅଁ, ଖିଆ ଠାକୁର ନା ଅଖିଆ ଠାକୁର ?

ଲମ୍ବୋ—ଆପଣ କଣ ପାଗଳପ୍ରଳାପ କରୁଛନ୍ତି ? ଆପଣଙ୍କ ପ୍ରଶ୍ନାର୍ଥ କିଛି ବୋଧଗମ୍ୟ ହେଉନାହିଁ ।

୧ମ ବ୍ରାହ୍ମଣ—ଅର୍ଥାତ୍ କିନା, ଦେବାରାଧନା ବେଳେ ଆପଣ କୌଣସି ଖାଦ୍ୟଦ୍ରବ୍ୟ ଭୋଗ ଲଗାନ୍ତି ନା ଫୁଲତୁଳସୀରେ ଗାଳଟାଏ ମାରିଦିଅନ୍ତି ?

ଲମ୍ବୋ—(ବିରକ୍ତଭାବେ) ଆପଣ କଣ ବ୍ରାହ୍ମଣ ନୁହନ୍ତି ? ଆପଣ କଣ କେବେ ଦେବାରାଧନା କରି ନାହାନ୍ତି ?

୧ମ ବ୍ରାହ୍ମଣ—ବିଁଦ୍ୟାଁନିଁନାଁ । ଭୋଁଗ ନିଁ ହେଁଲେଁ ଦିଁଅଁ ପୁଁଜାଁ ଅଁଗେଁ ହିଁବିଁନାଁ ? କିଁଛିଁ ନିଁ ହେଁଲେଁ ତିଁ ପାଁଚିଁଲିଁ କିଁଦଁଲୀଁ ଅଁଟୁଁଅଁ ଗୁଁଡ଼ିଁଲିଁ ଆଁଗେଁ ଦିଁରିଁକାଁରିଁ ।

( ଲମ୍ବୋଦର ଲୁଚେଇ ଲୁଚେଇ ଲାଳ ବୁହାଇବା )

୨ୟ ବ୍ରାହ୍ମଣ—ବିଁଦ୍ୟାଁନିଁନାଁ ! ଦେଁଖିଁ, ଦେଁଖିଁ, ପଁଣ୍ଡିଁତେଁ କଁଣ କଁରୁଁଛଁନ୍ତିଁ ?

୧ମ ବ୍ରାହ୍ମଣ—ପଣ୍ଡିତେ, ତର୍କ ମୀମାଂସା ହେଲାତ ?

ଲମ୍ବୋ—(ସକ୍ରୋଧେ) କଣ ମୀମାଂସା ହେଲା ?

୧ମ ବ୍ରାହ୍ମଣ—ଆପଣ ତ ସାମାନ୍ୟ ପାଚିଲା କଦଳୀ ନାଁରେ ଲାଳ ଗଳ ଗଳ କରି ଶ୍ରାବଣଧାରାପରି ବୁହାଇ ପକାଉଛନ୍ତି, ଆଉ ବହୁମୂଲ୍ୟ ସୁସ୍ୱାଦୁ-ଭୋଗସାମଗ୍ରିଦର୍ଶନରେ କଣ କରୁ ନ ଥିବେ ? ଏଥିରେ କି ପୂଜାର ପବିତ୍ରତା ରହୁଥିବ—ନା ନିଷ୍ଠାପରତା—?

ଲମ୍ବୋ—(ସକ୍ରୋଧେ) କି ? ଆମ୍ଭଙ୍କୁ ଚିହ୍ନ ନାହିଁ ! ରାଜଦାଣ୍ଡରେ ଆମ୍ଭର ଅପମାନ ! ଏହିକ୍ଷଣି ଆସ, ରାଜାଙ୍କ ନିକଟରେ ଅଭିଯୋଗ କରି ସାଙ୍ଗେ ସାଙ୍ଗେ ଦଣ୍ଡ ଦିଆଇବୁଁ, ନ ହେଲେ ଆମ୍ଭର ଉପବୀତ ଧରିବା ବୃଥା ! ନାମ ଧରିବା ବୃଥା ! ରାଜାଙ୍କ ବୟସ୍ୟ ହେବା ବୃଥା ।

[ ଦ୍ରୁତବେଗେ ପ୍ରସ୍ଥାନ ସମୟରେ ଉତ୍ତରୀୟ ସ୍କନ୍ଧସ୍ଖଳିତହୋଇ ଭୂପତିତ ହେବା ]

୧ମ ବ୍ରାହ୍ମଣ—ଯଥା ଲାଭ ! ଅସ ହେ, ଭୋଁଜ ଭୋଁଜ ବୋଲି ମରି ଯାଉଥିଲ ପରା ! ନିଅ ନିଅ, ଦେଖେଁ ଦୁର୍ବାସାଙ୍କପରି କେଉଁଆଡ଼େ ଦ୍ରୁତପଦରେ ପ୍ରସ୍ଥାନ କଲେ ! ( ନିଷ୍କ୍ରାନ୍ତ )

୨ୟ ବ୍ରାହ୍ମଣ—( ଉଠାଇ କରୁକରୁ ) ଅଁଜିଁଗଁରିଁକୁଁ ଦାଁଡିଁଃରିଁମିଁ, ବାଁହାଁଦିଁରିଁ ସଁରିଁବାଁଦିଁନିଁଠିଁ ସାଁଜାଁଦିଁରିଁ ମାଁଲିଁ ଆଁଉଁ ପେଁଟଁରେଁ ପଁଡ଼ିଁ ନିଁଥିଁଲିଁ । ଆଁହାଁ । ଆଁହାଁ ମୁଁ କଁଣଁ କଁଲିଁ ? ପଁଣ୍ଡିଁତଁଙ୍କୁଁ ତିଁ କାଁଲିଁଲ୍ କିଁରିଁ ପାଁରିଁଲିଁ ନାଁହିଁ ! ଆଁଚ୍ଛାଁ ଆଁଉଁଥିଁରେଁ ଭେଁଟିଁ ହେଁଉଁ, କଁଣିଁଟିଁ ସେଁ ପିଁଦିଁଟାଁ ? ଅଁଙ୍କିଁମିଁ—ନାଁ, ଅଁଙ୍କିଁମିଁ—ନାଁ ଅଁଟିଁମିଁ ନାଁଂତିଁ; ଯାଁ ଯାଁ-ଭୁଁଲିଁଗଁଲିଁ, କଁଣିଁଟିଁ ? ଅଁଗିଁମିଁ ନାଁ, ଅଁସ୍ମିଁମିଁ-ନାଁ, ଅଁସ୍ମିଁମିଁ-ହିଁ ହିଁ-ଏଁହିଁଥିଁରିଁ ମିଁନେଁ ପଁଡ଼ିଁଚିଁ-ଅଁସ୍ମିଁମିଁ, ଅଁସ୍ମିଁମିଁ-ଅଗିଁ ବିଁଷିଁରିଁ ଶିଁଶୁଁ ହାଁଃ ହାଁଃ କିଁ ଭୁଁଲିଁ ? ମିଁତେଁ ଭିଁଲ ରାଁଜାଁ ସଁଭାଁ ପଁଣ୍ଡିଁତିଁ କିଁଅଁ ନିଁ କଁଲେଁ ? ଅଁସ୍ମିଁମିଁ ଅସ୍ମିଁମିଁ ଅଁସ୍ମିଁମିଁ— (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

( ଉଦ୍ୟାନ )

( ଗୋଟିଏ ବେଦିକା ଉପରେ ଶାନ୍ତନୁସହ ଗଙ୍ଗାଦେବୀ ଆସୀନା, ଶାନ୍ତନୁ ନିବଷ୍ଟଚିତ୍ତରେ ଗଙ୍ଗାଙ୍କ ଅଡ଼େ ଗୃହିଁ ରହିଥିବା । )

ଗଙ୍ଗା—( ସ୍ମିତପୂର୍ବକ ) ପ୍ରିୟତମ !
କି ଭାବରେ ମତ୍ତହୋଇ ଚାହିଁଅଛ ମୋତେ ?
ଶାନ୍ତନୁ—କି ଭାବରେ ମତ୍ତ ହୋଇ ! ନ ପାରେ ମୁଁ କହି,
କିନ୍ତୁ ଦେଖୁଅଛି ପ୍ରିୟେ ।
କି ସେ ସୁଧା ଧାରା
ଶ୍ରୀଅଙ୍ଗୁ ତୁମ୍ଭର ପଡ଼ୁଅଛି ଝରି—
ଖାଇଚିପୁଇକ୍ଷୁଦଣ୍ଡୁ ରସ ଧାରା ଯଥା—
ମନହୁଏ,
ସେହି ସ୍ନାନେ, ସେହି ପାନେ ସଦା
ଶୀତଳିବ ଅଙ୍ଗ, ତୃଷା ମୋର,
ଲିଭାଇବ ଜ୍ୱାଳା ଯେତେ—
ଜ୍ୱଳୁଛି ବଡ଼ବାସମ ନିରତ ଅନ୍ତରେ ।
ଗଙ୍ଗା—(ସସ୍ମିତେ) ଦେଖ, ପ୍ରେମନାଥ ମୋର
ପ୍ରେମରସ୍ତୁ ଫେଡ଼ି—
କି ସୁନ୍ଦର ପଦ୍ମଟିଏ ପ୍ରେମର ପସରା,
ଫୁଟିଛି ସରସେ ଯେହ୍ନେ ରତି-ରୂପଶ୍ରେୟୀ—
ବିମୋହି ରକ୍ତାଭେ ତା'ର ଜଳ, ସ୍ଥଳ, ନଭ,
ମତାଇ ସୁଗନ୍ଧେ ପୁଣି ଚରାଚରବୃନ୍ଦ ।
ଶାନ୍ତନୁ—କିନ୍ତୁ ପ୍ରେମେଶ୍ୱରି !
ସ୍ଥିର ସୁଗନ୍ଧ ସେ ମଣେ
ତବ ପ୍ରେମଗନ୍ଧ ଠାରେ
ପଦ୍ମଜଣା କାନ୍ତି ପୁଣି ଦେଖେଁ ତବାଧରେ ।
କେଉଁ ପ୍ରବାଳ, କୁସୁମ—ଈଶ୍ୱରସୃଜନ,
ସୁର୍ଜିତ ଶ୍ରୀଅଙ୍ଗ ତବ, ମୋହିବ ମୋ ମନ ?
ଗଙ୍ଗା—(ସସ୍ମିତେ) ଦେଖ ପୁଣି,
କଞ୍ଜ କିବା ଦୋହଲେ ପବନେ,
ମତ୍ତକରୀ ଦୋଳେ କିବା ମନ୍ଥର ଗମନେ !
କିମ୍ବା,
ଅସମ୍ଭବଶ୍ରେଦୋଳନ, ସ୍ତମ୍ଭିତ-ଅନ୍ତରେ—
ନିବାରିଲ ଭୃଙ୍ଗେ ସ୍ମିତ, ଗୁଞ୍ଜିତ ପ୍ରେମରେ ।
ଶାନ୍ତନୁ—କି ଦୁର୍ଦ୍ଦଶା ଭୃଙ୍ଗ ଦେଖ, ଲଭୁଛି ନୟନେ
ସହେ କି ପରାଣେ ତବ, ଅନଙ୍ଗମର୍ଦ୍ଦିନି ?
ଗଙ୍ଗା—(ସସ୍ମିତେ) ପ୍ରିୟତମ !
ଦେଖ, ଦେଖ, ଅଳକ୍ଷ୍ୟେ ମୋହର
କିଏ ଟାଣେ ମୃଦୁ ମନ୍ଦ ବାସାଞ୍ଚଳ ଧରି ?
ଶାନ୍ତନୁ—ତବ ନେତ୍ର-ଅନୁକାରୀ ମୃଗଶିଶୁ ମୋର ।
ଏ'ଦୃଶ୍ୟ ଦର୍ଶନେ, ପ୍ରିୟେ ଭାବେ ମୁଁ ଅନ୍ତରେ
ମନ-ମୃଗ ଟାଣେ କିବା
ତବ ପ୍ରେମାଞ୍ଚଳ ଧରି ।
ଗଙ୍ଗା—(ସହାସ୍ୟେ) କାହିଁ ? କେଉଁଠି ଚଞ୍ଚଳା ?
ଶାନ୍ତନୁ—ଏହି ଯେ ଧରଛି—
( ମୃଗଶିଶୁର ପଳାୟନ କରିବାର ଅଭିନୟ କରି )
ଅହା ! ଖସି ଯାଇ କିନ୍ତୁ ମୋର,
ଦେଖ ଦେଖ, ପ୍ରିୟେ—
ଚଞ୍ଚଳା ଚଞ୍ଚଳ ବେଗେ କେମନ୍ତ ପଳାଏ !
ଗଙ୍ଗା—(ଭ୍ରୂଭଙ୍ଗସହିତ) ଦିଅ ପ୍ରାଣେଶ୍ୱର ! ଦିଅ ଧରି
ମୃଗ ମୋତେ,
[ ଶାନ୍ତନୁ ଚମକିତ ହେବା ]
ଏ'କଣ ?
ଚମକିତ ହେଲ କିମ୍ପା କହ, ପ୍ରିୟତମ ?
ଶାନ୍ତନୁ—କି କହିବି ପ୍ରିୟେ ! ତବ ଏସନ ଭାଷଣେ,
ଜାଗୁଛି ମାନସେ ପୂର୍ବ-ସ୍ୱମସୀତା ବନେ ।
ଗଙ୍ଗା—ତେବେ ବସ ପ୍ରିୟତମ ! ନାହିଁ ପ୍ରୟୋଜନ ।
ଶାନ୍ତନୁ—(ସ୍ୱଗତ) ଏ' କି ଆଶଙ୍କା ସହସା
ଜାଗିଲା ମୋ ମନେ ।
କେହି ଯେହ୍ନେ କ୍ଷୀଣ ସ୍ୱରେ କହୁଅଛି କର୍ଣ୍ଣେ,
"ଏତେ ସୁଖ ଦୀର୍ଘକାଳ ନ ସହେ ମାନବେ !"
ଓଃ ହୋଃ କେମନ୍ତେ ସହିବି ପ୍ରିୟାହୀନ ପ୍ରାଣ !—
ବିଚ୍ଛେଦେ, ଚନ୍ଦ୍ରମା ବିନା କୁମୁଦିନୀ ସମ;
ଦଣ୍ଡେକ ଅନ୍ତର ଯାଇ, ଚକୋର ସମାନ,
ତନୁସ୍ଥ ପରାଣ ମୋର କରୁଛି ଅଧୀର ।
( ଭାବନାପୂର୍ଣ୍ଣ ଚିତ୍ତରେ ରହିବା )

ଗଙ୍ଗା—କାହିଁକି ଆବୃତ, ପ୍ରିୟତମ ?
ସୁନ୍ଦର ଲୋ ସହ, ତାଙ୍କ ଲୋ ସଙ୍ଗିନୀଗଣେ,
ବର୍ଷନ୍ତୁ ପିୟୂଷ, ନାଚୁ ଲୋ ଆନନ୍ଦେ ହୃଦୟ ।
(ସ୍ୱଗତ) ହାୟ ! କି ଦୁର୍ବଳ ଏହି ମାନବ ହୃଦୟ !
ନାହିଁ ଏତେଟିକ ଶକତି, ଦୁର୍ଭାବନା ଏଡ଼ି,
ସୁଭାବନା ହର୍ଷଭରେ କରିବ ପୋଷଣ ।
ଏବେ ଶବାନନ୍ଦପୂର୍ଣ୍ଣ ପୁଣି ସେ ହୃଦୟ !—
ଅଳ୍ପେକେ ଅନ୍ଧାର ଅଣେ, ତିମିର ସଦୃଶ ।
( ନେପଥ୍ୟଆଡ଼େ ଗୁହିଁ ରହିବା )
ଶାନ୍ତନୁ—( ପୂର୍ବଭାବାନୁକ୍ରମରେ ) ବୁଝିଛି ଏଥର,
ପ୍ରେମରସବହ୍ନତ ହୃଦୟ ମୋର,
ତେଣୁ ଜ୍ଞାନଶୂନ୍ୟ ଏବେ ।
ଶୁଣିଛି ମୁଁ,
ପ୍ରେମ ମଦେ ମତୁଆଲ ହୁଏ ଲୋକ ଯେବେ
ପ୍ରକୃତାପ୍ରକୃତଜ୍ଞାନ,
ବାସ୍ତବାବାସ୍ତବର ଶକ୍ତି, ଛାଡ଼ି ଯାଏ ତେବେ;
ପ୍ରେମିକ ସେ ଜନ କରେ ଗତ ବାଧି ପୁଣି,
ଯେସନେ କି ମଦ୍ୟପ କିମ୍ବା ମତିହୀନ ଜନ !—
ଅକାରଣେ ହସେ, ଅକାରଣେ କାନ୍ଦେ,
ରଜ୍ଜୁ, ସର୍ପ—ସର୍ପ, ରଜ୍ଜୁ, ଭାବେ ଚକିତେ ବିଭ୍ରମେ
ସତ୍ୟ ଏ ବଚନ, ନଚେତ୍ବା କାହିଁକି,
ଶଙ୍କା ନାହିଁ, ଶଙ୍କା ମୁହିଁ ଗଣୁଅଛି ମନେ ?
ଆହା ! କି ସୁଧାସଙ୍ଗୀତ !
( ନେପଥ୍ୟେ ଗୀତ ଶ୍ରବଣକର )
ଭାସିଆସେ ଯେସନେ ଅମୃତ ସାଗରୁ ।
( ସଖୀଗଣଙ୍କର ଗୀତ ଗାଇ ଗାଇ ପ୍ରବେଶ )
ସଖୀଗଣ—କହ ବନୋ ! କହ ପ୍ରେମ କାପର ?
ସର୍ବାଙ୍ଗରୁ ପଡ଼େ ସେ ରସ କାଳାକାଳ ନାହିଁ ଯେ ତା'ର,
ଧ୍ୟାନେ ପୁରି ଭରେ ଅଞ୍ଜଳି ।
ସେ କି ମଧୁର ! କିବା ସ୍ଥାବର, କିବା ଜଙ୍ଗମ,
ଶୁଙ୍ଘିଲେ ଥରେ ଯାଇ
'ପ୍ରେମ, ପ୍ରେମ' ବୋଲି ଧାଆନ୍ତି ତାତରେ
ହୁଅନ୍ତି ପ୍ରେମେ ବାଇ,
ତୃଷା ନାଶେ ତା'ର ତୃଷା ବଢ଼େ, ଦିନୁଁ ଦିନୁଁ
ତା'ର ସ୍ୱାଦୁ ବଢ଼େ,
ଆସ ବନୋ ! ତବ କୋଲାକୋଳି
ପିଇଁ ଚୁମ୍ବେ ଚୁମ୍ବ ଅଧର ।
( ଗାଇ ଗାଇ ପ୍ରସ୍ଥାନ )
ଗଙ୍ଗା—କାହିଁ ସେ ଅମୃତ ଧାର ? କେଉଁଠି ଲୁଚିଲା ?
ଆହା !
ପ୍ରାଣେଶ୍ୱର ଅଙ୍କେ ମୋର ପଡ଼ିଲେ ଯେ ଢଳି
ଅବସନ୍ନ ଦେହ ଯଥା ଜ୍ୱରୀ ଜ୍ୱରାନ୍ତରେ ।
(ସ୍ୱଗତ) ଓଃ ହୋଃ
କି ବିଦ୍ୟୁତ୍କମ୍ପନେ କମ୍ପୁଛି ଶରୀର !
ସ୍ୱେଦନିର୍ଗମେ ପୁଣି ସେ ହେଉଛି କାତର ।
ଶାନ୍ତନୁ—(କ୍ଷୀଣସ୍ୱରରେ) ପ୍ରାଣେଶ୍ୱରୀ !
( ମୁଖୋତ୍ତୋଳନ କରିବା )
ଗଙ୍ଗା—ପ୍ରାଣେଶ୍ୱର ! (ମୁଖାବନତ କରିବା )
ଶାନ୍ତନୁ—( କାମାବେଶରେ ) କାହିଁ ତବ ବିମ୍ବାଧର
ଦିଅଟିଗୋ ଚୁମ୍ବନ ? ( ପରସ୍ପର ପରସ୍ପରକୁ ଚୁମ୍ବନ କରିବା ସମୟରେ ପଞ୍ଚ ପତନ )

---

## ଚତୁର୍ଥ ଦୃଶ୍ୟ ।

( ସଭାଭବନସଂଲଗ୍ନ ମନ୍ତ୍ରଣାଗୃହ )

(ମନ୍ତ୍ରୀ ଓ ତତ୍ ପଶ୍ଚାତ୍ ସଭାସଦ୍ବର୍ଗଙ୍କ ପ୍ରବେଶ)
୧ମ ସଭାସଦ—ମନ୍ତ୍ରୀ ! କିପାଇଁ ଭାବିତ ଏତେ ?
ନୁହେଁ କି ସମ୍ଭବ ରାଜାବିନେ ରାଜ୍ୟ ରକ୍ଷା ?—
ଭବାଦୃଶ ମନ୍ତ୍ରୀ ଯେବେ'ଛନ୍ତି କର୍ଣ୍ଣଧାର ।
ମନ୍ତ୍ରୀ—ସଭାସଦ୍ବର୍ଗ !
ସମ୍ଭବେ କି ହସ୍ତୀପିଣ୍ଡେ
ଗୁରୁ ଭରୋତ୍ତୋଳ କାର୍ଯ୍ୟ ?—
ଶକ୍ତି ଶୂନ୍ୟ କରି ଯେବେ,
ପିଞ୍ଜରନିର୍ମୁକ୍ତ ବିହଙ୍ଗମ ସମ,
ଧାଏଁ ପ୍ରାଣପକ୍ଷୀ ସ୍ୱଚ୍ଛନ୍ଦେ ସ୍ୱଦେଶେ ।
୧ମ ଓ ୨ୟ ସଭା—ଅତି ଅସମ୍ଭବ ।

ମନ୍ତ୍ରୀ—ସେହୁପର ରାଜା ବିନା
ପ୍ରାଣହୀନ ପିଣ୍ଡ ମାତ୍ର, ଭୃତ୍ୟ ବର୍ଗ ଅମ୍ଭେ ।
୨ୟ ସଭ୍ୟ—ଯଥାର୍ଥ, ସଚିବ ଏହା ।
ଅଗ୍ରେ ଯେବେ ରାଜା ମଣ୍ଡୁଥିଲେ ସିଂହାସନ,—
କି ଅବର୍ଣ୍ଣନୀୟ ଭାବ ଜାଗୁଥିଲା ମନେ,
କି ପରମୋତ୍ସାହେ ପୁଣି ଉତ୍ସାହିତ ହୋଇ
ଧାଉଁଥିଲୁ ସର୍ବେ, ଯେହ୍ନେ
କଶାଘାତ ତର୍ଜିତ ଘୋଟକଯୂଥ;
ଏବେ ଶୂନ୍ୟ ସିଂହାସନ ହେରି,
ସେହୁ ସର୍ବେ ଅଛୁଁ ଅମ୍ଭେ,
ସେହୁ ଶକ୍ତି ଅଛି ଅମ୍ଭର ସକଳେ,
କିନ୍ତୁ,
କି ମହା ଅଭାବ ଘଟିଛି ସରବେ—
ଯେ, ପୂର୍ବ ଶୃଙ୍ଖଳା କାର୍ଯ୍ୟେ
ଶତ ଚେଷ୍ଟା ସତ୍ତ୍ୱେ କଦା ନ ପାରୁଛୁଁ ସ୍ଥାପି ।
ମନ୍ତ୍ରୀ—ପ୍ରଜାବର୍ଗେ, ଦେଖ ପୁଣି—
ଯେଉଁମାନେ କି ନିତାନ୍ତ ଅନୁଗତ,
ବଶୀଭୂତ ଅମ୍ଭର ଥିଲେ,
କେଡ଼େ ଦୁର୍ବିନୀତ ଏବେ !—
ଯେହ୍ନେ ପରଗତ ଗୋପାଳ ତାଙ୍କର
ଏକାବେଳକେ ସମ୍ମୁଖୁଁ ହୋଇଛି ଅନ୍ତର ।
ଯେବେ ଏତିକି କରନ୍ତେ ନୃପୋତ୍ତମ,
ନ ବୁଝନ୍ତୁ ରାଜକାର୍ଯ୍ୟ ପଛେ;
ହୁଅନ୍ତୁ ପଛକେ ଅଳସ, ଅପଟୁ,
ମାତ୍ର, ପୂର୍ଣ୍ଣ କରୁଥାନ୍ତେ ଆସି ନିତ୍ୟ
ଏହି ଶୂନ୍ୟ ସିଂହାସନ,
କିଛି ବିଶୃଙ୍ଖଳା କାର୍ଯ୍ୟେ ନ ଘଟନ୍ତା ତେବେ ।
୧ମ ସଭ୍ୟ—ହାୟ ! ଏପର ଧାର୍ମିକ, ନ୍ୟାୟପର, ନୃପ,
ଏପର ଅଳସ ସ୍ତ୍ରୈଣ ହେବେ—
କିଏ ଜାଣିଥିଲା, ମନ୍ତ୍ରୀ !
୨ୟ ସଭ୍ୟ—ଆମର କପାଳ !
୧ମ ସଭ୍ୟ—ଚାଲ ସର୍ବେ ସଭ୍ୟବୃନ୍ଦ, ରାଣୀଙ୍କ ସମୀପେ,
କରିବା ପ୍ରାର୍ଥନା ଆଜି ଗଦ ଗଦ କଣ୍ଠେ,
ରାଜାଙ୍କୁ ଦେବେ ସେ ମତି—
ସୁଶାସନେ ରାଜ୍ୟ ।
ମନ୍ତ୍ରୀ—ସାମ୍ରାଜ୍ଞୀ ଯେ ଅନ୍ତଃସତ୍ତ୍ୱା ଏବେ,
ନଥିବା ଦର୍ଶନ ପାଉଥିଲେ ମୁହିଁ,
ଏତେ ଅଜ ଭାବିବାକୁ ହୁଅନ୍ତା କି କେବେ ?
୧ମ ସଭ୍ୟ—ଏ'କଣ ? ଲମ୍ବୋଦର ଏଭଳି ପାଗଳ
ପରି ଦୌଡ଼ୁଛି କାହିଁକି ?
( ଲମ୍ବୋଦରର ପ୍ରବେଶ । )
ଲମ୍ବୋ—ହାଃ ହାଃ ହାଃ
ଲଡ୍ଡୁ ମଣ୍ଡା ମାଳଂ ମାଳଂ,
ଗଣ୍ଡା ଗଣ୍ଡା ଭରିବି ଗାଲଂ
ହାଃ ହାଃ ହାଃ
କେହି ଯେବେ ମାଗିବ ଆସି
ମାରିବି ଗୁଡ଼ପଡ଼ା କଷି ।
(୧ମ ସଭ୍ୟସଦଙ୍କୁ ଚପେଟାଘାତ କରିବାକୁ ଉଦ୍ୟତ)
୨ୟ ସଭ୍ୟ—ହାଁ ହାଁ
୧ମ ସଭ୍ୟ—କି ହୋ ପଣ୍ଡିତେ ଅଜି ଏ'କଣ ?
ଲମ୍ବୋ—କିଏ ଖାଇବ ଭାଇ ? ହାଃ ହାଃ ହାଃ ସର୍ବାଙ୍ଗସୁ
ଶାନ୍ତିର୍ଭବନ୍ତୁ ।
୧ମ ସଭ୍ୟ—ଆନନ୍ଦ ଲହରୀ ତ ଅଜି ଉଦରାର୍ଣ୍ଣବ
ବଦାର୍ଣ୍ଣ କରି ଉଠୁଛି ।
ଲମ୍ବୋ—ଆନନ୍ଦ କଥା ଅଜ ପଚାରୁଛ ? ହାଃ ହାଃ ହାଃ
୧ମ ସଭ୍ୟ—କଥା କଣ ଆଗେ କହି ସାରୁନ୍ତୁ ନା ?
ଲମ୍ବୋ—ହାଃ ହାଃ ହାଃ ରାଜାଙ୍କର ପୁତ୍ର ।
ମନ୍ତ୍ରୀ—ରାଜାଙ୍କ ପୁତ୍ର ହୋଇଛି ।
ସମସ୍ତେ—ଜୟ ଶାନ୍ତନୁନନ୍ଦନଙ୍କର ଜୟ ।
ବୟସ୍ୟ—ଆସ, ଆସ, ଧାଇଁ ଆସ-ରାଜାଙ୍କ ଡାକରା
ଉପରେ ହକରା ପଡ଼ୁଛି-ମଣ୍ଡା ମିଠାଇର ଧୂମ୍
ଉଡ଼ିଯିବ-ହାଃ ହାଃ ହାଃ ।
ମନ୍ତ୍ରୀ—ସୌଭାଗ୍ୟ ଅତୀବ ।
ରାଜାଙ୍କ ଦର୍ଶନ ଅଜି
ଲଭିବ ଯୁଗାନ୍ତେ ଏକ । ( ପ୍ରସ୍ଥାନୋଦ୍ୟତ )
ସମସ୍ତେ—ଜୟ ଶାନ୍ତନୁନନ୍ଦନଙ୍କର ଜୟ ।
ଲମ୍ବୋ—( ଗମ୍ଭୀର ସ୍ୱରରେ ) ମନ୍ତ୍ରି ମହାଶୟ !

ମନ୍ତ୍ରୀ—କି ହୋ ! କଣ ?
ଲମ୍ବୋ—ଅସ୍ମନାମତ ଭବାନଙ୍କ ଗୋଚରେ ।
୧ମ ସଭ୍ୟ—ଭବାନଙ୍କ ନାମ ଶ୍ରୀମାନ୍ ଲମ୍ବୋଦର
ବାଗ୍‌ଗଜ ରଥ ଶର୍ମା ବୋଲି କିଏ ନ ଜାଣେ କି ?
ଭବାନ୍ ଯେମନ୍ତେ ପଣ୍ଡିତ !
ଲମ୍ବୋ—ହଁ ସେହିଠା ସଦା ସମସ୍ତରେ ଯେମନ୍ତେ ସ୍ମରଣ
ପଥାରୂଢ଼ ରହେ, ଏତିକି କାମନା ଅମ୍ଭର ।
ମନ୍ତ୍ରୀ—କାହିଁକି ପଣ୍ଡିତେ ? ଆମେ କଣ ଭୁଲି
ଯାଉଛୁଁ କି ?
ଲମ୍ବୋ—ଅହେ ! ତାହା କି କେବେ ଆପଣଙ୍କ ପରି
ବହୁଜ୍ଞଜନ, ପଣ୍ଡିତ ଗୁଣ-ସାଗର ହେଲେ ପାରନ୍ତି ?
ତେବେ ଲଡୁ ମଣ୍ଡା ବାଣ୍ଟିଲା ବେଳେ ଯେବେ
ଯେବେ ଆପଣଙ୍କ ସ୍ମରଣପଥରୁ ସ୍ଖଳିତ
ହୋଇପଡ଼ୁଁ—
୧ମ ସଭ୍ୟ—ବାଗ୍‌ଗଜେ ! କିଛି ପରୁଆ ନାହିଁ, ମୁଁ ଅଛି
ଧରପକାଇବି ଯେ !
( ସମସ୍ତେ ଉଚ୍ଚହାସ୍ୟ କରିବା )
ମନ୍ତ୍ରୀ—ପଣ୍ଡିତେ ! ସମସ୍ତଙ୍କୁ ଯେପରି ଦିଆଯିବ
ଆପଣଙ୍କୁ ମଧ୍ୟ ସେହିପରି ଦିଆଯିବ । ଏଥିରେ
ଆଉ ଭୁଲିବା ନ ଭୁଲିବା କଥା କଣ ରହିଲା ?
ଲମ୍ବୋ—ତେବେ ଅମ୍ଭର ନାମ କଣ ବୃଥା ହେଉ ?
( ସମସ୍ତେ ଉଚ୍ଚହାସ୍ୟ କରିବା )
ମନ୍ତ୍ରୀ—ଅଚ୍ଛା ଆସନ୍ତୁ ।
ଲମ୍ବୋ—ଦୀର୍ଘାୟୁରସ୍ତୁ, ମୋର ଏହି ଉଦରାଣ୍ଡବବତ୍
ଆପଣମାନଙ୍କର ଯଶଃଖ୍ୟାତି ବୃଦ୍ଧି ପାଉ ।
( ସମସ୍ତେ ହାସ୍ୟ କରୁ କରୁ ନିଷ୍କ୍ରାନ୍ତ ହେବା )

———

## ପଞ୍ଚମ ଦୃଶ୍ୟ

( ରାଜାନ୍ତଃପୁର )

[ ଶାନ୍ତନୁ ପାଦଚାରଣ କରୁଥିବା ]

ଶାନ୍ତନୁ—କି ଅମୂଲ୍ୟ ନିଧି ଏହି ଜନମ୍ମ ସଂସାରେ !
ନୁହେଁ ଏହା ସୁକୋମଳ,
ସ୍ପୃଶ-ଦୃଶ୍ୟ-ସ୍ପର୍ଶ୍ୟ ରକ୍ତ-ମାଂସ-ପିଣ୍ଡ ମାତ୍ର,
ନୟନେ ଯେମନ୍ତ ହୁଏ ବୋଧଗମ୍ୟ,
କାମ୍ୟ
ବଂଶବୃଦ୍ଧିକାରୀ କୌଶଳ ଧାତାଙ୍କ ମାତ୍ର
ମର୍ତ୍ତ୍ୟଲୋକେ ଏହି,
ନେତ୍ରର ବାସ୍ତବିକ ଯଥା ରୂପରୁଚ୍ଛନ୍ଦେ;
ଚକ୍ଷୁ ମୁଦ ହେଲେ ବାରେ, ଦେଖିବ ଯେମନ୍ତ—
କି ସୁନ୍ଦର ପ୍ରେମମୟ ସୁଧାସ୍ରାବଫଳ,
ପ୍ରେରିତ ଅମୃତଲୋକୁଁ କ୍ଷୁଧାର୍ତ୍ତ ମାନବେ;—
ଦୃଢ଼ ଗ୍ରନ୍ଥି ଯେତେ ପୁଣି ଦମ୍ପତି ପ୍ରେମର—
ଅକ୍ଷୟ, ଶାଶ୍ୱତ ସେହି ଜନ୍ମଜନ୍ମାନ୍ତରେ ।
( ମନ୍ତ୍ରୀ, ସଭାସଦ୍‌ବର୍ଗ ଓ ଲମ୍ବୋଦରର ପ୍ରବେଶ । )
ସମସ୍ତେ—ଜୟ ମହାରାଜ ଶାନ୍ତନୁଙ୍କର ଜୟ,
ଜୟ ମହାରାଜକୁମାରଙ୍କର ଜୟ !
ଶାନ୍ତନୁ—( ହସି ହସି ) ଶୁଣିଲଣି ତେବେ ମନ୍ତ୍ରି !
ଶୁଭବାର୍ତ୍ତା ମମ ।
ମନ୍ତ୍ରୀ—ବହୁଯଶୁ ମହାରାଜ ।
ଅବରୁଦ୍ଧ କେବେ ରହେ କି ସୌରଭ
ମ୍ଳାନ ସୁରଭି ଗୁଚ୍ଛରେ ?
ହେରନ୍ତୁ କେମନ୍ତେ ତାହା ବାତାୟନ ପଥେ,
ଚଞ୍ଚଳାଚଞ୍ଚଳ ବେଗେ ପଶି ଘରେ ଘରେ,
ସ୍ପନ୍ଦଲଣି ପ୍ରତିହୃଦ ମହୋତ୍ସବେ ଏକ !
ଶାନ୍ତନୁ । (ସସ୍ମିତେ) ଯାଅ ଏବେ ମନ୍ତ୍ରି ତ୍ୱରା,
କର ଆୟୋଜନ,
ମହୋତ୍ସବ-ଯଥାବିଧି ହୋଇବ ସମ୍ପନ୍ନ ।
ମନ୍ତ୍ରୀ—ଯଥା ଆଜ୍ଞା ମହାରାଜ, ପାଳିବି ଅଚିରେ;
କିନ୍ତୁ ମିନତି ଏତିକି ଶ୍ରୀଚରଣେ, ନୃପ
କରୁଅଛି ଦାସ,—
ଧନ୍ୟ କର ଦାନେ ନିତ୍ୟ
ଏହିପରି ଆଜ୍ଞାଭାର, ବଞ୍ଚିତ ଚିରାୟୁ ।
ଶାନ୍ତନୁ—(ସସ୍ମିତେ) ଯାଅ ପ୍ରିୟ ମନ୍ତ୍ରୀମମ,
ଆଉ ନାହିଁ ଭୟ ।
ସମସ୍ତେ—ଜୟ ମହାରାଜ ଶାନ୍ତନୁଙ୍କ ଜୟ ! ଜୟ
ଜୟ ମହାରାଜ ଶାନ୍ତନୁସୂନୁଙ୍କ ଜୟ ।
(ବୟସ୍ୟ ଓ ଶାନ୍ତନୁଙ୍କ ବ୍ୟତୀତ ସମସ୍ତେ ନିଷ୍କ୍ରାନ୍ତ)
ଶାନ୍ତନୁ—କି ବୟସ୍ୟ ! ଚୁପ୍ କରି ଛିଡ଼ା ହୋଇଛ
ଯେ ?

ବୟସ୍ୟ—ଭାବୁଛୁଁ ।
ଶାନ୍ତନୁ—କଣ ଭାବୁଛ ?
ବୟସ୍ୟ—ଘରକୁ ଆଜ ଯିବା କି ନାହିଁ ।
ଶାନ୍ତନୁ—କାହିଁକି ଯିବ ନାହିଁ ?
ବୟସ୍ୟ—ଗଲେ କି ଆଉ ଏପରି ସୁସ୍ଥ ଭାବରେ ଆମ୍ଭଙ୍କୁ
ଏଠାରେ ଦେଖି ପାରିବେ ?
ଶାନ୍ତନୁ—(ହାସ୍ୟ କରି) କାହିଁକି, ଘରେ କଣ ରୋଗ
ଜଗିବସିଛି କି ?
ବୟସ୍ୟ—ଜଗିବସିଛି ବୋଲି ବସିଛି, ସାକ୍ଷାତ୍ ଯେମନ୍ତ
ରୁଦ୍ରଚଣ୍ଡୀ କରାଳ ବଦନ ବ୍ୟାଦାନ କରି ଉଦ୍‌ଗତ
ନୟନରେ ବାଳକୁ ଅନାଇ ବସିଛନ୍ତି ।
ଶାନ୍ତନୁ—ବାଳ ନେଇ ଦେଉ ନାହଁ ?
ବୟସ୍ୟ—ଦେବାର କ୍ଷମତା ଥିଲେ କି ଆଉ ଏପରି
ଚିନ୍ତିତ ହୁଅନ୍ତୁ ?
ଶାନ୍ତନୁ—ଚିନ୍ତିତ ହେଲେ କଣ ଖାଲି ଚଳିବ ? ଦାମୀ
ଯୋଗାଡ଼ କରୁନାହଁ ?
ବୟସ୍ୟ—ମୁଁ କି ଯୋଗାଡ଼ ନ କରୁଛି, ମହାରାଜ ।
ଶାନ୍ତନୁ—ଏତେଠି ଛିଡ଼ା ହୋଇ କଣ ଯୋଗାଡ଼
କରୁଛ ? କଷ୍ଟ ନ କଲେ କିପରି ହେବ ?
ବୟସ୍ୟ—ଅନ୍ୟର କଷ୍ଟକରିବାକୁ କହୁଛନ୍ତି । ଏହି
ଉଦରାର୍ଣ୍ଣବ ଭାରରେ ତ ଚରଣମେରୁଦ୍ୱୟ ରସା-
ତଳଗାମୀ ହେବାକୁ ବସିଲାଣି-ଆଉ-ବାକ୍ୟ-ରଶ୍ମି
ଦହନରେ ରସନା ତ ଭସ୍ମୀଭୂତ ହୋଇ କଣ୍ଠରୁଦ୍ଧ
ହେଲାଣି; ଆଉ କେତେ କଷ୍ଟ ଦେବାକୁ ଇଚ୍ଛା
କରନ୍ତି, ମହାରାଜ ।
ଶାନ୍ତନୁ—( ହାସ୍ୟ କରି ) ଆଚ୍ଛା ତେବେ କଷ୍ଟରୁ ମୁକ୍ତ
ହେବେ ଆସନ୍ତୁ ।
ବୟସ୍ୟ—( ସ୍ୱଗତ ) ଉଦରସ୍ଥ ଆଉ ଯୋଗାଡଟା ତେବେ
ହୋଇଗଲା । ଆହା ! ଦିଗ୍‌ଗଜ ମୁଣ୍ଡ ନ ହେଲେ
କଣ ଏ ସବୁ ଉପାୟ ସହଜରେ ପ୍ରବେଶ କରିବ ?
( ନେପଥ୍ୟେ ବାଦ୍ୟଧ୍ୱନି )
ଶାନ୍ତନୁ—ଏହି ଶୁଣ ହେ ବୟସ୍ୟ ! ବାଜୁଅଛି ବାଦ୍ୟ,
ସଂହିବାଦେ ସଂହିଦ୍ୱାରେ,
କି ଝଂକାରେ ପୁଣି, ଝଂକାରି ହୃଦୟେ

ତାଳେ ଆନନ୍ଦ ଲହରୀ ।
ଏହି ଦେଖ, ଦୀପାଳୋକେ ପୁଣି ପ୍ରତିଗୃହ
ଦଶିଲଣି ଦୀପ୍ତ ଯେସନେ ଗୋଟି ଗୋଟି ଚନ୍ଦ୍ର;
କିବା ସୁଖକର ରଶ୍ମି !
ଝାଙ୍କିଉଠେ ପ୍ରେମ ମୋର ପରଶେ ତାହାର,
ଆସ ବନ୍ଧୋ ତ୍ୱରା, ମାତିବା ଉତ୍ସବେ ଆଜ,
ମତୁଆଳ ଯହିଁ ହୋଇଛନ୍ତି ସର୍ବେ ।
( ଉଭୟଙ୍କର ପ୍ରସ୍ଥାନ )
ସୁରୁଚି—( ବେଗେ ପ୍ରବେଶ କରି ) ସର୍ବନାଶ !
ସର୍ବନାଶ ! କାହାକୁ ମଣିମା ? କିପରି ଜଣାଇବି,
ରାଣୀମାଙ୍କୁ ନହର ଗୋଟାଯାକ ଖୋଜି ଖୋଜି
ପାଉନାହିଁ ! ( ବେଗେ ନିଷ୍କ୍ରାନ୍ତ ! )

---

## ଷଷ୍ଠ ଦୃଶ୍ୟ

( ଗଙ୍ଗାତୀର । )

( ଗଙ୍ଗାଙ୍କ ଧୀରେ ଧୀରେ ପ୍ରବେଶ )

ଗଙ୍ଗା—କି ସୁନ୍ଦର ମୁଖଶ୍ରୀ, ନିଦ୍ରବଦୁର୍ଲ୍ଲଭ—
ଶୀତାନିଳ ହିଲ୍ଲୋଳିତ-ଅଳକାବେଷ୍ଟିତ !
ସୁଧାକରକରସ୍ପର୍ଶେ କୁମୁଦ କି ଅଡ଼
ବିକଶିତ ନୀଳ ସରେ ବିଚିମାଳାପୂର୍ଣ୍ଣ ?
ଅଥବା କୁମୁଦବନ୍ଧୁ ଆଜ
ନିଜେ କୁତୂହଳେ,
ଅଲକ୍ଷିତେ, ମର୍ତ୍ତ୍ୟଲୋକଶୋଭା ଦେଖି, ଦେଖି,
ଭ୍ରମୁଥିଲେ ମତ୍ତ ହୋଇ ଏକାକୀ ସେ ଯେବେ
ଧରା ପଡ଼ି କରେ ମୋର ସ୍ପନ୍ଦହୀନ ଏବେ !
( ପୁତ୍ରମୁଖାବଲୋକନକରି )
ଏହି କୃଷ୍ଣ ତୋଳା ଯୁଗ୍ମ ଉନ୍ମୁକ୍ତ ଅଧୁନା,
ଯେସନେ କୋକନଦଭ୍ରମେ, ଭ୍ରମର ଭ୍ରମରୀ
ଉନ୍ମତ୍ତ ଭାବରେ ଅସି ରହିଛନ୍ତି ଲାଗି ।
ହାୟ !
କିରୂପେ ଭସାଇ ଦେବି କାଳସ୍ରୋତେ ଏବେ,
ମାୟା, ମମତା ହୃଦୟ ଅକର୍ଷୁଛି ଯେବେ !
( ପୁନର୍ମୁଖ ଚୁମ୍ବି )

ଏହି ଦେଖ, ପୈଶାଚିକ କାର୍ଯ୍ୟ ଯେମନ୍ତ ସେ
ବୁଝିପାର, ସଙ୍କଳ୍ପଣେ ଗୃହୁଁ ଅଛୁ ମୋତେ ।
କି ଛଳ ଛଳ ଗୃହାଣୀ ! କି ଓଷ୍ଠ ସ୍ପନ୍ଦନ !
ବଦାରୁଛୁ ମର୍ମସ୍ଥାନ, ଅସିପତେ ଯେସନ୍ତେ ।
( ଚୁମ୍ବନକର )
କିଛୁ ଭୟ ନାହିଁ ଶିଶୁ, ନ ହ'ବେ ବ୍ୟାକୁଳ,
ବାଞ୍ଚିବ ମୁଁ ତୁଚ୍ଛାସଙ୍ଗେ-ନ ଫିଙ୍ଗିବି ଜଳେ ।

ନେପଥ୍ୟେ—ମା ଜାହ୍ନବି ! ପୂତଗାତ୍ରେ,
କି କର, କି କର ଆଜ ମୋହପାଶେ ପଡ଼ି ।
ଦେବକାର୍ଯ୍ୟ ଏକାବେଳେ ଗଲ କି ପାସୋର ?

ଗଙ୍ଗା—( ଚମତ୍କୃତା ହୋଇ ) ସତ୍ୟ ! ସତ୍ୟ !
ଏ'କି ମୋହାଚ୍ଛନ୍ନା ମୁହିଁ !
ଦେବକାର୍ଯ୍ୟ ଏକାବେଳେ ଯାଇଛୁ ପାସୋର !
ଏତେ ସ୍ପର୍ଦ୍ଧା ମର୍ତ୍ତ୍ୟଲୋକ ତୋ'ର,
ବାନ୍ଧୁ ପୁଣି ଦେବନ୍ଦ୍ୱଦ ମାୟାମୋହପାଶେ !
ଧିକ୍ ମୋତେ ! ହସୁଥିଲ୍ ନରେ,
ମର ହୋଇ ମାୟାଜାଲେ ପଡ଼ିଛନ୍ତି ଯେବେ !
ଆଉ ବିଳମ୍ବ ନ ସହେ,
ଛିଣ୍ଡାଇଣ ଦଏ ପାଶ, ଫିଙ୍ଗି ପୁତ୍ର ଜଳେ ।

ଶାନ୍ତନୁ—(ଦ୍ରୁତବେଗେ ପ୍ରବେଶ କରି) ପ୍ରିୟେ ! ପ୍ରିୟେ
ଏ'କି କାର୍ଯ୍ୟ ତବ ?

ଗଙ୍ଗା—ସାବଧାନ ପ୍ରିୟତମ !
ସ୍ମର ତବ ପ୍ରତିଜ୍ଞାର କଥା !
( ଶାନ୍ତନୁ ଅଧୋବଦନରେ ଛିଡ଼ା ହେବା )

( ପଟକ୍ଷେପ )

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ ।

( ଗଙ୍ଗାତୀର )

( ଶିଶୁହସ୍ତେ ଗଙ୍ଗାର ପ୍ରବେଶ )

ଗଙ୍ଗା—ଯାଅ ଶିଶୁ,
ଶୀତାନିଳ-ଆନ୍ଦୋଳିତ ବୀଚି-ଅଙ୍କେ ବସି,
ସେହି ପୁଣ୍ୟଧାମେ,
ଯହିଁ ଭ୍ରାତୃଗଣ ତବ,
ଆଗମନପଥ ଗୃହିଁ ବସନ୍ତି ବ୍ୟାକୁଳେ ।

ଶାନ୍ତନୁ—( ବେଗେ ପ୍ରବେଶ କରି )
କ୍ଷାନ୍ତ ହୋ' ପିଶାଚି !
ନତୁବା—
ମୁଣ୍ଡଛେଦନ ଗଣ୍ଡି ତୋର ଲୋଟିବ ଭୂତଳେ ।
( ସାୟୁକ ସନ୍ଧାନ କରିବା )

ଗଙ୍ଗା—( କ୍ଷାନ୍ତହୋଇ ) ସ୍ମର, ଦେବ ବାରେ
ପ୍ରତିଜ୍ଞାର କଥା ।

ଶାନ୍ତନୁ—(କ୍ରୋଧଭରେ) ପଦାଘାତ ପ୍ରତିଜ୍ଞାରେ ତୋର ।
ପିଶାଚି ! ରାକ୍ଷସି ! ଓଃ ହୋଃ !
ମର୍ମ ଭେଦ ଯେସନ୍ତେ ଛିନ୍ନ ଭିନ୍ନ ଶତ ଖଣ୍ଡ !
ମାୟାବିନୀ ଆରେ !
କି କୁକ୍ଷଣେ ଭେଟି ତୋତେ,
ଗୃହୀକୁ ବାକ୍ୟେ ତୋର ଭୁଲି ପୁଣି,
ସୁନ୍ଦରସୁଷମାଭ୍ରମେ ଧରିଥିଲି କଣ୍ଠେ;
ନ ଜାଣି ବିଷାକ୍ତ କୀଟ ବସେ ତହିଁ,
ଅଲକ୍ଷିତେ ପୁନଃ କରିବ ଦଂଶନ ।
କହ ନାରି !
କୋମଳ ସୃଜନା ପରି ଈଶ୍ୱରର ତୁହି ?
କହ, କେମନ୍ତେ କୋମଳ ପ୍ରାଣେ ତୋର—
ବ୍ୟଥା ଲଭେ ଅଶ୍ରୁମାନ ଯହିଁ
ଦୁଃଖରେ ଦୁଃଖୀର—
ଏତେ ନିଷ୍ଠୁରତା ଉପୁଜିଲ୍ଲ ପୁଣି,
ନିଜ ସ୍ତନ୍ୟପାୟିଗଣେ, ନୁହେଁ ପର ଶିଶୁ—

ଓଃ ହୋଃ ! କେମନ୍ତେ ବର୍ଣ୍ଣିବି ମୁଁ, ପାଷାଣି
ଏକ ନୁହେଁ-ଦୁଇ ନୁହେଁ-ସପ୍ତ ସପ୍ତ ପୁଣି,
ନାଶିଲୁ ଦାନବୀ ସମ କାଲସ୍ରୋତେ ଦେଇ ।
କହ, ଦାନବୀ ତୁ ଏବେ,
ଆଉ ନାହିଁ ନାଶ ତୋର !
କହ ବେଗେ ଦେବ ବେଶ ପରିହରି,
କିଏ ତୁହି ?
ନତୁବା ଟଙ୍କାରି ଏ' କୋଦଣ୍ଡ,
ଛିଣ୍ଡାଇବି ମୁଣ୍ଡ ହେଳେ ।

ଗଙ୍ଗା—ମହାରାଜ !
ଦେବକାର୍ଯ୍ୟ ସିଦ୍ଧ ଏବେ ମୋର,
ସ୍ଥିରଚିତ୍ତେ କରନ୍ତୁ ଶ୍ରବଣ,
ମୁହିଁ ଗଙ୍ଗାଦେବୀ,
ଆସିଥିଲି ନରଦେହ ଧରି
ଦେବକାର୍ଯ୍ୟସିଦ୍ଧି-ଅର୍ଥେ ।

ଶାନ୍ତନୁ—(ସକ୍ରୋଧେ) ଅଦ୍ୟାପି ଛଳନା !

ଗଙ୍ଗା—ଶୁଣନ୍ତୁ ବୃତ୍ତାନ୍ତ ଅଗ୍ରେ,—
ଅଷ୍ଟବସୁ, ବଶିଷ୍ଠଙ୍କ ଶାପେ ଯେବେ;
ନରଦେହ ଧରି ଜନ୍ମିବେ ସଂସାରେ,—
ପାଇଲେ ଆପଣା ପାପକର୍ମ ଫଳେ,
ମୋତେ ତେବେ କହିଲେ ଆସି,
ମୁହିଁ ମାତା, ଧାର୍ମିକ ଜନକ
ହେବ ତାଙ୍କର ଏ' ଭବେ;
ତେଣୁ ଏହି ସମ୍ବନ୍ଧ ଅଙ୍କୁର ।

ଶାନ୍ତନୁ—(ସାଶ୍ଚର୍ଯ୍ୟେ) ସତ୍ୟ କି ଏ !

ଗଙ୍ଗା—ଶୁଣନ୍ତୁ ରାଜେନ୍ଦ୍ର !
ସପ୍ତଶିଶୁ ସପ୍ତବସୁ, ଶାପମୁକ୍ତ ଏବେ;
ଏହି ଅଷ୍ଟମ ଶିଶୁଟି ଶେଷ ବସୁ ।
(ପୁତ୍ର ମୁଖକୁ ଚାହିଁ ରହିବା)

ଶାନ୍ତନୁ—(ଅତ୍ୟାଶ୍ଚର୍ଯ୍ୟ ସହିତ) କି ମାୟା ଏ !
ମୁଁ କି ଜାଗ୍ରତ—ନା ସୁପ୍ତ ?

ଗଙ୍ଗା—(ଶାନ୍ତନୁଙ୍କୁ ଚାହିଁ) ଭାଗ୍ୟବାନ୍ ନୃପେନ୍ଦ୍ର ଆପଣ
ଏହି ବର ଲଭେ !
ଏହି ଶିଶୁ, ପ୍ରସାଦେ ମୋହର
ସର୍ବଗୁଣେ ପୂର୍ଣ୍ଣ ହୋଇ
ଖ୍ୟାତନାମା ହେବ ସ୍ୱର୍ଗ, ମର୍ତ୍ତ୍ୟ, ରସାତଳେ;
ଯୋଗ୍ୟ ଶିକ୍ଷାର୍ଥେ ଅଧୁନା, ନେବି ତାକୁ ସଙ୍ଗେ;
ଉପଯୁକ୍ତ କାଳେ ପୁଣି ଦେବି ତବ କରେ;
ବିଦାୟ ସମ୍ପ୍ରତି ନୃପ, କାର୍ଯ୍ୟ ଶେଷ ମମ ।
( ଗଙ୍ଗା ନଦୀରେ ଝମ୍ପ ପ୍ରଦାନ )

ଶାନ୍ତନୁ—ପ୍ରିୟେ ! ପ୍ରିୟେ !
( ତଦନୁକରଣ )

---

## ଦ୍ୱିତୀୟ ଦୃଶ୍ୟ

[ ଲମ୍ବୋଦରର ଗୃହାଭ୍ୟନ୍ତର ]

( ବ୍ରାହ୍ମଣୀର ପ୍ରବେଶ । )

ବ୍ରାହ୍ମଣୀ—ବାହ୍ମ୍ରଣଟା ଯାଉଛି-ରାତି ଆସି ଦ'ଣ୍ଡହେବ ହେବାକୁ ବସିଲା-ତେବେବି ଦେଖାନାହିଁ-କଣ କରୁଛି ? ମୋର କଣ ଯିବ କି ? ଆଣିଲେ ଖାଇବ ନଇଲେ ଶୋଇବ-ଉପାସ ତ ଥରେ ନୁହେଁକି ଦ'ଥର ନୁହେଁ ସାତ-ସାତଥର--ଏତେ-ଏତେଥର ତେଁଣି ତେବେବି କଣ ଶିଖୁଚି ?-ମୁଁ କହୁଛି, ଗଣ୍ଡିଏ ବସେଇ ଦେଇଥାଏଁ, କାଲେ, ଏଥରକୁ ଯେବେ ରାଣୀ ପୁଅଖାଇ ଡାହାଣୀ ହୁଅନ୍ତି-ନା, ନା, ଏଥର କେବେ ନୁହେଁ-ସାତଦିନ ଗଲାଣି—ରଜା ରାଣୀଙ୍କି ଅନେକ କରି ବୁଝେଇଲେଣି-କେଜାଣି କେ—ସେଥର ମାନଙ୍କରେ କଣ ଗୁରୁ ପାଞ୍ଚଦିନ କରି ଯାଇ ନ ଥିଲା କି ? ସେଥର-ମାନଙ୍କରେ କଣ ରଜା ରାଣୀଙ୍କି ବୁଝେଇ ନ ଥିଲେ କି ? ନରମାୟା ନାରାୟଣଙ୍କୁ ଅଗୋଚର—ଓଃ ପେଟ ବଡ଼ ଜଳିଲାଣି—କିଛି ଖାଇନାହିଁ—ଅନେଇ ବସିଚି—ରଜାଘର-ମାଲ ଆସିବ, କାହିଁ ? କେତେବେଳେ ଆସୁଚି—ଯାଏଁ ଅଭିବାରେ ଦାଣ୍ଡ-ଦୁଆରକୁ ଅନାଏଁ ।
( ବ୍ରାହ୍ମଣୀ ଗମନୋଦ୍ୟତା ହେବାବେଳେ ଲମ୍ବୋଦର ବେଗେ ପ୍ରବେଶ କରି ଉପବିଷ୍ଟ ହେବା )

ଲମ୍ବୋ—ବ୍ରାହ୍ମଣୀ ଲୋ ! ସର୍ବ୍ବନାଶ ! ସର୍ବ୍ବନାଶ !

ବ୍ରାହ୍ମଣୀ—କଣ ? କଣ କହୁଚ ? କାହିଁକି ? କାହିଁକି ?

ଲମ୍ବୋ—ସେହି ପୁଅଖାଇ ଡାହାଣୀ ଲୋ । ପୁଅଖାଇ ଡାହାଣୀ !

ବ୍ରାହ୍ମଣୀ—ମୁଁ ଜାଣେ ପରା ।

ଲମ୍ବୋ—ଆଲୋ ! ଏଥର ସବୁ ସାରଛି ଲୋ-ସବୁ ସାରିଛି ! ଠାକୁର ଖାଇ ଠାକୁର ଖଟୁଲିକି ପାର କରି ଦେଇଛି ଲୋ-ପାର କରି ଦେଇଛି !

ବ୍ରାହ୍ମଣୀ—କଣ ? କଣ ? କଣ ସାରିଛି ?

ଲମ୍ବୋ—ନିଜେ ବୁଡ଼ିମରିଛି—ସାଙ୍ଗେ ସାଙ୍ଗେ ରାଜାଙ୍କୁବି—

ବ୍ରାହ୍ମଣୀ—ଏଁ, ଏଁ, କଣ କରିଛି ?

ଲମ୍ବୋ—ବୁଡ଼େଇ ମାରିଛି ଲୋ—ବୁଡ଼େଇ ମାରିଛି—

ବ୍ରାହ୍ମଣୀ—ଏଁ, ଏଁ ! କେମିତି ? କେମିତି ?

ଲମ୍ବୋ—ନିଜେ ଆଗେ ପାଣିରେ ପଡ଼ି ରାଜାଙ୍କୁ ଧୋଷାଡ଼ି ନେଲା—କି ରାଜାଙ୍କୁ ପେଲି ଦେଇ ଆପେ ପାଣିରେ ପଡ଼ିଲା, କହି ପାରୁନାହିଁ ଲୋ ! କିନ୍ତୁ ଦେଖିଲିବେଳକୁ ( କମ୍ପିତସ୍ୱରରେ ) ପାଣିରେ ଦୁଇଜଣଯାକ ଧରାପରା ହେଉଥିଲେ ଲୋ—ଧରାପରା ହେଉଥିଲେ ! !

ବ୍ରାହ୍ମଣୀ—ଆହେ ରାଜା ! ମୁଁ ପଚାରୁଛି, ଏତେ ଲୋକଙ୍ଗହଳରେ କେହି କଣ ନ ଥିଲେ ? କେହି କଣ ଜାଣି ପାରିଲେ ନାହିଁ ? ଏଡ଼େ କାଣ୍ଡଟାଏ ଘଟିଗଲା !

ଲମ୍ବୋ—କେହି ନ ଥିଲେ ଲୋ, କେହି ନ ଥିଲେ ! ଖିଅପିଆ ସାରି ଯେ ଯାହା ଘରକୁ ଚାଲି ଯାଇଥିଲେ ଲୋ, ଚାଲି ଯାଇଥିଲେ !

ବ୍ରାହ୍ମଣୀ—ଆଉ ତମେ ?

ଲମ୍ବୋ—ମୋତେତ ଜଗିବାପାଇଁ ଗଛମୂଳରେ ବସାଇ ଦେଇ ରାଜା ଅନ୍ତଃପୁରକୁ ଗଲେ ଯେ ଗଲେ—ଓଃ ହୋଃ ଲୋ ବ୍ରାହ୍ମଣି, ସର୍ବ୍ବନାଶ ହେଲା ଲୋ, ସର୍ବ୍ବନାଶ ହେଲା ।

ବ୍ରାହ୍ମଣୀ—ତମେ ପରା କହୁଚ, ତମେ ଦେଖିଚ ଧରାପରା ହେବାକୁ ?

ଲମ୍ବୋ—ଆଲୋ ଲୋକେ ଆସି ଏ ହୁଲର କଲେ ନା ?

ବ୍ରାହ୍ମଣୀ—(ହସି) ଶୁଣିଛ ତେବେ, ଦେଖିନାହିଁ ?—ତହୁଁ ?

ଲମ୍ବୋ—ତାହୁଁ ମୁଁ ଧଇଁସଇଁ ହୋଇ ଘରଆଡ଼େ ଧାଇଁଛି ଲୋ, ଘରଆଡ଼େ ଧାଇଁଛି !

ବ୍ରାହ୍ମଣୀ—ବେଶ୍ କରିଚ । ବିଦ୍ୟାଧରଗଜ ନା'ରେ ଯେମିତି-ଗୁଣରେବି ସେମିତି ! ରାଜାଙ୍କ ଦଶାଟା ଯେ କଣ ହେଲା, ତା' ଆଉ ଦେଖି ଆସିବାକୁ ହେଲାନାହିଁ !

ଲମ୍ବୋ—ଏହି ତ ଶୀଘ୍ରମୁଁ ଖବର କରୁଛି, ଅନୁମତି ହେଲେ, ଯିବି ଲୋ ଯିବି !

ବ୍ରାହ୍ମଣୀ—ହାପୂରେ ବିଧାତା ! ଏପରି ମଣିଷ ପୁଣି ଜଗତରେ ଥାନ୍ତି ! ଯାଏଁ, ବୁଝେଁ, ରାଜାଙ୍କ ଦଶା କଣ ହେଲା ?

( ଦ୍ରୁତପଦେ ପ୍ରସ୍ଥାନ । )

ଲମ୍ବୋ—ବ୍ରାହ୍ମଣି ଲୋ ! ତୁ 'ଯା'ଧାତୁ କରନା ଲୋ, 'ଯା'ଧାତୁ କରନା ! ସେହି ପୁଅଖାଇ ଡାହାଣୀ ବାଟ ଓଗାଳି ବସିଛି ଲୋ, ବାଟ ଓଗାଳି ବସିଛି ! ତୋତେ ଯେବେ ନରମା ପାଇ ଧୋଷାଡ଼ି ନିଏ, ମୋର ସେବା ଆଉ କିଏ କରିବ ଲୋ, କିଏ କରିବ ? (ଉଠିବସି) ଏଁ ! ସତେ ସତେ କଣ ବ୍ରାହ୍ମଣୀ ଚାଲିଗଲା ? କିଏ ଅଛ ସବୁ ଧାଇଁପଡ଼ ହୋ ଧାଇଁପଡ଼-ମୋର ଘର ବୁଡ଼ିଗଲା ହୋ, ବୁଡ଼ିଗଲା-

( କାନ୍ଦୁ କାନ୍ଦୁ ପ୍ରସ୍ଥାନ । )

---

## ତୃତୀୟ ଦୃଶ୍ୟ

( ଅନ୍ତଃପୁର । )

( ପଲଙ୍କୋପରି ଶାନ୍ତନୁ ନିଦ୍ରିତ ଓ ସୁରୁଚି ପଦସେବାରେ ପ୍ରବୃତ୍ତ । )

ଶାନ୍ତନୁ—(ଉଠିବସି) ଏହି ଧରିଛି ଅଞ୍ଚଳ । ଆଉ ଯିବ କାହିଁ ?

(ଦେଖି) କାହିଁ ? କେଉଁଠି ଅଞ୍ଚଳ ?

ସୁବ୍ରତ—(ସଭୀତରେ) ମହାରାଜ ! ନହୁଅ ଚଞ୍ଚଳ ।
ଶାନ୍ତନୁ—ଏହ ଯେ କୋକିଳକଳ-ବୀଣାକ୍ୱଣାସ୍ୱର—
ସ୍ଫୁରୁଛି ଶ୍ରବଣେ ଯେଉଁଠୋ ଅମୃତ ନିର୍ଝର !
(ରହିଯାଇ)
କାହିଁ ? କେଉଁଠି ସେ ସ୍ୱନ ? ମର୍ମ ତନ୍ତ୍ର ମୋର
ଛିନ୍ନ ଭିନ୍ନ କରି କିବା ଲୁଚିଲା ବହନ ।
ସୁବ୍ରତ—ମହାରାଜ ! ନ ହୁଅ ଅସ୍ଥିର !
ଶାନ୍ତନୁ—ଏହ ଯେ ଅଶ୍ୱାସେ ପ୍ରିୟା, 'ନ ହୁଅ ଅସ୍ଥିର !'
କାହିଁ ସେ ଲାବଣ୍ୟ ମୂର୍ତ୍ତି ! କେମନ୍ତେ ଦେଖିବି !
(ସୁବ୍ରତଙ୍କୁ ଦେଖି )—ଏହ ଯେ ରାଜିତା ପାଶେ
କାମମନୋହରୀ ।
(ସାବେଗେ) ଦିଅ ପ୍ରିୟେ !
ଦିଅ ତୁରା ଅଧରେ ଚୁମ୍ବନ;
ଶୀତାସଙ୍ଗ ଗାତ୍ରେ ଦିଅ—ଜଉଁ ଏ' ପରାଣ ।
( ଆଲିଙ୍ଗନ କରିବାକୁ ଯିବା )
ସୁବ୍ରତ—ନୃପେନ୍ଦ୍ର ! ହୁଅନ୍ତୁ ସ୍ଥିର, ଅସୁସ୍ଥ ଆପଣ ।
ଶାନ୍ତନୁ—କି-ଏ ? ସୁବ୍ରତ !
ଏକାକୀ ଯେ ତୁ ।
କହ ଲୋ ସୁବ୍ରତ ତୁରା
ପ୍ରିୟାହୀନ କି ବାସ୍ତବେ ମୁହିଁ ?
ତୁହି ଲୋ ଜୀବନ ସାଥି ତାର,
କହ ସତ୍ୟ କରି,
ବିଚ୍ଛେଦ କି ଚିର ଦିନ ଘଟିଲା ଏ ଭାଲେ ?
କହ ଲୋ କେମନ୍ତେ ଏବେ ଅର୍ଦ୍ଧାଙ୍ଗ ବିହୁନେ,
ଅପର ଅର୍ଦ୍ଧାଙ୍ଗ ମୋର ରହିଛି ପରାଣେ ।
ନ-ନା-ମିଥ୍ୟାକଥା ଏହ, ମିଥ୍ୟା ଏ ଭାବନା !
(କରଯୋଡ଼ି) କହ ପ୍ରିୟସଖି ମୋର,
କହ ଦୟା ବହି—
କାହିଁଛନ୍ତି ସଖୀ ତବ ଲୁଚୁଇଛୁ ମୋତେ ?
ସୁବ୍ରତ—ଜ୍ଞାନୀ ହୋଇ ଏଡ଼େ ଅଜ୍ଞାନ ଆପଣ ।
ଶାନ୍ତନୁ—(ଦୀର୍ଘନିଶ୍ୱାସ ତ୍ୟାଗ ପୂର୍ବକ)
ସତ୍ୟ ଲୋ ସୁବ୍ରତ, ମୁଁ ଅଜ୍ଞାନ ।
ଜ୍ଞାନୀ ହୋଇ ଯେବେ
ପ୍ରିୟା ବାର୍ତ୍ତା ସ୍ଥିର ନ ପାରଇ ଜାଣି ।
ଯାଉଅଛୁ ଏହାଙ୍କିଣି ଖୋଜିବା ନିକୁଞ୍ଜେ,
ଲୁଚିଛନ୍ତି କ୍ରୀଡ଼ାଛଳେ ନିଶ୍ଚେ ମୋତେ ଖଞ୍ଜେ ।
( ଉଠି ବେଗେ ପ୍ରସ୍ଥାନ । )
ସୁବ୍ରତ—( ସୋଦ୍‌ବେଗେ ) କେ ଅଛ ଶୀଘ୍ର ଆସ,
ବାତୁଳ ଯେ ରାଜା ।                ( ଅନୁଧାବନ )

—

## ଚତୁର୍ଥ ଦୃଶ୍ୟ

( ବଶିଷ୍ଠଙ୍କ କୁଟୀର ଦ୍ୱାର )

ନେପଥ୍ୟେ—ଧନ୍ୟ, ଧନ୍ୟ, ଦେବବ୍ରତ !
ବଶିଷ୍ଠ—( ବେଗେ ପ୍ରବେଶ କରି ) କାହିଁକି ଏ'ଗୋଳ ?
( ଦେବ ବାଳକମାନଙ୍କର ବିପରୀତ ଦିଗରୁ ପ୍ରବେଶ । )
୧ମ ବାଳକ—ଗୁରୁଦେବ !
ହେର ଆଜ ଅଦ୍ଭୁତ ଶିକାର ବୀରଗାଙ୍ଗେୟର ।
ବଶିଷ୍ଠ—କିସ ? ଜୀବିତ ଯେ ଏହ !
ବାଣ ଚିହ୍ନ ନ ଦେଖେଁ ତ କାହିଁ !
୨ୟ ବାଳକ—ସେହିପରି, ଗୁରୁଦେବ !
ବାଜିଥିଲା ଅମ୍ବୁରେ ଏ ଲକ୍ଷ୍ୟ;—
ଉଡ଼ନ୍ତା ଶକୁନ୍ତ ହେବ, ଉଚ୍ଚେ ପୁଣି ଥିବ,
ଅଯୁତନେ ଯୁଦ୍ଧୋତ୍ତମ ଯେମନ୍ତ ଦେଖୁଚ,
ଜୀବନ୍ତ ଇଦୃଶ ଏକ, ବାଣେ ଅଣିଦେବ ।
ବଶିଷ୍ଠ—କାହିଁ ତୁମ୍ଭ ଜେତାବନ୍ଧୁ ? ନ ଦେଖେଁ ତ
ମେଳେ ।
୨ୟ ବାଳକ—ବଡ଼ ଲଜ୍ଜାଶୀଳ ଦେବ, ଭକ୍ତିନତ ପୁଣି,
ଶତ ଅନୁରୋଧେ ମଧ୍ୟ ନ ଆସିଲା ସଙ୍ଗେ ।
୧ମ ବାଳକ—ଏହ ଯେ ଆସଇ ଦେବ,
ମାତାର ସଙ୍ଗତେ ।
କାର୍ତ୍ତିକ ପାର୍ବତୀ ସଙ୍ଗେ ଆସେ କିବା ଶୋଭେ ।
( ଦେବବ୍ରତ ଗଙ୍ଗାଙ୍କ ସହିତ ପ୍ରବେଶ କରି
ବଶିଷ୍ଠଙ୍କୁ ପ୍ରଣାମ କରିବା )
ବଶିଷ୍ଠ—ଦୀର୍ଘାୟୁ ହୁଅ ରେ ବତ୍ସ, କରେଁ ଆଶୀର୍ବାଦ ।
( ଗଙ୍ଗାଙ୍କୁ ପ୍ରଣାମ କରିବା ବେଳେ )
ମା ଜାହ୍ନବୀ—ପୂତନୀରେ !
ବନ୍ଦେ ନତଶିରେ ବଶିଷ୍ଠ ଅଧମ
ପୁଣ୍ୟ ପାଦପଦ୍ମ ତବ ।

ଗଙ୍ଗା—ପୁଣ୍ୟଫଳ ଯଜ୍ଞ ତବ ଫଳାଉ ବହନ ।
ବଶିଷ୍ଠ—ଦେଖ ଗୋ ଜନନୀ ଏଣେ,
 କି କାର୍ତ୍ତି ଲଭୁଛନ୍ତି ପୁତ୍ର, ଆଜ ଲକ୍ଷ୍ୟ ଭେଦେ ।
ଗଙ୍ଗା—ମୁନିବର ।
 ନୁହେଁ ଏହା ତନୟର କୀର୍ତ୍ତି—
 କୀର୍ତ୍ତି ଆପଣଙ୍କ ।
ବଶିଷ୍ଠ—ସତ୍ୟ ଏ ବଚନ ମାତଃ, ମାନୁଅଛି ମୁହିଁ
 କିନ୍ତୁ କି ହେତୁ ଏଥିର,
 ଅଧ୍ୟାପକ ଯେବେ ଅକୀର୍ତ୍ତି ଲଭଇ
 ପୁଣି ସେହି ବିଦ୍ୟା ଦାନେ ?
 (ଦେବବ୍ରତଙ୍କୁ ଚାହିଁ) କହିଲରେ ଦେବବ୍ରତ ।
 ଅଛି କି ଏ' ଭାବେ କୌଣସି ଶୋଳକ ମନେ ?
ଦେବ—ଗୁରୁଦେବ ।
 ଏହି କି ସେ ଶ୍ଳୋକ ?
 ପଡେ ମନେ ଭାବାର୍ଥ ଯାହାର,
 ବାଡରେ ଅଦତ୍ୟ ରଶ୍ମି ସମଭାବେ ସର୍ବେ,
 ସ୍ୱଚ୍ଛ ପ୍ରତିଫଳେ ତାହା, ମୃତ୍ ନୁହେଁ କେବେ ।
ବଶିଷ୍ଠ—ଶୁଣ ଗୋ ଜନନି ।
ଗଙ୍ଗା—(ସାନନ୍ଦେ) ମୁନୀନ୍ଦ୍ର ।
 ଆସିଅଛି ଆଜ ମୁହିଁ ଜିଜ୍ଞାସୁ, ସକାଶେ,
 ଉପଯୁକ୍ତ କି ଗାଙ୍ଗେୟ ଏବେ
 ମର୍ତ୍ତ୍ୟଲୋକବାସେ ?
ବଶିଷ୍ଠ—ଏତାଦୃଶ ପ୍ରଶ୍ନ—ଅର୍ଥ ନ ବୁଝେ ଗୋ ମାତଃ ।
 ଭବାଦୃଶୀ ମାତା ଯା'ର,
 ଶାନ୍ତନୁ ସଦୃଶ ଧାର୍ମିକ ଜନକ ପୁଣି,
 ଲୋଡଇ ଯୋଗ୍ୟତା ସେହି
 ସମାନ୍ୟ ଭୂଲୋକ ବାସେ ।
 ଅସମ୍ଭବ । ଅସମ୍ଭବ ।
ଗଙ୍ଗା—ଋଷିବର ।
 କହୁଛି ତ ଅଭିଜ୍ଞତା ମମ ଯେହି ମାୟାପୁରେ ।
ବଶିଷ୍ଠ—ଜନନି । ନ କର ଭୟ;
 ସର୍ବଗୁଣୀ,ଭକ୍ତ, ସର୍ବବେଦଦର୍ଶୀ,
 ସର୍ବନିୟମାନୁବର୍ତ୍ତୀ ପୁତ୍ର ତବ,
 କଷ୍ଟେ କେବେ ନ ପଡ଼ିବ ଜାଲେ ।

ଗଙ୍ଗା—(ପୁନଅତେ ଚାହିଁ) କହ ପୁତ୍ର ।
 ପାରିବୁ କି ମାୟାପାଶ ଛେଦ ?
ଦେବ—ମା ଗୋ !
 ସ୍ନେହ ତବ ଚିରଦିନ ଥାଏ ଯେବେ ପୁତ୍ରେ,
 ଆଶୀଷବର୍ଷିତ ଗୁରୁ ନ କରନ୍ତି ଶିଷ୍ୟେ,
 ପ୍ରେମ ଡୋରରେ ସହାଧ୍ୟାୟୀ ବାନ୍ଧନ୍ତି ଭ୍ରାତାକୁ,
 କହୁଅଛି ଦୃଢ଼ କର ମାତଃ !—
 ନାହିଁ ଶକ୍ତି ଏତାଦୃଶ ତ୍ରିମଣ୍ଡଳେ ଏହି—
 ଗୁପ୍ତ ବା ପ୍ରକାଶ—
 ବାନ୍ଧିବ ଗାଙ୍ଗେୟେ, ଛଳେ, ବଳେ ବା କୌଶଳେ ।
ସମସ୍ତେ—ସାଧୁ, ସାଧୁ, ଦେବବ୍ରତ ।
ଗଙ୍ଗା—ମହାମୁନି ।
 କରନ୍ତୁ ଏବେ ଆଶୀଷ ପ୍ରଦାନ,
 ସହାଧ୍ୟାୟୀ ଗଣ !
 କର ସର୍ବେ ଆନନ୍ଦ ବର୍ଷଣ,
 ସୁଖେ ଥାଉ ପୁତ୍ର ମୋର ମର୍ତ୍ତ୍ୟଲୋକେ ଯେତେଦିନ
 ବ୍ୟୋମସମ ଲଭୁ ଖ୍ୟାତି ଅନନ୍ତ, ଅମର ।
ବଶିଷ୍ଠ—( ମସ୍ତକରେ ହସ୍ତ ଦେଇ ) କରୁଛି ଆଶୀଷ,
 ଦେବ ! ପୂଜାଯୋଗ୍ୟ ନାମ ତୋର
 ହେଉ ମର୍ତ୍ତ୍ୟ ଲୋକେ ।
ବାଳକଗଣ—ଜୟ ଦେବବ୍ରତ ଜୟ ଘୋଷନ୍ତି
 ସରବେ ।
ବଶିଷ୍ଠ—ଶୁଣ ଶିଷ୍ୟ ଉପଦେଶ, ସାର ଗୁଣି ମନେ;—
 ଯେଉଁ ବେଦ, ଶାସ୍ତ୍ର ତୁମ୍ଭେ କରିଛ ପଠନ
 ଯେଉଁ ଧର୍ମକଥା ମାନ ଶୁଣିଅଛ କର୍ଣ୍ଣେ,
 କର ଚେଷ୍ଟା ପ୍ରାଣପଣେ, ବାଧା ବିଘ୍ନ ସତ୍ତ୍ୱେ,
 ଆତ୍ମକାର୍ଯ୍ୟେ ପରିଣତ ହୋଇବ ଯେମନ୍ତ ।
ଦେବ—(ମୁଣ୍ଡ ନୁଆଁଇ) ଉପଦେଶ ଶିରୋଧାର୍ଯ୍ୟ ତବ ।
ବଶିଷ୍ଠ—ଶୁଣ ପୁଣି,—
 ପରାଜୟେ ସେ ସର୍ବର ପରାଜିତ ସର୍ବ ।
 ମହାଶତ୍ରୁ ଜାଣ ତବ ଇନ୍ଦ୍ରିୟନିଚୟ;
 ବୀରଶ୍ରେଷ୍ଠ ନାମ ତେଣୁ, ଅଭିଳାଷ ଯେବେ—
 ଆନ ଶତ୍ରୁ ଚିନ୍ତି ଦୂରେ, ଦମହ ଇନ୍ଦ୍ରିୟେ ।

ଦେବ—(ମୁଣ୍ଡ ନୁଆଁଇ) ଯଥା ଉପଦେଶ ଗୁରୁଦେବ,
ପାଳିବ ଯତନେ ।
ବଶିଷ୍ଠ—ଶୁଣ ପୁଣି—
ଧର୍ମବୀର ନାମେ ଯେବେ ଅଭିରୁଚି ଥାଏ,
ସ୍ୱାର୍ଥତ୍ୟାଗମହାବ୍ରତ କର ହେ ପାଳନ,
ପରହିତେ ସ୍ୱାର୍ଥତ୍ୟାଗ, ସ୍ୱସୁଖବିନାଶେ,
ସର୍ବବିଧ ତ୍ୟାଗଠାରୁ ଶ୍ରେୟସ୍କର ଜାଣ ।
ଦେବ—ପ୍ରାଣପଣେ ଏହି ବ୍ରତ କରିବି ପାଳନ ।
ବଶିଷ୍ଠ—ଶୁଣ ଶେଷ ଉପଦେଶ—ଉପଦେଶସାର,—
ଚରାଚର, ଦେବନର, ଶତ୍ରୁ ମିତ୍ର ଗଣେ,
ମିତ୍ରାଲିଙ୍ଗନେ ବାନ୍ଧିବ, ଅଭିଳଷ ଯେବେ,
ଏହି ମହାଦାନବିଧି ପାଳ ହେ ଯତନେ,—
ମୁକ୍ତ ହୃଦେ ପ୍ରେମଧନ-ଦାଅ ଅକାତରେ ।
ଦେବ—ଦାଅ ପ୍ରେମ, ପ୍ରେମନିଧି ଦରିଦ୍ର ଶିଷ୍ୟକୁ ।
ବଶିଷ୍ଠ—କାମଶୂନ୍ୟ କର୍ମ କର, ସର୍ବ ସିଦ୍ଧ ହେବ ।
ଦେବ—ସେହି କର୍ମେ ଦାଅ ଶକ୍ତି, ଏତିକି ମିନତି ।
ବଶିଷ୍ଠ—ଲଭିବ ସେ ଶକ୍ତି ନିଷ୍ଠେ—ଭକ୍ତିକର ହୃଦେ ।
ଦେବ—ପ୍ରସାଦେ ଗାଙ୍ଗେୟ, ଦେବ ପାଇଛି ଅଭୟ,
ଆଉ ନାହିଁ ଡରେ ଶତ୍ରୁ, ଗୁପ୍ତ ବା ପ୍ରକାଶ ।
ସର୍ବେ—ଜୟ ଗାଙ୍ଗେୟର ଜୟ ! ଜୟ ଗାଙ୍ଗେୟର ଜୟ ।
ବଶିଷ୍ଠ—ମାତଃ ! ଧନ୍ୟ କର ଦାନେ ଏବେ
ଆତିଥ୍ୟ ଗ୍ରହଣେ ।
ଗଙ୍ଗା—ଚାଲନ୍ତୁ ମୁନୀନ୍ଦ୍ର ।
( ସମସ୍ତେ ନିଷ୍କ୍ରାନ୍ତ )

---

## ପଞ୍ଚମ ଦୃଶ୍ୟ

( ଗଙ୍ଗା ତଟସ୍ଥ ବନଭୂମି )
( ଶିକାରୀ ଗଣଙ୍କର ଗୀତ ଗାଇ ପ୍ରବେଶ )

ଗୀତ

ଶିକାରୀଗଣ—ଧର୍ ଧର୍ ଭାଇ, ମାର୍ ମାର୍ ଭାଇ,
ଗଲା ପଳାଇ ।
( ଅରେ ଗଲା ପଳାଇ ! ଅରେ ଗଲା ପଳାଇ !
ମାରି ମାରି ଶର ଓଟାରି ହୁଃ—
ଝାଡ଼ ଲତା ଆଡ଼ ପୁରି, ବଣପଶୁ ଯିବେଟି କରି
ମାର୍ ମାର୍ ବର୍ଚ୍ଛା ଧରି ମାର୍
( ମାର୍ ରେ ମାର୍ ! ମାର୍ ରେ ମାର୍ ! )
ଚାଲ୍ ଚାଲ୍; ଧର ଧର, ମାର ଗୋଡ଼ାଇ ।

୧ମ ଶିକାରୀ—ଅରେ ! କାହିଁରେ ? ରାଜା ଏତେ ଭଲ ଭଲ ଶିକାରଗୁଡ଼ାକ ଅକାରଣେ ଘଉଡ଼ାଇ ଆଣିଲୁ ଯିନା !
୨ୟ ଶିକାରୀ—ରଜା କଣ ସତେ ଶିକାର କରି ଆସିଛି ?
୩ୟ ଶିକାରୀ—କାଣ୍ଡ ଶର ଆଣିଚ ଯେତେବେଳେ ।
୧ମ ଶି—ମିଛ କଥା ।
୩ୟ ଶି—ମୁଁ ଆଖି ଛୁଇଁଚି ।
୨ୟ ଶି—ତୁ ନିଷ୍ଟେ ମିଛ କଥା କହୁଚୁ ।
୩ୟ ଶି—ମୁଁ ନିଷ୍ଟେ ମିଛକଥା କହୁଚି ? ତେବେ ଜଙ୍ଗଲକୁ ରଜା କଣ ହାଉୟା ପିଇବାକୁ ଆସିଚି ?
୧ମ ଶି—ତୁ ତା' ହେଲେ କାଣ୍ଡରେ ତା' ହାତରେ ଦେଖିନାହୁଁ ?
୩ୟ ଶି—ହଁ, ମୁଁ, ମୁଁ ଆଖିରେ ଦେଖିଚି ।
୨ୟ ଶି—ତୁ ନିଷ୍ଟେ ଦେଖି ନାହୁଁ
୩ୟ ଶି—ମୁଁ ନିଷ୍ଟେ ଦେଖିନାହିଁ । କରମ ଭାଇ, ରଜା କଣ ତେବେ ଶିକାର କରି ଆସି ନାହିଁ ? ଏତେ ଆଶାରେ କଣ ତେବେ ଧୂଳି ପଡ଼ିଲା ? ( କହୁଁ କହୁଁ ମୁଣ୍ଡରେ ହାତ ଦେଇ ବସି ପଡ଼ିବା )
୨ୟ ଶି—ମୁଁ ତ ସେହି କଥା ଭାବୁଚି ! ରଜାତ ବାୟା ହୋଇଚି, ଆଜି ହଠାତ୍ ଶିକାର କରି ଆଇଲା କେମିତି ?
୧ମ ଶି—ମିଛେ ମିଛେ ଏହି ହୁଣ୍ଡା କଥାରେ ପଡ଼ି ଏତେ ଗୁଡ଼ାଏ ମେହେନତ କଲୁ ସିନା !
୨ୟ ଶି—ଅରେ ! ଅରେ ମନ୍ତ୍ରୀ ସାଆନ୍ତେ ଇଆଡ଼େ ବେଗେ ଧାଇଁଛନ୍ତି କିଆଁ ?
( ମନ୍ତ୍ରୀଙ୍କ ପ୍ରବେଶ ଓ ଶିକାରୀଗଣ ସାଷ୍ଟାଙ୍ଗେ ପ୍ରଣିପାତ ହେବା )
ମନ୍ତ୍ରୀ—ଅରେ ତମେ ସବୁ କେହି ରାଜାଙ୍କୁ ଦେଖିଛ ?
୧ମ ଶି—ଏହି ବାଘ ତ ସାଆନ୍ତେ କହୁଛୁ ଦେଖିଛୁ ବୋଲି ।

୨ୟ ଶି—ଆମର କିନ୍ତୁ ପରତେ ହେଉ ନାହିଁ ।

(ମୁଣ୍ଡ ହଲାଇବା)

ମନ୍ତ୍ରୀ—(୩ୟକୁ ଚାହିଁ) କିରେ ଦେଖିଛୁ ?

୩ୟ ଶି—ଆଜ୍ଞା, ହଜୁର୍ ସାଆନ୍ତେ ।

ମନ୍ତ୍ରୀ—କେଉଁଠି ଦେଖିଛୁ ?

୩ୟ ଶି—କେଉଁଠି ? ଆଜ୍ଞା ଏଇ ଆଡ଼େ ତ ଆସୁଥିଲେ ।

ମନ୍ତ୍ରୀ—ଆଚ୍ଛା କେତେ ଦୂରରୁ ଦେଖିଛୁ ?

୩ୟ ଶି—କେତେଦୂରରୁ ? ଅନ୍ଦାଜ ସାଆନ୍ତେ, ତିନି ଚାରିହାତ ଦୂରରୁ—

ମନ୍ତ୍ରୀ—ସାଥିରେ ଆଉ କେହି ଥିଲେ ?

୩ୟ ଶି—ଆଉ କେହି ? ଆଜ୍ଞା, ସାଆନ୍ତେ ଆଉ କେହି ଥିଲେ ।

ମନ୍ତ୍ରୀ—କିଏ ସେ ?

୩ୟ ଶି—କିଏ ସେ ? କେଜାଣି ସାଆନ୍ତେ ?

ମନ୍ତ୍ରୀ—କିପରି ଦେଖିବାକୁ ?

୩ୟ ଶି—କିପରି ଦେଖିବାକୁ ! (ଅର୍ଦ୍ଧସ୍ଵଗତ) ଲମ୍ବା କି ଗୋଲ ?

ମନ୍ତ୍ରୀ—ତୁ ତା ହେଲେ ମୋଟେ ଦେଖିନାହୁଁ ।

୩ୟ ଶି—ମୁଁ ଦେଖିନାହିଁ ? ହଁ ସାଆନ୍ତେ ମୁଁ ଆଖିରେ ଦେଖିଛି ।

ମନ୍ତ୍ରୀ—ଆଚ୍ଛା ତୁ ଦେଖି ସାରି କଅଣ କଲୁ ?

୩ୟ ଶି—କଣ କଲି ? ଧଡ଼ ପଡ଼ ହୋଇ ଉଠିବସି ଆଖି ଦିଟା ମଳି ମାଳି ଗାମୁଛା ଖଣ୍ଡ କାନ୍ଧରେ ପକାଇ ଧାଇଁଗଲି ଏମାନଙ୍କୁ ଡ଼ାକିବାକୁ ?

(ସମସ୍ତେ ଉଚ୍ଚହାସ୍ୟ କରିବା)

ମନ୍ତ୍ରୀ—(ହାସ୍ୟାନନ୍ତର) ତେବେ ତୁ ସ୍ଵପ୍ନ ଦେଖୁଥିଲୁ ?

ସମସ୍ତେ—(୩ୟ ଆଡ଼େ ଚାହିଁ) ହାଃ ହାଃ ହାଃ-ହୁଣ୍ଡା ସ୍ଵପ୍ନ ଦେଖୁଥିଲୁ ରେ ସ୍ଵପ୍ନ ଦେଖୁଥିଲୁ !

ମନ୍ତ୍ରୀ—(ଗମ୍ଭୀର ସ୍ଵରେ) ଆଚ୍ଛା ତୁମ୍ଭେମାନେ ବର୍ତ୍ତମାନ ଯାଇ ରଜାଙ୍କୁ ଖୋଜି ବାହାର କର—ବକ୍‌ସିସ୍ ପାଇବ ।

ସମସ୍ତେ—ବକ୍‌ସିସ୍ ? ଚାଲ ଚାଲ ବେଗେ ଚାଲ—

(ସାନନ୍ଦେ ଶିକାରୀଗଣଙ୍କ ପ୍ରସ୍ଥାନ ।)

ମନ୍ତ୍ରୀ—କି ସଙ୍କଟରେ ପଡ଼ିଛି ? ଏକ ଆଡ଼େ ରାଜ୍ୟଚିନ୍ତା ଅନ୍ୟ ଆଡ଼େ ରାଜାଚିନ୍ତା । ହାୟ ! ଏତେ ଅଧୀର ଆଉ କାତର ହୋଇ ଲୋକେ ଯେବେ ନିଜର କର୍ତ୍ତବ୍ୟ କାର୍ଯ୍ୟ ସାଧନ କିମ୍ବା ଶାନ୍ତି ସୁଖାନୁଭବ କରିବାରେ ସମର୍ଥ ହୁଅନ୍ତେ—ତେବେ ଆଉ ଭାବନା କଣ ଥିଲା ? କାହିଁକି ଲୋକେ ବୃଥାରେ ତୁଳାକୋମଳ ମର୍ମୋପରି ପାଷାଣକଠିନ ଧୈର୍ଯ୍ୟ ସ୍ଥାପନ ପୂର୍ବକ ଜୀବନ୍ମୃତ କଷ୍ଟ ଅନୁଭବ କରୁଥାନ୍ତେ ? କିନ୍ତୁ ସେ ଆଶା ଦୁରାଶା ମାତ୍ର—ହେ ମରୀଚିକାମୁଗ୍ଧ ନର ! ବୃଥା ଆଶା ତ୍ୟାଗ କର—ଜ୍ଞାନଚକ୍ଷୁ ଫେଡ଼ି ଦେଖ—ଏଜନ୍ମ ନୁହେଁ ତବ ଭୋଗବିଳାସର—ଏଜନ୍ମ ନୁହେଁ ତବ ସୁଖ ଶାନ୍ତିର—ଏ ଜନ୍ମ ତବ ଦୁଃସହ ଶୋକ, ଦୁଃଖର—ଏ ଜନ୍ମ ତବ ଦାରୁଣ କର୍ମବିପାକର ! —ଜାଗ ! ଉଠ ! ଧର ଶକ୍ତି ! ମା ମା ବୋଲି ପଶ କର୍ମର ଘୋର ସମରକ୍ଷେତ୍ରରେ ପାଇବ ତେବେ ଅକ୍ଷୟ କୀର୍ତ୍ତିଲାଭ ଆଉ ଶେଷ ମୁକ୍ତିଲାଭ !

(ପ୍ରଥମ ଶିକାରୀର ପ୍ରବେଶ ।)

୧ମ ଶିଃ—ସାଆନ୍ତେ ! (ହାତ ଦେଖାଇ) ଏହିଆଡ଼େ ରଜା ଅଛି !

(ଉଭୟେ ନିଷ୍କ୍ରାନ୍ତ)

---

## ଷଷ୍ଠ ଦୃଶ୍ୟ

(ଗଙ୍ଗାତୀର ।)

(ବୟସ୍ୟ ଓ ଶାନ୍ତନୁ)

ବୟସ୍ୟ—ମହାରାଜ ! ହସ୍ତ ଧାରଣ କରୁଛି, ଫେରି ଚାଲନ୍ତୁ, ଢେର ଦେଖିଲେଣି, ଏ ସବୁ ଦେଖି ମନ କେବଳ ବିଚଳିତ କରିବା କଥା ।

ଶାନ୍ତନୁ—ବୟସ୍ୟ ହେ !

ଗଲେ ଫେରି ହେବ କିସ ?
ଭାବିଛ କି ମନେ ?
ଏହି ନେତ୍ରାନ୍ତର ହେଲେ ପ୍ରେମନିଧି ମୋର,
ବେଗଶୂନ୍ୟ ହେବ ମନ !
ହାଃ ହାଃ ହାଃ ହାଃ ବୃଥା ଚିନ୍ତା ତବ !

ବୟସ୍ୟ—କାହିଁକି ? ଅମ୍ଭ କଥାଟା କି ଏତେ ଅସାର
ଯେ ଆମ୍ଭଙ୍କୁ ହସି ଉଡ଼ାଇଦେଲେ ? ଆମ୍ଭର ବ୍ରାହ୍ମଣୀ
ତ ମରିଗଲା, ଆମ୍ଭେ କଣ ତାଙ୍କ ସକାଶେ ଦିନେ
ହେଲେ ଭାବୁଛୁ ? (ସ୍ୱଗତଃ) ଭାବରୁଁ କାହିଁକି ?
ବ୍ରାହ୍ମଣୀଟା ଥିଲା ଭଲ-ହଠାତ୍ ସେ ଦିନ ଜର
ହେଲା, ପ୍ରାଣ ଛାଡ଼ି ଚାଲି ଗଲା—ସେ ବି ନିଶ୍ଚିନ୍ତ,
ଆମ୍ଭେ ବି ନିଶ୍ଚିନ୍ତ—କାହାର ସକାଶେ କାହାରିକୁ
ମୁଣ୍ଡ ବଥେଇବାକୁ ହେଉ ନାହିଁ ।

ଶାନ୍ତନୁ—ବୟସ୍ୟ ହେ ! ହୁଏ ତ ଭାବେଁ,
ନ ଥିଲା ପ୍ରକୃତ ପ୍ରଣୟ ସ୍ତ୍ରୀଠାରେ ତବ;
ଅଥବା ଅବ୍ୟାଜେ, କହ ହୃଦ ସାକ୍ଷ୍ୟ କରି—
ସତ୍ୟ କି ଏ’ ବାକ୍ୟ ?

ବୟସ୍ୟ—(ସ୍ୱଗତ) ପ୍ରକୃତ କଥା—ବ୍ରାହ୍ମଣୀର ହସ୍ତପକ୍ୱ
ବ୍ୟଞ୍ଜନକଥା ମନେପଡ଼ିଗଲେ ମନଟା କିପରି
ହୁଏ !

ଶାନ୍ତନୁ—ନୀରବ କିପାଇଁ ବନ୍ଧୋ !
ବୟସ୍ୟ ହେ !
ପ୍ରେମବନ୍ଧନ ଅଚ୍ଛେଦ୍ୟ—ନିତ୍ୟ—
ନ ହେବ ବିନଷ୍ଟ ତାହା,
ଦେହାନ୍ତର ପ୍ରାପ୍ତେ ସୁଦ୍ଧା ପ୍ରେମିକ ପରାଣ ।

ବୟସ୍ୟ—ଅଚ୍ଛା ଉତ୍ତମ ! ଛେଦନ କରି ଯେବେ,
ନ ପାରିବେ ମୁକ୍ତ କରାଇ କଣ ପାରିବେ ନାହିଁ ?

ଶାନ୍ତନୁ—କି ଶକ୍ତି ଜୀବର ବନ୍ଧୋ !
ସେ ପ୍ରଣୟ ପାଶୁ ସେ ହୋଇବ ମୁକତ—
ଅତି ଅଚିନ୍ତ୍ୟ ଅକଥ୍ୟ !
ଦେଖ ଶ୍ରୀମଧୁସୂଦନ ଭାଇ,
ସର୍ବ ଶକ୍ତିମାନ—
ନିର୍ମାଣ କରତା ଯେହୁ,
ପ୍ରଳୟ କରତା ପୁଣି,
ନୁହନ୍ତି ସମର୍ଥ କଦା ଛେଦିବେ ଏ’ ପାଶ !
ପ୍ରେମରେ ପ୍ରହ୍ଲାଦ, ଦେଖ ଶିଶୁମତି ପୁଣି,
ନ ଜାଣେ ସାକାର କିମ୍ବା ନିରାକାର ତତ୍ତ୍ୱ,
ଡାକିଲା ଏକାଗ୍ରେ ଯେବେ ରାକ୍ଷସଶାସନେ—
ଆସ ପ୍ରଭୋ ! ଏହି ସ୍ତମ୍ଭେ ଦିଅ ମୋତେ ଦେଖା—
ପ୍ରେମାଧୀନ ପ୍ରଭୁ ତଦା ଆନନ୍ଦ ହୃଦୟେ
ନରସିଂହରୂପେ ଦେଖା ସେହି ସ୍ତମ୍ଭେ ଦେଲେ ।
ପ୍ରେମେ ମାତି ଧ୍ରୁବ ଯେବେ ମନ୍ଦ-ମତି ଶିଶୁ
ଆବେଗ ବିଶ୍ୱାସ ସହ କରିଲା ତପସ୍ୟା—
ସ୍ୱର୍ଗ ଛାଡ଼ି କ୍ଷଣେ ପ୍ରଭୁ ମୁରଲୀ-ଅଧର
ନିଭଙ୍ଗ ଠାଣିରେ ଆସି ଅଗ୍ରେ ହେଲେ ଉଭା ।
ବନ୍ୟଜନ୍ତୁ ଗଜ ପୁଣି, ନକ୍ରଗ୍ରାସେ ପଡ଼ି,
ଡାକିଲା ପ୍ରେମରେ ଯେବେ ‘ପ୍ରଭୁ, ‘ପ୍ରଭୁ’ ବୋଲି-
ପ୍ରେମଦାସ ପ୍ରଭୁ ତଦା ଛାଡ଼ି କ୍ରୀଡ଼ାସୁଖ,
ଦେଖାଦେଲେ ଭକ୍ତପାଶେ ଚକ୍ରରୂପେ ଆସି ।

ବୟସ୍ୟ—ମହାରାଜ ! ଦେଖନ୍ତୁ, ଦେଖନ୍ତୁ ଏଣେ,
ଗୋଟାଏ କି ଜ୍ୟୋତି ମାଡ଼ିଆସୁଛି

ଶାନ୍ତନୁ—ଏ’ କି ଜ୍ୟୋତିପୁଞ୍ଜ ଆଜ !
ଓଃ ହୋଃ ମନେ ଜାଗେ ? ସେହି ଦିନ,
ସେହି ଗତ କଥା ! (କିଛିକ୍ଷଣ ରହିଯାଇ)
ସତ୍ୟ କିଏ’ ?
ପ୍ରେମାଧୀନା ପ୍ରିୟା ମୋର, ପ୍ରେମମୋହବଶେ,
ତୁଚ୍ଛ ମଣି ସ୍ୱର୍ଗଧାମ, ଆସନ୍ତି ନରକେ ?
( ଗଙ୍ଗାଦେବୀଙ୍କର ଦେବବ୍ରତସହ ଆବିର୍ଭାବ )
ଆସ, ଆସ ପ୍ରିୟେ ମୋର, ଦିଅ ଆଲିଙ୍ଗନ—
ଜାଗି ଉଠୁ ପ୍ରାଣକଳ୍ପ ସୁଧାସ୍ପର୍ଶେ ଯେହ୍ନେ ।
( ଆଲିଙ୍ଗନ କରିବାକୁ ଯିବା )

ଗଙ୍ଗା—( ଦେବବ୍ରତକୁ ଦେଖାଇ ) ଏହି ନାଥ
ପ୍ରେମଫଳ-କର ଆଲିଙ୍ଗନ, ଶାନ୍ତିମୟ ପ୍ରାଣ ତବ
ହେଉ ଏ’ ପରଶେ !
( ଶାନ୍ତନୁ ଦେବବ୍ରତକୁ ଆଲିଙ୍ଗନ କରି ଛିଡ଼ା
ହେବା ଏବଂ ମନ୍ତ୍ରୀ ଓ ଶିକାରୀବର୍ଗଙ୍କ ପ୍ରବେଶ ଓ
ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ବିସ୍ମୟ ନେତ୍ରରେ ଚାହିଁ
ରହିବା )

[ ପଟନିକା ]

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ରାଜ ସଭା )

( ଶାନ୍ତନୁ, ମନ୍ତ୍ରୀ ଓ ସଭାସଦ୍‌ବର୍ଗ । )

ଶାନ୍ତନୁ—ମନ୍ତ୍ରୀବର !
ସର୍ବବିଦ୍ୟାବିଶାରଦ ପୁତ୍ର ବର୍ତ୍ତିମାନେ,
ଅଜ୍ ନ ବସିଲେ ମୋ' ମନ ରାଜ ସିଂହାସନେ !
ତେଣୁ, ଭାବୁଅଛି ମୁହିଁ, ଶୁଭଦିନ ଆଜି,
ଦେଇ ରାଜ୍ୟ ଦେବବ୍ରତେ ହେବି ଚିନ୍ତାଶୂନ୍ୟ,
କିନ୍ତୁ ଏକ ଚିନ୍ତା ଦିବାରାତ୍ର ଦହୁଅଛି ମନ୍ତ୍ରୀ !
ମନ୍ତ୍ରୀ—କି ଚିନ୍ତା ନୃପତି ତବ ଏ' ସୌଭାଗ୍ୟ ଲଭି ?
ଶାନ୍ତନୁ—ମନ୍ତ୍ରୀବର !
ଭାବି ଭୟ ସଦା ମୋର ଏକ ପୁତ୍ର ବୋଲି ।
ମନ୍ତ୍ରୀ—ଏକ ପୁତ୍ର ସତ୍ୟ ତବ, ନୃପ,
କିନ୍ତୁ ସେ ଚନ୍ଦ୍ରମା !
ଭାବି ଦେଖନ୍ତୁ, ନୃପେନ୍ଦ୍ର
ଥରେ ପୂର୍ଣ୍ଣିମା ନିଶିର ପ୍ରକୃତିର ଶୋଭା—
ଯେବେ ପୂର୍ଣ୍ଣ ଚନ୍ଦ୍ରୋଦୟ ହେଇ ନୀଳାକାଶେ,
ମର୍ମର, ଚରାଚର—ଈଶ୍ୱର ସୃଜନ,
ନବୋତ୍ସବେ ମାତି ସର୍ବେ ଗାଆନ୍ତି ଆନନ୍ଦେ
ବିଭୁଙ୍କର କୀର୍ତ୍ତିରାଜି ଫଳିତ ଆଲୋକେ !—
ଅଥ୍ ଅମାବାସ୍ୟାର ସେ ଗାଢ଼ ଅନ୍ଧକାର :—
ଲକ୍ଷ ତାରା ସତ୍ତ୍ୱେ, ଯେସନେ ମୂଢ଼ମତିଙ୍କର
ବେଦ ଶାସ୍ତ୍ର ପଢ଼ି ସୁଦ୍ଧା, ବେଦଜ୍ଞାନ ଭାବ !
ତହିଁ କହୁଛି ଅଧୀନ,
ଏକ ଚନ୍ଦ୍ର ନାଶେ ତମ, ଶତତାରା ନୁହେଁ କଦା ।
ଶାନ୍ତନୁ—ସତ୍ୟ, କିନ୍ତୁ—
ସେହି ଶାସ୍ତ୍ର ଭାବି ଡରେ, ଅଛି ଯେ ଲିଖିତ,—
ଏକ ପୁତ୍ରୀ—ଅପୁତ୍ରିକ ସମ ଏ ସଂସାରେ ।
ମନ୍ତ୍ରୀ—ବୃଥା ଭାବନା ଈଦୃଶ କରୁଅଛ ନୃପ ।
କିଂ ଆଶଙ୍କା ତବ ? ଜଗତେ ଶରାସୁ ଗାଙ୍ଗେୟ !
ଶାନ୍ତନୁ—ଏହି ଆସୁଅଛି ପୁତ୍ର—ଜିଷ୍ଣୁସୁ ଶରାସୁ !
( ଦେବବ୍ରତ ପ୍ରବେଶ କରି ପ୍ରଣାମ କରିବା )
ଦେବ—ପିତଃ !
ନମଇଁ ସାଷ୍ଟାଙ୍ଗେ ତବ ଚରଣେ ଗାଙ୍ଗେୟ !
ଶାନ୍ତନୁ—(ସ୍ୱଗତ) ସେହି ନାମଛଡ଼ା ପୁତ୍ର ତୋର
ଆନ କି ନାହିଁ ରେ !
କାହିଁ ପ୍ରିୟେ ? କେଉଁଲୋକେ ରହିଲ ନିଷ୍ଠୁରେ ?
(ପୁତ୍ରକୁ ଦେଖାଇ) ରଖିଛ ଯତନେ ସିନା
ଛଳେ ଛଳି । ଏହି
ଦେବ—ଆହୂତ କି ଆଜି ପିତଃ, ସଭାରେ ଅଧୀନ ?
ଶାନ୍ତନୁ—ହଁରେ ପୁତ୍ର ମୋର, ଶୁଣ ଆଜି ପ୍ରାଣଧନ,
ଗୁରୁ ଦୁଃଖଭାର ତୋତେ କରିବାକୁ ଦାନ,
ଡାକି ଅଛି, କ୍ରୂର ପିତା—କେବୁ କି ଆନନ୍ଦେ ?
ଦେବ—କୁହ ପିତଃ ! କି ସେ ଭାର ?—
ଧନ୍ୟ କରି ଦାନେ !
ପଢ଼ି ଅଛି ପିତଃ !
ପିତୃସତ୍ୟ ପାଳନାର୍ଥେ, ରାମ ସୀତା ସହ
ଭ୍ରମିଲେ ନିର୍ଜନ ବନେ, ରକ୍ଷଃ-ରକ୍ଷମେଳେ;
ପିତାଦେଶେ ପର୍ଶୁରାମ, ସ୍ୱ-ଅସ୍ତ୍ରେ, ସ୍ୱକରେ
ଛେଦିଲେ ଜନନୀଶିର—ପୁତ୍ରରଙ୍କଧନ;
ଏଥୁଁ କି କଷ୍ଟ ପୁତ୍ର ଭୁଞ୍ଜି ପାରେ ପିତଃ ?
ଦିଅ ପିତଃ ! ଦିଅ ଭାର ଅଯୋଗ୍ୟ ପୁତ୍ରକୁ,
ସଫଳ ମଣୁ ସେ ଜନ୍ମ ପିତୃଆଜ୍ଞା ବହି ।
ଶାନ୍ତନୁ—ସାଧୁ ପୁତ୍ର !—
(ସ୍ୱଗତ) ସାଧୁ ପୁଣି ମୋର ପିତୃନାମେ !
କେଉଁ ପିତା ମମାଧିକ ଗର୍ବିତ ସଂସାରେ ?—
ଲଭିଛି ଏସନ ପୁତ୍ର, ସର୍ବଗୁଣାନ୍ୱିତ—
ଏତେ କୋମଳ ବୟସେ, ସ୍ୱଳ୍ପକାଳେ ପୁଣି ।
କି ଧୀରତା ! କି ନମ୍ରତା ! କି ବିନୟ ଭାବ !
ଏହି ଦେଖି, ମନେ ମନେ ପ୍ରଶଂସା ତାହାର
ଗୁଣୁଛି, ବୁଝିଣ ରହେ ନତ ଶିରେ କିବା !
( ପ୍ରକାଶ୍ୟେ ) ପୁତ୍ର ମୋର !
ଦେଖାରେ ମସ୍ତକ ଏବେ ଦିଏଁ ଦୁଃଖ ଭାର ।
( ମୁକୁଟ ପିନ୍ଧାଇ ଦେବା )

ଦେବ—( ହସି ) ଏହି ଦୁଃଖୀଙ୍କର ପିତଃ !
( ଗିରିଧାରି ) ଏଁଙ୍କ ବତ୍ସରତର ରେଖା
ସଂଟକାଳ ହୁଦେ !
ହେଲେକ ତାହାର ଯେହ୍ନେ ଭୋଗ ବଳାସିତା,
ମେଘସମ ହୃଦାକାଶୁଁ ହେଲା ଛିନ୍ନ ଭିନ୍ନ ।
କାହିଁ ସେ ସ୍ୱେଚ୍ଛାଚାରିତା ?
ବାୟୁ ସମ ଅଗ୍ରେ ଯାହା ଭୁଞ୍ଜୁଥିଲି ସୁଖେ;
କାହିଁ ସେ ଶାନ୍ତି-ସାଗର ?
ଲୁଚିଥିଲି ସୁଖେ ଯହିଁ ସଂସାରର ଭୟେ;
ଲୁପ୍ତ ହିନା ଏବେ ସର୍ବ, ଏହି ଗୁରୁ ଭାରଭରେ ।
( କିଞ୍ଚିକ୍ଷଣ ରହି )

କିଏ କହେ ତେବେ ରାଜା ଜନ୍ମ ଶ୍ରେଷ୍ଠ—
ଶ୍ରେଷ୍ଠ ସୁଖୀ ଧରାଧାମେ ଏହି ?
ଏହି ମୁକୁଟ ମୋହର ଦେଖୁଛନ୍ତି ସର୍ବେ,
କିବା କାରୁକାର୍ଯ୍ୟ ପୂର୍ଣ୍ଣ ! କିବା ସମୁଜ୍ଜ୍ୱଳ !
ଚନ୍ଦ୍ର ତାରା ଶତକୋଟି ନୁହେଁ ସର ଯେହ୍ନେ—
ଭାବୁଛନ୍ତି ହୃଦେ ପୁଣି, ଭାଗ୍ୟବାନ ଅଛି,
ଧରିଛି ମସ୍ତକେ ଯେହ୍ନୁ ପୃଥିବୀର ପତି—
ଭାବିଥିଲି ମୁହିଁ ମଧ୍ୟ ସେହିପରି ଦିନେ;
କାର୍ଯ୍ୟେ ଅନୁଭବ କରୁ ଜାଣିଛୁ କି କେହି ?
ଜାଣିଲି ମୁଁ ସ୍ୱର୍ଣ୍ଣ ମାନେ ଅଛି—
ଲୁକ୍କାୟିତ କ୍ଲେଶ ମାନ ଅନ୍ତରାଳେ ତାର—
ଯଥା ମାନସିକ, ତଥା ଶାରୀରିକ—
ପ୍ରତିଦ୍ୱନ୍ଦୀ ପରସ୍ପର ଯେହ୍ନେ,
କରିବାକୁ ନିଜ ନିଜ ଉତ୍କର୍ଷ ସାଧନ ।
( ଅଶ୍ରୁମାର୍ଜ୍ଜି ବସି ପ୍ରକାଶ୍ୟେ )
ଦିଅ ପିତଃ ! ଦିଅ ଦେବ ! ଦିଅ ଗୋ ଜନକ !
ଡାକୁଅଛି ଦୀନ ଭାବେ, ଗଦ ଗଦ କଣ୍ଠେ—
ବଳବୀର୍ଯ୍ୟ, ଯଥାଶକ୍ତି, ଏ'ଭାର ସଙ୍ଗତେ,—
ଶକ୍ତି ଯେହ୍ନେ ହୁଏ ଶିଶୁ ବହନେ ମସ୍ତକେ ।
ଶାନ୍ତନୁ—କିଛି ଭୟ ନାହିଁ ଶିଶୁ,
ଆଶୀର୍ବାଦେ ମୋର—
ନ ହେବୁ ଅଶକ୍ତ କଦା ବହନେ ମସ୍ତକେ;
ଯା' ଏବେ ବସ ତରେ ଧନ ରତ୍ନସିଂହାସନେ,
ଦେଖି ନେବ ତୃପ୍ତ କରୁ ଦୁଃଖୀ ପିତା ତୋର ।
( ସିଂହାସନରେ ଉପବେଶନ କରାଇବା )
ସମସ୍ତେ—ଜୟ ଦେବବ୍ରତଙ୍କର ଜୟ
ଶାନ୍ତନୁ—ଯାଅ ମନ୍ତ୍ରି ! କର ଏବେ ଉତ୍ସବ ବିଧାନ ।
( ଦୀର୍ଘନିଃଶ୍ୱାସ ତ୍ୟାଗପୂର୍ବକ ) ( ସ୍ୱଗତ ) ପ୍ରିୟେ !
କାହିଁ ଅଛ ଆଜ ଏହି ଉତ୍ସବ ଦିବସେ ?

---

## ଦ୍ୱିତୀୟ ଦୃଶ୍ୟ

( ରାଜବାଟୀର ସମ୍ମୁଖ )

( ନର୍ତ୍ତକୀଗଣଙ୍କ ଏକଦିଗରୁ ଓ ଅନ୍ୟ ଦିଗରୁ ବୟସ୍ୟଙ୍କ ପ୍ରବେଶ )

ନର୍ତ୍ତକୀଗଣ—ନମସ୍କାର, ନମସ୍କାର, ରସିକଶେଖର ମହାଶୟ !

ବୟସ୍ୟ—(ସ୍ୱଗତଃ) ହାଃ ହାଃ ହାଃ ଦିଗ୍‌ଗଜ ଉପାଧି ସାଙ୍ଗେ ସାଙ୍ଗେ ରସିକ-ଶେଖର ଉପାଧି--ଯେମନ୍ତ ଚୂଡ଼ା ସାଙ୍ଗେ ସାଙ୍ଗେ ଦଧି-ଦଧି ସାଙ୍ଗେ ସାଙ୍ଗେ ଗୁଡ଼ ।

୧ମ ନର୍ତ୍ତକୀ—କି ରସିକେ ! ଛିଡ଼ା ହୋଇ କରି କଣ ଭାବୁଛନ୍ତି କି ?

୨ୟ ନର୍ତ୍ତକୀ—ଆମକୁ ଦେଖି ବ୍ରାହ୍ମଣୀ କଥା ମନେ ପଡ଼ି ଯାଉଚି କି ?

ବୟସ୍ୟ—ହାୟ ! ହାୟ ! କାହିଁ ରାଣୀ କାହିଁ ଚନ୍ଦ୍ର-କାଣୀ ! ତୁମ୍ଭମାନଙ୍କର ଚନ୍ଦ୍ରମାନନ୍ଦତ ଧଳା ଧଳା ମୁହଁ ଦେଖି ବ୍ରାହ୍ମଣୀର ଲୁଅଁ ସିଆ ମୁହଁ କି ଆଉ ମନେ ପଡ଼ୁଛି ?

୧ମ ନର୍ତ୍ତକୀ—ତେବେ କି ଆପଣଙ୍କ ମନକୁ ଏ ଦାସୀ-ମାନେ ଘେନୁଚନ୍ତି ?

ବୟସ୍ୟ—ଛି ! ଛିଃ ! ତୁମ୍ଭେ କଣ କହିଲ ? ତୁମ୍ଭେ-ମାନେ ଦାସୀ ! ତାହା ହେଲେ ଏ ଜଗତରେ ଆଉ ଦେବୀ କିଏ ?

୨ୟ ନର୍ତ୍ତକୀ—ରସିକେ ! ମୋତେ ବ୍ରାହ୍ମଣୀ କରିବେ କି ?

ବୟସ୍ୟ—ସେ ନା' ଆଉ ଧର ନା ମା ରାଣୀ ! ଅମ୍ଭେ ବର୍ତ୍ତମାନ ବେଶ୍ ସୁଖରେ ଅଛୁଁ । ଆପେ ଅଣୁଁ ଆପେ ଖାଉଁ, ଭାଗବାଣ୍ଟ ଦେବାକୁ ନ ଥାଉଁ ।

୩ୟ ନର୍ତ୍ତକୀ—ରସିକ ! ମୁଁ କିଛି ଖାଏଁ ନା ମୋତେ ବାଦ୍ଧୁଣୀ କରନ୍ତୁ ।

ବୟସ୍ୟ—ମା ମଙ୍ଗଳା ! ତୁମ୍ଭଙ୍କୁ ଜୁହାର—ତୁମ୍ଭେ ସିନା ଏ ମୁହଁ ବାଟେ କିଛି ଖାଅ ନାହିଁ, କିନ୍ତୁ ତୁମ୍ଭର ସେହି, ସେହି ଯେ ଡାହାଣିଆ ଗୁହାଣୀ, ସେଥିରେ ସବୁ ପାର କରି ଦିଅ, ହଜମ କରି ଦିଅ ।

ସମସ୍ତେ—(ଧରି) ଆଚ୍ଛା ! ତେବେ ଆମେମାନେ ଜୋର କରି ବାନ୍ଧୁଣୀ ହେବୁଁ, କେବେ ଛାଡ଼ିବୁଁ ନାହିଁ—ନ ହେଲେ ପେଟ ଫୁଟାଇ ଦେବୁଁ ।

ବୟସ୍ୟ—ହେ, ହେ, ମା ରୁଦ୍ରଚଣ୍ଡୀମାନେ ! ଆମ୍ଭର ସର୍ବସ୍ୱ ପଛକେ ଭକ୍ଷଣ କର, କିନ୍ତୁ ସେହି ଗୋଟିକ ଛାଡ଼ିଦିଅ, ସେହି ଗୋଟିକପାଇଁ ଆଜ ଆମ୍ଭେ ରାଜାଙ୍କର ବୟସ୍ୟ, ଆଜି ଉତ୍ସବ ଦିବସରେ ଆମ୍ଭର ସର୍ବାଗ୍ରେ ନିମନ୍ତ୍ରଣ ।

୨ୟ ନର୍ତ୍ତକୀ—ଆଚ୍ଛା ଆଜ ଗୋଟିଏ ପ୍ରତିଜ୍ଞାକର, ତା'ହେଲେ ଛାଡ଼ିଦେବୁଁ ।

ବୟସ୍ୟ—କି ପ୍ରତିଜ୍ଞା ? ଏହିକ୍ଷଣି କୁହ—ଅମ୍ଭେ ଅଗ୍ନି, ବାୟୁ, ବରୁଣ ପ୍ରଭୃତି ତେତିଶକୋଟି, ଚୌତିଶ-କୋଟି, ଯେତେ କୋଟି ଦେବତା ଅଛନ୍ତି—ଉପଦେବତା ଅଛନ୍ତି, ସମସ୍ତଙ୍କୁ ସାକ୍ଷୀ କରି, କରିବୁଁ ।

୨ୟ ନର୍ତ୍ତକୀ—(ହସି) ତେବେ ଶୁଣନ୍ତୁ, ଆପଣ ଆଜ ଯାହା ଭୋଜି ପାଇବେ ସେଥିରୁ ଅଧେ ଆମମାନଙ୍କର—କି ? ଦେଇ ପାରିବେତ ?

ବୟସ୍ୟ—( ମୌନାବଲମ୍ବନ କରି ରହିବା )

୧ମ ନର୍ତ୍ତକୀ—କି ରସିକ ! ଚୁପ୍ କରି ରହିଲ ଯେ ? ଧରି ଲୋ ଧରି ଏଁଙ୍କ କଥା ଆଜି ପଟିବ ନା'ହିଁ ।

ବୟସ୍ୟ—ଦୋହାଇ, ଦୋହାଇ-ଛାଡ଼ିଦିଅ ଛାଡ଼ିଦିଅ, ଅମ୍ଭେ ଆଜ ଯାହା ପାଇବୁଁ, ଅଧେ କାହିଁକି, ସମଗ୍ର ଆଣି ଏହି ଦେବୀଙ୍କ ସାକ୍ଷାତରେ ଭୋଗ ଲଗାଇବୁ ।

୨ୟ ନର୍ତ୍ତକୀ—ତେବେ ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ !

ବୟସ୍ୟ—ଏତକି ନିଶ୍ଚୟ କାହିଁକି ? ଶଏ ଥର ହଜାରେ ଥର, ଲକ୍ଷେ ଥର ( ଅନ୍ୟଆଡ଼େ ଚାହିଁ ଉପହାସ୍ୟ ସହ କ୍ଷୀଣ ସ୍ୱରରେ ) ଦୁଇଥର, ଥରେ, ( ଅତି କ୍ଷୀଣସ୍ୱରରେ ) କିଛି ନାହିଁ ଥର—

୨ୟ ନର୍ତ୍ତକୀ—ହାଁ, ହାଁ, କଣ କହିଲ ?

ବୟସ୍ୟ—ନିଶ୍ଚୟ କରୁଛୁ ।

୨ୟ ନର୍ତ୍ତକୀ—ଠିକ୍ ?

ବୟସ୍ୟ—ଠିକ୍ ।

୨ୟ ନର୍ତ୍ତକୀ—ତେବେ ଯାଆନ୍ତୁ, ଆମେମାନେ ଏଇଠି ଆପଣଙ୍କୁ ଅପେକ୍ଷା କରିବୁ । ( କହି ଛାଡ଼ିଦେବା )

ବୟସ୍ୟ—ହଉ ( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ସ୍ୱଗତ ) ଓଁ ହୋଃ, ଟିକିଏ ନିଶ୍ୱାସ ମାରିଲି ମଣିଷ, (ହାସ୍ୟସହ) ଚାହିଁ ଥାଅ ବାବା ଚାହିଁଥାଅ, ମାରଯିବେ ମହାପାତ୍ରେ, ଚାହିଁଥିବେ ଜଳକା— ଆମ୍ଭର ପ୍ରତିଜ୍ଞାନୁଯାୟୀ ଆମ୍ଭେ ଠିକ୍ କାର୍ଯ୍ୟ କରିବୁଁ ଯେ ! (ପ୍ରସ୍ଥାନ)

( ଦେବବ୍ରତ, ମନ୍ତ୍ରୀ ଓ ଜନୈକ ସଭାସଦର ପ୍ରବେଶ )

ଦେବବ୍ରତ—ନମସ୍ତେ ଦେବୀବୃନ୍ଦ !

(ସଭାସଦ୍ ମୁଖାବୃତ କରି ହସୁଥିବା)

ମନ୍ତ୍ରୀ—ଯୁବରାଜ ! ଏ' କଣ କରୁଛନ୍ତି ?

ଦେବ—(ସାଶ୍ଚର୍ଯ୍ୟେ) କାହିଁକି ମନ୍ତ୍ରୀ ମହାଶୟ !

ମନ୍ତ୍ରୀ—ଏମାନେ ଦେବୀ ନୁହନ୍ତି ।

ଦେବ—ଏମାନେ ତେବେ କିଏ ?

ମନ୍ତ୍ରୀ—ଏମାନେ ଗାୟିକା, ନୃତ୍ୟ, ଗୀତ କରନ୍ତି ।

ଦେବ—ଏମାନେ ନର୍ତ୍ତକୀ ! ଏଠାରେ ତେବେ କି ପ୍ରୟୋଜନ ?

ମନ୍ତ୍ରୀ—ଆପଣଙ୍କର ଆଜ ଅଭିଷେକୋତ୍ସବ ! ତେଣୁ ସେମାନେ ନୃତ୍ୟ ଗୀତ କରି କିଛି ଅର୍ଥ ଉପାର୍ଜନ କରିବାକୁ ଆସିଛନ୍ତି ।

ସଦବ—(ସ୍ୱଗତ) କହିଛନ୍ତି ଗୁରୁଦେବ—
ବାରନାରୀକୃତ ନୃତ୍ୟ ଗୀତ-କାମଦ୍ଧକ;
କୃପୁ ସେବା ତହିଁ, କରନ୍ତି ଯେ ଜନ,
ଦ୍ୟନ୍ତି ମନ ସେ ସରବେ ।
( ନର୍ତ୍ତକୀମାନଙ୍କ ଆଡ଼େ ଚାହିଁ ) ହାୟ !
ବ୍ୟଥା ଲାଗେ ଶତ୍ରେ ଦର୍ଶନେ ଏ' ନାରୀ—
ମାତୃ ଦତ୍ତ ରୂପରାଜି, ସୌନ୍ଦର୍ଯ୍ୟ ସକାଶେ

ଅର୍ଥଲୋଭେ ପଢ଼ି ସିନା ଦେଉଛନ୍ତି ବକ !
(ପ୍ରକାଶ୍ୟେ) ଅସ୍ତୁ, ମନ୍ତ୍ରି ମହାଶୟ ! ଏମାନଙ୍କୁ ପ୍ରଚୁର ଅର୍ଥ ଦେଇ ବିଦାୟ କରିଦିଅ । (ପ୍ରସ୍ଥାନ)

୧ମ ସଭାସଦ୍—ମନ୍ତ୍ରୀ ମହାଶୟ ! ରାଜାଙ୍କର ଚିନା ସୌକ୍ ନାହିଁ । ଆମର କଣ ନାହିଁ ? ହକ୍ ଟଙ୍କା ଦିଆଯିବ ଯେତେବେଳେ, କାମ ନିଆଯିବ ନାହିଁ କାହିଁକି ? ଗାଅ, ଗାଅ, ନର୍ତ୍ତକୀଗଣ ।

ମନ୍ତ୍ରୀ—ଅନ୍ୟ ସ୍ଥାନକୁ ଯାଅ । (ନିଷ୍କ୍ରାନ୍ତ)

ସଭାସଦ୍—ଆସ ରଙ୍ଗିଣୀମାନେ, ତେବେ ଉଦ୍ୟାନକୁ ଯିବା ।

( ଦୃଶ୍ୟ ପଟ ଉଦ୍ୟାନରେ ପରିବର୍ତ୍ତିତ ହେବା)

ନର୍ତ୍ତକୀଗଣ— ( ଗୀତ )

କିଏ ସେ ନାଗର ବର ?
ନୟନ ବାଣେ ତାର ଦେଲା ହାଣି ଫୁଲଶର ।
ମରମ ବ୍ୟଥା ଦେଇ ଆକୁଳ ପ୍ରାଣେ ପୁଣି,
ଗୋଡ଼ାଇଲି କାନ୍ଦି-କାନ୍ଦି, 'ରକ୍ଷାକର ରକ୍ଷାକର'
(କିନ୍ତୁ) ନିଷ୍ଠୁର ମନଚୋର, ଏଡ଼େ ସେ ନଟବର,
ନ ଗୁହାଁଲା ଥରେ ଫେରି କି ଯେ ଦଶା ହେଲା ମୋର !

---

## ତୃତୀୟ ଦୃଶ୍ୟ

( ରାଜପଥ )

( ଜଣେ ନାଗରିକ ରାସ୍ତାକଡରେ ବସି ଖରା ପୁହାଁଉଁ ପୁହାଁଉଁ ଧୂମ୍ରପାନ କରୁଥିବା )

୧ମ ନାଗରିକ—କି ନିଆଁ ଲଗା ଖରାଟା ମ ! ଯେତେ ଯେତେ ମୁଁ ଗୋଡ଼େଇ ବୁଲୁଛି, ତେତେ ତେତେ ସେ ପଳେଇ ବୁଲୁଛି !

( ଦୁଇଜଣ ନାଗରିକର ଅନ୍ୟ ଦିଗରୁ ପ୍ରବେଶ । )

୨ୟ ନାଗ—ଆରେ ଭାଇ, ରାମରାଜ୍ୟ ଆମ୍ଭେମାନେ କାନରେ ଶୁଣିଥିଲୁଁ ମାତ୍ର ।

୩ୟ ନାଗ—ହଁ, ତାହା ନୁହେଁ କଣ ?—ସେହିପରି ରାଜ୍ୟସୁଖ ଯାହା ହେଉ, ଆମ୍ଭେମାନେ ଭୋଗ କରି ଜୀବନ ସାର୍ଥକ କଲୁଁ ।

୧ମ ନାଗ—( ସ୍ୱଗତ ) ଲୁହ ବାବା ! କହୁଥାଅ, କହୁଥାଅ—କହିବାକୁ ମୁହଁ ଖଣ୍ଡେ ଖଣ୍ଡେ ପାଇଛ ଯେତେବେଳେ ।

୨ୟ ନାଗ—ଏପରି ରାଜା ଏହି ଜଗତରେ ଆଉ ଗୋଟିଏ ଅଛନ୍ତି କି ନାହିଁ, ସନ୍ଦେହ !

୩ୟ ନାଗ—ତ୍ରିଜଗତରେ ଆଉ ଅଛନ୍ତି ନା ?

(୪ର୍ଥ ନାଗରିକ ଧୌତ ମୁଖ ପରିମାର୍ଜ୍ଜନ କରୁ କରୁ ପ୍ରବେଶ । )

୪ର୍ଥ—ସ୍ୱୟଂ ବିଶ୍ୱପାଳନକର୍ତ୍ତା ବିଷ୍ଣୁ ଆଉ ସର ହେବେ ନା !

୧ମ ନାଗ—(ସ୍ୱଗତ) ଆଉ କେହି ନାହିଁ ବାକି ପାଦ ପୂରଣ କରିବାକୁ ? ଗଡ଼ି ପଡ଼ !

୨ୟ ନାଗ—ଯେମନ୍ତ ନ୍ୟାୟପର !

୩ୟ ନାଗ—ତେମନ୍ତ କ୍ଷମାଶୀଳ !

୪ର୍ଥ ନାଗ—ତେମନ୍ତ ଦୟାଶୀଳ !

୧ମ ନାଗ—ତେମନ୍ତ ଲଜ୍ଜାଶୀଳ ! କନ୍ତୁ ନା ! (ସ୍ୱଗତ) ନାଃ, ଆଉ ବସାଇ ଦେଲେ ନାହିଁ । କଥା ବେଳକୁ ବେଳକୁ ବଢ଼ିବାକୁ ଗ୍ଲାଲା । (ପ୍ରକାଶ୍ୟେ) ହେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରମାନେ ଏହି ପାପୀ ଯୋଡ଼ ହସ୍ତରେ ପ୍ରଣାମ କରୁଛି, ଏ ପାପୀର ଗୁହାରିଟା ଶୁଣିବା କରିବା ହେବେ କି ?

୨ୟ ନାଗ—ତୁମ୍ଭେ କଣ ଅମ୍ଭମାନଙ୍କୁ ଥଟ୍ଟା କରୁଛ ?

୧ମ ନାଗ—ଥଟ୍ଟା ! ହାୟ ! ହାୟ !—ଆପଣମାନଙ୍କୁ—ସାକ୍ଷାତ୍ ଦେବତାମାନେ—ବାୟୁ ସେବନ ସକାଶେ ମର୍ତ୍ତ୍ୟ ଲୋକକୁ ଅବତରଣ କରିଛନ୍ତି ?—

୨ୟ ନାଗ—(କ୍ରୋଧଭରେ) କି !

୪ର୍ଥ ନାଗ—ଭାଇ, ଏହି ପାଗଲାଟାର କଥାରେ ରାଗୁଛ ?

୩ୟ ନାଗ—ରାଜାଙ୍କ କଥା ମନେ କରନ୍ତି ଭଲ !

୧ମ ନାଗ—ମୋର ଗୁହାରି କଣ ଦେବତାମାନେ, ତେବେ ଶୁଣା ହେବ ନାହିଁ ?

୪ର୍ଥ ନାଗ—ତୁମ୍ଭେ କି ବାତୁଳ ? ଅମ୍ଭେମାନେ ତ ତୁମ୍ଭପରି ଜଣେ ଜଣେ ପ୍ରଜା ମାତ୍ର—ଅମ୍ଭମାନଙ୍କ ପାଖରେ କି ଗୁହାରି ?

୧ମ ନାଗ—ଅହେ ଗୃହକାପ୍ତମାନେ, ମୁଁ ପାଗଳ ନୁହେ, ମୁଁ ଏତକ ପଚାରେଁ, ଆପଣମାନଙ୍କର ଯେ ନୂଆ ରଜା—ଯାʼଙ୍କ ନାʼ ଅଗରେ ଆଉ ପଛରେ ଲମ୍ବା ଲମ୍ବା କରି ଅଲଙ୍କାରମାନ ଯୋଡ଼ି ଦେଉଛ, ସେ ସବୁ କଣ ଯାଚ ଗୁଞ୍ଜି ଦେଉଛ, ନା, ସେଥିପାଇଁ କିଛି କିଛି ହାତଗୁଞ୍ଜା ମିଳୁଛି ?

୨ୟ ନାଗ—(କ୍ରୋଧଭରେ) କଣ କହିଲେ !

୪ର୍ଥ ନାଗ—ରହ ଭାଇ । ଆପଣ କଣ ଏ ଦେଶବାସୀ ନୁହନ୍ତି ? ଆପଣ କଣ ତାଙ୍କର କଥାବାର୍ତ୍ତା ଶୁଣି ନାହାନ୍ତି—କାର୍ଯ୍ୟକଳାପ ଦେଖି ନାହାନ୍ତି ?

୧ମ ନାଗ—ମୋର ଚଉଦପୁରୁଷ ଭାଗ୍ୟରେ ନ ଘଟୁ—ମୁଁ ନ ଶୁଣେଁ, ନ ଦେଖେ, ଏମିତ ମାଇମୁହାଁ ରଜାମୁହଁ ସକାଳୁ ଚାହିଁଲେ, ଧୂଆଁ ଅଟେ ପେଟରେ ପଶିବ ନାହିଁ ।

(ଧୂମ୍ରୋଦ୍‌ଗୀରଣ କରିବାକୁ ଲାଗିବା )

୨ୟ ନାଗ—(କ୍ରୋଧଭରେ) କି ! ଆପଣଙ୍କୁ 'କିଛି ନ କହିବାକୁ ତ ଆପଣ—

୪ର୍ଥ ନାଗ—ରହ ଭାଇ ଚୁପ୍ କର ।

୨ୟ ନାଗ—ନା ଭାଇ, ମୁଁ ପାରିବି ନାହିଁ । ଜଣେ ବିନାଦୋଷରେ ରାଜାଙ୍କ ନାʼରେ ଯାʼଛା ତାʼ କହିଯିବ, ଆଉ ଆମ୍ଭେମାନେ ଚୁପ୍ କରି ଶୁଣିଯିବା ! ଏହା କେବେ ସହ୍ୟ ହେବନାହିଁ ।

୩ୟ ନାଗ—ରାଜାଙ୍କୁ ଦେଖି ନାହାଁ ଭାଇ, ସେ ନିନ୍ଦୁକ ମାନଙ୍କୁ କପରି ଶାସ୍ତି ଦଅନ୍ତି—

୧ମ ନାଗ—ହେ ସାʼନ୍ତମାନେ, ମୋତେ ଧରି ନେଇ ଯାଅ, ମୁଁ ସେହି ଦଣ୍ଡ ନେବାକୁ ରାଜି—

୨ୟ ନାଗ—ଚାଲ ଭାଇ, ଏଠି ଛିଡ଼ା ହେବାର ପ୍ରୟୋଜନ ନାହିଁ ।

୩ୟ ଓ ୪ର୍ଥ—ହଁ ଚାଲ୍ ଚାଲ୍,

(୨ୟ, ୩ୟ ଓ ୪ର୍ଥ ନାଗରିକର ପ୍ରସ୍ଥାନ । )

୧ମ ନାଗ—କି ଦେବତାମାନେ । ପଳାଇ ଗଲ କି ? (ସ୍ୱଗତ) ହାୟ, ହାୟ, କି ଅକାଳ କୁସୁମାଣ୍ଡଟାଏ ଆସି ସିଂହାସନରେ ବସିଲା ଯେ ସମସ୍ତଙ୍କର ଘର ଭାଙ୍ଗିଲା—ଜଣେ ଜଣକ ନାʼରେ ଫେରାଦ ହେଲା, ଶୁଣାନାହିଁ ମଣାନାହିଁ, ଦଣ୍ଡ ହେଲା କଣ ନା ସେମାନଙ୍କୁ ଚିଲାଇ ଦେବା । ମହାଜନମାନଙ୍କର ତ ସୁଧ ବୁଡ଼ିଲା । ଖାତକମାନଙ୍କର ତ ଦେଖ ନାଟ, ଘୃତ ଯେମିତ କୁଣ୍ଡେ କୁଣ୍ଡେ ମୋଟ ! ସେଦିନ ଗୋଟାଏ ନାଲିଶ ଦାଏର କଲି ଟ ୨୫୦ ଙ୍କା—ଅସଲ ଟ ୧୦୦ ଙ୍କା, ସୁଧ ଓଗେର ୧୫୦ଙ୍କା—ପାଇଲିଟାଏ ଭଲ ରାମୁଙ୍କ ବିଗ୍ରହରେ ସେ ଆଉ—ପାଇଥାନ୍ତି—ଆପତ୍ତି କଲାବେଳକୁ କି କଅଁଳିଆ ନରମା କଥା—ଏପରି ପିଲାଟାʼକୁ ସିଂହାସନରେ ବସାଇ ରାଜା ବଡ଼ ଭୁଲ କରିଛନ୍ତି । ବୁଢ଼ା ମନ୍ତ୍ରୀଟା, ହାୟ ରେ ହାୟ ! ସେ ବି ପିଲା ପାଲଟି ଗଲାଣି—କପାଳ କଥା କାହାକୁ କହିବା । ସାଙ୍ଗକୁ ମୋର ଟୋଟାଏ ବାହାରୁଛନ୍ତି କେହି—ରାଜାଙ୍କ ପାଖରେ ଆପତ୍ତି କରନ୍ତେ—ରାଜା ଭଲ ଥାଇ ହୋଇ ରାଜ୍ୟରେ ରହନ୍ତେ—ତାʼ ହେଲେ ମୁଁ ଏକା ଚେଷ୍ଟା କରି ଦେଖନ୍ତି ଥରେ—ଛାଡ଼, ଏ ସବୁ ଅରଣ୍ୟ ରୋଦନ ମାତ୍ର—ଯାଏଁ ଦୋକାନ ଫିଟାଏ ଯାଇଁ— (ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

( ନଦୀତୀରସ୍ଥ ଅରଣ୍ୟ ପ୍ରଦେଶ । )

( ଶାନ୍ତନୁ ଓ ବୟସ୍ୟଙ୍କ ପ୍ରବେଶ । )

ଶାନ୍ତନୁ—ବନ୍ଧୋ ! ଆସ ଏହି ସ୍ଥାନେ, ଦେଖିବ ଯେମନ୍ତ ସ୍ୱପ୍ନତର ସେହି ଗନ୍ଧ ମୋହୁଛି ଆଘ୍ରାଣ ।—

ବୟସ୍ୟ—(ସ୍ୱଗତ) ମହାରାଜା ଥରକୁ ଥର ବନଭ୍ରମଣ କରି ଆସୁନାହାନ୍ତି ଯେ, ଗୋଟିଏ ଗୋଟିଏ ବାହାର କରାଉଛନ୍ତି—ସେଥରମାନଙ୍କରେ ତ ଖାଲି ନୟନ ତୃପ୍ତ ହୋଇଥିଲା, ଏଥର ହଂସାରେ ନାସିକା କହିଲା ଆମ୍ଭେ ବି ତୃପ୍ତ ହେବୁଁ; ହୁଅ ରେ ବାବା ହୁଅ—ସଚେତ, ଗନ୍ଧ ଖାଲି ଏଠି ମହକି ଉଠୁଛି ।

ଶାନ୍ତନୁ—(ସ୍ୱଗତ) ଅହା କି ସୁଗନ୍ଧ ଏହୁ ?
    କେଉଁଦିଗୁଁ ଅସେ ବହୁ,
    ମୃଦୁଲ ପବନେ ବୋଳି;
    ଶୀତଳ ପରଶେ ପୁଣି
    ଶ୍ୱେହାଇ ନେଉଛି ମୋର
    ମନ, ପ୍ରାଣ ଦେହୁଁ ।

ବୟସ୍ୟ—ରାଜା ଏକାବେଳକେ ତନ୍ମୟ ହୋଇଗଲେ
    ଯେ ।

ଶାନ୍ତନୁ—ବନ୍ଧୋ !
    ସ୍ଥିର କରିଅଛି ମୁହିଁ—
    ଏହିଦିଗୁଁ ଅସେ ବହି ।
    ଅସ ଅସ ଦେଖିବା ସେ କେମନ୍ତ ସୁମନ ।

ବୟସ୍ୟ—ଚାଲ ବାବା—ବୋଝ ପଛେ, ଗଛେ ତ
    ବଜର । (ଉଭୟେ ନିଷ୍କ୍ରାନ୍ତ)

---

## ପଞ୍ଚମ ଦୃଶ୍ୟ

(ଯମୁନା ନଦୀ)

( ନୌକାରେ ସତ୍ୟବତୀ ସଖୀଗଣ ସହ ଗୀତ ଗାଇ ଗାଇ
    ପ୍ରବେଶ କଲେ )

( ଗୀତ )

ମୃଦୁଲାନିଳେ, ମୃଦୁଲ ହିଲ୍ଲୋଳେ,
    ବାହୁଛି ତରଣୀ ଧୀରେ ।
କହ କହ ଲୋ, କେଉଁକିରେ ଭସି ଯାଉଛି,
    ନ ଜାଣି ପାରେ ॥
କଲ୍ଲୋଳିନୀ କୂଳେ    ଟାଣୁଛି ମୋ' ମନ
ସମୀରଣ ସଙ୍ଗେ    ମିଶାଇଛି ପ୍ରାଣ,
(ଏବେ) ନୀରଦର ରେଖା ଦେଖି ଲୋ ଅମ୍ବରେ,
    ତୋଫାନ ଅସେ କି ଡ଼ରେ ॥
( ଗୀତାନ୍ତରେ ସମସ୍ତେ ତୀରକୁ ଓହ୍ଲାଇ ଆସିବା)

୧ମ ସଖୀ—ସହି ଲୋ,
    ମାଛଗନ୍ଧ ଦେହେ ତୋର ଥିଲା ଯେତେବେଳେ,
    ବାନ୍ତି ମାଡ଼ନ୍ତା ଲୋକ ଆର ପାଖେ ଲୁ ବସିଲେ;

୨ୟ ସଖୀ—ହୁଃ ହୁଃ ହୁଃ ହୁଃ (ହାସ୍ୟକରି)
    ମୁଁ ତ ଦେଖିଲେ ପଳାନ୍ତି ଆସିଲେ ଲୁ କେଉ ।

ସତ୍ୟବତୀ—ହଁ ଲୋ ସହି ।
    ସମ୍ପଦେ ସମସ୍ତେ ସଖା—
    ବିପଦେ କି ଥାଏ ଆଉ ଦେଖା ?
        ( ସତ୍ୟବତୀ ଅନ୍ୟମନସ୍କା ହେବା

୧ମ ସଖୀ—(ସ୍ୱଗତ) ଅଚ୍ଛା ଜବ୍ଦ କଲାତ ସହି !
    (ପ୍ରକାଶ୍ୟେ) ହଉ ଏବେ
    ଭାଗ ତୁଲେ କାହାକୁ ନ ଦେବୁ,
    ନୃପ ସଙ୍ଗେ କେଳି ଯେବେ ଲୁଚାଇ କରିବୁ ।

୨ୟ ସଖୀ—ସତେ ମ ସହି ଲୋ ।
    କହ ନାହାନ୍ତି କି ମୁନି ? ପଚାରିଲୁ ନାହିଁ—
    କେଉଁ ନୃପମଣି ତୋର ହେବ ମନଚୋର ?

୧ମ୍ ସଖୀ—ବାଃ, ଭୁଲିଆର ଆମର ବେଶ୍ ଅକଲ
    ହେଲଣି । ଦେ ସହି ଜବାବ ଦେ ।

ସତ୍ୟବତୀ—ଯାଃ ।

୨ୟ ସଖୀ—ଶୁଣ୍ ସହି, ରାଗୁ କିଆଁ ?
    ସତେ କହୁଚି ଲୋ ।
    ମୁଁ ଯେବେ ଥାଆନ୍ତି ସେଠି, ମୁନିଙ୍କ ଧରନ୍ତି କସି,
    ନାମ ଧାମ ନୃପତିଙ୍କ ଦେବାକୁ ଛିପାଇ ।

ସତ୍ୟବତୀ—(ସ୍ୱଗତ) କି ଲୁପ୍ତ ସ୍ମରଣ ମୋର
    ଜାଗିଲା ଅନ୍ତରେ !—
    କିଏ ସେହି ମୁନି ?
    ଯୋଗୀ ହୋଇ ସୁଦ୍ଧା, ରୂପେ ମୁଗ୍ଧ ହେଲେ
    ମୋର !
    କିଏ ବା ସେହି ଯୋଗୀନ୍ଦ୍ର ?—
    ଜନ୍ମ ମାତ୍ରେ, ନମି ମୋତେ, ସମ୍ବୋଧି ଜନନୀ,
    ଚାଲିଗଲା ବନ ମଧ୍ୟେ, ତପସ୍ୟା କାରଣ—
    କେଡ଼େ ଜଟିଳ ସମସ୍ୟା !—କି ବୁଝିବି ନାହିଁ !
        ( ଅନ୍ୟ ମନସ୍କ ଭାବରେ ରହିବା )

୨ୟ ସଖୀ—ଉଣି ଭାବୁ କି ଲୋ ସହି, ଲୁଚାଇ ଲୁଚାଇ ?

୧ମ ସଖୀ—ଅଚ୍ଛା କହିଲୁ ତୁ ସହି,
    ସତ କହ ମୋତେ—
    କେଉଁ ରାଜା ଭାବିବାର ଲାଗି ତୋ' ଚିତ୍ତେ ?

ସତ୍ୟ—ଧେତ୍ !
୨ୟ ସଖୀ—ତୁ ମହାର ଦୁର୍ଗ୍ରୀ,
ନାନା, ନ ଜାଣି ନ ଦେଖି,
କେମିତ ବାଛବ ସମ୍ମୀ କେଉଁ ରଜା ଲଖି !
୧ମ ସଖୀ—ରହନା ଲୋ !
ତୋତେ କେହି କ ପଚ୍ଚୁରେ—ଆପେ ପଡ଼ି ଭହୁ ?
୨ୟ ସଖୀ—ମୁଁ କ ତେବେ କେହି ନୁହେଁ ?
(ସତ୍ୟବତୀ ଆଡ଼େ ଚାହିଁ) ଅଚ୍ଛା କହିଲୁ ତୁ ସହି,
ମନକଥା କଛି କହିଲ କ ମୁହିଁ ?
୧ମ ସଖୀ—ଆଲୋ ମଣିଷ ପର ହ' ଆଗେ,
ଏ' ସବୁ ବୁଝିବୁ ଯେବେ !
୨ୟ ସଖୀ—ପଶୁ କ ଲୋ ତେବେ ମୁହିଁ ?
( ସତ୍ୟବତୀକୁ ଚାହିଁ ) ଯାଉଅଛୁ ରୁଷି ସହି !
ସତ୍ୟ—( ହସି ) କିଏ କହେ ପଶୁ ତୁହି ?
ବୁଲ୍ ଯେବେ ପଶୁ ହୁଏ—
ମଣିଷଟି ହବ କିଏ ?
୨ୟ ସଖୀ—ହିଃ ହିଃ ହିଃ ହିଃ-ଶଶୀ ନାନୀର ହାର,
ଶଶୀ ନାନୀର ହାର !
ହିଃ ହିଃ ହିଃ ହିଃ,
ସତେ ଲୋ ନାନୀ ମ, ଲାଗୁଛି ଅଡୁଆ—
କେମନ୍ତେ ବାଛବ ସମ୍ମୀ ନ ଦେଖି ନାଗର ?
ସତ୍ୟ—(ବିରକ୍ତ ଭାବେ) ପୁଣି ସେହି କଥା ! ଆଉ କଣ
କଛି ନାହିଁ ?
୨ୟ ସଖୀ—ଭୁଲ ହ' ଟିକିଏ ସହି,
ବୁଝିନିଏ ଆଗେ ମୁହିଁ !
୧ମ ସଖୀ—ଆଲୋ ! ସବୁ କଣ ଦେଖୁ ତୁହି ?
୨ୟ ସଖୀ—ଅଧେ କ ଲୋ ଦେଖେ ମୁହିଁ ?
୧ମ ସଖୀ—ତୋତେ କେ ବୁଝାଇବ ଲୋ ?
୨ୟ ସଖୀ—କହ କହ ସହି ! ଅଖି ବୁଜେଁ ମୁହିଁ—
ଏଥର ବୁଝିବ ନଷ୍ଟେ !
୧ମ ସଖୀ—ଅଚ୍ଛା ! ଦେଖିଚୁ କ କେବେ ପବନ
ରୂପର ?
୨ୟ ସଖୀ—ହଁ, ହଁ-ନା, ନା—

୧ମ ସଖୀ—ଅଚ୍ଛା କହିଲୁ ତୁ ଭଲ,
ତାହାକୁ କ କେବେ ପାଉଅଛୁ ଭଲ ?
୨ୟ ସଖୀ—ଭଲକଥା ! ପବନକୁ ଭଲ ନ ପାଏ କିଏ !
୧ମ ସଖୀ—ଭଲ ପାଉ କପାଇଁ କହିଲୁ ଭଲ ?
୨ୟ ସଖୀ—କେ ଜାଣି କପାଇଁ !—
ହଁ, ହଁ, ଭଲଲଗେ, ଥଣ୍ଡାବୋଲି !
୧ମ ସଖୀ—ସେହିପର—
ଗୁଣ ଯେବେ ଜଣାଯାଏ,
ରୂପ ତେବେ ଧରେ କିଏ ?
୨ୟ ସଖୀ—କଣ ? "ରୂପ ତେବେ ଧରେ କିଏ ?"
ଜଚ୍ଛି ମୁଁ ନ ବୁଝେ, ନାନା !
୧ମ ସଖୀ—ନ ବୁଝୁ ତ ନାହିଁ—
ଫଟାଇବ କ୍ରେମୋ'ର ନାହିଁ !
(ସତ୍ୟବତୀକୁ ଚାହିଁ) ହସ୍ତିନାର ନୃଅରଜା
ଶୁଣିଛୁ ଲୋ ସହି,
ଭାର ଗୁଣବନ୍ତ, ରୂପବନ୍ତ ପୁଣି—
ସେହି ହୁଅନ୍ତା କ ଯେବେ—
୨ୟ ସଖୀ—ବୁଝିଚ, ବୁଝିଚ,
ସଖୀର ନାଗର ଲଖି ହୁଅନ୍ତା ସେ ତେବେ !
( ମୁହଁରେ ହାତଦେଇ ହିଃ୨ କରି ହସିବା । )
ସତ୍ୟବତୀ—(ସ୍ୱଗତ) ଏତେ ରଙ୍ଗ, ଏତେ ହାସ୍ୟ,
ବିଷପର ମାନ ଯାଉଅଛି ଜଣା !
( ଶାନ୍ତନୁ ଓ ବୟସ୍ୟର ପ୍ରବେଶ )
ଶାନ୍ତନୁ—ଏ'କ ଅପୂର୍ବ ମୁରତ !
୧ମ ଓ ୨ୟ ସଖୀ—ସହି, ସହି ! ପଳେଇଆ',
ପଳେଇଆ' !
( ସଖିଦ୍ୱୟ ଓ ସତ୍ୟବତୀ ଦ୍ରୁତପଦେ ପ୍ରସ୍ଥାନ
କରିବା )
ଶାନ୍ତନୁ—କ ବେଗେ ପଳାନ୍ତି, ଦେଖ ରୂପସୀ ସରବେ,
ପ୍ରାଣପଣେ, ମୃଗୀ ଯଥା ଶିକାରୀ ଦର୍ଶନେ !
ବୟସ୍ୟ—ମହାରାଜ !
ଧରନ୍ତୁ ଧରନ୍ତୁ—ନିଷ୍ଟେ ଏହି ସେ ସୁମନ !
ଶାନ୍ତନୁ—ସତ୍ୟ, ସତ୍ୟ, ବନ୍ଧୋ ! ଏହି ସେ ସୁମନ !—
ମଦନ ପ୍ରେରିତ ଶର କିବା—

ବାଞ୍ଛ ଗାନ ମୋର ଯେବେ,
ମନପ୍ରାଣ ହେଲେ କରୁଛି ହରଣ ।
ଗୁଲ୍, ଗୁଲ୍ ବନ୍ଦୋ ହୁଁସ—ଉଡ଼ୁ ନେବା ଭାଙ୍କ ।
(ଦ୍ରୁତପଦେ ନିଷ୍କ୍ରାନ୍ତ)

ବୟସ୍ୟ—ହେ, ହେ ରୂପସୀ ନୌକାବାଳିମାନେ !
ଟିକିଏ ଭଲ ଅଟନ୍ତୁ, ଅଙ୍ଗୁଳି ଡେଣା ହଲାଅ—
(ନିଷ୍କ୍ରାନ୍ତ)

[ ପଟକ୍ଷେପ ]

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( ଦାଶରାଜାଙ୍କ ଅନ୍ତଃପୁର )

ଦାଶରାଜ—ବେଟୀ ହାମର ରାଣୀ ହବ-ବେଟା ତା'ର ରଜା ହବ । ହାମର ବେଟୀ କଣ ଏମତ କର ସାଦୀହବ ? ରଜା ହେଲାତ ଭାସିଗଲ୍ କଣ ? ହାମେ କହିଲୁ, ପରତିଜ୍ଞା କର, ହାମ ବେଟୀକୁ ପାଟରାଣୀ କରବୁ, ଆଉ ତା'ର ବେଟାକୁ ରଜା କରବୁ—ସେହିଠୁଁ ମୁହଁଟା ହାଣ୍ଡିପର କର ଦେଲା ଦେଲାତ ଦେଲା, ତା' ରଜା ତା'ଠି—ହାମେବି ଜଣେ ରଜା—ହାମ ବେଟୀ ରାଣୀହବ, ବେଟା ତା'ର ରଜା ହବ ।

( ଦାଶ-ପତ୍ନୀର ପ୍ରବେଶ ।

ଦାଶ ପତ୍ନୀ—ଇଏ କଣ ସତଅ ବୋପା ? ରଜାକୁ ମନାକର ଦେଲ୍ କାହିଁକି ?

ଦାଶ ରାଜ—ମନାକରି ଦେବା ନାହିଁତ କଣ ? ସତଅ ହାମର ରାଣୀ ହବ—ବେଟା ତା'ର ରଜା ହବ ।

ଦାଃ ପଃ—ଗାଛୁ ମେ କଟହଲ୍ ଓଠ୍ ମେ ତେଲ୍ ! ରଜାକୁ ସାଦୀଦେଲେତ ହବ ! ଆଉ କଣ ଆପେ ଆପେ ହବ ?

ଦାଃ ରାଃ—ରଜା ପରତିଜ୍ଞା କଲା ନାହିଁ । ପରତିଜ୍ଞା କଥା କହିଲା ବେଳକୁ ମୁଣ୍ଡ (ହଲାଇ) ଏମ୍ତି ଏମ୍ତି କଲା କାହିଁକି ?

ଦାଃ ପଃ—ହଉ, ତୁଭ ମିଣିପ—ହାମେଉ ରଣ୍ଡିହେବା—ତୁ ଯା, ଭଲ୍ ବୁଝ୍ ଶୁଝ୍ କର ।

ଦାଃ ରାଃ—ସତଅ ମା, କିଛି ଭାବନା କରନା—ସତଅ ତୋ'ର ରାଣୀ ହବ—ନାତି ତୋର ରଜା ହବ ।

ଦାଃ ପଃ—ଏହିତ ମା ହାମର ଏଣେ ଆସୁଚି—ସତଅ ବୋପା ପୁଛିଁତ କେମ୍ତି ରେହେବ ।

( ସତ୍ୟବତୀର ପ୍ରବେଶ )

ଦାଃ ରାଃ—ସତଅ ମା, ନିଶ୍ଚେ ସତଅ ହାମର ରାଣୀ ହବ—ବେଟା ତା'ର ରଜା ହବ ।

ସତ୍ୟବତୀ—ମା, ମୋତେ ଡାକିଲ୍ କାହିଁକି ?

ଦାଃ ପଃ—ବେଟୀଲୋ, ତୋ'ର ସେ ରଜାକୁ ସାଦୀ କରବାକୁ କି ମନ ହଉଛି ?

ସତ୍ୟ—(ସ୍ୱଗତ) ସାଦୀ ! ମୋର ! ଏହି ଉତ୍କୃଷ୍ଟ ରୂପ ଦେଖି ? ହେ ବିଧାତଃ ! ନାରୀଙ୍କୁ ରୂପଯୌବନ ଦେଇଛନ୍ତି କଣ କଳଙ୍କ ଅର୍ଜ୍ଜନ କରିବାକୁ ?

ଦାଃ ରାଃ—ବୋଲ୍ ମା, ତୋର ପେଟ କଥା ଫିଟାଇ ବୋଲ୍ ମା ।

ସତ୍ୟ—( ସ୍ୱଗତ ) ସେ ଶକ୍ତି ଥିଲେ କି ମୋତେ ଆଜି ଏତେ ମନସ୍ତାପ ଭୋଗ କରିବାକୁ ହୁଅନ୍ତା ।

ଦାଃ ପଃ—ବୋଲ୍ ମା—ଚୁପ୍ ହେଲୁ କାହିଁକି ?

ସତ୍ୟ—(ପ୍ରକାଶ୍ୟେ) ମା ଗୋ ।

ପରାଧୀନା ବାଳା ତୋର, ସଦା ଋଣୀ ପାଶେ,
ଏହି ଦେହ, ଏହି ପ୍ରାଣ, ସମସ୍ତ ତୁମ୍ଭର;
ବୃଥା ତେବେ ପ୍ରଶ୍ନ କିପାଁ ଅଯୋଗ୍ୟା ସନ୍ତାନେ ?

ଦାଃ ରାଃ—(ସ୍ୱଗତ) ସତଅ ହାମର ବଡ଼ା ସୁନା ପିଲା—କେତେ ଭଲ୍ ଭଲ୍ କଥା କହୁଚି—ହାମେମାନେ ଯା କହବୁ, ସେଥିରେ ତା'ର ରାଜି—(ପ୍ରକାଶ୍ୟେ) ଅଚ୍ଛା ମା—ତୁ ହାମର ଅଚ୍ଛା ମା । ତୁ ନିଶ୍ଚେ ରାଣୀ ହବୁ—ତୋର ବେଟା ନିଶ୍ଚେ ରଜା ହବ ।

ଦାଃ ପଃ—ଅଚ୍ଛା, ଯା ମା, ଖେଲ୍ ଯା—( ସତ୍ୟବତୀ ନିଷ୍କ୍ରାନ୍ତ )

ଦାଃ ସ୍ରୀଃ—ଦେଖିଲୁ ସଉଅ ମା, ଝିଅର ହାମର କେମନ୍ତ ବୁଦ୍ଧି—ସେ ନଷ୍ଟେ ରାଣୀ ହବ—ବେଟା ତାର ନଷ୍ଟେ ରଜା ହବ ।

ଦାଃ ପଃ—ମା ବସୁଲୀର ଇଚ୍ଛା—( ସମସ୍ତେ ନିଷ୍କ୍ରାନ୍ତ )

( ସତ୍ୟବତୀର ଦ୍ରୁତବେଗେ ପୁନଃ ପ୍ରବେଶ )

ସତ୍ୟ—ସ୍ୱେ କଣ ହେଲା ? ହଠାତ୍ ମନଟା କାହିଁକି ମେଘାଚ୍ଛନ୍ନ ହୋଇଗଲା—ସୂର୍ଯ୍ୟଦେବ ଯେପରି ମଧ୍ୟାକାଶରେ ଲୀନ ହୋଇଗଲେ ।

( ଗୀତ )

ଏଁକି ଚିର ବିଷାଦ ?—ରାହୁ ସମ ଅସି
ଗ୍ରାସିଲା ହୃଦୟାକାଶ !
କାହିଁ ସେ ଆଲୋକ ? କାହିଁ ସେ ପୁଲକ ?
ଅନ୍ଧକାର ଦଶଦିଶ । ପଦ ।
ପ୍ରଥମ ପ୍ରଭାତ ଉଇଁଲା ଅମ୍ବରେ,
ନବ ଅନୁରାଗେ ଯେବେ,
ନବ ସ୍ରୋତେ ପଡ଼ି, ନବ ମଦେ ମାତି,
ଆତ୍ମହରା ହେଲି ତେବେ;
ମନେ ହେଲା ଯିବି ଭାସି ଏହିପରି,
ମଳ ମଳା-ବର୍ତ୍ତୀ ହୋଇ ଯିବି ପାରି,
(କିନ୍ତୁ) ଜାଣିଥିଲି କିଏ ଲୁଚିଛି ଅରି,
ଅକାଳେ କରିବ ଶେଷ ।

( ଦୁଇ ଜଣ ସଖୀଙ୍କର ପ୍ରବେଶ )

୨ୟ ସଖୀ—ରାଣୀ ନାକ ! ହେଇତ ସହି ହାରିଯିବ ବୋଲି ଏଠିଆସି ଲୁଚିଛି ।

( ହଃ ହଃ କରି ହାସ୍ୟାନନ୍ତର )

ଆ, ଆ, କିଏ ଘରୁ ଛୁଟି ଅଛି ( ଧରି ଓଟାରିବା )

୧ମ ସଖୀ—ସହି, କଣ ଭାବୁଚୁ ? କହ ମୋତେ, ଖୋଲି କହ, ତୋର ଯେବେ ତାଙ୍କଠି ମନ ଅଛି ।

ସତ୍ୟ—ଭୁଲ, ଯିବୁ ନାହିଁ ଖେଳ ?

୨ୟ ସଖୀ—ହାରିଯିବା ଭୟରେ ଲୁଚି ହୋଇ, କୁହା ହଉଚ କି ନା ଭୁଲ, ଯିବୁ ନାହିଁ ଖେଳ ! ଚାଲ ଚାଲ—( ସତ୍ୟବତୀକୁ ଟାଣିବା )

ସତ୍ୟ—( ସ୍ୱଗତ ) ଭୁଲ ! ତୁ ବି ମଣିଷ, ମୁଁ ବି ମଣିଷ, କିନ୍ତୁ କାହିଁ ତୋର ଭାବ—କାହିଁ ମୋର ଭାବ ?—କାହିଁ ତୋର ଆନନ୍ଦର ପୀୟୂଷଧାରା ? କାହିଁ ମୋର ବିଷାଦର ଗରଳ ଧାରା ?

( ୨ୟ ସଖୀ ସହ ସତ୍ୟବତୀର ଧୀରେ ଧୀରେ ପ୍ରସ୍ଥାନ )

୧ମ ସଖୀ—ସହୀର ଭାବତ କିଛି ବୁଝିପାରୁନାହିଁ—ସତେ କଣ ରାଜାଙ୍କଠି ମନ ବଳିଚି, ନା ସେହି ପୁରୁଣା ରୋଗ ପୁଣି ଧରିଚି ? (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ ।

( ଶାନ୍ତନୁଙ୍କ ବିଶ୍ରାମ କକ୍ଷ )

ଶାନ୍ତନୁ—( ପାଦଚାରଣ କରୁ କରୁ )

ଅହା ! କି ମନମୋହିନୀ ତ୍ରିଲୋକ ଦୁର୍ଲଭା,
ଅଦ୍ୟାପି ଦେଖୁଛି ସେହି ଚିତ୍ରିତଚିତ୍ରରେଖା !
ସ୍ୱପନେ-ସ୍ୱପନେ ପୁଣି, କିବା ଜାଗରଣେ,
ସେହି ଛବି ଛଡ଼ା ଆନ ନ ଆସେ ମୋ' ଧ୍ୟାନେ,
ମନ ହୁଏ, ଯାଏଁ କ୍ଷଣେ ଦାସରାଜ ପାଶେ,
ପ୍ରତିଜ୍ଞାରେ ଯଥା ତାର ଦେଇଣ ସମ୍ମତି,
ଘେନି ଆସେ ମୁହୂର୍ତ୍ତକେ ପ୍ରାଣର ପ୍ରତିମା—
ଅଙ୍କ ଲକ୍ଷ୍ମୀ କରି ମୋର ପିନ୍ଧାଏ ସୁଷମା ।
କିନ୍ତୁ ଯେବେ ପଡ଼େ ମନେ ପୂର୍ବ ପ୍ରେମାଳାପ,
ସେହି ପ୍ରେମସମ୍ଭାଷଣ, ସ୍ୱର୍ଗର ଦୁର୍ଲଭ,
ପୁଣି ଯେବେ ରାଜେ ନେତ୍ରେ ଦେବବ୍ରତ ମୁଖ,
ମର୍ମାହତ ହୁଏ ଯେସନେ ସର୍ପ ମନ୍ତ୍ରମୁଗ୍ଧ ।
କି କରିବି ମୁହିଁ ଏବେ ? କାମ ଏକ ଆଡ଼େ,
ଅନ୍ୟ ଆଡ଼େ ପ୍ରେମ ଯେବେ ଟଣାଟଣି କରେ !
( ରହିଯାଇ )
ଧିକ୍ ମୋତେ, ଧିକ୍ ମୋର ବିବେକ ବାଞ୍ଛନେ,
କାମବଶେ ପଡ଼ି ଯେବେ ନିନ୍ଦେ ଶୁଦ୍ଧ ପ୍ରେମେ !
ଯା' ତୁ କାମ, ଦୂର ହ'ରେ ଦେବଦେଶୀ ଦନୁ,
ଅକର୍ଷି ଆତ୍ମାରେ ହେଲେ ମାରୁରେ କୌଶଳେ ।
ଆସ ପ୍ରେମ, ଆସ ତୁମ୍ଭେ ହୃଦୟ ପ୍ରତିଭା—
ବିକଶି ହୃଦୟେ ମୋର ଜନ୍ମ କର ଶୋଭା !

( ନେପଥ୍ୟେ )—ପ୍ରାଣେଶ୍ୱର !

ସତ୍ୟବତୀପରିଣୟ କରନ୍ତୁ ବହନ—

ପ୍ରେମ ନାଶ ତହିଁ କଦା ନ ହେବ ଅନ୍ତର ।
ଭୟ କର ମନେ ତୁମ୍ଭେ ଦେବବ୍ରତପାଇଁ—
ଭଲ ଛଡ଼ା ମନ୍ଦ କେବେ ନ ହେବ ତାହାର ।
ପ୍ରାଣପ୍ରିୟ ପୁତ୍ର ତବ ମାତୃହୀନ ଶିଶୁ
ମାତୃସୁଖ ଭୁଞ୍ଜେ ଯେହ୍ନେ କର ଯତ୍ନ ଅଶୁ ।

ଶାନ୍ତନୁ—କାହାର ଅବ୍ୟକ୍ତ ଧ୍ୱନି ଏହି ।
ଆଶ୍ୱାସଇ ପ୍ରିୟା କଣ୍ଠ ଅନୁସରି ।
କ୍ଷପର କଥା ଏ' !
ପ୍ରେମ ହାନି ନାହିଁ ହେବ ଅନ୍ୟେ ପ୍ରେମ
ଦାନେ ।—
ଅଶ୍ରୁଭରଣେ ପୁଣି ଶୁଭ ହେବ ଜନେ ।
ନିଶ୍ଚୟ କୁହୁକ ମନ୍ତ୍ର କେହି
ଝାଡ଼ୁଛି ଶ୍ରବଣେ
କିନ୍ତୁ—କିନ୍ତୁ—
ଶାନ୍ତନୁ ଦୁର୍ବଳ ନୁହେ, ମୋହିବ ଏ' ମନ୍ତ୍ରେ ।
(ନେପଥ୍ୟେ)—ପ୍ରାଣେଶ୍ୱର !
ମାନ ମୋର ଦୀନ କଥା, ନିବେଦନ ତରେଁ—
ଏକମ ନ ପୁତ୍ର ତବ—ଧର୍ମରକ୍ଷା ସ୍ତମ୍ଭ,
ପିତୃ କୁଳୋଦ୍ଧାର ହେତୁ ନିର୍ଭର ଯା' ପ୍ରତି;
କାଳମୁଖେ ପଡ଼େ ଯେବେ ସହସା ସେ ଦିନେ,
ପୁନ୍ନାମ ନରକ ଭୋଗ ଜାଣ ହେ ନିଶ୍ଚୟେ;
ତେଣୁ କୁହ ଦେବବ୍ରତେ, ଉପଦେଶ ମୋର,
ଯେନି ଆସୁ ସତ୍ୟବତୀ ଜନନୀ ସକାଶେ ।

ଶାନ୍ତନୁ—ସତ୍ୟ, ସତ୍ୟ,
କିଏ କହେ ମର୍ମ କଥା ମୋର ?
ପ୍ରାଣେଶ୍ୱରି ! ଛଳନା, ନା ହୃଦ କଥା ତବ ?—
କେମନ୍ତେ ବୁଝିବି ?
ଦେଖାଦିଅ ଆଉ ଥରେ ଡାକୁଛି କାତରେ—
ମୁକ୍ତ କର ମନ ମୋର ସନ୍ଦେହ—ଦୋଳାରୁ ।

[ ଦେବବ୍ରତର ପ୍ରବେଶ ]

ଦେବବ୍ରତ—ପିତଃ । ପିତଃ ।
ଏ'କି ଭାବ ହେବେ ତବ ଏହି କେତେ ଦିନ ?
କି ଚିନ୍ତା-ଦହନେ ତବ ତନୁ ଜୀର୍ଣ୍ଣ ଶୀର୍ଣ୍ଣ ?

ଶାନ୍ତନୁ—[ ହୃଦୟଗୋପନ ପୂର୍ବକ ]
ପୁତ୍ର ରେ !
କିଛି ଚିନ୍ତା ନାହିଁ ମୋର, ନ ହ'ରେ ବ୍ୟାକୁଳ !

ଦେବବ୍ରତ—ପିତଃ ।
ଛଳନା ପୁତ୍ରର ସଙ୍ଗେ, ସାଜେ କି ପିତାର ?
ହାୟ ! କାହିଁ ସେ ମୁଖଶ୍ରୀ ? କାହିଁ ବା ସେ
ଜ୍ୟୋତି ?
ଚନ୍ଦ୍ର, ସୂର୍ଯ୍ୟ ଦେଖି ଯାହା ହେଉଥିଲେ ମ୍ଳାନ !
କାହିଁ ସେ ବିଶାଳ ବକ୍ଷ, ଗଦାସମ ବାହୁ ?—
ଦୀନ କ୍ଷୀଣ ଯେହ୍ନେ ଏବେ ପ୍ରତିପଦ ବିଧୁ ।
କୁହ ପିତଃ ! କୃପା କରି, ଧରୁଛି ଚରଣ,—
ଅକ୍ଷମ କି ରାଜ୍ୟଭାର ଅଧମ ଗ୍ରହଣେ ?
କିମ୍ବା ଯେବେ ଅପରାଧ କରିଥାଏ ଲକ୍ଷ୍ୟ,
ଅଜ୍ଞାତେ ନିଶ୍ଚୟ ସେହି, ଜଣାଉଛି ପିତ ।
କୁହନ୍ତୁ, କି ଦୋଷ ମୋର ଅଥବା କି ଦଣ୍ଡ ?
ଚେଷ୍ଟିବି ମାର୍ଜନେ ଏକ, ପାଳନେ ବା ଅନ୍ୟ ।

ଶାନ୍ତନୁ—ପୁତ୍ର ରେ !
ଦୋଷୀ ମୁହିଁ, ଦୋଷ ତୋର କି କରିବି ଲକ୍ଷ୍ୟ ।
କହ ପୁତ୍ର, କ୍ଷମିବୁ କି ପିତାକୁ ତୋହର ?

ଦେବବ୍ରତ—ପିତଃ । ପିତଃ !
ଏ' କି ବାତୁଳତା ତବ ?

ଶାନ୍ତନୁ—ସତ୍ୟ ରେ ବାତୁଳ ମୁହିଁ ।—
ପିତା ହୋଇ ଚିନ୍ତେ ଯେବେ ପୁତ୍ରର ଅନିଷ୍ଟ ।
[ସ୍ୱଗତ] ଯାଏଁ ଚାଲି ଅନ୍ୟ ସ୍ଥାନେ ସମ୍ମୁଖୁଁ
ପୁତ୍ରର । ( ବେଗେ ନିଷ୍କ୍ରାନ୍ତ )

ଦେବ—ପିତଃ । ପିତଃ [ ପଶ୍ଚାଦ୍ଧାବନ ]

---

## ତୃତୀୟ ଦୃଶ୍ୟ

( ପ୍ରାନ୍ତର )

( ସତ୍ୟବତୀ ଅଳଙ୍କୃତା ବେଶରେ ବେଗେ
ପ୍ରବେଶ କରି )

ସତ୍ୟ—ଆଉ ରକ୍ଷା ନାହିଁ ।—ଆଉ ରକ୍ଷା ନାହିଁ !
ପ୍ରଭଞ୍ଜନ ! ମନ୍ଦଗତି ହୁଅ;
ଜଳଦାବର୍ଷଣ ! ଧୀରେ କ୍ଷୁଦ୍ର ମହାକ୍ଷେତ୍ର;

ବିଦ୍ରୂପର୍ । ପରିହର ଅଟ୍ଟହାସ୍ୟ;
ବଜ୍ର । ଶାନ୍ତ କର କଡ଼ ମଡ଼ ଘଷଣେ;—
ଦିଅ ପଥ, ଯାଏଁ ମୁହିଁ,
ଲଭେ ଶାନ୍ତି, ଶାନ୍ତିସୁଧାମୟୀ କୋଡ଼େ ।
କିନ୍ତୁ କାହିଁ ଶାନ୍ତି ?—
କେଉଁଠି ଦୂରେ ? କେଉଁ ରୂପେ ?
କେମନ୍ତେ ଖୋଜିବି ?
ହେଲା ନାହିଁ । ହେଲା ନାହିଁ !
ଅଉ ରକ୍ଷା ନାହିଁ ! ଆଉ ରକ୍ଷା ନାହିଁ ।

୧ମ ସଖୀ—(ପ୍ରବେଶ କରି) ସଖି !

ସତ୍ୟ—କିଏ ? ପ୍ରାଣସଖି—ଶଶି !
ଶୀଘ୍ର ପଳାଇ ଆ !—ଶୀଘ୍ର ପଳାଇ ଆ !

୧ମ ସଖୀ—କାହିଁକି ଲୋ ସଖି !

ସତ୍ୟ—ଦେଖୁ ନାହୁଁ—
କି ଭୟଙ୍କରୀ ପ୍ରକୃତିରାଣୀ ଆଜି !—
ଢାଙ୍କିଅଙ୍ଗ ତାଙ୍କ କୃଷ୍ଣାମ୍ବରେ—
ଉଡ଼ାଇଣ କେଶପାଶ ଧୂଳି ଧୂସରିତ—
ଉଦ୍‌ଗାରି ସ୍ଫୁଲିଙ୍ଗ ନେତ୍ରୁ, ଦନ୍ତେ ଘର୍ଷି ଦନ୍ତ—
ଧାବନ୍ତି ଉନ୍ମାଦେ !—
ଭୟ ନାହିଁ ହୁଏ ତୋର ?
ପଳାଇ ଆ ! ଶୀଘ୍ର ପଳାଇ ଆ !

୧ମ ସଖୀ—ସଖି ! ସଖି !
କିସ ହେଲା ତୋର ?

ସତ୍ୟ—ଭୟ ନାହିଁ କିଛି, ସଖି
ଅଛି ମୁହିଁ ପାଖେ ପାଖେ ତୋର !

୧ମ ସଖୀ—ସଖି ! ସଖି ।
ସତେ କି ଲୋ ବାତୁଳ ହେଲୁ ତୁ ?

ସତ୍ୟ—ବାତୁଳ ମୁଁ ସଖି ! ନା ନା—ଅଶାନ୍ତ, ଅଶାନ୍ତ,
ଘୋର ଅଶାନ୍ତି କେବଳ ବାହାରେ ଅନ୍ତରେ ।

୧ମ ସଖୀ—କି କାଠ ଦାଗିଲା ସଖି, ହୃଦୟ ତୋହର—
ଦିନେ ସୁଦ୍ଧା ହର୍ଷମୁଖୀ ନ ଦେଖିଲି ତୋତେ ।
(ସ୍ୱଗତ) ହାୟ ! କିଏ ସେ ମୂନ ?—ଭେଟ ହେଲା
ଦିନୁ, ସଖୀ ଅମର ଏକାବେଳକେ ବଦଳିଗଲେଣି
ବାହାର ଦୁର୍ଗନ୍ଧ ଭିତରେ ପଶି ଭିତର ସୁଗନ୍ଧ
ବାହାର କରି ଦେଲଣି ! ହାୟ ! କାହିଁ ଅଗ
କଥାବାର୍ତ୍ତା :—କାହିଁ ଅଗ ହସ ଖେଳ !
ଯେତେ ଚେଷ୍ଟା କଲେ ସୁଦ୍ଧା ସବୁ ନିଷ୍ଫଳ
ହେଉଛି ! ହେ ମା ଭଗବତି ! ସଖୀଙ୍କର
ମତିଫେରାଇ ଦିଅ ମା ।

ସତ୍ୟ— ସଖି ! ଆଉ ଭାବନା ନାହିଁ !—ମେଘ
ଚାଲିଗଲାଣି, ସୂର୍ଯ୍ୟ ଦେଖାଦେଲେଣି !—ଆଉ
ସଖୀମାନେ କାହାନ୍ତି ? ଡାକିଆଣୁ ସଖି, ଆଜି
ଖେଳିବା—ନାଚିବା—ଗାଇବା, ଆମୋଦ
ପ୍ରମୋଦରେ ମାତିଯିବା ।

୧ମ ସଖୀ—[ ସ୍ୱଗତ ] କି ପାଗଳ ପ୍ରଳାପ ଏ ।

ସତ୍ୟ—ସଖି । ଆ, ଆ—ହେଳା କର ନା—ପ୍ରାଣ-
ଖୋଲି ଆଜି ଆମୋଦ କରିବା ।
[ ବେଗେ ପ୍ରଥମ ସଖୀଙ୍କୁ ଟାଣିନେଇ ପ୍ରସ୍ଥାନ ]

---

## ଚତୁର୍ଥ ଦୃଶ୍ୟ

[ ରାଜପଥ ]

ମନ୍ତ୍ରୀ—[ ଦ୍ରୁତବେଗେ ପ୍ରବେଶ କରି ] କାହିଁ ? କେଉଁଠି ? କେତେ ଆଉ ଖୋଜି ଖୋଜି ବୁଲିବି । [ ଦୀର୍ଘନିଃଶ୍ୱାସ ତ୍ୟାଗପୂର୍ବକ ] ହେ ମା ନିତ୍ୟ ହାସ୍ୟମୟୀ କମଳବାସିନି ! କାହିଁକି ଏହି ଦୁର୍ଭାଗ୍ୟ ରାଜ୍ୟ ପ୍ରତି, ହାସ୍ୟଶୂନ୍ୟ କଟାକ୍ଷପାତ ଆଜି ? ମନେ କରିଥିଲି, ଯୁବରାଜ ସିଂହାସନରେ ବସିଲେଣି, ଆମ୍ଭର ଭାଗ୍ୟ ପ୍ରସନ୍ନ ହେଲା, କିନ୍ତୁ କିଏ ଜାଣିଥିଲା ସର୍ବଗ୍ରାସୀ ରାହୁ ପୁଣି ଅଲକ୍ଷିତ ଭାବରେ ଅବସ୍ଥାନ କରୁଅଛି । ହାୟ ! କି ସେ ଦୁରାରୋଗ୍ୟ ବ୍ୟାଧି ରାଜଙ୍କର, ତାଙ୍କୁ ଗ୍ରାସ କରି ବର୍ତ୍ତମାନ ସମସ୍ତଙ୍କୁ ଗ୍ରାସ କରିବାକୁ ଉଦ୍ୟତ । କେତେଠାରୁ କେତେ ବୈଦ୍ୟ ଆସିଲେଣି, ସମସ୍ତେ ନିରାଶ ହୋଇ ଫେରୁଛନ୍ତି—ଯୁବରାଜ ଏକାବେଳକେ ପାଗଳ ହୋଇ ଗଲେଣି—ମୁଁ ଏବେ କରୁଛି କଣ ? [ ଭାବନାପୂର୍ଣ୍ଣ ଚିତ୍ତରେ ରହିବା ] [ ହଠାତ୍

ନେପଥ୍ୟ ଅଢ଼େ ଗୁହି ] ଏହି ବାଝିଦେଇ କେହି
ଗଲ ନା ।—ଠିକ୍ ଯୁବରାଜଙ୍କ ପରି—ଯାଏଁ
ଦେଖେଁ—                    [ ନିଷ୍କ୍ରାନ୍ତ ]

[ ଦେବବ୍ରତଙ୍କ ପ୍ରବେଶ ]

ଦେବ—ଅତୀବ ଆଶ୍ଚର୍ଯ୍ୟ ।
କେହି ସୁଦ୍ଧା ନ ପାରଇ କହି—
କାହିଁକି ଈଦୃଶ ବ୍ୟାକୁଳ ଜନକ ?
କ୍ଷୀଣୁ କ୍ଷୀଣତର ଅଙ୍ଗ ଦିନୁ ଦିନୁ ପୁଣି ।
                    ( ରହିଯିବା )
ତେବେ କି ଭ୍ରମାନ୍ଧ ମୁହିଁ—ଭ୍ରମେ ବୃଥା !
ନା—ନା—
ନିଶ୍ଚେ ପ୍ରୀତିପ୍ରଦ କିଛି ଅମୂଲ୍ୟ ରତନ,
ହରିଛି ହୃଦୟ ତାଙ୍କ, କରୁଛି ଅଥୟ;
ନଚେତ୍ ଏକାନ୍ତେ, ସେ କି ପାଗଳ-ପ୍ରଳାପ ?
" କି ସୁନ୍ଦର । କି ସୁନ୍ଦର ।"
ଜଳ୍ପିଲେ ଯାଇ, କାହିଁକି ବ୍ୟଥିତ ଏଡ଼େ ?
ଦଂଶନ୍ତି ରସନା ।—
ଯେବେହେଁ ଘଟିବ ପ୍ରମାଦ ଶ୍ରବଣେ ମୋହର ।
ହାୟ । କି କଷ୍ଟଭୁଞ୍ଜନ୍ତି ତେବେ ମୋହଲାଗିପିତା ।
ମୁହିଁ କି ନିଷ୍ଠୁର ଏଡ଼େ, ରହିଛି ନିଶ୍ଚିନ୍ତେ ?
ମୁହିଁ କି ପାପିଷ୍ଠ ଏଡ଼େ, ଦେଖୁଛି ସାନନ୍ଦେ ?
ନ—ନା—ତେବେ---
କାହିଁ ଯିବି ? କିଏ ଅଛି ଏହି ଭୂମଣ୍ଡଳେ ?
କେହି କି ନାହାନ୍ତି ମହାମର
ତ୍ରିଭୁବନ ମଧ୍ୟେ ?
କରି ଏ ରହସ୍ୟଭେଦ
ବଞ୍ଚାଇବ ସ୍ନେହମୟ ପିତାଙ୍କୁ ମୋହର ।
ହାୟ । ପୁତ୍ରଲାଗି ସିନା
ନାହିଁ ନିଜ ସ୍ୱାର୍ଥ---ଦେଉଛନ୍ତି ବଳି ପ୍ରାଣ ।

[ ମନ୍ତ୍ରିଙ୍କ ପ୍ରବେଶ ]

ମନ୍ତ୍ରୀ—ରାଜନ୍ । ଆପଣ ଏଠି ।
ଦେବ—[ ସାବେଗେ ] ମନ୍ତ୍ରିନ୍ । କହି କି ପାରିବ ?
ତୁମ୍ଭେ ଯେ ଅତୀବ ପ୍ରିୟ ମନ୍ତ୍ରୀ ତାଙ୍କ,
କିପାଁ ବ୍ୟାକୁଳ ଜନକ ? କେଉଁ ବସ୍ତୁଲାଗି ?
ମନ୍ତ୍ରୀ—ଯୁବରାଜ ।
ପ୍ରକୃତରେ ମୁହିଁ ନ ଜାଣଇଁ କିଛି ।
ତେବେ, କ୍ଷୁଦ୍ର ଜ୍ଞାନେ ମୋର ହେଉଛି ଉଦିତ;
ନୁହେଁ ସେ ପ୍ରଳାପ, ବ୍ୟାଧି ଏକବିଧ—
ଯିବ ଗୁଚି କାଳକ୍ରମେ ତାହା—
ବୃଥା ତବ ଭାବନା ଅଧୁନା ।
ଦେବ—ନା, ସଚିବ ।
ଜାଣନାହିଁ ତେବେ ତୁମ୍ଭେ କିଛି ।
ଯାଏଁ ଆଜି ଅନ୍ୱେଷିବି
ସ୍ୱର୍ଗ, ମର୍ତ୍ତ୍ୟ, ରସାତଳ—
ତନ୍ନ ତନ୍ନ କରି ସର୍ବ କନ୍ଦରା-କନ୍ଦର,
ତୃଣ-ତୁଚ୍ଛ ମଣି ବାଧା ବିଘ୍ନ ଯେତେ ।
ଅସ୍ତୁ ତହିଁ ରୁନ୍ଧିବାକୁ ଦୃଷ୍ଟିପଥ
ଗାଢ଼ ଅନ୍ଧକାର;
ଅସ୍ତୁ ତହିଁ ବାନ୍ଧିବାକୁ ମନୋବୃତ୍ତି
ମାୟାମୋହ-ଜାଲ;
ଅସ୍ତୁ ତହିଁ ଝଲ୍ସିବାକୁ ନେତ୍ରତାରା
ଜ୍ୟୋତି ପୁଞ୍ଜ ଯେତେ;—
ଜାଣିବି ନିଶ୍ଚୟ ପିତା କାହିଁକି ଉଦ୍‌ବିଗ୍ନ ?
କାହିଁକି ବ୍ୟଥିତ ଏତେ ? କେଉଁ ବସ୍ତୁଲାଗି ?
ମନ୍ତ୍ରୀ—ଯୁବରାଜ !
ନ ହୁଅ ଅସ୍ଥିର, ରାଜକାର୍ଯ୍ୟ—
ଦେବ—ନା, ସଚିବ !
ରାଜକାର୍ଯ୍ୟ କାର୍ଯ୍ୟ ତବ—
ପିତୃକାର୍ଯ୍ୟ କାର୍ଯ୍ୟ ଏବେ ମୋର ।
                    (ଦ୍ରୁତବେଗେ ପ୍ରସ୍ଥାନ)
ମନ୍ତ୍ରୀ—ଯୁବରାଜ । ଯୁବରାଜ ।        ( ପଶ୍ଚାଦ୍ଧାବନ )

---

## ପଞ୍ଚମ ଦୃଶ୍ୟ

( ଉଦ୍ୟାନ )

ବୟସ୍ୟ—ବୟସ୍ୟ ଆମର ପାଗଳ ହୋଇଚନ୍ତି ବୋଲି,
ତୁଆରଜା ଆମର ବଇଦ ଲଗାଇଛନ୍ତି—ହାଃ ହାଃ
ହାଃ—ଏଡ଼େ ରଜା ହେଲେ କଣ ହେବ,
ବଡ଼ାକରତ ବୁଦ୍ଧି ନାହିଁ—ଅଚ୍ଛା ପାଟିକରି କହେ

ନା, ଯେବେ ଭାଗ୍ୟଲକ୍ଷ୍ମୀ ସୁପ୍ରସନ୍ନା ହୋଇ ଯାଆନ୍ତି—( ଉଚ୍ଚସ୍ୱରେ ) ଅମ୍ଭଙ୍କୁ କେହି ଯେବେ ଉଦରପୂର୍ତ୍ତି କରି ଗ୍ରାସେ ଦିଅନ୍ତେ, ଅମ୍ଭେ ପରି ଦଣ୍ଡକରେ ଭଲ୍ କରି ଦିଅନ୍ତୁ—ସେ ଯେ ସୁନ୍ଦରୀ —ଅମ୍ଭର ମନ କଣ ହେଇ ଯାଉଛି—ତାଙ୍କର ତ ଭଲ୍ ରଜାଘର ମନ—କାହିଁ ? କେହି ଶୁଣୁଛନ୍ତି କି—ଯାଃ ଅମ୍ଭଙ୍କ ବୟସ୍ୟ ଯେବେ ମନା କରି ନ ଥାନ୍ତେ, ତା' ହେଲେ ପରି କେତେ ଦିନୁ ଅମ୍ଭେ ତୁଆ ରଜାକୁ କହି, ନେଇ ଆସନ୍ତୁଣି— ପେଟପୂର୍ କରି ଗ୍ରାସେ ଖାଇ ସାରନ୍ତୁଣି—କିଏ ବା ଶୁଣୁଛି ! କିଏ ବା ଦେଖୁଛି !

( ଦେବବ୍ରତର ପ୍ରବେଶ )

ଦେବ—ପିତୃବନ୍ଧୁ ମୋର !
ମୁହିଁ ଶୁଣିଛି, ମୁହିଁ ଦେଖି ।

ବୟସ୍ୟ—ମହାରାଜ ! ଅମ୍ଭେ ବନ୍ଧୁଦ୍ରୋହୀ ହେଉଁ—
ଅମ୍ଭେ ବନ୍ଧୁଦ୍ରୋହୀ ହେଉଁ ।

ଦେବ—ନ ହେବ ହେ ବନ୍ଧୁଦ୍ରୋହୀ !
ବରଂ ପିତୃଦ୍ରୋହୀ ହେବି ମୁହିଁ,
ପୁତ୍ର ବର୍ତ୍ତିମାନେ ଯେବେ,
ପିତୃକାମ ରହେ ଅସମ୍ପୂର୍ଣ୍ଣ ଭବେ ।
କହ ପିତୃସଖା, କିଛି ନାହିଁ ଭୟ ତବ,
କହ ଦୟା ବହି,—କିଏ ସେହି ନାରୀ ?

ବୟସ୍ୟ—ମହାରାଜ ! ଅମ୍ଭଙ୍କ ଛାଡ଼ିଦିଅନ୍ତୁ ! ଅମ୍ଭଙ୍କ ଛାଡ଼ିଦିଅନ୍ତୁ !

ଦେବ—ଦ୍ୱିଜବର !
ଦେବି ମୁଁ ଉଦରପୂର୍ତ୍ତି ଗ୍ରାସ, ମାସାବଧି;
କହନ୍ତୁ, କିଏ ସେ ନାରୀ ?—କେଉଁଠି ନିବାସ ?
ପିତାର ଅନ୍ତର ମୋର ହରଣ କୌଶଳେ
ଉଦ୍ୟତା ଅଧୁନା ପୁଣି ପରାଣ ହରଣେ !

ବୟସ୍ୟ—ଆସନ୍ତୁ, ( କମ୍ପିତ କଳେବରରେ )
କର୍ଣ୍ଣମୂଳେ ତେବେ ମୁହିଁ କହିବି ଲୁଚାଇ;—
( କର୍ଣ୍ଣମୂଳେ କହିବା )

ଦେବ—ଏହି ଛାର ଲାଗି ପିତା, ଏଡ଼େ ବ୍ୟାକୁଳିତ !
ଏହିକ୍ଷଣି ଯିବି ମୁହିଁ, ଆଣିବି ଜନନୀ ।

ବୟସ୍ୟ—ମହାରାଜ ! ସେ କୈବର୍ତ୍ତିର ଭାରି କୁଲୁମ୍—
କେବଳ "ପର୍ତିଜ୍ଞା" "ପର୍ତିଜ୍ଞା"—ଆପଣ କେବେ ଯାଆନ୍ତୁ ନାହିଁ ।

ଦେବ—କି ପ୍ରତିଜ୍ଞା ଚାହେଁ ସେହି, କହ ବିପ୍ରବର ?
ପ୍ରାଣାପେକ୍ଷା ବେଶି କିଛି ଚାହେ କି କୈବର୍ତ୍ତି ?
ଚାହୁଁଥାଏ ଯେବେ ସେହି ସାଧ୍ୟାତୀତ କିଛି,
କରିବି ପୂରଣ କଷ୍ଟେ ଗୁରୁଙ୍କ ପ୍ରଭାବେ !
(ଅର୍ଦ୍ଧସ୍ୱଗତ) ଦିଅ ଗୁରୁଦେବ !
ଦିଅ ପିତୃଦେବ !
ଦିଅ ଗୋ ଜନନୀ !
ଅଭାବ ସନ୍ତାନେ ଯାହା କରୁଛନ୍ତି ଲକ୍ଷ୍ୟ;
ଦିଅ ସେହି ଶକ୍ତି, ସେହି ବୁଦ୍ଧି, ସେହି ଧନ—
ପିତୃକାମ ପୂର୍ଣ୍ଣ ଯେଉଁଥି ପୂର୍ଣ୍ଣଏ ବହନ ।
(ପ୍ରକାଶ୍ୟେ) ଆସ ସଙ୍ଗେ ଦ୍ୱିଜବର ଏବେ—
ପୂର୍ଣ୍ଣଗ୍ରାସେ ତବ ତୋଷିବି ହୃଦୟ ।

ବୟସ୍ୟ—ଯାହା ହେଉ, ଭାଗ୍ୟଟା ଏତେ ଦିନେ ପ୍ରସନ୍ନ ହେଲା—ଅମ୍ଭର ଦୋଷ କଣ ? ଅମ୍ଭେ ତ ପ୍ରକାଶ୍ୟରେ କହିନାହୁଁ କିଛି !

( ଉଭୟଙ୍କ ପ୍ରସ୍ଥାନ )

( ଶାନ୍ତନୁଙ୍କର ଉଦ୍ୟାନରେ ପ୍ରବେଶ )

ଶାନ୍ତନୁ—(ସ୍ୱଗତ) ସୌନ୍ଦର୍ଯ୍ୟ ! ସୌନ୍ଦର୍ଯ୍ୟ !
ଦେବ ନା ଦାନବ ତୁହି ! ଅଥବା ମାୟାବୀ !
କି ବୁଝିବ ମାୟା ତୋର ମାୟାମୁଗ୍ଧ ନର ?
ହାୟ ! କାହିଁ ତୋର ସେହି
ସ୍ନିଗ୍ଧ ମନମୋହକର ଜ୍ୟୋତି ?—
ଉଦ୍ଭାସି ହୃଦୟ ଯାହା ଅପୂର୍ବ ଆଲୋକେ
ତିରସ୍କାର କରିଦିଏ ମନୁ ମଳିନତା—
ତିରସ୍କାରି ସୁର-କର କରେ ଯଥା ନିଶା !
କାହିଁ ବା ପବିତ୍ର ଶାନ୍ତ ଭାବ ସେହି ?—
ମର୍ମେ ମର୍ମେ ଅନୁଭବି, କାମ, କ୍ରୋଧ, ଲୋଭ
ମାତ ଯାନ୍ତି ପୂତ ରସେ ଏକ,
ନାଶି ଉଠେ ହୃଦୟ ଯେଉଁଠେ କେକୀ ସୁଧାମତ୍ତ !
ଆଜ କାହିଁ ତୋର ବିଷଜ୍ୱାଳା ଆଜ ?
ତକ୍ଷକ-ଦଂଶନ ସଦୃଶ ସଙ୍କଟେ ?

ଓଃ ହୋଃ କି ସେ ଜ୍ୱାଳା ।
ଉଚ୍ଚାଟନ କର ମନ ପ୍ରାଣ
ଦେଉଛୁ ପ୍ରଜ୍ୱଳ ଆବେଗ-ଇନ୍ଧନ,
ଜ୍ୱଳେ ଦାଉ ଦାଉ ଯେସନେ ତାହା—
କାଷ୍ଠ ହବିଃର ସଂଯୋଗେ ।
କି ଯନ୍ତ୍ରଣା, ଓଃ ହୋଃ ପୁଣି ଦେଉ ତୁ କାମୀକୁ ?
ବାଞ୍ଛିତ ଯଦ୍ୟପି ହୁଏ ସେହି,
କର୍ତ୍ତବ୍ୟର କଠୋର ତାଡ଼ନେ ।—
( ଦେବବ୍ରତଙ୍କୁ ଦେଖି ଦ୍ରୁତବେଗେ ପ୍ରସ୍ଥାନ )
ଦେବ—( ଦେବବ୍ରତ ଓ ବୟସ୍ୟର ପ୍ରବେଶ )
ପିତଃ । ପିତଃ !
ସ୍ୱୀର ବସ୍ତୁ ଲାଗି ଏତେ ବ୍ୟାକୁଳିତ ।
ଆସ ବନ୍ଧୋ, ଝୁରି ଆଣିବା ଜନନୀ ।
( ଦ୍ରୁତବେଗେ ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

( ସତ୍ୟବତୀଙ୍କ କକ୍ଷ )
( ସଖୀମାନଙ୍କ ଗୀତ ଗାଇ ଗାଇ ପ୍ରବେଶ )
—ଗୀତ—

ନବ ବସନ୍ତ କାଳ ।
ନବ ବେଶେ, ନବ ଭାବେ, ସାଜି ଜଗେ ମନୋହର,
ପ୍ରେମିମନ ଉପବନେ କରୁଅଛି ବିହାର ।
ତରୁ ଶାଖେ ବସି ପିକ ଆନନ୍ଦ ଅନ୍ତରେ
ଗାଉଅଛି କୁହୁ କୁହୁ ପଞ୍ଚମ ସ୍ୱରରେ—
ଗନ୍ଧବହ—ବହୁଅଛି ଧୀରେ—
ନବ ମଦେ ପ୍ରକୃତି କି ହେଲେ ଆଜ ବିଭୋର ।
( ସଖୀଗଣଙ୍କ ପ୍ରସ୍ଥାନ )
( ସତ୍ୟବତୀର ପ୍ରବେଶ )
ସତ୍ୟବତୀ—ସହି । କହ ଲୋ କିରତେ,
ଧରୁଅଛି କର ତୋ'ର—
କିଏ ସେହି ପୁରନ୍ଦର ?
ସରଳ ଗୃହାଣି ତାର—
କାମ ଯେସନେ ଭସ୍ମେ ତା'ର
ଲୁଚି ହୁଏ ହରବର—
ଭେଦେ ବା ପରାଣ ମୋର
କରେ ବାଣେ ନାରଖାର ।
୧ମ ସଖୀ—ସହି ଲୋ । ତୁ ହୁଅ ସ୍ଥିର,
ଯାଉଛି ମୁଁ ଏହି ଥର,
ବୁଝିଆସେ କେଉଁ ବୀର ?
କି କାମ ପିତାରେ, ତାର ?
ସତ୍ୟ—ଯା'ଲୋ ତୁ ନ କର ହେଳା—
ନ ହେଲେ ବୁଝିବ ବେଳା ।
୨ୟ ସଖୀ—କିଏ ରେ ତୁ ମନ-ମାଝି ?—
ବଞ୍ଚା ହେଲା ଶୀଘ୍ର ପାଇ ।
( ସଖୀଦ୍ୱୟ ନିଷ୍କ୍ରାନ୍ତ )
ସତ୍ୟ— ( ଗୀତ । )
କହ ମନ କାହିଁ ତାର ଲାଗି ତୁ ଆକୁଳ ?
ସେ କରେ ଆକୁଳ ମୋର ଲାଗି
କାନ୍ଦେ ହିୟା ତାର । ଧ୍ରୁବ
ଏ ନୟନପଥେ ତୋର ଆସେ ଯାଏ କେତେ ପାନ୍ଥ,
ହନେ ତ କାହାର ଲାଗି ହୋଇ ନାହୁଁ ଏତେ ଭ୍ରାନ୍ତ,
ଧାଇଁ ନାହୁଁ ସେ ଆବେଗେ ଧାଉଁ ଯଥା ପଛେ ତାର ।୧।
୧ମ ସଖୀ—( ପ୍ରବେଶ କରି ) ସହି ଲୋ । ଶୁଣୁଁ ଲୋ,
ଏଣେ ଆସୁଛି ସେ ପିତା ସଙ୍ଗେ ।
ସତ୍ୟ—( ସ୍ୱଗତ ) ଏତେଦିନେ ଶାନ୍ତି-କୋଳେ,
ଆସିଲେ କି ଆଶା ?
( ଦେବବ୍ରତଙ୍କୁ ଦେଖି ପ୍ରକାଶ୍ୟେ ) ସହି ଲୋ ।
ନୟନେ ଆଣେ—
ଯୋଗୀବେଶେ କାମ ଯେସନେ
ବାଣ ତାର ରଖି ତୂଣେ
ଆସୁଛି ବହନ ଏଣେ ।
(ସ୍ୱଗତ) ସ୍ଥିର ହୁଅ ହୃଦ, ବେଗି ହୁରେ ନାହିଁ ସର ।
( ଦାଶରାଜ, ଦେବବ୍ରତ ଓ ବୟସ୍ୟର ପ୍ରବେଶ
ଏବଂ ସତ୍ୟବତୀ ଲଜ୍ଜାରେ ଅବନତା ହେବା )
ଦାଶରାଜ—ସତ୍ୟା । ତୁ ଭୟ କର ନା-ତୁ ରାଣୀ ହବୁ,
ତୁ ରାଣୀ ହବୁ । ଦେଖରେ ବାବା, ଏହି ମୋର

ବେଟୀ—ତୋର, ବାବା ବଡ଼ା ଖବ୍‌ସୁରତ୍
ଚେହେରା । ତୁ, ବାବା, ବେଟୀର ଲାଗି ବର
ହେବୁ—ତୁ କାହିଁକି ମନା କରୁଛୁ ରେ ?
ବୟସ୍ୟ—( ସ୍ୱଗତ ) ତୁ ପଡ଼ିଙ୍କି କଥା କାହିଁକି
କହୁଛୁରେ ?
ଦେବ—(ସ୍ୱଗତ) ଆହା ! କି ସୁନ୍ଦରୀ ଏହି ନାରୀ ?
କି ସୁଗନ୍ଧ ପୁଣି !
ଗଢ଼ିଛନ୍ତି ବିଧାତା କି ଏକାନ୍ତେ ଯତନେ ?
କିନ୍ତୁ ଦୀନହୀନ ବେଶ ଭାବ ଏହି,
ଆଣୁଅଛି ମନେ—
ଯେହ୍ନେ କି କୁସୁମ, ବନେ, ଫୁଟି ନିଜ ମନେ,
ନ ଦେଖି ଗ୍ରାହକ କେହି, ଗୁହିଁ, ଗୁହିଁ, ଗୁହିଁ,
ନିରବେ ବିତରି ଗନ୍ଧ, ପଡ଼ିଅଛି ଢଳି !
(ସତ୍ୟବତୀ ଗୋପନରେ ଦେବବ୍ରତଙ୍କୁ ଗୁହିଁବା )
କି ସେହି ଗୁହାଣୀ !
ଏହି ଗୁହାଁ ଅଛି ମୋତେ,
ଯେହ୍ନେ ଶତ ତୀକ୍ଷ୍ଣ ଶର ତ୍ୟଜି ଭ୍ରୂ-ବାୟୁଧ,
ଝଲକି ଅମ୍ବରେ ବେଗେ ଭେଦି ମନୋଦୁର୍ଗ,
ବନ୍ଦୀକୃତ ରିପୁଗଣେ ଦେଉଛି ଫିଟାଇ !
ଏଁ—ବୀର୍ଯହୀନ କି ତେବେ ଜାହ୍ନବୀ-ତନୟ ?
( କର ଯୋଡ଼ି ଊର୍ଦ୍ଧ୍ୱକୁ ଅନାଇ )
ପିତୃଦେବ ! ଗୁରୁଦେବ ! ପୁଣ୍ୟଶ୍ଳୋକା ମାତଃ !
ପ୍ରେର ଶକ୍ତି ଦାସେ, ଯଥା ନକ୍ର ପାଶେ ଚକ୍ର,
ଦିଅ ବାଣ, ରାମେ ଯଥା ଦଶଭୁଜା ମାତା,
ସହାୟତା ଦିଅ ପୁଣି, ବାତ୍ୟାସୁନୁ ସମ,
ଲକ୍ଷ୍ମଣ-ଅନୁଜ ତୁଲ୍ୟ ଅବା ବିଭୀଷଣ—
ନାଶେ ପ୍ରାଣେ, ଶତ୍ରୁଗଣେ ସମୂଳେ ସବଂଶେ;
ରିପୁଜୟୀ ନାମ ବୋଲି ଘୋଷନ୍ତୁ ସରବେ !
(କିଛିକ୍ଷଣ ରହି ଯାଇ )
ଏହି ଦେଖ, ନୀଳାମ୍ବରେ ଫୁଟିଲା ବେଗେ—
ବିଦ୍ୟୁତ୍ ସମାନ ଅଭୟ-ବାଣୀ-ଶୁଭ୍ର ରେଖା;
ଏହି ଶୁଣ ପ୍ରଭଞ୍ଜନ ଭୈରବ ଶ୍ୱାସରେ
କର୍ଣ୍ଣମୂଳେ ଅବିରତ ପ୍ରେରେ 'ମା ଭୈଃ, ମା ଭୈଃ';
ଆଉ ନାହିଁ ଡରେ ଦେବ ସାମାନ୍ୟ ଅରାତି,
ବାନ୍ଧି ଏବେ ଯମ-ଡୋରେ ଫିଙ୍ଗିଦେଲି ହୃଦେ ।
(ଜାନୁପାତକରି) ଆସ ଗୋ ଜନନୀ ଶିରେ
କରେଁ ମୁଁ ବନ୍ଧନ,
ଜନକଙ୍କ ଭେଟି ଦିଅ ବଞ୍ଚାଏଁ ପରାଣ ।
( ସତ୍ୟବତୀ ନିରାଶଜନିତ ନାନାପ୍ରକାର ଭାବ ଭଙ୍ଗୀ
କରିବା )
ଦାଃରାଃ—ବେଟାରେ, ତୋର ଲାଗି ଯୋରୁ ଏହି--ତୁ—
ଦେବ—ସାବଧାନ ଦାଶରାଜ !
ବୟସ୍ୟ—(ସ୍ୱଗତ) ଏତେ ଯେବେ ଶ୍ରଦ୍ଧା ଅଛି, ରଜାକୁ
ଯୋରୁ ଦେବୁ ବୋଲି, କହୁଛୁ କାହିଁକି ?
ଦାଃରାଃ—ଅଚ୍ଛା ହେଉ, ବେଟା; ଈଶ୍ୱର ତୋର ଭଲ
କରୁ—ଏବେ ପଡ଼ିଙ୍କି କରି ବୋଲ, ହାମର ବେଟୀ
ରାଣୀହବ ତ ? ବେଟା ତା'ର ରଜା ହବ ତ ?
ସତ୍ୟ—(ସ୍ୱଗତ) ପିତା ! ପିତା ! କି ବୁଝିବ ନାରୀ
ହୃଦ ତୁମ୍ଭେ ?
ବୟସ୍ୟ—( ସ୍ୱଗତ ) ସେହି କଥା ଘୋଷି ଘୋଷି
ପୁନର୍ଘୋଷି କରୁଥାଅ, ସ୍ମରଣ ପଥଭ୍ରଷ୍ଟ ହେବନି !
ଦେବ—ଅବିଶ୍ୱାସ କି ରାଜନ୍ ପ୍ରତିଜ୍ଞାରେ ମୋର ?
ଦାଶ-ପତ୍ନୀ—( ପ୍ରବେଶକରି ) ହଁ ଅବିଶ୍ୱାସ ବେଟା !
ଚୁଲ୍ ବେଟା ତୋର ବାବା ନଜିକ୍; ତୁ ପିଲାଲୋକ
ତୋର ବାପା ଯେବେ ମନା କରିବ ?
ଦାଃ ରାଃ—ହଁ ବାବା, ସେହି କଥା ଭଲ ।
(ସ୍ୱଗତ) ରାଣୀର ହାମର ବଡା ବୁଦ୍ଧି !
ବୟସ୍ୟ—ଯମକୁ ଯମୁଣୀ ଠିକ୍ ରାଜଯୋଟକ ହୋଇଛି ।
ଦେବ—କିଛି ଭୟ ନାହିଁ ରାଜ୍ଞି !
କର୍ତ୍ତବ୍ୟର ଦାସ ମୁହିଁ;
ଯେଉଁ ପଥେ ନିଏ, ଚୁଲେ ଆନନ୍ଦରେ,
ଦବା ଆସେ, ରାବି ଯାଏ, ପୁଣି ବିପରୀତ,—
ଯେଉଁ ଅନୁରୋଧେ,
ସେହି ଅନୁରୋଧ-ବାଧ୍ୟ ମୁହିଁ,
ନାହିଁ ପ୍ରଭୁ ଅନ୍ୟ କେହି ଏଥିରେ ମୋହର ।
ଦାଃ ରାଃ—ତୋ'କଥା ହାମେ କିଛି ସମଜିପାରୁ ନାହୁଁ
ବେଟା—ତୋ' ବାବା ନଜିକ୍ ଚୁଲ୍ ।

ଦେବ—ଅଚ୍ଛା ଚାଲ ।

(ସ୍ୱଗତ) ଲୌକିକତା ଦର୍ଶନୀୟ, ଦେଖେ ଏ' ସଂସାରେ ।

ବୟସ୍ୟ—ଚାଲ ବାବା ଯେଉଁ ଆଡ଼େ; ଗ୍ରାସେ ତ ପଡ଼ୁଛି—ଅଦ୍ଭୁତ ଚୌଦ୍ଦ ଗ୍ରାସର ତ ଆୟୋଜନ ହେଉଛି ।

ଦାଃ ପଃ—ଆ'ରେ ସତଅ ଜଲଦି ଆ'—

(ବୟସ୍ୟ ଓ ଦେବବ୍ରତ ପଛେ ଦାଃ ପଃ ଦାଃ ସ୍ୱଃ ନିଷ୍କ୍ରାନ୍ତ)

ସତ୍ୟବତୀ—(ସ୍ୱଗତ) ଚାଲିଗଲେ । ଚାଲିଗଲେ ।

ଯାଅ ସୂର୍ଯ୍ୟ ରସାତଳେ;
ଆସ ଗାଢ଼ ଅନ୍ଧକାର ଆବର ମେଦିନୀ;
ତରଙ୍ଗ । ନ ହୁଅ ଚୂର୍ଣ୍ଣ ବେଳାଭୂମି ଘାତେ;
ଛାଡ଼ ମୃଦୁ ମନ୍ଦ ହାସ୍ୟ, ପ୍ରକୃତି ସୁନ୍ଦରୀ ।
ବିଦ୍ୟୁତ୍ । ଦେଖାଅ ଖଳ ଖଳ ହାସ୍ୟ ତବ,
ବଜ୍ର । ନିନାଦ ଗମ୍ଭୀରେ ଗୁହାଗୃହେ ଥାଇ;
ବର୍ଷ ବୃଷ୍ଟି ଅବିରତ କରକା କେବଳ—
ଯାଉ ସୃଷ୍ଟି ଛାରଖାର ହୋଇ,
ଅଣୁ ପରମାଣୁ ସଙ୍ଗେ ନିରାକାରେ ମିଶି—
ଐକ୍ୟ କରି ପ୍ରେମ, ଘୃଣା ସହ,
ଆଶା ନିରାଶା ସଙ୍ଗତେ;
ଶାନ୍ତି, ଅଶାନ୍ତି ସହିତେ ।

୧ମ ସଖୀ—ବ୍ୟାକୁଳ କାହିଁକି ସହି ?

୨ୟ ସଖୀ—କାହିଁକି କାନ୍ଦୁଚୁ ସହି ?

ସତ୍ୟ—(ସ୍ୱଗତ) ହାୟ । ହାୟ । କିଣ ହେଲା ?

ଘୋରତର ଅନ୍ଧକୂପେ ହେଲି ସିନା କ୍ଷିପ୍ତା ।
କାହିଁକି ତୁ ଆଶା ଦୀପ, ଜ୍ୱଳିଉଠି ତେଜେ,
ଜ୍ୱଳାଇ ଲିପ୍‌ସାକୁ,
ଚିର ନିରାଶ-ତମିରେ ହେଲୁ ନିର୍ବାପିତ ?
ମନେ କରିଥିଲି ମୁହିଁ,
ପ୍ରିୟା ବୋଲି ହୃଦପଦ୍ମେ ଲଭି ସୁଖାସନ,
ଯାପିବି ଜୀବନ—
ଢାଳି ମନ, ପ୍ରାଣ ପତି ସେବାରେ ନିରତ;
କିନ୍ତୁ ହେଲି କି ନା ଶେଷେ ମାତୃପଦବାଚ୍ୟା ।
ବାଞ୍ଛିତ ନାରୀର ସତ୍ୟ, କିନ୍ତୁ ଅବାଞ୍ଛିତା ମୋର ।
ଓଃ ହୋଃ—କେମନ୍ତେ ସହିବି ହତାଶ ପରାଣ,
ଆଶାବାୟୁ ଜନ୍ମ ପରି ଗଲା ଯେବେ ଛାଡ଼ି ।
(ନେପଥ୍ୟେ 'ସତଅ' 'ସତଅ' ଡ଼ାକ)

ଡ଼ାକୁଚନ୍ତି ଜୁବାବ ଅସ୍ତ୍ର ଶୁଣି ଅଶାନ୍ତି ଗ୍ରାସରୁ;—

୧ମ ସଖୀ—ଚାଲ ସହି । ତୋ' ମା ଡ଼ାକୁଚନ୍ତି

(କାତରସ୍ୱରରେ) ସହି (ସତ୍ୟବତୀକୁ ଆଲିଙ୍ଗନ କରିବା)

ସତ୍ୟ—ସହି !

(ନେପଥ୍ୟେ 'ସତଅ ସତଅ' ଡାକ)

୨ୟ ସଖୀ—ସହି କାନ୍ଦୁଚୁ କାହିଁକି ? ମା ଡାକୁଚନ୍ତି ।

(ସମସ୍ତଙ୍କର ପ୍ରସ୍ଥାନ ।)

---

## ସପ୍ତମ ଦୃଶ୍ୟ

(ଶାନ୍ତନୁଙ୍କ ଶୟନାଗାର ।)

ଶାନ୍ତନୁ—କି ଜ୍ୱାଳା । କି ଜ୍ୱାଳା ।

ଓଃ ହୋଃ ଆଉ ନ ପାରେ ମୁଁ ସହି ।
ଯାଏଁ ଉଠି, ଏହିକ୍ଷଣି ଡ଼ାକିଆଣି ପୁତ୍ରେ
କହିଦେଇ ମର୍ମବ୍ୟାଧି ବଞ୍ଚାଏଁ ପରାଣ ।
ନା, ନା, ମୃତ୍ୟୁ ବରଂ ମୋର,
ଯାଏଁ ଜ୍ୱଳି ପଛେ ସେହି ଜ୍ୱାଳେ—
ଜ୍ୱାଳାନଳେ ଜ୍ୱଳନ ଯେମନ୍ତ ।—
ତଥାପି ମୁଁ ପଦଚ୍ୟୁତ କରି ପ୍ରେମେ
କାମେ ଦେବି ଏ' ଅମୂଲ୍ୟ ସିଂହାସନ,
ଅସମ୍ଭବ—ଅସମ୍ଭବ—।
କିନ୍ତୁ କିଏ କହେ ପୁଣି ସେହି ପୂର୍ବସ୍ୱରେ—
"ପ୍ରେମେ ନାଶ ତହିଁ କଦା ନ ହେବ ଆମ୍ଭର,
ଭଲ ଛଡ଼ା ମନ୍ଦ କେବେ ନ ହେବ ତାହାର ।"
ଧର୍ମଭୟ ଶାସେ ପୁଣି ଏକପୁତ୍ର ଟିବାଲି—
(ରହିଯାଇ)
ହୁଁ—ବୁଝିଛି ପ୍ରାଣେଶ୍ୱର । ଛଳନା ତୁମ୍ଭର,
ପରୀକ୍ଷା ପ୍ରେମର କର

ଦୁର୍ବଳତା ମମ ଦୁର୍ଗୁଣ ମନାସି—
କିନ୍ତୁ ଜାଣି କି ନ ଥିଲ ପୂର୍ବେ ଏହା ?
କହ ପ୍ରିୟେ, କାହିଁକି ନ ନେଲ ସଙ୍ଗେ ତେବେ ?
କିମ୍ବା କେଉଁଲାଗି ଛାଡ଼ି ଗଲ ଭବେ ?
ଦେବାକୁ କି ଏହି ଜୀବନ୍ତ ସମାଧି ? (ରହିଯାଇ)
ସତ୍ୟ କି ଦୁର୍ବଳ ଏଡ଼େ ଶାନ୍ତନୁ ହୃଦୟ,
ନ ପାରେ ସାମାନ୍ୟ ସ୍ୱାର୍ଥ ତ୍ୟଜ,
ସ୍ୱାର୍ଥେ ପୁଣି ସେହି ଦଏ ରତ୍ନାସନ,
ପିଙ୍ଗି ଦୂରେ ନିଃସ୍ୱାର୍ଥତା ପବିତ୍ର ବିକାଶ !
ଆରେ ମୂଢ଼ ମନ !
କେତେ କ୍ଷଣ ଭାଙ୍ଗିବୁ ନିହାରେ ଦମେଣ୍ଟରେ ?
ଦେଖ ତେବେ ଅଙ୍ଗୀକାର ମୋର,
କରେ ମୁହିଁ ଦୃଢ଼ କରି ଆଜ,—
ନୁହେଁ ଶତ ସତ୍ୟବତୀ ଶକ୍ତ କଦା,
ଟଳାଇବ ଶାନ୍ତନୁର ପ୍ରେମିକ ପରାଣ !
କିନ୍ତୁ ହାୟ ! କି ସୁନ୍ଦରୀ ସେହି ନାରୀ !
ଓଃ ହୋଃ !—( ଶଯ୍ୟାରେ ମୁଖାବୃତ କରିବା )
( ଚମକିପଡ଼ି) କାହାର ଚରଣକ୍ଷେପ-ଧ୍ୱନି !
କିଏ ଆସେ ?
ଏହି ଯେ ଆସଇ ପୁତ୍ର ! ସଙ୍ଗେ ସବୁ କିଏ ?
[ଦେବବ୍ରତ ଦାଶରାଜ ଇତ୍ୟାଦିଙ୍କ ପ୍ରବେଶ ]
କିଏ ଏହି ଦେବବ୍ରତ ? ନେଇ ଯା ରେ ତ୍ୱରା !
ପିଶାଚୀ ଦାନବୀ ସେହି, ଗ୍ରାସିଛି ହୃଦୟ !

ଦେବ—ପିତଃ !
ହୁଅ ଚିନ୍ତାମୁକ୍ତ—ଆଉ ନାହିଁ ଭୟ;
ଜନନୀଙ୍କୁ ଖୋଜ ପୁତ୍ର ଆଣିଅଛି ଗୃହ ।
କହ ଏବେ ଦାଶରାଜ, କି 'ସମୟ' ତବ,
ପିତୃ ସାକ୍ଷ୍ୟ କରି ମୋର, କରିବି ପ୍ରତିଜ୍ଞା !

ଦାଶରାଜ—ଦେଖ୍ ରାଜା, ତୋର ବେଟା ହାମକୁ ଡାକି
ଆଣିଚି—ବେଟୀକୁ ହାମର ରାଣୀ ଆଉ ବେଟାକୁ
ତା'ର ରଜା କରିବୁ ତ !

ଶାନ୍ତନୁ—( କ୍ରୋଧଭରେ ) ରାକ୍ଷସ—
(ସ୍ୱଗତ) ଆହା !—
( ସତ୍ୟବତୀକୁ ଅନାଇ ରହିବା )

ଦେବ—ଦାଶରାଜ !
ନାହିଁ ପ୍ରୟୋଜନ ତବ ପିତା ସଙ୍ଗେ କିଛି,
ମୁହିଁ କରିବି ପ୍ରତିଜ୍ଞା, ପିତୃ ସାକ୍ଷ୍ୟ କରି ।

ଦାଶପତ୍ନୀ—ରଜାଟା ପାଗଳ !

ଦାଃ ରାଃ—ଅଚ୍ଛା ବାବା ପର୍ତିଜ୍ଞା କର । ବେଟୀ ହାମର
ରାଣୀ ଅଉ ବେଟା ତା'ର ରାଜା ହବ ତ ?

ଦେବ—(ସ୍ୱଗତ) ଦସ୍ୟୁଧର ମନୋବୃତ୍ତି ।
(ପ୍ରକାଶ୍ୟେ) ଏହି ଦେଖ, ଦାଶରାଜ ପତ୍ନୀ ।
ପିତାର ଚରଣ ଧରି କରୁଛି ପ୍ରତିଜ୍ଞା—
କନ୍ୟା ତବ—ମାତା ମମ ନିଶ୍ଚେ ହେବେ ରାଣୀ,
ଭ୍ରାତା ମୋର ଗର୍ଭେ ତାଙ୍କ ନିଶ୍ଚେହେବ ରାଜା ।
( ଉଠିବସି )
ନିଦର୍ଶନ ଦେଖ ଏବେ ସର୍ବ ଚରାଚର,
ଦେବ, ଗନ୍ଧର୍ବ, କିନ୍ନର ଯେ ଯେଠାରେ ଅଛ,
ଦେବବ୍ରତ—ଖୋଲି ଦଏ ରାଜାର ମୁକୁଟ,
( ମୁକୁଟ ଖୋଲିବା )
ରଖେ ପିତୃପାଦତଳେ ଅକପଟ ହୃଦେ,—
ପିଙ୍ଗି ଦୂରେ ଲୋଭ, ମାୟା, ରାଜପଦେ ସେହି—
ଆଜ୍ଞାଧୀନ ଭୃତ୍ୟ ମାତ୍ର ରାଜ୍ୟର ସେ ହୋଇ ।
(ସମସ୍ତେ ବିସ୍ମିତ ହେବା )

ଶାନ୍ତନୁ—ସତ୍ୟ । (ସ୍ୱଗତ)
ଓହୋ ଏ ପାପିନୀଲାଗି ସିନା ।
ପୁତ୍ର ! ପୁତ୍ର !
କଣ କରୁରେ ପାଗଳ ?
ଦୂର ହ ସକଳେ ।

ଦେବ—ପିତା, ହୁଅନ୍ତୁ ହେ ସ୍ଥିର ।
କହ ଦାଶରାଜ ଆଉ କି ସମୟ ତବ ?

ଶାନ୍ତନୁ—( ସ୍ୱଗତ)—ଓହୋ—( ଢଳପଡ଼ିବା )

ଦାଃ ରାଃ—ନା, ହାମର ଅଉ କିଛି ନାହିଁ, ବେଟୀ
ତେବେ ନିଶ୍ଚେ ରାଣୀ ହବ ।

ବୟସ୍ୟ—(ସ୍ୱଗତ) ଲେଖାପଢ଼ିଟା କରାଇ ନିଅ ବାବା,
ଲେଖାପଢ଼ି !—ହାୟ ! ହାୟ !

ଦାଃ ପଃ—ହାମର ଅଛି ବେଟା—ଡୁ ସିନା ବେଟା
ରଜା ହବୁ ନାହିଁ, ତୋର ବେଟା ଯେବେ
ଦାବି କରେ ।

ଶାନ୍ତନୁ—(ଉଠି) ହୃଦୟ' ପିଶାଚୀ—( ସ୍ୱଗତ )
ହାୟ ! ହାୟ ! ( ଢଳିପଡ଼ିବା )
ସମସ୍ତେ—ମାର ! ମାର !
ଦେବ—ସ୍ଥିର ହୁଅ ସର୍ବେ—
ପ୍ରକୃତ କହୁଛ ମାତଃ ! କି ଆଦେଶ ତେବେ—
କରନ୍ତୁ, ପାଳିବ ଦେବ ଆନନ୍ଦ ହୃଦୟେ ।
ଦାଃ ପଃ—ଏକ ଉପାୟ ଅଛି ବେଟା—ତୁ ବାହା
ହେଲେତ ବେଟା ହବ
(ଦେବବ୍ରତ ଭାବନାପୂର୍ଣ୍ଣ ଚିତ୍ତରେ ରହିବା)
ଦାଃ ପଃ—କଣ କହୁଚୁ ବେଟା ?
ଦେବ—( ସ୍ୱଗତ ) ମା ଶ୍ଳେଦାୟିନି !
ଶକ୍ତି ଦିଅ କ୍ଷଣେ ପୁତ୍ରେ ତବ—
( ଭକ୍ତିପୂର୍ଣ୍ଣ ଚିତ୍ତରେ ରହିବା )
ଶାନ୍ତନୁ—( ଉଠି ବସି ) ଆଣ ରେ, କେ ଅଛ, ଅସି
ଦର୍ପ ଛେଦ ସର୍ବେ ।
ସମସ୍ତେ—ଧର, ଧର—ମାର, ମାର ।
ଦାଃ ପ୍ରଃ—ହାମେ ବାବା ଯାଉଚୁ, ଏତେ ଅପମାନ !
ଶାନ୍ତନୁ—( ସ୍ୱଗତ ) କେଉଁଣେ ଯାଅ ?—
ହୃଦ-ଦେବୀ ଅଛନ୍ତି ଯେ ସତୀଙ୍କ ସଙ୍ଗେ ତବ ।
( ଉଭୟଙ୍କ ନୟନରେ ସତ୍ୟବତୀ ଆଡ଼େ ଚୁହିଁ
ରହିବା )
ଦେବ—ଦାଶରାଜ ! ଦାଶପତ୍ନି ! ଧରୁଛି ଚରଣ,
କରନ୍ତୁ ମାର୍ଜନା ମୋତେ, ମୁହିଁ ଅପରାଧୀ ।
ଦାଃ ପ୍ରଃ—ବେଟା, ତୁ ଉଠ୍ ଉଠ୍—ରଣି, ବେଟା
କହୁଛି ଯେତେବେଳେ ଅଉ କଣ କହିବା ?
ଦାଃ ପଃ—ବେଟା ଉପରେ ହାମର ବିଶ୍ୱାସ-ନାହିଁ
ପାଗଳ ! ଆଚ୍ଛା, ବେଟା-ପର୍ତିଜ୍ଞା କର ।
ଦେବ—ଶୁଣ ଲବେ ଗୁରୁଦେବ, ଶୁଣ ଗୋ ଜନନି !
ଶୁଣ ସର୍ବେ ଚରାଚର, ଦେବତା-ମାନବ ।
କରେ ପ୍ରତିଜ୍ଞା ଭୀଷଣ ଦେବବ୍ରତ ଆଜ—
ଅଟଳ ଅଚଳ ଏହା—ହିମାଚଳ ଯେବେ
ପକ୍ଷଚ୍ଛେଦ ଶକ୍ତି ନାଦ ଉଡ଼େ ଉର୍ଦ୍ଧ୍ୱାକାଶେ;
ଅଟଳ ଅଚଳ ଏହା, ଅଚଳ ଆଦିତ୍ୟ,
କେନ୍ଦ୍ରଭ୍ରଷ୍ଟ ହୋଇ ଯେବେ ଭ୍ରମେ ପୃଥ୍ୱୀ ପାର୍ଶ୍ୱେ;
ଅଟଳ ଅଚଳ ଏହା, ଅଚଳ ବ୍ରହ୍ମେଶ,
ତ୍ୟକ୍ତ-ବ୍ରହ୍ମ ହୋଇ ଯେବେ ଧାବନ୍ତି ଉନ୍ମାଦେ—
ଆମରଣ ବ୍ରହ୍ମଚର୍ଯ୍ୟ ଆଜହୁଁ ଗାଙ୍ଗେୟ—
କାମିନୀ-କାଞ୍ଚନ-ତ୍ୟାଗୀ—ଶୁଦ୍ଧ କର୍ମବୀର !
(ସମସ୍ତେ) ସାଧୁ ସାଧୁ ଦେବବ୍ରତ !
ଶାନ୍ତନୁ—ତୁହି କି ରେ ପୁତ୍ର ଏହି ପାପୀ ଜନକର ?
( ଆଲିଙ୍ଗନ କରିବା )
ସତ୍ୟ—ଏହି ରୂପ ତୃପ୍ତି ଲଭ ଏତେ ବଳିଦାନ ।
ଓ ହୋ—(ଘଉନୋନ୍ମୁଖୀ ହେବା)
ନେପଥ୍ୟେ—ହେ ଗାଙ୍ଗେୟ !
କି ଆଦର୍ଶ ଦର୍ଶାଇଲ ଆଜି ମର୍ତ୍ତ୍ୟପୁରେ,
ସାମାନ୍ୟ ମାନବ ଦେହେ, ଅସମ୍ଭବ ସୁରେ ।
ତେଜହୀନ ହେଉ ସୂର୍ଯ୍ୟ, ତେଜହୀନ ସର୍ବେ
ମହାମର ବ୍ରହ୍ମତେଜ ତେଜେ ପୁଣି ତବ ।
କି ଅମୂଲ୍ୟ ହୀର ଅଛି କୁବେର ଭଣ୍ଡାରେ,
ଯୋଗ୍ୟ ଉପାଧିନ ବୋଲି ଲମ୍ଭାଇବୁ ଗଳେ ।
ଏହି ରତ୍ନ ଧର ତେବେ କଣ୍ଠତ ଯଦ୍ୟପି,
'ଭୀଷ୍ମ' ନାମେ ପରିଚିତ ହୁଅ ହେ ତ୍ରିପୁରେ—
ତ୍ୟାଗୀ-ବୀର ବୋଲି ସର୍ବେ ଘେନନ୍ତୁ ଆଦର୍ଶ ।
ସମସ୍ତେ—ଜୟ ଭୀଷ୍ମଙ୍କର ଜୟ ।
ଦାଃ ପ୍ରଃ ଓ ପଃ—ହାମେ କି ଚଣ୍ଡାଳରେ ! ହାମେ କି
ଚଣ୍ଡାଳରେ !
ଶାନ୍ତନୁ—ପୁତ୍ରରେ !
କି ବର୍ଣ୍ଣିବ ବାର୍ଯ୍ୟ ତୋର ଦୁର୍ବଳ ଜନକ—
ଅସମର୍ଥ ସୁରାସୁର ବର୍ଣ୍ଣିବେ ଯାହାର ।
ଆଶୀର୍ବାଦ କରେ ବତ୍ସ ।
ଇଚ୍ଛାଧୀନ ମୃତ୍ୟୁ କର,
ମୃତ୍ୟୁଞ୍ଜୟ ନାମ ଘେନ ମର୍ତ୍ତ୍ୟଲୋକେ ଏହି ।
( ପ୍ରସ୍ଥାନ )
ସମସ୍ତେ—ଜୟ ମୃତ୍ୟୁଞ୍ଜୟଙ୍କର ଜୟ ।
ଜୟ ଭୀଷ୍ମଙ୍କର ଜୟ ।

ପଟନିକା ।

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

( ସୁସଜ୍ଜିତ କକ୍ଷରେ ସତ୍ୟବତୀ ରାଜରାଣୀ ବେଶରେ ଉପବିଷ୍ଟା )

ଗୀତ ।

ସହଚରୀଗଣ—କିମ୍ପାଁ ପୋଡଛ ସଜନି,
ତଳକୁ ମଥା ?
କିମ୍ପାଁ ଝାଉଁଳି ପଡ଼ୁଛି
କନକଲତା ?
ମଧୁର ଗୁଞ୍ଜନେ ଗୁଞ୍ଜଇ ଅଳି,
ମଧୁର ବର୍ଷଣେ ବର୍ଷଇ ବାରି,
ତେବେ, କାହିଁକି ନ ହସ, ନ କହ କଥା ?

ସତ୍ୟବତୀ—ଯାଅ ଚାଲି ସଖୀଗଣ, ବୃଥା ଚେଷ୍ଟା ତବ
ସୁଧାସ୍ପର୍ଶେ ବିଷଜ୍ୱାଳ କରିବ ବିନାଶ ।
( ସହଚରୀଗଣ ଚାଲିଯିବା )
କାହିଁ ଶାନ୍ତି ? କେଉଁଠାରେ ? କେଉଁ ରୂପେ ଅଛି ?
ଥିଲି କୁଟୀରବାସିନୀ, ଦରିଦ୍ରସଙ୍ଗିନୀ,
ଯାପୁଥାଏଁ ନିଶିଦିନ ଭୋଗଶୂନ୍ୟ ପ୍ରାଣ,
ହେଲି ପ୍ରାସାଦବାସିନୀ, ରାଜରାଣୀ ଏବେ;
ଦେବପୁତ୍ରସୁଖାର୍ଣ୍ଣବେ ଭାସେ ନିରନ୍ତର;
ତଥାପି କାହିଁ ସେ ବାରି
ନିଭାଇବ ପାପସ୍ମୃତି ମୋର ?
ଅନ୍ତର୍ଦାହ ଯାର ବଢ଼ୁଅଛି କମେ ।
( ଚିତ୍ରାଙ୍ଗଦର ପ୍ରବେଶ )

ଚିତ୍ରା—ମା ! ମା !

ସତ୍ୟବତୀ—(ସ୍ୱଗତ) ଆହା ! କି ମଧୁର ବୋଲି ଏହି
'ମା ମା' ଡାକ ।
ମୁଖରିତ କରି କର୍ଣ୍ଣପଥ ମୋର
ହେଉଅଛି ଲୀନ ଶେଷେ
କେଉଁ ନିର୍ଜ୍ଜନ ପ୍ରଦେଶେ ?—
ମୁଗ୍ଧ ଯେସନ୍ତେ ମନ, ପ୍ରାଣ ଅପୂର୍ବ ଆମୋଦେ ।

ଚିତ୍ରା—ମା, ମା

ସତ୍ୟ—ଡାକ୍ ଡାକ୍ ଶିଶୁ ତୁହି ପିପାସାର ବାରି,
ଯେତେ ପାରୁ ସେହି ନାମ ଧରି,
ପିଏଁ ସୁଧା କର୍ଣ୍ଣ ଭରି ତହିଁ,
କରେଁ ପ୍ରାଣ ଚିନ୍ତାଶୂନ୍ୟ ମୁହିଁ ।

ଚିତ୍ରା—ମା, ଦେଖ୍ ମା, ଭାଇ ମୋତେ ମାରୁଛି ମା,—
ଖେଳିବାକୁ ଦେଉ ନାହିଁ ମା ।

ସତ୍ୟ—(ସ୍ନେହରେ ହାତ ବୁଲାଉ ବୁଲାଉ) ତୋତେ
ମାରୁଛି, ଅଚ୍ଛା ଚାଲ୍ । (ଉଭୟେ ନିଷ୍କ୍ରାନ୍ତ)
( କିଛିକ୍ଷଣ ପରେ ସତ୍ୟବତୀ ଫେରି ଆସି )

ସତ୍ୟ—ଏହି ଦେଖ ଶିଶୁ ଦ୍ୱୟ,
ପୁଣି କି ସୁନ୍ଦର କ୍ରୀଡ଼ାରତ :—
ଭୁଲି ଦ୍ୱନ୍ଦ ପରସ୍ପରେ କ୍ଷଣେ,
ବାନ୍ଧି ଭୁଜେ ଭୁଜ ଯେସନ୍ତେ ମିତ୍ରପ୍ରେମପାଶେ ।
ଆହା ! ଥିଲି ଦିନେ ମୁହିଁ ମଧ୍ୟ ଏହିପରି ଶିଶୁ,
ସଂସାରର କୋଳାହଳ ନ ପଶଇ କର୍ଣ୍ଣେ,
ମଣୁଥାଏଁ ଧରା ଧାମ ଯେସନ୍ତେ ଶାନ୍ତି-ନିକେତନ ।
ହାୟ ! କାହିଁ ସେହି ଦିନ, କାହିଁ ଆଜିଦିନ ?
ସ୍ୱର୍ଗ ସଙ୍ଗେ ନରକର ତୁଳନା କି ଅଛି ।
(ମୌନେ ରହିବା)
(ଦେବବ୍ରତର ପ୍ରବେଶ )

ଦେବ—ଏ କି ବିଷାଦର ମୂର୍ତ୍ତି
ହେରେ ନେତ୍ରପଥେ ଆଜି ।
ଏହି କି ସେହି ମା ମୋର ଲକ୍ଷ୍ମୀକାନ୍ତି ଜଣା—
ଯାର ଲାଗି ପିତୃଦେବ
ହୋଇଥିଲେ ଅସ୍ଥିଚର୍ମସାର ଦିନେ ।
ମା, ମା, ଏକି ରୂପ ତବ ହୋଇଅଛି ଆଜି ?

ସତ୍ୟ—କିଏ ? ଦେବବ୍ରତ ।

ଦେବ—ହଁ ମା, ଆଶୀର୍ବାଦେ ତୋର,
ରାଜକାର୍ଯ୍ୟ ସାରି ପୁନ୍ନ ଅସିଅଛି ଫେରି—
ଘେନ ଏହି ପ୍ରଣାମ ଚରଣେ ।
କିନ୍ତୁ କହ ମା—ଛାତି ଯେ ଫାଟିଯାଏ ମୋର—
କାହିଁକି ଏ ଦୀନଭାବ ତୋର ?
କାହିଁକି ନ ଦେଖେଁ
ସେହି ସ୍ନେହଭରା ହସ ହସ ମୁଖ ?

କାହିଁକି ନ ଶୁଣେ
ସେହି ପ୍ରୀତି-ସୁଧା-ବୋଳା ମଧୁ ମଧୁ ଭାଷ ?
ଅଳୁଳିତ ଯାର ଲାଗି ଏ
ମାତୃ-ପ୍ରାଣ ପୁତ୍ର ସଦା ।

ସତ୍ୟ—ପୁତ୍ର ରେ ! କିଛି ତ କଷ୍ଟ ନାହିଁ ମୋର,
ତୋର ସମ ଲଭି ପୁତ୍ର
କେଉଁ ମାତା ଅ-ସୁଖିନୀ ମଣିବ ଏ ଭବେ ?

ଦେବ—ମା, ମା, ଛଳନା କିପାଇଁ
ଅଧମ ସନ୍ତାନ ସଙ୍ଗେ ତୋର ?
କହ କହ ଖୋଲି—କି ଅଶାନ୍ତି ଗ୍ରାସିଛି ହୃଦୟ ?
କରୁଅଛି ଅସ୍ଥିଚର୍ମ ସାର ?

ସତ୍ୟ—( ଅନ୍ୟଆଡ଼େ ଚାହିଁ )
ଦେଖ୍ ଦେଖ୍ ଦେବ, ସାନ ଭାଇମାନେ ତୋ'ର
ଦେଖି ତୋତେ, ଗାଢ଼ କ୍ରୀଡ଼ା ସୁଖ,
ଧାଇଁଛନ୍ତି କି ଆବେଗେ !—
ଯେସନେ ହାରାନିଧି ତାଙ୍କ
ପାଇଛନ୍ତି ବହୁଦିନ ଅନ୍ତେ ।

ଦେବ—(ସ୍ୱଗତ) ଏହି ତ ଦେବତା
ଅଛି ମର୍ତ୍ତ୍ୟଲୋକେ !
କେଉଁ ସୁଖ ଊଣା ଆଉ ନରଦେହ ପକ୍ଷେ—
ମାତୃସ୍ନେହେ ଦିବ୍ୟ ସୁଖ ଭୁଞ୍ଜୁ ଥାଏ ଯେବେ;
ମାତୃପ୍ରେମେ ସ୍ୱର୍ଗ ସୁଧା ନିତ୍ୟ ପିଏ ଯେବେ ।
ମା, ମା, କି କୁପୁତ୍ର ତୋର !—
କିନ୍ତୁ କି ସୁମାତା ତୁହି !
ଯେତେ ଦୁଃଖ, ଯେତେ କ୍ଳେଶ ଭୁଞ୍ଜି ପଛେ ନିଜେ,
ହେଉ ପଛେ ତାହା ତୋତେ ଅସହ୍ୟ ଯନ୍ତ୍ରଣା—
ମରଣୁ ଅଧିକ—
ତଥାପି କି ଦେଉ ପୁତ୍ରକି
ନିଜ ବ୍ୟାଧିକଥା ?
ଭୟ ସଦା ମନେ—
ଲଭେ ଯେବେ ପୁତ୍ର ଅଶାନ୍ତି ଏଥିରେ !

ମା, ମା, କି ଅମୂଲ୍ୟ ସୃଷ୍ଟି ବିଧାତାର ତୁହି !
ତୋର ଲାଗି ପିନା ସ୍ୱର୍ଗସୁଖ, ମର୍ତ୍ତ୍ୟ
ଭୁଞ୍ଜୁଅଛି ଲୋକ ନିରନ୍ତର ଆଜି ।
( ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟର ପ୍ରବେଶ )

ଉଭୟେ—ଭାଇ ! ଭାଇ !
ଦେବ—ଆସ, ଆସ, ଭାଇମାନେ, କୋଳେ ଆସ ମୋର !
ବିଚିତ୍ର—ଭାଇ, ଦେଖିବୁ ଚାଲ, କେମିତି ଘର ତଆର
କରିଛି, ଭାଇ !

ଦେବ—ଆଚ୍ଛା ଚାଲ, ଚାଲ !
(ସ୍ୱଗତ) କେଉଁ ଗୁଣେ ସ୍ୱର୍ଗସୁଖ ବଳିବ ଏ ସୁଖେ ?

ସତ୍ୟ—(ସ୍ୱଗତ) ଦେବବ୍ରତ ! ଦେବବ୍ରତ ! କିଏ ତୁହି ?
ତୁହି କି ମାନବ, ନା ମାନବ-ବେଶୀ ଦେବ ?
ତୋର ଭକ୍ତି ପ୍ରେମ ପୂତ ଗାଥା—
କି ବର୍ଣ୍ଣିବ ଏହି ରସନା ଦୂଷିତ ?
ଯଥା ପିତୃଭକ୍ତି—ତଥା ମାତୃଭକ୍ତି,
ନିଜ ସନ୍ତାନ ଔରସଜାତ
ପାରେ କି କାହିଁତେ ଦେଖାଇ ଏ ଭାବ ?
ଧିକ୍ ମୋତେ ! ଧିକ୍ ମୋର ମାତୃନାମେ !
ଏତେ ପାପ ଧରେ,
ଏତେ ପାପକର୍ମେ କଳୁଷିତ ଆତ୍ମା ଯେଣୁ,
ବସିଛି ନିଶ୍ଚିନ୍ତେ ବୈକୁଣ୍ଠପୁରେ ଏହି !
ଧିକ୍ ପୁତ୍ରୀ ପତ୍ନୀନାମେ ମୋର !
ଏହି ପାପଅଙ୍ଗେ ପିନା
ସ୍ପର୍ଶୁଅଛି ଦିବ୍ୟ ଅଙ୍ଗ ସେହି,
ସେବାଅଳେ ପୁଣ୍ୟତୋୟା ଗଙ୍ଗା ଦିନେ ଯାହା !
ଆରେ ନୀଚ୍ଚାଶୟ ପ୍ରାଣ !
ଅବହେଳେ କରୁଅଛୁ ପାପମୟ,
ପୁଣ୍ୟ ପ୍ରାଣ ସର୍ବ—ବିଷପୂର୍ଣ୍ଣେ ସୁଧା ଭାଣ୍ଡ ସମ !
ଆଉ ନାହିଁ ପ୍ରୟୋଜନ ପ ପପିଣ୍ଡେ ଏହି—
ନାଶି ତୋତେ ବିନାଶିବି ପାପ ଯେତେ ମୋର !
( ବେଗେ ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ଅନ୍ତଃପୁର )

ଶାନ୍ତନୁ—ଦିନ ଦିନ କରି କାଳସ୍ରୋତ
ଯାଉଅଛି ବହି ଖର ବେଗେ,
ରଙ୍ଗେ ଭଙ୍ଗେ ନାନା,
ଭାଙ୍ଗି ରୁହି ଗଢ଼ି ପୁଣି ଭାଗ୍ୟ ନାନାବିଧ,
ହେଉଅଛି ଲୀନ ଶେଷେ କେଉଁ ମହା ଗର୍ଭେ—
ଧୀର, ସ୍ଥିର, କଳଙ୍କଶୂନ୍ୟ ଶାନ୍ତି ନିକେତନ ।
ଥିଲି ଦିନେ ଶିଶୁ ମୁହିଁ—ସରଳ—କୋମଳମତି,
ମଣୁଥାଏଁ ଧରାଧାମ ଯେସନେ ଦେବାଳୟ,
ମୁଗ୍ଧ ହୋଇ ଦିବା ରାତ୍ର ଆନନ୍ଦର ଗନ୍ଧେ ।
ଯୁବାପଦେ ଅନନ୍ତର ହେଲି ପ୍ରତିଷ୍ଠିତ—
ମନ ହେଲା ବିଳାସର କ୍ଷେତ୍ର ଏହି,
ଭ୍ରମିଲି ଉନ୍ମାଦେ ଭ୍ରମେ ସେହି—
ଭୁଲି ନିଜତ୍ୱ ନିଜର ।
ଯୌବନର ମୃଦୁଳ ପରଶେ ଭାଙ୍ଗିଲା ସ୍ୱପ୍ନ,
ଜାଗରିତ ହେଲି ସତ୍ୟ,
କିନ୍ତୁ ଅର୍ଦ୍ଧମୁକ୍ତ ରହିଲା ନୟନ ତେବେ ।
ଜରାଜୀର୍ଣ୍ଣ ଅଙ୍ଗ ଏବେ,
ଭୋଗସ୍ପୃହାଶୂନ୍ୟ ପ୍ରାଣ,
ପରିତୃପ୍ତ ଅପୂର୍ବ ଭାବରେ ।
ପୂର୍ବ କୃତ୍ୟ ସର୍ବ ମନେ ପଡ଼େ ଯେବେ,
ଭୀତ ହୁଏ ସଦା ପ୍ରାଣ ନର୍କର ଭୟେ !

( ଦେବବ୍ରତଙ୍କୁ ଚାହିଁ )

ଏହି ଆସୁଅଛି ପୁତ୍ର ମୋର,
ଦିବ୍ୟଜ୍ୟୋତି ତାର, ନେତ୍ରଯୁଗ୍ମ ଯେସନେ ମୋର—
ଦିବାନେତ୍ରେ ତାରପୁଞ୍ଜ ପରି
କରୁଅଛି ମ୍ଳାନ !

( ଦେବବ୍ରତର ପ୍ରବେଶ )

ଦେବ—ପିତଃ !
କାହିଁ ଡାକିଲେ ଅସମୟେ ଏହି ?
କିବା ପ୍ରୟୋଜନ ତବ ?

ଶାନ୍ତନୁ—ପ୍ରୟୋଜନ ମୋର ଅତି ଗୁରୁତର ।
କହ ପୁତ୍ର !
ପୁତ୍ରବରୁ କି ରେ ପିତୃକାମ ଆଉ ଥରେ ?

ଦେବ—ପିତଃ !
କର୍ତ୍ତବ୍ୟ-ଆଦେଶେ ମିନତି ପୁତ୍ରକୁ ?
ଏହି ଦେହ, ଏହି ପ୍ରାଣ,
କାହା ଲାଗି ଆଜ ଧରିଅଛି ପୁତ୍ର ?
କାହା ଲାଗି ଆଜ ଶୋକ ଦୁଃଖ ଭୁଲି ପୁତ୍ର
ଭାସୁଅଛି ମହାନନ୍ଦେ ଧରଣୀରେ ଏହି ?
ସାର ଜାଣେ ପୁତ୍ର ତବ ପିତଃ !
ପିତା ସ୍ୱର୍ଗଃ ପିତା ଧର୍ମଃ ପିତା ହି ପରମଂ ତପଃ ।
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତାଃ ।

ଶାନ୍ତନୁ—ପୁତ୍ର ରେ !
ଜାଣିଅଛି ବହୁଦିନୁ
ଭକ୍ତି ତୋର ପିତୃ ପ୍ରତି;
ସେହି ବଳେ ଆଜି
ଫେଡ଼ୁଅଛି ମନକଥା ମୋର;
କହ ପୁତ୍ର, ରଖିବୁ କି ନିଶ୍ଚେ ?

ଦେବ—ଆଦେଶନ୍ତୁ ପିତୃଦେବ ।
ରହିଛି ପ୍ରସ୍ତୁତ ସଦା ଶ୍ରୀଚରଣେ ଦାସ ।

ଶାନ୍ତନୁ—କି କହିବି ମନୋବ୍ୟଥା ପୁତ୍ର ମୋର,
ଦେଖେଁ ଯେବେ ତୋତେ ଏହି ନବୀନ ବୟସେ,
ଧରି ବ୍ରହ୍ମଚର୍ଯ୍ୟ ବେଶ
ଫେରୁ ନିତ୍ୟ ଏହି ନରାଧମ ନେତ୍ର ପଥେ ।

ଦେବ—ବୁଝିଅଛି ମନୋଭାବ ପିତା ତବ !
ରକ୍ଷାକର, ରକ୍ଷାକର ଅଧମ ସନ୍ତାନେ,
(ସ୍ୱଗତ) ହେ ଗୁରୋ ! ହେ ମାତଃ ! କେଉଁ
ପରୀକ୍ଷା-ସାଗରେ
ପୁଣି ଭସାଉଛ ଆଣି
ଜ୍ଞାନହୀନ, ଶକ୍ତିଶୂନ୍ୟ ଶିଶୁକୁ ତୁମ୍ଭର ?
ଦିଅ ତେବେ ସେହିପରି ଜ୍ଞାନ;
ସେହିପରି ଶକ୍ତି ଆଜି,
ଯାହା ବଳେ ଦୀନ ଶିଶୁ ଏହି
ହୋଇବ ଉତ୍ତୀର୍ଣ୍ଣ ଦୁସ୍ତର ବାରିଧି ।

ଶାନ୍ତନୁ—ଭଙ୍ଗ କରୁ ପୁତ୍ର ତୁମ୍ଭ, ସତ୍ୟଭ୍ରଷ୍ଟ ହେଉ,
ପୁନର୍ବାର ରାଜ୍ୟଗ୍ରହେ
ବଳାଏଁ ଯେବେ କି ତୋତେ ?

ଦେବ—ପିତଃ ! ମତିମାନ୍ ତୁମ୍ଭେ,
ଅଧିକ କି ଆଉ କହିବ ଅଜ୍ଞାନ ଶିଶୁ ?

ଶାନ୍ତନୁ—ପିତୃଭକ୍ତ ପୁତ୍ର !
ସର୍ବଶାସ୍ତ୍ରେ ସୁପଣ୍ଡିତ ତୁମ୍ଭ,
କି ବୋଲିବି ଅଧିକ ମୁଁ ?
ଜାଣିଥିବୁ ପୁତ୍ର, ପିତ୍ରାଦେଶ, ପର୍ଶୁରାମ,
ରାମଚନ୍ଦ୍ର ଆଦି
ପାଳିଥିଲେ କେଉଁରୂପେ;
ସେହିପରି କହ ପୁତ୍ର
ପାଳିବୁ କି ପିତ୍ରାଦେଶ ତୋର ?

ଦେବ—ପିତଃ ! ପିତଃ !
କାହିଁ ଏ କଠୋର ଆଦେଶ
କୋମଳ-ହୃଦୟ-ଶିଶୁ ପ୍ରତି ତବ ?

ଶାନ୍ତନୁ—ତେବେ ଅଧମ କି ଦେବ ତୁମ୍ଭ
ପାଳିବେ ନି ପିତାର ଆଜ୍ଞା ?

ଦେବ—ନୁହେ କଦା ଦେବବ୍ରତ
ଆଶୀର୍ବାଦେ ତବ, ପିତଃ
ଶକ୍ତିହୀନ ପିତ୍ରାଜ୍ଞାପାଳନେ ।
ଏହି ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ତାରା
ଯେତେ ଛନ୍ତି ଜ୍ୟୋତିଷ୍କମଣ୍ଡଳୀ,
ଦିନେ ହେବେ ତେଜହୀନ;
ପ୍ରତିଜ୍ଞାପାଳନ-ଗର୍ବ ତାଙ୍କ
ଯିବ ଲିଭି ଫୁତ୍କାରେ ଦୀପ ଶିଖା ସମ
ପ୍ରଳୟର ଘନ ଶ୍ୱାସେ;
କିନ୍ତୁ ଦେବବ୍ରତର ଗରବ ଏହି
ରହିବ ଅକ୍ଷୁଣ୍ଣ ତ୍ରିକାଳେ; ତ୍ରିପୁରେ ସଦା ।

ଶାନ୍ତନୁ—ସାଧୁ ସାଧୁ ପୁତ୍ର !
ତେବେ ଆଜ୍ଞାକରେ ମୋର
ଛାଡ଼ ଏହି ବ୍ରହ୍ମଚାରୀବେଶ;
ସାଜୁ ପୁଣି ଅଙ୍ଗେ ତୋର
ସେହି ରାଜପରିଚ୍ଛଦ—
ଦେଖି ଦୁଃଖୀ ପିତା ଯାହା ତୃପ୍ତ କରୁ ନେତ୍ର ।

ଦେବ—ପିତା ! ପିତା !
ସତ୍ୟ-ଭଙ୍ଗ, ବଡ଼ ଭଙ୍ଗ ଯେ ମୋହର ।

ଶାନ୍ତନୁ—ପୁତ୍ର ରେ !
କିଛି ଭୟ ନ କର ତୁ,
ମୁହିଁ ଦାୟୀ ସେଥି ଲାଗି ।
ହେ ଈଶ୍ୱର, କରୁଣାସାଗର !
କର ବାରେ ଦୟା ପ୍ରଦର୍ଶନ
ଦୀନ ଦାସ ପ୍ରତି ତବ,
ଯେତେକ ସତ୍ୟ-ଭଙ୍ଗ-ଜାତ
ପାପ, ତାପ କୁମାରର ମୋର
ସ୍ପର୍ଶେ ପିତୃଅଙ୍ଗ ତାର !

ଦେବ—ପିତା ! ପିତା !
ରତ୍ନାକର, ରତ୍ନାକର
ଅଧମ କିଙ୍କରେ ତବ ।
ହେବ ପଛେ ମୃତ୍ୟୁ ତବ
ପିତ୍ରାଜ୍ଞାଲଙ୍ଘନକାରୀ,
ପିତୃଦ୍ରୋହୀ ପୁତ୍ର ବୋଲି,
ମନ୍ଦସ୍ୱରେ ନିତ୍ୟ ଘୋଷିବ ଜଗତ,
ତଥାପି ସେ ନିଜ ସ୍ୱାର୍ଥ ଲାଗି
ଦେବ ନାହିଁ ପାଦ-ଭାର ପିତୃଶିରେ କଦା—
ତାର ଆରାଧ୍ୟ ଦେବତା ।
କ୍ଷମାକର ପିତଃ, ଯାଚୁ ପୁତ୍ରେ ଏହି ।
(ସ୍ୱଗତ) ଯାଏଁ ଚାଲି ଅନ୍ୟ ସ୍ଥାନେ ଶଙ୍କିତ ତ୍ରାସରୁ !
( ଦ୍ରୁତପଦେ ପ୍ରସ୍ଥାନ )

ଶାନ୍ତନୁ—ପୁତ୍ର ! ପୁତ୍ର !
( ପଶ୍ଚାଦ୍ଧାବନ ସମୟରେ ବିପରୀତ ଦିଗରୁ ସତ୍ୟବତୀର ପ୍ରବେଶ )

ସତ୍ୟବତୀ—ପ୍ରଭୋ ! ପ୍ରଭୋ !

ଶାନ୍ତନୁ—(ଫେରିଚାହିଁ) କିଏ ? ପ୍ରିୟେ ! ଆସ, ଆସ,
କର ମୋତେ ମୁଗ୍ଧ ସେହି ରୂପ ମୋହେ ତବ,
ଭୁଲି ଯାଏଁ ଅନ୍ୟ ଚିନ୍ତା—ଚିନ୍ତା ଛଡ଼ା ତବ ।
( ସତ୍ୟବତୀଙ୍କୁ ନିରୀକ୍ଷଣ କରିବା )
ଏ' କିଣ, ହୃଦୟେଶ୍ୱର !
ଅଶ୍ରୁକଣା ଦେଖେଁ କିପାଁ ନେତ୍ର ପ୍ରାନ୍ତେ ତବ ?

ସତ୍ୟ—ଅଧୀର ନୃପେନ୍ଦ୍ର ଦେଖି, ଏହୁ ଅଶ୍ରୁକଣା ।
ଏତ ଅତି ଅଳ୍ପ ।
ଶାନ୍ତନୁ—ପ୍ରିୟେ ! ପ୍ରିୟେ !
ଏ କି ଭାବ ତବ ? ଏ କି ରୂପ ତବ ?
କାହିଁକି ଏ ଭଗ୍ନ ବୀଣାସ୍ୱର ?
କାହିଁକି ଏ ଶୋକାକୁଳ ଅଧରସ୍ପନ୍ଦନ ?
କାହିଁକି ଏ ରକ୍ତଶୂନ୍ୟ ଆନନ-କମଳ ?
ମର୍ମେ ମୋର ଶେଲାଘାତ ହେଉଛି ଯେ ପ୍ରିୟେ !
କହ ତ୍ୱରିକରି କପାଁ ଘଟିଛି ଏ ଦଶା ?
ସତ୍ୟ—ରାଜେନ୍ଦ୍ର !
ବ୍ୟାକୁଳିତ ଏତେ ଦେଖି ଏହୁ ଦଶା ମୋର !
କେମନ୍ତେ ସାଧିବେ ତେବେ,
ନିଜ ହସ୍ତେ ସେ ଦୁର୍ଦ୍ଦଶା—
(ସ୍ୱଗତ) ସୁଦଶା ଯା ମଣେ ମୋର ପକ୍ଷେ ।
ଶାନ୍ତନୁ—ପ୍ରିୟେ ! ପ୍ରିୟେ !
ମତିଭ୍ରମ ଘଟିଛି କି ତବ ?
ସତ୍ୟ—ମତିଭ୍ରମ ଘଟିଥିଲା ଏତେଦିନ,
କିନ୍ତୁ ଆଜ ଯାଇଅଛି ଚୁଲି ତାହା ।
ଶୁଣିବେ କି ତେବେ ସେହୁ ଭ୍ରମ କଥା ମୋର ?
ଶାନ୍ତନୁ—ପ୍ରିୟେ ! ପ୍ରିୟେ !
କିସ କହୁଅଛ ? କିବା ଭ୍ରମ ?
କହ ତ୍ୱରା କରି ?
ସତ୍ୟ—ତେବେ ଆଣିଲୁ ସାହସ, ଦୃଢ଼ଭାବ ମନେ;
ଦୟା-ମାୟା-ଆଦି ପ୍ରବୃତ୍ତି ନିଚୟ
ଦଅନ୍ତୁ ଉନ୍ମୂଳ କରି—
କରନ୍ତୁ ରୋପଣ ତହିଁ
ନିର୍ଦ୍ଦୟା-ନିର୍ମ୍ମୟା-ଆଦି
ଶୁଣିବେ ବୃତ୍ତାନ୍ତ ଯେବେ ପାପିନୀର ଏହୁ !
ଶାନ୍ତନୁ—ପ୍ରିୟେ ! ପ୍ରିୟେ !
କିସ କହୁଅଛ ପାଗଳପ୍ରଳାପ ପରି ?
ସତ୍ୟ—ପାଗଳ-ପ୍ରଳାପ ନୁହେ ନୃପ !
ସତ୍ୟ-ଧ୍ରୁବ-ସତ୍ୟ-ମୁହିଁ ଭ୍ରଷ୍ଟା,
କୁଳ-କଳଙ୍କିନୀ ନାରୀ ।
ଶାନ୍ତନୁ—(ସାଶ୍ଚର୍ଯ୍ୟେ) ଭ୍ରଷ୍ଟା !
ସତ୍ୟ—ହଁ ନୃପେନ୍ଦ୍ର, ଭ୍ରଷ୍ଟା ମୁହିଁ ।
ଶୁଣନ୍ତୁ, ସେ ବୃତ୍ତାନ୍ତ ଅଗ୍ରତେ,
କହୁଛି ନୃପେନ୍ଦ୍ର,
ମତ୍ସ୍ୟଗନ୍ଧ ଥିଲା ଯେବେ ମୋର;
ନିଯୋଜିଣି ଥିଲେ ପିତା
ପାରି କରି ମୁନିଗଣେ
ନିତ୍ୟ ନିତ୍ୟ ସେବାରେ ତାଙ୍କର ।
ଶାନ୍ତନୁ—ତହୁଁ, ତହୁଁ କହ ତ୍ୱରା ।
ସତ୍ୟ—କହୁ ନାହିଁ ନୃପ, ପାପିନୀ, ସତ୍ୟେ,
ଲଭି ଅଛି ଗନ୍ଧ ଏହୁ ଧର୍ମବିନିମୟେ—
ନାରୀର ପରମ ଧନ—
ଶାନ୍ତନୁ—ଥାଉ, ଥାଉ କୁଳ-କଳଙ୍କିନୀ !
କରି ସଂଯତ ରସନା ତୋର ।
ଆରେ ରେ ପିଶାଚି !
ଧରିଥିଲୁ କି ଏରୂପ, ମଜାଇବୁ ବୋଲି
ଇହକାଳ ପରକାଳ ମୋର ?
ଓଃ ହୋଃ କି ବୃଶ୍ଚିକ ଆଜ ଦଂଶୁଛି ହୃଦୟ !
ଆରେ ମାୟାବିନି !
ତୋର ଲାଗି ସିନା ପୁତ୍ର ମୋର—
ହୃଦୟର ଧନ-ତ୍ୟଜିଲା ସଂସାରସୁଖ,
ପାଳିଲା କଠୋର ବୈରାଗ୍ୟ ନିୟମ ।
ଦେବବ୍ରତ ! ଦେବବ୍ରତ ! କାହିଁଅଛୁ ବାପ
ଦେଖିଯା, ଦେଖିଯା ଆସି,
ସୁଧା ଭ୍ରମେ ପିତା ତୋର ପିଇଛି ଗରଳ;
ଆଉ ନାହିଁ ରକ୍ଷା—ଆଉ ନାହିଁ ରକ୍ଷା—
ମାରି ସେହୁ ନାରୀ ଆଗେ ମରିବ ସେ ପରେ ।
କାହିଁ ଅଛି ଖଡ୍ଗ ? ଆଣ ରେ କେହୁ ଶୀଘ୍ର ।
ସତ୍ୟ—( ଖଡ୍ଗ ଦେଇ ) ଏହୁ ନିଅନ୍ତୁ ରାଜେନ୍ଦ୍ର!
ଦୋଷୀଦଣ୍ଡ ସ୍ୱହସ୍ତେ ହେ କରନ୍ତୁ ବଧ ନ ।
ଶାନ୍ତନୁ—ଆରେ ଭ୍ରଷ୍ଟ କଳଙ୍କିନି !
ଏତେ ଯେବେ ନୀତି-ଜ୍ଞାନ ଥିଲା ତୋର ଚିତ୍ତେ,
ନ ସାଧିଲୁ ଆତ୍ମହତ୍ୟା କପାଁ
ଆସିବାର ଆଗେ ସମ୍ମୁଖେ ମୋହର ?

ସତ୍ୟ—ଅଣିଥିଲି ଖଡ୍‌ଗ ଦାସୀ
ସେହି ଉଦ୍ଦେଶ୍ୟରେ ପ୍ରଭୋ !
କାର୍ଯ୍ୟକାଳେ କିନ୍ତୁ ଦୈବବାଣୀ ହେଲା ତାକୁ—
'ଅସ୍ତ୍ରହତ୍ୟା ବ୍ରହ୍ମହତ୍ୟାର ପରିଚୟ'—
ପଶୁରନ୍ତେ, କାହିଁ ଶାନ୍ତି ?—
ହେଲା ଉତ୍ତର, ଶୁଣିଲି କର୍ଣ୍ଣେ ଯେସନେ—
ନିଜ ପ୍ରଭୁଠାରେ, କର ଆତ୍ମନିବେଦନ ।
ପ୍ରକୃତରେ ପ୍ରଭୋ !
ଲଭିଅଛି ଶାନ୍ତି ଏବେ,
ନାହିଁ ଆଉ ସେହି ତାପ—
ଯେସନେ ଲଭିଅଛି ଅଗ୍ନିଶିଖା
ଶୀତ-ବାରି ସ୍ପର୍ଶେ ।
ଦିଅନ୍ତୁ ବିଦାୟ ଏବେ ଜନ୍ମ ପରି ପ୍ରଭୋ ।

ଶାନ୍ତନୁ—ଆରେ କୁହୁକିନି !
ମନାସି ଅଛୁକି ତୁହି ?
ଭୁଲାଇ ରଖିବୁ ପୁଣି
ଗୂଢ଼ ବାକ୍ୟବଳେ ଏହି—
ଭୁଲାଇଣି ଥିଲୁ ଯେଉଁପରି
କୁଟିଳ ରୂପରେ ଏତେ କାଳ ମୋତେ ?
ବୃଥା ଏ କଳ୍ପନା ! ଆଉ ରକ୍ଷା ନାହିଁ ଏବେ ।
ସ୍ମର ତୋର ଇଷ୍ଟ-ଦେବେ ତ୍ୱରା ।

ସତ୍ୟ—ଇଷ୍ଟଦେବ ଯେ ସାକ୍ଷାତେ ମୋର !—
ସ୍ମରିବି କାହାକୁ ?
ଦିଅନ୍ତୁ ହେ ଦଣ୍ଡ, ଦେବ
ହରନ୍ତୁ ହେ ପ୍ରାଣ ତ୍ୱରା ପାପ ଦେହରୁ ଏହି ।

ଶାନ୍ତନୁ—ଏହି ଘେନ ଦଣ୍ଡ ତୋର—
( ହତ୍ୟା କରିବା ସମୟରେ ଦେବବ୍ରତର ପ୍ରବେଶ)

ଦେବ—ପିତା ! ପିତା ! କ୍ଷାନ୍ତ ହୁଅ
( ଶାନ୍ତନୁଙ୍କୁ ଧରିବା )

( ପଟପତନ )

---

## ତୃତୀୟ ଦୃଶ୍ୟ ।

( ଆଶ୍ରମ )
( ମୁନି ବାଳକବୃନ୍ଦର ପ୍ରବେଶ )
( ଗୀତ )

ଅନାଦି ଅନନ୍ତ ବ୍ରହ୍ମ ଭଗବାନ,
ବିଶ୍ୱ-ପାତା, ବିଶ୍ୱ-ହର୍ତ୍ତା, ବିଶ୍ୱର କାରଣ,
ସାକାର ତୁମ୍ଭେ, ନିରାକାର ତୁମ୍ଭେ,
ଯେ ଭାବେ ଯେ ଡାକେ ଦିଅ ହେ ଦର୍ଶନ ॥
ସୂର୍ଯ୍ୟ, ଚନ୍ଦ୍ର; ଗ୍ରହ, ତାରା, ଜ୍ୟୋତିଷ୍କ ମଣ୍ଡଳୀ,
ବିକାଶଇ କ୍ଷୀଣ ପ୍ରଭା ଉଜ୍ଜ୍ୱଳ ଭାତିର,
ଆକାଶ-ବିତାନ, ଅତୀତ ଚିନ୍ତାର,
ନିଦର୍ଶନ ଦିଏ ତବ ତନୁର ସାମାନ୍ୟ ॥
ତରୁ, ଲତା, ଫଳ, ଫୁଲ-ସୌନ୍ଦର୍ଯ୍ୟନିକର,
ପରିଚୟ ଦିଏ ତୁମ୍ଭ ସୌନ୍ଦର୍ଯ୍ୟଭଣ୍ଡାର,
କୋକିଳ-କାକଳି, ଭ୍ରମର-ଗୁଞ୍ଜନ
ପ୍ରତିଧ୍ୱନେ ମାତ୍ର ତବ ଅମୃତ ଭାଷଣ ॥
ଜ୍ଞାନ, ବୁଦ୍ଧି, ପ୍ରେମ, ଭକ୍ତି-ହୃଦୟପ୍ରତିଭା,
ରଶ୍ମିକଣା ପରି ସେହି ଶକ୍ତିମୟ ତୁମ୍ଭର,
ସଗୁଣ ତୁମ୍ଭେ ହେ ! ନିର୍ଗୁଣ ତୁମ୍ଭେ ହେ !
ନମୋ-ନମୋ-ନମୋ-ନମୋ-ନମୋ ନାରାୟଣ ॥

( ଗୀତ ହେଉଥିବା ବେଳେ ଦେବବ୍ରତର ପ୍ରବେଶ
ଓ ଏକ ପାର୍ଶ୍ୱରେ ଦଣ୍ଡାୟମାନ ହେବା )

ଦେବବ୍ରତ—ଅହା ! କି ମଧୁର ଗୀତ !
କି ସୁନ୍ଦର ଦୃଶ୍ୟ !
ଶାନ୍ତି-ସୁଧା ଢାଳୁଅଛି ମନେ ପ୍ରାଣେ ଯେସନେ !
ଏହି ଦେଖ ତରୁ-ଲତା ଫଳ-ଫୁଲ-ଭାରେ,
ନତଶିରେ ଜଗ କିବା ଶାନ୍ତ ସୌମ୍ୟ ଭାବେ !
ଅତିଥି ସେବାରେ ଯେସନେ ଢାଳିଛନ୍ତି ମନ ।
ମୁନି ଶିଶୁଗଣ ଦେଖି ପୁଲକିତ ଚିତ୍ତେ,
ପ୍ରସାରିଣ କ୍ଷୀଣକର କରନ୍ତି ଚୟନ—
ଦେଇନନ୍ତି କି ଅର୍ଘ୍ୟ ଅବା ଆଶୀର୍ବାଦ ଭରି ?
କୂଜିଲ ବିହଙ୍ଗକୁଳ ଶାଖେ ଶାଖେ ବସି—
ସାମ-ଗାନ-ପ୍ରତିଧ୍ୱନି କରନ୍ତି କି ଆଜି ?

ମନ୍ଦ ବହେ ଗନ୍ଧାନିଳ ହିଲ୍ଲୋଳ ପଲ୍ଲବ
ମୃଦୁ ଗତ ଧୂମ୍ର ପାନେ ହୋଇଛୁ କି ଅନ୍ଧ ?
ଅଦୂରେ ହରିଣୀ ଦେଖ ଶିଶୁଟିକୋଳେ ଘେନି,
ଚୁମ୍ବୁଅଛି ଅର୍ଦ୍ଧଭକ୍ଷ୍ୟ ତୃଣ ମୁଖେ କରି ।
ହଂସ କଳୁ ବିହରଇ ଆଖେ ପାଖେ ତାର ।
ଭ୍ରୂକ୍ଷେପ ନାହିଁ ତ କିଛୁ କାହା ପ୍ରତି କାର ?
ମୁଗ୍ଧ କି ସମସ୍ତେ ଆଜି ମହାମନ୍ତ୍ରେ ଏକ ?
ସେହି ମନ୍ତ୍ର-ମୁଗ୍ଧ ମଧ୍ୟ ହୋଇଯାଏଁ ମୁହିଁ,
ଭୁଲିଯାଏ ସ୍ନେହ, ମାୟା—ସଂସାର ବନ୍ଧନ ।
ହାୟ ! ମଣିଥିଲି ଯିନା
ଶାନ୍ତିମୟ—ସୁଖମୟ—
ଗୃହସ୍ଥାଶ୍ରମ ଏ ଭବେ,
କିନ୍ତୁ ମଧ୍ୟେ ତା'ର ଏତେ ଅନାଚାର !
ଏକ ଅଛେ ପ୍ରଲୋଭନ
ଭୁଲାଇ ସୌନ୍ଦର୍ଯ୍ୟେ ତାର,
ଇଚ୍ଛେ ବୁଡ଼ାଇବ ଅନନ୍ତ ନିରୟେ !
ଅନ୍ୟ ଅଛେ ଦୁଷ୍ଟଚାରିଣୀ ମାତା—
କୁଳର କଳଙ୍କ—
ସ୍ମୃତିମାନେ ଜରେ ଥର ଥର ଅଙ୍ଗ !
( ବ୍ୟାସଦେବଙ୍କର ପ୍ରବେଶ )

ବ୍ୟାସ—ଶିଷ୍ୟଗଣ !
କର ଶୀଘ୍ର ପୂଜା-ଆୟୋଜନ,
ଯିବି ମୁହିଁ ମାତୃ-ଦରଶନେ ଆଜ—
( ସ୍ୱଗତ) ଘେନି ଆଶୀର୍ବାଦ ତାଙ୍କ
ପଶିବି ଚିନ୍ତି ଆଜି ଲୋକହିତ ପାଇଁ—
ନିଜ କଳ୍ପନାସାଧନେ ।
( ଶିଷ୍ୟଗଣଙ୍କ ପ୍ରସ୍ଥାନ )
ଦିବାରାତ୍ରି ଚିନ୍ତା ମୋର, କେଉଁରୂପେ
ଉଦ୍ଧାରିବି ଜୀବକୁଳ ଅଶାନ୍ତି ଗ୍ରାସରୁ ?
ଦିନ ଦିନ ଦେଖେଁ ଧାନ-ବଳେ,
ହେଉଛନ୍ତି ନର କ୍ଷୀଣୁ କ୍ଷୀଣତର,
ପଥା ଶାରୀରିକ ତଥା ମାନସିକ—
ବେଦବିହିତ ମାର୍ଗକୁ ଦେଉଛନ୍ତି ଛାଡ଼ି,
**ମଣି ଦୁର୍ବୋଧ୍ୟ, ଦୁର୍ଗମ ଅତି !—**

ଚାଲନ୍ତି କୁପଥେ—ସୁପଥ ସେ ମଣି,
ଅତି ଆନନ୍ଦ ହୃଦୟେ,
ଯେତେହେଁ ଅନୁସରି ସେହି ପଥ
ଲଭିବେ ସେ ଶାନ୍ତି
ଇହଲୋକେ, ପରଲୋକେ ପୁଣି ।
ତେଣୁ ଭାବୁଅଛି ମୁହିଁ
ବେଦାନ୍ତକଥିତ ନୀତି ଦେବି ଶିକ୍ଷା ଜନେ
ଇତିହାସପାଠଛଳେ, ସରଳ ଭାଷାରେ !

ଦେବ—( ସ୍ୱଗତ ) କିଏ ଏହି ଯୋଗିଶ୍ରେଷ୍ଠ ?
ଦରଶନ ମାତ୍ରେ
କିବା ଶାନ୍ତ ଭାବ ଜାଗୁଅଛି ମନେ ।
ଆହା ! କେଡ଼େ ଶାନ୍ତିମୟ ଏହି ଯୋଗି ପ୍ରାଣ !—
ନାହିଁ ଜଣା କିବା ଦୁଃଖ, କିବା କ୍ଲେଶ ଭବେ !
ରହିଅଛି ମାତ୍ର ସଦା ମହାଭାବ ଘେନି,
ମହା ଆନନ୍ଦରେ—
ସ୍ୱର୍ଗ, ମର୍ତ୍ତ୍ୟ, ରସାତଳ ଏକ ମଣି ଯେତେହେଁ !
ହାୟ ! କେଡ଼େ ମୂର୍ଖ ମୁହିଁ କ୍ଷୁଦ୍ର ଜଳାଶୟ,
ମୁଗ୍ଧ ହୋଇଥିଲି ଯିନା ମରୀଚିକା ମୋହେ !
ଯାଏଁ ଏବେ, ଋଷିପାଦେ ପ୍ରଣମି ସାଷ୍ଟାଙ୍ଗେ,
ନେବି ଦୀକ୍ଷା ଭୁଞ୍ଜିବାକୁ ଯୋଗିପ୍ରାଣ ଆଜି !
( ପ୍ରକାଶ୍ୟେ) ହେ ମୁନୀନ୍ଦ୍ର ! ବନ୍ଦେ ନତଶିରେ
ଦୀନ ଅରକ୍ଷିତ ପାଦପଦ୍ମ ତବ ।

ବ୍ୟାସ—( ସ୍ୱଗତ) କିଏ ଏହି ଯୁବା ?
ଆତ୍ମ-ଜନ-ଜ୍ଞାନ କିପାଁ ହେଉଅଛି ମୋର ?
( ପ୍ରକାଶ୍ୟେ )
କିଏ ତୁମ୍ଭେ ଯୁବକ ସନ୍ନ୍ୟାସୀ ?

ଦେବ—ଋଷିବର ! ନୁହେଁ ମୁଁ ସନ୍ନ୍ୟାସୀ
ଘଟି ନାହିଁ ଅଦ୍ୟାପି ସେ ସୁଖ
ଭାଗ୍ୟହୀନ ଏହି ଗୃହବାସି-ଭାଳେ ।

ବ୍ୟାସ—ଗୃହୀ ହୋଇ ଭାଗ୍ୟହୀନ କିପାଁ ବୋଲ
ତୁମ୍ଭେ ?

ଦେବ—ମୁନିଶ୍ରେଷ୍ଠ । ନୁହେଁ କି ସେ ଭାଗ୍ୟହୀନ—
ଗାର୍ହସ୍ଥ୍ୟରେ ସେହି
**ଭକ୍ତ ସଖା ବନ୍ଧୁ ଦୁଃଖେଁ ଜନ ?**

ବ୍ୟାସ—( ସହାସ୍ୟେ ) ଯୁବା ତୁମ୍ଭେ—
ବୁଦ୍ଧି ତବ ହୋଇନାହିଁ ପକ୍ୱ,
କହୁଅଛ ତେଣୁ ତୁମ୍ଭେ ବାକ୍ୟ ଏହିପରି !
ଦେବ—କାହିଁକି ଯୋଗୀନ୍ଦ୍ର ?
ନୁହେଁ କି ଗୃହସ୍ଥାଶ୍ରମ;
ସର୍ବନିନ୍ଦ୍ୟ, ସର୍ବାଧମ ଆଶ୍ରମ ଏ ଭବେ ?
ବ୍ୟାସ—ସର୍ବଶ୍ରେଷ୍ଠାଶ୍ରମ, ସର୍ବଜନପୂଜ୍ୟ ସେହି
ଗୃହସ୍ଥାଶ୍ରମ ଏ ଭବେ ।
ଦେବ—ଦେବ !
କପଁା ଏ ଛଳନା
ମୂଢ଼ମତି ଶିଷ୍ୟ ସଙ୍ଗେ ତବ ?
କହ ପ୍ରଭୋ !
କେଉଁ ଗୁଣେ ଗୃହୀ ଶ୍ରେଷ୍ଠ ଧରାଧାମେ ଏହି ?
ମାୟାମୋହମୁଗ୍ଧ ମନ-ପ୍ରାଣ ଯାର,
ଭୁଲିଅଛି ସାରକର୍ମ ଯେତୁ—
କର୍ତ୍ତବ୍ୟ ନିଜର,
ପାପ, ତାପ, ଶୋକ-ଆଦି—
ନିଜର, ଅନ୍ୟର ପୁଣି
ଗ୍ରାସିଛି ହୃଦୟ ଯାର,
କରୁଅଛି ଯାକୁ ହେଲେ ଅସ୍ଥିଚର୍ମସାର,
କାହିଁ ତାର ଶାନ୍ତିସୁଖ ଭବେ ?
କହ ପ୍ରଭୋ !
କିଏ ଆନ ଗୃହୀଠାରୁ ଦୁଃଖୀ ?
ବ୍ୟାସ—ବତ୍ସ !
କ୍ଳେଶପୂର୍ଣ୍ଣ ସତ୍ୟ ଗୃହସ୍ଥ-ଆଶ୍ରମ,
ଶିକ୍ଷାସ୍ଥଳ ମାନବର ଏକମାତ୍ର କିନ୍ତୁ ।
ସେହି ଶୋକଦୁଃଖ-ଆଦି
ବହିଅଛି ଘେରି ଯାହା ଚତୁଃପାର୍ଶ୍ୱ ତାର—
ପରୀକ୍ଷା ନିମନ୍ତେ ମାତ୍ର ଶକ୍ତିର ଆମ୍ଭର ।
ବୀର ପ୍ରକୃତିରେ ସେହି,
ପାରିଅଛି ଅଣି ଯେତୁ
ନିଜାଧୀନେ ମାୟା, ମୋହ-ଦୁଃଖର କାରଣ,
କ୍ଳେଶଭୟେ କିନ୍ତୁ ସେହି,
ତ୍ୟଜେ ଗୃହ ଯେଉଁ ଜନ,
ତ୍ରିପୁରେ ତ୍ରିକାଳେ କେବେ ନାହିଁ ଜୟ ତାର ।
କହୁଅଛି, ତେଣୁ ବତ୍ସ !
ଗୃହସ୍ଥ-ଆଶ୍ରମ ପରୀକ୍ଷାର ସ୍ଥାନ—
ଯାଇଁ ତହିଁ, ଦିଅ ଅଗ୍ରେ ଶକ୍ତି ପରିଚୟ,
ବଳାଇବ ମନ ପଛେ ଅପର ଆଶ୍ରମେ ।
ଦେବ—କିନ୍ତୁ ପ୍ରଭୋ ! କେହି ଅସ୍ପ-ଜନ ଯେବେ
ଆଚରଇ ଗୃହେ ଥାଇ ପାପ ନାନାବିଧ—
ସେହି ପାପ-ସ୍ପର୍ଶେ କଳୁଷିତ
ନ ହେବେ କି ଅନ୍ୟ ଗୃହବାସୀ ?
ବ୍ୟାସ—ହେବେ ନିଶ୍ଚେ-ଯେବେ ଗୃହସ୍ୱାମୀ ନିଜେ
କିମ୍ବା ଅପର ସ୍ୱଜନ କେହି
ଜାଣି ସେହି ପାପ,
ନ କରଇ ପ୍ରତିକାର ତାର ।
ଦେବ—କିବା ପ୍ରତିକାର କରି ପାରେ ଜନ ?
ବ୍ୟାସ—କାହିଁକି ବାଳକ ?
କର ଚେଷ୍ଟା ପ୍ରାଣପଣେ, ଅନୁତାପାନଳେ
ଶୁଦ୍ଧ ହେବ ଯେସନେ ତାର କଳଙ୍କିତ ମନ ।
ଦେବ—କହ ଗୁରୋ !
କିବା ସେହି ଚେଷ୍ଟା
ବ୍ୟାସ—ଚେଷ୍ଟା-ଅତି ସୂକ୍ଷ୍ମ !
ସାଧୁସଂସର୍ଗରେ, ବଳାଇଣ ମନ ତାର
ଶୁଣାଅ ପ୍ରତ୍ୟହ ଯେତେ ନୀତିକଥାମାନ—
ଦେଖାଅ ଦୃଷ୍ଟାନ୍ତ, ନିଜର, ଅନ୍ୟର ପୁଣି,
ପ୍ରତି କାର୍ଯ୍ୟେ, ପ୍ରତି ବାକ୍ୟେ, ପ୍ରତି ପଦେ ତାକୁ,
ଦେଖିବ ହେ ଶେଷେ ନିଶ୍ଚେ—
ଶୁଦ୍ଧ ହେବ ପାପ-ଆତ୍ମା ତାର,
ଅଗ୍ନି ସ୍ପର୍ଶେ କଳଙ୍କିତ ଧାତୁ ବର୍ଣ୍ଣ ଯେସନେ ।
ଦେବ—ପ୍ରଭୋ ! ପ୍ରଭୋ !
ଧନ୍ୟ କଲ ଦାସେ ଆଜ ଏହି ଜ୍ଞାନାଲୋକେ !
ବ୍ୟାସ—ବତ୍ସ ! ପରିଚୟ ତବ ?
ଦେବ—ଶାନ୍ତନୁତନୟ, ନାମ ଦେବବ୍ରତ ।
ବ୍ୟାସ—କିଏ ? ଦେବବ୍ରତ ! ଭ୍ରାତା ମୋର !
ଆସ ଆସ ଭାଇ, ବଡ଼ ଶୁଭ ଦିନ ଆଜି,

ପାଉଛୁ ଆଲିଙ୍ଗି ସେହି ଭୁବନ ବିଖ୍ୟାତ,
ଯୋଗିଶ୍ରେଷ୍ଠ, ବୀରଶ୍ରେଷ୍ଠ ଭ୍ରାତାକୁ ମୋହର ।
( ଆଲିଙ୍ଗନାନନ୍ତର )
ଦେବ—(ସ୍ୱଗତ) ଆହା !
କି ଶାନ୍ତି ଲଭେ ମୁଁ ପୂତ ସ୍ପର୍ଶେ ଏହି !
କିଏ ଏହି ମୁନିବର ?
ଭ୍ରାତା ବୋଲି କିପାଁ ଆଲିଙ୍ଗିଲେ ମୋତେ ?
(ପ୍ରକାଶ୍ୟେ) ଋଷିବର !
ଫେଡ଼ିବେକି ସଂଶୟ ଦାସର ଏବେ ?
ବ୍ୟାସ—କି ସଂଶୟ ? କହ ଭାଇ !
ଦେବ—ଭ୍ରାତା ବୋଲି କିମ୍ପା ସମ୍ବୋଧିଲେ ଦାସେ ?
ବ୍ୟାସ—ସ୍ଥିର ହୋ' ତୁ'—ପରିଚୟ ପାଇବୁ ଅଚିରେ ।
କହ ଭାଇ ଆଗେ
ଅଛନ୍ତି ତ ସମସ୍ତେ କୁଶଳେ ଗୃହେ ?
ଦେବ—(ସ୍ୱଗତ) କି କହିବି ଗୃହକଥା ମୁନିବରେ ?
ଶ୍ରବଣି !
ବଧିର ନ ହେଲୁ କିମ୍ପା
ଶ୍ରବଣାଗ୍ରେ ପ୍ରଶ୍ନ ଏହି ?
ରସନା ତୁ ଯା'ରେ ଭସ୍ମୀଭୂତ ହୋଇ
କୋପାନଳେ ଯଥା ସଗରସନ୍ତାନଗଣ !
ବଜ୍ର !
ପଡ଼ି ତ୍ୱରା ଚଡ଼ ଚଡ଼ ଶବ୍ଦେ ଶିରୋଦେଶେ ମୋର,
ଲୁପ୍ତଜ୍ଞାନ ହୁଏ ମୁହିଁ,
ଦେବି ଯେବେ ଉତ୍ତର ପ୍ରଶ୍ନର ଏହି !
ବ୍ୟାସ—ନୀରବ କିପାଇଁ ଭାଇ !
କହ ଭାଇ !
ଘଟିଅଛି ଘରେ ଯେବେ ଅମଙ୍ଗଳ କିଛି ?
ଦେବ—(ସ୍ୱଗତ) କିଏ ଏହି ମୁନି ?
ଭ୍ରାତୃପ୍ରେମେ ଶାନ୍ତିସୁଧା ଢାଳୁଛନ୍ତି ହୃଦେ !
କିବା ପ୍ରୟୋଜନ ତେବେ,
ଗୁପ୍ତ ରଖି ପାପ-କଥା ହୃଦେ,
ଅଶାନ୍ତି—ଅନଳେ ଦହିବି ଏ ପ୍ରାଣ !
(ପ୍ରକାଶ୍ୟେ) ମୁନିବର !
ବଡ଼ ଦୁଃସମ୍ବାଦ ଆଜି ଆଣିଅଛୁ ଘରୁ !
ବ୍ୟାସ—(ପଛକୁ ଘୁଞ୍ଚିଯାଇ) କି ଦୁଃସମ୍ବାଦ, ଭାଇ ?
କହ ! କହ !

କାଳଗ୍ରାସେ ପଡ଼ିଛନ୍ତି କିରେ ସର୍ବେ ?
ଗୃହତ୍ୟାଗୀ ତହୁଁ ହୋଇଛୁ କିରେ ନିରାଶେ ?
ମାତୃ ଦର୍ଶନବଞ୍ଚିତ ହେଲି କି ରେ ଶେଷେ ?
କହ ତ୍ୱରା-କି ସମ୍ବାଦ ?
ଦେବ—ମୁନିବର !
ଦିଅନ୍ତୁ ହେ ପରିଚୟ ଶୀଘ୍ର !
କିଏ ମାତା ତବ ?
କିମ୍ପା ବ୍ୟାକୁଳିତ ଏତେ ଆମ୍ଭ ଲାଗି ତୁମ୍ଭେ ?
ବ୍ୟାସ—ପରିଚୟ ପାଇବୁ ରେ ପରେ !
ଦେ ରେ ବାର୍ତ୍ତା ତ୍ୱରା !
ଯୋଗିପ୍ରାଣେ ସୁଦ୍ଧା ଧୈର୍ଯ୍ୟ ଯେ ନ ପାରେ ଧରି !
ଦେବ—ମୁନିବର !
ବଡ଼ ଦାରୁଣ ବାରତା !
ମାତା ମୋର ଦ୍ୱିଚାରିଣୀ—
ପିତା ଉନ୍ମାଦ ପ୍ରାୟ !
ବ୍ୟାସ—(ସାଶ୍ଚର୍ଯ୍ୟେ) କିଏ ? ସତ୍ୟବତୀ !
ଦେବ—ହଁ, ମୁନୀନ୍ଦ୍ର ସେହି ନାରୀ !
ବ୍ୟାସ—କିଏ ? ସତ୍ୟବତୀ ! ମାତା ମମ ! ଦ୍ୱିଚାରିଣୀ !
ଆରେ ଦେବ !
ବଜ୍ର ହାଣିଲୁ କି ସତେ ମସ୍ତକେ ମୋହର ?
ନା, ନା, ଦେବ ! ଭ୍ରମ ନିଶ୍ଚୟ ଏ ତୋର !
( ଧ୍ୟାନକରି ଦେଖିବା )
କିଏ କହେ ମାତା ମୋର ଦ୍ୱିଚାରିଣୀ !
ଦେଖ୍ ଦେଖ୍ ଦେବ, ଚକ୍ଷୁ ମୁଦି ଥରେ,
ମାତା ମୋର ସତ୍ୟବତୀ-ସତୀ-ଅବତାର-
ବସିଛନ୍ତି ଦିବ୍ୟାସନେ, ଦିବ୍ୟ ତେଜେ କିବା !
ଡାକୁଛନ୍ତି ସ୍ନେହେ କିବା ଶିଶୁଗଣେ ପୁଣି,
ପ୍ରସାରଣି ଅଲିଙ୍ଗନ ଆସ ଆସ ବୋଲି !
ଚାଲ, ଚାଲ ଭାଇ ତ୍ୱରା
ଶୀତଳିବା ମନ, ପ୍ରାଣ ଅଲିଙ୍ଗନେ ସେହି !
ଦେବ—(ସ୍ୱଗତ) କି ଦୃଶ୍ୟ ଦେଖିଲି ମୁହିଁ-ମା' ଯେ
ଦେବୀ ମୋର !
(ପ୍ରକାଶ୍ୟେ) ହେ ମାତଃ ! ହେ ଋଷିଶ୍ରେଷ୍ଠଭ୍ରାତ !
କ୍ଷମ ଅପରାଧ ମୋର—

ଜ୍ଞାନହୀନ ଶିଶୁ ମାନ ମୁହିଁ ।—
କରିଅଛୁ ଅଜ୍ଞାନେ ଅତୀବ,
ଗୁରୁତର ଦୋଷ ମାତୃପ୍ରତି ଆଜ ।
ବ୍ୟାସ—ଉଠ, ଉଠ, ଭାଇ ।
ଦୋଷ କିବା ହୋଇପାରେ ତୋର ।
ମାତୃଚରିତ ବିଷୟେ,
ମାତା ଯେବେ ନିଜେ, ଛନ୍ତି ଅନ୍ଧକାରେ—
କିବା ସାଧ୍ୟ ଅପରର ବୁଝେ ସେହି ତତ୍ତ୍ୱ ।
ଦେବ—ଚାଲ, ଚାଲ, ଭାଇ ତ୍ୱରା ।
ମୁକ୍ତ କର ପିତୃମାନେ ଭ୍ରମ-କାରାଗାରୁ ।
( ଉଭୟେ ବେଗେ ନିଷ୍କ୍ରାନ୍ତ । )

---

## ଚତୁର୍ଥ ଦୃଶ୍ୟ

( ରାଜପଥ । )

( ଶାନ୍ତନୁ ଉନ୍ମତ୍ତ ଭାବରେ ବୟସ୍ୟ ସହିତ ପ୍ରବେଶ କରିବା )

ଶାନ୍ତନୁ—ଛାଡ଼ ଛାଡ଼ ବନ୍ଧୁ ମୋତେ, ଭୟ୍ନ ନାହିଁ ତଳେ ।
ପୁତ୍ରଘାତୀ-ପିତା ମୁହିଁ—ଦେଖୁ ନାହିଁ—
ବହୁଛି ମୋର ରକ୍ତ-ସ୍ରୋତ କିବା
ପଡୁଅଛୁ ଭୀମ ବେଗେ ଭୀମ ଧାରେ ଝର ।
ଏଁ ଏଁ ପୁତ୍ର ମୋର ନାହିଁ । ପୁତ୍ର ମୋର ନାହିଁ ।
ବୟସ୍ୟ—ମହାରାଜ । ଶାନ୍ତ ହୁଅନ୍ତୁ-ପୁତ୍ର ଆପଣଙ୍କର ଅଛନ୍ତି ।
ଶାନ୍ତନୁ—ପୁତ୍ର ମୋର ପ୍ରାଣେ ଅଛୁ ।
କାହିଁ ? କାହିଁ ?
ଶୀଘ୍ର ମୋତେ ଦେଖାଅ ବୟସ୍ୟ ?
ବୟସ୍ୟ—ଆପଣ ଆଗେ ଘରକୁ ଚାଲନ୍ତୁ ।
ଶାନ୍ତନୁ—ଘରକୁ ଯିବି ମୁଁ ? କାହା ଲାଗି ? କିଏ ଅଛୁ ?
ହିଁ ହିଁ ଅଛୁ, ପୋଷିଛୁ ଯତନେ ଅତି ।
ଏହି ଦେଖ ବନ୍ଧୋ ।
ଆସୁଅଛୁ ଏଣେ ସେହି—ପିଶାଚୀ ରାକ୍ଷସୀ ।
କାହିଁ ଖଡ୍‌ଗ ଆଣିରେ କେହି ଶୀଘ୍ର ।
( ଦ୍ରୁତପଦେ ପ୍ରସ୍ଥାନ )

ବୟସ୍ୟ—ମହାରାଜ । ମହାରାଜ । (ଅନୁଧାବନ)
( ମନ୍ତ୍ରୀର ବେଗେ ପ୍ରବେଶ । )
ମନ୍ତ୍ରୀ—ପ୍ରାୟ ସମସ୍ତେ ତ ନିରାଶ ହୋଇ ଫେରି ଆସିଲେ—କେହି କୌଣସି ସନ୍ଧାନ ପାଇଲେ ନାହିଁ । ରାଜାଙ୍କୁ ଏବେ ମୁଁ କି ସମ୍ବାଦ ଦେଉଛି—ରାଜାଙ୍କର ଯେପରି ଅବସ୍ଥା, ଏଥିରେ ଯେବେ ସେ ଏହି ଦାରୁଣ ସମ୍ବାଦ ଶୁଣନ୍ତି, ଆଉ କଣ ପ୍ରାଣରେ ବଞ୍ଚିବେ ? କଣ କରୁଛି ? ଯାଏଁ, ଦେଖେଁ, ଆଉ କେହି ଫେରି ଆସିଚନ୍ତି କି ନାହିଁ ?
( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

( ଶୟନାଗାର )

ସତ୍ୟବତୀ—ଦେବବ୍ରତ । ଦେବବ୍ରତ । କାହିଁଗଲୁ ବାପ
କାହିଁ ଲୁଚିଲୁ ସେହି ଚନ୍ଦ୍ରମୁଖ ତୋର ।
କହ ବାପ । ଏତେ ଯେବେ ଥିଲା ତୋର ମନେ,
କିମ୍ପା ବୋଧିଲୁ ସେ ଦିନ ପିତାଙ୍କୁ ତୋହର ?
ଲଭିଥାନ୍ତି ସେହି ଦିନୁ
ଅନନ୍ତ ବିଶ୍ରାମ ସିନା ।
ଆଁରେ ବାପ ଥରେ, ଦେ ରେ ଦେଖା ତ୍ୱରା—
ଡାକୁ ନାହିଁ ସ୍ୱାର୍ଥ ଲାଗି ମୋର,
ଡାକୁଅଛୁ ତୋର ଅନୁଜଙ୍କ ପାଇଁ—
ସମର୍ପି ଦେଇଣ ତାଙ୍କୁ କରେ ତୋର ମୁହିଁ
ଲଭିବି ରେ ଅନନ୍ତ ଶୟନ—
ଅନନ୍ତ ଗର୍ଭରେ,
ବିଷପାନେ ଏହି, ଦେଖ୍ ଅଣିଅଛୁ କରେ ।
( ବିଚିତ୍ରବୀର୍ଯ୍ୟର ପ୍ରବେଶ )
ବିଚିତ୍ର—ମା, ମା । ଗିଲାସରେ କଣ ମା, ଦେ ମା, ମୁଁ ଖାଇବି ମା ।
ସତ୍ୟ—(ସ୍ୱଗତ) ଖୁଅନ୍ତି ରେ ଆନନ୍ଦରେ ବାପ ତୋତେ
ମାତା ପୁତ୍ରେ ଏକା ସଙ୍ଗେ ଲଭନ୍ତୁ ରେ ଶାନ୍ତି,
କିନ୍ତୁ ଅଛୁ କି ରେ ଏତେକ ଶକତି ହୃଦେ—
ମାରି ନିଜ ସ୍ତନ୍ୟପାୟୀଟିଏ ଆଗେ,

ମରିବାକୁ ଶେଷେ ?
ହାୟ !
ଆତ୍ମା ଯେବେ ମାତୃଦେହେ ଏତେକ ଶଙ୍କିତ—
କରନ୍ତି ରେ ହର୍ଷଭରରେ
ଏହି କାର୍ଯ୍ୟ—ଏହିକ୍ଷଣି ମୁହିଁ !

( ଶିବାଙ୍ଗଦର ପ୍ରବେଶ )

ଶିବାଙ୍ଗଦ—ମା, ମା, ବାପା ମୋତେ ମାରିଲେ ମା !

ସତ୍ୟ—( ସ୍ୱଗତ ) ପ୍ରଭୋ ! ପ୍ରଭୋ !
କ୍ଷମାକର ଅଭାଗିନୀ ଦାସୀକୁ ତୁମ୍ଭର—
କିବା ଦୋଷ ମତିହୀନ କୋମଳ ଶିଶୁଙ୍କ !
(ପ୍ରକାଶ୍ୟେ) ନା, ବାପ କାନ୍ଦ ନା—ଯା ଖେଳ ଯା-
ବାପାଙ୍କ ପାଖକୁ ଅଭିକା ଆଉ ଯିବୁ ନାହିଁ—
ବାପାଙ୍କ ଦେହ ଭଲ ନାହିଁ ପରା !

ବିଚିତ୍ର—କାହିଁକି ମା ? ବାପାଙ୍କ ଦେହ ଭଲ ନାହିଁ—
ଠାକୁର କଣ ଭଲ କରି ଦେବେ ନାହିଁ ?

ସତ୍ୟ—ହଁ, ତୁମ୍ଭେ ଦୁଇଭାଇ ଠାକୁରଙ୍କୁ ଡାକ, ସେ ଭଲ କରି ଦେବେ ।

ଶିବ—ବଡ଼ ଭାଇନା କାହିଁକି ମା ଏତେବେଳ ଯାଏ ଆସିନି ନାହିଁ ?

ସତ୍ୟ—ତୁମ୍ଭେମାନେ ଠାକୁରଙ୍କୁ ଡାକ, ବଡ଼ଭାଇନାକୁ ସେ ଅଚିରକା ଅଣାଇ ଦେବେ ।

ବିଚିତ୍ର—ଆ ଭାଇ ! ଦୁଇଜଣ ଯାକ ଆଜି ଖୁବ୍ ବଡ ପାଟିକରି ଠାକୁରଙ୍କୁ ଡାକିବା-ବାପାଙ୍କୁ ସେ ଭଲକରି ଦେବେ-ଭାଇନାକୁ ଜଲଦି ଆଣି ଦେବେ—

( ବିଚିତ୍ରବୀର୍ଯ୍ୟ ଓ ଶିବାଙ୍ଗଦର ପ୍ରସ୍ଥାନ )

ସତ୍ୟ—ହେ ବିପଦଭଞ୍ଜନ ନାରାୟଣ ! ସତେ ସତେ କଣ ଏପରି ଦିନ ହେବ ? ନା ଯାଏ ଚାଲି ମୁହିଁ—
ଆଉ ନ ରହିବି
ପାପ ଦେହେ ପାପ ଆତ୍ମା ଘେନି !
ନିଜ ନିଜ କର୍ମଫଳ ଭୁଞ୍ଜିବେ ସନ୍ତାନେ—

( ଚୁଲିଆର ପ୍ରବେଶ )

ଚୁଲିଆ—ରାଣୀମା ! ରାଣୀମା ! ସର୍ବନାଶ ! ସର୍ବନାଶ !

ସତ୍ୟ—କଣ ? କଣ, ଚୁଲି ?

ଚୁଲି—ରାଜା ନଈର ବାହାରକୁ ଯାଇଥିଲେ—ହଠାତ୍ ଫେରି ଆସି ପାଗଳପରି ଏଣୁ ତେଣୁ ବକୁଛନ୍ତି, ଆଉ କ୍ଷଣେ କ୍ଷଣେ ମୂର୍ଚ୍ଛା ଯାଉଛନ୍ତି ।

ସତ୍ୟ—ପ୍ରାଣେଶ୍ୱର ! ଜାଣିଲିଣି—
ଆଉ ନାହିଁ କାଳବିଳମ୍ବ ତୁମ୍ଭର ।
ଏହି ଦେଖେଁ ଊର୍ଦ୍ଧ୍ୱେ ନଭେ
ଧୀରେ ଧୀରେ ଜ୍ୟୋତିର୍ମୟ ରଥ,
ଘେନି ଯିବ ବୋଲି ଚିର ଶାନ୍ତିନିକେତନେ ।
ମୁହିଁ ଯିବି କାହିଁ ?
ମୋର ସ୍ଥାନ, ଦେଖ ଅନ୍ଧକାର ଗୁହେ—
ଜ୍ୱଳେ ଲେଲିହାନ-ଅଗ୍ନିକୁଣ୍ଡ କିବା !
ଖେଦ ନାହିଁ କିନ୍ତୁ; ପ୍ରଭୋ !
କ୍ଲେଶ ମୋର ସେଥିଲାଗି,
ସ୍ୱର୍ଗସୁଖ ବରଂ ଲଭିବି ସେ ସ୍ଥାନେ,
ଶୁଣିବି ଯେବେ ପାପକର୍ଣ୍ଣେ ମୋର
କ୍ଷମାବାଣୀ ଶ୍ରୀମୁଖେଁ ତୁମ୍ଭର !
କର ମୋତେ କ୍ଷମା, ପ୍ରଭୋ ! ମାଗୁଛି କାତରେ !
ଯାଏଁ ମରି ନିଏଁ ଶେଷ ଭିକ୍ଷା ଧରି !

( ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

( ଶାନ୍ତନୁ ଶାୟିତ ଓ ବହୁସଂଖ୍ୟକ ବୈଦ୍ୟ ଭବନରେ ଦଣ୍ଡାୟମାନ )

ଶାନ୍ତନୁ—ମନ୍ତ୍ରି, କାହିଁ ପାଇବି ଆଉ ପୁତ୍ରକୁ ମୋର ! ଦେଖୁ ନାହଁ, ମୋ ହାତରେ କିପରି ରକ୍ତସ୍ରୋତ ବହି ଯାଉଛି—ମୁଁ ନିଜେ ଖଡ୍ଗରେ ଖଣ୍ଡ ଖଣ୍ଡ କରି କାଟି ଦେଇଛି—ସେହି ରାକ୍ଷସୀ ତାହାକୁ ଗୋଗ୍ରାସେ ଗୋଗ୍ରାସେ ଖାଇ ଦେଉଛି—ଆଉ କାହିଁ ପାଇବି ପୁତ୍ରକୁ ମୋର—ମନ୍ତ୍ରି ! ଦେଖ, ଦେଖ, କିଏ ଆସୁଛି ସେହି, ସେହି-ରାକ୍ଷସୀ-ମୋତେ ଧର, ଧର—

( ମୂର୍ଚ୍ଛାଯିବା )

ସମସ୍ତେ—ମହାରାଜ ! ମହାରାଜ !

( ସତ୍ୟବତୀର ପ୍ରବେଶ )

ସତ୍ୟ—ପ୍ରଭୋ ! ପ୍ରଭୋ !

କହନ୍ତୁ ହେ ଥରେ-କ୍ଷମିବେ କି ଦାସୀକୁ ତୁମ୍ଭର ?
ଏଁ—ଏଁ—ମିନତି ଶୁଣିବା ଆଗରୁ ଚାଲିଗଲେ,
ନାଥ—ଆଚ୍ଛା ଯାନ୍ତୁ ପ୍ରାଣେଶ୍ୱର ! ପରଲୋକରେ
ପୁଣି ଦର୍ଶନ ହେବ ତେତେବେଳେ କ୍ଷମା-
ପ୍ରାର୍ଥନାରେ ସ୍ୱର୍ଗ ମର୍ତ୍ତ୍ୟ ରସାତଳ ପ୍ରତିଧ୍ୱନିତ
କରି ଦେବି । (ବିଷପାନୋଦ୍ୟତା)

ସମସ୍ତେ—ରାଣୀ ମା ! ରାଣୀ ମା !

ସତ୍ୟ—ସାବଧାନ ! ( ପୁନର୍ବାର ବିଷପାନୋଦ୍ୟତା ହେବା କାଳେ ଦେବବ୍ରତର ପ୍ରବେଶ )

ଦେବ—ମା, ମା, ଏକଣ ? ଏକଣ ?

( ବିଷ ପାତ୍ର ଛଡ଼ାଇ ନେବା )

ସତ୍ୟ—କିଏ ? ଦେବବ୍ରତ !

ସତ୍ୟ, ସତ୍ୟ, ଆସିଛୁକି ଫେରି ?
ନା, ସ୍ୱପନ ଦେଖୁଅଛି ମୁହିଁ ?

ଦେବ—ମା ! ମା !

ସତ୍ୟ, ସତ୍ୟ ପୁତ୍ର ତୋର ଆସିଅଛି ଫେରି,
ଏକା ନୁହେଁ ପୁଣି-ଯେଣି ଜ୍ୟେଷ୍ଠ ଭ୍ରାତେ ସଙ୍ଗେ—
କ୍ଷମ ଅପରାଧ ଶିଶୁର, ମା !

ସତ୍ୟ—ପ୍ରଭୋ ! ପ୍ରଭୋ !

ଦେଖ ଚାହିଁ ସ୍ନେହମୟ ପୁତ୍ରେ ଥରେ !

( ଶାନ୍ତନୁଙ୍କ ଚରଣ ଧାରଣ କରିବା )

ଦେବ—ପିତଃ ! ପିତଃ !

ଏକି ଦଶା ଦେଖେ ତବ ?
(ବିହ୍ୱଳ ଚିତ୍ତରେ ପିତୃଶଯ୍ୟାରେ ମୁଖାବୃତ କରିବା)

( ବ୍ୟାସଦେବଙ୍କର ପ୍ରବେଶ )

ବ୍ୟାସ—ଶାନ୍ତି ! ଶାନ୍ତି ! ଶାନ୍ତି !

( ସତ୍ୟବତୀ ଚରଣ ଛାଡ଼ିଦେଇ ବିସ୍ମୟ ଦୃଷ୍ଟିରେ ଚାହିଁବା )

ମାଗୋ !
ବନ୍ଦେ ନତ ଶିରେ ଦୀନ ଦ୍ୱୈପାୟନ
ପାଦପଦ୍ମ ତବ ଆଜି ବହୁଦିନ ଅନ୍ତେ

(ଚରଣ ବନ୍ଦନା କରିବା)

ସତ୍ୟ—( ସ୍ୱଗତ ) ଓଃ ହୋଃ କି ସ୍ମୃତି ଜାଗଇ ମନେ
ପୁଣି !

( ବିସ୍ମିତ ଭାବର ଅଭିନୟ କରିବା )

ବ୍ୟାସ—ମା ଗୋ !

ଭୁଲିଅଛୁ ମନୋଜ୍ଞ କି ତବ—
ପୋଷିଅଛ ଏତେଦିନ ନିଜ ଦୋଷେ ଯାହା;
ଆଜି ଆସିଅଛି ପୁତ୍ର ତେଣୁ,
ଆଶୀର୍ବାଦେ ତୋର, କରିବାକୁ ଦୂର ସର୍ବ ।

( ଦେବବ୍ରତ ଆଡ଼େ ଚାହିଁ)

ଦେବବ୍ରତ ! ଭାଇ ମୋର !
ଜ୍ଞାନୀ ହୋଇ ଏତେ, ଅଜ୍ଞାନୀ ହେଉଛୁ ତୁହି !

ଦେବ—ଭାଇ, ଭାଇ,

କାହିଁ ଫେରାଇ ଆଣିଲ ମୋତେ,
( ପିତାଙ୍କ ଆଡ଼କୁ ଦେଖାଇ ) ଦେଖାଇବ ବୋଲି
ଏହି ଅନ୍ତିମ ଅବସ୍ଥା !

ସତ୍ୟ—ପୁତ୍ର ! ପୁତ୍ର ! କିସ କହୁଅଛୁ ତୁହି ?

ପ୍ରଭୋ ! ପ୍ରଭୋ ! ( ପତନୋନ୍ମୁଖ )

ବ୍ୟାସ—ଦେବବ୍ରତ ! ହୁଅରେ ସ୍ଥିର—

ଦେଖୁନାହୁଁ—
ମା ଯେ ହେଉଛନ୍ତି କାତର ଅତ୍ୟନ୍ତ !
ପିତଃ ! ଆସିଅଛି ପ୍ରାଣପୁତ୍ର ତବ—
ଦେଖ ବାରେ ଚକ୍ଷୁ ମେଲି—
ଘେନ ମୋର ପ୍ରଣାମ ଚରଣେ !

ଦେବ—ପିତଃ ! ପିତଃ !

ବଡ଼କଷ୍ଟ ଦେଇଅଛି ପୁତ୍ର !
କରିବକି କ୍ଷମା ତବ ଅଜ୍ଞାନ ସନ୍ତାନେ ?—

ସତ୍ୟ—ପ୍ରଭୋ !

ଘେନନ୍ତୁ ହେ ପୁତ୍ରେ କୋଡ଼େ !
କରନ୍ତୁ ହେ ମାର୍ଜନା ଦାସୀକୁ ତୁମ୍ଭର—
ନିଜ ଗୁଣେ ଥରେ !

( ଶାନ୍ତନୁ ଭ୍ରୂକୁଞ୍ଚିତ କରିବା )

ବ୍ୟାସ—ପିତଃ !

ମାତୃବାକ୍ୟ କାହିଁ କର ଭ୍ରୂକୁଞ୍ଚିତ ଏହି ?
ଶୁଣ ପିତଃ !

ମାତା ମୋର ନୁହନ୍ତି ସାମାନ୍ୟା ନାରୀ—
ଯଥା ଭାବୁଛନ୍ତି ଜନେ ।
ମାତା ମୋହର ସାକ୍ଷାତ୍ ଦେବୀ ଜାହ୍ନବୀ ।
ଜନ୍ମ ମୋର ଗର୍ଭେ ତାଙ୍କ ପୁଣ୍ୟ ତେଜ ସ୍ପର୍ଶେ,
କୁମାରୀ କାଳରେ, ଅଲୌକିକ ଭାବେ—
ଅଗମ୍ୟ, ଅବୋଧ ମୁନୀଙ୍କନେ—
କି ବୁଝିବେ ଅନ୍ୟେ !
ବୁଝ ମାତୃଶକ୍ତି ଖାଲି,
ଦେଖି ପୁତ୍ର ଶକ୍ତି ତାଙ୍କ ;
କାହା ଯୋଗେ ଆଜ
ପରାଜୟି ନର ଦସ୍ୟୁଗଣେ,
ଉଡ଼ାଇଛ ଜୟ ଧ୍ୱଜା ପୁତ୍ର,
ସଂଯମ ରାଜ୍ୟରେ ?
କାହା ଯୋଗେ ଆଜ ଜ୍ଞାନ, ଧର୍ମ, କର୍ମ,
ଲୋଟୁଛନ୍ତି ନତଶିରେ ପଦପ୍ରାନ୍ତେ ତା'ର ?
କହ ପିତଃ !
ସେ ଯେ କି ଜନନୀ କେବେ ହୋଇପାରେ ମୋର ?

ଦେବ—ଭାଇ ! ଭାଇ !
କିସ ହେଲା ! କିସ ହେଲା !
ପିତା ନୟନ ମୁଦ୍ରିତ କଲେ କିପାଁ ?

ଧର୍ମ—ପ୍ରିୟେ ! ପ୍ରିୟେ ! (ଉଭୟେ ମୂର୍ଚ୍ଛାଯିବା)

( ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦର ପ୍ରବେଶ )

ଚିତ୍ର ଓ ବିଚିତ୍ର—ମା, ମା
( ସତ୍ୟବତୀଙ୍କୁ ଆଲିଙ୍ଗନ କରିବା )

( ଜାହ୍ନବୀର ପ୍ରବେଶ )

ଜାହ୍ନବୀ—ଶାନ୍ତ ହୁଅ ସର୍ବେ,
ବଡ଼ ଆନନ୍ଦର ଦିନ ଆଜ,
ଲଭିଛନ୍ତି ଶାନ୍ତି ସର୍ବେ ବହୁଦିନ ଅନ୍ତେ—
ବହୁକଷ୍ଟେ !

ବ୍ୟାସଦେବ—ମା, ମା, ଶାନ୍ତିଦାୟିନୀ ମା !
ଦିଅ ଶାନ୍ତି ଆଜ ଅଧମ ସନ୍ତାନଗଣେ—
( ଅବନତ ହେବା )

ଜାହ୍ନବୀ—ଉଠ, ଉଠ ଭଗ୍ନୀ ମୋର, ଉଠ ପୁତ୍ରଗଣ,
ଛିଡ଼ା ହୁଅ ବାରେ ଦେଖେଁ ମାତା ପୁତ୍ରେ ମିଳି—
( ଏକତ୍ରରେ ଛିଡ଼ା କରି ଦେବା )
ଭୁଞ୍ଜ ଶାନ୍ତି ସର୍ବେ ଏବେ କରେଁ ଆଶୀର୍ବାଦ !
ଦେବବ୍ରତ ! ପୁତ୍ର ମୋର
ବଡ଼ ଆନନ୍ଦିତା ମୁହିଁ—
କ୍ରିୟା ତୋର କାର୍ଯ୍ୟେ ଆଜ ଦେଖି ପରିତୃପ୍ତ ।
ତୋହରି ବଳେ ସତ୍ୟବତୀ ପାଇଅଛି ରକ୍ଷା ;
ତୋହରି ବଳେ ପିତା ତୋର ପାଇଅଛି ଶାନ୍ତି ।
ଦେଖ ତୁହି ପିତା ତୋର ଦିବ୍ୟ ରଥେ କିବା !
କରନ୍ତି ଅପେକ୍ଷା ଏବେ ମୋର ସାଙ୍ଗ-ଆଶେ
ବିଦାୟ ସମ୍ପ୍ରତି ସର୍ବେ, ଥାଅ ଚିର ସୁଖେ !
( ଜାହ୍ନବୀଙ୍କ ପ୍ରସ୍ଥାନ )

ସର୍ବେ—ଓଁ ଶାନ୍ତି—ଶାନ୍ତି—ଶାନ୍ତି—

( ଯବନିକାପତନ )

---

# ଭୂମିକା

୧୯୧୭ ମସିହାରେ ବିଶ୍ୱବ୍ୟାପି ଯୁଦ୍ଧଜୟର ଉତ୍ସବ ପାଳିତ ହୁଏ "ଅଓ୍ୱାରଡ଼େ" (Our Day) ନାମରେ । ତଦୁପଲକ୍ଷେ ଆନନ୍ଦଉତ୍ସବ ପାଇଁ ଏକ ନାଟକ ଅଭିନୀତ ହେବାର ବ୍ୟବସ୍ଥା ହେବାରୁ ମୋତେ ଗୋଟିଏ ନୂଆ ପୌରାଣିକ ନାଟକ ଲେଖି ଦେବାକୁ ପଡ଼ିଲା । କ'ଣ ଲେଖିବି ?—ନିଷ୍ଠା ଓ ଏକାଗ୍ରତା କିପରି ବିଜୟଶ୍ରୀ ମଣ୍ଡିତ କରାଏ ତାହାହିଁ 'ସାବିତ୍ରୀ' ନାଟକରେ ଫୁଟାଇବାକୁ ଚେଷ୍ଟା କରିଛି । ବିଜ୍ଞାନ ଆଗେଇ ଚାଲିଥିବାବେଳେ ଆମର ସଂସ୍କାର ( ଧର୍ମନୀତି ) ପ୍ରକୃତରେ ପଛେଇ ଯାଉଛି କି ନା ପ୍ରମାଣିତ କରିବାର ଚେଷ୍ଟା କରିଛି ଏହି ନାଟକ ମାଧ୍ୟମରେ । ଧର୍ମକୁ ଏଡ଼ି ହୁଏନା ଅଥଚ ବିଜ୍ଞାନକୁ ଅସ୍ୱୀକାର କରିବାର ଉପାୟ ନାହିଁ, ତେଣୁ ଉଭୟଙ୍କୁ ମାନି ଚାଲିବା ଛଡ଼ା ଉପାୟ କ'ଣ ? ଦୁଇଟିରହିଁ ପ୍ରୟୋଜନ, କେବଳ ଗୋଟିକରେ ସିଦ୍ଧି ମିଳେନା ।

'ସାବିତ୍ରୀ' ନାଟକ ପାଠକ ଦର୍ଶକଙ୍କୁ ଆନନ୍ଦ ଦେଲେ ମୁଁ ସୁଖି ହେବି ।

କଟକ
୧୯୧୭ }

ବିନୀତ
**ଲେଖକ**

ଏହି

**ନାଟକ ଖଣ୍ଡି**

ମୋର ପରମାରାଧ୍ୟ ମାତାମହ

ଉତ୍କଳର କୃତୀସନ୍ତାନ ଓ ଧର୍ମବୀର

**୬ ଗୌରୀଶଙ୍କର ରାୟଙ୍କ**

ଶ୍ରୀଚରଣକମଳୋଦ୍ଦେଶ୍ୟରେ

ସମର୍ପିତ

ହେଲା ।

ଅଶ୍ୱିନୀ

# ଚରିତ୍ର ଲିପି

## —ପୁରୁଷ—

| | |
|---|---|
| ଅଶ୍ୱପତି— | ମଦ୍ରାଧିପତି |
| ଗଜପତି— | ଏକ୍ସ କନିଷ୍ଠଭ୍ରାତା |
| ଦ୍ୟୁମତ୍ସେନ— | ମାଲବାଧିପତି |
| ସତ୍ୟବାନ— | ଏକ୍ସ ପୁତ୍ର |
| ଦୁର୍ଦ୍ଦାନ୍ତସିଂହ— | ଏକ୍ସ ସେନାପତି |
| ସୁଦାମ— | ଏକ୍ସ ସଭାସଦ |
| ଶଙ୍କର— | ଜନୈକ ପ୍ରଜା |

ନାରଦ, ଯମ, ସେନାପତି, ପ୍ରଜାଗଣ, ସୈନିକଗଣ, ଋଷି, ଋଷି ବାଳକଗଣ, ପୁରୋହିତ, ବ୍ୟାଧ ଇତ୍ୟାଦି ।

## —ସ୍ତ୍ରୀ—

| | |
|---|---|
| କୌଶଲ୍ୟା— | ଅଶ୍ୱପତିଙ୍କ ରାଣୀ |
| ମାଳବିକା— | ଦ୍ୟୁମତ୍ସେନଙ୍କ ରାଣୀ |
| ଲୀଳା— | ଗଜପତିଙ୍କ ସ୍ତ୍ରୀ |
| ସାବିତ୍ରୀ— | ଅଶ୍ୱପତିଙ୍କ କନ୍ୟା |

ସଖୀଗଣ, ତପସ୍ୱିନୀଗଣ, ସାବିତ୍ରୀ ଦେବୀ, ବ୍ୟାଧପତ୍ନୀ ଇତ୍ୟାଦି ।

---

# ସାବିତ୍ରୀ

---

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ଅନ୍ତଃପୁର—

( ଅଶ୍ୱପତିଙ୍କ ଯାଜ୍ଞିକବେଶରେ ପ୍ରବେଶ )

ଅଶ୍ୱପତି—ଆଜି ଅଷ୍ଟାଦଶ ବର୍ଷର ଶେଷ ଦିନ—ଆଜି ଯଜ୍ଞାହୁତିର ଶେଷଦିନ—ଆଜି ଭାଗ୍ୟ ପରୀକ୍ଷାର ମଧ୍ୟ ଶେଷଦିନ—ଏ କଣ ହେଲା ? ହଠାତ୍ ମନଟା କାହିଁକି ପଦ୍ମପତ୍ରସ୍ଥିତ ବାରିବିନ୍ଦୁ ପରି ଚଞ୍ଚଳ ହୋଇ ଉଠିଲା ? ଦିକ୍ ବିଦିକ୍ ଯେ ଅନ୍ଧକାରମୟ ଦିଶୁଛି, ଶକ୍ତି ଯେପରି ହ୍ରାସ ପ୍ରାପ୍ତ ହେଉଛି, କଣ କରିବି ? କେଉଁଠାରେ ଆଶ୍ରୟ ନେବି ? ହେ ମା ଧର୍ମ ରକ୍ଷିଣି ! ଏହାକି ମନେ ଥିଲା ତୋର ? ଏତେ ଶ୍ରମ, ଏତେ ଧୈର୍ଯ୍ୟ, ଏତେ ସଂଯମ—ସମସ୍ତ ଆଜି ବିଫଳ ହେବ ?

( କୌଶଲ୍ୟାଙ୍କର ପ୍ରବେଶ )

କୌଶଲ୍ୟା—ସଫଳ ହେବ, ପ୍ରାଣେଶ୍ୱର ! ଆଜି ଆମ୍ଭମାନଙ୍କର ଦୁଃଖର ଅବସାନ ଦିନ—ସୁଖର ଆରମ୍ଭ ଦିନ—

ଅଶ୍ୱପତି—( ଫେରି ଚାହିଁ ) ସତ୍ୟ, ସତ୍ୟ କି ଏହା ପ୍ରାଣେଶ୍ୱରି ?

କୌଶଲ୍ୟା—ସନ୍ଦେହ ଏଥିରେ ପ୍ରାଣବଲ୍ଲଭ ? ଏହି ଦେଖନ୍ତୁ ପୂର୍ବାକାଶକୁ ଚାହିଁ—ପ୍ରଭାତୀ ତାରା କିପରି ସ୍ମିତମୁଖରେ ଶୁଭବାର୍ତ୍ତା ଦେଇ ପ୍ରବେଶ କଲାଣି, ମ୍ରିୟମାଣା ପ୍ରକୃତିସୁନ୍ଦରୀ କିପରି ନବୋଲ୍ଲାସରେ ମାତି ଉଠିଲେଣି, ପାପିନୀ ନିଶା କାଳଙ୍କ ଭୟରେ ପଶ୍ଚିମ ପଥ ଦେଇ କିପରି ପଳାଇବାକୁ ବସିଲାଣି, ଆସ ପ୍ରିୟତମ ! ଆଜି ନିର୍ମଳ ମନରେ ଶେଷ ଆହୁତି ପ୍ରଦାନକରି ମନସ୍କାମନା ସିଦ୍ଧ କରିବା ।

ଅଶ୍ୱପତି—( ଅର୍ଦ୍ଧସ୍ୱଗତ ) ସତ୍ୟ, ସତ୍ୟ କି ମନସ୍କାମନା ସିଦ୍ଧ ହେବ ?
( ପ୍ରକାଶ୍ୟେ ) ଆସ, ଆସ ଗୋ ଶକ୍ତିଦାୟିନୀ,
ଶକ୍ତି ସ୍ୱରୂପିଣୀ ପ୍ରାଣପ୍ରିୟତମେ ମୋର !
ଆସ ଆଜି ପୂର୍ଣ୍ଣଭାବେ ତବ
ଏ' ହୃଦୟ ଦରିଦ୍ର କୁଟିରେ,
ଯାଉ ଚାଲି ଦୂରେ ଯେତେ
ଭୟ, ବିଭୀଷିକା, ମୋହ, ଭ୍ରାନ୍ତି ଆଦି ;
ଫୁଟି ଉଠୁ ନବନଳିନୀ ସମାନ,
ଅଦମ୍ୟ ସାହସ, ଉତ୍ସାହ, ଦୃଢ଼ତା ମନେ—

କୌଶଲ୍ୟା—( ଜାନୁପାତ ପୂର୍ବକ ) ଏହି ଅଭାଗୀକୁ ଏତେ ଉଦାସୀନ ପ୍ରାଣନାଥ ! କ୍ଷମା କରନ୍ତୁ ପଦଦାସୀକୁ ତୁମ୍ଭର—(ଉଠି) ହାୟ ! କି ଗ୍ରହଦୋଷରୁ ଏହି ପାପିନୀର ହସ୍ତଧାରଣ କରିଥିଲେ ଯେ ତାହା ଲାଗି ଆଜି ଏତେ ଦେହ-ତାପ ଓ ମନସ୍ତାପ ଭୋଗ କରୁଅଛନ୍ତି ; ଆଉ ଅଚିରେ କୁଳନାଶ ଓ ଧର୍ମନାଶର ସମ୍ଭାବନା !

ଅଶ୍ୱପତି—ପ୍ରାଣେଶ୍ୱରି ! ତୁମ୍ଭରି ଲାଗି କାଲୁ ଆଜି ମୋ'ର କୁଳରକ୍ଷା ଆଉ ଧର୍ମରକ୍ଷାର ସମ୍ଭାବନା ! ତୁମ୍ଭର ପ୍ରଭାବରୁ ପିନା ମୁଁ ପୁନର୍ଶକ୍ତି ଆଉ ପୁନର୍ଜ୍ଜୀବନ ଲାଭ କଲି ।

କୌଶଲ୍ୟା—ଲଜ୍ଜା ଦିଅନା ଏ଼ ଦାସୀକୁ ପ୍ରଭୋ ! ଏହି ପାପିନୀର ପାପ ଯୋଗୁଁ ସନ୍ତାନସୁଖରୁ ବଞ୍ଚିତ ହେବାରୁ ସିନା ଏତେ କଠୋର—

ଅଶ୍ୱପତି—ପୁଣି ସେହି ଅକାରଣ ଧିକ୍‌କାର ନିଜପ୍ରତି ପ୍ରିୟତମେ ! ଭୁଲ୍ କି ଗଲ ତେବେ ଉଦ୍ଦେଶ୍ୟ ମୋହର ? ଇଚ୍ଛେ କି ମୁହିଁ ଯେ ସେ ସନ୍ତାନ ? —ଇଚ୍ଛେ କି ମୁହିଁ ସନ୍ତାନ ମାତ୍ର ପିତୃନାମ ଲୋପପାରେ ? ଇଚ୍ଛେ ମୁହିଁ ସନ୍ତାନ, ହେବ ଜ୍ଞାନଜୟୀ, ଧର୍ମଜୟୀ—ରଖିବ ପିତୃ ପିତାମହଙ୍କ ନାମ—ଅକ୍ଷୟ, ଅମର—ଇହଲୋକେ, ପର-ଲୋକେ ଯେତେହେଁ । କିନ୍ତୁ ରାଣି, ଏପରି ସନ୍ତାନ କି ଯେ ସେ ପିତୃମାତୃଠାରେ ସମ୍ଭବେ ?—ସମ୍ଭବ ହେବାକୁ ହେଲେ ପିତାମାତାଙ୍କୁ ସେହିପରି ଶକ୍ତିଶାଳୀ ହେବା ଉଚିତ—ସେହିପରି ଧର୍ମଶୀଳ ହେବା ଉଚିତ । ସେହି ସକାଶେ ଆଜି ଆମ୍ଭମାନଙ୍କର ଏତେ ସଂଯମ, ଆଉ ଏତେ ଯାଗ ଯଜ୍ଞ ।

କୌଶଲ୍ୟା—ପ୍ରାଣବଲ୍ଲଭ ! ଶୁଣିଛି, ବ୍ରତାଦିଦ୍ୱାରା ଆଧ୍ୟାତ୍ମିକ ଶକ୍ତି ବୃଦ୍ଧି ପାଏ—ସୁତରାଂ ଆମ୍ଭମାନଙ୍କର ମନସ୍କାମନା ସିଦ୍ଧ ହେବ କିପରି ?

ଅଶ୍ୱପତି—ରାଣି ! ସେହି ଶକ୍ତି ତ ମହାଶକ୍ତି—ଅନ୍ୟାନ୍ୟ ଶକ୍ତି ତାହାରି ଅନ୍ତର୍ଭୁକ୍ତ ନୁହେଁ—ସେହି ଶକ୍ତିଦ୍ୱାରା ଦେଖ, ରାଜା ଦଶରଥ ସ୍ୱୟଂ ବିଷ୍ଣୁଙ୍କୁ ପୁତ୍ରରୂପରେ ଲାଭ କରିଥିଲେ—ଋଷିଶ୍ରେଷ୍ଠ ବିଶ୍ୱାମିତ୍ର କ୍ଷତ୍ରିୟ ହୋଇ ସୁଦ୍ଧା ବ୍ରାହ୍ମଣତ୍ୱ ଲାଭ କରିଥିଲେ—ଆଉ ଦସ୍ୟୁପ୍ରବର ରତ୍ନାକର ଯୋଗୀନ୍ଦ୍ର ବାଲ୍ମୀକି ନାମରେ ପରିଚିତ ହୋଇଥିଲେ । କେଉଁ ବାସନା ତେବେ ସେହି ଶକ୍ତିର ସାଧ୍ୟାତୀତ ?

କୌଶଲ୍ୟା—ପ୍ରାଣେଶ୍ୱର ! ଏହି ଜ୍ଞାନହୀନା ଦାସୀ ସେ ସବୁ ତତ୍ତ୍ୱଜ୍ଞାନର ବିଷୟ କଣ ବୁଝିବ—ଏ଼ ଦାସୀ ଜାଣେ କେବଳ, ପତି ଧ୍ୟାନ, ପତି ଜ୍ଞାନ, ପତି ଧର୍ମ, ପତି ସ୍ୱର୍ଗ !

( ପୁରୋହିତଙ୍କର ପ୍ରବେଶ )

ପୁରୋହିତ—ମହାରାଜ ! ଯଜ୍ଞ ସମୟ ଉପସ୍ଥିତ ହେଲାଣି

ଅଶ୍ୱପତି—ଚାଲନ୍ତୁ, ଗୁରୁଦେବ !

( ସମସ୍ତଙ୍କର ପ୍ରସ୍ଥାନ )

( ଗଜପତିଙ୍କର ପ୍ରବେଶ )

ଗଜପତି—ଆଜି ପରୀକ୍ଷା—ଦେଖିବି, ଅନ୍ଧ ବିଶ୍ୱାସୀର ଜୟ, କି ତର୍କବାଦୀର ଜୟ ! ହାୟ ! କି ମୋହାନ୍ଧ ଏହି ଶାସ୍ତ୍ରବାଦୀ—ଅତି ଅସଲଗ୍ନ, ଅର୍ଥହୀନ କଥା ଯାହା ଗୋଟିଏ ଅଷ୍ଟମ ବର୍ଷୀୟ ଶିଶୁ ଶୁଣି ହସି ଉଡାଇ ଦେବ, ତହିଁରେ ପୂର୍ଣ୍ଣ ବିଶ୍ୱାସସ୍ଥାପନ କରନ୍ତି—ଅଗ୍ନିରେ ହସ୍ତ ପ୍ରଦାନ କର ହସ୍ତ ଦଗ୍ଧ ହେବ, ନଚେତ୍ ନୁହେଁ—ପଙ୍କରେ ପାଦ ନିମଗ୍ନ କର ପାଦ କର୍ଦ୍ଦମମୟ ହେବ, ଅନ୍ୟଥା ନୁହେଁ ! କାରଣାନୁଯାୟୀ କାର୍ଯ୍ୟ—କାର୍ଯ୍ୟାନୁଯାୟୀ ଫଳ—ଏହାର ପ୍ରମାଣ ମଧ୍ୟ ସମସ୍ତରେ କରିଣଅ—ଅନ୍ୟରୂପ କହିବାକୁ ପଥ ନ ଥିବ !—କିନ୍ତୁ କାହିଁ, ସୁସ୍ପଷ୍ଟ ପ୍ରମାଣ ତାର ? ଶାସ୍ତ୍ରବାଦୀ କହେ ଯେବେ ରୋଗ ହୋଇଛି—ଈଶ୍ୱରଙ୍କର ଆରାଧନା କର—ମୁକ୍ତହେବ; ପୁତ୍ରସନ୍ତାନାଦି ହେଉନାହିଁ—ଯାଗଯଜ୍ଞ କର, ଲାଭହେବ—ଏହା କି ପାଗଳର ପ୍ରଳାପ ନୁହେଁ ? କ୍ଷୁଧା ହେଲେ, କେହି କି ଅନଶନଦ୍ୱାରା ତାହା ନିବାରଣ କରିପାରେ ? ଅସମ୍ଭବ ! ଅସମ୍ଭବ ! ଯାଏଁ, ଦେଖେଁ, ଯଜ୍ଞ-ସ୍ଥଳରେ କିପରି ପ୍ରହସନାଭିନୟଟା ହେଉଛି ।

( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଯଜ୍ଞଭୂମି—

( ପ୍ରଜ୍ୱଳିତ ଯଜ୍ଞକୁଣ୍ଡ ସ୍ଥାପିତ । ଅଶ୍ୱପତି
ଓ ରାଣୀ ପୁରୋହିତଙ୍କ ସହିତ ଯଜ୍ଞକାର୍ଯ୍ୟରେ
ବିଧିପୂର୍ବକ ପ୍ରବୃତ୍ତ )

ପୁରୋହିତ—ମହାରାଜ ! ଏହିବାର ଶେଷ ଆହୁତି ପ୍ରଦାନ କରନ୍ତୁ ।

ଅଶ୍ୱପତି—ମା, ମା, ଦେବୀଙ୍କର ଶେଷ ଆହୁତି ମୋହର ଶେଷ ନିବେଦନ ସଙ୍ଗେ;

କର ଗୋ ବାଣି ଦୀନ ଶିଶୁକୁ ତୁମ୍ଭର—
ଅଧର୍ମ ଗ୍ରାସରୁ ଏହି—
( ଅଞ୍ଜଳି ପ୍ରଦାନ ଓ ସାବିତ୍ରୀ ଦେବୀଙ୍କର ଆବିର୍ଭାବ )

ପୁରୋହିତ—ଜୟ ମା ସାବିତ୍ରୀଦେବୀଙ୍କର ଜୟ ! ଜୟ ରାଜା ଅଶ୍ୱପତିଙ୍କର ଜୟ !

ଅଶ୍ୱପତି—ଏ କି ଦିବ୍ୟ ଲାବଣ୍ୟମୂରତି,
ହେରିଲି ମୁଁ ନେତ୍ରପଥେ ଆଜି !—
ହେଲା ମୋର ସାର୍ଥକ ଜୀବନ,
ସାର୍ଥକ ଜନମ ଧରାଧାମେ ଏହି !
ଅହା ! କି ସେ ପୂତଭାବପୂର୍ଣ୍ଣ କାନ୍ତି ଧାରା,
ବୋହିଯାଏ ମନ୍ଦାକିନୀ ଯଥା,
ହିମ—ଶୁଭ୍ର—ଗାତ୍ର ଦେଇ
ଗଙ୍ଗାଧର ଶିରୁଁ !—
ଭାସିଯାଏ ପ୍ରକୃତି ନିଚୟ
ଯେତେବେ ଆନନ୍ଦ ହିଲ୍ଲୋଳେ—
ଧାଏଁ ମନ ଚୁମ୍ବିବ ସେ ଚରଣ-ପିୟୂଷ !
( ଅବନତ ମସ୍ତକ ହେବା )

କୌଶଲ୍ୟା—ମା, ମା, ଏହି ଦୀନା ଦାସୀର ଆଜି କି ଭାଗ୍ୟ ! କେଉଁ ପୁଣ୍ୟବଳରେ ସେ ଆଜି ଏହି ଦେବଦୁର୍ଲ୍ଲଭ ଦର୍ଶନ ଲାଭ କରି ପାରିଛି ! ଯାହାଙ୍କ ବଳରେ ସେ ଆଜି ଏହି ମହିମାମୟ ଧ୍ୱଣୀର ଅଧିକାରିଣୀ, ତାହାଙ୍କର ହିତ କାମନା କରି ସେ ଚରଣ ବନ୍ଦନା କରୁଛି ।
( ପ୍ରଣାମ କରିବା )

ସାବିତ୍ରୀଦେବୀ—ଉଠ ପତିପ୍ରାଣେ ! ଉଠ ଧର୍ମବୀର ! ଆଉ ଭୟ ନାହିଁ, ତୁମ୍ଭମାନଙ୍କର ମନସ୍କାମନା ଅଚିରେ ପୂର୍ଣ୍ଣହେବ । ପ୍ରିୟ ସନ୍ତାନଗଣ ତୁମ୍ଭେମାନେ ଅଷ୍ଟାଦଶ ବର୍ଷ ଧରି କଠୋର ସଂଯମ ଓ ବ୍ରତାଦି ପାଳନଦ୍ୱାରା ଦାମ୍ପତ୍ୟଧର୍ମର ଯେଉଁ ଆଦର୍ଶ ଦେଖାଇଲ ତହିଁରେ ଆଜି ତ୍ରିଭୁବନବାସୀ ଚରାଚରଗଣ ମୁଗ୍ଧ ଓ ଚମତ୍କୃତ । ଏହିତ ପ୍ରକୃତ ଦାମ୍ପତ୍ୟପ୍ରଣୟ—ଏହିତ ସୁସନ୍ତାନ ଲାଭ କରିବାର ପ୍ରକୃଷ୍ଟ ଉପାୟ—ହାୟ ! ଲୋକେ ଯେବେ ଅସାର ପାଶବିକ ସୁଖରେ ପ୍ରମତ୍ତ ନ ହୋଇ, ଏହିପରି ସାତ୍ତ୍ୱିକ ଧର୍ମାଚରଣରେ ପ୍ରବୃତ୍ତ ହୁଅନ୍ତେ, ଏ ସଂସାର ତାହାହେଲେ ଦେବତୁଲ୍ୟ ନରନାରୀରେ ପୂର୍ଣ୍ଣ ହୋଇଯାନ୍ତା—କିନ୍ତୁ ଚକ୍ଷୁ ଥାଇ କି ଅନ୍ଧ ମାନବ ! ଜ୍ଞାନ ଥାଇ କି ମୂର୍ଖ ମାନବ ! ପତଙ୍ଗପରି ନିଜପ୍ରାଣ ହରଣକାରୀ କାମାଗ୍ନିର ତୁଚ୍ଛ ଦୀପ୍ତିରେ ଆକୃଷ୍ଟ ହୋଇ, ତହିଁରେ ସାନନ୍ଦେ ଝମ୍ପ ପ୍ରଦାନ କରୁଅଛନ୍ତି । ସନ୍ତାନଗଣ ! ତୁମ୍ଭେମାନେ କଠୋର ସାଧନା ଦ୍ୱାରା ମୋତେ ଆଜି ଯେଉଁ ଆନନ୍ଦ ପ୍ରଦାନ କଲ, ତାହାର ପ୍ରତିଦାନ ସ୍ୱରୂପ ମୁଁ ତୁମ୍ଭମାନଙ୍କୁ ଗୋଟିଏ ସ୍ୱର୍ଗୀୟ ଭାବାପନ୍ନା କନ୍ୟା ପ୍ରଦାନ କରୁଅଛି । (କିଛିକ୍ଷଣ ପରେ) ଏ କଣ ? ମୁଖ ମ୍ଳାନ କରୁଅଛ କାହିଁକି ?

ଅଶ୍ୱପତି—ଦେବି ! କନ୍ୟାଦ୍ୱାରା କି କୁଳୋଦ୍ଧାର ହେବ ?

ସାବିତ୍ରୀଦେବୀ—କାହିଁକି ନ ହେବ, ନୃପେନ୍ଦ୍ର ?

ଅଶ୍ୱପତି—ଶାସ୍ତ୍ରରେ କଥିତଅଛି, କନ୍ୟା ପରକୀୟା, ସୁତରାଂ କନ୍ୟା ଦ୍ୱାରା ଶ୍ୱଶୁରାଳୟର ମଙ୍ଗଳ ସାଧିତ ହୋଇପାରେ—ପିତ୍ରାଳୟର ହେବ କିପରି ?

ସାବିତ୍ରୀଦେବୀ—ସେହି କନ୍ୟା ଯେବେ ଉଭୟପକ୍ଷର ମଙ୍ଗଳବିଧାନରେ ସମର୍ଥା ହୁଏ ?

ଅଶ୍ୱପତି—ମା ! ସନ୍ତାନର ଧୃଷ୍ଟତା ମାର୍ଜନା କରନ୍ତୁ !
( ଅବନତ ମସ୍ତକ ହେବା )

ସାବିତ୍ରୀ—ବତ୍ସ ! ଏହି କନ୍ୟାସନ୍ତାନ ଦ୍ୱାରା ତୁମ୍ଭର ସବିଶେଷ ଶିବ ସାଧିତ ହେବ । ଚିନ୍ତାର କୌଣସି କାରଣ ନାହିଁ—ମନ ପୁଲକିତ କର—ମୁଁ ଆସୁଅଛି । ( ଅନ୍ତର୍ଦ୍ଧାନ )

ସମସ୍ତେ—ଜୟ ମା ସାବିତ୍ରୀଦେବୀଙ୍କର ଜୟ !

ପୁରୋହିତ—ଜୟ ରାଜା ଅଶ୍ୱପତିଙ୍କର ଜୟ !
( ରାଜା ଓ ରାଣୀଙ୍କର ପ୍ରସ୍ଥାନ )
( ପୁରୋହିତଙ୍କ ପ୍ରସ୍ଥାନୋଦ୍ୟୋଗ ସମୟରେ ଗଜପତିଙ୍କର ବିପରୀତଦିଗରୁ ପ୍ରବେଶ )

ଗଜପତି—ହୋଃ ! ହୋଃ ! ହୋଃ ! ଆହେ ନନା ! ଟିକିଏ ରୁହ ହେ, ହାଃ, ହାଃ ହାଃ—ଆମ୍ଭ କଥା ଟିକିଏ ଶୁଣ ହେ—ହାଃ ହାଃ ହାଃ ।

ପୁରୋହିତ—ଯୁବରାଜ !

ଗଜପତି—ବେଶ୍ ବେଶ୍, ନନା—ବଡ଼ ସୁନ୍ଦର ଅଭିନୟଟି ଆଜ ଦେଖାଇଲ !—ହାଃ, ହାଃ ହାଃ—ଦେଖା ନାହିଁ, ଦର୍ଶନ ନାହିଁ, ସାବିତ୍ରୀ ଦେବୀଙ୍କର ଆବିର୍ଭାବ ହେଲା—ଯାଜକ ଯଜମାନମାନେ ସ୍ତୁତି ପାଠରେ ମତ୍ତ ହୋଇଗଲେ—ଯେପରି କି ସତେ ସତେ ସମ୍ମୁଖରେ କାହାର ମୂର୍ତ୍ତି ଦେଖୁଛନ୍ତି—ତା'ପରି ସମସ୍ତେ ନତ ଶିରରେ ରହିଲେ—ଯେପରି ସତେ କି କାହାର ବକ୍ତୃତା ଶୁଣୁଛନ୍ତି—ତା'ପରି, ଭାଇ ଯଜ୍ଞକୁଣ୍ଡ ଆଡ଼କୁ ଅନାଇ କଥାବାର୍ତ୍ତା କରିବାକୁ ଲାଗିଲେ—ଯେପରି କି ସତେ ସତେ କଥାବାର୍ତ୍ତା କରିବାକୁ ସେଠାରେ କେହି ଜଣେ ଅଛି ! ହାଃ, ହାଃ, ହାଃ ! କି ବାତୁଳତା ! ନନା, ଏସବୁ କଣ ?

ପୁରୋହିତ—ଯୁବରାଜ ! ଆପଣ ନାସ୍ତିକ—ଆପଣମାନେ ଯେତେବେଳେ ନିଜର ଅସ୍ତିତ୍ୱକୁ ସୁଦ୍ଧା ସନ୍ଦେହ କରନ୍ତି, ସେତେବେଳେ ତାଙ୍କର ସ୍ୱରୂପ ଦେଖି ପାରିବେ କିପରି ?

ଗଜପତି—ତା'ତ ଦେଖି ପାରିବୁ ନାହିଁ—କାରଣ ଆମ୍ଭମାନଙ୍କର ମସ୍ତିଷ୍କ ଆପଣମାନଙ୍କର ପରି ବିକୃତ ନୁହେଁ । (ଅର୍ଦ୍ଧ ସ୍ୱଗତ) ମୋତେ ବୋଧ ହେଉଛି, ଏହି ଅଗ୍ନିକୁଣ୍ଡ ସମ୍ମୁଖରେ ବସି ବସି ଏମାନଙ୍କର ମସ୍ତିଷ୍କରେ ଏକ ପ୍ରକାର ବିକାର ଜନ୍ମିଛି, ଯଦ୍ଦ୍ୱାରା ସେମାନେ କଳ୍ପିତ ମୂର୍ତ୍ତିଟିକୁ ସ୍ୱଚକ୍ଷୁରେ ଦେଖିଲା ଭଳି ମନେ କରୁଛନ୍ତି !—ଆଉ ଯେ ତା' ସଙ୍ଗେ କଥାବାର୍ତ୍ତା କରୁଛନ୍ତି—ଏହା କେବଳ ଘୂର୍ଣ୍ଣିତ ମସ୍ତିଷ୍କର ପାଗଳ ପ୍ରଳାପ !

ପୁରୋହିତ—ଯୁବରାଜ ! ଫଳ ଦେଖିଲେତ ବିଶ୍ୱାସ କରିବେ ?

ଗଜପତି—ଗଛ ଥିଲେ ତ ଫଳ ଦେଖିବି ?

ପୁରୋହିତ—ତା' ତ ଠିକ୍ କଥା—ଗଛ ନ ଥିଲେ ଫଳ ଦେଖିବେ କିପରି ?

ଗଜପତି—ଯେବେ ଗଛ ନାହିଁ ସେତେବେଳେ ଫଳ ଆସିବ କାହୁଁ ?

ପୁରୋହିତ—ଆପଣ ଜାଣିଲେ କିପରି—ଗଛ ନାହିଁ ବୋଲି ?

ଗଜପତି—କାରଣ ଆଖିରେ ଦେଖୁ ନାହିଁ ?

ପୁରୋହିତ—ତାହା ଯେବେ ଆପଣଙ୍କର ସାମାନ୍ୟ ଚକ୍ଷୁର ଅଗୋଚର ହୁଏ, ସୀମାବଦ୍ଧ ଶକ୍ତିର ବହିର୍ଭୂତ ହୁଏ ?

ଗଜପତି—(ଅର୍ଦ୍ଧ ସ୍ୱଗତ) ଆମ୍ଭମାନଙ୍କର ଶକ୍ତିର ବହିର୍ଭୂତ ! ଯାହା ଆମ୍ଭେମାନେ ଚର୍ମଚକ୍ଷୁ ସ୍ଥୂଳେନ୍ଦ୍ରିୟ ଦ୍ୱାରା ଜାଣିବାକୁ ଅକ୍ଷମ—ତାହା ଆମ୍ଭେମାନେ ଜ୍ଞାନେନ୍ଦ୍ରିୟଦ୍ୱାରା ଜାଣିବାକୁ ସକ୍ଷମ—ଗଛର ଅସ୍ତିତ୍ୱ ଫଳଦ୍ୱାରା ନିର୍ଣ୍ଣୀତ ହୁଏ, କାରଣର ଅସ୍ତିତ୍ୱ କାର୍ଯ୍ୟଦ୍ୱାରା ନିର୍ଣ୍ଣୀତ ହୁଏ । ତେଣୁ ଶାସ୍ତ୍ରପ୍ରତି ବିଶ୍ୱାସ କରିବ, ଯେବେ ଆଜଠାରୁ ଦଶମାସ ଦଶଦିନ ମଧ୍ୟରେ ସନ୍ତାନ ଜାତ ହୁଏ—ସନ୍ତାନ ! ଭାଇଙ୍କର ସନ୍ତାନ ! ମୋର ଯେ ପ୍ରତିଦ୍ୱନ୍ଦୀ ! ଉଚ୍ଚାକାଂକ୍ଷାର ଯେ ପ୍ରତିବନ୍ଧକ ! (ପ୍ରକାଶ୍ୟେ) ଅଚ୍ଛା, କି ସନ୍ତାନ ହେବ ?

ପୁରୋହିତ—କନ୍ୟା ସନ୍ତାନ !

ଗଜପତି—କନ୍ୟା ସନ୍ତାନ ! (ସ୍ୱଗତ) ବେଶ ଉତ୍ତମ ! ହୃଦୟ ! ଧୈର୍ଯ୍ୟ ଧର ! ବିଚଳିତ ହେବାର କୌଣସି କାରଣ ନାହିଁ । (ପ୍ରକାଶ୍ୟେ) ନନା ! ଆପଣମାନଙ୍କର ଶାସ୍ତ୍ରରେ ପରା ଅଛି—ପୁତ୍ର ନ ହେଲେ କୁଳରକ୍ଷା ହୁଏ ନାହିଁ ?

ପୁରୋହିତ—ଦେବୀଙ୍କ ପ୍ରସାଦରୁ ଏହି କନ୍ୟାହିଁ ଆପଣମାନଙ୍କର କୁଳରକ୍ଷା କରିବ ।

ଗଜପତି—(ହସି) ତେବେ ଆପଣମାନଙ୍କର ଶାସ୍ତ୍ରନିୟମର ଏଇଟି କଣ ବିଶେଷତ୍ୱ ?

ପୁରୋହିତ—ବିଶେଷତ୍ୱ ହୋଇ ପାରେ—

ଗଜପତି—(ସ୍ୱଗତ) କିନ୍ତୁ ରାଜନୀତିର ନୁହେଁ ।

ପୁରୋହିତ—ରାଜନ୍ ! ଦେବତାମାନଙ୍କର କେଉଁ କାର୍ଯ୍ୟ ସାଧ୍ୟାତୀତ ? ଇଚ୍ଛାକଲେ, ସେମାନେ

ମୁହୂର୍ତ୍ତିକେ ବିଶ୍ୱ ପ୍ରଳୟ କରିପାରନ୍ତି—ମୁହୂର୍ତ୍ତିକେ ବିଶ୍ୱ ସର୍ଜ୍ଜନ କରି ପାରନ୍ତି—ଏଠାରେ ଏପରି ମଧ୍ୟ ହୋଇ ପାରେ—ଏହି କନ୍ୟାହିଁ ପୁତ୍ରର ସମସ୍ତ ଶକ୍ତି ଧାରଣ କରି ପାରେ, କିମ୍ବା ଏହାଙ୍କର ଧର୍ମ ପ୍ରଭାବରେ ରାଜାଙ୍କର ପୁତ୍ର ସନ୍ତାନ ଜନ୍ମିପାରେ ।

ଗଜପତି—( ଏକାନ୍ତେ ) ପୁତ୍ର ଜନ୍ମିପାରେ—କିନ୍ତୁ ରହି ପାରିବ ନାହିଁ, ତେଣୁ ଭ୍ରାତାଙ୍କ ଅନ୍ତେ ରାଜ୍ୟ ମୋର—( ପ୍ରକାଶ୍ୟେ ) ଅଚ୍ଛା, "ଫଲେନ ପରିଚୀୟତେ"—କିନ୍ତୁ, ହାଃ, ହାଃ, ହାଃ,—ଯେଉଁ ପ୍ରହସନାଭିନୟଟି ଆଜି ଦେଖାଇଲ ଦେହାନ୍ତେ ସୁଦ୍ଧା ତାହା ମନରୁ ପାଶୋରି ଯିବନାହିଁ । ଯାଏଁ, ମୋର ବିଜ୍ଞାନାଲୋଚନା ମୁଁ କରେ ।

( ଗଜପତିଙ୍କର ପ୍ରସ୍ଥାନ )

ପୁରୋହିତ—ହେ ଈଶ୍ୱର ! ଏହି ଜୀବ କି ତୁମ୍ଭର ସୃଷ୍ଟି ? ତୁମ୍ଭର ସୃଷ୍ଟି ଯେବେ, ଏଡ଼େ ଅନ୍ଧ କି ଏହି ମାନବ ! ଚରିଆଡ଼େ ସୌନ୍ଦର୍ଯ୍ୟ ଦର୍ଶନ କରି, ଚରିଆଡ଼େ ତୁମ୍ଭର ସୁଧାମୟ ସଙ୍ଗୀତ ଶ୍ରବଣ କରି, ଚରିଆଡ଼େ ତୁମ୍ଭର ମହିମା ଅନୁଭବ କରି ତୁମ୍ଭର ଅସ୍ତିତ୍ୱ ସ୍ୱୀକାର କରିବାରେ ଅକ୍ଷମ ? କେଉଁ ଗର୍ବରେ ତେବେ ସୃଷ୍ଟିରକ୍ଷ ଏହି ମାନବ ? କେଉଁ ଗୁଣରେ ତେବେ ପଶୁଶ୍ରେଷ୍ଠ ଏହି ମାନବ ?

( ପ୍ରସ୍ଥାନ )

( ଗଜପତିଙ୍କର ଲୀଳା ସହିତ ପୁନଃ ପ୍ରବେଶ )

ଲୀଳା—ରକ୍ଷାକରନ୍ତୁ ! ରକ୍ଷାକରନ୍ତୁ ! ଦାସୀକୁ ଆଗେ ଦିଅଙ୍କଠାରେ ଭୋଗ କରିବାକୁ ଦିଅନ୍ତୁ ।

ଗଜପତି—ମୁହିଁତ ଦିଅଁ, ଦିଅଁ ଆଉ କିଏ ?

ଲୀଳା—ଆପଣ ମୋହର ଦିଅଁ, ଏହା ନିଶ୍ଚୟ; କିନ୍ତୁ ସେହି ଦିଅଁଙ୍କର ଦିଅଁ—ଆପଣଙ୍କର ମଧ୍ୟ ଦିଅଁ ତାଙ୍କଠାରେ ଆଗେ—

ଗଜପତି—ବସ୍ ! ଚୁପ୍—ମୋର ଦିଅଁ କିଏ ? ମୁହିଁତ ଦିଅଁ—ମୁହିଁତ ସବୁ ।

ଲୀଳା—ପ୍ରଭୋ ! ପ୍ରଭୋ ! ତାଙ୍କର ନିନ୍ଦା କରନ୍ତୁ ନାହିଁ—ବିଶ୍ୱାଧିପତି ପରମେଶ୍ୱରଙ୍କର ଅବମାନନା କରନ୍ତୁ ନାହିଁ ।

ଗଜପତି—ପ୍ରିୟେ ! ପାଗଳଙ୍କ ପରି ଏଣୁ ତେଣୁ କଣ ବକୁଚ ? ମୁହିଁ ପରମେଶ୍ୱର—ମୁହିଁ ବିଶ୍ୱାଧିପତି—

ଲୀଳା—ତେବେ ବିଶ୍ୱସୃଷ୍ଟିକର୍ତ୍ତା ପରମେଶ୍ୱର କଣ ବିଶ୍ୱାଧିପତି ନୁହନ୍ତି ?

ଗଜପତି—ବିଶ୍ୱସୃଷ୍ଟିକର୍ତ୍ତା କାହାକୁ କହୁଛ ? ବିଶ୍ୱସୃଷ୍ଟି କର୍ତ୍ତା କିଏ ? ବିଶ୍ୱ ଯେ ଆପଣା ମନକୁ ପ୍ରାକୃତିକ ନିୟମବଳରେ ଉତ୍ପନ୍ନ—ଯେମନ୍ତ କି ବୀଜରୁ ଅଙ୍କୁର; ଅଙ୍କୁରରୁ ବୃକ୍ଷ, ବୃକ୍ଷରୁ ଫୁଲ; ଫୁଲରୁ ଫଳ ହୁଏ ।

ଲୀଳା—ଆପଣ ବିଦ୍ୱାନ, କିନ୍ତୁ ଏହି ମୁଢ଼ାର ଏହା କହିବାରେ ସୁଦ୍ଧା ବିଶ୍ୱାସ କରିପାରୁ ନାହିଁ ? କାରଣ ଏହି ଦୀନା ବିପଦରେ ପଡ଼ି ଯେତେ ବେଳେହିଁ ତାଙ୍କୁ ଡାକିଚି ତେତେବେଳହିଁ ସେ ନିଜେ ଆସି ଯେମନ୍ତ ରକ୍ଷାକରିଛନ୍ତି କିମ୍ବା ଅଭୟ ବାଣୀ ଦ୍ୱାରା ଯେମନ୍ତ ଆଶ୍ୱାସନା ପ୍ରଦାନ କରିଛନ୍ତି ।

ଗଜପତି—ହାଃ, ହାଃ, ହାଃ,—କି ଭ୍ରମ ! କି ଭ୍ରମ ! ପ୍ରିୟେ ! ଏ ସମସ୍ତ ଭ୍ରମ ଚିନ୍ତାର ଫଳ ଛଡ଼ା ଆଉ କିଛି ନୁହେ । ଦେଖ ପ୍ରିୟେ ! ତୁମ୍ଭେ ଯେ ସନ୍ତାନ ସକାଶେ ଭାରି ଭକ୍ତିଜଙ୍କ ଭଳି ଏତେ ଶ୍ରମ କରୁଛ, ଏହା ବୃଥା—ସେ ସବୁ କୁହୁକରେ ଆଉ ପଡ଼ ନାହିଁ—ଆସ, ମୋ କଥା ମାନ, ସନ୍ତାନ ପ୍ରସବ ସକାଶେ ଶକ୍ତିସୁଧା ଔଷଧ-ସେବନ କର—ବୈଜ୍ଞାନିକ ନିୟମ ପାଳନ କର—ଦେଖିବ, ଅନାୟାସେ କିପରି ତୁମ୍ଭର ସନ୍ତାନ ଲାଭ ହେବ ।

ଲୀଳା—( ସ୍ୱଗତ ) ସ୍ୱାମୀ ପରମ ଗୁରୁ—ସ୍ୱାମୀଙ୍କ କଥା ବାରେ ମାନି ଚାଲେ । (ପ୍ରକାଶ୍ୟେ) ପ୍ରଭୋ ! ଆପଣ ବିଦ୍ୱାନ୍, ଯେପରି ଆଜ୍ଞା କରିବେ !

ଗଜପତି—ଏହି ମୋର ସ୍ତ୍ରୀର ଉପଯୁକ୍ତ କାର୍ଯ୍ୟ । ( ସ୍ୱଗତ ) ମୋର ଭାବନା ବର୍ତ୍ତମାନ, କିପରି ନାସ୍ତିକର ଜୟ, ଆଉ ଆସ୍ତିକର ପରାଜୟ ହେବ ।

ଭାବିବ ବା କାହିଁକି ? ମିଥ୍ୟା—ନିତ୍ୟ ମିଥ୍ୟା, ସତ୍ୟ—ନିତ୍ୟ ସତ୍ୟ । ( ପ୍ରକାଶ୍ୟେ ) ଆସ, ପ୍ରିୟେ । ତୁମ୍ଭଙ୍କୁ ମୋର ଧର୍ମମତ ଶୁଣାଇ, ସତ୍ୟାର୍ଥ ବୁଝାଇ ଦେବି ।

ଲୀଳା—(ସ୍ୱଗତ) କିନ୍ତୁ ଏ' ଦାସୀର ମନ କାହିଁକି ମାନୁ ନାହିଁ, ତାଙ୍କର ଆଡ଼େ କେବଳ—ନା ସ୍ୱାମୀ ପରମଗୁରୁ !

( ଉଭୟଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ବନପଥ—

( ଦ୍ୟୁମତ୍ସେନଙ୍କ ହସ୍ତଧାରଣ ପୂର୍ବକ ସତ୍ୟବାନ ଓ ମାଳବିକାଙ୍କର ଗୀତ ଗାଇ ଗାଇ ପ୍ରବେଶ )

ହାୟରେ ଦାରୁଣ ବିଧି ମନେ ଥିଲା ଏହା ତୋର !
ସହିବାକୁ ଏ କଷଣ ଲିହିଥିଲୁ ଭାଲେ ମୋର !
କାହିଁ ମମ ଶାନ୍ତି-ରବି ?
କାହିଁ ମମ ସୁଖ ଛବି ?
କି ଦୁର୍ଯୋଗେ ଗରାସିଲା କେଉଁ ଦୁଃଖରାହୁ କ୍ରୂର !

ସତ୍ୟବାନ୍—ପିତଃ ! ଏହିଠାରେ ଆମ୍ଭର ରାଜ୍ୟର ସୀମାସ୍ଥଳ—ଆଉ ଅରଣ୍ୟ ପ୍ରଦେଶର ଆରମ୍ଭ ସ୍ଥଳ ।

ଦ୍ୟୁମତ୍ସେନ—ଏହିଠାରେ ପୁତ୍ର ? ଏହିଠାରେ ତେବେ ମୋତେ ମୋର ପ୍ରାଣସଙ୍ଗିନୀ ଧରଣୀଙ୍କ ଠାରୁ ବିଦାୟ ନେବାକୁ ହେବ । ଏହିଠାରେ ତିର ଶ୍ୟାମକଳେବର ମାନସୀପ୍ରତିମାକୁ ମୋର ବିସର୍ଜନ ଦେବାକୁ ହେବ ! ହାୟ ! ଏହି ବିରହ ସଙ୍ଗେ ସଙ୍ଗେ ମୋର ମୋର ମରଣ ନ ହେଲା କାହିଁକି ? ବଜ୍ର ! କାହିଁ ଅଛ ତୁମ୍ଭେ ? ଏ ଧାରଣା କରିବା ଆଗେ ମୋର ଶିରୋଦେଶ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେଉ ନାହିଁ କାହିଁକି ? ବସୁନ୍ଧରେ ! ନିଶ୍ଚଳ ଭାବେ ତୁହିଁ ରହିଛ କିପରି ? ଏ କଷ୍ଟ ସହିବା ଆଗେ ତୁମ୍ଭେ ଦ୍ୱିଧା ହୋଇ ଯାଉନାହିଁ କାହିଁକି ? ମୋର ଅସ୍ତିତ୍ୱ ଲୋପ କରି ଦେଉନାହିଁ କାହିଁକି ?

ସତ୍ୟବାନ—ପିତଃ ! ପିତଃ !

ମାଳବିକା—ମହାରାଜ !

ଦ୍ୟୁମତ୍ସେନ—ମହାରାଜ କିଏ ଆଉ, ରାଣି !

ମାଳବିକା—ଦେବ ! ସ୍ଥିର ହେଉନ୍ତୁ । ଦେଖୁନାହାନ୍ତି, ସତ୍ୟ କେଡ଼େ ବ୍ୟାକୁଳ ହେଉଛି ?

ଦ୍ୟୁମତ୍ସେନ—ବ୍ୟାକୁଳ ହେଉଛି କିଣ, ଦେବି ? ବ୍ୟାକୁଳ ହେବାର ସମୟ ଆସୁଛି କୁହ ! ହାୟରେ ପୁତ୍ର ମୋର !--କି କୁକ୍ଷଣରେ ଜନ୍ମିଥିଲୁ, ଯେ କାନ୍ଦି କାନ୍ଦି ତୋର ଦିନ ଅବସାନ ହେବାକୁ ବସିଲା !

ସତ୍ୟବାନ—ପିତଃ ! ତୁମ୍ଭେ କାନ୍ଦୁଛ ବୋଲି କାନ୍ଦୁଛି; ନ ହେଲେ କାନ୍ଦିବି କାହିଁକି ? ମୋର କେଉଁ ବସ୍ତୁର ଅଭାବ ? ସ୍ୱର୍ଗ ସମ୍ପଦ ତୁଲ୍ୟ ପିତା ମାତା ଯାହା ନିକଟରେ ସର୍ବଦା ବର୍ତ୍ତମାନ, ସୁଧା ସାଗର ତୁଲ୍ୟ ପିତାମାତାଙ୍କ ଅଗାଧ ସ୍ନେହରେ ଯାହାର ନିତ୍ୟ ଅବଗାହନ; ତାହାର କେଉଁ ବିଷୟର ଅଭାବ—ଅନ୍ୟ କେଉଁ ବିଷୟର ଆକାଙ୍କ୍ଷା ହୋଇପାରେ ?

ଦ୍ୟୁମତ୍ସେନ—ବାସ୍ତବିକ୍—କି ମୂର୍ଖ ମୁଁ ! ଏପରି ସମ୍ପଦ ଲାଭକରିବା ସତ୍ତ୍ୱେ, ଅନ୍ୟକେଉଁ ସମ୍ପଦର ଆକାଙ୍କ୍ଷା କରୁଛି ? ଆ'ରେ, ପୁତ୍ର ମୋର ! ଅନ୍ଧର ନଉଡ଼ି—ଦୁଃଖୀରଙ୍କଧନ—ଆଲିଙ୍ଗନ କରି ବାରେ, ମୋର ତାପିତ ହୃଦୟ ଶୀତଳ କରେ ! [ ଆଲିଙ୍ଗନାନ୍ତର ] କିନ୍ତୁ ବତ୍ସ, ପୁତ୍ର ! ଅନ୍ଧ ମୁହିଁ—ଶକ୍ତି ଥାଉଁ ଥାଉଁ ଶକ୍ତିହୀନ ମୁହିଁ—ଏ ଅମାନୁଷିକ ଭକ୍ତିର ତୋର କି ପୁରସ୍କାର ଦେଇପାରେ ?

ସତ୍ୟବାନ—ପୁରସ୍କାର, ପିତଃ !—ଦିଅ ଦାସେ ଯେବେ ହୋଇଛ ପ୍ରସନ୍ନ, ହୃଦୟର ସେହି ଗଭୀର ବାତ୍ସଲ୍ୟ—ଆଉ ଶ୍ରୀଚରଣେ ତବ ବୈକୁଣ୍ଠୋପମ ଦୁର୍ଲ୍ଲଭ ସ୍ଥାନ ।

ଦ୍ୟୁମତ୍ସେନ—ଦେବି ! କି ଭାବନା ଆଉ—ନୋହୁ ଆମ୍ଭେ ରାଜ୍ୟସୁଖହୀନ—କିମ୍ବା ଦୀନ, ପଥର

ଉକାରୀ—ସେହିପରି ରାଜାରାଣୀ ନୁହେଁ, ବରଂ ତତୋଽଧିକ—ରାଜ୍ୟସୁଖ ପରିବର୍ତ୍ତେ ଯେ ଅମୂଲ୍ୟ ମୁକ୍ତିସୁଖର ଅଧିକାରୀ ଅଟେ ।

ମାଳବିକା—ପୁତ୍ରମୋର—ହୃଦୟ ଧନରେ—ସତ୍ୟ, ସତ୍ୟ ସଙ୍ଗୀ-ବନୀ ତୁହି ! ତୋର ବାକ୍ୟ-ସୁଧା-ବର୍ଷଣରେ—ଦେଖ, ଗୃହି—ମୁଞ୍ଜରିଛି ଆଜ ଶୁଷ୍କତରୁ—ରାହୁଗ୍ରସ୍ତ ଶଶଧର ଲଭି ନବଶକ୍ତି ଯେତେ, ହୋଇଚି ପୁଲକିତ, ଗୃତକର ଶୁଷ୍କକଣ୍ଠ ହୋଇଛିରେ ରସାପ୍ଳୁତ ! ଅରେ ପ୍ରେମର ପସରା ! ପ୍ରାଣର ପଙ୍ଖାଳି ! ତୁମ୍ଭି ତୋତେ ଥରେ, ଶୁଷ୍କ ହୃଦ ମୋର କରେ ରସମୟ ! (ଚୁମ୍ବନ କରିବା)

ସତ୍ୟବାନ—ପିତଃ ! ଦିବା ପ୍ରାୟ ଅବସାନ ହେବାକୁ ବସିଲଣି—ଆଉ ବିଳମ୍ବ କରିବା ନିଷ୍ପ୍ରୟୋଜନ ।

ଦ୍ୟୁମତ୍‌ସେନ—( ଦୀର୍ଘ ନିଶ୍ୱାସ ତ୍ୟାଗ କରି ) ଚାଲ, ପୁତ୍ର ! ତୁହି ଯେ ଅନ୍ଧର ଦିବା—ତୁହି ଯେ ଅନ୍ଧର ଗତି !

( ଗମନୋଦ୍ୟତ ହେବାକାଳେ ପ୍ରଜାଗଣଙ୍କ ପ୍ରବେଶ । )

ସମନ୍ତ୍ରେ—ମହାରାଜ ! ମହାରାଣୀ ! ଯୁବରାଜ ! ରାଜପୁର ଅନ୍ଧକାର କରି କେଉଁଠି ଯାଉଅଛନ୍ତି ?

ଦ୍ୟୁମତ୍‌ସେନ—ପୁତ୍ର ! କିଏ ଏମାନେ ?

ଶଙ୍କର—ପିତଃ ! ଆପଣଙ୍କର ପୁତ୍ରମାନଙ୍କୁ କଣ ଚହ୍ନି ପାରୁନାହାନ୍ତି ?

ଦ୍ୟୁମତ୍‌ସେନ—ଭ୍ରାତୃଗଣ ! ପୁଣି କାହିଁକି ଆସିଛ ? ତୁମ୍ଭମାନଙ୍କ ନୂତନ ପିତାଙ୍କ ନିକଟକୁ ଯାଅ । ଆମ୍ଭେମାନେ ମଧ୍ୟ ତୁମ୍ଭମାନଙ୍କ ପରି ଜଣେ ଜଣେ ପ୍ରଜାମାତ୍ର—ବରଂ ତହୁଁ ହୀନ—ଯେଣୁ ଆମ୍ଭେମାନେ ନିର୍ଜିତ, ତାଡ଼ିତ, ଆଶ୍ରୟହୀନ ।

ଶଙ୍କର—ପିତଃ ! ଏପରି ସମ୍ବୋଧନ କାହିଁକି କରୁଛନ୍ତି—ନିଜପ୍ରତି ଏପରି ନୀଚତା କାହିଁକି ପ୍ରକାଶ କରୁଛନ୍ତି—ଆପଣମାନେ ନିର୍ଜିତ, ତାଡ଼ିତ, ଆଶ୍ରୟହୀନ—ଆମ୍ଭେମାନେ ଥାଉଁ ଥାଉଁ ? ଭାଇ-ମାନେ ! କିପରି ନିଶ୍ଚେଷ୍ଟଭାବେ ଛିଡ଼ାହୋଇ ରହିଛ, ଅବିଶ୍ୱସ୍ତର ବିଶ୍ୱାସଘାତକତା ପୂର୍ଣ୍ଣରେ ତୁମ୍ଭମାନଙ୍କର ହୃଦୟ କି ଦାବାନଳ ସମ ଜ୍ୱଳି ଉଠୁନାହିଁ—ଅତ୍ୟାଚାରୀର ଅତ୍ୟାଚାର-ପୀଡ଼ନରେ ତୁମ୍ଭମାନଙ୍କର ହସ୍ତକି ବଜ୍ରମୁଷ୍ଟି ହେଉନାହିଁ—ନାରକୀର ନାରକୀୟକାର୍ଯ୍ୟ ଦର୍ଶନରେ ତୁମ୍ଭମାନଙ୍କ ଚକ୍ଷୁକି ଅଗ୍ନି ବର୍ଷଣ କରୁନାହିଁ ? କିପରି ତୁଷାର କଠିନ ହୋଇ ରହିଛ ?—କିପରି ନିଶ୍ଚଳ ନିଶ୍ଚେଷ୍ଟ ଭାବେ ଠିଆ ହୋଇ ରହିଛ ?

ସମନ୍ତ୍ରେ—ମହାରାଜ ! ମହାରାଜ ! କ୍ଷମା କରନ୍ତୁ ! କୁହ ଶଙ୍କର; କି କର୍ତ୍ତବ୍ୟ ଆମ୍ଭମାନଙ୍କର ।

ଶଙ୍କର—କର୍ତ୍ତବ୍ୟ ତୁମ୍ଭମାନଙ୍କର ଅତୀବ ଗୁରୁତର—କୁହ ସମସ୍ତେ, ସାଧନ କରି ପାରିବତ ?

ସମସ୍ତେ—ନିଶ୍ଚୟ ପାରିବା, ନିଶ୍ଚୟ ପାରିବା ।

ଶଙ୍କର—ବେଶ, ତେବେ ପ୍ରତିଜ୍ଞାକର, ଶପଥକର ।

ସମସ୍ତେ—ଏହି ଆମ୍ଭେମାନେ ମହାରାଜାଙ୍କ ପାଦସ୍ପର୍ଶ କରି ଶପଥ କରୁଛୁଁ ।

ଦ୍ୟୁମତ୍‌ସେନ—ଏହି ଅନ୍ଧ ଓ ବୃଦ୍ଧ ସକାଶେ କାହିଁକି ଏତେ କଷ୍ଟ ?

ଶଙ୍କର—ମହାରାଜ ! ଆମ୍ଭମାନଙ୍କୁ ଆମ୍ଭେମାନଙ୍କର କର୍ତ୍ତବ୍ୟ କରିବାକୁ ଦିଅନ୍ତୁ—ଶୁଣ, ଭାଇମାନେ ! ଆଜ ଆମ୍ଭେମାନେ ଗୋଟିଏ ମହାନ୍ କର୍ତ୍ତବ୍ୟ ଭାର ବହନ କରିବାକୁ ଅଗ୍ରସର—ପ୍ରୟୋଜନ ହେଲେ ପ୍ରାଣ ମଧ୍ୟ ବଳିଦାନ ଦେବାକୁ ହେବ—ଆଶା କରେଁ, ସମସ୍ତେ ପ୍ରଫୁଲ୍ଲ ଚିତ୍ତରେ ତାହା କରିବାକୁ ଉଦ୍ୟତ !

ସମସ୍ତେ—ସମସ୍ତେ ଉଦ୍ୟତ—ଆମ୍ଭେମାନେ ସମସ୍ତେ ଉଦ୍ୟତ ।

ଶଙ୍କର—ଜାଣ ଭାଇମାନେ ! ଦୁର୍ଦ୍ଦାନ୍ତ ସିଂହ କି ଅନ୍ୟାୟ କରିଛି ? ରାଜାଙ୍କୁ ଅନ୍ଧ ଦେଖି ଯୁବରାଜଙ୍କୁ ଅମ୍ଭର ଅଳ୍ପ ବୟସ୍କ ଦେଖି, ରାଣୀଙ୍କୁ ରମଣୀ ଦେଖି, ନିଜାଧୀନ ସୈନ୍ୟମାନଙ୍କୁ ମତାଇ, ନିଜେ ବଳପୂର୍ବକ ସିଂହାସନା-ରୋହଣ କରିଛି । ତେତିକି ନୁହେଁ, ଏହି ଆମ୍ଭମାନଙ୍କର ଦେବତୁଲ୍ୟ ରାଜପରିବାରଙ୍କ—ଯାହାଙ୍କର ଅଧିଷ୍ଠାନ ଆମ୍ଭେ-ମାନେ ଦେବାଧିଷ୍ଠାନ ବୋଲି ଜ୍ଞାନ କରୁ

ଯାହାଙ୍କର ଚରଣ ସେବା ଆମ୍ଭମାନେ ଦେବ-ସେବା ବୋଲି ମନେକରୁଁ—ଦେଖ, ଆଜ କିପରି ଦୀନହୀନ, ନିଃସହାୟ, କଙ୍ଗାଳ ପରି ରାଜ୍ୟରୁ ବହିଷ୍କୃତ କରି ଦେଉଛି—ହାୟ ! ଏହି ଭାରର ଦୃଶ୍ୟ, 'ଚକ୍ଷୁ ଥାଇଁ ଥାଇଁ ତୁମ୍ଭେମାନେ କିପରି ଦେଖୁଛ ?—ଶକ୍ତି ଥାଇଁ ଥାଇଁ କିପରି ସହ୍ୟ କରୁଛ ?

ସମସ୍ତେ—କୁହ, କୁହ, ଶଙ୍କର ! ଆଉ ସହ୍ୟ ହୁଏ ନାହିଁ, ଆଉ ଦେଖି ହୁଏ ନାହିଁ ।

ଶଙ୍କର—କୁହ, ତେବେ ସମସ୍ତେ ହୃଦୟର ଗୁରୁ-ଗମ୍ଭୀର-ନିନାଦରେ, ଆକାଶ ଅବନୀ ପ୍ରତିଧ୍ୱନିତ କରି 'ଜୟ ରାଜା ଦ୍ୟୁମତ୍ସେନଙ୍କ ଜୟ, ଜୟ ରାଜା ଦ୍ୟୁମତ୍ସେନଙ୍କ ଜୟ !'

ଶଙ୍କର ଓ ସମସ୍ତେ—ଜୟ ରାଜା ଦ୍ୟୁମତ୍ସେନଙ୍କ ଜୟ ! ଜୟ ରାଜା ଦ୍ୟୁମତ୍ସେନଙ୍କ ଜୟ !

( ଦୁର୍ଦ୍ଦାନ୍ତଙ୍କର ସସୈନ୍ୟ ପ୍ରବେଶ )

ଦୁର୍ଦ୍ଦାନ୍ତ—ଆରେ ରେ ପାଷଣ୍ଡଗଣ ! ଦୁର୍ଦ୍ଦାନ୍ତ ସିଂହର ଜୟ ତେବେ ଘୋଷିବ କିଏ ? ମୂଢ଼ଗଣ ! କେଉଁ ସାହସରେ ତୁମ୍ଭେମାନେ ଆଜ ଦୁର୍ଦ୍ଦାନ୍ତସିଂହ ସମ୍ମୁଖରେ ଦଣ୍ଡାୟମାନ ? ତୁମ୍ଭେମାନେ କି ଏତେ ଅନ୍ଧ ? ଦେଖିପାରୁ ନାହିଁ—ରାଜ୍ୟର ଯାହାକି ଶକ୍ତି—ରାଜ୍ୟର ଯାହାକି ସାର ପଦାର୍ଥ, ତାହା ଆଜ ମୋର ମୁଷ୍ଟିଗତ ? ତୁମ୍ଭେମାନେ ନିର୍ଭରଶୀଳ—ରାଜ୍ୟର ଅସାର ପଦାର୍ଥ ମାତ୍ର ! କେଉଁ ଗାରଦର୍ପରେ ତେବେ ଗର୍ବ କରୁଛ ?—କେଉଁ ବଳାଶିକାର ତେବେ ଅବତାରଣା କରୁଛ ?—ଯାଅ, ବର୍ତ୍ତମାନ ସୁଦ୍ଧା ମୁଁ ତୁମ୍ଭମାନଙ୍କୁ କ୍ଷମା କରୁଛି, ହିର ହୁଅ, ରାଜ୍ୟମଧ୍ୟକୁ ଫେରିଯାଅ; ନଚେତ୍ ବଳ ପ୍ରୟୋଗ ଦ୍ୱାରା ବିଦାୟ କରି ଦିଆଯିବ—( ସମସ୍ତଙ୍କର ଅଧୋବଦନରେ ପ୍ରସ୍ଥାନ ) ସୈନିକ ! ( ଶଙ୍କରଙ୍କୁ ଦେଖାଇ ) ଏହି ବର୍ବରକୁ ବନ୍ଦୀକର !

ଶଙ୍କର—( ସକ୍ରୋଧେ ) ଦୁର୍ଦ୍ଦାନ୍ତ—

ଦୁର୍ଦ୍ଦାନ୍ତ—( ବାଧାଦେଇ ) ନେଇ ଯା !

( ସୈନିକମାନେ ବନ୍ଦୀକରି ନେଇଗଲେ )

ଦେଖ ଅନ୍ଧ ! ତୁ ମୋର ଆଜ୍ଞା ଅବଜ୍ଞା କରି ଏତେବେଳ ପର୍ଯ୍ୟନ୍ତ ରାଜ୍ୟମଧ୍ୟରେ ରହିଛୁ ? ଜାଣୁକି ତୋର ଏହି ଗୁରୁତର ଦୋଷର ଦଣ୍ଡ କଣ ? ଆଜ୍ଞା-ଲଙ୍ଘନକାରୀର ଶାସ୍ତି କ'ଣ ?

ସତ୍ୟବାନ—ମୁଁ ଜାଣେ ସେନାପତେ ! ଶିର ଛେଦନ ! ଆମ୍ଭମାନଙ୍କର ସେହି ଶାସ୍ତିହିଁ ବାଞ୍ଛନୀୟ—ଯଦିଓ ଏହି ଅବମାନନାଠାରୁ ମୃତ୍ୟୁହିଁ ଶ୍ରେୟସ୍କର—କିନ୍ତୁ ମରିବା ଆଗେ ଥରେ ଦେଖିବ ! ପିତଃ ! ଆଦେଶ ଦିଅନ୍ତୁ !

ଦ୍ୟୁମତ୍ସେନ—ବତ୍ସ, ସତ୍ୟ ! ଅବିମୃଷ୍ୟକାରିତା ସର୍ବଥା ନିନ୍ଦନୀୟ । ବର୍ତ୍ତମାନ ଆମ୍ଭେମାନେ ଆମ୍ଭମାନଙ୍କର ପୂର୍ବଜନ୍ମକୃତ କର୍ମଫଳ ଭୋଗ କରିସାରୁ ! ସେନାପତେ ! ସତ୍ୟବାନ ବାଳକ ମାତ୍ର ! ତାହାର ଦୋଷ ମାର୍ଜନା କରନ୍ତୁ !

ଦୁର୍ଦ୍ଦାନ୍ତ—ଅର୍ବାଚୀନ ! ତୋର ଏତେ ସ୍ପର୍ଦ୍ଧା ? ସିଂହ ସମ୍ମୁଖରେ ଶୃଗାଳ-ଶାବକର ଆସ୍ଫାଳନ—ଏହାର ପ୍ରତିଫଳ ମୁଁ ହାତେ ହାତେ ଦେଇଥାନ୍ତି, କିନ୍ତୁ ତୋର ପିତାଲାଗି ଆଜ ମୁଁ ତୋତେ କ୍ଷମା କଲି ! ସୈନିକ ! ଏମାନଙ୍କୁ ଗଳା ଧକ୍କା ଦେଇ ଶୀଘ୍ର ବିଦାୟ କରି ଦେ !

( ସୈନିକର ତଥା କରଣ )

ସତ୍ୟବାନ—ପିତଃ !

ଦ୍ୟୁମତ୍ସେନ—ନା, ପୁତ୍ର !

ମାଳବିକା—ହେ ଜଗଦୀଶ ! ଏହି କି ବିଚାର ତୁମର ?—

( ସତ୍ୟବାନ୍, ଦ୍ୟୁମତ୍ସେନ ଓ ମାଳବିକାର ପ୍ରସ୍ଥାନ )

ସୁଦାମ—ରାଜାଙ୍କର ଆମ୍ଭର କଣ୍ଟକ ଦୂର ହୋଇଛି ।

ଦୁର୍ଦ୍ଦାନ୍ତ—ନା ସୁଦାମ ! ଏପର୍ଯ୍ୟନ୍ତ କଣ୍ଟକ ଦୂର ହୋଇନାହିଁ । ବନ୍ଧୁବର ! ଗୋଟିଏ କଠିନ କାର୍ଯ୍ୟ କରିବାକୁ ହେବ—ପାରିବ କି ?

ସୁଦାମ—ପାରିବ କଣ ? ଏହିକ୍ଷଣି କହନ୍ତୁ ନା କଣ ଦେଉଛି—ସୁଦାମ ପକ୍ଷେ ପୁଣି କେଉଁ କାର୍ଯ୍ୟ କଠିନ ?

ଦୁର୍ଦ୍ଦାନ୍ତ—(ଧୀରସ୍ୱରରେ) ନରହତ୍ୟା କରି ପାରିବ ?

ସୁଦାମ—ନ-ର-ହ-ତ୍ୟା !

ଦୁର୍ଦ୍ଦାନ୍ତ—ହିଁ, ନରହତ୍ୟା—ଯେବେ କରିପାରିବ, ତୁମ୍ଭଙ୍କୁ ସହସ୍ର ସ୍ୱର୍ଣ୍ଣ ମୁଦ୍ରା ପୁରସ୍କାର ଦେବି ।

ସୁଦାମ—ସହସ୍ର ସ୍ୱର୍ଣ୍ଣମୁଦ୍ରା ପୁରସ୍କାର !—(ସ୍ୱଗତ) କିନ୍ତୁ ନ-ର-ହ-ତ୍ୟା !

ଦୁର୍ଦ୍ଦାନ୍ତ—ତୁମ୍ଭର କିଛି ଭୟ ନାହିଁ—ଆସ, ମୁଁ ତୁମ୍ଭଙ୍କୁ ସବୁ ଶିଖାଇ ଦେଉଛି—କିନ୍ତୁ ସାବଧାନ, ଏ କାର୍ଯ୍ୟ ଗୋପନରେ କରିବାକୁ ହେବ ।

ସୁଦାମ—ଗୋପନରେ ? ମୋର ସ୍ତ୍ରୀକୁ ସୁଦ୍ଧା କହିବି ନାହିଁ ?

ଦୁର୍ଦ୍ଦାନ୍ତ—ନା—କାହାରିକି ନୁହେଁ—କହିଲେ ତୁମ୍ଭର ଶିର ଛେଦନ ହେବ ।

ସୁଦାମ—ବାବାରେ ! ଶିରଚ୍ଛେଦନ ହେବ ? ତେବେ ମୁଁ କାହାରିକୁ କହିବି ନାହିଁ—ମୋତେ ସୁଦ୍ଧା ମୁଁ କହିବି ନାହିଁ । (ସ୍ୱଗତ) ସହସ୍ର ସ୍ୱର୍ଣ୍ଣ ମୁଦ୍ରା ! କିନ୍ତୁ, ନ-ର-ହ-ତ୍ୟା !

ଦୁର୍ଦ୍ଦାନ୍ତ—ତୁମ୍ଭେ ବର୍ତ୍ତମାନ ଯାଇ ମୋର ମନ୍ତ୍ରଣାଗୃହରେ ଅପେକ୍ଷା କର, ମୁଁ ଯାଉଛି—(ସ୍ୱଗତୋକ୍ତି ଆବୃତ୍ତି କରୁ କରୁ ସୁଦାମର ପ୍ରସ୍ଥାନ) ନ୍ୟାୟରେ ହେଉ ବା ଅନ୍ୟାୟରେ ହେଉ—ରାଜା ହୋଇଛି—ଆକାଂକ୍ଷା ମୋର ପୂର୍ଣ୍ଣ ହୋଇଛି—କିନ୍ତୁ ପଦ ମୋର ନିରାପଦ ହୋଇନାହିଁ—ଦିନୁ ଦିନୁ ଦେଖୁଛି, ପ୍ରଜାମାନେ ବିଶୃଙ୍ଖଳ ହୋଇ ଉଠୁଛନ୍ତି; ସୁତରାଂ ସେମାନଙ୍କୁ ମିଷ୍ଟ-କଥାରେ ତୁଷ୍ଟ କରିବା ବୃଥା ଚେଷ୍ଟା, ବାଧହୋଇ ଅସ୍ତ୍ରଦ୍ୱାରା ଶାସନ କରିବାକୁ ହେବ । ମୋର ମହାନ୍ ଭୟ ସତ୍ୟବାନକୁ, ତାର ଯେପରି ବୀରତ୍ୱ ଓ ବୀରପ୍ରକୃତି—ତହିଁରେ ସେ ଦିନେ ପ୍ରତିଦ୍ୱନ୍ଦୀ ହେବ, ଏ ଭାବନା ଅଳୀକ ନୁହେଁ—ତେଣୁ ତାହାର ଉଚ୍ଛେଦ ସର୍ବାଗ୍ରେ କର୍ତ୍ତବ୍ୟ । ବର୍ତ୍ତମାନ ଦେଖିଯାଏଁ, ପ୍ରଜାମାନେ କିପରି ଭାବରେ ଗତିବିଧି କରୁଛନ୍ତି । ସୈନିକ ! ମୋର ଅଶ୍ୱ ସଜ୍ଜିତ କର । (ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

### କକ୍ଷ

ରାଜପତି—ଗୃହଅଚେତ ଅଭେଦ ! ଗୃହଅଚେତ ଉତ୍ତର—ମୂର୍ତ୍ତି ମାନେ ନିରୁତ୍ତର ? ମୂର୍ତ୍ତି ମାନେ ନିରାନନ୍ଦ ? ସତ୍ୟ, ସତ୍ୟ କି ରାଜାଙ୍କ ସନ୍ତାନ ହୋଇଛି ?—ଶାସ୍ତ୍ରବାଦୀର ଜୟ ହୋଇଛି ?—ନା, ମିଥ୍ୟା କଥା; କିନ୍ତୁ ମୁଁ ତ ସ୍ୱଚକ୍ଷୁରେ ଦେଖିଅଛି—ନବୋଦିତ ବାଳାର୍କ ଯେପରି ଗୃହାଭ୍ୟନ୍ତର ଆଲୋକିତ କରି ରହିଛି । ଏପରି ପ୍ରଭାବତୀ କନ୍ୟା ତ ମୁଁ ଆଉ କେବେ ଦେଖିନାହିଁ ସତ୍ୟ ସତ୍ୟ କି ଏହା ଦେବୀଙ୍କର ପ୍ରସାଦ ? ଦେବୀ କାହୁଁ ଆସିବ ?—ଶାସ୍ତ୍ରବାଦୀର କପୋଳକଳ୍ପିତ ମୂର୍ତ୍ତି ମାନେ—ତେବେ ଏହାର ସତ୍ୟାର୍ଥ କଣ ? ନିଶ୍ଚୟ ଅଷ୍ଟାଦଶ ବର୍ଷ ଧରି ସଂଯମାଦି ନିୟମ ପାଳନ କରିବା ଦ୍ୱାରା ଦମ୍ପତି ବୀର୍ଯ୍ୟଶାଳୀ ହେବାରୁ ପ୍ରାକୃତିକ ନିୟମବଳରେ ଏହିପରି ସନ୍ତାନ ଜାତ ହୋଇଅଛି—ନଚେତ୍ ବା ଶାସ୍ତ୍ରବାଦୀର ଯୁକ୍ତି ଯେ ସାବିତ୍ରୀ ଯଜ୍ଞାଚରଣ ଦ୍ୱାରା ଦେବୀ ପ୍ରସନ୍ନା ହୋଇ ଏହି ବର ଦେଇଛନ୍ତି—ଏହା ଅସମ୍ଭବ ! ଅସମ୍ଭବ ! କିନ୍ତୁ ପୁରୋହିତଙ୍କ ନିର୍ଦ୍ଧାରିତ ଦିନ ଅନୁସାରେ ସନ୍ତାନର ଜନ୍ମ ପୁଣି କନ୍ୟାସନ୍ତାନ—ଏହାର ଯୁକ୍ତି କଣ ? ଯୁକ୍ତି—ଅନ୍ଧକାର ଗୃହେ ଲୋଷ୍ଟ୍ର ନିକ୍ଷେପଣ—କିନ୍ତୁ ସେହି ଲୋଷ୍ଟ୍ର ନିକ୍ଷେପଣ କଥାନୁଯାୟୀ ରାଜାଙ୍କର ଯେବେ ପୁତ୍ରସନ୍ତାନ ଜନ୍ମେ ତାହାହେଲେ ମୋର ଦଶା କଣ ହେବ ? ମୋର ରାଜ୍ୟାକାଂକ୍ଷା କିପରି ପୂର୍ଣ୍ଣ ହେବ ? ଦେଖାଯିବ ଶାସ୍ତ୍ରବାଦୀ କେତେଦିନ ଜୟୀ ରହିବ—ମିଥ୍ୟାବାଦୀ କେତେଦିନ ସତ୍ୟବାଦୀ ରହିବ ?

(ଲୀଳାର ପ୍ରବେଶ)

ଲୀଳା—ପ୍ରାଣେଶ୍ୱର ! ଦେଖ ଏବେ କାହାର ଜୟ ! ମୁଁ ଆଉ ଆପଣଙ୍କ କଥା ଶୁଣିବି ନାହିଁ—ଏହି

ନିଅନ୍ତୁ, ଆପଣଙ୍କର ଔଷଧ ଆପଣ ଫେରାଇ
ନିଅନ୍ତୁ (ହସ୍ତରେ ଦେଇ) ଏବେ ମୋର
ଉପାୟ ମୁଁ କରିବି । (ସ୍ୱଗତ) ଅହା ! ବଡ଼ରାଣୀ
ସାବିତ୍ରୀଙ୍କ ପୂଜା କରି କି ସୁନ୍ଦର କନ୍ୟାଟିଏ ଜନ୍ମ
କରିଛନ୍ତି—ଆଉ ମୁଁ ମୋର ସ୍ୱାମୀଙ୍କ କଥାରେ
ପଡ଼ି, ଧର୍ମ୍ମ କର୍ମ୍ମ ଛାଡ଼ି ଔଷଧ ଖାଇ ଖାଇ ସର୍ବନାଶ
ହେଲିଣି ।—(ପ୍ରକାଶ୍ୟେ) ଯାହା ହେବାର
ହୋଇଛି, ପ୍ରାଣେଶ୍ୱର ! ବର୍ତ୍ତମାନ ଆସନ୍ତୁ
ଆମ୍ଭେମାନେ ମଧ୍ୟ ସେହିପରି ଯଜ୍ଞାନୁଷ୍ଠାନ କରି
ପୁତ୍ରଲାଭ କରିବା !

ଗଜପତି—ପ୍ରିୟେ ! ଏପରି ଅଶ୍ଳୀଳ ଉପାୟରେ ମୁଁ
ପୁତ୍ରଲାଭ କରିବାକୁ ଇଚ୍ଛା କରେନାହିଁ—ତୁମ୍ଭେ
ଧୈର୍ଯ୍ୟ ଧର, ଆଉ କିଛିଦିନ ନିୟମାନୁଯାୟୀ
ଔଷଧ ସେବନ କର, ଦେଖିବ, ପରିଶେଷରେ
ଆମ୍ଭର ଅଧିକତର ଶକ୍ତିଶାଳୀ ସନ୍ତାନ ଜାତ
ହେବ ।

ଲୀଳା—ନା, ପ୍ରାଣେଶ୍ୱର ! ଆଉ ମୁଁ ଆପଣଙ୍କ ଶିକ୍ଷାରେ
ପଡ଼ିବି ନାହିଁ; ଆପଣଙ୍କ ଶିକ୍ଷାରେ ପଡ଼ି ମୁଁ ଧର୍ମ୍ମକର୍ମ
କଲିନାହିଁ—ଦିଅଁ ଦେବତା ମାନିଲି ନାହିଁ—
କାହାରିକୁ ବିଶ୍ୱାସ କଲି ନାହିଁ—ସେଥିପାଇଁ
ସନ୍ତାନସୁଖରୁ ବଞ୍ଚିତା ହେଲି; କୌଣସି
ଦୁଃଖବେଳେ ମଧ୍ୟ ଶାନ୍ତି ପାଇଲିନାହିଁ । (ସ୍ୱଗତ)
ଯାଏଁ, ଆଜିଠାରୁ ମୁଁ ମନପ୍ରାଣଦେଇ ଈଶ୍ୱରଙ୍କୁ
ଡାକିବି—ସେ ଆମ୍ଭମାନଙ୍କୁ ସନ୍ତାନ ଦେବେ
ଆଉ ସ୍ୱାମୀଙ୍କର ମତ ଫେରାଇ ଦେବେ ।

(ପ୍ରସ୍ଥାନ)

ଗଜପତି—ଏଁ ! ମୋର ମତର ଅବମାନନା ! ଗୋଟିଏ
ନିର୍ବୁଦ୍ଧି ନାରୀର ମଧ୍ୟ ମୋର ବୁଦ୍ଧିମତ୍ତାର
ହେୟଜ୍ଞାନ ? ଏହା କଦାପି ସହ୍ୟ ହୁଏନା ?
ମିଥ୍ୟାର ପ୍ରଶଂସା—ଶାସ୍ତ୍ରର ପ୍ରଶଂସା, ଆଉ ସତ୍ୟର
ନିନ୍ଦା—ସତ୍ୟ ପ୍ରମାଣର ନିନ୍ଦା—ସତ୍ୟବାଦୀର
ନିତାନ୍ତ ଅସହ୍ୟ—ଅନେକଦର୍ଶୀର ନିତାନ୍ତ
ଅସହ୍ୟ । ଯେ କୌଣସି ଉପାୟରେ ଶାସ୍ତ୍ରବାଦକୁ
ମିଥ୍ୟା ପ୍ରମାଣିତ କରିବାକୁ ହେବ—ନାସ୍ତିକର
ଜୟ ଘୋଷଣା କରିବାକୁ ହେବ ।

(ଦ୍ରୁତ ପ୍ରସ୍ଥାନ)

(ଅଶ୍ୱପତି ଓ ପୁରୋହିତଙ୍କର ପ୍ରବେଶ)

ପୁରୋହିତ—ମହାରାଜ ! କନ୍ୟା ଦେଖି ମୋର ବୋଧ
ହେଉଛି ଯେପରି କୌଣସି ଅମରକନ୍ୟା ସ୍ୱର୍ଗଭ୍ରଷ୍ଟା
ହୋଇ ପୃଥିବୀରେ ଜନ୍ମଗ୍ରହଣ କରିଅଛି ।

ଅଶ୍ୱପତି—ଗୁରୁଦେବ ! ଦେବୀଙ୍କ ପ୍ରସାଦ ବିନା
ଏପରି ସନ୍ତାନ ମନୁଷ୍ୟ କେବେ ଲାଭ
କରିପାରେ ?

ପୁରୋହିତ—ତା'ତ ନିଶ୍ଚୟ—ଆମ୍ଭମାନଙ୍କର ଯାହାକିଛି
ଗର୍ବର ବିଷୟ ଯାହାକିଛି ଯେଣ ଆମ୍ଭେମାନେ
ପରମସୁଖୀ ବୋଲି ମନେ କରୁ—ସେ ସବୁତ
ତାଙ୍କର ପ୍ରସାଦ ।

ଅଶ୍ୱପତି—କିନ୍ତୁ ଲୋକେ ଅଛନ୍ତି—ଯେଉଁମାନେ କି
ମନେକରନ୍ତି ସେମାନେ ନିଜେ ନିଜର
ଭାଗ୍ୟବିଧାତା—ବୁଝିପାରନ୍ତି ନାହିଁ ଯେ ସେମାନେ
ସେହି ଅସୀମକାତ୍ମାର କ୍ଷୁଦ୍ରାଂଶୁ ମାତ୍ର—ବ୍ରହ୍ମାଗ୍ନିର
ସ୍ଫୁଲିଙ୍ଗ ମାତ୍ର ।

ପୁରୋହିତ—ମହାରାଜ ! ଆପଣଙ୍କ ଭାଇଙ୍କୁ ମୁଁ ସେହି
ଶ୍ରେଣୀୟ ଦେଖେଁ ।

ଅଶ୍ୱପତି—ହଁ, ମୁଁ ସେହି ଶ୍ରେଣୀୟ ଲୋକଙ୍କୁ ଉଦ୍ଦେଶ୍ୟ
କରି କହୁଥିଲି ଗୁରୁଦେବ ! ଆପଣ ସେଦିନ
ଯେପରି କହୁଥିଲେ—ବୋଧହୁଏ ଗଜପତିର ମତ
ଏହି କନ୍ୟା ଜନ୍ମରେ ପରିବର୍ତ୍ତିତ ହୋଇଥିବ ।

(ଦ୍ୱାରୀର ପ୍ରବେଶ)

ଦ୍ୱାରୀ—ସଭାଗୃହରେ ମାନ୍ୟଗଣ୍ୟ ବ୍ୟକ୍ତିମାନେ
ଉପଢୌକନ ନେଇ ଆପଣଙ୍କ ଅଭିବାଦନ
ନିମନ୍ତେ ଉପସ୍ଥିତ ହେଲେଣି ।

ଅଶ୍ୱପତି—ଆଚ୍ଛା ଆମ୍ଭେ ଯାଉଛୁଁ । (ଦ୍ୱାରୀର ପ୍ରସ୍ଥାନ)
ଗୁରୁଦେବ ! ତେବେ ଏ କନ୍ୟାର କି ନାମ
ରଖିବା ?

ପୁରୋହିତ—ମୋର ମତରେ—ସାବିତ୍ରୀଙ୍କ ପ୍ରସାଦରୁ
ଯେତେବେଳେ ଏହି କନ୍ୟା ଜାତ ହୋଇଅଛି

ତାଙ୍କର ନାମସ୍ମରଣ ରକ୍ଷିବା ସକାଶେ ଏହି କନ୍ୟାର ନାମ ମଧ୍ୟ ସାବିତ୍ରୀ ରଖାଯାଉ ।

ଅଶ୍ୱପତି—ଆପଣଙ୍କ ମତ ଶିରୋଧାର୍ଯ୍ୟ । ମୋର ବେଶ ମନୋମତ ହୋଇଅଛି—ଏତଦ୍ୱାରା ଆମ୍ଭେମାନେ ସାବିତ୍ରୀ ଦେବୀଙ୍କର କେବଳ ମର୍ଯ୍ୟାଦା ବଢ଼ାଇବା ନାହିଁ—ଏହି କନ୍ୟାର ନାମ ରଣୀକାରମାନଙ୍କୁ ମଧ୍ୟ ସ୍ମରଣ କରାଇ ଦେଇ ପାରିବା ଯେ ନିଃସନ୍ତାନ ଲୋକମାନଙ୍କର କିମ୍ବା ଉପଯୁକ୍ତ ସନ୍ତାନାକାଙ୍‌କ୍ଷୀ ମାନଙ୍କର ସାବିତ୍ରୀ ଯଜ୍ଞଦ୍ୱାରା ମନସ୍କାମ ପୂର୍ଣ୍ଣ ହୁଏ । ଆସନ୍ତୁ ଗୁରୁଦେବ ! ବର୍ତ୍ତମାନ ସଭା ମନ୍ଦିରକୁ ଯାଇ ଆନନ୍ଦ ସାଗରରେ ଆଜି ମଗ୍ନ ହେବା ।

( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

ଅରଣ୍ୟର ଏକ ଦେଶ ।

(ଶବର ଓ ଶବରୁଣୀର ଗୀତ ଗାଉ ଗାଉ ପ୍ରବେଶ)

ସ୍ତ୍ରୀ—ଠାକୁରାଣି ଏତେ ପୂଜା ତୋତେ କିଛି ସତେ ନୋହିବ
ଦେଲ ନାହିଁ ମାତା ଏକବୋଲ୍ ପୋଡା
ଆଣ୍ଠୁକୁଡ଼ା ହୋଇକେ ଜାନମେ ଯାଇବ । (ଘୋଷା)

ପୁରୁଷ—ଆସୁ, ଆସୁ, ଆସୁ, ଆସୁ, ଆସୁ, ଯାଉଲୋ କାହାଁକେ ?

ସ୍ତ୍ରୀ—(ଯାଇମୋର) ମାକେ ପୂଜିବାକେ ପୋଡା ଦବେ ହାମାକେ—

ପୁରୁଷ—ଖେତେ ଦେଲ୍ କିଛି ଭୋକ ଲାଗୁଛି,
ହାମବି ଯାବ ଶିକାରକେ

ସ୍ତ୍ରୀ—(ଆରେ) କୁଛୁ ନାହିଁ ଘରେ ଦବ କାସ ତୋରେ,
ଯାଥି ତୁ ଶଢ଼ିଆ ମାରକେ

ପୁରୁଷ—ଶୁଲ୍ ଶୁଣ୍ଡେ !

ସ୍ତ୍ରୀ—ରହ ଦଣ୍ଡେ !

ପୁରୁଷ—ଉଛୁର ହେଉଛି—

ସ୍ତ୍ରୀ—ଚଇଥା ଯାଉଛି—ଭୋଗରାଗ ସବୁ ସଜାଡ଼ି ଆନବ,
ମାକେ ପୂଜିବାକେ ପୋଡା ଦବେ ହାମାକେ ।

ପୁରୁଷ—ହାମବି ଶଢ଼ିଆ ମାରକେ ବୁଢ଼ିଆ,
ମା' ପାଶ ଭୋଗ ଲଗାଇବ;

ସ୍ତ୍ରୀ—ନାଚ ନାଚ ଗାଇକେ, ମା ନାମ ଧରକେ,
ଚଲ୍‌ଯାଇ ମାକେ ପୂଜିବ ।—(ପ୍ରସ୍ଥାନ)

( ଦ୍ୟୁମତ୍‌ସେନ ଓ ମାଳବିକାଙ୍କର ପ୍ରବେଶ )

ଦ୍ୟୁମତ୍‌ସେନ—ଅଉ ସହ୍ୟ ହୁଏ ନା—ଆଉ ସହ୍ୟ ହୁଏ ନା—ବଡ଼ ତୃଷ୍ଣା—ଓଃ ବଡ଼ ତୃଷ୍ଣା ।

ମାଳବିକା—ପ୍ରଭୋ ! ଆପଣ ଏହି ବୃକ୍ଷତଳେ ଟିକିଏ ବିଶ୍ରାମ କରନ୍ତୁ; ସତ୍ୟ ଏହିକ୍ଷଣି ପାଣି ଘେନି ଆସୁଛି ।

ଦ୍ୟୁମତ୍‌ସେନ—ଶୁଳ୍, ଶୁଳ୍, ପ୍ରିୟେ ! ତେବେ ଟିକିଏ ବିଶ୍ରାମ କାହିଁକି ? ଚିରକାଳ ସକାଶେ ବିଶ୍ରାମ କରିବି । ଉଃ—ପ୍ରାଣଗଲା, ପ୍ରାଣଗଲା—

( ପତନ )

ମାଳବିକା—ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! କେଉଁଠାରେ ପଡ଼ିଛନ୍ତି—କେଉଁ ସକାଶେ ପୁଣି ? କାହିଁ ଦିନେ ଇନ୍ଦ୍ରଭୁବନତୁଲ୍ୟ ରାଜପ୍ରାସାଦରେ ସୁକୋମଳ ଦୁଗ୍ଧଫେନନିଭ ଶଯ୍ୟା ଭୋଗ କରୁଥିଲେ—କାହିଁ ଆଜି ସିଂହ ବ୍ୟାଘ୍ର ସଙ୍କୁଳ ଅରଣ୍ୟ ପ୍ରଦେଶର କଣ୍ଟକିତ କଠିନ ଶଯ୍ୟାରେ ପୀଡ଼ିତାଙ୍ଗ ହେଉଛନ୍ତି ?—କାହିଁ ନିଜେ ଦିନେ ନାନାବିଧ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ପେୟଦ୍ୱାରା ପ୍ରସାରିତକର ପୂର୍ଣ୍ଣ କରୁଥିଲେ—କାହିଁ ନିଜେ ଅପି ସାମାନ୍ୟ ଜଳସକାଶେ ନିଜ କର ପ୍ରସାରିତ କରିଅଛନ୍ତି—ତେତିକି ମଧ୍ୟ ନୁହେ, ସେଇ ସକାଶେ ଅଧୁନା ଓଷ୍ଠାଗତପ୍ରାଣ—ଓଃ ହୋଃ ! ହା ଦାରୁଣ ବିଧି !

ଦ୍ୟୁମତ୍‌ସେନ—ପ୍ରା-ଣ—

ମାଳବିକା—ପ୍ରାଣେଶ୍ୱର—ପ୍ରାଣେଶ୍ୱର ! ଏ' କଣ କଲ ? ସାହସା ବାକ୍‌ରୁଦ୍ଧ ହେଲ କାହିଁକି ?—ଆକାଶ ! ତୁମ୍ଭେ ହାସ୍ୟ ମୁଖରେ କ'ଣ ଦେଖୁଛ ? ତୁମ୍ଭେ ଏହିକ୍ଷଣି ରକ୍ତୀଭୂତ ହୋଇ ଅଗ୍ନିରୂପେ ବାରିବର୍ଷଣ ଦ୍ୱାରା ସ୍ୱର୍ଗମର୍ତ୍ତ୍ୟ ଏକତ୍ର କରି ଦେଉନାହିଁ କାହିଁକି ? ପର୍ବତ ! ତୁମ୍ଭେ କଠିନ

ହୋଇ କିପରି ରହିଛ ? ନିର୍ମମହୃଦୟ ସହସା ବିଗଳିତ ହୋଇ ଶତ ଶତ ନଦୀ ପ୍ରସୂତ କରୁ ନାହିଁ କାହିଁକି ? ସମୁଦ୍ର ! ତୁମ୍ଭେ ସୀମାବଦ୍ଧ ହୋଇ ରହିଛ କିପରି ? ତୁମ୍ଭର ଜଳୋଚ୍ଛ୍ୱାସ ଅଧୁନା ଶୋକୋଚ୍ଛ୍ୱାସରେ ପରିଣତ ହୋଇ ପୃଥିବୀକୁ ଜଳମଗ୍ନ କରୁନାହିଁ କାହିଁକି ? ଓଃ, କି ନିଦାରୁଣ ଦୃଶ୍ୟ !—କି ଦାରୁଣ ବେଦନା !

( ମୂର୍ଚ୍ଛିତ ହେବା )

( ବ୍ୟାଧ ଓ ବ୍ୟାଧ ପତ୍ନୀର ପ୍ରବେଶ )

ବ୍ୟାଧସ୍ତ୍ରୀ—ଅରେ ସର୍ଦ୍ଦାର ! ଦେଖ୍ ଦେଖ୍, କି ସୁନ୍ଦର ମିଣିପ, ଆଉ କି ସୁନ୍ଦର ଔରତ୍ଟିଏ ଏଠାରେ ଶୋଇଚନ୍ତି ?

ପୁରୁଷ—( ନିକଟକୁ ଯାଇ ) ପୋକିଆ ମା ! ପୋକିଆ ମା ! ତୁ ଶୁଣ୍ଡେ ପାଣି ଲେଇଆ ! ତୁ ଶୁଣ୍ଡେ ପାଣି ଲେଇଆ ! ଏତ ବେହୁଁସ ଦେଖୁଛିରେ—

( ସ୍ତ୍ରୀର ପ୍ରସ୍ଥାନ )

—କି ସୁନ୍ଦର ମିଣିପ କି ସୁନ୍ଦର ଔରତ୍ଟିଏ ?

[ ସ୍ତ୍ରୀର ଜଳପାତ୍ର ନେଇ ପ୍ରବେଶ ଓ ଉଭୟଙ୍କର ମୁଖରେ ଜଳ ପ୍ରଦାନ ]

ମାଳବିକା—( ଉଠିଉଠି ) ସତ୍ୟ ! ପୁତ୍ର ମୋର !

ଦ୍ୟୁମତ୍ସେନ—ଓଃ କି ଶାନ୍ତି ! ଆଁରେ ଧନ ମୋ'ର, ପ୍ରାଣରତନ, ନୟନର ମଣି,—

( ବାହୁ ପ୍ରସାରଣ କରିବା )

ମାଳବିକା—ତୁମ୍ଭେମାନେ କିଏ ? ସତ୍ୟ କାହିଁ ?

ଦ୍ୟୁମତ୍ସେନ—ସତ୍ୟ ନାହିଁ ରାଣୀ ।

[ ବ୍ୟଥିତ ହେବା ]

ପୁରୁଷ—ମା ! ହାମେମାନେଇ ତୋର ପିଲା—ସତ୍ୟ ବୋଲିତ ଏଠାରେ କେହି ନାହିଁ ? ମା ! ବାପା ! ତୋତେ ବଡ଼ ଭୋକିଲା ଆଉ ଦୁବ୍ଲା ଦେଖୁଚି, ହାମର ଏଇଟି କୁଡ଼ିଆ ଅଛି ସେହିଠାକୁ ଚାଲ୍ ।

ଦ୍ୟୁମତ୍ସେନ—ରାଣି ! ରାଣି ! କିଏ ଏମାନେ ?

ମାଳବିକା—ଏମାନେ ଅମ୍ଭମାନଙ୍କର ଜଳଦାତା ଓ ରକ୍ଷାକର୍ତ୍ତା ।

ଦ୍ୟୁମତ୍ସେନ—ତେବେ ନିଶ୍ଚୟ ଏମାନେ ଦେବତା —ହେ ଛଦ୍ମବେଶୀ ଦେବତାମାନେ ! ତୁମ୍ଭମାନଙ୍କୁ ଅମ୍ଭମାନଙ୍କର କୋଟି କୋଟି ନମସ୍କାର; କିନ୍ତୁ ରାଣୀ ! ବେଳ କେତେ ? ସତ୍ୟ ଫେରିଲା ନାହିଁ ? କାହିଁକି ?

ମାଳବିକା—ଦିବା ଯେ ଅବସାନ ହେବାକୁ ବସିଲାଣି —ଅରଣ୍ୟ ଯେ ଘୋର ଅନ୍ଧକାରାଚ୍ଛନ୍ନ ହୋଇ ଆସିଲାଣି—ମଧ୍ୟେ ମଧ୍ୟେ ସିଂହ-ବ୍ୟାଘ୍ରଙ୍କର ଘୋର ଗର୍ଜ୍ଜନରେ ଅରଣ୍ୟ ଯେ କମ୍ପିତ ହେବାକୁ ଲାଗିଲାଣି । ସତ୍ୟ ଫେରିଲା ନାହିଁ କାହିଁକି ? କେଉଁଠାରେ ଦିଗଭ୍ରଷ୍ଟ ହୋଇ ରହିଲା ? ଭଣି କରିବି ?

ସ୍ତ୍ରୀ—ଚାଲ୍ ମା ! ଚାଲ୍ ବାବା ! ହାମର ମନ ଖୁସି କର୍ ମା !

ପୁରୁଷ—( ଏକାନ୍ତେ ସ୍ତ୍ରୀକୁ ) ଏମାନେ ରଜା ରାଣୀ !

ସ୍ତ୍ରୀ—( ଏକାନ୍ତେ ପୁରୁଷକୁ ) ହଁ, ହଁ ଦେଖ୍‌ନା କେମ୍ତି ଖବ୍‌ସୁରତ୍ ଚେହେରା—ରଜା ଅଛି ।

ପୁରୁଷ—ରଜା, ରଜା ! କହ କହ ସତ୍ୟ କିଏ, ହାମେମାନେ ଦଣ୍ଡକେ ଖୋଜି ଆଣିବୁଁ ।

ଦ୍ୟୁମତ୍ସେନ—ସତ୍ୟ ! ସତ୍ୟ ! ଅମ୍ଭର ପ୍ରାଣର ପ୍ରାଣ—ହୃଦୟର ହୃଦୟ—ଅଗତିର ଗତି ! ବାବା, ବାବା, କାହିଁଗଲୁ ? ଏହିକ୍ଷଣି ଆସୁଛି ବୋ'ଲ୍ କହି କାହିଁଗଲୁ ?

ପୁରୁଷ—ରଜା ! ତୁ କିଛି ଦର୍ କରନା—ହାମେ, ତୋ ପୁଅକୁ ଘୁଣ୍ଡେ ଆଣି ଦେଉଚୁ—ପୋକିଆ ମା,' ତୁ' ରଜାରାଣୀକୁ ହାମ କୁଡ଼ିଆକୁ ଲେଇ ଫଲ ମୂଳ ଖାଇବାକୁ ଦେ, ଆଉ ଖଟିଲ୍ ପକାଇ ଶୋଇବାକୁ ଦେ—ହାମେ ସତ୍ୟ ଭାଇକୁ ଘେନି ଦଣ୍ଡକେ ଆସୁଚୁ ।

ଦ୍ୟୁମତ୍ସେନ—ବର୍ତ୍ତମାନ ଯେ ଅନ୍ଧକାର ହୋଇ ଆସିଲାଣି, ତୁମ୍ଭେ କିପରି ଖୋଜିବ ?

ପୁରୁଷ—ନା, ରଜା—ଅବ ଘଡ଼ିଏ ଦିନ ଅଛି—ତୁ ଜଙ୍ଗଲ୍ କଥା କ'ଣ ଜାଣୁ ? (ପ୍ରସ୍ଥାନ)

ସ୍ତ୍ରୀ—ଆ, ରଜା ! ଆ, ରାଣି ! ହାମ କୁଡ଼ିଆକୁ ଆ ?

ମାଳବିକା—ନା ମା, ଅମ୍ଭମାନଙ୍କୁ ଏହିଠାରେ ରହିବାକୁ ଦିଅ—ପୁତ୍ର ବିନା କେଉଁଠାକୁ ଯିବୁ ? କେଉଁ ସୁଖ ଭୁଞ୍ଜିବୁଁ ?—

ସ୍ତ୍ରୀ—ଏ ଥାନରେ ମା—ବଡ଼ ଭଣ୍ଡା ।

ମାଳବିକା—କାହିଁ ଭଣ୍ଡା ?—ପୁତ୍ର-ବିରହ-କଣ୍ଟକରେ ଯା'ର ହୃଦୟ ଛିନ୍ନ ବିଛିନ୍ନ, ଏ ବାହ୍ୟ ଭଣ୍ଡା ତା'ର କ୍ଷତି କରିପାରିବ ?

ସ୍ତ୍ରୀ—ଏଇ ଦେଖ ମା—ଗୋଟାଏ ବୋଡ଼ା ସାପ ।

ମାଳବିକା—ସାମାନ୍ୟ ସର୍ପଟାଏ । ମୋତେ କ'ଣ ଭୟ ଦେଖାଉଛ—ଯାର ଇନ୍ଦ୍ରିୟସମସ୍ତ ଅଧୁନା ପୁତ୍ରଚିନ୍ତା, ପୁତ୍ରଧ୍ୟାନରେ ନିମଜ୍ଜିତ—ତାର ଅନ୍ୟ କେଉଁ ବିଷୟ ଧାରଣା କରିବାର କ୍ଷମତା ଅଛି ?

ସ୍ତ୍ରୀ—ମା । ତୁଅର କଥା ରଖିବୁ ନାହିଁ ?

ଦ୍ୟୁମତ୍ସେନ—ରାଣି । ଆଉ ମନା କର ନାହିଁ, ଚାଲ, ଆମ୍ଭମାନଙ୍କର ଜୀବନଦାତ୍ରୀଙ୍କର—ଆଶ୍ରୟଦାତ୍ରୀଙ୍କର ଯେତେବେଳେ ଏତେ ସ୍ନେହ, ଏତେ ପ୍ରେମ—ତେତେବେଳେ ଆମ୍ଭେମାନେ କି ଏଡ଼େ ଅକୃତଜ୍ଞ, ଏଡ଼େ ନିର୍ମମ ଯେ ତାଙ୍କର ନିମନ୍ତ୍ରଣ ଅବହେଳା କରିବା ?

ମାଳବିକା—ଚାଲ, ଚାଲ, ମା—କାହିଁକି ମା, ଏହି ଦୀନ କାଙ୍ଗାଳମାନଙ୍କ ଋଣଜାଲରେ ବାନ୍ଧୁଅଛ ?

ଦ୍ୟୁମତ୍ସେନ—(ସ୍ୱଗତ) ଦୁର୍ଦ୍ଧାନ୍ତ । ତୁହି ପରା ଶିକ୍ଷିତ, ସଭ୍ୟ, ମୋର ପୁଣି ବାଲ୍ୟସହଚର, ବିଶ୍ୱସ୍ତ କର୍ମଚାରୀ ।—ଆଉ ଏ' ଅଶିକ୍ଷିତା, ଅସଭ୍ୟା, ବର୍ବର ସ୍ତ୍ରୀଟିଏ—କିଏ ଏ' ମୋର ?—ଏହାର ସହିତ ମୋର କି ସମ୍ବନ୍ଧ ? କେଉଁ ପ୍ରଲୋଭନରେ ଯେ ମୋ' ସକାଶେ ଏତେଦୂର ସ୍ୱାର୍ଥତ୍ୟାଗ କରିବାକୁ ଉଦ୍ୟତ ? ଦେଖ, ଦେଖ ଜଗତ୍, ତେବେ ଏକାଧାରରେ ରହି, ସଭ୍ୟ ଆଉ ଅସଭ୍ୟର ଚିତ୍ର—ଶିକ୍ଷିତ ଆଉ ଅଶିକ୍ଷିତର ଚିତ୍ର—ସବଳ ପୁରୁଷ ଆଉ ଦୁର୍ବଳା ନାରୀର ଚିତ୍ର ?

(ସମସ୍ତଙ୍କର ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

[ ଅରଣ୍ୟର ଅପରଭାଗସ୍ଥ ପୁଷ୍କରିଣୀ ତୀର ]

ସତ୍ୟବାନ—( ଇତସ୍ତତଃ ଧାବନ ପୂର୍ବକ ) ଏହି ଆଡ଼େ ଠିକ୍ ବାଟ—ନା, ନା ଏଣେ ଯେ ପ୍ରାଚୀରବତ୍ ଉତ୍ତୁଙ୍ଗପର୍ବତମାଳା—ଏହି ଆଡ଼େ ଠିକ୍ ବାଟ—ନା, ନା, ଏଣେ ଯେ ସରୀସୃପସଦୃଶ ନୀଳତୋୟା ସ୍ରୋତସ୍ୱତୀ—ଏହି ଆଡ଼େ ଠିକ୍‌ବାଟ—ଓଃ, ଏଣେ ନିବିଡ଼, ନିବିଡ଼ କଣ୍ଟକମୟ ପ୍ରଦେଶ—ତେବେ, ଏହି ଆଡ଼େ ନିଶ୍ଚୟ ଠିକ୍ ବାଟ—

( ପ୍ରସ୍ଥାନୋଦ୍ୟତ )

( ସୁଦାମର ପ୍ରବେଶ )

ସୁଦାମ—ହଁ, ରେ, ଏହି ଆଡ଼େ ନିଶ୍ଚୟ ଠିକ୍ ବାଟ ।
(ସ୍ୱଗତ) ଅଜଗରକୁ ଦାତା ରାମ—ମୁଖେ ପଡ଼ିଲେ ରାମ ରାମ ।—ଖୋଦା ଦେନେ ବାଲେ, ଯିସ୍‌କୁ ଦେତା—ଦୋରବସ୍ତ ଛପର ଫାଡ଼୍‌କେ ଦେତା । ଥିଲି ଦରିଦ୍ରବ୍ରାହ୍ମଣ, ହେବି କୁବେର ସମାନ—ଥିଲି ପଥର ଭିଖାରୀ, ହେବି ରାଜ୍ୟାଧିକାରୀ—ଓଃ, ବଡ଼ଭୟ ହେଉଥିଲି, ସୁବିଧାରେ କେମିତି ଏ କାମ ହାସଲ କରିବି—ସ୍ୱର୍ଣ୍ଣ-ରୌପ୍ୟ ମୁଦ୍ରା-ସ୍ପର୍ଶରେ ପ୍ରାଣ ଶୀତଳ କରିବି—କିନ୍ତୁ କି ଭାଗ୍ୟ ମୋର । ଯେଉଁ ସୁଯୋଗ କି କେବେ ଚିନ୍ତା ପଥରେ ଆସିନାହିଁ—ସ୍ୱପ୍ନରାଜ୍ୟରେ ସୁଦ୍ଧା କେବେ ଦେଖା ଦେଇନାହିଁ—ସେହି ସୁଯୋଗ ଆସି ନିକେ ସମ୍ମୁଖରେ ବର୍ତ୍ତମାନ—ହାଃ, ହାଃ, ହାଃ କଥା ମଜା—ଅଜଠାରୁ ରଜା !

ସତ୍ୟବାନ—କିଏ ? କିଏ ? ସୁଦାମ ! ଚିତ୍ତବ୍ୟ ! ତୁମ୍ଭେ ଏଠି ? ତୁମ୍ଭର ପୂର୍ବସଖ୍ୟ ତେବେ ମନେ ପଡ଼ିଛି କି ? ତୁମ୍ଭର ମତ ପରିବର୍ତ୍ତିତ ହୋଇଛି କି ? ତୁମ୍ଭର କରୁଣାର ଉଦ୍ରେକ ହୋଇଛି କି ? ପିତାଙ୍କ ତୃଷା ନିବାରଣ କରି ମୋତେ ଖୋଜିବାକୁ ଆସିଛ କି ? ପଥଭ୍ରଷ୍ଟଙ୍କୁ ଉଦ୍ଧାର କରିବା ସକାଶେ ଦେବପ୍ରେରିତ କି ତୁମ୍ଭେ ?

ସୁଦାମ—(ସ୍ୱଗତ) ହଁରେ ! ଉଦ୍ଧାର କରିବା ସକାଶେ ଦୁର୍ଦ୍ଦାନ୍ତପ୍ରେରିତ ମୁହିଁ ।

ସତ୍ୟବାନ—ପିତୃବ୍ୟ ! ତୁନି ହୋଇ ରହିଲ ଯେ—ଭୁଲିଯାଅ, ଭୁଲିଯାଅ ଏତେବେଳେ ଶତ୍ରୁଭାବ ତୁମ୍ଭର ! ଏହି ଅଜ୍ଞାନ ଶିଶୁକୁ—ଦୁର୍ବଳ ଶିଶୁକୁ ତୁମ୍ଭର ପଥ ଦେଖାଇ ତୃଷାର୍ତ୍ତଙ୍କ ନିକଟକୁ ନେଇଚାଲ—ପିତା ଯେ ଜଳ ଜଳ ବୋଲି କାତର ହେଉଥିବେ !

ସୁଦାମ—(ସ୍ୱଗତ) ବାଃ, ବାଃ, ବେଶ୍, ବେଶ୍, ସମୂଳେ ଯେ ବୃକ୍ଷଚ୍ଛେଦନର ବ୍ୟବସ୍ଥା ହୋଇ ଯାଇଛି—ଏଣେ ସତ୍ୟବାନ ମୋ ହସ୍ତେ, ତେଣେ ବୁଢ଼ାବୁଢ଼ୀ ଦେବ ହସ୍ତେ—ବାଃ, ବାଃ ! କିଆ ମଜା—ଏକାବେଳେ ମହାରାଜା !

ସତ୍ୟବାନ—ଶୁଣିଲ ନାହିଁ ? ଶୁଣିଲ ନାହିଁ ? ନିର୍ମମ ପାହାଡ଼ ! ମୂକ ତରୁଲତା ! ଦେଖୁଛି ତୁମ୍ଭମାନଙ୍କର ହୃଦୟ ଅଛି—ତୁମ୍ଭେମାନେ ଏହି କାତର ବାଣୀ ଶୁଣି ନିଶ୍ଚଳ ନିସ୍ପନ୍ଦ ହୋଇ ଗଲଣି—କିନ୍ତୁ ଏହି ମମତାପୂର୍ଣ୍ଣ, ବାକଶକ୍ତିଶାଳୀ ମାନବ ! ତୁମ୍ଭର କି ହୃଦୟ ନାହିଁ ? ତୁମ୍ଭର କି ବିବେକ ନାହିଁ ? ଓଃ ହୋଃ ! ତେବେ ଯାଏଁ ଏଇପଥ ଦେଇ—ଈଶ୍ୱର ! ଆପଣ ଭରସା ଏକମାତ୍ର ।

(ଗମନୋଦ୍ୟତ)

ସୁଦାମ—( ସତ୍ୟବାନକୁ ଟାଣି ଆଣି ) କେଣେ ପଳାଉ ରେ ଶିକାର ଶିକାରି କରନ୍ତି ?

ସତ୍ୟବାନ—ପିତୃବ୍ୟ !

ସୁଦାମ—ଛାଡ଼, ଛାଡ଼, ତୋର ସେହି ପିଲାଳିଆ ଡାକ—ବର୍ତ୍ତମାନ ଇଷ୍ଟଦେବତାକୁ ତୋର ସ୍ମରଣ କର୍, ମୋର କାର୍ଯ୍ୟ ମଧ୍ୟ ଶୀଘ୍ର ଶେଷ କରିବାକୁ ଦେ ! (ସ୍ୱଗତ) ରେ ମୁଦ୍ରା ! ତୋର ଶୀତଳ-ପ୍ରତିମା କେତେବେଳେ ସ୍ପର୍ଶ କରିବ ?

ସତ୍ୟବାନ—(ସ୍ୱଗତ) ଏ କଣ ? ମୋର ହତ୍ୟା ? ବୁଝିଛି ଦୁର୍ଦ୍ଦାନ୍ତ ! ତୋର ଏହି ଗୃଢ଼ରସ—ତୋର ଏହି ଦୁଃଶୀଳତା ! ଏ ପର୍ଯ୍ୟନ୍ତ କି ତୁ ଆମ୍ଭମାନଙ୍କୁ ପରିତ୍ୟାଗ କରିନାହୁଁ ? ଏ ପର୍ଯ୍ୟନ୍ତ କି ପଦେ ପଦେ ଅନୁସରଣ କରୁଛୁ ? ଏଘୋର ଜଙ୍ଗଲକୁ ଛଡ଼ି ସୁଦ୍ଧା କଣ ନିଶ୍ଚିନ୍ତ ହୋଇପାରୁ ନାହୁଁ ? ମୋଠାରୁ, ଏହି ଦୀନ ଅସ୍ତ୍ରଶସ୍ତ୍ରହୀନ—ଅଶ୍ରୟହୀନ ବାଳକଠାରୁ ତୋର କେଉଁ ଭୟ ? କିବା କ୍ଷୋଭ ? (ବିହି) ହଁ, ବୁଝିଛି, ଶତ୍ରୁର ମୂଳୋତ୍ପାଟନ କରିବା; କିନ୍ତୁ, ଥାନ୍ତା ଯେବେ ଏକ ଚତୁର୍ଥାଂଶ ସୈନ୍ୟ ଆମ୍ଭ ପକ୍ଷରେ—ଦେଖାନ୍ତି, ଦେଖାନ୍ତି, କେତେ ଶକ୍ତି ଧରେ ଏହି କ୍ଷୁଦ୍ର ଶିଶୁ ! ଛାଡ଼—ବେଶ, ଉତ୍ତମ ହୋଇଛି—ଦୁର୍ଦ୍ଦାନ୍ତ ପକ୍ଷେ ଶତ୍ରୁନାଶ ହେବ—ଆଉ ମୋ ପକ୍ଷେ କ୍ଷତ୍ରିୟ ସନ୍ତାନର ହୃଦୟନିର୍ବାସନ-ଯାତନା ଅଚିରେ ଅବସାନ ହେବ—କିନ୍ତୁ, କିନ୍ତୁ, ବୃଦ୍ଧ ପିତାମାତା—ସେମାନଙ୍କର ଗତି !—ଯାଆନ୍ତୁ, ଯାଆନ୍ତୁ, ସେମାନେ ମଧ୍ୟ ଶୁଷ୍କପ୍ରାଣ ହୋଇ ଯାଆନ୍ତୁ—କିନ୍ତୁ, କିନ୍ତୁ ମୁଁ ତ ସେମାନଙ୍କର ଆଶା ପୂର୍ଣ୍ଣ କରିପାରିନାହିଁ—ସେମାନେ ଯେ ବ୍ୟାକୁଳ ଚିତ୍ତରେ ମୋର ଅଗମନ ପଥକୁ ଅନାଇ ବସିଥିବେ,'(ପ୍ରକାଶ୍ୟେ ) ପିତୃବ୍ୟ !

ସୁଦାମ—ପୁଣି ସେହି ଡାକ ?—କିନ୍ତୁ ଜାଣିଥା ସେ ସବୁ କୋମଳାସ୍ତ୍ର ଏହି ପାଷାଣ ହୃଦୟ ପ୍ରତି କାର୍ଯ୍ୟକର ନାହିଁ—ଦେଖ, ଦେଖ, ଟଙ୍କା ସକାଶେ ଏ'ହୃଦୟ କେଡେ କଠିନ ହୋଇଛି—ଥାଉ—କହ, ଏବେ ପ୍ରସ୍ତୁତ ହୋଇଛୁ ତ ?

ସତ୍ୟବାନ—(ସ୍ୱଗତ) ମାନବ ! ତୁମର ହୃଦୟ କି ଏଡେ କଠିନ ? ତୁମ୍ଭଠାରେ କଣ କାର୍ଯ୍ୟ ମାତ୍ର ମନୁଷ୍ୟତା ନାହିଁ ? (ପ୍ରକାଶ୍ୟେ)—ପିତୃବ୍ୟ ! ମରିବା ଆଗେ ମୋର ଗୋଟିଏ ଅଭିଳାଷ କି ପୂର୍ଣ୍ଣ କରିବ ନାହିଁ ?

ସୁଦାମ—(ସ୍ୱଗତ) ଅଚ୍ଛା ! କି ଅଭିଳାଷଟା ଶୁଣିବା ଯାଉନା—(ପ୍ରକାଶ୍ୟେ) କହ ଶୀଘ୍ର କହ !

ସତ୍ୟବାନ—ପିତାମାତାମାନେ ବଡ଼ ତୃଷାତୁର ହୋଇଛନ୍ତି—ମୋତେ ଏହି ପାଣିଟିକ ସେମାନଙ୍କ ମୁହଁରେ ଢାଳି ଦେଇ ଆସିବାକୁ ଦିଅ ।

ସୁଦାମ—( ଅର୍ଦ୍ଧସ୍ୱଗତ ) ବାଃ, ବାଃ, ବେଶ ଅଭିଳାଷ ତ—(ପ୍ରକାଶ୍ୟେ) ଆରେ, ମନେ କରୁଚୁକି ମୁଁ

ଭୀର ଚୋକା—ଏହିକ୍ଷଣି କହିବ—"ଯା'ରେ
ସତ୍ୟ ଯା—ମୁଁ ଏଠାରେ ଗୁହିଁ ବସିଛି—କିମ୍ବା
ତୋର ଯେପରି ଇଚ୍ଛା ସେହିପରି କରିବି ?"

ସତ୍ୟବାନ—ତେବେ ମନେ କରିଛ କି ମୁଁ ଏହି ଭୀର
ପ୍ରାଣରକ୍ଷା କରିବା ସକାଶେ ତୁମ୍ଭଠାରେ ଛଳନା
ପୂର୍ବକ ଏହି ପ୍ରାର୍ଥନା କରୁଛି ? ଶୁଣ ତେବେ—ମୁଁ
ଏହି ତରୁଲତା, ଆକାଶ, ବସୁନ୍ଧରା, ଦେବ, କିନ୍ନର
ସମସ୍ତଙ୍କୁ ସାକ୍ଷୀକରି ଶପଥ କରୁଛି— ପିତାଙ୍କୁ
ସ୍ୱହସ୍ତରେ ଏହି ପାଣିଟିକି ପିଆଇ ତାଙ୍କଠାରୁ ଶେଷ
ବିଦାୟ ନେଇ ଏହିଠାରେ ଉପସ୍ଥିତ ହେବି ।

ସୁଦାମ—ଆମ୍ଭର ଦରକାର ନାହିଁ—ଛାଡ଼ ସତ୍ୟ, ସେ
ଅଭିଳାଷ ତ୍ୟାଗ କର—ଆଉ ଦେଖ ସେମାନେ
ଯେତେବେଳେ ତୃଷାତୁର ହୋଇଛନ୍ତି, ଭଲ
ହୋଇଛି—ସମସ୍ତେ ତାହାହେଲେ ଇହଧାମ ଛାଡ଼ି
ଚାଲିଯିବ ଏକାସାଙ୍ଗେ ଆ, ଆ, ଶୀଘ୍ର ପ୍ରସ୍ତୁତ ହ ।

ସତ୍ୟବାନ—ଏହିଯେ, ପିତା ଡାକୁଛନ୍ତି—'ସତ୍ୟ, ସତ୍ୟ
ଶୀଘ୍ର ପାଣି ଦେ, ପ୍ରାଣ ଗଲା', ଏହି ଦେଖ, ଏହି
ଦେଖ—ମା ବୃଥା ଆଶ୍ୱାସନା ଦେଉଛନ୍ତି, ଦୈବ !
ସ୍ଥିର ହେଉନ୍ତୁ—ସତ୍ୟ ଏହିକ୍ଷଣି ପାଣି ନେଇ
ଆସୁଚି'—ଚାଲ ଚାଲ ପିତା, ମାତା, ଆଉ ବିଳମ୍ବ
ନାହିଁ—ଏହି ପାଣି ମୁଁ ନେଉଛି ।

( ଦ୍ରୁତବେଗରେ ପ୍ରସ୍ଥାନୋଦ୍ୟତ ହେବା ସମୟରେ )

ସୁଦାମ—ଏତେ ସ୍ପର୍ଦ୍ଧା ! ଜୋର କରି ପଳାଇବାକୁ
ବସିଛୁ ! ( ଧରିବା ସମୟରେ )

ସତ୍ୟବାନ—ଛାଡ଼, ଛାଡ଼, ପାମର !—ପିତା ! ପିତା !
ଏହି ନେଉଛି ପାଣି—

( ପଳାୟନ ସମୟରେ ସୁଦାମର ସିଟି ବାଦନ
ଓ ବିପରୀତ ଦିଗରୁ ସୈନ୍ୟମାନେ ପ୍ରବେଶ କରି
ବର୍ଶୋତ୍ତଳନ କରିବା, ସତ୍ୟବାନର ହସ୍ତରୁ
ଜଳପାତ୍ର ଖସି ପଡ଼ିବା ଏବଂ ସେହି ସମୟରେ
ଭିଲ୍ ସର୍ଦ୍ଦାରର ତୀର ନିକ୍ଷେପଣ ଓ ଭିଲ୍‌ମାନଙ୍କର
ସୈନ୍ୟମାନଙ୍କୁ ଆକ୍ରମଣ କରିବା ଏବଂ ସତ୍ୟବାନ
ଆଶ୍ଚର୍ଯ୍ୟ ଭାବରେ ଠିଆ ହୋଇ ରହିବା । )

ଯବନିକା ପତନ

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଉଦ୍ୟାନ )

[ ସାବିତ୍ରୀ ଗୋଟିଏ କ୍ଷୁଦ୍ର ବୃକ୍ଷଶାଖା ଧରି ମୁଗ୍ଧଚିତ୍ତରେ ଉଦ୍ୟାନର ଶୋଭା ଦର୍ଶନ ଓ ସହଚରୀଗଣଙ୍କ ଗୀତ ଶ୍ରବଣ କରୁଥିବା ]

( ନୃତ୍ୟ ସହିତ ସଖୀଙ୍କର ଗୀତ )

ତୋଳିଛୁ କୁସୁମ ରାଶି   ଗୁନ୍ଥିଛୁ ଯତନେ ବସି
ଆଣିଛୁ ଏ'ହାର ବନ୍ଧୋ ! ଦେବୁ ଉପହାର ।
ଏ'ହାର କୁସୁମ ଗନ୍ଧ   ବିରଚିତ କାମଗନ୍ଧ
ପ୍ରେମ-ପାରିଜାତ-ଗନ୍ଧସାର ।
ଏ'ହାର କୁସୁମ ଶୋଭା   ପ୍ରିୟଜନ ମନ ଲୋଭା
ଶଶି ଦିବାକର ମଣି ହାର ।
ଏ'ହାର ବନ୍ଧନ ବନ୍ଧୁ   ପ୍ରକୃତି ନିୟମ ଛନ୍ଦୁ
କଠିନ, କଠିନ ହୃଦ-ତାର ।
ହୃଦୟେ ହୃଦୟ ଛନ୍ଦ   କରେ କରୁ ଚିର ବନ୍ଦୀ
ଜୀବନ ମରଣ ଏକାକାର;
ପତିହେ, ବନ୍ଧୁହେ, ସଖାହେ,
ପ୍ରାଣ ପ୍ରିୟତମ ତୁମ୍ଭେ ମୋର
ଏ' ହାର ତୁମ୍ଭର ବନ୍ଧୁ, ଏ' ଦେହ ତୁମ୍ଭର ବନ୍ଧୁ,
ଏ' ପ୍ରାଣ ତୁମ୍ଭର ବନ୍ଧୁ, ସବୁ ତୁମ୍ଭର ।

୧ମ ସଖୀ—( ନିକଟକୁ ଯାଇ ) ସଖି ! ଏକ ଦୃଷ୍ଟିରେ
କଣ ଦେଖୁଛ ?

୨ୟ ସଖୀ—(ନିକଟକୁ ଯାଇ) ସଖି ! ଏକଧ୍ୟାନରେ
କଣ ଭାବୁଛ ?

ସାବିତ୍ରୀ—ଭାବୁଛି, ଦେଖୁଛି, ସୌନ୍ଦର୍ଯ୍ୟ, ଚାରି-
ଆଡ଼େ—ଏକ ଅପରୂପ ସୌନ୍ଦର୍ଯ୍ୟ—ଯାହାର
ବର୍ଣ୍ଣନା ବାକ୍ୟର ଅତୀତ, ଯାହାର ଧାରଣା
କଳ୍ପନାର ଅତୀତ, ଯାହାର ତୁଳନା ମର୍ତ୍ତ୍ୟ-
ଲୋକରେ ଅସମ୍ଭବ—ଗାଅ, ଗାଅ, ସଖୀଗଣ !
ପୁଣି ସେହି କୋକିଳ କୁହୁତାନରେ—ସେହି

ବୀଣାଝଙ୍କାର ସ୍ୱରରେ—ସେହି ସୁଧାମୟ ସଙ୍ଗୀତ,
ଯେଉଁଠି ମୁଁ ଏହି ପ୍ରକୃତିର ସୌନ୍ଦର୍ଯ୍ୟ-ନୌକାରେ
ବସି ତୁମ୍ଭମାନଙ୍କର ସଙ୍ଗୀତ-ସୁଧାସ୍ରୋତରେ ସେହି
ନିର୍ମଳ ସୌନ୍ଦର୍ଯ୍ୟ-ରାଜ୍ୟକୁ ପୁଣି ଭାସିଯାଏଁ ।

( ସଖୀଗଣ ପୁନର୍ବାର ଗାଇବାକୁ ଲାଗିଲେ ଏବଂ ସାବିତ୍ରୀ ସେହି ଗାନ ଶ୍ରବଣ କରୁ କରୁ ଗୋଟିଏ ବେଦିକା ଉପରେ ବସିପଡ଼ିଲେ ଏବଂ କ୍ରମେ ନିଦ୍ରାଭିଭୂତା ହେଲେ )

ଗୀତ

ମଧୁର ବସନ୍ତ କାଳରେ, ସଜନି,
ମଧୁର ବସନ୍ତ କାଳ,
ପ୍ରଫୁଲ୍ଲ ପ୍ରଫୁଲ୍ଲ ଆଜି ଦିଗନ୍ତ କୁସୁମରାଜି,
ଦିଗନ୍ତ ବଟ ବକୁଳ ।
ମଧୁର ସଙ୍ଗୀତ ଗାଉଅଛି
ପିକ ଚୂତ ଡାଳରେ ବସି
ମଧୁର ମଧୁର, ସଧୀର ସଧୀର,
ବହେ ମଳୟାନିଳ
(ଆଜି) ଆମୋଦେ, ଆହ୍ଲାଦେ,
ମାତି ନାନା ମୋଦେ ଗାଆନ୍ତି ବିହଙ୍ଗ କୁଳ ।

୧ମ ସଖୀ—ସଇଙ୍କୁ ଯେ ଆମର ନିଦ ଲାଗିଲା !

୨ୟ ସଖୀ—ନାନି ! ସଇ ଆମର କପରି ମଣିଷ ମୁଁ କିଛି ବୁଝିପାରେ ନାହିଁ; ଗୀତ ଶୁଣିଲେ ଏକାବେଳକେ ଅଜ୍ଞାନ ହୋଇ ଯାଆନ୍ତି—ଫଳ ଫୁଲ ଦେଖିଲେ ଏକାବେଳକେ ପାଗଳ ହୋଇ ଯାଆନ୍ତି ?

୩ୟ ସଖୀ—ଆଲୋ ଗୀତ ତ ଗୀତ—ସେ ଦିନ ଗଛର କୋଇଲିଟା ବୋବାଉଥିଲା—ତାକୁ ଶୁଣିତ ଏକାବେଳକେ ବାହୋର—ମୁଁ ଆସି 'ସଇ ସଇ' ବୋଲି କେତେଣି ହକାରେ ଡାକିଥିବି, ତେବେବି କଣ ତାଙ୍କର ହୋସ ଅଛି ? ଉପାୟ ନ ଦେଖି ଶେଷକୁ ଦେହ ଧରି ହଲାଇଲି, କେତେବେଳେ ଯାଇଁ ଟିକିଏ ପରା ମୋଡ଼ି ମୋଡ଼ି ହେଲେ ।

୪ର୍ଥ ସଖୀ—ଆଲୋ ତାଲି କଥା ଶୁଣିଲୁତ ଆହୁରି ଆଶ୍ଚର୍ଯ୍ୟ ହେବୁ ! ଏହି ଗୋଲାପ ଗଛରେ ଯେଉଁ ନାଲିଆ ଫୁଲଟା ଦେଖୁଚୁ, ସେହି ଫୁଲଟାକୁ ତ ଧରି, ଏହି ମୁହଁସଞ୍ଜବେଳେ ମ, କେତେ ସୁଆଗ କରୁଥାଏ—କେତେ କଥାବାର୍ତ୍ତା କରୁଥାଏ—ହସୁଥାଏ, କାନ୍ଦୁଥାଏ—ଏ' ସବୁ ଦେଖି ମୁଁ ହସିବି କେତେ, କାନ୍ଦିବି କେତେ—ଶେଷକୁ ସମ୍ଭାଳି ନ ପାରି, ଆସି ପଚାରିଲି—'ସଇ ! ଏହି ନାଲିଆ ନାଗରଟି କିଏ କି ?' ଲଜ୍ଜାରେ ତ ସଇର ମୁହଁ ଏକାବେଳେ ସେହି ଗୋଲାପ ଫୁଲ ପରି ଲାଲ ହୋଇଗଲା ।

୫ମ ସଖୀ—ଏ' ସବୁ କି ପାଗଳାମି !

୬ଷ୍ଠ ସଖୀ—ଏ' ସବୁ ବୟସ ଲକ୍ଷଣ ଛଡ଼ା ଆଉ କିଛି ନୁହେଁ ।

୧ମ ସଖୀ—ଆଲୋ ! ଆଲୋ ! ରାଣୀମା ଆସୁଚନ୍ତି ।

( କୌଶଲ୍ୟାଙ୍କ ପ୍ରବେଶ )

କୌଶଲ୍ୟା—ବେଳ ଆସି ବୁଡ଼ିବାକୁ ବସିଲାଣି, ତୁମ୍ଭମାନଙ୍କର ଖେଳ କଣ ସରିବ ନାହିଁ ? ସାବିକୁ ଦେଖୁନାହିଁ କାହିଁକି ? ସାବି କାହିଁ କି ?

୧ମ ସଖୀ—ସାବି ଗୀତ ଶୁଣୁ ଶୁଣୁ ସେହି ଡିପ ଉପରେ ଶୋଇ ପଡ଼ିଛି ।

କୌଶଲ୍ୟା—ଖାଲିଭୂଇଁଟାରେ ଶୋଇପଡ଼ିଲା—ତୁମ୍ଭେ-ମାନେ କେହି ଟିକିଏ ଘରକୁ ଉଠାଇ ନେଲ ନାହିଁ ? ଖଟପଲଙ୍କ ଥାଉ, ଥାଉ—ଗଦି ତକିଆ ଥାଉ ଥାଉ, ଝିଅମୋର—ସୁନାର ପିତୁଳା ମୋର—ଭୂଇଁରେ ଲୋଟୁଛି ?

୧ମ ସଖୀ—ରାଣୀମା ! ଆମେମାନେ କଣ କରିବୁ—ସେଦିନ ଏହିପରି ଶୋଇ ପଡ଼ିଲାବେଳେ ମସିଣାଟାଏ ଆଣି ଶଯ୍ୟା ପାରି ଦେବାକୁ କହିବାରୁ—କେମିତେଇ ପରା ଏକାବେଳକେ ଆମକୁ ହସି ଉଡ଼ାଇ ଦେଲେ—କହିଲେ କିନା, ମାଟିର ଦେହ ମାଟିରେ ମିଶିବ, ଏହାକୁ ଏତେ ଯତ୍ନ କାହିଁ ? ଆହୁରି କେତେ କଣ କହିଲେ—ଆମେମାନେ କିଛି ବୁଝି ପାରିଲୁ ନାହିଁ (ଅର୍ଦ୍ଧସ୍ୱଗତ) ପାଠୁଆଙ୍କର କଥା ଅପାଠୁଆ କାହୁଁ ବୁଝିବେ ?

କୌଶଲ୍ୟା—ଅଚ୍ଛା ! ତୁମ୍ଭେମାନେ ସମସ୍ତେ ଯାଅ—
(ନିକଟକୁ ଯାଇ) ସାବି ! ସାବି !

[ ସଖୀମାନଙ୍କର ପ୍ରସ୍ଥାନ ]

ସାବିତ୍ରୀ—(ସ୍ୱପ୍ନରେ) ଆହା ! କି ସୁନ୍ଦର ଆନନ୍ଦମୟ ଭୁବନ ! କି ଶାନ୍ତିମୟ ସ୍ଥାନ ! ଯେଉଁଆଡ଼େ ଦୃଷ୍ଟି ଫେରାଉଛି—ନବ ନବ ଦୃଶ୍ୟାବଳୀର ବୈଚିତ୍ର୍ୟ—ନବ ନବ ସୌନ୍ଦର୍ଯ୍ୟର ବିକାଶ—କି ଉଜ୍ଜ୍ୱଳ ! କି ସ୍ନିଗ୍ଧ ! ଚକ୍ଷୁର ଆବରଣ ଯେପରି ଉନ୍ମୁକ୍ତ ହୋଇ ଯାଉଅଛି—ହୃଦୟ କନ୍ଦର ଯେପରି ପୂର୍ଣ୍ଣ ହୋଇ ଉଠୁଛି !

କୌଶଲ୍ୟା—ସାବି ! ସାବି !

ସାବିତ୍ରୀ—(ସ୍ୱପ୍ନରେ) କିଏ ? ମା ! ଦେଖ ମା, କି ଆନନ୍ଦମୟ ଭୁବନ, ଯେପରି ସୌନ୍ଦର୍ଯ୍ୟରେ ଗଠିତ, ସଙ୍ଗୀତରେ ଅନୁପ୍ରାଣିତ, ସୁଗନ୍ଧରେ ଆମୋଦିତ !

କୌଶଲ୍ୟା—ସାବି ! ଏ ଗୁଡ଼ାକ କଣ ବକୁଛୁ ? ସାବି ! ସାବି !

ସାବିତ୍ରୀ—( ସ୍ୱପ୍ନରେ ) ମା ! ମା ! ଏଠାରେ ତ କାହାରିକୁ କଙ୍କାଳସାର ବା କାହାରିକୁ ଦୀନଦୁଃଖୀ ଦେଖୁନାହିଁ,ସମସ୍ତେ ଯେପରି ନବପ୍ରସ୍ଫୁଟିତ ପୁଷ୍ପପରି ଦିବ୍ୟାଙ୍ଗ ଓ ହାସ୍ୟମୟ ! ପୁଣି ଦେଖ, ମା ! ସିଂହ ମୃଗାଦି ହିଂସ୍ରଜନ୍ତୁମାନେ କିପରି ଦ୍ୱେଷ-ବିଦ୍ୱେଷ ଶୂନ୍ୟ ହୋଇ ଏକତ୍ରରେ ଆହାର ବିହାର କରୁଅଛନ୍ତି—ଯୁବକ ଯୁବତୀମାନେ କିପରି କାମନା ବର୍ଜିତ ହୋଇ ପରସ୍ପର ମଧ୍ୟରେ ହାସ-ପରିହାସ, କ୍ରୀଡ଼ା-କୌତୁକ କରୁଅଛନ୍ତି । ମା ! ମା ! ଏ କେଉଁ ପୁଣ୍ୟଲୋକ ମା ? ଏଠାରୁ ଯେ ଯିବାକୁ ମନ ବଳୁନାହିଁ ମା !

କୌଶଲ୍ୟା—(ସ୍ୱଗତ) ଏ' କଣ ? ସାବି ଏ' ଏଗୁଡ଼ାକ କଣ ବକୁଛି ? ଏ' ଆଉ କଣ୍ଢୁନୁହେଁ, ଏ' ସବୁ ବୟସବେଗ—ଯୁବକ-ଯୁବତୀର ଛବି ଦେଖିବା—ନିଶ୍ଚୟ ଯୁବକ-ଯୁବତୀଙ୍କ ମନର ବିକାର ! ରାଜାଙ୍କୁ ମୁଁ ସେଦିନୁ କହୁଛି, ସାବୀର ବୟସ ହେଲାଣି, ଶୀଘ୍ର ବିବାହ ଦିଅନ୍ତୁ—ସେ ଆଉ ସେ କଥା କାନକୁ ନେଉ ନାହାନ୍ତି, କହୁଛନ୍ତି କନା, ଉପଯୁକ୍ତ ପାତ୍ର କେହି ଆସୁ ନାହାନ୍ତି—ହେ ମା ସାବିତ୍ରି ! ତୁମ୍ଭର ପ୍ରସାଦକୁ ତୁମ୍ଭେହିଁ ରକ୍ଷା କର, ମା ! ସାବି ! ସାବି !

( ଦେହ ଧରି ହଲାଇବା )

ସାବିତ୍ରୀ—( ଉଠିବସି ) ଏଁ, ଏଁ, ମୁଁ କେଉଁଠି ? ମୁଁ ଏହି ଅନ୍ଧକାରମୟ ଉଦ୍ୟାନ ମଧ୍ୟରେ !

କୌଶଲ୍ୟା—ସାବି ! ମା ମୋର ! ଏଣୁ ତେଣୁ କଣ ଗୁଡ଼ାଏ ବକୁଥିଲୁ କି ?

ସାବିତ୍ରୀ—ନାହିଁ ମା ? କେତେବେଳେ—କହୁଛ ତ ନାହିଁ ! ସଖୀମାନେ କାହାନ୍ତି ?

କୌଶଲ୍ୟା—ସେମାନଙ୍କୁ ବିଦାୟ କରି ଦେଲିଣି—ଏହି ଭୂଇଁଠାରେ ଶୋଇ ପଡ଼ିଥିଲୁ—ସଞ୍ଜ ହେଲାଣି—ଆ, ଘରକୁ ଆ ।

ସାବିତ୍ରୀ—ଖୁଡ଼ୀ କଣ ଲୀଗା ପାଲଟି ଗୃଲି ଗଲାଣି, ମା ?

( ଲୀଳାର ପ୍ରବେଶ )

ଏହିତ ଖୁଡ଼ୀ ଆସୁଛି—ମା, ତୁ ଯା—ମୁଁ ଖୁଡ଼ୀ ସଙ୍ଗେ ଯାଉଛି ।

କୌଶଲ୍ୟା—ରଖ୍ ଲୋ ଲୀଳା, ଝିଅକୁ ରଖ୍—ଏ'ତ ମୋର ଝିଅ ନୁହେଁ—ଯେମିତକ ତୋର ! ଆଜି ଯାଉଛି, ରାଜାଙ୍କ ଆଗେ ସାବିର ବାହା କଥା ପକାଇବି; ତାଙ୍କୁ ଏ ବିଷୟରେ ଖୁବ୍ ଜିଦ୍ କରାଇବି । ( ପ୍ରସ୍ଥାନ )

ସାବିତ୍ରୀ—ଖୁଡ଼ି ! ଖୁଡ଼ି ! ଆଜି ଗୋଟିଏ ନୂଆ ଗୀତ ଶିଖିଛି, ଶୁଣିବୁ ?

ଲୀଳା—ଅଚ୍ଛା କି ଗୀତ, ଗା !

ସାବିତ୍ରୀ—ନା, ନା ଖୁଡ଼ି ! ଏହି ସୁର୍ଣ୍ଣ ନାମୀ ଫୁଲ ତୋଳିବା ପାଇଁ ଆସିଲାଣି, ସେ ଗାଉ—ସେ ମୋଠୁ ଭଲ ଗାଏ ।

ଲୀଳା—ସୁର ! ଗା'ଲୋ, କଣ ନୂଆଗୀତ ଆଜି ସବୁ ଶିଖିଛ ।

ସୁରମା—

## ଗୀତ

କାହାର ମୂରତିରେ,
ନାଚେ ନୟନେ ନିରତେ ନିତି ମୋର ?
କେତେ ଶୋଭା ସଙ୍ଗେ, କେତେ ଭାବ ଭଙ୍ଗେ
କିଏ ନାଶ ରଙ୍ଗେ, ମତେ ମନ ଅଙ୍ଗେ ?
ଗାଇ ଗାନ ପୁଣି, ସିଞ୍ଚି ଶାନ୍ତି ପାଣି
ମନ୍ଥୁ ପ୍ରାଣେ ଆଣି ଦିଏ ଶୋଭା ରାଣୀ ।

( ଗାଉ ଗାଉ ପ୍ରସ୍ଥାନ )

ଲୀଳା—ସାବି ! ସାବି ! ତୁହି କି ମୋର ଗର୍ଭ-ଜାତ ସନ୍ତାନ ? ଗର୍ଭ-ଜାତ ସନ୍ତାନ ଠାରେ ଏପରି ମାତୃସ୍ନେହ କି କେବେ ସମ୍ଭବେ ? ସାବି, ସାବି, ତୋହରି ସ୍ନେହ-ସୁଧାପାନ କରି—ତୋହରି ଚନ୍ଦ୍ରମା-ନିନ୍ଦିତ ବଦନ ଦର୍ଶନ କରି, ସବୁ ଦୁଃଖ ପାସୋରିଛି—ସବୁ ଆକାଙ୍କ୍ଷା ଦୂର କରିଛି—ହାୟ ପ୍ରାଣନାଥ ! ତୁମ୍ଭର ହୃଦୟ କିପରି ? ତୁମ୍ଭେ ଏପରି ସନ୍ତାନ ସୁଖ-ସୁଧାକୁ ତିକ୍ତ ବୋଲି ଅବହେଳା କରୁଛ ? ଥରେ ଚୁମ୍ବନ କରି—ଥରେ ଆସ୍ୱାଦନ କରି—ଦେଖିବ ଏହା ପ୍ରକୃତରେ ଦେବୀଙ୍କ ପ୍ରସାଦ କି ନା !

ସାବିତ୍ରୀ—ଖୁଡ଼ି ! ଯା ଶୀଘ୍ର ଲୁଗା ପାଲଟି ଆ । ସଞ୍ଜ ଆସି ହେଲାଣି—ମୁଁ ଯାଉଛି କେତକୀ, ମାଳତୀ ସଖିମାନଙ୍କଠାରୁ ବିଦାୟ ନେଇ ଆସେଁ ।

( ସାବିତ୍ରୀ ଫୁଲଗଛ ପାଖକୁ ଯାଇ ଗୁଣୁ ଗୁଣୁ ସ୍ୱରେ ଗୀତ ଗାଉ ଗାଉ ଫୁଲମାନଙ୍କୁ ଆଦର କରୁଥିବା )

ଲୀଳା—ସ୍ୱାମି ! ପ୍ରଭୋ ! ପଥକୁ ଆସ ! ଧର୍ମପଥକୁ ଆସ ! ତାଙ୍କଠାରେ ବିଶ୍ୱାସ କର, ଆମ୍ଭର ପରମ ପିତା ପରମେଶ୍ୱରଙ୍କଠାରେ ବିଶ୍ୱାସ କର, ଦେଖିବ—ତୁମ୍ଭେ ସ୍ୱଚ୍ଛମନା, ହେବ—ଚିରଶାନ୍ତିର ଅଧିକାରୀ ହେବ ! ବୃଥାରେ କାହିଁକି ନିଜର ଦୌର୍ବଲ୍ୟକୁ ଅସ୍ୱୀକାର କରୁଛ ?—ବିପଥଗମନରେ ଛିନ୍ନାହସ୍ତପଦ ହେଉଛ ? ନାରୀର ସାମାନ୍ୟ କଥା ଶୁଣି, ନାରୀର ସାମାନ୍ୟ ବିଶ୍ୱାସରେ ବିଶ୍ୱାସ କର, ଦେଖିବ—ମନରେ କୁଚିନ୍ତା ଆଦୌ ସ୍ଥାନ ପାଇବ ନାହିଁ—ରାତିରେ ଦୁଃସ୍ୱପ୍ନ ଦେଖି ହଠାତ୍ ଉନ୍ମତ୍ତ ହୋଇ ଉଠି ବସିବ ନାହିଁ—ହେ ଈଶ୍ୱର ! ସ୍ୱାମିଙ୍କ ମତି ଫେରାଇ ଦିଅନ୍ତୁ !

( ଲୀଳାର ପ୍ରସ୍ଥାନ ଓ ଗଜପତିର ପ୍ରବେଶ )

ଗଜପତି—( ଆପଣା ମନରେ ) ପ୍ରିୟେ ! ତୁମ୍ଭେ ମୋତେ ଦିନରାତି ଅଛା କରୁଛ ! ମୋର ମତକୁ ହସି ଉଡ଼ାଇ ଦେଉଛ ! କିନ୍ତୁ ଦେଉଛି—ଆଜି ତୁମ୍ଭର ମତ ଫେରାଇ ଦେଉଛି—ଶାସ୍ତ୍ରବାଦୀର ବଂଶ ଧ୍ୱଂସ କରିବି, ନାସ୍ତିକର ଜୟଧ୍ୱଜା ଉଡ଼୍ଡୀୟମାନ କରିବି ମୋର ରାଜ୍ୟଲାଭାଶଙ୍କା ଦୂର କରିଦେବି । ଉପାୟ ? ଉପାୟ—ମାତ୍ର ? ଉପାୟ—ନରହତ୍ୟା ଏକମାତ୍ର ଉପାୟ ! କ୍ଷତି କଣ ? ନିଜର ମତ ରକ୍ଷା କରିବା ସକାଶେ ଏପରି ଉପାୟ ଅବଲମ୍ବନରେ କ୍ଷତି କଣ ? ଲୋକେ କହିବେ, ପାପ—ଅଧର୍ମ ! ପାପ-ପୁଣ୍ୟ କଣ ? ଧର୍ମାଧର୍ମ କଣ ? ନୀତିକାରଙ୍କର ନୀତି-କୌଶଳ ମାତ୍ର—ଦୁର୍ବଳ ଚିତ୍ତର ଦୁର୍ବଳ କଳ୍ପନା ମାତ୍ର । ତାଙ୍କର ମତ ଗ୍ରହଣ କଲେ ସୁଦ୍ଧା ମୋର ପାପ କେଉଁଠି ? ଅଧର୍ମ କେଉଁଠି ? ସେମାନେ ନିଜେ କହୁଛନ୍ତି, ମିଥ୍ୟା-ନାଶରେହିଁ ଧର୍ମ—ପାପ-ନାଶରେହିଁ ପୁଣ୍ୟ—ଭ୍ରମ ନାଶରେହିଁ ଜୟ ! ତେଣୁ ଆଜି ବେଶ୍ ସୁବିଧା ମିଳିଛି—ଏହି ପୁଣ୍ୟ ଉପାର୍ଜନ କରିବାର ବେଶ ସୁଯୋଗ ମିଳିଛି । ଏହି ବିଷମିଶ୍ରିତ ଲଡ଼ୁ ଦ୍ୱାରା ମିଥ୍ୟାର ସ୍ତମ୍ଭ ଧ୍ୱଂସ କରି, ସତ୍ୟର ସ୍ତମ୍ଭ ସ୍ଥାପନ କରିବି; ଆଉ ଭ୍ରମର ମେଘ ଅପସାରିତ କରି ଆଲୋକର ମହିମା ପ୍ରଚାର କରିବି—ମୋର ସୁଖର ପଥ ମଧ୍ୟ ଏକାବେଳକେ ନିଷ୍କଣ୍ଟକ ହେବ ।

ସାବିତ୍ରୀ—( ଦେଖି ) ଦାଦି ଯେ ! ଦାଦି, ଦାଦି ! ହାତରେ କଣ ? କି ସୁନ୍ଦର ଲଡ଼ୁଟିଏ—କାହା ପାଇଁ ନେଉଛ, ଦାଦି ?

ଗଜପତି—( ସ୍ୱଗତ ) ନେବ ଆଉ କାହାପାଇଁ
( ପ୍ରକାଶ୍ୟେ ) ତୋ'ର ପାଇଁ ଆଣିଛି—ନେ'ଆ ।
ଏହିଠି ଖାଇ ଦେ' ।

ସାବିତ୍ରୀ—( ମିଠାଇ ନେଇ ) ଖୁଡ଼ି । ଖୁଡ଼ି । (ଦୌଡ଼
ପ୍ରସ୍ଥାନ )

ଗଜପତି—( ସ୍ୱଗତ ) ଏଁ, ଏଁ, ଲୀଳା କ'ଣ ଏହିଠି
ଅଛି ?

( ଲୀଳା ସଙ୍ଗେ ସାବିତ୍ରୀର ପ୍ରବେଶ )

ସାବିତ୍ରୀ—( ଲଡ଼ୁ ଦେଖାଇ ) ଦେଖ୍, ଦେଖ୍, ଖୁଡ଼ି ।
ଦାଦା ପରି ମୋତେ ଭଲ ପାନ୍ତି' ନାହିଁ ?

( ସାବିତ୍ରୀ ଲଡ଼ୁ ଖାଇବାକୁ ଉଦ୍ୟତ ହେବାକାଳେ )

ଲୀଳା—( ଗଜପତିର ମୁଖଭାବକୁ ସନ୍ଦେହ କରି )
ରହ ସାବି । ଲଡ଼ୁ ମୋତେ ଦେ'—ମୁଁ ଆଗେ
ଖାଇ ଦେଖେଁ ( ସାବିତ୍ରୀ ହସ୍ତରୁ ଛଡ଼ାଇ
ନେବା )

ସାବିତ୍ରୀ—ଏ' କଣ ଖୁଡ଼ି ? ଲଡ଼ୁ ଛଡ଼ାଇ ନେଲ
କାହିଁକି ?

ଗଜପତି—ଲୀଳା ! ଲୀଳା !

ଲୀଳା—( ଖାଇସାରି ) ଓଃ । ମୁଣ୍ଡ ଘୁରୁଛି । ବୁଝିଛି
ଦେବ । ଓଃ ହୋଃ—ଓଃ ହୋଃ, ଏତେଦୂର
ନିମ୍ନପଦରେ ଅବତରଣ କରିଛନ୍ତି । ପ୍ରାଣକୁ
ଏତେଦୂର ନିର୍ଦ୍ଦୟ କରିଛନ୍ତି । ଏହି ନୟନା-
ନନ୍ଦକାରିଣୀ—ପ୍ରାଣଶୀତଳକାରିଣୀ—ବଂଶରକ୍ଷା-
କାରିଣୀ—ବହୁତପସ୍ୟାର ଫଳ—ଦେବୀଙ୍କର
ପ୍ରସାଦ—ଏକମାତ୍ର ସନ୍ତାନ—ଦୁଃଖୀର ଧନ—
ଅନ୍ଧର ଯଷ୍ଟିକୁ, ଆପଣ କି ନା ଅଜ ସ୍ୱହସ୍ତରେ
ବିଷମିଶ୍ରିତ ମିଷ୍ଟାନ୍ନ ଦାନ କରି ବିନାଶ କରିବାକୁ
ଉଦ୍ୟତ । କାରଣ କଣ ? ଓଃହୋଃ । ବୁଝିଛି,ବୁଝିଛି
ଆପଣଙ୍କର ନାସ୍ତିକତା ପ୍ରମାଣ କରିବା ନିମନ୍ତେ;
କିନ୍ତୁ ହାୟ ! ତାହା ପ୍ରମାଣ କରିବାର ଏହାହିଁ
କି ଉପଯୁକ୍ତ ସ୍ଥାନ ଥିଲା ? ତେବେ ସ୍ୱଚକ୍ଷୁରେ
ଦେଖିଲୁ, ସ୍ୱକାର୍ଯ୍ୟରେ ଅନୁଭବ କରିଲୁ—କିଏ
ସତ୍ୟ ? କିଏ ମିଥ୍ୟା ? ଓଃ ହୋଃ ପ୍ରାଣଗଲା—
ସାବି ! ପ୍ରାଣଗଲା—( ପତନ ) ଓଃ—ହିକ୍—ଏ
—ପାଣି । ବଡ଼—ତୃଷା—ସାବି । ସାବି !
ମୋର—କୋଳକୁ ଆ'—

ସାବିତ୍ରୀ—ଖୁଡ଼ି, ଖୁଡ଼ି ! ଏ କଣ ହେଲା ? ଦାଦା
ଦାଦା, ଏ' କଣ କଲ ? ମୋର ଖୁଡ଼ିର ଏ'
କଣ ହେଲା ? ( ଆଲିଙ୍ଗନ କରିବା )

ଲୀଳା—ସ୍ୱା-ମୀ ! ପ୍ର-ଭୋ ! ଏ—ଦାସୀ—କୁ—ବି
ଦା—ୟ ଦିଅନ୍ତୁ, ଆ—ଉ—ଅ—ନ୍ତି—ମ—
କାଳରେ—ଦା—ସୀ—ର ଏ—ହି ଭି—କ୍ଷା
ର—ଖନ୍ତୁ,—ଈ—ଶ୍ୱ—ର—ଙ୍କ—ପ—ଦ—
ରେ ମ—ନ ଦିଲା—ନ୍ତୁ—ଏ—ହି—ହୃ—
ଦ—ୟ—ପ୍ର—ତି—ମା—କୁ—ସ୍ନେ—ହ—
କ—ରି—ନ୍ତୁ । ( ମୃତ୍ୟୁ )

ସାବିତ୍ରୀ—ଖୁଡ଼ି ! ଖୁଡ଼ି !

ଗଜପତି—ଲୀଳା ! ଲୀଳା !

---

## ଦ୍ୱିତୀୟ ଦୃଶ୍ୟ

ରାଜପଥ

( ଉନ୍ମତ୍ତ ଭାବରେ ଗଜପତିର ପ୍ରବେଶ )

ଗଜପତି—ହତ୍ୟାକାରୀ ! ହତ୍ୟାକାରୀ ମୁହିଁ ! କାହାର
ହତ୍ୟାକାରୀ ? ମୋର ସ୍ତ୍ରୀର ? ମୋର ପ୍ରାଣ
ସଙ୍ଗିନୀର ? ସାବିତ୍ରୀର ନୁହେ ? ଶାସ୍ତ୍ରବାଦର
ଜୟସ୍ତମ୍ଭର ନୁହେଁ ? କାହିଁକି ଏପରି ହେଲା ?
କାହିଁକି ଅକୃତକାର୍ଯ୍ୟ ହେଲି ? ତେବେ କି ଶାସ୍ତ୍ର
ସତ୍ୟ ? ମୋର ନାସ୍ତିକତା ମିଥ୍ୟା ?—ଏଁ, ଏଁ,
କଣ ଶୁଣୁଛି—କଣ ଶୁଣୁଛି ? ଏ, ଯେ ପରିଚିତ
କଣ୍ଠସ୍ୱର—ପ୍ରିୟାର କଣ୍ଠସ୍ୱର ( କ୍ଷଣକାଳ ରହି )
'ଈଶ୍ୱରଙ୍କ ପଦରେ ମନ ଦିଲାନ୍ତୁ, ହୃଦୟପ୍ରତିମାକୁ
ସ୍ନେହ କରନ୍ତୁ'—କରିବି, କରିବି—ତାହାହିଁ
କରିବି—ତୁମ୍ଭର କଥା (କର୍ଣ୍ଣଦେଇ) ରୁହ ! ରୁହ !
କାହାର ତୀବ୍ର ସ୍ୱର ଏହି ? ଶୁଣିବାକୁ ଦିଅ
( କ୍ଷଣକାଳ ରହି ) ଠିକ୍ କହୁଛ, ଠିକ୍ କହୁଛ—
ମୁହିଁ ଭୀରୁ ! ମୁହିଁ କାପୁରୁଷ ! ଯିଏ ମତ
ଶାସ୍ତ୍ରବାଦୀଙ୍କ ପରି ସାମାନ୍ୟ ମର୍ମର ଶବ୍ଦରେ ଶଙ୍କିତ

ହେଉଛନ୍ତି । ସାମାନ୍ୟ କ୍ଷତଗ୍ରସ୍ତ ହୋଇ ନିରାଶ ହୋଇ ପଡ଼ୁଛନ୍ତି । କିନ୍ତୁ ଏ କଣ ଦେଖୁଛି ? ଏ କଣ ଅନୁଭବ କରୁଛି ? ବାହାରେ ଦାବାନଳର ପ୍ରଜ୍ୱଳିତ ଶିଖା ଲହ ଲହ ଜିହ୍ୱା ପ୍ରସାରିତ କରି ଧାଇଁ ଆସୁଛି—ଅନ୍ତରରେ ବିବେକର ମର୍ମାନ୍ତିକ ବିଷଦଂଶନର ଜ୍ୱାଳା ଜ୍ୱଳି ଉଠୁଛି—ଜାଳିଦେବ ପୋଡ଼ିଦେବ—କିନ୍ତୁ ମୁଁ ଭୀରୁ ନୁହେଁ—କାପୁରୁଷ ନୁହେଁ—ମିଥ୍ୟାଠାରେ ଅବନତ ହେବି ନାହିଁ—ଶାସ୍ତିଠାରେ ନତଜାନୁ ହେବି ନାହିଁ—ଯାଏଁ ଯାଏଁ ଯେ କୌଣସି ଉପାୟରେ ମିଥ୍ୟାର ବଂଶ ଧ୍ୱଂସ କରିବାକୁ ହେବ—ସତ୍ୟର ଜୟ ଘୋଷଣା କରିବାକୁ ହେବ ।

( ବେଗେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—କୁଟୀର ସମ୍ମୁଖ—

( ଋଷି, ଦ୍ୟୁମତ୍‌ସେନ, ମାଳବିକା ଓ ସତ୍ୟବାନ ଆସୀନ )

ଋଷି—ମହାରାଜ ! ଆପଣଙ୍କର କରୁଣ କାହାଣୀ ବାସ୍ତବିକ ହୃଦୟସ୍ପର୍ଶୀ—କିନ୍ତୁ ମହାରାଜ ! ଆପଣ ବିଦ୍ୱାନ୍, ସୁତରାଂ ଜାଣିଥିବେ ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ—ତେଣୁ କାହାର ସବୁ ଦିନ ସମାନ ଯାଏ ନାହିଁ । କାଲି ଆପଣ ରାଜା ଥିଲେ, ଆଜି ଆପଣ ପଥର ଭିଖାରି—କାଲି ଆପଣ ଲକ୍ଷ ଲକ୍ଷ ଲୋକର ଆଶ୍ରୟଦାତା ଥିଲେ, କିନ୍ତୁ ଆଜି ଆପଣ ଆଶ୍ରୟପ୍ରାର୍ଥୀ—( ଦ୍ୟୁମତ୍‌ସେନ୍, ସତ୍ୟବାନ ଓ ମାଳବିକାଙ୍କର ଦୀର୍ଘନିଶ୍ୱାସ ତ୍ୟାଗ ) ଅବସ୍ଥାର ଘୋର ପରିବର୍ତ୍ତନ—ହେଉ—ନିରାଶ ହେବେ କାହିଁକି ? ଭୀତ ହେବେ କାହିଁକି ?—ପୂର୍ବ ଅବସ୍ଥା ସଙ୍ଗେ ବର୍ତ୍ତମାନ ଅବସ୍ଥା ତୁଳନା କରି—ପୂର୍ବ ସୁଖଶାନ୍ତି ସ୍ମରଣ ସଙ୍ଗେ ତାହାର ଅଭାବ ବର୍ତ୍ତମାନ ଅନୁଭବ କରି ଦୁଃଖିତ ହେବେ କାହିଁକି ? ମନୁଷ୍ୟର ଶକ୍ତି ଅଛି, ମନୁଷ୍ୟ ବାହ୍ୟାବସ୍ଥା ଉପେକ୍ଷା କରି ନିଜ ମନରେ ସ୍ୱର୍ଗ ଗଢ଼ିପାରେ—ପୁଣି ସେହିଶକ୍ତିର ଅଭାବରୁ ବାହ୍ୟବସ୍ଥା ସ୍ୱର୍ଗୀୟ ହେଲେ ସୁଦ୍ଧା ଅନ୍ତରରେ ନରକର ଦାବାନଳ ସୃଷ୍ଟି କରେ—ତେଣୁ ମନୁଷ୍ୟ ରାଜା ହୋଇ ଯେଉଁ ସୁଖ ଅନୁଭବ କରି ନ ପାରେ, ସାମାନ୍ୟ କୁଟୀରବାସୀ ହୋଇ ସେହି ସୁଖ ଅନୁଭବ କରିବାକୁ ସକ୍ଷମ । ଉଦାହରଣ ସ୍ୱରୂପ ଆପଣଙ୍କର ଆଶ୍ରୟଦାତାମାନଙ୍କୁ ଦେଖନ୍ତୁ, ସେମାନଙ୍କର କେଉଁ ଧନରତ୍ନ ଅଛି—କେଉଁ ଦୁର୍ଗ ପ୍ରାସାଦ ଅଛି—କେଉଁ ଦାସ ପରିଜନ ଅଛନ୍ତି—କିନ୍ତୁ ସେମାନଙ୍କର ଆନନ୍ଦ—ସେମାନଙ୍କର ସୁଖ—ସେମାନଙ୍କର ଶାନ୍ତି—କେତେଟା ନୃପତି ଭୋଗ କରିଥାନ୍ତି ।

ଦ୍ୟୁମତ୍‌ସେନ—ହେ ଋଷି ! ଆଜି ଆପଣ ଅସ୍ମମାନଙ୍କୁ କେଉଁ ଆଲୋକର ପଥକୁ ଘେନି ଆସିଲେ ? ଏହି ଦ୍ୱାଦଶବର୍ଷାଧିକକାଳ ଅମ୍ଭେମାନେ ପୂର୍ବର ଗୌରବ, ପୂର୍ବର ବିଭବ ଚିନ୍ତା କରି ଯେଉଁ ମାନସିକ ଯନ୍ତ୍ରଣାରେ ଦଗ୍‌ଧ ହେଉଥିଲୁଁ—ତାହା ଆଜି ଆପଣଙ୍କର ଅମୃତମୟ ଆଶ୍ୱାସନାରେ ସମ୍ପୂର୍ଣ୍ଣ ନିର୍ବାପିତ ହୋଇଅଛି । ହେ ଗୁରୋ ! ଦୟା କରି ଏହି ଦୀନ ଦାସମାନଙ୍କୁ ଶ୍ରୀଚରଣେ ସ୍ଥାନ ଦିଅନ୍ତୁ—ମନରୁ ଦୁଶ୍ଚିନ୍ତା ନିବାରଣ କରି ଜୀବନକୁ ଶାନ୍ତିମୟ କରନ୍ତୁ ।

ଋଷି—ରାଜନ୍ ! ଆପଣ ପ୍ରକୃତରେ ଯେବେ ଦୁଶ୍ଚିନ୍ତା ନିବାରଣ କରିବାକୁ ଇଚ୍ଛା କରନ୍ତି—ପ୍ରକୃତରେ ଯେବେ ଶାନ୍ତିଲାଭ କରିବାକୁ ଅଭିଳାଷ କରନ୍ତି—ତେବେ ନିଜ ମନକୁ ଆଗେ ନିର୍ମଳ କରନ୍ତୁ ।

ଦ୍ୟୁମତ୍‌ସେନ—କିପରି କରିବି, ଋଷିବର ! ଉପଦେଶ ଦିଅନ୍ତୁ ?

ଋଷି—ଭଗବଦ୍‌ଧ୍ୟାନ କରନ୍ତୁ—ତାହା ହେଲେ ଆପଣଙ୍କ ମନ ଏହି ଅନିତ୍ୟ ଅସାର ପାର୍ଥିବ ବିଷୟ ଚିନ୍ତାରୁ ମୁକ୍ତ ହୋଇ, ସେହି ନିର୍ମଳ ନିତ୍ୟ ସନାତନ ପରମବ୍ରହ୍ମଚିନ୍ତାରେ ଆବଦ୍ଧ ହେବ—କ୍ଷଣସ୍ଥାୟୀ ସୁଖଦୁଃଖ ଚିରାନନ୍ଦରେ ପରିଣତ ହେବ—ଆପଣ ଚିରଶାନ୍ତି ଅନୁଭବ କରିବେ ।

ଦ୍ୟୁମତ୍‌ସେନ—ଋଷିବର ! ଏହି ପାପିଙ୍କୁ ଉଦ୍ଧାର କରିବା ସକାଶେ ବାସ୍ତବିକ କି ଦେବ-ପ୍ରେରିତ ଆପଣ ? ଆଜି କେଉଁ ଶକ୍ତି—କେଉଁ ଦୁଃଖ— ଯେତେବେଳେ ଜଗତର ସାର ପଦାର୍ଥ— ଈଶ୍ୱରଙ୍କପ୍ରେମ—ଏହି ଦୀନ ଅକିଞ୍ଚନ ହୃଦୟରେ ଜାଗରିତ ହୋଇଅଛି ! ଋଷିବର ! କୃପାକରି ଏ ଦାସକୁ ସେହି ଅମୂଲ୍ୟ ପ୍ରେମାସ୍ୱାଦନ କରିବାର ଉପାୟ କହି ଦିଅନ୍ତୁ ।

ଋଷି—ଟିକିଏ ! ତେବେ ଚାଲନ୍ତୁ, ଅଦୂରରେ ଆମ୍ଭମାନଙ୍କର ଆଶ୍ରମ—ସେଠାରେ ଅବସ୍ଥାନ କରି ଗୁରୁଦେବଙ୍କଠାରୁ ଦୀକ୍ଷା ଗ୍ରହଣ କରିବେ ।

ଦ୍ୟୁମତ୍‌ସେନ—ଆମ୍ଭେମାନେ ତେବେ ଆମ୍ଭମାନଙ୍କର ଅଶ୍ରୟଦାତାଙ୍କଠାରୁ ବିଦାୟ ନେଇ ଆସୁଁ ।

( ଦ୍ୟୁମତ୍‌ସେନଙ୍କୁ ନେଇ ମାଳବିକାର ପ୍ରସ୍ଥାନ )

ଋଷି—ମୁଁ ମଧ୍ୟ ଇତ୍ୟବସରରେ ସମିଧ ପୁଷ୍ପାଦି ଚୟନ କରି ନିତ୍ୟ କର୍ମ ସାରି ଦିଏଁ । (ଋଷିଙ୍କ ପ୍ରସ୍ଥାନ)

ସତ୍ୟବାନ—କିନ୍ତୁ ମୋର କର୍ମ ମୁଁ କିପରି ସାରିବି ?— ମୁଁ ଯେ ପ୍ରତିଜ୍ଞା କରିଛି, ପାପର ସର୍ବନାଶ କରିବି- ଧର୍ମର ଜୟ କରିବି ! ପିତଃ ! ଆଜି କିଛିଦିନ ସକାଶେ ସେ ସଙ୍କଳ୍ପ ତ୍ୟାଗ କରନ୍ତୁ—ମୋର ବର୍ତ୍ତମାନ ସୁଦ୍ଧା ରାଜ୍ୟ-ରକ୍ଷା-ଶିକ୍ଷା ସମ୍ପୂର୍ଣ୍ଣ ହୋଇ ନାହିଁ—ଥରେ ମନେ କରନ୍ତୁ—ଥରେ ଚିନ୍ତା କରନ୍ତୁ—ଶତ୍ରୁ ହସ୍ତରେ, ପଦମର୍ଯ୍ୟାଦାରେ ଆପଣଙ୍କର ଦାସାନୁଦାସ—ତାହାର ହସ୍ତରେ ଆଜି ମାଳବାଧୀଶ୍ୱର ଆପଣ, କିରୂପ ଲାଞ୍ଛନା— କିରୂପ ଯନ୍ତ୍ରଣା ଭୋଗ କରିଛନ୍ତି—ବର୍ତ୍ତମାନ ସୁଦ୍ଧା ଭୋଗ କରୁଛନ୍ତି—ଏହାକି ରକ୍ତମାଂସ ଶରୀରରେ କେବେ ସହ୍ୟ ହୁଏ ? ଏହାକି କ୍ଷତ୍ରିୟ ହୃଦୟ ପ୍ରତି ଦାବାନଳ ନୁହେଁ ? ପିତୃଦେବ ! ଶତ୍ରୁର ଶୋଣିତତର୍ପଣରେ କି ମନର ଅଶାନ୍ତି ନିର୍ବାପିତ ହେବ ନାହିଁ ? ଆପଣ ନିଜେ ତ ଉପଦେଶ ଦେଇଛନ୍ତି—ବ୍ରାହ୍ମଣ ଯେପରି ଘୃତ- ତର୍ପଣ ଦ୍ୱାରା ଶାନ୍ତି ଭୋଗ କରିଥାନ୍ତି, କ୍ଷତ୍ରିୟ ସେହିପରି ଶୋଣିତତର୍ପଣ ଦ୍ୱାରା ଶାନ୍ତି ଭୋଗ କରନ୍ତି—ତେବେ ଆଜି ଏହି ବିରୁଦ୍ଧଭାବ କାହିଁକି ? ହେ ଋଷି ! କ୍ଷତ୍ରିୟଙ୍କୁ ଆଜି ବ୍ରାହ୍ମଣପନ୍ଥରେ ନେଇ ଯାଉଛନ୍ତି କାହିଁକି ? ଆପଣଙ୍କର ଯେପରି ଧର୍ମ, ଘୃତ ତର୍ପଣ ଦ୍ୱାରା କଳୁଷକୁ ନାଶକରି ଧର୍ମକୁ ଉଦ୍ଧାର କରିବା— ଆମ୍ଭର ମଧ୍ୟ ସେହିପରି ଧର୍ମ, ଶତ୍ରୁର ଶୋଣିତ ତର୍ପଣ ଦ୍ୱାରା ଅନ୍ୟାୟକୁ ବିନାଶ କରି, ନ୍ୟାୟକୁ ଉଦ୍ଧାର କରିବା ।

(ଋଷିର ପ୍ରବେଶ)

କ୍ଷମା କରନ୍ତୁ ଋଷିବର ! ଆମ୍ଭମାନଙ୍କୁ ଆମ୍ଭମାନଙ୍କର କର୍ତ୍ତବ୍ୟ କରିବାକୁ ଦିଅନ୍ତୁ !

ଋଷି—ଯୁବରାଜ ! କଣ କହୁଛ ?

ସତ୍ୟବାନ୍—ଋଷିବର ! ଅନ୍ୟାୟକୁ ଦଣ୍ଡ ଦେବା— ନ୍ୟାୟକୁ ଉଦ୍ଧାର କରିବା କି ମନୁଷ୍ୟର ଧର୍ମ ନୁହେଁ ?

ଋଷି—ମନୁଷ୍ୟର ପ୍ରଧାନ ଧର୍ମ ।

ସତ୍ୟବାନ—ତେବେ ଅନ୍ୟାୟରେ ଯେ ଆମ୍ଭମାନଙ୍କର ରାଜ୍ୟ ହରଣ କରିଛି, ତାହାର ଉଚ୍ଛେଦ ସାଧନ କରିବାକୁ ଆମ୍ଭମାନଙ୍କୁ ଉପଦେଶ ଦେଉ ନାହାନ୍ତି କାହିଁକି ?

ଋଷି—ତୁମ୍ଭମାନଙ୍କର କି ଶକ୍ତି ଅଛି—ଅନ୍ୟାୟର ଉଚ୍ଛେଦ ସାଧନ ତୁମ୍ଭେମାନେ କରିବ ?

ସତ୍ୟବାନ—ଆମ୍ଭମାନଙ୍କର କି କିଛି ଶକ୍ତି ନାହିଁ ? ଏତେ ଶାରୀରିକ ବ୍ୟାୟାମ, ଏତେ ଅସ୍ତ୍ରଶସ୍ତ୍ର ଶିକ୍ଷା—ସବୁ କଣ ଅକାରଣ ? ଏତଦ୍ୱାରା ଆମ୍ଭମାନଙ୍କର କି କିଛି ଶକ୍ତି ହୋଇ ନାହିଁ ?

ଋଷି—ହାଃ, ହାଃ, ହାଃ, ଯୁବକ ! ଏହି କ୍ଷୀଣଶକ୍ତିର ଏତେ ଗର୍ବ କରୁଛ ?—ତେବେ ନିଜକୁ କାହିଁକି ରକ୍ଷାକରି ପାରିଲ ନାହିଁ—ଯେତେବେଳେ ଶତ୍ରୁ ଦ୍ୱାରା ଆକ୍ରାନ୍ତ ହୋଇ ଘୋର ଅରଣ୍ୟରେ ନିଶ୍ଚଳ ନିସ୍ତେଜ ଭାବରେ ଛିନ୍ନ ହୋଇ ରହିଥିଲ ? ପାସୋର କି ଗଲ ବସ୍ତ୍ର, ବିପଦ ଭଞ୍ଜନ ଶ୍ରୀମଧୁସୂଦନ କେମନ୍ତ ଅଲୌକିକ ଭାବରେ ତୁମ୍ଭର ସହାୟତା କରିଥିଲେ ?

ସତ୍ୟବାନ—(ସ୍ୱଗତ) ସତ୍ୟ, ସତ୍ୟ । ମୁଁ କିଏ ? ମୋର କି ଶକ୍ତିଅଛି ? ( ଜାନୁପାତ ପୂର୍ବକ ) ପ୍ରଭୋ ! ମୋର ଦୋଷ ମାର୍ଜ୍ଜନା କରନ୍ତୁ, ମୋତେ କ୍ଷମା କରନ୍ତୁ ।

ଋଷି—ବତ୍ସ ! ଉଠ ! ତୁମ୍ଭର ଦ୍ୱାରା ଶତ୍ରୁ ନିର୍ଜ୍ଜିତ ହେବ—ତୁମ୍ଭେହିଁ କର୍ମକର୍ତ୍ତା—ଭଗବାନ ପଥ ପ୍ରଦର୍ଶକ ମାତ୍ର—କିନ୍ତୁ ତୁମ୍ଭର ଇଦାନୀଂ ଗୋଟିଏ ମହାନ୍ ଅଭାବ ଲକ୍ଷିତ ହେଉଅଛି—ତୁମ୍ଭେ ଆତ୍ମାଭିମାନ ତ୍ୟାଗ କରିବାକୁ ଶିଖିନାହିଁ—କିମ୍ବା ସେହି ଅଖିଳବ୍ରହ୍ମାଣ୍ଡ ପତିଙ୍କଠାରେ ଆତ୍ମକାର୍ଯ୍ୟ ନିବେଦନ କରିବାକୁ ଶିଖିନାହିଁ—ତେଣୁ ମୋ'ର ଉପଦେଶ ଗ୍ରହଣ କର—ତୁମ୍ଭେ ନୀତିଶାସ୍ତ୍ରାଦି ଆଲୋଚନା ସଙ୍ଗେ ସଙ୍ଗେ ଧର୍ମ୍ମ ଆଲୋଚନା ମଧ୍ୟ କର—ଆଉ ଐହିକ ଚିନ୍ତା ସାଙ୍ଗେ ସାଙ୍ଗେ ପାରତ୍ରିକ ଚିନ୍ତା ମଧ୍ୟ କର ।

ସତ୍ୟବାନ—ଋଷିବର ! ଏହି ଅଯୋଗ୍ୟ ଶିଶୁକୁ ଶ୍ରୀଚରଣରେ ସ୍ଥାନ ଦିଅନ୍ତୁ—କହନ୍ତୁ, କେଉଁ ଉପାୟରେ ଏହି ଅନ୍ଧ ଚକ୍ଷୁଷ୍ମାନ ହେବ ?

ଋଷି—ବତ୍ସ ! କିଛି ଭୟ ନାହିଁ—ତୁମ୍ଭେତ ତୁମ୍ଭର ପିତାଙ୍କ ସହିତ ଆଶ୍ରମକୁ ଯାଉଛ—ସେହିଠାରେ ସମସ୍ତ ଶିଖି ପାରିବ ।

( ବ୍ୟାଧ, ବ୍ୟାଧପତ୍ନୀ, ଦ୍ୟୁମତ୍‌ସେନ ଓ ମାଳବିକାର ପ୍ରବେଶ )

ବ୍ୟାଧ—ଆରେ ହାମ୍‌କୁ ଏକଲା କରି କେଣେ ଯାଉଛୁରେ ?

ବ୍ୟାଧପତ୍ନୀ—ଆରେ କିଏ ରେ ତୁ ମୁନି—ତୋ ଜାନରେ କି ସଇଲନାହିଁ—ହାମଠୁ ଛଡ଼ାଇ ନେଉଛୁ ।

ଦ୍ୟୁମତ୍‌ସେନ—ଆଶ୍ରୟଦାତାମାନେ ! କ୍ଷମା କରନ୍ତୁ—ଆମ୍ଭେମାନେ ଅନେକଦିନ ଆପଣମାନଙ୍କ ଆଶ୍ରୟରେ ରହିଲୁଁ—ବେଶି ଦିନ ପରଗଲଗ୍ରହହେବା କି ଆଉ ଶୋଭାପାଏ ?

ଋଷି—ଆସନ୍ତୁ ରାଜେନ୍ଦ୍ର ! ମୋ'ର ବିଳମ୍ବ ହେଉଛି ।

(ସତ୍ୟବାନାଦି ସମସ୍ତେ ବ୍ୟାଧ ଓ ତାର ପତ୍ନୀକୁ ନମସ୍କାର କରି)

ସତ୍ୟବାନ—ହେ ଜୀବନଦାତା—ଆଶ୍ରୟଦାତାମାନେ ! ବିଦାୟ ଦିଅ ।

ବ୍ୟାଧ—ବିଦାୟ ଦେବି ? ( ବ୍ୟାଧ ଓ ତାର ପତ୍ନୀ ସତ୍ୟବାନକୁ ଆଲିଙ୍ଗନ କରି ଠିଆ ହୋଇ) କେଉଁ ପ୍ରାଣରେ ସତଅ ?

---

## ଚତୁର୍ଥ ଦୃଶ୍ୟ

—ପ୍ରାସାଦସମ୍ମୁଖସ୍ଥ ରାଜପଥ—

(ଘାତକ କର୍ତ୍ତୃକ ବନ୍ଦୀ ହୋଇ ଗଜପତି ବଧଭୂମିକୁ ନୀତ ହେଉଥିବା)

ଗଜପତି—ମୋର ଶିରଶ୍ଛେଦନ ! ଆସ୍ତିକର ଜୟ—ନାସ୍ତିକର ପରାଜୟ !

ଘାତକ—ଚାଲ—ଚାଲ—

ଗଜପତି—ଘାତକ ! ମୁଁ କି ତୁମ୍ଭର ପ୍ରଭୁ ନୁହେଁ ?

ଘାତକ—ଏକ ସମୟରେ ଥିଲେ ସତ୍ୟ, କିନ୍ତୁ ବର୍ତ୍ତମାନ ନୁହନ୍ତି ।

ଗଜପତି—କାହିଁକି ନୁହେଁ ? ବର୍ତ୍ତମାନ ସୁଦ୍ଧା ମୋରତ ସେହିପରି ଅଙ୍ଗପ୍ରତ୍ୟଙ୍ଗ ଅଛି, ସେହିପରି ବଳବୀର୍ଯ୍ୟ ଅଛି, ସେହିପରି ଧନସମ୍ପଦ ଅଛି ।

ଘାତକ—ପଶୁର ମଧ୍ୟ ସେହିପରି ଅଙ୍ଗ ପ୍ରତ୍ୟଙ୍ଗ ଥାଏ—ସେହିପରି ବଳବୀର୍ଯ୍ୟ ଥାଏ—ଏହା ବୋଲି କଣ ପଶୁକୁ ମଧ୍ୟ ପ୍ରଭୁ ବୋଲାଯିବ ?

ଗଜପତି—ଏତେଦୂର ଆସ୍ପର୍ଦ୍ଧା ! ତୁମ୍ଭେ ପରର ଚାକର ମାତ୍ର !

ଘାତକ—ଆମ୍ଭେ କିନ୍ତୁ ନିଜର ପ୍ରଭୁ ମଣିମା !

ଗଜପତି—ଅର୍ଥର ଦାସ ! ଏହି ନାଅ ତେବେ ଉତ୍କୋଚ ଦେଉଛି ।

ଘାତକ—କ୍ଷମା କରନ୍ତୁ—ଆମ୍ଭେ କର୍ତ୍ତବ୍ୟର ଦାସ, ଅର୍ଥ କଦାପି ଆମ୍ଭ ଉପରେ ପ୍ରଭୁତ୍ୱ ବିସ୍ତାର କରିପାରିବ ନାହିଁ ।

ଗଜପତି—ନରପିଶାଚ !

ଘାତକ—ସତ୍ୟ, ମଣିମା । କିନ୍ତୁ ଅନ୍ୟାୟକାରୀ ପକ୍ଷେ ।

( ଅଶ୍ୱପତିର ପ୍ରବେଶ )

ଅଶ୍ୱପତି—ଠିକ୍‌କହୁଛୁ, ଘାତକ, ଠିକ୍ କହୁଛୁ ।—ମୋର ଉପଯୁକ୍ତ ଭୃତ୍ୟର ଉପଯୁକ୍ତ କଥା ।—କିନ୍ତୁ, ଘାତକ ଏତେବେଳ ଯାଏ କାର୍ଯ୍ୟ ଶେଷ ହୋଇନାହିଁ—ଏହି ବର୍ବର ନାସ୍ତିକ ଆତତାୟୀ ଏତେବେଳ ପର୍ଯ୍ୟନ୍ତ ପ୍ରାଣରେ ରହିଛି ?

( ସାବିତ୍ରୀର ପ୍ରବେଶ )

ସାବିତ୍ରୀ—ରହିବାକୁ ଦିଅନ୍ତୁ ପିତଃ । ପିତୃବ୍ୟ । ଆସ, ମୁଁ ସ୍ୱହସ୍ତରେ ତୁମ୍ଭର ବନ୍ଧନ ମୋଚନ କରିଦିଏଁ ।

( ବନ୍ଧନମୋଚନ କରିବାକୁ ଯିବା )

ଚଜପତି—(ସ୍ୱଗତ) ଉଃ—କି ଅପମାନ । ମୋର ମରଣହିଁ ଶ୍ରେୟସ୍କର ଥିଲା ।

ଅଶ୍ୱପତି—(କ୍ରୋଧଭରରେ) ସାବିତ୍ରୀ !

ସାବିତ୍ରୀ—(ସବିନୟେ) ପିତଃ ।

ଅଶ୍ୱପତି—ଅନ୍ୟାୟକାରୀକୁ ଦଣ୍ଡଭୋଗ କରିବାକୁ ଦେ—ହତ୍ୟାକାରୀକୁ ହତ ହେବାକୁ ଦେ ।

ସାବିତ୍ରୀ—ଦଣ୍ଡଭୋଗ କରିବ । ହତ ହେବ । କାହାର ଆଦେଶରେ ପିତଃ ?

ଅଶ୍ୱପତି—ରାଜାର ଆଦେଶରେ — ବିଚାରପତିର ବିଚାରରେ ।

ସାବିତ୍ରୀ—ରାଜାରଆଦେଶରେ—ବିଚାରପତିର ବିଚାରରେ । ଏହିକି ଆଦେଶ ରାଜାର ? ଏହିକି ଏହିକି ବିଚାର ବିଚାରପତିର ? ନିଜର ଦୁର୍ବଳତାକୁ ଭୁଲିଯାଇ, ନିଜର ଦୋଷବହୁଳତାକୁ ଉପେକ୍ଷା କରି, ଅପରର ଦୋଷଦର୍ଶନରେ କ୍ଷୁବ୍ଧ-ହୋଇ ଉଠିବା—ଅପରର ପ୍ରାଣହରଣରେ ତତ୍ପର ହେବା—ପିତଃ । ପିତଃ । କ୍ଷୀଣଦେହଧାରୀ ଆମ୍ଭମାନଙ୍କର କି ଶକ୍ତି ଅଛି ଯେ, ଆମ୍ଭେମାନେ ଆମ୍ଭମାନଙ୍କର ବିଚାରର ଗର୍ବ କରି ଦଣ୍ଡବିଧାନ କରିବା—ପ୍ରାଣନାଶର ଆଦେଶ ପ୍ରଦାନ କରିବା ?

ଅଶ୍ୱପତି—( ସ୍ୱଗତ )—ମୋର ବାଳା ଏତେଦୂର ଶିକ୍ଷିତା—ଏତେଦୂର ମହତ୍ତ୍ୱହୃଦୟା ! ମୋତେ ଧନ୍ୟ ! ମୋତେ ଧନ୍ୟ ! (ପ୍ରକାଶ୍ୟ) ସାବି ! ତୁ ଯାହା କହୁଅଛୁ—ତାହା ଧର୍ମନୀତ୍ୟନୁମୋଦିତ ସତ୍ୟ—ରାଜନୀତ୍ୟନୁମୋଦିତ ନୁହେଁ । ଆମ୍ଭେମାନେ ଯେବେ ଏହି ସଂସାରରେ ଏହିପରି ଉଦାରଚେତା ଓ ଧର୍ମ୍ମମନା ହେବୁଁ, ତାହାହେଲେ ଏହିପରି ହିଂସ୍ର ଓ ସଂଖ୍ୟାରେ ସଂସାର ଏକା-ବେଳକେ ଉଚ୍ଛନ୍ନ ହୋଇଯିବ— ଅତ୍ୟାଚାରର ଉତ୍ପୀଡ଼ନରେ ଲୋକେ ଜୀବନ୍ମୃତ କଷ୍ଟ ଭୋଗ କରିବେ ।

ସାବିତ୍ରୀ—ଯଥାର୍ଥ ପିତଃ । ମୁଁ ରାଜନୀତି ବିଷୟରେ ଏକାନ୍ତ ଅନଭିଜ୍ଞ । ତେବେ—

ଅଶ୍ୱପତି—ତେବେ କଣ ମା ?

ସାବିତ୍ରୀ—ପିତଃ ! ଏହି ମୋର ପିତୃବ୍ୟ କି ଆପଣଙ୍କର ଭ୍ରାତା ନୁହେଁ ? ଆପଣଙ୍କର ସହିତ କି ଏକଗର୍ଭରୁ ଜାତ ନୁହେଁ ? ମନେ କରନ୍ତୁ ପିତଃ । ଭାଇ ବୋଲି କଣ ଆପଣ କେବେ ତାଙ୍କର ମୁଖ ଚୁମ୍ବନ କରି ନାହାନ୍ତି ? ଭାଇ ବୋଲି କଣ ଆପଣ କେବେ ତାଙ୍କୁ ନିଜ କୋଡ଼ରେ ସ୍ଥାନ ପ୍ରଦାନ କରି ନାହାନ୍ତି ? ଭାଇ ବୋଲି କଣ ଆପଣ କେବେ ତାଙ୍କର ଦୋଷ ମାର୍ଜନା କରି ନାହାନ୍ତି ? ସେହି ଭାଇ ଆଜି ଲୌହ ଶୃଙ୍ଖଳରେ ବଦ୍ଧହୋଇ ଛାଗମେଷ ପରି ବଧଭୂମିକୁ ନୀତ ହେଉଛି—ଏହା କିପରି ସ୍ୱଚକ୍ଷୁରେ ଦର୍ଶନ କରୁଅଛନ୍ତି—ଏହି ଭ୍ରାତୃବତ୍ସଳ ହୃଦୟରେ ବା କିପରି ସହ୍ୟ କରୁଅଛନ୍ତି ?

ଅଶ୍ୱପତି—ସାବି ତୁ ଏଠୁ ଯା—ମୋର ପୂର୍ବସ୍ମୃତି ଉଦିତ କରି ଦେ’ନା—ମୋତେ ବିଚାର କରିବାକୁ ଦେ—ଘାତକ । କାର୍ଯ୍ୟ ତୋର ଶୀଘ୍ର ଶେଷ କର ।

ସାବିତ୍ରୀ—ପିତଃ । ବିଚାର କରନ୍ତୁ, ଆପତ୍ତି କରୁ ନାହିଁ, କିନ୍ତୁ ସେହି ବିଚାର କି କ୍ଷମା ଦ୍ୱାରା ମଧୁରିତ ହେବା ଉଚିତ ନୁହେଁ ? ଦେଖନ୍ତୁ, ପିତଃ । ଏହି କ୍ଷମା ହୀରକ-କାଞ୍ଚନ-ଖଚିତ-ମୁକୁଟଠାରୁ ରାଜାର ଅଧିକତର ଶୋଭା ସମ୍ପାଦନ କରେ—

ମୁକୁଟ ରାଜାର ବାହ୍ୟ ସୌନ୍ଦର୍ଯ୍ୟ—କିନ୍ତୁ କ୍ଷମାଗୁଣ ରାଜାର ଅନ୍ତରର ସୌନ୍ଦର୍ଯ୍ୟ—ଏହା ସ୍ୱର୍ଗର ପବିତ୍ର ପିୟୂଷ, ସେହି ସଦାନନ୍ଦଙ୍କ ଅନନ୍ତସ୍ରୋତରୁ ଝର ଝର ଧାରାରେ ନିର୍ଗତହୋଇ ଶୋକାକୁଳିତ ପୃଥିବୀର ତପ୍ତ ଅଙ୍ଗ ଶୀତଳ କରେ—ଏଠାରେ ଆନନ୍ଦ ଅସୀମ—ଉଭୟ ଦାତା ଓ ଗ୍ରହୀତା ସମଭାବେ ସେହି ଆନନ୍ଦ ଉପଭୋଗ କରନ୍ତି । ଆସନ୍ତୁ, ପିତଃ—ଆମ୍ଭେମାନେ ମଧ୍ୟ ସେହି ଆନନ୍ଦ, ସେହି ଦୁର୍ଲ୍ଲଭ ଅମୃତ ପାନ କରି ଆଜ ଧନ୍ୟ ହେବା ।

ଅଶ୍ୱପତି—ସାବି ! କିଏ ତୁମେ ? ତୁମେ କି ମୋର କନ୍ୟା ? ନା, ମୁଁ ତୋର ଅଜ୍ଞ ସନ୍ତାନ ?

ସାବିତ୍ରୀ—ପିତଃ !

ଅଶ୍ୱପତି—ମା ! ମା ! କ୍ରୋଧବଶରେ ଅନ୍ଧ ମୁହିଁ କି ନିଷ୍ଠୁର ହୋଇ ଥିଲି—କି ପାପ କରିବାକୁ ବସିଥିଲି—କିନ୍ତୁ ତୁମେ ମୋହର ଚକ୍ଷୁ ଉନ୍ମୀଳିତ କରିଦେଲ—ତୁମେ ମୋତେ ଆଜି ରକ୍ଷାକଲ । ଘାତକ ! ବନ୍ଦୀକୁ ମୁକ୍ତ କରିଦେ—ଶିରଶ୍ଛେଦନ ପରିବର୍ତ୍ତେ ଦଣ୍ଡ ରହିଲା, ନିର୍ବାସନ । ଯା—ସମ୍ମୁଖରୁ ଦୂରହ ।

ଗଜପତି—(ସ୍ୱଗତ) ଉଃ, କି ଅପମାନ । ଏପରି ଅପମାନିତ ପ୍ରାଣଧାରଣ କରିବାଠାରୁ ମୋର ଜାତ ଶତ୍ରୁ ସମ୍ମୁଖରେ ମରିବାହିଁ ଶ୍ରେୟସ୍କରଥିଲା ।
(ପ୍ରସ୍ଥାନ)

ସାବିତ୍ରୀ—ଦାଦା ! ଶେଷରେ ଏହି ପରିଣାମ ତୁମ୍ଭର ଦେଖିବାକୁ ହେଲା—ଖୁଡ଼ି ! ଖୁଡ଼ି ! କାହିଁଗଲ ? —ସାବିକୁ ତୋର ଏକା କରି କାହିଁଗଲ ?

ଅଶ୍ୱପତି—ବୃଥା ମନଃକଷ୍ଟରେ ଆଉ କି ପ୍ରୟୋଜନ, ମା—ଆ, ମା, ତୋର (ହାତଧରି) ଏହି ଅଭିପୁଅକୁ ଖାଲିଡ଼ିପି ଦେଖାଇ, ନେଇ ଚାଲ ମା !

ସାବିତ୍ରୀ—ପିତଃ ! ପିତଃ !

(ପିତାର ହସ୍ତ ସସ୍ନେହେ ଧାରଣ କରି ପ୍ରସ୍ଥାନ)

—*—

## ପଞ୍ଚମ ଦୃଶ୍ୟ

—କକ୍ଷ—

(କୌଶଲ୍ୟାର ପ୍ରବେଶ)

କୌଶଲ୍ୟା—(ପ୍ରବେଶ କରି) ଲୀଳା, ଭଗ୍ନୀମୋର । କି ସ୍ୱାର୍ଥତ୍ୟାଗ ଦେଖାଇଗଲୁ—ଅଲ୍ଲ କି ଆଦର୍ଶ ରଖିଗଲୁ—କିନ୍ତୁ ତୋହର କଣ ଏହିପରି ରାକ୍ଷସ ସ୍ୱାମୀ ବିଧାତା ଉପଯୁକ୍ତ ମନେ କରିଥିଲେ ? ଛାଡ଼, ବର୍ତ୍ତମାନ ବେଶ୍ ହୋଇଛି, ଜୀବହତ୍ୟା ପାପରୁ ରକ୍ଷା ପାଇଛୁଁ—ଦୋଷୀର ଦଣ୍ଡ ମଧ୍ୟ ଦିଆହୋଇଛି—ଆମ୍ଭର ସାବିତ୍ରୀର ଜୀବନାଶଙ୍କା ମଧ୍ୟ ଚିରଦିନ ସକାଶେ ଲୋପ ପାଇଛି । କିନ୍ତୁ ଶେଷ ବିଷୟରେ ତ ମୁଁ ସମ୍ପୂର୍ଣ୍ଣରୂପେ ଭାବନାଶୂନ୍ୟ ହୋଇ ପାରୁ ନାହିଁ—ବର୍ତ୍ତମାନ ମୋହର ମହା ଭାବନା—ତା'ର ବିବାହ—ଯେତେ ଦେଖୁଁ ଯେତେ ରାଜାମାନେ ଆସୁଛନ୍ତି, ସମସ୍ତେ କନ୍ୟାର ଦିବ୍ୟ ଜ୍ୟୋତିରେ ଆପଣାକୁ ଅନବାତ୍ ମଣି, ସାଷ୍ଟାଙ୍ଗ ପ୍ରଣାମପୂର୍ବକ ଫେରି ଯାଉଛନ୍ତି—ମୁଁ ଏବେ କରୁଛି କଣ ? କନ୍ୟା ଯେ ବିବାହ ବୟସ ଅତିକ୍ରମ କରିବାକୁ ବସିଲାଣି ।

(ଅଶ୍ୱପତିର ପ୍ରବେଶ)

ଅଶ୍ୱପତି—ମହାରାଣି ! ଏତେବେଳେ ସ୍ମରଣ କରିବାର ପ୍ରୟୋଜନ ?

କୌଶଲ୍ୟା—ପ୍ରୟୋଜନ କଣ ବୁଝି ପାରୁ ନାହାନ୍ତି ?

ଅଶ୍ୱପତି—ବୁଝିଛି—ତୁମ୍ଭର ଶୟନରେ ଏକମାତ୍ର ଚିନ୍ତା—ସ୍ୱପ୍ନରେ ଏକମାତ୍ର ଦୃଶ୍ୟ—ଜାଗରଣରେ ଏକମାତ୍ର କାର୍ଯ୍ୟ, ସାବିତ୍ରୀର ବିବାହ; କିନ୍ତୁ ମୋର ଆଉ କି ସାଧ୍ୟ ଅଛି, ପ୍ରିୟେ ?

କୌଶଲ୍ୟା—ତେବେ କଣ ସାବି ମୋର ଚିର କୁମାରୀ ହୋଇ ରହିବ ?

ଅଶ୍ୱପତି—ତାହା ଯେବେ ବିଧିର ଲିପି ହୋଇଥାଏ—ତେବେ ବର୍ତ୍ତମାନ ସୁଦ୍ଧା ଆମ୍ଭର ଯଥାସାଧ୍ୟ ଚେଷ୍ଟା

ହୋଇ ନାହିଁ—ନିର୍ଗୁଣ ନ ହୋଇ ଅଦ୍ଭୁତ ଚେଷ୍ଟା କରେ, ଦେଖେ ଫଳରେ କଣ ଘଟୁଛି ।

କୌଶଲ୍ୟା—ପ୍ରଭୋ । ଯେତେଦୂର ପାରନ୍ତି ଚେଷ୍ଟା କରନ୍ତୁ, ଏଥିରେ ଯେବେ ମୋର ଜୀବନାହୁତି ଦେବାକୁ ହୁଏ ତାହା ମଧ୍ୟ ସ୍ୱୀକାର । ଆହା ! କନ୍ୟା ଯେ ମୋର ଏତେକାଳ ଯାଏ ଅବି-ବାହିତା—

ଅଶ୍ୱପତି—ରାଣି ! ମୁଁ ଗୋଟାଏ ଉପାୟ ଭାବୁଛି—ସାବିକୁ ଡାକ—

କୌଶଲ୍ୟା—ସାବି । ସାବି । ( ନେପଥ୍ୟେ ସାବିତ୍ରୀର 'ମା, ମା', ଡାକୁ ଡାକୁ ପ୍ରବେଶ )

ଅଶ୍ୱପତି—ସାବି !

ସାବିତ୍ରୀ—ପିତଃ ।

ଅଶ୍ୱପତି—ମା ମୋର ! ଆଜି ତୋତେ ଗୋଟିଏ ଗୁରୁତର କାର୍ଯ୍ୟରେ ନିଯୁକ୍ତ କରିବି—

ସାବିତ୍ରୀ—କି କାର୍ଯ୍ୟରେ ପିତଃ ? ଏତେ ସୌଭାଗ୍ୟ ମୋର—ପିତୃ-କାର୍ଯ୍ୟ କରିବାକୁ ନିଯୁକ୍ତା ହେବି ।

ଅଶ୍ୱପତି—ଦେଖ, ସାବି ! ତୋର ବିବାହକାଳ ଉପସ୍ଥିତ—ତେଣୁ ପିତାମାତାମାନଙ୍କର କର୍ତ୍ତବ୍ୟ, କନ୍ୟାକୁ ସୁପାତ୍ରରେ ଅର୍ପଣ କରିବା—କିନ୍ତୁ ସେ କାର୍ଯ୍ୟରେ ଆମ୍ଭେମାନେ ଏତାବତ୍‌କାଳ କୃତକାର୍ଯ୍ୟ ହୋଇ ପାରୁ ନାହୁଁ—କାରଣ ଉପଯୁକ୍ତ ଵର୍ତ୍ତାର କୌଣସି ଅନୁସନ୍ଧାନ ପାଇ ପାରୁ ନାହୁଁ ।

ସାବିତ୍ରୀ—(ସବିନୟେ) ପିତଃ ! ଏହି ଛାର ବିଷୟ ସକାଶେ ଏତେ ଅଧୀର କାହିଁକି ? ବିବାହ ନ ହେଲେ କଣ ଚଳିବ ନାହିଁ ?

କୌଶଲ୍ୟା—ମା ! ତୁ ଏପରି କଥା କହନା, ମା !—ତୋର ସେପରି ଅବସ୍ଥା ଯେ ଆମ୍ଭମାନଙ୍କର ଚିରକଳଙ୍କମୂଳ ହେବ—ହେ ମା ଭଗବତୀ ! ଆପଣ ଏକମାତ୍ର କର୍ଣ୍ଣଧାର ।

ଅଶ୍ୱପତି—ମା, ତାହା ଯେ ଗାର୍ହସ୍ଥ୍ୟ ନୀତି ସଙ୍ଗତ ନୁହେଁ । ଶୁଣ ମା ! ମୁଁ ଏକ ଉପାୟ ଭାବୁଛି—ତୁ ନିଜେ ଯାଇ ନିଜର ମନୋମତ ପାତ୍ର ଅନୁସନ୍ଧାନ କର ।

ସାବିତ୍ରୀ—(ନୀରବ)

ଅଶ୍ୱପତି—ରାଣି ! ଏ ପ୍ରସ୍ତାବ ବୋଧହୁଏ ତୁମ୍ଭର ମନୋମତ ହେବ ?

କୌଶଲ୍ୟା—ନିଶ୍ଚୟ ମହାରାଜ !

ଅଶ୍ୱପତି—ତେବେ ମୁଁ ଯାଉଛି, ବୃଦ୍ଧମନ୍ତ୍ରିବର୍ଗଙ୍କୁ ଡକାଇ, ସେମାନଙ୍କ ସମଭିବ୍ୟାହାରରେ ମା'କୁ ମୋର ଏହି ଗୁରୁତର କାର୍ଯ୍ୟରେ ନିଯୁକ୍ତ କରିବି । ( ପ୍ରସ୍ଥାନ )

କୌଶଲ୍ୟା—ଯାଆନ୍ତୁ ମହାରାଜ ! ଯେତେ ଶୀଘ୍ର ପାରନ୍ତି—ଏଥିରେ ଆଉ ହେଳା କରିବେ ନାହିଁ । ( ସାବିତ୍ରୀପ୍ରତି ) ମା, ମା ! ସତେ କଣି ତୋ ମୁଣ୍ଡରେ ମୁକୁଟ ଚଢ଼ିବ !

( ସାବିତ୍ରୀଙ୍କର ମସ୍ତକ ଆଘ୍ରାଣ କରୁ କରୁ କୌଶଲ୍ୟାଙ୍କର ପ୍ରସ୍ଥାନ )

---

## ଷଷ୍ଠ ଦୃଶ୍ୟ

—ବଧ ଭୂମି—

( ଗଜପତି ଓ ଦୁର୍ଦ୍ଦାନ୍ତସିଂହଙ୍କର ପ୍ରବେଶ )

ଦୁର୍ଦ୍ଦାନ୍ତ—ଯୁବକ ! ତୁମ୍ଭର ବିହ୍ୱଳ ହେବାର କୌଣସି କାରଣ ନାହିଁ—ତୁମ୍ଭର କଥାରେ ମୁଁ ପରମ ପ୍ରୀତିଲାଭ କଲି—ତୁମ୍ଭର ଧର୍ମ ଜ୍ଞାନ ଓ ରାଜନୀତିରେ ପରମ ଆନନ୍ଦ ଲାଭକଲି । ଈଶ୍ୱର କିଏ ? ଆମ୍ଭେହିଁ ଈଶ୍ୱର—ହର୍ତ୍ତା-କର୍ତ୍ତା ବିଧାତା । ଈଶ୍ୱର-ଧାରଣା କ୍ଷୀଣମତିର ଭ୍ରମ ମାତ୍ର । ଧର୍ମାଧର୍ମର ଭେଦାଭେଦ ଜ୍ଞାନ—ପାପପୁଣ୍ୟର ଭେଦାଭେଦ ଜ୍ଞାନ—କ୍ଷୀଣବିବେକୀ ଷଡ଼ଯନ୍ତ୍ରକାରୀଙ୍କର ନୀତିକୌଶଳ ମାତ୍ର । ଦୃଢ଼ଚେତା ସାହସୀଜନଙ୍କ ଚକ୍ଷୁରେ ତାହା କେବଳ ହାସ୍ୟାସ୍ପଦର ବିଷୟ । ଆପଣଙ୍କର ସେହି ନୀତିବାକ୍ୟଗୁଡ଼ିକ, ଆହା, କି ହୃଦୟସ୍ପର୍ଶୀ ମୋତେ ଏକାବେଳକେ ମନ୍ତ୍ରମୁଗ୍ଧ କରି ଦେଉଛି ।

ଗଜପତି—(ସ୍ୱଗତ) ମୋର ଉପଯୁକ୍ତ ଶିଷ୍ୟ ପାଇଛି— ଶାସ୍ତ୍ରବାଦ ! ଏହିଥର ସମ୍ଭାଳ—କାହାର ବିଜୟ ଶେଷେ ।

ଦୁର୍ଦ୍ଧାନ୍ତ—ଅଚ୍ଛା, ସୁଖହିଁ ଯେବେ ଏହି ଜୀବନର ମୁଖ୍ୟ ଉଦ୍ଦେଶ୍ୟ—ତେବେ ସେଥିଲାଗି ଅନ୍ୟର ସ୍ୱାର୍ଥ ବିନାଶ କଲେ୍ ମଧ୍ୟ ଦୋଷ କଣ ?

ଗଜପତି—ଅନ୍ୟର ସ୍ୱାର୍ଥତ ଛାର—ଅନ୍ୟର ପ୍ରାଣବିନାଶ କଲେ୍ ସୁଦ୍ଧା କୌଣସି ଦୋଷ ନାହିଁ ।

ଦୁର୍ଦ୍ଧାନ୍ତ—ବେଶତ—ତେବେ ଆପଣଙ୍କ ଧର୍ମନୀତି ଦେଖୁଛି, ମୋର ମତର ଏକାନ୍ତ ଅନୁକୂଳ । ଯୁବକ ! ଅସ, ଆଜଠାରୁ ତୁମ୍ଭଙ୍କୁ ମୋର ମନ୍ତ୍ରଦାତା କଲି—ଆଜଠାରୁ ତୁମ୍ଭେ ମୋର ଶ୍ରେଷ୍ଠମନ୍ତ୍ରୀ ହେଲ ।

ଗଜପତି—ମୋର ଅତି ସୌଭାଗ୍ୟ—ଆପଣଙ୍କର ବିଶେଷ କରୁଣା—(ସ୍ୱଗତ) ଅଶ୍ୱପତି ! ଏହିଥର ଦେଖ—ମୋର ଅପମାନର ପ୍ରତିଶୋଧ ନେବା ପାଇଁ କିପରି ସୁଯୋଗ ମିଳିଛି ।

( ଜନୈକ ବନ୍ଦୀରକ୍ଷକର ପ୍ରବେଶ )

ଦୁର୍ଦ୍ଧାନ୍ତ—କିଏ ? ବନ୍ଦୀରକ୍ଷକ ! ବନ୍ଦୀକୁ ଏଠାରୁ ଶୀଘ୍ର ନେଇଯାଅ—ମୁଁ ଏତେକାଳ ଦୟାପରବଶ ହୋଇ ତାହାର ପ୍ରାଣଦଣ୍ଡ ରହିତ କରିଥିଲି, କିନ୍ତୁ ଦୋଷର ଗୁରୁତ୍ୱ ବିଚାରରେ ପ୍ରାଣଦଣ୍ଡହିଁ ଉପଯୁକ୍ତ ଶାସ୍ତି—କି ମନ୍ତ୍ରି ! ତୁମ୍ଭେତ ସବୁ ଶୁଣିଛ—ତେଣୁ ମୋର ସେହି ଦଣ୍ଡ ଦେବା କର୍ତ୍ତବ୍ୟ ନୁହେଁ କି ?

ଗଜପତି—ଆପଣ ତ ଭାରି ଦୟାଳୁ ! ଏହି ଶାସ୍ତି ଯେ ଅତ୍ୟନ୍ତ ଲଘୁ । ବିଦ୍ରୋହର ଦୋଷ ତୁଳନାରେ ଏହା ଯେ କିଛି ନୁହେଁ ।

ଦୁର୍ଦ୍ଧାନ୍ତ—ଯା ରକ୍ଷକ ! ( ରକ୍ଷକର ପ୍ରସ୍ଥାନ ) କିନ୍ତୁ ମନ୍ତ୍ରି, ମୋର ବର୍ତ୍ତମାନ ବଡ଼ ଦୁଃଖ ହେଉଛି ଯେ ମୁଁ ରାଜପରିବାରକୁ ସମୂଳେ ନିପାତ ନ କରି, ଜୀବନ୍ତ ମାଆ ଛାଡ଼ିଦେଲି ।

ଗଜପତି—ସେ ଆପଣଙ୍କର ଅପାର ଦୟା—ଅପାର ଦୟା—ଶତ୍ରୁକୁ ପ୍ରାଣରେ ନ ମାରି କି କେବେ ଛାଡ଼ିଦିଆ ଯାଏ ?

ଦୁର୍ଦ୍ଧାନ୍ତ—ଛାଡ଼, 'ଗତସ୍ୟ ଶୋଚନା ନାସ୍ତି' ହିଁ, ଆପଣ ତେତେବେଳେ କ'ଣ ପରୁଛୁଥିଲେ ? ମୁଁ ବିବାହିତ କି ଅବିବାହିତ ?

ଗଜପତି—ଆଜ୍ଞା, ମଣିମା !

ଦୁର୍ଦ୍ଧାନ୍ତ—କାହିଁକି ? ଆପଣଙ୍କ ଅନୁସନ୍ଧାନରେ କୌଣସି ସୁନ୍ଦରୀ କନ୍ୟା ଅଛି ନା କଣ ?

ଗଜପତି—ସୁନ୍ଦରୀ କନ୍ୟା—ନା, ସ୍ୱର୍ଗର ଅପ୍‌ସରୀ !

ଦୁର୍ଦ୍ଧାନ୍ତ—ଏତେହିର ସୁନ୍ଦରୀ—ତେବେ ପୁନର୍ବାର ବିବାହ କରିବାରେ ଦୋଷ କଣ ? ଏଥିରେ ଯେବେ ପତ୍ନୀହନ୍ତା ହେବାକୁ ହୁଏ, ସେଥିରେ ମଧ୍ୟ ଆପତ୍ତି କଣ ? ଯେ କୌଣସି ଉପାୟରେ ସ୍ୱାର୍ଥସିଦ୍ଧି କରଣୀୟ ।

ଗଜପତି—ଅବଶ୍ୟ—ଅବଶ୍ୟ । ( ସ୍ୱଗତ ) ମୁଁ ଶୁଣୁଛି ସାବିନୀ ପାତ୍ରାନ୍ୱେଷଣରେ ବାହାରିଛି—ବଡ଼ ସୁଯୋଗ—ବଡ ସୁଯୋଗ—ଶାସ୍ତ୍ରବାଦ ! ଦେଖ, ଏହିଥର କାହାର ବିଜୟ !

( ଶଙ୍କର ବନ୍ଦୀରୂପେ ଘାତକଗଣ ଓ କେତେକ ସଭାସଦ୍‌ଗଣ ପରିବେଷ୍ଟିତ ହୋଇ ପ୍ରବେଶ କରିବା )

ଦୁର୍ଦ୍ଧାନ୍ତ—ବିଦ୍ରୋହି ! ଏହିବାର ତୁ ତୋର କର୍ମଫଳ ଭୋଗକର ।

ଶଙ୍କର—ବିଦ୍ରୋହୀ ! କିଏ ଦୁର୍ଦ୍ଧାନ୍ତ ?

ଦୁର୍ଦ୍ଧାନ୍ତ—ପ୍ରଶ୍ନକାରୀ ସ୍ୱୟଂ—

ଶଙ୍କର—ପ୍ରଶ୍ନକାରୀ ସ୍ୱୟଂ, ନା ଉତ୍ତରଦାତା ସ୍ୱୟଂ—

ଦୁର୍ଦ୍ଧାନ୍ତ—ଉପସ୍ଥିତ ସଭ୍ୟବୃନ୍ଦ ! ବିଚାର କର—କିଏ ବିଦ୍ରୋହୀ ? ଯେ ପ୍ରଜାପାଳନକର୍ତ୍ତା ରାଜାଙ୍କ ବିରୁଦ୍ଧରେ ପ୍ରଜାମାନଙ୍କୁ ଉତ୍ତେଜିତ କରି ରାଜାର ସର୍ବନାଶ ସାଧନ କରିବାକୁ ଉଦ୍ୟତ—ଯେ ରାଜନୀତିର ବିରୁଦ୍ଧାଚରଣ କରି ରାଜ୍ୟର ଅନିଷ୍ଟ ସାଧନ କରିବାକୁ ଅଗ୍ରସର—ସେ କି ବିଦ୍ରୋହୀ ନୁହେଁ ?—ସେ କି ରାଜାର ଆଉ ରାଜ୍ୟର ଶତ୍ରୁ ନୁହେଁ ?

ସଭ୍ୟଗଣ—ପରମଶତ୍ରୁ ! ପରମଶତ୍ରୁ !

ଶଙ୍କର—ଭାଇମାନେ ! ତୁମ୍ଭେମାନେ କି ଏଡ଼େ ଅନ୍ଧ !
ରାତକୁ ଦିବା—ଦିବାକୁ ରାତ୍ର ଜ୍ଞାନ କରୁଛ ?
ଭାବି ଦେଖ—ବିଚାର କରି ଦେଖ, କିଏ
ବିଦ୍ରୋହୀ ?—ଯେଉଁ ଅର୍ଥଗୃଧ୍ନୁ ଅର୍ଥଲୋଭରେ
ନିଜର ଅନ୍ନଦାତା—ଆଶୈଶବପାଳନକର୍ତ୍ତା,
ଦେବୋପମ ଦ୍ୟୁମତ୍ସେନଙ୍କୁ ସିଂହାସନଚ୍ୟୁତ
କରି, ନିଜେ ସେହି ସ୍ଥାନ ଅଧିକାର କରିଛି—
ଯେଉଁ ନରପିଶାଚ ନ୍ୟାୟପର, ଧର୍ମନିଷ୍ଠ,
ପ୍ରଜାବତ୍ସଳ ରାଜପରିବାରଙ୍କୁ ନିଃସହାୟ ନିଃସମ୍ବଳ
କରି ରାଜ୍ୟରୁ ବହିଷ୍କୃତ କରି ଦେଇଛି ସେ କି
ବିଦ୍ରୋହୀ ନୁହେଁ ?—ସେ କି ରାଜାର ଓ
ରାଜ୍ୟର ପରମ ଶତ୍ରୁ ନୁହେଁ ?

ସଭ୍ୟଗଣ—( ଗଜପତିକୁ ଲକ୍ଷ୍ୟ ) ଠିକ୍ କହୁଛ,
ଶଙ୍କର— ଠିକ କହୁଛ !

ଦୁର୍ଦ୍ଦାନ୍ତ—ବର୍ବର !

ଗଜପତି—ମହାରାଜ ! ଭାରି ବିପଦ—ଭାରି ବିପଦ
ଶୀଘ୍ର ଦଣ୍ଡାଜ୍ଞା ଦେଇ ଆପଦ ଦୂର କରନ୍ତୁ !

ଦୁର୍ଦ୍ଦାନ୍ତ—ଘାତକ ! ଶୀଘ୍ର ଏହି ବର୍ବରର ମସ୍ତକ
ଛେଦନ କର । ( ଘାତକ ଛିଡ଼ା ହୋଇ ରହିବ )
କି’ରେ ! ଛିଡ଼ା ହୋଇ ରହିଲୁ ଯେ ? କି ?
ମୋର ଆଜ୍ଞାର ଅବମାନନା ! ମନ୍ତ୍ରି ! ଏହି
ଘାତକର ଶିରଚ୍ଛେଦନ ଶୀଘ୍ର କର । ( ମନ୍ତ୍ରୀ
ତତ୍ପର ହେବ )

ଘାତକ—ଦୋହାଇ, ଦୋହାଇ !

ଦୁର୍ଦ୍ଦାନ୍ତ—ତେବେ ଯା’ ଶୀଘ୍ର ଆଦେଶ ପାଳନ କର ।

ଶଙ୍କର—ଭାଇମାନେ ! ବଡ଼ଦୁଃଖ ରହିଗଲା—ବଡ଼
ବ୍ୟଥା ରହିଗଲା; ତୁମ୍ଭେମାନେ ମନୁଷ୍ୟ ନା
ମନୁଷ୍ୟଦେହ ବିଶିଷ୍ଟ କୁକୁର ଶୃଗାଳ ମାତ୍ର !
ଭାବି ଦେଖ ଭାଇମାନେ ! ତୁମ୍ଭମାନଙ୍କର ଏହି
ନିର୍ଜ୍ଜୀବତା; ତୋଷାମୋଦକାରିତା ମନୁଷ୍ୟ-
ସମାଜର କେତେଦୂର କଳଙ୍କ, ସଭ୍ୟଜାତିର
କେତେଦୂର ହୀନତାପରିଚାୟକ ! ମରିବା ଆଗେ
ମୋର ଏତିକି ମିନତି ଭାଇମାନେ !—ଚାଟୁକାରିତା
କରନାହିଁ--ଚାଟୁ ବାକ୍ୟରେ ଭୁଲ ନାହିଁ—ନିଜର
ବିବେକକୁ ହେୟଜ୍ଞାନ କରନାହିଁ ! ଭାଇମାନେ !
ସଜାଗ ହୁଅ—ସମାଜର କଳଙ୍କ ଦୂର କର—
ଜାତିର ମର୍ଯ୍ୟାଦା ରକ୍ଷାକର ! ଆଉ ଦୁର୍ଦ୍ଦାନ୍ତ—
ଜାଣି ଥା’ ମୋର ଏହି ହତ୍ୟାରେ ତୁ କେବେହେଁ
ନିଷ୍କଣ୍ଟକ ହେବୁନାହିଁ—ଏହି ପାପର ଫଳ
ଅଚିରେ ଭୁଞ୍ଜିବୁ !

ପ୍ରଜାଗଣ—ଶଙ୍କର ! ଶଙ୍କର !

ଦୁର୍ଦ୍ଦାନ୍ତ—ସୈନିକଗଣ ! ଗୋଳମାଳ ବନ୍ଦକର !
ଘାତକ ! ଶୀଘ୍ର କାର୍ଯ୍ୟ ଶେଷକର ( ଶିରଚ୍ଛେଦନ
କରିବା ସମୟରେ ପ୍ରଜାମାନଙ୍କର ଅଗ୍ରସର ହେବା
ଓ ସୈନିକଙ୍କ ଦ୍ୱାରା ନିବାରିତ ହେବା )

---

## ସପ୍ତମ ଦୃଶ୍ୟ

—ରାଜପଥ—

( ବୃଦ୍ଧମନ୍ତ୍ରିଗଣଙ୍କ ସହିତ ସାବିତ୍ରୀର ପ୍ରବେଶ )

୧ମ ମନ୍ତ୍ରୀ—ଜେମାଦେଇ ! ଏହି ସେହି ମାଳବରାଜ୍ୟ ।

ସାବିତ୍ରୀ—ଏହି ସେହି ରାଜ୍ୟ ! ଚାଲ, ଶୀଘ୍ର ଏଠୁଁ
ଯିବା ।

୨ୟ ମନ୍ତ୍ରି—କାହିଁକି ଜେମାଦେଇ, ଏଠା ରାଜାକୁ
ଥରେ ଦେଖି ଗଲେ ଭଲ ହୁଅନ୍ତା ନାହିଁ ?

ସାବିତ୍ରୀ—ଦେଖିବାର ଆବଶ୍ୟକ ନାହିଁ । ଯେଉଁ
ରାଜାର ଗୁଣକୀର୍ତ୍ତି ଏତେଦୂର ନୀଚ, ସେ ରାଜାର
ଦର୍ଶନତ ଦୂରର କଥା—ସେ ରାଜାର ରାଜ୍ୟରେ
ପଦାର୍ପଣ କରିବା ମଧ୍ୟ ପାପ !

( ଦୁର୍ଦ୍ଦାନ୍ତର ପ୍ରବେଶ )

ଦୁର୍ଦ୍ଦାନ୍ତ—ପାପ, ସୁନ୍ଦରି ! ମୋ ହୃଦୟରେ ଯେ ଭୀଷଣ
ତାପ ! ବାହାରେ ଅନ୍ତରେ ଯେ କାମାଗ୍ନିର
ଭୀଷଣ ତାପ !

ସାବିତ୍ରୀ—ମନ୍ତ୍ରି ! ଜିଜ୍ଞାସା କର, କିଏ ଏହି ଯୁବକ ?
ତାଙ୍କର କି ପ୍ରୟୋଜନ ଏଠାରେ ?

ଦୁର୍ଦ୍ଦାନ୍ତ—ପ୍ରୟୋଜନ କଣ, ସୁନ୍ଦରି ମୋର ଏହି
ଅଧର ସ୍ପନ୍ଦନରେ ପରିତୃପ୍ତ ହେଉନାହିଁ—ମୋର

ବ୍ୟାକୁଳ ଦୃଷ୍ଟିରେ ପ୍ରତିଫଳିତ ହେଉନାହିଁ—
ମୋ'ର ଭଗ୍ନ ସ୍ୱରରେ ସୂଚିତ ହେଉନାହିଁ ?

ସାବିତ୍ରୀ—ଯୁବକ ତୁମ୍ଭେ କଣ ବାତୁଳ ?

ଦୁର୍ଦ୍ଦାନ୍ତ—ହଁ ସୁନ୍ଦରି ! ମୁହିଁ ବାତୁଳ—ତୁମ୍ଭର ଏହି ରୂପ ଯୌବନ ଲାଗି—ଆହା ! କିବା ଭୁଜଙ୍ଗ-ଲୁଣ୍ଠିତ-କୃଷ୍ଣଘନ-ନିନ୍ଦିତ କେଶରାଜି—କିବା ଅର୍ଦ୍ଧ ଚନ୍ଦ୍ରନିଭ ତୁଷାର-ଧବଳ କପୋଳ ଦେଶ—କିବା ଭ୍ରୂଲତାଚ୍ଛାଦିତ ଆକର୍ଣ୍ଣବିସ୍ତୃତ ମଦିରାକ୍ଷିଯୁଗ୍ମ—କିବା ଶୁକଚଞ୍ଚୁ ତୁଲ୍ୟ ନାସିକାଶୋଭିତସୁକୋମଳ ଗଣ୍ଡସ୍ଥଳ ଦ୍ୱୟ—କିବା ଆରକ୍ତିମ ବିମ୍ବାଧରଧାରୀ ବର୍ତ୍ତୁଳୀକୃତ ଚିବୁକଟିଏ—ଯେତେକି କି କନ୍ଦର୍ପ ଦର୍ପହାରୀ—ଯେତେକି କି ବିଧାତାର ସର୍ବୋତ୍କୃଷ୍ଟ ସୃଷ୍ଟି ! ପ୍ରିୟେ ! ପ୍ରିୟେ !

ସାବିତ୍ରୀ—ସାବଧାନ ! ଗୁଲ୍ ମନ୍ତ୍ରୀଗଣ !

ଦୁର୍ଦ୍ଦାନ୍ତ—ସୁନ୍ଦରି ! ରକ୍ଷା କର, ରକ୍ଷାକର ଧରୁଛି ଚରଣ ।

ସାବିତ୍ରୀ—ପାପିଷ୍ଠ ! ନାରକୀ ! (ପଦାଘାତ କରିବା )

ମନ୍ତ୍ରୀଗଣ—ସାବଧାନ ! (ଅସି ନିଷ୍କାଶିତ କରିବା )

ସାବିତ୍ରୀ—ଗୁଲ୍ ଆସ ମନ୍ତ୍ରିଗଣ !

( ଦୁର୍ଦ୍ଦାନ୍ତ ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ )

ଦୁର୍ଦ୍ଦାନ୍ତ—ଓଃ ହୋଃ ! ବାଳକାଟାଏ ମୋତେ ପଦାଘାତ କରି ଗୁଲିଗଲା—ମୁଁ ମାଲବେଶ୍ୱର ଦୁର୍ଦ୍ଦାନ୍ତସିଂହ—ତାହା ନୀରବରେ ସହ୍ୟ କଲି—ଏହା କଦାପି ହୋଇ ପାରେ ନାହିଁ—ଏହାର ପ୍ରତିଶୋଧ ନେବି—ନିଶ୍ଚୟ ନେବି—କିନ୍ତୁ କେଉଁ-ରୂପରେ ?—ନାରୀହତ୍ୟା କରି ? ନା—ଯେଉଁ ମୁଖ ଉପରେ ସେ ଥୁତ୍କାର କରିଛି—ସେହି ମୁଖରେ ତାହାର ଅଧର ଦଂଶନ କରି—ଯେଉଁ ହସ୍ତଉପରେ ସେ ପଦାଘାତ କରିଛି—ସେହି ହସ୍ତରେ ତାହାକୁ ଆଲିଙ୍ଗନ କରି ।

( ଗଜପତିର ପ୍ରବେଶ )

ଗଜପତି—ମହାରାଜ !

ଦୁର୍ଦ୍ଦାନ୍ତ—କିଏ ? ଗଜପତି ? ଆସ ଭ୍ରିୟ ମନ୍ତ୍ରି ! ଆଜ ମନ୍ତ୍ରଣା କରିବା—କେଉଁ ଉପାୟରେ ଅପମାନର ପ୍ରତିଶୋଧ ନେବି ?

ଗଜପତି—ଅପମାନ ! କାହାର ?

ଦୁର୍ଦ୍ଦାନ୍ତ—ମୋର ମନ୍ତ୍ରି—ମୋର ! କହିଲା ବେଳକୁ କଳେବର କମ୍ପିତ ହେଉଛି—ହୃଦୟ ବିଦୀର୍ଣ୍ଣ ହେଉଛି—

ଗଜପତି—ଆପଣଙ୍କର ଅପମାନ ! ଏତେ ସାହସ କାର ?

ଦୁର୍ଦ୍ଦାନ୍ତ—ସେହି, ସେହି ରାଜନନ୍ଦିନୀ ।

ଗଜପତି—ଏଁ, ଏଁ, ବାଳକାଟାଏ—( ସ୍ୱଗତ ) ସାବିତ୍ରି ! ତୋର ଏତେ ଗର୍ବ ! ( ପ୍ରକାଶ୍ୟେ ) ଆସନ୍ତୁ ବେଗେ, ମହାରାଜ !

---

## ଅଷ୍ଟମ ଦୃଶ୍ୟ

—ଆଶ୍ରମ—

( ସତ୍ୟବାନ ଓ ସହଚରବର୍ଗ ପୁଷ୍ପାଦି ଚୟନ କରୁ କରୁ ଗୀତ ଗାଉଥିବା )

ଅନାଦି ଅନନ୍ତ ପ୍ରଭୁ ଭଗବାନ
ବିଶ୍ୱପାତା, ବିଶ୍ୱହନ୍ତା, ବିଶ୍ୱର କାରଣ,
ସାକାର ତୁମ୍ଭେ, ନିରାକାର ତୁମ୍ଭେ
ଯେ ଭାବେ ଯେ ଡାକେ ଦିଅ ହେ ଦର୍ଶନ ।
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ଜ୍ୟୋତିଷ୍କ ମଣ୍ଡଳ,
ବିକାଶଇ କ୍ଷୀଣ ପ୍ରଭା ଉଜ୍ଜ୍ୱଳ କାନ୍ତିର;
ଆକାଶ-ବିତାନ, ଅତୀତ ଚିନ୍ତାର
ନିଦର୍ଶନ ଦିଏ ତବ ତନୁର ସାମାନ୍ୟ ।
ତରୁ, ଲତା ଫଳ, ଫୁଲ— ସୌନ୍ଦର୍ଯ୍ୟ ନିକର,
ପରିଚୟ ଦିଏ ତୁମ୍ଭ ସୌନ୍ଦର୍ଯ୍ୟ-ଭଣ୍ଡାର,
କୋକିଲ-କାକଳି, ଭ୍ରମର-ଗୁଞ୍ଜନ,
ପ୍ରତିଧ୍ୱନେ ମାତ୍ର ତବ ଅମୃତ ଭାଷଣ ।
ଜ୍ଞାନ, ବୁଦ୍ଧି, ପ୍ରେମ, ଭକ୍ତି— ହୃଦୟ ପ୍ରତିଭା,
ବର୍ଣ୍ଣି କଣ୍ଠୀ ସିନା ସେହି ଶକ୍ତିମୟ ତୁମ୍ଭର,
ସଗୁଣ ତୁମ୍ଭେ ହେ ! ନିର୍ଗୁଣ ତୁମ୍ଭେ ହେ !
ନମୋ-ନମୋ-ନମୋ-ନମୋ-ନମୋ-ନାରାୟଣ !

ସତ୍ୟବାନ—ବାସ୍ତବିକ କି ଶାନ୍ତିମୟ ଜୀବନ, ଏହି ଧାର୍ମିକ ଜୀବନ ! ହିଂସା, ଦ୍ୱେଷ, ଲୋଭ, ମୋହ

ଯାହା ସଂସାରର ପ୍ରାଣକୁ ଏକାବେଳକେ ଶିଳ ବିଶିଳ କରିଦିଏ, ତାହା କିପରି ଏହି ବିରାଗୀଙ୍କ ଠାରେ ନଥିଲା ! ମୁଁ ଏହି ଶତ୍ରୁମାନଙ୍କର କୁମନ୍ତ୍ରଣାରେ ପଡ଼ି ସିନା ସେଦିନ ଅସାର ସମ୍ପଦ ସୁଖର କାମନା କରୁଥିଲି—ଘୃଣ୍ୟ ପିତୃ ଶତ୍ରୁ ନିର୍ଯାତନ ସକାଶେ, ବୃଥା ପାଶବିକ ଶକ୍ତି ସଞ୍ଚୟ କରୁଥିଲି । କି ଅନ୍ଧଥିଲି । ଯାହା ହେଉ ଭଗବାନଙ୍କ ଇଚ୍ଛାରେ ମୋର ଚକ୍ଷୁ ଉନ୍ମୀଳିତ ହୋଇଛି । ମିଥ୍ୟାର ମାୟାଜାଲ ଭେଦକରି, ସତ୍ୟର ପଥ ଆବିଷ୍କାର କରି ପାରିଛି ।

୧ମ ବାଳକ—ସତ୍ୟଭାଇ ! ତୁ ଫୁଲ ତୋଳିବୁ ନାହିଁ ?

ସତ୍ୟବାନ—ଚାଲ୍, ଯାଉଛି !

୨ୟ ବାଳକ—ଆମ୍ଭେମାନେ ଯାଉଛୁ, ଆମ୍ଭର ଶେଷ ହେଲାଣି ।

ସତ୍ୟବାନ—ଠିକିଏ ରୁହନା ! ଆଚ୍ଛା ଯାଅ ଭାଇ, ଫୁଲ ତୋଳି ତୋଳି ମୋର ଯେବେ ବିଳମ୍ବ ହୁଏ ।

( ଅନ୍ୟ ବାଳକ ମାନଙ୍କର ପ୍ରସ୍ଥାନ ।
ସାବିତ୍ରୀର ପ୍ରବେଶ )

ସାବିତ୍ରୀ—ଆହା କି ମନୋରମ ଦୃଶ୍ୟ । କି ସୁନ୍ଦର । କି ପବିତ୍ର । ଏପରି ଦୃଶ୍ୟ ରାଜ-ଅଟ୍ଟାଳିକାରେ ଅସମ୍ଭବ । ରାଜ-ଉଦ୍ୟାନରେ ବିରଳ । ଏହି ଶୁଣ ପୁଣି—କୋକିଳର କୁହୁ କୁହୁ ତାନ—ପାପିହାର ପିଉ ପିଉ ରବ—କି ମଧୁର । କି ହୃଦୟସ୍ପର୍ଶୀ । କେଉଁ ବୀଣା, ବଂଶୀ ଏହାର ସମକକ୍ଷ ହେବ ? ଏହାକି ତେବେ ସ୍ୱର୍ଗପୁରୀ ? କି ମହିମା ଏହି ସ୍ଥାନର । ମୋତେ ଏକାବେଳକେ ମନ୍ତ୍ରମୁଗ୍ଧ କରି ଦେଉଛି—ମୋତେ ନିମେଷରେ କେଉଁ ଆଡ଼େ ଟାଣି ନେଇ ଯାଉଛି—ଆହା କି ସୁନ୍ଦର ଫୁଲ ଗୁଡ଼ିଏ ଏହିଠାରେ ଫୁଟିଛି—ଯାଏଁ ସଖିମାନଙ୍କ ସଙ୍ଗେ ଆଳାପ ପରିଚୟ କରେଁ । ( ସତ୍ୟବାନକୁ ଦେଖି ଚମକି ପଡ଼ି ) କିଏ ଏହି ଯୁବକ ? ମାନବ ନା ଦେବ ? ( ସ୍ତମ୍ଭିତ ହୋଇ ଛିଡ଼ା ହେବା ) ।

ସତ୍ୟବାନ—( ଚମକି ) କିଏ ଏହି ଯୁବତୀ ?—ମାନବୀ ନା ଦେବୀ ? ଏ'କଣ ହେଲା—ମୋର ହୃଦୟ ଏପରି ଭାବରେ ଚମକି ଉଠିଲା କାହିଁକି ? ଶରୀର ଏପରି ବେଗରେ ତାଡ଼ିତ ହେଲା କାହିଁକି ? ଅନ୍ତର୍ଦେଶ ଯେଉଁକି ଶୂନ୍ୟ ବୋଧ ହେଉଛି ? ବାହ୍ୟପ୍ରକୃତି ଯେଉଁକି ନିସ୍ତବ୍ଧ ଜଣା ଯାଉଛି ?

ସାବିତ୍ରୀ—( ସ୍ୱଗତ ) ନୟନ ସମ୍ମୁଖରେ ଆଜ ଏ'କି ଅପୂର୍ବ ଦୃଶ୍ୟ—ହୃଦୟମଧ୍ୟରେ ଆଜ ଏ'କି ଅଭିନବ ଖେଳା । କି ଚମତ୍କାର । କି ମହନୀୟ । ଭାଷା କିବା ବର୍ଣ୍ଣିବ—ଲେଖନୀ କିବା ଲେଖିବ । ମନ ହେଉଛି କେବଳ ନୟନେ ନୟନେ ମିଳିଯାଏଁ—ହୃଦୟେ ହୃଦୟେ ମିଶିଯାଏଁ ।

ସତ୍ୟବାନ—( ସ୍ୱଗତ ) କି ଅଜଣା ଭାବ ସମୂହ ଜାଗି ଉଠୁଛି—( ପ୍ରକାଶ୍ୟେ ) ବନମଧ୍ୟେ କିଏ ତୁମ୍ଭେ ସହସା ବନମଲ୍ଲୀ ସଦୃଶ ଫୁଟି ଉଠିଲ ? ସାନ୍ଧ୍ୟଗଗନେ କିଏ ତୁମ୍ଭେ ସହସା ପୂର୍ଣ୍ଣଶଶି ସମ ଜ୍ୟୋତ୍ସ୍ନାଲୋକ ଢ଼ାଳି ଦେଲ ? କିଏ ତୁମ୍ଭେ ଦେବୀ ? କିଏ ତୁମ୍ଭେ ସୁନ୍ଦରୀ ?

ସାବିତ୍ରୀ—( ଲଜ୍ଜାବନତମୁଖୀ ହୋଇ ସ୍ୱଗତ ) କିଏ ତୁମ୍ଭେ ଦେବ ? ଆଜି ଅନନ୍ତବାରିଧି ମଧ୍ୟଦେଶରେ ଭାସମାନ ହୃଦୟପୋତ ରକ୍ଷା କରିବା ନିମନ୍ତେ, ଧ୍ରୁବ ତାରା ସଦୃଶ ସହସା ନୟନପଥରେ ଉଦିତ ହେଲ ?

[ ପରସ୍ପରକୁ ବିସ୍ମୟ ନେତ୍ରରେ ଚାହିଁ ରହିବା ଓ ଉଭୟ ଦିଗରୁ ସଖୀମାନେ ପ୍ରବେଶ କରି ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ଦଣ୍ଡାୟମାନ ହୋଇ ଗୀତ ଗାଉଥିବା ।]

ଗୀତ—

ସହିରେ ! ଚାହିଁ ଚାହିଁ ଏ'କି ଚମତ୍କାର ।
ଅନୁପମ ରୂପ-ରାଶି ଶୋଭାସଙ୍ଗେ ଅଛି ମିଶି
ଆଖି କେବେ ଦେଖି ନାହିଁ, କାନ କେବେ ଶୁଣିନାହିଁ
ରୂପର, ଗୁଣର, ସୁନ୍ଦର ଏ'ଯୁଗଳ ॥

( ଯବନିକା ପତନ ) ।

———

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ରାଜସଭା—

ଅଶ୍ୱପତି—ଦୂତବର ! ଆପଣ ଜାଣନ୍ତି, ଏ ବିଷୟରେ ମୁଁ ସ୍ୱାଧୀନମତ ଦେଇ ନ ପାରେଁ । ମୋର କନ୍ୟାକୁ ଆସିବାକୁ ଦିଅନ୍ତୁ—ତାହାର କେଉଁ ପାତ୍ର ମନୋନୀତ ହୋଇଅଛି, ତାହା ମଧ୍ୟ ଜାଣିବାକୁ ଦିଅନ୍ତୁ, ତତ୍‌ପର ବିଚାର କରି ଦେଖିବି, ଆପଣଙ୍କର ପ୍ରସ୍ତାବ ଗ୍ରହଣର ଯୋଗ୍ୟ କି ନା ।

ଦୂତ—( ସ୍ୱଗତ ) ଏହ ତ ମୁସ୍କିଲ୍ !—ଯେଉଁ ନାଆଁ ଡରରେ ଏଠାକୁ ପଳାଇ ଆସିବା, ସେହି ନାଆଁ ନ ହେଲେ ପୁଣି କାମ ଚଳିବ ନାହିଁ—ଏବେ କରୁଛି କଣ ?—ରାଜାଙ୍କ କପାଳ ( ପ୍ରକାଶ୍ୟେ ) ମହାରାଜ ! ମୋତେ ଏଠୁଁ ଶୀଘ୍ର ବିଦାୟ ନେବାକୁ ହେବ—ରାଜାଙ୍କର ଆମ୍ଭର ଏହିପରି ଆଦେଶ; ତେଣୁ ଏ ପ୍ରସ୍ତାବର ମିମାଂସା ଆପଣ ନିଜେ କରିଦେଲେ କୃତାର୍ଥ ହୁଅନ୍ତି ।

ଅଶ୍ୱପତି—ଦୂତବର ! କହୁଛନ୍ତି, ଏ' ବିଷୟରେ ମୋର ସମ୍ପୂର୍ଣ୍ଣ ସ୍ୱାତନ୍ତ୍ୟ ନାହିଁ—ମୋର କନ୍ୟା ଉପରେ ମୁଁ ଅଧିକ ନିର୍ଭର କରୁଅଛି । ତେବେ ମୁଁ ପିତା ହୋଇ ଏତକି କହିପାରେଁ ଯେ ଆପଣଙ୍କର ପ୍ରଭୁ ଯଥାର୍ଥ ଯେବେ ଆପଣଙ୍କର ବର୍ଣ୍ଣନାନୁଯାୟୀ ହୋଇଥାନ୍ତି, ତେବେ ମୋର ଏପରି ପାତ୍ର ପାଇବା ସୌଭାଗ୍ୟର ବିଷୟ, ଏବଂ ମୁଁ ବିଶ୍ୱାସ କରେଁ ଯେ ମୋର କନ୍ୟା ମଧ୍ୟ ଏପରି ପାତ୍ରଙ୍କୁ ବରଣ କରିବାକୁ କଦାପି କୁଣ୍ଠିତା ହେବ ନାହିଁ ।

ଦୂତ—ତେବେ ଆପଣଙ୍କର ଏ ପ୍ରସ୍ତାବରେ ସମ୍ପୂର୍ଣ୍ଣ ସହାନୁଭୂତି ଅଛି ବୋଲି କଣ ଯାଇଁ ରାଜାଙ୍କୁ ଜଣାଇବି ?

ଅଶ୍ୱପତି—ନା—ନା—ଆପଣ ଏତେ ଅଧୀର ହୁଅନ୍ତୁ ନାହିଁ—ସାବିତ୍ରୀ ଫେରି ନ ଆସିବା ପର୍ଯ୍ୟନ୍ତ ମୁଁ ଏ ପ୍ରସ୍ତାବ କଦାପି ଅନୁମୋଦନ କରି ନ ପାରେଁ । ପୁଣି ଆପଣଙ୍କର ରାଜାଙ୍କ ବିଷୟରେ ମୁଁ ସମ୍ପୂର୍ଣ୍ଣ ଅନଭିଜ୍ଞ; ତେଣୁ ବିଶ୍ୱାସୀ ଭୃତ୍ୟ ସାହାଯ୍ୟରେ ଏ ବିଷୟରେ ସବିଶେଷ ଅନୁସନ୍ଧାନ ନ କରି, କିପରି ବା ମତ ଦେଇ ପାରେଁ ?

ଦୂତ—( ସ୍ୱଗତ ) କିରେ ବାବା—ରାଜା ଆମ୍ଭର ଯାହାଙ୍କୁ ସହଜ ଲୋକ କଣ ଭାବିଥିଲେ—ସେ ତ ଦିଅଙ୍କ ଉପରେ କାଠିଏ । ( ଦ୍ୱାରୀର ପ୍ରବେଶ )

ଦ୍ୱାରୀ—ମହାରାଜ ! ଜେମାଦେଈ ଫେରି ଆସିଲେଣି—ଅନ୍ତଃପୁର ପ୍ରବେଶ ପୂର୍ବରୁ ଶ୍ରୀମୁଖଙ୍କର ଶ୍ରୀଚରଣ ବନ୍ଦନା କରିବାକୁ ଦ୍ୱାରଦେଶରେ ଦଣ୍ଡାୟମାନ ଅଛନ୍ତି ।

ଦୂତ—( ସ୍ୱଗତ ) ସର୍ବନାଶ ! ( ପ୍ରକାଶ୍ୟେ ) ମହାରାଜ ! ତେବେ କଣ ମୁଁ ସ୍ଥାନାନ୍ତରକୁ ଯିବି ?

ଅଶ୍ୱପତି—କିଛି ପ୍ରୟୋଜନ ନାହିଁ । ମୋର କୌଣସି ଗୋପନ ପରାମର୍ଶ ନାହିଁ ! ଦ୍ୱାରୀ ! ଜେମାଦେଈଙ୍କୁ ଏଠାକୁ ଆସିବାକୁ କହିଦେ, ମୋର ବର୍ତ୍ତମାନ କୌଣସି ଗୁରୁତର କାର୍ଯ୍ୟ ନାହିଁ ।

ଦୂତ—( ସ୍ୱଗତ ) ସର୍ବନାଶ ! ସର୍ବନାଶ ! କ'ଣ କରୁଛି ? ଏହିକ୍ଷଣି ତ ସବୁ ଧରାପଡ଼ିଯିବ—ମୋର ଯେ ମୁଣ୍ଡକାଟ ହେବ ! ହାୟ ! ହାୟ ! ମୁଁ କାହିଁକି ଏ ମିଥ୍ୟା ଦୌତ୍ୟଭାର ଗ୍ରହଣ କଲି ? ( ଅସ୍ଥିର ହେବା ) ।

ଅଶ୍ୱପତି—ଦୂତବର ! ଆପଣ ଅସ୍ଥିର ହୁଅନ୍ତୁ ନାହିଁ—(ନେପଥ୍ୟକୁ ଚାହିଁ) ଏହି ମୋର କନ୍ୟା ଆସିଗଲାଣି । ଆପଣଙ୍କୁ ଆଉ ବେଶିବେଳ କଷ୍ଟ ସହିବାକୁ ହେବ ନାହିଁ ।

ଦୂତ—(ସ୍ୱଗତ) ବାସ୍ତବିକ ମୋତେ ଆଉ ବେଶିବେଳ କଷ୍ଟ ସହିବାକୁ ହେବ ନାହିଁ—ହେ ମା କାଳି ! ମୋତେ ଏ' ଯାତ୍ରା ରକ୍ଷା କଲେ, ମା, ନିଶ୍ଚୟ ଯୋଡ଼ାବଳି ଦେବି, ମା—ଯାଏଁ ପଳାଏଁ, କେଉଁ

ଆଉ କି ଯିବ ? ହେଲା ନାହିଁତ—ହେଲା ନାହିଁତ, ଏହି ଯେ ଆସିଗଲେ । (ମୁହଁ ଫେରାଇ ଛିଡ଼ା ହେବା )

(ସଖୀ ଓ ମନ୍ତ୍ରୀଗଣଙ୍କ ସହିତ ସାବିତ୍ରୀର ପ୍ରବେଶ)

ସାବିତ୍ରୀ—ପିତଃ । କନ୍ୟାର ସାଷ୍ଟାଙ୍ଗ ପ୍ରଣାମ ଗ୍ରହଣ କରନ୍ତୁ—

ଅଶ୍ୱପତି—(ଉଠାଇ) ଆଶୀର୍ବାଦ କରୁଛି, ବତ୍ସେ ! ତୋର ମନସ୍କାମନା ସିଦ୍ଧ ହେଉ ।

ସାବିତ୍ରୀ—ସଭାସଦ୍‌ବର୍ଗ । ମୋହର ବିନୀତ ଅଭିବାଦନ ଗ୍ରହଣ କରନ୍ତୁ ।

ସମସ୍ତେ—ଚିରସୁଖିନୀ ହୁଅନ୍ତୁ, ଈଶ୍ୱରଙ୍କଠାରେ ଏହି ଆମ୍ଭମାନଙ୍କର ପ୍ରାର୍ଥନା ।

ଅଶ୍ୱପତି—ମା ! ସମ୍ବାଦ କୁଶଳ ତ ?

ସାବିତ୍ରୀ—ପିତଃ ! ଆପଣଙ୍କର ଆଶୀର୍ବାଦ ଗ୍ରହଣ କରି ଯେତେବେଳେ ବାହାରି ଥିଲି, ସେତେବେଳେ କୁଶଳ ଛଡ଼ା ଅକୁଶଳ କି କେବେ ହୋଇ ପାରେ ?

ଅଶ୍ୱପତି—ଈଶ୍ୱରଙ୍କୁ ଧନ୍ୟବାଦ, ମୋର କନ୍ୟା ମୋ ର କୋଳକୁ ନିର୍ବିଘ୍ନରେ ଫେରି ଆସିଛି—ମା ! ଯେଉଁ ଉଦ୍ଦେଶ୍ୟ ନେଇ ତୁ' ବାହାରି ଥିଲୁ, ସେ ବିଷୟରେ କେତେଦୂର କୃତକାର୍ଯ୍ୟ ହୋଇଛୁ, ତାହା ଏହିକ୍ଷଣି ଏହିଠାରେ ଜ୍ଞାପନ କରିବୁ କି ?

ସାବିତ୍ରୀ—ଏହିକ୍ଷଣି ?

ଅଶ୍ୱପତି—ହଁ ଏହିକ୍ଷଣି—ମୁଁ ଜାଣେ, ଏହିପରି ପ୍ରଶ୍ନ, ଏପରି ସମୟରେ ନିତାନ୍ତ ଅଯୋଗ୍ୟ—ପରନ୍ତୁ ତୁ ବର୍ତ୍ତମାନ ପଥଶ୍ରାନ୍ତ; କିନ୍ତୁ କଣ କରିବି, ମା ଏହି ରାଜଦୂତଙ୍କର ବଡ଼ କଷ୍ଟ ହେଉଛି ।

ଦୂତ—ନା, ନା, ମହାରାଜ !—ମୋ'ର କୌଣସି କଷ୍ଟ ହେଉ ନାହିଁ—ଜେମାଦେଇଙ୍କୁ ବର୍ତ୍ତମାନ ବିଶ୍ରାମ କରିବାକୁ ଦିଅନ୍ତୁ ।

ସାବିତ୍ରୀ—ପିତଃ ! ବିଶ୍ରାମର ପ୍ରୟୋଜନ ମୋର ନାହିଁ—କୌଣସି କଷ୍ଟ ହେଉ ନାହିଁ ।

ଅଶ୍ୱପତି—ଦୂତବର ! ଆପଣ ସ୍ଥିର ହୁଅନ୍ତୁ—ସାବି ! ଏହି ଦୂତବର ମାଳବରାଜାଙ୍କ ପ୍ରେରିତ ।

ସାବିତ୍ରୀ— ମାଳବରାଜାଙ୍କ ପ୍ରେରିତ ।

ଅଶ୍ୱପତି—ହଁ, ମାଳବରାଜାଙ୍କ ପ୍ରେରିତ ।

ସାବିତ୍ରୀ—କିଏ ? ଦୁର୍ଦ୍ଦାନ୍ତ ସିଂହ ?

ଅଶ୍ୱପତି—ହଁ—ତୁ' କଣ ତାହାଙ୍କୁ ଦେଖିଆସିଛୁ ?

ସାବିତ୍ରୀ—ଆଜ୍ଞା, ପିତଃ !

ଅଶ୍ୱପତି—ତେବେ ଆଶ୍ଚର୍ଯ୍ୟ ହେଉଛୁ କାହିଁକି ?

ସାବିତ୍ରୀ—ଆଶ୍ଚର୍ଯ୍ୟ କାହିଁକି ହେଉଛି ପିତଃ, କହିବି—ନା, ଆପଣ ଆଗେ କହନ୍ତୁ, ଏହି ଦୂତବରର ଆସିବାର ପ୍ରୟୋଜନ ?

ଅଶ୍ୱପତି—ତୋର ବିବାହ ପ୍ରସ୍ତାବ ନେଇ ।

ସାବିତ୍ରୀ—ଏତେଦୂର ସାହସ ସେ ପାମରର ! ପିତଃ ! ଏ ଦୂତ ନିଶ୍ଚୟ ଆପଣଙ୍କୁ ଭୁଲାଇ କହୁଛି ।

ଅଶ୍ୱପତି—ବୁଝିଛି ମା ! ଦୂତବର !

ଦୂତ—ମହାରାଜ ! ରକ୍ଷା କରନ୍ତୁ—ରକ୍ଷା କରନ୍ତୁ—ମୋତେ ଏହିପରି ଆଦେଶ ଥିଲା ।

ଅଶ୍ୱପତି—ଏତେଦୂର ପ୍ରତାରଣା ! ସୈନିକ ! ଏହି ଦସ୍ୟୁକୁ ବନ୍ଦୀକର !

ଦୂତ—ମହାରାଜ ! ମୁଁ ଦୂତ—

ଅଶ୍ୱପତି—କିଏ କହେ ତୁ ଦୂତ ? ତୁ ଦସ୍ୟୁ—ତୋର ପ୍ରାଣଦଣ୍ଡହିଁ ଉପଯୁକ୍ତ ଶାସ୍ତି ।

ଦୂତ—ମହାରାଜ !

ସାବିତ୍ରୀ—ପିତଃ ! ଏହି ଛାର ହତଭାଗାକୁ ବନ୍ଦୀକରି କି ଲାଭ ?

ଅଶ୍ୱପତି—ଆଚ୍ଛା ସୈନିକ ! ଶୀଘ୍ର ସମ୍ମୁଖରୁ ଦୂର କରିଦେ ।

(ସୈନିକ ଦୂତକୁ ବାହାର କରିଦେବା)

ସାବି ! ମା ମୋର ! ବଡ଼ ଉତ୍କଣ୍ଠା ହେଉଛି, ମୋତେ ଶୀଘ୍ର ଶୁଣା—ତୋର ଉଦ୍ଦେଶ୍ୟ କେତେ ଦୂର କଣ ସାଧିତ ହୋଇଛି ? (ସାବିତ୍ରୀ ଲଜ୍ଜାବନତ-ମୁଖରେ ଛିଡ଼ା ହେବା ) ଆଚ୍ଛା, ଭିତରକୁ ଗ୍ଳଲ !

( ଅଶ୍ୱପତିର ପ୍ରସ୍ଥାନ )

ସୁରମା—ସଖି ! ଆଉ ଲଜ୍ଜା କାହିଁକି ?

ଗୀତ

କାହିଁ ପାଇଁ ଛଳନା ।
କିବା ଅନ୍ତ କା ମନା ।
ମାର-ଶରେ ମୃତ ଏ' ହୃଦ ମାବନା ।
ଯେଉଁ ଛବି ଆଜ ଅଙ୍କିଛ ହରଷେ,
ଗୋପନେ ନବ ଭାବବଶେ—
ନେବି ନାହିଁ କାଢ଼ି, ସହି ମୋର, ଡରନା ।

ସାବି—ଧେତ୍ । (ସଲଜ୍ଜେ ପ୍ରସ୍ଥାନ)

ସୁରମା—ରହ, ରହ, ସହି— (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

—ରାଜପଥ—

ଦୂତ—ଆଜ କାହା ମୁହଁ ଗୁହିଁ ସକାଳୁ ବାହାର ଥିଲି ମଣିଷ—ଦଫା ରଫା ହୋଇଥିଲି ଆଉ କଣ ? କେମାଦେଈ ! ତୁମ୍ଭଙ୍କୁ କୋଟି କୋଟି ଜୁହାର ! ତୁମ୍ଭେ ନ ଥିଲେ କି ଏ' ପ୍ରାଣ ଆଉ ଫେର ପାଇଥାନ୍ତି ? ଛାଡ଼, ଗଲା କଥାତ ଗଲାଣି—ଏବେ ରାଜାଙ୍କୁ ଅମର କି ଖବରଟା ଦେଉଛି ? ଏହି ଅପମାନର କଥାଗୁଡ଼ାକ ପିନା କହିବି ?— କାହିଁକି ? ମନ୍ତ୍ରୀମାନଙ୍କ ମୁଖରୁ ତ ବେଶ ଖବର ଶୁଣିଛି—ସାବିତ୍ରୀ କୁଆଡ଼େ ସତ୍ୟବାନକୁ ଅଙ୍ଗ ଛାଳିଦେବ—ଆମ୍ଭର ରାଜାଙ୍କର ଶତ୍ରୁକୁ ? ଏ କଥା ଶୁଣିଲେ ରଜା କି ଆଉ ସମାଳି ହୋଇ ରହିବେ ? ନିଆଁ ରେ ଘିଅ ଢାଳିଲା ଭଳିତ ଜଳି ଉଠିବେ । ଯାଏଁ ବର୍ତ୍ତିମାନ କେମିତି ଏଠୁ ପଳାଇ ଯାଏଁ ।

## ତୃତୀୟ ଦୃଶ୍ୟ

—କକ୍ଷ—

( ଅଶ୍ୱପତି, କୌଶଲ୍ୟା, ସାବିତ୍ରୀ ଓ ସୁରମା ଆସୀନ )

ଅଶ୍ୱପତି—ତୁ, ରାଜନନ୍ଦିନୀ—ପିତାମାତାଙ୍କର ବହୁ ଆୟାସଲବ୍ଧା, ଏକମାତ୍ର ଦୁହିତା—ଏହା କଣି ଭୁଲିଗଲୁ ?

ସାବିତ୍ରୀ—ଭୁଲିବି କିପରି ପିତଃ ! ଯାହାର ପ୍ରତ୍ୟେକ ଶିରାରେ ରାଜ ରକ୍ତ ପ୍ରବାହିତ—ଯାହାର ଦେହ-ଲତା ପିତାମାତାଙ୍କର ବହୁଯତ୍ନରେ ଓ କ୍ଳେଶରେ ଲାଳିତ ପାଳିତ—ସେ କିପରି ରାଜାର ମର୍ଯାଦା ଭୁଲିଯିବ ? ପିତାମାତାଙ୍କର ମନୋବାଞ୍ଛାକାରିଣୀ କିପରି ହେବ ?

ଅଶ୍ୱପତି—ତେବେ ସତ୍ୟବାନକୁ ମନୋନୀତ କରି, ତୁ ରାଜମର୍ଯାଦା ରଖିବୁ କିପରି ?

କୌଶଲ୍ୟା—ମା ! ମା ! ତୁ' ଯେ ଲବଣୀ ପିତୁଳା ମୋର—ଅରଣ୍ୟବାସ କଷ୍ଟ ତୋର ସହ୍ୟ ହେବ କିପରି—ଏ କଥା ଭାବିଲାବେଳକୁ ହୃଦୟ ଯେ ମୋର ଶତଧାଭିନ୍ନ ହେଉଛି ।

ସାବିତ୍ରୀ—ପିତଃ ! ଆପଣ କ୍ଷମା—ମୋ'ପରି ଅଜ୍ଞାନ ଶିଶୁ ଆପଣଙ୍କୁ କଣ ବୁଝାଇବ ? ଆପଣ ତ ନିଜେ ଶିଖାଇଛନ୍ତି, ମନୁଷ୍ୟର ଗୁଣହିଁ ପ୍ରକୃତ ସମ୍ପଦ—ଧନରତ୍ନାଦି ନୁହେଁ—ଧନରତ୍ନାଦି ଆଜ ଅଛି, କାଲି ନାହିଁ—ଆଜି ନାହିଁ, କାଲି ଆସିବ—ସୁତରାଂ ଅନିଶ୍ଚିତ; କିନ୍ତୁ ଗୁଣାବଳି ମନୁଷ୍ୟର ନିଶ୍ଚିତ ସମ୍ପଦ—ତାହା ଯିବାର ନୁହେଁ, କି ଆସିବାର ନୁହେଁ—ତାହା ଏକପ୍ରକାର ଈଶ୍ୱର-ପ୍ରଦତ୍ତ—ସେହି ଈଶ୍ୱରଦତ୍ତ ଓ ନିଶ୍ଚିତ ସମ୍ପଦର ଯେ ଅଧିକାରୀ, ସେ କି ପାର୍ଥିବ ଓ ଅନିଶ୍ଚିତ ସମ୍ପଦାଧିକାରଠାରୁ ଶ୍ରେୟସ୍କର ନୁହେଁ ?

ଅଶ୍ୱପତି—(ସ୍ୱଗତ) ବାସ୍ତବିକ—ମୁଁ କେଡ଼େ ସ୍ନେହାନ୍ଧ ! କନ୍ୟାର ଉପସ୍ଥିତ ସୁଖଛବିକୁ ଅଣ୍ଡ କରି, ତାହାର ଭାବୀ ଚିରନ୍ତନ ଓ ନିଶ୍ଚିତ ସୁଖଭୋଗରୁ ତାକୁ ବଞ୍ଚିତ କରୁଛି । (ପ୍ରକାଶ୍ୟେ) ସାବି ! ଏବେ ଭିତରକୁ ଯା'—

(ଗମନୋଦ୍ୟତା ହେବା ସମୟରେ ଦ୍ୱାରର ପ୍ରବେଶ)

ଦ୍ୱାରୀ—ପ୍ରଭୁ, ଋଷିଶ୍ରେଷ୍ଠ ନାରଦ ଦ୍ୱାରଦେଶରେ ଦଣ୍ଡାୟମାନ ।

ଅଶ୍ୱପତି—ନାରଦମହାମୁନି ଆସିଛନ୍ତି !

(ଅଶ୍ୱପତିଙ୍କ ପ୍ରସ୍ଥାନ)

ସାବିତ୍ରୀ—ରହ, ସଖି ! ଋଷିଙ୍କର ଶ୍ରୀଚରଣ ବନ୍ଦନା-କରି ଯିବା ।

( ଅଶ୍ୱପତିଙ୍କର ନାରଦ ସହିତ ପୁନଃ ପ୍ରବେଶ ଓ ସମସ୍ତେ ଚରଣବନ୍ଦନା କରିବା )

ଅଶ୍ୱପତି—ମହାମୁନି ! ଏ ଦୀନକୁଟୀରରେ ଏପରି ଅସମୟରେ ଚରଣ ଧୂଳି ପ୍ରଦାନର କ'ଣ କୌଣସି ବିଶେଷ କାରଣ ଅଛି ?

ନାରଦ—ନା, ମହାରାଜ ! ବିଶେଷ କାରଣ କିଛି ନାହିଁ—ଆମ୍ଭେ ଏହି ପଥଦେଇ ଯାଉଥିଲୁଁ—ଇଚ୍ଛା ହେଲା, ତୁମ୍ଭର ମଙ୍ଗଳ ସମାଚାର ଜାଣି ଯିବୁଁ ।

ଅଶ୍ୱପତି—କି ସୌଭାଗ୍ୟ ମୋର ! ଅନେକ ବର୍ଷପରେ ମହାମୁନିଙ୍କର ଚରଣଧୂଳି ଆଜି ଗ୍ରହଣ କରି ପାରୁଛି ।

ନାରଦ—( ସାବିତ୍ରୀଙ୍କୁ ଦେଖି ) ଏ କିଏ ? ସାବିତ୍ରୀ ?

ଅଶ୍ୱପତି—ଆଜ୍ଞା ଋଷିବର !

ନାରଦ—ମୁଁ ତାହାକୁ ପିଲାଟିଏ ଦେଖିଥିଲି—ବେଶ, ବେଶ,—ସାବିତ୍ରୀର ଶ୍ୱଶୁରାଳୟ ବର୍ତ୍ତମାନ କେଉଁଠାରେ ?

ଅଶ୍ୱପତି—ସେ ଅଦ୍ୟାପି ଅନୂଢ଼ା ।

ନାରଦ—ଅଦ୍ୟାପି ଅନୂଢ଼ା ! କାହିଁକି ମହାରାଜ ? ଏ ବୟସରେ କି କନ୍ୟାକୁ କୁମାରୀ ରଖିବା କର୍ତ୍ତବ୍ୟ ?

ଅଶ୍ୱପତି—କଣ କରିବି, ଋଷିବର—ଯୋଗ୍ୟପାତ୍ର କେହି ନ ମିଳିବାରୁ ଏପରି ଘଟିଛି—ତେବେ ସାବିତ୍ରୀକୁ ସ୍ୱୟଂ ପାତ୍ରାନ୍ୱେଷଣାର୍ଥ ପଠାଇଥିଲି—ସେ ଆଜି ଫେରି ଆସିଛି ।

ନାରଦ—ପାତ୍ର ଠିକ୍ ହୋଇଛି ତ ?

ଅଶ୍ୱପତି—ଆଜ୍ଞା ।

ନାରଦ—ପାତ୍ରଟି କିଏ ?

ଅଶ୍ୱପତି—ସତ୍ୟବାନ୍ ।

ନାରଦ—କେଉଁ ସତ୍ୟବାନ୍ — ଦ୍ୟୁମତ୍ସେନଙ୍କର ପୁତ୍ର ?

ଅଶ୍ୱପତି—ଆଜ୍ଞା ମୁନୀନ୍ଦ୍ର ।

ନାରଦ—ପାତ୍ର ନିର୍ବାଚନ ତ ଠିକ୍ ହେଲା ନାହିଁ—ପାତ୍ରଟି ସର୍ବଗୁଣାନ୍ୱିତ ସତ୍ୟ—ଯେଉଁପରି ଜିତେନ୍ଦ୍ରିୟ, ସେହିପରି ବୀର୍ଯ୍ୟବାନ୍—ଯେଉଁପରି ଶାସ୍ତ୍ରଦର୍ଶୀ, ସେହିପରି ଧର୍ମଜ୍ଞାନୀ—ଯେଉଁପରି ରୂପବାନ୍, ସେହିପରି ଗୁଣବାନ୍ ; କିନ୍ତୁ ଗୋଟିଏ କଥାରେ ଊଣା ।

ସାବିତ୍ରୀ—( ଦୀର୍ଘ ନିଶ୍ୱାସ ଛାଡ଼ି ସ୍ୱଗତ ) ମା, ଭଗବତି ! ରକ୍ଷା କର ମା !

କୌଶଲ୍ୟା—(ସ୍ୱଗତ) ହେ ମା ସାବିତ୍ରୀ ! ଏ କି ବାଧା ପୁଣି—ତୁମ୍ଭେ ସହାୟ ହୁଅ ମା !

ଅଶ୍ୱପତି—କେଉଁ କଥାରେ ଊଣା, ମୁନିଶ୍ରେଷ୍ଠ ! ( ସ୍ୱଗତ ) ଓଃ—ମୋର ମସ୍ତିଷ୍କ ଯେ ଘୂର୍ଣ୍ଣିତ ହୋଇ ଯାଉଛି !

ନାରଦ—ମହାରାଜ ! ଅଧୀର ହେଉଛନ୍ତି କାହିଁକି ? ଏ ପାତ୍ର ଛାଡ଼ିଦେଲେ କଣ ଅନ୍ୟ ପାତ୍ର ମିଳିବ ନାହିଁ ? ଏହାଠାରୁ ଭଲ ମଧ୍ୟ ମିଳିପାରେ—ତେବେ ଶ୍ରମସ୍ୱୀକାର କରିବାକୁ ହେବ—ଯତ୍ନ କଲେ, ରତ୍ନ ମିଳେ ।

ସାବିତ୍ରୀ—( ସ୍ୱଗତ ) ମା ଭଗବତି ! ଏ କଣ ଶୁଣୁଛି ମା !

ଅଶ୍ୱପତି—ଋଷିଶ୍ରେଷ୍ଠ ! ମୋର ଦୁର୍ବଳତା ମାର୍ଜ୍ଜନା କରନ୍ତୁ—ସତ୍ୟବାନ୍ ଦରିଦ୍ର, ଆଶ୍ରୟହୀନ ହେଲେ ସୁଦ୍ଧା; ସତ୍ ଗୁଣଯୋଗୁଁ ତାକୁ ମନୋନୀତ କରିଥିଲି—ଏବେ କହନ୍ତୁ, କେଉଁ କଥାରେ ସେ ଊଣା ?

ନାରଦ—ମହାରାଜ ! ସେ ଅଳ୍ପାୟୁ । ଏମନ୍ତ କି ଆଜିଠାରୁ ଠିକ୍ ଏକବର୍ଷ ପର୍ଯ୍ୟନ୍ତ ତାହାର ପରମାୟୁ !

ସାବିତ୍ରୀ—( ସ୍ୱଗତ ) କର୍ଣ୍ଣ ! ଏ କଣ ଶୁଣୁଛୁ ? ହୃଦୟ ! ଏ କି ଶେଳାଘାତ ?—

ଅଶ୍ୱପତି—ଋଷିବର ! ଆପଣଙ୍କର ଏତାଦୃଶ କରୁଣାର କି କୃତଜ୍ଞତା ଜ୍ଞାପନ କରିବି ? ମା ସାବି ! ଶୁଣ,

ମା—ଏ ନିର୍ବାଚନ ତ୍ୟାଗକର, ଅନ୍ୟ ପାତ୍ରର ଅନ୍ୱେଷଣ କର ।

କୌଶଲ୍ୟା—( ସ୍ୱଗତ ) ହେ ଭଗବାନ ! ତୁମ୍ଭଙ୍କୁ ଧନ୍ୟ !

ସାବିତ୍ରୀ—( ସ୍ୱଗତ ) ଅନ୍ୟ ପାତ୍ରର ଅନ୍ୱେଷଣ କରିବି ! ଏହି କଥା ଶ୍ରବଣମାତ୍ରେ ଯେ କର୍ଣ୍ଣ ମୋର ବଧିର ହୋଇ ଯାଉଛି—ଏହି କଥା ଉଚ୍ଚାରଣମାତ୍ରେ ଯେ ରସନା ମୋର ସଙ୍କୁଚିତ ହୋଇ ଯାଉଛି ! ଓଃ ! ପୁଣି ତ୍ୟାଗ କରିବି—କାହାକୁ ? ଯାହାଙ୍କର ଦର୍ଶନାବଧି ଅପୂର୍ଣ୍ଣ ପ୍ରାଣ ମୋର ନବଘନଦର୍ଶନରେ କେକୀ ସଦୃଶ ନୃତ୍ୟାନନ୍ଦ ଭୋଗ କରୁଅଛି—ନବ-ବସନ୍ତାଗମରେ କୋକିଳ ସଦୃଶ ସୁମଧୁର ଗୀତ-ସୁଧା ବର୍ଷଣ କରୁଅଛି—ପ୍ରଚଣ୍ଡ ରୌଦ୍ରରେ ଶୀତଳ-ସମୀରସ୍ପର୍ଶଜନିତ ଶାନ୍ତି-ତୃପ୍ତି ଅନୁଭବ କରୁଅଛି ?

ନାରଦ—ମା ! ତୁ' କଣ ଭାବୁଛୁ ? ମୁଁ ଜାଣେ, ସତ୍ୟବାନ୍ ଉପଯୁକ୍ତ ପାତ୍ର, ପୁଣି ତୋର ମନୋନୀତ—କିନ୍ତୁ କଣ କରିବୁ ମା ବିଧି ଯେତେବେଳେ ବାମ ହେଉଛନ୍ତି ?

ସାବିତ୍ରୀ—ମୁନିଶ୍ରେଷ୍ଠ ! ଅଭାଗିନୀକୁ ରକ୍ଷାକରନ୍ତୁ ! ଅଭାଗିନୀ ତାହାଙ୍କୁହିଁ ତାହାର ମନଃପ୍ରାଣ ସର୍ବସ୍ୱ ଅର୍ପଣ କରି ଦେଇଛି ।

ଅଶ୍ୱପତି—ସାବି ! ପିତାର ଅନୁମତି କିମ୍ବା ଅନୁମୋଦନକୁ ଅପେକ୍ଷା ନ କରି ଏପରି ଯୌବନସୁଲଭ କାର୍ଯ୍ୟ କରିବାତ ସନ୍ତାନ ପକ୍ଷେ ପ୍ରଶଂସନୀୟ ନୁହେଁ । ମୋର ଆଦେଶ ଥିଲା, ତୁ' ପାତ୍ର ନିର୍ବାଚନ କରିବୁ—ଯୋଗ୍ୟାଯୋଗ୍ୟ ମୁଁ ବିଚାର କରିବି ।

ସାବିତ୍ରୀ—ପିତଃ ! ସନ୍ତାନର ଅବାଧ୍ୟତା ମାର୍ଜନା କରନ୍ତୁ—ମୁଁ ତେତେବେଳେ ଭଲମାନ ସ୍ମରଣ କରି ନ ଥିଲି, ଯେ ମୋ' ପ୍ରତି ଏପରି କଠୋର ଆଦେଶ ଥିଲା । କି ମୋହିନୀ-ଶକ୍ତି ତାହାଙ୍କର—କି ଆକର୍ଷଣୀ-ଶକ୍ତି ତାହାଙ୍କର, ଯେ ଉଦ୍ଭ୍ରାନ୍ତ ଅବସ୍ଥା ହୋଇ ମୁଁ ମୋର ସ୍ୱାତନ୍ତ୍ୟ ଏକାବେଳକେ ହରାଇ ଦେଇଥିଲି—ମୋର ଭାବନା-ରାଜ୍ୟ ସେହି ଅତଳଗୁଣସାଗରରେ ନିମଜ୍ଜିତ କରି ଦେଇଥିଲି !

ନାରଦ—ଏହା ସ୍ୱାଭାବିକ ! ମନୁଷ୍ୟମାନଙ୍କେ ଦୁର୍ବଳ ! ବର୍ତ୍ତମାନ ନିଜର ଦୋଷ ସଂଶୋଧନ କରିନେଲେହିଁ ହେଲା ।

ସାବିତ୍ରୀ—( ନୀରବ ରହିବା )

ଅଶ୍ୱପତି—ସାବି ! ମହର୍ଷିଙ୍କର ଆଦେଶ ପାଳନ କର ।

କୌଶଲ୍ୟା—( ସାବିତ୍ରୀକୁ ଧରି ) ମା' ମୋର—ପ୍ରାଣର ସଙ୍ଗିନୀ ମୋର—ଗୁରୁଜନଙ୍କ ଉପଦେଶ ପାଳନ କର ।

ସାବିତ୍ରୀ—ମହର୍ଷି ! ପିତଃ ! ଆପଣମାନେ ଧର୍ମଭୀରୁ ! ଆପଣମାନଙ୍କଠାରୁ ଏପରି ଧର୍ମହୀନ କଥା ଅଧମ ସନ୍ତାନ କିପରି ଆଶା କରିବ ?

ନାରଦ—କାହିଁକି, ବତ୍ସେ ? ନିଜର ଭ୍ରମସଂଶୋଧନ କରି ନେବା—ଏଥିରେ ଧର୍ମହୀନ କଥା ରହିଲା କେଉଁଠି ?

ସାବିତ୍ରୀ—ମହାମୁନି ! ସନ୍ତାନ ସଙ୍ଗେ ଛଳନା ତ୍ୟାଗ କରନ୍ତୁ । ଆପଣମାନେତ ଧର୍ମନୀତିର କର୍ତ୍ତା—ତେବେ ଆପଣମାନେହିଁ କଣ ଧର୍ମ ନୀତିର ହନ୍ତା ? ଆପଣମାନେତ କହିଛନ୍ତି, ଦାନ ଥରେ ମାତ୍ର କରାଯାଏ—ସତ୍ୟକଥା ଥରେ ମାତ୍ର କୁହାଯାଏ—ବର୍ତ୍ତମାନ କିପରି ସେହି ନୀତିର ବିରୁଦ୍ଧ କଥା କହୁଛନ୍ତି—ତେବେ କଣ ସେ ସବୁ ନୀତି ନୁହେଁ ?

ନାରଦ—ବତ୍ସେ ! ତୋର ଶାସ୍ତ୍ରଜ୍ଞାନ ଆଉ ଧର୍ମମତିରେ ମୁଁ ପରମ ପ୍ରୀତି ଲାଭ କଲି ! କିନ୍ତୁ କହ ବତ୍ସେ, ଅପାତ୍ରକୁ ଯେଉଁ ଦାନ ଅଜ୍ଞାତସାରେ କରାଯାଏ ତାହାର ପ୍ରତ୍ୟାହାର କଲେ କଣ ଦୋଷ ଅଛି ? ସତ୍ୟକଥା ଯେବେ ଅପ୍ରୀତିକର ହୁଏ ତାହା ମିଥ୍ୟାରେ ଆବୃତ କଲେ କଣ ଦୋଷ ଅଛି ?

ସାବିତ୍ରୀ—କିନ୍ତୁ ଏଠାରେ ଅପାତ୍ର କିଏ ? ଆପଣମାନେତ ତାଙ୍କୁ ସତ୍‌ପାତ୍ର ବୋଲି କହିଅଛନ୍ତି ।

ଅଶ୍ୱପତି—ସତ୍ୟବାନ୍ ସତ୍‌ପାତ୍ର ସତ୍ୟ, କିନ୍ତୁ ଅଳ୍ପାୟୁ, ତାର ଗୁଣାବଳିମଧ୍ୟରେ ବିଷକଣିକା ସଦୃଶ ହୋଇଅଛି—ତେଣୁ ସେ ଅଯୋଗ୍ୟ ।

ସାବିତ୍ରୀ—ପିତଃ ! ସନ୍ତାନର ଧୃଷ୍ଟତା ମାର୍ଜ୍ଜନା କରି କହନ୍ତୁ, ପରମାୟୁ ସକାଶେ କି ଲୋକର ଅଯୋଗ୍ୟତାରେ ପରିଣତ ହୁଏ ?

ଅଶ୍ୱପତି—ତାହା ହୁଏ ନାହିଁ ସତ୍ୟ, କିନ୍ତୁ ଅକାଳେ ଯେବେ ଦମ୍ପତିର ଚିରବିଚ୍ଛେଦ ଘଟେ, ତାହା ହେଲେ ବିବାହର ଉଦ୍ଦେଶ୍ୟ ସଫଳ ହେବ କିପରି—ଜୀବନର ଉଦ୍ଦେଶ୍ୟ କାର୍ଯ୍ୟରେ ପରିଣତ ହେବ କିପରି ?

ସାବିତ୍ରୀ—ଶାସ୍ତ୍ରରେତ ଅଛି, ଆମ୍ଭମାନଙ୍କର ସମ୍ବନ୍ଧ କେବଳ ଐହିକ ନୁହେଁ, ପରକାଳରେ ମଧ୍ୟ ସେହିପରି ଅକ୍ଷୁନ୍ନ ଥାଏ ।

ନାରଦ—ସାବିତ୍ରୀ ! ଏ' ସମସ୍ତ ଭାବିବା ସହଜ, କିନ୍ତୁ କାର୍ଯ୍ୟରେ କରିବା ବଡ଼ କଠିନ—ବୈଧବ୍ୟଯନ୍ତ୍ରଣା ଯେ କି ଯନ୍ତ୍ରଣା, ତାହା ଯେ ଅନୁଭବ କରିଛି, ସେହି ମାତ୍ର ଜାଣେ—ତେଣୁ ଜାଣୁ ଜାଣୁ ଅଗ୍ନିରେ ପ୍ରବେଶ କରିବା କି ଉଚିତ ?

ସାବିତ୍ରୀ—ମହାମୁନି । ପିତଃ ! ଏହି ଅଜ୍ଞାନ ସନ୍ତାନ ଆପଣମାନଙ୍କ ସହିତ ତର୍କରେ ଅକ୍ଷମ—ଏହାର ଯାହା ହୃଦୟର କଥା, ଏହାର ଯାହା ସରଳ ବିଶ୍ୱାସ, ତାହାହିଁ ଶ୍ରୀଚରଣରେ ସେ ନିବେଦନ କରୁଛି—ଯେବେ ଆପଣମାନେ ଏକାନ୍ତ ଏହି କୁମାରୀର ବିବାହ ଅଭିଳାଷ କରନ୍ତି—ଏହି ଦୀନାର ଐହିକ କିମ୍ବା ପାରତ୍ରିକ ସୁଖ କାମନା କରନ୍ତି, ତେବେ ଏହାକୁ ସେହି ନିର୍ବାଚିତ କର-କମଳରେ ଅର୍ପଣ କରନ୍ତୁ—ସେ ଅଳ୍ପାୟୁ ହେଉ ବା ଚିରାୟୁ ହେଉ—ଗୁଣବାନ୍ ହେଉ ବା ଗୁଣହୀନ ହେଉ—ରୂପବାନ ହେଉ ବା କୁତ୍ସିତ ହେଉ—ଏ ଦାସୀର ହୃଦୟେଶ୍ୱର—ପ୍ରାଣେଶ୍ୱର ଧର୍ମ୍ମାଧିପତି ।

ନାରଦ—(ସ୍ୱଗତ) ସାଧୁ, ସାଧୁ, ସାବିତ୍ରି ! ତୁମ୍ଭେ ମାନବୀ ନୁହଁ, ଦେବୀ ! ଏପରି ସରଳ ହୃଦୟ—ଏପରି ଅକପଟମନ, ମନୁଷ୍ୟଠାରେ କି କେବେ ସମ୍ଭବ ? ଅସମ୍ଭବ—ଦେବତାଠାରେ ମଧ୍ୟ ଦୁର୍ଲ୍ଲଭ । (ପ୍ରକାଶ୍ୟେ) ମହାରାଜ ! ଆପଣ ଧନ୍ୟ, ଯେ ଏ ସଂସାରରେ ଏପରି ରତ୍ନର ଅଧିକାରୀ ହୋଇଛନ୍ତି—ଏପରି ସନ୍ତାନର ପିତା ହୋଇଛନ୍ତି ! ନୃପେନ୍ଦ୍ର ! ବରଂ ଏ ବିବାହ ସାନନ୍ଦେ ସମ୍ପାଦନ କରନ୍ତୁ—କୌଣସି ଭୟ ନାହିଁ ! ଆଶୀର୍ବାଦ କରୁଛି ବତ୍ସେ, ତୁମ୍ଭେ ଆଜୀବନ ସଧବା ହୁଅ ।

ସମସ୍ତେ—ଜୟ ନାରଦ ଋଷିଙ୍କର ଜୟ । ଜୟ ରାଜନନ୍ଦିନୀ ସାବିତ୍ରୀଙ୍କର ଜୟ ।

କୌଶଲ୍ୟା—ସତେ କଣ ସାବିତ୍ରୀ ମୋର ଏତେ ଭାଗ୍ୟ ହେବ ?

---

## ଚତୁର୍ଥ ଦୃଶ୍ୟ

—ରାଜପଥ—

( ଦୁର୍ଦ୍ଦାନ୍ତସିଂହ ଅସି ହସ୍ତେ ସବେଗେ ପ୍ରବେଶ )

ଦୁର୍ଦ୍ଦାନ୍ତ—ଏତେଦୂର ଅପମାନ ! ଏତେଦୂର ଲାଞ୍ଛନା ! ପୁଣି ସତ୍ୟବାନର ସହିତ ବିବାହ—ମୋର ଜାତଶତ୍ରୁର ସହିତ—ଏହା କଦାପି ସହ୍ୟହୁଏ ନାହିଁ—ଏହିକ୍ଷଣି ଯିବି ମୁହିଁ, ଅଶ୍ୱପତିକୁ ଖଣ୍ଡ ଖଣ୍ଡ କରି କାଟି ଶୃଗାଳ, କୁକ୍କୁର ମୁଖରେ ନିକ୍ଷେପ କରିବି—ସତ୍ୟବାନକୁ ଜୀବନ୍ତ ସମାଧି ଦେଇ, ସେହି ସମାଧି ଉପରେ ବସି, ଗର୍ବିଣୀର ଗର୍ବ ଚୂର୍ଣ୍ଣ କରିବି । (ପ୍ରସ୍ଥାନୋଦ୍ୟତ)

( ଗଜପତିର ଓ ଦୂତର ପ୍ରବେଶ )

ଗଜପତି—ମହାରାଜ । ଆପଣ ଟିକିଏ ସ୍ଥିର ହେଉନ୍ତୁ । ଧୀର ପାଣି ପଥର କାଟେ—ଧୈର୍ଯ୍ୟ ଧରି କାର୍ଯ୍ୟ କରନ୍ତୁ ।

ଦୁର୍ଦ୍ଦାନ୍ତ—ନା, ସଚିବ । ଏହିକ୍ଷଣି ରଣସଜ୍ଜା କର ! ମଦ୍ରଦେଶକୁ ଛାରଖାର କରିଦିଅ—ଅଶ୍ୱପତିକୁ ଜୀବନ୍ତ ବାନ୍ଧି ନେଇଆସ । ଆଉ ସତ୍ୟବାନକୁ—ସେହି ଜାତଶତ୍ରୁକୁ ମୋର, ସୈନ୍ୟପଠାଇ—ନା, ମୁହିଁ ନିଜେ ଯିବି—ଜୀବନ୍ତ ବାନ୍ଧିଆଣି, ସାବିତ୍ରୀ ସମ୍ମୁଖରେ ଖଣ୍ଡ ଖଣ୍ଡ କରି କାଟିବି—ତା' ପରେ, ତା' ପରେ—ଯାଏଁ, ଆଉ ବିଳମ୍ବ ନ ସହେ ।

( ବେଗେ ପ୍ରସ୍ଥାନ )

ଗଜପତି—ମହାରାଜ ! ମହାରାଜ ! (ଗୃହିଁରହିବା)

ଦୂତ—(ସ୍ୱଗତ) ଅଶ୍ୱପତି ! ଯେଉଁ ଖଡ୍ଗ ମୋତେ ଦିଖାଇ ଥିଲୁ, ସେହି ଖଡ୍ଗ ତୋତେ ଦିଖାଇବି, ତା ପର ତୋର ମୋର କଥାବାର୍ତ୍ତା । କିନ୍ତୁ ଜେମାଦେଇଙ୍କୁ ଶତକୋଟି ପ୍ରଣାମ—ସେ ନ ଥିଲେ କି ମୁଁ ଆଜ ଏଠି ଏପରଭାବେ ଠିଆ ହୋଇଥାନ୍ତି ।

(ବେଗେ ପ୍ରସ୍ଥାନ)

ଗଜପତି—(ସ୍ୱଗତ) ଏହିଥର ସୁଯୋଗ ଉପସ୍ଥିତ—ଅଶ୍ୱପତି ! ଏହିଥର ପରୀକ୍ଷା କରିନେବୁ—ଶାସ୍ତ୍ରବାଦର ଜୟ, କି ନାସ୍ତିକର ଜୟ ! ତୋର ରାଜ୍ୟ ଅଧିକାର କରିବି—ତୋତେ ସିଂହାସନ-ଚ୍ୟୁତ କରିବି—ନିଜେ ମୁଁ ସେହି ସିଂହାସନାରୋହଣ କରି, ମୋର ଦୀର୍ଘକାଳ-ପୋଷିତ ରାଜାହେବା ଅଭିଳାଷ ପୂର୍ଣ୍ଣ କରିବି; ଆଉ ନାସ୍ତିକର ମହିମା ପ୍ରଗ୍ଭର କରିଦେବି—ଏତିକି ନୁହେଁ, ତୋତେ ପୁଣି ଶୃଙ୍ଖଳାବଦ୍ଧ କରି, ସର୍ବସମ୍ମୁଖରେ ପଦାନତ କରି ସ୍ୱୀକାର କରାଇବି—ଶାସ୍ତ୍ର ମିଥ୍ୟା, ନାସ୍ତିକତା ସତ୍ୟ; ଆଉ ମୋର ଅପମାନର—ଓଃ ହୋଃ, କି ସେ ଅପମାନ ! ସ୍ମରଣ କଲାମାତ୍ରକେ ହୃଦୟ ଜ୍ୱଳି ଉଠୁଛି—ସ୍ୱାର୍ଥଣ ପ୍ରତିଶୋଧ ନେବି ।

(ବେଗେ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

—ଅରଣ୍ୟ ପଥ—

(ଅଶ୍ୱପତି, ସାବିତ୍ରୀ, ସଖୀଗଣ ଓ ଅନୁଚରବର୍ଗଙ୍କ ପ୍ରବେଶ)

ଅଶ୍ୱପତି—ଅନୁଚରବର୍ଗ ! ତୁମ୍ଭେମାନେ ଏହିଠାରେ ଅପେକ୍ଷା କର; ମୁନିମାନଙ୍କର ଆଶ୍ରମ ସମୂହ ଦୃଷ୍ଟିଗୋଚର ହେଲାଣି—ଏତେ ଲୋକଗହଳରେ ଅତି କୋଳାହଳରେ ସେମାନଙ୍କର ଯଜ୍ଞାଦି-କାର୍ଯ୍ୟରେ ବ୍ୟାଘାତ ଘଟିପାରେ—ଏହି ଦେଖ, ଏଣେ ଆଶ୍ରମ-ମୃଗମାନେ କିପରି ଏହି ଅପୂର୍ବ କୋଳାହଳ ଶ୍ରବଣକରି, ଚଞ୍ଚଳ ଦୃଷ୍ଟିପାତ କରୁ କରୁ, ପଳାଉଅଛନ୍ତି—ମୁନିବାଳକଗଣ କିପରି ପୁଷ୍ପଚୟନାଦି ନିତ୍ୟକର୍ମରୁ ବିରତ ହୋଇ, ଯଜ୍ଞ କାର୍ଯ୍ୟରେ ବ୍ୟାଘାତ ଘଟାଉଛନ୍ତି—ତପସ୍ୱିନୀମାନେ କିପରି ପରିଧେୟ ବଲ୍କଳାଦି ଶୁଷ୍କ କାର୍ଯ୍ୟରୁ ବିରତ ହୋଇ, ଭୀତ କମ୍ପିତ ଚିତ୍ତରେ ତରୁଲତାଶ୍ରୟ ଅବଲମ୍ବନ କରୁଅଛନ୍ତି—ତୁମ୍ଭେମାନେ ଏହିଠାରେ ଅବସ୍ଥାନ କର । କେବଳ ଆମ୍ଭେ ପୁରୋହିତ ଏବଂ ଆଉ କେତେକ ଜଣ ମାତ୍ର ଯିବୁଁ ।

ମନ୍ତ୍ରୀ—ମହାରାଜ ! ଆପଣ କଣ ରାଜ-ପରିଚ୍ଛଦାଦି ପରିଧାନ କରିବେ ନାହିଁ ?

ଅଶ୍ୱପତି—ନା, ମନ୍ତ୍ରି ! ଏହିପରି ପରିଧେୟରେ ମୋର ଯିବା ଉଚିତ । ଯେତେବେଳେ ବରପକ୍ଷ ଦୀନହୀନ ଭାବରେ ଅବସ୍ଥାନ କରୁଅଛନ୍ତି—ସେତେବେଳେ କନ୍ୟାପକ୍ଷର ଆଡ଼ମ୍ବର କରି ଯିବା କି ଶୋଭା ଦିଏ ? ଆମ୍ଭେମାନେ ବୈବାହିକ ବନ୍ଧୁତ୍ୱ ସ୍ଥାପନ କରିବାକୁ ଯାଉଅଛୁଁ, ଦୁଇଜଣ ବିପରୀତ ଅବସ୍ଥାପନ୍ନ ବ୍ୟକ୍ତିଙ୍କ ମଧ୍ୟରେ—ଜଣେ କୁବେର—ଅନ୍ୟଜଣେ ପଥଭିଖାରୀ; କିନ୍ତୁ ସମାନ ଅବସ୍ଥା ନ ହେଲେ, କିମ୍ବା ସମାନ ଭାବ ନ ହେଲେ ଉଭୟ ମଧ୍ୟରେ ବନ୍ଧୁତ୍ୱ ସ୍ଥାପିତ ହେବା ଅସମ୍ଭବ—ସୁତରାଂ ଆମ୍ଭମାନଙ୍କର ଦୀନହୀନଭାବରେ ଯିବା ଉଚିତ ।

ସାବିତ୍ରୀ—(ସ୍ୱଗତ) ପିତା ଯଥାର୍ଥ କହୁଛନ୍ତି । ମୋତେ ତେବେ ଏହିପରି ଅଳଙ୍କାରାଦିରେ ଭୂଷିତ କରିବାର କି ପ୍ରୟୋଜନ ଥିଲା ? (ପ୍ରକାଶ୍ୟ) ପିତଃ ! ମୋତେ—

ଅଶ୍ୱପତି—ସାବି ! ପ୍ରାଣାଧିକେ ମୋର ! ତୋର ଭାବ ମୁଁ ବୁଝି ପାରୁଅଛି; କିନ୍ତୁ ସମକ୍ଷେ କନ୍ୟାର ଦୁର୍ଦ୍ଦଶା ଦେଖିବା ପିତାପକ୍ଷେ ନିତାନ୍ତ ଅସହ୍ୟ । ପରୋକ୍ଷେ ତୋ'ର ରୁଚି ଅନୁଯାୟୀ ତୁ କାର୍ଯ୍ୟ କରିବୁ, ମୋର ଆପତ୍ତି ନାହିଁ—କିନ୍ତୁ ସମକ୍ଷେ

ନୁହେଁ । ସାବି । ସାବି । ତୁହି ରାଜନନ୍ଦିନୀ—ମୋର ଏକମାତ୍ର କନ୍ୟା—କେତେ ଆଶ୍ୱାସଲବ୍ଧା—ଅରେ ଭଲ ଭାବନ୍ତୁ—ତୋର ଏହିପରି ଅବସ୍ଥା—

( ଅଶ୍ରୁମୋଚନ କରିବା )

ସାବିତ୍ରୀ—ପିତଃ । ଆପଣ ଜ୍ଞାନୀ, ବିବେକୀ ହୋଇ ଏପରି କହୁଛନ୍ତି ?

ଅଶ୍ୱପତି—ସାବି ! ମୋର କି ଜ୍ଞାନ ଅଛି ? ମୋର କି ବିବେକ ଅଛି ? ମୁଁ ଯେ ସନ୍ତାନସ୍ନେହରେ ଭୋଳ ହୋଇ ସମସ୍ତ ହରାଇଛି ।

ସାବିତ୍ରୀ—ଆପଣ କଣ ତେବେ ସନ୍ତାନ ସକାଶେ ଅଧର୍ମାଚରଣ କରିବେ ?

ଅଶ୍ୱପତି—ପୃଥିବୀ ପ୍ରଳୟ ହୋଇଗଲେ ସୁଦ୍ଧା ନୁହେଁ—କିନ୍ତୁ, ସାବି । ପିତୃମାତୃ-ହୃଦୟ ସନ୍ତାନ କଣ ବୁଝିବ ? ତୋର ସନ୍ତାନ ହେଲେ ତୁ ଦିନେ ବୁଝିବୁ ( ସାବିତ୍ରୀ ନୀରବ ରହିବା ) । ସାବି । ଦେଖ ମା, ପିତ ତୋର ଶ୍ୱଶ୍ରୂ ଶ୍ୱଶୁରଙ୍କୁ ଯେଉଁ ଅନୁରୋଧ କରିବ ବୋଲି ଇଚ୍ଛା କରୁଛି, ସେଥିରେ ଯେପରି ତୁ କୌଣସି ବାଧା ନ ଦେଉ, କିମ୍ବା ମନରେ କୌଣସି କଷ୍ଟ ନ କରୁ ।

ସାବିତ୍ରୀ—ପିତଃ ! ସନ୍ତାନ ଯେ ପିତାମାତାଙ୍କର ଅଧୀନ—ପିତାମାତାଙ୍କର ନ୍ୟାୟସଙ୍ଗତ କାର୍ଯ୍ୟରେ ସେ ବାଧା ଦେବ କିପରି ?

ଅଶ୍ୱପତି—( ଆନନ୍ଦର ସହିତ ) ସାଧୁ, ସାଧୁ କନ୍ୟା ମୋର ! ଚାଲ ସମସ୍ତେ, ବିଳମ୍ବ ହେଉଛି ।

( ଅଶ୍ୱପତି ଓ ମନ୍ତ୍ରିମାନଙ୍କର ପ୍ରସ୍ଥାନ )

ସାବିତ୍ରୀ—( ସ୍ୱଗତ ) ହେ ଈଶ୍ୱର । ରକ୍ଷା କରନ୍ତୁ ! ଏହି ଅଧମ ସନ୍ତାନ ସକାଶେ ପିତାମାତାଙ୍କୁ ଯେପରି ଅଧର୍ମାଚରଣ କରିବାକୁ ନ ହୁଏ । ମୋତେ ପିତା ଦାନ କରିବେ, ପୁଣି ଘରେନେଇ ରଖିବେ—କିପରି ଅନ୍ୟାୟ କଥା ! କାହିଁକି ରଖିବେ ? କାରଣ କଣ ? ମୋ'ର ସୁଖ ଲାଗିତ ? ହାୟ ! ଏହି ସାମାନ୍ୟ ପାର୍ଥିବ ସୁଖ ସକାଶେ କଣ ମୋର ପିତାମାତାଙ୍କୁ ଦାନର ପ୍ରତ୍ୟାହାର ଜନିତ

ଅନନ୍ତ-ପାପ-ନରକରେ ବୁଡ଼ିବାକୁ ହେବ ? ଏହା କଦାପି ଘଟିବାକୁ ଦେବି ନାହିଁ । ହେ ପ୍ରଭୋ ! ଆପଣ ଯେବେ ପ୍ରକୃତରେ ଏହି ଦାସୀକୁ ଶ୍ରୀଚରଣରେ ସ୍ଥାନ ଦେଇଥାନ୍ତି—ହେ ଶ୍ୱଶ୍ରୂ ଶ୍ୱଶୁରମାନେ । ଆପଣମାନେ ଯେବେ ବାସ୍ତବିକ ଧର୍ମଭୀରୁ ହୋଇଥାନ୍ତି—ହେ ଈଶ୍ୱର । ଏହି ଦୀନାଶିଶୁ ଯେବେ ଆପଣଙ୍କଠାରେ କିଛିହେଲେ ପୁଣ୍ୟାର୍ଥର ଦାବି କରିଥାଏ, ତେବେ ଆପଣ-ମାନଙ୍କଠାରେ ଏତିକି ନିବେଦନ, ଯେମନ୍ତ କି ଏହି କାର୍ଯ୍ୟ ଏକାବେଳକେ ପ୍ରତିସିଦ୍ଧ ହୁଏ ।

୧ମ ସଖୀ—ସହି ! ସହି ! ଚାଲ, ଚାଲ—ବାପା ଯେ ଅନାଇ ଠିଆହୋଇଚନ୍ତି ।

ସୁରମା—ସହି ! ସହି । ସତେକି ଅଜ ଆମ୍ଭମାନଙ୍କୁ ଛାଡ଼ିଯିବୁ ?

ଗୀତ

ସତେକି ସହିରେ ଆଜ ହୋଇବୁ ଅନ୍ତର—
ଅନ୍ତର କରିବୁ ଶୂନ୍ୟ ଘୋର ଅନ୍ଧକାର ।
କିରେଜି ମୂରତି ତୋର ସୁକୁମାର ମନୋହର
ନାଚୁଥିଲ କେତେ ରଙ୍ଗେ ଗାଇ ଗୀତ ନାନା ଭଙ୍ଗେ
କେମନ୍ତେ ଦୀନ ହୀନ ଯାପିବୁ ଏ ଜୀବନ
ଧରୁଛୁଛେ କର ତୋର ନହୁଅ ଅନ୍ତର ।

( ସମସ୍ତଙ୍କର ପ୍ରସ୍ଥାନ )

( ଦୁର୍ଦ୍ଦାନ୍ତ ସିଂହର ପ୍ରବେଶ )

ଦୁର୍ଦ୍ଦାନ୍ତ—ଚାଲିଗଲା—ଚାଲିଗଲ । ମୋର ନୟନପଥ ଅନ୍ଧକାର କରି ଚାଲିଗଲା । ହୃଦୟାସନ ଶୂନ୍ୟ କରି ଚାଲିଗଲା ! ସତ୍ୟବାନ ! କେତେ ଭାଗ୍ୟବାନ ତୁହି ! ତୋର ଅରଣ୍ୟବାସରେ ଅଉ କି କଷ୍ଟ—ଯେତେବେଳେ ତୁହି ଏପରି ନାରୀରତ୍ନର ଅଧି-କାରୀ ? କିନ୍ତୁ, ହାୟ ! ଏପରି ରତ୍ନ କି ମୋ' ଭାଗ୍ୟରେ ନାହିଁ ? ରଜା ହେବା କି ମୋ ଭାଗ୍ୟରେ ଥିଲା ? ଥିଲା ବୋଲିବା ଜାଣିଥିଲା କିଏ ? ତେବେ ଯତ୍ନହିଁ କାର୍ଯ୍ୟସିଦ୍ଧିର ମୂଳ—ଯତ୍ନକରି ଭାଗ୍ୟ ଅନ୍ୱେଷଣ କରିବାକୁ ହୁଏ—ନିଜର ଭାଗ୍ୟ ନିଜକୁ ଗଢ଼ିବାକୁ ହୁଏ । ଅରେ ଯେବେ ସତ୍ୟବାନକୁ, ଜାଙ୍ଗଲକୁ

ମୋର, ଏହିଠାରେ ପାନ୍ତ—ଯେପରି ନିର୍ଜନ ସ୍ଥାନ ହୋଇଛି—ସୈନ୍ୟମାନେ ଯେପରି ଦୂରକୁ ଚାଲି ଯାଇଛନ୍ତି—ଦେଖି ନାହାନ୍ତି, ଥରେ ଦେଖି ନାହାନ୍ତି, ଦୁରାତ୍ମାକୁ ପଦାଘାତରେ ମାଟିସଙ୍ଗେ ମିଶାଇ ଦିଅନ୍ତି (ପଦାଘାତକରିବା )। (ସଚକିତରେ ଚାହିଁ ) ଏହି ତ ମେଘ କଥା ନଭାରୁଣୁ ପାଣି ଉପସ୍ଥିତ। ମୋର ଭାଗ୍ୟକୁ ଧନ୍ୟ ! ବର୍ତ୍ତମାନ ଟିକିଏ ଅନ୍ତରାଳକୁ ଯାଇ, ଶିକାରକୁ ନିଜର କବଳଗତ କରନିଏ।

(ବୃକ୍ଷାନ୍ତରାଳେ ଲୁକାୟିତ ହେବା ଓ ସତ୍ୟବାନର ପ୍ରବେଶ )

ସତ୍ୟବାନ—ଆହା ! କିବା ରୂପର ମାଧୁରୀ—କିବା ଗଠନର ଛଟା—କିବା ସେହି ସୁଗୋଲ, ସୁଠାମ, ପୂର୍ଣ୍ଣଶଶି ବିନିନ୍ଦିତ ଆନନକମଳ—କେମନ୍ତେ ପାଶୋରିବି, କେମନ୍ତେ ପ୍ରାଣର ମାୟା ରଖି ଏହି ହୃଦୟରୁ ଉନ୍ମୂଳିତ କରିଦେବି ? ଏହିଦେଖ—ଏହି ବକ୍ଷସ୍ଥଳ ଭେଦକରି ଦେଖ—କିପରି ସେହି ଗୃହବାସିନୀର ରୂପଚିନ୍ତା, ଏକମାତ୍ର ଚିନ୍ତା ହୋଇଛି। ମୋର ପ୍ରତି କାର୍ଯ୍ୟରେ—ପ୍ରତି ଚିନ୍ତାରେ—ପ୍ରତି ସ୍ୱପ୍ନରେ ଯେମନ୍ତେ ସେହି ଧ୍ୟାନହିଁ ଏକମାତ୍ର ଧ୍ୟାନ ହୋଇରହିଛି। ହା, ଦୈବ ! ଏ ହୃତରାଜ୍ୟ ହୃଦୟରେ ରାଜନନ୍ଦିନୀ ପ୍ରେମ କାହିଁକି ଜଗାଇ ଦେଲେ ?—ଏ ଦୀନ ହୃଦୟରେ ଧନଚିନ୍ତା କାହିଁକି ଆଣି ଦେଲେ ?—ବେଶ ଥିଲି—ରାଜ୍ୟର ଆଶା ତ୍ୟାଗ କରିଥିଲି—ସଂସାରର ମାୟା ତ୍ୟାଗକରି ଥିଲି—ଈଶ୍ୱରଙ୍କ ପଦରେ ମନବଳାଇ ଥିଲି—ସୁତରାଂ ଶାନ୍ତିରେ ଥିଲି; ପୁଣି କାହିଁକି ଏ ମାୟା ଜାଲରେ ଆବଦ୍ଧ କରିଦେଲେ ? ପୁଣି କାହିଁକି ଏ ସଂସାର ତରଙ୍ଗରେ ନିକ୍ଷେପ କରିଦେଲେ ?

( ନେପଥ୍ୟେ ଅକାଶବାଣୀ )—ସତ୍ୟବାନ ! ତୁ ଏତେ ଦୁର୍ବଳ ! ନିର୍ବାସନାରମ୍ଭରେ ବ୍ୟାଧଠାରୁ ଏକଧ୍ୟାନରେ, ଏକ ମନରେ ଯୁଦ୍ଧବିଦ୍ୟା ଶିଖିଲୁ, ହୃଦୟରେ ଦୃଢ଼ ସଂକଳ୍ପ କଲୁ—ରାଜ୍ୟର ପୁନରୁଦ୍ଧାର କରିବୁ ବୋଲି; ସେହି ହେତୁ ପୁଣି ତପସ୍ୟାଦକ୍ଷ ହୋଇ ଶାରୀରିକ ଶକ୍ତି ସଞ୍ଚୟ ସଙ୍ଗେ ସଙ୍ଗେ ଆବଶ୍ୟକୀୟ ମାନସିକ ଓ ଆଧ୍ୟାତ୍ମିକ ଶକ୍ତିଲାଭ ପାଇଁ ଶାସ୍ତ୍ରାଧ୍ୟୟନ ଓ ଧର୍ମାଚରଣ କାର୍ଯ୍ୟରେ ପ୍ରବୃତ୍ତ ହେଲୁ—କିନ୍ତୁ ଫଳ ହେଲା କଣ ନା, ତୁ କ୍ରମେ କ୍ରମେ ଉଦାସୀନ ହୋଇ ଉଠିଲୁ, ସଂସାରପ୍ରତି ମାୟାମମତା ତ୍ୟାଗ କଲୁ—ତୋର ପୂର୍ବସଂକଳ୍ପ ଉଷ୍ଣକିରଣ ସମ୍ପର୍କରେ ତୁଷାର ସଦୃଶ ଧୀରେ ଧୀରେ ବିଗଳିତ ହୋଇଗଲା, ତୁ ଗୋଟିଏ ପରମଯୋଗୀ ହୋଇଉଠିଲୁ—ବର୍ତ୍ତମାନ ପୁଣି ଏକି ଭାବ ? ଗୋଟିଏ ସାମାନ୍ୟ ସୁନ୍ଦରୀ ନାରୀ ଦର୍ଶନରେ ଏତେ ଉନ୍ମତ୍ତ କାହିଁକି ? ତୋର ଭଗବଦ୍ଧ୍ୟାନକୁ କାମିନୀ-ରୂପଧ୍ୟାନରେ ବିସର୍ଜନ କରି ଦେଉଛୁ କାହିଁକି ? କି ଅବ୍ୟବସ୍ଥିତଚିତ୍ତ ତୁହି ! କି ଚଞ୍ଚଳମତି ତୁହି ! ତୋର କଣ ଏତିକି ଶକ୍ତି ନାହିଁ, ଗୋଟିଏ ସଂକଳ୍ପ ପୋଷଣ କରି, ତାହା ପାଳନ କରିବାକୁ ?—ଧିକ ! ଧିକ ! ତୋର ଏପରି ଜୀବନ ଧାରଣ କରିବା ଅପେକ୍ଷା ଧାରଣ ନ କରିବାହିଁ ଶ୍ରେୟସ୍କର।

ସତ୍ୟବାନ—ବାସ୍ତବିକ, ମୋର ଜୀବନଧାରଣ ନ କରିବାହିଁ ଶ୍ରେୟସ୍କର—ଏପରି ଶକ୍ତିହୀନ ଜୀବନ-ଧାରଣ କରିବା ଅପେକ୍ଷା ନ କରିବାହିଁ ଶ୍ରେୟସ୍କର। କିନ୍ତୁ ବିବେକ ! ତୁମ୍ଭେ କେଡ଼େ କଠିନ ! କେଡ଼େ ନିଦୟ ! ତୁମ୍ଭର ଉପଦେଶ ଗୁଡ଼ିକ ଯେ ମୋତେ ନିଦାରୁଣ ବଜ୍ରତୁଲ୍ୟ ବୋଧ ହେଉଛି—( କିଛିକ୍ଷଣ ରହିବା ) ଯାଏଁ, ଆଜି ଠାରୁ ଏ ହୃଦୟକୁ ଇତରଭାବଶୂନ୍ୟ କରିଦେବି (ପ୍ରସ୍ଥାନୋଦ୍ୟତ ହେବା ସମୟରେ ପଶ୍ଚାତ୍ ଦିଗରୁ ଦୁର୍ଦ୍ଦାନ୍ତର ଧୀରେ ଧୀରେ ପ୍ରବେଶ)

ଦୁର୍ଦ୍ଦାନ୍ତ—( ସ୍ୱାଗତ ) ଏହିବାର ଠିକ୍ ଜବଲକୁ ଆସିଛି—( ପ୍ରକାଶ୍ୟେ ) ଆଉ କୁଆଡ଼େ ଯିବୁ ? ( ସତ୍ୟବାନର ଗଳଦେଶ ଧାରଣ ପୂର୍ବକ ଛୁରୀ ଦ୍ୱାରା ବକ୍ଷସ୍ଥଳ ଭେଦ କରିବାକୁ ଉଦ୍ୟତ ହେବା। )

ସତ୍ୟ—କି—ଏ ? କି—ଏ ?

ଦୁର୍ଦ୍ଦାନ୍ତ—ପରିଚୟ ଜାଣିବାକୁ ଚାହୁଁ ? ( ମୁହଁ ଦେଖାଇ ) ଏହି ଦେଖ, ତୋର ଯମ । ସାବିତ୍ରୀର—

ସତ୍ୟବାନ୍—( ସାଶ୍ଚର୍ଯ୍ୟେ ) ଦୁର୍ଦ୍ଦାନ୍ତ !

ଦୁର୍ଦ୍ଦାନ୍ତ—ହଁ, ଦୁର୍ଦ୍ଦାନ୍ତ—ତୋର ଯମ—କାଳ ବିଳମ୍ବ ନିଷ୍ପ୍ରୟୋଜନ । ( ଛୁରିକାଘାତ କରିବାକୁ ଯିବା ସମୟରେ ପଶ୍ଚାଦ୍ଦିଗରୁ ଦୁଇଜଣ ସୈନ୍ୟ ଆସି ଦୁର୍ଦ୍ଦାନ୍ତକୁ ଧରି ଛୁରିକାଘାତ କରିବାକୁ ଉଦ୍ୟତ ହେବା ଏବଂ ସତ୍ୟବାନ ନିଷ୍କୃତି ପାଇ ବିସ୍ମୟ-ନୟନରେ ଘଟନାବଳୀ ଦେଖିବା । )

ଦୁର୍ଦ୍ଦାନ୍ତ—ଉଃ । ପ୍ରାଣ ଗଲା । କିଏ ଅଛ, ମୋତେ ରକ୍ଷାକର—ରକ୍ଷାକର ।

୧ମ ସୈନ୍ୟ—କିଛି ଭୟନାହିଁ । ଏହି ଗୋସାଇଁଙ୍କ ପ୍ରାଣ ଯେପରି ରକ୍ଷା କରିଥିଲୁ, ତୋ' ପ୍ରାଣ ସେହିପରି ରକ୍ଷା କରିବୁଁ ।

୨ୟ ସୈନ୍ୟ—ଡକାଇତ ବାବୁ । ଏଥର ବୁଝି ନିଅ ନା—ପ୍ରାଣ ଦେବାଟା କେଡ଼େ କଠିନ ?

ଦୁର୍ଦ୍ଦାନ୍ତ—କେହି କି ଶୁଣିବ ନାହିଁ ? କେହି କି ମନୁଷ୍ୟ ନାହାନ୍ତି ? କାହାରି ଅନ୍ତଃକରଣରେ କଣ ଲେଶମାତ୍ର ଦୟା ହେଉନାହିଁ ? ଗୋଟିଏ ଜୀବନ କି ରକ୍ଷା ହେବନାହିଁ ?

ସତ୍ୟବାନ—ଭ୍ରାତୃଗଣ ! କିଛି ଭୟ ନାହିଁ । ହେ ସୈନିକଗଣ । ତୁମ୍ଭେମାନେ ମୋର ରକ୍ଷାକର୍ତ୍ତା—ପ୍ରାଣଦାତା—ସୁତରାଂ ଦେବତା । ତୁମ୍ଭେମାନେ ଯେ ମୋତେ କେତେଦୂର ଋଣୀ କଲ ତାହା ମୁଁ ବାକ୍ୟରେ ବର୍ଣ୍ଣନା କରିବାକୁ ଅକ୍ଷମ—ଏ' ଋଣର ପରିଶୋଧ ଏ ଜୀବନରେ କଦାପି କରିପାରିବି ନାହିଁ—ତଥାପି ମୁଁ ତୁମ୍ଭମାନଙ୍କଠାରୁ ଆଉରି ଗୋଟିଏ ଋଣ ଗ୍ରହଣ କରିବାକୁ ଇଚ୍ଛା କରୁଛି—ଏ ଭ୍ରାତାଙ୍କୁ ମୁକ୍ତିଦିଅ ।

୨ୟ ସୈନିକ—ନା, ଗୋସେଇଁ ଆମେ ତା' ପାରିବା ନାହିଁ ।

ସତ୍ୟବାନ୍—ସୈନିକଗଣ । ତୁମ୍ଭେମାନେ ଉଦାର ହୃଦୟ—ତୁମ୍ଭେମାନେ ବୀରଚେତା—ତୁମ୍ଭେମାନେ ହିଁ ଜାଣ, କିପରି ନିଜର ପ୍ରାଣ ବଳିଦେଇ ଅପରର ପ୍ରାଣ ରକ୍ଷା କରିବାକୁ ହୁଏ—ତୁମ୍ଭେମାନେହିଁ ଜାଣ, କିପରି ଭ୍ରାତୃଭିକୁ କିମ୍ବା ଦୁର୍ବଳଙ୍କୁ, ଶତ୍ରୁ ହେଲେ ସୁଦ୍ଧା, ନିଜର ପ୍ରାଣ ତୁଚ୍ଛକରି ଆଶ୍ରୟ ଦେବାକୁ ହୁଏ—ତେଣୁ ଆଶାକରେ; ତୁମ୍ଭେମାନେ ମୋତେ ଏହି ଋଣଟି ସାନନ୍ଦରେ ପ୍ରଦାନ କରିବ ।

୧ମ ସୈନିକ—ଗୋସେଇଁ ମହାପ୍ରଭୁ । ଏମିତି କହି ଆମର ପାପ ମାତ୍ରା ବଢ଼େଇ ଦିଅନ୍ତୁ ନାହିଁ । ଆପଣ ଯେବେ ଆମପ୍ରତି ଖୁସି ହୋଇଛନ୍ତି, ତେବେ କଲ୍ୟାଣ କରନ୍ତୁ—ଗୋଡ଼ଧୂଳି ଦିଅନ୍ତୁ ।(ଚରଣଧୂଳି ଗ୍ରହଣ )

ସତ୍ୟବାନ୍—(ଏକାନ୍ତେ) କି ସରଳବିଶ୍ୱାସୀ ଏମାନେ ! ଦୁର୍ଦ୍ଦାନ୍ତ । ଦେଖ, ତୁ' ବି ମନୁଷ୍ୟ—ଏମାନେ ବି ମନୁଷ୍ୟ; ବରଂ ତୁହି ଶିକ୍ଷିତ, ସଭ୍ୟ—ଏମାନେ ଅଶିକ୍ଷିତ, ଅସଭ୍ୟ—କିନ୍ତୁ କି ପ୍ରଭେଦ ! (ପ୍ରକାଶ୍ୟେ) ହେ ସୈନ୍ୟମାନେ । ତୁମ୍ଭେମାନେ ମନୁଷ୍ୟବେଶଧାରୀ ଦେବତା — ତୁମ୍ଭମାନଙ୍କର ଚରଣଧୂଳି ମୋର ଗ୍ରହଣୀୟ । ( ଗୋଡ଼ତଳେ ପଡ଼ିବା )

୧ମ ସୈନ୍ୟ—ରକ୍ଷାକର । ରକ୍ଷାକର । ଆମ୍ଭର ପାପ ହେବ । ଆମ୍ଭେମାନେ ନରକରେ ପଡ଼ିବୁଁ । ( ଇତ୍ୟବସରେ ଦୁର୍ଦ୍ଦାନ୍ତ ମୁକ୍ତିପାଇବା )

ଦୁର୍ଦ୍ଦାନ୍ତ—ଉଃ । ନିଶ୍ୱାସମାରି ବଞ୍ଚିଲା ମଣିଷ—ଯାଏଁ, ପଳାଏଁ—( ପଳାୟନ )

୨ୟ ସୈନ୍ୟ—( ଉଠି ) ଅରେ ଯା, ଯା, ଚୋରଟା ପଳାଇଗଲାରେ !

ସତ୍ୟବାନ୍—ଦିଅ, ପଳାଇବାକୁ ଦିଅ—ତୁଚ୍ଛହାତ ମାରି ହାତ ଗନ୍ଧ କରିବା ନିଷ୍ପ୍ରୟୋଜନ—ସୈନ୍ୟଗଣ ତୁମ୍ଭେମାନେ କେଉଁ ରାଜସେନା ? ଆଜ ଏଠାକୁ ଆସିବାର କାରଣ ?

୧ମ ସୈନ୍ୟ—ଆମ୍ଭେମାନେ ମଦ୍ରଦେଶର ରାଜା ଅଶ୍ୱପତିଙ୍କର ଦେହ ଜଗୁଆଳ—ରାଜମାଦେଈଙ୍କ ବିବାହ ଉପଲକ୍ଷେ—

ସତ୍ୟବାନ୍—କେମାଦେଈଙ୍କ ବିବାହ ! ସାବିତ୍ରୀଙ୍କର ? ତାହାର ସହିତ ? ବିବେକ !—( ବେଗେ ନିଷ୍କ୍ରାନ୍ତ )

୨ୟ ସୈନ୍ୟ—ଭାଇମ ! ବ୍ରାହ୍ମଣ ଗୁଡ଼ାକ ଯେତେ ପାଠ ପଢ଼ନ୍ତୁ ନା କାହିଁକି, ମୁନି ଋଷି ହୁଅନ୍ତୁ ପଛକେ, ଭାରି ଲୋଭୀ !

୧ମ ସୈନ୍ୟ—କାହିଁକିମ ? ଏ' କଥା ତୋ' ମନେ ଉଦେ ହେଲା କାହିଁକି ?

୨ୟ ସୈନ୍ୟ—ଏହି ଦେଖନା—ଉପିଷ୍ଟା ଅଇଛୁଣିକା ଆମ ସଙ୍ଗେ କେମିତି କଥା କହୁଥିଲା—ଯଦିଁଠୁ ଶୁଣିଲା—ରଜାଘର ବାହାଘର—ଆଉ କି ଦଣ୍ଡେ ସମ୍ଭାଳି ରହେ—ଏକଦମ୍ ଚମ୍ପଟ ଛୁ'—(ସମସ୍ତେ ହାସ୍ୟ କରିବା )

୧ମ ସୈନ୍ୟ—ଅଚ୍ଛା ସେ ଗ୍ରେବଟା ଲୁଅଡ଼େ ଚମ୍ପଟ ଛୁ ଦେଲା—ଗୁଲ୍‌ଲ୍ଲ ଦେଖିବା ? (ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

—ପ୍ରାନ୍ତର—

( ଗଜପତି ଓ ସୈନ୍ୟଗଣଙ୍କ ଯୁଦ୍ଧ ଯାତ୍ରା )

ଗୀତ ।

ସାଜ ସାଜ ସାଜ ସର୍ବେ    ଗାଅ ଗାଅ ଗାଅ ଗର୍ବେ,
ବୀର୍ଯ୍ୟ ଶୌର୍ଯ୍ୟ ମଣ୍ଡିତ    ରାଜାଧିରାଜଙ୍କ ଜୟ ।
ରଣ ରଣ ରଣ, ଝଣ ଝଣ ଝଣ, ବୀର ବାଜା ଆଜି
ବାଜେ ଘନ ଘନ
ଗାଅ ହେ ରାଜାଧିରାଜଙ୍କ ଜୟ ।
ଭକ୍ତି ହୃଦୟେ ଆସ ହେ !    ବୀରଦର୍ପେ ମାତହେ !
ନବୀନ ଉତ୍ସାହେ, ନବୀନ ଉଲ୍ଲାସେ,
ମାତ ଉଠ ନାହିଁ ଭୟ ।
ଶତ୍ରୁ ବୃନ୍ଦ ଅଙ୍ଗ, ଅମ୍ଭରାଜବୀର୍ଯ୍ୟ, ଦେଖି ପାଉ ଲଜ୍ଜ,
ହେଉ ହୀନ ତେଜ,
ଭୁବନ ଗଗନ ମତାଇ ଗାଅ,    ରାଜାଧିରାଜଙ୍କ ଜୟ ।

---

## ୭ମ ଦୃଶ୍ୟ

—ଆଶ୍ରମ—

( ଅଶ୍ୱପତି ଓ ଦ୍ୟୁମତ୍‌ସେନ ଆସୀନ )

ଦ୍ୟୁମତ୍‌ସେନ୍—ମହାରାଜ !

ଅଶ୍ୱପତି—ପୁଣି ସେହି ଡାକ ଭାଇ ! ଏ'ପରି ସମ୍ବୋଧନ କରି ମୋତେ ଅନ୍ତର କରି ଦେଉଛନ୍ତି କାହିଁକି ?

ଦ୍ୟୁମତ୍‌ସେନ—ଆଚ୍ଛା ଭାଇ ! ସେପରି ଡାକରେ ଆଉ ମୁଁ ଡାକିବି ନାହିଁ; କିନ୍ତୁ, ଭାଇ ଆପଣ କ୍ଷତ୍ରିୟ ହୋଇ, ନୀତଜ୍ଞ ହୋଇ ଏପରି କଥା କହୁଛନ୍ତି କିପରି ?

ଅଶ୍ୱପତି—ଭାଇ ! କହୁଛନ୍ତି, ଏହି ସନ୍ତାନ ସ୍ନେହ ମୋହରେ ପଡ଼ି ମୁଁ ସମସ୍ତ ହରାଇଛି—ମୋର କି ଆଉ କ୍ଷତ୍ରିୟର ସେ ପାଷାଣ କଠିନ ହୃଦୟ ଅଛି ? ମୋର କି ଆଉ ନୀତଜ୍ଞର ସେହି ନିଷ୍ଠୁର ଭକ୍ତିବ୍ୟଞ୍ଜନ ଅଛି ?

ଦ୍ୟୁମତ୍‌ସେନ—ଭାଇ ! ଏହା ଅତୀବ ପରିତାପର ବିଷୟ—ପରନ୍ତୁ ନିନ୍ଦାର ବିଷୟ ।

ଅଶ୍ୱପତି—ଯାହା ହେଉ—ଲୋକେ ଯାହା କହିବେ କହନ୍ତୁ—ସଂସାର ପଛକେ ମୋର ମସ୍ତକରେ ତାହାର ସମସ୍ତ କଳଙ୍କ ପସରା ଅଜାଡ଼ି ଦେଉ— ମୋର ସେଥିରେ ଲେଶମାତ୍ର ଶଙ୍କା ନାହିଁ, ଲେଶମାତ୍ର ଭୟନାହିଁ, ଯେବେ ଆପଣମାନେ ଅନୁଗ୍ରହ କରି ଏହି ଦୀନର କୁଟୀର ଅଳଂକୃତ କରନ୍ତି ।

ଦ୍ୟୁମତ୍‌ସେନ—ଭାଇ ! ଆପଣ ଯେ ଏପରି ଅନୁରୋଧ କରିବେ, ତାହା ମୋ ମନରେ ଆଗରୁଁ ଉଦୟ ହୋଇ ଥିଲା; ସେଥି ଲାଗି ସମ୍ମତି ଦାନ ପୂର୍ବରୁ ଆମ୍ଭମାନଙ୍କର ଦୁଃଖ କାହାଣୀ ଶୁଣାଇ—ଉପସ୍ଥିତ ଅବସ୍ଥା ଜଣାଇ—ଆଉ ଏହି ପର୍ଣ୍ଣ କୁଟୀର, ଫଳ ମୂଳ ଭକ୍ଷଣ ଦେଖାଇ, ସେହି କାର୍ଯ୍ୟରୁ ବିରତ ହେବା ସକାଶେ ପୁନଃ ପୁନଃ ଅନୁରୋଧ କରିଥିଲି । ଆପଣ ଯେତେବେଳେ ଏ' ଅନୁରୋଧ ପ୍ରତି କର୍ଣ୍ଣପାତ ସୁଦ୍ଧା କଲେ ନାହିଁ, ତେତେବେଳେ

ତାହାର ବିଷମୟ ପରିଣାମ ଅବଶ୍ୟ ଭୋଗ
କରିବେ—ମୋର ଆଉ କି ସାଧ ଅଛି ?

ଅଶ୍ୱପତି—ଭାଇ ! ଏପରି କହି ମୋର ଦଗ୍‌ଧ ପ୍ରାଣକୁ
ଆହୁରି ଦଗ୍ଧ କରି ଦିଅନ୍ତୁ ନାହିଁ । (ସ୍ୱଗତ)
ହାୟ ! କିପରି ମୁହିଁ ସାବିତ୍ରୀ-ଶୂନ୍ୟ ଘରକୁ
ଫେରିଯିବି—କିପରି ମୁହିଁ ଦେବଦୁର୍ଲ୍ଲଭ
ପ୍ରାସାଦରେ ବାସ କରିବାକୁ ମନ ବଳାଇବି—
ଯେତେବେଳେ କନ୍ୟା ମୋର ସିଂହ-ବ୍ୟାଘ୍ର-
ସଙ୍କୁଳ ଅରଣ୍ୟରେ ଅବସ୍ଥାନ କରୁଥିବ ? କିପରି
ମୁହିଁ ନାନାବିଧ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ
ଦ୍ୱାରା ରସନା ତୃପ୍ତ କରାଇବି—ଯେତେବେଳେ
କନ୍ୟା ମୋର ତିକ୍ତ ଫଳ ମୂଳ ଆହାର କରି
ଜୀବନଧାରଣ କରୁଥିବ ?

(ସାବିତ୍ରୀ ଓ ସତ୍ୟବାନଙ୍କର ବରକନ୍ୟା ବେଶରେ
ପ୍ରବେଶ ଓ ସଖୀମାନଙ୍କର ଗୀତ )

ଆସ ଆସ, ସଖି ସାଜିବା
ଯୁଗଳେ ଯୁଗଳେ ମାତିବା
ନୂତନ ସ୍ୱରେ, ସ୍ୱରେ, ଛନ୍ଦେ
ନୂତନ ମିଳନ ଗାଇବା ।
ଗାଏ କୋକିଳ କୋକିଳା ସଙ୍ଗେ
ଗାଏ ଭ୍ରମର ଭ୍ରମରୀ ସଙ୍ଗେ
ଏକ ତାନେ, ଏକ ଧ୍ୟାନେ,
ଆସ ଗୋ ସେ ତାନେ ମିଳିବା ।
କହ ଲୋ କାହିଁ ଦେଖିଛୁ କି
ଅପରୂପ ଏହି ଦୃଶ୍ୟ—
ବନ-ପାଦପେ ଆଲିଙ୍ଗିଛି
ଉଦ୍ୟାନ ବ୍ରତତୀ-ଶୀର୍ଷ ?
କେ ତୁମ୍ଭେ ଅହେ ଅଦୃଶ୍ୟ ବିଧାତା !
କିବା ରୂପ ଗୁଣ ତବ ?
ତୁମ୍ଭରି ପ୍ରଭାବେ, ଅପୂର୍ବ ଭାବେ,
ଅପୂର୍ବ ସଂଯୋଗେ ମିଳନ୍ତି ସର୍ବେ
କି ଭାବେ ଏ ଦମ୍ପତି
ମଜାଇଛନ୍ତି ଲୋ ଗାଇବା ।

ପୁରୋହିତ—ମହାରାଜ ! ବିବାହର ସମସ୍ତ କାର୍ଯ୍ୟ ଶେଷ
ହୋଇଅଛି—ବର୍ତ୍ତମାନ କେବଳ କନ୍ୟାସମର୍ପଣ
କରିବାକୁ ହେବ ।

ଅଶ୍ୱପତି—(ଅର୍ଦ୍ଧସ୍ୱଗତ) ଏହିଠାରେ ବିବାହର ଶେଷ
ସୀମା—ଏହିଠାରେ ମଧ୍ୟ କନ୍ୟା-ପିତାର
ମନୋକଷ୍ଟର ଶେଷସୀମା ।

ପୁରୋହିତ—ମହାରାଜ, ଆଉ ବିଳମ୍ବ କରିବେ ନାହିଁ ।
ଦିବା ଅବସାନ ହେବାକୁ ଆସିଲାଣି—ଆମ୍ଭମାନଙ୍କୁ
ଆଜି ଯେପରି ହେଲେ ଫେରିଯିବାକୁ ହେବ ।

ଅଶ୍ୱପତି—ପ୍ରାଣପ୍ରିୟା ସାବିତ୍ରୀକୁ ମୋର ସଙ୍ଗରେ
ନେଇ—ନା ଏକା ?

ପୁରୋହିତ—ମହାରାଜ ! ଆପଣ ଏତେବେଳେ ଏପରି
ବିହ୍ୱଳ ହେଲେ ଚଳିବ କିପରି ?

ଅଶ୍ୱପତି—( ଲୁହ ପୋଛି ) ଭାଇ ! ଏହି ଶେଜକୁ
( ସାବିତ୍ରୀ ସତ୍ୟବାନର ଏକତ୍ର ହସ୍ତ ଦ୍ୟୁମତ୍‌-
ସେନଙ୍କ କରରେ ଅର୍ପଣ କରି ) ବୁଢ଼ାର ଧନକୁ
ମୋର—ଅନ୍ଧର ଯଷ୍ଟିକୁ ମୋର—ଭାଇ ! ଏହି
କନ୍ୟା ମୋର କନ୍ୟା ନୁହେଁ—ମୋର ପ୍ରାଣର
ପ୍ରାଣ—ହୃଦୟର ହୃଦୟ—ଏହାକୁ ସମର୍ପଣ କରି
ମୁଁ କେବଳ ଆପଣଙ୍କ ହସ୍ତରେ କନ୍ୟା ସମର୍ପଣ
କରୁନାହିଁ—ମୋର, ଜୀବନସର୍ବସ୍ୱକୁ ସମର୍ପଣ
କରୁଅଛି—ଏହାର ସୁଖରେ ମୋର ସୁଖ—ଏହାର
ଦୁଃଖରେ ମୋର ଦୁଃଖ—ଏହାର ଅବସ୍ଥାନ
ମୋର ଅସ୍ତିତ୍ୱଜ୍ଞାପକ । ହେ ଭାଇ ! ବର୍ତ୍ତମାନ
ଆପଣଙ୍କଠାରେ ଏତିକି ମିନତି—ଅତି ଯତ୍ନଲାଳିତା
ଅତି ସୁଖବର୍ଦ୍ଧିତା କନ୍ୟା ମୋର ନିତାନ୍ତ
ଶିଶୁମତି—ସାଂସାରିକ ବିଷୟରେ ନିତାନ୍ତ
ଅନଭିଜ୍ଞା—ଏହାର ନୀତିଶିକ୍ଷାଭାର ଆପଣଙ୍କ
ହସ୍ତରେ ଆଜଠାରୁ ସମର୍ପଣ କରି, ମୋର ଦାୟିତ୍ୱ
ଶେଷ କଲି—ଆପଣ ବର୍ତ୍ତମାନ ଏହାର ପିତା—
ଆପଣ ବର୍ତ୍ତମାନ ଏହାର ମାତା—ମୁଁ ଆଉ
କେହି ନୁହେଁ—ମୋର ସମ୍ବନ୍ଧ ଆଜଠାରୁ ନାମ
ମାତ୍ର ରହିଲା !

( କାନ୍ଦିବା )

ଦ୍ୟୁମତ୍‌ସେନ—ଭାଇ ! ମୋତେ ଆଜ ଯେଉଁ ଅମୂଲ୍ୟ-ଭାର ଅର୍ପଣ କଲେ, ତାହା ବହନ କରିବା ବିଷୟରେ ମୁଁ ନିତାନ୍ତ ଅଶକ୍ତ, କେବଳ ଆପଣଙ୍କ ସ୍ନେହାର୍ପିତ ବୋଲି ବହନ କରୁଅଛି । ସମର୍ଥ ହୁଏ ବା ନ ହୁଏ, ମୁଁ ଏହି ଭାରର ଯଥାଯୋଗ୍ୟ ସମ୍ମାନ କରିବାକୁ କଦାପି ତ୍ରୁଟି କରିବି ନାହିଁ—ଆପଣ ଏଥିପାଇଁ ଲେଶମାତ୍ର ଚିନ୍ତା ନ କରନ୍ତୁ ।

ଅଶ୍ୱପତି—ସତ୍ୟବାନ ! ପୁତ୍ର ମୋର ! ଆଜ ତୁମ୍ଭର ଗଳଦେଶରେ ଯେଉଁ ଅମୂଲ୍ୟ ହାରଟି ଲମ୍ବାଇ ଦେଲି, ତାହା ଯେ ମୋର କେତେ କ୍ଳେଶରେ ଉପାର୍ଜିତ, ତାହା ଯେ ତାହାର ସ୍ନେହମୟୀ ଜନନୀର କେତେ ଯତ୍ନରେ ଲାଳିତ, ତାହା ମୁଁ ବାକ୍ୟରେ କହି ପାରୁ ନାହିଁ—ମୋର ହୃଦୟକୁ ଲକ୍ଷ୍ୟ କର, ବୁଝି ପାରିବ । ପ୍ରିୟ ପୁତ୍ର ! ତୁମ୍ଭଙ୍କୁ ଏତିକି ଅନୁରୋଧ ଯେ, ଏହି ହାରଟିକୁ ଯେପରି କେବେ ଅଯତ୍ନ ନ କର, ଏହାର କାନ୍ତିର କଳଙ୍କ ଦର୍ଶନରେ ଯେପରି ବିରକ୍ତ ନ ହୁଅ, ବରଂ ପରିମାର୍ଜିତ କରି ପୂର୍ବାପେକ୍ଷା ଉଜ୍ଜ୍ୱଳତର କରିବାକୁ ଚେଷ୍ଟା କର—ତୁମ୍ଭେ ବୁଦ୍ଧିମାନ—ତୁମ୍ଭଙ୍କୁ ମୁଁ ଆଉ ବିଶେଷ ଉପଦେଶ କଣ ଦେବି ?

ସତ୍ୟବାନ—ପିତଃ ! ଏହି ଦୀନ ଶିଶୁକୁ ଆଜ ଯେଉଁ ସ୍ୱର୍ଣ୍ଣ ନିଗଡ଼ରେ ଆବଦ୍ଧ କଲେ—ତାହା ଯେ ସେ କିପରି ଅନାୟାସରେ ବହନ କରି, କର୍ତ୍ତବ୍ୟ-ପଥରେ ଅଗ୍ରସର ହେବ, ଭାବି ଠିକ୍ ପାରୁ ନାହିଁ, କେବଳ ଆପଣମାନଙ୍କର ଉପଦେଶ ଓ ଆଶୀର୍ବାଦ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଲା ।

(ଅବନତ ହେବା)

ଅଶ୍ୱପତି—ଆମ୍ଭେମାନେ ଅନ୍ତରର ସହିତ ଆଶୀର୍ବାଦ କରୁଅଛୁ—ତୁମ୍ଭେ ନିଶ୍ଚୟ ସଫଳକାମ ହେବ । (ସାବିତ୍ରୀ ଆଡ଼େ ଚାହିଁ) ସାବି ! ମା ମୋର ! ତୋତେ କେତେ ଗୁଡ଼ାଏ ଉପଦେଶ ଦେଇଛି, ମନ ଦେଇ ଶୁଣ ମା ! କାୟମନୋବାକ୍ୟେ ଗୁରୁଜନ-ମାନଙ୍କର ସେବା ଶୁଶ୍ରୂଷା କରିବୁ—ଶାଶୂ ଶ୍ୱଶୁରଙ୍କୁ ନିଜ ପିତା ମାତାଙ୍କଠାରୁ ଅଧିକ ଜ୍ଞାନ କରିବୁ—ପରିଜନମାନଙ୍କ ମନରେ କେବେହେଁ କଷ୍ଟ ଦେବୁ ନାହିଁ, ସେମାନଙ୍କୁ ସର୍ବଦା ନିଜର ସନ୍ତାନ ତୁଲ୍ୟ ଦେଖିବୁ—ସ୍ୱାମୀଙ୍କୁ ଦେବତା ତୁଲ୍ୟ ମନେ କରି ତାଙ୍କଠାରେ ଅଚଳା ଭକ୍ତି ରଖିବୁ, ଆଉ ଗୋଟିଏ କଥା ମନେ ରଖିଥିବୁ ମା ! ଘୁଣାକ୍ଷରେ ଯେପରି ତୋର ନିନ୍ଦା ବା କୁତ୍ସା ଅପର କାହାରି କର୍ଣ୍ଣଗୋଚର ନ ହୁଏ, ତାହାହେଲେ ମା, ତୋର ପିତୃକୁଳ ଓ ଶ୍ୱଶୁରକୁଳ—ଉଭୟ କୁଳ ନଷ୍ଟ ହେବ—ବିଶେଷତଃ ଆମ୍ଭମାନଙ୍କର ଏତେକାଳ ସଞ୍ଚିତ ପୁଣ୍ୟର ସମ୍ପୂର୍ଣ୍ଣ କ୍ଷୟ ହେବ—ତୁହି ଯେ ଆମ୍ଭମାନଙ୍କ କୁଳ ରକ୍ଷାକରିବା ସକାଶେ ଏକମାତ୍ର ସନ୍ତାନ ମା ।

ସାବିତ୍ରୀ—ପିତଃ ! ଏହି ଦୁର୍ବଳା ତନୟା କଣ ନିଜ ଶକ୍ତିରେ ଏହି ମହାମୂଲ୍ୟ ଉପଦେଶ ଗୁଡ଼ିକ ଯଥାସମ୍ଭବ ପାଳନ କରିବାକୁ ସମର୍ଥା ହେବ ?

( ଅବନତ ହେବା )

ସମସ୍ତେ—ଆମ୍ଭେମାନେ ଆଶୀର୍ବାଦ କରୁଛୁ, ତୁମ୍ଭର ଜୟ ହେବ ।

ଅଶ୍ୱପତି—ଏବେ ବିଦାୟ ଦେ, ମା !

ସାବିତ୍ରୀ—ବିଦାୟ ଦେବି ! (ଆଲିଙ୍ଗନ କରିବା)

ଅଶ୍ୱପତି—କେଉଁ ପ୍ରାଣରେ ବିଦାୟ ମାଗୁଅଛୁ ? କେଉଁ ପ୍ରାଣରେ ମୋର ପୁଷ୍ପ ମୁହିଁ ବୃନ୍ତଚ୍ୟୁତ କରୁଅଛୁ ?

ସାବିତ୍ରୀ—ପିତଃ ପିତଃ ! ( କାନ୍ଦିବା )

ଅଶ୍ୱପତି—ଓଃ ! କି ବେଦନା ! ସମାଜ ତୁମ୍ଭେ କି କଠିନ ! କି ନିଦାରୁଣ ! କନ୍ୟା ହେଲେ କଣ ଲୋକେ ଦାନ କରିବାକୁ ବାଧ୍ୟ ? ନିଜଠାରୁ ଏହିପରି ଭାବେ ଅନ୍ତର କରିବାକୁ ବାଧ୍ୟ ? ଅନ୍ୟ କୌଣସି ଉପାୟ କଣ ନାହିଁ ? ଯେବେ ନାହିଁ—ସଂସାର ! ତେବେ ତୁମ୍ଭେ କନ୍ୟାଦ୍ୱାରା କାହିଁକି ପିତା ମାତାଙ୍କୁ ମାୟାଜାଲରେ ଆବଦ୍ଧ କରୁଅଛ ? ତେବେ ତୁମ୍ଭେ କନ୍ୟା ପ୍ରତି କାହିଁକି ପିତା ମାତାଙ୍କୁ

ସ୍ନେହ କରିବାକୁ ଶିଖାଇ ଅଛ ? ତୁମ୍ଭେ ପାଷାଣ କଠିନ ହେଉ ନାହିଁ କାହିଁକି ? ଅମ୍ଭମାନଙ୍କ ମଧ୍ୟରେ ବିପରୀତ ଭାବ ଜଗାଇ ଦେଉ ନାହିଁ କାହିଁକି ? ( କାନ୍ଦିବା )

ସମନ୍ତ୍ରେ—( କରୁଣସ୍ୱରେ ) ମହାରାଜ । ସ୍ଥିର ହେଉନ୍ତୁ ।

ଅଶ୍ୱପତି—ସାବି । ସାବି ।

ସାବିତ୍ରୀ—ପିତଃ । ପିତଃ । ( ବୃଦ୍ଧାଲିଙ୍ଗନ କରିବା ଓ ସମନ୍ତ୍ରେ କରୁଣ ଭାବେ ଗୁହିଁ ରହିବା )

[ ଯବନିକା ପତନ ]

---

# ଚତୁର୍ଥ ଅଙ୍କ

## —ପ୍ରଥମ ଦୃଶ୍ୟ—

( ତପସ୍ୱୀନୀଗଣ ଓ ସାବିତ୍ରୀ )

ତପସ୍ୱୀନୀଗଣ— ଗୀତ ।

( ଅମ୍ଭେ ) ତପୋବନ-ଆଶ୍ରମ-ବାସିନୀ ତପସ୍ୱିନୀ,
ବଲକଲ ପରିଧାନେ ସତତ ସୁଖିନୀ ।
ତରୁଲତା, ପଶୁପକ୍ଷୀ ସରବେ ଗୋ ଅମ୍ଭ ସଖୀ,
ସୁଖେ ସୁଖୀ ଦୁଃଖେ ଅମ୍ଭ ଜଗତ ବିଷାଦିନୀ ।
ବାସ କରୁ ଥାଉଁ ଏକା ନାହିଁ ତଳେ ନାହିଁ ଦେକା,
ଭବ ବାରିଧି ନଉକା ଏକା ଜଗତ୍ଜନନୀ ।
( ପ୍ରସ୍ଥାନ )

ସାବିତ୍ରୀ—ଅହା କି ସୁମଧୁର ଗୀତ । କି ସୁମଧୁର ତାନ । ଏହାର ପ୍ରତି ଶବ୍ଦରେ—ପ୍ରତି ଝଙ୍କାରରେ ଯେପରି ସୁଧାସାଗର ପ୍ରସ୍ଫୁଟିତ ହେଉ ଅଛି, ମନ ଏକ ଅପୂର୍ବ ପବିତ୍ର ଭାବରେ ଅନୁପ୍ରାଣିତ ହେଉ ଅଛି—ଆଜି ସଂସାରର ମାୟା ମୋହ ଯେପରି ସୁରଭିତ୍ପୂର୍ଣ୍ଣରେ ତାମସୀ ଛାୟା ସଦୃଶ ଦୂରେଇଁ ଯେତେ ଅପସାରିତ ହୋଇଯାଉ ଅଛି—ଶରୀର ଧାଉଁଛି ତପସ୍ୱିନୀମାନଙ୍କର ସେହି ପବିତ୍ର ଶାନ୍ତିମୟ ପ୍ରାଣଧାରଣରେ, ସେହି ଶିବାନନ୍ଦମୟ ଦିନ ଯାପନରେ, ସେହି ନିର୍ବିକାର ପ୍ରଲୋଭନ ଶୂନ୍ୟ ଭାବାବେଶରେ ଆତ୍ମାକୁ ବିସର୍ଜନ କରିଦେବି— କିନ୍ତୁ, କାହିଁ ସେ ଶକ୍ତି ? କାହିଁ ସେ ସାମର୍ଥ୍ୟ— ଯେତେବେଳେ ବିବେକ ମୋର ଶାସକ, କର୍ତ୍ତବ୍ୟ ମୋର ବାସସ୍ଥାନ ? ଶ୍ୱଶୁରଦେବ । ପିତୃଦେବ । ମାତୃଦେବି । ଏହି ଅଧମ କନ୍ୟା କଣ ଆପଣମାନଙ୍କର ପ୍ରୀତିସମ୍ପାଦନରେ ସମର୍ଥା ହୋଇଅଛି ? ଏହି ଅଭାଗିନୀ କଣ ଆପଣମାନଙ୍କର ସମ୍ମାନ ରକ୍ଷା କରିବାରେ ସମର୍ଥା ହୋଇଅଛି ? ଆପଣମାନେ ଉଦାର ହୃଦୟ ଦେବୋପମ । ଶିଶୁର ଦୋଷ ମାର୍ଜ୍ଜନା କରନ୍ତୁ । ସ୍ୱାମି । ପ୍ରଭୋ । ଓଃ ହୋଃ । ତୁମ୍ଭର କଥା ଭାବିଲି ବେଳକୁ ହୃଦୟ ସ୍ପନ୍ଦହୀନ ହୋଇ ଯାଉଛି—ଉଷ୍ଣରକ୍ତପ୍ରବାହ ତୁଷାର ତୁଲ୍ୟ ଘନୀଭୂତ ହୋଇଯାଉଛି—ବସୁଧା ଯେପରି ଚରଣପ୍ରାନ୍ତରୁ ଅପସାରିତ ହୋଇଯାଉଛି —ଆକାଶ ଯେପରି ମୁଣ୍ଡ ଉପରେ ଭାଙ୍ଗିପଡୁଛି— ପ୍ରଭୋ ! ପ୍ରଭୋ ! ଏ ପ୍ରାଣ ଥାଉଁ ଥାଉଁ ସେହି ଭୀଷଣ ଦିନ, ସତୀର ସେହି ଜୀବନ୍ମୃତ୍ୟୁ ଦିନ, ଏହି ଦୁର୍ବଳା ଉପରେ ସମ୍ମୁଖୀନ ହେବ ? (ବିହି) ଆସୁ, ଆସୁ ସେହି ଦିନ, କି ଭୟ କି ଚିନ୍ତା— ଯେବେ ଏହି ପାପିନୀ ନିଜ କର୍ମଗୁଣରେ କିଞ୍ଚିତ୍ ପୁଣ୍ୟବଳ ସଞ୍ଚୟ କରିଥାଏ, ଯେବେ ଏହି ଦାସୀ ଗୁରୁଜନମାନଙ୍କର ସେବା କରି କିଞ୍ଚିତ୍ ଆଶୀର୍ବାଦର ଅଧିକାରିଣୀ ହୋଇଥାଏ, ତେବେ ଏହା ସତ୍ୟ, ଧ୍ରୁବ ସତ୍ୟ, ଏ ଦାସୀ କଦାପି ସ୍ୱାମିସଙ୍ଗବଞ୍ଚିତା ହେବ ନାହିଁ—ଏ ଦାସୀ କଦାପି ବିଧବା ହେବ ନାହିଁ ।

ନେପଥ୍ୟେ—ତଥାସ୍ତୁ—ତଥାସ୍ତୁ

ସାବିତ୍ରୀ—କାହାର ଅଶ୍ୱାସନା ବାକ୍ୟ ଏହି ? ବିବେକ । ତୁମ୍ଭର ଅଧୀନା ଏକମାତ୍ର ମୁହିଁ— ତୁମ୍ଭର ବାକ୍ୟ ନିଶ୍ଚୟ ସଫଳ ହେଉ ।

( ମାଲବିକାର ପ୍ରବେଶ )

ମାଲବିକା—(ସ୍ୱଗତ) ଏହି କି ସେହି ବୋହୂ ମୋର—
ଯା'ର ରୂପ ପ୍ରଭାବରେ ଦିନେ ଘୋର ଅନ୍ଧକାର-
ମୟୀ ବନସ୍ଥଳୀ ଉଦ୍ଭାସିତ ହୋଇଯାଇଥିଲା ?
ହାୟ ! କାହିଁ ସେ ମୃଗଶ୍ରୀ—କାହିଁ ସେ ମୁଖ-
ଲାବଣ୍ୟ, ଯାହା ଅଧୁନା କୃଷ୍ଣପକ୍ଷ-ଶଶୀକଳା ତୁଲ୍ୟ
ଦିନକୁ ଦିନ ହ୍ରାସପ୍ରାପ୍ତ ହେଉଅଛି ! ପୁଣି ଦେଖ,
ଅଳଙ୍କାରଶୋଭାବର୍ଜ୍ଜିତ ଦେହଯଷ୍ଟି କୁସୁମବିହୀନ-
ବନଲତା ସଦୃଶ କିପରି ହତଶ୍ରୀ ଦେଖାଯାଉ-
ଅଛି—ତାହାଙ୍କ ଏପରି ଘଟିଲା ? କି ଦୁର୍ଦ୍ଦିନ
ଆସି ହୃଦୟାକାଶକୁ ତାର ଗ୍ରାସକଲା ? ସେତ
ସ୍ୱେଚ୍ଛାରେ ଦାରିଦ୍ର୍ୟକୁ ବରଣ କରିଅଛି—ସେତ
ସ୍ୱେଚ୍ଛାରେ ଭୋଗବିଳାସକୁ ପରିହାର କରିଅଛି !
(ପ୍ରକାଶ୍ୟେ) ବୋହୂ ! ବୋହୂ !

ସାବିତ୍ରୀ—ମା, ମା !

ମାଲବିକା—କହ ବୋହୂ, କି ଚିନ୍ତା ତୋର ହୃଦୟକୁ
ଗ୍ରାସ କରିଛି—ତୁ ଯେ ସ୍ୱେଚ୍ଛାରେ ଏ ଦୀନ
କାଙ୍ଗାଳମାନଙ୍କୁ ଆଶ୍ରୟ କରିଛୁ ?

ସାବିତ୍ରୀ—ମା, ମା ! କ୍ଷମା କରନ୍ତୁ, ମା—ଏପରି ବାକ୍ୟ
ଯେ ମୋତେ ବଜ୍ରପ୍ରହାରତୁଲ୍ୟ ବୋଧ ହେଉଅଛି !
( ଅଧୋବଦନରେ ରହିବା )

ମାଲବିକା—ଅଚ୍ଛା ମା ମୋର ଗୋଟିଏ ଅନୁରୋଧ
ଅଛି, ରଖିବୁ କି ?

ସାବିତ୍ରୀ—କି ଅନୁରୋଧ, ମା ? ସନ୍ତାନକୁ ପୁଣି
ଅନୁରୋଧ କଣ ମା ? ସନ୍ତାନକୁ ଆଦେଶ
କରନ୍ତୁ—ସେ ଏହା ନିଶ୍ଚୟ ପାଳିବ, ପ୍ରାଣ ପଣେ
ପାଳିବ ।

ମାଲବିକା—ତୋ ପକ୍ଷେ ଏ କିଛି ବେଶୀ କଥା ନୁହେଁ
ମା ! ଯେ କର୍ତ୍ତବ୍ୟ ପାଳନ ସକାଶେ ସ୍ୱେଚ୍ଛାରେ
ଧନ ସମ୍ପଦ, ସାଂସାରିକ ସୁଖସ୍ୱାଚ୍ଛନ୍ଦ୍ୟ ଅବ-
ହେଳାରେ ତ୍ୟାଗ କରିପାରେ—ସାନନ୍ଦରେ
ଫଳମୂଳ ଭୋଜନ ଆଉ ଦୁଃଖୀର ଦୁଃଖ କ୍ଳେଶ
ସହ୍ୟକରି ପାରେ, ତାହାପକ୍ଷେ ଗୁରୁଜନଙ୍କ
ଅନୁରୋଧ ପାଳନପାଇଁ ପ୍ରାଣପଣ କରିବା କଥା
କଣ ? ମା ! ମା ! ତୋପରି ବଧୂ ପାଇ ଆମ୍ଭେ-
ମାନେ ସୁଖୀ ହେଲୁ ସତ୍ୟ, କିନ୍ତୁ ତୋତେ ଯେ
ସୁଖୀ କରି ପାରିଲୁ ନାହିଁ—ତୋର ଯେ ଦୁଃଖର
ସୀମା ରହିଲା ନାହିଁ !

ସାବିତ୍ରୀ—ମା ! ମା ! ମୋର କେଉଁ ସୁଖର ଊଣା
ଅଛି, ମା ? ଏହିତ ମୋର ସୁଖ, ଯେବେ ଆପଣ-
ମାନେ ସୁଖୀ ହୁଅନ୍ତି—ଏହିତ ମୋର ଶାନ୍ତି,
ଯେବେ ଆପଣମାନେ ଶାନ୍ତି ଭୋଗ କରନ୍ତି ?

ମାଲବିକା—ମା ! ମା ! ତୁ ମାନବୀ ନା ଦେବୀ ?
ନିଶ୍ଚୟ ତୁ ଦେବୀ ! ତା ନ ହେଲେକି ତୋତେ
ପାଇବା ଦିନୁ ଆମ୍ଭମାନଙ୍କ ହୃଦୟର ସମସ୍ତ ଜ୍ୱାଳା
ଆଜ ଏପରି ସ୍ୱପ୍ନାତୀତଭାବେ ନିର୍ବାପିତ ହୋଇ-
ଯାଇଥାନ୍ତା—ଆମ୍ଭମାନଙ୍କର ପର୍ଣ୍ଣ କୁଟୀରବାସ
ଆଜ ଏପରି ରାଜପ୍ରାସାଦାବାସ ତୁଲ୍ୟ ବୋଧ
ହେଉଥାନ୍ତା—ଆମ୍ଭମାନଙ୍କର ସାମାନ୍ୟ ଫଳମୂଳା-
ଶନ ଆଜ ଏପରି ବହୁମୂଲ୍ୟ ରାଜଭୋଗ ପରି ସୁଖ-
କର ହେଉଥାନ୍ତା ?—ପୁଣି କହୁଛି, ମା ନିଶ୍ଚୟ
ତୁ ଦେବୀ !

ସାବିତ୍ରୀ—ମା ଅଯଥା ପ୍ରଶଂସା କରି ଦାସୀର ଲଜ୍ଜାବୃଦ୍ଧି
କରନ୍ତୁ ନାହିଁ—କହନ୍ତୁ, ମା ଦାସୀକି କି
ଆଦେଶ କରୁଥିଲେ ?

ମାଲବିକା—ମା ! ଯେଉଁ କାର୍ଯ୍ୟରେ ଆମ୍ଭମାନଙ୍କର
ଆନନ୍ଦ, ସେହିକାର୍ଯ୍ୟ କରିବାକୁ ତୁ ସର୍ବଦା ପ୍ରସ୍ତୁତ
—ତେଣୁ ମୋର ଏହି ଅନୁରୋଧ, ତୋର ତ୍ୟକ୍ତ
ଅଳଙ୍କାର ସମୂହ ପୁନର୍ବାର ଶ୍ରୀଅଙ୍ଗରେ ଧାରଣ
କର—ସେ ଶୋଭା ଦେଖି, ନୟନ ତୃପ୍ତ ହେଉ—
ମନ ପୁଲକିତ ହେଉ !

ସାବିତ୍ରୀ—ମା !—

( ଦ୍ୟୁମତ୍‌ସେନଙ୍କ ପ୍ରବେଶ )

ଦ୍ୟୁମତ୍‌ସେନ—ନା, ମା—ତୋତେ ପ୍ରତ୍ୟୁତ୍ତର ଦେବାକୁ
ଦେବି ନାହିଁ, ମା—ତୋର ବୃଦ୍ଧପୁଅ ନିଜେ ଆଜ
ବାଧା ଦେବାକୁ ଧାଇଁ ଆସିଛି ! ଏହି ଦେଖ ମା
ଅଳଙ୍କାର ସବୁ ସେ ନିଜେ ଖୋଜି ଆଣିଛି—
ତୋତେ ପିନ୍ଧାଇ ଜୀବନ ସାର୍ଥକ କରିବ ବୋଲି

—ତୋର ପୁଅର କଥା ରଖ, ମା—ତୋର ଦୁଃଖୀଜନନୀର ଆକାଂକ୍ଷା ପୂର୍ଣ୍ଣ କର, ମା ।
( ପରିଚ୍ଛଦାଦି ପ୍ରଦାନ )

ସାବିତ୍ରୀ—ଦିଅନ୍ତୁ, ପିତା । ମୁଁ ସଯତ୍ନେ ତାହା ଧାରଣ କରିବି । ଯେତେବେଳେ ପିତାମାତାଙ୍କର ଏତେ-ଦୂର ସ୍ନେହ—ଏତେଦୂର ଶ୍ରଦ୍ଧା—ତେତେବେଳେ ଏହି ଦୀନା କନ୍ୟାର ଅଶ୍ରଦ୍ଧା ଓ ଅସ୍ନେହ ଅସମ୍ଭବ —ଏହି ଅନୁରୋଧଟି ସର୍ବାଗ୍ରେ ପାଳନୀୟ ।

ଦ୍ୟୁମତ୍ସେନ—ହାୟ ! ମୋର ଯେବେ ଚକ୍ଷୁ ଥାନ୍ତା—ମୋର ଯେବେ ଦୃଷ୍ଟିଶକ୍ତି ଥାନ୍ତା—ଦେଖନ୍ତି ବାରେ, ଲକ୍ଷ୍ମୀମା ମୋର—ଶାନ୍ତିଦାୟିନୀ ମା ମୋର—କେଉଁ ଭୁବନ-ମୋହିନୀ ରୂପରେ ମର୍ତ୍ତ୍ୟରେ ଅବତୀର୍ଣ୍ଣା । ମା, ମା ମୋର ମନ ହେଉଛି—ତୋର ସର୍ବାଙ୍ଗ ମୁଁ ସ୍ୱହସ୍ତରେ ଅଳଙ୍କାର ଦ୍ୱାରା ଭୂଷିତ କରି ଦିଅନ୍ତି—ତା'ପରେ ଦେଖନ୍ତି, ତୋର ସ୍ୱାଭାବିକ ସୌନ୍ଦର୍ଯ୍ୟପ୍ରଭାବରେ ଅଳଙ୍କାରର କାଳ୍ପନିକ ସୌନ୍ଦର୍ଯ୍ୟ କିପରି ମ୍ରିୟମାଣ ହୋଇଯାଉଛି; କିନ୍ତୁ ତୋର ଦୁର୍ଭାଗ୍ୟ ଜନକର କାହିଁ ସେ ଶକ୍ତି ?—ତୋର ଅଧମ ସନ୍ତାନର କାହିଁ ସେ ସୌଭାଗ୍ୟ ? ( ରାଣୀ କାନ୍ଦିବା )

ସାବିତ୍ରୀ—( ଲୁହ ପୋଛୁ ପୋଛୁ ସ୍ୱଗତେ ) ହେ ଈଶ୍ୱର ! ତୁମ୍ଭର କୃପାରୁ ଆମ୍ଭେମାନେ ଅରଣ୍ୟକୁ ନଗରରେ ପରିଣତ କରିଅଛୁ, କିନ୍ତୁ କଣ ଚକ୍ଷୁଷ୍ମାନ କରିପାରୁ ନାହିଁ । ଚକ୍ଷୁଷ୍ମାନ୍ ହେବାର କଣ କୌଣସି ଉପାୟ ନାହିଁ ? ଏକର ଚକ୍ଷୁଦାନ ଦ୍ୱାରା ଅନ୍ୟକୁ କଣ ଚକ୍ଷୁଷ୍ମାନ କରାଯାଇ ନ ପାରେ ? ଯେବେ ସମ୍ଭବ ହୁଏ, ତେବେ ହେ ପ୍ରଭୋ ! ଏହି ଶିଶୁ-ମତିକୁ କହି ଦିଅନ୍ତୁ, ଏହି ଅଧମ ଏହିକ୍ଷଣି ନିଜର ଚକ୍ଷୁକୁ ଉତ୍ପାଟିତ ପୂର୍ବକ ଶ୍ୱଶୁରଙ୍କୁ ଚକ୍ଷୁଷ୍ମାନ କରି, ନିଜକୁ ଭାଗ୍ୟବତୀ ମନେ କରିବ ।

ମାଳବିକା—(ଦୀର୍ଘନିଃଶ୍ୱାସ ତ୍ୟାଗକରି) ଅସ ବୋହୂ—ଆସନ୍ତୁ, ଦେବ ! ଅଳିକବେଳ ଯେ ଗଡ଼ି ଯିବାକୁ ବସିଲାଣି ।

ସାବିତ୍ରୀ—ଆସନ୍ତୁ, ପିତଃ ।
( ସାବିତ୍ରୀ ଦ୍ୟୁମତ୍ସେନଙ୍କର ହସ୍ତଧାରଣ କରିବା )

ଦ୍ୟୁମତ୍ସେନ—ମା ଗୋ ! ଦୀନ ସନ୍ତାନ ତୋର ଏହି ସ୍ନେହସୁଧାଟିକ ପାନକରି ବଞ୍ଚିଅଛି ସିନା !—ଏହି ଆନନ୍ଦାମୃତଟିକ ପାନକରି ଧନ୍ୟହୋଇଛି ସିନା ! ଜଗତ ! ତୁମ୍ଭେ ମୋର ଏହି ଆନନ୍ଦକୁ କଳ୍ପିତକରି ମନେ କରୁଅଛ, ଥରେ ଅନୁଭବ କରି ଦେଖ, ଧନର ସୁଖ ଶ୍ରେଷ୍ଠ କି ସ୍ନେହର ସୁଖ ଶ୍ରେଷ୍ଠ ? ଧନ ବାହ୍ୟେନ୍ଦ୍ରିୟକୁ ସନ୍ତୁଷ୍ଟ କରେ—ଭୋଗ ଲାଳସାକୁ ତୃପ୍ତ କରେ—କିନ୍ତୁ ସ୍ନେହ, ସ୍ୱର୍ଗୀୟ ପିୟୂଷ-ଅନ୍ତରେନ୍ଦ୍ରିୟକୁ ସନ୍ତୁଷ୍ଟ କରେ—ଆତ୍ମାକୁ ତୃପ୍ତ କରେ । ସ୍ଥିର ଚିତ୍ତରେ ତେବେ ବିଚାର କରି ଦେଖ, କେଉଁ ସୁଖ ଶ୍ରେଷ୍ଠ—ପାର୍ଥିବ କ୍ଷଣସ୍ଥାୟୀ ସମ୍ପଦସୁଖ ନା ସ୍ୱର୍ଗୀୟ ଚିରସ୍ଥାୟୀ ସ୍ନେହସୁଖ ?

ମାଳବିକା—ଆସନ୍ତୁ, ଦେବ ! ଆହ୍ନିକ ସମୟ ଉପସ୍ଥିତ ହେଲାଣି ।

ଦ୍ୟୁମତ୍ସେନ—(ସାବିତ୍ରୀପ୍ରତି) ଚାଲ, ମା ! ଦୀନ ଅନ୍ଧପିତାକୁ ତୋର ଏହିପରି ହାତ ଧରି ନେଇ ଚାଲ, ମା !

( ସମସ୍ତଙ୍କ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଅନ୍ତଃପୁର—

( ଅଶ୍ୱପତି ଓ ରାଣୀ )

କୌଶଲ୍ୟା—ନା, ମହାରାଜ ! ଆଜ ଯେପରି ହେଲେ ଚାଲନ୍ତୁ—ଯେତେ ବୁଝାଇଲେ ସୁଦ୍ଧା ମୋର ମନ ମାନୁନାହିଁ—ହୃଦୟ ବିଶ୍ୱାସ କରୁ ନାହିଁ ।

ଅଶ୍ୱପତି—ରାଣି ! ତୁମ୍ଭେ ବୁଦ୍ଧିମତୀ ହୋଇ ଏପରି ବାତୁଳା ହେଉଛ ? ସାବିତ୍ରୀ ନିଜେ ପତ୍ର ଲେଖୁଛି, ପ୍ରତ୍ୟେକ ଲୋକ ଯାଇ ଦେଖି ଆସୁଛି,

ଆଜି ତାର ଗୁଣାବଳୀ ତ ସମସ୍ତଙ୍କ ମୁଖରୁ ଶୁଣୁଛ—ଏଥିରେ ମଧ୍ୟ ତୁମର ଶାନ୍ତି ହେଉନାହିଁ ?

କୌଶଲ୍ୟା—ନା ମହାରାଜ ! ମୋର ଚଳେମାନ ଶାନ୍ତି ହେଉନାହିଁ । ସାବିକୁ ମୋର—ପ୍ରାଣ ପ୍ରତିମାକୁ ମୋର, ଆଖିରେ ଥରେ ନ ଦେଖିଲେ ଶାନ୍ତି ହେଉ ନାହିଁ ! ହାୟ ! କନ୍ୟା ମୋର କି ପାଗଳିନୀ ! ଇନ୍ଦ୍ରଭୁବନ ତୁଲ୍ୟ ପ୍ରାସାଦ ଥାଉଁ ଥାଉଁ, ଅରଣ୍ୟ ମଧ୍ୟରେ, ଜୀର୍ଣ୍ଣ ପର୍ଣ୍ଣକୁଟୀରରେ ବାସ କରୁଅଛି—ପୁଣି ଦେବଦୁର୍ଲ୍ଲଭ-ଭୋଗସାମଗ୍ରୀ ଥାଉଁ ଥାଉଁ, ଦୀନ କାଙ୍ଗାଳଙ୍କ ପରି ଫଳମୂଳ ଆହାର କରି କାଳ କଟାଉଅଛି !

ଅଶ୍ୱପତି—ରାଣୀ ! ମୁଁ ମଧ୍ୟ ଦିନେ ତୁମ୍ଭପରି କନ୍ୟାର ଏହିପରି ଦୁରବସ୍ଥା କଥା ଭାବି ବ୍ୟାକୁଳ ହେଉଥିଲି, କିନ୍ତୁ ବର୍ତ୍ତମାନ ମୋର ଆନନ୍ଦର ସୀମା ରହୁନାହିଁ ।

କୌଶଲ୍ୟା—ମହାରାଜ ! ପିତା ହୋଇ ଏଡ଼େ ନିଷ୍ଠୁର ତୁମ୍ଭେ ?

ଅଶ୍ୱପତି—ନିଷ୍ଠୁର ହୋଇଥାନ୍ତି, ରାଣି—ଯେବେ କନ୍ୟାକୁ ମୋର, କର୍ତ୍ତବ୍ୟପଥରୁ ବିଚଳିତ କରି, ଏହି ପ୍ରାସାଦରେ ଆଣି ବାସ କରାଇଥାନ୍ତି ।

କୌଶଲ୍ୟା—ମହାରାଜ ! ମୋର ଦଗ୍ଧ ହୃଦୟରେ ଘୃତାହୁତି ପ୍ରଦାନ କରନାହିଁ—ତୁମ୍ଭେ କିଣ ଏତେ ନିର୍ଦ୍ଦୟ ହୋଇ ଗଲଣି ?—ସେହି କନ୍ୟା ତୁମ୍ଭର—କୋମଳାଙ୍ଗରେ ଯାର ତିଳେମାତ୍ର ବ୍ୟଥା ଲାଗିଲେ, ତୁମ୍ଭର ହୃଦୟ ଶେଳାଘାତ ଅନୁଭବ କରୁଥାନ୍ତା, ବର୍ତ୍ତମାନ—ଦାରୁଣ ଅରଣ୍ୟବାସ-କ୍ଳେଶ ସହ୍ୟକରୁଅଛି, ଭୀଷଣ ଅନଶନଘଟିତ ଦୁର୍ବ୍ବିଷ ଯାତନା ଭୋଗ କରୁଅଛି—ଏ ଯନ୍ତ୍ରଣା କିଣ ତୁମର ହୃଦୟକୁ ସ୍ପର୍ଶ କରୁନାହିଁ—ବରଂ କହୁଛ—ତୁମ୍ଭେ ଆନନ୍ଦ ଉପଭୋଗ କରୁଅଛ—କିପରି ପିତା ତୁମ୍ଭେ ?

ଅଶ୍ୱପତି—(ସ୍ମିତପୂର୍ବ୍ବକ) ରାଣି ! ପ୍ରକୃତ ପିତା ମୁହିଁ—ଯେତେବେଳେ ଶୁଣି ଆନନ୍ଦିତ ହେଉଛି—କନ୍ୟା ମୋର, ଶ୍ୱଶ୍ରୂ ଶ୍ୱଶୁରଙ୍କ ସୁଖ ଦୁଃଖକୁ ଆପଣାର ସୁଖ ଦୁଃଖ ବୋଲି ଜ୍ଞାନ କରୁଅଛି—ପୁଣି ଆମ୍ଭମାନଙ୍କ ପ୍ରତି ପତ୍ରରେ, ଆମ୍ଭମାନଙ୍କର ଉପଦେଶ ଆଉ ଆଶୀର୍ବାଦ ପ୍ରାର୍ଥନା କରୁଅଛି ।

କୌଶଲ୍ୟା—ଏଠାରେ ବାସକରି ସେ ସମସ୍ତ କଲେ କିଣ ଚଳନ୍ତା ନାହିଁ ?—ଆମ୍ଭମାନଙ୍କ ପରେ ଏହି ରାଜ୍ୟତ ତାହାର ?

ଅଶ୍ୱପତି—ରାଣି ! ତୁମେ କିଣ ବୁଝିପାରୁ ନାହିଁ ?—ଦ୍ୟୁମତ୍‌ସେନ ତ ଦିନେ ରାଜାଥିଲେ—ବର୍ତ୍ତମାନ ରାଜ୍ୟ ଯଦ୍ୟପି ନାହିଁ—ରାଜାର ହୃଦୟତ ଅଛି—ରାଜାର ସମ୍ମାନ ତ ଅଛି—ଭିକ୍ଷାର୍ଥୀଭାବେ ଅନ୍ୟର ଆଶ୍ରୟରେ ବାସ କରିବା କ୍ଷତ୍ରିୟ ପକ୍ଷେ କି କେବେ ଶୋଭନୀୟ ?

କୌଶଲ୍ୟା—ଏଥିରେ ସେମାନଙ୍କର 'ଭିକ୍ଷାର୍ଥୀଭାବେ' କିପରି ହେଲା ? ଏ' ରାଜ୍ୟତ ସେମାନଙ୍କର ?

ଅଶ୍ୱପତି—ପରେ ହୋଇପାରେ—ବର୍ତ୍ତମାନ ତ ନୁହେଁ ?

କୌଶଲ୍ୟା—(ବିରକ୍ତଭାବେ) ଏତେ ଛନ୍ଦ କଥାରେ ମୁଁ ପଶିପାରେ ନାହିଁ ।

( ଦ୍ୱାରୀର ପ୍ରବେଶ )

ଦ୍ୱାରୀ—ମହାରାଜ ! ମନ୍ତ୍ରୀ ମହାଶୟ କାହିଁକି ଆପଣଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଭାରି ଉଦ୍‌ବିଗ୍ନ !

ଅଶ୍ୱପତି—ରାଣି ! ମୁଁ ବର୍ତ୍ତମାନ ବିଦାୟ ହେଉଛି ।

କୌଶଲ୍ୟା—ନା—ଆପଣ ଶୀଘ୍ର ଫେରି ଆସନ୍ତୁ—ଯିବାର ବନ୍ଦୋବସ୍ତ ଅତି ଚଞ୍ଚଳ କରିବାକୁ ହେବ—ମନ୍ତ୍ରୀ ମହାଶୟ ମଧ୍ୟ ଆସିଛନ୍ତି—ବେଶ୍ ହୋଇଛି । ( ଅଶ୍ୱପତିଙ୍କର ପ୍ରସ୍ଥାନ )

ହାୟରେ ବାଳାମୋର ! ପ୍ରାଣର ସଙ୍ଗିନୀ ମୋର ! ତେତେ ଛାଡ଼ି କିପରି ମୁଁ ଏହି ନୀରସ ଜୀବନ ଧାରଣ କରିଅଛି ! ଯେତେବେଳେ ମୁଁ ଭାବେ ତୁ ସିଂହ ବ୍ୟାଘ୍ରସଙ୍କୁଳ ଅରଣ୍ୟ ମଧ୍ୟରେ ସଶଙ୍କ ଦିନ ଯାପନ କରୁଅଛୁ—ଯେତେବେଳେ ମୋ ମନରେ ଉଦୟ ହୁଏ, ତୁ କେତେବେଳେ ଅନଶନରେ, କେତେବେଳେ ବା ତିକ୍ତ ଫଳମୂଳାହାରରେ ଦିନାତିପାତ କରୁଅଛୁ—ସେତେବେଳେ ମୋର

ପୂର୍ବ ସ୍ମୃତି ଜାଗ୍ରତ ହୋଇ ଉଠେ, ସେତେବେଳେ ତୋର ବଦନେ ଯେ ଏହି ଇନ୍ଦ୍ରଭୁବନ ତୁଲ୍ୟ ରାଜପ୍ରାସାଦୋପଭୋଗ ଥିଲା—ଏହି ଦେବଭୋଗ-ପ୍ରମୁଖାଦ୍ରବ୍ୟ ସାମଗ୍ରୀ ସମ୍ଭୋଗ ଥିଲା—ଏହି ଚିନ୍ତା ମୋର ହୃଦୟକୁ ଆଲୋଡ଼ିତ କରିଦିଏ—ମୁଖ ମଧ୍ୟସ୍ଥ ଗ୍ରାସକୁ ଉଦ୍‌ଗାରିତ କରିଦିଏ—ସୁକୋମଳ ଦୁଗ୍ଧଫେନନିଭ ଶଯ୍ୟାକୁ କଣ୍ଟକିତ କରିଦିଏ—ହାୟ କନ୍ୟା ମୋର !

( ଅଶ୍ୱପତିର ପୁନଃ ପ୍ରବେଶ )

ଅଶ୍ୱପତି—ସର୍ବନାଶ !

କୌଶଲ୍ୟା—କି ସର୍ବନାଶ, ମହାରାଜ ? ସାବିତ୍ରୀର ସର୍ବନାଶ ନୁହେଁତ ? ସାବିତ୍ରୀର ମୋର କୌଣସି ବିପଦ ଘଟିନାହିଁତ ?

ଅଶ୍ୱପତି—ସାବିତ୍ରୀର ଅମଙ୍ଗଳ ଚିନ୍ତା କାହିଁକି କରୁଛ, ରାଣି ? ସାବି ଆମ୍ଭର ସୁଖରେ ଅଛି—ଈଶ୍ୱର କରନ୍ତୁ ସେ ସେହିପରି ଥାଉ !

କୌଶଲ୍ୟା—ତେବେ କି ସର୍ବନାଶ, ମହାରାଜ ?

( ସେନାପତି ଓ ସୈନ୍ୟମାନଙ୍କର ପ୍ରବେଶ )

ସେନାପତି—ମହାରାଜ ! ଆଉ ଅବସର ନାହିଁ—ଶତ୍ରୁ ଆସି ଦ୍ୱାରଦେଶରେ ଉପସ୍ଥିତ ।

( ନେପଥ୍ୟେ ସୈନ୍ୟମାନଙ୍କର କୋଳାହଳ )

କୌଶଲ୍ୟା—ମହାରାଜ ! ଏ’ କଣ ଶୁଣୁଛି ?

ଅଶ୍ୱପତି—ରାଣି ! ସେହି ପାମର ଦୁର୍ଦ୍ଦାନ୍ତ ସିଂହ ଆମ୍ଭମାନଙ୍କର ଦେଶ ଆକ୍ରମଣ କରିଛି—କଥା କହିବାର ଆଉ ଅବସର ନାହିଁ, ତୁମ୍ଭେ ଅନ୍ୟାନ୍ୟ ସ୍ତ୍ରୀମାନଙ୍କୁ ଘେନି ଆତ୍ମରକ୍ଷା କର—ମୁଁ ଯୁଦ୍ଧ ଯିବାକୁ ବାହାରିଲି—ପୁଲକିତ ମନରେ ବିଦାୟ ଦିଅ, ପ୍ରାଣେଶ୍ୱରି !

କୌଶଲ୍ୟା—ଯାଆନ୍ତୁ, ପ୍ରାଣେଶ୍ୱର ! ଜୟୋତ୍‌ଫୁଲ୍ଲ ବଦନରେ ଫେରି ଆସନ୍ତୁ ।

ସମସ୍ତେ—ଜୟ ରାଜା ଅଶ୍ୱପତିଙ୍କର ଜୟ !

( ଅଶ୍ୱପତିଙ୍କର ସସୈନ୍ୟେ ପ୍ରସ୍ଥାନ )

କୌଶଲ୍ୟା—କନ୍ୟାପ୍ରତି ଆକ୍ରୋଶ ଯୋଗୁଁ ଆମ୍ଭମାନଙ୍କ ବିରୁଦ୍ଧରେ କଣ ଏହି ଆକ୍ରମଣ ? ଯେବେ ତାହାହିଁ ହୁଏ, ହେଉ—କ୍ଷତି ନାହିଁ—କନ୍ୟାର ମୋର ଯେପରି କୌଣସି ଅନିଷ୍ଟ ନ ହୁଏ—ହେ ମା ଭଗବତି ! ଏତିକି କାମନା ମାତ୍ର ପୂର୍ଣ୍ଣ କର ମା !

( ପୁରନାରୀ ମାନଙ୍କର ପ୍ରବେଶ )

ପୁରନାରୀ—ରାଣି ! ରାଣି ! ଆମ୍ଭେମାନେ କେଉଁଠାକୁ ଯିବୁ ? ଶତ୍ରୁମାନେ ଯେ ଗୃହଦ୍ୱାର ଭାଙ୍ଗି ପ୍ରବେଶ କଲେଣି !

କୌଶଲ୍ୟା—କିଛି ଭୟ ନାହିଁ—ମୋର ଜୀବନ ଥିବା ପର୍ଯ୍ୟନ୍ତ ତୁମ୍ଭମାନଙ୍କର କିଛି ଭୟ ନାହିଁ—ଆସ, ଯେ ଯାହା ପାଉଛ ଘେନି, ଶତ୍ରୁ ନିବାରଣ କରିବା ଆସ ! ( ବେଗେ ପ୍ରସ୍ଥାନ )

ପୁରନାରୀ—ଜୟ କାଳୀମାତାଙ୍କ ଜୟ !

( ବେଗେ ଅନୁଧାବନ )

---

## ତୃତୀୟ ଦୃଶ୍ୟ

—ଆଶ୍ରମ—

( ସତ୍ୟବାନ ଓ ସାବିତ୍ରୀ )

ସତ୍ୟବାନ୍—ସୁନ୍ଦରି ! ଆଜିତ ବେଶଭୂଷାର ଖୁବ ବାହାର ଦେଖୁଛି—କାହାର ମନ ମଜାଇବାକୁ ଚାଲିଛ କି ?

ସାବିତ୍ରୀ—ଯାହାର ମନ ମଜିବ ।

ସତ୍ୟବାନ—ଅଭାଗାମାନଙ୍କର ଭାଗ୍ୟ ତେବେ ପ୍ରସନ୍ନ ବୋଲିବାକୁ ହେବ ।

ସାବିତ୍ରୀ—ଏଥିପାଇଁ କହନ୍ତି—ପୁରୁଷ ଜାତି ନିତାନ୍ତ ସ୍ୱାର୍ଥପର ।

ସତ୍ୟବାନ—ସ୍ୱାର୍ଥପର କିପରି ସୁନ୍ଦରି ?

ସାବିତ୍ରୀ—ନିଜର ମନଟି ମଜିଲେ ନିଶ୍ଚିନ୍ତ—ଆଉର କି ଆଉ ମନ ନାହିଁ ?

ସତ୍ୟବାନ—ବୁଝିଛି, ସୁନ୍ଦରି ! ( ଆଲିଙ୍ଗନ କରି ) କିନ୍ତୁ ଏହି ବିଶ୍ୱଭୁବନରେ ଏହି ଅଭାଗା କଣ

ତୁମ୍ଭର ମନ ମଜାଇ ପାରଛି ?—ତୁମ୍ଭର ପବିତ୍ର ପ୍ରେମର ପ୍ରକୃତ ଅଧିକାରୀ ହୋଇ ପାରଛି ?

( ଦୃଢ଼ାଲିଙ୍ଗନରେ ଆବଦ୍ଧ କରିବା )

ସାବିତ୍ରୀ—ପ୍ରଭୋ ! ଏହି ଅଧୀନାକୁ ଏତେ ଉଚ୍ଚାସନ ଦେଉଛନ୍ତି କାହିଁକି ? ଏ ଅକିଞ୍ଚନ ଯେ ତୁମ୍ଭର କରୁଣାଭିକାରିଣୀ ମାତ୍ର ।

ସତ୍ୟବାନ—କରୁଣାଭିକ୍ଷା କିନ୍ତୁ ଆଜିଯାଏ ପାଇଛି କାହାଠାରୁ ପ୍ରିୟେ ! ତୁମ୍ଭେ ଯେବେ ମୋର ସହଧର୍ମିଣୀ ହୋଇ ନ ଥାନ୍ତ, ତାହାହେଲେ କି ମୁଁ ଧର୍ମରକ୍ଷା କରିବାକୁ ଆଜି ସମର୍ଥ ହୋଇଥାନ୍ତି—ତୁମ୍ଭେ ଯେବେ ମୋର ଅର୍ଦ୍ଧାଙ୍ଗିନୀ ହୋଇ ନ ଥାନ୍ତ, ତାହାହେଲେ କି ଏହି କ୍ଷୀଣ ଶକ୍ତିରେ ମୋର ଦୈନନ୍ଦିନ କାର୍ଯ୍ୟକରି ପାରୁଥାନ୍ତି ? ମନେ ପଡ଼ୁଛି ପ୍ରିୟେ ! ଆମ୍ଭର ବିବାହର ପ୍ରଥମାବସ୍ଥା—ସେତେବେଳେ ମୋର ଭାରି ଭୟ ହେଉଥିଲା—ଦାରପରିଗ୍ରହ ଦ୍ୱାରା ମୋର ବ୍ରତ ନଷ୍ଟ ହେବ—ଐହିକ ସୁଖ ତ ନଷ୍ଟ ହୋଇଗଲାଣି, ପାରତ୍ରିକ ସୁଖ ମଧ୍ୟ ଅଚିରେ ନଷ୍ଟ ହେବ—କିନ୍ତୁ ବର୍ତ୍ତମାନ ଠିକ୍ ବିପରୀତ ଘଟିଛି—ତୁମ୍ଭର ସହବାସରେ ଐହିକ ସୁଖତ ଫେରିପାଇଛି—ପାରତ୍ରିକ ସୁଖ ଯେ ଅପ୍ରତ୍ୟକ୍ଷୀନ—ଏ ବିଷୟରେ ଅଣୁମାତ୍ର ସନ୍ଦେହ ନାହିଁ ।

ସାବିତ୍ରୀ—ପ୍ରାଣେଶ୍ୱର ! ପାଗଳପରି ଏଣୁ ତେଣୁ କଣ ବକୁଛନ୍ତି ?

ସତ୍ୟବାନ—ପ୍ରାଣେଶ୍ୱରି ! ବାସ୍ତବିକ ମୁହିଁ ପାଗଳ—ତୁମ୍ଭର ପ୍ରେମର ପାଗଳ—ଆସ ଆସ ପ୍ରିୟେ ! ଆଲିଙ୍ଗନ ଦ୍ୱାରା ମୋର ତପ୍ତାଙ୍ଗ ଶୀତଳ କରିଦିଅ—ଚୁମ୍ବନ ଦ୍ୱାରା ମୋର ଅସ୍ଥିର ମତି ସ୍ଥିର କରିଦିଅ । ( ଆଲିଙ୍ଗନ କରି ଚୁମ୍ବନ ଦେବା ବେଳେ ନେପଥ୍ୟ, ତପସ୍ୱି ବର୍ଗଙ୍କ 'ରକ୍ଷା କର-ରକ୍ଷା କର' ଶବ୍ଦ ଶୁଣାଯିବା )

ସତ୍ୟବାନ—ଏ କି ଶବ୍ଦ ।

( ନେପଥ୍ୟ ପୁନର୍ବାର ସେହିପରି ଶବ୍ଦ )

ସତ୍ୟବାନ—ଏ'ଯେ ତପସ୍ୱି ବର୍ଗଙ୍କ ଆର୍ତ୍ତଧ୍ୱନି । ଯାଏଁ ପ୍ରିୟେ, ଦେଖି ଆସେ ।

( ସତ୍ୟବାନର ବେଗେ ପ୍ରସ୍ଥାନ )

ସାବିତ୍ରୀ—ହଠାତ୍‌ରେ ଏପରି ଆର୍ତ୍ତଧ୍ୱନିର କାରଣ କଣ ? ପାପିଷ୍ଠ ଦୁର୍ଦ୍ଦାନ୍ତ ପୁନର୍ବାର ଆକ୍ରମଣ କରି ନାହିଁତ ?

( ସତ୍ୟବାନର ବେଗେ ପ୍ରବେଶ )

ସତ୍ୟବାନ—ପ୍ରିୟେ ! ସର୍ବନାଶ—ସର୍ବନାଶ—ଦୁର୍ଦ୍ଦାନ୍ତ ଏଥର ସସୈନ୍ୟେ ଆମ୍ଭମାନଙ୍କୁ ଆକ୍ରମଣ କରିବାକୁ ଆସିଛି—ସେତିକି ନୁହେଁ ପଥରେ ଯାହାକୁ ଦେଖୁଛି, ତାହାର ସର୍ବନାଶ କରୁଛି—ଘରେ ଘରେ ଅଗ୍ନି ପ୍ରଦାନ କରୁଛି । ଏହି ଦେଖ, କି ଭୀଷଣ ଭାବରେ ବନସ୍ଥଳୀ ଜ୍ୱଳି ଉଠିଲାଣି—ଆଉ କାଳବିଳମ୍ବରେ ପ୍ରୟୋଜନ ନାହିଁ—ତୁମ୍ଭେ ପିତା ମାତାଙ୍କର ତତ୍ତ୍ୱ ନିଅ—ମୁଁ ବାହାରିଲି, ଯେତେଦୂର କ୍ଷମତା ଆଶ୍ରମ ରକ୍ଷା କରିବି । ପ୍ରିୟେ ! ଆଲିଙ୍ଗନ ଦିଅ, ଜାଣେ ନାହିଁ ପୁନର୍ବାର ଏ ସୌଭାଗ୍ୟ ଘଟିବ କି ନାହିଁ ।

( ଆଲିଙ୍ଗନ କରିବା )

ସାବିତ୍ରୀ—( ସ୍ୱଗତ ) ଆଜି କି ସେହିଦିନ ଉପସ୍ଥିତ ? ସେହି ଭୀଷଣ ଦିନ !—ଯାହା ଶୟନେ ସ୍ୱପନେ ମନକୁ ଉଦ୍‌ବେଳିତ କରୁଥିଲା—ଯାହା ଦିନୁଁ ଦିନୁଁ ଏ ଅଙ୍ଗ ପ୍ରତ୍ୟଙ୍ଗ କ୍ଷୀଣୁଁ କ୍ଷୀଣତର କରୁଥିଲା—ଆଜି କଣ ମୋତେ ସେହିଦିନର ସମ୍ମୁଖୀନ ହେବାକୁ ହେବ ? ଓଃ ହୋଃ—କିପରି ସହ୍ୟ କରିବି !

ନେପଥ୍ୟ—ରକ୍ଷାକର, ରକ୍ଷାକର !

ସତ୍ୟବାନ—ପ୍ରିୟେ ! ବିଦାୟ ଦିଅ—ଆଉ ଅବସର ନାହିଁ ।

ସାବିତ୍ରୀ—ଯାଅ ପ୍ରାଣନାଥ ! କିଛି ଭୟ ନାହିଁ—ଏ ଦାସୀ ଆନନ୍ଦ ମନରେ ବିଦାୟ ଦେଉଛି—ନିଜର କର୍ତ୍ତବ୍ୟ କରନ୍ତୁ—ଏଥି ସକାଶେ ପ୍ରାଣ ମଧ୍ୟ ବଳି ଦେବାକୁ ହେଲେ, କୁଣ୍ଠିତ ହେବେ

ନାହିଁ, ସାନନ୍ଦେ ସମ୍ପାଦନ କରିବେ—ଏ ଦାସୀ ଗୌରବମୟୀ ଗର୍ବରେ ଗର୍ବୋନ୍ମତ୍ତା ହେବ—ଚାଲନ୍ତୁ ପ୍ରାଣନାଥ ! ଯେତେବେଳଯାଏ ଆପଣ ଅଦୃଶ୍ୟ ନ ହୋଇଛନ୍ତି, ଏ ଦାସୀ ଆପଣଙ୍କର ଦର୍ଶନ-ସୁଖାନୁଭବ କରିବ ।

ସତ୍ୟବାନ—( ସ୍ୱଗତ ) ପିତାମାତାଙ୍କର ଆଶୀର୍ବାଦ ନେଇ ପାରିଲି ନାହିଁ—ଏଠାରେ ନମସ୍କାର କରୁଛି । ( ନମସ୍କାରାନ୍ତେ ପ୍ରକାଶ୍ୟେ ) ଚାଲ ପ୍ରିୟେ !

( ପୁନର୍ବାର ଇଙ୍ଗିତାନ୍ତର ଧୀରେ ଧୀରେ ପ୍ରସ୍ଥାନ ଓ ସାବିତ୍ରୀ ଗମନପଥକୁ ଚାହିଁ ରହିବା )

ସାବିତ୍ରୀ—( କିଛିକ୍ଷଣ ପରେ ) ଚାଲିଗଲେ, ଚାଲିଗଲେ—ବଜ୍ର ! କାହିଁ ଅଛ—ମୋର ଶିରୋଦେଶ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେଉନାହଁ କାହିଁକି ?—ମୋ ର ଜୀବନ ଲୋପ କରିଦେଉ ନାହଁ କାହିଁକି ?—ଦାବାନଳ ! ତୁମ୍ଭେ ଅଗ୍ନି ଉଦ୍‌ଗୀରଣ କରୁନାହଁ କାହିଁକି ? ଏ ସୃଷ୍ଟିର ସୌନ୍ଦର୍ଯ୍ୟ ବିନାଶ କରି ଦେଉନାହଁ କାହିଁକି ? ସାଗର ! ତୁମ୍ଭେ ସ୍ଫୀତ ହେଉନାହଁ କାହିଁକି ?—ଏହି ବସୁନ୍ଧରାକୁ ରସାତଳଗାମୀ କରି ଦେଉନାହଁ କାହିଁକି ? ଓଃ ହୋଃ—ପତିହୀନା ହେବ—ବିଧବା—ନା, ନା ଦୁଷ୍ଟାମୁହିଁ ! ପତିର ଅମଙ୍ଗଳ ଚିନ୍ତା କରୁଛି, ପତିର ଆଜ୍ଞା ଲଙ୍ଘନ କରୁଛି ! ପିତାମାତାଙ୍କୁ ଯେ ରକ୍ଷା କରିବାକୁ ହେବ ! ଯାଏ—ଦେଖେ ।

( ମାଳବିକାର ପ୍ରବେଶ )

ମାଳବିକା—ସତ୍ୟ ! ସତ୍ୟ !

( ଦ୍ୟୁମତ୍ସେନଙ୍କର ପ୍ରବେଶ )

ଦ୍ୟୁମତ୍ସେନ—ସତ୍ୟ ! ସତ୍ୟ !

ମାଳବିକା—ବୋହୂ ! ବୋହୂ ! ସତ୍ୟ କାହିଁ ?

ଦ୍ୟୁମତ୍ସେନ—ଏଁ, ଏଁ ସତ୍ୟ ନାହିଁ ? ସତ୍ୟ କାହିଁ ?

ସାବିତ୍ରୀ—ପିତଃ ! ମାତଃ ! ଆପଣମାନେ ଶୀଘ୍ର କୁଟୀର-ବାହାରକୁ ଆସନ୍ତୁ—କୁଟୀରରେ ଅଗ୍ନି ଲାଗିପାରେ ।

ମାଳବିକା—ଲଗ୍ନ—ପୁଅ କାହିଁ ମୋର ? ପୁଅ କୁଆଡ଼େ ଗଲା ?

( ସାବିତ୍ରୀ ଅଧୋବଦନରେ ନିରବ ହେବା )

ମାଳବିକା—ବୋହୂ ! ବୋହୂ ! ତୁମ୍ଭେ କାନ୍ଦୁଛ ଯେ ! ସତ୍ୟ କାହିଁ ମୋର ?

ଦ୍ୟୁମତ୍ସେନ—ସତ୍ୟ ନାହିଁ ରାଣି—ସତ୍ୟ ମୋର ନାହିଁ ।

ମାଳବିକା—ସତ୍ୟ ନାହିଁ ?

( ଉଭୟେ ମୂର୍ଚ୍ଛିତ ହୋଇ ପଡ଼ିବା ସମୟରେ ସାବିତ୍ରୀ କର୍ତ୍ତୃକ ଧୃତ ହେବା )

ସାବିତ୍ରୀ—ପ୍ରାଣେଶ୍ୱର ! ଏ ଗୁରୁଭାର ଦେଇ କାହିଁ ଚାଲିଗଲ ? ଶକ୍ତିହୀନାକୁ ଶକ୍ତି ଦିଅ ଭଗବନ୍ତ !

( ସମସ୍ତଙ୍କର ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

( ଜ୍ୱଳନ୍ତ ଅରଣ୍ୟ ପ୍ରଦେଶ, ଦୁର୍ଦ୍ଦାନ୍ତ ଲତାବଦ୍ଧ ହୋଇଥିବା )

ଦୁର୍ଦ୍ଦାନ୍ତ—ଚାରିଆଡ଼େ ଅଗ୍ନି !—ଚାରିଆଡ଼େ ଅନଳର ଭୀଷଣ ଶିଖା, କେଉଁଆଡ଼େ ଯିବ ? ପଳାନ୍ତି—ଯେଉଁଆଡ଼େ ଇଚ୍ଛା ପଳାନ୍ତି—କିନ୍ତୁ କାହିଁ ସେ ଶକ୍ତି ? କିନ୍ତୁ କାହିଁ ସେ ସାମର୍ଥ୍ୟ ?—ହସ୍ତପଦ ଲତା ବିଜଡ଼ିତ—ଶରୀର କଣ୍ଟକବିଦ୍ଧ ହୋଇ ରକ୍ତ ପ୍ଲାବିତ—ପ୍ରାଣ ଓଷ୍ଠାଗତ, କଣ କରୁଛି ? କେହି କି ମୋତେ ରକ୍ଷା କରିବାକୁ ନାହିଁ ?—ଏତେ ଧନରତ୍ନ, ଏତେ ବଳ ବୀର୍ଯ୍ୟ, ଏତେ ଲୋକବଳ ଥାଉଁ ଥାଉଁ, ଏହି ପରିଣାମ ଶେଷରେ ?—କାହାର ପଦଧ୍ୱନି ?

( ଜଣେ ସୈନିକର ସେହି ପଥ ଦେଇ ବେଗେ ପଳାଉଥିବା )

ଦୁର୍ଦ୍ଦାନ୍ତ—ହେ ସୈନିକ ! ମୋତେ ରକ୍ଷା କର ! ମୋତେ ରକ୍ଷା କର ।

୧ମ ସୈନିକ—କିଏରେ ତୁ ? ନିଜର ପ୍ରାଣ ସମ୍ଭାଳିବା ମୁସ୍କିଲ—ତୋତେ ରକ୍ଷା କରୁଛି କିଏ ?

ଦୁର୍ଦ୍ଦାନ୍ତ—ମୁଁ ଦୁର୍ଦ୍ଦାନ୍ତ—ତୁମ୍ଭର ରାଜା—ମୋତେ ଉଦ୍ଧାର କର—ମୋର ପ୍ରାଣ ରକ୍ଷା କର ।

୧ମ ସୈନିକ –ମହାରାଜ ଆପଣ ? ଆପଣ ଏପରି ବିପଦରେ ପଡ଼ିଗଲେ ?—ବଡ଼ ଦୁଃଖର ବିଷୟ—ଓହୋ ନିଆଁ ଯେ ମାଡ଼ିଆସିଲା !

( ବେଗେ ପ୍ରସ୍ଥାନ )

ଦୁର୍ଦ୍ଦାନ୍ତ—ଏ' କଣ ? ମୋତେ ଉପେକ୍ଷା କରି ଚାଲିଗଲା—ବୁଝିଲି, ବୁଝିଲି—ବିପଦରେ କେହି କାହାରି ନୁହେ । ସମ୍ପଦରେ ସମସ୍ତେ ସଖା—ବିପଦ ଉପସ୍ଥିତ ହେଲେ—ମରଣ ଉପସ୍ଥିତ ହେଲେ, ଶୃଗାଳ ମଧ୍ୟ ସିଂହକୁ ପଦାଘାତ କରି ଚାଲିଯାଏ । ( ୨ୟ ସୈନିକର ପ୍ରବେଶ ) ଆଉ ଜଣେ କିଏ ଆସୁଛି—ହେ ସୈନିକ । ମୋତେ ରକ୍ଷା କର, ମୋତେ ରକ୍ଷାକର ।

୨ୟ ସୈନିକ—କିଏ ତୁ ?

ଦୁର୍ଦ୍ଦାନ୍ତ—ମୁଁ ଦୁର୍ଦ୍ଦାନ୍ତ ।

୨ୟ ସୈନିକ—ମହାରାଜ ?

ଦୁର୍ଦ୍ଦାନ୍ତ—ମୋତେ ଶୀଘ୍ର ରକ୍ଷାକର—ମୋତେ ଶୀଘ୍ର ରକ୍ଷାକର—ଅଗ୍ନି ଯେ ନିକଟବର୍ତ୍ତୀ ହୋଇ ଆସିଲାଣି ।

୨ୟ ସୈନିକ—ହାଃ ହାଃ ହାଃ,—ଆସୁ ଆସୁ ମହାରାଜ ! ଆପଣ ଶୀଘ୍ର ଉଦ୍ଧାର ପାଇଯିବେ—ଶୀଘ୍ର ରକ୍ଷା ପାଇଯିବେ । ଶଙ୍କରର କଥା ଥରେ ମନେ କରନ୍ତୁ ବର୍ତ୍ତମାନ—ଓହୋ ନିଆଁ ଯେ ମାଡ଼ି ଆସିଲା ।

(ବେଗେ ପ୍ରସ୍ଥାନ)

ଦୁର୍ଦ୍ଦାନ୍ତ—ପାପର ଉପଯୁକ୍ତ ଶାସ୍ତି ! ଶଙ୍କରର ମୃତ୍ୟୁ କଣ ପ୍ରଜାମାନଙ୍କ ମନରେ ଏତେଦୂର ବିଦ୍ରୋହ ଭାବ ଜଗାଇ ଦେଇଛି ? ଯେଉଁମାନେ ଇଙ୍ଗିତ ମାତ୍ରେ କାଲି ମୋର ଆଜ୍ଞା ପାଳନ କରୁଥିଲେ—ଆଜି କିନ୍ତୁ ଶତ ଅନୁରୋଧ ସତ୍ତ୍ୱେ ମୋତେ ଅବଜ୍ଞା କରି ଚାଲି ଯାଉଛନ୍ତି । ମୋର ଅବିବେକତାର ଉପଯୁକ୍ତ ଶାସ୍ତି ହୋଇଛି । (୩ୟ ସୈନିକର ପ୍ରବେଶ) ଆଉ କିଏ ଜଣେ ଆସୁଅଛି—ଏଥର ଆଉ ପରିଚୟ ଦେବି ନାହିଁ । ହେ ପଥିକ ! ମୁଁ ଭାରି ବିପଦଗ୍ରସ୍ତ—ମୋତେ ଉଦ୍ଧାର କର—ଅଗ୍ନିର ତେଜ ସମ୍ଭାଳି ପାରୁ ନାହିଁ ।

୩ୟ ସୈନିକ—ହେ ଭାଇ ! କ୍ଷମାକର—ମୋର ସେ ଶକ୍ତି ନାହିଁ—ତୁମ୍ଭେ ଈଶ୍ୱରଙ୍କ ଧ୍ୟାନ କର, ସେ ରକ୍ଷା କରିବେ । (ବେଗେ ପ୍ରସ୍ଥାନ)

ଦୁର୍ଦ୍ଦାନ୍ତ—ବାସ୍ତବିକ କହୁଛ ପଥିକ !—ମୁହିଁ ପାପୀ—ତାହାଙ୍କୁ ହେୟଜ୍ଞାନ କରିଛି—ମୋର ଏହିପରି ପରିଣାମହିଁ ଉପଯୁକ୍ତ—ଓଃ ହୋଃ, ନିଆଁ ଯେ ପାଖ ଆସିଲାଣି—ଆଉ ରକ୍ଷା ନାହିଁ—ଏଥର ସବୁ ଶେଷ—ହେ ମଧୁସୂଦନ ! ସମୟ ଥାଉଁ ଥାଉଁ ତୁମ୍ଭଙ୍କୁ କେବେ ଡାକି ନାହିଁ—ପ୍ରାଣ ଥାଉଁ ଥାଉଁ ତୁମ୍ଭଙ୍କୁ କେବେ ସ୍ମରଣ କରିନାହିଁ—ଏହି ଅନ୍ତିମ କାଳରେ, ଏହି ଶେଷ ମୁହୂର୍ତ୍ତରେ ତୁମ୍ଭର ମଧୁମୟ ନାମ ଚିନ୍ତା କରୁ କରୁ ଅସ୍ଥି ବିସର୍ଜନ କରିବାକୁ ଦିଅ—ତୁମ୍ଭର ପବିତ୍ର ନାମ ଉଚ୍ଚାରଣ କରୁ କରୁ ପାପ ହୃଦୟ ନିର୍ମଳ କରିବାକୁ ଦିଅ—ହରିବୋଲ, ହରିବୋଲ ।

(ସତ୍ୟବାନ ଓ ସଙ୍ଗିବର୍ଗଙ୍କ ପ୍ରବେଶ)

ସତ୍ୟବାନ—କାହାର ଏହି କାତର ଧ୍ୱନି ? କିଏ ଏହି ବିପଦଗ୍ରସ୍ତ ?

(ସତ୍ୟବାନର ଝମ୍ପ ପ୍ରଦାନ)

ସଙ୍ଗିଗଣ—ସତ୍ୟଭାଇ ! ସତ୍ୟଭାଇ ! ପାଗଳଙ୍କ ପରି କଣ କରୁଛ ?

ସତ୍ୟବାନ—ତୁମ୍ଭମାନଙ୍କର କାହାର ଖଡ୍‌ଗଟାଏ ମୋତେ ଶୀଘ୍ର ନିକ୍ଷେପ କର ।

୧ମ ସଙ୍ଗୀ—(ଖଡ୍‌ଗ ନିକ୍ଷେପି) ଏହି ନିଅ ଖଡ୍‌ଗ—ତୁମ୍ଭେ ଶୀଘ୍ର ବାହାରି ଆସ—ଆମ୍ଭେମାନେ ବାହାରେ ସୁଦ୍ଧା ଛିଡ଼ା ହୋଇ ପାରୁ ନାହୁଁ ।
(ସହସା ଅଗ୍ନି ନିର୍ବାପିତ ହୋଇଯିବା, ସତ୍ୟବାନ ଦୁର୍ଦ୍ଦାନ୍ତକୁ ସ୍କନ୍ଧରେ ଧେନି ପ୍ରବେଶ କରିବା )

୨ୟ ସଙ୍ଗୀ—ଏ' କଣ ହେଲା ? ଅଗ୍ନି ସହସା ନିର୍ବାପିତ ହୋଇଗଲା କାହିଁକି ?

୩ୟ ସଙ୍ଗୀ—ଏ' କିଏ ମାୟାଗ୍ନି ?

ସତ୍ୟବାନ—( ଦୁର୍ଦ୍ଦାନ୍ତକୁ ଛୁଇଁଲେ ଥୋଇ ଦେଇ ) ଏଁ, ଏଁ—କିଏ ଏହି ? ଭାଇ ! ଭାଇ ! ନିଶ୍ଚୟ ଏହା ମାୟାଗ୍ନି—ଈଶ୍ୱରଙ୍କ କରୁଣା—ଦୁର୍ଦ୍ଦାନ୍ତ କବଳରୁ ଆମ୍ଭମାନଙ୍କୁ ରକ୍ଷା କରିବା ସକାଶେ ସୃଷ୍ଟ ହୋଇଥିଲା—ଦେଖୁ ନାହଁ, ଏହି ସେହି ନରପିଶାଚ ! (ସମସ୍ତେ ଆଶ୍ଚର୍ଯ୍ୟ ଭାବରେ ଚାହିଁ ରହିବା )

୧ମ ସଙ୍ଗୀ—ସତ୍ୟ ଭାଇ ! ଦୁର୍ଦ୍ଦାନ୍ତ ପ୍ରାଣଶୂନ୍ୟ ହୋଇ ନାହିଁ !

ସତ୍ୟବାନ—ଈଶ୍ୱରଙ୍କୁ ଧନ୍ୟବାଦ ଯେ ଆମ୍ଭେମାନେ ତାର ପ୍ରାଣ ରକ୍ଷା କରି ପାରିଛୁଁ ।

୨ୟ ସଙ୍ଗୀ—ଭାଇ ! ଦୁର୍ଦ୍ଦାନ୍ତ ଯେ ଶତ୍ରୁ !

ସତ୍ୟବାନ—କିନ୍ତୁ ମୁଁ ଯେ କ୍ଷତ୍ରିୟ—କ୍ଷତ୍ରିୟର କାର୍ଯ୍ୟହିଁ ହେଉଛି—ବିପଦଗ୍ରସ୍ତ ଶତ୍ରୁ ହେଲେ ସୁଦ୍ଧା ତାହାକୁ ରକ୍ଷା କରିବା ।

୨ୟ ସଙ୍ଗୀ—ସତ୍ୟବାନ ! ସତ୍ୟବାନ ! ତୁମ୍ଭେ ଏଡ଼େ ମହତ୍ !

ସତ୍ୟବାନ—ଚାଲ, ଭାଇମାନେ ରୋଗିକୁ ଆଶ୍ରମକୁ ଘେନିଚାଲ ।

( ପଟ ପତନ )

---

## ପଞ୍ଚମ ଦୃଶ୍ୟ

—ରାଜପଥ—

( ଅଶ୍ୱପତି ବନ୍ଦୀଭାବେ ଘାତକଗଣକର୍ତ୍ତୃକ ନୀତ ହେଉଥିବା ଓ ଗଜପତିର ବିପରୀତ ଦିଗରୁ ପ୍ରବେଶ । )

ଗଜପତି—ମହାରାଜ ! ମୋ' ପ୍ରତି ଏହିପରି ବିଚାର କରିଥିଲ ପରା ? ଏହିପରି ଶୃଙ୍ଖଳାବଦ୍ଧକରି ମୋତେ ବଧଭୂମିକୁ ପଠାଇଥିଲ ପରା ?

ଅଶ୍ୱପତି—ପଠାଇ ଥିଲି—କିନ୍ତୁ ସୌଭାଗ୍ୟ ତୋର—ଆଉ ବାଳାର ମୋର ଅମାନୁଷୀ କରୁଣା—ସେହି ଦଣ୍ଡ ବିଧାନର ପ୍ରତିବନ୍ଧକ ହୋଇଥିଲା । ଛାଡ଼ ( ଦୀର୍ଘନିଶ୍ୱାସ ତ୍ୟାଗକରି ) ସାବି ମୋର ! ବାଳା ମୋର ! ତୋତେ ଯା ଥରେ ଏ' ଅନ୍ତିମ କାଳରେ ଦେଖି ନ ପାରିଲି ? ରାଣି ! କେଉଁଠାରେ ରହିଲ ? ଏତେ ଯତ୍ନ କରିଥିଲି, ସାବିକୁ ଥରେ ଦେଖିବି ବୋଲି—କାହିଁକି ବିଧି ବାମ ହେଲେ ? ଆମ୍ଭେମାନେ କଣ ଏଡ଼େ ପାପୀ ? ଆମ୍ଭମାନଙ୍କ ଭାଗ୍ୟରେ ଦେଖି ଯିବା ସୁଖ ସୁଦ୍ଧା ଘଟିଲା ନାହିଁ ?

ଗଜପତି—ଶାସ୍ତ୍ରବାଦ ! ଭାବୁଛୁ କଣ ? ଶାସ୍ତ୍ରାଲୋଚନା ବର୍ତ୍ତମାନ ସୁଦ୍ଧା ତ୍ୟାଗ କର ନାହୁଁ ? କାହିଁ ତୋର ଈଶ୍ୱର ? କେଉଁଠାରେ ଅଛି ?—ଏହି ବିପଦରେ ଆସି ଥରେ ମାତ୍ର ସହାୟ ହୋଇ ପାରିଲା ନାହିଁ ? ହାଃ ହାଃ ହାଃ—ଶୁଣ, ଶୁଣ ରାଜା ଶାସ୍ତ୍ରବାଦ ! ଏ ସମସ୍ତ ଭ୍ରମଧାରଣା ଶୀଘ୍ର ତ୍ୟାଗ କର—ମୋର ମତ ଅବଲମ୍ବନ କର—ଆପଣାକୁ ସର୍ବେସର୍ବା ମନେକର—ଦେଖୁନାହୁଁ, ଆତ୍ମ-ନିର୍ଭରତା ଯୋଗୁଁ ମୁଁ କିପରି ରାଜ୍ୟାଧିକାର କରିଛି ? ପାପ ପୁଣ୍ୟ ନ ମାନିବାରୁ ମୁଁ କିପରି ସ୍ୱାର୍ଥସୁଖ ସାଧନ କରୁଛି ?

ଅଶ୍ୱପତି—( ସକ୍ରୋଧେ ) ନାସ୍ତିକ ! ସାବଧାନ—ତୋର ସେହି ବର୍ବର ମୁଖରେ ଶାସ୍ତ୍ର ପଦୋଚ୍ଚାରଣ ସୁଦ୍ଧା ଶାସ୍ତ୍ର ପ୍ରତି ନିନ୍ଦନୀୟ ! ତୋର ପାପ ମୁଖରେ କରୁଣାମୟ ପରମେଶ୍ୱରଙ୍କ ନାମୋଚ୍ଚାରଣ ସୁଦ୍ଧା ତାଙ୍କର ପବିତ୍ର ନାମ ପ୍ରତି କଳୁଷକାରୀ ! (ସ୍ୱଗତ) ହେ ଜଗଦୀଶ ! ମୋର କର୍ମଫଳ ମୁହିଁ ଭୋଗ କରୁଅଛି—ମୋର ପାପର ପ୍ରାୟଶ୍ଚିତ୍ତ ମୁହିଁ ଭୋଗ କରୁଅଛି, ସେଥିପାଇଁ ତୁମ୍ଭ ପ୍ରତି ମୋର ଟିକେମାତ୍ର ଅଶ୍ରଦ୍ଧା ନାହିଁ—ଟିକେମାତ୍ର ଅଭକ୍ତି ନାହିଁ; ବରଂ ତୁମ୍ଭର ଉଦାରତାରେ ମୁଁ ବିସ୍ମିତ ହେଉଅଛି ! ଯେତେବେଳେ କ୍ଳେଶ ଅନୁଭବ କରୁଅଛି, ତୁମ୍ଭର ନାମୋଚ୍ଚାରଣ ମୋତେ ଶାନ୍ତ୍ୱନା ପ୍ରଦାନ କରୁଅଛି—ତୁମ୍ଭର ଉପଧାନ ମୋତେ ଏହି ପାର୍ଥିବ ଯନ୍ତ୍ରଣାରୁ କେଉଁଆଡ଼େ ଘେନି ଯାଉଛି—ହାୟ ! ତେବେ ଏହି ଅବିଶ୍ୱାସୀ, ନାରକୀ, ନାସ୍ତିକ କାହିଁକି ମୋତେ ତୁମ୍ଭର ନିନ୍ଦା ଶୁଣାଉଅଛି ?—

ମୋର ପିତାମ୍ୱାକୁ କଳୁଷିତ କରୁଅଛୁ । ମୁହିଁକି ତୁମ୍ଭର ଦୀନ ସନ୍ତାନ ନୁହେଁ ?—କିମ୍ବା ଏହି କଳଙ୍କ ପ୍ରତିଷେଧ କରିବାର କଣ ଅନ୍ୟ କୌଣସି ଉପାୟ ନାହିଁ ? (ଭାବି) ହୁଁ, ଅଛି, ପାଇଛି (ପ୍ରକାଶ୍ୟେ) ଗଜପତି । ମୋତେ ଶୀଘ୍ର ଏ ପାପ ଦେହରୁ ପରିତ୍ରାଣ କର । ଭାଇ ମୋର ! ତୋ'ର ପୁଣ୍ୟ ହେବ ।

ଗଜପତି—ପୁଣି ଅଛା ହେଉଛି ? ଅଚ୍ଛା ଦେଖ, ଠିକ୍ ପୁଣ୍ୟ ହେଉଛି କି ନାହିଁ । ଘାତକ ! ଶୀଘ୍ର କାର୍ଯ୍ୟ ଶେଷ କର ! [ରାଣୀ ଛୁରିକା ହସ୍ତେ ପ୍ରବେଶ କରି]

କୌଶଲ୍ୟା—ମୋତେ ଆଗେ ଶୀଘ୍ର ଶେଷ କରିବାକୁ ଦିଅ । [ଗଜପତିଙ୍କୁ ଛୁରିକାଘାତ କରିବା ଓ ଛୁରିକା ବାହୁବିଦ୍ଧ ହେବା ଏବଂ ଘାତକର ପଳାୟନାନ୍ତର ରାଣୀ ରାଜାଙ୍କୁ ମୁକ୍ତ କରିଦେବା] ଆସନ୍ତୁ ଶୀଘ୍ର ପଳାଇ ଆସନ୍ତୁ, ସୈନ୍ୟମାନେ ଏଣେ ଦ୍ରୁତ ବେଗରେ ଧାଇଁଛନ୍ତି ।

( ଅଶ୍ୱପତି ଓ କୌଶଲ୍ୟାର ବେଗେ ପ୍ରସ୍ଥାନ )

ଗଜପତି—ଉଃ ହୋଃ କି ଯନ୍ତ୍ରଣା—କେହି କି ନାହାନ୍ତି ଉଃ ହୋଃ ବଡ଼ ତୃଷା—

( ସୈନ୍ୟମାନଙ୍କର ପ୍ରବେଶ )

୧ମ ସୈନ୍ୟ—ମନ୍ତ୍ରୀବର—ଆପଣଙ୍କ ଏପରି ଦଶା କିଏ କଲା ?

ଗଜପତି—ମୋତେ ଆଗେ ଟିକିଏ ପାଣି ଦିଅ—ତାପରେ କହିବି (ଜନୈକ ସୈନ୍ୟର ଅଞ୍ଜଳିରେ ଜଳ ନେଇ ପ୍ରବେଶ ଓ ଜଳ ପ୍ରଦାନ) ମୋତେ ଧର—ମୁଁ ଉଠିବି—ମୋର ଶକ୍ତି ହୋଇଛି । (ଦୁଇଜଣ ସୈନ୍ୟର ଧରାଧରି କରି ଉଠାଇବା) ସୈନିକଗଣ ! ତୁମ୍ଭମାନଙ୍କର ଯେବେ ମୋ' ପ୍ରତି ଆନ୍ତରିକ ଭକ୍ତି ଥାଏ—ତେବେ ଯାଅ—ଶୀଘ୍ର ଯାଅ—ଅଶ୍ୱପତି ଏବଂ ତାହାର ମହିଷୀଙ୍କୁ ବାନ୍ଧି ଟାଣି ନେଇଆସ—ମୁଁ ସ୍ୱହସ୍ତରେ ସେମାନଙ୍କର ମସ୍ତକ ଛେଦନ କରିବି ।

ସୈନ୍ୟଗଣ—ମନ୍ତ୍ରିବର । କିଛି ଚିନ୍ତା ନାହିଁ—ଆମ୍ଭେମାନେ ଏହିକ୍ଷଣି ଧରି ଆଣୁଛୁ ।

ଗଜପତି—କି ଅପମାନ ! ସାମାନ୍ୟ ସ୍ତ୍ରୀଠାରୁ ହସ୍ତରେ ଏତେଦୂର ଲାଞ୍ଛନା ।

(ଦୂତର ପ୍ରବେଶ)

ଦୂତ—ମନ୍ତ୍ରିବର !

ଗଜପତି—କିଏ ? ଦୂତ—ମହାରାଜାଙ୍କ ସମ୍ବାଦ କଣ ?

ଦୂତ—ଏହି ପତ୍ର ପଢ଼ନ୍ତୁ (ଗଜପତି ପତ୍ର ପାଠକରି)

ଗଜପତି—ଏଁ କଣ ? ଦୁର୍ଦ୍ଦାନ୍ତସିଂହ ଅଗ୍ନିରେ ଭସ୍ମୀଭୂତ ହୋଇଯାଇଛନ୍ତି—ଇହଧାମ ଛାଡ଼ି ଚାଲି ଯାଇଛନ୍ତି ! ଓହୋ ବଡ଼ ଦୁଃଖର ବିଷୟ ।

ଦୂତ—ମନ୍ତ୍ରିବର ! ଦୁଃଖ କାହିଁକି ? ଆପଣ ତ ତାହାହିଁ ଖୋଜୁଥିଲେ !

ଗଜପତି—ବାସ୍ତବିକ, ଦୂତ, ଦୁଃଖ କାହିଁକି ? ମୋର ସୌଭାଗ୍ୟ କହିବାକୁ ହେବ । (ଅର୍ଦ୍ଧସ୍ୱଗତ)ମୋର ବଳିମ ନ ଭୟ, ମାଳବ ରାଜ୍ୟର ଲୋକେ ଯେବେ ବିଦ୍ରୋହୀ ହୋଇ ଉଠନ୍ତି—ଅଚ୍ଛା (ପ୍ରକାଶ୍ୟେ) ରାମସିଂହ ! ତୁମ୍ଭଙ୍କୁ ମୁଁ ୫୦୦୦ ସୈନ୍ୟ ସହ ଏହି ରାଜ୍ୟାଧିକାର ଭାର ଦେଇଗଲି—ଆଉ ବିଶେଷ ଆଜ୍ଞା, ଅଶ୍ୱପତି ଓ ତାହାର ମହିଷୀଙ୍କୁ ବନ୍ଦୀକରି, ଶୀଘ୍ର ମୋ ନିକଟକୁ ପ୍ରେରଣ କରିବ । ମୁଁ ଏହିକ୍ଷଣି ମାଳାବାଭିମୁଖେ ଯାତ୍ରା କଲି ।

ସମସ୍ତେ—ଜୟ ରାଜା ଗଜପତିଙ୍କର ଜୟ !

---

## ଷଷ୍ଠ ଦୃଶ୍ୟ

—ଆଶ୍ରମ—

( ଦୁର୍ଦ୍ଦାନ୍ତ ଓ ଦ୍ୟୁମତ୍‌ସେନଙ୍କ ପ୍ରବେଶ )

ଦୁର୍ଦ୍ଦାନ୍ତ—ମହାରାଜ । ବାସ୍ତବିକ କଣ ଆପଣଙ୍କର ଦାସ ବୋଲି ଏ ଅଧମକୁ କ୍ଷମା କରିଛନ୍ତି ?

ଦ୍ୟୁମତ୍‌ସେନ—ସେନାପତେ ! ମୋତେ ଅବିଶ୍ୱାସ କରୁଛ ?

ଦୁର୍ଦ୍ଦାନ୍ତ—ତେବେ କାହିଁକି ଏ ଦାସର ଅନୁରୋଧ ରକ୍ଷା କରୁ ନାହାନ୍ତି ?

ଦ୍ୟୁମତ୍ସେନ—ସେନାପତେ ! ମୁଁ ବୃଦ୍ଧ ହୋଇଛି, ମୋର କଣ ଆଉ କୌଣସି ବିଷୟ ପ୍ରତି ଲାଳସା ଅଛି ? ଭଗବତ୍ ଧ୍ୟାନହିଁ ମୋର ବର୍ତ୍ତମାନ ସର୍ବସ୍ୱ ।

ଦୁର୍ଦ୍ଦାନ୍ତ—ସତ୍ୟବାନ ତ ବର୍ତ୍ତମାନ ଯୁବକ—କିନ୍ତୁ ଆପଣଙ୍କ ଛଡ଼ି ସେ ଇନ୍ଦ୍ରଭୁବନ ହେଲେ ସୁଦ୍ଧା ଯିବାକୁ ଅସମ୍ମତ ।

(ମାଲବିକାର ପ୍ରବେଶ)

ମାଲବିକା—ଅସନ୍ତୁ, ଦେବ ! ଆହ୍ନିକ ସମସ୍ତ ଗଡ଼ିଯିବାକୁ ବସିଲାଣି ।

ଦ୍ୟୁମତ୍ସେନ—ଆଚ୍ଛା, ସେନାପତେ ! ଏହା ପରେ ବିଚାର କରି ଦେଖିବା ।

ମାଲବିକା—ସେନାପତେ ! ତୁମ୍ଭେ ଏଡ଼େ ଅଧୀର ହେଉଛ କାହିଁକି ?—ଭଲରୂପେ ଆଗେ ସୁସ୍ଥ ହୋଇସାର—ତା'ପର ସବୁ ଦେଖାଯିବ !

(ମାଲବିକାର ଦ୍ୟୁମତ୍ସେନଙ୍କୁ ଘେନି ପ୍ରସ୍ଥାନ ଓ

(ସାବିତ୍ରୀର ଖାଦ୍ୟସାମଗ୍ରି ହସ୍ତେ ପ୍ରବେଶ)

ସାବିତ୍ରୀ—ସେନାପତେ ! ଆପଣଙ୍କର ଆହ୍ନିକ ଶେଷ ହେଲାଣି କି ?

ଦୁର୍ଦ୍ଦାନ୍ତ—ନା, ମା, ଆହ୍ନିକ ଏ ପର୍ଯ୍ୟନ୍ତ ଆରମ୍ଭ କରିନାହିଁ ।

ସାବିତ୍ରୀ—ଆପଣ ଯେ ଦିନଯାକ କିଛି ଖାଇ ନାହାନ୍ତି—ଖାଇବାର ଆଣିଥିଲି ।

ଦୁର୍ଦ୍ଦାନ୍ତ—ମା ! ମା ! ତୁମ୍ଭେ କି ମୋର ଗର୍ଭଧାରିଣୀ ମା ? ଏ'ପରି ଶିଶୁବାତ୍ସଲ୍ୟ—ଏ'ପରି ଶିଶୁସ୍ନେହ କି ଗର୍ଭଧାରିଣୀ ଜନନୀ ଠାରେ କେବେ ସମ୍ଭବେ? କହ ମା, କେଉଁ ମାତା ଅମ୍ଳାନ ବଦନରେ ବିନା ନିଦ୍ରାରେ—ବିନା ଭୋଜନରେ, ତିଳେ ମାତ୍ର ବିରକ୍ତି ପ୍ରଦର୍ଶନ ନ କରି ନିଜର ପ୍ରାଣପ୍ରିୟତମ ଶିଶୁ ହେଲେ ସୁଦ୍ଧା ତାର ଏତେଦୂର ଶୁଶ୍ରୂଷା କରିଥାଏ—ଏତେଦୂର ମନଯୋଗ ବାଞ୍ଛା କରିଥାଏ ? ମା, ମା ! ତୁମ୍ଭେ ଏହି ପାପିପାଇଁ—ଏହି ନରହନ୍ତା ଶତ୍ରୁ ପାଇଁ, କଣ ନ କରିଅଛ—ଓଃ କି କଳଙ୍କ ମୁହିଁ—ଏ' ପାପମୁଖ ଘେନି ମାର ପବିତ୍ର ମୁଖ ସମ୍ମୁଖର ଛିଡ଼ା ହୋଇଛି !

ସାବିତ୍ରୀ—ସେନାପତେ ! ଆପଣ କଣ ପାଗଳ ହୋଇ ଗଲେଣି ? ଏହି ଜଳ ନିଅନ୍ତୁ—ମୁଁ କୁଶାସନ ଆଣି ଦେଉଛି, ଆପଣ ଶୀଘ୍ର ଆହ୍ନିକ ସାରି ଦିଅନ୍ତୁ—ଆହା ! ଏତେବେଳ ହେଲାଣି ଜଳ ସୁଦ୍ଧା ସ୍ପର୍ଶ କରି ନାହାନ୍ତି ।

ଦୁର୍ଦ୍ଦାନ୍ତ—ମା ! ମୁଁ ଯେ ପ୍ରତିଜ୍ଞା କରିଛି, ମୋର ଅନୁରୋଧ ରକ୍ଷା ନ ହେବା ପର୍ଯ୍ୟନ୍ତ ମୁଁ ଜଳ ସୁଦ୍ଧା ସ୍ପର୍ଶ କରିବି ନାହିଁ ।

ସାବିତ୍ରୀ—ସେନାପତେ ! ଏଥି ସକାଶେ ଏତେ ଅଧୀର କାହିଁକି ? ଆଜ ସେ ଫେରି ଆସନ୍ତୁ, ପରାମର୍ଶ କରି ଯାହା ସ୍ଥିର ହେବ, ତାହାହିଁ କରିବେ । (ସ୍ୱଗତ) ଓଃ ! ସେହି ଭୀଷଣ ଦିନ ! କପାଳ ସମ୍ମୁଖୀନା ହେବ ! (ସାବିତ୍ରୀର ପ୍ରସ୍ଥାନ)

(ମାଲବିକାର ପୁନଃ ପ୍ରବେଶ)

ମାଲବିକା—ସେନାପତେ ! ତୁମ୍ଭେ ସାରାଦିନ ଉପବାସ ଅଛ ?

ଦୁର୍ଦ୍ଦାନ୍ତ—ନା, ମା ମୋର ଆଜ ଖାଇବାକୁ ପ୍ରବୃତ୍ତି ନାହିଁ ।

ମାଲବିକା—ଏ କଣ ସେନାପତେ ! ତୁମ୍ଭେ କଣ ବାତୁଳ ହୋଇ ଗଲେଣି ? ଜୁହଁନାହିଁ, ତୁମ୍ଭେ ଉପବାସ ଅଛ ବୋଲି ବଧୂମାତା ମଧ୍ୟ ଆଜ ଉପବାସ ଅଛନ୍ତି ?

ଦୁର୍ଦ୍ଦାନ୍ତ—ବଧୂମାତା ଉପବାସ ଅଛନ୍ତି ? ମୋ ଲାଗି ? ଆକାଶ ! କଣ ଦେଖୁଛ ?—ମୋ ଉପରେ ଭାଙ୍ଗିପଡ଼ୁ ନାହଁ କାହିଁକି ? କପାଳ ମୁଁ ଏହି ପାପ ମସ୍ତକ ଘେନି ଏହି ପବିତ୍ର ସ୍ଥଳରେ ଛିଡ଼ା ହୋଇ ରହିଛି ? ( ସାବିତ୍ରୀର ଜଳପାନ ଘେନି ପ୍ରବେଶ)

ସାବିତ୍ରୀ—ଅସନ୍ତୁ, ମା ତେଣେ ଡାକୁଛନ୍ତି—ମୁଁ ସେନାପତିଙ୍କର ସମସ୍ତ ବନ୍ଦୋବସ୍ତ କରି ଦେଉଛି ।

ମାଲବିକା—ମା ! ମା ! କେଉଁ ପୁଣ୍ୟବଳେ ତୋତେ ପାଇଥିଲି ମା ? (ରାଣୀର ପ୍ରସ୍ଥାନ)

ସାବିତ୍ରୀ—ସେନାପତେ ! ଏକ ଦୃଷ୍ଟିରେ କଣ ଦେଖୁଛନ୍ତି ?

ଦୁର୍ଦ୍ଦାନ୍ତ—ଦେଖୁଛି—ଦେଖୁଛି, ଦେବୀ ମୂର୍ତ୍ତି—ସାକ୍ଷାତ୍ ଅନ୍ନପୂର୍ଣ୍ଣା—ଯେମନ୍ତ ଏହି କ୍ଷୁଧାର୍ତ୍ତିକୁ ଅନ୍ନ ଦାନ ଦ୍ୱାରା ଉଦ୍ଧାର କରିବା ସକାଶେ ମର୍ତ୍ତ୍ୟଲୋକରେ ଅବତରଣ କରି ଅଛନ୍ତି—ମା, ମା ! ଏହି ପାପିକୁ ଶ୍ରୀଚରଣରେ ସ୍ଥାନ ଦିଅ, ମା !

ସାବିତ୍ରୀ—ସେନାପତେ ! ସେନାପତେ ! ଏ କଣ କରୁଛନ୍ତି ! ମୋତେ କ୍ଷମା କରନ୍ତୁ ! ମୋତେ ରକ୍ଷା କରନ୍ତୁ !

ଦୁର୍ଦ୍ଦାନ୍ତ—ନା, ମା ତୋର ଚରଣ ଧୂଳି ନ ନେଇ ଏ ଦୀନ ସନ୍ତାନ କଦାପି ଛାଡ଼ିବ ନାହିଁ । ( ଚରଣ ଧୂଳି ଗ୍ରହଣ )

ସାବିତ୍ରୀ—(ସ୍ୱଗତ) ହେ ଈଶ୍ୱର । କ୍ଷମା କର—ଏ ଦୀନାର ଦୋଷ ମାର୍ଜ୍ଜନା କର । (ପ୍ରକାଶ୍ୟେ) କିଅନ୍ତୁ ସେନାପତେ—ଜଳ କିଅନ୍ତୁ—ଆହ୍ନିକ ଶେଷ କରନ୍ତୁ ।

ଦୁର୍ଦ୍ଦାନ୍ତ—ଆହ୍ନିକର କି ପ୍ରୟୋଜନ ମା ?—ଯେତେବେଳେ ସାକ୍ଷାତ୍ ଜଗଦ୍ଧାତ୍ରୀ ଦୀନ ସନ୍ତାନ ସମ୍ମୁଖରେ ଆଶୀର୍ବାଦ ହସ୍ତେ ଦଣ୍ଡାୟମାନ, ତେତେବେଳେ ଆହ୍ନିକର କି ପ୍ରୟୋଜନ ?

ସାବିତ୍ରୀ—ସେନାପତେ ! ଏ ଅଧମାକୁ କ୍ଷମା କରନ୍ତୁ—ଆହ୍ନିକର ଯେବେ ପ୍ରୟୋଜନ ନାହିଁ, ତେବେ ଆହାର କରି କ୍ଷୁଧା ଶାନ୍ତ କରନ୍ତୁ ।

ଦୁର୍ଦ୍ଦାନ୍ତ—କ୍ଷୁଧା ଶାନ୍ତ କରିବ !—ତେବେ ମାଙ୍କର ପ୍ରସାଦ ପାଇ ଅଜ, କ୍ଷୁଧା ଶାନ୍ତ କରିବ—ଦିଅ, ଦିଅ ମା ପ୍ରସାଦ ଖାଇ ଏ' ପାପୀ ଧନ୍ୟ ହେଉ—ଜୀବନ ସାର୍ଥକ ମଣୁ !

ସାବିତ୍ରୀ—( ଖାଦ୍ୟ ପ୍ରଦାନ )

ଦୁର୍ଦ୍ଦାନ୍ତ—ନା, ମା ! ପ୍ରସାଦ ନ କରି ଦେଲେ ଏ ପାପୀ କଦାପି ଗ୍ରହଣ କରିବ ନାହିଁ !

ସାବିତ୍ରୀ—( ସ୍ୱଗତ ) ହେ ଈଶ୍ୱର ! କେଉଁ ସଙ୍କଟରେ ଆଣି ଏ' ପାପିନୀକୁ ପକାଉଛ ? ( ପ୍ରକାଶ୍ୟେ ) ସେନାପତେ ! ଆପଣ କଣ ବାତୁଳ ?

ଦୁର୍ଦ୍ଦାନ୍ତ—ହଁ ମା, ମୁଁ ବାତୁଳ—ତୁମ୍ଭର ପବିତ୍ର ସୌନ୍ଦର୍ଯ୍ୟ ଲାଗି—ତୁମ୍ଭର କୋମଳ ହୃଦୟ ଲାଗି । ଦିଅ ମା—ତୁମ୍ଭର ପ୍ରସାଦ ଦିଅ ମା, ସନ୍ତାନର ଯେ ବଡ଼ କ୍ଷୁଧା !

ସାବିତ୍ରୀ—( ଗୋଟିଏ ଫଳ ଉଠାଇ ନେଇ ) ହେ ଈଶ୍ୱର ! ତୁମ୍ଭେ ଏକମାତ୍ର ସହାୟ—ମୁଁ ଜ୍ଞାନହୀନା ନାରୀମାତ୍ର ( ସାବିତ୍ରୀ ଫଳଟିଏ ଉଚ୍ଛିଷ୍ଟ କରିବା-ମାତ୍ରେ, ସେହିଫଳଟି କାଢ଼ିଲେ )

ଦୁର୍ଦ୍ଦାନ୍ତ—ଦିଅ, ଦିଅ ମା ସେହି ପ୍ରସାଦ—ସେହି ଅଧରାମୃତ—ଅଜ କି ଆନନ୍ଦ ! ଅଜ କି ଆନନ୍ଦ !—( କିଛିତ ଖାଇବା ପରେ ସତ୍ୟବାନର ଦୂତସହିତ ପ୍ରବେଶ )

ସତ୍ୟବାନ—ସେନାପତେ ! ସର୍ବନାଶ—ସର୍ବନାଶ ! ଗଜପତି ମାଳବ ସିଂହାସନ ଆରୋହଣ କରିଛି—ଆପଣଙ୍କର ମୃତ୍ୟୁ ରାଜ୍ୟମୟ ରାଷ୍ଟ୍ର ହୋଇଛି—ଏହି ଦେଖନ୍ତୁ, ଦୂତ ଫେରି ଆସିଛି ।

ଦୁର୍ଦ୍ଦାନ୍ତ—( ଭୋଜନରୁ ବିରତ ହୋଇ ) କଣ କହିଲ—ଗଜପତି ସିଂହାସନାରୋହଣ କରିଛି—ନାରକୀ—ପିଶାଚ ! ଏତେଦୂର ସାହସ ବାନ୍ଧିଛି—ଭାଇ, ସତ୍ୟବାନ ! ମା ସାବିତ୍ରୀ ! ରହିଲା—ମୋର ମହାମୂଲ୍ୟ ପ୍ରସାଦ ଭୋଜନ ଏହିଠାରେ ରହିଲା —ମାର ଦେବଦୁର୍ଲ୍ଲଭ ଅଧରାମୃତାସ୍ୱାଦନ ଏହିଠାରେ ରହିଲା—ଆଗେ ଯିବି, ଏହିକ୍ଷଣି ଯିବି—ନିନ୍ଦୁକ ନର ପିଶାଚକୁ ଖଣ୍ଡ ଖଣ୍ଡ କରି କାଟିବି—ତାର ସେହି ମାଂସ ଓ ରକ୍ତ ଆହାର କରି କ୍ଷୁଧାଶାନ୍ତ କରିବି—ଯା ଏଁ ଦେଖେ—ଆଉ ବିଳମ୍ବ ସହ୍ୟ ହୁଏ ନାହିଁ ।

(ବେଗେ ପ୍ରସ୍ଥାନ)

ସତ୍ୟବାନ—ସେନାପତେ ! ସେନାପତେ ! ସ୍ଥିର ହେଉନ୍ତୁ (ଅନୁଧାବନ)

ସାବିତ୍ରୀ—ଉଃ—ଏହିକି ସେହି ଦୁର୍ଦ୍ଦାନ୍ତ ! (ଦୁର୍ଦ୍ଦାନ୍ତର ଗମନପଥକୁ ଚାହିଁ ରହିବା )

( ଯବନିକା ପତନ )

———

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

—ଆଶ୍ରମ—

( ସାବିତ୍ରୀ ବ୍ରତୋପଯୋଗୀ ବେଶଧାରଣ ପୂର୍ବକ ଦଣ୍ଡାୟମାନା ହୋଇ ଦୀର୍ଘ ନିଃଶ୍ୱାସ ତ୍ୟାଗ-କରିବା )

ସାବିତ୍ରୀ—ଆଜି ସେହି ଭୀଷଣ ଦିବସ ଉପସ୍ଥିତ—ଯାହାର ଭୟଙ୍କର ଚିନ୍ତା ଏତେ ଦିନ କାଳ୍ପନିକ ମାତ୍ର ଥିଲା ! ଓଃ ହୋଃ କିପରି ସହ୍ୟ କରିବି !—କିପରି ଏହି ରକ୍ତ ମାଂସ ଶରୀରରେ ତା'ର ଅନୁଭୂତିକୁ ସ୍ଥାନ ଦେବି ! ହେ ମା ଭଗବତି ! ହେ ମାତୃପିତୃଗଣ ! ହେ ହୃଦୟେଶ୍ୱର !—ଓଃ ହୋ ତୁମ୍ଭର ନାମୋଚ୍ଚାରଣ କରିବା ମାତ୍ରକେ, ହୃଦୟ ଯେ ସ୍ପନ୍ଦିତ ହେଉଛି, ଉଷ୍ଣରକ୍ତପ୍ରବାହ ଯେ ଘନୀଭୂତ ହୋଇ ଯାଉଛି—ଏ ଦୀନାକୁ—ଏ ଅଭାଗିନୀକୁ କୃପାକରି ବଳ ଦିଅନ୍ତୁ, ଦିଅନ୍ତୁ—ଯେପରି ଏ' କ୍ଷୀଣାଙ୍ଗୀ ଆଜିକାର ଭୀଷଣସଙ୍କଟାତିକ୍ରମରେ ସମର୍ଥା ହୁଏ ! ( ଧ୍ୟାନ-ମଗ୍ନା ହେବା )

( କୁଠାର ହସ୍ତେ ସତ୍ୟବାନର ପ୍ରବେଶ )

ସତ୍ୟବାନ—ପ୍ରିୟେ !

ସାବିତ୍ରୀ—ହୃଦୟେଶ୍ୱର ! ( ସ୍ୱଗତ ) ଓଃ ହୋଃ ! ଏହି ଦେବମୂର୍ତ୍ତିଙ୍କର ଆଜି କି ଶେଷ ଦର୍ଶନ ? ଏହି ବୀଣାବିନିନ୍ଦିତ ଝଙ୍କାରର ଆଜି କି ଶେଷ ଶ୍ରବଣ ? ଆକାଶ ! ତୁମ୍ଭେ କଣ ବଜ୍ରଶୂନ୍ୟ ହୋଇଗଲଣି ? ରସାତଳ ! ତୁମ୍ଭେ କଣ ଶୁଷ୍କତଳ ହୋଇଗଲଣି ? —ଏ ଧାରଣା କରିବା ଆଗେ ମୋର ଶିରୋଦେଶ ଚୂର୍ଣ୍ଣୀଭୂତ ହେଉନାହିଁ କାହିଁକି ? ମୋର ଅସ୍ତିତ୍ୱ ଲୁପ୍ତ ହେଉନାହିଁ କାହିଁକି ?

ସତ୍ୟବାନ—ପ୍ରିୟେ ! ପ୍ରିୟେ ! ମୁଖ ଆଜି ଏପରି ଶୁଷ୍କ କାହିଁକି ?

ସାବିତ୍ରୀ—( ସ୍ୱଗତ ) ମୁଁ ଆତ୍ମସଂଯମ କରିପାରୁନାହିଁ । ( ପ୍ରକାଶ୍ୟେ ) ଉପବାସ ଯୋଗୁଁ ବୋଧହୁଏ ମୋର ମୁଖ ସେପରି ଶୁଷ୍କ ଦେଖୁଥିବେ ।

ସତ୍ୟବାନ—ଠିକକଥା—ପ୍ରିୟେ ! ତୁମ୍ଭର ଧୈର୍ଯ୍ୟକୁ ଧନ୍ୟ—ଏହି ତ୍ରିରାତ୍ରି ବ୍ରତ ପାଳନ କରିବା ସାମାନ୍ୟ ମନୁଷ୍ୟର କାର୍ଯ୍ୟ ନୁହେଁ—ଆଚ୍ଛା ପ୍ରିୟେ ! ତ୍ରିରାତ୍ରି ତ ଉତ୍ତୀର୍ଣ୍ଣ ହୋଇଛି, ଏଥର ଜଳ ଯୋଗରେ ତ କୌଣସି ଆପତ୍ତି ନାହିଁ ?

ସାବିତ୍ରୀ—ଆପତ୍ତି ନାହିଁ ସତ୍ୟ—କିନ୍ତୁ ଆଜିକାର ରାତ୍ରି ଉତ୍ତୀର୍ଣ୍ଣ ନ ହେବା ପର୍ଯ୍ୟନ୍ତ ମୁଁ ଜଳ ସ୍ପର୍ଶ ସୁଦ୍ଧା କରିବି ନାହିଁ ।

ସତ୍ୟବାନ—କାହିଁକି ପ୍ରିୟେ ?

ସାବିତ୍ରୀ—( ସ୍ୱଗତ ) କାହିଁକି ? ଓଃ ହୋଃ—ଏହାର ଉତ୍ତର ସ୍ତ୍ରୀ କି ସ୍ୱାମୀକୁ ଦେଇପାରେ ? ଏହାର କାରଣ ସତୀ କି ସ୍ୱ-ରସନାରେ କେବେ ପ୍ରକାଶ କରିପାରେ ? ପ୍ରଭୋ ! ପ୍ରଭୋ !

ସତ୍ୟବାନ—ପ୍ରାଣେଶ୍ୱରି ! ତୁନିହୋଇ ରହିଲ ଯେ ! ମୋର ବଡ଼ ଉତ୍କଣ୍ଠା ହେଉଛି !—ଏପରି କି ଗୁରୁତର କାରଣ ଅଛି ?

ସାବିତ୍ରୀ—ନା ପ୍ରଭୋ ! ଗୁରୁତର କାରଣ କିଛି ନାହିଁ—ମୁଁ ଏହିପରି ପ୍ରତିଜ୍ଞା କରିଛି ।

ସତ୍ୟବାନ—ନା ପ୍ରିୟେ ! ତୁମ୍ଭେ ସଂଗୋପନ କରୁଛ—କିନ୍ତୁ ମୁଁ ଛାଡ଼ିବାର ପାତ୍ର ନୁହେଁ—ବର୍ତ୍ତମାନ ବେଳ ହୋଇଗଲାଣି—ମୁଁ ସମିଧାଦି ସଂଗ୍ରହ କରି ଆସେଁ—ତା' ପର ନିଶ୍ଚୟ ଆଦାୟ କରିନେବି ।

( ସତ୍ୟବାନ ଗମନୋଦ୍ୟତ ହେବା ସମୟରେ ସାବିତ୍ରୀ ହସ୍ତ ଧାରଣ କରିବା )

ସତ୍ୟବାନ—ଏ କଣ ପ୍ରିୟେ ! ମୋତେ ବାଧା ଦେଉଛ କାହିଁକି ?

ସାବିତ୍ରୀ—ପ୍ରଭୋ ! ଦାସୀର ଆଜି ଗୋଟିଏ ମିନତି ଅଛି ।

ସତ୍ୟବାନ—କି ମିନତି, ପ୍ରିୟେ ? ଏହା ଯେ ତୁମ୍ଭଠାରୁ ଆଜି ନୂତନ ଶୁଣୁଛି—ଶତ ଅନୁରୋଧ ସତ୍ତ୍ୱେ ତୁମ୍ଭେ ତ କେବେ ମୋତେ କୌଣସି ମିନତି କରିନାହଁ ?

ସାବିତ୍ରୀ—ଯଥାର୍ଥ, ପ୍ରଭୋ ! ଶତ ଅନୁରୋଧ ସତ୍ତ୍ୱେ କେବେ ଶ୍ରୀପଦରେ କୌଣସି ମିନତି କରିନାହିଁ, କେବଳ ଆଜ ମିନତି କରିବି ବୋଲି ! ଦୀନାର ଆକାଙ୍କ୍ଷନ ପୂର୍ଣ୍ଣ କର ପ୍ରଭୋ !

ସତ୍ୟବାନ—କି ଆକାଙ୍କ୍ଷନ ତୁମ୍ଭର, ପ୍ରିୟେ ? ମୋତେ ଏହିକ୍ଷଣି କୁହ, ତାହା ପୂର୍ଣ୍ଣ କରିବାକୁ ଯଥାସାଧ୍ୟ ଚେଷ୍ଟା କରିବି ।

ସାବିତ୍ରୀ—ଏହି ମିନତି ପ୍ରଭୋ !—ଆଜ ଆପଣ ଦୟାକରି କୁଟୀରରୁ ବହିର୍ଗତ ହେଉନ୍ତୁ ନାହିଁ ।

ସତ୍ୟବାନ—ପ୍ରାଣେଶ୍ୱରୀ ! ଏ କିପରି କଥା ? ତୁମ୍ଭେ ବୁଦ୍ଧିମତୀ ଓ ଧର୍ମ୍ମପରାୟଣା ହୋଇ ଏପରି କଥା କହୁଛ ? ମୁଁ ନ ଗଲେ, ସମିଧାଦି ସଂଗ୍ରହ ହେବ କିପରି ? ପିତା ହୋମ କରିବେ କିପରି ?

ସାବିତ୍ରୀ—ବାସ୍ତବିକ୍‌ତ—ପ୍ରଭୋ ! ମୋର ଭ୍ରାନ୍ତି ଜନ୍ମିଛି—ମୋତେ କ୍ଷମା କରନ୍ତୁ । ଓଃ—ମୁଁ କି ପାପିୟସୀ, ଧର୍ମ୍ମକାର୍ଯ୍ୟରେ ବାଧା ଦେଉଛି !

ସତ୍ୟବାନ—ଉପବାସ ହେତୁ ତୁମ୍ଭର ମତି ବୋଧହୁଏ ସ୍ଥିର ନାହିଁ—ଯାଅ ପ୍ରିୟେ ! ମୋର ଅନୁରୋଧ ରଖ—ତୁମ୍ଭେ କିଛି ଜଳଯୋଗ କର ।

ସାବିତ୍ରୀ—ହୃଦୟେଶ୍ୱର ! ଶ୍ରୀଚରଣରେ ଭିକ୍ଷା କରୁଛି, ଅଧୀନାକୁ ସେ ଅନୁରୋଧ କରନ୍ତୁ ନାହିଁ ।

ସତ୍ୟବାନ—ଅଚ୍ଛା, ପ୍ରିୟେ ! ତୁମ୍ଭର ଧର୍ମରକ୍ଷା ଯେଉଁ ରୂପେ ହୁଏ, ତାହାହିଁ କର, ମୁଁ ବର୍ତ୍ତମାନ ଆସୁଛି ।

(ପୁନର୍ଗମନୋଦ୍ୟତ ହେବା କାଳେ)

ସାବିତ୍ରୀ—ପ୍ରଭୋ !

ସତ୍ୟବାନ—ପୁଣି କାହିଁକି ବାଧା ଦେଉଛ, ପ୍ରିୟେ ?

ସାବିତ୍ରୀ—ପ୍ରଭୋ ! ଅଧୀନା ପ୍ରତିଜ୍ଞା କରିଛି, ସ୍ୱାମିଙ୍କୁ ଛାଡ଼ି ସେ ଆଜ ମୁହୂର୍ତ୍ତିମାତ୍ର ଏକା ରହିବ ନାହିଁ ।

ସତ୍ୟବାନ—ତୁମ୍ଭେ ବୁଦ୍ଧିମତୀ—କୁହ ଉପାୟ କଣ ଅଛି ?

ସାବିତ୍ରୀ—ଗୋଟିଏ ଉପାୟ ଅଛି, ପ୍ରଭୋ ! ଏ ଦୀନାକୁ ଆପଣଙ୍କର ଅନୁଗାମିନୀ ହେବାକୁ ଆଦେଶ ଦିଅନ୍ତୁ ।

ସତ୍ୟବାନ—ପ୍ରିୟେ ! ଆଜ ତୁମ୍ଭର ଏ କି ବିଚିତ୍ର କଥା ? ଏ କି ନୂତନ ଭାବ ? ମୁଁ ଯେ ସମିଧାଦି ସଂଗ୍ରହ ସକାଶେ ଜଙ୍ଗଲକୁ ଯାଉଛି—ତୁମ୍ଭେ ସେଠାକୁ ଯିବ କିପରି ?

ସାବିତ୍ରୀ—କାହିଁକି ପ୍ରଭୋ ? ଦାସୀକୁ ଏପରି ପ୍ରବଞ୍ଚନା କରିବାର କାରଣ କଣ ? ସ୍ୱାମୀ ଯେତେବେଳେ ଜଙ୍ଗଲପଥଦେଇ ଅନାୟାସେ ଏକାକୀ ଯାଇ ଆସି ପାରନ୍ତି—ସେତେବେଳେ ଏହି ଦାସୀ କଣ, ସ୍ୱାମୀଙ୍କ ପରି ସହାୟ ଥାଉଁ ଥାଉଁ ସେହି ସାମାନ୍ୟ କାର୍ଯ୍ୟ ସୁଦ୍ଧା କରିପାରିବ ନାହିଁ ?

ସତ୍ୟବାନ—ପ୍ରିୟେ ! ମୁଁ ସେଥିପାଇଁ ତୁମ୍ଭର ଅରଣ୍ୟଗମନ ପ୍ରତିରୋଧ କରୁନାହିଁ—ଅରଣ୍ୟପଥ ଯେ କେଡ଼େ ବନ୍ଧୁର, କେଡ଼େ କଣ୍ଟକାକୀର୍ଣ୍ଣ—ଯେ ଅନୁଭବ କରିଛି, ସେହି ଜାଣେ—ତେଣୁ ତୁମ୍ଭଙ୍କୁ ବାରଣ କରୁଛି ।

ସାବିତ୍ରୀ—ପ୍ରଭୋ ! ଏହି ଛାର କଣ୍ଟା ଭୟ ଦେଖାଇ ଦାସୀକୁ ଡରାଉଛନ୍ତି ? ଏ ଦାସୀ ଯେତେବେଳ ପର୍ଯ୍ୟନ୍ତ ପତି ପଦଚ୍ଛାୟାଶ୍ରିତା, ଏ ଦାସୀ ଯେତେବେଳ ପର୍ଯ୍ୟନ୍ତ ସ୍ୱାମୀସଙ୍ଗ-ସୁଖାନୁ-ଗୃହୀତା, ସେତେବେଳ ପର୍ଯ୍ୟନ୍ତ ଅରଣ୍ୟ-ପଥ କଣ୍ଟକାକୀର୍ଣ୍ଣ ହେଲେହେଁ ରାଜମାର୍ଗ ତୁଲ୍ୟ—ଅରଣ୍ୟବାସ ଭୟାନକ ହେଲେହେଁ ସୁରମ୍ୟ ପ୍ରାସାଦାବାସ ତୁଲ୍ୟ ।

ସତ୍ୟବାନ—ପ୍ରିୟେ ! ମୁଁ ଜାଣେ—ଉପସ୍ଥିତ କାର୍ଯ୍ୟରୁ ତୁମ୍ଭଙ୍କୁ ବିରତ କରିବା ବିଡ଼ମ୍ବନା ମାତ୍ର—କିନ୍ତୁ ପ୍ରିୟେ ! ଏ ବିଷୟରେ ତ ମୋର ସ୍ୱାତନ୍ତ୍ର୍ୟ ନାହିଁ—ପିତାମାତାଙ୍କ ଅନୁମତି ବିନା ଏ ପ୍ରସ୍ତାବରେ ତ ମତ ଦେଇ ନପାରେ ।

ସାବିତ୍ରୀ—ତା'ତ ନିଶ୍ଚୟ—ତେବେ ଆପଣ ଅପେକ୍ଷା କରନ୍ତୁ—ପିତା ମାତାଙ୍କଠାରୁ ମୁଁ ଅନୁମତି ନେଇଆସେ ।

ସତ୍ୟବାନ୍—ଅଚ୍ଛା, ଆସ—ମୁଁ ଏହିଠାରେ ଅପେକ୍ଷା କରୁଛି । (ସାବିତ୍ରୀର ପ୍ରସ୍ଥାନ) ପ୍ରିୟେ ! ପ୍ରିୟେ ! ତୁମ୍ଭେ ମାନବୀ ନା ଦେବୀ ? ଏପରି ବିଶୁଦ୍ଧ

ପ୍ରେମ—ଏପରି ପାତିବ୍ରତ୍ୟ କି ମନୁଷ୍ୟ ଠାରେ କେବେ ସମ୍ଭବ ! ତୁମ୍ଭେ ରାଜନନ୍ଦିନୀ—ସର୍ବବିଧ ଭୋଗବିଳାସ ସୁଖରେ ଅଧିକାରିଣୀ—ପୁଣି ରାଜାଙ୍କର ଏକମାତ୍ର ସନ୍ତାନ—ତେଣୁ ବିଶାଳ ରାଜ୍ୟର ଅଧିଶ୍ୱରୀ; କିନ୍ତୁ କରିଅଛ କଣ ?—ଏହି ଦରିଦ୍ର କୁଟିରବାସୀ ଲାଗି ତୃଣପରି ସମସ୍ତ ବିସର୍ଜନ କରିଅଛ ? ପ୍ରିୟେ ! ପ୍ରିୟେ ! ଏ'ପରି ଉଦାର ହୃଦୟ ତୁମ୍ଭର, ଏ' ସଙ୍କୀର୍ଣ୍ଣମନା କି ଉପକାର କରିପାରେ ?—ଏପରି ବିଶୁଦ୍ଧ ପ୍ରେମଦାନର,ଏ ଦୀନ କି ପ୍ରତିଦାନ ଦେଇପାରେ ?

(ଦ୍ୟୁମତ୍‌ସେନ, ରାଣୀ ଓ ସାବିତ୍ରୀର ପ୍ରବେଶ)

ମାଳବିକା—ମା ମୋର ! ତୋର ଯେ ବଡ଼କଷ୍ଟ ହେବ—ଏହା ମୁଁ ଜାଣୁ ଜାଣୁ କିପରି ଅନୁମତି ଦେବି ?

ଦ୍ୟୁମତ୍‌ସେନ—ନା, ରାଣି ! ଧାର୍ମିକାକୁ ଧର୍ମକାର୍ଯ୍ୟରେ ବାଧା ଦିଅ ନାହିଁ—ପତିବ୍ରତାକୁ ପାତିବ୍ରତ୍ୟରୁ ବିରତା କରନାହିଁ । ସତ୍ୟ କାହିଁ ?

ସତ୍ୟ—ପିତଃ !

ଦ୍ୟୁମତ୍‌ସେନ—ପୁତ୍ରରେ ! ବଧୂମାତାଙ୍କର ଅନୁରୋଧ ଯେ ଆଜ ମୁଁ ଭାଙ୍ଗିପାରୁ ନାହିଁ । ତୋତେ ଅନୁମତି ଦେଉଛୁ, ତୁ ତାଙ୍କର ମନସ୍କାମନା ପୂର୍ଣ୍ଣକର; କିନ୍ତୁ ପୁତ୍ର ! ବଡ଼ ସାବଧାନ ଥିବୁ । ଏକେ ବଧୂମାତା ଆଜ ଅନଶନା—ତହିଁରେ କଣ୍ଟକାକୀର୍ଣ୍ଣ ବନ୍ଧୁର ଅରଣ୍ୟ ପ୍ରଦେଶରେ ଏହି ପ୍ରଥମ ବିଚରଣ—ସତର୍କ ଭାବେ ସଙ୍ଗେ ସାଙ୍ଗେ ରହି ଗମନାଗମନ କରିବୁ—ଅନ୍ତ ଦେଶ, ସନ୍ଧ୍ୟା ନ ହେଉଣୁ ଯେପରି ଫେରି ଆସିବୁ—ସୂର୍ଯ୍ୟାସ୍ତ ପୂର୍ବରୁ ବ୍ରତଭଙ୍ଗ କରିବା ନିୟମ ।

ସତ୍ୟବାନ—ତେବେ ଦିନ ଅନେକ ହେଲାଣି, ଆମ୍ଭମାନଙ୍କୁ ଆସିବାକୁ ଅନୁମତି ଦିଅନ୍ତୁ ।

ଦ୍ୟୁମତ୍‌ସେନ—ଯାଅ ପୁତ୍ର, ଆନନ୍ଦରେ ଶୀଘ୍ର ଫେରି ଆସ ।

ସାବିତ୍ରୀ—ମାତଃ ! ପିତଃ ! କନ୍ୟାକୁ ଆଶୀର୍ବାଦ କରନ୍ତୁ ।

ଦ୍ୟୁମତ୍‌ସେନ—ଆଶୀର୍ବାଦ ଭିକ୍ଷା କରିବା ଅଗରୁ ଁ ଯେ ଆଶୀର୍ବାଦ କରି ସାରିଛୁ, ମା—ତେବେ ଆଉଥରେ ଈଶ୍ୱରଙ୍କଠାରେ ଏହି ପ୍ରାର୍ଥନା—ତୁମ୍ଭେ ସଧବା ଓ ଚିରସୁଲକ୍ଷଣୀ ହୁଅ ।

ମାଳବିକା—ମୋର ମଧ୍ୟ ସେହି ପ୍ରାର୍ଥନା—ତୋ'ର ମୁଣ୍ଡରେ ସିନ୍ଦୁର ଚିରକାଳ ଉଜ୍ଜ୍ୱଳ ରହୁ, ମା ।

ସାବିତ୍ରୀ—(ସ୍ୱଗତ) ବାସ୍ତବିକ କି ମୋର ଏପରି ଭାଗ୍ୟ ହେବ ? ହୃଦୟ ! ଧୈର୍ଯ୍ୟଧର—ଗୁରୁବାକ୍ୟ, ସାଧୁବାକ୍ୟ କେବେହେଁ ଅନ୍ୟଥା ହେବନାହିଁ—ବିଦ୍ୱାନମାନଙ୍କର ବାକ୍ୟ ସତ୍ୟକୁ ଅନୁଧାବନ କରେ, କିନ୍ତୁ ସାଧୁମାନଙ୍କର ବାକ୍ୟକୁ ସତ୍ୟ ଅନୁଧାବନ କରେ ।

ଦ୍ୟୁମତ୍‌ସେନ—ମା ! ବିଳମ୍ବରେ ଆଉ ପ୍ରୟୋଜନ ନାହିଁ ।

(ରାଣୀ ଓ ଦ୍ୟୁମତ୍‌ସେନଙ୍କର ଚରଣଧୂଳି ନେଇ ସାବିତ୍ରୀର ପ୍ରସ୍ଥାନ)

ମାଳବିକା—ମହାରାଜ ! ମୋର ସେହି ଦୁଃସ୍ୱପ୍ନସକାଶେ ମନ କିପରି ଅସ୍ଥିର ହେଉଛି ।

ଦ୍ୟୁମତ୍‌ସେନ—ରାଣି ! ସେ ସମସ୍ତ ଅତ୍ୟଧିକ ଚିନ୍ତାର ଫଳ—ମିଥ୍ୟା ଭୟରେ ବ୍ୟଥିତ ହେବା ଜ୍ଞାନମାନଙ୍କର ଉଚିତ ନୁହେଁ—ଆସ ।

ମାଳବିକା—ମା ଭଗବତି ! ତୁମ୍ଭେ ଏକମାତ୍ର ସହାୟ !

(ଦ୍ୟୁମତ୍‌ସେନଙ୍କ ହସ୍ତଧାରଣ ପୂର୍ବକ ରାଣୀଙ୍କର ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

— ରାଜପଥ —

(ଅଶ୍ୱପତି, କୌଶଲ୍ୟା ଓ ଦୁର୍ଦ୍ଦାନ୍ତର ପ୍ରବେଶ)

ଅଶ୍ୱପତି—ତୁମ୍ଭେ କି ସେହି ଦୁର୍ଦ୍ଦାନ୍ତ—ଯାହାକୁ ମୁଁ ଦିନେ ଦୁର୍ଦ୍ଦାନ୍ତ ବୋଲି ହେୟଜ୍ଞାନ କରିଥିଲି ?

ଦୁର୍ଦ୍ଦାନ୍ତ—ଆଜ୍ଞା, ମହାରାଜ ! ମୁଁ ସେହି ଦୁର୍ଦ୍ଦାନ୍ତ—ଦୁର୍ଦ୍ଦାନ୍ତହିଁ ଅଛି ।

ଅଶ୍ୱପତି—ନା ଦୁର୍ଦ୍ଦାନ୍ତ ! ତୁମ୍ଭେ ଆଉ ସେ ଦୁର୍ଦ୍ଦାନ୍ତ ନୁହଁ—ତୁମ୍ଭେ ଆଉ ସେ ନରହନ୍ତା ନୁହଁ—ତୁମ୍ଭେ ବର୍ତ୍ତମାନ ସୁଦାନ୍ତ—ନରପ୍ରାଣ ରକ୍ଷାକାରୀ ! ହେ ବନ୍ଧୁବର ! ତୁମ୍ଭେ ଆଜି ଆମ୍ଭମାନଙ୍କୁ କାରାମୁକ୍ତ କରି, ଗୁପ୍ତଘାତକଙ୍କ ଛୁରିକାରୁ ଆମ୍ଭମାନଙ୍କର ପ୍ରାଣରକ୍ଷା କରି, ଯେଉଁ ଉପକାର କରିଛ, ତା'ର ପ୍ରତ୍ୟୁପକାର ଏ' ଜଗତରେ ନାହିଁ—ସେ ଋଣର ପ୍ରତିଶୋଧ ଏ' ଜଗତରେ ଅସମ୍ଭବ !

ଦୁର୍ଦ୍ଦାନ୍ତ—ମହାରାଜ ! ଅକାରଣ ପ୍ରଶଂସା କରି ଏ' ପାପିର ପାପମାତ୍ରା ବଢ଼ାଉଛନ୍ତି କାହିଁକି ? ତାଙ୍କୁହିଁ ଧନ୍ୟବାଦ ଦିଅନ୍ତୁ—ସେହି ବିପଦଭଞ୍ଜନ ଶ୍ରୀମଧୁସୂଦନଙ୍କୁହିଁ ଧନ୍ୟବାଦ ଦିଅନ୍ତୁ—ସେହି ଏକା ଏ' ଜଗତରେ ଉଦ୍ଧାର କର୍ତ୍ତା—ସେହି ଏକା ଏ' ଜଗତରେ ରକ୍ଷାକର୍ତ୍ତା !

( ଜଣୈକ ଗୁପ୍ତଚରର ପ୍ରବେଶ )

ଗୁପ୍ତଚର—ମହାରାଜ ! ସର୍ବନାଶ ଉପସ୍ଥିତ—ବନ୍ଦୀ ପଳାଇଛି ବୋଲି ଖୋଜା ପଡ଼ିଲାଣି—ଆପଣ ସାବଧାନ ହେଉନ୍ତୁ !

ଦୁର୍ଦ୍ଦାନ୍ତ—ମହାରାଜ ! ମହାରାଣି ! ଆପଣମାନେ କିଛି ଭୟ କରନ୍ତୁ ନାହିଁ—ଏ' ଦାସ ଜୀବିତ ଥିବାଯାଏ ନିଶ୍ଚିନ୍ତ ରହିଥାନ୍ତୁ ! ଏଠାରେ ଆପଣମାନଙ୍କର ବର୍ତ୍ତମାନ ରହିବା ନିରାପଦ ମନେ କରୁନାହିଁ ! ସୈନିକ ! ଏମାନଙ୍କୁ ଏ ଜଙ୍ଗଲପଥଦେଇ ମୋର କୁଟୀରକୁ ଶୀଘ୍ର ନେଇଯା !

ଅଶ୍ୱପତି—ବନ୍ଧୁବର ! ତୁମ୍ଭଙ୍କୁ ଧନ୍ୟ ! ତୁମ୍ଭର ମହତ୍ ହୃଦୟକୁ ଧନ୍ୟ !

ଦୁର୍ଦ୍ଦାନ୍ତ—ମହାରାଜ ! ମୋର କର୍ତ୍ତବ୍ୟ ମୁଁ କରୁଛି—ଏଥିରେ ଧନ୍ୟବାଦ ଦେବା ଅକାରଣ ! ଆପଣ ଶୀଘ୍ର ଆସନ୍ତୁ—ବିଳମ୍ବରେ ବିପଦ ଘଟିପାରେ !

( ଅଶ୍ୱପତି, ରାଣୀ ଓ ଗୁପ୍ତଚରଙ୍କର ପ୍ରସ୍ଥାନ )

ଦୁର୍ଦ୍ଦାନ୍ତ—ବାସ୍ତବିକ କି ମୁଁ ଉଦ୍ଧାର କରିପାରିବି ? ବାସ୍ତବିକ କି ମୁଁ ସତ୍ୟବାନଙ୍କୁ ରାଜସିଂହାସନରେ ବସାଇ ମୋର ପାପର ପ୍ରାୟଶ୍ଚିତ୍ତ କରି ପାରିବି ? ମୋର ପାପର ପ୍ରାୟଶ୍ଚିତ୍ତ—ତାହା କି ସମ୍ଭବ ? ତାହା କି ଏ' ଜୀବନରେ ସମ୍ଭବ ? ଏହି ହସ୍ତ, ଯେ କି ଯୁଗବ୍ୟାପୀ ନରନାରୀ-ରକ୍ତରେ ରଞ୍ଜିତ ହୋଇ ଆସିଛି—ତାହାକି ସାମାନ୍ୟ ଲୋତକ-ଜଳରେ ପରିଷ୍କୃତ ହୋଇ ପାରିବ ? ଏହି ହୃଦୟ, ଯେ କି ଆଜୀବନ କୋଟି କୋଟି କଣ୍ଠ-ନିସୃତ କରୁଣୋଦ୍ଦୀପନାଦପ୍ରତି ପାଷାଣ ତୁଲ୍ୟ କଠିନ ହୋଇ ରହିଛି—ତାହାକି ସାମାନ୍ୟ ପୁଣ୍ୟ-ବାରି ସେଚନରେ କୋମଳ ହୋଇ ପାରିବ ? ବୃଥା ଚେଷ୍ଟା—ମୋର ପାପର ପ୍ରାୟଶ୍ଚିତ୍ତ ଅସମ୍ଭବ ! ମୋର ପରିତ୍ରାଣ ଅସମ୍ଭବ ! ତେବେ ଯେତେଦିନ ପର୍ଯ୍ୟନ୍ତ ଏ ପାପପିଣ୍ଡରେ ପ୍ରାଣ ଧାରଣ କରିଥିବି, ମୋର କର୍ତ୍ତବ୍ୟସାଧନହିଁ ଏକମାତ୍ର ଜପମନ୍ତ୍ର ହୋଇ ରହିଥିବ !

( ପ୍ରଜାଗଣଙ୍କର ପ୍ରବେଶ )

ପ୍ରଜା—ମହାରାଜ ! ମହାରାଜ ! ଆପଣ—

ଦୁର୍ଦ୍ଦାନ୍ତ—ନା ପ୍ରଜାଗଣ ! ମୁଁ ମହାରାଜ ନୁହେଁ—ତୁମ୍ଭର ମହାରାଜ, ସେହି ଦ୍ୟୁମତ୍ସେନ—ଯୁବରାଜ, ସେହି ସତ୍ୟବାନ—ମୁଁ ସେମାନଙ୍କର ଅନୁଗତ ଭୃତ୍ୟ ମାତ୍ର !

ପ୍ରଜା—ଏ'କଣ ଶୁଣୁଛୁଁ ?

ଦୁର୍ଦ୍ଦାନ୍ତ—ପ୍ରଜାଗଣ ! ଏହା ସତ୍ୟ—ଏହା ଧ୍ରୁବ ସତ୍ୟ ! ତୁମ୍ଭେମାନେ ବୋଧହୁଏ ଏ' ବିଶ୍ୱାସଘାତକକୁ ବିଶ୍ୱାସ କରି ପାରୁନାହିଁ—ଏ ପ୍ରଜାପୀଡ଼କ ଉପରେ ନିର୍ଭର କରିପାରୁନାହିଁ ? କିନ୍ତୁ ଥରେ ମୁଖ ଆଡ଼କୁ ଚାହିଁ ଦେଖିଲ—ଥରେ ବକ୍ଷସ୍ଥଳରେ ହାତ ଦେଇ ଦେଖିଲ—ଏ ଅବିଶ୍ୱାସୀ ବିଶ୍ୱାସଯୋଗ୍ୟ କି ନା—ଏ ମିଥ୍ୟାବାଦୀର କଥା ଯଥାର୍ଥ କି ନା ?

ପ୍ରଜା—ସେନାପତେ ! ହୋଇଛି, ହୋଇଛି—ଆମ୍ଭେମାନେ ଆମ୍ଭମାନଙ୍କର ପୂର୍ବସେନାପତିଙ୍କୁ ଫେରି ପାଇଛୁଁ—ଆମ୍ଭେମାନେ ଆମ୍ଭମାନଙ୍କର ପୂର୍ବ ରାଜା-ରାଣୀଙ୍କୁ ଫେରି ପାଇଛୁଁ !

ଦୁର୍ଦ୍ଦାନ୍ତ—ନା ପ୍ରଜାଗଣ ! ଅଦ୍ୟାପି ଫେରି ପାଇନାହିଁ ! ଦେଖୁନାହିଁ, ସିଂହାସନାରୋହଣକାରୀ କିଏ ବର୍ତ୍ତମାନ ? ରାଜ୍ୟର ବଳ କାହା ହସ୍ତରେ ?

ପ୍ରଜା—ବାସ୍ତବିକ, ସେନାପତେ ! କହନ୍ତୁ କି ଉପାୟ ଅଛି ?

ଦୁର୍ଦ୍ଦାନ୍ତ—ଉପାୟ ଅଛି—କିନ୍ତୁ ଜାଣିବାକୁ ଚାହେଁ, ତୁମ୍ଭେମାନେ ପ୍ରକୃତରେ ତୁମ୍ଭମାନଙ୍କର ପୂର୍ବ ରାଜାଙ୍କୁ ଫେରି ପାଇବାକୁ ଇଚ୍ଛାକର କି—ତୁମ୍ଭମାନଙ୍କର ସ୍ୱରାଜ୍ୟକୁ ଉଦ୍ଧାର କରିବାକୁ ଅଭିଳାଷ କର କି ?

ପ୍ରଜା—ଆମ୍ଭେମାନେ ବକ୍ଷସ୍ଥଳରେ ହସ୍ତ ଦେଇ କହୁଅଛୁଁ—ଆମ୍ଭେମାନେ ପ୍ରକୃତରେ ଇଚ୍ଛା କରୁଁ !

ଦୁର୍ଦ୍ଦାନ୍ତ—ତେବେ ତୁମ୍ଭେମାନେ ଉଠ ! ଜାଗ ! ଯେ ଯାହା ପାଅ ନେଇ ଅସ୍ତ୍ର ପ୍ରସ୍ତୁତ ହୁଅ ! ଦେଖିବା, ଅସ୍ତ୍ରଧାରୀସୈନ୍ୟମାନଙ୍କର ବଳ କେତେ—ଅସ୍ତ୍ରଶୂନ୍ୟ ଆମ୍ଭମାନଙ୍କର ବଳ କେତେ ? ଅନ୍ୟାୟକାରୀ ରାଜପତିର ବଳ କେତେ—ନ୍ୟାୟବାନ ଦ୍ୟୁମତ୍ସେନଙ୍କର ବଳ କେତେ ?

ସମସ୍ତେ—ଜୟ ରାଜା ଦ୍ୟୁମତସେନଙ୍କ ଜୟ ! ଜୟ ସେନାପତି ଦୁର୍ଦ୍ଦାନ୍ତ ସିଂହଙ୍କ ଜୟ !

(ସମସ୍ତଙ୍କର ପ୍ରସ୍ଥାନ)

(ରାଜପତି ଓ ସୈନ୍ୟମାନଙ୍କର ବିପରୀତ ଦିଗରୁ ପ୍ରବେଶ)

ରାଜପତି—ସୈନ୍ୟଗଣ ! ଏ ପୁଣି କି ନୂତନ କୋଳାହଳ—ପ୍ରଜାଗଣ କଣ ବିଦ୍ରୋହୀ ହୋଇଛନ୍ତି ? ଦୁର୍ଦ୍ଦାନ୍ତ କଣ ରାଜ୍ୟରେ ଉପସ୍ଥିତ ହୋଇଛି ? ଅଶ୍ୱପତିଙ୍କୁ କଣ ସେହି ଉଦ୍ଧାର କରିଛି ? ଏତେଦୂର ଦୁଃସାହସ ତାର ! ଯାଅ, ବେଗେ ଯାଅ—ନିଶ୍ଚୟ ସେ ଏହି କୋଳାହଳ କାରିଙ୍କ ମଧ୍ୟରେ ଅଛି—ବାନ୍ଧି, ଶୀଘ୍ର ନେଇ ଆସ ! (ସୈନ୍ୟଗଣଙ୍କ ପ୍ରସ୍ଥାନ) (ସ୍ୱଗତ) ଦୁର୍ଦ୍ଦାନ୍ତ ! ମନେ କରିଛୁ ମୋର ସ୍ୱାର୍ଥକୁ ମୁଁ ତୋ ହସ୍ତରେ ଅର୍ପଣ କରିବି ? ଏହା ଲାଭ କରିବା ଯେ ପ୍ରକୃତ ସୁଖ—ପ୍ରକୃତ ଧର୍ମ । ଅଶ୍ୱପତି ! ଶାସ୍ତ୍ରବାଦ ! ମନେ କରିଛୁ ପରା ଏଥର ରକ୍ଷା ପାଇଗଲୁ ? ଭୁଲ ଧାରଣା—ଅଚିରେ ପୁଣି ଧୃତ ହେବୁ—ତୋର ଶିରଚ୍ଛେଦନ ମୁଁ ସ୍ୱହସ୍ତରେ ସମ୍ପନ୍ନ କରିବି ! ମୋର ବୁଦ୍ଧି ଅଛି—ମୋର ଶକ୍ତିଅଛି । ଯାଏଁ, ଦେଖେଁ ସୈନ୍ୟମାନେ କଣ କଲେ ? (ବେଗେ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ସତ୍ୟବାନ ବୃକ୍ଷାରୋହଣ ପୂର୍ବକ ଶାଖା ଛେଦନ କରୁଥିବା—ନିମ୍ନ ଦେଶରେ ସାବିତ୍ରୀ କାଷ୍ଠାହରଣ କରୁଥିବା—କାଠୁରିଆ ନରନାରୀ ମାନଙ୍କର ପ୍ରବେଶ ଓ ଗୀତ)

—ଗୀତ—

ସ୍ତ୍ରୀ—ଚୁଲିପଶାଟା ମରୁନାହିଁ ! ଗାଇ, ଗାଇ ଗୁଣି ତାର ଦିନ ସରୁନାହିଁ !

ପୁ—ଗୃହମୁହିଁ ! ପୋଡ଼ାମୁହିଁ ! ତୋତେ ନ ଦେଖିଲେ ଭାତ ରୁଚୁନାହିଁ ! ଅଲସେଇ—ସେ ଓଲେଇ—ହାଣ୍ଡିଖାଇ—ସେ ଟାଉକୀ !

ସ୍ତ୍ରୀ—କରି ପାଇଛି କାଠ କାଟି—ମଲି ଦିନ ରାତି !

ପୁ—ଆହା ସତେ କି ସତ ?

ସ୍ତ୍ରୀ—ତେବେ କିମ୍ପା ସାପଖିଆ, ନୁହେ ମନ ଶାନ୍ତ !

ଉଭୟ—(ଉଚ୍ଚ) ଚାଲି ଏବେ ବେଗେ ବେଗେ କାଠ କାଟି ଯିବା ଦୁହିଁ । (ପ୍ରସ୍ଥାନ)

(ସତ୍ୟବାନ ଅବତରଣପୂର୍ବକ ନିଜ ମସ୍ତକରେ ହସ୍ତାର୍ପଣ କରି)

ସତ୍ୟବାନ—ପ୍ରିୟେ ! ହଠାତ୍ ମୋର ମୁଣ୍ଡଟା ବଥେଇଲା କାହିଁକି ?

ସାବିତ୍ରୀ—ଅଧିକ ପରିଶ୍ରମ ହେତୁ ହୋଇଥିବ ।

ସତ୍ୟବାନ—ନା, ପ୍ରିୟେ ! ମୋର କାହିଁକି ଘାରି ଭୟ ହେଉଛି ? ଏପରି ମୁଣ୍ଡ ବଥେଇବା ତ ମୁଁ କଦାପି ଅନୁଭବ କରନାହିଁ ? ଉଃ, କି ଯନ୍ତ୍ରଣା !

(ବସି ପଡ଼ିବା)

ସାବିତ୍ରୀ—ତେବେ ଆପଣ ଟିକିଏ ବିଶ୍ରାମ କରନ୍ତୁ; ମୁଁ ବୃକ୍ଷଶାଖାରେ ବ୍ୟଜନ କରିଦିଏ ।

ସତ୍ୟବାନ—ମୋତେ କାହିଁକି ଭାରି ଦୁର୍ବଳ ବୋଧ ହେଉଛି ?—ସତେ କି ଶକ୍ତିଶୂନ୍ୟ ହୋଇଗଲିଣି ! ମୁଁ ଆଉ ବସିପାରୁ ନାହିଁ, ଟିକିଏ ଏଇଠାରେ ଶୋଇବି ।

ସାବିତ୍ରୀ—ବେଶ୍ ମୁଁ ମୋର ଲୁଗାକାନି ବିଛାଇ ଦେଉଛି, ଆପଣ ମୋ' କୋଳରେ ମୁଣ୍ଡ ରଖି ଟିକିଏ ଶୋଇ ପଡ଼ନ୍ତୁ ।

(ସତ୍ୟବାନର ତଥା କରଣ)

ସତ୍ୟବାନ—ପ୍ରିୟେ ! ମୋର ଗଳଦେଶ ଶୁଷ୍କ ହୋଇ ଆସୁଛି କାହିଁକି ? ଜିହ୍ୱା ଯେପରି ସଙ୍କୁଚିତ ହୋଇଯାଉଛି—ପ୍ରାଣ ଓଷ୍ଠାଗତ ପ୍ରାୟ ! ଓଃ ମସ୍ତିଷ୍କରେ ଏ'କି ଯନ୍ତ୍ରଣା, ଯେପରି କି କେହି ଶୂଳାଘାତ କରୁଛି ! ପ୍ରିୟେ, ମୋର ମୁଣ୍ଡ ଟିକିଏ ଚିପିଦିଅ ।

ସାବିତ୍ରୀ—(ତଥା କରଣ ଓ ଦୀର୍ଘନିଶ୍ୱାସ ତ୍ୟାଗ ପୂର୍ବକ ଊର୍ଦ୍ଧ୍ୱଦୃଷ୍ଟି ହୋଇ) ହେ ପ୍ରଭୋ ! କରୁଣାମୟ ! ଦୀନାପ୍ରତି ସଦୟ ହୁଅ—ଏ' ଦୀନା ତାହାର ସର୍ବସ୍ୱ ତୁମ୍ଭର ଶ୍ରୀଚରଣ କମଳରେ ସମର୍ପଣ କରିଦେଉଛି ! (ସତ୍ୟବାନ ଆଡ଼େ ଚାହିଁ, ସଚକିତେ) ଏ' କଣ ? ମୁଖ ବିବର୍ଣ୍ଣ ଦିଶୁଛି କାହିଁକି ? ଚକ୍ଷୁ କୋଟରଗତ ହୋଇ ଯାଉଛି କାହିଁକି ? ନାସିକା ଯେ ବକ୍ରୀ-କୃତ ହେଉଛି ! ଅଙ୍ଗୁଳିଚୟ ଯେ ମୁଷ୍ଟିବଦ୍ଧ ହେଉଛି ! ସର୍ବାଙ୍ଗରେ ଏ'କି ସ୍ପନ୍ଦନ ! ଚାରିଆଡ଼େ ଏ'କି ସ୍ପନ୍ଦନ ! ଆକାଶ ! ତୁମ୍ଭେ ସ୍ପନ୍ଦିତ ହେଉଛ କଣ ଭୂତଳ-ଶାୟୀ ହେବ ବୋଲି ? ମେଦିନି ! ତୁମ୍ଭେ ସ୍ପନ୍ଦିତ ହେଉଛ କଣ ରସାତଳଗାମୀ ହେବ ବୋଲି ? ହୁଅ, ହୁଅ, ତାହାହିଁ ହୁଅ—ମୋର ଅସ୍ତିତ୍ୱ ଲୋପକରି ଦିଅ—ଏ ଦାରୁଣ ଦୃଶ୍ୟ ଦର୍ଶନରୁ ମୋତେ ଅବ୍ୟାହତି ଦିଅ ! ( ସତ୍ୟବାନ ଆଡ଼େ ପୁନର୍ବାର ଚାହିଁ ) ପ୍ରାଣେଶ୍ୱର ! ହୃଦୟବଲ୍ଲଭ ! କଥା କୁହ—ଥରେ ମାତ୍ର କଥା କୁହ—

( ଚିବୁକ ଧରିବା )

( ସତ୍ୟବାନ କଥା କହିବାକୁ ଚେଷ୍ଟା କରିବା—ନ ପାରି କେବଳ ଚକ୍ଷୁରୁନ୍ମିଳନପୂର୍ବକ ସଙ୍ଗେ ସଙ୍ଗେ ପୁନର୍ମୁଦ୍ରିତ କରିବା)

ସାବିତ୍ରୀ—(ଘନ ଘନ ନିଶ୍ୱାସ ତ୍ୟାଗ ପୂର୍ବକ) ଓଃ, କି କଷ୍ଟ ତୁମ୍ଭର ପ୍ରାଣେଶ୍ୱର ! କଥା କହ, କହି କହିପାରିଲ ନାହିଁ ? ବାସ୍ତବିକ କି ଆଜି ସେହିଦିନ ଉପସ୍ଥିତ ? ବାସ୍ତବିକ କି ଆଜି ଏ ଅଭାଗିନୀକୁ ସଂସାରରେ ଏକାକିନୀ କରି ଚାଲି ଯାଉଛ ? ଓଃ ହୋଃ ! କି ବେଦନା !—ହୃଦୟରେ କି ଯନ୍ତ୍ରଣା ! ଆଉ ଯେ ସହିପାରୁ ନାହିଁ—

(ମୂର୍ଚ୍ଛିତା ହୋଇ କ୍ରନ୍ଦନ କରିବା)

(ଧର୍ମ୍ମରାଜ ଯମଙ୍କ ପ୍ରବେଶ)

ଯମ—ଏହି ସେହି ଦେବୋପମ ଦମ୍ପତି !—ଏହି ସେହି ମର୍ତ୍ତ୍ୟଲୋକରେ ଆଦର୍ଶ ଦମ୍ପତି—ପତିପ୍ରାଣା ସାଧ୍ୱୀ କିପରି ସ୍ୱାମିଶୋକବିହ୍ୱଳା ହୋଇ ପଡ଼ି ରହିଛି ! ତାହାର ଆଉ ଏ ଜଗତରେ ଆପଣାର ବୋଲିବାକୁ କିଏ ଅଛି ? ତାହାର ଆଉ ଏ ଜଗତରେ ସୁଖ ଶାନ୍ତି ଦେବାକୁ କିଏ ଅଛି ? ତାହାର ପ୍ରାଣ ବର୍ତ୍ତମାନ ଶୁଷ୍କ ମରୁତୁଲ୍ୟ ! ତାହାର ସୁଖାଶା ବର୍ତ୍ତମାନ ମରୀଚିକା ତୁଲ୍ୟ ! ହାୟ ! ଏ କଷ୍ଟ ଦେଖି କାହାର ହୃଦୟ ନ ତରଳିବ ? ମୁଁ ଏଡ଼େ ନିଷ୍ଠୁର—ମୋର ହୃଦୟ ପାଷାଣ କଠିନ—ତଥାପି ଏ' ଦୃଶ୍ୟ ଦର୍ଶନରେ ଶୋକବିଚଳିତ ହେଉଛି—କିନ୍ତୁ କରିବି କଣ, କର୍ତ୍ତବ୍ୟର କଠିନ ନିଗଡ଼ରେ ଯେ ମୁହିଁ ବଦ୍ଧ ? ରାଜା ହେଉ, ପ୍ରଜା ହେଉ—ସୁଖୀ ହେଉ, ଦୁଃଖୀ ହେଉ—ବ୍ରାହ୍ମଣ ହେଉ, ଚଣ୍ଡାଳ ହେଉ—ସେମାନଙ୍କର ଐହିକ ଶରୀର ମୋତେ ଏହିପରି ଧୂଳିସାତ୍ କରିବାକୁ ହେବ—ସେମାନଙ୍କର ବିଭିନ୍ନାବସ୍ଥା ମୋତେ ଏହିପରି ସମଦଶାପନ୍ନ କରିବାକୁ ହେବ; କେବଳ ନୁହେଁ, ଏହି ଶବର ସୂକ୍ଷ୍ମ ଦେହକୁ ଏହି ପାଶାବଦ୍ଧ କରି ନିଜପୁରୀକୁ ନେଇ ଯିବାକୁ ହେବ—ସେହିଠାରେ ତାର ବିଚାର ହେବ—ନିଜର କର୍ମାନୁଯାୟୀ ଫଳ ସେ

ଭୋଗ କରିବ । ଯାଏଁ, ବର୍ତ୍ତମାନ ମୋର କାର୍ଯ୍ୟ ମୁଁ କରେଁ ।

(ଯମଙ୍କ ଅଗ୍ରସର ହେବା)

ସାବିତ୍ରୀ—( ସଚକିତେ ଇତସ୍ତତଃ ନିରୀକ୍ଷଣ ପୂର୍ବକ ) ଏ'କି ଦିବ୍ୟ ମୂର୍ତ୍ତି ! ମୋର ନୟନ ଯେ ସହ୍ୟ କରିପାରୁ ନାହିଁ ! କି ତେଜୀୟାନ !—କିଏ ତୁମ୍ଭେ ଦେବ ? ତୁମ୍ଭେ କି ବନଦେବତା—ଏହି ଅବଳାକୁ ରକ୍ଷା କରିବା ସକାଶେ ସହସା ଏଠାରେ ଉଦିତ ହେଲ ?—ଆସ, ଆସ, ପ୍ରଭୋ ! ମୁଁ ଭାରି ଦୀନା ।

ଯମ—( ସ୍ୱଗତ ) ମୋ କାର୍ଯ୍ୟ ଯେ ଅନ୍ୟରୂପ ! ଆର୍ତ୍ତନାଦ ଶୁଣି କେହି ବିଗଳିତ-ହୃଦୟ ହୋଇ ଅଶ୍ରୁପାତ କରନ୍ତି—ମୁଁ କିନ୍ତୁ ପାଷାଣ ପରି କଠିନ-ହୃଦୟ ହୋଇ ଚକ୍ଷୁ ରକ୍ତବର୍ଣ୍ଣ କରେ ! ବିପଦ-ଗ୍ରସ୍ତକୁ କେହି ରକ୍ଷା କରନ୍ତି, କେହି ବା ଆଶ୍ୱାସନା ଦିଅନ୍ତି—ମୁଁ କିନ୍ତୁ ବିପରୀତ କାର୍ଯ୍ୟ କରେଁ, ତାହାକୁ ହତ୍ୟା କରି, ତାହାର ସର୍ବନାଶ କରେ ! ହାୟ, କି କ୍ରୂରକାର୍ଯ୍ୟ ମୋର ! ( ପ୍ରକାଶ୍ୟେ ) ବତ୍ସେ ! ଉଠ ।

ସାବିତ୍ରୀ—ଉଠିବି କିପରି ? ଉଠିବାର ଶକ୍ତି କି ଆଉ ଅଛି ? ଯେ ଅବଳାର ଏକମାତ୍ର ସହାୟ—ଯେ ସତୀର ଏକମାତ୍ର ଶକ୍ତି—ଯେ ପତିବ୍ରତାର ଏକମାତ୍ର ସମ୍ପତ୍ତି, ସେ ଯେତେବେଳେ କଣ୍ଟକା-କୀର୍ଣ୍ଣଭୂମ୍ୟବଲୁଣ୍ଠିତ— ଉତ୍ଥାନଶକ୍ତିରହିତ—ତେତେବେଳେ ମୋର କି ଶକ୍ତି ଅଛି, ଉଠିବି ? ହେ ଦେବ ! ଆପଣ ସମ୍ପ୍ରତି ଏକମାତ୍ର ଭରସା—ଆପଣ ସହାୟ ହୁଅନ୍ତୁ ! ଏ ନିଃସହାୟାକୁ ରକ୍ଷା କରନ୍ତୁ !

ଯମ—ପତିପ୍ରାଣେ ! ଏ' କାର୍ଯ୍ୟ ଯେ ମୋର ଶକ୍ତିସୀମା ବହିଭୂତ—ମୋର କାର୍ଯ୍ୟହିଁ ହେଉଛି, ଜୀବନ ହରଣ କରିବା—ସେହି ଉଦ୍ଦେଶ୍ୟରେ ମୋର ଏଠାକୁ ଆଗମନ ।

ସାବିତ୍ରୀ—ଆପଣ କି ତେବେ ଧର୍ମରାଜ ଯମ ?

ଯମ—ହଁ ବତ୍ସେ !

ସାବିତ୍ରୀ—ଆପଣ ତେବେ ନିଜେ ଆସିଛନ୍ତି କାହିଁକି ? —ଶାସ୍ତ୍ରରେ ପଢ଼ିଛି—ପଣ୍ଡିତମାନଙ୍କଠାରୁ ମଧ୍ୟ ଶୁଣିଛି—ଆପଣଙ୍କର ଦୂତମାନେ ଏ'ସବୁ କାର୍ଯ୍ୟ କରିବାକୁ ଆସିଥାନ୍ତି ।

ଯମ—ହଁ, ମୋର ଦୂତମାନେ ଆସିଥାନ୍ତି, କିନ୍ତୁ ସ୍ଥଳବିଶେଷରେ ସେମାନଙ୍କର ଦୁଃସାଧ୍ୟ କାର୍ଯ୍ୟ ମୁଁ ସ୍ୱୟଂ କରିବାକୁ ଆସେ—ଯେପରି ଏଠାରେ ଘଟିଛି ।

ସାବିତ୍ରୀ—ଦେବ ! କୃପାକରି ଏ ମୂଢ଼ାକୁ ବୁଝାଇ ଦିଅନ୍ତୁ, ଏଠାରେ କିପରି ଘଟିଛି ।

ଯମ—ବତ୍ସେ ! ତୁମ୍ଭର ପତି ଦେବୋପମ-ସଦ୍‌ଗୁଣ ହେତୁ ଏକ ଅପୂର୍ବ ତେଜରେ ତେଜୋଽନ୍ୱିତ, ଏଣେ ତୁମ୍ଭେ ପତିପ୍ରାଣା ସାଧ୍ୱୀ—ଏ ଜଗତରେ ଅତୁଳନୀୟା ସତୀ, ତାଙ୍କର ଦେହ ଆଲିଙ୍ଗନ କରି ବସିଅଛ—ମୋର ଦୂତମାନେ, ଯେଉଁମାନେ ପାପିମାନଙ୍କୁ ସ୍ପର୍ଶ କରି ଥାଆନ୍ତି, ସେମାନଙ୍କ ମଧ୍ୟରେ କିଏ ଏଡ଼େ ଶକ୍ତିମାନ ଅଛି, ଯେ ଧର୍ମପରାୟଣାଠାରୁ ଧାର୍ମିକକୁ ବିଚ୍ଛିନ୍ନ କରିନେବ—ପତି ପ୍ରାଣାଠାରୁ ପତିକୁ ବିଭିନ୍ନ କରିନେବ ?

ସାବିତ୍ରୀ—ଧର୍ମରାଜ ! ଏ ଦୀନାର ବୃଥା ପ୍ରଶଂସା କରି ଦୀନତା ବଢ଼ାନ୍ତୁ ନାହିଁ—ହେ ଦେବ ! ଲୋକେ କହୁଥାନ୍ତି, ଆପଣଙ୍କର ରୂପ ଭୟଙ୍କର—ଆପଣଙ୍କର ହୃଦୟ ପାଷାଣଠାରୁ କଠିନ ! ମୁଁ କିନ୍ତୁ ବିପରୀତ ଦେଖୁଅଛି, ଆପଣଙ୍କର ଦିବ୍ୟ ମୂର୍ତ୍ତି—ଆପଣଙ୍କର ହୃଦୟ ତୁଳାଠାରୁ କୋମଳ ?

ଯମ—ବତ୍ସେ ! ବିଭିନ୍ନ ଲୋକେ ମୋତେ ବିଭିନ୍ନ ପ୍ରକାର ଦେଖିଥାନ୍ତି, ମୋର କିନ୍ତୁ ରୂପର ବିଭିନ୍ନତା ନାହିଁ । ଯେଉଁମାନେ ପାପୀ, ମୋତେ ଭୟ କରନ୍ତି—ସେମାନେ ଦେଖନ୍ତି, ମୁଁ ଭୟଙ୍କର—ଯେଉଁମାନେ ଧର୍ମଶୀଳ, ମୋତେ ଶ୍ରଦ୍ଧା କରନ୍ତି, ସେମାନେ ଦେଖନ୍ତି ମୁଁ ରୂପବାନ । ତୁମ୍ଭେ ମୋତେ ଦିବ୍ୟମୂର୍ତ୍ତି ଦେଖୁଅଛ, ସୁତରାଂ ତୁମ୍ଭେ ଧର୍ମପରାୟଣା—ମୋତେ ଶ୍ରଦ୍ଧା କରୁଅଛ ।

ସାବିତ୍ରୀ—ହେ ଧର୍ମରାଜ ! ଆପଣ ଯେବେ ହୃଦୟଙ୍ଗମ କରୁଅଛନ୍ତି, ଏ ଦୀନା ଆପଣଙ୍କୁ ଶ୍ରଦ୍ଧା କରୁଅଛି, ତେବେ ଆପଣଙ୍କର କଣ ତଦ୍‌ବିନିମୟରେ ଏ ଦୀନାପ୍ରତି ସ୍ନେହ ପ୍ରଦର୍ଶନ କରିବା ଉଚିତ ନୁହେଁ ?

ଯମ—ବତ୍ସେ ! ତୁମ୍ଭକୁ ଦେଖିବା ମାତ୍ରକେ ମୋର ପାଷାଣ ହୃଦୟ ସନ୍ତାନ-ବାତ୍ସଲ୍ୟରେ ଦ୍ରବୀଭୂତ ହୋଇଛି—ତୁମ୍ଭର ଏ ଆକାଙ୍‌କ୍ଷା, ଯାଚଞ୍ଚା ପୂର୍ବରୁ ମୁଁ ପୂର୍ଣ୍ଣ କରିଅଛି ।

ସାବିତ୍ରୀ—ହେ ଦେବ ! ବାସ୍ତବିକ ଆପଣ ଧର୍ମରାଜ ! ହେ ପିତଃ ! ଏ ଦୀନାକୁ ଯେବେ ଆପଣ ସନ୍ତାନ-ଜ୍ଞାନ କରିଅଛନ୍ତି—ଏ ସନ୍ତାନର ଅଭିଳାଷ କି ଆପଣଙ୍କର ପୂର୍ଣ୍ଣ କରିବା ଉଚିତ ନୁହେଁ ?

ଯମ—ବତ୍ସେ ! ତୁମ୍ଭର ଶ୍ରଦ୍ଧାରେ ମୁଁ ବଶୀଭୂତ ହୋଇ-ଅଛି--ତୁମ୍ଭେ ମୋର ହୃଦୟ ଅଧିକାର କରିଅଛ-- ସୁତରାଂ ସତ୍ୟବାନର ପ୍ରାଣଭିକ୍ଷା ଛାଡ଼ି ଅନ୍ୟ ଯେକୌଣସି ଭିକ୍ଷା ଅବାଧେ ମୋତେ ମାଗିପାର ।

ସାବିତ୍ରୀ—ପିତଃ ! ଯଥାର୍ଥ ଯେବେ ଆପଣ ଏ ଦୀନା କନ୍ୟାପ୍ରତି ପ୍ରସନ୍ନ ହୋଇଥାନ୍ତି, ତେବେ ଏହି ଭିକ୍ଷା ଦିଅନ୍ତୁ—ଶ୍ୱଶୁରଦେବ ଅକାଳେ ଚକ୍ଷୁହୀନ, ରାଜ୍ୟହୀନ ହୋଇଅଛନ୍ତି—ସେ ଚକ୍ଷୁଷ୍ମାନ ହେଉନ୍ତୁ —ଅପହୃତ ରାଜ୍ୟ ଫେରିପାନ୍ତୁ ।

ଯମ—ତୁମ୍ଭର ଏ ପ୍ରାର୍ଥନା ମୁଁ ସାନନ୍ଦେ ପୂର୍ଣ୍ଣ କରୁଛି, ବତ୍ସେ ! ବର୍ତ୍ତମାନ ଅନ୍ଧକାର ହେଇ ଆସିଲାଣି, ତୁମ୍ଭେ ଗୃହକୁ ପ୍ରତ୍ୟାବର୍ତ୍ତନ କର ।

ସାବିତ୍ରୀ—ପିତଃ ! ସ୍ୱାମୀ-ବିଚ୍ଛେଦରେ ଯା'ର ଜୀବନ ବର୍ତ୍ତମାନ ଅନ୍ଧକାରମୟ—ଯାର ହୃଦୟ ବର୍ତ୍ତମାନ ତମସାଚ୍ଛନ୍ନ, ତା'ର ଏ ବାହ୍ୟ ଅନ୍ଧକାର—ପାର୍ଥିବ ତମସା କି ଅନିଷ୍ଟ କରିପାରେ ?—ସେ ଶଙ୍କା ଆପଣଙ୍କର ବୃଥା ।

ଯମ—କନ୍ୟେ ! ତୁ ବିଦୁଷୀ—ତୋର କି ଏପରି ଭାବ ପୋଷଣ କରିବା କର୍ତ୍ତବ୍ୟ ? ସମସ୍ତଙ୍କୁ ଯେତେ-ବେଳେ ମୋର ଆଳୟକୁ ଯିବାକୁ ହେବ—କେହି ଆଗେ ଯିବ, କେହି ପଛେ ଯିବ—ଏତିକି ପ୍ରଭେଦ—ମୂର୍ଖମାନେ ଏହା ବୁଝି ନ ପାରି ବୃଥା ମାନସିକ ଯନ୍ତ୍ରଣା ଭୋଗ କରିଥାନ୍ତି, କିନ୍ତୁ ପଣ୍ଡିତ-ମାନଙ୍କର କଣ ଏ'ପରି କରିବା ଉଚିତ ?

ସାବିତ୍ରୀ—ପିତଃ ! ଏ' ଶୀର୍ଣ୍ଣାଙ୍ଗୀର ତେତେ କ୍ଳେଶ ନାହିଁ ! ଏ ଦୀନା ଆପଣଙ୍କଠାରୁ ଦିବ୍ୟାଲୋକ ଅନୁଭବ କରୁଛି—ଶାନ୍ତି ସୁଧା ପାନ କରୁଛି—ସେହି ଆଲୋକ, ସେହି ଶାନ୍ତି ଭୋଗ କରିବାକୁ ଦିଅନ୍ତୁ ! ପଣ୍ଡିତମାନେ କହିଛନ୍ତି, ମନର ଅଶାନ୍ତି ଉପସ୍ଥିତ ହେଲେ ତାହା ମହତ୍‌ବ୍ୟକ୍ତିମାନଙ୍କ ଉପଦେଶାମୃତ ପାନଦ୍ୱାରା ଉପଶମିତ ହୁଏ, ଏହା ଯଥାର୍ଥ—ଏ ଦୀନା କାର୍ଯ୍ୟରେ ବେଶ ଅନୁଭବ କରୁଛି ।

ଯମ—ହେ କନ୍ୟେ ! ତୋର କଥା ମୋତେ ସୁଧା-ବର୍ଷଣ ତୁଲ୍ୟ ବୋଧ ହେଉଛି—ମୋତେ ସତ୍ୟବାନର ଜୀବନ ଛାଡ଼ି ଅନ୍ୟ ଯେ କୌଣସି ଗୋଟିଏ ବର ମାଗିପାରୁ ।

ସାବିତ୍ରୀ—ହେ ପିତୃଦେବ ! ଯେବେ ଆପଣ ତୁଷ୍ଟ ହୋଇଛନ୍ତି, ତେବେ ଏହି ଭିକ୍ଷା ଦିଅନ୍ତୁ—ପିତା ଅଶ୍ୱପତି ପୁତ୍ର ସନ୍ତାନଶୂନ୍ୟ—ତାଙ୍କର କୁଳୋ-ଦ୍ଧାରକାରୀ ଶତପୁତ୍ର ହେଉ ।

ଯମ—ତଥାସ୍ତୁ । ଯାଅ, କନ୍ୟେ । ବର୍ତ୍ତମାନ ଗୃହକୁ ଫେରି ଯାଅ, ମୋର କାର୍ଯ୍ୟ ମୁଁ କରେଁ ।

(ଯମ ସତ୍ୟବାନର ବକ୍ଷସ୍ଥଳରୁ ସୂକ୍ଷ୍ମଶରୀର ବାହାରକରି ପାଶାବଦ୍ଧ ପୂର୍ବକ ଗମନୋଦ୍ୟତ)

ସାବିତ୍ରୀ—ହେ ପିତଃ ! କନ୍ୟାକୁ ଏକାକିନୀ କରି କେଣେ ଯାଉଛନ୍ତି ?

ଯମ—କନ୍ୟେ ! ତୁ ଫେରି ଯା—ବୃଥାରେ ମନକଷ୍ଟ କାହିଁକି କରୁଛୁ ?

ସାବିତ୍ରୀ—ହେ ପିତୃଦେବ । କିପରି କହୁଛନ୍ତି—ମୁଁ ଫେରି ଯିବି—ମନକଷ୍ଟ ଦୂର କରିବି—ନାରୀର ଯେ ଇହଜଗତରେ ଏକମାତ୍ର ଅବଲମ୍ବନ, ଶୋକ ଦୁଃଖରେ ଏକମାତ୍ର ସାନ୍ତ୍ୱନା, ତାଙ୍କୁ ଯେ ଆପଣ ଛଡ଼ାଇ ନେଇ ଯାଉଛନ୍ତି ? ହେ ଧାର୍ମିକ ପ୍ରବର ! ଦୀନାକୁ ଉପଦେଶ ଦିଅନ୍ତୁ, କି ଉପାୟରେ ସେ

ନିଷ୍ଫଳ ହେବ ? ଆପଣ ଦୟାମୟ—କରୁଣା-
ମୟ—କରୁଣାବାରିଧି—ଆପଣ ସ୍ୱତଃ ପ୍ରବୃତ୍ତ
ହୋଇ ଦୀନାକୁ ଅନେକ ବର ଦେଲେଣି ।
କେବଳ ଏହି ଉପାୟଟି ବନ୍ଦ କରି ଦୀନାର
ମନସ୍କାମନା ପୂର୍ଣ୍ଣ କରନ୍ତୁ ।

ଯମ—କନ୍ୟେ ! ଜଗତରେ ବିଧବା ପୁତ୍ର-ସମ୍ପତ୍ତିରେ
ଶାନ୍ତି ଭୋଗ କରିଥାଏ—ତୋର ସେହି ସଂପତ୍ତି
ଲାଭ ହେଉ ।

ସାବିତ୍ରୀ—ପିତଃ ! ଆପଣଙ୍କ ବର ନିଶ୍ଚୟ ଲାଭ ହେବ;
କିନ୍ତୁ, କହନ୍ତୁ, ମୁହିଁ ପତିବ୍ରତା—ପତିଙ୍କ ଯେତେ-
ବେଳେ ଆପଣ ନେଇ ଯାଉଛନ୍ତି, ସେ ଆଶା
ମୋର ପୂର୍ଣ୍ଣ ହେବ କିପରି ?

ଯମ—(ସ୍ୱଗତ) ବାସ୍ତବିକ ମୁଁ କଣ କଲି—ଏହି ସାଧ୍ୱୀର
ରୂପ-ଗୁଣରେ ମୁଗ୍ଧ ହୋଇ ମୁଁ ନିଜକୁ ଭୁଲିଗଲି ?
କାହିଁ ସେ ଗର୍ବ ମୋର—କାହିଁ ସେ ଆତ୍ମପ୍ରାଧାନ୍ୟ
ମୋର, ଯାହା—ମୁହିଁ ବିଶାଳରାଜ୍ୟାଧିପତିକୁ
ସାମାନ୍ୟ କୁଟିରବାସୀ ସହିତ ଏକ ଶଯ୍ୟାରେ
ଶାୟିତ କରିଦିଏଁ ବୋଲି—ଯାହା, ମୁହିଁ
ବଳିଷ୍ଠକାୟ ଯୁବକକୁ କ୍ଷୀଣାଙ୍ଗବୃଦ୍ଧର ସହିତ
ସମକକ୍ଷ କରି ଦିଏଁ ବୋଲି, ନିଜର ଶକ୍ତିଚିନ୍ତାରେ
ସ୍ଫୀତବକ୍ଷ ହୋଇ, ଗର୍ବ ଅନୁଭବ କରେ ? ଦେଖ,
ଦେଖ, ଜଗତ ! ମୋର ଗର୍ବ ଆଜ କିପରି ଖର୍ବ
ହୋଇ ଯାଇଛି—ଏହି ସାମାନ୍ୟ ବାଳିକା ଠାରେ
ମୃତ୍ୟୁରାଜ କିପରି ନତଜାନୁ ହୋଇଛି ! (ପ୍ରକାଶ୍ୟେ)
ହେ ସତୀଶିରୋମଣି ! ତୁମ୍ଭେ ଆଜ ମୋର ସମ୍ମାନ
ଯୋଗ୍ୟ ନୁହଁ, ମୁଁ ତୁମ୍ଭର ସମ୍ମାନ-ଯୋଗ୍ୟ—
ମୋତେ ଥରେ ତୁମ୍ଭଙ୍କୁ 'ମା, ମା' ବୋଲି ଡାକି
ଜୀବନ ସାର୍ଥକ କରିବାକୁ ଦିଅ । କୁହ, ନର-
ନାରୀମାନେ—ଆଜ ସମସ୍ୱରେ ଥରେ କୁହ "ଜୟ
ମା ସାବିତ୍ରୀର ଜୟ ! ଜୟ ପତିପ୍ରାଣା ସାବିତ୍ରୀର
ଜୟ !!"

( ସାବିତ୍ରୀ ଅଧୋବଦନରେ ଲଜ୍ଜିତା ହେବା )

ସାବିତ୍ରୀ—(ସ୍ୱଗତ) କିଏ କହେ ମୃତ୍ୟୁରାଜଙ୍କର
ଅନ୍ତଃକରଣ ପାଷାଣନିର୍ମିତ—କିଏ କହେ ମୃତ୍ୟୁ-
ରାଜଙ୍କର ହୃଦୟରେ ଦୟାଦାକ୍ଷିଣ୍ୟ ନାହିଁ ?
ଦେଖ, ଭାଇଭଉଣୀମାନେ—ଥରେ ସ୍ୱଚକ୍ଷୁରେ ଚାହିଁ
ଦେଖ, ମୃତ୍ୟୁରାଜଙ୍କର ଅନ୍ତଃକରଣ କି ତୁଳା
କୋମଳ ନୁହେଁ ? ମୃତ୍ୟୁରାଜଙ୍କର ହୃଦୟ କି
ଦୟାଦାକ୍ଷିଣ୍ୟପୂର୍ଣ୍ଣ ନୁହେଁ ? ହେ ଧର୍ମରାଜ !
ଆପଣ ବାସ୍ତବିକ ଧର୍ମରାଜ । ଆପଣଙ୍କ ତୁଲ୍ୟ
ମହତ ବ୍ୟକ୍ତି ତ୍ରିଲୋକରେ ଦୁର୍ଲ୍ଲଭ—ଆପଣଙ୍କ
ସମ୍ମାନ ଆମ୍ଭମାନଙ୍କ ପରି ଇତର ଲୋକ କଣ କରି
ପାରେ ? ଆପଣଙ୍କ ଯୋଗ୍ୟସମାଦର ଯୋଗ୍ୟ
ବ୍ୟକ୍ତିମାନେହିଁ ଜାଣନ୍ତି—ସେମାନେହିଁ କରି
ପାରିବେ ! ତଥାପି କୁହେ ଥରେ "ଜୟ ଧର୍ମରାଜ
ଯମଙ୍କର ଜୟ" !

ଯମ—ହେ ପତିପ୍ରାଣେ ! ତୁମ୍ଭର ପତିକୁ ଫେରାଇ ନିଅ—
ତାଙ୍କ ସହିତ ଦୀର୍ଘକାଳ ପରମ ସୁଖରେ ଜୀବନ
ଯାପନ କର—ମୋତେ ବର୍ତ୍ତମାନ ବିଦାୟ
ଦିଅ—ମୁଁ ଆସୁଛି । ( ଅନ୍ତର୍ଦ୍ଧାନ )

ସତ୍ୟବାନ—( ଉଠି ବସି ) ପ୍ରିୟେ ! ପ୍ରିୟେ !

ସାବିତ୍ରୀ—ପ୍ରାଣେଶ୍ୱର ! କିଛି ଭୟ ନାହିଁ—ଦାସୀ
ଆପଣଙ୍କର ପାଖେ ପାଖେ ଅଛି ।

ସତ୍ୟବାନ—ପ୍ରିୟେ ! ଅନ୍ଧକାର ଯେ ହୋଇ
ଆସିଲାଣି—ମୁଁ ଏତେ ସମୟ ଶୋଇ ପଡ଼ିଲି—
ମୋତେ ଉଠାଇ ଦେଲ ନାହିଁ ? ଚାଲ, ପ୍ରିୟେ,
ଶୀଘ୍ର ଚାଲ, ପିତାମାତା ଆମ୍ଭମାନଙ୍କ ଅଦର୍ଶନରେ
ବ୍ୟାକୁଳ ହେଉଥିବେ ।

( ସତ୍ୟବାନ ଉଠିବାର ଅଭିନୟ କରି )

ପ୍ରିୟେ ! ମୋତେ କାହିଁକି ଭାରି ଦୁର୍ବଳ ବୋଧ-
ହେଉଛି ? ମୁଁ ଯେ ଉଠିପାରୁ ନାହିଁ—ମୋତେ
ଟିକିଏ ଧର ।

ସାବିତ୍ରୀ—( ସତ୍ୟବାନର ହସ୍ତ ଧରି ଉଠାଇ ସ୍ୱଗତ )
ମୋତେ ମଧ୍ୟ କିପରି ଦୁର୍ବଳ ବୋଧ ହେଉଛି !
ଏତେବେଳ ପର୍ଯ୍ୟନ୍ତ ଶାରୀରିକ ଅସୁସ୍ଥତା ତ କିଛି
ଅନୁଭବ କରୁ ନ ଥିଲି, ବର୍ତ୍ତମାନ କାହିଁକି
ଭାରି କ୍ଲାନ୍ତି ବୋଧ ହେଉଛି—ସର୍ବାଙ୍ଗ ଅବଶ
ବୋଧ ହେଉଛି ? କଣ କରିବି ? କିପରି

ସ୍ୱାମିଙ୍କୁ ଘେନି ଘରେ ପହଞ୍ଚିବ ? ଶ୍ୱଶ୍ରୂ ଶ୍ୱଶୁର-ମାନେ ଯେ ବ୍ୟାକୁଳଚିତ୍ତରେ ଆମ୍ଭମାନଙ୍କୁ ଅନାଇ ବସିଥିବେ !—ହେ ଜଗନ୍ନାଥ ! ଏ ଦୀନାପ୍ରତି ଅସୀମ କରୁଣା ଦେଖାଇଛ—ବର୍ତ୍ତମାନ କେବଳ ଏତିକି ପ୍ରାର୍ଥନା, ସ୍ୱାମୀସଙ୍ଗେ ନିର୍ବିଘ୍ନେ ଆଶ୍ରମରେ ପହଞ୍ଚାଇ ଦିଅ ।

ସତ୍ୟବାନ—ପ୍ରିୟେ ! ଭାବନାର ପ୍ରୟୋଜନ ନାହିଁ ! ଈଶ୍ୱରଙ୍କ ଇଚ୍ଛାରେ ମୋର ବର୍ତ୍ତମାନ ଖୁବ ଶକ୍ତି ହୋଇଛି । ଅବଲମ୍ବନର ଆଉ ପ୍ରୟୋଜନ ନାହିଁ ! ମୁଁ ସ୍ୱଚ୍ଛନ୍ଦରେ ନିଜେ ଚାଲି ପାରିବି । ଚାଲ ପ୍ରିୟେ, ଶୀଘ୍ର ଚାଲ—ଅରଣ୍ୟ ଘୋର ଅନ୍ଧକାରାଚ୍ଛନ୍ନ ହୋଇ ଆସିଲାଣି—ଗିରିକନ୍ଦର ସବୁ ବ୍ୟାଘ୍ରଭଲ୍ଲୁକ ଗର୍ଜନରେ ପ୍ରତିଧ୍ୱନିତ ହେବାକୁ ଲାଗିଲାଣି ।

ସାବିତ୍ରୀ—ଚାଲନ୍ତୁ ପ୍ରଭୋ ! (ସ୍ୱଗତ) ହେ ଦୀନବନ୍ଧୋ ! ପ୍ରକୃତ ଆପଣ ଦୀନର ବନ୍ଧୁ—ଅବଳାର ଏକମାତ୍ର ସହାୟ !

( ସତ୍ୟବାନ ସାବିତ୍ରୀର ହସ୍ତଧାରଣ ପୂର୍ବକ ପ୍ରସ୍ଥାନ କରିବା )

---

## ଚତୁର୍ଥ ଦୃଶ୍ୟ

—ରାଜପଥ—

( ଅଶ୍ୱପତି, ରାଣୀ, ଦୁର୍ଦ୍ଦାନ୍ତ ଓ କେତେକ ସୈନ୍ୟର ପ୍ରବେଶ )

ଅଶ୍ୱପତି—ସେନାପତେ ! ତୁମ୍ଭେ ଧନ୍ୟ—ତୁମ୍ଭର ଯୋଗୁଁ ଆମ୍ଭେମାନେ ରକ୍ଷାପାଇଲୁ—ଦ୍ୟୁମତ୍-ସେନଙ୍କର ରାଜ୍ୟୋଦ୍ଧାର ମଧ୍ୟ ହେଲା ।

ଦୁର୍ଦ୍ଦାନ୍ତ—ମହାରାଜ ! ସମସ୍ତ ଈଶ୍ୱରଙ୍କର ଇଚ୍ଛା ।

ଅଶ୍ୱପତି—ତା'ତ ନିଶ୍ଚୟ ! ଆଚ୍ଛା ସେନାପତେ ! ଶତ୍ରୁପକ୍ଷର ସମ୍ବାଦ କିଛି ମିଳିଲା କି ?

ଦୁର୍ଦ୍ଦାନ୍ତ—ଖୁବ୍‌ସମ୍ଭବତଃ ସେ କେଉଁଆଡ଼େ ନିରୁଦ୍ଦେଶ ହୋଇଗଲେ ।

ରାଣୀ—ମହାରାଜ ! ଏହି ଦେଖନ୍ତୁ ମୁନିମାନଙ୍କର ଆଶ୍ରମ—ସାବିତ୍ରୀର ଆଶ୍ରମ ଆଉ କେତେ ଦୂରେ ?

ଦୁର୍ଦ୍ଦାନ୍ତ—ଆଉ ବେଶିଦୂରରେ ନୁହେଁ ।

ରାଣୀ—ତେବେ ଚାଲନ୍ତୁ ଶୀଘ୍ର, ମୋର ମନ ଭାରି ଉଦ୍‌ବିଗ୍ନ ହେଉଛି । (ସମସ୍ତଙ୍କ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

—ଆଶ୍ରମ—

( ଚକ୍ଷୁଷ୍ମାନ ଦ୍ୟୁମତ୍‌ସେନ ଓ ତତ୍‌ପଶ୍ଚାତ୍ ମୁନିଗଣଙ୍କ ପ୍ରବେଶ )

ଦ୍ୟୁମତ୍‌ସେନ—ମୋତେ ଖୋଜିବାକୁ ଦିଅନ୍ତୁ—ମୋର ବାପ ମାକୁ ଖୋଜିବାକୁ ଦିଅନ୍ତୁ ! ମୁଁ ଚକ୍ଷୁ ପାଇଛି—ମୁଁ ଦୃଷ୍ଟିଶକ୍ତି ପାଇଛି—ମୁଁ ଆଉ ଅନ୍ଧ ନୁହେଁ—ଅନ୍ଧକାର ମୋର ଗତିରୋଧ କରି ପାରିବ ନାହିଁ—କେହି ମୋତେ ଭୁଲାଇ ରଖି ପାରିବ ନାହିଁ ।

୧ମ ମୁନି—ମହାରାଜ ! ଆପଣ ସ୍ଥିର ହେଉନ୍ତୁ—ଆପଣଙ୍କର ପୁତ୍ର, ପୁତ୍ରବଧୂ ନିଶ୍ଚୟ କୁଶଳରେ ଅଛନ୍ତି । ଦେଖୁ ନାହାନ୍ତି—ଆପଣଙ୍କର ଅମଙ୍ଗଳ ଘଟିବାର ଥିଲେ କି ଆପଣ ପୁନର୍ଚ୍ଚକ୍ଷୁପ୍ରାପ୍ତ ହୋଇଥାନ୍ତେ ?

ଦ୍ୟୁମତ୍‌ସେନ—ମୁଁ ଜାଣେ, ଆପଣମାନେ ମୋତେ ଭୁଲାଉଛନ୍ତି—ନିଷ୍ଠୁର ବିଧି ମୋତେ ନୟନ ଦେଇ, ନୟନମଣିକୁ ମୋର ଛଡ଼ାଇ ନେଇଛନ୍ତି—ମୁଁ ଯାଉଛି—ସମସ୍ତ ଅରଣ୍ୟ ତନ୍ନ ତନ୍ନ କରି ଅନୁସନ୍ଧାନ କରିବି—ନ ପାଇଲେ ଏହି ଚକ୍ଷୁଦ୍ୱୟକୁ ଆଗେ ଉତ୍ପାଟିତ କରିବି—ତତ୍‌ପରେ ଦଗ୍‌ଧପ୍ରାଣକୁ ନଦୀବକ୍ଷେ ନିମଜ୍ଜିତ କରିଦେବି ।

( ବେଗେ ପ୍ରସ୍ଥାନ )

( ରାଣୀର ପ୍ରବେଶ )

ମାଳବିକା—ଏ ପାପିୟସୀକୁ ଛାଡ଼ି କେଉଁଠି ଯାଉଛନ୍ତି, ମହାରାଜ ? ଏ ଦାସୀକୁ ସଙ୍ଗରେ ନିଅନ୍ତୁ !—ହାୟ ପୁତ୍ର, ପୁତ୍ର ବଧୂ ମୋର !—(ଅନୁଧାବନ)

ମୁନିଗଣ—ମହାରାଜ ! ମହାରାଣି ! ( ଅନୁଧାବନ )

( ଅଶ୍ୱପତି ଓ କୌଶଲ୍ୟାର ପ୍ରବେଶ )

କୌଶଲ୍ୟା—ମହାରାଜ । ଏ'କଣ ଶୁଣୁଛୁ,—ସାବିତ୍ରୀ ମୋର ନାହିଁ ? ସତ୍ୟବାନ ମୋର ନାହିଁ ?—କଣ କରିବି ? କେଉଁଆଡ଼େ ଯିବି ? ଏ' ପୋଡ଼ାପ୍ରାଣର ଜ୍ୱାଳା କେମନ୍ତେ ସହିବି ? ନା, ଆଉ ସହି ପାରିବି ନାହିଁ—ମୋର ପ୍ରଭାତ-ସ୍ୱପ୍ନ ସତ୍ୟ ହୋଇଛି । ମୋର କନ୍ୟାଜାମାତା ଏ' ସଂସାରରେ ଆଉ ନାହାନ୍ତି ! ମୁଁ ମଧ୍ୟ ରହିବି ନାହିଁ । ହେ ମୋର ପ୍ରାଣର ପ୍ରାଣ ! ହୃଦୟର ହୃଦୟ ! ମୋତେ ମଧ୍ୟ ତୁମ୍ଭମାନଙ୍କର ସହଯାତ୍ରୀ କର ! (ପତନ)

ଅଶ୍ୱପତି—ରାଣି ! ରାଣି ! କଣ କଲ ? ଏହି ଦୀନ ନିଃସହାୟକୁ ଏକାକୀ କରି କେଉଁଆଡ଼େ ଚାଲିଗଲ ? ଏ' ସଂସାରରେ ମୋ'ର ଆଉ ନିଜର ବୋଲିବାକୁ କିଏ ଅଛି—ଏ' ସଂସାରରେ ମୋର ଆଉ ଆଶାଭରସାର ସ୍ଥଳ କିଏ ଅଛି ? ଏହି ପୁତ୍ର-କନ୍ୟା-ବର୍ଜିତ ପ୍ରାଣ ଆଉ କେଉଁ ସୁଖର ଆକାଙ୍‌କ୍ଷା କରିବ ? ଚାଲ, ପ୍ରାଣେଶ୍ୱରି ! ଯେଉଁଆଡ଼େ ଆମ୍ଭମାନଙ୍କର ଅନ୍ଧର ଲଉଡ଼ି—ଦୀନର ସହାୟମାନେ ଚାଲି ଯାଇଛନ୍ତି, ସେହିଆଡ଼େ ଚାଲ ! (ପତନ)

( ଦୁର୍ଦ୍ଦାନ୍ତର ପ୍ରବେଶ )

ଦୁର୍ଦ୍ଦାନ୍ତ—କାହିଁ ? କେଉଁଠାରେ ତ ପାଇଲି ନାହିଁ ? ଏତେ ଆଡ଼େ ଏତେଲୋକ ପଠାଇଲି, କେହିତ କୃତକାର୍ଯ୍ୟ ହୋଇ ଫେରି ଆସିଲେ ନାହିଁ ? ଓଃ, ଆଜି କି ଭୀଷଣ ଅନ୍ଧକାର । କି ଭୟଙ୍କର ନିସ୍ତବ୍ଧତା । କେଉଁଠାରେ ରହିଲେ ? ଦିଗଭ୍ରଷ୍ଟ ହୋଇ ନାହାନ୍ତି ତ ? ହିଂସ୍ର ଜନ୍ତୁମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ନାହାନ୍ତି ତ ? ଅଥବା, ସେମାନେ କି ବାସ୍ତବିକ ଦେବଦେବୀ ? ଆଜି ଏହି ପାପସଂସାରରୁ ଏକାବେଳକେ ଅନ୍ତର୍ଦ୍ଧାନ ହୋଇ ଗଲେ—ଏ' ପାପୀକୁ ଦର୍ଶନ ସୁଖରୁ ସୁଦ୍ଧା ବଞ୍ଚିତ କଲେ ? ହେ ଦେବଦେବୀ ! ମୋର ନିଜପାଇଁ ମୁଁ ତୁମ୍ଭମାନଙ୍କୁ ଡାକୁ ନାହିଁ—ତୁମ୍ଭମାନଙ୍କର ପିତାମାତା ଓ ଶ୍ୱଶ୍ରୂ ଶ୍ୱଶୁରମାନଙ୍କ ସକାଶେ ଡାକୁଛି—ଥରେ ଦେଖାଦିଅ—ସେମାନଙ୍କର ବିରହ-କାତର ପ୍ରାଣ ଶୀତଳ କରିଦିଅ ! ହାୟ ! ପିତାମାତାଙ୍କର ଆଜି କି କଷ୍ଟ—କି ଯନ୍ତ୍ରଣା—ଅନୁଭବୀ ଛଡ଼ା ଅନ୍ୟ କିଏ ଧାରଣା କରି ପାରିବ ? ଯାଏ ଦେଖେଁ, ପୁନର୍ବାର ଚେଷ୍ଟାକରେଁ, ଯେବେ କୃତକାର୍ଯ୍ୟ ହୋଇପାରେ ।

( ଗମନୋଦ୍ୟତ ବେଳେ ନେପଥ୍ୟେ ଜୟ ମା ସାବିତ୍ରୀ ସତ୍ୟବାନଙ୍କ ଜୟ । )

ଏ' କଣ ଶୁଣୁଛି ?

( ଦ୍ୟୁମତ୍‌ସେନ ଓ ମାଳବିକା କର୍ତ୍ତୃକ ଅଲିଙ୍ଗିତ ହୋଇ ସାବିତ୍ରୀ ଓ ସତ୍ୟବାନର ପ୍ରବେଶ)

ଏହି ଯେ ମୋର ଆରାଧ୍ୟ ଦେବତାମାନେ ! ଆଜି କି ଆନନ୍ଦ । ଆଜି କି ଆନନ୍ଦ !

(ନମସ୍କାର କରିବା)

ସାବିତ୍ରୀ—ମା, ମା । ( କୌଶଲ୍ୟାଙ୍କ ନିକଟକୁ ଯିବା )

କୌଶଲ୍ୟା—(ଉଠି) କିଏ ? କିଏ ? ସାବି । ମୁଁ ଜାଗ୍ରତ ନା ସୁପ୍ତ ?

ସାବିତ୍ରୀ—ବାବା ! ବାବା । (ଆଲିଙ୍ଗନ କରିବା)

ଅଶ୍ୱପତି—(ଉଠି) ମା ! ମା । କାହିଁ ତୁ ? ଏହିଯେ ମା ମୋର ! (ଆଲିଙ୍ଗନ କରିବା)

---

## ଷଷ୍ଠ ଦୃଶ୍ୟ

—ରାଜପଥ—

( ବ୍ୟାଧିଗ୍ରସ୍ତ ଗଜପତିର ପ୍ରବେଶ )

ଗଜପତି—ଶେଷେ କି ଏହି ପରିଣାମ ମୋର ! ସର୍ବାଙ୍ଗ ବ୍ୟାଧି ଗ୍ରସ୍ତ—ମାଂସ ଚର୍ମ ଗଳିତ ପଳିତ—ହସ୍ତ ପଦ ଛିନ୍ନ ବିଚ୍ଛିନ୍ନ । ଯନ୍ତ୍ରଣାରେ ପ୍ରାଣ ମୋର ଓଷ୍ଠାଗତ—ଦୁର୍ଗନ୍ଧରେ ନିଜେ ମୁହିଁ ବ୍ୟତିବ୍ୟସ୍ତ—କିପରି ଏହା ହେଲା ? ଏହା ତ ମୁଁ ଦିନେ ସୁଦ୍ଧା ସ୍ୱପ୍ନରେ ଭାବି ନ ଥିଲି—ହୋଇତ ମୁଁ ଦିନେ ସୁଦ୍ଧା ନିଜ ଜୀବନରେ ଜାଣି ପାରିନଥିଲି ।

ଏହାକି ତେବେ ମୋର ଶକ୍ତି, ଯାର ଏତେ ଗର୍ବ କରୁଥିଲି ? ଏହାକି ତେବେ ମୋର ବୁଦ୍ଧି, ଯାର ଏତେ ପ୍ରଶଂସା କରୁଥିଲି ? ଏଥର ବୁଝିଲି— ଏଥର ବୁଝିଲି, ମୁଁ କିଛି ନୁହେ—ମୁଁ କେହି ନୁହେଁ । ମୋର ନିଶ୍ଚୟ ଜଣେ କର୍ତ୍ତା ଅଛନ୍ତି—ମୋର ନିଶ୍ଚୟ ଜଣେ ପ୍ରଭୁ ଅଛନ୍ତି, ଯାହାଙ୍କ ଆଦେଶରେ ଏହି ବିଶାଳ ଜଗତ ସୃଷ୍ଟି—ଯାହାଙ୍କ ଆଦେଶରେ ଏହି କ୍ଷୁଦ୍ର ଜୀବନ ଚାଳିତ । କିଏ ସେ ମହାଜନ ? କିପରି ଦେଖିବାକୁ ? କେମନ୍ତେ ଜାଣିବି ? ସେ କି ଏହି ପାପିକୁ ଦେଖା ଦେବେ ? ସେ କି ଏହି ନର-ପିଶାଚକୁ କ୍ଷମା କରିବେ ?

(ନେପଥ୍ୟ)—ନିଶ୍ଚୟ କ୍ଷମା କରିବେ । ପାପିମାନଙ୍କୁ ଉଦ୍ଧାର କରିବା ତାଙ୍କର କାର୍ଯ୍ୟ ! ତୁମ୍ଭର କର୍ତ୍ତବ୍ୟ ଅଧୁନା ତାହାଙ୍କର ଦର୍ଶନ ପ୍ରାର୍ଥନା କରିବା— ତାହାଙ୍କ ଠାରୁ କରୁଣା ଭିକ୍ଷା ମାଗିନେବା ।

ରାଜାପତି—କିଏ ତୁମ୍ଭେ ? କିଏ ତୁମ୍ଭେ ଆଜି ଏ ତମସାଛନ୍ନ ହୃଦୟକୁ ଆଲୋକିତ କରିଦେଲ ?— କିନ୍ତୁ ଏ ପାପ କିପରି ସେ ମହିମାମୟ ଦର୍ଶନର ଅଧିକାରୀ ହେବ ? ଏ ନରହନ୍ତା କିପରି ସେ କରୁଣାମୃତ ପାନର ଅଧିକାରୀ ହେବ ?

ନେପଥ୍ୟ—ତୁମ୍ଭେ ନିରାଶ ହୁଅ ନାହିଁ—ତୁମ୍ଭେ ଚେଷ୍ଟା କର—ଦୃଢ଼ ହୁଅ—ମନକୁ ପାପକାର୍ଯ୍ୟରେ ଯେପରି ପ୍ରବୃତ୍ତ କରାଇ ଥିଲ, ସେହି ଶ୍ୟାମରୂପ ଧ୍ୟାନରେ ସେହିପରି ପ୍ରବୃତ୍ତ କରାଅ—ନିଶ୍ଚୟ ତୁମ୍ଭର ଜୟ ହେବ ।

ରାଜାପତି—କି ଆନନ୍ଦ ! କି ଆନନ୍ଦ ! ଆଜି ଅନ୍ଧ ଚକ୍ଷୁଷ୍ମାନ ହୋଇଛି—ରୋଗୀ ରୋଗମୁକ୍ତ ହୋଇଛି—ନିରାଶ ଆଶା ପାଇଛି । ମନ ଦୃଢ଼ ହୁଅ—ପାପ କାର୍ଯ୍ୟରେ ଯେପରି ବ୍ରତୀ ହୋଇଥିଲ, ସେହି ଶ୍ୟାମକଳେବର ଧ୍ୟାନରେ ବର୍ତ୍ତମାନ ସେହିପରି ବ୍ରତୀ ହୁଅ—ନିଶ୍ଚୟ ତାଙ୍କର କରୁଣା-ମୃତ ପାନ କରି ପାରିବ—ଏ ବାହ୍ୟିକ ଯନ୍ତ୍ରଣା ଅଚିରେ ନିଶ୍ଚୟ ଚାଲିଯିବ—ଏ ଆନ୍ତରିକ ଅଶାନ୍ତି ଅଚିରେ ନିଶ୍ଚୟ ନିର୍ବାପିତ ହୋଇଯିବ । ବୋଲ ମନ ଥରେ, ଏହି ପାପ କଣ୍ଠରେ ସେହି ମଧୁମୟ ନାମ "ହରିବୋଲ ହରିବୋଲ"

(ପ୍ରସ୍ଥାନ)

---

## ସପ୍ତମ ଦୃଶ୍ୟ

—ରାଜସଭା—

( ସତ୍ୟବାନ ଓ ସାବିତ୍ରୀ, ରାଜା ଓ ରାଣୀ ବେଶରେ ସିଂହାସନାସୀନ—ଅନ୍ୟ ସମସ୍ତେ ଯଥାପୂର୍ବକ ଆସୀନ )

ଦ୍ୟୁମତ୍ସେନ—ସେନାପତେ ! ଦାନକାର୍ଯ୍ୟ ଶେଷ ହେଲାତ ?

ଦୁର୍ଦ୍ଦାନ୍ତ—ଜଣେ ମାତ୍ର ବାକି ଅଛି ।

ଦ୍ୟୁମତ୍ସେନ—ଶୀଘ୍ର ବିଦାୟ କରିଦିଅ ।

ଦୁର୍ଦ୍ଦାନ୍ତ—ସେ ବିଦାୟ ହେଉନାହିଁ, ମଣିମୁକ୍ତାଦି ଦେଲେ ସୁଦ୍ଧା ଗ୍ରହଣ କରୁ ନାହିଁ ।

ଅଶ୍ୱପତି—ତେବେ ସେ କଣ କହେ ?

ଦୁର୍ଦ୍ଦାନ୍ତ—ସେ କହେ, ଅନେକ ଦୂରରୁ ଆସିଛି, ଥରେ କେବଳ ଏହି ରାଜଦରବାରକୁ ଆସି, ଆମ୍ଭମାନଙ୍କର ନୂତନ ରାଜା ଓ ରାଣୀଙ୍କୁ ଦର୍ଶନ କରିବ ।

ଅଶ୍ୱପତି—ଏପରି ରାଜଭକ୍ତ କିଏ ସେ ?

ଦ୍ୟୁମତ୍ସେନ—ଆସିବାକୁ ଦେଇପାର—ଏଥିରେ କ୍ଷତି କଣ ଅଛି ? ଭିକ୍ଷୁକ ହେଲେ ସୁଦ୍ଧା, ସେ ପ୍ରଜା ।

ଦୁର୍ଦ୍ଦାନ୍ତ—ସେ ଜଣେ ବାତୁଳ ଓ କୁଷ୍ଠରୋଗୀ— ପୁଣି ଉତ୍ଥାନ ଶକ୍ତି ରହିତ; ତେଣୁ ତାକୁ ଆସିବାକୁ ଦେବା ଉଚିତ ମନେ କରୁନାହିଁ ।

ମନ୍ତ୍ରୀ—ତେବେ ସେହିକଥା ତାକୁ କହିଦିଅ ।

( ସେନାପତି ଗମନୋଦ୍ୟତ ହେବା )

ସତ୍ୟବାନ—ସେନାପତେ ! ତିଷ୍ଠ ହେଉନ୍ତୁ ! ମନ୍ତ୍ରି ! ତୁମ୍ଭେ ନିରାଶ କରନାହିଁ—ପିତଃ ! କ୍ଷମା କରନ୍ତୁ ! ତାକୁ ଆସିବାକୁ ଯେବେ ଦେଇ ନ ପାରନ୍ତି, ଆମ୍ଭମାନଙ୍କୁ ଯିବାକୁ ଦିଅନ୍ତୁ ।

ସାବିତ୍ରୀ—ଏ’ କନ୍ୟା ମଧ୍ୟ ସେହି ଭିକ୍ଷା କରୁଛନ୍ତି ।

ଅଶ୍ୱପତି—ରାଜାରାଣୀମାନଙ୍କର ତ ସିଂହାସନ ତ୍ୟାଗ କରିବା ବିଧି ନୁହେ—ତେବେ ସେନାପତେ ! ଏହି ଆସ୍ତରଣ ଘୁଞ୍ଚାଇ ଦିଅ, ଡାକଆଣି ହୃଦୟ ଦେଖିବାକୁ ଦିଅ ।

ଦୁର୍ଦ୍ଦାନ୍ତ—ଯେ ଆଜ୍ଞା । ( ପ୍ରସ୍ଥାନ ଓ ଗଜପତି ସହ ପ୍ରବେଶ )

ଅଶ୍ୱପତି—ଏପରି ରାଜଭକ୍ତ କିଏ ?

ଗଜପତି—କାହିଁ ପ୍ରଭୋ ? କାହିଁ ତୁମ୍ଭେ ? କେଉଁଠାରେ ଅଛ ? ତୁମ୍ଭେ ଯେ ଆଶ୍ୱାସନା ଦେଇଛ, ନିଜେ ଦେଖାଦେବ ବୋଲି, ତେବେ ଦେଖା ଦେଉ-ନାହଁ କାହିଁକି ? ଏ କୋଡ଼ିଅଠା ସଙ୍ଗେ ଏତେ ଛଳନା କାହିଁକି, ପ୍ରଭୋ ? ଆଜ ଲୋକମୁଖରେ ଶୁଣିଲି, ରାଜା ହୋଇଛ—ଦୀନ କାଙ୍ଗାଳମାନଙ୍କୁ ଦାନଧ୍ୟାନ କରୁଛ—ଏ କାଙ୍ଗାଳକୁ କଣ ଏକାବେଳକେ ପାଶୋରି ଗଲ ? ଦିଅ ପ୍ରଭୋ ! ଥରେ ଦେଖା ଦିଅ—ତୁମ୍ଭର କରୁଣା-ମୂର୍ତ୍ତିରୁ କଣିକାଏ ଦେଇ ଏ ଦୀନର ଶାନ୍ତି ବିଧାନ କର ।

ଦ୍ୟୁମତ୍ସେନ—ଏ ଜଣେ ହରି-ପ୍ରେମୋନ୍ମତ୍ତ ବାତୁଳ ।

ଅଶ୍ୱପତି—( ସ୍ୱଗତ ) କିଏ ଏହି ଦୁର୍ଭାଗ୍ୟ ବାତୁଳ ! ମୋର ମନ ଏପରି ବିହ୍ୱଳ ହେଉଛି କାହିଁକି ?

ସାବିତ୍ରୀ—(ସ୍ୱଗତ) କିଏ ଏହି ଭାଗ୍ୟହୀନ ସନ୍ନ୍ୟାସୀ—ମୋର ପ୍ରାଣ କାନ୍ଦି ଉଠୁଛି କାହିଁକି ?

ଦ୍ୟୁମତ୍ସେନ—ସନ୍ନ୍ୟାସି ! ତୁମ୍ଭେ କଣ ଚାହଁ ?

ଗଜପତି—କଣ ଚାହେଁ ? ପଚାରୁଛ ପୁଣି ? ହେ ମଧୁସୂଦନ ! ବାସ୍ତବିକ କଣ ତୁମ୍ଭେ କପଟୀ ? କୋଡ଼ି-ଅଠା ସଙ୍ଗେ ଏପରି ବ୍ୟବହାର କରୁଛ, ଯେ ଶାରୀରିକ ଆଉ ମାନସିକ ଯନ୍ତ୍ରଣାରେ ଏକା-ବେଳକେ ଜୀବନ୍ମୃତ ? ଏହାର କଣ ରହସ୍ୟ ସହ୍ୟ କରିବାର ଆଉ କ୍ଷମତା ଅଛି ? ଦିଅପ୍ରଭୋ ! ପ୍ରାଣାବେଗରେ ଡାକୁଛି ଥରେ, ଦେଖାଦିଅ—ତୁମ୍ଭର ଶ୍ରୀଚରଣସ୍ପର୍ଶରେ ଏ ଦଗ୍‌ଧପ୍ରାଣକୁ ଶୀତଳ କରିଦିଅ !

ଦ୍ୟୁମତ୍ସେନ—ସେନାପତେ ! ଏ ଜଣେ ପ୍ରେମୋନ୍ମତ୍ତ ସନ୍ନ୍ୟାସୀ ! ଏହାଙ୍କୁ ଦେବାଳୟକୁ ନେଇଯାଇ, ଭୋଜନାଦି ଦ୍ୱାରା ପରିତୃପ୍ତ କରାଅ ।

ଦୁର୍ଦ୍ଦାନ୍ତ—ଚାଲନ୍ତୁ, ଦେବାଳୟକୁ ଚାଲନ୍ତୁ ।

ଗଜପତି—ତେବେ କଣ ଦୀନପ୍ରତି କରୁଣା ହେଲା ନାହିଁ ? ଶତ ଶତ ଲୋକେ ଆଜ ଭିକ୍ଷା ନେଇ-ଗଲେ—ଏ ଦୀନର ଭାଗ୍ୟରେ କଣ ଦର୍ଶନ-ସୁଖ ସୁଦ୍ଧା ଘଟିଲାନାହିଁ ? ଘଟିବ ବା କିପରି ? ପାପିର ଭାଗ୍ୟରେ ଏତେ ପୁଣ୍ୟଲାଭ କିପରି ସମ୍ଭବ । ଦୁଃଖିର ଭାଗ୍ୟରେ ଏତେ ସୁଖଲାଭ କିପରି ସମ୍ଭବ ?

ଦ୍ୟୁମତ୍ସେନ—ସନ୍ନ୍ୟାସି । ଏ ଦେବାଳୟ ନୁହେଁ—ଏ ରାଜସଭା ।

ଗଜପତି—ପ୍ରବଞ୍ଚନା ରଖ, ଦୀନବନ୍ଧୋ । ଏ ଜ୍ଞାନହୀନ କଣ ଏତିକି ସୁଦ୍ଧା ଜାଣେ ନାହିଁ, କେତେବେଳେ ତୁମ୍ଭେ ଗୋପାଳ ବାଳକ—କେତେବେଳେ ତୁମ୍ଭେ ବ୍ରଜେଶ୍ୱର—କେତେବେଳେ ତୁମ୍ଭେ ଲବଣୀ-ଚୋର—କେତେବେଳେ ତୁମ୍ଭେ ପ୍ରଜା-ପାଳକ ? ହେ ପ୍ରଭୋ ! ତୁମ୍ଭେ ଆଜ ବ୍ରଜେଶ୍ୱର ହୋଇଛ—ଦୀନ କାଙ୍ଗାଳମାନଙ୍କୁ କରୁଣା ଭିକ୍ଷା ଦେଉଛ, ତାହାହିଁ ଜାଣି ତ ଏ କାଙ୍ଗାଳ ଆସିଛି । ଦିଅ ପ୍ରଭୋ ! ମୁଁ ଭାରି ଦୀନ—ଏ ଦୀନକୁ ନିରାଶ କରନାହିଁ, କିଞ୍ଚିତ ହେଲେ ଭିକ୍ଷା ଦିଅ ।

ସାବିତ୍ରୀ—( ସ୍ୱଗତ ) ମନରେ ଆଜ ଏ’ଙ୍କ ପୂର୍ବ-ସ୍ମୃତି ଜାଗିଉଠୁଛି ? ଏ କଣ ମୋର ଦାଦା ? ( ପ୍ରକାଶ୍ୟେ ) ପିତଃ ! ମୋତେ ସେହି ଭିକ୍ଷୁକ ପାଖକୁ ଯିବା ନିମନ୍ତେ ଆଦେଶ ପ୍ରଦାନ କରନ୍ତୁ ।

ଅଶ୍ୱପତି—ନା ସାବି ! ଏହା ଯେ ବିଧି ନୁହେଁ ।

ଦ୍ୟୁମତ୍ସେନ—ଅଚ୍ଛା ଭାଇ, ଯିବାକୁ ଦିଅ—ଭିକ୍ଷୁକର ମନସ୍କାମନା ପୂର୍ଣ୍ଣହେଉ । ( ସାବିତ୍ରୀର ନିକଟକୁ ଯିବା ଓ ଗଜପତିର ଏକ ଦୃଷ୍ଟିରେ ଚାହିଁ ରହିବା । )

ଗଜପତି—ମଧୁସୂଦନ ! କି ରୂପରେ ଆଜ ଏ’ ଦୀନକୁ ଦର୍ଶନ ଦେଉଛ ? ଏ ରୂପଧ୍ୟାନତ ସ୍ୱପ୍ନରେ ସୁଦ୍ଧା

କେବେ ଉଦୀତ ହୋଇ ନାହିଁ ? ଏ ଯେ ମୂର୍ତ୍ତିମତୀ କରୁଣା ! ପ୍ରଭୋ ! ତୁମ୍ଭେ କଣ ଏ ଦୀନ ପାଇଁ ଏକାବେଳକେ କରୁଣା-ମୂର୍ତ୍ତି ସାଜ ଦେଖାଦେଲ ? ଆସ, ଆସ ପ୍ରଭୋ ! ସେହି ରୂପରେ ଆସ ! ସେହି ରୂପ ଦର୍ଶନକରି ପ୍ରାଣ ବିସର୍ଜନ କରେ—ସେହି ରୂପଧ୍ୟାନ କରି ଆତ୍ମାକୁ ମୁକ୍ତଦିଏ।

(ଚରଣଧୂଳି ନେବାକୁ ଯିବାବେଳେ ସାବିତ୍ରୀ ଆଲିଙ୍ଗନ କରିବା)

ଅଶ୍ୱପତି—ସାବି।

ଅନ୍ୟସମସ୍ତେ—ମହାରାଜ। ମହାରାଣି।

(ଗଜପତି ମୂର୍ଚ୍ଛାଯିବା ଓ ଦିବ୍ୟଦେହରେ ଆବିର୍ଭୂତ ହେବା)

ସମସ୍ତେ—ଏ' କଣ ହେଲ ? ଏ ଯେ ଗଜପତି !

ଗଜପତି—(ସାଶ୍ଚର୍ଯ୍ୟେ) ନୟନ ! ଏ କଣ ଦେଖୁଛ ! ମୁଁ କେଉଁଠାରେ ? ମୋର ସମ୍ମୁଖରେ ଏ' କାହାର ମୂର୍ତ୍ତି ?

ସାବିତ୍ରୀ—ଦାଦି !

ଗଜପତି—ନା ସାବି ! ମୁଁ ତୋର ଦାଦା ନୁହେଁ—ତୁ ମୋର ମା, ମୁଁ ତୋର ଦୀନ ସନ୍ତାନ; ଏ ସନ୍ତାନର ଧୃଷ୍ଟତା ମାର୍ଜନା କର, ମା !

ଅଶ୍ୱପତି—ଗଜପତି, ଭାଇ !

ଗଜପତି—ଆସ, ଆସ ଭାଇ ! ଯେଉଁ ଈଶ୍ୱର ଆଜ ଭାଇକୁ ଭାଇର ସହିତ—ସନ୍ତାନକୁ ପିତାର ସହିତ—ସ୍ୱାମୀକୁ ସ୍ତ୍ରୀର ସହିତ ମିଳାଇ-ଦେଇଛନ୍ତି—ତାଙ୍କର ନାମ କୀର୍ତ୍ତନ କରି ଜୀବନ ଧନ୍ୟ କରିବା !

ସମସ୍ତେ—ଜୟ ଜଗତ୍ ପିତା ପରମେଶ୍ୱରଙ୍କର ଜୟ !

ଗଜପତି—ଅଧୁର ଆସ ଭାଇମାନେ ! ଯେଉଁ ସାବିତ୍ରୀ ନିଜର ସତୀତ୍ୱ ବଳରେ ଆଜ ଏହି ମିଳନାନନ୍ଦର ପ୍ରଧାନ କାରଣ, ତାହାର ଜୟ ଗାନକରି ଜୀବନ ସାର୍ଥକ କରିବା !

ସମସ୍ତେ—ଜୟ ସତୀ ସାବିତ୍ରୀଙ୍କର ଜୟ !

(ସମସ୍ତେ ସ୍ୱ ସ୍ୱ ଆସନ ଗ୍ରହଣାନ୍ତେ ସଖୀଗଣଙ୍କପ୍ରବେଶ)

ସଖୀଗଣ— ଗୀତ

ଦେଖିଲେ ସହି, ସାବିତ୍ରୀ ନାମେ ମାତିଛି ଭୁବନ—
ଘରଆଡ଼େ ହୁଲାହୁଳି ଜୟ ନିଃସ୍ୱନ ॥
ଏ ସତୀ-ମହିମା-ଗୀତ, ଗାଆନ୍ତି ଚରୁଦୃତୀ—
ଗାଏ ନବେ ତାରି ଶଶୀ, ଉଠେ ସଘନ ॥

—ଯବନିକା ପତନ—

# ମୁଖବନ୍ଧ

'ଦାର୍ଶ୍ୟତାଭକ୍ତି' ଓଡ଼ିଆ ପ୍ରାଣର ଗୋଟିଏ ଆବେଗମୟ ଉଚ୍ଛ୍ୱାସ କହିଲେ, ଅତ୍ୟୁକ୍ତି ହେବ ନାହିଁ । ଏହି ଧର୍ମପ୍ରାଣ ଦେଶରେ, ପ୍ରତ୍ୟେକ ସନ୍ତାନର ହୃଦୟରେ, ଯେତେ ପ୍ରକାର ରୁଚି ସଂସ୍କାରର ଢେଉ ଖେଳି ଯାଉଥିଲେ ମଧ୍ୟ, ଈଶ୍ୱର ଭକ୍ତି, ଈଶ୍ୱର ପ୍ରେମ, ଗୁପ୍ତ ଫଗୋଭଳି ଚିରନ୍ତନ ପ୍ରବାହିତ ହେଉଥିବ । ଆଜି ଜଡ଼ବାଦୀ ( **Materialist** ) ମାନେ ମଧ୍ୟ, ବିଜ୍ଞାନର ଶୀର୍ଷଦେଶକୁ ଯେତେ ଯେତେ ଅଧିରୋହଣ କରୁଛନ୍ତି, ସେତେ ସେତେ ପ୍ରାଣସତ୍ତ୍ୱର ଅଭାବ ଅନୁଭବ କରୁଛନ୍ତି । ମନୁଷ୍ୟର ପ୍ରକୃତ ଜୀବନ ତ ଏହିପରି ଦୃଶ୍ୟମାନ ଜୀବନମାନଙ୍କ ନୁହେଁ—ତାହା ଏକ କେଉଁ ନିରବଚ୍ଛିନ୍ନ ଅନନ୍ତଧାରା, କେଉଁ ଅନନ୍ତ ଗର୍ଭରୁ ଉତ୍ପତ୍ତି ହୋଇକରି, କେଉଁ ଅନନ୍ତ ଆଡ଼େ ଧାଇଁ ଚାଲିଛି । ସୁତରାଂ, ଯେତେ ପ୍ରକାର ଅଶ୍ଚର୍ଯ୍ୟ ଆବିଷ୍କାର ଓ ଐହିକ ସୁଖ ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥା, ଆମ୍ଭମାନଙ୍କର ବିଜ୍ଞାନ କରିବାକୁ ସକ୍ଷମ ହେଲେ ମଧ୍ୟ, ପ୍ରକୃତ ଜୀବନର ଆକାଂକ୍ଷା ମେଣ୍ଟାଇବାକୁ ବା ପୁଷ୍ଟିସାଧନ କରିବାକୁ କଦାପି ସମର୍ଥ ହେବନାହିଁ । ଆମ୍ଭମାନଙ୍କୁ ବାଧହୋଇ ଈଶ୍ୱର-ବାଦ ( **Spirtualism** ) ଆଡ଼େ ଗତି ମୁହାଁଇବାକୁ ହେବ; କେବଳ ନୁହେଁ, ଈଶ୍ୱରଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ( **Complete resignation** ) ସ୍ଥାପନ କରିବାକୁ ହେବ । ପ୍ରକୃତରେ ନିମ୍ନଲିଖିତ ପଙ୍‌କ୍ତି ଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ ।

**"Complete resignation on Providence is not want of energy, ability or Confidence, but it is infinite capacity to resist a rushing sea of troubles, an indomitable force to stand against all untoward events and circumstances. It is the equilibrium of two immense forces—of the outer world and of the inner man—Counter balancing each other".**

**( Voices from Heaven. )**

ଆମ୍ଭେମାନେ ଈଶ୍ୱରଙ୍କଠାରେ ଦୃଢ଼ବିଶ୍ୱାସ ସ୍ଥାପନ କରିବା ବଳରେ, କିଭଳି ଅସାଧ୍ୟ ସାଧନ କରିପାରୁ, ତାହା ଭକ୍ତ, ବା ସାଧକ ବିନା ଅନ୍ୟ କେହି ଉପଲବ୍ଧି କରିବା ଅସମ୍ଭବ ।

ଏଠାରେ 'ସାଲବେଗ'ଙ୍କୁ ସାଧକରୂପେ ମୁଁ ଚିତ୍ରିତ କରି ଅଛି, ତାଙ୍କର ସାଧନାର କ୍ରମ ବିକାଶ ଦେଖାଇ । 'ସାଲବେଗ' ପ୍ରକୃତି ବା ପ୍ରବୃତ୍ତିର ଦାସ—ଆପଣାର ଦୋଷ ଗୁଣ ସୂକ୍ଷ୍ମଭାବେ ଉପଲବ୍ଧି କଲେ ମଧ୍ୟ ।

'ସାଲ୍‌ବେଗ୍ ଜନନୀ' ଈଶ୍ୱର ପ୍ରେମରେ ଉନ୍ମାଦିନୀ—ବାହ୍ୟ ଜଗତକୁ ଅନ୍ତର୍ଜଗତରେ ଏକାବେଳକେ ଲୀନ କରିଦେଇଛନ୍ତି; ମଧ୍ୟେ ମଧ୍ୟେ ଯେଉଁ ଭେଦ ଭାବ, ତାହା, ତାଙ୍କର ରକ୍ତ ମାଂସ ଶରୀର ଧାରଣର ଧର୍ମ ( **Instinct** ) ମାତ୍ର ।—ସେହି 'ଉନ୍ମାଦନା' ଓ 'ସାଧନା'ର ସମ୍ମିଶ୍ରଣରେ ଈଶ୍ୱର ପ୍ରୀତି ବା ଦର୍ଶନ ଲାଭ ସମ୍ଭବପର ହୋଇଥାଏ ସିନା ।

କଟକ ୧୯୩୩

ଲେଖକ

---

# ଉତ୍ସର୍ଗ

ମୋ'ର

**କଟକ-ଆର୍ଟ ଥିଏଟରର**

ଦୀର୍ଘଜୀବନ ଓ ଉତ୍ତରୋତ୍ତର ଉନ୍ନତି କାମନା

କରି, ଏହି କ୍ଷୁଦ୍ର ନାଟକଟି 'ମେମ୍ବର'

ମାନଙ୍କୁ ଉପହାର

ଦେଇ—

ନୂତନ ବର୍ଷର—ସ୍ୱାଗତ କଲେ ।

( ୧୯୩୪ ) **ଅଶ୍ୱିନୀ**

## ଚରିତ୍ର ଲିପି—

| | |
|---|---|
| ଲାଲବେଗ | ଉଖାଚୁଣୀ |
| ସାଲବେଗ | ଗୋପାଳ |
| ଜେବୁନ୍ନିସା | ବ୍ରାହ୍ମଣଗଣ |
| ମୁସଲମାନଗଣ | ଖୋକା |
| ସୈନ୍ୟ | ହବ୍ଦବ |

ସହଚରୀଗଣ

# ସାଲବେଗ

## ପ୍ରଥମ ଅଙ୍କ

**ଦୃଶ୍ୟ :**—କଟକ ଲାଲବାଗର ସୁରମ୍ୟ ରାଜପ୍ରାସାଦର ବିଳାସକକ୍ଷ ।

( ଲାଲବେଗ ନର୍ତ୍ତକୀଗଣ ପରିବେଷ୍ଟିତ ହୋଇ ପାନ ଓ ଗାନୋନ୍ମତ୍ତ—ତାଙ୍କର ନୂତନ ମହଷୀ, ବା ରକ୍ଷିତା ଜେବୁନ୍ନିସା କପଟ ଅନିଚ୍ଛା ସତ୍ତ୍ୱେ ଯୋଗ ଦେବାକୁ ଦେଖା ଯାଉଥାଏ, ମନେ ମନେ ଯେମନ୍ତ ଆଉ କା'ର ଚିନ୍ତା କରୁଥାଏ )

ନର୍ତ୍ତକୀଗଣ— ଗୀତ

କେୟା ସୁରଂ ବେରଂ ଏହୁ ଦୁନିଆ, ହାଁ ।
ଯୈସି ବୁଲ୍‌ଭେହେଁ ମେରେ "ପାନିଆ", ହାଁ ।
ମେରି ଗାଲୌଁକା ଲାଲି
ଓଠୌଁକା ମତୁଆଲି
ହେଲ୍‌ତି ସାଥି ସୁରମା ଆଁ ଖିଆ, ହାଁ ॥
ଯୌବନ୍ କା ଜୁଆର୍
ବଦନ୍‌ମେ ସବାର
ମଏଁ, ଝଲ୍‌ତି କୈସି ସମାଲିଆ, ହାଁ ॥

ଲାଲ୍‌ବେଗ—(ମତୁଆଲ ଭାବେ) ସମ୍ଭାଳିନେବାଲି ତୋ ହାଜର ହୈ

( କହୁ କହୁ ଜେବୁନ୍ନିସାକୁ ଭିଡ଼ିଆଣି ଚୁମ୍ବନ କରିବାକୁ ଉଦ୍ୟତ ହେଲେ )

( ନର୍ତ୍ତକୀଗଣ ବ୍ୟସ୍ତ ବିସ୍ତ ହୋଇ ସ୍ଥାନ ପରିତ୍ୟାଗ କଲେ )

ଜେବୁନ୍ନିସା—(ଅଭିମାନରେ) ନା, ନା ।

( ବାହୁ ପାଶରୁ ଆପଣାକୁ ମୁକୁଳାଇ ନେଲା )

ଲାଲବେଗ—(ଲାଲସାପୂର୍ଣ୍ଣ ଦୃଷ୍ଟିରେ ଚାହିଁ) ଜେବୁ—

ଜେବୁ—ନା—ନା—ସେପରି ଫାଙ୍କା ଅବାଜରେ କିଛି କାମ ନାହିଁ, ଜନାବ୍ !

ଲାଲ—ହୋଃ—ହୋଃ—ହୋଃ—ମୋର ଅବାଜ୍ କି କେବେ ଫାଙ୍କା ହୁଏ ରେ ଜେବୁ ! ଲାଲ-ବେଗର ? ଗଲୁ ଗଲୁ, ଥରେ ବିଶାଳ ଓଡ଼ିଶାର ଏକଛତ୍ରୀ ରାଜା "ଗଜପତି"ଙ୍କ ପଚ୍ଛର ଆସିବୁ ?

ଜେବୁ—ମ, 'ହାତେ ଶଙ୍ଖା-ଦର୍ପଣ ଦେଖା' କାହିଁକି ? ନିକେ ମୁହିଁ ଏହି ଘର କୋଣରୁ ସ୍ଥିର ବାନ୍ଧିଠାଏ ଅଙ୍ଗେ ଅଙ୍ଗେ ଲିଭୁଉଛି ଯେତେବେଳେ ?

ଲାଲ—ହାଃ—ହାଃ—ହାଃ—ମୋତେ, ତୋ'ର ବନ୍ଦାକୁ, ଏଭଳି କହି ହସାନା, ଜେବୁ—ଲାଲ-ବେଗର ଅବାଜ୍ ଫାଙ୍କା ! ହାଃ—ହାଃ—ହାଃ—

( ହସି ହସି ବେଦମ୍ ହୋଇଗଲେ )

ଜେବୁ—ଏହି ତ ଫାଙ୍କା ବନ୍ଧୁକର ଫାଙ୍କା ଅବାଜ୍ !

ଲାଲ—(ହୁରି ପକାଇଲେ) ସିରାଜ୍—ସିରାଜ୍—

(ଜଣେ ନର୍ତ୍ତକୀ 'ସିରାଜ' ଆଣି ଯୋଗାଇ ଦେଲା)

ଲାଲ—( ଢକ ଢକ କରି ଗୁଡ଼ାଏ ପିଇ, ଗମ୍ଭୀର ସ୍ୱରେ) ଏଥର ? ଭରି ବନ୍ଧୁକର ଭରି ଅବାଜ୍ ନିକଳୁଚିତ ?

ଜେବୁ—ହାଁ—ହାଁ—ଜନାବ୍—ସେହିଭଳି ଟୋଟା ଭାରି ବନ୍ଧୁକର, ନା, ନା, ଗୋଲା ଭରି ଶତ ଶତ କମାଣର ଅବାଜ୍ ନିକଳୁ ଆଜି, ଏକାସଙ୍ଗେ, ଜାହାଁପନାଙ୍କର ଇଙ୍ଗିତରେ ପଲକେ ଯେଉଁ ଭଳି ଅବାଜର ଧକ୍କାରେ ବିଶାଳ ଓଡ଼ିଶାର କେଉଁ ସୁଦୂର ପ୍ରାନ୍ତରର ଗିରିଚୂଡ଼ା ଖସି ପଡ଼ୁଥିଲା ତେର ପୂର୍ବେ ହଦେ, ଶୁଣିଥିଲି ।

ଲାଲ—( ଉଦ୍ଭ୍ରାନ୍ତ ହେଲା ଭଳି ) କିନ୍ତୁ, କାହିଁ ପ୍ରତିଦ୍ୱନ୍ଦୀ ସେହିଭଳି ? ହାଃ—ହାଃ—

( ସୁରା ପାଇଁ ପୁଣି ଇଙ୍ଗିତ କଲେ )

ଜେବୁ—ମନମାଫିକ୍ ତ ?

ଲାଲ—( ସୁରାପାନ ଧରି ) ହାଁ, ହାଁ, ମନ ମାଫିକ୍ ଦୁଷ୍ମନ୍ । କିନ୍ତୁ, ଗଜପତିର ଆଉ ଦୁଷ୍ମନ କହୁନାହିଁ ରେ, ଜେବୁ ?

( ପିଇବାକୁ ଲାଗିଲେ )

ଜେବୁ—ଗଜପତିଠାଉଁ ଆହୁରି ଭୟଙ୍କର ଦୁଷ୍ମନ୍ ଯେ ମୁଣ୍ଡଟେକି ଠିଆ ବର୍ତ୍ତମାନ ।

ଲାଲ—( ଉତ୍ତେଜିତ ଭାବେ ) ଲାଲବେଗର ସାମ୍ନାରେ !

( ସୁରାପାନ ଖସି ପଡ଼ିଲା )

ଜେବୁ—ଖାଲି ସାମ୍ନାରେ ନୁହେଁ, ଜନାବ୍ !

ଲାଲ—ତେବେ କିଏ ସୀମାନା ଦଖଲ କରିଚି, ବେଇମାନ୍ !

( ହାତ ବଢ଼ାଇଲେ )

ଜେବୁ—ଏକାବେଳକେ ହଜମ୍ କରିବାକୁ ତିଆରି, ସଇତାନ୍

( ପରିଚାରିକା ଆଣି ମଦ ବୋତଲ ଧରାଇ ଦେଲା)

ଲାଲ—ବେଲୁବ୍, ନାଦାନ୍—

( ପରିଚାରିକା ଉପରେ ଫିଙ୍ଗିଦେଇ, ଏଣେ ତେଣେ କ'ଣ ଖୋଜିବାକୁ ଲାଗିଲେ—ହଠାତ୍ ଜେବୁନିସା ପାଖକୁ ଧାଇଁଆସି )

···ମୋର ଜାନ୍‌ର ଜାନ୍‌କୁ ଅବଶ୍ୟ ନୁହେଁ ?

ଜେବୁ—ତୁମର ଜାନ୍‌ର ଜାନ୍‌ସେ ତୋ ଉନ୍‌କା କାମ୍—

ଲାଲ—ଥାମ, ଥାମ୍— (ଉତ୍ତେଜିତ ହୋଇ ଧାଇଁଲେ) ମୋର ବନ୍ଧୁକ, ମୋର ତଲ୍‌ୱାର୍—

( ଠିକ୍ ସେତିକିବେଳେ ସାଲବେଗ ଆପଣା କୋଷରୁ ତଲ୍‌ୱାର ବାହାର କରୁ କରୁ ପ୍ରବେଶ କଲେ )

ସାଲବେଗ—ଏହି ଯେ ବାବାଜାନ୍ ।

( ତଲ୍‌ୱାରଟା ବଢ଼ାଇ ଦେଉଁ ଦେଉଁ ନ ଦେଇ )

ନା—ନା—ବୋଲ, ବୋଲ ପିତା—କାହିଁ କତଲର ପ୍ରୟୋଜନ ହୋଇଚି ? କିଏ ସେହି ଦୁଷ୍ମନ୍ ?—ନିଜ ହସ୍ତେ ମୁହିଁ କରିବି ଛେଦନ ?

ଜେବୁ—( ହଠାତ୍ ଏପରି ଭାବେ ସାଲବେଗର ଆବିର୍ଭାବରେ ଭୀତା ଓ ସଙ୍କୁଚିତା ହେଲା )

ଲାଲ—( ସେହି ଭାବଟା ଲକ୍ଷ୍ୟ କରିଥିଲେ, କିନ୍ତୁ କାନେ କାନେ କହିଲେ ଅନ୍ୟଭାବେ ମୃଦୁ ମୃଦୁ ହସି )

ଜେବୁ ! ଏହି ବେଟା ମୋ'ର ବାପ୍‌ସେ ଜ୍ୟାଦା' । ବୋଲ, ତୋ'ର ଦିଲ୍ ଜାନ୍ ଖୋଲି ବୋଲ୍ ଉସ୍‌କୁ—ଓ କୈସି ଦୁଷମନ୍ ତେରା !

ଜେବୁ—(କେଉଁ ସଙ୍କଟରେ ପଡ଼ି କଣ କରିବ ହଠାତ୍ ଠିକ୍ କରି ନ ପାରିବାରୁ, ଶିହରି ଉଠିଲା )

ସାଲ—ଜନନି, ନ କର ଭୟ ! ମୁହିଁ ଗୋ ସନ୍ତାନ ତବ ! ଦିଅ ଆଜ୍ଞା ଅକପଟେ,—କିଏ ଶତ୍ରୁତବ ? ମୋ'ର ସ୍ୱର୍ଗାଦପିଗରୀୟସୀ ଜନନୀର ?— ନାସ୍ତିପିବ ଏହି ଦଣ୍ଡେ,—ଏହି ଖଡ଼୍‌ଗାଘାତେ ମୋର;—ପିଇବ ପ୍ରଥମ ରକ୍ତ,—ପ୍ରଥମ ବଳାର, ମୋ'ର ମାତାର ଉଦ୍ଦେଶ୍ୟ ।

ଜେବୁ—( କେଉଁ ଲାଲସାପୂର୍ଣ୍ଣ ଦୃଷ୍ଟିରେ ଚାହିଁ, ନିକଟକୁ ଧାଇଁ ଯାଉନ୍ତେ, ପ୍ରତି ଘାତରେ ଯେମନ୍ତ ଫେରିଆସି ଘୃଣାବିକୃତ ସ୍ୱରେ )

କାଫେର୍—କାଫେର୍ ତୁହି ! କାଫେରେ ବିଶ୍ୱାସ-

ସାଲ—( କଥା ଛଡ଼ାଇ ନେଇ ) 'ବିଶ୍ୱାସ' । 'ବିଶ୍ୱାସ' ସେ ତ ନୁହେଁ ଧର୍ମ, କାଫେର୍ ବା ଯବନର ।— ସେ ଯେ ଧର୍ମ ସନାତନ, ମନୁଷ୍ୟର । ଜାଣେ ନା ଗୋ ମୁହିଁ, ମାତା—କିଏ 'ମାତା'—ଗର୍ଭଧାରିଣୀ ମୋହର ? କି ସମ୍ବନ୍ଧ ପିତାର ସଙ୍ଗତେ ? କିରୂପେ ବର୍ଦ୍ଧିତ ଅବା ଧରା ବକ୍ଷେ ଏହି ? ବୋଲନ୍ତି କେହି, ମୁଁ କାଫେର । କେହି, ମୁଁ ଯବନ—କେହି, କେହି, ପୁଣି, ମାତା—ମୁହିଁ ଜାରଜ ସନ୍ତାନ ! କିବା ଯାଉ ମୋ'ର—କିବା ଯାଏ ଆସେ ତହିଁ—ଲୋକେ ଦେଖେ ଯେବେ—ମୁହିଁଟି

ମନୁଷ୍ୟ ! ମନୁଷ୍ୟର ଅକୃତ୍ରିମ ପ୍ରକୃତି ମୋ'ର, ଯଥାବିଧି ପୂର୍ଣ୍ଣତା ବିକାଶି । ତେଣୁ, ମନୁଷ୍ୟତ୍ୱ ଧର୍ମ ମୋ'ର ! ଆଚରିବି ସେହି ଧର୍ମ, ମନୁଷ୍ୟର ଗର୍ବେ ।

( ସ୍ଫୀତବକ୍ଷ ହୋଇ ଉଠିଲେ )

ଜେବୁ—ସେଇ କଥା ତ ପୁଚ୍ଛେଁ ମୁଁ—ତୁମେ ମନୁଷ୍ୟ-ଯୁବକ ! ଯୁବକର ଧର୍ମ କର ଅବହେଳା କିମ୍ପା ?

ସାଲ—କରିଛି ମୁଁ ଅବହେଳା ? ଯୁବକର ଧର୍ମ ? ଯେ ନିୟମେ, ଦିବାକର, ଉଠି ପୂରବ ଗଗନେ—ଯାଏ ଅସ୍ତ ଅସ୍ତାଚଳେ—ପ୍ରାତଃ, ପୂର୍ବାହ୍ନ, ମଧ୍ୟାହ୍ନ, ପରାହ୍ନ, ସାୟାହ୍ନ-ଯଥାରୀତି କରି ଭୋଗ; ସେହି ନିୟମରେ—ବିନା ବ୍ୟତିକ୍ରମେ, ତଥା କକ୍ଷ ଧରି, ଚାଲିଛି ଜୀବନ ସୂର୍ଯ୍ୟ ମୋ'ର !—ଏହି ଯୌବନ ମଧ୍ୟାହ୍ନ—ଶଙ୍କଟକାଳ ସେ ମନୁଷ୍ୟର,— 'ରିପୁ' ଗଣ ଯେବେ ପୂର୍ଣ୍ଣଦମେ, କଲନ୍ତି ବିକ୍ରମ କିନ୍ତୁ ବିଶ୍ୱାସ ମୋହର—ମଥିଛି ତ ସର୍ବେ;— ସେହି ଗର୍ବେ ସିନା ସ୍ଫୀତବକ୍ଷ, ଜଗତ ସମ୍ମୁଖେ ! —ଏଁ, ଏଁ, ତଥାପି, ତଥାପି—କେଉଁ ଅଜ୍ଞାନ ଅନ୍ଧାରେ—ମାୟା କି ମାୟାବୀର ମୁଁ ନ ପାରଇ ଭେଦ ? କିମ୍ବା, ଅଲକ୍ଷ୍ୟେ ମୋହର—କେଉଁ ତ୍ରୁଟି—ମା, ମା—କିବା ତ୍ରୁଟି ମୋ'ର—କିବା ଧର୍ମ୍ମ ଯୁବକର, କରେ ଅବହେଳା ମୁହିଁ— ଅଜ୍ଞାନ ସନ୍ତାନ ?

ଜେବୁ—( ହସି ହସି, ନାନା ଅଙ୍ଗଭଙ୍ଗିକରି ଗାଇବାକୁ ଲାଗିଲା )

ଗୀତ ।

ଏମିତି ଅବୋଧ ତୁମେ—ବୁଝନା—ବୁଝନା ।
ରସର ପିଅର, ରସ—ପିଅନା—ପିଅନା ॥
ନବୀନ ବସନ୍ତ ଦୋଳେ,
ନବୀନ ରସାଳ କୋଳେ,
କୋକିଳ ଗାଉଛି କିବା—ଶୁଣନା—ଶୁଣନା ॥

( ଆଉ ସମ୍ଭାଳି ନ ପାରି ଏକାବେଳକେ ଉନ୍ମତ୍ତ ଭଳି ଆଲିଙ୍ଗନ କରିବାକୁ ଉଦ୍ୟତ ହେଲେ )

ସାଲ—[ ସବିନୟେ ] ମା ! ପୁଣି ପରୀକ୍ଷା ? ମୁହିଁ ତ ତୁମ୍ଭର ସେହି ବୀର ସନ୍ତାନ !

( ହସି ହସି ଚାଲିଗଲେ )

ଜେବୁ—(କେଉଁ ହତାଶରେ ହତଦ୍ରୁମ ଭଳି ପଡ଼ିଗଲେ)

( ଲାଲବେଗ ବିପରୀତ ଦିଗରୁ ଦ୍ରୁତବେଗେ ପ୍ରବେଶ କଲେ )

ଲାଲ—ହାଁ—ହାଁ—ଭାରି କଡ଼ା ଶାସ୍ତି ଦେଇଗଲା ନା କଣ ଦୁଷ୍ମନ୍‌କୁ ତୁମର, ନା, ଦେବାକୁ ଧାଇଁଗଲା, ବେଟା ମୋ'ର ?—ମୁଁ ଜାଣେ ପରା—

ଜେବୁ—(ଆପଣାକୁ ସମ୍ଭାଳି ସମ୍ଭାଳି ) ତୁମେ ତ ସବୁ ଜାଣ, ଅନ୍ଧ, ମାତାଲ । ଦୁଷ୍ମନ୍ କବଳରେ ମୋତେ—ଗୋଟିଏ ନିଃସହାୟା ଅବଳା ନାରୀକୁ ପକାଇ, ଦେଇ, କେଉଁଆଡ଼େ ଯେ ନିଜେ—

ଲାଲ—ଭାଗେ—ଠମ୍ଭି ଛି—?

ଜେବୁ—ନୁହେଁ ?

ଲାଲ—ତେବେ ତ ବେଟା ମୋର, 'ଲୁଚ୍ କାମ୍‌କା ନେହିଁ'—'ଡର୍‌କେ ଭାଗା' !

ଜେବୁ—ଅହେ ପୁଅ ସୁଆଗିଆ ବୁଢ଼ାଓଲୁ ! ସେହି 'ବେଟା' ତୁମରି ଯେ ଦୁଷ୍ମନ୍ ମୋ'ର ।

ଲାଲ—ମୋ'ର ବେଟା ?

ଜେବୁ—ହାଁ ହାଁ—ସେହି ଜ୍ଞାନରେ—ସେହି ସ୍ନେହରେ —ମୁଁ କେତେବେଳେ ସ୍ନେହାଦର—କେତେ-ବେଳେ ବା ସ୍ନେହଶାସନ କରିବାକୁ ଧାଇଁ ଯାଇଛି—ପ୍ରତିଫଳ ତା'ର ଏହି ଭଳି—ଏହିଭଳି ପାପିଷ୍ଠ, ଓଃ, କପଟ ଭକ୍ତିକି, କପଟ ବର୍ତ୍ତିବି, ସତୀନାରୀ ମୁହିଁ—

ଲାଲ—ଓହୋ ! ସତୀର ସ୍ୱାମୀ ଆଗେ ପୁଣି ?—

ଜେବୁ—ଉଃ, ଅଙ୍ଗ ଯେ ମୋ'ର ଥରି ଉଠୁଛି—ପ୍ରାଣ ଯେ ମୋ'ର କମ୍ପି ଉଠୁଛି ।

ଲାଲ—ଅସି ଯେ ମୋ'ର ଝଣ ଝଣ ହୋଇ ଉଠୁଛି ।

ଜେବୁ—ଥା'ନ୍ତା, ଥାନ୍ତା ଯଦି କରେ ମୋ'ର ତେବେ—

ଲାଲ—ଶିରଟା— ନିଶ୍ଚେଁ — ନିଶ୍ଚେଁ — ଲୋଟୁଥାନ୍ତା ଏବେ ।

ଜେବୁ—( ସନ୍ଦେହରେ, କିଛିକ୍ଷଣ ଅନାଇ ) ପରିହାସ ନୁହେଁ, ପ୍ରିୟତମ ! ( ଚରଣ ଧରିବାକୁ ଗଲା )

ଲାଲ—(ବାଧାଦେଇ) ଚୁପ୍, ଚୁପ୍—ଏହି ଯେ ଆସୁଚି ମୋ'ର ପ୍ରିୟ, ନା—ନା—ନରାଧମ-ଲମ୍ପଟ-ମାତାଲ-ସସ୍ୟୁତାନ୍ ।

( କେଉଁ ଜରୁର ସମ୍ବାଦ ନେଇ ସାଲବେଗ ପ୍ରବେଶ କରୁଥିଲେ, ଜେବୁନିସାକୁ ସେଠାରେ ଦେଖି, ଫେରିଗଲେ ଝଟ୍ କରି )

ଜେବୁ—( ହର୍ଷଭରେ ନିକଟକୁ ଧାଇଁଯାଇ ) ଦେଖିଲତ, କେଉଁ ଲାଳସାରେ ପୁଣି, ଉନ୍ମାଦ ଭଳି ପଶି ଆସି, ତୁମକୁ ଦେଖି ହଠାତ୍—

ଲାଲ—ସାଲବେଗ୍ !

ଜେବୁ—ନା, ନା—ଥାଉ, ଥାଉ—ଅଚ୍ଛା ମୁଁ ବାହାରି—

ଲାଲ—( ବାଧାଦେଇ ନେପଥ୍ୟ ସାଲବେଗର ଅଗମନ ପଥ ଆଡ଼େ ଚାହିଁ ରହିଥିଲେ )

ସାଲ—ପିତା ! ( ପୁନର୍ବାର ପ୍ରବେଶ କଲେ ) ଭାରି ଜରୁରି ସମ୍ବାଦ ! ଦୁଷ୍ମନ ପୁନର୍ବାର ଆକ୍ରମଣ କରିଚି ।

ଲାଲ—ହଁା, ହଁା. ଧରାକୁ ପଡ଼ିଛି—ଆପେ. ଆପେ !

ସାଲ—ସତେ, ସତେ ପିତା ! ( ଭାରି ଉତ୍‌ଫୁଲ୍ଲ ହୋଇ ଉଠିଲେ )

ଲାଲ—ଏହି ଦେଖ୍‌ନା—କୋଇହେସ୍ତ !

ସାଲ—( ନେପଥ୍ୟ ଚାହିଁ ରହିଲେ ସେହି ବନ୍ଦୀର ଆଶାରେ ଅଜ ହାତଟା ତାଙ୍କର ସ୍ୱତଃ ଅସିର ମୁଠାକୁ ମୁଠାଇ ପକାଇଲା )

ଜେବୁ—(ଭାରି ଖୁସି ହେଉଥାଏ, କିନ୍ତୁ ବେଳେବେଳେ ମୁହଁ ଶୁଖି ଯାଉଥାଏ, ଲାଲବେଗଙ୍କ ଭାବଗତିକ ଦେଖି )

( ଖୋକା ସେହି ସମୟରେ ଆସି ଉପସ୍ଥିତ ହେଲା )

ଲାଲ—ବାକୋ !

(ସାଲବେଗ ଆଡ଼େ ଇଙ୍ଗିତ କରାଇଲେ )

ସାଲ—ପିତା ! ( ବୋଲି ଚମକି ଉଠି ସଙ୍ଗେ ସଙ୍ଗେ ନିର୍ବିକାର ହେଲେ )

ଜେବୁ—ମଗଜରେ ପଶୁଚିତ ? ସେହି, ସେହି ପ୍ରତିଫଳର, କେଉଁ ପ୍ରତି-ପ୍ରତିଫଳଟା ଏବେ ?

ଲାଲ—ହଁ, ସେହି ପ୍ରତି-ପ୍ରତିଫଳଟା--କାମରେ ଦେଖାଇ ଦେବଟି ବେଗେ । ( ଅସି ବଢ଼ାଇଦେଲେ )

ଜେବୁ—ମୁଁ ?

ଲାଲ—ନିଜେ, 'ହାତଟେକି' ଦେବାଟା ଭଲ ନୁହେଁ କି ? ବହୁତ ପୁରସ୍କାର ମିଳେ—ହାତର ସୁଖ ବି ଖୁବ୍ ମିଳେ ।

ଜେବୁ—( ବରଡ଼ାପତ୍ର ଭଳି ଥରିବାକୁ ଲାଗିଲା )

ଲାଲ—ହଁା, ଜଲ୍‌ଦି ! କି ହତଭାଗ୍ୟ, ତୋ'ର କିଛି ଅଳି ଅଛି,—ଏହି ଶେଷ ବେଳେ ?

ସାଲ—ଏତକି ମାତ୍ର, ପିତା ! କମ୍ପିତ ଦେଖଇ ମାତୃକର ମୋ'ର—ଆଦେଶକୁ ଅନ୍ୟ— ହେଉବା ସେ ଚଣ୍ଡାଳ ଅଧମ—ଦେଖାଇବ ନିଷ୍ଟଲେ ମସ୍ତକ, ଅସିତଳେ ତା'ର;—ପିତାର ଆଦେଶେ—ମାତାର ସକାଶେ !

ଜେବୁ—ହଁ, ହଁ—ସେହି କଥା ହେଉ, ଜାହାଁପନା— ନ ପାରିବି ମୁଁ ବଧି—

ଲାଲ—'ନ ପାରିବି ମୁଁ ବଧି'—ହାଃ—ହାଃ—ହାଃ— ତା ହବନାହିଁ—ତା ହବନାହିଁ—ତୋର ଦୁଷ୍ମନକୁ ତୁହି ଏକା ଜାଣୁ ବଧିବାକୁ !—ପାରୁ ବଧିବାକୁ !

ଜେବୁ—ଆଉ କ'ଣ କେହି ପାରିବେ ନାହିଁ, ଜନାବ୍ ?

ଲାଲ—ନା, ନା—ସାରାଦୁନିଆରେ ନାହିଁ—ସୃଷ୍ଟିର ବାହାରେ ବି ନାହିଁ—ଆପଣା ଦୁଷ୍ମନେ ବଧିପାରିବେ ଅପରେ ?

ଜେବୁ—ନ ପାରେ ମୁଁ ଯଦି—

ଲାଲ—ନ ପାରିଲେ, ନାରୀ—ଏହି ତୀକ୍ଷ୍ଣ ଅସି— ପଲକେ ନେଉଛି—ଲୁଚିବ ସମୂଳେ—ସେହି ନିବଡ଼ ଅଚ୍ଛେଦ୍ୟ, ପୀନପୟୋଧରଯୁଗ୍ମ ସନ୍ଧିସ୍ଥଳ ମଧ୍ୟେ;—ମିଇବ ଶୋଣିତ-ସୁରା ଲାଲସା ମେଣ୍ଟାଇ ।

ଜେବୁ—ମୋ'ର—ମୋ'ର—

ଲାଲ—ହଁା—ହଁା—ତୋ'ର ! ତୋ'ର !—ସାଲବେଗ କରେ—ତୋର ଦୁଷ୍ମନର କରେ !

ସାଲ୍—ପିତା ! ନା, ନା, ବଧ—ବଧ, ବେଗେ ଗୋ
ଜନନି ! ମୁଁ ରହିଚି,—ରହିବି ନିଶ୍ଚଳ,—ନିଶ୍ଚଳ
ଯେ ଯାଏ ନ ଭଜଇ ପରାଣ ମୋହର ।
( ଅବନତ ହେଲେ )

ଜେବୁ—( ହାତରୁ ଅସି ଖସି ପଡ଼ିଲା ) କ୍ଷମା—କ୍ଷମା—
( ଲାଲବେଗର ଗୋଡ଼ ଧରିଲେ )

ଲାଲ—'କ୍ଷମା'—'କ୍ଷମା' —ହାଃ— ହାଃ— ହାଃ—
( ଅସିଦେଇ ) ନେରେ, ବେଟା—ପିତାର
ଆଦେଶ— ଦେ ଦଣ୍ଡ ଯଥେଚ୍ଛା ତୋ'ର—
ପୁତ୍ରଘାତୀ— ସ୍ୱାମୀଦ୍ରୋହୀ— କୁଳଟା ସେ
ସ୍ୱୈରୀ— ।
( ଗୋଡ଼ ଛଡ଼ାଇନେଇ ବେଗେ ଚାଲିଗଲେ )

ଜେବୁ—ମୃତ୍ୟୁ ! ମୃତ୍ୟୁ ! ନାହିଁ ପରିତ୍ରାଣ ! (ସାନୁନୟେ)
ମାତୃହତ୍ୟା କରିବୁ କି ନିଷ୍ଠେ ?

ସାଲ—ପିତାର ଆଦେଶ ! ମୁହିଁ 'ପରଶୁରାମ' !

ଜେବୁ—କାଫେର ତୁହି ! ( ସାନୁନୟେ ) କିନ୍ତୁ,
କାଫେରର ଶାସ୍ତ୍ରେ, ନାହିଁକିରେ ମୁକ୍ତିର ବିଧାନ ?

ସାଲ—(କେଉଁ ସ୍ମୃତିର ଦଂଶନରେ ହଠାତ୍) ଜନନି !
ଜନନି ! ଭଲକଥା କହିଲ ମନେ—
'ରେଣୁକାର' ଦଣ୍ଡ ଭାର ଦେଇଥିଲେ ପିତା—
ପୁତ୍ରସ୍କନ୍ଧେ, 'ମୁକ୍ତି' ହିଁ ଦେବାକୁ—ମାତାକୁ
ତାହାର ! ଅଧମ ସନ୍ତାନ ମୁହିଁ—କେଉଁ
ସାଧନାର ଗର୍ବେ ହୁଏ ସମସର;—ମାରି ନିଜହସ୍ତେ
—ତାରିବାକୁ ଶକ୍ତି ନାହିଁ ଯେବେ କି କରିବି ।
ପିତା—ପିତା—( ହଠାତ୍ କେଉଁ କଥା ସ୍ମରଣ
କରି, ଲେଉଟି ) ନା, ନା, ଯେଣୁ ଦଣ୍ଡଭାର—
ଦଣ୍ଡ ଇଚ୍ଛା ସାଥେ ପିତା, ଦେଇଅଛ ପୁତ୍ରେ—
ଏହି ଦଣ୍ଡ ଦେଇପାରେ ଜନନୀକୁ ତା'ର !
( ଅସି ମାତୃପଦତଳେ ଥୋଇ, ପଦରଜ ଗ୍ରହଣ
କଲେ )

ଜେବୁ—ପୁତ୍ର ! ପୁତ୍ର !
( ଲୁଣ୍ଠାଇ ପକାଇଲେ )

ସାଲ—ମା ! ମା !
( ସସବ୍ୟସ୍ତେ ଯେମନ୍ତ ଲାଲବେଗ ପ୍ରବେଶ କଲେ)

ଲାଲ—ଏଁ, ଏ' କଣ, ବେଟା ? ଏ' ପର୍ଯ୍ୟନ୍ତ, କାମ
ଶେଷ ନ କରି—

ଜେବୁ—'ମା, ପୁଅ'ର କାମରେ ତୁମର କାମ
ନାହିଁ, ଜନାବ୍—ତୁମର ଦୁଷ୍ମନର କାମ—

ଲାଲ—ମୋ'ର ଦୁଷ୍ମନର କାମରେ ବି ଯେ ଏହି
ବେଟାକୁ ନେଇ ମୋର କାମ୍ ।

ସାଲ—ଏତେ ସୌଭାଗ୍ୟ କି ହେବ ମୋ'ର, ପିତା—
ରଣେ ଯିବାକୁ ଏଥର, ଲଭିବି ଆଦେଶ ?

ଲାଲ—ଖାଲି ଯିବାକୁ ନୁହେଁରେ !—ସେନାପତି ପଦେ
ଅଭିଷିକ୍ତ—ଅଭିଯାନେ ଏହି !

ସାଲ—(ବୀରକାଏଦାରେ ଅଭିବାଦନ କରୁ କରୁ
ପ୍ରସ୍ଥାନ କଲେ )

ଲାଲ—ଜେବୁ ! ଦେଖିଲତ, କେମିତିକା ବୀର କୁମାର
ମୋ'ର ?

ଜେବୁ—( ସରମରେ ମୁହଁ ଟେକି ପାରିଲା ନାହିଁ )

ଲାଲ—ଲଜ୍ଜା କାହିଁପାଇଁ ? ଏହିପରି ବେଟା ଘରେ
ଥାଏ ଯାର—ସଂସାରେ ଦୁଷ୍ମନ୍ ନାହିଁ କେବେ
ତାର !

ଜେବୁ—ବୁଝି ପାରୁନାହିଁ, ପ୍ରଭୁ—କେମନ୍ତେ ସହିଲ—
କେଉଁ ଧୈର୍ଯ୍ୟ ବଳେ,-ଏତେଟା ଅନ୍ୟାୟ୍ୟ, ଅପରାଧ
ମୋ'ର,-ଗୋଟାଏ କାମୁକା, ବେଶ୍ୟା ହୀନା, ପୁତ୍ର
ଘାତକୀର !

ଲାଲ—(ହସି ହସି) 'ଅନ୍ୟାଯ୍ୟ, ଅପରାଧ' ଏ' ଯଦି
ତୁହି—ମୋର ପ୍ରତି ତବ,—ତତୋଽଧିକ,
ଶତଗୁଣେ, କରିନାହିଁ କି ଗୋ ତବପ୍ରତି ମୁହିଁ ?-
ଜବର୍ଦ୍ଦସ୍ତି—ଜୋକଭଳି—ଯୌବନ ମଦିରା ତବ
ପିଇବା ଲାଳସେ, ଏ' ଜୀର୍ଣ୍ଣ ଶରୀରେ,—କେଉଁ
ଉନ୍ମାଦନା ଭୋଗେ ?

ଜେବୁ—( ସରମରେ ମାଟିସଙ୍ଗେ ମିଶିଗଲେ କି ଅଛ,
ଦୁଇଁଟା ଗୋଡ଼ର ବୁଢ଼ା ଆଙ୍ଗୁଳିରେ ଖୋଳୁଖୋଳୁ)

ଲାଲ—'ଯୁବକ-ଯୁବତୀ'—ରଞ୍ଜକ-ଜ୍ୱାଳାଗ୍ନି ! ପରସ୍ପରର
ମିଳନ ଭାବ, ପ୍ରକୃତି-ସ୍ୱଭାବ !-ଯୌବନର ଧର୍ମ !
ଖାଲି ସମାଜର ଶୃଙ୍ଖଳା ପାଇଁକି—ସଂଯମର ବନ୍ଧ !
ମନୁଷ୍ୟତ୍ୱର ବିକାଶ ଲାଗି—ନିୟମ ବନ୍ଧନ !

ଜେବୁ—ଏ' ଆଲୋକ ଯେବେ, ହେଇଥା'ନ୍ତ କଳ୍ପିତେ ମୃତ୍ୟୁକୁ ଆଗେ— ।

ଲାଲ—ପାଇଲି ଯେ ଚକିତେ ମୁଁ ଆଜ,—ଦେଖି, ନିଜ ସନ୍ତାନର—ବୀରତ୍ୱ, ମହତ୍ତ୍ୱ, ମନୁଷ୍ୟତ୍ୱ ଅନ୍ତରାଳେ ଥାଇ;—ହିଂସାର ଜ୍ୱାଳାରେ ଯେବେ ଜଳୁଥିଲା ଗାତ୍ର—ପ୍ରତିହିଂସା ଖୋଜି ଲୋଡ଼ି ଘୂର୍ଣ୍ଣିତ ମସ୍ତିଷ୍କ ।

ଜେବୁ—ତେବେ କଣ ଆଗରୁ ସନ୍ଦେହ— ?

ଲାଲ—'ସନ୍ଦେହ ଆଗରୁ' କଣ ? ବିଶ୍ୱାସ, ଯେ ଧ୍ରୁବ ବରାବର—ତୁମକୁ ଆଣିବାକାଳୁଁ ?

ଜେବୁ—ଜନାବ୍—ଜନାବ୍—

ଲାଲ—ବିସ୍ମୟର ନାହିଁତ କାରଣ ।—ତୁମେ ନୂଆ ଯାତ୍ରୀ—ଜୀବନର ପଥେ;—ତେଣୁ, ଭାବୁଅଛ ନୂଆ—କିନ୍ତୁ, ପୁରାତନ—ଅତି ପୁରାତନ ସବୁ—ବିଳାସ-ବ୍ୟସନବର୍ଦ୍ଧିତ ଏ' ପରାଣେ ମୋହର ।

ଜେବୁ—( ଉତ୍ତେଜିତ ସ୍ୱରେ ) ଫିଙ୍ଗିଦିଅ—ଫିଙ୍ଗିଦିଅ ଏବେ—ଦୂ-ର—ପ୍ରାସାଦ ବାହାରେ—ବିଳାସ-ବ୍ୟସନଉପକରଣ ଯେତେକ—ଆପଣାର ପୁନ ଗୁଣି ଗୁଣି ।

ଲାଲ—ନ ରହିବ ତଳେ ସୁଦ୍ଧା ଅନ୍ତର ଭିତରେ,—ଏହିଭଳି ଆଶା ବାନ୍ଧିଅଛି ସେହି କାଳୁଁ, ଜାନ୍ ।—ତଥାପି, ତଥାପି—କାନ୍ଦଉଠେ ପ୍ରାଣ୍— ।

ଜେବୁ—କାହିଁକି ? କାହିଁକି ? ବରଂ ଆନନ୍ଦ କରିବା ଉଚିତ । ଏଥିରେ ସମାଜର ହେବ କଲ୍ୟାଣ ସାଧନ ! ମନୁଷ୍ୟର ମନୁଷ୍ୟତ୍ୱ ଲଭିବ ବିକାଶ । ସର୍ବଶେଷେ, ପୁନି ଆମ୍ଭ ନିର୍ବିଷ ହୃଦୟରେ, ନିର୍ମଳ ଜୀବନପଥେ କରିବ ପ୍ରଚାର ।

ଲାଲ—ଚିନ୍ତାଅଛି ଯିନିଭଳି କର, ଏହି ଅବସର ମଧ୍ୟେ—ବୁଝିଅଛି ସବୁ କଥା; କିନ୍ତୁ ଏ' ଶେଷ ଯାତ୍ରାରେ—ତୁମେହିଁ ଜୀବନସାଥି ମୋର ।—ନା, ନା, ଜୀବନୁ ଅଧିକ । ଜାଣେ ନା, ଜାଣେ ନା, ଏହା ଉଦ୍ଦାମ ଲାଲସା—କାମ୍ୟ, ଶୁଦ୍ଧ ପ୍ରେମିକତା ମୋର ।

ଜେବୁ—ତେବେ କଣ—ମୋତେ ବି ଫିଙ୍ଗିଦେବାକୁ—

ଲାଲ୍—ନିରୁପାୟ—ନିରୁପାୟ ହୋଇ, ପ୍ରିୟେ—ତୁମରି କଥାରେ ଯେବେ, ଫିଙ୍ଗିଦେବାକୁ ହେବଟି, 'ବିଳାସ-ବ୍ୟସନ-ଉପକରଣ ଯେତେକ, ପ୍ରାସାଦ ବାହାରେ' !

ଜେବୁ—ନା, ନା, ଅନ୍ତର ଭିତରୁ' ଫିଙ୍ଗିଦିଅ, ତୁମରି କଥାରେ ! ପ୍ରକୃତରେ, ପ୍ରିୟତମ, ମୁହିଁ ଅଟେ ଉପକରଣ ପ୍ରଧାନ, ବିଳାସ ବ୍ୟସନେ ! ଏହି ଗୃହାଣୀ, କଟାକ୍ଷ, ହାସ୍ୟ, ଲାସ୍ୟ—ରୂପର ମଦିରା-ଟଳ ଟଳ ଯଉବନ,—ହେର, ନିକେ ନିଜର ଯେବେକି, ହୁଏ ଛନ ଛନ ମୁକୁର ସ୍ପର୍ଶରେ ।

ଲାଲ୍—( କେଉଁ ମଦୋନ୍ମତ୍ତଭଳି ଧାଇଁ ବୁଲିଲେ ) ନା, ନା, ଯାଉ, ଯାଉ, ଏହିକ୍ଷଣି ସବୁ (କେତେକ ଦ୍ରବ୍ୟ ଫିଙ୍ଗି ଦେଇଁ ଦେଇଁ ଉନ୍ମତ୍ତଭାବରେ, ଜେବୁନିସା ଆଡ଼କୁ ଧାଇଁଆସି ଆକୁଳଭାବେ ) କିନ୍ତୁ, ଜେବୁ—ଜେବୁ—( ବୋଲି, ଆଲିଙ୍ଗନ ପାଶରେ ଅବଦ୍ଧ କରିବାକୁ ଉଦ୍ୟତ ହେଲେ )

( ସେତିକିବେଳେ, ପ୍ରାସାଦ ବାହାରେ ଯୁଦ୍ଧବାଦ୍ୟ ଘନ ଘନ ବାଜି ଉଠିଲା )

ଲାଲ୍—ନା—ନା—ମୁଁ ବୀର ! ବୀର ସନ୍ତାନର ବୀରଜନକ !

ଜେବୁ—ହଁ, ହଁ—ବୀର ମାତା ମୁହିଁ—ବୀର ତନୟର ।

( ସେହି ସମୟରେ ଖୁବ୍ ସାଜସଜ୍ଜା ପୂର୍ବକ ଯୋଦ୍ଧୃବେଶରେ ସାଲ୍‌ବେଗ ପ୍ରବେଶ କରି ଅଭିବାଦନ କଲେ )

ସାଲ୍‌ବେଗ୍—ଦିଅ ଗୋ ବିଦାୟ ।

ଉଭୟେ—ଜୟଯାତ୍ରା କର ବୀର—ବୀର ଜନକ, ଜନନୀ ଆଶୀର୍ବାଦ କରେ ।

( ତେତିକିବେଳେ ଯୁଦ୍ଧବାଦ୍ୟ ଘନ ଘନ ବାଜି ମେଦିନୀ କମ୍ପାଇ )

—ଯବନିକା—

———

# ଦ୍ୱିତୀୟ ଅଙ୍କ

**ଦୃଶ୍ୟ :**—ମୁକୁନ୍ଦପୁର ଗ୍ରାମର ବାଡ଼ଭଳ ଦେଇ ବୋହି ଯାଉଥିବା ନଈକୂଳର ବଉଳ ବଣ ।

( ଗୋଟିଏ ଝାଁକୁଡ଼ା ଗଛମୂଳେ ଭଖାରୁଣୀଟିଏ, ବାଲିର ଗୋପାଳମୂର୍ତ୍ତି ଗଢ଼ି ବଉଳଫୁଲ ଖଞ୍ଜି, ବଉଳ ଫଳ ଭୋଗ ଲଗାଇ, ପୂଜାନିରତା ; ଆଖିରେ, ମୁଖରେ ତା'ର ଟୋଠାଏ ଆଭା ଯେମନ୍ତ ଖେଳି ବୁଲୁଥାଏ । )

ଭଖାରୁଣୀ— ଗୀତ

ଏ' ବଉଳ ଫୁଲ୍‌ହାର କି ସୁନ୍ଦର ଗୋ ।
କି ସୁନ୍ଦର ମହକଇ ବାସ ତାର ଗୋ ।
ଆହୁରି ବାସିବ କିନା—
ସୁନ୍ଦର ହସିବ ସିନା—
ସୁନ୍ଦରେ ସୁନ୍ଦର ଯେବେ ମିଶିବାର ଗୋ ।

( ଖଣ୍ଡେଦୂରରେ ଦୁଇଜଣ ବ୍ରାହ୍ମଣ ଟୋକା ବ୍ୟାପାରଟା ଦେଖୁଥିଲେ ଠିଆହୋଇ )

୧ମ ବ୍ରାହ୍ମଣ—ଦେଖୁଚନା, ଭାଇନା—ବୁଢ଼ୀଟାକୁ ଖୋଜି ଖୋଜି ଆଜି ଭୋଗ କିଛି ମିଳିଲା ନାହିଁ, ଯେ—କଞ୍ଚା ବଉଳ ଫଳ ଗୁଡ଼ାକ ଗୋଟେଇ, ଭୋଗ ଦିଆ ହେଉଚି ।

୨ୟ ବ୍ରାହ୍ମଣ—ଅଲୋ, ବୁଢ଼ି !

ଭଖାରୁଣୀ—( କଟମଟେଇ ଚାହିଁଲା )

୧ମ ବ୍ରାହ୍ମଣ—ମୋ' ବୌଲୋ—ଗିଳିପକାଇବ ନା କଣ ?

୨ୟ ବ୍ରାହ୍ମଣ—ଗଣ୍ଡେ ମୁଢ଼ିଦେବୁ ?—ଭୋଗ···

୧ମ ବ୍ରାହ୍ମଣ—ଦେଖୁଚନା — ଦେଖୁଚନା — ସେହି ବାସ୍ନାଫଳ ଗୁଡ଼ାକ କେମିତିକା ବଡ଼୍ ବଡ଼୍ କରି, ଗ୍ରେବାଇ ମରୁଚି !

୨ୟ ବ୍ରାହ୍ମଣ—ଅଲୋ, ବୁଢ଼ି—ଗଣ୍ଡେ ମୁଢ଼ି—

ଭଖାରୁଣୀ—(ପାଖକୁ ଛୁଟିଆସି) ଆରେ ଅଲୋଇସା— ମୁଁ, ମୁଁ ବୁଢ଼ୀ !—ଦେଖିଲୁ ଅଖିମାଡ଼ !

୧ମ ବ୍ରାହ୍ମଣ—ସତେ, ଭାଇନା—ତୁମର ଅଟୌ ନଜର ନାହିଁ !

୨ୟ ବ୍ରାହ୍ମଣ—କାଇଁଲି ମାନୁଚି, ଭାଇ—କଞ୍ଚା ଷୋଳ-ବର୍ଷର ଭୁଆସୁଣୀଟାକୁ, ମୁଁ ବୁଢ଼ୀ ବୋଲି, ହକାରିଲି—ନା ।

ଭଖାରୁଣୀ—( ଓଢ଼ଣା ଦେବାକୁ ଲାଗିଲା, ଯେହ୍ନେ ଭୁଆସୁଣୀ ଜୀବନରେ କି ଆଉ ? )

୧ମ ବ୍ରାହ୍ମଣ—ଆହା, ଲାଜ ସରମରେ ସେ ଏକା-ବେଳକେ ବୁଡ଼ିଗଲା !

୨ୟ ବ୍ରାହ୍ମଣ—ଯାଃ, ଯାଃ—ସୁନ୍ଦର ପଣ ଯାକତ ବିଲକୁଲ୍ ଲୁଚିଗଲା !

ଭଖାରୁଣୀ—ଫୁଟି ବାହାରିଥିଲା ଯା' ପାଖେ—ତା' ପାଖେ ନା—?

୧ମ ବ୍ରାହ୍ମଣ—ହଁ, ହଁ, ଗହଣା ଗ୍ରାହକ ଏକା ଚହ୍ନିବ ସିନା !

୨ୟ ବ୍ରାହ୍ମଣ—କିନ୍ତୁ ଆଚମ୍ବିତ କଥା, ଭାଇ—ଏ' ଶାସନରେ କି କେଉଁ ଶାସନରେ, ଏ' ରୂପସୀକୁ କେହି ଚହ୍ନି ପାରିଲେ ନାହିଁ ପରା—!

୧ମ ବ୍ରାହ୍ମଣ—ପାରିବେ କାହୁଁ ? ହୋମଧୂଆଁରେ ଆଖି ଆଗେ ଆଖି ହୋଇ ଅଛି ନା ବାହ୍ମଣ ଗୁଡ଼ାଙ୍କର ?

୨ୟ ବ୍ରାହ୍ମଣ—ଠିକ୍ କହୁଚୁ, ଭାଇ—ସେଇଥିପାଇଁ ସିନା ଗଲାଆଁ ଖିଆ ପଠାଣଟାଏ, ଗଲାମାରି, ନେଇ, ଛୁ ବଟେଇଗଲା !

ଭଖାରୁଣୀ—( ହସି ହସି ) କଣ କହୁଚ ମ ଟୋକାଏ ? 'ସୁନ୍ଦରପଣ' ବୁଝିବାକୁ ସୁନ୍ଦରମନ—ପଠାଣ, ବାହ୍ମଣ କ'ଣ ? କାଫେର ଯବନ କ'ଣ ? 'ସୁନ୍ଦର ସମୁଜଇ ଏକା । ହୃଦରେ ସୁନ୍ଦର ଅଙ୍କା ।'

୧ମ ବ୍ରାହ୍ମଣ—କଥାକେ କଥାକେ ତ ଖାଲି କବିତାର ଛନ୍ଦ— !

୨ୟ ବ୍ରାହ୍ମଣ—ଆରେ, ସେହି ଛନ୍ଦ ଯୋଗୁଁ ତ, ବାଗୁଥ୍ଵର ଯେତକେ ଦ୍ୱନ୍ଦ !

୧ମ ବ୍ରାହ୍ମଣ—ଶାଶୁ ଶ୍ୱଶୁର ଭଲା କେମିତକାଁ ଖଦାରେ ପୂରାଇ ଦେଇ ଥା'ନ୍ତେ—?

୨ୟ ବ୍ରାହ୍ମଣ—ବେଲସୁଁ ନେଇ ରନ୍ଧାରେ ମାଡ଼ଦେଇ-ଥିଲେ, କବ୍‌ତା ନା, କବ୍‌ତାର ଚୌଦପୁରୁଷ ଏମିତିକା 'ଲଠା' ମାଡ଼, ଫଟାପଠା ଲଗାଇ ଦେଇଥାନ୍ତା ? ଗୁଲ୍ ଗୁଲ୍—

( ଗୁଲ୍‌ଗଲେ ଉଭୟେ )

ଭିଖାରୁଣୀ—କବ୍‌ତା ! କବ୍‌ତା ! ସୁନ୍ଦର କବ୍‌ତା ! ସେହି ମୋ'ର ଉଡ଼ାଇବା ହଁସା—କରିଅଛୁ, କରୁଅଛୁ ଲୋକହସା—ତଥାପି, ତଥାପି, ସେହି ମୋ' ଆଶା ଭରସା !—

ଗୀତ

ହେ ମୋ'ର କବ୍‌ତା !
ତୁମ୍ଭେ କେଉଁ ଗଗନ ସବ୍‌ତା ?
ଉଡ଼ିଁ ଆସ— ଧାଇଁ ଆସ—
ମୋ' ହୃଦୟ ଦେବତା !
ତୁମେ ଦିଅ ଗୋ ବେଦନା—
ତୁମେ ବୁଝ ଗୋ ଯାତନା—
ତୁମର ସ୍ରୋତେ ମୋ ଜୀବନ—
ତୁମର ସ୍ରୋତେ ମରଣ—
ଯେ ଯା'ଭାବୁ ମନେ—
ଯେ ଯା' କହୁ କ୍ଷଣେ କ୍ଷଣେ—
ତୁମେ ମୋ ଦୟିତା ॥

( ଗାଧୋଇ ସାରି ଫେରି ଆସିଲେ ସେହି ବ୍ରାହ୍ମଣ ଦୁଇଜଣ )

୧ମ ବ୍ରାହ୍ମଣ—ଆହା ! କେଡ଼େ ମିଠା ଗଳା ମ ?

୨ୟ ବ୍ରା—କାହିଁକି, କବ୍‌ତାର ଛଟା ?

୧ମ ବ୍ରା—ପଦେ ପଦେ ଯେମିତିକା ରସର ଛୁଟା !

୨ୟ ବ୍ରା—ଆହୁରି ଶୁଣିବୁ ? ଆଲୋ, କେମିତିକା 'ସୁନ୍ଦରପଣ' ଦେଖି ତୋ'ର, ସେହି ପଠାଣ-ନାଗର ତୋତେ ଧରି ନେଇ ଗଲାଟି !

ଭିଖା—ଠୋଙ୍କାଏ !—ଖାଲି ସେହି କଥା ଫଟାନ୍ତୁ !

୨ୟ ବ୍ରା—ମଜାପାନ୍ତୁ ବୋଲି, ନା ?

୧ମ ବ୍ରା—ହଁ, ଦେଖ କବ୍‌ତା କରି କହୁଛୁଟି—?

ଭିଖା—( ଘୁରି ଖୁସିରେ, ଯଥା ଅଙ୍ଗଭଙ୍ଗି କରି )

'ଏକେ ବ୍ରାହ୍ମଣୀ ଦୁଜେ ପୁବା ।
କେ କହିପାରେ ତାର ଶୋଭା ॥
ଚମ୍ପକ ପୁଷ୍ପ ପରି କାନ୍ତି ।
ମୁକୁତା ଶ୍ରେଣୀ ଦନ୍ତପନ୍ତି ॥'

୧ମ ବ୍ରା—ଅହା, ଝରୁଛୁକା ସିନା ବିଲ୍‌କୁଲ୍ 'ପାକୁଆପାଟି'—

୨ୟ ବ୍ରା—ବନ୍ଦକର ନା ପାଟି—

ଭିଖା—( ପୂର୍ବାନୁକ୍ରମରେ )

'ସୁନାସା ସୁନ୍ଦର କପାଳ । ବଦନ ଚନ୍ଦ୍ରମା ମଣ୍ଡଳ ।'

୧ମ ବ୍ରା—ହାୟ ! ଏ' ଜଉଁସିଆ ରାତରେ ଆଜ ମାଲୁମ ପଡୁନାହିଁ ସିନା !

୨ୟ ବ୍ରା—ଜୁଆରଟା ତୋ'ର ବନ୍ଦକର୍ କିନା !

ଭିଖା— 'ନେତ୍ରକୁରଙ୍ଗ ଶୋଭା ଜିଣି ।
ଅପୂର୍ବ ଭଙ୍ଗିମା ଗୃହିଣୀ' ॥

୧ମ ବ୍ରା—ଏବେ ବି ଦେଉଚି ଖଣ୍ଡ ଖଣ୍ଡ କରି ହାଣି ।

୨ୟ ବ୍ରା—ତୋ'ର ବେକପଣ୍ଟାବି ଦେଉଚି ଗୋଟା-ମୁଣ୍ଡା ହାଣି ।

ଭିଖା— "ଅଞ୍ଜନୁ ବଳି କେଶ ଆଭା ।
ବାହୁ ଯୁଗଳ ଦିବ୍ୟ ଶୋଭା ॥"

୧ମ ବ୍ରା—ଆହା ! 'ଗଭା'ଟା ଯା' ଖାଲି ନାହିଁ ।

୨ୟ ବ୍ରା—ରମ୍ଭା ଭଳି ଦେଇ ନାହୁଁ ତ ଗିଲ ?—ମାଙ୍କଡ଼—ରହନା— !

ଭିଖା— "ହୃଦୟ ଭାଗ ଅତି ଉଚ୍ଚ ।
ଶ୍ରୀଫଳ ଜିଣି ବେନି କୁଚ ॥"

୧ମ ବ୍ରା—'ଶ୍ରୀଫଳ' କ'ଣ, ଭାଇନା ?

୨ୟ ବ୍ରା—ଏହିଥର ଅକଲ୍ ଗୁଡୁମ୍ !—ଗଣ୍ଡ—!

ଭିଖା—"କଟି କ୍ଷୀଣ ତା କହି ନୋହେ ।
ଶୋଭାରେ ଜନମନ ମୋହେ ॥"

୧ମ ବ୍ରା—ମୁଁ ଗଣ୍ଡ ! ଅଚ୍ଛା, ଶୁଣ୍ ଟେଣିକି—
"ଏମନ୍ତ ନାରୀ ନଦୀକୂଳେ ।
ଭିକ୍ଷା ତା ଜୀବନ ବିକଳେ ॥

ଏମନ୍ତ ବେଳେ ଲଲବେଗ ।
ଆସି ମିଳିଲା ତା'ର ଆଗ ॥
ଦେଖିଣ ଅତ୍ୟନ୍ତ ସୁନ୍ଦରୀ··· ···
··· ··· ତା'ପର—ତା'ପର—

୨ୟ ବ୍ରା—ହୋଃ—ହୋଃ—( ହସି ଉଠିଲି )

ଭଖା—"··· ··· ··· । ମଦନଶରେ ହେଲା ଘାରି ॥"

୨ୟ ବ୍ରା—ହେଲରେ ଓଲ୍—

୧ମ ବ୍ରା—ପଇଟିଗ—ପଇଟିଗ—ଶୁଣ—ଶୁଣ—
"ବଳେ ଧରିଲା ତା'ର ଭୁଜ ।···

୨ୟ ବ୍ରା—ପାଟି ଏଥର ବୁଜ—

ଭଖା—"··· ··· ··· । ମୃଗୀକୁ ଯେହ୍ନେ ମୃଗରାଜ ।"

୨ୟ ବ୍ରା—କାରେ ମୂର୍ଖ । ଯେ କବି ସେ କବି—ଶ୍ଳେଷକର କେହୁ କେବେ ହେଲଣି, ନା ହବ ?—

୧ମ ବ୍ରା—ଅଚ୍ଛା, ହଉ, ପକାନ ପଦ ?—
"ବସାଇ ଅଶ୍ୱର ଉପରେ । ·········"
( ନେପଥ୍ୟେ ଅଶ୍ୱପଦ ଶୁଣାଗଲା—ବହୁତ ଅଶ୍ୱାରୋହୀଙ୍କର)

୨ୟ ବ୍ରା—ବେଗେ ପଳେଇ ଅ'ରେ—ଆରେ—

୧ମ ବ୍ରା—ମୋ' ବୌଲେ—( ଉଭୟେ ଦୌଡ଼ି ପଳାଇଲେ )

ଭଖା—( କେଉଁ ପୂର୍ବ ସ୍ମୃତିରେ ଭୁଆସୁଣୀ ଭଳି ଆପଣାକୁ ଲୁଗୁଇବାକୁ ଲାଗି ଲି ପୂର୍ବପରି )
( ସାଲବେଗ ଧୀରପଦେ ପ୍ରବେଶ କଲେ. )

ସାଲ—ସେହିଠାରେ ରହ ସବେ—

ଭଖା—( ଓଢ଼ଣୀ ଫିଙ୍ଗିଦେଇ କେଉଁ ଉତ୍ତେଜନାରେ ) —ମୁହିଁବି ନ ଡରେ ଶବେ ।

ସାଲ—( ସାଶ୍ଚର୍ଯ୍ୟେ ଚାହିଁ ରହିଲେ )

ଭଖା— "ମୋ ଜାତି ଅଜାତି ବିଚାର ।
ନାହିଁ ନାହିଁ କେଉଁ ବିଚାର ॥
ଯେବେ ଦେହ ଯା ଇଚ୍ଛାକର ।
ମୋ'ଗୋପାଳେ ନ ଛୁଅ କର ॥
( ସେହି ବାଳର ଗୋପାଳକୁ ଆଡୁଆଳ କରି ଠିଆହେଲା )

ସାଲ—ମା । କିଛିତେ ନ ଡର—

ଭଖା—'ମା' ।—

ସାଲ—ସୁନ୍ଦର ଛୋଟା ଦେଖି, ବିଶ୍ରାମ କରିବାକୁ ଏହି ଗଛ ତଳକୁ ଧାଇଁ ଆସିଥିଲି, 'ମା—ତୁମର 'ଗୋପାଳ' ଏଠି ଅଛନ୍ତି ବୋଲି ତ ଜଣା ନ ଥିଲା ମୋତେ—ତୁମର 'ଗୋପାଳେ' ନେଇ ନିରାପଦେ ରହ, ମା—ହେଉଚି ମେଲାଣି ।—

ଭଖା—କିଏ ? କିଏ ତୁମ୍ଭେ ? ଏ' ଭଳି ସୁଧାଭରି 'ମା' ଡାକତ କେବେ ଶୁଣି ନାହିଁ ? ସେହି ଥିଲା ଦିନେ— (ବିହ୍ୱଳା)

ସାଲ—ମା । ମୁଁ ଛାର ଯବନ ମାତ୍ର—

ଭଖା—ନା, ନା, ତୁମ୍ଭେରେ 'ଗୋପାଳ' ମୋ'ର—ଯବନର ବେଶେ— ।

ସାଲ—ନା, ମା—ପ୍ରକୃତରେ ମୁଁ ଯବନ । ମୋ'ର ନାମ—

ଭଖା—'ଗୋପାଳ' ।—'ଗୋପାଳ' । ଯା' ବିହ୍ନେ ମୁଁ ପାଗଳ । 'ଯବନ, ଅଯବନ' ବୋଲି ଭଣ୍ଡାଉଚ କାହିଁ ?

ସାଲ—'ସତ୍ୟ' ଛଡ଼ା 'ଅସତ୍ୟ' କେବେ ମୁଁ କହେ ନାହିଁ, ଜନନୀ ।

ଭଖା—ମୋ'ର ଗୋପାଳ' କି କେବେ କହିପାରେ ରେ, ବାପ ?

ସାଲ—ଶ୍ରଦ୍ଧା ଯେଉଁ ଭଳି—ଡାକ ଗୋ, ଜନନୀ—ହେଉଚି ମେଲାଣି ।—

ଭଖା—'ମେଲାଣି', ଜନନୀ କେବେ ଦେଇପାରେ କି ସନ୍ତାନେ ?

ସାଲ—ଅସମ୍ଭବ ମଣ, ମାତା—ହାଃ—ହାଃ—ହାଃ—ମୁହିଁ ପରି ଜ୍ୱଳନ୍ତ ପ୍ରମାଣ ତା'ର—ମାତାର ଅବହେଳିତ ସନ୍ତାନ ।
( ଚାଲି ଯାଉଁ ଯାଉଁ ଗୋଟାଏ ଆବେଗରେ ପୁଣି ଫେରି ଆସି )
କ୍ଷୋଭ ନାହିଁ ସେଥିଲାଗି ମୋ'ର ।—କ୍ଷୋଭ ଏତିକି ମାତ୍ର,—କେବେ ନାହିଁତ ଚାହିଁଲା—ସନ୍ତାନ ହୋଇଣ—ନ ନେଇ ସନ୍ଧାନ କାହିଁକି, ଜ

ବୁଝି ବାରତା,—ଗର୍ଭଧାରଣୀର ମୋ'ର ? ଆଚ୍ଛା,
ମା—ଏ' ଗ୍ରାମର ନାମ ମୁକୁନ୍ଦପୁର ନା ?
( ଜଣେ ସୈନ୍ୟ ବେଗେ ପ୍ରବେଶ କଲା )
ସୈନ୍ୟ—ଶତ୍ରୁ ଆସୁଛ ପାଇଛୁ ସନ୍ଧାନ ।
ସାଲ—ଚୁପ୍—ଯାଅ ନିଜ ସ୍ଥାନ ! (ସୈନ୍ୟ ଚାଲିଗଲା)
ଭିଖା—ହଁ ରେ, ବାପ—ଏହିପରି ମୋ'ର ଜନ୍ମସ୍ଥାନ।
ସାଲ—ବେଶ୍, ତା'ହେଲେତ ତୁମେ ଜାଣିଥିବ ନିଶ୍ଚେ,
ସେହି ଯେ ଆଜକୁ ବ୧୫।୨୦ର୍ଷ ତଳେ ଭାରି ଯୁଦ୍ଧ ଲାଗିଥିଲା, ସେତିକି ବେଳେ ଏ ଗାଁର ଗୋଟିଏ ସୁନ୍ଦରୀ ନାରୀକୁ—
ସୈନ୍ୟ—ଏହି ଶୁଣିଲୁ ଗୋଳମାଳ !
ସାଲ—'ଗୋଳମାଳ' ମତ୍ କରୋ !···
(ସୈନ୍ୟ ପୁଣି ଚାଲିଗଲା)
ଭିଖା—ଓଃ, ସେଇକଥା ପଚାରୁଚୁ ?—ଶୁଣ୍, ଶୁଣ୍, କ'ଣ ହେଲା ତେଣିକି ।—
"ବସାଇ ଅଶ୍ୱର ଉପରେ ।
ସେ ନାରୀ ଦଇବ ସୁମରେ ॥
ଯେତେକ୍ଷଣ ଚଳାଗଲା ବେଗେ ।
ସମସ୍ତ ସୈନ୍ୟଙ୍କର ଆଗେ ।"
ସାଲ—କିଏ—କିଏ ସେ ପୁରୁଷ, ମା ?
ଭିଖା—ଆରେ, ସେଇ-ସେଇ ମ—ଛ, ତା' ନା' ଧରିବ ନା ?
ସାଲ—ଆଚ୍ଛା, ବେଶ୍, କହ ଯା'—କହ ଯା' ତେଣିକି—
ଭିଖା—"ତା'ପୁର ଦେଖି ସେ ଯୁବତୀ ।
ଅତି ସନ୍ତାପେ ମଥାପୋଡି ॥
ନୟନୁ ଅଶ୍ରୁଧାର ଗଳେ ।
କାନ୍ଦ ଗଡ଼ଇ ମହୀତଳେ ।"
ସାଲ—'ମା' !—
ଭିଖା—"ତା' ନିଜ କୁଟୁମ୍ବ ସୁମରି ।
ବୋଲଇ ଦେବି ପ୍ରାଣହାରି ॥
ତାହା ସେ ଦେଖିଣ ପଠାଣ ।
ସେ ନାରୀଚରଣ ଧରଣ ॥"
ସାଲ—କିଏ, କିଏ ସେ ପଠାଣ, ମା ? ନାମ କି—?

ଭିଖା—ଶୁଣ୍ ନା ଆଗେ—
"ଅନେକ ଅଳଙ୍କାରମାନ ।
ତା' ଅଙ୍ଗେ କଲାକ ମଣ୍ଡନ ।
ଚିକ୍କଣ ବସନ ପିନ୍ଧାଇଲା ।
ନାନା କୁସୁମେ ବେଶ କଲା ॥"
ସୈନ୍ୟ—ଏହି ଶୁଣିଲୁ, ଜନାବ୍—ବନ୍ଧୁକର ଶବ୍ଦ—
ସାଲ—ବନ୍ଦ୍—ବନ୍ଦ୍‌କରୋ—ତା' ପର, ତା' ପର'ମା—
ଭିଖା—"ନାନା ବିନୋଦେ ମନମୋହି ।
କୁଟୁମ୍ବେ ଦେଖାପାସୋରାଇ
ଏମନ୍ତେ କେତେ ଦିନ ଗଲା ।
ସେନାରୀ ପୁତ୍ର ପ୍ରସବିଲା ।
ସୈନ୍ୟ—ଅତି ନିକଟରେ—ଅତି ନିକଟରେ ଶତ୍ରୁ !
ସାଲ—ଦୂରେ—ଦୂରେ ଦୂରକରୋ—ବୋଲ, ବୋଲ, ମା—ତା'ପରେ କ'ଣ ହେଲା—ତା'ପରେ—
( ସୈନ୍ୟ ଚାଲିଗଲା ବ୍ୟସ୍ତଭାବେ )
ଭିଖା—"ପୁତ୍ରକୁ ଦେଖି ··· ···
ସାଲ—( ଆଉ ରହି ନ ପାରି ) ··· ···ଲାଲ୍‌ବେଗ ।"
ଭିଖା—ହଁ, ହଁ ରେ ବାପ,···"ତା' ନାମ ଦେଲା ସାଲ୍‌ବେଗ ।"
ସାଲ—ଠିକ୍ କହିଚ, ମା—'ସାଲ୍‌ବେଗ' ! କହ, କହ ବେଗ, ତୁହି ଜାଣୁ ସବୁ ଗୁପ୍ତବାଣୀ—କହ, ଦୟାକରି, କାହିଁ, କାହିଁ ସେହି 'ସାଲ୍‌ବେଗ ଜନନୀ' ? କି ହେଲା ତା'ର ?
( ଏଥର କୋଳାହଳ ନିକଟରେ ଶୁଣାଗଲା )
ସୈନ୍ୟ—ଆଉ ରକ୍ଷାନାହିଁ, ଜନାବ୍—
ସାଲ—ଦଣ୍ଡେ, ଦଣ୍ଡେ ଅପେକ୍ଷା—ଯାଏଁ ମୁହିଁ ଜାଣି—
ଭିଖା—ଆରେ, ତୁ'ଟା ଭାରି ବୋକା ତ ?—ମୋ'ର 'ଗୋପାଳ' କିଏ ଆଉ 'ସାଲବେଗ' କିଏ ?
( ସୈନ୍ୟ ଚାଲିଗଲା ନିକଟରେ ଭାରି କୋଳାହଳ ଶୁଣାଗଲା )
ସାଲ—( ସମସ୍ତ କୋଳାହଳ ଡୁବାଇ ଉଚ୍ଚସ୍ୱରେ ) ତେବେ—ତେବେ—ତୁହି କି ମୋର ସେହି ଅଭାଗୀ ଜ—ନ— ?

( ଯାଉଥିଲେ ଭିଖାରୁଣୀକୁ କୁଣ୍ଢାଇବାକୁ ଲାଲ-
ବେଗ ସେହିକ୍ଷଣି ପଛିଆସି କାନ୍ଧରେ ହାତଦେଲେ)

ଲାଲ—ସାଲବେଗ ! କି କର ଗୋଟାଏ ସ୍ଥିର
ଭିଖାରୁଣୀ ସଙ୍ଗେ—?

ସାଲ—'ଭିଖାରୁଣୀ' । କିଏ ଭିଖାରୁଣୀ ? କା'କୁ
ଭିଖାରୁଣୀ, ଆଜ, ପିତା—?·········

( ବିକଟ ଚିତ୍କାର କରି ଉଠିଲେ, କେଉଁ
ବିଦ୍ରୋହର ଉତ୍ତେଜନାରେ )

ଲାଲ—ସେନାପତି ତୁହି ! ଅଗଣିତ ଶତ୍ରୁସେନା !
ଆସିଛନ୍ତି ମୁଁ ପଳାଇ— !

ସାଲ—'ପଳାଇ' !—

( ବେଗେ ଚାଲି ଯାଉଥିଲେ ସେହି ଉତ୍ତେଜନାରେ
ଲେଉଟି )

ଭିଖା—ସାଲବେଗ !—( ଧୈର୍ଯ୍ୟ ଆଉ ରଖି,ନ ପାରି )

ସାଲ—ମା !—ମା ଗୋ !—(ଲେଉଟି ଆସୁଥିଲେ )

ଭିଖା—ନା, ନା—ଫେରି—ଫେରି—ଯୁଦ୍ଧ—ଯୁଦ୍ଧ
—ପିତୃକାର୍ଯ୍ୟ ଆଗେ କର ସମାଧାନ !

ସାଲ—( ଅବନତ ମସ୍ତକରେ ଅଭିବାଦନ ପୂର୍ବକ
ଫେରିଗଲେ ବୀର ଦର୍ପେ )

ଲାଲ—( ଅଳ୍ପ ଅଳ୍ପ ହସି କହିଲେ ) ତୁହି—?

ଭିଖା—କିନ୍ତୁ, ଭିଖାରୁଣୀ ନୁହେଁ ମୁହିଁ, ରାଜା—ସେହି
ରାଜରାଣୀ—ପ୍ରାସାଦେ, କାନନେ—ତୁମରି
ପ୍ରସାଦେ !

( ପଦଧୂଳି ଗ୍ରହଣ କଲେ )

—ଯବନିକା—

---

# ତୃତୀୟ

**ଦୃଶ୍ୟ :—ପ୍ରାସାଦ**

( ଜେବୁନିସା ଫୁଲ ଧେ
ଥିଲେ—ସଙ୍ଗରେ ସହଚରୀ

ସହଚରୀଗଣ— ଗୀତ

କି ହେବ ଏ ଫୁଲତୋଳା, ଯେବେ
କି ହେବ ସେ ମାଳଗୁନ୍ଥି, ଯେବେ ଗ
ଅକାରଣ ଗନ୍ଧସାର—
କାରବାର ନ ହେଲେ ତା
ପିନ୍ଧି ହୁଏ ଅକାରଣ, ଯେବେ ନ ରହେ
ସେ ଜୀବନେ କି ହେବ ଗୋ, ଯେବେ ବା

( ଲାଲବେଗ ହଠାତ୍ ପ୍ରବେଶ କଲେ, ୧

ଲାଲ—ଠିକ୍ କହିଚ, ରଙ୍ଗିଣୀଗଣ—
"ସେ ଜୀବନେ କି ହେବ ଗୋ,
ଯେବେ ବାସନା ନ ଥିବ ।"

ଜେବୁ—( ବ୍ୟସ୍ତ ସମସ୍ତ ହୋଇ ସ୍ଥାନ ତ୍ୟାଗ କରି
ସଙ୍ଗିନୀ ମାନଙ୍କ ସଙ୍ଗେ )

ଲାଲ—( ହାତଧରି ) ନା, ନା, ସେ'ପରି ପଳାଇ
ଆଉ ଦେବି ନାହିଁ—ଆମେ ଢେର୍ ଲୁଚି
ଖେଳ ଖେଳିଲୁଣି—ସେଥିରେ ବାସନାଟା
ଦିନୁ ଉଛୁଳି ଉଠି, ଏବେ ଘାରି, ପାଗଳ
ହେଲାଣି ସିନା ।

ଜେବୁ—ଜନାବ୍ ! ଏ' ପ୍ରାସାଦର ବାହାରେ—
ପରିତ୍ୟକ୍ତ କୋଣରେ ସୁଦ୍ଧା, ସ୍ଥାନ କଣ ନାହିଁ
ଏ ବାନ୍ଦୀର ?

ଲାଲ—ଏବେ ଯେ ପୁଣି ଅନ୍ତଃପୁରେ ସ୍ଥାନ ଦେବାକୁ
—ନା, ନା, ଏହି ଅନ୍ତରର ପୁଷ୍ପବନେ ଚିରବନ୍ଦୀ
କରି ରଖିବାକୁ, ଧାଇଁ ଆସିଚି, ମେରି ଜାନ୍ !

ଜେବୁ—ଏ କି ଭାବ ପରିବର୍ତ୍ତନ ଆଜି, ପ୍ରିୟତମ ?

ହଁ, ପ୍ରିୟତମେ—ଖବର
...ସରେ ମୁଁ ତାଡ଼ ଡଡ଼
ଆସିଚି ।—ଆଜି ଯଶୋମାନ
...ଗେ ଖଣ୍ଡ ବିଖଣ୍ଡହୋଇ,
...ଶୁ ସଙ୍ଗେ ମିଶିଯିବାକୁ ପଡ଼-

ନାହିଁ ପ୍ରହେଳିକା ଭୁମ୍ଭର,

କଥା କହ, ପ୍ରହେଳିକା ଯେ ମୁଁ
ଦେବାକୁ ଧାଇଁ ଆସିଚି, ଜାନ୍—
କଣ, ପୁଣି ସେହି ବିଳାସ
ଅଙ୍ଗ ଢାଳିଦେବାକୁ ଉପଦେଶ
ପ୍ରସ୍ତୁତମ୍ ।
ଅଙ୍ଗ ନୁହେଁ ଖାଲି, ପିଆରେ,—ଜାନ୍,
ସହିତେ ।—ଏ’ ଦୁନିଆ, ସେ ଦୁନିଆ,
ଗୁଲ୍ ଗୁଲ୍ ଜାର କର—। ହାଃ—ହାଃ—
-ମୁଣ୍ଡ ବୋଧହୁଏ ଭୁମ୍ଭର—
ଠିକ୍ ନାହିଁ ? ହଁ,—ହଁ,—ବେଠିକ୍ ଥିଲି, ଜାନ୍
—ଯେତେଦିନ ଯାଏ,—କାହିଁକି ଏହି ମୁହୂର୍ତ୍ତ
...ଏ,—ତୁମେ କ’ଣ କରୁଥିଲ, ତୁମେ ଜାଣୁ ନ
ଥିଲ—ଆଉ ମୁଁ କଣ କରୁଥିଲି, ମୁଁ ଜାଣୁ ନ
ଥିଲି ?—

...ଲୁ—ଏ’ କ’ଣ କହୁଚ, ଜାନ୍ ? ମୁଁ ତ କିଛି ବୁଝୁ
ନ ଥିଲି ?

...—( ହସି ହସି ) ଏହି ଫୁଲ୍ ତ ତୋଳୁଥିଲ ?—

...ଲୁ—ଫୁଲ ତୋଳିବା କଣ ଗୋଟାଏ କାମ
ଭିତରେ ?

ଲାଲ—ଆଦୌ ନୁହେଁ, ମେରିଜାନ୍ ( ହସି, ହସି )
ଡେବେବି ଡେବେବି ଖୁବ୍‌କାମ୍ ନୁହେଁ କି ?

ଜେବୁ—ଖୁବ୍‌କାମ୍ !

ଲାଲ—‘କାମ’ର କରାମତିଟାକୁ, ତା’ର ଅନ୍ତରେ,
ଅନ୍ତରେ ଥରେ ନିରଖି ଦେଖନା ?—

ଜେବୁ—ଆପି ସନ୍ଦେହ ବାନ୍ଦୀକୁ, ଜନାବ !—

ଲାଲ—ସନ୍ଦେହ ? ଧ୍ରୁବ ବିଶ୍ୱାସ । ଏ ଯେ ଧ୍ରୁବ
ସତ୍ୟ । ଏତା ଯୁବତୀ ଜେବୁନ୍ନିସା ନୁହେଁ—
ଲମ୍ପଟୀ ଲାଲବେଗ ନୁହେଁ—ଯୁବକ, କର୍ତ୍ତବ୍ୟ-
ନିଷ୍ଠ ସାଲବେଗ ନୁହେଁ—ସେହି, ସେହି ତାଡ଼ିତା
ଉପେକ୍ଷିତା ଧର୍ମପରାୟଣା ଭିଖାରୁଣୀ ସାଲବେଗ-
ଜନନୀ ମଧ୍ୟ ନୁହେଁ—ନା, ନା, ଦୁନିଆର ସ୍ଥିର
ପିମ୍ପୁଡ଼ିଟି ପର୍ଯ୍ୟନ୍ତ ନୁହେ,—ଯେ କି କାମର
ଶରରେ ଘାରି ନ ହୋଇ ରହିବ !—ଦଣ୍ଡେ
ପାଇଁ ସୁଦ୍ଧା କାମନାଶୂନ୍ୟ ହୋଇ ରହିବ ।
ବାସ୍ତବରେ, ଜେବୁ—ଜୀବନଟା ଜୀବନ୍ମରଣ
ତୁଲ୍ୟ, ଯେବେ କାମନା ବାସନା ନ ଥାଏ ।
ତୁମେ ଆଜି ଉଦାସୀନା, ମୃତକଳ୍ପା—କାମନାକୁ
ମାରି ରଖିଚ ବୋଲି ସିନା ।

ଜେବୁ—( ଶିହରି ଉଠିଲେ ଏହି ଶେଷ ପଦରେ )

ଲାଲ—ଚମକିବାର ତ କାରଣ କିଛି ନାହିଁ ?—ମୁଁ ବି
ଆଜି ଗୋଟାଏ ପ୍ରେତ ପରି ଘୂରି ବୁଲୁଚି,—
ହାଓ୍ୱାରେ ମିଶିଗଲିଚି, କାମନାକୁ ଆପଣାକୁ
ହୃଦେ ହୃଦନ୍ତରେ ରଖିଚି ବୋଲି ସିନା । କହିଲ,
କହିଲ କି କଷ୍ଟ—ଯେବେ ଦେଖି, ଦେଖି
ପାରୁ ନ ଥାଇଁ—ଛୁଇଁ, ଛୁଇଁ ପାରୁ ନ ଥାଇଁ—
ପିଇ, ପିଇ ପାରୁ ନ ଥାଇଁ !

ଜେବୁ—କିଛି ମୁଁ ସମୁଜି ପାରୁନାହିଁ, ଜାନ୍—
( କପଟ ଅଶାନ୍ତଶ୍ୱାସି ହୋଇ ଉଠିଲେ )

ଲାଲ—ସମୁଜିବ ଗୋ ସୁନ୍ଦରି—ଅଧର ସୁଧାଟି ଆଗେ
କରିଲ ମୋତେ ଦାନ୍ ( କୋଳକୁ ଭିଡ଼ିନେଇ )
—ଆଣି ପାନି, ଢାଳ ମଦ—କର ଫୁର୍ତ୍ତି—
ଲାଲବେଗ ମୁଁ—ଲାଲ ହୁଏ ;—ଦୁନିଆଟାକୁ
ଜୀବନ-ମରଣକୁ, ଲାଲ ଗୁଲାଲ୍ କରିଦିଏଁ ।
( ରଙ୍ଗିଣୀଗଣ ରଂ ବେରଂର ସୁରାପାତ୍ର ଆଣି, ଗାଇ
ଗାଇ ସୁରା ଯୋଗାଇବାକୁ ଲାଗିଲେ )

ଗୀତ

କୈସେ ମଏଁ ଦିନ୍ ଗୁଜାରୁ,
ଭିଆଲମେ ‘ପିଆ’ନ ହର ।

ସୁରତ୍ ସେ ପୟଦା ହୁଆ—
ସୁରତ୍ ମେ ଚଲ୍‌ତି ଦୁନିଆ—
ସୁରତ୍ ମେ ସୁରତ୍ ଲଗାନା,
ମାଲିକ୍ କା ଐସି ଫିକର ।

ଲାଲ— କେୟାବାତ୍—ହାଃ—ହାଃ—
"ମାଲିକ୍ କା ଐସି ଫିକର"—
ନାଓ—ଲାଓ, ପିଓ—ପିଲାଓ—
"ସୁରତ୍ ମେ ସୁରତ୍ ଲଗାନା"—
( ଜେବୁନ୍ନିସାକୁ ପିଆଇ ନିଜେ ପିଇଲେ )

ଜେବୁ—ଆଃ—ଏତେ ଅଳ୍ପ—ଅଳ୍ପ—

ଲାଲ—ନା, ନା, କଲ୍ପ—କଲ୍ପ—ପିଆଲା ଭର, ଜ ଭର, ପିଆସା ମେଣ୍ଟାଇ,—ମଦ୍—ମଦ୍—

ଜେବୁ—ଟିହ୍‌କା—ଟିହ୍‌କା ।—

ଲାଲ—ଟିହ୍‌କାରେ ଅଣାଇବା, ଜାନ୍—ବାସି ମଦରେ କି ନିଶାହୁଏ ? ଲାଓ, ଟିହ୍‌କା—ଟିହ୍‌କା—
( ଜଣେ ଖୋଜା ନୂଆ ନୂଆ ମଦର ବୋତଲ୍ ଓ ଖାନା ଧେନି ପ୍ରବେଶ କଲା ନାଚି ନାଚି)

ଖୋଜା— ଗୀତ

ଟିହ୍‌କା ସରାପ୍ ଟିହ୍‌କା କବାବ୍ ।
ଲୟାହୁଁ ଔରବି ଟିହ୍‌କା କବାବ୍ ॥

୧ମ ରଙ୍ଗିଣୀ—ଟିହ୍‌କା ଜମର୍ ଯଉବନ୍ ମେରା—
୨ୟ ,, —ଟିହ୍‌କା ସୁରତ୍ ଖେଲ୍‌ତି ପୂରା
ଖୋଜା ଓ ସଙ୍ଗିନୀଗଣ } ଟିହ୍‌କା ଲାଓଜି, ଟିହ୍‌କା ପିଓଜି, ଟିହ୍‌କା ରଖ୍‌ନା ଆପନି ରେୟାବ୍" ।

ଲାଲ୍—ମେର ଦିଲ୍‌କି ବାତ୍—
"ଟିହ୍‌କା ରଖ୍‌ନା ଅପନି ରେୟାବ୍ ।"
କେଉଁ, ମେରଜାନ୍—ସବୁବେଳେ ଖାଲି, ଟିହ୍‌କା—ଟିହ୍‌କା, ନା ?

ଜେବୁ—ଆଃ, ଲାଗୁଚି ଯେ ଭାରି ଗହ୍‌କା !
(ବିରକ୍ତ ଭାବ ଦେଖି ନର୍ତ୍ତକୀଗଣ ଚାଲିଗଲେ)

ଲାଲ—ଅହ୍‌କା—ଅହ୍‌କା ।

ଜେବୁ—ନା, ନା—ଏତେଟା ମାତ୍ଲାମି ଭଲ ନୁହେଁ, ଜାନ୍—

ଲାଲ—ମଏଁ ଭାବି ଭୁକ୍‌ଖା – ଭୁକ୍‌ଖା, ବିବିଜାନ୍—

ଜେବୁ—କିଏ କହିଥିଲା ଶୁକ୍‌କା ରହିବାକୁ ?

ଲାଲ—ଯିଏ କହିଥିଲା ତୁମକୁ !

ଜେବୁ—କିନ୍ତୁ, ମୁଁ ତ ତୁମଭଳି ଝାଉ ଝାଉ ହେଉନାହିଁ ?

ଲାଲ—ହାଃ ହାଃ-ହ'ବାର କି ଜୁ ଅଛି—ତୁମେ ଯେ ଭରପୁର ଗୋଲାପ୍—ଛପି ଛପି କେତେ କେ କରୁଚି ଆଲାପ୍—

ଜେବୁ—କଣ ? ( ରଙ୍ଗା ପଡ଼ିଗଲେ )

ଲାଲ—( ହସି ହସି ) ଟିକିଏ ବି ନୁହେଁ 'ଅପଲାପ' ।—ଆଉ ମୁଁ ! ଫରସ୍ତାର ବୁଲ୍ ବୁଲ୍ ।—ଏ' ଗୁଲ୍ ରୂପରେ ଯେ ଏକଦମ୍ ମଜ୍‌ଗୁଲ୍ !
( ସେହି ଗଣ୍ଡଦେଶରେ ସୁଅଗଭୀର ଆଘାତଟିଏ କଲେ )

ଜେବୁ—ଭୁଲ—ଭୁଲ—

ଲାଲ—ନୁହେଁ ଆଉ ବାଙ୍କ୍ ଏକ୍‌ଚୁଲ୍ !—ଗୋଲାପ୍‌ଟି ଯେ ମୋ'ର କରୁଚି, ଡୁଲ, ଡୁଲ—

ଜେବୁ—ତା'ପର୍—

ଲାଲ୍—ଫର୍‌ର୍—

ଜେବୁ—ତା' ଆଗରୁ ଯଦ—

ଲାଲ— କରିଦିଏଁ ହଲାର୍— ?

ଜେବୁ—( ଭୟରେ ଥର ଉଠିଲା )

ଲାଲ—ହାଃ-ହାଃ—ଆରେ, ସେହିତ କଦର ତୋ'ର-ସେଇଥି ପାଇଁତ ଏତେ ଆଦର ମୋ'ର—

ଜେବୁ—ଜାନ୍—ଜାନ୍—ମେରାଜାନ୍—
ଗୀତ

ତୁହି ମେରା ଜାନ୍—ତୁହି ମେରା ପ୍ରାନ୍—
ନକରୋ ନକରୋ—ମୁଝେ ହଏରନ୍—

ଲାଲ—କଭିନେହିଁ—ଏ'ଜାନ୍ ଯାନେସେ ଭି ନେହିଁ—

ଜେବୁ— ଗୀତ

ହାମ୍ ହୋଏଙ୍ଗେ ଯୁଗ ପୟାକାର୍
ତୋ'ର ପାଓଁମେ ରହି ବରାବର୍—

ଲାଲ—ନେହିଁ—ନେହିଁ—ଇଧର୍—ଇଧର୍—
( ଆପଣାର ପିଠି, ମୁଣ୍ଡ ଦେଖାଇଥାନ୍ତି )

ଜେବୁ—"ବିଶ୍ୱାସ" କରୋଜି—ତୁହି ମେରାଜାନ୍—ତୁହି ମେରା ପ୍ରାନ୍—
( ପାଦତଳ ଚୁମ୍ବନ କଲେ )

ଲାଲ—ଛି, ଛି—(ତାରସ୍ୱରେ) "ତୁହି ମେରା ଜାନ୍—ତୁହି ମେରା ପ୍ରାନ୍" ( ବକ୍ଷୋଦେଶରୁ ଜେବୁର, ଛୁରିକାଟିଏ ଅଜ୍ଞାତସାରେ ତା'ର କାଢ଼ି ଆଣି, ଦେଖାଇଲେ )

ଜେବୁ—( ସଭୟେ ଦେଖି, ଗୋଡ଼ତଳେ ପଡ଼ି ) ଜନାବ-ଜନାବ୍—

ଲାଲ—ଆଃ, ରସ ଭଙ୍ଗ ହେଲା ଯେ, ଜାନ୍—ଏ' 'ନୟନା କଟାକ୍ଷ ଆଗରେ ଯେ ତୋ'ର, ଏ' ଛଟାକ୍ଷ ଅତି ଛାର—

ଜେବୁ—ଜନାବ୍—ଜନାବ୍—ବାନ୍ଦୀକୁ—

ଲାଲ—କ୍ଷମା ! ଛି, ଛି—ତା' ହେଲେ ତୋ'ର ରସ ବିଲ୍‌କୁଲ୍ ମରିଗଲାଣି—ଅରସିକା, ଅନ୍ୟରସିକା ମୋତେ—

ଜେବୁ—ନିରାଶ୍ କରନା, ଜନାବ୍—

ଲାଲ—କେମିତିକା ଉଲ୍‌ଟା କଥା ମ ? ମୁହିଁ ଯେ ହେଉଚି ହତାଶ—( ଛୁରିକା ପୁନର୍ବାର ଯଥା ସ୍ଥାନରେ ଗୁଞ୍ଜି ଦେବାକୁ ଲାଗିଲେ )

ଜେବୁ—ନା, ନା—ଆଉ—

ଲାଲ—ଆଃ—ଏଇଟା ଯେ ଭାରି ଦରକାର—ପ୍ରେମିକାଟି ଖୋଲିବାକୁ ରସିକର ଗୁପ୍ତ ଭଣ୍ଡାର ଦ୍ୱାର—

ଜେବୁ—ନା, ନା, ମୋ'ରଭ ଆଉ କିଛି ଗୁପ୍ତ ନାହିଁ ?

ଲାଲ—'ଲୁପ୍ତ' ନିଶ୍ଚେ ଥିବ—ତା' ନ ହେଲେ ସେହି କାଫେର ସ୍ତ୍ରୀଟା ଭଳି ତୁଚ୍ଛ ହେବ ସିନା ।—

ଜେବୁ—ତେବେ—ତେବେ—ମୋ'ର ତଡ଼ା ଖାଇବାର ଡ଼ର ଭୟ ନାହିଁ ତ ?—ବଳ ବୟସ ହଟିଗଲେ ମଧ ?—

ଲାଲ—କିନ୍ତୁ, ସେ ଯାଏ ଅଟ୍‌କିଲେତ ? ଫୁଟ୍‌କି ମାର କା' ସଙ୍ଗେ ଛୁଟ୍ ନ କଲେତ ?

ଜେବୁ—ତଥାପି ସନ୍ଦେହ ?—

( ତେଙ୍କିକା ବେଳେ ଜଣେ ନିପଣ୍ଡ କଳା ଭୁସୁଣ୍ଡାକୁ ଶୃଙ୍ଖଳାବଦ୍ଧକରି ଖୋଜାମାନେ ଘେନି ଆସିଲେ )

ଲାଲ—'ବିଶ୍ୱାସ'—'ବିଶ୍ୱାସ' କରଚି, ଜାନ୍—ଏହି' ଭଅଁରଟିକୁ ଦେଖିଲ ଦିନୁ—

ଜେବୁ—( ଛୁରିକା ବାହାରକରି ଘେନିଗଲେ ହତ୍ୟା କରିବାକୁ )

ଲାଲ—( ଅଟକାଇ ) ଆଃ—କରୁଚ କଣ ? ଏ'ମିତିକା ଭଅଁର ନ ଥିଲେ, ଗୋଲାପର କଦର ବୁଝିବ କିଏ ଭଲା ? ଗୁଣ୍ ଗୁଣ୍ କରି ଗୁଣ ତା'ର ଗାଇ ବୁଲିବ ଗୃହଅଡ଼େ କିଏ ଭଲା ? ଛି—ଛି—ଉଡ଼ାଇ ଦିଅ—ଭୁତାଇ ଦିଅ—ଭୂତହୋଇ ସେ ପାଖେ, ପାଖେ—ଦୂରେ, ଦୂରେ—ବୁଲୁଥାଉ,—ଗୁଞ୍ଜପଠେ ଭ୍ରମର,—ଭଁ, ଭଁ କରି । ( ମୁକୁଳାଇ ଦେଲେ—ସେ—ଦୌଡ଼ି ପଳାଇଲା ଧାବମାନ ହୋଇ )

ଜେବୁ—( ବଲ୍ ବଲ୍‌କରି ଚୁହିଁ ରହିଲେ )

ଲାଲ—ଏ' ଦୁନିଆର ମାଲିକ୍ କା ଝୀସି ଫିକିର, ବିବିଜାନ୍ ! ଦୁନିଆରେ, ବିଷ ବି ରହିବ, ଅମୃତ ବି ରହିବ, ଲାଲବେଗ ବି ରହିବ, ସାଲବେଗ ବି ରହିବ, ଜେବୁନିସା ବି 'ରହିବ, ଆଉ ସେହି ସାଲବେଗ ଜନନୀ ଭିଖାରୁଣୀ ବି ରହିବ । ଏକ ନ ରହିଲେ, ଅନ୍ୟର କଦର ବୁଝାଯିବ କିପରି କହିଲ ? ତା'ପରେ, ଯେ ଯା'ର ସେ ତା'ର ଧର୍ମ ପାଳିବା ଉଚିତ ନୁହେଁ କି ? ରସିତା, ସତୀ ହେଲେ ପ୍ରଣୟର ମାଧୁରୀ ରହିବ କି ? ଲମ୍ପଟୀ, ବ୍ରହ୍ମଚର୍ଯ୍ୟ ହେଲେ ନିୟମର ତାତ୍ପର୍ଯ୍ୟ ରହିବ କି ?

ଜେବୁ—ମୋତେ କ୍ଷମାକର, ଜାନ୍—ଆଉ ମୁଁ ସେ ସବୁ କଥା ମରିଗଲେ ସୁଦ୍ଧା ମନରେ ସ୍ଥାନ ଦେବି ନାହିଁ ।

ଲାଲ—ଉଁ ହୁଁ—ତା' ହେଲେ ତ ଚଳିବ ନାହିଁ—ତୁମେ ଚୁଲି ଚୁଲି ଯାଉଥିବ, ମୁଁ ଏହି ଭଳି ଚୁଲିଯିବାକୁ ଦେଉ ନ ଥିବି—ତୁମେ ଛାଡ଼ି ଛାଡ଼ି ଯାଉଥିବ, ମୁଁ ଏହି ଭଳି ଛାଡ଼ି ଦେଉ ନ ଥିବି—ତା'ହେଲେ ସିନା—

ଜେବୁ—ରସର କଥା କହୁଚ, ଜାନ୍—କିନ୍ତୁ ଏହିପରି ଲୁଚକାଳି କେତେଦିନ ଖେଳୁଥିବା, ଜାନ୍ ?

ଲାଲ୍—ଯେତେଦିନ 'ଆଲ୍ଲା, ଅନ୍ଧାର'-'ସୁଖ, ଦୁଃଖ'
ଏହିପରି ଖେଳ, ଖେଳୁଥିବ, ଏହି ଦୁନିଆରେ,
ଜାନ୍ !

ଜେବୁ—ବେଶ୍, ବେଶ୍—ଖେଳ, ଖେଳ—ରସର
ଝରଣା ଖୋଲିଦିଅ—

ଲାଲ୍—ତାଳ, ତାଳ—ଜୀର୍ଣ୍ଣ, ଶୀର୍ଣ୍ଣ ପ୍ରାଣେ ଏହି
କର ଢଳ ଢଳ,—ସରସ ଉଜ୍ଜ୍ୱଳ ।
( ରଙ୍ଗିଣୀଗଣ ଆସି ନାନାରଙ୍ଗେ ଖେଳ ଖେଳ ଗାଇଲେ )

ରଙ୍ଗିଣୀଗଣ— ଗୀତ ।
ଖେଳିବା ଆମେ ଗୋ, ଆସ ଲୁଚକାଳି ।
କେତେ ମଜା ଜାଣେ, ତହିଁ ଖେଳୁଆଳି ॥
୧ମ ରଙ୍ଗିଣୀ—ମୁଁ ହେବି ଗୋ ଚୋର
୨ୟ ରଙ୍ଗିଣୀ—ମୁଁ ଲୁଚିବି ଖର
୧ମ ରଙ୍ଗିଣୀ—ଖୋଜିବି ଘର ଘର
୨ୟ ରଙ୍ଗିଣୀ—ଲୁଚିବି କେଉଁ ସହର
ସମସ୍ତେ—ଚାଲିଥିଲେ ଏହିଭଳି ଲୁଚୁ-ଖୋଜା,
ଉଠୁଥିବ ଖେଳ-ମଜା ଭଲି, ଭଲି ॥
( ଲାଲବେଗ ଓ ଜେବୁନିସା ସେହି ଖେଳରେ
ଯେମନ୍ତ ମଜଗୁଲ୍ ହୋଇ ଯାଇଥିଲେ )
( ସାଲବେଗ ପ୍ରବେଶ କଲେ ଗୋଟାଏ
ଉତ୍ତେଜନାରେ ଚାଲିବାର ଶକ୍ତି ନ ଥିଲେ ମଧ୍ୟ—
ହବିବ୍‌କୁ ପେଲି ପକାଇ ଦେଲେ ସାମନାକୁ ।
ଦେହରେ ତା'ର ପଟି ସବୁ ଗୁଡ଼ିଆ ହୋଇଥାଏ—
ଯୁଦ୍ଧରେ ଅସ୍ତ୍ରାଘାତ ଯୋଗୁଁ ଘା' ହୋଇ ଯାଇ
ଥିବାରୁ )

ସାଲ୍—ବାବାଜାନ୍ !—ଏହି ଯେ ମା !
( ଯଥା ସମ୍ମାନ ପ୍ରଦର୍ଶନ କଲେ )
ମୁଁ ହବିବ୍‌ର ଜାନ୍ ଆଜି ନେବି ।
ହବିବ୍—ଦୋହାଇ, ହୁଜୁର—ଜନାବ୍ ଆଲି—
ସାଲ—ପାଜି !—ଶୂଅର !—
( ପୁଣି ମାରିବାକୁ ଧାଇଁଲେ )
ଲାଲ୍—ହାଁ, ହାଁ—କଥା କ'ଣ—କଥା—

ସାଲ—ବାବାଜାନ୍ । ସେ କଥା ମୁହଁରେ ଧରିବାର
ନୁହେଁ—ଆପଣଙ୍କ, ପିତାଙ୍କ, କହିବା ତ ଦୂରର
କଥା—

ଲାଲ—ହାଁ ଏତେ ଖରାପ୍ କଥା ! ତେବେ—ତେବେ,
ତ—

ସାଲ—ଶୁଣିବାର ହେଲେ ମଧ୍ୟ, ଶୁଣାଇ ପାରିବି ନାହିଁ,
ବାବାଜାନ୍ । ମା' ଶୁଣିଲେ—

ଲାଲ—ମୂର୍ଚ୍ଛାଯିବେ ?—ତେବେ ତ ଅଦ୍ଭୁତ ଶୁଣିବାର
କଥା—

ଜେବୁ—ବୋଲ୍, ବୋଲ୍, ବେଟା—କ'ଣ ସେ ପାଜି
କରିଚି, କହୁଚ ? ଓଃ, ମୋ'ର ଆଜି ଏ'
କେତେଦିନ ହେଲା ଆଦୌ ହୋଉନାହିଁ—
ବେଟାର ଖବର ନେବାକୁ । ବୋଲ, ବୋଲ,
ବେଟା କଣ କରିଚି କହୁଚି, ସେ ବଦ୍‌ମାସ୍—
ଶୂଅର—

ସାଲ—ତା'ର ନିଜ ମୁହଁରୁ ଶୁଣ, ମା—ମୁଁ କହି ପାରିବି
ନାହିଁ—ବୋଲ ନା, ପାଜି—ନ କହିବୁ ତ
ତୋ'ର ଜାନ୍—

ହବିବ୍—ଜନାବ୍—ଜନାବ୍—
( ବିକଳଭାବେ ଲାଲବେଗକୁ ଚାହିଁଲା )

ଲାଲ—ମୁଁ କ'ଣ କରିବି, ହବିବ୍—ତୋ'ର କସୁରର
ଭୁଲି ମାଫି—

ସାଲ—'ମାଫି' ଦେବନାହିଁ । ମାଫ୍ କରି ପାରିବି
ନାହିଁ ।

ହବିବ୍—( ଲାଲବେଗ ଆଡ଼େ କାତରତା ପୂର୍ଣ୍ଣ ଦୃଷ୍ଟିରେ
ଚାହିଁ )
ଜନାବ୍—ଜନାବ—ମୋତେ ଫସାଇ ଦିଅନ୍ତୁ
ନାହିଁ—ମୁଁ ନିମକ୍-ସଚା ଚାକର ଆପଣଙ୍କର—

ସାଲ—କେଉଁ ଅମଳରେ ଥିଲୁ—କିନ୍ତୁ ବର୍ତ୍ତମାନ,
ନିମକ୍-ହରାମ୍—ନିମକ୍-ହରାମ୍—

ହବିବ୍—ହଁ, ହଁ,—ମୁଁ ତାହାହିଁ ହେବି—ଏହି
ମୁହ୍, ଭିତ୍ତ—ଦୁନିଆକୁ ସାକ୍ଷୀ କରି ! ସାହାଜାଦା,
ଶୁଣନ୍ତୁ, ଏ' ନଫର ଜନାବଙ୍କ ହୁକୁମ୍ ତାମିଲ୍
କରିଚି ମାତ୍ର—

ସାଲ—'ଜନାବଙ୍କ ହୁକ୍କୁମ୍' ! ପିତାଙ୍କର !—
ମୋତେ, ମୋତେ, ପୁଅକୁ—ଠିକ୍ ବାତ୍ ବୋଲ,
ପାଜି—ନୋହିଲେ—ନୋହିଲେ—
( ବେକ ଚିପି ଦେବାକୁ ଲାଗିଲେ )

ହବିବ—ହାଁ—ହାଁ—ଜନାବଙ୍କୁ ସାକ୍ଷୀ କରି—
ଜନାବଙ୍କ ମୁହଁ ଉପରେ କହୁଚି, ସାହାଜାଦା—
ଜନାବଙ୍କ ହୁକୁମ—

ସାଲ—ଘରୁ ତଡ଼ି ଦେବାକୁ !—ପିତା—ପିତା—
( ମୂର୍ଚ୍ଛିତପ୍ରାୟ ହୋଇ ପଡ଼ିଗଲେ )

ଲାଲ—ଆଃ ( କି ଗୋଟାଏ କୋଲାହଳ ମର୍ମ ଭିତରେ
ଅନୁଭବ କରୁ କରୁ ଦୂରକୁ ଘୁଞ୍ଚିଗଲେ )

ସାଲ—(ସକାତରେ) ସତେ, ସତେ, ପିତା—ତଡ଼ି
ଦେବାକୁ ହୁକୁମ୍—ତୁମର ପୁଅକୁ ଏହି ?
ଯୁଦ୍ଧେ ପିତୃ ପ୍ରାଣ ରକ୍ଷି, ଲଭିଚି ସଗର୍ବେ ଏ'
ଦଶାକୁ ଯେହୁ ? ଆହୁରି, ଆହୁରି, ପିତା—ନ
ଆଣେ ସ୍ୱପ୍ନେ ବି ଯେହୁ ମାତୃସ୍ମୃତି ଭୁଲେ—ମାନ
ତବ, ଏହି ପିତୃସ୍ନେହ ହୋଇଲେ କହ, ପିତା,
କେଉଁ ପ୍ରାଣେ ବିସର୍ଜିଲେ ହେଲେ ? ସେତ
ସତ୍ୟକଥା—ହରି ମନୋବ୍ୟଥା—ଦେହ ବ୍ୟଥା
ବଳି ଏବେ ବ୍ୟଥିତ ପରାଣ !—

ଲାଲ—ହବିବ୍ ହବିବ୍—(ଜେବୁନ୍ନିସାର ବକ୍ଷୋଦେଶରୁ
ଛୁରିକା ନେଇ ମାରିବାକୁ ଧାଇଁ ଯାଇ ) ନା,
ନା—ଏହି ନେ ମୋ'ର ମୁଦ୍ଧ ପୁରସ୍କାର !

ହବିବ୍—ନା, ନା, ମୋତେ ମାରି ପକାଅ—ମାରି
ପକାଅ—ସେହି ଛୁରିରେ ମୋତେ ପୁରସ୍କାର
ଦିଅ,—ମୁଁ ମୁନିବର ଗୁପ୍ତ କଥା ଫାଁକ୍ କରିଚି—
ମୁଁ—

ଲାଲ—( ସମ୍ଭାଳି ନ ପାରି ) ପିତାର କଲିଜା ଫାଡ଼ି
ଫାଙ୍କ୍ କରି ଦେଇଥିଲେ ବି ଆଜି, ଏତେ ବ୍ୟଥା
ଦେଇ ନ ଥା'ନ୍ତୁ ରେ ପାଷଣ୍ଡ—
(ଗୋଇଠା ମାରି ତଡ଼ିଦେଲେ—ହବିବ୍ ଗୁଳିଚଲା
ବୋକା ଭଳି)
ପୁଅ ! ପୁଅ !—ନା, ନା—ଜେବୁ, ଜେବୁ—
( ହାତ ଧରି ଗମନୋଦ୍ୟତହେଲେ )

ଜେବୁ—(ଏତେବେଳ ଯାଏ କାଠିପିତୁଲା ପାଲଟି
ଯାଇଥିଲା) ନା, ନା—ମୋ'ର ବେଟାକୁ ଛାଡ଼ି,
ମୁଁ—

ଲାଲ—ବେଟା ! ବେଟା !—ହାଃ, ହାଃ—ଛୁଅଁ ନା,
ଛୁଅଁ ନା-ଖାଲି ଘା' ଘା'—ପୂଜ, ରକ୍ତ—ପୋକ
ସାଲୁବାଲୁ !

ଜେବୁ—ତେବେ ବି, ମୋ'ର ବେଟା !—ସେହି ବୀର
ବେଟା !—ଛୁଇଁବି, କୁଣ୍ଢାଇବି, ଚୁମ୍ବ ଖାଇବି—

ଲାଲ—ହାଃ—ହାଃ ଦିନେ ଖାଇବ—ଦୁଇଦିନ
ଖାଇବ—ତା'ପର — ତା'ପର—ଘିନ୍ ଘିନ୍
ହେବ—ନାକରେ ହାତ ଦେବ—ମୁହଁ
ମୋଡ଼ିବ—ଏହି ଭଳି ତଡ଼ିଦେବ ନା, ନା—
ବୋଧହୁଏ ମନେ ମନେ ଖୋଜି ବୁଲିବ, ନା,
ନା—ଆପେ ଯାଇ ନିମନ୍ତ୍ରଣ କରି ଘେନି ଆସିବ,
ଦୁନିଆ ସାରା କାଜି ସାଗ୍ରଣା, ବିଲୁଆ କୁକୁରଙ୍କୁ;
ମଡ଼ାର ଚନ୍ଦ୍ରମ ସୁଦ୍ଧା ଆଖି ଆଗେ ଯେପରି ନ
ରହେ—ପୂତିଗନ୍ଧର ହାଓ୍ୟା ସୁଦ୍ଧା ନାକରେ
ଯେପରି ନ ବାଜେ— !

ସାଲ—ଚେତା ମୋ'ର ଆସିଚି, ପିତା—ନିର୍ଦ୍ଦୟ,
ନିଷ୍ଠୁର ବୋଲି ପିତାଙ୍କୁ ମୋ'ର, ଅନ୍ତରଭରି
ଧିକ୍କାର କରୁଥିଲି—କିନ୍ତୁ, ବୁଝିଲି, ବୁଝିଲି—
ପିତା ମୋର' ପ୍ରକୃତରେ ପୁଅ ବତ୍ସଳ—ଏପରି
ପିତା ଦୁନିଆରେ ଦୁର୍ଲ୍ଲଭ ! ହାୟ ! ଏ' ଦୁର୍ଦ୍ଦଶା
ମୋର, ରକ୍ତମାଂସ ଶରୀରରେ ସହ୍ୟକରି ପାରିବେ
ନାହିଁ ବୋଲି ସିନା, ଏ'ଭଳି ଆଦେଶ ଦେବାକୁ
ବାଧ ହେଲେ ! ସେ'ଦିନ ମୋ'ର ଗର୍ଭଧାରିଣୀ
ଜନନୀ ପାଇଁ, ମନେ ମନେ ଭାରି ରୁଷ୍ଟ ହୋଇଥିଲି,
ପିତା—ଶେଷେ ଭିଖାରୁଣୀ କରି ତଡ଼ିଦେଲି,
ସମସ୍ତ ସମ୍ପଦ ତା'ଙ୍କର ଲୁଟି କରି ନେଇ ସିନା;
କିନ୍ତୁ, ପିତା ଏ'କ୍ଷଣି କେତେ ତୁଷ୍ଟ ମୁହିଁ, ଭାବି,
କେଉଁ ସୁଦୂର କଳ୍ପନା ବଳେ, ଏହି ମହତ୍ କାର୍ଯ୍ୟ
କରିଗଲେ ଆପଣ ! ମୋ'ର ଜନନୀ, ସର୍ବସ୍ୱ ହରାଇ
କେଉଁ ଅସାର ସୁଖର ଅଧିକାରିଣୀ ଆଜି !
କେଉଁ ସୁଖର ଶୃଙ୍ଗରେ ଅଧିରୋହଣ କଲେଣି ସେ

ଧନ—ମୋତେ, ପିତୃକାର୍ଯ୍ୟରେ ନିଯୋଗ କରି ଦେଇ, ବୀରଦର୍ପେ 'ପୁତ୍ରକୁ ନଜର' ଯୁଦ୍ଧଯାତ୍ରା କରିବାକୁ ଦେଖିଲେ ଯେତେବେଳେ ! ସେହି କଳ୍ପନାରେ, ଏବେ ସୁଦ୍ଧା ସେହି ଭଳି ସୁଖାମୃତ ପାନ କରୁଥିବେ ଆବଶ୍ୟ ଭାଇ ପିତା !

ଲାଲ—(କାନେ କାନେ) ଶୁଣୁଚ ତ—କେଉଁ ସଉତୁଣୀ କଥା କହୁଚି ସେ—ସଉତୁଣୀ ପୁଅ କି କେଜାଣି, ଆପଣାର ହୁଏ, ନା ହ'ବ ?

ଜେବୁ—ଉଃ—ଭାସି ଗନ୍ଧ । ଶ୍ୱାର ଗନ୍ଧ !—ପଳାଇ ଆସ—ପଳାଇ—

ଲାଲ—ମୁଁ ତ ସେବୁଁ କହୁଛି (ଜେବୁନିସାର ହାତଧରି ଚାଲି ଯାଉଁ ଯାଉଁ) ବେଟା—ନା—ନା—ମଦ ! —ବେଶ୍ୟା !—ଫୁର୍ତ୍ତି !—( କେଉଁ ଦୃଢ଼ ଭାବରେ ଯେ ଚାଲିଗଲେ ! )

ସାଲ—( ଦମ୍ଭଧରି ଠିଆହୋଇ ) ସେହିପରି-ସେହିପରି ଫୁର୍ତ୍ତି ଦେଇଯାଅ ପୁନି ପ୍ରାଣେ ପିତା—ସେହିପରି ସେହିପରି ଦମ୍ଭନିର୍ବିକାର ଭାବ ! ( ସ୍ୱସ୍ଥକାୟ ଭଳି ପ୍ରସ୍ଥାନ କଲେ)

ବିପରୀତଦିଗରୁ ଭିଖାରୁଣୀ ଗାଇ ଗାଇ ପ୍ରବେଶ କଲା )

ଭିଖାରୁଣୀ— ଗୀତ ।

କେତେ ଲୁଚକାଳି ଖେଳୁଚରେ, ଗୋପାଳ ।
ଫନ୍ଦାରେ ପକାଇ ତୁ ଓଟାଉଚ କାଳ ।
କେତେ ରଙ୍ଗେ ତୁ ଜାଗ୍ରତରେ ଖେଳି—
କେତେ ଢଙ୍ଗେ ତୁ ନାଚୁଚରେ ଢଳି—
କରେ କରତାଳି ଦେଉଛି ମୁଁ ତାଳ—
ବେଶୁ ବାଇ କରୁ କାଳ ।

(ଆପଣାଭାବରେ ବିଭୋର ହୋଇ ନାଚୁଥିଲା ତାଳ ଦେଇ । ଦୁଇଜଣ ଲୁଙ୍ଗିପିନ୍ଧା ମଦୁଆ ଢଳି ଢଳି ପ୍ରବେଶ କଲେ)

୧ମ ମଦୁଆ—ବାଃ—ବେଶ୍ ମାତାଲ୍ ହୋଇଗଲ !—

୨ୟ ମଦୁଆ—ଅରେ, ଅଧୁରି ପିଇ ନା !—ଅଧୁରି ନାଚିବୁ ଢଳି ଢଳି ! ଏ' ଘର କଡ଼ା ସରାପ୍ !

୧ମ ମଦୁ—ଲିଭଯିବ ଭସ୍ମା—ବିଲ୍‌କୁଲ୍ ଚାପ୍ !

ଭିଖାରୁଣୀ—ତେବେତ ମୁସ୍କିଲ୍—ବିଲ୍‌କୁଲ ସନ୍ନିପାତ ଯେ ଘଟିଯିବ, ବାପ୍—

୨ୟ ମଦୁ—ହୋଃ—ହୋଃ—ସନ୍ନିପାତ୍ କଟାଇବାର ଯେ ଏକମାତ୍ର ଫାନ୍ଦ୍ !

ଭିଖା—ତେବେତ ମୋ'ର ସନ୍ନିପାତ ଘଟିନାହିଁ, ଗୁନ୍ଦ୍ ! ( ମଦୁଆମାନେ ଅପ୍ରସ୍ତୁତଭାବେ ପରସ୍ପରକୁ ଚାହିଁଲେ ଫାଁକାଦୃଷ୍ଟିରେ କ୍ଷଣକାଳ )

୧ମ ମଦୁ—ମେରେ ବିବିଜାନ୍—ଏ' ଥଣ୍ଡାକୁ ଗରମ୍ କରେ—ଗରମ୍‌କୁ ବି ଥଣ୍ଡା କରେ—

୨ୟ ମଦୁ—(ସୋତ୍ସାହେ) ଐସି କରାମତ !—ହାଁ—

ଭିଖା—ସ୍ୱାକ୍ ଥୁ—ଥୁ—ଥୁ—'ଐସି କରାମତ' ତୁମର ମଦର ?—ଗରମ୍‌କୁ ଗରମ୍ କରିପାରେ ନାହିଁ ?

୧ମ ମଦୁ—ହାଁ, ହାଁ—ଗରମ୍‌କୁ ଖୁବ୍ ଗରମ୍ କରିପାରେ—ଧୂଆଁ ନିକାଲ୍ ଦିଏ—କିନ୍ତୁ ଥଣ୍ଡାକୁ ତ ଥଣ୍ଡା—

୨ୟ ମଦୁ—ଅରେ ଗଦ୍ଧେ କା ପଠ୍‌ଠେ—ଥଣ୍ଡାକୁ ଥଣ୍ଡା କରିଦେଲେ ତ, ମସ୍ତ ହୋଇଯିବ ଏକାବେଲେକେ ଚିତ୍‌ପାତ୍—

ଭିଖା—ଅରେ, ତା'ହେଲେ ତ ଆଉ ନ ଥାଏ ଚିତ୍‌ପାତ୍—

୧ମ ମଦୁ—କିଆ ବାତ୍ ! ତୋଠେଇଁ କଣ ସେମିତିକା ମଦ ଅଛି, ଧନମଣି ?

ଭିଖା—ଅରେ, ବାପ—ସେଇ ମଦ ପିଇତ, ନିଶାରେ ବେସୁର ହୋଇ ଦଣା ହରାଇ ବୁଲୁଚି,—ଦିନ ନାହିଁ, ରାତ ନାହିଁ—ଦେଶ ନାହିଁ, ବିଦେଶ ନାହିଁ—ଜୀବନ ନାହିଁ, ମରଣ ନାହିଁ—?

୧ମ ମଦୁ—ଏଁ—ଏକାବେଲେକେ ଅମର୍ ନା କଣ ?

ଭିଖା—ଦେଖୁନାହଁ ?—ଅମରାବତୀର ସ୍ୱପ୍ନରେ ଯେ ମୁଁ ଏକାବେଲକେ ବିଭୋର !—

୨ୟ ମଦୁ—ଅରେ ଦୋସ୍ତ !—ଏ' କାଫେରଟା ସେହି ମଦର କଥା କହୁଚିରେ—ଯା' ନା'ହି—ସୁଧା—

୧ମ ମଦୁ—କିଆ ବୋଲ୍‌ତା, ଗଧା—ଇନ୍ଦର୍‌ଜି ପିଇକେ ଯିସ୍‌କୁ, ହୁଇକୋ ସାଥ୍ ବନା ।

୨ୟ ମଦୁ—ହାଁରେ ଦୋସ୍ତ—ଗୁନ୍ଦ୍ ଲେକେ ଦେତା, ସିସ୍‌ସେ ପିଆଲା କର୍‌କେ ଭର୍‌ପୁର୍—
୧ମ ମଦୁ—ଦୋଗେ, ଦୋଗେ, ଯେର୍—ସେଲମ୍—ସେଲମ୍, ହଜୁର୍—
ଭଖା—'ଯେର୍' କାହିଁକରେ ?—ଜାଅ ଯେତେ ଇଚ୍ଛା, କରପାନ ପ୍ରାଣ କର 'ଭରପୂର' !—
୨ୟ ମଦୁ—ଯେର୍ ସବୁର୍ !—ଆଗେ, ବୋତଲ ଗିଲାସକୁ କହୁଁ ଏହ ଗଦ୍ଧଅ ମାଲ୍ ହୁର—
ଉଭୟେ—( ଆପଣା, ଆପଣାର ବୋତଲ ଗ୍ଲାସ ଖାଲି କର ) ଦେଖୋଜି, ମାଲିକ, ମେହେର୍ବାନ୍, ପିଆଲା ସବୁ ଏକଦମ୍ ଖାଲି—
ଭଖା—ବେଶ୍—ବେଶ୍, ଭାଇ, ଅଲ୍—!
୧ମ ମଦୁ—ଦେ, ଦେ ମୋତେ ଆଗେ ( ଆପଣାର ବୋତଲ ଗ୍ଲାସ ଦେଖାଇ )
୨ୟ ମଦୁ—ନାହିଁ, ନାହିଁ—ମୋତେ ଆଗେ—
( ସେହିପରି କଲା )
ଭଖା—ଆଃ, ଆଖିବୁଜ—ପାଟି ବୁଜ—କାନ ମେଲି-କର ମୋ' ପାଖକୁ ଲଗି ଆସିଲେ ହବନା ?
ଉଭୟେ—( ପରସ୍ପର ପ୍ରତି ) ଏ' କଥାବାର୍ ରେ ?
ଭଖା—ଆରେ ଓଲୁ—କଣ୍ଠା କଡ଼ା ମଦ ପିଇଲାବେଳେ କ'ଣ କର ତୁମେ ଓସ୍ତାଦ୍ !
୧ମ ମଦୁ—ଠିକ୍ ଠିକ୍—ଆଁଖ୍, ମୁଖ୍, ସବ୍ କୁଛ୍ ବନ୍ଦ୍ କର୍‌ନେ ହୋତା ସାହେବାନ୍
( ମୁହଁ ବିକୃତାକରି ଠିକ୍ ମଦ ଟୋକିଲା ଭଳି )
୨ୟ ମଦୁ—ଆରେ, ପି ଲେଲିଆନା, କିଆ ?
(ସେହିପରି କଲା)
୧ମ ମଦୁ—ମଗର୍, ବବ୍‌କାନ୍—
୨ୟ ମଦୁ—ହଁ, 'ମଗର ବବକାନ୍'—
ଭଖା—ବୁଝୁ ଚୁରେ, ମଗର, କୁମ୍ଭୀରମାନେ—ତୋଳୁ ତୋଳୁ ସେ କଥା କହୁଯାଏ, ଏହ କଥାନା ?
୧ମ ମଦୁ—ଅପ୍‌ତୋ ହୁସିଆରନା—ଆପକୁ ହାମ୍‌ସି ସବ୍‌କୁଛ୍ ମାଲୁମ୍, ନାନା !
୨ୟ ମଦୁ— ହିମ୍‌ତୋ ହାମ୍ ସେ ବେମାଲୁମ୍, ଜାନା—
ଭଖା—ଆରେ, ସେଇଥି ପାଇଁତ କାନ ମେଲିକରି, ପାଖକୁ ଆସିବାକୁ କହୁଚି—

୧ମ ମଦୁ—ଏଁ, କାନ୍ ସେ କିଆ ପିନେ ହୋତା ?—
୨ୟ ମଦୁ—ଆରେ ଗଦ୍‌ଧେକା ପଠ୍‌ଠେ—ଏ' ଯେ କାଫେର୍ କା ମଦ୍—ସୁଧା !
୨ମ ମଦୁ—'ସୁଧା'—'ସୁଧା' !—ଢାନ୍‌ମେ ଢାଲ୍ଲେଜି, ସିଧା—
( କାନ ଦେଖାଇଲା, ଆଖି ବୁଜି, ପାଟି ବୁଜି )
୨ୟ ମଦୁ—ତୁମ୍ ଗଧା !—ଗଧା ! ଖାନେ କାନ୍‌ତା ଖାଲି ବାଧା—
( ଗୋଟାଏ ବାଧାମାରି, ଆରପାଖକୁ ଯାଇ, ପାଟି ବୁଜି, ଆଖି ବୁଜି, କାନଦେଖାଇ ଠିଆହେଲା )
୧ମ ମଦୁ – ( ଇଙ୍ଗିତରେ ବୁଝାଇଦେଲା, ସେ ଏହିପରି ସିଧାହୋଇ ଠିଆ ହୋଇଥିବ, ପାଟି ବୁଜି, ଆଖି ବୁଜି, ଯା' କରି ପଛକେ )
ଭଖା—( ପ୍ରଥମର କାନପାଖେ )

ଗୀତ

ହରିନାମ ସୁଧା ବିନା—
(୨ୟର କାନପାଖେ) ସୁଧାଅଛି କି ଏ' ଭବେ ?
୧ମ ମଦୁ—ଆରେ କିଆ କିଆରେ, ପଗଲି—ଫସାଦ୍‌ଆରେ ଫସାଦ୍‌ଆରେ—
୨ୟ ମଦୁ—ଓଲୁକା ପଠ୍‌ଠେ ବନା ଦିଆରେ—
ଉଭୟେ—( ସକ୍ରୋଧେ ) ପଗ୍‌ଲି !– ଭସ୍କୁ ଯବ୍ – ( କିନ୍ତୁ, ମଦବୋତଲ ଶୂନ୍ୟଦେଖି ) ଆରେ ଚୂନାକାଲି ଲଗା ଦିଆରେ – ଚୂନାକାଲି – !
( କହୁ କହୁ ଚାଲିଗଲେ )
ଭଖା – ଅପ୍‌ସୋସ୍ କରନା, ଭାଇମାନେ-ଥରେ ଚାଖି ଦେଖନା-

ଗୀତ

ହରିନାମ ସୁଧା ବିନା – ସୁଧା ଅଛି କି ଏ'ଭବେ ।
ଯେଉଁନାମେ ଅଚଳ ଚଳେ, ସେତ ଅତୁଳନ ଭବେ ॥
ଯେ ପିଇବ –  ସେ ମଜିବ
ବୁଦ୍ଧି ଶୁଦ୍ଧି  ହଜିଯିବ –
କିନ୍ତୁ, ଏତିକ ତା' ଗୁଣ, ଭାଇ
ନିଶାରେ ଦିବା ଦେଖିବେ ॥
(ଚାଲିଗଲା ସେହିଆଡ଼େ ଯେଉଁଆଡ଼େ ମଦୁଆମାନେ ଚାଲି ଯାଇଥିଲେ )

( ସାଲ୍‌ବେଗ ଘୋର ଯନ୍ତ୍ରଣା ଅନୁଭବ କରୁ କରୁ ଚଳତ୍-ଶକ୍ତିହୀନ ହୋଇ ପ୍ରବେଶ କଲେ )

ସାଲ୍—ନା, ନା, ମୋରତ ଏତେଶୀଘ୍ର ଯିବା ହେବନାହିଁ—ମା' ଯେ ମୋ'ର ତୀର୍ଥସ୍ଥାନରେ ତୀର୍ଥବାସ କରୁଛନ୍ତି—ମୁଁ ଅତୀର୍ଥ କରିଦେବି କାହିଁକି, ଏହି ସଢ଼ା ପଚା ମାଂସର ବୋଝ ସେଠାରେ ଓଜାଡ଼ି ଦେଇ ? ଏହି ପୂତିଗନ୍ଧରେ ପବନଟାକୁ ଦୁର୍ଗନ୍ଧମୟ କରିଦେଇ ? ହାୟ ! ଦୈବାତ୍ ଯଦି ସାକ୍ଷାତ୍ ହେଲା, ମା'ର ସେହି ସୁନ୍ଦର ସବଳ କଳ୍ପନାକୁ ଦୁର୍ବଳ କୁତ୍ସିତ କରିଦେବି ସିନା ଆଖି ପିଛୁଳାକେ ! (ରାଜପ୍ରାସାଦ ଆଡ଼େ ଥରେ ନଜର ପଡ଼ିବାରୁ ) ଏହି ରାଜପ୍ରାସାଦ—ରାଜଭୋଗ — ପିତୃସ୍ନେହ !— ନା, ନା, – ପିତା – ପିତା – ମୋତେ ସେହି ଦମ୍ଭଦିଅ – ମୁଁ ଯେପରି ଅଟଳ ଅଚଳ ହୋଇ, ହିମାଚଳକୁ ଜିଣିଯାଏଁ ! କି ଆନନ୍ଦ, ପିତା !— ଆଜି ଯୁଦ୍ଧକ୍ଷେତ୍ରରେ ବୀର ମରଣରେ ଧରାଶାୟୀ ହୋଇଥିଲେ ଯେଉଁ ଗୌରବ ଅନୁଭବ କରି ନ ଥା'ନ୍ତି, ସେହି ଗୌରବ, ନା, ନା, ତତୋଽଧିକ ଗୌରବ ଯେମନ୍ତ ଅନୁଭବ କରୁଚି ବର୍ତ୍ତମାନ— ଏହି ଦୁରବସ୍ଥାରେ—ଜୀବନ ମରଣର ସନ୍ଧିସ୍ଥଳରେ—ଏହିପରି ତାଡ଼ିତ ହୋଇ ନିଃସହାୟ ନିସମ୍ବଳ ଭାବେ ! – ଏହିତ ମନୁଷ୍ୟତ୍ୱ ବିକାଶର ପ୍ରକୃତ ସୁଯୋଗ, ମନୁଷ୍ୟପକ୍ଷେ ! ବୀରତ୍ୱ ଦେଖାଇବାର ପ୍ରକୃତ ସୁଯୋଗ, ବୀରପକ୍ଷେ ! (ସଦମ୍ଭେ ଘୂରି ଚାଲିବାର ଉପକ୍ରମ କଲେ—କିନ୍ତୁ କୋଳାହଳ ଶୁଣି, ଠିଆହେଲେ ସିଂହାବଲୋକନ କରି )

ଭଖା—( ମଦରେ ଟଳି ଟଳି ବୁଢ଼ି ପ୍ରବେଶ କଲା ) ଆରେ, ଇଉନା—ଯେତେ ସରାପ୍, ମଦ ତୁମର ଅଣି !— ପଳାଇଗଲ କାହିଁକି ମ ?—ମୋ'ର ଟିକିଏ ହେଲେ ବି 'ଇସ୍' ଅଛିନା ? ମୁଁ ଯେଉଁ ସୁଧା ଦିନ ରାତି ପିଇ ବୁଲୁଚି,—ତା'ର ଦାଉରେ କି ତୁମମାନଙ୍କର ଏହି ସରାପ୍ ମଦର ଗନ୍ଧ ଠେଲି ହେଉଚି, ନା, ତା'ର ପଣ୍ଡା କିଛି ମିଳୁଚି ? ଥରେ ପିଇ ଦେଖନା—ଚାଖି ଦେଖନା—ଆଉ କି ସମାଳି ହେବ, ଦିନ ରାତି ପରି ଖୋଜି ବୁଲିବ— ତା'ଲାଗି ଝୁରି ମରିବ ?

( ଗୀତ )

ହରିନାମ ସୁଧା ବିନା—
ସୁଧା ଅଛି କି ଏ'ଭବେ ॥

( ଲାଲବେଗ ଓ ଜେବୁନିସା, ଅଦୂରେ ଗୋଟାଏ କୁଞ୍ଜର ଫାଙ୍କରେ, ପୂର୍ବ ମାତାଲଭାବେ ଜଡ଼ାଜଡ଼ି ହୋଇ ଏଣିକି ଚାହିଁବାକୁ ଦେଖାଗଲେ । )

ଲାଲ—(ବିକଟ ଚିତ୍କାର କରି ଉଠିଲେ, ଅନ୍ୟଆଡ଼େ ଚାହିଁ) ହାଃ—ହାଃ—ହାଃ—ଦେଖୁଚନା, ଏହି କୁକ୍‌କୁରଟାକୁ, ଜାନ୍ ! ଏତେ ତଡ଼ା ଖାଉଚି, ତେବେବି ଚାହିଁ ଠିଆହୋଇଚି—ଏକାଲୟରେ— ସାମ୍‌ନାରେ ଆପଣାର ବେଉଁଧନର ଗନ୍ଧଆ ପୋଟଳ୍ ମଇଳାମେଞ୍ଚିକି ଦେଖି;—ଚାଟି, ସାଫ୍ ନ କରିଦେଇ ଯିବାଯାଏ, ତର ସହିବ ନାହିଁନା କଣ, ଖାଲି ଆପଣାର ବୋଲି ? ହାଃ—ହାଃ— ହାଃ—

ଜେବୁ—ଆଃ—ଏମିତକା ବେସୁରା ଗାଉଚ କାହିଁକି, ଜାନ୍ ? ଠିକ୍ ସୁର୍‌ରେ ନାଚ ଚାଲ୍, ନାହିଁତ— ହୁଁ—

ଲାଲ—ଖୁବ୍‌ରେ, ନେବ ମୋର ଜାନ୍ ? ହାଃ—ହାଃ— ହାଃ

ଜେବୁ—ସଇତାନ୍—

ଲାଲ—ବିବିଜାନ୍ !—ମେରି କଦରକା ଆସ୍ମାନ୍ ! ( ଲୁଣ୍ଠାଇ ମୁଣ୍ଡାଇ ଢେଳି ଚାଲିଗଲେ )

ଭଖା—(ଏକାଳୟରେ ସାଲବେଗ ଆଡ଼େ ଲକ୍ଷ୍ୟ କରିଥିଲା, ଧୀରେ ଧୀରେ ତାଙ୍କ ଆଡ଼େ ଅଗ୍ରସର ହେଲା )

ସାଲ—(ସେହିପରି ଲକ୍ଷ୍ୟକରି ରହିଥିଲେ) ମା !

ଭଖା—ଗୋପାଳ ! ଗୋପାଳ !

ସାଲ—ମା—ମାଗୋ !—

ଭଖା—ଗୋପାଳ ମୋ'ର ! (ଆଲିଙ୍ଗନ କରିବାକୁ ଗଲା)

ସାଲ୍—ଛୁଅଁ ନା—ଛୁଅନା, ମା, ଘା' ଗୁଡ଼ାକ—ପଚ୍, ସଢ଼ା—ପୂଜ, ରକ୍ତ—ଭାରି ଦୁର୍ଗନ୍ଧ !—

ଭିଖା—ଗୋପାଳ ! ଗୋପାଳ ! ମୋତେ ଆଉ କର ନା ଅନ୍ଧ ! ଏତେ ଲୁଚକାଳି ଖେଳ, ଥରେ ଭଲ ଧରି ଦେ, ବାପଧନ !

ସାଲ୍—ଏହା ଖୋଲି ଦେଉଚି, ମା ! ବିଶ୍ୱାସ ଯଦି ନ ହେଉଚି ! ( ଘା' ଗୁଡାକ ଦେଖାଇଲେ )

ଭିଖା—କେତେ ଭାଣ୍ଡାଉ ତୁ, ଗୋପାଳ—ମୁଁ ପରି 'ମା' ତୋ'ର ! ବାହାର ଦେଖାଇ, ଅନ୍ତର ଲୁଚଉ କାହିଁକି ରେ ? କହ କହ, ଗୋପାଳ, ମା'ର କଥାର କିଣ ଅବାଧ ହେଉ ତୁ ?

ସାଲ୍—ଏ' ଭାରି କଠିନ ଶାସନ, ମାତା—ଜୀବନ ମରଣ ସମସ୍ୟା ବେଳେ, ଯୁଦ୍ଧକ୍ଷେତ୍ରରେ ପ୍ରଧାନ ସେନାପତିର ଆଦେଶକୁ ବଳି, ଏ' ଆଦେଶ ତୁମ୍ଭର, ମାତା—ଯଥା ଇଚ୍ଛା, କର ଚୋ ବ୍ୟବସ୍ଥା—ଏ' ପିଣ୍ଡ ପରାଣ ଯେ ତୁମ୍ଭର, ମାତା ! ( ମାତୃକୋଳେ ଆପଣାକୁ ଦୁର୍ବଳ ଶିଶୁ ଭଳି ଓଜାଡ଼ି ଦେଲେ )

ଭିଖା—( କେଉଁ ଯୁଗର ଅକାଙ୍କ୍ଷା ମେଣ୍ଟାଇବା ପରି, ବାର ବାର ଚୁମ୍ବନ କରି ) ଗୋପାଳ ! କାହିଁ ତୋର ସେହି ରାଜବେଶ, ଯାହା ଦେଖି, ସେହିଦିନୁ ହୃଦୟ ମୋ'ର କେଉଁ ଉକୋଗୁଣେ ଭରି ଉଠିଥିଲା ?—ମୁଁ ଗର୍ବଭରେ ଗୋଡ଼ ଭୂଇଁରେ ଲଗଉ ନ ଥିଲି ପରା, ମଣି ଆପଣାକୁ ସେହି ରାଜରାଣୀ ରାଜମାତା ! ହଠାତ୍ ଆଜି ଏ' କି ବେଶ ପରିବର୍ତ୍ତନ ତୋ'ର, ବାପଧନ ?

ସାଲ୍—କିନ୍ତୁ ମୋ'ର ଯେ କି ଭାବର ପରିବର୍ତ୍ତନ, ମା ? ସେ ଦିନ ରାଜା ହୋଇ—ଥିଲି, କାଙ୍ଗାଳ ! ସୁସ୍ଥ ସବଳ ହୋଇ—ଥିଲି, ଦୁର୍ବଳ, ପୀଡ଼ିତ ! କିନ୍ତୁ, ଆଜି—ଏହି ମାତୃକୋଳେ, ଦୀନ, ପୀଡ଼ିତ, କାଙ୍ଗାଳ ହୋଇ ସୁଦ୍ଧା—ରାଜ-ରାଜେଶ୍ୱର, ବୀର୍ଯ୍ୟବାନ, ଅମର ! ମୋତେ ଏହିଭଳି ଚିରଦିନ ବାନ୍ଧି ରଖିବୁ ତ, ମା ?

ଭିଖା—ମୋତେ ଭଣ୍ଡାଉ ନାହୁଁ ତ, ଗୋପାଳ ? ମୋର ପ୍ରାଣର ଗୋପାଳକୁ ଏହି ଭଳି ବାନ୍ଧି ରଖିବି, ଏତେ ସୌଭାଗ୍ୟ ହେବ ନା ମୋ'ର ? ( ଦୃଢ଼ାଲିଙ୍ଗନ କରୁ କରୁ କାନ୍ଦ ପକାଇଲେ )

ଗୀତ

ଏତେ ସୁଖ ଅଛୁ ମୋ'ର ଭାଲେ !
ବାନ୍ଧି ରଖିବି ମୁଁ ମୋ' ଗୋପାଳେ ॥
କେତେ ନଷ୍ଟ କଷ୍ଟ
କାଣ୍ଡରେ ଭୁଞ୍ଜି,
ଧିଙ୍ଗୁଆ ପଣରେ ଯେ
କେ ସବୁ ନୋହି—
ଜାଣ ନା, କେମନ୍ତେ—ନାଚୁଆ ପରିତେ
ଯିବି ମୁହିଁ ତୋ'ର ବୋଲେ, ରେ ଗୋପାଳ ।

ସାଲ୍—(ଗଦଗଦ କଣ୍ଠେ ମା ମୁହଁ ଚାହିଁ) ମା !—

ଭିଖା—ଗୋପାଳ ମୋ'ର !

( ସାଲବେଗ ଲୁହରେ ଭାସିଯାଇ, ମାତୃବକ୍ଷରେ ମୁହଁ ପୋତିଲେ, ମା ହାତ ବୁଲାଇବାକୁ ଲାଗିଲେ ଦେହ ମୁଣ୍ଡରେ )

—ଯବନିକା—

---

# ଚତୁର୍ଥ ଅଙ୍କ

**ଦୃଶ୍ୟ**—ପୁରୀ ଧାମର ଏକ କୋଣରେ, ଗୋଟିଏ ପର୍ଣ୍ଣକୁଟୀର ।

( ଭିଖାରୁଣୀର କୋଳରେ ମୁଣ୍ଡ ରଖି, ସାଲବେଗ୍ ଶାୟିତ—ଭିଖାରୁଣୀ ସାକ୍ଷାତ୍ ତପସ୍ୱିନୀ ଭଳି ଦେଖା ଯାଉଥାଏ )

ସାଲ୍—ଆଉ 'ଠାଣି' ରଖିପାରୁ ନାହିଁ, ମା—ଏତେ କଷ୍ଟ ଆଉ ସହି ହେଉ ନାହିଁ !

"ହେ ମାତ ଶୁଣ ମୋ' ବଚନ ।
ଏଥର ଚଳୁଛି ଜୀବନ ॥
ମରିବି ଆତ୍ମଘାତୀ ହୋଇ ।
ଏ' କଷ୍ଟ ନ ପାରିବି ସହି ॥"

ଭିଖାରୁଣୀ—ଛି, ବାପ—

ସାଲ—"ଛାଡ଼ ମୋହର ପ୍ରତିଆଶା ।
ଆଜିଁ ସରିଲା ମୋ ଭରସା ॥
ତୋ'ର କି ବୁଦ୍ଧି ଥିଲେ କହ ।
ନୋହିଲେ ପାସୋରଣି ରହ ॥"

ଭିଖା—ମୋ'ର 'ଗୋପାଳ'କୁ ମୁଁ ପାଶୋରି କିପରି ବଞ୍ଚି ରହିବିରେ ?

"ମୋହର କଥା ଶୁଣ ବାବୁ ।
ତୋହର ଥିଲେ ମୋ'ର ସବୁ ॥
ତୋ ବିନା ହୋଇବି ଅନାଥ ।
ସ୍ୱରୂପ କହିଲିରେ ସୁତ ॥"

ସାଲ—କହ, ମା ମୁଁ କି ବୁଦ୍ଧି କରିବି ?

ଭିଖା— "ମୋତେ ତୁ ପଚାରିଲୁ ଯାହା ।
ଶୁଣ କହିବି ତୋତେ ତାହା ॥
ପଠାଣ ଅଟେ ତୋ'ର ତାତ ।
ମୁହିଁ ବ୍ରାହ୍ମଣୀ ତୋର ମାତ ॥"

ସାଲ—ମା—ମା—( କେଉଁ ଉତ୍ତେଜନାରେ ଉଠି ବସିଲେ)

ଭିଖା— "ତୁ କାହିଁ ମୋ ବୋଲ କରୁ ।
ସ୍ୱରୂପ ଶୁଣ ଆରେ ବାବୁ ॥"

ସାଲ—ମା—ମା—ଆଜି କେଉଁ ସୁପ୍ତରାକ୍ଷସକୁ ମନ ଭିତରେ ମୋ'ର ଜଗାଇ ଦେଲୁ, ମା !—ମୋ'ର ଜନ୍ମ ରହସ୍ୟମୟ, ଏ' କଥା ଜାଣି ସୁଦ୍ଧା, କଦାପି ଭେଦ କରିବାକୁ ଉତ୍କଣ୍ଠିତ ହୋଇନାହିଁ, ମା— ଏ'ପରିକି ନାନା କଷ୍ଟ ଭିତରେ ମଧ୍ୟ ଉତ୍କ୍ଷିପ୍ତ ହୋଇନାହିଁ ମୁହୂର୍ତ୍ତିକପାଇଁ ଦିନେ ସୁଦ୍ଧା, ଜାଣୁଥିଲି ଯେତେବେଳେ ମୁଁ ପିତାର ସନ୍ତାନ— ମୋ'ର ପିତାହିଁ ମୋ'ର 'ବାପ' 'ମା'—ଆଉ, ମୁଁ ମନୁଷ୍ୟ, ପୂର୍ଣ୍ଣାବୟବ, ପୂର୍ଣ୍ଣ ଜ୍ଞାନ ବୁଦ୍ଧି ଦେଇ ! ସେ ଦିନ, ସେହି ଯୁଦ୍ଧଯାତ୍ରା ପୂର୍ବେ, ତୋ ସଙ୍ଗେ ପ୍ରଥମ ସାକ୍ଷାତ୍—ପ୍ରଥମ ପରିଚୟ;—ଆଉ, ଏହି ଶେଷ ଅବସ୍ଥାରେ—ନିରାଶ୍ରୟ ମୋର ତୋ' କୋଳରେ ଏକମାତ୍ର ଆଶ୍ରୟଲାଭ; ତଥାପି, କାହିଁ ସେହି ଜନ୍ମରହସ୍ୟ ବିଷୟରେ ତ ତିଳେମାତ୍ର ଆଲୋକପାତ କରିବାକୁ ମନ ମୋ'ର ଚଞ୍ଚଳ ହୋଇ ଉଠିନାହିଁ—କିନ୍ତୁ, ବର୍ତ୍ତମାନ ମୁଁ ଉନ୍ମାଦ ହୋଇ ଯାଉଚି, ମା—ସେହି ରହସ୍ୟ ଜାଲ ଛିନ୍ନ ଭିନ୍ନ କରି, ଛିନ୍ନକରି ଦେବାକୁ—ତୁ ସହାୟ ହ', ମା—ସଂଶୟ ରାକ୍ଷସକୁ ଦୂର କରି ଦେ, ମା—ମୋତେ ବଞ୍ଚା—କହ, କହ—

"ସେ ଯେ ପଠାଣ ତୁ ବ୍ରାହ୍ମଣୀ ।
କିରୂପେ ତୁ ତାର ଘରଣୀ ॥"

ଭିଖା—ଶୁଣ ରେ, ବାବୁ—

"ଗ୍ରାମ ମାନଙ୍କେ ଯେ ଉତ୍ତମ ।
ଦାଣ୍ଡ ମୁକୁନ୍ଦ ପୁର ନାମ ॥
ସେହି ଗ୍ରାମରେ ମୋର ଘର ।
... ... ... "

ସାଲ—ତେତିକି ମୁଁ ଅଗହୁଁ ଜାଣିଥିଲି, ମା—

ଭିଖା—"......... । ନ ଥିଲେ ମୋ'ର ଶାଶୁ ଶ୍ୱଶୁର ॥"

ସାଲ— ......'ଶାଶୁ ଶ୍ୱଶୁର' ।—ମା—ମା—

ଭିଖା— "ତୋ' ବାପ ଯୁଦ୍ଧେ ଯାଇଥିଲେ ।
ସଙ୍ଗେ ବହୁତ ସୈନ୍ୟଥିଲେ ॥
ବାହୁଡ଼ି ଆସିବାର ବେଳେ ।
ସେଦିନ ଦଇବର ବଳେ ॥
ମୁଁ ଯାଇଥିଲି ସ୍ନାନ କରି ।
ତହୁଁ ଆଣିଲା ମୋତେ ଧରି ।"

ସାଲ—ଥାଉ, ଥାଉ, ମା— ତେଣିକି ସବୁ ଶୁଣିଚି— ଆଉ ଶୁଣିବାର ଲୋଡ଼ା ନାହିଁ—

"ହେ ମାତ ଶୁଣ ମୋର ବାଣୀ ।
ତୁ ମୋର ପିଣ୍ଡର କାରଣୀ ।
ତୋ ଇଚ୍ଛା ଯାହା ତାହା କର ।
ତୋ କଥା ବିନା ଇଷ୍ଟମୋର ॥

ଏଥିକି ବୁଝି କିସ କହ ।
କେମନ୍ତେ ରହିବ ମୋ' ଦେହ ।"

ଭଗା—"ମୋ' କଥା ଶୁଣସିରେ ବାବୁ ।
ଏ ଯେ ତୋହର ନିଜବାବୁ ॥
ତୋତେ ପାସୋରି ସବାତାଳେ ।
ବିଳାସବ୍ୟସନର ଭୋଳେ ॥"

ସାଲ୍—ସେ କଥା ଆଉ କାହିଁକି, ମା ?

ଭଗା—( ସେହି ଆବେଗରେ )
"ରହିଲା ଅଟଳ୍ୟା ହୋଇଣ ।
ମୁଁ ସିନା ହେଲି ଅକାରଣ ॥"

ସାଲ୍—ଆଉ ମା—

ଭଗା—( ସେହି ଅବେଗରେ )
"ମୋ' ଯୁବା ବୟସ ସରଲା ।
ତେଣୁ ସେ ମୋତେ ପାସୋରିଲା ॥"

ସାଲ୍—ମା—ମା—

ଭଗା— "ତୁ ହୋଦେ ଦାସୀ ପୁତ୍ର ସିନା ।
ତାକୁ କି ଲାଗେ ତୋ ବେଦନା ॥"

ସାଲ୍—( ଆଉ ସମ୍ଭାଳି ହୋଇ ନ ପାରି, ସାନ ଛୁଆଟି ପରି କାନ୍ଦ ପକାଇ ମା କୋଳରେ ମୁଣ୍ଡ ଗୁଞ୍ଜିଲେ )

ଭଗା— "ତୁ ଅଟୁ ମୋର ଜୀବଧନ ।
ତୋ' ବିନା ମୋର ସର୍ବଶୂନ୍ୟ ॥
ତୁ ମୋର ଅନ୍ଧର ଲଉଡ଼ି ।
ତୁ ସିନା ମୋ ଧନ କଉଡ଼ି ॥
ତୁହି ମୋ' କଣ୍ଠ ରତ୍ନମାଳା ।
ତୁହି ମୋ ନୟନ ପିତୁଳା ॥"

ସାଲ୍—( ମୁହଁ ଟେକି ବିକଳ ଭାବେ କଣ୍ଠ ଜଡ଼ାଇ )
ମା-ମା—

ଭଗା— "ସ୍ୱରୂପ କହସିରେ ବାବୁ ।
ସତେକି ମୋ ବୋଲ କରିବୁ ॥
ସତ୍ୟ ତୁ କର ମୋର ଆଗ ।...... ।"

ସାଲ୍—( ଚରଣ ଛୁଇଁ ଦୃଢ଼ସ୍ୱରେ )
"ଲଙ୍ଘିବାର ସତ୍ୟ ହେ'ମାତ ।
ତୋ'ବୋଲ କରିବ ନିଶ୍ଚିତ ॥

ତୁ ମୋତେ କହୁଛୁଟି ଯାହା ।
ମୋ' ଶିର ଫୁଲ୍ ଗନ୍ଧ ତାହା ॥
ଏଥକୁ ସନ୍ଦେହ ନ କର ।
ବେଗେ ତୁ କହ ସୁବିସ୍ତର ॥"

ଭଗା—(ଅତି ଗଦ୍‌ଗଦ ସ୍ୱରେ, ଉଜ୍ଜ୍ୱଳ ଦୃଷ୍ଟିରେ ଚାହିଁ)
"ବୋଲୁଛି ଯାହା ପୁତ୍ର ଶୁଣ ।
ତୋ' ମନେ ବିଶ୍ୱାସ କରିଣ ॥
ଶ୍ରୀ ବୃନ୍ଦାବନଚନ୍ଦ୍ର ଭଜ ।
ସେ ଯେ ଅଶେଷ ଦେବରାଜ ॥
ଅଶେଷ ଔଷଧିର ଘର ।
ଭଜିଲେ ନଷ୍ଟେ ହେବୁ ପାର ॥"

ସାଲ୍— "ତୁ ଯାହା କହିଲୁଟି ମୋତେ ।
ତାହା ମୁଁ ଜାଣିବି କେମନ୍ତେ ॥
କେଉଁଣ ସ୍ଥାନେ ତାଙ୍କ ଘର ।
କେ ତାଙ୍କ ଜନନୀ ପିତର ॥
କେଉଁଣ ଦେଶର ସେ ନୃପ ।
କେମନ୍ତ ଅଟଇ ସ୍ୱରୂପ ॥
ମୁଁ ତାଙ୍କୁ ଭଜିବି କେମନ୍ତେ ।
ବୁଝାଇ କହ ମାତ ମୋତେ ॥"

ଭଗା—( ମନ୍ଦ ମନ୍ଦ ହସି ) "......।
ଶୁଣ ମୋହର ବାଳଶିଶି ॥
ନନ୍ଦ ରାଜା ଯେ ତାଙ୍କ ତାତ ।
ଯଶୋଦାଦେବୀ ତାଙ୍କ ମାତ ॥
ଗୋପ ନଗରେ ତାଙ୍କ ଘର ।
ଅଶେଷ ପରଜା ତାଙ୍କର ॥
ରାଧିକା ନାମେ ତାଙ୍କ ନାରୀ ।
ସେ ଦୁହେଁ କିଶୋର କିଶୋରୀ ॥
ସେ ଗୋପ ବୃନ୍ଦାବନ ଭୂପ ।
କହିବି ଶୁଣ ତାଙ୍କ ରୂପ ॥"

ସାଲ୍—କହ, କହ, ମା—କେମିତିକା ରୂପ ?

ଭଗା—(ଭକ୍ତି ମୁଗ୍ଧ ଚିତ୍ତ କରି ସୁଲଳିତ ସ୍ୱରେ)
"ନବୀନ ଶ୍ୟାମଘନ ମୂର୍ତ୍ତି ।
ଦଳିତାଞ୍ଜନ ଜିଣି କାନ୍ତି ॥
ସୁରୁଚିର ଇନ୍ଦ୍ରନୀଳମଣି ।
ତାଙ୍କ ରୂପକୁ ନୋହେ ଜିଣି ॥

ମର୍କତ କେଶ ଛବି ତା'ର ।
ନାନା କୁସୁମେ ଶୋଭାକର ॥
ଶିରେ ଶିଖଣ୍ଡ ଚୂଳ ଶୋହେ ।
ଭକତ ଜନ ମନ ମୋହେ ॥
ମସ୍ତକେ ଅମୂଲ୍ୟ ମୁକୁଟ ।
ଅଷ୍ଟ ରତନେ ଝଟ ଝଟ ॥"

ସାଲ—(ଦୂରେଇଗୁହିଁ) ଏହି ଯେ—ଏହି ଯେ ସେହି ମୂର୍ତ୍ତି, ମା—

( ସେହିପରି ଝଟ ଝଟ ମୂର୍ତ୍ତି ଦୂରେ ଦେଖାଗଲା କ୍ଷଣକେ, ଗଗନର ନିର୍ମଳ ନୀଳମା ଭେଦକରି କି ଆଉ ! )

ଭକ୍ତା—( ସେହିଭାବେ)

"ଲଲାଟେ ଗୋରଚନା ଟୀକା ।
ଯାହା ଭାବନ୍ତି ଊର୍ଦ୍ଧରେତା ॥
ଶ୍ରବଣେ ମକର କୁଣ୍ଡଳ ।
ନିନ୍ଦଇ ତପନ ମଣ୍ଡଳ ॥
ସୁଚନନେ ଶ୍ୱେତ ପଦ୍ମଜିତା ।
ଦେଖି ଧଇର୍ଯ୍ୟ ହରେ ଧାତା ॥
ଭ୍ରୂଲତା କାମ ଶରାସନ ।
ଦେଖିଲେ ହରେ ପ୍ରାଣିମନ ॥
ସୁନାସା ସ୍ପଷ୍ଟ କି ସୁନ୍ଦର ।
କୋଟିଏ କନ୍ଦର୍ପ କି ଛାର ॥
ଦ୍ୱିରଦ ମୋତି ନାସା ପୁଟେ ।
ଗୁଞ୍ଜରି ପାଟି ଭାଲ ପଟେ ॥"

ସାଲ—ପୁଣି ଦେଖା ଦେଇଛି ମା—ଠିକ୍ ସେହି ମୂର୍ତ୍ତି—!

ଭକ୍ତା—(ସେହିଭାବେ)

"କୁନ୍ଦ କୋରକ ଶୋଭାଜିଣି ।
ହୀରକ ପ୍ରାୟେ ଦନ୍ତଶ୍ରେଣୀ ॥
ରଙ୍ଗଅଧରେ ମନ୍ଦହାସ ।
ଅଶେଷ ପୀୟୂଷର ବାସ ॥
ମୁଖାରବିନ୍ଦ ଶୋଭା ଯେତେ ।
କେ କହି ପାରିବ ଜଗତେ ॥
ଦେଖି ଶ୍ରୀମୁଖ ଶୋଭା ତାଂ'ର ।
ଛପି ରହିବ ନିଶାକର ॥"

ସାଲ—ଆଖି ମୋ'ର ଯେ ଝଲକ ସହି ପାରୁନାହିଁ, ମା— (ଆଖି ବୁଜି ହୋଇଗଲା)

ଭକ୍ତା—( ହସି ହସି )

"ପଙ୍କଜ ବଦନ ମୁକୁର ।
କିଣି ଦିଶଇ ଶୋଭାକର ॥
ଗୁହ୍ଣ ଚିବୁକ ଗମ୍ବୁଗ୍ରୀବ ।
ଦେଖି ମୋହିତ ସଦାଶିବ ॥
ତହିଁ ଲମ୍ବିତ ବନମାଳ ।
ସୁରତ୍ନହାର ବକ୍ଷସ୍ଥଳ ॥
ବଳୀନ ସୁବାହୁ ଯୁଗଳ ।
ସୁନ୍ଦର ମଦନଗୋପାଳ ॥"

ସାଲ—ଗୁହାଁ, ଗୁହାଁ, ମା—ଏହି କି ତୋ'ର ସେହି 'ସୁନ୍ଦର ମଦନ ଗୋପାଳ' ?

( ସାଧାରଣ ଗୋପାଳ ବେଶରେ ବାଳକଟିଏ ଆସି ଠିଆ ହେଲା )

ଭକ୍ତା—( ଅନାଇ ସାଲବେଗ ଆଡ଼େ ) 'ମୋର ସୁନ୍ଦର ମଦନଗୋପାଳ' ଆଉ କିଏ ରେ ? ଅନ୍ୟ କେଉଁଠିରେ ? ଏଁ—ଏ' କିଏ ?—ଗୋପାଳଅ ? ତୁ ? ଏ'ଠି କେମିତି ରେ ?

ସାଲ—ଏହି କ'ଣ ସେହି ମୂର୍ତ୍ତି ?—ନା, ନା—ଏ'ତ ନୁହେଁ !

ଗୋପାଳ—ଗାଈଟିଏ ହଜି ଯାଇଛି ଯେ—ଖୋଜି ଖୋଜି ଆସି, ଏଠି—

ଭକ୍ତା—କ'ଣ କହୁଚୁରେ ଟୋକା ? କାହିଁ ମୁକୁନ୍ଦପୁର-କାହିଁ ପୁରସ୍ତମ ?—

ଗୋପାଳ—ମାଉସି ! ମୋର କରାମତି କ'ଣ ଜଣାନାହିଁ ତୁମକୁ ? ଏ ସାରା ଚୌଦଭୁବନ ପରି ଆଖି ପିଛୁଳାକେ ମାରି ଦେଇ ଆସି ପାରେ ମୁଁ !

ଭକ୍ତା—ଭଗଲା !—ଆରେ, ପୁଅ—ଏ'ଠି ରହିବୁନା, ବାହାରି ଯିବୁ ମ ?

ଗୋପାଳ—ମୁଁ ତ ବାର ବୁଲଟାଏ—ରହିଲେ, ରହିବ—ଗଲେ, ଯିବି—

ଭକ୍ତା—ଅରେ ରହିଯା'ନା ପୁଅ—

ଗୋପାଳ—ସେ ସ୍ନେହ କି ଆଜ ତୁମର ଅଛି ମୋ' ଠେଇଁ ?—ହଁ, ନୂଆ 'ଗୋପାଳଆ' ଟିଏ ତ କାହୁଁ ପାଇଲଣି—ଆଉ ପଚ୍ଚୁରିବ କାହିଁକି ଏ' ପୁରୁଣା ଛତରଖିଆକୁ ?

ଭିଖା—( କୁଣ୍ଠିଯାଇ ) ଆରେ, ଗୋପାଳଆ—ଏ' ତୋ'ର ଭାଇମ ?—ଆ, ତା'ସଙ୍ଗେ ଶଙ୍ଗା କରିଦିଏଁ—

ଗୋପାଳ—ଏ'କଣ ତମର ପୁଅ, ମାଉସି ?

ଭିଖା—ହଁରେ, ବାପ—ଜନ୍ମକଲା ପୁଅ—

ଗୋପାଳ—( ଅଭିମାନରେ ) ତେବେ କଣ ଆଉ ଏ ପୋଷାପୁଅ—ଗୁଞ୍ଜାଳୁଅକୁ—

ଭିଖା—'ଗୁଞ୍ଜା' 'ପୋଷା' ନୁହେଁରେ—ତୁ'ବି ମୋ'ର ଜନ୍ମକଲା ଯେ—ଏ ଅନ୍ତରର—।

ଗୋପାଳ—ଓ ! (ହସି ହସି) ଆଚ୍ଛା, ମା, ଭାଇର ନା' ବି କ'ଣ 'ଗୋପାଳ' ?

ସାଲ—ନା, ନା, ଭାଇ—'ସାଲ୍‌ବେଗ'—

ଗୋପାଳ—ଉଁ ହୁଁ—ଏ' ଅଖାଡୁଆ ନା' କାହିଁକି ଦେଲ, ମା ?

ଭିଖା—(ହସି ହସି) ଅରେ, ନାହିଁରେ, ନାହିଁରେ, ତା' ନା' ବି 'ଗୋପାଳ'—ମୁଁ କି ଭିନ୍ନେ ନା' ଦେଇପାରେ ରେ ? ପାଣି ଛେଦ କରିପାରେ ରେ ?

ଗୋପାଳ—ମାଉସି ! ଆମେ ଦୁଇଭାଇ, ସଙ୍ଗାତ ବସିବା—ଏକା ନା'—ଏକା ମା' ଯେତେବେଳେ ଆମ ଦୁଇଙ୍କର !

ଭିଖା—( ହସି ହସି ) ହଉରେ, ବାବୁ—ଆ, ଆ—ଦୁଇ ଜଣଙ୍କୁ ଏକାଠି ଏକାସଙ୍ଗେ—

ଗୋପାଳ—( ହଠାତ୍ ସୁଙ୍ଘିଚାଲି ) ଉଁ ହୁଁ ହୁଁ—କି ବୋଇ ! କି ଗନ୍ଧ !—ଛି, ଛି—ତୋର ପେଟର ଜନ୍ମ କଲା ଗୋପାଳ ଦେହରେ ଖାଲି ଘା'ଗୁଡ଼ାକ—ଇହ—ପୋକ ସାଲୁ ବାଲୁ ହେଉଛି, ମା !—ତୋତେ 'ଘିନ ଘିନ' ମାଡୁନାହିଁ ? ନାହିଁ, ନାହିଁ—ମୁଁତ କେବେ ସଙ୍ଗାତ ବସିବ ନାହିଁ ?—ଛୁଇଁବତ ନାହିଁ ?

ଭିଖା—(କେଉଁ ମର୍ମ ବେଦନାରେ ଯେ ଅଧୀର ହୋଇ ଉଠିଲେ )

ସାଲ—ଦେହ ଭଲ ହୋଇଗଲେ ମୋତେ ଛୁଇଁବନା, ସଙ୍ଗାତ ? —

ଗୋପାଳ—ଛୋ' ଛୁଇଁବି ନାହିଁନା ? ତୁମେଇ କହିଲ; ସଙ୍ଗାତ; ମା ସିନା ଦୁଃଖ କରୁଛନ୍ତି—ଅଭିକା ଛୁଇଁବା କି ଉଚିତ ? ମୋ' ଦେହକୁ ଯଦି ଉଡ଼େ—ସେହିପରି ଦେହଯାଏ ମାଡ଼ିଯାଏ ?

ସାଲ—ହକ୍‌କଥା, ମା !—ଏଥି ପାଇଁ ମତେ ବାପା ମୋତେ ସବୁ ଅନ୍ତର କରି ଦେଇଚନ୍ତି—ଠିକ୍ କାମ କରିଚନ୍ତି—ତୁମେ ମିଛେ ମିଛେ ବାପାକୁ ମୋ'ର ଦୋଷ ଦେଇ କାନ୍ଦୁଥିଲ ସିନା ?—ଜଣକ ପାଇଁ ଆଉଜଣେ ଭୋଗିବେ କାହିଁକି ଭଲା ?—ହଁ, ମା—ତୁ ବି ଏଣିକି ଛୁଁନା—

ଭିଖା—ମୋ'ର କଷ୍ଟ ହୁଏ ନାହିଁରେ, କଷ୍ଟ ହୁଏ ନାହିଁ—ମା'ର ଦେହ ବଜ୍ରଠୁଁ ବି ଟାଣ !—ଯା, ଯା,—ଚାଲ୍ ତୁ ଟୋକା ! ପୋଡ଼ାମୁହାଁ—ଫେର୍ ଯଦି ଏଣିକି ମାଡ଼ିବୁ ତ—ଜାଣିଥା, ହଁ—ତୋ'ର ଦିନେ କି ମୋ'ର ଦିନେ !

ଗୋପାଳ—ଏତେ ତମ୍ ତମ୍ ଗମ୍ ଗମ୍ କାହିଁକି ହୋ ? ମୁଁ କା'ର ଖାଏ, ନା ଧାରେ ? ବେଶ୍ ସିଧା, ସିଧା, କହିଦେଲେ ତ, ସୁନା ପୁଅଟି ଭଳି ବାଟେ ବାଟେ ଚାଲିଯିବି—

ଭିଖା—ଦେଖୁଚ ନା ?—

ସାଲ—ନା,ନା, ମା—ତଡ଼ି ଦେ'ନା—ତଡ଼ିଦେ'ନା—

ଗୋପାଳ—ନା, ସଙ୍ଗାତ—ଅଟକାଅ ନାହିଁଟି—ମୂର୍ତ୍ତି ଦେଖୁ ନାହିଁ—?

ଭିଖା—ମୂର୍ତ୍ତି ଦେଖିବ କ'ଣରେ, ଟୋକା ? ମୋତେ କଣ' ଝାଡ଼ଖଣ୍ଡି ଲଚିଶ କରେ ?—

ଗୋପାଳ—ସଙ୍ଗାତ ! ଦେଖୁଚତ—ଭାଗ୍ୟେ ଝାଡ଼ୁ ପାଡ଼ୁ ଏଠି ପଡ଼ିନାହିଁ ?

ଭିଖା—କରେ ମୋ'ର କଣ, ଠିକଏ ହୋଇ ଅକଲ ନାହିଁ କରେ ? ମୋ ମାଲେ—ଟୋକା ବକଟେ

ନାକୁ—କେତେ ବେଳ ହେଉଛି—କଥା କହୁଚ, କେଉଁ ସାତସନ୍ଧ ଖୋଲି—?

ଗୋପାଳ—ହକ୍‌କଥା କହିଲି ବୋଲି ସିନା, ମାଉସିର ଏତେ ରାଗ !

ଭଖା—ପୁଣି ରଗାନ କହୁଛୁ—?

ସାଲ—ମା—ମା—ହକ୍ କଥାରେ ସତେ, ସତେ ଏତେ ରାଗନ୍ତି କାହିଁକି ଲୋକେ ?—ବାପାଙ୍କର ହକ୍ କଥାରେ ମୁଁ ଚିଡ଼ୁଚି—ପିଲାଟିର ହକ୍ କଥାରେ, ଏଇ ତୁ ଚିଡ଼ୁଚୁ—ମାଏ, ସେହି ହକ୍ କଥା କହିବାକୁ, ପିଲାଟିଦିନୁ, ଅଭ୍ୟାସ କରିବାକୁ, ଲୋକେ ଶିକ୍ଷା ଦିଅନ୍ତି ପୁଣି !

ଗୋପାଳ—ଏ' ପାଞ୍ଚଣ ବାଡ଼ି ଅଉ ମୋ' ହାତରେ କାହିଁକି କି ? ସେହିଭଳି ଗୋରୁଙ୍କୁ ବାଗେଇବା ପାଇଁ ନା ?

(ଦ୍ୱାରକୁ ପଳାଇ ଯାଇ ଗାଇଲା)

ଗୀତ।

ସାଧେ କି ଧରିଛି ଏ' ପାଞ୍ଚଣ ବାଡ଼ି।
ମହତ କେତେଟି ରହିଚି ସଜାଡ଼ି॥
ଗୁହ ତ୍ରି ଗୋରୁ ଯେବେ କି ଧାଇଁ,
ଚରି ବୁଲନ୍ତି—ଆପଣା ଖୁଇଁ—
ମୁହାଁଇ ଦିଏ ଚରିକୁ ଚଢ଼ି।
ନିର୍ଘାତେ ପିଠିରେ ପାହାରକୁ ଛାଡ଼ି॥

(ବୁଲିଗଲା)

ସାଲ—ସତେ କ'ଣ ସଙ୍ଗାତ ଆଉ ଆସିବ ନାହିଁ, ମା ?

ଭଖା—ଭାରି ଚଗଲା ସେ—ପବନକୁ ବାନ୍ଧିପାରିବ—ତାକୁ ବାନ୍ଧିବା ପରା କାଠିକର ପାଠ।

ସାଲ—କିନ୍ତୁ, ହକ୍ କଥା କହେ ସେ, ମା—ମୋତେ ପରା ଭାରି ସୁଆଦିଆ ଲାଗୁଚି।

ଭଖା—ତା'ର ଲାଗିବାର କଥା, ତୋତେ, ବାପ—ଚିରକାଳଟା, ସତ ମିଛର ଗୋଟାଏ ଘାଣ୍ଟିଭିତରେ ଘାଣ୍ଟି ହୋଇ ଆସିଲୁ କିନା ? ନିର୍ମଳ 'ସତ'ର ସ୍ୱାଦ ପାଇବୁ କାହୁଁ !

ସାଲ—ତୋତେ କଣ ଭଲ ଲାଗେ ନାହିଁ ?

ଭଖା—ସେଇଥିପାଇଁ ତ ତା' ସଙ୍ଗେ ମୋ'ର ଏତେ ଭାବ, ପ୍ରୀତି !-ଅହା ! କା'ର ଛେଉଣ୍ଡ ପିଲାଟି—କ'ଣ କରି ବୁଲେ କେଜାଣି—କିନ୍ତୁ, ମୁଁ ଯେଉଁଠି, ସେ ସେଇଠି ପରା—ମୁଁ ଭୁଲିଗଲେ ବି, ସେ ଭୁଲେ ନାହିଁ ପରା !

ସାଲ—ତେବେ, ତେବେ ମା—ଏମିତିକା ଗାଳି ମନ୍ଦ କରି ତଡ଼ିଦେଲୁ କାହିଁକି, ମା ? ତୋ' ମାୟାଭିତରେ ଯେ ପଶିପାରୁ ନାହିଁ, ମା—

ଭଖା—ଆରେ, ଦୁଲଭାଇ ପରା ତୁମେ ? ହକ୍ କଥା ହେଉ ପଛକେ, ଏମିତିକା ମୁହଁ ଉପରେ ଏକଭାଇ ଆରଭାଇକୁ ସଲଖ କହିଲେ, ଆରଭାଇଟିର ମନରେ କଷ୍ଟ ହେବ ନାହିଁ ନା ? ଆଉ, ମୁଁ ମା ହୋଇ, ମୋ'ର କର୍ତ୍ତବ୍ୟ କରିବି ନାହିଁ ? ଦୋରସ୍ତ କରି ଦେବି ନାହିଁ ନା ?

ସାଲ—ମା—ମା—'ମା'ର' ସ୍ୱରୂପ ମୁଁ କେମିତି ବୁଝିବି, ମା—ପିଲାଟି ବେଳୁଁ ମା'ର କୋଳ ମା'ର ସୁଆଗ ଯେ ନ ପାଇଚି— ?

ଭଖା—(ହୃଦୟକୁ ଗୋପନ କରିବା ଉଦ୍ଦେଶ୍ୟରେ) ଅଃ—ଭାରି ଚଗଲାଟା ପରା ସେ ! ଥିବ ଥିବ ଏହି ଭଳି ପାଇଛି ବେଳେ, କାହୁଁ ଧାଇଁଆସି, ସବୁ ଲଣ୍ଡ ଭଣ୍ଡ କରି ଦେବ ଯେ,— ଶୁଣ, ଶୁଣ, ବାପ, ଆଖି ବୁଜି ଏଥର,—ସେହି 'ବୃନ୍ଦାବନଚନ୍ଦ୍ର'ଙ୍କର ବାଳ ସ୍ୱରୂପ ତକ,—

ସାଲ—କହ କହ, ମା ! ମୁଁ ଆଖିବୁଜି, କାନଡେରି ମନମାରି, ଶୁଣିବି ଏଥର, ମା ! ମୁଁ କେମିତି ଭଲ ହେବି ? ସଙ୍ଗାତ ମୋତେ ଛୁଇଁବ ! ମା, ମା, ଭଲହେବାକୁ ମନ ଯେ ଭାରି ଉଚ୍ଛନ୍ନ ହେଉଚି ! ମା—ଏ' ଦେହ ଉପରେ ଭାରି ମାୟା ହେଉଚି ମା ! ଖାଲି ସଙ୍ଗାତକୁ ମୋ'ର, ଥରେ ଛୁଇଁବି, ମନ ପ୍ରାଣଭରି କୁଣ୍ଢାଇବି, ମୁଣ୍ଡାଇବି !

ଭଖା—(ହର୍ଷଭରେ ଆଖି ମୁଦି) ବେଶ୍, ଶୁଣ ବାପ,

"ହୃଦୟରେ ଶ୍ରୀବତ୍ସ ଚିହ୍ନ।
ସେହିଁ ପତିତ ଉଦ୍ଧାରଣ॥

ଭୁଜେ ବିରାଜେ ବୀରବାନା ।
ସେହି ଅନାହୃ ବଜ୍ରସେହ୍ନା ॥
ଶ୍ରୀକର ଯୁଗଳେ କଙ୍କଣ ।
ନାନାରତନେ ଅଘଟଣ ॥
ରତ୍ନ ମୁଦ୍ରିକା କରାଙ୍ଗୁଳି ।
ସେ ଅଘ ତମିର ବାତୁଳି ॥
କରଜ କାନ୍ତି ପୂର୍ଣ୍ଣ ଶଶୀ ।
ସାଧୁ କୁମୁଦ ମନ ତୋଷି ॥
ଚିନ୍ତି ନ ପାରେ ବେଦବ୍ରହ୍ମା ।
କେ କହୁ ମୁଖେ ତା' ମହିମା"

ସାଲ—ମା—ମା—ଆଖି ମୁଦିଲେ ବି—ସେହି ରୂପ ପୁଣି ଆଖି ଆଗେ ଜଳ୍ ଜଳ୍ ହୋଇ ଦିଶୁଚି, ମା—

ଭିଖା—ମନ ଚଞ୍ଚଳ କରନା—ଶୁଣି—

"କମଳ ବଜ୍ରାଙ୍କୁଶ ମାନ ।
ବିରାଜେ ଅଷ୍ଟାଦଶ ଚିହ୍ନ ॥

ସାଲ—ଠିକ୍ ସେହି ସେହି ଚିହ୍ନ, ମା—

ଭିଖା—( ହସି )

"କମଳା ଦେବୀଙ୍କ ବିଳାସ ।
ଯହିଁ ଶରଣ ଚତୁର୍ଦ୍ଦଶ ॥
ଅଶେଷ ବ୍ରହ୍ମାଣ୍ଡ ମଣ୍ଡଳ ।
ସେବନ୍ତି ପଦପଦ୍ମେ ଲୀନ ॥
ସିଦ୍ଧ ଯେ ଯୋଗୀନ୍ଦ୍ର ମୁନିଗଣେ ।
ନିତ୍ୟ ଚିନ୍ତନ୍ତି ଯେ ଚରଣେ ॥
ସେ ପାଦେ ଆଶେ ଥିବ ଯାର ।
ସଂସାରେ ଭୟ ନାହିଁ ତା'ର

ସାଲ—ମୁଁ ଆଶା କରିବି, ମା—ସଙ୍ଗାତ ମୋତେ ଛୁଇଁବାକୁ ଆଉ ଘୃଣା କରିବ ନାହିଁ ତ, ମା ?

ଭିଖା—ପୁଣି ଚଗଲାମି—

ସାଲ—ନା, ନା,—କହିଯା'—କହିଯା' ମା—

ଭିଖା—( ହସି ହସି )

"ତ୍ରିଭଙ୍ଗି ରୂପ ବଂଶୀଧର ।
ଭଙ୍ଗିମା ଗୃହାଣୀ ସୁନ୍ଦର ॥
ଏମନ୍ତ ସ୍ୱରୂପ ଅଟଇ ।
ଯହିଁ ଚିନ୍ତିବ ତହିଁ ଥାଇ ॥
ତୁ ବାବୁ ଏହିରୂପ ଚିନ୍ତ ।
ମନରୁ ଛାଡ଼ ଭୟ ଭ୍ରାନ୍ତି ॥
ଅନେକ ଦେବେ ଶେଷ ଶିବେ ।
ଯା' ରୂପ ଚିନ୍ତି ନ ପାରିବେ ॥
ମୋ ଛାର କେତେକ ମାତର ।
କହିବି ରୂପ ଗୁଣ ତାର ॥
ମୋହର ପିତା ମୁଖୁଁ ଯାହା ।
ଶୁଣିଚି କହିଲି ମୁଁ ତାହା ।"

ସାଲ—ମୁଁ ଯେ ଆଖିରେ ତାହାହିଁ ଦେଖୁଚି, ମା—

ଭିଖା—ମନରେ ଭାବି, ମନରେ ଧରି ରଖିଲେ, ହେବ ସିନା ।

ସାଲ—କିନ୍ତୁ "ଏମନ୍ତ ସ୍ୱରୂପକୁ ଭାବି ।
କହ ମୁଁ କେମନ୍ତେ ବଞ୍ଚିବି ॥"

ଭିଖା—( ହସି )

"ଶୁଣରେ ମୋହର ତନୁଜ ।
ବିଶ୍ୱାସ ସିନା ମୂଳ ବୀଜ ॥
ଦୃଢ଼େ ତୁ ଯେବେ ଭଜିବୁ ।
ଦ୍ୱାଦଶଦିନେ ଭଲ ହେବୁ ॥

ସାଲ— "......ହେଉ, ହେଉ ।
ଏ'କଥା ତୋର ମନେ ଥାଉ ॥
ଏବେ ମୁଁ ଭଜୁଅଛୁ ହରି ।
କଣ୍ଠ ବଳିଲେ କିନ୍ତୁ ମରି ॥

ଭିଖା—ଛି, ଛି, ବାପ—

ସାଲ—ଦେ, ଦେ, ଶିଖାଇ ଦେ, ମା-କେମିତିକା ଭଜିବାକୁ ହୁଏ ।

ଭିଖା— ଗୀତ

ଭଜରେ ମନ, ଶ୍ରୀ ବୃନ୍ଦାବନଚନ୍ଦ୍ର ଭଜ ।

ସାଲ—( ଠିକ୍ ସେହି ସ୍ୱରେ )

'ଭଜରେ ମନ ଶ୍ରୀବୃନ୍ଦାବନ ଚନ୍ଦ୍ର ଭଜ' ।

ଭିଖା—ବେଶ୍, ଏହି ପଦଟି ଘୋଷୁଥା'—ବ୍ରାହ୍ମ ମୁହୂର୍ତ୍ତ ଗଡ଼ି ଯାଉଚି-ମୁଁ ଗାଧୋଇ ସାରି ଆସେ କି—।

( ଘର ଭିତରୁ ଲୁଗାପଟା, ଗାମୁଛା ଓ କଳସି-ଟିଏ ନେଇ ବାହାରି ଗଲା )

ସାଲ—( ସେହିପରି ଘୋଷୁଥାଏ )
'ଭଜରେ ମନ ଶ୍ରୀ ବୃନ୍ଦାବନଚନ୍ଦ୍ର ଭଜ !'
( ଛପି ଛପି, ଜୁଙ୍କିମାରି, ଏ' ପାଖ ସେ ପାଖ ଗୁହୁଁ ଗୁହୁଁ, ଗୋପାଳ ଘରର ବାହାରପଟ ଦେଇ, ସାଲବେଗ ପାଖକୁ ଆସିଲି )

ଗୋପାଳ—ବାଃ, ବେଶ୍ ଗାଉଚ ତ, ସଙ୍ଗାତ !

ସାଲ—ନାହିଁମ, ଭାଇ—ମୋତେ ଠିକ୍ ଗାଇ ଅସୁନାହିଁ—ମା କି ସୁନ୍ଦର ଗାଉଥିଲେ—ତୁମେ ଜାଣ କି ? ଗାଇଲ, ଗାଇଲ—

ଗୋପାଳ—ମୋତେ କଣ ଗାଇ ଆସେ କି ? ଖାଲି ଶୁଣି ଆସେନା । ତୁମର ଗାଉଣା ସତେ ଏକା ଭାରି ମିଠା ଲାଗିଲା ବୋଲି, ଥୟହୋଇ ରହି ପାରିଲି ନାହିଁ ପରି ।

ସାଲ—କଥାରେ କ'ଣ କହନ୍ତି ନାହିଁନା—'ଆପଣା ପୁଅ ଅନ୍ଧ ହେଲେବି, ନା' 'ପଦ୍ମଲୋଚନ' ।

ଗୋପାଳ—ମୁଁ କଣ ତୁମର ଏତେ ଆପଣାର, ସଙ୍ଗାତ ?

ସାଲ—ତୁମେଇ ମୋତେ ଏତେ ଆପଣାର କରି, କହୁଚ ଏ'କଥା ?

ଗୋପାଳ—ନା ଭାଇ—ମୁଁ ତ ତମକୁ ଛୋଇଁବାକୁ ଯୁକ୍ତ ଘିନ୍ ଘିନ୍ ହେଉଚ !

ସାଲ—ତା'ନୁହେଁ ସଙ୍ଗାତ, ଛୋଇଁବାକୁ ବରଂ ଉଚ୍ଛନ୍ନ ହେଉଚ । ମୋତେ ଶୀଘ୍ର ସୁସ୍ଥ ହୋଇ ଉଠିବାକୁ ଜୋର୍ ଜୁଲୁମ୍ କରୁଚ । ଭାଇ, ଭାଇ ଏକାନ୍ତମନେ ମୋତେ ଗାଇବାକୁ ଦିଅ—

( ଗୀତ )

'ଭଜରେ ମନ ଶ୍ରୀ ବୃନ୍ଦାବନଚନ୍ଦ୍ର ଭଜ !'

ଗୋପାଳ—ଆଚ୍ଛା, ଭାଇ—ମୁଁ ଯଦି ସେହି ବୃନ୍ଦାବନଚନ୍ଦ୍ର ହୁଏଁ—

ସାଲ—ବେଶ୍, ତୁମକୁଇ ଭଜିବି—

ଗୋପାଳ—ଭଜ, କଣ କରିବ ?

ସାଲ—କରିବି କଣ ? କହିବି—ଭଲକରି ଦିଅ—

ଗୋପାଳ—ଭଲ କରି ଦେଲିଣୁ—

ସାଲ—ତୁମକୁଇ କୁଣ୍ଢାଇ ମୁଣ୍ଡାଇ, ବୁଲିବି ।

ଗୋପାଳ—ନା, ଖଣ୍ଡାଟିଏ ଧରି, କଟକ ଲାଲବାଗ ଆଡକୁ ଧାଇଁ ଯିବ, ଲାଲବେଗର ସେନାପତି ହୋଇ, ପୁଣି ଲଢ଼େଇ କରିବାକୁ ? ମଣିଷ କାଟିବାକୁ ?

ସାଲ—ତା' ବି ଅସ୍ୱାଭାବିକ ନୁହେଁ—ତେବେ—

ଗୋପାଳ—ତେବେ କଣ ?

ସାଲ—ତୁମେ ଯଦି ସେ ବାପଦ୍ୱାରେ ପ୍ରବର୍ତ୍ତାଅ, ତା' ହେଲେଯାଇଁ ସିନା—

ଗୋପାଳ—କାହିଁକି ମ ? ଆମର ଗରଜ ?—ଓହୋ ! ତୁମେ ତ ଭାରି ଫିଚାଦିଆ—ପର ମୁଣ୍ଡରେ କେମିତିକା ଅଠା ବୋଳିଦେଇ, ଅଲଗା ହୋଇଯିବ, ନା ?

ସାଲ—ମ—ଆପଣାକୁ 'ବୃନ୍ଦାବନଚନ୍ଦ୍ର' ବୋଲି ପରିଚୟ ଦେଉଚ ଏତିକିବି ବୁଝି ପାରୁନାହଁ ? ଏ ପିଣ୍ଡରେ ତ ତୁମ ଛଡ଼ା ଆଉ କାହାରି ଅଧିକାର ରହିବ ନାହିଁ ସେତେବେଳେ ?

ଗୋପାଳ—ସଙ୍ଗାତ—ସଙ୍ଗାତ— ( କୁଣ୍ଢାଇବାକୁ ଧାଇଁଗଲେ, ଆପଣା ଭୁଲି କି ଅଉ ? )

ସାଲ—ନା, ନା, ସଙ୍ଗାତ—ଛୁଅଁ ନା,—ମା ଛୁଅଁନା ଦେଖିଲେ ଓଲଟି ମୋତେ ପୁଣି ଗାଳି ମନ୍ଦ କରିବେ ଟି ! ମୁଁ ଯେମିତିକା ପୁଅ—ତୁମେବି ତ ସେମିତିକା ପୁଅ ?

ଗୋପାଳ—ମୁଁ ପରି ସେହି 'ବୃନ୍ଦାବନଚନ୍ଦ୍ର' !

ସାଲ—ଯେ ହି ହୁଅନା ? ଛୁଇଁବାକୁ କେବେଁ ଦେଉ ନାହିଁଟି ! ତୁମେଇ ସେତେବେଳେ କହୁଥିଲ କ'ଣ ମୁହଁ ଉପରେ ପୋ'ର, ଯା'ପାଇଁ ଏତେ ଗାଳି ମନ୍ଦ ଖାଇବାକୁ ହେଲି ମାଠୁଁ ?

ଗୋପାଳ—ମୋତେ କଣ ବୃନ୍ଦାବନଚନ୍ଦ୍ର ବୋଲି ବିଶ୍ୱାସ ହେଉନାହିଁ ତେବେ ?

ସାଲ—ତା' ମୁଁ କେମିତି କରିବି, କହିଲ ? ମା ଯେଉଁଭଳି ରୂପ କହୁଥିଲେ, ତା'ରି ତ ବାଣିଗୁଏ ତୁମଠି ନାହିଁ ? ହଉ, ମା' ଆସନ୍ତୁ, ମୁଁ ପଚାରି ବୁଝେଁ । ସେ ଯଦି କହିବେ ତ—

ଗୋପାଳ—ଅରେ ଭାଇ—'ମା' ତୁମକୁ ଭଣ୍ଡାଉଚନ୍ତି ମ !
'ମା' ମାନେ କେତେ ଅଳ୍‌ଗୁବି କଥା କହ୍ନ୍ତି, ପିଲାଙ୍କୁ ଭଣ୍ଡାନ୍ତି ନାହିଁନା ?

ସାଲ୍—ମୁଁ ତ କିଛି ବୁଝିହେଉ ପାରୁ ନାହିଁ, କି 'ମା' ସଙ୍ଗେ ସମ୍ପର୍କ ଲାଗୁଏ ନାହିଁ, ଯେ—

ଗୋପାଳ—ଆହେ ! ତୁମର ଦେହର ବେଦନାଟା ଭୁଲି ରହିଚ କାହିଁରେ ଆଉ ତେବେ, କହିଲ ?

ସାଲ୍—ତେବେ, ତେବେ, ସ୍ୱରୂପଟା ତୁମର କି ଭଳି ? ଦେଖାଅନା ଥରେ, ଭାଇ—

ଗୋପାଳ—ଅବିକଳ ଯା' ଦେଖୁଚ, ମ—

( ଗୀତ )

ଆରେ, ମୁହିଁ ଅଟେ ଗୋରୁଚର୍‌ ।
ଦୁଧ ଦହି ଘିଅ ସର ଚୋର୍‌ ॥
ଅଣ୍ଟାରେ ଘାଗୁଡ଼ି
ହାତେ ମୋର ବାଡ଼ି—
ବଇଁଶୀରେ ପ୍ରାଣ ମନଚୋର୍‌ ॥
ଟୋକାଏ ପଡ଼ିଲେ ମୋ' ହାତୁଡ଼େ-
କରଣି ଛାଡ଼େ ଏ' ନାକ ଚୁଡେ,
ଧୃଷ୍ଟୁଆ ନାହିଁ କେ ମୋହ ପର୍‌ ।
ଯୁବତୀଙ୍କର ମହତହର୍‌ ॥

( ଶେଷ ପଦ ବେଳକୁ ଭଖାରୁଣୀ ପଛପଟୁ ଧାଇଁ ଆସି, ଗୋଟାଏ ଗଛର ଡାଳରେ ପାହାରେ ଦେଲେ କିମ୍ବାଭବେ କହୁଁ କହୁଁ )

ଭଖା—(ପଦମିଶାଇ ସ୍ୱରରେ ) ଖାଏ ସେଇଥି ପାଇଁ, ବୁଢ଼ୀଙ୍କ ଦାଣ୍ଡ ପହଁର୍‌ !

ଗୋପାଳ—ମୋ ବୌଲୋ ! (ଏକା ବେଳକେ ଭାଗେ)

ସାଲ୍—ଭାଗି ଗଲା, ମା—ତେବେ ବି ପ୍ରାଣକୁ ମୋର ଦିଏ, କେଉଁ ସୁଖଦୋଳା !

ଭଖା—ଆରେ, ଚଗଲାମି ନ କଲେ ପିଲା କଣ ? ସେହି ତ ପିଲାର ମହତଗୁଣ !—ତାହାହିଁ ମା'ର ମନକୁ ନଚୁଏ ସିନା !

( ଏହିପରି କଥା ମଝିରେ କେତେବେଳେ ଗୋପାଳ ଦୌଡ଼ି ଆସିଲା )

ଗୋପାଳ—ମା'ର ମନକୁ ସିନା ନଚୁଏ—କିନ୍ତୁ— କିନ୍ତୁ—

( ଗୀତ )

ଦେଖ, ମା ଏ' ପିଠି ମୋ'ର,
ଫୁଲିଚ ଝାଡ଼ୁରେ ତୋ'ର ॥
ତୋ' ଝାଡ଼ୁ ଖାଇବି ନାହିଁ—
ଆଉ ତ ଆସିବି ନାହିଁ—
ନାକ ତଳେ ଘସେ କୋର ।
କାନ ମୋଡ଼େ ବାର ବାର ॥

ସାଲ୍—ଆ, ଆ, ସଙ୍ଗାତ—ପ୍ରାଣର ଭାଇ ମୋ'ର !

ଭଖା—ଆ, ଆ, ବାପ, ଧନମଣି ମୋ'ର—

ଗୋପାଳ—ନା—ନା—

( ସେହିପରି କାନ୍ଦ କାନ୍ଦ ଗାଉ ଗାଉ ଅଭିମାନ-ଭରେ ଚାଲିଗଲା )

—ଯବନିକା—

---

# ପଞ୍ଚମ ଅଙ୍କ

**ଦୃଶ୍ୟ**:—ନିର୍ଜନ ପ୍ରାନ୍ତର ।

( ଦିଗନ୍ତ ପ୍ରସାରିତ—ଗୋଟିଏ ବୃକ୍ଷକୁ ଆଉଜି, ସାଲବେଗ ତନ୍ମୟ ହୋଇ ଗାଉଥିଲେ । ତପସ୍ୱିନୀ ଅଦୂରେ, ଶୋଇ ପଡ଼ିଥିଲେ କେତେବେଳେ )

ସାଲବେଗ— ଗୀତ ।

ଭଜରେ ମନ ଶ୍ରୀ ବୃନ୍ଦାବନଚନ୍ଦ୍ର ଭଜ ।
ଅଟଇ ଏକା ସେ ଯେ ଅଶେଷ ଦେବରାଜ ॥
ଅଶେଷ ଔଷଧିର ଘର
ଭଜିଲେ ନିଶ୍ଚେ ହେବୁ ପାର;
ସେହି ଏକା ଭବେ ଦୁଃଖହର—
ଧର ଅଷ୍ଟେ ପଦ, ମନ, ବୋଲ ପଦରଜ ॥

ଭକ୍ତା—( ହଠାତ୍‌ ଚେଇଁ ଉଠି ) ଗୋପାଳ !—ତୁ ଆସୋ ଶୋଇନାହୁଁ ?

ସାଲ୍—ମା, ମା—ଏମିତରେ ତ ବରଂ ବେଶ୍ ଶାନ୍ତି ପାଉଚି—ଶୋଇଲେ, ଏହି ବେଦନା ଭରା ଅଙ୍ଗ ମୋର କଣ ଭଲେ ହେଲେ ଶୁଆଇ ଦେବ, ମା ?

ଭଖା—ମନ ଦମ୍ଭକର, ବାପ—ନିଶ୍ଚେ, ସେହି ଦୁଃଖହାରୀ 'ବୃନ୍ଦାବନଚନ୍ଦ୍ର' ତୋର ଦୁଃଖ ହରିବେ, ବାପ !

ସାଲ୍—କାହିଁ, ମା ?—ଗୀତ ପାହିଲେ ତ ବାରଦିନ ପୂରିଯିବ—ଯାହାହେଉ, ପୁଣି କହୁଚି, ମା—କଣ୍ଟ ବିନ୍ଧିଗଲେ କିନ୍ତୁ, ଏ ପ୍ରାଣ କେବେ ରହିବ ନାହିଁ , ମା ?—

ଭଖା—ସେହି ଭଲ ଅଣ୍ଟ ରହି, ତାଙ୍କ ପଦେ ଲୟ ଲଗା, ବାପ—ନିଶ୍ଚେ ସେ ପ୍ରସନ୍ନ ହେବେ—ତୋତେ ଆରୋଗ୍ୟ କରି ଦେବେ—

ସାଲ୍—ବେଶ୍, ଆଉ ମୋତେ ବାଧା ଦେ'ନା—

ଭଖା—ନା, ବାପ—ତୁ ଭଜ, ଯେଉଁ ଭଲ ମନ ତୋ'ର । ( ଚାଲିଗଲେ )

ସାଲ୍—( ଚକ୍ଷୁ ମୁଦ୍ରିତ କରି ଗଦ୍‌ଗଦ କଣ୍ଠେ )

"ଜୟ ତୁ ବୃନ୍ଦାବନଚନ୍ଦ୍ର ।
ଜୟ ତୁ ମୁକୁନ୍ଦ ଆନନ୍ଦକନ୍ଦ ॥
ଜୟ ଯାମଳାର୍ଜ୍ଜୁନ ଭଞ୍ଜା ।
ତୃଣା ଶକଟା ଗର୍ବ ଗଞ୍ଜା ॥
ଜୟ ତୁ ଷଣ୍ଢା ବିନାଶନ ।
ଗୋକୁଳ ଶିଶୁ ବିବର୍ଦ୍ଧନ ॥
ଜୟ ତୁ ବକ ଅଣ୍ଟ ଶରୀ ।
ଅଘା ପ୍ରଳମ୍ବା ପ୍ରାଣ ହରୀ ॥

( ହଠାତ୍ ଥମିଯାଇ ) —କିଏ ?—କିଏ ଏମାନେ ?— ( ବୋକାଭଳି ହୋଇଗଲେ)

( ମାୟା-ଲାଲ୍‌ବେଗ ଓ ଜେବୁନିସା ପ୍ରବେଶ କଲେ ବ୍ୟସ୍ତ ହୋଇ )

ଲାଲ୍—ତୁ ଏଠି, ବେଟା—ଏହି ଘୋର ଜଙ୍ଗଲଟାରେ ?

ଜେବୁ—ଆ, ଆ, ବେଟା—ଆମେ ପରା ଖୋଜି ଖୋଜି ତୋତେ ଥକି ଗଲୁଣି ।

ଲାଲ୍—ଛି, ଛି, ତୁ ଜ୍ଞାନୀହୋଇ, ଏତେ ବେକୁବ୍ ନା ?—ସେହି କାଫେର ପଚ୍‌ଲ୍ଲଟାର କଥାରେ ବାଟ ଭୁଲୁଚୁ ନା ?

ଜେବୁ—ମୁଁ କ'ଣ ତୋର ମା' ନୁହେଁ ରେ ? ତୋ'ର ପାଇଁ ସିନା ଲାଲ୍‌ବାଗର କୋଠି ଛାଡ଼ି, ଏଠାକୁ ଧାଇଁ ଆସିଚି ?

ଲାଲ—ତୁହି ପରା ମୋତେଇ 'ବାବା, ମା' ବୋଲି ଜାଣୁଥିଲୁ ?

ଜେବୁ—ଧର, ବାବା ତୋର ଭୁଲରେ ଯଦି କିଛି ଗୋଟାଏ ଦୋଷ କରି ପକାଇ ଥାନ୍ତି—ତୋ'ର କଣ ପୁଅ ହୋଇ ଏମିତକା ଛାଡ଼ି ଆସିବାଟା ଠିକ୍ ହୋଇଚି ?—

ଲାଲ—ଆରେ, ମୁଁ ଯଦି ଆପଣା ଉପରେ ଛାଡ଼ି, ଆପଣାର ଓଠ ଆପେ କାମୁଡ଼ି, ରକ୍ତପାତ କରି ପକାଇ ଥାଏଁ, ତୋ'ର କ'ଣ ସେ'ଠି ରକ୍ତପାତ ବନ୍ଦ ନ କରି, ଆଶ୍ୱାସନା ନ ଦେଇ, ଏମିତକା ରାଗି ମାଗି ହେଇ, ବା ମାନ ଅଭିମାନ କରି ହେଉ, ବାହାରି ଆସିବାଟା ଉଚିତ ହୋଇଚି ?

ଜେବୁ—ଆହୁରି, ଦେଖ, ବାପ—ତୋ'ର ବାପ ତୋ' ପାଇଁ କ'ଣ ନ କରିଚି ? ମୁଲ୍‌କର ବୈଦ୍ୟ ଲଗାଇ ଲଗାଇ ଥକି ଗଲେ, ଯେତେ ଯା' ଭଲ ଭଲ ଦବେଇ ଦୁନିଆରେ ଅଛି, ଅଣିବାକୁ କସୁର କଲେ ନାହିଁ;—ଫକୀର ହୁକୁମି ଯା କିଛି କହି, କରି କରି ଶେଷକୁ ଦିକ୍‌ଦାର ହୋଇ, ଛାଡ଼ି ଦେଇ, ପାଗଳ ପରା ହୋଇଗଲେ,—ତେବେକେଉ କାହିଁରେ କିଛି ହେଲାନାହିଁ, ଆଉ ତୁ ଏହି ଭିଖାରୁଣୀଟାର କଥାରେ ପଡ଼ି, ଗଡ଼ୁଚୁ ସଢ଼ୁଚୁ ସିନା !—ଆରେ, ଖାଲି ଏମିତକା ତୁଚ୍ଛା ନା'ରେ କଣ ଗୋଟାଏ କାମ ହୋଇଯାଏ ରେ ?

ଲାଲ—ଆ, ଆ, ବେଟା—ଯେତେଦିନ ଜାନ୍ ଅଛି ତୋ'ର—ଖାଲି ମଜକ୍ ମଜଲିସ୍, ଫୁର୍ତ୍ତି ! ଏହି ଯେ ଆସି ଗଲେଣି ମୋ' ବିଳାସ-ସଙ୍ଗୀଗଣ—କର, କର ଫୁର୍ତ୍ତି, ବେଟା ! ଫୁର୍ତ୍ତିର ଏହି ଦୁନିଆଟା !

କେଳୁ—ଆରେ ଯୌବନର ଧର୍ମ ସିନା ଏହିଟା ।
(ଉଭୟେ ହାତ ଧରାଧରି ହୋଇ ଚାଲିଗଲେ କେଉଁ ଯୁଗଳ ପ୍ରଣୟୀ ଭଳି)
(ଗୋଲାପ ସୁନ୍ଦରୀଗଣ ଗାଇ ଗାଇ ନାଚି ନାଚି ଆସି ଘେରିଗଲେ ସାଲବେଗଙ୍କୁ)

ହବର୍—(ମାୟା ହବର୍ ମଧ୍ୟ ସୁରାପାନେ ଘେନି ତାଙ୍କ ସଙ୍ଗେ ନାଚିବାକୁ ଲାଗିଲା)

ଗୋଲାପ ସୁନ୍ଦରୀଗଣ—

(ଗୀତ)

ସବୁ ଦୁଃଖ ଚାଲିଯିବ
ବେଦନା ଗୋ ପାଶୋରିବ ।
ଏ' ଗୋଲାପ ଅଧରେ ମୋ'
ଚୁମ୍ବନଟିଏ ଯଦି ଦେବ ॥
ସ୍ୱର-ତନୁ-ତରୁ ତବ—
ଭରି ହୋଇ ମୁଞ୍ଜରିବ—
ବସନ୍ତ ଖେଳିବ ପ୍ରାଣେ—
ଜରା କେବେ ନ ଭଜିବ ॥

ସାଲ—(ଉତ୍‌କ୍ଷିପ୍ତ ହୋଇଉଠି)—ପିତା ! ପିତା !—ଏହି ଢଳ ଢଳ ସୁଧାଭରା ଗୋଲାପୀ ଅଧର ସାମ୍ନାରେ ପାଇ ନିତ ନିତ, ହେଳାରେ ଫିଙ୍ଗିଦେଇ ଅବଜ୍ଞା କରି, ଏହି ଭରା ଯୌବନରେ ଜରା ପ୍ରସ୍ତ କରିବାର ଯାତନା ଭୋଗ କରୁଛି ଆଜ,—ରୋଗ ବ୍ୟାଧିର ଅଶେଷ ଲାଞ୍ଛନା ଦେହେ, ମନେ, ପ୍ରାଣେ ଯେତେକ ?—ବୁଝିଚି ବୁଝିଚି, ପିତା—ତୁମର ଆଦର୍ଶ ଦେଖି, ଦେଖି ଦିନରାତ, ତୁମର ଯୋଗ୍ୟ ସନ୍ତାନ ହୋଇ ପାରିଲିନାହିଁ ବୋଲି, ଏହାପରି ପୀଡ଼ିତ ତାଡ଼ିତ ସିନା ଆଜ !

ଗୋଲାପ ସୁନ୍ଦରୀଗଣ }—କିଛି ଚିନ୍ତାନାହିଁ, ଆମସଙ୍ଗେ ଆସ ନା ବାହାରି—ଏବେ ବି ଭୁଲ ଶୁଧାରିବାକୁ ଢେର ବେଳ ଅଛି ଯେ ।

ଗୀତ

ସବୁ ଦୁଃଖ ଚାଲିଯିବ—
ବେଦନା ଗୋ ପାଶୋରିବ—
ଏ' ଗୋଲାପ ଅଧରେ ମୋ'—
ଚୁମ୍ବନଟିଏ ଯଦି ଦେବ ॥

ହାବର୍—କେୟାବାତ୍—ଲେଓ—ଲେଓ— ପିଓ —

(ସାଲବେଗ ମନ୍ତ୍ରଚାଳିତ ଭଳି, ଜାଗରିତ ଥାଇ ଯେମିତି ଯୁଗର ସ୍ୱପ୍ନ ଲାଳସାରେ ତାଡ଼ିତ ହେଲା ଭଳି, ଅଧର ଚୁମ୍ବନ ଓ ହବର୍‌ଠାରୁ ସୁରାପାନ କରିବାକୁ ଯାଉଥିଲେ)

(ଭଖାରୁଣୀ ଠିକ୍ ସେତିକିବେଳେ ନେପଥ୍ୟ ଗାଇବାର ଶୁଣାଗଲେ)

ଭଖା— "ହେ ଆର୍ତ୍ତିଦୀନବନ୍ଧୁ ।
ଭକ୍ତବତ୍ସଳ କୃପାସିନ୍ଧୁ ॥
ମୋ' ଆର୍ତ୍ତିଖଣ୍ଡ ଦେବରାଜ ।
ବିଳମ୍ବେ ନାହିଁ ଅଉ କାର୍ଯ୍ୟ ॥"

(ଗୋଲାପ ସୁନ୍ଦରୀଗଣ କିଏ କୁଆଡ଼େ ଛିନ୍ନଭିନ୍ନ ହୋଇ ପଳାଇ ଗଲେ)

ସାଲ—(କେଉଁ ମୋହନିଦ୍ରାରୁ ହଠାତ୍ ଜାଗିଉଠିଲା) ମା, ମା—(ମାର ବୁକୁ ଉପରେ ଢଳି ପଡ଼ିଲେ)

ଭଖା—ଏ' କଣ, ବାପ—ଏମିତିକା ଥରୁଚୁ ଯେ !

ସାଲ—ମା, ମା,—ମୁଁ ବୁଝି ପାରୁନାହିଁ—ସ୍ୱପ୍ନ, କି ସତ୍ୟ—କ'ଣ ଗୁଡ଼ାଏ ଏଣ୍ଡୁ ତେଣ୍ଡୁ, ଖରାପ୍ କଥା ଆସି, ମୋ'ର ଭଜନରେ ବାଧାଦେଲା, ମା—ବୁଝିଲି, ବୁଝିଲି, ମା—ମୋ'ର ମନର ଦୃଢ଼ତା ନାହିଁ—ସେଇଥିପାଇଁ, ଶ୍ରୀ ବୃନ୍ଦାବନଚନ୍ଦ୍ର ମୋତେ ଦୟା କଲେ ନାହିଁ—ଏ' ଜୀବନ ମୁଁ ଆଉ ରଖିବି ନାହିଁ, ମା ?—

ଭଖା—ଛି, ବାପ—ମନକୁ ସ୍ଥିର କର—ଦମ୍ଭଧର—

ସାଲ—ନା, ମା—ମୋ'ର ମନ ବି ଏହି ଦେହକୁ ବଳି ସଢ଼ି ପଚିଗଲାଣି—ଆଉ କିପରି ବାନ୍ଧିବି, ବୋଲ, ମା ?

ଭଖା—ମନର ଯା' ଭିତରେ ରୋଗ ଥିଲା, ତା' ଆଜି ପଦାକୁ ବାହାରି ପଡ଼ିଛି, ବାପ—ଆଉ ଡର ନାହିଁ—ଏଇ ଥର ତୁ ନିଶ୍ଚେ ଭଲ ହୋଇଯିବୁ, ବାପ (ହାତ ବୁଲାଇ ଦେବାକୁ ଲାଗିଲା)

ସାଲ—ବଳ ପାଇଛି, ମା—ତୋ'ର ଏହି ପ୍ରଲେପରେ ।

ଭିଖା—ଗା, ଗା, ମୋ' ସାଥିରେ, ବାପ—

ଉଭୟେ :— ( ଗୀତ )

ହେ, ଶ୍ରୀହରି !—ଆସ ନାଚି ସେହିପରି ॥
ଯଶୋଦାର କୋଳେ ଗୁଞ୍ଜମାଳ ଦୋଳେ
ଗୁଞ୍ଜିହୁଅ ଯେଉଁପରି ।
ଗାଇବ କି ଥରେ ସେହି ମୁରଲୀରେ
ତ୍ରିଭଙ୍ଗ ମୁରଲୀଧାରି ।
ଯେ ନାଦେ ଯମୁନା ଉଜାଣି ଗମନା
ଅମାରେ ଶଶୀ ବିହରି ।
କୁବୁଜା ଯା' ବଳେ— କୁବ୍‌ଜ ହରାଇଲେ,
ଅବ୍‌କେ ଜଣି ସେ ମାଧୁରୀ ॥

ସାଲ—ମା, ମା, ଏ' କା'ର ପରଶ, ମା ? ମୋ' ଅଙ୍ଗେ ଅଙ୍ଗେ, ମନେ ମନେ, ଚନ୍ଦନ ଓଯମିଭଳି ଲେପି ଦେଉଛି, ମା ?

ଭିଖା—ଏହି ଯେ ଉଷାରାଣୀଙ୍କ କୋଳ ଭୂଷା କରି, ନବୀନ ତପନ ଉଇଁ ଆସିଲେଣି—ତା'ଙ୍କରି ପରଶ, ବାପ ?

ସାଲ—ମୋ'ର ଭାଗ୍ୟାକାଶର ଅମାନିଶା ଦୂର କରି-ଦେବା ପାଇଁ କି, ଏ' ପରଶ ସତେ ଅଜି, ମା ?

ଭିଖା—ମୋ'ର ଶୂନ୍ୟକୋଳକୁ ଚିର ଉଜ୍ଜ୍ୱଳ କରିବା ପାଇଁକି ନିଶ୍ଚେରେ, ଧନ ?—

ସାଲ—ମା, ମା—ସତେ, ସତେ—ଦେହରେ କି ବଳ—ମନରେ କି ପୁଲକ, ମା—ପୁନେଇ ରାତିରେ, ପୂର୍ଣ୍ଣ ଜୁଆର ଯେପରି ମାଡ଼ି ଆସୁଛି, ମା ? ( ଅଙ୍ଗର ବସ୍ତ୍ରାଭରଣ ଖୋଲି ଫିଙ୍ଗିଦେଲେ )

ଭିଖା—( ହାତ ବୁଲାଉ ବୁଲାଉ ) ଦେଖ୍, ଦେଖ୍, ବାପ—ଶ୍ରୀ ବୃନ୍ଦାବନ ଚନ୍ଦ୍ରଙ୍କର କେଉଁ ଅପୂର୍ବ ଦୟା ।

ସାଲ—ମୁଁ ଯେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିଛି । ମା—ମା ! କି ଆନନ୍ଦ !—କି ଆନନ୍ଦ !—ମୁଁ କାନ୍ଦିବି କି ହସିବି ?—ନାଚିବି କି ଗାଇବି ?—ମରିବି କି ଜିଇଁବି ? ( ପାଗଳ ପ୍ରାୟ ହୋଇଗଲେ )

ଭିଖା—ବାୟା ହେଲୁ ନା କଣ ? ହରି, ହରି, ଏ' କଣ କଲ ? ଗତି ଦେଇ, ମତି ହରିନେଲ ନା କଣ ?

ସାଲ—( ହଠାତ୍ ରହିଯାଇ ) ଶୁଣ୍, ଶୁଣ୍, ମା—କିଏ କାନ୍ଦୁଛି ? କି ବିକଳ ହୋଇ ।
( ଗୋପାଳଙ୍କ କାନ୍ଦି କାନ୍ଦି ପ୍ରବେଶ କଲା )

ଗୋପାଳ— ଗୀତ

ପର ପୁଅ ବୋଲି, ମାଗୋ ।
ଏତେ ହୀନମାନି କିଗୋ ॥

ଭିଖା—ଆ, ଆ, ଗୋପାଳ ମୋ'ର—କାନ୍ଦନା, କାନ୍ଦନା—ଏ ଆନନ୍ଦ ଦିନରେ ଆଜି, କାନ୍ଦନା—

ସାଲ—ସଙ୍ଗାତ ! ସଙ୍ଗାତ ! ଦେଖିଲ, କି ଭଲ ସୁନ୍ଦର ସୁସ୍ଥ ଦେହ ମୋ'ର !—ଆଜି ତୁମେ ଧରି ଛୁଆଁ ନ ଦେଲେ ବି, ମୁଁ ଗୋଡ଼ାଇ, ବଳେ ପଶି ଛୁଇଁବି ପରା ।

ଗୋପାଳ—( ବାଧାଦେଇ) କଣ୍ଡୁ, ମୁଁ କପରି ଛୁଇଁବାକୁ ଦେବିରେ ତୋତେ, ଭାଇ ?—

ଗୀତ

ଉଡ଼ିଦେଲି—ଦେଇ ଥିଲି—
ଶେଷେ ଦାଉକି ସାଧିଲି ?—(ମା)

ଭିଖା—କାନ୍ଦନା, କାନ୍ଦନା, ଗୋପାଳ—ମା'କୁ ତୋ'ର ଯେମିତିକା ଖୁଣ୍ଟାଦେଇ, ଅପ୍‌ଣା ମାରି । ମା କି ପୁଅଠେଇଁ କେବେଁ 'ଦାଉ' ସାଧେ ରେ ?

ସାଲ—ସଙ୍ଗାତ । ସଙ୍ଗାତ । ତୁମକୁ ଯଦି ଛୁଇଁ ନ ପାରିଲି, ମୋ'ର ଭଲ ହୋଇ ଫଳ କଣ ? ଏ ଜୀବନ ଧରିବାର ଲାଭ କଣ ? ମା । ମା ! ତୁ ଥରେ ସଙ୍ଗାତକୁ କୋଳକୁ ଭିଡ଼ିନେ କି,

କପିକର ଚୁମ୍ୱଟିଏ ଦେ' କି, ଦେଖିବୁ, ସଙ୍ଗାତର ସବୁ ମାନ ଅଭିମାନ କେଉଁଠି ଉଡ଼ିଯିବ ପରି ଦଣ୍ଡକେ ।

ଭିଖା—ଆ, ଗୋପାଳ—ଛି, ଛି ଛୁଆ ନା—ଦେଖିଲୁ, ଭାଇ ତୋର କେତେ କଷ୍ଟ ଭୋଗି, ଆଜି ଟିକିଏ ହସିଛି—ତୁ କଣ ଏମିତିକା ଧରି ଛୁଆଁ ନ ଦେଇ, ସେ ହସ ଖେଳ ଭାଙ୍ଗିଦେବୁ ତା'ର ? ଆ, ବାପ—

ଗୋପାଳ—ମା !—କିଏ କା'ର 'ହସଖେଳ' ଭାଙ୍ଗି ଦେଇଛି, ଥରେ ଦେଖିନ ଆଖି ମେଲିଇ—ତୁ ଆଜି, ଯଦି ସତେ ସତେ ମୋତେ ପୁଅ ବୋଲି ତୋ'ର, ଅଳଅର କରୁଥା'ନ୍ତୁ, ମା—ତା' ହେଲେ କି—

ଗୀତ

ସେହି ପୂଜ ରକ୍ତ ଆଣି ।
ମୋ' ଦେହେ ଲେପନ୍ତ କିଗୋ ॥

( ଅଙ୍ଗାଭରଣ ଫିଙ୍ଗି ଦେଖାଇଲେ )

ଭିଖା—( ନିର୍ବାକ୍ ହୋଇଗଲେ—ଜଡ଼ ପିଣ୍ଡ ପରି ରହିଁ ରହିଲେ ଖାଲି)

ସାଲି—ମା—ମା—ଏ' କି କାଣ୍ଡ ତୋ'ର ? ମୋର ଘା' ଯାକ ମୋର ଭାଇର, ସଙ୍ଗାତର ଦେହରେ ବୋଳି ଦେଇ, ମୋତେ ଯନ୍ତ୍ରଣା ମୁକ୍ତ କରିବୁ, ମା !—ମା, ମା—ତୁମେ ମା' ହୋଇ, ଏତେ ସ୍ୱାର୍ଥପର ନା ? ମୁଁ ତୁମର ଗର୍ଭରୁ ଜାତ ବୋଲି, ହେଲି, ତୁମର—ନିଜର, ଏତେ ଆଦରର !—ଆଉ, ସେହୁଟି ତୁମର ଅନ୍ତରରୁ ଜାତ, ମାନସ ପୁତ୍ର ବୋଲି, ହେଲା କି ନା, ଭଗାରଠୁଁ ହୀନ !—ଏତେ ଆଦର, ଏତେ ସୁଆଗ ଉଚ୍ଛୁଥିଲି ସେ ଅଭାଗାକୁ, ଶେଷେ ଏହିପରି 'ହଜର' କରିବ ବୋଲି ଦିନେ,—ଆପଣାର ଜଠରର ଜାଳା ଶାନ୍ତ କରିବ ବୋଲି ଯେଣେ !—ବାବା ! ବାବା ! ତୁମକୁ ଶତକୋଟି ସେଲମ—ଶତକୋଟି

ଧନ୍ୟବାଦ—ତୁମେ ପରକୁ ଆପଣାଠୁ ବଳି ଜ୍ଞାନ କର ବୋଲି, ତାଙ୍କର କଲ୍ୟାଣ ହେତୁ, ଆପଣାର ଏତେଟା ସ୍ନେହର ଅକାଞ୍ଚନକୁ, ଜୀବନର ଅଧିକକୁ, ଏହିପରି ବିସର୍ଜନ କରିଚ ସିନା,—ମା'ସୁ ମମତାର ଲେଶ ମାତ୍ର ସତ୍ତ୍ୱ ନ ଦେଖାଇ,—ଦୂର ଦୂର, ମାର ମ'ର, କୁକୁର ତଡ଼ିଲା ଭଳି କରି !—କାରଣ ? କାରଣ ?—ଯେମନ୍ତ ମୁଁ ସେ ଦ୍ୱାର ମାଡ଼ିବାକୁ ସ୍ୱପ୍ନରେ ସୁଦ୍ଧା ନ ଭାବେଁ ! ଅପରର ଅନିଷ୍ଟ କରିବାକୁ ଭୁଲିରେବି କେବେ ଧାଇଁ ନ ଯାଏଁ ! ଆସ, ଆସ, ସଙ୍ଗାତ ମୋତେ ଆଲିଙ୍ଗନ ଦିଅ—ମୋ'ର ରୋଗ ମୋତେ ଫେରାଇ ଦେଇ, ତୁମେ ରୋଗମୁକ୍ତ ହୁଅ—

ଗୋପାଳ—ତା' ତ ମୁଁ କରି ପାରିବି ନାହିଁ, ଭାଇ ?—'ଭାଇ' ହୋଇ—ମା'ର ସନ୍ତାନ ହୋଇ ?

ସାଲି—ବେଶ୍ ମୋତେ ତେବେ ଆତ୍ମହତ୍ୟା କରିବାକୁ ଦିଅ, ଭାଇ—ମାତୃ ଅପରାଧର କଳଙ୍କ ଧୌତ କରିବାକୁ ଦିଅ, ଭାଇ—

( ଗମନୋଦ୍ୟତ ହେଲେ )

ଗୋପାଳ—(ବାଧାଦେଲେ)

ଭିଖା—ହେ, ବୃନ୍ଦାବନଚନ୍ଦ୍ର ! ଏତେ ଛନ୍ଦ ତୁମର ମନରେ ଥିଲା ? ହେଉ ତୁମେ ଯଦି ସତ୍ୟ ହୁଅ—ସତ୍ୟରେ ତୁମ ପ୍ରତି ଯଦି ମୋ'ର ଦୃଢ଼ ଭକ୍ତି ଥାଏ—ତେବେ, ମୋ'ର ରକ୍ତ ଦାନରେ ପିଲାଟି ମୋ'ର ଏହିକ୍ଷଣି, ନିମିଷକେ, ରୋଗ ମୁକ୍ତ ହେଉ !

ସାଲି—ଏ' କିପରି ହେବ, ମା ? ସନ୍ତାନ ତୋ'ର ଜୀବିତ ଥାଉଁ ଥାଉଁ, ତା' କିପରି ଘଟିବାକୁ ଦେବ, ମା ?—ପ୍ରକୃତରେ ଯଦି ମା'ଠାରେ ମୋ'ର ଦୃଢ଼ ଭକ୍ତି ଥାଏ, ଆଉ ସେହି ବଳେ, ବୃନ୍ଦାବନଚନ୍ଦ୍ରଙ୍କ କୃପା, କଣିକାଏ ହେଲେବି, ପାଇବାର ଦାବୀ ରଖିଥାଏ, ତା' ହେଲେ, ମୋ'ର ରକ୍ତରେ,ସଙ୍ଗାତ

ମୋ'ର ରୋଗ ମୁକ୍ତ ହେଉ, ଆଉ ମା' ମୋ'ର କଳଙ୍କମୁକ୍ତ ହେଉ ।

ଗୋପାଳ—ଭାଇ ବଳେଇ ଗଲା ଦେଖୁଚ—ଆଚ୍ଛା, ଏତେ, ବଳ କସାକସିରେ—କଥା କଟାକଟିରେ ଦରକାର କଣ, ସଙ୍ଗାତ ? କିଚ୍ଛି ନାହିଁ—ତୁମେ ଯଦି ତୁମର ରକ୍ତ ବଦଳରେ, କହୁଥିଲ, ଯେମିତକା ମା କୁ ଫେରେଇଦେଲେ, ଭରି ଜାଅନ୍ତ କୋଳକୁ ତୁମର, ରକ୍ତ ଭିତରକୁ ମୋତେ— ଆଉ, ମା, ତୁମେ ଯଦି କସିକରି ଗୋଟିଏ ଚୁମ ଦିଅନ୍ତ, ରକ୍ତ ନ ଦେଇ—ତା' ହେଲେ, 'ସ୍ୱରୂପ'ଟା ମୋ'ର ଦେଖି ଜାଅନ୍ତ ପରା ।

( ସେହିପରି କହିବାରୁ 'ମଦନ ମୋହନ' ରୂପେ ଗୋପାଳ ଦେଖାଦେଲେ )

ଉଭୟେ—ହରି !—ହରି !—ଦୟାମୟ !—ଆଉ ଛାଡୁନାହୁଁ ଏଥର—

ଗୀତ

ଆଉ କି ସହଜେ ଛାଡ଼ିବାରେ ।
କପଟିଆ ତୁ ନନ୍ଦ କହ୍ନାରେ ॥
କେତେ ଛନ୍ଦ ଜାଣୁ ତୁ ନଟକୁଟିଆ,
ଛନ୍ଦେ, ଛନ୍ଦେ, ଛନ୍ଦ ଦେଇଚୁ ଦୁନିଆ-
ଛନ୍ଦାଚରଣ—ଆଉ କି ଫନ୍ଦା ?
ପଡ଼ିଛୁ ଏତେ ଭାରି ଛନ୍ଦାରେ ॥

—ଯବନିକା—

# ଭକ୍ତ ହରିଜନ

ବା

# ଦାସିଆ ବାଉରି

—ଭକ୍ତିମୂଳକ ନାଟକ—

## ବକ୍ତବ୍ୟ

ଏହି ନାଟକର କଥା ବସ୍ତୁ, ଓଡ଼ିଆର ଆଦରର ଧନ 'ଦାର୍ଢ୍ୟତାଭକ୍ତି' ଫଂଗୃହୀତ । ମୁଁ ଯଥାଯଥଭାବେ ଭକ୍ତକବିଙ୍କ ଭାବ ସଜାଗ ରଖିବା ଉଦ୍ଦେଶ୍ୟରେ, ତାଙ୍କର ପଦ୍ୟାଂଶ ଯଥାସମ୍ଭବ ଏହି ନାଟକରେ ବ୍ୟବହାର କରିବାକୁ ଚେଷ୍ଟା କରିଅଛି । ସେଥିରେ କେତେଦୂର କୃତକାର୍ଯ୍ୟ ହୋଇଅଛି, ତାହା ଉଭୟ ଅଭିନେତା ଓ ଦର୍ଶକମାନଙ୍କର ବିଚାର ସାପେକ୍ଷ । ଏ' ଭଳି ନାଟକ, ମୋ'ର ଭାଇ ଭଉଣୀମାନେ ଶ୍ରଦ୍ଧା ଓ ପ୍ରୀତି ଦୃଷ୍ଟିରେ ଦେଖି, ଆଦର କଲେ, ମୁଁ ମୋ'ର ଶ୍ରମ ସାର୍ଥକ ଜ୍ଞାନକରିବି ଓ ଆହୁରି ଲେଖିବାକୁ ଉତ୍ସାହିତ ହେବି । ଏ'ପରି, ଏ' ନାଟକରେ ସେହି କାଳର ଗ୍ରାମ୍ୟ ଚିତ୍ର ଅଳ୍ପାଧିକ ଦେଖାଇବାକୁ ମଧ୍ୟ ଚେଷ୍ଟାକରିଅଛି ।

ପରଶେଷରେ ମୋ'ର ଅନ୍ତରଙ୍ଗ ବନ୍ଧୁ କବି ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ରଙ୍କୁ ଅଶେଷ ଧନ୍ୟବାଦ୍ ଦେଉଅଛି । ତା'ଙ୍କର ସାହାଯ୍ୟ ନ ପାଇଥିଲେ, ସ୍ଥାନେ ସ୍ଥାନେ ଭାଷାଗତ ତ୍ରୁଟି ରହି ଯାଇଥା'ନ୍ତା ବୋଲି ମୋର ବିଶ୍ୱାସ ।

ଏହି ନାଟକାଭିନୟର ସ୍ୱତ୍ୱ, ଅର୍ଥାତ୍ Play Right ମୁଁ ଆନନ୍ଦର ସହିତ **କଟକ ଆର୍ଟ ଥିଏଟରକୁ** ଦେଇଅଛି । ଅନ୍ୟ କେହି ଥିଏଟରଦଳ ଅଭିନୟ କରିବାକୁ ଚାହିଁଲେ, ଆର୍ଟଥିଏଟରର ପ୍ରୋପ୍ରାଇଟର ଶ୍ରୀମାନ୍ କାର୍ତ୍ତିକକୁମାର ଘୋଷଙ୍କ ଅନୁମତି ଆବଶ୍ୟକ କରିବେ ।ଇତି

ଅଶ୍ୱିନୀ

କଟକ—୧୯୩୩

## —ଚରିତ୍ର ଲିପି—

ଶ୍ରୀହରି—ଛଦ୍ମବେଶରେ କେତେବେଳେ ସାନପିଲା, କେତେବେଳେ ବା ଗୋପାଳ ବାଳକ

ଦାସିଆ—ବାଉରୀ ଭକ୍ତ

ଚେହ୍ଲି—ଏକ ସ୍ତ୍ରୀ

ଷଡ଼ଙ୍ଗୀ—ବୃଦ୍ଧ ବ୍ରାହ୍ମଣ

ଦନା—ଏକ ନାତି

ତର୍କ ପଞ୍ଚାନନ—ବାଲି ଗ୍ରାମର ବରିଷ୍ଠ ପଣ୍ଡିତ, ବ୍ରାହ୍ମଣଗଣ, ସେବକଗଣ ଇତ୍ୟାଦି ।

# ଭକ୍ତ ହରିଜନ

## ବା

## ଦାସିଆ ବାଉରୀ

---

### ପ୍ରଥମ ଅଙ୍କ

**ଦୃଶ୍ୟ :**—ବ୍ରାହ୍ମଣ ସାହିର ଶେଷମୁଣ୍ଡରେ ନାହାଗୁଳିଆ ଘରଟିଏ ।

( ବାହାରେ ଦାସିଆ ଗୋଟିଏ ତନ୍ତରେ ଲୁଗା ବୁଣୁଥାଏ । ତା'ର ଭାରିଯା ଗେହ୍ଲି ଅରଟରେ ସୂତା କାଟୁଥାଏ । କାର୍ଯ୍ୟର ଲୟରେ ଉଭୟେ ତନ୍ମୟ । ମଝିରେ ମଝିରେ ଦାସିଆ ଆପଣାକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ କି କଣି, ଏହିପରି ଲୁହାଟ ଗାଉଥାଏ—"ରମ୍ଭା ତୋର ଲୋ, ତୋ ନାଗର ଯାଉଛନ୍ତି ଫୁଲ ତୋଳି" ଇତ୍ୟାଦି । ଗେହ୍ଲି ସେହି ସବୁ ପଦର ଭାବାନୁଯାୟୀ, ଜ୍ଞାତସାରରେ ହେଉ, କି ଅଜ୍ଞାତସାରରେ ହେଉ, କେତେବେଳେ ଅଳ୍ପ ଅଳ୍ପ ହସ ମୁଖରେ, କେତେବେଳେ ବା ଈଷତ୍ ଦଂଶିତ ଅଧରରେ, ସ୍ୱଳ୍ପ ଭ୍ରୂକୁଞ୍ଚନ ପୂର୍ବକ, ଦାସିଆ ଆଡ଼େ ଠିକ୍ ତାଳ ଦେଇ ଯେ ଗୁହୁଁ ନ ଥାଏ ତା ନୁହେଁ । )

ଦାସିଆ—(ହଠାତ୍ ଚାଲେଇ ଉଠିଲା—ଗୀତଭଙ୍ଗିରେ ହସି ହସି )

"ଦିନେ ଯାଇଥିଲି ଲୁଗା ବିକି—
ହାଣ୍ଡିରେ ଖାଇଦେଲା ଠାଉକୀ—
ରମ୍ଭା—"

ଗେହ୍ଲି—(ପଦଟା ଶେଷ ନ ହେଉଣୁ, ଖପ୍‌କିନା ଦାସିଆ ହାତକୁ ମୁଠାଇ ଧଇଲା )

ଦାସିଆ—ମ—।

ଗେହ୍ଲି—'ମ' ନା 'ଯ' ? କି ରେ ? ମୁଁ 'ଠାଉକୀ' ?—

ଦାସିଆ—ହୋଃ—ହୋଃ—ହୋଃ—( ହସି ଗଡ଼ିଗଲା )

ଗେହ୍ଲି—( ନିଆଁ ଖୁଣ୍ଟା ଖେଞ୍ଚିଲା ଭଳି, ଆହୁରି ଚାଳି ଉଠି ) କେବେ ମୁଁ ହାଣ୍ଡିରେ ଖାଇଛି ରେ ତୋ'ର, ହାଣ୍ଡିଖିଆ ? ତୋ' ଘରେ ଅଟେ ହାଣ୍ଡି ଅଛି ନା ? ଛତରଖିଆ ତୁ—ଛତରରେ ଖାଇ ବୁଲିବୁ—କହିଲା ବେଳକୁ, କହିବୁ କି ନା···( ସକେଇ ସକେଇ ) ସେ ଦିନ, ରାମା ବୌ କଙ୍କଡ଼ା ପୁଞ୍ଜେ ଦେଇ ଯାଇଥିଲା ବୋଲି, କହିଲି, ଆଜି ପର୍ସାଦ ପାଅ ନାହିଁ—ଗଣ୍ଡାଏ ଫୁଟାଇ ଦିଏଁ କି, କଙ୍କଡ଼ା ପୋଡ଼ା ଦେଇ—

ଦାସିଆ—( ହସି ହସି ) "ଚୋରର ମନ—ଚୋରର ଶରିରରେ" ।

ଗେହ୍ଲି—ଅରେ ନିଆଁ ଜଳା । ତୁ ତୋ'ର 'ଛତା, କନ୍ଥି'ର 'ବୁହି' ଦେଇ, ମୋର 'ମୁଣ୍ଡ ଖାଅଟି' ବିଣିକୁ ଯେତେବେଳେ ନ ମାନିଲୁ, ସେତେବେଳେ ସବୁ ନେଇ ପରା ଖତ ଦୋରେ—

ଦାସିଆ—କେ ଜାଣି ଖତଗଦାରେ ମାଡ଼ିଲୁ କି, ପେଟରେ ନେଇ ମାଡ଼ିଲୁ—

ଗେହ୍ଲି—ଅରେ, ଅନ୍ଧ ତୁ ଅଖିରେ ଦେଖିଚୁ—ମୁଁ ରାନ୍ଧିଚି—ଖାଇଚି ?—

ଦାସିଆ—'ଅନ୍ଧ'ର ଭଲ ଆଖି ଆସିବ କାହୁଁ ଯେ ସେ ଦେଖିବ ? ତେଣିଁରେ ତୁ ଯଉଁ ଅନ୍ଧପୁତୁଳା ବାନ୍ଧ ମ'ଣ କରେଇଚୁ···(ସପ୍ରେମେ)—ଗେହ୍ଲି ! ମୁଁ କଣ ସେ କଥା କେବେ ହେଲେ ସ୍ୱପ୍ନରେ ଭାବିଚି, ନା ଗେଲେଇବ ତୋ'ତେ କହୁଚି ?—

ଗେହ୍ଲି—ଆରେ ସଢଆ ! କହୁଚୁ କାହିଁକି ? ଗାଁଡରେ ଗାଇ ମରୁଚୁ ନା ? (ସ୍ୱରକରେ) "ହାଣ୍ଡିରେ ଖାଇଦେଲୁ ଠାକୁରା"—

ଦାସିଆ—ହୋଃ, ହୋଃ—କିନ୍ତୁ ତା' ସାଙ୍ଗପଦଟା—? (ସ୍ୱରରେ) "ଚମ୍ପା ଗୋରି ଲୋ" !—ହିଁ, "କାମୁଡାଲା ଲୋ" ବୋଲି ଗାଇଥାନ୍ତି କି, ତେବେ ମତେ ଦୁଇ କାମୁଡ଼ା ମାରଥା'ନ୍ତୁ—

ଗେହ୍ଲି—ହଉ, ତୋ'ର ସେହି 'ଚମ୍ପାଗୋରୀକୁ'ନେଇ ଏବେ ମର—

( ଅଭିମାନଭରେ ଗୁଲ୍‌ଯାଉଥିଲା )

ଦାସିଆ—ମରିବାକୁ କି ବାଟ ରଖିଚୁ ଲୋ—ତୁ ଯେ ମୋ'ର କାଳିଆ ଚାନ୍ଦ—କଳାମାଣିକ— !

ଗେହ୍ଲି—( ହାତ ଛୁଆଁଇ ଦେଇ, ଅରଟରେ କାମ କରିବାକୁ ବସିଗଲା—କିନ୍ତୁ କାମ କି ସହଜେ କର ହୁଏ ? )

ଦାସିଆ—କହିଲୁ କହିଲୁ, ନଣୀ ଠାକୁରାଣୀ ଆମର ଚମ୍ପାକୁ ବଳି ଗୋରି, କିନ୍ତୁ ରସିକନ୍ତି ସେହି କାଳିଆକୁଆଁକୁ ସିନା ?

ଗେହ୍ଲି—( ଅଭିମାନଭରେ ) ଲଗାନା କହୁଚି, ହିଁ—!

ଦାସିଆ—ଆଲୋ, ତୁ ମତେ ରସିନାହୁଁ ମ ? ମୁଁ ତୋତେ ରସିଚି ନା ? ମୁଁ ପରା ଗୋପୀ—ତୁ ମୋ'ର ଗୋପାଳ ! ସତେ, ଗେହ୍ଲି—ତୁ ଯଦି କାଳିଆ ହୋଇ ନ ଥା'ନ୍ତୁ—

ଗେହ୍ଲି—(ବାଟ ପାଇଲା ନାହିଁ ଖୋଜି ଖୋଜି, ସେଠୁଁ ଉଠି ଘର ଭିତରେ ପଶିଯିବାକୁ—ଶେଷେ ଧଡ଼୍‌କିନା କବାଟ କିଳିଦେଇ, ପଶିଯାଇ )

ଦାସିଆ—ଉଃ ( ବୋଲି ପାଟିକରି ଉଠିଲା, ମର୍ମରେ ଗୋଟାଏ ଆଘାତ ପାଇ କି ଅଉ—ଦେହ ମୁଣ୍ଡରେ ନ ପାଇଲେ ମଧ୍ୟ ? )

ଗେହ୍ଲି—( ସେହି ଆଘାତର ପ୍ରତିଘାତରେ, ଭିତରୁ ଛୁଟି ଆସିଲା ମାନ, ଅଭିମାନ ଭୁଲିଯାଇ ଯଣେ)

ଦାସିଆ—ହାଃ, ହାଃ ତା' ନ ହେଲେ କି ମୋର ଗେ—ହ୍ଲି !—

( ଗେହ୍ଲାଇ କହି ହସିବାକୁ ଲାଗିଲା )

ଗେହ୍ଲି—ଚୁହ୍ଲି !—ଚୁହ୍ଲି !—ଚୁହ୍ଲି !

( ଦାନ୍ତ ଚିପି କହୁ କହୁ ଗମ୍ ଗମ୍ ହୋଇ ଗୁଲିଗଲା )

ଦାସିଆ—(ପଛେ ପଛେ ଛୁଟିଯାଇ, ଗାଉ ଗାଉ) ଏ' ଗୁମାନ ବରଜ, ମାନ' ( ଫେରି ଆସି ଆପଣା ଭିତ୍ତିରେ କାମ କରିବାକୁ ଲାଗିଲା, ଏବଂ ସେହିପରି ଏଥିରୁ ପଦେ, ସେଥିରୁ ପଦେ ଗାଉ ଗାଉ, ହଠାତ୍ ଗାଇ ଉଠିଲା ଏହି ଭଳି )

"ରସାଳସା ଆଶା ଧରି ରହିଛି ମୋ ଜୀବ ।
ଚମ୍ପାଗୋରୀ ଅନୁକମ୍ପା ନ ପାଇଲେ ଯିବ ।
ହୃତ ଗୋ । କହୁଚୁ ଗୋରୀକି ।
ଦାସ ଦୋଷୀ ହେଲେ ଏତେ ସରିକି କରିକି ॥"

[ ଷଡ଼ଙ୍ଗୀଏ କରିଆ ଖଣ୍ଡେ ପିନ୍ଧି ଉକ୍ତ ଗୀତ ମଝିରେ ପ୍ରବେଶ କଲେ ]

ଷଡ଼ଙ୍ଗୀ—ବାଃରେ ଭୋଇପୁଅ !—ବେହିପୁତ୍ର ଭାରି ରସିକଟାଏ ବାଛି ବାଛି, ଗୁଡ଼ୁନ୍ଦା, ଚଢ଼େଇନେଦା ପଦ ବସାଇଚ ବେହିପୁଅ ! ଅରେ, ଏ 'ବିଦଗ୍ଧ ଚିନ୍ତାମଣି' ଟେ ତୁ କାହୁଁ ପାଇଲୁ ?

ଦାସିଆ—(ସାଷ୍ଟାଙ୍ଗ ପ୍ରଣାମ ପୂର୍ବକ) ଆଜ୍ଞା, ମୂର୍ଖଲୋକ ଆମେ, ସାଁ'ନ୍ତେ—ସାଁ'ନ୍ତମାନଙ୍କର ପଢର ଅଇଣ୍ଠା ସାଉଣ୍ଟି, ପର୍ସାଦ ପାଇବା କଥା !—କଉଁ ପଦ—କି ପୋଥି, ଆମକୁ କି ଜଣା ?—

ଷଡ଼ଙ୍ଗୀ—ହେଁ, ହେଁ—ଓ୍ୟାଜିବ୍ କଥା—ଓ୍ୟାଜିବ୍ କଥା—ହେଁ ହେଁ—ତୁମେ ସେ ସବୁ ଜାଣନ୍ତ କାହୁଁ, ଆମେ ଦୟା କରି ନ ଦେଲେ ?—ହେଁ, ହେଁ—ଆରେ ଦାସିଆ, ଶୂଦ୍ରଙ୍କୁ 'ବେଦ' 'ଶାସ୍ତ୍ର' ପଢ଼ି ଶୁଣାଇବାରେ ବ ଆଗକାଳେ, ହେଁ, ହେଁ—କ'ଣଟି, ସୁରାପାନ ଭଳି କଟକଣା ଥିଲା !—କିନ୍ତୁ, ଆମେ ଏଣିକି, ହେଁ, ହେଁ—କହୁନାହୁଁ—

ଦାସିଆ—ଆଜ୍ଞା, ସାଂନ୍ତଙ୍କଠୁଁ ଛ'ଣ ଅମେ ଆଉ ଅଧିକ କହିବା ? ସାଂନ୍ତମାନଙ୍କ ଦୟାରୁ ସିନା, ପଦେ, ଅଧେ ଏ' ଗଡ଼ବମାନେ ଆଜ ଶୁଣିବାକୁ ପାଉଚନ୍ତି ?

ଷଡ଼ଙ୍ଗୀ—ହେଁ, ହେଁ—ଅରେ ନିମକ୍‌ହରାମ୍—'ସାଂନ୍ତମାନଙ୍କ' ନା, ସାଂନ୍ତଙ୍କ—?

ଦାସିଆ—'ସାଂନ୍ତଙ୍କ' ଦୟାରୁ,—ସାନ୍ତଙ୍କ—କାଇଲ୍ ମାନୁଚ, ସାନ୍ତେ—

(ଭାବ ନ୍ୟୂନ ହେବାକୁ ଲଗିଲା)

ଷଡ଼ଙ୍ଗୀ—ଅରେ ମନେ ପଡ଼ୁନାରେ—ତୋର ଏହି ତିଳକ ଚିତା, କଣ୍ଠି ମାଳ ଦେଲା—ହେଁ, ହେଁ—ଯଜ୍ଞଁଦନ—

ଦାସିଆ—ଆଜ୍ଞା, ସାଂନ୍ତେ—ଏ' କଥା ପଥରର ଗାର ଭଳିଆ ଚକାଗାର ହୋଇ ରହିଚ ପରା ମନ ଭିତରେ । ଯେତେଦିନ ପିଣ୍ଡରେ ପ୍ରାଣ ଥିବ, ସାଂନ୍ତଙ୍କ ଏ ଉପକାର ପାଶୋରିବ ନା ? ଅହା, ସାଂନ୍ତଙ୍କ ଯୋଗୁଁ ସିନା ଭାଗବତ ଟୁଙ୍ଗି ବାହାରେ ନିତ ନିତ ସଞ୍ଜରେ ଟିକିଏ ଥାନ ମିଳୁଚି—ଭାଗବତ ଅମୃତ ପିଉଚୁଁ—

ଷଡ଼ଙ୍ଗୀ—ହେଁ, ହେଁ—ଭେଡ଼େ କେଡ଼େ ସାଂନ୍ତମାନଙ୍କ ମେଲରେ ବସି ପାରୁଚୁ, ଯେ ସେ କଥାଟା ? ହେଁ, ହେଁ—ଅରେ ଦାସ, ତୁ ବି ମଣିଷ, ମୁଁ ବି ମଣିଷ—ତୋର ବି ଦୁଇ ପା', ଦୁଇ ବାହା, ମୋ'ର ବି ଦୁଇ ପା' ଦୁଇ ବାହା—ତୋ'ଠେଇଁ ଯେଉଁ ଜୀବ ବ୍ରହ୍ମ, ମୋ'ଠେଇଁବି ସେହି ଜୀବ ବ୍ରହ୍ମ; ବୋଇଲେ କ'ଣ କି, "ନାରାୟଣଂ ନମସ୍କୃତ୍ୟଂ ନରଂଚୈବଂ ନରୋତ୍ତମଂ, ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟଂ ମୁଦୀରୟେତ୍"—ଅହହ—ହେଁ, ହେଁ—

ଦାସିଆ—( ଶ୍ଲୋକ ପଢ଼ା ହେଉଥିଲା ବେଳେ ବାର ବାର ନମସ୍କାର କରୁଥାଏ ) ଚୁ, ଚୁ—ସାନ୍ତଙ୍କ ତୁଣ୍ଡରେ ଏମିତିକା ଶୋଲକ, ସତେକି ଉଠିକା ଖଜୁରି ରସ !

ଷଡ଼ଙ୍ଗୀ—ହେଁ, ହେଁ—ପିଅଇରୁ ପିଅଇରୁ ବୋଲିତ ଉମର କଟିବାକୁ ବସିଲଣି, ହେଁ, ହେଁ—ବୁଢ଼ା ବାହ୍ମଣଟାର କଲ୍ପନା ରହିଯିବଟି, ହେଁ, ହେଁ—ମରିଗଲେ ବି ସେଇ ଆଶାରେ ଭୂତ ହୋଇ ତୋ ତନ୍ତ ଖୁଣ୍ଟିରେ ବସା ବାନ୍ଧି ରହିବଟି, ହେଁ, ହେଁ, ଜାଣିଥା—

ଦାସିଆ—ଛି, ଛି, ସାଂନ୍ତେ ଦେବତା ହୋଇ ସେ ନାଁ ତୁଣ୍ଡରେ ଧରୁଚନ୍ତି ?

ଷଡ଼ଙ୍ଗୀ—ଅରେ ଦେବତା ତ ସୁଧାକୁ ପିଇ ଅମର ହୋଇ ରହିଚନ୍ତି, ହେଁ, ହେଁ—ଚନ୍ଦ୍ରା .ଦିକ ଘର ଜଞ୍ଜାଳ, ହେଁ, ହେଁ— ବିଲକୁଲ୍ ମାରିଦେଇ—

ଦାସିଆ—ନା, ସାଂନ୍ତେ ଏ ତୁଳସୀ କଣ୍ଠି ଧରିଲା ଦିନୁ ତା ପାଖ ପଶେ ନାହିଁ ପରା—ମତେ ସେ କଥାରେ ବଳାନ୍ତୁ ନାହିଁ ।

ଷଡ଼ଙ୍ଗୀ—ଅରେ, ମୂର୍ଖ—ହେଁ, ହେଁ, ମୁଁ କ'ଣ ତୋତେ ପିଇବା ପାଇଁ କହୁଚି, ନା କହିବି ଏକଥା ? ମରିଗଲେ ବି ? ହେଁ, ହେଁ, ତୁ କ'ଣ ଦେବତା ଯେ ପିଇ, ପାର କରିଦେବୁ ? ହେଁ, ହେଁ, ତୋର ତ ଯୋଗାଇଁବା ଉଚିତ ନୁହେଁ ?

ଦାସିଆ—ଆଜ୍ଞା, କରୁଚନ୍ତି କ'ଣ ? ଘର ଚମାରଟାଏ ଅଣି ସିନା ଗୋସେଇଁ କି ପଶିବ ?

ଷଡ଼ଙ୍ଗୀ—ଅରେ ଓଲୁ—ତୋତେ ଶାସ୍ତ୍ରକଥା କି ମାଲୁମରେ ? ହେଁ, ହଁ—ଏ' ହେଲା 'ସୋମରସ' । ଗୃଣ୍ଡାଳ ବାହ୍ମଣ ଏକାଠି ବସି, ବେଶ୍ ଖୁସିରେ —ମନ ମଉଜରେ ପିଇ ପାରିବେ—ଯେମିତିକା କି ବଡ଼ ଦେଉଳର ମା'ପ୍ରସାଦ—ଅଧରପଣା ? ହେଁ, ହେଁ—

ଦାସିଆ—କହୁଚନ୍ତି ସିନା—ମା'ପର୍ସାଦ ବେଳେବିତ ସେହି ଶାସ୍ତ୍ରର କଥା କାହିଁ ଖଟେ ନାଇଁ, ସାଂନ୍ତେ ?

ଷଡ଼ଙ୍ଗୀ—( ବିଦ୍ରୂପସ୍ୱରେ ) କେମିତିକାରେ, ଗଜ ପଣ୍ଡିତ ?—

ଦାସିଆ—ଏ' ଗାଁରେ, କେତେ ମାପର୍ସାଦ ସେବା ନ ହୋଇଚି ? କାଇଁ, ଦିନେ ତ ଅମକୁ ପଙ୍ଗତରେ

ପୂରାଇ ନାହାନ୍ତି ? ଆଜ୍ଞାରେ, ନଜର ପଡ଼ିବ ବେଳ, ଗାଁର ବିସର୍ଜନ କା ମଡାଇ ଦଅ ନାହିଁ ପରା ଟୋଏ ଦାନ ?

ଷଡ଼ଙ୍ଗୀ– ବାଃରେ, ଭୁଟେ କଙ୍କଡ଼ା ଖାଇବ—କୋଚଆ ଖେଇବ—ତାଡ଼ି ପିଇବ—ହେଁ, ହେଁ—ଏମିତିକା ମଇଳା ମେଳଚ୍ଛୁଆ ହୋଇ ହୋଇ ରହିବ—ବାର ବର୍ଷରେ ତେଲ ଗାଧିବ ଦାନରେ ପଡ଼ିବ ନାହିଁ—ହେଁ, ହେଁ—ଏମିତିକା ଡାଅଣା ଯେ, ସବୁବେଳେ ଖାଲି ଖାଇବା ଖାଇବା ହେଉଥିବ—ପାଇଲେ ମାଗଣା କେଉଁଠି, ଏମିତି ଚୋଲ ସଇ କରଦେବ ଯେ, ହଲି ଚଳି ପାରିବ ନାହିଁ—ସ୍ତ୍ରୀଙ୍କୁ ପୁଣି ପଙ୍ଗତରେ ମୂରାଇବା, ନା ? ହେଁ ହେଁ—ଦେଖ ହୋ ଅଜ୍ଞାନ ଟିକିଏ ଦବାରୁ, ମନ୍ଦର କିମିତ ଶ୍ରେଷ୍ଠ ଜାତର !—

ଦାସିଆ— ଆଜ୍ଞା, ସାଂନ୍ତେ—କଥା ପଡ଼ିଲାରୁ କହୁଚି—ଚଳିବେ ନାହିଁ—ସାଂନ୍ତେଇ ନିଜେ ଏଷଣି ସେଇ ତାଡ଼ି ମୁନେ ପିଇବା ପାଇଁ, ଏହ ବାଉଗ୍ରି ଶ୍ରେଷ୍ଠ ଜାତିଟା ପାଖେ ଏତେ ନାଳେଇ ହେଉଥିଲେ—ହୁଏତ, ସେହ କଙ୍କଡ଼ା କୋଚଆ କେଉଟର, ଏହ ଶ୍ରେଷ୍ଠ ଜାତି ସାହାଙ୍କ ଶୁଭାଗମନ ହୋଇ-ଥିବ– ମଇଳା ମେଳଛୁଆ କଥା କହିଲେ ଯେ,—ସାଂନ୍ତଙ୍କର ଏହ ତେଲଚିକଟା କରଅଠୁଁ କଣ, ହୋଇର ଏହ ଦାସିଆଟି ବେଶି ମଳିଆ ?

ଷଡ଼ଙ୍ଗୀ—ହକ୍ କଥା କହିବାରୁ, ମର୍ମକୁ ବାଧିଗଲା ପରା ? ହେଁ, ହେଁ,—ହଇରେ, ବାଉଗ୍ରି ଟୋକା —ଭାରି ତ ମୁହଁ ବଢ଼ିଗଲାଣି—ହେଁ, ହଁ, କ'ଣ କନା ଦାଖଣ୍ଡ ବକା, ବଣାରେ କାଛୁ ମାଲି ପେଟବାକୁ କରେ ? ହେଁ, ହେଁ—ଅରେ, ମୋର ଅଜା ଅମଳରେ ନଉତି ନଉତି ଖାଲି ସୁନା, ଅସିଲ, ମୁଣ୍ଡାକୁ ମୁଣ୍ଡା. ହେଁ, ହେଁ, ହଣ୍ଡାରେ ଝୁଲୁଥିଲା, କ'ଣୁ ? ହେଁ, ହେଁ, ବାଉଗ୍ରି ଟୋକା । କ'ର ନାତି—କାର ପୁଅ, ମୁଁ—ମୋ'ମୁହଁ ଉପରେ—ହେଁ, ହେଁ—ଦେବ ଯେ ମୁଁଥେ—( ମାରିବାକୁ ଦୌଡ଼ିଗଲେ )

ଦାସିଆ—ହାଁ, ହାଁ—ଛୁଆଁ—ଛୁଆଁ ହୋଇଯିବେ, ସାଂନ୍ତେ ! କେମିତିକା ଗାରଡ଼ି ମନ୍ତର, ସାଂନ୍ତେ ? ଛୁଇଁ ପାରିବେ ? ଏଇଟିକି ରକ୍ଷା କବଚ, ଭାଗ୍ୟେ ଆମେ କର୍ଣ୍ଣରଜାଙ୍କ ଭଳି ଜନମରୁ ପାଇଚୁଁ ବୋଲି, ରକ୍ଷା ସିନା !—ନାହିଁତ, ସାଂନ୍ତମାନଙ୍କର ଯଉଁ ଦାଉ—

ଷଡ଼ଙ୍ଗୀ—କିରେ, ଆମର 'ଦାଉ' ? ହେଁ, ହେଁ—ନା, ଆମେ ଦସ୍ୟୁଙ୍କର ଆଉର ଉମର ଏଇ ଛୁଆଁ ଅଛୁଆଁ ଉଠାଇ ଦବାକୁ ଧାଇଁଚୁଁ—ହେଁ ହେ—

ଦାସିଆ—ସାଂନ୍ତେ, ତା' ହେଲେ ଆମେ ଏକଦମ୍ ଠକ୍ ! କେ' ଜାଣି, ସାଂନ୍ତମାନେ ସଦାଳବଳେ ଇନ୍ଦ୍ରରଜା ଯେ ହୋଇ ନ ଥିବେ ?

ଷଡ଼ଙ୍ଗୀ—ହେଃ ( ହସି ହସି ) ଇନ୍ଦ୍ରରଜା ବ୍ରାହ୍ମଣ ବେଶରେ କବଚ କୁଣ୍ଡଳ ହରିଥିଲେ !—ହେଁ ହେଁ—କେଡ଼େ ଗୌରବ ଟି ଆମର, କହିଲୁ ? ହେଁ, ହେଁ—ତୁ ମହାଭାରତ ପଢ଼ିଚୁ ତା' ହେଲେ —ବେଶ୍—ବେଶ୍—ହେଁ, ହେଁ—

ଦାସିଆ—କାନରେ ଶୁଣିବା କଥା, ସାଂନ୍ତମାନଙ୍କ ଦୟାରୁ—ଅଖର ଚିହ୍ନିବ ଯେ—ପଢ଼ିବା—! ଏଡ଼େ ଭାଗ୍ୟ ହ'ବ ନା ଆମର !

ଷଡ଼ଙ୍ଗୀ—ଅହୋ ! ପାଠ ପଢ଼ିନାହିଁ-ବୋଲି ସିନା, ଅନ୍ଧ ହୋଇ ରହିଚ ? ହେଁ, ହେଁ—

ଦାସିଆ—ଏଇ ଅବଶୋସଟା, କିନ୍ତୁ, ସାଂନ୍ତମାନଙ୍କର, —ଆମକୁ ଆହୁରି ଅନ୍ଧ କରିଦେଏ ସିନା, ସାନ୍ତେ—ଗୋଟାଏ ବାଗରେ, ହିଂସାରେ, ଘୃଣାରେ !

ଷଡ଼ଙ୍ଗୀ—କଣ—କଣ ?—ହେଁ, ହେଁ, ଦେଖୁଚନା ଶ୍ରେଷ୍ଠ ଜେକଟାକୁ ? ହେଁ, ହେଁ—ଶାସ୍ତ୍ରକଥା କି କେବେ ମିଛ ହେବ ? ଶୂଦ୍ରଙ୍କୁ ପାଠ ପଢ଼ାଇଲେ, ବେଦ ପୁରାଣ ଶୁଣାଇଲେ, କିଭଳି ଖାତିରଟା ମିଳେ, ଆଖିରେ ଥରେ ଦେଖ, ଦେଖ !—ହେଁ, ହେଁ—କଳି ! ଘୋର କଳି ! ମାଳିକା ବଚନ କୁଆଡେ ଯିବ ? ହେଁ, ହେଁ—"ସର୍ବେ-ହୋଇବେ ଏକାକାର, ନ ଥିବ ବେଦର ବିଚାର ॥

ଏଣୁ ହୋଇବେ ଅଳ୍ପାୟୁଷ, ପାପେ ସକଳ ଯିବେ ନାଶ ॥"

ଦାସିଆ—( ଇତସ୍ତତଃ ହୋଇ ସଭକ୍ତ ) ଏବେ ସା'ନ୍ତଙ୍କ ବଗୁରଣ୍ଟା ?—ଏ ଅଡ଼େ ?—ଏତେ ସଖାଲେ ?

ଷଡ଼ଙ୍ଗୀ—ଆରେ, ବଗୁରଣ୍ଟା ତୋ ଠେଇଁ ରେ—ହେଁ, ହେଁ, ଭଲ କଥା ମନେ ପକାଇ ଦେଲୁ ଏକା—ଆରେ ଦାସ, ଅଛା ମଣ୍ଡଳରେ କେତେ କଥା କଣ ହୋଇ ନଥାଏଟି ସାଙ୍ଗ ସୁଖ ଭିତରେ ?—ହେଁ, ହେଁ, ଆଜ ତୁ ତ ଆମର କେଡ଼େ ଆପଣାର ! ହେଁ, ହେଁ, ତୁ ରାଗି ନାହୁଁ ତ, ପୁଅ ?

ଦାସିଆ—ଛି, ସା'ନ୍ତେ—ସା'ନ୍ତଙ୍କ ଚରଣଧୂଳି ଟିକିଏ ପାଇଲେ ଆମେ ତରବା କଥା—ସା'ନ୍ତଙ୍କ ଉପରେ ଆମେ ରାଗିବୁ ? ଏଡ଼େ ମଗ୍‌ଦୂର ? କେଉଁ କାଳର ମନର ଦରକଣ୍ଟା ମର ମର ଥିଲା—ହଠାତ୍ ମାତି, ଅଥମାଳ ହୋଇ ଉଠିଲା ସିନା ଆଜ—ଗୋଟାଏ—

ଷଡ଼ଙ୍ଗୀ—ଅଭିମାନରେ ? ନା ?—ହେଁ, ହେଁ, ମନର ଅନମାନ ବାପଠେଇଁ ମେଣ୍ଟାଇବ ନାହିଁତ' ଆଉ ମେଣ୍ଟାଇବ କା'ଠେଇଁ ? ହେଁ, ହେଁ, ତା କଣ ମୁଁ ବୁଝି ନାହିଁ ? କନ୍ତୁ, ହେଁ, ହେଁ, ଘାଉଡ଼ୁଣ ସହଜେ କିଏ କା'କୁ ? ସବୁତ ଲଣ୍ଟରା ପଣ୍ଟରା ଲାଗିଚି—ହେଁ, ହେଁ, କହଲୁ, ପୁଅ—ତେବେବି ବାପ ଗୋଟାଏ କଥା ମାଗିଲେ ରଖିବୁ କି ନାହିଁ ?—

ଦାସିଆ—ଏ କ'ଣ କହୁଚନ୍ତି ? ଏଡ଼େକଥାଟା ଏ ଯେ—

ଷଡ଼ଙ୍ଗୀ—ହେଁ, ହେଁ—କେଉଁ କଥା ତୁ ମୋର ନ ରଖିବୁ ଯେ, ହେଁ, ହେଁ—ଏତେ ଖାତୁଣି ପଡ଼ିଚି—ହେଁ, ହେଁ—କଣ କରବ, ପୁଅ,—ରଥଯାତ ଆସି କାଲି ଘାଡ଼ ପରଦନ, ହେଁ, ହେଁ—ହାତରେ ଦେଖୁଚୁତ କଣା କଉଡ଼ିଟିଏବି ନାହିଁ—ହେଁ, ହେଁ—ମୋ ନାଜସକାଶେ କିଛି ନୁହେଁରେ, ପୁଅ—ମୋ'ର ଦେଖୁଚୁତ, ସେହି ବର୍ଷ ତଳ ତଳେ ଚଯଉଁ କରଆ ଖଣ୍ଡକ ଦେଇଥିଲୁ, ହେଁ, ହେଁ—ତାକୁ ସିଇଁ ସାଇଁ, ଗଚ୍ଚୋଇ ଗାଣ୍ଠେଇ, ଏ ଯାଏଁ ଚଳେଇଚି—ହେଁ, ହେଁ—ଖାଲି—

ଦାସିଆ—ଆଜ୍ଞା, ସା'ନ୍ତେ—ତା'ର କଉଡ଼ି ତ ଏ'ଯାଏଁ ମିଳି ନାହିଁ ?

ଷଡ଼ଙ୍ଗୀ—( ହସ ହସି ) ଆରେ—ମିଳିବ—ମିଳିବ ମ ! ତୁ ଏମିତିକା ଘାବରା ହ'ନା, ପୁଅ—ହେଁ, ହେଁ—କଲନ୍ତର ସହିତ ତୋ ରଣ ଶୁଝିବି—ହେଁ, ହେଁ, ଏଜୀବନରେ ନ ହେଲେ ପରା, ତୋ ବାଡ଼ିରେ ନଡ଼ିଆରିଚ ଗଛ ହୋଇ ଶୁଝିବି ।

ଦାସିଆ—( ଜୁହାର ହୋଇ ) ଏଡ଼େ କଥାଟାଏ କିଆଁ କହିଲେ, ସା'ନ୍ତେ ? ମୁଁ କଣ କେବେ ହେଲେ ସା'ନ୍ତଙ୍କୁ ଅପତଆରି କରିଚି ? ସା'ନ୍ତ ପାନଙ୍କୁ ଆଶ୍ରା କରିକ ପେଟ ପୋଷିବା କଥା ।

ଷଡ଼ଙ୍ଗୀ—ତା' ତ ଠିକ୍—ତା' ତ ଠିକ୍ ହେଁ, ହେଁ—ଦେଖ୍ ଦାସିଆ—ମୁଁ ଘରେ ଏଥର, ହେଁ, ହେଁ, ସଫା କହି ଦେଇ ଆସିଚି—କାଲିରେ ଅଣି, ହେଁ, ହେଁ, ମୋ ନାଁରେ କାଲି ଆଉ ବୋଲିବ ନାହିଁ । ହେଁ, ହେଁ, କ'ଣ କହୁଚୁ ରେ, ପୁଅ, ଠିକ୍ କହି ନାହିଁ କି ?

ଦାସିଆ—ସା'ନ୍ତେତ ଠିକ୍ ଠାକ୍ ଲୋକ—ଠେକ୍ ଠୋକ୍ କାରବାର ସା'ନ୍ତଙ୍କର ।

ଷଡ଼ଙ୍ଗୀ—ହେଁ ହେଁ, ଆରେ କଥା ଠିକ୍ କହିଲେ, ସବୁଠିକ୍ ?

ଦାସିଆ—କାରବାରତ ଆମେ ସେଇଆ ଜାଣୁ ସା'ନ୍ତେ?

ଷଡ଼ଙ୍ଗୀ—ହେଁ, ହେଁ—ମୁଁ ମୋର କଥା ଠିକ୍ ରଖିଚି ବୋଲିସିନା, ପୁଣି ଅଇଲି ତୋ' ହାତକୁ, ହେଁ, ହେଁ, ବ୍ରାହ୍ମଣୀଟାର କଥା ଭାଙ୍ଗି ନ ପାରି, କାହିଁକି ଜୋର୍ କରି—ହେଁ, ହେଁ, ଏ' ଗାଁରେ ଏମିତିକା ଠିକ୍‌ଠାକ୍ ମୋ' ଭଳିଆ କିଏ ଅଛି ଭଲା, ହେଁ, ହେଁ, ଏତେ ଟାଣରେ କହିବ—ତୋ ବାଡ଼ିରେ ନଡ଼ିଆରିତ ଗଛ ହୋଇ ଶୁଝିବି' ! ହେଁ, ହେଁ, କହିଲୁ, କହିଲୁ—

ଦାସିଆ—ଠିକ୍ କଥା, ସା'ନ୍ତେ !

ଷଡ଼ଙ୍ଗୀ—ହେଁ, ହେଁ, ମୁଁ ଖଣ୍ଡେ ଅଧେରୁ ବେଶୀ କଲି ବାସି ନେଉଚି ନା ଏଥର ? ରଣଭାର ମୋ'ର ବଢ଼ିଯିବ ସିନା । ହେଁ, ହେଁ, କହି ଦେବଢ

ସମସ୍ତେ ହିଁ—ହେଁ, ହେଁ, କାନ୍ଥ ବୋହୁଁ ତ ମୋର ମୁଣ୍ଡରେ ?

ଦାସିଆ—ତା' ନୁହେଁ କ'ଣ, ସାନ୍ତେ ?

ଷଡ଼ଙ୍ଗୀ—ସେଇଥିପାଇଁ କହୁଚ କଣ କି, ହେଁ, ହେଁ—ସେଇ ବୁଢ଼ୀଟା ଲାଗି କୁମ୍ଭପକା ଶାଢ଼ୀ ପଟେ, ହେଁ, ହେଁ—ହଳଆଟା ଲାଗି ପଖାଳକଂସା ହଲେ ହେଁ, ହେଁ—କ'ଣ କରିବ ପୁଅ ହେଁ, ହେଁ, ନ ଦେଲେ ତ ନ ଚଳେ—ହେଁ, ହେଁ, ଆମର ପଛେ ସୂତା ଟିଏ ନ ହେଉ ? ହେଁ, ହେଁ—ତା' ପରେ ବୋହୁ ଉପରେ ନଳିତା ବାଡ଼ା—ହେଁ, ହେଁ—କପାଳ କଥା, କହିବ କା'କୁ ? ହେଁ, ହେଁ—କୋଠିଆ-ଟିଏ ଅଛୁ ଯେ, ସେ ପୁଣି ବାହା ହୋଇଚି ନଗଦ—ହେଁ, ହେଁ, ଭୁଟୁଡ଼ୁ ତ ତା' ଅଳି, ହେଁ, ହେଁ, ନାଲି କସ୍ତା, ବେହିଆ ବାପ ଅଜାକାଳେ ଦେଖି-ଥିବ ନା ? ହେଁ, ହେଁ, ଆରେ—ବାରହାତୀ ହେଲେ ବି ଚଳିଯିବ ମ। ହେଁ, ହେଁ—କର-ଧଡ଼ିଆ ଥାଏ ଯଦି, ଭଲ, ନାହିଁତ, କିଛି ଚିନ୍ତା ନାହିଁ ତୋର, ପୁଅ, ହେଁ, ହେଁ—ମୋପାଇଁ, ହେଁ, ହେଁ, ବାହ୍ମଣୀଟା ଘାଷି ଲଟଗଇଚି, ହେଁ, ହେଁ, ଯଥା ପଥା ଇଦ କିଛି ଥାଏ, ହେଁ, ହେଁ, ତୁ ପୁଅ, ବାଛୁକରି ଯା' ଦବୁ ମ, ହେଁ, ହେଁ—ଯା' ଯା'—ଅସଲ କଥାତ ଭୁଲିଚି—ହେଁ, ହେଁ, ସବୁତ ସରୁ—ସେଇ ନାତି ଟୋକାଟା କରିଚି କାରୁ—ହେଁ, ହେଁ, ଦଣ୍ଡେ ଭଙ୍ଗ କଉ ଘୁଡ଼ି ବହନ୍ତା—ହେଁ, ହେଁ,—ଆରେ, ଦ'ନା !—ହେଁ ହେଁ—ମା ମଳ ଛେଉଣ୍ଡଟା !—ତୁମ୍ଭଟା ମରିଗଲା ନାହିଁ ଯେ, ଗୋଟାଏ, ହେଁ, ହେଁ, ବେକରେ ଛନ୍ଦ ଦେଇଗଲା—ହେଁ, ହେଁ, ସେହିଦିନୁଁ, ବାହ୍ମଣୀ କଣ ମୋ'ର ଆଉ ବାହ୍ମଣୀ ହୋଇଅଛି—ହେଁ, ହେଁ, ସେହି 'ତଣ୍ଟାଟା' ପାଇଁ ଭଲ କରି ଯୋଡ଼େ ନ ହେଲେ—ହେଁ, ହେଁ,—ଘରେ ନିଆଁ ଲାଗି ଯିବ ନାହିଁ ନା ? ହେଁ, ହେଁ, ହବାର କଥା—ହେଁ, ହେଁ, ପିଲା କବିଲାଙ୍କ କଥା ତୁ କାହୁଁ ବୁଝିବୁରେ ?

ଦାସିଆ—ଆଜ୍ଞା, କିଏ କା'ର ସାନ୍ତେ ?—

"ଆରେ ଶୁଖା ଖଡ଼ ଖଡ଼—
ମିଛ ମାୟାରେ ପଡ଼ି ତୁ ଲଡ଼୍‌ବଡ଼ ଲଡ଼୍‌ବଡ଼"

ଷଡ଼ଙ୍ଗୀ—ହେଁ, ହେଁ, ଦାସ, ଦାସ—ସତେ ୨ ମୋର ଜଳନ୍ତା ଚିତାରେ ତୁ ଅଜା ପାଣି ଓଜାଡ଼ି ଦେଲୁ—ହେଁ, ହେଁ, ପୁଅ, ତୁ ନୀଚକୁଳରେ ଜନ୍ମ ସତ, କିନ୍ତୁ ବହୁତ ବାହ୍ମଣ ପଣ୍ଡିତ ତୋ ଗୋଡ଼ଧୂଳିକୁ ପରି, ହେଁ, ହେଁ, ସର—

ଦାସିଆ—ନାରାୟଣ ! ନାରାୟଣ !—ବାହ୍ମଣଙ୍କ ଦେହରେ ଯେ ସ୍ୱୟଂ ନାରାୟଣ ବିରାଜମାନ ।
(ଲମ୍ବ ଖମ୍ବ ହୋଇ ଗୋଡ଼ତଳେ ପଡ଼ିଗଲା)

ଷଡ଼ଙ୍ଗୀ—ଉଠ, ଉଠ, ବାପ—ହେଁ,—ହେଁ,—ଏହିପରି ସୁମତି ତୋର—ସୁଜ୍ଞାନ ତୋର—ହେଁ, ହେଁ—ବାହ୍ମଣ ନାରାୟଣଠେଇଁ ଚିରକାଳ ରହି ଥାଉ—ହେଁ, ହେଁ—

ଦାସିଆ—( ପୁଣି ଥରେ ପ୍ରଣତ ହୋଇ, ସେହି ଆଶୀର୍ବାଦ ମୁହୂର୍ତ୍ତରୁ ଯେମନ୍ତ କାମନା କରିବାକୁ ଲାଗିଲା )

ଷଡ଼ଙ୍ଗୀ—ହେଁ, ହେଁ—ଆରେ ଦନୁ !—ହେଁ, ହେଁ, ବାପ—ଯା', ଯା', ବେଗେ ଲୁଗା ଗଣ୍ଠିଟା ଘେନିଆ'—ହେଁ, ହେଁ, ପିଲାଟାକୁ ସାଙ୍ଗରେ ବାନ୍ଧିଚି ବୋଲି—ହେଁ, ହେଁ, ଟେଟିକା ଉଚ୍ଛନ୍ନ ଯିବା—ହେଁ, ହେଁ, ଦିନ ଗୋଟାଏ ତୋ' ପାଖରେ ନିକମା ହେବାକୁ ପରି ମୋ'ର ମନା ନାହିଁ ? ଯା, ଯା, ବାପ—ସହଳ, ସହଳ—

ଦାସିଆ—( ଗୋଟାଏ ଆବେଗରେ ଚାଲିଯାଇ ହଠାତ୍ ଦ୍ୱାର ପାଖରୁ ଲେଉଟି ଆସିଲା )

ଷଡ଼ଙ୍ଗୀ—ଲେଉଟିଲୁ ଯେ—ହେଁ, ହେଁ, କଉଡ଼ି କଥା ଭୁଲିଗଲୁ ପୁଅ—ହେଁ, ହେଁ, ବୁଢ଼ା ବାହ୍ମଣଟାକୁ ବିଶ୍ୱାସ ପାଉନାହିଁ ?—ହେଁ, ହେଁ, ଆରେ ଏଇ ବ୍ରହ୍ମ ପଇତା ଗଣ୍ଠି ଛୁଇଁ, କହୁଛି—ରଥ ବାସିଦିନ ଯଦି, କଉଡ଼ି ଅଣି, ନଗଦେ, ତୋ' ଘରେ, କଡ଼ାକାନ୍ତିରେ ହିସାବ କରି ନ ଦେଇ ଯାଇଚି, ତା' ହେଲେ ମୁଁ ବାହ୍ମଣ ଛୁଆ— —

ଦାସିଆ—ନାହିଁ, ନାହିଁ, ଏଡ଼େ ଜାସୁମଣ୍ଠାଏ ଖାଅନ୍ତୁ ନାହିଁ, ସାଆନ୍ତେ ! ଛି, ଛି, ଭଉଡ଼ି କ'ଣ ସରଗ ନବ କି ?

( ଦ୍ୱାରପାଖେ ଯାଇ ଦେଖେ ଯେ, ଗେହ୍ଲି ଦ୍ୱାରଠେଇଁ ରଣାକାଳସୀ ଭଳି ଠିଆ—ସାହସ ହେଲା ନାହିଁ, କିଛି କହିବାକୁ କି କରିବାକୁ—ସୁତରାଂ ଫେରି ଆସିଲା )

ଷଡ଼ଙ୍ଗୀ—( ସେହି ମୂର୍ତ୍ତିକୁ ଦେଖିଯେ ଡରିଯାଇ ନ ଥିଲା, ତା' ନୁହେଁ )

ଦାସିଆ—ମତେ ଖେମା ଦିଅ, ସାଆନ୍ତେ—ଖିଏ ବି ମୁଁ କାଲି ବାସି ଦେଇ ପାରିବି ନାହିଁ—

( ଗୋଡ଼ତଳେ ପଡ଼ିଗଲା )

ଷଡ଼ଙ୍ଗୀ—( ହତାଶ ଭାବେ ) ଦେଇ ପାରିବୁ ନାହିଁ ! ( ଟିକିଏ ରହି ) ଆରେ ଦନା !—ଶଳା ମୁଦେଇଟା—ବେହିପ ମଲା କଉଁଠି ? ମରି ଯାଆନ୍ତା କି ? ଓଃ, ମତେ ଆଉ ରଖି ଥୋଇ ଦେଲେ ନାହିଁ—କିଲ୍‌ବିଲ୍ କରି ଖାଇଯିବେ—ଖାଇଯିବେ !—

( ଆପଣାର ମୁଣ୍ଡ କେଶ ଛିଣ୍ଡାଇ ପକାଇଲା ଧୂଣା ଧୂଣା କରି କି ଆଉ, ସେହିପରି ଧିକ୍‌କାର କଲାବେଳେ ଆପଣାକୁ, ଗୁଲି ଯାଉଁ ଯାଉଁ )

ଦାସିଆ—ଗେହ୍ଲି ! ଗେହ୍ଲି !—ବାହ୍ମୁଣୀ—ବାହ୍ମୁଣୀ ସେ—ଦୁଆରକୁ ଆସିଚି ଆମର—ଭାଇବିକଳରେ—ଭାଇ ଭରସାରେ—ହଟାଇ ଦେ'ନା—ଲେଉଟାଇ ଦେ'ନା—( ଦ୍ୱାରପାଖକୁ ଯାଇ ଦେଖେ ଯେ କେହି ସେଠାରେ ନାହିଁ ) ଲୁଆଡ଼େ ବାହାରି ଗଲା ନା କ'ଣ ? ପୋଖରୀ ପାଣିକି··· ? ( ଅସ୍ତେ ଅସ୍ତେ ଗୁରୁଭଳି ଭିତରେ ପଶି, ଲୁଗା ଗଣ୍ଠିଲିଟା ନେଇ ବାହାରି ଆସି ସସବ୍ୟସ୍ତେ )—ଗୋସେଇଁ—ଗୋସେଇଁ—ଧାଇଁପଡ଼—ଧାଇଁ——

( ନେପଥ୍ୟେ ଷଡ଼ଙ୍ଗୀ )—ଏଡ଼େ ଦିମାକ୍ ତୋର, ହାରାମଜାଦା ! ହେଁ, ହେଁ, ଦେଖ ହୋ—ଗୁହୁଁ ଗୁହୁଁ ଘଉଡାଖାଇଟା ପିଲାଟାକୁ ମୋ'ର ଛୁଇଁ ପକାଇଲା ? କେଉଁ ପାପରୁ ତ, ବାଉରୀ ନୀଚକୁଳରେ ଜନ୍ମ ?—ଏମିତିକା ପାପ ଅଧୁରି ନ କଲେ କଣ ଆଣ୍ଠୁକୁଡ଼ୀ ହ'ନ୍ତି ଲୋକେ ?

ଦାସିଆ—( ଧାଇଁ ଯାଉଁ ଯାଉଁ ) କ'ଣ କ'ଣ ହେଇଚି, ଗୋସେଇଁ ମହାପ୍ରଭୁ—ଚଳନ୍ତୁ ନାହିଁ ଏଭଳି—ମାଇଚିଲେକ—ନ ଜାଣି ଯଦି—

ଷଡ଼ଙ୍ଗୀ—( ପଶି ଆସି, ଗୋଟିଏ ଚିଲା ସଙ୍ଗେ )—ନ ଜାଣି ଯଦି ଏତେ ସବୁ ?—ଜାଣି କରିଥିଲେ ତ, ଜଗତଯାକ ମହତ ସାରିବାକୁ କିଛି ଆଉ ବାକୀ ନ ଥାନ୍ତା ?

ଦାସିଆ—ସାଆନ୍ତେ ଖେମା ଦେଉନ୍ତୁ—ଖେମା—

( ଗୋଡ଼ତଳେ ପଡ଼ିଗଲା )

ଷଡ଼ଙ୍ଗୀ—ହେଁ, ହେଁ—"ଗୋରୁ ମାରି ଜୋତା ଦାନ ?"—ବାହ୍ମଣକୁ ଅପମାନ ? ନେ, ନେ, ତୋ'ର କରିଅଛା !—ମତେ ନୂଆଲୁଗା ଦେଖେଇ ହଉଚି ! ହେଁ, ହେଁ—ଗୁଲି, ଗୁଲି, ରେ ଦେଖିବୁ କୁଳଚେଣ୍ଡାଖିଆ !— କେତେ ମାଣିଆବଢ଼ୀ, ପିଠ, ମଠା—ହେଁ, ହେଁ,—ପେଡ଼ିରେ ମଜା ହେଇ ସଡୁଚି—ପୋକ କାଟି ଧୂଣା ଧୂଣା କରୁଚି—( କହିବା ସଙ୍ଗେ ସଙ୍ଗେ ପିଲାଟାକୁ ଲଙ୍ଗଳା ମୁକୁଳା କରି, ଲୁଗାଟା ଫୋପାଡ଼ି ଦେଲା)

ଦନା—ଉଁ, ଉଁ ମୋ'ଲ ନୂଆଁ ଜଗା କିଆଁ କଲି ନେଲୁ ? ଅଜା, କିମିତିକା ଲଙ୍ଗା ଠିହ ଠିହ—ଉଁ ଉଁ—ମାଉଁ କେଲେ ସୁନ୍ଦର ପିନ୍ଧେଇ ଦେଇଥିଲା—ଉଁ ଉଁ !

ଷଡ଼ଙ୍ଗୀ—ଗୁଲି ଗୁଲି—ବିକଳା ଟୋକା— !

( ଭିଡ଼ି ନେଇଗଲା )

ଦନା—ଉଁ, ଉଁ—ମ'ର ନାଲି ଜଗା—ଉଁ,ଉଁ—ମାଉଁ—ଦେ'ନା, ମାଉଁ— ?

( ବିକଳ ଭାବେ ସେହି ଲୁଗା ଓ ଗେହ୍ଲି ଆଡ଼େ ଚାହିଁ ଥାଏ, ଓଟିକି ଭିଡ଼ା ହୋଇ ଗଲାବେଳେ )

ଗେହ୍ଲି—( ଆଖିରୁ ଯେଉଁପରି ଗଙ୍ଗା ଯମୁନାର ଦୁଇ ଧାର ଛୁଟିଲା )

ଦାସିଆ—( ସ୍ତବ୍ଧ ହୋଇ ଭାଣ୍ଡ କାରଖାନାଟା ଦେଖୁଥିଲା—ହଠାତ୍ ଗେହ୍ଲି ଆଡ଼େ ନଜର ପଡ଼ିଗଲାରୁ—)

ଗେହ୍ଲି—(ଲୁହ ପୋଛିଦେଇ, କବାଟ ଢ଼ାଙ୍କରେ ଛପିଗଲା )

ଦାସିଆ—( ଆଉ ସମ୍ଭାଳି ହୋଇ ନ ପାରି, କରଆ ଖଣ୍ଡିକ ନେଇ ଛୁଟିଲା )—ଗୋସେଇଁ—ଗୋସେଇଁ—ମତେ ଦଶ ଜୋତା ମାର ପଛକେ—'କୁକୁର' ଖିଆ—'ଗେଣ୍ଡା' ଖିଆ—ଯା' ମନକୁ ପାଏ, ଗାଳିଦିଅ ପଛକେ—ଏଇ ନାଲି ଲୁଗା ବକଟକ ନେଇ ଯା'—ନେଇ ଯା'—ପିଲାଟାକୁ ପିନ୍ଧେଇ ଦିଅ—ପିନ୍ଧେଇ——

( କହୁଁ କହୁଁ ଗୋଡ଼ାଇ ଗଲା )

( ନେପଥ୍ୟ ପିଲା କଣ୍ଠରେ )—ଗୀତ ।

ମୋଲ୍ ନାଲି ଲୁଗା ନାଲି ଅଙ୍ଗା—
ଦେ ନା ମାଉଁ— କେଲେ ଲଙ୍ଗା ॥

(ଗେହ୍ଲି ଛୁଟି ଆସିଲା ଘର ଭିତରୁ ବାଉଳୀ ହୋଇ)

ଗେହ୍ଲି—ଆ, ଆ, ପୁଅ—କାନ୍ଦ ନା—କାନ୍ଦ ନା—ଅଜା ତୋ'ର ଭାରି ଦୁଷ୍ଟ—ମୁଁ ଆଜିର ଭଲକରି ପିନ୍ଧେଇ ଦେବି ରେ—

( ନେପଥ୍ୟ ପୁଣି ପୂର୍ବାନୁକ୍ରମରେ ) ଗୀତ !

ସେଇ ନୂଗା— ସେଇ ଭଳି—
ଟିକାଇବୁ କୁଅଁତୋଳି ?—

ଗେହ୍ଲି—ଆଜିର ଭଲ କରି ପିନ୍ଧେଇ ଦେବି ରେ—ଭଲ ଭଲ ଲୁଗା, ବେଉଅଛୁ କାଢ଼ି—ନା, ନା—ଆ, ଆ, ବାପ ତୁ ବାଛି ନେ, କାଢ଼ି ନେ—ମୁଁ ବେଉଆ, ଘର, କାନ, ଅସାନ ଖୋଲି ମେଲିକରି ଥୋଇଦେଇଛି ତୋ ଆଗେ—ଯେଉଁଭଳି ମନ—ଯେଉଁଭଳି ଇଚ୍ଛା—କିଏ ନେ—ପିଲାଙ୍କ ପାଇଁ ସିନା ଯେତକି ନାଟ ?

( ନେପଥ୍ୟ ପୁଣି ସେହି ଅନୁକ୍ରମରେ )

ଗୀତ

ନାଚିବି ମୁଁ ଢ଼ଳି, ଢ଼ଳି—
ଦେଇ କରେ କରତାଳି ।

ଗେହ୍ଲି—( କେଉଁ ଉନ୍ମତ୍ତତାରେ ଯେମନ୍ତ ନାଚୁ ନାଚୁ, ସେହି ଗୀତ ସଙ୍ଗେ ଚିତ୍କାର କରି ଉଠିଲା )—ନା, ନା, ମତେ ଛୁଁ ନା, ମତେ ଛୁଁ ନା—ମୁଁ ଯେ ବାଉରାଣୀଟାଏ ! ମୁଁ ଯେ ଅଣ୍ଡକୁଡ଼ିଟାଏ !!

( ପଶି ଯାଉଥିଲା ସେହି ଆବେଗରେ )

[ ଦାସିଆ ଯନ୍ତ୍ର ମନରେ ପ୍ରବେଶ କଲା—ହାତରେ ସେ କରଆଟା କିନ୍ତୁ ନାହିଁ ]

ଦାସିଆ—ଯେତେ ଗୋଡ଼ ଉଲେ ପଡ଼—ନାକ ଘଷି—କାନ ମୋଡ଼ି—ମାଫି ମାଗି ନେଇ, ଅକୁଳ ବିକୁଳ ହୋଇ କହିଲି, ଗୋସେଇଁ ପରି ମୁହଁକୁ ଟିକିଏ ଅନେଇଲେ ନାହିଁ—ଆହା ! ପିଲାଟି କାନ୍ଦି କାନ୍ଦି ପରି—

ଗେହ୍ଲି—ହଉ, କସ୍ତା ଖଣ୍ଡ କଲୁ କଣ ?

ଦାସିଆ—ମୁଁ କ'ଣ ଏଡ଼େ ଓଲା ହେଇଚି, ଗେହ୍ଲି—ଦଆଧନ ଆମର, ଫେରାଇ ଆଣନ୍ତି ?—ଫେରୁ ଫେରୁ ବାଟରେ ଦୋରବସ୍ତ ନଙ୍ଗଳା ପିଲାଟିଏ ହାବୁଡ଼ିଲା ଯେ,—କହିଲେ ମିଛ ମାନିବୁ, ଠିକ୍ ସେହି ପିଲାଟିକି ଆଉ, ବଳି ପଶି ନ ଦେବାଯାଏ, ପରି ତରି ସହିଲା ନାହିଁ ?—ଆହା ! ବିଚରା ମା ବାପ ଛେଉଣ୍ଡ—କେବଳ ଲୁଗା ପିନ୍ଧ ନାହିଁ—ପିନ୍ଧ ଜାଣିବ କାହୁଁ ? ଭାରି ଖୁସିରେ ଲୁଗା ଖଣ୍ଡିକ ନେଇ, କାଖରେ ଯାକି ଦେଇ,—କ'ଣ କହିବି, ଗେହ୍ଲି—ଠିକ ସେମିତିକା ଦରୋଟି କଥା—ଠିକ୍ ସେହି ଭଳି ଲହରେଇ ଲହରେଇ 'ମାଉଁ' 'ମାଉଁ' ଡ଼ାକ ଡାକୁ ଡାକୁ ତ, କେଉଁଠି ଚ୍ଛପିଗଲା ଯେ—ମୁଁ ଖୋଜି ଖୋଜି ପରା ଥକିଲି—!

ଗେହ୍ଲି—ଆରେ, ତୋତେ ବି କ'ଣ ମୋ'ର ରୋଗ ଘୋଟିଲାଣି କି ରେ ?—

ଦାଦଆ ନା, ନା, ଗେହ୍ଲି—

ଗେହ୍ଲି—ଆଉ 'ନା, ନା' ? ତା' ନ ହେଲେ କି, ଜିନିଷ-ମାଲ, ଏମିତିକା ବରବାଦ୍ କରିଦେବାକୁ ମନ ବଳନ୍ତା ?—

ଦାସିଆ—( ଅବାକ୍ ହୋଇ ଗେହ୍ଲି ଆଡ଼େ ଚାହିଁ ରହିଲା )

ଗେହ୍ଲି—ଖୁବ୍ କମ୍‌ରେ 'ବାଣୀ' କଉଡ଼ି ହିସାବ କଲେ, ଦଶଗଣ୍ଡାରୁ ତ କମ୍ ନୁହେଁ, ସେ ଭଳି ଫୁଲ ତହିଁରେଅ କସ୍ତା ପଟକର ?—

ଦାସିଆ—ଛି, ଗେହ୍ଲି—ଖଇରାତ କାମପରେ ଆଉ ଲୋଭ ?-ମନଟାକୁ ଏତେ ଶ୍ରେଷ୍ଠ କରି ଦେ'ନାମ ?

ଗେହ୍ଲି—ତା' ନ କଲେ, ଜୀଇବା କେମିତି ରେ ?—'ଶ୍ରେଷ୍ଠ' ଲୋକ ଆମେ, ଯଦି ବଡ଼ ମନ କରିବା—ବଡ଼କୁ ଆଶା ବାନ୍ଧିବା—'ବଡ଼' ଲୋକେ ଆଉ ଦଙ୍ଗି ଥୋଇ ଦେବେ ନା ?—ଦଳି ମଳି, ଧୂଳିରେ ମିଶାଇ ଦେବେ ନାହିଁ ନା ?—ଆଖିରେ ଦେଖି, ଅଙ୍ଗରେ, ଲଗାଇ ସୁଦ୍ଧା, ଶିଖିଲୁ ନାହିଁରେ ? ଆରେ, ବଡ଼ଲୋକଙ୍କ ସବୁ କଥା ସୁନ୍ଦର—ବଡ଼ଲୋକେ ମୁଡ଼ି ଚୋବାଇଲେ ବି ଦୁନିଆ ହସି ହସି, କହିବ, 'ଖୁସିରେ ଚୋବାଉଛି ନା ?'—ଆଉ ଛୋଟଲୋକ ଯଦି ଚୋବାଏ ସେହି ମୁଡ଼ି—ନାକ ଟେକି କହିବ, ବାରବର୍ଷର ପିଲାଟିଏ କି-'ନଅ-ଅଙ୍କି, 'ଅକାଳିଆ' !

ଦାସିଆ—( ଦୀର୍ଘଶ୍ୱାସ ଛାଡ଼ି ) ହଁ, କହିବାକୁ ପାରୋଉଛି, ଗେହ୍ଲି—ଆଜଠୁଁ, ଠାକୁର ଘର ପର୍ଯ୍ୟନ୍ତ ଆମର ବନ୍ଦ—ଅଗଣା ଓଳିଆ ଓଳି କରିବାକୁ ବି ମନା ଏଣିକି—

ଗେହ୍ଲି—ଠାକୁରେ ଜାଣନ୍ତି ପରା !—ଆରେ, ତୁଇ ବାଉରୀ ଘରେ ଜନ୍ମ—ବାଉରୀ ଆଚରଣ କରିବୁ—ସେ ବାମ୍ଭୁଣିଆ ପାଇଟିକି ମନ କାହିଁକି ? ଆରେ ଯା'କୁ ଯେ ପୋଷାଏ, ନା ? ତୁ ବାଉରୀ—ତନ୍ତ୍ର ମୁଠେଇବୁ, କି ମାଟିକୁ ଯିବୁ—ତୋ'ର ସେ ପୋଥି ପାଖ ପଶିବାରେ ଲାଭ ? ଚିନ୍ତା କରିବାରେ ଫଳ ? ଆମେ ଯଦି ବାମ୍ଭୁଣୀ ପାଲଟିବା', ଆମର କାମ ସବୁ କରିବ କିଏ ? ବାମ୍ଭୁଣେ ଆସି କରିବେ ?

ଦାସିଆ—ଛି, ଗେହ୍ଲି—ଆମେ ନୀଚକୁଳରେ ଜନ୍ମ ହେଲୁ ବୋଲି, ନୀଚ ହେବା ? ଉଚ୍ଚ କୁଳର ଲୋକଙ୍କ ହିଂସା କରିବା ?—ହଁ, ଏକଥା ମାନୁଛି—ମୂର୍ଖ ମୁଁ—ଜାଣୁ ନା କି ବୁଝୁ ନା—ଏ ଭଳି ଧର୍ମକର୍ମ କରିବାଟା ଆମର ଭଲ କି ମନ୍ଦ—ଜାଇଲ କି ବେକାଇଲ—ତେବେ ବି—ତେବେ ବି—ମନଟା କାହିଁକି ମୋର ନାଚି ଉଠେ—ପ୍ରାଣଟା ଉଛନ୍ନ ହୋଇ ଉଠେ—ଯେବେ କି—

"ଗ୍ରାମରେ, ବିପ୍ରଙ୍କର ଘରେ ।
ବ୍ରତ ଉତ୍ସବ ମାନଙ୍କରେ ॥
ନାମ ଗାୟନ ହେବେ ହୋଇ ।
ତେବେ ଶୁଣିଣ ସୁଖ ପାଇ ॥
ନ ଜାଣେ ଭାବ ଅର୍ଥ କିଛି ।
ଶୁଣିବା କଥା ମୂଳ ଅଛି" ॥

ଗେହ୍ଲି—ଆରେ, ସେହି କାରଣରୁ ତ—

"ହୋଇଲୁ ଗୁରୁ ମନ୍ତ୍ର ଧାରୀ ।
ମାଳା ତିଳକ ନିତ୍ୟେ କରି ॥
ବସୁ ସ୍ୱଜନ ଜନ ପାଶେ ।
ଅତ୍ୟନ୍ତ ମନର ହରଷେ ॥
ନିତ୍ୟେ ଶୁଣିଣ ହରି କଥା ।
ବୁଝିଣ ପାପ ପୁଣ୍ୟ ମିଥ୍ୟା" ॥

କିନ୍ତୁ, ଏ ସବୁ କରିବାର ଫଳଟା ଏବେ ବେଶ୍ ବୁଝୁଛ ତ—ଆରେ, ଆମେ କୁଆ—କୁଆ ହୋଇ ରହିବା ର ଆମର ମଙ୍ଗଳ—ମିଛେ ମିଛେ ମୟୂର ଲାଞ୍ଜ ଗୁଞ୍ଜି ହୋଇ, ବାହାଦୁର ଦେଖେଇ, ଦି କୂଳରୁ ଠେଙ୍ଗା ଖାଇବା କାହିଁ ପାଏ ଭଲ ?

ଦାସିଆ—( ମର୍ମଟା ତାର ଯେମନ୍ତ ନିମ୍ନଭାବେ ଅପ୍‌ଶୋଷ କରି ଉଠିଲା )

"ବିଧାତା ମୋତେ ଏହା କଲା ।
ନୀଚ ଜାତିରେ ଜନ୍ମ ଦେଲା ॥
କାହୁଁ ପାଇବି ହରି ଭକ୍ତି ।
ଜୀବନ ହୋଇବ ମୋ ମୁକ୍ତି"

( ଆପଣାର ତନ୍ତ୍ରରେ କାମ କରିବାକୁ ଗଲା, ହତାଶ ଭାବେ—ଯେମନ୍ତ କି, ତାହାହିଁ ତାହାର **ଆଜୀବନ ଏକମାତ୍ର ସଙ୍ଗୀ** )

ଗେଣ୍ଡୁଲି—ଭୁଲେଣି କାହିଁକି ରେ ?—ଆମର କାମରେ କ'ଣ ଆମର 'ମୋକ୍ଷ' ନାହିଁ ?—

( ଅଦୂରେ ପୁରୀଯାତ୍ରୀଙ୍କର କୋଳାହଳ ଶୁଣାଗଲା )

( ନେପଥ୍ୟ )—

ଗୀତ

"ଠାକୁର ଭଲ ବିରାଜେ ହୋ
ଓଡ଼ିଶା ଜଗନ୍ନାଥ···"

ଗେଣ୍ଡୁଲି—ଆଚ୍ଛା; ମିଣିପ—ତୁ ଗୋଟାଏ କାମ କଲେ ହ'ନ୍ତା ନାହିଁ ?—ଏଇ ପୁରୀଯାତ୍ରୀଙ୍କ ସଙ୍ଗେ ଯାଇ, ଲୁଗା ଗଣ୍ଡିରାକ ସେଠେଇଁ, ଯାତରେ, ବେଶ୍ ଚଢ଼ାଦାମରେ ବିକି କରି, ଆସନ୍ତୁ ? ଆରେ, ମନଟା କାହିଁକି ମୋର ସେଇକାଳୁ ଛଟ୍କୁଚି,—ଷଡ଼ଙ୍ଗୀଏ ଯିମିତକା ଅବଜିଆ ଲୋକ—ଗାଁ ଗୋଟାକ ମତେଇ, ସବୁକଥାରେ ଯେବେ ବାସନ୍ଦ କରିଦିଏ ତ···? ଅନନ୍ତ ଅନନ୍ତ ପଡ଼ି ତ ବନ୍ଦ କରେଇ ଦେଲଣି—କାରବାରଟା ବନ୍ଦ କରେଇ ଦ'ବାକୁ କେତେବେଳ ? ନିଆଁ ପାଣି ବାସନ୍ଦ ଏବେ କରି ଦଉଚି କି କ'ଣ, ଦେଖ । ଯା' ହଉ, କଉଡ଼ି ଅଣ୍ଟାରେ ଥିଲେ, ସବୁ ଅଣ୍ଟ—କଣ୍ଟା ବି ଗୋଡ଼ରେ ଭୁଷିବ ନାହିଁ ରେ—ଭୁଷିବ ନାହିଁ ! !

ଦାସିଆ—ଗେଣ୍ଡୁଲି ଗେଣ୍ଡୁଲି, ତୁ ଆଜି କି ଅମୁର୍ତ ପେଇ ଦେଲୁ ?—ଜଗନ୍ନାଥଙ୍କ ଡୋରି କ'ଣ ସତେ ସତେ ଏତେଦିନେ ଲାଗିଲା ?—

"ବାରେ ମୁଁ ଯାତ୍ରା ଦେଖିଯିବି ।
ପ୍ରଭୁଙ୍କ ଦର୍ଶନ କରିବି ॥
କେମନ୍ତ ରୂପ ଭଗବାନ ।
ଦେଖିବ ଏ ଚର୍ମ ନୟନ ॥"

ଗେଣ୍ଡୁଲି—ଅରେ ଅଲେଇସିଆ,—ମୁଁ କ'ଣ ତତେ 'ଯାତ୍' ଦେଖିବାକୁ ପଠଉଚି ?—ନା—ନା—ତୋ' ଯିବାରେ ଲୋଡ଼ା ନାହିଁ—କି ଆମର ବଣିଜରେ କାମ ନାହିଁ ।

ଦାସିଆ—ଗେଣ୍ଡୁଲି ଗେଣ୍ଡୁଲି ତୋ ହାତ ଧରୁଚି—ଗୋଡ଼ତଳେ ପଡ଼ୁଚି—

ଗେଣ୍ଡୁଲି—ମ, ମ, ତୋତେ ଭୂତ ଲାଗିଲା ନା କଣ ?

ଦାସିଆ—ନାହିଁ, ଗେଣ୍ଡୁଲି—'ଭୂତନାଥ', 'ଭୂତନାଥ'-ତୁ ମନା କରନା—ଆଣ ଦେଇ, କାଢ଼ି ନେ' ନା—ମୁଁ ମାଲ୍ ତୋର ଆଗେ ବିକିବି, କଉଡ଼ି ଅଣ୍ଟାରେ ମାରିବି, ତା'ପର ଯାଇଁ, ଯଉଁ କଥା ।

ଗେଣ୍ଡୁଲି—ଆଚ୍ଛା, ବେଶ୍—ମୋ ଦନ୍ଦ ଛୁଁ ।

ଦାସିଆ—ଖାଲି ଛୁଇଁବି ନାହିଁ ଲୋ—କୁଣ୍ଢେଇବି, ମୁଣ୍ଢେଇବି, ମୋର ଗେଣ୍ଡୁଲିରାଣୀକୁ । (ସେଇଆ କରିବାକୁ ଯାଉଥିଲା )

( ନେପଥ୍ୟେ—ପୂର୍ବାନୁକ୍ରମରେ )

ଗୀତ

"ଓଡ଼ିଆ ମାନେ ଖିରି ଖେଳେତି
ବଙ୍ଗାଳୀ ମାନେ ଭାତ—
ସାଧୁ ମାନେ ଦର୍ଶନ···

ଦାସିଆ—ଆଉ ଡେରି କରନା, ଗେଣ୍ଡୁଲି—ଏଥୁ ଯେ ସେମାନେ ଡେରା ଭାଙ୍ଗି, ଯାତ୍ରା କରିବାକୁ ବସିଲେଣି—ହଁ, ଏ' ଜମାଏତଙ୍କ ସାଙ୍ଗରେ ମିଶି କରି ଗଲେ, ଚୋର ଡକେଇତଙ୍କ ଡର ବାଟରେ ନ ଥିବ—।

ଗେଣ୍ଡୁଲି—ହଉ ହଉ, ତୁ ଲୁଗାସବୁ ସଜାଡ଼ି ଗଣ୍ଠିଲା ବାନ୍ଧ—ମୁଁ ଚୂଡ଼ା ଗଣ୍ଡେ, ଗୁଡ଼ ମେଞ୍ଚେ, ଲୁଣ, ଲଙ୍କା ମରଚ ଦ'ଟା ଗାମୁଛାରେ ବାନ୍ଧି ଦେଉନି ଆସେଁ କି ? (ଚାଲିଗଲା)

ଦାସିଆ—( ଭାରି ଖୁସିରେ ଲୁଗା ସଜାଡ଼ୁ ସଜାଡ଼ୁ ) ଏତେ ସିଧି ହଉଚି—ବାଟତ ଭାରି !—ଦକୋଶ ଦ ଖୋଜକୁ ନାଅଣ୍ଟ ।

ଗୀତ

ଅଉ ନାହିଁ କାହିଁରେଟି ମନ ।
ଯେବେ ମୁହିଁ ଯିବିରେ ବହନ ॥
ହେବ ତହିଁ ରଥଯାତ୍ରା
ଭଡ଼ାଭଡ଼ି କେତେ ମାତ୍ରା
ନନ୍ଦଘୋଷେ ବିଜେ ଭଗବାନ ॥

ଗେଣ୍ଡୁଲି—କୁଅଁକାଣିଟା ଦେଖା ତ—ଗ୍ରାମଦେବତୀ ଧଣ୍ଡା ବାନ୍ଧିଦିଏଁ ଆଗେ—( ଧଣ୍ଡାକୁ ଦାସିଆ

କପାଳରେ ଓ ଆପଣା କପାଳରେ ଲଗାଇ, ଲୁଗା କାନରେ ଗଣ୍ଠି ପକାଇ ବାନ୍ଧଦେଲ )—ଦେଖ୍, ମିଣିପ—ତୁ ତ ଭୁଲ ମନ—ଭସା ହୁସିଆର ଥିବୁଟି—ନୂଆ ଜାଗା—ନୂଆ ଥାନ—ବୁଝି ଶୁଝି ଚାଲିବୁଟି—ନାହିଁତ, ବଡ଼ା ଧନଟକ କିଏ ଚୋରା କାଟି ଦେଲାତ, ଭାଁ ଭାଁ ହେବୁଟି ?

ଦାସିଆ—ଏଡ଼େ ସାହସ କା'ର ହବନା, ମୋ ପାଖ ପାଖ ଆଗେ ପଶିବାକୁ ? ତୁ ପରା ଅକାଟ ରକ୍ଷା-କବଚଟାଏ ମୋ ଲୁଗାକାନରେ ବାନ୍ଧ ଦେଲୁଣି ? ଆଉ ଜଗନ୍ନାଥଙ୍କୁ ମୁଁ ପରା ସଅଁପି ଦେଲିଣି ଆପଣାକୁ···।

( କହୁଁ କହୁଁ ବୁଜୁଲାଟି ପିଠିରେ ବାନ୍ଧ ଠିଆ ହେଲା, ଓ ଗେହ୍ଲି ଆଣିଥିବା ଲୁଗା ଚାଦରକୁ ଅଣ୍ଟାରେ ଭିଡ଼ିଲା, ଯାଉଁଳାଟା କାନ୍ଧରେ ଝୁଲାଇଲା )

ଗେହ୍ଲି—ହଁ, ଛତାଟା—ବର୍ଷାଦାନ— ( ଚାଲିଗଲା )

( ନେପଥ୍ୟେ ଯାତ୍ରୀମାନେ )

"ଜୟ ଜଗନ୍ନାଥ ସ୍ୱାମୀଙ୍କ ଜୟ ।"

ଦାସିଆ—( କେଉଁ ଆନନ୍ଦ ଭୋଳରେ ଛତାଟା ମେଲାଇ ମୁଣ୍ଡରେ ଦେଇ, ପ୍ରତିଧ୍ୱନି କରି ଉଠିଲା )— 'ଜୟ' ଜଗନ୍ନାଥ ସ୍ୱାମୀଙ୍କ ଜୟ' ।

( ଚାଲିବାକୁ ଲାଗିଲା )

ଗେହ୍ଲି—( ମନେ ମନେ କେତେ କା'କୁ ଯେ କ'ଣ ମନାସିବାକୁ ଲାଗିଲା ଓ ଓଳଗି ହେବାକୁ ଲାଗିଲା ) ବେଶ୍, ମୁଁ ବାଟ ତୋ'ର ଚାହିଁ ରହିଲିଟି !

ଦାସିଆ—ମୁଁ ବାଟେ ବାଟେ ଫେରି ଆସିବି, ଗେହ୍ଲି— ତୁ ଆଦୌ ଦକା କରନା—ତୋର 'ଗେହ୍ଲା'ର ବାଟ ଓଗାଳିବ, ଏଡ଼େ ଥାଟ କା'ର ?—

ଗେହ୍ଲି—(ହସି ହସି) ଆରେ, ତୁଟ ଦଅଁ ଦେଖିବୁ— 'ଯାତ' ଦେଖିବୁ—ମୋ' ପାଇଁ କ'ଣ ଆଣିବୁ, ଜବାବ କଲୁନାହିଁତ ?

( ଲୁଗା ଗଣ୍ଠିଲି ମୁଠାଇ ଧରିଲା )

ଦାସିଆ—ତୋ ପାଇଁ ପରା, ସେହି 'ବଡ଼' ଦଅଁଙ୍କଠୁଁ ମାଗି ଆଣିବି—ନାଲି ଲୁଗା ପିନ୍ଧାଇ ଆନମାନଟା ତୋ'ର ମେଣ୍ଟେଇବୁ ଯଉଁଥିରେ ?

(ହସିଦେଇ ଚାଲିଗଲା)

ଗେହ୍ଲି—(ଲଜ୍ଜାରେ ଅଲଗା ହୋଇ ଯାଇଥିଲା, ଯିବା ପରେ ପରେ କେଉଁ ଉଚ୍ଛ୍ୱାସରେ, ଘରଭିତରେ ପଶିଗଲା କହୁଁ କହୁଁ) ଓଃ, ମୁଁ ଅଣ୍ଟୁକୁଡ଼ୀହେବାରୁ ସିନା, ଏତେ ସବୁକଲି ତାଙ୍କୁ ଆଜି, ଦାହରେ, ମନରେ—!

[ଗୋଟିଏ ସାନ ପିଲା—ଉଖୁରା-ନୁଖୁରା—ସେହି ଲୁଗାଟି କାଖରେ ଯାକି, ହସି ହସି, ଗାଇ ଗାଇ, ଆସିଲା ]

ପିଲା— ଗୀତ

ଅଣ୍ଟୁକୁଡ଼ୀ କେ ଏ ଜଗତେ, ମା ।
ଅଣ୍ଟୁଆ ଯେବେକି ତୋ'ର ଜମା ॥
ବାହାରେ ତୁ ଖୋଜି ବୁଲୁ—
ହସଇ ଯେ କୁଲୁ କୁଲୁ—
କି ଲଭ ସେ ଦବୋଟି ଫୁଲେ, ମା ।
କାଲକାଟ ପେ ବୁଡ଼ାଏ ଜମା ।
ଅନ୍ତର ଖୋଜ ଗୋ ବାରେ—
ପ୍ରେମସିନ୍ଧୁ ପାରାବାରେ—
କେ ଅଛୁ ଅନନ୍ତ ନିଦ୍ରାରେ, ମା ।
ମୁହିଁ, ମୁହିଁ ସେ ପୂର୍ଣ୍ଣଚନ୍ଦ୍ରମା ॥

( ଗାଇ ଗାଇ ବାହାରି ଯାଉଥିଲା )

[ଗେହ୍ଲି ଦ୍ୱାର ପାଖକୁ ଆସି ଚାହିଁ ଦେଖିଲା]

ଗେହ୍ଲି—ଅରେ ରେ ସେହି ପିଲାତ—ମିଣିପ ଯା'କୁ ଲୁଗା ଖଣ୍ଡିକ ଦେଇଚ—ଆହା ! ପିନ୍ଧ ଜାଣେ ନାହିଁ ବୋଲି, କାଖରେ ଯାକି ବୁଲୁଚ ! ଆରେ, ରେ—

ପିଲା—( ଫେରି ଚାହିଁ, ଠିଆ ହେଲା )

ଗେହ୍ଲି—ଆ, ଆ, ଏଣିକି ଆ—

ପିଲା—କାହିଁକି ମ ?—ତୁ ଛଲେଇ ନବୁ ?—

( ଆହୁରି ଯାକି ଧରିଲା )

ଗେହ୍ଲି—(ହସି ହସି) 'ଛଲେଇ' ନେବି ନାହିଁ ମ— ଆ, ଆ—

ପିଲା—ତେବେ କ'ଣ ଆଉ ଖଣ୍ଡେ ଦବୁ ?—

ଗେହ୍ଲି—(ମନେ ମନେ ଯେମନ୍ତ କହି ଉଠିଲା)-ଖଣ୍ଡେ କାହିଁକିରେ ? ଜଗତ ଯାକର ହେଲେ ବି, ଦେଇ ପରି ମନ ମୋ'ର ସନ୍ତୋଷ ହ'ନ୍ତା ନାହିଁ !

ପିଲ୍ଲ—ଦବାକୁ ତ ମନ ନାହିଁ, ଏତେ ଶୁଖିଲା ସବୁଗ ବିଆ ?

ଟେହ୍ଲି—(ହସି) ଅରେ, ତୁ ତ ଯା' ଖଣ୍ଡେ ଅଧେ ପାଇଚୁ, ପିନ୍ଧି ଜାଣୁନା ବୋଲି, କାଖରେ ପାଞ୍ଜିବାଡ଼ା ଭଳି ଯାକି ଯାକି ବୁଲୁଚୁ—ଆଉ—

ପିଲ୍ଲ—ନ ଯାକି, ଆଉ କରନ୍ତି କ'ଣ ଭଗ୍ନ, କହିଲୁ ? ପିନ୍ଧବାକୁ ଅଣ୍ଟିଲେ ତ ?—

ଗୀତ

ଅଣ୍ଟିବ କି ଏ ସୁରବ ବସନ. ମା !
ନାଅଣ୍ଟ ଯାକୁ ନୀଳ ଗଗନ ॥

ଟେହ୍ଲି—ମ'—ଏ' ମଲାଟା କହୁଚି କ'ଣ ମ ? ଅରେ ଛୁଆ, ମେଲାଇ ଦେଖିଲୁ ଥରେ—ତୋ' ଭଳି କେତେ ଗଣ୍ଡା ପଶିଯିବ ଅଗେ ?

ପିଲ୍ଲ—(ହସି ହସି ମେଲାଉ ମେଲାଉ)

ଗୀତ

ସନ୍ଦେହ କର ଗୋ କାହିଁ—
ନୁହେଁ ମୋର କଥା ଫମ୍ପା—

( ବେଡ଼ଶାଟା ଖୋଲି ଅଣ୍ଟା ଗୁଡ଼ପାଖେ ବେଢ଼ାଇବାକୁ ତା ଅଧେ ନାଅଣ୍ଟ ହେଲା )

ଟେହ୍ଲି—(ନିରେଖି ନାରଖି ଦେଖି) ଏଁ, ଏଁ—ସତେ କ'ଣ ଅଣ୍ଟିଲା ନାହିଁ ? ଏ'ତ ଭାରି ଅଚମ୍ବିତ କଥା ! ମୋ' ହାତରୁଣା ବେଢ଼ଣି, ଯା'କୁ ଯେମନ୍ତ, ବଡ଼ ହେବ ପଛକେ ଅଙ୍ଗୁଳିଏ ଦୁ ଅଙ୍ଗୁଳି, ସାନ ତ କେବେ ହେବନାହିଁ ? କାହାର ମୁହଁରୁ ଦନେତ ଏକଥା ଶୁଣି ନାହିଁ !

ପିଲ୍ଲ—ହଃ—ହଃ—ମିଛ ମାନୁଥିଲୁ ପରା ?

ଟେହ୍ଲି—ହୁଁ—ତେବେ କ'ଣ ମୁଁ ମିଛୁଆ ?

( ଅପେ ଲୁଗା ପିନ୍ଧାଇବାକୁ ଲାଗିଲେ )

ପିଲ୍ଲ— ଗୀତ

ଏହି ଠାଣି ବାନ୍ଧେ ଯେ ଜନ
ତାର ପାଶେ ମୁହିଁ ନଠାଣି ॥

ଟେହ୍ଲି—କାହିଁକି ? ହେଲା :—

ପିଲ୍ଲ - ଗୀତ

ଏ'ତ ଅତି ଲମ୍ବ ବସନ,
ଝାଅକେ ହୋ ବନ୍ଧା ଭୁବନ !

ଅଚ୍ଛା, ଏଥର ମୋତେ କାଖ କରବୁ ନା, ମାଉଁ ?

ଟେହ୍ଲି—(କାଖ କରିବାକୁ ଯାଇ ସେହି 'ମାଉଁ' ଡାକରେ ଚମକି ଉଠିଲା)—ଓଃ, ମୁଁ କଣ କଲି ? ମୁଁ ଯେ ଅଣ୍ଡୁ କୁଢ଼ୀଟା !

( ଭିତରକୁ ପଶିଯାଇ କବାଟ କିଳିଦେଲା )

ପିଲ୍ଲ—(ଦ୍ୱାର ପାଖକୁ ଛୁଟିଯାଇ).ଆଉ, ମୁଁ ଯେ ତେ'ର ଆଣୁଆ ଗୋପାଳ, ମା !

(କଲବଲ ହୋଇ ଦ୍ୱାରରେ କର୍‌ଘାତ କରିବ କୁ ଲାଗିଲା )

("ଅାଣ୍ଡୁକୁଢ଼ୀ କେ ଏ' ଜଗତେ, ମା"—ତା'ର ବ୍ୟଥିତ ଝଙ୍କାରରେ ସ୍ଥାନଟି ଯେମନ୍ତ ଝର ଝର ହୋଇ କାନ୍ଦିବାକୁ ଲାଗିଲା)

—ଯବନିକା—

---

# ଦ୍ୱିତୀୟ ଅଙ୍କ

**ଦୃଶ୍ୟ:**— ସେହି ପୂର୍ବ ଦୃଶ୍ୟ ।

( କେବଳ ତନ୍ତ ଓ ଅରଟ ନାହିଁ—ଟେହ୍ଲା ଖାଲି କଳସିଟିଏ କାଖରେ ଯାକି, ଗାମୁଛାଟିଏ କାନ୍ଧରେ ପକାଇ, ଦ୍ୱାର ମେଲାକରି, ଏପଟ ସେପଟ ଗୁହୁଁ ଗୁହୁଁ ପଦାକୁ ଆସିଲା । )

ଟେହ୍ଲି—( ମୃଦୁସ୍ୱରେ ) ଜଳାଟାର ଦେଖାନାହିଁ ଆଜି 'ଯା'ହଉ-ମାହାପ୍ରଭୁ ଜାଣନ୍ତି ପରା—ଦିନରାତ, ଦଣ୍ଡେ ବି ଥୟ କରିଦେଉ ନାହିଁ—ଟିକିଏ ନିଶ୍ଚିନ୍ତରେ ମଣିଷ କଣ୍ଡୁକଥା କରିବ, କି ଧରିବ, ତାର ଆଉ 'ଜୁ' ଅଛି ନା ? ସିଣିପଟା ଯେ ଯୁଗେ ହେଲା ତେଣେ ଲାଗିଲାଣି, ସେ କଥା ବି ଶନ୍ତିବାକୁ ଟିକିଏ ଫୁର୍ସତ ଦଉଚି ନା ?—

( ଏହାପରି ଆପଣା ମନକୁ କହୁ କହୁ, ଝଣ୍ଡେ ଛଡ଼ା, ଗୋଟିଏ ଢିପ ଉପରେ, କଳସିଟା ଥୋଇ

ଦେଇ, ବସିଲା ବାଲୁବାନ୍ଧ ଉପରେ କଳ୍ପନା-
ପ୍ରସାରିତ କେଉଁ ଅନନ୍ତ ପଥ ଆଡ଼େ ଚାହିଁ )

ଗେହ୍ଲି—( ସେହି ନୀରବ ଦୃଷ୍ଟି ସଙ୍ଗେ ସଙ୍ଗେ ନୀରବ
ଭାଷାରେ ହୃଦୟୋଚ୍ଛ୍ୱାସ ଯେମନ୍ତ ଉଚ୍ଛୁଳି ଉଠିଲା
ଏହିଭାବେ )

ଗୀତ

ଫେରି ଆସ—ଫେରି ଆସ—
ଅଗୋ, ମୋର ଭଗ୍ନ ଚୁନ୍ଦ ।
ଭରିଦିଅ—ଭରିଦିଅ—
ଏ' ମୋ' ଶୂନ୍ୟଘଟ ଫାନ୍ଦ ॥
ଶୂନ୍ୟ ଘଟେ ଯେବେ ଭରେ ପାଣି
ଶୂନ୍ୟ ଏ'ଘଟ ଅଧିକ ମଣି—
ଶୂନ୍ୟେ ଚାହିଁ—ଦେଖେଁ ଶୂନ୍ୟ—
ନିଷ୍ଟୁର ନିଶାର ଶୂନ୍ୟ ।
ଶୂନ୍ୟେ ସନ୍ଧି—ଶୂନ୍ୟେ ବନ୍ଧି—
ଆଶା ତୁମେ ଶୂନ୍ୟ ଚୁନ୍ଦ ॥

( ଶୂନ୍ୟ ଆକାଶରୁ ସତେ ସତେ ଶୂନ୍ୟ-
ଚୁନ୍ଦଟିଏ ଖସିପଡ଼ି ହଠାତ୍ ଗାଇ, ଗାଇ, ନାଚି,
ନାଚି, ପାଖକୁ ଧାଇଁଆସିଲା କି ଆଜ ! )

ପିଲା— ଗୀତ

ଏ' କି ଅକଲ୍ ତୋହର, ମା !
ବିକଳ କାନ୍ଦୁଛି ଚନ୍ଦ୍ରମା ॥
ଉଆଁସ ଦିନେ ଡ଼େଇଁଛୁ କେତେକେ
ଉକୁଣୀ ପରି ଶୂନ୍ୟେ ଶଶୀ;
କିନ୍ତୁ, ନୀରବେ କାନ୍ଦିଲୁ ଯେବେ
ଆସିଲି ଧାଇଁ ଶୂନ୍ୟୁ ଖସି ।
ଦେଖ୍‌ନା ତୋ' ଶୂନ୍ୟକୋଳ, ମା—
ଭରିଚି ମୁଁ ଶୂନ୍ୟଚନ୍ଦ୍ରମା ॥

ଗେହ୍ଲି—( ରୂପର ଝଲକଟା ଆଉ ସହ୍ୟ କରି ନ ପାରି
ଆଖି ମୁଦି ଦେଇଥାଇ ) କିଏ—କିଏ ?

ପିଲା—ମ' ?—ଜଳ ଜଳ—ଡବା ଡବା—ଯୋଡ଼ା
ଯୋଡ଼ା ଆଖି ଥାଉଁ, ଥାଉଁ, ଅନ୍ଧୁଣୀ ନା କ'ଣ ?

ଗେହ୍ଲି—( ଆଖି ଫିଟାଇ ) ତୁ ଅନ୍ଧ ହ'—ତୋର
ସାତପୁରୁଷ ଅନ୍ଧ ହେଉ—ଚଉଦ ପୁରୁଷ ଅନ୍ଧ
ହେଉ—ଜଳା !—ଆସିଲା ଆହୁରି ଜଳେଇବାକୁ ?

ପିଲା—ନା, ମ—ତୋ'ର ଜ୍ୱାଳା ଲିଭାଇବାକୁ ନା ?—

ଗେହ୍ଲି—( ମର୍ମକଥା ଉପଲବ୍ଧି କରିବା ସତ୍ତ୍ୱେ )
ଭାରି ମୋ' ହିତକାରିଆ ରେ ! ଯିବୁ କି ଯେମିତିକା
ନେହୁରା ହେଇ କିଏ ଡାକୁଥିବ ? ( ମୁହଁ
ମୋଡ଼ିଦେଇ କଳସୀଟା କାଖରେ ଯାକି
ବାହାରିଲା )

ପିଲା—( ବାଟ ଓଗାଳି ) ସତ କହିଲୁ, କା'କୁ ଆଜ
ଏତେ ବିକଳ ହୋଇ ଡାକୁଥିଲୁ ?—

ଗେହ୍ଲି—ଆରେ 'ଜଳା' !—ତତେ ତ ନୁହେଁ ?

ପିଲା—ମନ ସନ୍ଧ ତୋର ଖୋଜି ଲୋଡ଼ି କହିଲୁ—
ମୋତେଇ କି ନୁହେଁ ? ଏ' ଟିକି ପିଲାଟିକି କି
ନୁହେଁ ? ତୋ ମନ ଜାଣି ପରା, ଘ'ଟୁ ସେ ଗୋଡ଼
କାଢ଼ୁଥିଲୁ ନ କାଢ଼ୁଣୁ, ମତେ ହକାରି ପଠାଇ
ଦେଲା, ଆଗଭରି, ଟିକିଏ ଡର ବି ନ ଦେଇ ?

ଗେହ୍ଲି—କ'ଣ କହୁଚି, ଏ' ଟୋକା ? ମତେ କାବା
ଲାଗୁଚି !

ପିଲା—ଅଟେଇ, ଦଅଁଠୁଁ କି ବର ଆଦିଦେ'ବ ବୋଲି
କହୁ ଥା'ଇଥିଲା ସେ,—ଏତେ କାଲୁ ?

ଗେହ୍ଲି—ଜଳା !—ଉଠ—ଉଠ—ବାଟଛାଡ଼—
ବାଟଛାଡ଼—ମୁଁ ଯାଏଁ, ଯାଏଁ ବାହାରି—ହାଁ,
ହାଁ—ଛୁଇଁବୁ—ଛୁଇଁବୁ !

ପିଲା—ମୋ'ର ଛୁଆଁକୁ ଏତେ ଡର, ନା ?

ଗେହ୍ଲି—ତୋ'ର ଛୁଆଁକୁ ନୁହେ ରେ, ଜଳା—
ମୋର—ମୋ'ର ଛୁଆଁକୁ ।

ପିଲା—ମ'—ସେ ଦିନତ ଛୁଇଁ, କୁଣ୍ଢେଇ, କେତେ
ଅଲଅଲ କରି, ନିଜେ, ଲୁଗା ଆଣି, ମତେ ପିନ୍ଧାଇ
ଦେଲୁ, କାହିଁ, ମତେ ତ କିଛି ଡର ମାଡ଼ିଲା
ନାହିଁ ?—ଆହୁରି, କେତେ ଯେ ଭଲ ଲାଗିଲା !—

ଗେହ୍ଲି—ସତେ—ସତେ ?—
( ଆତ୍ମବିସ୍ମୃତା ହୋଇ କହି ଉଠିଲା )

ପିଲା—ହୁଁ—ତୋତେ ଭଲ ଲାଗିଲା ନାହିଁ, ସେ କଥା
ନ କହୁ—ବାଆଁରେଇ କୁହା ହଉଚି କିନା—
"ତୋ'ର ଛୁଆଁକୁ ନୁହେ ରେ ଜଳା, ମୋ'ର—
ମୋ'ର ଛୁଆଁକୁ" ?—
( ମୁହଁ ଭାରି କରିଦେଲା )

ଗେହ୍ଲି—(ଛଳ ଛଳ ହୋଇ) ଏ ମୋର କଥା ନୁହେଁ
ରେ, ବାପ—ତୋ'ର କଥା—ତୋ'ର ଜାତିର
କଥା—ବ୍ରାହ୍ମଣୀ ଗୋସେଇଁଙ୍କ କଥା—

ପିଲା—ହୋଃ—ହୋଃ—ତୁ ସେଇମାନଙ୍କ କଥାକୁ
ଡରିହରି, ମତେ ଛୁଇଁବାକୁ ଡରୁଚୁ ?—

ଗେହ୍ଲି—ଡରିବି ନାହିଁ ?—ଜାନ୍ତି ଆଗେ ପର୍ଶ ହାତୀ
ବାଟ ପାଏ ନାହିଁ ?

ପିଲା—ହେଲା ଏବେ, ମୋଠେଇଁ ଡର ଭୟ
କାହିଁକି ? ମୁଁ ତ ଜାତିର ବାହାରେ । ମୋ'ର
କ'ଣ ବାର ବର୍ଣ୍ଣର ଅଛି ? ମୁଁ ବାହ୍ମଣୀ
ସାଙ୍ଗରେ ବାହ୍ମଣୀ—ହାଡ଼ି ସାଙ୍ଗରେ ହାଡ଼ି !—

ଗେହ୍ଲି—ହଁ, ତୋ'ର ବାପ ମୋ'ର ଠିକଣା ନାହିଁ
ଯେତେବେଳେ, ଜାତିଆଣି ଆସିବ କଉଁଠୁ ?
ତେବେ ବି——        ( ଅଟକି ଗଲା )

ପିଲା—ଫେଣି ନଟରି ?

ଗେହ୍ଲି—( କୋହଟା ଉଚ୍ଛୁଳି ପଡ଼ିଲା କି ଆଉ
ନିମ୍ନସ୍ୱରେ ) "ନାହିଁ ମୋ ପୁଅ ପୁତ୍ରୀ ଧନ ।
ତେଣୁ ଦରିଦ୍ର ମୋ ଜୀବନ ॥" ଅଣ୍ଟୁକୁଡ଼ୀ—
ଅଣ୍ଟୁକୁଡ଼ୀ ମୁହିଁରେ, ବାପ—ଯଉଁ ପିଲାକୁ
ଛୁଇଁଦେବ, ତା'କୁ ମହା ଦୋଷ ଲାଗିଯିବ !—
ତାର ମହା ଅକଲ୍ୟାଣ ହବ ।

ପିଲା—ମୋର କାନ୍ଥୁ ଓଲଟା ହୁଏ, ମା—ମୁଁ ଯେ ତୋ'ର
'ଅଣ୍ଟୁଆ ଗୋପାଳ', ମା—ଦେଖ—ଦେଖ
ଆଖିବୁଜି ଥରେ—ମୁଁ ସେହି 'ଶରବାଛିତ୍ର' କି
ନୁହେଁ, ତୋ'ର ।

( ତତ୍କ୍ଷଣାତ୍ ଅଣ୍ଟୁଆ ଗୋପାଳ ରୂପରେ
ସମ୍ମୁଖରେ ଆବିର୍ଭୂତ ହେଲେ )

ଗେହ୍ଲି—( ସେ ମୋହନ ମୂର୍ତ୍ତି ଆଖିବୁଜି ଦେଖି)

ଗୀତ

ଆ', ଆ'—ଆ' ରେ କୋଳେ—
ଆ, ମୋହନ—!
ଛୁଇଁ ମୋର—ହୃଦ-କିଶୋର ॥

ତୋ'ର ସେହି ଦରହାସ—ଦରଭାଷ—
ଭୁଲାଇଛି ମୋ' ଶୋକ ଶୋଷ—
ତୋ'ର ପାଇଁ ମୁଁ କାଙ୍ଗାଳ ।
ଆରେ ମୋ' ଅଣ୍ଟୁଆ ଗୋପାଳ ॥

( ଆଖି ଫିଟାଇ, ନେବାକୁ ଗଲା )

ପିଲା—( ପୂର୍ବରୂପରେ ଧାଇଁଲେ ) ନେ, ନେ, ମା
କୋଳକୁ—

ଗେହ୍ଲି—ନା, ନା—ତୁ ପର ପିଲା !—ପର ପିଲା !—
ମୁଁ ଛୁଇଁ ପାରିବି ନାହିଁରେ—ମୁଁ—
( ବିଚ୍ଛୁଆତ ଲାଗିଲା ଭଳି, ଛଟପଟ ହୋଇ
ପଳାଇଗଲା )

ପିଲା—( ଥକ୍କା ମାରି ଠିଆ ହୋଇ, କିଛିକ୍ଷଣ
ସେହିଆଡ଼େ ଚାହିଁ )—'ପର ପିଲା' !—କାନ୍ଥୁ,
ଏତେ ଆପଣାର ଭଳି, ତୋ'ର ଆଉ କିଏ,
ମା ?—ମୋର ବା କିଏ ଅଛି ?—

ଗୀତ

ପାଷାଣୀ ତୁ ହଁ'ନା, ମାଗୋ ।
ସୁଧାଭରା ତୋ ପ୍ରାଣ ଗୋ ॥
ପର ବୋଲି ଠେଲୁ ଯାକୁ—
ଆପଣାରୁ ସେ ଅଧିକୁ—
'ମା' ପ୍ରାଣେ ନ ବୁଝିଲେ ତୁ—
କହିବ ଅଉ କାହାକୁ ?
ହେ'ନା ବ୍ୟଥା ପିଲା ପ୍ରାଣେ—
ଡାକଇ ଯେ—'ମା' 'ମା' 'ମା' ଗୋ ॥

( ଭାରି ବ୍ୟାକୁଳ ଭାବେ କାନ୍ଦି କାନ୍ଦି ଛୁଟି
ଚାଲିଗଲା କେଉଁଆଡ଼େ । ତତ୍କ୍ଷଣାତ୍ ଯିବା ସଙ୍ଗେ
ସଙ୍ଗେ ଗେହ୍ଲି ଧାଇଁଆସିଲା ବ୍ୟଥିତ ପ୍ରାଣରେ )

ଗେହ୍ଲି—କାହିଁ, କାହିଁ, ପୁଅ ମୋର ? ମୁଁ ତାକୁ
କନ୍ଦାଇଲି ନା କ'ଣ ? ( ଖୋଜି ଖୋଜି )
କାହିଁଗଲା ? ପୁଚୁଖାଇ ମୁଁ ହାରୁକା ମାରି
ତଡ଼ିଦେଲି ନା କ'ଣ ? ( ରହିଯାଇ ) ଏଇଯେ—
ଏଇଯେ—

( ନେପଥ୍ୟେ—ସେହି କ୍ରନ୍ଦନର ରେଶଟା ଯେପରି
ଭାସି ଭାସି ଆସୁଥାଏ )

ଗେହ୍ଲି—କାନ୍ଦନା, କାନ୍ଦନା—ଆ, ଆ, ଧନ ମୋ'ର—ମୁଁ ଛୁଇଁବ କୋଳକୁ ନେବ-ବୁକୁରେ ଲୁଚ୍ଛାଇ ରଖିବ ।

( ଧାଇଁ ଯାଉଥିଲା କେଉଁ ଉଚ୍ଚାଟ ପ୍ରାଣରେ )

ଷଡ଼ଙ୍ଗୀ—( ହଠାତ୍ ହାବୁଡ଼ି ) ହେଁ, ହେଁ—ନାତକୁ ତ ଖାଇଲୁ—ଏବେ ଅଜାକୁ ତା'ର, ହେଁ, ହେଁ, ଆଉ ବାକି କାହିଁକି, ମା ମଙ୍ଗଳା ? ହେଁ, ହେଁ—

ଗେହ୍ଲି—( ଲମ୍ବ ହୋଇ ଗୋଡ଼ଧୂଳି ନେଇ ) କଣ କହୁଚ ତେମେ, ଗୋସେଇଁ ?

ଷଡ଼ଙ୍ଗୀ—( ବାଧାଦେଇ ) କହିବି ଆଉ ମୁଣ୍ଡ ଚଣ୍ଡି ? ହେଁ, ହେଁ—ସେଇ ଫୁଲ୍ ସକାଳେ, ନାହିଁ କରୁ କରୁ, ପିଲାଟାକୁ ତୁ ଆଣ୍ଠୁକୁଡ଼ୀ ଛୁଇଁ ଦେଲୁବୋଲି ପିନା, ହେଁ, ହେଁ, ଅକାଳେ ସକାଳେ, ମା ବାପ ଛେଉଣ୍ଡ ସେଇଟାକୁ 'ବାଡ଼ି'ରେ ଦେଇ ଅଇଲି-ହେଁ, ହେଁ, ପୁରସ୍ତମରେ ଆଜ—ପୁରସ୍ତମ ନାଥଙ୍କର ବି କାବୁ ଖଟିଲା ନାହିଁ ଲୋ ।—ହେଁ, ହେଁ ?

ଗେହ୍ଲି—କଣ କହୁଚ, ଗୋସେଇଁ—ପିଲାଟି ମୋ'ର—?

ଷଡ଼ଙ୍ଗୀ—ହେଁ, ହେଁ, ତୋର, ତୋରଲୋ, ମା, ମଙ୍ଗଳା । ହେଁ ହେଁ, ଆଉ କି ମୋର କର ରଖିଦେଲୁ, ଲୋ—ହେଁ, ହେଁ, ମା, ଏ' ବୁଢ଼ା ହଡ଼ାଟା ଉପରେ ସେଇ ନଜରଟା ଥରେ ଦୟା କର ଦେ ତ, ମା—ହେଁ, ହେଁ, ପାକଲା ହାଡ଼ରେ ଦାନ୍ତ ଭାଙ୍ଗିଯିବ ବୋଲି, ହେଁ, ହେଁ, ଡରୁଚୁକି, ମା ? ଥରେ ଛୁଇଁ ଦେ' ନା ଖାଲି, ହେଁ, ହେଁ,—କାହିଁ ପିଣ୍ଡି ମିଳାଇ ଯିବ ପରା-ହେଁ, ହେଁ—

ଗେହ୍ଲି—ତୁମେ ଭଣ୍ଡି ଚ, ଗୋସେଇଁ—ଯାକି କେବେ ହୋଇପାରେ ? 'ମା' ଅଛି, ପିଲା ନାହିଁ ? ଏଇ-ଶୁଣ ଶୁଣ—ଶୁଣିଲି—

( ନେପଥ୍ୟେ ସେହି କରୁଣସ୍ୱରେ )

( ଗୀତ )

"ଦେ ନା ବ୍ୟଥା ପିଲା ପ୍ରାଣେ—
ଡାକଇ ଯେ—ମା, ମା-ମା ଗୋ"

ଗେହ୍ଲି—ଆହା ! 'ମା, ମା' ବୋଲି କେତେ ଡକା ପାରୁଚି ବଚରା । ଅହେ ଗୋସେଇଁ, ମୁଁ ପିଲା ବେଇ ନାହିଁ ବୋଲି କ'ଣ, ମା'ର ଦରଜ—ମା'ର ପ୍ରାଣ ମୋ ଠେଇଁ ନାହିଁ ? ଜଗତ ଯାକର ପିଲା ପାଇଁ ମୋ'ର ମାୟା ହୁଏ ନ ?

ଷଡ଼ଙ୍ଗୀ—ହେଁ, ହେଁ, ଯୁଗେ ଯୁଗେ ତୋ' ମାୟା ତୋ'ଠେଇଁ ଥାଉ, ମା—ହେଁ, ହେଁ, ଏଇ କାୟାଟି ନେଇ, ହେଁ, ହେଁ, ବେଗେ ମୋର ସଂସାର ମାୟା ତୁଟାଇ ଦେ, ମା-ହେଁ, ହେଁ—

ଗେହ୍ଲି—ଗୋସେଇଁ, ତମେ ପିଆଁ ହୁଅ—ବାଇଲା ହୁଅ ନାହିଁ—ମୁଁ ଏଇଲାଗେ ପିଲାକୁ ମୋ'ର ଘେନି ଆସୁଚି—

ଷଡ଼ଙ୍ଗୀ—ହେଁ, ହେଁ, ମା । କାଳିଆ ଲୁଲୁଢ଼ାପୁଞ୍ଜେ ତୋତେ ବଳି ଦେବି, ମା—ହେଁ, ହେଁ ସଂକଳ୍ପ କରୁଚି, ମା—ହେଁ, ହେଁ ଏଇ ମୁହଁ ସଞ୍ଜବେଳେ ହେଁ, ହେଁ ପଇଡ଼ାଛୁଇଁ, ଯଦ—ଯଦ

ଗେହ୍ଲି—( ବାହାର ଯାଉଁ ଯାଉଁ କା'କୁ ଦେଖି ଥମକି ଠିଆ ହୋଇଗଲା, ଆଖିକୁ ତା'ର ବିଶ୍ୱାସ କରିପାରୁ ନଥିଲା )

ଦାସିଆ—( କାନ୍ଧରେ ପିଲାଟିକୁ ବସାଇ ପ୍ରବେଶ କଲା ହସି ହସି ) ଗେହ୍ଲି, ଦେଖୁଚୁ କ'ଣ ? ଏଇ ସେ ଗେ ସେଇଁ !

ପିଲା—( କାନ୍ଧରୁ ଓହ୍ଲାଇ ଧାଇଁଗଲା ଅଜା ପାଖକୁ ) ଔଁ ଔଁ ତୁ ଭାରି ଦୁଷ୍ଟ, ଅଜା ! ମତେ ଛାଡ଼ିଦେଇଁ, ଚାଲି ଅଇଲୁ ନା ? ଔଁ, ଔଁ—

ଷଡ଼ଙ୍ଗୀ—(ଟଳି ଭଳି ଚାଳିତ ହୋଇ କୋଳକୁ ଉଠାଇନେଲା)

ଦାସିଆ—ଅନାଇଚୁ କ'ଣ ଗେହ୍ଲି ? ତୋ'ର 'ରସା' ହେଉଚି କି' ନାଲି ଲୁଗା ପିନ୍ଧେଇ ଦେଇଚି ବୋଲି ତୋ' ପିଲାକୁ ?

ଗେହ୍ଲି—( ଗୋଡ଼ଧୂଳି ନେଇ ସାର ) ଅରେ, କତ ପ ରିଲୁ ନାହିଁରେ ! ତୋ' କେତେ ଆଗରୁ ମୁଁ ପିନ୍ଧେଇ ସାରଚି ତୋର ସେହି ନଙ୍ଗଳା ପିଲାଟିକୁ, ତୋର ଦୟା ଲୁଗାରେ ।

ଷଡ଼ଙ୍ଗୀ—ଦାସିଆ !

ଦାସିଆ—ଯଉଁ ଭଡ଼ ଗୋଳମାଳ, ସାଆନ୍ତେ ! ବଡ଼ ବଡ଼ ତ ଥପୁ ପଡ଼ିଲେ ନାହିଁ—ଏ'ତ ପିଲା ବଢଟେ ନାକୁ; ଚାଲ ହଜ, କଉଁଠି ନାଖି ଯାଇଥିବ ଯେ ଆସ୍ତର୍ଯ୍ୟ କଅଣ ? ଭାଗ୍ୟେ ମୋ ହାବୁଡ଼ ବୋଲ୍ ସିନା !

ଷଡ଼ଙ୍ଗୀ—ନା, ନା, ଦାସିଆ—ତା'—ତା'—

ଦାସିଆ—ସ'—ସମୁଦରରେ ସ୍ନାହାନ ପ୍ରକାର ସାର୍, ଫେରିଲା ବେଳକୁ, ସରଗ ଦୁଆର ମୁହଁଟାରେ ଦେଖେଇ ବେଚେଡ୍ ହେଇ ପଡ଼ିଚି ପିଲାଟା—

ଷଡ଼ଙ୍ଗୀ—'ବେଚେତ୍' ! ନା—ନା—

ଦାସିଆ—ଆଜ୍ଞା, ସାଆନ୍ତେ—ମୁଁ ଲଣ୍ଡଭଣ୍ଡ ହୋଇ ଛୁଟି-ଯାଇ ଛୁଇଁ ଦେଇଚି ଯିମତି, ଚମକି ଉଠିଲାଣି—"କି ରେ ପୁଅ ? ତୁ ଏଠି ? ଏମିତକାଟା ? ଅଜା ତୋ'ର" ଏତକରେ ତ, 'ଅଜା ଅଜା' ବୋଲ୍ ରଡ଼ି ଛାଡ଼ି, ଖାଲି ରଣ୍ଡାଳି ପକାଇଲା । ଆହା ! ବଡ଼ବାଙ୍କୁ ଏମିତକା ଘମାଘୋଟ ନିଦ ଲାଗି ଯାଇଥିଲେ, ଯେ—କେତେବେଳେ ହଗି, ଘାଣ୍ଟି ପକେଇଚି, ତା'ବି ତାଙ୍କୁ ମାଲୁମ ନାହିଁ—ମଇଲାରେ ପରା ନଟର ପଟର ହେଇ ଯାଇଥାଏ ଦେଗୋଟାଯାକ ବିଲକୁଲ୍—

ଷଡ଼ଙ୍ଗୀ—ଦାସିଆ ! ତୁ ମଣିଷ ନୋହୁଁ—ଦେବତା—ଦେବତା—ତୋ'ର ଛୁଆଁରେ, ଆଜି ପିଲା ମୋର ଜୀଇ ଉଠିଚି ସିନା !—(ଲମ୍ବ ଖମ୍ବ ହୋଇ ଗୋଡ଼-ତଳେ ପଡ଼ିଗଲା )

ଦାସିଆ—ସାଆନ୍ତେ ! ସାଆନ୍ତେ ! ଏ' କଣ କରୁଛନ୍ତି ? ବାପ୍ପା ବାତୁଲାଙ୍କ ଭଳି ? ମୁଁ ଘାର ବାଉରୀ ଟାଏ ! ତମର ଗୋଡ଼ଧୂଳିକି ବି ସର ନୁହେଁ ?

( ଗୋଡ଼ତଳେ ପଡ଼ିଗଲା )

ଷଡ଼ଙ୍ଗୀ—ନା, ନା, ଦାସ—ତୁ ଆଜି ବ୍ରାହ୍ମଣମାନଙ୍କର 'ମୁଣ୍ଡର ଫୁଲଗଭା' ! ତୋତେ ମୁଣ୍ଡରେ ସ୍ଥାନ ଦେଇ—( ଆଲିଙ୍ଗନ ପୂର୍ବକ )—ତୁହି ଆଜି ପ୍ରକୃତରେ ତୀର୍ଥ କରିଚୁ—ଜଗନ୍ନାଥ ଦର୍ଶନ କରିଚୁ—କୈବଲ୍ୟ ଲାଭ କରିଚୁ—

ଗେହ୍ଲି—( ମାତୃଭାବରେ ଅନୁପ୍ରାଣିତ ହୋଇ, କିଛିକି ଖାତର ନକରି ହଜିଲା ପୁଅକୁ ପୁଣି ଫେରି ପାଇଲା ଭଳି, ସ୍ନେହାଦର କରୁଥାଏ ଦେତେବେଳକୁ )

ଦାସିଆ—ଏତେ ଭାଗ୍ୟ ହେବ ମୋ'ର, ସାଆନ୍ତେ ! କୈବଲ୍ୟ ଲାଭ କରିବି !

ଗେହ୍ଲି—କୁହ, ଗୋସେଇଁ—ଆଉତ ଆମକୁ 'ଛୁ ଛାକର' କରିବ ନାହିଁ ?

ଷଡ଼ଙ୍ଗୀ—ମା—ମା—( ଭୂମିଷ୍ଠ ହୋଇ ପ୍ରଣାମ କଲା)

ଗେହ୍ଲି—ଗୋସେଇଁ—ଗୋସେଇଁ—ତମର ପଡର-ଚଟା ହିଅଟା ପରା ମୁଁ—ଆଶିର୍ବାଦ କରିବ ସିନା—

( ସେହ୍ନପର ଓଳଗି ହେଲା )

ଷଡ଼ଙ୍ଗୀ—ଆଶୀର୍ବାଦ !—ହଁ, ହଁ, କରିବି, ମା,—ବ୍ରାହ୍ମଣ ଗର୍ବରେ ନୁହେଁ—ତମରି, 'ବ୍ରାହ୍ମଣତ୍ୱ'ର ସ୍ୱର୍ଗ ଗର୍ବରେ,—'ଆଣ୍ଠୁକୁଡ଼ି' ନାଁ ତୋର ଚଞ୍ଚଳ ଲୁଚିଯାଉ, ମା—!

( ପିଲାଟିକୁ କାଖେଇ ଗୁଳିଗଲା )

ଦାସିଆ—( ହସି ହସି ) ଗେହ୍ଲି !—

ଗେହ୍ଲି—କ'ଣ ?

ଦାସିଆ—ମୁଁ ତ ଭୁଲିଚି ?

ଗେହ୍ଲି—କିସ ରେ ?—

ଦାସିଆ—ଦଅଁ ଠୁଁ ବର ଅଣିବାକୁ—?

ଗେହ୍ଲି—ଘର ତ ପାସୋର ପକାଇଥିଲୁ ? ଆରେ, ଦଅଁଙ୍କ ରୂପରେ ଏକାବେଳକେ ଭୋଳ ହୋଇ ଯାଇଥିଲୁ ନା କଣ ?—

ଦାସିଆ—( ଆଖି ବୁଜି ) ଆହା ! କି ସେ ରୂପ, ଗେହ୍ଲି ! ଅବାକଲ ଯା' ମୁଁ ଶୁଣିଥାଏ ପରା ଗୀତ—

"ନବୀନ ଶ୍ୟାମଘନ ମୂର୍ତ୍ତି ।
ଦଳିତାଞ୍ଜନ ଜିଣି କାନ୍ତି ॥
ସୁଚ୍ଛୁରୁ ଇନ୍ଦ୍ର ନୀଳମଣି ।
ତାଙ୍କ ରୂପକୁ ନୋହେ ଜିଣି ॥
ମର୍କତ କେଶ ଛବି ତା'ର ।
ନାନା କୁସୁମେ ଶୋଭାକର ॥
ଶିରେ ଶିଖଣ୍ଡ ଚୂଳ ଶୋହେ ।
ଭକତ ଜନ ମନ ମୋହେ ॥

ମସ୍ତକେ ଅମୂଲ୍ୟ ମୁକୁଟ ।
ଅଷ୍ଟ ରତନେ ଝଟ ଝଟ ॥
ଲଲାଟେ ଗୋରଚନା ଚିତା ।
ଯାହା ଭାବନ୍ତି ଉର୍ଦ୍ଧ୍ୱରେତା ॥
ଶ୍ରବଣେ ମକର କୁଣ୍ଡଳ ।
ନିନ୍ଦଇ ତପନ ମଣ୍ଡଳ ॥
ସୁନେତ୍ର ଶ୍ୱେତ ପଦ୍ମକଳିକା ।
ଦେଖି ଧଇର୍ଯ୍ୟ ହରେ ଧାତା ॥"

ଗେହ୍ଲି—ମୋ'ର ବ ଧଇର୍ଯ୍ୟ ହର ନେଉଚ ରେ !—ଅ, ଅ, ବାଟ ଗୁଲ୍ ଗୁଲ୍ ଅସିରୁ—

ଦାସିଆ—( ପୂର୍ବଭାବାନୁ କ୍ରମରେ )
"ଭ୍ରୂଲତା କାମ ଶରାସନ ।
ଦେଖିଲେ ହରେ ପ୍ରାଣୀମନ ॥
ସୁନାସାପୁଟ କି ସୁନ୍ଦର ।
କେ ଟିଏ କନ୍ଦର୍ପ କି ଘର ॥
ଝଳ ଝଳ ମୋତି ନାସା ପୁଟେ ।
ଗୁଞ୍ଜାଏ ପାଟି ଭଲ ପଟେ ॥
କୁନ୍ଦ କୋରକ ଶୋଭା ଜିଣି ।
ହୀରକ ପ୍ରାୟ ଦନ୍ତ ଶ୍ରେଣୀ ॥
ରଙ୍ଗ ଅଧରେ ମନ୍ଦ ହାସ ।
ଅଶେଷ ପୀୟୁଷର ବାସ ॥
ମୁଖାରବିନ୍ଦ ଶୋଭା ଯେତେ ।
କେ କହି ପାରିବ ଜଗତେ ॥
ଦେଖି ଶ୍ରୀମୁଖ ଶୋଭା ତାର ।
ଛପି ରହିବ ନିଶାକର"

ଗେହ୍ଲି—ଥାଉ ଥାଉ ଅ' ଅ' ତୁ—ଘର ଭିତରକୁ ଅଇଲୁ ଆଗେ—
( ହାତଧରି ନେଇ ଗୁଲଗଲା )

ଦାସିଆ—( ସେହି ପୂର୍ବଭାବରେ )
"ପଙ୍କଜ ବଦନ ମୁକୁର ।
ଜିଣି ଦଶଇ ଶୋଭାକର ॥
ଗୁଡ଼ୁ ଚିବୁକ କମ୍ବୁଗ୍ରୀବ ।
ଦେଖି ମୋହିତ ସଦାଶିବ ॥
ତହିଁ ଲମ୍ବିତ ବନମାଳ ।
ସୁରତ୍ନ ହାର ବକ୍ଷସ୍ଥଳ ॥
ବଳନ ସୁବାହୁ ଯୁଗଳ ।
ସୁନ୍ଦର ମଦନ ଗୋପାଳ ॥"

ଗେହ୍ଲି—( ଢେଉଢେଉଳକୁ ଘର ପିଣ୍ଡାରେ ବସାଇ, ଭୁକୁଲା ଭୁକୁଲା ଥୋଇ ଦେଇ, ପାଣି ଆଣି ଗୋଡ଼ ଧୋଇ ଦେଉଁ ଦେଉଁ )
ଅରେ ଟିକିଏ ସତାର କର ନା !—

ଦାସିଆ—( ସେହି ଭଳି ।
"ହୃଦରେ ଶ୍ରୀବତ୍ସର ଚିହ୍ନ ।
ଯେଉଁ ପତିତ ଉଦ୍ଧାରଣ ॥
ଭୁଜେ ବଳୟେ କେୟୂରବାନା ।
ସେହି ଅବାଧ୍ୟ ବଜ୍ରସେନା ॥
ଶ୍ରୀକରେ ଯୁଗଳ କଙ୍କଣ ।
ନାନା ରତନେ ସୁଘଟଣ ॥"

ଗେହ୍ଲି—( ପିଢ଼ା ଅଣି ଥୋଇ ) ହଉ, ବସିଲ ଏବେ, ଗୋସାଇଁ ?

ଦାସିଆ—( ସେହିଭଳି )
"ରତ୍ନ ମୁଦ୍ରିକା କରାଙ୍ଗୁଳି ।
ସେ ଅଘ-ତମିର ବିକୁଳି ॥
କରକ କାନ୍ତି ପୂର୍ଣ୍ଣତେଣି ।
ସାଧୁ କୁମୁଦ ବନ ତୋଷି" ॥

ଗେହ୍ଲି—ସତେ ସତେ, 'ଭୋଳ' ନା କଅଣ ?—
(ବସାଇ ଦେଇ ଭିତରକୁ ଖାଇବାର ଅଣିବାକୁ ଗଲା)

ଦାସିଆ—( ସେହିଭାବେ )
"ଚିନ୍ତି ନ ପାରେ ବେଦବ୍ରହ୍ମା ।
କେ କହୁ ମୁଖେ ତା ମହିମା ॥
କମଳ ବଜ୍ରାଙ୍କୁଶ ମାନ ।
ବିରାଜେ ଅଷ୍ଟାଦଶ ଚିହ୍ନ
କମଳାଦେବୀଙ୍କ ବିଳାସ ।
ଯହିଁ ଶରଣ ଚତୁର୍ଦ୍ଦଶ ॥
ଅଶେଷ ବ୍ରହ୍ମାଣ୍ଡ ମଣ୍ଡଳ ।
ଯେବଣ ପାଦପଦ୍ମେ ଲୀଳ ॥

ଗେହ୍ଲି—ଆଚ୍ଛା ସୁଅ ପଡ଼ିଲା ତ । ଠାକୁରେ, ମୁଁ ଲୁଲା ହେଉଛି—ମୋ'ର ନଇବାଦ୍ୟ ଟିକିଏ ଘେନା ହେଉ ଭଲ ଅଟେ ।

ଦାସିଆ—( ସେହିଭାବେ )

"ସିଦ୍ଧ ଯୋଗେନ୍ଦ୍ର ମୁନିଗଣେ ।
ନିତ୍ୟେ ଚିନ୍ତନ୍ତି ଯେ ଚରଣେ ॥
ସେପାଦେ ଆଶ୍ରେ ଥିବ ଯାର ।
ସଂସାରେ ଭୟ ନାହିଁ ତାର ॥

ଗେହ୍ଲି—ମୋର 'ଭୟ' ଭଲ ବଢ଼ାଉଚୁ କିଆଁ ? ମୁଁ ପରା ଏଇ 'ପାଦେ' ଆଶରା କରି, ବଞ୍ଚିରହିଛି !—

ଦାସିଆ—( ସେହି ପ୍ରଭୁଙ୍କ ଉଦ୍ଦେଶେ ପ୍ରଣାମ କରିବାକୁ ଗଲା )

ଗେହ୍ଲି—ହାଁ, ହାଁ—ଅଳକୁଡ଼ୁଆ—ଦେଖି ଶୁଣି—

ଦାସିଆ—( ପ୍ରଣାମାନନ୍ତର ) ଗେହ୍ଲି, ଗେହ୍ଲି—ତୁ କି'ଣ ମୋ ମନ ଜାଣି ଅଳ ବାଢ଼ିଚୁ ? ସତେ ଏକା, ଦଶ, ବାର ଦିନ ହେଲା ଅଜାକୁ, ମୁଁ କିଛି ଖାଇ ନାହିଁ—ଭାରି ଭୋକ ! ଭାରି ଶୋଷ !—

ଗେହ୍ଲି—ଆରେ, ଦିଅଁ କି'ଣ ତୋ'ର ଭୋକ ଶୋଷବି କାଢ଼ି ନେଇଥିଲେ ରେ ?

ଦାସିଆ—ସବୁ, ସବୁ, ମୋ'ର, ଗେହ୍ଲି—ସେହି—

"ତ୍ରିଭଙ୍ଗ ରୂପ ବଂଶୀଧର ।
ବଙ୍କିମ ଗ୍ରୀବାଣି ସୁନ୍ଦର ॥"

ଗେହ୍ଲି—ହଉ ହଉ, ସେ ସୁନ୍ଦର ସୁନ୍ଦର ତୋତେ ବଡ଼—ହେ, ସଅଳ ସଅଳ ମଣୋହି ସାଇଲୁ—ଆଉ କା'କୁ ଭୋକ କରୁନାହିଁ ନା କି'ଣ ?—

ଦାସିଆ—( ହସି ହସି ) ତୁ ବି ଦଶଦିନ ହେଲା, କେଉଁ ସୁନ୍ଦର ରୂପରେ ଭୁଲି, ଖିଆ ପିଆ ଭୁଲିଚୁ ନା କି'ଣ ?

ଗେହ୍ଲି—ଆରେ, ତୁ ତୋର 'ବଂଶୀଧର'କୁ ଦେଖି ସବୁ ପାଶୋରିଲୁ—ମୁଁ ମୋର 'ମାକୁନ୍ଧର'କୁ ହେଜି ସବୁ ପାଶୋରିବି ନାହିଁ ନା ?—

ଦାସିଆ—ଓ, ଠିକ୍ ଠିକ୍, ଏ 'ଅରଟ ସୁନ୍ଦରୀ'ଙ୍କ ଦାଉ ହୋଇ ନ ଥିଲେ କି, 'ରଇ କଣୋଗ୍ରୀ' ସହଜେ ମତେ ନାହି ଦେଇ ଥା'ନ୍ତେ ଆଜ ?—

ଗେହ୍ଲି—ହଉ, 'ସାହିଲୁ' ଏବେ—ଭାରି କପାଳ ଟାଣ ଯେ ବେଳସୁଁ ଆସି ଯାଇଚୁ—ତା' ନ ହେଲେ, ଭାତ ପୋଖରୀରୁ ଛାଣିବାକୁ ପଡ଼ିଥାନ୍ତା କି କି'ଣ ?—

ଦାସିଆ—ଜାତ ଜାତ ଏଇଆ କରୁ ପରା ? ରାନ୍ଧୁ, ବାଢ଼ୁ, ପୋଖରୀରେ ନେଇ ମାରୁ ? କାହିଁକି ଭଲା ଏତେ ସିଧି କରୁ ?

ଗେହ୍ଲି—ନେ, ନେ, ଭୁଞ୍ଜ—କେତେ ଫଟେଇ ହଉଚୁ ମ ! ଆରେ, ତୁ ସିନା ତୋର କାଠ ପଥର ଦେବତାକୁ ଭୋକିଲା, ଶୁଖିଲା ରଖି ପାରୁ—ମୁଁ କିମିତ ରଖିବି ରେ, ମୋର ଜିଅନ୍ତା ଦେବତାକୁ ନ ଖୋଇ, ନ ପେଇ ?

ଦାସିଆ—ଓ ହୋ ! ସେଇଥି ଲାଗି ମୋ' ପେଟ ଭରି ଯାଉଥାଏ—ଭୋକ ଶୋଷ ବି କରୁ ନ ଥାଏ ? ଆଚ୍ଛା, ଗେହ୍ଲି, ଦୁଇଜଣଙ୍କ ପାଇଁ ରାନ୍ଧିଥିଲୁ, ନା, ଜଣକ ପାଇଁ ?

ଗେହ୍ଲି—ମୁଁ ଏତେ ଜବାଲ ସବାଲ କରି ଧାରିବି ନାହିଁ—ନେ, ଖାଇବୁ ତ ଖା, ନାଇଁ ତ——

ଦାସିଆ—ଏଁ—ଏଁ—ମୁଁ ପଚାରୁଛି ଥିଲି କାହିଁକି କି—ତୁ—ତୁ 'ହାଣ୍ଡିଖାଇ, ଟାଉକି' କି ନୋହୁଁ—ସେଇଟା ଜାଣିବା——

ଗେହ୍ଲି—ଆରେ, ଓଲା—'ହାତେ କଙ୍କଣ ଦର୍ପଣ ଦେଖା' କାହିଁକି ରେ ? ଦେଖୁନାହୁଁ, ଆଖି ଆଗେ ତୋର ?

ଦାସିଆ—ବେଶ୍ ତ, ମୁଁ ପରଖି ଦେଖେଁ, ମୋ' ପେଟରୁ ବଳୁଚି କି ନାହିଁ ?—

( ସେହି ଅନ୍ନ-ପୂର୍ଣ୍ଣ କୁଡ଼ୁଆ ଅନାଇ ଦେଖି ମାତକେ, ଭାବାବସ୍ଥା ହେଲା )

ଗେହ୍ଲି—ଏତେ କାରଖି କି'ଣ ଦେଖୁଚୁ ରେ ? କିଛି ତ ନାହିଁ ସେ'ଠି ଆଉ ?

"ସୁରଙ୍ଗ ଦଶେ ହାଣ୍ଡି ଧାର
ମଧ୍ୟେ ଧବଳ ଫେଜସର ॥
ତା ମଧ୍ୟେ ଶାଗ ଦଶେ କଳା ।
.................."

ଦାସିଆ—(ଢେଉଁ ଭ୍ରୁକୁଭଙ୍ଗୀ ଉଚ୍ଛ୍ୱାସରେ କହି ଉଠିଲା)
"................... ।
ଅଟେ ଏ ଶ୍ୱେତ ପଦ୍ମଡୋଳା ॥
ଏହା ମୁଁ ଖାଇବି କେମନ୍ତେ ?
ଭାବନା ଉପୁଜଇ ଚିତ୍ତେ ॥"
( କହୁ କହୁ ଦେହ କମ୍ପମାନ ହେଲା—ବଦନୁ
ବଚନ ସ୍ଫୁରିଲା ନାହିଁ )

ଗେହ୍ଲି—କ'ଣ—କ'ଣ ହେଲା ରେ ?

ଦାସିଆ—( ହଠାତ୍ କରତାଳି ଦେଇ ନାଚି ଉଠିଲା )
କ'ଣ—କ'ଣ ଆଉ କହିବି ତୋତେ ?
"ରଥେ ଦେଖିଲି ଜଗନ୍ନାଥ ।
ମଥାରେ ଦେଲି ବେନିହସ୍ତ ॥
କଲି ଶ୍ରୀମୁଖକୁ ଅନାଇ ।
ବେନି ନୟନୁ ଧାର ବହି ॥
ରଙ୍ଗ ଅଧର କଳା ଡୋଳା ।
ଦେଖି ଭାବରେ ହେଲି ଭୋଳା ॥
ଚାହିଁଲେ ପ୍ରଭୁ ଚତୁର୍ଭୁଜ ।
ବୋଇଲି ନମୋ ଦେବରାଜ ॥"

ଗେହ୍ଲି—ଏ' କଣରେ ? ଏମିତିକା ବାଇଆପଣ ହଉଛୁ
କାହିଁରେ ?

ଦାସିଆ—( ନାଚୁ ନାଚୁ )
"ମୁଁ ମହାପାପୀ ଏ ଜଗତେ ।
ଉଦ୍ଧର ମୋତେ ଜଗନ୍ନାଥେ"

ଗେହ୍ଲି—ଅରେ, କି ନାଆଁ ଲଗା ଦାଆଁ ଯାତ ଦେଖି
ଆଇଲୁରେ—ମୋର ଭେକ ବୁଡ଼ିଲାରେ—ମୋ
ଦାଆଁର ଏକା ଦଶା ହେଲା ରେ ?

ଦାସିଆ—( ସେହି ଭାବେ )
"ନକର ମୋ ବିଷୟେ ହେଳା ।
ମୋ ହୃଦେ ଜ୍ଞାନଦୀପ ଜାଳ "

ଗେହ୍ଲି—ଅରେ ରେ, ମୋ'ର ଜ୍ଞାନଦୀପ ଯେ ନିଭି-
ଗଲାରେ ?

ଦାସିଆ—( ସେହି ଭାବେ )
"ତୁମ୍ଭେ ଯେ ପତିତ ପାବନ ।
ମୋତେ ଉଦ୍ଧର ଭଗବାନ ॥"
( ସାଷ୍ଟାଙ୍ଗେ ପ୍ରଣିପାତ ହେଲା )

ଗେହ୍ଲି—( ସେହି ଭଳି ଦାସିଆ ଗୋଡ଼ତଳେ ପଡ଼ି )
ଅରେ, ମୋର ଭଗବାନ୍ ତୁଇ ରେ !—ମୋତେ
ଉଦ୍ଧାର କର କଥା ଶୁଣି—ଦ'ଟା ଖାଇ ଦେ
ଆଗକର—

ଦାସିଆ—( ଉଠି ମଥାରେ କରଲାଇଁ କହିଲା ବହୁତ
ବିନମ୍ରି )
"ହେ ନାଥ, ତୁମ୍ଭେ ମାତ୍ର ସତ୍ୟ ।
ମିଥ୍ୟା କେବଳ ଏ ଜଗତ ॥
ଏବେ ତୁ ସତ୍ୟ ଅଛୁ ମୂଳ ।
ଏ କଥା ଭାବଇ କେବଳ ।"

ଗେହ୍ଲି—ଅରେ, ତୋର ସିନା ସେ 'ସତ୍ୟ ଆଚ୍ଛୁମୂଳ'
କିନ୍ତୁ ତୁ ଯେ 'ସତ୍ୟ' ମୋ'ର କାଳ, କାଳ ।
ଆ—ଆ କଥା ଶୁଣି—
[ ହାତ ଧରି ଟଳାଇଲା ]

ଦାସିଆ—ନା, ନା—ମତେ ଛାଡ଼ି ଦେ—ମୁଁ ଯିବି—
ଦେଖିବି, ଶୁଣିବି, ଆହା ହା !
"ସେ ଯେଉଁ ଶ୍ରୀମୁଖ ଲାବଣ୍ୟ ।
ନୟନ ଭୃଙ୍ଗ କରେ ଧ୍ୟାନ ॥
ସେ ଯେଉଁ ନନ୍ଦଘୋଷ ରଥ ।
ମନକୁ ଥୋଇଛି ନିରତ ॥
ସେ ଯେଉଁ ଘଣ୍ଟା ବାଦ୍ୟସ୍ୱନ ।
ତହିଁକି ଡେରିଥାଇ କର୍ଣ୍ଣ ॥
"ହରି ହରି ବୋଲ"—"ଦାରୁ ହରି ବୋଲ"—
( ନାଚିବାକୁ ଲାଗିଲା )
"ଅଭୟ ପାଦପଦ୍ମଗତେ ।
ନିବେଶ ଥାଉ ମୋର ଚିତ୍ତେ ॥
ବଦନେ ଏକା ଦାରୁ ହରି ।
ରଟେ ମୁଁ ଦିବସ ଶର୍ବରୀ ॥"
"ହରି ହରି ବୋଲ—ଦାରୁ ହରି ବୋଲ"
( ଦକ୍ ବଦକ୍ ଜ୍ଞାନଶୂନ୍ୟ ହୋଇ ନାଚୁ ନାଚୁ
ଚାଲିଗଲା )

ଗେହ୍ଲି—( ଗୋଡ଼ାଇ ଯାଉଁ ଯାଉଁ )—ଧାଇଁ ପଡ଼
ହୋ ! ମୋ'ର ଘର ବୁଡ଼ିଗଲା ହୋ !

"ସ୍ୱାମୀ ମୋ ଯେବେ ଯାଉଥିଲେ ।
ବାଦେ କେ କାସ କରଦେଲେ ॥"
( ଗୋଡ଼ାଇ ଗଲା )

[ ସେହ୍ୱ ପିଲାଟି ଶ୍ରୀକୃଷ୍ଣଙ୍କ ସ୍ୱରୂପ ଧାରଣ କରି ବଂଶୀ ବଜାଉଁ ବଜାଉଁ ପ୍ରବେଶ କଲା ]

ପିଲା— ଗୀତ

ଭକ୍ତମୋର ବାଇ ମୋ' ଆଶାରେ ।
ଧାଇଁ ବୁଲେ ନାହିଁ ତା ଦଶାରେ ।
ଥାଏଁ ମୁହିଁ ଗୋପ୍ୟେ ରହି—
ଥାଏଁ କାଲୁ, ସବୁଠାଇଁ—
କେତେ ମଜା କରେ ମୁହିଁ, ମଜି ଭକ୍ତ, ଠାଇଁ ଠାଇଁ
ଧନ୍ଦେ ଯେବେ ମୋ'ର ଧନ୍ଦାରେ ।
( ଗାଇ ଗାଇ ଚାଲିଗଲା )

[ ଷଡ଼ଙ୍ଗୀଏ ଗେହ୍ଲିକୁ ଆଶ୍ୱାସନା ଦେଉ ଦେଉ ଘେନି ଆସିଲେ ]

ଗେହ୍ଲି—( ସେହ୍ୱପରି ବିକଳ ଭାବେ )
"ଦେଖି ସାକ୍ଷାତେ ହେଲା ବାଇ ।
କି ବୁଦ୍ଧି କରିବଇଁ ମୁହିଁ ॥"

ଷଡ଼ଙ୍ଗୀ—ଚୁନ ହ', ମା—ତୋର ସ୍ୱାମୀ ପରମ ଭକ୍ତ, ହେଁ, ହେଁ—ଦେବତା !—

ଗେହ୍ଲି—ତୁମର ଯେବେ ସତେ ସତେ ମୁଁ, ମା—ମୋରକଥା ଏଡ଼ ଦଅ ନାହିଁ—ଯାଅ, ଯାଅ—ଦେବତାକୁ ତୁମର, କାହିଁ ଅଛି, ଖୋଜ ଘେନି-ଆସ—ଆହା ! ଟୋପେ ପାଣିବି ପେଟକୁ ଯାଇ ନାହିଁ ? ଭାରି ଭୋକ ବୋଲି ଆପେ ଆପେ କହି ଅଥୟ ହେଉଥିଲେ—ଏବେ ବଡ଼ା ଭାତ ଉପୁଛି, କୁଠି ଚାଲିଗଲେ କେଉଁ ଆଡ଼େ ?

ଷଡ଼ଙ୍ଗୀ—ଥିର ହ, ତୁ, ମା—ହେଁ, ହେଁ, ମୁଁ ଏଇଲଗେ ଘେନି ଆସୁଚି— ( ଚାଲିଗଲେ )

ଗେହ୍ଲି—କପାକର୍ମ ମୋ'ର, କହିବ କାହାକୁ ? ଜାଣୁ ଜାଣୁ ପିନା ଯେବକୁ ପଠାଇ ଏତେ ସରିକଲି—ଭନେ ବ ଯାକୁ ଆଖି ଉହାଡ଼ କରେ ନାହିଁଟି ! —ହାୟ ! କି ମନ୍ଦ କଲି, କେଜାଣି ସେ କାଳଆ ଭୁଆ—? ଓଃ—ମୋ ହାତୁଡ଼ରେ ପଡ଼ନ୍ତା କି ଅଇଚ୍ଛବା, ଏଇ ଚାକୁଡ଼ ମୁନରେ ପରା, ସେହି 'ପଦ୍ମତୋଳା'କୁ ତା'ର—
( ଫୋଡ଼ି ଦେବାର ଅଭିନୟ କଲା)

ସେହ୍ୱାଦଗରୁ ପିଲାଟି କଲବଲ ହୋଇ ଆଖିଦାଂଟା ବୁଜି ଧରି ପ୍ରବେଶ କଲା )

ପିଲା—ଫୋଡ଼ି ଦେ'ନା—ଗେଞ୍ଜି ଦେ'ନା—ମରିଗଲି ମରିଗଲି—ଓଃ ହୋଃ—

ଗେହ୍ଲି—( ଅବାକ୍ ହୋଇ ଚୁହିଁ ରହିଲା )

ପିଲା—ଏ' ଭଲ କି କାଣ୍ଡ ତୋ'ର, ମା—ପିଲାଟାକୁ ତୋ'ର ଏଇଭଳି ଦଣ୍ଡିବାକୁ ହୁଏନା ?—

ଗେହ୍ଲି—ଯା—ଯା—ତୁ ଟଲ୍—ଗଲ୍—ଗେଲ କରିବାକୁ ମୋ'ର ଅଭିକା ବେଳ ନାହିଁ !

ପିଲା—ମତେ ପରା ଭାରି ଭୋକ କରୁଚ, ମା !

ଗେହ୍ଲି—ଘରକୁ ଯାଉନାହୁଁ ?

ପିଲା—ମୋ'ର କଣ ଗୋଟାଏ ଅଲଗା ଘର ଅଛି, ମା ?

ଗେହ୍ଲି—ତେବେ ନିତ ନିତ କେଉଁଠି ଖାଉରେ, ଟୋକା ?

ପିଲା—ମ' ଭୋକ ଖାଇବାକୁ ଦେଉଚୁ, ନିଜ ହାତରେ, ପଚ୍ଚୁରୁଚୁ ପୁଣି ?—

ଗେହ୍ଲି—କେବେ ତ ମୁଁ ଦେଇ ନାହିଁରେ, ବାପ ?

ପିଲା—ସେଇ ପୋଖରୀ ହୁଡ଼ାରେ, ନିତ ନିତ କ'ଣ ଅକାଡ଼ି ଦେଇ ଆସୁ, ଏମିତକା ଫୁଲ ସଞ୍ଜବେଳେ ?—ମୁଁ ନିକେ ଖାଏଁ, ମୋ'ର ଭକ୍ତକୁ ବି ଖୁଆଏଁ ।

ଗେହ୍ଲି—ଶୁଣୁଚନା ? ନିକେ ତ ଛତରା ! ଯା'ର ପୁଣି 'ଭକ୍ତ' !

ପିଲା—କାହିଁକି ? ଛତର ଖିଅ ମୋ'ର ପରି ଯେ ? —ଦେ, ଦେ, ମା, ଭାରି ଭୋକ କଲାଣି ।

ଗେହ୍ଲି—ଏ' ଭାତ ତଅଣ ତ, ମୁଁ ହରି ବ୍ରହ୍ମା ହେଲେ ବି ଦେଇ ପାରିବ ନାହିଁରେ ।

ପିଲା—ମା ! ତୁ ଏଡ଼େ 'ଝାଉଁକା' 'ହାଣ୍ଡିଖାଇ' ନା ?

ଗେହ୍ଲି—କିଏ ମ, ଏ ଭୁଆ ? କ'ଣ, ଭାରି ବଢ଼ି ବଢ଼ି ତ କହି ଚାଲି ଯାଉଚ ?

ପିଲା—ମା !—ତୁ ଆଉ ବଢ଼ନା—ମତେ ଭାରି ଡର ମାଡୁଛି ।

ଗେଣ୍ଡି — ତୋ ଗୋଡ଼ତଳେ ପଡୁଛି, ଟୋକା—ମୋ' ସଙ୍ଗେ ଢଙ୍ଗ୍‌ଟା ଲଗା ନା, କହୁଚି ଅଇଛୁକା ?

ପିଲା—ଛି, ମା—ମୁଁ ପରା ତୋ' ପୁଅ—କଣ ହୁଙ୍କାର ଦ'ପଦ ଏଣୁ ତେଣୁ କହି ଦେଇଥିବ ?—ସେଇଟାକୁ—

ଗେଣ୍ଡି —ମୋ'ର ବ ମୁଣ୍ଡ ଠିକଣା ନାହିଁରେ, ବାପ ! ଗଲ୍—ଗଲ୍ ହାୟ ! —ସେ ଯେ କେଉଁଠି ବେଠିକଣା ହୋଇ, ବାଘ୍ୟାପରି ବୁଲୁଛି—ନ ଖାଇ ନ ପିଇ ? ବର୍ଷା ଭୁଇଁ ଉପରୁ ଉଠିଗଲା—କି ବନ୍ଧୁଆଡ ଲଗାଇଲା, କେଜାଣି, ସେହି ଶ୍ୱେତ ପଦ୍ମତୋଳା ତା'ର ? ଓଃ, କେହି କି ସାହା ହେବେ ନାହିଁ, ଏହି—(ମୁହଁ ଦେଇ) —ହଁ, ହଁ, ତୁ ହସିବୁ ନାହିଁ କ'ଣ ?—ଆପଣାର ଯେ, ସେ ତ ଉଗାଗି ଏ'କାଳେ ! (ମୁହଁ ବୁଲାଇ କାନ୍ଦୁ କାନ୍ଦୁ ) ହଇରେ, ତତେ 'ଅଗସ୍ତି', 'ସତ୍ୟ' କରି ଧରିଛି ବୋଲି କାଳ କାଳକୁ ସିନା, ଏମିତିକା ଉଗାରେହସା କରି ଦେଇ ଘାଇ ଛାଡ଼ି ବୁଲୁଚୁ—'କୋରିବେ' 'ମିଛ' କରି !—

ପିଲା—କିନ୍ତୁ, ଦେଖ—ଏତେ ହଇରଣ ନ ହୋଇ ତୁ ଯେବେ ମତେ 'ସତ୍ୟ' 'ଅଗସ୍ତି' କରି ଧରନ୍ତୁ ଦଣ୍ଡେ ପିମିତ, ତୋ ଆଖିରେ ପଣି ଟୋପେ ହେଲେ ଲୁହ ରହନ୍ତା ନାହିଁ କେଉଁ ?

ଗେଣ୍ଡି —କ'ଣ କହିଲୁ ରେ, ଛତରି ? କାହିଁଗଲା ସେ ତାକୁଡ଼ ?

ପିଲା—ମତେ ଘଉଡ଼ାଇ ଦେଉଚୁ, ମା—କିନ୍ତୁ ଜାଣିଥା—ମୁଁ ନ ଖାଇଲେ, ବାପା କେବେ ଖାଇବେ ନାହିଁଟି !

ଗେଣ୍ଡି —ଆରେ, ଶୁଣ, ଶୁଣ ମ—ଅରେ, ସତ—ସତ କହୁଚୁ ନାରେ ?

ପିଲା—ଦେଖ୍‌ନା—ମୁଁ ଅଇଛୁକା ଖାଏଁ—ବାପା କେମିତିକା ଉତାଳ ହେଇ, ଘରଏଁ ଦଉଡ଼ ଆସିବ !—

ଗେଣ୍ଡି —ଖା, ଖା, ବାପ—ଆ, ଆ—ଆଉ ଡେରି କରନା—

ପିଲା—ମତେ ଖୁଆଇ ଦେଲେ ହବ ନା ? ମୁଁ କଣ ଖାଇ ଜାଣେ କି ?

ଗେଣ୍ଡି —କିନ୍ତୁ, ଇଥାର ଘତତ ବେଶ୍ ଜାଣୁ ! ପିଲା ବଙ୍କଟେନାକୁ—ଇଥାରେ ଯେମିତକା ବାଟୁଲି ବାଜୁନାହିଁ ।

ପିଲା—ଉଁ, ଉଁ—ଯ୍ୟା ମୋ'ର ଦୋଷ, ନା ? ତୁ କଥା କୁହାଉ ବୋଲି, କହେ ନା ? ନାଇଁ ତ, ମୁଁ କ'ଣ କହି ଜାଣେ ?

ଗେଣ୍ଡି —ହଉ, ହଉ,—ଆ' ଆ'—ଅଇଲା—

( କୋଳରେ ବସାଇ ଖୁଆଇଲା )

ପିଲା—ଏ' କ'ଣ ମ ? ବଡ଼ ବଡ଼ କରି ଗୁଣ୍ଡା କରୁ ନାହୁଁ ? ତୋ' ଭାଗରୁ କଣ କମି ଯିବକି ?—

ଗେଣ୍ଡି —ଯା'ଭାଗ କମିଯିବା ଡରରେ ନା, ନା, ବାପ—ତା'ବ ମୁଁ ଲୋଭ କରିବି ନାହିଁ ! ଖୁଆଇବାକୁ ବସି, ଦର-ପେଟାକରି ଛାଡ଼ିଦେବ ପିଲାଟାକୁ, ଏ କଥାତ ମୋ ଦେଇ ହେଇ ପାରିବ ନାହିଁ !—ଖା, ଖା, ବାପ, ତୋର ପେଟ ପୂରାଇ, —ମନ ପୁରାଇ !

ପିଲା—ହଁ ଦେଖ୍, ସବୁ ଖାଇଦେଲେ, ପରେ ପୁଣି ଗାଳି ମନ୍ଦ କରିବୁ ନାହିଁତ ?

ଗେଣ୍ଡି —ଆଜ ମୋର ଅନ୍ତର ଭରନ୍ତୁ, ସତେ ସତେ କିଏ ଯେମିତକା କହି ଉଠୁଚିରେ, ବାପ—"ନ ଖାଇ, ମଲେ ବ ଦୁଃଖ, ଯଉଁ ଆନନ୍ଦ ପାଇବା,—ଖାଇ, ବଞ୍ଚିଲେ, ତା'ର ଚାଳିଶୁଏ ବ ପାଇବା ନାହିଁ ପରା !"

ପିଲା—ଖିଅତ ସଇଲା—ଏବେ ଆସୁଚି—

ଗେଣ୍ଡି —କାହିଁ ଯିବୁରେ ?—ତୋତେ ଯେ ଆଉ ଛାଡ଼ିଦବାକୁ ମନ ବଳୁନାହିଁ ରେ ?

ପିଲା—ହାଃ—ହାଃ—କେମିତିକା ଶଡାକାଟିଛ ? ମତେ ଛୁଇଁ ନ ଥିଲୁ ପରା ?—

( ବେଗେ ଗୁଲିଗଲା )

ଗେହ୍ଲି—( ସ୍ତବ୍ଧ ଭାବେ କହି ଉଠିଲା )—ସ୍ୱାମି !
ସ୍ୱାମି !—
( ଦାସିଆ ଉରବର ହୋଇ ଧାଇଁ ଆସିଲା )

ଦାସିଆ—ଦେ, ଗେହ୍ଲି, ଦେ—ଭାଗ୍ୟ ଭୋଗ !
ଭାଗ୍ୟ ଭୋଗ ! ଏ' କଣ, କୁଡ଼ୁଆ ଯେ ଖାଲି !
ପୋଛି ପାଛି ଏକଦମ୍ ସାଫ୍‌କରି ଦେଇଚୁ ?
'ହାଣ୍ଡିଖାଇ'—'ହାଡ଼କା'— !

ଗେହ୍ଲି—ସ୍ୱାମି ! ସ୍ୱାମି !—ସତକଥା—ସେ ପିଲାଟି
ନ ଖାଇଲେ, ତମେ ଖାଅ ନାହିଁ ବୋଲି, ବିଶ୍ୱା-
ସରେ, ମୁଁ ତାକୁ ଖୁଆଇ ବସିଲି—ଖୁଆଉ
ଖୁଆଉ—

ଦାସିଆ—ଏ' କ'ଣ ତୁ କହୁଚୁ, ଗେହ୍ଲି ? କିଏ
ସେ ପିଲା ? ତୋତେ ଏମିତକା ଭଣ୍ଡାଇଦେଲା ?
—ତୁ'ତ ଜାଣୁ, ମୁଁ ସେହି 'ଶ୍ୱେତପଦ୍ମଡୋଳା'
ଛଡ଼ା ଆଉ କା'କୁ ପାଣି ଛଡ଼ାଏ ନାହିଁ, ଖାଇଲା
ଆଗରୁ ? ତୋ'ର କ'ଣ ମତ—

ଗେହ୍ଲି—ମୋ'ର ମତ ଠିକ୍ ଥାଉ କି ନ ଥାଉ—
ସେ ପିଲାଟି ଭଣ୍ଡାଉ, କି ସତ କହୁ—ମୋ'ର
ଯଦି ବିଶ୍ୱାସ ସତ ହୁଏ—ଆଉ ମୋ'ର ମନ ଏଇ
ଚରଣଠେଇଁ ଠିକ୍ ଥାଏ—ତେବେ ଏ
କୁଡ଼ୁଆଟି ଯେମିତକା ପୁରି ଥିଲା ସେମିତକା ପୁରି-
ହୋଇ ଉଠୁ !
( କୁଡ଼ୁଆଟି ସେହିଭଳି ଭର୍ତ୍ତି ଦେଖାଗଲା )

ଦାସିଆ—( ଗୁହିଁଦେଇ ) ଗେହ୍ଲି ! ଗେହ୍ଲି ! ତୁ
ଆଜ ପରମ ଭାଗ୍ୟବତୀ—ସ୍ୱୟଂ 'ଶ୍ୱେତପଦ୍ମ-
ଡୋଳା' ଆଜ ବାଳକ ବେଶରେ ତୋ' ହାତରେ
ତୋ ରାନ୍ଧଣା ଖାଇଚନ୍ତି ! ଦେ, ଦେ, ସେଇ
ହାତରେ, ସେହି ଅମୃତ ଥରେ ଖୁଆଇ ଦେ
ମୋତେ—

ଗେହ୍ଲି—( ସେହିପରି କରି ) ହାୟ, କି ଅଭାଗୁଣୀ
ମୁହିଁ—ଚହ୍ନି, ଚହ୍ନି ପାରିଲି ନାହିଁ—ଧରି, ଧରି
ପାରିଲି ନାହିଁ ! ହେ ଜଗନ୍ନାଥ, ସତେ ସତେ
ତମଠେଇଁ ଏତେ ଛନ୍ଦ, କପଟ ?

ଦାସିଆ—ଆସ, ଆସ, ହେ ସଂସାରବାସି !
କେ ଅଛ କେଉଁଠି ?—
'ଶ୍ୱେତପଦ୍ମଡୋଳା' ଆଜ ନିଜେ
ଦେଇ ଦରଶନ—
ବିଜେ କଲେ ଘୃର ଖନ୍ଦାଳର ଘରେ !
କଲେ ସୁଖେ ପ୍ରସାଦ ସେବନ—
ବାଉରାଣୀ ହାତେ !—
ସେହି କୈବଲ୍ୟ ଦୁର୍ଲଭ—
ପାଅ ହେ ସାନନ୍ଦେ—
କର ସୁଖେ ହରି ସଂକୀର୍ତ୍ତନ ! (ଖାଇଲେ)
( ଷଡ଼ଙ୍ଗୀଏ ଆସି ଉପସ୍ଥିତ ହୋଇଥିଲେ )

ଷଡ଼ଙ୍ଗୀ—ହେଁ, ହେଁ—ଭକ୍ତ ମାର ମୋତେ, ପଳାଇ
ଆସି ଏଣେ, ହେଁ, ହେଁ, ଏକା ଏକା ହରି ଦର୍ଶନ
କଲୁ, ନା ? କଲୁ, ଦାସ—ହେଁ ହେଁ, ତୋର
ଯେ ମନେ ସେ 'ହରି' ହଉ, ମୋ'ର 'ହରି' ତୁହି
ରେ—ହେଁ, ହେଁ, ତୁହି !—ଦେ, ଦେ, ତୋ'ର
ପ୍ରସାଦ ମୋତେ ଦେ—ହେଁ, ହେଁ, ସେହି ଯେ
ମୋ'ର ଦୁର୍ଲଭ କୈବଲ୍ୟ !—
( ଛଡ଼ାଇ ନେଇ ଦାସିଆ ମୁହଁରୁ ଖାଇଲେ । )
( ବ୍ରାହ୍ମଣ ଦୁଇଜଣ ଅଦୂରେ ଆସି ଠିଆ ହୋଇ-
ଥିଲେ )

୧ମ ବ୍ରାହ୍ମଣ—ନା, ନା, ଏ ଘୋର ଅନ୍ୟାୟ—
ଯେତେ ହେଲେ ସେ ବାଉରୀଟା !

ଷଡ଼ଙ୍ଗୀ—କଲୁ, ତୁ ଯେ ଚଣ୍ଡାଳ ! ମହାପ୍ରସାଦେ
ଯେଣୁ ଲଗାଉ ଜଞ୍ଜାଳ !—

ଦାସିଆ—( ମହାପ୍ରସାଦ କୁଡ଼ୁଆକୁ ମୁଣ୍ଡାଇ )
ବୃଥା ଦ୍ୱନ୍ଦେ କିବା ପ୍ରୟୋଜନ—
କର ମିଳି ହରି ସଂକୀର୍ତ୍ତନ !
ଭେଦାଭେଦ ଭୁଲିଯିବ କ୍ଷଣେ—
ଭାବଯଜ୍ଞେ ଆତ୍ମାହୁତ ଦେଇ !—
(ସମସ୍ତେ ହରି ସଂକୀର୍ତ୍ତନ କରୁ କରୁ ପ୍ରସ୍ଥାନ କଲେ ।)
( ଶ୍ରୀକୃଷ୍ଣ ସ୍ୱରୂପରେ ପିଲାଟି ବିପରୀତ ଦଗରୁ ଧାଇଁ
ଆସିଲା )

ପିଲା—କେଉଁଠେ ବାଙ୍ଗାଳ ଗୁଡ଼ାକ ମ ?—ଏ' ବାଙ୍ଗା-
ଳଟା ପାଇଁ ଦାନାଟିଏ ବି ଛାଡ଼ିଗଲେ ନାହିଁ ?

ଭୋରକାର ଗୁଣ୍ଡିଚୁଣ୍ଡି ସବୁ ଖାଇ, ପାର ! କିନ୍ତୁ ମୁଁ ପର ନକ୍କାନକା ଡାଆଁଶୀଟା—ଭକ୍ତର ଭକ୍ତଙ୍କ ଅଧରାମୃତ ଟିକକ ପାଇଁ ବୈକୁଣ୍ଠ ଛାଡ଼ ଧାଇଁ ଆସେଁ — ( ଖୋଜି ଖୋଜି )
ପାଇଛି ପାଇଛି—ଖୁଣ୍ଟିଖାଣ୍ଟି ବାଲ ଭିତରୁ, ଏହି ଭଙ୍ଗା ଦାନାଟିଏ !—

ଗୀତ

ଆଜ ମୋ'ର କି ଆନନ୍ଦ !
ପାଇ ଏହି ମକରନ୍ଦ ॥
ଏହିଟିକ ପାଇଁ ପିନା ସ୍ୱର୍ଗୁଁ ଆସେ ଧାଇଁ କିନା
ସ୍ୱର୍ଗ ସୁଖ ତୁଚ୍ଛ ମଣେ—
ଭକ୍ତ ଦାସ ମୁଁ ଗୋବିନ୍ଦ ॥
( ଭାବ ଗୌରବ ଓ ଆନନ୍ଦରେ ପ୍ରସାଦ ସେବନ କଲେ )

—ଯବନିକା—

# ତୃତୀୟ ଅଙ୍କ

**ଦୃଶ୍ୟ**—ସେହି ବାଲ ଗ୍ରାମର ଭାଗବତ ଘର ।

[ ଖୁବ୍ ସକାଳୁ, ସାହିର ବ୍ରାହ୍ମଣମାନେ ଏକ ବୈଠକ ଜମେଇଛନ୍ତି; ତର୍କପଞ୍ଚାନନେ ସଭାପତି ରୂପେ ସ୍ୱତନ୍ତ୍ର ଆସନରେ ବିରାଜମାନ । ତର୍କ-ବିଷୟ—ସେ ଦିନକାର, ସେହି ସଂକୀର୍ତ୍ତନ ଓ ପ୍ରସାଦ ସେବନ ଘେନି, ଦାସିଆବାଉରୀ ସଙ୍ଗେ । ଷଡ଼ଙ୍ଗୀଙ୍କୁ ଏକ ପାଖିଆ କରି ବସାଇଚନ୍ତି ।]

ତର୍କ—କି ଷଡ଼ଙ୍ଗୀଏ ? କ'ଣ କହୁଚନ୍ତି ? ବାଉରୀ ଅଇଁଠା ଆପଣ ଖାଇଚନ୍ତି କି ନାହିଁ ?

ଷଡ଼ଙ୍ଗୀ—ହେଁ, ହେଁ, ମୋତେ ବାର ବାର ସେପରି ପ୍ରଶ୍ନ କରିବାର ଉଦ୍ଦେଶ୍ୟ ? ମୋ'ର ତ ଏକା **ଜବାବ୍**—ହେଁ, ହେଁ—

"ଧନ୍ୟ ମୋର ଅଜି ଜୀବନ ।
ଭକ୍ତ ଅନ୍ନ କରି ଭୋଜନ ॥"

୧ମ ବ୍ରା—( କାନେ କାନେ ପରାମର୍ଶ ଦେଲାଭଳି ) ଆପଣ ଗୋଟାରେ ଧା' କରିବେ, କରନ୍ତୁ ପଛକେ-ଦାଣ୍ଡଘରେ ଖା'ନ୍ତୁ କି ଉମଘରେ ଖାନ୍ତୁ—କିଏ ଧରିବାକୁ ଯାଉଚି ? କିନ୍ତୁ ପଞ୍ଚାତିରେ, ପାଞ୍ଚଜଣଙ୍କ ସାମନାରେ କଥା ପଡ଼ିଲାବେଳେ, ନ ମାନିଲେ ତ ଲଫଟ ଗଲା ?

ତର୍କ—ଦେଖ, ବାର ବାର, ତିନିବାର ହେଲା—ଏକା ଉତ୍ତର—କ'ଣ କହୁଛନ୍ତି ଆପଣମାନେ ?

ସମସ୍ତେ—ନାଃ, ଆଉ ଦୟା ମାୟା ନାହିଁ—ଦାଅ, ତା'କୁ ଏହିକ୍ଷଣି ବ୍ରାହ୍ମଣକୁଳରୁ—

୧ମ ବ୍ରା—ଆଜ୍ଞା, ସା'ନ୍ତମାନେ—ଟିକିଏ ଥୟ ଧରନ୍ତୁ । ବାଲ ବଗାବାଲା—ବୁଢ଼ାହାଡ଼ାଲୋକ—ମୁଣ୍ଡଗଣ୍ଡି ଠିକ୍ ରଖି ପାରୁନାହାନ୍ତି । ଏତ କମ୍ କଥାନୁହେଁ, ଗୋଟିଏ ବୋଲ୍ ନାତି—ତା'କୁ ଯେତେବେଳେ ହଠାତ୍ କ'ଣ ଜଡ଼ୁରୁଟି କରି, ଭଲ କରିଦେଲା ସେଇଥିଆଟା—? ( ସଭାପତିଙ୍କ କାନପାଖେ ) ମୁଁ ବୁଝାଇ ସମୁଝାଇ ଦେଉଚି—କଥାଟା ଭେଦୁଚି—ଭେଦୁଚି—

ତର୍କ—ଅଚ୍ଛା ଅଚ୍ଛା, ଆଉ ୫ ଦଣ୍ଡ ସମୟ ଦିଆଗଲା ।

ଷଡ଼ଙ୍ଗୀ—ହେଁ, ହେଁ ୫ବର୍ଷ ସମୟ ଦେଲେବି ତ ସେହି ଏକା ଜବାବ୍ ମୋର ।

୧ମ ବ୍ରା—( କାନେ କାନେ ) ଭାବି ଦେଖନ୍ତୁ, ଷଡ଼ଙ୍ଗୀଏ—ଆପଣଙ୍କର ପିନା ଅପୁଷ ପୁରିବାକୁ ବସିଲାଣି, କିନ୍ତୁ ଆପଣଙ୍କର ନାତି ତ ନିହାତି ଟକା—ଆଗ ପଛ ଟିକିଏ ଭାବି ଚିନ୍ତି ଦେଖନ୍ତୁ—ଅଜାତି ହୋଇ ରହିଲେ, କା'କୁ ନେଇ ଚଳିବ ଭଲା—ଉମ ଅନ୍ତେ ?

ଷଡ଼ଙ୍ଗୀ—ଭାଇ, ଭାଇ—ସତେ ସତେ, ମୁଁ ତ ସେ କଥା ଆଦୌ ଖିଆଲ କରି ନାହିଁ ?

୧ମ ବ୍ରା—ଏବେ କରୁନାହିଁ—?

ଷଡ଼ଙ୍ଗୀ—କିନ୍ତୁ, କିନ୍ତୁ, ସେହି ସାକ୍ଷାତ୍ ଭଗବାନରୂପୀ 'ବାଲଗାଁ' ଦାସଙ୍କ ଯୋଗୁଁ ପିନା, ପିଲାଟିକୁ ମୋର ଆଖି—

ତର୍କ—ଆହେ ଷଡ଼ଙ୍ଗୀଏ, ଏମିତିକା ଯଦି ତୁମର ଦାସଙ୍କ କରାମତି—ମନ୍ତ୍ର ମଣିଷ ଜିଆଇଁ ଦେଇ ପାରନ୍ତି, କାଞ୍ଜିଆ ହାଡ଼ରେ ଛୁଇଁଦେଲେ ଭଲ ହୁଇଁ ଖାଲି, ତା' ହେଲେତ ସଂସାରରେ କେହି ଆଉ ମରନ୍ତେ ନାହିଁ ?

ଷଡ଼ଙ୍ଗୀ—ହେଁ, ହେଁ, ତା ହେଉ କି ନ ହେଉ, ଏ ଯେ ମୋର ଅନୁଭବ କଥା, ଭାଇ—ମୋ'ର ବିଶ୍ୱାସ—।

ତର୍କ—ଆହେ ! 'ବିଶ୍ୱାସର' ଦୋହି ଦେଇ ତ, ସେହି ଭଳି ନିଷ୍ପତ୍ତି କରିଦେଇ ପାରିଯାଏ ଦଣ୍ଡକେ ସବୁକଥା—ଯେଉଁ ଭଳି ଜଟିଳ ସମସ୍ୟା ହେଉନା କାହିଁକି ? କିନ୍ତୁ, ସେଥିରେ ସଂସାର ଚଳିବ କି ?

ଷଡ଼ଙ୍ଗୀ—ତର୍କରେ କ'ଣ ସଂସାର ଚାଲୁଛି ?

ତର୍କ—ନୁହେଁ ? ମାନବ ଜାତିର ଏହି ଯେ କ୍ରମବିକାଶ, କ୍ରମୋନ୍ନତି—ତର୍କର ସୋପାନମାର୍ଗେ, କ୍ରମେ କ୍ରମେ ଊର୍ଦ୍ଧ୍ୱଗତି କରୁଛି ବୋଲି ସିନା—।

ଷଡ଼ଙ୍ଗୀ—ବସ୍ତୁତଃ ତାହା ନୁହେଁ, ତର୍କପଞ୍ଚାନନେ !—ହେଁ ହେଁ କାରଣ, ଆପଣମାନଙ୍କ ଭଳି ତାର୍କିକ ପଣ୍ଡିତଙ୍କ ଜ୍ଞାନଗର୍ଭ କଥା ଢେର ଢେର ଶୁଣିଛି—ହେଁ, ହେଁ—ବେଦଶାସ୍ତ୍ର ବି ଢେର ଢେର ହେଁ ହେଁ, ପଢ଼ିଛି—କିନ୍ତୁ ସେ ସବୁ କିଛି ତ ଦିନେ ବି ମୋ ମନକୁ ଏମିତିକା ଭେଦିନାହିଁ—ହେଁ, ହେଁ, ଯେମିତିକା ଭେଦିଛି ସେହି ଗଣ୍ଡ ମୂର୍ଖ ଖେଦାଳର ସରଳ ମନ—ସରଳ ଭାବ—ସରଳ ବିଶ୍ୱାସ—।

ତର୍କ—ଏ'ଟା କେବଳ ତୁମ୍ଭର ସରଳ ପ୍ରକୃତି—ଦୁର୍ବଳ ମନ, ଷଡ଼ଙ୍ଗୀଏ ।

ଷଡ଼ଙ୍ଗୀ—ମୋ ଭଳି କଠିନ ମନ—ହେଁ, ହେଁ—ରୁକ୍ଷପ୍ରକୃତିର ଲୋକ ଖୁବ୍ କମ୍ ଦେଖିଥିବେ ଏ ଗାଁରେ, ପଞ୍ଚାନନେ ? ହେଁ, ହେଁ, ଏହି ସେ ଦିନ, ଦାସକୁ—ଆଉ ତାର ସାଧ୍ୱୀ ପତ୍ନୀକୁ—ହେଁ, ହେଁ, ଯା' ତା' କରି, ଗାଳି ଗୁଲଜ କରି ଆଇଲି—ସାମାନ୍ୟ ଲାଗି କେତେଖଣ୍ଡ କାଳିଟରେ ଦେଲେ ନାହିଁ ବୋଲି,—ଏ କଥା ମନେ ମନେ ମୁଁ ଜାଣୁଥାଏଟି—ହେଁ. ହେଁ, ଯେ ସେମାନେ ସେ କଥା କଲେଇ ଠକିବେ ନିଶ୍ଚେ—କିନ୍ତୁ, କିନ୍ତୁ ସେମାନେ କରିଛନ୍ତି କ'ଣ ? ନା, ନା, ଦାସ ଜଗନ୍ନାଥଙ୍କ କୈବଲ୍ୟ ଲାଭ କରିଛି—ସାକ୍ଷାତ୍ ନରରୂପୀ ନାରାୟଣ ସେ—।

( ଓଳଗି ହେଲେ )

ତର୍କ—ବେଶ୍, ଯଦି ପ୍ରକୃତରେ ତାହାହିଁ ହୁଏ—ଆଉ କାହାରି ମନରେ ସେ ବିଶ୍ୱାସ ଜନ୍ମୁନାହିଁ କାହିଁକି ?

ଷଡ଼ଙ୍ଗୀ—ବିଶ୍ୱାସ ଜନ୍ମାଇଲେତ ହେବ !—ହେଁ, ହେଁ—

"କରିବ ହରି ନାମ ମୂଳ ।
ମୂଳଟି ବିଶ୍ୱାସ କେବଳ ॥"

ତର୍କ—ହାଃ—ହାଃ—ପାଗଳଙ୍କ ବିଶ୍ୱାସ,—ଆମେ ସୁସ୍ଥ ଦେହରେ ତା' କରିବାକୁ ଯିବା କାହିଁକି, ଭଲା ?

ସମସ୍ତେ—ଠିକ୍ତ ।

ଷଡ଼ଙ୍ଗୀ—ହେଁ, ହେଁ, ବାହାରର ଚକ୍କଣ ଚିକ୍କଣ ସିନା ତର୍କର ଭୂଷଣ—ହେଁ, ହେଁ ସେଥିରେ ଭୁଲି, ଭିତରର ସୋରକୁ, ହେଁ, ହେଁ, ଘୋଡ଼ାଇବା କି ଠିକ୍, କହିଲ ?

ତର୍କ—ହଉ ହେ ଭଟରଣିକର୍ଣ୍ଣିଆ—ପାଞ୍ଚଦଣ୍ଡ ଯାଇ, ଏବେ ପାଞ୍ଚଘଣ୍ଟା ହେଲାଣି—ତୁମର ବକ୍ତବ୍ୟଟା କେବେ ଶେଷ କରିଦେଲ ?

ଷଡ଼ଙ୍ଗୀ—ହେଁ, ହେଁ—ମୋର ବକ୍ତବ୍ୟତ ଶେଷ କରି ଦେଇଛି ।

ତର୍କ—ଦେଖନ୍ତୁ, ଭାଇନା,—ପୁଣି ଗୋଟାଏ ଆବେଗରେ ଭାସିଯା'ନ୍ତୁ ନାହିଁ—ଆପଣଙ୍କ ବିଶ୍ୱାସ ବୋଲି, ଆପଣ ଜାତିପ୍ରାଣ ଜଳାଞ୍ଜଳି ଦେଇ ପାରନ୍ତି—କିନ୍ତୁ ନାତିଟିର କଥା ଭାବୁଚନ୍ତି ତ ? ସେହି ପୁଣି ବୁଦ୍ଧି ହେଲେ, ଆପଣଙ୍କର ଦୋଷ ଦେବିଟି ? ଏହି ଧରନ୍ତୁ, ଆପଣଙ୍କର ବିଶ୍ୱାସ ଯା' ମୋର ବିଶ୍ୱାସତ ତା' ନୁହେଁ—ନାତିଟିର ଯେ ସେହିପରି ଠିକ୍ ନହେବ ତାର କି ମାନେ ଅଛି ?

ଅଦ୍ଭୁତ, ଯେତେବେଳେ ଏକଘରିଆ ହୋଇ ଅଘରିଆ ହେଲ, ବାଟରୀ ବାରଣ୍ଡାରେ ଶୁଣି ପିଣ୍ଡା ହେଉଥିବ; ଅଭିଶାପର ଭାଗୀ କିଏ ହେବ ଭଲା ? ଏତେ ଦୁଃଖରେ ଆପଣଙ୍କର— ଗୋଟିଏ ବୋଲ ଝିଅକୁ ହଜାଇ, ଦେହ ଧରି ରହିଛନ୍ତି ଖାଲି— ଏହି ଜଗୁରା ନୁଖୁରା ଦୀପ ବଳିଭାଟି ଆଜି କୁତ୍ରୁ କୁତ୍ରୁ କହୁଛି ବୋଲି ସିନା ? ଭବିଷ୍ୟତ ତାର କପାଳ ଦାନୁ ଦାନୁ ଉଜ୍ଜ୍ୱଳ ହେବ, ତାହାହିଁ ଭାବୁଚନ୍ତି ବୋଲି ସିନା ?— କିନ୍ତୁ, ଏଁପରି ଅଣସମ୍ପୃକ୍ତ ଭାବରେ ଆପଣଙ୍କର, ଯଦି, ଅହା, ଅକାଳେ ପିଲାଟିର ସର୍ବନାଶ—

ଷଡଙ୍ଗୀ—ଥାଉ, ଥାଉ—ସେ ଭଲ ଦିନ ଆଉ ମୋ ଆଖି ଆଗେ ଆଙ୍କି ଦିଅ ନାହିଁ !—ସ୍ୱଚକ୍ଷୁରେ ଦେଖିଛି ମୁଁ—'ବାସନ୍ଦ' କହିଦେଲେ, ଲୋକଙ୍କ କି ଭଲ କଲବଲ ହେବାକୁ ହୁଏ !—ସେ ଦିନ, ଦାସକୁ, ଦେଉଳ ପ୍ରସାଦ ବାସନ୍ଦ କରାଇ ଦେଲି, ଜାଳେ ମୁଁ ସମସ୍ତଙ୍କ ମତାଇ ଯେତେବେଳେ,— ଦିଟରୀ, ନ ଖାଇ, ନ ପିଇ, ଉପାସି ତଲ୍ଲି-ସିରେ ପାହାଡ଼ ପ୍ରମାଣେ ଭୁକୁଲି ପିଠିରେ ନଦି ଗ୍ରାମ ଛାଡ଼ି ପଳାଇବାକୁ ବାଟ ପାଇଲା ନାହିଁ ପରା; ଖରାଏ ଖରାଏ ବାଛୁଅଣ୍ଡା ଘାଟ ବାଜିଲାଭଳି, ଓଃ ଅଉ ତା'ର ସ୍ତ୍ରୀ, ଦଣ୍ଡଦିନକାଳ ଦାଣ୍ଡରେ ଖାଡ଼ା ଖାଡ଼ା ଉପାସରେ ଦିନ କଟାଇ ଦେଇଛି — ଛେପ ବି ଟିକିଏ ନ ଢୋକି (ଦମ୍ଭରେ) ପଞ୍ଚାନନେ ! ମୁଁ ଅଇଣ୍ଠା କାହାର, କେବେ, କୌଣସିଠାରେ, ସ୍ୱର୍ଗ ସୁଦ୍ଧା କରି—

ସମସ୍ତେ—('ନାହିଁ' ପଦଟିକୁ ଶୁଣିବାକୁ ଉଦ୍‌ଗ୍ରୀବ ହୋଇ ଉଠିଥିଲେ)

(ଦାସିଆ ହଠାତ୍ ଥାନେ ନୂଆଲୁଗା କାଖରେ ଯାକି ପ୍ରବେଶ କଲା)

ଦାସିଆ—ତମେ ଏଠି ଷଡଙ୍ଗୀଏ ? ସଁଠି ଖୋଜି— ଆମର ଜୀବନ ଆଖଡ଼ାଟି ଖୋଜି—ଅଦ୍ଭୁତ ଅଦ୍ଭୁତ ଠିକଣା ଜାଗାମାନଙ୍କରେ ଖୋଜି ଖୋଜି, ମୁଁ ଥକଇ !—ଅଣ୍ଟା ପିଠି ରହି ଗଲାଣି ପରା !— (ବସି ପଡୁଥିଲା)

ଷଡଙ୍ଗୀ—ଦାସ, ଦାସ—ଦେବତା ମୋର—ମୋତେ ବଞ୍ଚା ବଞ୍ଚା— (ଗୋଡ଼ତଳେ ପଡ଼ିଗଲା)

ଦାସିଆ—(ଗୋଡ଼ତଳେ ପଡ଼ି)—କଥା କ'ଣ ଗୋସେଇଁ ? ଚିନ୍ତା ବା କାହିଁକି ?

"ଭାବର ବନ୍ଧୁ ଭାବଗ୍ରାହୀ ।
ସକଳ ଜୀବେ ଦୟା ବହି" ॥

ଷଡଙ୍ଗୀ—(କୁଣ୍ଢାଇ) କିନ୍ତୁ, ତୁହି ମୋତେ ଦୟା ନ କଲେ, ବଞ୍ଚିବି ନାହିଁ ପରା !

ଦାସିଆ "ମନକୁ ଛାଡ଼ ସର୍ବଭୟ ।
ନିରତେ ଆନନ୍ଦ ହୃଦୟ" ॥

ସମସ୍ତେ—(କୋଲାହଳ ପୂର୍ବକ) ଆଉ ରହିବା ନାହିଁ ଏ ସ୍ଥାନରେ—ଘୋର କଳଙ୍କ—ବ୍ରାହ୍ମଣ କୁଳକୁ ଘୋର ନିନ୍ଦା— !

ତର୍କ—ଆଜଠୁଁ ଶୁଣ ସମସ୍ତେ,—ଷଡଙ୍ଗୀ ଆଉ ତା'ର ଘରର ସମସ୍ତେ—

ସମସ୍ତେ—ଏକଘରିଆ ! ଆଜଠୁଁ ସବୁ ବାସନ୍ଦ !— ଧୋବା ଭଣ୍ଡାରୀ ପର୍ଯ୍ୟନ୍ତ ! (ଚାଲିଗଲେ)

ତର୍କ—(ଲୋଲୁପ ଦୃଷ୍ଟିରେ, ସେହି ଲୁଗା ଅଡ଼େ ଚାହିଁ ଚାହିଁ ଚାଲିଗଲେ)

ଷଡଙ୍ଗୀ—ଶୁଣିଲୁ ତ—

ଦାସିଆ—କିଛି ଚିନ୍ତା ନାହିଁ, ଭାଇ—

"ଚିନ୍ତ ଦୃଢ଼େ ଚିନ୍ତାମଣିଙ୍କୁ ।
ସେହି ଆଶ୍ରାଦେବେ ତୁମ୍ଭଙ୍କୁ" ॥

ଷଡଙ୍ଗୀ—ଠିକ୍ କଥା, ଭାଇ—କ୍ଷଣକାଳ ପାଇଁ, ଭକ୍ତ-ମାନଙ୍କ କଥା ଛନ୍ଦରେ ଭଣି, 'ବିଶ୍ୱାସ' ହରାଇ, ଚିନ୍ତାନଳରେ ପୋଡ଼ି ମରୁଥିଲି ସିନା—ନା, ନା, କେଉଁ ଅବାଟରେ ବାଟ ହୁଡ଼ିବାକୁ ବସିଥିଲି ସିନା !-ଦାସ ! ଦାସ ! ଦେବତା ମୋର !— ତୁହି ଆଜି ମୋତେ ରକ୍ଷାକଲୁ, ଭାଇ ! ଶୁଣା ଶୁଣା—ତୋ'ର ମୁହଁରେ ଥରେ, ସେହି ସୁଧାମୟ ହରିନାମ—

ଦାସିଆ—( ଭାବାଭିଭୂତ ହୋଇ )

ଗୀତ

'ହରି,' 'ହରି,' କି ମଧୁର ନାମ ।
ଯେ କରେ, ସେ ବସେ ପୁଣ୍ୟ ଧାମ ॥
"କହିବ ଯେ ହରିନାମ ମୂଳ—
ମୂଳଟି ବିଶ୍ୱାସ କେବଳ ହେ"—
ତର୍କେ ପଡ଼ି ନ ହୁଅ ଚଞ୍ଚଳ ।
ଅବିଶ୍ୱାସ ଜାଣ ବିଷ ସମ ॥

[ ଉଭୟେ ଏହି ଭଳି କୀର୍ତ୍ତନ କରୁଥିବା ବେଳେ ତର୍କ ପଞ୍ଚାନନେ ପୁଣି ପ୍ରବେଶ କଲେ ]

ତର୍କ—ଆହେ ପାଷଣ୍ଡଗଣ ! ହରିଙ୍କି ନେଇ ଏମିତକା ବିର୍ ବଜାରଟାରେ, ବଜାସି ଭଳି ନ ନାଚଲେ କ'ଣ ହୁଏ ନାହିଁ ?—

ଉଭୟେ—( ଥମକି ଠିଆହୋଇ, ଚାହିଁଲେ )

ତର୍କ—( ମୃଦୁ ମୃଦୁ ହସି ) ଭଦ୍ରର ସଦର ଟିକିଏ ହୁଅ ଭଲ ? ଆରେ ଦାସିଆ—ସେ ଲୁଗାଖଣ୍ଡି କଣ—

ଦାସିଆ—ଅଜ୍ଞା, ସା'ନ୍ତେ—ବିକି କରିବା ପାଇଁ ଆଣିଚି ।

ତର୍କ—ବେଶ୍, ଭଲ ବିକି କରୁଚୁ ତ ?

ଦାସିଆ—ଅଜ୍ଞା—ଅଜ୍ଞା-( ଅପ୍ରସ୍ତୁତ ଭାବେ ଚାଲିଯାଇ ଚାଲିଯାଇ, ଫେରି, ଚୁନକରି ଷଡ଼ଙ୍ଗୀଙ୍କ କାନରେ ) ଦେଖ, ଅସଲ କଥା ଭୁଲି ଯାଇଚି—ଘରେ କ'ଣ ଅଜ ପିଠା ପଣା ଭୋଗ ରାଗ କରିବେ ବୋଲି କହୁଥିଲେ—ତମେ ଯେମିତି ହେଲେ ଯିବଟି, ଭାଇନା—

ଷଡ଼ଙ୍ଗୀ—ଏ'କଥା ପଚାରିବାକୁ ?—ହେଁ, ହେଁ, ଏହି ମୁଁ ଗାଧୁଆ ପାଧୁଆ ସାରି, ହାଜର ହେଲି ବୋଲି ଜାଣ—ହେଁ, ହେଁ—

(ଦାସିଆର ଗୋଡ଼ଧୂଳି ମୁଣ୍ଡରେ ଲଗାଇ ଚାଲିଗଲେ)

ଦାସିଆ—( ଷଡ଼ଙ୍ଗୀର ଗୋଡ଼ଧୂଳି ମଧ୍ୟ ମୁଣ୍ଡରେ ଲଗାଇଲା )

ତର୍କ—ହାୟ ! ହାୟ ! ବାହ୍ମଣ ହୋଇ ବାଉରି ଗୋଡ଼ ଧରିଲା—ଗୋଡ଼ଧୂଳି ମଥାରେ ଲଗାଇଲା !—ଆରେ ଦାସିଆ—ତୋ'ର ବଡ଼ବୋଲ ହବରେ—ଗୋଡ଼ ଛିଡ଼ିପଡ଼ିବରେ—ବୁଢ଼ା ବୋଲି ସିନା, ତା'ର ବୁଦ୍ଧି ହଜିଗଲାଣି—ତୋ'ର କ'ଣ ଅକଲ୍ ହୋଇ ଟିକିଏ ନାହିଁରେ ? ଆରେ, ମୂର୍ଖ, ଗଣ୍ଡ—

ଦାସିଆ—ପ୍ରଭୁ ! ପ୍ରଭୁ !—ଚତ୍ରଚନ୍ଦ୍ର କାହାଁ ?—
କିଏ କିଏ କା'ର ଗୋଡ଼ଧୂଳି ?
ତୁମେ ହରି—ମୁହିଁ ହରି—
ହରିମୟ ଅଟଇ ସଂସାର !
ହରି କାର୍ଯ୍ୟ—ହରି କରୁଛନ୍ତି—
ନିମିତ୍ତ ମାତ୍ରକ ଅଛୁଁ—ଆମ୍ଭେ ସିନା ଭବେ ।

( ଗୀତ ଭଙ୍ଗୀରେ ଭାବାବେଶେ )

"ଯେ ପ୍ରଭୁ ଭକତ ବତ୍ସଳ ।
ଭକତ ଭାବ ଯାର ମୂଳ ॥
ନାହିଁ ତା ଜାତି କିମ୍ବା କର୍ମ ।
ନାହିଁ ତପସ୍ୟା ଦାନ ଧର୍ମ ॥
ନାନାବ୍ରତାଦି ତୀର୍ଥ ଯେତେ ।
କିଛୁ ନ ଛୁଇଁ ତା'ର ଚିତ୍ତେ ॥
କିସ ହୋଇବ ଦାନ ପୁଣ୍ୟ ।
ଯେତେ ବା କଲେ ଦେବାର୍ଚ୍ଚନ ॥
ଏଣେ ପାଇବ ତାଙ୍କୁ କାହିଁ ।
ଯହିଁ ଲୋଡ଼ିଲେ ତହିଁ ଥାଇ" ॥

ତର୍କ—ଆଃ—ମୂର୍ଖ ସଙ୍ଗେ ତର୍କ କରିବାହିଁ ଆଗେ ମୂର୍ଖତା !—ଏଣୁ ତେଣୁ ଗୁଡ଼ାଏ ଖାଲି ବକି ମରିବା ସାର ହେବ ସିନା ? ଆରେ, ତୋ'ର ସେହି ପଖାଳକଂସାଟା ଦେଖେଁ—

ଦାସିଆ—( ବଢ଼ାଇ ଦେଉଥିଲା )

ତର୍କ—ହାଁ-ହାଁ-ଛୁଇଁବୁ—ଛୁଇଁବୁ—'ଜଗନ'ଟା ତ ଆଜି ଷଡ଼ଙ୍ଗୀ ପାଲଟି ଯାଇ ନାହାନ୍ତି ? ଆରେ ବ୍ରାହ୍ମଣ—ବ୍ରାହ୍ମଣ ! ଚଣ୍ଡାଳ—ଚଣ୍ଡାଳ ! ଏ' ଭେଦଭାବ ରହିଥିବ—ଚାଲିଥିବ—ସଂସାର ଚାଲୁଥିବାଯାଏ—ଚନ୍ଦ୍ରାର୍କ ନଭେ ଉଇଁଥିବା ଯାଏଁ ।

ଦାସିଆ—ଏହି 'ଭେଦ—ଭାବ' ଯେମା ତ ଜାତିଗତଟା ଚାଲିଚ, ସାନ୍ତେ !—ଯେଉଁଭାବେ

ହେଉନା କାହିଁକି ?—ଚଣ୍ଡାଳ, ବାହ୍ମଣ ହେଉ, କି ବାହ୍ମଣ, ଚଣ୍ଡାଳ ହେଉ ? ଚୈତନ୍ୟ ମନକୁ କହୁଚନ୍ତି ପରା—

"ଯେ ଯେତେ ନୀଚ ଜାତି ହେଉ ।
ସେ ଏକା ଭକ୍ତିଭାବେ ଥାଉ ॥
ତାହାର ପତ୍ର ଫଳ ପୁଷ୍ପ ।
ପାଇଲେ ଶ୍ରୀହରି ସନ୍ତୋଷ ॥
ଯେ ନର ଉଚ୍ଚ ଜାତି ହେଉ ।
ଶ୍ରୀହରି ଭକତି ନ ଥାଉ ॥
ସେ ଯେତେ ସ୍ୱାଦୁ ଦ୍ରବ୍ୟ ଦେଲେ ।
ପ୍ରଭୁ ତା' ନ ଛୁଅନ୍ତି ଭଲେ ॥"

ତର୍କ—ହଁ, ହଁ, ଏ'ତ 'ଭକ୍ତିଯୋଗମାର୍ଗ' କଥା—କିନ୍ତୁ, ମୁଁ 'କର୍ମଯୋଗ ମାର୍ଗ' କଥା କହୁଛି ରେ ମୂର୍ଖ ।

ଦାସିଆ—ଆଜ୍ଞା, ମହାପ୍ରଭୁ—ମୂର୍ଖ ମୁଁ—'ଭକ୍ତିଯୋଗ', 'କର୍ମଯୋଗ' କିଛି ସମୁଝେ ନାହିଁ—କିନ୍ତୁ, ଏକ ମାର୍ଗକୁ ଛାଡ଼ି, ଅନ୍ୟମାର୍ଗ ଥାଇପାରେ କି ? ଯେଉଁ କର୍ମରେ 'ଭକ୍ତି'ର ଯୋଗ ନାହିଁ, ସେ କି ଖୋଟେ 'କର୍ମ' ଭିତରେ ଲେଖା ?

ତର୍କ—ଆରେ ମୂର୍ଖ ପଣ୍ଡିତ ! ଶାସ୍ତ୍ର ନ ପଢ଼ି, ମନରୁ ଗୁଡ଼ାଏ ଗାଳି ଯା'ନା ମ ? ଆରେ, ଜାଣୁ, କା' ସଙ୍ଗେ କଥାଭାଷା କରୁଚୁ ? କିଏ ସେ ମୁ ଏ' ସାତକୋଶ ଅନ୍ତରରେ ? କେତେ ପୋଥି ମୋ' ଘରେ ? ବାହାରଙ୍କର ତ ଜଣେ ପାଠୁଆ ମୋ' ଆଗରେ ?

ଦାସିଆ—କିନ୍ତୁ, ସା'ନ୍ତେ ସବୁ ଅନ୍ଧାରରେ ବନ୍ଦ ସିନା । ଆମେ, କୁଆ ହୋଇ, ପାଇବୁ ବାହାରୁ କାହୁଁ ତା ସ୍ୱାଦୁ ?

ତର୍କ—ଆରେ, ତମକୁ ଶୁଆ କରିଦେଲେ କି ଆଉ ବାକି କିଛି ରହିବ ? କେଉଁ ସନ୍ଧିଫାଟେ ପଶି, ବିଲକୁଲ୍ ଗ୍ରାମର ଫାଙ୍କ କରିଦେବ ନାହିଁନା ? ଛାଡ଼, କହିଲ୍, କେତେ କଉଡ଼ି ଦାମ ? ଏଃ ହେଃ—ଖାଲି ମଣ୍ଡିଦଆଡ ?

ଦାସିଆ—( ହଠାତ୍ ନେପଥ୍ୟ ଆଡ଼େ ଏକଦୃଷ୍ଟିରେ କ'ଣ ଗୁହିଁ ଦେଖୁଥାଏ ନିବିଷ୍ଟ ମନରେ )

ତର୍କ—କରେ, ତେଣେ ନଜର କାହିଁରେ ? ଅମର ଅଗଣା ଆଡ଼େ ତ ? କା'କୁ ଖାର ବାଉଛି, ଫାଉଛି ଲଗାଇବାର ମତଲବ ଅଣ୍ଟୁଚୁ ନା କ'ଣ ?

ଦାସିଆ—ଆଜ୍ଞା, ସେହୁ 'ଶ୍ରୀଫଳଟି' ଯଦି ଦୟାକରି ମୋତେ—

ତର୍କ—ବାଃ ରେ, ଭୋଇପୁଅ—ମୋର ନୂଆ ନଡ଼ିଆ ଗଛରେ ନୂଆ ଫଳ ପଡ଼ିଚି,—ମୋର ରାସବିହାରୀଙ୍କ ନା'ରେ ପାଣି ଛଡ଼ାଇବି, ବାଃ ରେ ।

ଦାସିଆ—ମୁଁ ବି ସେହିଭଳି ମନାସିଚି, ସାନ୍ତେ, ଜଗତର 'ରାସବିହାରୀଙ୍କୁ' ! ଦୁହିଙ୍କର ମନାସ ମିଶାଇ କାମକଲେ ହ'ନ୍ତା ନାହିଁ, ଗୋସେଇଁ ?

ତର୍କ—(ହସି) ତୁ ଗୋଟାଏ କ'ଣ ମନାସିଚୁ ରେ ?

ଦାସିଆ—ସାନ୍ତେ !

"ଏକଦିନେ ମୁଁ ଶୟନରେ ।
ମନ ନିବେଶି ଶ୍ରୀପଦ୍ମରେ ॥
ହୋଇଣି ଅତି ଶ୍ରଦ୍ଧାବନ୍ତ ।
ବିଚାର କଲି ଏହା ଚିତ୍ତ ॥
କୃପା କି କରିବେ ଶ୍ରୀହରି ।
ଦେଖିବି ଶଙ୍ଖଚକ୍ରଧାରୀ ॥"

ତର୍କ—(ଥଟ୍ଟାରେ) ଦେଖାଦେଲେ ନା କ'ଣ ?

ଦାସିଆ— "ମୋ ମନ ଜାଣି ଭଗବାନ ।
ତେଜିଲେ ରତ୍ନ ସିଂହାସନ ॥

ତର୍କ—(ଥଟ୍ଟାରେ) କେଉଁସବେ କଲେ କି ଆସନ ?"

ଦାସିଆ— "ଦେଖିଲି ନୟନ ପୂରାଇ ।
ବୋଇଲି ନମୋ ଜଗନ୍ନାଥ ॥"
( ନମସ୍କାର କଲେ )

ତର୍କ—ଅହା, ହା ! ବିଗ୍ରହଟି କେମିତିକାରେ, ଭୋଇ ?

ଦାସିଆ— "ରଥେ ମୁଁ ଦେଖିଥିଲି ଯାହା ।
ସାକ୍ଷାତେ ଦେଖିଲିଇଁ ତାହା ॥"

ତର୍କ—ଊଁହୁଁ ଆହୁରି ବଙ୍ଗତଙ୍ଗିଆ ହୋଇ ଦଗିବାର କଥା ? ସ୍ୱପ୍ନଟା ତୋ'ର ଗାଡା ହୋଇ ନ ଥିଲା କିରେ ?

ଦାସିଆ—( ଟେରଗଦଭାବେ )

"ବ୍ରହ୍ମା ଇନ୍ଦ୍ରାଦି ସୁରାସୁର ।
ଯକ୍ଷ ଗନ୍ଧର୍ବ ଯେ କିନ୍ନର ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ ।
ଚିନ୍ତନ୍ତି ଯେ ହରି ଚରଣ ॥
ମନେ କରନ୍ତି କେତେ ଭାବ ।
ତାଙ୍କୁ ତୋ ଦର୍ଶନ ଦୁର୍ଲଭ ॥"

ଉର୍କି—କିନ୍ତୁ ଟେଣ୍ଟାଖିଆ ଦାସିଆ ବାଉଳା ଠାରେ ସୁଲଭ !—ହାଃ—ହାଃ—

ଦାସିଆ— "ମୁଁ ଯେ ଅଜ୍ଞାନ ହୀନଜାତ ।
ନାହିଁ ମୋ ଭକ୍ତି କିମ୍ବା ଗତ ॥
ବିଜୟ କଲ ମୋର ପୁର ।
ହେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ॥"

ଉର୍କି—'ପାହାର ଖାଇବାଟି ସାର' ବୁଝିନେଇ, ଚମ୍ପୂ ଛୁ ବଡେଇଥିବେ କେତେ ବ୍ରହ୍ମାଣ୍ଡ ଠାକୁର ।

ଦାସିଆ—ନା, ନା, ସାନ୍ତେ ( ଲୁହ ଭରା ଆଖିରେ )

"ତା ଶୁଣି ପ୍ରଭୁ ପୀତବସ ।
ବୋଲନ୍ତି ଶୁଣ ଆରେ ଦାସ ॥
ସ୍ୱର୍ଗାଦି ଅପବର୍ଗ ଯେତେ ।
କେବେ ନ ରସେ ମୋର ଚିତ୍ତେ ॥"

ଉର୍କି—ରସରସିଆ ମାଲ କିଛି କେଉଁଠି ଛପି ଛପି ରଖିଥିଲୁ କିରେ ? ତା'ର ବାସନା ପାଇ ରସିକ ଠାକୁରେ ନାଳିଆ ହୋଇ କେତେ ଧାଇଁ ଆସିଥିବେ ପରା ? ବେଶ୍, ବେଶ୍, କ'ଣ କହିଲେଟି ଆଉ ତୋତେ ?

ଦାସିଆ—( ସେହିଭାବେ )

"ଭକତ ରସେ ଯେ ରସଇ ।
ମୋ' ମନ ତାଠାରେ ରସଇ ॥"

ଉର୍କି—ଏଃ—ଖାଲି ଏଇଆ ? ପାନ ପିକା ଖର୍ଚ୍ଚିକୁ କିଛି ଦେଇଗଲେ ଭଲ !—

ଦାସିଆ—(ସେହିଭାବେ) କହିଲେ ଆପଣା ଗ୍ଲାଏଁ—

"ହେ ଭକ୍ତ ମାଗି ନେନ ବର ।
ଯାହା ଇଚ୍ଛା ଅଛି ତୁମ୍ଭର ॥"

ଉର୍କି—ଏଁ, ତ'ଣ କହୁଚୁ ? ଦାଉଁଡ଼ା ଛାଡ଼ି ଦେଲୁ ନା କ'ଣ ? 'କଳ୍ପବୃକ୍ଷ'ମଣି ପଣିରୁ ଗୋଟାଏ କିଛି ମାଗିନେଇ ପାରିଲୁ ନାହିଁ ?

ଦାସିଆ—ତା'ଠୁଁ ଅଧିକେ ମାଗି ନେଇଚି, ସାନ୍ତେ !—

"ବରେ ମୋ ପ୍ରୟୋଜନ ନାହିଁ ।
ଏତେକ ଦେବ ଭାବଗ୍ରାହୀ ॥
ତୋ ଭକ୍ତ ମାନଙ୍କ ଚରଣେ ।
ମୋ' ମନ ଥାଉ ଅନୁକ୍ଷଣେ ॥
ଯେବେ ମୁଁ ମନରେ ଭାବିବି ।
ତୁମ୍ଭ ଦର୍ଶନ ପାଉଥିବି ॥
ଏ'ବର ମୋତେ ଆଜ୍ଞା ହେଉ ।
ଅଧିକ ଲୋଡ଼ା ନାହିଁ ଆଉ ॥

ଉର୍କି—ଚୁ, ଚୁ—ତୁ କ'ଣ କଲୁ ? ଆରେ ସେ ଶୁଖିଲା ଦର୍ଶନରେ କ'ଣ ରୁଚିଲା ଦ୍ରବ୍ୟ ତୋତେ ମିଳିବ ? ତୋତେ ବୁଦ୍ଧି ଘଟିଲା ନାହିଁତ—ଗାଁର ମାମଲତ୍‌କାର ମୁଁ ଅନ୍ତ୍‌ତଃ କଇଁ ରହିଚି—ଛ'କୋଶ ଦୂରେ ନୁହେଁ, କି ନ'କୋଶ ଦୂରେ ନୁହେଁ—ଘରକୁ ଘର ଲାଗିଚି—ଓଳକୁ, ଓଳ ଚୁ, ଚୁ—ମସୁଦା ଟିକିଏ ନେଇ ଯାଇ ପାରିଲୁ ନାହିଁ ?—

ଦାସିଆ—ଶୁଣ, ଶୁଣ ଗୋସେଇଁ—ଭଗବାନ୍ ମୋର କେଡ଼େ ଦୟାଳୁ— ଯାଚି ଗୁଞ୍ଜି ପରା କହିଲେ—

'ତୁ ଯେବେ ଯିବୁ କ୍ଷେତ୍ରବରେ ।
ମୁଁ ଥିବି ନୀଳଚକ୍ର ପରେ ॥
ଉହିଁ ଚକ୍ରରୁ ଯେଉଁ ରୂପ ।
ମୁଁ ହେବି ତେମନ୍ତ ସ୍ୱରୂପ ॥'

ତା' ପରେ—ତା' ପରେ, ଦୟାଳୁ ପ୍ରଭୁ ମୋର, କେଡ଼େ ଆଗ୍ରହରେ ଆହୁରି କହିଲେ—

'ତୁ ଯେଉଁ ଦ୍ରବ୍ୟ ଯାଚି ଦେବୁ ।
ଆମ୍ଭେ ତା ଅବଶ୍ୟ ଭୁଞ୍ଜିବୁ ॥'

କିନ୍ତୁ, ଗୋସେଇଁ, ମୁଁ ବାସ୍ତବ୍ୟା ବଶରେ ଭୋଳ ହୋଇ ସେ କଥା ଏକାବେଳକେ ପାସୋରି ପକାଇଚି ! ଆପଣ ଯଦି ଦୟା କରି—

ତର୍କ—(ନିଜମନେ) ଏତକବେଳେ ଦାଉ—(ପ୍ରକାଶ୍ୟେ)
ହଁ, ହଁ, ତୋର ଭାରି ଭୁଲ କଥା, ଦାସ—
ଜମିଦାରରେ ଅସି ଗାଁ ବୁଲିଗଲେ ଖାଲି, ଅମେ
ଭାର ଭାର ନେଇ ପଣାପଡ଼ବା ଗଦେଇ ଦେଇ
ଆସୁଚୁ—ଏ'ତ ବ୍ରହ୍ମାଣ୍ଡ ଠାକୁର—ବ୍ରହ୍ମାଣ୍ଡର
ଜମିଦାର !—ତୁ ନାମ୍ଭା କରି ଅଣ୍ଡୁର, ଘରକୁ
ଆପଣାର ଅଣାଇଥିଲୁ—ଯା' ନ ମାଗିଲୁ, ତା'
ବି ଯାଚିଗୁଞ୍ଜି ଦେଇଗଲେ !—ଏ' ସବୁକୁ
ବିଚାରି ତୁ କାହିଁ ଏତେବେଳକୁ ଗାଁ ଗୋଟା
ଧନ ନେଇ ଓଜାଡ଼ି ଦେଇ ଆସନ୍ତୁଣୁ ଗୋଡ଼ତଳେ
ତାଙ୍କର, ନା, ତାଙ୍କୁ ପୁଣି ମୁହଁ ଫିଟାଇ କହିବା-
ଯାଏ, ମାଗିବା ଯାଏ, ଗଲା—ଛି, ଛି—

ଦାସିଆ—( ଗଦ୍‌ଗଦସ୍ୱରେ, ଗୋଡ଼ତଳେ ପଡ଼ି )
ପ୍ରଭୁ—ପ୍ରଭୁ—ଏଥକୁ ଆପଣ ଏକମାତ୍ର
ଭରସା—

ତର୍କ—କହ, ମୋ ଦେଇ ଯା' ହବ, ତା' କଣ ମୁଁ
କରିବାକୁ ନାରାଜ ?—ଆରେ, ଦାସ ମୋଠୁଁ
ମସୁଦା ନ ନେଇ ଏହି ଦେଶେଣ୍ଟ ମଝିଜାରେ
କେହି କେଉଁ କାମ କଲଣି ନା ? ଏଡ଼େ ଏଡ଼େ
ଜମିଦାରମାନେ ତ ରହିଚନ୍ତି ଛତ ଠେକା—
କେହି କ'ଣ ତାଙ୍କ ପାଖ ମାଡ଼ନ୍ତି ନା, ଭୁଲିରେ
ବି ? କିନ୍ତୁ ବଖତ ପଡ଼ିଲେ, ସେହି ଜମିଦାରମାନେ
ଅସି ଏହି ତର୍କ ପଞ୍ଚାନନର ଗୋଦାଡ଼ ଗୋଡ଼କୁ
ନ କୁଣ୍ଢାଇବା ଯାଏ ବାଟ ଦିଶେନାହିଁ—

ଦାସିଆ—ତେବେ-ତେବେ-ଏତକ ଦୟା ମୋତେ
କର, ଧର୍ମାବତାର—

"ଏ ଫଳ ଗୋଟି ମୋତେ ଦିଅ ।
ବାଣ କଉଡ଼ି କାଟି ନିଅ ॥"

ତର୍କ—ଆରେ କହୁଚତ, ଗଛର ପହିଲି ଫଳଟି ସେହି
—ପିନ୍ଧିଏ କ'ଣ ମନାସିଛନ୍ତି—ହଉ ଦାସ, ତୁ
ଯେତେବେଳେ ଏଡ଼େ ବିପଦରେ ପଡ଼ି, ମାଗୁଚୁ
—ଭଣ କରାଯାଏ—ହଉ—

'ଏ ଫଳଗୋଟି ଯେବେ ନେବୁ ।
କହ କଉଡ଼ି କେତେ ଦେବୁ ?'

ଦାସିଆ—( ହର୍ଷଭରେ )
'ଅହେ ଗୋସାଇଁ ତୁମ୍ଭ ମନ ।
ଯେତେକ ଅଛୁ ତେତେ ଘେନ ।'

ତର୍କ—ଯାଃ—'ତୋଠୁ ଆଉ କ'ଣ ନେବି ? ସକାଳ
ହେଲେ, ମୁହଁ ଚୁହାଁ ଚୁହିଁ—ଆହୁରି ତୁ ବି
ଠାକୁର କାମକୁ ମାଗୁଚୁ—

'ଅରେ ଭକତ ତୁହି ଶୁଣ ।
ଏ ବସ୍ତ୍ର ଖଣ୍ଡି ଯେତେ ବାଣ ॥
ତେତେକ ଯେବେ ଛାଡ଼ିଦେବୁ ।
ତେବେ ଏ ଫଳଗୋଟି ନେବୁ ॥'

ଦାସିଆ—( ବସ୍ତ୍ରଖଣ୍ଡ ଦେଇ )
'ନିଅ ହେ ଦୟାଳୁ ଗୋସାଇଁ ।
ଏ ଫଳଗୋଟି ମୋତେ ଦେଇ ॥'
( ଉଭୟେ ପ୍ରସ୍ଥାନ କଲେ )

( ଆବେଗ ଭରେ ଭକତବତ୍ସଳ ଶ୍ରୀହରି ବିପରୀତ
ଦିଗରୁ ଧାଇଁ ଆସି )

ଶ୍ରୀହରି— ଗୀତ

କି କଲୁ, କି କଲୁ, ବାପଧନ ।
ଘରେ ନାହିଁ ତୋର ତେଲ ଲୁଣ ॥
କହ, କହ, ଫେଇ ବାରେ—
ପାଇ ମୋତି କି ରସାରେ—
ବାଇ ହେଲୁ ଏ ସଂସାରେ;—
ତନର ବଳଦ ମୁହିଁ ସିନା,
ଚୁହିଁଥାଏ ଭକ୍ତ ତୋ ବଦନ ॥

ମା ଟେ—( ଟେହ୍ଳିକୁ ଦେଖି ପଳାଇଗଲେ )

ଟେହ୍ଳି—ଏଇଠି ଯେମିତକା ଦେଖିଲି ବୋଲି,
ମନେ ହଉଚି ! କାହିଁ, ଆଉତ ଦେଖା ଦେଉ
ନାହାନ୍ତି ?—ଯେତେବେଳେ ଖୋଜି ଲୋଡ଼ୁ ନ
ଥିଲିଟି, ଫଟାପଟ ହୋଇ ମୋସଙ୍ଗେ ଲାଗୁଥିଲେ
ପରା—ଏବେ, ଏତେ ଯେ, ଧନ୍ଦ ମରୁଚି, କାମ
ପାଇଁଟିରେ ଜଳାଞ୍ଜଳି ଦେଇ, ଉପାସି,
ତରାସିରେ, ଦିନ ନାହିଁ, ରାତି ନାହିଁ, ଦର୍ଶନ
ଟିକିଏ ବି ମିଳୁଚି ନା ? ଭୋଜବାଜି ପରି
ସେହି ଦିନ କେଉଁଠି ଉଭେଇଗଲେ, ନା
ଜଣେ ? ହେ ହରି—ବୁଝିବକି ସତେ

ଗେହ୍ଲିର ଗୁହାରି ? ଦେଖା ଦେବ ବାରେ ସେହ୍ନପରି ?—

ଗୀତ

ଆସ ଆସ ହରି   ଘେନ ମୋ ଗୁହାରି
ଦେଖା ଦିଅ ସେହ୍ନ ପରି ।
କେତେ ନବରଙ୍ଗେ   ଖେଳୁଥିଲ ସଙ୍ଗେ
'ମ,' 'ମା' ଡାକି ଦୁଃଖହାରୀ ।
ଆହା ! ସେଦିନ ମୋ' କୋଳେ   ବସିଲ କି ଗେହ୍ଲେ
ଭୁଞ୍ଜି ମୋ କରେ, ମୁରାରି;
କି ଅମୃତ ଧାରୀ   ବୁହାଇଲ ଧରି
ବତ୍ସେ ସିନା ଏବେ ଘାରି ।

( ପରଦା ଠେଲେଇ ମଣ୍ଡପରେ, ଗଉଡ଼ ପିଲାଟିଏ ପ୍ରବେଶ କଲା । )

ଗଉଡ଼ପିଲା—ଦାଣ୍ଡ ମଝିଁଟାରେ ଠିଆ ! କେମିତିକା ଭୁଆସୁଣୀଟା ମ ?

ଗେହ୍ଲି—ନାହିଁ ରେ, ବାପ—

ଗଃ ପିଲା—ଆଖିଟାରେ ମୁଁ ଦେଖୁଚି କହୁଚ କିନା— "ନାହିଁ ରେ, ବାପ" ।

ଗେହ୍ଲି—( ସ୍ଥିର ଦୃଷ୍ଟିରେ ଚାହିଁ ରହିଥାଏ )

ଗଃ ପିଲା—ଆଉ ତମ ଗାଁରେ ଠିଆହବାକୁ, ଚୁଲବୀ କହନ୍ତି କି ?

ଗେହ୍ଲି—ହଇରେ ପୁଅ, ତୋତେ କେମିତିକା ଚାହାଁ, ଚାହାଁ—

ଗଃ ପିଲା—(ଠାରି) ଟିକିଣିକି ଅଗେ ଅନା—

ଗେହ୍ଲି—( ଅନାଇ ବିପରୀତ ଦିଗକୁ ) ଆରେ, ମିଣିପଡି ! ହାଟ ବାଟ ସାରି ଆସୁଚି—ଗାଧୋଇ ପାଧୋଇ ଏକାବେଳକେ ! ପିଠାପଣାର ଯୋଗାଡ଼ ତ କିଛି କରି ନାହିଁ ଏ' ଯାଏ ! ବରି ବାଟୁ ବାଟୁ, ଦରବଟା କରି, ଗୁଡ଼ୁଚୁଡ଼ି ଦେଇ, ଏମିତିକାଟା ଧାଇଁ ଆସିଲି ସିନା ? ଛି, ଛି, ମିଣିପଟା ଏ'ଭଳି, ଏଠି ଦେଖିଲେ, କ'ଣ ମନେ କରିବଟି ?—ଅଚ୍ଛା ଲଣ୍ଡଭଣ୍ଡରେ ପକାଇଲ, ହରି !—କ'ଣ କରୁଚ ? କେଉଁବାଟେ ଲୁଚି ଛପି ପଳାଉଚ ?—   ( ପଳାଇଗଲା )

ଗଃ ପିଲା—ହାଃ-ହାଃ- ! ଏଣେ ବି ମଜା ଦେଖ—
( ଲୁଚିଗଲା ଅନ୍ତରାଳେ )

ଦାସିଆ—ଗେହ୍ଲି ତ ! ମୁଁ କଲି କ'ଣ ? ବାଣ କଉଡ଼ିରେ, ଗୁଡ଼ ନଡ଼ିଆ ଯେ କିଣିବାକୁ କହିଥିଲା ହାଟରୁ ! ଘରେ ତ ଆଉ ତିଆରି ଲୁଗା ନାହିଁ, କି କଉଡ଼ି ବି ନାହିଁ ? ଆମେ ଉପାସ ରହିଲେ କିଛି କଥା ନ ଥିଲା—ଗୋସାଇଁଙ୍କି ଯେ ନିମନ୍ତା କରି ସାରିଚି ! କରୁଚି କଣ ? ଉତ୍ତୁରି ଦେଖି ମୋର, ଖୋଜି ଆସିଥିଲା ନିଶ୍ଚେ ଗେହ୍ଲି ! ହରି ମୋର ନିଶ୍ଚେ ଉପାୟ କରିଦେବେ—ଯାଏ ବେଗେ ଘରକୁ ବାହାରି ନା—ନା—ଘରକୁ ତ ଯାଇ ପାରିବି ନାହିଁ,—ଯାଲୁ ଘେନି, ଏମିତିକାଟା—ନାହିଁ, ନାହିଁ, ଏ' ଶ୍ରୀଫଳ' ଅନ୍ଧୁଣିଆରେ ଯେବେ ଲୋଭକଲା ସେ—?

"ଅଭାବରେ ସ୍ୱଭାବ ନଷ୍ଟ ।
ଜାଣି ମନ କରି ତୁ ଇଷ୍ଟ ॥"

କରୁଚି କ'ଣ ? କା ହାତରେ ହରିଙ୍କ ପାଖକୁ ଅଗେ ପଠାଇ ଦଉଚି ?—

( ଠିକ୍ ସେତିକିବେଳେ ଭର୍କପଞ୍ଚାନନେ ସେହି ଗଉଡ଼ ପିଲାଟାକୁ ଗୋଡ଼ାଇ, ଧାଇଁ ଆସିଲେ ମାରିବାକୁ )

ଗଃ ପିଲା—( ଦାସିଆର ଶରଣ ପଶି ) ରକ୍ଷାକର, ରକ୍ଷାକର ସା'ନ୍ତେ—ଅଇଚ୍ଛିକା ମାରି ପକାଇବେ —ହାଡ଼ଗୋଡ଼ ମୋର—

ଭର୍କ—ଚୂନା କରିଦେବି, ନା ଧୂଳି ସାଙ୍ଗେ ମିଶାଇ ଦେବି ! ଟୋକା ! ହୁକୁମକୁ ମୋର ଖାତିର ନାହିଁ—ଆରେ, କେଇଘଡ଼ି ଦିନ ହେଲାଣି ରେ— କହିଥିଲି, ନା—ବେଗେ ଗାଈ ସବୁ ଗୋଠକୁ ଅଡ଼େଇ ଦେଇ, ପରଦା ଠେଲେଇ ନେଇ ବାହାରି ପଡ଼ିବାକୁ ? ବାଲି ସବୁ,—ଗୁଁଜି ଗୁଁଜି ହୋଇଯିବଣି—ଦେଖ ହେ, ଦି କୋଶ ବାଟ— ଖାଲି ଘୁଙ୍ଗା ବାଲି—

ଦାସିଆ—କେଉଁଠିକି ଯିବେ କି, ଗୋସେଇଁ ?—

ତର୍କ—ଆହେ ପୁରସ୍ତମଲୁ ହେ ! ସଖାଙ୍କୁ ଯିବାର
 କଥା—ଏହି ତୁମମାନଙ୍କ କାମରେ, ଗାଁ କାମରେ
 ଅଟକି ରହି ଗଲି ବୋଲି ସିନା—
ଗଃପିଲ—( ଦାସିଆକୁ ମଧ୍ୟସ୍ଥ କରି ) ଦେଖିଲ ସା'ନ୍ତେ
 ଅପଣାର ଗଫ୍ଲତି ପରମୁଣ୍ଡରେ ଚପେଇ ଦେଇ,
 ସେହି ପର ପିଠିରେ ଅଠା ବୋଳୁଚନ୍ତି
 କେମିତକା ?
ତର୍କ—( ରାଗରେ ଗର୍ ଗର୍ ହୋଇ ଜବାବ କିଛି ନ
 ପାଇବାରୁ ) ହଁ— ( ପୁଣି ମାରିବାକୁ ଧାଇଁଲେ)
ଦାସିଆ—ଥାଉ, ଗୋସେଇଁ—ପିଲଲୋକ—
ତର୍କ—'ପିଲଲୋକ' ! ଚୁଲ ତୁ ଏଇଠୁ, ଏହିଭଳି,
 ବାଟେ ବାଟେ । ନୂଆ ଲୁଗା ଦେବି ଯେ ?—
 ପିନ୍ଧିବୁ ଯେ—
ଗଃପିଲ—( ଭାରି ଖୁସିରେ) ଏଇ ଲୁଗାତ ମୁଁ ମାଗୁଥିଲି,
 ସା'ନ୍ତେ—ଦାସିଆ-ବାଉରୀ-ବୁଣା-ଲୁଗା !—
ତର୍କ—'ଲୁଗା' ?—ନା, ଲୁଗାଧୂଆ ପାଣି ? ପାଣିରେ
 ପକାଇ ଦେବି ପଛକେ—ତୋତେ ଛୁଆଁଇ
 ଦେବି ନା ? ମୋତେ ଯେଉଁ କଲବଲ କରି
 ମାଇଲୁଣି ତୁ ।
ଗଃପିଲ—ସା'ନ୍ତେ—ମୁଁ ଦାନ୍ତରେ ତୃଣ ଧରୁଚି—
 ମୋତେ ଦଶବାଡ଼ି ମାରି ପଛକେ—ସେହି ଲୁଗା
 ଖଣ୍ଡିକ ଦିଅ କେଉଁକାଳୁ ପିନ୍ଧିବାକୁ ମନ ?
 ବର୍ଷକଯାକ କିଛି ମାଗିବି ନାହିଁ—ଆଉ ଲୁଗାପଟା
 ବି ନୁହେଁ କି, ଦରମା ପତର—
ତର୍କ—ବି ନୁହେଁ ? ଶୁଣିଲେ—ଶୁଣିଲେ ତ—
 ଭଦ୍ରଲୋକ ଅପଣେ—ଆପଣଙ୍କ ସାକ୍ଷାତରେ—
 ସିଏଁ ସେ କହୁଚି ମୁଁ କିଛି ଜୋର ଜବରଦସ୍ତି
 କରି ନାହିଁ । ଏହି ଲୁଗା ଖଣ୍ଡିକ ପାଇଲେ,
 ବିନା ଦରମାରେ, ବିନା ଓଜର ଆପତ୍ତିରେ,
 ବର୍ଷକଯାକ ମୋ' ପାଖେ ଖଟିବ ! ନେ,
 ନେ, ଜଲ୍‌ଦି ପିନ୍ଧପକା—
ଗଃପିଲ—( ଝୋଙ୍କେଇ ଥୋଇଦେଇ, ଭାରି ଭକ୍ତିରେ
 ଗ୍ରହଣ କରି, ବୁକୁରେ ଜାପୁଡ଼ି ଧରି ପଳାଇଲା )
ଦାସିଆ—( ଆଖିରୁ କେବଳ ଝରଝର ହୋଇ ଲୁହ
 ଗଡ଼ି ଯାଉଥାଏ ) ମୋ'ର ବୁଣାବସନ ବୋଲି,
 ଏତେ ଲୋଭ ସିନା ଏ' ପିଲଟିର ! କିଏ ଏ'
 ପିଲଟି, ଗୋସେଇଁ ?—
ତର୍କ—( ନିଜମନେ ) ଲୋଭେଇଲଣି ନା କ'ଣ ?—
 ( ପ୍ରକାଶ୍ୟେ) ଛତରଖିଆଟାଏ—କେଉଁଠୁ ଆସି
 ଜୁଟି ଯାଇଚି—ଦୁଇ ଗୁରୁଦିନ ହେଲା ! ଉଡ଼ା
 ଚଢ଼େଇଟାଏ ତ—କେଉଁଦିନ ଥିବ ଥିବ, ଫଡ଼୍‌କରି
 ଉଡ଼ିଯିବ । ଗାଈଫାଇ ଜଗୁଚି,—ଜଗୁ ଥାଉ—
 କିନ୍ତୁ, ତା'ର ଅଶେଷ ଗୁଣ, ଭାଇ, ମଟରୁ ବୋଲି
 ତ ଏକଶେଷ—ପେଟୁ ଯେ, ହାଣ୍ଡି ହାଣ୍ଡି ପଖାଳ
 ବି ଥିଥୁ ପଡ଼ୁ ନାହିଁ, ଦରମା ସିନା ନେବନାହିଁ,
 କହିଲ—କିନ୍ତୁ, ଠିକ୍ ଦଶଗୁଣ ତା'ର ତା'
 ପିଛା ଖର୍ଚ୍ଚ ନ ହେଉଚନା, ଭାଇ—?
 ( ବାଳକଟି ନୂଆଲୁଗା ପିନ୍ଧି ଆସି ଠିଆ ହେଲା,
 ବୋଝଟି ମୁଣ୍ଡାଇ )
ଦାସିଆ—ଆହା ! ଏ' ପିଲଟି ପିଛା ମୋର ସାରା
 ଜୀବନଟା ଯଦି ଖର୍ଚ୍ଚ ହୁଅନ୍ତା ?
ଗଃପିଲ—ଅଉ ମଠ ମଠ କାହିଁକି ସା'ନ୍ତେ ?
 ( ଦାସଅଡ଼େ ) ଯିବ ଯଦି ବେଗେ ଆସ ହେ
 ବାହାର !—
ଦାସିଆ—ଚୁଲ, ଚୁଲ, ବାପ—ତୁ ଯେଣେ ଟାଣିବୁ—
ତର୍କ—( ନିଜମନେ ) ସାଇଲା—ସାଇଲା ( ପ୍ରକାଶ୍ୟେ )
 ଆହେ ! ଘରେ ଖବର ଦେଲଣି ? ଏମିତକା
 ଠୁଙ୍ଗା ଠୁଙ୍ଗା ବାହାରି ପଡ଼ିଲ ଯେ— !
ଦାସିଆ—ତେବେ, ଟିକିଏ ଅଟକିବେ କି ?
 ମୁଁ ଏଇଲାଗେ—
ତର୍କ—ହଁ, ଦାସ, ଏହି ଅଧ୍ଲଣିଆ 'ଶ୍ରୀଫଳ' ଲଟିତ
 ତୋର ଯିବାର କଥା ? ଅଛୁରି, ତୁ ତ ନିଜ
 ହାତରେ କିଛି ମଣୋହି କରାଇବୁ ନାହିଁ ? ଏହି
 ଭୋଗ ଝୋଙ୍କେଇରେ ଥୋଇଦେଲେ କ'ଣ
 ଚଳନ୍ତା ନାହିଁ ?
ଦାସିଆ—ଏତକ ଦୟାକଲେ ପରା ମୁଁ ଭାରି କୃତାର୍ଥ
 ହୁଅନ୍ତି—ଶୁଣନ୍ତୁ, ଗୋସେଇଁ—
 "ଏ ତୁମ୍ଭ ଦ୍ରବ୍ୟମାନ ଯେତେ ।
 ନେଇଣ ପ୍ରଭୁଙ୍କ ଅଗ୍ରତେ ॥

ମଣୋହି କରିଲ ସାରବ ।
ମୋ କଥା ମନେ ପକାଇବ ॥
ଏ ମୋ ଶ୍ରୀଫଳ ଗୋଟି ଧର ।
ଗରୁଡ଼ ପଛେ ରହିକର ॥”

... ... ... ...

( କହୁଁ କହୁଁ ତର୍କପଞ୍ଚାନନଙ୍କ ହାତରେ ଦେଲେ )

ତର୍କ—ମୋ ବଡ଼ ଲୋ !—କି ଭାର ଲୋ !—

ଗଃପିଲ—ଆହା ତୁମେ କ'ଣ ତାକୁ ଟେକି ପାରବ, ନା ନେଇ ପାରବ, ଗୋସେଇଁ ? ସେ କି କମ୍ ବୋଝ ? ଏହି ଟୋକେଇରେ ମୋର ଥୋଇଦିଅ ଯେ—

ଦାସିଆ—ନା, ନା, ତା' ହବନାହିଁ—ତା' ହବ ନାହିଁ—ତୋର କଅଁଳିଆ ବେକଷଣ୍ଢ ଯେ, ଉଟ୍‌କର ଦ'ଖଣ୍ଡ ହୋଇଯିବ, ବାପ !

ଗଃପିଲ—କ'ଣ କହୁଚ ହେ ବ୍ରହ୍ମାଣ୍ଡଟାଯାକର ଗୋବର ମୁଁ ଏକା ମୁଣ୍ଡାଉଚଟି ? ଏ'ତ ଫଳଟାଏ ?

ତର୍କ—ଆଶ୍ଚର୍ଯ୍ୟ କିଛି ନୁହେଁ, ଦାସ—ମୂଳଆ ମୁଣ୍ଡ କ'ଣ ସହି ନ ପାରେଟି ? (ଥୋଇଦେଲେ) ଚାଲ, ଚାଲ—

( ଚାଲିଗଲେ )

ଦାସିଆ—( କିଛିକ୍ଷଣ ନିର୍ବାକଶାନ୍ତିର, ଦୌଡ଼ିଗଲେ ) ହଁ, ହଁ, ଆଉ କଥାଏ ଶୁଣିଯାଅ, ଗୋସେଇଁ—

“ବୋଲିବ ବାଳଗ୍ରାମ ଦାସ ।
ଦେଇଛି ନାଅ ପୀତବାସ ॥
ସେ ଯେବେ ଶ୍ରୀହସ୍ତ ବଢ଼ାଇ ।
ତୁମ୍ଭର ହସ୍ତରୁ ଛଡ଼ାଇ ॥
ଯେନାଲେ ଦେବତାଙ୍କୁ ଦେବ ।

... ... ... ...

( ନେପଥ୍ୟେ ତର୍କପଞ୍ଚାନନ ହସି ହସି ) ନୋହିଲେ ?

ଦାସିଆ—( ଦମ୍ଭରେ )... ।
ନୋହିଲେ ଆଣି ମୋତେ ଦେବ ॥

ନେପଥ୍ୟେ—ତର୍କପଞ୍ଚାନନ—ହାଃ—ହାଃ—ଶୁଣୁଚୁ ନାରେ ଟୋକା ?—

(ନେପଥ୍ୟେ—ଗଉଡପିଲା)—ବାବାଜୀଙ୍କର ମୁଣ୍ଡ ଖରାପ, ଗୋସେଇଁ !

ଦାସିଆ—ହରି ! ହରି ! (ଭାବ ବିହ୍ୱଳ ହୋଇ ବିପରୀତ ଦିଗେ ପ୍ରସ୍ଥାନ କଲେ )

( ଶ୍ରୀକୃଷ୍ଣ ହସି ହସି ବେଗେ ପ୍ରବେଶ କଲେ )

ଶ୍ରୀକୃଷ୍ଣ—ହାଃ-ହାଃ ଗୀତ

କେ ବୁଝିବ ମୋର ଭକ୍ତଭାଗ ?
ଭକ୍ତଭାବେ ଯେହୁ ନମକ୍ତିବ ?
କି ସରଳ ଭକ୍ତି ଚରିତ୍ର ନୈବେଦ୍ୟ କଲା ସେ ମୋତେ
ଏହି ଦୃଢ଼ ବିଶ୍ୱାସର ବଳେ—
ବାନ୍ଧପାରେ ସିନା ମର୍ତ୍ତ୍ୟ ଜୀବ ।

—ଯବନିକା—

---

# ଚତୁର୍ଥ ଅଙ୍କ

**ଦୃଶ୍ୟଃ**—ଶ୍ରୀଜୀଉ ମନ୍ଦିର ସମ୍ମୁଖ ।

[ଆଜି ଏକାଦଶୀ ବୋଲି, ଯାତ୍ରୀଙ୍କ ଭିଡ଼ା ଭିଡ଼ି ଚକଡ଼ାଟେଇଁ । ଠାଏ ଠାଏ ଭକ୍ତମାନେ ଖଞ୍ଜଣି ବଜାଇ ଗାଉଥିଲେ—“ଚକାମନ, ଚାଲଯିବା, ଚକାନୟନ ଦେଖିବା ”ଇତ୍ୟାଦି—କିନ୍ତୁ ତାହା ନେପଥ୍ୟେ—କିଛି ଉଚ୍ଚରେ, ଦାସିଆ ଗାଧୋଇ ଭାରି ଶତା ଚୈତନ୍ୟ କରି, ହାତରେ ପାଚିଲା ଆମ୍ବ ଯେନି ପ୍ରବେଶ କଲା-ତାକୁ ଯେରି କେତେକ ସେବକ ଆପଣା ଆପଣା ଭିତରେ ଭାରି ଫିଙ୍କା ଫିଙ୍କି ଲଗାଇଥାନ୍ତି । ]

୧ମ ସେବକ—ଅରେ, ବେହିଆ, ତୁ'ଟା କାଲିକା ମେଙ୍କଡ଼ଛୁଆ ତୋତେ ସେବା ପୂଜା କି ମାଲୁମ ରେ ?

୨ୟ ସେବକ—ଅରେ, ବେହିଆ, ଅମେତ ଓଳିଅଛୁ ଗଜା ! ଜାଣୁ—କା' ପୁଅ—ବା' ନାତି ମୁଁ ?

୧ମ ସେବକ—ହଁ ହେ, ବଡ଼ସିଂହାର ବେଳେ, ସେ ଫୁଟାଣି ବାହାରିବ—ଧୂପରେ ଭମର କି ଅଧିକାର ହେ !

୨ୟ ସେବକ—ଜାଣୁଚରେ, ବେହୁପ—ହାଲ୍ ବନ୍ଦୋବସ୍ତରେ ଠାକୁର ରଜାଙ୍କଠୁଁ, କି ସନନ୍ଦ ମିଳିଚି ଆମକୁ ?

୧ମ ସେବକ—ଆରେ ବେହୁପ, ଗାଲୁଆର ବାରବାଟି ଗୁଷ ! ତୁ କେବେ ତା' କଥା ଶୁଣି ନା, ଭୋଇପୁଅ, ମୋ'ର ପଇଡ଼ା ଦେଖିଲୁ ?

୨ୟ ସେବକ—ଆରେ, ଦେଖି ଦେଖି କେମିତିକିଆ ଇଠା ଫଳରେ ଘଷି ଘଷି, ତାର ମାର୍ଗେ କରି ଦେଇଚି—ଝାଣି ଦେଲେ, ଗୋପିଚନ୍ଦ ଭଳି ଝଂ ଝଂ ଖାଲ୍—

୧ମ ସେବକ—ଆଚ୍ଛା, ମଣୋହି ଲାଗିବେଳେ, କି ମନ୍ତ ପଢ଼ାଯାଏ, କହିଲୁ, ଚିଲ୍ଲି—

୨ୟ ସେବକ—ବାଃ, ଭଲ କଥାଟାଏ ପଚାରିଲୁ ତୁ—ଦେଖ ହେ, ମୁଁ କହିଦଏଁ, ଆଉ ଏ ଶିଖିନେଉ—କାହେ, ଆମକୁ ଗଞ୍ଜେଇ କଲ୍ କରି ପାଇଲ କି ହେ ?

ଦାସିଆ—(ହସି ହସି)

"କହଁ କଳାକର ଗୋସାଇଁ ।
ମୁଁ ତ କାହାକୁ ଦେବି ନାହିଁ" ॥

୨ୟ ସେବକ—"କାହାକୁ ଦେବି ନାହିଁ" !—

୧ମ ସେବକ—"ଯେବେ ତୁ ଆମ୍ଭଙ୍କୁ ନ ଦେବୁ ।
କହ ତୁ ଏହା କି କରିବୁ ?"

ଦାସିଆ—"ଏ' ପ୍ରଭୁଙ୍କ ଅନ୍ତୁଣିଆ ଧନ ।
ଏହା ତୁଲିଁଲେ କେ ଭାଜନ ?"

୧ମ ସେବକ—"ତୁ ନେଇ କି କରି ପାରିବୁ ।
ଆମ୍ଭଙ୍କୁ ସିନା ଯାଚିଦେବୁ ॥"

୨ୟ ସେବକ—ହଁ, ହଁ, ମୋତେ—ମୋତେ—
(କାଢ଼ି ନେବାକୁ ଧାଇଁଲା)

ଦାସିଆ—ହାଁ, ହାଁ— (ଦୂରକୁ ହଟିଗଲା)
(କରଯୋଡ଼ି ନୀଳଚକ୍ର ଆଡ଼େ ଚାହିଁ)

"ବିଜୟ କର ହେ ଗୋସାଇଁ ।
ନୀଳଚକେ ଦେଖ ହେ ଚାହିଁ !
ଆସିଚି ମୁଁ ବାଲି ଗାଁ ଦାସ
ତୁମ୍ଭର ପାଦ କରି ଆଶ ।

(ରଡ଼ି ଖୁବ୍ ଜୋରରେ ଜଳିବାକୁ ଲାଗିଲା । ଜ୍ୟୋତିରେ କେହି ଚାହିଁ ପାରିଲେ ନାହିଁ ସେଆଡ଼େ)

ଦାସିଆ—(ଚାହିଁ ରହି)

"ମୋ ସ୍ଥିର ପାଇଁ ଏତେ ସତ୍ୟ ।
ରତ୍ନ ଆସନ କଲେ ତ୍ୟକ୍ତ ॥"

(ଅନେକ ପ୍ରଣାମ କରିବାକୁ ଲାଗିଲା)

ଉଭୟେ—କିରେ, ବେହୁପ—ଆମକୁ ଓଲିକରି ପାଇଲୁ ନା କ'ଣ ?—ଜାଣୁ, ଆମେ କେଳାଙ୍କ ବାପ ?—

ଦାସ—(ପାଟରୁ ଆମ୍ବ ଧରି)

"ଗୁହାରି ଶୁଣ ଭଗବାନ ।
ଏ' ଯେବେ ତୁମ୍ଭ ନିଜ ଧନ ॥
ତୁମ୍ଭ ଇଚ୍ଛାରେ ଭୋଗକର ।
କୋପ କିପାଇଁ ଏହାଙ୍କର ॥
(ଏମନ୍ତ ଯାରୁ କରେ ଧରି ।
ସେ ଆମ୍ବ ଶୂନ୍ୟେ ଗଲା ଚାଲି) ॥"

ଦାସ—(ଅତି ବିନୟରେ ଏହି ଭଳି ଯୋଡ଼ି ହୋଇ କରି ଆମ୍ବ ଦେଉଥାଏ, ଓ ତାହା ଅନ୍ତର୍ହିତ ହୋଇ ଯାଉଥାଏ—ଶେଷକୁ ଭୂମିଷ୍ଠ ହୋଇ ପ୍ରଣାମ କଲା)

ଗୀତ

ସଫଳ ଜନମ ମୋ'ର—
ସାର୍ଥକ ଜୀବନ ମୋ'ର—
ଏ'ମରନୟନେ ହେରି,
ବ୍ରହ୍ମାଣ୍ଡ ଠାକୁର ମୋ'ର ॥
ଜନମେ ଜନମେ ପ୍ରଭୁ—
ଦିଅ ମୋତେ ଏହି ବର—
ମଣୋହି ମୁଁ ନିଜକରେ
କରିବି ଜୀବନ ଭୋର ॥

୨ୟ ସେବକ—ସତେରେ, ଚୋକେଇ ଖାଲି, ଭାଇନା !

୧ମ ସେବକ—"କହ ହେ ଆମ୍ବ କେଣେ ଗଲା ।
କେ ଏଥେଁ ମାୟା କରି ନେଲା ॥

ଦାସିଆ—( ସସ୍ମିତରେ )
"ଦେଉଳେ ତୁମ୍ଭେ ଦେଖ ଯାଇ ।
ଭକ୍ତିଲେ ବ୍ରହ୍ମାଣ୍ଡ ଗୋସାଇଁ ॥

ଉଭୟେ—ବାହାପିଆ—ବଗୁଲିଆ—
( ଉଭୟେ ଶଶବ୍ୟସ୍ତେ ଭିତରକୁ ଧାଇଁଗଲେ )

ତର୍କ—(ପ୍ରବେଶ କରି) ଏହି ଯେ ଗୁରୁଦେବ ମୋ'ର !-
( ଗୋଡ଼ତଳେ ପଡ଼ିଗଲେ )

ଦାସିଆ—( ସେହିପରି ଗୋଡ଼ଧୂଳି ନେଇ ) ଛି, ଗୋସେଇଁ—ଆପଣ ପଣ୍ଡିତ ହୋଇ, ଏ' ଗଣ୍ଡଟାକୁ ଗୁରୁଦେବ ବୋଲି,—

ତର୍କ—ନା, ନା, ଦାସ—ତୁହି ପ୍ରକୃତରେ ମୋର ଗୁରୁଦେବ ! ମୋର ପାଣ୍ଡିତ୍ୟ ଅଭିମାନ ଦୂର ହୋଇ ଯାଇଛି । ଖାଲି ଗୁଡ଼ାଏ ପାଠ ପଢ଼ିଲେ, କି ତରକ୍ ଛାରକଟରେ ମିଛକୁ ସତ, ସତକୁ ମିଛ, କରି ଜାଣିଲେ, ପଣ୍ଡିତ ବୋଲାଏ ନାହିଁ । କୌଣସି ତଥ୍ୟର ପ୍ରକୃତ ସନ୍ଧାନ, ତର୍କର ବାହାରେ !—ତାହା ଲାଭ କରିବାକୁ ହେଲେ, ଯେଉଁ ସାଧନା, ଶ୍ରଦ୍ଧା ଓ ବିଶ୍ୱାସର ପ୍ରୟୋଜନ, ତାହା ଏହି ସାମାନ୍ୟ ଖଦାଲଠାରେ ଆଜ ପ୍ରତୀୟମାନ !

ଦାସିଆ—ଭାଇ ! ନିଜର ଗୁଣକୁ ଅପରଠାରେ ପ୍ରତିଫଳିତ କରି, ତାକୁ ଏମିତିକା ଠେକା ଠେକି କରିବାର ପ୍ରୟୋଜନ ? ଆପଣ ସେହି ଭଲ ଜ୍ଞାନୀ, ଭକ୍ତ, ସାଧକ ବୋଲି ପିନା ସ୍ୱୟଂ ଶ୍ରୀହରି ଆଜ ଆପଣଙ୍କର ଗାଣ ଜଗୁଆଳ ହୋଇ ରହିଥିଲେ ?

ତର୍କ—କିନ୍ତୁ, ଭାଇ—ମୋତେ ନିମିତ୍ତ ମାତ୍ର କରି, ତୁମ ପରି ବିଶ୍ୱାସୀ ଭକ୍ତର, ଅମୂଲ୍ୟ ଭକ୍ତିରସ ଆସ୍ୱାଦନ କରିବା ନିମନ୍ତେ ନୁହେଁ କି ? ହାୟ ! ହାୟ ! ଯଦି ତୁମର ସେହି ବିଶ୍ୱାସର ତିଳାଂଶ ସେତେବେଳେ ମୋର ଉପୁଜି ଥାନ୍ତା—ଗରୁଡ଼ ସ୍ତମ୍ଭପଛେ ଠିଆ ହୋଇ, ଆଖିବୁଜି, ଦେଇ ଦେଲେ, ଶ୍ରୀ ଫଳଟି ନେଇ ସାଥି ସାଥି ପରା, ଖପ୍‌କିନା ହାତଟା ମୁଠାଇ ପକାଇଥାନ୍ତି ! ଓଃ, ପରେ,—'ଗୋପାଳିଆ ଗୋପାଳିଆ' ବୋଲି ଡାକି ଡାକି, ଯେତେ ଖୋଜା ଲଗାଇଲି—ସେହି ରତ୍ନବେଦୀ ପାଖକୁ ଧାଁ ଧପଡ଼ କରିଛି,—ସବୁ ଅକାରଣ ପିନା !—ହାତର ଗୁଡ଼ ଯେ ନେଉଁକି ଗଡ଼ି ଗଲାଣି ! ଆହା ! କିଛି ଜାଣନ୍ତି ନାହିଁ ପରା !—ସେହି 'ଦାରୁବ୍ରହ୍ମ' ସତେକି ଦେବଦାରୁ ! ଟିକିଏ ହାଲ୍ ନାହିଁ କି ଚଲ୍ ନାହିଁ ?—

ଦାସିଆ ଆହା ! ଆହୁରି ଶୁଣାଅ ଶୁଣାଅ, ଗୋସେଇଁ-ତୁମରି ମୁହଁରେ ମୋର ଗୋପାଳର ଲୀଳା !—ଆହା !—କି ମଧୁର !—କି ମଧୁର !—

( ଏହି ସମୟରେ ସେବକମାନେ ଆମ୍ବଟାକୁଆ ଘେନି ପ୍ରବେଶ କଲେ )

ସେବକଗଣ—'ଦେଖ, ପଣ୍ଡିତେ ଅଚମ୍ବିତ ।
କେଅଛି ଏପରି ଭକତ' ॥

(ଲମ୍ବହୋଇ ଦାସିଆର ଗୋଡ଼ତଳେ ପଡ଼ିଗଲେ)

୧ମ ସେ—"ପ୍ରଭୁଙ୍କୁ କିଣିଲୁ ଭାବରେ ।
ତୋ ପରି କେ ଅଛୁ ସଂସାରେ ॥
ନାହିଁ ନୋହିବ ତୋହପରି ।
ଆମ୍ଭେ ତୋ କେଉଁଗୁଣେ ସରି ॥"
[ ଧଣ୍ଡାମାନ ଫିଙ୍ଗାଇବାକୁ ଗଲେ ]

ତର୍କ—ନା, ନା—ମୋତେ ଦିଅ—
"ପ୍ରଭୁଙ୍କ ଧଣ୍ଡାମାନ ଏହି ।
ଦେବାକୁ ଭାଜନ ସେ ମୁହିଁ ॥"
[ ଫିଙ୍ଗାଇଦେଲେ ]

ଦାସିଆ—[ ଭକ୍ତମାନଙ୍କ ଚରଣ ଧୂଳି ଗ୍ରହଣ କଲେ ]
"ଘେନ ହେ ଦଣ୍ଡବତ ମୋର ।
ଅଟଇ ମୁଁ ଛାର ବାଉରୀ ॥"

ସମସ୍ତେ—"ତୋ ଯଶ ରହିଲା ଜଗତେ ।
ପରମ ପଦ ମିଳୁ ତୋତେ ॥"

ଦାସିଆ—[ ଉଠି ସବିନୟେ ]
"ମୋଠାରେ ଏତେ କୃପାକଲ ।
ତେଣୁ ମୋହର ଭାଗ୍ୟଭଲ ॥"

ସମସ୍ତେ—"ଅଟ୍ଟୁ ବାଲ୍ ଗାଁ ଦାସ ବୋଲ୍ ।
କାଣନ୍ତୁ ଭକତ ମଣ୍ଡଳୀ ।"

ଦାସିଆ—[ ବାର ବାର ଓଲଟି ହେଲା ଓ ଭକ୍ତିଭରେ ନୀଳଚକ୍ର ଅଡ଼େ ଚୃହିଁ ]
"ନମୋ ନମୋ ହେ ଚକ୍ରପାଣି ।
ନମୋ ସର୍ବଙ୍କ ଚୂଡ଼ାମଣି ।।"
[ ଅନ୍ୟମାନେ ଦାସିଆର ସମାଧିଭାବ ଦେଖି ପ୍ରଣାମ ପୂର୍ବକ ସ୍ଥାନାନ୍ତରିତ ହେଲେ ]

ଦାସିଆ—"ଏହା ମୁଁ ବାଗୁରଇ ଟତେ ।
ମତ୍ସ୍ୟାଦ ଅବତାର ଯେତେ ।।
ବାରେ କରାଇ ଦରଶନ ।
ପବିତ୍ର କର ହେ ଜୀବନ ।।
[ ମତ୍ସ୍ୟ ଭଳଙ୍କୀ ରୂପ ଯାଏ । ଦର୍ଶନ ଦେଲେ ଦେବବସ୍ୟେ ।]
( "ପ୍ରଳୟ ପୟୋଧି ଜଳେ" ଇତ୍ୟାଦ ସ୍ତବ ନେପଥ୍ୟରୁ ଭାସି ଆସୁଥାଏ )

ଦାସିଆ—( ଅନେକ ଦଣ୍ଡବତ କଲା ।
ଉଠି କାଖରେ କର ଦେଲା ।। )
"ହେ ଦେବ ନମସ୍କରଇ ମୁହିଁ ।।
ତୋ କୃପା ଆହାଲଦ ପାଇ ।।"
( ଗେହ୍ଲି ଉଚ୍ଛ୍ବଳ ହୋଇ ପ୍ରବେଶ କଲା )

ଗେହ୍ଲି—( ବାଗ୍‌ଲେଇ ) 'ତୋ କୃପା ଅହାଲଦ ପାଇ—ନମସ୍କରଇ ମୁହିଁ । ଗେହ୍ଲିକୁ ଅଇଲ୍ଲ କାପାଁ ଘର କୋଣେ ଥୋଇ ? ମୁଁ ଚୃହିଁ ବସିଚ ତେଣେ —ମିଣିପ କେତେବେଳେ ହାଟରୁ ସଉଦା ପତ୍ର ଘେନ ଆସିବ, ମୁଁ ରନ୍ଧା ବଢ଼ା ସାରିବା—ଦ ଦନରେ ଆଜ ଚୁଲ୍ଲିରେ ହାଣ୍ଡି ଚଢ଼ିବ—ନା, ଦେଖ—

ଦାସିଆ—ଗେହ୍ଲି, ତୁ ରାଗ ନା,—ହାଟକୁ ଯାଉଯାଉ, ବାଟରେ ଭଲ ଆମ୍ବ ଦେଖିଲାରୁ ଆଉ ମନ ସମାଳି ହେଲ ନାହିଁ; ତୁ' ତ ଜାଣୁ କେତେଦନ ହେଲା, ନଜ ହାତରେ ମଣୋହି କରାଇବ କରାଇବ ବୋଲି, ଭାରି କଳ୍ପନାଟାଏ ଥିଲା—

ଗେହ୍ଲି—ସେଟା ଏବେ ପୂର୍ଣ୍ଣ ହେଲା ତ ?—

ଦାସିଆ—କ'ଣ କହିବ ଆଉ ତୋତେ, ଗେହ୍ଲି,—ସେ ପରମ ଦୟାଳୁଙ୍କ କଥା—ମୁଁ ଡ଼ାକିଦେଲା ମାତ୍ରେ ପରା—ଏହି ନୀଳଚକ୍ର ଠେଇଁ ଧାଇଁଆସି, ମୋ ହାତରୁ ଛଡ଼ାଇ ନେଇ, ଯୋଡ଼ାକୁ ଯୋଡ଼ା ସାରିବାକୁ ଲାଗିଲେ ।

ଗେହ୍ଲି—ବେଶ୍, ଏବେ ଘରମୁହାଁ ହ'—

ଦାସିଆ—ଆଉ ଯେ ତେଣେ ମୁହାଁଇବାକୁ ମନ ବଳୁନାହିଁ, ଗେହ୍ଲି !—

ଗେହ୍ଲି—ତେବେ କ'ଣ ଲଙ୍ଗୁଳାଦାସ ହେବାକୁ ମନ କି ରେ ?

ଦାସିଆ—ଏତେ ସୌଭାଗ୍ୟ କି ହେବ ସତେ ସତେ ମୋ'ର ?—

ଗେହ୍ଲି—କିଛି ନାହିଁ—ଜଣକର ଅଭାଗ୍ୟ ହେଲେ ତ ହେଲା ? ରହିଥା, ମୁଁ ସମୁଦ୍ରରେ ଡେଇଁ ପଡେଁନା ଏଇକ୍ଷଣି ?—

ଦାସିଆ—ଗେହ୍ଲି ! ଗେହ୍ଲି ! ଏ' କଣ କହୁଚୁ ତୁ ?—ଏତେ ଗଞ୍ଜଣା କାହିଁକି ଭଲା ? ତୋର ଏତେ ଭକ୍ତ ପ୍ରୀତ ଶ୍ରୀହରିଙ୍କ ଠେଇଁ, କ'ଣ କେଉଁଠି ଉଡ଼ିଗଲା ଏକାବେଳକେ ?—

ଗେହ୍ଲି—( କନ୍ଦନ କରୁ କରୁ ) ଉଡ଼ି ଯାଇଥିଲେ ତ, ମୁଁ ବଞ୍ଚି ଯାଇଥାନ୍ତିରେ । ମୋର ହରିକୁ କି, ତୋର ପିସାଦିଆ ହରି, ଏମିତିକା ଫୁସୁଲାଇ ଘେନି ଅସି ପରିଥା'ନ୍ତା ରେ ?—

ଦାସିଆ—ଗେହ୍ଲି ! ତୁ ସେହି ଗେହ୍ଲି ନା,—ଯା' କୋଳେ ଶ୍ରୀହରି ଦନେ ଯାଚି ଗୁଞ୍ଜି ହୋଇ ପଶିଥିଲେ, ଯା'କରେ ଆନନ୍ଦରେ ମଣୋହି ସାରିଥିଲେ ।

ଗେହ୍ଲି—ଦଗାଦାର !—ଦଗାଦାର ସେ ! (ଅଭିମାନର ଭରା ଉଚ୍ଛ୍ବାସରେ ଏହି ଭଳି କହୁଁ କହୁଁ, ହଠାତ୍ ଚୁପି ଦେଲା—ସେଥିରେ, ଯେଉଁ ପ୍ରତିଘାତ ସେ ଅନୁଭବ କଲା, ତାହା ଧିକ୍କାରଭାବେ ଦାସିଆ ପ୍ରତି ପ୍ରକାଶ କଲା, ନମ୍ରଭାବେ )—ହଁ, ଆସୁଚୁ ନା ବାହାର !—ନାହିଁତ, ନାକଫୋଡ଼ିଆ ବଳଦପରି ଘେନି ଯିବି ଟି !—ହଁ—

ଦାସିଆ—( ସେହି ମୂର୍ତ୍ତି ଦେଖି ଅବାକ୍ ହୋଇଗଲା )

ଗେଲ୍ଲି—ଚାଲ ( ତୁକ୍‌ପାଡ ନ କରି ଟାଣି ନେଇ ପଳାଇଲା )

[ ଶ୍ରୀହରି ପ୍ରବେଶ କଲେ ଗାଇ ଗାଇ ]

ଶ୍ରୀହରି—( ଭାରି ବ୍ୟାକୁଳରେ )

ଗୀତ

ନାକଫୋଡ଼ିଆ ବଳଦ ସଙ୍ଗେ—
କରି, ନେଇ, କି ଗୋ ମା ମୋତେ ॥
ଏତେ ମୋର ଖେଳ ଗୃହସ୍ଥି—
ସବୁ ଦେଲୁ କିଗୋ କରୁରି—
ଖଟ ଖୁରାରେ ଛନ୍ଦିବ କିବା
ଡରୁଛି ମୁଁ ଅଣ୍ଡୁଆ ଶରେ ।

—ଯବନିକା—

## ପଞ୍ଚମ ଅଙ୍କ

**ଦୃଶ୍ୟଃ**—ବାଲଗାଁର ଦାସିଆର ସେହି ଘର ।

[ ବେଶ୍ ସଫା ସୁତୁରା—କେହି କହିବ ନାହିଁ, ବାଉରୀ ଘର ବୋଲି—ସାମନା ଅଗଣାରେ ତୁଳସୀ ଚଉରା—ଅଗଣାଟିକୁ ବେଶ୍ ଲିପା ପୋଛା ଚିତାଦିଆ ହୋଇଛି । ଘରର ସରଞ୍ଜାମ ଯା ଯେଉଁଠି ରହିବାର, ଠିକ୍‌ଭାବେ ରଖାହୋଇଛି । ଚଉରା ସାମନାରେ ଥୁଆ ହୋଇ ଧୂପଦାନରୁ ଏ' ଯାଏଁ ଧୂଣା ଧୂଆଁ ବାହାରି, ଅଗଣା ଓ ବାହାରର ବାୟୁ ମଣ୍ଡଳକୁ ସୁବାସିତ ଓ ପବିତ୍ର କରୁଛି । ଦାସିଆ ଓ ତା'ର ପତ୍ନୀ ଗେଲ୍ଲି କେଉଁ ବ୍ରାହ୍ମମୁହୂର୍ତ୍ତରୁ ଆପଣା ଆପଣାର ନିତ୍ୟକର୍ମ ସାରି, କାମରେ ଲାଗି ଯାଇଚନ୍ତି । ଗେଲ୍ଲିର ଅରଟର ବିରାମ ନାହିଁ, କି ଦାସିଆର ତନ୍ତର ବିଶ୍ରାମ ନାହିଁ । ଗୋଟାଏ ପାଖରେ, ନାନାପ୍ରକାର ନୂଆ ନୂଆ ଲୁଗାର ଥାନମାନ ପ୍ରଦର୍ଶିତ ହୋଇଛି । ମୋଟ କଥାରେ,—ସୁନ୍ଦର ପରିବାରଟିଏ, ସ୍ତ୍ରୀ ପୁରୁଷରେ—ଭରା, ସ୍ୱଚ୍ଛ ଜୀବନ ଧାରାର ଅବାଧ ଗତି, କେଉଁ ମହାର୍ଣ୍ଣବକୁ ଲକ୍ଷ୍ୟକରି । ସେମାନେ କାମ କରୁ କରୁ ଜିମ୍ନୋକ୍ତଭାବେ କଥାବାର୍ତ୍ତା କରୁଥାନ୍ତି ଆପଣା ଆପଣା ଭିତରେ । ]

ଦାସିଆ—( ଦୀର୍ଘଶ୍ୱାସ ଛାଡ଼ି ) ଷଡ଼ଙ୍ଗୀଙ୍କ ନାତଟିର ପଇତାଘରର ବ୍ୟବସ୍ଥା କପରି କ'ଣ ଯେ—

ଗେଲ୍ଲି—ମ, ମୁଁ ତର୍କପଞ୍ଚାନନଙ୍କ ସଙ୍ଗେ ପରାମର୍ଶ କରି କେଉଁକାଳୁ କରି ସାରିଛି ନା ?

ଦାସିଆ—ସତେ ? ହାୟ ! ଷଡଙ୍ଗୀ ଏମିତିକା ହଠାତ୍ ଯେ ଚାଲିଯିବେ ( ଦୀର୍ଘଶ୍ୱାସ ଛାଡ଼ି ) ଯା—କହ, ଗେଲ୍ଲି, ଷଡଙ୍ଗୀଙ୍କର ଏଟା ଭଲ କାମ ହେଲା ନାହିଁ—ସାହିର କୌଣସି ବାହ୍ମଣଙ୍କ ଉପରେ ପିଲାଟିର ଭାର ନ ଦେଇ ଆମ ଉପରେ ଯା' ଲଦି ଦେଇଗଲେ ।

ଗେଲ୍ଲି—ତା' ତୋତେ ତ ଭାରି ଲାଗୁନାହିଁ ?

ଦାସିଆ—ନା, ମୁଁ ସେ କଥା କହୁନାହିଁ ଯେ, ସେହି ଯେ ଗଲାବେଳେ କହିଗଲେ ତୋ' ହାତ ଧରି—ଏଠି ଆଉ ତାକୁ ଏକୁଟିଆ ଛାଡ଼ିଦେବୁ ନାହିଁ, ମା, ତୋ'ର ଘରକୁ ନେଇଯାଇ ତୋ'ର କୋଳରେ ବଢ଼ାଇବୁ-ଲୁଚାଇବୁ ।

ଗେଲ୍ଲି—ବେଶ୍‌ତ, ଯା ମାନେ କଣ ଆଉ—ବ୍ରାହ୍ମଣକୁ ବାଉରୀ କରିଦେବା, ନା ଜାତପତ ବିଗୁଡ଼ି ବଳ କୁଳ ଉଠାଇ ଦେବା ? ଲୁଚ ଜଣା, କହିଲୁ, କୌଣସି ବିପଦ୍‌ରେ ମାନେ କରିବାକୁ ହେଲେ ଗୁରୁଅଡଟା ଆଗେ ବଗୁର କରିବାଟା ଠିକ୍ କି ନୁହେଁ ? ଏହି ଅମକୁଡ ଆଗେ କେହି ଛୁଇଁ ନ ଥିଲେ—ଯ୍ଲାଇ ଦେଖିଲେ ନାହି ଡେଉଁଥିଲା ଲୋକଙ୍କର, ଏବେ ପାଖରେ ପୂରାଇ, ସାଙ୍ଗରେ ବସାଇଲେ ବୋଲି, ମୁଣ୍ଡରେ ଚଢ଼ିବା ନା କଣ ?

ଦାସିଆ—କେବେଁ ନୁହେ—ତା' କଲେ ତ ସରିଯିବା ସମସ୍ତେ । ଧର୍ମବେଳେ ଆମେ ଏକ—କିନ୍ତୁ, କର୍ମବେଳେ, ଯେ ଯା'ର, ସେ ତା'ର କାମ

କରିବା ଉଚିତ—ମୁଁ ଯନ୍ତ୍ର କହିବ, ମୁଁ ସୂତା ବି କାଟିବି ଲୁଗା ବୁଣିବି—

ଗେହ୍ଲି—କହୁଛି—ଏମିତିକା ବେବସ୍ଥାରେ, କାମ ଜମ ଚଳିବ ନା ?—ଆମେ ଅଜ ଆପଣା ଆପଣା ଭିତରେ କାମ ବାଣ୍ଟି ନେଇଚୁଁ ବୋଲି ସିନା ଏତେ ଭଲ ଭଲ ଲୁଗା ବୁଣି, ଗଢେଇ ଦେଇଚୁଁ, ଦଶଖଣ୍ଡ ଗାଁ ପାଇଁ, ଏହା କେଇଟା ଦିନରେ ?—

ଦାସିଆ—ଅଚ୍ଛା, ଗେହ୍ଲି, ଚୁହୁଁ ଚୁହୁଁ ତ ବହୁତ ଲୁଗା ଜମିଗଲାଣି—କଟେଇବା ତ ଦରକାର, ମୁଁ ବିଚାରୁଚି—ରଥଯାତ୍ରା କାଲି ଛାଡ଼ି, ପରଦିନ—ଗଣ୍ଡିରିଏ ନେଇଗଲେ—

ଗେହ୍ଲି—ପୁଣି ସେହି ନାଁ ଧରୁଚୁ ?—

ଦାସିଆ—କାହିଁକି, ତୁ ବି ସାଙ୍ଗରେ ଚାଲ ନା ?—

ଗେହ୍ଲି—ଆରେ, ନାରେ ନା—ସେ ସେବକଥା ତୋତେ ଭାବିବାକୁ ସୁଦ୍ଧା ଦେବି ନାହିଁ !—

ଦାସିଆ—( କାମ ବନ୍ଦକରି ) ଗେହ୍ଲି, ଗେହ୍ଲି, ତୁ ଏଡ଼େ ନିର୍ଦ୍ଦୟା ହ'ନା—ତୁ ଜମା ବୁଝି ପାରୁନାହୁଁ—ମୋ ର ପ୍ରାଣ କେଡ଼େ ବ୍ୟାକୁଳ ହୋଇ ଉଠୁଛି—ଆଜିକି ବର୍ଷେ ହେଲା, ନା, ନା, ଗୋଟାଏ ଯୁଗ ବିତିଗଲା, ସେ 'ଚକାନୟନ'ଙ୍କ ଦର୍ଶନ-ସୁଖ, ଭାଗ୍ୟରେ ଘଟିନାହିଁ ବୋଲି ?

ଗେହ୍ଲି—ପ୍ରଭୁ, ମୁଁ କଣ ସେ କଥା ବୁଝି ପାରୁନାହିଁ, ନା, ମୋର ପ୍ରାଣ କଣ ଆକୁଳ ହୋଇ ଉଠୁନାହିଁ ? କିନ୍ତୁ, ଥରେ ବିଚାର କରି ଦେଖିଲ—କେଡେ ଚତୁର କହ୍ନା ସେ ? ଆମ ସଙ୍ଗେ ଲୁଚକାଳି ଖେଳୁ ନାହାନ୍ତି କି ? ଧରା ଛୁଆଁ ଦେବା ଭିତରେ କେବେ ପାଖେ ପଶୁଚନ୍ତି କି ?—

ଦାସିଆ—ଏ କଣ ତୁ କହୁଛୁ, ଗେହ୍ଲି ?

ଗେହ୍ଲି—'ଦଶଅବତାର' ରୂପମାନଙ୍କରେ ତମକୁ ଦେଖାଦେଲେ—ଗଉଡ଼ ପିଲା ରୂପରେ ତକ ପଞ୍ଚାନନଙ୍କୁ ଦେଖାଦେଲେ—ମୋତେ, ଛତରଖିଆ ପିଲା ରୂପରେ ଧରା ଦେଲେ—କିନ୍ତୁ, ସ୍ୱରୂପଟି ତାଙ୍କର ଦେଖାଇଲେ କି—ଧରାଇ ଦେଲେ କି ?—

ଦାସିଆ—ଧରା ବା ନ ଦେଲେ କାପରି ? ଭକ୍ତର ବାଞ୍ଛା ଯା' ସେ'ତ ଅକୁଣ୍ଠିତ ଚିତ୍ତରେ ପୂର୍ଣ୍ଣ କରନ୍ତି ।

ଗେହ୍ଲି—ତା ଯଦି କରିଥାନ୍ତେ, ତାହାହେଲେ, ଆମେ ଯେତିକି ମାଗିଲୁ, ସେତିକି ଦେଇ, କେବେଁ ସେ ତୁନି ହୋଇ ଲୁଚି, ଛପି ରହନ୍ତେ ନାହିଁ !—

ଦାସିଆ—ତୁ ଆଉ ମାଗିଲୁ କିମିତିକା ନ ଦେବେ ?—ମୋ'ର ହରି ଯେ, କେଡ଼େ ଦୟାଳୁ,—ତା'—

ଗେହ୍ଲି—ପୁଣି ସେଇ କଥା ?—ଦୟାଳୁ ଯଦି, ମାଗିବା ଯାଏଁ କଥା ଯିବ କାହିଁକି ?—

ଦାସିଆ—ଏ' ତୋ'ର ଅଭିମାନର କଥା !—

ଗେହ୍ଲି—ଅହେ, ସେ କଥା ବା ନ ହେବ କାହିଁକି ?—ମୁଁ, ଦିନଟିଏ—ଭୋକ ଶୋଷ ଭୁଲି, କାମ ପାଇଁଟି ଭୁଲି,—ମୋର ଜୀବନର 'ହରି' ତୁମ କଥା ଭୁଲି ଡାକି ଡାକି ତାଙ୍କୁ, ଥକିଛି—କେତେ କଲବଲ ହୋଇ ମରେଚି, ଟିକି ଥରେ ସେହିପରି କୋଳରେ ବସାଇ, ଭୁଞ୍ଜାଇବ ବୋଲି;—କିନ୍ତୁ, କିନ୍ତୁ, ଠିକ୍ ଓ'ହାଣୀ ଆଲୁଅ ଭଳି, ମୋତେ ଦଉଡ଼ାଇ, ଦଉଡ଼ାଇ, କନ୍ଦାଇ, କନ୍ଦାଇ, ସନ୍ତାଇ, ସନ୍ତାଇ, ମାରିଚନ୍ତି ସିନା !—ଶେଷକୁ ମୋ ଭିତରେ ଦିନେ କିଏ ଯେମିତିକା କହି ଉଠିଲା—"ତୁ କି ଭୁଲ କାମ କରୁଚୁ ଲୋ—କେଉଁ ପବନଟା ପଛେ ଗୋଡ଼ାଇ ମରୁଚୁ—ଯା, ଯା, ଫେରି ଯା—ତୁ ବାହା ହୋଇଚୁ—ତୋର ବେଉସା ଅଛି—ସେ ସବୁ ଛାଡ଼ି ଦେଇ, କେଉଁ ଛତରାଟା ପଛେ ଛତରା ହୋଇ ବୁଲୁଚୁ ଲୋ ?—ଆହୁରି ଦେଖ, ତୁ ବୁଲୁଚୁ, ତୋ' ଦେଖା ଦେଖି ସେ ବି ବୁଲୁଚି"—ସେହିଦିନୁ ସଂକଳ୍ପ ମୋର, ପ୍ରଭୁ—ହକ୍ କାମ କରିବା—କିନମ୍ପ ଦେବା—କାନମୋଡ଼ି ରେକ୍ ଠୋକ୍ ଦାମ ନେବା—କାହାରିକି ଅନୁସରଣ କରିବା ନାହିଁ, କି ଖୋସାମତ୍ କରି ଦିପଦ ସୁଦ୍ଧା କହିବା ନାହିଁ !

ଦାସିଆ—ଓଃ ହୋ, ସେଇଥି ପାଇଁ ପରା, ଏତେ ଭକ୍ତି ତୋର ମୋଠାରେ ? ଏତେ କାମ ପାଇଛି ? ଘର ସଂସାରରେ ଏତେ ମନ ?—ଗେହ୍ଲି ! ଗେହ୍ଲି ! —ବୁଝିଛି, ତୁ ମତେ ସଂସାର ଜଞ୍ଜାଳରେ ପକାଇ ଆପଣା କାମ ହାସଲ୍ କରି ନେବା ମତଲବରେ, ମୋର ଶ୍ରୀହରିଙ୍କ ଠାରୁ ମୋତେ ଅନ୍ତର କରି ଦେଉଚୁ !

ଗେହ୍ଲି—( ଭାରି ଅଭିମାନରେ ) ଆରେ, ସେମିତିକା ବାଉକର ହରିଙ୍କ ଠାରୁ ଅନ୍ତରରେ ରହିବା ଭଲ ନୁହେଁ କି ?

ଦାସିଆ—ମାୟାବୀ ! ରାକ୍ଷସୀ ! କ'ଣ କହିଲୁ ତୁ ? ହରିଙ୍କଠାରୁ ଅନ୍ତରରେ ରହିବା ଭଲ ! ହରି, ହରି, ଅଜ୍ଞାନ, ଦୁର୍ବଳ ମୁହିଁ, କେଉଁ ମାୟାବୀର ମାୟାରେ ଭୁଲି, ଆଜି ତୁମକୁ ଭୁଲିଚି ! ନା, ନା, ଆଉ ଦଣ୍ଡେ ଏଠି ରହିବି ନାହିଁ, ପବନରେ ନିଶ୍ୱାସରି ମାରିବି ନାହିଁ ! ହରି ! ହରି !

( ଗମନୋଦ୍ୟତ ହେଲା )

ଗେହ୍ଲି—( ଗୋଡ଼ତଳେ ପଡ଼ି ) ଆରେ ! ସେମିତିକା ଗୋଟାଏ ବନ୍ୟାରେ ଭାସି ଯା' ନା' ମ !—ଟିକିଏ ଥୟ ଧରି, ଆଗକୁ ପଛକୁ ଚାହିଁ, ବାଟ ଚାଲମ ! ଏମିତିକା ବେହାଲ କରିଦେଲେ ଆପଣାକୁ, ପଛେ ପସ୍ତେଇବୁ ସିନା ! ଆରେ, ମୁଁ ବଚନ ଦେଉଚି ! ମୋ'ର ଯେବେ ତୋ'ର ଏହି ଚରଣ ସେବା ସତ୍ୟ ହୁଏ—ହରିଙ୍କି ତୋ'ର ଏଇଠି ଏଇଠି ପାଇବୁ ନିଶ୍ଚେ !—ଆମେ ଏତେ ପରିଶ୍ରମ କରି, ମୁଣ୍ଡର ଝାଳ ଗୋଡ଼ରେ ମାରି, ଏତେ ଗୁଡ଼ାଏ କାମ ଗଢେଇ ଦେଲୁଣି ହରିଙ୍କର କ'ଣ କିଛି ଦରକାର ହେବନାହିଁ ଦିନେକାଳେ ? ସତାର କରନା, ଯେଉଁ ମୁହୂର୍ତ୍ତେ ଆସି ଏଇଠି ନୁଙ୍ଗୁର ପୁଙ୍ଗୁର ହେବେଟି, ଧନମଣି, କିଛି ଗୋଟାଏ କାମକୁ ଆମର ଲୋଡ଼େଇ—ଠିକ୍ ସେତିକାବେଳେ ଦାଗ ! ଦହେଁ ମିଶି ମାଡ଼ ବସିବା, ଆଖି, କାନ ବୁଜି—ବାନ୍ଧି ପକାଇବା କସିକରି ଆରେ, ଦେଖାଯିବ ତେଣିକି !—

ଦାସିଆ—( କେଉଁ ଭାବମୁଗ୍ଧ ହୋଇ ଅବାକ୍ ହୋଇ ଯାଇଥିଲା )

( ତନ୍ତଖୁରୁରେ ତତ୍‌କ୍ଷଣାତ୍ ଦେଖାଗଲା ଶ୍ରୀହରି ଖୁବ୍ କସାକସି ହୋଇ ବନ୍ଧା ହୋଇଛନ୍ତି )

ଶ୍ରୀହରି—ତେଣିକି, ଦେଖିବ ଏଇଆ ସିନା !—ଉଃ, ଏତେ ଭିଡ଼ି ମୋତେ ବାନ୍ଧନା, ମା, ବାନ୍ଧନା—ଖୋଲିଦେ, ଖୋଲିଦେ—ଭାରିକାଟୁଚି, ମା—

ଦାସିଆ—ହରି ! ହରି ! ଗେହ୍ଲି, ଗେହ୍ଲି—ଏ କଣ କରଚୁ ତୁ ? ଶ୍ରୀହରିଙ୍କୁ ଆଣି ତନ୍ତ ଖୁରୁରେ ବାନ୍ଧିଚୁ ?— (ବନ୍ଧନ ମୁକ୍ତ କରିବାକୁ ଗଲା )

ଶ୍ରୀହରି—ନା, ନା, ତୁମେ ପାରିବ ନାହିଁ ଖୋଲି—ମା ଖୋଲି ନ ଦେଲେ ? ଏ ଗଣ୍ଠି, ଯେ ପକାଇ ଜାଣେ, ସେହି ଏକା ଖୋଲି ଜାଣେ ?

ଦାସିଆ—ଦେ, ଦେ, ଗେହ୍ଲି—ଜଲ୍‌ଦି ଖୋଲିଦେ—ଆହା !

ଗେହ୍ଲି—ତୋତେ ଏତେ ବାଧୁଚି କାହିଁକି ରେ ? ଯେ ବାନ୍ଧିଲା ତାକୁ ତ ବାଧୁ ନାହିଁ ଭଲେ ହେଲେ ?

ଦାସିଆ—ଗେହ୍ଲି ! ଗେହ୍ଲି ! ଆଉ ମୁଁ ସହି ପାରୁନାହିଁ—

ଗେହ୍ଲି—କିନ୍ତୁ, ଯେତେବେଳେ ସହି ପାରିବୁ, ନା—ଯେତେବେଳେ ମୁଁ ଖୋଲିଦେବି—ଆଜି, ହରି ତୋ'ର ଯାଇ ଏକା ଖପାକେ କେଉଁଠି ଗଛ ଅଗରେ !

ଶ୍ରୀହରି—ମା—ମା— (ଭାରି ବିକଳଭାବରେ ଚାହିଁଲେ)

ଦାସିଆ—ତୋ' ଗୋଡ଼ତଳେ ପଡ଼ୁଚି ଗେହ୍ଲି—

ଗେହ୍ଲି—ହରି ! ଏ ମା' ତୋର ଯେ ସେ ମା ନୁହେଁଟି ! ତୋ'ର ଏ ଭଲ ବିକଳ ଦେଖି, ମୋର ହୃଦୟ ପରା ଆହୁରି ପାଗଳ ହୋଇ ଉଠୁଚି !—ଆ, ଆ, ହରି—ତୁ ସହଜ ଜଲୁ ନୋହୁ—ତୋତେ ଏହି ତନ୍ତ ଖୁରୁରୁ ମୁକୁଳାଇ, ଏହି ବୁକୁରେ ବାନ୍ଧି, ମୋର ଏହି ଦୁ' ବାହାରେ, ଆହୁରି ଛନ୍ଦି, କସିକରି ବାନ୍ଧିଦିଏଁ ( ସ୍ନେହଭରେ କରି ଘନ ଘନ ଚୁମ୍ବନ କରିବାକୁ ଲାଗିଲା )

ଦାସିଆ—( ଯୋଡ଼ ହସ୍ତେ ଗାଇ ଉଠିଲା )

ଗୀତ

ହେ, ଶ୍ୟାମସୁନ୍ଦର ମୁରଲୀ ମୋହନ ।
କି ଗତି ଆଜ, ଯଶୋଦା ଜୀବନ ।
ଯେଉଁ ବନ୍ଧାରେ ଛନ୍ଦା ଏବେ ଶ୍ରୀହରି—
ନିସ୍ତାର କି ତହିଁ ଅଛୁ ହେ ମୁରାରି ?
କି କରିବ ହେ ମଦନମୋହନ ।
ନିଜ କର୍ମକୁ ସିନା ଏ କଷଣ ॥

ଗେହ୍ଲି—ହିଂସା ହେଉଛି ପରା—ନା ?

( ଦାସିଆ କୋଳକୁ ଦେଲା )

ଦାସିଆ—( ନେଇସାରି )—ନା, ନା, ପ୍ରଶଂସା କରିବାକୁ—ତୋତେ ବରଂ ପୂଜା କରିବାକୁ ମୋର ମନ ହେଉଛି ଗେହ୍ଲି,—ଏତେଦିନ ମୁଁ ହରିଙ୍କୁ କେବଳ ଆଖିରେ ଦର୍ଶନ କରୁଥିଲି, କିନ୍ତୁ, ତୋ' ଯୋଗୁଁ, ଆଜି, କୋଳରେ ଧରି ଧନ୍ୟ ହେଲି ସିନା !

ଗେହ୍ଲି—ମୋ' ଯୋଗୁଁ ନୁହେଁ ରେ—ତୋ'ର ଏହି ଗୋଡ଼ର ଧୂଳି ଯୋଗୁଁ ?

( ପ୍ରଣାମ କରି ଗୋଡ଼ଧୂଳି ନେଲା )

ଶ୍ରୀହରି—କିନ୍ତୁ, ମୁଁ କହେଁ—ଦୁହିଙ୍କ ଯୋଗୁଁ— !

(ଦୁଇଜଣଙ୍କୁ ମିଶାଇ ଯୋଗ କରିଦେଲେ ପରି, ଅପେ ମଧ୍ୟସ୍ଥଳେ ରହି)

—ଯବନିକା—

# ପ୍ରାର୍ଥନା

ପାଠକେ ଓ ଦର୍ଶକେ

ଯେଉଁ
ହିଂସା, ମାନ,
ଅଭିମାନ ଉପରେ
ପ୍ରେମର ଭିତ୍ତି;—ତା'ର ସମଷ୍ଟି
ଏହି "ର ଘୁ - ଅ ର କ୍ଷି ତ" କୁ
ଥରେ ଆପଣାର ଜୀ ବ ନ ନି କ ଷ ରେ
କଷି,—ଆପଣାର ହୃଦଭୂଷା ରୂପେ
ଅର୍ପଣ ଦେଲେ, ମୋ'ର
ଶ୍ର ମ ସା ର୍ଥ କ ଜ୍ଞାନ
କରିବି !—

**ଅର୍ଶ୍ୱିନୀ**

---

# ପରିଚୟ

| | | | |
|---|---|---|---|
| **ରଘୁ** | ... | ... | ଜମିଦାର ପୁତ୍ର |
| **ଅନ୍ନପୂର୍ଣ୍ଣା** | ... | ... | ଧର୍ମପତ୍ନୀ |

ଗୁମାସ୍ତା, ଯୁବକ, ଯୁବକ ପତ୍ନୀ, ଅନ୍ନପୂର୍ଣ୍ଣାର
ସହଚରୀଗଣ, ରାଜା, ଯୁବରାଜ,
ରଘୁର ଶାଳକଦ୍ୱୟ
ଓ
ଛଦ୍ମବେଶୀ—"ରାମ" ଓ "କୃଷ୍ଣ"

---

# ରଘୁ ଅରକ୍ଷିତ

## ପ୍ରଥମ ଅଙ୍କ

### ଏକ

**ଦୃଶ୍ୟ :—** ଅପଣାର ରାଜ-ପ୍ରାସାଦୋପମ ବାସଭବନର ବୈଠକଖାନାରେ ଗାଲିଚା ଫରା ହୋଇଥିବା ତକ୍ତପୋଷ ଉପରେ, ତକିଆ ଠେସ୍-ଦେଇ କିଶୋର ରଘୁନାଥ ଅଲବଲା ହୁକ୍କାର ଲମ୍ବା ନଳ ଧରି ତମାଖୁ ସେବନ କରୁଥିଲେ ଗୁଡ଼୍ ଗୁଡ଼୍ କରି । ସାମ୍ନାରେ ପୁରୁଣା ଗୁମାସ୍ତା ଠିଆ ହୋଇଥିଲେ ନନ୍ଦକି ପଣ୍ଡା, ଜମିଦାରଙ୍କର କେଉଁ ଉତ୍ତରକୁ କାଣ୍ଡିବଗ ଭଳି ଟାକିରହି;—ଅନ୍ୟାନ୍ୟ ଆଡ଼େ ଦୃଷ୍ଟି ଫେରାଇଲେ ମନେହୁଏ ଘରର ଆସ୍ବାବ—ଲୋକବାକ—ଚାଲ୍ ଚଳନ—ଏ'ପରି କି,ଣ ସେ'ଠା ହାଓ୍ୱା ପର୍ଯ୍ୟନ୍ତ, କେଉଁ ବୁନିଆଦ ଓଜନରେ ଅବ୍ଭକ୍ ଠିକ୍ ରହିଚ ବା ଠେକି ରହିଚ, ଆଉ ଆଜ ଆଜୁ କମ୍ତି ପଡ଼ି ଆସୁଥିଲେ ମଧ୍ୟ—ନା, ନା, ବରଂ ବୁନିଆଦି ଓଜନଟା ଅହୁରି ଦିନୁ ଦିନୁ ଭାରି ହୋଇ ଉଠୁଥାଏ ଯେତିକି କମି କମି ଆସୁଥାଏ ଆଉ ଆଉ ଅଡ଼ ସବୁ ।

ରଘୁ—( ଗୁଡ଼ାଖୁ ଖାଉଖାଉ, କେତେବେଳେକେ ଅତି ଦୃଢ଼ସ୍ୱରେ କହି ଉଠିଲେ)—ନା—ନା—ନା

ଗୁମାସ୍ତା—ଭବିଷ୍ୟତ୍ ଚିନ୍ତା ଥରେ—

ରଘୁ—ଚିନ୍ତା' କରିବି କଣ, କକା ? ମୁଁ ତ ଜଳ ଜଳ ଆଖିଆଗେ ଦେଖିପାରୁଛି,—ଏ ଅଟ୍ଟାଳିକା ମୋର ନାହିଁ—ଏ' ଦାସ ଦାସୀ, ପରିଜନମାନେ ନାହାନ୍ତି—ଏ ଅଲବଲାହୁକ୍କା ମୋରନାହିଁ—ଖାଇବାକୁ ଦାନା ମୁଠେନାହିଁ—ପିନ୍ଧିବାକୁ ଛିଣ୍ଡା କନା ବିତକେ ବି ନାହିଁ ।

ଗୁମାସ୍ତା—( କେଉଁ ଆବେଗରେ ବ୍ୟାକୁଳ ହୋଇ )—ରଘୁ, ରଘୁ—ସା'ନ୍ତେ, ସା'ନ୍ତେ ମୋର—ଯେଉଁ କୃଷ୍ଣ ମହାପାତ୍ର, "ସାକ୍ଷାତ୍ କମଳା ଦେବୀଙ୍କ ସାଙ୍ଗରେ ଯେଣି—

ଦୁଃଖୀ ଦରିଦ୍ର ଜନଠାରେ ।
ଘୃଣା ନ ଥାଇ ମନରେ ॥
ଦଅଇ ଶକ୍ତି ଯେତେ ତାର ।
ନିରତେ ପରେ ଉପକାର ॥
ଅମୃତ ସମାନେ ବଚନ ।
କହୁ ତୋଷଇ ପ୍ରାଣିମନ ।"

ତାଙ୍କର,

"ବଂଶର ଏକଇ କୁମର ।
ଦଇବେ ଅତି ସୁକୁମାର ॥
ତା କଷ୍ଟ କହୁଁ ନ ସରଇ ।
ଭିକ୍ଷା ମାଗିଣ ସେ ଜୀଇବ ॥"

ରଘୁ—( ହସି ହସି ) କକା !—ଏହିତ ସଂସାରର ବିଚିତ୍ରତା ! ସୃଷ୍ଟିର ସୌନ୍ଦର୍ଯ୍ୟ !—ଜୀବାତ୍ମାର ମହାସଙ୍ଗୀତର ମହାମୂର୍ଚ୍ଛନା !

( ପୁଣି ଗୁଡ଼ାଖୁ ଖାଇବାକୁ ଲାଗିଲେ )

ଗୁମାସ୍ତା—କଞ୍ଚା ଉମର ତୁମର, ରଘୁ—ଅଭାବର କଷ୍ଟ ଏପର୍ଯ୍ୟନ୍ତ ତୁମକୁ ବାଧି ନାହିଁ—ସେଇଥିପାଇଁ, ଗୋଟାଏ ଧଡ଼ସରେ, ବୟସର ତାଉରେ, କହି ଯାଉଛ ସିନା ଏଇ ଭଳି ? ପିଲା ସାନ୍ତେ ମୋର ! ଭୀଷଣ ଦାରିଦ୍ର୍ୟ ଯେତେବେଳେ ତାର

କାଳକରାଳ ମୂର୍ତ୍ତିରେ ତୁମକୁ ଘୋଡ଼ାଇ, ବର୍ଷର
ଶୀତଳ ଗହ୍ୱର ମଧ୍ୟରେ ପୂରାଇ,ଛଳେ ଛଳେ ଶୁଖାଇ
ମାରିବ, ରକ୍ତ ଶୋଷି,—ଭୀଷଣ ଦାନ୍ତରେ ଚଡ଼
ମଡ଼ କରି ଚୋବାଇବ, କଅଁଳ ହାଡ଼ଗୋଡ଼
ମୋଡ଼—ତେତେବେଳେ ଏହି ପୂର୍ବପୁରୁଷ—
ହିତୋପଦେଶ ଗୁଡ଼ିକ, କଣ୍ଟା ଭଳି କେବଳ,
ମର୍ମକୁ ତୁମର ଭେଦିବା ସାରହେବ ସିନା ।

ରଘୁ—ତେବେ କଣ ମୋତେ ପିତୃଦ୍ରୋହୀ ହେବାକୁ
କହୁଚ, କକା ! ଏହି ଛାର ସମ୍ପତ୍ତି ଲାଗି ?
ଆପଣାର ସାମାନ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଗି ?
ଗୋଟାଏ ଭୋଗ ବିଳାସ ଲାଗି ? କକା !
କକା ! ମୋ'ର ପିତାମାତାଙ୍କର ସତ୍ୟ ମୁଁ
ଲଙ୍ଘନ କରିବି, ସନ୍ତାନ ହୋଇ—ବିବେକୀ
ହୋଇ—ମନୁଷ୍ୟ ହୋଇ ? ତୁମେ, ପରା,
କକା—କେତେ ଥର ଶୁଣାଇଚ ମୋତେ,—
କୋଳରେ ବସାଇ, ଗଦ୍‌ଗଦ କଣ୍ଠରେ ଗାଇ,
ଲୋତକ ଧାରା ବୁହାଇ, ଲୋମକୂପ ଗୁଡ଼ିକ
ଟାଙ୍କୁରାଇ--ନା, ନା, ପ୍ରାଣର କୋରକ ମୁକୁଳାଇ
ଅକାଳେ ଯେଉଁଥିରେ—ସେହି ମହାଗାଥାଟି—
ଶ୍ରୀରାମଙ୍କର ବନବାସଗାଥାଟି—

ଗୀତ

(ରାଗ—କନଡ଼ା)

× × ×

କୈକେୟୀ କହନ୍ତି ଶୁଣ ରାମଚନ୍ଦ୍ର
ଯହିଁପାଇଁ ଏ ମୂର୍ଚ୍ଛିତ ।
ସେତ ନକହିବେ, ମୁଁ ତାହା କହିବି
କଲେ ତୁମ୍ଭେ ସନମତ ।
ଶୁଣି ସୀତାଙ୍କ କାନ୍ତ ।

ବୋଲେ ଏ କଥା ମୋହର 'ସତ୍ୟ' ।
ପ୍ରାଣ ମାଗିଲେ ଦେବି ତ୍ୱରିତ ।
ଅଗ୍ନି ଜାଳଣି ହୋଇବି ହତ ଗୋ ।୭।

ସନ୍ତୋଷ ହୋଇଣ ବୋଲନ୍ତି ଜନନୀ
ପୂର୍ବେ ଦେଇଥିଲେ ବର ।
ତାହା ମାଗିଲାକୁ 'ଶପଥ' ହୋଇଣ
ଶୋକ କରନ୍ତି ପିଅର ।
ତୁମ୍ଭେ ବନକୁ ଯିବ,
ଭରତଙ୍କ ଅଭିଷେକ ହେବ ।
ଆଜ ଷଣେ ବିଳମ୍ବ ନ ହେବ ।
ତେବେ ପିତାଙ୍କ ସତ୍ୟ ରହିବ ହେ ।୧।
ଚଉଦ ବରଷ— ଯାଏ ରାମ ତୁମ୍ଭେ
ଧରିଥିବ ଯତି ବେଶ ।
ଫଳ ମୂଳ ଖାଇ ଗ୍ରାମେ ନ ପଶିବ
ବକଳ କରିବ ବାସ,
ତା'ର କିଷ୍ଟୁରି ବାଣୀ ।
ରାମ ସନମତ କଲେ ଶୁଣି ।
ସେହି ଷଣି ମାଗିଲେ ମେଲାଣି ।
ଦୀନ କୃଷି ଶୋକଭରେ ଭଣି ।୮।

ଆଉ, କହୁଚ ହସି ହସି—ରଘୁ, ତୁମେ କ'ଣ ସେହି-
ଭଳି ସତ୍ୟନିଷ୍ଠ ସତ୍ୟପ୍ରାଣ ହୋଇ ଆପଣାର
ରଘୁନାଥ ନାମ ସାର୍ଥକ କରିବ ନାହିଁ ? ( ଭଡ଼
ଭଡ଼ କରି ଗୁଡ଼ାଖୁ ଟାଣିବାକୁ ଲାଗିଲେ )

ଗୁମାସ୍ତା—( କିଛି ଷଣ ସେହି ମହତ୍ ଭାବରେ
ଅନୁପ୍ରାଣିତ ହୋଇ, ନୀରବ ହୋଇ ରହିଲା
ପରେ ) ସାନ୍ତେ ! ସାନ୍ତେ ! ମନେ କରନ୍ତୁ ଥରେ
ପିତାମାତାଙ୍କର ଅବସ୍ଥା !—କି ଦଶା ଭୁଞ୍ଜିଲେଣି
ଶେଷେ !—କେବଳ—
"ଦାରିଦ୍ର୍ୟଭୟେ ଦୁଃଖ ପାଇ ।
କଷ୍ଟ ସେ ନ ପାରିଲେ ସହି ।।
ଚିନ୍ତା କରିଣ ପିତା ମଲେ ।
ଜନନୀ ଅଗ୍ନି ହାସ ଦେଲେ ।।"

ରଘୁ—( ଉଠିବସି ) କହିଲ ତେବେ, କକା ! ଯେଉଁ
ସତ୍ୟକୁ ଏତେ ହୃଦରେ ସ୍ଥାନ ଦେଇଯାଇଛନ୍ତି
ପିତାମାତା ମୋ'ର—ଯା' ପାଇଁ ଜୀବନ ପର୍ଯ୍ୟନ୍ତ
ବଳିଦେବାକୁ କୁଣ୍ଠିତ ହୋଇ ନାହାନ୍ତି, ସେହି
ସତ୍ୟକୁ ସେମାନଙ୍କର ସନ୍ତାନ ହୋଇ—ମୁଁ ଛାର

ସମ୍ପତ୍ତି ଲୋଭରେ—ଦ'ଟା ଭଲ ଖାଇ ପିନ୍ଧି,
ସୁଖରେ ରହିବା ଆଶାରେ—ଗୋଡ଼ରେ ଦଳମଳି
ଦେବ ସିନା ଆଜି—ମିଥ୍ୟା କଥା କହି ?—
ମହାଜନକୁ ଫାଙ୍କିଦେଇ ?—( ପୁଣି ଗୁଡ଼ାଖୁ
ସେବନ କରିବାକୁ ଲାଗିଲେ )

ଗୁମାସ୍ତା—ମୁଁ ତ ଫାଙ୍କି ଦେଉଛି ବୋଲି, କି ମିଛ କଥା
କହିବାକୁ ବଳାଉ ନାହିଁ ତୁମକୁ, ବାବା ! ମୁଁ
ଏତିକି କେବଳ କହିବାକୁ ଚାହେଁ ଆଜି, ସେହି
ଆଇନ୍ ବଳରେ—ଯେଉଁ ଆଇନ୍ ବଳରେ
ମହାଜନ ଆଜି ସମସ୍ତ ବିଷୟ ଗ୍ରାସ କରିବାକୁ
ଧାଇଁଛି;—ଏହି ସମ୍ପତ୍ତି ବନ୍ଧକ ଦେବା ସମୟରେ,
ତୁମେ ଥିଲ ନାବାଳକ—ଆଉ, ସେହି ସମ୍ପତ୍ତି-
ମଉରସି,—ପିତାଙ୍କର ଅର୍ଜିତ ନୁହେଁ—

ରଘୁ—କିନ୍ତୁ ଟଙ୍କା ତ ତୁମେ ଗୋଟି ଗୋଟି କରି ଗଣି,
ବଜାଇ ନେଇଛ—ବାପାଙ୍କ ସାକ୍ଷାତରେ ।—

ଗୁମାସ୍ତା—ତା'ତ କେହି ଅସ୍ୱୀକାର କରୁ ନାହିଁ—

ରଘୁ—(ହସି) ମୋ'ର ବାହାଘର ପାଇଁ ତ ଏ ଋଣ ?—

ଗୁମାସ୍ତା – ହେଲେ ବା ?

ରଘୁ—ନ ?—ଏକେ ସତ୍ ଉଦ୍ଦେଶ୍ୟ—ତହିଁରେ ହକ୍
ଟଙ୍କା ଗଣି ନେବା—ଏହି ଦୁଇ କଥା ଯଦି
ଏକମେଳ ଖାଇଗଲା—ଆଉ ବାଟ ରହିଲା କାହିଁ,
ବାଣ୍ଟ ଲଢ଼ିବାକୁ ?

ଗୁମାସ୍ତା—(କେଉଁ ଉତ୍ତେଜନାରେ)

"ଅନେକ ଧନ ବ୍ୟୟ କଲେ ।
କୃଷ୍ଣ ପୁତ୍ରକୁ ବିଭାକଲେ ॥"

ଏ' କଥା ପେଟର ଛୁଆ ଏ ପର୍ଯ୍ୟନ୍ତ ଗାଇ
ବୁଲନ୍ତି—ହାଟରେ ଧଣ୍ଡି ଦାଣ୍ଡରେ ଗଡ଼ୁଛି—
ସୁତରାଂ ଏ ଅପବ୍ୟୟର ଲୁଚାଛପା କିଛି ନୁହେଁ ?

ରଘୁ—( ହସିହସି ) ତୁମେମାନେ ବାଛି ବାଛି ଯେଉଁ
ସମ୍ବନ୍ଧ ସ୍ଥିରକଲ—

"କରଣୀ ନାମେ ଗଙ୍ଗାଧର ।
କୁବେର ସମ ଧନ ତା'ର ॥
ସପତ ପୁତ୍ରରେ କୁମାରୀ ।
ଲକ୍ଷଣାବତୀ ସୁକୁମାରୀ ॥"

ସେଥିରେ, ଆପଣାର ମାନମର୍ଯ୍ୟାଦା ଲାଗି ସେତିକି
ବ୍ୟୟର ପ୍ରୟୋଜନ ହୋଇପଡ଼ି ନ ଥିଲା ?—

ଗୁମାସ୍ତା—ବେଶ୍ ତ, ବାବା ଏବେ ବ ସେହି ମାନ-
ମର୍ଯ୍ୟାଦା ଲାଗି—ମହାପାତ୍ର ବଂଶର ନାମ ଲୋପ
ଯହିଁରେ ନ ହୁଏ, ସେହି ଉଦ୍ଦେଶ୍ୟରେ, ଆମେ
ଏତିକି କହୁଛୁ—ମହାଜନ ସବୁଗ୍ରାସୁ ପଛକେ—
ଖାଲି ଏ ଘରଟି ଭିଟାମାଟିରେ ହାତ ନ ଦେଉ ।

ରଘୁ—( ହସି ) ଯଦି ସେ ନ ଛାଡ଼େ—

ଗୁମାସ୍ତା—ନ ଛାଡ଼ିଲେ ?—

ରଘୁ—ମିଥ୍ୟାର ଆଶ୍ରୟ ?

ଗୁମାସ୍ତା—ନା, ନା—ଆଇନ—ଅଦାଲତର !

ରଘୁ—ହଁ-ହଁ—ସେହି ଏକା କଥା—ଆଇନ ଅଦାଲତ
ନା'ରେ ଗୋଟାଏ ଫାଙ୍କିର ?

ଗୁମାସ୍ତା—ଯା' କୁହ, ଏ କାଗଜରେ ସଇଟିଏ ତୁମକୁ
ଦେବାକୁଇ ହେବ ।—( କାଗଜଟା ସାମ୍ନାରେ
ଖୋଲି ଧରିଲେ )

ରଘୁ—କ'ଣ ଜୋର କରି ନେବ ?—

ଗୁମାସ୍ତା—ହଁ, ଜୋର କରି ଟିପ ଚିହ୍ନ ନେଲା ଭଳି,
ନେବି—ଅବିମୃଶ୍ୟକାରୀ ଅବାଧ ସନ୍ତାନ ଠାରୁ
ମୋ'ର ।

ରଘୁ—କକା ! କକା !—ପିତୃସତ୍ୟ ! ପିତୃସତ୍ୟ !

ଗୁମାସ୍ତା—ବେଶ୍ ବାବା—ତାହା ପାଳନକର ତୁମେ
ନିଶ୍ଚିନ୍ତରେ ବନଚାରୀ ହୋଇପାର—କିନ୍ତୁ
ତୁମର ସହଧର୍ମିଣୀର ବ୍ୟବସ୍ଥା ?

ରଘୁ—'ସହଧର୍ମିଣୀର ବ୍ୟବସ୍ଥାଟା !' ( ସବିସ୍ମୟେ
ଚାହିଁଲେ )

ଗୁମାସ୍ତା—ହଁ, ହଁ, ଯା'କୁ ଧର୍ମସାକ୍ଷୀ କରି ବିଭା
କରିଛ—ଯା'ର ଭାର ଚିରଦିନ ସକାଶେ
ମୁଣ୍ଡେଇଛ—ତାକୁ ରଖିଥୋଇ ଯିବତ କାହିଁ—
ଗୋଟାଏ କୁଳ କିନାରା କରିଯିବତ ତା'ର—
ଏ' ଭଳି 'ଲଙ୍ଗୁଳିଦାସ' ହୋଇ ଲୋଟାକମ୍ବଳ
ସମ୍ବଳକରି ବାହାରିଯିବା ଆଗରୁ ?

ରଘୁ—କାହିଁକି ? ସେତ ବାପଘରେ ରହିବେ—
ବେଶ୍ ନିଶ୍ଚିନ୍ତରେ !—ବାପଘରଟି ଖୁବ୍ ଧନୀ,
ବଡ଼ଲୋକ ।

ଗୁମାସ୍ତା—କିନ୍ତୁ, ବାପଘରର ଖରଦନ ପୋଷିବ ବୋଲି ତୁମକୁ କିଛି ଲେଖିପଢ଼ି ଦେଇ-ନାହାନ୍ତି ?—କନ୍ୟା ଦାନ କରିଚନ୍ତି—ଘରେ ନେଇ ରଖିବେ ବୋଲିତ ନୁହେଁ ?—ଆଉ, ଧର—ମା ଲକ୍ଷ୍ମୀ ମୋର ସେଠାରେ ରହିବାକୁ ଯଦି ଇଚ୍ଛା ନ କରନ୍ତି—

ରଘୁ—ବେଶ୍‌ତ ମୋ'ସଙ୍ଗେ—......

ଗୁମାସ୍ତା—ତୁମସଙ୍ଗେ ? କ'ଣ ବାସ୍ତୁହରା ହୋଇ ବୁଲିବେ, ଛିଣ୍ଡା କନା ପିନ୍ଧି ? ଭିକ୍ଷା ଥାଳ ଧରି ?

ରଘୁ—ଜାନକୀ ଦେବୀତ ଯ୍ଛାଏଁ ଯ୍ଛାଏଁ ବନବାସ ଦୁଃଖ ବରଣ କରି ନେଇଥିଲେ, ଜାନକୀପତିଙ୍କ ବହୁ ବାରଣ ସତ୍ତ୍ୱେ ?

ଗୁମାସ୍ତା—କିନ୍ତୁ 'ଯ୍ଛାଏଁ ଯ୍ଛାଏଁ' ଏଇଟା ବୁଝୁଚତ ?

ରଘୁ—( ବୋକାବନି ) କକା !—ମୁଁ ତ ଏତେ କଥା ଭାବିନାହିଁ ଆଦୌ !

ଗୁମାସ୍ତା—ଏହିତ ସଂସାରର ଜଞ୍ଜାଳ, ବାବା !—ମଣିଷ, ଗୋଟାଏ ଖିଆଲରେ ଯେ ତା'ର, କାଟି-ଦେଇ ସେହି ଜଞ୍ଜାଳ ପାରି ଉଠାରି ହୋଇଯିବ, ଏ କଥା ମିଛ !—ଅସମ୍ଭବ—ବରଂ ଯେତିକି ଅଡ଼ୁଆ କାଟିବାକୁ ସେ ଚେଷ୍ଟା କରୁଥିବ ସେତିକି ଲଟରି ଲଗେଇ ଆହୁରି ଜଞ୍ଜାଳ ଭିତରେ ମାଡ଼ିହୋଇ ପଡ଼ୁଥିବ ।

ରଘୁ—( ନୀରବରହି ) ନା, ନା, ତଥାପି ପିତୃସତ୍ୟ !
( ଦୃଢ଼ସ୍ୱରେ କହିଲେ )

ଗୁମାସ୍ତା—କିନ୍ତୁ ଆପଣାର ପତ୍ନୀର ଜୀବନ ମରଣର ଦାୟିତ୍ୱ ?

ରଘୁ—( ଗୁମାସ୍ତାର ହାତଧରି ପକାଇ ) ତେବେ—ଉପାୟ ? ଉପାୟ ?—

ଗୁମାସ୍ତା—କିଛିନାହିଁ—ଏହି କାଗଜରେ ଗାରେ ମାରି ଦିଅନା, ମୁଁ ତାର ନାମଧରି ଯଦି ନ ଘୋଷାଉଚି—ବାଏଁ ବାଏଁ ଦାବୀଟା ତା'ର ବିଲ୍‌କୁଲ୍ ଯଦି ଉଡ଼ାଇ ନ ଦେଇଚି; ସେତିକି ନୁହେଁ, ଓଲଟି ଯାଉ, ଖେସରା ଯଦି କଡ଼ାଗଣ୍ଡାରେ ଆଦାୟ ନ କରିଚି । ତୁମେ ଥିର ହୋଇ ବସନା, ଗଦି ମାଡ଼ି—ତକିଆ ଠେସି—ଚିଲମ୍ ପରେ ଚିଲମ୍ ଚଢ଼ାଇ !—

ରଘୁ—( ଆଲବୋଲର ନଳ ଫିଙ୍ଗିଦେଇ ) ନା, ନା, କକା—ଏ ଆଲ୍‌ବୋଲ ହୁକ୍‌କା ତୁଚ୍ଛା ଗରଳ-ଭରା—ମୁଁ ଗରଳ ପିଉଚି ! ଗଦି ତକିଆ ଏ ଯେମିତକା ତପ୍ତାଙ୍ଗାରକୁ ଜଣା—ମୁଁ କାଆଁ ଗଦାରେ ବସିଚି, ମନେ ଭାବୁଥିଲି—ଆପଣାର ସ୍ୱାର୍ଥସିଦ୍ଧି ଲାଗି—ପିତୃସତ୍ୟ ମୋତେ ଅଜ ତୁଚ୍ଛ କରିବାକୁ ହେବ ?

ଗୁମାସ୍ତା—ତୁମେତ ଜ୍ଞାନୀ—ଅଧିକ ମୁଁ ଆଉ ବୁଝାଇବି କ'ଣ ?—ଏ' ଭଳି କଳ୍ପନା, ବିକୃତ ମସ୍ତିଷ୍କର ବିକାର-ସ୍ୱପ୍ନ ନୁହେଁକି ?—ବୁଦ୍ଧଦେବ 'ଅହିଂସା-ଧର୍ମ' ପ୍ରଚାର କରିଥିଲେ—କିନ୍ତୁ, ଆପଣାର ଶରୀର ଓ ଜୀବନ ରକ୍ଷାଲାଗି, ହିଂସା କଣ କରିନାହାନ୍ତି ? ଖାଲି ଶ୍ୱାସ ପ୍ରଶ୍ୱାସରେ, କେତେ କୋଟି କୋଟି ଜୀବାଣୁ ସଂହାର କରି ନ ଥିବେ, ଚନ୍ଦ୍ରାକର ଖେଳିଲ ଭଳି ?

ରଘୁ—ଯୁକ୍ତି ତୁମର ମାନୁଚି ମୁଁ, କକା—କିନ୍ତୁ, ଏହା ଏକ ଓ୍ବ, ଏକ ର ଶତ, ଶତ, ଶତଅଂଶରୁ ଅଂଶେ ବାଦ୍ ଦେଲେ ଯାହା, ତାହାହିଁ ନୁହେଁକି ?—

ଗୁମାସ୍ତା—ଯେତେକଲେବି ଏକରୁ ନିଛକ୍ ଶୂନ୍ ଅଙ୍କ ବାଦ୍‌ଗଲା ନାହିଁ ? ସୁତରାଂ ଆମର ଜୀବନଧାରଣ ପ୍ରୟୋଜନ ବିବେଚନାରେ, ଏକ'ର ସେହି ଶତ, ଶତ, ଅଂଶକୁ ଯେଉଁଭଳି 'ନିଛକ୍ ଶୂନ୍' ବୋଲି ମାନି ନେଇଛୁ—ଏହି ଦସ୍ତଖତଟି ତୁମର ଠିକ୍ ସେହିଭଳି, ଆପଣାର ଭିଟାମାଟି ବଞ୍ଚାଇବା ଓ ପିଲା ଚିଲାଙ୍କ ଭବିଷ୍ୟତ ଦୃଷ୍ଟିରେ, ନିଛକଶୂନ୍ ନୁହେଁ କି ? ତୁମ୍ଭର ମହନୀୟ 'ପିତୃ-ସତ୍ୟ' ପାଳନ ବିଷୟରେ ଅଣୁମାତ୍ରରେ ବାଧା ଦେବକି ?

ରଘୁ—ଅଙ୍କ ହିସାବରେ ଠିକ୍ ହେଉଛି, ସତ—କିନ୍ତୁ, ମନତ ମାନୁନାହିଁ—ପ୍ରାଣକୁତ ମୁଁ ସାନ୍ତ୍ୱନା ଦେଇ ପାରୁ ନାହିଁ ।

ଗୁମାସ୍ତା—ଦଶମିକ ନଅ ପୌନ ପୌନିକକୁ ଯେତେ ହିସାବରେ, ଯେତେ ସୂତ୍ରରେ କାର୍ଯ୍ୟତଃ

ଏହାସଙ୍ଗେ ସମାନ ବୋଲି ବୁଝାଇଲେ ମଧ୍ୟ, ସରଳ ଶିଶୁମନ କଦାପି ବୁଝି, ସନ୍ତୁଷ୍ଟ ହେବ କି ? ମାତ୍ର ଜଣେ ବୟସ୍କଜ୍ଞାନସମ୍ପନ୍ନ ସଂସାରିଭଙ୍କ, ବୟସ୍କ, ଅତି ସହଜରେ, ଦଶମିକ ନଅ ପୌନ ପୌନିକ କାହିଁକି, ଦଶମିକ ନଅ ଆଠ ପୌନ ପୌନିକକୁ 'ଏକ' ବୋଲି ସାଗ୍ରହେ ବରଣ କରି ନେବାକୁ କୁଣ୍ଠିତ ହେବନାହିଁ ପରା ।

ରଘୁ—କକା !—ଏଇଠି ମୋର ବଢ଼ୁଆବୁଦ୍ଧିହଦ୍—ଏଇଠି ମୁଁ ଜବ୍ଦ—ବୟସର ମୂଲ୍ୟନିରୂପଣ—

ଗୁମାସ୍ତା—ଦେଖ, ତୁମ୍ଭର ଧୋକ୍‌କାର ଆଦୌ କାରଣ ନାହିଁ—ବରଂ ଆମଉପରେ ସଂପୂର୍ଣ୍ଣ ନିର୍ଭର କର, ଦସ୍ତଖତ୍‌ଟା ଆଗେ ରୁଜୁ କରିଦିଅ—

( କାଗଜ ଓ କଲମ ବଢ଼ାଇ ଦେଲେ )

ରଘୁ—କଣ ଲେଖିଚ, ଥରେ—

ଗୁମାସ୍ତା—ଯା ଲେଖା ଲେଖି ହେବ, ଆମେ କଣ କରିବା ନାହିଁ ? ତୁମେ ଖାଲି ଏଇଠି ଗାରେ—

ରଘୁ—ସାଦା କାଗଜରେ ?

( ମହାଜନ ହସି ହସି ପ୍ରବେଶ କଲେ )

ମହାଜନ—'ସାଦାକାଗଜ'—'ସାଦାକାଗଜ', ଭାଇ ! ସେହିଭଳି ସାଦାମନ ତୁମର—କାଳିଦାଗ ଲଗାଇ ସାଦାକୁ କାଳିଆ କରିଦିଅ ନାହିଁ, ଭାଇ—ଏ କାଳିଆ, ଜୁଆଚ୍ଚୋରଙ୍କୁ ବିଶ୍ୱାସକରି, ଆପଣା ପ୍ରତି ବିଶ୍ୱାସ ହରାଇ ବସନାହିଁ, ଭାଇ !

ରଘୁ—( ବିସ୍ମୟ ବିସ୍ଫାରିତ ନେତ୍ରର ଗୁହିଁ ରହିଥିଲେ—କଲମଟା ହାତରୁ ହଠାତ୍ ଖସିପଡ଼ିଲା—ଗୋଡ଼ ଧୂଳି ନେଇ ମହାଜନଙ୍କର ) ଗୁରୁଦେବ !—ମୁଁ ବାଟ ପାଇଚି—ଆଜଠୁଁ ବର୍ଷକ ପରେ ଏ ସମ୍ପତ୍ତିଟା ଛାଡ଼ି ଦେବାର କରିବଥିଲି—କିନ୍ତୁ, ମୁଁ ଅଜର, ଏଇକ୍ଷଣେ, ଆପଣଙ୍କୁ ସମସ୍ତ ଅର୍ପଣ କଲି—ଏଇଭଳି ସାଦା ମନରେ—ସାଦାପ୍ରାଣରେ—( ଗୁଲିଯାଉଥିଲେ )

ଗୁମାସ୍ତା—ରଘୁନାଥ—ସାନ୍ତେମୋର—

( ପଶ୍ଚାଦନୁସରଣ କଲେ )

ରଘୁ—ଅରକ୍ଷିତ ମୁଁ, କକା—( ଫେରି ଆସି ପ୍ରଣାମ ପୂର୍ବକ ) ଏଣିକି 'ରଘୁ ଅରକ୍ଷିତ' ନାଁ ମୋର, ( କହୁ କହୁ ଆପଣାର ସମସ୍ତ ବେଶଭୂଷା ଖୋଲି ଦେବାକୁ ଲାଗିଲେ )

---

## ଦୁଇ

**ଦୃଶ୍ୟ—ଶ୍ରୀକ୍ଷେତ୍ରରେ ଆନନ୍ଦବଜାର ।**

[ମହାପ୍ରସାଦ ସେବାସାରି, ଭକ୍ତମାନେ ଗୁଲି-ଯାଇଛନ୍ତି—ଛେଳି, କୁକୁଆ ସବୁ ଏଣେତେଣେ ବିଗ୍ଭଡ଼ି ହୋଇ ପଡ଼ିଚି—ଗନ୍ଧାବୃତ—ଅଦୂରେ ଶୀର୍ଣ୍ଣାଙ୍ଗ, ବଲ୍କଲବସନ କିଏ ସେ ଜଣେ ଏ ଖପରିରୁ ସେ ଖପରିରୁ ଖୁଣ୍ଟିଖାଣ୍ଟି ଖାଉଥାଏ—ଜାତିଦେଇ ବେଳେ ବେଳେ ଯେ ଗୁଟି ଖାଉ ନ ଥାଏ, ତା ନୁହେଁ; କିନ୍ତୁ, ସେ ପଛପଟକରି ବସି-ଥାଏ—ମୁହଁ ଖାଲି ଖୁଲି ଦିଶୁ ନ ଥାଏ—ଅନ୍ଧାର, ଛାୟା ଆଲୋକର ସଂମିଶ୍ରଣରେ କାଇଁକି ଅସାଧାରଣ ଭଳି ଜଣାପଡୁଥାଏ—ହଠାତ୍ କାୟାବାନ୍ କେହି, ବାରିବା କଠିନ ପରା ।—ତହିଁରେ କୁକୁର ଗୋଟାଏ ଯୋଡ଼ାଏ ଯେ ଆସି ଭାଗିଦାର ଜାଣିରେ ତାକୁ ଖେଦାଇ, ଲୁକି ହେଉ ନଥାନ୍ତି ତା ନୁହେଁ—ତାର କିନ୍ତୁ ଭ୍ରୂକ୍ଷେପ ନ ଥାଏ—ହଠାତ୍ ସେହି ଜାନୁଆରଗୁଡ଼ାକ ଉଦ୍ଧ-ହୋଇ ଚଢ଼ି ଆସିବାରୁ ଉପରକୁ ସେ ଖେଁଦାଇ ଉଠିଲା :—

ରଘୁ—ଆରେ କେତେ ଠକିଲେଇ ଲୁହ ମକମ !—ହାଃ—ହାଃ—

[ ସେହି ବିକଟହାସ୍ୟ ରୋଳରେ, ଲୁକା ଗୁପାପଣ୍ଡି ବନ୍ଦ ହୋଇଗଲା ଯେପରି ]

ରଘୁ—ନାଚ ଦେଖୁଚ ? ନାଚ ଅଚଦ୍ଭୁତାଭଳି ଖେଁକାର ମରୁଚ ? ମୁଁ ପରା ତୁମର ସାଙ୍ଗ—ନା, ନା, ତୁମଭିତରେ ଜଣେ ଅଇଁଠା ଚାଟାଙ୍କ ସର୍ଦ୍ଦାର (କେତେକ ଯାତ୍ରୀଙ୍କ ଆଗମନ ଭୟରେ କୁକୁର ଗୁଡ଼ାକ ପଳାଇ ଗଲେ)

(ନେପଥ୍ୟ)—ଅନୁ—

ରଘୁ—ଅ-ନୁ ! (ସେହି ନାମୋଚ୍ଚାରଣରେ ଅଚଳ ସଚଳ ହେଲାଭଳି ଥରେ ମୁହଁ ବୁଲାଇ ଚାହିଁଲା—ସେତେବେଳକାର ସେହି ବିକୃତ ଭାବାପନ୍ନ ବିକୃତ ମୁଖରେ ମଧ୍ୟ କେଉଁ ମର୍ମବେଦନା ପରିସ୍ଫୁଟ ହୋଇ ଉଠିଲା—କିନ୍ତୁ କ୍ଷଣକେ ଲଭିଗଲା—ସେ ପୁଣି ମୁହଁ ବୁଲାଇ ନେଲା )

× × ×

[ କିଛୁକ୍ଷଣ ଗୋଟାଏ ଗମ୍ଭୀର ନୀରବତା ବିରାଜ କରିବାକୁ ଲାଗିଲା—]

ରଘୁ—( ଅଟ୍ଟହାସ୍ୟକରି ଉଠିଲା ହଠାତ୍ ) ହାଃ—ହାଃ—ହାଃ—

× × ×

ରଘୁ—ମୋର ନା' ? ରଘୁ ଅରକ୍ଷିତ ପରା ?

× × ×

ରଘୁ—ଅରକ୍ଷିତ କାହିଁକି ?—

× × ×

ରଘୁ—ରକ୍ଷା କରିବାକୁ କେହି ନାହିଁ ବୋଲି ନୁହେଁ ? ରକ୍ଷା କରିବାକୁ ଅଛନ୍ତି ବୋଲି,—ଅରକ୍ଷିତ ମୁହିଁ !—

× × ×

ରଘୁ—ମ, ଥଟ୍ଟା ମାରୁଚ ?—'ଅରକ୍ଷିତକୁ ଦୈବ ସହାୟ'—ଏ କଥା କ'ଣ ମାଲୁମ୍ ନାହିଁ ?

× × ×

ରଘୁ—ଅକ୍ଷରେ ଅକ୍ଷରେ ମୋତେ ମାଲୁମ୍, ଭାଇ—

"ପିତାଜନନୀ ବୁହେଁ ମଲେ ।
ମୋତେ ଅନାଥ କରିଗଲେ ॥
ଏଣୁଟି ରଘୁ ଅରକ୍ଷିତ ।
ତୋ ପାଦେ ଶରଣ ବାଞ୍ଛିତ ॥
ହେ ପ୍ରଭୁ ଯାହା ଇଚ୍ଛା କର ।
କିଣିଲା ଦାସ ମୁହିଁ ତୋର ॥"

× × ×

ରଘୁ—ନିଶ୍ଚୟ—ସେହି ଦୈବ ରକ୍ଷା କରୁଛନ୍ତି ମୋତେ—କରୁଛନ୍ତି ନାଚ—କରିବେ ଅନନ୍ତ କାଳକୁ—

× × ×

ରଘୁ—ରଙ୍ଗିଦାଅ ହେ ତୁମର କ୍ଷୀର ଖେଚଡ଼ି—ଯା ଗାଳିରେ ସେହି ମୋର ଅମୃତ—ଯା ପିନ୍ଧୁଚ, ସେହି ମୋର ପାଟ ପତନି !

× × ×

ରଘୁ—ତୁମର 'ହଜୁରେ ବାବାଙ୍କୁ'—ମୋର ବି 'ହଜୁରେ' ବାବା' । ଗଲ—ଗଲ—

× × ×

ରଘୁ—ମ, ମୁଁ ଭଣ୍ଡ ଦେଉଚି ?—ନା, ତୁମେ ଭଣ୍ଡ ହେଉଚ ?—ଲୁଚି, ଛପି, ମଲା ଦେଖୁ ଚ ?—

× × ×

ରଘୁ—ଅଭିମାନ ନ ହେବ ବା କାହିଁକି ?—ମୋର ଏଭଳି କିଶୋର ବୟସ—ତହିଁରେ, ସେ ଭଳି ସୁନ୍ଦରୀ କିଶୋରୀ—ଅମାପ ଧନ ଦୌଲତ !—ସୁତରାଂ ଭୋଗ ବିଳାସର ଉଦ୍ଦାମ ଲାଳସାରେ ହୃଦୟ ମୋର ଭରି ପୁରି ହୋଇ ନ ରହିବ କାହିଁକି ?

× × ×

ରଘୁ—ପାଇଲେ ? ଛାଡ଼ିବି କାହିଁକି ?—କ'ଣ ପିତାଙ୍କ ?—ନା, ନା—ଅଚ୍ଛା ଜଞ୍ଜାଳତ ତୁମେ ! କିଏ ହେ ତୁମେ ? ଭାରି ଗୁଞ୍ଜାଣିଆତ ? ଯା ଭୁଲୁଚି—ଯା କି ନ ପାଇବାର—ସେଇଥିକି ଖୋଳି ବଳାଉଚ !—ସେଇଥିପା ଖୋଲି ମନେ କରାଇ ଦେଉଚ !—ଗଲ—ଗଲ—

× × ×

ରଘୁ—ଏକୁଟିଆ ରହିବି କାହିଁକି ହେ ? ମୋର ଯା' ସଙ୍ଗେ କଥା କହିବାର, ବସୁଚ—ହସିବାର,

ହସୁଚ—ଖେଳିବାର, ଖେଳୁଚ—ଗଲ ଗଲ—
ତୁମେ ଆସି ସବୁ ଭଣ୍ଡୁର କରଦେଲ—ଆମର
ମଉଜ ମଜଲିସ ଭାଙ୍ଗି ଦେଲ—ମୋର
ସାଙ୍ଗମାନେ ଗଲେ କେଉଁଆଡ଼େ ? ତଡ଼ଦେଲ
ନା କଣ ?

× × ×

ରଘୁ—ମୁହଁଟା ଏମିତିକା ବାହ୍ଚାର ଦେଲ ଯେ ?—
ହୋଃ ହୋଃ—ତେମେ ଚିଡ଼ଲେ କେତେ ?
କାନ୍ଦଲେ କେତେ ?—ଫସାରଟା ଭାସିଗଲେ
ଅବା କଣ ? ବାସ୍ନା ଚଢ଼େଇର କି ଯାଏ, ବା'
କଲେ ବସା ହୋଇଯାଏ !—ହାଃ ହାଃ—
(ରଘୁ ଚାଲି ଯାଉଥିଲାବେଳେ, ଗୁଡ଼ିଏ ଯାତ୍ରିଆସି
ପ୍ରସାଦ ସେବନ କରିବାକୁ ବସିଲେ—ରଘୁ
ହଠାତ୍ ଯୁବତୀଟିଏ ଦେଖି, ଚାହିଁ ଠିଆ ହେଲା
କେଉଁ ଟ୍ରାସବରେ )
ଯୁବତୀ—ମୋ, ବୌଲୋ ! ଏଟା କିଏ ଲୋ ?
ଯୁବତୀମାତା—କଣ କି ଅନୁ—?
ଯୁବତୀ—( ହାତଠାର ଦେଖାଇଲା )
ଯୁବତୀମାତା—କେଉଁ ଭକ୍ତ ହୋଇଥିବ—ମୁଁ ବିମଳାଙ୍କ
ମନ୍ଦିରରେ ଚାହିଁ ବସିଚି ତୁମେମାନେ ପ୍ରସାଦସାରି
ଆସିଲ—(ଚାଲିଗଲେ)
ରଘୁ—( ଡାକ୍ତ ନିକଟି କେଉଁ ଲାଳସାପୂର୍ଣ୍ଣ ଦୃଷ୍ଟିରେ
ଯେ ଚାହିଁ ରହିଥାଏ )
ଯୁବତୀପତି—କିଏ ତୁ ? ମୁଁ ଭୂତ ପ୍ରେତ ମାନେ ନାହିଁ
ଜାଣିଥା !
ରଘୁ—ହାଃ ହାଃ ! ମଣିଷକୁ ମାନତ ?
ଯୁବତୀ ପତି—ଖାଲି ମାନେ ନାହିଁ, ନୁହେଁ, ଖୁବ୍
ସଦ୍‌ଭାବ କରିଥାଏଁ, ଯଦି—
ରଘୁ—ଠିକ ନିଜଭଳି ଯବାନ ହୋଇଥାଏ—ଆଜି
ଏଇଭଳି ଯୁବତୀଟିଏ ସଙ୍ଗରେ ତା'ର ଥାଏ—
ଯୁବତୀ ପତି—[ ଅବାକ୍ ହୋଇଗଲେ ]
ରଘୁ—ପାଖକୁ ମୋରଲାଗି ଦେଖିଲ—ଖୁବ୍ ଭିତରକୁ
ଦେଖିଲ, ଅନାଇ ଠିକ୍ ତୁମର ବୟସକି ମୋର
ନୁହେଁ, ଏଇ ଦାଢ଼ି ମୁଛ ଛାଡ଼ି ଥରେ ପରିଷ୍କାର
କର ହଁ, ଆଜି ମୋର ବି ଅଛି ସଙ୍ଗିନୀଟିଏ—
ପ୍ରାଣର ସଙ୍ଗିନୀ—ଠିକ ଏହିଭଳି—ଏହି
ବୟସୀ—ଏହି ନା' ତା'ର—"ଅନୁ ଅନୁ
ଅନ୍ନପୂର୍ଣ୍ଣା ଅନ୍ନପୂର୍ଣ୍ଣା" ଚାଲିଯିବାକୁ ଲାଗିଲା ଏକ
ମୁହାଁ ହୋଇ,—
ଯୁବତୀ—( ଏକାନ୍ତେ ଯୁବତୀପତିକୁ ହେ ହେ ବୋଲି
କଣ କହିବାକୁ ଯାଇ, ଔତ୍ସୁକ୍ୟରେ ମା, ନା
ବୋଲି ରହିଗଲେ )
ଯୁବତୀପତି—( ଧାଇଁଲେ ପଛେ ପଛେ ରଘୁର ) ଆହେ,
ଶୁଣ ଶୁଣ,
ରଘୁ—( ନେପଥ୍ୟେ ) ନା, ନା
ଯୁବକ—ଶୁଣିଯାଅ—ଶୁଣିଯାଅ ମହାପ୍ରସାଦର ଦୁହାଇ
ତୁମକୁ !
ରଘୁ—( ନେପଥ୍ୟେ ଚାଲି ଯାଉ ଯାଉ ) କୌଣସି
ଦୁହାଇ ଅଟକାଇ ପାରିବନାହିଁ ମୋତେ, ଭାଇ !
( ସେହିଭଳି ଦେ ଡାକ ଗୋଡ଼ାଉ ) ଜଗନ୍ନାଥର
ଦୁହାଇ ତୁମକୁ
ରଘୁ—( ନେପଥ୍ୟେ ଅନେକ ଦୂରୁଁ ) ହାଃ- ହାଃ-
ବୃଥା ଚେଷ୍ଟା—ବୃଥା—( ଯୁବକ—ନାଛୋଡ଼-
ବନ୍ଦା ହୋଇ ଗୋଡ଼ାଉ ଗୋଡ଼ାଉ ଯେମନ୍ତ )
'ଅନ୍ନପୂର୍ଣ୍ଣା'ର ଦୁହାଇ ତୁମକୁ—
ରଘୁ—( ଅତିଦୂରେ ) 'ଅନ୍ନପୂର୍ଣ୍ଣାର' !
ଯୁବକ—ହଁ, ହଁ, ତୁମର 'ଅନ୍ନପୂର୍ଣ୍ଣା'ର ଦୁହାଇ—
ଫେରି ଫେରି—ଶୁଣିଯାଅ ଥରେ—ଅନ୍ନପୂର୍ଣ୍ଣାର...
ରଘୁ—( ଫେରିଆସି ଗୋଟାଏ ଟଙ୍କର ଝାପଟାଭଳି )
ଅନ୍ନପୂର୍ଣ୍ଣାର ଖବର ! ଅନୁର ମୋ'ର ? ଚିହ୍ନ
ତାକୁ ? କେଉଁଠା ସେ ହେଲାଣି ? ଠିକ୍ ଏହି
ଭଳି ନା ? ସୁନ୍ଦର, ସୁରସ ଢଳ ଢଳ ?
ଯୁବତୀ-ପତି—ଅବିକଳ, ଭାଇ ?—ଦୁଇ ମିତ ତ
ନୁହନ୍ତି ଦୁହେଁ—ଯେମିତିକା ଦୁଇ.........
( ଯୁବତୀ ଆଡ଼େ ଚାହିଁଲେ )
ଯୁବତୀ—( ହସି ) 'ଭଉଣୀ' ନୋହୁ ତ କ'ଣ ?
ଯୁବତୀପତି—ନା, ନା—ସହୋଦରୀ !—

ରଘୁ—( ଅନିମେଷ ଦୃଷ୍ଟିରେ ସେହି ଯୁବତୀଆଡ଼େ ଚାହିଁ କେଉଁ ସ୍ୱପ୍ନ-ପୁରୀରେ ବିହାର କରୁଥିଲେ ପରି )

ଯୁବତୀ—( ଚମୁକିଦେଇ ) ହେ ହେ—କେମିତିକା ଲୋକ ତୁମେ ? ଦେଖିଲ, ଦେଖିଲ—କେମିତିକା ଅନାଉଛି ସେ,—ଡବା ଡବା ଆଖିକାଢ଼ି ? ଘଉଡ଼ାଇ ଦିଅନା—

ଯୁବତୀ ପତି—(ହସି ହସି) ଭାରି ଭୁକିଲାପରି ସେ !—ଯେତେ ଘଉଡ଼ାଇଲେ କି ?—

ଯୁବତୀ—( ରୋଷଦେଖାଇ ଚାଲିଗଲେ ଦୂରକୁ )

ରଘୁ—( ତଥାପି କେଉଁ ଧ୍ୟାନମଗ୍ନ ହୋଇଥାନ୍ତି )

ଯୁବତୀ ପତି—( ପାଖକୁଯାଇ ) ଅନ୍ନ ଗୁଣ୍ଡାଏ ଖାଇବୁ କି ?

ରଘୁ—( ସେହି ଅବସ୍ଥା ଭାବେ ) 'ଅନ୍ନ'—'ଅନ୍ନ'—ଅନ୍ନପୂର୍ଣ୍ଣା ! ଅନ୍ନପୂର୍ଣ୍ଣା ! ( ଚାଲିଗଲେ )

ଯୁବତୀ-ପତି—ଅହେ, ଶୁଣ, ଶୁଣ—( ଯୁବତୀକୁ ଲକ୍ଷକରି କହିଲେ ) ଡାକ, ଡାକ ନା ଥରେ ଅଭିମାନୀ ଭକ୍ତକୁ ତୁମରି !

ଯୁବତୀ—ତୁମର କ'ଣ ଲଜ ସରମ ହେଇ ଟିକିଏ ନାହିଁ ? ସେହି ବାଯୁାଟା ସଙ୍ଗେ ତୁମେବି ବାଯୁା ହେଲ ନା କ'ଣ ?

ଯୁବତୀ-ପତି—ବାଯୁାଫଳ ଯେ ତୁମ ଜାତି ? କେହି ଖାଇ ବାଯୁା ହୁଏ, କେହିବା ନ ଖାଇ·····

ଯୁବତୀ—ଡେରି ହେଉଛି—ଯାଉ ଦିଅନା ବେଗେ—ବୌ ଯେ ତେଣେ ବ୍ୟସ୍ତ ହେଉଥିବେ—

[ ମହାପ୍ରସାଦ କୁଡ଼ୁଆ ଆଣି ଦହେଁ ସେବା କରିବାକୁ ବସିଲେ ]

ଯୁବତୀ-ପତି—ହଇଗୋ !—ଏ' ସେହି ନୁହେଁ ତ—ମିତ ତୁମର ଯା'କୁ ଖୋଜି ଦେଇଚନ୍ତି ?

ଯୁବତୀ—ତୁମର କ'ଣ ଟିକିଏ ହୋଇ କାଣ୍ଡଜ୍ଞାନ ନାହିଁ ?—ମିତ ମୋ'ର ଖୋଜି ଦେଇଚନ୍ତି ?—ଏହି 'ଅର୍ପିତ'ଟାକୁ ?

ଯୁବତୀ-ପତି—କହି ନାହାନ୍ତି ହାତ ଧରି ତୁମରି—

"ରଘୁ ଅର୍ପିତ ନାମ ତା'ର ।
ଭିକ୍ଷା ମାଗଇ ଦ୍ୱାର ଦ୍ୱାର ॥
ଏ'ଲେଖା ଦେଲେ ତା'ଙ୍କ ହସ୍ତେ ।
ଜୀବନ ଦାନ ଦେବେ ମୋତେ" ॥

ଯୁବତୀ—ନା, ନା, ମୋ'ର ରାଜଜେମା—ରାଜରାଣୀ ମିତର, ସ୍ୱାମୀ କାଙ୍ଗାଳ, ଭିକାରି—ଅର୍ପିତ ଟାଏ ?

ଯୁବତୀ-ପତି—( ହସି ) 'ସୀତା ମାଈ କି ଅଣ୍ଡିରି'—ସାତକାଣ୍ଡ ରାମାୟଣ ଉଣ୍ଡରୁ ?—

"ରଘୁ ଅର୍ପିତ ଦୁଃଖ କଥା ।
ସକଳ ପାଇଲେ ବାରତା ॥
ସମସ୍ତ କୁଟୁମ୍ବ ବସିଣ ।
ଭାବି ଦୁହିତା ପତି ଗୁଣ ॥
ବାଳୁତ କାଳୁଁ ମାତା ପିତା ।
ଖାଇଣି ହୋଇଲା ଅରକ୍ତା ॥
ସର୍ବ ସଂପଦ ନାଶ କରି ।
ଭିକ୍ଷା ମାଗଇ ଦେଶେ ଫେରି ॥
ଅର୍ପିତ ଲୋକ ପ୍ରାୟ ହୋଇ ।
ମିଳଣି ଶ୍ରୀକ୍ଷେତ୍ରରେ ଯାଇ ॥
ସମସ୍ତ ଦ୍ୱାରେ ଭିକ୍ଷା କରେ ।
ପ୍ରାଣ ପୋଷଇ ଅନାହାରେ ॥
ତା'କୁ କେମନ୍ତେ ଝିଅ ଦେବା ।
କରିବା ଅନ୍ୟ ଜନେ ବିଭା ॥"

ଯୁବତୀ—ଥାଉ, ଥାଉ—"ଅନ୍ୟଜନେ ବିଭା" !—ସତୀନାରୀ ଏହା ସମ୍ଭବ ? ଯାଅ, ଯାଅ—ତୁମେ ଆଗ ଖୋଜି ତାଙ୍କୁ ଦେନିଆସ—କାହିଁ ଗଲେଣି ?—ସେ ଆମର ମିତର ସ୍ୱାମୀ—ଆମର ପରମ ବନ୍ଧୁ !—ଚିନ୍ତା ନ କରି ବାନ୍ଧି ନ ଦେବାଯାଏ, ଜଳ ଟୁନ୍ଦା କମିତି ପୁଣି କରିବା, କହିଲ ?

ଯୁବତୀ-ପତି—କି ? ବାଯୁା ସଙ୍ଗେ ଏଥର ବାଯୁାଣୀ ହେଲ ନା କ'ଣ ?

ଯୁବତୀ—ଟାହୁଲି କରିବାକୁ ବହୁତ୍ ବେଳ ଅଛି,—ଚାଲ-ଚାଲ—

ଯୁବତୀ-ପତି—ଆଗୋ ! ଏ' କ୍ଷେତ୍ରରେ ଭଲା କେତେ ଅର୍ପିତ କାଙ୍ଗାଳ ନାହାନ୍ତି ? କେତେ ଅନ୍ନପୂର୍ଣ୍ଣାର

ସ୍ୱାମୀ ନାହାନ୍ତି ?—କେତେ 'ରଘୁ' ନାହାନ୍ତି ? ସେହି ଯେ—

ଯୁବତୀ—ନା, ନା, ତୁମେ ଆଶା ଦେଇ ନିରାଶ କର ନା—ଯାଅ, ଯାଅ—ଗଲ, ଗଲ—ଗୋଡ଼ତଳେ ପଡ଼ୁଛି—ଦାଣ୍ଡରେ କୁଟା ହେଉଛି—ଖୋଜି ଦେନିଅସ ତାଙ୍କୁ—ଯଦି ସେ ନ ହୋଇଥାନ୍ତି, ତା'ଙ୍କଠାରୁ ଖବର ମିଳିବ ନିଶ୍ଚୟ ?

[ ରଘୁ ଅରକ୍ଷିତ ବେଗେ ପ୍ରବେଶ କଲେ ]

ରଘୁ—କି ଖବର, ସୁନ୍ଦରି ? ମୁଁ ନିଶ୍ଚୟ ଆଣିଦେବି । ମୋତେ ଅଜଣା, ଅଛପା, ଏଠାକାର କିଛି ନାହିଁ । ଗୌଡ଼ଭୁବନର କେଉଁ ଗୁପ୍ତଖବର ହେଲେବି,—ନିମିଷକେ ଆଣିଦେବି, ଯଦି, ଯଦି ମୋତେ ତୁମର ଚରଣରେ ଖାଲି ରହିବାକୁ ଦିଅ,—ରାତିକପାଇଁ—ମୁହୂର୍ତ୍ତିକ ପାଇଁ, ସୁନ୍ଦରି । ( ସେତିକିବେଳେ ଦୁଇଟା କୁକୁର କଜିଆ କରି ଉଠିଲେ )

ରଘୁ—ନା, ନା ମାନବ ସମାଜରେ ଯେ ରହିବାର ଅଧିକାର ମୋ'ର ନାହିଁ । ମୁଁ ନିର୍ବାସିତ !—ମୁଁ ଅରକ୍ଷିତ ।

( ଅଭିମାନରେ ଚାଲିଯାଉଥିଲେ )

ଯୁବତୀ—( କେଉଁ ଉଚ୍ଛ୍ୱାସରେ ) ସ୍ୱାମୀ !

ରଘୁ—'ସ୍ୱାମୀ' । ( ଫେରି ଠିଆହେଲେ )

ଯୁବତୀ—( ସେହି ପୂର୍ବ ଉଚ୍ଛ୍ୱାସରେ ) ଭଉଣୀ ଯେ ତୁମର ମୁହଁ—ତୁମ ଦସ୍ତାବିହି—କିଏ ତୁମ୍ଭେ ? ତୁମେ କି ମୋ'ର ମିତ 'ଅନୁ'ର—

ରଘୁ—ସ୍ୱାମୀ ? ହଁ, ହଁ, 'ଅନୁର'—ରାଜଜେମା ଅନ୍ନପୂର୍ଣ୍ଣାର ସ୍ୱାମୀ ମୁଁ—ନା, ନା—ଅସମ୍ଭବ—ଅସମ୍ଭବ—କହିଲି, କହିଲି, ଭଉଣି—'ରାଜଜେମାର' କି ମୋ ଭଳି ଭିଖାରୀ ଅରକ୍ଷିତଟାଏ ସ୍ୱାମୀ ହୋଇପାରେ କେବେ ?

ଯୁବତୀ—ତେବେ ତେବେ, ତୁମର ନାମ—

ରଘୁ—"ରଘୁ ଅରକ୍ଷିତ" ?

ଯୁବତୀ—ସ୍ୱାମି !

( ଭାବ ବିହ୍ୱଳରେ ନିଜ ସ୍ୱାମୀଆଡ଼େ ଚାହିଁଲେ )

ଯୁବତି-ପତି—ତୁମର ପରିଚୟ ଏଇଆ ତ ?

"ଯେବଣି ବଙ୍ଗଦେଶ ନାମ ।
ସକଳ ଦେଶରେ ଉତ୍ତମ ॥
ସେ ଦେଶେ ଏକଇ ସହର ।
ନାମ ତାହାର ହରିପୁର ॥
ସେ ଦେଶେ ଅଟେ ଅଧିପତି ।
ଅଚଳାଚଳ ତା' ସମ୍ପତ୍ତି ॥
ନାମ ତା' କୃଷ୍ଣ ମହାପାତ୍ର ।
ତାହାଏ ଏକଗୋଟି ପୁତ୍ର ॥
ପତ୍ନୀର ନାମ ତା' କମଳା ।
ସଦା ଆନନ୍ଦ ମତି ଭୋଳା ॥
ପୁତ୍ରର ନାମ ରଘୁନାଥ ।
... ... ... ॥"

ରଘୁ—( ଦୀର୍ଘଶ୍ୱାସ ଛାଡ଼ି )......ବହୁ ଦିବସୁ ସେହୁ ମୃତ !— ( ଚାଲି ଯାଉଥିଲେ )

ଯୁବତୀ—ସ୍ୱାମି !—ସ୍ୱାମି ( ବାଟ ଓଗାଳିଲେ - ଲଜ୍ଜା ସରମ ଭୁଲି ଏକାବେଳକେ )

ରଘୁ—ଭଉଣି !—ତୁମେ ଯେଉଁ "ରଘୁନାଥ"କୁ ଖୋଜି ବୁଲୁଛ,—ସେ, ମୁଁ ନୁହେଁ, ମୁଁ ନୁହେଁ ଭଉଣି ।

ଯୁବତୀ—( ହସି ହସି ) ଆମେ 'ରଘୁନାଥ'କୁ ଖୋଜି ବୁଲୁନାହୁଁ ସ୍ୱାମି, ? 'ରଘୁ ଅରକ୍ଷିତକୁ' ?—

"ରଘୁ ଅରକ୍ଷିତ ନାମ ତାର ।
ଭିକ୍ଷା ମାଗଇ ଦ୍ୱାର ଦ୍ୱାର ॥
ଏ ଲେଖା ଦେଲେ ତାଙ୍କ ହସ୍ତେ ।
ଜୀବନ ଦାନ ଦେବେ ମୋତେ ॥

( କହୁ କହୁ, ଲେଖାଟିଏ ଲୁଗା କାନିରୁ ଫିଟାଇ, ବଢ଼ାଇ ଦେଲେ )

ତୁମ୍ଭେ ଗୁପତେ ପାଠ କରି ।
ଦେଇ ଅଛନ୍ତି ତୁମ୍ଭ ନାରୀ ॥"

[ ବଡ଼ ସିଂହାର ବେଶ ବେଳର ଆରତି ଘଣ୍ଟା ବାଜିଉଠିଲା ]

ଯୁବତୀ—( ନିଜ ସ୍ୱାମୀ ପ୍ରତି ) ଆସ, ଆସ—ବଡ଼ ସିଂହାର ବେଶ ହେଲାଣି—

ଯୁବତୀ-ପତି—ଆଜ ଏଣେ ଗଛରେ ଚଢ଼େଇଦେଇ ବଗୁଲାଙ୍କୁ ... ... ...

ଯୁବତୀ—( କାନେ କାନେ ହସି ) କିସୁଣି କାଢ଼ି ନେଇ ତୁ ବଢେଇବା ଉଚିତ ନୁହେଁ କି ?

[ ଉଭୟେ ନୀରବେ ଚୁଲିଗଲେ ]

ରଘୁ—( ଅନତିଦୂରରେ ଦୀପାଲୋକରେ ଏକାଗ୍ରମନେ ଚିଠି ପଢ଼ୁ ପଢ଼ୁ )

"ହେ ପ୍ରିୟତମ ପ୍ରାଣେଶ୍ୱର ।
ମୁଁ ଯେବେ ଦାସୀଟି ତୁମ୍ଭର ॥
ଆସନ୍ତା ଫଗୁଣ ମାସରେ ।
ଶୁକ୍ଳପକ୍ଷ ପଞ୍ଚମୀରେ ॥
ଏ ରାଜ୍ୟ ରାଜ କୁମରକୁ ।
ବାଘ୍ର କରିବେ ମୋତେ ତାଙ୍କୁ" ॥

କ'ଣ ? କ'ଣ ?—( ପୁଣି ପଢ଼ି )

" ଏ ରାଜ୍ୟ ପାଚ କୁମରକୁ ।
ବାଘ୍ର କରିବେ ମୋତେ ତା'ଙ୍କୁ ॥"

ମୁଁ ଥାଉଁ ଥାଉଁ—ବନ୍ଧୁ ଥାଉଁ ଥାଉଁ—ମୋ'ର ନାରୀକୁ—ବିବାହିତା ପତ୍ନୀକୁ—ଅନ୍ୟକଣେ... ( ହିଂସାରେ ଯେମନ୍ତ ଫୁଲି ଉଠି ବାକ୍‌ରୁଦ୍ଧ ହେଲେ—କିଛିକ୍ଷଣ ପରେ ପୁଣି ପଢ଼ିଲେ,—କିନ୍ତୁ କେଉଁ ଶଙ୍କିତ ଚିତ୍ତରେ )

"ଏଥକୁ ଗୁହିଁ ବେଗେ ଆସ ।
ମୋଠାରେ ଯେବେ ଅଛି ଆଶ ॥"

( ଦ୍ୱିଗୁଣ ଉତ୍ସାହରେ ଯେମନ୍ତ କ୍ରୁଦ୍ଧ ଉଠିଲେ କହୁ କହୁ )—'ଆଶ'—'ଆଶ'—ଆଶା ଯେ ପୂର୍ବମାନବାରେ ତୁମଠେଇଁ 'ମୋର ଅନୁ'—( ପୁଣି ପଢ଼ିଲେ, କେଉଁ ଉତ୍ସାହ ଭରେ )

"ଆସ ନ ଆସ ତୁମ୍ଭ ମନ ।
ମୁଁ ଏବେ ଗଣୁଅଛି ଦିନ ॥
ଯେବେ ଏ କଷ୍ଟ ପରଯନ୍ତେ ।
ଦେଖା ନ ଦେବ ତୁମ୍ଭେ ମୋତେ ॥
ପ୍ରାଣ ଛାଡ଼ିବି ଅଭ୍ୱାଘାତେ ।
ଲାଗିବ ସ୍ତ୍ରୀ ହତ୍ୟା ତୋତେ ॥"

'ସ୍ତ୍ରୀହତ୍ୟା' ! (ହତବୁଦ୍ଧି ହୋଇ ଯେମନ୍ତେ)—କି ବୁଦ୍ଧି କରିବ ?

"ପଥ ଅଟଇ ମାସକର ।
ନ ଗଲେ ମଲା ପ୍ରିୟା ମୋର ॥
କଣ୍ଠ ରହିଲା ଦଶ ଦିନ ।
ନ ଗଲେ ଯୁବତୀ ରତନ ॥

( ଆଙ୍ଗୁଳରେ ଗଣି )

କଷ୍ଟେ ମରିବ ଆତ୍ମାଘାତେ ।
ଏଥକୁ ସାହା ଜଗନ୍ନାଥେ ॥"

[ ସେତିକିବେଳେ ଯୁବତୀ ହସି ହସି ପ୍ରବେଶ କଲେ ]

ଯୁବତୀ—ଈଁ ହୁଁ—'ଏଥକୁ ସାହା' ନିଜ ହାତେ !—ନେଲ, ନେଲ, ପିନ୍ଧିପକାଇଲ—ପା ମିଳିଲା, ଭାଇ, ଲୁଗା ପେଣ୍ଡିରୁ—ଛି, ଛି, ଏମିତିକା ନାସ୍ତିନାବା ଦେଖିଲେ, କେଉଁ ଟୋକୀ ଭଲ—

ରଘୁ—ଭଉଣି ! ଏ କଥା କ'ଣ ସତ ?—ପୁଣି 'ବାଘ୍ର'... ?

ଯୁବତୀ—ହେବାକୁ କଣ ମନା, ଦଗାଦାର ?—ତୁମେ ପୁରୁଷ ହୋଇ ୧୬ଟା କରିପାର ସ୍ଥାନଖୋଜରେ—ଆଉ, ଆମେ ସ୍ତ୍ରୀଲୋ ବାଘ୍ର ଥରେ କଲୁ ବୋଲି ବାଟରେ କଣ୍ଟା ପଡ଼ିଗଲା—ସ୍ୱାମୀ ତେଣେ ଘୋଡ଼ପଲର ଦେଇ ମନେ ମନେ, ମନ ଖୁସିରେ ଆଉ କେଉଁ ପାକୀ ଖୋଜି ବୁଲୁଥାଉ, କି ଛତରରେ ଖାଇ ବୁଲୁଥାଉ ?—

ରଘୁ—ଆଉ ଗଞ୍ଜନା ଦିଅନା ମୋତେ, ସୁନ୍ଦରୀ—ଉପାୟ ବତାଇ ଦିଅ—ଏ' ମାସକର ବାଟ କେମିତି—

ଯୁବତୀ—ଆଚ୍ଛା, ତୁମେ ଯା'ଙ୍କୁ ଭଲ ଭଲ ଏମିତିକା କାଲି ଖପର୍ ହେଲାଣି—ତୁମର ସେହି କାଲିଆଙ୍କର କରାମତି କ'ଣ କିଛି ଟିକିଏ ହେଲେବି ନାହିଁ ?—

ରଘୁ—( କେଉଁ ସନ୍ଧାନ ପାଇ ଯେମନ୍ତ, ଉତ୍ସାହିତ ହୋଇ, ମନ୍ଦିରଆଡ଼େ ଗୁହିଁଲେ—ସନ୍ତୁଷ୍ଟ ନୟନରେ )

ଯୁବତୀ—ଅହେ, ସେ ଧପାଦିଅ କାଲିଆ କଥା ଛାଡ଼—ସାଦା ସିଧା ଧୋବଲାକୁ ଗୁହଁତି—କାମର କଥା ଯା ତା' କରନ୍ତି—ଆହୁରି ଆଠଦିନ ଏ'ଠାରେ ଆମର ରହିବାର କଥା ଥିଲା—କିନ୍ତୁ ଆଜି,

ଗତ ପାହାନ୍ତା ଘର ବାହୁଡ଼ା ହେବୁଁ ବୋଲି
ଘର ଲୋକଙ୍କୁ ରାଜ୍ଯ ଝୁଜା କରେଇଚି—ତୁମେ
ବେଗେ ତୁମର ଗଣ୍ଠିଲି ପଠର ବାନ୍ଧ ଆମସଙ୍ଗେ
ଆସି ମିଶିଲ—ଦକ୍ଷିଣପାର୍ଶ୍ୱ ମଠର ସେହି ଲମ୍ବା
ଶାହାଲଝା—ସମ୍‌ଝିଲ ?

( କଟାକ୍ଷ ହାଣି କାନ୍ଥହିର ଚାଲିଗଲେ )

ହଁ, ଦେଖ—ସେମିତକା 'ବାବନାଭୂତ'
ବେଶରେ ଅସିଲେ କାଲୁ, ଘୁଡ଼ିପଲାଇବୁ ଟି—
ହଁ—( ପୁଣି କଟାକ୍ଷ ହାଣିଲେ )

ରଘୁ—ସେ ଯେଉଁ କଟାକ୍ଷ ଚାହାଣୀ—ସେଥିରେ,
ବାବନାଭୂତ ତ ଛାର—ଭୂତର ବସା, ବାବନ୍ଧ
ଗଛର ହାଣି ହୋଇ କେଉଁଠି ପଡ଼ିବ ଯେ,
ଠିକଣା ମିଳିବ ନାହିଁ ?

ଯୁବତୀ—ନା, ନା, ଭାଇ—

ଗୀତ

ବୋଲୁଛ ଯା'—ଅମର କଦର ।
ତୁଚ୍ଛ, ବିନା ତୁମ୍ଭର ଆଦର ॥
ରାଜକୁମାରୀ—ଭାଲି, ଭାଲି—
ପଲଙ୍କେ ସେଠ ପଡ଼େ ଢଳି—
ଉଡ଼ିପବନେ—ଉଡ଼ ବହନେ—
ସୁନାକାଠି ତୁମ୍ଭର କର ॥

( ନେପଥ୍ୟେ ଯୁବତୀ-ମାତା )—ଅନୁ !—
ବାହାରିଆ—ଦେଉଳ ଶୋଧନ ହେବ ପରା—

ଯୁବତୀ—ଶୁଣୁଛତ—ଆସ, ଆସ, ବେଗେ ବାହାରି—

( ଚାଲିଗଲେ )

ରଘୁ—( ଲୁଗାଟା ପିନ୍ଧୁ ପିନ୍ଧୁ, ଫିଙ୍ଗିଦେଇ )
'ଉଡ଼ିପବନ' !—'ଉଡ଼ିପବନ' !—ମୁଁ ଉଡ଼ିବି
ବହନ !—'ସୁନାକାଠି ତୁମ୍ଭର କର'—ହଁ,
ହଁ—ସ୍ତ୍ରୀଇଁ ବଞ୍ଚାଇବି ସତ୍ୱର !—( କାନ୍ଥକାଳ
ଯାଏ ଇତସ୍ତତଃ ହେବା ପରେ, ନୀଳଚକ୍ରକୁ
ଅନାଇ, ଏକମାତ୍ର ସହାୟ ମଣି ଯେମନ୍ତ
ଦୃଢ଼ଭାବେ— )

"ନମୋ, ନମୋ ହେ ଚକ୍ରପାଣି !
ଚିନ୍ତାର୍ଥ ଜନ ଚିନ୍ତାମଣି ॥
ନମସ୍ତେ ବାଞ୍ଛା-କଳ୍ପତରୁ !
କୃପା-ସମୁଦ୍ର ମହାମେରୁ ॥
ଭକ୍ତ୍ୟ-କାମନା କାମ-ଧେନୁ !
ଘୋର ବିପତ୍ତି ତମଭାନୁ ॥
ମୋର ଶଙ୍କଟ-ନିବାରଣ !
ତୁମ୍ଭହୁଁ ନାହିଁ ଅନ୍ୟଜନ ॥
କାସ କରିବି ଦେବ ସ୍ୱାମି !
ତୁମ୍ଭେ ତ ସର୍ବ ଅନ୍ତର୍ଯ୍ୟାମୀ ॥
ବାରେକ ଫେଡ଼ ଅଭିମାନ !
ନୋହିଲେ ଗଲାଟି ଜୀବନ ॥
ପ୍ରଭୁ ନୋହିଲେ ସାହାପକ୍ଷ !
ସଂସାରେ ନାହିଁ ମୋତେ ରକ୍ଷ ॥"

( ଭାବ ବିକଳରେ )—ପ୍ରଭୁ !—ପ୍ରଭୁ—!

"ପଥ ଅଟଇ ମାସକର !
ନଗଲେ ମଲା ପ୍ରିୟା ମୋ'ର ॥
କଣ୍ଠ ରହିଲା ଦଣ୍ଡଦିନ !
ନ ଗଲେ ଯୁବତୀ ରତନ ॥
ନିଷ୍ଟେ ମରିବ ଆମ୍ବାଘାତେ !
ଏଥିକୁ ସାହା ଜଗନ୍ନାଥେ ॥"

( ସେଇଠି, ସେଇଭାବେ, ଭଜୁ ଭଜୁ ବାହ୍ୟଜ୍ଞାନ
ଶୂନ୍ୟ ହୋଇ ବସିପଡ଼ିଲେ )

[ ହସି ହସି ଜଗନ୍ନାଥ ବାଳକୃଷ୍ଣ ବେଶରେ
ପ୍ରବେଶ କଲେ ]

ବାଳକୃଷ୍ଣ—

ଗୀତ

ମନର୍ ଯୋର୍ ତୋ' ଯେତେ !
କାୟା ତୋ' ଉଡ଼ିବ ତେତେ ॥
ଓଙ୍ଗା ନୁହେଁ କେତେ ଭାର—
ଉଡ଼ି ବୁଲେ ଶଲ ପର;
ଯେଉଁ ବଳ ଲୋଡ଼ା ତହିଁ—
ଅଣିଛୁରେ ତୁହି ଯେତେ ॥

[ ବାଳକୃଷ୍ଣ ମୃଦୁ ମୃଦୁ ହସି, ଇଙ୍ଗିତ କଲେ—
ଶୂନ୍ୟେ ରଘୁର ସେହି ନିଶ୍ଚଳ ଯୋଗାରୁଢ଼ କାୟା
ଭାସି ଉଠିଲା ]

## ତିନି

**ଦୃଶ୍ୟ :—କଳାବତୀ ପୁର ।**

[ ରଘୁଅରକ୍ଷିତଙ୍କ ଶ୍ୱଶୁରଘର—ବାହାରପଟେ ପିଣ୍ଡାରେ, ପୂର୍ବଭଳି 'ରଘୁ' ଚିନ୍ତାମଗ୍ନ—ମୁଖର ଭାବେଙ୍ଗିତରୁ ବେଶ୍ ଜଣାପଡୁଥିଲା, କେଉଁ ଗଭୀର ସ୍ୱପ୍ନର ଘୁମ୍ଘୁଟା ଏ'ପର୍ଯ୍ୟନ୍ତ ଯେମନ୍ତ ଲାଗିରହିଚି— ପ୍ରଭାତର ସ୍ପଷ୍ଟାଲୋକ ସୁଦ୍ଧା ଅପସାରିତ କରିପାରି ନାହିଁ ]

ରଘୁ—(ନିଦବାଉଳାରେ, ଗଭୀରୋଚ୍ଛ୍ୱାସରେ ଦୀର୍ଘଶ୍ୱାସ ଛାଡ଼ି ) "... ... ... ...

ଆସ ନ ଆସ ତୁମ୍ଭମନ ।
ମୁଁ ଏବେ ଗଣୁଅଛି ଦିନ ॥
ଯେବେ ଏ'କଣ୍ଠ ପରିଯନ୍ତେ ।
ଦେଖା ନ ଦେବ ତୁମ୍ଭେ ମୋତେ ॥
ପ୍ରାଣ ଛାଡ଼ିବ ଅସ୍ମାଘାତେ ।
... ... ... ..."

( ଯେମନ୍ତ ସହ୍ୟ କରି ନ ପାରି, କେଉଁ ଆବେଗ-ଭରେ ଟେକିଁ ଉଠି ) ପ୍ରଭୁ—ପ୍ରଭୁ—

( ପୁଣି ଆଖିମୁଦି ପ୍ରାର୍ଥନା କଲେ )

"ନୋହିଲେ ତୁମ୍ଭେ ସାହାପକ୍ଷ ।
ଫସାରେ ନାହିଁ ମୋତେ ରକ୍ଷ ॥"

( କିଛିକ୍ଷଣ ସେହିଭଳି ଧ୍ୟାନମଗ୍ନ ରହିବା ଉତ୍ତାରୁ, ଆଖି ମେଲାଇ ମିଞ୍ଜି ମିଞ୍ଜି ଚାହିଁ ଚାହିଁ ଏଣେ ତେଣେ )

ଏଁ—ଏଁ—ଏଁ' କେଉଁଠି ମୁଁ ?—

"ଚାରିଆଡ଼େ ଦେଖୁଚି ଚାହିଁ ।
ମୁହିଁତ ଶେଯବରେ ନାହିଁ ॥"

... ... ...

ଥିଲି ମୁଁ ସିଂହଦ୍ୱାରେ ଶୋଇ ।
କେ ମୋତେ ଗଲା ଏଥେ ଥୋଇ ?
ଏହା ମୁଁ ଜାଣିବି କେମନ୍ତେ ।
ତାହାକୁ ପଚାରିବ ଏଥେ ॥"

( କେଉଁ କଥାଗୁଡ଼ାକ ସ୍ମରଣ ହେଉଚି ବୋଲି, ମନେ ହେଲା, କିନ୍ତୁ ଠିକ୍ ମନେ ପଡ଼ିଲା ନାହିଁ, ଗଭଚେଷ୍ଟାରେ ସୁଦ୍ଧା,—ସଚେତ, ସମୁଦାୟ ଘଟଣା କାଏ ଲଭାଇ ଦେଉଚି ଓଦାକନାରେ— ତଥାପି ଅସ୍ପଷ୍ଟ ଦାଗରୁ ବେଶ୍ ବୁଝାଯାଉଥାଏ, ଗୋଟାଏ କଣ ଘଟିଥିଲା ବୋଲି,—କିନ୍ତୁ ହାତୀ କି ଘୋଡ଼ା, ଜାଣିବାର ଜୁ ନାହିଁ )

( ଏହି ସମୟରେ ଭିକ୍ଷୁକଟିଏ ପ୍ରଭାତୀ ଗାଇ ଗାଇ ବାଟରେ ଗ୍ଲଲିଯାଉଥିଲା )

ଭିକ୍ଷୁକ—

ଗୀତ ।

ଚିନ୍ତାମଣି ବିନା କେ
ଚିନ୍ତାମୋ' ପାରେ ଜାଣି ।

× × × ×

ରଘୁ—( ଧାଇଁ ଆସି )—ଭାଇ !—

"ଅଟଇ ଏହି କେଉଁ ଗ୍ରାମ ।
ତାହାର ଅଟେ ଏ ଆଶ୍ରମ" ?

ଭିକ୍ଷୁକ— "ଏ ଅଟେ କଳାବତୀ ପୁର ।
ଏ' କୃଷ୍ଣ ମହାପାତ୍ର ଘର ॥"

ରଘୁ—( ଛନ୍କା ପଶିଲା ଭଳି ଚାହିଁ ରହିଲେ )

ଭିକ୍ଷୁକ—( ଭ୍ରୂକ୍ଷେପ ନ କରି ଆପଣା ମନେ ଗାଇ ଗାଇ ଗ୍ଲଲିଗଲେ )

ଗୀତ ।

ଚିନ୍ତାମଣି ବିନା କେ—
ଚିନ୍ତାମୋ' ପାରେ ଜାଣି ॥

× × × ×

ରଘୁ— "ଯଥାର୍ଥ ଅଟେ ଭିକ୍ଷମଣି ।
ଚିନ୍ତାମୋ' ଜାଣି ଚକ୍ରପାଣି ॥
ପେସିଲେ ମାୟାବଳେ ଏଥେଁ ।
ଆବର ବଳେ ନୋହେ ଏତେ ॥"

( ନେପଥ୍ୟେ, ଦୂରେ ଦୂରେ ଭିକ୍ଷୁକ ଗାଇ ଯାଉଥିଲା )—

ଗୀତ ।

ବ୍ରହ୍ମାଣ୍ଡ ଯା'ର ଖେଳ ଘର—
ଏ'କଥା କେତେକ ମାତର—

× × × ×

ରଘୁ—ଠିକ୍, ଠିକ୍ କହୁଚ, ଭାଇ—
"ବ୍ରହ୍ମାଣ୍ଡ ଯା'ର ଖେଳଘର ।
ଏ'କଥା କେତେକ ମାତର ॥"

( ନେପଥ୍ୟେ ଅତି ଦୂରେ ପୁଣି ଶୁଣାଗଲା ଭିକ୍ଷୁକ ମୁହଁରେ ସେହି ଘୋଷ ପଦଟି )

ଗୀତ ।

ଚନ୍ଦ୍ରାମଣି ବିନା କେ—
ଚନ୍ଦ୍ରା ମୋ'······(ମିଳାଇଗଲା)

ରଘୁ—ଚନ୍ଦ୍ରାମଣି । ଚକ୍ରପାଣି । ଏ'କ ଚକେ ଘୂରାଇଲ ମସ୍ତକ ପୁଣି······

( ସେହି ଘରଆଡ଼େ ଅନାଇ, ଅତି ବିଶ୍ୱାସରୁ, ଅବିଶ୍ୱାସର ଧୋକାରେ ଯେପରିକି ଉନ୍ମାଦପ୍ରାୟ ହୋଇଗଲେ )

[ ରଘୁର ଶଳା ତୁଇଜଣ ସେତିକିବେଳେ ପ୍ରବେଶ କଲେ ଆଖି ମଳୁ ମଳୁ—ରଘୁକୁ ଝୁଣ୍ଟି, ପଡ଼ିଗଲେ ତା'ଉପରେ—]

ଶଳାମାନେ—କିଏ ରେ, ଶଳା ?—ସଖୀଳ୍ପଟାରେ···

ରଘୁ—(ହସି) ଭେଣେଇ ପଣ ତମର, ଭାଇନା !—

ଶଳାମାନେ—କ'ଣ କହୁଲୁରେ, ଶଳା ?—

ରଘୁ—(ହସି) 'ଭେଣେଇ' । 'ଭେଣେଇ' । ଏ' ଫୁଲ ସଖୀଙ୍କୁ ଭେଣେଇର ମୁଖକମଳ ଦର୍ଶନ କି କମ୍ ଭାଗ୍ୟର······?

୧ମ ଶଳା—'ଫଳ'ଟା ନଗଦା ନଗଦ ଦେଇ ଦେଉଛି ଫୁଲ ସଖୀଳର, ଚେମା—

୨ୟ ଶଳା—( ତୁଇଗୁଣ ବାଧା କସିଦେଇ ) କେମିତି-କାରେ ? ମିଠା ନା ଖଟା ?—

ରଘୁ—(ହସି ହସି) ପଚାରୁଚ ପୁଣି ?—ଏ'ପରି ଶଳା-ବାଧା ?

୧ମ ଶଳା—ହିଁ—ରହ, ଶଳା-ମର 'ବାଦାକାଠ' ଭଲ କର ଆଦାୟ କର ନେଉଚୁ—

୨ୟ ଶଳା—ନଙ୍ଗଳା ମୁକୁଳା କର, ଗାଁ ଗୋଷ୍ଠୀତ ଯାକ ଯଦି ନ ବୁଲାଇଚ, ଦାଣ୍ଡେ ଦାଣ୍ଡେ······

( ଲୁଗାପଟା କାଢ଼ିନେବାକୁ ଯାଉଥିଲା )

ରଘୁ—( ହସି ) ଏହାହିଁ ତ ଦରକାର, ଭାଇନା—ଭେଣେଇ ବୋଲି ଚଢ଼ିବାକୁ ଜଦା ପିମ୍ପୁଡ଼ି ବି ବାକି ରହିବେ ନାହିଁ ତା'ହେଲେ ।

ଶଳାମାନେ—(ଅପ୍ରସ୍ତୁତଭାବେ ଓ ସନ୍ଦିଗ୍ଧ ଦୃଷ୍ଟିରେ ପରସ୍ପର ପ୍ରତି ଚାହିଁଲେ)

( ନେପଥ୍ୟେ, ଅନ୍ନପୂର୍ଣ୍ଣା )—କୁ—କୁ—

୨ୟ ଶଳା—କ'ଣକି, ଅନ୍ନୁ ?—(ଭିତରକୁ ଦୌଡ଼ିଗଲା)

ରଘୁ—ଭାଇ !—କେମିତିକା ଅଛ ? ସବୁ ଭଲତ ? ବାବା, ମା ସମସ୍ତେ ଭଲ ଅଛନ୍ତିତ ?—

୧ମ ଶଳା—( ଘୃଣାଭରେ ) ହଁ, ହଁରେ, ସମସ୍ତେ ଭଲ । ଭଲରେ ଭଲରେ ତୁ ବାହାରିଲୁ ଆଗେ—ସଖୀଙ୍କୁ, କାଙ୍ଗାଳ, ଅର୍କ୍ଷିତଟାଏ—

ରଘୁ—ପ୍ରକୃତରେ ମୁଁ ଅର୍କ୍ଷିତ, କାଙ୍ଗାଳଟାଏ, ଭାଇନା—ସଖୀଙ୍କୁ—ତୁମର ଦ୍ୱାରେ—ତୁମରି ଭରସାରେ ···କାହିଁ, କାହିଁ ତୁମର ସେହି ଦୁଲାଳୀ, ଆଦରଣୀ, ସାତଭାଇରେ ଚମ୍ପା'······

୧ମ ଶଳା—କ'ଣ ?—( ଘଉଡ଼ାଇବାକୁ ଯାଉଥିଲା ପାଖଅ ଖୁଣ୍ଟଟା ଟାଣିଆଣି )

୨ୟଶଳା—ହାଁ, ହାଁ,—( ଧାଇଁ ଅସିଲା, ଓ କ'ଣ କହିଲା କାନେ କାନେ )

"ଭଉଣୀ ଦେଖି ମହାସୁଖୀ ।
ସବୁରି ଗଲା ମୁହଁ ଶୁଖି ॥"

୧ମଶଳା—କ'ଣ କହୁଚୁ ତୁ ?

( ସେହି ହତାଶଭାବ ଯୋଗୁଁ ଠେଙ୍ଗାଟା ପଡ଼ିଗଲା ତଳେ )

"ଏ'ବେଳେ ଦଇବ କି କଲା ।
ଅସିତ ମନ୍ଦଭୁତ୍ୟ ହେଲା ॥"

ନା, ଚେମା—ଅଣ ଠେଙ୍ଗା—( ଉତ୍ତେଜିତ ହୋଇ ଉଠୁଥିଲା )

୨ୟ ଶଳା—ନା, ଭାଇ—( କାନେ କାନେ )

"ନକଲେ ଏହାକୁ ଅର୍ଚ୍ଚନା ॥
ପାଇବା ଲୋକେ କନ୍ଦାସିନା ।"

୧ମଶଳା—ନିନ୍ଦାହେଲେ ହେବ ପଛକେ—ମୁଁ ······ଟେକେଇଁ···

୨ୟ ଶଳା—( କାନେ କାନେ କଣ ମନ୍ତ୍ର ଫୁଙ୍କିବାକୁ ଲାଗିଲା )

୧ମଶଳା—( ସହାନୁଭୂତି ସୂଚକଭାବେ ଯେମନ୍ତ ) ଭାଇ !—ଛି, ସେମିତକାଠା ଉଖମାରିଲା ଭଳି, ଗୋଡ଼ଭାଙ୍ଗି ଠିଆ ହୋଇଚ ନା ?

୨ୟଶଳା—ଲୋକେ ଦେଖିଲେ, କହିବେ କ'ଣ ଭଲା ?—ତୁମର ପିତା ମାନ ମହତକୁ—

ରଘୁ—କ୍ଷମା କରିବ, ଭାଇନା—ସେ'ଠା ଅଭ୍ୟାସ ପଡ଼ି ଗଲାଣି କି ନା—ନିନ୍ଦା ଅପମାନ—ଲାଜସରମ ସବୁ ପରା ପୋଡ଼ି ଗଣ୍ଠିଏ କରି ଦେଇ ସାରିଚି ?—ନା, ନା, ମୁଁ "ରଘୁନାଥ"—'ଧନୁର୍ଭଙ୍ଗ ପଣେ' ଉପସ୍ଥିତ ଜନକ ମନ୍ଦିରେ !—

୧ମଶଳା—(ବ୍ୟଙ୍ଗଭାବେ) ହଉହେ 'ଜାନକୀଜୀବନ'—ଆସନ୍ତୁ ଘରକୁ ବହନ ( ସମାଦର ପୂର୍ବକ ଭିତରକୁ ଘେନି ଯାଉଥିଲା )

୨ୟ ଶଳା—ଏହି ଯେ ବନ୍ଦାପନା କରିବାକୁ ଆସିଗଲେଣି ସଖୀବୃନ୍ଦ !—

[ ନେପଥ୍ୟେ ନାରୀମାନଙ୍କର ସମବେତ କଣ୍ଠରେ ହୁଳହୁଳି ଓ ଶଙ୍ଖଧ୍ୱନି ଶୁଣାଗଲା ]—

ରଘୁ—( ଉତ୍‌ଫୁଲ୍ଲ ନେତ୍ରରେ ସେହିଆଡ଼େ ଚାହିଁଥିଲେ )

୨ୟଶଳା—( ୧ମର କାନେ କାନେ )

"ସ୍ନେହ ଆଗେ ଭିତରେ ଯିବା ।
ସ୍ନାନ ମାର୍ଜନା କରାଇବା ॥
ଦିବ୍ୟ ବସନ ପିନ୍ଧାଇବା ।
ନାନାଦି ଅଳଙ୍କାର ଦେବା ॥"

୧ମ ଶଳା—( 'କପଟ ରଙ୍ଗିଣ ହୃଦରେ ।
ତୋଷିଲେ ଅନେକ ପ୍ରକାରେ ॥' )

ଭାଇ, ମନରେ କିଛି ଧରି ନାହଁତ, ଭାଇ ?—
( ହାତ ଧରିଲେ )

ରଘୁ—( ହସି ) ଊହୁଁ—ଏ 'ଶଳାର' କଥା ମାର୍ଗେ, ଖୋଲା ଫାଁକାଭିଥା ହେଲା ନାହିଁ ତ ?

୧ମ ଶଳା—( ଟିକିଏ ଧୋକା ଖାଇଲା )

୨ୟଶଳା—ହାଁ, ସ୍ୱାଙ୍ଗର କହିବ ଯେ, ଠିକ୍ ଭେଣେଇ !

ରଘୁ—(ହସି) ନକଲ ମନେ କରିଥିଲ ନା କଣ ?

୧ମଶଳା—( ଟିକ୍କା ମାରିବା ଉଦ୍ଦେଶ୍ୟରେ ) ଅସ୍‌ଲ, ନକ୍‌ଲ ଚିହ୍ନିବା ପରା ଭାରି ଦାୟ ଆଜିକାଲି !

୨ୟଶଳା—ସେଥିରେ ପୁଣି ଯେଉଁ ବେଶର ପରିପାଟୀ !

ରଘୁ—( ହସି ) ଚିହ୍ନାରି ଜହୁରି ତ ପାଖେ ପାଖେ ଅଛି—କଷୋଟି ନେବାକୁ—କେତେ ବାଟ ?

ଶଳାମାନେ—( ଅପ୍ରସ୍ତୁତ ହୋଇଗଲେ ପରା )

( ନେପଥ୍ୟେ ଶାଶୂ )—କେମିତକା ଅକ୍‌କଲମ ତୁମର ସବୁ—କୋଉଁ ପୁଅକୁ ଦାଣ୍ଡ ମଝିଁଠାରେ ଠିଆ କରି,—ଛି, ଛି—

ରଘୁ—ମା ! ( ବ୍ୟଗ୍ରଭାବେ ଭିତରକୁ ଦୌଡ଼ିଗଲେ ପ୍ରଣାମ କରିବା ଉଦ୍ଦେଶ୍ୟରେ ପରା )

ଶଳାମାନେ—( ଆପଣାଭିତରେ କଣ ଠାରଠାରି ହୋଇ ବିପରୀତ ଦିଗେ ପ୍ରସ୍ଥାନ କଲେ )

× × ×

[ ଅନ୍ନପୂର୍ଣ୍ଣା ଲାଜସରମରେ ମୁଣ୍ଡର ଓଢ଼ଣୀଟା ଟାଣୁ ଟାଣୁ, ଧାଇଁ ଆସିବେ କିନା, ବାଡ଼ଦ୍ୱାର କୁଅ ନନ୍ଦଅଟାକୁ ହାବୁଡ଼ିଗଲେ—ପୋଇଲିଟିଏ ଗୋଡ଼ାଇ ଥାଏ ]

୧ମ ପୋଇଲି—ହଁ, ହଁ—କୁଅଟା—ଭଙ୍ଗାନନ୍ଦଅ—ହୁସିଆର ।

ଅନ୍ନ—ଛି, ଛି—ମିଣିପଟା—

୧ମ ପୋଇଲି—( କଥାଛଡ଼ାଇ ) "ଏଡ଼େ ଅଲାଜୁକ ନା" ? ନା, ନା, ସହି—ତା' ନୁହେଁ—ତା ନୁହେଁ—

ଗୀତ

ଆସିଛି ସେ କେଉଁ ବୁଲୁଭିରି ପ୍ରାଣେ ।
ପ୍ରାଣେ ଘେନି କେଉଁ ଆବେଗ କେ ଜାଣେ ॥
ହୀର କିଳି ହୂରେ ରହିଲେ ଏସନ—
ଠେଲି ନ ପଶିବ, ଭାବୁଚ କେସନ ?

× × ×

[ ୨ୟ ପୋଇଲି ସବେଗେ ପ୍ରବେଶ କରି ଗାଉ ଗାଉ ଶେଷ ପଦଟି ]

୨ୟ ପୋଇଲି—କାନ୍ହୁ—

ଗୀତ

ତୁହେଁ ଛନ୍ଦ ପରି ସମାନେ, ସମାନେ ॥

ଅଳ—( ହଠାତ୍ ଅଣାନିଶ୍ୱାସି ହୋଇ ଉଠୁଥିଲେ )—ମୋତେ ରଖିଥୋଇ ଦ'ବ ନାହିଁ ନା କଣ ?—

( କୁଞ୍ଜଆଡ଼େ ପଳାଇ ବସିଲେ )

୨ୟ ପୋଇଲି ସଙ୍କେତ ଏଥର ତୁଙ୍ଗୁଡ଼ିତ, ଲଳିତେ ?—

ଗୀତ

କୁଞ୍ଜେ ବଜେ ଭର କୁଞ୍ଜର ଗାମିନୀ ।
କୁଞ୍ଜ ବିହାରିଙ୍କୁ ଅଣିବା ଗୋ ଝାଣି ॥

( ନାକରେ ଦଉଡ଼ି ଦେଇ )

ଅଳ—( ଅଧର ଦଂଶନ ପୂର୍ବକ କ୍ରୋଧର ଭାବ ଦେଖାଇବାକୁ ଯାଇ, ଉଚ୍ଛ୍ୱସିତ ଆନନ୍ଦଟାକୁ ରୁଦ୍ଧି ନ ପାରି ଲଟିହୋଇ ଲୁଚିଗଲେ ପରି )

୧ମ ପୋଇଲି—( ପାଖକୁ ଧାଇଁ ଯାଇ )

ଗୀତ

ଏ'ଖେଳ-ଗୁହୁରି—
ଖେଳିବୁ ଚତୁରି—
ଭେଟା ଭେଟି ଯେବେ, ନାଗର ନାଗରୀ—

୨ୟ ପୋଇଲି—( ନେପଥ୍ୟକୁ ସଙ୍କେତ କରି କରି ୨ୟାର କାନେ କାନେ ଏକାନ୍ତେ )

ଗୀତ

ଅନାଲୋ, ମିତଣି—ରଙ୍ଗେ ଗୁଣମଣି
ଖଞ୍ଜେ ଅଛେ କିବା—ପାଦ ଗଣି, ଗଣି ॥

[ ସୁବେଶ, ସୁନ୍ଦର ରଘୁନାଥ, ଅଳପୂର୍ଣ୍ଣାକୁ ଲକ୍ଷ୍ୟ କରି ଏକାଳାଯୁତରେ ଆସୁଥିଲେ—ସଖିମାନେ ଅଡ଼େଇଗଲେ ]

ରଘୁ—ଏ' କଣ, ଛଇଳ ? ମୃଗତୃଷ୍ଣା ଭଳି ଛଳାଇ ମାରିବ ନା କ'ଣ ? ଶେଷେ ଚନ୍ଦ୍ରମୁହଁରେ କଳଙ୍କ ଲେପିହେବାକୁ ? (ପଣତ ଧରିଲେ)

ଅଳ—ଛି, ଛି, (ଆଖିଟିପୁ ଥା'ନ୍ତି ସଖୀମାନଙ୍କ ଥିବାଦିଗେ ଇଙ୍ଗିତକରି)

ରଘୁ—(ଚାହିଁ ରହିଥା'ନ୍ତି)

ଅଳ—ପଣତ ଛାଡ଼ନା ?—

ରଘୁ—ଛାଡ଼ିଲି ତ ? (ଆହୁରି ଭିଡ଼ିଧରୁଥିଲେ)

ଅଳ—( କେଉଁ ମର୍ମୋଚ୍ଛ୍ୱାସରେ ଗାଇ ଉଠିଲେ ଯେମନ୍ତ, ଅନ୍ୟ ବାଟ ନ ଦେଖି )

ଗୀତ

ଛାଡ଼, ଛାଡ଼ ପଣତ ହେ ପ୍ରାଣମିତ ।
ଲାଜେ ମୁଁ ମଲିଟି ରଖ ହେ ମହତ ॥

ରଘୁ—କାନ୍ହୁ, ନିର୍ଲଜ୍ଜ, ନଲଠା ପଣିଆ କରି, ସେତେବେଳେ କଲାଇବାଟି ବାଟେ ଅନାଇ ରହିଥିଲି କା'କୁ ?—ଟିକିଏ ବି ପଲକ ନ ପକାଇ ?

ଅଳ—କଣ ତୁମକୁ ?—ମୋ'ର ପୋଷା ହରିଣଟିକୁ ନା ?

ରଘୁ—ପୋଷ ମାନନାହିଁ ବୋଲି, ଆଖିରେ ଆଖିରେ ରଖିଚ ନା କ'ଣ ?

ଅଳ—ଜଙ୍ଗଲି କି ନା ? କମ୍ ମୁଷ୍କିଲରେ ଜଙ୍ଗଲରୁ ପୁଣି ଧରାହୋଇ, ଅଣାହୋଇ ନାହିଁତ ?

ରଘୁ—ହୁସିଆର ! ଭାଇମାନେ ଭଗାର ଦାଉ ସାଷ୍ଟୁ, ଘଉଡ଼ାଇ ନ ଦିଅନ୍ତି ପୁଣି ?

ଅଳ—ଏଡ଼େ ମରଦୁର୍···( ଭରୁ ଭରୁ ଜାପୁଟି ଧରିଲେ ରଘୁକୁ—ସେତିକିବେଳେ ହସି ଉଠିଲେ ଠୋ ଠୋ କରି ପୋଇଲିଏ ନେପଥ୍ୟେ)

ଅଳ—ଆଃ—ଛାଡ଼ିଦିଅ ନା—

ରଘୁ—ତୁମେ ଛାଡ଼ିଲେ ତ ?

ଅଳ—( ଛାଡ଼ିଦେଇ ଚାଲି ଯାଉ ଯାଉ, ଲାଜଭରେ ଅଟକି ଗଲେ ଖଣ୍ଡେ ବାଟରେ )

ରଘୁ—(ନିକଟକୁ ଧାଇଁଯାଇ) ଆଉ ଡର କାହିଁକି ?—
କଣ୍ଟା ପୂବକୁ ତ ଆସି, ଶ୍ରୀହଜୁରରେ ହାଜର !

ଅଳ—କଣ୍ଟକ ଯେ, ନାଥ···( ଛଳ ଛଳ ଦୃଷ୍ଟିରେ ଚାହିଁଲେ )

ରଘୁ—ଭାଇଙ୍କର ଅଭିଶାପରେ ନା ? ହାଃ—ହାଃ—

ଅଳ—ହସ, ଖେଳ ତୁହେଁ, ପ୍ରଭୁ—

ରଘୁ—'ହସଖେଳ' ଏ ଅଧରେ—ସହାସ୍ୟ ହିଁ ଯା'ର ।
ମୃତ୍ୟୁକୁ ବି ହସିଖେଳି—ହୋଇବ ସେ ପାର ॥
ଅନ—ମୋତେ ବାୟାବାତୁଳ ମନେ କରୁଚ ନା କଣ ?
ରଘୁ—'ବାୟାବାତୁଳ' କରସାର କିଏ ?
ଅନ—ଥାଉ। ନୁହେଁ—ଶୁଣନ୍ତୁ—

[ ୨ୟ ଶଳା ଦୌଡ଼ି ଆସିଲା ]

୨ୟ ଶଳା—ଅଚ୍ଛା ସେ ତେଣେ ପଡ଼ିରହିଲା, ଅନୁ—ତେଣେଇଥା ରାତିରୁ ଉପାସିପରା ?
ଅନ—( ପଳାଇବାକୁ ବାଟ ପାଇଲେ ନାହିଁ )
ରଘୁ—( ଅପ୍ରସ୍ତୁତଭାବେ, ହାତ ପା'ନ୍ତା ଗୋଲାପ ଗଛରେ ଫୁଟିଥିବା ଫୁଲଟିଏ ଧରି, ଶୁଙ୍ଘୁ ଶୁଙ୍ଘୁ )—ଏ' ଗୋଲାପ ଫୁଲଟି, କେଡ଼େ ସବାଗରେ ଫୁଟିଚି, ଦେଖ ତ, ଭାଇନା'—ପାପୁଡ଼ି ମେଲାଇ—ନାଲି ଟହ ଟହ ହୋଇ—।
୨ୟ ଶଳା—(ବିରକ୍ତି ଓ ଘୃଣା ଗୋପନ କରୁ କରୁ) ଆମେ ତେଣେ ଖୋଜା ଲଗେଇଚୁ—'କୁଆଡ଼େ ଗଲେ ଭାଇ—କୁଆଡ଼େ ଗଲେ—ଲୁଚିଗଲେ ନା କ'ଣ ?
ରଘୁ—(ହସି ହସି) 'କାହା ଲୁଚିବାକୁ କି ଅଛି ?'
୨ୟ ଶଳା—ତୁମକୁ ଥଇଁଲାଗିଚି—ଆମର ବୋଲେ ତେଣେ—
ରଘୁ—'ଘରଭୁଇଁ ପାଣି ଅଛିଏ ?'—ହେଁ, ହେଁ, କଣକି, ଭାଇ,—କ'ଣ ଟାଏ ଏତେଘାଏଁ ଖୁସ୍‌-ବୋଇ, ଘାଡ଼ିଚି, ବୋଲି—ଗନ୍ଧମହକରେତ, ଅନ୍ଧହୋଇ ଏଣେ ଛୁଟି ଆସିଲି, ମହୁଆ 'ମଧୁଆ' ଭଳି—।
(ଫୁଲଟିକୁ ଧରି କେତେ ଭାବେ ଯେ ଆଦର କରୁଥା'ନ୍ତି)
୨ୟ ଶଳା—ଲୋଟିବାର ନେବନା କ'ଣ ?
ରଘୁ—ଲୁଟି ମାରଦେବ ନାହିଁନା ଏକାବେଳକେ ?—
୨ୟ ଶଳା—ଏ' କୁଟପଣିଆ ଏ'ଠି ଖଟିବ ନାହିଁଟି ?—
ରଘୁ—କାନ୍ତୁ, ଅନ୍ଧିଆରରେ ନାହିଁ ତୁମର, ଜାଣି-ଥାଅଛି—
୨ୟ ଶଳା—ଭାରି ମୁହଁଟାଣ ତ ?

ରଘୁ—ଟାଣୁଆ ଟେରୁର କିନା ?—
୨ୟ ଶଳା—( ବେହୁସ୍ୟାମିକର ; କାନ୍ତୁ, କହିଲ ତୁମେ, ଭାଇ—ଏ' ଭଳି ଦରବ ବଙ୍କାକୁ ବେଟିଲା ଭଳି ନୁହେଁ କି ?
ରଘୁ—'ଦଅଁ'କୁ ବେଟିଲା ଭଳି ନୁହେଁ କି ।—ମ, ମ—(ହଠାତ୍ ମନେପଡ଼ିଯିବାରୁ) ଗୁଲ, ଗୁଲ, ଭାଇନା—ଦଅଁଙ୍କ ଧୂପ ବେଳ ଗଡ଼ିଗଲାଣି—

(ଉଚ୍ଛନ୍ନ ହୋଇ ଅଗଭିର ହେଲେ)

୨ୟ ଶଳା—(ମନେ ମନେ) ମନ ହେଉଚି, ଏଇଠି ପରି ଖୋପେ ଥୋଇ, ଏହି କୂପେ ଗଳାଇ ପକାନ୍ତି—
ରଘୁ—( ପଛକୁଲ ଗୁହିଁ ଫୁଲ ଆଡ଼େ ) ଏ'ଫୁଲଟି, ଦଅଁ ପାଇଁ...
୨ୟ ଶଳା—ଉଃ, କି କଣ୍ଟା । ( ଛଳକରି ଆପଣାର ପାଦରୁ ଯେମନ୍ତ ଲଇଁପଡ଼ି କାଢ଼ିବାକୁ ଲାଗିଲା )
ରଘୁ—କଣ୍ଟା ?—ହାଃ—ହାଃ—
( ତୋଳିବାକୁ ଯାଉଁ ଯାଉଁ )—ନା, ନା—ଭାରି ସୁନ୍ଦର ଫୁଲଟି, ଭାରି ସୁନ୍ଦର ।—ସୁନ୍ଦର ।—ସୁନ୍ଦର ।—( ଗୁଲିଗଲେ )......
୨ୟଶଳା—'ସୁନ୍ଦର' ତୋ'ର, ଦଣ୍ଡବେ କାଢ଼ୁଚି, ରହିଥା'—( ବିନା କାଣରେ କଣ ମୋଡ଼ୁ ମୋଡ଼ୁ ଓ କେତେ କ'ଣ ବିଡ୍ରୁପ କରୁ କରୁ ଅନୁସରଣ କଲା )

[ ଅନ୍ନପୂର୍ଣ୍ଣା ଧାଇଁ ଆସିଲା କେଉଁ ଅବେଟଭିରେ, ସେହି ଗୋଲାପ ଫୁଲଟିକୁ ଲକ୍ଷକରି—କେତେ ସୁଆଗକରି, ଫୁଲଟିକୁ ତୋଳି ଆଣି ଶେଷେ, ଖୋସିଲା ଆପଣା କବରୀରେ, ତାଜ ଗାଇ ଗୀତଟି ହୃଦୟୋଚ୍ଛ୍ୱାସରେ ]

ଅନ—

ଗୀତ

ହେ ଫୁଲ !
କି ଦେଇ କରିବି ମୂଲ ?
ରଙ୍ଗନାଥ ଯାହାପାଇଁ—
ରଙ୍ଗେ ଭକ୍ତେ ଗୁହିଁଥାଇଁ—

ଅଜ୍ଞ, କେଉଁ ରଙ୍ଗେ ହାଇଁପାଇଁ—
ରଙ୍ଗିଲାକୁ ଦେବାପାଇଁ—
ରଙ୍ଗତୋ' ଜାଣେ ସେ, ଫୁଲ୍ ।
ରଙ୍ଗ୍ରେ ମୁଁ ଏ' ଖୋଷାମୂଳ ॥

୧ମ ପୋଇଲା—(ପ୍ରବେଶ କରି) ବାଃ—ତୁମେ ଏଣେ ଆପଣା ମଉଜରେ ରହିଚ—ତେଣେ ଯେ ଜଣାକର ଫଉଜ ବାହାରି ଯାଉଚି !—

ଅନ୍ଧ—ଚୁପ୍—ଚୁପ୍—ଏହି-ମୁଁ·····ହଁ, ବାବୁଫେଣା ସରିଲାଣି ନା ?—ନଡ଼ିଆ କୋରା ?—

୧ମ ପୋଇଲା—ନା, ଛେଳେ ପିଠା ଓଜ୍ଲା ସରିଲାଣି ! ଭାଗ୍ୟେ, ଏମିତକା ଗୁଣଧର ଭାଇମାନେ ଅଛନ୍ତି ବୋଲି ସିନା—

ଅନ୍ଧ—( ଗୁଲିଯାଉଁ ଯାଉଁ, ଭାଇମାନଙ୍କ ପ୍ରସଙ୍ଗରେ କି ଗୋଟାଏ ସନ୍ଦେହ ହେବାରୁ, ଗୁହିଁଲେ ସଖୀଅଡ଼େ )—ଭାଇମାନେ ?···

୧ମପୋଇଲା—ହଁ ଗୋ !—ଭଉଣୀ ସୁଅଗିଆ ଗୁଣଧରମାନେ ଗୋ ! ଅହା !—'ଫୁଲ୍' ପାଇଁ ସିନା 'ପଟ' କାସ୍ତରେ ?

ଅନ୍ଧ—(ସନ୍ଦେହଟା ଦୂରକରି ଦେଇ କେଉଁ ଶ୍ୱାସରେ) —କାହିଁକି ଲୋ ?—ସାତ ଭାଇରେ ଗୋଟିଏ ମୁଁ—'ପଟ' ହେବାକୁ ଯିବି କାହିଁକି କହ୍ନୋ ?—
( ଗର୍ବଭରରେ ଗୁହିଁ, ଗୁଲି ଗଲେ )

୧ମପୋଇଲି—ମୋ' ବୌଲୋ !—ଗରବରେତ ଗୋଡ଼ ତଳେ ଲାଗୁନାହିଁ !—(ବୁକୁ ଫୁଲାଇ, ହାତ ହଲାଇ, ନୟନ ଛଟକାଇ ଗୁଲିଗଲା ପଛେ ପଛେ )

× × ×

[ କିଛିକ୍ଷଣ ପରେ, ଦାଣ୍ଡଘରେ ଦେଖାଗଲା, ରଘୁ ଶଳାମାନଙ୍କ ସଙ୍ଗେ ପୂଜକ ବେଶରେ ପ୍ରବେଶ କଲେ ]

୧ମ ଶଳା—ଛି, ଦାଣ୍ଡ ଘରଟାରେ ପୂଜା ପୂଜା—

ରଘୁ—ଭିତରେ ଗୋଳମାଳ କେମିତକା······ ଦେଖୁନାହିଁ ?

୧ମ ଶଳା—କିନ୍ତୁ, ·ଖିଅପିଅ ଏ'ଠି···

ରଘୁ—ଦଅଁ ତ ମୋ'ର ମଣୋହି ସାରବେ ଏଇଠି ?—

୨ୟଶଳା—ବେଶ୍‌ତ, ମଣୋହି ପରେ, ଭୋଗରାଗ ଭିତରକୁ ଘେନିଗଲେ ହେଲା ?

ରଘୁ—( ମୁଣ୍ଡହଲାଇ ) ନା, ନା, ତା ଚଳିବନାହିଁ— ତା' ହବାର କୁ ନାହିଁ, ଭାଇନା—ମୋ'ର ଦଅଁ ଭୋଗଲାଗି ହେବେ ଠାଏଁ—ଆଉ ମୁଁ ସେବା-କରିବି ଠାଏଁ—?

୧ମଶଳା—ଏମିତକା ମେଳା ଦାଣ୍ଡଘରଟାରେ—ଲୋକେ କହିବେ କ'ଣ ?—

ରଘୁ—ଦାଣ୍ଡର ଠାକୁର ପରା ମୋର !—ଦାଣ୍ଡେ ଦାଣ୍ଡେ ପନ୍ତ ଖାଇ ବୁଲନ୍ତି—ଅଉ, ଭକ୍ତମାନେ ସେହି କୈବଲ୍ୟ ଟିକକ ପାଇବାଲଗି, ଛଡ଼ାଛଡ଼ି, କଡାକଡି, ମରାମରି ହ'ନ୍ତି ପରା ଆପଣା ଭିତରେ, ବର୍ ଦାଣ୍ଡଟାରେ ?

୨ୟଶଳା—( ଜଣେ ଠାରିଠାରି ହୋଇ ୧ମ ସଙ୍ଗେ ଆଖିରେ ଆଖିରେ ) ଥାଉ, ଭେଣେଇଙ୍କର ଯଉଁଥିରେ ସନ୍ତୋଷ !—ଏହି ବାହାର ଦ୍ୱାରଟା କିଳିଦେଲେ, ହେଲା—ଗଭାସ୍ତାତ ବାଡ଼ିଦ୍ୱାରପଟ ବାଟେ କଲେ କ'ଣ ଚଳିବନାହିଁ ଯେ ?

ରଘୁ—ବେଶ୍ ମୋ'ତେ ଯା' ଦବାର ଏଇଠି ଦେଇଯାଇ, ଭିତର ପଟ କବାଟଟା କିଳିଦେଲେବି ଅଛିର ସନ୍ତୋଷ ।

୨ୟଶଳା—ହଁ, ଭାରି ଗୋଳମାଳ—ମାଇପିଙ୍କର ଯଉଁ ହାଉ କାଉ—ସେଥିରେ ପୁଣି କୋଉଁ କୁଣିଆ ଅଜ୍ଞ ଘରେ ନୂଆ ହୋଇ—

୧ମଶଳା—ମୁଁତ ସେଇଥି ପାଇଁ ଗମ୍ଭୀରା ଘରଟା ସଜାଇ କରିଥିଲି—

[ ସେତିକି ବେଳେ ଶାଶୂ ପୂଜାପୂଜାର ସରଞ୍ଜାମ ଘେନି ପ୍ରବେଶ କଲେ ]

ଶାଶୂ—ଖାଇପିଇ ସାରି, ନାଟ ଲଗେଇଲେ ହ'ନ୍ତାନାହିଁ —ଯା, ଗେମା, ଭୋଗ ଥାଳୀଅଟା—ନା, ନା, ମେଲଛିଅଟା ତୁ—

[ ଅନ୍ନପୂର୍ଣ୍ଣା ଭୋଗ ଥାଳଅଟା ଆଣି ଦୂରେ ଥୋଇ ଦେଇ ଗୁଲି ଯାଉଥିଲା ବାହାର ]

ଶାଣୁ—ମ’ ଯାଉଚୁ ଲୁଅଡ଼େ ମ’—( ପୁଅମାନଙ୍କପ୍ରତି )
କେମିତିକା ଲାଲଠା ବେହୁଯ୍ୟା ଗୁଣ୍ଡାକମ୍……?
[ ଶଳାମାନେ କ’ଣ କହିବାକୁ ଯାଇ, ସମ୍ଭାଳି ନେଇ ଆପଣାକୁ, ଚୁଲିଗଲେ ଅପ୍ରସ୍ତୁତଭାବ ଦେଖାଇ ]

ଶାଣୁ—ଦେ, ଦେ, ସଜିଲ ସାଜିଲ କରିଦେ—ମୁ ଯାଏଁ, ତେଣେ ଖିର ହାଣ୍ଡି ଟା— (ପ୍ରସ୍ଥାନ)

ଅନୀ—( ଥାନଟା ଲିପାପୋଛାକରି, ଆସନପାରି ପୂଜା ସରଞ୍ଜାମ ସଜାଡ଼ି ରଖିବାକୁ ଲାଗିଲେ )—ତୁନିତାନି ହୋଇ ଅନାଇ ରହିଚ ଯେ, ପୁଟ୍ଟାର ? —ଠିକ୍‌ ଠାକ୍ କରି ନିଅନା ହାତେ ହାତେ ? ମୁଁ କ’ଣ ତୁମର ପୂଜା ପୂଜି କଥା ଜାଣେ ?

ରଘୁ—ଆଉ ମୁଁ ପରି ଜାଣେ !

ଅନୀ—ତେବେ, ଏ’ସବୁ କ’ଣ ଭଣ୍ଡାମି ?

ରଘୁ—ଗୁ ଣ୍ଡାମି କହିକେ ବରଂ ଶୋଭନ୍ତା, ସୁନ୍ଦରି—କାହିଁକିନା ଭିତରର ଗୋଟାଏ କେଉଁ - ଉଦ୍ଦାମ ଲାଲସାକୁ ଯେମନ୍ତ ଚୋଟି ଚିପି ମାରିବା ପାଇଁ ଏହି ଅନୁଷ୍ଠାନ ଅଜି ମୋ’ର !

ଅନୀ—ଚିପି ମାରିବା ଠଉଁ ବାହାରେ ନିକାଲି ଫିଙ୍ଗିଦେବା ଠିକ୍ ନୁହେଁ କି ?

ରଘୁ—ଜାଣିଲେତ, କ’ଣ ସେ ?—ଜାଣିଲେବି ଶକ୍ତି କି ଅଛି ଏତେ ଯେ—

ଅନୀ—ଫାଙ୍କେ ଫାଙ୍କେ ରହି, ଫାଙ୍କିଲେ କି, ଶକ୍ତିର ସଞ୍ଚୟ ହୁଏ ଆଉ ?—

ରଘୁ—କସ୍‌ରତ କରିବା ଦରକାର ନା କଣ ?

ଅନୀ—ସ୍ୱିତମତ—

ରଘୁ—ତୁମେ କ’ଣ—କର ?

ଅନୀ—ପଗ୍ଉରୁଚ ?—ଅଙ୍ଗରେ ନିଭେଇ ?—କେଉଁ ସାଧନା ବଳେ, ମାପକରି ବାଟରୁ ଯୋଖାଡ଼ି ଆଣିଛୁ ଅଜି ଦଣ୍ଡକେ ?—ଆଉ, ମନର କଥା ଜାଣିପାରି ପଲକେ, ମନ ରଞ୍ଜାଇବା ପାଇଁ, ଦାଅଁଟୁଁ ତାଙ୍କର ଛଡ଼ାଇଅଣି, କବରୀଭୂଷା କରିଛୁ, ଏହିଫୁଲ୍‌ଟି, ଫୁଲକେ ?
( ଓଢ଼ଣୀ କାଢ଼ିଦେଲେ )

ରଘୁ—ପ୍ରା-ଣେ—

ଅନୀ—ସ୍ୱାମି !—ପ୍ରଭୋ !—କ୍ଷମାକର ମୋତେ—କ୍ଷମାକର ପ୍ରଗଲ୍‌ଭତା ମୋ’ର—ତୁମେ ନିଷ୍ଠିନ୍ତରେ ତୁମର ଦାଅଁ ପୂଜାକର—ମୁଁ ବାଧାଦେଇଚି,—ନା, ନା, ଆଉରି ବାଧା ଦେବାକୁ—

ରଘୁ—( କେଉଁ ପ୍ରାଣର ଉଚ୍ଛ୍ୱାସରେ ) ‘ଧାଇଁ ଯାଉଚ ?’—ନା, ନା, ତୁମେ ଆସ, ବସ, ଶିଖାଇ ଦିଅ ମୋତେ ସାଧନା ପଦ୍ଧତି—ତୁମେଇ ଯେ—

୨ୟ ଶଳା—( ଜଳାକବାଟି ବାଟେ ଚୁହିଁ ) ବେଶ୍ ଆରାଧନା କରୁଚନ୍ତିତ ଭେଣୋଇ ଆମର !

ରଘୁ—(କିଭଳି ଅପ୍ରତିଭ ହୋଇଗଲେ)

ଅନୀ—ଲଜ୍ଜାରେ ବାଟ ଖୋଜି ପାଇଲେ ନାହିଁ ବାହାରି ଯିବାକୁ, କିନ୍ତୁ ଧାଇଁ ଆସିଲେ ପତି ପାଖକୁ କେଉଁ ବିପଦରେ ସାବଧାନ କରିଦେବାକୁ ଯେମନ୍ତ) ମୁଁ ଭୁଲିଚି କହିବାକୁ…

୨ୟ ଶଳା—(ଦେଉଡେବେଳକୁ ଭିତରକୁ ପଶିଆସି,—ଛି, ଛି, ଏତେ ଅଲକ୍ଷଣୀ ନା ତୁ, ଅନୀ ?—

ଅନୀ—( ସେହି ଅଲକ୍ଷଣୀ ଭବେ ଯେମନ୍ତ, ଗୋଟାଏ ଉତ୍ତେଜନାରେ)—ଭାଇ !—

୧ମ ଶଳା—( ଧାଇଁଆସି ) ଚକୁଆ ଚକୋଇ ପାଲଟି ଗଲେ ନା କ’ଣ ବିଲକୁଲ ?—

ଅନୀ—(ସକାତରେ ୧ମ ପ୍ରତି)—କିନ୍ତୁ, ଏ’ଭଳି କଅଁଳିଆ ସଖୀଲଟାକୁ ‘ମିଥୁନ’ଙ୍କର, ଅକାଳେ ଗମ୍ଭୀର ନିଶାରେ ପାଲଟାଇ ଦିଅନା, ଭାଇ, ନିଷାଦ ନିଶାଚର ଭଳି !

୧ମ ଶଳା—ତୁହି ଯେ ତାଙ୍କ ପୂଜା ପୂଜି ଭେଣୋଇଙ୍କର—

ଅନୀ—‘ପୂଜା ପୂଜି’ !—ସତେ, ସତେ ମୁଁ ଲଣ୍ଡ ଭଣ୍ଡ କରି ଦେଉଚି ସବୁସୀଟା—( ବାଣବିଦ୍ଧ ହୋଇ ଶତ ଯୋଜନରେ ଯାଇ ଉଡ଼ି ପଡ଼ିଲା ଭଳି ବାହାରିଗଲେ)

ରଘୁ—(ସ୍ଥିର ଦୃଷ୍ଟିରେ ଚୁହିଁରହିଥିଲେ)

୨ୟ ଶଳା—କବାଟଟା କିଳିଦେବି ନା କ’ଣ ?

ରଘୁ—ଯୋଡେ ବନ୍ଧୁ ଅଛୁ,—ଜଳ, ଚୁଳଦଅ—ମୁଁ ଦେବାରାଧନା କରିବି—ଠିକ୍ ସେହିଭଳି ସାଧନା—ଯେଉଁଭଳି ଆତ୍ମନିବୋଧ କରି, ଶକ୍ତିମତୀ ଆଜି ସତୀ, ସାଧ୍ବୀ ମୋ'ର !—

(ପୂଜା କରିବାକୁ ବସିଲେ)

[ ଦ୍ୱାର ଖୋଲିଦେଇ ଶଳାମାନେ ବାହାରି ଆସୁଥିଲେ—ସେତିକିବେଳେ, ଅନ୍ନପୂର୍ଣ୍ଣା କିଭଳି ବାଉଳୀ ଗୁହ୍ଲୀ ଭାବେ ପ୍ରବେଶ କଲେ ]

ଅନ୍ନ—ମୋ'ର ଭାଇ ପରା ! ସତ କୁହ ? କୌଣସି ଛଳ କପଟ ତୁମ ମନରେ ନାହିଁତ ?—ମୋ' ମନଟା କାହିଁକି ଭାରି ଗୁଡ଼େଇ ହେଉଛି !—ତୁମ ଗୋଡ଼ତଳେ ପଡ଼ୁଛି—ସାନ ଭଉଣୀଟା ପରା ମୁଁ ତୁମର—?

(ଗୋଡ଼ଧରିଲେ)

୧ମ ଶଳା—ନାଁ ନ ପକେଇ ଛାଡ଼ିବୁ ନାହିଁ ଦେଖୁଛି ?

୨ୟ ଶଳା—ଆମେ କେଉଁଠି ନାଁ ତୋଳିବାକୁ ଯାଉଛୁଁ—

ଅନ୍ନ—ମନ୍ଦିରଟାକୁ ଧସାଇ ଦେଇ ପିନା, ଭାଇ—ଛାଡ଼ିଦିଅ—ଛାଡ଼ିଦିଅ ବା,ଟ—

(ଦ୍ୱାର ଠେଲି ଭିତରକୁ ଯିବାକୁ ବସିଲେ)

ଶଳାମାନେ—( ବାଧାଦେଇ ) ଡେଙ୍ଗେଇ ପରା ପୂଜାରେ—

(ନେପଥ୍ୟେ, ମା) ଅନ୍ନ—ଅନ୍ନ ! କୁଆଡ଼େ ମ ତୁ, ଅନ୍ନ ?

ଅନ୍ନ—ମା—ମା—( ଭିତରକୁ ଗୁଲିଗଲେ କେଉଁ ପ୍ରତିଘାତରେ ଯେମନ୍ତ, ମା କୋଳରେ ଆଶ୍ରୟ ନେବାକୁ କି ଆଉ)

ଶଳାମାନେ—ଭଲକଥା ଆକଟ କରିବାକୁ ହେବ, ହଁ—

× × × ×

(ଦୃଶ୍ୟ ପରିବର୍ତ୍ତନ—ଘର ଭିତରର ଦୃଶ୍ୟ)

ରଘୁ—(ଧ୍ୟାନସ୍ଥ ହୋଇ)

"ଶୁଣିତହେ ପ୍ରଭୁ ଜଗନ୍ନାଥ ।
ଲୁଚି ଚରଣେ ମୋର ମାଥ ॥
ପୂଜା ବିଧାନ ନ ଜାଣଇ ।
ପୂଜିବ ତଥାପି ଇଚ୍ଛଇ ॥
ଏ ଇଚ୍ଛା ମୂଳେ ତୁମ୍ଭେ ହରି ।
ତେଣୁ ପରିଇ କର ପାରି ॥"

[ମନକୁ ଯେ ଭଳି ଆସିଲା, ସେ'ଭଳି ପୂଜାଦି କରିବାକୁ ଲାଗିଲେ, କେଉଁଟା ଆଗେ, କେଉଁଟା ପଛେ, ଠିକ୍ ପିଲା ଖେଳିଲା ଭଳି—ଶେଷକୁ 'ଅନୁଣିଆ' ସେବା କରିବାକୁ ବସିଲେ । ହାତରେ ଧରି, ମନେ ପଡ଼ିବାରୁ ]

ଆହା ହା !—

"ଜଳଗଣ୍ଡୂଷ କରେ ଧରି ।
ପ୍ରଭୁଙ୍କୁ ନୈବେଦ୍ୟ ନ କରି ॥
ସାରିବାକୁ ଉଚ୍ଛନ୍ନ ପିନା ।
ନ ଭକ୍ଷେ ଯେ ଉଚ୍ଛିଷ୍ଟ ବିନା ।"

(ଜଳ ଗଣ୍ଡୂଷାଦି କରିସାରି, ପିଠାଖଣ୍ଡେ ଖାଇବା ଉଦ୍ଦେଶ୍ୟରେ ଭାଙ୍ଗନ୍ତେ, ଚଟ ଖଣ୍ଡେ ଦେଖାଗଲା)

ଏ' କି ଚଟ ଖଣ୍ଡେ ?—
"ବିଷ ଯେ ଭରିଛନ୍ତି ଏଥେ ।
ଭୁଞ୍ଜିବ ନାହିଁ କଦାଚିତେ ॥"
ଓଃ—
"ନଜାଣି ଅପରାଧ କଲି ।
ପ୍ରଭୁଙ୍କୁ ବିଷ ଭୁଞ୍ଜାଇଲି ॥"
ହାଃ-ହାଃ—
"ବିଷ ଅମୃତ ଯେ କାରଣ ।
ତାଙ୍କଠାରେ ସବୁ ସମାନ ॥"

(ପୁଣି ପଦ୍ମଆଡ଼େ ଆକୃଷ୍ଟ ହେଲେ, ଖାଇବାକୁ ଯାଇ)

( ନେପଥ୍ୟେ କ୍ଷୀଣସ୍ୱରେ ଅନ୍ନପୂର୍ଣ୍ଣାର କଣ୍ଠସ୍ୱରେ )—

ବିଷ ! ବିଷ !—

"ବିଷ ଯେ ଭରିଛନ୍ତି ଏଥେ ।
ଭୁଞ୍ଜିବ ନାହିଁ କଦାଚିତେ ॥"

(କେଉଁ ଦୂରାହୂତସ୍ୱରେ) ଅନ୍ନପୂର୍ଣ୍ଣା !—(ଚଟଟି ଚୁମ୍ବନକରି ଗାଢ଼େ)—ନା—ନା—

"ଖାଇବି ନାହିଁ କଦାଚିତେ ।
ପ୍ରସାଦ ଛାଡ଼ିବି କେମନ୍ତେ ॥"

(କେଉଁ ନାଲି'ପ୍ରଭାବେ ଯେମନ୍ତ)

ଭଜନ—

ରାମ କୃଷ୍ଣ ହରି ।
ହରି ରାମ କୃଷ୍ଣ ।
କୃଷ୍ଣ, କୃଷ୍ଣ—ରାମ, ରାମ !
ରାମ, ରାମ—କୃଷ୍ଣ, କୃଷ୍ଣ !
(ପ୍ରସାଦ ସେବନକଲେ)

'ଦେଖୁ ଦେଖୁ ସେ ମହାବୀର ।
ଉଦରେ ହୋଇଲା ପ୍ରବେଶ ॥
ଘୋଟିଲା ବ୍ରହ୍ମାଣ୍ଡରେ ଯାଇଁ ।
ଚଳଣି ପଡ଼ିଲା ସେ ମହୀ ॥'

... ... ... ...

[ କିଛିକ୍ଷଣପରେ ଶଳାମାନେ ପ୍ରବେଶକଲେ ଗୋଡ଼ ଟିପି, ଟିପି—ମୁଖରେ ଭୟ ଓ ଆନନ୍ଦ ବେଶ୍ ଧରାପଡ଼ା ହେଉଥାନ୍ତି ]

୨ୟ ଶଳା—( ହଲାଇ ଚଲାଇ ଦେଖି )—ଭାଇ !—ଏକଦମ୍—

୧ମ ଶଳା—ଆସ୍ତେ—ଆସ୍ତେ—

୨ୟ ଶଳା—(ଧୀରସ୍ୱରେ)

"ରଜନୀ ହେଲାମାନେ ନେବା ।
ନ ପୋଡ଼ି ପୋତି ପକାଇବା ।"

୧ମ ଶଳା—(ସେହିପରି ଧୀରସ୍ୱରେ) ଆଉ—

"ଲୋକ ପୁଚ୍ଛିଲେ କହି ଏବେ ।
କୁଆଁରି ମଲା ସର୍ପାଘାତେ ॥"

[ଉଭୟେ ସାନନ୍ଦେ ଲେଉଟିଲା ବେଳକୁ ଦେଖିଲେ ଦ୍ୱାରମୁହେଁ ଉନ୍ମାଦିନୀ ଅନ୍ନପୂର୍ଣ୍ଣାକୁ—କିଭଳି ସ୍ଥିର, ତୀକ୍ଷ୍ଣଦୃଷ୍ଟି ତା'ର ]

ଅନ୍ନପୂର୍ଣ୍ଣା—(କହିଉଠିଲା ଏତିକି)

"କୁଆଁରି ମଲା ସର୍ପାଘାତେ ।"

[ ଶଳାମାନେ ପ୍ରକୃତରେ ଯେମନ୍ତ 'ସର୍ପାଘାତରେ' କାଳାକାଠ ପଡ଼ିଗଲେ—]

୧ମ ଶଳା—( କୌଣସିମତେ ଆପଣାକୁ ଚେତାଇ ଯେମନ୍ତ) ଶୁଣିଲୁଅ, ରେମା ସାମ୍ନାକୁ—ଏତେବେଳେ କିଛି କହିବା, କି କରିବା—

୨ୟ ଶଳା—ତୁନି ତୁନି କବାଟଟା କିଳିଦେଇ, ଜଗି ରହିବା ଦରକାର, ଦୂରେ ଦୂରେ ଥାଇ—ନା, ଭାଇ ?

୧ମ ଶଳା—( ସମ୍ମତି ସୂଚକ ଇଙ୍ଗିତ କଲା )

(ଉଭୟେ ପ୍ରସ୍ଥାନ କଲେ ଅତି ସାବଧାନ ହୋଇ)

... ... ... ...

ଅନ୍ନପୂର୍ଣ୍ଣା—(କିଛିକ୍ଷଣ ଏକଲୟରେ ଚାହିଁ ବନ୍ଧୁଆଡେ, ହସି ଉଠିଲେ, ବିକଟ ଚିତ୍କାରକରି) ହାଃ-ହାଃ-

"ମୋ' ପ୍ରାଣନାଥ ଥାଉଁ ଥାଉଁ ।
ବିଭା କରିବେ ମୋତେ ଆଉ ॥
ମୁଁ ପୁଣି ଧରି ଏ ଶରୀର ।
ବଦନ ଚାହିଁବି ଅନ୍ୟର ॥"

[ବନ୍ଧୁ ପାଖକୁ ଛୁଟିଆସି, କୁଣ୍ଢାଇଲେ ମୁଣ୍ଡାଇଲେ ଅଶ୍ରୁର ଝର ଯେମିତକି ଫିଟି, ଝରିଯାଉଥାଏ — କେତେବେଳକେ ବାହୁନିଲେ ଏହିପରି—]

"ଉଠ, ଉଠ ହେ ପ୍ରାଣନାଥ ।
କିପାଇଁ ନିଦ୍ରାରେ ଅଚେତ ॥
ଖାଇଣି, ମୁଖ ନ ପଖାଳ ।
ତାମ୍ବୁଲେ ଅଧର ନ ବୋଳ ॥
ଶେଯ ତଳପ ଗୁଡ଼ି ଚାହିଁ ।
ଲୋଟୁ ଅଛ ଏ ବାଲି ଭୂଇଁ ॥
ଆସ, ଶିର ରଖ ମୋ' ଅଙ୍କେ ।
ପଦସେବା କରେ ମୁଁ ରଙ୍ଗେ ॥
ବିଶ୍ରମ୍ଭ ଆଳାପ ନକରି ।
ରହିଚ ମଉନେ କିପରି ॥
ମୁଁ ପରା ତୁମ୍ଭର ଘରଣୀ ।
ଆସିଛ ଦେଖୁ ମନକାଣି ॥"

( କିଛିକ୍ଷଣ, କେତେ ସ୍ନେହାଦର କରି କରି ବନ୍ଧୁର ହାତ ଚଟାଣରେ ଆପଣାର ହାତଚଟାଣ ମିଶାଇବାକୁ ଯାଇ କେଉଁ ପ୍ରୀତିଭୋଳରେ, ଦେଖେତ—)—ଏହିତ ସେହି ଚଟଖଣ୍ଡ !—ପିଠା ଗଢ଼ୁ ଗଢ଼ୁ କିଭଳି ସନ୍ଦେହ ହେବାରୁ, ଲେଖି ପକାଇଥିଲି, ଗୋଜକାଠି ଦେଇ, ଆଖିର କଜଳ କଳାରେ;—କିନ୍ତୁ, କି ଗୋଟାଏ ଚେତୁର ଆଘାତରେ ସାଙ୍ଗେ ସାଙ୍ଗେତ ପକାଇ ଦେଇଥିଲି ମୋଡ଼ିମାଡ଼ି । କେମିତିକା ରହିଯାଇଥିଲା ନା କଣ 'ଫୁଲ' ଭିତରେ ? ହଁ, ଏଇ ଚଟତ—

"ବିଷ ଯେ ଭବବନ୍ଧ ଏଥେ ।
ଭୁଞ୍ଜିବ ନାହିଁ କଦାଚତେ ॥"

ପ୍ରେମମୟ !—ପ୍ରେମମୟ !—ମୋ'ର ଚିଟ ପାଇ—ବିଷ ବୋଲି ଜାଣି ସୁଦ୍ଧା—ବିଷ ଭକ୍ଷଣ କରିଚ ? କ'ଣ, ଅଭିମାନରେ ? ନା, ନା, ଏ ସେହି ଅସହଣି, କପଟିଆ ଦାଅଁର ପ୍ରତିହିଂସା—ପ୍ରତିହିଂସା—

"କପଟେ ପୁତନା ବିନାଶୀ ।
କପଟେ କଂସର ବିଧ୍ୱଂସୀ ॥"

କାନ୍ହୁ, କାନ୍ହୁ—

"ସେହିତ ଗଜେନ୍ଦ୍ରତାରଣ ।
ଦ୍ରୌପଦୀ ଲଜ୍ଜା ନିବାରଣ ॥"

ପ୍ରଭୋ !—ପ୍ରଭୋ !—( ଦୃଢ଼ଭକ୍ତିରେ )

"ମୃଗୁଣୀ ଉଦ୍ଧାରଣ ପ୍ରାପ୍ତେ ।
ନ ଉଦ୍ଧରିବ କାହାଁ ସ୍ୱପ୍ନେ ॥"

[ 'ଏମନ୍ତ ବୋଲି ସେ ତରୁଣୀ ।
ଚିନ୍ତିଲା ପ୍ରଭୁ ଚକ୍ରପାଣି ॥
କମ୍ପିଲା ବଳି ସିଂହାସନ ।
ଜାଣିଲେ ପ୍ରଭୁ ଭଗବାନ ॥'']

[ ହସି ହସି ବାଳକୃଷ୍ଣ ପ୍ରବେଶ କଲେ ଗାଇ ଗାଇ ]

ବାଳକୃଷ୍ଣ—

ଗୀତ

ଯେ ମୋତେ ଆରତେ ଡାକଇ
ନରକ ହେଲେ ମୁଁ ଅସଇ ॥
ଏହି ଘୋର ବାସନା ପାଇଁ—
ଏତେ ବିମନା ସଖୀ ତୁହି—?
ତୋହରି ପରଶେ ଦେଖଲେ—
ବିଷ ଯେ ଅମୃତ ହୁଅଇ ।

— — —

( ରଘୁଙ୍କୁ ଲକ୍ଷ୍ୟକରି )—
ଉଠରେ, ଉଠରେ, ନନ୍ଦନ ।
କାହିଁକି ନିଦ୍ରେ ଅଚେତନ ॥
ଭକ୍ତିରେ ହୃଦୟ ସରସ ।
କି କରିପାରେ ଘୋର ବିଷ ॥

ରଘୁ—( ସଚକିତେ ଉଠିବସି ଯେମନ୍ତ ) ଅନୁ—ଅନୁ—

ଅନୁ—( ଅତିଆନନ୍ଦରେ, ଅଶ୍ରୁବିଗଳିତ ନେତ୍ରରେ ଓ କଣ୍ଠରେ ) ଏହି ତ ପାଖେ ପାଖେ ଦାସୀଟି ତୁମର···।

ରଘୁ—( ଜଡ଼ାଇଧରି ) ନା, ନା, ଆହୁରି ପାଖକୁ—ଆହୁରି ପାଖକୁ, ଅନୁ—

ଅନୁ—( ଆପଣାକୁ ସମ୍ଭାଳି ଢେଢେକ ପରିମାଣରେ ) ତୁମର ଭାରି କଷ୍ଟ ହେଉଥିଲା—ନା ?

ରଘୁ—କଷ୍ଟ ହେଉଥିଲା, ହଠାତ୍ ତୁମକୁ କେଉଁଠି ଖୋଜି ନ ପାଇବାରୁ । ଅନୁ—କହିଲ ଭଲା—କି ସୁନ୍ଦର ଫୁଲର ନଉକାରେ ବସି, ଫୁଲର ଗଜରାଣୀ ସାଜି ଦହେଁ,—ଭାସି ବୁଲୁଥିଲୁ,—କେଉଁ ଫୁଲମନେ,—ଫୁଲି ସକାଳେ,—ଫୁଲର-ହାର୍ଓ୍ୱାରେ ଫୁଲି ଫୁଲି;—କେଉଁ ଫୁଲ ମଧୁର ତାନରେ ମଜି, ହଜି !—···

( ନେପଥ୍ୟେ ସେହି ମଧୁରତାନ ବାଜି ଉଠିଲା ଯେମନ୍ତ )

ଗୀତ

ଫୁଲର 'ଧାଲି'ଟି, ସଖୀ—ଆହୁରି ଫୁଲର ।
ଫୁଲମନେ ବସି ଯେବେ—'ରସି'ଟି ଅଣ୍ଟିବ ॥

ରଘୁ—( ଚମକାରକରି ଉଠିଲେ ) ହଠାତ୍ ସେହି ରସିଟି ଯଦି ଛିଣ୍ଡିଯାଏ, ଅନୁ—କେଉଁ ଉଦ୍ଧି ବଡ଼ ତୋଫାନରେ···?

ଅନୁ—( ସୋଦ୍ବେଗେ ) ପ୍ରିୟତମ !—ପ୍ରିୟ !—

ରଘୁ—( ସୋତ୍ସାହେ ହସି ହସି) ଡର କାହା ପ୍ରିୟତମେ-ଏଥିପାଇଁ ଯେବେ ଦହେଁ—"ତରୁଣ—ତରୁଣୀ"

( ସମ୍ମୋହନ ପାଶରେ ପରସ୍ପର ଆବଦ୍ଧ ହେଲେ )

( ସେହି ପୂର୍ବ ଗୀତର ଅନ୍ତରାଟି ଶୁଣାଗଲା ଯେମନ୍ତ )

ଗୀତ

ତରୁଣ-ତରୁଣୀ—
ଭାବେ ଭାବ ଆଣି—
ଭଙ୍ଗିବ କ୍ଷେପଣୀ—(ଯେବେ)
ତାଳେ ତାଳ ମାନି;—
ଆସୁନା ତୋଫାନ—ବରଷୁନା ଘନ ଘନ;
ଫୁଲ୍ଲ ପ୍ରାଣେ, ମାନେ ନାଚି—ତରଣି ଧାଇଁବ ।

...        ...        ...

ଯ-ବ-ନି-କା

---

ଚାର

**ଦୃଶ୍ୟ** :—ବିସ୍ତୀର୍ଣ୍ଣ ପ୍ରାନ୍ତର ।

[ ଗୋଟିଏ ଝାଙ୍କୁଡ଼ା ବରଗଛତଳେ ଶ୍ୟାଳକ ଦୁଇଜଣ ଠିଆହୋଇ ଥିଲେ;—କାହାରିକୁ ଅପେକ୍ଷା କରି ଯେମନ୍ତ । କିଛିକ୍ଷଣେ ଘୋର ନୀରବତା ବିରାଜ କଲା ଉତ୍ତାରେ—]

୧ମ ଶଳା—( କି ଗୋଟାଏ ଦଂଶନର ଜ୍ୱାଳାରେ ଯେମନ୍ତ )—ଉଃ, କି ଅପମାନଟାଏ ନଦେଲା ପୁଣି,—ପଦ ଯୋଖି···।

"ମୁଁ ଯୋଗୀ ସେ ମୋହର ଥାଳ ।
ମୋତେ ରଖିଲେ ଅମଙ୍ଗଳ ॥
ଅଧିକ କି କହିବି ତୋତେ ।
ଦୋଷୀ କରିବୁ କି ମୋତେ ॥"

ମୋ' ଗ୍ଲାନିରେ ପରି ତଳଗାର ହୋଇ ରହିଛି !

୨ୟ ଶଳା—ଟିକିଏ ଧମକ ଦେଇଛୁ ପୁଣି,—ମୋ' ବୌଳେ—କି ଡେଁପ ଗର୍ଜନ !—

"ମୁଁ ନୋହେ ଏମନ୍ତ ତରୁଣୀ ।
ହତ୍ୟାରେ ହୋଇବୁ କାରେଣୀ ॥

୧ମ ଶଳା—କିନ୍ତୁ, ସେହି ହତ୍ୟାକୁ ଡରିଯାଉଛି କି ନାହିଁ ଏଥର—ସେହି ଶଣ୍ଡିଆ···

[ ଯୁବରାଜ ଅସ୍ୱାଭାବିକଭାବେ ପ୍ରବେଶ କଲେ କହୁ କହୁ ]

ଯୁବରାଜ—ଯୁବରାଜ ସଙ୍ଗେ ହେଲେ ତ···—ହାଃ ହାଃ—?

ଶଳାମାନେ—( ଅପ୍ରସ୍ତୁତ ହୋଇଯାଇ, ଜୁହାର କଲେ )

ଯୁବରାଜ—ଅଚ୍ଛା, ଭାଇ—ମୁଁ କ'ଣ ତୁମର···?

ଶଳାମାନେ—( ଆଉ କହିବାକୁ ନଦେଇ ) 'ଭେଟେଇ' ହେବାକୁ ଲାଗି କି ନା ? ଗ୍ଲାମୁ ପଶୁରୁଛନ୍ତି ?—ଭେଟେଇ ହେବାକୁ ଲାଗି,—ଆମର ଖାଲି, ନା ସାରା ମୁଲକଟାର ?

ଯୁବରାଜ—ଅଚ୍ଛା କହୁଚ—ନା ?—

ଶଳାମାନେ—( ବେବହେଲେଇ) ଆମେ ପରା ଶଳା !—

ଯୁବରାଜ—ହୋଃ—ହୋଃ—ମୁଁ ଭୁଲି ଯାଉଛି—ଭୁଲି ଯାଉଛି ! ହେହେ ବୈଦ୍ୟ—ମୁଁ ଏମିତକା ଭୁଲିଯାଉଛି କାହିଁକି ହେ ?—ନାଡ଼ି ଦେଖ ତ—ନାଡ଼ି ଦେଖ ତ—

ବୈଦ୍ୟ—( ନାଡ଼ିଦେଖି ) ଅତି ହର୍ଷେ—ଅତି ହର୍ଷେ, ମଣିମା—

ଯୁବରାଜ—'ଅତି ହର୍ଷେ' !—ହୋଃ—ହୋଃ—(ଶଳାମାନଙ୍କ ପିଠିରେ ଦୁଲ୍ ଦାଲ୍ ଥୋଉ ଥୋଉ ) ଅତି ବର୍ଷା !—ଅତି ବର୍ଷା !—ଅତି ବର୍ଷାରେ କରକା ବର୍ଷେ ନାହିଁକି, ଭାଇ ?—ହୋଃ—ହୋଃ—ହଁା—ଦେଖ, ( ୨ୟ ଶଳାପ୍ରତି ) ତୁମେ ହେଲ ଆଜଠୁଁ ମୋ'ର, ସେନାପତି !—( ୧ମ ଶଳାପ୍ରତି ) ଏଁ—ତୁମେ ମନଉଣୀ କରୁଚ ନା କଣ ?—ଆହେ ! ତୁମେତ ମୋର ମନ୍ତ୍ରଣାଦାତା—ମନ୍ତ୍ରୀ !—ହାଃ—ହାଃ—

ଶଳାମାନେ—( କୃତଜ୍ଞତା ଜଣାଇବାକୁ ଲାଗିଲେ )

ଯୁବରାଜ—( ବୈଦ୍ୟପ୍ରତି ) କି ?—ଆଃ, ତୁମେ ଝିମାଉଚ କ'ଣ ହେ, ଘୋଡ଼ାମୁହାଁ ବୈଦ୍ୟରାଜ—'ଶୀତାରକା ବଟୀର୍ ?'

ବୈଦ୍ୟ—(ତଥାପି ଝିମାଉ ଥିଲେ )—

ଯୁବରାଜ—କାନରେ ପଥର ପଡ଼ିଛି ନା କ'ଣ, ହେ ?
( କାନଧରି ଓଟାରିଲେ )

ବୈଦ୍ୟ—ରାସ ଛୁଟିଯିବ, ସାନ୍ତ୍ରେ—ମୁଁ ଠିକ୍ ଭଡ଼ୁଚି— ଏ' ଠିକ୍ ଭାମ ହୋଇଚି !—ବୁଢ଼ାମଣିମାଙ୍କ କଦ୍‌କୁ ଯୁମ୍ଭଙ୍କ କଦ୍—ବରାବର ପଂଝାକୁ ପଂଝା !—

ଯୁବରାଜ—ଆଃ—'ବରାବର' ଯଦି—ମୁଁ ଭେଣ୍ଡା ହୋଇ ଅଧିକାଠା କଲ୍ କ'ଣ ହେ ?—

ବୈଦ୍ୟ—ରୋଗଟାଭ କାବୁ କରିଦେଇଚି ଯୁମ୍ଭଙ୍କୁ··· ନୋହିଲେ···

ଯୁବରାଜ—'ରୋଗ' ହୋଇଚି ମୋ'ର ?—ତୁମେ ସାକ୍ଷାତ୍ ଘୋଡ଼ାକୁମାରୀ—କହୁଚ ଏ' କଥା ?— ମୋ'ରି ସାକ୍ଷାତରେ—?

ବୈଦ୍ୟ—( ହିମାଉ ହିମାଉ ) 'ଭୋଗି' ସାକ୍ଷାତରେ, ମହାରାଜ—ବୈଦ୍ୟଙ୍କର ପରା ଅଭ୍ୟାସ—ଓଲଟା କହିବା—

ଯୁବରାଜ—'ଭୋଗି'କୁ 'ରୋଗୀ'—'ରୋଗି'କୁ 'ଭୋଗୀ'—? ହୋଃ-ହୋଃ ତୁମମାନଙ୍କ ମନକୁ ପାଉଚି ନା ଏ' କଥା ?

୧ମଶଲା—ମଣିମାଙ୍କ ମନକୁ ପାଉଚି ଯେତେବେଳେ···

୨ୟଶଲା—ଯୁମ୍ଭେତ ସାକ୍ଷାତ୍ ପୁରୁଷ ପୁଙ୍ଗବ କାର୍ତ୍ତିକେଶ୍ୱର !—

ଯୁବରାଜ—ସାବାସ୍‌ରେ ମୋ'ର ପାର୍ଶ୍ୱଚର !

ତୃତୀୟଶଲା—ଶଙ୍କର କୁମର ବି, ମଣିମା ?

ଯୁବରାଜ—ଓଃ, ମୋ'ର କି ପାଶୋରାମନ !
(ପିଠିରେ ବେଶ୍ ଗୋଟାଏ କେତେ ଥୋଇଲେ)

ବୈଦ୍ୟ—( ଚମକି ଉଠି ) ଆଜ୍ଞା, 'ବେଦ' କି ନ ଯାଉଣୁ···

ଯୁବରାଜ—ବିଧା ? ଗଲେତ ଖାଇବାକୁ ହୁଏ !

ବୈଦ୍ୟ—ସେ ଯେ କି ମିଠା ···!

ଯୁବରାଜ—ଏ' ଖଟା କପାଳରେ କି···?

ଶଲାମାନେ—ଯୁମ୍ଭ ସନ୍ଦେହ କରୁଚନ୍ତି ?

ଯୁବରାଜ—କିନ୍ତୁ, ବିଶ୍ୱାସ କରିବ କେଉଁ ଗୁଣରେ ଭଲ ?

୧ମ ଶଲା—ଆଜ୍ଞା, ଆଜ୍ଞା ସମଜନ୍ତୁ—ସେହି ବୁଢ଼ା ବାଙ୍ଗାଟା ଯେତକି 'କିନ୍ତୁ'·· ···

ଯୁବରାଜ—ସାବାସ୍‌ରେ ମୋର, ଜନ୍ତୁ !···ହାଁ— ଉପାୟ ?—

୧ମ ଶଲା—(ବୈଦ୍ୟଙ୍କ ଆଡ଼େ ଇସାରା କଲା)

ଯୁବରାଜ—'ବିଷ' ? ହାଃ-ହାଃ-ତୁମେମାନେ ପରା ହାତେ ହାତେ ପରଖି ଦେଇଚ—ଯୁଆଙ୍କଠୁଁ ନେଇ,—ମୁଣ୍ଡା ମୁଣ୍ଡା ସୁନା ଅଣ୍ଟାଗୁଞ୍ଜା ଦେଇ ?

ବୈଦ୍ୟ—( କେଉଁ ଖିଆଲରେ ଅଣ୍ଟା ଅଣ୍ଟାଳୁଥିଲା ଯେମନ୍ତ ) ଦେଇଥିଲେ ନା କ'ଣ ?

ଶଲାମାନେ—( ଚମକି ଉଠିଲେ ସତ, କିନ୍ତୁ ସମାଳି-ନେଲେ )

୨ୟଶଲା—( ଖାପଦାହରୁ ତରୱାଲ ବାହାର କରୁ କରୁ ) ଏହି ଠିକ୍ ଉପାୟ, ଯୁମ୍ଭ !

ଯୁବରାଜ—ଭାରି ଖେଳୁଆଡ଼ ରାଜା—ମାଲୁମ୍ ତ ତାଲପତ୍ର ସିପାହି ସାହେବଙ୍କୁ ?—

୨ୟ ଶଲା—ଯୁମ୍ଭଙ୍କୁ ବଳି ?

ଯୁବରାଜ—ଠିକ୍ କହିଚ, ସେନାପତେ !—ଏକା କଥାରେ କେମିତିକା ଜବ୍ଦ ବୁଢ଼ା—?

ବୈଦ୍ୟ—( ହିମାଉଁ ହିମାଉଁ ) ଆଜ୍ଞା, କଥାର ବିଷକୁ ବଳି ବିଷ ଅଛି ନା ?

ଯୁବରାଜ—ହାଃ—ହାଃ—ତା' ନହେଲେ କି ମୋର, ବିଷବୋଝା ବୈଦ୍ୟରାଜ ! କେମିତିକା ଭରିଦେଇ ବିଷ, ବୁଢ଼ାର ମଗଜ ଭିତରେ, ଖାଲି ଏହି କଥା ପଦକରେ—"କି ? ତୁମେ ମଦ ମାଇକିନିଆ ନେଇ ମଉଜ କରିବ—ବୁଢ଼ା ହଡ଼ା ହୋଇ ? ଆଉ ମୁଁ ଯବାନ, ଭେଣ୍ଡା—ବାହାହେବାକୁ ମନ-କଲି ବୋଲି—ହେଲି, କନା—ଘେଟା, କୁଜା, ବଦ୍‌ମାସ୍ !" ହାଃ—ହାଃ—

ବୈଦ୍ୟ—(ଆଖିଦାଟା ବହୁତ କଷ୍ଟେ ମେଲାଇ ମେଲାଇ) କିନ୍ତୁ ଆଜ ହତାଶ ହେବାର କାରଣ ନାହିଁ ଯୁମ୍ଭଙ୍କର ?—

ଯୁବରାଜ—ଅବଶ୍ୟ, କାରଣ ଯେବେ ନଥାଏ ସୁନ୍ଦରୀଙ୍କର ?

୨ୟ ଶଲା—ମହାରାଜ ! 'ଜୋର ଯାର୍—ମୁଲକ ତାର !—

[ ତରଓ୍ୱାଲ ବାହାର କଲେ, କିନ୍ତୁ ସେଟା ଭଙ୍ଗା କାଠଖଣ୍ଡିଏ ]

ଯୁବରାଜ—ଖଣ୍ଡିଏ ଖଣ୍ଡା ବୋଲି ହଟିଯାଉଛ ନା କଣ ? ସେହି ଖଣ୍ଡିଏରେ ତ ଖଣ୍ଡିଏର କାମ ! ହାଃ—ହାଃ—ଦେବଟି ଏକବାର—

( ଧରିବାକୁ ହାତବଢ଼ାଇଲେ )

ବୈଦ୍ୟ—ହାଁ—ହାଁ—ଶ୍ରୀଅଙ୍ଗକୁ ବାଧିବ—

ଯୁବରାଜ—(ହାତଟାକୁ କମ୍ପାଇ କମ୍ପାଇ) ମାନେ ବଧିବ ଯେ ଶତ୍ରୁ ମୁହିଁ ?

ବୈଦ୍ୟ—ଆପଣଙ୍କ ଶ୍ରୀଅଙ୍ଗ କମ୍ପୁଛି—ସ୍ୱରବି କମ୍ପୁଛି ! ଧରି ପାରିଲେତ ?

ଯୁବରାଜ—ଧରାଇ ଦେଲ ପାରିବ ନାହିଁ କେହି ?

ବୈଦ୍ୟ—ଖାଲି ଧରିଲେତ···

ଯୁବରାଜ—ଚଳିବ ନାହିଁ ? କ'ଣ କହୁଚ ହେ, ମନ୍ତ୍ରୀ ?—

୧ମ ଶଳା—ଆଜ୍ଞା, ଏ' ବ୍ରହ୍ମଜ୍ଞାନଟିକକ ବୁଝିବାକୁ ମଗଜ କାହିଁ ଭେଷଜଙ୍କର ? ଅହେ ! ସାକ୍ଷୀ-ଗୋପାଳ କ'ଣ କେବେହେଲେ ନିଜେ କିଛି କରିଥା'ନ୍ତି ?

୨ୟ ଶଳା—ବାଉଁଶକଣିଟାଏ ଦେଖିତ ହାତରେ ତାଙ୍କର,—ଦୁନିଆଟା ଘୁଞ୍ଚିଯାଉ !

ଯୁବରାଜ—ଆଉ ଏ'ତ ଝିଣପାତିଆ—! ( ହସିଲେ ଗୁଡ଼ାଏ ) କିନ୍ତୁ ଯୁ'ବୋଲି ମନେ କରିବ ନାହିଁ, ମୋ'ର ପୂଜାରୀଭକ୍ତ ସା'ନ୍ତମାନେ,—ଯେ ଏହି ଲକ୍ଷଅନ୍ତ୍ରା ସାକ୍ଷୀଗୋପାଳଙ୍କ ଭୋଗଟା ବାଢ଼ି, ସାକ୍ଷୀ-କରି ଖାଲି,—ତାଳି ଘଣ୍ଟାରେ ଘଉଡ଼ାଇ, ଦେଇ, ଆପଣାର ଘରକୁ ଦେନି ଛୁ ବଢେଇବ !

ଶଳାମାନେ— ଭାରି କାକୁସ୍ଥହୋଇ ) ମଣିମା ! ସ୍ୱାଙ୍ଗ ଆମେ କେବେ କରିପାରୁଁ ?

ଯୁବରାଜ—କରି ନ ପାର ବା କ'ଣ ?

ବୈଦ୍ୟ—ଆଜ୍ଞା, ଦୁନିଆଟା ଫେରା ଶଳାମାନଙ୍କର କରତଳରେ !—

ଶଳାମାନେ—(ଆନନ୍ଦୋଦ୍ବେଗରେ) ବାଃ, ବାଃ, ରେ ଶଳା ଆମେ !

୧ମ ଶଳା—( ନେପଥ୍ୟକୁ ଚାହିଁଦେଇ, ଯୁବରାଜଙ୍କୁ ) ମଣିମା ! ଏହି ଯେ—ଏଣେ ଆସୁଛନ୍ତି ଦରେହିଁ— ଖୁସ୍ ମିଜାଜ୍‌ରେ—ଖୁସ୍‌ଗପ୍ କରି କରିକା—

୨ୟ ଶଳା—(ଆପଣାକୁ ଅଣ୍ଡାଳି) ମନହେଉଚି ପରା—

ଯୁବରାଜ—ଦାହରେ ବି ସନ୍ଧି ହେଉନାହିଁ ପରା ?

୨ୟ ଶଳା—ସନ୍ଧି ହେବ—ଆମ୍ଭଙ୍କର ଶତ୍ରୁ ?

ଯୁବରାଜ—ଆପଣାର ଭାଇ !—ଭାଇ !

ଶଳାମାନେ—(ପରସ୍ପରପ୍ରତି ଅବାକ୍ ହୋଇ ଚାହିଁଲେ)

[ ଦୂରରେ ଯୁଦ୍ଧବାଦ୍ୟ ଓ ସୈନ୍ୟ କୋଳାହଳ ଶୁଣାଗଲା ]

ଯୁବରାଜ—(ଅସମାଳ ହୋଇ) ଶତ୍ରୁ ! ଶତ୍ରୁ ! ଅଗଣିତ ଶତ୍ରୁସେନା ! (ଖଣ୍ଡାଧରି ଧାଉଁଥିଲେ )

[ ସେନାପତି ବେଗେ ପ୍ରବେଶ କଲେ ]

ସେନା—ନୁହେଁ, ଶତ୍ରୁସେନା – ଆମର ମିତ୍ରସେନା, ମଣିମା !— ( ଅଭିବାଦନ କଲେ )

ଯୁବରାଜ—'ମିତ୍ରସେନା'··· ହାଃ— ହାଃ — ଏତେ ଅଳ୍ପସେନା, ସେନାପତି—ଧରିବାକୁ ଏହି କପୋତ କପୋତୀ ? ଆସ, ଆସ, ଆସ, ରାଜଭକ୍ତ ସର୍ବେ—ମୁହିଁ ରାଜସେନାପତି—ଜୀବନ ମରଣ ପଣ—ରାଜାର ଏ' ଶୁଭ ଅଭିଯାନେ !—

( ପ୍ରସ୍ଥାନ କଲେ )

ସେନାପତି—ମାନେ ରାଜାଦେଶ ଅନ୍ୟବାଧ ଯୁବରାଜ !

( ପ୍ରସ୍ଥାନ କଲେ )

ଶଳାମାନେ—ବୁଝି ନ ପାରୁଁ ଅର୍ଥ !—

( ପ୍ରସ୍ଥାନ କଲେ )

ବୈଦ୍ୟ—ମୂର୍ଖ ତୁମେ ବୁଝିବ କିସ ?—କାହାର କଫାଧିକ୍ୟ—କାହାର ବା ପିତ୍ତାଧିକ୍ୟ !—

( ହିମାଉ ହଂମାଉ ଗୁଲିଗଲେ )

× × ×

[ ଯୁଗଳମୂର୍ତ୍ତିରେ, ରଘୁ ଓ ଅନ୍ନପୂର୍ଣ୍ଣା ପ୍ରବେଶ କଲେ—କେଉଁ ନବୀନ ଉତ୍ସବରେ ଯେମନ୍ତ ପ୍ରକୃତିକୁ ଉତ୍ସବମୟ କରି;—ସେମାନେ ମୁଗ୍ଧ ପ୍ରାଣରେ ଶୁଣୁଥିଲେ,—ଆପଣାର ମିଳିତ ଆତ୍ମାର ମିଳନ ସଙ୍ଗୀତର କେଉଁ ପ୍ରତିଧ୍ୱନି ଏହିଭଳି—]

ଗୀତ

ମିଳ, ମିଳ ଆଜ ତରୁଣ ତରୁଣୀ
ବେଣୁ, ବୀଣା ମିଳୁ ସୁରେ ସୁରେ ଗୁଣି ॥
ତବ ହାସ ପରିହାସେ—ମରୁ କୁସୁମ ବିକାଶେ—
ତବ ଜ୍ୟୋତକର ଧାରେ—ନୀଳାକାଶ ବାରି ଢାଳେ
ଗ୍ଭଲ, ଗ୍ଭଲ ରଙ୍ଗେ ତରୁଣ ତରୁଣୀ ।
ପ୍ରେମ ପାରାବାରେ—ବରୁଣ, ବରୁଣୀ ॥

\+ \+ \+ \+

ରଘୁ—ଅନୁ !

ଅନୁ—( କେଉଁ ପ୍ରୀତିଭରା ଆଖିରେ ଅନାଇଲେ )

ରଘୁ—କିକିଏ ବସିବ ?

ଅନୁ—ତୁମରି ଇଚ୍ଛା—

ରଘୁ—ମୋ'ର ଇଚ୍ଛାରେ କ'ଣ ତୁମର ଇଚ୍ଛା, ଅନୁ ?

ଅନୁ—ମୁଁ ଭୁଲ୍ କହୁଚ—ମୋ'ର ଇଚ୍ଛାରେ ତୁମର ଇଚ୍ଛା—ନୋହିଲେ କହନ୍ତ କି—
"ନୋହିଲେ ଯେ ତୁମ୍ଭର ଇଚ୍ଛା ।
ଗଲନି ନାହିଁ ମୋ'ର ଇଷା ॥"

ରଘୁ—ସେହି ଭଲ କହିବାରୁ ସିନା, ଆଉମାନେ ମଙ୍ଗିଲେ—
"ବୋଇଲେ ଆଜ ସବ ରହ ।
ପର୍ନୀକ ତୋ'ର ଘେନି ଯାଅ ॥"

ଅନୁ—ମାମଲତ୍‌କାରଙ୍କ ବୁଦ୍ଧି ବେଶ୍ ପୂର୍ବମାନାରେ ଅଛିତ ?

ରଘୁ—ମାମଲା ନାହିଁ ବୋଲି କ'ଣ, ବୁଦ୍ଧି ବି ଆଉ ନାହିଁ ?

ଅନୁ—(ହଠାତ୍ ଚମକି) ମୋତେ ଭାରି ଡରମାଡ଼ୁଚି କାହିଁକି ?

ରଘୁ—ମ', ଏତେ ବଣଜଙ୍ଗଲ,—ରାତି ଅନ୍ଧାର—ପାର ହୋଇ ଆସିଲ—କିଛି ନାହିଁ,—ଆଉ, ଏହି ତକୁଡ଼ଦଅ ଦପକ୍ଷରଟାରେ,—ଖୋଲ ପଢ଼ିଆଟାରେ, ଡରମାଡ଼ୁଚ ?

ଅନୁ—ନାହିଁ ଗୋ, ତୁମରି 'ତକୁଡ଼ଦଅ', 'ଖୋଲ' କଥାରେ ।

ରଘୁ—(ସସ୍ମିତେ) ଖୋଲ କଥାକୁ ଏକା ଲୋକେ ଶୁଣୁ ଡରନ୍ତି, ନା ? ଠିକ୍ ଖୋଲ ଖଣ୍ଡା ଭଲ ?

ଅନୁ—ହେଲେ, ପ୍ରକୃତ ଯୋଦ୍ଧା ସିନା 'ଖୋଲ'କୁ ଦେଖି ବରଂ ବେଶୀ ଡରେ—?

ରଘୁ—ଉଁ ହୁଁ—

ଅନୁ—'ଖୋଲ'ରେ କି ଭୟଙ୍କର ଅସ୍ତ୍ରଅଛି, ସେଥିଯୋଗୁ ନୁହେଁ ଗୋ ।

ରଘୁ—(ହସି ହସି) ଆଉ କଣ ଖାଲି 'ଖୋଲ'ଟା, ସେଇଥିପାଇଁ ଜାଣି ?

ଅନୁ—ଠିକ୍ ସେଇଥି ଗୋ, ସେଇଥି—ନିରସ୍ତ୍ରସଙ୍ଗେ ଯୋଦ୍ଧା କେବେ ଯୁଦ୍ଧ କରେ କି ?

ରଘୁ—ତା'ହେଲେ ତ, ତୁମରିକଥାରେ, ତୁମେଇ ଭୀରୁ ।

ଅନୁ—ଭୀରୁତା ପରା ନାରୀର ଭୂଷଣ ।

ରଘୁ—'ଭୂଷଣ'ଟା କାଳର ମଜାଘଷାରେ 'ଅଭୂଷଣ' ହୋଇଯାଏ ନାହିଁ କି ?

ଅନୁ—ବେଶ୍, ତେବେ ହାଣ୍ଡି ଫିଙ୍ଗି ଦେଉଚ । ମୁଁ ନିର୍ଭୟା ନାରୀ ।

ରଘୁ—ମୋ'ରବି ସାହସ ଦୁଇଗୁଣ ବଢ଼ି ଉଠୁଚି । ମୁଁ ନିର୍ଭୟ ନର ।

[ ଯୁବରାଜ ସେହି ସମୟରେ ବିକୃତ ଭଙ୍ଗିରେ ପ୍ରବେଶ କଲେ]

ଯୁବରାଜ—ହାଃ ହାଃ—ନିର୍ଭୟ ବାନରଟି କିନ୍ତୁ, ମଝିରେ ଯେ ତୁମ୍ଭର !

ଉଭୟେ—(ଅବାକ୍ ହୋଇ ଗ୍ଭହିଁଲେ—ଭୟରେ ଯେ ଥର ନ ହଟିଲେ, ତା ନୁହେଁ )

ଯୁବରାଜ—ହାଃ ହାଃ—
"ଆରେରେ ମୂର୍ଖ ବନ୍ୟାଗ୍ଭର ।
ଜୀବନେ ଆଶା ଥିଲେ ତୋ'ର ॥
ଛାଡ଼ି ପଳାଅ ଏ' ସୁନ୍ଦରୀ ।
ନୋହିଲେ ନେବି ବାନ୍ଧିକରି ॥"

ରଘୁ—( ନିର୍ଭୟେ ) କେ ତୁମେହେ ନ୍ରଣ ବିକୃତମସ୍ତିଷ୍କ ?

ଯୁବରାଜ—ଅବିକୃତ-ମସ୍ତିଷ୍କ,—ସୁସ୍ଥକାୟ ଯେବେ,—
ପଳାଅ, ପଳାଅ ତେବେ,—ବୁଝି ରୋଗର
ନିଦାନ—।

ରଘୁ—ତୁମ୍ଭେ ରୋଗ କିବା—ବୁଝିଣ ମୁଁ କ୍ଷଣେ ।
ଜାଣ, ଭାଇ—ମୁହିଁ ମଧ୍ୟ ବୀର ଖଣ୍ଡାଏତ,—
ଖଣ୍ଡାଧର ଖେଳଣ ବହୁତ;—କିଭବର ଗର୍ବ
ଦେଖାଉଚ ତୁମ୍ଭେ ? ଅସିଛୁ ମୁଁ ଖର୍ବକର, ଫିଙ୍ଗି
ଧୂଳିର ସମାନ ।—ତୁମେ ଅର୍ବାଚୀନ । ଯାଅ
ଫେରି ଘରେ—ରୋଗମାନ୍ଦା ବଢ଼ିବ କେବଳ,
ଉତ୍ତେଜନାର ବଳେ ।

ଯୁବରାଜ—ହାଃ ହାଃ—ଭାରି ଆନନ୍ଦିତ ମୁହିଁ—ବୀର-
ସଙ୍ଗେ ପ୍ରତିଦ୍ୱନ୍ଦୀ ମଣି । ଥିଲା ଧାରଣା ମୋହର—
ଭିକ୍ଷୁକ ସାମାନ୍ୟ ତୁମ୍ଭେ—ମନ୍ଦଯନ୍ତ୍ର ଜଣା କିଛି—
ତେଣୁ, ଘେନି ପଳାଉଛ ନାରୀ—କୁହୁକର
ଛଳେ ।

ରଘୁ—ଧର୍ମବଳେ, ଭାଇ ।···ମିଥ୍ୟା ନୁହେଁ କଥା
ତୁମ୍ଭ—ମୁହିଁ ଅର୍ଥିତ ଭିକ୍ଷୁକ । କିନ୍ତୁ, ନାରୀ
ଏହି—ଧର୍ମପତ୍ନୀ ମୋ'ର ।—

ଯୁବରାଜ—'ଧର୍ମପତ୍ନୀ' । ଧର୍ମପତ୍ନୀ ବୋଲି, ଦାବୀ
କରୁ ସୁନ୍ଦରୀ ଏପରି ?—ନିଦବ ଦୁର୍ଲଭ ?—
ଛାର ତୁମ୍ଭ ଭିକ୍ଷୁକ ଅର୍ଥିତ ?

ଅଲ—ହେଲେ, ଏ' ବେଶେ, ଅର୍ଜୁନେ—ଚିହ୍ନିଥିଲ
ସୁଭଦ୍ରାସୁନ୍ଦରୀ ଏକା—ନୁହେଁ ଆନନାରୀ ।—
ଛାଡ଼ି ଦିଅ ପଥ—ଯାଉଁ ଚାଲି ଦୁହେଁ ।

ଯୁବରାଜ—ହାଃ-ହାଃ 'ଅର୍ଜୁନ' ସେ ଯଦି,—ଶୁଣିବାକୁ
ଇଚ୍ଛା ମୋହର—'ଗାଣ୍ଡିବ-ଟଙ୍କାର' ।

ରଘୁ—( ଉତ୍ତେଜିତ ହୋଇ ) 'ଅର୍ଜୁନର ଗାଣ୍ଡିବ-
ଟଙ୍କାର' ! କିନ୍ତୁ, ହାୟ,—ଯୁଦ୍ଧର ବାସନା—
ମେଣ୍ଟିଣ ସିନା ତା' କୁରୁକ୍ଷେତ୍ରେ ଆଜ ।

ଯୁବରାଜ—ଭୁଲ—ଭୁଲ···ଅର୍ଜୁନ,—ଗାଣ୍ଡିବୀ ଅର୍ଜୁନ
ସଦା—ଯଥା ରଣକ୍ଷେତ୍ରେ—ତଥା ପ୍ରେମ-
କ୍ଷେତ୍ରେ ।

ରଘୁ ଓ ଅନୁ—( ଶ୍ଳେଷପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ମଧ୍ୟ,
ଚିହ୍ନିଏ ରହିବା ଯେ ଅନୁଭବ କଲେ ତା'
ନୁହେଁ )

ଅଲ—ସେହି ପ୍ରେମକ୍ଷେତ୍ରେ—ରଣର କୌଶଳ—
ଦେଖାଇ ନାହିଁକି ସୁଭଦ୍ରା ସୁନ୍ଦରୀ—ଗାଣ୍ଡିବୀର
ହୋଇ ?

ଯୁବରାଜ—ରକ୍ତ-ଶୂନ୍ୟ-ସମର ସେଭଳି—ଅତୁଲ୍ୟ
ଯେ ଭବେ ।—

ଅଲ—ସେହି ଜ୍ଞାନେ ତେବେ, ଛାଡ଼ିଦିଅ ପଥ—

ଯୁବରାଜ—ବିନାଯୁଦ୍ଧେ ?

ରଘୁ—ଯୁଦ୍ଧ ?—ଯାଦବେତର ସଙ୍ଗତେ ?—

ଯୁବରାଜ—ହୋଃ-ହୋଃ—କ୍ଷୁର୍ଣ୍ଣହେବ ପରା ତହିଁ,
ଯୁଦ୍ଧର ମର୍ଯ୍ୟାଦା ?

ରଘୁ—ସମାନେ, ସମାନେ ଯୁଦ୍ଧ—ଯୁଦ୍ଧର ସମ୍ମାନ ।—
ଜିଣୁ ଅବା ହାରୁ—ଅର୍ଜୁନର ଗର୍ବ—ତଥା
ସୁଭଦ୍ରାଙ୍କ—ସେମାନେ ସ୍ୱପକ୍ଷ ଯାଦବର ।

ଯୁବରାଜ—(ସ୍ୱରୂପଦେଖାଇ ) ଦେଖ ଚାହିଁ—ନୁହେଁ କି
ମୁଁ ସମକକ୍ଷ ବୀର ?—କିବା ଅଭାବ ମୋହର ?
ରୂପ, ବଳ,—ଯଥେଷ୍ଟ ସର୍ବାଙ୍ଗେ, ପ୍ରକୃତ
କିଲ୍ୟାଣେ ।—ଧନରତ୍ନ, କୁବେର ସମାନ—
ଜ୍ଞାନ ବୁଦ୍ଧି, ବୃହସ୍ପତି ସମ ।—ବଂଶର ମର୍ଯ୍ୟାଦା,-
ଭାସ୍କରକୁ ଜିଣି ।—(କେଉଁଭଚ୍ଛ୍ୱସିତ ହୃଦୟରେ)
ବୋଲ, ବୋଲ ଗୋ ସୁନ୍ଦରି—କେଉଁ ଦୋଷେ
ଉପେକ୍ଷିତ ମୁହିଁ ?—କେଉଁ ଗୁଣେ ଅବା, ବରିତ
ଏ' ଯୁବା ?

ଅଲ—( କ୍ଷଣକାଳ ମୁଗ୍‌ଧ ନେତ୍ରେ ଚାହିଁଲେ )

ଯୁବରାଜ—ବିବାହ-ବନ୍ଧନ ଏତେ ପ୍ରବଳ କି ଭବେ ?
ପ୍ରକୃତବନ୍ଧନ ତୁଚ୍ଛ କରିପାରେ ହେଲେ ?—

ଅଲ—ଚାଲିଯା', ଚାଲିଯା', ଏଠୁଁ ତୁମ୍ଭ ମାୟାବି
ରାକ୍ଷସ ।—ନୁହେଁ ମୁହିଁ ମୁଗ୍‌ଧା ସୀତା—ମାୟାମୃଗ
ହେବ ।—

ଯୁବରାଜ—ମାୟାହୀନ ରୂପ ମୋର ଏବେ—କହ,
ହେଜ—ନୁହେଁ କି ଗୋ ପ୍ରକୃତ ସୁନ୍ଦର ?

ଅଲ—ଖାପୁଥିଲା ଖଳ ପ୍ରକୃତିଟି ଏହି—ପୂର୍ବରୂପେ,
କିନ୍ତୁ !

[ଠିକ୍ ସେତିକିବେଳେ ବୈଦ୍ୟ ପ୍ରବେଶ କଲେ]

ବୈଦ୍ୟ—ମହାରାଜ !—

ଯୁବରାଜ—ସୁସ୍ଥକାୟ ମୁହିଁ, ବୈଦ୍ୟରାଜ—କହ, ସୁସ୍ଥ
 ବୋଧେ କିସ ?

ବୈଦ୍ୟ—ବନ୍ଧୁମାନେ ପିତାଙ୍କର ବଶୀଭୂତ ହୋଇ-
 ଛନ୍ତି—ଆମର ସମସ୍ତ ଗୁପ୍ତକଥା ପ୍ରକାଶକରି
 ଦେଇଛନ୍ତି—

ଯୁବରାଜ—ବେଶ୍ ଭ—ପିତା ପୁତ୍ରେ ଯୁଦ୍ଧେ—ସମ୍ମୁଖୀ
 ସଂଗ୍ରାମେ—

( ବୀରଦର୍ପେ ଚାଲିଗଲେ ବୈଦ୍ୟଙ୍କ ସଙ୍ଗେ )

ଅନ୍ନ—ଏ' କ'ଣ ?—ମୁଁ ଯେ କିଛି ସମଜ ପାରୁନାହିଁ
 ଦେଖ, ଦେଖ, ନାଥ—ସୈନ୍ୟମାନେ ଏଣେ
 ପଙ୍ଗପାଳ ପରି ମାଡ଼ି ଆସୁଛନ୍ତି—

ରଘୁ—(ଶତ୍ରୁପୁରର ଉତ୍ତେଜନାରେ ଯେପରି ଖଣ୍ଡା
 ଆପଣାର କଟି ଦେଶରେ ଅଣ୍ଡାଳିବାକୁ ଲାଗିଲେ)

ଅନ୍ନ—ଏଁ—ଏଁ—ଏମାନେ କିଏ ?—ଭାଇମାନେ
 ଯେ ମୋର !

ରଘୁ—(ଶ୍ଳେଷପୂର୍ଣ୍ଣ ହସ ହସି) ଜଗାଇର କୀର୍ତ୍ତି ତେଣୁ
 ସିନା—

 "ଏଣେ ଭଗ୍ନୀକୁ ପଠାଇଲେ ।
 ତେଣେ ଏ କୂଟ ଖଞ୍ଜାଇଲେ ॥"

ଅନ୍ନ—"ଏଥିରେ କିବୁଦ୍ଧି କରିବା ।
 କେମନ୍ତେ ଏଥିରୁ ବଞ୍ଚିବା ॥"

ରଘୁ—"ତୁମେପରି ନାରୀ ନିର୍ଭିକା ।
 ଏତଜକରେ ଏତେଟି ଦକା ॥"

[ସେତିକିବେଳେ କ୍ଷତ ବିକ୍ଷତ ଦେହରେ ଯୁବରାଜ
 ପ୍ରବେଶ କଲେ ]

ଯୁବରାଜ—ଭାଇ—ଭଉଣି ମୋ'ର ! ଆଜ ମୁଁ
 ରକ୍ଷାକରି ପାରିଲି ନାହିଁ—ଦେଖ, ଦେଖ,
 ଭାଇ—ଲୋଭୀ ଜନକ ମୋହରି—ଜର୍'ଜୀର୍ଣ୍ଣ
 ଅଙ୍ଗ—ତଥାପି କ୍ରମୋହେ ଛଳ—ଧାଇଁଛନ୍ତି
 ଏଣେ—ନାରୀନର୍ଯ୍ୟାତନେ !—ରୋଧ—ରୋଧ,
 ଭାଇ—ଯେଉଁ ଭାବେ ପାର—କର ପ୍ରତିକାର—
 ରକ୍ଷାକର ଭଗ୍ନିର ମର୍ଯ୍ୟାଦା !—ଆପଣା
 ମର୍ଯ୍ୟାଦା—ପ୍ରେମର ମର୍ଯ୍ୟାଦା !—ଏହ—ଏହ—
 ଆସନ୍ତିଟି ଧାଇଁ—ନ ପାରେ ମୁଁ ରହ ( ପୁଣି
 ଧାଇଁଲେ ଯଥାଶକ୍ତିରେ )

ଅନ୍ନ—ଓଃ, ଜନ୍ତୁ କ୍ରନ୍ଦନବାର କରେ—ଆସଇ ଦୁରାତ୍ମା
 ଘରେ—ଦୁରାତ୍ମା ସୋଦର ମେଳେ !—

ରଘୁ—ଭୟନାହିଁ, ବାଳା—( ପଛକୁ ରହି )

 "ମୋ' ପ୍ରଭୁ ଦାରୁବ୍ରହ୍ମ ମୂର୍ତ୍ତି ।
 ଏ'ଗ୍ରର କେତେକ ବିପତ୍ତି ॥
 ଯେ ତୋତେ ମୋତେ ଭେଟ କରି ।
 ଯେ ବିଷ ଡାପୁଁ କଲେ ପାରି ॥
 ଏବେ ରଖିବେ ସେହି ମତେ ।
 ଭୋ ସଖି ! ଭୟ କିମ୍ପା ଚିତେ ॥"

( ନେପଥ୍ୟେ ଯୁବରାଜ )—ପଳାଅ—ପଳାଅ,
ଭାଇ—ରକ୍ଷାନାହିଁ ରକ୍ଷା···
(ଠିକ୍ ସେତିକିବେଳେ ଅନେକ ଗୁଣ୍ଡାଏ ଛରବାର
ଗୁରିଆଡ଼ୁ ଆସି ଭୂଷି ଦେବାକୁ ଉଦ୍ୟତ ହେଲା)

ଅନ୍ନ—ଓଃ, ପ୍ରାଣଗଲା—

ରଘୁ—ଭୟନାହିଁ, ବାଳା — (ଧ୍ୟାନସ୍ଥ ହୋଇ)

 "ଶରଣୀ-ପଞ୍ଜର ଯା ବାନା ।
 ସର୍ବ ଭୟକୁ ବଜ୍ରସେହ୍ନା ॥
 ବ୍ରହ୍ମା ଇନ୍ଦ୍ରାଦି ଯାରପଦେ ।
 ଧ୍ୟାନେ ଚିନ୍ତନ୍ତି ଅପ୍ରମାଦେ ॥
 ସେ ପ୍ରଭୁ ଥାଉଁ ଥାଉଁ ମୋର ।
 କିମ୍ପା ତୁ ଡରୁ ନାରୀବର ?"

[ବେକ ପାର୍ଶ୍ୱେ ରାମକୃଷ୍ଣ ଦେଖାଦେଲେ—ଠିକ୍
 ନିମ୍ନଭାବେ—]

 "ଶ୍ରୀ ବଳ ଦେବ ବ୍ରହ୍ମରାଶି ।
 ବେକ ଅଶ୍ୱବେ ଛନ୍ତି ବସି ॥
 କନ୍ଧେ ଜଉସାପୁ ଅସ୍ତ୍ର ପଢ଼ି ।
 କୁଟୀରେ ଯମଦାଢ଼ ଭିଡ଼ି ॥
 ଭାଲ ପଡ଼ିଛି ପିଠି ପାଶେ ।
 ଦ୍ୱିତୀୟସୂର୍ଯ୍ୟର ପ୍ରାୟେ ଦିଶେ ॥
 ବାହନ ସିଂହ ପ୍ରାପ୍ତ ହୋଇ ।
 ମିଳିଲେ ଭକ୍ତ ପାଶେ ଯାଇଁ ॥"

ରଘୁ—ଧୀରେ ଧୀରେ ଆଖି ମେଲିଇ ଗୁହିଁଲେ, କିନ୍ତୁ
 କଥା କହି ପାରିଲେ ନାହିଁ ଅଭିଭୂତ ହୋଇ )

କୃଷ୍ଣ— "କହ ଅହେ ନର ସୁନ୍ଦର ।
କେଉଁଣ ଦେଶେ ତୁମ୍ଭ ଘର ॥
କାହୁଁ ଅଇଲ ଯିବ କାହିଁ ।
ଏକାକୀ ସଙ୍ଗେ କେହୁ ନାହିଁ ॥
ଆବର ତୁମ୍ଭ ପଛକତ ।
ଅନେକ ସୈନ୍ୟ ଧାଇଁଛନ୍ତି ॥
କହ ଏ' କେଉଁଣ ଚରିତ ।
ଲାଗୁଛି ଭାରି ଆଚମ୍ବିତ ॥"

ରଘୁ—( ସବିନୟେ) "ସାଷ୍ଟାଙ୍ଗ ପ୍ରଣାମ ମୋ ଘେନ ।
ଶୁଣ କ୍ଷତ୍ରିୟ ଚୂଡ଼ାମଣି ॥
ଏ' ବଡ଼ ଆଚମ୍ବିତ କଥା ।
କହି ବସିଲେ ହେବ ପୋଥା ॥
ମୋ'ର ପତ୍ନୀକି ମୁଁ ନ ଅନ୍ତେ ।
ମାରିବେ ଆସୁଛନ୍ତି ମୋତେ ॥
ଅନାଥ ପ୍ରାଣୀ ମୁଁ ଅଟଇ ।
ସଖା ସୋଦର ମୋର ନାହିଁ ॥
କେବଳ ପ୍ରଭୁ ଚକ୍ରପାଣି ।
ନୀଳାଦ୍ରି ଚନ୍ଦ୍ରଚୂଡ଼ାମଣି ॥
ତାହାଙ୍କ ବିନା ଅନ୍ୟ ଜଣେ ।
ନାହିଁ ମୋ ଶରଣ ରକ୍ଷଣେ ॥"

କୃଷ୍ଣ— "ଶୁଣି ସାନନ୍ଦେ କେନାଭାଇ ।
ରହିବୁ ଆଗପଛ ହୋଇ ॥
ସାଷ୍ଟାଙ୍ଗ ସଙ୍ଗିନୀ କରଣେ ।
ଚାଲ ହୋ ପଞ୍ଜରେ ପଶିଣ ॥

[ ନେପଥ୍ୟେ 'ହାଣ, ହାଣ'—'ମାର, ମାର' ଶବ୍ଦରେ ଯେସନେ ଗଗନ ଫାଟି ଗଲା ]

କୃଷ୍ଣ—( ସୁଦର୍ଶନ ଚକ୍ର ପେଷିଦେଲେ—କ୍ଷଣକେ ସମସ୍ତ ଉଜ୍ଜ୍ୱଳ ହୋଇ ଗଲା ଓ ସେମାନେ ଅନ୍ତର୍ଦ୍ଧାନ ହୋଇଗଲେ )

ରଘୁ—ଦେଖ, ଦେଖ ଗୋ ସୁନ୍ଦର,—କି ତେଜ ଝଲକ ଗୁରିଆଡ଼େ ଖେଳ—···ହାଃ—ହାଃ—ଅନାଥ—ଅନାଥ—

"ଭେକ ଫଣୀକି ଦେଖି ଯେସନେ ।
ଭୟେ ପଳାନ୍ତି ଏଣେ ତେଣେ ॥
କେଶରୀ ଦେଖି ମୃଗରାଜ ।
ଯେସନେ ହୁଅନ୍ତି ହତବୀର୍ଯ୍ୟ ॥
ଗରୁଡ଼ ଦେଖି ଯେସନେ ବ୍ୟାଳ ।
ପଳାଇ ପଶିଲେକି ବିଳ ॥
ତେମନ୍ତ ପ୍ରାଣର ଆରତେ ।
ପଳାଇ ଯାନ୍ତି ଯେଝା ମତେ ॥"

ଅଳ—ଉଃ—ମୁଁତ ଆଉ ଗୁହିଁ ପାରୁନାହିଁ—

ରଘୁ—ଛି, ଏତେଭୀରୁ ନା ତୁମେ ?—( ଅନାଇ ଉଭୟ ଆଡ଼େ ) ଏଁ, କାହନ୍ତି ? କାହାନ୍ତି ସେମାନେ ? ( ଗୁଲିଗଲେ ଅନ୍ନପୂର୍ଣ୍ଣାକୁ ଘେନି ଶଶବ୍ୟସ୍ତେ )

[ କୃଷ୍ଣ ଓ ବଳରାମ ପ୍ରବେଶ କଲେ ]

ବଳରାମ—ନା, କୃଷ୍ଣ—'ଚକ୍ର' ତୋତେ ପ୍ରତ୍ୟାହାର କରିବାକୁ ହେବ—

କୃଷ୍ଣ—ମୁଁ ତ 'ଚକ୍ର' ଛଡ଼ା ଯୁଦ୍ଧ କରିପାରେ ନାହିଁ, ଭାଇ—

ବଳରାମ—ଭଲକଥା—ଏହି ହଳ ମୋ'ର ପେଷଣ କଲି—

କୃଷ୍ଣ—ଭାଇ !—ଭକ୍ତକୁ ପରା ରକ୍ଷାକରିବାକୁ ହେବ ?—

ବଳରାମ—ତା' ବୋଲି, ଅନ୍ୟାୟ ସମର ହେବ ?—ଅସହ୍ୟ !

( ହଳ ପେଷଣ କରୁଥିଲେ )

କୃଷ୍ଣ—ସ୍ଥିର ହୁଅ, ଭାଇ—ଏହି ମୁଁ ଚକ୍ର ପ୍ରତ୍ୟାହାର କଲି—

[ ଇଙ୍ଗିତ ମାତ୍ରେ ଚକ୍ରଆସି କୃଷ୍ଣଙ୍କ ଅଙ୍ଗୁଳିରେ ଦେଖା ଦେଲା ]

ବଳରାମ—ସେଥିରେ ବି ତୃପ୍ତ ନୁହେଁ ମୁହିଁ—ମୋ' ଜିମ୍ମାରେ ରଖିବାକୁ ହେବ ସେହି—

କୃଷ୍ଣ—ଯଥା ଆଜ୍ଞା—( ଚକ୍ର ଅନୁମତି ପାଇ ବଳରାମଙ୍କ ହାତକୁ ଗଲେ, କିନ୍ତୁ ସେ ସହି ପାରିଲେ ନାହିଁ )

[ ନେପଥ୍ୟେ—'ହାଣ, ହାଣ'—'ମାର ମାର' ଶବ୍ଦ ପୁଣି ଶୁଣାଗଲା ]

କୃଷ୍ଣ—( ମୃଦୁ ମୃଦୁ ହସି ଗୁହିଁଲେ ବଳରାମଙ୍କ ଆଡ଼େ )

ବଳରାମ—ଆଃ—ଭକ୍ତଙ୍କୁ ରକ୍ଷାକର ତୁମ୍ଭେ ଚକ୍ରୀ । ମୁଁ
ବୁଝାଇ, ସମଜାଇ,—ନାହିଁତ ଡରାଇ ହରାଇ,
ନିବାରଣ କରି, ଧାଇଁ ଆସୁଚି ଅପର ପକ୍ଷକୁ ?—
ମୂର୍ଖ ରାଜା—ବୁଝିପାରୁନାହିଁ ଆପଣାର ବଳ,—
ଆପଣାର ପୁତ୍ରର ବଳଦାନସଙ୍ଗେ ।—

( ପ୍ରସ୍ଥାନ )

କୃଷ୍ଣ—( ବଇଁଶୀ ବଜାଇ ଗାଇଲେ )

ଗୀତ

ବାଜ, ବାଜ ମୋ ବଇଁଶି ।
ବାଜ ଯାହା ମନ ଖୁସି ॥
ତୋ'ର ସୁରେ—ନାଚେ ଧୀରେ—
ତୋ'ର ତୁରେ—ନାଶେ ଖରେ—
ରୁଦ୍ର, ନମ୍ର ତମା' ବଇଁଶି ॥

[ ସେହି ଯୁବକ ଓ ଯୁବକ-ପତ୍ନୀ ପ୍ରବେଶ କଲେ ]

ଯୁବକ—ହେ ହେ, ତୁମେ ଏଠି ମନ ମଉଜରେ
ବେଶ୍ ବଇଁଶୀ ବଜେଇ ଗୀତ ଗାଉଚ—ତେଣେ
ଯେ କି ହଣାକଟା ଲାଗିଚି ?—ଦୁଇଟା ନିରୀହ
ପ୍ରାଣିକି ଧରିବାପାଇଁ, କେତେ ସୁନ୍ଦର ଗୁଳିଚି—
ଅଟେ ବୁଝନ୍ତ ଭଲ ?

କୃଷ୍ଣ—କି ଦରକାର ମୋ'ର ?—

ଯୁବକ—ଏମିତିକା ଯୁଦ୍ଧ ପୋଷାକ ପିନ୍ଧିବାର ଭଲ କି
ଦରକାର ତୁମର ?

କୃଷ୍ଣ—ତୁମେ ଯୁଦ୍ଧ ପୋଷାକ ପିନ୍ଧିନାହିଁ ବୋଲି କ'ଣ
ଇର୍ଷା ହେଉଚି କି ?—

ଯୁବକ—ତୋ'ଠୁଁ ଛଡ଼ାଇ ନେବାକୁ ମନ ହେଉଚି ।

କୃଷ୍ଣ—ନେଇ ନା'—ମୁଁଭି ଯାଚି କରି ଦେଉଚି ।

ଯୁବକ—ଥାଉ ।—ଓଃ—ତା ପଦ ଏ ଜନ୍ମରେ
ମିଳନ୍ତା,—ମୋ'ର ଶ୍ରୀକ୍ଷେତ୍ର ଯାତ୍ରା—ଶ୍ରୀଜଗନ୍ନାଥ
ଦର୍ଶନ ପରି—ମହା ପୁଣ୍ୟମୟ—ମହା ସାର୍ଥକ
ମଣନ୍ତି ।

କୃଷ୍ଣ—( ଯୁବକ-ପତ୍ନୀ ପ୍ରତି )—ହେ ଗୋ ଶୁଣୁଚତ
ତୁମର ପତିଙ୍କର ମନ କଥା ।—ତୁମ ପ୍ରତି ମାୟା
ତାଙ୍କର କେତେ, କଳୁଚତ ?

ଯୁବକ-ପତ୍ନୀ—ତୁମେ କି ବୁଝିବ, ନିର୍ମମ ସୈନିକ—
ଅଙ୍କଳିତ ମାୟା, ପତିଙ୍କର ମୋର—ପତ୍ନୀ ପ୍ରତି
ତାଙ୍କ ?—ଅହେ ! ମୋ ପ୍ରତି ସେହିଭଳି ମାୟା
ଥିବାରୁ ସିନା, ମୋର ସ୍ୱାମୀର ପ୍ରାଣ ରକ୍ଷା ପାଇଁ,
ପ୍ରାଣ ଆଜି ତୁଚ୍ଛ କରିବାକୁ ମନ ବଳାଇଛନ୍ତି
ପତି ମୋର ?

କୃଷ୍ଣ—ମୋ ବୋଲେ ।

( ସେତିକି ବେଳେ ଯୁଦ୍ଧ ଶବ୍ଦ ଶୁଣାଗଲା )

ଯୁବକ—ଅନୁ—ଏହି ଘେନିଲି ମୁଁ ଅସ୍ତ୍ର—

କୃଷ୍ଣ—ବାଃ, ବେଶ୍ ଲୋକତ—'ପର ଧନରେ
ବରବାପ' ?

ଯୁବକ-ପତ୍ନୀ—ଧନର 'ବେଭାର' ଯେ ଜାଣେ ନାହିଁ,
—କାଢ଼ିନେଲେ କିବା କ୍ଷତି ତହିଁ ?

କୃଷ୍ଣ—ମା ଅନ୍ନପୂର୍ଣ୍ଣା ବିନା, ଅନ୍ନର ବେଭାର ଜାଣେ
କି କେହି ମା ?

[ ନେପଥ୍ୟେ—'ହାଣ, ହାଣ'—'ମାର, ମାର'
ଶବ୍ଦ ଶୁଣାଗଲା ଭୀଷଣ ଭାବେ ]

ଯୁବକ—ଦିଅ ଗୋ ବିଦାୟ,—ଯାଏଁ ମୁହିଁ ରଣେ—

ଯୁବକ-ପତ୍ନୀ—ଜଗନ୍ନାଥ ଭରସା । ହୁଅ ଜୟୀ
ନାଥ—

କୃଷ୍ଣ—ଅହା ।—ଗୋଟାଏ କଥର ଯଦି କରନ୍ତ—
ତୁମର ନାମ ଯେମିତିକା ଅନ୍ନପୂର୍ଣ୍ଣା···ସେ ଯଦି
ରଘୁନାଥ ବୋଲି ଆପଣକୁ ପରିଚୟ ଦିଅନ୍ତେ
ଖାଲି, ବିନା ଯୁଦ୍ଧରେ ପରି କାମଟା···

ଭଦ୍ରସେ—( ଫେରିଲେ ) 'ହାସଲ ହୋଇଯାନ୍ତା' ?

କୃଷ୍ଣ—ନିଶ୍ଚୟ !—ଏତେ ରକ୍ତାରକ୍ତି,—ହଣାକଟା,
ଜଣକର କ୍ଷୁଧା ହେତୁ ସିନା ?—ତା'ର କ୍ଷୁଧାଟା
ମେଣ୍ଟାଇ ଦେଲେତ କୌଣସି ବାଟେ ···

ଯୁବକ—'ଜାମଶେଫ' !—ଠିକ୍ କହୁଚ, ଭାଇ—ମୁହିଁ
'ରଘୁନାଥ' !—

ଯୁବକ-ପତ୍ନୀ—( ହସି ହସି ) ମୋର 'ଅନ୍ନପୂର୍ଣ୍ଣା'
ନାମ ବି ଆଜି ସାର୍ଥକ, ନାଥ !

[ ଭଦ୍ରସେ—"କର ଆଶୀର୍ବାଦ—ହେଉଁ ଜୟୀ
ରଣେ", ବୋଲି ଗର୍ବଭରେ ଅଗ୍ରସର ହେଲେ ]

ବଳରାମ—( କ୍ରୋଧଭରରେ ପ୍ରବେଶକରି ) ଏ କ'ଣ କଲୁ କୃଷ୍ଣ ?—ଭକ୍ତକୁ ତୋ'ର ଏ'ପରି ଭାବେ ଧରାଇ ଦେଲୁ କାହିଁକି ? ମୁଁ ଯେ ଦୁର୍ବୃତ୍ତମାନଙ୍କୁ ଉପଯୁକ୍ତ ଶାସ୍ତି ଦେବା ଉଦ୍ଦେଶ୍ୟରେ, ଡାକିବାକୁ ଆସିଥିଲି ତୋତେ,—ଚକ୍ର ତୋର ପେଷିବାକୁ କହି—ଯା' ଯା', ଭାଇ—ତା' ହବ ନାହିଁ—ପଠା—ପଠା ତୋ'ର ଚକ୍ର—ମୁଁ ବି ପେଷେ ମୋର ହଳ— ଦେଖାଯାଉ କେତେ ଭାର ବଳ !

କୃଷ୍ଣ—( ହସି ହସି ) ଭାଇ, ନିରସ୍ତ ହୁଅ—ଦେଖ ତେଣେ ଚାହିଁ—ଅସ୍ତଚନ୍ଦ୍ର ହସି, ହସି, ଦୁଇ···!

ବଳରାମ—ଏ କି କୁଟ ଚକ୍ର ତୋ'ର, ଚକ୍ରି ?—

କୃଷ୍ଣ—(ପ୍ରଣାମ ପୂର୍ବକ) ଅନନ୍ତ ଦେବଙ୍କୁ ଅଗୋଚର କଣ ?—

ବଳରାମ—କିନ୍ତୁ ଚକ୍ରେ ତୋ'ର,—ଅନ୍ତଯେ ମୋ' ଦୃଷ୍ଟି !—

( ଭାଇ ସ୍ନେହ ଭରେ ହାତ ବଢ଼ାଇ ଦେଲେ—କୃଷ୍ଣ ଚାଲିଲେ ଗାଇ ଗାଇ,—"ବାଜ ମୋ' ବଇଁଶୀ" )

[ କିଛିକ୍ଷଣ ପରେ ବିପରୀତ ଦିଗରୁ ଅନ୍ନପୂର୍ଣ୍ଣା ଓ ରଘୁ ଅରକ୍ଷିତ ପ୍ରବେଶ କଲେ ]

ଅନ୍ନ—ଭାରି ଆଶ୍ଚର୍ଯ୍ୟ ! ଗୋଟାଏ ମନ୍ତ୍ରରେ ଯେମିତିକା ସବୁ ଉଭେଇଗଲା କୁଆଡ଼େ ?—କାହିଁ ରାଜା—···କାହିଁ ବା ସୈନ୍ୟ ?···ଆଖି ପିଛୁଡ଼ାକେ ଏଡ଼େବଡ କୋଳାହଳପୂର୍ଣ୍ଣ ଯୁଦ୍ଧଭୂଇଁଟା ଜନମାନବ ଶୂନ୍ୟ ହୋଇଗଲା ଏକାବେଳକେ !—କିଏ ଅମ୍ଭମାନଙ୍କୁ ଏମିତିକା, ଏହି ମହା ବିପଦରୁ ଉଦ୍ଧାର କଲେ, ନାଥ ?—

ରଘୁ—ସେହି ଦୁଇଜଣ ଅଶ୍ୱାରୋହୀ ଛଡା ଆଉ କିଏ ହୋଇପାରେ, ଅନୁ ?—ଜଣେ 'କଳା'—ଜଣେ 'ଧଳା' ।

ଅନ୍ନ—ଠିକ୍ ସେହି ରୂପ···କାହାନ୍ତି ?—କାହାନ୍ତି ସେମାନେ ?

ରଘୁ—କେଉଁ ଆଡ଼େ ଯେ ଅଦୃଶ୍ୟ ହୋଇଗଲେ,—ଖୋଜି ଖୋଜି ପରା ଥକି ଗଲିଣି—

ଅନ୍ନ—ପ୍ରଭୁ ! ନିଶ୍ଚୟ ସେମାନେ 'କୃଷ୍ଣ'—'ବଳରାମ' ।

ରଘୁ—'କୃଷ୍ଣ', 'ବଳରାମ' !—କଣ କହୁଚ, ଅନୁ ?—

ଅନ୍ନ—ମୁଁ ଯେମିତିକା ସେହିମାନଙ୍କର କଳା, ଧଳା, ମୁଖ ନିରୀକ୍ଷଣ କରୁଥିଲି ନିରବଧି । ବିପଦ ସାଗରେ,—ବଣାଘରର ସ୍ଥିର ଆଲୁଅ ଭଳି !

ରଘୁ—ଓଃ, କି ଦୁର୍ଭାଗ୍ୟ ମୋ'ର ! ଚିହ୍ନି, ଚିହ୍ନି ପାରିଲି ନାହିଁ !—ଧରି, ଧରି ପାରିଲି ନାହିଁ !

ଅନ୍ନ—ତେବେବି,—କେ ବୋଲେ ତୁମ୍ଭେ 'ଅରକ୍ଷିତ' ଭବେ ?

ରଘୁ—ନା, ନା—'ଅରକ୍ଷିତ' ବୋଲି ସିନା—'ରାମ, କୃଷ୍ଣ' ରକ୍ଷିତ ମୁଁ ଆଜି !

( ପ୍ରଣତ ହେଲେ ସେହି ପାଦପଦ୍ମ ବେନି ସ୍ମରି )

ଅନ୍ନ—କିନ୍ତୁ, ମୁହିଁ 'ରାଜରାଣୀ, ଚିରକାଳ—ଏହି ଧୂଳିର ପ୍ରସାଦେ—

( ରଘୁର ପଦଧୂଳି ଗ୍ରହଣ କଲେ )

—ଯବନିକା—

---

## ପାଞ୍ଚ

### ଦୃଶ୍ୟ—'ଯେବେବର'—

[ 'ଦକ୍ଷିଣପାର୍ଶ୍ୱ'ରେ ରଘୁ ଅରକ୍ଷିତଙ୍କ ମନ୍ଦିର । ଖୁବ୍ ସଖାନ୍ତ ଅନ୍ନପୂର୍ଣ୍ଣା ଗାଧୋଇ ପାଧୋଇ,—ଘର ପିଣ୍ଡାରେ, ନାନାଭଳି ଫୁଲ୍ ଘେନି, ହାରଟିଏ ଗୁନ୍ଥୁଥାଏ ମନପ୍ରାଣ ଢାଳି,—ଗୁଣୁ ଗୁଣୁ ସ୍ୱରେ ଗୀତଟିଏ ଗାଉ ଗାଉ— ]

ଗୀତ

ଅନ୍ନ— ନିତ, ନିତ ତୋଳି ଫୁଲ୍ ଭଳି, ଭଳି—
ଗୁନ୍ଥେ ମାଳା କେତେ ରଙ୍ଗେ ଏହି ଭଳି ॥
ନିଅନ୍ତି ଆଦରେ ପିନ୍ଧନ୍ତି ସେ ଗଳେ—
ପିନ୍ଧାନ୍ତି ଅବାଛି ଦାଅଙ୍କର ଗଳେ;
ତଥାପି କିପାଇଁ—ମରମେ ବାଜଇ—
ଦେଇ ନାହିଁ ମାଳା—ଗୁନ୍ଥି ଏହି ଭଳି ॥

[ ରଘୁ ଶୁଦ୍ଧ-ସ୍ନାତ, ପଟ୍ଟବାସପରିହିତ ହୋଇ ପ୍ରବେଶ କଲେ—କେତେବେଳେ ଯେ ଆସି ପାଖରେ ଠିଆ ହେଲେଣି, ଅନ୍ନପୂର୍ଣ୍ଣାଙ୍କୁ ଜଣା ନାହିଁ— ]

ରଘୁ—ସୁନ୍ଦର ମାଳଟି, ଅନୁ !

ଅନ୍ନ—କାହିଁକି ? ମୁଁ କ'ଣ କେବେ ହେଲେ ଅସୁନ୍ଦର ମାଳ ଗୁନ୍ଥିଥାଏ ?

ରଘୁ—କିନ୍ତୁ, ଏ'ଭଳି 'ସୁନ୍ଦରଟି' କେବେ ନୁହେଁ !

ଅନ୍ନ—( ମରମରେ କାଭଳି ଆଘାତ ଅନୁଭବ କରନ୍ତେ ଲଜ୍ଜାରେ କଥାକହି ପାରିଲେ ନାହିଁ )

ରଘୁ—ସତେ, ଅନୁ ! ଆଜି ମନେ ହେଉଛି, ତୁମେ ଯେମିତିକା ତୁମର ହୃଦୟର ସୁନ୍ଦର ସୁନ୍ଦର ଫୁଲ ଗୁଡିକ ତୋଳିଆଣି, ପ୍ରାଣର ପଟରେ ଏହି ସୁନ୍ଦର ହାରଟି ଗୁନ୍ଥିଛ ।

ଅନ୍ନ—ତୁମର ସୁନ୍ଦର ଏହି ବୁକୁରେ ହାର ହେବା ପାଇଁ ଗୋ !

ରଘୁ—ଆଜି, ସୁନ୍ଦର ସେହି ରାଜକୁମାରଙ୍କ ବୁକୁରେ ବାହାର ହେବାପାଇଁ, ନା ?—ହାଃ—ହାଃ—

ଅନ୍ନ—( ହଠାତ୍ ଛୁଞ୍ଚିଟା ଅଙ୍ଗୁଳିରେ ଭେଦିଗଲା—ମର୍ମରେ କଥାଟା ଭେଦିଲା ସଙ୍ଗେ ସଙ୍ଗେ )

ରଘୁ—ଏଁ, ଏଁ, ଛୁଞ୍ଚିଟା ଅଙ୍ଗୁଳିରେ ଫୋଡ଼ି, ରକ୍ତ ବାହାରିଲା ନା କ'ଣ ?

ଅନ୍ନ—( ହଠାତ୍ ରକ୍ତ ଦେଖି, କେଉଁ ମନକଥା ଲଜ୍ଜାରେ ଘୋଡ଼ାଇବାକୁ ଯାଇ, ଅଙ୍ଗୁଳିଟା ଚୁପିବାକୁ ଲାଗିଲେ ଖୁବ୍ ଜୋରରେ )

ରଘୁ—ଚୁ—ଚୁ—ମୁଁ ଧୋଇ, ବନା ବାନ୍ଧିଦିଏଁ, ରୁହ—

ଅନ୍ନ—('ଗୋରୁମାରି ଯୋତାଦାନ' ଏହିଭଳି ଭାବାନୁବର୍ତ୍ତନରେ ) କଷ୍ଟ କରିବାକୁ ହ'ବ ନାହିଁ !—( ଅଭିମାନଭରେ ଉଠି, ଚାଲି ଯାଉଥିଲେ )

ରଘୁ—ଛି, ରାଗିଲ କି ? ( ଗୀତସ୍ୱରେ ) "ଏ ଗୁମାନ ବରଜ ମାନ···"

( ଲୁଗା ପଣତ ଧରିଲେ )

ଅନ୍ନ—ଛାଡ ନା—ମୋର ଢେରେ ଅନେକ କାମ ଅଛି—

ରଘୁ—'ଅନେକ କାମ' ଭିତରେ—ଅସଲ କାମ ଏହି ହାର ଗୁନ୍ଥା ଆଗ ସରିଛି ନା ?

ଅନ୍ନ—ତୁମର ଦିଅଙ୍କ ଲାଗି ହାର, ଏବୁଁ ତୁମେ ଗୁନ୍ଥିବ !

ରଘୁ—( ହସି ) ଆଜି ତୁମର 'ଦିଅଁଙ୍କ' ଲାଗି ହାର ?

ଅନ୍ନ—ମୋର କଥା ମୁଁ···( ଖଟ୍‌କାନା ମର୍ମରେ କାପରି ଗୋଟାଏ ଖଟ୍‌କା ଅନୁଭବ କରିବାରୁ ଆଉ କହି ନ ପାରି, ଅଟକି ଗଲେ କାଭଳି ହୋଇ ରଘୁର ମୁହଁକୁ ଅନାଇ )

ରଘୁ—ହଁ, ତୁମେ ଜାଣି ନାହିଁ ତ ଆଉ ଜାଣେ କିଏ ?—ତେବେ ବାହାରେ ଜଣାଇବାରେ ବା ଆପତ୍ତି କ'ଣ ?

ଅନ୍ନ—( ଭାବ ଗଦଗଦସ୍ୱରେ ) ପ୍ରଭୁ—ନାଥ—ପ୍ରାଣେଶ୍ୱର !—ତୁମେ କାହିଁକି ତାଙ୍କୁ ନେଇ ଏତେ ଥଟ୍ଟା କର ?—ସେ ଦେବତା—ସ୍ୱର୍ଗର ଲୋକ···ତା'ଙ୍କୁ ଏ' ମର୍ତ୍ତ୍ୟକୁ ଓଟାରି ଆଣିବା ଦରକାର ?—

ରଘୁ—( ହସି ) ମୋ'ର ଯେ ପ୍ରଧାନ ପ୍ରତିଦ୍ୱନ୍ଦୀ !—

ଅନ୍ନ—ହେଲେ, ପ୍ରତିବନ୍ଧକ ତ ଆଉ ନାହାନ୍ତି ?

ରଘୁ—ଘୋର, ଘୋର ପ୍ରତିବନ୍ଧକ, ସୁନ୍ଦର,—ଆଜି ଆମର ମସୃଣ ପ୍ରଣୟ ପଥରେ !—ମୋ'ର ଅନ୍ନପୂର୍ଣ୍ଣାର ସରଳ ପ୍ରାଣ ପଥରେ !

ଅନ୍ନ—ଭାଗ୍ୟକୁ, ଅନ୍ତର୍ହିତ !

ରଘୁ—ସ୍ମୃତିରେ ଯେ ଅନ୍ତର ଉନ୍ମତ୍ତ !

ଅନ୍ନ—ଘୃଣ୍ୟ—ଘୃଣ୍ୟ ସେ···

ରଘୁ—ସେଥିପାଇଁତ ଆହୁରି ଭୀଷଣ କାମ୍ୟ !

ଅନ୍ନ—( କେଉଁ ଗୁପ୍ତତମ ରହସ୍ୟ ଭେଦରେ ଅବାକ ହୋଇ ରହିଲେ )

ରଘୁ—କହିଲି ଭଲା—ଭୂତଠାରୁ ଭୂତର କଳ୍ପନାରେ ବିଭୀଷିକା ବେଶୀ ଜନ୍ମି ନ ଥାଏ କି ?

ଅନ୍ନ—ଓପାଡ଼ି ଫିଙ୍ଗିଦେବ ଏଥର, ପ୍ରଭୁ !

ରଘୁ—ଆତ୍ମହତ୍ୟା—ନିଶ୍ଚେ ଆତ୍ମହତ୍ୟା କରିବସିନା, ସୁନ୍ଦର—

ଅନୁ—ପ୍ରଭୁ-ପ୍ରଭୁ—ଆତ୍ମହତ୍ୟା କରିଥାନ୍ତି ନିଶ୍ଚେ—
    ଜୀବିତ ଥିଲେ ଏ ଜଗତେ ସେ ।

ରଘୁ—ବରଂ ଆତ୍ମୋନ୍ନତି କରିଥାନ୍ତେ, ବନ୍ଧୁ—ଅଧିକ
    ସୁନ୍ଦର, ମନୋହର, ପୂର୍ଣ୍ଣତର ଭାବେ ପାଇଥାନ୍ତି
    ସୁନ୍ଦରୀକୁ ମୋର ।

ଅନୁ—( ହଠାତ୍ ଗବାକ୍ଷପଥେ ଚାହିଁ ) ଏକ ଆଲୋକର
    ରେଖା ରନ୍ଧ୍ରପଥେ ଆସେ, ଅଦେଖା ଜୀବନେ ।

ରଘୁ—ପୂର୍ଣ୍ଣଲୋକେ ହେବ ଗୋ ଆଲୋକିତ···ଲିଭିଯିବ
    ଯେତେ ଛାୟା ବର୍ତ୍ତିକା···ଖୋଲି ଦିଅ,—
    ଭାଙ୍ଗିଦିଅ ଯେବେ ରୁଦ୍ଧଦ୍ୱାର ଯେତେ—ହୃଦୟ
    କୁଟୀରର ତବ । ( ଭିତରକୁ ଚାଲିଗଲେ )

ଅନୁ—ପ୍ରଭୁ (କିଛିକ୍ଷଣ ଚାହିଁ ରହିଲେ ତା'ଙ୍କ ଆଡ଼େ)

ରଘୁ—( ଥାଳ ଘେନି ପ୍ରବେଶ କଲେ ) କ'ଣ
    ଭାବୁଛ ?—

ଅନୁ—ଭାବୁଛି—କପଟୀ, ଲମ୍ପଟୀ, ମାୟାବୀ ତୁମ୍ଭେ—
    ଯତି ବେଶ ଧରି ।—

ରଘୁ—( ଥାଳ ଦେଖାଇ ଗଦ୍‌ଗଦ୍‌କଣ୍ଠେ ) ଦିଅ ଭିକ୍ଷା
    'ମାୟା ସୀତା'—ମାଗେ ଥାଳ ଧରି ।

ଅନୁ—( ପଳାଇଗଲେ )

ରଘୁ—ହାଃ—ହାଃ—( ଗୀତ ସ୍ୱରେ )

ଜପ ରାଧାକୃଷ୍ଣ—କୃଷ୍ଣ ରାମ ରାମ—
ରାମ କୃଷ୍ଣ ହରି—କୃଷ୍ଣ ହରେରାମ ।

( କରତାଳି ବଜାଇ ଗାଉ ଗାଉ ପ୍ରସ୍ଥାନ
କଲେ, କିନ୍ତୁ ସେଥିରେ ଗୋଟାଏ ମର୍ମବେଦନା
ଫୁଟି ଉଠୁଥିଲା )

[ କିଛିକ୍ଷଣ ପରେ ଅନ୍ନପୂର୍ଣ୍ଣା ଅଳଙ୍କାର ବାକ୍ସ
ଘେନି ପ୍ରବେଶ କଲେ—ଓ ଆପଣାକୁ ସଜାଇ-
ବାକୁ ଲାଗିଲେ, ଗୋଟାଏ ଅଭିମାନରେ ଯେମନ୍ତ ]

( ନେପଥ୍ୟେ, ଶୁଣା ଯାଉଥିଲା ସେହି ଭାବଟି
ଗୀତରୂପେ )

ଗୀତ

ସାଜ, ସାଜ ଗୋ ଅଭିମାନିନୀ ।
ସାଜ ଆଜ ପତିମନ ଜାଣି ॥

ରତ୍ନାକରୁ ଆଣି ଅଳଙ୍କାର ଯେତେ—
ପାରିଜାତ ମାଳା ଆଣି ଗୋ ତ୍ୱରିତେ;—
ଦେବବାଳା ମିଳି ପିନ୍ଧାନ୍ତୁ ଯତନେ;
ସତୀ ପଣି ଆଜ—ପତି ନେବେ କିଣି ॥

( ସଜବାଜ କରି ସାରି କପାଳରେ ସିନ୍ଦୁର
ଟିପଟିଏ ପିନ୍ଧିଲା ବେଳେ, ରଘୁ ପ୍ରବେଶ କରି,
ଦେଖି ହସି ହସି କହିଲେ )

ରଘୁ—ଏତେ ଜୋରେ ଟିପ ଦେଲ, ଟିପି ଦିଅନା,
    ସୁନ୍ଦରୀ—

ଅନୁ—( ଅଭିମାନରେ ସବୁ ପୋଛିପାଛି ଦେଇ,
    ଅଳଂକାର ଟାଣି ଟୁଣି ପକାଇବାକୁ ଗଲେ )

ରଘୁ—ନା, ନା, ମୋ'ର ଶୂନ୍ୟ ମନ୍ଦିର ଯେ ଆଜି
    ଭରି ଉଠିବ ସୁନ୍ଦର ଝଲକରେ ।—ପୁଣି ଅସୁନ୍ଦର
    କରି ଦେବାକୁ ଧାଇଁଛ କାହିଁପାଇଁ, ସୁନ୍ଦରୀ ?

ଅନୁ—( ଝର ଝର କାନ୍ଦି ପକାଇ ରଘୁର ବୁକୁ
    ଭିତରେ ଆତ୍ମ ଗୋପନ କରିବାକୁ ଲାଗିଲେ )

ରଘୁ—ସୁନ୍ଦରୀ—ପ୍ରେୟସୀ ମୋ'ର ।—
    ( ବିକ୍ଷିପ୍ତ ଅଳକାରାଶିକୁ ବିନ୍ୟସ୍ତ କରୁ କରୁ, ଓ
    ସୌନ୍ଦର୍ଯ୍ୟର ପୁନରୁଦ୍ଧାର କରୁ କରୁ ) ସତେ,
    ଆଜି ଭିକ୍ଷାରେ କି କାହିଁକି ମନ ବଳିଲା ନାହିଁ,
    ଅନୁ ।

ଅନୁ—କି ଏ କହୁଥିଲ ଯିବାକୁ ?—

ରଘୁ—ଖାଇବା କ'ଣ ?

ଅନୁ—ନ ଖାଇଲେ ଏବେ ଦିନେ ଓଳିଏ—।

ରଘୁ—ତୁମ ମନରେ ଭାରି କଷ୍ଟ ଦେଇଛି—ନା,
    ଅନୁ ?—

ଅନୁ—ତୁମ ମନରେ ଯେଉଁ କଷ୍ଟ ଦେଇଚି, ତା'କୁ
    ବଳିକି ?

ରଘୁ—କିନ୍ତୁ, ବଳିଛି ସତ, 'ଅନୁ'ର ଭକ୍ତି-ପ୍ରୀତି,
    ଭରି-ବୁକୁକୁ ମୋ'ର ଆଜି—ଆଜି 'ଅନୁ'
    ମୋ'ର ହରିନାମ—ଆଜି 'ଅନୁ' ମୋ'ର ଭିକ୍ଷାର
    ଥାଳ ।—

ଅନୁ—ପ୍ରେ-ମ-ମ-ୟ ।—( କୁଣ୍ଢାଇଲେ ଗାଢ଼ ଭାବେ )

( ନେପଥ୍ୟେ, ଜଣେ ଭିକ୍ଷୁକ )—ଦାତା । ଘରେ
    ଅଛ ?—

ରଘୁ—( କେଉଁ ସୁସୁପ୍ତିରୁ ଉଠି ବସିଲା ଭଳି )

[ ଜଣେ ସାଧୁ ପ୍ରବେଶ କଲେ—ଅନ୍ନ ଟିକିଏ ଅଡ଼ୁଆଳକୁ ଗୁଞ୍ଜିଗଲେ ନାରୀ ଜନୋଚିତ ଲଜ୍ଜା ବଶତଃ ]

ସାଧୁ— "ମୁଞ୍ଜି ସାତ ସାଧୁମାନେ ।
ଆମ୍ଭଙ୍କୁ ତୋଷ ଅନ୍ନଦାନେ ॥"

ରଘୁ ଓ ଅନ୍ନ—( କେଉଁ ବୁଭୁକ୍ଷିତା ଦର୍ଶନରେ ଯେମନ୍ତ ଥରି ଉଠିଲେ )

ସାଧୁ— "ଅଇଲୁ କୀର୍ତ୍ତି ଶୁଣି ତୋ'ର ।
ଏଥିରେ ବିଳମ୍ବ ନ କର ॥"

ରଘୁ—(ହସି) ମୋ'ର କୀର୍ତ୍ତି ?—ଦରିଦ୍ର ଅରକ୍ଷିତଟାଏ ମୁଁ—?

ସାଧୁ— "ଲୋକେ ବୋଲନ୍ତି ଧନ୍ୟ ଧନ୍ୟ ।
ରଘୁ ଅର୍କ୍ଷିତର ଜୀବନ ॥
ଦରିଦ୍ର ହେଲେ କିସ ହେବ ।
ଦୁର୍ଲଭ ଅଟେ ତା'ର ଭାବ ॥"

ରଘୁ—ଆଦୌ ନୁହେଁ ମହାରାଜ !—( ବିନମ୍ରରେ ମାଟି ସଙ୍ଗେ ମିଶିଯାଉଥିଲେ )

ଅନ୍ନ—(କେଉଁ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠୁଥିଲେ ପତି-ପ୍ରଶଂସା ଶୁଣି )

ସାଧୁ—( କହି ଯାଉ ଥାଏ )
"ଭିକ୍ଷା ସେ ମାଗିଣ ଜୀଉଛି ।
ଯେ ଯାହା ମାଗିଲେ ଦେଉଛି ॥"

ରଘୁ ଓ ଅନ୍ନ—( ପରସ୍ପର ଆଡେ ବିସ୍ମୟଭାବେ ଚାହିଁଲେ । )

ସାଧୁ—( କହି ଯାଉ ଥାଏ )
"ଆବର ପ୍ରଭୁନାମ ଯେତେ ।
ଗାୟନ କରୁଥାଇ ନିତ୍ୟେ ॥"

ରଘୁ—ଭାରି କପଟୀ, ଅନାଗୃସ୍ତ ମୁଁ, ପ୍ରଭୁ !—
( ଚରଣ ବନ୍ଦନା କଲେ )

( ଅନ୍ନପୂର୍ଣ୍ଣା ଆସନ ଆଣି ପାରି ଦେଲେ )

ସାଧୁ— "କହେ ବିନମ୍ର ଧୀର ବାଣୀ ।
ଧନ୍ୟ ଅଟନ୍ତି ବେନି ପ୍ରାଣୀ ॥"

ରଘୁ—ଅପରାଧ ମାର୍ଜନା କରନ୍ତୁ—ଉପବେଶନ କରନ୍ତୁ ଆଗେ ନିଜ ଘର ମଣି—

ସାଧୁ—ଅପର ସାଧୁମାନେ ଅଦୂରରେ ଅପେକ୍ଷା କରୁଛନ୍ତି—

ରଘୁ—ମୁଁ ପାଗ୍ଲେଟି ଯେନ ଅସୁର—

ଅନ୍ନ—( ପାଣି ଢାଳ ଆଣି, ଚର୍ଚ୍ଚାକରିବାକୁ ଯାଇ କେଉଁ ବାଧାପାଇ ଠିଆ ହେଲେ ଯେମନ୍ତ )

ରଘୁ—ମ'—ନିତି ଯା' କର, ତା ତ କରିଯିବ—ମୋତେ ପୁଣି ଅପେକ୍ଷା—ଏ' କି ନୂଆଭାବ ତୁମର ଆଜ ?

ଅନ୍ନ—( ସାନନ୍ଦେ ସାଧୁଙ୍କ ଗୋଡ଼ ଧୋଇ ଦେଉଁ ଦେଉଁ କିଭଳି ଥରି ଥରି ଉଠୁଥିଲେ )

ସାଧୁ—( କହିବାକୁ ଲାଗିଲେ )
"ଅପୂର୍ବ ଅଟୁ ଆମ୍ଭେମାନେ ।
ଅଇଲୁ ଯେବେ ଦରଶନେ ॥
ପ୍ରବେଶ ହୋଇ ନୀଳଗିରି ।
ପ୍ରଭୁଙ୍କ ଦରଶନ ସାରି ॥
ଭୁଲିଲୁ ଭୋଜନ ନିମନ୍ତେ ।
ତହୁଁ ବୋଇଲେ ଜଣେ କେତେ ॥
ରଘୁ ଅର୍କ୍ଷିତଙ୍କ ଭୁବନେ ।
ବିଜୟ କର ସାଧୁମାନେ ॥
ତାହାର ଅଛି ଭକ୍ତି ଭାବ ।
ଗଲେ ଭୋଜନ ନିଶ୍ଚେ ଦେବ ॥"

ଅନ୍ନ—( ଥରି ଥରି ଲୋଟାଟି ହାତରୁ ଖସି ପଡ଼ିଲା, କେଉଁ ଅନ୍ୟମନସ୍କତାରେ ହେଉ ବା ଅନାଗତ ଭୟ ଦର୍ଶନରେ ହେଉ )

ସାଧୁ—ମା ! କିଛି ଚିନ୍ତା କର ନାହିଁ—ତୁମେ ଯା' ଦେବ, ସେଇଥିରେହିଁ ଆମର ସନ୍ତୋଷ ।

ଅନ୍ନ—( କେଉଁ ହୃଦୟାବେଗରେ ) ସନ୍ତୋଷ ଯେମନ୍ତ କରିପାରୁ—ସେହି ଆଶୀର୍ବାଦ କର, ପ୍ରଭୁ—

ସାଧୁ—ମା ଅନ୍ନପୂର୍ଣ୍ଣା ମା ତୁହି !—ସନ୍ତାନର ଆଶୀର୍ବାଦ ଚାହୁଁ ?

ଅନ୍ନ—( କି ଗୋଟାଏ ଦଂଶନରେ ଯେ ଭିତରକୁ ଛୁଟି ପିଟି ହୋଇ ପଳାଇଲେ ଅସହ୍ୟ ବୋଧରେ )

ସାଧୁ—ଏହି ଯେ ସାଥିମାନେ ମୋ'ର !—
ଅମ୍ଭେମାନେ ବାହାରେ ଅପେକ୍ଷା କରୁଛୁ, ମା—

ଅଳ—( ବାହାର ଆସି ) ନା—ନା—

ସାଧୁ—କିଛି ଭାବନା କରନା, ମା—ଅମେ ଆଦୌ ଅସନ୍ତୁଷ୍ଟ ହେଉଁ ନାହିଁ···—ତୁମେ ଯେ ମନ ଖୋଲି ଅମର ଚର୍ଚ୍ଚାର ଆୟୋଜନ କର ପାରବ ନାହିଁ,—ପତିସଙ୍ଗେ ତୁମର ପରାମର୍ଶ ନକର, ମା ?
( ଚୁଲିଗଲେ ପୁଣି ବାଧାକୁ ଭସ୍ମ କର )

ଅଳ—( କିଂକର୍ତ୍ତବ୍ୟମୂଢ଼ା ହୋଇ ରହିଁଥିଲେ )
[ ରଘୁ ପ୍ରବେଶ କଲେ ଟିକିଏ ବ୍ୟସ୍ତ ଓ ବିରକ୍ତଭାବେ ]

ରଘୁ—ଅତଥି ଅସନ୍ତୁଷ୍ଟ ହୋଇ ଏଠୁଁ ଉଠିଗଲେ ନା କଣ ?

ଅଳ—ପୂର୍ବ ମାନାରେ ସନ୍ତୁଷ୍ଟ ହେବା ଆଶାରେ, ଆମକୁ ଏକୁଟିଆ କର ଦେଇ, ସ୍ଥାନାନ୍ତରକୁ ଯେ ଗଲେ, ନାଥ ।

ରଘୁ—( ଭାର ହର୍ଷଭରେ ) ସତେ ?—

ଅଳ—ହେଲେ, ଘରେ ତ ଖଡ଼ାନାସ୍ତି—

ରଘୁ—ବେଶ୍, ଥାଳଟା ଦିଅ ନା—ମୁଁ ଯାଏଁ, ବେଗେ—

ଅଳ—ତୁମେ ବାୟା ହେଲନା କଁଣ ? ତୁମେ ଅସିବ କେଉଁ ପହରକେ,—ଅତଥିମାନେ ଉପାସି ଭୋକରେ ସେଯାଏଁ ରହିଁ ବସିଥିବେ ନା ?

ରଘୁ—ଉପାୟ ?

ଅଳ—ଆତୁର, ଭକ୍ଷ ମାଗି ମାଗି, ଆଣିବ ବା କେତେ ?—ଏଣେ ଯେ ସାତମୂର୍ତ୍ତି ।

ରଘୁ—ଠିକ୍ ତ—ଭଲ ଲକମ ଚର୍ଚ୍ଚା ବ ଆଶା କରଛନ୍ତ ସାଧୁମାନେ !—ମୋ'ରବ ଷୋଳଅଣା ଇଚ୍ଛା ସେଇଥ୍ୟା ।

ଅଳ—ତେବେ—?

ରଘୁ—( ଅଳାର ଦେଖି ) 'ତେବେ'···
"ଏଥିକୁ କବୁଦ୍ଧି କରବା ।
କେମନ୍ତ କର ଚରତବା ॥
ଘରେତ କିଛି ନାହିଁ ଧନ ।
କହ ମୋ ଯୁବତୀ ରତନ ॥"

ଅଳ—( ଆପଣାର ଅଳଂକାର ମାନ ଦେଖାଇ, ହସି ହସି )
"ଏଥିକୁ ଶୋଚନା ନକର ।
ମୋ ଅଙ୍ଗେ ଯେତେ ଅଳଂକାର ॥
ଅଛଇ, ବେଗେ ଘେନିଯାଅ ।
ସାଧୁତ ଘରେ ବନ୍ଧା ଦିଅ ॥
ଲାଗିବା ଧନ ଘେନିଆସ ।
ସାଧୁ ଚରିତ କର ତୋଷ ॥"

ରଘୁ— "ଧନ୍ୟ ଧନ୍ୟତୁ ଗୁଣମୟହିଁ ।
ମୋ'ର ସୁଚତ୍ତ ଦାସୀ ତୁହି ॥
ତୋର ଏ' ଭାବ କି ସୁନ୍ଦର ।
କିଣି ଉଜ୍ଜ୍ୱଳ ଅଳଙ୍କାର ॥"

ଅଳ— "ଯାଅ, ଯାଅ, ନାଥ ମୋହର ।
ବୃଥାରେ ବିଳମ୍ବ ନକର ॥"
( କାଢ଼ିବାକୁ ଗଲେ )

ରଘୁ—( ବାଧା ଦେଇ )
"ନେଲେ ମୁଁ ଏତେ ଅଳଂକାର ।
ଲୋକେ ଦେଖିଲେ ଅସୁନ୍ଦର ॥
ବୋଲିବେ ରଘୁଅରକ୍ଷିତ ।
କାହୁଁ ଆଣିଲା ଏତେ ବିତ୍ତ ॥
ଭିକ୍ଷା ମାଗିବା ଲୋକ ଏହି ।
କାହୁଁ ବା ଆଣିଲା ଚୋରାଇ ॥"

ଅଳ—( ହଲକ ଶୁଖିଗଲା ) ତେବେ···

ରଘୁ—( ହସି )
"ନାକେ ତୁ ଅଳଙ୍କାର ଘେନି ।
ବହନ ଯାଅରେ ତରୁଣି ॥
ସାଧୁର ଘରେ ବନ୍ଧା ଦେଇ ।
ପଞ୍ଚାଶ ମୁଦ୍ରା ଆଣ ତୁହି ॥
ଅଠଦିନକୁ କଣ୍ଟକର ।
ମିଟାଇ ମୂଳ କାଳାନ୍ତର ॥
ଶୁଝିଣ ଦେବା ଧନ ତା'ର ।
ଆଣିବା ଆମ୍ଭ ଅଳଙ୍କାର ॥"

ଅଳ—ତା'ହିଁ ହେଉ—ଓଡ଼ାରକୁ ଆଉ ତାହିଁକି ? ସେଇଟି ଯାଇଁ···

"ଅଙ୍ଗଭୂଷଣ ମାନ ଫେଇ ।
ଥୋଇବ୍ରି ଧନୀ ଆଗେ ନେଇ ॥
ବୋଲିବ୍ରି ଶୁଣ ମହାଜନ ।
ରଖ ଏ ଅଲଙ୍କାର ମାନ ॥
ଶତେ ସୁନାସୁଁ ଦେଉଥିବ ।
ଲାଭ ମିଶାଇ ମୂଲ ନେବ ॥
ଅନେକ ହେବ ଉପକାର ।
ଧର୍ମେ ଲାଗିବ ଧନ ତୋ'ର ॥"

( ହସି ହସି ଚାଲିଗଲେ )

ରଘୁ—( ରୂପ ସୌନ୍ଦର୍ଯ୍ୟର କେଉଁ ମୋହରେ ରହି ରହିଥିଲେ; ହଠାତ୍ ଗୋଟାଏ ଉଚ୍ଛ୍ୱାସରେ ଦୌଡ଼ି ଗଲେ ପଛେ ପଛେ କହୁ କହୁ )—ନିରଳଙ୍କାର, ନିରାଭରଣ କରି ଯାଅ ରୂପକୁ ତୁମର, ସୁନ୍ଦର— ନା, ନା, ବରଂ ଅଲଙ୍କାର ଏହିଭଳି ଦେହରେ ମୁଣ୍ଡରେ ଥିଲେ, କେହି ସନ୍ଦେହ କରିବେ ନାହିଁ— ( ନିରସ୍ତ ହୋଇ)—ମୁଁ ଯିବି କା ପଛେ ପଛେ ଧାଇଁ ?···

( ନେପଥ୍ୟେ ଅତିଥି ମାନେ )—

ଗୀତ

ଭଜ ମନ ସଦା ରାମ କୃଷ୍ଣ ହରି
ଚଞ୍ଚ ଏକା ଭବେ ସେହି ଆମ୍ଭର ॥

ରଘୁ—ଛି, ଛି—ମୁଁ ଅତିଥିଙ୍କ ଅବହେଳା କରି,— ଦେବତାଙ୍କ ପାଶୋରି, କରୁଚି କଣ ?

[ ଅତିଥି ଚର୍ଚ୍ଚା କରିବାକୁ ବାହାରି ଗଲେ ଗାଇ ଗାଇ "ଭଜମନ···" ]

( ନେପଥ୍ୟେ ଅତିଥିମାନେ ଗାଉଥିଲେ )—

ରଖିଲେ, ରଖିବେ—
ମାରିଲେ ମାରିବେ—
ନାହିଁଟି ଶୋଚନା— ସେଥିପାଇଁ ଲବେ—
ତୁମ୍ଭର ନାମଟି ଜପାମାଳ କରି ।
ପଡ଼ିଥିବି ପାଦେ, ଅହେ ଶ୍ରୀହରି ॥

( ଏହି ସମୟରେ ଅନ୍ନପୂର୍ଣ୍ଣା ବ୍ୟସ୍ତବ୍ୟସ୍ତ ହୋଇ ପ୍ରବେଶ କଲେ—ରଘୁ ମଧ୍ୟ ବିପରୀତ ଦିଗରୁ ତନ୍ମୟ ହୋଇ ପ୍ରବେଶକଲେ ସେହିଭଳି ଗାଇ ଗାଇ )

ରଘୁ—କାହିଁ, ଦିଅ ତ—ଘର ଭିତର ହୋଇ ଗଲଣି—କ'ଣ ଭାବୁଚ, ଜାଣ, ଅନ୍ନୁ··· ( ଆନନ୍ଦ ଗଦ୍‌ଗଦରେ )

"ଚଳଣି ଯିବ୍ରି ଅତି ବେଗେ ।
ମିଳିବ୍ରି ସିଂହଦ୍ୱାରେ ଆଗେ ॥
ଶ୍ରେଷ୍ଠ ସେବକ ଡାକି ଆଣି ।
ବରଗି ଦେବ୍ରି ତାକୁ ଗଣି ॥
ବୋଲିବ୍ରି, ଶୁଣ ହେ ସୁଆର ।
ପ୍ରଭୁ ମଣୋହି ବେଗେ କର ॥
ଷୀରି ଖେଚଡ଼ି ଶାଳିଅନ୍ନ ।
ନାନାବିଧ ପ୍ରକାର ବ୍ୟଞ୍ଜନ ॥
ନାଡ଼ୁ ଯେ ସରପୁଲି ଗଜା ।
ଅମାଲୁ ଆଦି ଦିବ୍ୟଖଜା ॥
କାନ୍ତି କାକରା ଆଦିପିଠା ।
ଯେ ସରପଣା ଦଧି ମିଠା ॥
ପ୍ରଥମ ଧୂପେ ଏତେ ହେବ ।
ସାଧୁଙ୍କ ନିମନ୍ତେ ଆସିବ ॥"

ଅନ୍ନ—( ଭାଷା ବିକଳରେ ) ପ୍ରଭୁ !—

ରଘୁ—ଏଁ···ଛି, ଛି, ଏହି ଘର ଅଲଙ୍କାରର ମାୟା ମୁକୁଳି ପାରିଲ ନାହିଁ, ନାରୀ ?

ଅନ୍ନ—ପ୍ରଭୁ···ସ୍ୱାମୀ···ଯେଉଁ ସ ର ଅଲଙ୍କାର ଆଜି ମାଗିଲେ, ଧନ···ତା' କୌଣସି ସତୀ ମୁକୁଳି ପାରେ ନାହିଁ, ନାଥ !—ପ୍ରାଣ ମୂଲ୍ୟରେ ମଧ୍ୟ ନୁହେଁ !

ରଘୁ—'ପତି ସେବା' ମୂଲ୍ୟରେ ?—'ଅତିଥି ସେବା' ମୂଲ୍ୟରେ ?

ଅନ୍ନ—ପ୍ରଭୁ—ପ୍ରଭୁ—( ଲୁହ ଧାର ଧାର ହୋଇ ବୋହି ଯାଉଥାଏ )

"କିଛି କ୍ଷଣେସେ ଧନୀ ଚିନ୍ତି ।
ବୋଇଲା ଶୁଣରେ ଯୁବତୀ ॥
ବଜାର ପ୍ରୟୋଜନ ନାହିଁ ।
ଯାହା କହୁଛି ଶୁଣ ତୁହି ॥
ଯେବେ ତୁ ଦେବୁ ପ୍ରୀତିଦାନ ।
ଗଣି ଦେଉଛି ନିଅ ଧନ ॥"

ରଘୁ—ଓଃ, ସଞ୍ଜତ କର—ସଞ୍ଜତ କର ରସନା ତୁମର ।
—କାହିଁ—କାହିଁ ସେ ଲକ୍ଷ୍ମୀ—ବୁଝିଗୁର ?—
( ନେପଥ୍ୟେ, ଅତିଥିମାନେ )—"ଭଜମନ ସଦା ରାମ କୃଷ୍ଣ ହର ।"
ରଘୁ—(ନିରସ୍ତ ହୋଇ) ଅନୁ ! ତୁମେ କ'ଣ ରାଗି ମାଗି ଗୁଲ୍ ଆସିଛ ସେଠୁଁ—ଗାଳିମନ୍ଦ କରି ଧନକୁ ?
ଅନ—"ପ୍ରଥମେ ସେହି କଥା ଶୁଣି ।
ବଜ୍ର ପଡ଼ିଲା ପ୍ରାୟ ମଣି ॥
ତକ୍ଷଣେ ଶାନ୍ତ କରି ମନ ।
ବୋଇଲି ଶୁଣ ମହାଜନ ॥
ଦଣ୍ଡକେ ମାତ୍ର ହୁଅ ସ୍ଥିର ।
ଆସୁଛି ତୁମ୍ଭର ଗୁମୁର ॥"
ରଘୁ—ଅନୁ !—ଅନୁ !—ଅଉ କେଉଁ ମହାଜନ ଘରକୁ—
( ନେପଥ୍ୟେ ଅତିଥିମାନେ )—ଗୀତ
"ଭବେ ଏକା ଗତି ସେହି ଗୋ ଆମ୍ଭର ॥"
ରଘୁ—ନା, ନା—ଆଜି ତୁମ୍ଭର ମହାମୂଲ୍ୟ ଅଳଙ୍କାର ବାହ୍ମମୁହୂର୍ତ୍ତରେ, ମହାସେବା ହେଉ ମହାଅତିଥି ମାନଙ୍କର ଆମ୍ଭର—ଯାଅ—ଯାଅ—
"ଭବେ ଏକା ଗତି ସେହି ଗୋ ଆମ୍ଭର"—
ଅନ—କିନ୍ତୁ, ତୁମ୍ଭେଇ ଗତି ମୋହର !···
"ଏ ହାନି ଲଭର କାରଣୀ ।
ତୁମ୍ଭେ ମୋହର ପ୍ରାଣମଣି ॥
ଏଥିକୁ କି ବିଚାର କହ ।
ଶୁଣି ସନ୍ତୋଷ ହେଉ ଦେହ ॥"
ରଘୁ—ଶୁଣ, ଶୁଣରେ ସଙ୍ଗୀତ—
"ସାଧୁ ମାନଙ୍କ ଉପକାରେ ।
ଲାଗିବ ଆମ୍ଭର ଭାଗ୍ୟରେ ॥
ଯାହା ବୋଇଲା ମହାଜନ
ସମ୍ପତ୍ତି କର ଅଣ ଧନ ॥
ଅନ—( ପଦଧୂଳି ନେଇ )
"ତୁମ୍ଭର ଆଜ୍ଞା ପାଇ ମୁହିଁ ।
ଗଲିଟି ମୋର ଦୋଷ ନାହିଁ ॥"
( ଘୁଲିଗଲେ ବେଗ ଖହାଇ )

ରଘୁ—( କିଛିକ୍ଷଣ ରହି, କେଉଁ ଅସୁସ୍ଥାବଶରେ )
ଅନୁ !···
ଅନ—( ଧାଇଁ ଯାଉଥିଲେ )
ସାଧୁ—( ପ୍ରବେଶ ପୂର୍ବକ ) ଭକ୍ତ ! ଆଉ କେତେ ବିଳମ୍ବ ?—
ରଘୁ—( କିପରି ଗୋଟାଏ ମିଶ୍ରିତ ଭାବରେ ) ଅନ ମୋ'ର ଫେରିବା ଯାଏ, ଭଗବାନ···!
( କରଯୋଡ଼ ହୋଇ ପାଦତଳେ ପଡ଼ିଲେ )

—ଯବନିକା—

---

**ତୃତୀୟ ଦୃଶ୍ୟ :—ସେହିଘର ।**

[ ପଲଙ୍କ ଉପରେ ରଘୁଅରକ୍ଷିତ କେଉଁ ସ୍ୱପ୍ନ ଦେଖି ଦେଖି ଶୋଇ ପଡ଼ିଥିଲେ, କି ଶୋଇ ଶୋଇ କେଉଁ ସ୍ୱପ୍ନ ଦେଖୁଥିଲେ !···କିଛି କ୍ଷଣ ଉତ୍ତାରେ—ଦୀପଟିଏ ଜାଳି, ଅନପୂର୍ଣ୍ଣା ପ୍ରବେଶ କଲେ;—ଯେତେଦୂର ମନୋହର ରୂପେ ପାରନ୍ତି, ଆପଣାକୁ ସଜାଇ ଥାନ୍ତି— ]

ଅନ—ମ', ଶୋଇ ପଡ଼ିଲ ନା କ'ଣ ?—ରାତି ଯେ ପହରେ ହୋଇ ଗଲାଣି ?—ଅରତି ଦର୍ଶନକୁ ଯିବ ନାହିଁ ନା କ'ଣ ମ' ?—
ରଘୁ—( ଉଠିବସି ) ହଁ, କଣ୍ଟବେଳ ଗଡ଼ିଗଲାଣି ପରା ?—
ଅନ—ପ୍ରଭୁ !···
ରଘୁ—[ ନମ୍ରଭାବେ କହିଲେ ମଧ୍ୟ, ଶ୍ଳେଷଟଙ୍କାଟା ଯେ ମିଶି ନଥାଏ ତା' ନୁହେଁ ]
"ଶୁଣ ଅଗୋ ମୋ ପ୍ରାଣସହ ।
ତୋତେ ଯେ ଧନ ଅଛି ଦେଇ ॥
ସେ ବଳେ କଲେ ଆମ୍ଭପୁର ।
କରିବୁ ଅତ୍ୟନ୍ତ ଆଦର ॥
ତାଙ୍କ ମୋଠାରୁ ଶତେ ଗୁଣେ ।
ସେବା କରିବୁ ତା' ଚରଣେ ॥

ଯେଉଁ ପ୍ରକାରେ ଧନଭାର ।
ସେହ ପ୍ରକାରେ ସେବା କର ॥
ଯେବେ ମୋଠାରେ ଅଛି ମନ ।
ଶୁଣିବୁ ଯୁବତୀ ରତନ ॥
[ ଏମନ୍ତ ସମୟରେ ତହିଁ ।
ସେ ଧନୀ କାମାତୁର ହୋଇ ॥
ମିଳିଲା ଦାସଙ୍କର ଦ୍ଵାରେ ।
ତୁଣ୍ଡ ଶୁଖିଲା କାମିବାରେ ॥"

ଅନୁ—( ଅନାଇଲେ ରଘୁଆଡ଼େ )—

ରଘୁ—ରେ କାମାତୁର—ନିର୍ଲଜ୍ଜ—
( ଉଠି ଧାଇଁଲେ କ୍ରୋଧଭରେ )

ଅନୁ—ପ୍ରଭୁ…ପ୍ରଭୁ…

ରଘୁ—ମହାଜନ…ମହାଜନ…
( ଟଳି ଟଳି ଗ୍ଳାଲିଗଲେ ବିପରୀତ ଦିଗେ )

ଅନୁ—( ପତିଙ୍କ ଚରଣୋଦ୍ଦେଶ୍ୟରେ ପ୍ରଣାମ ପୂର୍ବକ ନିର୍ବିକାର ଭାବେ )
"ଶୁଣ, ଶୁଣହେ ଧନ ଶିଷ୍ୟ ।
ନିର୍ଭୟ ହୋଇ ବେଗେ ଆସ ॥
ଶୂନ୍ୟ ମନ୍ଦରେ ମୁହିଁ ଏକା ।
କାହିଁ ତୁମ୍ଭର ମନେ ଶଙ୍କା ॥"
[ ପଲଙ୍କ ଉପରେ ବସିଲେ ]

[ ଧନୀ ପ୍ରବେଶ କରି, ଗୃହିଁ ଦଅନ୍ତେ ଅନୁପୂର୍ଣ୍ଣା ଅଡ଼େ,—ଦେଖିଲା ଏହୁ ଭଳି—]

ଧନୀ—ଓଃ—କି ତେଜ !…ଏ କ'ଣ ଦେଖୁଛି ?…
"ଅବୋଧ ବସି କି ଅଛନ୍ତି ।
ଲକ୍ଷ୍ମୀକି ଯେନ ଯଦୁପତି ॥
କିବା ପାର୍ବତୀ କୋଳେ ଧରି ।
ବିଜୟ ପ୍ରଭୁ ଶୂଳଧାରୀ ॥
କି ଇନ୍ଦ୍ରକୋଳେ ଇନ୍ଦ୍ରାୟଣୀ ।
ଚନ୍ଦ୍ରର କୋଳେ କି ରୋହିଣୀ ॥
କିବା ଶାରଦା ଯେନ ପତି ।
ବିଜୟ କରଣ ଅଛନ୍ତି ॥"

ଓଃ—କି ମୂଢ଼ ମୁଁ—!
ତେଜିବା କରୁଥିଲି ମନ ।
ଏ'ଯେ ଜ୍ଵଳନ୍ତ ହୁତାଶନ ॥
ମା ମା—
[ ଏମନ୍ତ ବୋଲି ଅବହେଳେ ।
ପଡ଼ିଲା ସତୀ ପାଦତଳେ ]

ଅନୁ—ଏ' କଣ କରୁଛ, ସାଧୁଭ ? ଉଠ, ଉଠ—।

ଧନୀ—
"ଶୁଣ ଗୋ ସତୀ ନାମେ ତୋତେ ।
ଶରଣ ଗଲି ରଖ ମୋତେ ॥
ଯେତେ ଅପ୍ରାଧ କଲି ତୋତେ—
ଚିତ୍ତେ ନ ଧର କଦାଚିତେ ॥
ପୁତ୍ର ସେ ମାତା ଗର୍ଭେ ଥାଇଁ ।
ସେ ଯେବେ ପାଦ ପ୍ରହାରଇ ॥
ମାତା କି ଘେନେ ତା'ର ଦୋଷ ।
ସେ ରୂପେ ମୁହିଁ ତୋର ଶିଷ୍ୟ ॥"
[ ଏମନ୍ତ ବୋଲିଣ ଲେଉଟି ।
ସତୀ ଚରଣ ତଳେ ଲୋଟି ॥ ]

ରଘୁ—ଅନୁ…( ବେଗେ ପ୍ରବେଶ କଲେ,—ଆପଣାକୁ ଖୁବ୍ ସଂଯତ ପୂର୍ବକ ତେଣେ ନ ଗୃହିଁ ) ହଁ, ଦେଖ, ଖୁବ୍ ସାବଧାନ, ଅନୁ—କଦାପି ଲଙ୍ଘନ କରିବ ନାହିଁଟି, ସୁନ୍ଦରି—ସେ ଯେ ଆମର ମହାଜନ—ମହାଜନର ଋଣ ପରିଶୋଧ ପାଇଁ ମୁଁ ପରି ଉଠାମାଟି—ଭୋଗ ବିଳାସ ସୁଦ୍ଧା ଛାଡ଼ି-ଦେଇଛି ଦଣ୍ଡକେ !—

ଅନୁ—ହେଲେ, ଏ ମହାଜନର ଋଣ ଶୋଧ କରିବାକୁ ଆଦୌ ତୁମର ମନ ନାହିଁ—

ରଘୁ ନା ନା—ସେ କଥା କୁହନାହିଁ—ମୁଁ ଋଣୀ—ଋଣ ଶୋଧ ମୋ'ର ଜୀବନର ବ୍ରତ !—ମୁଁ—ମୁଁ—ବାଧା ଦେବାକୁ ଧାଇଁ ଆସି ନାହିଁ ତୁମର… ତୁମ କୁହଙ୍କର…ହଁ, ଶାଳି—
"ଅନ୍ତର ହୋଇ ଯାଇଥିଲି ।
ସହସା ମନେ ବିଚାରିଲି ॥
ଧନୀ ଯେ ଥିଲା ଧନ ଦେଇ ।
ସନ୍ତୋଷ କଲା କି ସେ ନାହିଁ ॥"

ଅନୁ—ଅନାଇ ଦେଖିଲେତ ହ'ଙ୍କ ?

ରଘୁ—ନଳଠା···ବାଟପୀ···

[ ସେହିକ୍ଷଣରେ ଆରତି ଘଣ୍ଟା ବାଜ ଉଠିଲା ]

ଓଃ—ପ୍ରଭୁ—ଏଇସ୍ଥାନ···(ଦ୍ରୁତବେଗେ ପ୍ରସ୍ଥାନ କରୁଥିଲେ )

ଧନୀ—( ବାଟ ଓଗାଳି )

"ଯାଅ ହେ, ପିତା କେଉଁ ଠାଇଁ ।
ଦେଖ ହେ ପ୍ରଭୁ ଭାବଗ୍ରାହୀ ॥"

ରଘୁ—ମୁଁ ତୋ'ର ପ୍ରାଣଗ୍ରାହୀ !—

( ତଣ୍ଟି ଚପି ଧଇଲେ )

ଧନୀ— "ତୁମ୍ଭ ପତ୍ନୀଙ୍କୁ କୋଳେ ଧର ।
ପ୍ରଭୁ ଅଛନ୍ତି ବିଜେ କର ॥"

( ଅନ୍ତର୍ଦ୍ଧାନ ହେଲେ )

ରଘୁ—( ଶୁଦ୍ଧି ଦେଇ ) ପ୍ରଭୁ···କାହିଁ ? କାହିଁ ସେ ଲମ୍ପଟ ?

ଅନୁ—ଓଃ, ମୋତେ କେଉଁ ସଙ୍ଗସୁଖରୁ ବଞ୍ଚିତ କଲେ, ନାଥ—

ରଘୁ—ସଙ୍ଗ ସୁଖ—ସଙ୍ଗ ସୁଖ—ସେହି ସଙ୍ଗସୁଖ ଲାଗି ତୁମର, ଅନୁ—ସ୍ୱୟଂ ଭଗବାନ ସୁଦ୍ଧା ମୋ'ର ଶତ୍ରୁ—ଅସହ୍ୟ !—ଅସହ୍ୟ !

ଅନୁ—ନାଥ—ନାଥ—

( ଚରଣ ବନ୍ଦନା କରିବାକୁ ଗଲେ )

ରଘୁ—ନା, ନା ( ହଟିକରି ଦୂରେଇଯାଇ ) "**ରଘୁ-ଅଚେଷ୍ଟ**" ମୁଁ, ଅନୁ—ତୁମେ "**ରାଜରାଣୀ**" ।

ଯ-ବ-ନି-କା

# ଭୂମିକା

ଇତିପୂର୍ବେ 'ଦାତ୍ୟତାଭକ୍ତି'ର କଥାବସ୍ତୁ ଅବଲମ୍ବନରେ ରଚିତ ମୋର ନାଟକ ଗୁଡ଼ିକର ଜନପ୍ରିୟତା ମୋତେ ଉତ୍ସାହିତ କରିଛି । ଦାତ୍ୟତାଭକ୍ତିର ପ୍ରତିଟି ଆଖ୍ୟାନ ଅପୂର୍ବ, ପ୍ରାଣସ୍ପର୍ଶୀ । ସେଥି ମଧ୍ୟରୁ ଏଥର, ତ୍ୟାଗ, ନିଷ୍ଠା ଓ ବିଶ୍ୱାସର ମହନୀୟ ନିଦର୍ଶନ 'ତ୍ୟାଗୀ-ରାମଦାସ' ଚରିତକୁ ପାଦ-ପ୍ରଦୀପ ସମ୍ମୁଖରେ ଉପସ୍ଥାପିତର ଉପଯୋଗୀ କରି ତୋଳିଛି । ସଂଳାପରେ 'ଦାତ୍ୟତା ଭକ୍ତି'ରୁ ଉଦ୍ଧୃତ ପଦ୍ୟାଂଶ ଗୁଡ଼ିକ ବହୁ ସ୍ଥାନରେ ସଂଯୋଜିତ କରିଛି ନାଟକୀୟ-ମର୍ଯ୍ୟାଦା ବୃଦ୍ଧି ହୁଛି ।

ଆଶାକରେ ଏହା ଦର୍ଶକ ତଥା ପାଠକଙ୍କର ହୃଦୟ-ଗ୍ରାହୀ ହେବ ।

କଟକ — ୧୯୬୬

**ଅଶ୍ୱିନୀ**

---

## —ଚରିତ୍ର ଲିପି—

ରାମଦାସ—
ଉମଳା—
ଲବ—
ଧନପତି ( ସାହୁକାର )
ହୁସିଆର ସିଂ—
ପୁହ୍ଲାଣି—
ଅନ୍ୟ ସାହୁକାର ଗଣ, ସାଧୁଗଣ ।

---

# ରାମଦାସ

---

## ପ୍ରଥମ ଅଙ୍କ

**ଦୃଶ୍ୟ :**—ରାମଦାସଙ୍କ ମଠର ପ୍ରାଙ୍ଗଣ ।

[ ମନ୍ଦିର ଭିତରେ ଶ୍ରୀ ଲଛମନ୍‌ଜୀଙ୍କ ମୂର୍ତ୍ତି ଦେଖାଯାଉଥିଲେ । ରାମଦାସ ଅତି ପ୍ରତ୍ୟୁଷରୁ ଉଠି, ଶୌଚଶୁଦ୍ଧ ସାରି, 'ରାମନନ୍ଦ' ଟୀକା କାଟି, ଶୁଭ୍ର ପଟ୍ଟବସନ ପରିଧାନ ପୂର୍ବକ, ସେହି ମୂର୍ତ୍ତି-ସମ୍ମୁଖରେ ଭଜନ କରୁଥିବେଲ୍, ଅତି ନିବିଡ଼ ଚିତ୍ତରେ ]

ରାମ—(କରତାଳ ଦେଇ)—

ଗୀତ

ପ୍ରଭୁ ଲଛମନ—ସୂରଯକୁଳ ଭୂଷଣ ।<br>
ରାମ-ଗତ-ପ୍ରାଣ—ରାମ-ଜୀବନ-ରତନ ।<br>
ରାମ ଯେବେ ବନଗାମୀ—<br>
ପିତୃସତ୍ୟ ଅନୁସରି;<br>
(ତେବେ) ପିତା-ପତ୍ନୀ—ରାଜ୍ୟ-ସୁଖ—<br>
ସ୍ୱେଚ୍ଛାରେ ସର୍ବ ବିମୁଖ—<br>
ଜୟ-ସୀତା-ରାମ-ମୁଖେ—କୌପୀନ-ଧାରଣ ।

[ ଲବ ବେଗେ ପ୍ରବେଶ କଲା ]

ଲବ—ବାବା !—( କିନ୍ତୁ, ଧ୍ୟାନମଗ୍ନ ପିତାଙ୍କୁ ବିଚଳିତ କରିବା ଦୂରେ ଥାଉ, ବରଂ ସେହି ଧ୍ୟାନରେ ଆପେ ମଗ୍ନ ହୋଇଗଲା । )

ରାମ—( ପୂର୍ବାନୁକ୍ରମରେ )

ଗୀତ

କେ ତବ ସମାନ ଭବେ—<br>
ଭ୍ରାତୃ-ପ୍ରେମ-ଭକ୍ତି-ଭାବେ—<br>
'ଧରି ଲଛମନ ଧର୍ମ'—<br>
ଜ୍ୟେଷ୍ଠ-ଶାସନ-ଅକ୍ଷର<br>
ଅନୁଧ୍ୟାୟି, ଚତୁର୍ଦ୍ଦଶ ବର୍ଷ ନିରଶନ ।

[ ଊର୍ମିଳା ଦେବୀ, ଭାରି ବିରକ୍ତିରେ ଧାଇଁ ଆସିଲେ ]

ଊର୍ମିଳା—ବାଃ, ବେଶ୍‌ତ !—ଡାକିବାକୁ ଆସି, ପୁଅ ବି ଏଣେ ? ବାପ ସଙ୍ଗେ ଜଣେ ?—ହେଇହେ, ଶୁଣୁନେ ?

[ କିନ୍ତୁ, ସଙ୍ଗେ ସଙ୍ଗେ ସେହି ଭାବରେ ଉନ୍ମତ୍ତ ନହେଲେ ମଧ୍ୟ ମୁଗ୍‌ଧା ପ୍ରାୟ ହୋଇଗଲେ ]

ରାମ—( ସେହି ଅନୁକ୍ରମରେ )

ଗୀତ

ବୀରପଣେ କେ'ବା ସରି—<br>
ସଂଯମୀ—ବ୍ରହ୍ମଚାରୀ ?<br>
ଚମକିତ ତ୍ରିଭୁବନ—<br>
ଇନ୍ଦ୍ରଜିତର ନିଧନ<br>
ହେଲା ତବ କରେ, ଅହେ, ମୋ'ର ଲଛମନ ॥

( ନେପଥ୍ୟେ )—( ଭାରି କୋଳାହଳ ମଧ୍ୟରେ ଶୁଣାଗଲା )

ବାଃ, ବାଃ, ବେଶ୍ ଦାତା ବୋଲାଉଛୁ ରାମଦାସ !—

ରାମ—ଏ'କଣ, ଊର୍ମି ? ଅତିଥିମାନେ ଯେ ଦ୍ୱାରେ ଡାକି ଡାକି ବିରକ୍ତ ? ସେମାନଙ୍କର ଚର୍ଚ୍ଚା ନ କରି—

ଲବ—(ଆନନ୍ଦ ଗଦ୍‌ଗଦରେ) ଆଜି ବହୁତ ଅଭ୍ୟାଗତ, ବାବା !—

ଊର୍ମିଳା—( ଦୀର୍ଘନିଶ୍ୱାସ ଛାଡ଼ି )

"ନାଗାନମୈଷ୍ଠୀଖାଙ୍କି ଯେତେ ।<br>
ବିରକ୍ତ ସଂଯମୀ ସନ୍ତତେ ॥

ଗୃହସମ୍ପଦା ସାଧୁମାନେ ।
ଆସି ମିଳନ୍ତୁ ଆଜଦିନେ ॥"

ରାମ—ଏଥିଁ ବଳି ସୌଭାଗ୍ୟ ଆମର କ'ଣ ଅଛି, ଊର୍ମି ? ନିତ, ନିତ, ଯେବେ—

"ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ ।
ବାନପ୍ରସ୍ଥ ଗୃହୀ ଭିକାରୀ ॥
ସଂଯୋଗୀ ବିପ୍ରଙ୍କ ସହିତେ ।
ଦୁଃଖୀ ଦରିଦ୍ର ଆଦି ଯେତେ ॥
ଏମାନେ ଗୃହଦ୍ୱାରେଁ ଆସି ।
ମୋ'ଦ୍ୱାରେ ଭୋଜନ ପ୍ରକାଶି ॥"

(ନେପଥ୍ୟ)—( ପୁଣି ) ଭିକ, ଭିକ, ଦେଲ୍ଁ କରେ ନାରାଣ ?

ରାମ—ରହ, କ୍ଷଣେ—ପୂରାଇବି ମୁଁ ଆଶ ।—

[ ବ୍ୟଗ୍ରଭାବେ ବାହାରି ଯାଉଥିଲେ ]

ଲବ—( ଅନୁଧାବନ କରୁ କରୁ ) ମୁଁ ଆଜି ନିଜେ ପରଶିବି, ବାବା !

ଊର୍ମିଳା—( ବାଧା ଦେଇ ) କାହିଁ ଯାଅ, ନାଥ ? ତୁମେ ତ—

"ନାହିଁ ନ ବୋଲ ହେ ବଚନ ।
ସବୁଙ୍କୁ ତୋଷ ଅନ୍ନଦାନେ ॥
ରୁଟି, ଖେଚଡ଼ି, ପୁରି, କ୍ଷୀରି ।
ଅନ୍ନ ବ୍ୟଞ୍ଜନ ଆଦିକରି ॥
ଯେ ଯେଉଁ ଦ୍ରବ୍ୟ ଇଚ୍ଛା କରେ ।
ତୋଷ ହେ ସେଇ ପରକାରେ ॥
ଦଶ ବିଂଶ ବା ଷାଠି ଶତେ ।
କିବା ସହସ୍ର ପରଯନ୍ତେ ॥"

[ ଅଜ୍ଞାତସାରେ ନିଜର କେଉଁ ଅପୂର୍ଣ୍ଣ ବାସନାର ଗନ୍ଧ ଯେ ଏଥିରୁ ନି ବାହାରୁ ନ ଥିଲା ତା'ନୁହେଁ । ]

ରାମ—( କିନ୍ତୁ, ସେ ଗନ୍ଧର ଆଭାସ ମାତ୍ର ନପାଇ, କିମ୍ବା ପାଇଲେବି ଭ୍ରୂକ୍ଷେପ ନ କରି ) ହଁ, ହଁ—

"ଯେତେ ଆସିଲେ ତେତେ ଦେଇ ।
କେବେହେଁ ନାହିଁ ନ ବୋଲଇ ॥
ମୋର ସଂକଳ୍ପ ଏହି ମତେ ।
ଦ୍ୱାରେ ଅତିଥି ଥା'ନ୍ତି ଯେତେ ॥
ତାଙ୍କ ଚରଣୁ ଯେବେ ହୋଇ ।
ତେବେ ମୁଁ ଅନ୍ନ ଖାଏ ଯାଇଁ ॥"

ଊର୍ମିଳା—ତା' ମୁଁ ଜାଣେ, ପ୍ରଭୁ—

"ନୋହିଲେ ନ କର ଭୋଜନ
ଏହି ପ୍ରକାରେ ବଞ୍ଚୁ ଦିନ ॥

କିନ୍ତୁ, କିନ୍ତୁ, ଦେଖ ଏବେ—

"ଦିନକୁ ଦିନ ଧନ ଶେଷ ।
ଅଭାଗ୍ୟ ହେଲାଣି ପ୍ରବେଶ ॥
ସବୁ ସମ୍ପଦ ଚ୍ୟୁତ ହେଲା ।
ଭଲା କନା କେ ବୋଲାଦେଲା ॥
ଏଥକୁ ବାଗୁରହି କିବା ।
ଅତିଥି କାହୁଁ ଚରଚିବା ॥"

(ନେପଥ୍ୟ)—(ପୁଣି) ଭିକ୍—ଭିକ୍ ଭକ୍ତ ତୁହିରେ, ରାମଦାସ !

ଲବ—(ଅସହିଷ୍ଣୁ ଭାବେ) ମୁଁ ଯାଏଁ, ବାବା—ନାଟମନ୍ଦିରରେ ଗାଲିଚା ପାରିଦେଇ, ସେମାନଙ୍କୁ ବସାଏଁ ଆଗେ—

[ ଅନୁମତିକୁ ଅପେକ୍ଷା ନ କରି ବେଗେ ଚାଲିଗଲା ]

ରାମ—(ସକାତରେ ଊର୍ମିଳାଆଡ଼େ ଚାହିଁ) ଊର୍ମି !—

ଊର୍ମିଳା—( ଏଁଭଳି ବିକଳରେ ପଡ଼ିକରି, କେଉଁ ଆନନ୍ଦୋଚ୍ଛ୍ୱାସ ଯେପରି ଅନ୍ତର୍ଦେଶରୁ ଉଚ୍ଛୁଳି ଉଠୁଥିଲା, ସେ ଡାକିବାକୁ ଯାଉଥିଲେ ) ପ୍ରା-ଣେ—

ରାମ—(ଲଛମନ୍‌ଜୀଙ୍କଆଡ଼େ ଦୃଷ୍ଟି ପଡ଼ିବାରୁ କି କ'ଣ, ସୋତ୍ସାହେ)—ଊର୍ମିଳା !—ଊର୍ମିଳା !—

"ଚିନ୍ତିତ କିପାଁ ତୁମ୍ଭମନ ।
ଯାହାର ପ୍ରଭୁ ଲଛମନ ॥
ଦେବା ଦିଅଇବା ଠାକୁର ।
କେବଳ ସେହି ସିନା ମୂଳ ॥
ତା'ବିନା ଆଖିରେ ଏଁଜାବ ।
କିସ କରିବା ଚିନ୍ତା ହେବ ॥

ସାଧୁଙ୍କ ସେବାରୁ ମୋ’ ଗୌରବ ।
କୋଟିଏ କାଠରୁ ଅନ୍ତର ॥
କେବଳ ସାହା ହେବ ଶ୍ରେୟ ।
ଏଣୁ ମୋହର ନାହିଁ ଭୟ ॥”

ଊର୍ମିଳା—(ଆପଣାକୁ ସଂଯତ କରି ପରି )
“ମୋହର ଅବା କେଉଁ ଭୟ ।
ତୁମେ ଗୋ ଯେବେଟି ନିର୍ଭୟ ॥”
[ ଚରଣ ଧୂଳି ନେଲେ ଭକ୍ତିଭରେ କି ଅଭିମାନରେ ତା’ ତାଙ୍କୁ ଜଣା ]

ରାମ—( ପତ୍ନୀର ଏହି ଭକ୍ତିରେ ସମୁତ୍ସାହିତ ହୋଇ ଯେଉଁମା )
“ଧନ୍ୟ ମଣଇ ମୁଁ ଜଗତେ ।
ସହଧର୍ମିଣୀ ପାଇ ତୋତେ” ॥

ଲବ—( ପ୍ରବେଶ ପୂର୍ବକ ହସି ହସି )
“ନାହିଁଟି ଭୟ କଣ୍ଟ, ବାବା ।
ନିଶ୍ଚିନ୍ତ ସବୁ ସାଧୁ ବାବା ॥”

ରାମ—ସାଧୁପୁତ୍ର ମୋ’ର !—ନିଶ୍ଚିନ୍ତ……
[ କହୁ କହୁ ହଠାତ୍ ଚିନ୍ତାରେ କପର୍ ବିମର୍ଷ ହୋଇଗଲେ ]

ଊର୍ମିଳା—ଏ’କଣ ?—ବିମର୍ଷ କିପାଇଁ ହେଲ, ନାଥ ?—

ରାମ—( ଲଛମନ୍‌ଜଙ୍କ ଆଡ଼େ ଭକ୍ତିଭାବେ ଚାହିଁ ) ଉପାୟ—ଉପାୟ କହିଦିଅ, ପ୍ରଭୋ !

ଊର୍ମିଳା—( କପର ଗୋଟାଏ ଅସ୍ପଷ୍ଟ ବିରକ୍ତି ବା ଘୃଣାଭାବ ପ୍ରକାଶିତ ହେଲା ମୁଖରେ, ଲଛମନ୍‌ଜଙ୍କ ପ୍ରତି ହିଂସାରେ ହେଉ, କି ସ୍ୱାମିଙ୍କର ମୂଢ଼ତା ଯୋଗୁଁ ହେଉ ) ପ୍ରଭୁ ! ( ଏହିଭଳି ସମ୍ବୋଧନ କରି, କ’ଣ କହିବାକୁ ଯାଉଥିଲେ ସବତ୍ନେ )

ଲବ—( ସେତିକିବେଳେ କହିଉଠିଲେ )—ହଁ, ଜୀବା—ଧନପତି ସାହୁ କାହିଁକି—

ରାମ—( ଘୋର ଅନ୍ଧକାର ମଧ୍ୟେ ବିଦ୍ୟୁତ୍‌ଛଟାକର ଆଲୋକ ପାଇ ଯେମନ୍ତ ) ଧନପତି ସାହୁ ! କାହିଁ ? କେଉଁଠି ?

ଲବ—ଆମ୍ଭର ଦ୍ୱାରେ—

ରାମ—ଆମର ଦ୍ୱାରେ ? କାହିଁକି ଭିତରେ—ଭିତରେ ? ଡାକିଆଣ, ଡାକିଆଣ ସତ୍ୱରେ !—

ଲବ—( ଗୁଲ୍‌ଗଲ୍ପ କଥା ଶେଷ ନ ହେଉଣୁ )

ଊର୍ମିଳା—( ନିର୍ବାକ୍ ହୋଇ ଯାଇଥାଏ )

ରାମ—( ଊର୍ମିଳା ପ୍ରତି )—ଆଉ ଚିନ୍ତା ନାହିଁ, ଊର୍ମି ! ଦୟାଳୁ ପ୍ରଭୁ ମୋ’ର ଦୟା କରିଛନ୍ତି—ଉପାୟ ବତାଇ ଦେଇଛନ୍ତି—ଯାଏ, ମୁଁ ନିଜେ—

ଊର୍ମିଳା—( କେଉଁ ଅବୋଧ ଅନ୍ତରାତ୍ମାର ନିର୍ଦ୍ଦେଶରେ ବା ସତର୍କ ବାଣୀରେ ହେଉ, କିମ୍ବା ଆପଣାର ସଂସ୍କାରର ତାଡ଼ନାରେ ହେଉ, ବାଧା ଦେଇ ) —ନା, ନା, ପ୍ରାଣେ—
[ ଲବ ଓ ସାହୁ ଠିକ୍ ସେହି ମୁହୂର୍ତ୍ତେ ପ୍ରବେଶ କଲେ—ସାହୁଙ୍କର ବର୍ଣ୍ଣ ଘୋର କୃଷ୍ଣ । ଚେହେରା ଅତି କଦାକାର—ଶରୀର ଅତି ସ୍ଥୂଳ—ବିଶେଷତଃ ଉଦରଟି—ଧାନ ଓଳିଆ ଭଳି ଓହଳି ପଡ଼ିଛି—ଆଖି ଦି’ଟା ଯେମିତିକା ଚର୍ବିଭଳି ଘଷୁଛି—ଦୃଷ୍ଟିର ତୀକ୍ଷ୍ଣତା ରଞ୍ଜନ ରଶ୍ମିକୁ ବଳିଯାଉଛି ପରା ]

ଊର୍ମିଳା—( ଆଖିରେ ଆଖି ମେଳ ହେବାରୁ, କ୍ଷଣକାଳ ସ୍ତବ୍ଧ ହୋଇ ଚାହିଁ ଯେଉଁମା, ପଳାଇ ଗଲେ, ଲୁଗା କାନିରେ ନାକ ଘୋଡ଼ାଇ, ଘୃଣାରେ କି ଲଜ୍ଜାରେ, କି ଉପହାସରେ, ସେହି ଜାଣନ୍ତି ସିନା )

ସାହୁ—( ତା’ଙ୍କର ମନକଥା, ସେହି ସ୍ଥୂଳତା ଭେଦକରି ଉଠିବା ଭାରି କଠିନ )—
ବହୁ ଭାଗ୍ୟ ମୋ’ ଆଜଦିନ ।
ଲଭିଲି ଭକ୍ତଙ୍କ ଦର୍ଶନ ॥
[ ପ୍ରଣାମ କଲେ ]

ରାମ—( ଏକାବେଳକେ ଅସମ୍ଭାଳ ହୋଇ )—
“ହେ ସାଧୁ, ଦେଇ ମୋତେ ଧନ ।
ବଞ୍ଚାଅ ବେଗେ ମୋ ଜୀବନ ॥”
[ ଗୋଡ଼ତଳେ ଲମ୍ବଦମ୍ବ ହୋଇ ପଡ଼ିଗଲେ ]

ସାହୁ—( ଉଠାଇ ଚରଣ ଧୂଳି ନେଇ ) ଏ’ କଣ ଦାସେ ?—ଏ’କି କଥା ମୁଖେ ? କେ କେତେ ତୁମଠୁଁ ଧନ ନେଇ ଯାଉଛି, ତୁମେ ଅକ—?

ରାମ—ମୋ'ର ସବୁ ଧନ ସମ୍ପତ୍ତି ଶେଷ ହୋଇଛି । ରାଜାତୁମେ ଦୟା ନ କଲେ ଏଣିକି, ଜୀବନ ମୋ'ର ଶେଷ ହେଲା, ଜାଣି—

ସାହୁ—ଛି, ଦାସେ । ଏ' ଗୋଟାଏ କଥା ନା ? ଆହେ, ତୁମକୁ ଧନ ଦେବା ନାହିଁତ ଦେବା କାହାକୁ ?

ରାମ—ଉମ—ଉର୍ମି— ଶୁଣିଯା— ଦେଖିଯା—ମୋ'ର ଲଛମନ୍‌ଜୀ କେତେ ଦୟାଳୁ—କିଭଳି ଦୟା କରିଛନ୍ତି ସେ ଆମକୁ—

ଉର୍ମିଳା—( ଘର ଭିତରୁ ବାହାରି ଆସିଲା ସାବେଗେ, ସ୍ୱାମୀ ଘୋର ବିପଦଗ୍ରସ୍ତ ମଣି କିମ୍ବା ବିପଦ ମୁକ୍ତ ମଣି )—

ସାହୁ— ଉର୍ମିଳାର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହେଲାଭଳି ଜଣାପଡ଼ୁଥିଲେ )

ଉର୍ମିଳା—( ସେ'ଆଡ଼େ ହଠାତ୍ ନଜର ପଡ଼ିବାରୁ ଚାଲି ଯାଉଥିଲେ, ଛଟିପିଟି ହୋଇ )

ରାମ—( ହାତଧରି ) ଭୟ କାହାକୁ, ଉର୍ମି ?—ଏ' ଯେ ଆମର ସାହୁକାର । ଲଛମନ୍‌ଜୀ ଦୟା କରି ପଠାଇ ଦେଇଛନ୍ତି, ସଙ୍କଟ ବୁଝି ଆମର ।—

ଉର୍ମିଳା—( ହାତ ଛଡ଼ାଇ ନେଇ ପଳାଇ ଗଲେ )

ରାମ—ଭାରି ଲାଜୁକୀ ସେ, ସାହୁକାରେ । ଆସନ୍ତୁ ଭିତରକୁ, ଲବ । ତୁହି ଠିଆ ହୋଇଚୁ କ'ଣ ? ଗୋଡ଼ ଧୋଇଦେବାକୁ କ'ଣ ମନେନାହିଁ ତୋ'ର ?

ଲବ—ମନ କାହିଁକି ହେଉନାହିଁ, ବାବା—?

[ ପଳାଇଗଲା ]

ସାହୁ—( ହସି ହସି ) ବେଶ୍ ପିଲାଟିତ ।

ରାମ—( ଏ'ପରି ଉକ୍ତିରେ ଲବର, ଅବାକ୍ ହୋଇ ଯାଉଥିଲେ )

ସାହୁ—ମୋ'ର ପିଲାଟି, ଦାସେ—ଠିକ୍ ଏହିଭଳି— 'ସାଧୁ' ଦେଖିଲାତ, ଠେଙ୍ଗା କାଢ଼ିଲା—

ରାମ—କିନ୍ତୁ—ମୋ'ର ପିଲାତ—

"ସାଧୁଙ୍କ ସେବାକରେ ନିତ୍ୟ ।
ହୋଇ ମୋ ସଙ୍ଗେ ସଦାବର୍ତ୍ତୀ ॥

ସାହୁ—ଭାରି ଫକ୍‌କାଟାଏ ନା ? ମୋ'ଭଳି ସାଧୁଙ୍କୁ ଦେଖିଲେ କିନ୍ତୁ ଟିକେ ମନ ଖୁସିକରି ଦେଇଛ ।

ରାମ—( କ'ଣ ଉତ୍ତର ଦେବେ ଠିକ୍ କରିପାରିଲେ ନାହିଁ—ଅସ୍ତ ବ୍ୟସ୍ତ ହୋଇଗଲେ ପରି )

ସାହୁ—ବେଶ୍, ଭାଇ—ସାଧୁ ସେବାରେ ତୁମ୍ଭମାନଙ୍କର ଚିର ମତି ଥାଉ—ସଂସାରରେ ଏହିତ ସାର କଥା ।

[ କଣେଇ କଣେଇ ଭିତର ଆଡ଼େ ଯେ ଚାହିଁ
ନ ଥିଲେ ତା' ନୁହେଁ ]

ରାମ—ସେହି ଆଶୀର୍ବାଦ କର, ପ୍ରଭୁ—( ଅବନତ ହୋଇ )

"ପ୍ରଭୁ ମହିମା ନିତ୍ୟ ଶୁଣେ ।
ସଂସାର ଭଲ ମନ୍ଦ ଜାଣେ ॥
ଦେହ ବହିବା ଯେଉଁଲାଭ ।
କେବଳ କରେ ସେହିଭାବ ॥"

ସାହୁ—ଅଭାବ ତା'ହେଲେ ଆଉ ରହିଲା କ'ଣ ? ଆହା । ପ୍ରଭୁ ଲଛମନଜୀ କି ସତେ ସତେ ଏ'ପାପୀ ମନରେ କେବେ ହେଲେ ଏ' ଭଳି ଭାବ ଆଣିଦେବେ ?

ରାମ—( ସାହ୍ଲାଦେ ) ଏ' ଗୋଟାଏ କିବା କଥା, ଭାଇ—

"ସର୍ବଦା କର ହେ ଭଜନ ।
କେବଳ ପ୍ରଭୁ ଲଛମନ ॥
ଶ୍ରୀପାଦପଦ୍ମ ପଦ ଭାବି ।
ନଚିନ୍ତ ଅନ୍ୟ ଦେବଦେବୀ ॥
ନିଶ୍ଚେ ସେ ପୂରାଇବେ ଆଶ ।
ଅଟଇ ମୋ ଦୃଢ଼ ବିଶ୍ୱାସ ॥"

ସାହୁ—କିନ୍ତୁ, ମୋ ଦୃଢ଼ ବିଶ୍ୱାସ, ଦାସ ! ତୁମ୍ଭେହିଁ ପୂରାଇବ ଆଶ ।

ରାମ—ମୋ'ଭି କି 'ଆଶ' ମେଣ୍ଟିବ ! ପ୍ରଭୁ— ଦାସେଥିଲେ ସେତିକି ବିଶ୍ୱାସ ।

ସାହୁ—ରାମଦାସ । ତୁମେ କା'କୁ କ'ଣ କହୁଛ ? ଏ' ଧନ ମହାଜନି ଆମର କା'ପାଇଁ ? ତୁମରି ପାଇଁ ସିନା ? ଆହେ ! ତୁମରି ତ ସବୁ—ଆମେ ଖାଲି ଜଗୁଆଳି ଛଡ଼ା ତ ଆଉ କିଛି ନୋହୁଁ ?

ରାମ—( ତତ୍‌କ୍ଷଣାତ୍ ଭିତରକୁ ପଶିଗଲେ

ସାଧୁ—( ଘରର ବାହାର ଭିତର, କାବଣି ନାବଣି ଦେଖୁଁ ଦେଖୁଁ ଶାସ୍ତ୍ର ଦୃଷ୍ଟିରେ ) ପଥରର କୋଠା ଏକା ! ପ୍ରତିମାଟି ସୁନାର ନା କ'ଣ ? ଜଡ଼ିତ ଗହଣାରେ ତ ଦେହ ଯାକ ଭର୍ତ୍ତି !

[ ଲୀଳ ବୋହୁ ପଡ଼ୁଥିଲ ପରା ]

ରାମ ( ନେପଥ୍ୟେ )—ଦିଅଁ କାହିଁକି ନ ଦିଅ ଗୋ ବାଧା ?

ସାଧୁ—( ଗମ୍ଭୀର ଭାବେ ଠିଆ ହୋଇ ଶୁଣିଲେ )

ରାମ—( ପ୍ରବେଶ କରି, ଖଣ୍ଡେ ତାଳପତ୍ର ଦେଖି )

"ଶୁଣ ହେ ଧନୀ, ଯା ଲେଖିଲ,
ଆପଣା ନାମେ ଗୋଜା ଦେଲ ॥
ସାଧୁମାନଙ୍କ ଚରଣୁକୁ ।
ଦେବ ହେ ଖରଚ ଆମ୍ଭଙ୍କୁ ॥
ପ୍ରତିଦିନର ବ୍ୟୟ ଯେତେ ।
କେବଳ ଦେଉଥିବ ମୋତେ ॥"

ସାଧୁ—( ସାହ୍ଲାଦେ )

"ଆସ ଉତ୍ତମ ସାଧୁଜନ !
ଅଣିବ ଯେତେ ଇଚ୍ଛା ଧନ ॥"

( ଉଭୟେ ପ୍ରସ୍ଥାନ କଲେ )

ଉର୍ମିଳା—( ଉନ୍ମାଦିନୀ ଭଳିଆସି )

"ଉତ୍ତମାନେ ସେ ନାହିଁ କାର୍ଯ୍ୟ ।
ଫେର, ଫେର ବହନ, ଆର୍ଯ୍ୟ ॥"

ଲବ—( ସେହି ସଙ୍ଗେ ସଙ୍ଗେ ଆସି ) ନାହିଁ, ମା— ଠଛନ୍ତୁ ଡ଼ାକ ନାହିଁ—ଶୁଭକାମରେ ବାବା ବାହାରିଛନ୍ତି—

ଉର୍ମିଳା—ଶୁଭ ! ଶୁଭ ! ସେହି 'ଶୁଭ' ଛଳରେ କେଉଁ ଅଶୁଭର ଝଞ୍ଜାକୁ ଯେ ଡ଼ାକି, ନିମନ୍ତ୍ରଣ କରି ନେଇ ଆସିବାକୁ ବାହାର ନାହାନ୍ତି, କିଏ କହିବ ? ବାବା—ବାବା—

ଲବ—ତୋ' କଥା ମୁଁ କିଛି ସମ୍ଭଜ ପାରେ ନାହିଁ, ମା—ତୁ ଏତେ କହୁ ହେଉ, ଯେ ସତରେ ବି ଦିନ ଦେଖୁ; କିନ୍ତୁ ଏ ଉଦ୍ଭୁଦିଆ ଦିନ ଦିପହର ଠାରେ ରାତି ଦେଖୁଚୁ କେମିତିକା ଭଳି ? ବାବା ଧନ ଅଣିବେ—ସାଧୁଙ୍କର ଚରଣୁ ହେବ—ଏଥିରେ କେଉଁଠି କ'ଣ ରହିଲା ଯେ, ଏତେ ଡ଼ରୁଛୁ ?—

ଉର୍ମିଳା—ଋଣ ! ଋଣ ! ଋଣୀକର ଘିଅ ଖାଇବା କି ଖୁଆଇବା—

ଲବ—ଅବୈ ଉଚିତ ନୁହେଁ ! ଏ' କଥା ଗୁରୁଦେବ ଆମ୍ଭମାନଙ୍କୁ ବସିଲ ଉଠିଲ ଠେଇଁ କହୁଥାନ୍ତି ! ଏଇଥିପାଇଁ ତୁ ଏତେ ଡ଼ରୁଛୁ ନା ?—

ଉର୍ମିଳା—ହେବନାହିଁ, ବାପ !—

ଲବ—କିନ୍ତୁ, ଏ' ଋଣୀତ, ବାବା ନକଲେ କରିଲେ ? ସାଧୁଙ୍କ ଚର୍ଚ୍ଚା ହେବ କିପରି ? ଏମିତିକା ଅଠଣା ବେଳେ ? ଅହୁର ନ ସୁଝିବାର ତ କଥା ନୁହେଁ; ଜଲଦି ହେଉ, ବା ବିଳମ୍ବରେ ହେଉ ?—

ଉର୍ମିଳା—କିନ୍ତୁ, ସୁଝିବାର ଉପାୟ, ପୁଅ ?

ଲବ—ତା' କ'ଣ ସେ ନ ପାଞ୍ଚି କରୁଛନ୍ତି ମା ?

ଉର୍ମିଳା—ଶେଷକୁ ଭଟାମାଟି ଉଚ୍ଛନ୍ନ ହେବା କଥା ଛଡ଼ା ଆଉ କିଛି ନୁହେଁରେ ବାପ !—

ଲବ—ହେଲେ ବା !

ଉର୍ମିଳା—ତୋର ଭବିଷ୍ୟତ ଦଶା ଯେ,—

ଲବ—ଓ, ତୁ' ମୋ'ର 'ଭବିଷ୍ୟତ ଦଶା' କଥା ଭାବି, ଏତେ ଉଚ୍ଛନ୍ନ—ଋଣ କଥା ନୁହେଁ ?

ଉର୍ମିଳା—ଆରେ ସେହି ଋଣ ତ ତୋ'ର ଭବିଷ୍ୟତର ଘୁଣ ! ବାବା—ବାବା—ସେ ଯଦି ଥରେ ହେଲେ ଘରଆଡ଼େ ଚାହାଁନ୍ତେ, ଏହି ମୁହିଁ ବକଟକୁ ଚାହିଁ ! (ଲୁହପୋଛି) ସାଧୁଚର୍ଚ୍ଚା କରିବାକୁ ତ ମନା କରୁ ନାହିଁ, ତେବେ ଖର୍ଚ୍ଚଟା ଚଳିବ କେମିତି, ତା' ତ ବୁଝିବା ଦରକାର ! ଖାଲି ସଞ୍ଜ ସକାଳେ ଠାକୁର ସେବା କଲେ ତ, କେହି ଆଣି ପୁରାଇ ଦେବେ ନାହିଁ ?

ଲବ—ମା, ମୁଁ ତ ବଡ଼ ହୋଇଚି – ମୋର ବୁଦ୍ଧି ଶୁଦ୍ଧି ହୋଇଚି—ଦେହରେ ବି ଖୁବ୍ ତାକତ୍— ମୋତେ ଗୋଟାଏ କେଉଁ କାମରେ ଲଗାଇ ଦେଲେ ତ ବେଶ୍ ଦିପଇସା ଆଣନ୍ତି—ବାବାଙ୍କୁ ବି ହଟହଟା ହେବାକୁ ପଡ଼ନ୍ତା ନାହିଁ—ତୋ'ର ବି ଚିନ୍ତା ଦିକ୍କ ନଥା'ନ୍ତା । ଆଚ୍ଛା, ମା—ସେ

ଧନପତି ସାହୁ ତ କିଛି କାମ କରେ ନାହିଁ, ତା'ର ଏତେଧନ ଆସିଲା କେଉଁଠୁଁ ?

ଊର୍ମିଳା—( ସେହି ଧନପତିଙ୍କ ନା'ରେ କପଟ ଚମକି ଉଠିଲା ) ତୋ'ର ବାପାଙ୍କଠୁଁ ଦେଖି ଥିଲରେ—

ଲବ—ଓଃ, ବୁଝିଲି—ବୁଝିଲି—ସେ ଧନ ସେବାକରେ ବୋଲି, ଧନ ତାର ବେଶୀ—ବାପା ସାଧୁ ସେବା କରନ୍ତି ବୋଲି, ଆମଘରେ ସାଧୁ କେବେ ଛାଡ଼ନାହିଁ । କେଉଁଟା ଭଲ,ମା—?

ଊର୍ମିଳା—ଦୁଇଟାଇ ଭଲ, ବାପ—

ଲବ—ଓଁ ହୁଁ—ବାପା ଯେତେବେଳେ ସାହୁଙ୍କ ଗୋଡ଼ ଧୋଇ ଦେବା କଥା କହିଲେ, ମୋ'ମନ ଏମିତିକା ଚିଡ଼ିଗଲା କାହିଁକି ? ଅଚ୍ଛା, ମା ସମସ୍ତେ ତ ବାପାଙ୍କୁ ଭଲ ପାନ୍ତି, ଭଲ କହନ୍ତି, କାହିଁ ସେ ସାହୁଙ୍କୁ ତ—

ଊର୍ମିଳା—ଭଲ କହିବେ କେମିତି ? ଭଲ ପାଇବେ କେମିତି ?—ସେ ଯେ କାହାର ଆଡ଼େ ଅନାନ୍ତି ନାହିଁ, ଆପଣା ଆଡ଼େ ଅନାଇ, ଆପଣାକୁ କହି— 'ଆପ୍‌ଭଲା ତ ଦୁନିଆ ଭଲା' ।

ଲବ—ତେବେ ?

ଊର୍ମିଳା—ସେହିଭଳି ଅନ୍ନ-ଦୃଷ୍ଟି, ଅନ୍ନ-ବଳ ଯେ ଦରକାର ।

ଲବ—ଦରକାର ଯେବେ, ନିଶ୍ଚୟ ବାବାଙ୍କର ଥିବ—

ଊର୍ମିଳା—ବାପୁ । କାଣିଚୁଏ ଯେବେ ଥା'ନ୍ତା କି ?

ଲବ—ତୁ ସିନା ଏ' କଥା ମନେ କରୁଚୁ ?

ଊର୍ମିଳା—ପାଞ୍ଚଜଣ ଯା' ମନେ କରୁଛନ୍ତି, ତାହାହିଁ ମୁଁ ମନେ କରୁଚି, କହୁଚରେ, ବାପ—

ଲବ—ମା । ସେ ପାଞ୍ଚଜଣ ହେଉ, ବା ଦୁନିଆସାରା ହେଉ—କାହାର ମନକଥା କେହି କେବେ କହିଲଣି, କାଣିଲଣିନା ?

ଊର୍ମିଳା—(ହସି ହସି) ତୁ ବଡ଼ ହେଲେ, ସେ କଥା ଆପେ ଆପେ ବୁଝି ପାରିବୁରେ ବାପ ।

ଲବ—କାହିଁକି ମା ? ମୁଁ ତ କୋରକର କହିବ ଏ'କଥା । ଅଚ୍ଛା କହନ—ମୁଁ ମିଠା ଖାଇବାକୁ ଏତେ ଭଲପାଏ, ଆଜି ସେ ସାହୁ ମୁଁଅଟା ଦେଖିଲାଠୁ, ଅ, ଅ, ଭରି ଖାଲି ବାନ୍ତିକଲି— କାହିଁକି ? ବାପା—ଅପରକୁ ଖୁଆଇ, ସୁଖପାନ୍ତି— ଆଉ ଯେଉଁ ସାହୁଟା ଆପଣାର ତୋଲି ବଢ଼ାଇ ସୁଖପାଏ କାହିଁକି ? ଏହିତ, ବାପା ସାହୁଙ୍କୁ ଏତେ ଆଦର ଯନ୍ତ୍ରକଲେ—ଆଉ ତୁ କାହିଁକି ନ ଉଠିବା ଯାଏ, ଛେପଦି ତୋକିଲୁ ନାହିଁ ?

ଊର୍ମିଳା—( କେଉଁ ଉଦ୍ଦେଶ୍ୟରେ କହି ଉଠିଲେ )— ଭାଗ୍ୟେ ଗୋଡ଼ ଘେଣ୍ଟା କରିଦେଇ ନାହିଁ, କହି— ?

ଲବ—ତେବେ, ତେବେ କହିଲୁ—ତା'ର ମନକଥା କିଏ ସମଜି ପାରେ, କହିପାରେ ? ଯେ ଯେତେ କହିଲେ ବି ଅପରର କଥା, ଆପଣାର ଗନ୍ଧଟା ଅଳ୍ପ ବହୁତ ଯେ ନ ମିଶାଇ କହିବ, ତା' ନୁହେଁ—କେବେଁ ନୁହେଁ— ।

ଊର୍ମିଳା—(କେଉଁ ମର୍ମକଥା ଯେପରି ଶୁଣିଲେ କି ଅଉ, ସେହିଭାବେ କ୍ଷଣକାଳ ଚୁହିଁ ରହିଲେ ଅପଲକ ନେତ୍ରରେ ଲବଆଡ଼େ )

ଲବ— ଗୀତ ।

ବୁଝିଲେ କି ଶ୍ରୀରାମ ପ୍ରଜା ମନକଥା ।
ବିସର୍ଜିଲେ ସୀତା ଯେବେ, ସହି ମନ ବ୍ୟଥା ॥

ଊର୍ମିଳା—ଏ' କେମିତିକା କଥା ? ନ ବୁଝିଥିଲେ କି'ଣ, ପ୍ରାଣର ଅଧିକା ଜାନକୀଙ୍କୁ ସୁଦ୍ଧା ଏ'ଭଳି ବନେ ବିସର୍ଜନ କରିଥାନ୍ତେ ?

ଲବ—ତା' ଯେବେ—

ଗୀତ ।

ଧାତାଲ ଗର୍ଭେ ଯେବେ ପଶିଲେ ଜନନୀ
ଅଗ୍ନି ପରୀକ୍ଷା ଯଜ୍ଞେ ଦେବାକୁ ନ ଗଣି
କି ପାଇଁ ତର୍ଜିଲେ ବାରବର
କାନ୍ଦ ଯେପରି ଶିଶୁ ଶୋକାତୁର ।

ଊର୍ମିଳା—ଏ'ଭଳି ପତ୍ନୀ ପ୍ରତି ଆପଣାର କଠୋରତା ସ୍ମରଣକର ଅବଶ୍ୟ— !

ଲବ—ନା ନା, ମା—

ଗୀତ ।

ଧିକ୍‌କାର ମାନବର ସେହି ଅକ୍ଷମତା ।
ନବୁଝେ ଯା'ଯୋଗେ କେ ପରମନ କଥା ॥

( କେଉଁ ଭାବାବେଶରେ ) ବୁଝେଁ କି, ମା ?— ଯେଉଁ ପ୍ରଜାର ମନୋରଞ୍ଜନ ଲାଗି, ଆପଣାର ଗର୍ଭବତୀ, ଆସନ୍ନ-ପ୍ରସବା ପ୍ରାଣପ୍ରିୟତମାଙ୍କୁ ଏକାକିନୀ ଘୋର ଅରଣ୍ୟରେ, ସନ୍ଧ୍ୟା କାଳୀନ ଶୀକାରାନ୍ୱେଷୀ ସିଂହ ବ୍ୟାଘ୍ରଙ୍କ କୁହାଟ ଭିତରେ ବିସର୍ଜନ ଦେଇ, କଠୋର ହୋଇ ପାରନ୍ତି, ସେହି ପ୍ରଜାନୁରଞ୍ଜନ ଲାଗି, ଅଗ୍ନିପରୀକ୍ଷା ତ ଅନ୍ତର୍ଭୁକ୍ତ ବ୍ୟାପାର, ରଘୁ କୁଳ ତିଳକ ରଘୁ-ମଣିଙ୍କ ପକ୍ଷେ ।—ଅସଲ କଥା ମା, ପ୍ରଜାଙ୍କ କଥା ଭିତରେ ଯେଉଁ ସ୍ୱାର୍ଥଗନ୍ଧ ଟିକକ ଲୁଚି ରହିଥିଲା, ତାହା ସୀତାପତି ଶ୍ରୀରାମଚନ୍ଦ୍ର ପର୍ଯ୍ୟନ୍ତ ବୁଝିପାରି ନ ଥିଲେ ସେହି ନିର୍ବାସନ କାଳେ । ସେହି କଥା ସ୍ମରଣ କରିବାକୁ ସିନା—

ଊର୍ମିଳା—( ସଦମ୍ଭେ ) କିନ୍ତୁ, ସୀତାଙ୍କର ତ ବୁଝିବା ଉଚିତ ଥିଲା ସେତେବେଳେ—

( ନେପଥ୍ୟେ ସାଧୁମାନେ )—

ଗୀତ

ଜୟ ସୀତାପତି ଜୟ ଲଛମନ ।

ଲବ—ଯାଏଁ, ମା ! ସାଧୁମାନେ ସ୍ନାନପ୍ରକାର ବଢ଼ାଇ ଆସିଲେଣି ! କିପରି ବାଲଧୂପର ବନ୍ଦୋବସ୍ତ ହେବ, ବୁଝି ଆସେଁ, ମା—

( ନେପଥ୍ୟେ ପୁଣି )—

ଗୀତ

ଜୟ ରାମାନୁଜ—ଭରତ ଶତ୍ରୁଘ୍ନ ।
ଜୟ ରାବଣାରି—ଲଙ୍କାଧ୍ୱଂସକାରୀ
ଜୟତୁ ଇନ୍ଦ୍ରଜିତ—ନିଧନ କାରୀ
ଜୟ ପ୍ରାପ୍ତ ରାଜ୍ୟ-ରାଜ୍ୟଲକ୍ଷ୍ମୀ ସାଧ୍ୱୀନ ॥
ଜୟ ଭ୍ରାତୃ ପ୍ରେମେ—ଭ୍ରାତୃଗତ ପ୍ରାଣ ॥

ଊର୍ମିଳା—( ସେହି ସ୍ତୁତି ଗାନରେ ଯେ ମୁଗ୍ଧା ହୋଇଯାଇ ନଥିଲେ ଯଦ୍ୟପି ତା'ନୁହେଁ, କିନ୍ତୁ ବାହ୍ୟ ଦେହବାୟୋବେଶ କହିଉଠିଲେ ) ନା, ନା, ମୁଁ ଆଉ 'ଅନ୍ଧ' 'ଅକ୍ଷମ' ଦୁର୍ବଳ ହୋଇ ରହିବି ନାହିଁ !—( ଖୁବ୍ ଦୃଢ଼ତା ପ୍ରକାଶପୂର୍ବକ ଭିତରକୁ ଚାଲିଗଲେ କହୁ କହୁ ) ମୋ'ର 'ବୁଝିବା ଉଚିତ'—ମୁଁ ବୁଝିବି—

[ ରାମଦାସ ଆପଣା ଲୁଗା କାନିରେ କେତେଗୁଡ଼ିଏ ସ୍ୱର୍ଣ୍ଣମୁଦ୍ରା ବାନ୍ଧି ପ୍ରବେଶ କଲେ, ଭାରି ଆନନ୍ଦରେ ]

ରାମ—ହେ ହେ, ଝୁଣ୍ଟୁଚନ୍ଦ୍ରା—(କିଛିକ୍ଷଣ ରହି)—ମ, କୁଆଡେ଼ ଗଲ ମ—ନେଲ, ନେଲ, କ'ଣ ସବୁ କରିବାର କର । କେଉଁଠା ଗଲ କୁଆଡେ଼ ? ସାଧୁମାନେ ଯେ ଦ୍ୱାରରେ ହାଜର ହେଲେଣି !

[ ଊର୍ମିଳା ଆପଣା ଦେହର ଗହଣା ସବୁ ଓହ୍ଲାଇ ଗୋଟିଏ ପୁଟୁଳା କରି, ହାତରେ ଧରି ପ୍ରବେଶ କଲେ ]

ରାମ—ନିଅ, ନେଲ ! ମୁଁ ଯାଏଁ, ତେଣେ ଭଣ୍ଡା କଥା—

ଊର୍ମିଳା—ମୁଁ ସବୁ ବୁଝୁଚି—ତୁମେ ଆଗେ ଗଲ, ସେହି ଧନ ଫେରାଇ ଦେଇ, ଏହି ଗହଣାପାଇ ବିକ୍ରି ଯା' ଧନହେଉଚି, ଯେମିଅଛି—

ରାମ—ଊର୍ମିଳା !—

ଊର୍ମିଳା—ନା, ପ୍ରଭୁ—ଜୀବନ ଥାଉଁ ଥାଉଁ, ମୁଁ କଦାପି ଋଣ କରିବାକୁ ଦେବିନାହିଁ; ପ୍ରଭୁ—

ରାମ—କିନ୍ତୁ, ଏଭଳି ଉପାୟରେ ଧନ ଆଣିବାକୁ ଡହ୍ନ, ମୋତେ ଋଣୀର ଅଧିକ କରୁନାହିଁକି ।

ଊର୍ମିଳା—ତେବେ କ'ଣ ଏ ଦାସୀକୁ ଶ୍ରୀଚରଣ ସେବାରୁ ଅନ୍ତର କରିଦେଉଚ, ପ୍ରଭୁ—?

ରାମ—ନିରୁତ୍ତର କରିଚ, ଊର୍ମିଳା ! ଅଚ୍ଛା, ପରେ ଋଣଶୋଧର ବନ୍ଦୋବସ୍ତ କଲେ ଚଳିଅନ୍ତା ନାହିଁ ? ବର୍ତ୍ତମାନ ବିଳମ୍ବରେ, ସାଧୁ ଚଳିଁରେ—

ଊର୍ମିଳା—ଚଳିନାହିଁ—ବାଲଧୂପର ବନ୍ଦୋବସ୍ତ ଭାର ପୁଅମାନଙ୍କୁ ଦେଇସାରିଛି—ଲବ ବି ତାଙ୍କ ସଙ୍ଗରେ ଅଛି । ଦ'ପହର ପଙ୍ଗତର ବ୍ୟବସ୍ଥା ଟିକିଏ ବିଳମ୍ବ ହେଲେ ମଧ୍ୟ କିଛି ଯାଉ ନାହିଁ—

ରାମ—ଚିନ୍ତାହାରୀ ମୋ'ର ସମ୍ମୁଖେ ଥାଉଁ ଥାଉଁ—
( ଲକ୍ଷ୍ମଣଙ୍କୁ ପ୍ରଣାମ ପୂର୍ବକ )—ଚିନ୍ତା କଣ ?—

ଗୀତ

ଚିନ୍ତାହାରୀ ମୋ'ର-ପ୍ରଭୁ ଲକ୍ଷ୍ମଣ ।
ନାମଧ୍ୟାନେ ତବ—ସବୁ ଏ'ଜୀବନ ॥

ଉର୍ମିଳା—( ଉଚ୍ଛ୍ୱସିତସ୍ୱରେ, ବାଧାଦେଇ )—ନା, ନା, ପ୍ରଭୁ—ତୁଚ୍ଛା ନାମ ଧ୍ୟାନରେ ଜୀବନଟାକୁ ଅସାର କରି ଦିଅନାହିଁ—

ରାମ—( ହସି ହସି ) ତା' ଛଡ଼ା ଆଉକି ଗତି ଏ'ଜୀବର ଥାଇପାରେ ଉର୍ମି ?

ଗୀତ

ରାମନାମ କର ସାର—
ମହିମା ପାରାବାର—
ମଣିଲେ ଯେ ପ୍ରଭୁଧନ୍ୟ, ଧନ୍ୟ, ଧନ୍ୟ
ସେହି ଲକ୍ଷ୍ମଣ ଏ'ଦୀନ ଶରଣ ॥

ଉର୍ମିଳା—ଯେଉଁ ପ୍ରଭୁଙ୍କ ଅନୁସରି, ଆଜି ଏହି ତ୍ୟାଗ-ବ୍ରତରେ ବ୍ରତୀ ହୋଇଛ, ନାଥ—ସେ ପ୍ରଭୁ ହେଲେ ଧନୀ, ରାଜପୁତ୍ର ! କି ଚିନ୍ତା ତାଙ୍କର ? ଅଚଳାଚଳ ସମ୍ପତ୍ତି—କୌଣସି ଭାର ମୁଣ୍ଡରେ ନାହିଁ । ବନକୁ ଗଲାବେଳେ ସୋ'ଦର ପ୍ରୀତି ଘେନି, ଏ'କଥାଟି ସ୍ଥିର ଜାଣିଯାଇଥିଲେ, ଯେ ତା'ଙ୍କର ଅବର୍ତ୍ତମାନରେ ସ୍ତ୍ରୀଙ୍କୁ ତା'ଙ୍କର ଗ୍ରାସାଚ୍ଛାଦନର କଷ୍ଟ ଅନ୍ତତଃ ବାଧିବ ନାହିଁ ।

ରାମ—( ହସି ହସି) ଏଇଠେଇଁ ବୁଝିବାକୁ ହେବ, ଉର୍ମି—ଆମର କିଛିନାହିଁ, ଅଥଚ ଆମର କି ନୋଭ । ମୋର ପ୍ରଭୁ ଅହରହ ନୋଭ, ବ୍ୟସନ ମଧ୍ୟରେ ଉନ୍ମଗ୍ନ ରହିଥିବା, କି ମୁକ୍ତ ପୁରୁଷ । ଆଉ ପେଟପାଟଣା କଥା କହିଲ ଯେ, ସେ ଗୋଟାଏ କିଛି ବଡ଼ କଥା ନୁହେଁ, ମନୁଷ୍ୟ ପକ୍ଷେ, ତା'ର ଅନ୍ୟାନ୍ୟ ବଡ଼ ବଡ଼ ଚିନ୍ତା ତୁଳନାରେ । ତା' ନ ହୋଇଥିଲେ କି, ତୁମେ ନିଜେ ଆଜି, ଏହିପରି, ଜୀବନ ଧାରଣର ସମସ୍ତ ଚିନ୍ତା ଦୂରେ ଫିଙ୍ଗିଦେଇ, କେଉଁ ମହତ୍ ଚିନ୍ତାର ଅନୁବର୍ତ୍ତିନରେ ସର୍ବସ୍ୱ ତୁମର—ଭବିଷ୍ୟତର ସମ୍ବଳକୁ ଅଣି, ଅତିଥି ସେବାରେ ଢାଳିଦିଅନ୍ତ, ଏକାନ୍ତ ହୃଦୟରେ ? ଉର୍ମି, ଉର୍ମି ! ମୋ'ର ପ୍ରଭୁଲକ୍ଷ୍ମଣଙ୍କ ବାରବର୍ଷ କାଳ, ନିରବଚ୍ଛିନ୍ନ ଭାବେ ବିନା ଆହାରରେ, ବିନାନିଦ୍ରାରେ ରହିଥିଲେ, ନିଶ୍ଚିନ୍ତରେ, ଆନନ୍ଦରେ, ସେହି ଅମୂଲ୍ୟ 'ରାମ' ନାମ ସାରକରି, ସେହି ଶ୍ରୀ ପାଦପଦ୍ମ ଧ୍ୟାନକରି,—କେବଳ 'ତ୍ୟାଗ' ବଳେ—'ପ୍ରେମ' ବଳେ ସିନା !

ଉର୍ମିଳା—ମାନୁଛି ଏ'କଥା, ପ୍ରଭୁ,—କିନ୍ତୁ, ମର୍ମକୁ ତ ଭେଦୁନାହିଁ କାହିଁକି ? ଅଧିକୁ ଶୁଣିହିଁ ବ୍ୟସ୍ତ କରିବାଟା—

ରାମ—ଉଚିତ କଥା—କିନ୍ତୁ, ବ୍ୟବସାୟୀ ପକ୍ଷେ—ହିସାବୀ ପକ୍ଷେ ?

ଉର୍ମିଳା—ସଂସାରରେ ଚଳିବାକୁ ହେଲେତ ପ୍ରତ୍ୟେକଙ୍କୁ

ରାମ—ହିସାବୀ, ବ୍ୟବସାୟୀ ହେବା ଦରକାର !—କିନ୍ତୁ, ସେଥିରେ ସଂସାରଟା ଭାରି ଛୋଟ କରି-ଦିଆଯାଏ ନାହିଁକି ?

ଉର୍ମିଳା—ମୁଁ ତ, ପ୍ରଭୁ ଏହି ଚକ୍ରବାଳର ବନ୍ଧନରେ ରହିଯିବାକୁ ଚାହେଁ—ଏ' ନୀଳାକାଶର ବହୁ ଉର୍ଦ୍ଧ୍ୱେ ଉଡ଼ିଯିବାକୁ ଇଚ୍ଛାକରେଁ—

ରାମ—ତେବେ ଆଉ କ'ଣ ?—

ଉର୍ମିଳା—ଖାଲି ମନେକଲେ ତ ହୁଏନାହିଁ ?

ରାମ—ଅବଶ୍ୟ 'ବିଶ୍ୱାସ', 'ଦମ୍ଭ' ଥିବା ଆବଶ୍ୟକ ?

ଉର୍ମିଳା—କିନ୍ତୁ ସେହି 'ବିଶ୍ୱାସ' 'ଦମ୍ଭ' ଆପଣାଠାରେ ଥିବା ଆବଶ୍ୟକ ନୁହେଁକି ?—

ରାମ—ଏ'କଥା ଆଉ ପଚାରିବାକୁ ? ପରଠାରେ ବିଶ୍ୱାସ କରି ଉଡ଼ିବାକୁ ଗଲେତ 'କଚ୍ଛପ' ଭଳି ତଳେ ପଡ଼ି ଛେଚି ହୋଇ ମରିବା କଥା ସିନା !

ଉର୍ମିଳା—ସେହି ଆତ୍ମ-ଶକ୍ତିର ପରିମାଣଟା ଆମର କେତେ, ତାହାହିଁ ଥରେ କଳନା କରି ଉପଲବ୍ଧି କରନ୍ତୁ, ପ୍ରଭୁ-ଏତିକି ନିବେଦନ !

ରାମ—ଖାଲି 'ନିବେଦନ' ନୁହେଁ, ଉର୍ମି—ସଙ୍ଗେ ସଙ୍ଗେ ଆତ୍ମ ସମର୍ପଣ—ଆତ୍ମ ବିସର୍ଜନ, ଆମର ଦରକାର, ସେହି ଅନନ୍ତ ଶକ୍ତି, ଲକ୍ଷ୍ମଣଙ୍କ

ଚରଣ ରାଜୀବରେ—ଯେ କି ଏକମାତ୍ର ଶକ୍ତିମାନ ଆମର ଏ'କ୍ଷୁଦ୍ର ଶକ୍ତିକୁ ଦିନେ ଅନନ୍ତ ଶକ୍ତିରେ ପରିଣତ କରିଦେଇ ପାରନ୍ତି !—

[ ଲଛମନଜୀଙ୍କ ଆଡ଼େ ଚାହିଁ, ଗାଇଲେ ]

ଗୀତ

କାହିଁ ମୋର ଶକ୍ତି, ମୁକ୍ତି !
ବିନା ଲଛମନେ ଭକ୍ତି ॥

ଊର୍ମିଳା—ପ୍ରଭୁ !—ପ୍ରଭୁ !—( ଆପଣାଛାମୁରେ ) ନା, ନା, ମୋ'ର 'ଭୁଲିବା ଉଚିତ'—ମୋତେ ମୋର ପ୍ରଭୁସେବା—ପ୍ରଭୁକାର୍ଯ୍ୟ କରିବାକୁ ହେବ, ଅବିଚଳିତ ଚିତ୍ତରେ !—ଯାଅ, ପ୍ରଭୁ—ବେଗେ ଧନ ସଂଗ୍ରହ କରି, ଋଣଶୋଧ କରିଆସ—

( ଭିତରକୁ ଚାଲିଗଲେ )

ରାମ—( ହସି ହସି )          ଗୀତ

ଶକ୍ତିଶେଳେ ଯେବେ ବିଦ୍ଧ
ମୃତ୍ୟୁ ନିକଟେ ହେଲା ସିଦ୍ଧି
କେ ଦେଲାଟି ଶକ୍ତି ମୁକ୍ତି
ନୁହେଁ କି, ସେ 'ରାମ-ଭକ୍ତି' ॥

( ପ୍ରଣାମ କଲେ )

[ ଏତିକିବେଳେ ଗୋଟାଏ କୋଳାହଳ ଶୁଣାଗଲା ସାହୁ ଦିକ୍ ବିଦିକ୍ ଜ୍ଞାନଶୂନ୍ୟ ହୋଇ ପ୍ରବେଶ କଲେ—ପଛେ ପଛେ ଲବ ]

ଲବ—କ'ଣ କଲ ତୁମେ, ମହାଜନେ ? ଏତେଗୁଡ଼ାଏ ବାଳଭୋଗ ଗୋଡରେ ମାଡିଦେଲ, ଅକାରଣ କରିଦେଇ, ଅଇଲ ସିନା !

ସାହୁ—( ଭାଲପଡ଼ ଗୋଜାଖଣ୍ଡ ବାହାର କରି )—ମୋ'ର ଧନ ଦେବା ଯେ ଅକାରଣ ହେଲା ଏଣେ, ଟୋକା ! ରାମଦାସ ! ଏତେ ଦିନେ ବାଜଣୁହ ? ଗୋଜାରେ ଦସ୍ତଖତ୍ କାହିଁ ?

ଲବ—ବାଲଧୂପ ପଣ୍ଡ ହେଲା, ବାବା—ସାଧୁମାନେ ଯେ ପଦ୍ମ ଉପରେ !—

ସାହୁ—ମୁହିଁ 'ସାଧୁତ୍ୱମ' ଯେ ପଥର ଉଳେ, ବାବା !—

ରାମ—ଟିକିଏ ସବୁର, ମହାଜନେ !—

ସାହୁ—ଦସ୍ତଖତ ନ ହେବାଯାଏ, କରୁଛି ନାହିଁ, ସୁଜନେ !

( ବାଧାଦେଲେ )

ରାମ—(ଲେଖନୀ ଆଣିବାକୁ ଇଙ୍ଗିତ କରୁଥିଲେ ଲବକୁ)

ସାହୁ—ଏହି ଯେ ଧନମଣି !—

[ ଲେଖନୀ ଅଣ୍ଟାରେ ଖୋସା ହୋଇଥିଲା, ବାହାର କରି ଦେଲେ ]

ରାମ—( ଯେମିତି ଦସ୍ତଖତ୍ କରିବାକୁ ଯାଉଥିଲେ )

ଊର୍ମିଳା—( ଡାକି ଉଠିଲେ ) ଲବ !—

ଲବ—ମା !—(ଧାଇଁଗଲେ )

ରାମ—( ସେହି ଡାକରେ ଊର୍ମିଳାର ସ୍ମରଣ କରିନେଇ ଚକିତେ )—ମହାଜନେ ! ଏ ଗୋଜାରେ ତ ଆଉ କାମନାହିଁ ଏହି ଯେ ଆପଣଙ୍କର ଧନ, ମୋ'ର ହାତରେ ରହିଛି, ଦାମୁଡ଼ିଟିଏ ସେଥିରୁ ଖର୍ଚ୍ଚ ନ ହୋଇ—

[ ଧନ ଫେରାଇ ଦେବାକୁ ଯାଉଥିଲେ ]

ସାହୁ—ହାଃ, ହାଃ, ରାମଦାସ—ମୁଁ ଜାଣେ, ତୋ'ର 'ସ୍ତ୍ରୀ ଧନ'ରେ ତୁ ଆଜି ବୋଲାଉଚୁ ଧନୀ ! ଏହି ଗହଣାଟା ରଖି, ପୁଷ୍ଟାରିଙ୍କୁ ତ ଧନ ଦେଲି—କିନ୍ତୁ ପର ମୁହୂର୍ତ୍ତେ ସନ୍ଦେହ ହେଲା—ଏ'କିଭଳି କଥା ! ରାମଦାସ ଏହିକ୍ଷଣି 'ଗୋଜା' ଦେଇ ଯାଏଁ ଧନ ନେଇଗଲା, ଆଉ କରାର କରିଗଲା, ଯେତେ ଧନ ଦରକାର ହେଉଥିବ, ଦେଉଥିବ ନିତି—ଏ'ପୁଣି କି କାଣ୍ଡ ?—ରହସ୍ୟଟା ଭେଦ କରିବା ଉଦ୍ଦେଶ୍ୟରେ ଗୋଜା ଖଣ୍ଡ କାଢ଼ି, ଭଲକୁ ଅନାଇ ଦେଇଛି ଚକ୍ଷୁସ୍ଥିର ! 'ଦସ୍ତଖତ୍' କାହିଁ ? ଠକ ! ଜୁଆଚୋର ! ମୋ'ଭଳି ସାହୁ ଆଖିରେ ଆଜି ଧୂଳି ? ଓଃ, ତୋ'ଭଳି ଖାତକ ପାଇ ମୁଁ ଟିକିଏ ଭୋଳ ହୋଇ ଯିବାରୁ ସିନା ?

ରାମ—ମୁଁ ବି ନିଶ୍ଚେ, 'ଭୋଳ' ହୋଇ ଭୁଲିଚି କର୍ତ୍ତବ୍ୟ ନିଜର, ଆପଣଙ୍କ ଭଳି ଦୟାଳୁ ସାଧୁ ପାଇ, ଏହି ଜୀବନ ମରଣର ସମସ୍ୟା ବେଳେ !—

ସାହୁ—ଯାଉ, ଆହେ, ଦାସେ—ତୁମଭଳି ଖାତକଙ୍କୁ ଅବିଶ୍ୱାସ କରିବାତ, ଦୁନିଆରେ ଆଉ ବିଶ୍ୱାସ

କରିବା କାହାକୁ ?—ତୁମେ ଦସ୍ତଖତ୍ କଲେ ଭଲ, ନ କଲେ ଭଲ—ଟୋକା ଦେବା ସକାଶେ କ'ଣ ମୁଁ ତୁମକୁ କହିଥିଲି ?—ଛିଏଁ ଛିଏଁ ତୁମେ ନେଇଥିଲ କିନା ? ହଁ, ଦାସେ—ଗୋଟାଏ କଥା—ତୁମଭଳି ଲୋକ ପକ୍ଷେ 'ସ୍ତ୍ରୀଧନ' ନେଇ କାରବାର କରିବାଟା ସୁନ୍ଦର ଦିଶୁନାହିଁ—ଯେଉଁ ହେଉଛି କୋଢ଼ିଆ ଅଳସୁଆଙ୍କ କାମ ।—ଆହେ ! ହୁକୁମ୍‌ରେ ତ ତୁମର-ଆମେ ଶହ ଶହ ମୋହର ଆଣି ଗୋଡ଼ତଳେ ଗଦେଇ ଦେବାକୁ ହାଜର ! ଛି, ଛି, ଏତେ ଶ୍ରେଷ୍ଠ ନଜର ହଠାତ୍ ହେଲା କାହିଁକି ଭଲା ? ହଉ, ତୁମର ଯା' ଇଚ୍ଛା, କର—ମୋର ଯା' କର୍ତ୍ତବ୍ୟ, ମୁଁ......

[ ଗମନୋଦ୍ୟତ ହେଲେ ]

ରାମ—( ବାଟ ଓଗାଳି ) କଣ କହୁଛ ତୁମେ, ମହାଜନେ ?—

ସାହୁ—ଆହେ, ମନେ କରୁଛ କ'ଣ—ମୁଁ ଏଡ଼େ ଶ୍ରେଷ୍ଠ ଲୋକଟାଏ ଯେ—ଛାର ଦସ୍ତଖତ୍ ପାଇଁ, ଅନ୍ଧ ହୋଇ ଛୁଟି ଆସିଛି—ଏହି ଦେଖନା—( ଟୋକାଖଣ୍ଡ କାଢ଼ିନେଇ ) ମୁଁ ଖଣ୍ଡ ଖଣ୍ଡ କରି ଛିଣ୍ଡାଇ, ଜଳାଇ ଦେଇପାରେ ତୁମର ଦେଖନ୍ତେ—

[ ସେହିଭଳି କରିବାକୁ ଉଦ୍ୟତ ହେଲେ ]

ରାମ—ନା, ନା, ମହାଜନେ—ସେପରି କରି, ମୋତେ ଆଉ ଗୋଟାଏ ଫନ୍ଦାରେ ମାଡ଼ିଦିଅ ନାହିଁ—ମୋତେ ଟିକିଏ ଅବସର ଦିଅ—ଫୁର୍ସତ ଦିଅ—ମୁଁ ଭାବିଦେଖେଁ—

[ଲବ ସେତିକିବେଳେ ବ୍ୟଗ୍ର ଭାବେ ପ୍ରବେଶକଲା]

ଲବ—ପୂଜାରୀଙ୍କଠି ଯା ଧନ ଥିଲା, ସେଥିରେ ଅଣ୍ଟିଲା ନାହିଁ, ଯେ ମା' ସେହି ଗହଣା ଝୁଲୁଲାଟା ମାଗୁଚନ୍ତି—

ରାମ—ହଁ, ଗହଣା ଝୁଲୁଲାଟା ମା'ଙ୍କୁ ଫେରାଇ ଦେ—ଆଉ ଏହି ଧନ ଘେନି ଯା'—ପୂଜାରୀଙ୍କୁ ଦେ—

[ ସମସ୍ତ ଲବକୁ ଦେଲେ ]

ଲବ—( ବିନ୍ଦୁ ନ କରି ଚାଲିଗଲା ).

ସାହୁ—( ସ୍ମିତହାସ୍ୟ ଗୋପନ ପୂର୍ବକ ) ମୁଁ ଆସୁଛି, ଦାସେ—ତୁମେ ସାଧୁ ସେବାରେ ବର୍ତ୍ତମାନ ଭାରି ବ୍ୟସ୍ତ—ହଁ, ଟୋକାଟା ହେଇଗଲା—ରଖିଲି ତ—ତୁମେ ପରେ ଭାବି ଚିନ୍ତି—

[ ଚାଲି ଯାଉଥିଲେ ]

ରାମ—ଆଉ ତ ଭାବିବାକୁ ଚିନ୍ତିବାକୁ କିଛି ନାହିଁ—

[ ଦସ୍ତଖତ୍ କରି ଦେଇଦେଲେ ]

ସାହୁ—( ଗଭୀର ଆନନ୍ଦର ଧାରକୁ ଗମ୍ଭୀରାବରଣ ତଳେ ଘୋଡ଼ାଇ ଚାଲିଗଲେ )

ଉର୍ମିଳା—( ଶଶବ୍ୟସ୍ତେ ଧାଇଁ ଆସି )—କ'ଣ କଲ ତୁମେ, ପ୍ରଭୁ ?

ରାମ—ଉଚିତ୍ କାମ କରିଛି, ଉର୍ମି—

ଉର୍ମିଳା—ମୋତେ ଉନ୍ମାଦ ଜ୍ଞାନ କର—

ରାମ—( ହସି ହସି ) ନା, ନା, ତୁମର କ୍ରୋଧକୁ ଉନ୍ମାଦ, ଜମାଖାତାରେ ଅମାନତ ରଖି ? କାର୍ଯ୍ୟବେଳେ ଦରକାରରେ ଆସିବ' ଏହି କଥା ଜ୍ଞାନ କର—?

[ ସୋହାଗରେ ନିଦର୍ଶନ ଦେଖାଇ ଚାଲିଗଲେ—ଉର୍ମିଳାର ଗଣ୍ଡ ଦେଶରେ ଆଘାତ କରି ]

ଉର୍ମିଳା—( କେଉଁ ଉଚ୍ଛ୍ୱସିତ ଆନନ୍ଦରେ ଯେପରି ସ୍ଫୀତବକ୍ଷା ହୋଇ ଗୁରୁ-ପାଦକ୍ଷେପରେ ଭିତରକୁ ଗଲେ ଗାଇ ଗାଇ )

ଗୀତ ।

ଅଜ୍ଞକା'ର ପରଶ ଲାଗିଲା, ରେ ।
ହିଆ ମୋ'ର ଉଛୁଳି ନାଚିଲା, ରେ ॥
ଆସ, ଆସ ଗୋ ମୋ' ବୃନ୍ଦ
ଦିଅ ଢାଳି ମକରନ୍ଦ
କେଉଁ ସ୍ୱପ୍ନ ତୃଷାଟି ଜାଗିଲାରେ ॥

[ ସାହୁ ଶଶବ୍ୟସ୍ତେ ପୁନର୍ବାର ପ୍ରବେଶ କଲେ ରାମଦାସଙ୍କ ସଙ୍ଗେ ]

ସାହୁ—ମାଫ୍ କରିବ, ସୁନ୍ଦରି—ମୁଁ ଗହଣାଟା ତୁମର ଫେରାଇ ଦେବାକୁ—( ରାମଦାସଙ୍କୁ ଦେବାକୁ ଗଲେ )

ରାମ—ପୁଣି ସେଇ କଥା—ଯା'ର ଜିନିଷ ତା'କୁ ଫେରାଇ ଦେବେ ନା ?

ସାହୁ—ହୋଃ—ହୋଃ—ମୁଁ ଭୁଲିଯାଉଛି—

[ ଉର୍ମିଳାଙ୍କୁ ଦେବାକୁ ଗଲେ ]

ଉର୍ମିଳା—ଏ' କପର କଥା—ତା' ଜନମସ୍ଥିରେ ତ ମୁଁ ଧନ ପାଇଛି—

ରାମ—ମୁଁ ଧନ ଫେରାଇ ଦେବାକୁ ଯାଉଥିଲି—

ସାହୁ—ହୋଃ—ହୋଃ—ମୁଁ ତୁମର ଧନ ନେବାକୁ ଯା'ନ୍ତି କାହିଁକି ?

ରାମ—ଅଚ୍ଛା, ଗୋଜାଟା ଦେଲି—

ସାହୁ—ନେଉ ନାହିଁ ? ମୁଁ କ'ଣ ମାଗୁଛି କି ?—

ରାମ—( ଲେଖିବାକୁ ଲାଗିଲେ କଣ ) ହେଲା ତ ?

ସାହୁ—( ନେଇ, ପଢ଼ି ) ସେ କଣ ? ଫର୍ଦ୍ଦା ବଢ଼ାଇ ଦେଲ ଯେ । ମୁଁ ତ ଅସଲେ ସେତେ ଧନ ତୁମକୁ ଦେଇନାହିଁ ? ମୁଁ ଅସତ୍ୟ ହେବାକୁ ଯିବି କାହିଁକି ?

ଉର୍ମିଳା—(ରାମଦାସଙ୍କ ପ୍ରତି) ମୋ'ର ଗହଣାଟା ?

ସାହୁ—ନିଅ, ନିଅ, ଆର୍ଯ୍ୟେ—ମୁଁ ତ ଦେଲେ, ଖଲାସ—( ଦେଲେ )

ରାମ—ମୋ'ଠୁଁ 'ଗୋଜାଟା' ନେଇ ମୋତେ ବି' ଖଲାସ ଦେଲେ ତ, ସାହୁକାରେ ?

ସାହୁ—ତା' କେମିତି ହେବ ?—ତା'—

ଉର୍ମିଳା—(ରାମଦାସ ପ୍ରତି ଆସ୍ତେ ଆସ୍ତେ)—ଯେମିତିରେ ହେବ, ମୋ'ଆଡ଼େ 'ଲେଖନ୍' ଆଉ 'ଗୋଜା'ଟା ଦିଅତ ?

ରାମ—( ତାହାହିଁ କରି ବୋକା ଭଳି ଚାହିଁ ରହିଲେ )

ଉର୍ମିଳା—( ଦସ୍ତଖତ୍ କରି ଦେଇ, ଚାଲିଗଲେ )

ରାମ—ଓ, ଉଭୟଙ୍କର ଦସ୍ତଖତ୍ ମାଗୁଥିଲ ?

[ ସାହୁଙ୍କ ଆଡ଼େ ଚାହିଁଲେ ସାନନ୍ଦେ ]

ସାହୁ—ଏତେ ଅପତିଆରି ନା ମୋ'ଠେଇଁ ?—

[ କିନ୍ତୁ ଗୋଜାଟି କା'ଢ଼ ନେବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ ]

ରାମ—( ସାଗ୍ରହେ ) କିନ୍ତୁ, ନିଜଠେଇଁ ନିଜର ପତିଆରି ନୁହେ କି ?

[ ଓଲଟି ହେଲେ ଯେପରି ଗୋଟାଏ ଘାର ମୁକ୍ତ ବୋଲି ]

ସାହୁ—( ବାଧା ଦେଇ ) ଛି, ଛି, ଦାସେ—ତୁମେ ଯେ ବ୍ରାହ୍ମଣ !

ରାମ—ଆଉ, ତୁମେ, ମୋ'ର ମହାଜନ !—

[ ଆପଣା ମୁଣ୍ଡରେ ସେହିପରି ଧୂଳି ବୋଳି ହେଲେ ]

—ଯବନିକା—

---

# ଦ୍ୱିତୀୟ ଅଙ୍କ

**ଦୃଶ୍ୟ** :—ସେହି ଲଛମନ୍‌ଙ୍କ ମନ୍ଦିର ।

[ ତା'ର ଚଉପାଢ଼ି ଉପରେ ରାମଦାସ ଚିନ୍ତିତ ମନରେ ଉପବିଷ୍ଟ, ଗାଲରେ ହାତ ଦେଇ— ମନେ ମନେ କହୁଥାନ୍ତି ]

ରାମ— "ଏଭଳି ଗଳ୍ପ କେତେଦିନ ।
ଗୋଜାର ପ୍ରବୃତ୍ତି ହେଲା ଦିନ ॥
ଲେଖାରେ ସହସ୍ର ମୋହର ।
ହେଲା ଯେ ମୋହର ଉପର ॥
ଆଉ ନ ଦେଲା ଧନୀ ଧନ ।
କହିଲା ନିଷ୍ଠୁର ବଚନ ॥
ବୋଇଲା ଧନ ମୋର ଦିଅ ।
ଯେଡ଼ା ହୋଇଲେ ଆଉ ନିଅ ॥"

ଉର୍ମିଳା—( ପ୍ରବେଶ କରି ) ନାଇଁରାଟା କ'ଣ କହିଲ ଆଉ ?—ତୁମେ ତା' ନ କର—

"ତା'ଠାରୁ ନାରାଣ ଶୁଣିଲି ।
ଆବର ଧନଘର ଗଲି ॥
ଅନେକ ପ୍ରକାରେଣ କହି ।
ପୁଣି ଗୋଜାଏ ଲେଖି ଦେଇ ॥
ତା'ଠାରୁ ବ୍ୟସ୍ତ କଲି ଧନ ।
ଏମନ୍ତ ଗଳ୍ପ କେତେଦିନ ॥

ଯନ୍ତ୍ରୁଁ ସମ୍ପୂର୍ଣ୍ଣ ଉ'ଦ୍ଧ ହେଲା ।
ଅର୍ ଅଧିକ ସେ ନ ଦେଲା ॥
ଏମନ୍ତେ ବିଚାରିଣ ମନ ।
ତା'ଠାରୁ ବନ୍ଦ କଲ୍ ଋଣ ॥"

ରାମ—ସବୁଠେଇଁ ବନ୍ଦ ସିନା ଏବେ, ଊର୍ମି—
"ନଗ୍ରରେ ସମସ୍ତେ ଜାଣିଲେ ।
ଦାସେ ଅନେକ ଋଣ କଲେ ॥
ଏମନ୍ତେ ସମସ୍ତ ସାଧୁତ ।
ତ୍ରତେ ନ ଯା'ନ୍ତି କଦାଚିତ ॥
ମାଗେ ଉଣ୍ଡୁଲି ତ୍ରିକାଟିଲେ ।
ସକଳ ଲୋକେ ହିଙ୍ଗାସିଲେ ॥

ଊର୍ମିଳା—ତନ୍ତ୍ରିଁ ସଙ୍ଗେ, କି ନିଷ୍ଠୁର ବଚନଟି ତା'ଙ୍କର ?—
"ସ୍ୱାମୀସ୍ତା ସବୁପାଣ୍ଡି ଯାଏ ।
ଋଣ ତୁ କଲୁ ସବୁଠାଏଁ ॥
ଏତେକ ଅଗ୍ନି ନାହିଁ ତୋତେ ।
ଅନ୍ନର ମାଗୁଅଛୁ କେତେ ॥"

ରାମ—( ଦୀର୍ଘଶ୍ୱାସ ତ୍ୟାଗ ପୂର୍ବକ )
"ଏମନ୍ତ ସବୁର ନିରାଶ ।
ଶୁଣି ବହୁତ ଅଣଗ୍ରୁଷ ॥
ବାସ୍ତୁର କହୁଚ ମନର ।
କି ବୁଦ୍ଧି କରବି ଏଥର ॥"

ଊର୍ମିଳା—ଋଣ ସୁଝିବା କଥାତ ?—ଏଥିପାଇଁ ଏତେ—

ରାମ—ତଲେ ହେଲେ ସେ କଥା ଭାବୁନାହିଁ ମୁଁ, ଊର୍ମି—ମୁଁ ଭାବୁଚ କେବଳ—
(ଏଣେ) "ସାଧୁଙ୍କ ନିରାଶ ବଚନ ।
(ତେଣେ) ମଠରେ ନାହିଁ ଆଉ ଧନ ॥
ଏହୁ ସମୟେ ସାଧୁମାନେ ।
ଯେବେ ଅସିବେ ମୋ ଭବନେ ॥
ତାହାଙ୍କୁ ଦେବ ମୁହିଁ କସ ।
ନ ଦେଲେ ହୋଇବେ ନିରାଶ ॥

ଊର୍ମିଳା—ଦେଲେ ହେବ ।—ସଫା କଥା—'ମୋ'ର ଦେବା ଭଳି 'ଶକ୍ୟ' ଆଉ ନାହିଁ—ମୁଁ ଦେଇ ପାରିବ ନାହିଁ—

ରାମ—ତା' ହ'ବ ନାହିଁ—ତା' ହ'ବ ନାହିଁ—
"ଅତଥେ ଲେଉଟିବେ ଯେବେ ।
ମୋର ମରଣ ହେବ ତେବେ ॥

ଊର୍ମିଳା—ଏତେ ଯେବେଟି ଅସ୍ପୃହା—ଉପାର୍ଜନେ କିପାଇଁ ଅଶ୍ରଦ୍ଧା ?

ରାମ—(ସସ୍ମିତେ) 'ଉପାର୍ଜନ ।'—କି ଉପାର୍ଜନ—କେତେ ବା—ମୁଁ କରିବାକୁ କ୍ଷମ, ଊର୍ମି ?

ଊର୍ମିଳା—ସେତକ ଜାଣିବାର କ୍ଷମତା ଯେବେ ନାହିଁ—ବ୍ୟୟ କରିବାକୁ ଏତେ ଉଚ୍ଛନ୍ନ କିପାଇଁ ?

ରାମ—'ଆୟ, ବ୍ୟୟ' ?—ଏ'ତ ଅତସାଧାରଣ କଥା—ସାଧାରଣ ଲୋକେ ଯା'ଚନ୍ତି ଉଚ୍ଛନ୍ନ, ମତଛନ୍ନ ।—

ଊର୍ମିଳା—ତୁମେ ଆଉ କେଉଁ ଅସାଧାରଣ ଲୋକ କି ?—

ରାମ—କାହିଁକି ନୁହେଁ ମୁଁ, ଊର୍ମି—ତୁଚ୍ଛ ଯା'ର, ବାରଲଛମନ !

ଊର୍ମିଳା—ତେବେ ଆଜ ଚିନ୍ତାରେ ଏତେ ଘାରହୁଅ କାହିଁକି ?

ରାମ—'ଚିନ୍ତାରେ ଏତେ ଘାରହୁଏ କାହିଁକି' ?—( ରହିଯାଇ, ଲଛମନଜଙ୍କ ଆଡ଼େ ଗୁହିଁଲା ମାତ୍ରେ) —ହଁ, ହଁ, ଊର୍ମି—ମନ୍ଦିରେ, ମନ୍ଦିରେ, ମୋର ଚିନ୍ତାହାରୀଙ୍କୁ ମୁଁ ପାଶୋର ପକାଏଁ ବୋଲି ?—
(ଲଛମନ୍‌ଜଙ୍କୁ ଗୁହିଁ, ଯୋଡ଼ହସ୍ତେ ଗାଇଲେ)

( ଗୀତ )

ଏ'କି ନିଦୟା ହେ, ଚିନ୍ତାହାରୀ ।

ଊର୍ମିଳା—ଓଃ, ସେଇ ଚିନ୍ତାହାରୀ ସିନା, ଯେତକ ଚିନ୍ତାର ମୂଳ ମୋର !

[ ଗୁଲିଗଲେ ମନେ ମନେ କହୁ କହୁ ମାନଭରେ କି ଆଉ ]

ରାମ—( କୌଣସି ଭ୍ରୂକ୍ଷେପ ନକରି ଗାଉଥିଲେ )

( ଗୀତ )

ଏ'କି ନିଦୟା ହେ, ଚିନ୍ତାହାରୀ ।
ଚିନ୍ତାରେ, ଚିନ୍ତାରେ, ଦଅ ଘାରି ।

ଦେବ ଦେବ ଯଦୁ—ନାଥାନ୍ତ ହେ, ପ୍ରଭୁ—
ତୋ ପାଦପଦ୍ମ—ଦଅ ସେହୁ, ବନ୍ଧୁ
ଧରାଯେ ଯେ ଶଲ୍ୟା ରାମପଦେ ।
ପାଦ ପଦେ ଜପ୍ସୀ, ବ୍ରହ୍ମରୂପୀ ॥
( ପ୍ରଣାମ କଲେ )
[ ଲବ ଭାରି ଆନନ୍ଦରେ ପ୍ରବେଶ କଲ ]

ଲବ—ବାବା—ବାବା !—
ନନ୍ଦ ଡହୁଲଇ ଚରେ ।
ସି ମିଳନ୍ତି ଜମାଦରେ ॥
ଏକଜୋ ପାଞ୍ଚ ସଂସ୍ରମୂର୍ତ୍ତି ।
ମୁକୁଟବନ୍ଧା ଅସିଚନ୍ତି ॥

ରାମ—( ମୁହଁ ଓଳିକପାଇଁ ଯେ ଇତସ୍ତତଃ ନ ହେଲେ, ତ, ନୁହେଁ )
"ହେ, ପ୍ରଭୁ ତୁମେ ଯାହାକର ।
ସକଳ ଆପୃତ ତୋହର ॥
[ ଅପରୀ ଚଉରେ ଦମ୍ଭ ଅଣିବାକୁ ଲଗିଲେ ]

ଲବ—(ପିତାଙ୍କର ମୁଖ ଆଡ଼େ ଚାହିଁ, କଣ୍ଠ ଠିକ୍‌କର ଥାନ୍ତୁଜଥାଏ )
( ନେପଥ୍ୟେ ସାଧୁମାନେ )—
"ଅହେ, ଶୁଣୁଛୁ ଦାତାରୁହ ।
ଉତ୍ତର କହୁ କାହିଁପାଇଁ ॥
ଅମୃତଚରଣୁ ବେଗେକର ।
ଯେବେ ଧର୍ମକୁ ଇଚ୍ଛାତୋର ॥

ଲବ—ବାବା !—
"ବିଲମ୍ବ ହୋଇଲେ ବହୁତ ।
ଆମର ସରବ ମହତ ॥
ଅତଏ ସହନପାରବେ ।
ନାନା ପ୍ରକାରେ ଗାଳଦେବେ ॥

ରାମ—(ଯେପ୍ରେ ଉତ୍ସାହିତ ହୋଇ)—
"ନହୁଅ ସଜ୍ଜନେ କାତର ।
ନିଶ୍ଚିନ୍ତ ହୋଇ ତୁମ୍ଭେ ରସ ॥
ତୁମ୍ଭଚରଣୁ ବଧିମାନ ।
କରିବେ ପ୍ରଭୁ ଲକ୍ଷ୍ମନ ॥
[ ସଦାନ୍ତେ ଚାଲିଗଲେ ]

ଲବ—(ସାନନ୍ଦେ ଗାଇ, ଗାଇ, ନାଚଉଠିଲା)

ଗୀତ

ଦେଖିବରେ, ଲକ୍ଷ୍ମନ ।
ଭେଡ଼େ ତୋ'ର ବୀର ପଣ ॥
ପାଇଛୁ ସଂଗ୍ରାମେ ମୁହିଁ—
ଇନ୍ଦ୍ରଜିତ ଜେତାତୁହି
ତୁଣେ ତୋ'ର କେତେବାଣ ॥
( ନାଚ ନାଚ ସେହିପରି ଚାଲିଗଲା )
[ ଉର୍ମିଳା କ୍ଷଣକ-ପରେ ପ୍ରବେଶ କଲେ ]

ଉର୍ମିଳା—ମନେକରିଥିଲି, ସର୍ବସ୍ୱଦେଇ ଋଣ ସୁଝିବି, ତେବେ ଯାଇଁ ଅନଳ ସ୍ପର୍ଶ କରିବି—କିନ୍ତୁ ଏ'କି ଆପଦ ଆସି ଉପସ୍ଥିତ—
[ ଲବ ପୁନର୍ବାର ପ୍ରବେଶକଲା ବ୍ୟସ୍ତସମସ୍ତ ଭାବେ ]

ଲବ—ମା, ସେହିଧନପତିସାହୁ ଏଣେ ଆସୁଚନ୍ତି—

ଉର୍ମିଳା—( ପ୍ରଥମେ ଭୟରେ ) 'ଧନପତି' !—( ବୋଲି ଲୁଚିବାକୁ ଯାଉଥିଲେ, କିନ୍ତୁ ଫେରିଆସି ଅତି ସାଗ୍ରହେ )—ଆସୁଚନ୍ତି — ଆସୁଚନ୍ତି—କାହାନ୍ତି—କାହାନ୍ତି ?—

ଲବ—ନିଶ୍ଚେ ସେ ତାଗାଦାରେ ଆସୁଚନ୍ତି, ମା !

ଉର୍ମିଳା—ଯାଠୁ ବଳି ଆନନ୍ଦର କଥା ଆଜ ଅଛି ନା ?

ଲବ—ପାଞ୍ଚକଥା ଶୁଣାଇ ଅଭଦ୍ରା କହିବ—ସେଇଟା କଣ—

ଉର୍ମିଳା—ଦେହରେ ସହିବନାହିଁ, ଠିକ୍ ବାପ—କିନ୍ତୁ ପ୍ରାଣଟାକୁ ତ ଉଣାସିଅ କରିଦେବ ?—

ଲବ—ନାହିଁ, ମା—ମୁଁ ଯାଏଁ—'ବାପା ନାହାନ୍ତି' ବୋଲି କହି ଫେରାଇ ଦିଏଁ—ନାହିଁତ, ପାଞ୍ଚ-ଜଣଙ୍କ ଆଗରେ—ସାଧୁମାନଙ୍କ ସାମନାରେ ଭାରି ବେଇଜତ୍ କରିବ—ନା, ନା କଟାଳ କରି, କହିବ—

ଉର୍ମିଳା—ଅଧିକେ ବରଂ ତାହାହିଁ କରିବରେ, ବାପ—ତୁ ଏଭଳି କହି ବାଟ ଓଗାଳଲେ ?

ଲବ—ସତେ, ମା ?—ତେବେ—ତେବେ—

ଊର୍ମିଳା—ଆସିଲ ସାଥି ସାଥି—ସିଧା-ସିଧା—ମୋ'
ଆଡ଼େ ବାଟ କଢାଇ ଦେବୁ—

ଲବ—ନାହିଁ, ମା—ସେଭଳି ଲୋକକୁ ଘରେ
ପୂରାଇବା—

[ ସାଧୁ ହସି ହସି ପ୍ରବେଶ କଲେ ]

ସାଧୁ—( କଥାଶେଷ କରିବାକୁ ନଦେଇ )—ଠିକ୍
ନୁହେଁ !—ହାଃ—ହାଃ—ପୁଅଟି ପରା ମୋତେ
ଭାରି ଭଲପାଏ ।

ଊର୍ମିଳା—( ଆସନ ଆଣି, ବସାଇ, ପାଦ୍ୟାର୍ଘ୍ୟଦେଇ
ବନ୍ଦାପନା ପୂର୍ବକ ପ୍ରଣାମ କଲେ )

ଗୀତ

ଆସହେ ଅତିଥି ମନ୍ଦରେ
କେ ଡ଼ାକେ ହୃଦୟ କନ୍ଦରେ ।
ମନେ ହୁଏ ମୁହିଁ—
ପଥ ତବ ଚୁହିଁ—
ଜାଳିଚି ଜାଗର—ଆସିବେ ନାଗର
ପାଦ୍ୟଅର୍ଘ୍ୟ ଚନ୍ଦନ ବନ୍ଦରେ ॥

ଲବ—(ବଦ୍ରୋହୋତ୍ତେଜନାରେ ଯେମନ୍ତ)—ମା !—

ସାଧୁ—ଲବ !—ଅଭିକାହିଁକି ? ତେଜସ୍ୱୀପଣରଙ୍ଗି
ଦେଇ, 'ସାଧୁ' ପଦେ ଏବେ ଶରଣ ପଶ ?

ଲବ—'ସାଧୁ' !—ଆପଣ ?

ଊର୍ମିଳା—ଲବ !—

ସାଧୁ—ହାଃ ହାଃ ମୁଁ 'ସାଧୁ' ନୁହେଁ ? ପାଉଁଶ ବୋଳି
ହୋଇ ନାହିଁ ବୋଲି ? ଜଟା, ଜୁଟ ରଖିନାହିଁ
ବୋଲି ? ଦ୍ୱାରେ ଦ୍ୱାରେ ମାଗିଖାଏ ନାହିଁ
ବୋଲି ?—

ଲବ—ତୁମେ ଯେ ମାଗି ଖାଅ ଦ୍ୱାରେ ଦ୍ୱାରେ—
କାଳକୂଟ ଭରିରଖ ଶିରୋଦେଶରେ !—ଆଉ,
କ୍ଷୀରଲବଣୀ ବୋଳି ହୋଇଥାଅ ଦେହ
ଉପରେ !—

ସାଧୁ—ଆହା ! ପିଲାଟି କେତେ ଭକ୍ତି କରେଟି
ମୋତେ ? ତା'ର ସ୍ତବ ସ୍ତୁତି ମତେ ପରା ଖାଲି
'ବର' ଦେବାକୁ ବ୍ୟାକୁଳ କରୁଚି !

ଊର୍ମିଳା—ଲବ !—ତୁ ବାହାର ଯା' ଏଠୁଁ ।
ମହାଜନେ ! ପିଲାଟାର କଥା କାନକୁ ନିଅନ୍ତୁ
ନାହିଁ—

ସାଧୁ—ପିଲାଟାକୁ ପ୍ରାଣ ଭିତରେ ପୂରାଇ ରଖିବାକୁ ଯେ
ମନ ଉଚ୍ଛନ୍ନ ହେଉଚି ମୋର !—

ଊର୍ମିଳା—ଆ, ଲବ—ଗୋଡ଼ତଳେପଡ଼ ସାଧୁଙ୍କର—

ଲବ—ମା !—( କିନ୍ତୁ ମାତୃଆଦେଶ ପାଳନ କରିବାକୁ
ଗଲା )

ସାଧୁ—ଆହା ! କି ପ୍ରେମଗଦ୍‌ଗଦ ପ୍ରାଣରେ ମୋତେ—

ଲବ—( ନିରସ୍ତ ହୋଇ ) ଏଭଳି ସ୍ୱରୂପ ମୁଁ ସହି-
ପାରିବି ନାହିଁ, ମା—

ଊର୍ମିଳା—ବିରୂପ ହୁଅନ୍ତୁ ନାହିଁ, ପ୍ରଭୁ—

ସାଧୁ—( ହସି ହସି )—ମୁଁ ତ ବହୁରୂପୀ ନୁହେଁ, ଅପର
ସାଧୁଙ୍କ ଭଳି ? ମୋ'ତେ ଦେଖୁଚ ଯାହା,
ସ୍ୱରୂପରେ ବି ମୁଁ ତାହା !—

ଊର୍ମିଳା—( ଲବର ମସ୍ତକ ଜୋର କରି ନୂଆଇଁବାକୁ
ଲାଗିଲା )

ଲବ—( ଅତି କଷ୍ଟେ ତାହାହିଁ କରି, ଘୃଣାରେ ସ୍ଥିତିପିଟି
ହୋଇ ପଳାଇ ଯାଉଥିଲେ )

ସାଧୁ—ନା; ତା'ତ ହ'ବ ନାହିଁ—ମୁଁ ଯେତେବେଳେ
ପ୍ରସନ୍ନ ହୋଇଚି—'ବର' ନ ଦେଇ ଛାଡ଼ୁଚି
କେମିତି ?

[ ଲବକୁ ଧଇଲେ ]

ଲବ—ନା,—ନା—

ଊର୍ମିଳା—ଛି, ଲବ—ମହାଜନେ ଯେବେ ଯାଚି ଗୁଣ୍ଡି
ଦେଉଚନ୍ତି, ସେମିତଭା ମନାକରି, ମନରେ କଷ୍ଟ
ଦେବାକି ତାଙ୍କର—

ଲବ—( ସ୍ଥିର ହୋଇ ଯାଇଥିଲା )

ସାଧୁ—ଦେଖେଁ, ବାବା—ତୋ'ର ଜଡ଼ଉ ହାରଟା—
( ବେକରୁ କାଢ଼ି, ଆପଣା ଲୁଗା କାନିରେ
ବାନ୍ଧିଲେ ) ଆସୁଚି—

( କହୁ ପ୍ରସ୍ଥାନୋଦ୍ୟତ ହେଲେ )

ଊର୍ମିଳା—( ଅବାକ୍ ହୋଇ ଯାଇଥାଏ )

ଲବ—ମୋତେ ଗୋଡ଼ଧୂଳି ଦେଇ ଯାଅ, ମହାଜନେ-
(ସେଇସ୍ବୀକାର)—ଛୁହ, ଆଜ ବାବାଙ୍କ ମୋ'ର
ଗାଳ ମନ୍ଦ କରିବ ନାହିଁତ ? ବାବା !—ବାବା !
ଆଉ ଭୟନାହିଁ ତୁମର ! ତୁମେ ଆଜ ଋଣମୁକ୍ତ—
ଋଣ—

[ ଦୌଡ଼ି ପଳାଇ ଗଲା ବାବାଙ୍କୁ ସୁଖବରଟା ଦେବାକୁ ଯେମନ୍ତ ]

ସାହୁ—( ହସି ହସି ) ପିଲାଟା ବାଥୁ ହେଲାନା
କଣ ?—

( ଗମନୋଦ୍ୟତ ହେଲେ )

ଊର୍ମିଳା—( ବାଟଓଗାଳ ) ଛୁହ ଛୁହ ମହାଜନେ—
ସତେ ସତେ କ'ଣ ଆମେ ଋଣ ମୁକ୍ତ !

ସାହୁ—ତୁମେ ବି ବାୟାଣୀ ହେଲ ? ହଁ, 'ବାୟା' ନ
ହେଲେକି, ଲୋକେ କେବେ ଏ' ଦ୍ବାରେ ସେ'
ଦ୍ବାରେ ଋଣ କରି ବୁଲନ୍ତେ !

ଊର୍ମିଳା—କହୁଥିଲେ ତ ମୋ'ର ଦେହର ଅଳଙ୍କାର
ଯାକ—ନା, ନା ମୁଁ ଯେ ତାହାହିଁ ଦେଇ ଆଜ
ଋଣ ଶୋଧକରିବି ବୋଲି, ଉଚ୍ଛନ୍ନ ହୋଇ
ଆପଣଙ୍କୁ ଏତେ ସେବାପୂଜା କରୁଥିଲି !

ସାହୁ—ବେଶ୍ତ ଦିଅନା ଏବେ କ'ଣ ଦେବ ?

ଊର୍ମିଳା—କିନ୍ତୁ ସେହି ହାରଟା ଦେଇ ପାରିବିନାହିଁ,
ମହ ଜନେ—ତା' ଯେ ପିଲାଟିର ଜନ୍ମ ବେଳକାର
ହାର—ମା'ର ହାର—କେଉଁ ସାତ ପୁରୁଷର,
ଅଜା ଅମଳର ମଙ୍ଗଳସୀ ଫମ୍ପତ୍ତି !

ସାହୁ—ସେଇଥି ପାଇଁ ତ ବେଶୀ ଦରକାର ମୋ'ର !
ମୋ' ପିଲାର ବେକରେ ନାହିଁ ପରା ? ଆଣ୍ଣର—

ଊର୍ମିଳା—ଗୋଟିଏ ପିଲାପାଇଁ, ଆଉ ଗୋଟିଏ
ପିଲାବେକରୁ, ଏ' ଭଳି ଓଟାରି, କାଢ଼ି-
ନେବାଟା—

ସାହୁ—ଓଟାରି ନୁହେଁ, କିନ୍ତୁ ଜୋର କରି ନ ନେଲେ
କ'ଣ, ପିଲାଟା କାଢ଼ି ଦିଅନ୍ତା ନା, ତୁମେ କାଢ଼ି
ଦିଅନ୍ତ ? ଦେଖିଲ ଦେଖିଲ ନଙ୍ଗଳା ବେକରେ
ପିଲାଟିକି ତୁମର କେମିତିକା ମାନିଚ ? ମୋ'
ପିଲାଟିକୁ କ'ଣ ନଙ୍ଗଳା ବେକରେ ସେମିତିକା
ମାନିବ ? ଯାଏଁ, ପିଲାଟାକୁ ଏ'ହାରଟା ପିନ୍ଧାଇ
ବୋଧବାଧ କରିଦିଏଁ—ମା' ଛେଉଣ୍ଡ—ଏକା
କିଏରି ଧରିଚ ! ଦରକାର ହେଲେ ତୁମେ ପିନା
ତୁମର ପିଲାଟିକୁ ମାଟିର ବାଦାମ୍ ଦେଇ ଭଣ୍ଡାଇ
ପାରିବ—କିନ୍ତୁ ମୁଁ କ'ଣ ପାରିବି; ସୁନା ମୁଣ୍ଡାଏ
ଦେଇ ସୁଦ୍ଧା ? ( ଗୁହିଁ ହସି ହସି ଗୁଲିଗଲେ )

ଊର୍ମିଳା—( ନେପଥ୍ୟେ ଯେଉଁଠି ଲବକୁ ଗୃହିଁ ) !
—ଲବ—ଲବ !

( ଆଖିରୁ ଲହୁଧାର ଛୁଟି ବାହାରିଲାପରା )

[ ରାମଦାସ ବ୍ୟସ୍ତବ୍ୟସ୍ତଭାବେ ପ୍ରବେଶ କଲେ ]

ରାମ—ଉର୍ମି !—ଉର୍ମି !—ହେଲାଯିବ କ'ଣ ?
"ସାଧୁତମାନେ ଛନ୍ତି ଯେତେ !
ମାଣେ ତଣ୍ଡୁଳ ଆଉ ମୋତେ ॥
ପଡ଼ିତେ କରିଣ ନ ଦେଲେ,
କୁବୁଦ୍ଧି କରିବା ଗୋ ଭଲେ ॥
ସାଧୁଙ୍କ କଟାଳ ବହୁତ !
ଘରେ ତ ନାହିଁ ଆଉ ବିତ୍ତ ॥
ଅବର ଉରନ୍ତି କେମନ୍ତେ
କରିବା କହ ବୁଦ୍ଧି ମୋତେ ॥"

ଊର୍ମିଳା—( ଘୋର ଅଭିମାନଭରେ ) କୁବୁଦ୍ଧି ମୋତେ
ପଚାରୁଛ ? ତୁମର ବୁଦ୍ଧିରେ ତ ତୁମେ ଗୁଲିଚ !
ସେହି ଋଣୀ ବୋଲି ପିନା ଆମେ, 'ସାଧୁଙ୍କର
ଏତେ କଟାଳ ଆଜ ! ଜବରଦସ୍ତି ପଶି—
ଘରଭିତରୁ—ମା'ର ବୁକୁ ଉପରୁ—ଭଡ଼, ଓଟାରି
ପିଲାଟା ବେକରୁ—ଓଃ ହୋଃ—ନା ନା—
( ହଠାତ୍ ଭାବପରିବର୍ତ୍ତନକରି, ଅତିବିନୟ ଭାବେ
ଯେମନ୍ତ ) କିପାଇଁ ଚିନ୍ତାକର ତୁମେ ?
"ମାଠପିଉଳ ସଜମାନ,
ଗଉଅ ଗଡ଼ୁ ବରତନ
ଲୋଟିଆ ବଲାକୁମ୍ଭ ଯେତେ,
ଯେ ଥାଳି ଫରୁଆ ସହିତେ
ଏମାନ ଯେତେ ଅଛି ତୋର,
ଅବର ଦେହଅଳଙ୍କାର,

ସମସ୍ତେ ଘେନି ବେଗେ ଯାଅ,
ସାଧୁଙ୍କ ଘରେ ବନ୍ଧା ଦିଅ ।
ଆଜ ଅତିଥିଙ୍କ ନିମନ୍ତ୍ରେ,
ଲୋଡ଼ା ହୋଇବ ଧନ ଯେତେ
ବହନ ଯାଇ ଘେନିଆସ ।......"

ରାମ— ( ପାଦପୂରଣ କରି ଯେମନ୍ତ )
"ଶୁଣି ସେ କଥା ହେଲି ତୋଷ
ଆଣି ଦ୍ରବ୍ୟ ଗୋଟୁଳକରି,
ଘେନାଇ ଧନୀଘରେ ଚଳି ॥"

ଊର୍ମିଳା—( ଚୁଲିଗଲେ )

[ ଲବ ବେଗେ ପ୍ରବେଶ କଲା ]

ଲବ—ମା' ମା !—ଏହି ଯେ, ବାବା ! ଦେଖୁଚନା ସେହି ସାହୁ ପିଲାଟା ମୋ'ର ହାର ବେକରେ ନାଇ ମୋତେ ବାଟଯାକ ଖତେଇ ହେଇ ହେଇଲା, ବାଟ ଚାଲିଇ ଦେଉନାହିଁ, ଆହୁରି, ବାବା—

ରାମ—( ଦେଖି ଶୁଣି ଅବାକ୍ ହୋଇଗଲେ )

ଊର୍ମିଳା—( ଅଳଙ୍କାରିଆ ଘେନି ଆସି ) କାନ୍ଦୁଚୁ, ବାବା ?

ଲବ—କାନ୍ଦମାଡ଼ୁଥିଲା, ମା—ରାଗ ଏମିତିକା ହେଲା ଯେ ମାରେ କି ମରେ—କିନ୍ତୁ, ସବୁ ପାଣି ହୋଇଗଲା କୁଣ୍ଢାଇପକାଇ, ବାଲା ଯୋଡ଼ାକର ମୋ'ର ଖସାଇ ନିଜେ ହାତରେ ତା'ର କସ୍ ହେଲେବି, କସିକରି ପିନ୍ଧାଇ ଦେଲା, ମନେ ହେଲା ଯେତେବେଳେ—ଆମେ ଋଣ ମୁକ୍ତ ଆଜ; ସେତେବେଳେ, କେତେ ସହିବି କହିଲୁ, ମା—ତା'ର ଏମିତିକା ବଜାରି ଗିରିକୁ—

ଊର୍ମିଳା—ତୁ ସହିବୁନାହିଁ ତ, ଆଉ ସହିବ କିଏ ?

[ ଲବର ଦେହରେ ହାତ ବୁଲାଇ ଦେବାକୁ ଯାଇ ନିରସ୍ତା ହେଲେ ]

ରାମ—ଊର୍ମି—

ଊର୍ମିଳା—ନା, ନା, ସେ ସୁଆଗ ବୋଲରେ ଆଉ ଡାକନାହିଁ—ତୁମର ଲକ୍ଷ୍ମଣଙ୍କୁ—ତୁମର ସାଧୁ-ସେବା ନେଇ ତୁମେ ଥାଅ । ମୋର ଲବ କିଏ ତୁମର ! କେହି ନୁହେଁ—କେହି ନୁହେଁ—

( ଏହିଭଳି ଉକ୍ତିରେ ଆପଣା ପ୍ରତି ଅବହେଳା କଥାଟା ଯେ ପ୍ରକାଶ ପାଉନଥିଲା, ତା'ନୁହେଁ )

ଲବ—ଏ' କେମିତିକା କଥା ମା ? ବାବାର ମୁଁ କେହି ନୁହେଁ ? କହିଲ, ବାବା—ତା ନ ହେଲେ କି ଧନପତି ସାହୁ ଆଜ ଆମକୁ ଋଣ ମୁକ୍ତ କରିଥାନ୍ତେ ସହଜେ—ମୋର ଅଳଙ୍କାର ନେଇ ? କେଡ଼େ ଖୁସିର କଥା କହିଲ, ବାବା !—

ରାମ—( ଆଖିପିଇ ଦେଉଁ ଦେଉଁ ) ଯା' ବାପ ସାଧୁମାନଙ୍କର ତତ୍ତ୍ୱ ନେ—ମୁଁ ଯାଉଚି, ବେଗେ ଧନ ଘେନି ଆସେଁ ।

ଲବ—ମା !—ଶୁଣୁଁଚୁ କ'ଣ ? ବାବାର ପରା ମୁଁ କେହି ନୁହେ ?

ଗୀତ

ମୋ'ର ବାବା-ମୋ'ର ବାବା ।
ମୋ'ର ପାଇଁ-ଆବା କାବା ॥
ଅଶ୍ୱମେଧ ଯାଗ ବେଳେ,
ରାମାୟଣ ଗାନ କାଳେ—
ହା, ସୀତା—ହା, ସୀତା-ପ୍ରାଣେ
କା'ରେ ଧରି ରାମ ଜିଂବା ॥

( ଚୁଲିଗଲେ )

ରାମ—[ ଧ୍ୟାନସ୍ଥଭାବେ ] ସେହି ଲବକୁଶଙ୍କୁ ଧରିଥିନା କୋଳେ, ମୋ'ର ପ୍ରଭୁର ପ୍ରଭୁ । [ ଲବକୁ କୁଣ୍ଢାଇବାପାଇଁ ଖୋଜି ବୁଲୁଥିଲେ ]

ଊର୍ମିଳା—ହଇହେ, ପୁଅ ସୁଆଗିଆ ! ତୁମେବି ପିଲାଟିର ସେହି କଥା ବିଶ୍ୱାସ କରି ନିଶ୍ଚିନ୍ତ ନା ?—

ରାମ—କେଉଁ କଥା ଊର୍ମି ?

ଊର୍ମିଳା—ଋଣ ମୁକ୍ତ ହେବା କଥା—?

ରାମ—ବେଶ୍ ତ ବିଶ୍ୱାସ ନ କରିବି କାହିଁକି, ମୁକ୍ତିଦାତାଙ୍କ ଆଶ୍ରାରେ ଥାଇଁ ?

ଊର୍ମିଳା—( ଭାରି କାତର ସ୍ୱରେ, ଆଉ ଦମ୍ଭଧରି ନ ପାରି ) ଆଗୋ ସେ କଥା ସମ୍ପୂର୍ଣ୍ଣ ମିଛ ଗୋ—ସମ୍ପୂର୍ଣ୍ଣ ମିଛ—ପିଲାଟି ମନରେ କଷ୍ଟପାଇବ ବୋଲି ସତକଥା କହି ସୁଖର ସ୍ୱପ୍ନ ତା'ର ଭାଙ୍ଗି ଦେଇନାହିଁ ଗୋ, ଭାଙ୍ଗିଦେଇନାହିଁ—

ରାମ—ନ ହେଲାଭ ନାହିଁ ଲଛମନଜୀଙ୍କର ଯେ ଇଚ୍ଛା, ଊର୍ମି !

[ ଚାଲିଯାଉଥିଲେ ]

ଊର୍ମିଳା—ଆଗୋ ରକ୍ତ ମାଂସର ଦେହ ବନ୍ଧୁ, ପିତା ହୋଇ ଗୋଟିଏ ବୋଲି 'ସନ୍ତକର' ଏ ଭଳି ନଙ୍ଗଳା ବେକ, ହାତ, ଗୋଡ଼ ଦେଖି ସହିଲ କିପରି ଗୋ !—ଥରେବି ତ ପଚାରି ମୋତେ ବୁଝିଲ ନାହିଁ—କ'ଣ ହେଲା ? କିଏ ନେଲା ? ଏତେ ନିଷ୍ଠୁର ପ୍ରାଣ ନା ତୁମର ?

ରାମ—[ ମୃଦୁ ମୃଦୁ ହସି, ଲଛମନ୍‌ଜୀଙ୍କ ଆଡ଼େ ଦୃଷ୍ଟି ଆକର୍ଷଣ କରାଇ ] ଊର୍ମି ! ଯାଙ୍କର ବୁଝିବାର କଥା; ସେ ବୁଝିଲେ ହେଲା—

[ ଚାଲିଗଲେ ]

ଊର୍ମିଳା—[ କ୍ଷଣକାଳ ଲଛମନଜୀଙ୍କ ଅଭିମୁଖେ ଓ ରାମଦାସଙ୍କ ଗମନପଥ ଆଡ଼େ ଚାହିଁ, ଆପଣା ମନେ ମନେ କ'ଣ ଚିନ୍ତିବାକୁ ଲାଗିଲେ ନିସ୍ତବ୍ଧ ଭାବେ ]

[ ଏହି ସମୟରେ କୋଳାହଳ ଶୁଣାଗଲା ନେପଥ୍ୟେ ଅନ୍ୟ କେତେକ ସାହୁକାର ଓ ଧନପତି ସାହୁ ସଙ୍ଗେ ରାମଦାସ ପୁନଃ ପ୍ରବେଶ କଲେ ]

ଊର୍ମିଳା—[ ଅନ୍ତରାଳକୁ ଚାଲିଗଲେ, ନାରୀସୁଲଭ ଲଜ୍ଜାରେ ]

ରାମ—[ ଭାରିନେହୁରା ହୋଇ ]—

"ଶୁଣ ଶୁଣ ଆହେ ସାଧୁଭ ।
ବନ୍ଧାରୁ ରଖ ଏହି ବଭ ॥
ଆଜ ସାଧୁଙ୍କ ଲାଗେ ଯେତେ ,
କେବଳ ତାହା ଦିଅ ମୋତେ ॥"

ସାହୁ—ଅରେ ଏ'ଟା କହୁଚି କ'ଣରେ ?—ଅରେ—

"ଯେତେ ପଦାର୍ଥ ଅଛି ତୋର
ସକଳ ବନ୍ଧା ସିନା ମୋର ॥
ମୋ'ର ପଦାର୍ଥ ମୋତେ ଦେଇ ।
ଆସିଛୁ ଜିତିବାର ପାଇଁ ॥

ରାମ—ନା; ନା; ମହାଜନେ—

ସାହୁ—[ କହିବାକୁ ନ ଦେଇ ]—

"ଛାଡ଼ ଏ'କଥାମାନ ତୋ'ର ।
ମହତ୍ତ୍ୱ ଯିବଟି ଏଥର ॥"

୧ମ ବ୍ୟକ୍ତି—ଅରେ !

"ଯେତେକରୁ ଧନ ଅଛୁ ନେଇ ।
ନ ଦେଇ ରଖିଚୁ କିପାଇଁ ॥"

ସାହୁ— "କେଉଣ ଭରସା ତୋହର ।
ନଦେଉ ପଦାର୍ଥ ମୋହର ॥"

ଦେଖ—ମୁଁ ସାରାକଥା କହିଦେଉଚି—

"ଏଥର ମହତ୍ତ୍ୱ ସରବ ।
ପୁତ୍ର କୁଟୁମ୍ବ ବିକାଯିବ ॥"

୨ୟ ବ୍ୟକ୍ତି—"ଦେଖିବା କେ ରଖିବ ତୋ'ର
ଋଣ ଶୁଝିଲେ ଯିବୁ ଘର ॥"

[ ବାଡ଼ି ଓଗାଳିଲା ]

ସମସ୍ତେ—[ ଘେରଯାଇ ] ତେଡ଼କ ନୁହେଁ ଭାଇ—

"ଠକ ସେ ଧନ ଦେଲେ ଯିବ ।
ନୋହିଲେ ଅର୍ଗଳାରେ ଥିବ ॥"

ରାମ—ସାହୁକାର ଗଣ ! ସାଧୁ, ଅତଥିମାନେ ଯେ ଦ୍ୱାରେ !—

ସାହୁ—ଆମେ କ'ଣ ଅସାଧୁ, ମାଗିଖିଆ ? ପଦ-ଗୁଡ଼ିବାକୁ ଆସିଛୁଁ ଦ୍ୱାରେ !

୧ମ ବ୍ୟକ୍ତି—ହିଁ; ଭଲଗଢ ଅଛୁତ—

"ଛାଡ଼ ଏ ବାହାପିଆପଣ ।
ଯେ ଯାହାଧନ ବେଗେ ଆଣ ॥

୨ୟ ବ୍ୟକ୍ତି—ଛି ଛି—

"ଲଜ୍ଜା କି ନାହିଁ କହ ତୋତେ ।
ଦାତା ବୋଲାଉ ଏ' ଜଗତେ ॥"

ରାମ—[ ଅନୁନୟପୂର୍ବକ କରଯୋଡ଼ି ]

"ତୁମ୍ଭେ ସମସ୍ତେ ସାଧୁଗଣ
ମୋତେ ଲାଗିଛି ତୁମ୍ଭ ଋଣ ॥
ଉପର ହସ୍ତେ ଅଛ ଦେଇ ।
ତଳ ହସ୍ତରେ ଅଛି ନେଇ ॥
ସେ ବ୍ରହ୍ମ ବିଷର ସମାନ ।
ଖାଇ କେ ପାରକରେ ଋଣ ॥

ବିଷ ଖାଇଲେ ଜଣେ ମରେ ।
ବ୍ରହ୍ମସ୍ୱ ବଂଶ ନାଶ କରେ ॥
ବ୍ରହ୍ମା ଇନ୍ଦ୍ରାଦି ସୁରାସୁରେ ।
ଯକ୍ଷ ଗନ୍ଧର୍ବ ଯେ କିନ୍ନରେ ॥
ରାଣୀ ଭୁଜଙ୍ଗ ଦଂଶେ ଯାଂର ।
ଗୁଣିଆ ନାହିଁ ଆଉ ତା'ର ॥
ବିଷତ ଝାଡ଼ିଲେ ଝଡ଼ଇ ।
ନୋହିଲେ ଦେହ ସଙ୍ଗେ ରହି ॥
ସେ ଯାଇ ଜୀବର ସହିତେ ।
ବିଷର ବଡ଼ପଣ ଏତେ ॥
ବ୍ରହ୍ମସ୍ୱ କାଳେ ଦେହନାଶି ।
ଗମଇ ଜୀବ ସଙ୍ଗେ ମିଶି ॥
ବୃଷର ସ୍ଥାବ୍ୟାପ୍ତ ହୋଇ ।
ଜୀବର ସଙ୍ଗେ ଲାଗିଥାଇ ॥
ଦଣ୍ଡୀ ସୃଜିଲେ ଛାଡ଼ିଦେଇ ।
ନୋହିଲେ ଜନ୍ମେ ଜନ୍ମେ ଥାଇ ॥
ଏଣୁ ଏ ପୁତ୍ର ଦାରାଧନ ।
ବୋଲନ୍ତି ରାଣୀନୁ ବନ୍ଦନ ॥"

ସାହୁ—ରାଣୀ କଥାଟି ବେଶ 'ଜଲଜଲ' ମନେ ଅଛି—କାମବେଳେ ଏମିତିକା 'ଜଲକା' କାହିଁକି ?

ରାମ—ଭାଇ ।
"କେବଳ କଥା ଏକଅଛି ।
ଶୁଣ ମୁଁ ତୁମ୍ଭଙ୍କୁ କହୁଚି ॥
ସାହୁ ଯେ ଚନ୍ଦ୍ର ଗଙ୍ଗାଜଳ ।
କୃପାଳୁ କେତେ ବା ଶୀତଳ ॥
ବୋଇଲେ ରାଜା ଆଉନାହିଁ ।
ଅଧିକ କି କହିବ ମୁହିଁ ॥

ସାହୁ—ସେ ଠେକା ଠେକି କଥା ଛାଡ଼, ବାପଧନ—ଆମର 'ରାଜା' ହେବାକୁ ଲୋଡ଼ା ନାହିଁ—ଆମକୁ 'ଖଜା' ମିଳିଲେ ଯଥେଷ୍ଟ !

ରାମ—"ଶୁଣ ହେ ସକଳ ସାଧୁଏ ।
ଅଜ ମାଗୁଣି ମୋର ଏତେ ॥
ଏ' ସର୍ବ ରଖି ତୁମ୍ଭଠାର ।
ସାଧୁ ଚରଣୁ ଆଜ କର ॥"

ସାହୁ—କିନ୍ତୁ ଲଛମନ୍ କଭି ନେହିଁ ଭୁଲେ—
( ବ୍ୟଙ୍ଗସ୍ୱରେ )
"ମୋର ପଦାର୍ଥ ମୋତେ ଦେଇ ।
... ... ...

ଅନ୍ୟସମସ୍ତେ—( ଅନୁକରଣ କରି )
ଆସିଛୁ ଜଟିବାର ପାଇଁ ॥"

ରାମ—ନା, ନା, ଭାଇମାନେ—ସେ କଥା କଦାପି ମନରେ ସ୍ଥାନ ଦିଅ ନାହିଁ—ମୁଁ ଅକୁଳ, ଭାବ କେବଳ—
"ବିଳମ୍ବ କଲେ ଅପରାଧ ।
କେ ସହୁ ସାଧୁଙ୍କର କୋଧ ॥

ସାହୁ—ଆମର ଆଉ କୋଧ ନାହିଁ ? ଆମର ହକ୍ ଧନ ଦେବାକୁ 'ବିଳମ୍ବ କଲେ' 'ଅପରାଧ' ହୁଏ ନାହିଁ ?

ରାମ—ଭାଇମାନେ—
"ତୁମ୍ଭ ବ୍ରହ୍ମସ୍ୱ ମାନ ଯେତେ ।
ମନେ ଅଛଇ ମୋ କାରତେ ॥

ସାହୁ—ସେଇ,ତିକରେ ତ ଆମେ ନାହାଲ !

ସମସ୍ତେ—ସେ ମିଠା କଥାରେ ଆମର ଲୋଡ଼ା ନାହିଁ, ବାବୁ—

ସାହୁ—ହଁ, କଥାରେ ତ ଖାଲି ଚୂଡ଼ା ଭିଜେ ନାହିଁ—?

ରାମ—( ଲଛମନ୍‌ଜୀଙ୍କଠାରେ ଲକ୍ଷ୍ୟ ରଖି ) ସ୍ଥିର ଜାଣ, ଭାଇମାନେ—
"ଶ୍ରୀ ଲଛମନଙ୍କ ଆଜ୍ଞାରେ ।
ଶୁଝିବି ଦି ଚାରି ଦିନରେ ॥"

ସାହୁଙ୍କ ଛାଡ଼ି ଆଉମାନେ—ବେଶ୍ ଅମେ ଚାରିଦିନ ସମୟ ଦେଇଗଲୁ—

( ଚାଲିଗଲେ )

ସାହୁ—( ପଥର ଖମ୍ବ ଭଳି ଠିଆ ହୋଇରହି ) ସେମାନଙ୍କର ପିନା ହଣ୍ଡା ଝୁଲୁଚି—ଚାରିଦିନ ଛାଡ଼, ଚାରି ଯୁଗ ଗଲେ ବି ପର୍ବାୟ ନାହିଁ—କିନ୍ତୁ ମୁଁ ତ, ଭାଇ; ଅଲିକିଆ ଲୋକ; ଚାରିଦଣ୍ଡ ସମୟ ଦେଲି ବେଲକୁ ନାକଡ଼ୁବ୍ ।—

[ ଲବ ଶଶବ୍ୟସ୍ତେ ପ୍ରବେଶ କଲା ]

ଲବ—ବାବା ! ସାଧୁମାନେ ଯେ ତେଣେ ଯାଉ···ଏଁ;
ତୁମେ ଏଁଠି ପୁଣି ଭାଣ୍ଡଁ କି, ମହାଜନେ ?'—ନା,
ନା, ବାବା—ଏ' ଯମଠୁ ଅଉ ରଣଭର ନାହିଁ—

ସାହୁ—ଆହା ! ପିଲାଟିକୁ କାନ୍ଧରେ ବସାଇ ନାଚିବାକୁ
ପରି ଗୋଡ଼ ଖାଲି ଝୁଲେଇ ହେଉଚି !

ଲବ—ପାଉଣା ବାକି ଥିଲେ କାନ୍ଧୁ ପିଲାଟିର ବେକ
ମୋଡ଼ିବାକୁ ହାତ ଖାଲି ଝୁଲେଇ ହୁଏ ନା ?

ସାହୁ—( ହସି ହସି ) ପ୍ରାଣ ଭିତରଟା ପରି ଗଲ୍ଭ କରି-
ଉଠେ—ଓଲୁଅ ଭଳି—ହଁ, କଣ କହୁଚ
ବାବେ—?

ରାମ—ହ ତ ଧରୁଚ, ଗୁରଦାନ ସମସ୍ତ ମାନ୍ୟ—

ଲବ—ଏଁ, ତେବେ କଣ ରଣ ଆମର ସୁଝି ନାହିଁ ?—

ସାହୁ—ହାଃ—ହାଃ—

ଲବ—ଗୁଲ୍ ଯା'—ଗୁଲ୍ ଯା'—ଧେଉଁ, ସପୁତାନ !

ସାହୁ—ଟିକିଏ ରହ ସହ, ବାବା—ଏତେ ଭଲ
ପାଇଲେଯେ ମୋତେ, ମୁଁ ଆପଣାକୁ ଭୁଲିଯିବି—
ଦେଖ, ଦାସେ—ପିଲାଟିକୁ ଯେତେବେଳେ ଏତେ
ସ୍ନେହ କରି ପକାଇଚି, ଆହୁରି ତୁମେ ଯେତେବେଳେ
ଗୋଟାଏ କାମରେ ଏତେ ଧ୍ୟାନ ଲଗେଇଚ
କ'ଣ କରିବି, ତୁମରବି, ମନବାଞ୍ଛା ପୂର୍ଣ୍ଣହେଉ
ମୋ'ର ବି ହେଉ—ଏଥିନଅ, ପାଞ୍ଚ ଶହ ଖଣ୍ଡି
ହଲଦିଆଗିନିଅ ନେଲ ! କହିଲି ଭାଇ, ତୁମ୍ଭେମାନେ
ମନେ କରିବ କାହିଁକି—ଲୋକେ ବା କହିବେ
କ'ଣ—ମୁଁ ବା ମନ ଭିତରେ ଗୁଡ଼ୁରୁ ଗୁଡ଼ୁରୁ
ହୋଇ ମରିବି କାହିଁକି—'ଦେଖୁଚନା, ଧନପତି
ସାହୁଟା ଜବର୍ଦ୍ଦସ୍ତି ପିଲାଟା ବେକରୁ ହାରଟା
ଛଡ଼ାଇ ନେଇଗଲା ହେ !'—କହିଲି କହିଲି,
ଲଛମନ୍‌ଜି ଯା' କରନ୍ତି ମଙ୍ଗଳ ପାଇଁ ନୁହେଁକି ?
ଏତେବେଳେ କିଏ ତୁମକୁ ରଣ ଦିଅନ୍ତା—
ତୁମେ ସାଧୁ ସେବା କରନ୍ତ ! 'ସାଧୁଙ୍କ' ମାନଙ୍କର
ମତି-ଗତି ଦେଖିଲି ଆଖି ସାମନା ରେ !
ଆହେ !—ମୁଁ କଣ ଦସ୍ୟୁ କରୁଚି, ଭାବୁଚ—ନା,
ଲୋକଙ୍କ କଥାକୁ ଡରୁଚି—ତା' ନୁହେଁ—ତା'
ନୁହେଁ—ପିଲାଟା 'ଗୋଜା' ରେ ମୋ'ର ଦସ୍ତଖତ୍
କରିନାହିଁ ଯେତେବେଳେ, ତା' ପଦାର୍ଥରେ ଦାବୀ
ମୁଁ କରିବାକୁ ଯିବି ନାହିଁକି, କହିଲି ଭଲା ?

ରାମ—( ସେହି ଝଙ୍କାପାଇଲା ମାନେ ଦକ୍‌ବଦକ୍ ଜ୍ଞାନ
ଶୂନ ହୋଇ ବାହାରି ଗଲେ )

[ ଉର୍ମିଳା ଉଚ୍ଛନ୍ନା ହୋଇ ଧାଇଁ ଆସିଲେ ]

ଉର୍ମିଳା—ନା, ନା, ପ୍ରଭୁ ଅପଣ ଏ'ପରି କହ,
ଆମର ଅନ୍ତର ଦେଶରୁ ପିଲାଟିକୁ ଆମର ଅନ୍ତର
କରି ଦିଅନ୍ତୁ ନାହିଁ—! ( ଗୋଡ଼ତଳେ ପଡ଼ିଲେ )

ଲବ—ମା ! ମା !—ଏ' କ'ଣ କହୁଚୁ, ମା ?—ଆଜି
ସାହୁଙ୍କର ପ୍ରସାଦରୁ ସିନା—ସାଧୁଙ୍କର ପ୍ରସାଦ
ଲାଗିଲା ! ମହାଜନେ ! ତୁମେ ଏଡ଼େ ମହତ୍—
ତୁମର ଏ' ପିଲାଟିକୁ ସତେ ସତେ ଏଡ଼େ ଆଦର
ସ୍ନେହ କର ? ତୁମରି ଦୟାରୁ ସିନା ଆଜି ଜୀବନ
ସାର୍ଥକ ହେଲା—ବାପ-ମା'ର ଆଜି ମୁଁ ଏକାନ୍ତ
ଅନ୍ତରଙ୍ଗ ହୋଇ ଗଲି !—ଅନ୍ତର' କରି ଦେବା
କଥା କ'ଣ କହୁଚୁ ମା ?

ସାହୁ—ନା, ପିଲାଟା ଆଉ ଛପିବାକୁ ଦେଲାନାହିଁ—
'ଅତଲେମ୍ବୁ ଚୁପୁଡ଼ିବାକୁ ଆରମ୍ଭ କଲାଣି—( ଯାଉଁ
ଯାଉଁ )—ମା' ସଙ୍ଗେ ତାର ଟିକିଏ ଗୁପ୍‌ଚୁପିଆ
କଥା ଥିଲା—ଆଚ୍ଛା, ଥାଉ—ଆଉ ବଖତରେ—

ଉର୍ମିଳା—( ବାହ୍ୟଜ୍ଞାନ ଶୂନ୍ୟ ହୋଇ )—ନା, ନା,
କହିଯାଅ—କହିଯାଅ ଅଇଛୁକା, ପ୍ରଭୁ—ଲବ—

ଲବ—ମା !—ସାଧୁମାନଙ୍କର କି କି ବ୍ୟବସ୍ଥା ହେଲା
ମୁଁ ଦେଖେଁଯାଇ— ( ପ୍ରସ୍ଥାନ )

ଉର୍ମିଳା—( ସସ୍ମିତେ ) ହଁ, ଦେଖିଯାଇ ବାବା—ଲୁହ
ଲୁହ—ଖମା କରିବେ, ମୁଁ ଅପନଟା ପାରି ଦେଇ
ନାହିଁ—

ସାହୁ—ତା' ଏ' ଘର ଆସନ ପାଇଁ ଏତେ ବ୍ୟସ୍ତ
କାହିଁକି ?

ଉର୍ମିଳା—( ଯାଉଁ ଯାଉଁ ଗୋଟାଏ ଗହ୍‌ବାରେ ଅଟକି;
ହସି ହସି ଗୁଲିଗଲେ )

ସାହୁ—( ଅପଣାମନେ କ'ଣ ଗୁଣ୍ ଗୁଣ୍ କରି
ଗାଉଥାନ୍ତି )

ଊର୍ମିଳା—(ଆସନ ଆଣି ପାରିଦେଲେ ଓ ଅର୍ଘ୍ୟଥାଳ ଆଣି ଥୋଇଲେ)

ସାଧୁ—( କୌଣସି ଆପତ୍ତି ନ କରି ଉପବେଶନ କଲେ କହୁ କହୁ ) ବେଶ୍, ବେଶ୍—ହଁ ଦେଖ, ଋଣରେ ତ ତୁମେ ନାକବୁଡ଼୍ ହେଲଣି—କଣା କଉଡ଼ି ଟିଏତ ଶୁଝିବାର ନାଁ ନାହିଁ—ବରଂ ଧାର ଉପରେ ଧାର ବଢ଼ି ଯାଉଛି । ଆଜ ଠିକଣା ବେଳେ ଆସି ପଡ଼ି ନଥିଲେ ଘଟୀଏକୁ କଂସା ପିତଳ ଢଖଣ୍ଡ ହୋଇ ବି ନଥାନ୍ତା—ଯେମିତିକା ଦେଖୁଚି, ବଖତ ପଡ଼ିଲେ, ଏହି କାନ୍ଥର ଚୂନ ଇଟା ବି ଯେ ଦିନେ ବିକ୍ରି ନ ହେବ; ତା’ ବି ନୁହେଁ—

ଊର୍ମିଳା—ଯା’ କହୁଚନ୍ତି; ତା’ ଅକ୍ଷରେ ଅକ୍ଷରେ ସତ, ମହାଜନେ ! ଆପଣଙ୍କୁଇ ମୁଁ ବରାବର ମହାଜନ ବୋଲି, ଶ୍ରଦ୍ଧା, ଭକ୍ତି, ପୂଜା କରି ଆସିଚି ପରିଲି, ଦେଖିଲିଦନୁ—ଆପଣ ଦୟାବହି ଅଙ୍କରୁ ଗୋଟାଏ ବାଟ କରି ନ ଦେଲେ—

ସାଧୁ—ଦୟା କ’ଣ ? ଏହା ଯେ ଆମର ଧର୍ମ । ଆମେତ ବାଟ କରି ଦେଉଁ, ଲୋକେ ଯେମିତିକା ଋଣ କରନ୍ତୁ; ସେହି ଆମେ ପୁଣି ବାଟ କାଢ଼ି ଦେଉଁ, ଲୋକେ କିଭଳି ସେହି ଋଣରୁ ମୁକ୍ତ ହୁଅନ୍ତୁ ।

ଊର୍ମିଳା—ପ୍ରଭୁ ! ପ୍ରଭୁ ! ବାସ୍ତବିକ ଆପଣ ମହା ମହାଜନ—ଯେଣୁ ଆପଣ ମାରି ଜାଣନ୍ତି—ସଙ୍ଗେ ସଙ୍ଗେ ପୁଣି ତାରି ଜାଣନ୍ତି !—ଆପଣ ଭରସା ଏକମାତ୍ର ସିନା ଏ’ ନିରାଶ୍ରୀ ମାନଙ୍କର ଏ’କାଳେ ।

ସାଧୁ—ଆହା ! ଆମେ ଯେ ଭରସା କାଳେ, କାଳେ । ଛାଡ଼—ବିଳମ୍ବରେ ଆଉ କାମନାହିଁ—ଦେଖ ଏହି ମୁହୂର୍ତ୍ତିରୁ, ଏହି ଘରବାଡ଼ି, ଆସବାବପତ୍ର, ବିଲକୁଲ୍ ମୁଁ ଦଖଲ ନେଲି;—ଗୁରିଦିନ ସମୟ ଦେବାକୁ ମୋ’ର ଆପତ୍ତି କିଛିନଥିଲା—କିନ୍ତୁ, ଆଉ ଆଉ ସାଧୁ ମାନଙ୍କର ଜୁଲୁମ୍ ଦେଖିଲ ତ, ଆପଣା ତୋଳାରେ । ସେଥିରେ ଗୁରି ଦଣ୍ଡ ଅବସର ଦେବା କି ମୋ’ର ଉଚିତ ? ଏ’ଧରି କ’ଣ ଦଣ୍ଡେ ବି ଏ’ ଥାନ ଛାଡ଼ି ଯିବାକୁ ପରା ମୋ’ର ମନ ବଳୁ ନାହିଁ । ହୁସିଆର ସିଂ—

ହୁସିଆରସିଂ—( ପ୍ରବେଶ ପୂର୍ବକ ସେଲାମ୍ କରି ) କି !—

ସାଧୁ—ଯାଓ—ହୁସିଆର ରହେନା । ଔର ଆଦ୍‌ମିକୋ ହୁସିଆର ସେ କାମ୍ କର୍‌ନେ ତାକିଦ୍ କର୍‌ଦେନା ।

ଊର୍ମିଳା—( ବିସ୍ଫାରିତ ନେତ୍ରରେ ଗୁହିଁ ରହିଥାଏ କେବଳ ।)

ସାଧୁ—କ’ଣ କହୁଚ, ଏମିତିକା ହୁସିଆର ନ ହେଲେ ବେଲସୁଁ ହାତର ଲକ୍ଷ୍ମୀ ବେହାତ ହୋଇଗଲେ, କର୍ମକୁ ନିନ୍ଦ ରହିବ ସିନା ? ତୁମେ ବି କଣ ନ ପସ୍ତେଇବ ?—

ଊର୍ମିଳା—ଜୁହ, ପ୍ରଭୋ—ଏଥର ଆମେ ଋଣ ମୁକ୍ତ ତ ?

ସାଧୁ—ଯେଉଁମାନେ ମୁକ୍ତ, ସେମାନଙ୍କୁତ ଆଉ ବନ୍ଦୀ କରି ରଖିପାରେ ନାହିଁ ?

ଊର୍ମିଳା—ତେବେ କ’ଣ ମୁଁ ମୁକ୍ତ ନୁହେଁ ? ବନ୍ଦୀ ତୁମର !

ସାଧୁ—( ସସ୍ମିତେ ) ବନ୍ଦୀ ନୁହେଁ ଗୋ,—ବନ୍ଧା—ବନ୍ଧା ଯେତେ ଦିନ ଯାଏ ଆପଣାକୁ ମୁକ୍ତ କରି ନ ପାରିଚ ?

ଊର୍ମିଳା—ମୋର ମୁକ୍ତିର ପ୍ରୟୋଜନ ନାହିଁ, ପ୍ରଭୋ—ମୁଁ ବନ୍ଧା ରହିବି—ଆଜୀବନ—ଅନନ୍ତକାଳ ଯାଏ—ଆନନ୍ଦରେ । କି ଆନନ୍ଦ ! ମୋର ପତି ଆଜ ଋଣ ମୁକ୍ତ ! ମୋ’ର ପୁତ୍ର ଆଜ ଋଣ ମୁକ୍ତ !—

ସାଧୁ—କହିଲ, କହିଲ—ପୁତ୍ର ହେଉ, ସ୍ୱାମୀ ହେଉ,—ଏ’ଭଳି ଜଞ୍ଜାଳ ମୁକ୍ତ ଜୀବନରେ ଆଜ କି ଆନନ୍ଦ ତୁମର ।

ଊର୍ମିଳା—ଏ’ଭଳି ଜଞ୍ଜାଳ ମୁକ୍ତ ଜୀବନରେ ଆଜ କି ଆନନ୍ଦ ମୋ’ର ! ସତେ ? ସତେ ?—ମୁଁ ପାଗଳ ହୋଇଯିବି—ପାଗଳ—ପାଗଳ—ପ୍ରଭୁ—ପ୍ରଭୁ—ମୋତେ ଏକୁଟିଆ ରହିବାକୁ ଦିଅନ୍ତୁ—ଏକୁଟିଆ—ଏକୁଟିଆ—

ସାଧୁ—ଛି, ଛି, ତା’ ଆଉ ମୋ ଦେଇ ହେବ କିପରି କହିଲ ?

[ ହୁସିଆର ସିଂ, ଶୋଇବା ଶେଯ, ତକିଆ ଆଦି ମୁଣ୍ଡାଇ ପ୍ରବେଶ କଲା ]

ହୁସିଆରସିଂ—ହଜୁର !—କାହାଁ ରଖ୍‌ନେ ହୋଗା ?

ସାହୁ—(ଗମ୍ଭୀରଭାବେ) ତେବେ ମାଇଜଙ୍କୁ ପୁଛ ନା ।

ଉର୍ମିଳା—ଯା—ଯ—

ହୁସିଆରସିଂ—ମାଇଜି !—

ଉର୍ମିଳା—( ହଠାତ୍ ଆତ୍ମଗୋପନ କରିବାକୁ ଯାଇ ) ଓଃ ଘରମେ ( କହି ଦେଇ ) କ'ଣ କଲୁ—କ'ଣ କଲୁ—ମୋ'ର ଶୋଇଲା ଘର ଦେଖାଇ ଦେଲୁ ?—

[ ଘୁଞ୍ଚି ପିଟିହୋଇ ପଳାଇ ଗଲେ ]

ହୁସିଆରସିଂ—( ଖୁବ୍ ହୁସିଆରରେ ଅନୁସରଣ କଲା ]

ସାହୁ—[ ଓଷ୍ଠାଧରରେ ସ୍ମିତ ରେଖାଟିଏ ଦେଖାଗଲା ଓ ସେହି ଥାଳରୁ ଫୁଲଟିଏ ଉଠାଇନେଇ ଶୁଙ୍ଘିବାକୁ ଲାଗିଲେ ]

—ଯବନିକା—

---

# ତୃତୀୟ ଅଙ୍କ

**ଦୃଶ୍ୟ :**—ରାମଦାସଙ୍କ ଶୋଇଲା ଘର ।

[ ପଲଙ୍କରେ ଧୋବ ବିଛଣା ପାରି, ଉର୍ମିଳା ଧୂଳି ଝାଡ଼ିବା ଉଦ୍ଦେଶ୍ୟରେ କି କ'ଣ ହାତ ବୁଲାଇ ଦେଉଥାନ୍ତି, ବେଳେ ବେଳେ ଭାବ ପ୍ରେମଭରରେ ଯେ ଠାଏ ଠାଏ ବୁଲାଉ ବୁଲାଉ ଅନ୍ୟମନସ୍କା ହେଉ ନ ଥାନ୍ତି, ତା' ନୁହେଁ । ତା'ଙ୍କର ବେଶଭୂଷାର ବାହାର ଓ ମୁଖକାନ୍ତି ଦେଖିଲେ ମନେ ହୁଏ, ଏ'ଯେପରନ୍ତ କେଉଁ ସ୍ୱର୍ଗର ଅପ୍‌ସରା—ସେହି ବିରହବିଧୁରା, ବା ଉଦାସୀନା ରାମଦାସପତ୍ନୀ ନୁହେଁ । ]

ଉର୍ମିଳା—[ କାମକରିବା ସଙ୍ଗେ ସଙ୍ଗେ ଏହିପରି ଗାଉଥିଲେ ଆପଣା ମନେ ମନେ ]

ଗୀତ

ଆଜ ବସନ୍ତ ଆସିଛି—ମୋ'ର ପୁରେ ।
ପୁଲକେ, ପୁଲକେ, ହୃଦୟ ମୋ'ର ପୂରେ ॥
ଶ୍ୟାମଳ ତମାଳ ଶୋଭା
ବଂଶୀର ସେ ତାନ ଲୋଭା
ବାହାରେ ଅନ୍ତରେ କରୁ ମୋତେ ହୃରେ ॥

[ ସାହୁ ପ୍ରବେଶ କଲେ । ପୂର୍ବାପେକ୍ଷା ଅଧିକ କଦାକାର ଦିଶୁଥାନ୍ତି—ଗାଲର ମାଉଁସ ଯେମିତିକି ଖସି ପଡ଼ିଛି, ଆଖି କେଉଁ କୋରଡ଼ ଭିତରକୁ ପଶି ଯାଇଛି—ମୁଣ୍ଡର ବିରଳ କେଶ, କୁଞ୍ଚିତତାକୁ ଅଧିକ ଘନେଇ ଦେଉଛି । ]

ସାହୁ—( ଭାରି ବିରକ୍ତରେ )—ଆଃ—କ'ଣ ଯେ ବାଡ଼ିର ବାଡ଼ିର ହେଉଥାଅ ଦିନରାତି,—ସୁଖିଲାରେ ନାହିଁ ମୋତେ ? ଏତେ ରାତି ହେଲାଣି, ଶୋଇ ନାହଁ ଯେ ?

ଉର୍ମିଳା—କେମିତି ଶୋଇବି, ପ୍ରାଣେଶ୍ୱର ?

ସାହୁ—ବାଃ, ରେ—ମୁଁ ତୁମର ନିଦ କାଢ଼ି ନେଇ ଯାଇଥିଲି ନା, କ'ଣ ?

ଉର୍ମିଳା—ପ୍ରାଣ ଯେ କାଢ଼ି ନେଇ ଯାଇଥିଲ ମୋ'ର, ପ୍ରାଣେଶ୍ୱର ? ମୋ'ର ସର୍ବସ୍ୱ—?

ସାହୁ—ଅଚ୍ଛା ଜଞ୍ଜାଳ ! ଦେଖୁଛି, ମୋତେ ସେହି ଭଳି କାଙ୍ଗାଳ ନ କରି ଛାଡ଼ିବ ନାହିଁ ଏ' ଖାନଗୀ—! ଅଲ୍ଲେ, ମୋର ସାହୁ ମହାଜନ କ'ଣ ଜଳାଞ୍ଜଳି ଦେଇ, ବଗୁଲା ବଗୁଲି ଭଳି, ମୁହଁକୁ ମୁହଁ ଯୋଡ଼ି, ଦିନରାତି ଏ'ଘର କୋଣରେ ନେଇ ତୋତେ ପଡ଼ିଥିବି ନା, କ'ଣ ?

ଉର୍ମିଳା—ତୁମେଇ ମୋ'ର ହୃଦୟେଶ୍ୱର ! ତୁମର ଇଚ୍ଛାରେ ମୋ'ର ଇଚ୍ଛା—ଅନିଚ୍ଛାରେ ଅନିଚ୍ଛା !—

ସାହୁ—( ଖଟଉପରେ ଉପବେଶନ ପୂର୍ବକ ) କାହୁଁ, କେତେଦିନ କି ?—ଶେଷେ 'ରାମଦାସ' କରି, ରାମାନନ୍ଦ ଦେଇ, ଆଜ କା ସଙ୍ଗେ, କେଉଁଦିନ ଯେ···ଅଛି 'ଲବ' ସକାଶେ କ'ଣ ତୋଷ

ପ୍ରାଣ କେତେବେଳେ ହେଲେ କାନ୍ଦି ଉଠେ-
ନାହିଁ ?

ଊର୍ମିଳା—'ଲବ' ।—'ଲବ' !—ଅହରହ କାନ୍ଦି
ଉଠେ, ପ୍ରାଣେଶ୍ୱର, କାହିଁକି ସେଭଳି ବନ୍ଧନରେ
ସମାଜ ମୋତେ ବାନ୍ଧିଲା, ଏହି ଅପ୍‌ସୋସରେ ?

ସାହୁ—କାହିଁ ତୋ' ଆଖିରେ ତ ଟୋପିଏ ହେଲେ
ଲୁହ କେବେ ଦେଖିନାହିଁ ?—

ଊର୍ମିଳା—କାହୁଁକି ଦେଖିବେ, ପ୍ରାଣେଶ୍ୱର ? ମୁଁ ଯେ
ବନ୍ଧନ ମୁକ୍ତ—! ମୁଁ ଯେ ଆଜି ହେଲାରେ ସମସ୍ତ
ସମାଜ ବନ୍ଧନ ଛିନ୍ନ କରିଦେଇ, ମୁକ୍ତାକାଶରେ
ଉଡ଼ିପାରୁଛି, ମୁକ୍ତ-ବାୟୁ ସେବନ କରୁ କରୁ ।
କହିଲ, କହିଲ ପୂର୍ଣ୍ଣତା ବିକାଶର, ପୂର୍ଣ୍ଣମାଧୁରୀ
ଆସ୍ୱାଦନର, ସମ୍ପୂର୍ଣ୍ଣ ସୁଯୋଗ ପାଇଁ ନାହିଁ କି ମୁଁ
ଆଜି ?—

ସାହୁ—କ'ଣ ଏହିପରି ପରପୁରୁଷର ସହବାସରେ ?

ଊର୍ମିଳା—ମୋର ପ୍ରାଣ ସଙ୍ଗୀର ସହବାସରେ,
ପ୍ରାଣେଶ୍ୱର ?
( ପାଖରେ ଆସି ବସିଲେ ପ୍ରେମାକୁଳ ଚିତ୍ତରେ )

ସାହୁ—( ମୁଖ ବିକୃତକରି )—ଏହି କଦାକାର
ଚେହେରା—ଗାଲ୍‌ରେ ମାଉଁସ ନାହିଁ—ଆଖିର
ପତା ମିଳିବା କଠିନ—ମୁଣ୍ଡର ଯେଉଁ ଅଳ୍ପ ଅଳ୍ପ
କେଶ, ଝୋଟକୁ ବଳି ଫର ଫର – ଛି. ଛି—ଏ'
ଭଳି ଅସୁନ୍ଦର ନରାଧମକୁ ପ୍ରାଣର ସଙ୍ଗୀ କରିଚ,
ଘନ-କେଶୀ, କୁରଙ୍ଗ-ନେତ୍ରୀ, ଚନ୍ଦ୍ରାନନୀ,
ସୁନ୍ଦରୀ-ନାରୀ-ହୀରା ତୁମେ ?—ହାଃ-ହାଃ-ଏହି
ଚେହେରା ଦେଖିପରା, ବାଟର ବୁଢ଼ାହାଡ଼ା ଯୁବା
ଟୋକାଙ୍କ ବାଟରୁ ତଫାତ୍ ହୋଇଯାଇ ମୁହଁ
ବାଙ୍କ୍‌କାରନ୍ତି—ବିଟପୀ ସ୍ତ୍ରୀ ଗୁଡ଼ାକର ଘୃଣାରେ
କବାଟ ଓହାଡ଼ରେ ଲୁଚି ଛପି ରହନ୍ତି—କେତେ
ପିଲାଗୁଡ଼ାକର ଡ଼ରରେ ଚିତ୍କାର କରି, ମା କୁକୁରେ
ମୁହଁ ଗୁଞ୍ଜି ପଶନ୍ତି ?

ଊର୍ମିଳା—କିନ୍ତୁ, ଅନ୍ତର୍ଦୃଷ୍ଟିରେ ଥରେ ଚାହିଁ ଦେଖିଚନ୍ତି
କି, କେହି—କି ଭଳି, 'ସୁପୁରୁଷ'—'ପୁରୁଷ-
କାର'—ଲୁଚି ରହିଚି ସେହି ବିକଳାଙ୍ଗର
ଆବରଣ ତଳେ ?

ସାହୁ—ହାଃ—ହାଃ—ସୁ ପୁରୁଷ ! 'ପୁରୁଷ କାର' ।
ହଁ, ହଁ, ଦେଖାଏଁ ମୁହଁ ତର ପୁରୁଷକୁ
ନାରଖାର । ନୁହେଁ ?

ଊର୍ମିଳା—ଠିକ୍ ତ ଏହି ଭଳି ତ ଦେଖିଥା'ନ୍ତି ଲୋକେ,
ଭୁଲ ଉପକାର ?—କିନ୍ତୁ, ମହାପୁରୁଷ ତୁମେ !—
ନିନ୍ଦା, ପ୍ରଶଂସା, ପାପ, ପୁଣ୍ୟ—ସମଜ୍ଞାନ କରି,
ଚାଲିଚ ସିନା ଆପଣାର ଧାରାଧରି । ଜବାବ୍ ବୋଲ୍
ଠୋକ୍ । ହିସାବ ଠିକ୍‌ଠାକ୍ !

ସାହୁ—ଓ ହୋ !—ଏଇଥିପାଇଁ ତୁମେ ଏତେ
ଅନୁରକ୍ତା ?

ଊର୍ମିଳା—'ଅନୁରକ୍ତା' କି କ'ଣ ଜାଣେନା—କିନ୍ତୁ,
ଅପହୃତ ମନ ମୋର ସେହିଦିନୁ, ପ୍ରଥମ
ସାକ୍ଷାତରେ, ପ୍ରଥମ କଥାବାର୍ତ୍ତାରେ, ପ୍ରଥମ କାର-
ବାରରେ—ଏହି ଭବନରେ—ଏହି ଅଗଣାରେ ।

ସାହୁ—ତୁମର ପତିର ସାଥାର୍‌ରେ ? ପୁତ୍ରର
ସମ୍ମୁଖରେ ?

ଊର୍ମିଳା—ସମାଜର ସମ୍ମୁଖରେ—ସମସ୍ତ ବିଶ୍ୱର
ସାକ୍ଷାତରେ ନାଥ !—

ସାହୁ—କିନ୍ତୁ, ଆଉଯଦି ମନ ନ ମିଳେ—ମୋ'ର
ବାରବାର ଭଲ ନ ଲାଗେ, ତା'ହେଲେ ତ
ମୋତେବି ଦିନେ, ଏଇଠି ଫୋପାଡ଼ି ଦେଇ—

ଊର୍ମିଳା—( କଥାଛଡ଼ାଇନେଇ ) ଟମେଟ୍ ଛି
ବଢାଇବାରେ ଆଶ୍ଚର୍ଯ୍ୟ କଣ, ମନର ବିକାର
ଘଟେ ଯଦି ?—

ସାହୁ—'ବିକାର' ଘଟୁ, ବା 'ସଂସ୍କାର' ଘଟୁ—ମନର
ଦାସୀ ତୁହ ! ବାରବିଳାସିନୀ ତୁହ !
( ଘୃଣାରେ ଘୁଞ୍ଚି ଗଲେ )

ଊର୍ମିଳା—ନା, ନାଥ —ସେ ଦୋଷରେ ଆଦୌ ଦୋଷୀ
କରି ପାରିବେ ନାହିଁ, ଯେ ବାରବିଳାସିନୀ
ମୁହିଁ—ମନର ଦାସୀ ମୁହିଁ । ହଁ, ଏ' କଥା
ସତ—ମନକୁ ମୁଁ ଦାସ କରିଚି କିନ୍ତୁ କ୍ରୀତଦାସୀ
କରି ରଖି ନାହିଁ !—ମନକୁ ମୁଁ ଖେଳିବାକୁ
ଛାଡ଼ିଦେଇଚି, କିନ୍ତୁ ଖେଳ ପଡ଼ିଆକୁ ସୀମାବଦ୍ଧ
କରିଦେଇ ନାହିଁ—ମନକୁ ମୁଁ ମାଜ୍ଜିଁଚ, ସଂସ୍କୃତ

କରଚ, କିନ୍ତୁ ଲୌକିକ ସଂସ୍କାର ଓ ମାର୍ଜନାର ସଙ୍କୀର୍ଣ୍ଣ ନିୟମରେ ନୁହେଁ ?

ସାଜୁ—ତୁମେ ଯା' ବୁଝୁଚ କର—ତୁମେ ଜାଣ ତୁମର ଭାବ, ଅଭାବକଥା ଭଲ—ମୁଁ ଆଉ ବସିପାରୁ ନାହିଁ—ଆଖି ମାଡ଼ି ଦେଲାଣି—(ଶୋଇ ପଡ଼ିଲେ ଗୃହକାର୍ ମେଲାକରି )

ଊର୍ମିଳା—ମ'—ଆଉ କ'ଣ କାହାର ଆଖିମାଡ଼ି ଦେଉ ନାହିଁ କି ?

[ ଝୁଅଙ୍କାଇ ପାଖରେ ଶୋଇବାକୁ ଯାଉଥିଲେ ]

( ନେପଥ୍ୟ ରାମଦାସ )—ଖିଲ୍‌ଖିଲ୍—ଖିଲ୍‌ଖିଲ୍ ମାଡ଼ିଦେଇଚୁ କୋ ଆଖି ମୋ'ର ବେକଟଣିକୁ ମୋଡ଼—କିନ୍ତୁ, ମୁଁ ଟେକିବ—ଗୁହିବ—ହାଃ—ହାଃ—ହାଃ—

[ ଭୀଷଣ ଅଟ୍ଟହାସରେ ଭୁବନ ଥରାଇ ଦେଲେ ]

ଊର୍ମିଳା—( ସଚକିତେ ଜଳାକବାଟ ଆଡ଼େ ଗୃହିଁ ) କିଏ ? କିଏ ?

[ ସେହି ଜଳାକବାଟି ବାଟେ—ରାମଦାସ ଲମ୍ଫଦେଇ ହନୁମାନଭଳି, ଘର ଭିତରେ ପ୍ରବେଶ କଲେ । ତାଙ୍କର ଛିନ୍ନ ବେଶ ଭୂଷା—ନିରଶନ, ଶୀର୍ଣ୍ଣାବୟବ ଦେଖି ଗୋଟିଏ ପ୍ରେତାତ୍ମାଭଳି ବୋଧ ହେଉଥିଲ ]

ରାମଦାସ—ମାୟାବୀ । ରାକ୍ଷସୀ । ଓଃ, ମୁଁ ନିଶ୍ଚଳ, ନିଷ୍ପନ୍ଦ ହୋଇ ଯାଇଥିଲି ଏତେକାଳ, ତୋ'ର କଥା ଛନ୍ଦରେ, ଛନ୍ଦ ବନ୍ଦ ହୋଇ ଯେମନ୍ତ । ତୋ'ର ଉର୍କଜାଲରେ,—କେଉଁ ଇନ୍ଦ୍ରଜାଲର ମୋହ ମୁଗ୍ଧ ହୋଇ ଯେମନ୍ତ ।

ଊର୍ମିଳା—ଏଁ, ଏଁ—ତୁମେ—ତୁମେ—( ବହୁକାଳ ସମାଜ-ବନ୍ଧ ଜୀବଭଳି, ପ୍ରଚଳିତ ସମାଜ ନିୟମର ବ୍ୟତିକ୍ରମ କରିଥିବା ଯୋଗୁଁ ଭୟରେ ହଠାତ୍ ଶିହରି ଉଠିଲେ—କିନ୍ତୁ, ପରେ ପରେ ଆପଣାକୁ ସମ୍ଭାଳି ନେଇ କିମ୍ବା, ନେବା ଉଦ୍ଦେଶ୍ୟରେ କହି ଉଠିଲେ ) କିଏ ? କିଏ ତୁମ୍ଭେ ଡକାଏତ୍ ?—ଏତେବେଳେ—ରାତି ଅଧରେ—ଘର ଭିତରେ—ସ୍ତ୍ରୀ ପୁରୁଷର ବିଶ୍ରାମାଳାପ ବେଳେ—ଏକା ଶଯ୍ୟାରେ—

ରାମ—ଏକା ଶଯ୍ୟାରେ !—ହାଃ—ହାଃ—ବିଶ୍ରାମାଳାପ ବେଳେ ?—ହାଃ—ହାଃ—ସୁନ୍ଦରୀ—! ସୁନ୍ଦରୀ—! ଭଲକରି ଦେଖିଲ ଅନାଇ କିଏ ମୁହିଁ ?—

ଊର୍ମିଳା—ଚିହ୍ନିଚି ବହୁପୂର୍ବୁ ଆର୍ଯ୍ୟ—ତୁମେ ରାମଦାସ ! ଲଛମନ ଭକ୍ତ ରାମଦାସ !—

ରାମ—କିନ୍ତୁ, ବର୍ତ୍ତମାନ୍ ?—ସୟତାନ ଭକ୍ତ, ସୟତାନର ଦାସ !—ହାଃ—ହାଃ—ହାଃ—

ଊର୍ମିଳା—କିବା କାର୍ଯ୍ୟ ତୋ'ର, ତେବେ ସୟତାନ—ଏହି ପବିତ୍ର ପ୍ରଣୟ ମନ୍ଦିରେ ଆମର ?—

ରାମ—ଯଜ୍ଞ ପଣ୍ଡ କରିବାକୁ—ମଳ, ମୂତ୍ର, ତ୍ୟାଗେ ?

ଊର୍ମିଳା—ଜ୍ଞାନୀ, ଧାର୍ମିକ, ସୁଧୀର ତୁମେ ପରା—ପ୍ରଭୁ—

ରାମ—ଅଧୀର ସେଇଥି ଯୋଗୁଁ ସିନା ଏତେ—ଲାଳସା ମେଣ୍ଟାଇବାକୁ ସେହି—ଚଞ୍ଚିତ ସଯତ୍ନେ ଯାହା, ଜୀବନ ଆଦ୍ୟରୁ ମୋ'ର । ହାଃ ହାଃ ଖାଲି ରକ୍ତ !—ରକ୍ତ !—

ଊର୍ମିଳା—ନିଜ ରକ୍ତ, ନିଜେ ସିନା କରୁଚୁରେ ପାନ—ଅଜ୍ଞାତ ସାରରେ ନିଜ, ଅତ୍ୟାଗୃସ୍ତ—ଅନାଗୃସ୍ତ ତୁହି, ମୂଢ଼ !—( ହଠାତ୍ ମଥା ସ୍ଥିର କରି ) ପ୍ରଭୁ !—କ୍ଷମାକର ମୋତେ—ମୁଣ୍ଡ ମୁଁ ଠିକ୍ ରଖି ପାରି ନାହିଁ, କେଉଁ କଳ୍ପକଳ୍ପାନ୍ତର ଅତ୍ୟାଗୃର, ଅନାଗୃର ଗୁଡ଼ାକ ସ୍ମରଣ କରିବାରୁ ଆଜ, ସେହି ଅତ୍ୟାଗୃର, ଅନାଗୃରର ପ୍ରତୀକ ତୁମ୍ଭେ ସ୍ୱାମୀ ଆଜ, ଏହିଠାବେ, ଏହି ଭାବେ ଆସି ହଠାତ୍ ଠିଆହେବାରୁ ନିଗୃହୀତା ମୁଣ୍ଡିକ୍ତା ସ୍ତ୍ରୀ ସମ୍ମୁଖେ ତୁମ୍ଭର !—

[ ଗୋଡ଼ ଧୂଳି ନେବାକୁ ଗଲେ ]

ରାମ—ପାପିୟସି ! (ଗଳାଚିପିବାକୁ ଯାଇ) ନା, ନା—( ନିରସ୍ତହୋଇ ) ରାମଦାସ—ରାମଦାସ !—

( କମ୍ପୁଥିଲେ ଆପଣାକୁ ସମ୍ଭାଳି ନପାରି )

ଊର୍ମିଳା—( ଶଦ୍ଦିଙ୍କାର ଶବ୍ଦରେ, ପଲଙ୍କ ଆଡ଼େ ଗୃହିଁ, ସାଦ୍ଧୁଙ୍କ ଉଦ୍ଦେଶ୍ୟରେ ଯାଉଁ ଯାଉଁ ) ଗୃଲ ଗୃଲ ପ୍ରାଣେଶ୍ୱର—ଏଠି ଆଉ ରହିବା—

ସ୍ୱାମ—ଓଃ—ଅବୁଝୁନ୍ତେ—ଆଉ—

[ ବଦ୍ଧନପାର—ଏବଲମ୍ବରେ, ଖଟ ଉପରକୁ ଚଢ଼ିଯାଇ ଲେପଟାକୁ ମାଡ଼ ବସିଲେ, ସାଦ୍ଧୁଙ୍କ ଗଳା ଚିପିବା ଉଦ୍ଦେଶ୍ୟରେ ]

ଊର୍ମିଳା—( ସାନୁନୟେ ) ପ୍ରଭୁ ! ପ୍ରଭୁ !—ନରହନ୍ତା ହୁଅନ୍ତୁ ନାହିଁ । ନରଘାତୀ ପଶୁର ଆଚରଣ କରନ୍ତୁ ନାହିଁ । ସେ ମୋ'ର ପ୍ରାଣରବନ୍ଧୁ—ହୃଦୟର ସହଚର ବୋଲି, ଯେ ଏଭଳି ଅନୁରୋଧ କରୁଛି, ତା'ନୁହେଁ; ଅନୁରୋଧ କରୁଛି, ଆପଣଙ୍କୁ, ସାଧୁ, ବିବେକୀ, ତ୍ୟାଗୀ ମନୁଷ୍ୟକୁ !—ଥରେ ମନେ କରନ୍ତୁ ପ୍ରଭୁ, ନିଜର କେତେ ସୁଖ ସ୍ୱାଚ୍ଛନ୍ଦ୍ୟ—ସ୍ତ୍ରୀ ପୁତ୍ରର କେତେ ମନୋବ୍ୟଥା, ମନକଥା—ତୁଚ୍ଛ, ଅବହେଳା, କରିନାହାନ୍ତି ଆପଣ !—ନା, ନା, ସମସ୍ତ ତ୍ୟାଗ କରିଛନ୍ତି ଆପଣ ଆପଣଙ୍କର ଲକ୍ଷ୍ମନଙ୍କ ପାଦପଦ୍ମ ସାରକରି, ଦରିଦ୍ର ନାରାୟଣ ସେବା ମାତ୍ର ଜୀବନର ପଣକରି । କୁହନ୍ତୁ, ଏତେ ପୁଣ୍ୟ—ଏତେ ଧର୍ମ—ସମସ୍ତ କ'ଣ ବିସର୍ଜନ କରି ଦେବେ—ସାମାନ୍ୟ ନାରୀ ମୁହିଁ—ମୋ'ର ସାମାନ୍ୟ ସୁଖ ବାସନାକୁ ଲେଇ ହିଂସା କରି—ଗୋଟାଏ ନୀଚ ଅସୂୟାରେ କଦନ୍ୟ ପରଣି କାଢରିବାରେ ?—

ସ୍ୱାମ—( ତେଇଁ ଆସି, ଊର୍ମିଳା ପ୍ରତି ) ନାରୀ !—ତୁହି ନା ଧର୍ମପତ୍ନୀ ମୋ'ର ?—ତୋତେଇ ନା ଧର୍ମସାକ୍ଷୀ କରି, ସହଧର୍ମିଣୀ ବୋଲି, ଜୀବନର ସାଥି କରିଥିଲି ? ମୋ'ର ଔରସରେ, ତୋର ଗର୍ଭରେ ଜନ୍ମ ସିନା ସେହି କୁଳଙ୍ଗର ଅମ୍ବର !—

ଊର୍ମିଳା—କରୁଛି ମୁଁ ଅସ୍ୱୀକାର କରୁନାହିଁ—କରିବି ନାହିଁ ମଧ୍ୟ କାଳେ କାଳେ !—

ସ୍ୱାମ—ହାଃ—ହାଃ—ତେବେ ଲେ ସମ୍ଭୃତାମୀ ! ଏ'ଇ ଆଚରଣ ତୋ'ର ? ଏ'ଇ କୀର୍ତ୍ତି ତୋ'ର ?—କେଉଁ ଧର୍ମ—କେଉଁ ସତୀତ୍ୱ ଆଜ ଦେଖାଉଚୁ ଲୋକେ, କରି ପରପୁରୁଷ ସଙ୍ଗ ?—

ଊର୍ମିଳା—ପ୍ରଭୁ !—ସେ'ତ ନୁହେଁ ପରପୁରୁଷ ମୋ'ର ! —ସେ ଯେ ଅତି ଆପଣାର—ପ୍ରାଣର ପ୍ରାଣ ମୋ'ର । 'ଧର୍ମ', 'ସତୀତ୍ୱ', ବୋଲି, ଯେଉଁ ଲୌକିକ ଶଙ୍କାରେ କଲି, ନିନ୍ଦୁଚ୍, ଗଞ୍ଜୁଚ ମୋତେ । ମୁଁ ଯେ ତା'ର ସଂକୀର୍ଣ୍ଣ ଗଣ୍ଡିର ସମ୍ପୂର୍ଣ୍ଣ ବାହାରେ । ତେବେ ସତୀତ୍ୱର ମର୍ଯ୍ୟାଦା ଲାଗି—ଧର୍ମର ଔଦାର୍ଯ୍ୟ ଲାଗି, ସ୍ୱାମୀ ବୋଲି ନିତ୍ୟ ଏ'ପାଦ କରିବି ମୁଁ ପୂଜା—କିନ୍ତୁ ପ୍ରଣୟର ସାଥି—ପ୍ରାଣର ବନ୍ଧୁ, ରହିବ ଚିରଦିନ ସେହି ସାଦ୍ଧୁକାର ମୋ'ର !—

ସ୍ୱାମ—ହାଃ—ହାଃ—ନାରୀ ! କରେ ଯଦି ପ୍ରତାରଣା, ବିଟପୀ ସେ ସାଦ୍ଧୁକାର ଯା ଲାଗି କୁଳରୁ ତୁ ବାହାର—ଲୁଟିକରି ନାରୀତ୍ୱ ତୋହରି !—

ଊର୍ମିଳା—ତଥାପି ମୁଁ—ପ୍ରତାରିତ ହେବିନାହିଁ କେବେ, ସ୍ୱାମୀ ବୋଲି, ପ୍ରୀତିହୀନ ସ୍ନେହ ଆଗେ ତୁମ୍ଭର ?—ପୁତ୍ର ବୋଲି ତୁଚ୍ଛ ରକ୍ତ ସମ୍ବନ୍ଧେ ଲଦର ?—

ସ୍ୱାମ—ହାଃ—ହାଃ—ପ୍ରେୟସି, ମୁଁ ଯେଉଁ ଭଳି ଭ୍ରାନ୍ତ, ବୋଲୁଅଛ, ଅନ୍ଧକୂପେ ଅବଶ୍ୟ ବୋଲଣ—ଠିକ୍ ସେହିଭଳି ଭ୍ରାନ୍ତ, କି ନା ତତୋଧିକ, ଦେଖ, ତୁମ୍ଭେ ଆଜ—ମୁକ୍ତ ପ୍ରାଣେ—ମୁକ୍ତାକାଶେ, ଗୋ ବିହରି ?

[ ଲେପ ଉଠାଇ ଦେଲେ—ଦେଖାଗଲା କେହିନାହିଁ ]

ଊର୍ମିଳା—ପ୍ରତାରଣା—ପ୍ରତାରଣା—

( ମୂର୍ଚ୍ଛିତା ପ୍ରାୟ ହେଲେ )

ସ୍ୱାମ—ଏ' ଆତ୍ମପ୍ରତାରଣା ତୁମ୍ଭର ଊର୍ମି—ମନର ଭ୍ରମ ମନର ବିକାର—

ଊର୍ମିଳା—ଅସମ୍ଭବ—ଅସମ୍ଭବ—

[ ଉଦ୍‌ଭ୍ରାନ୍ତା ଭଳି ଗୃଲି ଯିବାକୁ ବାହାରିଲେ ]

ସ୍ୱାମ—ଛି, ଊର୍ମି—ଯାଅ କାହିଁ ?—

( ଧରିଲେ ଜୋର କରି )

ଊର୍ମିଳା—ନା, ନା, ଛାଡ଼ ଦିଅ—ଛାଡ଼ଦିଅ ମୋତେ, ପ୍ରଭୁ—ମୁଁ ଉଡ଼ିଯାଏଁ—ଛୁଟିଯାଏଁ — ମୋ'ର

'ନର' ପାଖକୁ—ମୋତେ ଅଟକାଅ ନାହିଁ—ମୋ'ଜୀବନକୁ ପଙ୍ଗୁକର ନାହିଁ—?

[ ଗୃହତ୍ୟାଗିବାକୁ କୋର କୁଲମ କଲେ]

ରାମ—ଊର୍ମି ! ଊମ ! ସ୍ଥିର ହୁଅ—ସଂଯତ ହୁଅ—ଏ'କ ନୁହେଁ ଉଚ୍ଛୃଙ୍ଖଳତା ତୁମର !—ଠିକ୍ ଯେଉଁଭଳି ମର୍ମେ ମର୍ମେ ଅନୁଭବ କରୁଛ ଆଜ, ପ୍ରତିଘାତ-ରୂପେ—ପ୍ରତିଫଳ ରୂପେ, ଅତି ଶୃଙ୍ଖଳତାର ମୋ'ର,—ଏହ ଉଦ୍ଦାମ ପାଶବିକତାର ପ୍ରଦର୍ଶନେ ଏହାକ୍ଷଣି ମୁହିଁ ?

[ ଖଟ ଉପରେ ଊର୍ମିକୁ ଶୁଆଇ ଦେଲେ ]

[ ନିରୀକ୍ଷଣ ପୂର୍ବକ ]—କି ସୁନ୍ଦର !—କି ସୁନ୍ଦର !—ଏ ସୁନ୍ଦର ଅପରୂପ ରୂପ ତ କେବେହେଲେ ନୟନ ଗୋଚର ହୋଇ ନାହିଁ ମୋ'ର ? ଊର୍ମି ! ଊର୍ମି ! ତୁମେ ଆଜ ଏ' ଅପରୂପ ରୂପ-ସୌନ୍ଦର୍ଯ୍ୟର ଗନ୍ତାଘର ଖୋଲି ଦେଇଛ, ନା, ମୋର ଆଖିରେ ପରଳ ପଡ଼ିଥିଲା ଏତେ ଦିନ ଯାଏ, କଟି ଗଲା ଆଜ !—ଊର୍ମି ! ଊର୍ମି ! [ ଚୁମ୍ବନ କରିବାକୁ ଯାଇ ] ଏଁ, ଏଁ—ଏ' କଣ ?—ସହସା ରାହୁ ଗ୍ରାସରେ ଯେତେକ ମ୍ଳାନ ହୋଇ ଗଲା, କାହିଁକି ପୂର୍ଣ୍ଣ ଶଶୀ ମୋର ? ଊର୍ମି ! ଊର୍ମି ଏଁ, ଏଁ—ସତେ ସତେ କଣ ମୁଁ ହତ୍ୟା କଲି ନା କ'ଣ—ପ୍ରେୟସୀକୁ ମୋ'ର ?—କାହିଁରେ ? କାହିଁରେ ? [କୌଣସି ଅସ୍ତ୍ର ହାତରେ ନ ଦେଖି ] ତେବେ ଟାଣି, ଭିଡ଼ି ରଖିବାକୁ କି ଏହ ଦଶା ସୁନ୍ଦରୀର ? ଛାଡ଼ି ଅଲଗା କରି ଦେଇ ଥିଲେକି, ବଞ୍ଚାଇଥାନ୍ତି ପ୍ରାଣ ପ୍ରତିମାକୁ ମୋ'ର ? ଏଁ, ଏଁ କିଏ ? କିଏ ? କ'ଣ କହୁଛ ?—ବରଂ ପୂର୍ଣ୍ଣ ସୌନ୍ଦର୍ଯ୍ୟ ତା'ର ବିକାଶିବାକୁ ଦେଇଥାନ୍ତି ଅବକାଶ, ଦିନୁ ଦିନୁ କଳାରେ, କଳାରେ,—ଅତରେ ଅତରଣେ ସେହ ?—ଊର୍ମି !—ଊର୍ମି !—ସୁନ୍ଦର ! ସୁନ୍ଦର !

[ ଏହ ସମୟରେ ପୁଷ୍ପାଶ୍ରୀ ଶେବ୍ୟାଙ୍କୁ ପ୍ରବେଶ କଲେ ]

ପୁଷ୍ପାଶ୍ରୀ—ଖୋଜ ଖୋଜ ପତ୍ତମିଳୁନାହିଁ, ରାମଦାସ—ଆମର ଲଛମନଜ୍ଜ ଠାକୁର କେଉଁ ଆଡ଼େ ଅଦୃଶ୍ୟ ହୋଇଚନ୍ତି ।

ରାମ—ଅଦୃଶ୍ୟ' ! ହାଃ—ହାଃ—ଭାଗ୍ୟ କପାଳ ଙ୍କୋର ତା'ର ପୁଷ୍ପାର—ମାନେ ମାନେ ଖସିପଳାଇଛ—ନାହିଁତ ଉଣ୍ଡିଆ ଦେଇ—

ପୁଷ୍ପାଶ୍ରୀ—ରାମଦାସ ! ତୁମେ ଭକ୍ତ ହୋଇ ଏ' କଣ କହୁଚ ଆଜ ?

ରାମ—ଭକ୍ତିର ପରିଣାମଟା ଥରେ ଦେଖୁନାହିଁ ? କହିଲ, ପୁଷ୍ପାର—ଜୀବନ୍ତ 'ସୁନ୍ଦର'କୁ ଉପେକ୍ଷା କରି, ଅସୁନ୍ଦର କାଠପଥରକୁ ଭକ୍ତି, ପୂଜାକରିବାର ଏ' ଠିକ୍ ଫଳକି ନୁହେଁ ?

ପୁଷ୍ପାଶ୍ରୀ—ଏଁ, ଏ'କଣ ? ମା ଆଉ ନାହାନ୍ତି ଇହଧାମରେ ?

ରାମ—ରଖିବାକୁ ଦେଲି ମୁଁ କେଉଁଠି ?—

ପୁଷ୍ପାଶ୍ରୀ—ହତ୍ୟା !—

ରାମ—ଚୁପ୍—ଚୁପ୍—ସେ ସେ ହତ୍ୟା ନୁହେଁ, ପୁଷ୍ପାର—ତିଳେତିଳେ ପଳେ ପଳେ ମୁଁ ହତ୍ୟା କରିଛୁ—ଊର୍ମିଳାକୁ ମୋ'ର; ଯେଉଁ କାଳୁଁ, ତୁମେ—ପୁଷ୍ପାଶ୍ରୀ କଣ ବଢ଼ର ବଢ଼ର କରି ପଢ଼ି ପୋଥି ଗୁଡ଼ାଏ—କୁଣ୍ଡେକୁଣ୍ଡେ ଘିଅ ଢାଳ ଜୁଆଁ ଗଦାରେ ଏହ ଲଛମନଜ୍ଜ ସାମନାରେ—ମୋ' ହାତେ, ତା' ହାତ ଆଣି, ଥୋଇ ମିଶାଇ ଖୁବ୍ କସିକରି ଗଣ୍ଠାଇ ଦେଇଥିଲ, ଗଣ୍ଠି ପରେ ଗଣ୍ଠି ଦେଇ,—ହାଃ—ହାଃ—ସଂକଳ୍ପ କରାଇ ନେଇ, ଚନ୍ଦ୍ରାର୍କ ଥିବାଯାଏ, ମୁଁ ହେବି କାୟା, ଆଉ ସେ ହେବ ମୋ'ର ଛାୟା !

ପୁଷ୍ପାଶ୍ରୀ—ରାମଦାସ !—ବିଧିର ବିଧାନ ବିଚିତ୍ର !—ବୃଥା ଶୋକର ପ୍ରୟୋଜନ କ'ଣ ?—ହାୟ ! ମୋ'ର ସତୀ ସାଧ୍ୱୀ ମା ଲକ୍ଷ୍ମୀଙ୍କର ଯେ ଏ'ଭଳି ମର୍ତ୍ତ୍ୟଭ୍ରମ ଘଟିବ ଦିନେ ସ୍ୱପ୍ନରେ କିଏ ଭାବିଥିଲା, ଭାଇ ?

ରାମ—ହାଃ-ହାଃ-'ସ୍ୱପ୍ନରେ କିଏ ଭାବିଥିଲା' ଭାଇ !—'କିଏ ବୋଲି ଅପଣାର, ମତକୁ ଜାହର

କରନାହିଁ କି, ତୁମେ ପୁନ୍ନାଗ ? 'ସ୍ୱପ୍ନ' ସେହି ଜାଗରଣରେ ମଧ୍ୟ ଦେଖି ନାହିଁକି, ତୁମେ ଭାଇ ?—ତା' ନହୋଇଥିଲେ, ସପ୍ତସତୀର ଆଦର୍ଶ ଗଢ଼ି, ନାରୀର ନାରୀତ୍ୱ ଖର୍ବ କରନ୍ତା କିଏ ଆଉ, ଭାଇ ?—ନିରର୍ଥକ ଶବ୍ଦାଡ଼ମ୍ବର-ପୂର୍ଣ୍ଣ ମନ୍ତ୍ର, ଯନ୍ତ୍ର ବଳେ ବଳପୂର୍ବକ ଆଦର୍ଶ ଦମ୍ପତି ଗଢ଼ି ଅବାଧ ଅନନ୍ତ ଗତିପଥ ମାନବ ଜାତିର, ରୋଧ କରନ୍ତା କିଏ ଆଉ ଭାଇ ?—ଭାଇ, ଭାଇ—ପୁନ୍ନାଗ ପୁନ୍ନାଗ—ମୁଁ ସ୍ୱାମୀ ହୋଇ ଶୋକ କରିବି ନାହିଁତ—ଶୋକ କରିବ ଏ' ଦୁନିଆରେ କିଏ ଆଉ ?—ଏ' ତୁମର ମା'ର 'ମତିଭ୍ରମ'—ନା, ମୋ'ର ଅମାନୁଷୀ ଅତ୍ୟାଚାରର, ନିର୍ଯାତନର ସତ୍ୟ ସ୍ୱରୂପ ଏ ?—

ପୁନ୍ନାଗ—ଏ' ତୁମର କଳ୍ପନାର ଛାୟାଚିତ୍ର ମାତ୍ର । ସବୁ ତାଙ୍କର ଇଚ୍ଛା, ରାମଦାସ—ତାଙ୍କର ଇଚ୍ଛା—

ରାମ—ବେଶ୍, ଆଜଠୁଁ ମୋର ଇଚ୍ଛା ହେଉ, ପୁନ୍ନାଗ ! ମନ୍ଦିର ଭିତରେ କାଠ ପଥର ଦେବତାର ଆଉ ସ୍ଥାନ ନରହୁ—ସେହି ଅଗମ୍ୟ-ଅବୋଧ-ସ୍ତୁତି ସ୍ତବପାଠ ବନ୍ଦହେଉ—ସେହି ଝୁଣା ଗନ୍ଧକର ତୀବ୍ର କଟୁଗନ୍ଧ ଦୂରହେଉ—ଆଉ, ଘଣ୍ଟା ଘଣ୍ଟିର କର୍କଶ, କର୍ଣ୍ଣ-ବଧିର ଧ୍ୱନି ସ୍ତବ୍ଧ ହେଉ । ମୁଁ ଶୁଣେଁ, ପରିବର୍ତ୍ତେ ତହିଁ, ଅଜୁଁ କର୍ଣ୍ଣାମୃତ ଦାୟୀ ସୁମଧୁର ଝଙ୍କାର, ବୀଣା ବେଣୁର !—ମନମୁଗ୍ଧ ସୌରଭ, ଗୋଲପ କେତକୀର,—ଆଉ, ଅବାଧ ହସ, ଖେଳ, ଥଟ୍ଟା, ତାମାସା, ଖୋଲା ଖୋଲି ଭାବେ ଆଳାପ ପରିଚୟ, ପରସ୍ପର ମଧ୍ୟରେ !—ନା, ନା, ଆହୁରି ଆହୁରି ସେହି ଦେବତାଙ୍କର ଅଖଣ୍ଡ ପ୍ରତାପ, କଠୋର ଶାସନ ପରିବର୍ତ୍ତେ, ମାନବଜାତୀର ସଖ୍ୟ, ସାମ୍ୟଭାବ । ଭକ୍ତିପୂତ ପୂଜା ପରିବର୍ତ୍ତେ, ପ୍ରୀତି ପୂର୍ଣ୍ଣ ଭ୍ରାତୃ-ଭଗିନୀ ଭାବ !

ପୁନ୍ନାଗ—ରାମଦାସ । ସେହି ଇଚ୍ଛାର ମୂଳରେ ମଧ୍ୟ, ତୁମ୍ଭର ଲଛମନ୍‌ଜି ସିନା !—

ରାମ—( ବିରକ୍ତଭାବେ ) ଲଛମନ୍‌ଜି ! ଲଛମନ୍‌ଜି !—ତୁମର ସେହି ଲଛମନ୍‌ଜୀଙ୍କୁ ତ ସମର୍ପି ଦେଇ ଆପଣାକୁ, ଏହି ଦୁର୍ଦ୍ଦଶା ମୋ'ର ! ଛିଣ୍ଡା କନା ଖଣ୍ଡେ, ପିନ୍ଧିବାର ନାହିଁ—ଓଳିଏ ମୁଠେ ପେଟ ପୂରାଇ ଖାଇବାର ନାହିଁ—ପିଲାଟା ଗଛ ମୂଳେ ପଡ଼ି, ଶୀତରେ ଥୁରୁ ଥୁରୁ ହେଉଚି, ଖଣ୍ଡେ ଘୋଡ଼ି ହେବାର ନାହିଁ—ଆଉ ଆଉ, ଗୋଟିଏ ପୂର୍ଣ୍ଣ ଯୁବତୀ, ସୁନ୍ଦରୀ, ଅପ୍‌ସରୀ—ତା' ପ୍ରତି, କରିଛି କଣ ? ଅଳି ସଙ୍ଗେ କେଳି ମତ୍ତ ଥିଲା-ବେଳେ, ତେମନ୍ତ ଫୁଟନ୍ତା ଫୁଲଟି, ଛିଣ୍ଡାଇ ଅଣି ଦଳି, ମଳି ଫିଙ୍ଗି ଦେଇ ନାହିଁକି, ଅନାସ୍ଥାରେ ଏହିଠାରେ ? ନିରାଶାରେ, ଏହି ବାସର ଶଯ୍ୟାରେ ତା'ର ? ହାଃ—ହାଃ—

ପୁନ୍ନାଗ—ଛି, ରାମଦାସ—ଦୃଢ଼ଭକ୍ତିରେ ସେହି ଲଛମନ୍‌ଜୀଙ୍କୁ ଭଜନାକର—ସେହି ଏକା—

ରାମ—ହଁ, ହଁ, ପୁନ୍ନାଗ—ଏଉଁ ଲଛମନ୍‌ଜୀଙ୍କୁ ଦୃଢ଼-ଭକ୍ତିରେ ଭଜନ କରି ସାଧୁ ସେବା ପାଇଁ, ସ୍ତ୍ରୀ ପରିବାର ଧନ ସମ୍ପତ୍ତି, ସୁଖ ସ୍ୱାଚ୍ଛନ୍ଦ୍ୟ, ସମସ୍ତ ତୁଚ୍ଛକରି, ଋଣ ଜାଲରେ ଜଡ଼ି ହୋଇ ଶେଷେ, ସାହୁମାନଙ୍କ ଜୁଲମ୍‌ରେ, ଋଣଶୋଧ-କାରଣ, ଗୃହ ଦାନ ଅବସର ନେଲି—ସେହି ଲଛମନ୍‌ଜି, ସେହି ଏକାନ୍ତ ଆତ୍ମଦାନର, କି ପ୍ରତିଦାନ ଦେଲେ, ଜାଣ, ଭାଇ,—କିଭଳି 'ମତିଗତି' ?—ଏହି ଚତୁର୍ଦ୍ଦିକ ରାତି ଅଧରେ ?—ହାଃ—ହାଃ—

"କାବୁଲି କରିବି ବୋଇଲି ।
ସାଧୁମାନଙ୍କ ଭଣ୍ଡବଳି ॥
ନଦେଲେ ତାହାଙ୍କର ବିତ୍ତ ।
ରଖିବେନାହିଁ ମୋ' ମହତ୍ତ୍ୱ ॥
ଏଥି ଉତ୍ତାରୁ ତୀର୍ଥ ବାସୀ ।
ଯଦ୍ୟପି ମୋର ଦ୍ୱାରେ ଆସି ॥
ରହିଣ ମାଗିବେ ଭୋଜନ ।
ମୋତେତ ନ ମିଳିବ ଧନ ॥
ନିରାଶ ହୋଇଣ ସମସ୍ତେ ।
ଲେଉଟି ଯିବେ ଯେଝା ମତେ ॥
ତାହାଦେଖିଣ ମୋ'ଜୀବନ ।
ଥିବାର କିସ ପ୍ରୟୋଜନ ॥

ନଦେଖୁଁ ଏସନ ଚରିତ ।
ଜୀବନ ଯିବାହିଁ ଉଚିତ ॥
ଏସନ ବୋଲି ଚଳି ଗଲି ।
ନାଗ ଗରଳ ଅଣାଇଲି ॥
ଯତନ କରି ତାହା ରଖି ।
ଆସିଲି ପରୀକ୍ଷ ଯେ ଡାକି ॥"

... ... ...

ତା'ପର, ତାପର ଯା' ଦେଖିଲି, ଏ' ବେନି ନୟନେ, ଏହି କଳା ଜବାନ୍ଟ ଫାଙ୍କ ବାଟେ—ଓଃ, ମନେ ହେଲା ସେତେବେଳେ, ଆକାଶଟା ମୋ' ଉପରେ ଅକାଣ୍ଡ ହୋଇ ପଡୁନାହିଁ କାହିଁକି ?—ପୃଥିବୀଟା ଫାଟି ଚଉଫାଳ ହୋଇ ଯାଉନାହିଁ କାହିଁକି ?—ମୁଁ ନ ମରି, ଜିଇ, ଠିଆ ହୋଇଛି କପରି ?—ଓଃ, ମୁଁ କା ବେକୁବ୍, ଗରଳ ତାଟିଆ ନପିଇ ଥୋଇ ଦେଇ ଧାଇଁ ଆସିଲି କେଉଁ ଆଶାରେ ?—କିନ୍ତୁ, କିନ୍ତୁ, ମୁଁ ବର୍ତ୍ତମାନ ନିଜକୁ ଧନ୍ୟ ମଣୁଛି, ଯେ ମୁଁ ଗରଳ ପିଇନାହିଁ, ମରିନାହିଁ ।—ମୁଁ ମରିଥିଲେ ଆଜ, ତୁମର ଏହି ଅନ୍ଧ ବିଶ୍ୱାସ ଜିଇଁ, ରହିଥାନ୍ତା ସିନା ।—ତୁମର କାଠପଥରର ଦେବତା ଅମର ହୋଇ ଚିରକାଳ ପୂଜା ପାଉଥା'ନ୍ତା ସିନା । ସମଗ୍ର ମାନବ ଜାତି ଦିନେ ଶୁଖି, ସିମିଟି, ଝଡ଼ି, କେଉଁଆଡ଼େ ଉଡ଼ିଯାନ୍ତା ସିନା ଏ' ଭୂପୃଷ୍ଠରୁ ।

ପୂଜାରୀ—ରାମଦାସ !—ତୁମେ ଯେ ଗୋଟାଏ ଆବେଗରେ, ସ୍ୱାର୍ଥ ଦୃଷ୍ଟିରେ, ଅନ୍ଧହୋଇ ସୁଅରେ ଭାସି ଯାଉନାହଁ, ଅସ୍ୱୀକାର କିଏ ?—ହୋଇ ପାରେ, ମୁଁ ଅନ୍ଧ-ବିଶ୍ୱାସୀ—କାଠ ପଥରର ଉପାସକ; କିନ୍ତୁ ତୁମେ ଯେ ଏହି ଉପାସନା, ଅନ୍ଧ-ବିଶ୍ୱାସ ଧ୍ୱଂସ କରିବାକୁ ଯାଇ, ତହୁଁ ହୀନ-ବିଶ୍ୱାସ ଓ ଉପାସନା ରେ ଯେ ଆବଦ୍ଧ ନ ହେଉଛ, ବା ନ ହେବ, କିଏ କହିବ ?—ସମସ୍ତ ସମସ୍ୟା ସାପେକ୍ଷ !—ନିରପେକ୍ଷ ଭାବେ ଧୈର୍ଯ୍ୟର ସହିତ ସୂକ୍ଷ୍ମ ଦୃଷ୍ଟିରେ ବିଚାର୍ଯ୍ୟ !—ସୁତରାଂ, ଲକ୍ଷ୍ମଣଜୀଙ୍କୁ ଏକାବେଳକେ ଅନାସ୍ଥା କରିବାଟା—

ରାମ—'ଅନାସ୍ଥା' !—ହାଃ—ହାଃ—ଅଦ୍ଭୁତ ଆସ୍ଥା ରଖିବାକୁ କହୁଛ, ପୂଜାରି !—

ପୂଜାରୀ—ଭାବିଦେଖ ଥରେ, ଭାଇ—ଏ' ଭଳି 'ଅନାସ୍ଥା' ଭାବ ପୋଷଣରେ, ସମଗ୍ର ମାନବଜାତି ପ୍ରତି, ସମସ୍ତ ସୃଷ୍ଟି ପ୍ରତି, ଅବଶେଷେ ଆତ୍ମ ପ୍ରତି ଦିନେ 'ଅନାସ୍ଥା' ତୁମର ଘଟିବ କି ନାହିଁ ?

ରାମ—( ହଠାତ୍ କିଛି ଉତ୍ତର ଦେଇ ପାରିଲେ ନାହିଁ )

ପୂଜାରୀ—ମୁଁ ଯାଏଁ, ଶବ ସତ୍କାରର ବ୍ୟବସ୍ଥା କରେଁ— ( ଚାଲିଗଲେ )

ରାମ—ହାଃ—ହାଃ—ପୂଜାରି—ପୂଜାରି—ଏହିତ ଆତ୍ମ ପ୍ରତି ଆସ୍ଥା, ସମସ୍ତ ସୃଷ୍ଟି ପ୍ରତି ଆସ୍ଥା, ସମସ୍ତ ମାନବ ଜାତି ପ୍ରତି ଆସ୍ଥା ଘଟାଇବାର ଏକମାତ୍ର ଉପାୟ ।—ସେହିପରି ନିର୍ଭରତାରେ, କାଠପଥର ପ୍ରତି ଆସ୍ଥାରେ, ଏତେଦିନ ଆତ୍ମଶକ୍ତିକୁ ପାଶୋରି ଯାଇ ନାହିଁକି ?—ବିସର୍ଜନ ଦେଇ ନାହିଁକି ? ଦୃଢ଼ ସଂକଳ୍ପ ଏଥର—ତୁମରି ଇନ୍ଦ୍ରଜାଲରେ ଭୌତିକ କ୍ରିୟାକାଣ୍ଡରେ, ଆଉ ମୁଁ ଭୁଲୁନାହିଁ—ଆପଣାକୁ ହଜାଇ ଦେଉନାହିଁ, ସତୀର ଭକ୍ତ ମୁହିଁ ରାମଦାସ ।

[ ଲବ ସବେଗେ ସେହି ବିଷ ତାଟିଆ ଘେନି ପ୍ରବେଶ କଲା ]

ଲବ—ବାବା ! ବାବା ! ମା !—ମା !—

ରାମ—(ଉଚ୍ଛ୍ୱଳଭାବେ) ସେ ତାଟିଆ ଆଗେ ଫୋପାଡ଼ି ଦେ' ବାବା ! ସେଥିରେ ଯେ—ବିଷ—ବିଷ—

ଲବ—( ହସି ହସି ) ନା, ବାବା—ବିଷଯ୍ୟା—ବିଷଯ୍ୟା । ଆମରି ସମସ୍ତ ବିଷୟ ଆଜି ଫେରି ପାଇଛୁ, ବାବା — ଏହି ଦେଖ—ଦେଖ—

ରାମ—ଏଁ, ଏଁ—ଏ'ଯେ 'ଗୋଜା' ଗୁଡ଼ାକ ।

ଲବ—ବାବା ! ସେହି ଧନପତି ସାହୁ ଏଡ଼େ ଦୟାଳୁ ନା ?—ତୁନିକରି କେତେବେଳେ ଆସି, ମୋତେ ଉଠାଇ, ଏହିଭଳି ତାଟିଆଟି ମୋ' ହାତରେ ଦେଇ, ଆଉ ମୋ'ର ସେହି ହାର, ବାଲି, ଆପଣା ହାତରେ ପିନ୍ଧାଇ ଦେଇ, ଛଳ ଛଳ ଆଖିରେ ମୋର ଦୁଇ ଗାଲରେ ଦୁଇଟି ଚୁମା ଖାଇ

କେଉଁଠି ଯେ ଉଭେଇ ଗଲେ, ତାଙ୍କୁ ତାଙ୍କୁ ପରି ପତ୍ତିମିଳିଲା ନାହିଁ । ବାବା ! ସେ ନିଶ୍ଚେ ଲଛମନଜୀଙ୍କ ଦୂତ, ବାବା !—

ରାମ—(କେଉଁ ପୂର୍ବ ସଂସ୍କାରରେ ହେଉ ବା ଅନ୍ତରାତ୍ମାର ନିର୍ଦ୍ଦେଶରେ ହେଉ) ନା, ନା, ସିଏ ଲଛମନଜୀ !—ମୋ'ର ପ୍ରଭୁ ଲଛମନଜୀ !—

ଲବ—( ଅତି ସାଗ୍ରହେ ) ମା—ମା (ଧାଇଁ ଯାଉଥିଲା)

ରାମ—( ଅଟକାଇ )—ହାଃ—ହାଃ—କିଏ କହୁଛି—ଲଛମନ୍‌ଜୀ ! ପ୍ରଭୁ ଲଛମନ୍‌ଜୀ ! ପୁରା ଦଗାଲ୍‌ବାଜ୍—ଫାଙ୍କିବାଜ୍ ! ହାଃ—ହାଃ—

ଲବ—ବାବା—ବାବା—ଏ' କଣ କହୁଚ, ବାବା ! ସେ'ପରି ନିନ୍ଦା କର ନାହିଁ । କଣ ସେ କହିଚନ୍ତି ଆମର—କଣ ସେ ଫେରାଇ ନ ଦେଇଚନ୍ତି ଆମକୁ ?—

ରାମ—ହାଃ—ହାଃ—କ'ଣ ବା ନ ଦେଇଚୁ ତାଙ୍କୁ ?—
( ଅନାଇଲେ ସେହି ଶଯ୍ୟାଆଡ଼େ, ଅଙ୍ଗୁଳି ନିର୍ଦ୍ଦେଶ କରି )

ଲବ—( କ୍ଷଣକାଳ ରହି )—କ'ଣ, କ'ଣ, ସେ କରିଚନ୍ତି ମା'ର ? ନା, ବାବା—ଆହୁରି ସେ କହିଲେ, ମୁଁ ତ ତାଙ୍କର ପୁଅ—ମୋର ସକାଶେ ଯେତିକି ଚିନ୍ତା ତାଙ୍କର—ସେହି ପୁଅଟା ତାଙ୍କର କେହି ନୁହେଁ—ଛାୟାବାଜୀ—ଛାୟାରେ ଆସି, ଛାୟାରେ ମିଳାଇ ଯାଇଚି ।

ରାମ—ସବୁ, ସବୁ ତା'ର ଛାୟାବାଜି, ବାବା ! ସେ ଯାଦୁକର ! ତୋତେ ବି ମୋ' ବୁକୁରୁ······ ନା, ନା, ଛାଡ଼ିବି ନାହିଁ—ମୁଁ ଛାଡ଼ି ପାରିବି ନାହିଁ—!

( ଆପଣା ବୁକୁରେ ଜାପୁଡ଼ି ଧରିଲେ )

—ଯବନିକା—

# ଚତୁର୍ଥ ଅଙ୍କ

**ଦୃଶ୍ୟ**—ସେହି ଲଛମନ୍‌ଜୀଙ୍କ ମନ୍ଦିର ।

[ ସଂସ୍କାରିତ ହେବାରୁ ପୂର୍ବାପେକ୍ଷା ଝଲମଲ୍ କରୁଚି । ଖୁବ୍ ଦାମିକା ପଟ୍ଟ ବସନ ଓ ରତ୍ନଭୂଷଣ-ଭୂଷିତ ଲବ ଓ ପୁଷ୍ପାଶ୍ରୀ ମନ୍ଦିର ସମ୍ମୁଖରେ ଠିଆ ହୋଇ କଥାବାର୍ତ୍ତା କରୁଥିଲେ—]

ଲବ—ପୁଷ୍ପାବଦନନା ! ଏ'ତ ଭାରି ଆଚମ୍ବିତ କଥା । ସାଧୁମାନଙ୍କ କଥା ମୁଁ ଜମା ବିଶ୍ୱାସ କରି ପାରୁନାହିଁ ! ମୁଁ ଠିକ୍ ଜାଣେ—ବାବା, ସେମାନଙ୍କ ଘରକୁ ମୋଟେ ଯାଇ ନାହାନ୍ତି—କହିଲ ତୁମେ, ନନା—ଏତେ ଧନ ବା ହଠାତ୍ ବାବା କାହୁଁ ପାଇଲେ ଯେ—

ପୁଷ୍ପାଶ୍ରୀ—ତୁମେ କ'ଣ ବାବାଙ୍କ ଭଳି ଅବିଶ୍ୱାସୀ ହେଲ ବାପ ? ବାବା—ବାବା—

( ଭାବ ଗଦ୍‌ଗଦ ସ୍ୱରେ )

"ଯେ ପ୍ରଭୁ ସର୍ବଦା ଅଚିନ୍ତା ।
ଲାଗିଲା ଭକ୍ତ ଜନ ଚିନ୍ତା ॥
ଅତ୍ୟନ୍ତ ଷ୍ଥିରା ହେଲା ମନ ।
ବିଜୟ ପ୍ରଭୁ ଲଛମନ ॥
ସେ ରାମଦାସଙ୍କ ସ୍ୱରୂପ ।
ମାୟାରେ ହେଲେ ସେହିରୂପ ॥
ସଙ୍ଗତେ ଘେନି ଦାସଜନ ।
ବୁହାଇ ସାଧୁଙ୍କର ଧନ ॥
ଛାମୁରେ ଦଣ୍ଡୁଡ଼ି ଲଗାଇ ।
ବିଜୟ କଲେ ଭାବଗ୍ରାହୀ ॥
ସାଧୁଙ୍କ ଦ୍ୱାରେ ବିଜେ କରି ।
ଡାକିଲେ ଧନି ନାମ ଧରି ॥
ବନ୍ଧନ ହୋଇ ଉଠି ଆସ ।
ଆମ୍ଭେ ଆସିଛୁ ରାମଦାସ ॥
ଦାଇବେ କଣ୍ଠ ଆଜଦନ ।
ନିଅ ତୋ' ଋଣ ନେବା ଧନ ॥

ଶୁଣି ସାଧୁତ ବେଗେ ଉଠି ।
ଦ୍ୱାରେ ପ୍ରଭୁଙ୍କୁ ଯାଇଁ ଭେଟି ॥
ସୁର ଯୋଗିନ୍ଦ୍ର ମୁନି ମାନେ ।
ଯାହା ଚିନ୍ତନ୍ତି ଦିବ୍ୟ ଜ୍ଞାନେ ॥
ଭକ୍ତଙ୍କୁ ଋଣୀ ଦେବାଫଳେ ।
ତାଙ୍କୁ ଦେଖିଲେ ଚର୍ମ ଡୋଳେ ॥
ଯା'ମାୟା ଦେବେ ଅଗୋଚର ।
କାହୁଁ ଚିହ୍ନିବ ନର ଛାର ॥"

ଲବ—କ'ଣ କହୁଚନ୍ତି, ଗୋସେଇଁ ?

ପୂଜାରୀ—ଶୁଣ୍, ଶୁଣ୍—ଯା' ମୁଁ ଶୁଣୁଚି; ଦେଖୁଚି ପ୍ରତ୍ୟକ୍ଷରେ—

"ନିଜ ଖାତକ ପ୍ରାୟ ମଣି ।
କହିଲେ ଶୁଣ ମୋର ବାଣୀ ॥
ଏତେ ନିଶାରେ କାହିଁପାଇଁ ।
ଆଇଲ କହ ହେ ଗୋସାଇଁ ॥
ତା' ଶୁଣି ଜଗତ ଜୀବନ ।
ବୋଇଲେ; ଶୁଣ ମୋ' ବଚନ ॥
ପଦାର୍ଥ ନଥିବାରୁ ମୋତେ ।
କହୁ ଯେ ଥିଲ ନାନା ମତେ ॥
ଆଜ ପ୍ରବେଶ ହେଲି ବଡ଼ି ।
ରଖିବା ନୁହଇ ଉଚିତ ।
ଲେଖିଦେବା ଯେ ଧନ ତୋର ।
ମିଶାଇ ମୂଳ କଳନ୍ତର ॥
ସୁନାଅ ଗଣି ନେଇ ଯାଅ ।
ଆମ୍ଭର ଗୋଜା ଗୋଟି ଦିଅ ॥
ଏମନ୍ତ ବୋଲି ଧନ ଦେଲେ ।
ତାଠାରୁ ଗୋଜା ନେଇ ଗଲେ ॥"

ଲବ—ତେତିକି ନୁହେଁ, ନନା—ଆହୁରି କୁଆଡ଼େ—

ପୂଜାରୀ—( ହସି ହସି ) ହଁ, ହଁ, ବାବା—ଭାବଗ୍ରାହୀ ମୋ'ର କହିଲେ ଆହୁରି, ଶୁଣ, ଶୁଣ କହି, 'ସାଧୁତ'ଙ୍କୁ ହକାରି—

"ଏବେ ମୁଁ କହୁଅଛି ତୋତେ ।
ବାଂଧୁ ତୁ ସାଥିଙ୍କ ନିମନ୍ତେ ॥
ଯେତେ ଲିଟିବ ଦେଉଥିଲୁ ।
ସେ ଧନ ଆମ୍ଭେ ଶୁଝିଦେବୁ ॥
ଆମ୍ଭେ ଖାତକ ତୁମ୍ଭେ ସାହୁ ।
ଏଥିକି କପଟ ଭରୁଥାଉ ॥
ଏମନ୍ତ ଆଜ୍ଞା ତାଙ୍କୁ ଦେଲେ ।
ସେଠାରୁ ବିଜେ କରିଗଲେ ॥
ଏହି ପ୍ରକାରେ ଯେତେ ସାହୁ ।
ସବୁଙ୍କ ଦ୍ୱାରେ ମହାବାହୁ ॥
ସୁନାଅ ମାନ ଗଣିଦେଲେ ।
ସମସ୍ତ ଗୋଜା ନେଇଗଲେ ॥"

ଲବ—ତହୁଁ—ତହୁଁ—

ପୂଜାରୀ—"ଚଳିଣ ଗଲେ ସେ ସତ୍ୱରେ ।
ମନ ଅଛଇ ଭକ୍ତ ଠାରେ ॥
ପ୍ରବେଶ, କୁଟୀରେ ଗୋପନେ ।
ବିଜୟ କଲେ ସିମ ସ୍ଥାନେ ॥
ବିଷ ଡାଟିଅ କରେ ଧରି ।
ଫିଙ୍ଗିଣ ଦେଲେ ଦୂର କରି ॥
ସେହି ଡାଟିଅ ପରେ ଗୋଜା ।
ରଖି ଦେବାଧିଦେବ ରାଜା ॥"

ଲବ—ତା'ପର କଣ, ମୋତେ ନିଦରୁ ଉଠାଇ, ମୋ' ହାତରେ ଦେଲେ ସେହି ଡାଟିଆଟି, ଧନପତି ସାହୁଙ୍କ ବେଶରେ ?

ପୂଜାରୀ—ସେହି ଧନପତି ସାହୁଙ୍କ ବେଶରେ, ଯେ ଦୟାମୟ ଭାବଗ୍ରାହୀ, ଏତେଦିନ, ଏଠି ରହି, ଏତେ ଲୀଳା ଖେଳିଗଲେ ଆମସଙ୍ଗେ, ଆମେ ମୂଢ଼ କ ତାହା ବୁଝିପାରିଲୁ ଲବେହେଲେ ? ହଁ, ଯେ ବୁଝିବାର ସେ ବୁଝିଚନ୍ତି—ଯେ' ପାଇବାର, ସେ ପାଇଚନ୍ତି । ସତୀ ଏକା ଚିହ୍ନିପାରେ ସିନା ସତ୍ୟର ସ୍ୱରୂପ—ସତୀ ଏକା ଧରିପାରେ ସିନା ସତ୍ୟର ସ୍ୱରୂପ—ଗାଢ଼ କୁସ୍ତିତତା ମଧ୍ୟେ—ଶତ ଆବରଣ ସତ୍ତ୍ୱେ ।

ଲବ—ଏହିଯେ—ବାବା 'ସାଧୁତ' ମାନଙ୍କ ସଙ୍ଗେ କ'ଣ ଗପ କରି କରୁଚା ଅସୁଚନ୍ତି—ଚୁହିଁ ଦେଖିଲ, ନନା—ବାବାଙ୍କ ମୁହଁରେ ଆଜ ହସ କେମିତିକା ଉଛୁଳି ପଡୁଚି ।

ପୂଜାରୀ—ସବୁଦିନ କ'ଣ ଉଆଁସ ଥାଏରେ, ବାପ ?- ଲଛମନ୍‌ଜିଙ୍କ ବୁଦ୍ଧି ନ ପାଇ ସିନା ଅଳ୍ପ ବୁଦ୍ଧିରେ ଅମର, ଗୋଲକଧନ୍ଦା ମଣି ଧନ୍ଦି ହେଉଥାଉ ଏ' ବୁଝୁଅରେ ? କହିଲୁ, ବାପ ! ତା'ଙ୍କର ଦୟାରୁ ସିନା, ତାଙ୍କର ବିଗ୍ରହ ଏଭଳି ଅଚମ୍ଭିତ ଭାବରେ ମିଳିଗଲା ଆମକୁ ?

ଲବ—ନନା । କି ଆଶ୍ଚର୍ଯ୍ୟ ।—ତୁମର ସ୍ୱପ୍ନସଙ୍ଗେ, ମୋ'ର ସ୍ୱପ୍ନ ଯେମିତିକା ଅକ୍ଷରେ ଅକ୍ଷରେ ମିଳି ଯାଉଥିଲା ।

ପୂଜାରୀ—ଏ' ତାଙ୍କର ସ୍ୱପ୍ନାଦେଶ, ବାପ । ହାଁସୁ । ସ୍ୱପ୍ନ ଯେ ବେଳେବେଳେ ସତ୍ୟକୁ ବଳିଯାଏ— ଏହାର ଗୂଢ଼ତଥ୍ୟ, ଆମେ ମୂଢ଼ ନର, ଘଟଣାର ମେଳ କରି, ମିମାଂସା କରି ଦେଇଥାଉଁ ସିନା ।—

[ ସାଧୁମାନଙ୍କ ସଙ୍ଗେ ରାମଦାସ ଧୀରେ ଧୀରେ ପ୍ରବେଶ କଲେ ]

୧ମ-ସାଧୁ—"ସକାଳ ଯାଏ ନ ରହିଲି ।
ରାତ ଅର୍ଦ୍ଧରେ କପାଁ ଗଲି ॥
ଦେଇ ସକଳ ସାଧୁ ଧନ ।
ଦେଲା ଅଇଲି ଗୋଳା ପୁଣି ॥
ରାତ ପାହିବା ଯାଏ ଥିଲେ ।
କେହି ତୁମ୍ଭଙ୍କୁ ଦଣ୍ଡୁ ଥିଲେ ॥"

ରାମ—( ଅବିଶ୍ୱାସର ହାସ୍ୟରେ )
"ତୁମ୍ଭଙ୍କୁ ଧନ ଦେବାବେଳେ ।
ଦେଖିଲଟିକି ରାମ ତୋଳେ ॥"

ସାଧୁ—ଏ'କଣ କହୁଚ ?···
"..................
ଗୋଳା ଦେଇଚୁ ତୁମ୍ଭ ହସ୍ତେ ॥
ତୁମ୍ଭେ ଆମ୍ଭଙ୍କୁ ଦେଲ ଧନ ।
ଏବେ ତ କହୁଚୁ ଏ'ମାନ ॥"

ରାମ—(ଲୁଣ୍ଠାଇ ସମସ୍ତଙ୍କୁ, ସେହିଭଳି ହାସ୍ୟରେ)— ଆହା ହା ।—
"ଧନ୍ୟ, ଧନ୍ୟ ହେ ତୁମ୍ଭେମାନେ ।
ପ୍ରଭୁଙ୍କୁ ଦେଖିଲ ନୟନେ ॥
ମୁଁ କେତେ ପାପ କରିଥିଲି ।
ଦିନେ ସ୍ୱପନେ ନ ଦେଖିଲି ॥"

ସାଧୁ—( ସେଭଳି ନ ବୁଝି ଭାବ ଗଦଗଦରେ )—
"ବିରୂହୁଁ ନିଷ୍ଠେ ଭକ୍ତ ହୁଅ ।
ବିଷ୍ଣୁ ଯେ ବିଜୟ ସାକ୍ଷାତେ ।
ହେ' ରାମଦାସ ତୋ' କୃପାରୁ ।
ଆମ୍ଭେ ଦେଖିଲୁ ମହାମେରୁ ॥"
( ପଦଧୂଳି ନେଲେ )

ରାମ—ହ.ଃ—ହାଃ – ମୋ' କୃପାରୁ' ?—

ସାଧୁ—( ପଦ ବନ୍ଦନା କରି )—ପ୍ରଭୁ—ପ୍ରଭୁ—ସତେ ସତେ—
"ତୋ ସଙ୍ଗେ ନଥିଲେ ବ୍ୟାପାର ।
କାହୁଁ ଦେଖନ୍ତୁ ବିଶ୍ୱମ୍ଭର ॥
ଏବେ ଆମ୍ଭର କଥା ଶୁଣ ।
ଦାସ ତନୟ ଧନ ପ୍ରାଣ ॥
ଆହୁଁ ତୁ ଯାହା କଲ କର ।
ଚରଣେ ଶରଣ ତୋହର ॥"
( ପୁଣି ଚରଣ ବନ୍ଦନା କରି ଚାଲିଗଲେ )

ରାମ—ଶୁଣିଲ, ଶୁଣିଲ, ପୂଜାରୀ । କେମିତିକା ଝିକ୍ ମାରି, 'ଦାସ ତନୟ ଧନ ପ୍ରାଣ' ? ସର୍ବସ୍ୱ ତାଙ୍କର ସମର୍ପଣ କରିଦେଇ ଗଲେ ଆପେ ଆପେ, ମୋତେ—କେମିତିକା ଉଦ୍ଧାର ?—ଅପଣାର ମାନ ମହତ୍ତ୍ୱକୁ ଜଗି ?—ନ କରି ବାଟ ଅଛି ନା—ଧନ କଥା ତେଣିକି ଥାଉ, ସୁନ୍ଦରୀ, ଯୁବତୀ 'ଦାସ' ହାତୁଡ଼ରେ ପଡ଼ିଲେ କାହାର, ଏ' ସର୍ବଗ୍ରାସୀ କବଳରୁ ନିସ୍ତାର ଅଛି ନା ?— ହାଃ—ହାଃ—

ପୂଜାରୀ—ରାମଦାସ । ସେ କଥା ଗୁଡ଼ାକ ମନରେ ଆଉ ସ୍ଥାନ ଦିଅନାହିଁ—'ମା' ଆମର ସତୀ, ସାଧ୍ୱୀ— ସେ ଯେ ଲଛମନ୍‌ଜିଙ୍କ ଅନୁଗୃହୀତା ।—ସେହି ଧନପତି ସାହୁକାର ଆଉ କେହି ନୁହନ୍ତି ଭାଇ । ଛଦ୍ମବେଶୀ ଆମର ଲଛମନ୍‌ଜି ସ୍ୱୟଂ !—

ରାମ—ଅହେ ।—ଲଛମନ୍‌ଜି ହେଉ, ବା ଲଛମନ୍‌ସିଂ, ହେଉ—ବାଟକୁ ଆସ, ଧନମଣି—ପ୍ରଣୟର ସାହିତ୍ୟଟା, ସତୀତ୍ୱର ନିର୍ମମ ବ୍ୟାକରଣ

ନିଗଡ଼ରେ ବନ୍ଦ ହୋଇ, କେତେଦିନ ଜୀଇଁ ରହିବ ଭଲା ?—ଜୀବନଟାକୁ ବାନ୍ଧି ରଖିଲେ ଏହିଭଳି ଗୁରୁଅଡ଼ୁ ପଚି, ସଡ଼ି, ପୋକ ସାଲୁବାଲୁ ହୋଇଯିବ ନାହିଁ ନା ? କଲବଲ ହୋଇ ନିଜେ ଆଗେ ମରିବା କଥା ନୁହେଁ କି ?

ପୂଜାରୀ—ତୁମର ଏ'ଭଳି ମନର ବିକୃତି ଦୂର ହୋଇଯିବ ରାମଦାସ ! ଥରେ ଏ' ମନ୍ଦିର ଭିତରକୁ ଆସି, ଲଛମନ୍‌ଜୀଙ୍କୁ ଦର୍ଶନ କଲେ, ଭାଇ !—

[ ସହସା ନେପଥ୍ୟେ ବାଦ୍ୟଧ୍ୱନି ଶୁଣାଗଲା ]

ରାମ—ଏ'କି ବାଦ୍ୟଧ୍ୱନି ପୂଜାରି ?—

ଲବ—ବାବା ! ଆଜି ପରା ଲଛମନ୍‌ଜୀଙ୍କ ପୁନ-ପ୍ରତିଷ୍ଠାର ଉତ୍ସବ !—

ରାମ—ପୁନ-ପ୍ରତିଷ୍ଠା କାହିଁକି ?—ପୁନର୍ବାର ତ ମୋର ବିବାହ ହେଉନାହିଁ !...ଓ ହୋ !—ବୁଝିଛି—ବୁଝିଛି—ଭାଇନା, ସେହି ଧନୀପତି ସାହୁଙ୍କର ତୁମର ଲଛମନ୍‌ଜୀ ! ତାଙ୍କର ବିଗ୍ରହ ଆଜି ଏ' ମନ୍ଦିର ଭିତରେ ସ୍ଥାପନା କରୁଚ—ତାଙ୍କର ପ୍ରତିଷ୍ଠା ପାଇଁ ଏତେ ଉତ୍ସବର ଆୟୋଜନ !—

ପୂଜାରୀ—ଏହି ବିଶ୍ୱାସ ତୁମର ଦୃଢ଼ ହେଉ, ଭାଇ ! ଲଛମନ୍‌ଜୀଙ୍କ ଦୃଢ଼ ଭକ୍ତି କର—ଆତ୍ମ ସମର୍ପଣ କର—

ରାମ—ଖାଲି 'ଆତ୍ମସମର୍ପଣ' ?—ନା, ନା, ତା'ଠାରୁ ଅଧିକା କିଛି ସମର୍ପଣ କରିବି ଆଜି, ଭାଇନା—ବୋହଁଟା ଭିତର କିଛି ବଳିଗଲାଣି—ଯା, ଯା, ଲବ—ତୋ'ର ବି ଆଜି ଭାରି ଆନନ୍ଦର ଦିନ—ଯା, ବେଗେ, ଯେତେ ସାଧୁ, ଅସାଧୁ, ଦେଶୀ, ବିଦେଶୀ—ସମସ୍ତଙ୍କୁ ଆମନ୍ତ୍ରଣ କରି ନେଇଆ'—ଯେତେ ଭଲ ଭଲ ଖିଆପିଆ ହୋଇପାରେ, ତା'ର ବନ୍ଦୋବସ୍ତ କର—ନାଚ, ଗୀତ, ବାଜଣାରେ ଗୁରୁଅଡ଼ ମାତିଉଠୁ ଦିନ ରାତି—ଆଜି ଯେ ବିବାହୋତ୍ସବ !—ମହୋତ୍ସବ !—ଯା, ଯା, ଠିଆ ହେଲୁ ଯେ—

ଲବ—( ବୋକାଭଳି କାପରି ଗୁଲିଗଲା—ଆଖିରେ ଦୁଇଟୋପା ଲୁହ ଦେଖାଗଲା )

ରାମ—ପିଲ୍‌ଟା ! କିଛି ସମୁଝି ପାରୁନାହିଁ କି ନା ?—ହଁ, ଆସିବଟି ଭାଇନା—

( ନେଇଗଲେ )

[ କିଛିକ୍ଷଣ ବିରାମ ପରେ, ଧୀର ବାଜିଲ ବାଦ୍ୟ ତାନ ସଙ୍ଗେ ସଙ୍ଗେ, ରାମଦାସ ସାଲଂକାରା ଊର୍ମିଳାର ଜୀବନ୍ତ ସ୍ୱର୍ଣ୍ଣ ପ୍ରତିମାକୁ ବକ୍ଷୋପରେ ଧାରଣ ପୂର୍ବକ ପ୍ରବେଶ କଲେ, ସାଙ୍ଗରେ ପୂଜାରୀ ମଧ୍ୟ ଥିଲେ ]

ରାମ—ଧୀରେ, ଧୀରେ—ଆସ୍ତେ, ଆସ୍ତେ, ପୂଜାରି—କହିଲ, କହିଲ, ମୋ'ର ଊର୍ମିଳା ସୁନ୍ଦରୀର ପ୍ରଣୟୀ, ସେହି ଲଛମନ୍‌ଜୀ ସାହୁକାର ଛଡ଼ା ଆଉ କିଏ ହୋଇପାରେ ?—ତା'ଙ୍କୁ ଆଉ ଏ' ଭାର ଦେଇ, ଭାରମୁକ୍ତ ହୋଇ, ନିଶ୍ଚିନ୍ତ ହୋଇପାରେ ଭଲା ?—

(ଲଛମନ୍‌ଜୀଙ୍କ ମୂର୍ତ୍ତିର ବାମପାଖରେ ସ୍ଥାପନ କଲେ)

ପୂଜାରୀ—( ଘଣ୍ଟା ବଜାଇ ପୂଜା ଆରମ୍ଭ କରିବାକୁ ଯାଉଥିଲେ )

ରାମ—ନା, ନା, ପୂଜାରି—ଏ' ବିବାହରେ, ଯେ କୌଣସି ପ୍ରକାର ଗୋଳମାଳ ନିଷେଧ—ମନ୍ତ୍ରପାଠ ନିଷେଧ—ଲୌକିକ ବିଧି ବିଧାନ ନିଷେଧ—ଏଥିରେ ତୁମରି ପୌରହିତ୍ୟ କରିବାର ଆଦୌ ଅଧିକାର ନାହିଁ—ଯଦି, ଅଧିକାର ଥାଏ କାହାରି, ବା ଦାବୀ କରିପାରେ, କେହି, ସେ ଏକମାତ୍ର ମୁହିଁ—ତ୍ୟାଗୀ—

'ରାମଦାସ' !

[ ଠିକ୍ ସେତିକିବେଳେ ଶୁଣାଗଲା ନାନାବିଧ ଶୁଭ ବାଦ୍ୟର ମିଶ୍ରିତ ଧ୍ୱନି—ଶଙ୍ଖ, ଭେରି ଓ ହୁଳହୁଳି—ପ୍ରକୃତିର ନାନାବିଧ କାକଳି ମଧ୍ୟରେ ]

—ଯବନିକା—

## ଦ୍ୱିତୀୟ ସଂସ୍କରଣର

# ମୁଖବନ୍ଧ

ମୁଁ ପ୍ରଥମ-ସଂସ୍କରଣଟି ଛପା ହେଲା ବେଳେ, ପାଣ୍ଡୁଲିପି ସଂସ୍କାର ବା ପ୍ରୁଫ୍ ଦେଖିବାର ସୁଯୋଗ ପାଇ ନଥିଲି । ସେଥିପାଇଁ ନାନା ଦୋଷ ତ୍ରୁଟି ରହିଯାଇଥିଲା । ବର୍ତ୍ତମାନ ବହିଟିକୁ ଆମୂଳଚୂଳ ପଢ଼ି, ପରିମାର୍ଜିତ କରିପାରିଛି ବୋଲି ମନେକରେ । ପ୍ରଥମ ସଂସ୍କରଣର ପାଠକେ ମୋତେ କ୍ଷମା ଦେବେ । ଇତି ।

**ଲେଖକ**

## —ଚରିତ୍ର ଲିପି—

—ସ୍ତ୍ରୀ—

| | |
|---|---|
| ବନ୍ଧୁ-ପତ୍ନୀ | ମାହାନ୍ତି |
| ନିର୍ମଳା | ଭିକାରୁଣୀ, ବ୍ରାହ୍ମଣୀ, |
| ଶୋଭା | ଶବରୁଣୀ, |
| ଲକ୍ଷ୍ମୀବାଈ | ପାର୍ବତୀ |
| ରୁଲି | ଗାଁ ବାଳକାଗଣ |

—ପୁରୁଷ—

| | |
|---|---|
| ବନ୍ଧୁମହାନ୍ତି | ଅଇଁଠା |
| ନାରାୟଣ | ଭିକାରି, ଶବର, ମହାଦେବ |
| ବାଞ୍ଛାରାମ | ଶିବା |
| ଗୋବିନ୍ଦ | ମାଧୋଇ |
| ନଟବର | ଗଣ୍ଡିକଟା |
| ପଧାନ | ରାଜା |
| ହଲଧର | ବୁଢ଼ାବ୍ରାହ୍ମଣ |
| ବରକନ୍ଦାଜ ଦ୍ୱୟ | ବଡ଼ପଣ୍ଡା |
| ସଦା | ସୁନ୍ଦରଥ |
| ପାରିଷଦ ଦ୍ୱୟ | ସୁଦୁଲା ଓ ବେଉଁଆ |

# ବନ୍ଧୁ ମହାନ୍ତି

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

[ ବନ୍ଧୁ ମହାନ୍ତିଙ୍କର ଘର ସମ୍ମୁଖ । ଦୂରେ ବଳଦ ଗାଡ଼ି ଚାଲିବାର ଶବ୍ଦ ଓ ବଳଦମାନଙ୍କର ଘଣ୍ଟି ଧ୍ୱନି ଶୁଣାଗଲା । ଶଗଡ଼ିଆ ଥାଇ ଥାଇ ତା ଲଞ୍ଜରେ କୁହାଟ ଗାଡ଼ୁଥାଏ ଓ ବଳଦ ଅଡ଼େଇବାର ଟାକରା ଫୁଟାଉଥାଏ । କ୍ରମେ କ୍ରମେ ତାହା ନିକଟ ହୋଇ ଆସିଲା ]

ଗେଡ଼ିଆ— ହ-ହ-ଈ-ଈ ହେଏ-ହ-ହ

ଗୀତ

ଅଣ୍ଡାଭଡ଼ି ଚାଲରେ ଡକ୍ କା—ଅଣ୍ଡାଭଡ଼ି ଚାଲ
ଧୂଳିଲେ ବାଟ, ମୋଡ଼ିବ ବେକ—
ହେବୁ ସିନା ହାଲ୍ ।
"ଈହ ଈହ—ଟକ୍ ଟକ୍"

[ ଗାଡ଼ି ଅଟକିବାର ଜଣାଗଲା । କେତେକ ପ୍ରଜାପାଟକଙ୍କ ସହ ବନ୍ଧୁ ମହାନ୍ତି ପ୍ରବେଶ କଲେ ]

ବନ୍ଧୁ—ନା, ନା, ନା, ଖଜଣା ମାଫି ହେବା ଅସମ୍ଭବ । ମୋ ଅମଳରେ ଏ' କଥା ହୋଇ ପାରିବ ନି ।

୧ମ ପ୍ରଜା—ଗୁମାସ୍ତା ସାଆନ୍ତେ, ନିଜେ ସବୁ ମଡ଼କ ବୁଲି ଆଖିରେ ଦେଖି ଆସିଲେ—

ବନ୍ଧୁ—ହଁ ହଁ, ଆଖିରେ ଦେଖି ଆସିଲି—ମରୁଡ଼ି, ମଡ଼କ, ଦୁର୍ଭିକ୍ଷ...

୧ମ ପ୍ରଜା—ଘରେ କାହାରି ଗଣ୍ଡେ କଂସା ବାସନ ହେଇ ନାହିଁ, କି ପିନ୍ଧିବାକୁ ବଳକଟ ଛିଣ୍ଡା କାନ୍ଥଡ଼ା ବି ନାହିଁ ।

ବନ୍ଧୁ—ସେ ସବୁରିକି ବଳି ଆଉ କଣ ଦେଖି ଆସିଲି, ଜାଣ ?

ପ୍ରଜାଗଣ—( ସୋତ୍ସୁକେ ) ଆଜ୍ଞା ?

ବନ୍ଧୁ—ତମମାନଙ୍କର କୋଢ଼ିଆମି—ଆମ ଜାତିର ନିଜକୁ ଠକାମି—

( ଚାଲିଯାଉଥିଲେ ଭିତରକୁ )

୨ୟ ପ୍ରଜା—ଆଜ୍ଞା, ଆମେ ତ ଗତର ଖଟେଇ......

ବନ୍ଧୁ—( ରହିଯାଇ ଓ ଫେରି ଚାହିଁ ) ଗତର ଖଟେଇ, ନା ଗତର ଛଡ଼େଇ ?—ବିଲକୁ ବିଲ ପଡ଼ିଆ ପଡ଼ି ରହୁଛି—ବାରିକି ବାରି ଲଟା ଜଙ୍ଗଲ ମାଡ଼ି ଯାଉଛି—ଗଡ଼ିଆ ପୋଖରୀ ତ କହ୍ନ୍ଲା ହେବାର ନା ଗନ୍ଧ ନାହିଁ । ଏ ଫସଲ ହେଲାନାହିଁ ବୋଲି ଦୋସରା ଫସଲ କରିବ—ସେଥିକି ଖିଆଲେ ନାହିଁ । କେବଳ ତାସ ପଶା, ନିଶାଭାଙ୍ଗ... କେମିତି ମନ ମଉଜରେ ଦିନ କଟେଇ ଦେଲେ, କାମ । ଆଉରି କାମ ଭିତରେ କଣ ନା, ମହାଜନଙ୍କ ବେକସଣ୍ଢ କେମିତି ମୋଡ଼ିବ—ତେଣିକି ଯେତେ ମସୁଦା ଫନ୍ଦିଫିକର । ଏବେ ମରୁଡ଼ି ମଡ଼କ ତମକୁ ବାଧିବ ନାଇ ତ, ବାଧିବ କାହାକୁ ?

୨ୟ ପ୍ରଜା—ଆଜ୍ଞା, ଏମିତି ତ କଳିଅସୁରି ପାଠ ପୁରୁଷ ହେଲା ।

ବନ୍ଧୁ—ଏମିତି କଳି ଆସୁଛି ବୋଲି, ଚିରଦିନ ଚାଲୁଥିବ—ସ୍ୱୀ କଣ ପାଞ୍ଜିରେ ଲେଖା ଅଛି ? ଆଜି ଅବସ୍ଥାକୁ ଚାହିଁ ବ୍ୟବସ୍ଥା ଖୋଜିବା ଦରକାର । ବାପ ଅଜା ଆମର ଡାଙ୍ଗଣି ଅଟରେ ଘିଅ ଖାଉଥିଲେ ବୋଲି ଆମେ ବି ସେଇଆ

କରବୁଁ—ଏ କେଉଁ ପ୍ରମାଣ ? ହଁ, ଦେଖ, ମୋ ପଛରେ ଗୋଡ଼େଇ ଲଭ ନାହିଁ । ତୁମର ଗୁହାର ତୁମେ ସିଧା ସିଧା ଜମିଦାର ଶ୍ରୀ ହଜୁରରେ ଯାଇ ଜଣାଇବ । ବର୍ତ୍ତମାନ ହଜୁର ପିଲା ନୁହନ୍ତି, ଅଜ ଏ ମୋର ବାପ ଦାଦାର ସମ୍ପତ୍ତି ନୁହେଁ ଯେ ମନ ମୁତାବକ କାମ ମୁଁ କରି ଦେବି ।

୧ମ ପ୍ରଜା—ସାଆନ୍ତ ଆମର ମା ବାପ—ସାଆନ୍ତ ଯା' କରିବେ—

ବନ୍ଧୁ—ପଧାନେ, ତମର ଏ ଖୁସାମଦିଆ କଥା—ବାହାପିଆ ଢଙ୍ଗ ବୈତରଣୀ ନଈରେ ନେଇ ଭସେଇ ଦିଅ । ଶୁଣ, ତୁମେ ଖଜଣା ମାଫି ମାଗୁଛ, ହେଲେ ସେଥିକି ମୁଁ କିଛି କରି ପାରିବିନି—ମୋର ଧାରା ମୁଁ ଆଦୌ ବଦଳାଇ ପାରିବିନି । ବୁଢ଼ା ସାଆନ୍ତେ ( ଦୀର୍ଘଶ୍ୱାସ ଛାଡ଼ି ) ଦେହଛାଡ଼ି ଗଲା ବେଳେ ମା ବିରଜାଙ୍କୁ ସାକ୍ଷୀ ମାନି, ଜମିଦାରୀ ସିରସ୍ତା, ତାହିଁ ସଙ୍ଗେ ଶିଶୁ ଜମିଦାରଟିକୁ ମୋର ହାତେ ସମର୍ପି ଦେଇ ଯାଇଥିଲେ ।

( ବିରଜାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ )

୩ୟ ପ୍ରଜା—ତେବେ ଆମେ ଆସୁଛୁଁ ସାଆନ୍ତେ, ଔଳାକୁ···

ବନ୍ଧୁ—ଔଳାକୁ । କାହିଁରେ ଯିବ ଜୁଆଡ଼େ ? ଛଅ, ଛଅ କୋଶ ବାଟ ଯେ ମୋ ଶଗଡ଼ ପିଛୁ ଧରି, ଏ ନାଲିଟିଆ ଖରା ତାତିଲା ଭୂଇଁରେ ଛଟପଟ ହୋଇ, ଗୋଡ଼େଇ ଗୋଡ଼େଇ ଆସିଲ, କଣ ଲେଉଟି ଯିବାକୁ ? ଯାଅ ଯାଅ—ବାହାରି ଗଲ ଏଠୁଁ ? ତୁମର ମୁହଁ ଚାହିଁଲେ ପାପ । କାହିଁରେ ଅଇଁଠା, ଚାହିଁ ଠିଆହୋଇଥା ? ଆରେ ବଳଦ ପିଠା—ତମା କାଢ଼ି, କୁଣ୍ଡା ତୋରାଣି ମୁନ୍ଦାଏ ଖାଇବାକୁ ଦେ । ପଶୁ ଜାନୁଆର ସେମାନେ, ମୁହଁ ଫିଟୁନି ବୋଲି କଣ ସେମାନଙ୍କର ପ୍ରାଣ ନାହିଁ ?

୩ୟ ପ୍ରଜା—ଅଜ୍ଞା ମୋର କସୁର ହୋଇଛି ।

ବନ୍ଧୁ—ଦେଖୁଚ ତ ପଧାନେ, ଏ ଟୋକା ଖଣ୍ଡକର ଦିମାକ୍—ମୋ ମୁହଁ ଉପରେ ପୁଣି ବଢ଼ି ବଢ଼ି କହୁଚ କେମିତି 'ଅଜ୍ଞା ମୋର କସୁର ହୋଇଛି' । ଆରେ କସୁର କରିଛୁ ତ ତାର ପରିଭବ ପାଇବୁ, କା'ର କ'ଣ ? ( ଗୋବିନ୍ଦ ଠିକ୍ ସେତିକିବେଳେ ପ୍ରବେଶ କଲା ଓ ଯଥା ସମ୍ମାନ ଜଣାଇ ହାତ ଯୋଡ଼ି ଠିଆ ହେଲା ) କିଏ, ଗୋବିନ୍ଦ ? ହାତ ଯୋଡ଼ି ଠିଆ ହେବ ପଛେ—ଶୁଣ ।

ଗୋବିନ୍ଦ—ଅଜ୍ଞା—

ବନ୍ଧୁ—ପାଖକୁ ଆସ ।

ଗୋବିନ୍ଦ—( ପାଖକୁ ଯାଇ ତୁନି ତୁନି ) ସିରସ୍ତାର ଖବର ତ ? ସବୁ କୁଶଳ ଅଜ୍ଞା ।

ବନ୍ଧୁ—ତା ତ ତୁମର ଗୋଲଗାଲ ଚେହେରା ଦେଖି ବେଶ୍ ବୁଝି ପାରୁଛି—ତୁମେମାନେ ଗୋଟିଏ ଗୋଟିଏ ମଉଜାର ତହସିଲଦାର ହୋଇନାହଁ ଯେ, ଇନ୍ଦ୍ର ଚନ୍ଦ୍ର ବରୁଣ ପାଲଟି ଯାଇଛ ଏକାବେଳକେ—ଶୁଣ—

ଗୋବିନ୍ଦ—ବୁଝାଇ ସାଆନ୍ତେ—ସାଆନ୍ତଙ୍କ ହୁକୁମ୍ କବୁଲ୍ କରି ଏ ସନକୁ ଖରଡ଼ାପଣି ବୋଲି ଅଧଲାଟାଏ କଣ ପିକାଟାଏ ବି ଆଦାୟ କରିନୁ ସାଆନ୍ତେ ।

ବନ୍ଧୁ—ଚୁପ୍‌କରି ଯା କହୁଛି ଶୁଣ—ଏମାନଙ୍କୁ ସଦର କଚେରି ଘରକୁ ନେଇଯାଅ—ପଡ଼ିର ବନ୍ଦୋବସ୍ତ କରିଦିଅ—ଏମାନଙ୍କ ହାଲ୍ କେମିତିକା ହୋଇଛି ଦେଖୁଛ ତ ?

ଗୋବିନ୍ଦ—ଅଜ୍ଞା ଏକାବେଳକେ ବେହାଲ୍—

ବନ୍ଧୁ—ଏଇ ବେହାଲ୍ କରିଛି କିଏ ? ତୁମେ ।

ଗୋବିନ୍ଦ—ଆମେ ।

ବନ୍ଧୁ—ହଁ, ହଁ, ତୁମେ—ଖଜଣା ଆଦାୟ କଲାବେଳକୁ ତ ବାରତାପଟା ଦେଖାଅ ବେଶ୍, ହେଲେ, ଖଜଣା ଦେଲାଭଳି ଅବସ୍ଥା ପ୍ରଜାଙ୍କର ଉପୁଜିବ କେମିତି, ସେଥିକି କି ବ୍ୟବସ୍ଥାଟା କରିଛ ଭଲା ? ଯାଅ ଯାଅ—ଯାହା କହିଲି, ତାହା ଆଗେ, ତା'ପର ଅନ୍ୟ ଖବର ।

ଗୋବିନ୍ଦ—ଆସନ୍ତୁ ଆପଣମାନେ—

୧ମ ପ୍ରଜା—ତେବେ କଣ, ଆମର ଗୁହାରଟା—

ବନ୍ଧୁ—ଆଃ । ଗୁହାରି, ଗୁହାରି—ଆରେ ଯାଅ, ହାଲିଆ ହୋଇଛ ଥଣ୍ଡାରେ ବସ, ଚେଷ୍ଟେଇ ବାସ କର,

ଝିଅପିଅ ସାର ଆସ୍ରମରେ ଟିକିଏ ଗଡ଼ପଡ଼ ହୁଅ—

ଗୋବନ୍ଦ—( କାନେ କାନେ ) କଚେରୀ ଘରେ କଚେରୀ କଥା, ଏଠି କଣ ହେ, ଅସ—( ବନ୍ଧୁ ମହାନ୍ତି ବ୍ୟତୀତ ସମସ୍ତଙ୍କ ପ୍ରସ୍ଥାନ )

[ ଚୁଲିର ପ୍ରବେଶ ]

ବନ୍ଧୁ—ଚୁଲି ! ଚୁଲି ମୋର ! ( କୋଳେଇ ନେଲେ )

ଚୁଲି—ଓଃ, ତୁମ ପାଖକୁ ଆସିବି ବୋଲି ବାଟ ପାଉ ନ ଥିଲି—ଆଜ ତ ଏମାନେ ଆସିବେନି, ବାପା ?

ବନ୍ଧୁ—ହଁ, ସେମିତି କହନ୍ତି—ସେମାନେ ପରା ତୋର ପର ପିଲା ପିଲା ମୋର । ( ଚୁମ ଖାଇଲେ ) ହଁ, ବୋଉ ତୋର କାହିଁ ? କଣ କରୁଛି କିରେ ଚୁଲି ?

ଚୁଲି—ରୋଷେଇ ଘରେ ଅଛି, ଏଥଣି ସନ୍ତୁଳୁଛି— ଡାକିବି ?

ବନ୍ଧୁ—ହଁ, କାମ ଧନ୍ଦାବେଳେ ଡାକନ୍ତି—

ଚୁଲି—ଯେମିତି ତୁମ କାମଧନ୍ଦାବେଳେ ଆମେ କେହି ଡାକିବୁନି କି ପାଖ ପଶିବୁନି ବୋଲି ତୁମେ କହୁ ଥାଅ, ଠିକ୍ ସେମିତି ବାପା ?—

ବନ୍ଧୁ—ତୋ ଅପା କାହିଁ ? ଦେଖୁ ନାହିଁତ—

ଚୁଲି—ହଁ, ବାପା ! ତୁମେ ଛଅ ସାତଦିନ ଭିତରେ ଫେରି ଆସିବ ବୋଲି କହି, ମାସେ ଏକାଠି ବିତେଇ ଦେଲ—

ବନ୍ଧୁ—ତୁ ଦିନ ଗଣୁଥିଲୁ ପରା ?

ଚୁଲି—ଏଇ ଦେଖୁନ ଅନାଇ ଘର କାନ୍ଥକୁ—କେମିତି ଗାର କାଟି କାଟି ରଖିଚ ?

ବନ୍ଧୁ—( କୋଳେଇ କରୁ କରୁ ) କ'ଣ କରିବିରେ ମା— ତୋର ବୟସୀ ପିଲାଛୁଅ କେତେ ରହୁଛନ୍ତି ଗାଁ ଗାଁରେ ! ସେମାନଙ୍କର ଯେଉଁ ଶ୍ରାବାଅବସ୍ଥା— ତା' ଦେଖି ଗୋଟାଏ ବ୍ୟବସ୍ଥା ନକରିବା ଯାଏ କେମିତି ଫେରିଆନ୍ତି, କହ ?

ଚୁଲି—ହଁ, ବାପା ! ତୁମେ କୁଆଡ଼େ ଧାନ- ଉଗାଳାଙ୍କୁ ମନା କରିଦେଇ ଯାଇଥିଲ, ଆମକୁ ଧାନ ଚାଉଳ ଦେବେ ନାହିଁ ବୋଲି ?

ବନ୍ଧୁ—କହିଲୁ ମା ! ପରକଥା ଆଗ, ନା ନିଜକଥା ଆଗ ?

( ବନ୍ଧୁ ପତ୍ନୀ ପ୍ରବେଶ କଲେ )

ବନ୍ଧୁ-ପତ୍ନୀ—ପରକଥା ଭାବିବ ତ ପରକୁ ନେଇ ଘର କରୁନ—ଘରକୁ ପୁଣି ଅଇଲ କାହିଁକି ? ତୁ ଯା ଚୁଲି, ଦେଖିତ ଅପା ପୋଖରୀକୁ ଯାଇଥିଲା, ପାଣି ନେଇ ଅଇଲା କି ନାହିଁ ? ( ଚୁଲି ଯାଉ ନ ଥିଲା ) ଯା···ଦେଖୁଛୁ ତ, ଅପା ସାଙ୍ଗେ ତାର ଦଣ୍ଡେ ହେଇ ପଡ଼ିଲା ନାହିଁ ।

ଚୁଲି—ସେ ଚମୁଟିବ କାହିଁକି ମୋତେ ?

ବନ୍ଧୁ-ପତ୍ନୀ—ତୁ ଚମୁଟାବୋଲି କହୁ କାହିଁକି ତାକୁ ?

ଚୁଲି—ହୁଁ···

ବନ୍ଧୁ-ପତ୍ନୀ—ଅଲୋ ଚୁଲି, ବାପା ଅସିଚନ୍ତି, ଏ ଖବର ଦେବୁନାହିଁ ଅପାକୁ ?

ଚୁଲି—ମୋ ସାଙ୍ଗେ ଆଗ ଦେଖା, ଏଇ ଖବର ଦେବି ଯାଇଁ । ( ଚାଲିଗଲା )

ବନ୍ଧୁ-ପତ୍ନୀ—ଦେଖୁଚ ତ···

ବନ୍ଧୁ—ହଉ, ଚାଲ ।

ବନ୍ଧୁ-ପତ୍ନୀ—ହଁହ—(ପ୍ରଣାମ କରି ଗୋଡ଼ଧୂଳି ନେଲେ)

ବନ୍ଧୁ—ଘରକୁ ପୁଣି ଅଇଲ କାହିଁକି, ଯଉଚୁଥିଲ ପରା ?

ବନ୍ଧୁ-ପତ୍ନୀ—ମୁଁ ଯାଏଁ ଲୋ, ଏଥଣି ହାଣ୍ଡି ତେଣେ ବସେଇ ଦେଇ ଆସିଚି । ଇଲୋ ଚୁଲି—ଶୋଭି —ପାଣି ଗାମୁଛା ଆଣ, ବାପାଙ୍କର ଗୋଡ଼ ହାତ ଧୋଇ ପୋଛି ପିଣ୍ଡାରେ ପିଢ଼ା ପକା; ବାପା ବସନ୍ତୁ, ବିଚଣା ନେଇ ବିଞ୍ଚି ଦେ ।

( କହୁ କହୁ ଚାଲିଗଲେ )

ବନ୍ଧୁ—( କିଛି ସମୟ ଅନାଇ ) ମଣିଷ ଘରକୁ ଅସନ୍ତି କାହିଁକି ? ଘର କରିବାକୁ ହେଲେ, ଯେଉଁ ତାକର ଦରକାର, ତା'ର ଗନ୍ତାଘର ହେଉଛି, ନିଜଘର —ଅଜ ତାର ଚାବିକାଠି ଥାଏ, ଘରଣୀ ହାତରେ । ତୁମେ ସେଇ ଗନ୍ତାଘରର ଚାବି ମୋତେ ଖୋଲି ଦେଇ ଗଲ ନାହିଁକି ମୋତେ; ଚୁଲିଆବୋଉ ?

[ ଶୁଭ ବା ଶୋଭ ପାଣି ଗିଲାସ ଓ ବୁଲି ଗାମୁଛା ଧରି ପ୍ରବେଶ କଲେ ]

ବନ୍ଧୁ—ବେଶ୍ ବେଶ୍ ! ଦୁଇ ଭଉଣୀ ଯାକ ମିଳି ମିଶି ଯାଇଛ ତ ?—

ବୁଲି—ସହଜରେ କଣ ମିଶିଥାନ୍ତି, ଏଇ ଗାମୁଛା ମୋତେ ନ ଦେଇଥିଲେ ଅପା ?

( ଶୁଭ ବାପାଙ୍କୁ ପ୍ରଣାମ କରି ଗୋଡ଼ଧୂଳି ନେଲା )

ବୁଲି—ବାପା ! ମୁଁ ତ ତୁମ ଗୋଡ଼ଧୂଳି ନେଇନି ?

ବନ୍ଧୁ—ଅଲେ ତୋ ମୁଣ୍ଡରେ ତ ଅଣ୍ଟେ ଧୂଳି—ଆଉ ଧୂଳି ନେବୁ କ'ଣ ଲେ ତୁ ?

[ ବୁଲି ପ୍ରଣାମ କଲାବେଳେ ତାକୁ କୋଳକୁ ନେଲେ—ଶୁଭ ଗୋଡ଼ହାତ ଧୋଇ ଦେବାକୁ ଲାଗିଲା ]

ବନ୍ଧୁ—ଆଲୋ ଶୁଭ—ତୁ ଏମିତ ଝଡ଼ି ଶୁଖି ଯାଇଛୁ ଯେ ? ତୋର ଦେହ ପା କିଛି ହୋଇଛି କି ?

ଶୁଭ—ନାଁ ତ—

ବୁଲି—ବାପା ! ମୁଁ କହିବି, ଅପା କାହିଁକି ଶୁଖି ଯାଉଚି ?

ଶୁଭ—ତା' କଥା ଶୁଣ ନାହିଁ, ବାପା ! ସେଇଟା ଅସଲ ମିଚ୍ଛେଇ—

ବୁଲି—ବାପା ଆଗରେ ମୁଁ କେବେ ମିଛ କହୁଚି—କୁହନ୍ତ ବାପା ?

ବନ୍ଧୁ—କ'ଣରେ, ବୁଲି ?

ବୁଲି—ଅପା ଆଜକାଲି ବଖତେ ଖାଉଛି, ବାପା—

ଶୁଭ—ହଁ ବାପା, ଭୋକ କେମିତକା—

ବନ୍ଧୁ—ଭୋକ ହେଉନାହିଁ—ତା ହେଲେ ତ ତୋର ଦେହ ନିଶ୍ଚୟ ବିଗିଡ଼ିଛି ।

ଶୁଭ—ନାହିଁ ବାପା, ଭଦୁଅ ମାସ ଗୋଟାକଯାକ ଓଷା ପଡ଼ିଥିଲା କିନା ।

ବନ୍ଧୁ—ଭଦୁଅ ମାସତ କେବେଠୁଁ ଗଲାଣି—ଏ'ତ ଅଶିଣ ଅଧା ଅଧି !

ଶୁଭ—ବୋଧେ ଓଷାବ୍ରତ ପାଳି ପାଳି ଭୋକଟା କେମିତକା ମରି ଯାଇଛି ।

ବନ୍ଧୁ—ଶୁଭ ! କଥା ଲୁଚୁନା ମା—

ବୁଲି—ବାଃ ରେ, କଥାତ ତୁମଠେଇଁ—କହିଲି ଭଲା, ବୋଉକୁ ସାତ ଦିନର ଖର୍ଚ୍ଚଦେଇ ଯାଇ ଅସିଲ ମାସକ ପରେ, ଧାର କରଜ କରିବାକୁ ତ ତୁମର ମନା—ଅପା କମାରେ ଯେତେବେଳେ ଭଣ୍ଡାର ଘର ଖୁବ, ସେ ଖରଚ କରେ କଣ—କୋଏ କମିତ ?

ଶୁଭ—ବୁଲି ! ତୁ କଣ ଗଲନାହୁଁ ? ତୋ ତୋଲାକୁ କ'ଣ କଷ୍ଟ ହୋଇଛି ? ତୋର ଏ ସବୁରେ କଣ ଲୋ ? ଛୋଟ ମୁହଁରେ ବଡ଼ କଥା । ବାପା ବୁଲିବାଲି ଏତେ ଦିନକେ ଘରକୁ ଆସିଲେ, ଟିକିଏ ଅସୁ ଥାନ୍ ହେବେ କ'ଣ, ତାଙ୍କୁ ଅଥସୁ କରି ମାରିବ ଏ ଟୋକା । ଉତେ କ'ଣ ନ ଜାଣି ମୁଁ ରମୁଚେ—

ବୁଲି—ଦେଖୁଛ ତ ବାପା ! ସତକଥା କହିଲି ବୋଲି, ଅପା କେମିତକା ମୋ ଉପରେ ରଗୁଚି—ଚମୁଟିବ ବୋଲି ପୁଣି ଧମକଉଚି ?

ବନ୍ଧୁ—ମୋରି ଦୋଷ ମା, ମୋରି ଦୋଷ । ନିଜ ଘରକଥା ଏକାବେଳକେ ପାଶୋରି ପକାଇଥିଲି, ପର ଧନ୍ଦାରେ ମାତି; ଆଉ ସେହି ନିଜ ଘରକୁ ଅସିଛି ଅଇଲୁକା, ପରଘର ଠିଆ କରିବାର ଡାକର୍ ନେବାପାଇଁ ।

[ ତେତକାବେଳେ ଭିକାରୀଟିଏ ଗୀତ ଗାଇବାର ଶୁଣାଗଲା ]

( ବନ୍ଧୁ-ପତ୍ନୀର ପ୍ରବେଶ )

ବନ୍ଧୁ-ପତ୍ନୀ—ଅସ, ତେଣେ ଭାତ ଶୁଖିଯାଉଛି ।

ବନ୍ଧୁ—ବୁଲିର, ଶୋଭର, ତମର, ସମସ୍ତଙ୍କ ପାଇଁ ଭାତ ଅଛି ତ ?

ବନ୍ଧୁ-ପତ୍ନୀ—ହଁଗୋ ହଁ, ଅଛି, ତୁମେ ସ୍ନାନଅ ହେବନି—

ବନ୍ଧୁ—ବେଶ୍, ବୁଲି—ଅଜ ଏକାଠି ବସି ସମସ୍ତେ ଖାଇବା—ତୁମେ ମନା କରନା, ମନା କରନା ।

ବନ୍ଧୁ-ପତ୍ନୀ—ତୁମେ ବାପ୍ପା ହେଲ ନା କ'ଣ ? ତୁମେ ନ ଖାଇ ସାରିଲେ ମୁଁ କେବେ ଖାଇପାରେ ? ଯା ଶୋଭ—ଯା ବୁଲି—ବାପାକୁ ନେଇ ଯା, ଏକା ଥାଳରେ ବାଢ଼ି ଦେଇଚି, ଏକାଠି ବସି ଖାଇବ ।

ବନ୍ଧୁ—ତୁମେ ?
ବ-ପତ୍ନୀ—ଆଃ, ଗୁଲ୍, ମୁଁ ତୁଆର ତଳେଁ । ଠିଆ ଠିଆ କାହିଁକି ? ଗୁଲ୍, ଶୋଭ—ବଲେଇଥା ଟେଣେ ନହର ପହରି ହେଉଥିଲା ଯେ—
ଗୁଲ୍—ଆସ, ବାପା—

[ ବନ୍ଧୁ-ପତ୍ନୀ ବ୍ୟତୀତ ସମସ୍ତେ ଗୁଲିଗଲେ —ଭିକାରୀ ପ୍ରବେଶ କଲା ]

ଭିକାରୀ—ମୋତେ ଅମୃତ ଖୁଆଇଲ, ମା—ଅମୃତ ଖୁଆଇଲ । ପେଟପୂରା କରି କେହି ଦିନେ ଏମିତ ଦେଇନାହିଁ, ତୁମେ ଯେମିତ ମୋତେ ଦେଲ ଆଜ ।
ବନ୍ଧୁ-ପତ୍ନୀ—( ଭିକାରୀକୁ ପ୍ରଣାମ କଲେ )
ଭିକାରୀ—ତୁମର ଅଧିକରୁ ଅଧିକ ହେଉ, ମା— (ଗୁଲିଗଲା)

(ବନ୍ଧୁମହାନ୍ତି ଅଇଁଠା ହାତରେ ଧାଇଁ ଆସିଲେ)

ବନ୍ଧୁ—ଏ କ'ଣ କରଛ ତୁମେ ? ଭତ୍ତ ହାଣ୍ଡିଟ ବିଲ୍‌କୁଲ୍ ଖାଲି ଦେଖିଲି—ତୁମର ଭାତ କାହିଁ ? —ଓ ସେଇ ଭିକାରୀଟିକି ନିଜର ଗଣ୍ଡାକ ଅକାଡ଼ି ଦେଇଚ ପରା—
ବନ୍ଧୁ-ପତ୍ନୀ—ଅତିଥି, ନାରାୟଣ—ଏ କଥା ତୁମେଇ ଶିଖେଇଚ ମୋତେ ।
ବନ୍ଧୁ—ହେଲେ, ତୁମେ ଖାଇବ କଣ ?
ବନ୍ଧୁ-ପତ୍ନୀ—ତୁମର ପତର ଅଇଁଠା, ମୋର କୈବଲ୍ୟ ପ୍ରଭୁ ।
ବନ୍ଧୁ—ଆଗରୁ ସେ କଥା କହି ନ ରଖିଲ କାହିଁକି ?
ବନ୍ଧୁ-ପତ୍ନୀ—କୈବଲ୍ୟ ତ ବେଶି ଖାଇବାକୁ ହୁଏନା । ତୁମର ଶଙ୍କୁଡ଼ହାତରେ ଲଗିଛି ଯଉଁ ଖୁଦ୍ରକଣାଟି —(ସେଇଟିକି ନେଇ ପାଟିରେ ଦେଲେ ଓ ପ୍ରଣାମ କଲେ । ଭିକାରୀ ସେତେବେଳେ ଗାଇ ଗାଇ ଯାଉଥିଲା, ପରିସ୍ଥିତିର ସମସ୍ୟାକୁ ଉପଲକ୍ଷ୍ୟ କରି )—

---

## ଦ୍ୱିତୀୟ ଦୃଶ୍ୟ

[ ପୂର୍ବ ଦୃଶ୍ୟ-ଶେଷର ଉଦ୍‌ବେଳିତ ଭାବୋଚ୍ଛ୍ୱାସ ଲୀନ ହୋଇଗଲା । ଉପସ୍ଥିତ ଦୃଶ୍ୟାରମ୍ଭର ଟୋଟାଏ ବିଳାସ ବ୍ୟସନର କୋଳାହଳ ମଧ୍ୟରେ ଦୃଶ୍ୟ ଦେଖାଗଲା—ନାରାୟଣ ବାବୁଙ୍କର ବୈଠକଖାନା । ସେଠାରେ ଯେଉଁ ବିଳାସ-ବୈଠକ ବସିଛି, ତାହା ପୂର୍ବକାଳର ସ୍ମୃତିରେ ମଣ୍ଡିତ, ଆମୋଦ ପ୍ରମୋଦକାରୀମାନେ ଯେ ଯାହାର ମର୍ଯ୍ୟାଦା ଅନୁସାରେ ଆସନ ଗ୍ରହଣ କରିଛନ୍ତି ]

ସଭାସଦ୍—ହାଃ, ହାଃ, ହାଃ, ହାଃ—
ବାଞ୍ଛାରାମ—ଚୁପ୍, ଚୁପ୍—ବାଈଜୀ ପୁଣି ନାଚିବେ ।
ବାଈଜୀ—( ପ୍ରଥମେ ନାଚିଲେ, ତା'ପରେ ନାନା ଅଙ୍ଗଭଙ୍ଗି ସହ ଗାଇଲେ )

ଗୀତ

ମୁହିଁ ଯଉବନ ସାଥି,
ଆଣେ ନିତି ମଧୁରାତି ॥
ମିଳନ ବାସନା ରୂପ ଉପାସନା
ପରଶେ ମୁଁ ହରେ ଭ୍ରାନ୍ତି ।

ନାରାୟଣ—( ଗୀତାନ୍ତେ ) ବାଃ, ବାଃ,—ବାଇ ତ ବାଇ—ବାଞ୍ଛାରାମ—
ବାଞ୍ଛା—ରାମ-ରାମଜୀ ।
ନାରାୟଣ—ଅଃ, ବାଈଜୀଙ୍କ ନାମ ?
ବାଈଜୀ—ମୋ' ନାମ ?—ଲଛମୀ ବାଈ ।
ନାରାୟଣ—'ଲଛମୀ ବାଈ'—'ଲଛମୀ ବାଈ'—ଆରେ, ବାଈ ତ ବାଈ ଲଛମୀ ବାଈ ।
ଲଛମୀ—( ସେଲାମ କରୁ କରୁ ) ଆଓର, ବାବୁ ତ ବାବୁ—
ନାରାୟଣ—( ଆପଣାକୁ ଦେଖାଇ ) ନାରାୟଣ ବାବୁ ?
ଲଛମୀ—(ସମର୍ଥନସୂଚକ କଣ୍ଠରେ) 'ନାରାୟଣ ବାବୁ' ।
ନାରାୟଣ—ଟଙ୍କା—ଟଙ୍କା—ଅସର୍ଫି—ମୋହର,— ବାଞ୍ଛାରାମ ।
ବାଞ୍ଛା—ରାମରାମଜୀ ।

ନାରାୟଣ—ଅରେ ଘୋଡ଼ା କାହିଁ ? ଘୋଡ଼ା, ଘୋଡ଼ା ?

ବାଞ୍ଛା—ଘୋଡ଼ାଏ ବି ନାହିଁ, ରାମଜୀ—ବିଲ୍‌କୁଲ୍ ଖାଲି । ତେବେ କଚେରି ଘରର ଲୁହା ସିନ୍ଦୁକଟା—

ନାରାୟଣ—ଭର୍ତ୍ତି ? ଯେନ ଆସ ଏହିକ୍ଷଣି,—ଖାଲିକରି ଦିଅ ବାଈଜୀଙ୍କ—

ବାଈଜୀ—ଥାଉ ଥାଉ, ( ନତହୋଇ ସେଲାମ କରୁ କରୁ ) ହୁଜୁର ଏହିପରି ଦୟା ରଖିଥିଲେଇ ହେଲା ।

ବାଞ୍ଛା—'ହଜୁର' କ'ଣ ? ମେରେସେଇଁଆ କୁହ, ବଦ୍‌ଜାତ୍ !

ନାରାୟଣ—( ଉନ୍ମାଦନାରେ ) ସାବାସ୍‌ରେ ମେରେ ସେଇଁଆ ବାଞ୍ଛାରାମ । ( କୁଣ୍ଢାଇ ପକାଇଲେ )

ବାଞ୍ଛା—ରାମଜୀ । (ସଭାସଦଙ୍କ ପ୍ରତି ) ଆଃ, କେମିତିକା ବେଅକଲ ଗୁଡ଼ାକ ମ—ବସି ରହିଚ ଆହୁରି ?

[ ନାରାୟଣ, ବାଞ୍ଛାରାମ ଓ ବାଈଜୀ ବ୍ୟତୀତ ଅନ୍ୟ ସମସ୍ତେ ଅତର୍କ ହୋଇ ପଳାଇ ଗଲେ ]

ବାଞ୍ଛା—( ବାଈଜୀକୁ ଇଙ୍ଗିତ କଲେ ନାରାୟଣଙ୍କ ପାଖେ ଆସି ବସିବାକୁ )

ଲଛମୀ—( ତାହାହିଁ କଲେ )

ନାରାୟଣ—( ସଙ୍କୋଚରେ ସ୍ୱଳ୍ପ ଘୁଞ୍ଚି ଯାଉଥିଲେ )

ବାଞ୍ଛା—ରାମ, ରାମ—ଏ କି କଥା ରାମଜୀ ? ଲଛମୀଜୀ ଯେ ରୁଷି ପଳାଇ ଯିବେ ?

ନାରାୟଣ—ନା, ନା—( ବସିଲେ ସ୍ଥିର ହୋଇ )

ବାଞ୍ଛା—ଆହୁରି ପାଖକୁ ଲଛମୀଜୀ ।—ଆଃ । ଦେଖିଲ, ଯେମିତି ସାକ୍ଷାତ୍ ଲଛମୀ ନାରାୟଣ ଭେଟ । ଜୟରାମ—ସୀତାରାମ । ଜୟରାମ ସୀତାରାମ ।—

[ ପଛେଇ ପଛେଇ ଚାଲିଯାଉଥିଲେ, ଭକ୍ତି ଗଦଗଦ ଭାବର ଅଭିନୟ କରୁକରୁ ]

ନାରାୟଣ—( ଜଡ଼ିତ କଣ୍ଠରେ ) ବାଞ୍ଛାରାମ ।

ବାଞ୍ଛା—ରାମରାମଜୀ ।

ନାରାୟଣ—ତୁମେ ଚାଲିଯାଉଛ କାହିଁକି ?

ବାଞ୍ଛା—ସୁଧା—ସୁଧା ଆଣିବାପାଇଁ, ନାରାୟଣଜୀ ।—କେତେ କଳ୍ପ ସାଧନାପରେ, ସାକ୍ଷାତ୍ ଲଛମୀ ନାରାୟଣଙ୍କୁ ଭେଟିଛି ଆଜି—

ନାରାୟଣ—(ହସି) ଓ, ତା' ହେଲେ ତୁମେ ଗରୁଡ଼ାବତାର ପକ୍ଷୀରାଜ ?

ବାଞ୍ଛା—ଅନ୍ତତଃ ତାଙ୍କର ଅଣ୍ଡଜ, ଏଥିରେ ସନ୍ଦେହ ନାହିଁ—କାରଣ ତା'ର ସାକ୍ଷୀ ପ୍ରମାଣ ରହିଛି—ଏହି 'ନାକ' ।

( ନମସ୍କାର କରି ଚାଲିଗଲେ )

[ ନାରାୟଣ ଓ ଲଛମୀ ଉପବେଶନ କଲେ—ନାରାୟଣ ଲଛମୀ ପ୍ରତି ମୁଗ୍ଧ ଦୃଷ୍ଟି ଥାଇ ଡାକିଲେ ]

ନାରାୟଣ—ଲଛମୀ—

ଲଛମୀ—ନାରାୟଣଜୀ ।—

ନାରାୟଣ—ତୁମେ ଭାରି ସୁନ୍ଦରୀ—

ଲଛମୀ—ଓଁ ହୁ ।

ନାରାୟଣ—ଜଳନ୍ତା ବହ୍ନି ଶିଖା ପରି—

ଲଛମୀ—ଦେଖ, ତେଇଁ ନ ପଡ଼ ଯେମିତି ।—

ନାରାୟଣ—ପୋଡ଼ି ମରିବାକୁ ଯେ ମନ ଉଚ୍ଚନ୍ନ ହେଉଛି ।

[ଆଲିଙ୍ଗନ କରିବାକୁ ଯାଉଥିଲେ, ସେହି ସମୟରେ ବନ୍ଧୁ ମହାନ୍ତି ପ୍ରବେଶ କରି ଡାକିଲେ, ବିକଳ ହୋଇ ]

ବନ୍ଧୁ—ବାପା ।—

ନାରାୟଣ—ବନ୍ଧୁ କକା । ( ନିକଟକୁ ଧାଇଁ ଆସିଲେ )

ଲଛମୀ—( କକ୍ଷାନ୍ତରକୁ ଚାଲିଗଲେ )

ନାରାୟଣ—( ନମସ୍କାର କରି ସାରି ) ଆଜି ଫେରିଲ ନା କ'ଣ ? ଜମିଦାରୀ ହାଲ୍ ଭଲ୍ ତ ? ପ୍ରଜା ପାଟକମାନେ ବେଶ୍ ସୁଖରେ ଅଛନ୍ତି ତ ?

ବନ୍ଧୁ—( ଲୁହ ପୋଛୁଲେ )

ନାରାୟଣ—ତୁମେ କାନ୍ଦୁଛ କକା ? ଜମିଦାରୀ ହାଲ କଣ ତେବେ ଖୁବ୍ ଖରାପ ?

ବନ୍ଧୁ—ଖୁବ୍ । ହେଲେ, ମୋ'ର ଜମିଦାର ସାଆନ୍ତଙ୍କୁ ଆଜି ଯେଉଁ ହାଲ୍‌ରେ ଦେଖୁଛି, ତାକୁ ବଳିଯାଇନି । ( ଲୁହପୋଛୁ )

ନାରାୟଣ—ତୁମେ ଏଠୁଁ ବାହାରଗଲ, କକା ।

ବନ୍ଧୁ—ନା, ଉଣ୍ଡିଆ ଦେଇ ବାହାର କରି ଦେଲେ ବି ମୁଁ ଏ' ଥାନୁ ପାଦେ ବି ଘୁଞ୍ଚିବି ନା ।

ନାରାୟଣ—ମୁଁ ବି ସାଙ୍ଗରେ ଯିବି, କକା ।

ବନ୍ଧୁ—ତଥାପି ନୁହେଁ ।

ନାରାୟଣ—କକା ?

ବନ୍ଧୁ—ମୁଁ ଏତେକାଳ ଜମିଦାରୀ ପଛେ ଗୋଡ଼ାଇଛି—ଜମିଦାର ଯେ ଏଣେ ଭାସିଯାଉଛନ୍ତି, ସେ ଖବର ରଖିନି ।—ଆଜ ତା'ର ନସ୍ତ କରିବି, ଏଇ ଘରେ—ଏଇଠାରେ ।

[ ନେପଥ୍ୟେ ପ୍ରଜାମାନଙ୍କର ଗୋଷ୍ଠୀଏ କରୁଣ ଅଭିନାଦ ଶୁଣାଗଲା ]

ନାରାୟଣ—ଏମାନେ କିଏ ? ଏଡ଼େ ବିକଳ କାହିଁକି ?

ବନ୍ଧୁ—ତୁମର ପ୍ରଜା ପାଟକ ବାବା—ତୁମର ମୁହଁକୁ ଚାହିଁ, ତୁମକୁଇ ଭରସାକରି, କାତର ଦୃଷ୍ଟିରେ ଠିଆ ହୋଇଛନ୍ତି ।

ନାରାୟଣ—କ'ଣ ଗୁହାରି ? ଏମିତକା ଲଙ୍ଗଳା ମୁକୁଳା, ହାଡ଼ଚମ ଲଗିଯାଇଛି—ଅନେଇଁ ହେଉ ନାହିଁ—ଓଃ । ନା, ମୁଁ ନିଜେ ଯିବି କକା—ସେମାନଙ୍କର ଗୁହାରି ଶୁଣିବି—

ବନ୍ଧୁ—ଗୁହାରି ଶୁଣିବ ବୋଲି ତ ସେମାନଙ୍କୁ ଆଣିଛି ଏଠାକୁ ।

ନାରାୟଣ—ତେବେ ଆଉ ଡେରି କାହିଁକି ?—ଆସ—

ବନ୍ଧୁ—ତୁମେ ଯିବ ନି ବାବା ! ମୁ ସେମାନଙ୍କୁ ଡାକ ଆଣୁଛି ଏଇଠାକୁ । ରଜାର ମର୍ଯ୍ୟାଦା ରଜା ରକ୍ଷା କରିବେ—ପ୍ରଜାର ମର୍ଯ୍ୟାଦା ପ୍ରଜା ରକ୍ଷା କରିବେ—ତେବେଯାଇ ରଜା ପ୍ରଜାର ମିଳନ ସମ୍ଭବ ।

ନାରାୟଣ—କିନ୍ତୁ ଏ ଥାନକୁ—

ବନ୍ଧୁ—ଏ ଥାନ ବିଳାସ ବ୍ୟସନରେ ଭରିଯାଇଛି, କଳୁଷିତ ହୋଇଛି—ସେଥିପାଇଁ ଉପଯୁକ୍ତ ଥାନ ନୁହେ ବୋଲି ଡରୁଛ ? ହେଲେ, ଭୟ ନାହିଁ, ବାବା—ରଜା-ପ୍ରଜାର ପ୍ରୀତି ଗଙ୍ଗାରେ ଆଜ ତାହା ଧୋଇ ପୋଛି ନିର୍ମଳ ପବିତ୍ର ଧାମ ହୋଇ ଯିବ ।

ନାରାୟଣ—କକା—( ମୁଖାବନତ କଲେ )

ବନ୍ଧୁ—ବର୍ତ୍ତମାନ ଏ ଦରବାର ଥାନ—ମୁଁ ତୁମର 'କକା' ନୁହେ । ତୁମେ ମୋର 'ମଣିମା'—ମୁଁ ତୁମର ବାର୍ତ୍ତାବହ କିଙ୍କର । ମଣିମା ! ହୁକୁମ ହେଲେ, ପ୍ରଜାମାନଙ୍କୁ ଶ୍ରୀ ହଜୁରରେ ହାଜର କରେଇବି ।

ନାରାୟଣ—( ଜମିଦାର ସୁଲଭ ମିଜାଜରେ ) ଅବିଳମ୍ବେ ।

( ବନ୍ଧୁ ମହାନ୍ତି ସମ୍ମାନ ଦେଖାଇ ଚାଲିଗଲେ )

[ ବାଞ୍ଛାରାମ ସଶଙ୍କ ଭାବରେ ନାରାୟଣଙ୍କ ନିକଟକୁ ଆସି କହିବାକୁ ଲାଗିଲେ, ଫୁସ୍ ଫୁସ୍ କରି, କାନେ କାନେ ]

ବାଞ୍ଛା—ଏ' କଣ କରୁଛନ୍ତି, ରାମଜୀ ?

ନାରାୟଣ—ବାଞ୍ଛାରାମ ! ଦେଖତ, ଏହି ପ୍ରଜାମାନେ ମୋର କେଡ଼େ ବିପନ୍ନ !

ବାଞ୍ଛା—ଲକ୍ଷ୍ମୀ ଠାକୁରାଣୀ ଯେ ତେଣେ କାନ୍ଦ କାଟି ହେଉଛନ୍ତି—

ନାରାୟଣ—ଏ' କ'ଣ କହୁଛ, ବାଞ୍ଛାରାମ !—( ଚାଲି ଯାଉ ଯାଉ ପୁଣି ଫେରି ) ନା ନା, ବିପନ୍ନ ପ୍ରଜାମାନଙ୍କର ଦୁଃଖ—

ବାଞ୍ଛା—ମୁଁ ବୁଝୁଛି, ରାମଜୀ !

ନାରାୟଣ—ତୁମେ ? ବାଞ୍ଛାରାମ ?—ପାରିବ ତ ?

ବାଞ୍ଛା—କାମରେ ପଡ଼ିଲେ ବଳାଇ ଶିଖନ୍ତି । ଏ ଆଉ ବେଶୀ କ'ଣ ? ଉଭୟଙ୍କରତ ଦୁଃଖ ମୋଚନ କରିବାକୁ ହେବ !—ଏକ ଆଡ଼େ ପ୍ରଜା ପାଟକର-ଅନ୍ୟ ଆଡ଼େ ଲକ୍ଷ୍ମୀ ବାଈଜୀର । ହେଲେ, ଲକ୍ଷ୍ମୀ ଠାକୁରାଣୀଙ୍କ ଦୁଃଖ—

ନାରାୟଣ—ସ୍ୱୟଂ ନାରାୟଣ ଛଡ଼ା କେହି ମୋଚନ କରିପାରିବେ ନି···

( ପ୍ରସ୍ଥାନ )

[ ବାଞ୍ଛାରାମ ଜମିଦାରୀ ଚାଲିରେ ତକିଆ ଠେସି ବସିଲେ ଓ ଅନ୍ୟ ଆଡ଼େ ମୁହଁ ବୁଲାଇ ଅଳବଳା ହୁକାରୁ ତମାଖୁ ସେବନ କରିବାକୁ ଲାଗିଲେ ]

( ପ୍ରଜାଗଣ ସହ ବନ୍ଧୁ ମହାନ୍ତି ପ୍ରବେଶକଲେ )

ପ୍ରଜାଗଣ—ହଜୁର୍, ମଣିମା—ଜୁହାର୍, ମା ବାପ—( ଲମ୍ବ ଖମ୍ବ ହୋଇ ସମସ୍ତେ ଗୋଡ଼ ତଳେ ପଡ଼ିଲେ )—ରକ୍ଷା କରନ୍ତୁ, ରକ୍ଷାକରନ୍ତୁ ॥

ବାଞ୍ଛା—ଉଠ, କୁହ, କଣ ଚାହଁ ।

୧ମ ପ୍ରଜା—ଦେଖନ୍ତୁ ଥରେ ଅନେଇ ଆମମାନଙ୍କର ହାଲ୍ । ଅକାଳ ପଡ଼ିଛି—ପେଟକୁ ଦାନା ନାହିଁ—ଅଣ୍ଟାକୁ କନା ନାହିଁ—ପିଲା ଛୁଆଏ ପ୍ରାଣ ଦାଉରେ ଇଲ୍‌ବିଲ୍—

ବାଞ୍ଛା—ଥାଉ, ଥାଉ; ମୁଁ ବି ତୁମ କଥାରେ ଘାର କଲ୍‌ବଲ୍—

ବନ୍ଧୁ—ଚୁପ୍, ଚୁପ୍—ଦେଖି ପାରୁନ, ସା'ନ୍ତେ ତୁମ-ପାଇଁ ଏତେ ବ୍ୟାକୁଳ ଯେ, ତୁମ ଆଡ଼େ ଅନେଇ ବି ପାରୁ ନାହାନ୍ତି ।

ବାଞ୍ଛା—ହଉ, କଅଣ ତୁମେ ଚାହଁ, ସଫା ସଫା କହିଦିଅ ।

ବନ୍ଧୁ—କୁହ, ଡର ଭୟ କାହିଁକି ?—ସା'ନ୍ତେ ନିଜେ ଅଭୟ ଦେଉଛନ୍ତି । ସେ ତୁମର ରାଜା—ତୁମେ ତାଙ୍କର ପ୍ରଜା—ବାପ ପୁଅ ସମ୍ପର୍କ ତୁମଭିତରେ । ପୁଅ ବାପ ପାଖେ ଅଳି କରିବନାତ, କରିବ କା'ପାଖେ ?

୧ମ ପ୍ରଜା—ଗୋଟାଏ ସନର ଖଜଣା ମାଫି—ଏତିକି ଆମ ଗୁହାରି ।

ବାଞ୍ଛା—ଏ' କିବା କଥା ? ଯା' ପାଇଁ ଏତେ ? ଛି:ଛି, ବନ୍ଧୁଭାଇ ଥାଉଁ ଥାଉଁ, ମୋ ପାଖେ ଜମିଦାରୀ କଥା ?

ବନ୍ଧୁ—ନା ନା, ଏମିତି କଥା କହିବେନି, ସା'ନ୍ତେ । ମୋତେ ଆଉ ମହିରେ ପୂରେଇବେ ନି । ଏଣିକି ମୋ'ର ବଳ ବୟସ ହଟିଲା—ବୁଦ୍ଧିଶୁଦ୍ଧି ହୁଡ଼ିଲା । ପାଚିଲା ଆମ୍ବଟିଏ କେତେବେଳେ ଠୁକ୍ କିନା ଝଡ଼ିପଡ଼ିବ, କାଉ କୋଇଲି ବି ଜାଣିବେ ନି । ମୁଁ ଜୀଇ ଥାଉଁ ଥାଉଁ, ରାଜା ପ୍ରଜା ଭିତରେ ଦେଖାସାକ୍ଷାତ୍ କରେଇ, ମେଣ୍ଟ ବାନ୍ଧିଦେଲେ—ମୋର ଛୁଟି ।

ବାଞ୍ଛା—ଏଁକି କଥା, ଭାଇ ? ତୁମେ ଏମିତି ଛାଡ଼ ଛାଡ଼ ହେଲେ, ମୁଁ ଛାଡ଼ିବି କାହିଁକି ?

ବନ୍ଧୁ—ନା ନା—ତୁମେ ସେପରି କୁହ ନା, ବାପ—ତୁମେ ରାଜ୍ୟଭାର ନେଲେ, ମୁଁ ରାଣୀଙ୍କ ଖବର ବୁଝିବି, ରାଜ୍ୟଭାରଠୁଁ ରାଜାଙ୍କ ଖବର ବଳି ଗଲାଣି ।

ବାଞ୍ଛା—ବେଶ୍, ତୁମର ଯେବେ ଏଇଟା ଇଚ୍ଛା, ସେଥିରେ ମୁଁ ବାଧା ଦେବି ନି—କାରଣ, ପିତାର ଇଚ୍ଛା, ପୁତ୍ରର ପୂରଣ କରିବା ଉଚିତ । ତେବେ, କଚେରି ଘର ଚାବିଟା ତୁମପାଖେ ଅଛି—

ବନ୍ଧୁ—ରହିବା ଠିକ୍‌ନୁହେଁ—ଏଇ ନିଅନ୍ତୁ ଚାବି ।

ବାଞ୍ଛା—ସେଇଠି ରଖ । ହଁ, ଲୁହା ସିନ୍ଦୁକର ଚାବିଟା— ?

ବନ୍ଧୁ—ସେହି ଚାବି ଗୋଛାରେ ଅଛି, ସା'ନ୍ତେ—

( ନାରାୟଣ ଠିକ୍ ସେହି ସମୟରେ ପଶି ଆସି କହିଲେ)

ନାରାୟଣ—ମୋର ବୋଉର ଗହଣା ସିନ୍ଦୁକର ଚାବି ?

ବାଞ୍ଛା—( ଉଠି ପଡ଼ି ) ଠିକ୍ କହିଛ. ରାମଜୀ ।

ବନ୍ଧୁ—ବାଞ୍ଛାରାମ !—ଓ୍ୱଃ

ନାରାୟଣ—ମୂର୍ଚ୍ଛା ଯିବ ପଛେ—ଆଗେ ଗହଣା ବାକ୍‌ସର ଚାବି—

ବାଞ୍ଛା—ଘର ପାରିଜାତ ପାଇଁ ରୁକ୍ମଣୀ ଦେବୀ କି କନ୍ଦଳଟାଏ ଲଗାଇ ନ ଥିଲେ—ଆଉ ଏ'ତ ସାର ସୁବର୍ଣ୍ଣ ଅଳଙ୍କାର—ଲକ୍ଷ୍ମୀ ଦେବୀ ବାକି ରଖିବେ ? ମଥା ପିଟିଦେବେନି ନାରାୟଣଜୀଙ୍କ ଚରଣ ତଳେ ?

ବନ୍ଧୁ—ବାଞ୍ଛାରାମ—

ନାରାୟଣ—ନାଲି ଆଖି ଦେଖାଇବ ପରେ—ବାଞ୍ଛାରାମ ଯା କହେ ବା କହିବାକୁ ଚାହେଁ, ତା' ତୁମ ଜମିଦାର ସା'ନ୍ତଙ୍କ ମନର କଥା,—ଏହା ଖିଆଲ ରଖିବ ।

ବନ୍ଧୁ—ତେବେ ଶୁଣ ସା'ନ୍ତେ—ମୁଁ ମରିଗଲେବି ଏ ଚାବି କାହାରିକୁ ଦେଇ ପାରିବି ନି ; କାରଣ,

ତୁମର ବୋଉ ସ୍ୱର୍ଗକୁ ଗଲାବେଳେ, ସେହି ଗହଣା ସିନ୍ଦୁକର ଚାବି ମୋ' ଜିମ୍ମାରେ ଦେଇ-ଯାଇଥିଲେ, ଆଉ ମୋ'ର ହାତ ଓଠ ଧରି କହିଥିଲେ, ଘରକୁ ଲକ୍ଷ୍ମୀ ଆସିଲେ, ତାଙ୍କର ଶାଢ଼ି ପଣନ୍ତରେ ଯେମିତି ବାନ୍ଧି ଦଏଁ ।

ବାଞ୍ଛା—ବେଶ୍ ତ—ଲଛମୀଜି ଆସିଛନ୍ତି—ବାନ୍ଧିଦଅ, ସହଲ ସହଲ ।

ବନ୍ଧୁ—ବାଞ୍ଛାରାମ—

ନାରାୟଣ—ବୁଢା । ଭଲରେ ଭଲରେ ଗହଣା ସିନ୍ଦୁକର ଚାବି ଆଣି ଦଅ, ନୋହିଲେ—

ବାଞ୍ଛା—ବୁଝି ପାରୁଛ ?

ବନ୍ଧୁ—ଅପମାନ ?

ନାରାୟଣ—ହଁ, ହଁ, ଗଳାଧକ୍କା ଦେଇ, ସାତ ବେଣ୍ଟିଆ କରି, ଘଉଡ଼ାଇ ଦେବି ଏହି ସହରରୁ, ଯାଜପୁର ମୁକାମରୁ !

ପ୍ରଜାଗଣ—ଏ ଅପମାନ ଆମ୍ଭେମାନେ ସହି ପାରିବୁ ନାହିଁ ।

ବନ୍ଧୁ—ଶାନ୍ତ ହୁଅ ଭାଇମାନେ—ଯେତେ ହେଲେ ସେ ମୁନିବ, ମୁଁ ନଉକର—ଆମ ଭିତରେ ଲାଗିଛି ଟିକିଏ ମନ କଷାକଷି—ତୁମେ ଦେହରେ ପଡ଼ି ତା' ଆଉ ବଢ଼ାଇ ଦିଅନାହିଁ । ଚାଲିଆସ ଅଇଛିକା—ମୁନିବ ମୋର ଅସୁସ୍ଥ—

( ସମସ୍ତଙ୍କୁ ଘେନି ଚାଲିଯିବାର ଉପକ୍ରମ )

ନାରାୟଣ—ତୁମେ ତ ସୁସ୍ଥ ?—ଦେଇଯାଅ ଚାବି ।

ବନ୍ଧୁ—ଚାବି ଏଠି କାହିଁ ?

ନାରାୟଣ—ତୁମ ଘରେ ଅଛି ? ବେଶ୍—ବାଞ୍ଛାରାମ ।

ବାଞ୍ଛା—ରାମରାମଜି ।

ନାରାୟଣ—ସାଙ୍ଗରେ ଯାଅ ତ ।

ବାଞ୍ଛା—ମୁଁ—ମୁଁ—ଦେଖନ୍ତୁ, ରାମଜି—ଯେମିତିକା ମେଳି ବାନ୍ଧିଛନ୍ତି ପ୍ରଜାଏ—ରାମଜୀଙ୍କ ଏକୁଟିଆ ଛାଡ଼ି କେବେ ଯାଇପାରେ ଲଛମନଜି ?—

ବନ୍ଧୁ—ମୋତେ ବିଶ୍ୱାସ କର, ବାପ—ମୁଁ ଠକି ପଳାଇ ଯିବିନି ।

ବାଞ୍ଛା—ଏ ବିଶ୍ୱାସ ଅମର ଅଛି—ଏ ବିଶ୍ୱାସ ଅମର—( ବନ୍ଧୁ ଚାଲିଯାଉଥିଲେ ) ହଁ, ଦେଖ, ଯେମିତି ବିଳମ୍ବ ନ ହୁଏ । ( ବନ୍ଧୁ ଚାଲିଗଲେ )

ଲଛମୀ—ମୋତେ ଭାରି ଡର ମାଡ଼ୁଛି ।

ବାଞ୍ଛା—ଆଉ ଡର ଭୟ ନାହିଁ, ସୀତାଜୀ—ସବଂଶେ ରାବଣ ନିଧନ । ଏଥର ନିଦକରେ ଆସନ୍ତୁ, ବସନ୍ତୁ, ରାମ ସୀତାଭିଷେକ ହେଉ—ଆଉ ମୁଁ ତୁମର ସେବାକାରୀ ଲକ୍ଷ୍ମଣ ହୁଏ ।

---

## ତୃତୀୟ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ଯେଉଁ ଘନ ଘନ ହୁଳହୁଳି ଓ ଶଙ୍ଖଧ୍ୱନି ଶୁଣାଗଲା, ତାହା ଗ୍ରାମର କେତେକ ଛୋଟ ଛୋଟ ବାଳିକାମାନେ ଓଷାଖେଳ ଖେଳୁଥିଲେ । ସେହି ସନ୍ଧ୍ୟାନ୍ତର ବର୍ତ୍ତିମାନ ଯେଉଁ ଦୃଶ୍ୟ ଦେଖାଗଲା, ତାହା ହେଉଛି—ଗାଁ ଭିତରେ ବିରଜା ମନ୍ଦିରକୁ ଯିବା ଆସିବାର ଗୋଟାଏ ସଙ୍କୀର୍ଣ୍ଣ ବାଟ । କରପଟରେ ବଣ ଲଟା ଗହଳି ଭେଦକରି ବିରଜାଦେବୀଙ୍କ ମନ୍ଦିର ଚୂଡ଼ା ଦେଖାଯାଉଥାଏ । ପିଲାମାନେ ଗୋଟିଏ ଟିଭାଦିଆ ପିଢ଼ାରେ ଗୁଡ଼ାଏ ଫୁଲ ରଖି, ଦୁଇ ମୁଣ୍ଡରୁ ତାହା ଧରି ଗାଉ ଗାଉ ଆସୁଥିଲେ ]

ପିଲାମାନେ—ଜହ୍ନି ଫୁଲ ଠୋ ଠା—କାକୁଡ଼ି ଫୁଲ ଠୋ, ଚୁଟିଆ ମୂଷା କହି ଯାଇଛି—ଚାଉଳ ମୁଠିଏ ଥୋ—

୧ମ ପିଲା—ଅଲୋ, ହୁଳହୁଳି ଦିଅ ଲୋ—

( ସମସ୍ତେ ସେହିଭଳି କଲାବେଳେ, ବୁଲି ଗୋଟିଏ ଫୁଲଗୁଚ୍ଛ ଧରି ପ୍ରବେଶ କଲା )

ବୁଲି—ଏ କି ଖେଳ ଖେଳୁଚ କି ଲୋ ?

୧ମ ପିଲା—ଜାଣିନି କି ମ, ଜହ୍ନି ଓଷା ଖେଳ ।

ବୁଲି—ଏଃ, ଏ ଗୋଟାଏ ଖେଳରେ ଲେଖା—ହୁଁ—ପିଢ଼ାରେ ଗାରେ ଗାରେ ଚିତା ମାରିଦେବି—

ଫୁଲ୍ ଗଣ୍ଡାଏ ଥୋଇଦେବ—ଅଉ ଦ ମୁଣ୍ଡରୁ ଦ'ଜଣ ଧରି ଗାଇବ—'ଜହ୍ନି ଫୁଲ୍ ଠୋ ଠା'

୧ମ ପିଲା—ବେଶ୍ ଭୁ, ଭୁ ଗୋଟାଏ ନୂଆ ଖେଳ ବତାଉନୁ ?

ବୁଲ୍—ଖୁ ଦୁରୁକୁଣୀ ଓଷା ଖେଳ ଖେଳିବା ।

୧ମ ପିଲା—ଓଃ, ଭାରି ନୂଆ ଖେଳଟାଏ ବତେଇଲୁ ଯେ । ଆମେ ଆଉ ଜାଣୁନା । ଏମିତି ଗୋଟିଏ ପିଢ଼ାରେ ଝୁଣ୍ଟିଫୁଲ ନ ଥୋଇ, ମାଟିର କୁଣ୍ଢେଇଟିଏ ବସେଇବ—ସେ ପିନ୍ଧିବ ଗୁଣା ବସୁଣୀ, ଖଡ଼ୁ ପାହୁଡ଼, ଅଉ ମୋଟ ଦନ୍ତକୁଣା ଶାଢ଼ୀ ।

୨ୟ ପିଲା—ହଁ ମ—ଭାଦ୍ରବ ମାସ—ପାଞ୍ଚପାଲି ପାଞ୍ଚ ରବିବାର ଏ' ଓଷା ହୁଏ । ଭାରି ତ ସେ ଖେଳ, ଅଉ ଆମକୁ ଆସିବ ନି ?

ବୁଲ୍—ଆଲୋ, ନା'ଲୋ ନା—ସେ ଖେଳ ନୁହେଁ—ଓଷା କଥା ଆମେ ଖେଳିବା ।

୧ମ ପିଲା—ଓଷା କଥା ?

ବୁଲ୍—ହଁ ଲୋ, ତଅପୋଇ କଥା ।

୨ୟ ପିଲା—ଖୁ ଦୁରୁକୁଣୀ ଓଷା ପୂଜିଲାବେଳେ ଯେଉଁ କଥା କୁହାହୁଏ ତ ?

୧ମ ପିଲା—ତାକୁ କେମିତି ଖେଳିବା ମ ?

ବୁଲ୍—ମତେ ଅପା ଶିଖେଇଛି—ଏମିତି ମୋ ପରି ଗୋଟେ ଥିଲାବେଳେ ସେ ଯେମିତି ଖେଳୁଥିଲା । ଆଗେ ତୁମେମାନେ ପାଟିତୁଣ୍ଡ ନ କର, ଶୁଣ—ମୁଁ ଠିକେ ଠିକେ କଥାଟି କୁହେଁ ।

୧ମ ପିଲା—ହଉ, କହ ।

ବୁଲ୍—ସାଧବଟିଏ—ତାର ସାତ ପୁଅ, ସାତ ବୋହୂ, ଅଉ ସୁନାନାଙ୍କୀ ଝିଅଟିଏ—ତା'ର ନାଁ ତଅପୋଇ । ତଅପୋଇ ସବୁ ସାନ ବୋଲି, ସମସ୍ତଙ୍କର 'ଦୁଲଣୀ' ହୋଇଥାଏ । ଦିନେ ତଅପୋଇ ସୁନା ଗୁଙ୍ଗୁଡ଼ି ଧରି ଖେଳୁଥିଲା ବେଳେ, ବୁଢ଼ୀ ରଣ୍ଡୀବ୍ରାହ୍ମଣୀଟିଏ ଥୁରୁ ଥୁରୁ—ମଥାରେ ନୁଖୁରିବାଳ ଫୁରୁ ଫୁରୁ—ଡକୁଣୀ ଝଡ଼ପଡ଼ୁଛି କାହିଁରେ କ'ଣ—ଅଣ୍ଟା ପିଠି ଭାଙ୍ଗି ପଡ଼ୁଛି—ବାଡ଼ି ଖଣ୍ଡେ ଧରି ଠୁକ୍ ଠୁକ୍ ହୋଇ ଆସି କହିଲା—

୨ୟ ପିଲା—କ'ଣ କହିଲା ?

ବୁଲ୍—'ଆଲୋ ଝିଅ, ତୋ ବାପ ତୋତେ ଏତେ ଗେଲବସର କରେ ଯେ, କହିଲେ ସରିବ ନାହିଁ । ସୁନାର ଗୁନ୍ଦିଟିଏ ମାଗିଆଣି, ଖେଳ ପାରୁନୁ ?'

୩ୟ ପିଲା—ବୁଢ଼ୀ ତ ବେଶ୍ କଥା ଶିଖେଇଲା ?

ବୁଲ୍—ଶୁଣିଛ—ବସ ବସ !—ତଅପୋଇ ଏ' ଧଇଲା—ସେହିକ୍ଷଣି ବଣିଆଙ୍କୁ ଡକରା ହେଲା—ସୁନାର ଗୁନ୍ଦି ଗଢ଼ିବାକୁ ବରାଦ ଦିଆଗଲା । ଗଢ଼ା ଅଧା ହୋଇଛି, ତଅପୋଇର ମା ମଲା—ପୂରା ହେଲା ବେଳକୁ ବାପା ବି ମଲା—ଧନ ସମ୍ପତ୍ତି କାହିଁ ଉଭେଇଗଲା ।

୩ୟ ପିଲା—ଆଲୋ ମୋ ବୋଉ ଲୋ । ଆଉ ଶୁଣିବନି ଲୋ—ମତେ ଭାରି ଡର ମାଡ଼ୁଛି ।

୪ର୍ଥ ପିଲା—ବୁଢ଼ୀଟା ରାକ୍ଷସୀ ନା କ'ଣ ?

ବୁଲ୍—ଆଲୋ, ନାହିଁ ଲୋ—ସେ ହେଉଛନ୍ତି ଜାଗେ ମା ମଙ୍ଗଳା—ଖୁଦୁରୁକୁଣୀ—

୧ମ ପିଲା—ଏମିତିକା କଣ୍ଠା ଡାହାଣୀଟାଏ ନା ?—

ବୁଲ୍—(ହସି) ଆଲୋ ଡାହାଣୀ ରାକ୍ଷସୀ ନୁହେଁ ଲୋ—ଅପା ମୋତେ ବୁଝେଇ କହିଛି ପରା—ଠାକୁର ଦେବତାମାନେ ଏ' ମର୍ତ୍ତ୍ୟମଣ୍ଡଳକୁ ଆସନ୍ତି ଏଇ ବେଶରେ, ଆମଠୁ ଭୋଗ ଖାଇବା ଲୋଭରେ ।

୩ୟ ପିଲା—ଭୋଗ ଖାଇବା ଲୋଭରେ, ନା ମଣିଷ ଖାଇବା ଲୋଭରେ ?

ବୁଲ୍—(ହସି) ଆଲୋ ନାହିଁ ଲୋ ନାହିଁ—ଅପା କହିଛି—ଆମେ ମଣିଷଜାତି ଏମିତି ଯେ, କଷ୍ଟରେ ନ ପଡ଼ିଲେ, କୃଷ୍ଣ ନାମ କେବେଁ ଡାକୁ ନା ।

୧ମ ପିଲା—ଓ, ସେଇଥିପାଇଁ ମା ମଙ୍ଗଳା ଭିଆଣ କରି ତଅପୋଇଙ୍କୁ ପହିଲେ କଷ୍ଟ ଦେଲେ, ତା' ପରେ ସେ ତାଙ୍କ ପୂଜିବାରୁ ସୁଖରେ ରଖିଲେ ।

୪ର୍ଥ ପିଲା—କେମିତି ?

ବୁଲ୍—ଯଉଁଠୁ ଗପ ଛାଡ଼ିଥିଲ, ସେଇଠୁ ଶୁଣିଲେ, ବୁଝିବ—ସବୁ ସମ୍ପତ୍ତିବାଡ଼ିଘର ଗଲା—ଭାଇମାନେ ବେପାରୀ-ପିଲା, ହଟିବେ କାହିଁକି ? ସଭିଏ ଏକାଠି ହୋଇ ବସି ବୁଦ୍ଧି ପାଞ୍ଚିଲେ—ତା'ପରେ ବୋଇତ ଚଢ଼ି ସିଂହଳ ରାଇଜକୁ ବଣିଜ କରି ଗଲେ, ଆଉ ସାତ ବୋହୂଙ୍କ ଜିମାରେ ତଅପୋଇକୁ ରଖି ଗଲେ—ତାକିଦ୍ କରି ଯେ, ତା'ର ଯେମିତି ଟିକିଏ ଅଣହେଲା ନ ହୁଏ ।

୨ୟ ପିଲା—ହଁ, ତା'ପର ମୁଁ ଜାଣେ ମ—ସେଇ ବୁଢ଼ୀ କେମିତି ସାତ ବୋହୂଙ୍କୁ କାନେ କାନେ ଶିଖେଇଲା—

୩ୟ ପିଲା—କ'ଣ ?...

୨ୟ ପିଲା—ଏଇ ନଣନ୍ଦକୁ ଦୋଳରେ ବସାଉଛ, ଖଟରେ ଶୁଆଉଛ, ସାତ ଭୁଣି ସରୁ ବାଢ଼ି ଖୁଆଉଛ—କହିଲ, ଏତେ ସେବା କରୁଛ ଯା'ର, ସେଇ ନଣନ୍ଦ ବଡ଼ହେଲେ—ତୁମ ଉପରେ ସବାର ହେବ ପରା !—

୧ମ ପିଲା—ହେଲେ, ବଡ଼ ଛ ବୋହୂଙ୍କ ଭଳି ସାନ ବୋହୂ ନଥିଲା । ବଡ଼ ଛ ବୋହୂ ବେଇମାନି କରି ଯେତେବେଳେ ତଅପୋଇକୁ ବନସ୍ତରେ ଛେଳି ଜଗିବା କାମରେ ଲଗେଇ ଦେଲେ, ସେତେବେଳେ ସାନ ବୋହୂଟି ପରା, ଏ ଆଖିର ଲୁହ ସେ ଆଖିରେ ମାରି ରହୁଥାଏ ।

ବୁଲ୍—ହଁ, ତା'ପର ଶୁଣ—'ଘରମଣି' ବୋଲି ଗୋଟିଏ ଛେଳି ଥାଏ । ସେଇଟି ବୋହୂମାନଙ୍କର ଭାରି ପିଅରି । ସେଇ ଛେଳିଟି ଦିନେ ଗୁହାଳକୁ ଅଇଲା ନି । ତଅପୋଇର ପଡ଼ି ବନ୍ଦହେଲା । ସେ ବିଚାରୀ କରେ କ'ଣ ? ପ୍ରାଣ ବିକଳରେ ଏଣେ ତେଣେ ଖୋଜି ଖୋଜି ବୁଲିଲା । ଛେଳି ନ ପାଇଲେତ ଘରକୁ ଫେରିବ ନି । ଫେରିଲେତ ଅବସ୍ଥା ସରିଯିବ—ଇମିତି ବେଳେ—

୨ୟ ପିଲା—ମୁଁ ଜାଣେ—ବାଳିହିଁଏଁ ଖୁଦୁରୁକୁଣୀ ଓଷା ପୂଜୁଥିଲେ, ତାଙ୍କୁ ଚଲା । ସେଇଠି ଯାଇ ହାଜର ହେଲା, ତା' ମନ କଥା ଜଣେଇଲା, ଆଉ 'ଘର-ମଣି'କୁ ପାଇ ଘରକୁ ଫେରିଲା ।

ବୁଲ୍—ଖାଲି ସେତିକି ?—ବାର ବରଷ ହେଲା ଯଉଁ ଭାଇମାନଙ୍କ ପତ୍ତା ମିଳୁ ନ ଥିଲା, ସେମାନେ ବୋଇତ ବୋହେଇକରି ଘରକୁ ଫେରିଲେ, ପୂର୍ବ ସଂପତ୍ତିରୁ ଅଧିକ କଲେ ।

୩ୟ ପିଲା—ଯଉଁ ଭାଉଜମାନେ ତଅପୋଇକୁ ଏତେ ହୀନ ଅବସ୍ଥା କରିଥିଲେ, ସେମାନଙ୍କୁ କିଛି କହିଲେ ନି ଭାଇମାନେ ?

ବୁଲ୍—କହିଲେ ନି ?—ସେଇ ତଅପୋଇ ଆଗରେ, ଜଣ ଜଣ କରି ଛଅ ବୋହୂଙ୍କ ନାକ କାଟି, ନାକୋଇ କରି ଅଗ୍ନାଗ୍ନି ବନସ୍ତରେ ନେଇ ଛାଡ଼ି ଦେଲେ ପରା ।

୪ର୍ଥ ପିଲା—ମୋ ବୋଉଲୋ ! ଅଚ୍ଛା, ଅଗ୍ନାଗ୍ନି ବନସ୍ତରେ ବାଘ ଭାଲୁତ ନିଶ୍ଚୟ ଥିବ, ସେମାନଙ୍କୁ ଖାଇ ପକେଇଥିବ ?

ବୁଲ୍—ଯା ଅଉ ପଚାରିବାକୁ ?

୩ୟ—ସାନ ବୋହୂଟି ?

ବୁଲି—ଭଲ ସେ, ଭଲରେ ରହିଲା ।

ସମସ୍ତେ—ତେବେ ତ ଏ ଭଲଖେଳ ।

୧ମା—ହେଲେ, ଆମେ ଖେଳିବା କେମିତି, ବୁଲ୍ ?

ବୁଲ୍—ସେଇ କଥାତ କହୁଛି, ଅପା ଯେମିତି ଖେଳୁ-ଥିଲା ପିଲାଦିନେ । ଆମ ଭିତରେ ଜଣେ ହେବ ତଅପୋଇ, ବାକି ସାତଜଣ ହେବେ, ସାତବୋହୂ ।

୩ୟା—ଅଉତ କେହି ନାହିଁ—'ଘରମଣି' ହେବ କିଏ ?

[ ଅନେକ ବେଳୁ ନାରାୟଣ ପ୍ରବେଶ କରି ପିଲାମାନଙ୍କ ଅଲକ୍ଷ୍ୟରେ ଥାଇ ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲେ ଓ ଆପଣାର ପିଲା ଦିନର କଥା ସ୍ମରଣ କରିବାର ଦେଖା ଯାଉଥିଲେ ]

ନାରାୟଣ—ମୁଁ । 'ଅର୍ଡ଼ର ମେଁ'—'ଅର୍ଡ଼'ର ମେଁ' ( ଛେଳିଭଳି ବୋବାଇଲେ ) ଅଃ, ତମେ ସବୁ ପଳାଉଚ କାହିଁକି ? ଖେଳ ।

( ପିଲାମାନେ ଗୁଲଚଲେ )

ବୁଲ୍—( ଗଲାନାହିଁ, କଟମଟ କରି ନାରାୟଣ ଅଡ଼େ ଅନାଇ ଠିଆ ହେଲା )

ନାରାୟଣ—କି, ତମେ ପଳେଇଲ ନା ?

ବୁଲ୍—ଛେଳିକି ଡରିବି ମୁଁ ?

ନାରାୟଣ—( ମନକୁ ମନ ) ଠିକ୍ ଏମିତି କଥା ପଦେକ ଦିନେ, ଦଶ ବର୍ଷ ତଳେ, ଏମିତି ଜଣେ ବାଳିକା ମୁହଁରୁ—( ବୁଲ୍ ଆଡ଼େ ଚାହିଁ ) ବାପ୍‌ରେ, କି ଚାହାଣୀ ? ଶିକାରୀ ବାଘୁଣୀ ଲୋ ମା !—ପଳାଏଁ ପଳାଏଁ—( ପଳାୟନର ଅଭିନୟ କରିବା )

ବୁଲ୍—ଠିଆ ହୁଅ—

ନାରାୟଣ—ମତେ ?

ବୁଲ୍—ହଁ, ତୁମକୁ ।

ନାରାୟଣ—ଛେଳିକି ଗିଳିପକେଇବ ନା ତ ?

ବୁଲ୍—ନା ।

ନାରାୟଣ—ଅଭୟ ପାଇଚି, ଆଉ ଭୟ କ'ଣ ? କୁହ ମଙ୍ଗଳାଠାକୁରାଣୀ ! ମୁଁ ଶୁଣିବାକୁ ପ୍ରସ୍ତୁତ ।

ବୁଲ୍—ତମେ ଏ ଗାଁର ଜମିଦାର ନା ?

ନାରାୟଣ—ମତେ ଚିହ୍ନ ?

ବୁଲ୍—ଚିହ୍ନିବି ନା, ଗଲା ଦୋଳପୂନିଅଁରେ, ମୋ ମୁହଁରେ ଅବିର ବୋଳି ଦେଇଥିଲ ପରା ?

ନାରାୟଣ—ତମେ କିଏ ? ମୁଁ ତ ଚିହ୍ନିପାରୁ ନି ?

ବୁଲ୍—ହେଲେ, ବାପାକୁ ଲୁଚେଇ ମୋ ହାତରେ ଅବିର ମୁଠେ ଦେଇ ଯେତେବେଳେ ଚୁନି ଚୁନି କରି କାନରେ କହିଥିଲ—ବୁଲ୍, ଏ ଅବିର ମୁଠାକ ତୋ ଅପା ମୁହଁରେ ବୋଳି ଦବୁ, ଆଉ କହିବୁ—ଏ ନାରଣଭାଇର ଅବିର··· ସେତେବେଳେ ତ ଏ ବୁଲ୍‌କୁ ବେଶ୍ ଚିହ୍ନିଥିଲ ?

ନାରାୟଣ—ତମେଇ ସେ ଅବିର ଦେଇଥିଲ ଶୋଭି ମୁହଁରେ ? ତମେ ମୋ ବନ୍ଧୁକକାଙ୍କ ଝିଅ ?—ତମେ—

( ବୁଲ୍‌କୁ ଧରିବାକୁ ଧାଇଁଲେ )

ବୁଲ୍—ଠିଆ ହୁଅ, ଜବାବ ଦିଅ । ତମେ ପିଲାଦିନେ ଅପାର ଖେଳ ଭାଙ୍ଗି ଦେଉଥିଲ ବୋଲି ମୋର ଖେଳ ଭାଙ୍ଗି ଦବ, କାହିଁକି ?

ନାରାୟଣ—ସେଇ ପୁରୁଣା ଅଭ୍ୟାସ କଥା ମନେ ପଡ଼ିଗଲା, ବୁଲ୍—ଆଜି ତମର ଏଇ ଖେଳ ଦେଖି । ବୁଲ୍—ବୁଲ୍—

ବୁଲ୍—ଛୁଅଁ ନା ମତେ—ଗାଁଅର ଜମିଦାର—ଟିକିଏ ହୋଇ ଅକଲ ନାହିଁ ତମର ?

ନାରାୟଣ—ସତେ, ବୁଲ୍—ମୁଁ ଯାହା କରିଚି, ସେଥିପାଇଁ ତମକୁ ଛୁଇଁବା ମୋର ଆଦୌ ଉଚିତ ନୁହେଁ ।

ବୁଲ୍—ଏକା ତମର କାହିଁକି, କାହାରି ନୁହେଁ ।

ନାରାୟଣ—କାହାରି ନୁହେଁ ? ( ଅପ୍ରତିଭ ନେତ୍ରରେ ଚାହିଁରହିଲେ ବୁଲ୍‌ଆଡ଼େ )

ବୁଲ୍—ଆହେ, ଆଜି ପରା ସପ୍ତମୀପୂଜା ? ମୁଁ ଦିଅଙ୍କ ପୂଜାପାଇଁ ଫୁଲ୍ ନେଇ ଯାଉଥିଲି—

ନାରାୟଣ—ଓ—ସେଇଥିପାଇଁ ଛୁଇଁବାକୁ ମନା କଲ ?

ବୁଲ୍—ହଇ, ଦେଖୁନ—( ଫୁଲ ଗୁଙ୍ଗୁଡ଼ି ଦେଖାଇଲା )

ନାରାୟଣ—ତୁମେ, ଏଡ଼େ ବଡ଼ଟେ ପିଲା, ଦିଅଁ ପୂଜା କରିଥାଉଚ ?

ବୁଲ୍—ମଲା, ମୋର କି ଗରଜ ମ ?—ଅପା ପୂଜିବ ବୋଲି ନେଉଚି ନା ?

ନାରାୟଣ—ଅପା ?

ବୁଲ୍—ହଁ . ଏଇ ଭୋଗ ଥାଳିଆ ଧରି ଆସୁଥିବ । ନାରଣ ଭାଇ ! ମୁଁ ଏଠି ଏମିତି ଖେଳରେ ମାତିଥିଲି ବୋଲି ଅପାକୁ ଯେମିତି କହି ନ ଦିଅ । ଦେଉଳରେ ବସି ମାଳ ଗୁନ୍ଥିବି, ଏଥିପାଇଁ କେତେ ବେଳୁଁ ମୋତେ ପଠେଇ ଦେଇଥିଲା । ଏ'କଥା ଜାଣିଲେ ଆଉ ବାକି ରଖିବ ନି । ଦାହାପାକ ଗାଳି ଚମୁଟି ପରାସ କରି ଦବ । ଯାଏଁ···

( ପ୍ରସ୍ଥାନ )

ନାରାୟଣ—ଓଃ ! ବୁଲୁ ଭିତରେ ଏ କି ପରାସ ! ନା, ନା ଏ ଗୋଟାଏ ଦୁର୍ବଳତା । ବାଞ୍ଛାରାମ ଠିକ୍ କହୁଛି, ପ୍ରେମ କରିବାକୁ ହେଲେ, ସାହସ ଦରକାର । ବିଲ୍‌ୱମଙ୍ଗଳ ଚିନ୍ତାମଣି ସକାଶେ ଶବ ଧରି ନଈ ପାରି ହୋଇଥିଲେ, ସାପ ଲାଙ୍ଗୁଡ଼ ଧରି

ପାଚେରି ଡେଇଁଥିଲେ—ମୁଁ ଏଇ ଗହଣା ଲାଗି ଘର ଗୋଟାଏ ବୁଢ଼ା ଗୁମାସ୍ତା, ଗୋଟାଏ ଚାକରକୁ ବରଖାସ୍ତ କରିଚି—ବେଶୀ କଣ ? ଲକ୍ଷ୍ମୀ, ଲକ୍ଷ୍ମୀ—( ଜଣେ ଅନ୍ଧ ବ୍ରାହ୍ମଣକୁ ଘେନି ବୁଢ଼ୀ ବ୍ରାହ୍ମଣୀଟିଏ ଗାଇ ଗାଇ ପ୍ରବେଶ କଲା )

ଗୀତ

ଅଛ କେ ଧରମୀ ଦାତା, ଶୁଣିବ ଗୁହାରି ?
ଦିଅ ଭିକ, ଦିଅ ମୁଠେ, ଆମେ ବାର-ଦୁଆରି ॥
ଗଣ୍ଡାଘର କରି ଖାଲି ଦେବଙ୍କ ଭିଖାରୀ ବୋଲି
ନ ଦେଲେଟି ଯିବୁ ଚାଲି,
ଆମ କରମ ଅଦର ।

ବ୍ରାହ୍ମଣ—ଅନ୍ଧ ବ୍ରାହ୍ମଣ—ଭିଖ ମିଳୁ ।

ନାରାୟଣ—ଏଇ ଗହଣା ?

ବ୍ରାହ୍ମଣୀ—ଆଜ୍ଞା ହଁ ହଁ...

ନାରାୟଣ—ଲୋଭ ତ କମ୍ ନୁହେ ?

ବ୍ରାହ୍ମଣୀ—ଚିରଦିନ ପିନ୍ଧି ଆସିଛୁ ପରା ।

ନାରାୟଣ—ଏବେ କପାଳ ପୋଡ଼ିଲା, କଅଣ କରିବୁ ?

ବ୍ରାହ୍ମଣୀ—ସାଆନ୍ତେ ! ଏ ଗେରସ୍ତର ହାତ ଧରିଲା ଦିନୁଁ—

ବ୍ରାହ୍ମଣ—କଲେ ! ତୁ' ତ ଖୁବ ବଡ଼ି ବଡ଼ି କଥା କହୁଛୁ ? ମୋର ଆଖିଥିଲା ବେଳେ ତୋର ଗହଣା ନ ଥିଲା ? ଆଜ ଅନ୍ଧ ହେଲି ବୋଲି ସିନା, ଦାତାଙ୍କ ପାଖେ ମୋ ନାଁରେ ଏତେ ଲଗେଇ କହୁଛୁ ? କହିଲ ସାଆନ୍ତେ ! ଆଖି ଥାଇ କଣ ଲୋକେ ଅନ୍ଧ ଭଳି କାମ କରନ୍ତି ନାହିଁ ?

ନାରାୟଣ—'ଆଖି ଥାଇ କ'ଣ ଲୋକେ ଅନ୍ଧ ଭଳି'—କିଏ ତୁ ? କେଉଁଠୁ ଆସିଛୁ ? ଯା ଯା ଆଖି ଆଗରୁ ବାହାରି—ଏଇ ନେ—ଯାଃ ଅଣ୍ଟାରେ ତ କିଛି ନାହିଁ ?

ବ୍ରାହ୍ମଣୀ—ନ ଥାଉ, ଦୟା ଦରଦ ଅଛି ତ ? ଆଜ ନ ହେଲେ ଆଉ ଦିନେ ନେବୁ ସାଆନ୍ତେ । ଗାଅ, ଗାଅ, ସାଆନ୍ତଙ୍କୁ ଗୀତ ଶୁଣା...ଭଲ କରି ଭିଖ ମୁଠାଏ ପାଇବାକୁ ଯେବେ ଅଣା—

ଗୀତ

ଚପଳ ନୟନ ଡୋଳା, ଖେଳାଇ ଭ୍ରୁ ମଞ୍ଜୁଳା
ହାଣିଲୁ ଯେ ଶର ବାଳା, ମରମେ ଭେଦିଲା ସେହୁ ।୦।
ଖରବ ମୋ ତନୁ କଲୁ କି ଅତନୁ
ଭରମେ ଚାଲେ ମୁଁ କାହିଁ, ସରମ ତ ମୋର ନାହିଁ,
ସବୁଗେ ତୋ ରସେ ମାତି—ଅଳସ ଥିଲା ମୋ ଛାତି
ସହସା କେ ଦେଲା ଚେତ ଦେଲି ମୁଁ ଚକିତେ ଚାହିଁ;
ଛନକା ପଶିଲା ଯଣେ, ଛନ ଛନ ଦେହ ମନେ
ସଖିରେ, ସଖିରେ, କେହୁ ତ ପାଖରେ ନାହିଁ—
ସପନ କି ଦେଖେ ମୁହିଁ ।

ନାରାୟଣ—ମନଟା ଏମିତି ଦୋହଲିଲା କାହିଁକି ?—ବାହାରି ଯାଅ ଏଠୁଁ...ଜଲଦି, ଆଖି ଆଗରୁ,—ଜଲଦି...

ବ୍ରାହ୍ମଣୀ—ହଉ ଅସୁରୁ, ସାଆନ୍ତେ । ଭିକ ଦବାକୁ ମନ କରିଥିଲେ, ଯେମିତି ପାଶୋରି ନ ପକାନ୍ତି, ମନ ଭିତରେ ସଚେତ ଥାଏ ଯେମିତି ।

ଅଧରୀ ଧରିବୁ ବେଳି, ଅଧୀରେ ଯାଉଛୁ ଚାଲି
ମଞ୍ଜରିକା ପଛେ ଧାଇଁ ଧାଇଁ ।
ଧାଇଁବା ହେବ ତୋ ସାର ମାର-ଶର ଏ ବେଭାର
କଉତୁକ କରେ ତୋର ପାଇଁ ।

( ଚାଲିଗଲେ )

ନାରାୟଣ—"ମନ ଭିତରେ ସଚେତ ଥାଏ ଯେମିତି"-ହାଃ ହାଃ ହାଃ—ଦୁନିଆକୁ ଯେ ପାଶୋରିବାକୁ ବସିଚି, ଲକ୍ଷ୍ମୀ ପ୍ରେମରେ ଭୋଳହୋଇ, ସେ ଘର ଭିକାରୀର ଭିକ କଥାଟା ମନରେ ସନ୍ଧିଧନ କରି ରଖିବ ?—ଲକ୍ଷ୍ମୀ—( ଯାଉଥିଲେ ) [ ଶୋଭା ଭୋଗ ଥାଳିଆ ଘେନି ପ୍ରବେଶ କଲା ଉପସ୍ଥିତ ହଉଛି । ନାରାୟଣଙ୍କୁ ଅନ୍ୟମନସ୍କ ଦେଖି, ଓଢ଼ଣା ଟାଣି ଦେଇ, ଗୋଟିଏ ଘରର ଆଢୁଆଳରେ ଠିଆ ହେଲା ]

ନାରାୟଣ—( ଚାଲିଯାଉଥିଲେ ଏକମୁହାଁ, ନଜର କରି ସୁଦ୍ଧା ନକଲା ଭଳି )

ଶୋଭା—( ନାରାୟଣ ଖଣ୍ଡେ ଦୂର ଚାଲିଗଲା ପରେ, ବାହାରି ଯାଉଥିଲା ସିଧା ସିଧା )

ନାରାୟଣ—( ହଠାତ୍ ସ୍ତୁତିର କି ଗୋଟାଏ ଭାବନାରେ ଫେରି, ଠିଆ ହୋଇ ରହି) ଶୁଣି ତ ?
ଶୋଭ—( ମୁହଁ ନ ତୁଳାଇ ଠିଆ ହେଲା )
ନାରାୟଣ—ତମେ ଦେଉଁ ପୂଜିବାକୁ ଯାଉଛ ?
ଶୋଭ—( ମୁଣ୍ଡ ଟୁଙ୍ଗାରିଲା )
ନାରାୟଣ—ତମେ ଭଣ ବନ୍ଧୁ ଭକ୍ତାଙ୍କ ଝିଅ ?
ଶୋଭ—( ଭାଷା ସ୍ଫୁରିଲା ନାହିଁ )
ନାରାୟଣ—ଶୋଭ ! ମୁଁ ତମର ନାରଣ—
ଶୋଭ—ନାରଣ ଭାଇ ।
( ଭୋଗ ଥାଳିଆ ହାତରୁ ଖସି ତଳେ ପଡ଼ିଗଲା )
ନାରାୟଣ—ଶୋଭ ।
ଶୋଭ—ନାରଣ ଭାଇ ।
ନାରାୟଣ—ଶୋଭ ! ( ପରସ୍ପରକୁ ଅନିମେଷ ଦୃଷ୍ଟିରେ ଅନାଇ ରହିଲେ । ସେତିକିବେଳେ ଦୂରରୁ ଗୋଟାଏ ମନାଦି ଶବ୍ଦ ଶୁଣାଗଲା ) "ସମସ୍ତେ ଶୁଣ—ଜମିଦାର ଶ୍ରୀ ଶ୍ରୀ ଶ୍ରୀ ନାରାୟଣ ମହାପାତ୍ରଙ୍କ ହୁକୁମରେ ସଦର ଗୁମାସ୍ତା ଶ୍ରୀ ବନ୍ଧୁ ମହାନ୍ତି ଆଜିଠାରୁ କାର୍ଯ୍ୟରୁ ବରଖାସ୍ତ ।"
ନାରାୟଣ—ବନ୍ଦ କର, ବନ୍ଦକର, ମନାଦି—ବନ୍ଧୁଭକ୍ତା ମୋର ବରଖାସ୍ତ ନୁହନ୍ତି··· (ଚାଲିଗଲେ)
ଶୋଭ—ମୁଁ ଚଣ୍ଡାଳୁଣୀ କଣ କଲି, ଠାକୁର ଅମଣିଆ ପକେଇ ମାରି କରି ଦେଲି ? ଓଃ, ନାରଣ ଭାଇଙ୍କ ମଙ୍ଗଳ ମନାସି, ଏହି ପୂଜା ଚାରିଦିନ ଏକ ଧ୍ୟାନରେ ପୂଜା କରିବାକୁ ବାପା ମୋତେ କହିଥିଲେ—ମୁଁ ଓଷାବ୍ରତ ଠିକ୍ କରିପାରେ ବୋଲି ମୋ ଉପରେ ବାପା ଏ ଭାର ଦେଇଥିଲେ । ମା—ମା—
[ ସେହି ବୃଦ୍ଧାବ୍ରାହ୍ମଣୀ, ଥାଳିଆ ଯେଉଁଠି ପଡ଼ିଥିଲା ସେହି ସ୍ଥାନରେ ଉକ୍ତ ଭୋଗଥାଳିଆଟି ଧରି ଠିଆ ହୋଇଥିବାର ଦେଖାଗଲା ]
ବ୍ରାହ୍ମଣୀ—ମା ! ତମର ଅମଣିଆଁ ତ ମାରୁ ନହାଇ ନି—ମୋର ହାତରେ ଧରାଇ ଦେଇଥିଲି ଅଜାଣତରେ । ଆସ ମା—
( ଉଭୟଙ୍କର ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ଢୋଲ ମହୁରୀ ଘଣ୍ଟା ପ୍ରଭୃତିର ଯେଉଁ ମିଶ୍ରିତ ବାଦ୍ୟଧ୍ୱନି ଶୁଣାଗଲା, ତାହା କ୍ରମେ ଦୂରେ ମିଳାଇ ଯିବାକୁ ଲାଗିଲା । ଦୃଶ୍ୟ ଦେଖାଗଲା—ଜମିଦାରଙ୍କର କଚେରୀ ଘର । ସିରସ୍ତା କାମ ଜୋରସୋରରେ ଚାଲିଛି । ଦୁଇଜଣ ଅମଲା ମଧ୍ୟରୁ ଜଣେ ଲେଖାଲେଖି କାମ ଆଉ ଜଣେ ଖଜଣା ଅସୁଲ୍ କାମରେ ବ୍ୟସ୍ତ । ଗୋଟାଏ ପଟେ, ସଦର ଗୁମାସ୍ତା ଯେଉଁଠାରେ ବସନ୍ତି, ସେଇଠି ଟିକିଏ ଠା ଗୁଡ଼ ଗୋବିନ୍ଦ ପୂଜା କୋଥଳି ଫିଟେଇଛି ଓ ତଳକୁ ଚାହିଁ ଘେନୁଛି । ଘରର ଆଉ ଗୋଟିଏ ପଟେ ବାଞ୍ଛାରାମ ଯୋଡ଼ହୋଇ କମ୍ପଜ୍ୱର ପୀଡ଼ିତ ମନ୍ତ୍ରର ଅଭିନୟ କରୁଥାଏ ଓ ଅଲକ୍ଷ୍ୟେ ସମସ୍ତଙ୍କର କାର୍ଯ୍ୟକଳାପ ପ୍ରତି ତୀବ୍ର ଦୃଷ୍ଟି ରଖିଥାଏ ]

ନଟବର୍—ଦୋକେ ତିନ୍—ତିନ ଏକେ ଚାର—
ଗୋବିନ୍ଦ—( ଚାହିଁ ଘେନୁ ଘେନୁ ) ଆରେ ସେହି ମନ୍ତ୍ରଟା—
ବାଞ୍ଛା—ଉଁ ହୁଁ ହୁଁ ।
ଗୋବିନ୍ଦ—ଯାଇନାହିଁ ଅବତକ ?—ଆରେ ଜର ଯଦି, ପଦାରେ ଯାଇ ମର—କେଉଁଠା ପ୍ରକାରେ, ତୁ ?
ବାଞ୍ଛା—ଉଁ ହୁଁ ହୁଁ ।
ଗୋବିନ୍ଦ—ଆରେ ଏଇଟାତ କଥା କହି ପାରୁ ନି—ଆହେ ତୁମେମାନେ ଦେଖୁଚ କ'ଣ ? କାମ କର ।
ନଟବର—ଦୋକେ ତିନି—ତିନି ଏକେ ଚାର୍—
( ଇତ୍ୟାଦି କହି କାମ କରୁଥାଏ )
ଗୋବିନ୍ଦ—କିରେ ଯାଉନୁ ନା ବାହାରି, ଡାକିବି ?—ଆରେ କିଏ ଅଛ ଜଗୁଆଳ ?
ବାଞ୍ଛା—ଯାଉଛି, ଯାଉଛି—ଉଁ ହୁଁ ହୁଁ—(ଚାଲିଗଲା, କିନ୍ତୁ ସମସ୍ତଙ୍କ ଅଲକ୍ଷ୍ୟରେ ଅବସ୍ଥାନ କଲା)
ଗୋବିନ୍ଦ—କେମିତିକା ଔଷଧି— ବନ୍ଧୁ ମହାନ୍ତି ଅମଳ ନୁହେଁ ଯେ, ରୋଗକୁ ଛାଡ଼ି ରୋଗୀକୁ ରଖିବ—

ଏ ହେଲା ବାଞ୍ଛାରାମ ଅମଳ—ରୋଗ ସଙ୍ଗେ ସଙ୍ଗେ ରୋଗୀକୁ ତଡ଼ିବା କାଳ । ତୁମେମାନେ ଶୁଣୁଛ କ'ଣ ?

ନଟବର—ଦୋକେ ଛନ, ଛନ ଏକ ଗୁର୍—ଗୁର ଛନ ସାତ, ସାତ ଏକ ଅଠ । ହଁ—ହେଲା—ଗାଏ, ୮ ଟଙ୍କା ୪ ଅଣା ୧୧ ପଇସା ୨ଗଣ୍ଡା ୨କଡ଼ା । ପଧାନେ—

ଗୋବନ୍ଦ—(ଖାତା ଦେଖୁ ଦେଖୁ) ଖରଡ଼ା ପଣି, ସୁଧ, ମାଗୁଣି, ମିଆଦ, ପାଉଣ କଟେଇ ଓଟେଇ ତରତବ ମୁତାବକ ଠିକ୍ ଠିକ୍ ହିସାବରେ ଧରିଚ ତ ?

ନଟବର—ଆଜ୍ଞା, ଏ' ଜାଗାର ଖଜଣା ତ ମୋଟେ ୩ଟଙ୍କା ୨ଅଣା ।

ଗୋବନ୍ଦ—ଜମିଦାରଙ୍କର ମୋଟ ପାଉଣାର ବାକିତକେ କ'ଣ ଅଜଣା ? ନଟବର ! ପାଉଣ ଫାଡ଼ିବା ଆଗରୁ ଆଉଥରେ ଭଲ କରି ହେଜ ପାଞ୍ଜିଦେଖି ନାଅ, ଯଦି ଆଉ କେଉଁ କେଉଁ ବାବଦ ଆଦାୟ କରିବା କଥା ଭୁଲି ଯାଇଥାଅ । ବୁଢ଼ା ମହାନ୍ତି ଅମଳରେ ରାଜସ୍ୱ ଖଜଣାର ସାଥି ପାଉଣା ଗୁଡ଼ାକ ବୋଡ଼ା ଲାଙ୍ଗୁଡ଼ ଭଳି ଛୁଡ଼ି ଛୁଡ଼ି ବିଲ୍‌କୁଲ୍ ଲୋପ ପାଇବାକୁ ବସିଥିଲା କନା ।

ପଧାନ—ଆଜ୍ଞା, ବୁଢ଼ା ସା'ନ୍ତେତ ଗଲା ୪ ସନ ହେଲା ଏ ସବୁ ମାଫ କରି ଆସୁଥିଲେ ।

ଗୋବନ୍ଦ—ଅହେ, ନଟବର ! ରାମଜୀ ପାଉଣା ବସେଇଛ ତ ?

ନଟବର—ରାମଜୀ ପାଉଣା ?

ଗୋବନ୍ଦ—ଯେତକ ଖଜଣା ସେତକ ପାଉଣା—ଯାକୁ କହନ୍ତି ରାମଜୀ ପାଉଣା ।

ପଧାନ—ମରଯିବୁ—ମରଯିବୁ ସାଆନ୍ତେ—

ନଟବର—ପଧାନେ, ଡକ୍ କର ନା—ଭଲରେ ଭଲରେ, ଦେଇ ପକାଅ । ( କାନେ କାନେ ) ଦେଖ, ମୋର ହିଅର ବାହାଘର—ଭେଟିକଥା ମନେ ଅଛି ତ ?

ପଧାନ—ସାଁ'ନ୍ତେ—( ହାଲିଆ ହୋଇ ପଡୁଥିଲେ )

ଗୋବନ୍ଦ—ଅହା ହା—କରୁଛ କ'ଣ, ପଧାନେ ? ମୋର ଟଙ୍କା ବଙ୍କେଇ ଯାଉଛୁ ଯେ—

ପଧାନ—ସାଁ'ନ୍ତେ ! ଆପଣ ଆଜ ମହାନ୍ତି ସାଁ'ନ୍ତଙ୍କ ଗାଦିରେ ବସିଚନ୍ତି, ଗାଦିର ଅପମାନ କରିବେ ନା ।

ଗୋବନ୍ଦ—ଅରେ, ଏଇଟା କହୁଚ କ'ଣ ? ନିମକ-ହାରାମ ହେବି ?

ନଟବର—( ପଧାନର କାନେ କାନେ ) ମହାନ୍ତି ଅମଳର 'ଅଡ଼ବଡ଼ି ଖତା କ'ଣ ଆଉ ଅଛି, ପଧାନେ ? ରାମଜୀ ଅମଳର ଏହି ରାମାନନ୍ଦୀ ଖତା ଦେଖି ବୁଝି ପାରୁ ନ···"କି ହେଲାରେ, କହିବ ନୁହଇ ଭାରତୀରେ"—

ଗୋବନ୍ଦ—ଅହେ ନଟବର !

ନଟ—ଆଜ୍ଞା—

ଗୋବନ୍ଦ—ତୁମେ ଗୋଟିଏ ବଳଦ ।

ନଟ—ଆଜ୍ଞା, ଆପଣତ ଚଲେଇଲାବାଲା ।

ଗୋବନ୍ଦ—କ'ଣ, କ'ଣ କହିଲ ?

ନଟ—ତୁଣ୍ଡରୁ ଖସିବା କଥା ଧରିଲେ ଚଳିବ ? କି ହୁକୁମ, ସେଇଯା ସାଦର ହେଉ, ଆଜ୍ଞା ।

ଗୋବନ୍ଦ—ତୁମେ ଗୋଟିଏ ଗଧ ।

ନଟ—ଆଜ୍ଞା, ଆପଣ ତ ମା' ବାପ ।

ଗୋବନ୍ଦ—ଅହେ, ଭଲକରି ଶୁଣେଇ ଦିଅ, ଭାରତ ଆଉ ଓଲଟିବାର ନୁହେଁ । ଦେଖିଛତ କାଲିର ଘଟଣା—ଏହି କଚେରୀଘରେ ମନାଦି ବନ୍ଦ କରିବା ବେଳ, କେମିତ ଗୁଲିଲା ରାମ ରାବଣ ଯୁଦ୍ଧ ?—ମଝେ ମଝିରେ ଠିଆକରି ଜଣେ କହୁଥାଏ, 'ମନାଦି ବନ୍ଦକର'—ଆଉଜଣେ କହୁଥାଏ, 'ମନାଦି ଚଲାଅ'—ଜଣେ କହୁଥାଏ, 'ଜମିଦାରର ହୁକୁମ'—ଆଉ ଜଣେ କହୁ-ଥାଏ—

ନଟ—ଆଜ୍ଞା, 'ଜମିଦାରର ଏହି ହୁକୁମ ନାମା' ।

ଗୋବନ୍ଦ—ପୁଣି ଜଣେ କହିଲା, 'ମୁଁ ତା ରଦ୍ଦ କରି ଦେଇ ପାରେ'—ଅପର ଜଣକ ହସି ହସି କହିଲା, 'ମାଭାଲିର ଖିଆଲ୍' ସେ'ଠୁ ଟିକିଏ ଥମି, ପ୍ରଥମ

ଜଣକ ଗର୍ଜି ଉଠି କହିଲା, 'ସତ ମୁଁ ପ୍ରକାଶ କରିଦେବି' । ସେହି ଠୋସରେ ପ୍ରତିବାଦ କରି ଦ୍ୱିତୀୟ ଜଣ ଚଗୁଲେଇ କହିଲା, 'ସତ ଯା' ଲୋକେ ତା' ଜମିଦାରଙ୍କର ନାଚଘରେ ନିଜ ଆଖିରେ ଦେଖି ଆସିଛନ୍ତି ।'

ନଟ—ତା' ପର, ଚୁପ୍ ଚୁପ୍, ନିଶୁନ, ଆଜ୍ଞା ।

ଗୋବିନ୍ଦ—ସେହି ନିଶୁନ ଭାଙ୍ଗି ଦେଇ ଜମିଦାର ଚିତ୍କାର କରି କହି ଉଠିଲେ—ମୋର ବନ୍ଧୁକକା ମୋତେ ବିଶ୍ୱାସ କରନ୍ତି—ଉପହାସ କରି ବାଞ୍ଛାରାମ କି ଉତ୍ତର ଦେଲା ଜାଣ ? 'ବନ୍ଧୁ କକା ରଜାର ବନ୍ଧୁ, ରାଜ୍ୟର ବନ୍ଧୁ ନୁହନ୍ତି' —ଏଇକଥା ବର୍ତ୍ତମାନ ଲୋକେ ବିଶ୍ୱାସ କରୁଛନ୍ତି ।

ନଟ—ଫଳରେ ?

ଗୋବିନ୍ଦ—'ଓଃ' ବୋଲି ଜଣେ ପଳାଇ ଗଲା—ଅପର ଜଣକ, ହୋଃ ହୋଃ କରି ହସି ଗଡ଼ିଗଲା ।

ନଟ—ଏଥର ବୁଝ ଛୁତ, ପଧାନେ—କା'ର ଅମଳ ?

ପଧାନ—ଅମଳ ହା'ର ହେଉ ସା'ନ୍ତେ—ପ୍ରଜା ଯେନ ରାଜ୍ୟ ।

ଗୋବିନ୍ଦ—କି ଯେନ ରାଜ୍ୟ, ଅଇଛୁକା ଦେଖିବ ନମୁନା ?— ( ଠାରିଦେଲେ )

[ ମୋଟା ମୋଟା ଠେଙ୍ଗାଧାରୀ ୨ଟା ଷଣ୍ଢା ଗୁଣ୍ଡା ଜଗୁଆଳ ପ୍ରବେଶ କରି ଯଥାରୀତି ସମ୍ମାନ ଦେଖାଇ ଠିଆ ହେଲେ, ମୁନିବର ଆଦେଶକୁ ପ୍ରତୀକ୍ଷା କରି ]

ପଧାନ—( ଜଡ଼ସଡ଼ ହୋଇଗଲା )

ଗୋବିନ୍ଦ—( ଇଙ୍ଗିତରେ ଚାଲିଯିବାକୁ କହିବାରୁ, ଗୁଣ୍ଡା ଦୁଇଟି ଚାଲିଗଲେ ) ଦେଖିଲ ତ ରାମଜୀଙ୍କ ବ୍ୟବସ୍ଥା ?

ପଧାନ—( ସଭୟେ ) ଠେଙ୍ଗାର ବ୍ୟବସ୍ଥା ?—

ଗୋବିନ୍ଦ—ତାହା ନ ହେଲେ, ତୁମେ ସିଧାହେବ କେମିତି ? ସାଇକାର ତୁମ ରକ୍ତ ଶୋଷିବ କେମିତ ?—ଆହା ହା, ତୁମେମାନେ କରୁଛ କ'ଣ ? ଜଲ୍‌ଦି କାମ ସାର—ଆଜ ପରା, ବଡ଼ ପୂଜା—ମହାଷ୍ଟମୀ—ତୁମେମାନେ ଯାଅ—ଆଜ ଛୁଟି—

( ସମସ୍ତେ ଚାଲିଗଲେ )

ସଦା, ସଦା ! ଅଃ ଏଣେ ମୋର ଶରା ବଟିଛି ଗଲାରେ—

[ ସଦାନନ୍ଦ ପ୍ରବେଶ କଲା । ବୟସ ତାର ୨୦।୨୫ ହେବ । ହେଲେ, ୫ବର୍ଷର ପିଲାଟିପରି କପାଳରେ, ଗାଲରେ ଟୋପା ଟୋପା ଚୁଆ ଚନ୍ଦନ ଓ ଆଖିରେ କଜଳ କଳା ଲଗେଇଥାଏ ]

ସଦା—ଡାକୁଛ, ମାମୁ ?

ଗୋବିନ୍ଦ—( ତଳକ ଉପର ସାର ) ହଁ—( ସଦାନନ୍ଦର ମୁହଁଆଡ଼କୁ ଚକେଇ ) କାରେ, ଏ'କି ବେଶ ତୋର ?

ସଦା—ମାଇଁ ( ପୋଷ୍ଟ ପକାଇ ମୁହଁକୁ ବାନ୍ଦରୀ କରିଦେଲା )

ଗୋବିନ୍ଦ—ଆଉ ଟିକିଏ ପିଲା ହ'ମ—

( ନିର୍ମଳ ପ୍ରବେଶ କଲା, ବୟସ ତାର ୧୪।୧୫ ହେବ, ଦେଖିବାକୁ ଭାରି ସୁନ୍ଦରୀ )

ନିର୍ମଳ—ପିଲା ନୁହେଁ ତ କ'ଣ ବୁଢ଼ା ?

ଗୋବିନ୍ଦ—୨୫ ବର୍ଷ ଉମର ହେଲା ଆସି—

ନିର୍ମଳ—ତୁମପାଖେ ସିନା ୨୫ ବର୍ଷ, ମୋ ପାଖରେ ତ ୫ ବର୍ଷ—ଏ'କଣ କଲୁ, ସଦା—ମୁହଁଟା ବାନ୍ଦରିଆ କରିଦେଲୁ ତ ? ମୋ'ର ଏତେ ମେହନତ,—ଦେଖୁଚ, ଦେଖୁଚ ପୁଅର ଗୁଣ—ଦେବି ଯେ ଗାଲ ଫଟେଇ—

ସଦା—ମାମୁ !

ନିର୍ମଳ--ମାମୁ ? ଯା—ଯା—ଜଲ୍‌ଦି ମୁହଁ ଧୋ—ଚୁଆ ଚନ୍ଦନ ଗୋଳ—ଦୀପ ଜାଳ—ସିନ୍ଦୁ ପତର ଆଣି କଜଳ ପାର—

ସଦା—ମାଇଁ । ସବୁ କରିବି, ହେଲେ ସେଇ କଜଳ ଆଉ ପାରିବି ନା ।

ନିର୍ମଳ—କ'ଣ, କଜଳ ପାରିବୁ ନା ?

ସଦା—ତୁ ଯଉଁ ଗେଞ୍ଜିକରି ଲଗେଇ ଦେଉଚୁ, ଆଖି ଏଯାଏଁ ପୋଡ଼ୁଛି—

ନିର୍ମଳା—ଫୋଡ଼ୁଛୁ କ'ଣରେ ? ଆଖି ଏଥର ଫୋଡ଼ିଦେବି—ଫୋଡ଼ିଦେବି—ଯା—

ସଦା—( ସଭୟେ ଚାଲି ଯାଉଥିଲା )

ନିର୍ମଳା—( ସସ୍ନେହେ ) ଆରେ ସଦେଇ, ଶୁଣୁ ଟିକେ, ଶୁଣି—ଏଥର ଥିଙ୍କଟିଏ ଲଗେଇ ଦେବି—ତୁ ଅଙ୍ଗୁଠ ହେଉ ନା ତ ?

ସଦା—( ପିଲା ଢଙ୍ଗରେ ) ନା ମାଈଁ—

ନିର୍ମଳା—ହଉ ଯା'—କାଲେ ମୋ ମଞ୍ଜୁଆଡ଼ି କ'ଣ କଲୁ ? ଦେଖିଲୁ, ଏତେବଡ଼ ମଞ୍ଜୁଆଡ଼ି ପଚା ବାଟି ହାତଟା ପଚେଇଥିଲି—

ସଦା—ମୁଁ କ'ଣ କରିବି ? ତୁଭ ମତେ ଧରି ପକେଇଲୁ—ଛାଡ଼ିଗଲା···

ନିର୍ମଳା—ମୁହଁ ଉପରେ ପୁଣି ଜବାବ—ଦେବି ସେ ଥୋମଣି ଭାଙ୍ଗି—ଯାଆ, ବାହାର ଏଠୁଁ

( ସଦାନନ୍ଦର ପ୍ରସ୍ଥାନ )

ଗୋବିନ୍ଦ—ତୁମେ ହାତ ପଚେଇଚ ?

ନିର୍ମଳା—ସେଥିପାଇଁ ତ ଆଣି ପାରିଲି ନା ,ପଣା ଚିନିସିଟା—ତୁମେ ନିଜେ ଯାଇ—ଆରେ, ସଦା—ଆଚ୍ଛା, ସନ୍ଧପୂଜା ତ ଆଉ ଡେରିନାହିଁ ।

ଗୋବିନ୍ଦ—ବେଶ୍, ବେଶ୍—ସନ୍ଧପୂଜା ସରିଯାଉ ଖାଇବି । ହଁ ଦେଖିଲ, ଆମ ରାଜ୍ୟର ଏ ଘଣ୍ଟି ସନ୍ଧବେଳେ, ମୋ'ର ଚିତାଟା କେମିତିକା ହୋଇଚି ?

ନିର୍ମଳା—ଏ'କି ଚିତା ?

ଗୋବିନ୍ଦ—ରାମାନନ୍ଦୀ ।

ନିର୍ମଳା—ରାମାନନ୍ଦୀ ?

ଗୋବିନ୍ଦ—ଯୁଗର ଧର୍ମ ।

ନିର୍ମଳା—ମାନେ ?

ଗୋବିନ୍ଦ—ବନ୍ଧୁମହାନ୍ତିଙ୍କ ଯୁଗ ଶେଷ—ବାଞ୍ଛାରାମଙ୍କ ଯୁଗ ପ୍ରବେଶ ।

ନିର୍ମଳା—ଅଚ୍ଛା ଦେଖ—ଛି, ଛି,—ବନ୍ଧୁ ଭାଇଙ୍କ ପାଖେ ପାଖେ ଥାଇ ତାଙ୍କର ଏତେ ବିଶ୍ୱାସୀ ହୋଇ, ଚିତାକଟା ସ୍ୱଭାବ ଧରିଲ ଶେଷକୁ ? ତୁମର ଏ ବଦ୍‌ନିଯୁତ କାମ, ଭଲ ହୋଇଛି ତ ?

ଗୋବିନ୍ଦ—( ହସି ) ତୁମେ ଯଦି ତୁମର ନିଯୁତ ବଦଳାଇ ପାର, ମୁଁ ନ ପାରିବି କାହିଁକି ? ଯଥା—ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା !

ନିର୍ମଳା—ତୁମେ କହୁଛ କ'ଣ ?—ମୁଁ ନିଯୁତ ବଦଳେଇଚି !

ଗୋବିନ୍ଦ—ନୁହେଁ ?—ଏଇ ଭଣଜା ସଦାପାଇଁ କନିଆ ଦେଖିବାକୁ ଯାଇ, ତୁମକୁ ବାହା କରି, ତାର ମାଈଁ ସଜାଇ ଦେଇ ଅଇଲି, ଏଥିରେ—

ନିର୍ମଳା—ଏଥିରେ ମୋର ନିଯୁତ ବଦଳିଲା କେଉଁଠି ?

ଗୋବିନ୍ଦ—ନିର୍ମଳା । ହାତ ଗଣ୍ଡି ବଦଳିଲେ ମଧ୍ୟ, ତୁମେ ନିଯୁତ ବଦଳାଇନାହିଁ, ବଦଳାଇବାର ଆଭାସ ପର୍ଯ୍ୟନ୍ତ ଦେଇନାହିଁ; ସେହି ପ୍ରେରଣାରୁ ମୁଁ ଏଇ ଚିତା ବଦଳାଇଲେ ସୁଦ୍ଧା, ନିଯୁତ ସେ ବଜାୟ ରଖି ପାରିବି, ତା' ମୁଁ ଜାଣେ । ତୁମେ ମୋର ସହଧର୍ମିଣୀ ନୁହଁ, ଧର୍ମଗୁରୁ ।

ନିର୍ମଳା—ଛି, ଛି, ବାପ୍ପା ବାତୁଲା ପରି କଣ ଗୁଡ଼ାଏ ବକୁଚ ? ( ସଦାନନ୍ଦର ବେଗେ ପ୍ରବେଶ )

ସଦା—ମାଈଁ, ଆଁ'ମ—ମୋତେ ସଜ ବେଶ କରିଦବୁ, ଦେଉଳକୁ ଯିବା ପରି ?—ସନ୍ଧ ପୂଜା ହବ, ବେଳ କଣ ମାଲୁମ୍ ପଡ଼ୁନାହିଁ ?

ନିର୍ମଳା—ମୁଁ ଯାଏଁ—

ଗୋବିନ୍ଦ—ଟିକିଏ ଠିଆ ହୁଅ । ଆରେ ସଦା, ଏଣିକି ତୁ ତୋର ମାଈଁକି, ମା ବୋଲି ଡ଼ାକିବୁ ।

ସଦା—ମୁଁ କେତେଥର ସେଇ କଥା କହେ ମାଈଁକି—ମାଈଁ ପରି—କି, ମା, ଏଥର ?—ଆରେ ରେ, ଠାକୁରଠେଇଁ ବଳି ପଡ଼ିବ—କାହିଁ ବୋଦାଟାଏ ଦେଇଗଲାନି ଶାମା ଧୋବା ଏ ଯାଏଁ ?—ମୁଁ ଯାଏଁ—ମୁଁ ଯାଏଁ—ଦେଖେଁ—( ଯାଉ ଯାଉ ଫେରିଆସି ) ମଲି, ମଲି, ମାଙ୍କୁ ତ ମୁଣ୍ଡିଆ ମାରିନି—( ପ୍ରଣାମ କଲା ) ମା—

ନିର୍ମଳା—ଅରେରେ, କରୁଛୁ କଣ ?

ଗୋବିନ୍ଦ—ନୂଆ ଲୁଗା ପିନ୍ଧିଲେ ପିଲାଏ ମା'ଙ୍କୁ ମୁଣ୍ଡିଆ ମାରିଥାନ୍ତି—ଏ' ପରି ତାର ନୂଆ 'ମା' ଡାକ—

ସଦା—( ଚାଲି ଯାଉଥିଲା )

ନିର୍ମଳ—କାହିଁ ଗଲ, ସଦେଇ, ସେଠି—

( ଗୋବିନ୍ଦର ପଦଦେଶ ଦେଖାଇ ଦେଲେ )

ସଦା—ବାପା—( ଗୋବିନ୍ଦଙ୍କୁ ପ୍ରଣାମ କରି ଚାଲିଗଲା )

ନିର୍ମଳ—ମୁଁ ଯାଏଁ—

ଗୋବିନ୍ଦ—ଆଉ ଟିକିଏ ନିର୍ମଳ—ଏଇ ସଦାଟା, ଘର ବଗିଚାରୁ ଥିଲା ବୋଲି, ତାକୁ ଛାଡ଼ ଦେବାକୁ ବସିଥିଲି—ତୁମେ ଆସିବା ପରେ, ବଗିଚା ବୋଲି ଘରୁ ଦିନେ ତଡ଼ି ଦେଇଥିଲି; ତୁମେଇ ତାକୁ ଡାକିଆଣି, ଆଜି ମଣିଷ କରି ଠିଆ କରିଚ। କୁହତ···

ନିର୍ମଳ—ହଉ, ମୁଁ ଯାଏଁ—

ଗୋବିନ୍ଦ—( ବାଟ ଓଗାଳି ) ଯିବା ଆଗରୁ ଥରେ ଦେଖିଯାଅ, ନିର୍ମଳ—ତୁମର ସ୍ୱାମୀପ୍ରତି ତୁମେ ଆଜି ଯେଉଁପରି ନିଷ୍ଠା ରଖିଚ, ମୋର ଏକାଧାରରେ ବନ୍ଧୁ ଓ ଅନ୍ନଦାତାଙ୍କ ପ୍ରତି, ଠିକ୍ ସେହିପରି ନିଷ୍ଠା ବଜାୟ ରଖିଚି କି ନା ?

( ଗୋଟିଏ ଆସନରେ ଥୁଆ ହୋଇଥିବା ପତ୍ର ପୁଷ୍ପ ମଣ୍ଡିତ ଲେଖନୀପ୍ରତି ଦୃଷ୍ଟି ଆକର୍ଷଣ କରି )

ଏଇ, ସେହି ମହାଜନ ବନ୍ଧୁ ମହାନ୍ତିଙ୍କର ବସିବା ସ୍ଥାନ—ତାଙ୍କର ଆସନ—ତାଙ୍କର ଲେଖନ—ତାଙ୍କର ଚଟା ତାଳପତ୍ର। ଏଗୁଡ଼ିକ ମୁଁ ପୂଜା କରିବି ବୋଲି, ସେହିଭାବେ ସଜାଇ ରଖିଚି। ଯାହା କିଛି ଅନ୍ୟାୟ ବୁଦ୍ଧି ଏ'ଯାଏଁ କରି ଆସିଛି, ତାହା ମହାଷ୍ଟମୀରେ ମହାବଳି ଦେବି। ଆଜି ତାଙ୍କର ଶିକ୍ଷା, ତାଙ୍କର ଦୃଷ୍ଟି, ତାଙ୍କର ଆଦର୍ଶ ସାର୍ଥକ କରିବି। ଏଇ ଚିତାର ଅଙ୍ଗୁଆଳରେ ଥାଇ, ପ୍ରଜା ପୀଡ଼ନର ଅଭିନୟ କରି, ଜଗାଇବି ଉଭୟ ରାଜା ଓ ପ୍ରଜାଙ୍କୁ—ଆଉ ଦୁହିଙ୍କ ମିଳନ ପଥରେ ଯିଏ କଣ୍ଟକ, ତା'ର କରିବି ମୂଳୋତ୍ପାଟନ।

( ସନ୍ଧିପୂଜା ଘଣ୍ଟା ବାଜିବାର ଶୁଣାଗଲା )

( ସଦାନନ୍ଦର ପ୍ରବେଶ )

ସଦା—ମା, ବୋଦା ଆଣିଚି—ଆ' ବେଗେ—ସନ୍ଧିପୂଜା ଘଣ୍ଟା ବାଜିଲାଣି—

ନିର୍ମଳ—ସନ୍ଧିପୂଜା ଆଜି ମୁଁ ଏଇଠି କରିବି ରେ—ବୋଦାଟା ଫେରାଇ ଦେ। ମୋର ସ୍ୱାମୀର ନିଷ୍ଠା ବଜାୟ ରହୁ, କହିଥିଲି ମାଙ୍କ ଠେଇଁ ପଶୁବଳିର ମନାସ, କିନ୍ତୁ ଯେଉଁ ମହାପୁରୁଷଙ୍କ ଏହି ଲେଖନ ଏଠାରେ ଶୋଭା ପାଉଚି, ସେହି ମହାତ୍ମା ଆଜି ଚେତାଇ ଦେଉଛନ୍ତି—ପଶୁ ବଧରେ ବଳି ହୁଏ ନାହିଁ—ବଳି ହୁଏ ପଶୁତ୍ୱ ବଧରେ—( ସମସ୍ତେ ଭୂଇଁରେ ମଥା ଲଗାଇ ପ୍ରଣାମ କରିବାକୁ ଯାଉଥିଲେ, ଏହି ସମୟରେ ବାଞ୍ଛାରାମ ଗୁପ୍ତ ସ୍ଥାନରୁ, ଗୁପ୍ତ ବେଶ ତ୍ୟାଗ ପୂର୍ବକ ଆସି, ଗୋଟାଏ ଖୋରଡ଼ା ଦେଖାଇ କହିଲା )

ବାଞ୍ଛା—ସାମାନ୍ୟ ଅପେକ୍ଷା—ସେହି ପୂଜା ଗାଦିରେ, ଲେଖନି ପାଖେ ମୋର ଏହି ଖୋରଡ଼ାଟା ସ୍ଥାନ ପାଉ—ହାଃ, ହାଃ, ହାଃ,—

( ନିର୍ମଳ ଖୋରଡ଼ାଟା ଦୂରେ ଫିଙ୍ଗି ଦେଲା )

---

## ପଞ୍ଚମ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ବାଞ୍ଛାରାମ ଯେଉଁପରି ଅଟ୍ଟହାସ୍ୟ କରି ଉଠିଲା, ଠିକ ସେହିପରି ଅଟ୍ଟହାସ୍ୟରେ ଦିନେ ସେ ନାରାୟଣଙ୍କୁ ଉନ୍ମାଦ କରି ଦେଇଥିଲା। ବର୍ତ୍ତମାନ ନାରାୟଣ ସେହିଭଳି ଉନ୍ମାଦ ପ୍ରାପ୍ତ ପ୍ରବେଶ କଲେ। ଦୃଶ୍ୟ ଦେଖାଗଲା – ସେହି ପୂର୍ବ ଗ୍ରାମ-ପଥ ]

ନାରାୟଣ— ବଦ୍‌ନାମ— ବଦ୍‌ନାମ— ଚୋରିଆଡେ ବଦ୍‌ନାମ—ମୁଁ ମାତାଲ—ମୁଁ ଲମ୍ପଟ—ମୁଁ ଦଗାବାଜ। ବାଞ୍ଛାରାମ—ବାଞ୍ଛାରାମ—ମୋର ସର୍ବସ୍ୱ ନେଇ, ଯଦି ବଦ୍‌ନାମରୁ ମୋତେ ଛାଡ଼ି ଦେଇ ପାରନ୍ତୁ। ଓଃ। ଏଥିରେ ଯେ ପୁଣ୍ୟପୀଠ ଯାଜପୁର ମୁକାମର ବଦ୍‌ନାମ—ପୁଣ୍ୟଶ୍ଳୋକ ମହାପାତ୍ର ବଂଶର ବଦ୍‌ନାମ।—ମୁଁ ବାହାରିଚି, ବନ୍ଧୁ ଭକ୍ତଙ୍କ ପାଖକୁ—ବୋହୂର ଏଇ ସୁନାର ଗହଣା ଫେରାଇ ଦେବି, ହେଲେ, ମୋ'ର

ସୁନାମ, ଯା'ଙ୍କୁ ସେ ସୁନାରୁ ଅଧିକ ମଣନ୍ତି, ତା'
କାହିଁ ଯେ ତାଙ୍କୁ ଦେବ ?
(ପୂର୍ବଦୃଷ୍ଟ ଛଦ୍ମବେଶୀ ଭିକାରୀ ଭିକାରୁଣୀ ପ୍ରବେଶ
କଲେ)

ଭିକାରୁଣୀ—ତୁମେ ସୁନାମ ଚାହଁ ?
ନାରାୟଣ—କିଏ ତୁମେ ?
ଭିକାରୁଣୀ—ହଁ, ଚିହ୍ନିବ କାହିଁକି ?
ନାରାୟଣ—ଓ, ତୁମେ ସେହି ଭିକାରୁଣୀ ?
ଭିକାରୁଣୀ—ଭିକ ଦେବବୋଲି କହିଥିଲ, ମନେ
ଅଛି ତ ?
ନାରାୟଣ—ସତେ ତ—( ଅଣ୍ଟାଲଟଲି ନିଜ ଅଣ୍ଟା
ପ୍ରଭୃତି )
ଭିଖାରୁଣୀ—ଦିଅ—
ନାରାୟଣ—ଭୁଲିଚି—
ଭିକାରୁଣୀ—ତେବେ, ତୁମେ ବଦ୍‌ନାମରେ ପଡ଼ିବ
ନାହିଁତ, ପଡ଼ିବ କିଏ ?
ନାରାୟଣ—ତୁମେ କିଏ ?
ଭିକାରୁଣୀ—ଭିକାରୁଣୀ ।
ନାରାୟଣ—ତୁମକୁ ଦେଲେ, ମୋର ସୁନାମ ଫେରି
ପାଇବି ?
ଭିକାରୁଣୀ—ତୁମର ବଦ୍‌ନାମ ମଧ୍ୟ ସୁନାମ ହୋଇ
ଠିଆହେବ ।
ନାରାୟଣ—କେମିତି ?
ଭିକାରୁଣୀ—ଯେମିତି ଖୁବ୍ ଅତୁରିଆ ରେ, କଲବଲ
ହୋଇ ପୁଅ ମାକୁ ବେଳେ ବେଳେ ଡାଆଣି,
ରାକ୍ଷସୀ ବୋଲି ଚିଙ୍ଗାସେ, ଅଥଚ ମା' ସେହି
ବଦ୍‌ନାମକୁ ସୁନାମ ମଣି ଧେଇ ଧେଇ ହୋଇ
ନାଚେ, ଠିକ୍ ସେମିତି । ଶୁଣ—

—ଗୀତ—

ମା' କି କେବେ ହୁଏ ରାକ୍ଷସୀ ?
ଅଭୟା ବରଦା ସେ ଯେ, କେ କୁହେ ରେ ସର୍ବନାଶୀ ?
ସର୍ବହରା ସନ୍ତାନ ଯେ, ଧରେ ମା ବୁକୁରେ ନିଜେ
ସବୁ କ୍ଲେଶ ଦୁଃଖ ହରି, ଉନ୍ମାଦିନୀ ନାଚେରେ ହସି ।
ମା'ନାମ ଯେ କରଇ ସାର, ଭାବନା କି ଅଛିରେ ତାର,
ସବୁ ସ୍ନେହ ଅକାଡ଼ି ଦେଇ, ମା' ହୁଏରେ ତାହାର ଦାସୀ ॥

ନାରାୟଣ—ତୁମେ ଏଇ ଗହଣା ତକ ନିଅ ।
ଭିକାରୁଣୀ—ତୁମର ଗହଣା ତ ?
ନାରାୟଣ—ମୋ' ବୋଉର ।
ଭିଖାରୁଣୀ—ଚୋରି କରିଛ ନିଶ୍ଚେ ?
ନାରାୟଣ—ଚୋରି ?—ନା—ହଁ, ଜବରଦସ୍ତି ଛଡ଼ାଇ
ଆଣିଛି ।
ଭିକାରୁଣୀ—ତେବେ ଏ ଡକାଏତି ମାଲ୍, ନେବି
କେମିତି ?—କ'ଣ ବନ୍ଦୀ ହେବାକୁ ?—ତା
ଯା' ବା ନୋହୁନ୍ତି, ଏ ଗୁଡ଼ାକ ମୋର କ'ଣ
ହେବ—ଦେହରେ କ'ଣ ଆଉ ଥାନ ଅଛି,
ମଣ୍ଡିବାକୁ ?
ନାରାୟଣ—ଏତେ ଗହଣା ତୁମଠେଇଁ ?
ଭିକାରୁଣୀ—( ମୁରୁକି ମୁରୁକି ହସିଲେ )
ନାରାୟଣ—ସେ ଦିନ ତ ତୁମ ଦେହରେ ଗହଣାର
ଗନ୍ଧ ବାସନା ସୁଦ୍ଧା ନଥିଲା, ଭିକାରୁଣୀ ?
ଭିକାରୁଣୀ—ହଁ କିଏ ଜଣେ ବାଈଜୀ ଅସିଥିଲେ ଏ
ମୁକାମକୁ···
ନାରାୟଣ—ଲଛମୀ ?
ଭିକାରୁଣୀ—ହଁ ଲଛମୀ ବାଈଜୀ । ସେ ମା ବିରଜାଙ୍କ
ପହିଲି ପୂଜାଦିନ ବଡ଼ଭୋର, କୋଇଲି ବୁଡ଼
ନ ଦେଉଣୁ, ବୈତରଣୀ ନଈରେ ବୁଡ଼ ପାରି,
ଏଇ ଗହଣାତକ ମୋତେ ଦେଇ, ଗେରୁଆ
ଖଣ୍ଡେ ସାର କରି—
ନାରାୟଣ—ଦେଶତ୍ୟାଗିନୀ ହେଲେ । ମୁଁ ବି ସେଇଆ
କରିବି—
ଭିକାରୁଣୀ—ଗେରୁଆ ପିନ୍ଧିବ, ଧାରୁଆ ଥାଇ ?
ନାରାୟଣ—ମୋତେ ଧାରରୁ ମୁକ୍ତ କର, ଭିଖାରୁଣୀ—
କୁହ ତୁମେ, କ'ଣ ଚାହଁ ?
ଭିଖାରୁଣୀ—ମୁଁ ଚାହେଁ, 'ତୁମକୁ' ।
ନାରାୟଣ—ମୋତେ ? ( ମନର ଏହି ଭଳି ଘଡ଼ ସନ୍ଧି
ବେଳେ, ଭିକାରୀ ଓ ଭିକାରୁଣୀ ଅନ୍ତର୍ଦ୍ଧାନ
ହୋଇ ଗଲେ । ଭୁଲି ନାରାୟଣର ସେହି
ଶେଷୋକ୍ତ କଥାର ଜେରବାଣି ପ୍ରବେଶ କଲା
ବହୁ ବହୁ )

ବୁଲୁ—ହଁ ତୁମକୁ ।

ନାରାୟଣ—(ସ୍ୱପ୍ନରୁ ଉଠିଲା ଭଳି, ଆଖିମଳି) ବୁଲୁ ?

ବୁଲୁ—ନାରଣ ଭାଇ, ଭାରି ବିପଦ—

ନାରାୟଣ—କି ବିପଦ, ବୁଲୁ ?

ବୁଲୁ—ବର ପଳେଇଛି ।

ନାରାୟଣ—ବର ପଳେଇଛି ?

ବୁଲୁ—ବାହା ବେଦିରୁ ।

ନାରାୟଣ—ବାହା ବେଦିରୁ ?

ବୁଲୁ—କଣିଆ-ପୁନା ଯା' ଦେବାକୁ ଜୁହା ହୋଇଥିଲା, ତା' ଦିଆ ହେଲା ନି ବୋଲି ।

ନାରାୟଣ—ଆଜି କ'ଣ କେହି ବର ନାହିଁ ?

ବୁଲୁ—ସେଇ କଥା ତ—ଆଲୋ, ହୁଳହୁଳି ଦିଅଲୋ-ବର ମିଳିଛି ।

( ନେପଥ୍ୟେ ହୁଳହୁଳି )

ନାରାୟଣ—ହୋଃ, ହୋଃ, ତୁମେ ଖେଳୁଥିଲ ?

ବୁଲୁ—ଆସ ନ, ଆମ ସାଙ୍ଗେ ଖେଳିବ—

ନାରାୟଣ—ଆଉ କା'କୁ ନେଇ ଖେଳ, ବୁଲୁ—ମୁଁ ଅଇଛିକା···

ବୁଲୁ—ଉଁ ହୁଁ—ତୁମେ ଯେମିତି ଖେଳ, ସେମିତି କ'ଣ ଆଉ କେହି ଖେଳିବେ ?

ନାରାୟଣ—କେମିତି ?

ବୁଲୁ—ସେଦିନ ଘରମଣି ଢେଲା ବୋହେଇଲ କଥା, ଥରେ ମନେ କଲ ?

ନାରାୟଣ—ଦେଖ, ବୁଲୁ—ମୋର ବର୍ତ୍ତମାନ ଫୁରୁସତ୍ ନାହିଁ—ହଁ, ବାପା ତୁମର ଘରେ ଅଛନ୍ତି ?

ବୁଲୁ—ଘରଜ୍ୱାଇଁ ଆଉ ଯିବେ କୁଆଡ଼େ କି ?—ତୁମେ ପରା ତାଙ୍କୁ କାମରୁ ବାହାର କରି ଦେଇଛ ?

ନାରାୟଣ—ବୁଲୁ—

ବୁଲୁ—ଦୁଃଖ କରୁଛ ?—ଭଲ କରିଛ ମ !—କାମ, କାମ ବୋଲି ବାପା ଘରେ ଦଣ୍ଡେ ହେଲେ ରହୁଥାନ୍ତେ. ଭଲ—ହଁ, ତୁମେ ଦେଉଳକୁ ଯାଉଚ ?

ନାରାୟଣ—କାହିଁକି ?

ବୁଲୁ—ବାପାଙ୍କ ଦେହ ଭଲ ନାହିଁ । 'ଠାକୁରେ ବାପାଙ୍କ ଦେହ ଭଲ କରି ଦିଅ'—ଏତକ ଯଦି ମୋ'ର ହୋଇ ଜଣାନ୍ତ !

ନାରାୟଣ—ତୁମେ ଆସୁନ ? (ଗଛର ଅନ୍ତରାଳରେ ବାଞ୍ଛାରାମ ଗ୍ରସ୍ତମୂର୍ତ୍ତିପରି ଆସି ଠିଆ ହେଲା)

ବୁଲୁ—ଆଲୋ ମୋ ବୌଲୋ—ଅପା ସେଠି ଅଛି !

ନାରାୟଣ—ଅପା ଦେଉଳରେ ?

ବୁଲୁ—ତୁମ ପାଇଁ ପରା ଅଧିଆ ପଡ଼ିଛି ।

ନାରାୟଣ—ମୋ ପାଇଁ ?

ବୁଲୁ—ଆଉ କ'ଣ ? ତା' ନ ହେଲେ, ତୁମେ ଏମିତି ହେଣ୍ଡିମାରି ବୁଲୁଥାନ୍ତ କେମିତି ?

ନାରାୟଣ—ଶୋଭ ! (ଚାଲିଯାଉଥିଲେ)

ବୁଲୁ—ହଁ ଦେଖ—ମୁଁ ଏଠି ଖେଳୁଥିଲି ବୋଲି ଅପାକୁ ଯେମିତି···

ନାରାୟଣ—କହିଲେ, ଚମ୍ପଟି ଦେବ ପରା ?—

( ଚାଲିଯାଉଥିଲେ )

ବୁଲୁ—ଆଉ ଗୋଟିଏ କଥା ଭାଇ, ଏଥର ଦୋଳ ପୁନେଇରେ ଅପା ପାଇଁ ତୁମକୁ ଆଉ ଅବିର ଦେବାକୁ ପଡ଼ିବ ନି ।

ନାରାୟଣ—କାହିଁକି ?

ବୁଲୁ—ତୁମ କଥା ପଡ଼ିଲେତ ଅପା ମୁହଁରେ ଆପେଁ ଆପେଁ ଅବିର ବୋଳା ହୋଇଯାଏ ।

ନାରାୟଣ—ଓଃ । ( କଷାଘାତ ଅନୁଭବ କଲାଭଳି ଚାଲିଗଲେ )

[ ବାଞ୍ଛାରାମ ଅନ୍ତରାଳରେ ରହି ସବୁକଥା ଶୁଣୁଥିଲା—ନିଜକୁ ସମ୍ଭାଳି ନପାରି ଅଟ୍ଟହାସ୍ୟ ପୂର୍ବକ ପ୍ରବେଶ କଲା ]

ବାଞ୍ଛା—ହୋଃ-ହୋଃ-ହୋଃ

ବୁଲୁ—( ଚାଲି ଯାଉ ଯାଉ, ଫେରି ) କିଏ ତୁମେ ?

ବାଞ୍ଛା—ଡର ନା, ବୁଲୁ !

ବୁଲୁ—ତୁମେ ମୋ ନାଁ ଜାଣ ?

ବାଞ୍ଛା—ମୁଁ ପରା ତୁମ ନାରଣଭାଇର ସାନ—

ବୁଲୁ—ତୁମେ ମିଛ କହୁଚ । ତାଙ୍କର ତ—

ବାଞ୍ଛା—ଆଜ୍ କେହି ଭାଇ ନାହିଁ ।—ତା ନୁହେଁ, ମୁଁ ପିଲାଦିନୁଁ ବନାରସର ଜଣେ ଜମିଦାରଙ୍କ ପୋଷ୍ୟପୁଅ ହୋଇ ଏଠୁ ଚାଲିଯାଇଚି କି ନା, ସେଇଥିପାଇଁ ତୁମେ ମୋତେ ଦେଖିନ ।

ଚୁଲ୍—ସତେ ?—ତେବେ ତୁମ ନାକଟା ନାରଣ ଭାଇର ନାକ ଭଳି ନୁହେଁ—ଭାରି ବେଢ଼ଙ୍ଗିଆ ।

ବାଞ୍ଛା—ଖୁବ୍ ହସ୍ତୁ—ନାଁ ?

ଚୁଲ୍—କୋଚିଲଖାଇ ନାକ ଭଳି—

ବାଞ୍ଛା—ସେଇତ ରାଜ-ଲକ୍ଷଣ । ତୁମର ଗୁହାଳର ଅବଧାନଙ୍କୁ ପଚାରିଲେ, ସେ କହିବ ।

ଚୁଲ୍—ସତେ ?—ବେଶ୍, ମୁଁ ତୁମକୁ ନାକାଭାଇ ବୋଲି ଡାକିବି ।

ବାଞ୍ଛା—ବେଶ୍ ବେଶ୍—ହଁ, ତୁମ ଅପା ନାରଣଭାଇକୁ ଖୁବ୍ ଭଲ ପାଏ, ନା ?

ଚୁଲ୍—ତମକୁ ବି ପାଇବ ।

ବାଞ୍ଛା—ମୋ ସଙ୍ଗେ ଏଇଠି ଥରେ—

ଚୁଲ୍—କାହିଁକି, ଯାଉ ନ ଦେଉଳକୁ—ଅପା ଅଛି—ନାରଣ ଭାଇ ଅଛି । ଅଲୋ ମା ବୋଉଲୋ ! ଏ' କିଏ ଆସୁଚି, ଏତେ ସହଳ ସହଳ ?—ଅପା ତ ! ନାରଣ ଭାଇର ଦେଖା ହୋଇ ନ ନଥିବ ! ନାକାଭାଇ, ତୁମେ କହିଦେବ, ନାରଣଭାଇ ଦେଉଳକୁ ଯାଇଛି, ଖୋଜୁଥିବ—ମୁଁ ପଳାଏ ଲୋ ମା—ହଁ, ଦେଖ—ନାକା-ଭାଇ, ମୁଁ ଏଠି ଥିଲି ବୋଲି, ଯେମିତି କହି ନ ଦିଅ ଅପାକୁ—

ବାଞ୍ଛା—ଚମ୍ପୁଟିବ ?

ଚୁଲ୍—ତୁମେ ଜାଣିଲ କେମିତି ?

ବାଞ୍ଛା—ଏ···ତା' ଜାଣିବି ନି ?—ହଁ, ତୁମ ଅପାର ନାଁ ?

ଚୁଲ୍—ଶୋଭ ! ମୋ ନାଁ ?

ବାଞ୍ଛା—ଚୁଲ୍ ।

ଚୁଲ୍—ହଃ, ହଃ, ( ହସି ହସି ପଳାଇଗଲା )

ବାଞ୍ଛା—ଭଲ ମଜକାଟାଏ—ନାରଣ ସଙ୍ଗେ ଦେଖା ହୋଇ ନି ଶୋଭର—ବାଃ ! ଜମିଦାର ସାଜି ଜମିଦାରଙ୍କୁ ଉନ୍ମାଦ କରଛି—ପ୍ରଜା ସାଜି ଗୋବନ୍ଦକୁ ଉନ୍ମାଦ କରଛି—ଏଥର ପ୍ରେମିକ ସାଜି ବନ୍ଧୁ ମହାନ୍ତିଙ୍କୁ ଉନ୍ମାଦ କରିବି । ସେଇଥିରେ ସେମାନେ ଅକ୍ତିଆର ହେବେ—ମୋର କାମ ହାସଲ୍ ହେବ । ହେଇ ଆସିଗଲା । ( ମୁହଁ ବୁଲାଇ, ରାସ୍ତା ମଝିରେ ବାଟ ଓଗାଳିଲା ଭଳି ଠିଆ ହେଲା )

( ନିର୍ମଳାର ପ୍ରବେଶ )

ନିର୍ମଳା—( ବାଟଛାଡ଼ି ଦେବାପାଇଁ ) ଚୁ, ଚୁ

ବାଞ୍ଛା—ଛି, ମୋତେ ପୁଣି ଲାଜ ?

ନିର୍ମଳା—ତୁମେ କିଏ, ଚୁହୁଁ ନା ଏଣିକି ?—

ବାଞ୍ଛା—ଚୁହିଁଲେ ତ ସମସ୍ତେ ଚିହ୍ନିବେ—ନ ଚୁହିଁ ଚିହ୍ନିବାରେ ସିନା ପ୍ରେମର ପରଖ ?

ନିର୍ମଳା—ପ୍ରେମ !

ବାଞ୍ଛା—ଦେଉଳରେ ଯାଇ ଯେଉଁ ନାରଣଭାଇ ପାଇଁ ଅଧିଆ ପଡ଼ିଛ, ସେ ଯେ ଏଣେ ଛଟପଟ ହୋଇ ମରୁଛି—ସେ କଥା ତ—

ନିର୍ମଳା—( ଚୁହିଁପାରି, ଅଭିନୟ କଲାଭଳି ) ନାରଣ ଭାଇ—

ବାଞ୍ଛା—କହିଲି ଶୋଭ—ମୋ ପାଇଁ ସିନା ତୁମ-ମାନଙ୍କର ଅଜି ଏ'ହାଲ୍ !

ନିର୍ମଳା—ବେଶ୍ ତ, ଦେଖାଇ ଦିଅ, ତୁମର ହାତରେ ତ କଥା ।

ବାଞ୍ଛା—ତୁମେ ରାଜି ହେଲେ ତ ?

ନିର୍ମଳା—ବାହା ହେବାକୁ ?—ହେଲେ, ତୁମେ ପର ଭାଇ, ମୁଁ ପର ଭଉଣୀ—ଭାଇକୁ ଭଉଣୀ କେବେ···

ବାଞ୍ଛା—ଛି ଛି, ତା' କି ମୁଁ କହିପାରେ କେବେଁ ?

ନିର୍ମଳା—ତେବେ ?

ବାଞ୍ଛା—ତମେ ତ ଜାଣ,—ମୋର ସଙ୍ଗାତ ··

ନିର୍ମଳା—ବାଞ୍ଛାରାମ ?

ବାଞ୍ଛା—ହଁ, ତାର ଖାତିରରେ ଅଇଛିକା ମୁଁ ଓ ମୋର ଯାନାସନ । ତା'ର ଯୋଗୁଁ ତମର ବାପା ବୋଉର ଏତେ ଦୁର୍ଦ୍ଦଶା । ତାକୁ ଯଦି ତୁମେ ବାହା ହେବାକୁ ରାଜି ହୁଅନ୍ତ—

ନିର୍ମଳା—ଯଦି ରାଜି ନ ହୁଏଁ ?

ବାଞ୍ଛା—ତେବେ ଜାଣିବ, ତୁମେ ମୋତେ ଭଲ ପାଅ ନା—ତୁମର ବାପା, ବୋଉ, ଜମିଦାର ଭାଇଙ୍କୁ ବଞ୍ଚାଇବାକୁ ଚାହଁନା—

ନିର୍ମଳା—କିନ୍ତୁ, ବାଞ୍ଛାରାମଜୀ ଯଦି ରାଜି ନ ହୁଅନ୍ତି ?

ବାଞ୍ଛା—ସେ'ଭାର, ମୋ'ଉପରେ ।

ନିର୍ମଳା—ଏତେ ଭାଗ୍ୟ ହେବ ମୋ'ର—ବାଞ୍ଛାରାମଙ୍କୁ ମୁଁ ପାଇବି—ମୋ' ମନୋବାଞ୍ଛା ପୂର୍ଣ୍ଣ ହେବ ? ବାଞ୍ଛାରାମ—ବାଞ୍ଛାରାମ—

ବାଞ୍ଛା—ଏଇ ଯେ ବାଞ୍ଛାରାମ ତୁମର—(ମୁହଁ ଫେରାଇ ଦେଖି) ନିର୍ମଳା । ସଇତାନ । କେତେଥର ଘରେ ମୋର ସେହି କୋରଡ଼ାର ଅପମାନ କରିଥିଲୁ ନା, ଦୂରରେ ଫିଙ୍ଗି ଦେଇ ?

ନିର୍ମଳା—ଗୋଟେଇ ପାଖରେ ରଖିଚି, ସଇତାନ—ଆଜି ତା'ର ସମ୍ମାନ କରିବି—

(ଚୋରଡ଼ାକାଢ଼ି ବେଦମ୍ ପ୍ରହାର କରିବାକୁ ଲାଗିଲେ)

---

## ଷଷ୍ଠ ଦୃଶ୍ୟ

[ବିରଜା ମନ୍ଦିରର ତୋରଣ ଦେଶ—ଉଭୟ ନାରଣି ଓ ଶୋଭି ଏକତ୍ର ଦେଉଳ ମଧ୍ୟରୁ ବାହାରି ଆସୁଥିଲେ ]

ନାରାୟଣ—ଓଃ, ସତେ ସତେ ଯେମିତି ଚୋରଡ଼ାରେ କିଏ ମୋର ଛାଲ ଓତାରି ଦେଉଛି ।—ତୁମେ ଆଉ ଥରେ କୁହ ଶୋଭି, ଆଉ ଥରେ—ମୋ ଚିନ୍ତା ଛଡ଼ା, ତୁମ ବାପା ବୋଉର ଆଉ କିଛି ଚିନ୍ତା ନାହିଁ ? ମୋର କୁଶଳ କାମନା କରି କରି, ମୋରି ନାଁରେ । ଘଟ ବସିଛି—ଦୀପ ଜଳୁଛି—ମନ୍ଦାର ବେଲପତ୍ରି ଚଢ଼ୁଚି—ଦିନରାତି ଚଣ୍ଡୀପାଠ ଲାଗିଚି ।—ଆଉ ତୁମେ—ଘରଧନ୍ଦା ଛାଡ଼ି, ଏହି ଧନ୍ଦାରେ ମାତିଛ ? ଓଃ ।—

ଶୋଭି—ଦେଖ, ତୁମେ ଏମିତି ବ୍ୟସ୍ତ ହେଲେ, ବାପା ବୋଉ ଅଧିକ ବ୍ୟସ୍ତ ହେବେ । ଯାଏଁ, ମୁଁ ଗଲେ ବାପା ଖାଇବେ ।

ନାରାୟଣ—ତୁମେ ଯାଅ—ଯାଅ—ହଁ, ଏହି ଟଙ୍କଣୀ-ତକ—

ଶୋଭି—ପୁଣି ?

ନାରାୟଣ—ଠିକ୍, ଠିକ୍···ଲୋକେ କହିବେ କ'ଣ ? ମୁଁ ନିଜେ ଦେଇପିବି,—କିନ୍ତୁ, ବାପାଙ୍କୁ ଏ ମୁହଁ—

ଶୋଭି—ଫେର୍—

ନାରାୟଣ—ସତେ ମୋର ସାହସ ଅଣ୍ଟୁନି, ଶୋଭି—ଏ ମୁହଁ—

ଶୋଭି—ଦେଖିଛ—ଦିନେ ଦୁଇଦିନ ଯାଉ, ମନଟା ଟିକିଏ ସ୍ଥିରହେଉ, ଦମ୍ଭ ଧରୁ;—ହଁ, ଏଇ ନିଅ, ଫୁଲ, ବେଲପତ୍ରି ଆଉ ମା'ଙ୍କ ସିନ୍ଦୂର । (ଦେଲାବେଳେ)

ନାରାୟଣ—ମା'ଙ୍କ ସିନ୍ଦୂର ତୁମେ ମଥାରେ ଲଗାଇ ଦିଅ, ଶୋଭି—

ଶୋଭି—(ତାହାହିଁ କଲା)

[ସେତିକିବେଳେ ସେହି ପୂର୍ବୋକ୍ତ ଭିକାରୀ ଭିକାରୁଣୀ ଗାଇ ଗାଇ ପ୍ରବେଶ କଲେ ଓ ବାଟେ ବାଟେ ଚାଲିଗଲେ ]

ଭିକାରୀ ଓ ଭିକାରୁଣୀ—

ଗୀତ

ପାହିଲାରେ ଘନରାତି ।
ସୀମନ୍ତର ସେହି ସିନ୍ଦୂର ରାଗେ ଗଗନ ଉଠିବ ମାତି ।
ମନ୍ଦିରେ ରଖି ଆସନ ପାତି
ଅନ୍ତରେ କର ପ୍ରୀତି ଆରତି
ସୁନ୍ଦରେ ସୁନ୍ଦର ମିଳନ ଆଜି ଖେଳାଯାଉ ନୂଆ ଭାତି ।

[ସେହି ଗୀତ ଶେଷ ହେବା ସଙ୍ଗେ ସଙ୍ଗେ ଉଭୟେ ପରସ୍ପରକୁ ଏକ ଦିବ୍ୟ ଦୃଷ୍ଟିରେ ଚାହିଁଲେ ଓ ଚେତନାରେ ଉଦ୍ବୁଦ୍ଧ ହୋଇ ପରସ୍ପର ବିପରୀତ ଦିଗରେ ପ୍ରସ୍ଥାନ କଲେ ]

(ବରକନ୍ଦାଜ ଦ୍ୱୟ ସହ ବାଞ୍ଛାରାମର ପ୍ରବେଶ)

ବାଞ୍ଛାରାମ—ହଁ, ସେହି ଟୋକୀ—ଯେମିତି ନଈ ଦାଢ଼େ ଦାଢ଼େ ଯାଇ ନିଶ୍ଚିତ ବାଟ ଧରିବ—ବୁଝିଲ ତ ?—

୧ମ ବରକନ୍ଦାଜ—ଜି—ରାମଜୀ—

ବାଞ୍ଛାରାମ—ଆଉ ପାଞ୍ଚଟି ଭିଡ଼ି ବାନ୍ଧି ଦେବ ।

୧ମ ବରକନ୍ଦାଜ—ଜୀ—

ବାଞ୍ଛାରାମ—ହାଁ, ଖୁବ୍ ହୁସିଆର—କେହି ରୋକିଲେ, କହିବ—'ଜମିଦାର ସା'ନ୍ତଙ୍କ ହୁକୁମ—ଆମର କି ଗୁହାଁ' ।

୧ମ ବରକନ୍ଦାଜ—ଜୀ, କେଉଁଠାକୁ ନେଇ ଯିବୁ, ହଜୁର ?

ବାଞ୍ଛାରାମ—ଆଃ—ନାଚଶାଳାକୁ ।

ବରକନ୍ଦାଜ ଦ୍ୱୟ—ଜୀ, ରାମଜୀ—

( ପ୍ରସ୍ଥାନ କଲେ )

ବାଞ୍ଛାରାମ—ମୁଁ ଏଣେ ଯାଏଁ, ପ୍ରଜାମାନଙ୍କୁ ଠିକାଇ ଦିଏଁ ।

( ବିପରୀତ ଦିଗରେ ଚାଲିଗଲେ )

---

## ସପ୍ତମ ଦୃଶ୍ୟ

[ ସେହି ପୂର୍ବ ଗ୍ରାମ୍ୟ ପଥ । ପୂର୍ବ ଦୃଶ୍ୟର ଅନୁକ୍ରମରେ ଗୋଟାଏ କୋଳାହଳ ଶୁଣାଗଲା । କେତେକ ପ୍ରଜାସହ ବାଞ୍ଛାରାମ ପ୍ରବେଶ କଲେ ]

ବାଞ୍ଛାରାମ—ତୁମେମାନେ ହଲ୍ଲା କରନା—ମୋ' ସାଥିରେ ଛପି ଛପି ଆସ—ଦେଖିବ ନିଜ ଆଖିରେ ତୁମର ଜମିଦାରଙ୍କର କୀର୍ତ୍ତି, ଆଉ ତୁମର ପ୍ରଜାବନ୍ଧୁ ବନ୍ଧୁ ମହାନ୍ତିଙ୍କ ପରଗୁଣ—

ପ୍ରଜାଗଣ—( ପୁଣି କୋଳାହଳ କରି ଉଠିଲେ )

ବାଞ୍ଛାରାମ—ଚୁପ୍— ( ସମସ୍ତଙ୍କ ପ୍ରସ୍ଥାନ )

( ଗୋବିନ୍ଦ ଓ ନିର୍ମଳର ବିପରୀତ ଦିଗରୁ ବେଗେ ପ୍ରବେଶ )

ଗୋବିନ୍ଦ—ମୁଁ କିଛି ବୁଝି ପାରୁନି, ନିର୍ମଳ !—ହଠାତ୍ ଗାଁ ସାରା ଏମିତି ଚହଳ ପଡ଼ିଗଲା କାହିଁକି ?—କଚେରୀରୁ ପ୍ରଜାମାନେ ହଠାତ୍ ହାଉଳି କରି ଜମିଦାର ଉଆସ ଆଡ଼େ ଧାଇଁଲେ କାହିଁକି ? ବରକନ୍ଦାଜ ଦୁଇଟାଙ୍କୁ ବି ଦେଖୁନି, କଥା କ'ଣ ? ତୁମେ ବନ୍ଧୁ ଭାଇଙ୍କ ଘରଆଡ଼େ ଯାଅ—ମୁଁ ଉଆସକୁ ଯାଏଁ—( ପରସ୍ପର ବିପରୀତ ଦିଗରେ ପ୍ରସ୍ଥାନ କଲେ )

[ ସନ୍ନ୍ୟାସିନୀ ବେଶରେ ଲଛମୀ ଉଦ୍‌ଭ୍ରାନ୍ତ ଭାବରେ ପ୍ରବେଶ କଲା ]

ଲଛମୀ—କାହାନ୍ତି ନାରଣ ସା'ନ୍ତେ ? କେଉଁଠି ତ ଖୋଜି ପାଉ ନି ? ଗ୍ରାମରୁ ବିଦାୟ ନେବି, ତା' ଆଗରୁ ତାଙ୍କୁ ଥରେ ପ୍ରଣାମ କରିଯିବି, ଏତିକି । ତାଙ୍କର ସରଳତା, ମୋର ଜଡ଼ତା ଭାଙ୍ଗିଛି, ମୋତେ ଏଇ ଦୀକ୍ଷା ଦେଇଛି—ସେ ମୋର ପରମ ଗୁରୁ, ସାକ୍ଷାତ୍ ନାରାୟଣ । ( ପ୍ରସ୍ଥାନ )

( ଶବର ଓ ଶବରୁଣୀର ବେଗେ ପ୍ରବେଶ )

ଶବର—କେଉଁଠାକୁ ତୁମେ ଧାଇଁଛ ପୁଣି ?

ଶବରୀ—ଭକ—ଭକ—

ଶବର—ଭକ ତ ପାଇଲ—ଜମିଦାର ପୂଜା କଲେ—ତୁମର ରକ୍ତଚନ୍ଦନ ନେଇଲେ—ଆଉ କି ଭକ ଚାହଁ ତୁମେ ?

ଶବରୀ—ରକ୍ତ—ରକ୍ତ—

ଶବର—ରକ୍ତଲାଳସୀ । ଉନ୍ମାଦ, ଉନ୍ମାଦ କଲ ମୋତେ···

ଶବରୀ—ମୁଁ ଉନ୍ମାଦିନୀ—ଧର, ଧର ତ୍ରିଶୂଳ—ମୁଁ ଧରୁଛି ଖଡ଼୍‌ଗ, ଖର୍ପର···ଧ୍ୱଂସ—ଧ୍ୱଂସ—

---

## ଅଷ୍ଟମ ଦୃଶ୍ୟ

[ ପୂର୍ବ ଦୃଶ୍ୟର ଅନୁକ୍ରମରେ ବନ୍ଧୁମହାନ୍ତି ବିକାରଗ୍ରସ୍ତ ରୋଗୀ ଭଳି ପ୍ରବେଶ କଲେ । ତାଙ୍କ ଆଖିରେ, ମୁଖରେ, ଭାବରେ ଗୋଟାଏ ଅବଶ୍ୟମ୍ଭାବୀ ଧ୍ୱଂସ ବା ପ୍ରଳୟର ଆତଙ୍କ ପରିସ୍ଫୁଟ ଦେଖା ଯାଉଥାଏ—ସେ ଯେମିତି ତାହା ପ୍ରତିରୋଧ କରିବାକୁ ଧାଇଁ ଆସୁଥିଲେ । ଦୃଶ୍ୟ ଦେଖାଗଲା—ତାଙ୍କର ଗୃହ ସମ୍ମୁଖ ]

ବନ୍ଧୁ—ଜମିଦାର ଧ୍ୱଂସ ହୋଇଯିବ—ଜମିଦାରୀ ଧ୍ୱଂସ ହୋଇଯିବ - ମୋତେ ଛାଡ଼ିଦିଅ—ମୁଁ କଟେକ୍କୁ ଯିବି—ଟେଲିଗ୍ରାମ ଲେଖିକ ପଠାଇ ଦେଇଛନ୍ତି, ଫିରସ୍ତା ବୁଝିନେବି । ତଉପସନ୍ଧୁ ତଲବ ଆସିବ, ଗହଣା ସିନ୍ଦୁକର ଗୃହ ଜମା କରିନେବି । ଗୋଷ୍ଠ ସାଥିରୁ ନାରାୟଣ ମୋର କାନ୍ଦୁଛି—ଡୁହାଇ ଡୁହାଇ ଡାକୁଛି 'ବନ୍ଧୁକକା—ବନ୍ଧୁକକା'—

( ବନ୍ଧୁ-ପତ୍ନୀର ବେଗରେ ପ୍ରବେଶ )

ବନ୍ଧୁ-ପତ୍ନୀ—ଏ' କ'ଣ କରୁଛ ? ଉଠି ପାରୁ ନ ଥିଲ, ସାତଦିନ ହେଲା ଉପାସ—ହୋଚ୍ଚେ ପାଣିବି—

ବନ୍ଧୁ—ଆଃ—ମୋର ଚନ୍ଦର—ମୋର ଚଠଉ !— ଏଇ ମୋର ପ୍ରଜା କାନ୍ଦୁଛନ୍ତି, ମୋ'ର ରାଜା କାନ୍ଦୁଛି—ତୁନି ହୁଅ—ସ୍ଥିର ହୁଅ ( ଗମନୋ-ଦ୍ୟତ )

( ବୁଲିର ବେଗରେ ପ୍ରବେଶ )

ବୁଲି—ଦେଉଳରେ ଅପା ନାହିଁ, ବାପା—

( ନିର୍ମଳାର ବେଗରେ ପ୍ରବେଶ )

ନିର୍ମଳା—ସାଇରେ ବି ନାହିଁ—ବାଞ୍ଛାରାମ ବାଟରେ ଛକି ଥିଲା, ସେଇ ନିଶ୍ଚୟ ଗୋଟାଏ କିଛି କାଣ୍ଡ କରିଛି ।

( ଉନ୍ମାଦିନୀ ଭଳି ଶୋଭା ପ୍ରବେଶ କଲା )

ଶୋଭା—ବାଞ୍ଛାରାମ ଆଜି ରାକ୍ଷସ-କବଳରୁ ମୋତେ ରକ୍ଷା କରିଛି—ମୋତେ ବାଟ ଦେଖାଇ ଘରକୁ ଘେନି ଆସିଛି, ବାବା !

ବନ୍ଧୁ-ପତ୍ନୀ—ଶୋଭା, ଶୋଭା—ଝିଅ ମୋ'ର—

ଶୋଭା—( ଗଦ ଗଦ ସ୍ୱରରେ ) ମୁଁ ଜମିଦାର ହାତରେ ଫୁଲ, ବେଲପତ୍ରି ଦେଲି, କପାଳରେ ସିନ୍ଦୂର ଲଗାଇ ଦେଲି, ଆଉ ଜମିଦାର ଦି'ଟା ପାଇକ ପଠାଇ, ମୋତେ ସବାରି ଚଢ଼ା କରାଇ ନେଇ ଯାଉଥିଲା, ତା'ର—

( ବାଞ୍ଛାରାମର ପ୍ରବେଶ )

ବାଞ୍ଛା—ନାତଖାନାକୁ—

ଶୋଭା—ଓଃ—( ଶିହରିବାକୁ ଲାଗିଲା ଘୃଣା ଓ କ୍ରୋଧରେ )

( ପଧାନର ପ୍ରବେଶ )

ପଧାନ—ଆମେ ଆଖିରେ ଦେଖିଛୁ, ନେବାର ସା'ନ୍ତେ—କାନରେ ଶୁଣିଛୁ ପାଇକଠୁଁ— 'ଜମିଦାରଙ୍କ ହୁକୁମ'—

ବନ୍ଧୁ—ନାରଣର ?

ଶୋଭା—ବୋଉ ଲୋ—( ବୋଉ ଉପରେ ଅଜାଡ଼ି ହୋଇ ପଡ଼ିଲା )

ବନ୍ଧୁ-ପତ୍ନୀ—ଏଠୁ ଗ୍ଲଲ, ମା —

( ବୁଲି ଓ ଶୋଭାକୁ ଘେନି ବନ୍ଧୁପତ୍ନୀ ଗ୍ଲଲି ଯାଉଥିଲେ )

ନିର୍ମଳା—ମୋର ବିଶ୍ୱାସ ହେଉନି ।

ବନ୍ଧୁ—ଠିକ କହୁଚ, ମୋର ବି ବିଶ୍ୱାସ ହେଉନି ।

ବନ୍ଧୁ-ପତ୍ନୀ—(ରହିଯାଇ) ତଉପସନ୍ଧୁ ତଲବ, ଗହଣା ସିନ୍ଦୁକର ଗୃହ ଜମା କରି ନେବାକଥା—ଏ' ଗୁଡ଼ାକ ବିଶ୍ୱାସ ହେଉଚି ତ ? (ଗ୍ଲଲିଗଲେ)

ନିର୍ମଳା—ଏଁ ! (ଲଜ୍ଜା ସଙ୍କୋଚରେ ଆଉ ରହି ନପାରି ଗ୍ଲଲିଗଲେ)

ପଧାନ—ଜମିଦାରଙ୍କର ଏ ଅନ୍ୟାୟ, ଆମେ କଦାପି ସହିବୁ ନାହିଁ ।

ବାଞ୍ଛା—ଏଥିରେ ମହାପାତ୍ର ବଂଶକୁ ଯେତିକି ନିନ୍ଦା, ମହାନ୍ତି ବଂଶକୁ ଠିକ୍ ସେତିକି ନିନ୍ଦା । ଯଦି ତୁମେ ନିନ୍ଦା ଅପବାଦ ଘୋଡ଼ାଇବାକୁ ଗ୍ଲହଁ—

ବନ୍ଧୁ—ପାରିବ, ପାରିବ ତୁମେ ବାପ ?—ଜାଣନାହିଁ ତୁମେ, ବାଞ୍ଛାରାମ । ମହାପାତ୍ର ଓ ମହାନ୍ତି ବଂଶ ମଧ୍ୟରେ କି ଅଭେଦ ପ୍ରୀତି ସମ୍ପର୍କ—କେଉଁ ପୁରୁଷାନୁକ୍ରମେ ତାହା ଗଢ଼ି ଆସୁଛି । ମହାନ୍ତି କୁଳ ସନ୍ତକ ଏହି ଲେଖନୀ ତାର ପ୍ରମାଣ—ମୋ ଅଣ୍ଟାରେ ଅଦ୍ୟାପି ଖୋସା ରହିଛି । କୁହ, କେଉଁ ଉପାୟରେ ଆଜି ଉଭୟ ବଂଶରୁ ସେହି କଳଙ୍କ କାଳିମା ଦୂର ହେବ ?

ବାଞ୍ଛା—ଉଭୟ ବଂଶର ବିଚ୍ଛେଦରେ—

ବନ୍ଧୁ—ଅର୍ଥାତ୍ ?

ବାଞ୍ଛା—ଉଭୟ ମଧ୍ୟରେ ପ୍ରୀତି ସମ୍ପର୍କ ଅକ୍ଷୁର୍ଣ୍ଣ ରଖିବାକୁ ହେଲେ, କଣକୁ କରିବାକୁ ହେବ—

ବନ୍ଧୁ—ତ୍ୟାଗ ?

ବାଞ୍ଛାରାମ—ହଁ, ଦେଶତ୍ୟାଗ ।

ବନ୍ଧୁ—ବେଶ୍, ଏହି ସାମାନ୍ୟ ତ୍ୟାଗ ଫଳରେ ଯଦି ମହାପାତ୍ର ବଂଶର କଳଙ୍କ ଲିଭିଯାଏ, ତେବେ ମହାନ୍ତି ବଂଶର ମୁଁ ବନ୍ଧୁ ମହାନ୍ତି, ଅଜି କଳଙ୍କର ସମସ୍ତ ପସରା ମୁଣ୍ଡାଇ ଦେଶତ୍ୟାଗୀ ହେବାକୁ ପ୍ରସ୍ତୁତ;—ଭୁଲିଥା ବୋଉ, ଭୁଲି, ଶୋଭି, ଅଉ ଚନ୍ଦ୍ରା ଶୋକ ନାହିଁ—ଆସ ବାହାର—ଜମିଦାରଙ୍କ ନିନ୍ଦା କଳଙ୍କରୁ ମୁକ୍ତ କରିପାରିଛି, ମହାପାତ୍ର ବଂଶର ମର୍ଯ୍ୟାଦା ରକ୍ଷା କରିପାରିଛି ।

[ଗୋଟାଏ ଉନ୍ମାଦନାରେ ଦ୍ୱାର ଖୋଲି ଭିତରକୁ ଚାଲିଗଲେ]

ବାଞ୍ଛାରାମ—(ବାହାର ପଟୁ ଶିକୁଳି ଲଗାଇ ଦେଇ) ଜାଣ, ପଧାନେ, ଜମିଦାରର କଳଙ୍କରେ ପ୍ରଜାର କଳଙ୍କ । ଯଦି ସେହି କଳଙ୍କ ଏକାବେଳକେ ଦୂର କରି ଦେବାକୁ ଚାହଁ—କାଳିମା ପୋଛି ପକାଇବାକୁ ଚାହଁ—ତେବେ, ଏଇ ସୁଯୋଗ—ଜାଳିଦିଅ, ପୋଡ଼ିଦିଅ—କଳଙ୍କର ନୀଡ଼, କଳଙ୍କ ସଙ୍ଗେ ଭସ୍ମ ହୋଇଯାଉ ।

ପଧାନ—କ'ଣ କହୁଛ, ରାମଜି ?

ବାଞ୍ଛାରାମ—'ରୋଗର ଶେଷ, ଋଣର ଶେଷ'—ଶିଖିଥିବ, ଭାଇ ।

ନାରାୟଣ—( ନେପଥ୍ୟ ଦୂରେ) ମୋର ବଦ୍‌ନାମ—ମୋର ନିନ୍ଦା—ଅସହ୍ୟ ଅସହ୍ୟ—

ବାଞ୍ଛାରାମ—ଏହି ଶୁଣ, ଭାଇ—ତୁମର ରାଜା—ନିନ୍ଦା, ବଦ୍‌ନାମ ଯୋଗୁଁ ବଲି ପାଗଳ—ଏଠାକୁ ଧାଇଁ ଆସୁଛନ୍ତି ବାଯ୍ୟା କୁକୁର ଭଳି—ନିଜେ ଏହି କଳଙ୍କ ବାଡ଼ ପୋଡ଼ି ଦେବାକୁ । ତୁମେ ରାଜାର ପ୍ରଜା—ରାଜକାର୍ଯ୍ୟ କର, କର୍ତ୍ତବ୍ୟ ପାଳନ କର ।

ପଧାନ—ଠିକ୍ କହୁଛ, ରାମଜୀ—ଆଉ ଡେରି ନୁହେ—ନିଆଁ ଅଠା ଜାଳି ନେଇ ଆସ, ଭାଇମାନେ—ଆମେ ରାଜାର ପ୍ରଜା, ଚୁଡ଼ା ତହସିଲଦାରର ନୋହୁଁ । ବନ୍ଧୁ ମହାନ୍ତି ଏହି ଶିକ୍ଷା ଦେଇଛନ୍ତି ଆମକୁ । ସେଇ ଶିକ୍ଷା ତାଙ୍କର ଠାରେ ଲଗେଇ କାମରେ ଦେଖାଇବା ।

( ପ୍ରଜାମାନଙ୍କର କୋଲାହଳ )

ବାଞ୍ଛାରାମ—ଏହି ଦେଖ, ସେହି ଗୋବିନ୍ଦାଟା ଆସୁଛି—ବନ୍ଧୁମହାନ୍ତିର ଅସଲ ଚେଲା । ମୋର ହୁକୁମନାମା ରଦ୍ଦ କରି, ଆପଣା ହୁକୁମ ଜାରି କରିଥିଲା—ତୁମ ତୋଟି ଚପି କଡ଼ାକାନ୍ତିରେ ଖଜଣା ଆଦାୟ କରିଥିଲା ସେ ଯଦି ବାଧା ଦିଏ ?

ପଧାନ—ତାକୁ ବି ଆମେ ପୋଡ଼ି ଜାଳି ଦେବୁ ।

ବାଞ୍ଛାରାମ—ଅରେ ରେ, ସେହି ବାଉଳଟା ଆସୁଛି । ଗେରୁଆ ପିନ୍ଧି ମାତାଜୀ ସାଜିଛି—ଆଖିରେ ଭେଲ୍‌କି ଲଗାଇ ତୁମର ଜମିଦାରୀ ଶୋଷିବ, ଏଇଥିପାଇଁ…ଯାଉ, ସେ ମାଇପି ଲୋକ—ମାଇପି ପ୍ରାଣରେ ନାହିଁ ନାହିଁ, ଯଦି ବାଧାଦିଏ ?

ପଧାନ—ତାକୁ ବି ଆମେ ଛାଡ଼ିବୁ ନି ।

ବାଞ୍ଛାରାମ—ମୂର୍ଖ ଜମିଦାର ଯଦି ସେମାନଙ୍କ ଖାତିରରେ ପଡ଼ି ବାଧାଦିଏ ?

ପଧାନ—ଜମିଦାର ବୋଲି ଖାତିର ରଖିବୁ ନି—

ବାଞ୍ଛାରାମ—ତେବେ ଶୀଘ୍ର—ହେଳା କରନା—ସେମାନେ ଆସିବା ପୂର୍ବରୁ—

( ପଧାନର ପ୍ରସ୍ଥାନ )

—ମୁଁ ବି ପଛରେ ଥାଇ ମଙ୍ଗଧରି କାମ କରେଁ ।

[ନେପଥ୍ୟେ କୋଲାହଳ ଓ ଜଳନ୍ତା ନିଆଁ ଅଠା ନେଇ ପ୍ରଜାମାନଙ୍କର ପ୍ରବେଶ]

( ଗୋବିନ୍ଦ, ଲକ୍ଷ୍ମୀ ଓ ନାରାୟଣର ପ୍ରବେଶ )

ନାରାୟଣ—ଏ କ'ଣ ଦେଖୁଛି ? ନିଆଁ ହୁଳା କାହିଁକି ?—ବନ୍ଧୁ କକା କାହାନ୍ତି ?

ପଧାନ—ଏହି ଘର ଭିତରେ—( ନିଆଁ ହୁଳାଧରି )

ବାଞ୍ଛାରାମ—( ଅନ୍ତରାଳରେ ଥାଇ ) ବାଟ ଓଗାଳ—ଦୁସିଅଛି…

ଗୋବିନ୍ଦ—ବାଞ୍ଛାରାମ—

ପଧାନ—କାହାରିକୁ ବାଟ ଛାଡ଼ିବୁ ନି ।

[ ଗୃହାଭ୍ୟନ୍ତରରୁ ସେହି ଉନ୍ମାଦିନୀର କଣ୍ଠସ୍ୱର ଶୁଣାଗଲା—'ରକ୍ତ—ରକ୍ତ' ]

ନାରାୟଣ—ସେହି ଭଦ୍ରାକ୍ଷୁଣୀ—ରକ୍ତ ମାଗୁଛି—ରକ୍ତ ଦେବି—ମୋର ବଦ୍‌ନାମ, ସୁନାମ ହୋଇ ଠିଆହେବ ।

ଲଛମୀ—ତୁମର ସାମାନ୍ୟ ରକ୍ତ—ସେଥିରେ ମା ସନ୍ତୁଷ୍ଟ ହେବେ ନା । ମା' ଚାହୁଁଛନ୍ତି ଆଜ, ତୁମ୍ଭଆର ରକ୍ତ । ମୋ'ହାତରେ ତାହା ସମ୍ଭବ । କେତେ କେତେ ଜମିଦାର—ନିରୀହ ତରୁଣ କିଶୋର ଦଳ ତାଙ୍କର ତାଜା ରକ୍ତ ଢାଳି ଦେଇଛନ୍ତି ଅଜାଣତରେ, ଏଇ ରୂପଜୀବୀର ରୂପ-ଖର୍ପରରେ । ( ପଥ ଅବରୋଧ କଲା )

ବାଞ୍ଛାରାମ—ଜାଳଦଅ ଆଗେ ସେଇ ସଇତାନୀଟାକୁ ।

[ ସମସ୍ତେ ନିଆଁ ହୁଲା ଧରି ଲଛମୀକୁ ଘେରିଗଲେ ]

ନାରାୟଣ—ଓଃ—( ଗୋବିନ୍ଦ ଉପରେ ଢଳି ପଡ଼ିଲେ )

ଗୋବିନ୍ଦ—ସା'ନ୍ତେ, ସା'ନ୍ତେ—( କହୁ କହୁ, ଘେନି ଚାଲିଗଲେ )

ଲଛମୀ—ମା—ମା—ନେ ମା ରକ୍ତ—ଭରି ତୋର ଖର୍ପର—ଖେଳୁ ଲହ ଲହ ଜିହ୍ୱା—ଉଠୁ ଖଡ୍‌ଗମାତି—ଅଗ୍ନିବାଣ ଛୁଟୁ ନେତ୍ରୁ—ପୋଡ଼ି ଯାଉ ହିଂସା ଦ୍ୱେଷ, ଦଳ ପାପ ଧରି; ପୁଣ୍ୟେ ଦେ ମା ଆଶ୍ରୟ ।

( କହୁ କହୁ ନିଆଁ ହୁଳସରେ ଢଳି ଭୂତଳଶାୟୀ ହେଲେ )

ବାଞ୍ଛା ଓ ପ୍ରଜାଗଣ—ର···ର···ର ( ଭୀଷଣ କୋଳାହଳ ଉଠିଲା )

[ ଧରା କମ୍ପିଉଠିଲା । ଶିବତାଣ୍ଡବର ପ୍ରଳୟ-ଡମ୍ବରୁ ସଙ୍ଗେ ଆବିର୍ଭୂତା ହେଲେ, ବିରଜା ଜନନୀ ଅଗ୍ନିମୟୀରୂପେ । ଏକ ହାତରେ ଅଗ୍ନି ବର୍ଷଣ କରି ଶତ୍ରୁମାନଙ୍କୁ ଛାରଖାର କରି ଦେଲେ ଓ ଅନ୍ୟ ହାତରେ ବନ୍ଧୁ ମହାନ୍ତି ପ୍ରଭୃତିଙ୍କୁ ଆଶୀଷ-ଶୀତଳ-କର ପଲ୍ଲବ ତଳେ ସ୍ଥାୟୀ ପ୍ରଦାନର ଆଶ୍ୱାସ ଦେଲେ ]

—ବିଶ୍ରାମ—

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ପୂର୍ବ ଦୃଶ୍ୟର ପରିଶେଷରେ ଯେଉଁ ପ୍ରଳୟ-ତାଣ୍ଡବଲୀଳା ହୋଇଯାଇଥିଲା, ତାହାର ଅବସାନ ଘଟିଛି । ପ୍ରକୃତି ନିସ୍ତବ୍ଧ । ସକାଳ ହେଲା । ପକ୍ଷୀକୂଜନ ଶୁଣାଗଲା । ରଖୁଆଳ ବାଳକଟିଏ ବଂଶୀ ବଜାଉଛି । ଗାଈଗୋରୁ ହମ୍ବାଳି ଛାଡ଼ୁଛନ୍ତି । ପ୍ରକୃତି ପୁଣି ନୂଆ ପ୍ରାଣରେ ମାତି ଉଠିଛି । ଦୃଶ୍ୟ ଦେଖାଗଲା—ଜଗନ୍ନାଥ ସଡ଼କ—ଦୁଇ ପଟରେ ବିସ୍ତୀର୍ଣ୍ଣ ପ୍ରାନ୍ତର ]

ରଖୁଆଳ—( ଗାଇ ଗାଇ ପ୍ରବେଶ କଲା )

ବାଟୋଇ ବାଟ ଚାଲୁରେ କେଉଁ ଦେଶେ ତୋ ଘର
କେତେ ଦୂରେ ଗାଁ ?
କିଏ ସେ ତୋର ବନ୍ଧୁଜନ—ଜାଣୁ କି ତାର ନାଁ
କେତେ ଦୂରେ ଗାଁ !
ଖରା ପବନ ଝଡ଼ି ବରଷା—ବାଟୋଇ—
ତହିଁକି ତୋର ନାହିଁରେ ଦଶା
ହାଲିଆ ହୋଇ ନ ଛାଡ଼ ବାଟ, ଥରେ ଫେରି ଚାହିଁ ॥

( ସପରିବାରେ ବନ୍ଧୁ ମହାନ୍ତି ପ୍ରବେଶ କଲେ—ବାଟଚଲା-ପଥିକ ସେମାନେ )

ବୁଲି—ଆଉ କେତେ ବାଟ, ବାପା ?

ବନ୍ଧୁ—ମା—( କହି ରହିଗଲେ )

ଶୋଭି—କେତେ ଷ୍ଟେପ୍‌ରେଇ ହେଉଚୁ ମ ?—ସତେ ଯେମିତ ବାଟ ଚାଲି ଚାଲି, ସ୍ୱାର ଗୋଡ଼ ଦାଟା—

ବୁଲି—ଦେଖୁଛ ତ, ବାପା ?—

ବନ୍ଧୁ—ଛି ଶୋଭି, ତା' ସଙ୍ଗେ ଲଗା ନା ।

ବୁଲି—ବାପା !—

ବନ୍ଧୁ—ମା—

ବୁଲି—ଆମେ କୁଠିକି ଯାଉଥାଇଁ ?

ବନ୍ଧୁ—ବନ୍ଧୁଘରକୁ ଲୋ, ମା !

ଭୁଲ—କୁଆଡ଼େ ଘରକୁ ? ତେବେ ତ କେତେ ମୁଁ— କେତେ ପିଠା—କେତେ ଅରିସା—

ଶୋଭ—ତୋଲର ତୋଲ ଚିନ୍ତା ଛଡ଼ା ଦୁନିଆରେ ଆଉ କିଛିନାହିଁ ।

ଭୁଲ—ତୋର କମିତ ନାରଣ ଭାଇ ଚିନ୍ତା ଛଡ଼ା ଆଉ କିଛି ନାହିଁ ?

ଶୋଭ—( ପୂର୍ବ ସ୍ମୃତ ଦର୍ଶନରେ କଳା ପଡ଼ିଗଲା )

ବନ୍ଧୁ-ପତ୍ନୀ—( ପଛରେ ଆସୁଥିବା ଭାଇଅଙ୍କୁ ଅଦେଖା କରି ରହିଥିଲେ; ଭୁଲର ଏହି ଖୁଣ୍ଟାଦିଆ କଥାରେ ଚିଡ଼ି ଉଠି କହିଲେ ) ଭୁଲ !—ପୁଣି ସେଇ ଖୁଣ୍ଟ କଥା ? ହେଇ ହେ, ଶୁଣୁଛ ? ଭାଇଅଟା କାହିଁ, ଦେଖା ଯାଉନି ତ ? ଆ'ତ ଭୁଲ...

( ଭୁଲକୁ ନେଇ ଚାଲିଗଲେ )

ବନ୍ଧୁ—ଶୋଭ—ମା, ମନ ଉଣା କରୁଚୁ ? କିଛି ଚିନ୍ତା କର ନା, ମା ! ତୋର ନାରଣ ଭାଇ ଅନ୍ୟାୟ କରି ପକେଇଛି । ସେଥିପାଇଁ ମନକୁ ଅସ୍ଥିର ଥୟ କରି ଠାକୁରଙ୍କ ତା'କଥା ଜଣା । ଅହା ! ରୋଗଟା ତାକୁ କେତେ ବଦଳେଇଚି; ଏକାବେଳକେ ଭାଉଳା ବାଉଳା କରି ପକେଇଚି ।

ଶୋଭ—ବାପା—( ପିତାର ଗୋଡ଼ତଳେ ଅଜାଡ଼ି ହୋଇ ପଡ଼ିଲା )

ବନ୍ଧୁ—ଠାକୁରେ ତୋ କଥା ନିଶ୍ଚେ ଶୁଣିବେ— ତୋର ନାରଣ ଭାଇ ନିଶ୍ଚେ ବାଟକୁ ଫେରି ଆସିବ ।

ଶୋଭ—( ପିତାର ପାଦ ଧୂଳି ନେଇ ମଥାରେ ଲଗାଇଲା ଓ ଧ୍ୟାନ ଦୃଷ୍ଟିରେ ଠାକୁରଙ୍କୁ ପ୍ରଣାମ କଲା )

( ବନ୍ଧୁ-ପତ୍ନୀର ବେଗେ ପ୍ରବେଶ )

ବନ୍ଧୁପତ୍ନୀ—ଶୁଣୁଛ ? ଭାଇଅଟା କହୁଚି ଆଉ ଯିବ ନି, ଏଇଠୁ ସେ ବିଦା ନବ ।

ବନ୍ଧୁ—( ସବିସ୍ମୟେ ) କ'ଣ ?

ବନ୍ଧୁ-ପତ୍ନୀ—ଦେଖ, ତମେ ତ ଆଉ ଗୁମାସ୍ତା, ତହସିଲଦାର ନୁହଁ ଯେ, ସେ ତୁମକୁ ଖାତିର କରିବ—ତୁମର ଗାଳିମାଡ଼ ସହିବ—କେଉଁଠି ବେଗାର ଖଟିବ ?

ବନ୍ଧୁ—ମୋର ହୋଇ ନାହିଁ, ଭୁଲଆ ବୋଉ । ଅଭ୍ୟାସଟା କି ପରମ ଚଣ୍ଡାଳ, କୁହ ତ ।

( ଶିବା ପ୍ରବେଶ କଲା ଭାଇ କାନ୍ଧେଇ ଓ ଭୁଲକୁ କାନ୍ଧରେ ବସେଇ )

ବନ୍ଧୁ—ହଇରେ ବାପ, ତୋ ନାଆଁ...

ଶିବା—ଶିବା, ଆଜ୍ଞା !

ବନ୍ଧୁ—ହଁ, ଶିବା, ଶିବା । ଅରେ ଶିବା, ମୁଲ ତ ପାଇରୁ, ଆଉ ଯିବାକୁ ମଙ୍ଗୁନୁ କିଆଁ ?

ଶିବା—ଆଜ୍ଞା ସା'ନ୍ତେ, କୁଆଡ଼ିକି ଯିବେ, କେତେ ବାଟ—ତା' ତ ଠିକ୍ କରି କହୁ ନାହାନ୍ତି ।

ବନ୍ଧୁ—ମୁଁ ବନ୍ଧୁ ଘରକୁ ଯାଉଚି, କେଉଁ ବାଟ ?—ଏଇ ବାଟ ବୋଲିତ ମନେ ହେଉଚି—କେତେ ବାଟ ?—ତା' ତା'—ଦେଖ, ଶିବା !

ଶିବା ଆଜ୍ଞା ।

ବନ୍ଧୁ—ହଁ, ଶିବା, ଉତେ ଏଣୁ ତେଣୁ କହି ଭଣ୍ଡେଇ ପାରିବି ନି । ତୋ ଖୁସି ।

ଶିବା—ଆଜ୍ଞା, ସାଆନ୍ତଙ୍କ ଭାଇ ଦେଖିଯିବି, ସେ ତ ଆନନ୍ଦର କଥା । ହେଲେ, ମୋ ଘରେ ମୁଁ ଏକୁଟିଆ—ଯଉଁ ବାସ୍ତୁଣୀଟାକୁ ଛାଡ଼ି ଆସିଚି, ତେଇଁରେ ଛୁଆ ଛୁଆ ପିଲା ଦି'ଟା—

ବନ୍ଧୁ ପତ୍ନୀ—ତୁ କା' କଥା ଶୁଣି ନା ?—ତୁ ଗଲୁ ଶିବା—ପିଲାଛୁଆ କଥା, ନା ଥଛା ? ଭାଇ ଥୋ ତୁ ଯା'—

ବନ୍ଧୁ—ତମେ ବି ଚଣ୍ଡିଲା ବାନ୍ଧିଛ, ଭୁଲଆ-ବୋଉ— ଦି'ଟା ପାହାଡ଼ କି ପର୍ବତ । ଘର କରଣାରୁ କାନି ବଳକଟେ ଛାଡ଼ି ଆସିବାକୁ ମନ ବଳିଲାନି, ତମର ।

ଶୋଭ—ବୋଉ, ତୁ ଚିନ୍ତା କର ନା, ମୁଁ ଏକାକେ ଦୁଇଟାଯାକ ବୋଝ ନେଇ ଯାଇ ପାରିବି ।

ଭୁଲ—ହଁ, ତା' ସାଙ୍ଗେ ମତେ ବି—

ଶୋଭ—ଓହ୍ଲାଉନୁ ନା, ଟୋକା—ଦେବି ଚୁମୁଟି ? ଦେଖୁଚୁ, ବୋଉ, କେମିତି ଖତେଇ ହେଉଚି—

ମାଙ୍କଡ଼ପରି, ଶିବା ଭାଇର କାନ୍ଧ ଉପରେ ଚଢ଼ି ବସିଚି । ଓହ୍ଲା—

ଶିବା—ଥାଉ, ମା, ଥାଉ—ପିଲା ସୁଖ ପରା ମୁଁ ଦଣ୍ଡେ ହେଲେ ଛାଡ଼ି ରହିପାରେ ନା; ଅନ୍ଧାର ମେଘ ଅନ୍ଧାର, ଝଡ଼ ବରଷା, ବିଲ, ମଶାଣି ପାର ହଉଥାର କର ଯିବା ଆସିଲି ଏତେ ବାଟ—ତା'ର ତ ଗୋଟେ ମୂଲ୍ ଅଛି, ମା ?

ବନ୍ଧୁ—ହଁ—

ଶିବା—ଶିବା, ଆଜ୍ଞା ।

ବନ୍ଧୁ—ଶିବା, ଶିବା,—ତୋର ମୂଲ୍ କେତେ ହେଲା, ଶିବା ? ଦେଖୁଛ ତ ବୁଲିଆ ବୋଉ, ମୋର କେମିତକା ହୁଡ଼ାମନ ?

ଶିବା—ସାଆନ୍ତେ ତ ମୂଲ୍ କଥା କହୁ ଛୁଣ୍ଡାର ଅଣି ନଥିଲେ—ସେଥିପାଇଁ ଏତେ ବ୍ୟସ୍ତ କାହିଁକି ? ତେବେ ମେହେନତର ଗୋଟିଏ ମୂଲ୍ ଅଛି, ତା' ଆଦାୟ କରନେବା ମୋ ତକ; ମୁଁ ଅଦାୟ କର ନେଉଛି, ସାଆନ୍ତେ । ବୁଲିଚାଲି ବୁଲି, ବୁଲିଲେ ବୁଲି—( ଗେଲ କର ଯେଉଁଏ ବୁଲାଇ ଆଣିଲା )
[ ସେତକବେଳେ ରଖୁଆଳ ବାଳକର ବଂଶୀ ଓ ଗୀତ ଶୁଣାଗଲା ]

ଶିବା—( ଦେଖି, ଦେଖାଇ ) ରଖୁଆଳ ପିଲାଟିଏ । ଟାଗ ଚରଉଛି । ଗାଁ ଗଣ୍ଡା ଅତି ନିକଟରେ । ଏଇତ ଚଟି ଘରଟିଏ । ସାଆନ୍ତେ, ସେଇଠି ବୋଝ ଓଜାର ଦେବା । ସମସ୍ତେ ବାଟ ଚାଲି ଚାଲି ହାଲିଆ ହୋଇ ପଡ଼ିଛନ୍ତି; ଟିକିଏ ହାଲ ମାରି ଫୁରସତ୍ ନେବା, ଭଲ୍ ହେବ ସା'ନ୍ତେ । ପିଲାଟି ଆମକୁ ଦେଖି, ପାଦ ଗଣି ଗଣି, ଆମର ଆଡ଼କୁ ଆସୁଚି । ଉଁହୁଁ, ପାଖକୁ ଯିବାକୁ ଡରଚର ହୁଅନ୍ତୁ ନାହିଁ, ଡରକି ଯିବ । ତା ଆଡ଼େ ନ ଚକେଇ, ପାଦେ ପାଦେ ମୋ ପିଛାଧରି ଆସନ୍ତୁ ।
( ସମସ୍ତେ ଚାଲିଗଲେ, ଗଣ୍ଠିକଟା ପ୍ରବେଶ କଲା )

ଗଣ୍ଠିକଟା—ଜବର ଗଣ୍ଠିଲା ଦ'ଟା । ମାଲ୍ ତେମିତକା ଦେଖାଯାଉ । ମାଲ୍ ଯାହା ଥାଉ, ଖଲସ କରିବାକୁ ହବ ମୋତେ—ଅରେ ମୁଁ ଗଣ୍ଠି କଟା, ମୋ ବେଉସାକୁ ସମସ୍ତେ ନିନ୍ଦନ୍ତି, କିନ୍ତୁ କେହି ବୁଝନ୍ତିନି—ଦଣ୍ଡା ବାଟରେ ଏହି ଚଟିଘର ହେଲା ଘାଟି ଜାଗା । ତମେ ଆସିଛ କେଉଁଠୁ ଜାଣେ ନା, ଯିବ କେଉଁଠିକି ଜାଣେ ନା, ତେବେ, ତୁମେ ବାଟ ଚାଲି ଚାଲି ଗଣ୍ଠିଲା ବୋଝରେ ନଇଁ ପଡ଼ିଛ । ସେଥିପାଇଁ ଦଣ୍ଡେ ନିସ୍ତୃତ ପାଇବ ବୋଲି ଚଟି ଘରେ ଆଶ୍ରୟ ନେଇଛ—ଏ'କଥା ଠିକ୍ । ପୁଣି କାଲି ସକାଳେ ସେଇ ବୋଝକୁ ନେଇ ବାଟ ଚାଲିବ ତ ? ମୁଁ ଯଦି ସେଇ ବୋଝରୁ ତୁମକୁ ଖାଲ୍‌ଖୁଲ୍ ମୁକ୍ତ କରିଦିଏ—କେଡ଼େ ଉଲ୍ଲାସରେ, ମନ ଖୁସିରେ, ଝଟ୍ ଝଟ୍ ବାଟ ଚାଲି ଘର ଧରି ପାରିବ, କହତ ? ଯେ ଯାହା କହୁ, ମୋର ବେଉସା ମୋତେ ଯୋଗାଏ—ସେଇ ମୋର ଧର୍ମ ଓ କର୍ମ ବଳ ।

( ରଖୁଆଳ ବାଳକର ପ୍ରବେଶ )

ରଖୁଆଳ ବାଳକ—ଆରେ, ତୁହି ତ ମୋର ଅସଲ ଚେଲା ।

—ଗୀତ—

ଯାହା ଲାଗି ତୁ ଉଛୁଳ ଏଡ଼େ ଧାଉଁ ଅଧୀରେ
ସେ ଯେ ରେ ତୋର ହୃଦୟ ରହିଛି ସାଥିରେ;
ତୋର ଅନ୍ଧ-ଆଖି ଖୋଲିବ ଭାଇ
ପାଇବୁ ଯେବେ ଠାଁ ॥

( ଶିବାର ପ୍ରବେଶ )

ଶିବା—ତୁମେ ସେଠି କଥା ଗପୁ ଗପୁ ଏଠି ଆସି ହାଜର । କେଉଁ ଘଟରେ କି ଭାବରେ ଯେ ଥାଅ, ତୁମର ଆଦିଅନ୍ତ ପାଇବା ମୁସ୍କିଲ । ଏତେ ଦିନେ, ଆଜ ଭେଟା ଭେଟି, କି ଆନନ୍ଦ ଲୁହତ ? ହଁ, ତୁମେ ମୋର ଜ୍ୟେଷ୍ଠ ଭାଇ, ଯିବା ଆଗରୁ ହସିଆର କରି ଦେଇଯାଏଁ, ଭାରି ଶକ୍ତ ବୋଝ—ରହି ସମ୍ଭାଳି ବାଟ ଚାଲିବ—

ରଖୁଆଳ—ଦରକାର ନାହିଁ, ଭାଇନା ।

ଶିବା—ତୁମେ କପଟିଆ, ଚିରି ବା ଟେକିପାର, ବସନ ବା ଲୁଚାଇ କରିପାର ।

ରଖୁଆଳ—ତୁମକୁ ତ ଅଛପା ନାହିଁ କିଛି, ଭାଇନା ।
( ପଦ ବନ୍ଦନା କଲେ )

ଶିବା—ଏବେ ମେଲାଣି ଦିଅ ଭାଇ, ଉତ୍ତର ଦେଶ ତେଣେ ତୁମର ଭାଉଜ, ଯୋଗିଣୀ ଠାକୁରାଣୀ—

ରଖୁଆଳ—ଶୀଘ୍ର ଶୀଘ୍ର, ଭାଇନା । ଠାକୁରାଣୀଙ୍କର ଯୋଗିଣୀ ମାୟାକୁ ମୋର ଭାରି ଡର ।
( ଶିବାର ପ୍ରସ୍ଥାନ )

( ବୁଲର ପ୍ରବେଶ )

ବୁଲ୍—ବାଃ, ମାଧୋଇ ଭାଇ, ଏଠି ଏକୁଟିଆ ଖେଳୁଚ ତ ?

ରଖୁଆଳ—କ'ଣ କରିବ, ସାଙ୍ଗ ସୁଖ ତ କେହି ନାହିଁ ।

ବୁଲ୍—ତୁମେ ମନେ କରିଚ, ମୁଁ ତମ ସଙ୍ଗେ ଖେଳିବି, ଖେଳ ଛଡ଼ା ମୋର ଯିମିତି ଦୁନିଆରେ କିଛି କାମ ନାହିଁ ।

ରଖୁଆଳ—ହଁ ହଁ, ତମେତ କମ ବଡ଼ ଘରଣୀ ନୁହଁ ? ଘରକରଣା କରିବ କେତେବେଳେ, ଖେଳିବ କେତେବେଳେ—ତା' ମୋତେ ଜଣା ବୋଲି ତ ତୁମକୁ ଡାକେ ନା ।

ବୁଲ୍—ଆଃ, ଦେଖିବି ଯେ ଆଖି ଫୁଟେଇ ।

ରଖୁଆଳ—ହଁ, ମରମ କଥା କହିଲେ, ଏମିତି ସମସ୍ତେ ଚିଡ଼ନ୍ତି ।

ବୁଲ୍—ତମେ ଭାରି ମରମ କଥା ଜାଣ । ଆଚ୍ଛା, କହିଲ, ବାପା କଣ ଭାବୁଛନ୍ତି ?

ରଖୁଆଳ—ପର କଥା ।

ବୁଲ୍—ବୋଉ ?

ରଖୁଆଳ—ଘର କଥା—

ବୁଲ୍—ଅପା ?

ରଖୁଆଳ—ବର କଥା ।

ବୁଲ୍—ମୁଁ ?

ରଖୁଆଳ—ତମେ ? ପେଟର ସେଇ କଥାଟି ଅପାକୁ ଫଟେଇ କହିଲେ, ସେ ଯଦି ଏଥର ଚୁମୁଟି ଦିଏ, ତେବେ ତା'ର ସେଇ ହାତରେ, ଏମିତି ବତିଶ ଦାନ୍ତ ବସେଇ ଦେଇ, ଛୁ ବଡେଇବ—( ବୁଲର ହାତକୁ କାମୁଡ଼ି ଦେଇ ଦୌଡ଼ି ପଳେଇଲା )

ବୁଲ୍—( ଯନ୍ତ୍ରଣାରେ ) ମୋ ବୋଉ ଲୋ—

---

## ଦ୍ୱିତୀୟ ଦୃଶ୍ୟ

[ ପୂର୍ବ ଦୃଶ୍ୟର ସେହି ଜଗନ୍ନାଥ ସଡ଼କର ପାର୍ଶ୍ୱବର୍ତ୍ତୀ ଗୋଟିଏ ଚଟିଘର । ସେହି ଚଟିଘର ସମ୍ମୁଖ ପିଣ୍ଡାରେ ବନ୍ଧୁ ମହାନ୍ତି ଓ ବନ୍ଧୁ-ପତ୍ନୀ ଅଲଗା ଅଲଗା ହୋଇ ନିଦ୍ରା ଯାଉଥିଲେ । ଘରଭିତରେ ଶୋଭ ଓ ବୁଲ୍ ଶୋଇଥିଲେ ]
( ଗଣ୍ଡିକଟା ଚୁପ୍ ଚୁପ୍ ପ୍ରବେଶ କଲା )

ଗଣ୍ଡିକଟା—ଚୁପ୍—ଚୁପ୍—କଣା ହାଇଁ ହାଇଁ—ଶିଆଳ ହୁକେ ହୁ—କୁକୁର ଭେଉ ଭେଉ—ଜୁଲୁଜୁଲା ଜୁକୁ ଜୁକୁ—ଗଛପତ୍ର ଚକ୍ ଚକ୍—ଚିରକୁଣି ଆଲୁଅ ଧପ୍ ଧପ୍—ସଇତ ନ ଦାନ୍ତ କଡ଼ ମଡ଼—ମୁଁ ଗଣ୍ଡିକଟା—ଗଣ୍ଠିକଟା—ଏହି ମୋର ସିନ୍ଧକାଠି—ଏହି ନିଦମାଳି—ଚୁପ୍—ଚୁପ୍—

( ଥିର୍ ଥିର୍ ପାଦ ପକେଇ ଆଗେଇଲା—ମାତ୍ର ହଠାତ୍ ଶବ୍ଦ ଶୁଣି ଚମକି ପଡ଼ି ଆଢୁଆଳରେ ଛପି ରହିଲା )

ଶୋଭ—( ନେପଥ୍ୟେ )—ମୋ ବୋଉ ଲୋ ।

ବନ୍ଧୁ-ପତ୍ନୀ—କି ଲୋ, ଶୋଭ—କ'ଣ ହେଲା କି ?

ଶୋଭ—ବୁଲ୍ ମୋ ହାତ କାମୁଡ଼ି ଦେଲା ।

ବନ୍ଧୁ ପତ୍ନୀ—( ବନ୍ଧୁ ପ୍ରତି ) ଶୁଣୁଛ—ଭିତରକୁ ଟିକେ—ପିଲାଏ'ଟା ଉଠୁଛନ୍ତି— ମୋତେ ବି କେମିତି ମାଡ଼ି ମାଡ଼ି ପଡ଼ୁଛି······ମ', ଶୁଣୁଛ—
( ପାଖକୁ ଉଠିଗଲେ )

ବନ୍ଧୁ—( ସ୍ୱପ୍ନ ଘୋରରେ ଉଠିବସି, କହିବାକୁ ଲାଗିଲେ, ଗୋଟାଏ ଅଦ୍ଭୁତ ଖିଆଲରେ )—

ସମାଲ—ସମାଲ—ବର୍ଷା ଝମ୍ ଝମ୍—ହୁ ହୁ—ବତାସ—ବିଜୁଳି ଚମକ—ଘଡ଼ଘଡ଼ି ଶବଦ—ଆକାଶ ଭାଙ୍ଗିପଡ଼ୁଛି—ମେଦିନୀ ଦୁଲୁକୁଚି—ଦରିଆ ମାଡ଼ିଆସୁଛି—ଭୁଲିଆ ବୋଉ—ଶୋଭି—ଭୁଲି—

ବନ୍ଧୁ-ପତ୍ନୀ—( ହଲାଇ ) ଶୁଣୁଚ—ଶୁଣୁଚ—

ବନ୍ଧୁ—ଭୁଲିଆ ବୋଉ !—ପ.ଖକୁ ଆସ—ଆହୁରି ଲଗି ବସ—

ବନ୍ଧୁ-ପତ୍ନୀ—କ'ଣ ଏଣୁ ତେଣୁ ଗୁଡ଼ାଏ ବକୁଚ ?—ଗୁଲ ଭିତରକୁ ଚାଲିଲ ।

ବନ୍ଧୁ—ମୋର ଶୋଭି, ଭୁଲି ?

ବନ୍ଧୁ-ପତ୍ନୀ—ଭିତରେ ଶୋଇଛନ୍ତି—

ବନ୍ଧୁ—ବେଶ୍ ବେଶ୍—ଆସ, କବାଟ କିଳିଦିଅ ।

( ଉଭୟେ ଭିତରକୁ ଯାଇ କବାଟ କିଳିଦେଲେ )

ଗଣ୍ଡିକଟା—( ବାହାରି ଆସି ) ଏଥର ମୋର କାମ—ଆଗେ ସେହି ଜଲାକବାଟି ବାଟେ ନିଦମାଟି—ତା'ପର ସିନ୍ଧକାଠି—

( ଚାଲିଗଲା—ପୁଣି ନିସ୍ତବ୍ଧତା କିଛିକ୍ଷଣ ବିରାଜ କରିବାକୁ ଲାଗିଲା । ସେହି ନିସ୍ତବ୍ଧତା ଭଙ୍ଗ କରି, ଗାଡ଼ିର ଘଣ୍ଟିଶବ୍ଦ ଶୁଣାଗଲା ଏବଂ ଗୋବିନ୍ଦ ଓ ନାରାୟଣ ପ୍ରବେଶ କଲେ )

ଗୋବିନ୍ଦ—ଏହିତ ଗୋଟିଏ ଚଟି ଘର—ଅଇଣ୍ଠା !

( ଅଇଣ୍ଠାର ପ୍ରବେଶ )

ଅଇଣ୍ଠା—ଆଜ୍ଞା !

ଗୋବିନ୍ଦ—ଏଇଠି ଗଣ୍ଟିଲି ପକା ଥୋଇ ଦେଇ, ତୁ ଗାଡ଼ିରେ ଯାଇ ବ' ।

ଅଇଣ୍ଠା—( ସେହି ଆଦେଶ ମୁତାବକ କାମ କରିବାକୁ ଲାଗିଲା )

ନାରାୟଣ—ନା, ଏଠି ନୁହେଁ, ଏଠି ସେମାନେ କାହାନ୍ତି ?

ଗୋବିନ୍ଦ—ସା'ନ୍ତେ, ଆପଣ ଏମିତ ଅସ୍ଥିର ହେଲେ ଚଳିବ ? ଜମିଦାର ଆପଣ, ଜମିଦାରି ସମାଳିବେ କେମିତ ?

ନାରାୟଣ—ତୁମେ ବୁଝି ପାରୁନା ଗୋବିନ୍ଦ—ମୁଁ ସ୍ଥିର ହେବି କେମିତ, ସେଥିପାଇଁ ଅସ୍ଥିର । ଥରେ ଖାଲି ମୋର ବନ୍ଧୁ କବିଙ୍କୁ ଭେଟିବି—ନିଜ ମୁହଁରେ ନିଜ କଥା ଫିଟାଇ କହିବି । ଆହା ! ଶୋଭି ବିଚାରିର ନିର୍ମଳ ଚରିତ୍ରରେ ଆଜି ଯେଉଁ ଦାଗ ଲାଗିଚି, ତାହା ମୋ ଯୋଗୁ ନୁହେଁ,—ସଇତାନ ବାଞ୍ଛାରାମର କାରସାଜି ଯୋଗୁଁ, ଏଇତିକି ଶୁଣାଇ ଦେବି—ତା' ପର ସେମାନେ ମୋତେ କ୍ଷମା କଲେ ଭଲ, ନ କଲେ ଭଲ—ତେବେ, ମୁଁ ନିଶ୍ଚିନ୍ତ ହେବି—ସ୍ଥିର ମନରେ ଫେରିଯିବି—ପ୍ରଜାସେବାରେ ସର୍ବସ୍ୱ ଢାଳି ଦେବି ।

ଗୋବିନ୍ଦ—ବେଶ୍, ରାତିଟା ଏଇ ଚଟି ଘରେ କଟେଇ-ଦବା—ତା'ପର ରାତି ପାହିଲେ—

ନାରାୟଣ—ରାତି ପାହିବା ଯାଏ ଅପେକ୍ଷା କଲେ, ସେମାନଙ୍କୁ ଆଉ ପାଇବା, ଭାବିଚ ? କେତେ ସମୟ ଭିତରେ, ସେମାନେ ରାତାରାତି ଆମ ଇଲାକା ପାର ହୋଇ, ଏତେ ବାଟ ଚାଲି ଆସିଛନ୍ତି ଯେ, ଯୋଜନେ ବାଟ ଚାଲି ସୁଦ୍ଧା ତାଙ୍କର ପତ୍ତା ପାଉ ନାହୁଁ । ମୁହୂର୍ତ୍ତେ ଗୋଟାଏ ନଷ୍ଟ କରିବାର ବେଳ ନାହିଁ, ଗୋବିନ୍ଦ—ତୁମେ ଚାଲ ।

ଗୋବିନ୍ଦ—ଦେଖନ୍ତୁ, ସେମାନେ ଏଣେ ନ ଆସି ଅନ୍ୟ କେଉଁ ଆଡ଼େ ଯାଇପାରି ଥା'ନ୍ତି । ଯେ ଆମକୁ ଖବର ଦେଲା, ସେ ହୁଏତ ଭୁଲ୍ କହିଚ । ଏତେ ଗାଁ ଗଣ୍ଡା ପଶି, ପଚାରି ପଚାରି ଆସିଲୁ, କେହିତ କିଛି ସନ୍ଧାନ ବତେଇ ପାରୁ ନାହାନ୍ତି ।

ନାରାୟଣ—ମୋର ମନ କହୁଛି, ସେମାନେ ଏଣେ ଆସିଛନ୍ତି—ଏଇଠି କେଉଁଠି ଅଛନ୍ତି । ତୁମେ ଚାଲ, ଖୋଜି ଦେଖ—ଆଗମୁଣ୍ଡ ଗାଁରେ ଯଦି ରାତିଟା କଟାଉ ଥା'ନ୍ତି—

ଗୋବିନ୍ଦ—ଆଜ୍ଞା, ଏ ମୁଣ୍ଡ କଟି ଗଲେବି, ମୁଁ ଆପଣଙ୍କୁ ଅଉ ଗାଁ ଭିତରକୁ ନେଇ ଯିବି ନା । ନିଜ ଆଖିରେ ତ ଦେଖି ଆସିଲେ, ଗାଁ ଗଣ୍ଡାରେ କେମିତ ହଇଜା ଲାଗିଛି ? 'ହରିବୋଲ' ହୁରି ପଡ଼ିଚ, ରାସ୍ତା ଦୁଇ କଡ଼ରେ ମୁର୍ଦ୍ଦାର ଭୁଡ଼ି ଭୁଡ଼ି ।

ନାରାୟଣ—ଗୋବନ୍ଦ !

ଗୋବନ୍ଦ—ଡକୁଛନ୍ତି ?

ନାରାୟଣ—ହଇଜାକୁ ଡରୁନାହିଁ, ଗୋବନ୍ଦ । ହଇଜାରେ ଯଦି ସେମାନେ—

( ଗଣ୍ଠିକଟାର ବେଗେ ପ୍ରବେଶ )

ଗଣ୍ଠିକଟା—ଆପଣ ପଳାନ୍ତୁ ପଳାନ୍ତୁ, ଏଠି ଆଉ ଦଣ୍ଡେ ରହିବେ ନା—ଭାରି ହଇଜା, ଭାରି ଝାଡ଼ାବାନ୍ତି ଲାଗିଛି ।

ଗୋବନ୍ଦ—ଆସନ୍ତୁ ବାହାର, ସାଆନ୍ତେ !—

ନାରାୟଣ—ଠିଆହୁଅ—ତୁମେ କିଏ ?

ଗଣ୍ଠିକଟା—ମୁଁ—ମୁଁ—ଏହି ଗାଁ ଚଉକିଆ, ସାଆନ୍ତେ ।

ନାରାୟଣ—ଗାଁ ଚଉକିଆ ? କହିପାରିବ, ତୁମେ କେଇଜଣ ବିଦେଶୀ ବାଟୋଇଙ୍କୁ ଏଣେ, ହିଁ ଗୃହଜଣ—

ଗଣ୍ଠିକଟା—ଗୃହଜଣ ?—ଦୁଇଜଣ ବୁଢ଼ା ବୁଢ଼ୀ—ଜଣେ ଯୁବା ବୟସୀ—ଆଉଜଣେ—

ନାରାୟଣ—ଛୋଟ ପିଲା ।

ଗଣ୍ଠିକଟା—ଆଜ୍ଞା—

ନାରାୟଣ—କାହାନ୍ତି ? କାହାନ୍ତି ସେମାନେ ? ଯଦି ଦେଖାଇ ଦେଇପାର, ତେବେ—

ଗଣ୍ଠିକଟା—ପିକାଖିଆ ଦେବେ ? (ସ୍ୱଗତ) ବାବା ମୁଁ ଗେରଧରିଙ୍କୁ ଭଲକରି ଚିହ୍ନେ । (ପ୍ରକାଶ କଣ୍ଠରେ) ହେଲେ, ଟିକିଏ ଆଗରୁ ଯଦି ଆସିଥା'ନ୍ତେ, ସାଆନ୍ତେ—

ନାରାୟଣ—କାହିଁକି ?

ଗଣ୍ଠିକଟା—ଏହାତ ସେମାନଙ୍କ ଲାଶ ଜଳେଇ, ଯାଉଛି ଗାଁ-ଦଫାଦାରକୁ ଖବର ଦେବାକୁ ।

ନାରାୟଣ—ଗୋବନ୍ଦ— (ତଳେ ପଡ଼ିଗଲେ)

( ଶୋଭା ହଠାତ୍ ଦ୍ୱାର ମେଲେଇ ଧାଇଁ ଆସିଲା )

ଶୋଭା—ନାରଣ ଭାଇ—

( ବନ୍ଧୁ ପତ୍ନୀର ବେଗେ ପ୍ରବେଶ )

ବନ୍ଧୁପତ୍ନୀ—ଶୋଭା—

ଶୋଭା—ବୋଉ—

( ବନ୍ଧୁପତ୍ନୀ ଉପରେ ଢଳି ପଡ଼ିଲେ )

ବନ୍ଧୁପତ୍ନୀ—ପାଗଳ କରିଦେବେ, ବାପ ହିଅ ଦୁଇଜଣ ।

( ଘରଭିତରକୁ ଶୋଭାକୁ ନେଇଯାଇ ଦ୍ୱାର କିଳି ଦେଲେ ।)

ଗଣ୍ଠିକଟା—(ଗୁପ୍ତସ୍ଥାନରୁ ବାହାରି ଆସି) ହାଃ ହାଃ—ଚୁପ୍ ଚୁପ୍, ଗୋଟେ ଢେଲାରେ ଦି'ଟା ଚଢ଼େଇ—( ପିଣ୍ଡାରେ ଥୁଆ ହୋଇଥିବା ଗଣ୍ଠିଲାକୁ ଟେକିପକାଇ ଝାମ୍ପିଲା କି ଭାଗ୍ୟ । ବାପ୍‌ରେ, ଏ କି ପାଣି ପବନ ! ଏ କି ବିଜୁଳି ଘଡ଼ଘଡ଼ି । ମରିଗଲି, ମରିଗଲି—

[ ବିଜୁଳି ଘଡ଼ଘଡ଼ି । ପାଣି ପବନ । ଗଣ୍ଠିକଟା ପଳାଇଲା । ଗଣ୍ଠିଲା ରହିଗଲା । ]

---

## ତୃତୀୟ ଦୃଶ୍ୟ

[ ପୂର୍ବଦୃଶ୍ୟର ପ୍ରଳୟ ଝଞ୍ଜା ବର୍ତ୍ତମାନ ସୁଦ୍ଧା ଥମିନାହିଁ—ସେଥିରେ ଯେମିତି ଛିନ୍ନ ଭିନ୍ନ ଓ ଛିନ୍ନବାସ ହୋଇ ବନ୍ଧୁମହାନ୍ତି ଉନ୍ମାଦ ଭାବରେ ପ୍ରବେଶ କଲେ ]

ବନ୍ଧୁ—ମୁଁ ସ୍ୱପ୍ନରେ ଝଞ୍ଜାର ଆଭାସ ପାଇଥିଲି । ଆଖିରେ ଝଞ୍ଜା ଦେଖିଲି । ମନ ଭିତରେ ଅଗଣ୍ଡିକା ଝଞ୍ଜା ଖେଳି ଯାଉଛି । ବନ୍ଧୁ ! ବନ୍ଧୁ ! ମୁଁ ଗୋଟାଏ ଆବେଗରେ—ଗୋଟାଏ ଖିଆଲରେ 'ବନ୍ଧୁ' ପଦ ଉଚ୍ଚାରଣ କରିଥିଲି । ହେଲେ, ଅସ୍ତିତ୍ୱରେ ସନ୍ଦେହ ଥିଲା । ବର୍ତ୍ତମାନ ବିଶ୍ୱାସ ହେଉଛି, ତୁମ୍ଭେ ଅଛ । ମାତ୍ର, ତୁମେ କିଏ—କେଉଁଠି ଥାଅ—ତୁମ ଘରକୁ କେଉଁ ବାଟ, ତା' ତ ଜାଣେ ନା ? 'ବନ୍ଧୁ' ବୋଲି କହି, ତୁମର ଘରକୁ ଯିବା ବାହାନାରେ, ମୋର ପିଲାକୁଟୁମ୍ବକୁ ଘରୁ କଢ଼େଇ ଆଣିଛି ସେମାନେ କେତେ ସହଗରେ ବନ୍ଧୁଘର ସୁଖ ଭୁଞ୍ଜିବେ ବୋଲି ମୋ ହାତେ ସାଥେ, ବାଟ ଅବାଟ ନ ମାନି ଧାଇଁଛନ୍ତି । ଅରେ ତୁମର ସନ୍ଧାନ ବତାଇ ଦିଅ, ବନ୍ଧୁ ! ବନ୍ଧୁ-ଭାବ ବହି ମୋ' ମନରେ ତୁମର ଅସ୍ତିତ୍ୱର ବିଶ୍ୱାସ ଜନ୍ମାଇ

ଦେଇଚ, ଅଉ ସେଇ ଭାବକୁ ମୂଲଦର, ମୋତେ ତୁମର ଘରବାଟ ଦେଖାଇ ଦେବ ନି, ବନ୍ଧୁ ? ଏ ଝଞ୍ଜା ବାତରୁ ରକ୍ଷା କର, ବନ୍ଧୁ !

( ଆଖିବୁଜି ଗାଇଲେ )

—ଗୀତ—

ତୁମେ ମୋ ବନ୍ଧୁ ଯଦିଚ ଚିହ୍ନେ ନା, ଚିହ୍ନେ ନା,
ଅରୂପ ସ୍ୱରୂପ ଅବା ଜାଣେ ନା, ଜାଣେ ନା ।
ଜାଣିଛି ଏତିକି ଅବେ, ମୋ ପିଅର
ଅଛ ତୁମେ କାହିଁ, ଅଛି ତୁମ ଘର ।
ଝଞ୍ଜାରେ ଅଖି ମୁଁ ଫେଇ ପାରେ ନା ପାରେ ନା,
ବିଚ୍ଛେଦ ତଥାପି ତବ ସହେନା ସହେନା ।

[ ମଠର ବଂଶୀସ୍ୱନ ଶୁଣାଗଲା । ମାଧୋଇ ଧୀରେ ଧୀରେ ଆସି ହାତ ଧଇଲା । ତା'ର ଛିଣ୍ଡା ପହରଣ—କାନରେ ଗୋଟିଏ ବାଡ଼ି—ଅଗ ମୁଣ୍ଡରେ ଗୋଟିଏ ଛୋଟ ବୁଜୁଲା ବନ୍ଧା ]

ମାଧୋଇ—ବାଃ, ବେଶ୍ ଲୋକତ । ଆମକୁ ଛାଡ଼ି ଛୁଡ଼ି ଦେଇ, ଏଠି ଆସି ହାଜର । ବନ୍ଧୁ ଘରକୁ ଯିବାକୁ ଏଡ଼େ ଉଚ୍ଛନ୍ନ ଯେ···

( ବନ୍ଧୁ ପତ୍ନୀ, ଶୋଭ, ବୁଲୁ ପ୍ରବେଶ କଲେ । ସମସ୍ତଙ୍କ ଲୁଗା ପଟା ଛିଣ୍ଡା ଧୋତରା । )

ବନ୍ଧୁ-ପତ୍ନୀ—ପିଲାଏ ମଲେ କି ହଜିଲେ, ସେ ଖବର ନେବାକୁ ତର ସହିଲା ନି ?

ବନ୍ଧୁ—ବୁଲୁଆ-ବୋଉ—

ବନ୍ଧୁ-ପତ୍ନୀ—ଚାଲ, ଠିଆ ହୋଇ ଲାଭ କ'ଣ ?

ବନ୍ଧୁ—ବାଟ ?···

ମାଧୋଇ—ଅଚ୍ଛା ଲୋକ ! ମୁଁ ବତେଇ ଦେବ ହେ !

ବନ୍ଧୁ—ତୁ ଯିବୁ ଆମ ସାଥିରେ ?

ମାଧୋଇ—ଦେଖୁଛ ତ, ମା—

ବୁଲୁ—ଚାଲ ମ, ବାପା—

ବନ୍ଧୁ—ହେଲେ, ବୁଲୁଆ ବୋଉ, ଏଇ କାଙ୍ଗାଳ ବେଶରେ—

ବନ୍ଧୁପତ୍ନୀ—କାଙ୍ଗାଳ ହୋଇଛ ବୋଲିତ ଆଜି ବନ୍ଧୁ ଘରକୁ ଯାଉଚ—ବନ୍ଧୁଙ୍କ ଏତେଦିନେ ମନେ ପଡ଼ିଚ ।

ବନ୍ଧୁ—ମୋ ପାଇଁ ଭାବୁନି—ତୁମ ଟଣାଭଣାଙ୍କପାଇଁ ।

ବନ୍ଧୁ-ପତ୍ନୀ—ଆଉ, ଏଇ ପରପିଲାଟି ପାଇଁ ?

ମାଧୋଇ—ମତେ ପର କରିଦେଲଣି ତ ? ତେବେ, ତୁମର ବୁଜୁଲା ବୁଜୁଲି, ଗଣ୍ଠିଲାପତ୍ର ଏଇଠି ରହିଲା । ମୁଁ ଚାଲିଲି ।

ବୁଲୁ—ନା, ମାଧୋଇ ଭାଇ ! ତୁମକୁ ମୁଁ କେବେ ଛାଡ଼ିବ ନି । ହାତ କାମୁଡ଼ି ଦେଇ ପଳେଇଥିଲ, ଏଥର ହାତ କାମୁଡ଼ି ଧରିବ । ହାଁ ବାପା, କଥା ଶୁଣ ନା, ତୁମେ ଚାଲ ।

ବନ୍ଧୁ—ତେବେ—( ଚାରିଆଡ଼କୁ ଚାହିଁ କ'ଣ ଭାବିବାକୁ ଲାଗିଲେ )

ବନ୍ଧୁ-ପତ୍ନୀ—ଦେଖୁଛ କ'ଣ ? ଝଞ୍ଜା ବତାସ କାହିଁ ? ଏମିତ ସ୍ୱପ୍ନ ଦେଖନ୍ତି ମଣିଷ ? ଯା ଅଗେ ସ୍ୱପ୍ନ ତୁମେ କେବେ ଦେଖିଚ ବୋଲି ତ, ମୋର ମନେ ହୁଏ ନା ।

ଶୋଭ—ଅହୁରି ତୁମେ ଭାବନା କରନା, ବାପା ! ଅମେ ଯା' କିଛି ଘର ପାଖୁ ଅଣିଥିଲୁ, ସବୁ ମୁଁ ସଜଡ଼ା ସଜଡ଼ି କରିଦେଇଛି, ଆଉ ମାଧୋଇ ତାଲୁ ବାନ୍ଧ ବୁନ୍ଦ ସେଥୁ ଗଣ୍ଠିଲାଟି କରିଛି । ହଁ, ତୁମର ଲେଖାମା ନିଅ ବାପା, ଅଣ୍ଟାରୁ ଖସି ପଡ଼ିଥିଲା ।

ବନ୍ଧୁ—ତୋ'ର ପାଖରେ ଥାଉ । ତୁ ତା'କୁ ଏଣିକି ଜମାକରି ରଖ ମା । ଏଇ ଗୋଟିକ ଆମର ପରଚୟ, ମହାନ୍ତ ଘରର ସନ୍ତକ । ( ଗୋଟାଏ ଚିନ୍ତାରେ ଭାସି ଯାଉଥିଲେ, ମାତ୍ର ଆପଣାକୁ ଠେକି ନେଇ ) ହଁ, ମୁଁ ଗଣ୍ଠିଲାଟା ମୁଣ୍ଡାଏ । ଆଚ୍ଛା ଏଡ଼େ ଏଡ଼େ ଦୁଇଟା ଗଣ୍ଠିଲା, ଏତେ ଛୋଟ ହେଲା କେମିତ ?

ମାଧୋଇ—ଏଥିରେ ଅଉ ଆଶ୍ଚର୍ଯ୍ୟ କଣ ? ଚଉଦକୋଟି ଭୁବନକୁ ଭାବଗ୍ରାହୀ ଯେତେବେଳେ ଧୂଳିକଣାପରି ନଖରେ ଧାରଣ କରି ପାରନ୍ତି—

ବନ୍ଧୁ—( ହସି ) ସେତେବେଳେ ଏଇ ମାଧୋଇ ଭଳି ଠିକି ପିଲାଟି, ପ୍ରକାଣ୍ଡ ଦୁଇଟା ଗଣ୍ଠିଲାକୁ ଯେ, ଛୋଟ ଚକଟେ ଗଣ୍ଠିଲା କରି ଦେବ, ଆଶ୍ଚର୍ଯ୍ୟ

କାଁଣ ? ( ଉଠାଇବାକୁ ଚେଷ୍ଟାକଲେ—କିନ୍ତୁ
ପାରିଲେ ନାହିଁ ) ଓଃ, ଏତେ ଓଜନ !

ମାଧୋଇ—ଥାଉ ଥାଉ ହେ, ଗଜେନ୍ଦ୍ର ପିଠିର କାମ,
ତୁମେ ଯେବେ କରନ୍ତ—

ବନ୍ଧୁ—ତୁ କିଏ ?

ମାଧୋଇ—ଏତେକ ବି ମଗଜରେ ପଶୁ ନା—ଗଣ୍ଠିଲିଟି
ଦେଖିବାକୁ ଛୋଟ, ହେଲେ ମାଲ ପଥର ଓଜନ
ଯିବ କୁଆଡ଼େ ?

ବନ୍ଧୁ—ତୁ—

ମାଧୋଇ—ଆଃ, ଆସିବ ତ ଆସ ହେ, ନାଇଁ ତ ମୁଁ
ତୁମର ଲୁଗା ପଟା, ସବୁ କିଛି ନେଇ ଚାଲିଲି ।

ବୁଲି—ମାଧୋଇ ଭାଇ, ଚାଲ ତ—ତୁମେ ନ ଚାଲିଲେ
କେହି ବାଟ ଚାଲିବେ ନି—

ମାଧୋଇ—ତୁମେ ଗାଇଲେ ସିନା ମୁଁ ଚାଲିବି ?

ବୁଲି—ତୁମେ ସୁର ମିଳେଇବ ତ ?

ମାଧୋଇ—ବେସୁରା ହେଲେ, ମିଳେଇବି କେମିତି ?

ବୁଲି—ବେଶ୍, ମୋ ହାତଧର—

ଗୀତ

ତୁମର ସଙ୍ଗୀତ ମୂର୍ତ୍ତି— ଗାଉଛି ତୁମର ପାଇଁ
ତୁମର ଭାଷା ଓ ସୁରେ

ମାଧୋଇ—ଭୁବନ ପବନ ନିତ ମୋ ସଙ୍ଗୀତେ
ଥାଏ ମାତି

ପ୍ରେମର ଧାର ଝରେ ।
ଉଷାର ଶିଶିର ହସେ,
ସେ ସଙ୍ଗୀତ ଭାସେ

ସଞ୍ଜ ପ୍ରଦୀପ ଜଳେ ତା'ରେଣ ପରଶେ,

ବୁଲି— ତୁମେ ଅଛ ମୋହପାଇଁ

ମାଧୋଇ— ତୁମ ଲାଗି ମୁହିଁ ଝୁରେ ।

[ ଗାଇ ଗାଇ ଚାଲିଲେ—ଅପର ସମସ୍ତେ
ଅନୁସରଣ କଲେ ]

## ଚତୁର୍ଥ ଦୃଶ୍ୟ

[ ବଡ଼ ଦେଉଳର ଦକ୍ଷିଣ ପାର୍ଶ୍ବ ପେଚନାଳା
ପ୍ରସ୍ତରର ଦୃଶ୍ୟ । ପୂର୍ବ ଦୃଶ୍ୟର ପରିଶେଷରେ
ମାଧୋଇ ଓ ବୁଲି ଯେଉଁ ଗୀତ ଗାଉଥିଲେ,
ତା'ର ରେଣ ମିଳାଇ ଯିବା ସଙ୍ଗେ ସଙ୍ଗେ ଜଣେ
ତୀର୍ଥଯାତ୍ରୀର ଭଜନ ଗୀତ ଶୁଣାଗଲା । ଖଞ୍ଜଣୀ
ବଜାଇ ଗାଉଥିଲା । ବନ୍ଧୁ ଓ ବନ୍ଧୁପତ୍ନୀ ପ୍ରବେଶ
କଲେ । ବନ୍ଧୁର ମନୋଭାବରୁ ବୁଝାଗଲା, ସେ
ଯେମିତି ସେହି ସଙ୍ଗୀତରୁ ଗୋଟାଏ ନୂତନ
ସଂକେତ ପାଉଛି । ]

ଯାତ୍ରୀ— ଗୀତ

ବାଇମନ ରେ, କାହିଁ ହେଉଛୁ ଧନ୍ଦ ?
ଜଗବନ୍ଧୁ ନାମ ଘୋଷୁଥା' ମନରେ
କଟିଯିବ ତୋର ବିଷମ ସନ୍ଧ ।
ଜାଣି ଶୁଣି ଅଜଣା ହୋଇ ମରୁ କପାଁ ଗାଅନ୍ତା ରହି
ଜୀବ ଗଲେ ଛାଡ଼ି ନ ଚାହିଁବେ ଫେରି,
କାୟାର ମାୟାକୁ ଯିବେଟି ନନ୍ଦ ।
ଅସାର ଏ ଗନ୍ତ ସଂସାର
ସବୁ ମିଛ ମାୟା ବେଭାର
ସବୁ ପଛେ ଥୋଇ, ଏକଧ୍ୟାନ ହୋଇ,
ସେହି ପଦ ମନେ ଦିଅ ତୁ ଛନ୍ଦ ॥

ବନ୍ଧୁ—"ଜଗବନ୍ଧୁ", "ଜଗବନ୍ଧୁ"—ମୋର ବନ୍ଧୁର
ନାମ "ଜଗବନ୍ଧୁ" ।

ବନ୍ଧୁ-ପତ୍ନୀ—ନାମ ଜାଣିଲ ତ, ଆଉ ଉଚ୍ଛନ୍ନ କାହିଁ ?
ଦେଖି ଶୁଣି ଏଥର ବାଟ ଚାଲ ।

ବନ୍ଧୁ—ଏଇତ ମୋର ବନ୍ଧୁର ନଅର । ଦେଖିଲ,
କେତେ କୋଠା ବାଡ଼ି, କେତେ ପାଇକ ବେରୁଆ,
କେତେ ପ୍ରଜାପାଟକ !

ବନ୍ଧୁ-ପତ୍ନୀ—ଭଲକଥା । ଏବେ ବନ୍ଧୁଙ୍କ ସଙ୍ଗେ ଯାଇ
ଦେଖା କର ।

ବନ୍ଧୁ—କେମିତି କଥା କହୁଚ, ବୁଲିଆ ବୋଉ ?—
ବନ୍ଧୁ ମୋର ରାଜାଲୋକ, ଦୁଆରେ ବେରୁଆ
ଜଗିଛନ୍ତି, ବୁଝି ସଙ୍ଘୋଳି ଛାଡ଼ୁଛନ୍ତି, ପେଲାପଣ କଲ

ଗଲେ, ମାଡ଼ରେ ଜୀବନ ଉଡ଼ିଯାଉଛି—ମୁଁ ସେଠି ପଶି ଯିବି ?

ବନ୍ଧୁ-ପତ୍ନୀ—ବନ୍ଧୁ ଘରେ ବନ୍ଧୁ ପଶିବ, ଏଥେ ଡର କାହିଁ ମ ?

ବନ୍ଧୁ—ଜୀବନକୁ ଡର ନୁହେଁ, ଭୁଲିଆ ବୋଉ ! ଡର ଭୟ ମୋର ବନ୍ଧୁର ମାନ ମର୍ଯ୍ୟାଦାକୁ ।

ବନ୍ଧୁ-ପତ୍ନୀ—ହେଲା, କାହା ହାତରେ ତେବେ ଖବର ପଠେଇ ଦିଅ ।

ବନ୍ଧୁ—କ'ଣ, ମୁଁ ଖବର ପଠେଇବି ବନ୍ଧୁ ପାଖକୁ ?

ବନ୍ଧୁ-ପତ୍ନୀ—ତେବେ କୁହ, ନିଜର ମାନ ମହତ ସରିଯିବ ।

ବନ୍ଧୁ—ଅବଶ୍ୟ । ମୁଁ ବନ୍ଧୁ ମହାନ୍ତି—ଦୀନ, କାଙ୍ଗାଳ, ଅରକ୍ଷିତ ହେଲି ବୋଲି, ମୋର କରଣ-ମର୍ଯ୍ୟାଦା କେଉଁଠି ଉଡ଼ିଗଲା ? ହଇ ହେ, ମୋର ଯଦି ସେମିତି ମର୍ଯ୍ୟାଦା ନ ଥାନ୍ତା, ତେବେ ରାଜା ମୋର ବନ୍ଧୁ ହୁଅନ୍ତେ କିପରି ?

ବନ୍ଧୁ-ପତ୍ନୀ—ହେଲେ, ଖବର ନ ପଠାଇଲେ, ଶୂନ୍ୟରୁ ତ ଆଉ ବନ୍ଧୁ ବନ୍ଧୁର ଖବର ପାଇ ପାରିବେ ନି ?

ବନ୍ଧୁ—କାହିଁକି ନ ପାରିବେ ? ଶୂନ୍ୟରୁ ମୋର ବନ୍ଧୁ ଅଛି ବୋଲି, ମୁଁ ଜାଣିଲି କେମିତି ? ଶୂନ୍ୟେ ଶୂନ୍ୟେ ମୋ ବନ୍ଧୁଘର ପାଖକୁ ମୁଁ ଧାଇଁ ଆସିଲି କେମିତି ? ଶୂନ୍ୟରୁ ମୋର ବନ୍ଧୁର ନାମ 'ଜଗବନ୍ଧୁ' ବୋଲି ଜାଣିଲି କେମିତି ?

ବନ୍ଧୁ-ପତ୍ନୀ—ବେଶ୍ ତେବେ ଶୂନ୍ୟକୁ ଚାହିଁ ଏଠାରେ ଠିଆ ହୋଇଥାଅ ।

ବନ୍ଧୁ—ଠିଆ ହେବି କାହିଁକି ? ବସିବି ।

(ସେଜନଲା ପାଖରେ ଦମ୍ଭ ଧରି ବସିଲେ)

ବନ୍ଧୁ-ପତ୍ନୀ—ମ, ଏଠି ଗାଈ ଗୋରୁ ଗୁଡ଼ାକ ବୁଲୁଛନ୍ତି-ସେଜ ତୋରଣି, ଅଇଁଠା ଶଙ୍କୁଡ଼ି ଗୁଡ଼ିଆଡ଼େ !

ବନ୍ଧୁ—ଭୁଲିଆ ବୋଉ । ଉମର ସ୍ନେହମଣି ମାଧୋଇ କଥା କ'ଣ ପାଶୋରି ଗଲ ?—ବାଟରେ ଆସୁ ଆସୁ ସେ କହୁଥିଲା ନା—ଗାଈ ଗୋରୁ ମୋ ବନ୍ଧୁର ଭାରି ପିଅରି—ସେଜନଲା ପାଖେ ବସିବାକୁ ସେ ଭାରି ସୁଖ ପା'ନ୍ତି ?

(ଭୁଲି ଓ ଶୋଭର ପ୍ରବେଶ)

ଭୁଲି—ବୋଉ । ମାଧୋଇଭାଇ ଛୁ !

ବନ୍ଧୁ-ପତ୍ନୀ—ଛୁ' ?

ଭୁଲି—କେଡ଼ୁଣୀ ନାଟ ହେଉଥିଲା—ଆମେ ଦେଖୁଥିଲୁ କେତେବେଳେ ଖଞ୍ଜରେ ଖସିଯାଇ, ଭିଡ଼ ଭିତରେ ପଶି, ପିଠିମାରି ଡାକି, ଠାରି କହିଲା—ଭୁଲି ମୋତେ ଧ', ନାହିଁତ, ଛୁ—

ବନ୍ଧୁ—ଭିଡ଼ ଭିତରେ ଦଳି ମଥି ହୋଇ ଯାଇନି ତ ପିଲାଟି ?

(ଯିବାର ଉପକ୍ରମ)

ବନ୍ଧୁ-ପତ୍ନୀ—ମୁଁ ଯାଏ, ତୁମେ ଥକା ହୋଇ ପଡ଼ିଛ ।

ବନ୍ଧୁ—ନା, ନା—(କହି ଚାଲିଗଲେ)

ଭୁଲି—ମୁଁ ସେତେ କହିଲି ଅପାକୁ, ଧର ଧର—ଅପା ଶୁଣିବ କାହିଁକି ?

ଶୋଭ—ତୁ ଧଇଲୁ ନି ଟୋକି ?

ଭୁଲି—ମେତେ ପଦେ ସେମିତି କାମୁଡ଼ି ଦିଅନ୍ତା—ଉହୁ, ହୁ, ହୁ,—

(ପୂର୍ବ କାମୁଡ଼ାଟା ଯେମିତି ଅନୁଭବ କଲା)

ଶୋଭ—ମାଙ୍କଡ଼ଟା ଖେତେଇ ହବ—ଚଢ଼େଇ ମାରିବ, ମୁଁ ତାକୁ ଧରିବି ?

ଭୁଲି—କଅଣ ସେ ତୋତେ ଚଢ଼ାଏ ?—ହଉ, କଥା କହେ—

ଶୋଭ—ଭୁଲି । (ଚିମୁଟି ଦେଲା)

ଭୁଲି—ମୋ ବୋଉ ଲୋ – ଉଁ ଉଁ ଉଁ ।

ବନ୍ଧୁ-ପତ୍ନୀ—ଶୋଭ—

ଭୁଲି—ବେଶ, ମୁଁ ବି ଖେତେଇ ହେବି—ଚଢ଼େଇବି—'ମେଘ ବରଷିଲା ଟୁପୁରୁ ଟୁପୁରୁ ମାଣ୍ଡିଆ ହେଲା ଗଜା'—

ଶୋଭ—ବୋଉ, ଦେଖୁଚୁ—ମୁଁ ଏଥର ଥୋମଣି ତାର ଭାଙ୍ଗିଦେବି ।

ଭୁଲି—ବୋଉ—(ବୋଉର ଆଞ୍ଚଳ ଧରି ଆଗରୁ ଲୁଚିଲା)

ବନ୍ଧୁ-ପତ୍ନୀ—ଆଲୋ, ଆମର ଗଣ୍ଡିଲାଟା କାହିଁ ?

ଶୋଭ—ମାଧୋଇ ପାଖରେ—ରହିଲ ଯାଇ କି ?

ବନ୍ଧୁ-ପତ୍ନୀ—ଭଲ କଥା, ଖାଇବ କ'ଣ ? ଚୁଡ଼ା ଗୁଡ଼ାକ ବି ସେହି ଗଣ୍ଠିଲିରେ ।

ଶୋଭ—ବାପାର ଲେଖନଟା ବି—ମୁଁ ଯେତେ ନାହିଁ ନାହିଁ କରୁଛି, ମୋ'ଠୁ କାଢ଼ି ନେଇ, ସେଥିରେ...

ବନ୍ଧୁ-ପତ୍ନୀ—ଲେଖନଟା ଗଲା ଚୁଲିକି—ଏବେ ଗିଳିବ କ'ଣ ?

ବୁଲି—ଖୁବ ଭୋକ, ବୋଉ !

ବନ୍ଧୁ-ପତ୍ନୀ—ମୋତେ ଗିଳ ।

ଶୋଭ—ମୋର ବି ଭୋକ୍ ହେଲା ନା । ଗଣ୍ଠିଲିଟା ତାଠୁଁ...

ବୁଲି—ଭୋକ୍ ହବ କେମିତି ?—'ଯାଜପୁରେ ରହିଲେ ମୋ ରଜା, ତେଲଙ୍ଗି ବାଇଦ ବଜା'—

ବନ୍ଧୁ-ପତ୍ନୀ—'ଯାଜପୁରେ ରହିଲେ ମୋ ରଜା' !

(ବୁଲିକୁ ଖୁଦାଟିଏ ଦେଲେ)

ବୁଲି—ବାପା ! ବାପା ଲୋ—(କାନ୍ଦି କାନ୍ଦି ଚାଲିଗଲା)

ବନ୍ଧୁ-ପତ୍ନୀ—ଶୋଭ—ଏଇଆ କ'ଣ ତୋର ପେଟର କଥା ? ଓଃ ଯୋଉଁ ପାଜିଟା ତୋର ଏତେ ସବୁ କଲା, ମହାନ୍ତି କୁଳରେ କାଳି ଲେପି ଦେଲା, ଆମକୁ ଦାଣ୍ଡର ଭିକାରି କରି ଛାଡ଼ିଲା—ତା'ର କଥା ତୁ ଅହୁରି ଭୁଲି ପାରୁନୁ ? ବୁଝିଛି, ତୋର ଯେବେ ଖରାପ ମତଲବ ନ ଥିଲା, ତେବେ ସେ ଦିନ ସେ ଖବର ପାଇଲା କେମିତି, ତତେ—

ଶୋଭ—ବୋଉ ! ବୋଉ ! ଏ' କଥା ଶୁଣାଇବା ଆଗରୁ ମୋତେ କାହିଁକି ଜହର ଖୋଇ ମାରି ନ ଦେଲୁ ?—ବେକରେ ଦଉଡ଼ି ଦେଇ ମରିବାକୁ ନ କହିଲୁ ?—ଆତ୍ମହତ୍ୟା ମହାପାପ, ଏ କଥା ଅହୁରି କାହିଁକି ଶୁଣାଉଥିଲୁ ?—ବୁଝିଛି, ତୋ ମୁହଁରୁ ଦିନେ ଅପବାଦ କଥା ଶୁଣିବି, ସେଇଥିପାଇଁ ଜୀଇଁ ରହିଥିଲି ।

ବନ୍ଧୁ-ପତ୍ନୀ—ଆଲୋ, ନା ଲୋ ନା—ତୁ କିଏ, ନାରଣ କିଏ ?—ପିଲାଟି ଦିନୁ—ତା'ର ମା ମରିଛି—ମୁଁ ତାକୁ ବଢ଼େଇଛି, କୁଢ଼େଇଛି—ଏକା ସଙ୍ଗେ ତୁମେ ଦୁହେଁ ଖେଳିଛ, ବୁଲିଛ, ପାଠ ପଢ଼ିଛ—ଏକା ଥାଳିରେ ଭାତ ଦୁହିଁଙ୍କି ଖୁଆଇଛି, ପିଆଇଛି—

ଶୋଭ—ବୋଉ—

ବନ୍ଧୁ-ପତ୍ନୀ—ହେଲେ, ଶୋଭ ! ସେ ଅମଣିଷ ହେଲା ବୋଲି ତୁ ବି ସେଇଆ ହବୁ ? ଭାଇକି ଭଉଣୀ ଯୋଉଁ ଆଖିରେ ଦେଖେ, ଭାଇର ମଙ୍ଗଳ ଭଉଣୀ ଯେମିତି ମନାସେ, ସେମିତି କର—ସଫା ମନରେ ତା' କଥା ଦିଅଙ୍କୁ ଜଣା ।

ଶୋଭ—ବୋଉ, ତା' କ'ଣ ମୁଁ କରୁ ନା ?

ବନ୍ଧୁ-ପତ୍ନୀ—ମନକୁ ପଚାର । ତୋ ମନରେ ଯେବେ କିଛି ମଳି ଧୂଳି ନାହିଁ, ତେବେ ପର କଥାରେ, ପର ମୁହଁରୁ ଫାଉଲ୍ ଶୁଣି, ତୁ ଏତେ ଚଳୁ କାହିଁ ? ଆଲୋ ଝିଅ ! ସଭିଙ୍କର ନିନ୍ଦା ଚୁଗୁଲିକୁ ହସି ଉଡ଼େଇଦେଇ, ଆପଣା କାମରେ ଠିକ୍ ରହିବା ହେଉଛି ଆମର କାମ । ଛି, କାନ୍ଦ ନା—ମା' କ'ଣ ପୁଅ ଝିଅର ଖୁଣ ବାଛେ ନା ? ତୁ ପରା ମୋ ପରଶ-ପଥର—ତୋତେ ଛୋଇଁ ଉଜ୍ଜ୍ୱଳ ହେବ ନି ? ତୋର ପରଶରେ ଯେ, ଛୋର ନାରଣ ଭାଇ ସୁନା ହୋଇଯିବ ।

(ଲୁହ ପୋଛି ଦେଲା)

ଶୋଭ—ବୋଉ ! ମତେ ଆଶୀର୍ବାଦ କର—ମୋ'ର ଯା' କିଛି ମଳି ଧୂଳି ଅଛି, ତା' ଏଇ ଲୁହରେ ଯିମିତି ଧୋଇ ପୋଛି ହୋଇଯାଏ ।

ବନ୍ଧୁ-ପତ୍ନୀ—ଠାକୁରେ କରନ୍ତୁ, ତୋର ସବୁ କିଛି ଅଲେଇ ବଲେଇ, ମୁଁ ଯିମିତି ଝାଡ଼ିଦେଇ ନିଏଁ ।

ଶୋଭ—ବୋଉ ! ବୋଉ ! (ଚରଣ ଧୂଳି ନେଲା)

(ବୁଲିର ବେଗେ ପ୍ରବେଶ)

ବୁଲି—ବୋଉ ! ଭାରି ଭୋକ । ଆଉ ସମ୍ଭାଳି ପାରୁ ନି !

(ଭୂଇଁରେ ଶୋଇ ପଡ଼ିଲା)

ଶୋଭ—ମାଧୋଇ ଗଲା କୁଆଡ଼େ । (ଚାଲିଗଲା)

(ବିପରୀତ ଦିଗରୁ ବନ୍ଧୁ ମହାନ୍ତିଙ୍କର ପ୍ରବେଶ)

ବନ୍ଧୁ—ପାଇଲି ନି, ପିଲାଟିକୁ—ଖୋଜି ଖୋଜି ନାକେଦମ୍—କେହି କହି ପାରିଲେ ନି ତା' କଥା । ଶେଷକୁ—

ବନ୍ଧୁ-ପତ୍ନୀ—ଏ' କଣ ?—ତୁମ ଦେହରେ ରକ୍ତ—କେଉଁଠିର ଦାଗ—?

ବନ୍ଧୁ—ଭଲ୍ ଦେଖି, ସେହି ମାଧୋଇ ପାଇଁ ବଲ ପଣି ବନ୍ଧୁ ଘର ଭିତରକୁ ପଶିବାର ଚେଷ୍ଟା କଲା, ତା'ର ଏଇ ବଦାଗ !

ବନ୍ଧୁ-ପତ୍ନୀ—ଛି, ଛି—ତମର ବନ୍ଧୁ ଘର, ଏମିତ ଫେଲ୍‌ଫଣା କରି ପଶିବାକୁ ହୁଏ ନା ? ବନ୍ଧୁର ମାନ ମହତ ତଳେ ପକେଇଲ ସିନା ?—ଆସ, ଆସ—ମୁଁ ଧୋଇଦିଏ—

ବନ୍ଧୁ—ଥାଉ ସେମିତ, ଭୁଲିଆ ବୋଉ—ଏ' ମୋର ଭୁଲର ପ୍ରାୟଶ୍ଚିତ୍ତ— ଯାକୁ ମୁଁ ଲିଭେଇବି ନି— ଯେତେ ଦିନ ଯାଏ ଏ ଦାଗ ମୋ ଅଙ୍ଗରେ ଥିବ - ମୋ' ଭୁଲ; ମୁଁ ବୁଝି ପାରୁଥିବି !

ବନ୍ଧୁ-ପତ୍ନୀ—ତା' ତ ବୁଝିଲି—ହେଲେ, ବନ୍ଧୁ ଯଦି ଏଇଲେ ଡକେଇ ପଠାନ୍ତି, କି ନିଜେ ସଙ୍ଗୋଳି ନେବାକୁ ଧାଇଁ ଅସନ୍ତି, ତା' ହେଲେ ?

ବନ୍ଧୁ—ତୁମେ ଏ' ବେତର ଦାଗ ବେଗେ ବେଗେ ଘୋଡ଼େଇ ପକାଅ—ଲିଭେଇ ଦିଅ, ଭୁଲିଆ ବୋଉ—ବନ୍ଧୁ କୁ କେତେ ନିନ୍ଦା ହେବ, କେତେ ଅପମାନ ହେବ !

ବନ୍ଧୁ-ପତ୍ନୀ—ଏତେ ଅଥୟ କାହିଁ ? କଳଙ୍କର ଦାଗ ଯିଏ ଅଙ୍ଗେ ଅଙ୍ଗେ ଲିଭେଇଛ ତାକୁ ଅଙ୍ଗର ସାମାନ୍ୟ ବେତର ଦାଗ ବଳେଇବ ? ତୁମେ ମଣିଷ ଖଣ୍ଡେ—ତୁମେ ଏମିତ ହାଲିଲେ, ଘର ଠିଆ ହେବ କେମିତ ?

ବନ୍ଧୁ—ଖମ୍ବର ବଳ, ମୂଳ ଦୁଆ—ତୁମେ ଠିକ୍ ଅଛ ଯେତେବେଳେ, ମୋର ବଳ ଠିକ୍ ଅଛି—କେହି ମୋତେ ହଲେଇ ପାରିବେ ନି, ଭୁଲିଆ ବୋଉ !

ବନ୍ଧୁ-ପତ୍ନୀ—( ଆପଣାର ଲୁଗା ପଣତରେ ସ୍ୱାମୀ ଦେହର ରକ୍ତଦାଗ ପୋଛିଦେଲେ ) ଶୋଭ ! ଶୋଭ !—ଓଃ, ପିଲାଟା ଭୋକରେ ଶୋଇ ପଡ଼ିଲା !

( ଶୋଭର ପ୍ରବେଶ )

ଶୋଭ—ନା, ବୋଉ—ପାଇଲି ନି !

ବନ୍ଧୁ—ଏମାନେ ଖାଇବେ କଅଣ ?—

ବନ୍ଧୁ-ପତ୍ନୀ—ତମର ରାଜା-ବନ୍ଧୁଙ୍କର ରାଜ-ଭୋଗ—

ବନ୍ଧୁ—ବନ୍ଧୁ କ'ଣ ପଠେଇ ଦେଇଛନ୍ତି ?

ବନ୍ଧୁ-ପତ୍ନୀ—ଆମର ପାଇଁତ ବାଢ଼ି ରଖିଛନ୍ତି !— ଶୋଭ ! ସେଠି ଛେଲିଅଟାଏ ପଡ଼ିଛି ଗୋଟେଇ ଆଣିତ, ମା—ମୁଁ ନଳାରୁ ଛେଲିଏ ଛେଲିଏ ପେଜ ପାଣି ଦିଏ !

ବନ୍ଧୁ—ପେଜ ପାଣି ?

ବନ୍ଧୁ-ପତ୍ନୀ—ଗୋରୁଗାଈ ଯେବେ ତମର ରାଜାବନ୍ଧୁଙ୍କର ଭାରି ପିଅର—ପେଜ ନଳାଠେଇଁ ଯେବେ ସେ ବସିବାକୁ ସୁଖ ପାଆନ୍ତି—ପେଜ ଚୋବଣି ନିଶ୍ଚେ ତାଙ୍କର ରାଜ-ଭୋଗ !

ବନ୍ଧୁ—ମୋତେ ଛେଲିଆ ଦିଅ—ମୋ'ର ରାଜା-ବନ୍ଧୁର ଅମୃତମଣୋହି ମୁଁ ବାଢ଼ିଦେବି ସମସ୍ତଙ୍କୁ !

( ସମସ୍ତେ ପେଟେ ପେଟେ ପିଇ ଶୋଇ ପଡ଼ିଲେ )

---

## ପଞ୍ଚମ ଦୃଶ୍ୟ

[ ପୂର୍ବବର୍ତ୍ତୀ ସେହି ପେଜନଳା ଦୃଶ୍ୟର ପାର୍ଶ୍ୱ-ପ୍ରଦେଶ । ନିଶାରାତ । ବଡ଼ପଣ୍ଡା ଭାଙ୍ଗରେ ଢୁଳୁ ଢୁଳୁ ହୋଇ ପ୍ରବେଶ କଲେ ]

ବଡ଼ପଣ୍ଡା—( ଗୀତ ସ୍ୱରେ )

ପାଚକ ! ଆହା ରେ, ପାଚକ !
ତୋ ମାହାତ୍ମ୍ୟ ଜାଣେ ଏକା ଏ ଦୀନ ସେବକ ।
ଛତଶ ନିଯୋଗ ନୃପ ଯେ କାଳେ ଖଞ୍ଜିଲେ,
ତୋ'ପରି ଗୁଣି ଅହା, ସମଜି ନ ଥିଲେ—
ସେବକେ ପ୍ରସନ୍ନ ଏବେ ଜଗନ୍ନାଥଙ୍କ,
ଖଞ୍ଜିଲେ ସେବାର ଅଙ୍ଗେ ତତେ ରେ, ପାଚକ ।

ବଡ଼ପଣ୍ଡା—ହୁସିଆର, ହୁସିଆର, ରାସ୍ତା ପରିଷ୍କାର—ରାତର ନିଶା ସାଇଁ ସାଇଁ, ପାଚକ ନିଶା ହାଇଁ ହାଇଁ—ପଦ୍ମୀରଜେ ଉଡ଼େ ମୁହିଁ, ପଦ୍ମ ରାଜ୍ୟ ଯିବାପାଇଁ—( ଠିକ୍ ସେହି ସମୟରେ ସୁବେଶା ମାହାରିଟିଏ ପ୍ରବେଶ କଲା । ବଡ଼ପଣ୍ଡା ନିଶା ଝୁଙ୍କରେ ତା' ଉପରେ ପଡ଼ି ଯାଉଥିଲେ )

ମାହାରୀ—ହାଁ—ହାଁ—

ବଡ଼ପଣ୍ଡା—କିଏରେ ତୁ, ବେହିଆ ?

ମାହାଙ୍ଗି—ବଡ଼ପଣ୍ଡେ !

ବଡ଼ପଣ୍ଡା—ପର !—

ମାହାଙ୍ଗି—ତମେ ଏତେ ଡେରି କର—

ବଡ଼ପଣ୍ଡା—ତମେ କୋଉଠିକି ଅଭିସାରି ? କହତ, ଧନମଣି ?

( ଗୀତସ୍ୱରେ )

ପିନ୍ଧନ୍ତୁ ସୁବର୍ଣ୍ଣ ଶାଢ଼ୀ
କୁଚ କୁମ୍ଭେ କୁମ୍ଭଧଡ଼ି;
ମଥାରେ ଯେ ମଥାମଣି
ଦେଇଛନ୍ତୁ ଓଢ଼ଣି ଟାଣି ।

ଫୁଲଗୁଣ୍ଠା ଦଣ୍ଡି ନାକେ ଶୋହେ ଗଜ ମୋତି ବେକେ
ତୋ ରଙ୍ଗ ଅଧର ବେଣୀ ମନ ମୀନ ନଏ ଟାଣି ।

ମାହାଙ୍ଗି—ହଉ ତମର ବାଣୀ ସେତିକି ଥାଉ, କା' ମନ୍ଦିରକୁ ଏ ଅଭିସାର ଆଜି ?

ବଡ଼ପଣ୍ଡା—ସବୁ ସାରିଦେଲୁ, ବେହ୍ନପୋ, ସବୁ ସାରି ଦେଲୁ—ଜରିତ, ସବୁ ସୁଖ ଦେଲୁ କରିତ ।—ଆଲୋ ପର, ଦେଉଳ ଖବର କ'ଣ କହିଲୁ ? ସେ ଖବର ମୁଁ ଏ ଯାଏଁ ନେଇ ନ ଲେ—ସେବା ପୂଜା ବନ୍ଧମତେ ବଢ଼ିଛି ତ ?—ନିର୍ଧୂପ—ପଞ୍ଚ ଅବକାଶ—ଉଡ଼ାଉ ଲାଗି—ବଡ଼ ସିଂହାର—ପୁଷ୍ପାଞ୍ଜଳି—ଶେଜାଉ— ?

ମାହାଙ୍ଗି—ମୋତେ ସେ କଥା ପଚାରୁଚ, ପଣ୍ଡା ସାଆନ୍ତେ—ମୁଁ କିମିତି କହିବି ଭଲା ?—

ବଡ଼ପଣ୍ଡା—ଆଚ୍ଛା, ଭଣ୍ଡାର ଘର ମୁଦଦିଆ ହୋଇଚି କି ନା, ସେ କଥା ?—ସେବକମାନେ ଦୀପ ଦହୁଡ଼ି ଧରି ଦେଉଳ ଶୋଧନ କରିଛନ୍ତି ତ ?—କବାଟ ସବୁ ପକେଇଛନ୍ତି ତ ?—ସାଙ୍କୁଳି ଲଗେଇ ଦେଇଛନ୍ତି ତ ?

ମାହାଙ୍ଗି—ଆଜି ଭାଙ୍ଗ କଣାଟା ତମର ଭାରି ଜବର ତ ? ନାଗ ଗରଳ ଦେଇ ଭାଙ୍ଗ ବାଟିଥିଲ ନା କ'ଣ ?—ଅହେ, ମୋର ସେବାକଥା ସିନା ମୁଁ କହିବି—ଅପରର ସେବା କଥା କିମିତି କହିବି ?—

ବଡ଼ପଣ୍ଡା—ଅଲୋ, ଭଣ୍ଡାର ମେକାପ କଣ୍ଢି ପକେଇ, ଗୁରିଧରି ଯାଇଚି କି ନା, ସେ ଖବରଟା ?

ମାହାଙ୍ଗି—ତମେ କେମିତିକା ମଣିଷ ହେ ?—ଶୁଣୁଚ କ'ଣ, ପଚାରୁଚ କ'ଣ ?

ବଡ଼ପଣ୍ଡା—ହାଁ, ଏତେ ଦିମାକ ତୋ'ର ? ସେବା ତୁ କେମିତି କରି ଆସିଛୁ ବତା ଏଇଠି, ଏଇକ୍ଷଣି । ଜାଣୁ ! ବଡ଼ପଣ୍ଡା ମୁଁ, ତୁମମାନଙ୍କର ଗଫଲତି ପ୍ରଭୁଙ୍କ କାନକୁ ନେଲେ, କେମିତିକା ମଜା ହେବ ? ଏକାବେଳକେ ଦେଉଳ ବାସନ୍ଦ, ଜାତି ବାସନ୍ଦ ।
( ମାହାଙ୍ଗି ସେତେବେଳକୁ ଚାଲିଯାଇଥାଏ )

ବଡ଼ପଣ୍ଡା—ଏଁ—ବେହ୍ନପ ଚାଲିଗଲା !—ହଉ' ଥି' ଥି'—( ପୂର୍ବ ଗୀତର ବନ୍ଦ ଧରି, ଗଲା ପରେ ପରେ, ନୂପୁର ଓ ବଂଶୀର ଧ୍ୱନି ଶୁଣାଗଲା )

---

## ଷଷ୍ଠ ଦୃଶ୍ୟ

[ ସେହି ନୂପୁର ଓ ବଂଶୀ ଧ୍ୱନି ମିଳାଇ ଗଲା । ଜଣେ ବୃଦ୍ଧ ବ୍ରାହ୍ମଣ ସୁବର୍ଣ୍ଣ ଥାଳରେ ପ୍ରସାଦ ଧରି ଡାକିଲେ । ପେଜ ନଳାର ଦୃଶ୍ୟ । ବନ୍ଧୁ ମହାନ୍ତି ପ୍ରଭୃତି ନିଦ୍ରା ଯାଇଥାନ୍ତି ]

ବ୍ରାହ୍ମଣ—ବନ୍ଧୁ—ବନ୍ଧୁ, ବନ୍ଧୁ !

ବନ୍ଧୁ-ପତ୍ନୀ—ହଇ ହେ, ଶୁଣୁଚ ତ ?

ବନ୍ଧୁ—କ'ଣ ?—

ବନ୍ଧୁ-ପତ୍ନୀ—ତମ ନାଁ ଧରି କିଏ ଜଣେ ଡାକୁଚି ।

ବନ୍ଧୁ—ଏତେ ରାତିରେ, ମୋତେ କିଏ ଡାକିବ ?

ବ୍ରାହ୍ମଣ—ବନ୍ଧୁ !—

ବନ୍ଧୁ-ପତ୍ନୀ—ହେଇ, ଶୁଣ—

ବନ୍ଧୁ—ଆଉ କୋଉ ବନ୍ଧୁ ହୋଇଥିବ—ଏଡ଼େ ରାଇଜରେ, ବନ୍ଧୁ ନାଁ କ'ଣ, ଆଉ କାହାର ନାହିଁ ? ଶୋଇଲ···ଶୋଇଲ—
( ପୁଣି ଶୋଇ ପଡ଼ୁଥିଲେ )

ବ୍ରାହ୍ମଣ—ଯାଜପୁରିଆ ବନ୍ଧୁ !

ବନ୍ଧୁ-ପତ୍ନୀ—ଯାଜପୁରିଆ ବୋଲି—

ବନ୍ଧୁ—( କାନଡେର, ସେହି ଡାକ ପୁଣି ଥରେ ଶୁଣି) ମୋର ବନ୍ଧୁ ଡାକୁ ନାହାନ୍ତି ତ ?

( ଗୃହଲକ୍ଷ୍ମୀ ଓ ଥାଳିଆ ଘେନି ପ୍ରବେଶ କଲେ )

ବନ୍ଧୁ-ପତ୍ନୀ—ତମର ବନ୍ଧୁ ?

ବନ୍ଧୁ—ନା, ଜଣେ ସେବକ—( ଜଗବନ୍ଧୁଙ୍କ କଥା ଭୁଲିଯାଇ ) ଦେଖିଲ—ଦେଖିଲ—କି ସୁନ୍ଦର ଭୋଜନ—ନାଡ଼ି, ଗଜା, କାକରା, ଆରିସା, ଶାଳୀ ଅନ୍ନ, କେତେ ପ୍ରକାର ଡାଲି, ତୁ'ଣ ! ତମେ ଉଠାଅ, ଉଠାଅ, ପିଲାଙ୍କୁ—ମୋତେ ଭାରି ଭୋକ—ମୁଁ ଆଉ ସମ୍ଭାଳି ପାରୁ ନି—

( ଖାଇବାକୁ ଆରମ୍ଭ କରି ଦେଲେ )

ବନ୍ଧୁ-ପତ୍ନୀ—ବୁଲି ! ଶୋଭି !

( ବୁଲି, ଶୋଭି ଉଠି ବସିଲେ )

ବନ୍ଧୁ—ଆ' ବୁଲି—ଆ' ଶୋଭି ! ଦେଖିଲୁ, କେମିତି ଭଲ ଭଲ ଖାଇବାର । ଜଣେ ସେବକ ଆମକୁ ଦେଇଛି ।

[ ବନ୍ଧୁ-ପତ୍ନୀ ଛଡ଼ା ସମସ୍ତେ ଖାଇବାକୁ ଲାଗିଲେ ]

ବନ୍ଧୁ-ପତ୍ନୀ—ସେଇ ତୁମର ବନ୍ଧୁ ?

ବନ୍ଧୁ—କ'ଣ, ଯେ ତୁମେ କୁହ ? ମୋର ବନ୍ଧୁ ପରା, ରାଜା !

ବନ୍ଧୁ-ପତ୍ନୀ—ତା'ତ ସୁନା ଥାଳିରୁ ଜଣା ପଡ଼ୁଛି ।

ବନ୍ଧୁ—ସତେ ତ !—ଯିଏ ଦେଇଗଲେ, ସେ ତ ଜଣେ ସାଧାରଣ ବୁଢ଼ା ବ୍ରାହ୍ମଣ ।

ବନ୍ଧୁ-ପତ୍ନୀ—ତୁମେ ବୁଢ଼ା, ସାଧାରଣ ବୋଲି, ହୁଏତ ସେଇ ବେଶରେ ବନ୍ଧୁ ଦେଖା ଦେଇଥିଲେ ।

ବନ୍ଧୁ—ଉହୁଁ, ବନ୍ଧୁ କେବେ ବନ୍ଧୁକୁ ଠକାଏ ନି । ରାଜା କ'ଣ ପ୍ରଜା ସଙ୍ଗେ ବନ୍ଧୁ ବାନ୍ଧେ ନା ? ଆମର କଥାକୁ ଦେଖ । ମହାପାତ୍ର ବଂଶ, ଆଉ ମହାନ୍ତି ବଂଶ—ବନ୍ଧୁ ପ୍ରୀତି ଉଭୟ ମଧ୍ୟରେ ପୁରୁଷ ପରମ୍ପରା; ଅଥଚ ଆମେ ପ୍ରଭୁ, ଭୃତ୍ୟ ।

ବନ୍ଧୁ-ପତ୍ନୀ—ହଉ, ଦାତାଙ୍କୁ ଆଉ କେତେବେଳଯାଏ ଠିଆ କରି ରଖିବା ?—ମୁଁ କୁଡ଼ୁଆ ଦେଉଛି, ଥାଳିଆଟା ଖାଲି କରିଦିଅ—ମୁଁ ପୋଛି ଦିଏଁ, ଯାଇଁ ଆଗେ ଦେଇଆସ ।

ବନ୍ଧୁ—ଠିକ୍ କହୁଛ ( ବନ୍ଧୁ-ପତ୍ନୀ ନିଜ ଲୁଗା କାନିରେ ଥାଳିଆଟା ପୋଛି ଦେଲେ ଓ ବନ୍ଧୁ ତାହା ଘେନିଗଲେ )

ବୁଲି—ଆଉ ଖାଇପାରିବି ନି, ବୋଉ !

ଶୋଭି—ମୁଁ ବି ଆଉ ପାରିବି ନି ।

ବନ୍ଧୁ-ପତ୍ନୀ—ହଉ, ବୋଭକର ଆଉ ଖାଅନି—ଯା ଥିବ କାଲି ସକାଳେ ଖାଇବ ।

ବୁଲି—ଭାରି ନିଦ ମାଡ଼ୁଛି । ଆ' ଅପା । ଏକୁଟିଆ ଶୋଇବାକୁ ଡରମାଡ଼ୁଛି ।

ବନ୍ଧୁ-ପତ୍ନୀ—ଯା, ଶୋଭି, ତା ପାଖରେ ଶୋ' ଯାଇ ।

[ ଶୋଭି, ବୁଲି ଶୋଇଲେ । ବନ୍ଧୁ ଥାଳିଆ ହସ୍ତ ପ୍ରବେଶ କଲେ ]

ବନ୍ଧୁ—ଦେଖା ପାଇଲି ନି, ବୁଲିଆ ବୋଉ ।

ବନ୍ଧୁ-ପତ୍ନୀ—ଡେରି ଦେଖି, ଚୁଲି ଯାଇଥିବେ ।

ବନ୍ଧୁ—କ'ଣ କରିବି ? କେଉଁଠି ତାଙ୍କୁ ପାଇବି, ଏତେ ରାତିରେ ?

ବନ୍ଧୁ-ପତ୍ନୀ—କାଲି ସକାଳେ ସେ ନିଜେ ଆସି ନେଇଯିବେ, ଚିନ୍ତା କ'ଣ ?

ବନ୍ଧୁ—ସୁନାର ଥାଳୀ, ସେ ନିଶ୍ଚେ ଆସିବେ । ମୁଁ ତା' ହେଲେ ଥାଳିଟାକୁ ମୁଣ୍ଡତଳେ ରଖି ଶୋଉଛି ।

ବନ୍ଧୁ-ପତ୍ନୀ—ଆମ ହେପାଜତ୍‌ରେ ଯେତେବେଳେ, ସେତେବେଳେ ହୁସିଆର ଥିବା ଭଲ । ହଁ, ଆଉ ଖାଇବ ନି ?

ବନ୍ଧୁ—ନା । ତୁମେ ଖାଅ ଏଥର । ମୋତେ ଭାରି ନିଦ ମାଡ଼ୁଛି ।

ବନ୍ଧୁ-ପତ୍ନୀ—( ନିଜେ ଖାଇବାକୁ ବସି ) ମାଧୋଇ କଥା ମନେ ପଡ଼ୁଛି । ପିଲାଟି ଖାଇ ନ ଥିବ—ମୁଁ କେମିତି ଖାଇବି ? ମାଧୋଇ, ମାଧୋଇ—

( ମାଧୋଇର ପ୍ରବେଶ )

ମାଧୋଇ—ମା, ଭାରି ଭୋକ, ମା ।

ବନ୍ଧୁ-ପତ୍ନୀ—ମାଧୋଇ ? କୁ'ଠି ଥିଲୁ, ବାପ ? ଆ, ଆ !

ମାଧୋଇ—ଉଁ ହୁଁ ମୋତେ ମାରିବୁ ।

ବନ୍ଧୁ-ପତ୍ନୀ—ଅରେ, ନା ରେ ନା । ଖାଇନୁ, ମୁହଁ ଶୁଖି ଯାଇଚି, ଆ' ଅଇଲୁ !

ମାଧୋଇ—ଖୁଆଇ ଦବୁ କହ, ତା' ହେଲେ—

ବନ୍ଧୁ-ପତ୍ନୀ—କୋଳରେ ବସେଇ ଖୋଇ ଦେବାରେ, ବାପ ।

ମାଧୋଇ—ଖାଜ ଖାଜ ଯଦି ସବୁତକ ଖାଇ ଦିଏ, ମା ।

ବନ୍ଧୁ-ପତ୍ନୀ—ଖୁଆଇଲେ ମାର ପେଟ ଭରେ—ଖାଇଲେ ନୁହେଁ ।

ମାଧୋଇ—ବୁଲି; ଶୋଭି ଅପା ପାଇଁ କାଲି ସକାଳକୁ ଅଜ ରହିବ କ'ଣ ?

ବନ୍ଧୁ-ପତ୍ନୀ—ଡମା !—କାଲିର କଥା କାଲି । ତୁ ଆଗ ଖା'ତ ।

( କୋଳରେ ବସାଇ ଖୁଆଇଲେ )

ମାଧୋଇ—ତୋତେ ମୁଁ ଖୁଆଇ ଦେବ, ମା ।

( ଖୁଆଇଲା )

ବନ୍ଧୁ-ପତ୍ନୀ—ମାଧୋଇ !—[ଅଶ୍ରୁଧାର ଦେଖାଗଲା ]

ବୁଲି—( ସ୍ୱପ୍ନ ବାଉଳାରେ ) ଭାଗି ଯୋକ, ଦୋଉ—

ବନ୍ଧୁ-ପତ୍ନୀ—ବୁଲି—(ବୁଲିକୁ ଗୁପୁଡ଼ାଇବାକୁ ଉଦ୍ୟତ ହେଲା ବେଲେ, ମାଧୋଇ ପଳାଇଲା )

ବନ୍ଧୁ-ପତ୍ନୀ—ମାଧୋଇ, ମାଧୋଇ !—ମୁଁ କ'ଣ ସ୍ୱପ୍ନ ଦେଖୁଥିଲି ? ଏଁ, ମୋର କୁଡୁଆ ଖାଲି । ନିଜ ହାତରେ କେବେ ଖାଉନ ! ଏମିତି ପେଟ ପୂରିକରି କେବେ ତ ଖାଇ ନ । ସଂସାରଟାକୁ ପେଟରେ ପୂରିଇ ଦେଲି, ନା କ'ଣ ?

---

## ସପ୍ତମ ଦୃଶ୍ୟ

[ ବଡ଼ଦାଣ୍ଡ । ସକାଳ ହୋଇଯାଇଛି । ବଡ଼ପଣ୍ଡା ଉଚ୍ଛନ୍ନ ହୋଇ ପ୍ରବେଶ କଲେ ]

ବଡ଼ପଣ୍ଡା—ସଂସାର ଉଚ୍ଛନ୍ନ ହୋଇ ଗଲା—ଦଅଁଙ୍କର ସୁନାଥାଳୀ ଚୋରି—ଅଚ୍ଛା ଭାଙ୍ଗ କଲି ମୁଁ କାଲି । କାହା କଥା—ଭଣ୍ଡାର ଘରେ ମୁଦପଡ଼ିଛି, ଚୋରି ?—ଏ ନିଶ୍ଚେ ଭଣ୍ଡାରମେକାପର କାମ । ନା, ମୁଁ ଠିକ୍ ଠିକ୍ କାମ ଅଦାୟ କରେ ବୋଲି, ମେକାପ, ଖୁଣ୍ଟିଆ, ବଡୁ, ପଢ଼ିଆରୀ, ସୁଆର, ଦଇତା ସମସ୍ତେ ମେଳ ବାନ୍ଧିଛନ୍ତି—ମତେ ବଦ୍‌ନାମି କରିବେ ବୋଲି । ଏ ଗୋଟାଏ ରଙ୍କ । ବେହୁପେ—କେଗାଘର, ଭାଙ୍ଗ ମଜ୍ଜିକ, ମୁଁ କରେ କି ତୁମେ କର,—ଚାଲି ଛାମୁଙ୍କ ପାଖକୁ, ଅଜ୍ଞା ସେଇଠି ବୁଝାମଣା !—ମୁଦୁଲିଏ ! ହୋ ମୁଦୁଲିଏ !

( ମୁଦୁଲିର ପ୍ରବେଶ )

ମୁଦୁଲି—ଜୁହାର, ଅଜ୍ଞା—

ବଡ଼ପଣ୍ଡା—ଡାକିଆଣ, ଜଣ ଜଣ କରି ସେବକମାନଙ୍କୁ ଏଇଠିକି—ବେହୁପେ—

ମୁଦୁଲି—ବେକରେ ଗାମୁଛା ପକେଇ ଘେନି ଆସୁଛି, ସା'ନ୍ତେ । (ମୁଦୁଲିର ପ୍ରସ୍ଥାନ)

ବଡ଼ପଣ୍ଡା—ପାକଲା ଗାମୁଛା ଭଡ଼ଭଡ଼ଇବେ—ଲାଲ-ମୋହନ ଖେଲେଇବେ—ବେହୁପେ—(ମୁଦୁଲିର ପୁନଃ ପ୍ରବେଶ)

ମୁଦୁଲି—ଚୋରିର ଧରା ପଡ଼ିଛି, ସା'ନ୍ତେ—ଷଣ୍ଡ, ଗାଈ, ବାଛୁରି କରି ପୁଞ୍ଜେ—ଏଇ, ଏଣେ ଆସୁଛନ୍ତି ।

ଲୋକେ—(ନେପଥ୍ୟେ) ଖଣ୍ଡା, ବଦ୍‌ମାସ୍—ଅରେ, ଜଲଦି ସାଙ୍କୋଳ ପିନ୍ଧା—ଦମା ଥୁଅ—ବେହୁଧଙ୍କୁ ଶୂଳ ଶୂଳ—

(ମୁଦରଥର ପ୍ରବେଶ)

ମୁଦରଥ—ଗୋଳମାଲ ବନ୍ଦକର—ଘେନି ଆସ ।

(ବନ୍ଧୁ, ବନ୍ଧୁପତ୍ନୀ, ଶୋଭି ଓ ବୁଲିର ପ୍ରବେଶ । ଦୁଇଜଣ ପାଇକ ମଧ୍ୟରୁ ଜଣକ ହାତରେ ସାଙ୍କୋଳ ଥାଏ )

ପାଇକ—ସାଙ୍କୋଳ ପିନ୍ଧାଇବୁ, ସା'ନ୍ତେ ?

ପଣ୍ଡା—ଅରେ ପଚାରୁଛୁ କ'ଣ ?—ବେଗେ, ବେଗେ—ଚୋର, ଖଣ୍ଡା, ବଦ୍‌ମାସ—

ମୁଦରଥ—ବଡ଼ପଣ୍ଡେ ! ହୁକୁମ୍ ଦେବ ମୁଁ, ନା ତୁମେ ?—

ପଣ୍ଡା—ଅଜ୍ଞା, ଭୁଲ ହୋଇଛି—ଛତିଶା ନିଯୋଗ ନାୟକଙ୍କ ଉଲେ ଆପଣଙ୍କ ପାହୁଆ—ମଜ୍ଜରସି ସେବକ ଆପଣ······

ମୁଦରଥ—ଶୁଣ ପଣ୍ଡେ ! ତୁମେ କାଲି ଦେଉଳକୁ ନ ଯାଇ, କାମରେ ଗଫ୍‌ଲତ କରି ଯେଉଁ ଭୁଲ

କରଚ, ସେଥିପାଇଁ, ଏ ସାଙ୍କୋଳ ତୁମକୁ ଅଗେ ପିନ୍ଧାଇବା ଦରକାର—

ବଡ଼ଘଣ୍ଟା—ମତେ—ମତେ— ?

ମୁଦ୍ରରଥ—ହଁ,—ହଁ ତୁମକୁ । ମୁଁ ପତ୍ନୀ-ମାହାରଠୁଁ ସବୁ ଖବର ପାଇଚି ।—ଓ୍ଵାଡ଼, ଦେଖ ବୃଦ୍ଧ—ତୁମେ ଯା' କହୁଚ, ତା' ସ୍ୱପ୍ନ ବୋଲି ମନେ ହେଉଚି— ପ୍ରକୃତ ଚୋର ଯିଏ ହେଉ, ମାଲ ଯେତେବେଳେ ତୁମ ନିକଟରେ, ସେତେବେଳେ, ମୋର କର୍ତ୍ତବ୍ୟ ତୁମ୍ଭି ପାରୁଥିବ ।

ବନ୍ଧୁ—ଆପଣ ଅନ୍ତ୍ର ହେଲା କରବେ ନି ।

ମୁଦ୍ରରଥ—ଓଃ, କର୍ତ୍ତବ୍ୟ କି କଠିନ, କି ନିର୍ଦ୍ଦୟ—

ବନ୍ଧୁ—କର୍ତ୍ତବ୍ୟ ଅଛି ବୋଲିତ, ମାନବର ହୃଦୟ ଅଛି, ଭାଇ ।

( ଆପଣାର ହାତ ବଢ଼ାଇଦେଲେ )

ପାଇକ—ହୁକୁମ, ସା'ନ୍ତେ ?

ମୁଦ୍ରରଥ—ଚୁପ୍—ନା—

[ଇଙ୍ଗିତରେ ହୁକୁମ୍ ଦେଇ, ମୁହଁ ବୁଲାଇ ନେଲେ ପାଇକ ବାନ୍ଧିବାକୁ ଲାଗିଲା]

ବୁଲି—ବାପା ! ବାପା ।

ବନ୍ଧୁ-ପତ୍ନୀ—ବୁଲି—( ବୁଲିକୁ ଅଟକାଇଲେ )

ଶୋଭ—( କାନ୍ଦିଲେ, କଇଁ କଇଁ ହୋଇ )

ବନ୍ଧୁ—ଶୋଭ ! ତୁ କାନ୍ଦୁଚୁ ?—

ଶୋଭ—ବାପା !—

ବନ୍ଧୁ—ଓଷାବ୍ରତ ପାଳି ଥାଉ, ଆଉ ନିଜକୁ ସମ୍ଭାଳି ଶିଖିନୁ ?

ଶୋଭ—( ଲୁହପୋଛି ଆତ୍ମସମ୍ବରଣ କରିବାକୁ ଲାଗିଲା )

ବନ୍ଧୁ—ବୁଲ—

ବୁଲ—ବାପା—( ଲୁଣ୍ଠାଇ ପକାଇଲା )

ବନ୍ଧୁ—ବୁଲଟିରେ—ଗାଁ' ରେଉ ଦେଖିଚୁ, ମୁଁ କେମିତି ଚୋରକୁ ଦଉଡ଼ାରେ ବାନ୍ଧ, ଶାସ୍ତି ଦେଇ ଥାଏ ?

ବୁଲି—ତୁମେତ ଚୋରି କର ନି, ବାପା ?

ବନ୍ଧୁ—କରିଚି ।

ବୁଲ—କାହିଁକି କଲ ?

ବନ୍ଧୁ—ପେଟ ଲାଗି ।

ବୁଲି—ତୁମେ ପେଟଲାଗି ଚୋରି କରିପାର ନା, ବାପା— ଧାନ-ଡଙ୍ଗା କଥା ଥରେ—

ବନ୍ଧୁ—ତୁ ଗଲୁ ଗଲୁ ମା । ଚାଲ, ମୋତେ ଏଠୁ ଶୀଘ୍ର ନେଇ ଚାଲ—

ମୁଦ୍ରରଥ—ତୁମକୁ ବି ସାଥିରେ ଯିବାକୁ ହେବ, ମା—

ବନ୍ଧୁ-ପତ୍ନୀ—ପିଲାମାନେ ?—

ମୁଦ୍ରରଥ—ନା—

ବନ୍ଧୁ-ପତ୍ନୀ—ତେବେ···?

ବନ୍ଧୁ—ପିଲାଙ୍କ ଖବର ? ବନ୍ଧୁ ନେବେ—

ବନ୍ଧୁ-ପତ୍ନୀ—ବନ୍ଧୁ ଜାଣିଲେ ତ ?

ବନ୍ଧୁ—ରଜା-ବନ୍ଧୁ ମୋର—ତାଙ୍କୁ ଅଜଣା କ'ଣ ?

ବୁଲ—ବାପା—

ବନ୍ଧୁ—ଚାଲ—[ ମୁଦ୍ରରଥଙ୍କ ନିର୍ଦ୍ଦେଶ ମତେ, ବନ୍ଧୁ ଓ ବନ୍ଧୁପତ୍ନୀଙ୍କୁ ନେଇ ପାଇକମାନେ ଚାଲି ଗଲେ ]

ମୁଦ୍ରରଥ—ତୁମେ ମୋ କୋଳକୁ ଆସ, ମା—

ବୁଲ—କାହିଁକି ?

ଶୋଭ—ଆ' ବୁଲ—( ବୁଲକୁ କାଖେକରି ଚାଲିଗଲା )

ମୁଦ୍ରରଥ—ବଡ଼ପଣ୍ଡେ, ତୁମେ ସବୁ 'ଛତଣା ନିଯୋଗ ନାୟକ'ଙ୍କ ଘରକୁ ଚାଲ, ମୁଁ ଏଇ ପିଲା ଦୁଇଟିର ବନ୍ଦୋବସ୍ତ କରିଦେଇ ଯାଉଚି ।

( ଅନ୍ୟ ସମସ୍ତଙ୍କ ପ୍ରସ୍ଥାନ )

[ ନାରାୟଣ ଓ ସଦା'ର ବିପରୀତ ଦିଗରୁ ପ୍ରବେଶ ]

ନାରାୟଣ—ତୁ ପୁଣି ମୋ' ସାଙ୍ଗେ ସାଙ୍ଗେ, କାହିଁକି ?— ଏମିତ ଲାଗିରହିଥିବୁ ନା କ'ଣ ?

ସଦା—ଥିଙ୍କ ପରି ଲାଗି ରହିଥିବି, ସା'ନ୍ତେ ।

ନାରାୟଣ—କାହିଁକି ?

ସଦା—ମୋର ମା କହୁଚି ।

ନାରାୟଣ—ମା ?

ସଦା—ହଁ—ମା ଆସନ୍ତୁ । ଦାନ୍ତପଡ଼ି ବେଗି ବେଗି ଘଷି ପକାନ୍ତୁ—ଗୋଡ଼ ହାତ ଧୋଇ ପକାନ୍ତୁ । ଘୋଡ଼ା ଟପଟେଇ ଟପଟେଇ ଆସିଛନ୍ତି—ଦେହ ପଚ୍ଚିସ ହୋଇଥିବ—ଘଷି ମୋଡ଼ି ଦେବି—ତେଲ ଲଗେଇ ଦେବି ।

ନାରାୟଣ—ଆରେ, ସଦା—ତୁ ମତେ ଏଣିକି ଆଉ ସାଆନ୍ତେ ବୋଲି ଡାକିବୁ ନି ।

ସଦା—ମା ବାଡ଼େଇବ ।

ନାରାୟଣ—'ଭାଇନା' ବୋଲି ଡାକିବାକୁ କହିଲେ ?

ସଦା—ମା କୁଣ୍ଢେଇବ । ନାଇଁ ଲୋ ମା—ଛୁହ, ମୁଁ ମା'କୁ ପଚାରି ଆସେ ।

( ନିର୍ମଳାର ପ୍ରବେଶ )

ନିର୍ମଳ—କ'ଣ ପଚାରିବୁ କିରେ, ସଦା ?—

ସଦା—ସାଆନ୍ତେ ମୋତେ 'ଭାଇନା' ବୋଲି ଡାକିବାକୁ କହୁଛନ୍ତି ।

ନିର୍ମଳ—ଭାଇନାର କାମ କ'ଣ କରୁଚୁ, ବତା ତ ?

ସଦା—ଆସ ବେଗେ, ଭାଇନା—ନାଇଁତ ମା ସବୁ ଭଣ୍ଡାର ଭରିଦେବ । ତମେ ଏତେଦିନ ମା ପାଖେ ରହିଚ—ମା' କଥା କ'ଣ ବୁଝିଁ ନ ?

( ସଦା ଚାଲିଗଲା )

ନାରାୟଣ—ଖାଣ୍ଟି ! ତୁମେ ବୟସରେ ଏତେ ଛୋଟ—ମହତ ପଣରେ ଏତେ ବଡ଼ ! ମାଟି ମୁଣ୍ଡାକୁ ବି ସୁନା କରି ଦେଲ ତ !—

ନିର୍ମଳ—ବାଜେ କଥା ଛାଡ଼ । ତୀର୍ଥକୁ ଆସିଛ, ତୀର୍ଥ କଥା ଭାବ ।

ନାରାୟଣ—ଆଚ୍ଛା, ତୁମେ କାହିଁକି ସଦାବେଳେ ମୋ' କଥା ଭାବ ?

ନିର୍ମଳ—ତୁମେ ସେ ଭାବନାରୁ ମୁକ୍ତ କରିଦେଲେ ହେଲା !

ନାରାୟଣ—ଘରକୁ ଲକ୍ଷ୍ମୀ ଆଣିବା, ତୁମର ଏଇ ଭାବନା ତ ?

ନିର୍ମଳ—ମୋର ଏକା ନୁହେଁ—ପ୍ରଜାପାଟକ, ସଭିଙ୍କର ।

ନାରାୟଣ—ହେଲେ, ଲୋକେ ବାହା କରନ୍ତି ନିଜ ନିଜ ସୁଖପାଇଁ—

ନିର୍ମଳ—ତୁମେ କରିବ, ଦୁନିଆର ସୁଖପାଇଁ ।

ନାରାୟଣ—ଖାଣ୍ଟି ! ତୁମେ ମାନବୀ, ନା ଦେବୀ !—

ନିର୍ମଳ—ସଦା—( ଡାକିଲା )

( ସଦାର ପ୍ରବେଶ )

ସଦା—ବାପା ତେଣେ ଡାକୁଛନ୍ତି, ତୁ ଏଣେ—ମଝିରେ ମୁଁ କ'ଣ କରେ ?—ପାଣି ତ ରଖି ଅଇଲି—ତୁ ତ ଭାଇନାକୁ ଧରି ରହିଗଲୁ—ଆସତ, ଭାଇନା !

ନାରାୟଣ—ଖାଣ୍ଟି, ମତେ ବି ଏଣିକି ନାଁଧରି ଡାକିବ—

ନିର୍ମଳ—ଗୋଟେ ସର୍ତ୍ତରେ ।

ନାରାୟଣ—ମୁଁ ବାହା ହେବି, ଏଇ ସର୍ତ୍ତରେ ତ ? ହେଲେ, ପୁଅ ମା ଭିତରେ ତ ସର୍ତ୍ତର ପ୍ରଶ୍ନ ନ ଥାଏ ?

ନିର୍ମଳ—'ନାରଣ' ।

ନାରଣ—ମା—

ସଦା—ମା ବୋଲି ନୂଆ ଡାକିଲ—କାହିଁ ମା'ର ଗୋଡ଼ ଧୂଳି ତ ନେଲ ନି, ଭାଇନା ?

ନାରଣ—ଠିକ୍ କହିଚୁ, ସଦା । ( ନିର୍ମଳାର ଗୋଡ଼ଧୂଳି ନେବାକୁ ଯାଉଥିଲେ )

ସଦା—ହଠାତ୍ ଛୁହ ଛୁହ—ମା ଗାଳିଦେବ । ମୁଁ ତମକୁ ନୂଆକରି 'ଭାଇନା' ବୋଲି ଡାକିଲି, ତୁମ ଗୋଡ଼ ଧୂଳି ତ ନେଇ ନି—

[ ଗୋଡ଼ଧୂଳି ନେଲା । ନାରଣ ମଧ୍ୟ ନିର୍ମଳାର ଗୋଡ଼ ଧୂଳି ନେଲା ]

( ଗୋବିନ୍ଦ ପ୍ରବେଶ କରି )

ଗୋବିନ୍ଦ—ଏ କ'ଣ ଦେଖୁଚି ! ( ଚାଟକା ହୋଇଗଲେ )—ସଦା ! ମା'କୁ ଛାଡ଼ି ନେଇ ଯା'ତ ।

ସଦା—ସେଇଠିକି ତ, ବାପା ?

ଗୋବିନ୍ଦ—ହଁରେ, ଓଲୁ ।

ନିର୍ମଳ—କେଉଁଠିକି ରେ ?

ସଦା—ବାପା ଗାଳିଦେବ—ନାରଣଭାଇନା ଅଛନ୍ତି—ନାରଣ ଭାଇ ଥାଇ, କହିବାକୁ ମନା କରିଛି ।

ନିର୍ମଳ—କି କଥା ?

ସଦା—ଶୋଭି, ଭୁଲି ଯେଉଁଠି ଅଛନ୍ତି, ସେଇ କଥା !

ଗୋବିନ୍ଦ—ସଦା !

ସଦା—ତୁମେ ଏଇ କଥା କହିବାକୁ ମନା କରି ନ ଥିଲ, ବାପା ?

ନିର୍ମଳ—ଆ’ତ ସଦା ।—

( ସଦା ଓ ନିର୍ମଳର ପ୍ରସ୍ଥାନ )

ନାରାୟଣ—ହଁଃ । ତୁମେ ଠିକ୍ କହୁଚ, ଭାଙ୍ଗ ଖାଇ ନ ଥିବା ଲୋକଙ୍କୁ ଭାଙ୍ଗ ନିଶା ଧରେ—ସେଇଆ ଦେଖୁଚି ।
ଯାଗା । କାହିଁକି ନା, ଭାଙ୍ଗ ନ ଖାଇ ବି ଲୋକଙ୍କୁ ଭାଙ୍ଗ ନିଶା ଧରେ—ସେଇଆ ଦେଖୁଚି ।

ଗୋବନ୍ଦ—ହେଲେ, ଭାଙ୍ଗ ନିଶାର ସ୍ୱପ୍ନ ମୁଁ ଦେଖୁ ନି, ସା’ନ୍ତେ । ପାହାନ୍ତା ପହରର କନକ ଛଟା ମୋ ଆଖିଆଗରେ—କେବଳ, କଳା ବଉଦଟିଏ ଅନ୍ତରାୟ । ଆପଣ ବସାକୁ ଚାଲନ୍ତୁ, ମୁଁ ସବୁ ଫିଟେଇ କହିବି ।

( ନାରାୟଣ ଓ ଗୋବନ୍ଦର ପ୍ରସ୍ଥାନ )

( ନିର୍ମଳ ଓ ଶୋଭର ପ୍ରବେଶ )

ଶୋଭ—କାହାନ୍ତି ?

ନିର୍ମଳ—ବ୍ୟସ୍ତ ହ’ନା, ଶୋଭ ।

ଶୋଭ—ଏହି ଏଣେ ଆସୁଚନ୍ତି—ମୋତେ ତୁମର ଧୈର୍ଯ୍ୟ ଦିଅ, ଧୈର୍ଯ୍ୟମୟୀ—

ନିର୍ମଳ—ଆଶୀର୍ବାଦ କରୁଚି । ( ଚାଲିଗଲେ )

( ନାରାୟଣ ପ୍ରବେଶ କଲେ ସାବେଗେ )

ନାରାୟଣ—ଶୋଭ—

[ ଶୋଭ ନମସ୍କାର କଲେ, ଧୈର୍ଯ୍ୟ ଧରି ]

ନାରାୟଣ—( କଥା କହି ପାରିଲେ ନାହିଁ, ଆଖିରେ ଲୁହ ଦେଖାଗଲା )

ଶୋଭ—ଛି, କାନ୍ଦୁଚ ?

ନାରାୟଣ—ଶୋଭ—( ଭାଙ୍ଗି ପଡ଼ୁଥିଲେ )

ଶୋଭ—ଭାଇ—

ନାରାୟଣ—( ଆତ୍ମ ସମ୍ବରଣ ପୂର୍ବକ ଲୁଗା ତାନିରୁ ସିନ୍ଦୂର ବେଲପତ୍ରୀ ବାହାର କରି ) ମା-ବିରଜାଙ୍କର ରକ୍ତ ସିନ୍ଦୂର, ଲଗେଇ ଦିଅ ତ କପାଳରେ

ଶୋଭ—ମୋର ବୁକୁର ପ୍ରୀତି ରକ୍ତରେ ଗୋଳି, ତାହା ଲଗାଇ ଦେବି ।

( ନିଜ ବୁକୁରେ ଛୁଆଁଇ ସିନ୍ଦୂର ଟିକାଇ ଦେଲା )

ନାରାୟଣ—ଆଉ ଭୟ ନାହିଁ ଶୋଭ, ମୁଁ ବାହାରିଲି ରାଜସଭାକୁ । ଆଜି ପ୍ରମାଣ କରିବି—ତୁମର ବାପା, ବୋଉ ବୈରୀ ନୁହନ୍ତି—ବୈରୀ ମୁଁ ।

( ଦ୍ରୁତ ଚାଲିଗଲେ )

ଶୋଭ—ନାରଣ ଭାଇ—ନାରଣ ଭାଇ—

( ଅନୁସରଣ କଲେ )

[ ସଦା ଓ ବୁଲି ଗୋଟିଏ ଚଦରକୁ ଫିଟେଇ ଧରି ବାନ୍ଧୁ ବାନ୍ଧୁ ପ୍ରବେଶ କଲେ ]

ସଦା—ଧ’ ମ, ଖେଳିବା ପରା—

ବୁଲି—ନା, ସଦା ଭାଇ—ବାପା, ବୋଉ ପାଇଁ ମନ କାମିଡ଼ି ହଉଚି ।

ସଦା—ଖେଳରେ ମନଦିଆ । ବାପା, ବୋଉ ତାଙ୍କର ଖେଳ ଖେଳୁଚନ୍ତି—ଆମେ ଆମର ଖେଳ ଖେଳିବା ।

ବୁଲି—ସଦାଭାଇ । ବାପା ନିଶ୍ଚେ ତାଙ୍କ ମନକଥା ମୋତେ ଲୁଚଉଛନ୍ତି । ଭଲ କଥା ମନେ ପଡ଼ିଚି, ସଦାଭାଇ—ତୁ ଗୋଟିଏ କାମ କରିପାରିବୁ ?

ସଦା—କି କାମ, ବଉଉନୁ ? କୋଳି ଗଛରେ ଚଢ଼ି ଆମ୍ବ ପାରିବି, କି ପଣସ ଗଛରେ ଚଢ଼ି ନଡ଼ିଆ ପାରିବି ?

ବୁଲି—ମୋର ମାଧୋଇ ଭାଇକୁ ଡାକି ଆଣି ପାରିବୁ ?

ସଦା—ମାଧୋଇ ଭାଇ ?

ବୁଲି—ହଁ, ସେ ଭଲେ ବାପାର ମନକଥା ଠିକ୍ ଠିକ୍ କହିଦେବ ।

ସଦା—ଆଲୋ, ସେ କିଏ ? ତାକୁ ପାଇବି କେଉଁଠୁ ?—ମୋଠାରୁ ଛୁଆ, ନା ତୋଠାରୁ ବଡ଼ ?

ବୁଲି—ସଦା ଭାଇ ! ସେଇ ସିଂହଦ୍ୱାର ମୁହଁକୁ ଚାଲ ତ—ସେଇଠି ସେ ଥିବ ।

ସଦା—ବେଶ୍ ମୁଁ ସିଂହ ହୁଏ, ତୁ ସିଂହବାହିନୀ ହ’—ତେବେ ତ ଯିବା ?

ବୁଲି—ଠିକ୍ କଥା ।

( ସେହି ଭଳି ହୋଇ ପ୍ରସ୍ଥାନ )

---

## ଅଷ୍ଟମ ଦୃଶ୍ୟ

[ ରାଜସଭା । ପାତ୍ର ମନ୍ତ୍ରୀସହ ରାଜା ପ୍ରତାପରୁଦ୍ର ଦେବ ମହାସମାରୋହରେ ସମାସୀନ । ବିଗୁର-ପ୍ରାର୍ଥୀ ବନ୍ଧୁମହାନ୍ତି ଓ ବନ୍ଧୁପତ୍ନୀ ଏକ ଆଡ଼େ, ଆଉ ଅନ୍ୟଆଡ଼େ ନାରାୟଣ ଓ ଗୋବିନ୍ଦ ଦଣ୍ଡାୟମାନ ]

ରାଜା—ଠିକ୍ କଥା କୁହ, ବୃଦ୍ଧ !

ବନ୍ଧୁ—ଠିକ୍ କଥା ଯା', ତାହାହିଁ ସ୍ମୁଖରେ ନିବେଦନ କରୁଛି ।

ରାଜା—ଆଚ୍ଛା, ଏହି ଶେଷଥର । ଯା' ଯା' ପ୍ରଶ୍ନ କରୁଛି, ତା'ର ଠିକ୍ ଠିକ୍ ଉତ୍ତର ଦିଅ ।

ବନ୍ଧୁ—ପଗ୍ଗ୍ର କରନ୍ତୁ ।

ରାଜା—ତୁମେ ପିଲା କୁଟୁମ୍ବ ଘେନି ବନ୍ଧୁ ଘରକୁ ଆସିଥିଲ ?

ବନ୍ଧୁ—ଆଜ୍ଞା ।

ରାଜା—ତୁମ ବନ୍ଧୁଙ୍କର ନାମ ?

ବନ୍ଧୁ—ଜଗବନ୍ଧୁ ।

ରାଜା—ପ୍ରକୃତ ନାମ ତ ?

ବନ୍ଧୁ—ଆଜ୍ଞା ।

ରାଜା—ଠିକ୍ ଜାଣ ?

ବନ୍ଧୁ—ଠିକ୍ ଜାଣେ ।

ରାଜା—ତୁମେ କହୁଚ, ସେ ରାଜା ?

ବନ୍ଧୁ—ଆଜ୍ଞା, "ରାଜା" ।

ରାଜା—ତାଙ୍କୁ କେବେ ଦେଖିଚ ?

ବନ୍ଧୁ—ନା ।

ରାଜା—ଅଥଚ ସେ ତୁମର ବନ୍ଧୁ !

ବନ୍ଧୁ—ଘନିଷ୍ଠ ବନ୍ଧୁ ।

ରାଜା—ତାଙ୍କର ଘର ?

ବନ୍ଧୁ—ସେହି ନଅର । ( ଦେଖାଇ ଦେଲେ )

ରାଜା—ତାକୁ କହନ୍ତି ବଡ଼ ଦେଉଳ, ଜାଣ ?

ବନ୍ଧୁ—ମୋର ବନ୍ଧୁ-ରାଜାଙ୍କର ଆବାସ, ଏଇ କଥା ଜାଣେ ।

ରାଜା—ତୁମେ ସେହି ଆବାସ ଭିତରକୁ ଯାଇଥିଲ ?

ବନ୍ଧୁ—ଯିବାର ଚେଷ୍ଟା କରିଥିଲି । କାରଣ ଅନ୍ୟ ।

ରାଜା—କାରଣ ଯାହା ହେଉ, ପାଇକେ ଘଉଡ଼ାଇ ଦେବାରୁ ପେଜନାଳା ପାଖରେ ଆସି, ଶୋଇଥିଲ ?

ବନ୍ଧୁ—ଆଜ୍ଞା ।

ରାଜା—ତା' ପର, କ'ଣ ହେଲା ।

ବନ୍ଧୁ—ରାତି ଅଧରେ, ଖଟଣ୍ଡି ଦୂରେ ଥାଇ ଜଣେ ସେବକ, ମୋ ନାଁ ଧରି ଡାକିଲେ, ମୁଁ ପାଖକୁ ଗଲିରୁ...

ରାଜା—ଏହି ରତ୍ନଥାଳୀରେ ଥାଳିଏ ଭୋଗ ବାଢ଼ି ଆଣିଥିଲେ, ଥାଳିଆ ସମେତ ତାହା ବଢ଼ାଇ ଦେଲେ ?

ବନ୍ଧୁ—ଆଜ୍ଞା ।

ରାଜା—ତା'ପରେ ଥାଳୀଟି ଫେରାଇ ଦେବାକୁ ଗଲ, ଦେଖିଲ ସେ ନାହାନ୍ତି ?

ବନ୍ଧୁ—ମଣିମା ।

ରାଜା—( ବନ୍ଧୁ-ପତ୍ନୀ ପ୍ରତି ) ମା, ତୁମର ସ୍ୱାମୀ ଯାହା ଯାହା କହିଗଲେ, ଏ ବାହାରେ ତୁମର କିଛି କହିବାର ଅଛି ?

ବନ୍ଧୁ-ପତ୍ନୀ—ଅଛି ।

ରାଜା—କୁହ ।

ବନ୍ଧୁ-ପତ୍ନୀ—ମୋର ବିଶ୍ୱାସ, ଜଗବନ୍ଧୁ ନିଜେ ଆସିଥିଲେ ।

ରାଜା—ତୁମେ ତ ଆଉ ତାଙ୍କୁ ଆଖିରେ ଦେଖିନାହଁ ? ( ଛିଡ଼ା—ସଭାସଦ୍‌ଗଣ । ଏମାନଙ୍କ ଉକ୍ତିରୁ ବେଶ୍ ବୁଝିହୁଏ ଯେ, ସ୍ୱୟଂ ଜଗତ୍‌ପତି ଜଗବନ୍ଧୁ ନିଜ କୋଠ ଭଣ୍ଡାରରୁ ନିଜର ରତ୍ନଥାଳୀ ଚୋରିକରି ଆଣି, ତାଙ୍କର ପରମବନ୍ଧୁ ବନ୍ଧୁ ମହାନ୍ତିଙ୍କୁ ଦେଇ ଅନ୍ତର୍ଦ୍ଧାନ ହୋଇଥିଲେ । 'ଜଗବନ୍ଧୁ' ନାମରେ ଯେତେବେଳେ ଆମର କୌଣସି ସେବକ ନାହାଁନ୍ତି, ଏବଂ ତାକୁ ଚିହ୍ନାଇଦେବାକୁ ଏ ବୃଦ୍ଧ ମଧ୍ୟ ଅକ୍ଷମ, ସେତେବେଳେ ଜଗତ୍‌ପତି ଜଗବନ୍ଧୁଙ୍କ ଉପରେ ସମସ୍ତ ଦୋଷ ବର୍ତ୍ତିଛି । ମାତ୍ର, ଜଗବନ୍ଧୁଙ୍କୁ ଆମେ ଦୋଷୀ ସାବ୍ୟସ୍ତ କରି

ନ ପାରୁ । ଯେ ହେତୁ, ଆସାମୀ ନିଜ ମୁହଁରେ
ସ୍ୱୀକାର କରୁଛି ଯେ, ଉଭୟଙ୍କ ମଧ୍ୟରେ କେବେ
ହେଲେ ଦେଖା ସାକ୍ଷାତ୍ ହୋଇନାହିଁ ।

ବନ୍ଧୁ—ମାନ୍ୟ,—ଘନିଷ୍ଠ ସମ୍ବନ୍ଧ ଅଛି, ମହାରାଜ ।

ରାଜା—ଘନିଷ୍ଠ ପ୍ରୀତି ମଧ୍ୟ ?

ବନ୍ଧୁ—ତା' ନ ହେଲେ, ଶୂନ୍ୟେ ଶୂନ୍ୟେ ସେ ବାଟି
କଢ଼େଇ ଆଣି ନ ଥାନ୍ତେ ।

ରାଜା—ଶୂନ୍ୟେ ଶୂନ୍ୟେ ରତ୍ନଥାଳୀ ମଧ୍ୟ ଦେଇ ନ
ଥାନ୍ତେ ?—କିଏ ଅଛ ? ବାନ୍ଧ ଏହି ଗାଲୁଆ,
ବାହାପିଆ, ତସ୍କରକୁ । ତୁମର ଦଣ୍ଡ—

ନାରାୟଣ—ଦଣ୍ଡେ ଅପେକ୍ଷା, ମହାରାଜ ।

ରାଜା—ଯୁବକ, ତୁମର ସବୁ କଥା ମନ ଦେଇ
ଶୁଣିଛି । ବାଳକାଟି ପାଇଁ ଅବଶ୍ୟ ଦୁଃଖିତ—
ହେଲେ, ତୁମର ଚରିତ୍ର ସଂଶୋଧନ ଦେଖି
ଆନନ୍ଦିତ ।

ନାରାୟଣ—ଅଧିକ ଆନନ୍ଦିତ ହେବେ, ଯଦି ମୋତେ
ଦଣ୍ଡ ଦିଅନ୍ତି ।

ରାଜା—ତୁମେ ତ ଆଜି ଚୋରି କର ନାହିଁ ?

ନାରାୟଣ—ଚୋରି କରାଇଛି, ମୁଁ ।

ରାଜା—କିପରି ?

ନାରାୟଣ—ଆଜି ଯଦି ଏହି ମହାଜନ ଚୋରି
କରିଥା'ନ୍ତି, ତେବେ କରିଛନ୍ତି ଅଭାବରୁ ।

ରାଜା—ଅଭାବରୁ ସ୍ୱଭାବ ନଷ୍ଟ ହୁଏ, ଏ'କଥା ଯେ
ଦଣ୍ଡ ଦେଲାବେଳେ, ବିଚାର ନ କରିବା, ତା
ନୁହେଁ ।

ନାରାୟଣ—ତେବେ, ଅଭାବ ଯେ ସୃଷ୍ଟି କରିଛି, ତା'
କଥା ମଧ୍ୟ ବିଚାର କରିବାକୁ ସଙ୍କୋଚ କରିବେ
ନାହିଁ, ମହାରାଜ ।

ରାଜା—ତାହାହେଲେ, ତୁମେ ବି ଚୋର, ଏହିକଥା
କହିବାକୁ ଚାହଁ ?

ନାରାୟଣ—ଅସଲ ଚୋର, ମହାରାଜ ।—ଥରେ ସୂକ୍ଷ୍ମ
ଦୃଷ୍ଟିରେ ବିଚାର କରି ଦେଖନ୍ତୁ,—ଆମେ ଏ
ଜଗତରେ କ'ଣ କରିଥାଉଁ ? ଯାହା ସ୍ଥୂଳ
ଦୃଷ୍ଟିରେ ଦେଖାଯାଏ—ସାଧାରଣ ବୁଦ୍ଧିରେ
ଯାହାକୁ ହିଁ ସତ୍ୟ ବୋଲି ଜାଣି, ତା'ର ବିଚାର
କରିଥାଉଁ; କିନ୍ତୁ ଅନେକ ସମୟରେ, ବାହାରେ
ଯା, ପ୍ରକାଶ ପାଏ—ତାହା ତ ମିଥ୍ୟା—
ଅନ୍ତର୍ନିହିତ ତଥ୍ୟର ବିକୃତ ଛାୟା, ସେ କଥା
ତଳେଇ ଦେଖୁନା । ଆମେ ଚୋରକୁ ଶାସ୍ତି
ଦେଉଁ—ଶିକ୍ଷା ସକାଶେ, ସମାଜର ହିତ ସକାଶେ;
କିନ୍ତୁ, ଅସଲ ଚୋରକୁ ଛାଡ଼ିଦେଇ ନକଲି
ଚୋରକୁ ଦଣ୍ଡିବା ଦ୍ୱାରା, ଆମେ ସେହି ଉଦ୍ଦେଶ୍ୟ
କେତେଦୂର ହାସଲ କରିପାରୁ, ତା' ଥରେ
ବିଚାର କରି ଦେଖନ୍ତୁ, ମହାରାଜ ।

ରାଜା—ଅଚ୍ଛା, ତୁମେମାନେ ଯାଇ ଅନ୍ୟତ୍ର ଅପେକ୍ଷା
କର—ମୋତେ ଟିକିଏ ଭାବିବାକୁ ଦିଅ । (ରାଜା
ବ୍ୟତୀତ ସମସ୍ତେ ଚାଲି ଗଲେ) ଏକଆଡ଼େ,
ବୃଦ୍ଧର ଅତିଭୌତିକ ଚୋରିକଥା—ଅନ୍ୟଆଡ଼େ
ଯୁବକର ଚୋରି ସମ୍ବନ୍ଧେ ଅତି ଗୂଢ଼ ତଥ୍ୟ;—
ତେବେ ଅତି ସାଧାରଣ ଚୋରଟି କିଏ ?

ଭୁଲି—(ଭୁଲିର ବେଗେ ପ୍ରବେଶ) ମାଧୋଇ—
ମାଧୋଇ ଚୋରି କରିଛି, ରାଜା ।—ତୁମେ, ରାଜା ?

ରାଜା—ତୁମେ କିଏ ?

ଭୁଲି—ମୁଁ ଭୁଲି—ଚୋରକୁ ବାନ୍ଧି ଆଣିଛି । କାହିଁ,
କାହିଁ ଗଲା, ଚୋରମୋ-ଧୋଇ ? (ଚାଲିଗଲା)

ରାଜା—ଚୋର ମାଧୋଇ ?—ମାଧୋଇ, ଚୋର !
[ଶଙ୍କିତ ହୋଇ ତନ୍ଦ୍ରାଚ୍ଛନ୍ନ ହେଲେ । ସ୍ୱପ୍ନ
ଦେଖିଲେ—କାନ୍ଥରେ ଯେଉଁଠି ଜଗନ୍ନାଥ ପଟି
ଥିଲା, ତାହା ଅନ୍ତର୍ହିତ ହୋଇଗଲା । ସେହିଠାରେ
ମାଧୋଇ ନିଜରୂପରେ ଦେଖାଦେଇ କହିବାକୁ
ଲାଗିଲେ— ]

ମାଧୋଇ—ହଁ ରାଜା । ତୁମର ପ୍ରିୟ ମାଧୋଇ-ରାଜା
ଚୋର—ଯେଉଁ ନାମରେ ମୋତେ ଡାକିବାକୁ
ତୁମେ ଶ୍ରଦ୍ଧା କର, ସେହି ମାଧୋଇ-ରାଜା । ଶୁଣ,
ରାଜା !—ବନ୍ଧୁ ମହାନ୍ତି ମୋ'ର ପରମ ବନ୍ଧୁ—
ସେ ଭକ୍ତି ସହିତରେ ପିଲା କୁଟୁମ୍ବ ନେଇ ମୋ
ଘରକୁ ଆସିଛି ।—ମୁଁ ନିଜେ କାଲି ମୋ
ମଣୋହିରୁ ଭଲ ଭଲ ଭୋଗ କାଢ଼ି ରଖିଥିଲି—

ସେବକେ ଦେଉଳ ବନ୍ଦ କରି ଗଲାପରେ, ନିଜ ଥାଳରେ ତାହା ବାଢ଼ି, ବନ୍ଧୁଙ୍କୁ ଦେଇଥିଲି । ବର୍ତ୍ତମାନ ସେହି ଗୋପ୍ୟ କଥା ଛାଡ଼, ବନ୍ଧୁ ସମାଦରରେ, ବନ୍ଧୁ-ଚର୍ଚ୍ଚା କର । ]

ରାଜା—ମାଧୋଇ-ରାଜା—ମାଧୋଇ-ରାଜା ।

[ ଜଗନ୍ନାଥ ପଡିଆଡ଼େ ଚାହିଁ ଦେଖିଲେ, ମାଧୋଇ ନାହିଁ ]

ଏ କି ଅଭୁତ ସ୍ୱପ୍ନ !

---

## ନବମ ଦୃଶ୍ୟ

[ ବଡ଼ଦାଣ୍ଡ । ମୁଦ୍ରରଥ, ବନ୍ଧୁ ଓ ବନ୍ଧୁ-ପତ୍ନୀ ସଙ୍ଗରେ ଘେନି ପ୍ରବେଶ କଲେ । ବନ୍ଧୁ ଓ ବନ୍ଧୁ-ପତ୍ନୀଙ୍କର ନୂଆ ପରିଧାନ ଥିଲା ]

ବନ୍ଧୁ—ମୁଁ ସ୍ୱପ୍ନ ଦେଖୁ ନି ତ, ମୁଦ୍ରରଥେ ?

ମୁଦ୍ରରଥ—ଆପଣ, ଯାହା ସତ୍ୟ, ତାହାହିଁ ଦେଖୁଛନ୍ତି ।

ବନ୍ଧୁ—ଭୁଲିଆ ବୋଉ ତୁମେ ବି ସେଇଆ କହିବ, ମୁଁ ଜାଣେ ।

ବନ୍ଧୁ-ପତ୍ନୀ—ମନ ଥିର କର—ବିଶ୍ୱାସକୁ ମୂଳକର ।

ବନ୍ଧୁ—ହେଲେ, ମୁଁ ଗୋଟାଏ ପଚାରେ, ଈଶ୍ୱର—ମୋତେ ବଡ଼ ସକାଳୁ ଉଠାଇ—ତୀର୍ଥ ଜଳରେ ସ୍ନାନ କରାଇ—ସୁନ୍ଦର ବାସ ପିନ୍ଧାଇ, ଏତେ ମର୍ଯ୍ୟାଦା ଦେଖାଇବାର କାରଣ, ମୁଦ୍ରରଥେ ?

ମୁଦ୍ରରଥ—ମୋତେ ପଚାରୁଛନ୍ତି, ଅବଧାନେ ?—ମୁଁ କହିବି, ମହିମାଙ୍କ ହୁକୁମ ।

ବନ୍ଧୁ—"ମହିମାଙ୍କ ହୁକୁମ"—ଭୁଲିଆ ବୋଉ ! ଏଥର ବୁଝିଲି, ଖଣ୍ଡ ଈଶ୍ୱରକୁ ଦଣ୍ଡଦେବା ଆଗରୁ ତାକୁ ଏମିତି ସଜେଇ ପରିହାସ କରିବା ଏଠା ନିୟମ । ଚାଲନ୍ତୁ ରାଜସଭାକୁ, ମୁଦ୍ରରଥ ଆପଣେ !

( ସମସ୍ତଙ୍କର ପ୍ରସ୍ଥାନ )

( ଗୋବିନ୍ଦ ଓ ନିର୍ମଳର ପ୍ରବେଶ )

ଗୋବିନ୍ଦ—ତୁମେ ଆଉ ଡେରି କରନା, ନିର୍ମଳ—ମୁଁ ଯେମିତି କହିଲି, ତୁମେ ଠିକ୍ ସେମିତି ସଜେଇ ଶୋଭକୁ ଦେଉଳକୁ ଘେନିଆସ—ଏ ମହାରାଜାଙ୍କର ଅଜ୍ଞା-ଶିଟାଉ ।

ନିର୍ମଳ—ଦେଉଳକୁ ଯିବ—ଏତେ ସବୁ ହେଙ୍ଗାମ ?

ଗୋବିନ୍ଦ—ମୁଁ କି ଜାଣେ ?

ନିର୍ମଳ—ଦେଖ, ସେ ଚାଲିକି ଆଉ କା' ପାଖରେ ଖଟେଇବ, ନିର୍ମଳ ପାଖେ ନୁହେଁ ।

ଗୋବିନ୍ଦ—ତେବେ, ଅଗୁଳିକି କଥାଟି କହେଁ ।

ନିର୍ମଳ—କ'ଣ ?

ଗୋବିନ୍ଦ—ରାଜାଘରୁ ଅଳଙ୍କାର ପତ୍ର ଆସିଛି, ଶୋଭି ଘେନାବ ।—ତୁମେ ଯଦି ତୁମର ବାହାଦନରୁ ସେହି ମଥାମଣିଟି ଆଜି ଘେନନ୍ତ—

ନିର୍ମଳ—ବୁଢ଼ା ଦନେ···କ'ଣ କହନ୍ତି ଆଉ ?

( ଚାଲିଯାଉଥିଲେ )

ଗୋବିନ୍ଦ—ନିର୍ମଳ—

ନିର୍ମଳ—ଆହେ, ପୁଅ ଝିଅର ବାପହେଲ, ବୁଢ଼ା ନୁହଁ ?—ସେହି ଅମୂଲ୍ୟ ମଥାମଣିଟି ପରା ଆଜି ମୋର ଝିଅ ଶୋଭ ମଥାରେ ମଣ୍ଡି ଦେଇଛି ।

( ପଦଧୂଳି ନେଇ ଚାଲିଗଲେ )

ଗୋବିନ୍ଦ—( କ୍ଷଣକାଳ ଚାହିଁ ରହି ) ମୁଁ ଯେ ଆନନ୍ଦ ସମ୍ଭାଳି ପାରୁ ନି—ମୋତେ ଧର, ନିର୍ମଳ ।

( ଅଧୀର ଭାବରେ ପ୍ରସ୍ଥାନ )

---

## ଦଶମ ଦୃଶ୍ୟ

[ ବଡ଼ଦେଉଳ—ଜଗମୋହନ ଦୃଶ୍ୟ । ଜଗନ୍ନାଥ-ଦେବଙ୍କର ପହଡ଼ ପଡ଼ିଥିଲା । ନାରାୟଣ ଓ ରାଜା ଉପସ୍ଥିତ ଥିଲେ ]

ନାରାୟଣ—ପ୍ରଭୁଙ୍କର ଆଦେଶ, ଅକ୍ଷରେ ଅକ୍ଷରେ ପାଳନ କରିଛି—ବେଶ ବିନ୍ୟାସରେ, ମହାପାତ୍ର-ଙ୍କର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିଛି । ଏଥର ମୁଁ ବିଚାର ପ୍ରାର୍ଥୀ ।

ରାଜା—ତୁମେ ଦୋଷୀ ।

ନାରାୟଣ—( ଅବନତ ହେଲେ )

ରାଜା—ତୁମର ଅପରାଧ, ଗୁରୁତର ।

ନାରାୟଣ—( ଅଧିକ ଅବନତ ହେଲେ )
ରାଜା—ଶାସ୍ତି ପାଇଁ ପ୍ରସ୍ତୁତ ?
ନାରାୟଣ—[ ସିଧା ହୋଇ ଠିଆ ହେଲେ ]
ରାଜା—ବାକ୍ୟ ଉଚ୍ଚାରଣ କରିପାରିବ ନାହିଁ ।
ନାରାୟଣ—[ ମଥାହଲାଇ ସମ୍ମତିଜ୍ଞାପନ କଲେ ]
ରାଜା—ବେଶ୍, ଶାସ୍ତି ଗ୍ରହଣ କର । ଗୋବିନ୍ଦ ।
( ଗୋବିନ୍ଦର ପ୍ରବେଶ )
ଗୋବିନ୍ଦ—ମଣିମା !
ରାଜା—ପ୍ରସ୍ତୁତ ?
ଗୋବିନ୍ଦ—ପ୍ରସ୍ତୁତ ମଣିମା !—ନିର୍ମଳ ।
[ ନିର୍ମ୍ମଳ ଶୋଭକୁ ନେଇ ପ୍ରବେଶ କଲା—ଫୁଲ ଗହଣାରେ ଶୋଭର ଶୋଭା ବଢ଼ି ଯାଇଥିଲା । ନିର୍ମଳର ମଥାମଣି ଛଡ଼ା ଅଉ କୌଣସି ଚିହ୍ନ ତା' ଦେହରେ ନ ଥିଲା ]
ରାଜା—ମା ! ତୁମେ ମହାନ୍ତି ବଂଶର ପବିତ୍ର କୁସୁମ—ତୁମର ଶୁଭ୍ର ନାମରେ କଳଙ୍କ ଲେପି ଦେଇଛି, ଏହି ଉନ୍ମାଦ ଭ୍ରମର । ତୁମେ ଠିଆ ହୁଅ, ଉନ୍ନତ ମସ୍ତକରେ—ଲଜ୍ଜା ସଙ୍କୋଚର ଊର୍ଦ୍ଧ୍ୱେ । ତୁମର ବଂଶ ମର୍ଯ୍ୟାଦା, ଆଜ ତୁମେ ରକ୍ଷା କରିବ ।
( ଶୋଭ ମସ୍ତକ ଉନ୍ନତ କଲେ )
ଉଦ୍ଧତ ଯୁବକ ! ଆସ ସମ୍ମୁଖକୁ । ତୁମର ଶାସ୍ତି ଗ୍ରହଣ କର । ବିମଳାକ୍ଷୀଙ୍କର ଏହି ପଦ ସିନ୍ଦୂର ଧାରଣ କରି କୁମାରୀର ଶୁଭ୍ର ଲଲାଟରେ ତାହା ଅଙ୍କିତ କରିଦିଅ । ମହାନ୍ତି ବଂଶର କଳଙ୍କ ଦୂରକର—ମହାପାତ୍ର ବଂଶର ମର୍ଯ୍ୟାଦା ରକ୍ଷାକର ।—ଏହା, ବିଗ୍ରହଙ୍କର ଆଦେଶ ।
( ନାରାୟଣ ସେହିପରି କଲେ )
ନାରାୟଣ ଓ ଶୋଭ }—( ରାଜାଙ୍କର ପାଦବନ୍ଦନା କଲେ )
[ ମୁଦିରଥ, ବନ୍ଧୁ ଓ ବନ୍ଧୁ-ପତ୍ନୀଙ୍କର ପ୍ରବେଶ ]
ବନ୍ଧୁ—ଧେନ ଗଲା, ମୋତେ ଏଠୁ ଧେନ ଗଲ । ରାଜମର୍ଯ୍ୟାଦା ମୁଁ ସହିଛି; କିନ୍ତୁ ଏ'ପରି ଭାବରେ ବନ୍ଧୁ-ମର୍ଯ୍ୟାଦା ମୁଁ ସହି ପାରିବି ନି । ବନ୍ଧୁଘର—ବନ୍ଧୁମାନେ ଆସି ବନ୍ଧୁକୁ ପାଞ୍ଚୋଟି ଧେନ ଯିବାକୁ ଭାଜନ, ଅନ୍ୟ କେହି ନୁହେଁ ।
ବନ୍ଧୁ-ପତ୍ନୀ—ଏଣେ ଥରେ ଚାହିଁ ଦେଖ, ତୁମର ବନ୍ଧୁଙ୍କର ପରିଗୁଣ ।
( ନାରାୟଣ ଓ ଶୋଭ ଏକତ୍ର ପ୍ରଣାମ କଲେ )
ବନ୍ଧୁ—ମଣିମା, ମୋତେ ଏଠୁଁ ବିଦାୟ ଦିଅନ୍ତୁ । ବନ୍ଧୁ ହୋଇ, ବନ୍ଧୁଘରେ ଏତେ ଅପମାନ ସହିପାରିବି ନି । ବନ୍ଧୁ ମୋତେ ଦେଖା ଦେବାକୁ ନାରାଜ—କେବଳ ଏହି ଭଳି ସୁଖ ସମ୍ପଦରେ ଭୁଲାଇ ବିଦାୟ କରି ଦେବେ, ଏହାହିଁ ତ ତାଙ୍କର ଅଭିପ୍ରାୟ । ମୋତେ ବିଗ୍ରହ ସ୍ଥାନକୁ ଶୀଘ୍ର ପଠାଇ ଦିଅନ୍ତୁ, ମହାରାଜ ।
ରାଜା—ଏହି ତ ଉପଯୁକ୍ତ ବିଗ୍ରହ ସ୍ଥାନ । ଚୋରର ବିଗ୍ରହ, ଚୋର ସ୍ଥାନରେ ହେବାହିଁ ଉଚିତ ।
( ଭୁଲିର ପ୍ରବେଶ )
ଭୁଲି—ରାଜା, ଚୋରକୁ ଧରି ଆଣିଛି । ବିଗ୍ରହ କର, ଦଣ୍ଡ ଦିଅ । ବାପାଙ୍କୁ ଛାଡ଼ିଦିଅ ।
ରାଜା—କାହିଁ ସେ ଚୋର, ମା ?
ଭୁଲି—ସଦାଭାଇ, ସଦାଭାଇ !—ଧେନଆ' ଚୋରକୁ—
( ସଦାର ପ୍ରବେଶ )
ସଦା—ଚୋର ମୋ ହାତକୁ କାମୁଡ଼ି ଦେଇ ପଳେଇ-ଗଲା ଭୁଲି—ଏଇଆଡ଼େ ।
ଭୁଲି—ଚୋର ମାଧୋଇ, ଚୋର ମାଧୋଇ—
[ ଧାଇଁଗଲା ]
ବନ୍ଧୁ—ମାଧୋଇ ଚୋର ?
ରାଜା—ହଁ ତୁମର 'ଜଗବନ୍ଧୁ' ।
ବନ୍ଧୁ—ମାଧୋଇ, ମୋର ଜଗବନ୍ଧୁ !
ରାଜା—ଦେଖିବ ଆସ ।—ଦେଖିଲ ? [ ପରଦା ଫିଟିଗଲା । ଦାରୁମୂର୍ତ୍ତି ଦେଖାଗଲେ ]
ବନ୍ଧୁ—ନା, ନା, ଏ'ତ ଦାରୁମୂର୍ତ୍ତି ।
ରାଜା—ଭଲ କରି ଚାହିଁ ଦେଖ ।
[ ଜଗବନ୍ଧୁ ମୂର୍ତ୍ତି ପରିବର୍ତ୍ତେ ମାଧୋଇ ମୂର୍ତ୍ତି ଦେଖାଗଲେ ]

ବନ୍ଧୁ—ବନ୍ଧୁ, ବନ୍ଧୁ ! ସମ୍ପଦେ, ବିପଦେ ତୁମେଇତ
ଚିରବନ୍ଧୁ ରହିଚ ମୋର ! ଆଜ ମୁଁ—ତୁମକୁ
ଚିହ୍ନି, ଚିହ୍ନି ପାରି ନା—ଧରି, ଧରି ପାରି ନା ।
( ଆଲିଙ୍ଗନ କରିବାକୁ ଧାଇଁ ଯାଉ ଥିଲେ, ଏହି
ସମୟରେ ବୁଲି ଗଣ୍ଠିଲିଟା ନେଇ ପ୍ରବେଶ କଲା )

ବୁଲି—ବାପା, ମାଧୋଇଙ୍କ ପାଇଲି ନା—ସେ ଏଇଠି
କୁଆଡ଼ି ଉଭେଇ ଗଲା ।

ସଦା—ଭାଲିଆ ଟୋକାଟା, ଭାରି ଚେଇଁଆ—

ବୁଲି—ଏଇ ଗଣ୍ଠିଲିକୁ ପାଇଲି—ଦେଖ ତ ବାପା,
ସବୁ ଠିକ୍ ଠିକ୍ ଅଛି କି ନା ? ସେ ଭାରି ଚୋର ।
( ଗଣ୍ଠିଲି ଖୋଲିଦେଲା )

ନାରାୟଣ—ଏଁ ! ଏଇ ତ ବୋଉର ସେଇ ଅଳଙ୍କାର
ପେଡ଼ି । ଚୋରି ଘରେ ଯେଉଁ ଗଣ୍ଠିଲି ଛାଡ଼ିଦେଇ
ଯାଇଥିଲି ସେଇଥିରେ ବନ୍ଧାଥିଲା ।

ଗୋଭି—ବାପା, ତୁମର ଲେଖନ ।

ବନ୍ଧୁ—ବନ୍ଧୁ ! ଏତେ ବନ୍ଧୁ-ପ୍ରୀତି ତୁମ୍ଭର ?—ବନ୍ଧୁର
କୌଣସି ବାସନା ଅପୂର୍ଣ୍ଣ ରଖିଲ ନା ! ଏହି
ଲେଖନ ସଙ୍ଗେ ଦୁଇଟି ବଂଶର ସ୍ମୃତି ଜଡ଼ିତ
ରହିଚି । ସେହି ମହାପାତ୍ର ଓ ମହାନ୍ତି ବଂଶ ପାଇଁ
ଘନିଷ୍ଠ ସୂତ୍ରରେ ମିଳିତ । ଏହି ଲେଖନ ଚିର
ସନ୍ତକ ହୋଇ ରହୁ ।

ରାଜା—ଆଉ, ବନ୍ଧୁ-ବନ୍ଧୁ ମିଳନର ଚିର ସନ୍ତକରୂପେ
ଆଜଠାରୁ ମୁଁ ଏହି ବ୍ୟବସ୍ଥା ଖଞ୍ଜିଦେଲି ଯେ,
ବନ୍ଧୁଙ୍କ ମାଦଳା ପାଞ୍ଜି ଲେଖିବାର ଭାର ତୁମର
ଉପରେ ନ୍ୟସ୍ତ ହେଲା—ଏବଂ ତୁମର ବଂଶଧର-
ମାନେହିଁ କେବଳ 'ଦେଉଳ-କରଣ' ନାମରେ
ଅଭିହିତ ହୋଇ, ବଂଶ ପରମ୍ପରାରେ ସେହି
କାର୍ଯ୍ୟର ଅଧିକାରୀ ହେବେ ।

"ବନ୍ଧୁ ରହିବ ବନ୍ଧୁ ପାଶେ—
ଅତ୍ୟନ୍ତ ମନର ହରଷେ"

[ରାଜା ଭିତରକୁ ଗଲେ—ସମସ୍ତେ ପ୍ରଣତ ହେଲେ]

—**ଯବନିକା**—

## —ଚରିତ୍ର ଲିପି—

ଇନ୍ଦ୍ରଦ୍ୟୁମ୍ନ—ଅବନ୍ତୀର ରାଜା
ବିଦ୍ୟାପତି—ଅବନ୍ତୀର ସେନାପତି
ବିଶ୍ୱାବସୁ—ଶବର ରାଜା
ସର୍ଦ୍ଦାର—ଶବର ସର୍ଦ୍ଦାର
ଶଙ୍ଖଧର—ବିଦ୍ୟାପତିର ସହଚର
ଗାଲମାଧବ—ଓଡ଼ିଶାର ରାଜା
ଅବନ୍ତୀର ଦୂତ, ପ୍ରଜାଗଣ ଓ ଶବର ଗଣ ।

× × ×

ଗୁଣ୍ଡିଚା ଦେବୀ—ଅବନ୍ତୀର ରାଣୀ
ଲଳିତା—ବିଶ୍ୱାବସୁର କନ୍ୟା
ମଇନା—ଲଳିତାର ସଖୀ
ବୁଲବୁଲ—ଲଳିତାର ସଖୀ
ବିଦ୍ୟାପତି ମାତା, ଶବରୀ ଗଣ ଓ ପରିଚାରିକା ।

# ଶ୍ରୀମନ୍ଦିର

---

## ପ୍ରଥମ ଅଙ୍କ

**ପ୍ରଥମ ଦୃଶ୍ୟ:**—ଅବନ୍ତୀ ରାଜପ୍ରାସାଦ ।

[ ଯେଉଁ କକ୍ଷରେ ରତ୍ନପଲଙ୍କ ଉପରେ ରାଜା ଇନ୍ଦ୍ରଦ୍ୟୁମ୍ନ ନିଦ୍ରା ଯାଉଥିଲେ ତାହାର କିୟଦଂଶ ଦିଶୁଥିଲା । ରାଜା ସ୍ୱପ୍ନ ଦେଖୁଥିଲେ । ତାଙ୍କର ଆଖି ଉପର ଦେଇ ନାନା ରଙ୍ଗର ଆଲୋକର ବିଦ୍ୟୁତ୍ ଚମକ ଖେଳିଗଲା । ଶେଷରେ ଗୋଟିଏ ନୀଳବର୍ଣ୍ଣର ଆଲୋକ କ୍ରମେ ଗାଢ଼ ସ୍ଥିରହୋଇ 'ନୀଳମାଧବ' ମୂର୍ତ୍ତିରେ ପରିଣତ ହେଲା । ରାଜା ନିଦ୍ରା ଘୋରରେ ଚିତ୍କାର କରି ଉଠିଲେ "ନୀଳମାଧବ" । କିନ୍ତୁ ପରକ୍ଷଣରେ ପୁଣି ଗମ୍ଭୀର ନିଦ୍ରାରେ ଅଚେତନ ହୋଇ ପଡ଼ିଲେ ।

କ୍ରମେ ବାତାୟନ ପଥ ଦେଇ ଉଷାର ଶୁଭ୍ରରଶ୍ମିର କ୍ଷୀଣ ଆଲୋକ ପାତ ହେଲା—କିଛିକ୍ଷଣ ପରେ ନିଦ୍ରାନୁଗୃହଣୀ ଗଣ ନିଦ୍ରାଭଙ୍ଗ ଲାଗି ଗୀତ ଗାଇ ନାଚି ନାଚି ପ୍ରବେଶ କଲେ ।— ]

—ନିଦ୍ରାନୁଗୃହଣୀଙ୍କ ଗୀତ—

କାଗ ଜାଗ ମେଲ ଆଖି
ଉଷାର ଉଦୟ ପୁରେ—ପ୍ରଭାତର ନବ ସୁରେ
ବିହଗିନୀ ଯାଏ ଡାକି ॥
ଦକ୍ଷିଣା ସମୀର ଦୋଳେ
କା'ର ଜାଗରଣ ଛଳେ
ହସେ ଗୋ କମଳ-କଳି ସୁନେଲି କିରଣ ମାଖି ॥
ଜାଗ ନବଜୀବନର ସ୍ପର୍ଶେ
ଜାଗ ମଧୁ ଚେତନାର ହର୍ଷେ
ଅଳସ ତନ୍ଦ୍ରା ତେଜି
ସ୍ୱପନର ମାୟା ଭାଙ୍ଗି
ଉଠ ହେ ଜାଗର ରଥେ—ପ୍ରାଚୀବଧୂ କହେ ଡାକି ॥

[ ସେମାନେ ଗୀତ ଗାଇ ଚାଲିଗଲେ । ଏଥର ବାତାୟନ ପଥ ଦେଇ ସ୍ୱର୍ଣ୍ଣ ରଶ୍ମି ପ୍ରବେଶ କଲା । ଦୂରେ ଗୋଟିଏ କୋଳାହଳ ଓ ବାଦ୍ୟଧ୍ୱନି ଶୁଭିଲା । 'ମୋର ବିଜୟ ଧ୍ୱନି' କହି ରାଜା ନିଦ୍ରା ତ୍ୟାଗ କରି ଉଠି ବସିଲେ; କିନ୍ତୁ ପୂର୍ବସ୍ୱପ୍ନ ସ୍ମୃତି ଯେପରି ଲାଗି ରହିଥାଏ ତାଙ୍କର ଚକ୍ଷୁ କୋଣେ । ହଠାତ୍ ସେ କିଛି ବୁଝି ନପାରି କହି ଉଠିଲେ ମନ୍ତ୍ରମୁଗ୍ଧ ପରି—]

ଇନ୍ଦ୍ରଦ୍ୟୁମ୍ନ—ଅଦ୍ଭୁତ ସ୍ୱପନ !
ମାୟାବିନୀ ଇନ୍ଦ୍ରଜାଲ ସମ
କ୍ଷଣିକର କ୍ଷୀଣ ଛାୟା ଛବି
ନିତ୍ୟ ଆସି ଦିଏ ଦେଖା ନିଦ୍ରାଘୋରେ ମୋର ।
କିନ୍ତୁ ସ୍ପଷ୍ଟ ରୂପେ ନ ଦେଖୁଣୁ ତା'ରେ
ଚକିତେ ମିଳାଇ ଯାଏ ବିଦ୍ୟୁତ୍ ଚମକ ସମ ।
ବୁଝି ନ ପାରଇ, କିବା ଏ ରହସ୍ୟ—
ମାୟାର ସୃଜନା କିମ୍ବା ସତ୍ୟର ଆଭାସ ।
( ପରିଚାରିକା ସମ୍ବାଦ ଦେଲା ପ୍ରବେଶ କରି )

ପରିଚାରିକା—ମହାରାଜ । ଶୁଭ ସମ୍ବାଦ । ସେନାପତି ବିଦ୍ୟାପତି ଦିଗ୍ବିଜୟ କରି ଫେରିଛନ୍ତି ।

ଇନ୍ଦ୍ର—କିଏ ? ବିଦ୍ୟାପତି ଫେରିଛି ?

ପରି—ହଁ, ମହାରାଜ—ବିଜୟର ବିଜୟଟୀକା ପିନ୍ଧି ଫେରିଛନ୍ତି ।

ଇନ୍ଦ୍ର—ମହାରାଣୀଙ୍କୁ ସମ୍ବାଦ ଦେଇଛ ?

ପରି—ନା, ଏ ପର୍ଯ୍ୟନ୍ତ ଦେଇନାହିଁ ।

ଇନ୍ଦ୍ର—ଯାଅ—ତାଙ୍କୁ ସମ୍ବାଦ ଦିଅ ଆଗେ । ଦେଖ, ତାଙ୍କର ପ୍ରିୟ ଅଦରର ଦିଗ୍ବିଜୟ-ଆଶା ଆଜି ପ୍ରକୃତରେ ରଞ୍ଜିତ ହୋଇ ସେହି ପୂର୍ବାଶାର ସ୍ୱର୍ଣ୍ଣରଶ୍ମି ସମ୍ପାତରେ ହିଲ୍ଲୋଳିତ ହୋଇ ଭାସି ଆସିଛି ।

ପ୍ରଜାଗଣ—( ନିକଟ ନେପଥ୍ୟ ) "ଜୟ ଅବନ୍ତୀରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଜୟ"

[ ବିଦ୍ୟାପତି ପ୍ରବେଶ କରି ରାଜାଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ କଲେ ]

ବିଦ୍ୟାପତି—ମହାରାଜ ! ଦାସର ଅଭିବାଦନ ଗ୍ରହଣ କରନ୍ତୁ ।

ଇନ୍ଦ୍ର—ଆସ, ଆସ, ଭୁବନବିଜୟୀ ବୀର !—ନା, ନା—ନୁହେ ସେହି ସ୍ଥାନେ !—ସ୍ଥାନ ତବ ଉନ୍ମୁକ୍ତ ଏ ବକ୍ଷୋଦେଶେ ମମ ।

( ଆଲିଙ୍ଗନ କଲେ )

[ ପ୍ରଜାଗଣଙ୍କର ଜୟଧ୍ୱନି ଆହୁରି ନିକଟରେ ଶୁଣାଗଲା—ପୁରନାରୀଗଣ ମଙ୍ଗଳ ଉପଚାର ଘେନି ପ୍ରବେଶ କଲେ, ଗୀତ ଗାଇ ]

—ଗୀତ—

ବିଜୟୀ ଆସିଛି ଆଜି ବିଜୟର ଟୀକା ମାଥେ ।
କନକ କିରଣ ସମ ଉଷାର ଉଦୟ ସାଥେ ॥
ରଚିତ ରଙ୍ଗିନ ପଥ ପରେ
ଅଞ୍ଜଳି ସମ କୁସୁମ ଝରେ
ଦିଗ୍ବଧୂ ଦିଏ ଗୋ ଶଙ୍ଖ ପଞ୍ଚରଙ୍ଗି ମୁକୁଟ ହାତେ ।
ଅନ୍ତରେ ଅନ୍ତରେ ଆନନ୍ଦ ଭରି
ପୁଲକେ ପୂରିଛି ବନ ସାରି
ପିକର କୂଜନେ, ଝରଣାର ତାନେ
ଗଗନେ ପବନ ଭରି ବନ୍ଦନା ଗୀତେ ॥

[ ବନ୍ଦନା ଶେଷ କରି ଚାଲିଗଲେ । ବିଦ୍ୟାପତିର ମନ କିନ୍ତୁ ଏ ବିଜୟ ଉତ୍ସବର ଗୀତ ବନ୍ଦନାରେ ଟିକେ ସୁଦ୍ଧା ଆକୃଷ୍ଟ ହୋଇ ନ ଥିଲା । ସେ ଉତ୍କଣ୍ଠିତ ଚିତ୍ତରେ ଯେପରି ଅପେକ୍ଷା କରୁଥିଲେ କା'ର ଆଗମନ ଆଶା ]

ଇନ୍ଦ୍ର—ଭ୍ରାତୃଗଣ ! ସତ୍ୟ ଆଜି ଉତ୍ସବର ଦିନ । ସତ୍ୟ ମୁଁ ଏକଛତ୍ରାଧିପତି 'ଇନ୍ଦ୍ର' । ଏହି 'ଅବନ୍ତୀ' ମୋର, ଅବନୀରେ 'ଅମରାବତୀ' ଆଉ ଏହି ବିଦ୍ୟାପତି,— ଏହି ଦିଗ୍ବିଜୟୀ ବୀର, ଏକାଧାରେ ମୋର ମନ୍ତ୍ରୀ ଓ ସେନାପତି, ବୀର୍ଯ୍ୟେ ଶୂଳପାଣି—ପ୍ରଜ୍ଞାରେ ବୃହସ୍ପତି—

ପ୍ରଜାଗଣ—ଜୟ ଦିଗ୍ବିଜୟୀ ବୀର ସେନାପତି ବିଦ୍ୟାପତିଙ୍କର ଜୟ ।

ବିଦ୍ୟାପତି—କିନ୍ତୁ, ଭ୍ରାତୃଗଣ !
ଏ କି ଆଚରଣ ତବ ?
ଧରି ଯା'ର ଆଶୀର୍ବାଦ ଶିରେ,
ବରାଭୟ ଲଭି ଯା'ନିକଟେ,—
ପିନ୍ଧିଣ ବିଜୟ ଟୀକା
ସମରେ ବିଜୟୀ ଆଜି ହୋଇଛି ସନ୍ତାନ;
ନ ଦେଲ ହେ ଜୟ ସେହି ମାତୃ ନାମେ ଥରେ ?

ପ୍ରଜାଗଣ—ଠିକ୍ କହୁଛନ୍ତି ସେନାପତେ ! କୁହ ଭାଇମାନେ, ଆମର ସ୍ନେହମୟୀ ମହାରାଣୀ "ଶ୍ରୀ ଗୁଣ୍ଡିଚାଦେବୀଙ୍କର ଜୟ ।"

ବିଦ୍ୟାପତି—କିନ୍ତୁ କାହିଁ'ଛନ୍ତି ଦେବୀ !—
ଆଜିର ଏ' ଜୟ ଅର୍ଘ୍ୟ—
ପ୍ରାପ୍ୟ ଯେ ତାଙ୍କର !—
ସେହି ଅର୍ଘ୍ୟ ଶ୍ରୀଚରଣେ ନିବେଦିବା ଲାଗି
ବହୁ ଆଶା ଉଦ୍ବେଳିତ ପ୍ରାଣେ,
ଆସିଛି ସନ୍ତାନ ଧାଇଁ—
କାହିଁ ? କାହାନ୍ତି ଜନନୀ ?

ଇନ୍ଦ୍ର—ରାଣୀ—ରାଣୀ—(କହୁ କହୁ ଚାଲିଗଲେ)

ବିଦ୍ୟାପତି—ଏତେ ପାଷାଣୀ କି ହୋଇଛ ଜନନୀ ?
ଅବା କିଛି ଗୁରୁ ଅପରାଧ କରିଅଛି ମୁହିଁ,
ଯେ କାରଣେ ଶ୍ରୀପଦ ଦର୍ଶନ ସୁଖୁଁ
ଅଭାଗା ବଞ୍ଚିତ ଆଜି ?
ବହୁ ଆଶା ବକ୍ଷେ ଘେନି
ଆସିଥିଲି ମୁହିଁ—
ମାତା ଆଜି ନେବ ତୋଳି କୋଳେ
ବିଜୟୀ ସନ୍ତାନେ ତାର,

ପ୍ରଦାନିବ ଅଶିଷ ଚୁମ୍ବନ
ମୃଦୁ ମଧୁ ହସି;
କିନ୍ତୁ, ଚୂର୍ଣ୍ଣ ହେଲା ସେ ଆଶା ମୋହର
ବ୍ୟର୍ଥତାର ନିଷ୍ଠୁର ଆଘାତେ ।
ନା, ଆଉ ନ ରହିବି ଏଥି
କ୍ଷଣିକାଣ ସୁଦ୍ଧା !—କିବା ସୁଖ—
ଜନନୀ ଯଦ୍ୟପି ହୁଏ ସନ୍ତାନେ ବିମୁଖ ।
[ଅଭିମାନରେ ଚାଲିଗଲେ । ବିପରୀତ ଦିଗରୁ
ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚା ଦେବୀ ପ୍ରବେଶ କଲେ । ]
ଗୁଣ୍ଡିଚା—ନା, ନା, ନ ଯିବ ମୁଁ—ଧରେ ତବ ପଦ ।
ଇନ୍ଦ୍ର—ଏ କି କଥା କହ ରାଣୀ ?
ଏତେ ହସ, ଏତେ ଗୀତ—
ବିଜୟର ଆନନ୍ଦ-ଉତ୍ସବ
ବ୍ୟର୍ଥ ହେବ ସବୁ ଖାଲି ତବ ଲାଗି ?
କେତେ ଆଶା ଘେନି
ସମରେ ବିଜୟୀ ହୋଇ ଆସିଛି ସନ୍ତାନ—
ଆଶା ତାର, ଇଚ୍ଛା ତାର,
ପୂଜିବାକୁ ମାତାର ଚରଣ—
ବରଭୟ ଆଶୀର୍ବାଦ ଲଭିବାକୁ ଜନନୀ ନିକଟୁଁ;
ତୁମ୍ଭେ ତାକୁ କରିବ ବିମୁଖ ?—
ଚୂର୍ଣ୍ଣ କରି ତା'ର ସେହି କଳ୍ପନାର ସୌଧ
କୋମଳ ଅନ୍ତରେ ତା'ର କରିବ ଆଘାତ ?
ମିଥ୍ୟା ହେବ ବିଶ୍ୱ ସୃଷ୍ଟି ତେବେ—
ରେଣୁ ରେଣୁ ହୋଇ ସବୁ
ମିଶିଯିବ ପ୍ରଳୟ ଝଞ୍ଜାରେ
ମାତା ଯଦି ସନ୍ତାନକୁ
ସ୍ନେହାଦରେ ନ ଘେନଇ କୋଳେ ।
(ସେହି ସମୟରେ ମିଳିତ କଣ୍ଠରେ ଗାନ ଭାସି ଆସିଲା)

—ଗୀତ—

ଜୟ, ଜୟ, ଜୟ ମାତା !
ସ୍ନେହ ଅଶିଷ ଯାର ବିଶ୍ୱ-ମୋହନ ଦାତା !
ବିଶ୍ୱଧାରିଣୀ ତୁମେ ଏ' ବସୁଧାରେ
ପାଳୁଛ ସୃଷ୍ଟି ତବ ସ୍ତନ୍ୟସୁଧାରେ
ଓଁକାରେ ଝଙ୍କାରେ ବିଘୋଷିତ ତବ ଜୟ ଗାଥା ॥
ତୁମେ ଆଦି ଅନନ୍ତ ତାପ ହାରିଣୀ
ଦୁଃଖ, ଶୋକ ଜ୍ୱାଳା ଭୟ ବାରିଣୀ
ବନ୍ଦେ, ବନ୍ଦେ ନତଶିରେ ଶ୍ରୀଚରଣ ତବ ମାତା ॥
ଇନ୍ଦ୍ର—ଶୁଣ—ଶୁଣ, ରାଣୀ !
ସନ୍ତାନର ଆକୁଳ ଆହ୍ୱାନ,
'ମା' 'ମା' ବୋଲି ଯେଉଁଥି ଆସୁଅଛି ସର୍ବେ ।
ଅମରାବତୀରୁ ଯେଉଁପରି ସେ ସୁର ଲହରୀ
ମନ୍ଦାକିନୀ ପୂତ ଧାରା ସମ
ଦୁଃଖ ତପ୍ତ ଏ ଧରାକୁ ଆସିଛି ଓହ୍ଲାଇ;
ସ୍ପର୍ଶେ ଯା'ର ମୁହୂର୍ତ୍ତିକେ
ସବୁ ଜ୍ୱାଳା—ସମସ୍ତ ଯନ୍ତ୍ରଣା ହେବ ଅବସାନ ।
ମାତା ହୋଇ ତୁମ୍ଭେ, ସନ୍ତାନର ଆକୁଳ ଆହ୍ୱାନେ
ନ ଦେବ ଉତ୍ତର ?
ସ୍ଥିର, ସ୍ତବ୍ଧ, ମୌନ ହୋଇ
ପାଷାଣ ପ୍ରତିମା ସମ ରହିବ ନୀରବ ?
ରାଣୀ—ହାୟ—ମହାରାଜ !
ବୁଝାଇବି କିପରି ତୁମ୍ଭଙ୍କୁ
ଅନ୍ତରର ଅନ୍ତର୍ଗୂଢ଼ ବ୍ୟଥା !
ସନ୍ତାନର ମାତା ଯଦି ହୋଇଥାନ୍ତି ମୁହିଁ,
ନ ହୁଅନ୍ତା ଏ ଉତ୍ସବ—ନରମେଧ ଯାଗ,
ଅବନ୍ତୀ ନଗରେ ଆଜି ।
ଦିଗ୍‌ବିଜୟ କରିବାର ଛଳେ
ରକ୍ତର ହିଲ୍ଲୋଳେ ଧରା କରିଣ ପ୍ଲାବିତ—
ମର୍ମନ୍ତୁଦ ହାହାକାରେ ଗଗନ କରିଣ ଦୀର୍ଣ୍ଣ—
ଧ୍ୱଂସ କରି ଶତ ଶତ ପ୍ରାଣ,
ଭଗିନୀକୁ ଭ୍ରାତୃହୀନା—ଜନନୀକୁ ପୁତ୍ରହୀନା କରି,
ପୋଛିଦେଇ ସଧବାର ସୀମନ୍ତ ସିନ୍ଦୂର,
ନ ଆସନ୍ତା ବିଦ୍ୟାପତି
ରକ୍ତ ଅର୍ଘ୍ୟ ଦେବା ପାଇଁ ମାତାର ଚରଣେ ।
[ ଦୂରେ ବିଦ୍ୟାପତି କଣ୍ଠରେ ଶୁଣାଗଲା 'ମା' 'ମା'']
ଇନ୍ଦ୍ର—ହେଇ ଦେଖ ରାଣୀ—
ବିଦ୍ୟାପତି ଆସୁଛି ଏଠାକୁ ।
( ବିଦ୍ୟାପତିର ପ୍ରବେଶ )

ବଦ୍ୟାପତି—ନିଷ୍ଠୁର ଜନନୀ—ଏ'କି ଖେଳା ତୋର ।
ସନ୍ତାନେ ପଠାଇଦେଇ ସମର ପ୍ରାଙ୍ଗଣେ
ଅଭୟ ନ ଦେଉ କି ତୁ ଅଭୟା ବରଦେ ?

ରାଣୀ—( ହସି ) କି ଅଭୟ ଚାହଁ ବଦ୍ୟାପତି ?
ତୁମେତ ବିଜୟୀ ।

ବଦ୍ୟାପତି—ସେହି ହେତୁ ବିଜୟୀ ସନ୍ତାନ ଆଜି
ବିଜୟାର ରକ୍ତ-ପାଦ-ପଦ୍ମେ,
ଆପଣାର ହୃତ୍‌ପିଣ୍ଡ କରି ଛିନ୍ନ
ଦେବାକୁ ଚାହୁଁଛନ୍ତି ଅର୍ଘ୍ୟର ଅଞ୍ଜଳି !

ରାଣୀ—ବତ୍ସ ମୋର !—ନ ବୁଝୁକି ଲବେ,
କାହିଁ ବ୍ୟଥା ମୋ'ର ରହୁଛି ଗୋପନେ ?
ଦୁର୍ମ୍ମଦ ସମର ଯେବେ
ଶତ୍ରୁପରେ ଶବ ସ୍ତୂପ,—
ବିଜୟର ବାର୍ତ୍ତା ତୋ'ର ଶୁଣିଅଛି ଯେତେ
ବ୍ୟଥା ମୋ'ର ବଢ଼ିଅଛି ତେତେ ।
କେତେ ବିନିଦ୍ର ରଜନୀ
ଶଯ୍ୟାପ୍ରାନ୍ତେ ଉଠିଅଛି ବସି,
ପବନେ ଆସିଛି ଭାସି
ଉତ୍କର୍ଣ୍ଣ କର୍ଣ୍ଣେ ମୋ'ର—
ଆହତର ଆର୍ତ୍ତନାଦ,
ପୁତ୍ରହରା, ଭ୍ରାତୃହରା, ସ୍ୱାମୀହରା
ମାତା, ପିତା, ଭଗ୍ନୀ ଆଉ ପତ୍ନୀର କ୍ରନ୍ଦନ;
ଦଅନ୍ତି ସମସ୍ତେ ଅଭିଶାପ ଯେସନେ,
'ଧିକ୍, ଧିକ୍, ଧିକ୍ ବଦ୍ୟାପତି !
କେଉଁ ରାକ୍ଷସୀ ସେ ଦେଇଥିଲା ସ୍ତନ,
କେଉଁ ରାକ୍ଷସୀ ସେ ପାଳିଥିଲା ତୋ'ତେ—
ସନ୍ତାନର ବ୍ୟଥା କି ସେ
ବୁଝିନାହିଁ କେବେହେଁ ?—
ଓଃ, ସେହି କରୁଣ ବିଳାପ
ଧ୍ୱନିତ ଅଦ୍ୟାପି କର୍ଣ୍ଣେ ।
ଦିବସେ, ନିଶୀଥେ କି ସନ୍ଧ୍ୟା, ସକାଳେ
ମୁଦ୍ରିତ କଲେହିଁ ଆଖି,
ଫୁଟି ଉଠେ ସେହି ଶୋଣିତଛବି—
ଭାସିଆସେ ସେହି ବୁକୁଫଟା ଆର୍ତ୍ତନାଦ—
ଓଃ ! ( ଯେପରି ଆଉ ସହି ପାରୁ ନ ଥିଲେ )

ବଦ୍ୟାପତି—ସର୍ବନାଶୀ ଜନନୀ ଗୋ !—
ସେହି କାରଣରୁ ତ ଆସିଅଛି ଧାଇଁ
ବ୍ୟଥିତାରେ ବ୍ୟଥା—ଅନ୍ତର ଅର୍ପିବା ପାଇଁ ।
ଧର, ଧର ଗୋ ଖର୍ପର,
ଢାଳି ଦିଏଁ ଶୋଣିତ ମୋହର—
ଏହି ରକ୍ତବୋଳା ଖଡ୍‌ଗର ଫଳକେ,
ସାଦରେ ମୋ' କରେ ଦେଇଥିଲ ଯାହା ।

ରାଣୀ—ନା—ନା—ନା ବଦ୍ୟାପତି ।
ଫିଙ୍ଗି ଦେରେ—ଫିଙ୍ଗି ଦେରେ ଅସି,
ନ ବଢ଼ିବ ବ୍ୟଥା ଆଚରଣେ ସେହି ।
ବଢ଼ାଇବୁ ବ୍ୟଥା—ବାଞ୍ଛା ଯେବେ ତୋ'ର,
ଆ'ରେ କୋଳେ ମୋ'ର
କନ୍ଦାଇ ଭୁବନ 'ମା, ମା' ଡାକେ—
ଆ', ଆ' ରେ ବତ୍ସ ! ଆ' ମୋ' ବକ୍ଷେ—

ବଦ୍ୟାପତି—ମା—ମା—ମା ଗୋ !

[ ରାଣୀ ବଦ୍ୟାପତିଙ୍କୁ ବକ୍ଷୋଦେଶେ ଧାରଣ କଲେ—ତା'ଙ୍କର ଦୁଇ ଗଣ୍ଡଦେଶ ପ୍ଲାବିତ କରି ଅଶ୍ରୁଧାର ବୋହିଚାଲି ]

ଇନ୍ଦ୍ର—(କେଉଁ ସ୍ୱପ୍ନ ଆଶା ଯେମନ୍ତ ସହସା ଜାଗି ଉଠ)
ବ୍ୟଥାହାରୀ ନାରାୟଣ !—

ରାଣୀ—ନା, ନା—ରାଜା—
ସେ ନାମ ନ କର ଉଚ୍ଚାରଣ ।
କିଏ ବୋଲେ ବ୍ୟଥାହାରୀ
ନାରାୟଣ ?—ନିର୍ଦ୍ଦୟ ପାଷାଣ ସେ ଯେ !
ହୋଇ ବିଶ୍ୱର ପାଳକ,
ସନ୍ତାନର ମୃତ୍ୟୁ ହେରି
ବୈକୁଣ୍ଠେ ନିଶ୍ଚିନ୍ତେ ବସି
ହସୁଛନ୍ତି କ୍ରୂର ବ୍ୟଙ୍ଗହାସ୍ୟ ।
ନଥିବା ଜନନୀ ଆଜି
ବନ୍ଧୁ ନ ଥା'ନ୍ତା ଜନନୀର ବକ୍ଷ—
ପୁତ୍ର ଶୋକ ବାଧୁ ଥା'ନ୍ତା ପ୍ରାଣେ,
ନିଦାରୁଣ ଶେଳାଘାତ ଯେସନେ,—
ସୃଷ୍ଟିର ଏ ଧ୍ୱଂସ ଲୀଳା ହେବ୍ ।

ଇନ୍ଦ୍ର—ସୁହ ତେଣୁ କହିବାକୁ,
କ୍ରୂର ନାରାୟଣେ ?
ନୃସିଂହ ମୂରତି ଧରି
ହିରଣ୍ୟ ବିଦାରି—
ରାମ ଅବତାର ରୂପେ
ତ୍ରେତାଯୁଗେ ରାବଣ ସଂହାରି—
କୁରୁକ୍ଷେତ୍ରେ ପୁଣି
ଭିଆଇଣ ମହାରଣ
କୁରୁ ଆଉ ପାଣ୍ଡବର ମଧ୍ୟେ,
ନିଜେ ହୋଇ ଯାଦବ ପ୍ରଧାନ
କରିଥିଲେ ଧ୍ୱଂସ ବଂଶ ଆପଣାର,—
ସେହି ହେତୁ କ୍ରୂର ?—
ସେହି ହେତୁ ନିର୍ମମ ପାଷାଣ ?
ରାଣୀ—ନୁହେଁ ଖାଲି ତାହା—
କପଟୀ, ଲମ୍ପଟୀ—କୁଟିଳ ଅତୀବ,
ନାରାୟଣ ସମ ଆଉ କେ ଅଛି ଧରାରେ ?
ଯେତେ କିଛି ଅନାଚାର, ଅବିଚାର,
ଧ୍ୱଂସ ଲୀଳା ଯେତେ —
ସବୁର ଆଧାର ହରି ।
ଇନ୍ଦ୍ର—ଶାନ୍ତ ହୁଅ—ଶାନ୍ତ ହୁଅ ରାଣୀ ।
ନ ବୁଝି, ନ ଶୁଣି କିଛି
କର ନାହିଁ ଦୋଷାରୋପ ତାଙ୍କୁ ।
ସ୍ଥିର ଚିତ୍ତେ ଚିନ୍ତା କରି ଦେଖ—
ରାଣୀ—ଦେଖି ଅଛି ବହୁଥର—
କହୁଛି ତଥାପି—ନିଷ୍ଠୁର ଶ୍ରୀହରି ।
ଇନ୍ଦ୍ର—ନା, ନା, ରାଣୀ —
କେବଳ ସେ ବହିରଙ୍ଗ ତାଙ୍କ ।
ଧ୍ୱଂସର ଏ ଗୂଢ଼ ତଥ୍ୟ
ଜାଣିଅଛି ଯେହୁ,
କଦାପି ସେ ନ କହିବ
କ୍ରୂର ନାରାୟଣ ।
ବରଂ କହିବ ସେ—ସୁନ୍ଦର, କୋମଳ,
ନବ ଜଳଧର ମୂର୍ତ୍ତି —
ଜଳଧର ସମ
ଶାନ୍ତି ବାରି ସିଞ୍ଚି ପୁଣି, ପୁଣି
ଶ୍ୟାମ ସ୍ନିଗ୍ଧ କରୁଛନ୍ତି
ଧରାଧାମ ଏହି ।
କେବେଁ ସେହି ନିର୍ଦ୍ଦୟ ପାଷାଣ ?—
କେବେଁ ସେହି ଧ୍ୱଂସକାରୀ ଦେବ ?
ରାଣୀ—ଧ୍ୱଂସକାରୀ ଯେହୁ —
'ଧ୍ୱଂସକାରୀ' ନ କହିବ କିପାଁ ?
ଇନ୍ଦ୍ର—ରାଣୀ ।—
କର୍ମ ଦେଖି ଖାଲି
ନୁହେଁ କର୍ତ୍ତବ୍ୟ ବିଚାର,
କର୍ମଯୋଗେ କା'ର ।
ଦେଖିବ ଉଦ୍ଦେଶ୍ୟ ତା'ର ।
ଧ୍ୱଂସ ଯେବେ ହୁଅନ୍ତାଟି
ଧ୍ୱଂସର କାରଣ,—
ତେବେ ସିନା କହିବା ଉଚିତ
କ୍ରୂର ସେହି ଦେବ ନାରାୟଣ ।
ଯେଉଁ ମହା ଧ୍ୱଂସ ଲୀଳା
ସୃଷ୍ଟିର ଆରମ୍ଭ,
ଚାଲିଅଛି ବିଶାଳ ଏ' ତ୍ରିଭୁବନ ମଧ୍ୟେ,
ସୃଷ୍ଟି ହିଁ ଉଦ୍ଦେଶ୍ୟ ତାଙ୍କ ।
ଧ୍ୱଂସ ନୁହେ ଅମଙ୍ଗଳ ହେତୁ ।
ଧ୍ୱଂସହିଁ କଲ୍ୟାଣ—ଧ୍ୱଂସ ବିନା ସୃଷ୍ଟି ଅସମ୍ଭବ ।
ତୀବ୍ର ଶୀତବାୟୁ ଧାତେ ଯେବେ
ଝରି ପଡ଼େ ଜୀର୍ଣ୍ଣ ପତ୍ରଦଳ
ଶାଖୀ ଶାଖା ଛିନ୍ନ,
ନ ହୁଏ କି ନବ ପତ୍ରୋଦ୍ଗମ ?—
ନବ ବାସେ—ନବ ବେଶେ
ନ ହସେ କି ପ୍ରକୃତି ସୁନ୍ଦରୀ ?—
ଏକାଧାରେ ସେହି—
ହର ରୂପେ କରନ୍ତି ବିନାଶ ଯେବେ—
ହରି ରୂପେ ପାଳୁଛନ୍ତି ପୁଣି ;
ତେଣୁ ତାଙ୍କ ନାମ ହରିହର ।
ରାଣୀ—ତେବେ ଆମର ଏ ଧ୍ୱଂସ,
ଶାନ୍ତିର ଆଧାର କିବା ?

ଇନ୍ଦ୍ର—ମିଥ୍ୟା ନୁହେଁ କଳ୍ପନା ତୁମ୍ଭର !
ଦେଖିଅଛୁ ସ୍ୱପ୍ନ ଆଜ ନିଶା ଅବସାନେ,
ଯେବେ ନାରାୟଣ—ପତିତ ପାବନ
ନୀଳଶିଳା ରୂପେ—ନୀଳମାଧବ ନାମରେ
କରନ୍ତି ବିହାର, ଏକ ଅରଣ୍ୟ ମଧ୍ୟରେ,
ସୁଦୂର ସାଗର ପ୍ରାନ୍ତେ—ଉତ୍କଳ ଖଣ୍ଡରେ ।
ଅସ୍ପୃଶ୍ୟ ଶବର ଏକ
କରେ ପୂଜା ତାଙ୍କ ।
ଏବେ କରନ୍ତି ମାନସ—ବାଞ୍ଛା କଳ୍ପତରୁ
ପ୍ରକଟ ହୋଇବେ ବିଶ୍ୱେ—ବିଶ୍ୱର ମଙ୍ଗଳ ହେତୁ !
ବିଶ୍ୱାସ ମୋହର, ଆସିଅଛୁ ଦିନ—
ପୁଣି 'ଧର୍ମରାଜ୍ୟ' ସେହି ··ହୋଇବ ସ୍ଥାପନ ।
ଦ୍ୱେଷ, ହିଂସା, ମହା ଈର୍ଷାନଳ
ବ୍ୟାପିଛୁ ଜଗତେ ଆଜି—
ମନୁଷ୍ୟ ବାନ୍ଧୁଛି ମନୁଷ୍ୟକୁ ନୀତ
ଅବଜ୍ଞରେ, ଦ୍ୱିଧାହୀନ— ସଙ୍କୋଚ ବିହୀନ ।
ମନୁଷ୍ୟର କ୍ରୂରତା ଯେତେହେଁ କି
ଉଠିଅଛୁ ଅଭ୍ରଭେଦୀ-ଊର୍ଦ୍ଧ୍ୱେ ଟେକ ଶିର
ଏବେ ଗୁହେଁ ସେ ବିରାମ,
ଗୁହୁଁ ଅଛୁ ପ୍ରାଣ—
ଭାଇ, ଭାଇ ବୋଲି
ଛନ୍ଦି ବାହୁ ପାଶେ, ପରସ୍ପର
ସାମ୍ୟ ସୂତ୍ରେ ହେବାକୁ ମିଳିତ !
ହୁଏ ତ ଦେଖିଛି ସ୍ୱପ୍ନେ ମୁହିଁ ଯାହା ଆଜ,
ଫଳିବ ଅଚିରେ ବାସ୍ତବ ଆକାରେ !
କିନ୍ତୁ, ରାଣୀ – ସେ ଯେ କଠୋର ସାଧନା—
କିଏ ଆଣିଦେବ ତା'ଙ୍କୁ
କେଉଁ ସୁଦୂର ସାଗର ପ୍ରାନ୍ତ ଦେଶୁଁ ଏଥି ।

ବିଦ୍ୟାପତି—ଶିବର ସାଧନା ଭୁଲିଗଲେ ଶିବ—
ଶକ୍ତିବଳ କେଉଁଗୁଣେ ତାଙ୍କ ?—
କାହା ବଳେ ଷଡ଼ାନନ ଭୁବନ ବିଜୟୀ ?
ନୁହେଁ ସେହି ସାଧନା ପ୍ରତୀକ—
ବିଦ୍ୟାପତି ମୁହିଁ ?
ଶକ୍ତିମୟୀ ମାତା—ସହାୟ ଯେବେକି—
ଭୟ କରେ ମୁଁ କାହାକୁ ?
ଆଶୀର୍ବାଦେ ତବ,
ହର ଆଉ ହରିର ମିଳନ
ଘଟାଇବି ଅବିଳମ୍ବେ କରୁଅଛି ପଣ ।

ପ୍ରଜାଗଣ—( ନେପଥ୍ୟ ) ଉତ୍ସବର କି ହେତୁ
ବିଳମ୍ବ ?
ଧୈର୍ଯ୍ୟ ଆଉ ସହ୍ୟ ନ ହୁଅଇ ।

ବିଦ୍ୟାପତି – ଭ୍ରାତୃଗଣ । ହେବ ନାହିଁ ଉତ୍ସବ ଏବଣି –
ଯେଣୁ ଦିଗ୍‌ବିଜୟ ଅସମ୍ପୂର୍ଣ୍ଣ ମୋ'ର ।
ପୂର୍ଣ୍ଣ ହେବ ସେହି ଦିନ, ଭାଇ—
ଯେଉଁ ଦିନ ବନୀ କରି ନାରାୟଣେ ମୁହିଁ
ଆଣିବି ଏ'ଠାରେ !—
ଆଶୀର୍ବାଦ କର ପିତାମାତା !
(ରାଜା ଓ ରାଣୀଙ୍କ ସମ୍ମୁଖେ ନତଜାନୁ ହେଲେ )

ରାଜା ଓ ରାଣୀ—କରୁଁ ଆଶୀର୍ବାଦ
ହୁଅ ପୂର୍ଣ୍ଣ-ମନସ୍କାମ !
(ଉଲ୍ଲସିତ ଚିତ୍ତରେ ବିଦ୍ୟାପତି ବିଦାୟ ନେଲେ)

ଇନ୍ଦ୍ର—ଅଚ୍ଛା ରାଣୀ, ନାରାୟଣ ଯଦି ଆମ ପୂଜାରେ ତୁଷ୍ଟ ହୋଇ ବର ଦିଅନ୍ତି—ତୁମେ କି ବର ମାଗିବ ଭଲା ?

ରାଣୀ—ବର ? ମାଗନ୍ତି ମୋ 'ବର'ଟି ହୁଅନ୍ତୁ ଯେପରି ବିଭୀଷଣ

ଇନ୍ଦ୍ର—ବିଭୀଷଣ ? ଓ ଅମର ହେବା ଲୋଭରେ ପରା ? ବେଶ୍—'ହନୁମାନ' ହେବା ପାଇଁ ନ କହନ୍ତି କାହିଁକି ?

ରାଣୀ—ହଁ—ହନୁମାନ ହୋଇ ପାରନ୍ତି, କିନ୍ତୁ ଗୋଟାଏ ଲାଞ୍ଜ ତ ଦରକାର ?

ଇନ୍ଦ୍ର—କାହିଁକି : 'ଇନ୍ଦ୍ର' ପଛରେ ତ ବେଶ ଗୋଟାଏ ବଡ଼ ଆକାରର ଲାଞ୍ଜ ରହିଛି ଦ୍ୟୁ—ମ୍ନ— ହାଃ—ହାଃ—·

ରାଣୀ—ଅଚ୍ଛା, ହେଲା— ହେଲା—ତୁମେ ଭଲା କି ବର ମାଗନ୍ତ ?

ଇନ୍ଦ୍ର—କ'ଣ ଯେ ତୁମେ କୁହ ? ମୁଁ 'ବର' ନେଇ କ'ଣ କରିବି ? ମୋର ଦରକାର 'କନ୍ୟା'—

ରାଣୀ—କନ୍ୟା ?

ଇନ୍ଦ୍ର—ହଁ ଗୋ ହଁ—ସନ୍ତାନ୍ତରାଣୀ ବୋଲି ଡାକିଲି ନା କଣ ? କିନ୍ତୁ ଏ' ସେ କନ୍ୟା ନୁହେଁ—ତୁମର ଗର୍ଭଜାତ କନ୍ୟା —

ରାଣୀ—ଯାଃ—( ଲଜ୍ଜାରେ ମୁହଁ ଫେରାଇଲେ— ଇନ୍ଦ୍ରଦ୍ୟୁମ୍ନ ହସିବାକୁ ଲାଗିଲେ ) ( କିଛିପରେ ) ଅଚ୍ଛା ବେଶ୍, ସେହି ଇଚ୍ଛା ଯଦି—ତେବେ 'ପୁତ୍ର' ନ ମାଗନ୍ତି କାହିଁକି ?

ଇନ୍ଦ୍ର—ତା'ହେଲେ ଜୀବନରେ ଗୋଟାଏ ମସ୍ତ ବଡ ଭୁଲ୍ କରି ପକାନ୍ତି ?

ରାଣୀ—କିପରି ?

ଇନ୍ଦ୍ର—ଗୃହଲକ୍ଷ୍ମୀ ଦେବତା ଯଦି ଗୋଟିଏ ଦେଇ ଭୁଲାଇ ଦିଅନ୍ତି ?

ରାଣୀ—ଓ ! ତା ହେଲେ ତୁମ ସାବିତ୍ରୀ କନ୍ୟାଠାରୁ ଶତ ପୁତ୍ରର ପିତା ହେବାର ବାସନା ପାଞ୍ଚିଛ ମନେ ମନେ ?

ଇନ୍ଦ୍ର—କିନ୍ତୁ, ତୁମର ଦେବତାର କଲ୍ୟାଣରୁ, ଶତ ଶତ ସାବିତ୍ରୀ ଯଦି ଜନ୍ମେ—ତା ହେଲେ ଥରେ ହିସାବ କରି ଦେଖିଲି ବ୍ୟାପରଟା କିପରି ହେବ ? (ହସିଲେ)

ରାଣୀ—(ନେପଥ୍ୟକୁ ଚାହିଁ) ଏ' କଣ ? 'ବିଦ୍ୟାପତିର ମା' ଯେ ଏ' ଆଡ଼କୁ ଆସୁଛନ୍ତି ।

[ ଯଷ୍ଟିଉପରେ ଭରା ଦେଇ 'ବିଦ୍ୟାପତିର ମା' ପ୍ରବେଶ କଲେ ଓ ବାଡ଼ି ଖଣ୍ଡିକ ଫିଙ୍ଗି ଦେଇ— କାନ୍ଦି କାନ୍ଦି କହିଲେ ]

ବି-ମା—ସର୍ବନାଶ ହେଲା ଗୋ—ମୋର ସର୍ବନାଶ ହେଲା ।

ରାଣୀ—କ'ଣ ହୋଇଛି ?

ବି-ମା—ଆଜି କ'ଣ—ବିଦ୍ୟାପତି—

ରାଣୀ—ବିଦ୍ୟା ପତି ? କ'ଣ ହେଲା ତା'ର ? ସେ କ'ଣ ଘରକୁ ଯାଇନାହିଁ ?

ବି-ମା—ହିଁ—ଘରକୁ ଯାଇଥିଲା । କେତେ ଯତନରେ ନିଜ ହାତରେ କାନରେ କୁଣ୍ଡଳ ପିନ୍ଧିଲି— ହାତରେ ସୁନା କଙ୍କଣ—ଭଗାଳଗଣ୍ଡ ଦେଖା

ଚୋପା—ଅହା ! କି ସୁନ୍ଦର, ଯେପରି ଠିକ୍ ଦ୍ୱାହା ହେବାକୁ ଯାଉଛି—କି ସୁନ୍ଦର ।

ରାଣୀ—କୁଆଡ଼େ ଗଲା ତେବେ ସେ ?

ବି-ମା—ଆସିବ—ଏଇକ୍ଷଣି ସେ ଆସିବ । ତୁମର ଆଶୀର୍ବାଦ ନ ନେଇ ସେ କ'ଣ ଯୁଦ୍ଧକୁ ଯିବ ? କିନ୍ତୁ—

ରାଣୀ—କିନ୍ତୁ କ'ଣ ? କୁହ ?

ବି-ମା—ମୁଁ ତ ବୁଢ଼ି ହେଲିଣି—ଆଉ କେତେ ଦିନ ? ମୋର ସେଇ ଗୋଟିଏ ବୋଲି ପୁଅ—ଅନ୍ଧାର-ସଳଡା । ମୋର କଣ ମନରେ ଭାବନା ତାକୁ ସଂସାରୀ ହେବାକୁ ଦେଖିବି ବୋଲି ? ତା ବାଁ ପଟରେ ଆଉ ଗୋଟିଏ ଚାନ୍ଦ ମୁହଁର ହସ ଦେଖିବି ବୋଲି ?

ରାଣୀ—ସେ ତ ସତ କଥା ।

ବି-ମା—କିନ୍ତୁ, ମୋ' କଥାରେ ସେ କାନ ଦିଏ ନାହିଁ । ଦିନରାତି ଖାଲି ଯୁଦ୍ଧ—ଯୁଦ୍ଧ । କେତେଥର କହିଲି—ଆରେ ଏଥର ସଂସାରୀ ହ' ମୁଁ ଦେଖି ସୁଖରେ ମରେ । ସେ କଣ ଶୁଣୁଛି ? କହେ 'କର୍ତ୍ତବ୍ୟ'ଟା ଆଗେ ଶେଷ କରେ ତା'ପରେ ଦେଖାଯିବ । ଅଚ୍ଛା ତୁମେଇ କହିଲ ଭଲା— ସଂସାର ଧର୍ମ କଣ କର୍ତ୍ତବ୍ୟ ନୁହେଁ ?

ରାଣୀ—ତୁମକଥା ମୁଁ ବୁଝିଛି । ଆଚ୍ଛା ସେ ଆସୁ, ତାକୁ କହିବି ।

ବି-ମା—ସେଇଥି ପାଇଁତ ଦୌଡ଼ି ଆଇଲି । ଏଇତ ଖାଲି ଫେରିଛି ଯୁଦ୍ଧରୁ—ପୁଣି ଆଜି ଶୁଣିଲି, ଯାଉଛି କେଉଁ ଦରିଆପାରି 'ନୀଳମାଧବ' ନା କା'କୁ ବନ୍ଦୀ କରି ଆଣିବାକୁ । ବିଶ୍ରାମ ତ ଟିକେ ଦରକାର । ମୁଁ ଜାଣେ, ତୁମ କଥା ସେ ବେଦବାକ୍ୟ ବୋଲି ମାନେ—ସେଇଥି ଲାଗି ତୁମ ପାଖକୁ ଆସିଛି—ନ ହେଲେ—

( ବିଦ୍ୟାପତିର ପ୍ରବେଶ )

ରାଣୀ—ଏହି ଯେ ବିଦ୍ୟାପତି । ବିଦ୍ୟାପତି ! ତୁମର ମା'ର ଇଚ୍ଛା ଅବହେଳା କରି ତୁମେ ଅନ୍ୟ ଦେଶକୁ ଆଉ ଯାଇପାରିବ ନାହିଁ ।

ବିଦ୍ୟାପତି—କିନ୍ତୁ 'ନୀଳମାଧବ' ?
ରାଣୀ—ନା—ମା'ର ଆଦେଶ ନିକଟରେ କିଛି ବଡ଼
ନୁହେଁ—ଭଗବାନ ନୀଳମାଧବ ମଧ୍ୟ ନୁହେଁ—
ବିଦ୍ୟାପତି—ମା ଏହାହିଁ କଣ ତୁମର ଇଚ୍ଛା—
ବିଦ୍ୟାପତି ଜନନୀ ?
ବି-ମା—ହିଁ—ହିଁ ଏହି ମୋର ଇଚ୍ଛା—ବିଦ୍ୟାପତି
ଜନନୀ । ମୁଁ ତୋତେ ଖାଲି କର୍ତ୍ତବ୍ୟଭ୍ରଷ୍ଟ
ହେବାକୁ କହୁନାହିଁ;—ମୋର ଇଚ୍ଛା—ମୋର
ଆଶୀର୍ବାଦ—ମୋର କାମନା—ଏହି କର୍ତ୍ତବ୍ୟନିଷ୍ଠା
ସଙ୍ଗେ ହିଁ ତୋର ଶୁଭ ପରିଣୟ ହେଉ ।
ବିଦ୍ୟାପତି—( ନତଜାନୁ ହୋଇ ) ତାହା ହିଁ ହେବ
ମାତା । ତୁମ୍ଭର ଇଚ୍ଛା ହିଁ ପୂର୍ଣ୍ଣ ହେଉ । ତୁମ୍ଭର
ଆଶୀର୍ବାଦ, ଚିରକାଳ ଅକପଟ—ଉଦାର—
ପ୍ରଭାତ ସୂର୍ଯ୍ୟାଲୋକ ସମ ମୋର ଜୀବନରେ
ସ୍ୱରୂପ—ତୁମର ବରାଭୟ ମୋତେ ଜୀବନର
କଣ୍ଟକମୟ ବନ୍ଧୁର ପଥରେ ଅଗ୍ରସର ହେବାର
ସାମର୍ଥ୍ୟ ପ୍ରଦାନ କରୁ—ଶତ ବାଧାବିଘ୍ନ—ଝଡ଼
ଝଞ୍ଜା—ଶତ ପ୍ରଲୋଭନର ମଧ୍ୟଦେଇ ଏହି କର୍ତ୍ତବ୍ୟ
ନିଷ୍ଠାକୁ ମୋର ଜୀବନର ସହଯାତ୍ରୀ କରି,
ଯେପରି ଜୀବନ-ପଥେ ଅଗ୍ରସର ହୋଇ ପାରେ ।
[ ସେହି ସମୟରେ ନେପଥ୍ୟରୁ ଶଙ୍ଖ ହୁଳ ହୁଳି
ଶୁଣା ଗଲା ]

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ—ସାଗର ବେଳାଭୂମି ।

[ ଶବରରାଜ ବିଶ୍ୱାବସୁରାଜ୍ୟର ପ୍ରାନ୍ତ ଦେଶ ।
ବିଦ୍ୟାପତି ଏକ ପାର୍ଶ୍ୱରେ ଠିଆ ହୋଇ
ସୂର୍ଯ୍ୟୋଦୟ ଦେଖୁଥିଲେ । ]—
ବିଦ୍ୟାପତି—"ଜବା କୁସୁମ ସଙ୍କାଶଂ କାଶ୍ୟପେୟଂ
ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବ ପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ ।
ଅପୂର୍ବ—ଅପୂର୍ବ ଛବି ଉଦୟ ଦିଗନ୍ତେ,
ରଜନୀର ତମିସ୍ରା ବିଦାରି
ଧୀରେ ଧୀରେ ଲଭୁଛି ପ୍ରକାଶ ।
କି ସୁନ୍ଦର ମହିମା ମଣ୍ଡିତ
ଲୋହିତ କିରଣେ ଜାଲ ବିସ୍ତିପ୍ତ ଚୌଦିଗେ—
ସୁପ୍ତି ଭାଙ୍ଗି ଉଠେ ଜାଗି ନିଦ୍ରିତା ଧରଣୀ—
ଯେପରି ଭେଟିଁ ଅଭିଶପ୍ତା ରାଜକନ୍ୟା
ନିମିଷେ ଉଠିଲା ଜାଗି, ସହସ୍ର ବର୍ଷର ପରେ,
ଯାଦୁ ଦଣ୍ଡ ସ୍ପର୍ଶେ ।
ସେ କିଏ ? ସାଗର ? ନା, ନା—
ସେ ଯେ ସୁବର୍ଣ୍ଣ-କୁଆର
କୁବେର ଭଣ୍ଡାରୁ ବୋହି
ଧରାର ସୀମାନ୍ତ ବାହି—
ଉଚ୍ଛଳିତ—ଉଚ୍ଛ୍ୱସିତ ହୋଇ ପ୍ରଭାତ ଆଲୋକେ,
ହିଲ୍ଲୋଳେ ଗୃହଲୁଛି ଧାଇଁ ।
ଦୂରେ—ଶ୍ୟାମଳବନାନୀ
ବିବାହର କନ୍ୟାସମ—ହରିଦ୍ରା ମାଖିଛି ଦେହେ ।
ମଙ୍ଗଳ ଉତ୍ସବେ
ଦିଗଙ୍ଗନା ଦିଏ ହୁଳହୁଳି—
ଆକାଶେ ପବନେ—ଜଳେ ସ୍ଥଳେ ଆଜ
ଅପରୂପ—ଅମୃତ ଆଭାସ ।
( ଦୂରେ ମାଦଳ ଧ୍ୱନି ଶୁଣାଗଲା )
ଏ'କି ଶୁଣେ । ଏ'ଯେ ମାଦଳର ଶବ୍ଦ ?
ଆସନ୍ତି କି କୁମାରୀର ଦଳ ?
ଧୀରେ ଧୀରେ ବନପଥ ଦେଇ—
ଚପଳ ଚରଣେ—ଦୋହଲାଇ କଟି
ଗୃହଲନ୍ତି କାହିଁ—
ଚଞ୍ଚଳା ଝରଣାସମ ବାଧା ବିଘ୍ନ ଏଡ଼ି ।
ବାଜୁଅଛି କଙ୍କଣ କିଙ୍କିଣି
କି ସୁନ୍ଦର ।
[ ଲଳିତା ଓ ସଖିଗଣ ପ୍ରବେଶ କରି ପାଣିରେ
ପଶିବାର ଉଦ୍ୟୋଗ କଲେ ]
କି ସୁନ୍ଦର ଗତିଭଙ୍ଗୀ ।
ପ୍ରତି ପାଦକ୍ଷେପେ ସାଗରବେଳାରେ

ରକ୍ତ ପଦ୍ମ ଉଠୁଅଛୁ ଫୁଟି ।
ଦେହ ଘେରି ଉଛୁଳି ଯୌବନ
ସାଗର ତରଙ୍ଗ ସମ ଉଠଇ ଉଚ୍ଛୁଳି ।
( ସମସ୍ତେ ପାଣିକୁ ଓହ୍ଲାଇଲେ )
ଚମତ୍କାର—ଚମତ୍କାର ।
ସାଗର ବକ୍ଷରେ ଯେପରି—
ଶୁଭ୍ର ଫୁଲ୍ଲ କୁସୁମ ସ୍ତବକ,
ଦୋହଲି ଦୋହଲି ନାଚେ ତରଙ୍ଗ ଆଘାତେ ।
ବାଃ—କି ସୁନ୍ଦର ଜଳକେଳି ଗାନ—
ଝରଣାର କଳଧ୍ୱନି ସମ
ମୁଖରିତ କରି ପ୍ରଭାତ ସମୀର
ଧୀରେ ଧୀରେ ଆସୁଅଛି ଭାସି ।
[ ସଖିଗଣ ସହ ଲଳିତା ଜଳକେଳି କରୁଥିଲେ
ଓ ଗୀତ ଗାଉଥିଲେ ]

—ଗୀତ—

ସାବଧାନେ ପଶିବୁ ସଖି ସାଗର ଜଳେ ।
ଭୁଲ ହେଲେ ତଳେଇ ଯିବୁ ଢେଉଁ ଅତଳେ ॥
ଲଳିତା—ମୁଁ ତ ଅତଳ ଦେଖିବାକୁ ଚାହେଁ ।
ସଖିଗଣ ସାଗର ତଳେ ଅଛି କେତେ ରତ୍ନରାଶି
ଦେଖିବାକୁ ମନ ପରା ହୁଅଇ ଖୁସି
ଲଳିତା—ନ ହେବ କାହିଁକି ଭଲ ?
ସଖିଗଣ—ସତେ ଏତେ ଚଞ୍ଚଳ ହେଲୁ କେବେ ?
ଦେଖ୍, ଗୋଡ ଖସାଇ ନ ଦେଲେ ଗଲେ ।
ଲଳିତା—ମୁଁ ଯେ ରାଜାର ବେଟୀ—
ମଇନା -- ତା ହେଲେ ତ ଫୁଲକଢ଼ିଟି ।
ଲଳିତା—ଜାଣୁତ ମୁଁ ସମୁଦ୍ର ତେଉରେ ଦେହ ଭସାଏ
—ପାହାଡ଼ ଡେଇଁ ଅବାଧେ ଧାଏଁ—ଆଉ ବାଘ
ଦେଖିଲେ ଚୁପି ଧରେ ତାର ତୋଟି—
( ମଇନାର ଗଳା ଚୁପି ଧରିଲେ )
ମଇନା—ଅଲୋ ଛାଡ଼ ଛାଡ, ମୁଁ ଯେ ମଇନାଟି—
ବୁଲ୍‌ବୁଲ୍—( ଦୌଡ଼ିଆସି ) ସଖି ଦେଖିଲୁଣି ସେଠି
କିଏ ଛିଡ଼ା ହୋଇଛି—ରାକ୍ଷସ ନା' କଣ ?
କେମିତି ଆଡ଼ ମଣ୍ଡ କରି ଚାହୁଁଛି ।

ମଇନା—ସତେତ ଗିଳି ପକେଇବ ନାହିଁତ ଆମର
ରସମଞ୍ଜରୀଟିକୁ ?
ଲଳିତା—( ସ୍ୱଗତ ) କିଏ ଏହି ସୁନ୍ଦର ଯୁବକ
ସନ୍ନ୍ୟାସୀର ବେଶେ ? ଗାଣ୍ଡୀବୀ ଅର୍ଜ୍ଜୁନ କିବା
ରୈବତକେ ହୋଇଲେ ଉଦୟ ?
ବିଦ୍ୟାପତି—(ସ୍ୱଗତ) ମାଧବ ! ଏ ତ ନୁହେଁ ଛଳନା
ତୁମର ?
ଖାଣ୍ଡବ ଦାହନ ଅନ୍ତେ—ଜର୍ଜ୍ଜରିତ ଅନ୍ତର-
ଦାହନେ ହେବବାକୁ ପୁନଃ ଫାଲ୍‌ଗୁନୀରେ—
ସୁଭଦ୍ରା ସାକ୍ଷାତେ ଇଚ୍ଛା ପରା ତବ ?
ମଇନା—ଲକ୍ଷ୍ୟ ତ ଠିକ୍ ଅଛି—ଏଥର ଶିକାରଟା
ଭରି ପକାଅ ଧନମଣି ।
ଲଳିତା—ଆଃ—ଉଠି ଆସୁନାହିଁ କାହିଁକି ଶୀଘ୍ର—
କେତେ ବେଳ ଅଉ ?—
ମଇନା—ଭୟ କରନା – ଭୟ କରନା, ଧନୀ—
ଲଳିତା — କ'ଣ କହିଲୁ - ( କେଶ ଧରିଲେ )
ମଇନା - ଆଗୋ ମୋ ବାଳଗୋଛି ଗଲା ଗୋ —
ଦେଖ, ଏମିତି ପାଟି କରିବି—
ଲଳିତା—ପ ଟି କରିବୁ ?
ମଇନା—ଆଗୋ ମୋତେ ବୁଡେଇ ମାରିପକାଇଲା
ଗୋ—
ଲଳିତା—ପୁଣି ?
ମଇନା—ଦୁହାଇ ତୁମର—ଛାଡ଼ିଦିଅ । ତୁମର
ବୀରତ୍ୱକୁ ଶହେ ଜୁହାର ।
ଲଳିତା —ଖାଲି ସେତିକିରେ ପାର ପାଇବୁ ମନେ
କରିଛୁ ପରା ? କାନମୋଡ଼—ନାକଘସ—
ଉଠ୍‌ବସ କର ଶହେଥର ।
( କଥାର ଅବସରରେ, ମଝେ ମଝେ ବିଦ୍ୟାପତିଙ୍କୁ
ଚାହୁଁଥିଲେ )
ବିଦ୍ୟାପତି—କିଏ ଏ ସୁନ୍ଦରୀ ?
ଦେବୀ ଅବା ସ୍ୱର୍ଗର ଅପ୍‌ସରୀ ?
ମର୍ତ୍ତ୍ୟଲୋକେ ଏ ସୌନ୍ଦର୍ଯ୍ୟ ଅସମ୍ଭବ ।
ନୀଳ ସେହି ନୟନ ପ୍ରାନ୍ତରୁ ସୁତୀକ୍ଷ୍ଣ ଶାୟକ ଆସି
ଜର୍ଜ୍ଜରିତ କରୁଛି ଅନ୍ତର ।

ସେହି ମୃଦୁହସ—ସେହି ଅଧର ଦଂଶନ—
କାମନାର ଶିହରଣ ଜଗାଏ ଅନ୍ତରେ ।

ବୁଲ୍ ବୁଲ—ଆଲୋ ଉଠି ଆ—ଉଠ ଆ—ଦେଖ ନା
କେମିତ ଭାଳଗଛ ସମାନ ଉଚ୍ଚ ଢେଉଟାଏ
ଆସୁଛି—

ମଇନା—(ପଳାଇ ଆସି) ରାଜକୁମାରୀ—ରାଜକୁମାରୀ—
ଗଲ—ଗଲ—
[ ଗୋଟାଏ ବଡ଼ଢେଉ ଆସି ଲଳିତାଙ୍କୁ ଦୂରେ
ଭସାଇ ନେଇଗଲା—ମଇନା ଚିତ୍କାର କରି
ଉଠିଲା ଭୟରେ ]
—ବୁଡ଼ିଗଲ—ଧର—ଧର

ବିଦ୍ୟାପତି—ଭୟ ନାହିଁ—ଭୟ ନାହିଁ ବାଳା—
[ ସମୁଦ୍ରରେ ଝମ୍ପଦେଇ ଲଳିତାଙ୍କୁ ଉଦ୍ଧାରକଲେ ]

ମଇନା—ଉଦ୍ଧାର କରୁଛିରେ—ଉଦ୍ଧାର କରୁଛିରେ—
ଦେଖ୍—ଦେଖ୍ ।

ବୁଲ୍‌ବୁଲ୍—ଦେଖୁଛୁ ସଖି, କେମିତ କୋଳରେ ଧରି
ଆଣୁଛି ସଖିଙ୍କୁ । ମନେ ହେଉଛି ସତ୍ୟରାଣୀ
ଉମା ଯେପରି ଶଙ୍କରଙ୍କ କୋଳରେ ଆଶ୍ରୟ
ନେଇଛି ! ହେଇ ଦେଖ୍—ଆଖି ଖୋଲୁଛି ।
ତମେ ସବୁ ଆସ, ଏହି ଗଛ ଆଢୁଆଳରେ
ରହି ମଜା ଦେଖିବା । ( ଚାଲିଗଲେ )
[ ଲଳିତାଙ୍କୁ ଘେନି ବିଦ୍ୟାପତି ପ୍ରବେଶ କଲେ ]

ଲଳିତା—ମୋତେ ଛାଡ଼ିଦିଅ—ଛାଡ଼ିଦିଅ ।

ବିଦ୍ୟାପତି—ଠିଆ ହେବାର ଶକ୍ତି ଯେ ଆପଣଙ୍କର
ନାହିଁ ।

ଲଳିତା—ନା—ନା—ଖୁବ୍ ଶକ୍ତି ଅଛି—ଖୁବ୍—

ବିଦ୍ୟାପତି—ଏହିତ ପଡ଼ି ଯାଉଛନ୍ତି—ଆପଣଙ୍କର
ହାତଟି ମୋତେ—

ଲଳିତା—ମଇନା—ବୁଲ୍‌ବୁଲ୍—

ବିଦ୍ୟାପତି—କୌଣସି ଭୟ ନାହିଁ—ବିଦେଶୀ ହେଲେ
ମଧ୍ୟ—ମୁଁ—

ଲଳିତା—ଚୁପ୍—ଚୁପ୍ ( ଚାରିଆଡ଼େ ଚାହିଁ—ଅସ୍ତେ
ଅସ୍ତେ ) କେହି ଯେପରି ନ ଦେଖନ୍ତି—କେହି
ଯେପରି ନ ଶୁଣନ୍ତି—କେହି ଯେପରି ଘୁଣାକ୍ଷରରେ
ମଧ୍ୟ ଜାଣି ନ ପାରନ୍ତି ଯେ—ତୁମେ—ତୁମେ—
ତୁମେ ମୋର ହାତ ଧରିଛ—ମୋତେ—ମୋତେ
ସ୍ପର୍ଶ କରିଛ ।—ନା, ନା ଆଉ ଏକ ମୁହୂର୍ତ୍ତ ସୁଦ୍ଧା
ତୁମେ ଏଠି ରୁହ ନାହିଁ—ତୁମକୁ ତା'ହେଲେ
ଭାରି ବିପଦରେ ପଡ଼ିବାକୁ ହେବ—ଭାରି—

ବିଦ୍ୟାପତି—ମୁଁ ଯେ ଭଲପାଏ ସେହି ବିପଦକୁ ।

ଲଳିତା—ନା, ନା, ମୋତେ ଛୁଅଁ ନା—(ପଳାଇଲେ)

ମଇନା—( ସମ୍ମୁଖକୁ ଆସି ) ସେ କଥା କହିଲେ କଣ
ଚଳିବ ? ଶିକାରଟା ଯେ ତେଣେ ଛଟ୍‌ପଟ୍
ହୋଇ ମଲା ।

ଲଳିତା—ଏତେ ଯଦି ଦୟା—ତା' ହେଲେ ଦୟାକରି
ସେଠି ଯାଇ ତାର ଛଟ୍‌ପଟ୍ ହେବାଟା ବନ୍ଦ କରି
ଦେଉ ନାହୁଁ ?

ବୁଲ୍‌ବୁଲ୍—ଆଲୋ ପଳେଇ ଆ, ପଳେଇ ଆ—ଦେଖୁଛୁ
କିଏ ଆସୁଛି ଏ'ଆଡ଼େ ?

ଲଳିତା—ମାତାଲ ସର୍ଦ୍ଦାରଟା ପରା ? ମଇନା—ତାଙ୍କୁ
ପଳେଇ ଯିବାକୁ କହ—

ମଇନା—ଆମେ ପଳେଇ ଗଲେ ହେବନାହିଁ ?

ଲଳିତା—ଠିକ୍ କହୁଛୁ ସଖି—ମୁହିଁତ ତା'ର ବିପଦର
ମୂଳ ।

ମଇନା—ସମ୍ପଦହିଁ ଯେ ବିପଦର ମୂଳ ହୁଏ ସହି !

ଲଳିତା—ନା ସଖି ଥଟ୍ଟା ନୁହେଁ—ତୁ କଣ ସର୍ଦ୍ଦାରଙ୍କୁ
ଜାଣୁନା ?

ମଇନା—ମୋ ଭଳି ଜାଣେ କିଏ ? ତଥାପି ସେ କାନ୍ତୁ
ଦିନରେ ଚେଷ୍ଟା କରେ ନାହିଁ ।

ଲଳିତା—ହେଇଟି ତ ସେ ଆସି ପହଞ୍ଚିଲା ବୋଲି—
ଆ—ପଳାଇ ଆ—

ମଇନା—ବେଶ୍ ତ—ଶିକାରଟାକୁ ତାହେଲେ ସେହି
ବାଘ ମୁହଁରେ ଛାଡ଼ି ଦେଇ ଯାଏଁ ?

ଲଳିତା—ମଇନା, ପ୍ରାଣର ସହି ମୋର—

ମଇନା—ନୟନଟା କିନ୍ତୁ କେଉଁଆଡ଼େ ସହି ?

ଲଳିତା—ମୋତେ ବାନ୍ଧା ମଇନା ।

ମଇନା—ଏବେତ ବୁଡ଼ାଇ ଦିଏ ତା ବାଦ ଦେଖାଯିବ ।

[ ସମସ୍ତେ ଚାଲିଗଲେ ସର୍ଦ୍ଦାର ପ୍ରବେଶ କରି ବିସ୍ମିତ ବିଦ୍ୟାପତି ପାର୍ଶ୍ଵରେ ଠିଆହୋଇ ଦୃଷ୍ଟିରେ ଦୃଷ୍ଟି ମିଳାଇଲେ ]

ସର୍ଦ୍ଦାର—ନଜରଟା ଟିକିଏ ଏଆଡ଼େ—( ବିଦ୍ୟାପତି ଚମକି ଚାହିଁଲେ ) ଓ୍, ନୀଳପଟ୍ଟି ବଦଳରେ କଳାଦୈତ୍ୟଟାଏ ଦେଖି ଚମକି ଉଠିଲୁ ନା କଣ ? ହାଃ—ହାଃ—

ବିଦ୍ୟାପତି—କିଏ ତୁମେ ? ଘୁଞ୍ଚି ଯାଅ ।

ସର୍ଦ୍ଦାର—ହଁ ବୀର ନିଶ୍ଚୟ । କିନ୍ତୁ, ତୋର ନଜରଟା ସେହି ଟୋକୀଙ୍କ ଉପରେ କାହିଁକି ? ବୀରପଣିଆ କମି ଯାଇଥିଲା ନା କଣ ?

ବିଦ୍ୟାପତି—ଶିକ୍ଷିତଙ୍କୁ ତୁମେ ଆଜି ଭଲ ଶିକ୍ଷା ଦେଇଛ—ତୁମକୁ ପ୍ରଣାମ ।

ସର୍ଦ୍ଦାର—ତା' ହେଲେ ଆଉ ଲଢ଼ିବାକୁ ହେଲା ନାହିଁ—ଶରଣ ନେଲୁ ଯେତେବେଳେ । ଆଚ୍ଛା ତୋର ନା' କଣ ?

ବିଦ୍ୟାପତି—ମୋର ନାମ ? ବିଦ୍ୟା—ବି—ସୁ—ସୁଦାସ—ସୁଦାସ ।

ସର୍ଦ୍ଦାର—ବାଃ—ବେଶ୍ ନାମ । ଆଚ୍ଛା ସୁଦାସ, ଯିବୁ ମୋର ସଙ୍ଗେ ? ଆଜି ଆମର ପରବ ଦିନ—ଚୈତ୍ରୀ ପୁନେଇ—ଭାରି ନାଚ ହେବ—ଗାଉଣା ହେବ—ମଉଜ ହେବ—

ବିଦ୍ୟାପତି—ତୁମ ସାଙ୍ଗରେ ?—ଚାଲ ଭାଇ ।

ସର୍ଦ୍ଦାର—ଆରେ 'ଭାଇ' କହୁଛୁରେ—'ଭାଇ' କହୁଛୁ ଆ—ଆ—ତୋତେ କୁଣ୍ଢେଇ ନାଚିବି ତୋତେ ବଡ଼ ବଡ଼ ଦି'ହାଣ୍ଡି ହାଣ୍ଡିଆ ପିଆଇବି—ଦି'ଟା ବାର୍ହା ମାରି ଖୁଆଇବି ।

ବିଦ୍ୟାପତି—ମାଧବ ।

ସର୍ଦ୍ଦାର—ହାଃ—ହାଃ—ହାଃ । 'ମାଧବ', ଜାଣୁ ଆମର ରାଜା ସେହି 'ମାଧବ'ଙ୍କୁ ପୂଜା କରେ ?

ବିଦ୍ୟାପତି—'ମାଧବ !'

ସର୍ଦ୍ଦାର—ହଁ ରେ ହଁ 'ନୀଳମାଧବ' ।

ବିଦ୍ୟାପତି—ନୀଳମାଧବ !

ସର୍ଦ୍ଦାର—ଜାଣୁ—ଆମର ରଜା— ସେ କେବେହେଲେ ହାଣ୍ଡିଆ ପିଏନା—ମାଛ ମାଉଁସ ଖାଏନା—ଛଇ ବି ଆଜି ଖାଇବି—ଖାଇ ମାତାଲ୍ ହେବି ।

ବିଦ୍ୟାପତି—କେଉଁଠି— କେଉଁଠି ତୁମର ନୀଳମାଧବ ?
( ଆତ୍ମ ସମ୍ବରଣ କଲେ )

ସର୍ଦ୍ଦାର—ଆଃ ତୁ ! ଭାରି ବୋକା ।—ସେହି—ସେହି ଜଙ୍ଗଲ ଭିତରେ ! ଦେଖି ପାରୁନାହୁଁ ? ସେହି ଯେ ଗୋଟାଏ ଉଚ୍ଚ ପାହାଡ଼, ଦୈତ୍ୟଭଳି ମୁଣ୍ଡ ଟେକି ଛିଡ଼ା ହୋଇଛି—ତା'ର ଦେହରେ ଗୋଟାଏ ଖୋଲ—ଆଉ ସେହି ଖୋଲ ଭିତରେ—ଆମର ଦେବତା 'ନୀଳମାଧବ' । ରଜା ଆମର ସେଠିକି ଏକା ଯାଏ, ଏକା ଆସେ—ରୋଜ ସଞ୍ଜେ, ସକାଳେ ।

ବିଦ୍ୟାପତି—ତା'ପର ?

ସର୍ଦ୍ଦାର— ବାଃ— ତା'ପର ଆମେ କେମିତି ଆଉ କିଛି ଜାଣିବୁ ଭଲା ? ତେବେ ଶୁଣିଛୁ—ଆଉ ଯିଏ ସେଠାକୁ ଯାଇଛି, ସେ ଫେରି ଆସି ନାହିଁ । ଯେଉଁ ପଥରର ବାଘ ସେହି ଖୋଲ ମୁହଁରେ ଅଛି ସେଟା କୁଆଡ଼େ ସତକୁ ସତ ବାଘ ହୋଇ—ଯିଏ ଯାଏ, ତାକୁ ଝପ୍ କରି ଗିଳି ପକେଇ ପୁଣି ଯେଉଁ ପଥରକୁ ସେହି ପଥର ହୋଇ ଯାଏ । ହଁ ଦେଖ୍ ଭାଇ ଏ କଥା ଯେପରି କୌଣସି ବିଦେଶୀକୁ ନ କହୁ—ଆମକୁ ମନା ଅଛି କହିବାକୁ—

ବିଦ୍ୟାପତି—ମୁଁ ତ ବିଦେଶୀ—

ସର୍ଦ୍ଦାର—ଥରେ 'ଭାଇ' କହିଛୁ ଯେତେବେଳେ, ଆଉ କି ବେମାନି କରି ପାରିବୁ ?

ବିଦ୍ୟାପତି—'ମାଧବ' ! ତୁମେ ଏମାନଙ୍କ ମଧ୍ୟରେ କି ରହିବତ, ରହିବ କଣ ସେହି କୁଟିଳ—ବିଳାସଲୋଭୀ—ସ୍ଵାର୍ଥାନ୍ଧ—ସଭ୍ୟନାମଧାରୀ ହିଂସକଙ୍କ ମଧ୍ୟରେ ?

[ ରାଜା ଆସିବାର ସଙ୍କେତ ଧ୍ଵନି ଶୁଣାଗଲା ]

ସର୍ଦ୍ଦାର—ଅରେ ରାଜା ଆସୁଛରେ—ରାଜା ଆସୁଛି—ଆ—ଆ

ମଇନା—( ହୁରକୁ ନେଇ ) ସର୍ଦ୍ଦାର ତୁ କରୁଛୁ କ'ଣ ?

ସର୍ଦ୍ଦାର—କହିଁକି ?—କଣ ହୋଇଛି ମଇନା ?

ମଇନା—ଏଇ ଲୋକଟା କ'ଣ କରୁଛି ଜାଣୁ ?

ସର୍ଦ୍ଦାର—ନ କହିଲେ ଜାଣିବି କିପରି ସଖି ?

ମଇନା—ତେବେ, ଏହି ମୁଣ୍ଡ—ଏହି ତେମା ତେମା ଦାଟା ଅଖି ଧେନି କିପରି ସର୍ଦ୍ଦାରୀ କରୁଛୁ କହିଲୁ ?

ସର୍ଦ୍ଦାର—ହେଁ—ହେଁ ସେଥିରେ ପାରୁନାହିଁ ବୋଲିତ ତୋତେ ଏତେ ନେହୁରା ହେଉଛିନା, ମଇନା ?

ମଇନା—ନେହୁରା ହେବୁ ଯଦି—ରାଜାଙ୍କଅ ପାଖରେ ହେଲେତ ନାମ ଦେବ ?

ସର୍ଦ୍ଦାର—ସତେ—ସତେ ? ତୁ ସେମିତ କିଛି ଅଞ୍ଚ ପାଇଛୁ ନା କ'ଣ ?

ମଇନା—ଅରେ ରାଜାର ବେଟୀ ଯେ ଜିଦ୍ ଧରିଛି, ଅଜ ନିଶ୍ଚୟ ବାହା କରିବ ।

ସର୍ଦ୍ଦାର—ସତେ—ସତେ ? ଅଜ ? ମଇନା—ତୋତେ କଣ ବକ୍‌ସିସ୍ ଦେବ କହିଲୁ ?

ମଇନା—ତୋର କାନ ଦାଟା ।

ସର୍ଦ୍ଦାର—ଖାଲି କାନ ଦାଟା ? ହାଃ—ହାଃ—ହାଃ—ହାଃ—

—ଗୀତ—

କାନ କାହିଁକି ? ଅଜ ତୋତେ ଦେବ ଲୋ ମୋ ଜାନ୍ ।

ମଇନା—ଯାରେ ଯା ତୁ ପୋଡ଼ାମୁହାଁଟା

ବେହିଆ ବେଇମାନ୍ ॥

ସର୍ଦ୍ଦାର—ଜାଣୁ, ମୁଁ ହୋଇଲି ରାଜା ?

ମଇନା—ମୋତେ କି ଦେବୁ ତୁ ସଜା ?

ଉଭୟେ—ଅ'ନା ଥରେ ପରଖି ନେବା

ତା'ର କେତେ ଟାଣ୍ ॥

ସର୍ଦ୍ଦାର—( ମଇନା କାନ ମୋଡ଼ି ଦେବାରୁ ) ଆହା ହା—ମୋ କାନ ଗଲା—କାନ ଗଲା—

ମଇନା—ଅରେ ଓଲୁ—ଶୁଣିଛୁ, ସେ ଅଜ କଣ କରୁଛି ?

ସର୍ଦ୍ଦର—କଣ କରୁଛି ? ( ବିଦ୍ୟାପତିଙ୍କୁ ) କିରେ କ'ଣ କରୁଛୁ ଟୋକା ?—ଜଲ୍‌ଦି କହ—ନଇଲେ —ନଇଲେ ଜାଣୁ ମୁଁ କ'ଣ କରିପାରେ ? ଦେଖୁଛୁ ହୁରରେ ସେହି ଯେ ଗଛଟା—ତାର ଯୋଡ଼ାଏ ଡାଳ ଧରି ତୋ ଦି ଗୋଡ଼କୁ ବାନ୍ଧି ଫାଁ କରି ଛାଡ଼ିଦେବି—ଆଉ ଫାଁ କରି ତୁ ଦିଫାଳ ହୋଇ ଦି'ଆଡ଼େ ଝୁଲୁଥିବୁ ।

ମଇନା—ଏ ଯାଏଁ ତ ଶୁଣିଲୁ ନାହିଁ—ସେ କ'ଣ କରୁଛି ?

ସର୍ଦ୍ଦାର—ଦେଖ୍ ମୁଁ ଭାରି ରାଗି ଗଲିଣି । ସବୁ ଶୁଣିଲେ ହୁଏ ତ ଗୋଟାଏ ବଡ଼ ରକମର କନ୍ଦର୍ପ କାଣ୍ଡ କିଛି କରି ବସିବି । ତା' ଅପେକ୍ଷା ଯାହା ଶୁଣିବାର ତାହା ରାଜା ପାଖରୁ ଶୁଣିବି ।

ମଇନା—ଆଉ ସଙ୍ଗେ ସଙ୍ଗେ ନିଜର ବୀରପଣିଆଟା ଦେଖେଇ ଦେବୁ ।

ସର୍ଦ୍ଦାର—ମନର ଦୁଃଖ କା'କୁ କହିବି କହ ? ଏଟର କପାଳ ମୋର—ଯେ ଗୋଟାଏ କାଉ କି ବାଲେଇ ମଧ ମୋ ଶର ମୁହଁରେ ଲାଗିଲା ନାହିଁ, ଅଜଯାଏ ।

ମଇନା—ତା ହେଲେ କପାଳଗୁଣରୁ ଯଦି ଏମିତ ଗୋଟିଏ ବଡ଼ ଶିକାର ଜୁଟି ଯାଇଛି—ତାକୁ ହେଲାରେ ଠେଲି ଦେବା ଉଚିତ ନୁହେଁ ।

ସର୍ଦ୍ଦାର—କେବେଁ ନୁହେଁ । ( ବିଦ୍ୟାପତିଙ୍କୁ ) ହେଇ, ଚାଲ ମୋ ସାଙ୍ଗେ । ମଇନା ! ଚାଲ ଦେଖିବୁ ମୋର ବୀରପଣିଆ । ହୁଁ, ଏଥର ଅଉ ସୁନ୍ଦରୀମାନେ ମୁରକି ମୁରକି ହସି ପାରିବେ ନାହିଁ କହି ଦେଉଛି—ଠିକ୍—

ମଇନା—ଅରେ, କନ୍ଥୁକୁ ବାନ୍ଧି ନେ—

ବିଦ୍ୟାପତି—ମୋର ଅପରାଧ ?

ମଇନା—ନିଜ ମନକୁ ନିଜେ ଥରେ ପଚାରି ବୁଝ ।

ସର୍ଦ୍ଦାର—ଦେଖ୍, ବେଶୀ ବକ୍ ବକ୍ କଲେ—ହୁଁ—

ବିଦ୍ୟାପତି—କ'ଣ ? ( ସର୍ଦ୍ଦାର ଖାପରୁ ତରବାରୀଟା ବାହାର କରି ନେଲେ )

ସର୍ଦ୍ଦାର—ଅରେ ମଇନା—ଏଟାତ ଭଲ ଲୋକ ନୁହେଁ—ତୁ ଖୁବ୍ ହୁସିଆର ହୋଇ ପହରା

ଦେ'ଭ—ମୁଁ ଏହିକ୍ଷଣି କଟୁଆଳକୁ ଡାକିଆଣି
ତାର ମଜା ବାହାର କରୁଛି ।

[ ରାଜା ବିଶ୍ୱାବସୁ ପ୍ରବେଶ କଲେ ]

ବିଶ୍ୱାବସୁ—କ'ଣ ହୋଇଛି ରେ ସର୍ଦ୍ଦାର ?

ସର୍ଦ୍ଦାର—ରାଜା, ଏହି ଲୋକଟା—( ମଇନାକୁ )
କହନା—କିଏ ?

ମଇନା—( ସର୍ଦ୍ଦାରକୁ ) କିଏ ମୁଁ କିପରି ଜାଣିବି ?

ସର୍ଦ୍ଦାର—( ମଇନାକୁ ) ତେବେ ମୁଁ କିପରି ଜାଣେ ?
( ରାଜାକୁ ) ହଁ—ହଁ—ଏହି ଲୋକଟା—ଏହି
ଲୋକଟାକୁ ମୁଁ ବାନ୍ଧି ଆଣିଛି—

ବିଶ୍ୱାବସୁ—ତା'ତ ବେଶ୍ ଦେଖି ପାରୁଛି—କାରଣ
ତା ହାତରେ ରହିଛି ଯେତେବେଳେ ତୁମର
ତରବାରି—

ସର୍ଦ୍ଦାର—ଏହି—ଧାରଟା ଠିକ୍ ଅଛି କି ନା
ପରଖିବାକୁ ଦେଇଛି ।

ବିଶ୍ୱାବସୁ—ଭାଗ୍ୟକୁ ତୁମ ବେକରେ ଲଗେଇ ପରଖି
ନାହିଁ—ବଡ଼ୁରି ଭଲ ମଣିଷ—

ସର୍ଦ୍ଦାର—'ବଡ଼ୁରି ଭଲ ମଣିଷ' ସେଇଥି ଲାଗିତ ତାକୁ
ଡାକି ନେଇ ଯାଉଥିଲି—ଏହି ମଇନାଟା ଯେତେ
ଗୋଳମାଳର କାରଣ—

ବିଶ୍ୱାବସୁ—କାହିଁକି ? କଣ କଲା ମଇନା ?

ସର୍ଦ୍ଦାର—ମଇନା ? ସେ—ସେ—କହିଲା—
କହିଲା—'ସେ କଣ କରୁଛି ଜାଣୁ ?'

ମଇନା—କେତେବେଳେ କହିଲିରେ, ପୋଡ଼ାମୁହାଁ ?

ବିଶ୍ୱାବସୁ—ତା' ହେଲେ—ମିଥ୍ୟାବାଦୀ ?

ବିଦ୍ୟାପତି—ସତ୍ୟକଥା ନିବେଦନ କରେ ନରବର ।
ଜଳ-କେଳି-ମତ୍ତ ଯେବେ,
ଥିଲେ ଆଜି ସୁନ୍ଦରୀ ନିଚୟ—
ସହସା ଆସିଲା ଏକ ତରଙ୍ଗ ଭୀଷଣ—
ସ୍ରୋତେ ତା'ର ଗଲେ ଭାସି ସୁନ୍ଦରୀ ପ୍ରଧାନା—
ସଖିମାନେ ଆତଙ୍କରେ କଲେ ଚିତ୍କାର—
ସେ ସମୟେ—

ବିଶ୍ୱାବସୁ—କରି ତୁଚ୍ଛ ଆପଣା ଜୀବନ,
ଝମ୍ପଦେଇ ସାଗର ସଲିଳେ—ତୁମେ ଉଦ୍ଧାରିଲ
ତାକୁ ?

ବିଦ୍ୟାପତି - କର୍ତ୍ତବ୍ୟ ମୋହର—

ଲଳିତା—( ପ୍ରବେଶ କରି ) ସାବଧାନ ଅତି ସାବଧାନ
ଥିଲି ମୁହିଁ, ପିତା !

ବିଶ୍ୱାବସୁ—ଯେପରି, ସେ ଅଙ୍ଗସ୍ପର୍ଶ ନ କରେ ତୁମ୍ଭର—
ନା ?—( ହସିଲେ )

ଲଳିତା—ବାବା—

ବିଦ୍ୟାପତି—କରିଅଛି ଅପରାଧ—ଅପରାଧୀ ମୁହିଁ—
ଦିଅ ଦଣ୍ଡ ରାଜା—

ବିଶ୍ୱାବସୁ—ଜାଣ ଯୁବା—ଆମ କୁଳେ—
କୁମାରୀର ଅଙ୍ଗସ୍ପର୍ଶ କରଇ ଯେ ଜନ,
କିବା ଶାସ୍ତି ତା'ର ?

ବିଦ୍ୟାପତି—ଜାଣେ କି ଅଜ୍ଞାତେ—ଯେ କାରଣେ
ହେଉ,
ସ୍ପର୍ଶ କରେ ଯଦି କେହି କୁମାରୀର ଅଙ୍ଗ—
ବଧ ସେହିଜନ ।

ବିଶ୍ୱାବସୁ—ବଧ ? ହଁ—ବନ୍ଧ ସେହିଜନ—ବନ୍ଧ
ସେହି ଚିରଦିନ ଲାଗି, ସେହି କୁମାରୀ ସଙ୍ଗରେ
( ଲଳିତା ଓ ବିଦ୍ୟାପତିର ହାତ ଏକାଠି
କଲେ—ବିଦ୍ୟାପତି ଓ ଲଳିତା ବିସ୍ମିତ—
ପୁଲକିତ ହୋଇ ଉଠିଲେ ) ଏଥର—
ଉତ୍ସବ—ଉତ୍ସବ—( ପ୍ରସ୍ଥାନ )

ବିଦ୍ୟାପତି—( ସହସା ଚମକି ଉଠିଲେ ) ଉତ୍ସବ—
କାହିଁ ଉତ୍ସବ ?
ନିରୁତ୍ସବ ଦେଖେଁ ଚତୁର୍ଦ୍ଦିଗ ।
ଗଗନର ଗ୍ରହ ତାରା ନିସ୍ତବ୍ଧ ମଳିନ—
ପବନର ଗତି ବେଗ ନିସ୍ତବ୍ଧ ନୀରବ—
ସମୁଦ୍ର ଗର୍ଜନ ଯେବେ ଶୁଣାଉଛି କର୍ଣ୍ଣେ,
କ୍ରନ୍ଦନର ତୀବ୍ର କଣ୍ଠ ମୋର—
କର୍ତ୍ତବ୍ୟ-ନିଷ୍ଠାର ସଙ୍ଗେ
ହେଉଛି ପ୍ରଣୟ ମୋର—ଚିର ପରଣୟ

ସର୍ଦ୍ଦାର—ମଇନା—

ମଇନା—କ'ଣରେ ଖଣ୍ଡିଆ ।

[ ବିଶ୍ୱାବସୁ ପୁନଃ ପ୍ରବେଶ କଲେ ]

ବିଶ୍ୱାବସୁ—ଆରେ—ଆରେ ମୁଁ ଭୁଲ କରିଛିରେ, ଭୁଲ କରିଛି । ପୁରସ୍କାର ଯେ ବାକି ରହିଯାଇଛି ରେ—ବାକି ରହିଯାଇଛି । ( ସର୍ଦ୍ଦାର ସଙ୍ଗେ ମଇନାକୁ ଏକାଠି କରି ଦେଲେ ) ହେଲା ? – ଏଥର ହେଲା ? କିରେ ତୁ ଭାବୁଛୁ କଣ ବେଟା ? ଲଳିତା—ଆରେ ବେଟି !—ଲଜ୍ଜା କ'ଣ ଆଜି ?—ଉତ୍ସବ—ଉତ୍ସବ—ସାରା ରାଜ୍ୟରେ ଚାଲିବ ଆଜି ଉତ୍ସବର ଅଖଣ୍ଡ ପ୍ରବାହ—ଉତ୍ସବ—ଉତ୍ସବ—

( ପ୍ରସ୍ଥାନ )

ସର୍ଦ୍ଦାର—ଅବଶେଷେ ତୋ'ର ଫାନ୍ଦରେ ପଡ଼ିଲି ମଇନା ?

ମଇନା—ଧରାଦେଇ ପୁଣି ଅପ୍‌ଶୋଷ ? ମନେ ନାହିଁକିରେ ଡକେଇତ, ସେ ଦିନ କଥା—ଆମ ବାଡ଼ିପାଖ ଗାଡ଼ିଆର ଅଣ୍ଟୁଏ ପାଣିରୁ ଯେଉଁଦିନ ତୋତେ ଟାଣି ଉଧୁରି ଆଣିଥିଲି ?

ସର୍ଦ୍ଦାର—ହୋଃ—ହୋଃ—ହୋଃ—ହୋଃ—ଅରେ ବାବାରେ, ଆଉ କହନା—ସେ ଦିନର ସେ ଅଙ୍ଗସ୍ପର୍ଶ କଥା—ସେ କଣ ଯେମିତି ସେମିତି ଅଙ୍ଗସ୍ପର୍ଶ ! ମନେ ହେଲେ, ଦେହଟା ମୋର ଶିରଶିର ହୋଇ କଣ୍ଟାଦେଇ ଉଠେ ପରା—ଏଇ ଦେଖନା ?

[ ବହୁ ଲୋକସହ ବିଶ୍ୱାବସୁ ପୁଣି ପ୍ରବେଶ କଲେ ]

ବିଶ୍ୱାବସୁ—ଆଣିଛି—ଆଣିଛି ଯାକୁ ପାଇଛି ତାକୁ ଡାକି ନିମନ୍ତ୍ରା କରି ଆଣିଛି । କର—କର ସବୁ ଆନନ୍ଦ—କର ସବୁ ଉତ୍ସବ—ଆଜି ବିରାମହୀନ ଭାବେ ଚାଲୁ ଉତ୍ସବର କୋଳାହଳ । ( ସହସା ) ସଚେତ—ସଚେତ—ମୁଁ ଗୋଟାଏ ମହା ଭୁଲ କରିଛିରେ—ମହା ଭୁଲ କରିଛି । ମୋର ନୀଳମାଧବଙ୍କୁ ତ ମୁଁ ମୋର ଉତ୍ସବ ନିବେଦନ କରିନାହିଁ !—କି ଭୁଲ କରିଛିରେ, ଲଳିତା !—ତୋର ପାଇଁ କେତେ ଦିନ, କେତେ ରାତି ଆକୁଳ ମିନତି ଜଣାଇଛି ତାଙ୍କ ପାଦେ—ଆଜି ମୋର ଦେବତା ପ୍ରସନ୍ନ ହୋଇ ମୁହଁ ଟେକି ଚାହିଁଛନ୍ତି—ପ୍ରାର୍ଥନା ପୂର୍ଣ୍ଣ କରିଛନ୍ତି !—ତୁମେ ଆନନ୍ଦ କର—ଉତ୍ସବ କର—ମୁଁ ଜଣାଇ ଆସେ, ମୋର ଦେବତା ନୀଳମାଧବଙ୍କୁ । ନୀଳମାଧବ !—ନୀ-ଳ-ମା-ଧ-ବ !—ଉ-ତ୍ସ-ବ—

( କହୁ କହୁ ଦ୍ରୁତ ପ୍ରସ୍ଥାନ କଲେ )

ବିଦ୍ୟାପତି—(ସ୍ୱଗତ) ନୀଳମାଧବ ! ତୁମରି ସନ୍ଧାନରେ ଆସି ମୁହୂର୍ତ୍ତିର ମୋହରେ—କ୍ଷଣିକର ଭ୍ରମରେ ଏ ମୁଁ କଣ କଲି ! ମା—ମା—ତୁମର ଆଶୀର୍ବାଦ କଣ ବୃଥା ହେଲା ? ବ୍ରାହ୍ମଣର ସନ୍ତାନ ହୋଇ—ଗୋଟାଏ ଶବର କନ୍ୟାକୁ—ଓଃ !

ସର୍ଦ୍ଦାର—କଣ ଭାବୁଛୁରେ ଭାଇ ? ଟିକେ ହାଣ୍ଡିଆ ପିଇ ନେନାରେ—ସବୁ ଠିକ୍ ହୋଇଯିବ ।

ବିଦ୍ୟାପତି—ସାବଧାନ —

ସର୍ଦ୍ଦାର—ଓଁ—ଏପରି କହିଲେ କି ଚଳିବ ? ଦେଖିତ ରାଜାର ବେଟୀ—

ମଇନା—ମାତ୍‌ଲାମି କରିବାକୁ ତର ସହୁନାହିଁ ପରା ?

ସର୍ଦ୍ଦାର—ଅରେ ମାତ୍‌ଲାମି ବର୍ତ୍ତମାନ ନ କରିବି ତ କରିବି କେତେବେଳେ ? କ୍ୟା ମଜା—ସବୁ ରଙ୍ଗୀନ୍ ହୋଇ ଆସୁଛି—ସବ୍‌କୁଛ୍—ହାଃ-ହାଃ ହାଃ—କ୍ୟା ମଜା—କହତ ଦେଖି—

ବିଦ୍ୟାପତି—( ସହସା ଯେପରି ନିଜକୁ ସଂଯତ କରି ନେଲେ ) ହଁ ଠିକ୍ କହୁଛୁ ଭାଇ—'ବର୍ତ୍ତମାନ ନ କରିବି ତ କରିବି କେତେବେଳେ' ! ଆରେ, ଅଣ୍ ଅଣ୍ ତୋର ହାଣ୍ଡି ହାଣ୍ଡି ହାଣ୍ଡିଆ ନେଇଆ—ମୁଁ ଏକା ହିଁ ସବୁ ଶେଷ କରି ଦେବି—ମାତାଲ ହେବି, ତୁମ ସାଥିରେ ସୁର ମିଶାଇ ଗାଇବି—ତାଳ ମିଶାଇ ନାଚିବି । ଆରେ ବଜା—ବଜା—ମାଦଳ ବଜା—ଗା—ଗା—ତୁମର ମିଳିତ କଣ୍ଠ ମୁଖରିତ ହୋଇ ଉଠୁ ତା' ସାଥିରେ—ସେହି ଛନ୍ଦ ସାଥେ, ବାଦଲରାତିର ବିଦ୍ୟୁତ୍ ପରି ତୁମର ନୃତ୍ୟ ଚପଳ ଅଙ୍ଗ ତାଳେ ତାଳେ କମ୍ପି ଉଠୁ—ମୁଁ ସବୁ ଭୁଲିଯାଏ—ସବୁ—

[ ସର୍ଦ୍ଦାରର ଇଙ୍ଗିତରେ ମାଦଳ ବାଜିଉଠିଲା । ଶବର ଏବଂ ଶବରୀମାନେ ଆସି ବିଦ୍ୟାପତି ଓ ଲଳିତାକୁ ଘେରି ଗୀତ ଗାଇ ଗାଇ ନାଚିବାକୁ

ଲାଗିଲେ । ସର୍ଦ୍ଦାର ଓ ମଇନା ଯେପରି ସେମାନଙ୍କର ଅଧିନାୟକତ୍ୱ ଗ୍ରହଣ କରିଥିଲେ। ପୂର୍ଣ୍ଣ ଉଦ୍ୟମରେ ହାଣ୍ଡି ଆପାନ ଚାଲିଥିଲା ]

ଗୀତ

ଶବରଗଣ—ଡିଂ ଡିଂ ଡିଂ ଡିଂ ଡିଂ ମାଦଳ ବଜା ।
ଆରେ ଆ ନାଚିବୁ ଆଜି ଲୁଟିବୁ ମଜା ॥
ଶବରୀଗଣ—ଦେହର ବସନ ଆଜି ଲୋଟଇ ତଳେ ।
ଶବରଗଣ—ନାଗର ରହିଛି ପାଖେ ହାଣ୍ଡିଆ ପି'ଲେ;
ଶବରୀଗଣ—ଆଜି, ମାତାଲି ହେବୁ ଆମେ ପ୍ରେମର ରାଣୀ
ଶବରଗଣ—ସଜାଦେବୁ ଆମେ ସବୁ ପ୍ରେମିକ ରଜା ॥

ସର୍ଦ୍ଦାର—( ଗୀତ ଶେଷ ହେବାରୁ ଚିତ୍କାର କରି ଉଠିଲା ) ଏଇ—ସବୁ ଚୁପ୍‌କଲି କାହିଁକି ? ବଜା—ବଜା—ନାଚ – ଗାଅ—ସାରାରାତି ଆଜି ଆମୋଦ କର—ହାଃ—ହାଃ— କେଡ଼େ ମଜା —କେଡ଼େ ମଜା ।

[ ପୁଣି ମାଦଳ ବାଜିଲା ଶବରୀମାନେ ଗାଇଲେ ଓ ଶବରମାନେ ନାଚିବାକୁ ଲାଗିଲେ ]

ଗୀତ

ଚାନ୍ଦ ସାଜିଛି ବର ଆଜି ଲୋ କନିଆ କୁମୁଦିନୀ
କଳା ବାଦଲ ଫାଙ୍କେ ଫାଙ୍କେ ମଧୁର ଚାହାଣି ॥
ନୀଳସାଗର ଭିତରୁ କେ ଉଠେ କି ଯେ ଡେଉ
ମୁଁ ଜାଣେ, ତୁମେ ଜାଣ—କେହି ନ ଜାଣେ ଆଉ
ଚକୋରୀ ଚାନ୍ଦର ଆଶେ ବୃଥା ପାଗଳିନୀ ॥

---

**ଦ୍ୱିତୀୟ ଦୃଶ୍ୟ—ଶୟନ କକ୍ଷ ।**

[ ବାହାରେ ଭୀଷଣ ଝଡ଼ ଓ ବୃଷ୍ଟି । ବିଦ୍ୟାପତି ଏକାକୀ ବାତାୟନ ପଥଦେଇ ସେହି ଦଗକୁ ଚାହିଁଥିଲେ ।—]

ବିଦ୍ୟାପତି—ଉଃ—ବାହାରେ କି ଭୀଷଣ ଝଡ଼ । ନିରନ୍ଧ୍ର ଅନ୍ଧକାର କଳା ଅଜଗର ପରି ପୃଥିବୀଟାକୁ ଗ୍ରାସ କରୁଛି । ଉପରର ଆକାଶ ଆଉ ତଳର ପୃଥିବୀ ମଧ୍ୟରେ ଯେପରି ଚାଲିଛି ଏକ ବିରାଟ ଦ୍ୱନ୍ଦ୍ୱ । ଆକାଶ ଚେଷ୍ଟା କରୁଛି ତାର ଶତ ସହସ୍ରମୁଖୀ ଜଳଧାରାରେ ଏହି ପୃଥିବୀଟାକୁ ଭାଙ୍ଗି ଚୂରି ଭସାଇ ବୁଡ଼ାଇ ଦେବାକୁ—ଅଭି ପୃଥିବୀ ଯେପରି ଅରଣ୍ୟ ଶାଖା ଦୋଳନର ଇଙ୍ଗିତରେ ଜଣାଉଛି ତାର ପ୍ରତିବାଦ । ( ସହସା ବଜ୍ରପାତର ଶବ୍ଦ ହେଲା ) ଏ କ'ଣ ? ପୃଥିବୀଟା କଣ ଆଜି ମିଶିଯିବ ରସାତଳ ସଙ୍ଗେ । ଅଭି ମୁଁ ? ମୁଁ କେଉଁଠି ? କେଉଁ ସ୍ୱପନ ଖେଳରେ ମାତି ଏଠାରେ ରହିଛି ? ମୋର ଅନ୍ତର ମଧ୍ୟରେ ଯେ ଏହିପରି ସର୍ବଗ୍ରାସୀ ଅନ୍ଧକାର—ଭୀଷଣ ଝଡ଼ବୃଷ୍ଟି । ଆଲୋକ ନାହିଁ—ପ୍ରଦୀପ ନାହିଁ—ପଥର ରେଖାଟି ପର୍ଯ୍ୟନ୍ତ ନିଶ୍ଚିହ୍ନ ହୋଇ ପୋଛି ଯାଇଛି । ମା— ମା—ଶକ୍ତି ଦିଅ ମା ଜ୍ଞାନଦାୟିନୀ—ମୋତେ ଆଲୋକ ଦେଖାଅ ମା, ମୁଁ ଯେପରି ସମସ୍ତ ଅନ୍ଧକାର—ଝଡ଼ ଝଞ୍ଜା ତୁଚ୍ଛ କରି କର୍ତ୍ତବ୍ୟ-ପଥରେ ଅଗ୍ରସର ହୋଇ ପାରେ । ନା, କୌଣସି ବାଧା ମୋତେ ଆଉ ବାନ୍ଧି ରଖି ପାରିବ ନାହିଁ —ମୁଁ ଛିନ୍ନ କରିବି ସମସ୍ତ ବନ୍ଧନ—ଭାଙ୍ଗିଦେବି ଲୌହ ଶୃଙ୍ଖଳ । ବ୍ରାହ୍ମଣ ମୁଁ, ମୁକ୍ତହେବ ନିଶ୍ଚୟ, ଚଣ୍ଡାଳର ଏହି ମାୟାଜାଲ ଛେଦି ।

[ ଉନ୍ମତ୍ତଭାବରେ ଦ୍ୱାର ଖୋଲି ବାହାରି ଯାଉଥିଲେ— କିନ୍ତୁ ସହସା ରହିଗଲେ ]

ନା—ନା ବାହୁବଳ ତ ମୋର ପନ୍ଥା ନୁହେଁ— ମୁଁ କୂଟନୀତିକୁଶଳ ବିଦ୍ୟାପତି—ଏହି ପ୍ରେମ-ଖେଳା ଅଭିନୟ ଭିତରେ ହିଁ ମୋତେ କାର୍ଯ୍ୟୋଦ୍ଧାର କରିବାକୁ ହେବ ।

[ ଦ୍ୱାର ବନ୍ଦକରିବାକୁ ଯାଉଥିଲେ—ସହସା ପ୍ରବେଶ କଲେ ଲଳିତା—ସର୍ବାଙ୍ଗ ତାର ସିକ୍ତ ]

ଲଳିତା—ଭାଗ୍ୟକୁ ତମେ ଦୁଆର ଖୋଲି ଦେଇଥିଲ—

ବିଦ୍ୟାପତି—ସେଇଥିପାଇଁ ରକ୍ଷା, ନା ?

ଲଳିତା—ନୁହେଁ ? ହେଇ ଦେଖନା—ଆଖିର ତାରା ଦି'ଟା ମଶାଲ ପରି କିପରି ଜଳୁଛି ? ( ହୁଡ଼େ ଅଙ୍ଗୁଳି ନିର୍ଦ୍ଦେଶ କଲେ )

ବିଦ୍ୟାପତି—କାହା ପରି ? ( ଦ୍ୱାର ବନ୍ଦ କରୁଥିଲେ )

ଲଳିତା—( ବାଧାଦେଇ ) ଲୁହନା—

ବିଦ୍ୟାପତି—ଭୟ କ'ଣ ? ଘରର ଅଳିଅ ଦେଖି ସେ ଥମି ଠିଆ ହୋଇଯାଇଛି ।

ଲଳିତା—ଅନ୍ଧାର ହେଲେ ଯେ ମୁହୂର୍ତ୍ତିକେ ଦୁଆର ଭାଙ୍ଗି ଘରେ ପଶିବ—

ବିଦ୍ୟାପତି—ଷଣ୍ଢ କଣ ? ଦେଖୁଛ ତ ହାତ ପାଖରେ ତୀକ୍ଷ୍ଣଧାର ବର୍ଚ୍ଛା ରହିଛି ।

ଲଳିତା—କିଛି କରିପାରିବ ନାହିଁ । ଜାଣ ତ ସେ କେଉଁଠାର ବାଘ ?

ବିଦ୍ୟାପତି—ବ୍ୟାଘ୍ରଗୁମ୍ଫାର ?

ଲଳିତା—ହଁ, ଯାଇ ପାରିବ ସେଠାକୁ ?

ବିଦ୍ୟାପତି—(ହସି) ତୁମେ ସେଠାକୁ ଯାଇଥିଲ ନା କ'ଣ ?

ଲଳିତା—ନ ଯାଇ ଆଉ ଉପାୟ କ'ଣ ?

ବିଦ୍ୟାପତି—ଏହି ଝଡ଼ ରାତିରେ ?

ଲଳିତା—ଝଡ଼ ରାତି ବୋଲି ତ ଯିବାକୁ ହୁଏ ।

ବିଦ୍ୟାପତି—ଟିକିଏ ସୁଦ୍ଧା ଭୟ ହୋଇନାହିଁ ତମର ?

ଲଳିତା—ଭୟ ?—ମୁଁ ଯେ ଶବର-କନ୍ୟା ।

ବିଦ୍ୟାପତି—ଓଃ !—ଦେଖିଲି ତମେ ଏ ପର୍ଯ୍ୟନ୍ତ ଓଦା ଲୁଗାଟା ପିନ୍ଧି ଠିଆ ହୋଇଚ, ମୋର ସେ ଖିଆଲ ବି ନାହିଁ—ଥଣ୍ଡା ଲଗିବ ଯେ—( ଖଣ୍ଡେ ଲୁଗା ଆଣିଦେଲେ ) ଏହି ନିଅ—

ଲଳିତା—ଆଃ—ଛୋଇଁବ—ଛୋଇଁବ—

ବିଦ୍ୟାପତି—ଏ ପୁଣି କି କଥା—

ଲଳିତା—ନା—ନା—କେତେ କ'ଣ ଅପବିତ୍ର ଜାଗା ମାଡ଼ି ଚଢ଼ି ଆସିଛି—

ବିଦ୍ୟାପତି—ନା—କେତେବଡ଼ ପବିତ୍ର ସ୍ଥାନରୁ ତୁମେ ଆସୁଛ—ନୀଳମାଧବଙ୍କ ସ୍ପର୍ଶ ଦେନି—

ଲଳିତା—ତଥାପି—ଆମେ ତ ତମମାନଙ୍କର ସ୍ପର୍ଶ ଯୋଗ୍ୟ ନୋହୁ—ମାନବ ସମାଜରେ ଆମେ ଅସ୍ପୃଶ୍ୟ, ଅପବିତ୍ର—ଯଦ୍ୟପି ଏହି ଏକ ନୀଳମାଧବର ଅଂଶ ନେଇ ଧରଣୀରେ ଜନ୍ମଗ୍ରହଣ କରିଛନ୍ତି ସମସ୍ତେ—ବ୍ରାହ୍ମଣ, ଚଣ୍ଡାଳ—

ବିଦ୍ୟାପତି—ଲଳିତା—ଲଳିତା !—ଅଚ୍ଛା ଲଳିତା, ତୁମେ କ'ଣ ମନେକର, ମୁଁ ବ୍ରାହ୍ମଣ ?

ଲଳିତା—ସେ ପରିଚୟରେ ମୋର କି ପ୍ରୟୋଜନ, ପ୍ରିୟତମ ?—ଯେତେବେଳେ ପ୍ରାଣେ ପ୍ରାଣେ—ହୃଦୟେ ହୃଦୟେ ଗୁନ୍ଥା ହୋଇଛୁ ଆମେ; କିନ୍ତୁ—ତଥାପି, ତଥାପି ପ୍ରିୟତମ, ତୁମେ ଆହୁରି—ନିକଟକୁ ଆସ—ଆହୁରି—ଆହୁରି—

ଗୀତ

ଦୂରେ ଦୂରେ କାହିଁ ରହ ତୁମେ
ଗୋପନେ ଗୋପନେ ହେ ପ୍ରିୟ !
ମୂରତି ଧରି ଆସ ଗୋ ପାଶେ
ଏ ମଧୁଲଗନେ ଦେଖା ଦିଅ ॥
କାୟା ତୁମେ ସଖା, ଛାୟା ମୁହିଁ
ତନୁ ମୁହିଁ, ତୁମେ ମନ ତହିଁ
ମୁଁ ଯେ ତଟିନୀ, ସାଗର ତୁମେ
ଚିର ଆକାଂକ୍ଷିତ ବରଣୀୟ ॥

ବିଦ୍ୟାପତି—ତାହାହି ଯଦି—ତେବେ କାହିଁକି ଏପରି ଅପ୍ରିୟ କଥା ମୋତେ ଶୁଣାଇଲ ?

ଲଳିତା—(ଗୋଡ଼ଧୂଳି ନେଇ) କ୍ଷମା କର, ପ୍ରିୟତମ ! ଝଡ଼ ତୋଫାନରେ ମୋର ମୁଣ୍ଡଟା ବୋଧହୁଏ ଠିକ୍ ନଥିଲା, ସେଥିଲାଗି କଣ ଗୁଡ଼ାଏ କହି ପକାଇଛି ।

ବିଦ୍ୟାପତି—ହଁ ମୋର ମଧ୍ୟ ସେହି ଦଶା ହୋଇଥିଲା ଲଳିତା—ତୁମେ ଆସିବ ଜାଣି ସୁଦ୍ଧା ମୁଁ ଦୁଆର ବନ୍ଦ କରି ରଖିଥିଲି । କିନ୍ତୁ କହିଲ ଭଲା, ମୁଁ କଣ ତା ପାରେ ? ପ୍ରିୟତମେ—( ଆଲିଙ୍ଗନ କରିବାକୁ ଯାଉଥିଲେ )

ଲଳିତା—ଓଦା ଲୁଗା ଛାଡ଼ି ଆସେ ।

[ ଏକ ଦୃଷ୍ଟିରେ ଚାହିଁ ଗୋଟିଏ ପ୍ରକୋଷ୍ଠର ଅନ୍ତରାଳରେ ଅଦୃଶ୍ୟ ହୋଇଗଲେ ]

ବିଦ୍ୟାପତି—ପ୍ରହେଳିକାମୟୀ ଏହି ନାରୀ । ଏବେ ସୁଦ୍ଧା ତାର ପ୍ରକୃତ ବୁଝି ପାରିଲି ନାହିଁ । ଅଥଚ ଦେଖୁ ଦେଖୁ ପ୍ରାୟ ବଶୀଭୂତ ହେବାକୁ ବସିଲି । ( କିଛିକ୍ଷଣ ରହି ) ମୁଁ ଗୁପ୍ତଚର—ନୀଳମାଧବଙ୍କ

ମୂର୍ତ୍ତି ଲୋଭରେ ଏଠାରେ ପଡ଼ିରହିଛି—ସେ କ'ଣ କିଛି ବୁଝି ପାରୁଛି ? ମୁଁତ ଘୁଣାକ୍ଷରରେ ସୁଦ୍ଧା ତାକୁ ତାର ଇଙ୍ଗିତ ପର୍ଯ୍ୟନ୍ତ ଜାଣିବାକୁ ଦେଇ ନାହିଁ । ତେବେ ଅଭିନୟ କରିବାକୁ ଯାଇ ନାଟକୁ ଯେପରି ଭୁଲି ଯାଉଛି ।—ଓଃ ! କି ନିର୍ଭୀକ ଏହି ନାରୀ ! ଦୁର୍ଦ୍ଦିନରେ ମଧ୍ୟ ତାର ପିତାର କାର୍ଯ୍ୟ ସ୍ଥିର ଭାବରେ ସେ ସମ୍ପନ୍ନ କରି ଆସେ—ତିଳେ ମାତ୍ର ବ୍ୟତିକ୍ରମ ଘଟେ ନାହିଁ । ଆଉ ମୁଁ—ନା—ନା ମୁଁ ମଧ୍ୟ ଠିକ୍ ସେହିପରି ଭାବରେ ପାଳନ କରିବି ମୋର ରାଜାର ଆଜ୍ଞା—ପଥର ସନ୍ଧାନ ଜାଣିବାକୁ ହେବ ଅଛି, ଯେ କୌଣସି କୌଶଳରେ ତାପରେ ।

[ ସହସା ପ୍ରବେଶ କଲେ ବିଶ୍ୱାବସୁ ]

ବିଶ୍ୱାବସୁ—ଲଳିତା—ଲଳିତା—

ବିଦ୍ୟାପତି—ବାବା—

ବିଶ୍ୱାବସୁ—ଓ ତୁମେ ?—ଲଳିତା ଫେରିଛି ?—ଆଃ ! ତୁମେ ଏତେବେଳ ପର୍ଯ୍ୟନ୍ତ ଶୋଇନାହିଁ ବିଦ୍ୟାପତି ? ମୁଁ—ମୁଁ—

ଲଳିତା—ମୋତେ ଡାକୁଥିଲ ବାବା ?

ବିଶ୍ୱାବସୁ—ହଁ, ଏଁ—ନା—ନା –ଖାଲି ଏମିତି—ଆଚ୍ଛା କହିଲୁ, ଆଜିର ରାତି ଭଳି ଏପରି କାଳରାତ୍ରି ଆଉ କେବେ ଦେଖିଛୁ ? ଅଚ୍ଛା—ଅଚ୍ଛା—ତମେ ସବୁ ଶୁଅ—ଶୋଇପଡ଼—ମୁଁ ଆସୁଛି—ମୁଁ ଆସୁଛି—

[ବାହାର ପଟୁ ଶିକୁଳି ଲଗେଇ ଦେଇ ଚାଲିଗଲେ ]

ଲଳିତା—ବାବା କାହିଁକି ଆସିଥିଲେ ଜାଣ ?

ବିଦ୍ୟାପତି—ଏଇଟା ଏପରି କଣ କଠିଣ ପ୍ରଶ୍ନ, ବୁଝିଲି ନାହିଁ ।

ଲଳିତା—ତୁମେ ମନେ କରିଛ ମୁଁ ଫେରିଛି କି ନା ସେଇ କଥା ଜାଣିବାକୁ ଆସିଥିଲେ ? ନା ଗୋ ନା, ତା ନୁହେଁ ।

ବିଦ୍ୟାପତି—ତେବେ ?

ଲଳିତା—ଆଗେ ଦୁଆର କାଳ ଦିଅ ।

ବିଦ୍ୟାପତି—ଦୁଆର ତ ବାବା ବନ୍ଦ କରି ଦେଇ ଯାଇଛନ୍ତି ।

ଲଳିତା—ହଁ ବାହାରୁ ମଧ୍ୟ ଶିକୁଳି ଲଗେଇ ଦେଇ ଯାଇଛନ୍ତି ଜାଣେ; ତଥାପି—

ବିଦ୍ୟାପତି—ବାହାରେ ଶିକୁଳି ଦିଅ—

ଲଳିତା—ହଁ ଗୋ ହଁ, ତୁମେ ଭିତରୁ ମଧ୍ୟ ଲଗେଇ ଦିଅ । ଦେଖୁ ନା,—ମୋ' ହାତରେ କ'ଣ ?

ବିଦ୍ୟାପତି—ଅଙ୍ଗୁରୀ ? ହୀରାପରି ଜଳୁଛି—ଓଃ, ମୋର ଆଖି ଝଲସି ଯାଉଛି ।

ଲଳିତା—ବାବାଙ୍କର ଅଙ୍ଗୁରୀ—

ବିଦ୍ୟାପତି—ଓ ଏଇଥିକୁ ପରା ମାଗିବାକୁ ଆସିଥିଲେ ?

ଲଳିତା—ହଁ, ଆହୁରି ଦେଖିବାକୁ ଆସିଥିଲେ,ତୁମେ—

ବିଦ୍ୟାପତି—ତୁମେ ଭାରି ଦୁଷ୍ଟ । ଯାକୁ ଫେରାଇ ଦେବାର ଉଚିତ ଥିଲା—ଏ'ତ ପିଲା ଖେଳ ନୁହେଁ, ଏ'ଭଳି ମୂଲ୍ୟବାନ ଜିନିଷ—

ଲଳିତା—କା'ର ଲୋଭ ନ ହୁଏ ଭଲା, କହିଲ ?

ବିଦ୍ୟାପତି—ଆଉ କେହି ଯଦି ସେହି ଲୋଭ ଉପରେ ଲୋଭ କରେ—

ଲଳିତା—ଚୋରି କରିବ ସେ, ଏହି ତ ?

ବିଦ୍ୟାପତି—ଆଶ୍ଚର୍ଯ୍ୟ କ'ଣ ?

ଲଳିତା—ତା ପୂର୍ବରୁ ଯଦି ମୁଁହିଁ ଆଶ୍ଚର୍ଯ୍ୟ କରି ଦିଏ ?

[ ହଠାତ୍ ବିଦ୍ୟାପତିର ଅଙ୍ଗୁଳିରେ ଅଙ୍ଗୁରୀଟି ପିନ୍ଧାଇ ଦେଲେ ]

ବିଦ୍ୟାପତି—( ବିସ୍ମିତ ହୋଇଗଲେ ) ଏ କ'ଣ ?

ଲଳିତା— —ଗୀତ—

ସୁନ୍ଦର ମମ ପ୍ରିୟ ।
ଆଜି, ଅଜାଡ଼ି ଦେଲି ହୃଦୟ
ମୋର ନାଥ ତୁମେ ନାଥ ॥
ଦେଲି, ସବୁ ସ୍ନେହ ସବୁ ଆଶା—
ଗୋପନ ପ୍ରୀତି ଗୋପନ ଭାଷା
ଅନୁରାଗେ ରଙ୍ଗାଇ ଦେଲି ତୁମ ଭାବରାଜ୍ୟ ॥
ପାଏ ବା ନ ପାଏ ଦୁଃଖ କିଛି ନାହିଁ,
ନ ମାଗିବି—ଦେବି ଖାଲି ମୁହିଁ;
ନଦୀ ଯେପରି ଧାଏଁ ସାଗରେ
ସେହିପରି ଦେଲି ଗୋ ମୋତେ
ସ୍ପର୍ଶେ ତବ, ମୋର ଏ ଦାନ, ଧନ୍ୟ କରି ଦିଅ ॥

ବିଦ୍ୟାପତି – ଲଳିତା ! ଏ କ'ଣ କଲ ତୁମେ ? ବାବା—

ଲଳିତା—ଚୁପ୍ ! ଆକାଶ ବେଶ୍ ପରିଷ୍କାର ହୋଇ ଯାଇଛି ଏଥର—ଅସ, ମୋର ହାତ ଧରି ବାହାରି ଅସ !

ବିଦ୍ୟାପତି—କେଉଁଠାକୁ ଯିବ ?

ଲଳିତା—ନୀଳମାଧବଙ୍କ ଦର୍ଶନେ ।

ବିଦ୍ୟାପତି —( ଅଦ୍ଭୁତ ବିସ୍ମିତ ହୋଇଗଲେ । ସହସା ବାତାୟନ ପଥରେ କାହାକୁ ଦେଖି ) କିଏ— କିଏ ସେ ?

ଲଳିତା—ଚୁପ୍—ଶୁଣ !

[ ବାତାୟନ ପଥଦେଇ ଅଦୂରେ ଦେଖାଗଲା ସର୍ଦ୍ଦାର ଓ ମଇନାକୁ ]

ସର୍ଦ୍ଦାର—ଆରେ ମଇନା—

ମଇନା—କଣରେ ନିଅାଁ ଲଗା—

ସର୍ଦ୍ଦାର—ନିଦ ମାଡ଼େ ଅଉ ନ ପାରେ, ଧରିଲୋ ମୋତେ ଧର !

ମଇନା—ଶିଳ୍ମଟି ଝାଣିଦେ କସି, ଅଉ କାହାକୁ ଡର ?

ସର୍ଦ୍ଦାର—ନା—ନା—ସେଥିରେ ନ ହେବ କିଛି—

ମଇନା—ତେବେ ? ମତେତ ନିଦ ଝାଙ୍କି ଦେଉଛି ।

ସର୍ଦ୍ଦାର—କ'ଣ କରାଯିବ କହିଲୁ ?

ମଇନା—ଗୋଟାଏ କାମ କରିବା—

ଉଭୟେ—ଦୁହେଁ ଦୁହିଙ୍କ ଆଖି ମଳିବା ଅଉ ନ ସହେ ତର !

[ ଗୀତ ଗାଇ ଗାଇ ସେମାନେ ଚାଲିଗଲେ ]

ବିଦ୍ୟାପତି—ଆମକୁ ପହରା ଦେଉଛନ୍ତି ପରା ?

ଲଳିତା—(ହସି) ଦିଅନ୍ତୁ ପହରା—ଆମର କ'ଣ କରିବ ? ମୁଁ ଯେ ଅସଲ ସିନ୍ଧକଟା ଚୋର ! ( ହଠାତ୍ ଗୋଟାଏ ସୁଡ଼ଙ୍ଗ ପଥ ଆବିଷ୍କାର କଲେ ) ଦେଖୁଛ ଏ ସୁଡ଼ଙ୍ଗ ? ଚାଲ—

ବିଦ୍ୟାପତି—ଏଇ ସୁଡ଼ଙ୍ଗ ବାଟେ ?

ଲଳିତା—ହଁ, ଏହି ସୁଡ଼ଙ୍ଗ ବାଟେ ଚାଲ—ଅଉ ଡେରି କରନା !

ବିଦ୍ୟାପତି—କିନ୍ତୁ, ଲଳିତା ! ଦେଖ ଥରେ ବାତାୟନ ପଥଦେଇ—ଆକାଶ ଘୋଟି ପୁଣି ଝଡ଼ ଉଠୁଛି ! ଓଃ କି ଭୀଷଣ ! ମନେ ହେଉଛି ଗୋଟାଏ ଅତିକାୟ କାଳଦୈତ୍ୟ ଧ୍ୱଂସ କରିବା ଲାଗି ଛୁଟି ଆସୁଛି । ଲଳିତା—

[ ସହସା ଘଡ଼ ଘଡ଼ ହୋଇ ପୃଥିବୀ କମ୍ପି ଉଠିଲା । ଘନ ଘନ ବିଦ୍ୟୁତ୍ ଚମକିଲା—ଗୋଟାଏ ପ୍ରଳୟଙ୍କର ଭୂମି କମ୍ପରେ ଚତୁର୍ଦ୍ଦିଗର ଯାହା କିଛି କିଛି ସବୁ ଯେପରି ନିମିଷକରେ ଚୂର୍ଣ୍ଣୀଭୂତ ହୋଇଗଲା ]

ବିଦ୍ୟାପତି—ଲଳିତା !—

ଲଳିତା—ଭୟ କ'ଣ ? ଭୟହରା ଅଙ୍ଗୁରୀ ରହିଛି ତୁମରି ହାତରେ ! ଅସ—ମୋର ହାତ ଧର— ଚାଲ—

[ ଦେଖାଗଲା ଜଙ୍ଗଲ ପଥରେ ଗୋଟାଏ ଆଲୋକ ରଶ୍ମି—ଏବଂ ସଙ୍ଗେ ସଙ୍ଗେ ଭାସି ଆସିଲା ଦୂରରୁ କାହାର ମୃଦୁ ମଧୁ ବଂଶୀଧ୍ୱନି । ବିଦ୍ୟାପତି ମନ୍ତ୍ରମୁଗ୍ଧପରି ଲଳିତାର ହାତଧରି ଅଗ୍ରସର ହେଉଥିଲେ – ଧୀରେ ଧୀରେ ]

---

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ—ବ୍ୟାଘ୍ରଗୁମ୍ଫା ।

ସମୟ—ସାୟଂକାଳ ।

ବିଦ୍ୟାପତି—ଏହି ଅଙ୍ଗୁରୀ—ଏହି ଅଙ୍ଗୁରୀ ପ୍ରଭାବରେ ସେଦିନ ମୁଁ ଏଡ଼େ ଦୁର୍ଯୋଗ ରାତିରେ ମଧ୍ୟ ଏହି ବ୍ୟାଘ୍ର ଗୁମ୍ଫାରେ ନୀଳମାଧବଙ୍କ ସ୍ଥାନ ନିର୍ଦ୍ଦେଶ କରି ପାରିଥିଲି—ଅଉ ଅଜି, ଏଡ଼େବଡ଼ ସୁଯୋଗ ହାତରେ ପାଇ ମଧ୍ୟ ସେହି ମୂର୍ତ୍ତିକୁ ଏଠାରୁ ନିରୁଦ୍ଦେଶ କରି ପାରିବି ନାହିଁ ?—ଶ୍ରେୟ ?

( ହଠାତ୍ କିଏ ଯେପରି ଅଟ୍ଟହାସ୍ୟ କରି ଉଠିଲା )
କିଏ ?—କିଏ ସେ, ହସି ମୋତେ ବିଦ୍ରୂପ କରୁଛି ? ଲଳିତା ! ତୁମେ ? ହାଃ—ହାଃ—ହାଃ—ତୁମର ସେହି ଲଳିତ-ଲବଙ୍ଗ-ଲତାର ବନ୍ଧନ ଆଉ ମୋତେ ବାନ୍ଧି ରଖି ପାରିବ ନାହିଁ । ନୀଳ-ମାଧବଙ୍କୁ ଆଜି ମୁଁ—ସେ ପୁଣି କିଏ ? ବିଶ୍ୱାବସୁ ?—କାହିଁ, କେହି ତ ନାହିଁ ? ସବୁ ମୋର ଆଖିର ଭ୍ରମ—କାହିଁ ? କାହାନ୍ତି ନୀଳମାଧବ ? ଏହି—ଏହି ଯେ !—ପାଇଛି—ପାଇଛି । କିଏ—କିଏ ଡାକୁଛି ? ନା—ନା ମୋରି ଭ୍ରାନ୍ତ ମନର ବିକୃତ କଳ୍ପନା । ହାଃ—ହାଃ—ହାଃ—ହାଃ (ଜୋରରେ ହସିଲେ) ଏ କ'ଣ ଦେବତା, ତୁମର ଅଧର କୋଣରେ ହସ କାହିଁକି ? ତୁମେ—ତୁମେ ମଧ୍ୟ ମୋତେ ବିଦ୍ରୂପ କରୁଛ, ନା କ'ଣ ? କିନ୍ତୁ, କାହିଁକି ? ମୁଁ ଚୋର ବୋଲି ହାଃ—ହାଃ—ହାଃ, ବାଲ୍ୟେ ଯେ ଯଶୋଦାର ନବନୀଚୋର, କୈଶୋରେ ଯେ କିଶୋରୀର ମନଚୋର—ପ୍ରୌଢ଼ରେ ଯେ ଦର୍ପୀର ଦର୍ପଚୋର—ମୋତେ 'ଚୋର' ବୋଲି କହିବା ତ ସାଜେ ନା ତା ପକ୍ଷେ । ଆସ, ଆସ ଚୋରଚୂଡ଼ାମଣି—ତୁମକୁ ଚୋରି କରି—ମହାଚୋରୀର ମଧ୍ୟ ଦେଇ ମୋର ମହାକର୍ତ୍ତବ୍ୟ ସାଧନ କରେ । ( ବିଗ୍ରହ ତୋଳି ଧରିଲେ ) ନା ଆଉ ତଳେ ମାନ ଏଠାରେ ନୁହେଁ । ଏହିଥର ପଳାଇବାକୁ ହେବ—ଅସ୍ତେ ଅସ୍ତେ ନୁହେଁ—ଦୌଡ଼ି—ପ୍ରାଣପଣେ । (ଦୌଡ଼ିବାକୁ ଚେଷ୍ଟା-କଲେ) ଓଃ ଏ ଯେ ଭୀଷଣ ଭାରି—ଯେପରି ଦୁଃସହ ପର୍ବତର ଭାର । ଏଁ, ଏ କଣ ? ଭାର ଯେପରି କ୍ରମଶଃ ବଢ଼ୁଛି ?—ଆଉ ଯେ ମୁଁ ଧରି ରଖି ପାରୁନାହିଁ । ଯାଏଁ—ଏଁ, ଲଳିତା ? ତୁମେ । ତୁମେ ଏଠି ? ପଥ ଛାଡ଼—ପଥ ଛାଡ଼ ଲଳିତା । ମୁଁ ପଳାଏ—ମୁଁ ପଳାଏ । ଏ କ'ଣ ? ଯେଉଁଆଡ଼େ ଦେଖେ, ସେହି ଆଡ଼େ ଲଳିତା । ସମ୍ମୁଖେ, ପଶ୍ଚାତେ—ଦକ୍ଷିଣେ, ବାମେ—ଓଃ । କେଉଁବାଟ ଦେଇ ଯିବି ତେବେ ? ନା, ନା ମୋତେ ଯେ ଯିବାକୁ ହେବ । ଶଙ୍ଖଧର-ଶଙ୍ଖ-ଧର !—କୌଣସି ବାଧା ମୁଁ ମାନିବି ନାହିଁ ଆଜି—କର୍ତ୍ତବ୍ୟ ସାଧନ କରିବି—କର୍ତ୍ତବ୍ୟ ସାଧନ କରିବି ମୁଁ ଆଜି ପ୍ରାଣ ବିନିମୟେ—

( ଉନ୍ମତ୍ତପରି ଧାଇଁଲେ )

[ କିଛି ପରେ ପୁଷ୍ପଡାଲା ହସ୍ତେ ପ୍ରବେଶ କଲେ ବିଶ୍ୱାବସୁ ]

ବିଶ୍ୱାବସୁ—ଲଳିତା ମୋତେ କହି ଦେଇଛି—ଆଜି ପୂର୍ଣ୍ଣ ଉତ୍ସାହରେ ନୀଳମାଧବର ପୂଜା ଦେବାକୁ । କେତେ ଯତ୍ନ କରି ନାନା ଫୁଲର କେତେ ସୁରଙ୍ଗ ମାଳା ଗୁନ୍ଥି ସେ ପୁଷ୍ପଡାଲାରେ ସଜାଇ ମୋତେ ଦେଇଛି । ଆରେ ବେଟି, ଆଜି ଯେ ପୂର୍ଣ୍ଣିମା—ପୂର୍ଣ୍ଣିମାରେ ଆଜି ଉମେ ଉତ୍ସବ କରିବ—ଏ କଥା ନ କହିଲେ କଣ ମୋର ବୁଝିବାକୁ ବାକି ଅଛିରେ ? ଆରେ ମୁଁ ତ ଦିନେ ତୁମରି ପରି ଥିଲି—ମୋର ଦେହରେ ମଧ୍ୟ ଥିଲା ପୂର୍ଣ୍ଣ ଯୌବନ । ତୋର ମା ଯେତେବେଳେ ବେଣୀରେ ଫୁଲ ଖୋସି, କାନରେ ଫୁଲର ଝୁମୁକା ନାଚି—ମୋ ବାହୁରେ ତାର କୋମଳ ବାହୁଲତା ଛନ୍ଦି ମାଦଳର ତାଳେ ତାଳେ ନାଚୁଥିଲା—ମୁଁ ଯେପରି ସେହି ଭରା ଗୁନ୍ଦର ଆକର୍ଷଣରେ ପୂର୍ଣ୍ଣସାଗର ପରି ମାତାଲ୍ ହୋଇ ପ୍ରେମର ପୂର୍ଣ୍ଣ ଜୁଆରରେ କେଉଁଆଡ଼େ ଭାସି ଯାଉଥିଲି । ( ସହସା ପୁଷ୍ପଡାଲା ହାତରୁ ପଡ଼ିଗଲା ) ଏ କ'ଣ ? ପୁଷ୍ପଡାଲା ହଠାତ୍ ଏପରି ଭାବେ ମୋ ହାତରୁ ପଡ଼ିଗଲା କାହିଁକି ? ଏ'କି ଅଶୁଭ ଲକ୍ଷଣ ? ଏ'ପରି ତ କେବେ ଘଟିନାହିଁ ? କି ଆଶ୍ଚର୍ଯ୍ୟ—ପାତ୍ର ଯେ ଶୂନ୍ୟ !—ଫୁଲ—ଫୁଲ ଗଲା କାହିଁ ? ପୂଜାର ଫୁଲ—ପୂଜାର ନୈବେଦ୍ୟ—ଭଲ କରି ପୂଜା କରିବି ବୋଲି, ଭଲ ଭାବରେ ଯେ ସବୁ ଆଣିଥିଲି । ଏ'କି—ଏ' କି ଶୁଣେ ? ଚିଗୋଲ କୁକ୍କୁରର ବିକଟ ଆର୍ତ୍ତନାଦ, ମଧୁର ବଂଶୀ ଧ୍ୱନିର ପରିବର୍ତ୍ତେ । ନୀଳମାଧବ—ନୀଳମାଧବ । ( ଦୌଡ଼ି ଭିତରେ ପ୍ରବେଶ କଲେ ) ଓଃ, କି

ଅନ୍ଧକାର—ପୂର୍ଣ୍ଣିମାର ପୂର୍ଣ୍ଣ ଆଲୋକ ସତ୍ତ୍ୱେ ।
ଅମାବାସ୍ୟାର ଗାଢ଼ ଅନ୍ଧକାର ଥିଲେ ସୁଦ୍ଧା
କୋଟୀ ଚନ୍ଦ୍ରର ଆଭା ଝଲମଲ କରେ ମୋର
ନୀଳମାଧବର ଚରଣ ନଖରେ—ସେଠି ଆଜ
ଏ'କ ତମିସ୍ରା । ନୀଳମାଧବ କାହାନ୍ତି ?— ମୋର
ପ୍ରାଣର ଦେବତା—( ଅନ୍ଧକାର ମଧ୍ୟରେ ଅଣ୍ଡାଳି
ଖୋଜିବାକୁ ଲାଗିଲେ ) ଠାକୁର କାହାନ୍ତି ?
ପାଇଛି—ପାଇଛି—ଏହି ଯେ—ନା—ନା—
ଏ'ତ ନୁହେଁ । ତେବେ ? ଏହି ତ ବେଦୀ—
ଦେବତା କାହାନ୍ତି ? ଦେବତା—ମୋର ପ୍ରାଣର
ଦେବତା—କାହିଁ ତୁମେ ? ମନ୍ଦିର ଯେ ଶୂନ୍ୟ—
ଦେବତା ଗଲେ କେଉଁଆଡ଼େ ? କେଉଁ ଅପରାଧରେ
ମୋତେ ଛାଡ଼ି ଗଲ, ପ୍ରଭୁ ? ଏ ମନ୍ଦିର ନୁହେଁ—
ସମସ୍ତ ପ୍ରକୃତି ଆଜି ଶୂନ୍ୟ !—ବିଶ୍ୱାବସୁର ବିଶ୍ୱ
ଆଜି ଶୂନ୍ୟ ।—ତାର ମରମର ବେଦୀରୁ ପ୍ରାଣର
ଠାକୁର ଚାଲି ଯାଇଛି । ( ହଠାତ୍ ଗୃହଆଡ଼େ
ନିଆଁ ଜଳି ଉଠିଲା ) ଏ'କଣ । ଗୃହଆଡ଼େ
ହଠାତ୍ ଅଗ୍ନି ଶିଖା ଜ୍ୱଳି ଉଠିଲା ଯେ । ଏହି ଯେ,
ଦେଖୁ ଦେଖୁ ତାର ଲେଲିହାନ ଜିହ୍ୱା ଆସି ସ୍ୱର୍ଗ
ମର୍ତ୍ତ୍ୟ ସବୁ ଗ୍ରାସ କରିଦେଲାଣି—ସମସ୍ତ ସୃଷ୍ଟି
ବୋଧହୁଏ ଭସ୍ମସ୍ତୂପରେ ପରିଣତ ହେବ,
ମୁହୂର୍ତ୍ତରେ ଆଜି । ତେବେ କ'ଣ ଦେବତା
ଅପହୃତ ? ମୋର ଅଙ୍ଗୁଳି ? ଲଳିତା—ଲଳିତା ।
ଓଃ । ବୁଝିଚି—ବୁଝିଚି ଏଥର । କାହିଁ କାହିଁ ସେ
ତସ୍କର ?—କାହିଁ ସେହି ଦେବତାପହାରୀ ? ସେ
କ'ଣ ଏବେ ସୁଦ୍ଧା ଭସ୍ମରେ ପରିଣତ ହୋଇନାହିଁ ?
ସେ କ'ଣ ଏ ପର୍ଯ୍ୟନ୍ତ ଜୀବିତ ? ଓଃ—ନିଆଁ—
ନିଆଁ—ସର୍ବାଙ୍ଗ ମୋର ଝଲସି ଯାଉଛି । ଯାଉ—
ପୋଡ଼ି ଯାଉ ମୋର ଦେହ—ତଥାପି, ଏହି
ଲେଲିହାନ ଅଗ୍ନି ଶିଖା ମଧ୍ୟ ଦେଇ ମୁଁ ଯିବି—
ଧରି ଆଣିବି ସେ ତସ୍କରକୁ—କେତେ ଦୂର
ପଳାଇବ ।

( ଉନ୍ମତ୍ତପରି ଛୁଟି ଚାଲିଗଲେ )

---

## ଦ୍ୱିତୀୟ ଦୃଶ୍ୟ

ସାଗରର ବେଳାଭୂମି । ପୂର୍ଣ୍ଣ ଚନ୍ଦ୍ରୋଦୟ ।
ଶକ୍ତିଧର ଓ ବିଦ୍ୟାପତି କଥା କହୁଥିଲେ ।—

ବିଦ୍ୟାପତି—ଶକ୍ତିଧର ।
ଧର ଏହି ବିଷ୍ଣୁ ଶିଳା—ଦୁର୍ଲ୍ଲଭ ମାନବ ଲୋକେ ।
ଘେନିଯାଅ ତ୍ୱରା ଅବନ୍ତୀ ନଗରେ,
ଆକୁଳ ନୟନେ ଯହିଁ
ନୃପବର କରନ୍ତି ଅପେକ୍ଷା ।
ଶକ୍ତିଧର—ଦେବ । ଶିରୋଧାର୍ଯ୍ୟ ଆଜ୍ଞା ତବ ।
ପ୍ରଭାତ ପୂର୍ବରୁ ପହଞ୍ଚିବ ଶିଳା, କରେ ଅଙ୍ଗୀକାର ।
ଗ୍ରାମ ପଞ୍ଚକୋଶେ—
ଅପେକ୍ଷାରେ ରହେ ପଞ୍ଚ ଅଶ୍ୱାରୋହୀ,
ଧାଇଁବେ ବିଦ୍ୟୁତ୍ ସମ
ଏକଦଳ ଅନ୍ୟଦଳେ ଦେବାକୁ ଆଗେଇ ।
ବିଦ୍ୟାପତି—ଉତ୍ତମ ବ୍ୟବସ୍ଥା ତବ—
ଶୁଣି ସୁଖୀ ହେଲି ।
ଯାଅ, ଶୀଘ୍ର ଯାତ୍ରା କର, ପ୍ରଭୁ ନାମ ସ୍ମର—
ଜୟ ନୀଳମାଧବଙ୍କ ଜୟ !
ଶକ୍ତିଧର—'ଜୟ ନୀଳମାଧବଙ୍କର ଜୟ' !
ବିଦାୟ-ନମସ୍କାର ଘେନ, ଦେବ ।
( ଗମନୋଦ୍ୟତ )
ବିଦ୍ୟାପତି—ହଁ, ନିବେଦନ ମୋର କହିବ ରାଜନେ,
ଯେତେ ଶୀଘ୍ର ପାରେ, ମିଳିବି ଛାମୁରେ ।
ଶକ୍ତିଧର—ଯଥା ଆଜ୍ଞା, ଦେବ—
( ପୁଣି ଗମନୋଦ୍ୟତ ହେଲେ )
ବିଦ୍ୟାପତି—ହଁ, ଆଉ ଦେଖ—
ପୁଚ୍ଛନ୍ତି ଯଦ୍ୟପି, କି ହେତୁ ରହିଛି ଏଥି—
କହିବ—ହଁ କହିବ ତାହାଙ୍କୁ—
ରୂପର ଆଧାର, ରତ୍ନର ଆକର ରାଜ୍ୟ ଏହି—
ନା—ନା,—ହଁ—ହଁ—ଯିବି କଣ—
ବିନାଯୁଦ୍ଧେ ଯଦି ଏ'ଭଳି ସାମ୍ରାଜ୍ୟ—
ନା—ନା—ଯାଅ—
କହିବାକୁ ହେବ ନାହିଁ କିଛି—

ଶକ୍ତିଧର—ଯଥାଦେଶ ତବ—( ଅଗ୍ରଗାମୀ ହେଲେ )
ବିଦ୍ୟାପତି—ଦେଖ—
    ଜହ୍ନପାର୍, ସାମାନ୍ୟ ବିଶ୍ରାମ ଲାଗି—
    ନୁହେଁ ମାଯ୍ୟାର ବନ୍ଧନ ।
    ସାମାନ୍ୟା ଶବରୀ—
    ନା—ନା—ଥାଉ, କହିବାକୁ ହେବନାହିଁ କିଛି—
    ଯାହା କହିବାର କହିବି ମୁଁ ନିଜେ । ( ଅନ୍ୟମନସ୍କ
    ହୋଇଗଲେ )
ଶକ୍ତିଧର—ଶିରୋଧାର୍ଯ୍ୟ ଆଜ୍ଞା ତବ, ଦେବ ।
    [ ଶକ୍ତିଧର ଚାଲିଗଲେ । ନେପଥ୍ୟେ ଅଶ୍ୱପଦ ଶବ୍ଦ
    କ୍ରମଶଃ କ୍ଷୀଣ ହୋଇ ମିଳେଇଗଲା—ହଠାତ୍
        ବିଦ୍ୟାପତିର ଯେପରି ଚମକ ଭାଙ୍ଗିଲା ]
ବିଦ୍ୟାପତି—ହଁ—ତା’ ହେଲେ—
    ଶକ୍ତିଧର । ବସ୍ତୁସ୍ଥିତି ଦଅ ମୋତେ ।
    ବ୍ରାହ୍ମଣ-ସନ୍ତାନ ମୁହିଁ—
    ଅବଶ୍ୟ ରଖିବି ମାନ କର୍ତ୍ତବ୍ୟର ମୋର ।
    (ଦେଖି) ଓ ଚାଲି ଯାଇଛି—
    [ହଠାତ୍ ଦୂରରୁ ଲଳିତାର କଣ୍ଠର ଗୀତ ଶୁଣାଗଲା]
ଲଳିତା – ( ନେପଥ୍ୟେ )—
                ଗୀତ
    ଲଳିତ ସୁନ୍ଦର କାହିଁ ତୁମେ-
                କାହିଁ ତୁମେ ପ୍ରିୟତମ ?
ବିଦ୍ୟାପତି—କାହାର ଏ ସଙ୍ଗୀତ ?
    ଲଳିତାର ? କାହିଁ ? କାହିଁ ସେ ଏ ସ୍ଥାନେ ?
    ଗୁଞ୍ଜିଅଛି—
    ମୋହର ଲଳିତ ଛନ୍ଦ
    ପରିପୂର୍ଣ୍ଣ ଆବେଗରେ
    ସଙ୍ଗୀତର ସ୍ରୋତେ ସ୍ରୋତେ ଚାଲିଅଛି ଧାଇଁ ।
    ପୂର୍ଣ୍ଣିମା ଜାଣିଥେ ଆଜ
    ପୂର୍ଣ୍ଣ ଇନ୍ଦୁ ହସଇ ଆକାଶେ,
    ପୂର୍ଣ୍ଣ ସିନ୍ଧୁ ଧାଏଁ ପୂର୍ଣ୍ଣ ପ୍ରେମରେ ପାଗଳ ।
    ଫୁଟିଲେ ଫୁଟିଲେ ଆଖି ଠାରି ଠାରି,
    ଲତିକା ଧରଇ ବାହୁପାଶେ ତାର
    ମଧୁଲିହେ ବେଢ଼ି ।

    ଚତୁର୍ଦ୍ଦିଗେ—ପ୍ରିୟ ଆଉ ପ୍ରିୟା,
    ଆବେଗ ବିହ୍ୱଳ ଆଜି ପ୍ରେମର ବନ୍ଧନ ।
    ମୁହିଁ କିବା ସ୍ଥିର—
    ଚୂର୍ଣ୍ଣ କରି ଦେବି ଏହି କଠିଣ ନିଗଡ଼ ।
    ଏହି ସେହି ସ୍ଥାନ—ପ୍ରିୟ ସ୍ଥାନ ମୋର—
    ପ୍ରେମର ପ୍ରତିଷ୍ଠା ମୋର ହୋଇଥିଲା ଯହିଁ;—
    ନୀଳ-ନଭ-ଚୁମ୍ବୀ ଏହି ପ୍ରେମର ମନ୍ଦିର
    ଗଢ଼ିଅଛୁଁ ଦୁଇଜଣ ମିଳି
    ସିନ୍ଧୁ ବକ୍ଷୁ ମଣି ରତ୍ନ ଆଣି ।
    ଭାଙ୍ଗିବି କି ମୁହିଁ ତାହା
    ଲୁହ କର୍ତ୍ତବ୍ୟ ଆଘାତେ ?
    କର୍ତ୍ତବ୍ୟ ?
    କର୍ତ୍ତବ୍ୟ ହିଁ ସାର ଯେବେ ମନୁଷ୍ୟ ନିକଟେ
    ତେବେ, ଯେ ଭୀଷଣ କର୍ତ୍ତବ୍ୟର ବ୍ରତ
    କରିଅଛି ଉଦ୍ୟାପନ—
    ସରଳା ଏ ବାଳିକାର ସରଳ ବିଶ୍ୱାସେ
    ମିଶାଇ ଗରଳ ଧାରା ଗୋପନେ, ଅଜ୍ଞାତେ—
    ଅତି କୁଟ ରାଜନୀତି ବୋଧେ
    ଦେହ ମନ ଜର୍ଜ୍ଜରିତ କରି;—
    ନୁହେଁ କି କର୍ତ୍ତବ୍ୟ ଏବେ ପ୍ରତିଶୋଧ ତାର,
    ଆହ୍ୱାନ ପାଇବି ଭଲ ଭଗ୍ନ ହୃଦୟେ
    ପ୍ରେୟସୀରେ ମୋର ?
    ସମାଜ ଶାସନ ଭାଙ୍ଗି—
    ଚୂର୍ଣ୍ଣକରି ଦୟାହୀନ ଶୃଙ୍ଖଳ ବନ୍ଧନ—
    କିନ୍ତୁ, କିନ୍ତୁ—
    ମାତା ମୋର—ଅଭିଳାଷ ତାଙ୍କ—?
    [ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ନେପଥ୍ୟରେ
    ଲଳିତାର ଗାନ ଅତିହିଁ ନିକଟରେ ଶୁଣାଗଲା ]
ବିଦ୍ୟାପତି—ଲଳିତା—ଲଳିତା—
    ନା, ନା—ଦେଖାଇବି ନାହିଁ ମୁଖ—(ଚାଲିଗଲେ)
        [ ଗୀତ ଗାଇ ଗାଇ ପ୍ରବେଶ କଲେ ଲଳିତା ]
ଲଳିତା—            —ଗୀତ—
ଲଳିତ ସୁନ୍ଦର କାହିଁ ତୁମେ—କାହିଁ ତୁମେ ପ୍ରିୟତମ ?
କାହେ ତୃପ୍ତାଇ ବେଦନା ଅତି ଚକୋରୀ ଏ ହୃଦ ମମ ॥

ଆକାଶ କାନନ ବ୍ୟାପି
ରହିଛ ହେ ତୁମେ ଛପି
ଧରଣୀର ରୂପେ ରହିଛ ଗୋ ଚୁପେ ନିରୁପମ, ମନୋରମ ।

[ ସେହି ଗୀତର ଆକର୍ଷଣରେ ବିଦ୍ୟାପତି ଧୀରେ ଧୀରେ ପ୍ରବେଶ କରି ଲଳିତାର ଆଖି ଚିପି ଧରିଲେ ]

ବିଦ୍ୟାପତି—ଏ'ଥର କହ ଦେଖି—କେଉଁଠି ତୁମର 'ସୁନ୍ଦର' ?

ଲଳିତା—'ସୁନ୍ଦର' ଯେ ମୋର ବିସ୍ମୃତ ହୋଇ ପଡ଼ିଥିଲା ବାହାରେ—ଏଥର ତା'କୁ ଏକାଠି ପାଇଛି ଏକ ସ୍ଥାନରେ—ଏହି ଅନ୍ତରରେ ।

ବିଦ୍ୟାପତି—ମୁଁ ତୁମକୁ ଛାଡ଼ିବି ନାହିଁ ଲଳିତା ! କଦାପି ନୁହେଁ—

[ ଆଲିଙ୍ଗନ କରିବାକୁ ଯାଉଥିଲେ—ପ୍ରବେଶ କଲା ମଇନା ]

ମଇନା—ଓ ସେଇଥି ପାଇଁ ପରା ଆମକୁ ଛାଡ଼ି ଚାଲିଆସିଛ ; ଆମେ ତେଣେ ଖୋଜି ଖୋଜି ମରୁଛୁ ।

ବିଦ୍ୟାପତି—ଦେଖିଥିଲି, ତୁମର ଡ଼ୁରୁରିଟି କାପରି—

ମଇନା—ବେଶ ତ ! ଏଥର ଦେଖିଲି ଡ଼ୁରୁରି ମୋର କାପରି ରକ୍ତ ସବାଣୀ ?

[ ସର୍ଦ୍ଦାର ନିଃଶବ୍ଦରେ ପ୍ରବେଶ କରି ଅନ୍ୟଆଡ଼େ ଚା'ଣ ଦେଖୁଥିଲା ]

ବିଦ୍ୟାପତି—କି ସର୍ଦ୍ଦାର ! ନଜରଟା ଥରେ ଏ'ଆଡ଼େ—

ସର୍ଦ୍ଦାର—ନା—ନା—ମୋର ସ୍ୱପ୍ନ ଭାଙ୍ଗି ଦିଅନା—
ମୋର ସ୍ୱପ୍ନ ଭାଙ୍ଗି ଦିଅନା—;

ଲଳିତା—କି ସ୍ୱପ୍ନ ଦେଖୁଛ ସର୍ଦ୍ଦାର ?

ସର୍ଦ୍ଦାର—ଦେଖୁଛି ପୂର୍ଣ୍ଣିମା ଆଉ ଅମାବାସ୍ୟାର ମିଳନ, ଠିକ ଏକ ସମୟରେ—ଏକ ସ୍ଥାନରେ ।

ମଇନା—ହୁଁ—କ'ଣ କହିଲୁରେ ପୋଡ଼ାମୁହାଁ—ମୁଁ ଅମାବାସ୍ୟା ?

ସର୍ଦ୍ଦାର—ନା—ନା—ନା—

—ଗୀତ—

ତୁହି ମୋର ମନ-ଗଗନେ ଉଆଁସ ଚାନ୍ଦ ।

ମଇନା—ଆହା ହା, ମରଯାଏଟି
ଶୁଣି ତୋର କଥାର ଛନ୍ଦ ।

ସର୍ଦ୍ଦାର—ତୋର ରୂପ ଲାଗି ସଖି ହେଲି ମୁଁ ବାତୁଲ,

ମଇନା—ରଇଥା ତୋର ମୁହଁରେ ଦେଉଛି ନିଆଁ—

ସର୍ଦ୍ଦାର—ସତେ, ଥଟ୍ଟା ନୁହେ—ବଡ଼ ମିଠା ତୋର ଗୋଇଠା ?

ମଇନା—ହେବତ—ତୋହ ଭଳି କାଏ ନାଲଠା ?

ଉଭୟେ—ତଥାପି, ଆମେ ଦୁହେଁ ଚଳୁଅ ଚକ୍ରି ପାତିଛୁ ପ୍ରେମର ଫାନ୍ଦ ॥

[ନେପଥ୍ୟରେ ଶୁଣାଗଲା ମାଦଳ ଧ୍ୱନି]

ସର୍ଦ୍ଦାର—ଆରେ, ମଇନା ଦେଖ ଦେଖ ସବୁ ଝିଅ ମରଦ ଆଜ ପୁନେଇରେ ଜୁଆର ଦେଖିବାକୁ ଆସୁଛନ୍ତିରେ ।

ମଇନା—( ଲଳିତାକୁ ) ପୂର୍ଣ୍ଣ ଜୁଆରରେ ସାଗରକୁ ତୋର ଟାଣିନେ ଚାନ୍ଦ ।

ବିଦ୍ୟାପତି—ଚାନ୍ଦକୁ ଯଦି ତୋର ବୁଡ଼େଇ ଦିଏ, ମଇନା ?

ଲଳିତା—ଡ଼ୁରୁରି ଭୟ କରୁଛି ନା କଣ ?

[ ଗାଇ ଗାଇ ନାଚି ନାଚି ପ୍ରବେଶ କଲେ ଶବର ଓ ଶବରୀଗଣ—ସର୍ଦ୍ଦାର ଓ ମଇନା ଯୋଗ ଦେଲେ ତାଙ୍କ ସଙ୍ଗେ । ଲଳିତା ଓ ବିଦ୍ୟାପତି ସାଗର ଓ ଚନ୍ଦ୍ରର ମିଳନ ଦେଖୁ ଦେଖୁ ଅନ୍ୟମନସ୍କ ହୋଇ ଯାଇଥିଲେ ]

—ଗୀତ—

ଶବର ଓ ଶବରୀଗଣ—
ଚାନ୍ଦର ଲାଗି ସାଗର ଆଜ ପାଗଳ ହେଲା ରେ ।
ହିଲି ମିଲି ଜୋଛନା ଲାଗି ଅନ୍ଧାର ଗଲା ରେ ॥
ପ୍ରିୟାକୁ ଧରଣି ବୁକେ
ସାଗର ଦୋଳାଏ ସୁଖେ
ତେଉର ତାଳେ ତାଳେ ନାଚ ମାତାଲ ହେଲାରେ ॥
[ଗୀତ ଗାଇ ଗାଇ ଚାଲିଗଲେ ଯେ ସେମାନେ ବିଦ୍ୟାପତି ଓ ଲଳିତାକୁ ଏକା ଛାଡ଼ିଦେଇ

ଯାଇଛନ୍ତି, ତାହା ଜାଣନ୍ତି ନାହିଁ ପ୍ରେମିକ ଯୁଗଳ ।
ତାଙ୍କର ମୋହ କିଛି ପରେ ଭାଙ୍ଗିଲା]

ଲଳିତା—ଦେଖ, ସତେ ଯଦି ଶୁଭ୍ରର ଦେହରେ ସେହି କଳା ଦାଗଟି ନ ଥାନ୍ତା—

ବିଦ୍ୟାପତି—ସେହି କଳଙ୍କ ତ ତାର ସୌନ୍ଦର୍ଯ୍ୟକୁ ବଢ଼ାଇ ଦେଇଛି, ଲଳିତା !

ଲଳିତା—ତେବେ କ'ଣ ତୁମେ କହିବାକୁ ଚାହଁ—ବାବାଙ୍କ ନିକଟରେ ଯେଉଁ ଶପଥ କରିଥିଲ, ନୀଳମାଧବର ସନ୍ଧାନ ଜୀବନରେ କାହାକୁ କହିବ ନାହିଁ—ସେହି ଶପଥ ଭାଙ୍ଗି ତୁମକୁ ବାଟ ଦେଖେଇ ନେଇ ଯିବା ଦ୍ୱାରା ଯେଉଁ ଅପରାଧ କରିଛି—ସାଦା ଦେହରେ ଯେଉଁ କଳା ଦାଗଟିଏ ଟାଣି ଦେଇଛି, ସେହି କାରଣରୁ ମୋର ସୌନ୍ଦର୍ଯ୍ୟ ଆହୁରି ବଢ଼ି ଯାଇଛି ?

ବିଦ୍ୟାପତି—କି ଯେ ପ୍ରିୟତର ହୋଇ ଉଠିଛ ତୁମେ, ଲଳିତା—

( ବାହୁବନ୍ଧନରେ ଧରିବାକୁ ଯାଉଥିଲେ )

ଲଳିତା—ନା-ନା—ଛାଡ଼ିଦିଅ, ଛାଡ଼ିଦିଅ ମୋତେ । ତୁମେ ଏମିତି ନୀଚ—ଏତେ ହୀନ—ଏତେ ଲମ୍ପଟ—ଏତେ ଦୁର୍ବଳ । ତା ଯଦି ଜାଣିଥା'ନ୍ତି ଆଗେ—

ବିଦ୍ୟାପତି—ଏ କ'ଣ କହୁଛ, ଲଳିତା ?

ଲଳିତା—ତୁମ ନିକଟରୁ ମିଥ୍ୟା, ଜାଲ, ପ୍ରବଞ୍ଚନାର ଗଳ୍ପ ଶୁଣି ଶୁଣି ମୁଁ ସତ୍ୟ ପଥରୁ ଯେ କେତେ ଦୂରକୁ ଚାଲି ଯାଇଛି ତା'ର ପ୍ରମାଣ ପାଇଲି ସେହି ଦିନ—ଏହି କାମଟି କରିବାର ଠିକ୍ ପର ମୁହୂର୍ତ୍ତେ । ମୋର ଗୋଟାଏ ଭୁଲ ଭାଙ୍ଗିଗଲା । ମୁଁ ତତ୍‌କ୍ଷଣାତ୍ ତୁମକୁ ନ ଜଣାଇ ବାପାଙ୍କୁ ସବୁ କଥା ଖୋଲି କହି ଦେଇଛି ।

ବିଦ୍ୟାପତି—ବାପାଙ୍କୁ କହିଛ ? ବାବା—ବାବା ତେବେ ସବୁ ଜାଣି ପାରିଛନ୍ତି ?

ଲଳିତା—କିଛି ଭୟ ନାହିଁ ପ୍ରିୟତମ ! ବାବା ବରଂ ଖୁସି ହୋଇ କହିଲେ, "ମା, ସେହି କଳାଦାଗଟି ବଢ଼ି ଶେଷରେ ଅମାବାସ୍ୟାର ଅନ୍ଧକାର ଯେପରି ଗ୍ରାସ ନ କରେ, ଏପରି ସୁନ୍ଦର ପୂର୍ଣ୍ଣିମାର ରଜତ-ପ୍ଲାବନକୁ ।

ବିଦ୍ୟାପତି—କିନ୍ତୁ ମୋ'ର ଦୋଷରେ ଯଦି ତା' ବଢ଼ିଯାଏ ଲଳିତା—?

ଲଳିତା—ବାବାଙ୍କର ଏହି ସନ୍ଦେହ ସକାଶେ ମୁଁ ତାଙ୍କୁ ଜବାବ ଦେଇଛି, ସେଥିଲାଗି ମୁଁ ସମ୍ପୂର୍ଣ୍ଣ ଦାୟୀ—ଏ କ'ଣ ? ତୁମେ ଚମକି ଉଠିଲ କାହିଁକି ?

ବିଦ୍ୟାପତି—ତୁମେ—ତୁମେ ମୋତେ ଏତେ ବିଶ୍ୱାସ କର, ଲଳିତା ?

ଲଳିତା—କାହିଁକି ନ କରିବି, ପ୍ରିୟତମ ? ତୁମର ମୋର ଏ ସମ୍ବନ୍ଧ—ଏ'ଯେ ଚିର ସତ୍ୟ ।

ବିଦ୍ୟାପତି—ତଥାପି, ସତକଥା ଯା' ତା' ମୁଁ ଏ'ଯାଏ ପ୍ରକାଶ କରିନାହିଁ, ଲଳିତା—ଏପରି କ'ଣନାମଟି ପର୍ଯ୍ୟନ୍ତ—

ଲଳିତା—ହାଃ—ହାଃ—ହାଃ—ତୁମେ ନ କହିଲେ ସୁଦ୍ଧା, ତୁମେ ଯେ ବ୍ରାହ୍ମଣ—ତୁମର ନାମ ଯେ ସୁଦାସ ନୁହେଁ—ତୁମେ ଯେ ଗୋଟାଏ ମହତ୍ ଉଦ୍ଦେଶ୍ୟ ଘେନି ନୀଳମାଧବଙ୍କ ସନ୍ଧାନରେ ଆସି ଗୋଟାଏ ଅସ୍ପୃଶ୍ୟ ଚଣ୍ଡାଳୁଣୀର ହାତରେ ପଡ଼ି ଛଟ୍ ପଟ୍ ହେଉଛ—ଏ ସବୁ କ'ଣ ମୋର ଜାଣିବାକୁ ବାକୀ ଅଛି ?

ବିଦ୍ୟାପତି—ତାରପର—ଆଉ କିଛି—?

ଲଳିତା—ଆହୁରି ଅନେକ ମୁଁ ଜାଣିପାରିଥାନ୍ତି—କିନ୍ତୁ ତୁମର ଅସୁସ୍ଥତା ଉପରେ ଅଛି ଦେଖିବାକୁ ହଠାତ୍ ବାବା ଆସି ପହଞ୍ଚି ଯିବାରୁ—କାଳେ ତୁମର ଏହିପରି ବକାବକାରୁ ସନ୍ଦେହ କରି ବସନ୍ତି, ଏହି ଭୟରେ—ତାଙ୍କୁ ଘରେ ରହିବାକୁ ନ ଦେଇ କଥାରେ ଭୁଲେଇ ବାହାରକୁ ନେଇଗଲି ।

ବିଦ୍ୟାପତି—କାହିଁ, ତୁମେତ ଏସବୁ କଥା ଘୂଣାକ୍ଷରରେ ସୁଦ୍ଧା ମୋତେ ଜାଣିବାକୁ ଦେଇ ନାହିଁ ?

ଲଳିତା—ତା ଯଦି ନ ହୁଅନ୍ତା, ତେବେ ବାବାଙ୍କର ପ୍ରାଣପ୍ରିୟ ଏହି ହୀରା-ମୁଦଟି ତୁମର ଅଙ୍ଗୁଳିରେ

ଫିଟାଇ ଦେଇ, ତୁମକୁ ନୀଳମାଧବ ଦର୍ଶନ କରାଇବାର ଏତେ ଆଗ୍ରହ ମୋର ହୋଇଥିଲା କାହିଁକି ?

ବିଦ୍ୟାପତି—ରହସ୍ୟମୟୀ ନାରୀ !—ତମର ପ୍ରହେଳିକା ବୁଝିବା ମୋ ପକ୍ଷେ ଅସମ୍ଭବ ।

ଲଳିତା—ଏ ଆଉ ପ୍ରହେଳିକା କ'ଣ ? ତୁମେ ହୃଦୟ ଦ୍ୱନ୍ଦରେ ଏକାବେଳକେ କ୍ଷତ ବିକ୍ଷତ ହୋଇ ପଡ଼ିଥିଲ—ମୁଁ ସେହି ଦଗ୍ଧ ସ୍ଥାନରେ ପ୍ରଲେପ ଲଗାଇ ଦେଇଥିଲି ମାତ୍ର ।

ବିଦ୍ୟାପତି—ଲଳିତା—

ଲଳିତା—ହଁ ଦେଖ—ତୁମର ରାଜା ଯଦି ନୀଳମାଧବଙ୍କ ଦର୍ଶନ କରିବା ପାଇଁ ପ୍ରକୃତରେ ବ୍ୟାକୁଳ ହୋଇଥାନ୍ତି, ତେବେ ମୁଁ ତୁମର ଦେହ ଛୁଇଁ ଶପଥ କରୁଛି—ଯେପରି ଭାବେ ହେଉ,ମୁଁ ବାବାଙ୍କୁ ରାଜି କରାଇ ତା'ର ବ୍ୟବସ୍ଥା କରିବି । ତୁମେ ଏ'କଥା ତୁମର ରାଜାଙ୍କୁ ଏହିକ୍ଷଣି ଜଣାଇ ଦେଇପାର ।—ତମର ତ ଅନେକ ଲୋକ ରହିଛନ୍ତି ଗୋପନରେ ।

ବିଦ୍ୟାପତି—ଏ କ'ଣ ? ଏପରି ସୁନ୍ଦର ପୂର୍ଣ୍ଣିମାର ଚନ୍ଦ୍ରକୁ ମେଘଟାଏ ଢାଙ୍କି ସବୁ ଅନ୍ଧାର କରିଦେଲା କାହିଁକି ?

ଲଳିତା—ମୁଁ ତ ପୂର୍ଣ୍ଣଶଶୀ ରହିଛି ତୁମର ନିକଟରେ—ଭୟ କ'ଣ ?

ବିଦ୍ୟାପତି—ସେ କ'ଣ ? ସାଗରଟା ଶୁଖିଗଲା ନା କ'ଣ ?

ଲଳିତା—ମୋର ପ୍ରେମର ଗମ୍ଭୀରତା ନିକଟରେ ତାକୁ ହାର ମାନିବାକୁଇ ହେବ ନାହିଁକି ?

ବିଦ୍ୟାପତି—ଏ କ'ଣ, ଭୂମିକମ୍ପ ? ଆକାଶଟା ଟଳମଳ କରୁଛି ପରା ? ପୃଥିବୀଟା ଭାଙ୍ଗି ଚୂରି ଖଣ୍ଡ ଖଣ୍ଡ ହୋଇଯିବ ନା କ'ଣ ?

ଲଳିତା—ମୁଁ ସ୍ଥିର ଥାଉଁ ଥାଉଁ ଭୟ କ'ଣ ନାଉରୀ ?

[ ବିଦ୍ୟାପତିକୁ ଭିଡ଼ି ଧରିଲେ—ଦୌଡ଼ି ଦୌଡ଼ି ପ୍ରବେଶ କଲା ମଇନା ]

ମଇନା—ଚୋର—ଚୋର—ଚୋର—

ବିଦ୍ୟାପତି—ଚୋର ? (ହଠାତ୍ ଚମକି ଉଠିଲେ) ମୁଁ—

[ ଲଳିତାଆଡ଼େ ଚାହିଁ ଆଉ କିଛି କହି ପାରିଲେ ନାହିଁ ]

ଲଳିତା—କ'ଣରେ—କ'ଣ ଚୋରି ଯାଇଛି, ମଇନା ?

ବିଦ୍ୟାପତି—କହିବି ? କହିବି କଣ ଚୋରି ଯାଇଛି ? ନା—ନା—ମୁଁ କହି ପାରିବି ନାହିଁ—ମୋତେ ଶାସ୍ତି ଦିଅ—ମୋତେ ମାରି ପକାଅ—ଟିକି ଟିକି କରି କାଟି ପକାଅ—ତଥାପି, ଲଳିତାକୁ ମୁଁ କହି ପାରିବି ନାହିଁ—

ମଇନା—ତୁମେ କାହିଁକି ଡରୁଛ, ସୁଦାସ ? ତୁମେ କିପରି ଜାଣିବ, କ'ଣ ଚୋରି ଯାଉଛି ?

ବିଦ୍ୟାପତି—ମୁଁ ଜାଣେ ନା ? ତୁମେ ଠିକ୍ କହୁଛ, ମୁଁ ଚୋରି କରି ନାହିଁ ?

ମଇନା—ମ—ମୋର ଡେଙ୍ଗୁରିଆଟା ତୁମେ କାହିଁକି ଚୋରି କରିବ ?

ବିଦ୍ୟାପତି—ଡେଙ୍ଗୁରିଆ ? ଓ !—ହାଃ—ହାଃ—ହାଃ—ହାଃ—କୁହତ—କିଏସେ ଚୋରି କରିଛି ଡେଙ୍ଗୁରିଆଟା ? ମୁଁ ତାକୁ ଏପରି ଶାସ୍ତି ଦେବି—ଚରମ ସାସ୍ତି—

( ସର୍ଦ୍ଦାର ପ୍ରବେଶ କଲେ )

ସର୍ଦ୍ଦାର—ବିଚାର କେବେ ଏକ ତରଫା ହୁଏ ନା, ବିଚାରପତି । କହତ ମଇନା, ମୁଁ ତୋତେ କି କହି ଚୋରି କରିଛି କି ନା ?

ମଇନା—(କ୍ରନ୍ଦନ ସ୍ୱରେ ) ମୋର ବାବା ମୋତେ ସେ ଡେଙ୍ଗୁରିଆଟା ଦେଇଥିଲେ—ମୁଁ କଥାରେ କଥାରେ ଦିନେ ତା'ଆଗରେ କହି ପକାଇଥିଲି – ସେଇ କଥା ଶୁଣି, ସେ ମୋତେ ଧମକାଉଥିଲା, "ଗଞ୍ଜେଇ ଖାଇବାକୁ ପଇସା ନ ମିଳିବ ଯେଉଁଦିନ ସେହିଦିନ ସେହି ଡେଙ୍ଗୁରିଆଟା ଠିକ୍ ହାତ ସଫେଇ କରି ଦେବି ।"

ଲଳିତା—ତେବେତ ସେ ନ କହି ପରଦ୍ରବ୍ୟ ନେଇ ନାହିଁ ।

ସର୍ଦ୍ଦାର—କହିଲ ଭଲା, 'ମଇନା କି ମୋର ପର' ?

ବିଦ୍ୟାପତି—ସର୍ଦ୍ଦାର—ସର୍ଦ୍ଦାର । ଆଉ ଥରେ କହ, 'ମଇନା କି ମୋର ପର ?'—ମୁଁ ତୋତେ

ପୁରସ୍କାର ଦେବ—ବକ୍‌ସିସ୍ ଦେବ । ଏହି ନେ—ନେ—(ଗଳାରୁ ହାର ଖୋଲି ଦେଲେ) କହ—କହ ସର୍ଦ୍ଦାର, ପୁଣି କହ, ମଇନା କି ମୋର ପର ?

ସର୍ଦ୍ଦାର—ଅରେ, ଖାଲି ସେଇଅ ନୁହେଁରେ—ଏହି ବାଖ୍‌ଶିଶ୍‌ଟା ବଦଳରେ ଏଇକ୍ଷଣି ମୋହି ଡେଙ୍ଗୁରିଆଟା ବାବାକୁ ଛଡ଼େଇ ଆଣି, ଯା'ର ଧନ ତା'କୁ ଦେଇ ଋଣ-ମୁକ୍ତ ହେବାରେ—ଋଣ ମୁକ୍ତ ହେବା ।

ମଇନା—ମୋତେ ତୋର ଗୋଡ଼ଧୂଳି ଟିକିଏ ଦେ'ରେ ପୋଡ଼ାମୁହାଁ—ଗୋଡ଼ ଧୂଳି ଟିକିଏ ଦେ ।

ସର୍ଦ୍ଦାର—ଖାଲି ଗୋଡ଼ଧୂଳି କାହିଁକି ମ—ଗୋଟା ସୁଦ୍ଧା ମତେ ନେଇ ନେ'ନା—

( ସର୍ଦ୍ଦାର ଓ ମଇନା ଚାଲିଗଲେ )

ବିଦ୍ୟାପତି—(ସ୍ୱଗତ) କିନ୍ତୁ ମୁଁ କରିଛି ଚୋରି—ମୁଁ ନେଇଛି ନ କହି । କହେ ଯଦି, ଫେରାଇ ଦେବାର କ୍ଷମତା ମୋର କାହିଁ ?

ଲଳିତା—ଏ କ'ଣ ? ଏ କି ଆଲୁଅ ? ଏ କ'ଣ—ଏ ଯେ ଅଗ୍ନିକାଣ୍ଡ !

ବିଦ୍ୟାପତି—ହଁ—ହଁ ଅଗ୍ନିକାଣ୍ଡ—ସେ ମୋ'ର କାଣ୍ଡ ଲଳିତା—ମୁଁ ଲଭିଇ ଆସୁଛି ଏହିକ୍ଷଣି—

[ ବିଦ୍ୟାପତି ଯାଉଥିଲେ—ପ୍ରବେଶ କଲେ ବିଶ୍ୱାବସୁ, ଦଗ୍‌ଧ ବିଦଗ୍‌ଧ ଦେହରେ, ଟଳି ଟଳି ]

ବିଶ୍ୱାବସୁ—'ଲିଭାଇ ଆସୁଛି ଏହିକ୍ଷଣି'—ହାଃ—ହାଃ—ହାଃ—ହାଃ—ତୁ ଲିଭାଇବାକୁ ଯିବୁ ନାହିଁ, ଲଳିତା ?—ଏଇଥିଲାଗି ପରା ତୁ କଥା ଦେଇଥିଲୁ ଯେ, 'ନୀଳମାଧବ' ଲାଗି ତୁ ଦାୟୀ ରହିଲୁ ?—ଅରେ ସର୍ଦ୍ଦାର, ହାଁ କରି ଠିଆ ହୋଇ କ'ଣ ଦେଖୁଚୁ ? ନେଇଯା'—ନେଇଯା'—ସେହି ସ୍ୱର୍ଣ୍ଣ ଆଉ ତା'ର ସାକ୍ଷୀ ମାତାଲଟାକୁ—ଏକା ସଙ୍ଗେ ହାତରେ ହାତ ମିଳାଇ—ଏକା ସଙ୍ଗେ ବାନ୍ଧ !—ସେମାନେ ଯେ ନିଆଁ ଲଗାଇବେ—ଅରେ ନିଆଁ ଲଭାଇବେ—

ସର୍ଦ୍ଦାର—ଏ କ'ଣ କହୁଛ, ରଜା ?

ବିଶ୍ୱାବସୁ—ହଁ—ହଁ, ସେହିମାନେ ଷଡ଼ଯନ୍ତ୍ର କରି ଏକ ମେଳ ହୋଇ ନୀଳମାଧବକୁ ମୋର ଚୋରି କରିଛନ୍ତି—ନିଆଁ ଲଗାଇଛନ୍ତି—ସେମାନେ ନ ଲିଭାଇବେ ତ ଲିଭାଇବ କିଏ ?

ସର୍ଦ୍ଦାର—ଏଁ—।

ବିଶ୍ୱାବସୁ—ଅରେ ବେଟା, ମୋର ପ୍ରାଣର ଧନକୁ ଚୋରି କରିବା ପୂର୍ବରୁ ମୋର ପ୍ରାଣଟିକୁ ଚୋରି ନ କରି ନେଲୁ କାହିଁକି ? ଏ କ'ଣ ? ନିଆଁ ଲିଭି ଯାଉଛି କାହିଁକି ?—ଅରେ, ଜାଳ—ଆହୁରି ଜାଳ—ଘରେ ଘରେ ନିଆଁ ଲଗାଇଦେ—ଆକାଶେ ପବନେ ନିଆଁର ହଲ୍‌କା ଉଡ଼ାଇ ଦେ—ଘୂର୍ଣ୍ଣି ଝଞ୍ଜାରେ ଦାଉଆଟା ଦୋହଲାଇ ଦେ—ନିଆଁ—ନିଆଁ—ମୁଁ ଚାହେଁ ଖାଲି ନିଆଁ—ପ୍ରଳୟର ନିଆଁ—ଯେଉଁଥିରେ ସେହି ଦୁଇଟା ପୋଡ଼ି ପାଉଁଶ ହୋଇଯିବେ—ଶୂନ୍ୟ ସଙ୍ଗେ ମିଶିଯିବେ—ଯା—ଯା—ନେଇ ଯା—ନେଇ ଯା—କସି କରି ବାନ୍ଧି ନେଇ ଯା ।

[ ସର୍ଦ୍ଦାର ବିଦ୍ୟାପତି ଓ ଲଳିତାକୁ ବାନ୍ଧିବାକୁ ଉଦ୍ୟତ ହେଲା, କିନ୍ତୁ ପାରିଲା ନାହିଁ ]

ନା—ନା—ତୁ ପାରିବୁ ନାହିଁ—କେହି ପାରିବ ନାହିଁ—କେହି ପାରିବ ନାହିଁ । ମୁଁ ଦିନେ ବାନ୍ଧି ଦେଇ ଥିଲି ଏକ ସଙ୍ଗେ ଅନ୍ୟକୁ—ମୁଁ ଆଜି ପୁଣି ବାନ୍ଧି ଦେବି ଦୁହିଁଙ୍କୁ ଆହୁରି ଶକ୍ତ କରି, କଠିଣ ବନ୍ଧନରେ ।—ନୀ—ଳ—ମା—ଧ—ବ ।

[ ଦୁହିଁଙ୍କୁ ବାନ୍ଧୁ ବାନ୍ଧୁ ଓ ନୀଳମାଧବର ନାମ ଉଚ୍ଚାରଣ କରୁ କରୁ ଢଳି ପଡ଼ିଲେ ଉଭୟଙ୍କର ମଧ୍ୟରେ ]

ଲଳିତା—ବାବା—ବାବା—(କିଛିକ୍ଷଣ ରହି) ନା—ନା—ମୁଁ ବିଦ୍ରୋହୀ ସନ୍ତାନ—କୌଣସି ବନ୍ଧନ ମୋର ରହିବ ନାହିଁ ଆଜି ।—ମୁକ୍ତ—ମୁକ୍ତ ମୁହିଁ—ବନ୍ଧନମୁକ୍ତ । ମୋର କର୍ତ୍ତବ୍ୟ ଅଛି—ମୁଁ ଯେ ରାଣୀ । ( ବିଦ୍ୟାପତି ଆଡ଼କୁ ) ଘୁଞ୍ଚି ଛିଡ଼ା ହ' ତସ୍କର । ସର୍ଦ୍ଦାର ! ଯା, ରାଜ୍ୟର ଯେତେ

ଲୋକ ସମସ୍ତଙ୍କୁ ଡାକ—ମାଦଳ—ବଜା—ସମସ୍ତଙ୍କୁ ନିଜ ନିଜର ତୀର, ଧନୁ, ବର୍ଚ୍ଛା ପ୍ରଭୃତି ନେଇ ପ୍ରସ୍ତୁତ ହେବାକୁ କହ—ଯାନ ବାହନ ଯା' ଅଛି ସମସ୍ତ ଠୁଳ କର । ତାରପର, ଏହି ଡକାଇତଟାକୁ ବାନ୍ଧି ଖୁବ ସମାରୋହରେ ତା'ର ରାଜା ପାଖକୁ ନେଇଯା । ତାଙ୍କୁ କହିବୁ—ଆମେ ଫେରାଇ ନେବୁ ନୀଳମାଧବଙ୍କୁ, ଚୋରି କରି ନୁହେଁ—ଡକାଇତି କରି ନୁହେଁ;—ନିଜର ବାହୁ ବଳରେ—ମନୁଷ୍ୟତ୍ୱର ମର୍ଯ୍ୟାଦା ରଖି-ନିଜର ଶୌର୍ଯ୍ୟ ବଳେ ଫେରାଇ ଆଣିବୁ, ପ୍ରାଣପଣ କର ।

ବିଦ୍ୟାପତି—ତା'ହେଲେ, ଯିବା ପୂର୍ବରୁ ମୁଁ ମଧ୍ୟ କହିଯାଏ, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ପ୍ରତିନିଧି ହୋଇ କର୍ତ୍ତବ୍ୟ କରିବାକୁ ଆସି, ଯେ ମହାନୀତି ମୁଁ କରିଛି—ଜନନୀକୁ ଅବମାନନା କରି, ସମାଜ ବକ୍ଷରେ ଧକ୍କାଘାତ କରି ଯେ ମହାପାପ ମୁଁ କରିଛି—ତାର ପ୍ରାୟଶ୍ଚିତ୍ତ ସ୍ୱରୂପ, ଏହି ଶରୀରରେ ଏକ ବିନ୍ଦୁ ରକ୍ତ ଥିବାଯାଏ, ମୋର ଜାତି—ଧର୍ମ—ମାତୃଭୂମି ଓ ରଜାକୁ କୌଣସି ରୂପେ ହତମାନ୍ୟ ହେବାକୁ ଦେବି ନାହିଁ;—ଏହି ମୋର ପ୍ରତିଜ୍ଞା—ଏହି ମୋର ଦୁର୍ଜ୍ଜୟମାନ । (ହଠାତ୍ ନଇଁକରି ପଡ଼ିଲା ମୁହଁ ଉପରେ) ଏହି—ଏହି ନିଅ ଲଳିତା । ତୁମର—ଅଙ୍ଗୁରୀ—(ଦେବାକୁ ଯାଇ ଦେଇ ପାରିଲେ ନାହିଁ)

ଲଳିତା—ଅଙ୍ଗୁରୀ—ଦି···(କହି, ନେବାକୁ ଯାଇ ନେଇ ପାରିଲେ ନାହିଁ)

[ଉଭୟେ ପରସ୍ପର ଆଡ଼କୁ ଚାହିଁଲେ ସତ—କିନ୍ତୁ ମୁହଁକୁ ଚାହିଁ ନ ପାରି ବିଦ୍ୟାପତି ବିପରୀତ ଦିଗକୁ କ୍ଷିପ୍ର ପଦେ ପଳାଇଗଲେ—ଲଳିତା 'ବାବା' 'ବାବା' ବୋଲି ବିଶ୍ୱାବସୁ ଉପରେ କରୁଣ ହୋଇ ପଡ଼ିଗଲେ ]

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

ଅବନ୍ତୀ ନଗର । ସୁବର୍ଣ୍ଣ ମନ୍ଦିର । ସେଠାରେ ନୀଳମାଧବଙ୍କ ଶିଳା ସ୍ଥାପିତ ହୋଇ ଉତ୍ସବର ଆୟୋଜନ ଚାଲିଛି । ସମସ୍ତେ ବ୍ୟସ୍ତ । ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚା ଦେବୀ ପ୍ରବେଶ କଲେ—

ଇନ୍ଦ୍ରଦ୍ୟୁମ୍ନ—ରାଣୀ, ଜାଣେନା କାହିଁକି ଏତେ ଉତ୍ସବ ମଧ୍ୟରେ ମୁଁଭା ମନେ ହେଉଛି ଯେପରି ସମସ୍ତ ଆନନ୍ଦହୀନ, ନିଷ୍ପ୍ରଭ, ନିରୁତ୍ସବ ।

ଗୁଣ୍ଡିଚା—ସ୍ୱାଭ ହେବ ରାଜା—ଯେଉଁ ବିଦ୍ୟାପତି ଏ ଉତ୍ସବର କାରଣ, ସେହି ବିଦ୍ୟାପତି ଯେ ଅନୁପସ୍ଥିତ—

ଇନ୍ଦ୍ର—ସେ'ତ ନିଶ୍ଚୟ—କିନ୍ତୁ ତା' ହେଲେ ମଧ୍ୟ ମନେ ହେଉଚି, ଯେପରି ଦେବତା ଏଠାରେ ରହିବାକୁ ଇଚ୍ଛୁକ ନୁହନ୍ତି ।

ଗୁଣ୍ଡିଚା—ଏ' କି ଅଲକ୍ଷଣ କଥା—ଠାକୁର ଏଠି ରହିବାକୁ ଚାହାନ୍ତି ନାହିଁ ? ଆମେ ଏପରି କ'ଣ ଅପରାଧ କରିଛୁ ଯେ, ଠାକୁର—

ଇନ୍ଦ୍ର—ମନୁଷ୍ୟ ମାତ୍ରେ ହିଁ ଅପରାଧୀ । ଆଉ ଆମେ ଅପରାଧ କରିଛୁ ବୋଲି ତ ଠାକୁର ଆମପ୍ରତି ସଦୟ ହୋଇ ଆମ ଘରକୁ ଆସିଛନ୍ତି । ଠାକୁର ଯେ ସବୁ ସମୟରେ ଅପରାଧୀର ହିଁ ଠାକୁର ।

ଗୁଣ୍ଡିଚା—ମୋର ମଧ୍ୟ ସେହି ବିଶ୍ୱାସ । ରାବଣ ଏତେ ବଡ଼ ଅତ୍ୟାଚାରୀ, ଅପରାଧୀ ଥିଲା ବୋଲି ନା ରାମ-ରୂପୀ ନର-ନାରାୟଣଙ୍କ ହାତରେ ପ୍ରାଣ ଦେଇ ପାରିଥିଲା !—ତେବେ ଆମକୁ କାହିଁ ସେ ଦୟା ନ କରିବେ ?

ଇନ୍ଦ୍ର—ଦୟା ? ଦୟା ତ ଯଥେଷ୍ଟ କରିଛନ୍ତି । ତେବେ ମୋର ମନେ ହୁଏ - ଦେବତା ହେଲେ ମଧ୍ୟ ପ୍ରକୃତିର ବିଧାନକୁ, ଯାହା ସେ ସୃଷ୍ଟି କରିଛନ୍ତି—ସେହି ବିଧାନକୁ ଏଡ଼ିବାର ଶକ୍ତି ତାହାର ନାହିଁ । ଏଠାକାର ଜଳବାୟୁ ତା'ର ମୋଟେ ଉପଯୋଗୀ

ନୁହେଁ । ଯେପରି କୌଣସି ଗଛକୁ ଗୋଟିଏ ଦେଶରୁ ଉପାଡ଼ି ଆଣି ଅନ୍ୟ ଦେଶର ମାଟିରେ ପୋତିଲେ ଦି ଦିନରେ ତା'ର ରୂପ ମ୍ଳାନ ହୋଇଯାଏ, ସେହିପରି ସେହି ଦେବଶିଳାରେ ମଧ୍ୟ ମୁଁ ଲକ୍ଷ୍ୟ କରୁଛି ଅନୁରୂପ ଲକ୍ଷଣ ।

ଗୁଣ୍ଡିଚା—ତେବେ କ'ଣ ତୁମେ ଚାହଁ, ଯେଉଁଠାର ଦେବତା, ସେହିଠାରେ ରଖି ଆସିବାକୁ ?

ଇନ୍ଦ୍ର—ତା' ଛଡ଼ା ଆଉ ଉପାୟ କ'ଣ କୁହ ? କାଲି ସ୍ୱପ୍ନରେ ଯେପରି ସେହି କଥା ସେ ମୋତେ କହିଛନ୍ତି, "ରାଜା ! ତୁମେ ସୁନାର ଦେଉଳ ତୋଳି—ମଣି ମାଣିକ୍ୟ ଦେଇ ସଜାଇ—ଶତୋପଚାରରେ ନୈବେଦ୍ୟର ଡାଲି ସଜାଡ଼ି—ଆଡ଼ମ୍ବରରେ ପୂଜା କରି ମୋତେ ବାନ୍ଧି ରଖିବାକୁ ଚାହଁ—କିନ୍ତୁ ମୁଁ କ'ଣ ତାହା ଚାହେଁ ? ଏହି ସୁଖଭୋଗ, ଐଶ୍ୱର୍ଯ୍ୟ କ'ଣ ମୋତେ ସୁଖୀ କରି ପାରିବ ? ମୁଁ ଯେ କାଙ୍ଗାଳର ଠାକୁର—ଦରିଦ୍ର ସୁଦାମାର ସଖା—ଖୁଦ୍‌କଣା ଯେ ମୋର ରାଜଭୋଗ । ମୋତେ ଛାଡ଼ିଦିଅ—ଯନ୍ତ୍ରଣାମୟ ବନ୍ଧନରୁ ମୋତେ ମୁକ୍ତି ଦିଅ—" ।

ଗୁଣ୍ଡିଚା—ରାଜା ! ଏ କଥାର ଇଙ୍ଗିତ ଯେ ମୁଁ କିଛି ବୁଝିପାରୁ ନାହିଁ ! ତେବେ—ତେବେ ରାଜା, ଆମେ କଣ ଦୀନ ଦରିଦ୍ର ନୋହୁଁ ? ଏହି ପ୍ରାସାଦ—ଏହି ଧନ ଐଶ୍ୱର୍ଯ୍ୟ ଅଛି ବୋଲି କ'ଣ ଆମେ ଧନୀ ?—ଆମଠାରୁ ଦୀନ ଦୁଃଖୀ ଆଉ କିଏ ଅଛି ?—ଆମେ କ'ଣ ଏହି ଭୋଗ ବିଳାସରେ ବୁଡ଼ିରହି ଦିନରାତି ବିଷ ଜ୍ୱାଳାରେ ଜଳି ପୋଡ଼ି ମରୁ ନାହୁଁ ?—ଦୟାଳୁ ଦେବତା ଠିକ୍ ଇଙ୍ଗିତ କରିଛନ୍ତି—ମୁକ୍ତି ଯେ ଆମରି ହାତରେ । ଆସ—ଆସ ଅବନ୍ତୀ ନଗରର ଯେତେ ପ୍ରଜା, ଆଜ ଆମେ ଆଉ ରାଜା ପ୍ରଜା ନୋହୁଁ—ଆମେ ସେହି ଦେବତାର ସନ୍ତାନ । ଦୂରେ କାହିଁକି ? ଆସ ନିକଟକୁ—ଅନ୍ତର ନିକଟକୁ । ଏକା ସାଥେ ମିଳି—ଏକ ମାତା ପିତାର ସନ୍ତାନ—ଭାଇ ଭଉଣୀ ଭଳି ସମସ୍ତେ ଦେବତାର ଉତ୍ସବ ସମ୍ପାଦନ କରିବା—

ଇନ୍ଦ୍ର—ଖାଲି ସେତିକି ନୁହେଁ—ଆଜି ଦେଶ ବିଦେଶ ବୋଲି କୌଣସି ଭେଦ ରହିବ ନାହିଁ । ତୁମେମାନେ ଉଲ୍ଲାସ କରୁଛ—ଆଜି ତୁମେମାନେ ଗୋଟାଏ ରାଜ୍ୟ ଜୟକରି ସେମାନଙ୍କ ନିକଟରୁ ତାଙ୍କର ପ୍ରାଣର ଦେବତାକୁ ଚୋରି କରିଆଣି ନିଜେ ଉପଭୋଗ କରିବ—ସ୍ୱାର୍ଥପର ଭଳି; ସେଥିଲାଗି ଠାକୁର ତମର ଏହି ସଂକୀର୍ଣ୍ଣ ଉତ୍ସବରୁ ଫେରି ଯିବାକୁ ଚାହାନ୍ତି । ଚାହିଁ ଦେଖ—ନୀଳମାଧବ ଶିଳାରେ ଯେପରି ଅଶ୍ରୁର ଶତଧାରା, ଆଉ ସେ କୌଣସି ଅର୍ଘ୍ୟ—କୌଣସି ନିବେଦନ ଗ୍ରହଣ କରିବାକୁ ଯେପରି ଅନିଚ୍ଛୁକ । ଆସ ଭାଇମାନେ, ଯାହାଙ୍କର ଶିଳା ତାଙ୍କୁ ଫେରାଇ ଦେଇ—ଭାଇ ଭାଇ ବୋଲି ସେମାନଙ୍କୁ ଆଲିଙ୍ଗନ କରି ଧନ୍ୟ ହେବା—ବିଶ୍ୱସମାଜର ଭିତ୍ତି ସ୍ଥାପନ କରି ନୀଳମାଧବଙ୍କ ପୂଜାକୁ ସାର୍ଥକ କରିବା ।

[ ସହସା ବିଦ୍ୟାପତି ପ୍ରବେଶ କଲେ ]

ବିଦ୍ୟାପତି—ନା—ତା' ହେବ ନାହିଁ—କଦାପି ହେବ ନାହିଁ, ରାଜା ! ପ୍ରତିଶୋଧ—ମୁଁ ଚାହେଁ, ପ୍ରତିଶୋଧ । ପ୍ରତିଜ୍ଞା କରିଛନ୍ତି ସେମାନେ, ଆମ ନିକଟରୁ ଜୋର କରି କାଢ଼ି ନେଇଯିବେ ଦେବତାକୁ—ଆଉ ପ୍ରତିଜ୍ଞା କରୁଛି ମୁଁ, ଏ ଦେହରେ ପ୍ରାଣ ଥିବାଯାଏ ତା' ହେବାକୁ ଦେବି ନାହିଁ ।

ପ୍ରଜାଗଣ—ଆମେମାନେ ମଧ୍ୟ ତାହାହିଁ ଚାହୁଁ—ପ୍ରାଣ ଥାଉଁ ଥାଉଁ ଆମେ ଠାକୁରଙ୍କୁ ଛାଡ଼ି ଦେଇ ପାରିବା ନାହିଁ ।

୧ମ ପ୍ରଜା—କୁହ କୁହ ଭାଇ, ଆଜି ଆମେ ପୂର୍ଣ୍ଣ ଉତ୍ସବ କରିବୁ କି ନା ? ତୁମେଇତ ସେଦିନ କହିଥିଲ—ତୁମର ଦିଗ୍‌ବିଜୟ ସମ୍ପୂର୍ଣ୍ଣ ହେବ ସେହିଦିନ, ଯେଉଁଦିନ ତୁମେ ବନ୍ଦୀ କରି ଆଣିବ ନୀଳ-ମାଧବଙ୍କୁ ।

ବିଦ୍ୟାପତି—ରାଜା ! ଅନୁମତି ଦିଅ—ଆମେ ଉତ୍ସବ କରିବୁ—ବହୁ ଦିନର ଆକାଂକ୍ଷିତ ଉତ୍ସବ—

ଇନ୍ଦ୍ର—କର, କର ଉତ୍ସବ ସମସ୍ତେ ମିଳି—ଭେଦାଭେଦ ଭୁଲି, ଏକ ଭ୍ରାତୃତ୍ୱରେ ଆବଦ୍ଧ ହୋଇ ଉତ୍ସବ କର—ଦେବତାଙ୍କୁ ଜାଗ୍ରତ କର। ତୁମର ସେ ପ୍ରୀତିବନ୍ଧନରେ ବନ୍ଦୀ ହୋଇ ରହିବେ ଦେବତା—ତୁମର ସେ ଭକ୍ତି ପ୍ରେମରେ ସବୁ ଭୁଲି ଦେବତା ରହିବେ ଚିରଦିନ, ତୁମର—

ଗୁଣ୍ଡିଚା—( ଜନାନ୍ତିକେ ) ଏ' କ'ଣ କଲ, ରାଜା ?—ନିଜର ପ୍ରତିଜ୍ଞା ଭୁଲି—

ଇନ୍ଦ୍ର—( ଜନାନ୍ତିକେ ) ଭୁଲି ନାହିଁ ରାଣୀ। ନିଜ ଘରେ ମୁଁ ଆଜି ବିଶ୍ୱଭ୍ରାତୃତ୍ୱର ଉଦାରତାକୁ ଜଗାଇ ତୋଳିବାକୁ ଚାହେଁ। ଆଉ ଦେଖୁ ନା, ପିଲାଟା କି ଅଭିମାନ କରିଛି—ଶକ୍ତିଧର ହସ୍ତେ ଯେଉଁ ଦେଶ ଅକ୍ରମଣର ପ୍ରସ୍ତାବ ପଠାଇଥିଲି ସେଥିରେ ମୁଁ ମତ ଦେଇ ନାହିଁ ବୋଲି। ( ପ୍ରକାଶ୍ୟେ ) ଉତ୍ସବ—ଉତ୍ସବ କର। ଏହି—ଏହି ଦେଖ ରାଣୀ। ନୀଳମାଧବ କିପରି ଉତ୍‌ଫୁଲ୍ଲ ହୋଇ ଉଠିଛନ୍ତି—ଆନନ୍ଦେ, ପୁଲକେ ଯେପରି ତାଙ୍କର ଦେହ ରୋମାଞ୍ଚିତ ହେଉଛି—ଯେପରି ସେ ଇଚ୍ଛା କରୁଛନ୍ତି ମିଶିଯିବାକୁ ସମଭାବେ ଆମର ସଙ୍ଗେ—। ଉତ୍ସବ—ଉତ୍ସବ—ଉତ୍ସବ—

[ପୂର୍ଣ୍ଣ-ଉତ୍ସବରେ ସ୍ଥାନଟି ପୂର୍ଣ୍ଣ ହୋଇ ଉଠିଲା ]

---

## ୨ୟ ଦୃଶ୍ୟ

ଶବର ରାଜ୍ୟ—ଯେଉଁ ସ୍ଥାନଟା ଘୋର ଜଙ୍ଗଲ ଥିଲା ପରିଷ୍କାର ହୋଇ ବର୍ତ୍ତମାନ ସେଠାରେ ନଗର ତିଆରି ହୋଇଚି। ସେହି ରାଜ୍ୟର ଏକ ରାଜପଥରେ କେତେକ ସୈନ୍ୟ ଗଳ୍ପ କରୁ କରୁ ପ୍ରବେଶ କଲେ।—

୧ମ—ହିଁ, ଆମର ନୀଳମାଧବ ରାଜାର ଏ ଗୋଟାଏ କୀର୍ତ୍ତି କହିବାକୁଇ ହେବ।

୨ୟ—ଏହି ବଣ ଜଙ୍ଗଲ ସାଫ୍ କରିବା ତ ?

୩ୟ—ଆଉ କହନା କହନା ଭାଇ, ମଶା ଧାଉଁରେ ଏ ରାଜ୍ୟରେ ବାସ କରିବା ଅସମ୍ଭବ ହୋଇ ପଡ଼ିଥିଲା।

୧ମ—ଆରେ ଓଲୁ, ବନ ଜଙ୍ଗଲତ ସବୁ ରାଜା ସାଫ୍ କରିଥାନ୍ତି; କିନ୍ତୁ ବାଲି ଭିତରୁ—ନା ନା—କହିଲ ଭଲା ବାଲି ଭିତରୁ କେଉଁ ରାଜା ଏପରି ମନ୍ଦିର ବାହାର କରିଥାଏ ?

୨ୟ—ତା' ଯା' କହ ଭାଇ, କପାଳ ଜୋର। ତା' ନ ହେଲେ ରାଜା କାହିଁକି ଯାଉଥିଲେ ଘୋଡ଼ାରେ ଚଢ଼ି ସମୁଦ୍ର କୂଳକୁ, ହାଓ୍ୱା ଖାଇ ?—ଆଉ ଘୋଡ଼ା ଖୁର ବା କାହିଁକି ବାଲି ତଳେ ମନ୍ଦିର ଚୂଡ଼ା ନୀଳଚକ୍ରରେ ଠୋକର ଖାଉଥିଲା ? ବୁଝିଲ ଭାଇ ସବୁ—( କପାଳ ଦେଖାଇ ) ଏହି ତିନି ଅଙ୍ଗୁଳି ଜାଗାରେ ଗୁଣ—ଆଉ କିଛି ନୁହେଁ।

୩ୟ—ତିନି ଅଙ୍ଗୁଳି ହେଉ କି ତିରିଶ ଅଙ୍ଗୁଳି ହେଉ, ବାଲିର ପାହାଡ଼ଟାତ ଭାଙ୍ଗିଲା। ଏଥର ଯା'ହେଉ ଶୋଇବା ଘରକୁ ଟିକିଏ ପବନ ପଶିବା ରାସ୍ତାଟା ପରିଷ୍କାର ହେଲା।

୧ମ—ସେ'ତ ପଶିଲା—କିନ୍ତୁ ତା' ସଙ୍ଗେ ଯେ ଅଦ୍ଭୁତ ଗୋଟାଏ ଜିନିଷ ପଶିବାର ରାସ୍ତାଟା ପରିଷ୍କାର ହେଲା—ତା'ର କ'ଣ ହେବ ?

୩ୟ—କାହିଁକି, ପୁଣି କ'ଣ ପଶିବ ?

୧ମ—ଓ। ସବୁ ଭୁଲିଗଲ ପରା ? ସେ ଦିନ ଯେଉଁ ଶବର ଗୁଡ଼ାଙ୍କୁ ଏପରି ଅପମାନ କରି ତଡ଼ି ଦିଆଗଲା—ଯଦି ସେମାନେ ସେହି ବାଟେ ସୁଡ଼ୁ ସୁଡ଼ୁ କରି ପଶିବାର ବ୍ୟବସ୍ଥା କରନ୍ତି ?

୩ୟ—ଏଁ। କହୁଛୁ କ'ଣ ? ପଶିବେ ନା କ'ଣ ?

୨ୟ—ଭୟ କ'ଣ ମ ?—ସେମାନେ ତ ଆଉ ମଶା ନୁହନ୍ତି ?

୩ୟ—ଠିକ୍‌ତ, କଥାଟା ତ ମୁଁ ଭୁଲି ଯାଇଥିଲି ଏକାବେଳକେ। ଆଃ। ରାଜା ଯେତେବେଳେ ସେ ଗୁଡ଼ାଙ୍କ ଦଳକୁ ଦଳ ଧାଡ଼ି ଧାଡ଼ି କରି ଠିଆ କରି ଦେଇ ଆମକୁ ଆଦେଶ କଲେ, ତୀର ଧନୁ ସବୁ କାଢ଼ି ନେବାକୁ—ମୁଁ ତ ପହିଲିରେ ଦୌଡ଼ିଗଲି

ସେହି ଅଣ୍ଡିରାଚଣ୍ଡିଟା ପାଖରୁ ତୀର ଧନୁ କାଢ଼ି ନେବାକୁ—

୧ମ—କେମିତି ଭେକଟା ଦେଖେଇଲୁ ସେତେବେଳେ ?—

୩ୟ—କିନ୍ତୁ, ସାଙ୍ଗେ ସାଙ୍ଗେ ପୁଣି ଭଲ ମଣିଷ ପରି ନିଜର ଅସ୍ତ୍ର ପକେଇ ଦେଇ ଜାତଭାଇ ସମସ୍ତଙ୍କୁ ସେଇଆ କରିବାକୁ କହିଲି ।

୨ୟ—କିନ୍ତୁ ତୁ ସେତେବେଳେ ମୋ ପଛରେ ଲୁଚି, ମୋତେ ଜାପୁଡ଼ି ଧରି କ'ଣ କରୁଥିଲୁ କହିତ ?

୩ୟ—ଓଃ । ତା ଆଉ କ'ଣ କରିବି ଭାଇ—ଏହି ଜଙ୍ଗଲୀଙ୍କର ଜଙ୍ଗଲି ଖିଆପିଆ କ'ଣ ଆମର ପୋଷାଏ ? ପେଟ ଭିତରଟା କେମିତି ମୋଡ଼ି ଘାଣ୍ଟି ଚକଟି ହେଲା—ତା' ଭଲି ମୁଁ ପ୍ରକାଶ୍ୟ ସ୍ଥାନରେ କିପରି—

୨ୟ—ମ ପେଟଟାରେ ହାତ ବୁଲଉଚୁ କାହିଁକି ମ ? କଥାଟା ମନେ ହେଲେ ବି ତୋର ପେଟ ଘାଣ୍ଟି ଚକଟି ହେଉଚି ନା କ'ଣ ?

୩ୟ—କପାଳ କଥା ଆଉ କ'ଣ କହୁଚୁ ଭାଇ ? କିନ୍ତୁ ଯା' ହେଉ, ସେହି ଶବରଗୁଡ଼ାଙ୍କୁ ଛାଡ଼ି ଦେଇ ରାଜା ଆମର ଭାରି ଭୁଲ କାମ କରିଛନ୍ତି—ତେବେ, ତୁମେ ଯେ ମନେ କରିଛ ମୁଁ ଏହି କେଇଟା ବାଘ ଭାଲୁଙ୍କୁ ଜବଦ କରି ପାରିବି ନାହିଁ, ତା' ନୁହେ—ଏତେ ଅପଦାର୍ଥ ମୁଁ ନୁହେଁ—କାହିଁକି, ହେଇ ଦେଖୁନା ବାହାରେ ବନ୍ଧା ତେଉଁରିଅ—

୨ୟ—ହଁ, ବାଘ ଭାଲୁ ସେହି ତେଉଁରିଆ ଗୁଣ୍ଡାରେ ପାଖରେ ପଶିବେ ନାହିଁ ପିନା—କିନ୍ତୁ ସେହି ଅଣ୍ଡିରାଚଣ୍ଡୀ ମାଇକିନିଆ—

୧ମ—ଆଜି ପୁଣି ଶୁଣୁଛି—ମନ୍ଦିର ପ୍ରବେଶର ଯେଉଁ ଉତ୍ସବ ହେଉଛି, ସେଥିରେ ରାଜା ସେମାନଙ୍କୁ ନିମନ୍ତ୍ରଣ କରି ପଠାଇଛନ୍ତି, ଯୋଗ ଦେବାକୁ ।

୩ୟ—କି—କି—କଅଣ କହିଲୁ ? ଶବରଙ୍କୁ ନିମନ୍ତ୍ରଣ, ମନ୍ଦିର ପ୍ରବେଶ ଉତ୍ସବରେ ? ସେହି ଚଣ୍ଡାଳ ଗୁଡ଼ାକ ଯା'ର ଛାଇ ମାଡ଼ିଲେ ସାତ ପୁରୁଷ ନର୍କଗାମୀ ହୁଅନ୍ତି, ସେମାନେ ଆସିବେ ମନ୍ଦିର ସାମ୍ନାକୁ ? ଆମେ—ହଁ ଆମେ—ଦେଖ ଆମେ—ହଁ ହଁ, ଆମେ ନିଶ୍ଚୟ ନିଶ୍ଚୟ ଏଥିରେ ଆପତ୍ତି କରିବା—ଏକାବେଳକେ ତା' ନା କ'ଣ, ଯା'କୁ କହନ୍ତି—

୨ୟ—କିନ୍ତୁ, ଯଦି ଥରେ ସେମାନେ ରାଗିଯାଇ ଲଢ଼େଇ ଆରମ୍ଭ କରି ଦିଅନ୍ତି—

୩ୟ—ଲଢ଼େଇ ?—ଏଁ—ନା ନା, ତୁ କହୁଚୁ କ'ଣ, ଲଢ଼େଇ ? ଲଢ଼େଇ କରିବେ ?

୨ୟ—କାହିଁକି ନ କରିବେ ? ମନ୍ଦିରରେ ତ ତାଙ୍କର ବି ଅଧିକାର ରହିଛି—

୩ୟ—ହୁଁ—ତା' ତ ରହିଚି । ହେଁ ହେଁ, ତୁ ଭାବୁଚୁ ପରି ମୁଁ ସତକୁ ସତ ଆପତ୍ତି କରିବା କଥା କହୁଥିଲି ।—ଏ ଯାଃ । ଗୋଟାଏ କଥା ନା ?—କଥାରେ କହିଲି ବୋଲି କାମରେ କଣ ସତେ କରିବି ?—ତାଙ୍କ ମନରେ କଷ୍ଟ ହେବ ନାହିଁ ?

( ଦୂରେ ବାଦ୍ୟଧ୍ୱନି ଶୁଣାଗଲା )

୧ମ—ଆରେ ଚାଲ ଚାଲ, ଉତ୍ସବର ସମୟ ହେଲା । ରାଜା ବିଜେ କରୁଛନ୍ତି ।

୨ୟ—ଆରେ ଦେଖିରେ, ସେହି ଅଣ୍ଡିରାଚଣ୍ଡୀଟା କିମିତି ବେଶ ହୋଇ ଦଳବଳ ନେଇ ଚାଲିଛି । କି ରେ, ତୁ ପୁଣି ପଛକୁ ହଟୁଚୁ କ'ଣ ?

୩ୟ—ତୁମେ ଆଗାଅ ନା—ମୁଁ କ'ଣ ଡରୁଛି ମନେ କରିଛ ପରା ? ନା ନା—ତୁମେ ଆଗାଅ ନା—

୨ୟ—ଚାଲ—ଚାଲ ତା' ହେଲେ ।

୩ୟ—କିନ୍ତୁ (ପେଟରେ ହାତ ବୁଲେଇ) ଭାଇ, ପେଟଟା ଏମିତି ଘାଣ୍ଟି ଚକଟି ହେଉଚି—ଏ ଅବସ୍ଥାରେ ଉତ୍ସବ ସ୍ଥାନକୁ ଯିବାଟା କଣ ଉଚିତ ହେବ ?

ଅନ୍ୟାନ୍ୟ—ନା ନା, କଦାପି ନୁହେଁ । (ଚାଲିଗଲେ)

୩ୟ—ମୁଁ କିନ୍ତୁ ଟିକିଏ ସୁଦ୍ଧା ଡରି ନାହିଁ—ବୁଝିଚ ?

( ଅନ୍ୟ ଅଡ଼େ ପ୍ରସ୍ଥାନ )

---

### ୩ୟ ଦୃଶ୍ୟ

[ ଶ୍ରୀମନ୍ଦିର ସମ୍ମୁଖ । ଏକ ପାର୍ଶ୍ୱରେ ଉତ୍କଳରାଜ ଗାଳମାଧବଙ୍କର ଉଚ୍ଚ ସଭା । ଉପରେ ଚନ୍ଦ୍ରାତପ । ମଞ୍ଚାସନେ ଉତ୍କଳରାଜ । ବୀରବେଶେ ସଜ୍ଜିତା । ଲଳିତା ଅନ୍ୟାନ୍ୟ ଶବରଗଣ ସହ ଉପସ୍ଥିତ । ସଭାର ବୈଶିଷ୍ଟ୍ୟ ଏହି ଯେ—ଉଚ୍ଚ ସାମନ୍ତ ରାଜା, ସାଧାରଣ ନାଗରିକ ଓ ପାରିଷଦଙ୍କ ମଧ୍ୟରେ କୌଣସି ଭେଦ ବା ପାର୍ଥକ୍ୟ ନାହିଁ । ବନ୍ଦୀଗଣ ଗାଉଥିଲେ—]

—ଗୀତ—

ବନ୍ଦୀଗଣ—

ଧନ୍ୟ ହେ ତୁମ୍ଭେ ଧନ୍ୟ ରାଜନ, ଜୟ ଜୟ ତବ ଜୟ ।
ମହା ମନ୍ଦିର କରିଲ ପ୍ରକାଶ, ଅପରୂପ ବିସ୍ମୟ ॥
ଖନନ କରି ଲୁପ୍ତିର ଖଣି
ଆଣିଲ ତୋଳି ଦୁର୍ଲ୍ଲଭ ମଣି
ତବ, କୀର୍ତ୍ତି-କଥା ରହିବ ବିଦିତ ଯୁଗେ ଯୁଗେ ଧରାମୟ
ଉତ୍କଳ ରାଜ—ଭ୍ରାତୃଗଣ !
ସାଗର ତରଙ୍ଗ ସମ ଯେ ଆନନ୍ଦ ଆଜି
ଉଦ୍‌ବେଳୁଛି ହୃଦୟ ସାଗରେ—
ଭାଷା ତାର ବର୍ଣ୍ଣନା ଅତୀତ ।
ଶିଳ୍ପର ଚରମୋତ୍କର୍ଷ, ବିରାଟ ମନ୍ଦିର—
ମୃତ୍ତିକାର ଗର୍ଭେ ଯାହା ଲୁପ୍ତଥିଲା ଯୁଗ ଯୁଗ ଧରି,
ହେରିବି ନୟନେ ସେହି ଅପରୂପ ଛବି—
କଳ୍ପନାରେ ନଥିଲି ମୋହର—
ହତଜ୍ଞାନ ହୋଇ ଯେବେ,
ପଡ଼ିଲି ଭୂତଳେ ଅଶ୍ୱପୃଷ୍ଠୁ ଦେଖି
ଦ୍ରୁତ-ପଦ ପ୍ରତିହତ ହୋଇବାରୁ କ୍ଷଣେ
ମନ୍ଦିର ଚୂଡ଼ାଗ୍ର ଭାଗ ନୀଳଚକ୍ରେ ଲାଗି ।
ଧନ୍ୟ—ଧନ୍ୟ ଶ୍ରମ ତବ, ଶ୍ରମିକମଣ୍ଡଳୀ !
ଧନ୍ୟ ମୁହିଁ—ତୁମ୍ଭର ରାଜନ ।
ଘେନ ଏବେ ପୁରସ୍କାର ସର୍ବେ—
ଆଜଠାରୁ ସ୍ୱୀୟଶ୍ରମେ ଲଭିବ ଯେ ଧନ,
ପୂର୍ଣ୍ଣ ଅଧିକାରୀ ତା'ର ହୋଇବ ଶ୍ରମିକ,
ଧନୀକ ଘେନିବ ମାତ୍ର ଶ୍ରମ-ଯୋଗ୍ୟ ଧନ ।

ପ୍ରଜାଗଣ—ସାଧୁ—ସାଧୁ ଉତ୍କଳରାଜ !
ଉଃ-ରାଜା—ଅଦ୍ଭୁତ ଘୋଷଣା ମମ ଶୁଣ ଭ୍ରାତୃଗଣ—
ଉତ୍କଳର ସାର ଏହି ନୀଳାଚଳ ଧାମ,
ଅଧିକୃତ ଯଦ୍ୟପି ସେ ବାହୁବଳେ ମମ—
ତଥାପି ତା' ଶାସନର ଭାର
କରିଲି ଅର୍ପଣ ମୁହିଁ, ତୁମ୍ଭର ହସ୍ତରେ ।
ପ୍ରଜାଗଣ—ସାଧୁ—ସାଧୁ—
ଉଃ-ରାଜା—ତୁମ୍ଭର ଏ କର୍ମ୍ମ-କୁଶଳତା—
ତୁମ୍ଭର ଏ ଦଳବଦ୍ଧ ଭାବ—
ତୁମ୍ଭର ଏ ନିୟମ-ବାଧ୍ୟତା—
ବିଶେଷତଃ ଦେଶ-ପ୍ରେମିକତା—
ଜାତି ଧର୍ମ୍ମ ନିର୍ବିଶେଷେ
ଅର୍ଜ୍ଜିଅଛି ଏହି, ସ୍ୱାୟତ୍ତ-ଶାସନ ।
ଆଜି ଠାରୁ ହୁଅ ସର୍ବେ
ଆଦର୍ଶ, ଏ ବିଶ୍ୱଜଗତର ।
ପ୍ରଜାଗଣ—ଏଇତ ଆମର ରାଜା—
ଉଃ-ରାଜା—ଆସ ବିଶ୍ୱାବସୁ-କନ୍ୟା ଲଳିତା ସୁନ୍ଦରୀ !
ଅତ୍ୟଦ୍ଭୁତ ସମର କୌଶଳ ତବ—
ବିସ୍ମିତ କରିଛି ମୋତେ ।
ଅଦ୍ଭୁତ ବିସ୍ମିତ ମୁହିଁ,
ତବ ଉନ୍ନତ ହୃଦୟ ଗୁଣେ ।
ପ୍ରଜା-ସ୍ୱାର୍ଥ—ନିଜ ସ୍ୱାର୍ଥ ଜାଣି,
ତେଜିଅଛ ଅସ୍ତ୍ର ତୁମ୍ଭେ—
ତେଜିଅଛ ସମ୍ମାନ ନିଜର,
ପ୍ରଜାର ମଙ୍ଗଳ ଲାଗି ।
ସେହି ଉଚ୍ଚ-ସମ୍ମାନ ତୁମ୍ଭର,
ଦିଏ ମୁହିଁ ଫେରାଇ ତୁମକୁ ।
ଆଜି ଠାରୁ ନିଜ ରାଜ୍ୟ ତୁମ୍ଭେ
ରକ୍ଷାକର ପ୍ରଜାଗଣ ସହ ।
ଲଳିତା—ପ୍ରଣତି ଚରଣେ ରାଜା !
ଅଯାଚିତ ତବ ଏହି କରୁଣାର ଲାଗି
କୃତଜ୍ଞତା ପ୍ରକାଶର ଭାଷା ନାହିଁ ମୋର ।
ସ୍ପର୍ଶ କରି ତବ ରାଜୀବ ଚରଣ
କରୁଛି ପ୍ରତିଜ୍ଞା—

ଯେତେଦିନ ଦେହେ ଥିବ ପ୍ରାଣ,
ଯେତେଦିନ ଧମନୀରେ ବୋହୁଥିବ ଶୋଣିତ,
ସେତେଦିନ ଏ ଅସିର ରଖିବି ସମ୍ମାନ !—
ରଖିବି ରାଜାର ମାନ—
ଅମର୍ଯ୍ୟାଦା ଏ ରାଜ୍ୟର ନ ଦେବି ହେବାକୁ ।

ଇଃ-ରାଜା—ଧନ୍ୟ ବୀରବାଳା—
ପୂର୍ଣ୍ଣ ହେଉ ପ୍ରତିଜ୍ଞା ତୁମ୍ଭର ।

( ଦୂତର ପ୍ରବେଶ )

ଦୂତ—ମହାରାଜ, ଅବନ୍ତୀର ଦୂତ ପ୍ରତୀକ୍ଷାରେ ରହେ
ଦ୍ୱାରେ—ଗୁରୁତର ରାଜକାର୍ଯ୍ୟେ, ଶ୍ରୀଘ୍ରମୁର ଦର୍ଶନ
ପ୍ରତ୍ୟାସୀ ।

ଇଃ-ରାଜା—ଅବନ୍ତୀର ଦୂତ ?
ଯାଅ, ସସମ୍ମାନେ ଡେକିଆସ ତାଙ୍କୁ ।

ଲଳିତା—(ସ୍ୱଗତ) ହେ ନୀଳମାଧବ !
ଏ'ଭଳି ମନ୍ଦିର ନୁହେ କିବା ବାସଯୋଗ୍ୟ ତବ ?

( ଅବନ୍ତୀ ଦୂତର ପ୍ରବେଶ )

ଅବନ୍ତୀ ଦୂତ—ହେ ନୃପତି !
ଗୁରୁତର ରାଜକାର୍ଯ୍ୟେ ଆସିଅଛି ଅବନ୍ତୀନଗରୁ,
ହୋଇଲେ ଆଦେଶ, ନିବେଦିବି ବାର୍ତ୍ତା ମୋର ।

ଇଃ-ରାଜ—ଅସଙ୍କୋଚରେ କର ନିବେଦନ ।

ଅଃ ଦୂତ—ଏହି ମନ୍ଦିରରେ
ଜନ୍ମଗତ ଅଧିକାର ଅବନ୍ତୀରାଜାଙ୍କ ।

ଇଃ-ରାଜା—ଜନ୍ମଗତ ଅଧିକାର ଅବନ୍ତୀରାଜାଙ୍କ ?
ହାଃ—ହାଃ—ହାଃ—ହାଃ—

ଅଃ ଦୂତ—ଉପହାସ ନୁହେ ରାଜା
ରହିଛି ପ୍ରମାଣ ତାର—
ଲିପିବଦ୍ଧ ନିଦର୍ଶନୀ—ମାନଚିତ୍ର ସହ ।

ଇଃ-ରାଜା—ମାନଚିତ୍ର ସହ—ଲିପିବଦ୍ଧ ନିଦର୍ଶନୀ ?

ଅଃ ଦୂତ—ଭବିଷ୍ୟତ ବାଣୀ ପୁଣି ଲେଖାଅଛି ତହିଁ,
ଇନ୍ଦ୍ରଦ୍ୟୁମ୍ନ ନିର୍ମିତ ମନ୍ଦିର ଏହି—
ଇନ୍ଦ୍ରଦ୍ୟୁମ୍ନ ନାମେ ବଂଶଧର ତାଙ୍କ
କରିବେ ଉଦ୍ଧାର ।

ଇଃ-ରାଜା—ବାଲୁକା ଗର୍ଭରୁ ପୁଣି—ଏ'କଥାବି ଲେଖା
ଥିବ ତହିଁ ?

ଅଃ ଦୂତ—ଅବଶ୍ୟ ରହିଛି ଲେଖା—
ଲୁପ୍ତ ବାଲୁକାର ଗର୍ଭେ ରହିବ ମନ୍ଦିର ।

ଇଃ-ରାଜା—ଯା ମଧ୍ୟ ଥିବ ଲେଖା—
ନୀଳମାଧବ ନରପତି ଦିନେ,
ଅଶ୍ୱପୃଷ୍ଠେ ଯାଉଁ ଯାଉଁ···ସ୍ଖଳିତ-ଚରଣ ହୋଇ
ହେବେ ଭୂପତିତ ତହିଁ—

ଅଃ ଦୂତ—ନୁହଇ ରହସ୍ୟ ରାଜା—

ଇଃ-ରାଜା—କହୁଅଛ ତୁମେ, ଦୂତ !
ନରଲୋକେ ଯାହା କେହି ନ ଥିବେଟି ଶୁଣି—
ସେହି ଅପରୂପ କଥା
କରିବାକୁ ହୋଇବ ବିଶ୍ୱାସ !
ଯାଅ ଦୂତ—କହିବ ରାଜାରେ ତବ—
ଧରଣୀର ଏ ମହା ସମ୍ପଦ,
ଆମର କଠୋର ଶ୍ରମେ—ଦେହରକ୍ତେ—ପ୍ରଗାଢ଼
ନେଷ୍ଠାରେ କରିଛୁ ଅର୍ଜ୍ଜନ ଆମ୍ଭେ ।
ଏ ଐଶ୍ୱର୍ଯ୍ୟେ ଆଉ କାର ନାହିଁ ଅଧିକାର ।
ହଁ, ଆହୁରି କହିବ ତାଙ୍କୁ—
ହେଲେ ପ୍ରୟୋଜନ,
ଏ ମନ୍ଦିର ରକ୍ଷାର କାରଣେ
ଯୁଦ୍ଧକ୍ଷେତ୍ରେ ଦେବାପାଇଁ ପ୍ରାଣ, ନ ହେବୁ ବିମୁଖ !

ଅଃ ଦୂ—ନିବେଦିବି ଯଥାରୀତି ।
କିନ୍ତୁ ରାଜା, ସାବଧାନ—
ହୁଏତ, ଏହିକ୍ଷଣି ହୋଇପାରେ ଯୁଦ୍ଧର ସୂଚନା ।

( ଚାଲିଗଲେ )

ଲଳିତା—ହେ ନୀଳମାଧବ !
ଧନ୍ୟ ପ୍ରଭୁ କରୁଣା ତୁମ୍ଭର !
ପ୍ରାଣର ଆକାଂକ୍ଷା ମୋର
ଏତେ ଶୀଘ୍ର ମେଣ୍ଟିବ ଏ ଭଳି,
ନ ଥିଲି କଳ୍ପନା ।
ରାଜା ! ମିନତି ଚରଣେ ତବ,
ଏ ଯୁଦ୍ଧର ଭାର, ଦିଅ ମୋ'ର ହସ୍ତେ—

ଇଃ-ରାଜା—ଭଲ—ଭଲ—ମନ୍ଦିର ରକ୍ଷାର ଭାର,
ତୁମ୍ଭ କରେ କରିଲି ଅର୍ପଣ ।
[ ନେପଥ୍ୟରୁ ଶୁଣାଗଲା 'ଜୟ ଇନ୍ଦ୍ରଦ୍ୟୁମ୍ନଙ୍କର
ଜୟ' ]

ଏହି ଶୁଣ, ଅବନ୍ତୀର ସେନା—
ମୁହୁର୍ମୁହୁ ଘୋଷୁଛନ୍ତି ଅବନ୍ତୀର ଜୟ ।
ଭ୍ରାତୃଗଣ—ରଣ ସାଜେ ସାଜ ସର୍ବେ,
ମୁହୂର୍ତ୍ତେକ ବିଳମ୍ବ ନ କର ।
ମନ୍ଦିର ରକ୍ଷାର ଲାଗି—ହେଲେ ପ୍ରୟୋଜନ,
ରଣକ୍ଷେତ୍ରେ ବିସର୍ଜିବୁ ପ୍ରାଣ ।
ମନେ ରଖ—ରାଜାର ସମ୍ମାନ ରକ୍ଷା
ଅଛି ତୁମ୍ଭ କରେ ।

ସମସ୍ତେ—ଜୟ ଉତ୍କଳ-ରାଜାଙ୍କର ଜୟ ।

ଉଃ-ରାଜା—ନା—ନା—କହ ସର୍ବେ,
‘ଜୟ ନୀଳମାଧବଙ୍କ ଜୟ’—
ଇଷ୍ଟଦେବ ଅଟନ୍ତି ସେ ସମସ୍ତଙ୍କ;
ତାଙ୍କ କୃପା ବିନା—ଅନିଷ୍ଟର ନ ହେବ ଉଚ୍ଛେଦ ।
( ଲଳିତାକୁ ) ସେନାପତେ !
କି ଆଦେଶ ଆଜ୍ଞାବାହୀ ପ୍ରତି ?

ଲଳିତା—ରାଜା, ଯାଅ ତୁମ୍ଭେ ରକ୍ଷାକର
ଆପଣା ପ୍ରାସାଦ ।
[ ଯଥା ସମ୍ମାନ ପ୍ରଦର୍ଶନ କରି ଉତ୍କଳରାଜ ଗ୍ଲଲିଗଲେ ]
ଶୁଣ ଭ୍ରାତୃବୃନ୍ଦ ! ରହିଲି ମୁଁ ମନ୍ଦିରର ଦ୍ୱାରେ—
ସର୍ଦ୍ଦାର, ରହ ତୁମ୍ଭେ ଦକ୍ଷିଣ ଦୁଆରେ—
ପଶ୍ଚିମ ପ୍ରବେଶ ଦ୍ୱାରେ ରହ, ବୁଲ୍‌ବୁଲ୍—
ମଇନା ରହିବ ଜଗି ଉତ୍ତର ଦୁଆର ।
( କୋଳାହଳ ନିକଟରେ ହେଲା )
ଅନ୍ୟ ସର୍ବେ ଶ୍ରୀମନ୍ଦିର କରି ହେ ବେଷ୍ଟନ—
କହିବେ ପ୍ରାଣଭରି, “ଜୟ ନୀଳମାଧବଙ୍କ ଜୟ” ।

ସମସ୍ତେ—ଜୟ ନୀଳମାଧବଙ୍କ ଜୟ ।
( ସମସ୍ତେ ଗ୍ଲଲିଗଲେ )
[ ନିରସ୍ତ୍ର ବିଦ୍ୟାପତି ପ୍ରବେଶ କଲେ ]

ବିଦ୍ୟାପତି—କାହିଁ ? କେଉଁଠି ଉତ୍କଳରାଜ ?

ଲଳିତା—କହ, ତବ କିବା ପ୍ରୟୋଜନ ?

ବିଦ୍ୟାପତି—ଏ କ’ଣ ଲଳିତା ?

ଲଳିତା—ସାବଧାନ !—

ବିଦ୍ୟାପତି—ପ୍ରଣାମ—ମହାରାଣୀ !

ଲଳିତା—ନୁହେଁ ଖାଲି ମହାରାଣୀ—
ଉତ୍କଳବାହିନୀ ଆଜି ଚଳିବ ଇଙ୍ଗିତେ ମୋର—
ମନେ ରଖ ଏ ଯୁଦ୍ଧର ମୁହିଁ ହେ ନାୟିକା—
ମମ ହସ୍ତେ ନ୍ୟସ୍ତ,
ଶ୍ରୀମନ୍ଦିର ରକ୍ଷା ଭାର ।

ବିଦ୍ୟାପତି—ତେବେ ତୁମ୍ଭରି ସାଥେ,
ରାଜକାର୍ଯ୍ୟ ମୋର ।
ଲଳିତା—ବେଶ, କହିପାର—
କିବା ରାଜକାର୍ଯ୍ୟ ତବ ?

ବିଦ୍ୟାପତି—ଏ ମନ୍ଦିର ତ୍ୟାଗ କରିବାକୁ ହେବ ।

ଲଳିତା—କାହିଁକି ? ତବ ଭୟେ ?

ବିଦ୍ୟାପତି—ନ୍ୟାଯ୍ୟ ଅଧିକାର ଭୟେ ।

ଲଳିତା—ଅସମ୍ଭବ—
ଯେତେକ୍ଷଣ ଅସ୍ତ୍ର ଅଛି କରେ,
ଅପୂର୍ଣ୍ଣ ରହିବ ତେତେକ୍ଷଣ, ତବ
ମନ୍ଦିର ପ୍ରବେଶ ବାଞ୍ଛା ।

ବିଦ୍ୟାପତି—କିନ୍ତୁ ଅଟେ ମୁହିଁ ଅସ୍ତ୍ରହୀନ ।

ଲଳିତା—କେତେକ୍ଷଣ ସଶସ୍ତ୍ର ହେବାକୁ ?

ବିଦ୍ୟାପତି—ନା—ନ କରିବି ହିଂସା-ଯୁଦ୍ଧ—
ପ୍ରତିଜ୍ଞା ମୋହର ।

ଲଳିତା—ମୋର ସେ ପ୍ରତିଜ୍ଞା-ବାଣୀ, ଅଛି କି ସ୍ମରଣ ?

ବିଦ୍ୟାପତି—କିନ୍ତୁ, ଦେବତାର କାର୍ଯ୍ୟେ,
ହିଂସା ଭାବ ନୁହେଁ ଶୋଭନୀୟ ।

ଲଳିତା—ଚୌର୍ଯ୍ୟବୃତ୍ତି—ବିଶ୍ୱାସଘାତକ ଭାବ—
ଶୋଭନୀୟ ପରା ?

ବିଦ୍ୟାପତି—ଚୌର୍ଯ୍ୟବୃତ୍ତି ?
କିନ୍ତୁ; ସେଥିଲାଗି ଦାୟୀ—ତୁମେ ନିଜେ ।

ଲଳିତା—ଏକ୍ଷଣି କରିବି ସେହି ଦାୟିତ୍ୱ ମୋଚନ—
( ଅସି ନିଷ୍କାସନ କଲେ )

ବିଦ୍ୟାପତି—ଚମତ୍କାର—ଅପରୂପ—ଅଦ୍ଭୁତ ଲଳିତା—
ହାଣ ସେହି ଅସ୍ତ୍ର ତବ,
ପ୍ରସାରିତ ବକ୍ଷଦେଶେ ମମ ।

ଲଳିତା—ଏପରି ଦୁର୍ବଳ ତୁମ୍ଭେ ?
ଧିକ୍—ଧିକ୍—ଶତଧିକ୍ !
ଚୁହିଁବାକୁ ଘୃଣା ହୁଏ ଆନନେ ତୁମ୍ଭର ।

ବିଦ୍ୟାପତି – ନା – ନା – କର୍ତ୍ତବ୍ୟ ରହିଛି ମୋର—
ଏ କି ଦୁର୍ବଳତା !
ଯାଅ—ଯାଅ—ଦୂରେ ତୁମ୍ଭେ !
ଆସ ଶକ୍ତି ସ୍ୱରଗୁ ଓହ୍ଳାଇ—
ଆସ ଶକ୍ତି ମାତାର ଆଶୀଷରୂପେ—
ବକ୍ଷେ ମୋର ଜ୍ୱାଳି ଦିଅ ପ୍ରଦୀପ୍ତ ପାବକ,
ବାହୁ ଯୁଗେ ଦିଅ ମୋର ମତ୍ତଗଜ ବଳ—
ବିମୁଖ ନହୁଁ ଏ ଯେପରି କର୍ତ୍ତବ୍ୟ ସାଧନେ ।
ଜାଗ ଜାଗ ବିଦ୍ୟାପତି
କର ତୁମ୍ଭେ କର୍ତ୍ତବ୍ୟ ନିଜର ।
(ଜୋର କରି ମନ୍ଦିରରେ ପ୍ରବେଶ କରିବାକୁ ଗଲେ)

ଲଳିତା—କାହିଁ ଯାଅ ତୁମ୍ଭେ ?—
ଦେଖ ତୁହିଁ—ସତର୍କ ପ୍ରହରୀ ମୁହିଁ
ରହିଛି ପ୍ରସ୍ତୁତ, ମନ୍ଦିରର ଦ୍ୱାରେ—
ହେର, ମୋର ଦୃଢ଼ କରେ
ରହିଅଛି ଶାଣିତ କୃପାଣ ।

ବିଦ୍ୟାପତି—ତୁଚ୍ଛ—ତୁଚ୍ଛ—ଅତି ତୁଚ୍ଛ ଅସି—
କିବା ଶକ୍ତି ତା'ର ?
ବ୍ରାହ୍ମଣ ସନ୍ତାନ ମୁହିଁ,
ଅହିଂସ ଭାବରେ ରହି
ପାରେ ଯଦି ସହିବାକୁ ହିଂସାର ପ୍ରହାର—
ସେହି ମୋର ବ୍ରହ୍ମତେଜ—ବୀରତ୍ୱ—ପୌରୁଷ ।

ଲଳିତା—ମୁହିଁ ମଧ୍ୟ ଶବର ସନ୍ତାନ ।
ହିଂସା ବିନିମୟେ ଯଦି
ପ୍ରତିହିଂସା ସାଧିପାରେ ମୁହିଁ,
ସେହି ମୋର ଶବରତ୍ୱ—ବୀରତ୍ୱ—ଗୌରବ ।

ବିଦ୍ୟାପତି—ହିଂସା ଦ୍ୱାରା ନ ପୂରିବ ଅଭୀପ୍ସା ତୁମ୍ଭର—
ନ ପାଇବ ତୁମ୍ଭର ସେ ନୀଳମାଧବଙ୍କୁ ।

ଲଳିତା—ମିଥ୍ୟା କଥା ।
କିଏ କହେ, ନ ପାଇବି ନୀଳମାଧବଙ୍କୁ ?
ପାଇବି—ମୁଁ ନିଶ୍ଚୟ ପାଇବି ।
ମାଧବର ରକ୍ତ-ରଙ୍ଗା ଚରଣ କମଳେ
କିଏ ସେହି ବାନ୍ଧିଥିଲା ସୁଗନ୍ଧିଣ ଶାମୁକ ତା'ର ?
ସେ ଏହି ଶବର ।
ପାଇ ନ ଥିଲା କି ସେହି, ନୀଳମାଧବଙ୍କୁ ?
ପୂରି ନ ଥିଲା କି ତେବେ, ଅଭୀପ୍ସା ତାହାର ?
ତଥ୍ୟ ଯେଣେ ଏଥି,
ଅସ୍ତ୍ର ମୁହିଁ ଦେଉଅଛି ଆଣି ।

ବିଦ୍ୟାପତି—ବିନା ଅସ୍ତ୍ରେ ପଶିବି ମନ୍ଦିରେ—

ଲଳିତା—ଆତ୍ମହତ୍ୟା କରିବ କି ତେବେ ?

ବିଦ୍ୟାପତି—ନା—ନୁହେଁ ଆତ୍ମହତ୍ୟା ।
ଶତ ଶତ ବଳି—ରୋଧ କରିବାକୁ
ଏ ମୋହର ଆତ୍ମବଳି,
ପ୍ରଭୁଙ୍କ ଏ ମନ୍ଦିର-ଦୁଆରେ ।
( ମନ୍ଦିରରେ ପ୍ରବେଶ କରିବାକୁ ଉଦ୍ୟତ ହେଲେ )

ଲଳିତା—ତେବେ ହେଉ ବଳି—( ବିଦ୍ୟାପତିଙ୍କୁ ମାରିବାକୁ ଅସି ଉଠାଇଲେ, କିନ୍ତୁ ଅସି ହସ୍ତ-ଚ୍ୟୁତ ହେଲା ) ଅସି—ଅସି ମୋର—
[ ସର୍ଦ୍ଦାର ବେଗେ ପ୍ରବେଶ କଲା ]

ସର୍ଦ୍ଦାର—ଭୟ ନାହିଁ—ଭୟ ନାହିଁ, ରାଣୀ !
କରେ ତବ ଶତ୍ରୁର ନିପାତ । ( ବିଦ୍ୟାପତି ପ୍ରତି ଶର ସନ୍ଧାନ କଲେ ଓ ବିଦ୍ୟାପତି ଶରାହତ ହୋଇ ତଳେ ପଡ଼ିଗଲେ )

ଲଳିତା—ସର୍ଦ୍ଦାର—ସର୍ଦ୍ଦାର ! ଏ କି କଲୁ—ଏ କି କଲୁ ?—କାହାକୁ ତୁ—

ସର୍ଦ୍ଦାର—( ବିଦ୍ୟାପତିଙ୍କୁ ଦେଖି ) ଏଁ—ଆରେ ଏ ଯେ—ଏ ଯେ—ଆରେ—ଆରେ ଏ କ'ଣ କଲି-ରେ—ଏ ମୁଁ କ'ଣ କଲି—
( ପଳାଇଗଲେ ପାଗଳ ପରି )

ବିଦ୍ୟାପତି—ଲଳିତା ! ତୁମ କୋଳରେ ମୁଣ୍ଡ ରଖି ମରିବି ବୋଲି ଭାରି ଇଚ୍ଛା ଥିଲା—ସେ ଇଚ୍ଛା ମୋର ପୂର୍ଣ୍ଣ ହୋଇଛି । ଏହି ନିଅ ସେହି ଅଙ୍ଗୁରୀ, ଯା' ବଳରେ ମୁଁ ନୀଳମାଧବଙ୍କୁ ଚୋରି କରିବାକୁ ସକ୍ଷମ ହୋଇଥିଲି । ଏ ପର୍ଯ୍ୟନ୍ତ ତାକୁ ହାତରେ ରଖିଛି । ତୁମେ ଇତି ଦିନେ କଲ୍ୟାଣ ପିନ୍ଧାଇ ଦେଇଥିଲ—ଏବେ ହିଂସା ସତ୍ତ୍ୱେ ବି ଫେରାଇ ନେଲି ନାହିଁ ।

ଲଳିତା—ତା ପାରିବ ନାହିଁ ବୋଲିତ ଏବେ ଅଯୋଗ୍ୟ—ହଂସାକୁ ଏପରି ଦୁର୍ଦ୍ଦମନୀୟ କରିଛି—

ବିଦ୍ୟାପତି—ଆଉ ହଂସାର କଥା କହୁଛ କାହିଁକି, ଲଳିତା ? ଏହି ନିଅ ଅଙ୍ଗୁଷ୍ଠ—ନୀଳମାଧବଙ୍କୁ ଆଣି ପ୍ରତିଷ୍ଠା କର ଏହି ଶ୍ରୀମନ୍ଦିରରେ—

ଲଳିତା—ଆଗୋ ! ଏହି ଅଙ୍ଗୁଷ୍ଠ ନେଇ ଏହି ମନ୍ଦିରରେ ନୀଳମାଧବଙ୍କୁ ପ୍ରତିଷ୍ଠା କରିବା ପୂର୍ବରୁ ମୋର ପ୍ରେମର ମାଧବଙ୍କୁ ଚିରକାଳ ପାଇଁ ଯେ ପ୍ରତିଷ୍ଠା କରିବାକୁ ତୁହେଁ ମୋର ଏହି ମନ୍ଦିରରେ, ପ୍ରିୟତମ—

ବିଦ୍ୟାପତି—ଏତେ ସୌଭାଗ୍ୟ କ'ଣ ହେବ ଲଳିତା ? —ତୁମର ମନ୍ଦିରର ଦ୍ୱାର ଖୋଲିଦେବ ଏପରି ଅଯାଚିତ ଭାବେ—ପୁଣି ତୁମର ଏକ ଶତ୍ରୁକୁ ?

ଲଳିତା—ଏତେ ବଡ଼ ଝଡ଼, ତୋଫାନ ଦୁର୍ଯ୍ୟୋଗ ମଧ୍ୟରେ ତୁମେ ଯଦି ଦ୍ୱାର ଖୋଲି ରଖିପାର, ମୋର ପଥ ଚାହିଁ—ସମସ୍ତ ରାତି ଜାଗି—ଭେଟିବେଲେ—

ବିଦ୍ୟାପତି—ଲଳିତା !

ଲଳିତା—( ସ୍ୱାବିଷ୍ଟ ଶ୍ରେଷ୍ଠି ବିଷ ପାନ କଲେ ଏବଂ ମୁହୂର୍ତ୍ତିରେ ତଳି ପଡ଼ିଲେ ବିଦ୍ୟାପତିଙ୍କ ପାର୍ଶ୍ୱେ ) ଏହି ଯେ ଦ୍ୱାର ଖୋଲି ଦେ—ଇ—ଛି,—ଆସ ଆସ—ମୋର ପ୍ରେମର-ଠାକୁ—ର—

ବିଦ୍ୟାପତି—ଲ—ଳି—ତା—

[ ସର୍ଦ୍ଦାର ଓ ମଇନା ପାଗଳ ପରି ପ୍ରବେଶ କଲେ ]

ମଇନା—ଆରେ ମୋର ରାଣୀ କାହିଁରେ—ରାଣୀ କାହିଁ ?

ଲଳିତା—ମଇନା—

ମଇନା—ଏ କ'ଣ—ଏ କ'ଣ କଲୁ ? ଆରେ ତୋର ଶର ମୁହଁରେ ଗୋଟାଏ ବିଲୁଅ କୁକୁର ବି ଆଜି ଯାଏ ଲାଗି ନଥିଲା ବୋଲି କ'ଣ—

ଲଳିତା—ନା—ନା—ତାର ଦୋଷ ନାହିଁ । ତୋର ତୁ ରୁହ ଆଜି ହାରିଣିଧୂକୁ ପାଇ ଜାପୁଛି ଧରି ରଖିଛି ରେ । ତାକୁ ଆଉ ଉପରକୁ ଉଠାଇବାର ପ୍ରୟୋଜନ ନାହିଁ, ସହି !—ଗୋଟିଏ ଗୀତ ଗାଅ, ତୁମେ ଦୁହେଁ ମିଳି—ସେହି ପୂନେଇ ରାତିରେ—ସାଗର ବେଳାରେ ଯେପରି ଗାଉଥାଅ—ଶୁଣୁ ଶୁଣୁ ଆମେ ଦୁହେଁ ଅଟେଇ ଯାଉଁ ମହାଯାତ୍ରାର—ମହାପଥରେ—

[ ସର୍ଦ୍ଦାର ଓ ମଇନା ଗୀତ ଗାଇଲେ—ଏବଂ ସେହି କ୍ରନ୍ଦନସ୍ୱରରେ ବ୍ୟଥିତ ଆକାଶ ପବନ ମଧ୍ୟ କାନ୍ଦି ଉଠିଲେ ]

—ଗୀତ—

ଆଜି, ଚନ୍ଦ୍ର-ସାଗର ମିଳନ ।
ଚିରଦିନ ଲାଗି ହେଲା ଆଜି ବିନିମୟ ପ୍ରାଣେ ପ୍ରାଣ ॥
ନିମେଷ ତଥା ନାହିଁ ବିରହ
ମିଳନ ଶଙ୍ଖ ବାଜେ ଅହରହ,
ବିଚ୍ଛେଦ ନାହିଁ ତହିଁ ଖାଲି ମିଳନ—
ଚିର ମିଳନ ॥

( ଗୁଣ୍ଡିଚାଦେବୀ ପ୍ରବେଶ କଲେ )

ଗୁଣ୍ଡିଚା—ବିଦ୍ୟାପତି, ବିଦ୍ୟାପତି ! ଏକଣ ? ରହିଗଲ କାହିଁକି ? ଗାଅ—ଗାଅ—ଆଜି ଯେ ଆନନ୍ଦର ଦିନ; ଆଜି ବିନାରକ୍ତପାତରେ ଦୁଇଟି ରାଜ୍ୟ—ଦୁଇଟି ସାମ୍ରାଜ୍ୟ ଏକ ହୋଇ ଯାଇଛି । ତୁମେମାନେ ନୀଳମାଧବଙ୍କୁ ପାଇଛ—ଆମେ ପାଇଛୁ ଏହି ମନ୍ଦିରକୁ ।

ମଇନା—କିନ୍ତୁ ଯେଉଁ ଅମୂଲ୍ୟ ରତ୍ନ ଦୁଇଟି ଆମେ ହରାଇଛୁଁ—ତୁମେ ମଧ୍ୟ ହରାଇଛ, ତା'ର ସନ୍ଧାନ କିଛି ରଖିଛ ତ, ମା ?

ଗୁଣ୍ଡିଚା—କଣ କହୁଛ ଯେ ?

ମଇନା—ଏହିଆଡ଼େ ଥରେ ଚାହିଁ ଦେଖ ତ, ମା—

ଗୁଣ୍ଡିଚା—ଏଁ, ଏକଣ ଦେଖୁଛି ? ବିଦ୍ୟାପତି—ବିଦ୍ୟାପତି !—ପୁତ୍ର ମୋର—

( ବିଦ୍ୟାପତିଙ୍କୁ ଜୁଣ୍ଟାଇ ଧରିଲେ —ଇନ୍ଦ୍ରଦ୍ୟୁମ୍ନ ଓ ନୀଳମାଧବ ପ୍ରବେଶକଲେ ଅନୁଚରଗଣ ସହ )

ଇନ୍ଦ୍ର—ତାହାହିଁ ହେବ, ବନ୍ଧୁ—ମୋର ଏହି ମନ୍ଦିରରେ ତୁମର ନୀଳମାଧବ-ଶିଳାହିଁ ପ୍ରତିଷ୍ଠିତ ହେବେ ।

ନୀଳମାଧବ—ଲଳିତା କାହିଁ ? ସେ ନିଶ୍ଚୟ ଏଥିରେ ଅମତ ହେବ ନାହିଁ ।

ଇନ୍ଦ୍ର—ମୋର ବିଦ୍ୟାପତି ମଧ ନୁହେଁ—

ଗୁଣ୍ଡିଚା—ହେଲେ, ଥିଲେଟି ମତ ନେଉଥିବେ ସେମାନଙ୍କର ସେମାନେ ଯେ ଚକୁଆ-ଚକୋର—ଏକମତ ହୋଇ ଉଡ଼ି ପଳାଇଛନ୍ତି କେତେବେଳେ—ସେହି ଅସୀମ ଆକାଶକୁ ଦୂରେ ବହୁଦୂରେ ଯେଉଁଠାରେ ନୀଡ଼ର ଜାଲି, ବାସରଶଯ୍ୟା ରଚନା କରି, ନବଦମ୍ପତିର ପ୍ରତୀକ୍ଷାରେ ଉଜାଗର ହୋଇ ରହିଁ ରହିଛନ୍ତି ଦିବ୍ୟାଙ୍ଗନାମାନେ ।—ହଁ, ଉଡ଼ି ଯାଇଛନ୍ତି ବୋଧେ ଏହି ଆଶଙ୍କାରେ, ଯଦି ତୁଚ୍ଛ ରାଜନୀତି ଓ ସମାଜନୀତିର ମିଥ୍ୟା ଜାଲରେ ଆବଦ୍ଧ ରହି, ସେମାନଙ୍କର ସତ୍ୟ-ସରଳ-ପ୍ରାଣ ଆମେ ବଧ କରି ପକାଉଁ ।

ନୀଳମାଧବ—ଓଃ ! ଲଳିତା ମୋର ନାହିଁ ଲଳିତା—ଲଳିତା—ମାଗୋ, ଅସ୍ପୃଶ୍ୟା ଶବରୀ ହେଲେ ମଧ ତୁହି ଥିଲୁ ମୋର ମାନସ କନ୍ୟା ! ଖାଲି ସେତିକି ନୁହେଁ—ମୋ'ର ମନର ଏହି ବାସନାଟି ସର୍ବସମକ୍ଷରେ ଆଜି ଘୋଷଣା କରିବି,—ଏହାହିଁ ସ୍ଥିର କରିଥିଲି ମା ।

ଗୁଣ୍ଡିଚା—ତୁମେ କଥା କହୁନା କାହିଁକି ? କଣ ଦେଖୁଛ ତେଣେ ? ବିଦ୍ୟାପତି କଣ ଅମର ଧନ ଯେ ଆମର ପ୍ରାଣ ଚିସେ ବୁଝିବ—

ଇନ୍ଦ୍ର—ଆମର ପ୍ରାଣ ବୁଝୁ ନ ବୁଝୁ—ବିଶ୍ୱର ପ୍ରାଣକୁ ସେ ବୁଝିଛି, ସେଥିଲାଗି ଆଜି ଜୀବ-ବିଶ୍ୱର ମିଳନ ସେତୁ ଗଢ଼ିଛି ବିଶ୍ୱାବସୁ-କନ୍ୟା ସହିତରେ ମିଶି । ଆସ ରାଜା—ଆସ ରାଜ୍ୟରେ ଯେ ଯେଉଁଠି ଅଛ ସମସ୍ତେ । ଆଜି ରାଜା—ପ୍ରଜା, ଉଚ୍ଚ—ନୀଚ, ସ୍ପୃଶ୍ୟ—ଅସ୍ପୃଶ୍ୟ, ଏହି ମିଥ୍ୟାଭାବ ଭୁଲିଯାଇ, ଆମେ ସମସ୍ତେ ସମ ପ୍ରାଣରେ ବ୍ୟବଧାନ ଅତିକ୍ରମ କରି ଯାଉଁ ସେହି ପ୍ରେମର ଯୋଗସୂତ୍ର ଧରି, ଯା'ର ପ୍ରତିଷ୍ଠା ହୋଇଛି ଆଜି ଲଳିତା ଓ ବିଦ୍ୟାପତିର ଅମର ପ୍ରେମର ମଧ ଦେଇ ।

ନୀଳମାଧବ—ତାହାହିଁ ହେବ ରାଜା ! ଏହି ଶ୍ରୀମନ୍ଦିରରେ ନୀଳମାଧବଙ୍କ ପୀଠ ସ୍ଥାନରେ, କୌଣସି ଭେଦାଭେଦ ଆଉ ରହିବ ନାହିଁ—ବ୍ରାହ୍ମଣ ଚଣ୍ଡାଳ ଏକାଠି ମିଳି କରିବେ ଜଗନ୍ନାଥଙ୍କର ପୂଜା; ସମସ୍ତେ ଗ୍ରହଣ କରିବେ ତାଙ୍କର ମହାପ୍ରସାଦ ବର୍ଣ୍ଣନିର୍ବିଶେଷରେ—ଉଚ୍ଛିଷ୍ଟ ବୋଲି ନ ରହିବ କିଛି—ଏହି ମହାମନ୍ଦିର ହେବ ମହାମିଳନର ତୀର୍ଥକ୍ଷେତ୍ର ।

ଇନ୍ଦ୍ର—ଆସ ତେବେ ଆଜି ସମସ୍ତେ ଏକ ଧ୍ୟାନରେ ଆମର ପ୍ରାଣର ଅର୍ଘ୍ୟ ନିବେଦନ କରିବା—ଶ୍ରୀନୀଳମାଧବଙ୍କ ପ୍ରକଟକାରୀ ଏହି ପ୍ରେମିକ ଯୁଗଳର ପ୍ରେମବେଦୀତଳେ ।—

ଗୁଣ୍ଡିଚା—ହଁ, ତୁମେ ଦିନେ କହିଥିଲ, ରାଜା—"ନାରାୟଣ ଯଦି ସନ୍ତୁଷ୍ଟ ହୋଇ ବର ଦିଅନ୍ତି, ତାହେଲେ ତୁମେ କି ବର ମାଗନ୍ତ"—ଆଜି ମୁଁ ସେହି ପ୍ରଶ୍ନର ଉତ୍ତରରେ ଏହି ବର ମାଗୁଛି, ରାଜା ଯେପରି ଯୁଗେ ଯୁଗେ ଏହି ପ୍ରେମର ପ୍ରତୀକ—କିଶୋର କିଶୋରୀ—ପୁତ୍ର କନ୍ୟା ରୂପେ ଆମର ବଂଶ ଉଜ୍ଜ୍ୱଳ କରି ରହିଥିବେ, ଏବଂ ଯେପରି ତାହା ମ୍ଳାନ କରିବାକୁ ଅନ୍ୟ ସନ୍ତାନ ଜାତ ନ ହୁଏ ଏହି ବଂଶରେ—

( ସହସା ଅଦୂରେ ନୀଳମାଧବଙ୍କ ଅପରୂପ ମୂର୍ତ୍ତି ଭାସି ଉଠିଲା ସେହି ଶବରୀସ୍ତୂପ ପରିବର୍ତ୍ତେ—ଏବଂ ସେହି ସଙ୍ଗେ ସଙ୍ଗେ ଭାସି ଆସିଲା ସୁମଧୁର ବଂଶୀଧ୍ୱନି । ସମସ୍ତେ ପ୍ରଣତ ହେଲେ ଭକ୍ତିଭରେ । )

—ଯବନିକା—

# ଚଣ୍ଡାଳୁଣୀ

ବା

## ଗୁରୁବାର ଓଷା

—ପୌରାଣିକ ନାଟକ—

## —ଚରିତ୍ରଲିପି—

### —ପୁରୁଷ—

ବଳଭଦ୍ର ( ବଡ଼ ଠାକୁର )
ଜଗନ୍ନାଥ ( ସାନ ଠାକୁର )
ନାରଦ
ବକଳା ବ୍ରାହ୍ମଣ
ଗରୁଡ଼
ଜମ୍ବୁ
ବିଜମ୍ବୁ
ଗୁଡ଼ିଆ
ବୁଲ୍ଲ-ବାପ
ବୁଲ୍ଲ

### —ସ୍ତ୍ରୀ—

ଲକ୍ଷ୍ମୀ
ପେଦ୍ରୁ
ଶ୍ରିୟା
ଗଉଡ଼ୁଣୀ
ମୁକୁଡା
କାଳିଆ
ସିମନ୍ତିନୀ ଗଣ

---

# ଚଣ୍ଡାଳୁଣୀ

( ବା ଗୁରୁବାର ଓଷା )

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

[ ଶ୍ରୀକ୍ଷେତ୍ର । ଗୁଣ୍ଡିଚା ମନ୍ଦିର—ବେଢ଼ାର ତୋରଣ ଦେଶ । ସମ୍ମୁଖରେ ଓସାରିଆ ଦାଣ୍ଡ । ରାତି ପାହି ନ ଥିଲା । ତେବେ, ଆକାଶରେ ଶୁକତାରା ଉଇଁ ତୋରା ଦିଶୁଥିଲା । ଶ୍ରିୟା ଚଣ୍ଡାଳୁଣୀ ଦାଣ୍ଡ ଗୋଟାକର କାମ ଶେଷକରି ବାଟଟା ଓଳାଉଥିଲା ସେତେବେଳେ । କ୍ରମେ ଉଷା ନାନା ରଙ୍ଗରେ ମାତି ଉଠୁଥିଲା । ଗୋଟାଏ ଚେତନାର ସଞ୍ଚାର ହେଉଥିଲା, ସଙ୍ଗୀତ ମାଧ୍ୟମରେ ]

ପୁରନାରୀ ଗଣ— —ଗୀତ—

ରଙ୍ଗେଇ ଉଷା ପୂର୍ବେଇ ଭାଲେ
ତାର ଫଗୁ ମୁଠାକ ମାଇଲା ରେ
ମାଇଲା ରେ ମାଇଲା ।
କାମର ବେଳ ତୋର ଅଇଲା, ଅଇଲା ରେ—
ଟେକି ଦେ ଶେଯ ଆଜ କାହିଁକି ରେ ?
ତୋର ଫିଟିଲା ଆଖିଁ ଘାଇଲା ରେ,
ଘାଇଲା ରେ, ଘାଇଲା ।୦।
କୁଆଁସୀ ତରୁ ଗଲାଣି ଝୁଙ୍କି ଡାଳି ଅନ୍ଧାରୀ ପାରେ···
ସୁନେଲୀ ଛାଇ ଚହଟି ଦେଲା ସବୁଟ କାନ୍ତି ତଳେ ରେ
ଧୂଳି ଅସନା ଦୁନିଆ ଡାକ, ତୋ'
ମରମସାରୀ ଛାଇଲା ରେ ଛାଇଲାରେ, ଛାଇଲା ।୧।
ଚୁହାଁ ଏ ପାହାନ୍ତି ଜହ୍ନରେ—ଧନ ରେ—ଧନ ରେ···
ବେଳ ସରିଲେ ଆଉ ନ ଥାଏ ମାନ ରେ ମାନ ରେ—
ବେଳହୁଁ ଚେତ,
ନ ପାହୁଁ ରାତି;
ଝାଡ଼ି ଦେ ସବୁ ମନ ମଇଳା,
ମନ ମଇଳା ରେ, ମଇଳା,
ଅଛୁଆଁ ତୋର ପହଁରୀ ମୂନ
ଛୁଇଁ ଦୁନିଆ ରେଇଁଲା ରେ,
ରେଇଁଲା ରେ, ରେଇଁଲା ।୨।
କାମର ବେଳ ତୋର ଅଇଲା ।

[ ଲକ୍ଷ୍ମୀ ସ୍ତୋତ୍ର ପଢ଼ୁ ପଢ଼ୁ ବିକଳାନନ୍ଦ ପ୍ରବେଶ କଲା—ଗାଧୋଇ ପାଧୋଇ, ଡାଲଟିଏ ଧରି ]

ବିକଳା—"ନମସ୍ତୁତେ ମହାମାୟେ—ସୁର ପୂଜିତେ ଶଙ୍ଖ-ଚକ୍ର-ଗଦାହସ୍ତେ ମହାଲକ୍ଷ୍ମୀ ନମସ୍ତୁତେ ।" ( ଶ୍ରିୟା ପ୍ରତି ) ହେ ବାଟ ଓଳେଇଲା ବାଲି ! ମଣିଷ ଦେଖି ବାଟ ଓଳା—"ନମସ୍ତେ ଗରୁଡ଼ାରୂଢ଼େ କୋଳାସୁର ଭୟଙ୍କରି—"

ଶ୍ରିୟା—( ତଥାପି ବାଟ ଛାଡ଼ୁ ନ ଥାଏ )

ବିକଳା—କି ଲୋ ? ତୋତେ ଶୁଝୁ ନାହିଁକି ?
"ସର୍ବ ପାପ ହରେ ଦେବି ମହାଲକ୍ଷ୍ମୀ ନମସ୍ତୁତେ ।"

ଶ୍ରିୟା—( କାମ ଶେଷ କରିବ କିପରି, ସେଥିପାଇଁ ଅହୁରି ଟୁଣ୍ଡେ ଟୁଣ୍ଡେ ଓଳାଇ ଚାଲିଥାଏ )

ବିକଳା—ହେ ଚଣ୍ଡାଳୁଣି !—

ଶ୍ରିୟା—( ହାମସାରି ) ଗୋସେଇଁ ମହାପ୍ରଭୁ ! ( ଝାଡ଼ୁ ଥୋଇଦେଇ ) ଓଳିକି ! ( କିନ୍ତୁ ମନ ମାନିଲା ନାହିଁ—ତଳେ ମୁଣ୍ଡ ଲଗାଇ ଓଳଗି ହେଲା )

ବିକଳା—ଉଠ, ଉଠ—ହେଃ, ବାଟରେ ଯେତେ ଜଞ୍ଜାଳ !

ଶ୍ରୀଯୁ—ଜଞ୍ଜାଳ-ଭ ବାଟରୁ ନିର୍ମୂଳ କରି ସଫାକରି ଦେଇଛୁ, ଗୋସେଇଁ ମହାପ୍ରଭୁ !

ବକଳା—( ଭେଜାକରି ) ଶିଯୁ···

ଶ୍ରୀଯୁ—( ଭଗ୍ନ ବକଲରେ ) ବକଳା ନନା ।

ବକଳା—କି ଲୋ, ଚଣ୍ଡାଳୁଣି—ନଗରର ସମସ୍ତେ ଡାକନ୍ତି ବୋଲି, ତୁ' ବି ଡାକିବୁ ମୋତେ, 'ବକଳାନନା' ?

ଶ୍ରୀଯୁ—କଣ କରିବି, ଗୋସାଇଁ ମହାପ୍ରଭୁ—ସମସ୍ତେ ଯେମିତି ମଣିଷ ଜନମ ପାଇଛନ୍ତି, ମୁଁ ବି ସେମିତି ଜନମ ପାଇଛି । ସମସ୍ତଙ୍କର ଯେମିତି ରକତ-ମାଉଁସର ଦେହ—ଭୋକ ଶୋଷ ଅଛି, ଏ' ଚଣ୍ଡାଳୁଣୀର ମଧ୍ୟ ସେମିତି ଅଛି । ସେଥିପାଇଁ ଏ ନଗର ବାହାରେ କୁଡ଼ିଆ ମାରି ପଡ଼ିରହିଥାଏ ସତ, ହେଲେ, ?

ବକଳ—ହେଲେ ?

ଶ୍ରୀଯୁ—ନଗର-ଭିତରେ ପଶୁଥାଏ ପରା ସଦାବେଳେ, ଏ' ବକଳ ମନଟି—

ବକଳା—ହଇଲେ, ଏହି ଗୁଣ୍ଡିଚ୍ଛ-ନଅର ଦାଣ୍ଡ ଖଣ୍ଡିକ ଖରକା ଖରକି କରୁ ବୋଲି, ଭଗ୍ନ ଦମାକରେ କଥା କହୁଚୁ ତ ?

ଶ୍ରୀଯୁ—ହେଲେ, ଗୋସେଇଁ ମହାପ୍ରଭୁ – ଏଇ ଗୁଣ୍ଡିଚ୍ଛ ନଅର ଆରପଟ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ଗାଧୁଆ ପାଧୁଆ ସାରି, ତିଳକ ଚନ୍ଦନ କାଟି, ଏମିତି ଲକ୍ଷ୍ମୀମନ୍ତ୍ରର ପଇଟୁ ପଇଟୁ ଯଜ୍ଞ ବ୍ରାହ୍ମଣ ଗୋସେଇଁ ମାନେ ହାଡ଼ି ଚଣ୍ଡାଳ-ଖରକା ନିର୍ମଳିଆ ଏଇ ଗୁଣ୍ଡିଚ୍ଛ ଦାଣ୍ଡ-ବାଟକୁ ଅଳିଆ ମଳିଆ କରି ଦେଇଯା'ନ୍ତି ଗୋଟାଏ ଧଡ଼ସରେ, ସେମାନଙ୍କ ବଳି ନୁହେ ।

ବକଳା – କ'ଣ ? ( କୋଧରେ ) କ'ଣ କହିଲୁ ତୁ ? ହାଡ଼ିଅଣି, ଛତରଖାଇ—

ଶ୍ରୀଯୁ —ହକ୍ କଥା—ଚଳିବ ନି, ଗୋସେଇଁ ମହାପ୍ରଭୁ ।

ବକଳା—'ହକ୍ କଥା' ! ହଇଲେ, 'ହକ୍ କଥା'— ଘୋଟ ଜାତି ପରା !

ଶ୍ରୀଯୁ—ଗୋସେଇଁ ମହାପ୍ରଭୁ ତ ବଡ଼ଜାତି—ହେଲେ, ଏ' ଘୋଟ ଜାତିରୁ ଜଣେ ଘୋଟପଣ କରି ମୁଣ୍ଡି ଅଟିଏ ମାଇଲା ଯେ ମଥା ନୁଆଇଁ, ତାହିଁ ବଡ଼ଜାତିର ଜଣେ ତ ବଡ଼ପଣ କରି ଟିକିଏ ହାତ ବି ଟେକିଲେ ନାହିଁ—ତା'କୁ ଛୁଟାଏ କଲ୍ୟାଣ କରିବ ବୋଲି ?

ବକଳା—'କଲ୍ୟାଣ' ! କଲ୍ୟାଣ କରିବ ଏଇ ଛତର-ଖାଇର ଜଣିକୁ ?—ହଉ, ବେଶ—ସାତଜନ୍ମ ତେଡେ, ଆଉ ତୁମ ଜାତିକୁ ଅହୁନର୍କ ବାସହେଉ—ଏଇ କଲ୍ୟାଣ କରୁଛି, ଶୁଣ ।

ଶ୍ରୀଯୁ—(ହସି) ହେଲା ନାହିଁ ଗୋସେଇଁ, ହେଲାନାହିଁ—ନରକର କୀଟ ପରା ଆମେ, ସାତ ଛୁଡ଼ି ସାତଶ ଜନ୍ମ ପାଇଲେ ବି ନରକର ବାସ ବାଧିବ ନାହିଁ ଆମକୁ ।

ବକଳା—( ମନକୁ ମନ ) ବାଳୁଙ୍ଗା ଧାନର ଧୋଇ ନାହିଁ କି ମରୁଡ଼ି ନାହିଁ—ଠିକ୍ ଏଇଟା ସମୁଜିବ ଏଇ ଘୋଟ ଜାତିକୁ । (ପ୍ରକାଶ୍ୟେ) "ସର୍ବଜ୍ଞ ବରଦେ ଦେବ ସର୍ବଦୁଷ୍ଟ ଭୟଙ୍କରୀ—" ଆଲୋ ବାଟଛାଡ଼, ଗୁମୁଣ୍ଡି ! ଛଅ ଛଅ ପ୍ରାଣୀ କୁଟୁମ୍ବ ଲୋ ମୋର—ଓ ହୋ, ବ୍ରତପାହିଲେ ମଗୁଶିର ମାସର ପହିଲି ସ୍ନାନ କରେଇ ବାହାରିଥିଲି ଏକମୁହାଁ ଲକ୍ଷ୍ମୀ ଦେଉଳକୁ ଯେ, ବାଟରେ ଅଲକ୍ଷଣୀ-ଭେଟ !—କି ଦୁର୍ଲକ୍ଷଣ ! ମାସ ଗୋଟାକ ତ ପଡ଼ିଛି—ଓ ହୋ ହୋ ହୋ—"ସର୍ବଦୁଃଖହରେ ଦେବ ମହାଲକ୍ଷ୍ମୀ ନମସ୍ତୁତେ ।"

ଶ୍ରୀଯୁ—ମଗୁଶିର ମାସ କାଲିଠୁ, ଠାକୁରେ ?

ବକଳା—ହଁ ଲୋ ଠାକୁରାଣୀ କାଲିଠୁ ଓଷଟି ମାନଙ୍କର ଓଷାମାସ । "ସିଦ୍ଧି ବୁଦ୍ଧି ପ୍ରଦେ—"

ଶ୍ରୀଯୁ—(ଦୀର୍ଘଶ୍ୱାସ ଛାଡ଼ି) ଓଷା କରିବେ କାଲିଠୁ ଓଷେଇତାମାନେ ।

ବକଳା—ଆଲୋ, ବାଟ ଛାଡ଼ ।

ଶ୍ରୀଯୁ—( ବାଟ ଓଗାଳି ) ଠାକୁରେ !

ବକଳା—ଅଃ—ଛୁଇଁଦେଇ—ଛୁଇଁଦେଲୁ, ଠାକୁରାଣୀ ।

ଶ୍ରୀପ୍ସା—ନନା ! ଏତେ ଦୂର ଦୂର, ମାର ମାର କରୁଛ ଯେ—ନାହିଁ ନାହିଁ ଯେବେ ଛୁଇଁ ପକେଇଲ, ତେବେ ହାନି କ'ଣ ?

ବକଲା—'ହାନି' ? ତୁ କଣ ବୁଝିବୁ ଲୋ, ଚଣ୍ଡାଳୁଣୀ ?

ଶ୍ରୀପ୍ସା—କି ହାନି ହେବ, ସେ କଥା ଖୋଜିବାକୁ ଲୋଡ଼ୁନାହିଁ, ଠାକୁରେ ! ମୋର କହିବାର କଥା, ସେମିତି ଛୁଇଁପକେଇଲେ ଯଦି କୌଣସି ହାନି ହୁଏ, ତାକୁ ସୁଧାରିବାକୁ ତ ତୁମ ପାଖେ ମନ୍ତ୍ର ଯନ୍ତ୍ର ଅଛି ?

ବକଲା—ହେଲେ, ତୁମ ଚଣ୍ଡାଳ ଛୁଆଁ-ହାନିକୁ କାଟୁ କରିବ ମନ୍ତ୍ର ଯନ୍ତ୍ର ?

ଶ୍ରୀପ୍ସା—ବଳେଇ ଲୁଲୁରଠୁ କ'ଣ ଚଣ୍ଡାଳଜାତି ଏତେ ହୀନ ଯେ, ଆମ ଛୁଆଁ-ହାନିକୁ କାଟୁକରିବ ନି ତୁମର ଯନ୍ତ୍ର ମନ୍ତ୍ର ?

ବକଲା—ଅଲୋ, ତୁମେ ହେଲ ଜନ୍ମରୁ ଶ୍ରେଷ୍ଠଜାତି, ଅଛୁଆଁ—ଅଛବ ।

ଶ୍ରୀପ୍ସା—ହେଲେ ଗୋସେଇଁ, ଏ' 'ଅଛୁଆଁ—ଅଛବ' ଛୁଆଁରେ ରହିଛି କାଞ୍ଚନ ପରଶ ।

ବକଲା—କାଞ୍ଚନ ପରଶ ?

ଶ୍ରୀପ୍ସା—ହଁ, ପରଶ ପଥରର ଗୁଣ ।

ବକଲା—ଲୁହାମୁଣ୍ଡାକୁ ସୁନାକରି ଦେବ ପରି ?

ଶ୍ରୀପ୍ସା—ମାଟି ମୁଣ୍ଡାକୁ ବି ।

ବକଲା—ଭଙ୍ଗ ଦମାକରେ କଥା କହୁଚୁ ତ ?

ଶ୍ରୀପ୍ସା—( ଅଗଣାକୁ ଦେଖାଇ ) ନମୁନା ଦେଖ ।

ବକଲା—କାହିଁ ? ସେତ ଗୁଣ୍ଡିଚ୍ଚ ନଅର ଦାଣ୍ଡ ଅଗଣା, ଏଇଅ ଦେଖୁଛି ।

ଶ୍ରୀପ୍ସା—ଟିକିଏ ଆଖିରୁ ଅନ୍ଧପୁଟୁଳା ଖୋଲି, ଗୃହଆଡ଼କୁ ଆଖି ବୁଲାଇ ଦେଖ ।

ବକଲା—(ଆଖିବୁଲାଇ ଦେଖିବାକୁ ଲାଗିଲା, ନାଠେଇ ନାଠେଇ )

ଶ୍ରୀପ୍ସା—କ'ଣ ଦେଖୁଚ ଯେ ?

ବକଲା—ଖୁବ୍ ସଫାସୁତୁରା—ନିର୍ମଳଅ ।

ଶ୍ରୀପ୍ସା—ଏଇ ଗୁଣ୍ଡିଚ୍ଚ-ନଅର ଭିତର-ଅଗଣାକୁ ଥରେ ଉହୁଁକି ଅନେଇ ଦେଖ ତ ?

ବକଲା—( ଚମକି ପଡ଼ିଲା, ଗୃହିଁ ଦେବା ମାତ୍ରେ )

ଶ୍ରୀପ୍ସା—ଏମିତ ଛନକି ମୁହଁ ବିହ୍‌କାରିଲ ଯେ !

ବକଲା—ଛି, ଛି, ଛି—ଡୁଗ୍ଧ ଅରମା-ଜଙ୍ଗଲର ବଣ-ବୁଦା—ସାପ ଗୁଡ଼ାକ ନହର ପହର ହୋଇ ବୁଲୁଛନ୍ତି ଏଣେ ତେଣେ । ମଣିଷ ଦେଖନ୍ତି ଏ' ସବୁ—କି ଅସ୍‌ନା ନାସ୍‌ନା ।

ଶ୍ରୀପ୍ସା—ସେମିତ ଅସ୍‌ନା ନାସ୍‌ନା କାହିଁକି, କହିପାରିବ ?

ବକଲା—ଚଣ୍ଡାଳର ହାତଲାଗି ନାହିଁ, ଏହିକଥା କହିବୁ ତ ?

ଶ୍ରୀପ୍ସା—ହକ୍-କଥା । ବୁଝିଅ କହିବ । ଆହୁରି ସ୍ବାର ମୂଳ-ମଞ୍ଜି ?

ବକଲା—ଅମେ ବ୍ରାହ୍ମଣଜାତି—ଚଣ୍ଡାଳ ଜାତିକୁ ଦେଉଳ ବାସନ୍ଦକରି ଯେଉଁ ପାପ କରିଥାଏଁ, ସେଇଥିରେ ରହିଛି ମୂଳମଞ୍ଜି—ବେଶ୍, ମନ ମାନିଲା ତ ? ବାଟ ଛାଡ଼ିଦିଅ ଘୁରୁଘୁରୁରେ ଏଥର ।

ଶ୍ରୀପ୍ସା—ଆଉ ପଦେ କଥା, ଗୋସେଇଁ !

ବକଲା—ଆହୁରି ? ହଉ କହ କହ, ଅକାଳରେ ପଡ଼ିଛି ତ ।

ଶ୍ରୀପ୍ସା—ଏ ଦେଉଳ-ବେଢ଼ା ଭିତରପଟକୁ ବଲ, ତୁମ ଦେହବେଢ଼ାର ଭିତରପଟ ଆହୁରି ଅସ୍‌ନା ନାସ୍‌ନା, ଗନ୍ଧିଅ ପୋଚରି କି ନୁହେଁ, କୁହ ତ ?

ବକଲା—ତା'ର ମାନେ ?

ଶ୍ରୀପ୍ସା—ତୁମର ମନ ।

ବକଲା—ଆମର ମନ ?

ଶ୍ରୀପ୍ସା—ହଁ—ଏ' ବାହାର ଟିକଣ ଗୁଡ଼ିକୁ ମାଠିଲେ କଣ ହେବ, ମନ ତ ନରକକୁଣ୍ଡ ।

ବକଲା – ହେଲେ, ତୁ'ତ ତାକୁ ଆଉ ଅମୃତକୁଣ୍ଡ କରି ଦେବୁ ନି ? ହାଃ—ହାଃ—

ଶ୍ରୀପ୍ସା—ହସିବ ନି, ନନା ! ଥରେ ଚଣ୍ଡାଳୁଣୀ ବୋଲି ଡାକି, ବେଢ଼ା ଭିତରକୁ ଛାଡ଼ିଦିଅ, ଦେଖିବ ତୁମର ଚଣ୍ଡାଳୁଣୀର ପରଗୁଣ—ଅଉ ଚଣ୍ଡାଳୁଣୀର ପରଶ-ଗୁଣ !

ବକଲା—ସତେ ? (ଥଟ୍ଟାରେ)

ଶ୍ରୀଯୁ—ଭାଇନା, ମଣିଷ ମୁଁ—ମଣିଷର ସେବା-ଧରମ ମୋତେ ପାଳିବାକୁ ଦିଅ—ମଣିଷ ତୁମେ, ମଣିଷର ସେବା-ଧରମକୁ ଅଧରମ ମଣି ଛୁ ଘୃଣା କରନ୍ତ; ସେଥିରେ ଦୁହେଁ ସବରସୁଖ ପାଇବା ପର୍‌ ।—

ବକଳା—ଭେଲ୍‌କି, ଭେଲ୍‌କି—'ଓଁ ଫଟ୍ ଫଟ୍, ସ୍ୱାହା ସ୍ୱାହା'—ପଳା ଏଁ ।

ଶ୍ରୀଯୁ—ଏ' ଭୂତଛଡ଼ା ମନ୍ତ୍ର ତୁମର ଅକାରଣି, ଗୋସେଇଁ—ଏଥିରେ ଦେହର ଭୂତ ଛାଡ଼ି ପଳାଇପାରେ, କିନ୍ତୁ ମନର ଭୂତ ନୁହେଁ—

ବକଳା—କ'ଣ କହିଲୁ ?

ଶ୍ରୀଯୁ—ଯା' କହୁଛି ସେଇଯୁ—ମନର ଭୂତ ଛଡ଼େଇବାଃ ମନ୍ତ୍ରର ଏକା, ଆମଠେଇଁ ଅଛି ।

ବକଳା—ତୁମଠେଇଁ ?

ଶ୍ରୀଯୁ—ଥରେ ଛୋଇଁ କର ଦେଖ ?

ବକଳା—ବୁଲେଇ ବୁଲେଇ ପୁଣି ସେଇ କଥା । ଜାଣୁ, ଗୁର ବର୍ଣ୍ଣର ରଜା ଆମେ—କାନ୍ଧରେ ପଇତା, କପାଳରେ ଚନ୍ଦନ ଟୋପା—

ଶ୍ରୀଯୁ—ତୁଣ୍ଡରେ ବେଦମନ୍ତ୍ରର ବ—

ବକଳା—କ'ଣ, ଥଟ୍ଟା ? ସେଇ ବେଦମନ୍ତ୍ରର ଜୋରରେ ଜାଣୁ—

ଶ୍ରୀଯୁ—'ଭସମ କରି ଦେଇପାରେ', ଏଇଯୁ କହିବ ତ ?

ବକଳା—ଏ'କଥା ଜାଣିଶୁଣି ମୋ ଆଖିକି ଆଖି ମାଡ଼ିଦେଇ ଠିଆ ହୋଇଛୁ ତ ?

( ପଇତା ଗୋଛା ସାଉଁଳିବାକୁ ଲାଗିଲା )

ଶ୍ରୀଯୁ—ସେମିତ ଗୁହାରିଟିଏ ଅଛି ବୋଲି, ଗୋସେଇଁଙ୍କ ଭସମ କରିଦେବା-ଭୟକୁ ସୁଦ୍ଧା ଭସମ କରିଦେଇ, ଠିଆ ମୁଁ ।

ବକଳା—ହଉ, ଛାଡ଼୍—କହ, ତୋର କି ଗୁହାରି ?

ଶ୍ରୀଯୁ—କାଲି ତ ବୁଧବାର ।

ବକଳା—ତା' ପରଦିନ ଗୁରୁବାର, ଆହୁରି ସେ ହେବ ଶୁକ୍ଳାଦଶମୀ ଗୁରୁବାର ।

ଶ୍ରୀଯୁ—ତା' ହେଲେ ତ ସୁଦଶାବ୍ରତ ଏଇ ଗୁରୁବାର ପଡ଼ିବ ?

ବକଳା—କାହିଁକି, ତୁ ସୁଦଶାବ୍ରତ କରିବୁ କି ?

ଶ୍ରୀଯୁ—ଭାରି ମନ ବଳୁଛି ଏଥିକି ଏଥର, ଗୋସେଇଁ !

ବକଳା—ହାୟ ହାୟ ! ଏ ବକଲମନ ଯେମ, ଚଣ୍ଡାଳ କୁଳରେ ଜାତ ହେଲୁ ତୁମ୍ଭ କାହିଁକି ?

ଶ୍ରୀଯୁ—ଏ ଓଷା ପାଳିବାରେ ତ ଜାତି ପାଟକର ବାରଣ ନଥାଏ ଶୁଣିଛି ?

ବକଳା—କିଏ କହିଲା ?

ଶ୍ରୀଯୁ—ପୁରାଣରେ ଅଛି ଲୁଅଡ଼େ ?

ବକଳା—ପୁରାଣରେ ଅଛି ?

ଶ୍ରୀଯୁ—ତୁମେଇ ତ ପୁରାଣ ଗଢ଼ିଚ—ତୁମେଇ ହେଜ ପାଞ୍ଚି ଦେଖ, ଗୋସେଇଁ !

ବକଳା—କ'ଣ ? କେଉଁ ପୁରୁଣା, ବାପ ଦାଦା ଅମଳର ଗଡ଼ା ବେଡ଼ା ପାଚେରି—ତା'ଆମେ ଭାଙ୍ଗି ଚୁଜ ପକେଇବୁ, ଏଇଯୁ ତୋ ମନ କଥା ।—ହାଃ ହାଃ ହାଃ—

ଶ୍ରୀଯୁ—ସେଇଯୁ ଯଦି ତେବେ ଭାଙ୍ଗି ଚୁଜ ପକେଇବା ଠିକ କି ନୁହେଁ—କାଲବେଲକୁ ଅନେଇ, ଥୟ ମନରେ, ଥରେ ଦେଖ, ଗୋସେଇଁ ! ଆମ ବୁଢ଼ାଙ୍କ ମଟିରେ ଏହ୍ନ ବେଢ଼ା ପାଚେରିଟା ମଥା ଟେକି ଠିଆ ବୋଲି ତ ଠାକୁର-ଥାନ ଅଜ ଅଥାନ ହୋଇଛି ।

ବକଳା—କି ଲୋ, ଆସ୍କାରି ପାଇ, ତୁ କ'ଣ ମଥାରେ ଚଢ଼ିବାକୁ ତଆର ?

ଶ୍ରୀଯୁ—ଛି, ଛି—ସେମିତ କହିବ ନା ଗୋସେଇଁ ! ମୁଁ କେତେକର, ତୁମେ କେତେକର—ଏ ଚଣ୍ଡାଳୁଣୀଟା ଖାଲି ନରକ ଘାଣ୍ଟେ ବୋଲି, ନରକ କେଉଁଠି ଦେଖିଲେ ତା' ମନଟା ପରି ବଦେଇ ଖବେଇ ହୁଏ; ସେଠି ଦିଅଁ ଦେବତା ହେଲେ ବି, ଦ'ପଦ ନ କହି ରହିପାରେ ନା ।—ଯାହା କହୁଛି ତୁମର ହିତକୁ, ଗୋସେଇଁ ।

ବକଳା—ଆମରି ହିତକୁ । ଏ' କଥା ଆଗେ କହି ନୁ ମୋତେ—"ଗୋସେଇଁ, ମୁଁ ଆଜି ବର୍ତ୍ତ ପାଳିବି—

ଦ୍ରବ୍ୟ ଦକ୍ଷିଣା ତୁମକୁ ଦେବ—ମୋ ଦ୍ୱାରେ ଯାଇ,
ମୋ ବ୍ରତ କାମ ବଢ଼େଇ ଦେଇ ଆସିବ" ?

ଶ୍ରୀଯୁ—ଏତକ ଯେବେ କରନ୍ତ ଗୋସେଇଁ, କୋଟି
କୋଟି ଜୁହାର ପଡ଼ନ୍ତା ତୁମକୁ । ଭାଇନା ।
ମଣିଷ ଜନମ ପାଇଛି ମୁଁ—ମଣିଷ ମନ
ମୋ ଠେଇଁ । ତୁମର ମା ଭଉଣୀ ଯେମିତି ଆଜି
ବ୍ରତ ପାଳିବେ, ପିଲାପିଲିଙ୍କର ମଙ୍ଗଳ ମନାସି—
ମୁଁ ବି ସେମିତି ଓଷା ପାଳିବି, ପିଲା ପିଲିଙ୍କର
ମଙ୍ଗଳ ମନାସି । ତୁମେ ବ୍ରତ ପାଳିବାର ବାଟ
ବତେଇ ଦିଅ, ମଣିଷ ଜନମ ମୋର ସାର୍ଥକ
କର—

ବକଳା—ଦେଖ୍ ଚଣ୍ଡାଳୁଣି, ତୋର ସୁ-ଦଶା ଅଛି ତ
ଭଲରେ ବାଟ ଛାଡ଼ ଦେ କହୁଛି, ନାହିଁ ତ—

ଶ୍ରୀଯୁ—ଗୋସେଇଁ, ଗୋସେଇଁ—ତୁମେ ବ୍ରାହ୍ମଣ,
ବ୍ରାହ୍ମଣର ବିଚାର କରିବ—ଚଣ୍ଡାଳ ପାଲଟି,
ଚଣ୍ଡାଳର ଆଚରଣ କରିବ ନା ।

ବକଳା—ତା' ହେଲେ ତୁ ବାଟ ଛାଡ଼ିବୁ ନା ଦେଖୁଚି ।
ଜାଣୁ, ମୁଁ ରଜାଘର ପୁରୋହିତ ? ରଜାଙ୍କ
କାନକୁ ଏ'କଥା ନବାକୁ ଅଧେ ସମୟ ଲାଗିବ
ନା । ସେଥିରେ ତୋର ଦଶା କଣ ହେବ,
ବୁଝୁଚୁ ତ ? ଏ ଦାଣ୍ଡ-ଖରକା ଦେଇ ଗଣ୍ଡିକ
ବୁଡ଼ିଯିବ, ଆଉ ଭୋକ ଦାଉରେ ତୋ'ର ପିଲା
କବିଲା ଗଡ଼ି ସଢ଼ି—

ଶ୍ରୀଯୁ—ଗୋସେଇଁ, ଗୋସେଇଁ, ଏତେ ନୀଚ-ମନ
ତୁମର ?—ନା—ନା—ତୁମେ ବ୍ରାହ୍ମଣ, ମୁଁ
ଚଣ୍ଡାଳ—ଚଣ୍ଡାଳ ନୀଚ ଜାତି ବୋଲି ସିନା
ତୁମ ଉଚ୍ଚ ମନକୁ ନୀଚ କରି ଦେଉଥାଇ—କ୍ଷମା
କରିବ, ଗୋସେଇଁ । ମୁଁ ପୁଣି ଥରେ ବାଟ
ଛାଡ଼ିଦେଇ ଦିଉଚି ନିର୍ମଳକରି—ତୁମେ ଚାଲି ଯାଅ
ତ ନିର୍ମଳ ମନରେ, ବାଟେ ବାଟେ—
( ଫେରେଇବାକୁ ଲାଗିଲା )

ବକଳା—ହେଃ । 'ଋଦ୍ଧି ଶୁଦ୍ଧି ପ୍ରଦେ ଦେବୀ ମହାଲକ୍ଷ୍ମୀ
ନମସ୍ତୁତେ'—
( ଏହିପରି ମନ୍ତ୍ର ପାଠ କରୁ କରୁ ପ୍ରସ୍ଥାନ କଲା )

[ ଠିକ୍ ସେହି ସମୟରେ ବକଳାର ଯଥାସ୍ଥାନ
ପୂରଣ କରି ଠିଆହେଲେ ଆସି ଆଉଜଣେ
ବ୍ରାହ୍ମଣ—ସେ ହେଉଛନ୍ତି, ଛଦ୍ମବେଶୀ ନାରଦ ]

ନାରଦ—ଶିରୀ ।

ଶ୍ରୀଯୁ—ଭାଇନା ।—ଏଁ, ତୁମେ କିଏ ?

ନାରଦ—ମୁଁ ତୋର ଭାଇନା, ଶିରୀ—ମୋତେ
'ଭାଇନା' ବୋଲି ଡାକିବୁ ।

ଶ୍ରୀଯୁ—ତୁମକୁ ତ ମୁଁ କେବେହେଲେ ଦେଖି ନି ?

ନାରଦ—ଆଖିରେ ଦେଖି ନଥିବୁ ଅବଶ୍ୟ—
ହେଲେ—

ଶ୍ରୀଯୁ—ହେଲେ ?

ନାରଦ—ଆଖିର ଦେଖା ତ ଖାଲି ଦେଖା ନୁହେଁ,
ଭଉଣୀ ।

ଶ୍ରୀଯୁ—ମୁଁ ତ ମୋଟେ ଚିହ୍ନିପାରୁ ନି ତୁମକୁ ?

ନାରଦ—ବାହାର ଚିହ୍ନା ଅଚିହ୍ନାରୁ ମିଳିବ କ'ଣ,
ଯେବେ ଭିତରେ ଥାଏ ଆମର ଚିହ୍ନା-ଚିହ୍ନି ।

ଶ୍ରୀଯୁ—'ଭିତରେ ଥାଏ ଆମର ଚିହ୍ନା ଚିହ୍ନି' ।
( ଭାବିବାକୁ ଲାଗିଲା )

ନାରଦ—ଭାବୁଛୁ କ'ଣ ଏତେ, ଭଉଣୀ ?

ଶ୍ରୀଯୁ—'ତୁମେ ମୋର ଏକା ମା' ପେଟର ଭାଇ'—
ଏଇ କଥା ଯେମିତି ମୋ ପେଟର ସାତ ସନ୍ଧିରୁ କିଏ
ତୁହାଇ ତୁହାଇ ଡକା ପାରି ଉଠୁଚି, ଭାଇନା ।

ନାରଦ—ଭଉଣୀ—

ଶ୍ରୀଯୁ—( ଆଖି ଲୁହରେ ଭରି ଯାଇଥିଲା )

ନାରଦ—ଛି, କାନ୍ଦନ୍ତି—

ଶ୍ରୀଯୁ—ଭାଇନା, ଏତେ ଦରଦ-ମାୟା ତୁମର ।
କେଉଁଠି ଥିଲ ଲୁଚିଛପି ଏତେଦିନ, ଭାଇନା ?—
କେଉଁଠି ଥିଲ କୁହ ? ହେଉ ହେଲା ଦିନୁ ତ ମୁଁ
ଗୁଣ୍ଡିଚି ନଅର ଦାଣ୍ଡ ଖେଦୁଛି—କାହିଁ ତୁମକୁ
ତ ଦିନେ ହେଲେ ବି କେବେ ଦେଖି ନି ?

ନାରଦ—ମୁଁ ଗୋଟାଏ ବାଉଳା—କେତେବେଳେ
କେଉଁଠି ଥାଏ, ତାର ଠିକଣା ନ ଥାଏ । ହଁ,
ତୋର ଘର ଖବର ଭଲ ତ ? ସଂସାରରେ ତୋର
କିଏ କିଏ ଅଛି, ଶୁଣେ ?

ଶ୍ରୀସ୍ୱା—ହିଁଅ—ପୁଅ—ଗେରସ୍ତ ।

ନାରଦ—ଏଇ ଡମକୁ ଯେନି ତୋ' ସଂସାର—ବେଶ୍, ବେଶ୍ । ଭଣଜାଟିର ନାଁ ?

ଶ୍ରୀସ୍ୱା—ବୁଲ୍ଲ ।

ନାରଦ—ଢାମରେ ବ ବାରବୁଲ୍ଲ ନା କଣ ?

ଶ୍ରୀସ୍ୱା—ବାପର୍ଁ ପୁଅ କହ୍ନବ ।

ନାରଦ—ଆଉ ଭଣିଜାଟି ?

ଶ୍ରୀସ୍ୱା—ବୋଙ୍ଗ ଉପରେ ଲଳତା ବଡ଼ାଟିଏ—

ନାରଦ—ମାନେ ?

ଶ୍ରୀସ୍ୱା—ଯେମନ୍ତ କାଣୀ କୁଜୀ ଙ୍କେଟୀ, ସେମିତ୍ତ କାନ୍ଦୁଣୀ ଗ୍ରେରଣୀ ଝାଉକୀ ।

ନାରଦ—ଆ-ହାହାହା ! ତୋର ଏତେ ଦୁଃଖ କଷ୍ଟ, ଭଉଣୀ ? ଦୁଃଖ ଧନ୍ଦା କରବାକୁ ବ ତୁହ୍ନ, ଘରଧନ୍ଦା ସମାଳବାକୁ ବ ତୁହ୍ନ ।

ଶ୍ରୀସ୍ୱା—ମୁଁ ଏମିତ୍ତ ଧନ୍ଦମଚ୍ଛର ବୋଲ୍, ତୁମର ଭାର କଷ୍ଟ ହଉଛି, ନା ?

ନାରଦ—ସ୍ୱା ଆଉ ପଚ୍ଚରବାକୁ ? ହଁ ଦେଖ, ଭଉଣୀ ! ତୁ ସୁଦଶାବ୍ରତ କର କ, ତୋର ସବୁ ଦୁଃଖ କଷ୍ଟ ମେଣ୍ଟି ଯିବ ।

ଶ୍ରୀସ୍ୱା—ସୁଦଶା'ବର୍ତ୍ତି ? ହାଃ—ହାଃ—ହାଃ—

ନାରଦ—ସିଦ୍ଧ—

ଶ୍ରୀସ୍ୱା—ହଇ ହେ, ତୁମେ ବ୍ରାହ୍ମଣ ତ ?

ନାରଦ—ଏଇ ଦେଖନା ମୋର ପଇତା—

ଶ୍ରୀସ୍ୱା—ହଁ, ମୁଣ୍ଡରେ ଗୋଛାଏ ଚୁଟିବି ଦେଖୁଚ୍ଛି ।

ନାରଦ—ତୁ ଠାପରା କରୁଛୁ ତ ?

ଶ୍ରୀସ୍ୱା—ଉଁ ହୁଁ—ଅସଲ୍ କି ନକଲ୍ ତୁମେ, ସେଇକଥା ଠଉରଉଚି ।

ନାରଦ—ମୋତେ ବିଶ୍ୱାସ କର, ଭଉଣୀ—

ଶ୍ରୀସ୍ୱା—ତା' ହେଲେ ତୁମେ ମୋ ଘରଠାକୁ ଯିବ ଗୁରୁବାର ଦିନ ?

ନାରଦ—ନିଶ୍ଚୟ ଯିବ—

ଶ୍ରୀସ୍ୱା—ବାଃ ବାଃ—ଗୁରୁବାର ହବ—ମୁଁ ଘର ଦ୍ୱାର ଲିପା ପୋଛା କରବ—ଅରୁଆ ଗୁଣ୍ଡଳବାଟି ଦ୍ୱାର ବାଡ଼ରେ ଝୋଟି ଚିତା ଦେବ—ସୋଳ କୋଠରେ ପଦ୍ମଟିଏ କାଟି, ତା ଉପରେ ବେଢ଼ାଏ ଧାନ ଢାଳିଦେବ—ସେଇ ଧାନ ଗଦା ଉପରେ ମାଣଟିଏ ବସେଇ ଧାନ ଭର୍ତ୍ତିକର ଦେବ; ତା' ପରେ ମଣ୍ଡଳେ ଦଶମୁଖ ଦୀପାଳି ଜାଳିବ—ମଣ୍ଡଳେ ଦଶବର୍ଣ୍ଣ ଫଳମୂଳ ବାଢ଼ିବ—ମଣ୍ଡଳେ ଦଶଗିଅ ସୁତାନେଇ ଥୋଇବ; ଆଉ ତୁମେ ପିଢ଼ାରେ ବସିବ, ମନ୍ତର ପଢ଼ିବ—ମୋ ପିଲାପିଲିଙ୍କ ନାଁରେ ଶୁଭ ମନାସି, ଫୁଲ୍ ଚଢ଼ାଇବ, କମିତ ? ହାଃ—ହାଃ—ହାଃ—

ନାରଦ—ତୁ ପରତେ ଯାଉନୁ ତ ? ତୋ ଦେହ ଛୁଇଁଚି ଲୋ, ଭଉଣୀ—

ଶ୍ରୀସ୍ୱା—ଠିଆ ହୁଅ ସେଇଠି—ତୁମେ ବ୍ରାହ୍ମଣ, ମୁ ଚଣ୍ଡାଳ ।

ନାରଦ—ଆଲୋ ମୋର କୌଣସି ଆଟକ ନାହିଁ ମ—ଚଣ୍ଡାଳବ୍ରାହ୍ମଣ ପରା ମୁଁ ।

ଶ୍ରୀସ୍ୱା—'ଚଣ୍ଡାଳ-ବ୍ରାହ୍ମଣ' ।

ନାରଦ—ହଁ ମ, ଯେମିତ୍ତ ଆମର ଚଣ୍ଡାଳ ଦଅଁ—

ଶ୍ରୀସ୍ୱା—'ଚଣ୍ଡାଳ-ଦଅଁ' !

ନାରଦ—ଆମର ଏଇ ଜଗନ୍ନାଥଙ୍କୁ ଚଣ୍ଡାଳଟିଏ ପୂଜା କରୁଥିଲା, ଦିନେ ନୀଳମାଧବ ନାଁରେ, ଶୁଣି ନୁ ?

ଶ୍ରୀସ୍ୱା—ଶୁଣିଛୁ ।

ନାରଦ—ଏ'ତ ଗଳ୍ପ ଶୁଣାକଥା, ଦେଖାକଥା ଅଛୁର—

ଶ୍ରୀସ୍ୱା—ଦେଖା-କଥା ?

ନାରଦ—ଯେମିତ୍ତ ଆମର ଚଣ୍ଡାଳ-ରାଜା ବା—

ଶ୍ରୀସ୍ୱା—'ଚଣ୍ଡାଳ-ରାଜା' ?

ନାରଦ—ଦେଖିନୁ ରଥ ଯାତ୍ରା ଦିନ ? ରାଜା ଛେରା-ପହଁରା କରବେ ତ, ତେବେଯାଇଁ ରଥ ଘିଡ଼ ଘଡ଼ ହୋଇ ଗ୍ଲଲବ ।

ଶ୍ରୀସ୍ୱା—ହେଲେ, ତୁମେ ଚଣ୍ଡାଳ-ବ୍ରାହ୍ମଣ କମିତ ଯେ ?

ନାରଦ—କମିତ ? ଶୁଣ—ରଜା ଆମର ଜଗନ୍ନାଥଙ୍କ ସେବା କରନ୍ତି, ଚଣ୍ଡାଳ ବୋଲାଇ; ମାତ୍ର ଚଣ୍ଡାଳି ଜାତି ଜଗତର ସେବା କରନ୍ତି, ଚଣ୍ଡାଳ କୁଳରେ ଜନ୍ମ ବୋଲ୍—ମୁଁ—

ଶ୍ରୀସ୍ବା—ବୁଝିଛି—ତୁମେ ସେଇ ଚଣ୍ଡାଳ ଜାତିର ସେବା କରିବ, ଆପଣାକୁ ଚଣ୍ଡାଳ-ବ୍ରାହ୍ମଣ ବୋଲାଇ— କେମିତି ? ହାଃ—ହାଃ – ହାଃ ।

ନାରଦ—ଠିକ୍ ତ—ଏଇ ତ ମୋର ଗର୍ବ !

ଶ୍ରୀସ୍ବା—ତା ନୁହେଁ କ'ଣ ? ଧନଜ ପାଇଁ ଲୋକ-ଦେଖଣାକୁ ମୋ ଘରେ ତାଳଟାଏ ବାନ୍ଧେଇ ଦେବ, ଆଜ କାଲ କାଲକୁ ବାହାବୁସ୍ତିଟା ମାରିନେବ, ଚଣ୍ଡାଳ-ବ୍ରାହ୍ମଣ ଗାଁଜିବାନା ଉଡ଼ାଇ କି ?—ଏଇତା କି ନା ତମର ପେଟ କଥା, ବୁଝ ତ ? ହାଃ ହାଃ ହାଃ—

ନାରଦ—ନାଇଲୋ, ମୋର ତୁଣ୍ଡ କଥା ଯା, ପେଟକଥା ବି ସେଇଆ—ତୋ ଦେହ ଛୁଉଁଚି ଲୋ— ( ଛୁଇଁବାକୁ ଉଦ୍ୟତ )

ଶ୍ରୀସ୍ବା—( ହଟିଯାଇ ) ଫେଣ୍—ଫେଣ୍—ଦିନେ ନାହିଁ କାଳେ ନାହିଁ, ଦ୍ୱାରେ ଆସି ଠିଆ ହେଲେ, ଦରଦୀ ଭାଇ ।

ନାରଦ—ମୁଁ ଆଜି ଛୁଉଁଚି, ଭଉଣୀ ! ଆଜ କେବେ ଯଦି ତୋତେ ଆଡ଼ କରୁଛି—

ଶ୍ରୀସ୍ବା—ବେଶ୍, ଏତେ ଟାଣ ଯଦି, ତେବେ ଟାଣ ପଣ ଦେଖେଇ ଆଗ ଏ ଦେଉଳର ବେଢ଼ା ପାଚେରିଟାକୁ ଭାଙ୍ଗି ଚୂନ ମାଟିରେ ମିଶାଇ ଦେଲ ?

ନାରଦ—( ମୁଖ ବିବର୍ଣ୍ଣ ହୋଇଗଲା )

ଶ୍ରୀସ୍ବା—ମୁହଁ ଫିକା ପଡ଼ିଗଲା କାହିଁକି ? ଯା ଯା ଯା— ଅହେ ଗାଲୁଆ-ନନା ! ( ଝାଡ଼ୁ ଟେକେଇ ଧରି ) ଚଣ୍ଡାଳ ଆମେ ଜନ୍ମିଥାଏଁ ଜଗତର ସେବା କରିବାକୁ—ସେବା ନେବାକୁ ନୁହେଁ । (ପ୍ରସ୍ଥାନ)

ନାରଦ—ଭଉଣୀ—ଭଉଣୀ ! ( ଫେରି ଆସି ) ମର୍ତ୍ତ୍ୟକୁ ଆସିଥିଲି ନୀଳାଚଳନାଥଙ୍କ ଦର୍ଶନ କରିବି—ଆଜ ମୋର ପ୍ରେମ-ରଜାର ପ୍ରେମରାଜ୍ୟ ଦେଖିଯିବି ବୋଲି । ହେଲେ, 'ଗାଁ ପଇମଲ ଧୋବା ତୁଠରୁ ଜଣାଯାଏ'—ଏ କଥା ଯଦି ଠିକ୍ ହୁଏ, ତେବେ ଯା' ଧାରଣା କରି ଆସିଥିଲି ତାକୁ ଠିକ୍ ଓଲଟା ଦେଖୁଛି । ହେ ଚଣ୍ଡାଳର ଠାକୁର ! ଆଜ ଚଣ୍ଡାଳ-ଜାତିକୁ ଏକାବେଳକେ ପାଶୋରି ପକାଇଛ ତ ? ବଡ଼ ଦେଉଳରେ ବସି—ବଡ଼ ମଣୋହି ଖାଇ—ବଡ଼ ପୂଜା ପାଉଛ ବୋଲି, ବଡ଼ ବଡ଼ଆଙ୍କ ଘେନ କେବଳ ବ ଇ ହୋଇଛ ତ ?—ନା, ନା, ଏହା କେବେ ହେବ ନାହିଁ ସମ୍ଭବ ନୁହେଁ—ତୁମେ ଯେ ମୋର ଚଣ୍ଡାଳର ଠାକୁର !

—ଗୀତ—

ଚଣ୍ଡାଳର ଠାକୁର, ହେ···
ଶୁଣ୍ତୋ ଟେକିଲ ଏବେ କି ଭଣ୍ଡାଇବାରେ···। ୦ ।
କୁଣ୍ଢାଇ ରୂପେ ବସାଇ, ଧଣ୍ଡାମାନେ ଭେଣ୍ଡା ସାଜି
ଛୁଣ୍ଡାଇଲ ବଡପଣ ଉଣ୍ଡାଇବାରେ··· । ୧ ।

---

## ଦ୍ୱିତୀୟ ଦୃଶ୍ୟ

[ ବଡ଼ଦାଣ୍ଡ—ନାରଦ ପୂର୍ବୋକ୍ତ ଗୀତ ଗାଇ ଗାଇ ପ୍ରବେଶ କଲେ ]

ନାରଦ— ଗୀତ

ଗୁଣ୍ଡା ବଳବାକୁ ଷାଠିଏ ପଡ଼ିଛି କି ?
କୁଣ୍ଢାଇ ବସିଲ ଚକା ବଇଠି କି ?
ପଣ୍ଡା ପଢ଼ିଆରି, ମେଘନାଦ ପାଚେରି—
ଏତେ ଅକଟ ଶ୍ରୀଅଙ୍ଗ ମଣ୍ଡାଇବାରେ···।୨।
ନୈଷଧ୍ୟାର କଥା ହେଲା ଚଉବାହା
ଗୁହକ ଶବର ଘରେ ଭୋଜଙ୍ଖିଆ
ଦ୍ୱାପରେ ମଲ୍ଲିକା ଶବରୁଣୀ ଚଖା
ଉଚ୍ଛିଷ୍ଟ ଭୁଞ୍ଜି ଏବେ ଦଣ୍ଡାଇବାରେ··· ।୩।
ବଡ଼ ବଡ଼ ଚକାନୟନ ମେଲି କି ?
ବଡ଼ଦେଉଳରେ ବସିଲ ବୋଲି କି ?—
ଉବ ବଡ଼ପଣ ହେବ ପ୍ରଭୁ ସାନ,
(ଖାଲି) ପତିତପାବନ ବାନା ମୁଣ୍ଡାଇବାରେ···।୪।

---

## ତୃତୀୟ ଦୃଶ୍ୟ

[ ବଡ଼ଦେଉଳର ସିଂହଦ୍ୱାର । ଜୟ ବିଜୟ ସିଂହଦ୍ୱାରର ସିଂହ ଦୁଇଟାକୁ ଆଉଜି ଢୁଙ୍ଗାଉ ଥିଲେ । ଛଡ଼ି ହାତରୁ ଖସି ତଳେ ପଡ଼ିଥିଲା । ଯେଉଁ ଗୀତ ଦୂରରେ ଶୁଣା ଯାଉଥିଲା, ତାହା କ୍ରମେ କ୍ରମେ ନିକଟେଇ ଆସିଲା ]

ବିଜୟ—ଆରେ ଜୟି ! (ହାଇ ମାରୁ ମାରୁ)

ଜୟ—(ଆଖିପତା ନ ଖୋଲି) କଣ କି ରେ, ବିଜି ?

ବିଜୟ—ଆରେ ଦେଖ ବା, ରାତି ଅଧରେ କିଏ ଗୋଟେ ଭେରେଣ୍ଡାଙ୍କପଟ୍ ବୋବୋଉଛି ।

ଜୟ—ତୁ ଦେଖ, ବିଜି । ମୋ ଆଖିପତା ଆଦୌ ଖୋଲୁ ନାହିଁ ।

ବିଜୟ—ଆରେ, ମତେ ତ ଖାଲି ହାଇ ଲୁଟି ପକଉଛି ! କଣ ଠିଆ ହେବାର ଯୁ ଅଛି ?

ଜୟ—ତେବେ ଉପାୟ ?

ବିଜୟ—ସେଇଆ ତ !

ଜୟ—ଉପାୟ ମିଳିଛି, ଭାଇ !

ବିଜୟ—ମିଳିଛି ? ବତା—ବତା—(ହାଇ ମାରିବା)

ଜୟ—ଦେଖ୍, ତୁ, ମୁଁ ତ ଯୋଡ଼ି—

ବିଜୟ—କଣ ପାଖକୁ ଯୋଡ଼ି ହୋଇଯିବା ?

ଜୟ—ଯା ଆଡୁର ପଶୁଛୁ ?

ବିଜୟ—( ବସିବା ଅବସ୍ଥାରେ ଘୋଷାରି ହୋଇ ପାଖକୁ ଗଲା )

ଜୟ—ଆସିଲୁ ତ ?

ବିଜୟ—ମାଲୁମ୍ ହେଉ ନି ?

ଜୟ—ଦେଖ୍, କାନ୍ଧକୁ କାନ୍ଧ ଏବେ—

ବିଜୟ—ଯୋଖିବା ?

ଜୟ—ଅଠାପରି—ହିଁ—( କାନ୍ଧ ଯୋଡ଼ି ତା କାନ ପାଖକୁ ମୁହଁ ଲଗାଇଲା )

ବିଜୟ—ଆରେ ମୋ କାନ ପାଖକୁ ତୋ ମୁହଁ ଆଣୁଚୁ କାହିଁକି ?—କଣ କାମୁଡ଼ି ଦେବୁ କି ?

ଜୟ—ଆରେ ନାହିଁରେ, ଓଲା । ମୁଁ କଥା କହିବି—ତୋ କାନ ଶୁଣିବ ।

ବିଜୟ—ଓ ଗୁପୁଚୁପିଆ କଥା ପରା !

( ସେତିକିବେଳେ ଗୀତ ସ୍ପଷ୍ଟ ଶୁଣାଗଲା )

ଜୟ—(ନାରଦଙ୍କୁ ଦେଖି) ଆରେ ଭିକାରିଟାଏ ରେ—

( ନାରଦ ଗ୍ଲେଟେଇ ଗ୍ଲେଟେଇ ପ୍ରବେଶ କଲେ—ହାତରେ ଥାଳ )

ଉଭୟେ—ଠିଆ ହ' ।

ନାରଦ—ବାପରେ ଯୋଡ଼ି ମାଣିକ !

ଉଭୟେ—ହଁ ଯୋଡ଼ି ବେତ ବି—

( ବେତ ଦେଖାଇଲେ )

ନାରଦ—ପଡ଼ିବ ନାହିଁ ତ ପିଠିରେ ?

ଉଭୟେ—ହଁ ପଡ଼ିବ, ଏମିତି ଖପାଖପ୍—ସପାସପ୍—

( ଉଭୟେ ପିଟାପିଟି ହେଲେ )

ନାରଦ—ହାଁ…ହାଁ…କରୁଛ କ'ଣ ?

ଜୟ ଓ ବିଜୟ—( ପରସ୍ପରକୁ ଚାହାଁଇଲେ, ସଲଜ୍ଜ ଭାବରେ )

ଉଭୟେ—ତୁମେ କିଏ କୁହ ତ ?

ନାରଦ—ମୁଁ ନାରଦ ।

ଉଭୟେ—ନାରଦ ? ହାଃ—ହାଃ—ହାଃ—

ନାରଦ—ଅନ୍ୟ କିଛି ଠଉରେଇବ ନି, ଜୟ ବିଜୟ !

ଉଭୟେ—( ପରସ୍ପର ପ୍ରତି ) ନାଁ'ଟା ଜାଣି ପକେଇଛି ରେ ।

ଜୟ—ଆଚ୍ଛା ତୁମେ ନାରଦ ତ, ତୁମର ଢିଙ୍କି ବାହନ କାହିଁ ? ଓ, ତୁମେ ଢିଙ୍କିରୁ ଖସି ପଡ଼ିଚ ପରା, ସେଇଥିପାଇଁ ଏମିତି ଢିଙ୍କି ଲୁଟି ଲୁଟି ମରୁଚ ?

ବିଜୟ—ଆଉ ବୀଣାଟା ବି ହାତରୁ ଖସି ତଳେ ପଡ଼ି ଭାଙ୍ଗି ରୁଜି ଯାଇଚି ଯେ, ଏବେ ବୀଣାର ଭଙ୍ଗା ନାଉ ତୁମ୍ବାଟା ଖାଲି ଧରି ବୁଲୁଚ । ( ଥାଳ ବଜାଇ ) ଆହା ରେ ମୋ ନାରଦ ବୀଣା !

( ନେପଥ୍ୟ )—ଜୟ ବିଜୟ । ଦ୍ୱାର ଖୋଲି ଦିଅ । ଠାକୁରମାନେ ବିଜେ କରିବେ ।

ଉଭୟେ—( ଧଳିଆ ହୋଇ ଦ୍ୱାର ଖୋଲି ଦେଲେ )

ନାରଦ—ଯାଏଁ, ଟିକିଏ ଅଲକ୍ଷ୍ୟରେ ଥାଇ ଠାକୁର ତିନିହିଙ୍କ କାର୍ଯ୍ୟକଲାପ ଭଲକରି ଲକ୍ଷ୍ୟ କରେ ।

[ ଦ୍ୱାର ସମ୍ପୂର୍ଣ୍ଣ ଖୋଲା ହେବା ପରେ ବାଇଶି ପାହାଚର କିଛି ଅଂଶ ଦେଖାଗଲା···ଜଗନ୍ନାଥ ଓ ବଳଭଦ୍ର ଶିକାରୀ ବେଶରେ ଓହ୍ଲାଇ ଅସୁଥିଲେ ]

( ପ୍ରବେଶାନ୍ତର )

ବଳରାମ—ଜଗା ।—

ଜଗନ୍ନାଥ—ଭାଇନା—

ବଳ · ତୁ ବୋହୂଠାକୁରାଣୀଙ୍କୁ ଡାକର୍ କରଦେବୁ ତ, ଏଣିକି ଏତେ ଭୋଗରାଗ ଆଉ ସେ ବାଢ଼ିବେ ନାହିଁ, କି ମଣୋହି ବେଳେ ଆଡୁଆଳରେ ଥାଇ—ଏଇଟା ରହିଗଲା, ସେଇଟା ରହିଗଲା—'ଚୁଁଚୁଁ' ଭାବରେ କହି ମୋତେ ଆଉ ବଳାଇବେ ନାହିଁ । ଓଃ । ତାଙ୍କ ହାତରାନ୍ଧଣା ସ୍ୱାଦକୁ ଭୋବେଇ, ମୁଁ ଗୁଣ୍ଟିଚୁଚି ଖାଇଚି ପରା ଅଜା—ସେହି ଘିଅ ଚବଚବ ଚଢ଼େଇନେଦା ଏ ଯାଏଁ ପେଟରେ ଲଦିହୋଇ ରହିଛି ପରା—

( ହାକୁଟି ମାରବା )

ଜଗ—ଭାଇନା, ଆଜି ତ ମାର୍ଗଶିର ମାସର ପହିଲି ଦିନର ପହିଲି ଭୋଗ ଟଳ୍ପ । କାଲି ପୁଣି—

ବଳ—କାଲି ପୁଣି, କଣ କି ରେ ?

ଜଗ– କାଲି ପରା ତୁମର ବୋହୂଠାକୁରାଣୀଙ୍କର ବାର ।

ବଳ—ଲକ୍ଷ୍ମୀବାର ତ ?

ଜଗ—ହଁ ତୁମର ଶ୍ରଦ୍ଧା-ନାମଦିଆ 'ଗୁରୁବାର'—

ବଳ—ତା' ହେଲେ ତ ଆହୁରି ଗୁରୁପାକର ଆୟୋଜନ ହେବ ।

ଜଗ—ସେଥିରେ ପୁଣି ସୁଦଶାବ୍ରତ ପଡ଼ୁଛି ଏଥର ।

ବଳ— ଜଗା, ତା'ହେଲେ ମୋର ଦୁର୍ଦ୍ଦଶା କହ ।

ଜଗ—ଚିନ୍ତା ନାହିଁ ଭାଇନା, ଆଜି ପାରଧିକି ବାହାରିଥାଇଁ ଯେତେବେଳେ, ଏ ବଣ ସେ ବଣ ଧାଁ ଧପଡ଼ରେ—

ବଳ—ଭିତର ଦାବାନଳ ଜଳି ଉଠିବ ନାହିଁରେ କଣ ? ( ହସି ) ହଉ, ଆ ଆ । ( ଯାଉଁ ଯାଉଁ ଠିଆ ହୋଇ ) ଜଗା !

ଜଗ—ଭାଇନା !

ବଳ—ସେଇ ଯେ ଅନୁକୂଳ କରି ବାହାରିଲୁ ବେଳେ ବେଢ଼ା ବାହାରେ, ଭଗ୍ନ ଆତୁରରେ ଗାଉଥିଲା କିଏ, ତାର ଟିକିଏ ସନ୍ଧାନ ନେଲୁ ନାହିଁ ତ ?

ଜଗ—କିଏ ଜଣେ ଭିକାରୀ ଫିକାରୀ ହୋଇଥିବ—ରାତି ପାହିଲେ, ତା'ର ବ୍ୟବସ୍ଥା—

ବଳ—ବୋହୂଠାକୁରାଣୀ କରିଦେବେ ବୁଝିଲି ଯେ. ହେଲେ···

ଜଗ—ହେଲେ ଆଉ କଣ ?

ବଳ—ଗୀତର ସେହି ଧାଡ଼ିକ, କ'ଣଟି ?

ଜଗ—କ'ଣ ?—

(ନେପଥ୍ୟେ)—'ତବ ବଡ଼ପଣ ହେବ ପ୍ରଭୁ ସାନ'

ବଳ—କିଏ ବୋଇଲା ?—ସେହି ଦରିଦ୍ରୀ ଭିକାରୀ ତ । ଦେଖିଲୁ, ଦେଖିଲୁ, ଜଗା······

ଜଗ—( ପ୍ରସ୍ଥାନ )

ବଳ—'ତବ ବଡ଼ପଣ ହେବ ପ୍ରଭୁ ସାନ'—ସତ୍ୟତରେ ନୀଳାଚଳରେ ଆମେ ଅବସ୍ଥାନ କଲାଦିନୁ, ମୁଁ ଆଖ୍ୟା ପାଇଛି ବଡ଼ଠାକୁର—ଆଉ ଜଗା ଆଖ୍ୟା ପାଇଛି ସ୍ରେଷ୍ଟ-ଠାକୁର । ତା' ଯଦି ହେଲା, ତେବେ ବଡ଼ ହୋଇ, ସ୍ରେଷ୍ଟ ହେବା ନାହିଁକି ?—ମୋର ଏହି ଜଡ଼ତା, ଗୀତର ସେହି ଚରଣଟି ଯେମିତି ସତକୁ ସତ ମାଡ଼ି ମକଚି ଦଳି ପକାଉଛି ।

( ଜଗନ୍ନାଥ ଫେରି ଆସିଲେ )

ଜଗ—କାହିଁ, କାହାରିକୁ ତ ଦେଖିଲି ନି, ଭାଇନା ?

ବଳ—ନ ଦେଖିଲୁ ନାହିଁ—ତୁ କହିଲୁ ଜଗା । ବଡ଼ ମୁଁ, ନା ତୁ ?

ଜଗ—ତୁମେ ବଡ଼ ।

ବଳ—ଜଗନ୍ନାଥର ଲେଖାରେ ସତ, ହେଲେ ଜଗତର ଲେଖାରେ ତ ନୁହଁ ।

ଜଗ—ଏ' କମିତି କଥା, ଭାଇନା ?

ବଳ—ଆରେ, ବଡ଼ ଦେଉଳ—ବଡ଼ ଠାକୁର—ବଡ଼ ଭୋଗ—ବଡ଼ ସିଂହାର, ଏ ସବୁ ଯାହା ଜଗତର

ଲୋକେ ବୋଲନ୍ତି, ତାହା ମୋତେ ଅନେଇ ବୋଲନ୍ତି, ନା ତୋତେ ?

ଜଗ—ଲୋକଙ୍କ କଥା କ'ଣ ଗୋଟାଏ କଥାରେ ଲେଖା, ଭାଇନା ?

ବଳ—ହେଲେ—ଏ କଥାଟି ତ ମୂଳ ଯେ, ତ୍ରେତାରେ ତୁ ଥିଲୁ ରାମ, ଆଉ ମୁଁ ଥିଲି ଲକ୍ଷ୍ମଣ ।

ଜଗ—ହଁ ଏ କଥାକୁ ଟାଳିବ କିଏ ?

ବଳ—ବର୍ତ୍ତମାନ କଳି । ଏହି କଳିକାଳରେ ତୁ ସେବା, ଭକ୍ତିକୁ ବଡ଼ କରି ଠିଆ କରୁ; ସେଥିପାଇଁ ମୋତେ ଦେଇଥିଲୁ ବଡ଼ ଭାଇର ଆସନ, ଆଉ ତୁ ନେଇଥିଲୁ ସାନ ଭାଇର ଆସନ—ଏ' କଥା କ'ଣ—

ଜଗ—ମିଛ ନୁହେଁ, ଖାଣ୍ଟି କଥା । ହେଲେ, ଭାଇ !

ବଳ—'ହେଲେ ଭାଇ' ?

ଜଗ—ସବୁ ଯୁଗରେ ତ ସେହି କଥାଟିକୁ ମୁଁ ବଡ଼ ମଣିଥାଏଁ ।

ବଳ—ସେହି କଥାଟିକୁ, ମାନେ ?

ଜଗ—ଭଗବାନ ଆଉ ଭକ୍ତ—ଏ ଦୁହିଁଙ୍କ ମଧ୍ୟରେ ଭକ୍ତର ଆସନହିଁ ଗୁରୁତର ।

ବଳ—ହଁ, ଦ୍ୱାପରରେ ତ ତାର ନମୁନା ଦେଖାଇଚୁ—ତୁଳା ଦଣ୍ଡର ଗୋଟିଏ ପଲାରେ ନିଜେ ବସି, ଅନ୍ୟ ପଲାରେ ଭକ୍ତର ତୁଳସୀ ପତ୍ରଟିଏ ଥୋଇ······

ଜଗ—ଚାଲ ଭାଇନା, ଚନ୍ଦ୍ର ପରା ଦେଉଳ ଆରପଟେ ଖସି ଛପି ଗଲେଣି ।

ବଳ—ହେଲେ, ଗୋଟିଏ ଖାସା ଅଛପା କଥା ନ ସମଝିବା ଯାଏ, ମୁଁ ଏଠୁ ପାଦେ ବି ଉଠୁଚି ନାହିଁ ।

ଜଗ—ଏମିତି କି ଅଖାଡ଼ୁଆ କଥା ଯେ—

ବଳ—ଖାଡ଼ା କଥା—ଯଦି ମୁଁ ବଡ଼, ତେବେ ଶ୍ରେଷ୍ଠ ହେବି କାହିଁକି ?

ଜଗ—କେବେହେଁ ନୁହେଁ ।

ବଳ—ତେବେ, ଜଗତ ସେମିତି ଦେଖୁଚି କାହିଁ ?

ଜଗ—ଆଖି ଥାଇ ପରା ଅନ୍ଧ ଜଗତ, ଏ' କଥା କ'ଣ ତୁମକୁ ଅଛପା, ଭାଇନା ?

ବଳ—ମାନେ, ମୁଁ କହିବି—ଏଥିରେ ତୋ'ର ଅନ୍ଧା-ଚତୁରୀ ରହିଚି ।

ଜଗ—ମୋର ଚତୁରୀ ?

ବଳ—ହଁ ହଁ, ତୋର ଚତୁରୀ । ଗୋଟାଏ କଥାରୁ ବୁଝାଇ ଦେଉଛି, ଶୁଣ ।

ଜଗ—କେଉଁ କଥା ?

ବଳ—ମୁଁ ବଡ଼—ତୁ ଶ୍ରେଷ୍ଠ । ହେଲେ, ଶ୍ରେଷ୍ଠର ହାତରେ ଚକ୍ର, ବଡ଼ର ହାତରେ ହଳ କାହିଁକି ?

ଜଗ—ଠିକ୍ ଅଛି ତ ।

ବଳ—ଆରେ କପଟିଆ, ମୁଁ କଷ୍ଟପଟିଆ ଭୋଳାନାଥ ବୋଲି, ମୋତେ ଠକି ଦେଇଛୁ ସିନା—ହେଲେ, ଜଗତ ଠକିବ କାହିଁକି ? ଜଗତ ବିଦ୍ୟାବୁଦ୍ଧିର ସୂକ୍ଷ୍ମସାଧନାରେ ମାତିଛି, ତା'ର ତୀକ୍ଷ୍ଣ ଆଲୋକରେ ଜଗତ ସବୁ କଥାକୁ ତଉଲେଇ ଦେଖୁଛି; ତୋ ଅନ୍ଧା-କଥାକୁ ସେ ଅନ୍ଧଭଳି ଅନୁସରି ବାଟ ଚାଲୁଥିବ, ତା' କେତେବେଳେ ହେଲେ ନୁହେଁ ।

ଜଗ—ଭାଇନା, ତୁମେତ ଏଭଳି ଅଜ୍ଞାନ-କଥା କହୁଚ, ଆଉ ମୁଁ କାହାକୁ କହିବି କ'ଣ ?

ବଳ—ଭାଗ୍ୟ ଆଣ୍ଟରେ କଥା କହୁଛୁ ତ ! ଶୁଣି ରଖିଥା—ଏତେକାଳ ତୋର ଚକ୍କରେ ପଡ଼ି ମୁଁ ଭୁଲି ରହିଥିଲି, ଆଜଠୁଁ ଆଉ ନୁହେଁ । ସେହି ଦରଦୀ ଭକ୍ତଟି, ମୋର ଭୁଲ ସୁଧାରି ଦେଇଛି, ତା'ର ଗୀତର ସୁଧା-ବର୍ଷଣରେ । ଓଃ, ମୁଁ ବଡ଼ ହୋଇ, ହେବି ଶ୍ରେଷ୍ଠ ? ଶ୍ରେଷ୍ଠର ଆୟୁଧ ହେବ ଚକ୍ର—ଆଉ ବଡ଼ର ଆୟୁଧ ହେବ, ହଳ ? ଓଃ, ହଳ ପୁଣି ଗୋଟାଏ ଅସ୍ତ୍ରରେ ଲେଖା । ଜଗା ! ଆଜିଠୁଁ ଏହି ସଂକଳ୍ପ ମୋର—ମୁଁ ବରଂ

ନିରସ୍ତୁଧ ହେବ, କିନ୍ତୁ ହଳ ଆଉ ଧାରଣ କରବ ନାହିଁ ।

[ହଠାତ୍ ଗୃହଅଡ଼େ ଶୁଣାଗଲା ଗୋଟିଏ ଭୀଷଣ ଆର୍ତ୍ତନାଦ । ଧରତ୍ରୀ ଯେପରି ଥରହର କମ୍ପି ଉଠିଲା ]

ଜଗ—ହଳଧର ! ହଳଧର ! କି ସଙ୍କଳ୍ପ କଲ, ପ୍ରଭୁ ? ତୁମେ ହଳ ତ୍ୟାଗ କଲେ ଯେ, ସୃଷ୍ଟି ସମୂଳେ ଧ୍ୱଂସ ହୋଇଯିବ ! ଏହ ଶୁଣ—ଶୁଣ, ଦେବ ! ତୁମର ସଂକଳ୍ପ ମାତ୍ରକେ, ବ୍ରହ୍ମାଣ୍ଡପୁର ସ୍ୱନପାତ— ଜୀବ-ଜଗତରେ ଭୁଭୁକ୍ଷୁର ଆର୍ତ୍ତନାଦ, ମୁମୂର୍ଷୁର କଣ୍ଠରୋଧ, ମହାକାଳର ପ୍ରେତନୃତ୍ୟଧ୍ୱନି ! ରୋଷ ସମ୍ବର—ସମ୍ବର, ଦେବ ! ( ନତଜାନୁ ହେଲେ )

ବଳ—ଆରେ ଚକି ! ଏ ଅଭିନୟ ଆଉ କାହାରିକୁ ଦେଖାଉଛୁ, ମୋତେ ନୁହେଁ । ତ୍ରେତା, ଦ୍ୱାପରରେ ତୋର ରଙ୍ଗ ଦୃଶ୍ୟ ଓ ଅଦୃଶ୍ୟ ଭାବରେ ଥାଇ କି ଖେଳ ଖେଳ ଆସିଛୁ, ତା' ମୁଁ ନିଜ ଆଖିରେ ଦେଖିଛି । ଲୋକେ ଲୋକ-ପରମ୍ପରା ତକର ପରଗୁଣହିଁ ବଖାଣି ଆସିଛନ୍ତି—ହଳର କଦାପି ନୁହେଁ । ସୁତରାଂ, ମୋତେ ଦୁନିଆ-ଛଡ଼ା ଅଦାନିଆ କଥାରେ ଭଣ୍ଡାଉଛୁ, ତା' ଆଉ ହେବ ନାହିଁ ।

ଜଗ—ବଳଦେବ ! ଲୋକମତକୁ ବଡ଼ ମଣି, ତୁମେ ଅଧୀର ହେବ ନାହିଁ । ଲୋକେ ତ କଳିକାଳରେ ସେହି ଚକ୍ରର ପରଗୁଣ ଅଧିକ ବଖାଣିବେ— ତାକୁ ବଳ ଅଧିକ ବଳଆର ମାରଣାସ୍ତ୍ର ବ୍ୟୁଜାଇବେ; ସେଇଥିରେହିଁ ଜ୍ଞାନ-ବିଜ୍ଞାନ ବୁଦ୍ଧି ଖଞ୍ଜିଦେବେ ।

ବଳ—ହେଲେ—

ଜଗ—ଜୀବ ଜଗତରେ ହଳ ଯେ ଚକ୍ରକୁ ବଳି ମହା-ଅସ୍ତ୍ରୁଧ—ଏ'କଥା ଜୀବ-ଜଗତ ବର୍ତ୍ତମାନ ବୁଝି ନ ପାରଲେ ମଧ୍ୟ, ବୁଝିବାକୁ ଅଧିକ ବିଳମ୍ବ ନାହିଁ—ଏହା ଧ୍ରୁବ, ସତ୍ୟ ।

ବଳ—ମାତ୍ର, ସେ କେବେ ?

ଜଗ—ହଳ ଧାରଣ ନ କଲେ କ'ଣ ଘଟେ, ସେହି କଥା ସ୍ୱୟଂ ହଳଧର ଯେବେ ବୁଝାଇ ଦେବେ ।

ବଳ—ଜଗା । ( ଧଇପକାଇ ) ସରିଗଲୁ କି ? ( ସାଦରେ ଗାଲରେ, ଓଠରେ ହାତମାରି ) ଅପର୍ତ୍ତିଅଣିଟା ପରି—ଟିକିଏକେ ସରିବେ, ଲୁଚିବ ! ଆ' ବିଳମ୍ବ ହେଉଛି । —ହଁ ଭେଦ୍ଧା, ଆଜ ମୁଁ ତୋର କଳା-ଘୋଡ଼ାରେ ବସିବ—ତୁ ମୋର ଧଳା-ଘୋଡ଼ାରେ ବସିବୁ—କେମିତି (ପ୍ରସ୍ଥାନ)

ଜଗ—( କିଛି କ୍ଷଣ ରହି ) ମୋର ଭାଇ— ! ( ଆଖିରୁ ଟପ୍ ଟପ୍ ଲୁହ ଝରି ପଡ଼ିଲା । ନାରଦ ଛପି ଛପି ପ୍ରବେଶ କଲେ ) ଆଉ ଛନ ଛନ କାହିଁକି ନାରଦ । ନିଡ଼ରରେ ଗୁଲିଆସ, ଏ'ସ୍ଥାନକୁ ।

ନାରଦ—ମୁଁ ଅପରାଧ କରିଛି, ପ୍ରଭୁ—

ଜଗ—କ'ଣ ଚଣ୍ଡାଳର ମୁକ୍ତିକୁ କାମନା କରି— ଚଣ୍ଡାଳର ଠାକୁରଙ୍କ ପାଖକୁ ଆସିଛ ବୋଲି ?

ନାରଦ—ଅନ୍ତର୍ଯ୍ୟାମି ! ହେଲେ, ମୁଁ ଜାଣି ନ ଥିଲି ଯେ, ବଡ଼ଠାକୁରେ ମୋର ଗୀତର ସେହି ପାଦଟି ଆପଣା ଦେହକୁ ଏମିତି ଟାଣି ନେବେ, —ଆଉ ତା'ର ସଦର୍ଥ ଏମିତି କଦର୍ଥ କରି ଆତ୍ମବ୍ୟଥା ଅନୁଭବ କରିବେ,—ସେହି ସଙ୍ଗେ ସଙ୍ଗେ ସ୍ନେହ ଠାକୁରଙ୍କ ଏତେ ହୀନମାନ—

ଜଗ—ସେ ପ୍ରସଙ୍ଗ ଥାଉ । ଚଣ୍ଡାଳୁଣୀର କଷ୍ଟ ଦୂର ହେବ—ସେହି ସଙ୍ଗେ ସଙ୍ଗେ ଚଣ୍ଡାଳ ଜାତର ଟେକ ବଢ଼ିବ, ଏହାହିଁ ତ ତୁମର କାମନା ?

ନାରଦ—ଭିକ୍ଷା, ନାରାୟଣ ।

ଜଗ—( କିଛିକ୍ଷଣ ଚିନ୍ତାପରେ ) ଦେଖ, ନାରଦ ! ଚଣ୍ଡାଳୁଣୀ ନାରୀ—ନାରୀର ବ୍ୟଥା ନାରୀକୁ ଯେପରି ଗୋଚର ବା ବାଧିବ, ସେହିପରି ଆଉ କାହାରିକି ନୁହେଁ । ତୁମେ ଗୋଟିଏ କାମ କର । ତୁମର ଭିକ୍ଷା ଥାଳ ଘେନି, ଠାକୁରାଣୀଙ୍କ ଦୁଆର ଦ୍ୱାରେ ଯାଇ ଠିଆ ହୁଅ—ଅଚିରେ ତୁମର ଆଶା ପୂର୍ଣ୍ଣହେବ ।

ନାରଦ—ପ୍ରଭୁଙ୍କର ଯେପରି ଆଦେଶ ।

ଜଗ—ନା, ନା, ଏ ମୋର ଆଦେଶ ନୁହେଁ, ନାରଦ —ମୋର, ତୁମର,ସମସ୍ତଙ୍କର କର୍ତ୍ତବ୍ୟ ଅଧୁନା ।

ଲକ୍ଷ୍ମୀଠାକୁରାଣୀ ବଡ଼ଦେଉଳରେ ଆସି ବାସକଲ୍ଲ ଦିନୁ, ଘର କଣରେ ରହି ରହି କେମିତି କରି ଭୁଆସୁଣୀ ପାଲଟି ଗଲେଣି; ଦେଉଳର ବାହାର ସଙ୍ଗେ ଯେମିତି ସବୁ ସମ୍ପର୍କ ତୁଟାଇ ଦେଇଛନ୍ତି—ଆଉ ଦେଉଳ ଚକଡ଼ାକୁ ହିଁ ସାରା-ଦୁନିଆ ବୋଲି ସାର କରି ବସିଛନ୍ତି ।

ନାରଦ—ଯୁଗ ଠିକ୍ ନୁହେଁ ।

ଜଗ—ସେଇଥି ତ । ସବୁ ଯୁଗରେ ଦେଖିଥିବ,

ନାରଦ—ନାରୀର ପ୍ରଗତିକୁ ଯେଉଁ ଯୁଗର ପ୍ରଗତି ।

ନାରଦ—ଅବଶ୍ୟ ।

ଜଗ—ଏ କଳିଯୁଗ ମଧ୍ୟ ଯୁଗ ପରଂପରାର କଣ୍ଟି ବାହାରେ ନୁହେଁ । ଯୁଗର ଧର୍ମ ମାନି, ଏ' ଯୁଗ ବି ଆଗେଇବ—ଦିନେ ସେ ଆପଣା-ପର ଭୁଲିବ—କଳି-ଝଗଡ଼ା ଛାଡ଼ିବ — ପ୍ରେମର ଦୁନିଆ ଗଢ଼ିବ । ହେଲେ—

ନାରଦ—ହେଲେ ?

ଜଗ—ହେଲେ, ଲକ୍ଷ୍ମୀଦେବୀ ଯଦି ଖଞ୍ଜାଭିତରେ କେବଳ ଆପଣାକୁ ଆବଦ୍ଧ ନ ରଖି, ତାଙ୍କର ଇଷ୍ଟଦେବତା ଜଗନ୍ନାଥଙ୍କ ସେବାରେ ଆପଣା-ସର୍ବସ୍ୱ ଅଜାଡ଼ି ନ ଦେଇ, ବିଛୁଡ଼ାଇ ଦିଅନ୍ତି ଆପଣାକୁ ନିଃସ୍ୱପର, ଜଗତର ସେବାରେ—ଏହି ଦେଉଳର ଖଞ୍ଜା ବାହାରେ ଯାଇ ।

ନାରଦ—ଜଗତ୍‌ପତେ ! ଏଇଥି ତ ଜଗତ ଗୁହେଁ—ଆତୁର ବି, ଏହା ହିଁ ମୋର ମର୍ମକଥା ।

ଜଗ—ମୋର କଣ ମର୍ମକଥା ସେଇଥି ନୁହେଁ, ନାରଦ ?—ଜାଣ ତ, ଜଗତ ମୋର କେତେ ଆପଣାର ?

ନାରଦ—ଆପଣାର ଅର୍ଦ୍ଧାଙ୍ଗିନୀକୁ ବଳି ଯେ ଆପଣାର, ତା'ର ପ୍ରମାଣ ଜ୍ୱଳନ୍ତ ଭାବରେ ବାଢ଼ି ଦେଇଛନ୍ତି ନିଜେ, ରାମଅବତାରରେ—ରାମରାଜ୍ୟ ସ୍ଥାପନ ହେତୁ ସୀତାବର୍ଜନର ନିଦାରୁଣ ଶୋକ, ବଜ୍ର-କଠିନ ବୁକୁରେ ଧାରଣ ପୂର୍ବକ ।

ଜଗ—ତୁମେ, ତୁମେ କିଏ ? ( ବିଦ୍ଧଳ ହୋଇ )

ନାରଦ—ମୁଁ ନାରଦ, ପ୍ରଭୁ !

ଜଗ—ନା ନା, ତୁମେ ଦୁର୍ମୁଖ — ତୁମେ ଚଣ୍ଡାଳୁଣୀର ଦୁଃଖବାର୍ତ୍ତା ଘେନି ଆସିନାହଁ, ଘେନି ଆସିଛ ରଜକଜୀର ଜାନକୀ-ଅପବାଦ-ବାର୍ତ୍ତା । ମୋତେ ଜାୟାହୀନ କରିବ ପୁଣି, ଏଇଥି ତୁମର ଭିତରି ଅଭିସନ୍ଧି ! ଥରେ ସୀତା-ହୀନ ହୋଇଥିଲି, ଏଥର କରିବ ମୋତେ ଲକ୍ଷ୍ମୀ-ହୀନ—ହା ଲକ୍ଷ୍ମୀ, ହା ଲକ୍ଷ୍ମୀ ବୋଲି···

ବଳରାମ— ( ସସବ୍ୟସ୍ତେ ପ୍ରବେଶ ) ଜଗା, ଜଗା ! କଣ ହେଲା କି ରେ ? 'ହା ଲକ୍ଷ୍ମୀ, ହା ଲକ୍ଷ୍ମୀ' ବୋଲି ତୁ ଯେ ପାଟି ତୁଣ୍ଡ କରିବାର ଶୁଣିଲି !

ଜଗ—ଯଦି ଶୁଣିଥାଅ, ତା'ର ମୂଳରେ ରହିଛି ଏହି···
( ଥମିଗଲେ )

ବଳ—( ନାରଦ ପ୍ରତି ) ଭିକାରି ! ହଁ, ତୁମେଇ ସେହି ଦରିଦ୍ର ଭିକାରି ନା, ଗାଇଥିଲ ଗୀତ ? ଦରଦ ଦେଖାଇବା ଛଳରେ ଭାଇ ଭାଇ ଭିତରେ ଡାଳ ଦେଇଥିଲ ବିଷ ? ବେଶ୍ ତା'ର ପ୍ରତି-କାର ମୁଁ ଏହିକ୍ଷଣି— ( ଶରଯୋଜନା କଲେ )

ଜଗ—ଭାଇ, ଏ' ଭିନ୍ନ ଦରିଦ୍ର ଭିକାରି—ନାରାଣୀ—ତୁମର ଲକ୍ଷ୍ମୀ-ମା'ଙ୍କର ଭିକ୍ଷାକୁ ଆଶା କରି, ଏ'ଠାକୁ ଆସିଛି ।

ବଳ—( ନୀରବ ଓ ଦ୍ରବୀଭୂତ ହୋଇ ) ମୋର ଲକ୍ଷ୍ମୀ ମା'ଙ୍କର ଭିକ୍ଷାକୁ ଆଶା କରିଛି ? ତା' ହେଲେ ତ, ତୁମେ ମୋର ଭାଇ । ଭାଇ—ଭାଇ ! ( ଲୁଣ୍ଠେଇ ପକାଇ ) ହଁ, ତୁମେ ଏ ଦେଉଳର ଉତ୍ତର-ପଟ ଦ୍ୱାରକୁ ଯାଇ, ମା'ଙ୍କ ଉଆସ-ବେଢ଼ା ପାଖେ ଠିଆହୁଅ ।—ସକାଳ ହେବ—ପହଡ଼ ଖୋଲିବ—ମା ତୁମର ଖାଲି-ଥାଳ ସୁଏଁ ଭର୍ତ୍ତି-କରି ଦେବେ···ତୁମେ ତା' ଆନନ୍ଦରେ ଘେନି ଚାଲିଯିବ ।

ଜଗ—( ମନକୁ ମନ ) ତଥାସ୍ତୁ—( ଅଳ୍ପ ହସିଲେ, ନାରଦ ଆଡ଼କୁ ଗୁହିଁ )

ବଳ—ଆଁ ଜଗା—ତୋର ଯେତକ ମଠ, ମଠ—
( ଜଗନ୍ନାଥଙ୍କୁ ଟାଣି ଘେନ ଗୁଲଗଲେ )

ନାରଦ—( କଚ୍ଛପଣ ଗୁହିଁ ପ୍ରଣାମ କଲେ ଓ ଦୀର୍ଘ-ଶ୍ୱାସ ଗ୍ରହ ଡାକଲେ 'ଜଗନ୍ମାତା !'—ଦୁଲ ଦୁଲ ଶୁଣାଗଲ )

[ ପଟପରବର୍ତ୍ତିନ ]

---

## ଚତୁର୍ଥ ଦୃଶ୍ୟ

[ ନାରଦ ଗୀତ ଗାଇ ଗାଇ ପ୍ରବେଶ କଲେ—ଲକ୍ଷ୍ମୀ ଦେବୀ ଆପଣା ସ୍ୱରୂପ ଅବୃତ ରଖି, ଦ୍ୱାରଦେଶରେ ଆସି ଉଭା ହେଲେ ]

ନାରଦ— —ଗୀତ—

ଜାଗ···ଜାଗ···
ଜାଗ ଜଗତ-ଜନନୀ—ଜାଗ···
ଜାଗ—ଗଗନ ତୀରେ ତୀରେ ତମିର ଅପସରେ—
ଶୁକ ପିକ କାକ କାକଳରେ ଦେଖ
ପୂର୍ବ ଗଲ୍ଲଣି ବନଭୂଗ—ଜାଗ··· । ୦ ।
କକୁଭ ବଳୟ ଭୂଷା କନକ ମଞ୍ଜୁଳା ଉଷା—
ହସଲ—ପହଡ଼ ଫେଡ଼ି ।
ତାଳ ମା କୃପା । ଅପାଙ୍ଗ—ଜାଗ··· । ୧ ।
ମାରବେ କାରଲ ମାଟିର ସନ୍ତାନ
ତବ ପଦତଳେ ପିଟେ ଲଲାଟ ନଶି ଦନ,
କୋଟି କଣ୍ଠ-ଫଟା କରୁଣ ମୂର୍ଚ୍ଛନା···
(ତବ) ଗମ୍ଭୀର କ ଭେଦ ପାରେ ନା—
ମାଗୋ—ଜାଗ···।୨।
ଅବହିତ ଚଣ୍ଡାଳ ପଥ କଙ୍ଗାଳର
'ମା' ବୋଲବାକୁ ଲାଗେ ଲାଜ କ ?
ବଡ଼ବଡ଼ୁଆଙ୍କ ଗଢ଼ା, ଉଚ୍ଚ ଏ ପଥର ବେଢ଼ା,
ତାଙ୍କ ରଖିଛୁ ତବ ତେଜ କ ?
ନିଖିଳ ନାସ୍ୱ ପାଇଁ, ଜାଗ ମା ବିଶ୍ୱମୟୀ ।
ସିଞ୍ଚ ଶୁଭ ଅଶୀଷ ପସ୍ରଗ—ଜାଗ··· । ୩ ।

ଲକ୍ଷ୍ମୀ—କିଏ ତୁମେ ?

ନାରଦ—ମୁଁ ନାରଦ—

ଲକ୍ଷ୍ମୀ—କଣ ଗୁହିଁ ?

ନାରଦ—ଲକ୍ଷ୍ମୀ ଦେବୀଙ୍କର ଦର୍ଶନ—

ଲକ୍ଷ୍ମୀ—ପ୍ରୟୋଜନ ?

ନାରଦ—ତୁମେ କ'ଣ ତାଙ୍କର ପରଗୁରକା ?

ଲକ୍ଷ୍ମୀ—ତା' ନ ହେଲେ ଦେବତାଙ୍କ ପ୍ରୟୋଜନ-କଥା ପଗୁରନ୍ତି କାହିଁକି ?

ନାରଦ—ମୋତେ ଦେବୀଙ୍କ ଦର୍ଶନ କରାଇ ଦଅ—ମୋର ପ୍ରୟୋଜନ ଯାହା, ତାହା ମୁଁ ନିଜେ ତାଙ୍କୁ ଜଣା କରାଇବ ।

ଲକ୍ଷ୍ମୀ—ତା' କମିତ ହେବ ?

ନାରଦ—କାହିଁକି ?

ଲକ୍ଷ୍ମୀ—ଠାକୁରାଣୀଙ୍କର ମୋ' ପ୍ରତି କଡ଼ା ହୁକୁମ ଯେ, କାହାର ପ୍ରୟୋଜନ କଥା ନ ଜାଣି—ତାକୁ ଏ ଖାସ୍ ଉଆସର ବେଢ଼ା ଭିତରେ ଆଦୌ ପୂରାଇ ଦେବ ନାହିଁ । ବିଶେଷରେ···

ନାରଦ—ବିଶେଷରେ ?

ଲକ୍ଷ୍ମୀ—ଦର୍ଶନ-ପ୍ରାର୍ଥୀ ଯଦ ଦେବତା ହୋଇଥାନ୍ତି ।

ନାରଦ—ଅଚ୍ଛା, ତୁମେ ଯାଇ ମୋ ନାଁ କହ କହିବ, ନାରଦ ଆସିଛନ୍ତି—ଏତକରେ ଦେଖିବ···

ଲକ୍ଷ୍ମୀ—ଦର୍ଶନର ଅନୁମତ ମିଳଯିବ ?

ନାରଦ—ତୁରନ୍ତ ମିଳଯିବ କ ନା, ତୁମେ ଯାଇ ଥରେ କହ, ପରଖି ଦେଖ ।

ଲକ୍ଷ୍ମୀ—ବେଶ୍, ତାହାହେଲେ ତୁମର ଦମ୍ଭ ରହୁ ।
[ ଆବରଣ ଖୋଲ ଦେଲେ ]

ନାରଦ—ମା । ( ପ୍ରଣାମ କଲେ )

ଲକ୍ଷ୍ମୀ—ଏଥର ଜଣା କରାଅ—ଅଚ୍ଛା, ଭିତରକୁ ଆସ ।

ନାରଦ—ନା ମା । ମୋର ନିବେଦନ ଯାହା, ଏ ବେଢ଼ା-ବାହାରର ବିଷୟକୁ ଘେନ—

ଲକ୍ଷ୍ମୀ—ସୁତରାଂ, ବେଢ଼ା ବାହାରେ ଥାଇ ଶୁଣିବା ଉଚିତ ।

ନାରଦ—ମା···

ଲକ୍ଷ୍ମୀ—ଏଥିପାଇଁ ସଂକଳ୍ପ କରି ଆସିଥିଲ ନା କଣ ?

ନାରଦ—ନା, ନା—

ଲକ୍ଷ୍ମୀ—ତେବେ ମୋତେ ଅକସ୍ମାତ୍ ବେଢ଼ାର ବାହାରେ ଦେଖି—

ନାରଦ—ଏହିପରି ସଂକଳ୍ପ ଉପୁଜିଲା,—ଠିକ୍ ଅନୁମାନ କରିଛ, ମା !

ଲକ୍ଷ୍ମୀ—ହେଲେ, ସାବଧାନ, ନାରଦ—ଏପରି ସଂକଳ୍ପ ଫଳରେ, ଶେଷକୁ ମୋତେ ଦେଉଳରୁ ବାହାର କରେଇ ନ ବସ ।

ନାରଦ—ମା, ମା—

ଲକ୍ଷ୍ମୀ—( ହସି ) କଉତୁକ କରି କହିଲେ—ତୁମେ ଡରୁଛ ? ଛି···ଦେଖ, ମୁଁ ଓଷବ୍ରତମାନଙ୍କ ହୁଳହୁଳି ଶୁଣି, ବାହାରକୁ ଧାଇଁ ଆସିଥିଲି—ତୁମ ଗୀତ ଶୁଣି, ତୁମ ପାଖକୁ ବାହାରି ଆସିଲି !—ଜାଣ ତ ଆଜି ସୁଦଶାବ୍ରତ, ମୋ'ର ଖାସ୍ ପୂଜା; ସେଥିପାଇଁ ବେଢ଼ା ଭିତରେ ଯେଉଁ ଉତ୍ସବ ହେବ, ତା'ର ଆୟୋଜନ, ଚହଲ ଚହଲ, ଏତେବେଳୁ ଲାଗି ଗଲାଣି । ଏ' ଭାଗ ନିରୋଳା ସ୍ଥାନ—ଏଇଠି ଆମ ଦୁହିଁଙ୍କ ଭିତରେ କଥାବାର୍ତ୍ତା ବେଶ୍ ସୁରୁଖୁରୁରେ ହେବ ।

ନାରଦ—ମା ! ବେଢ଼ା ଭିତରେ ଏତେ ଉତ୍ସବ—ବେଢ଼ା ବାହାରେ ନାହିଁ କାହିଁକି ? ଆଜି ପିଠା ପଣାରେ ଦେଉଳ ଭିତର ଭାସିଯିବ, ଦେଉଳର ଲୋକଙ୍କ ପାଇଁ—ଦେଉଳ ବାହାରେ ଯେଉଁ-ମାନେ, ସେହି ବାହାର ଲୋକେ 'ହା ଅନ୍ନ, ହା ଅନ୍ନ' ବୋଲି ଉଚ୍ଛନ୍ନ ହେଉଥିବେ—ଏହି କଥା ପିନା ଦେଖିବ ।

ଲକ୍ଷ୍ମୀ—ଏ କଥା ତୁମଠୁ ଆଜି ନୂଆ ଶୁଣୁଛି, ନାରଦ !

ନାରଦ—ବେଢ଼ା ଭିତରେ ଆପଣାକୁ ଅବଦ୍ଧ ରଖି, ବେଢ଼ା ବାହାର ଖବର କେମିତି ରଖିବ, ମା ?

ଲକ୍ଷ୍ମୀ—ତେବେ ସେହି ହୁଳହୁଳି ଧ୍ୱନି, ବେଢ଼ା ପ୍ରାଚୀର ଭେଦ କଲା କେମିତି ? ମୋ କାନକୁ ଗଲା କିପରି ?

ନାରଦ—ତେବେ, ଗୋଟିଏ ଚଣ୍ଡାଳୁଣୀର ନୀରବ ମର୍ମଭେଦୀ ଡାକ, ତୁମର ମର୍ମକୁ ଭେଦ ନ କରି ରହୁଛି କିପରି, ମା ?

ଲକ୍ଷ୍ମୀ—ଚଣ୍ଡାଳୁଣୀର—( ହସିଲେ )

ନାରଦ—ଚଣ୍ଡାଳୁଣୀ ମଧ୍ୟ ତୁମର ସନ୍ତାନ, ମା !

ଲକ୍ଷ୍ମୀ—ଛାର କୀଟ ପତଙ୍ଗ ମଧ୍ୟ, ନାରଦ !

ନାରଦ—ଇଥାପି, ସେହି ଚଣ୍ଡାଳୁଣୀ ଅନ୍ତର ଛାର—ତା'ର ଦୁଃଖ ଅପାର ।

ଲକ୍ଷ୍ମୀ—ଓ, ତୁମେ ତା' ପକ୍ଷ ମଧ୍ୟସ୍ଥ ହୋଇ ଆସିଛ ତାହାହେଲେ ?

ନାରଦ—ପାଷାଣ-ଦେବତାଙ୍କୁ ଜାଗ୍ରତ କରିବା ସକାଶେ, ମଧ୍ୟସ୍ଥର ବେଳେ ବେଳେ ପ୍ରୟୋଜନ ହୋଇଥାଏ, ମା—

ଲକ୍ଷ୍ମୀ—ଏ ତୁମର କପୋଳ କଳ୍ପନା ! ଦେବତା ସଦାବେଳେ ଜାଗ୍ରତ, ନାରଦ !

ନାରଦ—ମୁଁ ତେବେ ଶ୍ରିୟା ଚଣ୍ଡାଳୁଣୀର ଦୁଃଖ ଦୁର୍ଦ୍ଦଶା ଦେଖି, କଣ ବଡ଼ୁରିବ, ମା ?

ଲକ୍ଷ୍ମୀ—ନାରଦ ! ତୁମେ ଏହି ମର୍ତ୍ତ୍ୟ ଧାମରେ ପାଦ ଦେଇ, ମର୍ତ୍ତ୍ୟଭାବାବେଶରେ ଭାସି ଯାଉଛ । ଯା'କୁ ତୁମେ ମାନବର ଦୁଃଖ ବୋଲି ମଣୁଛ, ସେ ଯେ ତାର ପରମ ସୁଖ ବା ସୁଖର ହେତୁ ନୁହେଁ, କିଏ ତା' କହିବ ?—ଗର୍ଭ ଯନ୍ତ୍ରଣା ମା ବରଣ କରି ନେଇଥାଏ, ତା'ର କାରଣ—ଏହି ଦୁଃଖରେ ନିହିତ ରହିଛି, ମାତୃ ଆନନ୍ଦର ଉତ୍ସ !

ନାରଦ—ଚଣ୍ଡାଳୁଣୀର ଦୁଃଖ. ପରମ ଆନନ୍ଦର ଉତ୍ସ ହୋଇ ଠିଆ ହେଉ, ଏତିକି ମିନତି ଶ୍ରୀଚରଣରେ, ମା !

ଲକ୍ଷ୍ମୀ—ନାରଦ, ଚଣ୍ଡାଳ ହେଉ—ବ୍ରାହ୍ମଣ ହେଉ, ଯା'ର ଦୁଃଖ କଷ୍ଟ ହେବ, ସେ ତ ସଫା ସଫା ତାର ମା ପାଖକୁ ଧାଇଁ ଆସିବ—ସଫା ମା'କୁ ଜଣାଇବ; ମା ତା'ର ପ୍ରତିକାର କରିବ ସ୍ୱୟଂ । ଏ' ମା ଓ ସନ୍ତାନର ଖେଳ, ଏଥିରେ ତ କାହାର ମଧ୍ୟସ୍ଥତା ଦରକାର କରେ ନା—କି ଜପ ତପର ପ୍ରୟୋଜନ ହୁଏ ନା ।

ନାରଦ—କିନ୍ତୁ······

ଲକ୍ଷ୍ମୀ—କିନ୍ତୁ କଣ ?

ନାରଦ—ତୁମେ ରାଜ-ଲକ୍ଷ୍ମୀ—ରାଜପୁରୀ ମଧ୍ୟରେ ତୁମର ଅଧିଷ୍ଠାନ—ଚାରିଆଡ଼େ ବେଢ଼ା ପ୍ରାଚୀର—ଚାରିପଟେ ସଜାଗ ପ୍ରହରୀ । ଦୀନ ହୀନ ଅରକ୍ଷିତ କାଙ୍ଗାଳ ଚାହାଣ୍ଡି ଜଣେଇବ, ପ୍ରବେଶର ସୁଯୋଗ ପାଇଲେ ତ ? ବିଶେଷରେ ଚଣ୍ଡାଳ ଜାତି, ଯାହା ପ୍ରତି ରହିଚି ସମାଜର ଅଲଙ୍ଘ୍ୟ କଣ୍ଟକଣା—ବେଢ଼ା ପ୍ରବେଶ ଯେମ ।

ଲକ୍ଷ୍ମୀ—ନାରଦ—

ନାରଦ—ମା······

ଲକ୍ଷ୍ମୀ—ତୁମେ ଏତେ ଦୂର ବିମୂଢ଼ ହୋଇଯାଇଛ ଦେଖି, ମୁଁ ଆଶ୍ଚର୍ଯ୍ୟ ମଣୁଛି । ଏ ଭାରି ସାଧାରଣ କଥା । ସନ୍ତାନ ଯେତେବେଳେ ଉତଳ ବିକଳ ହୋଇ ତା'ର ମା'କୁ ଖୋଜିବ, ଲୋଡ଼ିବ—ସେତେବେଳେ ମଣିଷ ଗଢ଼ା କାଠ ପଥରର କୌଣସି ହାଡ଼ ବାଡ଼ ବା ସମାଜ ଶାସ୍ତ୍ରର କୌଣସି ବିଧି ନିଷେଧ, ତା'କୁ ରୋକି ବାଧା ଦେଇ ପାରିବ ତ ?

ନାରଦ—ମା······

ଲକ୍ଷ୍ମୀ—ତଥାପି ବିଶ୍ୱାସ ହେଉନାହିଁ ? ରାବଣ ପରି ଦୁରନ୍ତ ସନ୍ତାନ—ସେ ଯେତେବେଳେ ଆତୁର ହୋଇ 'ମା' 'ମା' ବୋଲି ଡାକିଲା, ସେତେ-ବେଳେ ସେହି ବ୍ୟାକୁଳ ଆହ୍ୱାନକୁ ଅଡ଼େଇ ଦେଇ ନ ପାରି, ସ୍ୱୟଂ ଦଶଭୁଜା ପରି ରାବଣ-ରଥରେ ଅବିର୍ଭୂତା ହୋଇଥିଲେ—ଆଉ ଦଶମାଥକୁ କୋଳରେ ଧାରଣ କରି, ସ୍ୱୟଂ ଶ୍ରୀ ଭଗବାନଙ୍କର ଶରମୂନକୁ ଆପଣାର ବକ୍ଷ ପାତି ଦେଇଥିଲେ—ପରିଣାମରେ, ଦେବ ଓ ଦେବୀଙ୍କ ମଧ୍ୟରେ ଘଟିଥିଲା ବିଷମ ବିରୋଧ ।

ନାରଦ—ମା, ତୁମେ ବେଢ଼ା ଭିତରକୁ ଫେରି ଚାଲ ତ ।

ଲକ୍ଷ୍ମୀ—ଅସ୍ଥିର ହେବ ନି, ନାରଦ ! ମୁଁ ଦିବ୍ୟ ଆଖିରେ ଦେଖିପାରୁଛି—ଚଣ୍ଡାଳ ସାହିରେ ତୁମର ଚଣ୍ଡାଳୁଣୀଟି ଷୋଡ଼ଶୋପଚାରରେ ମୋର ପୂଜାର ଆୟୋଜନ କରୁଛି, ଆଉ ନିର୍ମଳ ମନରେ ମୋତେ ଆବାହନ କରୁଛି; ଆଉ ତ ମୁଁ ଫେରିଯାଇ ପାରେ ନା ଭିତରକୁ !—ଆସୁଛି, ନାରଦ ! ହଁ, ତୁମକୁ ନିମନ୍ତ୍ରଣ ରହିଲା—ଆହୁରି ଇନ୍ଦ୍ରାଦି ଦେବତାଙ୍କୁ ମୋର ହୋଇ ନିମନ୍ତ୍ରଣ କରି ଯେମ ଆସିବ ତ ଭାରି ଖୁସି ହେବି । (ଗମନୋଦ୍ୟତା)

ନାରଦ—ମା, ମୋର ଗୋଟିଏ ଅନୁରୋଧ ।

ଲକ୍ଷ୍ମୀ—କି ଅନୁରୋଧ ?

ନାରଦ—ବାହାରକୁ ଯିବେ ନାହିଁ ।

ଲକ୍ଷ୍ମୀ—(ହସି) ସେହି ତ୍ରେତା-ଯୁଗର ଦେବ ଦେବୀ-ବିରୋଧ କଥାକୁ ହେଜି, ଦବା କରୁଛ ତ ?

ନାରଦ—ଯଦି ପ୍ରମାଦ ଘଟେ—

ଲକ୍ଷ୍ମୀ—ଲକ୍ଷ୍ମୀ ଜନାର୍ଦ୍ଦନଙ୍କ ମଧ୍ୟରେ କଳି ହେବ, ଏହି କଳିଯୁଗରେ—ଯାହାଠୁଁ ଆଉ ଅଧିକ କ'ଣ ?

ନାରଦ—ସର୍ବଦର୍ଶୀ ମା—

ଲକ୍ଷ୍ମୀ—ହେଲେ, ନାରଦ—ମୋର ପତି ବଡ଼, ନା ପତିର ଅଦର୍ଶ ବଡ଼ ? (କହି ଚାଲିଗଲେ)

ନାରଦ—[ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ଓ ନତଶିର ହୋଇ ପ୍ରଣାମ କଲେ ]

---

## ପଞ୍ଚମ ଦୃଶ୍ୟ

[ ଶ୍ରୀୟା ଚଣ୍ଡାଳୁଣୀର ଘର ଦେଖାଗଲା । ଶ୍ରୀୟା ଘରେ ନ ଥିଲା—ହେଲେ, ତାର ବ୍ରତ-ଉପକରଣମାନ ସଜାଡ଼ୁ ଥିଲେ ଲକ୍ଷ୍ମୀଦେବୀ ନିଜେ, ମାୟା-ରୂପରେ ମାୟା-ସିମନ୍ତିନୀମାନଙ୍କ ଗହଣରେ ଥାଇ । ସେମାନେ କାମଦାମ କରୁ କରୁ ଗାଉଥିଲେ ]

—ଗୀତ—

ଦୁନିଆର ମା ଆଜି ଦୀନ ଦୁଆରେ
ଦୟାସାଗରୀ ଭୁଲେ କି ଅଛୁଆଁ ତାର ଛୁଆଁରେ । ୦ ।
୧ମା—ଦଅଗୋ ସଙ୍ଗାତ ମୁରୁଜେ ତାଟି ପଦ୍ମମଣ୍ଡଳ,

୨ୟା—ପଞ୍ଚାମୃତରେ ସ୍ନାନ କରି ଲକ୍ଷ୍ମୀ ଗୁଅ
ଖଟୁଲିରେ ସଜ କର ଗୋ,
ମୋର ପେଡ଼ି ବଇଲ···
୩ୟା—ଦଶଖିଅ ସୂତା ଅଶୋକା ଧରି
ଦଶ ଗୋଟି ଗଣ୍ଠି ଯତନେ ଭିଡ଼
୪ର୍ଥୀ—ଦଶ ନାଡ଼ ଦୁବ ଦେଇ
ବାନ୍ଧ ସେ ବରତ ସୂତ୍ର—
ସମସ୍ତେ—ଚନ୍ଦନ ଛିଟା ଦିଅରେ··· । ୧ ।
୧ମା—ଦୋଟି ଶତା ଗ୍ରନ୍ଥିଦିଅ ଲବଙ୍ଗଲତା ଗୋ,
ନେଳି ନେଳି ଫୁଲ ଫଳେ ଅତି ଶୋଭିତା ଗୋ ।
ସମସ୍ତେ—ମହକି ଉଠୁ ଏ ପୁର
ଝୁଣା ଗୋଗୁଳ ଧୂଆଁରେ । ୨ ।
ଦଶ ଜାତି ପୁର ଦେଇ ଜାଇ ଫୁଲ
ଦଶ ଗୋଟି ମଣ୍ଡା ଗଢ଼ ।
ସାଆନ୍ତାଣୀ ତୁଣ୍ଡ ସୁଆଦ ବାରିଲେ
ଯାଚିବେ ଅଭୟ ବର, ଅଭଡ଼ା ଗୋ ମୋର ।
ଅଭଡ଼ା ଗୋ କରଥା' ଆଶ
ସୁପ୍ରସନ୍ନା କଲେ ସେ ହୋଇବ ନିମିଷେ
ପତିର କୁଡ଼ିଆ ରାଜା ଉଆସ ଗୋ,
କରଥା' ଆଶ ।—
ଚରଣେ ଜଣାଅ, ତା'ର
ମନକାମନା ଯାହାରେ···।
[ ଗୀତ ଚାଲୁଥିଲା ବେଳେ ନାରଦ ଆସି ଅଗଣାର ଗୋଟାଏ କରପଟେ ଛିଡ଼ା ହୋଇ ଦେଖୁଥିଲେ । ଗୀତ ଶେଷ ହେଲା—ସିମନ୍ତିନୀ-ମାନେ ଉଭେଇ ଗଲେ । ରହିଲେ କେବଳ ଲକ୍ଷ୍ମୀଠାକୁରାଣୀ ]
ନାରଦ—ଏ କି ଭେଳକି !—ମୁଁ ସ୍ୱପ୍ନ ଦେଖୁ ନ ଥିଲି ତ ?
ଲକ୍ଷ୍ମୀ—ନାରଦ—
ନାରଦ—ମା—( ଚମକି ପଡ଼ି ଚାହିଁଲେ )
ଲକ୍ଷ୍ମୀ—ନାରଦ ! ତୁମେ ମୋତେ ସନ୍ଦେହ କରି, ମୋ' ପଛେ ପଛେ ଆସିଥିଲ, ଜାଣେ । ଏବେ ସେହି ସନ୍ଦେହ ତୁଟିଲା ତ ?
ନାରଦ—( ନତ ମସ୍ତକ ହୋଇ ) ଅଧମ ସନ୍ତାନକୁ ଆଉ ଲଜ୍ଜା ଦେବ ନାହିଁ, ମା—ଆସୁଛି ।
( ଚାଲି ଯାଉଥିଲେ )
ଲକ୍ଷ୍ମୀ—ଦେଖ, ନାରଦ—ନିମନ୍ତ୍ରଣ କଥା ଯେପରି ଭୁଲି ନ ଯାଅ ।
ନାରଦ—କେବଳ ସ୍ୱର୍ଗ-ବାସୀଙ୍କୁ ନିମନ୍ତ୍ରଣ କରି ଦେଇ ଆସିବି ନାହିଁ ମା—ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି-ପୁରର ଅଧିବାସୀଙ୍କୁ ନିମନ୍ତ୍ରଣ କରି, ସାଥିରେ ଧରି ଆସିବି ମା !—ଆଜି ସୁଦଶାବ୍ରତ—କେତେ ଜାତିର ଖିରି ପିଠା, ମା ନିଜେ ରାନ୍ଧିବେ, ନିଜେ ପରଷିବେ—ମୁଁ ଖାଇବି, ଖୁଆଇବି, ଏ' କି ଅଳ୍ପ ସୌଭାଗ୍ୟର କଥା, ମା !
( ପ୍ରଣାମ କରି ପ୍ରସ୍ଥାନ କଲେ )
ଲକ୍ଷ୍ମୀ—ହାୟ ! ଯେଉଁ ଚଣ୍ଡାଳୁଣୀ ପାଇଁ ଏତେ ଦରଦ ତୁମର ନାରଦ, ସେହି ଚଣ୍ଡାଳୁଣୀର ହାତ ରନ୍ଧଣା ଓ ପରଷାକୁ ମନ ବଳାଇ ଦରଦ ଦେଖାଇଥାନ୍ତ ଯଦି, ତେବେ ସୌଭାଗ୍ୟର କଥା ବୋଲି କହି-ଥାନ୍ତି !
[ ଠିକ୍ ଏହି ସମୟରେ ପାଟି ତୁଣ୍ଡ କରୁ କରୁ ଶ୍ରୀୟା ପ୍ରବେଶ କଲା—ସେ ସ୍ନାନ ସାରି ଆସିଥାଏ ]
ଶ୍ରୀୟା—(ମନକୁ ମନ) ରାତି ଅଧରୁ ଉଠି, ଝିଅଟାକୁ ନାଥିଆ-ବୋଉ ପାଖରେ ଛାଡ଼ି ଦେଇ ଆସି, ଯେତେ କରି କଅଁ ଲେଇ ସଅଁ ଲେଇ କହିଲି ବୁଲା-ବାପାଟାକୁ—'ହଇ ହେ, ବର୍ଷକରେ ଆଜି ଦିନଟିଏ, । ମୁଁ ଯାଉଚି ଲକ୍ଷ୍ମୀ ଦାଣ୍ଡଟା ଖରଡ଼ି ଦେବି—ତା' ନ ହେଲେ, ରାଇଜର ଓଷଉଆସକ ଗାଧୁଆ ପାଧୁଆ ସାରି ସେଇ ବାଟେ ଯିବେ—ଯା' ତା' ଗୁଡ଼ାଏ ମାଡ଼ିବେ ଗୁଁ ଠିବେ--ପୂଜା ମାଟି ହବ ତ !—ଆଉ ତୁମେ ବାପ-ପୁଅ ମିଶି, ଖାଲି ଆଜି ଦିନକପାଇଁ, ଗୁଣ୍ଡିଚା ଦାଣ୍ଡଟା ଓଳେଇ ଦିଅନ୍ତ କି'···ହେଲେ, କିଏ ଯେମିତି କାହାକୁ କହୁଛି । ଚାଲିଗଲେ ବାପ ପୁଅ ଦୁହେଁ ଫିଙ୍ଗାଫିଙ୍ଗି ହୋଇ କେଉଁ ଗାଡ଼କୁ !—ନେ' ମ—ଯା' ହଉ, ଗୁଣ୍ଡିଚା ଦାଣ୍ଡଟା ଯାଇ ତାଇ ଝାଡ଼ୁ ମାରିଦେଇ

ଇନ୍ଦ୍ରଦ୍ୟୁମ୍ନରେ ବୁଡ଼ଟାଏ ପକେଇ ଧାଇଁଛ ତ; କେତେବେଳେ ଯେ ଘର ଲିପିବ—( ଘରକୁ ଚାହିଁ ) ଏ୍ୟୁ କଣ ?

ଲକ୍ଷ୍ମୀ—ମା, ତୁମର ପୂଜା ପୂଜକ ଯାହା କିଛି ଲୋଡ଼ା, ତା' ଆଉ ବାକୀ ରହିନାହିଁ, ମା ।

ଶ୍ରୀଯୁ—( ଗୋଟାଏ ଧଡ଼ସରେ ) ହେଲେ, ହାଣ୍ଡି ପଡ଼ିଛି ତ ? ଅଇଁଠା ବାସନ ମଜା ହେଇଛି ତ ? ସେଇ ବ୍ରେଷ-ଶାଳଟା ଲିପାପୋଛା ହେଇଛି ତ ?

ଲକ୍ଷ୍ମୀ—( ଚାଲିଗଲେ ଭିତରକୁ ) ମୋର ହୋଇ୍ ନାହିଁ, ମା—

( ଅଇଁଠା ବର୍ତ୍ତନ ଆଣି ମାଜି ବସିଲେ )

ଶ୍ରୀଯୁ—( ଚାରିଆଡ଼ ଚାହିଁ ଦେଖୁଥିଲା, ମନ୍ତ୍ରମୁଗ୍ଧ ପରି ) ଅଲୋ ଲୋ, କରୁଛୁ କ'ଣ ? ତୁ କିଏ ଲୋ ?

ଲକ୍ଷ୍ମୀ—ମୁଁ ଯିଏ ହୁଏ, ହାଣ୍ଡି ପକେଇ ଦେଇଛି, ମା—ବାସନ ମାଜସାରି, ବ୍ରେଷ-ଶାଳଟା ଲିପି ପୋଛି ଦେଇଛି, ଅଣି ପିଚୁଡ଼ାକେ···

ଶ୍ରୀଯୁ—ତୁ କିଏ, ଆଗ କହତ ? ( ବାଧା ଦେବାକୁ ଧାଇଁଗଲା )

ଲକ୍ଷ୍ମୀ—ଛୁ—ଛୁଇଁବ ନାହିଁ, ମା—ମୁଁ ପରା ଅଇଁଠା ବାସନ ମାଜୁଛି—ତୁମେ ଗାଧୋଇଛ—

ଶ୍ରୀଯୁ—ହଉଲୋ, ତୁ କିଏ ?

ଲକ୍ଷ୍ମୀ—ତୁମରି ଝିଅ, ମା—

ଶ୍ରୀଯୁ—(କିଛିକ୍ଷଣ ଚାହିଁ) ଆହା ! କି ନିଖୁଣ ଚେହେରାଟି !—ତୁ ଏମିତି ତେରେଛେଇ ଚାହୁଁଛୁ ଯେ··· ଢେର୍ କି ଲୋ ?

ଲକ୍ଷ୍ମୀ—ହଁ ମା, ସେଇଟିକକ ତ ମୋର ଖୁଣ—

ଶ୍ରୀଯୁ—'ଖୁଣ' ନୁହେଁ ଲୋ, ସେଇଟିକକ ତୋର ଗୁଣ—

ଲକ୍ଷ୍ମୀ—ଝିଅଟାକୁ ଟାହୁଲି କରୁଛ ତ, ମା ?

ଶ୍ରୀଯୁ—ଅଲୋ ମା, ଦୁନିଆଟା ପରି ତୁ ସିଧା ସଳଖ ଚାହୁଁଥିଲେ, ଆଜି ଆସି ଚଣ୍ଡାଳୁଣୀର ଅଇଁଠା-ବାସନ ମାଜୁ ନଥାନ୍ତୁ ଲୋ—

ଲକ୍ଷ୍ମୀ—ହଁ, ମା—ବର୍ତ୍ତନ ଧୁଆ ସରିଛି । ବ୍ରେଷ-ଶାଳଟା ଏବେ ଲିପା ପୋଛା କରି, ଗାରେ ଗାରେ ଚିତା ମାରି ଦେଉଛି ।—ତୁମେ ବେଗି ବେଗି ଭୋଗ ରାଗ ସଜଡ଼ା ସଜଡ଼ି କରି ତ—ପୂଜାବେଳ ଗଡ଼ି ଯାଉଛି—

ଶ୍ରୀଯୁ—ତୋତେ ବି ଭୋକ ଦାଉ ଲାଗିବଣି ଝିଅ, ନା ?

ଲକ୍ଷ୍ମୀ—ଲାଗିବ ନି ? ଯଉଁ ଜଞ୍ଜାଳ ପୂରେଇ ରଖିଥିଲ ଘରେ—କଉଁ ବାପା-ଦାଦା ଅମଳର କେଜାଣି—ଏକୁଟିଆ ସଫା କରିବା କ'ଣ ମୁହଁରେ ପଡ଼ୁଛି ?

( ଭିତରକୁ ଚାଲିଗଲେ )

ଶ୍ରୀଯୁ—ମୁଁ କାହାକୁ କ'ଣ କହୁଛି ଯେ ! ଅଲୋ, ଏ କିଏ ଲୋ ? ଚଣ୍ଡାଳୁଣୀ ଘରକୁ ଆସି—ଚଣ୍ଡାଳୁଣୀ ଘରେ ପଶି—ଚଣ୍ଡାଳୁଣୀର ମାନମହତ କାହିଁରେ କ'ଣ ବଢ଼େଇଦେଇଚି !—ନା, ନା, ତା' ହବ ନି—ନିଶ୍ଚେ ସେ ବ୍ରାହ୍ମଣୀ । ମୁଁ ଚଣ୍ଡାଳୁଣୀ—ମୁଁ ତାକୁ ତଡ଼ିବି, ମୁଁ ତାକୁ ତଡ଼ିବି—

[ ଭିତରକୁ ଚାଲିଗଲା ଅନ୍ୟ ବାଟରେ । ଲକ୍ଷ୍ମୀ ଆସି ପୂଜା ଖଟୁଲି ପାଖରେ ଠିଆ ହେଲେ ]

ଶ୍ରୀଯୁ—( ଫେରଆସି ) କୁଆଡ଼େ ଗଲା ? କେଡେ ଚଟ-ପଟିଆ ଲୋ ମା ! ଦେଖୁ ଦେଖୁ ବ୍ରେଷ-ଶାଳ ଖଣ୍ଡକ ଲିପି ପୋଛି, ଚିତା ଚଢ଼େଇ, ଉଜ୍ଜ୍ୱଳ କରି ଦେଇଛି ! (ଦେଖି) ଏଇ ତ !—ମା, ତୁମ ଗୋଡ଼ତଳେ ପଡ଼ୁଛି, ତୁମେ ଏଠୁ ଚାଲି ଯାଅତ—

ଲକ୍ଷ୍ମୀ—ମତେ ତଡ଼ି ଦେଉଛ ତ, ମା ?

ଶ୍ରୀଯୁ—ଆମେ ପରା ଚଣ୍ଡାଳ ଜାତି—ଜନ୍ମିଛୁ ଜଗତର ସେବା କରିବାକୁ !

ଲକ୍ଷ୍ମୀ—ଜଗତର ସେବା ନେବାକୁ ନୁହେଁ—ଏଇ କଥା ତ ? ହେଲେ—

ଶ୍ରୀଯୁ—'ହେଲେ' ଆଉ କହିବ ନି, ମା—ହେଲା ଆଉ କରନା—

ଲକ୍ଷ୍ମୀ—କେମିତି ନ କହିବି ଯେ ? ତୁମର ଯା' ହକ୍ ଦାବି—ସେ ଦାବି-କଥା ତୁମକୁ ଚେତାଇ ଦେବି ତ ?

ଶ୍ରୀଯୁ—ଆମର ହକ୍ ଦାବି ?

ଲକ୍ଷ୍ମୀ—ହଁ । 'ଜଗତର ସେବା କରିବାକୁ ଜନ୍ମିଛି—ଜଗତର ସେବା ନେବାକୁ ନୁହେଁ'—ଏଇ ପରମ ଭାବକୁ ଆଦରି, ପରସେବାରେ ମନ ପ୍ରାଣ ଢାଳି ଦେଉଥାଏ ଯେଉଁ ଚଣ୍ଡାଳ ଜାତି, ତା'ର ସେବା

ଭର, ବଡ଼ ମଣିବାକୁ ଜଣେ ମାନ ରହୁଚ ଏ' ତ୍ରିଭୁବନରେ—ତା'କୁ ବଡଦେଉଳରୁ ଓହ୍ଲାଇ ଆଣିବ, ଏ' ଦାବ ତୁମର ଭୁଲିଲେ ତ ଚଳିବ ନି, ହିଁଅ ।

ଶ୍ରୀଯୁ—ସେ କିଏ ?

ଲକ୍ଷ୍ମୀ—ଆଖି ବୁଜ, ଦେଖି ପାରିବ ।

[ ଆଖି ବୁଜିଲା । ସମସ୍ତ ଅନ୍ଧକାର ହୋଇଗଲା । ଲକ୍ଷ୍ମୀଦେବୀ ନିଜ ମୂର୍ତ୍ତି ଧରି ପୂଜା ଖଟୁଲି ଉପରେ ଠିଆହେଲେ ]

ଲକ୍ଷ୍ମୀ—ଦେଖୁଛ ?—

ଶ୍ରୀଯୁ—ଦେଖୁଚି, ହେଲେ—

ଲକ୍ଷ୍ମୀ—ହେଲେ ?—

ଶ୍ରୀଯୁ—ଝାପ୍‌ସା—ଝାପ୍‌ସା—

ଲକ୍ଷ୍ମୀ—ଅଚ୍ଛା, ଆଖି ଖୋଲ ଏଥର—

[ ପୁଣି ସମସ୍ତ ଆଲୋକିତ ହୋଇଗଲା—ଲକ୍ଷ୍ମୀଙ୍କ ସ୍ୱରୂପ ସ୍ପଷ୍ଟ ଦେଖାଗଲା ]

ଶ୍ରୀଯୁ—ଏଁ ଏଁ । କି ଉଜ୍ଜ୍ୱଳ ମୂର୍ତ୍ତି । ତୁମେଇ କି ଲକ୍ଷ୍ମୀଠାକୁରାଣୀ ? ମା, ମା,—( ପ୍ରଣାମ କଲାବେଳେ, ଅନ୍ଧକାର ହୋଇଗଲା । ଲକ୍ଷ୍ମୀଦେବୀ ଅନ୍ତର୍ଦ୍ଧାନ ହୋଇଗଲେ ) ଶ୍ରୀଯୁ ଉଠି, ଖୋଜୁଥିଲା ଗୁଡ଼ିଆଡ଼େ ଚାହିଁ ? କାହିଁ ଉଭେଇ ଗଲେ ?

[ ବୁଲା ଆଉ ତା' ବାପ ଗୋଟାଏ ହାଣ୍ଡିକୁ ଘୋରକରି କାନ୍ଧେଇ ପ୍ରବେଶ କଲେ ]

ବୁଲା-ବାପ—ବୁଲା-ବୋଉ, ଏ ବୁଲା-ବୋଉ ।

ବୁଲା—ଏଠି ଥୋଇବା, ବା' ?

ବୁଲା-ବାପ—ହଉ, ଥୋ—

ଶ୍ରୀଯୁ—ତମେ ?—ଦେଖିଚ ?—ଦେଖିଚ ତା'ଙ୍କୁ ?

ବୁଲା-ବାପ—ତା'କୁ ବା ?—ଆମେ ତ ଦେଖିଚୁ ଯାକୁ !

( ହାଣ୍ଡି ଭିତରକୁ ଦେଖାଇଲା )

ବୁଲା—(କୌତୁକ କରି) ହଁ, ଏଇ ଘୁଷୁରି ମୁଣ୍ଡ ।

ଶ୍ରୀଯୁ—ତୁମ ମୁଣ୍ଡ ଆଉ ଗଣ୍ଡି । ଆଜପରି ଦିନରେ ! ଓହୋ ହୋ । ଏଇଥିପାଇଁ ଲକ୍ଷ୍ମୀଠାକୁରାଣୀ ଘରକୁ ଆସି—ଘରୁ ଉଭେଇ ଗଲେ ।

( ବାଉଳା ହୋଇଗଲା )

ବୁଲା ଓ ବୁଃ ବପା } ( ହସିବାକୁ ଲାଗିଲେ ପରସ୍ପରକୁ ଚାହିଁ )

ଶ୍ରୀଯୁ—ହସ, ଥଟ୍ଟା !···ତୁମ ଘର ଏଣିକି ତୁମେ ସମ୍ଭାଳ—ମୁଁ ଆଉ ଏଠି ରହିବ ନି—ଯେତକ ଗୁଡ଼ିଲ ପକେଇଥିଲି ଏ' ଘରେ, ସେତକ—ମା, ମା

( ଯିବାକୁ ଉଦ୍ୟତ )

ବୁଲା-ବାପ—( ଓଗାଳି ) ଯିବୁ କୁଆଡ଼େ ବା' ? ଯୁାକୁ ନେ, ତା' ବାଦେ 'ଯେଣିକି ଆଖି, ସେଣିକି ଯା' ।

ଶ୍ରୀଯୁ—ମୁଁ ମୁଣ୍ଡ ପିଟି ଦଉଚି—ତୁମେ ବାପ୍ ପୁଅ ଦହେଁ ସେଇ ମୁଣ୍ଡକୁ ରାନ୍ଧି ବାଢ଼ି ଖାଅ—

ବୁଲା-ବାପ—ହେଲେ, ଏ' ମୁଣ୍ଡରୁ ଦଣା କଣ ହେବନି ?

[ ଘୋଡ଼ଣୀ ଖୋଲି ଓଜାଡ଼ି ଦେଲା ]

ଶ୍ରୀଯୁ—ଏଁ । ସେ କଣ ବା' ?

ବୁଲା—(ହସି) ଘୁଷୁରି ମୁଣ୍ଡ···

ଶ୍ରୀଯୁ—(ଦେଖି) ସୁନାର ମୁଣ୍ଡ !···ମୁଣ୍ଡାଏ ସୁନା !··· ଆଲୋ କିଏ ଦେଖି ପକେଇବ ଲୋ—ଚାଲି ମୁଣ୍ଡରେ ନେଇ ପୋତି ପକାଏଁ ଆଗ । (ଚାଲିଗଲା)

ବୁଲା—ବା', ବୋଉ କହେ, ଆମେ ଖଣ୍ଟ—

ବୁଲା-ବାପ—ସେମିତି ନ କହିଲେ, ଜଗୁଆଳି ବାଣ୍ଟ ନ'ବ କେମିତି ?

ନାଥ-ବୌ—(ନେପଥ୍ୟେ) ବୁଲା !···ବୋଉ ନାହିଁ କି ରେ ?

ବୁଲା—ବା'···ନାଥ-ବୌ—

ବୁଲା-ବାପ—କହିଦେ—ବୋଉ ଘରେ ନାହିଁ···

ନାଥ-ବୌ—(ନେପଥ୍ୟେ) ବୋଉ ସାଙ୍ଗେ ଦରକାର ନାହିଁ—ହେଇ ଦେଖ, ତୁମ ଲେଙ୍ଗଡ଼ ବୁଲି କେମିତି ସଳଖ ଗୋଡ଼ରେ ଚାଲିଆସିଚି ।

ବୁଲା—ବୁଲି···ବୁଲି···(ପ୍ରସ୍ଥାନ)

ଶ୍ରୀଯୁ—( ଧାଇଁ ଆସି ) ବୁଲା ବା'—

ବୁଲା-ବାପ—ବୁଲା-ବୋଉ ।

ଶ୍ରୀଯୁ—ବୁଲା-ବା'···

[ ଆନନ୍ଦରେ ଅଧୀର ହୋଇ ନାଚିବାକୁ ଲାଗିଲେ ]

---

## ଷଷ୍ଠ ଦୃଶ୍ୟ

[ ଦୃଶ୍ୟ ପରିବର୍ତ୍ତିତ ହେଲା । ଚଣ୍ଡାଳ ସାହିକୁ ପଡ଼ିଥିବା ବାଟ ମୁହଁ ଦେଖାଗଲା । ସେଠାରେ ଗୋଟାଏ ଙ୍କାଙ୍କଡ଼ା ବରଗଛ—ତା' ମୂଳେ ପେଚ୍ଚୁ ବସି ପେଚ୍ଚୁର ଡାକ ଡାକୁଥାଏ—କିଛି ଷଣ ପରେ ଗରୁଡ଼ ପ୍ରବେଶ କଲା ]

ଗରୁଡ଼—( ପାଖକୁ ଯାଇ ) ବାଃ···ପେଚ୍ଚୁ ତ !

ପେଚ୍ଚୁ—କିଏରେ ତୁ ?

ଗରୁଡ—ଦିନବେଳେ ତ ତୁ ଜଲକା—ଦେଖିବୁ କାହିଁ ?

ପେଚ୍ଚୁ—ମୁଁ ଜଲକା ?—ହଇରେ ନାକୁଆ ଗରୁଡ ।
( ଅଖି ଡୋଳା ବୁଲେଇବାକୁ ଲାଗିଲା, ଚକ୍ଷୀ ପରି )

ଗରୁଡ—ଦୁହାଇ, ଦୁହାଇ ନାକ-କାନ-ଖାଇ ଠାକୁରାଣୀ !···ଏମିତ ଚକର ଡ଼ୋଳା ବୁଲେଇ, ଏ' ମଥାଟାକୁ ଚକ୍‌କର ଖେଳାଇ ଦେବ ନି ।

ପେଚ୍ଚୁ—ଦେବି ଯେ ଥଣ୍ଟ ବସାଇ—ବାହାର, ବାହାର ଏଠୁ ।

ଗରୁଡ଼—ବାହାର ଯିବାକୁ କହୁଚୁ ଯେ—ହେଲେ, ଏ ତୋର ମଧୁରିଆ—ସନ୍ନିପାତିଆ—ଘଡ଼ ଘଡ଼—ଭିଟ ଭିଟ ଡାକର ମାଧୁରୀ ସମଜିବ କିଏ, କହ ତ ?

ପେଚ୍ଚୁ—( ଭାରି ଖୁସି ହୋଇ ) ଛାଡ଼, ତୋ' ଖାଉନ୍ଦ କାହାନ୍ତି କିରେ ?

ଗରୁଡ଼—ଅଲୋ, ଖାଉନ୍ଦ ଯାଇଛନ୍ତି ପାରିଧିକି ଘୋଡ଼ାରେ ଚଢ଼ି—ଏ' ଯାଏ ଫେରି ନାହାନ୍ତି । କାଳେ ଗରୁଡ଼ ବାହାନକୁ ଲୋଡ଼ୁଥିବେ ଗରୁଡ଼ାସନ, ଏଇଥି ବାବୁଙ୍କ ତାଙ୍କ ପାଖକୁ ଉଡ଼ି ଯାଉଥିଲି ଏଇ ବାଟେ—ତୋର ଠାବ ପାଇ ତ—

ପେଚ୍ଚୁ—ନାଇଁ କିନା ଟେଣୀ କରୁଡ଼ି ମଲୁ ଏଇ ବରଗଛ ମୂଳେ···

ଗରୁଡ଼—ଉଁ ହୁଁ, ଏହୁ ବରଦିଆ ଠାକୁରାଣୀଙ୍କ ଗୋଡ଼ତଳେ—

ପେଚ୍ଚୁ—( ସଗର୍ବେ ) ନାକା—

ଗରୁଡ଼—( ସେହ୍ନଭାବେ ) ପେଚ୍ଚୁ !—ହଁ, ପେଚୀ, ତୋ ଖାଉନ୍ଦାଣୀଙ୍କ ଖବର ତ କହିଲୁ ନି ?

ପେଚ୍ଚୁ—କହନା ସେ କଥା—କେଉଁ ମାଛି ଅନ୍ଧାରରୁ ବାହାରିଛନ୍ତି ନଗର ବୁଲି ଯେ···

ଗରୁଡ଼—ନଗର ବୁଲି ?

ପେଚ୍ଚୁ—ଅଜ୍ଞ ପରି ସୁଦେଶାବ୍ରତ—

ଗରୁଡ଼—ହେଲେ, ତୁ ଏଇ ଚଣ୍ଡାଳସାହିର ବାଟ-ମୁହଁରେ, ବରଗଛମୂଳେ କାହିଁକି ଯେ ?

ପେଚ୍ଚୁ—ଠାକୁରାଣୀଙ୍କର ହୁକୁମ । ଠାକୁରାଣୀଙ୍କର କି ଖିଆଲ ହୋଇଚି ଏଥର—ବ୍ରାହ୍ମଣ ସାହି ସାଧବ ସାହି ଛାଡ଼ି, ଏଥର ଚଣ୍ଡାଳ ସାହିରେ ବଢ଼େ ।

ଗରୁଡ଼—ହଇଲୋ, ତୁ କହୁଚୁ କ'ଣ ପେଚି ?

ପେଚ୍ଚୁ—କହିବି ଆଉ କ'ଣ ? ଚଣ୍ଡାଳ ଠାକୁରଙ୍କ ଘରଣୀ ଚଣ୍ଡାଳୁଣୀ ହେବେ, ସେ' ଆଉ ବେଶୀ କ'ଣ ?

ଗରୁଡ଼—ସେମିତ ଗରୁଡ଼ର ଘରଣୀ ପେଚ୍ଚୁ ହେବ, ସେ' ଆଉ ବେଶୀ କ'ଣ ?

ପେଚ୍ଚୁ—ହଇରେ ସାପଖିଆ—ବାଡ଼ିପଡ଼ା—

ଗରୁଡ଼—ତୁ ଗାଳ ଦେ' ପଛକେ, ହେଲେ ଶୁଣ—

( ଗୀତ )

ଗରୁଡ—ତୁ ହବୁ ନି ମୋ ସଜଣୀ ଏ ରୂପ ମନ ଲାଖି ଲୋ···
ପ୍ରୀତି ଖସଡ଼ା ପଥେ କରୁଡ଼ି ପଡ଼ିବି ମୁଁ ଝୁଙ୍କି ଲୋ ॥ ୦ ॥

ପେଚ୍ଚୁ—ଅ ହାହାହା, ମରି ଯାଉଁ ଥାଏ—
ଅମୂଲ ଟାକୁଆ ପାହାଡ଼ ନାକୁଆ
ନିଭ ଲୁଣିଆ ପଖୀରେ
ବୋହି ପଡ଼ୁଛି ଅଲଣା ରସ

ଗରୁଡ—ତୋ ଛଇ ଛଟକ ଦେଖି ଲୋ······ ॥୧॥

ପେଚ୍ଚୁ—ମରଣ ନାହିଁ—ପୋଡ଼ାମୁହାଁଟା, ସାପ ଖିଆଟା
( ଏ ଛତରାଟାକୁ କିଏ ପଚ୍ଚୁରେ ମ )

ଗରୁଡ଼—ତୁ ପରି ମୋ ନାଗରୀ ପ୍ରୀତ
ଆଉ ଏତେ ଜଣେ କିଏ ହବ କି ଲୋ ? ॥୨॥

ପେଗୁ—କାହିଁଗଲା ସେ ଖଣ୍ଡିଆ ଝାଉଁ
ଗଲାକି ନାହିଁ ମୋ ମୁହଁ ଆଗରୁ ?

ଗରୁଡ଼—ହଁ, ହଁ, ସହୁ ସେହି ଠାଣିରେ କହ ତୁମରେ—
ରସ ରସିଆ ପଦେ ଲୋ, ରସରସିଆ ପଦେ ।

ପେଗୁ—ଆରେ ଅଜର କରି ମୋ ହାଡ଼ ନ କଲା—
ବାଟ ଛାଡ଼ ଦେ, ବାଟ ଛାଡ଼ ଦେ ।

ଗରୁଡ଼—ଅଉ ଟିକିଏ—ଅଉ ଟିକିଏ—
ଅଉ ଟିକିଏ ଡେରଛି ଡେରଛି
ଟାଣି ନେ ଚଖା ଆଖି ଲୋ—॥ ୩ ॥

ଗରୁଡ଼—( ପେଗୁକୁ କୁଣ୍ଢେଇ ପକେଇବାକୁ ଯାଉଥିଲା ବେଳେ ହଠାତ୍ ନଜର ପଡ଼ିଗଲା ଦୂରକୁ । 'ଠାକୁରାଣୀ' । ବୋଲି କହି ପଳେଇ ଗଲା । )
[ ପେଗୁ ଉଙ୍ଗାଉ ଥାଏ ଓ ଡାକୁଥାଏ ଆଗ ଭଳି ]

ଲକ୍ଷ୍ମୀ—ଛି, ଛି, ଦିନ ହେଲାଣି କେତେ । ଠାକୁରମାନେ ଯେବେ ବାହୁଡ଼ି ଥିବେ, ମୋ କଥା ସରିଯିବ ସିନା ।—ପେଗୁଟା ଗଲା କୁଆଡ଼େ ?

ପେଗୁ—( ଡାକୁଥାଏ )

ଲକ୍ଷ୍ମୀ—ହେଇ ତ । ଅଲକ୍ଷଣୀଟାର ଡାକ ଶୁଣ ।—ହଇଲୋ, କା'ର କାଳ ପୂରିବ ବୋଲି ଏମିତି କାଳ-ଡାକ ଡାକି ମରୁଛୁ ମ ?

ପେଗୁ—( ହଠାତ୍ କହି ପକାଇଲା ) ତୁମର ···

ଲକ୍ଷ୍ମୀ—'ମୋର' ! (ହଠାତ୍ ଗୋଟାଏ ଦୁର୍ଲକ୍ଷଣର ସ୍ପନ୍ଦନ ଅନୁଭବ କରି ଥରି ଉଠିଲେ )

ପେଗୁ—ଠାକୁରାଣୀ—( ଗୋଡ଼ତଳେ ପଡ଼ିଲା )

ଲକ୍ଷ୍ମୀ—( ଏହି ସମୟରେ ଶିଆଳର ଡାକ ଶୁଣାଗଲା ) କି ଦୁର୍ଲକ୍ଷଣ ଚୁରିଆଡ଼େ । ଶିଆଳର ହୁକେହୁ—ଶାଗୁଣା ପଲ ପଲ—

ପେଗୁ—ଆହୁରି ବି ଗରୁଡ଼···

ଲକ୍ଷ୍ମୀ—ଗରୁଡ଼ ?

ପେଗୁ—ମଣିମା !

ଲକ୍ଷ୍ମୀ—ଗରୁଡ଼ ଆସିଥିଲା ଏଠିକି ?—ମୋତେ ଖୋଜିବା ପାଇଁ ତ ? ଠାକୁରମାନେ ବାହୁଡ଼ିଛନ୍ତି ତା' ହେଲେ ପାଖିଥିରୁ ନିଶ୍ଚେ ।

ପେଗୁ—ନାହିଁ ମଣିମା—ବାହୁଡେଇ ଆଣିବ, ସେଇଥି-ପାଇଁ ସେ ଉଡ଼ି ଯାଉଥିଲା ଏଇ ବାଟେ···

ଲକ୍ଷ୍ମୀ—( ଆଶ୍ୱସ୍ତ ହୋଇ ) ତା'ପରି ତୋ ଆଖିବାଣରେ ନଡକନା ଖସି ପଡ଼ିଲା ଏଇଠି, ନା ?

ପେଗୁ—( ଲାଜେଇଲା )

ଲକ୍ଷ୍ମୀ—ନା, ତୁମେ ଦୁହେଁ ଭାରି ଉତ୍ପାତ ଲଗେଇଲଣି । ଛନ୍ଦ ନ ଦେଲେ ଆଉ ଉପାୟ ନାହିଁ । ଆଜ ବାହୁଡ଼ନ୍ତୁ ଠାକୁର ଦୁହେଁ ।···

ପେଗୁ—ଠାକୁରାଣୀ ! ଧୂଳି ଉଡ଼େଇ ଏଣେ କିଏ—

ଲକ୍ଷ୍ମୀ—ଗୋଟିଏ ଘୋଡ଼ା ଦେଖୁଛି ଯେ—

ପେଗୁ—କାଳିଆ ଘୋଡ଼ା, ମଣିମା ।

ଲକ୍ଷ୍ମୀ—ହେଲେ, ବଡ଼ଠାକୁର ତ ପିଠିରେ ।···ଆ, ଆ, ପଳେଇ ଆ ! ( ଚାଲିଗଲେ )

[ ବଳଭଦ୍ର ପ୍ରବେଶ କଲେ ]

ବଳ—ଅମାନିଆ ଘୋଡ଼ାଟା କାହାକୁ ଦେଖି, ଠକ୍କିନା ରହିଗଲା ? ମୋତେ ଝାଡ଼ିଫିଙ୍ଗି ଦେଇ, ଧାଇଁ ଆସିଲା ଏଣିକି—କିଏ ଏମାନେ ? ଦେଖୁଚ—କେମିତି ପୋଷା କୁକୁର ପରି ତା' ପଛେ ପଛେ ଗୋଡ଼େଇଛି ! ବୁଝିଚି—ଲକ୍ଷ୍ମୀ-ଉଆସର କେହି ପୋଇଲି ପରିବାର ହୋଇଥିବେ । ଯା' ହେଉ ଘୋଡ଼ାଟା ତାଙ୍କ ପିଛା ଧରିଲା ନାହିଁ ଯେ, ମୁଁ ଗୋଟାଏ ଦାୟିତ୍ୱରୁ ରକ୍ଷା ପାଇଗଲି । ହେଲେ, ମୁଁ ଏଠୁଁ ଯାଉଛି କମିତ ? ଆଜ ବୋଧୁ ଠାକୁରାଣୀଙ୍କ ଉତ୍ସବ ଦିନ—ସହଳ ସହଳ ଫେରି ଯିବା କଥା । ଜଗାକୁ ଆଗେଇ ଯିବାକୁ କହିଲି—ପହଞ୍ଚି ଯାଇଥିବ ଯେ । କିଏ ଜାଣିଥିଲା, ଘୋଡ଼ାଟା ଏମିତି ଅମାନିଆ ହୋଇ ବାଟରେ ହଇରାଣ କରିବ । ଛାଡ଼—ପାଦେ ପାଦେ ଚାଲିଯାଇ କୌଣସିମତେ ଦକ୍ଷିଣ ଦ୍ୱାର ବାଟେ ଦେଉଳକୁ ପଶିଗଲେଇ କାମ । ଉଃ, ପାଦ ଆଉ ଚଳୁ ନାହିଁ—ଦେହ ହାତ ପରାଣ ।

[ ବଂଶୀର ଶବ୍ଦ ଶୁଣା ଗଲା—କ୍ରମେ ତା ନିକଟ ହୋଇ ଆସିଲା ମାଦଳର ଶବ୍ଦ । ଧାଙ୍ଗଡ଼ା ଓ ଧାଙ୍ଗଡ଼ିମାନେ ନାଚି ନାଚି, ଗାଇ ଗାଇ

ପ୍ରବେଶ କଲେ । ବଳରାମ ହାଲିଆ ହୋଇ
ବସି ପଡ଼ିଲେ ଗଛମୂଳରେ ]

—ଗୀତ—

ଓ ହୋ ହୋ ଇସ୍ ଧାଙ୍ଗଡ଼ା ଧାଙ୍ଗଡ଼ି ମିସ୍
କୁଇ ଯାଉଁରେ କୁଇ ଯାଉଁରେ
ସନ୍ ସନିଆ ନୁଙ୍ଗୁରି ବାଆ
ଦେଇ ସାତୋଟ କୁହେଇ ଫୁଲିଆ ବାସନା ॥
ନାଚୁ ନାଚୁ ନାଚୁ ନାଚୁ ନାଚୁ, ଉଣ୍ଡି ଉଣ୍ଡିକା ଅଲସେଇଲା
ଅଲସି ଖେଳ
ଭମରି ଭୁଲେ ମିସ୍ ନା
ଭମରି ଭୁଲେ ମିସ୍ ନା···।୧।
ଅରୁ ଅରୁକା ପାବଲ ଗୁଞ୍ଜରି ତଳେଇ ଦଆ
ସୁରୁଜ ଜୁମା
ଝୋଲାର ପାନ ଛଳେଇ ତଡର ବାଡର
ଖେଦାଲାରେ ଖେଦାଲା ରେ ଖେଦାଲା ।
ସାପେଇ ସାପେଇ ସରଗି ଟଙ୍ଗା କାଇଁକି ଭୁଲେ ନାସୀ
ହାମାର ଭୁଲେ ଗିଡ଼ ମାରଗୁ ଅସ୍ନା ॥
ଓ ହୋ ହୋ ରସ୍ ॥୧॥

ପୁରୁଷ—ଓ—ଓ—ଏଇ ଓରେ—ସାରିଆ ଦାନ୍
ସାରିଆଫୁଲ୍···
ସ୍ତ୍ରୀ—କାସ୍ ପାଇଁରେ, ରଙ୍ଗ ବାଲ, କାସ୍ ପାଇଁରେ
ସରୁ ବାଲ ।
ପୁ—(ଗୀତ) ସାରିଆ ଗାରୁ ଛାଡ଼ି କାଡ଼ୁ ଶୁଣ୍ଡି
ଗାରୁ ହଣ୍ଡା
ଆଇଲା ସୁରେ ନୁନ ଭୁଇ ବେଡ଼େ ବସ୍ ଉଣ୍ଡା
ସ୍ତ୍ରୀ—(ଗୀତ) ଛେ—ଛେ—ଛେ—
ଅଇଲ ବଡ଼େ ଲହ ଲହକା
ନବେସଇବାକୁ ମୋକେ
କେନ୍‌ସିଠାନ୍‌ରେ ତାଙ୍ଗିଡ଼ମୁହିଁକେ
କରଲା ନାଇକେ ତୋକେ ।
ସମସ୍ତେ—ହାଉଁ ହାଉଁଆଁ ଉଙ୍ଗର ମାଲେ
କାପଡ଼ା ଘୁମୁରେ ଝଠୁରେ ପୁଡ଼ା
ନାଗିଡ଼ ପଡ଼େ ଦରଜ ଯାକ
ହାଲିଆ·ମନ୍ କରେ କେନ୍ଦା କେନ୍ଦା ରେ

ପୁ—ତୋର ଝୋଟଣି ଗଙ୍ଗା କାଜଲ୍ ଆଁଖି
ଚହିଁକା ଚହିଁକା ଠେସ୍‌ନା ।
ଚହିଁକା ଚହିଁକା ଠେସ୍ ନା ॥୩॥

ବଳ—( ଅନ୍ୟ ମନସ୍କ ହୋଇ ଯାଇଥିଲେ )

[ ଗରୁଡ଼ ପ୍ରବେଶ କଲେ—ତା' ହାତରେ ଥିଲା
କଳା କୋରଡ଼ା ]

ଗରୁଡ଼—ପ୍ରଭୁ··· !
ବଳ—ଗରୁଡ଼, ତୁମେ ହଠାତ୍ ?
ଗରୁଡ଼—(କଳା କୋରଡ଼ା ଦେଖାଇ) ପ୍ରଭୁ, କଳା ଘୋଡ଼ାରେ ବଳେ କରିଥିଲେ—ହେଲେ, ଧଳା-କୋରଡ଼ା ଧାରଣ କରିଥିଲେ, ସେଥିପାଇଁ···
ବଳ—ସତେ ତ ! କି ପ୍ରକାଣ୍ଡ ଭୁଲ୍‌ଟାଏ କରିଥିଲି !—ଧଳା ଘୋଡ଼ାକୁ ଧଳା କୋରଡ଼ା—କଳା ଘୋଡ଼ାକୁ କଳା କୋରଡ଼ା; ଏ' ଖିଆଲ ତ ମୋ'ର ଆଦୌ ନ ଥିଲା ।
ଗରୁଡ଼—ଏଇ କଳା କୋରଡ଼ା ଯୋଗୁଁ, ଠାକୁରେ ବି ଧଳା ଘୋଡ଼ାକୁ ବାଗେଇ ନ ପାରି ହାରି ହଇରାଣ ହୋଇଥିଲେ ।
ବଳ—ତା' ପର ?
ଗରୁଡ଼—ଦୈବ ଯୋଗକୁ ମୁଁ ହାରୁଡ଼ି ଗଲି ବାଟରେ !
ବଳ—ଯା' ହେଉ, ଭଲରେ ଭଲରେ ପହଞ୍ଚେଇ ଦେଇ ଆସିଛ ତ ?
ଗରୁଡ଼—ଏବେ ସାନଠାକୁରଙ୍କ ଆଦେଶରେ ତ କଳା କୋରଡ଼ା ଘେନି ଉଡ଼ି ଆସିଛୁ ଏ'ଠାକୁ ।
ବଳ—ତୁମେ ଜାଣିଲ କେମିତ, ମୁଁ ଏହି ଚନ୍ଦ୍ରାଲସାହ୍ମୀ ମୁହଁରେ ଅଛି ବୋଲି ?
ଗରୁଡ଼—ବାଟରେ ଠାକୁରାଣୀଙ୍କ ଭେଟିଲି—ସେ···
ବଳ—ଠାକୁରାଣୀ ?
ଗରୁଡ଼—ନା, ନା···
ବଳ—କଥା ଆଉ ଲୁଚିବାର ନୁହେଁ, ମାରୁତି ! କାରଣ—
ଗରୁଡ଼—ହୁମ୍···
ବଳ—କଳାଘୋଡ଼ା ମୋ ଆଖି ଆଗରେ ତାର ପ୍ରଭୁ-ପତ୍ନୀର ପରିଚୟ ସ୍ପଷ୍ଟ ଭାବରେ ଦେଇ ସାରିଛି ।

ଗରୁଡ଼—ପ୍ରଭୁ—

ବଳ—ହଁ ଗରୁଡ଼—ତୁମେ ଜାଣ, ତୁମର ପ୍ରଭୁପତ୍ନୀ କି ଉଦ୍ଦେଶ୍ୟରେ ଏହି କଦର୍ଯ୍ୟ ସ୍ଥାନକୁ ଆସିଥିଲେ ?

ଗରୁଡ଼—ମୁଁ ଏତିକି ଜାଣେ—ଆଜି ସୁଦଶାବ୍ରତ—ଠାକୁରାଣୀଙ୍କର ମହାବ୍ରତ । ଘରେ ଘରେ ମାଇପେ କ୍ୱାପର ସେହି ବ୍ରତ ପାଳୁଛନ୍ତି, ସେହି କଥା ଭାବି ଶ୍ରଦ୍ଧାରେ ସାହୀ ସାହୀ ବୁଲି, ଦେଖୁ ଦେଖୁ······

ବଳ—ଏହି ଚଣ୍ଡାଳ ସାହିରେ ଆସି ହାଜର ହୋଇ ଯାଇଥିଲେ—ତାର ପର ?

ଗରୁଡ଼—(ନୀରବ)

ବଳ—ତାର ପର ମୁଁ କହୁଛି ଶୁଣ । ଚଣ୍ଡାଳଘରେ ପଶି ଚଣ୍ଡାଳୁଣୀର ପୂଜା ଘେନିଥିଲେ—ଚଣ୍ଡାଳୁଣୀ ହାତର ସିଝା ମଣ୍ଡା ଭୋଗଲାଗି ହୋଇଥିଲେ—ଚଣ୍ଡାଳୁଣୀକୁ ବର ଦେଇ ଏବେ ଆନନ୍ଦରେ ଢିଅସକୁ ଫେରୁଛନ୍ତି—

ଗରୁଡ଼—(ନୀରବ)

ବଳ—ତା'ପର କ'ଣ କରିବେ, ଜାଣ ? ଚଣ୍ଡାଳୁଣୀର ଛୁଆଁ ଘେନି ଦେଉଳରେ ପଶିବେ—ଖଦା ଶାଳରେ ବସି ରାନ୍ଧିବେ, ଆଜି ଠାକୁରଙ୍କ ପାଇଁ ମଣୋହି ବାଢ଼ିବେ ।

ଗରୁଡ଼—ପ୍ରଭୁ—

ବଳ—ଗରୁଡ଼ ! ତୁମେ ପ୍ରକୃତରେ ମୋତେ ପ୍ରଭୁ ବୋଲି ମାନ ତ ?

ଗରୁଡ଼—ଦାସକୁ ସନ୍ଦେହ କରିବେ ନାହିଁ, ପ୍ରଭୁ !

ବଳ—ବେଶ୍, ମୋର ଆଦେଶ—ତୁମେ ଏହିକ୍ଷଣି ଉଡ଼ିଯିବ; ତୁମର ଲକ୍ଷ୍ମୀଠାକୁରାଣୀ ଆଉ ତା'ର ଦ୍ୱାଲଣୀ ପେଚୁମଣି ବର୍ତ୍ତମାନ ସୁଦ୍ଧା ବାଟରେ—ସେମାନଙ୍କୁ ଅତିକ୍ରମ କରିଯାଇ ଦେଉଳର ପ୍ରହରୀ ମାନଙ୍କୁ ଜଣାଇ ଦେବ—

ଗରୁଡ଼—କ'ଣ ପ୍ରଭୁ ?

ବଳ—ଲକ୍ଷ୍ମୀଠାକୁରାଣୀ ଆଉ ତାଙ୍କର ନିତ୍ୟ ସଙ୍ଗିନୀ ଅଲକ୍ଷ୍ମୀ ପେଚୁ—ଏ ଦୁଇଜଣଙ୍କୁ ଦେଉଳ-ପ୍ରବେଶ ନିଷେଧ ।

ଗରୁଡ଼—( ଥରି ଉଠିଲେ ) ଦେଉଳ-ପ୍ରବେଶ ନିଷେଧ !

ବଳ—ହଁ, ଯାହାକୁ କହନ୍ତି 'ଦେଉଳ-ବାସନ୍ଦ' ।

ଗରୁଡ଼—ଦେଉଳ ବାସନ୍ଦ ?

ବଳ—ହଁ, ଏହି ଆଦେଶ ତୁମେ ଅକ୍ଷରେ ଅକ୍ଷରେ ପାଳନ କର ।

ଗରୁଡ଼—ସାନ ଠାକୁରେ—

ବଳ—ଯଦି ବାଧା ଦିଅନ୍ତି ?—ବେଶ୍, ଏହି ମୋର ରତ୍ନମୁଦି ନିଅ—ଏହାକୁ ସଙ୍କେତ ଦେଖାଇ କହିବ, ବଡ଼ ଠାକୁରଙ୍କର ଆଦେଶ ।

ବଳ—ଠିଆ ହେଲ ଯେ ?

ଗରୁଡ଼—ଘୋଡ଼ା ତ ନାହିଁ, ପ୍ରଭୁ ! ଯିବେ କେମିତି ?

ବଳ—ଗୋଡ଼ ଅଛି, ଚାଲିଯିବ—

ଗରୁଡ଼—ଚାଲିଯିବେ—ମାରୁତର ଏହି ପିଠି ଥାଉଁ ଥାଉଁ ?

ବଳ—ମାରୁତ ! ବର୍ତ୍ତମାନ ମୁଁ ଚାହେଁ—ମୋତେ ବହନ କରି ତୁମର ଗତି ମନ୍ଥର କରିବା ଅପେକ୍ଷା ମୋ'ର ଆଦେଶ ବହନ କରି, ତୁମର ଗତି ଦ୍ରୁତତର କରିବ ।

ଗରୁଡ଼—ଜୟ ପ୍ରଭୁ ବଳରାମ !

ବଳ—ଗରୁଡ଼ର ଜୟ ହେଉ !

---

## ସପ୍ତମ ଦୃଶ୍ୟ

[ଲକ୍ଷ୍ମୀ ଦାଣ୍ଡ ! ଲକ୍ଷ୍ମୀଦେବୀ ଓ ପେଚୁ ବ୍ୟସ୍ତଭାବରେ ପ୍ରବେଶ କଲେ]

ଲକ୍ଷ୍ମୀ—ପେଚୁ—( ନୀଳଚକ୍ର ଆଡ଼କୁ ଚାହିଁ )

ପେଚୁ—ଠାକୁରାଣୀ !

ଲକ୍ଷ୍ମୀ—କି ଅଲକ୍ଷଣ, ଚାହିଁ ! ତ ଏଣେ ?

ପେଚୁ—କାହିଁ ? କି ଅଲକ୍ଷଣ, ଦେବୀ ?

ଲକ୍ଷ୍ମୀ—ଏହି ନୀଳଚକ୍ରରେ କ'ଣଟାଏ, ଦେଖ ତ !

ପେଚୁ—ଚିଲ୍‌ଟାଏ । ଠାକୁରାଣୀ ବେଗେ ବେଗେ ଆସ !

ଲକ୍ଷ୍ମୀ—ପେଚା···କାନ ଡେରିଲୁ ।

ପେଚୁ—କେଉଁଆଡ଼େ ?

ଲକ୍ଷ୍ମୀ—ଏଇ ଦେଉଳ ଆଡ଼କୁ ! ଆଜି ଏତେ ଉତ୍ସବ—କାହିଁ, ଦେଉଳ ଭିତରେ ତ ଘୋର ଶବ୍ଦ ନାହିଁ-

ଗହଳ ଚହଳର କୌଣସି ଲକ୍ଷଣ ଜଣା ପଡ଼ୁନାହିଁ ? ଗୁହାଳ୍କୁ ଗୁହ ଅଢ଼ାକୁ—କେମିତ ଶୂନସାନ—ଯେମିତ ମାଛି ମର ରହୁଛି ।

ପେଗୁ—( ଭୟରେ ) ଠାକୁରାଣୀ !

ଲକ୍ଷ୍ମୀ—( ଦୀର୍ଘଶ୍ୱାସ ଛାଡ଼ି ) ଗୋଟାଏ ଝଡ଼ର ପୂର୍ବ ଲକ୍ଷଣ ନୁହେଁ ତ ?

ପେଗୁ—( ଭୟରେ ) ଠାକୁରାଣୀ—

ଲକ୍ଷ୍ମୀ—ନାଇଲୋ, କିଛି ନାହିଁ, ଚାଲ—

ପେଗୁ—ଆସ ତ—(ଚାଲିଗଲା)

ଲକ୍ଷ୍ମୀ—(ଯାଉଁ ଯାଉଁ) ଓଃ, ପାଦ ଯେମିତ ଚଳୁନାହିଁ—ପୁଣି, କିଏ ଯେମିତ ଧକ୍କା ଦେଇ ପଛକୁ ଠେଲୁଚି, ଏହାପର ମନେ ହେଉଚି—( ପେଗୁ ଧଇଁ ସଇଁ ହୋଇ ପ୍ରବେଶ କଲା )

ପେଗୁ—ଠାକୁରାଣୀ—

ଲକ୍ଷ୍ମୀ—କି ଲୋ, କ'ଣ ?

ପେଗୁ—ଦ୍ୱାର ବନ୍ଦ ।

ଲକ୍ଷ୍ମୀ—ଦ୍ୱାର ବନ୍ଦ ? ବେଶ୍‌ତ, ଡାକିଲୁ ନାହିଁ—ଭିତର ପଟେ ଜଗୁଆଳମାନେ ଥିବେ ?

ପେଗୁ—ଡାକିଛି—ଦ୍ୱାର ଠେଲିଛି…

ଲକ୍ଷ୍ମୀ—ତା'ପର ?

ପେଗୁ—ଉଡ଼ିଯାଇ, ବେଢ଼ା କାନ୍ଥ ଉପରେ ବସିଛି ବି-

ଲକ୍ଷ୍ମୀ—ତେଣିକି ଆଉ ଅକଲ ଖଟିଲା ନାହିଁ ପରା ? ତେଇଁ ପଡ଼ିଥାନ୍ତୁ ଅଗଣାକୁ—ଖୋଲି ଦେଇଥାନ୍ତୁ ଅର୍ଗଳଟା ଭିତର ପଟୁ !

ପେଗୁ—ହେଲେ, ଜଗୁଆଳ ତ ଭିତରେ ମାଳ ମାଳ । ମତେ ଦେଖି ତ କିଏ ଠେଙ୍ଗା, କିଏ ବାଡ଼ି ଧରି ହାସ୍ ହାସ୍ କରି ଉଡ଼ି ନ ଦେବା ଯାଏ ତର ସହିଲା ନାହିଁ ସେମାନଙ୍କର ।—

ଲକ୍ଷ୍ମୀ—ତୁ କହୁଛୁ କଣ ? ହଁ, ହଁ, (ହସି) ଆଜି ମୋର ପର୍ବ କିନା, ସେଇଥିପାଇଁ ଭାରି ଆକଟ ହୋଇଥିବ—ତୁ ବି ଏମିତ ଓଲି ଯେ, ମୋ ନାଁ କହି କାହାକୁ ଦ୍ୱାର ଫିଟେଇ ଦେବାପାଇଁ କହିବାକୁ ବୁଦ୍ଧି ଦିଶିଲା ନାହିଁ ତୋର ।

ପେଗୁ—ଠାକୁରାଣୀ ! ଯେତେ ଇଚ୍ଛା ଗାଳି ଖାଉଛି, ତଥାପି ତୁମ ନାଁ କହୁଛି—ପିଠିରେ କାହିଁରେ କ'ଣ ମାଡ଼ ବସିଛି; ତଥାପି ତୁମେ ବାହାରେ ଠିଆ ହୋଇ ରହିଛ, ଏ କଥା ବି ଶୁଣେଇଛି ।

ଲକ୍ଷ୍ମୀ—ତା' ପର ?

ପେଗୁ—ତା'ପର ସେମାନେ ଦାନ୍ତକୁ ନାକୁଟି, ନାକ ଛିଞ୍ଚାଡ଼ି, ଯଉଁ କଥାମାନ ଶୁଣେଇଲେ, ତା' ମୋର ପିଠିର ପରାସକୁ ବି ବଳି ପଡ଼ୁଛି, ଠାକୁରାଣୀ ! ଓଃ…

ଲକ୍ଷ୍ମୀ—ଆଲୋ ସେମିତ ଚଗୁଲେଇ ମିଗୁଲେଇ କହୁଥିବେ ମ—ଏଣେ ବାଟ ନାହିଁ, ଦ୍ୱାର ବନ୍ଦ ।

ପେଗୁ—ତା ନୁହେଁ, ଠାକୁରାଣୀ । ସେମାନେ ସଫା ସଫା କହିଦେଲେ, ବଡ଼ଠାକୁରଙ୍କ ଆଜ୍ଞା, ଆମକୁ —

ଲକ୍ଷ୍ମୀ—ଆମକୁ ମାନେ ? ମତେ ବି ଦ୍ୱାର ବନ୍ଦ ?—ହେଲା କ'ଣ ? ମୁଁ ହେଲେ କେତେ, ଆଉ କିଏ ହେଲେ କେତେ—ଜଗୁଆଳମାନେ ସେମାନଙ୍କ କାମ ଠିକ୍ ଠିକ୍ କରିବା ଉଚିତ—

ପେଗୁ—ତୁମେ କହୁଛ କ'ଣ ଯେ ?

ଲକ୍ଷ୍ମୀ—ଆଲୋ ଓଲି ! ଏ' ହେଲା ମୋର ଖାସ୍ ଉଆସ ପଟ । ଆଜି ମୋର ଉତ୍ସବ—ସେଥିପାଇଁ ଏଇପଟେ ଯେତକି ଧୂମ ଧାମ !

ପେଗୁ—ଠାକୁରାଣୀ—

ଲକ୍ଷ୍ମୀ—କହୁଥିଲି, ବର୍ତ୍ତମାନ ମୋର ବାଲଧୂପ ଉଠିଥିବ—ଅଗଣା ଧୂଆ ଧୋଇ ସରିଥିବ—ଭୋଗରାଗ ସଜଡ଼ା ସଜଡ଼ି ହେଉଥିବ—ଦୀପ ଝୁଣା ଜଳୁଥିବ—ଏତେବେଳେ ଏବାଟେ କି ଯିବା-ବାଟ ? ମୋର ପୂଜା ମାଜୁ ହବ ନାହିଁ ? ବଡ଼ ଠାକୁରେ ଏଇଥି ପାଇଁ କଡ଼ା ନଜର ଦେଇଛନ୍ତି ଏ ପଟେ । କାଣୁ ତ, କେତେ ଟେଲ ବସିହଆ ବୋଝ ମଣି ମୁଁ ତାଙ୍କର ?

ପେଗୁ—ହେଲେ କଥାଟା କେତେଦୂର ଗଡ଼ିଲାଣି, ତୁମେ ମୋଟେ ବୁଝିପାରୁ ନ—

ଲକ୍ଷ୍ମୀ—ତୁ ବୁଝିଚୁ ତ ? ହଉ, ଅଇଲୁ—କେମିତ ପଶ୍ଚିମ ବାଟେ ଯାଇ କୌଣସି ମତେ ଗଲପଶି, ଆପଣା ଅସ୍ଥାନରେ ଠିଆ ହୋଇଯିବା—

ପେଡ଼ୁ—ଠାକୁରାଣୀ—( କାନ୍ଦଲ )

ଲକ୍ଷ୍ମୀ—ଅଲୋ, ଆ—ସକେଇ ହବୁ ପଛେ । (ପ୍ରସ୍ଥାନ)

---

## ଅଷ୍ଟମ ଦୃଶ୍ୟ

[ସିଂହଦ୍ୱାର । ଜଗନ୍ନାଥ ଓ ବଳଭଦ୍ର କଥାବାର୍ତ୍ତା ହେଉ ହେଉ ପ୍ରବେଶ କଲେ]

ବଳ—ନା ନା, ଲକ୍ଷ୍ମୀ ଚଣ୍ଡାଳ-ବାଟାଳ । ଠାକୁର ଘରେ ସେ ପଶିବ, ଏହା କେତେବେଳେ ହେଲେ ହେବ ନାହିଁ ।

ଜଗ—ଲକ୍ଷ୍ମୀ, ନାରୀ—ଘରର ଘରଣୀ । ତାକୁ ଛଡ଼ାଦେଲେ, ପଦାରେ କଥା ପଡ଼ିବ । ସେଥିପାଇଁ ଛଡ଼ାଦେବାଟା—

ବଳ—ଅନ୍ୟାୟ—

ଜଗ—ନ୍ୟାୟ କି ଅନ୍ୟାୟ, ସ୍ଥିରମତରେ ଥରେ ବିଚାର କରି ଦେଖିବେ, ତା'ପର ଦଣ୍ଡ ଦେବେ ।

ବଳ—ଜଗା ।

ଜଗ—ଭାଇନା ।

ବଳ—ବଡ଼ ମୁଁ, ନା ତୁ ?

ଜଗ—ତୁମେ ।

ବଳ—ବେଶ୍, ବଡ଼ ପର ମୁଁ ଯା' ଆଦେଶ କରିବି, ଛୋଟ ପର ତୁ ତା' ମାନିବାକୁ ବାଧ୍ୟ ।

ଜଗ—ହେଲେ, ଜଗତରେ ବିଚାରଶୂନ୍ୟ ହେବେ ନାହିଁ; ଏ ଅଳ କ'ଣ ଛୋଟ କରିପାରେ ନା ?

ବଳ—ଜଗତରେ ବିଚାର ଶୂନ୍ୟ ? ଜଗା । ମୁଁ ବୁଝିଛି, ଲକ୍ଷ୍ମୀ ତୋର ସ୍ତ୍ରୀ—ସେଥିପାଇଁ ଏ କଥା କହୁଛୁ ।

ଜଗ—ନା ଭାଇ, ଲକ୍ଷ୍ମୀ ତୁମର ଅତି ଆଦରର ବୋହୂ ବୋଲି ଏ କଥା କହୁଛି ।

ବଳ—ତା' ହେଲେ ତ ମୁଁ ଅତି ନ୍ୟାୟ ବିଚାର କରୁଛି—ଏଇ କଥାହିଁ କହୁଛୁ ।

ଜଗ—ଅତି ଅନ୍ୟାୟ କି ନୁହେଁ, ଏଇ କଥା ଥରେ ବିଚାର ଦେଖନ୍ତୁ ।

ବଳ—କେମିତ ?

ଜଗ—ତୁମର କଥା ତୁମେ ବିଚାର ଦେଖ, ଭାଇନା । ତୁମର କଥାରୁ କଣ ବୁଝା ପଡ଼ୁନି ଯେ, ତୁମେ ଲକ୍ଷ୍ମୀକୁ ଅତି ସ୍ନେହ କର ବୋଲି, ଆଜ ତାଙ୍କପ୍ରତ ତୁମର ଏତେ ବିରକ୍ତି ?

ବଳ—ସୁତରାଂ, ସେମିତ ଲଘୁ ଦୋଷର ଗୁରୁ ଶାସ୍ତି ବିଧାନ କରୁଛି ?

ଜଗ—ଭାଇ-ନା ।

ବଳ—ଜଗା । ସ୍ତ୍ରୀ ଯଦ ତୋର ଏତେ ଆପଣାର, ତେବେ ଆପଣାର ଭାଇକୁ କାଟିଦେଇ ସ୍ତ୍ରୀକୁ ନେଇ ସେହି ଚଣ୍ଡାଳ ସାହିରେ ରହ—ମୋର ଟିକିଏ ହେଲେ ଆପତ୍ତି ନାହିଁ, କି ମନରେ ଦୁଃଖ ନାହିଁ । ଲକ୍ଷ୍ମୀ ଚଣ୍ଡାଳ ଘରେ ପଶିଛି, ସେ ଚଣ୍ଡାଳୁଣୀ—ଦେବତାର ମଣୋହି ହେବ, ଅସମ୍ଭବ ।

ଜଗ—ପ୍ରଥମ ଅପରାଧ, ଏହି ବିବେଚନାରେ—

ବଳ—ମାର୍ଜନା କରିବି ? ଅସମ୍ଭବ । ହଳ-ତ୍ୟାଗର ସଙ୍କଳ୍ପ କରିଥିଲି—ସେ ସଙ୍କଳ୍ପ ତ୍ୟାଗ କରିଛି, ତୋର ଅନୁରୋଧରେ; କିନ୍ତୁ, ଲକ୍ଷ୍ମୀ-ତ୍ୟାଗର ସଙ୍କଳ୍ପ-ତ୍ୟାଗ, ଅସମ୍ଭବ ।

ଜଗ—ଏହି ଜନ୍ମରେ, ଲକ୍ଷ୍ମୀପ୍ରତି ଅତ୍ୟଧିକ ଅନୁରକ୍ତି ଯୋଗୁଁ . ଅତ୍ୟଧିକ ବିରକ୍ତିର ଭାବ ସୃଷ୍ଟି ହେଉଛି କି ନା—ତା' ଥରେ ସୂକ୍ଷ୍ମ ଦୃଷ୍ଟିରେ ବିଚାର କରି ଦେଖିବେ, ଏତିକି ମୋର ଅନୁରୋଧ, ଭାଇନା ।

ବଳ—ବିଚାର-ବୁଦ୍ଧି ମୋତେ ଶିଖେଇବୁ, ତୁ ?—ଛାଡ଼, ବର୍ତ୍ତମାନ ମୋର ଶେଷ କଥା—

ଜଗ—ଭାଇ-ନା—

ବଳ—ହଁ, ଭାଇ ଆଉ ସ୍ତ୍ରୀ; ଏ ଦୁଇଟି ଭିତରୁ ତୋତେ ଗୋଟିଏ ବାଛି ନେବାକୁ ହେବ । କହ, ତୁ ଭାଇ ଗ୍ରହ୍ଣ, କି ଭାରିଯା ଗ୍ରହ୍ଣ ?

ଜଗ—ଭାଇ ।

ବଳ—ବେଶ୍, ତେବେ ତୋତେ ଏହି ବେଢ଼ା ଜଗାର ଭାର ଦେଇ ଗଲି । ( ଚାଲି ଯାଉଥିଲେ, ଫେରି ) ହଁ, ଲକ୍ଷ୍ମୀ ଚାଲି ଯାଉଛି ଏ ଖବର ମୋତେ ଦେଲେ, ମୁଁ ଯାଇଁ ମୁହଁ ପଖାଳିବି —

[ ଚାଲିଗଲେ ଭିତରକୁ । ଜଗନ୍ନାଥ କାଠପରି ଛିଡ଼ାହୋଇ ରହିଲେ ]

ଲକ୍ଷ୍ମୀ—( ପ୍ରବେଶ କରି ) ଏମିତି ଠିଆ ହୋଇ ରହିଛ ଯେ ?

ଜଗ—ଲକ୍ଷ୍ମୀ—

ଲକ୍ଷ୍ମୀ—କ'ଣ, ଠିଆ ଠିଆ ସ୍ୱପ୍ନ ଦେଖୁଥିଲ ?

ଜଗ—ଅଛା ନୁହେଁ !

ଲକ୍ଷ୍ମୀ—ବେଶ୍, ବର୍ତ୍ତମାନ ମୁଁ ସୀତା ନୁହେଁ, କି ତୁମେ ରାମ ନୁହଁ—ଆସ ।

ଜଗ—କେଉଁଠିକି ?

ଲକ୍ଷ୍ମୀ—ଦେଉଳ ଭିତରକୁ ।

ଜଗ—ଦେଉଳ ପୋଡ଼ି ଯାଇଛି ।

ଲକ୍ଷ୍ମୀ—ତୁମର ମନ ଦେଉଳ ନୁହେଁ ତ ? ଆହେ ମନୁଆ ଠାକୁର ! ତୁମେ ସାଥିରେ ଥିଲେ, ବଣ ଜଙ୍ଗଲରେ ପଥର କୁଡ଼ିଆ ବି ମୋର ବଡ଼ ଦେଉଳ—ଏ କଥା ତ ତୁମକୁ ଅଜଣା ନାହିଁ ।

ଜଗ—ଲକ୍ଷ୍ମୀ—( ବିହ୍ୱଳ ହୋଇଗଲେ )

ଲକ୍ଷ୍ମୀ—ଏ' କଣ—ତୁମ ଆଖିରେ ଲୁହ ?

ଜଗ—( ଲୁହପୋଛି ) ନା କିଛି ନୁହେ, ସେହି ପୁରୁଣା କଥା ଗୁଡ଼ାକ ମନେ ପଡ଼ି ଯିବାରୁ— ( ମନକଥା ଗୋପନ କରି ) ହଁ, ଲକ୍ଷ୍ମୀ । ତୁମେ ବାପ ଘର ଯିବାକୁ ଲଗେଇ ଥିଲ—ବଡ଼ ଠାକୁରେ ଆପତ୍ତି କରୁଥିଲେ—ଆଜି ସେ ନିଜେ ସେହି ପ୍ରସ୍ତାବଟି ବାଢ଼ିଚନ୍ତି ।

ଲକ୍ଷ୍ମୀ—ସୀତାଙ୍କୁ ବନବାସ ଦେଲାବେଳେ, ଯେଉଁପରି ବନଭ୍ରମଣର ପ୍ରସ୍ତାବ ବାଢ଼ିଥିଲ, ତୁମେ । ହଉ—ବେଶ୍, ମୁଁ ଯିବି—ତୁମେ ଯିବ ତ ମୋ ସାଥିରେ ?

ଜଗ—ଜାଣ ତ, ତୁମର ପିତା ବରୁଣ ଦେବଙ୍କ ସାଙ୍ଗରେ ମୋର କିପରି ସଦ୍‌ଭାବ ?

ଲକ୍ଷ୍ମୀ—ହେଲେ, ଆଜି ତ ଯିବାର ନୁହେଁ । ମୋର ଆଜି ସୁଦର୍ଶାବ୍ରତ—ଦେବତାମାନେ ଆସିବେ, ନିମନ୍ତ୍ରଣ ଦେଇଛି । ଏମିତି ହସ କୌତୁକ କରିବାକୁ ଢେର ସମୟ ମିଳିବ । ବର୍ତ୍ତମାନ ଚାଲ ତ—

( ହାତ ଧରିବାକୁ ଗଲେ )

ଜଗ—( ହଟେଇ ) ଛୁଇଁବ ନି ।

ଲକ୍ଷ୍ମୀ—ମାନେ ?

ଜଗ—ତୁମେ ଚଣ୍ଡାଳ-ବିଟାଳ !

ଲକ୍ଷ୍ମୀ—ସୁତରାଂ, ଦେଉଳ-ପ୍ରବେଶ ନିଷେଧ ।

ଜଗ—ମୋର ଆଦେଶରେ ନୁହେଁ, ବଡ଼ ଠାକୁରଙ୍କର—

ଲକ୍ଷ୍ମୀ—ଚଣ୍ଡାଳ-ବିଟାଳ—ଏହିକଥା ବଡ଼ ଠାକୁରେ କହୁଛନ୍ତି ?

ଜଗ—ହଁ—

ଲକ୍ଷ୍ମୀ—ଚଣ୍ଡାଳ ଘରେ ଅତିଥି ହେବା—ଚଣ୍ଡାଳ ଘରେ ଅନ୍ନ ସେବା କରିବା – ଚଣ୍ଡାଳ ହାତରେ ପ୍ରାଣଦେବା ; ଏ ସବୁ ଆଦର୍ଶ ଯେ ଦେଖାଇଛନ୍ତି, ସେ ଏହି ଶ୍ରେଷ୍ଠ ଠାକୁର ନୁହନ୍ତି କି ?

ଜଗ—ଏହା ବୋଲି ତୁମେ ଚଣ୍ଡାଳଘରେ ପଶିବ, ଏଇଟା—

ଲକ୍ଷ୍ମୀ—ପୂର୍ବ ଅଭିଜ୍ଞତାରୁ ମୁଁ ଯାହା ବୁଝିଛି—ଆଜି ତୁମର ମନର ଭାବ ବର୍ତ୍ତମାନ ଯାହା, ସେଇଥିରୁ ବୁଝିଛି—ଜଗନ୍ନାଥଙ୍କ ସେବାଠାରୁ ଜଗତର ସେବାକୁ ଆମର ଶ୍ରେଷ୍ଠ ଠାକୁରେ ଅଧିକ ପସନ୍ଦ କରନ୍ତି ; ପତି ସେବାଠାରୁ ପତିର ଆଦର୍ଶ ସେବା ହିଁ ପତ୍ନୀର ଉପଯୁକ୍ତ ଧର୍ମ ବୋଲି ମନେ କରନ୍ତି ; ମୁଁ ସେହି ଧର୍ମ ହିଁ ପାଳନ କରୁଛି, ସେହି ସେବା ହିଁ କରୁଛି ।

ଜଗ—ହେଲେ, ଭାଇଙ୍କର ଆଦେଶ ମୋତେ ପାଳିବାକୁ ହେବ ।

ଲକ୍ଷ୍ମୀ—ଦେଖ, ପର ମଥାରେ ଅଠା ବୋଳିଦେଇ ସବୁବେଳେ ନିଜର ଇଚ୍ଛା ପୂରଣ କରୁଥିବ—ଏ ଖୋଇ ତୁମର ଆଉ ସହି ପାରିବି ନାହିଁ !

ଜଗ—ମାନେ ?

ଲକ୍ଷ୍ମୀ—ତୁମର ଭାଇ ଭୋଳାନାଥ—ସେ ବଡ଼ ଘରର ବୋହୂକୁ ଚଣ୍ଡାଳ ସାହିରେ ଦେଖି, ବଡ଼ ମାନ ଭୟରେ ହୁଏ ତ ହୀନମାନ ବୋଧ କରିଥିବେ ; ସେଥିପାଇଁ ଗୋଟାଏ ଭୁଲ୍ କାମ କରି ପକାଇ-ଥିବେ । ହେଲେ, ତୁମେ ତ ଥିଲ—

ଜଗ—ମୁଁ ସେ ଭୁଲ ସୁଧାରିବାକୁ ଯଥେଷ୍ଟ ଚେଷ୍ଟା କରୁଛି, ଲକ୍ଷ୍ମୀ !

ଲକ୍ଷ୍ମୀ—ତୁମେ କରିଥିବ, ମୁଁ ମାନୁଛି—ହେଲେ, ତା'…

ଜଗ—ହେଲେ ତା' ?

ଲକ୍ଷ୍ମୀ—ଗୋଟାଏ ଲୋକ ଦେଖଣାକୁ !

ଜଗ—ଗୋଟାଏ ଲୋକ ଦେଖଣାକୁ ?

ଲକ୍ଷ୍ମୀ—ହଁ, ସେଇଆ କହିବି ତ । ତୁମର କୀର୍ତ୍ତିକଳାପ ମୋତେ କିଛି ଅଛପା ନାହିଁ—ବାହୁଅତ ଲଗେଇ ଦେଇ ତୁଳସୀ ପତ୍ରଟି ପରି ଛିଡ଼ା ହୋଇଯିବ । ଘଡ଼ି—ଚାଲ୍ ଦେଖିବ, ମୁଁ ନିଜେ ବଡ଼ ଠାକୁରଙ୍କୁ ମନେଇ, ଭୁଲ ତାଙ୍କର ସୁଧାରୁଛି କି ନାହିଁ—ଆଉ ତୁମକୁ ଅପଦସ୍ତ କରାଉଛି କି ନାହିଁ !

ଜଗ—କିନ୍ତୁ, ସେ ଯେ ସଂକଳ୍ପ କରିଛନ୍ତି ।

ଲକ୍ଷ୍ମୀ—ତୁମେ ଆସିବ କି ନାହିଁ କୁହ ତ ? ବେଳ ଆସି ପହରେ ହେଲାଣି, ଠାକୁରେ ମୁହଁ ପଖାଳି ନଥିବେ । ମୁଁ ଗଲେ ପାଣି ଦେବି, ଧୂପର ବନ୍ଦୋବସ୍ତ କରିବି । ଏଠି, ଦାଣ୍ଡଟାରେ ଛିଡ଼ା ହୋଇ ନାଟ ଲଗେଇଛ ତ ? (ଚାଲି ଯାଉଥିଲେ)

ଜଗ—(ଅଟକାଇ) ବଡ଼ ଠାକୁରେ ସଂକଳ୍ପ କରିଛନ୍ତି, ତୁମେ ଏ ଦେଉଳ ବେଢ଼ା ଛାଡ଼ି ଚାଲିଯିବ—ମୁଁ ସେ ଖବର ତାଙ୍କୁ ଜଣେଇବି, ତେବେଯାଇଁ ସେ—

ଲକ୍ଷ୍ମୀ—ମୁହଁ ପଖାଳିବେ ।

ଜଗ—ଠିକ୍ ସେଇ ସଂକଳ୍ପ, ଲକ୍ଷ୍ମୀ !

ଲକ୍ଷ୍ମୀ—ଆଉ ତୁମର ସଂକଳ୍ପ ?

ଜଗ—(ନୀରବ)

ଲକ୍ଷ୍ମୀ—କୁହ । କଥା କୁହ । ତା' ହେଲେ ତୁମେ ବି ତ୍ୟାଗ କରୁଛ ?

ଜଗ—ଲକ୍ଷ୍ମୀ ମୋର ଗୃହ କିଏ ?

ଲକ୍ଷ୍ମୀ—ଗୃହ ନାହିଁ ? ତେବେ ଜାଣିରଖ କପଟିଆ । ପୂର୍ବ ଅବତାରରେ ମୁଁ ତୁମର କପଟତାରେ ଭୁଲିଚି, ଏହିପରି ତ୍ୟାଗବ୍ରତକୁ ନୀରବରେ ସହ୍ୟ କରିଛି; କିନ୍ତୁ ଆଜିର ତ୍ୟାଗକୁ ମୁଁ ଆଉ ସହି ପାରୁନାହିଁ ।

ଜଗ—ଲକ୍ଷ୍ମୀ !

ଲକ୍ଷ୍ମୀ—ନା, ନା, ଲକ୍ଷ୍ମୀ ନୁହେଁ ମୁଁ—ଚଣ୍ଡାଳୁଣୀ ! (ଆପଣାର ଅଳଙ୍କାର କାଢ଼ି ପକାଇ ଦେଇ) ଚଣ୍ଡାଳୁଣୀର ହିଂସା ଆଜ ଗ୍ରାସିବ ଭୁବନ—ଚଣ୍ଡାଳୁଣୀର କ୍ରୋଧ ଆଜ ଧ୍ୱଂସିବ ଏ ସୃଷ୍ଟି—ଚଣ୍ଡାଳୁଣୀର ଛିନ୍ନ ବାସ ହେବ ଜଗତର ବାସ—ଚଣ୍ଡାଳୁଣୀର କ୍ଷୁଧାଜ୍ୱାଳା ଜାଳଦେବ ମାନବ, ଦାନବ—'ହା ଅନ୍ନ' 'ହା ଅନ୍ନ' ଉଠିବ ଆରାବ—ଆସିବ ଦୁର୍ଭିକ୍ଷ—ଆସିବ ମଡ଼କ—ଆସିବ ମହାମାରୀ – ହାଃ ହାଃ—ହାଃ—ହାଃ !

[ ଗୋଟାଏ ଭୟାବହ କୋଳାହଳ ମଧ୍ୟରେ ଏହିପରି ଅଟ୍ଟହାସ୍ୟ କରୁ କରୁ ଲକ୍ଷ୍ମୀ ସ୍ଥାନ ତ୍ୟାଗ କଲେ ]

ଜଗ—ଲକ୍ଷ୍ମୀ,—ଲକ୍ଷ୍ମୀ—

ଲକ୍ଷ୍ମୀ—ନା ନା, ମୁଁ ଚଣ୍ଡାଳୁଣୀ ।

[ 'ଚଣ୍ଡାଳୁଣୀ' କହିବା ମାତ୍ରେ ଭୀଷଣ ଦୁର୍ଯୋଗର ସୂତ୍ରପାତ ହେଲା—ଝଡ଼, ତୋଫାନ, ବିଦ୍ୟୁତ, ବଜ୍ରପାତ । କ୍ରମେ ମଞ୍ଚ ଗାଢ଼ ଅନ୍ଧକାର ହୋଇଗଲା—ଏହା ଭେଦକରି ଶୁଣା ଯାଉଥିଲା ଖାଲି ଲକ୍ଷ୍ମୀଙ୍କ ଆହ୍ୱାନ—ସେହି ଶବ୍ଦ କ୍ରମେ କ୍ଷୀଣ ହୋଇ ଆସୁଥିଲା ]

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ସାଗର ତଟ—ନୋଳିଆ ପଲ୍ଲୀ । ନୋଳିଆ ପୁଅ ଝିଅମାନେ ସାଗରବାଲିରେ ଶାମୁକା ଆଦି ଗୋଟାଇ ବୁଲୁଥିଲେ । ମୁକୁତା ଓ କାଳିଆ ସାଙ୍ଗଥିବା ଅନ୍ୟ ଝିଅମାନେ ମାନଭଞ୍ଜନ ପାଇଁ ଅଭିନୟ କରୁଥିଲେ, ନିମ୍ନୋକ୍ତ ଭାବରେ ଗାଇ ଗାଇ ]

—ଗୀତ—

କାଳିଆ—କାହିଁକି ? ଏଡ଼େ ଗୁମାନ କାହିଁକି
ମୋ'ଠାରେ, ପ୍ରାଣମିତଣି ରେ···
କିବା କଥା ରେ ··କିବା କଥା ରେ···
ନୀରଜ ନୟନେ ନୀର ଭରି ଚମ୍ପାଗୋରି
ପୋତିଛୁ ମଥା ରେ କାହିଁକି ॥ ୦ ॥

ମୁକୁତା—ଛି, ଛି, ଛି, ଛି,
(ପଢ଼ି) ମୋର ପଣତ ଛାଡ଼ ଲୋକହସା ନ କର,
ଜଣାଗଲା ବେଭାର କପଟ ଦଗାଦାର,
ତୁମ୍ଭସଙ୍ଗେ ପୀରତି ଛାଡ଼ି ଚିନ୍ତାରେ କାହିଁକି ? ॥ ୧ ॥

କା—ତୋର କଣା ପରଶୁର ଅପରାଧକୁ ବିଚାର—
ଧରାରେ ଗାର ନ ଟାର ମନ୍ତ୍ରୀମନ୍ତ୍ରଣା ବୃଥାରେ । ୨ ।

ମୁ—ମଧୁର କହି ବଚନ ଛଳି ଲୋକପରେ ମନ
କିଣିବାରେ ସିନା ଜାଣ ଠାର ଭୁଲିଥା ରେ···।୩।

କା—ମୋ ରାଣ, ଏହି ମାଗୁଣି—
ହସି ପଦେ କହ ବାଣୀ···

ଅନ୍ୟମାନେ—ହଁ, ହଁ, କହ କହ ।
ଏତେ ସବ ତୋର ଗୁଣମଣି,
ଆଉ ନିରାଶ କର ନା, କର ନା ସଜନି,
କାଳିଆ କାଇଁଚମାଳିଆ ମନରାଗ ମନରେ ମଲିଣି
ମିଶାମିଶି ହୁଅ ହସାହସି ହୃଦୟେ ହୃଦୟେ କଣାକଣି
ପଣତ ଘୋଡ଼ାଇ ଲଗା ତାରେ ॥ ୪ ॥

[ କେତେବେଳେ ଲକ୍ଷ୍ମୀ ଆସି, ସେ'ଠି ଠିଆ ହୋଇ ପିଲାମାନଙ୍କର ଗୀତ ଶୁଣୁଥିଲେ—ତାଙ୍କର ସେତେବେଳେକୁ ନୋଳିଆଣୀବେଶ । ପିଲାମାନେ ଗୀତକ୍ରମେ, କାଳିଆ ଓ ମୁକୁତାକୁ ମିଳାଉ କଲା-ବେଳେ, ଲକ୍ଷ୍ମୀ ଆସି ବାଧାଦେଲେ ଓ ସ୍ନେହ-ସ୍ୱରରେ କହିଲେ ]

ଲକ୍ଷ୍ମୀ—ପିଲାମାନେ !

ସମସ୍ତେ—ମା—

ଲକ୍ଷ୍ମୀ—ଏମିତିକା ଗୀତ କିଏ ଶିଖେଇଲା ତୁମମାନଙ୍କୁ ?

ମୁକୁତା—ତୁମେ—ଆମର ମାଣବସା-ମା ।

ଲକ୍ଷ୍ମୀ—ମୁଁ ?

ମୁକୁତା—ହଁ ତ, ଯେ ତ ତୁମର ଗୀତ ।

ଲକ୍ଷ୍ମୀ—ମୋର ଗୀତ ?

ମୁକୁତା—ମାଣବସା-କଥା କହୁ କହୁ, ଲହରେ ତନ୍ତ ବୁଡ଼ି ଯାଇ, ବଡ଼ ଦେଉଳ ଘେନା ଯଉଁ ଗପ କହୁଥାଅ, ଯେ ତ ସେଇଥିରୁ ଗୋଟିଏ ।

କାଳିଆ—ହଁ ତ, ଏଇ ବାଲିକୁଦ ଉପରେ ବସି—

ମୁକୁତା—ହାତେ ଶଂଖା, ଦରପଣ ଦେଖା କାହିଁକି ମ ? ଆସ ତ ଝିନୁକୀ, ସାମୁକୀ—ବସିବା ବାଲି-କୁଦ ଉପରେ । ଉଁ ହୁଁ, ତୁମେ ବସତ ମାଣବସା-ମା ଏଠି— ( ବସେଇଲେ )

ଲକ୍ଷ୍ମୀ—( ବସିଲେ )

ମୁକୁତା—ନିତି ସଞ୍ଜ ସକାଳେ ତୁମେ ଆସି ବସିବ ଏମିତ, ବାଲିକୁଦ ଉପରେ—ଆଉ ଆମେ ବସିବୁ, ଏମିତି ତୁମ ପାଦତଳେ—
( ସେହିପରି ଭାବରେ ବସିଲେ )

ଲକ୍ଷ୍ମୀ—(ହସି) ଠିକ୍ ଲକ୍ଷ୍ମୀ-ପାଦ-ପଦ୍ମର ମେଲା ପାଖୁଡ଼ା ଭଳି, ନା ?

ମୁକୁତା—ତା' ପର, ତୁମେ ବଡ଼ ଦେଉଳ ଆଡ଼କୁ ଅନାଇ—ଖର ନିଃଶ୍ୱାସଟାଏ ଛାଡ଼ି—ସାଗର ଲହରୀକି ଅନେଇ, କଥାର ଲହରୀ ଛୁଟାଇ ଦେବ । ହଇଗୋ ମାଣବସା-ମା । ତୁମେ କଣ ବଡ଼ଦେଉଳରେ ଥିଲ ?

ଲକ୍ଷ୍ମୀ—କାହିଁକି, କହ ତ ?

ମୁକୁତା—ତଥା କହୁଁ କହୁଁ କେମିତ ଅଟକି ଯାଅ କେବେଳ ବେଳେ—କାନ୍ଦ ପକାଅ ।

ଲକ୍ଷ୍ମୀ—ଆଲୋ, ତୁମର ମାଣବସା-ମା ଲକ୍ଷ୍ମୀଦେବୀଙ୍କର ଭାରି ସାଙ୍ଗ ସାଥି ଥିଲେ—

ମୁକୁତା—ମା !

ଲକ୍ଷ୍ମୀ—ମତେ ?

ମୁକୁତା—ବଡ଼ ଦେଉଳ ଭିତରକୁ ଥରେ ଆମକୁ ନିଅନ୍ତ ?

ଲକ୍ଷ୍ମୀ—କାହିଁକି, କହ ତ ?

ମୁକୁତା—ଠାକୁର ଦୁହିଁଙ୍କୁ ଥରେ ଦେଖି, କହନ୍ତୁ—

ଲକ୍ଷ୍ମୀ—ଠାକୁରାଣୀଙ୍କୁ କାହିଁକି ଛାଡ଼ିଦେଲେ—ଏହ କଥା ତ ?

ମୁକୁତା—ନାଁ, କହନ୍ତୁ—ଆମେ ଅଛୁ ଚଣ୍ଡାଳଜାତ—ଆମକୁ ଦୟା କରିଥିଲେ ଠାକୁରାଣୀ, ସେଥିପାଇଁ ତୁମେ ତାଙ୍କୁ ତେଜ୍ୟା କରିଛ । ଏବୁଣି ଆମେ ସଭିଏଁ ମିଳି ଏ ଦାଣ୍ଡରେ ହାସ ଦେବୁ—ଚଣ୍ଡାଳ ନା ପୋଛି ପକେଇବୁ—ତୁମେ ଠାକୁରାଣୀଙ୍କୁ ଘେନାକର, ଦେଉଳରେ ଥାନ ଦିଅ,—ଏତିକି ଜଣାଣ—

ଲକ୍ଷ୍ମୀ—ମୁକୁତା ! ( କୁଣ୍ଢାଇ ପକାଇ ) ମୋର ଚଣ୍ଡାଳ ଜାତ—ମୋର ଚଣ୍ଡାଳ ମ—ା

ମୁକୁତା—ମାଣବସା-ମା—ଓଷା ଦିନ ତ ଆଉ ବେଶୀ ଡେରି ନାହିଁ । ସେ ଦିନ ଲକ୍ଷ୍ମୀଠାକୁରାଣୀ ବିଜେ କରିବେ ଆମର କୁଡ଼ିଆକୁ । ଆମ ସଙ୍ଗେ ତ ସେ କଥା କହିବେ ନାହିଁ ? ତୁମେ ଯଦି ଆମ ପଖ ଧରି ତାଙ୍କୁ ମନେଇ କହନ୍ତ—

ଲକ୍ଷ୍ମୀ—ଠାକୁରଙ୍କ ସଙ୍ଗେ ପୁଣି ଘରକରିବା କଥା ତ ? ହାଃ—ହାଃ—ହାଃ—

ମୁକୁତା—ଠାକୁରାଣୀ ହସିଛନ୍ତି—ତୁମେ ତାଙ୍କ ସଙ୍ଗାତ; ତୁମ କଥା ସେ ନିଶ୍ଚୟ ଶୁଣିବେ—ତୁମେ ନିଶ୍ଚୟ ତାଙ୍କୁ ହିତ କଥା କହିବ ।

ଲକ୍ଷ୍ମୀ—ହେଲେ, କି ହିତ-କଥା କହିବି, ଜାଣ ?

ମୁକୁତା—କ'ଣ ?—

ଲକ୍ଷ୍ମୀ—ଲକ୍ଷ୍ମୀ ଚଣ୍ଡାଳୁଣୀ । ଚଣ୍ଡାଳୁଣୀ ରୁଷେ ନାହିଁ—ରୋଷ କରେ; ସେହି ରୋଷ ଫଳରେ ଜଗତର ଠାକୁର ଚଣ୍ଡାଳକୁ ବଳିବେ—ଜଗତସାରା ଦ୍ୱାର ଦ୍ୱାର ହୋଇ ବୁଲିବେ, ଭିକ ମାଗିବେ—ଅନ୍ନ ମୁଠାକ ପାଇଁ ହାତ ପତେଇବେ—ସେହି ଅନ୍ନ ମୁଠାକ କେହି ଦେବେ, କେହି ଦେବେ ନାହିଁ; କେହି ଦେଲେ, ତା'ବି କୁଆଡ଼େ···ହାଃ···ହାଃ···

ପେଚ୍ଛ—( ନେପଥ୍ୟେ ) ଠାକୁରାଣୀ !

ଲକ୍ଷ୍ମୀ—ଅଚ୍ଛା ପିଲାମାନେ, ତୁମେ ଯାଅ ତ !

ମୁକୁତା—କିଏ ମ ?

[ ସମସ୍ତେ ପ୍ରସ୍ଥାନ କଲେ ଓ ପେଚ୍ଛ ପ୍ରବେଶ କଲା ]

ଲକ୍ଷ୍ମୀ—ଆଜର ଖବର କଣ, ଲୋ ପେଚ୍ଛ ?

ପେଚ୍ଛ—ଆଜର ଖବର, ଭାରି ଜବର । ( ହସିଲା )

ଲକ୍ଷ୍ମୀ—ପୋଡ଼ାମୁହିଁ ! ହସି ମରିବୁ ପଛେ—ଖବର ଆଗେ କହ ? ଆଲୋ ତୋ ମୁହଁରେ ଏ କି କଳା-ଦାଗ ?

ପେଚ୍ଛ—ହାଣ୍ଡିର କଳା-ଦାଗ, ଠାକୁରାଣୀ !

ଲକ୍ଷ୍ମୀ—ହାଣ୍ଡିରେ ଖାଉଥିଲୁ କି ?

ପେଚ୍ଛ—ଖାଇଲି ଯାଏ କଥା ଗଲା କୁଆଡ଼େ ?

ଲକ୍ଷ୍ମୀ—ମାନେ ?

ପେଚ୍ଛ—ତୁମ ନିଶ୍ୱାସରେ ତ ଦେଉଳ ଶୂନ—ଧାନ ନାହିଁ, କି ଧନ ନାହିଁ ; ତେଣୁ, ଦୁଇ ଠାକୁରେ ମନ୍ଦିର ଅମାର ଗୋଟାକ ଖୁଣ୍ଟି ଖୁଣ୍ଟି ଯଉଁ ଖୁଦ-କୁଣ୍ଡା ପୋଷେ ପୋଷେ କରିଥିଲେ, ତା' ଶେଷ ଘରକୁ ଘେନିଯାଇ, ପାଞ୍ଚ କଲେ—ନିଜ ହାତରେ ତା' ରାନ୍ଧିବେ, ବାଢ଼ିବେ, ଖାଇବେ—

ଲକ୍ଷ୍ମୀ—ତା' ପର ?

ପେଚ୍ଛ—ଧଳା ଠାକୁରେ କୂଅରୁ ପାଣି କାଢ଼ିଲେ—ବେଗର ବାଛିଲେ—ଶେଷର ଯୋଗାଡ଼ଯନ୍ତ କଲେ—

ଲକ୍ଷ୍ମୀ—ଆଉ କଳା ଠାକୁରେ ରୋଷେଇରେ ବସିଲେ—ଚୁଲିରେ ହାଣ୍ଡି ଥୋଇଲେ, ନିଆଁ ଜାଳିବାକୁ କାଠ ମୁହେଁଇଲେ—

ପେଚ୍ଛ—ହେଲେ, ଫୁଙ୍କି ଫୁଙ୍କି ହଇରାଣ—

ଲକ୍ଷ୍ମୀ—କାଠ ବି ଜଳିଲା ନାହିଁ, କି ହାଣ୍ଡିର ପାଣି ବି ତାତିଲା ନାହିଁ—କେମିତି ?

ପେଗୁ—ତା' ପରେ—'ଧେତ୍ ତୋ ଲକ୍ଷ୍ମୀ-ଚୁଲି, ଲକ୍ଷ୍ମୀ-ହାଣ୍ଡି' କହି ରାଗିଯାଇ—

ଲକ୍ଷ୍ମୀ—ଦେଲେ ପରା ହାଣ୍ଡିକୁ କଚାଡ଼ି, ସେଇ ଚୁଲି ଉପରେ ?

ପେଗୁ—ଆଉ ସେହି ହାଣ୍ଡିର କଳା ପୋଛି ହୋଇ ହାତଭର୍ତ୍ତି ଲାଗିଗଲା ।

ଲକ୍ଷ୍ମୀ—ସେହି ହାତକୁ ନେଇ କଳା-ମୁହଁରେ ବୋଲି ଦେଲେ ଅଚ୍ଛାକରି ।

ପେଗୁ—ଠାକୁରାଣୀ ! ସେତେବେଳର ସେହି କଳା-ବୋଳା ଶ୍ରୀମୁଖଶୋଭାବନ ଯଦି ଦେଖିଥା'ନ୍ତ...

ଲକ୍ଷ୍ମୀ—ଦେଖୁଛି ତ ତୋର ମୁହଁରେ, ତା'ର ଟିକିଏ ନମୁନା ।

ପେଗୁ—କ'ଣ କହିବି ଠାକୁରାଣୀ । ମୁଁ ତ ବାଡ଼ି କୁଡ଼ରେ ଠାଏ ଲୁଚି ବସି ରଙ୍ଗ ଢଙ୍ଗ ଦେଖୁଥିଲି—ସମ୍ଭାଳି ନପାରି, ହସି ହସି ଗଡ଼ି ପଡ଼ିଲି ତ ସେହି ହାଣ୍ଡି ଉପରେ—

ଲକ୍ଷ୍ମୀ—ବାକୀ କଳାତକ ଲାଗିଗଲା ତୋର ମୁହଁରେ । ଭାଗ୍ୟକୁ ଚୁଲି ଜଳୁ ନ ଥିଲା । ମରିଲୁ ନାହିଁ ପୋଡ଼ାମୁହିଁ ? ରହ ରହ, ପୋଛି ଦିଏଁ କଳାଦାଗ—କଳାବୋଳା ଶ୍ରୀମୁଖ-ଶୋଭାବନ ଦେଖାଇବାକୁ ଆସିଛି । (ନିଜ ହାତରେ ପୋଛି ଦେଲେ)

ପେଗୁ—ଲୁଗା କାନିରେ ନ ପୋଛି, ନିଜ ହାତରେ ପୋଛି ଦେଲ ତ—ହାତ କଳା ହୋଇଗଲା ତ ?

ଲକ୍ଷ୍ମୀ—ଏଁ !

ପେଗୁ—ମୁଁ ତେଲକନା ନେଇଆସେ ; ହେଲେ, ଏ' ଠାକୁର କଳା, ସହଜରେ ଛାଡ଼ିବ ତ ? (ପ୍ରସ୍ଥାନ)

ଲକ୍ଷ୍ମୀ—ଠାକୁର-କଳା ? ମୁଁ ପୋଛି ପକାଇବି—ପୋଛି— (ପୋଛିବାକୁ ତତ୍ପର)

[ ନାରଦଙ୍କ ପ୍ରବେଶ ]

ନାରଦ— —ଗୀତ

ଦିଅ ନା...ଦିଅ ନା...ପୋଛି ମା
କ୍ଷୀରସିନ୍ଧୁ ଜେମା ।
କଳା କଳାକରଙ୍କର ଶ୍ରୀମୁଖ କାଳିମା ସେ ଗୋ
ଲେଖି ତିଳକ କପାଳେ ଅଞ୍ଜନ ନୟନାଞ୍ଚଳେ
ସେ କଳା ଲାଗି ବିକଳ ବାସବ ଶିବ ବ୍ରହ୍ମାରେ ।

ନାରଦ—ଜଗଜ୍ଜନନୀ !

ଲକ୍ଷ୍ମୀ—ନା, ନା, ମୁଁ ଚଣ୍ଡାଳୁଣୀ !

---

## ଦ୍ୱିତୀୟ ଦୃଶ୍ୟ

[ ବଡ଼ଦାଣ୍ଡ । ବଳରାମ ପ୍ରବେଶ କଲେ ଯୋଗୀ ବେଶରେ ]

ବଳ—ଶେଷେ ଚଣ୍ଡାଳର ବୃତ୍ତି—ଭିକ୍ଷା ଉପଜୀବିକା—ବେଶ୍, ଜଗା !

[ ଜଗନ୍ନାଥ ପ୍ରବେଶକଲେ ଯୋଗୀ ବେଶରେ—ହାତରେ ଥାଳ ଓ ଦଣ୍ଡ ]

ଜଗ—ନିଅ, ଧ୍ୟାନକୁ ଧର—

ବଳ—ଏ ପୁଣି କ'ଣ ରେ ? ( ଥାଳ ଧରିଲେ )

ଜଗ—ଯୋଗିର ଥାଳ—( ଦଣ୍ଡ ଦେଖାଇ )

ବଳ—ଏ ? (ଧରି)

ଜଗ—ଯୋଗିର ଦଣ୍ଡ—ଆଶାବାଡ଼ି ।

ବଳ—ବେଶ୍, ଏଥର ଭିକ ମିଳିବ ତ ?

ଜଗ—ଭେକ ଆଗେ ସରୁ ।

ବଳ—ଆହୁରି ବାକୀ ?

ଜଗ—ହଁ, ଆମକୁ ଗୀତ ବୋଲିବାକୁ ପଡ଼ିବ ।

ବଳ—କି ଗୀତ ?

ଜଗ—ଯୋଗୀ-ଗୀତ ।

ବଳ—ସେ କେମିତି, କ'ଣ ରେ ?

ଜଗ—ମୁଁ ଲେଖି ଆଣିଛି—ଏହି ନିଅ । ପଢ଼ି, ଘୋଷି, ମନେ ରଖ ।

ବଳ—ଘୋଷି ମନେ ରଖିବାକୁ ହବ ପୁଣି ?

ଜଗ—ଉପାୟ ନାହିଁ । ତା’ ନ ହେଲେ ଲୋକେ ଆମକୁ ସନ୍ଦେହ କରିବେ ଯେ ।

ବଳ—ହଉ । ( ପଡ଼ୁ ପଡ଼ୁ ) ଜଗା !

ଜଗ—ଭାଇନା !

ବଳ—ସେଇଟା କ’ଣ ଲକ୍ଷ୍ମୀ-ଗୀତ—ମୁଁ ଗାଇବି ଲକ୍ଷ୍ମୀ-ଗୀତ ?

ଜଗ—ଅହା, ଫୋପାଡ଼ି ଦେବ ନାହିଁ, ଭାଇନା । ଏ ହେଲା ଅସଲ ଯୋଗୀ ଗୀତ । ଲକ୍ଷ୍ମୀ-ମା ମାନେ ଏ ଗୀତ ଶୁଣିବେ—ତେବେ ଯାଇଁ ଲକ୍ଷ୍ମୀ-ଅଞ୍ଜୁଳାଏ ଥାଳରେ ପକାଇବେ । ଆମେ ତ ଆଉ ଲକ୍ଷ୍ମୀଙ୍କ ସ୍ତବ କରିବା ଉଦ୍ଦେଶ୍ୟରେ ଗାଉ ନ ଥାଏଁ ।

ବଳ—ଓ, ଲକ୍ଷ୍ମୀ-ସ୍ତବକୁ ସମ୍ବଳ କରି, ଭିକ ମୁଠାକ ପାଇଁ ଗାଉ ଥାଏଁ—ହେଲେ,—

ଜଗ—ହେଲା ଆଉ କରିବ କି, ଭାଇନା—ଅକାଳେ ନିୟମ ନାସ୍ତି ।

ବଳ—ଅଚ୍ଛା, ବେଶ । ଅଚ୍ଛା, ଜଗା—ମୁଁ ତ ବୋଲି-ବାର ବାଗବୁଝି ଜାଣେ ନା ?

ଜଗ—ମୁଁ ଶିଖି ଅସିଚ୍ଛି—ବତେଇ ଦେବି ।

ବଳ—ହଉ ବଢା—ହେଲେ, ମୋ ଦଦରା କଣ୍ଠରେ ଗୀତ ହବ ତ ?

ଜଗ—ଅଭ୍ୟାସ କରୁ କରୁ ହବ । ଅଚ୍ଛା, ଆମେ କି ନାଁ ବୋଲାଉ, ଭାଇନା ?

ବଳ—କାହିଁକି ? ଜଗନ୍ନାଥ, ବଳରାମ ।

ଜଗ—ନାହିଁ ଭାଇନା । ଯେମିତିକା ଭେକରୁ ସେମିତିକା ନାଁ ଦରକାର ।

ବଳ—ତା’ ହେଲେ, ସେଇବି ଆମର ଗୋଟାଏ ଅବତାର—ଦଶ ପରେ ଏଗାର—ବେଶ୍, କି ନାମ ଆମର ହବ ବଢା ।

ଜଗ—ମୁଁ ବୋଲାଇବି ଜଗାପଣ୍ଡା—ଆଉ ତୁମେ—

ବଳ—ବଳିଆ ପଣ୍ଡା ! ହା—ହା—ହା—ହା—

ଜଗ—ହେଇ ଭାଇନା, କିଏ ଜଣେ ଏଣିକି ଅସୁଛି—ସାଧବାଣିଟିଏ ହେବ ପରା । ବୋଲ, ମୋ ସାଙ୍ଗରେ କଣ୍ଠ ମିଳେଇ ଗୀତ ବୋଲ ।

[ ଗାଇଲେ, କିନ୍ତୁ ଭୁଲ କରୁଥାନ୍ତି । ଶ୍ରୀଯୁକ୍ତା ପ୍ରବେଶ କରି ଶୁଣିଲା ଗୀତ ]

ଶ୍ରୀଯୁ—ତୁମ ଦୁହିଙ୍କୁ ଭଲ ଗୀତ ବୋଲିଅସେ ତ ? ( ହସିଲା )

ବଳ—ଅନ୍ଧାର ଭଲ ଗାଇରୁ, ମା—ହେଲେ—

ଶ୍ରୀଯୁ—ଭୋକିଲା ପେଟ, ସେଇଥିପାଇଁ ଭଲ ଗାଇ ପାରୁ ନ—

ବଳ—ବିଲ୍‌କୁଲ୍ ଫାଁକା ପେଟ, ଠାକୁରାଣୀ—

ଶ୍ରୀଯୁ—ହେଲେ, ଢୋଲ ଯେତେ ଫାଁକ୍ ଥିବ, ତେତେ ଭଲ ବାଜିବ ।

[ ବଳରାମ ଅବାକ୍ ହୋଇ ଚାହିଁଲେ ]

ଚାହୁଁଛ କଣ—ଥାଳ ଦେଖାଅ, ଏହି ଥାଳକ ଭୋଗ—

ବଳ—ମୋ ଥାଳରେ ଥାଳକ ଭୋଗଟକ ଅଜାଡ଼ି ଦେବ ନାହିଁ ମା ।

ଶ୍ରୀଯୁ—( ହସି ) ଅଧେ ଅଧେ ବାଣ୍ଟିଦେବି ।

ବଳ—ମତେ ବରଂ କିଛି କମ୍ ଦେବ—ତାଙ୍କୁ ବେଶୀ କରି —

ଶ୍ରୀଯୁ—ମାନେ ? ସେ ଗାଉଣିଆ, ତୁମେ ପାଳିଆ—?

ବଳ—ମିଛ ନୁହେଁ ମା, ଆନ୍ଧାର—

ଶ୍ରୀଯୁ—ଅନ୍ଧାର ଦେଖିବାକୁ ତୁମେ ବଡ଼—ସେ ସାନ ।

ବଳ—ଦେଖିବାକୁ ସାନ, କିନ୍ତୁ ବୀର ହନୁମାନ—ଏ କାଳିଆଟାର ପେଟ ବଡ଼, ଗୁଣ ବି ବଡ଼—

ଜଗ—ଛି, ବଳି ପଣ୍ଡାଏ—କ’ଣ କହୁଛ ?

ଶ୍ରୀଯୁ—ପଣ୍ଡା ? (ଚମକି)

ବଳ—ହଁ ମା, ପଣ୍ଡା । ଦେଖୁ ନ ପଇତା ? ପତା, ପତାରେ ଜଗୁଆ, ଥାଳ ପତା—( ଜଗନ୍ନାଥ ଥାଳ ପତାଇଲେ )

ବଳ—ଦିଅ ମା, ଦିଅ ଆଗକରି ସେ ଥାଳରେ ଦିଅ । ତା’ ଥାଳ ଭରିଗଲେ, ମୋ ଥାଳରେ ଦେବ ।

ଶ୍ରୀଯୁ—( ଦେବାକୁ ଯାଇ ଦେଇ ପାରିଲା ନାହିଁ )

ବଳ—ମୋ ଥାଳରେ ଆଗକରି ଦବ—ଏହି ବଳିଆ ପଣ୍ଡା ଥାଳରେ ?—ହଉ, ସେଇ କଥା ହଉ । ( ଥାଳ ପତେଇଲେ ) କ’ଣ ଏତେ ଭାବୁଛ ମା ?

ଆମେ ଭାରି ଭଲ ବ୍ରାହ୍ମଣ; ଏ ଯେଉଁ ବଡ଼ ଦେଉଳ ଦେଖୁଛ—

ଶ୍ରୀୟା—ସେ ଦେଉଳରେ ତୁମେ ଥାଅ ? ତେବେ କ'ଣ—

ଜଗ—ହଁ ହଁ, ସ୍ୱୟଂ ବଡ଼ଠାକୁର ଆଉ ଶ୍ରେଷ୍ଠ ଠାକୁରଙ୍କର ଆମେ ଦୁହେଁ ସେବକ ଥିଲୁ। କର୍ମ ପଡ଼ିଲା—

ଶ୍ରୀୟା—ଲକ୍ଷ୍ମୀ ଛାଡ଼ି ଚାଲିଗଲେ। ଆହା ହା। ଅଚ୍ଛା ତୁମେ ଦେଖିବାକୁ ଧଳା—ତୁମେ ବୋଧ ହୁଏ ଧଳା ଠାକୁରଙ୍କର ସେବକ ଥିଲ—ନା କ'ଣ ?

ବଳ—ଠିକ୍ କହୁଛ ମା।

ଶ୍ରୀୟା—ଠାକୁରମାନଙ୍କୁ ଦେଖିବା, ଏ ଭାଗ୍ୟ ତ ମୋର ନାହିଁ—

ବଳ—ଆଉ ଜଣକ ଦେଖିବାକୁ କଳା—କଳା ଠାକୁରଙ୍କର ସେବକ ଥିଲେ।

ଜଗ—ଦିଅ, ମା। ତୁମ ଲକ୍ଷ୍ମୀ-ଭଣ୍ଡାର ଅକ୍ଷୟ ହେଉ।

ବଳ—ଅରେ ମୁଁ ତ ଆଶୀର୍ବାଦ କର ନାହିଁ—ତୁମେ ଲକ୍ଷ୍ମୀ-ହସ୍ତ ହୁଅ ମା।

ଶ୍ରୀୟା—ଥାଳ ତୁମର ଦେଖାଅ, ବଡ଼ପଣ୍ଡା।

[ ବଳରାମ ଥାଳ ଦେଖାଇଲେ—ଶ୍ରୀୟା ଦେବାକୁ ଯାଇ ଦେଇପାରିଲା ନାହିଁ ] ଓଃ—

ବଳ—ତୁମେ ଏମିତି ବିକଳ ହେଉଛ କାହିଁକି, ମା ?

ଶ୍ରୀୟା—ତୁମେ ଦେବତା, ତୁମେ ଭୋକିଲା; ତଥାପି ତୁମକୁ ପରଶି ଦେବା, ଏ ଭାଗ୍ୟ ମୋର ନାହିଁ।

ବଳ—ମା ! ତୁମେ ଭାବୁଛ, ଏ ଭୋଗ ଆମକୁ ଦେଇଭଲ ନୁହେଁ; କିନ୍ତୁ ମା ! ତୁମ ହାତରେ ଭୋଗ ଥାଳିଆ ଦେଖି—ମୋର ପେଟର ଭୋକ ଶୋଷରୁ ମନର ଭୋକଶୋଷ ଅଧିକ ବଳି ପଡ଼ୁଛି; ଦେଖୁଛି, ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ଆଜି ଠାକୁରମାନଙ୍କର ବିକଳରେ ଅସହଣି ହୋଇ—ଯେତେ ପ୍ରକାର ରନ୍ଧଣା ସେ ଜାଣନ୍ତି—ସବୁ ରାନ୍ଧି, ବାଢ଼ି ନେଇ ଆସିଛନ୍ତି, ଏହି ରତ୍ନ ଥାଳିଆରେ—ଅଭୁ ଉଭା ହୋଇଛନ୍ତି ଦରିଦ୍ରା ଅନ୍ତରରେ, ପରଷି ଦେବାକୁ ତାହା ଏହି ଦରିଦ୍ରଙ୍କ ଥାଳରେ। ଦିଅ ମା ! ଦିଅ—ଭାରି କ୍ଷୁଧା, ଭାରି ଜ୍ୱାଳା !

ଶ୍ରୀୟା—ଓଃ ! ତୁମେ ଯେ ବ୍ରାହ୍ମଣ—ମୁଁ ଚଣ୍ଡାଳ ! ତୁମର ପରଶକୁ ଛୁଇଁବା ମୁଁ ଯୋଗ୍ୟ ନୁହେଁ। ତୁମକୁ ପରଶି ଦେବି କିପରି ?—ମୁଁ ଦେଇ ପାରିବି ନାହିଁ—ଦେଇ ପାରିବି ନାହିଁ—

( ଯିବାକୁ ଉଦ୍ୟତ )

ବଳ—ଲକ୍ଷ୍ମୀ-ମା—ଲକ୍ଷ୍ମୀ-ମା—

ଶ୍ରୀୟା—ମୁଁ ଲକ୍ଷ୍ମୀ-ମା ନୁହେଁ, ପଣ୍ଡେ—ମୁଁ ଶ୍ରୀୟା ଚଣ୍ଡାଳୁଣୀ। ( ଚାଲିଗଲେ )

ବଳ—ମୋର ଶ୍ରୀ-ଠାକୁରାଣୀ ଆଜି ଶ୍ରୀୟା-ଚଣ୍ଡାଳୁଣୀ—

ଜଗ—ସେ ତୁମର ଶ୍ରୀ-ଠାକୁରାଣୀ ନୁହେଁ, ଭାଇନା।

ବଳ—ଜଗା ! ତୁ ଯେମିତି ଦୁନିଆକୁ ଠକିବାକୁ ବସିଥିଲୁ—ଜଗୁଆ ପଣ୍ଡା ଓ ବଳିଆ ପଣ୍ଡା ଏହି ଠକ ନାମରେ, ଶ୍ରୀ ଠାକୁରାଣୀ ଆଜି ସେମିତି ଠକିଗଲେ ଦୁନିଆର ଠାକୁରଙ୍କୁ—ଶ୍ରୀୟା ଚଣ୍ଡାଳୁଣୀ ଏହି ଠକ ନାମରେ। ନା, ନା, ମୁଁ ଠକିବି ନାହିଁ—ମୁଁ ଠକ ନୁହେଁ—ଲକ୍ଷ୍ମୀ ମା। ଲକ୍ଷ୍ମୀ ମା।

( ପ୍ରସ୍ଥାନ )

ଜଗ—ଭାଇନା ! ଭାଇନା ! (ଅନୁଧାବନ କଲେ)

[ ଏହି ଡାକ କ୍ରମେ ଗାଢ଼ରୁ ଗାଢ଼ତର ହେଲା—ଆଡ଼ିଷଣ୍ଡରେ ଗଗନ ପବନ ଶିହରି ଉଠିଲା ]

---

## ତୃତୀୟ ଦୃଶ୍ୟ

[ ନୋଳିଆ ପଲ୍ଲୀର ଏକାଂଶ। ଲକ୍ଷ୍ମୀ ଉନ୍ମାଦନୀ ପରି ଅଇଁଠା ହାତରେ ପ୍ରବେଶ କଲେ ]

ଲକ୍ଷ୍ମୀ—'ଲକ୍ଷ୍ମୀ-ମା', 'ଲକ୍ଷ୍ମୀ-ମା' ବୋଲି କିଏ ମୋତେ ଅତି କାତର କଣ୍ଠରେ ଡାକୁଛି ? ବଡ଼ ଠାକୁରେ ନୁହନ୍ତି ତ ?

( ମୁକୁତା ପ୍ରଭୃତି ପିଲାମାନଙ୍କ ପ୍ରବେଶ )

ମୁକୁତା—ମାଣବସା-ମା—ମାଣବସା-ମା। ଏ'କଣ କଲ ? ଖାଇବା ପରକୁ ଉଠି ଆସିଲ କି ? ଅଇଁଠା

ବାର ବର୍ଷ ହେଲା କି ବ୍ରତ ପାଳିଥିଲି ଯେ, ପାଣି
ବି ଟୋପେ ପିଉ ନଥିଲି—ଆମର ବୁଢ଼ା ମାନି
ସେହି ବ୍ରତ ଭଙ୍ଗ, ଆମ ଗହଣରେ ବସିଲ—
ବଡ଼ା ପଡରରୁ ଗୁଣ୍ଡେ ପାଟିକି ନେଇଛ କି ନା,
ଏତକି ବେଳେ କ'ଣ ହେଲି ଯେ—

ଲକ୍ଷ୍ମୀ—କିଛି ନାହିଁ, ମୁକୁତା—କିଛି ନାହିଁ । ମୁକୁତା !
ଚୁଲ, ଖାଇବ—କିଏ ଖା'ନ୍ତୁ ନ ଖା'ନ୍ତୁ ମୋର
ଗଲା କ'ଣ ? ମୁଁ ସର୍ବଗ୍ରାସୀ—ମୁଁ ରାକ୍ଷସୀ—ମୁଁ
ଚଣ୍ଡୀ ରୂପିଣୀ । ।

ବଳରାମ— ନେପଥ୍ୟ ) ଦିଅ ମା, ଦିଅ—ଭିକ୍ଷା
ଯୁଧା, ଭିକ୍ଷା ଶୋଷ—

ଲକ୍ଷ୍ମୀ—ପୁଣି ସେହି କାତର କଣ୍ଠ—କାତର ମିନତି—

ବଳ—(ନେପଥ୍ୟ) ଲକ୍ଷ୍ମୀ-ମା ! ଲକ୍ଷ୍ମୀ-ମା—

ଲକ୍ଷ୍ମୀ—ନା ନା, ମୁଁ ଚଣ୍ଡୀରୂପିଣୀ—ମୁଁ ଚଣ୍ଡୀରୂପିଣୀ—
( ପ୍ରସ୍ଥାନ )

ମୁକୁତା—ମାଣିବସା-ମା— (ଅନୁଧାବନ କଲା)

( ଦୃଶ୍ୟ ପରିବର୍ତ୍ତନ )

ଲକ୍ଷ୍ମୀ— ଗୀତ

ମୁଁ ଯେ ଚଣ୍ଡୀରୂପିଣୀ ଅଭିମାନୀ
ମୋର ମନ ତଳେ ନିଠୁର ହେ ତୁମେ
ଛପିଛପି ଆଉ ଅସ ନା । ୦ ।
ଛୁଅଁ ନା ଛୁଅଁ ନା ମୋ ହୃଦୟ କୋଣ
ଟେକି ରଖ ପ୍ରଭୁ, ତୁମ ବଡ଼ ପଣ—
ବଡ଼ ତୁମେ, ବଡ଼ ଦେଉଳେ ପଡ଼ିଛି
ତୁମଲାଗି ଟିକା ଆସନୀ ।
ଲୁଟିଲ-ଭ ସବୁ ଜୁଟିଲ ହେ ଆଜି
ମୋ ନୟନ ନୀରେ ହଂସ ନା । ୧ ।
[ ନାରଦଙ୍କ ଗାଇ ଗାଇ ପ୍ରବେଶ ]

ନାରଦ—ବିଶ୍ୱମୟୀ ହୃଦେ ବିଶ୍ୱ କାରଣର ମମତା
ରଖିଛ'ରେ କି 'ମା' ଦୁର୍ଜ୍ଜୟ ମାନ ସମତା
ଦୀନ ହୀନ କୋଟି ସନ୍ତାନ ଲାଗି
ଦୁଃଖିନୀ ଦୁଃଖ-ନାଶିନୀ··· । ୨ ।

—— —

ଚତୁର୍ଥ ଦୃଶ୍ୟ

[ ସମୁଦ୍ରତଟ । ଲକ୍ଷ୍ମୀ ନାରଦଙ୍କ ସଙ୍ଗେ ମୌନ ଭାବରେ ପ୍ରବେଶ କଲେ । କିଛିକ୍ଷଣ ପରେ ନାରଦଙ୍କୁ ସମ୍ବୋଧନ କରି ନୀରବତା ଭଙ୍ଗ କଲେ ]

ଲକ୍ଷ୍ମୀ—ନାରଦ !

ନାରଦ—ଜନନୀ !

ଲକ୍ଷ୍ମୀ—ମୁଁ ଫେରିବି ନାହିଁ—

ନାରଦ—ଏ ଦୀନ-ବେଶର ବି ଆଉ ପ୍ରୟୋଜନ ନାହିଁ

ଲକ୍ଷ୍ମୀ—ନା, ମୁଁ ଚଣ୍ଡୀରୂପିଣୀ । ଏ'କଥା କଦାପି ଭୁଲିବି ନାହିଁ । କହିଲ, ନାରଦ । ଠାକୁରମାନଙ୍କର ସେ ବିଭବ ଆଉ ଅଛି ?

ନାରଦ—ଦାରିଦ୍ର୍ୟ—ଛିଣ୍ଡା କପୀନଧାରୀ—ଅନ୍ନ ଦାଉଟି ମିଳୁନି ନାହିଁ ।

ଲକ୍ଷ୍ମୀ—କେମିତି ? ( ଅଦ୍ଭୁତ ହସ ହସିଲେ )

ନାରଦ—ହେଲେ—

ଲକ୍ଷ୍ମୀ—ହେଲେ ପୁଣି କ'ଣ ?

ନାରଦ—କଷ୍ଟ ନାହିଁ ଠାକୁର ଦୁହିଙ୍କର ।

ଲକ୍ଷ୍ମୀ—କଷ୍ଟ ନାହିଁ ?

ନାରଦ—କାରଣ, ଦରିଦ୍ରୀ ମା ଯେ ଅନ୍ନପୂର୍ଣ୍ଣା ହୋଇ ସୁଦ୍ଧା ନିରନ୍ନା, ଉପବାସୀ—ଧନରତ୍ନର ଅଧୀଶ୍ୱରୀ ହୋଇ ସୁଦ୍ଧା ଉଦାସିନୀ, ତପସ୍ୱିନୀ—

ଲକ୍ଷ୍ମୀ—ବୁଝି ପାରିଲି ନାହିଁ ତୁମ କଥା, ନାରଦ ?

ନାରଦ—ମା, ଏ ଜଗତରେ ଦୁଇଟି ସମ୍ପ୍ରଦାୟ ଅଛି— ଗୋଟିଏ ଧନୀ, ଆଉ ଗୋଟିଏ ଦରିଦ୍ର ।

ଲକ୍ଷ୍ମୀ—ତା' ଜାଣେ ।

ନାରଦ—ଧନୀ ସମ୍ପ୍ରଦାୟରେ—ଧନୀ ଧନୀକୁ ଦେଖି ହିଂସାରେ ଜଳି ପୋଡ଼ି ମରିଯାଏ; କିନ୍ତୁ ଦରିଦ୍ର ସମ୍ପ୍ରଦାୟରେ—ଦରିଦ୍ର ଦରିଦ୍ରକୁ ଦେଖି ଜୀଇ ରହିବାକୁ ବରଂ ବଳ ପାଇଥାଏ ।

ଲକ୍ଷ୍ମୀ—ହେଲେ, ଧନୀକୁ ଦେଖି ଦରିଦ୍ର କ'ଣ କରିଥାଏ ?

ନାରଦ—ଦରିଦ୍ର ଈର୍ଷା ପରବଶ ହୋଇ ଧନୀକୁ ମାରିବାକୁ ଚେଷ୍ଟା କରିଥାଏ, କିମ୍ବା ଆପଣା

ଦୁଃଖକୁ ବଡ଼ ନେଇ ଭଲେ ଭଲେ ପୋଡ଼ି ମରୁଥାଏ ।

ଲକ୍ଷ୍ମୀ—ଠିକ୍ କଥା କହୁଛ, ନାରଦ । ମୁଁ ଧନୀ ହେବି—ମୋର କୋଠା ବାଡ଼ି ହେବ—ମୋର ଦାସଦାସୀ ରହିବେ—ସ୍ତୁତି ଗାଇବେ—ଦୁଃଖୀ ରଙ୍କି ଆସି ମୋ ଦୁଆରେ ଲୁଚ୍ ଲୁଚ୍ ହେବେ—'ଅନ୍ନ ଦିଅ, ଅନ୍ନ ଦିଅ' ବୋଲି ବୋବାଳି ଛାଡ଼ିବେ—ମୁଁ ଉପର ମହଲରେ ଥାଇ ସେ ଦୃଶ୍ୟ ଦେଖୁଥିବି, ଆଉ ମନ ଖୋଲି ଠୋ ଠୋ ହସୁଥିବି—ହାଃ—ହାଃ—ହାଃ—

ନାରଦ—ମା !—

ଲକ୍ଷ୍ମୀ—ହଁ, ମୋର ରାଜପ୍ରାସାଦ ହେବ, ଏହି ସମୁଦ୍ର ତଟରେ—ନୋଳିଆ ପଲ୍ଲୀରେ ।

ନାରଦ—ଅବଶ୍ୟ, ମା ! ତା' ନ ହେଲେ ଚଣ୍ଡାଳ ଜାତିର ଟେକ ବଢ଼ାଇବ କିପରି ?

ଲକ୍ଷ୍ମୀ—ଆହୁରି; ବଡ଼ ଦେଉଳର ଠାକୁର ଦୁହେଁ ଯେତେବେଳେ ଏ' କଥା ଶୁଣିବେ—ସେତେବେଳେ ସେମାନେ କରିବେ କ'ଣ କୁହ ତ ?

ନାରଦ—ଆପଣା କର୍ମକୁ ନିନ୍ଦିବେ, ଭଲବଲ ହୋଇ—

ଲକ୍ଷ୍ମୀ—ଧାଇଁ ଆସିବେ ଏଠାକୁ, ଠାକୁରାଣୀଙ୍କର ଶରଣ ପଶିବେ—ହାଃ ହାଃ—

ନାରଦ—ନାରାଣୀ ଦୁହେଁ, ଆଶ୍ଚର୍ଯ୍ୟ କ'ଣ ?

ଲକ୍ଷ୍ମୀ—ହେଲେ, ତୁମେ ଶୁଣି ଆଶ୍ଚର୍ଯ୍ୟ ହେବ, ନାରଦ ! ମୁଁ ଆଶ୍ରୟ ଦେବି ନାହିଁ ।

ନାରଦ—ଅବଶ୍ୟ ମା—ତା' ନ ହେଲେ ଦେବୀର ଅଭିଶାପ ବୃଥା ହେବ ସିନା ।

ଲକ୍ଷ୍ମୀ—ଦେବୀର ନୁହେଁ, ଚଣ୍ଡାଳୁଣୀର ଅଭିଶାପ ! ଚଣ୍ଡାଳ-ବାଟାଳ ବୋଲି ଲଟାଳ କରି ମତେ ଘରୁ ତଡ଼ିଦେଲେ; ଚଣ୍ଡାଳ-ଅଧମ ହୋଇ ସେମାନେ ଘରୁ ବାହାରିବେ—ଦ୍ୱାରେ ଦ୍ୱାରେ ଭିକ ମାଗିବେ—ଶେଷକୁ ଚଣ୍ଡାଳ ହାତଟେକା ଅନ୍ନ ଖାଇ ମଣୋହି ସାରିବେ ।

ନାରଦ—ସେହି ମଣୋହି ସାରିବେ ମନର ଆନନ୍ଦରେ, ମା—ପେଟର ଜ୍ୱାଳାରେ ନୁହେଁ ।

ଲକ୍ଷ୍ମୀ—ଏଁ ! ମୋର ଅଭିଶାପ ଏତେହିଁ ଫଳିବ ନାରଦ ? ମୁଁ ଯେ ଆନନ୍ଦ ଆଉ ସମ୍ଭାଳି ପାରୁ ନାହିଁ—ହାଃ ହାଃ ହାଃ ହାଃ—

ନାରଦ—ନାରାୟଣ—ନାରାୟଣ— (ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

[ ପେଦ୍ରୁ ଓ ଗରୁଡ଼ ପ୍ରବେଶ କଲେ । ପେଦ୍ରୁର ସାଜ ସଜ୍ଜାର ଜମକ କହିଲେ ନ ସରେ; କିନ୍ତୁ ଗରୁଡ଼ର ବେଶଭୂଷା ଥିଲା ଠିକ୍ ଓଲଟା—ଅନାହାରରେ ସେ ଝୁଣ୍ଟି ଶୁଖି ଯାଇଥିଲା ]

ଗରୁଡ—ଅଲ୍ଲେ ମତେ ଟିକିଏ ଧର, ପେଦ୍ରୁ—

ପେଦ୍ରୁ—ହଇରେ ସାପଖିଆ, ଦେଖୁଚୁ କଣ—କହୁଚୁ କଣ ?

ଗରୁଡ଼—ମୁଁ ତ ତତେ ପେଦ୍ରୁ ଛଡ଼ା ଆଉ କିଛି ଦେଖୁ ନାହିଁ ?

ପେଦ୍ରୁ—କିଛି ଦେଖୁନୁ ? ( ଆପଣାର ବେଶ ପରିପାଟି ଦେଖାଇ ) ଏ'ମାନ କଣ ? ମଥାରେ ମୁକୁଟା ଜାଲି—ଦେହରେ ରେଶମୀ କାଞ୍ଚୁଲି—ଅଣ୍ଟାରେ ରତ୍ନ ଓଢ଼ଣୀ—ପାଦରେ ନୂପୁର ବାଜେଣୀ—

ଗରୁଡ଼—ଆଉ, ନାକ ନ ଥାଇ ନାକରେ ମୁକୁତା ବସଣି—କାନ ନ ଥାଇ କାନରେ, ହୀରାର କୁଣ୍ଡଳ—ବେକ ନ ଥାଇ ବେକରେ ଦୋଡାଇସି ଚିନାମାଳ ।

ପେଦ୍ରୁ—କ'ଣ, କଣ କହିଲୁରେ, ସାପଖିଆ ?

ଗରୁଡ଼—ଦୁହାଇ—ଦୁହାଇ, ପେଦ୍ରୁରାଣୀ—ଠାକୁରାଣୀ !

ପେଦ୍ରୁ—( ହସି ) କମିତି, ରାଣୀପରି ଦିଶୁଛି କି ନାହିଁ କହ ତ ?

ଗରୁଡ଼—ଆହା, ଠିକ୍ ଯେମିତି ଚନ୍ଦ୍ରକାଣୀ—

ପେଦ୍ରୁ—କ'ଣ କ'ଣ କହିଲୁରେ, ସାପଖିଆ—ମୁଁ କାଣୀ ?

ଗରୁଡ଼—ତା ନ ହେଲେ, ମୋର ଅବସ୍ଥା ଦେଖୁଛୁ ନାହିଁ ?

ପେଗୁ—ଅବସ୍ଥା ?···ସାପଖିଆ···

ଗଲ୍ଲଡ଼—ସାପଖିଆ ଆଉ କହନ୍ତୁ ନାହିଁ, ପେଗୁରାଣୀ !
( ବିକଳ ସ୍ୱରରେ )

ପେଗୁ—ଆ ହା ହା—କି ଦୁଃଖ ! ବେଶ୍, ଡାକିବ ଏଥର କେଞ୍ଚୁଆଗିଲା ବୋଲି—

ଗଲ୍ଲଡ଼—( ବିକଳରେ ) ଆଲୋ ଜିଆନାଳ ଖୁଣ୍ଟିଖାଇ—ତା' ଯଦି ମିଳୁଥାନ୍ତା ଲୋ—

ପେଗୁ—ଠିକ୍ ହୋଇଛି । ଅରେ ପବନା ! ପବନ ଖାଇ ଯେ ବଞ୍ଚିବ—ସେ ଜୁ ରହିବାକୁ ବ ଆଉ ବେଶୀ ଡେଗ୍ରି ନୁହେଁ ।

ଗଲ୍ଲଡ଼—ତୁ କଣ କହୁଛୁ, ଲୋ ଅଲକ୍ଷଣୀ ? ପବନ ମୋର ବାପ—ବାପଖିଆ କର ମତେ ଭଗାସ୍ତି ହସା କରବୁ କଲୋ ?

ପେଗୁ—ହା—ହା—ହା—ହା ( ହସିଲ )

ଗଲ୍ଲଡ଼—ହସୁଚୁ ଆହୁର ?

ପେଗୁ—କହିଲ୍ଲ, ମୋଠୁ ବେଶୀ ଭଗାସ୍ତି ଆଉ କିଏ ଅଛି ତୋର ଏ' ଦୁନିଆରେ ?

ଗଲ୍ଲଡ଼—ବୁଝିଛି—ସେହି ଭଗାବ ଦାଉ ସାଧିବାକୁ ଏହି ସାଜ ବେଶ ତୋର ।

ପେଗୁ—ଅରେ, ତୋର ଅରକ୍ଷିତ ଠାକୁରମାନଙ୍କୁ ଭଗାବ୍ରପଣ ଦେଖାଇବେ ବୋଲି, ମୋର ଠାକୁରାଣୀ ନୋଳଆ ସାହିରେ ଇନ୍ଦ୍ରଭୁବନ ତିଆର କର, ଇନ୍ଦ୍ରାଣୀ ହୋଇ ସେଠାରେ ବିରାଜମାନ । ସ୍ତେ ତା'ର ଟିକିଏ ନମୁନା ରେ, ନାକା !

ଗଲ୍ଲଡ଼—ମୁଁ ନାକଖାଇ—ତୁ କଣ ସର୍ବଖାଇ ?

ପେଗୁ—ସର୍ବ ଅରେ ଖାଇପାରେ ତ ? ( ଗୁଲିଗଲ )

[ ଏଣିକିବେଳେ ଜଗନ୍ନାଥ ଓ ବଳରାମ ପ୍ରବେଶ କଲେ—ଅତି ଦୀନହୀନ ବେଶ । ବଳରାମ ନିଜ ପିଠି ଆଉଁସୁଥିଲେ—ଗଲ୍ଲଡ଼ ପ୍ରସ୍ଥାନ କରଥିଲ ]

ବଳ—ଓଃ ! ଶକ୍ତ ବିଧାଟାଏ କସିଦେଇଛି ରେ ଜଗା !

ଜଗ—କପାଳ କଥା—

ବଳ—ଆମର ଅର୍ଜିବା କଥା ।

ଜଗ—ପରାଣ କମିଲା ତ ?

ବଳ—ହେଲେ, ଭୁକୁର ପରାଣ ଯେ ସେଇକି ବଳ ପଡ଼ୁଛି, ଜଗା !

ଜଗ—ତୁମେ ସେଦନ କଥା ଭୁଲିଯାଅ ! ମୋତେ ବିଶ୍ୱାସ କର ! ସେ—

ବଳ—ଶ୍ରୀ-ଠାକୁରାଣୀ ନୁହନ୍ତି ?

ଜଗ—ନା, ସେ ଜଣେ ଚଣ୍ଡାଳୁଣୀ—ଲୋକେ ତାକୁ ଶ୍ରୀଯା ଚଣ୍ଡାଳୁଣୀ ବୋଲି ଡାକନ୍ତି ।

ବଳ—ତା'ର କଥାବାର୍ତ୍ତା, ତା'ର ଗୁଲିଚଳଣ ଦେଖିଲେ—କିଏ କହିବ ସେ ଚଣ୍ଡାଳୁଣୀ ? ବରଂ ବ୍ରାହ୍ମଣ ଘରର ଝିଅ ବୋଲି ସମସ୍ତେ କହିବେ ।

ଜଗ—ମନ ଗୁଣରେ ଫଳ ।

ବଳ—ଯା' କହୁଛୁ ରେ, ଜଗା ! ବ୍ରାହ୍ମଣୀଟାଏ କେଡ଼େ ସରାଗରେ ଆମକୁ ତା' ଘରକୁ ଡାକିନେଲା—ପାଣି ଆଣିଦେଲା, ଗୋଡ଼ ହାତ ଧୋଇବାକୁ—ଗାମୁଛା ଦେଲା ପୋଛିପାଛି ହେଲୁ—ଠା ପିଢ଼ା କରିଦେଲା, ଚେକା ପକେଇ ବସିଲୁ—ଡଙ୍କା କଦଳୀପତ୍ର ଲଗେଇ ଦେଲା, ଆମେ ତଟକା ଅନ୍ନକୁ ଅନେଇ ରହିଲୁ; ହେଲେ, ବ୍ରାହ୍ମଣୀଟା ଅନ୍ନ କୁଡ଼ୁଆ ଆଣି ଅନ୍ନ ବାଢ଼ିବ କ'ଣ, ଖାଲି କୁଡ଼ୁଆଟା ଭାଙ୍ଗିଲା ମୋର ମଥାରେ—ଆଉ ସେଇଁ ବିଧାଟାଏ—ଓଃ—

ଜଗ—ଆହୁରି, ଭାଇନା ! ସେଇଁ କଥାଟା ସେ ଗଳୁଗେଇ କର କହିଲା—ଆମେ ଅଲକ୍ଷଣୀ ଦି'ଟା ଆମକୁ ଆଣି ଘରେ ପୂରାଇବାରୁ, ତା' ଘରୁ ଲକ୍ଷ୍ମୀ ଗ୍ଳାଡ଼ିଗଲେ — ତା' ଅନ୍ନ-ହାଣ୍ଡିରୁ ଅନ୍ନ ଉଭେଇଗଲା—

ବଳ—ସେ ବ୍ରାହ୍ମଣୀ ନୁହେଁ—ଚଣ୍ଡାଳୁଣୀ ।

ଜଗ—ମନ ଗୁଣରେ ଫଳ ।

ବଳ—ଓଃ ! ସେହି ଫଳଟା ମୋର ପିଠିରେ ପିନା !

ଜଗ—ହଁ, ମନଗୁଣରେ ଫଳ ।

ବଳ—ହଇରେ, କ'ଣ କହିଲୁ ତୁ ? ମୋର ମନ-ଗୁଣରେ—

ଜଗ—ଭାଇନା, ଏଣେ ଦେଖ ତ, କେତାଏ ଖଇ ମୁଣ୍ଡେଇ—

ବଳ—ଗୁଡ଼ିଆ ସାହୁ ତ ! ଏଣିକି ଅସୁଛୁ ଝମର ଝମର ବଜେଇ ।

ଜଗ—ହେଲେ, ଦେବ ତ ?

ବଳ—ଆମର ପ୍ରଜା, ନ ଦେଇ ଯିବ କୁଆଡ଼େ ।
( ଧାରେଇଗଲେ )

ଗୁଡ଼ିଆ—( ପ୍ରବେଶ କରି ) ବେହ୍ନ ପୋ, ଅନୁକୂଳ ବାଟରେ ଚଣ୍ଡାଳ ଦ'ଟା—

ବଳ—ଆମେ ଚଣ୍ଡାଳ ନୋହୁ, ଗୁଡ଼ିଆ ସାହୁ—

ଗୁଡ଼ିଆ—ଆଉ ବ୍ରାହ୍ମଣ ଗୋସେଇଁ ?

ବଳ—ବ୍ରାହ୍ମଣ ଗୋସେଇଁ ବି ଆମକୁ ମୁଣ୍ଡ ନୁଆନ୍ତି, ଗୁଡ଼ିଆ ସାହୁ ।

ଗୁଡ଼ିଆ—ତୋ ମୁଣ୍ଡ ଗଣ୍ଡି—ବାଟ ଛାଡ଼, ଲକ୍ଷ୍ମୀଛଡ଼ା ।

ବଳ—ସତେ ଲକ୍ଷ୍ମୀ ଛାଡ଼ିଛନ୍ତି ଆମକୁ—ତୁମ୍ଭେ ଛାଡ଼ି ଯିବ କି ଆମକୁ, ଗୁଡ଼ିଆ ସାହୁ !

ଗୁଡ଼ିଆ—ନାହିଁ ତୋ ଗୋଡ଼ତଳେ ଅଜାଡ଼ି ଦେଇଯିବି ଏଇ ଟୋକେଇକ ଖଇ ?

ବଳ—ଯେ ଆଉ ବେଶୀ କ'ଣ ? ତୁମେ ଆମର ଅମୃତ-ମଣିଷିଆ ପ୍ରଜା—

ଗୁଡ଼ିଆ—ଅହାରେ, ମୋ ରଜା କି ରେ ! ବାଟ ଛାଡ଼ୁଚୁ, ନା ଦେଖୁଚୁ ଏଁ—( ସେହି ଲହୀ କଡ଼ାଟି ଦେଖାଇଲା )

ବଳ—ଭରି ଭେଜ, ଗୁଡ଼ିଆ ସାହୁ !

ଗୁଡ଼ିଆ—ଅଚ୍ଛା, ଅଚ୍ଛା, ହାତ ପତା ।
[ ଗୁଡ଼ିଆ ସାହୁ ଖଇ ଦେଇ ଚାଲିଗଲା । ମାତ୍ର, ଖାଇବାକୁ ଗଲାବେଳେ ପବନରେ ସବୁ ଉଡ଼ିଗଲା]

ଜଗ—(କ୍ରୋଧରେ) ପବନ !

ବଳ—( ଧରି ପକାଇଲେ ଜଗନ୍ନାଥଙ୍କୁ ) ଅରେ, ଏ ପବନ ନୁହେଁ ରେ ଜଗା—ମୋର ଲକ୍ଷ୍ମୀ-ମା'ର ଖର ନିଃଶ୍ୱାସ—

---

## ଷଷ୍ଠ ଦୃଶ୍ୟ

[ ସୁରମ୍ୟ ଅଟ୍ଟାଳିକାର ଗୋଟିଏ ରତ୍ନ ଖଚିତ ପ୍ରକୋଷ୍ଠ । ରତ୍ନ-ପଲଙ୍କରେ ଲକ୍ଷ୍ମୀଦେବୀ ଅର୍ଦ୍ଧ-ଶାୟିତା ଥିଲେ—ମୁକୁତା ବ୍ୟଜନ କରୁଥିଲା; ଲକ୍ଷ୍ମୀ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ ]

ମୁକୁତା—ମାଣବସା-ମା !

ଲକ୍ଷ୍ମୀ—ମୁକୁତା !

ମୁକୁତା—ଏତେ ସୁଖରେ ପୁଣି ତୁମର କି ଦୁଃଖ ?

ଲକ୍ଷ୍ମୀ—ଦୁଃଖ ? ( ହସିଲେ )

ମୁକୁତା—ହସୁଛ ସିନା, ହେଲେ ତୁମର ମନର ଦୁଃଖ ଯେମିତି ଏଥିରେ ଅନ୍ଧାର ଫୁଟି, ଉଛୁଳି ପଡ଼ୁଛି ।

ଲକ୍ଷ୍ମୀ—ଆଲୋ ମୁକୁତା, ତୁ ପରି ନାଚ ଶିଖିଛୁ ?

ମୁକୁତା—ତୁମେ ତ ଶିଖେଇଚ—ନାଚିବି ?

ଲକ୍ଷ୍ମୀ—ନାଚିଲୁ !
[ ମୁକୁତା ଫୁଲହାରଟିଏ ଆଣି ଲକ୍ଷ୍ମୀଙ୍କ ପାଦରେ ଲଗାଇ ନିଜ ଗଳାରେ ଲମ୍ବାଇଲା ]
ଫୁଲହାର ଦେଲୁ ଯେ ?

ମୁକୁତା—ବଡ଼ ଦେଉଳରେ ବଡ଼ସିଂହାର ବେଶ ବେଳରେ ମାହାରୀ ଯେଉଁ ନାଚ ନାଚଥାଏ, ସେହି ନାଚ ନାଚିବି ପରା—ସେହି ନାଚକୁ ତ ତୁମେ ବେଶ ପସନ୍ଦ କରିଥାଅ ।

ଲକ୍ଷ୍ମୀ—ନିକଥା ! ହଉ, ନାଚ ।
[ ମୁକୁତା ନାଚିଲା । ଲକ୍ଷ୍ମୀ ବଡ଼ ସିଂହାର ବେଶରେ ସ୍ୱପ୍ନ ଦେଖୁଥିଲେ । ମୁକୁତା ଚାଲିଗଲା; ମାତ୍ର ବଡ଼ସିଂହଦ୍ୱାର ବେଶରେ ସ୍ୱୟଂ ଜଗନ୍ନାଥ ଆସି ପାଖରେ ଠିଆ ହୋଇଛନ୍ତି, ଏହି ଦୃଶ୍ୟ ଦେଖୁଥିଲେ ଲକ୍ଷ୍ମୀ ]

ଜଗ—ଲକ୍ଷ୍ମୀ ! (ଡାହୁକ ଧରି)

ଲକ୍ଷ୍ମୀ—ଛାଡ଼, ଛାଡ଼, ( ଛଡ଼ାଇ ନେଲେ )

ଜଗ—ଭାରି ରାଗ ତ ?

ଲକ୍ଷ୍ମୀ—ରାଗ ଖାଲି ଏକା ତୁମର ଅଛି, ଆଉ କାହାରି ନାହିଁ ?

ଜଗ—ହେଲେ, ଭାଇ ଭୋଳାନାଥ—ତାଙ୍କ କଥା ଧର
ଏତେ ଗଗ, ସୁନ୍ଦର ହେଉଛି କି ?

ଲକ୍ଷ୍ମୀ—ଥାଉ ଥାଉ—ତୁମ ଭାଇଙ୍କୁ ଶବ୍ଦୋ, ତୁମକୁ ବ
ଭଲକରି ଶବ୍ଦୋ ।

ଜଗ—ତୁମର ସଦାବେଳେ ଧାରଣା, ଲକ୍ଷ୍ମୀ—ମୁଁ ହିଁ
ସବୁ ଅନର୍ଥର ମୂଳ ।

ଲକ୍ଷ୍ମୀ—ତୁମେଇ ଯେ ନାଟର ଗୁରୁ ଗୋବର୍ଦ୍ଧନ,
ଏଇକଥା ଅଚ୍ଛାକରି କହିବ ।

ଜଗ—( ଦୀର୍ଘନିଃଶ୍ୱାସ ଛାଡ଼ି ) ମୋର ଭାଗ୍ୟ !
( ଗମନୋଦ୍ୟତ ହେଲେ )

ଲକ୍ଷ୍ମୀ—ଉଃ—

ଜଗ—କ'ଣ ହେଲା, ଲକ୍ଷ୍ମୀ ?

ଲକ୍ଷ୍ମୀ—ମୁଣ୍ଡଟା ଭାଗି ବଥେଇଲା—ଟିକିଏ—

ଜଗ—ଟିପିଦେବି ?

ଲକ୍ଷ୍ମୀ—ହେଉ ! ମଥାଟି ରଖିବ କେଉଁଠି, ଆଗେ
କୁହ ?

ଜଗ—ଏହି ବଜ୍ର-ବାହୁକୁ ପରା ତୁମେ ସଦାକାଳେ
ନରମ ତକିଆଠୁ ଅଧିକ ମଣି ଥାଅ ? ଆସ,
ଲକ୍ଷ୍ମୀ ! ( ବାହୁପ୍ରସାରଣ କଲେ )

ଲକ୍ଷ୍ମୀ—ନା—( ଅଭିମାନ ଭରେ )

ଜଗ—ଛି, ମୋ ଲକ୍ଷ୍ମୀଟି ପରା ! ( ଧାରଣ ପୂର୍ବକ
ଉତ୍ତୋଳନ କଲେ )

ଲକ୍ଷ୍ମୀ—[ କଳ୍ପିତ ବାହୁଦେଶରେ ମସ୍ତକ ସ୍ଥାପନ
କରିବାକୁ ଗଲେ—ଫଳରେ, ନିଦ ଭାଙ୍ଗିଗଲା
ଅନ୍ତୁନଙ୍କ ଭାବରେ ]
ମୁକୁତା—ମୁକୁତା—

ମୁକୁତା—ମାଣବସା-ମା !

ଲକ୍ଷ୍ମୀ—ଏ ଘରକୁ କିଏ ଆସିଥିଲା, ଜାଣୁ ?

ମୁକୁତା—କେହି ତ ନାହିଁ ?

ଲକ୍ଷ୍ମୀ—(ଦୀର୍ଘଶ୍ୱାସ ଛାଡ଼ି) ମୁକୁତା !

ମୁକୁତା—ମା ।

ଲକ୍ଷ୍ମୀ—ହଁ, ମୁକୁତା—କାଲି ସୁଦଶା ବ୍ରତ ପରା ?

ମୁକୁତା—ମା !

ଲକ୍ଷ୍ମୀ—ହେଲେ, ଯୋଗାଡ଼ ଯନ୍ତ ତ ତୁମର କିଛି ଦେଖୁ
ନାହିଁ ?

ମୁକୁତା—(ନୀରବ)

ଲକ୍ଷ୍ମୀ—କି ଲୋ, ତୁନି ହେଲୁ ଯେ—ଓଷା କରିବାକୁ
ମନ ନାହିଁ କି ?

ମୁକୁତା—ମନ ନ ଥିବ କାହିଁକି ? ହେଲେ—

ଲକ୍ଷ୍ମୀ—କରିବ ନାହିଁ ।

ମୁକୁତା—କରିବୁ କାହିଁକି ? ଲକ୍ଷ୍ମୀ ଠାକୁରାଣୀ ତ ଆମ
ପ୍ରତି ପ୍ରସନ୍ନା ନୁହନ୍ତି ।

ଲକ୍ଷ୍ମୀ—ଅପ୍ରସନ୍ନା ବୋଲି ତ ଅଧିକ ଜଗରଖିକରି କରିବା
ଉଚିତ ।

ମୁକୁତା—ତୁମର ଯେମିତି ସହଣୀ ଟିକେ, ମା—ସମସ୍ତଙ୍କର
ତ ସେମିତି ନୁହେଁ ।

ଲକ୍ଷ୍ମୀ—ଆଚ୍ଛା, ଲକ୍ଷ୍ମୀଠାକୁରାଣୀ ତୁମପ୍ରତି ଖୁସି ନୁହନ୍ତି,
ଏ କଥା ଜାଣିଲୁ କେମିତି ?

ମୁକୁତା—ତୁମେ ଅଜକ ବାର ବର୍ଷ ହେଲା ଅଖୁସି
କାହିଁକି—ଏ' କଥା ଆଗ କୁହ ତ ?

ଲକ୍ଷ୍ମୀ—ମୁକୁତା ମୋର କର୍ମକୁ ନିନ୍ଦ ମୁଁ ସୁଖୀ—ତୁମେ
ଅସୁଖୀ ହେବ ଏହି କାରଣରୁ, କାହିଁକି ?

ମୁକୁତା—ମାଣବସା-ମା । ତୁମେ ପରା ଆମକୁ ସଦା-
ବେଳେ କାମ ଭିତରେ—ଗୀତ ଗାଉଥିବେ—
କଥା ଛଳରେ, ଘରର ଘରଣୀ ହେବାକୁ ହେଲେ
କି କି ଗୁଣ ହାସଲ କରିବାକୁ ହୁଏ, ସେଇକଥା
ଶିଖେଇ ଥାଅ ?

ଲକ୍ଷ୍ମୀ—ବେଶ୍ ତ—

ମୁକୁତା—ସେଇ ଗୁଣମାନଙ୍କ ଭିତରୁ ତୁମେ ପରା
ଗୋଟିଏ ଗୁଣକୁ ସାର ବୋଲି ମଣିଥାଅ ?

ଲକ୍ଷ୍ମୀ—କେଉଁ ଗୁଣ-କଥା କହୁଚୁ ଯେ ?

ମୁକୁତା—ଘରର ଘରଣୀ ଯେଉଁ କାମ କରିବ—ସେହି
କାମ କଲାବେଳେ ବରାବର ମନେ ରଖିବ ଯେ,
ସେ ଯାହା କିଛି କରୁଛି, ତାହା ପରପାଇଁ; ଏମିତ
କଣ, ଭାତ ରାନ୍ଧିବ, କଣ୍ଠି କାଣ୍ଡି ନୁହେଁ—
ଗୋଟିଏ ଯୋଡ଼ିଏ ଅତିଥି ଆସିଯିବେ କାଳେ,
ଏଇ କଥାକୁ ଭାବିକରି—

ଲକ୍ଷ୍ମୀ—ଓ, ତା' ହେଲେ ତୁମେ ଓଷା-ମାଙ୍କୁ ତୁମ କଥା ଜଣାଇଲ ବେଳେ ମୋ କଥା ବି ଜଣେଇ ଥାଅ ?

ମୁକୁତା—ତୁହ ମାଣବସା-ମା । କେବେ ତୁମର ଓଷା ଭାଙ୍ଗିବ ?

ଲକ୍ଷ୍ମୀ—କାଲି ।

ମୁକୁତା—ତମେ ସେ ଦିନ ଅମମେଳରେ ଖାଇବାକୁ ବସି, ହଠାତ୍ ଘୁନାଅହୋଇ ଯେମିତି ଉଠି ପଳେଇ ଗଲ, ପୁଣି ସେମିତି କରିବ ନାହିଁ ତ ?

ଲକ୍ଷ୍ମୀ—ଅଲୋ, ନାହିଁ ଲୋ, ନାହିଁ—ସେଇ କଥାକୁ, ଏତେଦିନ ଯାଏ ତୁମକୁ ଯେଉଁ ମାଣବସା-ଓଷା କଥା ଶିଖେଇ ତା' କରେଇ ଅସିଛୁ, କାଲି ମୁଁ ନିଜେ ସେଇ ଓଷା ପାଳିବି ।

ମୁକୁତା—ସତେ ? ଭଣ୍ଡଭ ନାହିଁ ତ ?—ମାଣବସା-ମା ଓଷା ପାଳିବ—ଦୁନିଆ ଦୁଲୁକି ଉଠିବ । ମା ତୁମେ ଓଷା କଲେ, ଲକ୍ଷ୍ମୀ ଠାକୁରାଣୀ ନିଶ୍ଚେ ତୁମ କଥା ଶୁଣିବେ, ଦୟା କରିବେ; ତୁମେ ଖୁସୀ ହେବ—ଅମେ ଖୁସୀ ହେବୁଁ—ଦୁନିଆ ଖୁସୀ ହେବ ।

ଲକ୍ଷ୍ମୀ—ଅଃ—ଶୁଣ ତ—

ମୁକୁତା—କ'ଣ କୁହ, ମା—

ଲକ୍ଷ୍ମୀ—କାଲି ଭୋଜହେବ ।

ମୁକୁତା—ଖୁସିର କଥା ।

ଲକ୍ଷ୍ମୀ—ଦୁନିଆ ସାରା ଜୀବ ଏଇଠି ରୁଣ୍ଡ ହେବେ ।

ମୁକୁତା—ଅହୁରି ଖୁସିର କଥା ।

ଲକ୍ଷ୍ମୀ—ୟାକୁ ବଳି ଆହୁରି ଖୁସିର କଥା ଅଛି, ମୁକୁତା !

ମୁକୁତା—କି କଥା, ମା ?

ଲକ୍ଷ୍ମୀ—ଦୁନିଆରେ ଦୁଇଜଣ ଅଛନ୍ତି—ଦୁଇ ଭାଇ—ସେମାନେ କେବଳ ଅସିବେ ନାହିଁ ।

ମୁକୁତା—ଏମିତି ଦୁନିଆ-ଛଡ଼ା ସେ ଦୁଇଭାଇ କିଏ, ମା ?

ଲକ୍ଷ୍ମୀ—ଯେଉଁ ଦୁଇଭାଇ ଦୁନିଆର ଭୋକ ଶୋଷ ଘେନି, ଦୁନିଆ ସାରା ଖେଦ ବୁଲୁଛନ୍ତି, 'ହା ଅନ୍ନ, ହା ଅନ୍ନ' ବୋଲି—ସେଇ ଦୁଇ ଭାଇ ।

ମୁକୁତା—ମୁଁ ବୁଝିଛି ତୁମର ମନକଥା । ସେଇ ଦୁଇ ଭାଇ ଉପବାସୀ ବୋଲି, ତୁମ ବାରବର୍ଷିଆ ଓଷା ପାଳିଛ—ସେଇଥିପାଇଁ ଅନ୍ନ ଜଳ ଛାଡ଼ିଛ; ବର୍ତ୍ତମାନ ସେଇ ଦୁଇ ଭାଇ ଆସିବେ ବୋଲି, ତୁମେ ଦୁନିଆକୁ ନିମନ୍ତ୍ରଣ କରିବ, ମନାସିଛ—

ଲକ୍ଷ୍ମୀ—ମୁକୁତା—ମୁକୁତା । ଏ କ'ଣ କହୁଛୁ ?

ମୁକୁତା—ମୁଁ ଠିକ୍ କଥା କହୁଛି । ସ୍ୱେ ତ ତୁମର କଥା—'ଦରିଦ୍ର' ହେଉଛନ୍ତି 'ନାରାୟଣ' । ଏଇ ଦୁଇ ଭାଇ ଦୁନିଆ ଛଡ଼ା ଦୀନ ଦରିଦ୍ର; ସୁତରାଂ ସ୍ୱୟଂ ନାରାୟଣ ଅଜି ଦୁଇ ମୂର୍ତ୍ତିରେ—ଏଇ କଥା କହିବି ।

ଲକ୍ଷ୍ମୀ—ମୁକୁତା—ମୁକୁତା—

ମୁକୁତା—ମୁଁ ଚାଲିଲି—ମୁଁ ଚାଲିଲି, ମା । ଦୁନିଆକୁ ତୁମେ ନିମନ୍ତ୍ରଣ କର ବା ନ କର—ଭୋଜ ତୁମେ କରାଅ ବା ନ କରାଅ—ମୁଁ ଯିବି, ଦୁନିଆ ସାରା ଖୋଜି ବୁଲିବି—ମୋର ମାଣବସା-ମା'ର ସେହି ଦରିଦ୍ର-ନାରାୟଣ ଅତିଥି ଦୁଇଜଣ କାହାନ୍ତି ।

---

## ସପ୍ତମ ଦୃଶ୍ୟ

ମୁକୁତା— ଗୀତ

ଅତିଥି – ଅତିଥି—
ଏଁ ମଧୁ ତିଥି ଯାଏ ଗୋ ବିତି
ଅସ ଅତିଥି—ଅସ ଅତିଥି, ଅତିଥି—
ଲିଭିଲା ଦିନର ଅସ୍ତରାଗରେ
ଲିଭିଯାଇଛି ଗୋ ଅନ୍ତର ଭାତି ।୦।
ତୁମରି ଆସିବା ସରଣୀରେ ମନ ନିବେଶି
ନିମିଷେ ନୟନ ନ ପଡ଼େ ପଲକ ହତାଶୀ
ଲହରେ ବିଜନେ ଗଗନେ ପବନେ
ସୁନ୍ଦର ତବ ଅବାହନ ଗୀତି । ୧ ।
ଦୁଃଖ ଦରଦ—ମାନ ଅପମାନ ଯେତେକ
ଭସାଇ ଦେଇଛି ତୁମ ବିରହର ଅଶ୍ରୁଜଳରେ ଯେତେକ
ଆସ ପଥଭୁଲା ପଥିକ ବାଉଳା
ଜୀବନର ଚିର ଅପାଶୋରା ସାଥି । ୨ ।

[ ଗୀତ ଗାଇ ଗାଇ ଚାଲିଗଲା—ଗୀତର ରେଶ ଚାଲିଥାଏ । ବଳରାମ ଉଦ୍‌ବିଗ୍ନଭାବରେ ପ୍ରବେଶ କଲେ — ପଛେ ପଛେ ଥିଲେ ଜଗନ୍ନାଥ ]

ବଳ—କିଏ ଆମକୁ ଡାକିଲା, ଜଗା ?

ଜଗ—କାହିଁ, କେହି ତ ନାହିଁ ?

ବଳ—ଧ୍ୟାନ ଥାଇ ତୁ ତ କାଲ (ପୁଣି ଗୀତ ଶୁଣାଗଲା) ଏହି ଶୁଣ ଶୁଣ, କେମିତି କରୁଣ ସ୍ୱର—

ଜଗ—ବାଉଁଶ ଫାଙ୍କରେ ପବନ ପଶି ସେମିତି କରୁଣ ସ୍ୱରରେ ଡାକୁଥିବ ।

ବଳ—( ବାଧାଦେଇ ) ଆଃ—ରହ, ଶୁଣିବାକୁ ଦେ । 'ହେ ଅନାଥ', 'ହେ ଅନାଥ' ବୋଲି ଡାକୁଛି— ଚାଲ ଚାଲ, ମା ! ( ପ୍ରସ୍ଥାନ )

ଜଗ—ଚାଲ—( ଦୀର୍ଘନିଃଶ୍ୱାସ ଛାଡ଼ି ପଛେ ପଛେ ଗଲେ)

---

## ଅଷ୍ଟମ ଦୃଶ୍ୟ

[ ଲକ୍ଷ୍ମୀ ଦାଣ୍ଡ । ବକଳା ନନା ଦାଣ୍ଡ ଓଳାଉଥିଲା । ଶ୍ରୀୟା ପ୍ରବେଶ କଲା ଶ୍ରୀ-ମନ୍ତ ହୋଇ ]

ଶ୍ରୀୟା—ବକଳା ନନା !

ବକଳା—ଛି, ଝାପର କରୁଛ ତ, ଶ୍ରୀୟା ?

ଶ୍ରୀୟା—ତା' ହେଲେ ମୁଁ କହିବି, ତୁମେ ବି ଝାପର କରୁଛ ମତେ ।

ବକଳା—କେମିତି ?

ଶ୍ରୀୟା—ଏଇ ଝାଡ଼ୁ ମୁଠା ଧରି—

ବକଳା—ଶ୍ରୀୟା ତୁମେ ବର୍ତ୍ତିମାନ ଶ୍ରୀ-ମନ୍ତ, ବଡ଼ଲୋକ । ତୁମେ ଏ ଝାଡ଼ୁଧରି ଛୋଟ କାମକରିବ, ସେଇକଥା କହୁଚ ତ ?

ଶ୍ରୀୟା—ବକଳା ନନା ! ମୁଁ ଧନରେ ବଡ଼ ସତ, କିନ୍ତୁ ତୁମେ ମନରେ କେତେ ବଡ଼—ସେହି କଥା ଥରେ ହେଜ ପାଞ୍ଚି କୁହ ତ ?

ବକଳା—( ହସି ) ଭାରି ଈର୍ଷା ହେଉଛି, ନା ? ଉଠ, ଉଠ—

ଶ୍ରୀୟା—ନା—

ବକଳା—ଛି, ଆଜ ପରା ଲକ୍ଷ୍ମୀଦିନ—ଲକ୍ଷ୍ମୀ-ମା' ମାନେ ଶୁଚିମନ୍ତ ହୋଇ ଏଇବାଟେ ଯା' ଆସ କରିବେ— ଲକ୍ଷ୍ମୀଦାଣ୍ଡ ଏମିତି ଅଖରିକା, ଅପରିଷ୍କାର ହୋଇ ପଡ଼ି ରହିଥିବ ତ ?

ଶ୍ରୀୟା—କେବେ ନୁହେଁ ।

ବକଳା—ତେବେ ?

ଶ୍ରୀୟା—ଝାଡ଼ୁମୁଠା ମୋ ହାତକୁ ଦିଅ ।

ବକଳା—ଲୋକେ କହିବେ କଣ ତୁମକୁ, ଶ୍ରୀୟା ?

ଶ୍ରୀୟା—ଲୋକେ ତୁମକୁ ବା କହିବେ କ'ଣ, ବକଳା-ନନା ?

ବକଳା—ଲୋକ କଥାକୁ ମୁଁ କାନ ଦେବି ନା । ମୋ ମନ ଯାହା କହୁଚି, ମୁଁ ସେଇୟା କରିବି ।

ଶ୍ରୀୟା—ବେଶ୍, ମୋ ମନ ଯାହା କହୁଛି, ମୁଁ ବି ସେଇୟା କରିବି ।

ବକଳା—ହିଁ, ବଡ଼ଲୋକର ମନ ତ ?

[ ଶ୍ରୀୟା ଦେହରୁ ଅଳଙ୍କାର ଖୋଲି ଓତାରିବାକୁ ଲାଗିଲା ]

ଏ କଣ କରୁଛ, ଶ୍ରୀୟା ?

ଶ୍ରୀୟା—ମନର ମଇଳା ଛଡ଼ାଉଚି । ଲକ୍ଷ୍ମୀଠାକୁରାଣୀ ଏଗୁଡ଼ାକରେ ଭଣ୍ଡି ମତେ ପର କରି ଦେଇଛନ୍ତି—ଏହି କଥା ଆଜି ମୋ ମନ ସଫା କହୁଛି ।

ବକଳା—ନା ନା, ଶ୍ରୀୟା ! ସେମିତି କହିବ ନାହିଁ— ଏହି ଧନରତ୍ନ ଲକ୍ଷ୍ମୀ ଠାକୁରାଣୀଙ୍କ ଦାନ—ସେଇକୁ ଏମିତି ହତାଦର କରିବ ନାହିଁ ।

ଶ୍ରୀୟା—ହେଲେ, ବାନର ଗଳାରେ ମୁକ୍ତାହାର ସିନା—ହା-ହା-ହା

ବକଳା—ଶ୍ରୀୟା—

ଶ୍ରୀୟା—ବକଳା ନନା ! ସ୍ତ୍ରୀର ମର୍ଯ୍ୟାଦା, ତୁମେ ବ୍ରାହ୍ମଣ କରି ପାରିବ—ମୁଁ ଚଣ୍ଡାଳୁଣୀ ନୁହେଁ !

ବକଳା—ଏମିତି ଅପୁରା ମାରି କଥା କହିଲା ପରି କଥା କହୁଛ ଯେ, ଶ୍ରୀୟା ?

ଶ୍ରୀୟା—ବକଳା ନନା ! ତୁମର ସେଦିନର କଥା ମନେ ଅଛି ତ ?

ବକଳା—କେଉଁ ଧନର କଥା ?

ଶ୍ରୀୟା—ଗୁରୁବାର ଓଷା ପାଳି, ମୁଁ ଝିଅ ସବୁଗରେ ଅଟିକା ଚଢ଼େଇ ଥିଲି ଯେଉଁଦିନ ?

ବକଳା—ଲକ୍ଷ୍ମୀ ଦେଉଳରେ ତ ? ମୁଁ ତ ଲଗେଇଥିଲି ଭୋଗ ସେଦିନ । ଲକ୍ଷ୍ମୀ ଠାକୁରାଣୀ ଯେତେ ଭଲ ଭୋଗ-ଲାଗି ହୋଇଥାନ୍ତି, ସବୁ ବଢ଼ା ହୋଇଥିଲା ଥାଳକୁ ଥାଳ ଭୋଗ-ମଣ୍ଡପରେ – ଦିବ୍ୟ ବ୍ରାହ୍ମଣ ଭୋଜନ ବି କରାଯାଇଥିଲା ।

ଶ୍ରୀୟା—ତା' ପରେ, ତୁମେ ଠାକୁରାଣୀଙ୍କର ଭୋଗ ଆଣି ମୋ' ରନ୍ଧାଥାଳରେ ଅଜାଡ଼ ଦେଇଥିଲ ।

ବକଳା—ହଁ ତ । ତୁମେ ଠିକ୍ ଏଇ ଯାଗାରେ ଠିଆ ହୋଇଥିଲ ଅପେକ୍ଷା କରି, ବେଶ୍ ମନେ ଅଛି ।

ଶ୍ରୀୟା—ତା ପରେ ମୁଁ ଭୋଗ ଥାଳିଆ ଘେନି ଯାଉଁ ଯାଉଁ ବାଟରେ ଦୁଇଜଣ ବ୍ରାହ୍ମଣଙ୍କୁ ଭେଟିଲି— (ରହିଗଲା)

ବକଳା—ତା' ପର ?

ଶ୍ରୀୟା—ଦୁଇଭାଇ ସେମାନେ । ସେମାନେ କହିଲେ— ବଡ଼ଠାକୁର ଆଉ ସାନଠାକୁର, ଏ ଦୁହିଙ୍କର ସେବାକାରୀ ଥିଲେ ଦିହେଁ । ଠାକୁର ଦର୍ଶନ ତ ଭାଗ୍ୟରେ କେବେହେଲେ ଘଟିନାହିଁ—ତେବେ ସ୍ୱୟଂ ଠାକୁର ଦୁଇଭାଇ ଯେମିତ ଦୟାକରି ଦର୍ଶନ ଦେଇଥିଲେ ମୋତେ, ଏହିପରି ମନେ ହୋଇଥିଲା ସେ ଦିନ ।

ବକଳା—ଜଣେ ଧଳା, ଜଣେ କଳା ?

ଶ୍ରୀୟା—ଧଳା ଜଣକ କହିଲେ, ସେ ବଡ଼ଠାକୁରଙ୍କର ସେବାକାରୀ— ଆଉ କଳା ଜଣକ କହିଲେ—

ବକଳା—ସାନ ଠାକୁରଙ୍କର ସେବାକାରୀ—ତା' ପର ?

ଶ୍ରୀୟା—କେତେ କାଳର ଭୋକିଲା ଦୁହେଁ—ଶୁଖିଲା ମୁହଁ, ହାଡ଼ ଚମ ଲାଗି ଯାଇଛି କାହିଁରେ କ'ଣ, ଦୁହିଁଙ୍କ ହାତରେ ଦୁଇଟି ଥାଳ । କେତେ ବଳରେ ଚାହିଁଥାନ୍ତି ମତେ—ଥାଳ ପତେଇ ଥା'ନ୍ତି—ସବୁତକ ଅଜାଡ଼ି ଦେବି, ଏହିପରି ମନ ମୋର ଉଚ୍ଛଳ ହୋଇ ଉଠିଲା—ହାତ ଆଗେଇ ଗଲା...

ବକଳା—ତା' ପର ସେମାନେ ଥାଳ ହଟେଇ ନେଲେ ନା କଣ ?

ଶ୍ରୀୟା—ମୁଁ ହଟେଇ ନେଲି ମୋର ଭୋଗ ଥାଳିଅକୁ । ମୁଁ ଯେ ଚଣ୍ଡାଳୁଣୀ—କାହାରି ଛୁଆଁ ପଇଲେ ସୁଦ୍ଧା ଯୋଗ୍ୟ ନୁହେଁ—ବ୍ରାହ୍ମଣଙ୍କୁ ପରଷି ଦେବି କିମିତ ?

ବକଳା—ଶ୍ରୀୟା—ଶ୍ରୀୟା ! ତୁମେ କ'ଣ କଲ, ଶ୍ରୀୟା ? ଅଜାଡ଼ି ନଦେଲ କାହିଁକି ? ଠାକୁରାଣୀ ତୁମକୁ ଦୟା କରିଥିଲେ, ସେଇ କାରଣରୁ ଠାକୁର ଦୁହେଁ ସେଇ ରୂପରେ ତୁମ ହାତପରଶା ଅନ୍ନ ଖାଇବାକୁ ଲୋଭେଇ ଥାଳ ପତେଇ ଥିଲେ । ତୁମେ କଣ କଲ, ଶ୍ରୀୟା—ଅଜାଡ଼ି ନ ଦେଲ କାହିଁକି ?

ଶ୍ରୀୟା—ବ୍ରାହ୍ମଣ ! ତୁମର ଗଢ଼ା ଏଇ କାନ୍ଥ ବାଡ଼ ଯୋଗୁଁ—

ବକଳା—ଚଣ୍ଡାଳୁଣୀ ତୁମେ — ଚଣ୍ଡାଳ-ବଂଶରେ କାନ୍ଥବାଡ଼ ଭାଙ୍ଗିଚୁରି ପକେଇ ପାରିଲ ନାହିଁ ? ଠାକୁର ଦୁହିଙ୍କୁ ନିରାଶ କଲ ତ ?

ଶ୍ରୀୟା—(ଲୁହ ଟପ୍ ଟପ୍ ଗଡ଼ିପଡ଼ୁଥାଏ) ବକଳା-ନନା—

ବକଳା—ବକଳା-ନନା ନୁହେଁ, ମୁଁ ବକଳା-ଚଣ୍ଡାଳ —ଚଣ୍ଡାଳ ବୋଲି ଏଣିକି ଡାକିବ, ଭଉଣୀ । ବୁଝିପାଅ ତ —

ଶ୍ରୀୟା—ନାହିଁ, ଭାଇନା—ତୁମେ ବ୍ରାହ୍ମଣ, ବ୍ରହ୍ମ ମନ୍ତ୍ର ପଢ଼—ବ୍ରାହ୍ମଣର ଧର୍ମ କର; ମୁଁ ଚଣ୍ଡାଳ, ଚଣ୍ଡାଳର ଧର୍ମ କରେ—ଦାଣ୍ଡରେ ଝାଡ଼ୁ ଦିଏ ।

ବକଳା—ଭଉଣୀ ! (ଛୁଇଁବାକୁ ଯାଉଥିଲା)

ଶ୍ରୀୟା—ଛୁଇଁବ ନା, ଭାଇନା—ଏମିତି ଦିନେ ଅଧେ ଛୁଆଁରେ କି ଲାଭ ? ଯା'ର ଯେଉଁ ବେଉସା ସେଇ ତାକୁ ବଡ଼—ଏଇ କଥା ହେଜି ପାଞ୍ଚ ଲୋକେ ଆଗେ ମର୍ଯ୍ୟାଦା ଦିଆ ନିଆ ହେଉନ୍ତୁ, ଘୃଣା ହିଂସା ଛାଡ଼ନ୍ତୁ, ଭଲ ପାଇବାକୁ ଶିଖନ୍ତୁ— ତା' ହେଲେ ତ ଯାଇ ବ୍ରାହ୍ମଣ ଚଣ୍ଡାଳ ଭିତରେ ଅସଲ ମେଳହେବ—ଏ କଣ୍ଟକଣା ପାଚେରିର

ଅପେ ଧସି ମାଟିରେ ମିଶିଯିବ । ଖାଲି ଟୋଟାଏ ଖୁସି ଖିଆଲରେ ମାତି ଯାଇ, ଦହର ବଳରେ ଏ ବେଢ଼ା ପାଚେରିଟାକୁ ଭାଙ୍ଗି ଚୂନ ପକେଇଲେ କଣ ହେବ ? ପୁଣି କଣ ତୁମର ଭିତରୁ କେହି ଜଣେ ଗଢ଼ି ଠିଆ କରି ଦେଇ ପାରିବ ନା ?

ବିକଳା— ଶ୍ରିୟା । ସେ ଦିନ କେବେ ଆସିବ ?

ଶ୍ରିୟା—ଯେବେ ଅସ୍ତୁ, ତୁମେ ଏ ଧନ ନିଅ—ମୋତେ ସେହି ଝାଡ଼ୁ ଦିଅ ତ । ଚଣ୍ଡାଳ ଝାଡ଼ୁର ବେଭାର ଜାଣେ, ସେଥିରେ ସେ ବ୍ରାହ୍ମଣର ବାଟ ସଫା କରିଦେବ—ବ୍ରାହ୍ମଣ ଧନର ବେଭାର ଜାଣେ, ସେଥିରେ ସେ ଚଣ୍ଡାଳର ବାଟ ସଫା କରିଦେବ ।

ବିକଳା—ବୁଝିଛି ତୁମର ଇଙ୍ଗିତ, ଭଉଣୀ ।

( ଧନ ଗ୍ରହଣ କଲେ )

ଶ୍ରିୟା—( ଓଟେଇବାକୁ ଗଲା । ଏହି ସମୟରେ ନାରଦ ପ୍ରବେଶ କଲେ )

ନାରଦ—ଶୁଣିଲି, ଭାଇ ଭଉଣୀ ଦୁହେଁ ।

ବିକଳା—ତୁମେ କିଏ ?

ନାରଦ—ତୁମ ଭଉଣୀକୁ ପଚାର ।

ଶ୍ରିୟା—( ଝାପ୍‌ସା ଝାପ୍‌ସା ମନେକରି ) ବାରବର୍ଷ ପୂର୍ବେ—ଏହି ଓଷାଦିନ—ଏହି ଗୁଣ୍ଡିଚା ନଅର ଦାଣ୍ଡ ଖରକୁ ଥିଲାବେଳେ ଯେଉଁ ବ୍ରାହ୍ମଣ ଗୋସେଇଁ ଏ' ଚଣ୍ଡାଳୁଣୀର ଡହଳ ବିକଳ ଶୁଣି ଧାଇଁ ଆସିଥିଲେ, ତୁମେ କଣ ସେହି ?

ନାରଦ—ହଁ, ସେହି ଚଣ୍ଡାଳ-ବ୍ରାହ୍ମଣ ମୁଁ ।

ଶ୍ରିୟା—ଭାଇନା ! ( ଗୋଡ଼ ଧୂଳି ନେବାକୁ ଯାଇ ନେଇ ପାରିଲା ନାହିଁ, ଗୋଟାଏ ସଂସ୍କାରର ତାଡ଼ନାରେ )

ବିକଳା—ଚଣ୍ଡାଳ-ବ୍ରାହ୍ମଣ ! ଭାଇନା—ତୁମ ପରିଚୟ ?

ନାରଦ—ମୋର ପରିଚୟ ? ମୁଁ ବ୍ରାହ୍ମଣ, ଚଣ୍ଡାଳ ଭଉଣୀଙ୍କ ସେବାକାରୀ ।

ବିକଳା—ମାନେ ?

ନାରଦ—ହଁ, ଭାଇନା, ମୋର ଉତ୍ତର ହେଉଚି—କଥା କହିବାକୁ ଡର ନାହିଁ । ଲକ୍ଷ୍ମୀ ଠାକୁରାଣୀ ସମୁଦ୍ର କୂଳ ନୋଳିଆ ସାହିରେ ବିଜେ କରିଛନ୍ତି—ଲକ୍ଷ୍ମୀବ୍ରତ ଏଥର ଲକ୍ଷ୍ମୀ ଠାକୁରାଣୀ ନିଜେ ପାଳୁଛନ୍ତି—ଭାରି ମେଳା ବସିବ—ଦେଖିଯିବତ, ଆସ । ( ପ୍ରସ୍ଥାନ କଲେ )

ବିକଳା—ଆସ, ଶ୍ରିୟା ! ( ହାତ ଧରିବାକୁ ଗଲେ )

ଶ୍ରିୟା—ଅବେଗରେ ଭାସିଯିବ ନା, ନନା ।

[ ବିକଳା ଆଗେ ଆଗେ ଓ ଶ୍ରିୟା ପଛେ ପଛେ ଚାଲିଗଲେ ]

---

## ନବମ ଦୃଶ୍ୟ

[ ସମୁଦ୍ର ତଟ । ଭାରି ଖରା । ତତଲା ବାଲି ଏମିତି ଯେ, ଖଇ ଭାଜି ହୋଇଯିବ । ବଳଭଦ୍ର ପ୍ରବେଶ କଲେ, ଛଟ ପଟ ଭାବରେ । 'ଆସ ଅତିଥି ଆସ' ଏହି ଗୀତର ରେଶ୍ ଚାଲିଥାଏ ]

ବଳ— ସେହି ଡାକ—ସେହି କୋହଭରା କଣ୍ଠ—'ଆସ ଅତିଥି ଆସ' – ଆ' ଆ' ଜଗା !

ଜଗ—( ଯାତନାରେ ଅବସନ୍ନ, ଏଇ ଭାବରେ ପ୍ରବେଶ କଲେ ) ଓଃ, ତତଲା ବାଲି—ଖଇ ଭାଜ ହୋଇ ଯାଉଛି; ତୁମେ କେଉଁ ଆଡ଼େ ଅମଡ଼ା ମାଡ଼ି ଚାଲିଚ, ଭାଇନା' ?

ବଳ—ସେଇ ଆଡ଼େ—ସେଇ ଆଡ଼େ ଜଗା । ଯେଉଁ ଆଡ଼ୁ ଅସୁରା ଆମନ୍ତ୍ରଣର ଡାକ—ଦରଦୀର ଆବାହନ ।—ଏହି ଶୁଣ, ଶୁଣ !

[ ଗୀତ ସ୍ପଷ୍ଟ ଶୁଣା ଯାଉଥାଏ—ବଳରାମ ଅସ୍ଥିର ହୋଇ ଉଠିଲେ ]

ଜଗ—ଓଃ ଗୋଡ଼ ପୋଡ଼ିଯାଉଛି—ଦେହ ଜଳି ଯାଉଛି—

ବଳ—ଅରେ ପ୍ରାଣ ତୋର ପୋଡ଼ି ଯାଉନାହିଁ—ବୁକୁ ଜଳି ଯାଉ ନାହିଁ, ଏଡ଼ିକି ପାଷାଣ ତୁ ?

ଜଗ—( ଠିଆ ହୋଇ ନ ପାରି ପଡ଼ିଗଲେ ) ଭାଇନା—

ବଳ—ଜଗା—ଜଗା । ବେଶ୍, କିଛି ଭୟ ନାହିଁ । ମୁଁ ପିଠି ଦେଖାଉଚି, ତୁ ବସ । ତୋତେ ଲାଉକରି ନେଇ ଯିବି । (ପାଖରେ ବସିପଡ଼ି) ଉଠ, ଉଠ, ଭାଇ ।

ଜଗ—( ନୀରବ )
ବଳ—ଜଗା ! କ'ଣହେଲା ତୋର ? କଥା କହୁନାହୁ
କାହିଁକି ?
( ଆପଣା କୋଳକୁ ନେଇ ଗଦ୍‌ଗଦ୍ କଣ୍ଠରେ ଓ
ଅଶ୍ରୁପ୍ଲାବିତ ନୟନରେ )
ଓଃ ! ଶେଷେ କ'ଣ ମୁଁ ତୋର ହତ୍ୟାର କାରଣ
ହେଲି, ଜଗା ? ( ଦୀର୍ଘଶ୍ୱାସ ଛାଡ଼ି ) ସ୍ମୃତି କି ସ୍ମୃତି ?
କେଉଁ ଯୁଗର କଥା ମନେ ପଡ଼ୁଛି !—ସେହି
ତ୍ରେତା ଯୁଗର କଥା—ତୁ ଥିଲୁ ରାମ ଓ ମୁଁ ଥିଲି
ଲକ୍ଷ୍ମଣ—ପଞ୍ଚବଟିରେ ମାୟାମୃଗ ଖେଳା ପ୍ରସଙ୍ଗ
ଯେବେ ସୀତା ଦେବୀଙ୍କର ଲକ୍ଷ୍ମଣ ପ୍ରତି କଟୁ
ଭର୍ତ୍ସନା—ପୁଣି, ଶକ୍ତି ଶେଲ, ତା'ର ଫଳରେ
ଲକ୍ଷ୍ମଣର ଦାରୁଣ ଯନ୍ତ୍ରଣା—ଅବଶେଷେ ସୀତା
ନିର୍ବାସନ, କଠିନ ପ୍ରାଣରେ ଲକ୍ଷ୍ମଣ ଯାହା
କରିଥିଲା ସମ୍ପନ୍ନ—ଓଃ ! ଏ' ସବୁ ନିର୍ଯାତନାର
ଯୁକ୍ତ ପ୍ରତିଶୋଧ ନେବ ବୋଲି କ'ଣ ଭଙ୍ଗା
ବାଲିରେ ଆଜି ତୋତେ ଭାଜି ମାରିଲି, ଜଗା !—
ଜଗା—ଜଗା—
ଜଗ—( ନୀରବ )
ବଳ—ମୁଁ ଦିନେ ସଂକଳ୍ପ କରିଥିଲି, ହଳ ତ୍ୟାଗ କରିବି;
ସେତିକିରେ ତୁ ବ୍ୟଥିତ ହୋଇ ପଡ଼ିଥିଲୁ, ପ୍ରାଣର
ବିକଳରେ ମୋତେ କହିଥିଲୁ—ତୁମେ ହଳ
ତ୍ୟାଗ କଲେ ସୃଷ୍ଟି ସମୂଳେ ଧ୍ୱଂସ ହୋଇଯିବ !—
ମୁଁ ଘରର ଲକ୍ଷ୍ମୀ, ଲକ୍ଷ୍ମୀ-ମାକୁ ତ୍ୟାଗ କରିଛି—
ବାରଦ୍ୱାରୀ ହୋଇ ବୁଲୁଛି—ଅନ୍ନ ଜଳ ବିନା
ମୁମୂର୍ଷୁ ପ୍ରାୟ; ତଥାପି ଏହି ସୃଷ୍ଟି, ତୋର ପ୍ରାଣର-
ବସ୍ତୁ, ଆଦରର ଖେଳନା—ଏହି କଥା ହେଜି
ହଳ ତ୍ୟାଗ କରିନାହିଁ ! ସେଇଥିପାଇଁ ସୃଷ୍ଟି
ଚାଲିଛି; କିନ୍ତୁ, ଯା'ର ଖେଳନା ସେ ଯେତେ-
ବେଳେ ନୀରବ, ଏ ଖେଳନାରେ ଆଉ କି
ପ୍ରୟୋଜନ ?
ଜଗ—ଜଳ—ଜଳ—
ବଳ—ଜଳ—ଜଳ—[ ନୋଳିଆଣୀ ବେଶରେ ଲକ୍ଷ୍ମୀ
କଳସୀଟି ନେଇ ପ୍ରବେଶ କଲେ ]
ଲକ୍ଷ୍ମୀ—ଜଳ କିଏ ମାଗୁଛି, ପଥିକ ?
ବଳ—କିଏ ତୁମେ, ମା !—ଯିଏ ହୁଅ, ଦିଅ ଜଳ—
ରକ୍ଷା କର ପ୍ରାଣ !
ଲକ୍ଷ୍ମୀ—ତୁମେ ବ୍ରାହ୍ମଣ ? ମୁଁ ଚଣ୍ଡାଳୁଣୀ—
ବଳ—ଏହି ଚଣ୍ଡାଳୁଣୀ ବୁଝେ ଏକା ସେବାର ମହତ୍ତ୍ୱ;
ସେଇଥିପାଇଁ ଦ୍ୱିଜ ମନକଥା ଜାଣି, ଚଣ୍ଡାଳୁଣୀ
ଆଣିଅଛୁ ନୀର ! ନୀରଦ ସମାନ ଏହି ନୀର-ଦାନେ
ତବ, ବଞ୍ଚିବେ ଜଗତପତି—ବଞ୍ଚିବ ଜଗତ—
ଘୋଷିବ ଭୁବନ ଗର୍ବେ, ଜାତିବର୍ଣ୍ଣ ନିର୍ବିଶେଷେ—
ମାନବତା ଶୀର୍ଷଦେଶେ ସଦା ଚଣ୍ଡାଳର ସ୍ଥାନ ।
ଜଗ—ଓଃ, ପ୍ରାଣ ଗଲା—
ବଳ—ଦିଅ ଦିଅ ମା, ଜଳ—
[ ଲକ୍ଷ୍ମୀ କଳସୀଟି ଥୋଇଦେଲେ—ବଳରାମ
ଜଗନ୍ନାଥଙ୍କୁ ପାନ କରାଇବାକୁ ଉଦ୍ୟତ ହେଲେ ]
ଜଗ—( ଆଖିଖୋଲି ଚାହିଁ ) ପ୍ରସାଦ ତ ?
[ ସେତିକି ବେଳେ ଶଙ୍ଖ ହୁଳହୁଳି ଧ୍ୱନି
ଦୂରରୁ ଶୁଣାଗଲା ]
ବଳ—ଜଗା !
ଜଗ—ଭାଇନା !
ବଳ—ଆଜି ଏତେ ଶଙ୍ଖ ହୁଳହୁଳି କାହିଁକି କିରେ ?
ଜଗ—କେଜାଣି, ଭାଇନା ।
ବଳ—ଆଜି ମାଇପିଙ୍କର କିଛି ଓଷା ବ୍ରତ ଅଛି କିରେ ?
ଜଗ—ମନେ ପଡ଼ୁଛି ଭାଇନା ! ଆଜି ପରା ଶୁକ୍ଳା ଦଶମୀ
ଗୁରୁବାର—
ବଳ—ପୋଚ ଲକ୍ଷ୍ମୀ-ମା'ର ସୁଦଶାବ୍ରତ ଦିନ ? ଜଗା,
ଚାଲ୍ ସେଇଆଡ଼େ ଯିବା ।
ଜଗ—ଏହି ନୋଳିଆ ସାହିକୁ ତ ?
ବଳ—ହଁ ରେ ହଁ—ସେହି ଚଣ୍ଡାଳସାହି—
( ଚାଲିଗଲେ )

---

## ଦଶମ ଦୃଶ୍ୟ

[ ଲକ୍ଷ୍ମୀ ଠାକୁରାଣୀଙ୍କ ଖଞ୍ଜା ଭିତର ପଟ ।
ପେଗୁ ହସି ହସି ପ୍ରବେଶ କଲା ]
ପେଗୁ—ଠାକୁରାଣୀ—ଠାକୁରାଣୀ—(ହସୁଥାଏ)
ଲକ୍ଷ୍ମୀ—( ହାତରେ ଝାଡ଼ଣୀ ଚଟୁଧରି ପ୍ରବେଶ କଲେ )
ଅଲୋ ଏତେ ହସି ମରୁଛୁ, କଥା କଣ ?

ପେଗୁ—ତୁମେ ଏଣିକି ଅସ ତ, ଦେଖିବ ।

ଲକ୍ଷ୍ମୀ—କେଣିକି ଲୋ ? କାହାକୁ ବା' ?

ପେଗୁ—ସେଇ ମାଗିଖିଆ ଦୁଇଜଣଙ୍କୁ । (ହସିଲା)

ଲକ୍ଷ୍ମୀ—ଆଲୋ, କହୁସାର ଅଛ, ହସିବୁ ପଛେ । ( ପେଗୁ ଅଦ୍ଭୁତ ହସିଲା ) ଧେତ୍ ପୋଡ଼ାମୁହିଁ— ଯାଏଁ, ମୋ ଯୋଡ଼ପିଠାଟା ତେଣେ ପୋଡ଼ିଯିବ । ( ଯିବାକୁ ଉଦ୍ୟତ )

ପେଗୁ—ଠାକୁରାଣୀ—

ଲକ୍ଷ୍ମୀ—ଆଲୋ କଥା କଣ, କହ ? (ପୁଣି ପେଗୁ ହସିଲା) ପୁଣି ହସ ?

ପେଗୁ—କ'ଣ କରିବି—କହିଲା ବେଳକୁ ତ ହସ ଖାଲି ଓଗାଳି ହୋଇ ପଡ଼ୁଛି ?

ଲକ୍ଷ୍ମୀ—ଦେଖ ଯେ ଏ' ଉତଲା ଚଢ଼ୁ ସେଇ ପେପା ମୁହଁରେ—

ପେଗୁ—ହଉ, ଶୁଣ—ତୁମ କଥାମାନ, ଭାଲ ଗୁଡ଼ାଲ ପଡ଼ିବା ପନ୍ଦ ସବୁନେଇ ଥୋଇ ଦେଲି, ତେସର ବାଟି ଦେଲି, ପରିବା କାଟି ଦେଲି—ଅଉ ଯା' ଯେମିତ ବଢ଼େଇ ଦେଲି, ହେଲେ—

ଲକ୍ଷ୍ମୀ—ହେଲେ ?

ପେଗୁ—ମା କେମିତ ଜନମ ଦେଇଥିଲା ସେ ଦୁଇଟାକୁ—କୁଟା ଖଣ୍ଡକ ବି ଦ'ଖଣ୍ଡ କରି ଶିଖି ନାହାନ୍ତି, ବରବୁଢ଼ା ହେଲେଣି—

ଲକ୍ଷ୍ମୀ—ଚୁପ୍—ଅଲକ୍ଷଣୀଟା—

ପେଗୁ—ସତେ ଏକା, ଅଲକ୍ଷଣା ସେଇ ଦ'ଟା, ଠାକୁରାଣୀ । ଠାକୁରେ ଦ' ଭାଇ ରାନ୍ଧିବାକୁ ଯାଇ, ଆଖିରେ ନାକରେ ଯେମିତ ପାଇଥିଲେ ପାନେ, ଠିକ୍ ସେମିତ ।

ଲକ୍ଷ୍ମୀ—ଅଲୋ, ଚୁଲି ଜଳିଲା ନାହିଁ କି ?

ପେଗୁ—ଫୁଙ୍କିଫୁଙ୍କି ଧୂଆଁରେ କାଲୁବାଲୁ । ବଡ଼ ଜଣକ ଅଉ ସମ୍ଭାଳି ନ ପାରି ଦେଲା ହାଣ୍ଡିକୁ କଚାଡ଼ି, ସେଇ ଚୁଲି ଉପରେ ।

ଲକ୍ଷ୍ମୀ—ଅଲୋ ତୁ କହୁଛୁ କ'ଣ ?

ପେଗୁ—ଅଦ୍ଭୁତ କହିବାର କଥା ତ କହୁ ନି— ବାହ୍ମୁଣ୍ଡର ରଗ ମରତ । ବଡ଼ ଜଣକ ଭାରି ନେହୁରା ହୋଇ କହିଲା —

ଲକ୍ଷ୍ମୀ—କ'ଣ ?

ପେଗୁ—'ତୁମ ଠାକୁରାଣୀ ସିନା ଆମ ଜାତ କଥାକୁ ଡର ନିଜ ହାତରେ ରାନ୍ଧିବାଢ଼ି ଖାଇବାକୁ କହିଲେ—ହେଲେ, ଅଜ ତାଙ୍କର ହାତ ରନ୍ଧଣା ଖାଇବାକୁ ଭାରି ମନବଳୁଛି ଆମର—'

ଲକ୍ଷ୍ମୀ—ସତେ ? ଏଥିରେ ଜାତ ଯିବନାହିଁ ତାଙ୍କର ?

ପେଗୁ—ସେ କଥା କହିବାକୁ କ'ଣ ମୁଁ ଛାଡ଼ିଛି ? ହେଲେ ସେ କହିଲେ, 'ଅଜ ମାଣବସା-ଓଷା —ତୁମର ମାଣବସା-ମାଙ୍କୁ କହିବ, ଏଥିରେ ଜାତ ଯିବ ନାହିଁ, ଜାତ ବରଂ ବଢ଼ିବ ।'

ଲକ୍ଷ୍ମୀ—ହଉ, ଟିକିଏ ଠିଆ ହ' ତ । (ଚାଲିଗଲେ)

ପେଗୁ—ବାର ବର୍ଷ ପରେ ଅଜ ଠାକୁରାଣୀଙ୍କ ମୁହଁରେ ହସ ଦେଖୁଛି—ଏମାନେ କିଏ କି ?

ଲକ୍ଷ୍ମୀ—( ପ୍ରବେଶ କଲେ ପାଟ-ପୀତାମ୍ବରୀ ଘେନି ) ନେଇ ଯା'—ଦେଇ କହିବୁ, ପାଟ ପିତାମ୍ବରୀ ପିନ୍ଧି ଏଇ ଖଞ୍ଜାକୁ ଅସିବେ ।

ପେଗୁ—ଏଇ ଖଞ୍ଜାକୁ ?

ଲକ୍ଷ୍ମୀ—ହଁ, ମୋ'ର ଏଇ ଖାସ ଖଞ୍ଜାକୁ ।

ପେଗୁ—ଠାକୁରାଣୀ, ଏ' ଦୁଇଜଣ କିଏ କି ?

ଲକ୍ଷ୍ମୀ—ତୋର ମୁଣ୍ଡ ଅଉ ଗଣ୍ଡି— ( ଚାଲିଗଲେ )
[ ଗରୁଡ଼ ପ୍ରବେଶ କଲା ]

ଗରୁଡ଼—ଅଉ ଏ' ଜଣକ ?

ପେଗୁ—ହୁଁ, ତୁ ବି ଏଠି ?

ଗରୁଡ଼—ମୁଁ ପରା ମୁଣ୍ଡ ଗଣ୍ଡିର ପାଦଯୁଗ୍ମ ।

ପେଗୁ—ହେଲେ, ଏ ଖଞ୍ଜାଭିତରେ ତାହାଁକି ? ବାହାର—ବାହାର—

ଗରୁଡ଼—ଖଞ୍ଜରେ ପଶିଆସିଛି ଯେତେବେଳେ, ସେତେବେଳେ ଗୋଟାଏ କାମ ହାସଲ ନ କରି ଯାଉଛି କେମିତ, କହ ?

ପେଗୁ—କି କାମ ଯେ ?

ଗରୁଡ଼—ଠାକୁରମାନଙ୍କ ପାଇଁ ତ ପାଟ ପୀତାମ୍ବରୀ ନେଉଛୁ—ଅଉ ମୋ ପାଇଁ ?

ପେଚୁ—ତୋ ପାଇଁ ? ( ଭାବିବାକୁ ଲାଗିଲା )

ଗଜୁଡ଼—ହଁ ବା', ଯା' ପାଇଁ ତୁ ସଦାବେଳେ ଘଡ଼ ଘଡ଼—ସଡ଼ ସଡ଼—

ପେଚୁ—ମନେ ପଡ଼ୁଛି—ତୋର ପାଇଁ ତ ମୁଁ ସାଇତି ରଖିଛି—

ଗଜୁଡ଼—କଣ, କଣ ମୋ' ପେଚୁରାଣୀ ?

ପେଚୁ—ବହୁ ଅତ ଘଷ୍ଟ—

( ମୁହଁ ଘୁଷିଦେଇ ଚାଲିଗଲା )

ଗଜୁଡ଼—ଓ ହୋ ହୋ— ( ଅନୁଧାବନ କଲା )

[ ଲକ୍ଷ୍ମୀଦେବୀ ନିଜ ହାତରେ ଠା ପିଢ଼ା କରିଦେଲେ । କିଛିକ୍ଷଣ ପରେ ଜଗନ୍ନାଥ ଓ ବଳରାମ ପାଟପୀତାମ୍ବର ପିନ୍ଧି ପ୍ରବେଶ କଲେ ]

ବଳ—ଜଗା !

ଜଗ—ଭାଇନା —

ବଳ—ପୁରୁଷ ତ ଜଣେ ହୋଇ ଏଠି ଦେଖୁନାହିଁ—ଯେମିତି ସାକ୍ଷାତ୍ ପ୍ରମିଳା-ରାଜ୍ୟ । ଆମକୁ ଏତେ ଚର୍ଚ୍ଚା କରିବା—ଶେଷକୁ ପାଟ-ପୀତାମ୍ବର ପିନ୍ଧେଇବା—ଫୁଲ ମାଳ ଦିଅ କରେଇବା—ଚନ୍ଦନ ଛିଟା ଲାଗି କରେଇବା—ଏ ସବୁ ଦେଖି ମୁଁ ଭାବିଥିଲି—କିଛି ନାହିଁ, ଆମକୁ କେଉଁ ଗୋପାଣୀ ଆଗରେ ଯୋଡ଼ିବଳ ଦେବାର ବ୍ୟବସ୍ଥା—

ଜଗ—ହେଲେ, ଏତେ ଭଲ ଭଲ ଭୋଜନର ଯେ ବ୍ୟବସ୍ଥା ଥିଲା ଆମ ଭାଗ୍ୟରେ, ତା' କିଏ ଜାଣିବ ? ବସ ମ, ଭାଇନା !

( ଦୁହେଁ ଖାଇ ବସିଲେ )

ବଳ—( ଖାଉଁ ଖାଉଁ ) ଜଗା !

ଜଗ—ଭାଇନା !

ବଳ—ଆରେ ଏ'ତ ଆମ ଲକ୍ଷ୍ମୀଠାକୁରାଣୀଙ୍କ ହାତ ରାନ୍ଧଣା ପରି ମନେ ହେଉଛି—ସେମିତି ସୁଆଦିଆ ଲାଗୁଛି ।

ଜଗ—ଲକ୍ଷ୍ମୀଠାକୁରାଣୀ ହୁଏତ ଦୟାକରି ଶିଖେଇଥିବେ ଏହି ମାଣବସା-ଚଣ୍ଡାଳୁଣୀକୁ ।

[ ଲକ୍ଷ୍ମୀ ଠିକ୍ ସେତିକିବେଳେ ପୋଡ଼ପିଠା ଧରି ଠିଆ ହୋଇଥିଲେ ଅନ୍ତରାଳରେ । ଜଗନ୍ନାଥ ତାଙ୍କୁ ଚାହିଁ ଦରହାସ ହସୁଥିଲେ ]

ବଳ—ଉଁ-ହୁଁ—ଯେତେ ପକା ଶିଖାଳି ହେଲେ ବି, ଏମିତି କେବେ ରାନ୍ଧିବ ନାହିଁ । ଏ' ନିଶ୍ଚୟ ଲକ୍ଷ୍ମୀଦେବୀଙ୍କର ହାତ-ରାନ୍ଧଣା—ତାଙ୍କର ହାତ ପରଶ; ଆହୁରି, ଦେଉଳରେ ଯେଉଁ ଧୂପରେ ଯେଉଁ ଗୀତ ବଢ଼େ—ଯେଉଁ ଭୋଗ ଚଢ଼େ—ସେହି ସବୁର ଏକତ୍ର ସମାବେଶ ଯେମିତି ଦେଖୁଛି, ଏଇ ବଢ଼ାଥାଳୀରେ । ଛପନ କୋଟି ଭୋଗର ମଣୋହି ଅନ୍ୟ କେହି କରେଇବ, ଏମିତି ବାଢ଼ିବା ଢଙ୍ଗ ଅନ୍ୟ କାହାର ହେବ—ଅସମ୍ଭବ ।

[ ଜଗନ୍ନାଥ ଲକ୍ଷ୍ମୀ ଆଡ଼କୁ ଚାହିଁ ଇଙ୍ଗିତ କଲେ । ଲକ୍ଷ୍ମୀ ପୋଡ଼ପିଠା ଥାଳିଆ ଆଣି ଥୋଇ ଦେଲେ ବଳଭଦ୍ରଙ୍କ ଆଗରେ ]

ପୋଡ଼ପିଠା ? ତୁମେ ଠିଆ ହୁଅ ତ, ମା ! ଭୋଜନ ଶେଷରେ ମୁଁ ପୋଡ଼ପିଠା ଖାଇବାକୁ ଭଲ ପାଏଁ, ଏ କଥା ମୋର ଲକ୍ଷ୍ମୀ-ବୋହୂ-ଠାକୁରାଣୀ ଛଡ଼ା ଅପର କେହି ଜାଣେ ନା ! ତୁମେ କଣ—

( ତଳପାଦଦେଶକୁ ଚାହିଁଲେ । ଲକ୍ଷ୍ମୀ ନିଜ-ପାଦତଳ ଘୋଡାଇବାକୁ ଯତ୍ନ କଲେ )

ତୁମର ସେହି କମଳ-ପାଦତଳ ଦୁଇଟି ମୋର କମଳା-ମାଙ୍କୁ ଧରାଇ ଦେଉଛି । ଆଉ ତାକୁ ଘୋଡ଼ାଇବାର ଅପଚେଷ୍ଟା କାହିଁକି, ମା ?

( ଲକ୍ଷ୍ମୀ ଚାଲିଗଲେ )

ବଳ—( ଖାଇସାରି ଠିଆ ହେଲେ )

ଜଗ—ଠିଆ ହେଲ ଯେ, ଭାଇନା ?

ବଳ—ଆହୁରି ବସି ଥା'—ଚାଲଉ ଥା'...

ଜଗ—ପେଟ ତ ପୂରୁନାହିଁ, ଭାଇନା !

ବଳ—ଅସଂଖ୍ୟ ବ୍ରହ୍ମାଣ୍ଡ ହେଲେ ବି ତୋ ପେଟ ପୂରିବ ନା ?

ଜଗ—ମୋର କି ଅପରାଧ ?

ବଳ—ଆରେ ଛପଟିଆ ! ବାହୁରର ସାମାନ୍ୟ ଶାଗ ଭାଜରେ ତୋ ପେଟ ପୁରି ଯାଇଥିବ ପରା ?

ଜଗ—ହୁଏତ, ଏ ଭୋଜରେ କିଛି କପଟ ଥିବ, ସେଥିପାଇଁ ଯେତେ ଖାଇଲେ ବି ପେଟ ପୂରୁ ନାହିଁ ।

ବଳ—ନା, ଏଥିରେ ରହିଛି ତୋ'ର ଗୃ ଭୂଷି—ଜଣେ ଉପାସ ରହିବ, ସେଥିକି ଏ' ଧିକର ।

ଜଗ—ହେଲେ ଭାଇନା ! ଜଳ ଜଳ ବୋଲି ଯେତେବେଳେ ଆମେ ଛଟପଟ ହେଉଥିଲେ, ସେତେବେଳେ ତୁମର ଜଣଙ୍କ ଏହି ପଦାଧରେ ବସି, ମଉଜରେ ନଉତକୁ ନଉତ ଅଧରପଣା ଯେ ଚଳାଉ ନ ଥିଲ, କିଏ ତା' କହିବ ?

ବଳ—ଜଗା !

ଜଗ—ଭାଇନା !

ବଳ—ଦେଖ୍, ଖ ବ୍ ହୁସିଆର—ବୋହୂ ଠାକୁରାଣୀ ଯେମିତି ଜାଣି ନ ପାରନ୍ତି ଯେ, ଆମେ ଗୋଟାଏ ଅଛୁଆଁ ନୋଳଆଣୀ ହାତଛୁଆଁ ଜଳ ପିଇଚେଁ । ସେହି ଛୁଆଁ, ଅଛୁଆଁ ବାର ଘରର ଘରଣୀକୁ ଘରୁ ତଡ଼ିଲା; ତା'ର ଫଳରେ ଘର ଥାଇ ସୁଦ୍ଧା ନିଘରଅ ହୋଇ ବୁଲିଚେଁ । ଠିକ୍ ବାର ବର୍ଷ ପୁରିଲା ଆଜକୁ—ଯେଉଁ କଷ୍ଟ ଅଙ୍ଗେ ଅଙ୍ଗେ ଲିଭେଇଚେଁ—ତା' ତୁ ଜାଣୁ, କି ମୁଁ ଜାଣେ । ପୁଣି ସେହି ଛୁଆଁ, ଅଛୁ ଆ ଘେନା କଥା ଉଠିବ—

ଜଗ—ହୁଏତ, ଆମକୁ ବି ଦେଉଳ ବାସନ୍ଦ ହୋଇଯିବା । ଯେଉଁ ଗାତ ପର ପାଇଁ ଖୋଳଥାଏଁ, ସେଥିରେ ଆପେ ଇ ପଡ଼ିଯିବା ।

ବଳ—ତା' ହେଲେ ଗୋଟିଏ କାମକର—ଲକ୍ଷ୍ମୀ-ଠାକୁରାଣୀଙ୍କୁ ମନେଇ, କେମିତି ଏଠୁ ନେଇଯାଇ, ଦେଉଳ ଭିତରେ ପଶି, ସମସ୍ତେ ଯେ ଯା' ଖଞ୍ଜାରେ ରହିଯିବା ଚାଲ୍ । କ'ଣ କରେ ଜଗା ! ଏମିତି ଅଚିନକ ଠିଆ ହେଲୁ ଯେ ? ଓ, ଠାକୁରାଣୀ—

ଜଗ—( ଦ୍ୱାର ପାଖକୁ ଯାଇ କଥାବାର୍ତ୍ତା କାନପର ଅଭିନୟ କରୁଥିଲେ )

ବଳ—ହଉ, ମୁଁ ପଦାକୁ ଯାଉଛି, ଜଗା !
( ଗମନୋଦ୍ୟତ )

ଜଗ—ଭାଇନା—( ପାଖକୁ ଆସି )

ବଳ—କ'ଣ କରେ ? ମୋର କଳାମାଣିକ ଏମିତ କଳା ପଡ଼ିଗଲ ଯେ—ଠାକୁରାଣୀ କିଛି କଟାଳ କର କହିଲେ କରେ ? ଆ—ଆ—ପଦାକୁ ଆ !

ଜଗ—କଥା ଯେତେବେଳେ ପଦାରେ ପଡ଼ିଲଣି—ଆଉ ପଦାକୁ ଯାଇ, ଲାଭ ?

ବଳ—କି କଥା, ଶୁଣେ ? (ଭିତରକୁ ଚାହିଁ) ଚାଲି-ଗଲେଣି, କହ—

ଜଗ—ଯେଉଁ ନୋଳଆଣୀ ଆମକୁ ଜଳ ଦେଇଥିଲା, ସେଇ ଛତରଖାଇ ଆସି ଆମର ସବୁ ଗୋଇ ତୁମର ବୋହୂ ଠାକୁରାଣୀଙ୍କ ପାଖେ ଖୋଲି ଦେଇଛି ।

ବଳ—ତେବେ ଆମେ ଚଣ୍ଡାଲ-ବଟାଳ—ଏ କଥା ଠାକୁରାଣୀ ଜାଣି ପାରିଛନ୍ତି ?

ଜଗ—ସେଇଥି ପାଇଁତ ଆମକୁ ଏତେ ଆଦର ଯତ୍ନ ।

ବଳ—ଠିକ୍ କହ, ଏତେଦିନଯାଏ ଯିଏ ପଚୁରୁ ନ ଥିଲେ—ଆଜ ଏମିତ ପଚାରିବାର ଅର୍ଥ ?

ଜଗ—ଅତି ସରଳ—ନିଜର ଅପମାନର ପ୍ରତିଶୋଧ; ତା' ଛଡ଼ା ଆଉ କିଛି ନୁହେଁ ।

ବଳ—ହୁଁ—ବେଶ୍ ବାହାରେ ଆ'ତ ! (ଗମନୋଦ୍ୟତ)

ଜଗ—କେଉଁଠାକୁ ଯିବା, ଭାଇନା ?

ବଳ—ପ୍ରାୟଶ୍ଚିତ୍ତ କରିବା ଯେଉଁଠାକୁ ଯାଇ ।

ଜଗ—ବେଶ୍, ଚାଲ—( କପଟକର କହିବାକୁ ଲାଗିଲେ ଦ୍ୱାର ଆଡ଼କୁ ଚାହିଁ ) ନା, ନା, ଠାକୁରାଣୀ—ଆଉ ଡକାଡକିରେ ଫଳ ନାହିଁ—ତୁମ ଠକ-ପଣ ବେଶ ଜଣା ପଡ଼ିଛି ।—କ'ଣ ? ଭାରି ତ ଅତିଥି ଚର୍ଚ୍ଚା କରୁଛ ବୋଲି ଅତିଥିଙ୍କ ମଥା ଏକାବେଳକେ କିଣି ରଖିଛ—ଚାଲ ତ, ଭାଇନା ।

ବଳ—ଆରେ ଯା, ଯା—ଶୁଣି ଆ' । ଯେତେହେଲେ ଆମେ ତାଙ୍କର ନୂଣ ଖାଇଛେଁ ।

ଜଗ—ନୂଣ ଖାଇଛେଁ ବୋଲି ଗୁଣ ମାଣିବା, କେଉଁ ପାଞ୍ଜିରେ ଲେଖା, ଭାଇନା ?

ବଳ—ଅରେ ଯା’·· ଶୁଣିଆ’ ।

ଜଗ—ଭାଇନାଙ୍କ ହୁକୁମ—( ଦ୍ୱାର ପାଖକୁ ଯାଇ ପୂର୍ବପର ଅଭିନୟ—ଫେରିଆସି ) ଭାଇନା—

ବଳ—କାରେ କଥା କ’ଣ ?—ମୋ’ କଳାମାଣିକ ଏମିତି କଳା କାଠ ପଞ୍ଚଗବ୍ୟ ଯେ !

ଜଗ—ତୁମର ବୋହୂଠାକୁରାଣୀ ଯା’ କହିଲେ, ଭାଇନା ! ତା ଶୁଣିଲେ—ହାତ ଗୋଡ଼ ଝିଅ ମୂର୍ତ୍ତି କରି ଯାହା ଗଢ଼ିଛନ୍ତି ଲୋକେ ଆମକୁ, ସତକୁ ସତ ଆମେ ସେଇଯ୍ୟା ପାଲଟି ଯିବୁଁ ।

ବଳ—ଏମିତି କି କଥା, ଶୁଣେ ?

ଜଗ—ତୁମର ବୋହୂଠାକୁରାଣୀ କହୁଛନ୍ତି, ‘ତୁମେ ଦୁଇ ଭାଇ ତ ବାହାରିଚ ପ୍ରାୟଶ୍ଚିତ୍ତ କରିବାକୁ—ଗୋବର ପାଣି ପିଇବ, ମୁଣ୍ଡ ଲଣ୍ଡା ହେବ, ବ୍ରାହ୍ମଣ ଭୋଜନ କରାଇବ; ସେଥିରେ ତୁମର ଚଣ୍ଡାଳ-ବାଣ୍ଟାଳ ଦୋଷ କଟିଯିବ—ତୁମେ ଯେଉଁ ଜାତକୁ ସେଇ ଜାତ ହେବ !’

ବଳ—ଠିକ୍ ତ—

ଜଗ—ହେଲେ, ‘ଲକ୍ଷ୍ମୀ ତ ବରୁଣ କନ୍ୟା, କଞ୍ଚା ନୋଳଅଣୀ—ଚଣ୍ଡାଳୁଣୀ ! ସୁତରାଂ, ପଚାରିବ ତୁମ ଭାଇନାଙ୍କୁ, ଏହି ଚଣ୍ଡାଳୁଣୀକୁ ଯେତେବେଳେ ବୋହୂ କରି ଘରକୁ ଆଣିଲେ—ସେତେବେଳେ ଏ ଖିଆଲ ତାଙ୍କର ଥିଲା ତ ?’

ବଳ—ଜଗା ! ବୋହୂଠାକୁରାଣୀ ଠିକ୍ କହିଛନ୍ତି ରେ ! ଆମେଇ ଅଜନ୍ମ ଚଣ୍ଡାଳ-ବାଣ୍ଟାଳ ଜଗା ! ତୁ ଯେତିକ ଅନର୍ଥର ମୂଳ ।

ଜଗ—ମୁଁ ?

ବଳ—ହଁ, ତୁ ! ଆଗେ କସିକର ଗୃପ୍ତଡ଼ାଣ୍ଟା ଏ ଦେଇ-ସାରେ, ତା’ପରେ କହିବ ।

ଜଗ—ହଉ, ମାର ପଛେ, କୁହ ।

ବଳ—( ସସ୍ନେହେ ଗଣ୍ଡ ଦେଶ ସ୍ପର୍ଶ କରି ) ଅରେ ତୁ’ଟା ପରା ସଦାକାଳେ ଚଣ୍ଡାଳ ହାତରେ ଖାଇଥାଉ, ଆଉ ବ୍ରାହ୍ମଣ ଘରେ ସେହି ଶଙ୍ଖୁଡ଼ି ହାତ ପଖାଳିଥାଉ ? ଏ କଥା ମୋର ମନେ ନ ଥିଲା ସେଦିନ—ଭୋର ତ ଥିବ ! ଅରେ, ବୋହୂ-ଠାକୁରାଣୀ ପାନ ଧରି ଠିଆ ହୋଇଛନ୍ତି—ମୁଁ ପଦାକୁ ଯାଉଛି, ତୁ ଯେମା ଆ’ ।

[ବାହାରିଗଲେ ଓ ଲକ୍ଷ୍ମୀ ପାନ ଯେନି ପ୍ରବେଶ କଲେ ]

ଲକ୍ଷ୍ମୀ—ଦେଲେ ନାହିଁ କସି ଗୃପ୍ତଡ଼ାଣ୍ଟାଏ ?

ଜଗ—ତୁମେ ତ ଗେଲବସରିଆ ବୋହୂମଣି ତାଙ୍କର—ତାଙ୍କର ହୋଇ ଦିଅ ଏବେ ।

ଲକ୍ଷ୍ମୀ—ଗାଲୁଆ ଯିଏ, ତାକୁ ମାଇଲେ ଆପଣା ହାତକୁ କାଟିବ ସିନା ।

ଜଗ—ବେଶ୍, ତେବେ ପାନଖିଲେ ଖୁଆଇ ଦିଅ—

( ଅଧର ବଢ଼ାଇଲେ )

ଲକ୍ଷ୍ମୀ—ହେଉ । ହେଲେ, ଆଜି ଯେମିତି ଅକିଲ ଖଟାଇ କଥାଟିଏ କହିଲ, ସେଦିନ ଯେବେ ମତେ ଏହି କଥାର ସୁରାଗ ଦେଇଥାନ୍ତ—ତ’ ହେଲେ ଏ ଯାଏ କଥା ଗଡ଼ିଥାନ୍ତା ନା ?

ଜଗ—ତୁମରି କଥାରେ, ମୁଁ ପରା ‘ନାଟର ଗୁରୁ ଗୋବର୍ଦ୍ଧନ’ ।

ଲକ୍ଷ୍ମୀ—କ’ଣ କହନ୍ତି ଯେ—

ଜଗ—( ପଣତ କାନି ଧରି ) ନ କହିବ ତ ନାହିଁ । ପାନ ଖଣ୍ଡେ ଖୋଇଦିଅ ।

[ ଲକ୍ଷ୍ମୀ ପାନ ଦେବାକୁ ଗଲାବେଳେ ନାରଦ ପ୍ରବେଶ କଲେ ]

ଏ—କ’ଣ କି—( ମୁଣ୍ଡ କୁଣ୍ଡେଇଲେ )

ନାରଦ—ଠାକୁରଙ୍କ ମଥାରେ କ’ଣ ଭାରି ଉକୁଣୀ ହୋଇଛି ?

ଜଗ—ଠାକୁରାଣୀ ତ ସେହି ଉକୁଣୀ ବାଛୁ ଦେଉଥିଲେ ।

ଲକ୍ଷ୍ମୀ—ଉକୁଣୀ ନୁହେଁ ନାରଦ, ପୋକ ।

ନାରଦ—ପୋକ ?

ଲକ୍ଷ୍ମୀ—ମଟାଳ ଭିତରେ ଥାଇ ଯେଉଁ ପୋକ ବେଳେ ବେଳେ କାମୁଡ଼ି ଦିଏ ତୁମ ଠାକୁରଙ୍କୁ—ଆଉ ତା’ଟ ଫଳରେ—

( ନମସ୍କାର କଲେ )

ଜଗ—ଦେଖୁଛ ତ, ନାରଦ ! ତୁମ ଠାକୁରାଣୀଙ୍କ ଗୁଣ ?

ନାରଦ—ହେଲେ, ମୁଁ କହୁଚି—ଯେମିତ ଦେବକୁ ସେମିତ ଦେବୀ, ଗୁଣୀକୁ ଗୁଣୀ—ତୁହେଁ ଯାକ ସମାନ ।

ଜଗ—ତୁହେଁ ସମାନ—କାହିଁ ? ( ଲକ୍ଷ୍ମୀ ସଙ୍ଗେ ମିଶି ଠିଆ ହେଲେ )

ନାରଦ—ଲକ୍ଷ୍ମୀ-ଜନାର୍ଦ୍ଦନ । ( ପ୍ରଣତ ହେଲେ )

ଲକ୍ଷ୍ମୀ—ନାରଦ । ତୁମର ନିମନ୍ତ୍ରିତ ଦେବ ଦେବୀ ମାନେ କାହାନ୍ତି ?

ନାରଦ—ସେମାନେ ତ, ଯଥାସମୟରେ ଉପସ୍ଥିତ ଓ ଆପ୍ୟାୟିତ ହୋଇ ଫେରି ଯାଇଛନ୍ତି ।

ଲକ୍ଷ୍ମୀ—କେତେବେଳେ ?

ଜଗ—( ହାଲୁଟି ମାରିଲେ )

ନାରଦ—ନା ମା । ମୁଁ ଭୁଲ କହୁଚି—ଅଦ୍ୟାବଧି ଉପସ୍ଥିତ ରହିଚନ୍ତି । ଏହି ଦେଖନ୍ତୁ, ଏତେ ଖୁଆଇଛନ୍ତି ଯେ, ଅଜୀର୍ଣ୍ଣ ହେବାର ଯୋଗାଡ଼ ହେଲଣି ଦେବ ଦେବୀ ମାନଙ୍କର ।

ଲକ୍ଷ୍ମୀ—ସତେ ତ, ଦେବ ଦେବୀମାନେ ଯେ ଏହି ବ୍ରାହ୍ମଣ ଉଦରରେ, ତା'ତ ଖିଆଲ ନ ଥିଲା ।

ନାରଦ—ମା' ଠାକୁରରୂପୀ ବ୍ରାହ୍ମଣ ଚଣ୍ଡାଳର ମେଳ ହେଲା—ମାନବରୂପୀ ବ୍ରାହ୍ମଣ ଚଣ୍ଡାଳର ମେଳ ହେବ ନାହିଁ, ମା ?

ବଳ—( ପ୍ରବେଶ ପୂର୍ବକ ) ମେଳ ହେବ ନାରଦ । ଦେବତା-ମାନବର ମିଳନ କ୍ଷେତ୍ର ବଡ଼-ଦେଉଳରେ । ମୋର ଲକ୍ଷ୍ମୀ-ମା ନିଜେ ରାନ୍ଧିବେ, ବାଢ଼ିବେ ପରଶି ଦେବେ—ଆଉ ଚଣ୍ଡାଳ ବ୍ରାହ୍ମଣ ମୁଖରୁ, ବ୍ରାହ୍ମଣ ଚଣ୍ଡାଳ ମୁଖରୁ ଆନନ୍ଦରେ ସେହି କୈବଲ୍ୟ ଭୋଜନ କରିବେ । ଉଚ୍ଚ ନୀଚ, ଜ୍ଞାନୀ ମୂର୍ଖ, ଧନୀ ନିର୍ଦ୍ଧନ ସମସ୍ତେ ଗୋଟିଏ ମହାପ୍ରାଣତାରେ ମାତି ଯିବେ—ପାର୍ଥକ୍ୟ ଭୁଲି ଯିବେ; ମହାମାନବତାର ସେବାକାର୍ଯ୍ୟ, ଏହା ହିଁ ଉପଲବ୍ଧି କରିବେ ।

[ ସମସ୍ତେ ବଳଭଦ୍ରଙ୍କର ପାଦ ବନ୍ଦନା କଲେ ]

ନାରଦ—ବଡ଼ଭାଇର ତ ଏହି ବଡ଼ପଣ ।

ବଳ—ନାରଦ । ମୋର ବଡ଼ପଣ ଯାହା, ତାହା ପ୍ରକାଶ ପାଇବ ଯେଉଁ ରୂପରେ, ସେହି ରୂପ ମୁଁ ଧାରଣ କରିବି ବଡ଼ଦେଉଳରେ । ( ସମସ୍ତଙ୍କର ପ୍ରସ୍ଥାନ )

---

## ଶେଷ ଦୃଶ୍ୟ

[ ବଡ଼ଦାଣ୍ଡ ଦେଖାଗଲା । ଶ୍ରୀୟା ଓ ବିକଳାଙ୍କ ପ୍ରବେଶ ]

ବିକଳା—ନୋଳିଆ ସାହି ତ ଖାଲି ଦେଖୁଚ ? ସେ ଚଣ୍ଡାଳ-ବ୍ରାହ୍ମଣ ଗଲେ କୁଆଡ଼େ ?

ଶ୍ରୀୟା—ମୋର ମନେ ହେଉଛି, ଭାଇନା' । ଠାକୁରାଣୀ ପଠେଇଥିଲେ, ବ୍ରାହ୍ମଣ ଚଣ୍ଡାଳ ଏକାଠି କରେଇବା ପାଇଁ । ସେଇକଥା କରେଇ ସାରି, କୁଆଡ଼େ ଉଭେଇଗଲେ ନିଶ୍ଚେ ।

ବିକଳା—ସେଇୟା ହେବ । ଅହୁରି ସେ ଠାକୁର ରଜା ପାଖକୁ ନିଶ୍ଚୟ ଯାଇଥିବେ ଓ ଠାକୁରାଣୀ-ଙ୍କର ଆଦେଶ ନିଶ୍ଚୟ ଜଣାଇଥିବେ । ତା' ନହେଲେ କିଛି କେଉଁଠି ନାହିଁ, ହଠାତ୍ ନାଗରା ଦିଆଗଲା କାହିଁକି ଯେ, 'ଆଜିଠାରୁ ଦୁଃଖୀ-ରଙ୍କି-ହାଡ଼ି-ଚଣ୍ଡାଳ ସମସ୍ତେ ବଡ଼ ଦେଉଳରେ ପଶି-ପାରିବେ ଏବଂ ଦର୍ଶନ କରିପାରିବେ ।'

ଶ୍ରୀୟା—ଅହୁରି ତୁମେ ତ ରଜାଙ୍କ ପୁରୋହିତ—ତୁମେ ତ କହୁଥିଲ, ପାଟରାଣୀ ଏଥର ନୂଆକରି ମାଣ-ବସା ଓଷା ପାଳିଥିଲେ । ଓଷା ଭାଙ୍ଗିବାକୁ ଯାଇ ଯେଉଁ ସ୍ୱପ୍ନ ଦେଖିଲେ, ସେଥିରେ ପୁଣି ନାଗରା ଦିଆଗଲା ଯେ—ଦେଉଳରେ ଆଜି ଯେଉଁ ଭୋଜଭାତ ହେବ, ସେଥିରେ ଜାତି ପାଟକର ବାରଣ ରହିବ ନାହିଁ ।

ବିକଳା—ହେଲେ, ଆମରି ମନ କଥା ଜାଣି, ଠାକୁରାଣୀ ଯେମିତ ସତକୁ ସତ ସେଇୟା କରିଛନ୍ତି । ଚାଲ ଭଉଣୀ, ଯେଉଁ ଛୁଆଁ ଅଛୁଆଁ ବାରଣ, ଅସଲ କାନ୍ଥବାଡ଼ ହୋଇ ଠିଆ ହୋଇଥିଲା ଆମ ଦୁହିଁଙ୍କ

ମନ୍ଦିରେ—ଅଉ ତାହା ଭାଙ୍ଗିବାକୁ ଉଚ୍ଛନ୍ନ ହୋଇ ପଡ଼ିଥିଲେ ବୁହେଁ; ବର୍ତ୍ତମାନ ଠାକୁରାଣୀଙ୍କ ଦୟାରୁ ତା' ଯେତେବେଳେ ଭାଙ୍ଗି ଛୁଟି ଦେବାର ସୁଯୋଗ ମିଳିଛି, ସେତେବେଳେ ଆମେଇ ଆଗଭର ହେବା — ଦେଉଳରେ ପଶିବା — ମୂଳଦୁଆ ପକେଇବା—ବ୍ରାହ୍ମଣ ଚଣ୍ଡାଳ ଏକାଠି ହେବାର।

( ହାତ ଧରାଧରି ହୋଇ ଚାଲିଗଲେ )

[ ମୁକ୍ତାର ପ୍ରବେଶ ]

ମୁକୁତା—ସେ କ'ଣ ଶୁଣୁଛି ? ମାଣବସା-ମା ମୋର ନିଜେ ଲକ୍ଷ୍ମୀ ଠାକୁରାଣୀ ? 'ମୋତେ ଦେଉଳରେ ଦେଖିବୁ ମୁକୁତା' ଏହି କଥା କହି ଯେମିତି ସେ ଉଭେଇଗଲେ—ସ୍ୱପ୍ନ ନୁହେଁ ତ ? ଆମେ ଚଣ୍ଡାଳ-ଜାତି ଅଛୁଁ ଚଣ୍ଡାଳ ନୋହୁ, ଠାକୁ-ରାଣୀଙ୍କ ଜାତି—ଏହି କଥା ସଂସାରକୁ ଶୁଣେଇ ଦେବାପାଇଁ କ'ଣ ଏତେ ଦୁଃଖ କଷଣ ସହି, ଆମର ଭିତରେ ଜଣେ ହୋଇ ରହିଥିଲେ ? ମା'ଙ୍କ ଦୟାରୁ ଦେଉଳ କବାଟ ଆଉ ନାହିଁ। ଯାଏଁ, ମା'ଙ୍କର ଘରକରଣା ନିଜ ଆଖିରେ ଦେଖି, ନୟନ ମନ ସାର୍ଥକ କରେଁ। (ଚାଲିଗଲା)

ନାରଦ—( ପ୍ରବେଶ ପୂର୍ବକ ) ମୁଁ ତ କିଛି ଠଉରେଇ ପାରୁନାହିଁ—ବଡ଼ଠାକୁର ଅଜ କେଉଁ ରୂପର ଭିଆଣ କରିବେ ? ଯାହା ହେଉ, ମୋର ଈପ୍‌ସିତ ରାମରାଜ୍ୟ ଯେ ଫେରି ଆସିବ, ତାର ସୂଚନା ବେଶ୍ ଦେଖିପାରୁଛି। ମା ଜଗଜ୍ଜନନୀ। ଯୁଗେ, ଯୁଗେ ତୁମେଇ ଚଣ୍ଡାଳୁଣୀ, ତୁମେଇ ରାଜରାଣୀ—ଏ କଥା ଯେମିତି ଆଉ ଭୁଲି ନ ଯାଏଁ, ଏତିକି ଦୟା କର ମା।

[ ହଠାତ୍ ଶଙ୍ଖ ଘଣ୍ଟାର ଶବ୍ଦ ଶୁଣାଗଲା ]

—ଦୃଶ୍ୟ ପରିବର୍ତ୍ତନ—

[ ବଡ଼ ଦେଉଳର ରତ୍ନ-ବେଦୀ ଉପରେ, ରାମାଭିଷେକ ଦୃଶ୍ୟର ଅନୁଷ୍ଠାନ ହୋଇଥିଲା ]

ନାରଦ—ଘୃଣା ହିଂସା ଜର୍ଜରିତ ବିଶ୍ୱମାନବ ହୃଦୟରେ ଅହିଂସା-ପ୍ରୀତିରେ ରାମରାଜ୍ୟ ଖେଳାଇ ଦିଅ ଏହିପରି, ପ୍ରାଣାରାମ।

( ଉପସ୍ଥିତ ବ୍ରାହ୍ମଣ ଚଣ୍ଡାଳ ସମସ୍ତେ ଏକସ୍ୱରେ ଗାଇଲେ )

—ଗୀତ—

ଏହି ସିନା ରେ—ବଡ଼-ଦେଉଳର ବଡ଼ ମହିମା—
ବଡ଼ ବୋଲି ତିନିପୁରେ ପଡ଼ିଛି ଡୁରି, ମହିମା ॥ ୦ ॥
ବଡ଼ ସାମନ୍ତ ପଣେ ତ ବିଜେ ଜଗତର ନାଥ
ବଡ଼ଘରଣୀ 'ମା' କ୍ଷୀରସାଗର ଦୁଲଣୀ ରମା ॥ ୧ ॥
ବଡ଼ ପ୍ରମାଦ ଏ ମା-ପ୍ରସାଦ ପାଇଥା ରେ ତୁ ପାଇଥା
କୋଟି କୋଟି ଜନ୍ମ ପୁଣ୍ୟଫଳକୁ ପାଇଥା ରେ ପାଇଥା
ବଡ଼ ସାନ ନାହିଁ ଭେଦ, ଚଣ୍ଡାଳ ବ୍ରାହ୍ମଣ ଶୂଦ୍ର
ଶ୍ରୀଚରଣ ତଳେ ସବୁ ସମା ରେ ॥ ୨ ॥
ବଡ଼ ଲମାଟ ଏ କଇବଲ୍ୟ-ହାଟ ରେ ଧନ
କୈବଲ୍ୟ ହାଟ—
ବଡ଼ ମନ ବୋଲି ଆମ ଜାତି ବିରାଟ—
ବଡ଼ ବଡ଼ ଶିର ନୋଇଁବାର ଏ ବିଚିତ୍ର ସୀମା ॥ ୩ ॥ ✱

—ଯବନିକା—

✱ ଏହି ନାଟକରେ ଗୀତ ଗୁଡ଼ିକ କିଶୋରକବି ଶ୍ରୀ ଶ୍ୟାମସୁନ୍ଦର ଦାଶଙ୍କ ରଚନା। ସେଥିପାଇଁ ମୁଁ ତାଙ୍କ ନିକଟରେ କୃତଜ୍ଞ।

# ସାକ୍ଷୀ ଗୋପାଳ

( ଲକ୍ଷ୍ମୀ-ଗୋପିନାଥ )

—ପୌରାଣିକ ନାଟକ—

## ପଦେ କଥା

ଏହି ନାଟକଟି ପ୍ରଥମେ 'କୁଳଟା' ନାମ ଦେଇ ଲେଖା ହୁଏ । ପାଣ୍ଡୁଲିପିଟି ପ୍ରାୟ ଆଠ ଦଶ ବର୍ଷ ଧରି ପଡ଼ିରହିବା ପରେ ଅନ୍ନପୂର୍ଣ୍ଣା (ଏ) ଗ୍ରୁପ୍, ପୁରୀର ରଙ୍ଗମଞ୍ଚରେ ଏହାର ପ୍ରଥମ ଅଭିନୟ କରନ୍ତି । ମୋ'ର କନିଷ୍ଠଭ୍ରାତା ଶ୍ରୀ କାର୍ତ୍ତିକକୁମାର ଘୋଷ ନିର୍ଦ୍ଦେଶ ଦିଏ । ଯେଉଁଠୁ ନାଟକର କଥା-ବସ୍ତୁ ଆରମ୍ଭ, ତାର ପୂର୍ବବର୍ତ୍ତୀ ଘଟଣାବଳକୁ ପ୍ରତ୍ୟକ୍ଷୀଭୂତ କରାଇବା ଉଦ୍ଦେଶ୍ୟରେ ଶ୍ରୀମାନ୍ କାର୍ତ୍ତିକ ଯେଉଁ ମଞ୍ଚକୌଶଳ ଅବଲମ୍ବନ କରେ, ତା' ପ୍ରଶଂସନୀୟ ।...ତା'ପରେ ନାଟକଟି ଜନତା ରଙ୍ଗମଞ୍ଚରେ ଅଭିନୀତ ହୁଏ ।

ମୁଁ ଏହାର ଅଭିନୟ ଦେଖେଁ ।...ଦୃଶ୍ୟ ସ୍ୱଳ୍ପତା ଓ ସଂଳାପ ସଂକ୍ଷିପ୍ତତା ଯୋଗୁଁ ନାଟକଟି ଦର୍ଶକମନରେ ଆଶାନୁରୂପ ପ୍ରଭାବ ପକାଇ ପାରୁନି, ଅନୁଭବ କରେ । ସେଥିପାଇଁ ଏହାର କଳେବର ଯଥେଷ୍ଟ ପରିମାଣରେ ବଢ଼ାଇଦିଏଁ ଓ ଅନ୍ୟ ଦୃଶ୍ୟ ଗୁଡ଼ିକ ସନ୍ନିବେଶ କରେଁ । ନାଟକଟିର ଅଭିନୟ ଏଥର ପୂର୍ଣ୍ଣ ମାତ୍ରାରେ ଉପଭୋଗ୍ୟ ହେବ, ଆଶା କରେ । ଇତି ।

**ଅଶ୍ୱିନୀ**

---

## —ଚରିତ୍ରଲିପି—

| | |
|---|---|
| ଶ୍ରୀ ଗୋପୀନାଥ | ବୈରାଗୀ |
| ସଦାନନ୍ଦ ବାବା | ଉତ୍କଳ-ରାଜା |
| ଆନନ୍ଦ | ମନ୍ତ୍ରୀ |
| ବସ୍ତୁ | ଗ୍ରାମବାସୀଗଣ |
| ବଡ଼ ବ୍ରାହ୍ମଣୀ | ଲକ୍ଷ୍ମୀ |
| ସତ୍ୟବାଦୀ | ଲକ୍ଷ୍ମୀ ବୋଉ |
| ଗାଁ ମାମଲତ୍‌କାର | ସୁଭଦ୍ରା |
| ସୁମନ୍ତ | ଅଯୁଦ୍ଧଆପୂଣୀଗଣ |
| ପରନ୍ତ | |

---

# ସାକ୍ଷୀ ଗୋପାଳ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ସତ୍ୟବାଦୀ—ସାକ୍ଷୀଗୋପାଳ ମନ୍ଦିର—

[ ବକୁଳ ବନର ଗହଳ ଭେଦକରି ଗୋଟିଏ ଯୁଗର ମାହାତ୍ମ୍ୟକୁ ଯେପରି ମୂକ ଭାଷାରେ ଘୋଷଣା କରୁଥିଲା । କିଛିକ୍ଷଣ ପରେ ବୀଣାର ମୃଦୁଝଙ୍କାର ଶୁଣାଗଲା । ତାହା ମନ୍ଦିର ଭିତରୁ ଆସୁଥିଲା, ଏହିପରି ଜଣାଗଲା । ]

[ ଦୃଶ୍ୟ ପରିବର୍ତ୍ତିତ ହେଲା ]

[ ମନ୍ଦିରାଭ୍ୟନ୍ତର । ବେଦୀଉପରେ ଛନ୍ଦାଚରଣ ଗୋପୀନାଥ ମୂର୍ତ୍ତି । ତ୍ରିଭଙ୍ଗଠାଣିରେ ଉଭା । ବାଦନ ଭଙ୍ଗୀରେ ବେଣୁ ଧାରଣ କରିଥିଲେ । ନାଟମନ୍ଦିରର ଦୁଇପଟେ ଦୁଇଟି ଉଚ୍ଚାସନ । ଗୋଟିକରେ ସଦାନନ୍ଦ ବାବା ଉପବିଷ୍ଟ ଥାଇ ନିବିଷ୍ଟ ମନରେ ବୀଣାବାଦନ କରୁଥିଲେ ଓ ଗାଉଥିଲେ । ସେହି ଗୀତବାଦ୍ୟ ସଙ୍ଗେ ଲୟରକ୍ଷି ଲକ୍ଷ୍ମୀ ଆରତି କରୁଥିଲେ । ଅବଶେଷେ ଗୀତ-ବାଦ୍ୟର ଦ୍ରୁତଝଙ୍କାରରେ ଆତ୍ମହରା ହୋଇ ଦେବଦାସୀ ନୃତ୍ୟ ଆରମ୍ଭ କଲେ । ମୁଖରିତ ସଙ୍ଗୀତର ମୂର୍ଚ୍ଛନା କ୍ରମପର୍ଯ୍ୟାୟ ଅଧିରୋହଣକଲା । ମନେ ହେଲା ପାଷାଣ ଦେବତାଙ୍କ ଚରଣ ଚଞ୍ଚଳ, ବେଣୁ ସ୍ୱ-ରବ, ନୂପୁରକିଙ୍କିଣି ସୁସ୍ପଷ୍ଟ । ]

ସଦାନନ୍ଦ— ଗୀତ

ରତିସୁଖସାରେ ଗତମଭିସାରେ
ମଦନ ମନୋହର ବେଶଂ
ନକୁରୁ ନିତମ୍ବିନି ଗମନ ବିଳମ୍ବନ
ମନୁସର ତଂ ହୃଦୟେଶଂ ।
ଧୀର ସମୀରେ ଯମୁନାତୀରେ
ବସତି ବନେ ବନମାଳୀ,
ପୀନପୟୋଧର ପରିସରମର୍ଦ୍ଦନ
ଚଞ୍ଚଳ କରଯୁଗଶାଳୀ ।
ନାମ ସମେତଂ କୃତ ସଙ୍କେତଂ
ବାଦୟତେ ମୃଦୁବେଣୁ,
ବହୁମନୁ ତେନନୁ ତେତନୁ ସଙ୍ଗତ
ପବନ ଚଳିତମପି ରେଣୁ ॥
ପତତି ପତତ୍ରେ ବିଚଳିତ ପତ୍ରେ
ଶଙ୍କିତ ଭବଦୁପଯାନଂ
ରଚୟତି ଶୟନଂ ସଚକିତ ନୟନଂ
ପଶ୍ୟତି ତବ ପନ୍ଥାନଂ ।

[ ମୂର୍ଚ୍ଛନାର ଚରମ ପରିଣତିରେ ବୀଣାର ତାର ଛିଣ୍ଡିଗଲା । ସେହି ସଙ୍ଗେ ଅନ୍ତରର ବୀଣା-ତାର ଯେମିତି ଛିଣ୍ଡିଗଲା, ଏହିପରି ଭାବ ବାବାଜି ଅନୁଭବ କଲେ ]

ସଦାନନ୍ଦ—ଲକ୍ଷ୍ମୀ—ଲକ୍ଷ୍ମୀ !

ଲକ୍ଷ୍ମୀ—( ବୀଣାର ତାର ଛିଣ୍ଡିବା ସଙ୍ଗେ ସଙ୍ଗେ ସେ ଅଚାଡ଼ି ହୋଇ ପଡ଼ିଥିଲେ ଦେବତାଙ୍କ ଛଦାଚରଣ ତଳେ । ତା'ପରେ ସେ କେଉଁ ମହାଭାବରେ

ଅଚଳ ଥାଇ ଦେବତାଙ୍କ ଅର୍ଦ୍ଧନିମିଳିତ ନେତ୍ରରେ ଗୁହିଁରହିଲେ ଓ ଡାକିଲେ ଏହିପରି— ) ଲକ୍ଷ୍ମୀନାଥ !

ସଦାନନ୍ଦ—( ଉଚ୍ଛଳ-ଭାବ ବଦଳିଗଲା । ବିସ୍ଫାରିତ ଅଧରରେ ଅଳ୍ପ ଅଳ୍ପ ହସର କ୍ଷୀଣରେଖା ଅଙ୍କିତ ହେବାର ଦେଖାଗଲା ଓ ସେ ସ୍ନେହଭରା କଣ୍ଠରେ ଡାକିଲେ )—ଲକ୍ଷ୍ମୀ···!

ଲକ୍ଷ୍ମୀ—( ଚେତନା ପାଇବାରୁ, ନାରୀ ସୁଲଭ ଲଜ୍ଜା ଅନୁଭବ କଲେ ଓ ସ୍ଥାନ ତ୍ୟାଗ କରିବାକୁ ଉଦ୍ୟତା ହେଲେ )

ସଦାନନ୍ଦ—( ପୁଣି ଥରେ ଡାକିଲେ )—ଲକ୍ଷ୍ମୀ···!

ଲକ୍ଷ୍ମୀ—(ଲଜ୍ଜା ସମ୍ବରଣ କରି ଧାଇଁଆସିଲେ ଓ ଜଡ଼ାଇ ଧରି )—ବାବା !

ସଦାନନ୍ଦ—(ହୃଦୟର ସମସ୍ତ ସ୍ନେହ ନିଗାଡ଼ି ଆପଣା ବୁକୁ ଭିତରକୁ ଟାଣି ନେଲେ ) ଏତେଦିନେ ଆଜି ସଦାନନ୍ଦ-ବାବାର ଶିକ୍ଷା ପୂର୍ଣ୍ଣାଙ୍ଗ ଆଉ ଲକ୍ଷ୍ମୀର ସାଧନା ସାର୍ଥକ ହୋଇଛି ।

ଲକ୍ଷ୍ମୀ—( ଆପଣାକୁ ଆଲିଙ୍ଗନପାଶରୁ ମୁକ୍ତକରି ) ବୀଣାଟି ତୁମର ପଡ଼ିଅଛି···( ଉଠାଇବାକୁ ଗଲେ )

ସଦାନନ୍ଦ—( ବିହ୍ୱଳ ଭାବରେ ) ସତେ, ଲକ୍ଷ୍ମୀ ଆଜି ତୁମେ ନାଚୁଥିଲ, ସେହି ନାଚଭିତରେ ମୁଁ ସ୍ପଷ୍ଟ ଦେଖୁଥିଲି—

ଲକ୍ଷ୍ମୀ—କଣ ?

ସଦାନନ୍ଦ—ଲକ୍ଷ୍ମୀ-ଲକ୍ଷ୍ମୀନାଥର ଭେଟ । ଲକ୍ଷ୍ମୀ ସଙ୍ଗେ ଲକ୍ଷ୍ମୀନାଥର ସହ-ନୃତ୍ୟ ।

ଲକ୍ଷ୍ମୀ—( ଲଜେଇଲେ ଓ ସେହି ଲାଜ ଏଡ଼ାଇବା ଉଦ୍ଦେଶ୍ୟରେ କହିଲେ ) ଆଃ, ବୀଣାର ତାର ଛିଣ୍ଡାଇ ପକାଇଛତ ?

ସଦାନନ୍ଦ—ମୋର ହୃଦୟର ତାର ମଧ୍ୟ, ଲକ୍ଷ୍ମୀ ।

ଲକ୍ଷ୍ମୀ—ହେଲେ, ତୁମର ହସ ହସ ଓଠ ଦେଖିଲେ ତା ମନେ ହୁଏନା ବାବା !

ସଦାନନ୍ଦ—ଏହିତ ମଜା । ଯୋଗ-ସୂତ୍ର ଛିଣ୍ଡାଇ, ଜୀବ ମାୟାଭ୍ରମରେ ଅଚ୍ଛନ୍ନ ହୋଇଥାଏ । ଯେତେବେଳେ ସେହି ଭ୍ରମ ସେ ବୁଝିପାରେ, ସେତେବେଳେ ସେ ଏମିତି ଅଳ୍ପ ଅଳ୍ପ ହସିଥାଏ ।

ଲକ୍ଷ୍ମୀ—ହଉ, ବୀଣାଟି ଛାଡ଼ତ, ମୁଁ ନେଇ ଥୋଇ ଦିଏଁ ।

ସଦାନନ୍ଦ—ଲକ୍ଷ୍ମୀ—ଲକ୍ଷ୍ମୀ—।

ଲକ୍ଷ୍ମୀ—ତୁମେ ଆଜି ଏମିତି ଅଥୟ କାହିଁକି, ବାବା ?

ସଦାନନ୍ଦ ଗୋଟିଏ କଥା ପଚାରିବି ସତକହିବ୍, ମା ?

ଲକ୍ଷ୍ମୀ—ମୋତେ ସନ୍ଦେହ ?

ସଦାନନ୍ଦ—ଆଖିହୀନ ସଦାନନ୍ଦର ଆଖି ଲକ୍ଷ୍ମୀ ; ସେ ନିଃସନ୍ଦେହତ ?

ଲକ୍ଷ୍ମୀ—ବୁଝିପାରିଲିନି, ବାବା—!

ସଦାନନ୍ଦ—ତୁମେ ଧୈର୍ଯ୍ୟ ଧର—ଅଥୟହୋଇ ବସିତ ଆଗ ।

ଲକ୍ଷ୍ମୀ—(ବସିଲେ) ବସିଲି, କୁହ ଏଥର, ବାବା !

ସଦାନନ୍ଦ—ଏହି ସ୍ଥାନର ନାମ ?

ଲକ୍ଷ୍ମୀ—ସତ୍ୟବାଦୀ !

ସଦାନନ୍ଦ—ସତ୍ୟବାଦୀ-ବ୍ରାହ୍ମଣର ସତ୍ୟରକ୍ଷା ହେବ, ଏଥିପାଇଁ ଦିନେ ବୃନ୍ଦାବନ ଛାଡ଼ି, ସାକ୍ଷୀଦେବାକୁ ଧାଇଁ ଆସିଥିଲେ ବୃନ୍ଦାବନବିହାରୀ ଗୋପୀନାଥ ନିଜେ । ବ୍ରାହ୍ମଣର ସତ୍ୟନିଷ୍ଠା ଓ ଦେବତାଙ୍କର ସତ୍ୟପ୍ରୀତି ଜାଗ୍ରତ ରହିବ, ସେଥିପାଇଁ ଏହି ଅଞ୍ଚଳର ନାମ ସତ୍ୟବାଦୀ, ଆଉ—

ଲକ୍ଷ୍ମୀ—ଦେବତାଙ୍କ ନାମ ସାକ୍ଷୀଗୋପୀନାଥ ?··· ବାବା !—

ସଦାନନ୍ଦ—କଣ ?

ଲକ୍ଷ୍ମୀ—ସତ୍ୟଦେବତାଙ୍କ ସତ୍ୟପ୍ରୀତି କାହାଣୀ ପୁଣି ଥରେ ଶୁଣିବି, ଏଥିକି ଭାରି ମନ ବଳୁଛି ଆଜି ।

ସଦାନନ୍ଦ—ମୁଁ ବି ଭାରି ଆଗ୍ରହରେ କହିବି । କାରଣ, ତୁମେ ସେହି ସତ୍ୟ-ଦେବତାଙ୍କ ସତ୍ୟ-ମହିମା କ୍ଷୁନ୍ନ ନ କରି ମୋ ପ୍ରଶ୍ନର ଉତ୍ତର ଦେବ । ଶୁଣ, ଅତି ପୂର୍ବକାଳରେ କାଞ୍ଚି ବିଦ୍ୟାନଗରୀରେ ବାସ-କରୁଥିଲେ ଦୁଇଟି ବ୍ରାହ୍ମଣ । ଗୋଟିଏ ସାନ ଆଉ ଗୋଟିଏ ବଡ଼ । ଦୁହେଁ ତୀର୍ଥଭ୍ରମଣରେ ବାହାରି, ନାନାତୀର୍ଥ ଦର୍ଶନ ପରେ, ବୃନ୍ଦାବନରେ ଆସି ଉପସ୍ଥିତ ହେଲେ । ଯେଉଁଦିନ ସେଠାରେ

ସେମାନେ ପହଞ୍ଚନ୍ତି, ସେ ଦିନ ଦୋଳପୂର୍ଣ୍ଣିମା । ବୃନ୍ଦାବନର ନରନାରୀ ଗ୍ଲେଟ ବଡ଼ ନିର୍ବିଶେଷରେ ହୋରି ଖେଳରେ ମାତିଥା'ନ୍ତି—

* * * * *

—ଦୃଶ୍ୟାନ୍ତର—

[ ବୃନ୍ଦାବନର ରାଜପଥ । ହୋରି ଖେଳରେ ପ୍ରମତ୍ତ ନରନାରୀଗଣ ପିଚକାରୀ ଓ ଅବିର ଖେଳୁ ଥା'ନ୍ତି, ଗାଉ ଥା'ନ୍ତି, ଓ ନାଚୁ ଥାନ୍ତି । ]

ଗୀତ

ରାଧା—ହେମୁରାରି, ଆଉ ନ ମାର ପିଚକାରୀ
ବସନ ତନ୍ତି ରଙ୍ଗେ, ଜଡ଼ିରହିଲା ଅଙ୍ଗେ,
ସରମେ ମୁଁ ଅଛି ଗଲି ସରି ।
କୃଷ୍ଣ—ଆଉ ନହିଁଅ ବାଧା, ନ ଭାଙ୍ଗ ଏ ସରଧା,
ରଙ୍ଗରଧାରୀ ଅଛି ଖୋଜଇ କାହିଁ 'ରାଧା',
କାମନା କୁସୁମ, ରଙ୍ଗେ ଅନୁପମ,
ଅଙ୍ଗେ ଢାଳିବି ବୋଲି ଭରି ଆଣିଛି ଝରୀ ।
ରାଧା—ଘରେ ଶାଶୁ ନଣନ୍ଦ, କହିବେ କେତେ ମନ୍ଦ—
କୃଷ୍ଣ—ପୂର୍ଣ୍ଣ ତଥି ଆଜି ତେଜ ଗୋ ମନୁ ଦ୍ୱନ୍ଦ—
ରାଧା—ଅପବାଦ କଳଙ୍କ ରଟିବ ବ୍ରଜପୁରେ—
କୃଷ୍ଣ—ତୁମରି କାଳିମା ମୋ ଅଙ୍ଗ ଶୋଭା କରେ,
ରାଧା—ଯାହା ଇଚ୍ଛାକର ନିଠୁର ନାଗର
ଶରଣୀ ନେଲି ରାଇ କିଶୋରୀ ।

[ ହୋରିଆ ମାନେ ଚାଲିଗଲେ, ବିପରୀତ ଦିଗରୁ ପ୍ରବେଶ କଲେ ଗ୍ଲେଟ ବ୍ରାହ୍ମଣ ଓ ବଡ଼ ବ୍ରାହ୍ମଣ; ଉଭୟଙ୍କ କାନ୍ଧରେ ଜାଉଁଳି ଲୋଟା କମ୍ବଳ ଓ ହାତରେ ବେତଛଡ଼ି । ବଡ଼ ବ୍ରାହ୍ମଣ ଶୂଳରୋଗରେ ଅକାନ୍ତ ବୋଲି ଜଣା ପଡ଼ୁଥାଏ; ସେମାନଙ୍କଠାରେ ମଧ ହୋରି ରଙ୍ଗର ଚିହ୍ନଥାଏ ।]

ଗ୍ଲେଟବ୍ରାହ୍ମଣ—ସେହି ଶୂଳ ବେମାରଟା କଣ ପୁଣି ଲେଉଟିଲା, ମଉସା ?

ବଡ଼ବ୍ରାହ୍ମଣ—ଏଥର ମୋତେ ନ ଖାଇ, ଛାଡ଼ିବନିରେ ବାପ ।

ଗ୍ଲେଃବ୍ରାହ୍ମଣ—ତୁମର ଯାଉଁଳି, କମ୍ବଳ, ଲୋଟା ତ୍ୱମାତେ ଦିଅ—ଅଉ ମୋ କାନ୍ଧରେ ହାତ ପକେଇ, ଗୋଟି, ଗୋଟି ହୋଇ ବାଟ ଚାଲ । ପାଖେ ଯେଉଁ ବସାଘର ବଡେଇଚି, ତା'ଠ ହେଇ ଆଖି ଆଗରେ—

ବଃବ୍ରାହ୍ମଣ—ଅଉ ବସାଘର । ଏହି ବ୍ରଜଦାଣ୍ଡ ଧୂଳିରେ କେମିତି ମିଶି ଯିବି ସେହି କଥା କହ, ବାପ ।

( ବସି ପଡ଼ିଲେ )

ଗ୍ଲେଃବ୍ରାହ୍ମଣ—ଦାଣ୍ଡମଝିଟାରେ ବସି ପଡ଼ିଲତ ? (ସେହି ସମୟରେ ବିବାହ ପଟୁଆରର ବାଦ୍ୟଧ୍ୱନି ଶୁଣାଗଲା )

ବଃ ବ୍ରାହ୍ମଣ—ଇଏ କି'ଙ୍କ ପଟୁଆର ? କି ବାଜା କି ?

ଗ୍ଲେଃବ୍ରାହ୍ମଣ—ବାହା ବାହୁଡା ବର କନିଆଁ ଦିଅଁ ଦର୍ଶନକୁ ଯାଉଛନ୍ତି ।

ବଃବ୍ରାହ୍ମଣ—ପାଖେଇ ଯାଅ ତ ।

ଗ୍ଲେଃବ୍ରାହ୍ମଣ—ଦେଖୁଚ ମଉସା, ଲୋକେ ରଙ୍ଗ ଖେଳ କିମିତି ରଙ୍ଗ ଅବିରରେ ଜୁଡ଼ୁ ବୁଡ଼ୁ କରି ଦେଇ-ଛନ୍ତି ବର କନିଆଁକୁ ।

ବଃବ୍ରାହ୍ମଣ—ତା' ନୁହେଁ, ବାପ ! ଜୀବନର ଚଲ୍ଲି ବାଟରେ ନୂଆ ପଟୁକି ବୁହେଁ; ଲୋକେ ନିଜ ନିଜ ରଙ୍ଗିନ ସ୍ୱପ୍ନରେ ମଜ୍ଗୁଲ ହୋଇ ଅଭିନନ୍ଦନ ଜଣାଉଛନ୍ତି ସ୍ୱପ୍ନର ରଙ୍ଗଢାଳି । ( ସ୍ୱପ୍ନ ଦେଖିଲା ପରି ଚାହିଁ ରହିଲେ )

ଗ୍ଲେଃବ୍ରାହ୍ମଣ—ମଉସା ପରାଣ ଟିକିଏ କମିଲା ?

ବଃ ବ୍ରାହ୍ମଣ—ହେଲେ, ଆଉ ଏକ ପରାଣ ଯେ ବଳି ପଡ଼ିଲଣି, ବାପ !

ଗ୍ଲେଃ ବ୍ରାହ୍ମଣ—ଘରଚିନ୍ତା'ତ ? ଆଜକି ଛଅବର୍ଷ ହେଲା ଘରଛାଡ଼ି ଥାଏଁ । ବୃନ୍ଦାବନତ ଆମର ଶେଷତୀର୍ଥ । ଏଇଠୁ ଲେଉଟି ଯିବା ଘରପୋଖକୁ । ଅଉ ଚିନ୍ତା କ'ଣ ?

ବଃ ବ୍ରାହ୍ମଣ—ତୀର୍ଥର ଶେଷ, ଦେହର ଶେଷ, ଯଦି ଏଇଠାରେ ଘଟି ଯାଏ, ତେବେ ?—

ଗ୍ଲେଃ ବ୍ରାହ୍ମଣ—ଛି, ଛି,—ତୁମେ ଏମିତ ଛାନିଆ ହେଲେ, ଚଳିବ, ମଉସା ?

ବଃ ବ୍ରାହ୍ମଣ—ଛାନିଆ ଏତେବେଳ ହୋଇ ନ ଥିଲି, ବାପ । ଘର ସଂସାର ବଲକୁଲ ପାଶୋରି

ପାଳାଇଥିଲି । ହେଲେ, ଆଜି ଏହି ବର ଢଙ୍ଗଆ ଦେଖି ମୋ'ର ଗୋଟିଏ ବୋଲି ଝିଅ, ଅଭିହାଡ଼ ଅଲଅଳ ଝିଅ ସୁମିତ୍ର କଥା ମନେ ପଡ଼ୁଛି । ତାକୁ ଆଜି ଷୋଳ, ମୁଁ ଯଦି ଘର ପାଖକୁ ଆଉ ନ ଫେରେ, ସୁମିତ୍ର ଯେପରି ଚଗଲି ଟୋକା ସେ ଯଦି ମୋ ଅନ୍ତେ ଘରକଥା ନ ବୁଝେ, ତା' ଭଉଣୀକି ଯଦି ଦି ଆଖିରେ ନ ଦେଖେ, ଅଉ ଦେଖିଲେ ବି, ଯଦି ଯୋଗା ବରପାତ୍ର ନ ଯୁଟେ, ତେବେ—ତେବେ—

ଛୋ: ବ୍ରାହ୍ମଣ—ଏ ବୁଢ଼ା କି ଅମଙ୍ଗଳ ଚିନ୍ତା ତୁମର, ମଉସା ?

ବ: ବ୍ରାହ୍ମଣ—ବାପ, ତୁମେ ମୋତେ ତୀର୍ଥ, ତୀର୍ଥ ବୁଲେଇଛ—ଋଣରେ ଋଣରେ ଛନ୍ଦିଛ—ତଥାପି ମୋ'ର ଗୋଟିଏ ଦାଇନ୍ ଅଛି ତୁମପାଖେ, ମାଗିବି, ଦେବ ତ ?

ଛୋ: ବ୍ରାହ୍ମଣ—ମୋତେ ?

ବ: ବ୍ରାହ୍ମଣ—ହଁ ତୁମକୁ । ଆଜିଠାରୁ ସୁମିତ୍ରା ତୁମର—ତୁମକୁ ଲଗିଲି ମୋ' ସୁମି ।

ଛୋ: ବ୍ରାହ୍ମଣ—ମଉସା !

ବ: ବ୍ରାହ୍ମଣ—ଆଉ ମଉସା ନୁହେଁ । ତୁମେ ମୋର ପୁଅ, ମୁଁ ତୁମର ବାପ । ଆସ, ଆଉ ହେଳା କରନା, ଯମୁନାକୁ ଯିବା, ଯମୁନାଜଳରେ ଗାଧୋଇ, ପବିତ୍ର ମନରେ ଦେବଥାନକୁ ଯିବା । ମୁଁ ଦେବତାଙ୍କୁ ସାକ୍ଷୀ ମାନି ମୋର ସୁମିକୁ ତୁମର ହସ୍ତେ ଅର୍ପଣ କଲି, ଏହି ସତ୍ୟ କରିବି; ଆଉ ତୁମେ ସେହି ଦାନ ପବିତ୍ର ମନରେ ଗ୍ରହଣ କଲ, ଏହି ସତ୍ୟ କରିବ ।

ଛୋ: ବ୍ରାହ୍ମଣ—ମ-ଉସା—!

* * * * *

[ ଦୃଶ୍ୟ ପରିବର୍ତ୍ତନ ହେଲା ]

[ ସେହି ସାକ୍ଷୀଗୋପାଳଙ୍କ ମନ୍ଦିରାଭ୍ୟନ୍ତର । ସଦାନନ୍ଦ ବାବା କହୁଥିଲେ, ଲକ୍ଷ୍ମୀ ଶୁଣୁଥିଲେ । ]

ସଦାନନ୍ଦ—ଏହି ସେହି ବୃନ୍ଦାବନ ବିହାରୀ ଶ୍ରୀ ଗୋପୀନାଥ, ଯାଙ୍କୁ ସାକ୍ଷୀ ମାନି ଯଥାସମୟରେ ବୁଢ଼ା ସତ୍ୟ କରିଥିବା ହେଲେ ।

ଲକ୍ଷ୍ମୀ—ତା'ପର ?

ସଦାନନ୍ଦ—ବାପର ମନ ହାଲୁକା ହୋଇଗଲା ସତ, ହେଲେ ଶୂଳ ବେମାରଟା ଏଥର ପ୍ରବଳ ହୋଇ ଉଠିଲା; ଆଉ ବ୍ରାହ୍ମଣ ସେହିଦିନ ସେହି ବୃନ୍ଦାବନ ଧାମରେ ସୂର୍ଯ୍ୟର ଶେଷରଶ୍ମି ସଙ୍ଗେ ଜୀବନର ଶେଷଝଲକ ମିଶାଇ ଦେଲେ ।

ଲକ୍ଷ୍ମୀ—ତାପର ଛୋଟ ବ୍ରାହ୍ମଣ କଣ କଲେ ?

ସଦାନନ୍ଦ—ହଁ କହିବାକୁ ଭୁଲିଚି । ଛୋଟ ବ୍ରାହ୍ମଣର ନାମ ସତ୍ୟବାଦୀ । ସତ୍ୟବାଦୀର ହାତକୁ ଧରିପକାଇ, ମହାପଥର ଯାତ୍ରୀ ଗଦଗଦ କଣ୍ଠରେ କହିଥିଲେ,—"ବାପ, ତୁମର ନାମ ସତ୍ୟବାଦୀ, ସେହି ନାମକୁ ଯେମିତି ନିନ୍ଦା ନ ଲାଗେ, ଏତକି ଖିଆଲ ରଖିବ ।"

ଲକ୍ଷ୍ମୀ—( କେମିତି ଥରି ଉଠିଲେ ) ତା'ପର ?

ସଦାନନ୍ଦ—ଲକ୍ଷ୍ମୀ, ତୁମ କଣ୍ଠରେ ଯେମିତି ଗୋଟାଏ ଆତଙ୍କର ଆଭାସ—

ଲକ୍ଷ୍ମୀ—(ଭୁଲେଇ) 'ସତ୍ୟବାଦୀ ବିଗୁରି କରେ କ'ଣ', ସେଇ କଥା—

ସଦାନନ୍ଦ—ହଁ, ସେକଥା ଆଉ ପଗୁରିବାକୁ, ମା ।

ଲକ୍ଷ୍ମୀ—ତା'ପର, ବାବା ?

ସଦାନନ୍ଦ—ଶବସତ୍କାରର ଆଦି ବିଧି ଯାହା ଯେମିତି ସାରି ସତ୍ୟବାଦୀ ବିଦ୍ୟାନଗରୀକୁ ଫେରିଲେ । ଖବର କଲେ । ଯଥା ସମୟରେ ଶୁଙ୍ଖିକିନ୍ଧା ବଢ଼ିଲା । ଶୋକ ତାପର ମାତ୍ରା କମିଲା । ଝିଅ ବାହାଥିଆ ଘେନି କଥା ପଡ଼ିଲା । ସତ୍ୟବାଦୀ ସେହି ସୁବେ ଝିଅ ବାପର ମନକଥା, ଆଉ ସତ୍ୟ କରିବା କଥା ଫିଟାଇ କହିଲେ । ସୁମି-ବୋଉ ବିଶ୍ୱାସ କଲେ, ହଁ ଭରିଲେ, ହେଲେ, ସୁମିତ୍ର କାନରେ ଯେମିତି ବାଜିଛି, ତା ବର୍ତ୍ତାପ ଆଉ ଦେଖେ କିଏ ? ଗୋଟାଏ ଘୋଡ଼ା ଠେଙ୍ଗାଧରି, ଗାଁ ମଝି ଦାଣ୍ଡ ଫଟେଇ, ପାଟି ତୁଣ୍ଡ କରି କହିବାକୁ ଲଗିଲା—

* * * * *

—ଦୃଶ୍ୟାନ୍ତର—

[ ବିଦ୍ୟାନଗରୀର ଗାଁ ଦାଣ୍ଡ । ସୁମନ୍ତ ଗୋଟାଏ ମୋଟା ଠେଙ୍ଗା ଧରି ପ୍ରବେଶକଲା ]

ସୁମନ୍ତ—କ'ଣ, ସୁମୀଙ୍କ ବାହାହେବ ଗୋଟାଏ ଅଶିକ୍ଷିତ କଙ୍ଗାଳ ? ମାଡ଼୍‌ ଖାଇ ଏ ଗାଁ ଦାଣ୍ଡ ପୁଣି ଥରେ, ପଡ଼ୁ ଥିଲା ହାବୁଡ଼େ, ତା'ଭାଗ୍ୟ ଫଟେଇ ଦେବିନି ଏ ଦାଣ୍ଡରେ—

[ ଏକଆଡ଼ୁ ଗାଁ ମାମଲତକାର ଓ ଅନ୍ୟଆଡ଼ୁ ଗାଁବାଲାଏ ପ୍ରବେଶ କଲେ ]

ଗାଁ: ମା:—ହାଁ, ହାଁ, ନିଜ ଭାଗ୍ୟ ଆଗ ସମ୍ଭାଳ, ବାବା—

ସୁମନ୍ତ—ମୁଁ ମରେଁ କି ବଞ୍ଚେ, ହାଁ, ଏଇଠି, ତୁମର ଆଗେ, ( ଠେଙ୍ଗା ତିନଥର ଠୁକେଇ ) କିସମ ଖାଇ କହୁଚି, ତା'ର ଦିନେ କି ମୋ'ର ଦିନେ ।

ଗାଁ: ମ.:—ଆରେ କିଏ ? କା'କଥା କହୁଚୁ ବା ?

ସୁମନ୍ତ—ଆଉ କିଏ, ସେହି ସତ୍ୟବାଦୀ, ସିଧିଆ, ଯିଏ ବୋଉ ଆଖିରେ ଭେଲ୍‌କି ଲଗେଇ ଦେଇଚି; ସେହି ଛତରା କହୁଚି ସୁମୀଙ୍କ ବାହାହବ, ନନା ସତ୍ୟ କରିଚି ବୃନ୍ଦାବନବିହାରୀଙ୍କ ପାଦଚୁଇଁ, ହେଃ ।

ଗାଁ: ମା:—ସତେ ?

୧ମ ଗ୍ରା:—ଖାଲି ସେତିକି ? ହାଟରେ, ଦାଣ୍ଡରେ, ବାଟରେ, ଘାଟରେ ଯାହାକୁ ଦେଖୁଚି, ତାକୁଇ ଏଇକଥା କହି ବୁଲୁଚି ।

ଗାଁ ମା:—ତା ହେଲେ ଗୋଟେ ଡେଙ୍ଗୁରା ପିଟି ବୁଲୁଚି, କହ ।

୧ମ ଗ୍ରା:—ଆଉ ?

ଗାଁ ମା:—ହଇହେ, ତୁମେ ପରା ଗାଁ ବାଲା—ସାଇ ପଡ଼ିଶା—ଏ'ଘରେ ତୁଣ୍ଡଣି ସନ୍ତୁଳା ହେଲେ ସେ ଘରକୁ ବାସେ ? ତା'ହେଲେ ସୁମୀ କିଏ, ତୁମ ଝିଅ କିଏ ? ତାକୁ ବାହାହବ କଉ ଅଜଣା ଅଶୁଣା ଅଶିକ୍ଷିତଟା—ଏକଥା ତୁମ ମନକୁ ପାଉଚିତ ? ତୁମ ଦେହ ବର୍ଦ୍ଦାସ୍ତ କରିବତ ?

୨ୟ ଗ୍ରା:—ପାଗଳାଟାଏ, ତା କଥା ଭଲ ପଚେରିଛ—
( ଚାଲିଯିବାର ଉପକ୍ରମ )

ଗାଁ ମା:—[ ଅଟକାଇ ] ପାଗଳାଟାଏ ?—ହଉ, ତୁମର କଥା ହେଲା, ଭାଇ—ହେଲେ, ବାପୁ ପାଗଳାକୁତ୍ତା ଗାଁ ଗଣ୍ଡା ଭିତରେ ପଶି ଉପଦ୍ରବ ଲଗେଇବତ ? ଏକେତ ଘରର ମାଲିକକୁ ତୀର୍ଥ ବୁଲେଇବା ବାହାନାରେ ଘରୁ କଢ଼େଇ ଖତମ୍‌ କରିଦେଇ ଆସିଲା କଉଁ ଅଜାଣ ମୁଲକରେ । ଅଇଲାକ୍ଷଣି ପୁଣି ଘର ଭାଙ୍ଗିବ ଡେମିତ ସେଇ ଯୋଗାଡ଼ । ଆଜ୍ଞା ସୁମନ୍ତର କଥା—ତାଲି ତୁମକୁ ଛାଡ଼ିବତ ?

୧ମ ଗ୍ରା:—ଠିକ୍‌ କହୁଚ ମାମଲତକାରେ—ବାପ୍ପା ପାଗଳା କୁତ୍ତା—ତାକୁ ଚୁହିଁ ଠେଙ୍ଗା ମାଡ଼ ।

ସୁମନ୍ତ—( ଗୋଟାଏ ଧଡ଼ସରେ ଠେଙ୍ଗା ଉଠାଇଲା, ତାହା ମାମଲତକାର ମଥାରେ ପଡ଼ିବାକୁ ଯାଉଥିଲା )

ଗାଁ ମା:—ହାଁ, ହାଁ, ଦେଖି ଶୁଣି ବାବୁ । ଦେଖ, ତୁମେ ଭାଇ ଭାଇ ଯଦି ଏକମତ, ତେବେ ଏଠି ଆଉ ହାଟ ଲଗାଅନି, ଘରକଥା ଖାଲି ପଦାରେ ପଡ଼ିବ, ଆଉ ଝିଅଟି ବାଲୁଙ୍ଗା ହେବ; ହୁଏତ ତାର ବାହା—

ସୁମନ୍ତ—ଦୁର୍ଘଟ ହେବ ? ମଉସା—

ଗାଁ ମା:—ତୁମେ କିଛି ଦିକା କରନା, ସୁମନ୍ତ, ମୁଁ ବାଟ ଖଞ୍ଜି ରଖିଚି, ଯହିଁରେ—

୧ମ ଗ୍ରା:—ସାପ ମରିବ, ବାଡ଼ି ଭାଙ୍ଗିବନି ? ବାଃ—ବାଃ—

ଗାଁ ମା:—ଭାଇମାନେ ( ଚାଲିଯିବାକୁ ଇଙ୍ଗିତ )

୧ମ ଗ୍ରା:—ଚାଲ, ଚାଲ, ( ଗ୍ରାମବାସୀ ମାନେ ଯାଉ ଯାଉ ) ଘର କଥା ଘରେ ଛାଡ଼ୁ—

ସୁମନ୍ତ—କୁହ, ମଉସା, କି ବାଟ ?

ଗାଁ ମା:—( ଏ'ପାଖ ସେପାଖ ଚୁହିଁ ) ଉତାଲ ହେବନି, ବାପ !

ସୁମନ୍ତ—ମୁଁ ଥିର ମନରେ ଶୁଣିବି, ମଉସା, କୁହ ।

ଗାଁ ମା:—ଦେଖ ସୁମନ୍ତ, ଗାଁର ସମସ୍ତେ କୁହନ୍ତି ଗଙ୍ଗାଧରଟା ବସ୍ତୁତ ଝିଅ - ଘରଭଙ୍ଗା—ହେଲେ,

ଅଜ ମଉକା—ଦେଖେଇବ, ଗଙ୍ଗାଧର ଘରରଖା କି ଘର ଭଙ୍ଗା ?

ସୁମନ୍ତ—ମୁଁ ବି ବ୍ରାହ୍ମଣ ପୁଅ, ପଇତା ଛୁଇଁ କିରୁମ ଖାଉଛି, ତୁମେ ଖାଲି ବାଣ୍ଟ ବଢେଇ ଦିଅ,—ଯଉଁ ଅଗ୍ରିକ ଘେନି ନନା ସଙ୍ଗେ ତୁମର ଝଗଡ଼ା, ମାଡ଼ ଫଉଦାରୀ, ସେତକ ଯଦି ତୁମ ନାଁରେ ଲେଖିପଢ଼ି ନ ଦେଇଛି, ତେବେ—

ଗାଁ ମାଃ—ତା ହେଲେ ତୁମେ ମୋତେ ପର କରି ଦେଉଚ, ସୁମନ୍ତ !

ସୁମନ୍ତ—ସେ କି କଥା ମଉସା ? ଆପଣାର ବୋଲି ତୁମେ ମୋ ବାଣ୍ଟ କରି ଦେଉଚ, ଆଉ ମୁଁ ପର କରିଦେବି ତୁମକୁ ?

ଗାଁ ମାଃ—ହେଲେ, ବାପ ଆଉ ଗୋଟିଏ କଥା,—ମୁଁ ଯେଉଁ ବାଣ୍ଟ କରିଦେବି, ସେଥିରେ ତୁମ ବୋଉ ରାଜି ହେବେ ତ ?

ସୁମନ୍ତ—ମୁଁ ତ ସାବାଳକ, ଘରର ମାଲିକ, ମାଲିକ ଯାହା କହିବ ତାହା ଶୁଣିବାକୁ ସମସ୍ତେ ବାଧ୍ୟ ।

ଗାଁ ମାଃ—ବସ ବୋଇଲେ ବସିବେ, ଉଠ ବୋଇଲେ ଉଠିବେ । ଗୋଟିଏ କଥା ସଦାବେଳେ ମନେ ରଖିଥିବ ବାପ, ଘରର ମଝିଖୁଣ୍ଟ ଯାହା, ଘରର ମାଲିକ ସେଇୟା । ହଁ ଦେଖ, ବାଣ୍ଟଟି ଭାରି ସୂକ୍ଷ୍ମ ।

ସୁମନ୍ତ—କେମିତି ?

ଗାଁ ମାଃ—ସୁମୀର ବାହାଘର । କଥାରେ କହନ୍ତିପରି—ବାଡ଼ୁଅ ଝିଅ ଆଉ ଭରଲା ଘିଅ ଦୁହେଁ ସମାନ ।

ସୁମନ୍ତ—ହେଲେ କରଯାକ, ମଉସା ?

ଗାଁ ମାଃ—ଅବିତ ବେଳେ ଯିଏ ଏକମାତ୍ର ସାହା···

ସୁମନ୍ତ—( ରାଗରେ ) ଅବିତ ମିଶ୍ର ?

ଗାଁ ମାଃ—ରାଗିବନି, ପୁଅ—ହେଜ ପାଣ୍ଡୁ—ଦେଖ ଅବିତକାଣ ବୁଢ଼ା ହଡ଼ା ସତ, ପାଞ୍ଚଟା ଖାଇ ଛଅଟାକୁ ଆଶା ସତ, ହେଲେ, କି ଘର-ପୁଅ, କି ଘର-ନାତି ।

ସୁମନ୍ତ—ରକ୍ତଭଖୋର, ବେମାନ । ସୁମୀ ମୋର ଅଭିଆଡ଼ ରହିବ [ ଗୁଲିଯାଉଥିଲା ]

ଗାଁ ମାଃ—ଏକେତ ଷୋଳବର୍ଷୀ ବୋଲି ଊଣା ଊଣା ନାଗରୀ ଗୁରିଅଡ଼େ । ଗାଁବାଲାଏ ରକ୍ତଗୁଡ଼ଲ ଗୈବେଇ ହେଉଚନ୍ତି···

ସୁମନ୍ତ—[ ଠିଆହେଲା ]

ଗାଁ ମାଃ—ଆଉ ଅଭିଆଡ଼ ରଖିଲେ, ଗାଁ ବାଲାଏ ତୁମକୁ ବାସକରେଇ ଦେବେଟି ଏ ଗାଁରେ ?

ସୁମନ୍ତ—ମଉସା ।

ଗାଁ ମାଃ—ଦେଖ, ସେଇ ସତ୍ୟବାଦୀଟା ପଗଲା କୁହ ହେଉ ବା ପଗଲା କିଲୁଆ ହେଉ, ଗାଏଁ ଗାଏଁ ଯେତେବେଳେ ବାହାହବାକୁ ରାଜି, ତୁମେ ଏ ଦାଉଁ ହରଗିଜ୍ ଛାଡ଼ନାହିଁ । ହେଲା ଏବେ, ଘର-ଜୁଆଁଇ କରି ରଖିବ—ମଉରସି ସମ୍ପତ୍ତିରେ ଭାଗ ବସିବ, ଏଇୟାତ ?

ସୁମନ୍ତ—ସମ୍ପତ୍ତିରେ ଭାଗ ?

ଗାଁ ମାଃ—ବୁଢ଼ାଠୁ କଣ ସେଇ କାଇଦା ଟିକକ ସେ ବାଗେଇ ନ ନେଇଥିବ ଭାବିଚ ?

ସୁମନ୍ତ—ମଉସା, ତୁମେ ଅବିତ ମିଶ୍ର କଥା ବୁଝୁଚ ।

ଗାଁ ମାଃ—ଦେଖ, ମିଶ୍ର ଆପଣେ ତାଙ୍କ ସମ୍ପତ୍ତିବାଡ଼ି ସବୁ ଲେଖିଦେବେ ତୁମ ଭଉଣୀ ନାଁରେ, ଏ ଏକରାର ନାମା ମୁଁ ଶଠା କରେଇ ରଖିଚି ବେଳସୁଁ । ଅଭ ବୁଝୁଚ, କେଇଟା ଦିନରେ ତୁମେ ହେବ ଦୁଇଟା ସମ୍ପତ୍ତିର ମାଲିକ ।

ସୁମନ୍ତ—ତା ମାନେ ?—ସୁମୀ ହାତରୁ ବଜ୍ର-ଗଙ୍ଗା ଖସିବ—ଆଉ ମୁଁ ହେବି ଦୁଇଟା ସମ୍ପତ୍ତିର ମାଲିକ ? ତୁମ ତୋଟି ଚିପି···

( ଦାନ୍ତ କଡ଼ମଡ଼ କରି ଗୁଲିଗଲା ସେଠୁଁ । )

ଗାଁ ମାଃ—ହୁଁ—ବେଶ୍ କିଏ କା ତୋଟି ଚିପୁଛି, ଦେଖ । ସେ ପଗଲାଟା ଗଲା କୁଆଡ଼େ ? ( ଦେଖି ) ଏଇତ ଧନମଣି—ଏ'କିଏ, ବାପ ସତ୍ୟବାଦୀ ?

ସତ୍ୟ—( ବାକୁଳ ଭାବ ଓ ବେଶରେ ପ୍ରବେଶ ପୂର୍ବକ ) ଏଁ ସତ୍ୟବାଦୀ ।

ଗାଁ ମାଃ—କାମ ଗୁଣେ ନାମ ସାର୍ଥକ,—ଏ ନମୁନା ତୁମେଇ ଏକା ବାଢ଼ିବ, ବାପ ।

ସତ୍ୟ—ନା, ନା, ସତ୍ୟ କଥା କହୁ ମୁଁ ଅଖ୍ୟା ପାଇଛି ବାୟା-ପାଗଳା; ଗାଁ ବାଲାଏ ବାୟା କୁକୁର ବୋଲି କହି ଘଉଡ଼େଇ ଦେଲେ ମୋତେ; ସୁମନ୍ତ ପାଗଳାମି ଛଡ଼େଇ ଦେଉଛି ବୋଲି କହି, ବାଡ଼ିଟାଏ କସିଦେଲା ପିଠିରେ···ଉଃ (ଅଉଁସିବାକୁ ଲାଗିଲା ପିଠି )

ଗାଁ ମାଃ—( ଅଉଁସି ଦେଇ ) ଏ' ଶଳାବଧାର ନମୁନା, ବାପ—ସେଥିକି ଭାଲେଣୀ କଣ ?

ସତ୍ୟ—ତୁ···ମେ କି···ଏ ?

ଗାଁ ମାଃ—'ମଉସା' !

ସତ୍ୟ—କା' କଥା ପୁଣି ମନେ ପକାଇଦେଲ ? ତା'ଙ୍କର ତୁଣ୍ଡ ଯିମିତ ମୁଁ ଶୁଣୁଛି—

( ନେପଥ୍ୟେ ବଡ଼ ବ୍ରାହ୍ମଣର କଣ୍ଠସ୍ୱର )

( କଣ୍ଠସ୍ୱର )—ଆଜଠାରୁ ସୁମିତ୍ରା ତୁମର—ତୁମକୁ ଲାଗିଲା ମୋ ସୁମି··· ।

ଗାଁ ମାଃ—ସତ୍ୟବାଦୀ ।

ସତ୍ୟ—ଲୁହ, ଲୁହ, ମଉସା କି ଉପାୟ କଲେ, ମୁଁ ସୁମିତ୍ରାକୁ ପାଇବି—ସୁମିତ୍ରା-ପିତାର ବାସନା ପୂରିବ—ମୋର ସତ୍ୟ ରକ୍ଷା ହେବ—

ଗାଁ ମାଃ—ହେବ, ଥୟ ଧର ବାପ । ଏ ଗୋଟାଏ କାବା କଥା । ଆଚ୍ଛା, ସୁମିତ୍ରା-ପିତା ତୁମକୁ ବାକ୍ୟ ଦାନ କରିଥିଲେ, ତା'ର ସବୁତ ଅଛି, ପ୍ରମାଣ ଦେଇ ପାରିବ ?

ସତ୍ୟ—ପ୍ରମାଣ ? ମୋର ବାକ୍ୟ କଣ ପ୍ରମାଣ ନୁହେଁ ?

ଗାଁ ମାଃ—ତୁମେ ଯେ ମିଛ କହୁନାହଁ, ତା'ର ପ୍ରମାଣ ?

ସତ୍ୟ—ଲୋକେ ଏତେ ଅବିଶ୍ୱାସୀ ?

ଗାଁ ମାଃ—ସେଇଥି ପାଇଁତ ଯେତେ ନଥିପତ୍ର—ଦଲିଲ ଦସ୍ତାବିଜ—ମା'ଲି-ମକଦ୍ଦମା—କଚେରି ଦରବାର—ସାକ୍ଷୀ ସାବୁତ୍ ପ୍ରଭୃତିର ବ୍ୟବସ୍ଥା ।

ସତ୍ୟ—ମୋର ସାକ୍ଷୀ ଅଛି, ମଉସା !

ଗାଁ ମାଃ—ସାକ୍ଷୀ ଅଛି ?

ସତ୍ୟ—ଯେମିତି ସେମିତି ସାକ୍ଷୀ ନୁହେଁ ।

ଗାଁ ମାଃ—ମାତବର ସାକ୍ଷୀ ?

ସତ୍ୟ—ସ୍ୱୟଂ ବୃନ୍ଦାବନ-ବିହାରୀ ଗୋପୀନାଥ ।

ଗାଁ ମାଃ—ଅରେ, ପାଗଳା, ସେ ସାକ୍ଷୀତ ଆଉ କଥା କହିବନି । ରାଜଚିଠାଉ ପଠାଗଲେ, ରାଜ ଦରବାରରେ ଆସି ହାଜର ହେବନି ।

ସତ୍ୟ—ତୁମେ ବି ମୋତେ ଅବିଶ୍ୱାସ କଲ, ପଗଳା ବୋଲି କହିଲ, ମଉସା ?

ଗାଁ ମାଃ—ଅରେ ବାପ ! ବିନା ମିସଲରେତ ମହକାଲର କାମ ହାସଲ ହେବନି । ଯଦି ସାକ୍ଷୀ ମିଳନ୍ତା,—ତା' ହେଲେ ଫର ଏଇଲା ଧଅସି ଯାଇ, ରାଜ-ଦରବାରରେ ନାଲିଶ ଟାଏ ଦାଏର କରି ଦିଅନ୍ତି—ତା'ପର ଦେଖନ୍ତି, କିଏ କାର ତୋଟି—

ସତ୍ୟ—ତୁମେ ନାଲିଶ ଦାଏର କରିଦିଅ, ମଉସା ? ରାଜ ଚିଠାଉ ପଠାଇ ଦିଅ—ମୁଁ ଚାଲିଲି ବୃନ୍ଦାବନବିହାରୀଙ୍କ ପାଖକୁ—(ଚାଲି ଯାଉଥିଲେ)

ଗାଁ ମାଃ—ଅରେ—ଅରେ—

ସତ୍ୟ—( ଫେରି) ହଁ ମୁଁ କହି ଦେଇ ଯାଉଛି—ଦୋଳ ପୂନେଇଁ ଆଜକୁ ରହିଲା ମାସେ—ସେ ଦୋଳ ପୂନେଇକି ଏ ଦୋଳ ପୂନେଇ ଠିକ୍ ବର୍ଷେ,—ମୁଁ ଠିକ୍ ସେହିଦିନ ସାକ୍ଷୀଙ୍କୁ ଆଣି ବିଦ୍ୟାନଗରୀରେ ହାଜର କରାଇବି—ତୁମେ ସେହି ଦିନକୁ ତାରିଖ ପକେଇ, ବୃନ୍ଦାବନ ବିହାରୀ—ଶ୍ରୀ ଗୋପୀନାଥଙ୍କ ପାଖକୁ ଚିଠାଉ ପଠାଇ ଦେବ ମଉସା—ଗୋପୀନାଥ— (ପ୍ରସ୍ଥାନ)

ଗା ମାଃ—ଏଁ—ଏଇଟା କହୁଛି କଣ ? ସତେ, ସତେ···ଦିଏଁ ତ ନାଲିଶଟାଏ ଠୁକି ଗୋପୀନାଥଙ୍କୁ ମୁଦେଇ ତରଫର ପ୍ରଧାନ ସାକ୍ଷୀକରି ।

[ ଚାଲିଗଲା ]

* * * *

( ଦୃଶ୍ୟ ପରିବର୍ତ୍ତିତ ହେଲା )

[ ସେହି ସାକ୍ଷୀଗୋପାଳଙ୍କ ମନ୍ଦିରଭ୍ୟନ୍ତର । ସଦାନନ୍ଦ କହୁଥିଲେ ଓ ଲକ୍ଷ୍ମୀ ଶୁଣୁଥିଲେ ]

ଲକ୍ଷ୍ମୀ—ତା'ପର ?

ସଦାନନ୍ଦ—'ତୁଣ୍ଡବାଇଦ ସହସ୍ର କୋଶ' । ସତ୍ୟବାଦୀ-କହିବା କଥା ଘରେ ଘରେ, ଗ୍ରାମେ ଗ୍ରାମେ,

ରାଜ୍ୟେ ରାଜ୍ୟେ ଚଳ ବଚଳ ହୋଇ ବଛୁଡ଼ି ପଡ଼ିଲା । ଦୋଳ ପୂର୍ଣ୍ଣିମା ସାତଦିନ ଥାଏ, ନଦୀ ବାଲିରେ ଆଉ ବାଲି ଦେଖାଗଲା ନାହିଁ ।

ଲକ୍ଷ୍ମୀ—ଏତେ ଲୋକ ? ତାପରେ ?

ସଦାନନ୍ଦ— ବୃନ୍ଦାବନ-ବିହାରୀ ଶ୍ରୀଗୋପୀନାଥ ସତ୍ୟବାଦୀର ସରଳ ଡାକ ଶୁଣିଲେ, ସତ୍ୟବାଦୀ ପ୍ରତି ପ୍ରସନ୍ନ ହୋଇ କହିଲେ—"ସତ୍ୟବାଦୀ, ତୁମେ ମୋତେ ସାକ୍ଷୀ ମାନିଛ—ସାକ୍ଷୀ ତଳବର ରାଜ ଚଟାଉ ମଧ୍ୟ ଆସି ହାଜର । ତୁମେ ଆଉ ଡେରି କରନା । ରାଜା ଓ ରାଜ୍ୟର ଲୋକେ ମୋର ଅପେକ୍ଷାରେ ରହିଛନ୍ତି । ଦେଖ, ମୁଁ ତ ବାଟ ଚିହ୍ନେନା, ତୁମେ ଆଗେ ଆଗେ ଚାଲିବ— ମୁଁ ପଛେ ପଛେ ଯିବି ।"

ଲକ୍ଷ୍ମୀ—ତାପରେ—

ସଦାନନ୍ଦ—ସତ୍ୟବାଦୀ ଚାଲିଲେ ଗାଇ ଗାଇ । ମୋହନ ମୁରଲୀଧାରୀ ଶ୍ରୀ ଗୋପୀନାଥ ଅନୁସରିଲେ ରୁଣୁଝୁଣୁ ନୂପୁର ବଜାଇ ।

* * * *

—ଦୃଶ୍ୟାନ୍ତର—

[ ନୀଳାଚଳ ପଥ—ସତ୍ୟବାଦୀ ଗାଇ ଗାଇ ଚାଲିଥାନ୍ତି । ଶ୍ରୀ ଗୋପୀନାଥ ନୂପୁର ବଜାଇ ଚାଲିଥାନ୍ତି ପଛେ ପଛେ ]

ସତ୍ୟବାଦୀ— —ଗୀତ—

ବନ୍ଦେ ସୁନ୍ଦର ନନ୍ଦକୁମାରଂ
ଭାନୁ ସୁତାତଟ ରଙ୍ଗ ମହା ନଟ,
ସୁନ୍ଦର ନନ୍ଦ କୁମାରଂ ॥
ସରଜଙ୍ଗି କୃତ, ଦ୍ରବ୍ୟ ରସାକୃତ,
ମଙ୍ଗଳ ରାସ ବିହାରଂ ॥
ଗୋପି ଚୁମ୍ବିତ ଭାଗ କରମ୍ବିତ,
ମାନ ବିଲୋକନ ଲୀନଂ ।
ରୁଣି ଗର୍ବୋନ୍ନତ ରାଧା ସଙ୍ଗତ,
ସୌହୃଦ ସମ୍ପଦାଧୀନଂ ॥
ଅମ୍ବୁବିଗାହନ ନନ୍ଦିତ ନିଜ ଜନ,
ମଣ୍ଡିତ ଯମୁନା ତୀରଂ ।
ସୁଖ ସମ୍ବିଦ୍ ଘନ ପୂର୍ଣ୍ଣ ସନାତନ
ନିର୍ମ୍ମଳ ନୀଳ ଶରୀରଂ ॥

[ ଶ୍ରୀ ଗୋପୀନାଥ ରୁଣୁଝୁଣୁ ସ୍ୱନରେ ଗୀତର ତାଳେ ତାଳେ ଅନୁସରଣ କରୁଥିଲେ । ହଠାତ୍ ବାଲି ପଡ଼ିବାରୁ, ଆଉ ନୂପୁର ଶବ୍ଦ ଶୁଣାଗଲା ନାହିଁ ]

ସତ୍ୟବାଦୀ—( କାନଡେରି ) ନୂପୁର ଶବ୍ଦତ ଆଉ ଶୁଣା ଯାଉନାହିଁ—ତେବେ କଣ ଘାଟରେ ଡଙ୍ଗା ଲାଗିଲା ବେଳରେଇ ଭେକ ବୁଡ଼ିଲା—ବୃନ୍ଦାବନ-ବିହାରୀ ମୋତେ ଛଳନା କଲେ ?

[ ପଛକୁ ଚାହିଁଦେବାରୁ ଶ୍ରୀ ଗୋପୀନାଥ— ସ୍ଥିରମୂର୍ତ୍ତି ପାଲଟିଗଲେ । ]

ସତ୍ୟବାଦୀ—ଓଃ, ବୃନ୍ଦାବନବିହାରୀ—ସତ୍ୟ ଗୋପୀନାଥ ! ···ମୁଁ ସନ୍ଦେହ କରିଛି, ତାର ପରିଭବ ପାଇଛି । ( କରୁଡ଼ିହୋଇ ପଡ଼ିଗଲେ )

* * * *

( ଦୃଶ୍ୟ ପରିବର୍ତ୍ତିତ ହେଲା )

[ ସେହି ମନ୍ଦିରାଭ୍ୟନ୍ତର—ସଦାନନ୍ଦ ବାବା କହୁଥିଲେ, ଲକ୍ଷ୍ମୀ ଶୁଣୁଥିଲେ— ]

ସଦାନନ୍ଦ—ଏହି ସେହି ସତ୍ୟ ଦେବତା ଶ୍ରୀଗୋପୀନାଥ, ଆମର ସାକ୍ଷୀଗୋପାଳ । ମାନବର ସନ୍ଦେହ ଫଳରେ ସଚଳ ଦେବତା ଆଜି ଅଚଳ । କଥା କୁହା ଦେବତା ଆଜି ମୂକ ଦେବତା !—ଲକ୍ଷ୍ମୀ !

ଲକ୍ଷ୍ମୀ—ବାବା ! (କପର ବିଚଳିତା ଦେଖା ଯାଉଥିଲେ)

ସଦାନନ୍ଦ—ସତ୍ୟ ଦେବତାଙ୍କ ସତ୍ୟ-ପ୍ରୀତି-କାହାଣୀ ଶୁଣିଲୁ । ଏବେ ସେହି ସତ୍ୟ ଦେବତାଙ୍କୁ ଚାହିଁ, ତାଙ୍କରି ସାକ୍ଷାତରେ ମୋର ପ୍ରଶ୍ନର ଉତ୍ତର ଦେବ ?

ଲକ୍ଷ୍ମୀ—'ପ୍ରଶ୍ନ' ? କି ପ୍ରଶ୍ନ ବାବା ?

( ଭୀତ କମ୍ପିତ ସ୍ୱରରେ )

ସଦାନନ୍ଦ—ଭୟ କରୁଛ ? ତେବେ ଆଉ ପଚାରିବି ନାହିଁ ।

ଲକ୍ଷ୍ମୀ—ନା, ବାବା, ସତ୍ୟ କହିବ, ଭୟ କଣ ?

ସଦାନନ୍ଦ—ହଁ, ସେହି ଦମ୍ଭ ସଦାବେଳେ ରଖିଥିବ । ସତ୍ୟନିଷ୍ଠ ମାନବର ଡର ଭୟ କ'ଣ ?

ଲକ୍ଷ୍ମୀ—ପଣ୍ଟୁର, ବାବା ?

ସଦାନନ୍ଦ—ମୋ ପାଖକୁ ଆସ ତ, ମା । ହଁ,···ତୁମେ ଆରତି ଶେଷରେ ପ୍ରତିଦିନ ଶ୍ରୀଗୋପୀନାଥଙ୍କୁ କି ଡାକରେ ଡାକୁଥାଅ ଶୁଣିବାକୁ ଭାରି ଆଗ୍ରହ ଥିଲା । ଆଜି ତାହା ମୁଁ ସ୍ପଷ୍ଟ ଶୁଣିଛି, 'ଲକ୍ଷ୍ମୀନାଥ ।' ହେଲେ ଏହି 'ଲକ୍ଷ୍ମୀନାଥ' ଡାକ ପୂଜାରିଣୀ ଲକ୍ଷ୍ମୀର ଗୋଟାଏ ଭାବାବେଶର ଡାକ, ନା ବିରହିଣୀ ଲକ୍ଷ୍ମୀର ବେଦନା ଭରା ଅନ୍ତରାତ୍ମାର ଉଚ୍ଛୁଳା ଉଚ୍ଛ୍ୱାସ ?

ଲକ୍ଷ୍ମୀ—( ଲଜ୍ଜା, କ୍ରୋଧ, ଅଭିମାନ ମିଶ୍ରିତ ଭାବରେ କ୍ଷିପ୍ର ହୋଇ ଯେମିତି ଗୋଟାଏ ଝଞ୍ଜା ଖେଳାଇ ଦେଇ ଚାଲିଗଲେ )

ସଦାନନ୍ଦ—ଲକ୍ଷ୍ମୀ ! ଲକ୍ଷ୍ମୀ !

[ କିଛିକ୍ଷଣ ପରେ ଆନନ୍ଦ ପ୍ରବେଶ କଲା । ମଥାରେ ଠେକା, ହାତରେ ଠେଙ୍ଗା, ଆନନ୍ଦ ସଦାନନ୍ଦ ବାବାର ଚେଲା । ତରୁଣ ଯୁବକ, କମନୀୟ କାନ୍ତି ]

ଆନନ୍ଦ—ବାବା ?—

ସଦାନନ୍ଦ—କିଏ ? ଆନନ୍ଦ ? ବାହାରେ ଭାରି ଝଡ଼-ତୋଫାନ ନା କ'ଣ ?—

ଆନନ୍ଦ—ନାହିଁତ, ଆକାଶ ବେଶ ନିର୍ମଳ, ତାରା ଫୁଟିଛି କାହିଁରେ କଣ, ଦକ୍ଷିଣା ବହୁଛି ଶିର-ଶିର, ତେବେ—

ସଦାନନ୍ଦ—କଣ ? କଣ ?

ଆନନ୍ଦ—ଲକ୍ଷ୍ମୀ ଭଉଣୀ ଯେମିତି ଗୋଟାଏ ଝଡ଼ ତୋଫାନ ଖେଳେଇ ଦେଇ, ଝଡ଼ ବେଗରେ ବାହାରି ଚାଲିଗଲେ, ଠିକ୍ ଏହିପରି ମନେ ହେଲା । ଅନ୍ଧାର ରାତି, ଭୟଁସ ଆଜି, ମୁଁ ବାହାରିଲି ସାଙ୍ଗରେ ଯିବାକୁ ନିଡଭିଳା, ହେଲେ ମୋତେ 'ନାହିଁ ନାହିଁ' ବୋଲି ହାତ ଛିଞ୍ଚାଡ଼ି ମନା କରିଦେଲେ, ଆଉ ଝଞ୍ଜା ବେଗରେ ବଉଳ ବନ ଗୋଟାକ ଦୋହଲାଇ ଦେଇ ଅଦୃଶ୍ୟ ହୋଇଗଲେ, ମୁଁ ଗୋଡ଼ାଇ ଗୋଡ଼ାଇ ସୁଦ୍ଧା ପତ୍ତା ପାଇଲି ନାହିଁ ।

ସଦାନନ୍ଦ—ସତେ ? ହାଃ ହାଃହାଃ — ହାଃ ହାଃ ହାଃ —

ଆନନ୍ଦ—ବାବା —

ସଦାନନ୍ଦ—ତୁମେ ବୁଝି ପାରିବନି, ଆନନ୍ଦ —ଏ ହେଉଛି ରସ-ରଙ୍ଗିନୀର ରାସେଶ୍ୱର ପ୍ରତି 'ଦୁର୍ଜୟ ଅଭିମାନ' ।

---

## ଦ୍ୱିତୀୟ ଦୃଶ୍ୟ

### —ପରିଗ୍ଗଳଙ୍କ ଗୃହ ସମ୍ମୁଖ—

[ ବୁଲା ବୈରାଗୀ ଗୀତ ଗାଇ ଗାଇ ପ୍ରବେଶ କଲେ । ସେତେବେଳେ ପ୍ରଭାତ । ଲକ୍ଷ୍ମୀ ପ୍ରବେଶ କଲେ । ଗୀତ ଶୁଣିବାକୁ ଲାଗିଲେ ନିବିଷ୍ଟ ଚିତ୍ତରେ । ଉଦାସିନୀର ପ୍ରତିମୂର୍ତ୍ତି ଯେମିତି, ଠିକ୍ ଏହିପରି ମନେ ହେଉଥାଏ ତାଙ୍କର ମୁଖଭାବ ଓ ବେଶଭୂଷା ଦେଖି । ]

ବୈରାଗୀ— ଗୀତ

ସଙ୍ଗିନୀରେ ରସ ରଙ୍ଗିନୀରେ
ଦୋଷ କ୍ଷମାକର ଜୀବବନ୍ଧୁ ଜୁଷନାରେ ।
ଯାକର ତୋ ପଦ ପଙ୍କଜ କିଙ୍କର
ରଙ୍କ ରତନ ମୃଗାଙ୍କ ଲପନାରେ
ଶଙ୍କର ଶନ୍ତୁ ନିଶଙ୍କରେ ଦହୁଛି
ଅଙ୍କ ପର୍ଯ୍ୟଙ୍କ ମୋ ମଣ୍ଡୁକି ନାରେ ।୧।
ଜୋଡ଼ି ପାଣି ଜଣାଉଛି ରାମାମଣି
ଧରଣୀରେ ନଖ ଗାର ଲେଖନାରେ
କାଣି ଲାଜ ମୁଁ ତୋର ଆଜନମୁଁ
ତଳୁ ତୋଳଗୁଳୁ ବେଣୀ ଲୋଟାନାରେ ।୨।
ଗୋକୁଳ କୁଳଜା ପରିଷଦ ରଜା
ନକଲେ କରୁଣା ମୁ ଜାଣ ତୋ ନାରେ
ରାଧେ ରାଧେ ବୋଲି ତୋ ସରସୀ
ସଲିଳରେ ଝାସିବାର ଲୁଣ୍ଡୁ ସିନାରେ ।୩।

ଲକ୍ଷ୍ମୀ—( ଗୀତ ଶେଷରେ ତନ୍ମୟ ଥାଇ ) ମାନମୟୀ ଏଥିରେ ମାନ ତ୍ୟାଗ କରିଥିଲେ ତ ?

ବୈରାଗୀ—ତା’ ମାନ-ମୟୀଙ୍କ ଗୋଚର । ହେଲେ, ପ୍ରେମିକ କବି ଯେ ନିଗୂଢ଼ ଶ୍ୟାମପ୍ରୀତିର ସରସ କବିତା ପ୍ରବାହରେ ମାନ-ମୟୀଙ୍କର ମାନକୁ ଦେହାତୀତ ସୀମାରେ ପହଞ୍ଚାଇ ଥିଲେ, —ଏଥିରେ ଆଦୌ ସନ୍ଦେହ ନାହିଁ ।

ଲକ୍ଷ୍ମୀ—ମୁଁ କହିବି—ଯେମିତି କବି, ସେମିତି କବିତାର ନାୟକ,—ଅସଲ ନିଲଠା, ବେହିୟା ।

ବୈରାଗୀ—( ହସି ) କବିତାର ନାୟିକାଟି ଭାରି ଲାଜୁକୀ ନାୟିକାର ଲାଜ ସରମ ଭାଙ୍ଗି ଛୁଞ୍ଚି ପକେଇବେ, ଏଇଥି ପାଇଁ ନାୟକର ଯେତିକି ନିଲଠା-ପଣ ।

ଲକ୍ଷ୍ମୀ—ଲଜ୍ଜା ନାରୀର ଭୂଷଣ, ଏକଥା ଭୁଲିଯିବନି ବାବା !

ବୈରାଗୀ—ଲଜ୍ଜାତ ମାନ ଅଭିମାନର ମୂଳବୀଜ, ଆଉ ଶ୍ୟାମ ପ୍ରୀତି ବାଟରେ ଯେତିକି ଜଞ୍ଜାଳ ।

ଲକ୍ଷ୍ମୀ—କେମିତି ?

ବୈରାଗୀ—ବସନ ଚୋରି କଥା ଜାଣିଥିବ ।

ଲକ୍ଷ୍ମୀ—ଜାଣେ, ଦିନେ ଯମୁନାରେ ଗୋପ ଯୁବତୀ-ମାନେ ସ୍ନାନ କରୁଥିଲେ, ତେଣେ ନନ୍ଦନନ୍ଦନ କେତେବେଳେ ବସନ ଗୁଡ଼ିକ ଚୋରେଇ ନେଇ କଦମ୍ବର ଡାଳେ ଡାଳେ ବାନ୍ଧି, ମନ ଆନନ୍ଦରେ ଗୋଟାଏ ଡାଳରେ ବସି, ବଇଁଶୀ ଫୁଙ୍କୁଥିଲେ ।

ବୈରାଗୀ—ସ୍ନାନ ସାରି, ବସନ ନ ପାଇ ଯୁବତୀ ରତ୍ନମାନେ ଯେତେବେଳେ ସରମରେ ସଢ଼ି, କାତର ହୋଇ ବଂଶୀ ଧାରୀଙ୍କୁ ତାଙ୍କର ଲଜ୍ଜାବାସ ଫେରାଇ ମାଗିଲେ, ସେତେବେଳେ ପ୍ରୀତଚିନ୍ତାମଣି କଣ, କହିଥିଲେ ?

ଲକ୍ଷ୍ମୀ—କହିଥିଲେ, ‘ଅହେ ବିବସନା ସୁନ୍ଦରୀନିକର, ତୁମେ ଯମୁନା ଜଳରୁ ଉଠି ଆସ, ଏହି ନୀପମୂଳରୁ ଯେ ଯାହାର ବସନ ଚିହ୍ନି ନେଇଯାଅ ।’

ବୈରାଗୀ—ବେଣୁପାଣି ଏମିତି କହିବାର ତାତ୍ପର୍ଯ୍ୟ ?

ଲକ୍ଷ୍ମୀ—ଲମ୍ପଟିଆର କପଟ ବେହିଆମି, ନିଲଠାପଣ, ତା ଛଡ଼ା ଆଉ କଣ ?

ବୈରାଗୀ—ତା ନୁହେଁ, ସଖୀ । ଏ ପ୍ରୀତି-ପରୀକ୍ଷା । ଗୋପୀକାରଞ୍ଜନ ଏମିତି କହିବାର ଗୂଢ଼ ଅର୍ଥ,—‘ଅହେ ଗୋପ ସୁନ୍ଦରୀ ନିକର, ତୁମେ ଶ୍ୟାମପ୍ରୀତି ମନାସିଛ । ସେହି ପରମ ପ୍ରୀତି ଲାଭ କରିବାକୁ ହେଲେ ଭିତର ଓ ବାହାର ଉଭୟ ପଟୁ ଲଜ୍ଜା ସଙ୍କୋଚ ଏକାବେଳେ ପୋଛି ପକାଇବାକୁ ହେବ’ ।

ଲକ୍ଷ୍ମୀ—ଏଁ…( ଅଶ୍ରୁପୂର୍ଣ୍ଣ ହୋଇ ମୁହଁ ବୁଲେଇଲେ )

ବୈରାଗୀ—ସେଇଥି ପାଇଁତ, ପ୍ରେମିକ କବି ଜୟଦେବଙ୍କୁ ବିମୁଗ୍ଧ କରିଥିଲେ ପ୍ରେମର ଠାକୁର ନିଜେ, କବି-ଙ୍କର ପ୍ରେମ କବିତା ଗୀତ ଗୋବିନ୍ଦର ମାନ ମୋଚନ ଶ୍ଳୋକର ଶେଷ ପାଦଟି ପୂରଣକରି ଏହିପରି—‘ଦେହି ପଦ ପଲ୍ଲବ ମୁଦାରଂ’ ( ଭାବାବେଶେ ) ପ୍ରୀୟେ ଗୁରୁଣୀରେ ମୁଞ୍ଚମୟୀ ମାନମନିଦାନଂ ।’

ଲକ୍ଷ୍ମୀ—କିଏ ତୁମେ ? ତୁମେ ଏଠୁ—(ଗୁଲୁଗଲେ)

ନେପଥ୍ୟ ପରିଣ୍ଡ—ଲକ୍ଷ୍ମୀ ! ଲକ୍ଷ୍ମୀ !

ବୈରାଗୀ—ଲକ୍ଷ୍ମୀ ?…ଏତ ବଡ଼ପଣ୍ଡା ପରିଣ୍ଡଙ୍କ ଦର ! ତେବେ କଣ ଲକ୍ଷ୍ମୀ ପରିଣ୍ଡଙ୍କ ଝିଅ ? ସାକ୍ଷାତ ଲକ୍ଷ୍ମୀ । ଏଇତ ପରିଣ୍ଡ, ଆଉ ପରିଣ୍ଡଙ୍କ ଗୃହିଣୀ—କଣ ଗୃହ କଥା ପକେଇ ଏଣେ ଆସୁଛନ୍ତି—ମୁଁ ଆଡ଼େଇ ଠିଆ ହୁଏ ।

[ ପରିଣ୍ଡ ଓ ଲକ୍ଷ୍ମୀ ବୋଉ ପ୍ରବେଶ କଲେ ଗପ କରୁକରୁ । ପରିଣ୍ଡଙ୍କ ହାତରେ ଥିଲା ପୂଜା ସାମଗ୍ରୀ]

ଲକ୍ଷ୍ମୀ-ବୌ—ମୋ’ କଥା କାନକୁ ଗଲାତ ?

ପରିଣ୍ଡ—ଲକ୍ଷ୍ମୀ କଥାତ ?

ଲକ୍ଷ୍ମୀ-ବୌ—ଲକ୍ଷ୍ମୀ କଥା ଛଡ଼ା, କହିବାର ବା ଚିନ୍ତା କରିବାର ଆଉ କଣ ଅଛି ମୋର ଏ ଦୁନିଆରେ ?

ପରିଣ୍ଡ—ଲକ୍ଷ୍ମୀ ମନ ଉଣା କରୁଛି, ସେଇ କଥାକୁ ଏତେ ଭାଳେଣି । ହେଲେ, ଭଲ କରି ଥରେ ପଚାରି ବୁଝ, ଦେହପା କଷ୍ଟ ହୋଇ ଥିବ ।

ଲକ୍ଷ୍ମୀ-ବୌ—ତୁମେ କଣ, ବୁଝତ ?

ପରିଣ୍ଡ—କାହିଁକି ?

ଲକ୍ଷ୍ମୀ-ବୌ—ପଚାରିଲେ ସେ କହିବ ?

ପରଶୁ—ରୋଗ କଥା କହିବ ନାହିଁ ? ଅଲବତ କହିବ ?

ଲକ୍ଷ୍ମୀ-ବୌ—ଓଲ୍ଟ କ'ଣ ଆଉ ଗଛରେ ଫଳନ୍ତି ? ଆହେ ଏମିତ ରୋଗ ଅଛି, ଯା ମାଇପିଜାତ କେବେ ହେଲେ ତୁଣ୍ଡ ଫିଟେଇ କହିବେ ନା। ପେଟ ଫାଟିବ, ପାଟି ଫିଟିବନି।

ପରଶୁ—ଏଁ—

ଲକ୍ଷ୍ମୀ-ବୌ—ଆଗୋ ବୟସର ରୋଗ ଲକ୍ଷ୍ମୀକୁ ଘୋଟିଛି, ଯା କଣ ଲକ୍ଷଣ ଦେଖି ବୁଝି ପାରୁନ ?

ପରଶୁ—ଲକ୍ଷଣ ?

ଲକ୍ଷ୍ମୀ-ବୌ—ଛି ଛି—ତୁମର କ'ଣ ଆଖିନାହିଁ ?—ଯେଉଁ ଲକ୍ଷ୍ମୀ କୁଆଁରୀ ଦେଖା ନ ଦେଉଣୁ, ବୁଢ଼ା ପାରିଅପି, ପବନ ମନରେ, ଗଛ ପତ୍ରରୁ କାକର ନହଉଣୁ, ଫୁଲ ତୋଳିଆଣି ମାଳ ଗୁନ୍ଥି ସାରିଥାଏ, ଦାଅଙ୍କ ପହଡ଼ ନ ଫିଟୁଣୁ ପୂଜାଥାଳି ଧରିନି ଦେଉଳ ଦୁଆରେ ହାଜର ହୋଇଥାଏ, ସେହି ଲକ୍ଷ୍ମୀ ଆଜି ଅଳସ ଅଳଯ, ଭୁଇଁରେ ଲେଟୁଛି, ଗାଧିଆ କଥା କହିଲେ, ମୁହଁ ମୋଡ଼ି ଦେଉଛି, ଫୁଲଡାଲି ଥୋଇ ଦେଲେ ଦୂରକୁ ଠେଲି ଦେଉଛି, ଦାଅଁ ପୂଜିବାକୁ କହିଲେ, ପଳେଇ ଯାଉଛି, ଏ ସବୁରୁ ତୁମେ ବୁଝୁଛ କଣ, କୁହତ ?

ପରଶୁ—ସେତ ଶକ୍ତ ରୋଗ—ଗୋପିନାଥ ଭରସା ! (ଗମନୋଦ୍ୟତ)

ଲକ୍ଷ୍ମୀ-ବୌ—ଚାଲିଲତ ?

ପରଶୁ—ଆଉରି କ'ଣ କହିବ ?

ଲକ୍ଷ୍ମୀ-ବୌ—ତୁମେ ଓଡ଼ା ସମୁଦ୍ଦଙ୍କ ପାଖକୁ—

ପରଶୁ—କଣ ? (ରାଗରେ)

ଲକ୍ଷ୍ମୀ-ବୌ—ରାଗିବା କଥା ନୁହେଁ, ତୁମେ ସମୁଦ୍ଦ ଘରକୁ ପୁଣି ଥରେ ଲୋକ ପଠାଅ।

ପରଶୁ—ଲୋକ ପଠାଇବ ?

ଲକ୍ଷ୍ମୀ-ବୌ—ମୁଁ ଜାଣେ, ଗୋପୀନାଥଙ୍କ ବଡ଼ପଣ୍ଡା ତୁମେ। ନିଜର ଗଉଁ ବଡ଼ ତୁମର। କେମିତ ଏକୋଇରବଲା ଝିଅଟି ତାର ବାଳୁତ ବବାହ କଥା ମନେ ନ ପକେଇବ, ସେଇଥି ପାଇଁ ତାକୁ ନେଇ ଖଞ୍ଜିଲ ଗୋପୀନାଥଙ୍କ ସେବାରେ, ହେଲା ସେ ସେବାଦାସୀ, ହେଲେ—

ପରଶୁ—ହେଲେ ଲକ୍ଷ୍ମୀର ସେହି ସେବା ପୂଜାରେ ଯଦି କୌଣସି ବିଘ୍ନ ଘଟି ଥାଏ, ତାହାହେଲେ ସେଥିପାଇଁ ଦାୟୀ ତୁମେ।

ଲକ୍ଷ୍ମୀ-ବୌ—ମୁଁ ?

ପରଶୁ—ହଁ ତୁମେ। ଆମର ପୁଅପାଟ କିଛି ନଥିଲା। ତୁମେ ଏ ଗୁହାରି କାନ୍ଦି ଗୋପୀନାଥଙ୍କୁ ଜଣାଇଲ। ଗୋପୀନାଥ ଦୟା କଲେ, ଝିଅଟିଏ ହେଲା, ତୁମେ ଦାଅଙ୍କୁ ସମର୍ପି ଦେଲ, ନାମ ରଖିଲ ଲକ୍ଷ୍ମୀ···

ଲକ୍ଷ୍ମୀ-ବୌ—ହେଉ।

ପରଶୁ—ହେଲେ, 'ଲକ୍ଷ୍ମୀ' ଏହି ନାମରଖିବା ଫଳରେ, ତୁମେ ଜାଣିତରେ ହେଉ କି ଅଜାଣତରେ ହେଉ, ଝିଅଟିକୁ ଲକ୍ଷ୍ମୀନାଥଙ୍କ ସେବା-ଦାସୀ କରି ଦେଇଥିଲ, ଏଥିରେ ସନ୍ଦେହ ନାହିଁ। ସେହି ଲକ୍ଷ୍ମୀକୁ ପୁଣି ବାଳୁତ ବୟସରେ ଅନ୍ୟ ସଙ୍ଗେ ଗଣ୍ଠେଇ ଦେବାର କି ପ୍ରୟୋଜନ ଥିଲା ତୁମର ?

ଲକ୍ଷ୍ମୀ-ବୌ—ବୁଝିଲି ଏତେ ଦିନେ ତୁମ ମନ କଥା। ପାଞ୍ଚବର୍ଷ ବୟସରେ ଝିଅଟିକୁ ବାହା ଦେଇଥିଲ, ଗୌରୀଦାନ କରିଥିଲ; ମୋ'ର ସେହି ଜିଦ୍ ନଥିଲେ, ଅତଣ ସାଧିବାକୁ ତୁମର ଜିଦ୍ ଆଜି,— କେମିତ ଘରଯୋଗା ଝିଅ ଘର ନ କରୁ— ଏଇଯାତ ? ହଉ ହେ, ତୁମେ ପରା ବାପ ?

ପରଶୁ—ହେଲେ, ନୀତି ନିୟମ ଘେନି ଦୁନିଆଁ।

ଲକ୍ଷ୍ମୀ-ବୌ—ସମାଜ ର ନୀତି ନିୟମ ଘେନି ଗଢ଼ା।

ପରଶୁ—ଧର୍ମ ସେଥିରୁ ବାହାର ନୁହେଁ—

ଲକ୍ଷ୍ମୀ-ବୌ—(ହସିଲେ)

ପରଶୁ—ହସିଲ ଯେ ?

ଲକ୍ଷ୍ମୀ-ବୌ—ସମାଜ ଆଉ ଧର୍ମ—ଦୁଇଟି ଅଲଗା ଜିନିଷ, ମୁଁ ଆଜି ନୂଆ ଶୁଣୁଚି।

ପରଶୁ—ଘର ଆଉ ଦେଉଳ ନୁହେଁ କଣ ଏକ ? ଘରର ଘର କରଣା ଏକ ପ୍ରକାର କୃଷ୍ଟି, ଦେଉଳର ପୂଜା ଅର୍ଚ୍ଚନା ଅନ୍ୟ ପ୍ରକାର କୃଷ୍ଟି।

ଲକ୍ଷ୍ମୀ-ବୌ—ପୁରୁଷ ଜାତି ତୁମେ, ତୁମ ଦୃଷ୍ଟିରେ ତା' ହୋଇପାରେ । ନାରୀ ଜାତି ଆମେ, ଆମ ଦୃଷ୍ଟିରେ ଘରର ଘରକରଣାରେ ରହିଛି ଦେଉଳର ପୂଜା ଅର୍ଚ୍ଚନା । ଘରର ଦେବତା ଭିତରେ ରହିଚି ଦେଉଳର ଦେବତା । ଘର ବାହାର ଉଭୟର କଲ୍ୟାଣ ଚିନ୍ତାରେ ରହିଛି ଦେବତାଙ୍କ ଆଶୀର୍ବାଦ ।

ପରିଚ୍ଛା—ଲକ୍ଷ୍ମୀ ବୋଉ ।

ଲକ୍ଷ୍ମୀ-ବୌ—(ପଦ ଧୂଳି ଗ୍ରହଣ କଲେ)

ପରିଚ୍ଛ—ହେଲେ ପଠାଉଛ କାହାକୁ ?

ବୈରାଗୀ—କାହିଁକି ? ଏ ବୁଲା ବୈରାଗୀ ବାବା ହାଜର ରହିଚି । ( କହୁ କହୁ ପ୍ରବେଶ କଲେ )

ଲକ୍ଷ୍ମୀ-ବୌ—( ଚାଲି ଯାଉଥିଲେ ଲାଜରେ ଓଢ଼ଣା ଟାଣି ଦେଇ )

ବୈରାଗୀ—ଏ ବାରବୁଲା ପୁଅଟାକୁ ଲାଜ ସରମ, ମା ?

ଲକ୍ଷ୍ମୀ-ବୌ—ଶୁଣୁଚ ? ( ଧୀରେ ) କହିବ, ବୈରାଗୀ ବାବା ଏଇଠି ଆଜି ଗୋପୀନାଥଙ୍କ ପ୍ରସାଦ ପାଇବେ ।

ବୈରାଗୀ—ପ୍ରସାଦ ପାଇବା, ସେତ ଭାଗ୍ୟର କଥା, ହେଲେ ଦାନ୍ତ ନଡ଼ ନଡ଼ ଦାନ୍ତଭଙ୍ଗା ମାହାର୍ଦ୍ଦକୁ ଭାରି ଡର, ମା ।

ଲକ୍ଷ୍ମୀ-ବୌ—ଶୁଣୁଚ, କହିବ ଶୀଳୁପଡା ଅଛି ଡରିବେନି ।

ବୈରାଗୀ—ଦାନ୍ତଭଙ୍ଗା ଛେଚି ଗୁଣ୍ଡ କରିବାକୁ ଯାଇ, ଯଦି ଶିଳୁପଡା ଗୁଣ୍ଡା ହୋଇଯାଏ, ଆହୁରି ଅଡୁଆ ମା । ତାଠୁ—

ଲକ୍ଷ୍ମୀ-ବୌ—ଶୁଣୁଚ, ରହିଗଲେ କାହିଁକି, କହିବାକୁ କୁହ ।

ବୈରାଗୀ—କହୁଥିଲି କଣକି—ହଁ, ମା ପାଖେ ପୁଅର ଯେତକି ଅଳି—ମାଲପୁଆ ହେଲେ ମାଙ୍କର ପରିଶ୍ରମ ଲାଘବ ହେବ । ଏ ବୁଲା ବାବାର ଆଶାବି ମେଣ୍ଟିବ ।

ଲକ୍ଷ୍ମୀ-ବୌ—(ତୁନି ତୁନି) ଶୁଣୁଛ, କହିବ ଆମ ଆତ୍ମା ସନ୍ତୋଷ ତାଙ୍କ ହାତରେ । ତାଙ୍କ ଆତ୍ମା ସନ୍ତୋଷ ଆମ ହାତରେ । (ଚାଲିଗଲେ)

ପରିଚ୍ଛ—ଶୁଣିଲତ ?

ବୈରାଗୀ—ମୁଁ ତୁମ ଦୁହିଁଙ୍କ କଥା ସବୁ ଶୁଣିଚି ଭାଇନା, ଯଦିଚ ଶୁଣିବି ବୋଲି ଜାଣେଇ ଛିଡ଼ା ହୋଇ ନଥିଲି, ଦୋଷ ଧରିବନି, ଭାଇନା ।

ପରିଚ୍ଛ—ନା ନା ସେତ୍ କି କଥା । ଲୋକେ କହନ୍ତି ତୁମେ ବାରବୁଲା, ବାହାରର ଲୋକ । ମୁଁ ତ ଜାଣେ ତୁମେ ସାରା ଦୁନିଆଁକୁ ଆପଣାର କରିଛ, ଘରର ଲୋକ ।

ବୈରାଗୀ—ଛାଡ଼ ମୁଁ ଶୁଣିଲା କାଳୁ ପ୍ରସ୍ତୁତ ହୋଇ ରହିଚି । ତୁମ ଜୋଇଁ ବାସ୍ତୁ ଏବେ ପଣ୍ଡିତ ହୋଇଚି । ମୋତେ ଭାରି ଖାତିର କରେ । ତୁମେ ଝିଅ ବାହା କରିବ, ସେହି ଯୋଗାଡ଼ରେ ଲାଗିପଡ଼ । ମୁଁ ତୁମର ଓଡା ସମୁଦିଙ୍କ ମଙ୍ଗେଇ, ଖବର ଦେଇ ଆସିଲି ବୋଲି ଜାଣ ।

ପରିଚ୍ଛ—ତୁମେ ଏଇକ୍ଷଣି ବାହାରିଲ ?

ବୈରାଗୀ—ଶୁଭସ୍ୟ ଶୀଘ୍ରଂ ।

ପରିଚ୍ଛ—ପ୍ରସାଦ ଗଣ୍ଡେ ପାଇଗଲେ ଭଲ ହୁଅନ୍ତା । ହଇହେ ଶୁଣୁଚ (ଲକ୍ଷ୍ମୀ ବୋଉକୁ ଉଦ୍ଦେଶ୍ୟ କରି)

ବୈରାଗୀ—ଅଥୟ ହେବନି ଭାଇନା । ଆରଓଳି ପାଇଁ ସମୁଦୀ ଘର ନିମନ୍ତ୍ରଣଟା ଯୋଗାଡ଼ କରି ଆସେ । ବାଟ କୋଶେ ଯାଇ, ଫେରି ଆସିବାକୁ କେତେ ବେଳ । ତୁମେ ଜାଣ ନା ଭାଇନା, ତୁମ ଝିଅ ପାଇଁ ତୁମେ ଯେତେ ଛଳବଳ ନୁହଁ, ଏ ବୁଲା ବଇରାଗୀଟା ତହିଁରୁ ଅଧିକ । କହିନାହିଁ, ତୁମେ ଦୁହେଁ ଏଠାକୁ ଆସିବା ଆଗରୁ ତୁମ ଲକ୍ଷ୍ମୀକୁ ମୁଁ ଏଇଠି ଭେଟିଥିଲି । ଲକ୍ଷ୍ମୀ ତୁଲେ କଥାବାର୍ତ୍ତା ହୋଇଛି । ତା' ମନ କଥା ଭେଦିଚି । ହଉ, ମୁଁ ଆସୁଛି ଭାଇନା । (ଚାଲିଗଲେ)

ପରିଚ୍ଛ—(ଦୀର୍ଘଶ୍ୱାସ) ଗୋପୀନାଥ !

---

## ତୃତୀୟ ଦୃଶ୍ୟ

—ପରଶୁଙ୍କ ଗୃହାଭ୍ୟନ୍ତର—

[ ଲକ୍ଷ୍ମୀ-ବୋଉ ହଳଦୀ କାଠୁଆଟିଏ ଧରି ଡାକୁ ଡାକୁ ପ୍ରବେଶ କଲେ । ]

ଲକ୍ଷ୍ମୀ-ବୌ—ଲକ୍ଷ୍ମୀ—ଲକ୍ଷ୍ମୀ—କୁଆଡ଼େ ଚଳିଗ—ମୁଁ କ'ଣ ହଳଦୀ କାଠୁଆ ଧରି ଇମିତି ଧନ୍ଦ ମରୁଥିବି--ତୋ' ଧନ୍ଦା ସାରିଲେ, ତେଣେ ପରି ଶବାର ବେହେରାଙ୍କ ଖବର ବୁଝିବି, ଘର ସଜାଡ଼ିବି, କେତେ କ'ଣ—ଲକ୍ଷ୍ମୀ, ଲକ୍ଷ୍ମୀ—ଅଲୋ, ଏତେବେଳେ ଇମିତି ଲୁଚି ବସିଲେ ଚଳିବ—ଝିଅ ହେଇ ଯେତେବେଳେ ଜନ୍ମ ହୋଇଥାଏଁ, ସେତେବେଳେ ପରଘର କରିବା ଛଡ଼ା ଆମର ଅଯୁତ କ'ଣ ? ସେ ଗଲେ ଯେ ଗଲେ । ଦେଉଳୁ ଫେରିବେ ତେବେ ଯାଇଁ—ଦିନ ଆସି ମଥା ଉପରେ—ବାରବେଳା ଗଡ଼ିଗଲେ ଝିଅ ବିଦା—ଲକ୍ଷ୍ମୀ—ଲକ୍ଷ୍ମୀ—

[ ଲକ୍ଷ୍ମୀ ପ୍ରବେଶ କଲା ହସି ହସି । ଝିଅ-ବିଦାର ସମସ୍ତ ବେଶଭୂଷା ତା' ଅଙ୍ଗରେ । ]

ଲକ୍ଷ୍ମୀ-ବୌ—(ତାଟଙ୍କା ହୋଇ ଗୁହିଁ ରହିଲେ)

ଲକ୍ଷ୍ମୀ—ଝିଅବିଦାକୁ ଯେମିତି ଯା ସଜବାଜ ହେବାର କଥା ତା' ଠିକ୍ ଠିକ୍ ହୋଇଛି ? କହ, ଆଉ କ'ଣ ବାକୀ ଅଛି, ବେଗେ ତା' ସାରିଦେବି ।

ଲକ୍ଷ୍ମୀ-ବୌ—ଅଲାଜୁକୀ । ଏ' କାମ ତୋତେ କିଏ କରିବାକୁ କହିଲା ?

ଲକ୍ଷ୍ମୀ—ଏ' ସଜ ବାଜ କାମ ମୁଁ କି ଜାଣେ । ସାରିଆ ମାଉସୀ ଘରକୁ ଯାଇ ଏ'କାମ ଭୁଲେଇ ଆସିଚ ନା—କହିଲ, ଘରକୁ ତୁ ଏକା—ଦଶ-ଭୁଜାଭ ଆଉ ହୋଇ ପାରିବୁନି—ଦଶଜଣଙ୍କ ସାହା ନ ଲୋଡ଼ିବୁ କେମିତି—

ଲକ୍ଷ୍ମୀ-ବୌ—ଦଶଜଣ । ଦଶଜଣଙ୍କ ମୁହଁରେ ନିଆଁ । ସେଇମାନେ ତ ମୋତେ ବଳି ଥୋଇ ଦେଇ ନାହାନ୍ତି—ବାଟରେ, ଘାଟରେ ତୋ'ର ନାଁରେ ଯେତକ ଅପବାଦ-ନାଗରୀ ପିଟିଛନ୍ତି—ଭଗାର ହସା ହସିଛନ୍ତି ।

( ଲୁଣ୍ଠାଇ ପକାଇ କ୍ରନ୍ଦନ ସ୍ୱରେ ) ଅଲୋ ମୋ' ଧନଲୋ—

ଲକ୍ଷ୍ମୀ—ସବୁସବୁ ହେଉ ପଛେ—କେମିତି ଭଗାର ହସାକୁ ଗ୍ରେଟେ ଦେଇ ଅସିଚ, ଶୁଣ, ଗହଣାପତ୍ର, କାଞ୍ଚଳା, ଓଢ଼ଣା ଦେଇ ଯାଇ କହିଲ,—ପାଣୁଆ-ମା, ବନା-ଶାଶୂ ଆହୁରି ପୁରୁଖା ସୁରୁଖା କେତେ ସେଠି ଥିଲେ—କହିଲ, ମୁଁ ଶାଶୁଘର ଯାଉଚ—ମୋତେ ତୁମ ମନଲାଖି କରି ସଜାସଜ କରି ଦିଅ—

ଲକ୍ଷ୍ମୀ-ବୌ—ଭାଉ କଲେ, ହେଲେ ସେମାନେ ଅହୁରି ଝାହୁଲ ଝାପରା ଯେମିତି କରିବେ, ସେଇ ବାଟ କରି ଦେଇ ଆସିଲୁ ତ ?—(କ୍ରନ୍ଦନ ସ୍ୱରରେ) ଅଲୋ ମୋ ଗଳାକଣ୍ଠି, ରତ୍ନମାଳି, ନଳଠା ବୋଲି କେତେ ତୋତେ ଗଞ୍ଜିବେ ଲୋ—ମୋ' ମା ଲକ୍ଷ୍ମୀ—

ଲକ୍ଷ୍ମୀ—ବୋଉ, ବାପା—

[ ପରଶୁ ପ୍ରବେଶ କଲେ । ତାଙ୍କ ହାତରେ ପୂଜା-ପତ୍ରୀ ଥାଏ ]

ପରଶୁ—ବାଃ ତୁମେ ଏ'ଠି ?—ଏଣେ ଝିଅକୁ ଧରି, ଝିଅ କାନ୍ଦଣାରେ ମାତିଛ ବେଶ୍, ତେଣେ ଝିଅ-ବିଦାର ଯୋଗାଡ଼ ସରିଚାଟି ?—ଶଙ୍ଖୁଆ, ବେହେରାମାନେ କହୁଚନ୍ତି,—ସହଳ ସହଳ ବିଦା କରିଦେବାକୁ—ଗହିର ନିଗୁଟିଆ ବାଟ—ଗୈର-ଖଣ୍ଡଙ୍କ ଦାଉ—ସଞ୍ଜ ଆଗରୁ ନ ପହଞ୍ଚିଲେ ନୁହେଁ ।

ଲକ୍ଷ୍ମୀ—ମୋ' ବୋଉଲୋ !—(ଗୁଳିଗଲେ)

ପରଶୁ—ଗୋପୀନାଥ !—

[ ଯିବାର ଉପକ୍ରମ, ଆନନ୍ଦ ପ୍ରବେଶ କଲା—ତା' ହାତରେ ଥାଏ ଦାଅଁଙ୍କ ଧଣ୍ଡା ]

ଆନନ୍ଦ—ପରଶୁ ମଉସା !

ପରଶୁ—ଆନନ୍ଦ ?

ଆନନ୍ଦ—ଗୋପୀନାଥଙ୍କ ଧଣ୍ଡା—

ପରଗ୍ଣା—ଓଃ କି ଭୁଲାମନ, ବାବା ପଠେଇ ଦେଇଛନ୍ତି—

ଆନନ୍ଦ—ଆହୁରି ବି କହିଛନ୍ତି—

ପରଗ୍ଣା—କ'ଣ ?

ଆନନ୍ଦ—ଲକ୍ଷ୍ମୀ ଅପାର ପଣତ କାନରେ ବାନ୍ଧ ଦେବାକୁ ।

ପରଗ୍ଣା—ନିଶ୍ଚୟ ବାନ୍ଧି ଦେବି—ଚାଲିଯାଉଚ, ତୁମ ଅପା ସଙ୍ଗେ ଦେଖା କରିବନି—

ଆନନ୍ଦ—ନା—ନା—ନା ( ଚାଲିଗଲେ )

ପରଗ୍ଣା—( କିଛିକ୍ଷଣ ଚାହିଁ ରହି ) ଗୋପୀନାଥ—

---

## ତୃତୀୟ ଦୃଶ୍ୟ

—ସେହି ମନ୍ଦିରାଭ୍ୟନ୍ତର—

[ ସଦାନନ୍ଦ ବାବା ଆସନରେ ଉପବିଷ୍ଟ ଥାଇ ବୀଣାଟି ଧରି ଗୀତ ଗାଉଥିଲେ । ଦେବତାଙ୍କ କକ୍ଷଦ୍ୱାର ଉନ୍ମୁକ୍ତ ଥିଲା । ]

ସଦାନନ୍ଦ— ଗୀତ

ଗୋପିନାଥ ପୂର୍ଣ୍ଣକର ଦୀନ ମନୋରଥ ।
କହ କେଉଁ ସିଦ୍ଧି ଏହା ସରବେ ଦୁଷଣି ଯାହା,
ପ୍ରଭୁ ବୋଲି କେହି ଅହା ନିନ୍ଦା ନ କରିଲେ ତାହା ।
ଭବମରୁ, ଜଗତେ ଯା ହୋଇଛି ବିଖ୍ୟାତ ॥୧॥
ବକୁଳ ତମାଳ ବନେ, ଭୁଲି ପୂର୍ବ ବୃନ୍ଦାବନେ
ମଧୁ ରସ ଆସ୍ୱାଦନେ, ବାସନା ଯାହାର ପ୍ରାଣେ,
ପ୍ରଫୁଲ୍ଲିତ ତାହାକୁ କି ଲୁଚେ ଡାଲି ଭାତ ॥୨॥
ରସ ଅନୁରାଗି ହୋଇ, ରସ ଲବଣୀ ମଣୋଇ
ଦବାନଳି ପାଶେ ଥାଇ, ସଙ୍ଗିନୀ ଚନ୍ଦ୍ରମା ମୁହିଁ,
ଇହପର ଭୁଲିଲି ମୁଁ ହୋଇ ଅନାଥ ॥୩॥

( ଆନନ୍ଦ ଗୀତ ଶେଷରେ ପ୍ରବେଶ କଲେ )

ସଦାନନ୍ଦ—କିଏ ?

ଆନନ୍ଦ—ମୁଁ ଆନନ୍ଦ—

ସଦାନନ୍ଦ—ଯାଇ ଥିଲ ?

ଆନନ୍ଦ—ଯାଇ ଥିଲି ।

ସଦାନନ୍ଦ—ଲକ୍ଷ୍ମୀକୁ ଦେଖି ଥିଲ ?

ଆନନ୍ଦ—ବଉଳ ଗଛ ଉହାଡ଼ରେ ଥାଇ ଦେଖି ଥିଲି ।

ସଦାନନ୍ଦ—ଲକ୍ଷ୍ମୀ ଭାରି ଖୁସିତ ?

ଆନନ୍ଦ—ଗୋଡ଼ ଯିମିତି ତଳେ ଲାଗୁ ନାହିଁ ।

ସଦାନନ୍ଦ—ବେଶ୍, ବେଶ୍, ହଁ, ଗୋପୀନାଥଙ୍କର ସଂହାରବେଶର ଧଣ୍ଡାମାଳ ବଡ଼ ପଣ୍ଡା ଦେଇ ଯିବାକୁ ଭୁଲି ଥିଲେ ବୋଲି କହୁଥିଲ, ତା ତାଙ୍କ ହାତରେ ଦେଇ ଆସିଛତ ?

ଆନନ୍ଦ—ଆହୁରି କହିଆସିଛି, ଅନୁକୂଳ ବେଳେ ମନେ କରି ଲକ୍ଷ୍ମୀ ଅପାର ପଣତ କାନରେ ସେହି ଧଣ୍ଡାମାଳ ବାନ୍ଧି ଦବାକୁ ।

ସଦାନନ୍ଦ—ଲକ୍ଷ୍ମୀ ଯେମିତ ଜାଣି ନପାରେ, ଏକଥା ?

ଆନନ୍ଦ—ସେ କଥାତ···( ସେତିକିବେଳେ ସବାଙ୍ଗ ଡାକ ଓ ଶଙ୍ଖଧ୍ୱନି ଶୁଣା ଗଲା ) ଏଇତ ସବାଙ୍ଗ ଡାକ, ଅଉ ଶଙ୍ଖଧ୍ୱନି, ବାବା !

ସଦାନନ୍ଦ—ନବ ବର୍ଷର ସଂସାର ଧର୍ମର ଅଭ୍ୟାନ ଜୟଯୁକ୍ତ ହେଉ, ଏ ତାରି ସଙ୍କେତ ଧ୍ୱନି, ନୁହେଁ ଆନନ୍ଦ ?

[ ହଠାତ୍ ଶବ୍ଦ ଥମିଗଲା ]

ଆନନ୍ଦ—ଏ କଣ ? ପାଟି ତୁଣ୍ଡ ହଠାତ୍ ବନ୍ଦ ହୋଇଗଲା କାହିଁକି ? ଦେଖେଁ ।

ସଦାନନ୍ଦ—( ଆଶ୍ଚର୍ଯ୍ୟ ଓ ଅସ୍ଥିର ହୋଇ ପଡ଼ିଲେ ) ଆନନ୍ଦ !

ଆନନ୍ଦ—ବାବା ।

ସଦାନନ୍ଦ—ତୁମେ ଗୋଟିଏ କାମ କରତ ଆଗେ ।

ଆନନ୍ଦ—କି କାମ ବାବା ?

ସଦାନନ୍ଦ—ଦିଅଁଙ୍କ ମନ୍ଦିର ଦ୍ୱାର ଖୋଲା ଅଛି, ନା ?

ଆନନ୍ଦ—ହଁ ବାବା !

ସଦାନନ୍ଦ—ବନ୍ଦ କରିଦିଅ ।

ଆନନ୍ଦ—ଧୂପତ ବଳିନି ।

ସଦାନନ୍ଦ—ପ୍ରତିବାଦ କରନା ।

ଆନନ୍ଦ—( ବନ୍ଦ କରିଆସି ) ବନ୍ଦ କରି ଦେଇଛି ।

ସଦାନନ୍ଦ—ବେଶ, ହଁ, ବୀଣାଟି କାହିଁ ଆଣି ଦିଅତ ?

ଆନନ୍ଦ—ବୀଣାର ତାରତ ଛିଣ୍ଡି ଯାଇଛି ବାବା !

ସଦାନନ୍ଦ—ଆଃ ପୁଣି ପ୍ରତିବାଦ !

ଆନନ୍ଦ—( ବୀଣା ଦେଲେ )

( ନେପଥ୍ୟେ ଲକ୍ଷ୍ମୀ )—ତୁମେମାନେ ଏଇଠି ଠିଆ ହୁଅ, ମୁଁ ଦାଅଁଙ୍କ ଦର୍ଶନସାରି, ଆସୁଛି ।

ଆନନ୍ଦ—ଲକ୍ଷ୍ମୀ-ଅପା, ବାବା ।

ସଦାନନ୍ଦ—ତୁମେ ଏଠି ରହିବନି ଆନନ୍ଦ, ଅନ୍ୟବାଟେ ବାହାରିଯାଅ ବେଗେ । (ଆନନ୍ଦ ଚାଲିଗଲେ )

[ ଲକ୍ଷ୍ମୀ ପ୍ରବେଶ କଲେ । ନବ ବଧୂର ସଜବେଶ । ହସ ହସ ମୁଖ । କିନ୍ତୁ ବିରସ ଦିଶୁଥିଲେ ]

ଲକ୍ଷ୍ମୀ—ବୀଣା ବଜାଉଛନ୍ତି ବାବା ?

ସଦାନନ୍ଦ—ହଁ, ଅତି ଆନନ୍ଦରେ, ଅତି ଆନନ୍ଦରେ ।

ଲକ୍ଷ୍ମୀ—କିନ୍ତୁ ତାରରେତ ?

ସଦାନନ୍ଦ—ତାର ଛିଣ୍ଡି ଯାଇ ଥିବ, ମା ।

ଲକ୍ଷ୍ମୀ—ଅତି ଆନନ୍ଦରେ ବୀଣାଟି ଯେ ଭାଙ୍ଗି ଯାଇ ନ ଏଇ ଠେଇ, ନୁହେଁ ବାବା ?

ସଦାନନ୍ଦ—ଲକ୍ଷ୍ମୀ···

ଲକ୍ଷ୍ମୀ—ଦାଅଁଙ୍କ ଦ୍ୱାର ବନ୍ଦ ଏତେବେଳୁ । କାହିଁକି ବାବା ?

ସଦାନନ୍ଦ—( ନିଜକୁ ସମ୍ଭାଳି ) ଧୂପ ବଢ଼ିଲା କିନା—

ଲକ୍ଷ୍ମୀ—ସେଇଥି ପାଇଁ ପହଡ଼ ବି ପଡ଼ିଲା, ନା ବାବା ?

ସଦାନନ୍ଦ—ମା ?

ଲକ୍ଷ୍ମୀ—ହେଲେ ସଞ୍ଜ ଧୂପତ ସରିନି । ଚାଲିଛି ଦେଖି ଆଇଲି । ବୁଝିଲି, ଏ ଗୋଟାଏ ଅଧିକା ଧୂପ ।

ସଦାନନ୍ଦ—ହଁ ମା, କେବଳ ଆଜିର ପାଇଁ ।

ଲକ୍ଷ୍ମୀ—ମୋର କଲ୍ୟାଣ ମନାସି, ନା ?

ସଦାନନ୍ଦ—ତୁମର କଲ୍ୟାଣ ମନାସି, ମା ।

ଲକ୍ଷ୍ମୀ—ହେଲେ, ଯେମିତି ବାଲ୍ୟଧୂପ, ସଞ୍ଜ ଧୂପ··· ସେମିତି ଏ ଅଧିକା ଧୂପରତ ଗୋଟାଏ କିଛି ନାମ ଥିବ ।

ସଦାନନ୍ଦ—ନାମତ କିଛି ନାହିଁ, ମା ।

ଲକ୍ଷ୍ମୀ—ମୁଁ ଦେବି ବାବା ?

ସଦାନନ୍ଦ—ଦେବ ? ଦିଅ ।

ଲକ୍ଷ୍ମୀ—ଭଣ୍ଡାମୀ ଧୂପ ।

ସଦାନନ୍ଦ—ଲକ୍ଷ୍ମୀ !

ଲକ୍ଷ୍ମୀ—ଶୁଣ ବାବା, ମୁଁ ତୁମର ଦାଅଁ ଦର୍ଶନକୁ ଆସିଛି, ତା, ନୁହେଁ; ତୁମର ବୀଣା ବାଦନ ଶୁଣିବି ବୋଲି ଆସିଛି, ତା ବି ନୁହେଁ; ଆଜିର ମଧ୍ୟ ଏଣିକି ଲକ୍ଷ୍ମୀର ଦେଉଳ ଚଉକାଠ ମାଡ଼ିବା ଉଚିତ ନୁହେଁ ବୋଲି ଲକ୍ଷ୍ମୀର ଗୁରୁଜନମାନଙ୍କ ଯେଉଁ ପରାମର୍ଶ ବାନ୍ଧିଥିଲ, ତା ବ୍ୟର୍ଥ କରିବାକୁ ଧାଇଁ ଆସିଛି, ତା ବି ନୁହେଁ । ମୁଁ ଆସିଛି ଜଣେ ସତ୍ୟାଗ୍ରହୀ । ସତ୍ୟବାଦୀର ସତ୍ୟ ପୀଠରେ ସତ୍ୟର ମହିମା କୀର୍ତ୍ତନ ଶୁଣିଛି—ଦକ୍ଷିଣା ଦେଇନି,—ସେହି ଦକ୍ଷିଣା ମୁଁ ଦେବି—ସତ୍ୟବାଦିନୀ ଏହି ପରିଚୟ ଦେଇ ।

ସଦାନନ୍ଦ—ଲକ୍ଷ୍ମୀ !!

ଲକ୍ଷ୍ମୀ—ତୁମେଇ ପ୍ରଶ୍ନ କରିଥିଲ ଦିନେ—ଲକ୍ଷ୍ମୀ ନାଥ, ଏହି ଡାକ ପୂଜାରୀ ଝିଅ ଲକ୍ଷ୍ମୀର ଭାବାବେଶର ଡାକ ନା କିଶୋରୀ ଲକ୍ଷ୍ମୀର ଅନ୍ତର ଆତ୍ମାର ଉଚ୍ଛ୍ୱଳ ଉଚ୍ଛ୍ୱାସ ?

ସଦାନନ୍ଦ—ଲକ୍ଷ୍ମୀ !!

ଲକ୍ଷ୍ମୀ—ସେହି ପ୍ରଶ୍ନର ଉତ୍ତର ସେଦିନ ଦେଇ ପାରି ନ ଥିଲି, ନାରୀର ସ୍ୱଭାବସୁଲଭ ଲଜ୍ଜାର ତାଡ଼ନାରେ—ସାମାଜିକ ଜୀବର ଅଭ୍ୟାସ ଗଢ଼ା ଗୋଟାଏ ସଂକୋଚ ପ୍ରଭାବରୁ । ମାତ୍ର, ବୈରାଗୀ ବାବାର ଚେତାବନୀ,—ପରମ ପ୍ରୀତି ଲାଭ କରିବ ସେତିକିବେଳେ, ଯେତେବେଳେ ଲଜ୍ଜା ସଂକୋଚ ନିଃଶେଷରେ ବିସର୍ଜନ ଦେଇ ପାରିବ,—ସେହି କରିଛି ମୋତେ ସଚେତ, ଉଦ୍‌ବୁଦ୍ଧ । ଆଜି ମୋର ଲଜ୍ଜା ନାହିଁ, ମାନନାହିଁ, ଅଭିମାନ ନାହିଁ—ମୁଁ ନିଃସଂକୋଚରେ—

ସଦାନନ୍ଦ—ଲକ୍ଷ୍ମୀ, ଲକ୍ଷ୍ମୀ—

ଲକ୍ଷ୍ମୀ—ତୁମ ପ୍ରଶ୍ନର ଉତ୍ତର ଦେବି, ସତ୍ୟ କଥା ପ୍ରକାଶ କରିବି । ସତ୍ୟର ଭାଷା ସରଳ ଓ ସୁସ୍ପଷ୍ଟ, ମୁଁ ସେହି ସୁସ୍ପଷ୍ଟ ସରଳ ଭାଷାରେ କହିବି "ଗୋପୀନାଥ ମୋର ସ୍ୱାମୀ"

ସଦାନନ୍ଦ—ଲକ୍ଷ୍ମୀ !! ( ଉତ୍ତେଜିତ ହୋଇ ଉଠିଲେ )

[ ଗୋପୀନାଥଙ୍କର କବାଟଦ୍ୱାର ଉନ୍ମୁକ୍ତ ହୋଇଗଲା । ଧୂପ ଧୂଣାର ଧୂଆଁରେ ଦାଅଙ୍କ ମୂର୍ତ୍ତି ଝାପସା ଦେଖାଗଲା । 'ରତି ସୁଖ ସାରେ' ଗୀତର ଏହି

ଦେଲ ଅନୁରଣିତ ହୋଇ ଉଠିଲା ପବନ ହିଲ୍ଲୋଳରେ । ]

ଲକ୍ଷ୍ମୀ—( ବାହ୍ନଲା ହୋଇ ) ରତ୍ନ ସୁଖ ସାରେ, ଗତମଭୂସାରେ ଆଉ ନୁହେଁ, ଆଉ ନୁହେଁ ସ୍ୱାମୀ ! ତୁମର ମଦନ ମନୋହର ବେଶର ସଙ୍କେତ ଏହି ବକୁଳ ହାର ଏହିଠାରେ ରହିଲା, ଦେବତା !— ( ନିଜ ପଣତ କାନରୁ ଧଣ୍ଡ୍ରାମାଳ କାଢି ଥୋଇ ଦେଇ ) ସମାଜ ହାତରେ ଗଢ଼ା ଦେବୀ ପ୍ରତିମା ମୁଁ, ଗୁଲିଛି ମହା ପଚ୍ଛୁଆଡରେ କୁଳ ନିୟମର ଧାର୍ ବଜାୟ ରଖି କୁଳଦେବତାଙ୍କ ଅଭିସାର ପଥେ । ଦୁନିଆଁ ଆଖିରେ ବର୍ତ୍ତିମାନ ମୁଁ କୁଳ-ଭୁଆସୁଣୀ— କୁଳ-ଲକ୍ଷ୍ମୀ,— ତଥାପି— ତଥାପି ବିବେକ ଦୃଷ୍ଟିରେ, ମୋର ଦେବତା ସମ୍ମୁଖରେ— ମୁଁ କୁଳଟା···କୁଳଟା··· ( ପ୍ରସ୍ଥାନ )

ସଦାନନ୍ଦ—ଲକ୍ଷ୍ମୀ···ଲକ୍ଷ୍ମୀ ! !

—ଯବନିକା—

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଲକ୍ଷ୍ମୀର ଶ୍ୱଶୁର ଘରର କକ୍ଷ ।—

[ ମଧୁଶଯ୍ୟା ଆଜି, ସେଥିପାଇଁ ଘର ଲିପା ପୋଛା ଚିତାଦିଆ ହୋଇଛି । ଫୁଲରେ ଫୁଲରେ ଫୁଲ ଶଯ୍ୟାର ପଲଙ୍କ ମଣ୍ଡିତ । ଗୋଟାଏ ପଟେ ଗୋଟିଏ ଆସ୍ଥାନ ଉପରେ ପୋଥି ଗାଦି । ତା' ଉପରେ କ୍ଷୁଦ୍ର ଗୋପାଳ ମୂର୍ତ୍ତି ସ୍ଥାପିତ । ବର କନ୍ୟା ଉପବେଶନ କରିଥାନ୍ତି । ଶଙ୍ଖ ହୁଳି ହୁଳି ପଡ଼ୁଥାଏ । ଲକ୍ଷ୍ମୀର ସମ ବୟସୀ ଅୟସ୍ତ୍ରୀ··· ମାନଙ୍କ ମଧ୍ୟରୁ କେତେକ ବରପକ୍ଷ, କେତେକ କନ୍ୟାପକ୍ଷ ହୋଇଥା'ନ୍ତି । ଦୁଇଜଣ ପୁରୁଖା ଅୟସ୍ତୁଣୀ ଅଲଗା ଥିଲେ । ]

୧ମ ପୁରୁଖା ଅୟସ୍ତୁଣୀ—ଏ ଅୟସ୍ତ୍ରୀ ଗୁଡ଼ାକ କଣବା ? ଖାଲି ଠିଆ, ଠିଆ, ମଠ ମଠ । ଆଲୋ ତୁମେ ପରା ସଜ ଭୁଆସୁଣୀ ଗୁଡ଼ାକ, ସଜ ମଧୁ ଶଯ୍ୟାରୁ ···କ'ଣ କହନ୍ତି ପୁଣି,···ମଧୁଶଯ୍ୟାର ଆଦ ବିଧି ସବୁ ପାଶୋରି ପକେଇଛତ ?

୨ୟ ପୁଃ ଅଃ—ତୁମେ ଭଲ କଥା କହୁଚ ଅପା, ଯାର ମଧୁଶଯ୍ୟା ହୁଏ ତାର ମନ ଭ୍ରମର ପରି କେଉଁ ସ୍ୱପ୍ନ ମଧୁରେ ଜଡ଼େଇ ହୋଇ ଥାଏ ।

୧ମ ପୁଃଅଃ—ଠିକ୍ କହୁଚ ଭଉଣୀ, ହେଲେ ଆଦ ବିଧି ଗୁଡ଼ାକ ମଧୁ ସଞ୍ଚିବାର ମଧୁକୋଷ, ଏ ଖିଆଲ ରଖିଥିବା ଉଚିତ । ଛାଡ଼, ତୁମେ ବସତ ବିଷ୍ଣୁ ଠାକୁରେ—(ନିଜେ ବସାଇ) ଆଲୋ ତୁମେ ବସାଅ ଲକ୍ଷ୍ମୀ ଠାକୁରାଣୀଙ୍କି ଏମିତ ( ବସାଇଲେ ) ଆଲୋ, ତୁମ ମୁହଁରେ କଣ ବେଙ୍ଗ ପଶିଚି ନା କଣ ? ଗୋଟେ ହୁଳ ହୁଳି ଦେଉନା ? ଆରେ ଶଙ୍ଖୁଆ— ( ହୁଳହୁଳି ପଡ଼ିଲା ଓ ଶଙ୍ଖ ଘନ ଘନ ବାଜିଲା )

୨ୟ—କଣ ଶିଖେଇ ଥିଲି, ମନେ ଅଛିତ ?

ସମସ୍ତେ—ଖୁବ୍—

ବରପକ୍ଷ ଅଃ—ଆମେ ବର ପଟ···ଶୁକଦଳ ।

କନ୍ୟାପକ୍ଷ ଅଃ—ଆମେ କନ୍ୟା ପଟ···ଶାରୀଦଳ ।

୨ୟ ପୁଃ ଅଃ—ବେଶ, ଦୁଇଦଳ ଭିତରେ ଏଥର ଦାସ୍ଥିକା ଗୁଲୁ । ଦେଖାଯାଉ କାଏ କାକୁ ଜିଣୁଛି ! —ଏକ, ଦୁଇ, ତିନି···( ଗୀତ ଆରମ୍ଭ ହେଲା )

ଶୁକ ଦଳ—ଶୁକ ବୋଲେ ବିଷ୍ଣୁ ମୋର ଜଗତ ପାଳକ ।
ଶାରୀ ଦଳ—ଶାରୀ ବୋଲେ ଲକ୍ଷ୍ମୀ ମୋର ବିଷ୍ଣୁର ପୁଲକ ?
ଶୁକ ଦଳ—ବିଷ୍ଣୁ ବିନା ଲକ୍ଷ୍ମୀ କେବେ ବାନ୍ଧନ୍ତିକି ଘର ?
ଶାରୀ ଦଳ—ଲକ୍ଷ୍ମୀବିନା କୃଷ୍ଣରାମ ସିନା ହରବର ।
ଶୁକ ଦଳ—ସରସ୍ୱତୀ ଲକ୍ଷ୍ମୀକଲି ଜଗତେ ବିଦିତ ।
ଶାରୀ ଦଳ—ଜଗତରେ କଲି କିପାଁ, ଯେବେ ଜଗନ୍ନାଥ ।
ଶୁକ ଦଳ—ଚଞ୍ଚଳା ଅଟଇ ଲକ୍ଷ୍ମୀ, ଗୃହିଣୀ ତେବସ୍ଥା ।
ଶାରୀ ଦଳ—ତିନିଭଙ୍ଗା ମୂର୍ତ୍ତି କୃଷ୍ଣ, ନୁହଇ ତ ସିଧା ॥
ଶୁକ ଦଳ—ରାମଯୋଗୁ ସୀତା ମୁକ୍ତ ଅଶୋକ କାନନୁ ॥
ଶାରୀ ଦଳ—ସୀତା ଯୋଗୁଁ ଭାଙ୍ଗିଲେତ ରାମ ହରଧନୁ ॥

ସମସ୍ତେ—ଶୁକ ଶାରୀ ପାଲା ଏବେ ହୋଇଗଲାତ ଶେଷ ॥
ବିଷ୍ଣୁ, ଲକ୍ଷ୍ମୀ ଭେଟା ଭେଟି ଜଗତ ସନ୍ତୋଷ

୧ମ ପ୍ରଃ ଅଃ—ହଉ, ଏବେ ବର କନ୍ୟାର ପରୀକ୍ଷା ହେଉ ।

୨ୟ ପ୍ରଃ ଅଃ—ବୁଦ୍ଧିର, ନା ବଳର ? ( ପଣ୍ଡିତ ଆଡ଼କୁ ଅନାଇଲେ )

ବିଷ୍ଣୁ—(ହସି)-'ବୁଦ୍ଧି ର୍ଯସ୍ୟ ବଳଂତସ୍ୟ',—ବୁଦ୍ଧି ଯାର ବଳତାର—ସୁତରାଂ, ବୁଦ୍ଧି ପରୀକ୍ଷାରେହିଁ ବଳର ପରୀକ୍ଷା ।

ଶୁକ ଦଳ—କ'ଣ କହୁଚ, ଶାରୀ ଦଳ ?

ଶାରୀ ଦଳ—ଲକ୍ଷ୍ମୀ, ଆମ ମୁହଁ ଛୋଟକୁ ହୋଇ ଯାଉଛି । ତୁମେ ଯାର ଗୋଟାଏ ମନଲାଖି ପ୍ରତି ଉତ୍ତର ଦିଅ ।

ଲକ୍ଷ୍ମୀ—(ସସ୍ମିତେ) କହି ଦିଅ, ଧନ ନଥିଲେ ବୁଦ୍ଧି ବଣା ହୋଇ ଯାଏ ।

ଶାରୀ ଦଳ—ଯାର ଜବାବ୍ ଏଥର ଦିଅ ଶୁଆଦଳ । ଆମ ଠାକୁରାଣୀ କହିବା ଅର୍ଥ—ଲକ୍ଷ୍ମୀ ବୋଇଲେ ଧନ, ଧନ ନଥିଲେ ଯେତେ ବୁଦ୍ଧିଆ ହେଲେ ବି ତା'ର ବୁଦ୍ଧି ବଣା ହୋଇଯାଏ ।

୧ମ ପ୍ରଃ ଅଃ—ସାବାସ୍—କେହି କାହାରିକୁ ଊଣା ନୁହେଁ । ଆସନ୍ତ ବାହାର ।

ଅନ୍ୟ ସମସ୍ତେ—(ବର କନ୍ୟାଙ୍କୁ ଏକାଠି କରି ଦେଇ) —ଆମର ପାଉଣା, ପଣ୍ଡିତେ ।

ବିଷ୍ଣୁ—'ମିଷ୍ଟାନ୍ନମିତରେ ଜନାଃ'—

( ସମସ୍ତେ ହସି ହସି ହୁଳହୁଳି ଦେଉ ଦେଉ ଚାଲିଗଲେ )

ଲକ୍ଷ୍ମୀ—( ହଠାତ୍ ଉଠିଯାଇ ସରମରେ ଜଣକର ପଣତ କାନି ଧରିଲେ )

୧ମ ପ୍ରଃ ଅଃ—(ଛଡ଼ାଇ) ଛି ଲକ୍ଷ୍ମୀ । ଆହେ ଲକ୍ଷ୍ମୀନାଥ, ଲକ୍ଷ୍ମୀଙ୍କୁ ତୁମର ସମ୍ଭାଳ । ଦ୍ୱାର କିଳିଦିଅ ଭିତରପଟୁ ।

ବିଷ୍ଣୁ—( ଦ୍ୱାର କିଳିବାକୁ ଗଲେ )

ଲକ୍ଷ୍ମୀ—( ସମ୍ଭ୍ରମ୍ଭାସରେ ) 'ଲକ୍ଷ୍ମୀନାଥ' ।

ବିଷ୍ଣୁ—( ଫେରିଆସି ) ମତେ ଡାକୁଥିଲ ଲକ୍ଷ୍ମୀ ?

ଲକ୍ଷ୍ମୀ—( ମଥାଟୁଙ୍ଗାଇ 'ନା' ବୋଲି, ଜଣାଇଲେ )

ବିଷ୍ଣୁ—କୋହି ଭରା କଣ୍ଠରେ ଲକ୍ଷ୍ମୀନାଥ ବୋଲି ଯେମିତ—

ଲକ୍ଷ୍ମୀ—ପ୍ରଭୁ ! ( ପଦଧାରଣ କରିବାକୁ ଯାଉଥିଲେ )

ବିଷ୍ଣୁ—( ବାଧାଦେଇ ) ନା, ଲକ୍ଷ୍ମୀ—'ଦେହି ପଦ ପଲ୍ଲବମୁଦାରଂ' ଯେବେ ଗାଇଥିଲେ ଜୟଦେବ, ମୁଁ ତାକୁଇ ଆଜି ସାର କରିବି ତୁମର ପାଦ···

ଲକ୍ଷ୍ମୀ—ପ୍ରଭୁ—ପ୍ରଭୁ—(ଦୂରକୁ ଘୁଞ୍ଚିଗଲେ )

ବିଷ୍ଣୁ—ଡରିବନି, ଲକ୍ଷ୍ମୀ—ପାଖକୁ ଆସ —

ଲକ୍ଷ୍ମୀ—( ଡର ଡର ପାଖକୁଗଲେ )

ବିଷ୍ଣୁ—ଛି—( ପାଖକୁ ସସ୍ନେହେ ଭିଡ଼ିଆଣି ) ଚାହିଁଲେ ଏଣେ ··ଦେଖୁଚ କିଛି ?

ଲକ୍ଷ୍ମୀ—ଦେଖୁଚି ।

ବିଷ୍ଣୁ—କଣ ?

ଲକ୍ଷ୍ମୀ—ପୋଥି ଗାଦି ।

ବିଷ୍ଣୁ—ଜ୍ଞାନ ।

ଲକ୍ଷ୍ମୀ—କାର ?

ବିଷ୍ଣୁ—ଜୀବର । ତା'ପର ସେହି ଗାଦିଉପରେ ?

ଲକ୍ଷ୍ମୀ—ଗୋପାଳ ମୂର୍ତ୍ତି ।

ବିଷ୍ଣୁ—ଭଗବାନ୍, ଜ୍ଞାନର ପରିଣତି ।

ଲକ୍ଷ୍ମୀ—ହେଲେ—

ବିଷ୍ଣୁ—କୁହ—କୁହ—

ଲକ୍ଷ୍ମୀ—ଯୁଗଳ ମୂର୍ତ୍ତି ଦେଖି ଭଗବାନ୍ ପୂର୍ଣ୍ଣାଙ୍ଗ, ଶୁଣିଛି ।

ବିଷ୍ଣୁ—ଠିକ୍ ଶୁଣିଛି । ସେହି ଅପୂର୍ଣ୍ଣାଙ୍କୁ ପୂର୍ଣ୍ଣାଙ୍ଗ କରିବ ତୁମେ ।

ଲକ୍ଷ୍ମୀ—ମୁଁ ?

ବିଷ୍ଣୁ—ହଁ ତୁମେ,—'ଭକ୍ତି' ।

ଲକ୍ଷ୍ମୀ—ମୁଁ 'ଭକ୍ତି' ?

ବିଷ୍ଣୁ—ମୋତେ କପଟ କରିବନି, ଲକ୍ଷ୍ମୀ-ଲୁଲୁ ! ବୈରାଗୀ ବାବା ମୋତେ ସବୁ କଥା ମିଟାଇ କହିଛନ୍ତି ।

ଲକ୍ଷ୍ମୀ—କି କଥା ଯେ ?

ବିଷ୍ଣୁ—ତୁମେ ଭକ୍ତିରେ ଉନ୍ମାଦ ।

ଲକ୍ଷ୍ମୀ—ଆଉ ତୁମେ, ଜ୍ଞାନରେ ?

ବିଷ୍ଣୁ—ଯଥାର୍ଥ, ଆମେ ବୁଝିଛି ଉଭୟାଦ । 'ଜ୍ଞାନ' ଓ 'ଭକ୍ତି' । ସେହି ଦୁହିଙ୍କର ମିଳନ ରାତି ଆଜ । ଏ' ତା'ର ମଧୁଶଯ୍ୟା ।

ଲକ୍ଷ୍ମୀ—( ଲାଜେଇଲେ )

ବିଷ୍ଣୁ—ପ୍ରୀତି ପଲଙ୍କ । ଏକ ଆଡ଼େ ପୋଥିଗାଦି ଆଉ ଗୋପାଳ ମୂର୍ତ୍ତି, ଅନ୍ୟ ଆଡ଼େ ପ୍ରୀତି-ପଲଙ୍କ । ଯାର ଅର୍ଥ ଜ୍ଞାନ ଓ ଭକ୍ତି, ଏହି ଦୁହିଙ୍କ ମଧ୍ୟରେ ଯେତେବେଳେ ପ୍ରୀତି ସଂଯୋଗ ଘଟେ, ସେତେବେଳେ ମିଳିଥାଏ ପରମଆନନ୍ଦ । ଆସ, ଲକ୍ଷ୍ମୀ—

ଲକ୍ଷ୍ମୀ—ପ୍ରଭୁ ।

ବିଷ୍ଣୁ—ମୁଁ ଅସଂଯତ ହୋଇ ପଡ଼ୁଛି, ନା ?—ହଁ, ଲକ୍ଷ୍ମୀ ତୁମେ ପଲଙ୍କରେ ବିଶ୍ରାମ କର, ମୁଁ ତେଣେ ଯାଇ—

ଲକ୍ଷ୍ମୀ—ନା, ନା, ମୁଁ ବରଂ ତେଣେ ଯାଇ—( ଉଠି ଯାଉଥିଲେ )

ବିଷ୍ଣୁ—କିନ୍ତୁ, ଲକ୍ଷ୍ମୀ—

ଲକ୍ଷ୍ମୀ—କ'ଣ ?

ବିଷ୍ଣୁ—ଆଜ ମଧୁଶଯ୍ୟାର ମଧୁବ୍ରତ । ବର-ବଧୂର କ୍ଷଣକ ପାଇଁ ସୁଦ୍ଧା ଛଡ଼ା ଛଡ଼ି ହେବା ବିଧି ନୁହେଁ । ଆସ ଲକ୍ଷ୍ମୀ, ପ୍ରୀତି ପଲଙ୍କରେ ଏକାଠି ବସି, ପ୍ରୀତି ଗୋପୀନାଥଙ୍କୁ ଧ୍ୟାନ ଲଗାଇ ତାଙ୍କର ପ୍ରୀତି-କଥା ରସରେ ମାତି ରାତି ପୁହାଇ ଦେବା ।

ଲକ୍ଷ୍ମୀ—ଗୋପୀନାଥଙ୍କ ପ୍ରୀତି କଥା ?

ବିଷ୍ଣୁ—ହଁ ତୁମର ସାକ୍ଷୀ-ଗୋପୀନାଥଙ୍କର ।

ଲକ୍ଷ୍ମୀ—ସାକ୍ଷୀ-ଗୋପୀନାଥ ହେଉଛନ୍ତି ସତ୍ୟ-ଗୋପୀନାଥ,—ଏହି କଥା ଶୁଣିଛି, ହେଲେ, ସେ ଯେ ପ୍ରୀତି-ଗୋପୀନାଥ, ତା' ତ ଜାଣେନା ।

ବିଷ୍ଣୁ—ତେବେ ସେହି କାହାଣୀ ମୁଁ ବଖାଣୁଚି, ଶୁଣ ।

ଲକ୍ଷ୍ମୀ—କୁହ ।

ବିଷ୍ଣୁ—ଶ୍ରୀ ବୃନ୍ଦାବନବିହାରୀ ସାକ୍ଷୀ ଦେବାକୁ ଆସି, କାଞ୍ଚି ରାଜ୍ୟର ନଈ ବାଲିରେ ପଥର ପାଲଟି ରହି ଯାଇଥିଲେ, ଶୁଣିଥିବ ?

ଲକ୍ଷ୍ମୀ—ସେତିକି ନୁହେଁ, ତାଙ୍କର ସେହି ପଥର ମୂର୍ତ୍ତି ବକୁଳ ବଣକୁ ଅଣାଗଲା,—ସେଠାରେ ଦେଉଳ ତୋଳାଇ ରଖାଗଲା, ଆଉ ସ୍ଥାନର ନାମ ସତ୍ୟବାଦୀ ଓ ଦିଅଙ୍କ ନାମ ସାକ୍ଷୀଗୋପାଳ କରି ହେଲା, ଜାଣିଚି ।

ବିଷ୍ଣୁ—ହେଲେ ମନ୍ଦିର ଘଟଣାଟି ଭାରି ଚମତ୍କାର, ତା' ବୋଧ ହୁଏ ଜାଣନା ?

ଲକ୍ଷ୍ମୀ—ନା ।

ବିଷ୍ଣୁ—ଶୁଣ, ଏ' ହେଉଚି ରାଜା ପୁରୁଷୋତ୍ତମ ଦେବଙ୍କ ଅମଳର କଥା । ରାଜା ନୂଆ ହୋଇ ଗାଦିରେ ବସିଥାନ୍ତି, ରଥଯାତ୍ରା ଗହ ଗହ ଲାଗିଥାଏ, ରାଜା ଚଣ୍ଡାଳ ବେଶରେ ଛେରା ପହଁରା କରୁଥାନ୍ତି; ଏହି ଦୃଶ୍ୟ କାଞ୍ଚି ରାଜାର ଜେମାମଣି ପଦ୍ମାବତୀ ପିତାଙ୍କ ଗହଣରେ ଥାଇ ଦେଖୁଥାନ୍ତି; ପଦ୍ମାବତୀ ରୂପ ଗୁଣରେ ସାକ୍ଷାତ୍ ଲକ୍ଷ୍ମୀ, ଆଉ ପୁରୁଷୋତ୍ତମଦେବ ତ ଜାଣିଶୁଣି ଚଳନ୍ତି ବିଷ୍ଣୁ ।

ଲକ୍ଷ୍ମୀ—ତା'ପର ?

ବିଷ୍ଣୁ—ବିଷ୍ଣୁ ଲକ୍ଷ୍ମୀର ଭେଟା ଭେଟି···ହାଃ ହାଃ ହାଃ

ଲକ୍ଷ୍ମୀ—ଯାଃ ।

ବିଷ୍ଣୁ—ତୁମର ମୋର ନୁହେଁ ଗୋ, ପୁରୁଷୋତ୍ତମ ଆଉ ପଦ୍ମାବତୀର ।

ଲକ୍ଷ୍ମୀ—ହଉ, ତା'ପର—

ବିଷ୍ଣୁ—ପୁଷ୍ପଧନୁର ଟଙ୍କାର । ପଦ୍ମାବତୀ ଅଧୀର ହୋଇ ପଡ଼ିଲେ । କାଞ୍ଚିକୁ ଫେରି ଯିବା ସଙ୍ଗେ ସଙ୍ଗେ ମନକଥା ପିତାଙ୍କୁ ଫେଇ କହିଲେ, ପିତାତ ଶୁଣି ତାଟଙ୍କା ଆଉ କୋଧରେ ଅଗ୍ନି-ବାଣ, ଉତ୍କଣ୍ଠାତ୍ ପ୍ରକାଶ୍ୟରେ ଜଣାଇ ଦେଲେ—

ଲକ୍ଷ୍ମୀ—କଣ ?

ବିଷ୍ଣୁ—କାଞ୍ଚିର ଜେମା ବାହାହେବ ଗୋଟାଏ ଚଣ୍ଡାଳକୁ ?

ଲକ୍ଷ୍ମୀ—ତା'ପର—

ବିଷ୍ଣୁ—ପଦ୍ମାବତୀ ମଉନ ହୋଇ ରହିଲେ, କିନ୍ତୁ ତୁଷନିଆଁ ଜଳୁଥାଏ ଭିତରେ, ଭିତରେ ।

ଲକ୍ଷ୍ମୀ—ଓଃ—ତା'ପର—

ବିଷ୍ଣୁ—ପଦ୍ମାବତୀ ରାଜଗୁରୁଙ୍କଠାରୁ ସାକ୍ଷୀ ଗୋପୀନାଥଙ୍କର ସତ୍ୟ ମହିମା କଥା ଶୁଣିଥିଲେ ।

ଗୋପୀନାଥ ସେତେବେଳେ ତାଙ୍କର ନନ୍ଦୀ ବାଳରେ ବ୍ରଜବାଳମାନ ଥାନ୍ତି । କେମା ଗୋପୀନାଥଙ୍କୁ ଧ୍ୟାନ ଲଗାଇ, ତାଙ୍କର ପାଖରେ ଗୁହାରି ପଡ଼ିଲେ । ଦିନେ ମୁଁ ଶତ ଅଧରେ ଓଁରଜଣି, ଉଆସରୁ ଏକୁଟିଆ ବାହାରି, ନନ୍ଦୀବାଳକୁ ଯାଇ ଦୁଆଁଙ୍କ ପାଦ ଛୁଇଁ, ବଦନକୁ ଚୁହିଁ, ଗଦ ଗଦ କଣ୍ଠରେ କହିବାକୁ ଲାଗିଲେ—

ଲକ୍ଷ୍ମୀ—କ'ଣ ?

ବସ୍ତୁ—"ଗୋପୀନାଥ, ସତ୍ୟ ଦେବତା ! ଦିନେ ବ୍ରାହ୍ମଣ ସତ୍ୟ କରିଥିଲେ ତୁମକୁ ସାକ୍ଷୀମାନି; ତୁମେ ସତ୍ୟର ମାନ ରକ୍ଷାହେବ, ସେଥିଲାଗି ସାକ୍ଷୀ ଦେବାକୁ ସରଳ ହୋଇ ଧାଇଁ ଆସିଥିଲ । ମୁଁ ବି ସେମିତି ସତ୍ୟ କରୁଛି ନନ୍ଦଘୋଷ ବ୍ରଜବାଳମାନ ନୀଳାଚଳ ନାଥଙ୍କୁ ସାକ୍ଷୀମାନି ଏଇ କଥା ଯେ, ଜୀବନେ ମରଣେ ନୀଳାଚଳ ନାଥଙ୍କ ସେବକହିଁ ମୋର ପତି ଦେବତା । ତୁମେ ବୃନ୍ଦାବନବିହାରୀ ଶ୍ରୀଗୋପୀନାଥ ଆଉ ନୀଳାଚଳ ବିହାରୀ ଶ୍ରୀଜଗନ୍ନାଥ ଏକ, ଅଭିନ୍ନ । ତୁମେ କଣ ଶୁଣିବନି ଦୀନାର ଗୁହାରୀ, ମୋ' ତୁଲେ ଯାଇ ସତ୍ୟର ସାକ୍ଷ୍ୟ ଦେବନି ପିତାଙ୍କୁ ?··· ଗୋପୀନାଥ !"

ଲକ୍ଷ୍ମୀ—ଓଃ—କି ଦାରୁଣ !—ତା'ପର···

ବସ୍ତୁ—ଗୋପୀନାଥ ପ୍ରସନ୍ନ ହେଲେ, ଅଉ ପଦ୍ମାବତୀଙ୍କୁ ସଂବୋଧନ କହିବାକୁ ଲାଗିଲେ—"ପଦ୍ମାବତୀ ! ତୁମର ଗୋପୀକା ପ୍ରାଣ, ଗୋପୀକାରମଣୀକୁ ବ୍ୟାକୁଳ କରୁଛି । ବ୍ରାହ୍ମଣ-କୁମାର ଏଠାରୁ ମୋତେ ଆଣି ପାରିଥିଲା ତାର ସାତ୍ତ୍ୱିକ ବଳରେ; ହେଲେ ମୁଁ ହୋଇଥିଲି ମୂକ, ବଧିର ତା'ର ସନ୍ଦେହ ଫଳରେ । ଆଜି ତୁମର ପ୍ରେମନିଷ୍ଠା ମୋ ଭିତରେ ପ୍ରାଣପ୍ରତିଷ୍ଠା କରୁଛି ମୋତେ ସବାକ କରୁଛି । ତୁମର ଇଚ୍ଛା ଅଚିରେ ପୂର୍ଣ୍ଣ ହେଉ !"

ଲକ୍ଷ୍ମୀ—ତା' ହେଲେ, ଯେଉଁ ବିବାହ ଅସମ୍ଭବ ଥିଲା, ତାହା ସମ୍ଭବ କରି ପାରିଥିଲେ ଏହି—[ସଜଳ ଦୃଷ୍ଟିରେ ଗୋପାଳ ମୂର୍ତ୍ତି ଆଡ଼େ ଚୁହିଁ ରହିଲେ ]

ବସ୍ତୁ—ହିଁ ଏହି ଗୋପୀନାଥ—ପ୍ରୀତିର ଦେବତା—(କାନଡ଼େଇ) ତାଙ୍କ ବିଜୟ ଗୀତ ଗାଉଛି ଯୋଗୀଟିଏ କେନ୍ଦ୍ରା ବଜାଇ—ଝରକା ଖୋଲି ଦେଉଛି, (ଘରର ଗବାକ୍ଷ ମେଲା କରୁ କରୁ) ଆସ, ଶୁଣ, ହିଁ, ମୁଁ ଯୋଗୀକୁ ଝରକା ତଳକୁ ଡାକି ଦେଉଛି—

* * * * *

## —ଦୃଶ୍ୟାନ୍ତର—

[ ଗବାକ୍ଷର ବାହାର ପଟ । ଯୋଗୀ କେନ୍ଦ୍ରା ବଜାଇ ଗାଉଥିଲା । ]

ଯୋଗୀ— ଗୀତ

ପଦ୍ମା ଶଶ୍ରା କରି ଧ୍ୟାନ, ଥିଲେ ଉତ୍କଳ ରାଣୀ;
ପ୍ରବେଶ କାଞ୍ଚୀକି ଦୂତ,—
କହେ—ସାକ୍ଷୀ-ଗୋପୀନାଥ, କାଞ୍ଚୀପୁରେ ଅବସ୍ଥିତ,
ହେଲାରେ ସକଳ ନାଥ—ବିରଚନ୍ତି,—ବାର୍ତ୍ତା ଆଣ ।୧।
ଦ୍ରୁତହୋଇ ମୂର୍ଚ୍ଛା ଶୁଣି, କାଞ୍ଚୀ ରାଜା ଦୁଆଁ ଘେନି,—
ପୂଜେ ପଦ୍ମା ଅଶ୍ରୁ ନୀରେ,
ଭଅଣ ଏ' ଶଶ୍ରା ମଣି;—ପ୍ରେମର ସଙ୍କେତ ମଣି,
ପେସିଲେ ସତ୍ୱରେ ଦୂତ, ମାଗି କର କେମା-ମଣି ।୨।
'ଚଣ୍ଡାଳେ ନ ଦେବି ସୁତା',—ପଠାଇଲେ ପ୍ରତି-ବାର୍ତ୍ତା,
ଶୁଣି ପୁରୁଷ-ଉତ୍ତମ,—
'ଚଣ୍ଡାଳେ ଦେବି',—ଏ'ପଣ କରି କଲେ ଆକ୍ରମଣ;
ପରାଜୟ-ଫଳ ଶେଷେ, ନେଲେ ଅଶ୍ରୁ ଦୀନ ବାର୍ତ୍ତା ।୩।
ଦୟାବହି କୃଷ୍ଣ ରାମ ସଜେ କଲେ ତାଙ୍କଧାମ
କଳା, ଧଳା ଅଶ୍ୱ ପୃଷ୍ଠେ;
ବନ୍ଧା ଦେଇ ରତ୍ନ-ମୁଦ୍ରି ଖାଇ ମାଣିକାର ଦହି
ଭକ୍ତ-ବାଞ୍ଛା କଲେ ପୂର୍ଣ୍ଣ, ରାଜା ଜିଣିଲେ ସଂଗ୍ରାମ ।୪।
ପଦ୍ମାତୁଲେ ଗୋପୀନାଥ, ଅବର ଯେ ଗଣନାଥ
ଆଣିଲେ ଶ୍ରୀ କ୍ଷେତ୍ର ଧାମ;
ପୁଣି ମନ୍ତ୍ରୀ ଯେ କୌଶଳେ ରଥ ଝଳାଇବା କାଳେ
ହେଲେ ପଦ୍ମା ରାଜା-ଙ୍କର ପୂରିଲାତ ମନୋରଥ ।୫।

ଲକ୍ଷ୍ମୀ—[ନେପଥ୍ୟେ] ମୋ’ ମନୋରଥ !—

[ ଯୋଗୀ ଅର୍ଜୁନଙ୍କ ଭାବରେ କେନ୍ଦ୍ରା ଓ ଗୀତ ବନ୍ଦ କରି ଦେଲା । ]

* * * * *

[ ପୁଣି ଦୃଶ୍ୟ ପରିବର୍ତ୍ତିତ ହେଲା ]

ଲକ୍ଷ୍ମୀ—( କୋହଭରା କଣ୍ଠରେ ) ଲକ୍ଷ୍ମୀନାଥ । ତୁମେ ପ୍ରେମର ଦେବତା ହୋଇ ଲକ୍ଷ୍ମୀ ପ୍ରତି ଏତେ ପାଷାଣ !

[ ଠିକ୍ ସେହି ସମୟରେ ଲକ୍ଷ୍ମୀର ନଣନ୍ଦ ସୁଭଦ୍ରା ପ୍ରବେଶ କଲେ, ତାଙ୍କୁ ବୟସ ୧୨।୧୩ ହେବ । ]

ସୁଭଦ୍ରା—ଲକ୍ଷ୍ମୀର ମନୋରଥ ପୁରାଇଛନ୍ତି, ଲକ୍ଷ୍ମୀନାଥ—

ଲକ୍ଷ୍ମୀ—( ଅର୍ଜୁନଙ୍କ ଭାବରେ ଗୁହିଁ ) ଏଁ—

ସୁଭଦ୍ରା—ଭାଉନା ମୁଣ୍ଡରେ ଆଜ ପାଟଶାଢ଼ୀ ବନ୍ଧା ହେବ ।

ଲକ୍ଷ୍ମୀ—ଆଉ ମୋ’ ନୂଆ ନଣନ୍ଦ ଗୋଭ ମୁଣ୍ଡରେ ପାଟ ଯୋଡ଼ ?

ସୁଭଦ୍ରା—ଉଁ ହୁଁ ବସ୍ତ୍ର ଠାକୁରଙ୍କ ଘରଣୀ ନୂଆ ଭାଉଜ ଲକ୍ଷ୍ମୀ ଠାକୁରାଣୀଙ୍କ ମୁଣ୍ଡରେ । ହଁ, ଅଛା ନୁହେଁ ନୂଆ ଭାଉଜ, ତାଉ କା ନ କରୁଣୁ ଘୁମୁଙ୍କ ଚିଠାଉ ଆସି ହାଜର—ଭାଉନା ଆଜଠାରୁ ସଭା ପଣ୍ଡିତ ହେବେ ।

ଲକ୍ଷ୍ମୀ—( ପହଁରା ଆଣି ) ପାଖେଇଲ୍···ଘରଠା ମୁଁ ପହଁର ଦଏଁ ।

ସୁଭଦ୍ରା—ବାଃ, ନୂଆ ଭାଉଜ ପହଁରବ ଘର, ନୂଆ ନଣନ୍ଦ ଥାଉଁ ଥାଉଁ ( ପହଁରା ଛଡ଼ାଇ ନେଇ ଝୁଲାଇବାକୁ ଲାଗିଲା )

ଲକ୍ଷ୍ମୀ—( ସ୍ୱଗତ ) ଏ କି ନୂଆ ପ୍ରୀତିର ଅନୁଭୂତି ? ଯାର ମାଧୁରୀ ଦେଉଳରେ କାହିଁ ?

---

## ଦ୍ୱିତୀୟ ଦୃଶ୍ୟ

[ ସାକ୍ଷୀ ଗୋପାଳଙ୍କ ନାଟ-ମନ୍ଦିର । ଆନନ୍ଦ ବୀଣାର ତାରରେ ଝଙ୍କାର ଶବ୍ଦ କରୁ କରୁ ପ୍ରବେଶ କଲେ ]

ଆନନ୍ଦ—ବାବାଙ୍କର ଏକ ଅଜବ୍ ଖିଆଲ । ମୁଁ ଶିଖିବି ବୀଣା, ଗାଇବି ଗୀତ । ( ହସିଲେ ) ବେଶ୍ ଶିଖିବି, ହେଲେ ନାଚିବ କିଏ ? ଲକ୍ଷ୍ମୀ ଅପା ଯେଉଁଠାରେ ଅଉ କଣେ ତ ? ତା’ ହବନି । ଏହିକ୍ଷଣି ଯିବି, ବାବାଙ୍କ ପାଦ ତଳେ ବୀଣାଟି ଥୋଇଦେଇ, ପେଟର କଥା ଫିଟେଇ କହିବି— ‘ବାବା, ଏ କଳା-ବିଦ୍ୟା ମୋ ଦେଇ ହ’ବନି । ହଁ ଲକ୍ଷ୍ମୀ ଅପାଥିଲେ କଥା ନ ଥିଲା—’

[ ସଦାନନ୍ଦ ପ୍ରବେଶ କଲେ ଅଣ୍ଟାଳି ଅଣ୍ଟାଳି । ବିମର୍ଷଭାବ ]

ସଦାନନ୍ଦ—ଆନନ୍ଦ !

ଆନନ୍ଦ—ବାବା !

ସଦାନନ୍ଦ—ବୀଣା ଦିଅତ—

ଆନନ୍ଦ—( ଦେବାକୁ ଗଲା )

ସଦାନନ୍ଦ—ନା ଥାଉ—

ଆନନ୍ଦ—ବାବା କ’ଣ ଆଜ ଅସୁସ୍ଥ——?

ସଦାନନ୍ଦ—[ ହସିବାକୁ ଚେଷ୍ଟାକରି ] ଆରେ ନାରେ ନା—ହଁ, ଆନନ୍ଦ—

ଆନନ୍ଦ—ବାବା !

ସଦାନନ୍ଦ—ଦେଉଳ ଆଉ ଦେଉଳ ବେଢ଼ାର ଫାଟକ ଓ ଦ୍ୱାରର ମୁଦ ଠିକ୍ ଠିକ୍ ପଡ଼ିଛି ତ ?

ଆନନ୍ଦ—ହୁସିଅର କଲା ଦିନୁ ମୁଁ ନିଜେ ପକାଏ, ଅଉ କୁଞ୍ଚି କାଠି ଆଣି ବାବାଙ୍କ ଜିମ୍ମା କରିଦଏଁ ।

ସଦାନନ୍ଦ—ହଁ, ହଁ—ତା’ହେଲେ ଏ ମୋ’ର ମନର ଖିଆଲ ଛଡ଼ା ଆଉ କିଛି ନୁହେଁ···

ଆନନ୍ଦ—କି ଖିଆଲ, ବାବା ?

ସଦାନନ୍ଦ—ରାତି ନିଶୂନ ହେଲେ କିଏ ଯେମିତି ଝୁଣି ଝୁଣି ନୂପୁର ବଜାଇ ବାହାର ଯାଏ···ପରୁହିଲା ଯଣି ଚୁପ୍ ମାରିଯାଏ, କୌଣସି ହୋର୍ ଶବ୍ଦ ନ ଥାଏ । ଅଧୁର ବି—

ଆନନ୍ଦ—କ'ଣ ?

ସଦାନନ୍ଦ—ଦିନେ ଦିନେ ଖୁବ୍ ନିଶାରାତ୍ରରେ, ଅନେକ ଦୂରରୁ ଗୋଟାଏ ଭଙ୍ଗା ବଇଁଶିର କରୁଣ ସ୍ୱର ଯେମିତ ତୁହାଇ ତୁହାଇ ଭାସି ଆସେ, ମୁଁ ଅଚାନକ ଉଠିବସେ, କାନ ଡେରେ, କିନ୍ତୁ ହତାଶ ହୋଇ ଶୁଣେ ଖାଲି ନିଶାର ସାଇଁ ସାଇଁ ।

ଆନନ୍ଦ—ବାବା, ତୁମେ ଲକ୍ଷ୍ମୀ-ଅପାଙ୍କୁ ଦେଖି ଆସିତ—

ସଦାନନ୍ଦ—ଆନନ୍ଦ, ଆନନ୍ଦ

( ବିହ୍ୱଳ ଭାବରେ ପ୍ରସ୍ଥାନ କଲେ )

ଆନନ୍ଦ—ବାବା—( ଅନୁଧାବନ )

---

## ତୃତୀୟ ଦୃଶ୍ୟ

—ଗ୍ରାମ୍ୟପଥ—

[ କେତେକ ଗାଁ ମାଇପେ ପୋଖରୀ ତୁଠରୁ ଘରକୁ ବାହୁଡ଼ିବା ବାଟରେ କଥାବାର୍ତ୍ତା କରୁ କରୁ ଯାଉଥିଲେ ]

୧ମା—ଗାଧୋଇଲା ତୁଠରେ ଓଡ଼ା-ଘର-ବୋହୂଟିକି ଆଜି ନିରେଖି ନାରେଖି ଦେଖିଲୁ ତ ?

୨ସ୍ତ୍ରୀ—ସୁଲକ୍ଷଣି ବୋହୂଟିଏ । ତା' ନ ହେଲେ, ପାଦ ଦେଉଣୁ ନ ଦେଉଣୁ ଓଡ଼ା ଘର ଇମିତ ଉଜ୍ଜ୍ୱଳ ହୋଇ ଯାନ୍ତା, କଥା ନାହିଁ ବାର୍ତ୍ତା ନାହିଁ, ଯାମୁ ସଭି ପଣ୍ଡିତ କରି ଦିଅନ୍ତେ ଯାଏଁ ଯାଏଁ ବସ୍ତୁ ଗୋସାଇଁଙ୍କ ।

୧ମା—ଯାକୁର୍ କହିବ ଦିଯୁମନ୍ତ । ଆହୁରି ଅନା, ଦିନ ଦିଟାରେ ଗାଁ ଗୋଟାକ ଅପଣାର କରି ନେଇଛି ।

୩ସ୍ତ୍ରୀ—ହେଲେ ଗୋଟିଏ କଥା ମୋ ମନକୁ ଆଦୌ ପାଉନାହିଁ, ଅପା ।

୨ସ୍ତ୍ରୀ—କୋଉ କଥା ମ' ?

୩ସ୍ତ୍ରୀ—ନୂଆ ଶାଶୁଘର···କଲି କେଇ ଦିନ···କଅଁଳ ଝିଅପିଲାଟା···ଲାଜ ସରମ ହେଇ ଟିକେ ନାଇଁ । ଦାଣ୍ଡରେ ପଡ଼ି ଆମ ସଙ୍ଗରେ ହେଁ ହେଁ— ଫେଁ ଫେଁ ।

୪ର୍ଥୀ—ମଲାମ, ଖାଲି ଏତକି ମାହାର୍ଦ୍ଦ !—ଦିନ ଦିଃପ୍ରହରଟାରେ, କେବେ ଶୁଅନ୍ତି, ବସନ୍ତି, ହସନ୍ତି, କା ବସି, କାଞ୍ଚିଗାଉ ଖେଳନ୍ତି, ତା' ନାହିଁ, ଉଦଣ୍ଡି ପର ସ୍ତ୍ରୀ ଘରେ ପଶ, ତା' ଘରେ ପଶ, ମୋ' ମାଗୋ

୩ସ୍ତ୍ରୀ—ମୋ'ରତ ହୋଇ୍ ନ ଥିଲା ଆହୁରି କହିବାକୁ । ଏଇ କାଲିର ଘଟଣା । ଉଦୁଉଦିଆ ଦି'ପହର । ମୋ ଦିର ଯାଇ ଗାଁର ଉଣ୍ଡି ମୁଣ୍ଡରେ । ଗୋଉ-ନଣିଦଟାକୁ ଭାକିରେ ବାନ୍ଧି ସେଠି ଯାଇ ହାଜର—

୨ସ୍ତ୍ରୀ—କାବା କଥା !

୪ର୍ଥୀ—ହେଇଟି ଆସୁଛନ୍ତି ନଣିନ ଭାଉଜ ଯୋଡ଼ି । ଚାଲି ଦେଖୁଚ, ଯେମିତ ଘୋଡ଼ା ଟାପୁ·· ମଲିମୋର !

୨ସ୍ତ୍ରୀ—କହୁଚତ ବେଶ୍, ହେଲେ ସାତ ପଛରେ ଆସି, ଆପଣା କାମ ଧନ୍ଦା ସାରି ଘରକୁ ଲେଉଟିଲେଣି, ଆଉ ଆମେ ବାଟରେ ହାଟ ଜମେଇ ଥାଏଁ । ଲାଜ ନାହିଁ ତୁମ ମୁହଁକୁ—

( ଲଣ୍ଡଭଣ୍ଡ ହୋଇ ଚାଲିଗଲେ ସମସ୍ତେ )

[ ବିପରୀତ ଦିଗରୁ ଲକ୍ଷ୍ମୀ ପ୍ରବେଶ କଲା ଡାକୁ ଡାକୁ । କାଖରେ ତା'ର କଳସିଟିଏ ଥାଏ ]

ଲକ୍ଷ୍ମୀ—ବେଙ୍ଗ ଅପା···ବେଙ୍ଗ ଅପା ( ଭାରି ଦିକ୍ ସିକ୍ ହୋଇ ୩ସ୍ତ୍ରୀଟି ଫେରି ଠିଆହେଲା ) ପଚାରିବାକୁ ଭୁଲିଗ ଅପା···ପୁଅଟି ତୁମର କେମିତ ଅଛି ? ବଇଦ ଲଗେଇ ଓଷଧ ପାଣି କରୁଚତ ? ହେଳା କରିବନି···ହଁ, କଉଡ଼ି ଲାଗିଲେ—

ଶୁଭଦ୍ରା—( ସେତେବେଳେ ପଛି ଆସିଥାଏ, ଓ କହିଲା ଏହାପରି କଥା ଛଡ଼ାଇ ) ଡରିବନି, ଅପା !— କଉଡ଼ିର ମାଲିକ ହେଉଚନ୍ତି ଲକ୍ଷ୍ମୀ ଠାକୁରାଣୀ, ସେହି ଠାକୁରାଣୀ ନିଜେ ତୁମକୁ ଅଭୟ ଦେଉଚନ୍ତି ।

ଲକ୍ଷ୍ମୀ—ଶୁଭ !

ଶୁଭଦ୍ରା—'ଜଳିଆରୁ ଗଞ୍ଜା' ମୁଁ, ତୁମେଇ ତ ଏ' ଆଖ୍ୟା ଦେଇଚ—ମୋ'ର ଆପତ୍ତି କ'ଣ ?

ଲକ୍ଷ୍ମୀ—ତୁମେ ଗଲ ଚଲ ବାହାରି, ସବୁବେଳେ ଗେଲି ଥାଅ···ଗୋଟାଏ ଦୁଃଖ-ସୁଖ ପଡ଼ିଚି—

ସୁଭଦ୍ରା—ହଉ, ଦୁଃଖ-ସୁଖ ହଉଥାଉ···ଦଅତ ମାଠିଅଟା ( ଖପ୍ କନା କଳସିଟା ଛଡ଼ାଇ ନେଇ ଲକ୍ଷ୍ମୀଠାରୁ ଚାଲିଗଲା )

ଅମ୍ବା—ଭଉଣୀ, ମତେ ବଇଦ ଔଷଧି ପାଣି କଥା କହିବନି, ମୁଁ ଦେବୀ-ଅଣ୍ଡା ନେଇଚି, ସମର୍ପି ଦେଇଚି ମୋ ଫଖାଳିକି ସତ୍ୟ ଗୋସାଇଁ ସତ୍ୟ ଗୋପୀନାଥଙ୍କ ପାଦତଳେ—ସେ ରଖିଲେ ରଖିବେ, ମାରିଲେ ମାରିବେ । ( ପ୍ରସ୍ଥାନ )

ଲକ୍ଷ୍ମୀ—( ଅନ୍ୟମନସ୍କା ହୋଇଗଲେ, ଓ ରୁଦ୍ଧ କଣ୍ଠ ସ୍ୱରରେ ସମ୍ବୋଧନ କରି ଉଠିଲେ ) ଲକ୍ଷ୍ମୀନାଥ !

---

## ଚତୁର୍ଥ ଦୃଶ୍ୟ

—ଗୋପୀନାଥଙ୍କ ମନ୍ଦିର—

[ 'ଲକ୍ଷ୍ମୀନାଥ' ଏହି ଡାକର ପ୍ରତିଡାକ 'ଲକ୍ଷ୍ମୀ' ବୋଲି ଶୁଣାଗଲା ଅତି ଆତୁର କଣ୍ଠରେ । ସଦାନନ୍ଦ ବାବା ଅସ୍ତ ବ୍ୟସ୍ତ ହୋଇ ପଶି ଆସିଲେ ନାଟ ମଣ୍ଡପକୁ । ]

ସଦାନନ୍ଦ— 'ଲକ୍ଷ୍ମୀ' ଡାକର ପ୍ରତିଧ୍ୱନି 'ଲକ୍ଷ୍ମୀନାଥ' । ମୁଁ ଠିକ୍ ଶୁଣିଛି । ପ୍ରାଣରେ ସେହି ଶବ୍ଦର ତରଙ୍ଗ । ସ୍ୱପ୍ନ ନୁହେଁ । କଳ୍ପନା ନୁହେଁ । ପରିସ୍ଥିଏ ଠିକ୍ କହନ୍ତି—ଅନ୍ତ୍ରଣିଆ ମାରୁ ହୁଏ, ଗର୍ଭ ପୁରରେ ଦଅଙ୍କ ଘର ପଡ଼େନା, ଘଣ୍ଟା ବେସୁରା ବାଜେ, ଆରତି ଲିଭିଯାଏ, ଦେବତା ମଳିନ ଦିଶନ୍ତି । ଓଃ ସବୁ କିଛି ଲଣ୍ଡଭଣ୍ଡ···ଆନନ୍ଦ, ଆନନ୍ଦ—

ଆନନ୍ଦ—( ପ୍ରବେଶ ପୂର୍ବକ ) ବାବା !

ସଦାନନ୍ଦ—ତୁମେ କହିପାରିବ—ଦେଉଳରେ ଏ' ଶ୍ରୀ-ବିଶୃଙ୍ଖଳା କାହିଁକି ?

ଆନନ୍ଦ—ମୋ'ର ଲକ୍ଷ୍ମୀ-ଅପା ଚାଲିଗଲା ଦିନୁ, ଦେଉଳର ଶ୍ରୀ ଯେମିତି ଚାଲିଯାଇଛି, ଏଇଯା ମୁଁ ଜାଣେ, ବାବା !

ସଦାନନ୍ଦ—ତୁମେ ଠିକ୍ କହୁଚ, ଆନନ୍ଦ । 'ଲକ୍ଷ୍ମୀ' ବିନା 'ଲକ୍ଷ୍ମୀନାଥ' ତିଷ୍ଠିପାରେ ନା । ଦେଉଳରେ ଲକ୍ଷ୍ମୀ-ପ୍ରତିଷ୍ଠା ହେବ, ତାର ଆୟୋଜନ ମୋତେ ଶୀଘ୍ର କରିବାକୁ ହେବ ।

ଆନନ୍ଦ—ଲକ୍ଷ୍ମୀ ଅପା ମୋ'ର ଫେରି ଆସିବ ? ତା'ର ଆୟୋଜନ କରିବ ବାବା ? ତା' ହେଲେ ମୁଁ ମନଖୁସିରେ ବୀଣା ବଜାଇ ଶିଖିବି, ଖୁବ୍ ଆନନ୍ଦରେ ଗୀତ ଗାଇ ଶିଖିବି—

ସଦାନନ୍ଦ—ଆନନ୍ଦ !

ଆନନ୍ଦ—ବାବା ।

ସଦାନନ୍ଦ—ଆଜି କି ବାର ?

ଆନନ୍ଦ—ଗୁରୁବାର !

ସଦାନନ୍ଦ—ଆଜିର ବାରରେ ରାଜାଙ୍କ ସ୍ନାନ-ନକ୍ଷେତ୍ର ଦିବସ ନା ?

ଆନନ୍ଦ—ବାବା !

ସଦାନନ୍ଦ—ତେବେ ଆଜି ଶ୍ରୀକ୍ଷେତ୍ର ଯିବାର ଆୟୋଜନ କର । ଆଜିଠୁଁ ଧାରଣା ଦେବି । ଏ ଶୁଭ ତିଥିରେ ପ୍ରାର୍ଥୀକୁ ରାଜା କଦାପି ନିରାଶ କରନ୍ତି ନାହିଁ । ରାଜସଭାରେ ଉପସ୍ଥିତ ହୋଇ ସ୍ପଷ୍ଟ ଏତିକି ଜଣାଇବି,—ଅମର ଗୋପୀନାଥ ଶ୍ରୀହୀନ, ସେ ଶ୍ରୀମନ୍ତ ହେବେ, ଏହି ବ୍ୟବସ୍ଥାଟି କରି ଦିଅନ୍ତୁ ।

ଆନନ୍ଦ—ବାଃ···ବା···ମୋ'ର ଶ୍ରୀ ଅପା ଫେରି ଆସିବ—ମୋ'ର ଶ୍ରୀ ଅପା—ହଁ, ଦେଖିବ ବାବା, ପୁଣି ଯେଉଁ କଥାକୁ ସେଇ କଥା ହ'ବ···ତୁମେ ସେମିତି ଗାଇବ, ଲକ୍ଷ୍ମୀ ଅପା ସେମିତି ନାଚିବ, ଲକ୍ଷ୍ମୀ-ନାଥ···

ସଦା—( ବିହ୍ୱଳ କଣ୍ଠରେ ) ଆନନ୍ଦ···

( ଅଣ୍ଟୁ ଦେଖାଗଲା )

ଆନନ୍ଦ—ବା—ବା—

---

## ପଞ୍ଚମ ଦୃଶ୍ୟ

—ଲକ୍ଷ୍ମୀର ଶୟନ-କକ୍ଷ—

[ ଚୌଥିରାତି ଆଜି ନ ଥାଏ । ପଲଙ୍କର ଶଯ୍ୟାରଚନା ଫୁଲ ଶଯ୍ୟାକୁ ବଳି ଲୋଭନୀୟ ହୋଇଥାଏ । ମାତ୍ର ଦୁଇଟି ମଧ୍ୟରେ ବ୍ୟବଧାନ ନଥାଏ । ଲକ୍ଷ୍ମୀର ବେଶ ପରିପାଟି କାହିଁବେ କି'ଣ । ମୁଖ ହସ ହସ

ହୃଏଥାଏ, କିନ୍ତୁ ତାହା ଅକୃତ୍ରିମ ବୋଲି ମନେ ହେଉ ନ ଥାଏ । ଏହି ସମୟରେ ସୁଭଦ୍ରା ପ୍ରବେଶ କରି ଗୋଡ଼ ଟିପି ଟିପି···ଲକ୍ଷ୍ମୀ ଅଜାଣତରେ ଗୃହିଁ ଦେଇ କହିଲେ—]

ଲକ୍ଷ୍ମୀ—କିଏ ?

ସୁଭଦ୍ରା—ଆଉ ତୁମେ ମନେ କରୁଥିଲ···

ଲକ୍ଷ୍ମୀ—ଯାଃ···

ସୁଭଦ୍ରା—'ଯା' ନୁହେଁ ଗୋ 'ନଣନ୍ଦ' । ଆଜି ଭାଇନା ନିଜେ ଫେରୁ ନାହାନ୍ତି, ନୂଆ-ଭାଉଜ । କାଲି ରାତ୍ରି ପରଦିନ ରାଜାଙ୍କ ସ୍ୱ-ନକ୍ଷତ୍ର । ଭାଇନାଙ୍କ ଉପରେ ଏଥର ଉତ୍ସବର ସବୁ ଭାର ।

ଲକ୍ଷ୍ମୀ—ବେଶ୍ ତ, ମୋ'ର କ'ଣ ?

ସୁଭଦ୍ରା—ତେବେ ଏତେ ଆୟୋଜନ ଅକାରଣ କିନା ?
( ପଲଙ୍କ ଓ ଲକ୍ଷ୍ମୀର ବେଶଭୂଷା ପ୍ରତି ଇଙ୍ଗିତ )

ଲକ୍ଷ୍ମୀ—ତୁମେ ଶ୍ରେଷ୍ଠ, ମୁଁ ବଡ଼ ନା ?···

ସୁଭଦ୍ରା—ହେଲେ, 'ଓଳିଅନ୍ଧ ରଜା' ଏ' ନାଁ ତୁମେଇ ରଖିଛ ମୋ'ର—ହାଁ ।

ଲକ୍ଷ୍ମୀ—ରାଗିଲ, ନୂଆ-ନଣନ୍ଦ ?

ସୁଭଦ୍ରା—ରାଗିବାକୁ ?

ଲକ୍ଷ୍ମୀ—ମୋ' ଉପରେ ?

ସୁଭଦ୍ରା—ହଁ, ହଁ ତୁମରି ଉପରେ ।

ଲକ୍ଷ୍ମୀ—କାହିଁକି ଯେ ?

ସୁଭଦ୍ରା—ଆହୁରି ପଚାରୁଛ ?—ନିଜ ମନକୁ ଥରେ ପଚାରି, ବୁଝ । ଏତେ ଦିନ ହେଲା ଏ'ଠାକୁ ଆସିଲଣି, କେଉଁ ଦିନ ଭଲ ଏମିତି ନୂଆ ଜୁଡ଼ା ପାରିଛ, ନୂଆ ଗହଣା ନାଇଛ, ନୂଆ ଟିକା ପିନ୍ଧିଛ, ଆଜି ମୋତେ ବି ଶରଧାକରି ଏମିତି ସଜେଇ ଦେଇଛ ?—

ଲକ୍ଷ୍ମୀ—( କୋହଭରା କଣ୍ଠରେ ) ଶୁଭ ।

ସୁଭଦ୍ରା—ତୁମେ ଏ ଘରକୁ ଆସିଛ ସତ, ହେଲେ ବଣ ମାଳତୀକୁ ଯେମିତି କିଏ ଉପାଡ଼ି ଆଣି ବାଗ ବଗିଚାରେ ରୋଇ ଦେଇଛି । ସେଥିରେ ଫୁଲ ଫୁଟେ ସତ, ହେଲେ ବଣ ମାଳତୀର ଗନ୍ଧ ବାସନା ଆଉ ଶୋଭା ନ ଥାଏ ।

ଲକ୍ଷ୍ମୀ—କ'ଣ ଯେ କୁହ ?

ସୁଭଦ୍ରା—ଭାଇନା ଆଡ଼କୁ ଥରେ ଆଖି ପକାଅ, ଦେଖିବ ନିଜ ରୂପ ।

ଲକ୍ଷ୍ମୀ—ନିଜ ରୂପ ?

ସୁଭଦ୍ରା—ଭାଇନା ଘରକୁ ଆସିଲେ, ଘରେ ରହନ୍ତି ନାହିଁ; ପୋଥି ମେଲାଇ ବସିଲେ, ପୋଥିରେ ମନ ଦିଅନ୍ତି ନାହିଁ; ଭାତ ଥାଳିଆ ବଢ଼ା ହେଲେ, ବିଷ ଥାଳିଆ ମନେ କରନ୍ତି; ତୁମେ ବିଡ଼ିଆ ବଢ଼ାଇ ଦିଅ, ସେ ମୁହଁ ବିଡ଼ି ବିଡ଼ି କରି ଗୁଲିଯାନ୍ତି । କାହିଁକି ? କାହିଁକି ? ବିଜୁଳି ଝଲକରେ ମୟୂର ନାଚେ, ବିଜୁଳିବତୀର ଝଲକରେ ନୁହେଁ ।

ଲକ୍ଷ୍ମୀ—ହଉ, ଏଥର କହିଲ, ମୁଁ ବିଜୁଳିକି ନୁହେଁ ।
( ତକିଆ ତଳୁ ପାନ ଡବା ବାହାର କରି ଆଣି ଦେଖାଇଲେ )

ସୁଭଦ୍ରା—( କୁଣ୍ଢାଇ ପକାଇ ) ସତେ, ନୂଆ-ଭାଉଜ—ଏ' ଘରେ ପୋଥିଗାଦି ଥିଲା ଯେତିକି ଅଡୁଆ—ଦୁହିଙ୍କ ଭିତରେ କାନ୍ଥବାଡ଼ । ତା'କୁ ଭାଙ୍ଗିଛ ସେ' ଘରକୁ ବିଦା କରିଛ, ଭଲ କରିଛ, ଭାଇନା'ଙ୍କ ତଳପ ତକିଆ ସେ ଘରୁ ଆଣି ଏ ଘରେ···

ଲକ୍ଷ୍ମୀ—ଶୁଭ··· ( କପି କରି ଜାବୁଡ଼ାଏ ଦେଲେ )

ସୁଭଦ୍ରା—ମୋତେ ମାଇଲ, ନୂଆ ଭାଉଜ—ତୁମ ହାତ ଚଳିଲା—'ଓଳିଅନ୍ଧ ରଜା'ର କୁଆଁଟିକୁ ମହକ ଭାଙ୍ଗିବାକୁ ତୁମ ମନ ବଳିଲା ?

ଲକ୍ଷ୍ମୀ—ଶୁଭ, ଶୁଭ—ମୋ'ର କସୁର···( କୁଣ୍ଢାଇବାକୁ ଯାଉଥିଲେ )

ସୁଭଦ୍ରା—( ଧରା ନଦେଇ ) କସୁର ତୁମର ନୁହେଁ, କସୁର ଏହି ଜଳକବାଟିର, ତୁମେ ତା'କୁ ଆଗ ବନ୍ଦ କରି ଦିଅତ—ଖିଲ୍‌ଟା କସି କରି, ଦାବ ଲଗାଇ ଦିଅତ—

ଲକ୍ଷ୍ମୀ—( ଗବାକ୍ଷ ପ୍ରତି ଏକ ରହସ୍ୟ ଗମ୍ଭୀର ଦୃଷ୍ଟିରେ ଗୃହିଁ ରହି, ତା'ପର )—

ଖୁବ୍ କସି କରି ଲଟେଇଦେବ ଶୁଭ୍—ଖୁବ୍
ଧାଡ଼ି କରି—( କହୁ କହୁ ଗବାକ୍ଷଦ୍ୱାର ବନ୍ଦ
କରି ଦେଇ ଖିଲ୍ ଲଗାଇ ତା’ ଦାବିବାକୁ
ଲାଗିଲେ )

ଶୁଭଦ୍ରା—( ଶ୍ଳେଷଭରେ ) ଏଥର ଆଉ ଭେଲ୍କି
ଲଟେଇବେ ବଣ ଦେବତା ।—

ଲକ୍ଷ୍ମୀ—ଶୁଭ—

ଶୁଭଦ୍ରା—ଭାଉଜ ! ବଣ-ଦେବତା ତୁମର ପିଛା
ନେଇଛନ୍ତି, ଏକଥା ମୋତେ ଫିଟେଇ କହୁଚ;
ମୁଁ କାହାରିକି ଫିଟେଇବିନି, ଏଇ ଦେଖ କାନରେ
ତମାଗଣ୍ଠି ପକେଇ ରଖିଚି...ହେଲେ ହସିଆର
ଥିବ ନ୍ୟା ଭାଉଜ—

ଲକ୍ଷ୍ମୀ—କଉଁ କଥାକୁ ଯେ ?

ଶୁଭଦ୍ରା—ଖିଡ଼କି ଯେମିତ ନ ଖୋଲ—କେହି
ଡାକିଲେ ଯେମିତ ନଶୁଣ,—ତୁମକୁ ଭାଇନାଙ୍କ
ରାଣ, ହାଁ—( ପଳାଇଗଲା )

ଲକ୍ଷ୍ମୀ—ଶୁଭ...

[ ବ୍ୟଥାଭରା ଚିତ୍ତ ଘେନି ଅଗ୍ରସର ହେଲେ,
ପଲଙ୍କରେ ଉପବେଶନ କଲେ ଖଟ ବାଡ଼କୁ
ଆଉଜି; ତା’ପରେ କାନ୍ଦିବାକୁ ଲାଗିଲେ କଇଁ କଇଁ
ହୋଇ ଏବଂ ସେହି ଅବସ୍ଥାରେହିଁ ନିଦେଇ
ପଡ଼ିଲେ ଅବସନ୍ନ ହୋଇ ]

---

## ସ୍ୱପ୍ନ-ଦୃଶ୍ୟ

[ ଅନ୍ଧକାର ହୋଇଗଲା । କ୍ରମେ ଛାୟା ଫିକା
ପଡ଼ି ଆସିଲା । ଝାପସା ଆଲୋକରେ ଦେଖାଗଲା,
—ଘନସାନ୍ନିଧ ହୋଇ ଲକ୍ଷ୍ମୀ ଓ ଗୋପୀନାଥ
ପଲଙ୍କରେ ଉପବିଷ୍ଟ । ]

ଗୋପୀନାଥ—(ଅତି ସରାଗରେ) ଲକ୍ଷ୍ମୀ—!

ଲକ୍ଷ୍ମୀ—ଲକ୍ଷ୍ମୀ-ନାଥ !—ଏଁ, ତୁମେ ଆସିଚ ?—

ଗୋପୀନାଥ—(ସସ୍ମିତେ) ଆସିଚି ନୁହେଁ, ଏକାବେଳେ
ଘର ଭିତରେ, ପଲଙ୍କ ଉପରେ, ତୁମରି ଘନ-
ସନ୍ନିଧିରେ । ଅବାକ୍ ହେବନି ଲକ୍ଷ୍ମୀ !—ସେତ
ତୁମରି ଆବାହନ, ନ ଆସି ମୋର ଗତି କଣ,
କୁହ ?

ଲକ୍ଷ୍ମୀ—ମୋର ଅବାହନ !—

ଗୋପୀନାଥ—ନୁହେଁ ? ଗବାକ୍ଷର ଦ୍ୱାର ଆଜି ଜୋର୍
କରି ବନ୍ଦ କରି ଦେଇଛ, ହେଲେ—

ଲକ୍ଷ୍ମୀ—ହେଲେ ?

ଗୋପୀନାଥ—ବକ୍ଷର ଦ୍ୱାର ସେତିକି ଖୋହଲ କରି
ଦେଇଚ କିନା କୁହତ, ଲକ୍ଷ୍ମୀ !—

ଲକ୍ଷ୍ମୀ—( ଶୁଭର ଶେଷୋକ୍ତିର ଶେଷ ପଦକ ସ୍ମରଣ କରି
ଆତଙ୍କିତା ହୋଇ ଉଠିଲେ )

( ଶୁଭର କଣ୍ଠସ୍ୱର )—“ଖିଡ଼କି ଯେମିତ ନ ଖୋଲ,
କେହି ଡାକିଲେ ଯେମିତ ନଶୁଣ; ତୁମକୁ ଭାଇନାଙ୍କ
ରାଣ, ହାଁ”—

ଗୋପୀନାଥ—ଭାଇନାଙ୍କ ରାଣକୁ ଡରୁଛ ?—ଲକ୍ଷ୍ମଣ
ପରି କୁଟୀର ଛାଡ଼ି ଗଲା ବେଳେ ରାମଙ୍କ ରାଣ
ପକେଇ, ଛନଗାର କାଟି ଦେଇ ସୀତାଙ୍କୁ ଅଟକ
କରି ଯାଇଥିଲେ, ସତୀ ତା’ ମାନିଲେ ? କହିବ,
ମାୟା ଭ୍ରମରେ ପଡ଼ି ସେ ଗାର ଡେଇଁ ଥିଲେ;
ତା’ ନୁହେଁ ତାଙ୍କର ନାରୀ-ପ୍ରାଣ କାନ୍ଦି ଉଠିଥିଲା,
ସେହି ଆବେଗରେ ସେ ଖସି ଯାଇଥିଲେ । ତୁମର
ବି ସେଇପରି ପ୍ରାଣ-ପ୍ରାଚୁର୍ଯ୍ୟ ଅଛି, ନିଷେଧର
ବନ୍ଧ ତୁମକୁ ଅଟକାଇ ପାରିବନି । ଆହୁରି ସୀତା
ଠାକୁରାଣୀ ଦେଇଥିଲେ ଭିକ୍ଷା ମାୟାଯତିକି,
ଲକ୍ଷ୍ମୀଠାକୁରାଣୀ ଦେବେ ଭିକ୍ଷା ମାୟାଧରକୁ ।
‘ଭିକ୍ଷାଂ’ ଦେହି...‘ଭିକ୍ଷାଂଦେହି’...‘ଭିକ୍ଷାଂ...’...

ଲକ୍ଷ୍ମୀ—[ ଅନାସୃତ ହୋଇ ଅଧର ଭିକ୍ଷା ଦାନ
କରିବାକୁ ଯାଉଥିଲେ — ଏହି ସମୟରେ
ବିଷ୍ଣୁ ପ୍ରବେଶ କଲେ ଅଧୀର ଭାବରେ ।
ଗୋପୀନାଥ ଅନ୍ତର୍ଦ୍ଧାନ ହୋଇଗଲେ । ତରବର
ହୋଇ ଗଲାବେଳେ ବଂଶୀ ଓ ନୂପୁର ପଟେ
ଛାଡ଼ିଗଲେ । ସ୍ତିମିତ ଆଲୋକ ଉଜ୍ଜ୍ୱଳ ହୋଇ
ଉଠିଲା ]

ବିଷ୍ଣୁ—ଲକ୍ଷ୍ମୀ !—

ଲକ୍ଷ୍ମୀ—ଏଁ—[ ନାଦବୋଲା ଆଖି ମଳୁ ମଳୁ ]

ବିଷ୍ଣୁ—କିଏ ଏ'ଘରେ ଥିଲା ?—ତା' ସଙ୍ଗେ ତୁମେ କଥା କହୁଥିଲ ? ତା'କୁ ଅଧର ସୁଧା ପରଷୁଥିଲ ? କିଏ ପାନ କରିବାକୁ ଅଧୀର ହୋଇ ପଡ଼ିଥିଲା ? ( ଢଷର ଗୁରୁପଣ୍ଠ ଅଣ୍ଡାଳ, ଖେଦ ଭୁଲିବାକୁ ଲାଗିଲେ )

ଲକ୍ଷ୍ମୀ—( ଧରି ପକାଇ ) ସ୍ୱାମୀ···ତୁମେ ବାସ୍ତୁ ବାତୁଳ ହେଲନା କି'ଣ ?—କେହି ତ ଏ ଘରେ ନଥିଲେ ।

ବିଷ୍ଣୁ—ତୁମେ ସତ କହୁଚ, ଘୋଡ଼ାଉ ନାହିଁତ କିଛୁ ?

ଲକ୍ଷ୍ମୀ—ସନ୍ଦେହ ?—

ବିଷ୍ଣୁ—ସନ୍ଦେହ, ସନ୍ଦେହ, ଲକ୍ଷ୍ମୀ···ଦୀର୍ଘଦିନର ସନ୍ଦେହ ଆଜ ମାତ୍ରା ଅତିକ୍ରମ କରିଚି ।—ତଥାପି—

ଲକ୍ଷ୍ମୀ—କି'ଣ ?—

ବିଷ୍ଣୁ—ତୁମ ପ୍ରତି ରହିଚି ମୋ'ର ଅଗାଧ ବିଶ୍ୱାସ ।

ଲକ୍ଷ୍ମୀ—ଏମିତି ଓଲଟା ଓଲଟି କରି କହିବାର ଅର୍ଥ ?

ବିଷ୍ଣୁ—ମନୋବିଜ୍ଞାନୀମାନେ କହିଥା'ନ୍ତି—ଏସାରେସି ଭାବରୁ ଈର୍ଷା, ଈର୍ଷାରୁ ସନ୍ଦେହ ଜାତ ହୁଏ; ପୁଣି ଏହି ସନ୍ଦେହର ପ୍ରକାର-ଭେଦ ମଧ୍ୟ ଥାଏ ।

ଲକ୍ଷ୍ମୀ—କିପରି ?

ବିଷ୍ଣୁ—ବିଶ୍ୱାସ ଥାଇ ସନ୍ଦେହ, ବିଶ୍ୱାସ ନ ଥାଇ ସନ୍ଦେହ ।

ଲକ୍ଷ୍ମୀ—ଫରକ ?

ବିଷ୍ଣୁ—ଆକାଶ-ପାତାଳ ।

ଲକ୍ଷ୍ମୀ—କେମିତି ?

ବିଷ୍ଣୁ—ଯେଉଁଠି ବିଶ୍ୱାସ ନ ଥାଇ ସନ୍ଦେହ, ସେ'ଠି ସନ୍ଦେହୀ କରିଥାଏ ଗୁପ୍ତ-ଚର ବୃତ୍ତି, ସତ୍ୟକୁ ମିଥ୍ୟା, ମିଥ୍ୟାକୁ ସତ୍ୟ ମଣିଥାଏ, ଉଦ୍‌ଭ୍ରାନ୍ତ ହୋଇଯାଏ, ଆତତାୟୀ ହେବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଏ ନା ।

ଲକ୍ଷ୍ମୀ—ଆଉ ଯେଉଁଠି ବିଶ୍ୱାସ ଥାଇ ସନ୍ଦେହ, ସେ'ଠି···?

ବିଷ୍ଣୁ—ସନ୍ଦେହୀ ଗୁପ୍ତଚର ବୃତ୍ତି କରେନା, ତରେ ବରଂ ଅନ୍ତ ପୀଡ଼ନ, ସତ୍ୟ-ମିଥ୍ୟାର ଦ୍ୱନ୍ଦରେ ପଡ଼ି ଉଦ୍‌ଭ୍ରାନ୍ତ, ଆତତାୟୀ ହୋଇପଡ଼େ ନା, ବରଂ ହୁଏ ଉଦାର, ଆତ୍ମତ୍ୟାଗୀ; ସନ୍ଦେହ-ରାକ୍ଷସକୁ ମଧ୍ୟ କରିଥାଏ ଧ୍ୱଂସ ।

ଲକ୍ଷ୍ମୀ—ସେହି ବିଶ୍ୱାସ ତୁମର ଅଟୁଟ ରହୁ, ସ୍ୱାମୀ ।

ବିଷ୍ଣୁ—ମୁଁ ସନ୍ତୁଷ୍ଟ ! ବେଶ୍···ତୁମେ ଯାଇ ତୁମର ପଲଙ୍କ ଶଯ୍ୟା ଗ୍ରହଣକର—ମୁଁ ଯାଇ···

ଲକ୍ଷ୍ମୀ—ନା, ମୋତେ ଆଜ ଏକୁଟିଆ ଭାରି ଡର ମାଡ଼ୁଚି—( ବ୍ରୀଡ଼ାବନତା ହେଲେ )

ବିଷ୍ଣୁ—( ଚିବୁକ ଧରି ) କାହିଁ ଆଜି ତ ସେକଥା କହୁନ ?

ଲକ୍ଷ୍ମୀ—ଯାଃ···( ପଳାଇ ଯାଉଥିଲେ )

ବିଷ୍ଣୁ—ତା' ହବନି···

[ ଦୁହେଁ ଲଗାଲଗି ହୋଇ ଠିଆହେଲେ ଓ ମନର ଆନନ୍ଦରେ ପଲଙ୍କଆଡ଼େ ଅଗ୍ରସର ହେଲେ । ହଠାତ୍ ନୂପୁର ଓ ବଂଶୀ ଦେଖିବାରୁ ବିଷ୍ଣୁ ତାଟଙ୍କା ହୋଇଗଲେ । ଲକ୍ଷ୍ମୀ ମଧ୍ୟ ବିସ୍ମୟରେ ଅଭିଭୂତା ହୋଇଗଲେ ଦ୍ରବ୍ୟ ଗୁଡ଼ିକ ଧରି, ନିରିଖିଦେଖି ନିଃସଂକୋଚରେ କହିଲେ—]

ଲକ୍ଷ୍ମୀ—ଏହି ନୂପୁର, ବଂଶୀତ ଗୋପୀନାଥଙ୍କର ।

ବିଷ୍ଣୁ—ଏ'ଠାକୁ ଆସିଲା କେମିତି ?

ଲକ୍ଷ୍ମୀ—ସେଇଗ୍ରା ତ ।

ବିଷ୍ଣୁ—'ସେଇଗ୍ରାତ' । ତୁମେ ଜାଣନା ?···ଅଭୁଭ ଛଳନା ?···

ଲକ୍ଷ୍ମୀ—ମୁଁ ସତ କହୁଚି । ବିଶ୍ୱାସ କର ।

ବିଷ୍ଣୁ—ବିଶ୍ୱାସ !—ହାଃ ହାଃ ହାଃ ହାଃ । ହଁ, ହଁ, ବିଶ୍ୱାସ କରିବି···ତୁମର ଯୌବନ-ସାଥି ହେଉ-ଲର ଅତି ପ୍ରିୟ ବାନ୍ଧବ କେହି ଏହି ପ୍ରାଣପ୍ରିୟ ଜନିସ ଗୁଡ଼ିକ ତୁମକୁ ପ୍ରୀତି ଉପହାର ଦେଇ, ହୋଇଥିଲେ ଅନ୍ତର୍ଦ୍ଧାନ । ଗୁପ୍ତ ପ୍ରଣୟର ସେହି ସଂକେତ ଗୁଡ଼ିକ ଲୁଚାଇବାକୁ ଭୁଲିଯାଇ, ଭୁଲିଯାଇଥିଲ ମୋତେ । କାଳେ ଯେମିତି ଧରା ନପଡ଼େ, ସେଥିପାଇଁ ଆଜି ଶଯ୍ୟା-ନିମନ୍ତ୍ରଣ ?

—ସ୍ୱାମୀଙ୍କୁ ଉତ୍କୋଚ ଦାନର ଉଆଣ ? ବାଟପୀ···
କୁଳଟା—( କ୍ରୋଧାନ୍ଧ ହୋଇ ଲକ୍ଷ୍ମୀର କଣ୍ଠ ଦେଶ ଧାରଣ କଲେ )

ଲକ୍ଷ୍ମୀ—ବିଶ୍ୱାସର ଆଲୋକ ଲିଭାଇ ଦିଅନାହିଁ ।

ବନ୍ଧୁ—( ହଠାତ୍ ପ୍ରଶମିତ ହୋଇଗଲେ । ଟଳି ଟଳି ପଲଙ୍କ ଉପରେ ଢଳି ପଡ଼ିଲେ । ଅଶ୍ରୁର ପ୍ଲାବନରେ ଶେଯ ତନ୍ଦ୍ରାଇ ବୁଡ଼ାଇ ଦେଲେ । ) ଲକ୍ଷ୍ମୀ, ମୁଁ ଭୁଲ କରିଛି ।

ଲକ୍ଷ୍ମୀ—ମୁଁ ଭୁଲ କରିଛି । ନାଥ ଯେଉଁ ସ୍ୱପ୍ନ ଦେଖେଁ, ତା' ସ୍ୱାମୀଙ୍କୁ ଫିଟାଇ କହିବା ଉଚିତ ଥିଲା ସ୍ତ୍ରୀର । ଆଜି ସେହି ସ୍ୱପ୍ନର ଚୂଡ଼ାନ୍ତ ଘଟିଛି ।

ବନ୍ଧୁ—ସ୍ୱପ୍ନ ?···

ଲକ୍ଷ୍ମୀ—ସ୍ୱପ୍ନ ଯଦି ହେବ, ତେବେ ଏ' ନୂପୁର, ବଂଶୀଟି ସ୍ୱପ୍ନ ନୁହେଁ ?

ବନ୍ଧୁ—ଲକ୍ଷ୍ମୀ ! ସ୍ୱପ୍ନର ବିବରଣୀ ମୋତେ ଟିକିନିଖି କରି କୁହତ ?···ଅନ୍ଧକାର ମଧ୍ୟରେ ମୁଁ ଯେମିତି ଗୋଟା ଏ ଆଲୋକର ରଶ୍ମି ଦେଖିବାକୁ ପାଉଛି ? ତୁମେ ଜାଣନା, ଲକ୍ଷ୍ମୀ—ସ୍ୱପ୍ନହିଁ ସତ୍ୟର ଆଭାସ, ପୁଣି ସତ୍ୟ ବୋଲି ଲୋକେ ଯାହା କହୁଥା'ନ୍ତି, ତାହା ମଧ୍ୟ ସ୍ୱପ୍ନ—ପରମ ସତ୍ୟର ଇଙ୍ଗିତ । ଭଗବାନ ପରମ-ସତ୍ୟ,—ଏହି ଗୋ-ପୀ-ନା··· (ପୋଥିଗାଦି ନ ଦେଖି) କାହିଁ କାହିଁ ପୋଥିଗାଦି··· କାହିଁ ଗୋପୀନାଥ ?

ଲକ୍ଷ୍ମୀ—ମୁଁ ପାଖ ଘରେ ଥୋଇ ଦେଇଛି— ।

ବନ୍ଧୁ—ତାହେଲେ ତୁମେ ଏ'ଘର ଆଗରୁ ଖାଲି କରି ରଖିଥିଲ, ସ୍ୱୟଂ ଗୋପୀନାଥ ବିରାଜମାନ ହେବେ ବୋଲି ? ଏ ତୁମ-ମନର ଖିଆଲ ନୁହେଁ, ଲକ୍ଷ୍ମୀ, ଯା. ଘଟିବ ତା'ର ପୂର୍ବାଭାସ, ତୁମେ ତୁମ ଅଜାଣି-ତରେ ବୁଝି ପାରିଥିଲ, ସେଥିପାଇଁ ପୂଜାର ବ୍ୟବସ୍ଥା ଖଞ୍ଜି ରଖିଥିଲ । କୁହ, କୁହ, ଲକ୍ଷ୍ମୀ—କି ସ୍ୱପ୍ନ ଦେଖିଥାଅ ନିତି ?—କି ବେଶରେ ଗୋପୀନାଥ ଦେଖା ଦେଇଥିଲେ ଆଜି ? ( ବଂଶୀ ଓ ନୂପୁର ଘେନି ବୁକୁରେ ରଖି ) ଚରଣେ ନୂପୁର ଥାଇ, ଅଧରେ ବଂଶୀ ଘେନିଥ ?—କୁହ କୁହ—ନା, ନା. ତୁମେ ଆଗେ ବସ—ବସତ ଏ' ପଲଙ୍କରେ··· ( ବସାଇଲେ )

ଲକ୍ଷ୍ମୀ—( ଉପବେଶନ କଲେ )

ବନ୍ଧୁ—( ପଦପ୍ରାନ୍ତେ ବସି, ଲକ୍ଷ୍ମୀର ପାଦକୁ ହାତ ବଢ଼ାଇଲେ )—

ଲକ୍ଷ୍ମୀ—ସ୍ୱାମୀ···ସ୍ୱାମୀ··· ( ଚରଣ ସଙ୍କୁଚିତ କରି ନେଲେ )

ବନ୍ଧୁ—ମନା କରନା—ମନା କରନା— । ( ଭାବା-ବେଶରେ ) 'ଦେହି ପଦ ପଲ୍ଲବମୁଦାରଂ', ଅପୂର୍ଣ୍ଣ ଶ୍ଲୋକର ଏହି ପାଦଟି ପୂର୍ଣ୍ଣ କରିଥିଲେ ଦିନେ ଭାବ-ଚିନ୍ତାମଣି, ଆଜି ସେହି ଲେଖାଟି ସାର୍ଥକ କରିବେ, ସେଥିପାଇଁ ଲକ୍ଷ୍ମୀଙ୍କ ପାଦ ଧାରଣ କରିଥିଲେ ପ୍ରେମ-ଚିନ୍ତାମଣି !···ସେହି ପାଦ-ପରଶ ଦିଅ ମୋତେ, ଲକ୍ଷ୍ମୀ—

ଲକ୍ଷ୍ମୀ—( ବନ୍ଧୁର ଏହିପରି ଉକ୍ତିରେ ଆତ୍ମନିର୍ଯାତନର ଶେଷ ସୀମାରେ ପହଞ୍ଚି ସ୍ତମ୍ଭିଭୂତ ହୋଇ ଯାଇଥିଲେ )

ବନ୍ଧୁ—ତୁମେ ମାନ କଲ ? ମୁଁ ବିଦ୍ରୂପ, ବାଗୁଳତା କରୁଛି ବୋଲି ? ଈର୍ଷାର ଅଭାବ ଦେଖାଇବାକୁ ଯାଇ ଈର୍ଷାଭାବ ଦେଖାଉଛ, ନା ?···ବିଶ୍ୱାସର ପରିଚୟ ଦେବାକୁ ଯାଇ, ଅବିଶ୍ୱାସ ସାର କରୁଛ, ନା ?

ଲକ୍ଷ୍ମୀ—ସ୍ୱାମୀ !

ବନ୍ଧୁ—ମୁଁ ଭୁଲିଛି । ତୁମେ କୁହ ତୁମ ସ୍ୱପ୍ନ-କଥା ! ମୁଁ ହସି ହସି ଶୁଣିବି, ତୁମେ ହସି ହସି କହିବ—କୁହ, ହସ—ହସ—

ଲକ୍ଷ୍ମୀ—( ହସିବାର ଚେଷ୍ଟା କଲେ )

ବନ୍ଧୁ—ସେମିତି ଦରଫୁଟା ହସ ନୁହେଁ, ଏମିତି ବୁକୁଫଟା ହସ—ହାଃ—ହାଃ—ହାଃ—ହାଃ—

ଲକ୍ଷ୍ମୀ—ସ୍ୱା—ମୀ—(ଅଜାଡ଼ି ହୋଇ ପଡ଼ିଲେ ବନ୍ଧୁଙ୍କ ଚରଣ ତଳେ ଓ ଅଶ୍ରୁର ଅବିରାମ ଧାରାରେ ତାହା ଧୌତ କରିଦେଲେ )

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଉତ୍କଳ ରାଜସଭା—

[ ପାତ୍ର, ମନ୍ତ୍ରୀ, ସଭାପଣ୍ଡିତ ଆଦିଙ୍କ ସହ ରାଜା ଆସୀନ । ମାହାରୀ ନର୍ତ୍ତକୀ ନୃତ୍ୟ ସାରି ଯଥା ସମ୍ମାନ ଦେଖାଇ ଚାଲିଗଲେ ]

ରାଜା—ସଭା ରହୁ ।

ବସ୍ତୁ—ମହାରାଜ !

ରାଜା—ମୋର ଆଜି ସ୍ୱ-ନକ୍ଷତ୍ର ଦିବସ ।

ବସ୍ତୁ—ଜାଣୁ ।

ରାଜା—ଉତ୍ସବର ଆୟୋଜନ ଭାର ଦେଇଥିଲି ତୁମ ଉପରେ—

ବସ୍ତୁ—ମଣିମା ତ୍ରୁଟିହୀନ ବୋଲି—

ରାଜା—ତା' ତ୍ରୁଟିହୀନ, ତଥାପି ମୋର ଅତୃପ୍ତି ରହିଯାଇଛି ।

ବସ୍ତୁ—( ଶଙ୍କା ମିଶ୍ରିତ ବିସ୍ମୟ ପ୍ରକାଶ କଲେ )

ରାଜା—( ସସ୍ମିତେ ) ଭୟ ବା ବିସ୍ମୟର କାରଣ ନାହିଁ । ନୃତ୍ୟ ଗୀତ, ଧନ ଦାନ, ମିଷ୍ଟାନ୍ନ ଭୋଜନ, ଉପାଧି ବିତରଣ ଏ ସବୁ ଅତି ମାମୁଲି ପ୍ରଥା; ମୁଁ ଆଜିର ଦିବସକୁ ଏପରି ଗୋଟିଏ ସ୍ମୃତି ସଙ୍ଗେ ଜଡ଼ିତ ରଖିବାକୁ ଇଚ୍ଛା କରେ, ଯାହା ଯୁଗର ସାକ୍ଷ୍ୟ ହୋଇ ରହିବ ଜାତୀୟ ଇତିହାସ ପୃଷ୍ଠାରେ । ତୁମେ ସେମିତି କିଛି ସ୍ମୃତିର ସଙ୍କେତ ଦେଇ ପାରିବ ?

ବସ୍ତୁ—ଦେଇ ପାରିବି ମଣିମା—ମୁଁ ପ୍ରସ୍ତାବର ସୁଯୋଗହିଁ ଅନ୍ୱେଷଣ କରୁଥିଲି ।

ରାଜା—ବେଶ୍ କି ସଙ୍କେତ କୁହ ?

ବସ୍ତୁ—ଆପଣଙ୍କ ପୂର୍ବ ପୁରୁଷମାନେ ନାନା ଅବଦାନ ରଖି ଯାଇଛନ୍ତି; ଯେମିତି···

ରାଜା—କହିଯାଅ ।

ବସ୍ତୁ—ରାଜା ଇନ୍ଦ୍ରଦ୍ୟୁମ୍ନ ବଡ଼ ଦେଉଳ ତିଆରି କରି ଅମର । ଯଯାତି, ଅନଙ୍ଗଭୀମ ଦେବ ପ୍ରଭୃତି ମନ୍ଦିର ସ୍ଥାପତ୍ୟ ଓ ପରିକଳ୍ପନାର ବ୍ୟବସ୍ଥା କରି ଧନ୍ୟ । ଭୁବନେଶ୍ୱର ଆଜି ଭାସ୍କର୍ଯ୍ୟ ଶିଳ୍ପର ଚିତ୍ରାଗାର, ଏଥିପାଇଁ ଲଲାଟେନ୍ଦୁ କେଶରୀ ଚିର ସ୍ମରଣୀୟ । ସୂକ୍ଷ୍ମ କାରୁ କଳାର ପ୍ରତୀକ କୋଣାର୍କର ସୂର୍ଯ୍ୟ ମନ୍ଦିର ଦିନେ ଧୂଳିରେ ମିଶିଯିବ, ତଥାପି ରାଜା ନରସିଂହ ଦେବଙ୍କ ଖ୍ୟାତି ଲିଭିଯିବ ନାହିଁ ଧରା ବକ୍ଷରୁ ।

ରାଜା—ମହତ୍ ସେମାନେ, ନମସ୍ୟ । ସେମାନଙ୍କ ସଙ୍ଗେ ସମତୁଲ ହେବାର ଯୋଗ୍ୟତା ବା ଦୁରାକାଙ୍କ୍ଷା ମୋର ନାହିଁ । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇଲା ଭଳି ହାସ୍ୟକର । ତେବେ ସେମାନଙ୍କର କୌଣସି କୀର୍ତ୍ତି ଅସମ୍ପୂର୍ଣ୍ଣ ଥିଲେ ତାହା ପୂର୍ଣ୍ଣ କରି ଚରଣ ଧୂଳିର ଯୋଗ୍ୟ ହେବି, ଏହି ଭଳି କୀର୍ତ୍ତିର ସୂଚନା ଦେଇ ପାରିବ ତ କୁହ ।

ବସ୍ତୁ—ସେହିଭଳି କୀର୍ତ୍ତି ଅଛି, ମଣିମା ।

ରାଜା—ବେଶ୍ କୁହ ।

ବସ୍ତୁ—ଆମ୍ଭ ଯେଉଁ ସୂର୍ଯ୍ୟବଂଶର ରାଜା, ସେହି ବଂଶର ମହୁଡ଼ମଣି ଶ୍ରୀ ପୁରୁଷୋତ୍ତମ ଦେବ କାଞ୍ଚି ଜିଣିଥିଲେ । ପଦ୍ମାବତୀଙ୍କ ଅଭିଳାଷ କ୍ରମେ ସାକ୍ଷୀଗୋପାଳଙ୍କୁ କାଞ୍ଚିରୁ ଆଣିଥିଲେ । ଶ୍ରୀକ୍ଷେତ୍ରର ଅଦୂରେ ସତ୍ୟବାଦୀର ବକୁଳ ବଣରେ ଦେଉଳ ତୋଳାଇ ଥିଲେ ଓ ସେଥିରେ ବିରାଜମାନ କରାଇ ଥିଲେ ।

ରାଜା—ତା'ଜାଣେ । ଆହୁରି କି ଜାଣେ, ଏହି ଗୋପୀନାଥ କେବଳ ସତ୍ୟର ଦେବତା ନୁହନ୍ତି, ପ୍ରେମର ଠାକୁର ମଧ୍ୟ । କୁହ, ତାଙ୍କର କି ଅଭାବ ପୂର୍ଣ୍ଣ କରିବାକୁ ହେବ ?

ବସ୍ତୁ—ସେହି ପ୍ରେମର ଠାକୁର ଆଜି ଦେଉଳରେ ଏକାକୀ । ପ୍ରେମର ଠାକୁରାଣୀ ନାହାନ୍ତି ପାର୍ଶ୍ୱଦେଶ ମଣ୍ଡିବାକୁ ।

ରାଜା—ସତେତ । ପ୍ରେମର ବିକାଶ ଏହି ସୃଷ୍ଟି; ତାର ମୂଳାଧାର ପୁରୁଷ ଓ ପ୍ରକୃତି; ଏହି ମୌଳିକ ଧାରଣାକୁ ଭିତ୍ତିକରି ମାନବ ତାର ନାନାଶିଳ୍ପ କୃଷ୍ଟି ଓ ସଂସ୍କୃତିକୁ ରୂପ ଦେଇଥାଏ ।

ଶାସ୍ତ୍ରର ସେହି ବିଚାରଧାରାରେ ଏଭଳି ସୃଷ୍ଟି
ରହିଯାଇଛି ଏହି ପୀଠ ସ୍ଥାନରେ, ଆଶ୍ଚର୍ଯ୍ୟ !
ତୁମକୁ ଭାର ଦଅଗଲା ସଭା-ରତ୍ନ, ତୁମେ କରିବ
ଶ୍ରୀରାଧାଙ୍କ ସୁବର୍ଣ୍ଣ ପ୍ରତିମା ଗଢ଼ିବାର ବ୍ୟବସ୍ଥା;
ଆଜି ତୁମ ଉପରେ ଭାର ରହିଲା ଧୀର-ପ୍ରାଜ୍ଞ,
ଆସନ୍ତା ପୂର୍ଣ୍ଣିମାଦିନ ମୂର୍ତ୍ତି ସ୍ଥାପନ ହେବ—
ସାଡ଼ମ୍ବରେ—ମୋର ଉପସ୍ଥିତିରେ ।

ମନ୍ତ୍ରୀ—ଯଥାଦେଶ ମହିମା ?

ରାଜା—ବେଶ୍ ରାଜସଭା ଭଙ୍ଗହେଉ, ହଁ ଧୀର-ପ୍ରାଜ୍ଞ,
ରାଜସ୍ୱର୍ଣ୍ଣକାର !

ମନ୍ତ୍ରୀ—ଅବିଳମ୍ବେ ଉପସ୍ଥିତ କରାଉଛି ! ( ପ୍ରସ୍ଥାନ )
( ରାଜା ଓ ବିଦୂଷକ ବ୍ୟତୀତ ସମସ୍ତେ ଚାଲିଗଲେ )

ରାଜା—ମୋର ପ୍ରମାତାମହୀ ପଦ୍ମାବତୀ ଶ୍ରୀ ଗୋପୀନାଥଙ୍କ
ନିକଟରେ ଋଣୀ ଥିଲେ । ଶ୍ରୀରାଧାମୂର୍ତ୍ତିପ୍ରତିଷ୍ଠା
ଫଳରେ ତାଙ୍କର ସେହି ଋଣ ଶୋଧ ହେବ । ମୁଁ
ନିଜକୁ ଭାଗ୍ୟବାନ୍ ମଣିବି ।

ବିଦୂଷକ—ସପାଳ ମଧ୍ୟ ଏଥିରୁ ଅଦର୍ଶ ଲାଭ କରିବ,
ମହିମା—

[ ସଦାନନ୍ଦର ପ୍ରବେଶ ]

ସଦାନନ୍ଦ—ହେଲେ ଶ୍ରୀରାଧା ଯେବେ ଶ୍ରୀଗୋପୀନାଥ
ସନ୍ତୁଷ୍ଟ ହେବେକି ମହାରାଜ । ପ୍ରୟୋଜନ
ଶ୍ରୀ ଲକ୍ଷ୍ମୀ ।

ରାଜା—ଆପଣ ?

ସଦାନନ୍ଦ—ମୁଁ ସଦାନନ୍ଦ ବାବା ।

ରାଜା—ଶ୍ରୀଗୋପୀନାଥଙ୍କ ମନ୍ଦିରରେ ଦେଖିଛି ଯେମିତି,
ସ୍ମରଣ ହେଉଛି ।

ସଦାନନ୍ଦ—ମୁଁ ଅନ୍ଧ ନାଗର, ତଥାପି ମନ୍ଦିର ଦେଖା
ଶୁଣାର ଭାର ମୋର ଉପରେ ନ୍ୟସ୍ତ କରିଥିଲେ,
ମହିମା !

ରାଜା—ମନ୍ଦିରର ବଡ଼ପଣ୍ଡା ପରଶୁ ବାବାଙ୍କ ବହୁ
ସୁଖ୍ୟାତି କରିଥିବାରୁ ଅବଶ୍ୟ । ହଁ, ଶ୍ରୀରାଧା
ପରିବର୍ତ୍ତେ ଶ୍ରୀଲକ୍ଷ୍ମୀ, ଏପରି କହିବାର ତାତ୍ପର୍ଯ୍ୟ ?

ସଦାନନ୍ଦ—ଅଛି ମହାରାଜ !

ରାଜା—ମୁଁ ଶୁଣିବି ! —ଆପଣ ଉପବେଶନ କରନ୍ତୁ !
( ବସାଇ ଦେଲେ )

ସଦାନନ୍ଦ—ସାଧୁ ! ସାଧୁ ! ଗ୍ରହୁ ଆସନ ଗ୍ରହଣ……

ରାଜା—କରିଛି, ବାବା ! ଆପଣ ଏଥର କୁହନ୍ତୁ !

ସଦାନନ୍ଦ—ଭକ୍ତ କବି ଜୟଦେବ 'ଶ୍ରୀ ଗୀତଗୋବିନ୍ଦ'
ରଚନା କରି ଶ୍ରୀ ଗୋବିନ୍ଦଙ୍କ ପ୍ରୀତି ସମ୍ପାଦନ
କରିଥିଲେ ।

ରାଜା—ତା' ଜାଣେ; ଆହୁରି ଜାଣେ—ଏହି
କାରଣରୁ ଶ୍ରୀ ଜଗନ୍ନାଥଙ୍କ ବଡ଼ସିଂହାର ବେଶ
ବେଳେ 'ଗୀତ ଗୋବିନ୍ଦ' ବୋଲା ହୋଇଥାଏ ।

ସଦାନନ୍ଦ—ବଡ଼ ଦେଉଳର ଏହି ନୀତି ଅନୁକରଣରେ
ବକୁଳ ବନ ଦେବତା ଶ୍ରୀ ଗୋପୀନାଥ ପ୍ରୀତ
ହେବେ, ଏଥିପାଇଁ ଖଞ୍ଜିଥିଲି ତାଙ୍କର ବଡ଼
ସିଂହାର ବେଶ । ସେହି ବେଶ ବେଳେ ମୁଁ ବୀଣା
ବଜାଇ ଗାଏଁ ଗୀତଗୋବିନ୍ଦ, ଆଉ ତା'କୁ
ପ୍ରାଣବନ୍ତ କରି ଠିଆ କରେ ନାନା ନୃତ୍ୟ ଭଙ୍ଗିରେ
ଲକ୍ଷ୍ମୀ ।

ରାଜା—ଲକ୍ଷ୍ମୀ ?

ସଦାନନ୍ଦ—ବଡ଼ ପଣ୍ଡା ପରଶୁଙ୍କ କନ୍ୟା ।

ରାଜା—କନ୍ୟାର ବୟସ ?

ସଦାନନ୍ଦ—ବର୍ତ୍ତମାନ ଷୋଳ । ଲକ୍ଷ୍ମୀ ଯେତେବେଳେ
ଛ' ବର୍ଷ, ସେତେବେଳୁ ନେଇଥିଲି ଶିଷ୍ୟତିର
ଦୀକ୍ଷାଭାର ।
ଅଦ୍ଭୁତ ପ୍ରତିଭା !
ଶିକ୍ଷାଗୁଣେ ଲଭିଥିଲା ବିକାଶ !
କଣ୍ଠରେ କିନ୍ନରୀ, ନୃତ୍ୟରେ ଉର୍ବଶୀ ।
ପୂର୍ଣ୍ଣ ଯୌବନ ପ୍ରକାଶେ, ପୂର୍ଣ୍ଣଶଶି ଯେବେ,
ଦେବତା ପ୍ରସନ୍ନ
ହେଉଥିଲେ ତାହା ପ୍ରତି ।
ଉପସ୍ଥିତ ଲଗ୍ନ; ଲକ୍ଷ୍ମୀ ହୋଇଲା ଉନ୍ମନା;
ଶୁଣିଲା ସେ ବଂଶୀତାନ, ଧାଇଁଲା ଉନ୍ମାଦେ,
ପ୍ରେମ ପାରାବାରେ ଯିବ ମିଶି
ସରିତ ଯେସନ;
ଏତିକି ବେଳେ—

ବିଦୂଷକ—ମୁହିଁ ଦ୍ୱୈତବାଦୀ ହେଲି ମହାରାଜ !

ରାଜା—ମନେ—?

ବସ୍ତୁ—ଲକ୍ଷ୍ମୀକୁ ଯେତେବେଳେ ପାଞ୍ଚବର୍ଷ, ଆଉ ମୋତେ ବାର, ସେତେବେଳେ ବୁହିଙ୍କ ମଧ୍ୟରେ ସାମାଜିକ ବନ୍ଧନ ଘଟେ । ହେଲେ, ସମାଜର କଷଟଣା ତାହା ଏକ ପ୍ରକାର ଛିନ୍ନ କରଦିଏ । ଚତୁର୍ଦ୍ଦଶ ବିତ ଯାଏ । ସେହି ବନ୍ଧନ ପୁଣି ସ୍ୱୀକୃତ ହୁଏ । ତା'ର ଫଳରେ ଷୋଡ଼ଶୀ-ଲକ୍ଷ୍ମୀ ବର୍ତ୍ତମାନ ମୋ'ର ଗୃହ-ଲକ୍ଷ୍ମୀ ।

ସଦାନନ୍ଦ—ବସ୍ତୁ ବାବା ।

ବସ୍ତୁ—ବାଧା ଦେଲି ବୋଲି, କ୍ଷମା କରିବେ, ବାବା ।

ସଦାନନ୍ଦ—ନା, ନା, ବାଧା ନୁହେଁ ବରଂ ଏ' ସୁବିଧା । ମୁଁ ଭାରି ଖୁସୀ, ତୁମେ ଏ'ଠାରେ ଉପସ୍ଥିତ, ଆଉ ମୋ ବକ୍ତବ୍ୟ ଶୁଣୁଛ ।

ରାଜା—ତାପରେ, ବାବା ?

ସଦାନନ୍ଦ—ଲକ୍ଷ୍ମୀର ବାଦ ଯ'...
ଦେବତାର ବଂଶୀ ତୂର୍ଣ୍ଣ;
ନ ଦେଖିଲେ ଅନ ।
କି କହିବି, ରାଜା,
ଭୋଗ ଲାଗି ଯେବେ ଦିଅଁ
ତେବେ ଗଣ୍ଡୁଷେ ନ ପଡ଼େ ଗଳ୍ପୀ ।
ଅରତ ମଳିନ ।
ଶୃଙ୍ଗାର ମଣ୍ଡନମାଳା ନ ଧରନ୍ତି ଟଳେ ।
ଗୀତ ଗୋବିନ୍ଦ ନ ଦିଏ ଆନନ୍ଦ ଗୋବିନ୍ଦେ,
ଲଣ୍ଡ ଭଣ୍ଡ ଦେଉଳର ନୀତ ।
ଖଞ୍ଜା ଖଞ୍ଜି କଲେ ସୁଦ୍ଧା
ନରହେ ଶୃଙ୍ଖଳା ।
'ଘରଣୀ ଭାଙ୍ଗିଁସି ସ୍ୱର୍ଗେ ଘର ସମୁଜ୍ଜ୍ୱଳ'
ନୁହଇ ପ୍ରବାଦ ବାକ୍ୟ—
ପ୍ରମାଣିତ ସତ୍ୟ ଏହା ଅକ୍ଷରେ ଅକ୍ଷରେ ।

ରାଜା—ଏ' କଣ ଶୁଣୁଛି, ସଦ୍ଭାବନ୍ ?

ବସ୍ତୁ—ଅଲୌକିକ ହେଲେ ମଧ୍ୟ ଅବିଶ୍ୱାସ୍ୟ ନୁହେଁ, ପ୍ରଭୁ ।

ରାଜା—କାରଣ ?

ବସ୍ତୁ—ଗୃହ-ପ୍ରବେଶ ପରେ ଯାହା ବାରମ୍ବାର ଘଟିଯାଇଛ, ତାହା ଲକ୍ଷ୍ମୀ ମୋତେ ସବୁ ଫିଟାଇ କହିଛି ।

ରାଜା—କ'ଣ ?

ବସ୍ତୁ—ଗମ୍ଭୀର ନିଶିଥେ, ଝିଙ୍କାରର ସ୍ୱନେ
ଭଗ୍ନ-ବଂଶୀର ନିସ୍ୱନ
ଅସେ ଭାସି, ଭାସି;—
ଭଙ୍ଗା ଭୁଲୁର ଲହରୀ
ଖେଳାଇ ଅଳୁଲେ
ଘୂରିବୁଲେ ଚଉପାଶେ
ଶୟନ କକ୍ଷର ।
ଗବାକ୍ଷର ଦ୍ୱାର ଯେବେ ନ ଥାଏଟି ଖୋଲି,
ତେବେ ଧୀର କରାଘାତେ,
ଧୀର କଣ୍ଠ-ସ୍ୱରେ,
'ଲକ୍ଷ୍ମୀ' 'ଲକ୍ଷ୍ମୀ' ବୋଲି
ଡାକେ ଡୁହାଇ, ଡୁହାଇ...(ଦୀର୍ଘଶ୍ୱାସ)

ରାଜା—ତା'ପର ?—

ବସ୍ତୁ—ତା'ପର ଦୁଇଦିନ ତଳର କଥା; ଲକ୍ଷ୍ମୀ କୁହେ-

ରାଜା—କ'ଣ ?

ବସ୍ତୁ—"ଛିନ୍ନ-ବାତାୟନ ଯେବେ
ଶୟନର କକ୍ଷ,
ତେବେ ତନ୍ଦ୍ରାର ଆବେଶେ
ଅନୁଭବେ ସ୍ପୃଷ୍ଟ;
ସ୍ପୃଷ୍ଟ୍ୟା କି ସେ କାଯ୍ୟା ନ ପାରିଲି ବୁଝି;
ବକୁଳ ମହକେ ଭରି
ଭଲ୍‌ସାଇ ଚଉ
ବସେ ସୁପାତ ଉପରେ,
ଘନ ସାନିଧେ ଅଧର,
ଭକ୍ଷାଂ ଦେହି
ଭକ୍ଷାଂ ଦେହି ବୋଲି
ମିନତିର କଣ୍ଠେ
କଲି ସେ ଅଧୀର ମୋତେ ଅଧର ଲାଳସି ।"

ରାଜା—ଦେଉଳରେ ଥାଇ ଥାଇ ଲକ୍ଷ୍ମୀର ଗୋଟାଏ ସଂସ୍କାର କନ୍ମିଛି । ଏ'ପରି ସ୍ୱପ୍ନ ଦେଖିବା ତା'ର ପାତାଳ ମନର ପ୍ରତିକ୍ରିୟା ଛଡ଼ା ଅଉ କିଛି ନୁହେଁ । ତେବେ ଭୟ—ଏହା ଶେଷକୁ ମୂର୍ଚ୍ଛା ରୋଗର ନିଦାନ ହୋଇ ଠିଆ ନ ହୁଏ । ସମସ୍ତ

ଥାଉଁ ଥାଉଁ ସାବଧାନ ହେବା ଉଚିତ । ରାଜ-ବୈଦ୍ୟ ସଙ୍ଗେ ଆଜ ପରାମର୍ଶ କର ।

ବସ୍ତୁ—ମାନ ଯେଉଁ ପ୍ରମାଣ ପାଇଛି, ମଣିମା—

ରାଜା—ପ୍ରମାଣ ?

ବସ୍ତୁ—ସ୍ମରଣ କଲାବେଳକୁ କଣ୍ଠ ଶୁଖି ଯାଉଚି—।

ରାଜା—ଜଳ—

[ ଦୌବାରିକ ଜଳ ପୂର୍ଣ୍ଣ ପାତ୍ର ଆଣି ଦେଲା ଓ ବସ୍ତୁ ପାନ କରିବା ପରେ, ପାତ୍ର ଘେନି ଚାଲିଗଲା ]

ବସ୍ତୁ—କିଛିଦିନ ତଳେ ମୋତେ ଭାରି ଚିନ୍ତାକ୍ଲିଷ୍ଟ ଦେଖି, ସ୍ୱାମୁ ଅଧୀର ହୋଇ ପଡ଼ି ଥିଲେ । ଅତ୍ୟଧିକ ଶାସ୍ତ୍ର ଗବେଷଣାର ପ୍ରତିକ୍ରିୟା ବିଗ୍ଭରି, ସେଥିରୁ ଏକାବେଳକେ ବିରତ ହେବା ପାଇଁ ଉପଦେଶ ଦେଇଥିଲେ । ସେତିକରେ ସନ୍ତୁଷ୍ଟ ନ ହୋଇ, ମୋତେ କାର୍ଯ୍ୟାନ୍ତରରେ ଲଗାଇ ରଖିବେ, ଏହି ଉଦ୍ଦେଶ୍ୟରେ ଏଥର ଉତ୍ସବର ଭାର ମୋର ଉପରେ ନ୍ୟସ୍ତ କରିଥିଲେ ।

ରାଜା—ଯଥାର୍ଥ ।

ବସ୍ତୁ—କିନ୍ତୁ, ଚିନ୍ତାର ଯଥାର୍ଥ କାରଣ ସ୍ୱାମୁଙ୍କ ଅଗୋଚର ଥିଲା । ତାହାହିଁ ଗୋଚର କରୁଛି, ମଣିମା ।

ରାଜା—ବେଶ୍ ।

ବସ୍ତୁ—ଲକ୍ଷ୍ମୀ ସଂସାର କରିବାକୁ ଆସେ । ଆମର ଦାମ୍ପତ୍ୟ-ମିଳନ ଘଟେ । ହେଲେ, ଦୈହିକମିଳନ ଘଟେ ନାହିଁ । ବ୍ୟବଧାନ କ୍ରମେ ବଢ଼ିଯାଏ । ଈର୍ଷା, ସନ୍ଦେହ ପ୍ରବଳ ହୋଇ ଉଠେ । ଧୈର୍ଯ୍ୟଚ୍ୟୁତି ଘଟିବାର ଉପକ୍ରମ ହୁଏ । ତଥାପି ମୁଁ ସମ୍ଭାଳି ରହିଥାଏ···

ରାଜା—ତା'ର କାରଣ ?

ବସ୍ତୁ—ସ୍ତ୍ରୀ ପ୍ରତି ସ୍ୱାମୀର ଅଗାଧ ବିଶ୍ୱାସ । କିନ୍ତୁ,—

ରାଜା—କିନ୍ତୁ ?

ବସ୍ତୁ—ଦୁଇଦିନ ତଳର ଘଟଣା—

ରାଜା—ସ୍ୱପ୍ନ ସଂପର୍କରେ ତ ?

ବସ୍ତୁ—ନା, ପ୍ରମାଣ ସଂପର୍କରେ ।

ରାଜା—ପ୍ରମାଣ ?

ବସ୍ତୁ—ରାଜକାର୍ଯ୍ୟ ସାରି, ଘରକୁ ଲେଉଟିଲା ବେଳକୁ ରାତି ଅଧିକ ହୋଇଥାଏ । ନିଶାରାତି । ଘର ମୁହାଁ ହୋଇ ବାଟଗ୍ଭଲିଥାଏ । ଘର କଥା ମନେ ପଡ଼େ । ଲକ୍ଷ୍ମୀର କଥା ମନକୁ ଆଚ୍ଛନ୍ନ କରିଦ ପକାଏ । ଈର୍ଷା ସନ୍ଦେହ ଫଣା ଟେକି ଉଠେ, ଦଂଶନରେ ଦଂଶନରେ ଘାରି ଦିଏ । ସେହି ଘୋର ଅବସ୍ଥାରେ ମୁଁ ଘରେ ପାଦଦିଏ, ସିଧା ସିଧା ଲକ୍ଷ୍ମୀର ଶୟନ କକ୍ଷଦ୍ୱାରେ ଉପସ୍ଥିତ ହୁଏ । ଲକ୍ଷ୍ମୀ ଯେମିତି ଗୁପ୍ତ ପ୍ରଣୟରେ ଲିପ୍ତ, ଏହି ଧାରଣା ଘେନି ଭିତରକୁ ପଶିଯାଏ ଓ ଗୁପ୍ତ ପ୍ରଣୟୀର ସନ୍ଧାନରେ ଘର ଗୋଟାକ ଖେଦି ପକାଏ···

ରାଜା—ସେହି ଧଡ଼ସରେ ଲକ୍ଷ୍ମୀ ନିଶ୍ଚେ ଚେଇଁ ଉଠିଥିବ, ଆଉ ତୁମେ ଲଜ୍ଜାରେ ମଥା ନୁଆଁଇଥିବ ।

ବସ୍ତୁ—ଲକ୍ଷ୍ମୀ ମୋତେ ଅହୁରି ଆଶ୍ଚର୍ଯ୍ୟ କରି ଦିଏ, ଯେତେବେଳେ ସେ ଦୈହିକ ବ୍ୟବଧାନର ଅବସାନ ଘୋଷଣା କରେ । ହେଲେ ଆପୋଷ ମିଳନକୁ ମୁଁ ବରଣ କରିନିଏ । ମିଳନ ଶଯ୍ୟା-ଅଡ଼େ ଦୁହେଁ ଅଗ୍ରସର ହେଉଁ । ସେତିକିବେଳେ ଅକସ୍ମାତ୍ ଗୃହୀ ଦେଖେ—

ରାଜା—କ'ଣ ?

ବସ୍ତୁ—ଭଗ୍ନ ବଂଶୀ ଆଉ ନୂପୁରର ପଟେ ।

ରାଜା—ତା'ପରେ ପ୍ରଶ୍ନ କରିଥିବ···ଲକ୍ଷ୍ମୀ କ'ଣ କହେ ?

ବସ୍ତୁ—ବିସ୍ମୟରେ ଅଭିଭୂତ ହୋଇଯାଏ ଓ ଧାଇଁଯାଇ, ଦ୍ରବ୍ୟଗୁଡ଼ିକ ଉଠାଇ ନେଇ କହେ,—ଏତ ଗୋପୀନାଥଙ୍କର । ଏଠାକୁ ଆସିଲା କେମିତି ? ପ୍ରଶ୍ନର ଉତ୍ତରରେ ଏହି ପ୍ରତିପ୍ରଶ୍ନହିଁ ସେ କରେ, ଆଉ ପୂର୍ଣ୍ଣ ଅଜ୍ଞତା ପ୍ରକାଶକରେ ।···ମୁଁ ବିଚଳିତମନରେ କ୍ଷିପ୍ତ ହୋଇ ନୃଶଂସତାର ଶେଷ ସୀମାରେ ପହଞ୍ଚି ଥାନ୍ତି, ମାତ୍ର···

ରାଜା—ମାତ୍ର ?

ବସ୍ତୁ—ବିଶ୍ୱାସର ଅଳୌକିକ ଲାଗିଲ ଦଉନାହିଁ,—ସରଳା ଲକ୍ଷ୍ମୀର ଏହି ଉକ୍ତିଟି ମନର ପ୍ରଭାବ ମୋ ଉପରେ; ମୁଁ ତତ୍‌କ୍ଷଣାତ୍ ନିରସ୍ତ ହୁଏ ।

ରାଜା—ତା' ହେଲେ ତୁମର ବିଶ୍ୱାସ ଯେ, ଗୋପୀନାଥ ନିଜେ ଅବହେଳା କରି ଭକ୍ତ ସଙ୍କେତ ଗୁଡ଼ିକ ଛାଡ଼ି ଯାଇଥିଲେ ।

ବିଷ୍ଣୁ—ଅନ୍ୟ କେହି ନୁହେଁ, ଏହା ନିଶ୍ଚୟ । ତଥାପି···

ରାଜା—ତଥାପି···

ବିଷ୍ଣୁ—ମୋ'ର ଅଜ୍ଞାନଭାବ କଟି ନ ଥାଏ, ସନ୍ଦେହର ମାୟା ଲିଭିଯାଇ ନ ଥାଏ, ଏତିକି ବେଳେ ଶୁଣେ—

ରାଜା—କ'ଣ ?

ବିଷ୍ଣୁ—ପ୍ରଭାତର ଡାକ ।

ରାଜା—ମାନେ ?

ବିଷ୍ଣୁ—'କା-କା'—ରବ, କୁକୁଡ଼ାର କୁହାଟ, ଅଗଣା ଖରକା ଶବ୍ଦ, ପୋଖରୀ ଘାଟରେ ବାସନ ମଜାର ଝଣ ଝାଣ, ପଲ୍ଲୀ ବଧୂର ଝୁମୁରୁ ଝୁମୁରୁ, ଗହିର ବିଲରେ ହଳଅର ଠାକରାପୁଟା, ଦାଣ୍ଡ ସଡ଼କରେ ବଳଦର ଘଣ୍ଟି ଘାଗୁଡ଼ି । ମୁଁ ଚମକି ଉଠେ । ଦିବସର ଚେତନା ମୋ ମଧ୍ୟେ ଆଣି ଦିଏ ବାସ୍ତବର ଚେତନା, ପରିବାରର ଚେତନା, ସମାଜର ଚେତନା ଆଉ ନୂଆ ଜୀବନର ଉଦ୍ଦୀପନା—ମୁଁ ତତ୍‌କ୍ଷଣାତ୍ ଲକ୍ଷ୍ମୀଙ୍କୁ ସାବଧାନ କରିଦିଏ—

ରାଜା—କ'ଣ ?

ବିଷ୍ଣୁ—କୁଳ-ମର୍ଯ୍ୟାଦା ଆଉ ମାନ-ମହତକୁ ଜଗି ବେଳେବେଳେ ଅନେକ ଅବାଞ୍ଛିତ କଥା ଘୋଡ଼ାଇବାକୁ ହୋଇଥାଏ, ସୁତରାଂ ଏହି ବଂଶୀ ଓ ନୂପୁର-କଥା ଯେମିତି କେହି ନଶୁଣନ୍ତି ।

ରାଜା—ଲକ୍ଷ୍ମୀ ଶୁଣି କ'ଣ କହେ ?

ବିଷ୍ଣୁ—କେବଳ ଲୁଲୁଫଟା କୋହ ଘେନି ଘରୁ ଛୁଟି ପଳାଏ, ଆଉ ମୁଁ ମଧ୍ୟ କାଳବିଳମ୍ବ ନ କରି, ସେହି ଦ୍ରବ୍ୟ ଗୁଡ଼ିକ ଘେନିଯାଏ ଓ ବଡ଼ ପଣ୍ଡାଙ୍କୁ ଫେରାଇ ଦେଇ ଆସେ ଏତିକି କହି,—'ବୋଧ ହୁଏ ଦାନ ଯୌତୁକ ସଙ୍ଗେ ଭୁଲରେ ଚାଲି ଯାଇଥିବ ।'

ରାଜା—ବଡ଼ପଣ୍ଡା କିଛି ପଚାରିଲେ ନାହିଁ ?

ବିଷ୍ଣୁ—ସେ ଅବାକ୍ ହୋଇ ଯାଇଥିଲେ, ସେହି ଭାବ ତାଙ୍କର କଟୁଁ କଟୁଁ ମୁଁ ସ୍ଥାନ ତ୍ୟାଗ କରିସାରି ଥାଏଁ ।

ରାଜା—ଫେରି ଆସି, ଲକ୍ଷ୍ମୀର କି ଭାବ ଦେଖିଲ ?

ବିଷ୍ଣୁ—ଅପୂର୍ବ । ଯୋଥି ରାଧା ଆଉ ଗୋପୀନାଥ ମୂର୍ତ୍ତି ଯେଉଁଠାରେ ଥିଲା, ସେହିଠାରେ ସେ ଟାଙ୍ଗି ଦେଇଥାଏ ଦୁଇଟି ଚିତ୍ରପଟ ।

ରାଜା—କି, କି ପଟ ?

ବିଷ୍ଣୁ—'ସାବିତ୍ରୀ-ସତ୍ୟବାନ'—ଆଉ 'ଜାନକୀ-ଶ୍ରୀରାମ'

ରାଜା—ଏ'ତ ଗୃହ ଲକ୍ଷ୍ମୀର କାର୍ଯ୍ୟ ।

ସଦାନନ୍ଦ—ମହାରାଜ, ବର୍ତ୍ତମାନ ଲକ୍ଷ୍ମୀ ନିର୍ଦ୍ଦ୍ୱନ୍ଦରେ କେମିତି ଗୃହ ସଂସାର କରିବ ଗୃହୀ ବିଷ୍ଣୁ କୁ ଘେନି, ଦେବାଳୟର ବିଷ୍ଣୁ କୌଣସି ବାଧା ଉପୁଜାଇବେ ନାହିଁ ସେ ଘେନି, ଏହି କାରଣରୁ ପ୍ରୟୋଜନ, ଲକ୍ଷ୍ମୀର ପ୍ରତିମା ଓ ପ୍ରତିଷ୍ଠା । ଏହାହିଁ ଛାମୁରେ ଜଣା କରାଇବ ବୋଲି ଧାଇଁ ଆସିଥିଲି, ଆଉ ସ୍ୱ-ନକ୍ଷତ୍ର ଦିବସରେ ମୋର ଏତିକି ମାଗୁଣି ।

ରାଜା—( ହସି ) ଗୃହୀ ବିଷ୍ଣୁତ ନିଜେ ଆଗଭର ହୋଇ ପ୍ରତିଷ୍ଠା ପ୍ରସଙ୍ଗ ଉଠାଇଛନ୍ତି, ଭୟ କ'ଣ ?

ସଦାନନ୍ଦ—ସତେ ? ସତେ ?—ଆନନ୍ଦ, ଆନନ୍ଦ, ମୋତେ ଘେନିଥିଲ ଏଠୁଁ । ଦେବତାର ଇଚ୍ଛା ଦେବତା ପୂର୍ଣ୍ଣ କରେ, ମନୁଷ୍ୟ କରେନାରେ, ମନୁଷ୍ୟ କରେ, ନା ।

[ ସଦାନନ୍ଦଙ୍କୁ ଆନନ୍ଦ ଘେନିଗଲେ ]

ପ୍ରତିହାରୀ—( ପ୍ରବେଶ କରି ) ମଣିମା, ରାଜସ୍ୱର୍ଣ୍ଣକାର ।

ରାଜା—ପ୍ରବେଶ କରାଅ ( ସ୍ୱର୍ଣ୍ଣକାର ପ୍ରବେଶ କରି ଅଭିବାଦନ ଜଣାଇଲା ପରେ ) ସ୍ୱର୍ଣ୍ଣକାର ।

ସ୍ୱର୍ଣ୍ଣକାର—ଛାମୁ ।

ରାଜା—ସୁବର୍ଣ୍ଣ ପ୍ରତିମାଟିଏ ଗଢ଼ିବାକୁ ହେବ ।

ସ୍ୱର୍ଣ୍ଣକାର—କି ପ୍ରତିମା, ଆଦେଶ କରନ୍ତୁ ?

ରାଜା—ଲକ୍ଷ୍ମୀ-ପ୍ରତିମା । ଅତି ଶୀଘ୍ର ।

ସ୍ୱର୍ଣ୍ଣକାର—ମା'ଙ୍କର ରୂପାଦର୍ଶ ବା ତା'ର ସୂଚନା ପାଇଲେ ଏ' ଅଧୀନର କାର୍ଯ୍ୟ ସହଜ ସାଧ୍ୟ ଓ ତୁରନ୍ତ ହେବ, ମଣିମା ।

ରାଜା—( କାଞ୍ଚନପଣି ଚନ୍ଦ୍ରାକର ) ଅଳ୍ପ ବର୍ତ୍ତମାନ ତୁମେ ଆସି ପାର ।

ସ୍ୱର୍ଣ୍ଣକାର—ଯଥା ଆଦେଶ । (ପ୍ରସ୍ଥାନ)

ରାଜା—ସଭ୍ୟବୃନ୍ଦ !

ବସ୍ତୁ—ଘମ୍ମୁ—।

ରାଜା—ଦେଉଳର ବସ୍ତୁ ଲକ୍ଷ୍ମୀ ପାଇଁ ଉଚ୍ଛନ୍ନ, ଏଥିରେ ସନ୍ଦେହ ନାହିଁ । ସୁତରାଂ ଶ୍ରୀଗୋପିନାଥ ଲକ୍ଷ୍ମୀ-ଯୁକ୍ତ ହେବା ବାଞ୍ଛନୀୟ । ଏ' ବିଷୟରେ ସଦାନନ୍ଦବାବାଙ୍କ ସଙ୍ଗେ ମୁଁ ଏକମତ । ତୁମର ମତ ?

ବସ୍ତୁ—ମୋ'ର ଏହାହିଁ ପ୍ରାର୍ଥନା, ମହାରାଜ ।

ରାଜା—ଅନ୍ତର କ୍ଷେତ୍ରର ପୂର୍ଣ୍ଣାଙ୍ଗବିକାଶ ଦରକୁ ଏଥିରେ ଗୁରୁତ୍ୱ ରହିଚି । ସୁତରାଂ ଏ କ୍ଷେତ୍ରରେ ରାଜାର ମନମୁଖୀ ଆଦେଶ ବା ସ୍ୱେଚ୍ଛାଚାରିତାର ସ୍ଥାନ ନାହିଁ, ରହିଚି ସମାଜ, ରାଷ୍ଟ୍ର ଓ ବିଶ୍ୱର ମୌଳିକ ଦାବୀ ।

ବସ୍ତୁ—ସେଥିପାଇଁ ତ୍ୟାଗର ପ୍ରୟୋଜନ ପ୍ରତ୍ୟେକର ।

ରାଜା—ସବୁରି ଉପରେ, ତୁମର ।

ବସ୍ତୁ—ମୁଁ ସାମାନ୍ୟ ବ୍ୟକ୍ତି, ମହାରାଜ !

ରାଜା—ତୁମର ତ୍ୟାଗ ହେବ ଅସାମାନ୍ୟ ।

ବସ୍ତୁ—ମୋ'ର ତ୍ୟାଗ ?—

ରାଜା—ହଁ, ହଁ, ତୁମର ।—ସ୍ୱୟଂ ଲକ୍ଷ୍ମୀ ଆଜି ତୁମର ଗୃହରେ ଆବଦ୍ଧ ।

ସୁଖେ ପାଳଇ ସଂସାର,—
ଦୁଃଖ ତା ଅପାର;
ହସି ହସି କହେ ଗୀର,
କାନ୍ଦେ ଝର ଝର ।
ପ୍ରୀତି ଡୋରେ ବାନ୍ଧେ ଜନ,—
ଛିନ୍ନ-ଡୋର, ଜାଣ ।

ବସ୍ତୁ—ମହାରାଜ ।—

ରାଜା—ଯେଉଁ ଆଦର୍ଶ ପାଳିବାକୁ ମୋତେ ଅନୁପ୍ରାଣିତ କରିଛ, ସେହି ଆଦର୍ଶ ପାଳିବ ସର୍ବାଗ୍ରେ, ତୁମେ । ମୋର ଆଦର୍ଶ ବାଡ଼ିଛନ୍ତି ରାଜବଂଶର ତୁଚ୍ଛ ପରମ୍ପରା; ଆଉ ତୁମ ଆଦର୍ଶ ବାଡ଼ିଛନ୍ତି ଯୁଗ-ଯୁଗର ମହାମନୀଷୀଙ୍କ ଧାରା । ଜାନକୀ-ଶ୍ରୀରାମ ଛବିକୁ ଗୃହରେ ସମ୍ପାଦିଚ, ଏଥର ସେହି ଛବିର ପ୍ରତିଚ୍ଛବି ବାଡ଼ିବ ତୁମେ କାର୍ଯ୍ୟରେ ?

ବସ୍ତୁ—ଅର୍ଥାତ୍—

ରାଜା—ତୁମେ କରିବ ଲକ୍ଷ୍ମୀ ତ୍ୟାଗ—ପତ୍ନୀ ତ୍ୟାଗ !

ବସ୍ତୁ—ମହାରାଜ !...

ରାଜା—ଏକ ଆଡ଼େ ସଂସ୍କୃତିର ଦାବୀ—ଅନ୍ୟ ଆଡ଼େ ସଂସ୍କାରର । ଏକଆଡ଼େ ସ୍ୱାର୍ଥ ତ୍ୟାଗର ଦାବୀ—ଅନ୍ୟ ଆଡ଼େ ସ୍ୱାର୍ଥ ଭୋଗର । ଏକ ଆଡ଼େ ସମଗ୍ର ବିଶ୍ୱର ଦାବୀ—ଅନ୍ୟ ଆଡ଼େ ମାତ୍ର ଜଣକର । ବାଛିନିଅ ଏଥର, କଣ କରିବ ତୁମେ ?

ବସ୍ତୁ—ମୁଁ କିଛି ଧାରଣା କରି ପାରୁନାହିଁ, ମହାରାଜ !

ରାଜା—ଅଚ୍ଛା, ଚିନ୍ତନ ସମୟ...(ପ୍ରସ୍ଥାନ)

ବସ୍ତୁ—( ଅକାଡ଼ି ହୋଇ ପଡ଼ିଲେ ବସିବା-ସ୍ଥାନରେ )

---

## ଦ୍ୱିତୀୟ ଦୃଶ୍ୟ

—ପରଶୁଙ୍କ ଗୃହାଭ୍ୟନ୍ତର—

[ ଲକ୍ଷ୍ମୀ-ବୋଉ ପ୍ରଦୀପ ଜାଳି, ବୃନ୍ଦାବତୀଙ୍କୁ ସଞ୍ଜ ଦେବାକୁ ଯାଉଥିଲେ, ତାହା ହଠାତ୍ ଲିଭିଗଲା ]

ଲକ୍ଷ୍ମୀ-ବୋଉ—ସଞ୍ଜ-ଦୀପ ଇମିତି ଲିଭିଗଲା...ସକାଳ ପହରୁ ମନ୍ଦ ମାଛର ସ୍ୱପ୍ନ...ତାଙ୍କର ଡେରିରୁ ଆଖି ଡେଉଁଚି ସେ କହୁଥିଲେ...ଜୁଆଁଇ ସେ'ଦିନ ସେମିତି ଆସି ଠିଆ ଠିଆ ଚାଲି ଗଲେ—ମୁଁ ତ କିଛି ଭଲ ଲକ୍ଷଣ ଦେଖୁନି,...

[ ଠିକ୍ ସେତିକିବେଳେ ପରଶୁଏ କଠଉ ଠକ୍ ଠକ୍ କରି ଫେରିଲେ ]

ପରଶୁ—ଲକ୍ଷ୍ମୀ-ବୋଉ...ଆଜି ଚନ୍ଦ୍ରାକରନାହିଁ ।

ଲକ୍ଷ୍ମୀ-ବୋଉ—ସବୁ ଭଲତ ?—ଜୁଆଁଇ ଭଲ ଅଛି ? ଲକ୍ଷ୍ମୀ ଭଲ ଅଛି ?...

ପରଶୁ—ସଦାନନ୍ଦ ବାବା ଏଇନା ପ୍ରବସ୍ଥମରୁ ଫେରିଲେ--କହୁଥିଲେ...ଦେଉଳରେ ଲକ୍ଷ୍ମୀ-ମୂର୍ତ୍ତି ପ୍ରତିଷ୍ଠା ହେବ...ଗୋପୀନାଥ ଖୁସି ହେବେ...

ଦେଉଳ, ଦୂରଆ ବାହାରେ ଅତ ଅଶାନ୍ତ ରହିବନି—

ଲକ୍ଷ୍ମୀ-ବୋଉ—ରହତ—ମୁଁ ଦୀପଟା ଲଗେଇ ଆଣେ—

( ଗୁଲ୍ ଗଲେ )

ପରଗ୍ଗ—ବଂଶୀ-ନୂପୁର ମିଳୁଛି—ମୋ' ମୁଣ୍ଡରୁ ଅପବାଦର ଭୟ ଯାଉଚି—କିନ୍ତୁ, ଯେମିତ ଭାବରେ ତା ପାଉଛି, ସେ-କଥା ସଦାନନ୍ଦ ବାବାଙ୍କ ଫିଟେଇ କହିବାରୁ, ସେ ଖାଲି ହସି ହସି ଏତକ କହିଲେ—'ଗୋପନ-କଥା ଗୋପନ ରହୁ । ଲକ୍ଷ୍ମୀ-ବୋଉ ଯେମିତ ନ ଶୁଣେ । ମାଇପିଙ୍କେକ । ହସିଅର ଥିବ ।' କ ରହସ୍ୟ ! —ଗୋପୀନାଥ ଜାଣନ୍ତି ।—(ଦୀର୍ଘଶ୍ୱାସ ଛାଡ଼ିଲେ)

[ଲକ୍ଷ୍ମୀ-ବୋଉ ସେତେବେଳକୁ ଦୀପ ଜାଳ ଆଣି, ବୃନ୍ଦାବତୀକୁ ଦେଇ ଔଳକ ହେଲେ, ଓ ପରଗ୍ଗଙ୍କ ଚରଣ ଧୂଳ ମଥାରେ ଲଗାଇଲେ । ]

ପରଗ୍ଗ—ହଁ, ଲକ୍ଷ୍ମୀ-ବୋଉ—ଆନନ୍ଦ ଏ'ଠାକୁ ଆସିଥିଲାକ ?

ଲକ୍ଷ୍ମୀ-ବୋଉ—ଆନନ୍ଦ ? ନା'ତ ?

ପରଗ୍ଗ—ଚଗଲା ! ଗଲା କୁଆଡ଼େ ?

ଲକ୍ଷ୍ମୀ-ବୋଉ—ଲକ୍ଷ୍ମୀ ଅପା, ଲକ୍ଷ୍ମୀ ଅପା ବୋଲିତ ସଦାବେଳେ ହୁରୁଛିଏ, ପୁରସ୍ତମରୁ ଫେରିଚ, ମହାର୍ଦ୍ଧ ନେଇ ହୁଏତ ସେଠାକୁ ଯାଇଥିବ ?

ପରଗ୍ଗ—ଏଁ—ତା'ହେଲେ ତ ସର୍ବନାଶ—

ଲକ୍ଷ୍ମୀ-ବୋଉ—ମଲା !—ଝିଅ-ଘରକୁ ଯାଇଛି, ଝିଅକୁ ଦେଖିବ, ଭଲ ମନ୍ଦ ଖବର ବୁଝିବ, ଅସି କହିବ, ସର୍ବନାଶ କ'ଣ ?—ପୁଅଟା ଗଲା, କହିଗଲାନି । ଚଛ ତୋଳା ନଡ଼ଆ ହ'ପୁଞ୍ଜା ହେଲେ ତା' ହାତରେ—

ପରଗ୍ଗ—ନା, ମୋତେ ପୁଣି ଯିବାକୁ ପଡ଼ିଲା ।

ଲକ୍ଷ୍ମୀ-ବୋଉ—ଝିଅ-ଘରକୁ ?

ପରଗ୍ଗ—ଦେଉଳକୁ !

[ ଠକ୍ ଠକ୍ ହୋଇ ଗୁଲଗଲେ ]

---

## ତୃତୀୟ ଦୃଶ୍ୟ

—ଗୁହାଳଘର ।—

[ ଲକ୍ଷ୍ମୀ କାନ୍ଥରେ ଗୋବର ଲିପୁ ଥିଲେ । ଅଗ୍ନାରେ ପଶତ କାନି ଭିଡ଼ାଥାଏ । ଗୋବର-ଦାଗ ସର୍ବାଙ୍ଗରେ ସୁସ୍ପଷ୍ଟ । ହାତରେ ଥାଏ ଛୁଚକାନି । ପାଖରେ ଥାଏ ଗୋବରହାଣ୍ଡି ସିଡ଼ଟାଏ କାନ୍ଥକୁ ଡେସ୍ଥାଏ । ]

ଲକ୍ଷ୍ମୀ—( ଶେଷ ପୋଛା ସାର, ଘରର କାନ୍ଥ ବାଡ଼କୁ ଗୁହିଁ ଗୁଣୁ ଗୁଣୁ ହୋଇ ଆନନ୍ଦର ଗୁଞ୍ଜନ କରୁଥାଏ )

[ଏତକେ ବେଳେ ଅହୂରେ ଶୁଣାଗଲା ନମ୍ରକଣ୍ଠରେ ଆନନ୍ଦର ଡାକ ]

ଆନନ୍ଦ—ଲକ୍ଷ୍ମୀ ଅପା—

ଲକ୍ଷ୍ମୀ—(ଫେରି, ଗୁହିଁ—) ଆନନ୍ଦ !

ଆନନ୍ଦ—(ପ୍ରବେଶ ପୂର୍ବକ ଲକ୍ଷ୍ମୀର ବେଶଭୂଷା ଦେଖି, ବିଷଣ୍ଣ ଭାବରେ ଥକ୍କା ମାରି ଠିଆ ହୋଇଗଲା)

ଲକ୍ଷ୍ମୀ—ତୁମେ ହଠାତ୍ ?···ଦେଉଳର ଖବର ଭଲ ? ···ସଦାନନ୍ଦ ବାବାଙ୍କ ଖବର ଭଲ ? ମାଁତ ଠିକ୍ ଠିକ୍ ଗୁଲଚ ?

ଆନନ୍ଦ—ସବୁ ଗୁଲଚ, ସବୁ ଖବର ଭଲ, ହେଲେ ମୋ'ର ଅପା ଯେ—

ଲକ୍ଷ୍ମୀ—ଭଲରେ ନାହିଁ ? କିଏ କହିଲା ? ମୁଁ ଭାରି ଆନନ୍ଦରେ ଅଛି, ଆନନ୍ଦ !

ଆନନ୍ଦ—କାହାଘର ଝିଅ, କାହାଘର ବୋହୂ,— ଗୁହାଳ ପୋଛୁ ପୋଛୁ ଦନ ସରୁଚ, ଆହୁରି ଆନନ୍ଦ !

ଲକ୍ଷ୍ମୀ—ତୁମେ କହୁଚ କଣ, ଆନନ୍ଦ ? ହଁ, ତୁମେ ଦେଉଳର ଲୋକ ଘରର ଆନନ୍ଦ ବୁଝିବ କାହିଁ ?

ଆନନ୍ଦ—ଘରର ଆନନ୍ଦ ?

ଲକ୍ଷ୍ମୀ—ଘରର ଆନନ୍ଦ ଘରର ଲକ୍ଷ୍ମୀ ବୁଝେ । ଘରଧନ୍ଦା ବେଳେ ସେ ଏମିତ ହାଡ଼ିଆଣୀ, ଆଉ ଘରଧନ୍ଦା ସରିଗଲେ···

[ ସୁଭଦ୍ରା ସଫାସୁତୁରା ବେଶରେ ପ୍ରବେଶ କଲା । ବଉଳ ମାଳଟିଏ ଧରିଥାଏ । ଲକ୍ଷ୍ମୀ ମୁହଁରୁ କଥା ଛଡ଼ାଇନେଇ କହିଲା ଏହିପରି—]

ସୁଭଦ୍ରା—ଏମିତ ହଜରଣୀ ! (ହସିଲା)

ଆନନ୍ଦ—( ପାଟି ହାଁ ମେଲା କରି ଚକେଇ ରହିଲେ )

ସୁଭଦ୍ରା—( ଆନନ୍ଦର ପାଟି ବୁଜା ଦେଇ ) ମୁଁ ରସମଣ୍ଡା ନୁହେଁ, ଝପକରି ଟିଲି ପକେଇବ—'ଓଳିଅରୁ ଗଜା'···ହାଁ···

ଲକ୍ଷ୍ମୀ—ସୁଭଦ୍ରା···!

ସୁଭଦ୍ରା—ଉଁ ହୁଁ ଏଣିକି ଶ୍ରେଷ୍ଠ ଲକ୍ଷ୍ମୀ ବୋଲି ଡାକିବ, ନୂଆ-ଭାଉଜ !

ଲକ୍ଷ୍ମୀ—( ହସି ହସି ) ତୁମେ କ'ଣ କହୁଚ, ଶ୍ରେଷ୍ଠ ସଦାନନ୍ଦ ?

ଆନନ୍ଦ—ମୁଁ ତ କହିବି ଦୁହେଁ ସମାନ—ଏକା ଛାଞ୍ଚରେ ଗଢ଼ା ।

ସୁଭଦ୍ରା—ଯେମିତ 'କୁଶ ଲବ ଦୁଇ ଜାଆଁଳା ଭାଇ ସାନ ବଡ଼ ବାରି ହୁଅଇ ନାହିଁ ।'

ଆନନ୍ଦ—ସେୟିତ ରୂପର ଗଳା—

ସୁଭଦ୍ରା—ଗୁଣର ? ପରୀକ୍ଷା କରି ନିଅ, ହେଲେ —

ଆନନ୍ଦ—କ'ଣ ?

ସୁଭଦ୍ରା—ଗୁଣ ଯଦି କିଛି ଥାଏ, ତେବେ ତା' ଶ୍ରେଷ୍ଠ ଲକ୍ଷ୍ମୀର ନୁହେଁ—

ଆନନ୍ଦ—ବଡ଼ ଲକ୍ଷ୍ମୀର ?

ସୁଭଦ୍ରା—ମାନେ, ଯେମିତ ଗୁରୁକୁ ସେମିତ ଚେଲା ।
(ହସିଲା)

ଲକ୍ଷ୍ମୀ—ସେପରି···ହଉ, ତୁମେ ଦୁହେଁ ପରୀକ୍ଷା ଦିଆ ନିଆ ହେଉ ଥାଅ, ମୁଁ ପୋଛାପାଛା ହୋଇ ଆସେ ।

ସୁଭଦ୍ରା—ଖୋସା ବି ପାରି ଆସିବ, ଅପା, ମୁଁ ବେଢ଼ାଇ ଦେବି ଏ ବଉଳ ମାଳଟି ।

ଲକ୍ଷ୍ମୀ—ହେଲେ, ବଉଳ ସହିତ୍ ଆଉ ଜଣେ ହାଜର, ଏ' ଖିଆଲ ରଖିଥିବ, ଭଉଣୀ !

ସୁଭଦ୍ରା—( ଆନନ୍ଦକୁ ଚାହିଁ ) ତା' ହେଲେ ତୁମେ ବକୁଳ ବଣର ଦେବତା ?

ଲକ୍ଷ୍ମୀ—ଅପଦେବତା ! ଛୁଁଇବନି'···ହୁସିଆର···
( ଚାଲିଗଲେ )

ସୁଭଦ୍ରା—ଛୁଇଁବନି ? ( ଆନନ୍ଦ ହାତକୁ ଜାପୁଡ଼ି ଧରିଲା)

ଆନନ୍ଦ—ଓ ହୋ—ହୋ—ଛାଡ଼, ଛାଡ଼

ସୁଭଦ୍ରା—ହୁଁ, କେମିତ ମୁଠା ?

ଆନନ୍ଦ—ଯେମିତ ଲହୁଣୀ ମେଞ୍ଚା !

ସୁଭଦ୍ରା—ଆଉ ତୁମ ଠାକୁର ?—ଲହୁଣୀ ଚୋର ।

ଆନନ୍ଦ—ହାୟ ! ହାୟ ! ଲହୁଣୀ ବାଲିଙ୍କ ଏହି ଅପବାଦ ଯୋଗୁଁ ସିନା ସିଧା ଠାକୁର ଆଜି ଏମିତ ବଙ୍କାଠାକୁର—( ତ୍ରିଭଙ୍ଗ ଠାଣିରେ ଠିଆହୋଇ ଠେଙ୍ଗାକୁ ବଂଶୀ କଲେ )

ସୁଭଦ୍ରା—( ହସିଲା )

ଆନନ୍ଦ—ହସିଲ ଯେ !···ସେୟିତ ଆମ ଠାକୁରଙ୍କ ନମୁନା ।

ସୁଭଦ୍ରା—ହେଲା ନାହିଁ ।

ଆନନ୍ଦ—କଣ ହେଲା ନାହିଁ ?

ସୁଭଦ୍ରା—ଠିଆ ହେବା ଠାଣି ।

ଆନନ୍ଦ—( ଠିକ୍ କରିବାକୁ ଯାଇ ଅଧିକ ଭୁଲ୍ କରି ) ହେଲା ?

ସୁଭଦ୍ରା—( ତ୍ରିଭଙ୍ଗ ଠାଣିରେ ଠିଆ କରାଇ ଦେଲା )

ଆନନ୍ଦ—ଠିକ୍, ଠିକ୍ ।

ସୁଭଦ୍ରା—ତୁମେ ପରା ଦେଉଳରେ ଥାଅ···ଏତକ ଖିଆଲ୍ ନାହିଁ ?

ଆନନ୍ଦ—ଖିଆଲ୍ ମୋ'ର ଏପଟ ସେପଟ କାହିଁକି; ତୁମେଇ କୁହତ କାହିଁକି ?

ସୁଭଦ୍ରା—ହଉ ସେମିତ ଠିଆହୁଅ, ମୁଁ ବଡ଼ସିଂହାର ନମୁନା ବାଢ଼େ···'ରତିସୁଖ ସାରେ ଗତମଭିସାରେ ।'

ଲକ୍ଷ୍ମୀ—( ପ୍ରବେଶ କଲେ ସେହି ସମୟରେ ଓ ପୂର୍ବ-ସ୍ମୃତିର ଯନ୍ତ୍ରଣାରେ ବ୍ୟଥିତ ହୋଇ ବାଧା ଦେଲେ )—ସୁଭ···

[ ଆନନ୍ଦ ଓ ସୁଭଦ୍ରା ପଳାଇବାକୁ ବାଟ ପାଇଲେ ନାହିଁ ]

---

## ଚତୁର୍ଥ ଦୃଶ୍ୟ

— ଗ୍ରାମ୍ୟପଥ । —

[ କେତେକ ଗ୍ରାମବାସୀ ସହ ବସ୍ତୁ ପ୍ରବେଶ କଲେ । ଧନକ ଭିତରେ ବସ୍ତୁର ଚେହେରା ବଦଳି, ବଳି-ରେଖାରେ ଭରି ଯାଇଥାଏ ]

୧ମ ଗ୍ରାଃ—ପଣ୍ଡିତେ, ତୁମର କଣ ମଥା ଖରାପ ହୋଇଛି ? ଲକ୍ଷ୍ମୀକୁ ତ୍ୟାଗ କରିବ ? କହୁଛ କଣ ?

ବସ୍ତୁ—ରାଜାଙ୍କ ଆଦେଶ ।

୧ମ ଗ୍ରାଃ—କାରଣ ?

ବସ୍ତୁ—ଆଦର୍ଶ ।

୧ମ ଗ୍ରାଃ—ଆଦର୍ଶ ?

ବସ୍ତୁ—ହଁ, ଯେମିତି ଆଦର୍ଶ ମାନି ରାମଚନ୍ଦ୍ର ସୀତା ତ୍ୟାଗ କରିଥିଲେ ।

୨ୟ ଗ୍ରାଃ—ହେଲେ, ସୀତା ଠାକୁରାଣୀ ଥିଲେ ଏକୁଟିଆ ରାମଚନ୍ଦ୍ରଙ୍କର ।

୧ମ ଗ୍ରାଃ—ଆମର ଲକ୍ଷ୍ମୀଠାକୁରାଣୀ ସାରା ଗ୍ରାମର, ସାରା ଦୁନିଆର ।

୨ୟ ଗ୍ରାଃ—ସେଇଆଡ଼...ସୁଲକ୍ଷଣୀ ବୋହୂଟି ଓଡ଼ା ଘରେ ପାଦ ଦେଲା ଦିନୁ ଓଡ଼ା ଘର ଉଜ୍ଜ୍ୱଳ, ଗ୍ରାମ ଉଜ୍ଜ୍ୱଳ, ଦୁନିଆ ଉଜ୍ଜ୍ୱଳ, ।

୧ମ ଗ୍ରାଃ—ପାଶୋରି ଗଲ ପଣ୍ଡିତେ ? ତୁମେ ପରା ଦେହର ରକ୍ତ ପାଣି କରି ସୁଦ୍ଧା ଚାହାଳିଟିଏ ଫିଟାଇ ପାରି ନ ଥିଲ, ଆଉ ଏ ଲକ୍ଷ୍ମୀ ବୋହୂଟି ଗାଧୁଆ ତୁଠରେ କି ପାଠ ପଢ଼େଇଲା ଯେ, ଘରେ ଘରେ ଆଜି ପାଠଶାଳା !

୨ୟ ଗ୍ରାଃ—ମତୁଆ-ମଡ଼କ ତ କୁଆଡ଼େ ଉଭେଇ ଗଲା; ହଁ, ଚୁଗୁଲି-ଫିସାଦ, କଳି-କଜିଆ ଗାଁଟାକୁ ଯେମିତି ଦ'ଖଣ୍ଡ଼ାର କରି ଦେଇଥିଲା, ତା ଆଉ ଅଛି ?

୧ମ ଗ୍ରାଃ—ଭାଗବତ ଟୁଙ୍ଗି ?

୨ୟ ଗ୍ରାଃ—ସେ'ତ ଗୋଟାଏ ତାସ୍, ପଶା, ଗଞ୍ଜା ପେଲା ଜୁଆର ଆଡ଼ା ଥିଲା, ଆଜି ଶୁଣିବ ସେଠି ସଦାବେଳେ ହରିନାମ, ସଞ୍ଜବତୀ ନ ଲାଗୁଣୁ ଗ୍ରାମ ଗୋଟାକ ଅଜାଡ଼ି ହୋଇ ପଡ଼ିଥିବେ ।

୧ମ ଗ୍ରାଃ—ଭାଇମାନେ, ଭାଗବତ ଟୁଙ୍ଗିରେ ସମସ୍ତେ ଥିବେ ଅଇଛକା । ଏହି ମଜା । ଗାଁ-ବୈଠକ ବସିବ । କଥା ପଡ଼ିବ । ସମସ୍ତେ ଥାଇ ଏହି ନିଷ୍ପତ୍ତି ସାର କରିବୁ ଯେ, ପୁରସ୍ତମ ଯିବୁ, ଠାକୁର ରାଜାଙ୍କ ଭେଟିବୁ, ସଫା ସଫା କହିଦେଇ ଦେବୁ—କେଉଁ ପ୍ରଜାର କଥାମାନି, ରାଜା କୁଳ ଲକ୍ଷ୍ମୀ ତ୍ୟାଗ କରିଥିଲେ, ଶହ ଶହ, ପ୍ରଜାର କଥାମାନି ରାଜା କୁଳ-ଲକ୍ଷ୍ମୀ ରକ୍ଷା କରିବେ ।

ବସ୍ତୁ—ତୁମେ ମେଳି ବାନ୍ଧିବ ?

୨ୟ ଗ୍ରାଃ—ଆହେ ପଣ୍ଡିତେ ! ସୀତା ପେଇଁ ରାମ ରାବଣ ଯୁଦ୍ଧ ହୋଇଥିଲା, ଲକ୍ଷ୍ମୀ ପେଇଁ ରାଜା ପ୍ରଜା ଯୁଦ୍ଧ ହେବ—ଆଶ୍ଚର୍ଯ୍ୟ କ'ଣ ?

୧ମ ଗ୍ରାଃ—ସେଇ ଗୋଟାଏ 'ଆଦର୍ଶ,' ପଣ୍ଡିତେ !

୨ୟ ଗ୍ରାଃ—ଭାଗବତ ଟୁଙ୍ଗିରେ ପୁଣି ଦେଖା ସାକ୍ଷାତ୍ । ଓଳିକି । ( ବସ୍ତୁ ବ୍ୟତୀତ ସମସ୍ତେ ଚାଲିଗଲେ )

ବସ୍ତୁ—( କିଛିକ୍ଷଣ ଗୁହଁରହି ଭାବରେ ଉସ୍ତ ହୋଇ କଣ୍ଠରେ ମନକୁମନ କହିଲେ ) ଆଉ ଚିନ୍ତା ନାହିଁ ଲକ୍ଷ୍ମୀ, ତୁମେ ମୋର, ତୁମେ ମୋର ହୋଇ ରହିବ । ( ଚାଲିଗଲେ )

---

## ପଞ୍ଚମ ଦୃଶ୍ୟ

— ଲକ୍ଷ୍ମୀର ଶୟନ କକ୍ଷ । —

[ ପଲଙ୍କ ସମ୍ମୁଖରେ ଦେଖା ଯାଉଥାଏ ଜାନକୀ ଓ ଶ୍ରୀରାମଙ୍କ ଚିତ୍ର ପଟ । ଦୀପ-ଧୂପ ଦିଆ ହୋଇଥାଏ । ଲକ୍ଷ୍ମୀ ସେଥିପ୍ରତି ନିବଦ୍ଧ ଦୃଷ୍ଟି ଥାଇ ଭାବାବେଶରେ ଗାଉଥିଲେ ]

ଲକ୍ଷ୍ମୀ—

—ଗୀତ—

ଭୂଷଣ କଲ୍ୟା କଷଣ ନ ଡର
ପାଷାଣ ପରମ ପୀରତି କି ।
ବରଜି ଦେଲ ମୁଁ ଅରଜି ନ କରି
ସରମ ଭରମ ଆରତି କି ଗୋ ॥

ପଣା କଲ୍ ଛଣା ପିୟୂଷକୁ ହେଲେ
ଜଣା ଅବା ଅଜଣାରେ ସଖି
ଛନ୍ଦା ନେଲ୍ ବନ୍ଦୀ ଛନ୍ଦା ପାଦ ଧରି
ବନ୍ଧା ଦେଲ୍ ହୃଦ ଭାବତୀକ ଗୋ ॥
ଆଖି ଗଲା ଲାଖି ସେ ସୁଷମା ଦେଖି
ହେଲେ ହେଲ୍ ସିନା ଜନମାଖି ସଖି ।
କଞ୍ଜ ହେ ମୁରାରି ରଞ୍ଜ ହୃଦ ମୋର
ରଣ ବାରେ ଗଞ୍ଜ କରତୀକ ଗୋ ॥

ଲକ୍ଷ୍ମୀ—( ଦୀର୍ଘଶ୍ୱାସ ଛାଡ଼ି ) ଲକ୍ଷ୍ମୀ ପ୍ରତିଷ୍ଠା ହେବ ଦେଉଳରେ ! ( ହଠାତ୍ ନଜର ପଡ଼ିବାରୁ ) କିଏ ? ଆନନ୍ଦ ? କଣ କରୁଚ ସେଠି ?

ଆନନ୍ଦ—ଯଉଁ ବଦ୍‌ହଜମ ( ହେଉଛି )—

ଲକ୍ଷ୍ମୀ—( ହସି ) ହଉ ଏଣିକି ଆସ—ଆଉ ବେଶୀକି ଲୋଭ କରନାହିଁ । ତୁମେ ଯା' ପାଇଁ ହାଇଁପାଇଁ, ତା' ମୋତେ ଜଣା, ଆନନ୍ଦ । ସୁଭ ଆଉ ଏ'ଠା' ମାଡ଼ୁନାହିଁ । ମୁଁ ତାକୁ ମନା କରି ଦେଇଚି ।

ଆନନ୍ଦ—କାହିଁକି ମନା କ'ଲ ? ଭାରି ଭଲ ଝିଅଟି ।

ଲକ୍ଷ୍ମୀ—ଭଲକୁ ଯେ ତୁମେ ନାକରି କରିଦିଅ, ଆନନ୍ଦ !

ଆନନ୍ଦ—ମୁଁ ?

ଲକ୍ଷ୍ମୀ—ତୁମର ଜାତି—ଦେଉଳର ଲୋକେ ।

ଆନନ୍ଦ—( ଭେଳକା ହୋଇ ଚୁହିଁ ରହିଲେ )

ଲକ୍ଷ୍ମୀ—ଭେଳକା ହୋଇ ଚୁହିଁଚ କଣ ? ତୁମର ଗୁରୁଦେବ ପରା କହିଥିଲେ ଦିନେ,—ଲକ୍ଷ୍ମୀ ଭଲ ଝିଅଟିଏ, ଭଲ ମନ ତାର, ସଜଫୁଟା ଫୁଲଟି ପରି,—ସେଥିପାଇଁ ଦେବତା ତାକୁ ଭାରି ଭଲ ପାଆନ୍ତି । ସେହି ଗୁରୁଦେବ ପୁଣି କହୁଛନ୍ତି ଆଜି ଲକ୍ଷ୍ମୀ ଭାରି ନାକରା, ତାକୁ ଦେଉଳ ବାସନ୍ଦ ।

ଆନନ୍ଦ—'ଦେଉଳ ବାସନ୍ଦ'—ଏକଥା ତ ମୁଁ କହି ନାହିଁ ।

ଲକ୍ଷ୍ମୀ—ହିଁ, ହିଁ, ତୁମେ ଯା' କହୁଚ, ତା'ର ଅର୍ଥ ସେଇଆ । ସେଦିନ ଗୁରୁଦେବ ପରାମର୍ଶ ଦେଇଥିଲେ ପିତାଙ୍କୁ,—ଦେଉଳ ଚକଡ଼ା ମାଡ଼ିବା ଏଣିକି ଗୃହ-ଲକ୍ଷ୍ମୀର କର୍ତ୍ତବ୍ୟ ନୁହେଁ; ଆଜି ପରାମର୍ଶ ଦେଉଛନ୍ତି ବାବାଙ୍କୁ,—ଦେଉଳରେ ପୂର୍ଣ୍ଣିମା ଦିନ ଲକ୍ଷ୍ମୀ ପ୍ରତିଷ୍ଠା ହେବ; ଯା'ର ଅର୍ଥ,—ଗୃହ-ଲକ୍ଷ୍ମୀ ଦେଉଳର ଦେବତାକୁ ମନରୁ ପୋଛି ପକାଇବେ । ସୁତରାଂ ଦେଉଳ ମୋତେ ପୂରାପୂରି ବାସନ୍ଦ ଏ'କଥା ମୁଁ କହିବି ।

ଆନନ୍ଦ—ତୁମେ ସେ ବାସନ୍ଦ ମାନିବ କାହିଁକି ?—ଠିକ୍ ସେଦିନ ପରି ସେଠାକୁ ଯାଇ ଭାଙ୍ଗିଦେ'ବ, ଆଉ ସଦାନନ୍ଦ ବାବାଙ୍କୁ ସଫା, ସଫା ବତାଇ ଦେ'ବ—

ଲକ୍ଷ୍ମୀ—( ଶ୍ଳେଷୋକ୍ତି ) 'ଲକ୍ଷ୍ମୀ ଥାଉ ଥାଉ, ଲକ୍ଷ୍ମୀ ପ୍ରତିଷ୍ଠା' ଏଇଆ ତ ?

ଆନନ୍ଦ—କହିଲ, କେଉଁ ଗୁମାନରେ ସେଦିନ ତୁମେ ନିଜକୁ କୁଳଟା ବୋଲି ଡିଙ୍ଗାପି, ସବାରି ଚଢ଼ି ପଳେଇ ଆସିଥିଲ ଏ'ଠାକୁ ?

ଲକ୍ଷ୍ମୀ—( ସଚେତେ ) ଆନନ୍ଦ !…ତୁମେ ଏଇ କଥା ମନେ କରାଇ ଦେବାପାଇଁ ଏ'ଠାକୁ ଧାଇଁ ଆସିଥିଲ ପରା ?

ଆନନ୍ଦ—ଅପା ! ତୁମକୁଇ ଝୁରି ଝୁରି ଗୋପୀନାଥ-ଅଙ୍ଗ,…ଦେଉଳ ଅନ୍ଧାର !—ନିତି ଫୁଲ୍ ଗୁଚ୍ଛି, ଆରତିର ଯୋଗାଡ଼ କରେ, ତୁମରି କଥା ଭାବେ, ମୁଁ କାନ୍ଦି ପକାଏ; ତୁମେ ଫେରି ଆସିବ ଏ' ଭରସା ଥିଲା; ଆଜି ତା ବି ଲିଭିଗଲା; ସେଥିପାଇଁ ଲୁଚି, ଛପି…

ଲକ୍ଷ୍ମୀ—ଆନନ୍ଦ, ତୁମେ ଗଲ ଚାଲ୍, ଚାଲିଗଲ ଏ'ଠୁଁ… ମୁଁ ଖୁବ୍ ଆନନ୍ଦରେ ଅଛି । ମୋ'ର ଶାଶୁ, ନଣନ୍ଦ; ପୋଇଲି-ପରିବାରି, ସାଇ-ପଡ଼ୋଶୀ, ରଙ୍କି-ଦୁଃଖୀ, ଦୁନିଆର ସବୁ କିଛି ଭଲ-ମନ୍ଦକୁ ଆବୁରି ବେଶ ଭାସି ଚାଲିଚି । ତୁମେ ଦେଉଳର ଶନ୍ତା ପୂରେଇ ମୋ ସଂସାର-ଶନ୍ତାକୁ ଲଣ୍ଡଭଣ୍ଡ କରି-ଦିଅନା । ତୁମେ ଚାଲ, ଗଲ, ବାହାରି ଗଲ ! ଯାଅ, ଯାଅ…

ଆନନ୍ଦ—ଯାଉଛି, ଯାଉଛି, ଅପା…ହେଲେ, ବିବେକର ସତ୍ୟକୁ ସତ୍ୟ ମଣିଥିବ ( କହୁ କହୁଁ ଚାଲିଗଲେ )

ଲକ୍ଷ୍ମୀ—ଆନନ୍ଦ—ଆନନ୍ଦ—

ଲକ୍ଷ୍ମୀ—( ଅନନ୍ଦର କଣ୍ଠସ୍ୱର ଶୁଣିଲେ ଯେମିତି—
'ବିବେକର ସତ୍ୟକୁ ସତ୍ୟ ମଣିଥିବ ।' ଅସ୍ଥିର ଭାବରେ ପଲଙ୍କ ଉପରେ ଆଜାଡ଼ି ହୋଇ କାନ୍ଦିବାକୁ ଲାଗିଲେ )

[ ବସ୍ତୁ ପ୍ରବେଶ କଲେ କିଛିକ୍ଷଣ ପରେ । ]

ବସ୍ତୁ—ଲକ୍ଷ୍ମୀ, ତୁମେ କାନ୍ଦୁଛ ?

ଲକ୍ଷ୍ମୀ—ନା—ନା—( ହସିବାର ଉପକ୍ରମ )

ବସ୍ତୁ—ଛି ଭଣ୍ଡଉଚ ? ମୁଁ ସୁଭିଠାରୁ ଶୁଣିଲି । ତୁମର ଆନନ୍ଦ ଭାଇ ଆସିଥିଲେ । ଦେଉଳରେ ଲକ୍ଷ୍ମୀ ପ୍ରତିଷ୍ଠା ହେବ, ଏ'କଥା କହିଥିବ । ହେଲେ, ତୁମେ ଡରିବ ନା, ଲକ୍ଷ୍ମୀ । ରାଜା ଆଦେଶ କଲେ କେତେ, ଦୁନିଆଁ ଦାବୀ କଲେ କେତେ । ତୁମେତ ଅଉ ଦେଉଳର ଲକ୍ଷ୍ମୀ ନୁହଁ ଯେ ମୁଁ ତୁମକୁ ତ୍ୟାଗ କରିବି ।

ଲକ୍ଷ୍ମୀ—( ଆହୁରି ଅଧୀର ହୋଇ ପଡ଼ୁଥିଲେ )

ବସ୍ତୁ—ଛି, କାନ୍ଥ ବାଡ଼ରେ ସୀତା ସାବିତ୍ରୀଙ୍କ ଛବି ମଡ଼େଇଚ; ତା'ଙ୍କ ଧୈର୍ଯ୍ୟ ଗୁଣକୁ ଥରେ ହେଜ ।

ଲକ୍ଷ୍ମୀ—( ସରମରେ ପଳାଇ ଯାଉଥିଲେ )

ବସ୍ତୁ—ହଁ, ଗଣ୍ଡାଏ କ'ଣ ଖାଇବାକୁ ଦିଅତ, ଶୀଘ୍ର ଯିବି, ଭାଗବତ ଟୁଙ୍ଗିରେ ବୈଠକ ବସିବ, ସମସ୍ତେ ମୋ' ଅପେକ୍ଷାରେ ଥିବେ ।

ଲକ୍ଷ୍ମୀ—ସୁଭି—ସୁଭି—( ଚାଲିଗଲେ )

ବସ୍ତୁ—( ନିଜ ଲୁଗାପଟା ବଦଳାଇଲେ । ଇତି ମଧ୍ୟରେ ସୁଭି ଓ ଲକ୍ଷ୍ମୀ ମିଳିମିଶି ଠା' ପିଢ଼ା କଲେ ଓ ଖାଇବାର ବାଢ଼ି ଦେଲେ । ଖାଉ ଖାଉ ) ଆଃ କି ସୁଆଦ । ମୋର ଗୃହ-ଲକ୍ଷ୍ମୀର ରନ୍ଧଣା ଠିକ୍ ଯେମିତି ଦେଉଳ-ଲକ୍ଷ୍ମୀର ରାନ୍ଧଣା ।

ଲକ୍ଷ୍ମୀ—( ପାଖରେ ବସିଥାନ୍ତି ) ହଁ ଭାଗବତ ଟୁଙ୍ଗିରେ ଆଜି ବୈଠକ ବସିବ କହୁଥିଲ, କି ବୈଠକ ?

ବସ୍ତୁ—ଦେଉଳରେ ପୂର୍ଣ୍ଣିମା ଦିନ ଲକ୍ଷ୍ମୀ ବିଗ୍ରହ ପ୍ରତିଷ୍ଠା ହେବ । ସେ କଥା ଆନନ୍ଦଠାରୁ ଶୁଣିଥିବ ଅବଶ୍ୟ ।

ଲକ୍ଷ୍ମୀ—ହଁ, ତା' ଶୁଣିଛି । ତେବେ କହୁଥି ବୈଠକର କାରଣ ?

ବସ୍ତୁ—ବର୍ତ୍ତମାନ ରାଜାଙ୍କ ଖିଆଲ—

ଲକ୍ଷ୍ମୀ—ସୁବର୍ଣ୍ଣ ମୂର୍ତ୍ତି ଗଢ଼ାହେବ—ତା' ବି ଶୁଣିଚି ।

ବସ୍ତୁ—କିନ୍ତୁ ସେ ମୂର୍ତ୍ତିର ରୂପରେଖ ହେବ ତୁମରି ଅନୁରୂପ ।

ଲକ୍ଷ୍ମୀ—ମାନେ ?

ବସ୍ତୁ—ମାନେ ଖୁବ୍ ସରଳ, ତୁମେ ଦେଉଳର ଲକ୍ଷ୍ମୀ, ଦେଉଳରେ ରହିବ ।

ଲକ୍ଷ୍ମୀ—ଯାଃ, ଠାକୁର ଦେବତାଙ୍କୁ ଘେନ ଥଟ୍ଟା ! ତୁମ ମୁହଁରୁ ଆଜି ଯା ନୂଆ ଶୁଣୁଛି ।

ବସ୍ତୁ—ନୂଆକଥା ଯେତେବେଳେ, ସେତେବେଳେ ନୂଆ ଶୁଣିବ, ଏଥିରେ ଅଉ ଆଶ୍ଚର୍ଯ୍ୟ କଣ ? ସତେ ଲକ୍ଷ୍ମୀ, ରାଜା କହନ୍ତି ଠାକୁର କୁଆଡ଼େ ସତେ ସତେ ତୁମକୁ ଲୋଡ଼େଇଛନ୍ତି ।

ଲକ୍ଷ୍ମୀ—ତୁମେତ ଆଉ ସତେ ସତେ କହୁନ ।

ବସ୍ତୁ—ଦୁନିଆ ସାରା କେହି ନୁହେଁ । ସେଇଥି ପାଇଁତ ବୈଠକର ବ୍ୟବସ୍ଥା । ରାଜାଙ୍କର ଗୋଟାଏ ଅଜବ ଖିଆଲ ବିରୁଦ୍ଧରେ ଅଭିଯାନର ମସୁଧା ।

ଲକ୍ଷ୍ମୀ—( ପଲକା-ହୀନ ଦୃଷ୍ଟିରେ ଅନାଇ ରହିଲେ )

ବସ୍ତୁ—( ମୃଦୁ ମୃଦୁ ହସି ) ପାନ ?

ଲକ୍ଷ୍ମୀ—( ଅପ୍ରତିଭ ହୋଇ ) ସୁଭି—ସୁଭି ( ସୁଭି ପାନବଟା ଆଣି ଲକ୍ଷ୍ମୀଙ୍କ ହାତରେ ଦେଲା )

ବସ୍ତୁ—( ପାନ ନେଇସାରି ସ୍ମିତ ଅଧରରେ ) ଲକ୍ଷ୍ମୀ ! ମଧୁଶଯ୍ୟା ଆମର ବଢ଼ିଚି, ମଧୁମିଳନ ଘଟିନାହିଁ । ଆଜି ତୁମେ ତାରି ବ୍ୟବସ୍ଥା କରିବ । ( ପ୍ରସ୍ଥାନ )

ଲକ୍ଷ୍ମୀ—( ହଠାତ୍ ଯେମିତି ଅନନ୍ଦର କଣ୍ଠ ଶବ୍ଦ ଶୁଣିଲେ—'ବିବେକର ସତ୍ୟକୁ ସତ୍ୟ ମଣିଥିବ, ଅପା ।' ) ବିବେକର ସତ୍ୟ···ବିବେକର ସତ୍ୟ···

[ କି ଏକ ମହନୀୟ ଭାବରେ ଅନୁପ୍ରାଣିତ ହୋଇ ଉନ୍ମାଦିନୀ ପରି ବାହାରିଗଲେ କହୁ କହୁ ]

---

## ଷଷ୍ଠ ଦୃଶ୍ୟ

—ଭାଗବତ ଟୁଙ୍ଗି—

[ ବୈଠକ ଘର ଯାଉଥାଏ । ଗ୍ରାମବାସୀଗଣ ଉତ୍ତେଜିତ ଦେଖାଯାଉଥିଲେ । ମସୁଦାର ଶେଷ ନିଷ୍ପତ୍ତି ସ୍ୱରୂପ ଯାହା ଗ୍ରହଣ କରଥାନ୍ତି, ତାହା ବ୍ୟକ୍ତ କରୁଥିଲେ ଦୃଢ଼ କଣ୍ଠରେ । ]

୧ମ ଗ୍ରାଃ—ହଁ, ଏହ ଆମର ସଂକଳ୍ପ । ରାଜା ଯଦ ଆମକଥା ନ ଶୁଣନ୍ତି, ତେବେ ଆମେ ଦେଉଳ ଘେରାଉ କରବୁଁ, ସତ୍ୟାଗ୍ରହ ଚଳେଇବୁଁ ।

ସମସ୍ତେ—ହଁ, ହଁ, ସତ୍ୟାଗ୍ରହ ଚଳେଇବୁଁ । ସତ୍ୟାଗ୍ରହ ।

୧ମ ଗ୍ରାଃ—ତେବେ ଆସ ଭାଇମାନେ, ଭାଗବତ ଗୋସେଁଇଙ୍କ ପାଦଛୁଇଁ ଶପଥ କରବୁଁ, ଆମ ଦେହରେ ରକ୍ତର ଶେଷ ବନ୍ଦୁ ଥିବାଯାଏ, ପ୍ରାଣର ଶେଷ ନିଃଶ୍ୱାସ ବୋହୁଥିବା ଯାଏ, ଆମେ ସତ୍ୟାଗ୍ରହ ଚଳେଇବୁ···ଏ ସଂକଳ୍ପରୁ ପଦେ-ହେଲେ ହଟିବୁ ନାହିଁ ।

ସମସ୍ତେ—ପଦେହେଲେ ହଟିବୁ ନାହିଁ ।

୧ମ ଗ୍ରାଃ—ଲକ୍ଷ୍ମୀ ଆମର ମା ।

ସମସ୍ତେ—ଲକ୍ଷ୍ମୀ ଆମର ମା ।

୧ମ ଗ୍ରାଃ—ଲକ୍ଷ୍ମୀ ଆମର, ଆମର ହୋଇ ରହବ ।

ସମସ୍ତେ—ଲକ୍ଷ୍ମୀ ଆମର, ଆମର ହୋଇ ରହବ ।

( ବଶିଷ୍ଠ ପ୍ରବେଶ କଲେ )

୧ମ ଗ୍ରାଃ—ଆସ ପଣ୍ଡିତେ, ଆମେ ମସୁଦା କର, ଏଇୟା ସାର କଲୁଁ,—ରାଜା ଯଦ ଆମ ଗୁହାରି ନ ଶୁଣନ୍ତି, ତେବେ ସତ୍ୟାଗ୍ରହ ।

ସମସ୍ତେ—ସତ୍ୟାଗ୍ରହ ।

( ଲକ୍ଷ୍ମୀ ଆଲୁଳାୟିତା ବେଶରେ ପ୍ରବେଶ କଲେ )

ଲକ୍ଷ୍ମୀ—ସତ୍ୟାଗ୍ରହ । ହେଲେ, ଯା'ଙ୍କୁ ଘେନି ସତ୍ୟାଗ୍ରହ, ତା'କୁତ ପଦେହେଲେ ପଚାର ନାହଁ···କ ସତ୍ୟରେ ସେ ଆବଦ୍ଧ, ତା'ତ ତା' ମୁହଁରୁ ଟିକିଏ ହେଲେ ଶୁଣି ନାହଁ ।

ବଶିଷ୍ଠ—ଲକ୍ଷ୍ମୀ ? ତୁମେ ଏଠି ? ଏ'କ ବାଳିତା ଭାବ ? ତୁମେ ଗୃହ-ଲକ୍ଷ୍ମୀ—ଗୃହକୁ ଫେରଯାଅ, ଲକ୍ଷ୍ମୀ ।

ଲକ୍ଷ୍ମୀ—'ଗୃହ' ? ମୋର ଗୃହ ବିଶ୍ୱ-ଭୁବନ ।— 'ଗୃହ-ଲକ୍ଷ୍ମୀ' ?—ବିଶ୍ୱ ଭୁବନର ମୁଁ ଗୃହ-ଲକ୍ଷ୍ମୀ । ବିଶ୍ୱ-ଦରବାର ଆଜି ଶୁଣିବ ଅକପଟ ଭାଷାରେ ବିବେକର ସତ୍ୟ, ସେଥିପାଇଁ ଧାଇଁ ଆସିଛୁ ଏ'ଠାକୁ । ମୋର ଲଜ୍ଜା ନାହିଁ, ସଂକୋଚ ନାହିଁ । ମାନ ନାହିଁ, ଅପମାନ ନାହିଁ, ସମାଜ ନାହିଁ, ସଂକୀର୍ଣ୍ଣତା ନାହିଁ । ମୋର ଜ୍ଞାନ ପରଧି ସୀମା-ହୀନ, ଦୃଷ୍ଟି-ବଳୟ ରେଖା-ଶୂନ୍ୟ, ହୃଦୟ ଗଗନରେ ଜୁଳୁଛି ତାରକା ଭାସ୍ୱର, ଦଗଦର୍ଶୀ ଦୀପଦଣ୍ଡି । ସତ୍ୟଦାନ ଥରେ ମାନ କରା ଯାଏ, ଏହ ଶିକ୍ଷା ଦେଇଛନ୍ତି ସତୀ ସାବିତ୍ରୀ । ସତ୍ୟ ବେଦୀ ତଳେ ଆତ୍ମବସର୍ଜନ କରବାକୁ ହୁଏ, ଏହ ଆଦର୍ଶ ବାଢ଼ିଛନ୍ତି ତପସ୍ୱିନୀ ଜାନକୀ । ମୁଁ ସେହ ଅମର ଜ୍ୟୋତିର ଅମଳ ଧାରା ଅନୁସରଣ କରବି । ମୁକ୍ତ କଣ୍ଠରେ ମୁକ୍ତ ସତ୍ୟ ପ୍ରକାଶ କରବି । ଶୁଣ, ବିଶ୍ୱବାସୀଗଣ । ସମାଜ ଆଜି ମୋତେ କୁଳ-ଲକ୍ଷ୍ମୀର ଆସନ ଦେଇଛି, ପୂଜା କରୁଛି କୁଳ-ଲକ୍ଷ୍ମୀ ବୋଲି, ହେଲେ, ସମାଜ କରୁଛି ଭୁଲ, ଅଥବା ମୁଁ ଭୁଲାଇଛି ସମାଜକୁ । ମୁଁ ଗୃହଲକ୍ଷ୍ମୀ ନୁହେଁ, ଗୃହର ଅଲକ୍ଷ୍ମୀ । କୁଳ-ଲକ୍ଷ୍ମୀ ନୁହେଁ, କୁଳଟା ।

ସମସ୍ତେ—କୁଳଟା ?

ଲକ୍ଷ୍ମୀ—ହଁ, କୁଳଟା । ଲକ୍ଷ୍ମୀର ସ୍ୱାମୀ ଗୃହ ଦେବତା ନୁହନ୍ତି, ସ୍ୱାମୀ ବିଶ୍ୱ ଦେବତା···ସ୍ୱୟଂ ଗୋପୀନାଥ ।—

[ ଠିକ୍ ସେହ ସମୟରେ ବଂଶୀର ସ୍ୱନ ଭାସି ଭାସି ଆସୁ ଥାଏ ]

ଏହ, ଏହ ଶୁଣ—
ଡାକଇ ଆତୁରେ ମୁରଲୀର ଭଗ୍ନସ୍ୱରେ
ଦେତେ ନୀରବ ନିଶିଥ ଉତ୍ସରେ
'ଲକ୍ଷ୍ମୀ', 'ଲକ୍ଷ୍ମୀ' ବୋଲି ଆକୁଳାଇ ପ୍ରାଣ ।
ଗାଅ, ଗାଅ ଗୀତ···ଉଚ୍ଛୁଳାଇ ପ୍ରୀତ—

'ରତି ସୁଖ ସାରେ ଗତମଭିସାରେ'...
ଅଭିସାରେ ଚାଲେ ଲକ୍ଷ୍ମୀ
ଧୀର ପଦକ୍ଷେପେ ଲକ୍ଷ୍ମୀନାଥ ପୁରେ...

( ଯେପରି ଶୁଣିଲେ ଗୋପୀନାଥଙ୍କ କଣ୍ଠସ୍ୱର—
ସେ ସ୍ୱରରେ ଅଭିମାନ—ବିଷାଦ ପରିସ୍ଫୁଟ ।
ଗୋପୀନାଥ ଗାଉଛନ୍ତି—
"ଦେଉଳର ଦାଅଁ ଗୁରୁରେ ମମତା
ପାଷାଣ ନୟନୁ ଝରେ ବାରି ।"

ଲକ୍ଷ୍ମୀ ଅକୁଳ ହୋଇ ଉଠିଲେ ତାଙ୍କ କଣ୍ଠରୁ ସମବେଦନାର ସ୍ୱର ଫୁଟି ଉଠିଲା—

"କାନ୍ଦେ ମାନବୀ ପଥର ଉହାଡ଼େ
ଲିଭିଯାଏ ରାତ ଝୁରି ଝୁରି ।"

ସେ ଅଟେଇ ଚାଲିଲେ—ଅଞ୍ଚଳ ତଳେ ଲୋଟୁଛି—ବେଣୀ ମୁକୁଳା ହୋଇ ଯାଇଛି' ।— ସମସ୍ତେ ତାଟକା ହୋଇ ପଥର ପାଲଟିଗଲେ ଯେମିତି । ବିଷ୍ଣୁ ଖାଲି ଅନୁସରଣ କଲେ, କୋହଭରା କଣ୍ଠରେ ଡାକି ଡାକି 'ଲକ୍ଷ୍ମୀ'— 'ଲକ୍ଷ୍ମୀ'— )

---

## ସପ୍ତମ ଦୃଶ୍ୟ

—ମନ୍ତ୍ରଣା କକ୍ଷ—

[ ରାଜା ଗମ୍ଭୀର ଭାବରେ ପାଦଚାରଣା କରୁଥିଲେ । ମନ୍ତ୍ରୀ ଉପସ୍ଥିତ ଥିଲେ ]

ରାଜା—ପ୍ରଜାମାନେ ସତ୍ୟାଗ୍ରହର ସଂକଳ୍ପ କରିଛନ୍ତି ?

ମନ୍ତ୍ରୀ—ମହାରାଜ ।

ରାଜା—ରାଜ ବିଦ୍ରୋହ ?

ମନ୍ତ୍ରୀ—ହୁଁ...ହେଲେ ତା...

ରାଜା—ନଗଣ୍ୟ...?

ମନ୍ତ୍ରୀ—ସାମାନ୍ୟ ଗାଁ ମେଳି ।

ରାଜା—ହାଃ, ହାଃ, ହାଃ—( ଗମ୍ଭୀର ଭାବରେ ) ଧୀର-ପ୍ରାଜ୍ଞ । ଏ ଅତି ଅସାମାନ୍ୟ ବିଦ୍ରୋହ । ମୋର ବିଶ୍ୱାସ ବିରୁଦ୍ଧରେ ଗୋଟାଏ ଅଭ୍ୟୁତ୍ଥାନ । ସମଗ୍ର ବିଶ୍ୱବ୍ୟାପି ବିଦ୍ରୋହର ବୀଜ ନିହିତ ଏହି ଗାଁ ମେଳରେ । ମୁଁ ସ୍ପଷ୍ଟ ଆଖିରେ ଏହା ଦେଖି ପାରୁଛି ।

ମନ୍ତ୍ରୀ—ମହିମା—

ରାଜା—ହଁ, ହଁ, ଆଜ ନୀତି ସଙ୍ଗେ ନୀତିର, ଆଦର୍ଶ ସଙ୍ଗେ ଆଦର୍ଶର ସଂଘର୍ଷ । ଶୁଣ, ପ୍ରାଜ୍ଞ,ତୁମେ ଏହିକ୍ଷଣି ସତ୍ୟବାଦୀ ଯାତ୍ରାର ଆୟୋଜନ କର—

ମନ୍ତ୍ରୀ—ଏହିକ୍ଷଣି ?

ରାଜା—ହଁ ହଁ ଏହି ମୁହୂର୍ତ୍ତରେ—ଏ' ମୋର ଅସ୍ମ-ରକ୍ଷାର ଅଭିଯାନ । ମୋର ସଂକଳ୍ପ ବିରୁଦ୍ଧରେ ବିଦ୍ରୋହ...ଗୋଟାଏ ଗ୍ରାମକୁ ଆଶ୍ରୟ କରି ବିପ୍ଳବ । ସେହି ଅଗ୍ନି ବିଶ୍ୱବ୍ୟାପୀ ଶିଖା ଧାରଣ କରିବା ପୂର୍ବରୁ ମୋତେ ଲିଭାଇବାକୁ ହେବ, ତା'ର ସତ୍ତା ମୂଳପୋଛ କରିବାକୁ ହେବ ।

ମନ୍ତ୍ରୀ—ବୀର-ଚନ୍ଦ୍ରକୁ ଯଥା ଆଦେଶ ଜଣାଉଛି, ମହିମା ।
( ଚାଲି ଯାଉଥିଲେ )

ରାଜା—ବୀରଚନ୍ଦ୍ର ନୁହେଁ, ସ୍ୱର୍ଣ୍ଣକାର ।

ମନ୍ତ୍ରୀ—ସ୍ୱର୍ଣ୍ଣକାର !

ରାଜା—ହଁ ହଁ ସ୍ୱର୍ଣ୍ଣକାର ।

ମନ୍ତ୍ରୀ—ଯଥା ଆଦେଶ ( ଚାଲି ଯାଉଥିଲେ )

ରାଜା—ଶୁଣ, ରାଜ କୋଷରେ ଯେତେ ସ୍ୱର୍ଣ୍ଣ ମୁଦ୍ରା ଅଛି, ରାଜପୁରୀ ମଧ୍ୟରେ ଯେତେ ସ୍ୱର୍ଣ୍ଣ ଅଳଙ୍କାର ଅଛି, ଆହୁରି ରାଜ୍ୟ-ସାରା ଘରେ ଘରେ ଯେତେ ସ୍ୱର୍ଣ୍ଣ ଅଛି ଆଣି, ଯାତ୍ରାର ପାଥେୟରୂପେ ଶୀଘ୍ର ଠୁଳକର ।

ମନ୍ତ୍ରୀ—( ଯଥାସମ୍ମାନ ଜଣାଇ ଚାଲିଗଲେ )

ରାଜା—ମୋ'ର ସଂକଳ୍ପ,—ଲକ୍ଷ୍ମୀ-ମୂର୍ତ୍ତି-ପ୍ରତିଷ୍ଠା !— ଲକ୍ଷ୍ମୀର ସ୍ଥାନରେ ଲକ୍ଷ୍ମୀ ମୂର୍ତ୍ତିର ରୂପାୟନ ! !

---

## ଅଷ୍ଟମ ଦୃଶ୍ୟ

—ବକୁଳବନ ଗହଳ—

[ ଲକ୍ଷ୍ମୀ ପ୍ରବେଶ କଲେ ଆଲୁଳାୟିତା ବେଶରେ—କଣ୍ଠରେ ସେହି ସ୍ୱର ।—ମଞ୍ଚର ସେହି ଦୃଶ୍ୟ ଭେଦକରି ଦେଖାଗଲା ଗୋପୀନାଥଙ୍କ ମନ୍ଦିର ସମ୍ମୁଖରେ ଗୋପୀନାଥଙ୍କୁ । କଣ୍ଠରେ ତାଙ୍କର ସେହି କୋହଭରା ସଙ୍ଗୀତ । ଦୁଇହାତ ମେଲି ଡାକୁଛନ୍ତି 'ଲକ୍ଷ୍ମୀ' 'ଲକ୍ଷ୍ମୀ' । ସେ ଏକ ଅପୂର୍ବ ମିନତି— ଅଧୀର ଅପେକ୍ଷା । ଦେବତାର ମାନବ-ପ୍ରୀତିର ଚରମ ନିଦର୍ଶନ ।—ଲକ୍ଷ୍ମୀ ଛୁଟିଗଲେ 'ଲକ୍ଷ୍ମୀନାଥ' 'ଲକ୍ଷ୍ମୀନାଥ' ବୋଲି । ପଛେ ପଛେ ଆସିଲେ ବସନ୍ତ, ମାତ୍ର ସେତେବେଳକୁ ଲକ୍ଷ୍ମୀ ବହୁଦୂର ଆଗେଇ ଗଲେଣି । ସେ କେବଳ ବୁକୁଫଟା ସ୍ୱରରେ ଡାକିଲେ 'ଲକ୍ଷ୍ମୀ' 'ଲକ୍ଷ୍ମୀ' ବୋଲି । ବକୁଳ ବନଟା ଯେପରି ସେହି ଆର୍ତ୍ତନାଦରେ ବିହ୍ୱଳ ହୋଇ ପଡ଼ିଲା । ]

---

## ନବମ ଦୃଶ୍ୟ

—ମନ୍ଦିର ସମ୍ମୁଖ—

[ ଆଲୋକୋଜ୍ଜ୍ୱଳ ମୂର୍ତ୍ତିରେ ଶ୍ରୀ ଗୋପୀନାଥ ବଂଶୀ ବାଦନ କରୁ କରୁ ପ୍ରବେଶ କଲେ ଓ ଅଗ୍ରସରମାନ ହେଲେ । ଲକ୍ଷ୍ମୀ ଅନୁବର୍ତ୍ତିନୀ ଥିଲେ । ମନ୍ଦିର-ଦ୍ୱାର ଉନ୍ମୁକ୍ତ ହୋଇଗଲା । ଗୋପୀନାଥ ମନ୍ଦିର ମଧ୍ୟରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ଦ୍ୱାର ବନ୍ଦ ହୋଇଗଲା । ଲକ୍ଷ୍ମୀ ରହିଗଲେ, ଅନ୍ଧକାର ଦେଖିଲେ, ଅବଶେଷରେ 'ଲକ୍ଷ୍ମୀ-ନାଥ', 'ଲକ୍ଷ୍ମୀ-ନାଥ' ବୋଲି କରୁଡ଼ି ହୋଇ ପଡ଼ିଲେ । ପ୍ରଭାତ ହେଲା । ପ୍ରଭାତୀ ଆଲୋକରେ ଦେଖାଗଲା—ମନ୍ଦିର ସୋପାନ ଉପରେ ଲକ୍ଷ୍ମୀର ପ୍ରାଣହୀନ ଶରୀର ଲୁଣ୍ଠିତ । ଗ୍ରାମବାସୀମାନେ ସେଠାରେ ରୁଣ୍ଡ ହୋଇଥାନ୍ତି । କାହାରି ମୁହଁରେ କଥା ପଦେ ନଥାଏ—ପ୍ରକୃତି ମଧ୍ୟ ନୀରବ ନିଶ୍ଚଳ । ]

ରାଜା—( ଉଚ୍ଛନ୍ନ ହୋଇ ପ୍ରବେଶ କଲେ ) କାହିଁ କାହିଁ ଲକ୍ଷ୍ମୀ ? ସେ କ'ଣ ଶୁଣୁଛି ?

ସମସ୍ତେ—ମହାରାଜ···( ସମସ୍ୱରରେ ଚିତ୍କାର କରି, ଲମ୍ବ ଦମ୍ବ ହୋଇ ଗୋଡ଼ତଳେ ପଡ଼ିଲେ )

୧ମ ଗ୍ରାଃ—ଆମେ ହତ୍ୟାକାରୀ, ଆମକୁ ଶାସ୍ତି ଦିଅନ୍ତୁ ।

ରାଜା—ଭାଇମାନେ ! ହତ୍ୟାକାରୀ ତୁମେ ନୁହଁ, ହତ୍ୟାକାରୀ ତୁମର ରାଜା ନୁହେଁ, ହତ୍ୟାକାରୀ ଆମର ସଂକୀର୍ଣ୍ଣ ସମାଜ । ଆମେ ଆଜି ଶିକ୍ଷିତ, ମାର୍ଜିତ, ଉନ୍ନତ ବୋଲି ଗର୍ବ କରୁଥାଏଁ, ମାତ୍ର ଚମ୍ପୁର ଖଟାଇ ଦେଖିଲେ ବୁଝିବୁ, ଆମେ କେତେ ତଳକୁ ଖସି ପଡ଼ିଥାଏ । ଯୁଗେ ଯୁଗେ ସମାଜ, ରାଷ୍ଟ୍ର ତାର ବିକାଶ ଧାରା ପ୍ରକାଶ କରି ଆସିଛୁ ତ୍ୟାଗ-ସମ୍ବଳିତ କୃତି, ସଂସ୍କୃତିକୁ ଆଶ୍ରୟ କରି । ସତ୍ୟ-ଯୁଗରେ ରାଜା ହରିଶ୍ଚନ୍ଦ୍ରଙ୍କ ତ୍ୟାଗ, ତଥା ସାବିତ୍ରୀଙ୍କର ଉତ୍ସର୍ଗ ଅବିସ୍ମରଣୀୟ; ତ୍ରେତା ଯୁଗରେ ଶ୍ରୀ ରାମଚନ୍ଦ୍ରଙ୍କ ପତ୍ନୀତ୍ୟାଗ, ତଥା ସୀତାଙ୍କ ଆତ୍ମତ୍ୟାଗ କାହାକୁ ଅଭିଭୂତ ନ କରିବ; ଦ୍ୱାପରରେ ଭୀଷ୍ମଙ୍କ ବାସନାତ୍ୟାଗ, ତଥା ଶ୍ରୀକୃଷ୍ଣଙ୍କର ଅସ୍ତ୍ର-ତ୍ୟାଗ ମହନୀୟ ଆଦର୍ଶ ସୃଷ୍ଟି କରିଛି । କଳି-ଯୁଗରେ ମଧ୍ୟ ତ୍ୟାଗ ଦୃଷ୍ଟାନ୍ତର ଅନ୍ତ ନାହିଁ । ଅଶୋକଙ୍କ ହିଂସାତ୍ୟାଗ, ଇନ୍ଦ୍ରଦ୍ୟୁମ୍ନଙ୍କର ବଂଶବାସନା-ତ୍ୟାଗ, ଧର୍ମ ପଦାର ସ୍ୱାର୍ଥତ୍ୟାଗ ଆମର ଆଖି ଆଗରେ ଦେଦୀପ୍ୟମାନ । ସାମାନ୍ୟ ଭୋଗର ଲାଳସା ତ୍ୟାଗ କରିଥିଲେ, ଦେବତା ଆଜି ଆମକୁ କଦାପି ତ୍ୟାଗ କରି ଯାଇ ନ ଥାନ୍ତେ । ନା, ନା, ଲକ୍ଷ୍ମୀ ଆଜି ଆମକୁ ତ୍ୟାଗ କରି ଯାଇ ନାହାନ୍ତି,—କାଳକାଳକୁ ରାଜା ପ୍ରଜା ମଧ୍ୟରେ ସଂଘର୍ଷ, ଦେଉଳ ସମାଜ ମଧ୍ୟରେ ବ୍ୟବଧାନ, ଦେବତା ମାନବ ମଧ୍ୟରେ ବିରୋଧ ଆଉ ନ ରହିବ, ସେହି ଦୃଷ୍ଟିରୁ ଏହି ସେତୁବନ୍ଧ ରଚନା କରିଦେଇଗଲେ ।

[ ସେହି ସମୟରେ ବସନ୍ତ ବିହ୍ୱଳ ଭାବରେ ପ୍ରବେଶ କଲେ । ସଦାନନ୍ଦ ବାବା ତାଙ୍କୁ ଅଟକାଉଥିଲେ ]

ବସ୍ତୁ—ମୋତେ ଛାଡ଼ିଦିଅ, ଛାଡ଼ିଦିଅ,···ଲକ୍ଷ୍ମୀ···ଲକ୍ଷ୍ମୀ (ଏକ ଦୃଷ୍ଟିରେ ଚାହିଁ ରହି, ତା'ପରେ ଗଦ ଗଦ କଣ୍ଠରେ ଡାକିଲେ । )

ସମସ୍ତେ—( ବ୍ୟଥିତ ହେଲେ )

ବସ୍ତୁ—ଲକ୍ଷ୍ମୀ···ତୁମେ ସ୍ୱର୍ଣ୍ଣ, ଥରେ ଅନାଅ, କଥା କୁହ—କୁହ—

ରାଜା—(ବ୍ୟାକୁଳ ଭାବରେ) ସଭାବନ୍ତ !—

ବସ୍ତୁ—( ରାଜାଙ୍କୁ ଅନାଇ ରହିଲେ କିଛିକ୍ଷଣ, ତା'ପର ନିକଟକୁ ଧାଇଁଆସି ମିନତି କଣ୍ଠରେ ) ରାଜା ! ମୁଁ ଲକ୍ଷ୍ମୀକୁ ତ୍ୟାଗ କରିଛି—ହେଲେ, ପଦେ କଥା କହିବାର ଅଛି । ଶେଷ କଥା—ଅନୁମତି ହେଲେ, ରାଜା—

ରାଜା—ଜ୍ଞାନୀ ହୋଇ ଅଜ୍ଞାନ ହେବନି, ସଭାବନ୍ତ—

ବସ୍ତୁ—ଅନୁମତି ମିଳିବନି ? ତେବେ ଛାମୁ ନିଜେ ଲକ୍ଷ୍ମୀକୁ ଜଣାଇ ଦେଇ ପାରିବେନି ମୋ'ର କଥା ପଦକ ?

ରାଜା—କି କଥା ପଦକ, ସଭାବନ୍ତ ?

ବସ୍ତୁ—ମୋ'ର ଅଭିମାନ ଆଉ ନାହିଁ, ଏହି ପଦକ ।

ରାଜା—ସ-ଭା-ବ-ନ୍ତ !

ବସ୍ତୁ—ଛାମୁ ଲକ୍ଷ୍ମୀ ତ୍ୟାଗର ଆଦେଶ ଦେଇଥିଲେ; ତାର ଗୋପନ ଅର୍ଥ—ଲକ୍ଷ୍ମୀ ପ୍ରତି ମୁଁ ଆଉ ଅଭିମାନ ରଖିବିନି···ଏଇଆ ନୁହେଁକି, ରାଜା ?

ରାଜା—ଭାଇ···( କୁଣ୍ଢାଇ ପକାଇଲେ । ଗଣ୍ଡ ଯୁଗଳ ଅଶ୍ରୁପ୍ଳାବିତ ହୋଇଗଲା । )

## ଦଶମ ଦୃଶ୍ୟ

—ବକୁଳବନ-ପଥ—

[ ଆନନ୍ଦ ଓ ସୁଭଦ୍ରା ପ୍ରବେଶ କଲେ । ବୀଣାକାର ବେଶରେ ଆନନ୍ଦ ଓ ପୂଜାରିଣୀ ବେଶରେ ସୁଭଦ୍ରା ।]

ଆନନ୍ଦ—ଆଜି ପୂର୍ଣ୍ଣିମା । ପ୍ରତିଷ୍ଠା-ଦିବସ । ତୁମେ ଏମିତି ମନ ଉଣା କଲେ, ଚଳିବ ?

ସୁଭଦ୍ରା—ଭା-ଇ ।

ଆନନ୍ଦ—ତୁମର ଭାଇନା କେଡ଼େ ସରାଗରେ ପ୍ରତିଷ୍ଠା କାମ ତୁଲାଉଛନ୍ତି, ତୁମେ ତାଙ୍କର ସେ ଉତ୍ସାହ ଭାଙ୍ଗି ଦେବ ତ ?

ସୁଭଦ୍ରା—ତେବେ ବି ନୂଆ-ଭାଉଜଙ୍କ ପାଇଁ ମନ ମୋ'ର···

ଆନନ୍ଦ—ଛି, ସେ ପରା ଦେଉଳର ଲକ୍ଷ୍ମୀ, ଦେଉଳକୁ ବଡ଼େ କରିଛନ୍ତି ।—ବାବା ଆମକୁ କେତେ ଆଉ କେତେ କଥା ବୁଝାଇ ଶେଷକୁ କ'ଣ କହିଲେ··· 'ଲକ୍ଷ୍ମୀର ଶିକ୍ଷା, ଲକ୍ଷ୍ମୀର ଶ୍ରଦ୍ଧା ଅତୁଟ ରଖିବାକୁ ହେଲେ, ତୁମେ ହେବ···

ସୁଭଦ୍ରା—ଶ୍ରେଷ୍ଠ ଲକ୍ଷ୍ମୀ ( କହୁ କହୁ ଆଖିର ଲୁହ ପୋଛି ପକାଇ ସୋତ୍ସାହେ ) ହଁ, ହଁ, ମୁଁ ହେବି ଶ୍ରେଷ୍ଠ-ଲକ୍ଷ୍ମୀ । ତୁମେ ?

ଆନନ୍ଦ—ଶ୍ରେଷ୍ଠ-ସଦାନନ୍ଦ ।

[ ଠିକ୍ ସେତିକି ବେଳେ ଉତ୍ସବର ବାଦ୍ୟଧ୍ୱନି ଶୁଣାଗଲା ]

ସୁଭଦ୍ରା—ଉତ୍ସବ ଆରମ୍ଭ ହୋଇଛି···

( ଦୁହେଁ ଚାଲିଗଲେ ମିଳିମିଶି )

## ଏକାଦଶ ଦୃଶ୍ୟ

—ଗୋପୀନାଥ ମନ୍ଦିର—

[ ଗୋପୀନାଥଙ୍କର ମୁଖକୁ ଟିକିଏ ଆଡ଼ ହୋଇ ଲକ୍ଷ୍ମୀ-ବିଗ୍ରହ ସ୍ଥାପିତ । ବସ୍ତୁ ନିଜେ ଚାମର ଢାଳୁଥିଲେ । ଅନ୍ୟ ଦିଗରେ ଥାଇ ରାଜା ଆଳଟ ପକାଉଥିଲେ । ସଦାନନ୍ଦ ବାବା ଆନନ୍ଦ ହାତକୁ ବୀଣା ଟେକି ଦେଲେ ଓ ସୁଭଦ୍ରା ହାତକୁ ଶିଖା ସମୁଜ୍ଜ୍ୱଳ ଆରତି ଦୀପଟି ଦେଲେ । ]

ଆନନ୍ଦ—( ସଦାନନ୍ଦଙ୍କ ସ୍ଥାନରେ ଉପବେଶନ କରି, ଠିକ୍ ସଦାନନ୍ଦଙ୍କ ଅନୁକରଣରେ ଗାଇବାକୁ ଲାଗିଲେ )—

'ରତି ସୁଖ ସାରେ' ଇତ୍ୟାଦି—

ସୁଭଦ୍ରା—( ଲକ୍ଷ୍ମୀର ଅନୁକରଣରେ ଆରତି ସାରି, ନାଚିବାକୁ ଲାଗିଲେ ଲକ୍ଷ୍ମୀର ଠାଣି ମାଣିରେ )

— ଯବନିକା —

# ଶ୍ରୀସତ୍ୟନାରାୟଣ

—ବ୍ରତମୂଳକ ପୌରାଣିକ ନାଟକ—

# ଭୂମିକା

ଶ୍ରୀ ସତ୍ୟ-ନାରାୟଣଙ୍କ ପୂଜା, 'ପାଲା-ଟୂଜା' ରୂପେ ଓଡ଼ିଶାର ସର୍ବତ୍ର ପ୍ରଚଳିତ । ମନସ୍କାମନା ସିଦ୍ଧି ପାଇଁ ଲୋକେ ଏହି ପୂଜା ମନାସିଥାନ୍ତି । 'ସତ୍ୟ-ପୀର'ଙ୍କର ଅପାର ମହିମାର ନିଦର୍ଶନ ୧୬ ଗୋଟି ବ୍ରତ-କଥା, ସାଧାରଣତଃ ଷୋଳ-ପାଲା ବୋଲି ପ୍ରସିଦ୍ଧ ।

ଗାୟକମାନେ ଏହି ପାଲା ଗାନ କରୁଥିବା ବେଳେ ମୁଁ ଶୁଣିଛି—ତନ୍ମୟ ହୋଇ ଶୁଣିଛି—ତାଙ୍କର ସେହି ସୁନ୍ଦର-ଅନୁପମ ମହିମା କୀର୍ତ୍ତନ । ମୁଁ ପ୍ରବୁଦ୍ଧ ହୋଇଛି ନାଟ୍ୟ-ରୂପ ଦେବାକୁ ।

'ଦାତ୍ୟତା-ଦ୍ଭନ୍ତ'ର ଚରିତ ଗୁଡ଼ିକର ନାଟ୍ୟରୂପ ଜନପ୍ରୀୟତା ଲାଭ କରିଛି—ସେଥିରେ ଉତ୍ସାହିତ ହୋଇ ମୁଁ ଏହି ଷୋଳ-ପାଲା ଭିତରୁ 'ମନୋହର ଫାଶିଆରୀ' ଆଖ୍ୟାନକୁ ପ୍ରଥମେ ନାଟ୍ୟ-ରୂପ ଦେଇଛି । ଏଥିରେ 'ପାଲା'ର ଗୀତାଂଶ, ଯାହା ବହିରେ ଅଛି, ତାହାହିଁ ସ୍ଥାନେ ସ୍ଥାନେ ବ୍ୟବହାର କରିଛି ମୂଳ ପାଲାଗାନକୁ ପ୍ରଚ଼ାର କରିବା ଉଦ୍ଦେଶ୍ୟରେ ।

ପାଲା-ନାଟକକୁ ମୁଁ ବ୍ରତ-ମୂଳକ ନାଟକ ବୋଲି ଅଭିହିତ କରିଛି । ଏହାର ସମାଦର ହେବ ବୋଲି ମୋର ବିଶ୍ୱାସ । ଇତି ।

| | | |
|---|---|---|
| କଟକ | } | ବିନୀତ |
| ତା ୧୯୫୫ ମସୀହା | | ଲେଖକ |

—

# —ଚରିତ୍ରଲିପି—

ଶ୍ରୀ ସତ୍ୟନାରାୟଣ
ନାରଦ
ବିକମଜିତ
ବିଦ୍ୟାଧର (ବଡ଼)
ବିଦ୍ୟାଧର (ସାନ)
ଫାସିଆରୀ
ସତ୍ୟଜିତ
ଡକାୟତ ଗଣ
ନର୍ତ୍ତକ, ନର୍ତ୍ତକୀଗଣ
ପାଲା—ଗାୟକ
ବାୟକ
ପାଲିଆ
ଗ୍ରାମବାସୀ
ରାଜଗୁରୁ
ସୁଭଦ୍ରା
ରଙ୍ଗଲତା
ରାଣୀ
ଗ୍ରାମ୍ୟ ସ୍ତ୍ରୀ
ମାଲ୍ୟାଣୀ
ଡକାୟତ ବୋହୂଗଣ

—

# ଶ୍ରୀ ସତ୍ୟନାରାୟଣ

---

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—କେବଳ ଗୋଟିଏ ଶୂନ୍ୟ ପରଦା—

[ ଅଙ୍କ ଉଦ୍‌ଘାଟନ—ପୂର୍ବରୁ ଠିଆ-ପାଲାର ଯଥାବାଦ୍ୟସମାରୋହର ଅବଦ୍ଧ ଧ୍ୱନି । କ୍ରମେ ଦୃଶ୍ୟପଟର ବିକାଶ । ପାଲା-ଗାୟକର ଏକ ହାତରେ ଗିନି ଓ ଅନ୍ୟ ହାତରେ ଚଅଁର ମୁଠା ଧରି ପ୍ରବେଶ । ଯଥାରୀତିରେ ଗିନି ବଜାଇ ଗାଉଥାଏ ଓ ଚଅଁର ମୁଠା ହଲାଉଥାଏ ।]

ଗାୟକ—"ଶୁଣ ସର୍ବ ବିବାଦରେ ପ୍ରଭୁର କାଲାମ ।
ନିସୃତ ହାସିଲ୍ ହସ୍ତ ପଡେ ହସ୍ତ କାମ ॥
ଇୟାର ପିୟାର ଭାଇ ଶୁଣ ସର୍ବ ଜନ ।
ସତ୍ୟପୀର ସାହେବେର ମହିମା ବର୍ତ୍ତନ ॥

*        *        *        *

ଆମି ସେହି ଦେବତା ଅଲେଖ ନିରାକାର ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ଭୁବନ ଆମାର ॥
ଜଗନ୍ନାଥ ରୂପେ ଆମି ଓଡ଼ିଶାତେ ଆର
ହିନ୍ଦୁ ମୁସଲମାନ ସର୍ବ କରି ଏକାକାର ॥
ରାମ ରହିମାନ୍ ଜାନ କୋରାନେ·ପୁରାନେ ।
ଜାନି ଯେ କେମନ୍ ଲୋକ୍ ମାନେ କି ନା ମାନେ ॥
ତାଂରୁ ପାକା ଆସ୍ଥାନେତେ ସିରନୀ ବାଁଟିଅ ।
ସଞ୍ଜୀବ ହଇବେ ଲୋକ୍ ଦୁହାତ୍ ଗୁଟିଅ ॥
ତବେ ଆମି ସତ୍ୟପୀର ବଲିବେ ବୁଝିଅ ।
ଅତ ବଲି ଆସ୍ଥାନେତେ ଖୋଦାଏ ଗାଡ଼ିଅ ।
ପଦ୍ମଫୁଲ ରୂପ ହଇଅ ସତ୍ୟନାରାୟଣ ।
ଦରିଆତେ ଦାରୁବ୍ରହ୍ମ ଯେସନ ଭାସନ ॥
ଆଉବଡ଼ ଛିଲ କୁନ୍ତ ପାସାର ଯେ ବେଟୀ ।
କୁରାନ୍ ପୁରାନ୍ ଶୁନେ ପ୍ରାତଃକାଲେ ଉଠି ॥
ଗୋପାଲ୍ କରିତେଛିଲ୍ ବେଟୀ ଦରିଆତେ ।
ଦେଖିଅ ସେ ପଦ୍ମଫୁଲ୍ ଉଠାଇଲ୍ ହାତେ ॥
କପାଲେ ବିଧିର ଲେଖା ପୀରେର କରନି ।
ସାମ୍ନେ ଉଠିଅ ଫୁଲ୍ ଶୁଙ୍ଘିଲ୍ ତଖନି ॥
ତତକାଲ୍ କରି କନ୍ୟା ନାକେ ଦିଲ୍ ହାତ ।
ଅଗସ୍ତି ହଇଲ ଯେନ ଗର୍ଭେ ଉପଗତ ॥
ଗୋପାଲ କହିଅ କନ୍ୟା ପ୍ରବେଶ ମହଲେ ।
ପ୍ରଭୁର ପୁରାନ କବିକର୍ଣ୍ଣ ରସେ ବଲେ ॥

ନବାବ ବାଦ୍‌ସାହ ଅମଳରେ ହିନ୍ଦୁ, ମୁସଲମାନ ପାର୍ଥକ୍ୟ ଯେତେବେଳେ ପ୍ରବଳ ହୋଇ ଉଠିଥିଲା, ସେତେବେଳେ ସେହି ତୀବ୍ରତା ହ୍ରାସ କରିବା କାରଣ, କବିକର୍ଣ୍ଣ ଏଭଳି ଗୋଟାଏ ସାଂସ୍କୃତିକ ଓ ଧର୍ମଗତ ଭାବ ସମନ୍ୱୟର ଧାରା ପ୍ରଚଳନ କରିଥିଲେ । ସତ୍ୟପୀରଙ୍କ ଜନ୍ମ ଉଆଣ, ତାଙ୍କର କାରସାଦ ହେଲେ ମଧ୍ୟ ତାହା ମୂଳତଃ ସ୍କନ୍ଦ ପୁରାଣର ରେବାଖଣ୍ଡୋକ୍ତ ଶ୍ରୀ ସତ୍ୟନାରାୟଣ ତତ୍ତ୍ୱ ଓ ମାହାତ୍ମ୍ୟ ଉପରେ ସଂପୂର୍ଣ୍ଣ ପ୍ରତିଷ୍ଠିତ । ସେହି ମୌଳିକ ଆଖ୍ୟାନଟି ଏହିପରି, ଯଥା :—

"ଏକଦା ମୁନୟଃ ସର୍ବେ ଲୋକହିତେ ରତାଃ
ସୁରମ୍ୟେ ନୈମିଷାରଣ୍ୟେ ଗୋଷ୍ଠିଂ ଚକ୍ରୁର୍ମନୋରମଂ

ତଦନ୍ତରେ ମହାତେଜା ବ୍ୟାସ ଶିଷ୍ୟୋ ମହାଯଶାଃ
ସୂତଃ ଶିଷ୍ୟ ଗଣୈର୍ଯୁକ୍ତଃ ସମାଯାତୋ ହରିଂ ସ୍ମରନ୍"

ଏକଦା ମୁନିମାନେ ମାନବ ସମାଜର ଶୁଭ ମନାସି ସୁରମ୍ୟ ନୈମିଷାରଣ୍ୟରେ ସଭା କରି ବସିଥିଲେ । ସହସା ସୂତମୁନି ସଶିଷ୍ୟ ସେଠାରେ ଉପସ୍ଥିତ ହେଲେ । ବ୍ୟାସଦେବଙ୍କର ପଟ୍ଟଶିଷ୍ୟ ସଦାବେଳେ ମୁଖରେ ହରି ନାମ । ମୁନିମାନଙ୍କୁ ଦେଖି ସେ ପ୍ରଣାମ କଲେ । ମୁନିମାନେ ଆଶୀର୍ବାଦ କରି ଦିବ୍ୟ ଆସନ ପ୍ରଦାନ କଲେ । ମୁନିବର ଉପବେଶନ କରନ୍ତେ ସଉନକ ଠିଆ ହୋଇ, କର ଯୋଡ଼ି ବିନୟ ସହକାରେ ପଚାରିଲେ :—

"ମହର୍ଷେ ସୂତ ସର୍ବଜ୍ଞ କଳିକାଳ ସମାଗତେ ।
କେନୋପାୟେନ ଭଗବାନ ହରି ଭକ୍ତିର୍ଭବେନ୍ନୃଣାଂ ।"

ଗୁରୁଙ୍କ କୃପାରୁ ମହର୍ଷି ସର୍ବଜ୍ଞ । କଳି ଯୁଗରେ ଲୋକେ ଧର୍ମ ଜ୍ଞାନ ରହିତ, ଅନାଗତ ପ୍ରାଣ, ରୋଗ ିି ଗ୍ରସ୍ତ । ଅଳ୍ପାୟୁଷ, ଦୀନ ଦରିଦ୍ର । ବ୍ରତ ତପ କଷ୍ଟସାଧ—ସୁତରାଂ ଅଳ୍ପ ପରିଶ୍ରମ, ଅଳ୍ପ ବ୍ୟୟରେ ଲୋକେ କିପରି ହରିନାମ କରିବେ, ପାପରୁ ତରିବେ, ଲୋକରେ ସୁଖ ଶାନ୍ତି ବିରାଜ କରିବ, ଏଥିର ସହଜ ଉପାୟ ବତାଇ ଦେଇ ଏ ଆଲୋଚନା ସଭାକୁ ଧନ୍ୟ କରନ୍ତୁ ।

ସୂତ ଭକ୍ତ ଗଦ୍ ଗଦ୍ କଣ୍ଠରେ କହିଲେ :—

"ଏକଦା ନାରଦଯୋଗୀ ପରାନୁଗ୍ରହ କାଂକ୍ଷିୟା,
ପର୍ଯ୍ୟଟନ ବିବିଧାନ୍ ଲୋକାନ୍ ମର୍ତ୍ତ୍ୟଲୋକ ମୁପାଗତଃ ।"

ଧନେ ସଦା ପରହିତବ୍ରତ ମହାମୁନି ନାରଦ ଚଉଦ ଭୁବନ ପର୍ଯ୍ୟଟନ କରି ମର୍ତ୍ତ୍ୟକୁ ଆଗମନ କଲେ । କଳିଯୁଗର ସମାଗମରେ ମର୍ତ୍ତ୍ୟବାସୀ ଭକ୍ତ ଭାବରେ ଦୁର୍ଦଶାକ୍ଲିଷ୍ଟ, ତାହା ପ୍ରତ୍ୟକ୍ଷ ଦର୍ଶନ କଲେ । ପ୍ରାଣ ତାଙ୍କର ବ୍ୟାକୁଳ ହୋଇଉଠିଲା । ସେ ତତ୍‌କ୍ଷଣାତ୍ ବିଷ୍ଣୁଲୋକରେ ଯାଇ ଉପନୀତ ହେଲେ ଏବଂ ଶ୍ରଦ୍ଧନଙ୍କୁ ଚେତାଇବା ପାଇଁ ବୀଣା ଯନ୍ତ୍ର ବଜାଇ ଗାଇବାକୁ ଲାଗିଲେ,—

[ ପଟ୍ଟ ପରିବର୍ତ୍ତନ ]

---

## ଦ୍ୱିତୀୟ ଦୃଶ୍ୟ

—ବିଷ୍ଣୁଲୋକ—

[ ନାରଦ ଗାଇ ଗାଇ ପ୍ରବେଶ କଲେ ]

ନାରଦ— ଗୀତ

ହରି ଗୁଣ ଗା ତୁ ନିଶି ଦିନ—ରେ ମନ,
ହରି ବିନା ସୁଖଦାୟୀ କାହିଁ ଆନ ରେ—ହରି—
ହରି ମୁକତି ଦାତା, ହରି ପାପ ପରିତ୍ରାତା
ହରି ପାଦେ ରଖିଥା' ଧିଆନ ରେ—
ହରି ଗୁଣ ଗାତୁ···

[ ଗୀତାନ୍ତେ 'ସତ୍ୟନାରାୟଣ' ରୂପଧାରୀ ଶ୍ରୀବିଷ୍ଣୁ ମୃଦୁ ମୃଦୁ ହସି ବିପରୀତ ଦିଗରୁ ପ୍ରବେଶ କଲେ । ]

ନାରାୟଣ—ନାରଦ !

ନାରଦ—ନାରାୟଣ···( କିଛି କାଳ ପଲକହୀନ ନେତ୍ରରେ ଚାହିଁ ରହିଲେ )

ନାରାୟଣ—ଆଶ୍ଚର୍ଯ୍ୟ ହୋଇ ଦେଖୁଛ କ'ଣ କୁହତ ?

ନାରଦ—ଦେଖୁଛି,—ଦେବଙ୍କର—ସର୍ବବର୍ଣ୍ଣୋଜ୍ଜ୍ୱଳ—ଶୁକ୍ଳବର୍ଣ୍ଣରୂପଂ

ନାରାୟଣ—ଏହି ତ ମୋର ସତ୍ୟ ସ୍ୱରୂପ, ନାରଦ ! ମୁଁ—ସତ୍ୟନାରାୟଣ ।

ନାରଦ—ନାରାୟଣ—ନାରାୟଣ—ନାରାୟଣ—

ନାରାୟଣ—ନାରଦ ! ତୁମକୁ ଆଜି ଭାରି ବ୍ୟଥିତ ମନେ ହେଉଛି,—କଥା କ'ଣ ?

ନାରଦ—ଅନ୍ତର୍ଯ୍ୟାମୀ ! ପର-ସେବା-ବ୍ରତରେ ଏ ଦୀନ ଦାସକୁ ଲଗାଇ, ପର କରିଦେଇ, ଏବେ ପରିହାସ କରୁଛନ୍ତି ତ ?

ନାରାୟଣ—( ହସି ହସି ) ଜାଣେ, ମର୍ତ୍ତ୍ୟବାସୀଙ୍କ ଦୁଃଖରେ ତୁମେ ଦୁଃଖିତ—ସେହି ଦୁଃଖ ମୋଚନ ହେବ କିପରି, ତା'ର ଉପାୟ ଲୋଡ଼ି, ଉଦ୍ଭ୍ରାନ୍ତ ହୋଇ ଧାଇଁ ଆସିଛ ବୈକୁଣ୍ଠକୁ; ହେଲେ······

ନାରଦ—ହେଲେ ?

ନାରାୟଣ—ମାନବ ତ ଆଜି ନିଜକୁ ସ୍ୱୟଂସିଦ୍ଧ ମନେ କରୁଛି—ଉପାୟ କ'ଣ ?

ନାରଦ—ଭସ୍ମାସୁର ଭସ୍ମ କରିବାର ଶକ୍ତି ଲାଭ କରିଥିଲା, ସେଥିପାଇଁ ଦାୟୀ ମହାଦେବ—ଭସ୍ମାସୁର ନୁହେଁ ।

ନାରାୟଣ—ବେଶ୍, ବିଜ୍ଞ ମାନବ ମଧ୍ୟ—ନିଜର ଶକ୍ତି ପରୀକ୍ଷା ନିଜଠାରେ କରି, ଦିନେ ଧ୍ୱଂସ ହେବ—କା'ର କ'ଣ ?

ନାରଦ—ତେବେ 'ବିଶ୍ୱ ପାଳନ କର୍ତ୍ତା'—ଏପରି ବୋଲାଇବାର ଅର୍ଥ ?

ନାରାୟଣ—( ସ୍ମିତ କଟାକ୍ଷ କରି ) ପ୍ରକାରାନ୍ତରେ ମୋର ଏହି ସତ୍ୟସ୍ୱରୂପ ପ୍ରତି କଟାକ୍ଷ କରୁନାହଁ ତ ?

ନାରଦ—(ଅପ୍ରତିଭ ହୋଇ) ନାରାୟଣ ··

ନାରାୟଣ—କ'ଣ କରିବ ନାରଦ ! ଏହି ଛଦ୍ମାବରଣ-ମୂର୍ତ୍ତି ଛାଡ଼ି ସ୍ୱଚ୍ଛନ୍ଦ ମୂର୍ତ୍ତି ଧାରଣ କଲେ ମଧ୍ୟ, ବନ୍ଧୋକ୍ତିର ମନ୍ଦ ସ୍ୱଭାବଟା ଛାଡ଼ି ପାରୁନି ।

ନାରଦ—ଅପରାଧ ହୋଇଛି—ମାର୍ଜନା······

ନାରାୟଣ—ଆଃ—'ମାର୍ଜନା'—'ମାର୍ଜନା'— ମାର୍ଜନା ବିଷୟରେ ଯେମିତି ମୁଁ ନିତାନ୍ତ କୃପଣ !···

ନାରଦ—( ଅପ୍ରତିଭ ହୋଇ ଗଲେ )

ନାରାୟଣ—ଏଣେ ଚାହିଁ ତ, ମହର୍ଷି !

( ହାତ ଦେଖାଇଲେ )

ନାରଦ—(ଅନାଇଲେ)

ନାରାୟଣ—ମୋର ହସ୍ତରେଖାରେ ନୂତନତ୍ୱ କିଛି ଦେଖୁଛ ?

ନାରଦ—(ନିରୀକ୍ଷଣ ପୂର୍ବକ) ଦେଖୁଛି ।

ନାରାୟଣ—କ'ଣ ?

ନାରଦ—ଶଙ୍ଖ, ଚକ୍ର, ଗଦା, ପଦ୍ମ,—ଏହି ଚିହ୍ନ ଗୁଡ଼ିକର ଏକ, ଏକ ନୂତନ ରୂପରେଖ ।

ନାରାୟଣ—ନୂତନ ନୂତନ ଭାବଧାରାକୁ ଇଙ୍ଗିତ କରି, ଯଥା—

ନାରଦ—ଯଥା ?

ନାରାୟଣ—ଜ୍ଞାନ, ଦୟା, ଅହିଂସା, ଅକପଟତା—

ନାରଦ—ଅର୍ଥାତ୍ ?

ନାରାୟଣ—ଏହି ଗୁଣଗୁଡ଼ିକ ହାସଲ କଲେ, ଶୋକ ସନ୍ତପ୍ତ ଧରାଧାମରେ ଜୀବ ସୁଖ ଶାନ୍ତିର ଅଧିକାରୀ ହେବ; ଏବଂ ସେ ଗୁଡ଼ିକର ଉତ୍କର୍ଷ ସାଧନ ଫଳରେ, ଦିନେ ନରଦେହୀ ନାରାୟଣ ବୋଲାଇବ ।

ନାରଦ—ମାତ୍ର ତାହା ହାସଲ କରିବାର ସହଜ ସୂତ୍ର ?

ନାରାୟଣ—ସରଳ ବିଶ୍ୱାସ ।

ନାରଦ—କିପରି ?

ନାରାୟଣ—ଅବହିତ ହୁଅ—ଶୁଣ···

( ନେପଥ୍ୟେ ଖଞ୍ଜଣୀ ବାଦ୍ୟ ଶୁଣାଗଲା )

ନାରାୟଣ—ଶୁଣୁଛ କିଛି ?

ନାରଦ—ଶୁଣୁଛି—ଖଞ୍ଜଣୀବାଦ୍ୟ ।

ନାରାୟଣ—ମୋ'ର ସ୍ତୁତିର ଆହ୍ୱାନ । ମୋ'ର ମାହାତ୍ମ୍ୟକୁ କେନ୍ଦ୍ର କରି ଅଦୂର ଅତୀତର ଗୋଟିଏ ପାଲା ଅଧ୍ୟାୟ ନାଟକାକାରରେ ବାଢ଼ି ଦେଉଛି, ଦେଖ ।

[ ନାରଦଙ୍କୁ ଦିବ୍ୟ ଦୃଷ୍ଟି ଦାନ କଲେ । ]

ନାରାୟଣ—ଦେଖୁଛ ସ୍ପଷ୍ଟ ?

ନାରଦ—ସ୍ପଷ୍ଟ ।

ନାରାୟଣ—କେଉଁ ଦୃଶ୍ୟ ?

ନାରଦ—ଗଭୀର ଅରଣ୍ୟ—ଥୋକେ ଗୋପାଳ, ଅନ୍ୟାନ୍ୟ ଜାତି ପାଟକ ନର ନାରୀ ମଧ୍ୟ ଏକାଠି ହୋଇ ଗୋଟିଏ ପୂଜା ଅନୁଷ୍ଠାନକୁ ଘେରି ବସିଛନ୍ତି—ଅଜ୍ଞ ପୂଜାପଣ୍ଡା ପଣ୍ଡିତ ବ୍ରାହ୍ମଣଟିଏ ପୋଥି ବୋଲି ଶୁଣାଉଛନ୍ତି···

ନାରାୟଣ—ଓଃ କିମିତି ପାଳିବାକୁ ହୁଏ—ତା'ର ନିୟମ ପଢ଼ୁଛି !···

[ ପଞ୍ଚ ପରିବର୍ତ୍ତନ ]

## ତୃତୀୟ ଦୃଶ୍ୟ

—କଳିଙ୍ଗ ରାଜ୍ୟର ବନ ଭୂମିର ଗୋଟିଏ ନିଭୃତଅଂଶ—

[ ଯଥାବିଧିରେ ସତ୍ୟନାରାୟଣ ପୂଜାର ବ୍ୟବସ୍ଥା ହୋଇଛି । ନର ନାରୀମାନେ ଘେରିବସି, ତନ୍ମୟ ଚିତ୍ତରେ ବ୍ରାହ୍ମଣର ପୋଥି ବୋଲା ଶୁଣୁଥା'ନ୍ତି— ମଧ୍ୟେ ମଧ୍ୟେ ହରିବୋଲ—ହୁଳ ହୁଳି ଗୁଳିଥାଏ ]

ବ୍ରାହ୍ମଣ—ଇଚ୍ଛାହେବ ଯେଉଁଦିନ କରିବାକୁ ବ୍ରତ—
ରହିବ ସେଦିନ ହୋଇ ଇନ୍ଦ୍ରିୟ ବିଜିତ ॥
ଉପବାସୀ ହୋଇ ନାରାୟଣେ ମନେ ଚିନ୍ତି ।
ନିଶା ମୁଖେ ପୂଜିବ ଯେ କରି ଦୃଢ଼ଭକ୍ତି ॥
ବନ୍ଧୁ କୁଟୁମ୍ବାଦି ମାନଙ୍କରେ ଯୁକ୍ତ ହୋଇ ।
ବ୍ରାହ୍ମଣ ମାନଙ୍କ ହସ୍ତେ ପୂଜିବ ଚିତ୍ତେଇ ॥
ପକ୍ୱରମ୍ଭା ଫଳ ଘୃତ କ୍ଷୀର ସଙ୍ଗେ ନେଇ ।
ଗୋଧୂମ ବା ତଣ୍ଡୁଳର ଚୂର୍ଣ୍ଣକୁ ମିଶାଇ ॥
ଶର୍କରା ବା ଗୁଡ଼ ଏଳା ଲବଙ୍ଗ କର୍ପୂର ।
ମରିଚ ସହିତ କରି ଏକତ୍ର ସତ୍ୱର ॥
ଏପରି ଦ୍ରବ୍ୟର ନାମ ପ୍ରସାଦ ବୋଲାଇ ।
ଦେବ ଯୋଗ୍ୟ ଉତ୍ତମ ନୈବେଦ୍ୟ ତାକୁ କହି ॥
ଏପରି ନୈବେଦ୍ୟ ସତ୍ୟନାରାୟଣେ ଦେବ ।
ବ୍ରାହ୍ମଣେ ଦକ୍ଷିଣା ଦେଇ, କଥାକୁ ଶୁଣିବ ॥
କଥା ଶେଷେ ବନ୍ଧୁଜନ ମାନଙ୍କ ସଙ୍ଗରେ
ବ୍ରାହ୍ମଣ ଭୋଜନ କରାଇବ ସନ୍ତୋଷରେ ।
ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରାଇ ଆଜ୍ଞା ନେଇ ।
ପ୍ରସାଦ ଭକ୍ଷିବ ବନ୍ଧୁଗଣ ସଙ୍ଗହୋଇ ॥
ତହିଁପରେ ନୃତ୍ୟ ଗୀତ ବାଦ୍ୟ କରାଇବ ।
ମାନସରେ ସତ୍ୟନାରାୟଣ ଭଜୁଥିବ ॥
ଏପରି ଯେ ସତ୍ୟନାରାୟଣ ବ୍ରତ କଲେ ।
ଅବଶ୍ୟ ତାହାର ମନବାଞ୍ଛା ଫଳ ମିଳେ ॥

[ ଠିକ୍ ସେହି ସମୟରେ ଶିକାରୀ ବେଶରେ କଳିଙ୍ଗରାଜ ବିକମଜିତ୍ ଅଟ୍ଟହାସ୍ୟ ପୂର୍ବକ ପ୍ରବେଶ କଲେ ]

କଳିଙ୍ଗରାଜ—ମନୋବାଞ୍ଛା—ଫଳ ମିଳେ—ହାଃ— ହାଃ—ହାଃ

ସମସ୍ତେ—ମହାରାଜ !

କଃରାଜ—ହଁ—କୁଶଳ ଦ୍ୱୀପର ରାଜା ମୁଁ—କଳିଙ୍ଗ ବିଜୟୀ ମହାରାଜ ! ଲୁବ୍ଧ—କଳିଙ୍ଗ ନିବାସୀ ପ୍ରଜା ପାଷଣ୍ଡ ଗଣ ! ଏହି ଗଭୀର ଅରଣ୍ୟ ମଧ୍ୟରେ, ନିଶାର ସମାଗମରେ, କି ଗୁପ୍ତ ମନ୍ତ୍ରଣାରେ ଲିପ୍ତ ରହିଛ ? ମୋର ମୁଣ୍ଡପାତ କରିବ ?—ମନୋବାଞ୍ଛା ପୂର୍ଣ୍ଣ କରିବ ? ବେଶ୍, ଏଭଳି ଦୁରଭିସନ୍ଧି ମୂଳକ ମନୋବାଞ୍ଛାର କି ଫଳ ମିଳେ—ତା'—ହାତେ ହାତେ ପରଖି ନିଅ ।

( ଅସି ନିଷ୍କାଷିତ କଲେ )

ବ୍ରାହ୍ମଣ—ମହାରାଜ ! ଆମର ତ କୌଣସି ଦୁରଭିସନ୍ଧି ନାହିଁ ।

କଃରାଜ—ତେବେ, ଏ ଗୁପ୍ତ ମନ୍ତ୍ରଣାର ଅଭିପ୍ରାୟ ?

ବ୍ରାହ୍ମଣ—ଏ'ତ ଗୁପ୍ତ ମନ୍ତ୍ରଣା ନୁହେଁ, ପ୍ରଭୁ ?

କଃରାଜ—ଆଉ ?

ବ୍ରାହ୍ମଣ—ଶ୍ରୀ ସତ୍ୟନାରାୟଣ ପୂଜା ।

କଃରାଜ—ସତ୍ୟନାରାୟଣ ପୂଜା—ଏଇ ପୂଜାକୁ ଆଳ କରି, ପ୍ରତି ସଂକ୍ରାନ୍ତି ଦିନ ରାଜ୍ୟର ଘରେ ଘରେ ଗୋଟାଏ ଅବାଞ୍ଛିତ ବୈଠକ ବସୁଥିଲା । ଉଜୀର ତାଙ୍କର ତୀକ୍ଷ୍ଣ ନଜର ବଳରେ ଏହି ପୂଜାର ଗୁପ୍ତତଥ୍ୟ ଆବିଷ୍କାର କରି, ମତେ ଅତି ସନ୍ତର୍ପଣରେ ଜଣାଇ ଥିଲେ—ମୁଁ ତତ୍‌କ୍ଷଣାତ୍ ସତ୍ୟନାରାୟଣ ପୂଜା ଅବୈଧ ବୋଲି ଘୋଷଣା କରି, ଆସନ୍ନ ମେଳି ଅଙ୍କୁରରେ ବିନାଶ କରିଥିଲି । ଆଉ—ତୁମେ—ସେହି ରାଜାଦେଶ ଲଙ୍ଘନ କରି, ଚରମ-ଶାସ୍ତି ଶୂଳିକୁ ଉପେକ୍ଷା କରି, ରାଜ୍ୟସାରା ଲୋକେ ଏକାଠି ହୋଇ, ନର ନାରୀ ନିର୍ବିଶେଷରେ ନିରଙ୍କୁଶ ରାଜ-ବିଦ୍ରୋହର ଗୁପ୍ତ ମନ୍ତ୍ରଣା ଚଳାଉଛ—ଏହି ରାଜ୍ୟ ବାହାରେ—ଗୁପ୍ତ ସ୍ଥାନରେ ଥାଇ ?

ବ୍ରାହ୍ମଣ—ମିଥ୍ୟା କଥା ।

କଂରାଜ—ଆଜି ଶିକାରକୁ ଆସି—ଶିକାର ସନ୍ଧାନରେ ବ୍ୟର୍ଥ ମନୋରଥ ହୋଇ ଏଠାକୁ ଆସି—ଆଖିରେ ଦେଖି ନ ଥିଲେ ଯେଉଁକଥା ଥିଲା । ତୁମେଇ ଦଳର ଅଧିନାୟକ—ବିପ୍ଳବର ମନ୍ତ୍ରଦାତା । କିଏ ଅଛ ?

ବ୍ରାହ୍ମଣ—ଭାଇମାନେ । ଶ୍ରୀ ସତ୍ୟନାରାୟଣଙ୍କ ପୂଜା କରୁଛ—ସତ୍ୟାଶ୍ରୟୀ ହେବାକୁ ଭୁଲ ଯିବ ନି—ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ସେହି ନାରାୟଣ, ଆଜି ଦୟା, ଅହିଂସା, ସରଳତା ଉପଦେଶ—ଶିକ୍ଷା ଦାୟୀ ଶ୍ରୀ ସତ୍ୟନାରାୟଣ—ମନେରଖ—ପ୍ରଣାମ କର । ( ସମସ୍ତେ ପ୍ରଣାମ କଲେ )

କଂରାଜ—ରାକ୍ଷସର ଜୀବନ ଫଳୁଅ ପରି ରାଜଦ୍ରୋହୀ ରାକ୍ଷସ ଦଳର ଗୁପ୍ତ ମନ୍ତ୍ରଣାର ସିଦ୍ଧି ମନ୍ତ୍ର ନିହିତ ରହିଛି, ଏହି ପୂଜାଗାଦିରେ । ସୈନ୍ୟଗଣ । ଭାଙ୍ଗ ଏ ଗାଦିକୁ ।

ବ୍ରାହ୍ମଣ—ଅସମ୍ଭବ । ( ଗାଦିକୁ ଆଗୁଳାଇ ଛିଡ଼ା ହେଲେ )

କଂରାଜ—ବଧ କର, ଏ ବ୍ରାହ୍ମଣକୁ ।

ବ୍ରାହ୍ମଣ—ହାଃ ହାଃ ହାଃ—ବଧ କରିବେ ? କରନ୍ତୁ, କିନ୍ତୁ ପୂଜା ଏଥିରେ ରୋଧ କରି ପାରିବେ ନାହିଁ—ହିଂସାରେ ଆପଣ ରାଜ୍ୟ ଜୟ କରିଛନ୍ତି ସତ୍ୟ, କିନ୍ତୁ ମାନବକୁ ଜୟ କରି ପାରି ନାହାନ୍ତି ।

କଂରାଜ—ଆଉ ଦମ୍ଭ ତ ?

ବ୍ରାହ୍ମଣ—ଏ ମାନବର ଦମ୍ଭ ମହାରାଜ । ଜୈବ ଧର୍ମ ପଶୁର ଯେପରି ଅଛି—ମାନବର ମଧ୍ୟ ସେହିପରି ଅଛି । ଯେଉଁ ବିଶେଷ ଧର୍ମ ଯୋଗୁ ମାନବ—'ମାନବ', ତାହା ହେଉଛି ଆତ୍ମାର ଧର୍ମ—ମାନବ ତା'ର ସତ୍ତା ଦେଖେ ଆତ୍ମା ମଧ୍ୟରେ । ମାନବ ବଞ୍ଚି ରହେ ଆତ୍ମାର ଉତ୍କର୍ଷ ସାଧନରେ—ଚିରନ୍ତନ ଆତ୍ମ-ବିକାଶର ନିରବଚ୍ଛିନ୍ନ ଧାରାରେ ।

କଂରାଜ—ମୁଁ ବର୍ତ୍ତମାନ—ବର୍ତ୍ତମାନର କଥାହିଁ ଜାଣେ —ବର୍ତ୍ତମାନର କାର୍ଯ୍ୟହିଁ କରିବି । (ବଧୋଦ୍ୟତ)

ବ୍ରାହ୍ମଣ—ପଶୁର କାର୍ଯ୍ୟ କରିବେ, ମହାରାଜ ? ପଶୁର ଅଛି କେବଳ ବର୍ତ୍ତମାନ; କିନ୍ତୁ ମାନବର ଅଛି ଅତୀତ, ବର୍ତ୍ତମାନ, ଭବିଷ୍ୟତ ।—ଆଦିମ ଯୁଗର ମାନବ ଆଜି ଯେତିକି ସଂସ୍କୃତ ଓ ଅଗ୍ରସର, ସେତିକି ସେ ତ୍ରିକାଳର ଚିନ୍ତାଧାରାର ସମନ୍ୱୟ ପ୍ରଚେଷ୍ଟାରେ ସାଧନକ୍ଷମ । ଆଜିର ଏହି କୃଷ୍ଟି, ସଂସ୍କୃତି ତା'ର ମାନଦଣ୍ଡ—ସେଥିରେ ରହିଛି, ଆଦି ଅନ୍ତହୀନ ଜୀବନଧାରାର ଗୋଟାଏ ସ୍ପଷ୍ଟ ସଂକେତ—ଅତୀତର ପରଂପରା, ବର୍ତ୍ତମାନର କର୍ମ, ଭବିଷ୍ୟତର ସ୍ୱପ୍ନ ।

କଂରାଜ—ଭବିଷ୍ୟତର ସ୍ୱପ୍ନ ? ମୁଁ ଅପୁତ୍ରିକ, ମୋର ପୁତ୍ର ହେବାର ସଂକେତ ଏଥିରୁ ମିଳିବ ବ୍ରାହ୍ମଣ ?

ବ୍ରାହ୍ମଣ—ବ୍ୟକ୍ତିଗତ ବାସନା—ଆପଣଙ୍କର ପୁତ୍ର ବାସନା ଚରିତାର୍ଥ ହେବ, ଯଦି···

କଂରାଜ—ଯଦି ?

ବ୍ରାହ୍ମଣ—ଯଦି ଆପଣ ଆତ୍ମବିଶ୍ୱାସରେ ବ୍ରତୀ ହୋଇ, ତାହା କାମନା କରନ୍ତି ।

କଂରାଜ—ଅର୍ଥାତ୍ ?

ବ୍ରାହ୍ମଣ—ଆପଣ ଯଦି, ପରର ଚକ୍ଷୁ ଓ ତାର ଦେଇ ନିଜର ଚକ୍ଷୁ ବ୍ୟବହାର କରନ୍ତି । ଆପଣ ଯଦି ବିଦେଶୀୟ ପ୍ରଭାବରୁ ଆଚ୍ଛନ୍ନ ମନକୁ ମୁକୁଳାଇ ଦେଶୀୟ ଭାବରେ ନିଜକୁ ଅନୁପ୍ରାଣିତ କରନ୍ତି—ଆପଣ ଯଦି କାନ-କୁହାର ଶ୍ରୁତ ବାକ୍ୟରେ ନ ଭୁଲି ବିବେକର ରୁଢ଼ କଥାରେ ଆବଦ୍ଧ ହୁଅନ୍ତି;—ତେବେ ଆତ୍ମ ପରିଚୟ ପାଇବାକୁ ଆଦୌ ବିଳମ୍ବ ହେବ ନାହିଁ; ଫଳରେ ମାନବ ତାର ମୂଳତତ୍ତ୍ୱ ଯେଉଁ ସାମ୍ୟବାଦ, ତାହା ହେବ ଆପଣଙ୍କ ଜୀବନର ସାରତତ୍ତ୍ୱ । ଆଉ ଆମର କୃଷ୍ଟି, ସଂସ୍କୃତି ସମ୍ଭୂତ ଶ୍ରୀ ସତ୍ୟନାରାୟଣ ଗୋସାଇ ରାମା ଶାମାର ଯେପରି ଜୀବନଦେବତା, ମହାରାଜଙ୍କର ମଧ୍ୟ ସେପରି ଜୀବନଦେବତା—ଏହା ଅତି ସହଜରେ ଉପଲବ୍ଧି କରିପାରିବେ; ତେଣୁ···

ଢ଼ଃରାଜ—ତେଣୁ, ଏହି ଗୋପାଳଙ୍କ ଦେବତାଠାରେ ଭୂପାଳ ମଧ୍ୟ ଯାହା ପ୍ରାର୍ଥନା କରିବ, ତାହା ଅଚିରେ ପୂର୍ଣ୍ଣ ହେବ ?

ବ୍ରାହ୍ମଣ—ଅବଶ୍ୟ ।

ଢ଼ଃରାଜ—( ନତଜାନୁ ହୋଇ ) ହେ ସତ୍ୟ-ଦେବତା ! ମୁଁ ଅପୁତ୍ରିକ—ମୋର ପୁତ୍ର ହେଉ, ଏହି ମନୋବାଞ୍ଛା ଫଳ ପ୍ରଦାନ କର ।

[ ଗହଳ ମଧ୍ୟରୁ ବିଦ୍ୟାଧର ଆସି, ରାଜାଙ୍କୁ ତା'ର ମୁକାଟି ଦେଇ ]

ବିଦ୍ୟାଧର—ହେଲେ, ତୁମର ତ ମୁକା ନାହିଁ, ରାଜା ? ମୋର ମୁକାଟି ନିଅ । ଯା'ର ତା'ର ମୁକା—ଗହମ ଗୋଟି ଗଣିତା—ଅଧିକା ଅଦୌ ନୁହେଁ । ନିଅ, ପାଟରାଣୀ ମହାଦେଈଙ୍କୁ ଦେବ, ମନକାମନା ପୂର୍ଣ୍ଣ ହେବ ।

ଢ଼ଃରାଜ—( ଯନ୍ତ୍ର ଚାଳିତ ପରି ମୁକାଟି ନେଇ ) ତୁମେ କିଏ ?

ବିଦ୍ୟାଧର—ମୁଁ ?—ବଗୁଲିଆ । [ କହି ଦୌଡ଼ି ଚାଲିଗଲା—ସମସ୍ତେ ତା'ର ଯିବା ପଥକୁ ଚାହିଁ ରହିଲେ । ]

---

—ଚତୁର୍ଥ ଦୃଶ୍ୟ—

—ଗୋଟିଏ ଜୀର୍ଣ୍ଣ କୁଟୀର ସମ୍ମୁଖ—

[ ଫୁଲସଞ୍ଜ ବେଳ । ଶଂଖଧ୍ୱନି ଶୁଣା ଯାଉଥାଏ—ବିଦ୍ୟାଧର ଡାକି ଡାକି ପ୍ରବେଶ କଲା । ]

ବିଦ୍ୟାଧର—ମା—ମା— ।

ସୁଭଦ୍ରା—( ପ୍ରବେଶ କରି, ସଞ୍ଜ ଦୀପ ଥୋଇ ଦେଇ ଓ ପ୍ରଣାମ ସାରି, କହିଲା ) କ'ଣ କି ରେ ?

ବିଦ୍ୟାଧର—କାମ ଫତେ ।

ସୁଭଦ୍ରା—ବଗୁଲିଆ ।

ବିଦ୍ୟାଧର—ବଗୁଲିଆ, ବଗୁଲିଆ ବୋଲି ସବୁବେଳେ କହୁ, ବଗୁଲିଆର କରାମତି ଆଜି ଦେଖେଇଚି, ମା ।

ସୁଭଦ୍ରା—ଅରେ ! କ'ଣ କରିଛୁ ଶୁଣେ ? ବାହାର କଲି ଆଣି ଘରେ ପୂରେଇଛୁ, ନା କ'ଣ ? ଆଜି ତୋର ଜନ୍ମ ଦିନଟା—ବାପ ଛେଉଣ୍ଡ—କେହି ଦି'ଆଖିରେ ଦେଖି ପାରନ୍ତି ନାହିଁ । ଗୁଡ଼, ପୂଜା ନେଇ ସତ୍ୟଗୋସେଇଁ ପୂଜିଗଲୁ—ବାଟରେ ଆସୁ ଆସୁ—କି'ରେ ? ତୋ ହାତ ଖାଲି ?—ପୂଜା ମୁକା ?

ବିଦ୍ୟାଧର—ସେଇ କଥାତ କହୁଛି । ତୁ ତ ଖାଲି ଗାଡ଼ୁଛୁ ଗାଡ଼ୁଛୁ ହୋଇ କିଛି ବୁଝାଇ ଦେଉନାହୁଁ ।

ସୁଭଦ୍ରା—ଅରେ—କିଏ ଛଡ଼ାଇ ନେଲା ନା କ'ଣ ?

ବିଦ୍ୟାଧର—ହୁଁ…ଛଡ଼େଇ ନେବ—ପଡ଼ିଛି ଖାଲି । ମୁଁ ବିଦ୍ୟାଧର—ସଦାନନ୍ଦ ନୁହେଁ । ହକ୍ କଥା ମା ! ମୁଁ ଯଦି ସେତେବେଳେ ଜନ୍ମିଥାନ୍ତି—ବାପାଙ୍କୁ ମାରି ସମ୍ପତ୍ତି ଛଡ଼ାଇ ନେଇଥାନ୍ତା ? ସାଉକାରର ଜଣେ ଖାତକ ତୁ, କହତ…ଆଜି ଆମର ଏହି ଅରକ୍ଷିତ ଦଶା—ଛି, ତୁ କାନ୍ଦୁଛୁ ମା ?…

ସୁଭଦ୍ରା—ବଗୁଲିଆମି କରବୁ ପଛେ—ମୁକା କ'ଣ କଲୁ, କହତ ?

ବିଦ୍ୟାଧର—ଆମଠାରୁ ହୀନିମାନୀ ଗୋଟିଏ ଅରକ୍ଷିତକୁ ଦେଇ ଦେଇଛି ।

ସୁଭଦ୍ରା—ଆମଠାରୁ ହୀନିମାନୀ ?

ବିଦ୍ୟାଧର—ଦୁନିଆଛଡ଼ା ହୀନିମାନୀ ?

ସୁଭଦ୍ରା—ଆହା—ଏଡ଼େ ଦୁଃଖୀ ଲୋକ । ସାଙ୍ଗରେ ଡାକି ଆଣିଲୁ ନି ? ଆଜି ଯାହା ପିଠା ପଣା ହୋଇଥିଲା—ଦୁହେଁ ବସି ମନଖୁସିରେ ଖାଇଥାନ୍ତେ ।

ବିଦ୍ୟାଧର—ଗରିବର ବଡ଼ ପଣ ବୁଝିବ, ବଡ଼ ଲୋକ ? ବୁଝେଁ ନି ବୋଲି ତ, ତାର ଆଜି ଏତେ ଦୁଃଖ ।

ସୁଭଦ୍ରା—ଅରେ—ତୁ କାହା କଥା କହୁଛୁ ବା ?

ବିଦ୍ୟାଧର—ଆଉ କାହା କଥା—ଆମର ରାଜା କଥା ।

ସୁଭଦ୍ରା—ରାଜା ? ( ଚକ୍ଷୁରେ ପ୍ରତିହିଂସା ବହ୍ନି ଧପ୍‌କରି ଜଳି ଉଠିଲା )

ବିଦ୍ୟାଧର—ମା !—ରାଗିବୁନି । ମୁଁ ରାଜାଙ୍କୁ ଦେଇ-ପକାଇଛି ମୁକାଟି ।

ସୁଭଦ୍ରା—ରାଜାଙ୍କୁ ଦେଇଛୁ ? ରାଜାଙ୍କର କ'ଣ ନାହିଁ ?

ବିଦ୍ୟାଧର—କିଛି ନାହିଁ ।

ସୁଭଦ୍ରା—( ଅପ୍ରସ୍ତୁତ ହୋଇ ଚକାଇଲେ )

ବିଦ୍ୟାଧର—ହଂସାରେ, ହଂସାରେ ଯା'ର ଦିନ କଟେ—ତା'ର ହଂସାରେ ମନୁଷ୍ୟତ୍ୱ ଅଛି ତ ?—କୁଟିଳ ପଣରେ ଯେ ନିପୁଣ, ସହଜ ଜୀବନର ସୁଖ ତା'ର ଥାଏ ତ ?—କୁବେରର ଭଣ୍ଡାର ଥାଇ ଯା'ର ସନ୍ତାନ ସମ୍ପଦ ନାହିଁ, ତା'ର ପୁଣି ଆନନ୍ଦ ?—ସବୁରିକୁ ବଳି ସେଇ କଥାଟି ତୋର ମା—

ସୁଭଦ୍ରା—କେଉଁ କଥାଟି ?

ବିଦ୍ୟାଧର—ଆମର ଅଙ୍ଗେ ନିଭୁଇବା କଥା । ଆଜି ଯେ ଅମୀର—କାଲି ସେ ଫକୀର । ରାଜାର ଯେ ଦିନେ ଏହା ନ ଘଟିବ—ତାହା କିଏ କହିବ ।

ସୁଭଦ୍ରା—ଯା'ର ପ୍ରତି ତୋ'ର ଏତେ ମାୟା ଦରଦ, ସେହି ଯେ ମାୟାମମତା ହୀନ ଇଶ୍ୱର-ବୃତ୍ତିକୁ ସ୍ୱ'ର କର. ତୋର ପିତାକୁ କରିଛି ହତ୍ୟା—ଲୁଣ୍ଠିତ ଧନର ନିରଂକୁଶ ଅଧିକାରୀ ହେବ, ସେଥିପାଇଁ ଖୋଜି ବୁଲୁଛି ପିତାର ଏକମାତ୍ର ଉତ୍ତରାଧିକାରୀକୁ,—ତାହା ଯଦି ଥରେ ତୁ ଜାଣନ୍ତୁ—

ବିଦ୍ୟାଧର—ମା ।

ସୁଭଦ୍ରା—ନା, ନା ତୁ ଠିକ୍ କରିଛୁ—ତୁ ଠିକ୍ କରିଛୁ, ବାପ—ନିଜ ଭାଗ୍ୟକୁ ତୁଚ୍ଛ କରି ରାଜାକୁ ଦେଇଛୁ ମୁକ୍ତା ।—ରାଜା ସେହି ମୁକ୍ତା ନେଇ ତା'ର ପାଟରାଣୀ ହୈମବତୀକୁ ଦେବ—ରାଣୀ ସନ୍ତାନ ମୁଖ ଦେଖିବ—ରାଜବଂଶ ଉଜ୍ଜ୍ୱଳ ହେବ—ହଂସାର ଜୟଯୁକ୍ତ ପ୍ରତିହଂସା···ହାଃ···ହା···ହାଃ···

ବିଦ୍ୟାଧର—(ପାଦତଳେ ପଡ଼ି) ମା ।

ସୁଭଦ୍ରା—(ଉଠାଇ) ସତ୍ୟନାରାୟଣ ଗୋସେଇଁ ତୋର ଏହିଭଳି ସୁମତି ବଜାୟ ରଖିଥାନ୍ତୁ ।—ତୁ ରାଜାର ଅହୁରି ମଙ୍ଗଳ କର । କଥାରେ ଅଛି ପରା,—ଛାଡ଼ ପିତୃ-କାର୍ଯ୍ୟ, କର ରାଜ-କାର୍ଯ୍ୟ ।

ବିଦ୍ୟାଧର—ମୋତେ ଏଣିକି ବିଦ୍ୟାଧର ବୋଲି ଡାକିବୁ, ମା ?

ସୁଭଦ୍ରା—ବଗୁଲିଆ···

( ଆଦରକରି କୋଳକୁ ଟାଣିନେଲେ )

[ ପଞ୍ଚ ପରିବର୍ତ୍ତନ ]

---

## ପଞ୍ଚମ ଦୃଶ୍ୟ

—ଶୂନ୍ୟ ପରଦା—

[ ପାଲି-ଗାୟକ ପ୍ରବେଶ କଲେ ]

ଗାୟକ—ତା'ପର ଯା ଘଟିଲା—କବିକର୍ଣ୍ଣଙ୍କ ଭାଷାରେ, ଏହିପରି :—

ଦୈବର ଯୋଗେ ରାଣୀ ଗର୍ଭବତୀ ହୋଇଲା,
ସତ୍ୟପୀର ସାହେବେର ଦୟା ଉପୁଜିଲା ।
ଦୁଇମାସ ଗର୍ଭ ହୁଏ ଆଳସ ହୋଇଲା,
ଅନ୍ନ ପାନି ନାହିଁ ରୁଚେ ଅଙ୍ଗ ନା ଚଳିଲା ।
ରାଜନ ବଲେନ ତୁମି ଶୁନ ପାଟରାଣୀ,
କି ଖାଇତେ ମନ ହୁଏ ବଲ ଗୋ ଏଖନି ।
ସଂକୋଚ ପାଇୟାଁ ରାଣୀ କିଛୁ ନା ବଲିଲା,
ବାର ବାର ମହାରାଜା ଜିଜ୍ଞାସା କରିଲା ।
ରାଣୀ ବଲେ ମହାରାଜା କହି ହେ ତୁମାରେଁ,
କୋଶଲର ସାଥେ ବଡ଼ ସାଦ ଦିଅ ମୋରେଁ ।
ଆମ୍ର ଜମ୍ବିଲ କାଣ୍ଡାଲ ଶ୍ରୀଫଲ ଯେ ତାଲ,
ଦୁଗ୍ଧ ଗୁଡ଼ ପାକାକେଲା ଦିବେ ହେ ଭୂପାଲ ।
× × × ×
ଏତ ଶୁନି ରାଜା ମନେ ହରଷ ହଇଲ ।
ରାଣୀର ଇଚ୍ଛାନୁସାରେ ଖାଇତେଁ ଯେ ଦିଲ ॥
ସାତମାସେ ସାଦ ଖେଏଁ ଆଠ ମାସ ଗଡ଼େ ।
ଉଦରେ ଥାକିୟାଁ ବାଚ୍ଛା ହାତ ପାଅ ନାଡ଼େ ॥
ସତ୍ୟନାରାୟଣେ ଚିତ୍ତ ରାଣୀ ନିବେଶିଲ ।
ରତ୍ନ ପଲଙ୍କ ଛାଡ଼ିୟାଁ ଭୂମି ଶଯ୍ୟା କୈଲ ॥

---

## ଷଷ୍ଠ ଦୃଶ୍ୟ

—ଅନ୍ତଃପୁର—

[ ରତ୍ନ ପଲଙ୍କ ଛାଡ଼ି ରାଣୀ ଭୂମିଶଯ୍ୟା ଗ୍ରହଣ କରିଥିଲେ—ସ୍ୱପ୍ନ ଦେଖୁଥିଲେ । ପଲଙ୍କ ଆରପଟେ ଶ୍ରୀ ସତ୍ୟନାରାୟଣ ଆବିର୍ଭୂତ ହେଲେ । ]

ନାରାୟଣ—ରାଣୀ ।

ରାଣୀ—କିଏ ତୁମେ ?

ନାରାୟଣ—ମୁଁ ଶ୍ରୀ ସତ୍ୟନାରାୟଣ ।

ରାଣୀ—ଆଦେଶ ପ୍ରଭୁ !

ନାରାୟଣ—ସତ୍ୟ କର ।

ରାଣୀ—କରୁଛି ।

ନାରାୟଣ—ନବଜାତ ପୁତ୍ରର ଏକୋଇଶା ଦିନ ମୋର ପାଲା ପୂଜା ଦେବ ।

ରାଣୀ—ଦେବି ।

ନାରାୟଣ—ସାଡ଼ମ୍ବରେ ।

ରାଣୀ—ସାଡ଼ମ୍ବରେ ।

ନାରାୟଣ—ସୁଦୂର ପାଟଣାରେ ମୋର ସୁନା ଗିର ଓ ସୁନାର ଆସ୍ଥାନ ଅଛି, ତାହା ଅଣାଇବାକୁ ହେବ ।

ରାଣୀ—ଅଣାଇବି ।

ନାରାୟଣ—(ଆଶୀର୍ବାଦ କରି ଅନ୍ତର୍ଦ୍ଧାନ ହୋଇଗଲେ)

ରାଣୀ—( ଜାଗ୍ରତ ହୋଇ ମହାରାଜାଙ୍କୁ ଦେଖି ) ମହାରାଜ !

କଂ ରାଜ—( ପ୍ରବେଶ ପୂର୍ବକ ) ଆଜି କି ଗର୍ଭ-ବାସନା ତୁମର ? ନିଃସଙ୍କୋଚରେ କୁହ—ମୁଁ ସାନନ୍ଦେ ପୂର୍ଣ୍ଣ କରିବି ।

ରାଣୀ—ମୁଁ ସ୍ୱପ୍ନ ଦେଖିଛି—ଶ୍ରୀସତ୍ୟନାରାୟଣ ଗୋସେଇଁ ନିଜେ ଆସି ସତ୍ୟ କରାଇ ନେଇଛନ୍ତି ।

କଂ ରାଜ—କ'ଣ ?

ରାଣୀ—ନବଜାତ ସନ୍ତାନର ଏକୋଇଶା ଦିନ ମୁଁ ଶ୍ରୀସତ୍ୟନାରାୟଣ-ପାଲା ପୂଜା ଦେବି ।

କଂରାଜ—ବେଶ୍ ତ ।

ରାଣୀ—ସୁଦୂର ପାଟଣାରେ ସୁନାର ଗିର ଓ ଆସ୍ଥାନ ଅଛି—ତାହା ଅଣାଇବାକୁ ହେବ ।

କଂରାଜ—ଅଣାଇବି ।

ରାଣୀ—ହଁ, ବଗୁଲିଆର ସନ୍ଧାନ କିଛି...

କଂରାଜ—ନା, ରାଣୀ ! ବଗୁଲିଆର କୌଣସି ସଂଧାନ ମିଳିଲା ନାହିଁ । କେହି କେହି କହୁଛନ୍ତି, ସେ...

[ ଅଦୂରେ ରାମାୟଣ ଗୀତ ଶୁଣା ଗଲା ]

ରାମାୟଣ ଶୁଣିବାକୁ କହୁଥିଲ, ଏହି ଶୁଣ—ଆସ, ରାମାୟଣୀ-ମାଉସୀ—ଉଜାରର କଟକଣା ଆଉ ନାହିଁ । (ଚାଲିଗଲେ)

[ରାମାୟଣୀ-ମାଉସୀ ପ୍ରବେଶ ପୂର୍ବକ ଗାଇବାକୁ ଲାଗିଲା ]

ରାଃ ମାଉସୀ— ଗୀତ

"ଋଷ୍ୟଶୃଙ୍ଗ ଯାଗ କଲେ । ଦେବତା ସନ୍ତୋଷ ହେଲେ ।
ପୂର୍ଣ୍ଣ ଅହୁତିର ଶେଷେ । ଜାତ ପୁରୁଷେ, ସୁଜନେ ହେ ॥
ଦଗ୍ଧ ସୁବର୍ଣ୍ଣ ଶରୀର । ପାୟସ ଘେନିଛି କର ।
ମୁନିଙ୍କ କରେ ସେ ଦେଲେ । ଅଦୃଶ ହେଲେ, ସୁଜନ ହେ ॥
ମୁନି ଦେଲେ ରାଜକର । ଘେନିଲେ ସେ ନୃପବର ।
କୌଶଲ୍ୟା କୈକେୟୀ ରାଣୀ । ଦେଲେ ସେ ଆଣି, ସୁଜନେହେ
ବେନି ରାଣୀ ବେନି ଭାଗ । ସୁମିତ୍ରାକୁ ଅନୁରାଗ ।
କରିଣ ତାହାଙ୍କୁ ଦେଲେ । ତିନି ଖାଇଲେ, ସୁଜନ ହେ ॥
ଉଦେ ହୋଇ ରବିପ୍ରଭା । ଯେସନେ ପ୍ରାଚୀ ଦିବ୍ୟ ଶୋଭା ।
ସେହି ରୂପେ ସେ ସୁନ୍ଦର । ରହି ଗର୍ଭର, ସୁଜନେ ହେ ॥
ଗଲା ବେନି ପଞ୍ଚମାସ । ହେଲା ପ୍ରସବ ଦିବସ ।
ଚଇତ୍ର ଶୁକ୍ଳ ନବମୀ । ପୁତ୍ର ଜନମି, ସୁଜନ ହେ ॥"

[ ରାଣୀ ପ୍ରସବ ବେଦନା ଅନୁଭବ କଲେ ଓ ସଙ୍ଗେ ସଙ୍ଗେ ଶଙ୍ଖ-ହୁଳହୁଳି ଧ୍ୱନିତ ହୋଇ ଉଠିଲା ]

---

## ସପ୍ତମ ଦୃଶ୍ୟ

—ଜୀର୍ଣ୍ଣ କୁଟୀର—

[ ବିଦ୍ୟାଧର ଗୋଟିଏ ପାଗ ବାନ୍ଧୁ-ବାନ୍ଧୁ ପ୍ରବେଶ କଲା—ଦେହରେ ବାପାର ଚିଲା ପୋଷାକ ]

ବିଦ୍ୟାଧର—ଆଃ—ରଜାଘର ପୁଅର ଏଡ଼େ ଗୋଳିଆ—ରାଜ-ନଅରରେ ଯାତ—ଯାତ୍ରୀ ଚାଲିଲେଣି କାହିଁରେ କଣ । ମୁଁ ଯେ କେତେବେଳେ ଯିବ !—

ସୁଭଦ୍ରା—( ଠିକ୍ ସେତିକିବେଳେ ବିପରୀତ ଦିଗରୁ କାଖରେ ପାଣିଭରା କଳସୀ ସହ ପ୍ରବେଶ କଲେ ) ଅରେ । ଏ କ'ଣ ?

ବିଦ୍ୟାଧର—ମା । ମୋର ପାଗଟା ବେଗି ବାନ୍ଧି ଦେ ତ—ମୁଁ ଯାତକୁ ଯିବ । ବେଳ କ'ଣ ହେଲେ ମାଲୁମ ପଡ଼ୁ ନ ?

ସୁଭଦ୍ରା—ହେଲେ, ତୁ ଛୁଆ ବଡ଼କଟେ—ବାପାର ପୋଷାକ ପିନ୍ଧିଛୁ—ଚିଲା ହେଉଚ—ଲୋକେ ତୋର୍ ଏ ଢଙ୍ଗ ଦେଖି ତୋ'ର ଗୁରୁପଟେ ଯାତ ଜଗେଇ ଦେବେ ପିନା ।

ବିଦ୍ୟାଧର—ଅଦ୍ଭୁତ ହସିବେ । ହେଲେ 'ବାପ୍‌କା ବେଟା' ଏ କଥା ମନେ ମନେ କହିବେ ତ ?

ସୁଭଦ୍ରା—ବଗୁଲିଆ···

ବିଦ୍ୟାଧର—ଫେଣେ ?—ତୁ ସିମିତି ଡାକୁ ବୋଲି ତ ମୁଁ ବଗୁଲିଆମି ଛୋଡ଼ି ଛାଡ଼ ପାରୁ ନ ।

ସୁଭଦ୍ରା—ବିଦ୍ୟାଧର ।

ବିଦ୍ୟାଧର—ଖାଲି ସେତିକି ନୁହେଁ—ଶ୍ରୀ ସଦାନନ୍ଦ ସୌଦାଗରର ପୁଅ ବିଦ୍ୟାଧର ।

ସୁଭଦ୍ରା—ସୌଦାଗର···

ନେପଥ୍ୟେ—ବିଦ୍ୟାଧରା, ଯିବୁ ଯଦି ବେଗି ଆ' ।

ବିଦ୍ୟାଧର—ଆମର ନାରଣ ଗୋସେଇଁଙ୍କ ପୁଅ ମ—ତୁ ବେଗେ ବାନ୍ଧି ଦେ'ତ—ସାଥି ହୋଇ ଯିବୁଁ ।

ସୁଭଦ୍ରା—(ପାଗ ବାନ୍ଧି ଦେଲେ । ବିଦ୍ୟାଧର ଚାଲିଯିବା ସମୟରେ ) ଟିକିଏ ଠିଆ ହ'ତ ।

( ଭିତରକୁ ଚାଲିଗଲେ )

ବିଦ୍ୟାଧର—( ନେପଥ୍ୟକୁ ଚାହିଁ ) କହେଇ । ସେଇ ପୋଖରୀ ହୁଡ଼ାଟି ଠିଆ ହ', ମୁଁ ଯାଉଛି ଯାଉଛି ।

ସୁଭଦ୍ରା—( ଭିତରୁ ସତ୍ୟନାରାୟଣଙ୍କ ପୂଜା-ଫୁଲ ଆଣି ପଗଡ଼ିକାନରେ ବାନ୍ଧି ଦେଲେ )

ବିଦ୍ୟାଧର—ସେ କ'ଣ ମା ?

ସୁଭଦ୍ରା—ଶ୍ରୀ ସତ୍ୟନାରାୟଣଙ୍କ ପୂଜା-ଫୁଲ ।

ବିଦ୍ୟାଧର—( ଆନନ୍ଦରେ ) ଶ୍ରୀ ସତ୍ୟନାରାୟଣଙ୍କ ପୂଜା ଫୁଲ ?—ମୁଁ ସତ୍ୟ କରି କହୁଛି ମା । ବଗୁଲିଆପଣ ଆଉ କେବେ କରିବି ନ ।

( ପ୍ରସ୍ଥାନ )

ସୁଭଦ୍ରା—( ସାଶ୍ରୁ-ନୟନରେ ଚାହିଁ ରହିଲେ । ହଠାତ୍ ଚଞ୍ଚଳ ହୋଇ ଉଠି ) ମୁଁ କ'ଣ କଲି ?—ମୋର ଛାଡ଼ିବାର ଉଚିତ୍ ନ ଥିଲା । ବଗୁଲିଆର ଗୁପ୍ତ ସନ୍ଧାନ ଚାଲିଛି ଶୁଣିଲି—ଆଖିରେ ଦେଖି, ବଗୁଲିଆ ବୋଲି ଯଦି ଶିକ୍ଳି ପକାଏ ରାଜା ? ନା—ନା—ଯେଉଁ ସୁଆଙ୍ଗ ସାଜିଛି ସେଥିରେ ମୋର ତ ଭ୍ରମ ହେଉଛି—ହେ ସତ୍ୟନାରାୟଣ । ( ପ୍ରଣାମ କଲେ )

[ ଏହି ସମୟରେ ପ୍ରତିବେଶିନୀ ଜଣେ ପ୍ରବେଶ କଲେ ]

ପ୍ରତିବେଶିନୀ—କି ବିଦଆ-ବୋଉ । ଯାତ ଦେଖି ଯିବୁ ନ ?

ସୁଭଦ୍ରା—ଯାତ । କମିତି ଗାଡକୁ ଯାଇ ପାରିଲେ ରକ୍ଷା, ଭଉଣୀ ।

ପ୍ରତିବେଶିନୀ—ଛୁଆ ଲୋ । ସାଧବ ଘର ବୋହୂ ତୁ—ଶ୍ରୀମନ୍ତ ଭଲି ପୁଅ ତୋର—ଦିନେ ସେ ମା'କୁ ସନ୍ତେଇ କହେଇ ସାତ ସମୁଦ୍ର, ତେର ନଦୀ ପାର ହୋଇ ଯିବ—କେଉଁ ଅଜଣା ରାଜକନ୍ୟୁ ବୋଇତ ଭରା ଟଙ୍କ ଆଉ ରାଜକନ୍ୟାଟିଏ ଯେମିତି ବାହୁଡ଼ିବ—ସେତେବେଳେ ତୁ ହସି ହସି ଯିବା କଥା କହିବୁ ଯେ—ସୁନ୍ଦର ଦିଶିବ ।

ସୁଭଦ୍ରା—( ଶିହରି ଉଠି ) ଶିଶି-ବୋଉ । ତୁମେ ଏଡ଼ା ବାହାରିଛ, ନାଁ ଆଉ କେହି ?

ପ୍ରତିବେଶିନୀ—ଗାଁ ଗୋଷ୍ଠୀକ ଲୋ—ଯେଉଁ ନାଟ ତାମସା ହେବ—ରାଜା ପରା ନିଜେ ଆଜି ରାତିକେ ହେବେ ନାଟ ମଣ୍ଡପରେ । ସେଇଥିପାଇଁ ତ ଅସ୍ଥିର ଉଚ୍ଛନ୍ନ ସଭିଏଁ ।

ସୁଭଦ୍ରା—( ଚମକି ପଡ଼ି ) ଛିଃ-ବୋଉ ।

ପ୍ରତିବେଶିନୀ—କି ଲୋ ! ଇମିତ ଛନକା ପଶିଲା ଭଳିଆ ହେଲୁ ଯେ—ଉଜ୍ଜ୍ୱଳ ମୁହଁ କଳା କାଠ ପଡ଼ିଗଲା ଏହୁଁ ଏହୁଁ ।

ସୁଭଦ୍ରା—ମୁଁ ଯିବି ।

ପ୍ରତିବେଶିନୀ—ବେଶ୍ ତ ।

ସୁଭଦ୍ରା—ତୁମେ ଠିଆ ହୁଅ—ମୁଁ ଆସିଲି ବୋଲି—ନାଁ—ନାଁ, ତୁମେ ପଳେଇ ଯିବ—ତୁମେ ମୋ ସାଙ୍ଗରେ ଭିତରକୁ ଆସ ।

( ଟାଣି ନେଇ ଯାଉଥିଲେ )

ପ୍ରତିବେଶିନୀ—ଆଲୋ ! ହାତ ଛାଡ଼, ପାଣି ମାଠିଆ ଛାଡ଼ି ଚାଲୁ ଯେ ।

( ପାଣି ମାଠିଆ ଧରି ପ୍ରସ୍ଥାନ କଲେ )

---

## ଅଷ୍ଟମ ଦୃଶ୍ୟ

— ନାଟ ମଣ୍ଡପ —

[ ରାଜା ସିଂହାସନ ଉପରେ ବସିଥିଲେ—ପରିଷଦ ଗଣ ତାଙ୍କ ପାର୍ଶ୍ୱରେ ଠିଆ ହୋଇଥାନ୍ତି—ନୃତ୍ୟ ଚାଲିଥାଏ । ମଝିରେ ମଝିରେ ସୁରା ପାନ ଚାଲିଥାଏ । ]

ଗୀତ

ଆସେ···ମନଭୁଲା
ପହିଲି ପ୍ରେମର ପରଶେ ଓ···ଭୁଲାଇ ପାରେ ଯେ
(ସବୁ) ଭୁଲାଇ ପାରେ ଯେ ।
ପୁଣି, ଭୁଲିଲା ହିନ ପରାସ···ନରମ କୁଳୁ-ମୁକୁରେ···
ଝୁଲାଇ ପାରେ ଯେ··ଆସେ ॥

ଓ···ଜଳାଇ ଦେ ରେ ମାଧବ ଅଗି ତୁ ନାଗର ଲାଗି
ଥର ଥର ତୋ···କୋହଲା ମନେ
ଦର ଦର ସୋହାଗ ଦାଗି
ଭାଙ୍ଗର ଝୋଟି ଝୋଟି ଯାଏ ଉଭାଇରେ
ଦରଦ ଲିଭାଇ ସେ···
କମଳ ବନେ ଲୋହିତ ସୁଷମା ଉଠିଲା ଜାଗି···ଓ···
ଓ···ନୂଆଛଇଳ ସପନେ କୁହୁ କୁହୁକ ବାଜଇ···ଛାଇ
(ସାରା) ମରମ ଚହଲାଇ ପାରେ ଯେ (ମନଭୁଲା ସେ···)॥
ହୋ···ହୋ···ମନର ମିତ ଆଇଛି ଲୋ ଆଇଛି ସେ
ଆଇଛି ସେ ମନଭୁଲା···
ସାଗୁଆ ମାଟିରେ ତା କାଉଁରୀ କାଠିରେ
ଟିକି ଟିକି ସୁନେଲି ଚମକ ଛୁଇଁଚି···
ଫଗୁଆ ଖିଆଲେ ଟିରିକି ଛାଉଁକା ଛିଟା
(କାଲି) ଛନ ଛନ ଯଉବନ ରଙ୍ଗିଲା ସେ ମନଭୁଲା,
ଫୁଲ ମୁହେଁ ବୋଲି ଲାଜୁଆ
ହସ କି ମାଗିଲା (ଅକୁହା କଥା)
କଳା ଭଅଁରେ—ଚକା ଭଉଁରୀ ବୁଲାଇ ପାରେ
ଗୁଣୁ ଗୁଣୁ ଗୁଣୁ ଗୁଣୁ କାନ କୁହାରେ
ବହଲାଇ ପାରେ ଯେ ॥
ଝୁମୁ ଝୁମୁ ଝୁମୁ ଚାଲି ଚରଣ ନୂପୁର···
ଯାଏ ରୂପସୀ ଘାଟେ ଉଡ଼ାଇ ବେଣୁ
ବୁଡ଼ାଏ ଚିତ୍—ଅଣଆବୃତ ହୁଡ଼ାଏ ପଥ ଗୋ···
ହୂରେ, ଗୋଧନ ବାହୁଡ଼ା ବେଣୁ;
ଫେରିଯାଏ ମାଧବ···ସଖୀରେ···
ଚହକ କୁଞ୍ଜେ ମର୍ମର ଉଠେ ମେଲାଣି ତା'ର
ଣିରବମ ଣିଦାଘ ରୁପ ନୟନେ,
ଜଳେ ନିଆଁ ଜଳାଏ କାମିଅଁ
ଫେରିଯାଏ, ମନଭୁଲା······
ପଲକେ ଚିତ୍···ପୁଲକେ ଫୁଲାଇ ପାରେ ଯେ··
ଛପି ଛପି, ଫୁଲାଇ ପାରେ ଯେ···
ଫେରିଯାଏ ·····॥ ୩ ॥

ରାଣୀ—( ହଠାତ୍ ପ୍ରବେଶ କରି ) ମହାରାଜ !

କଃ ରାଜ—ରାଣୀ ! ( ପରିଷଦ ବର୍ଗ ଚାଲିଗଲେ )

ରାଣୀ—ସନ୍ତାନ ଅସୁସ୍ଥ ।

କଃ ରାଜ—ସନ୍ତାନ ଅସୁସ୍ଥ ? ଡ଼ଜୀର—ପାବ—ସେନାପତି କିଏ ଅଛ ?···ରାଜବୈଦ୍ୟ ।

ରାଣୀ—ରାଜବୈଦ୍ୟ ଛାଡ଼ ସ୍ୱୟଂ ଧନ୍ୱନ୍ତରି ହେଲେ ମଧ୍ୟ ସନ୍ତାନର ପ୍ରାଣ ରକ୍ଷା ଅସମ୍ଭବ ।

କଃ ରାଜ—ଅସମ୍ଭବ ?

ରାଣୀ—ଦେବତାର ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ହେବେ କି, ରାଜା !

କଃ ରାଜ—ଦେବତା ?

ରାଣୀ—ଦେବତାର ଦାନକୁ ବଡ଼ କରି, ଦେବତାକୁ ତୁଚ୍ଛ କରିଥାଏ ମାନବ । ସେଇଥିପାଇଁ ତ ମାନବର ଆଜି ଏତେ ଦୁଃଖ, କଷ୍ଟ, ଅଶାନ୍ତି ।

କଃରାଜ—ମୁଁ ଭୁଲିଛି ତ ? ସନ୍ତାନ-ମୋହରେ ଉନ୍ମତ୍ତ ହୋଇ ଶ୍ରୀ ସତ୍ୟନାରାୟଣଙ୍କ ପାଲି-ପୂଜା ଦେବା କଥା ଭୁଲିଛି ତ !

ରାଣୀ—ମୁଁ ମଧ୍ୟ ଅସ୍ପୃଶ୍ୟ ବସ୍ତ୍ରୁତା ହୋଇ କମ୍ ଅପରାଧ କରି ନି, ମହାରାଜ !

କଃରାଜ—ଭୟ ନାହିଁ, ରାଣୀ ! ରାଜ ପୁରୋହିତଙ୍କୁ ଡକାଇ ମୁଁ ଏହିକ୍ଷଣି ପୂଜାର ବ୍ୟବସ୍ଥା କରୁଛି ।

ରାଣୀ—କିନ୍ତୁ—

କଃରାଜ—କିନ୍ତୁ !

ରାଣୀ—ସୁନାର ତୀର ଓ ସୁନାର ଅସ୍ଥାନ ବ୍ୟତୀତ ପୂଜାର ବ୍ୟବସ୍ଥା ଅସମ୍ଭବ ମହାରାଜ !

କଃରାଜ—ବେଶ—ମୁଁ ଏହିକ୍ଷଣି ରାଜ-ସ୍ୱର୍ଣ୍ଣକାରକୁ ତଲପ କରି ପଠାଉଛି ।

ରାଣୀ—ମାତ୍ର, ସୁଦୂର ପାଟଣାରେ ସୁନାର ତୀର ଓ ଅସ୍ଥାନ ଅଛି,—ତାହା ଅଣାଇ ମୁଁ ପୂଜା କରିବ—ଏହି ସତ୍ୟ ମୁଁ କରିଥିଲି ସତ୍ୟ-ଗୋସାଇଁଙ୍କଠାରେ ଏବଂ ସେହି ସତ୍ୟ ତୁମେ ରକ୍ଷା କରିବ ସଂକଳ୍ପ କରିଥିଲ ।

କଃରାଜ—ଏବେ ଉପାୟ ?

ବିଦ୍ୟାଧର—( ଅନ୍ତରାଳରୁ ପ୍ରବେଶ କରି ) ମୁଁ କରିବ, ରାଜା !

କଃରାଜ—ତୁମେ ?······( ନିକଟକୁ ଆସି ) ତୁମେ ମୋତେ ମୁକ୍ତା ଦେଇଥିଲ ନା ?······ତୁମ ନାଁ ବଗୁଲିଆ ନା ?

ବିଦ୍ୟାଧର—ବଗୁଲିଆ ମୋ ମାଆର ଶ୍ରଦ୍ଧା ଡାକ—ମୋର ଅସଲ ନାଁ, ବିଦ୍ୟାଧର ।

କଃରାଜ—ତୁମର ବେଶଭୂଷା ଦେଖି ମନେ ହେଉଛି ତୁମେ······

ବିଦ୍ୟାଧର—ସାଧବଘର ପୁଅ······ହଁ, ମୁଁ ସଦାନନ୍ଦ ସୌଦାଗରର ପୁଅ ।

କଃରାଜ—ସଦାନନ୍ଦ !

ବିଦ୍ୟାଧର—ରାଜ୍ୟ ସଂପତ୍ତି ଲୋଭରେ ଯାହାକୁ ସର୍ବସ୍ୱାନ୍ତ କରିଛ—ହତ୍ୟା କରିଛ—ଅତୁର—

କଃରାଜ—ଅତୁର ?

ବିଦ୍ୟାଧର—ଖୋଜି ବୁଲୁଛ, ତାର ଏକମାତ୍ର ଏଇ ପୁତ୍ର ସନ୍ତାନକୁ ।

କଃରାଜ—ମିଥ୍ୟା କଥା !

ବିଦ୍ୟାଧର—( ପୋଷାକ ଭିତରୁ ତାଳପତ୍ର ଲେଖାଟି ବାହାର କରି ) ମିଥ୍ୟା କଥା ? ଏଇ ଦଲିଲ୍ ତାର ପ୍ରମାଣ ।

କଃରାଜ—( କାଢ଼ିନେବାକୁ ଅଗ୍ରସର ହେଲେ )

ବିଦ୍ୟାଧର—ସାବଧାନ ରାଜା ! ଏକ ଆଡ଼େ ଏହି ଦଲିଲ—ଅନ୍ୟଆଡ଼େ ତୁମର ପୁତ୍ର ।

ରାଣୀ—ମହାରାଜ !

କଃରାଜ—ଭୟ ନାହିଁ ରାଣୀ ! ମୁଁ ଏହିକ୍ଷଣି ପାଟଣା ଅଭିଯାନର ବନ୍ଦୋବସ୍ତ କରୁଛି । ଦଣ୍ଡକେ ଅସ୍ଥାନ ତୀର ଅଣାଇ ଦେଉଛି ।

ବିଦ୍ୟାଧର—( ହସି ହସି ) ଏ ଥାଟ ସଇନ୍ୟର କାମ ନୁହେଁ ରାଜା !

କଃରାଜ—ଆଉ ଗୋଟାଏ ଅର୍ବାଚୀନର ?

ବିଦ୍ୟାଧର—ଅର୍ବାଚୀନ ?—ଶ୍ୱାପଦ ସଂକୁଳ ଅରଣ୍ୟ ମଧ୍ୟକୁ କିଏ ଅଣିଥିଲା ନାରାୟଣଙ୍କୁ ? ଧ୍ରୁବ !—ହିରଣ୍ୟକଶ୍ୟପୁର ଅଟ୍ଟାଳିକା ସ୍ତମ୍ଭ ମଧ୍ୟକୁ କିଏ ଅଣିଥିଲା ନାରାୟଣଙ୍କୁ ?—ପ୍ରହ୍ଲାଦ !···କଳିଙ୍ଗର ଅଧୁନିକ ରାଜପ୍ରାସାଦକୁ କିଏ ଅଣିଥିଲା ପୁତ୍ର ସନ୍ତାନ ?—ଏହି ବିଦ୍ୟାଧର ।

କଃରାଜ—ତାର ଦମ୍ଭ ?

ବିଦ୍ୟାଧର—ଅତ୍ମ-ବିଶ୍ୱାସ ହିଁ ମାନବର ଦମ୍ଭ ମହାରାଜ !

ହଂସରାଜ—ହେଲେ—ସେହି ଅସ୍ପଷ୍ଟ ବିଶ୍ୱାସର ଦମ୍ଭ ଘେନି, ତୁମେ ହେବ ଅଭିଯାନର ଅଭିଯାତ୍ରୀ—ଯୁକ୍ତିର ପ୍ରମାଣ ?

ବିଦ୍ୟା—( ଢାଲ ପତ୍ର ଲେଖାଟିକୁ ଦେଖାଇ )
ମୁଁ ଆଜି ମାଆକୁ ଲୁଚାଇ ଏହି ଦଲିଲ୍ ଟି ଘେନି ଆସିଥିଲି—
ବାପାର ପୋଷାକ ପିନ୍ଧି ପୁତ୍ରର ପରିଚୟ ଘେନି ଆସିଥିଲି;—

ଅଭିପ୍ରାୟ ଥିଲା, ଉତ୍ସବ ଶେଷେ ସଭାସ୍ଥାନରେ ଠିଆ ହୋଇ ରାଜା ଜଣେ ଅନ୍ତଃଚାରୀ···ପ୍ରତାରକ ଏହା ପ୍ରକାଶ କରିଦେବି । ରାଜା ସଙ୍ଗେ ପିତାର··· ସର୍ତ୍ତ ଅନୁସାରେ, ବିଜିତ କଳିଙ୍ଗ ରାଜ୍ୟର ପ୍ରକୃତ ଉତ୍ତରାଧିକାରୀ ମୁଁ—ତାହା ପ୍ରମାଣ କରି ନିଜର ଅଧିକାର ସାବ୍ୟସ୍ତ କରିବି; ମାତ୍ର ଯେଉଁ ମୁହୂର୍ତ୍ତରେ ଶୁଣିଲି, ରାଜପୁତ୍ର ଅସୁସ୍ଥ—ମୋର ମୁକ୍ତାର ଫଳ ବିଫଳ ହେବାକୁ ବସିଛି, ସେତିକିବେଳେ ହୃଦୟ ମୋର ହୋଇ ଉଠିଲା ଚଞ୍ଚଳ—ମାନବତାର ଡାକ କଲା ମୋତେ ବିହ୍ୱଳ । ( ଲେଖାଟି ଚିରି ଦେଇ ) ମୋତେ ଆଦେଶ କର ରାଜା । ମୁଁ ଏହିକ୍ଷଣି ପାଟଣା ଅଭିମୁଖେ ଶୁଭଯାତ୍ରା ଆରମ୍ଭ କରିବି ।

ରାଣୀ—ବାବା ! ତୁମର ମାଆର ଅନୁମତି ନେଇଛ ତ ? ଦୁଃସାହସ କରି ଯେଉଁଥିରେ ବ୍ରତୀ ହେଉଛ, ଯେଉଁ ବିପଦକୁ ଆଲିଙ୍ଗନ କରିବାକୁ ଯାଉଛ—ସେଥିରେ ତୁମର ମା ସମ୍ମତି ପ୍ରଦାନ କରିବେ ତ ?

ବିଦ୍ୟାଧର—ରାଣୀ ମା ! ତୁମେ ମୋର ମାଆଙ୍କୁ ଆଦୌ ଚିହ୍ନ ନା—ମୁଁ ଯେଉଁ ଦିନ ରାଜାଙ୍କୁ ମୁକ୍ତା ଦେଇସାରି ଘରକୁ ଲେଉଟି ଆସେ—ନିଃସଙ୍କୋଚରେ ମା'ଙ୍କୁ ସେହି କଥା ଜଣାଇଲି । ସେ ଦିନ ମୋର ମା କ'ଣ କହିଥିଲେ ଶୁଣିବ ?

ରାଣୀ—କ'ଣ ?

ବିଦ୍ୟାଧର—'ସତ୍ୟନାରାୟଣ ଗୋସେଇଁ ତୋର ଏହି ଭଲ ସୁମତି ବଜାୟ ରଖିଥାନ୍ତୁ—ତୁ ରାଜାର ଆହୁରି ମଙ୍ଗଳ କର !' କଥାରେ ଅଛି ପରା—ଛାଡ଼ ପିତୃ-ଚାର୍ଯ୍ୟ, କର ରାଜ-କାର୍ଯ୍ୟ ।

ରାଜା—ତଥାପି ମୋର କର୍ତ୍ତବ୍ୟ—ରାଜାର କର୍ତ୍ତବ୍ୟ—ଜନନୀର ବିନା ଅନୁମତିରେ ତୁମର ଅଭିଯାନ ଅକର୍ତ୍ତବ୍ୟ ।

ସୁଭଦ୍ରା—( ପ୍ରବେଶ କରି ) କର୍ତ୍ତବ୍ୟ-ଅକର୍ତ୍ତବ୍ୟ—ନୀତି-ଅନୀତି— ଶୃଙ୍ଖଳା-ବିଶୃଙ୍ଖଳା — ଏସବୁର ପ୍ରଶ୍ନ ନାହିଁ ବର୍ତ୍ତମାନ । ରୁଗ୍ଣ ଶିଶୁ, ମୁମୂର୍ଷୁ—ମୁମୂର୍ଷୁର ପ୍ରାଣରକ୍ଷା ହେବ କିପରି ?—ଏଥିପାଇଁ ରାଜା-ପ୍ରଜା—ଶତ୍ରୁ-ମିତ୍ର ନିର୍ବିଶେଷରେ ଆମେ କରିବୁ ସମୂହ ପ୍ରଚେଷ୍ଟା—ଆଜି ମୋର ସଙ୍କଳ୍ପ ହେବ, ସେହି ପ୍ରଚେଷ୍ଟା ଯଜ୍ଞର ପ୍ରଧାନ ପୁରୋଧା ! ( ରାଣୀପ୍ରତି) ଭଉଣୀ ! ବଗୁଲିଆର ମୁକ୍ତା-ଫଳରେ ତୁମେ ଲାଭ କରିଛ ପୁତ୍ର-ରତ୍ନ— ସୁତରାଂ ସେଇଟି ବଗୁଲିଆର ଠିକ ମୁକ୍ତା-ଭାଇ ··ଏ'କଥା ଠିକ ଏ ଚିନ୍ତା କରି ଦେଖିବ କି ?—( ବିଦ୍ୟାଧର ପ୍ରତି ) ବାବା ! ତତେ ଆଉ ଅଧିକ କ'ଣ କହିବି । ସାଗରର ସନ୍ତାନମାନଙ୍କୁ ଉଦ୍ଧାର କରିବେ ବୋଲି ଭଗୀରଥ ଆଣିଥିଲେ ଗଙ୍ଗାଦେବୀଙ୍କୁ, ସେଥିରେ ହୋଇଥିଲା ପୃଥିବୀର କଲ୍ୟାଣ । —ଆଉ ତୁ ସେହିପରି ରୁଗ୍ଣ ଶିଶୁର ରୋଗ ମୁକ୍ତି ନିମନ୍ତେ ଆଣିବୁ, ଫିରି ଓ ଅସ୍ଥାନ—ସେଥିରେ ହେବ ଶ୍ରୀସତ୍ୟନାରାୟଣଙ୍କ ପୂଜା—ପୃଥିବୀର କଲ୍ୟାଣ । ତୁ ଯାତ୍ରା କର । ତୁ ଜୟୀ ହ'—ଏହାହିଁ ମୋର ଆଶୀର୍ବାଦ ।

[ ନେପଥ୍ୟରୁ ଶଙ୍ଖ, ହୁଳ ହୁଳି ଶୁଣା ଗଲା । ]

—ପଟନିକ୍ଷେପ—

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଶୂନ୍ୟ ପରଦା—

[ ଗାୟକ ଗାଉଥିଲେ ]

ଗାୟକ—

ଶୁଣ ଶୁଣ ସଭାଜନେ ଦିଅଁ ମନ କର୍ଣ୍ଣ ।
ଘଟିଲ ଏ'ପର ଯାହା କହୁଛି ବର୍ଣ୍ଣନ ॥
ରତନ ପୁରର ପରେ ବସେ ସୌଦାଗର ।
ଶୁଭ ଅନୁକୂଳ ଦଳ ତା'ରେ ବପ୍ରବର ॥
ନଳ ମନ୍ତ କହେ ରଥୀ ଅଶ୍ୱେର କର୍ଣ୍ଣେତେ ।
ମନ୍ତ୍ର ପାଇ, ଘୋଡ଼ା ଦୁଇଟି ଉଡ଼ିଲ ତୁରିତେ ॥
ଗହନ କାନନ ମଧ୍ୟେ ପ୍ରବେଶିଲ ଗିଆଁ ।
ଚନ୍ଦ୍ରସେନ ରାଜ୍ୟ ରହୀ ପିଚ୍ଛୁତେ କରିଆଁ ॥
ସେହି ଯେ ରାଜାର ଦେଶ ପ୍ରସ୍ଥାନ କରିଆଁ ।
ଉତ୍କଳ୍କ ମଙ୍ଗଳ ଦେଶ ପ୍ରବେଶିଲ ଗିଆଁ ॥
ଚନ୍ଦନ ଅଗୁରୁ ଦେଶ ରଖି ବାମ ପାଶେ ।
ପ୍ରବେଶିଲ ସାଧୁ ଗିଆଁ ଉତ୍କଳର ଦେଶେ ॥

---

## ଦ୍ୱିତୀୟ ଦୃଶ୍ୟ

—ମନୋହର ଫାସିଅରି ରାଜ୍ୟର ଜଙ୍ଗଲ—

[ ମନୋହର ଫାସିଅରିର ଛଅ ପୁଅ ଗୁପ୍ତରେ ଶିକାର ଅନୁସନ୍ଧାନ କରୁଥାନ୍ତି—ଏହି ସମୟରେ ବିଦ୍ୟାଧରଙ୍କୁ ଦେଖି, ଲୁଚି ଗଲେ ]

ବିଦ୍ୟାଧର—( ପ୍ରବେଶ ପୂର୍ବକ ) ଆଚ୍ଛା ବଗୁଲ୍‌ଆପଣି କରି ମେଲ ଗ୍ଲାଡ଼ ଏକୁଟିଆ ବାହାରି ଆସିଲି—ଏ' କେଉଁ ରାଜ୍ୟ ?···ହେ, ବାବା ସତ୍ୟନାରାୟଣ !—
[ ଏହି ସମୟରେ ନାରାୟଣ ଫକୀରର ଛଦ୍ମବେଶରେ ଆସି ବିଦ୍ୟାଧରଙ୍କୁ ବାଧାଦେଲେ ]

ଫକୀର—( ବାଧାଦେଇ ) ଏ ମନୋହର ଫାସିଅରି ରାଜ୍ୟ—ଡାକୁରାଜ୍ୟ—ଭାରି ଭୟଙ୍କର ସ୍ଥାନ—ଏଠି ପଶିଲେ ଆଉ ରକ୍ଷା ନାହିଁ । ଛଅ ପୁଅ—ଛଅଟି ମାଲ !—ଆଉ ରଙ୍ଗଲତା ଝିଅଟି ରୂପସୀ ଷୋଡ଼ଶୀ—ରୂପରେ ପୁରୁଷମାନଙ୍କର ମନ ମୋହିନୀ କରେ, ଆଉ ଗୁପ୍ତ ଛୁରୀକାରେ ତା'ର ସର୍ବସ୍ୱ ଅପହରଣ କରି ନିଏ ।

ବିଦ୍ୟାଧର—( ପୂର୍ବୋକ୍ତ ଶେଷ ପଂକ୍ତି ସହିତ ସଙ୍ଗତ ରଖି ) ହାଃ—ହାଃ—ହାଃ—ପୁରୁଷ ନାଶିନୀ ! ହଁ—ନାମଟି କ'ଣ କହିଲେ, ସାଧୁ ବାବା—ଫକୀର ବାବା ?

ଫକୀର—ରଙ୍ଗଲତା ।

ବିଦ୍ୟାଧର—'କବିତା ବନିତା ଲତା—ବିନାଶ୍ରୟେନ ବର୍ତ୍ତନ୍ତେ'—ଆଉ ରଙ୍ଗଲତା ପୁରୁଷ-ହନ୍ତ୍ରୀ ? ହାଃ—ହାଃ—ହାଃ—

ଫକୀର—ଅଚ୍ଛା ନୁହେଁ ବାବା !···ମୋ କଥା ମାନ, ଫେରିଯାଅ ।

ବିଦ୍ୟାଧର—ପଥିକ୍ ! ତୁମେ କିଏ ମୁଁ ଚିହ୍ନେ ନା—ଯାହା କହୁଛ, ତାହା ମୋ ହିତକୁ, ବୁଝୁଛି,··· ତଥାପି କାହିଁକି ଜାଣେ ନା, ତୁମେ ଯେତିକି ମନାକରୁଛ ମୋ ମନ ସେତିକି ଅମାନିଆ ଧରୁଚି—ଝିଅଟିକୁ ଦେଖିବାକୁ ସେତିକି ଆଗ୍ରହ ବଢୁଛି ।

ଫକୀର—ବାବା ! ମନ ଭାରି ଚଞ୍ଚଳିଆ—ତାକୁ ସଦାବେଳେ ଲଗାମ ଦେଇ ଟାଣି ରଖିଥିବ । ପ୍ରଜ୍ଞାର ସ୍ଥିର ଆଲୋକରେ ଦେଖିଲେ ବୁଝିବ ଯେ, ବାହାରେ ଯାହା ମନୋହର—ଭିତରେ ତାହା ହଳାହଳ ।

ବିଦ୍ୟାଧର—କଣ ଯେ କୁହ—( ଠିକ୍ ଏତିକିବେଳେ ନେପଥ୍ୟରୁ ଶୁଭାଗଲା, ଛଅ ଭାଇଙ୍କର ଡାକ—ଉଣେଇ, ଉଣେଇ ) ମତେ ? [ ଗୋଟିଏ ପ୍ରବଳ ଆକର୍ଷଣରେ ଟାଣି ହୋଇ ଚାଲିଗଲେ ]

ଫକୀର—( ଆତ୍ମପ୍ରକାଶ ପୂର୍ବକ ) ଭୌତିକ ଆକର୍ଷଣ । ସେଥିରେ ଆକୃଷ୍ଟ ହେବ ଭୌତିକ ଜୀବ—

ସ୍ୱଭାବ ଲକ୍ଷଣ । ମନୋହର ଫାସିଅଗ୍ରା ଗ୍ରାମ ଆଜ ଭୌତିକ ରାଜ୍ୟ । ମନୋହର ଫାସିଅଗ୍ରା ସେହି ରାଜ୍ୟର ଅଧିପତି ।—ତାର ଛଅପୁଅ ଛଅରିପୁ—କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । —ଆଉ ସୁନ୍ଦରୀ ରଙ୍ଗଲତା ହିଁ ଅଛି—ପ୍ରକୃତି । ବିଦ୍ୟାଧର ଜୀବାତ୍ମା—ଜୀବନର ନୂଆ ପଥିକ । ଆତ୍ମଜ୍ଞାନର ତତ୍ତ୍ୱ ଜାଣିଥିଲେ ମଧ୍ୟ ଏତେ ସହଜରେ ଆତ୍ମଜ୍ଞାନୀ ହେବା ଅସମ୍ଭବ; ସୁତରାଂ ବିବେକର ଗୃହ କଣ ? (ବିପରୀତ ଦିଗକୁ ପ୍ରସ୍ଥାନ)—

[ ବିଦ୍ୟାଧର ଓ ଛଅଭାଇ ପ୍ରବେଶ କଲେ ]

ବିଦ୍ୟାଧର—ତୁମେ ସତ କହୁଛ, ମୁଁ ତୁମର ଭଣେଇ ?

କାମ—କେଉଁ ପିଲା ଦିନର କଥା, ହେତୁ ନଥିବ ।—ବର୍ତ୍ତମାନ ତୁମେ ଆମର ଘର ମରଦମାନଙ୍କୁ ଥରେ ପରଖି ଦେଖ ।

ବିଦ୍ୟାଧର—ଏ'କ ପ୍ରଦାହ ଅନୁଭବ କରୁଛି ? ତେବେ ସେହି ପଥିକ ଯେଉଁ ପରିଚୟ ଦେଇଗଲା ଏମାନଙ୍କର, ତାହା କଣ—

କ୍ରୋଧ—ସମ୍ପୂର୍ଣ୍ଣ ମିଥ୍ୟା—କାହିଁ ଗଲା ସେ ମିଥ୍ୟାବାଦୀ ?

ଲୋଭ—କ୍ରୋଧ କର ଲଭ ନାହିଁ ଭାଇ, ଗୁଲ୍ ତ ଭଣେଇ । (ବିଦ୍ୟାଧରର ହାତ ଧରିଲା)

ବିଦ୍ୟାଧର—ତୁମେ ସାକ୍ଷାତ ଲୋଭ, ମୋତେ ଲୋଭରେ ପକାଇ—

ମୋହ—ଛି, ଛି, ତୁମର କଣ କାନ ନାହିଁ, ଭଣେଇ ? ଥରେ କାନ ଡେରିଲ—

ବିଦ୍ୟାଧର—(କାନ ଡେରିଲା—ଗୋଟାଏ କରୁଣ ସଙ୍ଗୀତ ଭାସି ଆସୁଥାଏ, ଅତି ଦୂରରୁ) ଏଁ ! କିଏ କାନ୍ଦେ ? ଏ'କ ମୋହ, ମନକୁ ମୋର ଆଚ୍ଛନ୍ନ କଲା ?

ମଦ—ରଙ୍ଗି, ରଙ୍ଗି !—ତୁ କାନ୍ଦ ନା ବା, ତୁ କାନ୍ଦ ନା ।

ବିଦ୍ୟାଧର—ନା ନା—ମୁଁ ଯିବି—ମୁଁ ଯିବି, ମୁଁ ଉନ୍ମାଦ— (ବେଗେ ପ୍ରସ୍ଥାନ)

ମାତ୍ସର୍ଯ୍ୟ—ହାଃ, ହାଃ, ହାଃ—ମାଛ ଜାଲରେ ପଡ଼ିଛି, ଏଣିକି ମାତ୍ସର୍ଯ୍ୟର କରାମତି—

[ ସମସ୍ତେ ଅନୁଧାବନ କଲେ ]

———

## ତୃତୀୟ ଦୃଶ୍ୟ

—ପ୍ରାସାଦର ତୋରଣ ଦେଶ—

[ ମନୋହର ଫାସିଅଗ୍ରାର ମନୋହର ପ୍ରାସାଦର ତୋରଣ ଦେଶ—ବିଶିଷ୍ଟ ଅଭ୍ୟାଗତର ଅଭ୍ୟର୍ଥନା ପାଇଁ ଯଥାଭାବରେ ସୁସଜ୍ଜିତ । ରଙ୍ଗଲତା ବେଶ ପରିପାଟିରେ ଲାଗିଥାଏ—ଏହି ସମୟରେ ବୃଦ୍ଧ ଦସ୍ୟୁ ଫାସିଅଗ୍ରା ପ୍ରବେଶ କଲା ]

ରଙ୍ଗଲତା—ବାବା ! ବାବା !

ଫାସ୍ୟାଗ୍ରା—ଶିକାର ଫସିଲି ନାଁ କ'ଣ ?

ରଙ୍ଗଲତା—(ସୋଲ୍ଲାସେ) ସେ ଆସୁଛି ।—ମୁଁ ଆଙ୍ଗୁଳି ଗଣି ଦେଖୁଛି—ସେ ଛଏଁ ଛଏଁ ଆସୁଛି, ମନ କହୁଛି ।

ଫାସ୍ୟାଗ୍ରା—ତୁ କାନ୍ଦ୍—ଆହୁରି କାନ୍ଦ୍—ଶିକାରକୁ ଏମିତି କରି ଭୁଲେଇ, ମଜେଇ ରଖ, ଯେମିତି ସେ ଜାଣି ନପାରେ ଯେ, ସେ ଜାଲରେ ପଡ଼ିଛି —ମୁଁ ତେଣେ ଛଅ ବୋହୂଙ୍କୁ ଜାଗତିଆର କରିଦିଏ । (ପ୍ରସ୍ଥାନ)

ରଙ୍ଗଲତା—(ଭାବ ଦରଦ ଭରା ଢଙ୍ଗରେ ଗାଇବାକୁ ଲାଗିଲା)

ରଙ୍ଗଲତା— —ଗୀତ—

ଫେରି ଯାଅ ନା ଗୋ ପରବାସୀ
ଯେବେ ଆସିଛ ମୋ ମନ ଦୁଆରେ ।
ମୁଁ ଯେ ଯୁଗ ଯୁଗ କାଳ ଆଶାର ଦୀପାଳୀ
ଜାଳିଛି ପଥ କାନ୍ତ ପୁଲକ ଜୁଆରେ ।

ଜାଣେ ତୁମେ ଦିନେ ଜୀବନ ଫଗୁଣେ ଆସିବ,
ଅଚାହାଁ ଛାଇରେ ମରମ ଗୁମରେ ବସିବ;
(ମୋର) ପ୍ରୀତି କଷଟିରେ କଷିବ
ମୁଁ ଆପଣା ଭୁଲିବି ବାଛିନ୍ତି ତବ
ଦର ଦର ଗୁଣ୍ଠି କୁହାରେ...
ଅଜାଡ଼ି ଦେବି ଗୋ ଯାହା କିଛି ମୋର
(ତୁମ୍ଭ) ସୋହାଗର ମୂଳ ଦୁଆରେ ॥ ୧ ॥

ରଙ୍ଗଲତା—ବାବା ! ଦେଖା ଦେଇଛ—ହେଇ ସେ ।
( କାଠପର ଅନାଇ ରହିଲା )

ଫାସିଆରି—( ପ୍ରବେଶ କରି, ରଙ୍ଗଲତାକୁ କିଛିକ୍ଷଣ ନିରୀକ୍ଷଣ କଲେ ) ଏମିତି କାଠପରି ଠିଆ ହୋଇ ଚାହିଁ ରହିଲୁ ଯେ । ନୂଆ କିଛି ଦେଖୁଚୁ କି ଲତା ?

ରଙ୍ଗଲତା—ନାହିଁ......( ଲାଜରେ ) ଯାଉଚି ବାବା—
( ହରଣୀ ପରି ଚାଲିଗଲା )

ଫାସିଆରି—ରଙ୍ଗର ଗାଲରେ—ଓଠରେ ଗୋଟାଏ ରଙ୍ଗର ଢେଉ ଖେଳିଗଲା—ସେଟା ଭଲ ଲକ୍ଷଣ ନୁହେଁ ।

[ ବଡ଼ ବୋହୂ ପ୍ରବେଶ କଲା ]

ବଡ଼-ବୋହୂ—ବାପା !

ଫାସିଆରି—କ'ଣ କି ଲୋ ବଡ଼-ବୋହୂ ?

ବଡ଼-ବୋ.ହୂ—ଏତେ ପରିପାଟି କରି ସଜେଇ ଦେଇଥିଲୁ; ତା' ଓଢ଼ଣା ପକାଇ, ରଙ୍ଗ କହୁଚି—ନିଜ ହାତରେ ଜୁଡ଼ା ପାରିବ, ନିଜେ ଚନ୍ଦନ ଟୋପା ଲେଖିବ, କଜ୍ଜଳ ନାଇବ, ଅଳତା ନାଇବ, ଶାଢ଼ି ପିନ୍ଧିବ—ଆଉ ଅଳଂକାର ଖଞ୍ଜିବ ଆପଣା ପସନ୍ଦକୁ ଚାହିଁ ।

ଫାସିଆରି—ସେଇଆ ହଉ ।

ବଡ଼-ବୋହୂ—( ମଥା ଟୁଙ୍ଗାଇ ଚାଲି ଯାଉଥାଏ )

ଫାସିଆରି—ହଁ ଦେଖ, ତୁମେ ତାକୁ କେହି କିଛି କହିବନି । ତା ମନକୁ ଯିମିତି ଆସୁଚି—ସେମିତି କରୁ । ବଡ଼ିଆ ଗହଣା—ହୀରାଆର ।—ବଡ଼ିଆ କରି ବନ୍ଦେଇବାର ଯୋଗାଡ଼ କରିବ । (ବଡ଼-ବୋହୂ ଚାଲିଗଲା ) ସମଜି ପାରୁନି, ରଙ୍ଗର ଢଙ୍ଗ ରଙ୍ଗ—ହେଲେ, ଜାଣିଥା ରଙ୍ଗି—ତୁ ମୋର ବିଷ-କନ୍ୟା—ନାଗରାଜ ଚଣ୍ଡ ତା'ର ବିଷ-କନ୍ୟାକୁ ବିସର୍ଜନ ଦେଇଥିଲା ବିଷ ଜାଣି; ସେହି ସ୍ଥଳେ ଦସ୍ୟୁରାଜ ଫାସିଆରି—ତୋତେ ଆଉପାଡ଼ କରିଚି, ଉତ୍କଟ କାଳକୂଟ—ଏହି ଜ୍ଞାନରେ । ତୁ ହଳାହଳ ବର୍ଷଣ କରୁଛୁ—ଫାସିଆରି ସେଥିରୁ ଲାଭ କରୁଛି, ଅମୃତର ନିର୍ଝର ।—ବର୍ତ୍ତମାନ ତୁ ଅମୃତ-କନ୍ୟା ପାଲଟିଲେ, ଫାସିଆରି ବିଷ-ପିତା ପାଲଟିବାକୁ ଟିକିଏ ହେଲେ କୁଣ୍ଠାବୋଧ କରିବନି । ହାଃ—ହାଃ—ହାଃ—

ବିଦ୍ୟାଧର—( ନେପଥ୍ୟରୁ ) ଭାରି ଡର ମାଡ଼ୁଚି—ମତେ ଛାଡ଼ିଦିଅ, ଛାଡ଼ିଦିଅ ।

ଫାସିଆରି—( ମୁଖର ଭାବ ସଙ୍ଗେ ସଙ୍ଗେ ବଦଳାଇ ) ଶ୍ୱଶୁର ଘର—ଡର ଭୟ କ'ଣ ବାପ ?

ବିଦ୍ୟାଧର—(ମୂକ ଭାବରେ ଫାସିଆରି ମୁହଁକୁ ଚାହିଁଥାଏ)

ଫାସିଆରି—ତୁମର ବୁଢ଼ା ଶ୍ୱଶୁର ପରି ମୁଁ—ବୁଢ଼ା ବାପଟାକୁ ଛାଡ଼ି ଚାଲିଯିବ ?—ଚିନ୍ତିରେ ଛୁରି ଦେବ ତ ?

ବିଦ୍ୟାଧର—( ତଥାପି ଚାହିଁ ରହିଥାଏ )

ଫାସିଆରି—ଆଉ ଚାହିଁ ଦେଖୁଚ କ'ଣ ବାପ ? ତୁମର ଚିନ୍ତାରେ ପରି ଭଲ ଭଲ ସରିଗଲାଣି, ଏ ମୁହଁ ଗୋଟାକ ବଳି ରେଖାରେ ଭରି ଗଲାଣି । ଆଉ ରଙ୍ଗଲତା—ଲତାକୁ ବଳି ଝାଉଁଳି ପଡ଼ିଲାଣି ।

ବିଦ୍ୟାଧର—ଏଁ !—

ଫାସିଆରି—ଚିନ୍ତା ନାହିଁ, ବାବା—ତରୁର ଆଶ୍ରୟ ପାଇ—ସୁଯୋଗରେ ପୁଣି—ସଙ୍ଗେ ସଙ୍ଗେ ତାଜା ହୋଇ ଉଠିବ ଯେ—

[ ଠିକ୍ ଏତିକି ବେଳେ ବେଳେ ବୋହୂ-ମାନଙ୍କର କଣ୍ଠସ୍ୱର ଶୁଣାଗଲା ]

ବିଦ୍ୟାଧର—( ତେଣିକି ଅନାଇ ) ଏମାନେ କିଏ ?

ଫାସିଆରି—ହେଃ—ହେଃ—ହେଃ—ତୁମର ଛଅ ଶଳା-ଭାଉଜ । ( ବୋହୂମାନଙ୍କୁ ଆଖିଠାରି ଦେଇ ବିପରୀତ ଦିଗକୁ ଚାଲିଗଲେ । ବୋହୂମାନେ ବନ୍ଦାପନା କରିବାକୁ ପ୍ରବେଶ କରି ଯଥାରୀତିରେ ବନ୍ଦାପନା କଲେ )

ବିଦ୍ୟାଧର—ତୁମେ ଏ ସବୁ କ’ଣ କରୁଛ ଯେ ?

୧ମ—ଶ୍ରେଷ୍ଠ ଅତିଥି ତୁମେ, ତୁମକୁ ବନ୍ଦାଉଚୁ !

ବିଦ୍ୟାଧର—ଶ୍ରେଷ୍ଠ ଅତିଥି ମୁଁ—ମତେ ବନ୍ଦୀ କରୁ ନାହଁ ତ ?

୨ୟ—ତା’ ତ ମିଛ ନୁହେଁ, ତୁମେ ଜଣକର ହୃଦୟ ରତ୍ନ ଚୋରି କରିଚ—ଫେରାରି ଅସାମୀ—ତୁମକୁ ଗିରଫ୍ କରି, ବାନ୍ଧି ନେଇଯିବୁ ତାରି ପାଖକୁ—ଯା’ର ଯାଇଚି ଚୋରି ।

୩ୟ—ବିଚାର ବି କରିବ ସେଇ ।

୪ର୍ଥ—ଅପରାଧର ଶାସ୍ତି ମଧ୍ୟ ଦେବ ।

୫ମ—କି ଶାସ୍ତି କହ ତ ?

୬ଷ୍ଠ—ଅପରାଧୀଙ୍କ ପରିଚ ।

ବିଦ୍ୟାଧର—ବଧ······

[ ବୋହୂମାନେ ହସିବାକୁ ଯାଇ ଅପ୍ରସ୍ତୁତ ହୋଇଗଲେ । ବିଦ୍ୟାଧର ସେମାନଙ୍କର ହସର ଜୋର ଜାଣି—ସମସ୍ତଙ୍କୁ ଭିଡ଼ ଓଟାରି, ବଗୁଲିଆ ପରି ଭିଡ଼ ଭିତରୁ ପଳାଇ ଗଲା ]

—— ——

## ଚତୁର୍ଥ ଦୃଶ୍ୟ

### —ଅରଣ୍ୟ ପଥ—

[ ଫାସ୍ୟାର୍ ଛୁରି ପକାଉ ପକାଉ ପ୍ରବେଶ କଲା ]

ଫାସ୍ୟାର୍—ରଙ୍ଗର ଛୁରି ପୁରୁଣା ହୋଇଗଲାଣି—ଗଳା କାଟି କାଟି ଦାନ୍ତ ଲେଉଟି ପଡ଼ିଥିବ । ତାକୁ ଏଇ ଛୁରିଟି ଦେବି—ନୂଆ କରି ପଜେଇଚି ।—ନୂଆ ବିଦେଶୀର ତଣ୍ଟି—ଛୁରି ଦେଲା ମାତ୍ରେ—ମୁଣ୍ଡ ଗଣ୍ଡି ଏକାବେଳକେ—ଅଲଗା—ଅଲଗା ( ହସିଲା ) । ଜୀବନରେ ଅନେକ ସଉଦା କରିଚି—ହେଲେ, ଏମିତି ସଉଦାଗର ଭେଟିବା ଏଇ ପ୍ରଥମ । ସଉଦାଗର ନୁହେଁ—ଯେମିତି ସୁନା ମୋହରର ଗୋଟାଏ ଜୀବନ୍ତ ଥଳି ।—ଛୁରି ବସାଇ ଦେଲା ମାତ୍ରେ—ଖୋଲି ଗଲ ଗଲ ସୁନାର ଶୀଳା ବୃଷ୍ଟି—ହାଃ—ହାଃ—ହାଃ— ( ପ୍ରସ୍ଥାନ )

——————

## ପଞ୍ଚମ ଦୃଶ୍ୟ

### —ରଙ୍ଗଲତାର ଶୟନ କକ୍ଷ—

[ ଚଉଠି ରାତିର ଯଥା ଆଡ଼ମ୍ବରରେ ତାହା ସୁସଜ୍ଜିତ—ବିଦ୍ୟାଧର ଉତ୍କଣ୍ଠିତ—ନବାଗତାର ପ୍ରଥମ ମିଳନର ପ୍ରତୀକ୍ଷାରେ ମନରେ ଉନ୍ମାଦନା ନେଇ ଉପସ୍ଥିତ ଥାଏ ]

ବିଦ୍ୟାଧର—କୁଆଁରି ଭୋଜନ—କୁଆଁରିର ଆଦର ମର୍ଯ୍ୟାଦା—ସବୁ ତ ହେଲା; ହେଲେ, ଯାହା ନେଇ ଏତେ କାରଖାନା, ସେ କାହିଁ ? ନିଶା ଗଳିଲାଣି—ଗୁରୁଅଡ଼ ଶୁନ୍ ଶାନ୍—ଏତକି ବେଳେ କଙ୍କଣର ଠୁଣ୍ ଠାଣ୍, କି ନୂପୁରର ଝୁଣ୍ ଝାଣ୍—ନୀରବକୁ ସରବ କରିବାର କଥା—କାହିଁ ?—ଦୀପଶିଖା ନିସ୍ତେଜ—ଫୁଲଶଯ୍ୟା ମଳିନ—( ସାବେଗରେ ) ରଙ୍ଗଲତା—ରଙ୍ଗ ( ଗୋଟିଏ ପୈଶାଚିକ ହସରେ କକ୍ଷଟି ପ୍ରକମ୍ପିତ ହେବାକୁ ବସିଲା— )

ନେପଥ୍ୟେ—ହାଃ—ହାଃ—ହାଃ ( ସଙ୍ଗେ ସଙ୍ଗେ ଦୀପ ନିର୍ବାପିତ ହୋଇ ଗଲା ) ରଙ୍ଗଲତା ପୁରୁଷ ହନ୍ତୀ—ରଙ୍ଗଲତା ପୁରୁଷ ହନ୍ତୀ—

ବିଦ୍ୟାଧର—ରଙ୍ଗଲତା ପୁରୁଷ ହନ୍ତୀ ? ମିଥ୍ୟାକଥା ! ( ଏହି ସମୟରେ ପଲଙ୍କ ଉପରେ ଛାୟାମୂର୍ତ୍ତି ଗୁହ୍ନକର ଭୌତିକ ନୃତ୍ୟ ଦେଖାଗଲା ) ( ସଚକିତେ ) ଏ କଣ ? ଏ କି ବିଭୀଷିକା ?—ଏ କଣ ସତ୍ୟ ନା ସ୍ୱପ୍ନ ? ନା—ନା—ମିଥ୍ୟା କଥା—ମିଥ୍ୟା କଥା—

ରଙ୍ଗଲତା—( ପ୍ରବେଶ କଲେ, ହାତରେ ପାନଡବା ) ସତ୍ୟକଥା—ଏ କକ୍ଷ ପ୍ରୀତିର ଆଗାର ନୁହେଁ, ମୃତ୍ୟୁର ଗହ୍ୱର—( ଯଥାସ୍ଥାନରେ ପାନଡବା ଥୋଇ ଚାଲି ଯାଉଥିଲେ )

ବିଦ୍ୟାଧର—ଠିଆ ହୁଅତ—

ରଙ୍ଗଲତା—[ ଠିଆ ହେଲା । ଏଥର ସ୍ପଷ୍ଟ ଆଲୋକରେ ଦେଖାଗଲା—ରଙ୍ଗଲତା ଅତି ସାଧାରଣ ପୋଷାକର ବେଶରେ—]

ବିଦ୍ୟାଧର—( ଥରେ ତାମ୍ବୁଳ ପାତ୍ର ପ୍ରତି ଲକ୍ଷକରି ଦେଖିଲା ) ତୁମେ ?

ରଙ୍ଗଲତା—ପୋଇଲୀଟିଏ ।

ବିଦ୍ୟାଧର—ପାଗଲୀଗା ପୋଇଲୀ ନିଶ୍ଚୟ ।

ରଙ୍ଗଲତା—ହଁ, ଅତି ପାଗଲୀଗା ।

ବିଦ୍ୟାଧର—ତାମ୍ବୁଳାଧାର ଦେଖି ତା ବୁଝୁଛି—ହେଲେ, ତାମ୍ବୁଳାଧାର ତୁମର ଦେଇ କାହାନ୍ତି ?—ଏତେ ଡହୁଳ କରିବାର କାରଣ ?

ରଙ୍ଗଲତା—ଦେଇଙ୍କୁ ପଚାରିବି । ( ଚାଲି ଯାଉଥିଲେ )

ବିଦ୍ୟାଧର—ହଁ, ତୁମକୁ ଗୋଟିଏ କଥା ପଚାରିବି—କହିବ ?

ରଙ୍ଗଲତା—କହିବାର ହେଲେ କହିବି ।

ବିଦ୍ୟାଧର—ହକ୍ କଥା—ବିଶ୍ବସ୍ତ ପୋଇଲି ତୁମେ—ବିଶ୍ୱାସରେ ବିଷ ଦେବ କେମିତି ?

ରଙ୍ଗଲତା—ଭଣିତା ଥାଉ ।

ବିଦ୍ୟାଧର—ବେଶ୍—ଗୁହିଁବାର ହେଲେ ଗୁହିଁବାରେ ଆପତ୍ତି ଅଛି କି ?

ରଙ୍ଗଲତା—ତୁମର ମୁଣ୍ଡ ବିଗିଡ଼ିଛି କି ?

ବିଦ୍ୟାଧର—ମୁଣ୍ଡ ନ ବିଗିଡ଼ିଲେ, କିଏ ଛୁଇଁ ଛୁଇଁ ଗୁଲିଆସେ, ଏଇ ମୃତ୍ୟୁର ଗହ୍ବରକୁ ?

ରଙ୍ଗଲତା—(ଆଉ ରହି ନ ପାରି—ବିଦ୍ୟାଧର ଆଡ଼କୁ ଗୁହିଁ ) ଏ'ସ୍ଥାନକୁ ଆସିଲେ ମୁଣ୍ଡ ଦେବାକୁ ହୁଏ—ଏ'କଥା ଜାଣିସୁଦ୍ଧା ତୁମେ ଧାଇଁ ଆସିଛ କେଉଁ ଦୁଃସାହସରେ, କୁହତ ?

ବିଦ୍ୟାଧର—( ମୁଗ୍ଧନେତ୍ରରେ ରଙ୍ଗଲତାକୁ ନିରୀକ୍ଷଣ କରୁ କରୁ ) ଦୁଃସାହସ ନୁହେଁ — ଦୁର୍ବାର ଆକର୍ଷଣରେ ।

ରଙ୍ଗଲତା—ଆକର୍ଷଣ ?

ବିଦ୍ୟାଧର—ତୁମର ରୂପ-ବହ୍ନି ର ।

ରଙ୍ଗଲତା—ମୋର ?—ମୁଁ ତ ଛାର ଦାସୀ—ପୋଇଲୀଟିଏ ।

ବିଦ୍ୟାଧର—ହାଃ—ହାଃ—ହାଃ··· ।

ରଙ୍ଗଲତା—ହସିଲେ ଯେ ?

ବିଦ୍ୟାଧର—ଦେଇର ଅଭିନୟ କରି କରି ମନ ପିତା ଧରିଗଲଣି, ସେଥି ଯୋଗୁଁ ଆଜି ପୋଇଲୀର ଏ ନୂଆ ଅଭିନୟ ।—ରୂପ ବଦଳାଇଲେ ମଧ—ରୂପ ସଜ୍ଜାକାରୀର ପ୍ରକୃତି ବଦଳେ ନା—ଅଚ୍ଛା-ଦିତ ହେଲେ ମଧ ବହ୍ନି ତା'ର ଦାହିକା ଶକ୍ତି ପ୍ରକ୍ଷେପ କରିବାକୁ ଛାଡ଼େ ନା । ଆଖିରେ କଟାକ୍ଷ ନାହିଁ ସତ୍ୟ, ହେଲେ, ରହିଛି କଟାରୀର ତୀକ୍ଷ୍ଣ ଆଭାସ—ଅଧରେ ଲାସ୍ୟର ବିଭ୍ରମ ନାହିଁ ସତ୍ୟ, ରହିଛି ସୁପ୍ତ ବିଷର ଉତ୍କଟ ଉଚ୍ଛ୍ୱାସ—

ରଙ୍ଗଲତା—ସୁତରାଂ, ରଙ୍ଗଲତା ଯେଉଁ ପୁରୁଷ-ହନ୍ତୀରୁ ସେହି ପୁରୁଷ-ହନ୍ତୀ ?

ବିଦ୍ୟାଧର—ପୁରୁଷ ନୁହେଁ—କା-ପୁରୁଷ ।—ଏ କଥା ମୁଁ ଦୃଢ଼ କଣ୍ଠରେ କହିପାରେ ।—ଆଉ ତା'ର ପ୍ରମାଣ ମଧ—( ତାମ୍ବୁଳ ପାତ୍ର ଖୋଲି ଦେଇ, ଗୁପ୍ତଅସ୍ତ୍ର ପରିବର୍ତ୍ତେ, ଗୁପ୍ତ ସଙ୍କେତ ଦେଖି ତାଟକା ହୋଇଗଲେ )

ରଙ୍ଗଲତା—ଗୁପ୍ତ ଅସ୍ତ୍ର ନାହିଁ—ଅଛି ଗୁପ୍ତ ସଙ୍କେତ । —ସାବଧାନ ।—ତୁମେ ବୀର ଅଭିମନ୍ୟୁପରି ମୃତ୍ୟୁ ବ୍ୟୂହରେ ପଶିଛ । ସେହି ଅବିମୃଷ୍ୟକାରୀ ବୀର ପରି ସେଥିମଧ୍ୟରୁ ବାହାରିବାର ବାଟ ଜାଣ ନା ।—ବର୍ତ୍ତମାନ ସୁଯୋଗ—ସେହି ସଙ୍କେତ ଧରି, ତୁମର ବାଟଧର ।

ବିଦ୍ୟାଧର—( ଅବାକ ହୋଇ ଯାଇଥାଏ )

ରଙ୍ଗଲତା—ଆଉ ବିଳମ୍ବ ନୁହେଁ । ( ବାଟ ଦେଖାଇ ଦେଇଯିବାର ଉପକ୍ରମ—ସେତିକି ବେଳେ ଦ୍ୱାରରେ କରାଘାତ ଶବ୍ଦ ହେଲା—)

ରଙ୍ଗଲତା—ସର୍ବନାଶ ।

ବିଦ୍ୟାଧର—କ'ଣ ?

ରଙ୍ଗଲତା—ଅସ୍ତ୍ରେ—ଦ୍ୱାରେ କରାଘାତ ଶବ୍ଦ—ବାବା—ଫେରି ହୋଇ ଆସିଲଣି, ମୋର କାର୍ଯ୍ୟ ଶେଷ କି ନା, ସେହି କଥା ଜାଣିବାର ସଙ୍କେତ ।

ବିଦ୍ୟାଧର—ତା ହେଲେ ଉପାୟ ?

ରଙ୍ଗଲତା—ଭୟ ନାହିଁ—ତୁମେ ଅସ୍ଥିର ହେବ ନାହିଁ ।

ବିଦ୍ୟାଧର—ଭୟ ମୋ ପାଇଁ ନୁହେଁ—ତୁମ ପାଇଁ—ତୁମେ—

ରଙ୍ଗଲତା—କି କୈଫିୟତ ଦେବ ?—କି ପରିଣାମ ହେବ ମୋର ?—

ବିଦ୍ୟାଧର—ପରିହାସ ନୁହେଁ ।

ରଙ୍ଗଲତା—ସାଧୁତ୍ତମ ! ପ୍ରକୃତିରୁ ନିବୃତ୍ତି ଆସେ—ଶୁଣିଛି । ହେଲେ, ମୋର ଅନ୍ତର କହୁଛି, ମୁଁ ଆଜି ପୁରୁଷ-ନାଶିନୀରୁ ପୁରୁଷ-ରକ୍ଷିଣୀ ହେବି ! ଜୀବନ ଓ ମୃତ୍ୟୁ ନୁହେଁ ଅବିଚ୍ଛିନ୍ନ ଭାବରେ ଗୋଟିଏ ସୂତ୍ରରେ ଗୁନ୍ଥା—ଏହି ଦିବ୍ୟ-ଜ୍ଞାନର ଆଲୋକ ମୁଁ ଆଜି ଦେଖି ପାରୁଛି !—ମୋ ପାଇଁ ଚିନ୍ତାର ପ୍ରୟୋଜନ ନାହିଁ !—ଯେଉଁ ଚିନ୍ତା ନେଇ ଆଜି ତୁମେ ମାଣିକ ପାଟଣାର ଅଭିଯାତ୍ରୀ—ସେହି ଅଭିଯାନର ସାଫଲ୍ୟ ହେଉ, ତୁମର ଏକମାତ୍ର ଚିନ୍ତା ।

ବିଦ୍ୟାଧର—ରଙ୍ଗଲତା !

ରଙ୍ଗଲତା—ଧୈର୍ଯ୍ୟ । ପ୍ରଥମେ ମୁକ୍ତି—ହଁ, ତୁମେ ମୋତେ ବିଶ୍ୱାସ କରୁଛ ତ ?

ବିଦ୍ୟାଧର—ବିଶ୍ୱାସ ? ଆତ୍ମ-ବିଶ୍ୱାସରୁ ଅଧିକ ।

ରଙ୍ଗଲତା—ବେଶ୍, ଗଳାକଣ୍ଠାର ଏହି ରାଜ୍ୟସୀମା ଛାଡ଼ି ତୁମେ ତୁମର ଲକ୍ଷ୍ୟ ପଥର ଯାତ୍ରୀ ନ ହେବା ଯାଏ, ତୁମର ସମସ୍ତ ଭାର ମୋର ଉପରେ—କିନ୍ତୁ...

ବିଦ୍ୟାଧର—କିନ୍ତୁ ?

ରଙ୍ଗଲତା—ତୁମର ଉଦ୍ଦେଶ୍ୟ ହାସଲ କରି ପାଟଣାରୁ ଫେରିବା ବାଟରେ ମୋତେ ଏଇ ନରକ କୁଣ୍ଡରୁ ଉଦ୍ଧାର କରି ନେଇଯିବ—ଏତିକି ପ୍ରାର୍ଥନା ।

ବିଦ୍ୟାଧର—ତୁମର ପ୍ରାର୍ଥନା ନୁହେଁ, ମୋର କର୍ତ୍ତବ୍ୟ । ନିଶ୍ଚୟ ନେଇଯିବି—ମୁଁ ଶ୍ରୀ ସତ୍ୟନାରାୟଣଙ୍କ ନାମରେ ଶପଥ କରି କହୁଛି ।

[ ସତ୍ୟନାରାୟଣଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ—ରଙ୍ଗଲତା ବିଦ୍ୟାଧରର ପାଦ ବନ୍ଦନା କଲେ—ଦ୍ୱାରଦେଶରେ ଘନ ଘନ କରାଘାତ ଶବ୍ଦ—ବିଦ୍ୟାଧର ଚଞ୍ଚଳ ହୋଇ ଉଠିଲେ—ରଙ୍ଗଲତାର ଆସନରେ ଉପବେଶନ କରିବାକୁ ଇଙ୍ଗିତ ଦେଇ ପ୍ରସ୍ଥାନ । ]

ବିଦ୍ୟାଧର—ହେ ସତ୍ୟନାରାୟଣ !

---

## —ଷଷ୍ଠ ଦୃଶ୍ୟ—

—ବହିରଙ୍ଗନ—

[ ଫାସିଆରି ଓ ରଙ୍ଗଲତା ପରସ୍ପର ବିପରୀତ ଦିଗରୁ ଆଗ୍ରହରେ ପ୍ରବେଶ କଲେ ]

ରଙ୍ଗଲତା...ବାବା !

ଫାସ୍ୟାରି—କାମ ଫତେ ?

ରଙ୍ଗଲତା—ମୁଁ ଗୋଟାଏ କାମ କଲାଆ କାମରୁ ମତଲବ୍ କରିଛି ।

ଫାସ୍ୟାରି—କ'ଣ ଶୁଣେ ?

ରଙ୍ଗଲତା—ବିଦେଶୀକୁ ମାରିବା ନାହିଁ ।

ଫାସ୍ୟାରି—ମାନେ ?

ରଙ୍ଗଲତା—ବିଦେଶୀ ଯିମିତି ସ୍ୱାସ୍ଥ୍ୟକାର, ସିମିତି ବେପାରି ପୁଅ ।

ଫାସ୍ୟାରି—ସେମିତି ହୁସିଆର ବି । ଅଂଗା ଦେଖିଛୁ ? ତା ଭିତରେ କିମିତି ଶହ ଶହ ମୋହର ପୂରିଛି ସିଇଁ ହିଦରେ ନାଇଛି ?—ମୁଁ ବି ଉହୁଁ ବଲି ସିଅଣା—କୁଣ୍ଡେଇଲାବେଳେ ଅଣ୍ଟାଳି ଅଣ୍ଟାଳି ଭଲକରି ଚିପି ନେଇଛି—କମ୍‌ରେ କମ୍ ପାଞ୍ଚଶରୁ ଊଣା ନୁହେଁ । ଆଉ ତୁ ଇମିତି ଶିକାରକୁ ନ ମାରି, ବଞ୍ଚେଇ ରଖିବୁ ?—ସେଥିରେ ଆମର ଲାଭ ?

ରଙ୍ଗଲତା—ଲାଭ ଅଛି କି ନା—ଗପ ଶୁଣି କୁହ ।

ଫାସ୍ୟାରି—ଗପ ?—କି ଗପ ଯେ ?

ରଙ୍ଗଲତା—ଗୋଟିଏ ଚଷା ଥିଲା । ସେ ଗୋଟିଏ ହଂସ ପାଳିଥାଏ—ହଂସଟି ନିତି ଗୋଟିଏ ଲେଖାଏଁ ସୁନାର ଅଣ୍ଡା ଦିଏ !—ଚଷାର ମନ ଭରିଲା ନାହିଁ—ଦିନେ ସେ ମନକୁ ମନ କହିଲା, ଧେତ୍ ! ଢାକର ଧରି ଘଡ଼ା ଭର୍ତ୍ତି ! ମାରି ଦେଲେ ତ

ଯେତେ ଅଣ୍ଡା ଅଛି ତା ପେଟ ଭିତରେ, ସବୁତକ ପାଇଯିବ ଏକାବେଳକେ ।

ଫାସ୍ୟାର୍—ତା'ପର ?

ରଙ୍ଗଲତା—କଥା ଅନୁସାରେ କାମ୍—ହଂସ ମଲା, ଅଣ୍ଡାବି ଗଲା ।

ଫାସ୍ୟାର୍—ବୁଝିଲି—ସେମିତି ନିବୁଦ୍ଧିଆ ଆମେ ହେବା ନା—ଏହି କଥା ତ ?

ରଙ୍ଗଲତା—ବୁଦ୍ଧି ଖଟେଇ ଦେଖ—ଯଦି କେଇଟା ମୋହରର ଲୋଭରେ ସୌଦାଗରଟାକୁ ମାରି ପକାଉ, ତେବେ ଏଇ ମୋହରକୁ ମୂଳଧନ କରି ଯେଉଁ ଅମୂଲ୍ୟ ଧନ ଆଣିବାକୁ ଯାଉଛି ସେହି ମାଣିକ ପାଟଣାରୁ, ତାହା ସେ ଆଣି ପାରିବ ତ ? ଆମେ ଆଉ ପାଇ ପାରିବା ତ ?

ଫାସ୍ୟାର୍—ସୌଦାଗରଟା ଯେ ସତଦା ସାରି ଏଠାକୁ ଫେରି ଆସିବ, ତା'ର ପ୍ରମାଣ ?

ରଙ୍ଗଲତା—( ସରମେଇବା ଅଭିନୟ କରି ) ମୁଁ ତାକୁ ପାଲରେ ପକାଇଛି, ବାପା !!

ଫାସ୍ୟାର୍—ନାଁ—ସେ ତୋତେ—(ଅନୁନୟ ଭାବରେ) ରଙ୍ଗି !

ରଙ୍ଗଲତା—ବାପା !

ଫାସ୍ୟାର୍—ମୋର ସେ ବିଷ-କନ୍ୟା କଥା ମନେ ପଡ଼ି ଯାଉଛି ।

ରଙ୍ଗଲତା—ଓଃ—ବିଷ-କନ୍ୟା—ତାର ପିତା ଚଣ୍ଡକୁ ହତ୍ୟା କରିଥିଲା—ଏଇ ଆଶଙ୍କା ତ ?

ଫାସ୍ୟାର୍—ନାଁ—ବିଷ-କନ୍ୟା ନାଗବଂଶ ନିର୍ବଂଶ କରିବ, ଏଇ ସଂକଳ୍ପ ନେଇ ସେନଜିତ୍‌କୁ ହତ୍ୟା କରିବାକୁ ଯାଇ ତା'ରି ପ୍ରେମରେ ପଡ଼ି ଶେଷରେ ଆତ୍ମହତ୍ୟା କରିଥିଲା—ଏହି ଆଶଙ୍କା ।

ରଙ୍ଗଲତା—( ଶିହରି ଉଠି ) ବାପା !

ଫାସ୍ୟାର୍—ଥାଉ ମା—ଥାଉ । ଆମର 'ଯେତିକି ଚୂନାକୁ ସେତିକି ପିଠା'—ଏତେ ଅଡ଼ୁଆରେ ପଶିବା ଆମର ଦରକାର ନାହିଁ । ଅନ୍ତତଃ, କଥାରେ ଅଛି ପରା—'ଆକାଶ କଇଁଆ ଶଲକା ମାଛ—'

ରଙ୍ଗଲତା—ହେଲେ, ମୁଁ ଯେ ସେମାନଙ୍କୁ କଥା ଦେଇଛି, ବାପା ।

ଫାସ୍ୟାର୍—କେଉଁମାନଙ୍କୁ ?

ରଙ୍ଗଲତା—ବୋହୂମାନଙ୍କୁ ?

ଫାସ୍ୟାର୍—କ'ଣ ?

ରଙ୍ଗଲତା—ଯେଉଁ ସୁବର୍ଣ୍ଣ କାଣ୍ଡ ଆଉ ଅସ୍ଥାନ ବଦେଶୀ ଆଣିବାକୁ ଯାଉଛି, ତାହା ଘରକୁ ଆସିଲେ, ତାକୁ ଭାଙ୍ଗି ଛଅ ବୋହୂଙ୍କ ପାଇଁ ଚୂଡ଼ି କଂକଣ ଗଢ଼େଇ ଦେବି ।

ଫାସ୍ୟାର୍—ହେଃ—ଚୂଡ଼ି କଂକଣ ନାଇବେ ।

ରଙ୍ଗଲତା—ତୁମେ ବୁଝି ନ ବାପା ! ମାଇପି ମନ, ସହଜେ ଗହଣାକୁ ଲୋଭ—ତହିଁରେ, ସଦାବେଳେ ମୁଁ ବୋଟେ ବୋଟେ ଗହଣା ଲଦି ହୋଇଥାଏ— ଆଖିରେ ଦେଖନ୍ତି···କେତେ ବରଦାସ୍ତ କରିବେ ? ବରଦାସ୍ତର ଗୋଟାଏ ସୀମା ଅଛି ତ ?

ଫାସ୍ୟାର୍—ବୁଝିଲି ? ତୁ ଆଜି କାହିଁକି ବୋହୂମାନଙ୍କ ହାତରେ ବେଶ ପାଉନୁ—ତୋର ଏ ନୂଆଘର ବେଶ ।

ରଙ୍ଗଲତା—ଭାଇମାନେ ବି ଏ କଥା ନେଇ ଫୁଟ୍‌ଫାଟ ହେଉଛନ୍ତି ।

ଫାସ୍ୟାର୍—ତୁ କାନରେ ଶୁଣିଛୁ ?

ରଙ୍ଗଲତା—ହୁଏତ ଦିନେ ଈର୍ଷାର ଶେଷ ସୀମାରେ ପହଞ୍ଚି ତୁମର ପୁଅ ବୋହୂ ମାନେ ମିଳି, ମୋତେ—

ଫାସ୍ୟାର୍—ଶେଷ କରିଦେବେ ? ରଙ୍ଗି—

ରଙ୍ଗଲତା—ତୁମେ ଗୋଟେ କାମ କର ବାପା ! ସାପ ମରିବ, ବାଡ଼ି ଭାଙ୍ଗିବ ନାହିଁ ।

ଫାସ୍ୟାର୍—କହ ।

ରଙ୍ଗଲତା—ତୁମର ଯକ୍ଷ ଧନରୁ ହେଉ, କି ମହାଜନକୁ ମାରି କରି ହେଉ, ଆଜି ଯେଉଁ ମୋହର ପାଇବ, ସେଇଥିରୁ ବୋହୂମାନଙ୍କୁ ଗହଣା ଗଢ଼େଇ ଦିଅ । ଘରେ ଆଉ ଅଶାନ୍ତି ରହିବ ନାହିଁ—ତୁମେ ବି ନିଶ୍ଚିନ୍ତ—ମୁଁ ବି ନିଶ୍ଚିନ୍ତ ।

ଫାସ୍ୟାଗ୍—ହେଲେ, ହେଃ···ହେଃ—ହେଃ—ରଙ୍ଗି,
ଏଇ ସୁବର୍ଣ୍ଣ କାଣ୍ଡ ଓ ଅସ୍ଥାନ ପ୍ରତ ମୋର
ବନ୍ଧୁଦନରୁ ଲୋଭ ବହୁଛି—ବନ୍ଧୁଦନରୁ ।
( ଲାଲ ବୋହୂ ପଡ଼ୁଥାଏ । ପ୍ରସ୍ଥାନ କଲେ )
ରଙ୍ଗଲତା—ହେ ସତ୍ୟନାରାୟଣ !

---

## ସପ୍ତମ ଦୃଶ୍ୟ

—ରାଜ ଅନ୍ତଃପୁର କକ୍ଷ—

[ କଳିଙ୍ଗ ରାଜାଙ୍କର ଶିଶୁପୁତ୍ର ସତ୍ୟଜିତ୍‌ର ଜନ୍ମଦନ ।—ସେଥିପାଇଁ ସେ ପୁଷ୍ପାଦ ମଣ୍ଡିତ ଗୋଟିଏ ସୁବର୍ଣ୍ଣ ଆସନରେ ଉପବିଷ୍ଟ । ଅଦୂରେ ସୁବର୍ଣ୍ଣ ଦୀପରୁଖାରେ ସୁବର୍ଣ୍ଣ ପ୍ରଦୀପ ସ୍ଥାପିତ—ସୁଭଦ୍ରା ସତ୍ୟଜିତ୍‌କୁ ସଜାଇ ଦେଉଥାଏ ଓ ବୋଇତ-ଗୀତ ଗାଉଥାଏ ]

—ଗୀତ—

ତୁ ଶୁଣ୍ କାହାଣୀ—ନୟନ ସଙ୍ଗାଳି
ହଜିଲା ଦନର ଶୁଣ୍ କାହାଣୀ ରେ ।
ଏକ ବ୍ରଜର ସାଧବ ସେ ଯେ···
ସାତ ଝିଅ ସାତ ଜୁଆଁଇ ତାର···
ଗୋଟିଏ ବୋଲ୍ ପୁଅ
ତାର ହାତୀ ବୋଇତ, ଉଡ଼ାଇ ପାଲ୍
ବାଟେ ଦରିଆ ସୁଅ ।
ହୀରା ନୀଳା ମୋତି ମାଣିକ ତୁଲେ···
ବାରମାସି ସେ ସେପାର ବୁଲେ···
ସୁକୁମାର ସେ ଏକୋଇ ବଳା
ଦାହରେ ତା'ର ସୁନା ଘୁଆଁଣି ରେ । ୦ ।
ଟିକି କନିଆ ସୁନା ଖଡ଼ିକା···କଇଁ ଫୁଲରୁ ତୋଷ—
ସଜିଲ୍ କଲେ ତା'ପାଇଁ ବାପା···ମାଆ ଦୁଃଖ ପାଶୋର ।
ଆଜ୍ଞା ଜନ୍ମସରେ କରିବେ ବାହା···
ଦେଖିବେ ନିତ ତା ଟିକି ଗୁହାଁଣି,
ଲକୁଆ—ଲକୁଆ ଟିକି ଗୁହାଁଣି ରେ ।୨।

ବରଷେ କାଳ ପରବାସରୁ ସାଧବ ପୁଅ ଫେରିଲା ନାହିଁ । ତାର ହାତୀ-ବୋଇତ ଦରିଆ ମଝିରେ ଅଟକି ଗଲା ।
ସତ୍ୟଜିତ୍—କାହିଁକି ମା ?
ସୁଭଦ୍ରା—ବୋଇତ ଚରଟେଁଇ ଅଟକି ଗଲା ।
ସତ୍ୟଜିତ୍—ଚର କ'ଣ ମା ?
ସୁଭଦ୍ରା—କୁହ । ଦରିଆ ମଝିରେ ଗୋଟିଏ ଉଚ୍ଚ ସ୍ଥାନ ।
ସତ୍ୟଜିତ୍—ସଂସାର ବି ଗୋଟାଏ ଦରିଆ, ତୁମେ,କୁହ; ସେଇ ଦରିଆରେ ମୋର ବଡ଼ ଭାଇନା ସେମିତି କେଉଁଠି ଅଟକି ଯାଇ ନି ତ ?
ସୁଭଦ୍ରା—ସତ୍ୟଜିତ !
ସତ୍ୟଜିତ୍—ସତ୍ୟ-ଠାକୁରଙ୍କୁ ଡାକ ମା । ସେ ପରା ଦରିଆ ମଝିରେ ବୋଇତଆଳୀଙ୍କୁ ରକ୍ଷା କରିଥାନ୍ତି—ସଂସାର ମଝିରେ ମୋର ମୁକା-ଭାଇନାଙ୍କୁ ରକ୍ଷା କରିବେ ନି ?
ସୁଭଦ୍ରା—ହଉ, ତୁମେ ଶୋଇ ପଡ଼ ।
( ସତ୍ୟଜିତ୍ ଶୋଇ ପଡ଼ିଲେ )
ହୈମବତୀ—( ପ୍ରବେଶକରି ) ସୁଭ !
ସୁଭଦ୍ରା—ଅସ୍ତେ ମଣିମା ! ସତ୍ୟଜିତ୍ ଶୋଇଛି । ( ଧୀରେ ଧୀରେ ରାଣୀଙ୍କ ନିକଟକୁ ଆସି ) କ'ଣ କହୁଛନ୍ତି ?
ହୈମବତୀ—ଆଜି ସତ୍ୟଜିତ୍‌ର ଜନ୍ମଦନ,—ସତ୍ୟଜିତର ଜ୍ୟେଷ୍ଠ ବିଦ୍ୟାଧର ଫେରିଲା ନାହିଁ;—ଏଇକଥା ଭାଳି ଭାଳି ମନ ଘାଣ୍ଟି ଚକଟି ହେଉଛି, ପୁଅର ଯେ କି ଦଶା ହେଲା ।······ହଁ, ରାଜା କହୁଥିଲେ—ଯେଉଁମାନେ ସାଥୀରେ ଯାଇଥିଲେ, ସେମାନେ ସାଥିଛଡ଼ା ହୋଇ ଫେରିଛନ୍ତି—କେହି କୌଣସି ପତ୍ତା ବତାଇ ପାରୁନାହାନ୍ତି ।
ସୁଭଦ୍ରା—ଏଥିକି ଭାଲେଣୀ କ'ଣ—ପୁଅ ଠାକୁର କାମରେ ଯାଇଛି—ଠାକୁର କାମରେ ଫିବାକୁ ହୁଏ, ଏକା ।
ହୈମବତୀ—ସତ୍ୟ-ଠାକୁର ମତେ ଦୟା କରିବେ, ଏ ଅରକ୍ଷିତ କାଙ୍ଗାଳ ଦରେ ସତେ ପାଦ ପକାଇବେ !

ସୁଭଦ୍ରା—ଆହୁରି ସନ୍ଦେହ ?

ହୈମବତୀ—ଛି, ଛି, ମୋର ଯାହା ବଳିଗଲା ଆ ମନ !
( ଶିଶୁ ଆଡ଼କୁ ଅନାଇଥିଲେ )

ସୁଭଦ୍ରା—ମଣିମା ! ସେମିତି ନଜର ପକାଇବେ ନି, ଏ ପରି ଠାକୁରଙ୍କର ଅମଣିଆ !

ହୈମବତୀ—ଓ—( ଚାଲି ଯାଉଥିଲେ )

[ ରାଜା ପ୍ରବେଶ କଲେ—ସୁଭଦ୍ରା ଅନ୍ୟ-ଦିଗକୁ ଚାଲିଗଲେ ]

ବିକ୍ରମ—କିଏ ଚାଲିଗଲା ?—ବିଦ୍ୟାଧର-ଜନନୀ ନା ?

ହୈମବତୀ—ଉଁହୁଁ—ସତ୍ୟଜିତ୍‌ର ମା !

ବିକ୍ରମ—ଦେଖ, ସେଦିନ ବିଦ୍ୟାଧର ଯେଉଁ ତାଳପତ୍ର ଲେଖାଟି ଟିକି ଟିକି କରି ଛିଣ୍ଡାଇ ପକାଇଥିଲା, ମୁଁ ସେଗୁଡ଼ିକ ଗୋଟେଇ, ତୁମ ଜିମା ଦେଇଥିଲି; ତୁମେ ତାକୁ ସାଇତି ଯତ୍ନରେ ରଖିଛ ତ ?

ହୈମବତୀ—ଖାଲି ସେତିକି ? ମୁଁ ସେ ଗୁଡ଼ିକ—ଗୋଟିକୁ ଗୋଟି ଯୋଡ଼ି, ଏମିତି ସୁନ୍ଦର ଭାବରେ ମରାମତି କରାଇ ନେଇଛି ଯେ, କେହି କହିବେ ନି—ତାହା କେବେ ମାରି ଥିଲା !

ବିକ୍ରମ—ବେଶ୍, ବେଶ୍—ଖୁବ୍ ହୁସିଆରରେ—ଖୁବ୍ ଯତ୍ନରେ ରଖିଥିବ !

ହୈମବତୀ—ସେ କଥା ମତେ ଆଉ ହୁସିଆର କରିଦେବାକୁ ହବ ନି—ମୁଁ ଜାଣେ, ବିଦ୍ୟାଧର ପକ୍ଷେ ଏହା କେତେ ମୂଲ୍ୟବାନ୍ !

ବିକ୍ରମ—ସତ୍ୟଜିତ୍‌ର ପକ୍ଷେ ଏହା ଅମୂଲ୍ୟ—ଏକଥା ସଦାବେଳେ ଖିଆଲ ରଖିଥିବ, ରାଣୀ !

ହୈମବତୀ—ଏଁ ଭଳି କହିବାର ତାତ୍ପର୍ଯ୍ୟ ?

ବିକ୍ରମ—(ଏଣେ ତେଣେ ଚାହିଁ) କେହି ନାହାନ୍ତି ତ ?

ହୈମବତୀ—ଗୋପନ କଥା ?

ବିକ୍ରମ—ଖୁବ୍—ଜୀବନ ମରଣର !

ହୈମବତୀ—ରାଜା !

ବିକ୍ରମ—ଆଜି ସତ୍ୟଜିତର ଜନ୍ମଦିନ ଉପଲକ୍ଷେ ପ୍ରଜାମାନେ ସ୍ୱତନ୍ତ୍ର ଭାବରେ ଗୋଟିଏ ଅନୁଷ୍ଠାନ କରିଥିଲେ—

ହୈମବତୀ—ଜାଣେ !

ବିକ୍ରମ—ମୁଁ ହୋଇଥିଲି ସଭାପତି—

ହୈମବତୀ—ତା'ବି ଜାଣେ !

ବିକ୍ରମ—ସଭାର କାର୍ଯ୍ୟ ସୂଚୀ ଅନୁସାରେ—ସତ୍ୟଜିତ୍‌ର ମଙ୍ଗଳ କାମନା ପରେ—ଜଣେ ଅତି-ସାଧାରଣ ପ୍ରଜା ଗୋଟିଏ ବିଶେଷ ପ୍ରସ୍ତାବ ଆଗତ କଲେ !

ହୈମବତୀ—କ'ଣ ?

ବିକ୍ରମ—ଆଜିର ଉତ୍ସବ ହେଉ, ଯୁବରାଜଙ୍କର ଯୁବରାଜ ପଦରେ ଅଭିଷେକ ଉତ୍ସବ !

ହୈମବତୀ—ତା'ପରେ !

ବିକ୍ରମ—ସଭାରେ ସମସ୍ତେ ଏକମତ ହୋଇ—

ହୈମବତୀ—କ'ଣ କଲେ ?

ବିକ୍ରମ—କେବଳ ପ୍ରସ୍ତାବ ସମର୍ଥନ କଲେ ନାହିଁ, ମୋର ଜରିଆରେ ପଠାଇ ଦେଇଛନ୍ତି—ଅଭିଷେକ ତିଳକ !

ହୈମବତୀ—ବେଶ, ଲଗାଇ ଦିଅ !

ବିକ୍ରମ—କିନ୍ତୁ, ତହିଁ ପୂର୍ବରୁ ଦେବାକୁ ହେବ ମତେ—ସେଇ ଦଲିଲ !

ହୈମବତୀ—ଦଲିଲ୍ ?

ବିକ୍ରମ—ବିଦ୍ୟାଧରର ସେଇ ତାଳପତ୍ର ଲେଖାଟି !

ହୈମବତୀ—ବୁଝିଛି, ସେଇ ଲେଖାଟି ସତ୍ୟଜିତ୍‌ର ଭବିଷ୍ୟତ ରାଜ୍ୟ-ସୁଖ-ଭୋଗ ପଥରେ ଗୋଟିଏ କଣ୍ଟକ !

ବିକ୍ରମ—ତାହା ମୁଁ ନିର୍ମ୍ମୂଳ କରି ଦେବାକୁ ଚାହେଁ !

ହୈମବତୀ—ବିଦ୍ୟାଧର ତାହା ନିଜେ ଉନ୍ମୂଳିତ କରି' ଖଣ୍ଡ ଖଣ୍ଡ କରି ଦେଇଥିଲା—

ବିକ୍ରମ—ମୁହୂର୍ତ୍ତିର ଉତ୍ତେଜନାରେ ମୁଁ ତାହା ସାଇତି ରଖିଥିଲି,—ଆଉ ବିଦ୍ୟାଧର ଫେରି ଆସିଲେ—ତା'ର ପ୍ରାପ୍ୟ ତାକୁ ଫେରାଇ ଦେବି, ମନେ ମନେ ଏହି ସଂକଳ୍ପ କରିଥିଲି !

ହୈମବତୀ—ଆହୁରି ବି ସେ ମହନୀୟ ଭାବରେ ମତେ ଅନୁପ୍ରାଣିତ କରିବ, ସେଇଥି ପାଇଁ ମୋ ଜିମ୍ମାରେ ରଖିବାର ଉଦ୍ଦେଶ୍ୟ !

ବିକ୍ରମ—ଯଥାର୍ଥ !

ହୈମବତୀ—ବର୍ତ୍ତମାନ ତୁମର ଆଶଙ୍କା—ବିଦ୍ୟାଧର ଫେରି ଆସି ନିଜର ଅଧିକାର ଦାବୀକରି, ଯଦି ଗୋଳମାଳ ଆରମ୍ଭ କରେ ।

ବିକ୍ରମ—ଆଶ୍ଚର୍ଯ୍ୟ କ'ଣ ! ସୁତରାଂ ଗୋଳମାଳର ମୂଳ ଯାହା—ତାହା ଧ୍ୱଂସ କରି ଦେବାହିଁ ଭଲ !

ହୈମବତୀ—ହାଃ—ହାଃ—ହାଃ ।

ବିକ୍ରମ—ହସିଲ ଯେ ?

ହୈମବତୀ—ଗୋଳମାଳର ମୂଳ ଯେ, ମନୁଷ୍ୟର ଗୋଳମାଳିଆ ମନ—ମନୁଷ୍ୟ ଏ କଥା କେତେବେଳେ ହେଲେ ଭାବେ ନା । ଆଉ, ହଁ, ଦଲିଲ୍ ତ ମୋ ନିକଟରେ ନାହିଁ ।

ବିକ୍ରମ—ଆଉ ?

ହୈମବତୀ—ଯାର ଦଲିଲ୍, ତା'ର ହେପାଜତରେ—

ବିକ୍ରମ—ବିଦ୍ୟାଧର-ଜନନୀର ?—ତୁମେ ଦେଇ ଦେଇଛ ?—ମୋ'ର ବିନା ପରାମର୍ଶରେ ? ମୋର ବିନା ଅନୁମତିରେ ?

ହୈମବତୀ—ମହାରାଜ !

ବିକ୍ରମ—ହଁ, ହଁ, ମୁଁ ଅପୁତ୍ରିକ ଥିଲି—ଭଲ ଥିଲି । ପୁତ୍ରବନ୍ତ ହେବା ପରେ—ପୁତ୍ରର ଅନ୍ଧକାରମୟ ଭବିଷ୍ୟତ କଳ୍ପନା—ରାଜା ଥାଇ, ରାଜପୁତ୍ର ଦ୍ୱାରେ ଦ୍ୱାରେ ଭିକ୍ଷା ଥାଳି ନେଇ ବୁଲୁଛି, ଏ ଛବିର ଧାରଣା—ପିତା ପକ୍ଷେ ଅସହ୍ୟ, ଆଉ ରାଜା ପକ୍ଷେ—

[ ରାଣୀ ଅଭିଭୂତ ହୋଇ ଯାଇଥିଲେ—ଠିକ୍ ସେହି ସମୟରେ ସୁଭଦ୍ରା ତାଳପତ୍ର ଦଲିଲ୍ ଟି ଧରି, ପ୍ରବେଶ କଲେ ]

ସୁଭଦ୍ରା—ରାଜା ! ଦେଖନ୍ତୁ ତ, ଏଇଟି ସେହି ଦଲିଲ୍ କି ନା ?—

ବିକ୍ରମ—( ହାତ ବଢ଼ାଇଲେ, ଗୋଟାଏ ଆକର୍ଷଣରେ )

ସୁଭଦ୍ରା—ହାତକୁ ଦେବି ନି ରାଜା !—ଅଗ୍ନିରେ ହେବ ଏହାର ବିସର୍ଜନ;—(ଲେଖାଟି ପୋଡ଼ି—ପାଉଁଶ ଧରି) ଆଜି ଏହି ଭସ୍ମାବଶେଷରେ—ଯୁବରାଜ ସତ୍ୟଜିତ୍, ସବୁରି ଆଗେ—ମୋର ହାତରେ ନେବେ, ଅଭିଷେକ ତିଳକ···

(ମଥାରେ ଟୋପାଟି ପିନ୍ଧାଇଦେଲେ)

---

## ଅଷ୍ଟମ ଦୃଶ୍ୟ

—ପ୍ରାନ୍ତର—

[ ସୁବର୍ଣ୍ଣ ତୀର ଓ ଆସ୍ଥାନ ନେଇ ବିଦ୍ୟାଧରର ପ୍ରବେଶ ]

ବିଦ୍ୟାଧର—ମୋର ଗର୍ବ, ମୁଁ ଅନାୟାସରେ ଲକ୍ଷ୍ୟ ହାସଲ କରିଛି । ହଁ, ଏହି ତ ସେହି ସୀମାନ୍ତରୁ, ଯେଉଁଠାରେ ରଙ୍ଗଲତା ବାଟ ବତାଇ, ପାଟଣା ଅଭିମୁଖେ ବିଦାୟ ଦେଇଥିଲା । କଳିଙ୍ଗକୁ ଫେରିବା ବାଟରେ ମୁଁ ଏହି ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହେବି—ଫାସିଆରା ରାଜ୍ୟକୁ ଆଉଥରେ ଯିବି—ସେ ମୋତେ କହିଥିଲା । ବର୍ତ୍ତମାନ ମୁଁ ଯିବି କି ନା ?—ଗଲେ ଏହି ସୁବର୍ଣ୍ଣତୀର ଆସ୍ଥାନ ନେଇ ଯିବି ତ ?—ଏକ ଆଡ଼େ ଏହି ମୂଲ୍ୟବାନ ଦ୍ରବ୍ୟ, ଅନ୍ୟଆଡ଼େ ନ ଗଲେ ସତ୍ୟଭଙ୍ଗ । ( ଚିନ୍ତା-କ୍ଲେଶ ଅନୁଭବ କରିବାକୁ ଲାଗିଲା—ହଠାତ୍ ଅଦୂରେ ଘୋଡ଼ା ଟାପୁ ଶୁଣାଗଲା ) ଘୋଡ଼ା ଟାପୁ କ୍ରମେ ନିକଟେଇ ଆସୁଛି···କିଏ ଏ ଘୋଡ଼ସବାର ? ଡକେଇତ ନୁହେଁ ତ ? କିନ୍ତୁ, ଏ ଚିଜ ଗୁଡ଼ିକ ? ( ଚାରିଆଡ଼େ ଚାହିଁ ) ହଁ, ଏଇ ବଙ୍କା ବରଗଛ କୋରଡ଼ରେ ଲୁଚାଇ ରଖିବି ।

[ ବରଗଛ କୋରଡ଼ରେ ଲୁଚାଇଲା ବେଳେ—ରଙ୍ଗଲତା ସୈନିକ ବେଶରେ, ବନ୍ଧୁକ ହସ୍ତରେ ଆସି ତୀକ୍ଷ୍ଣ ନିରୀକ୍ଷଣ କରିବାକୁ ଲାଗିଲେ—ହଠାତ୍ ଖସ୍ ଖସ୍ ଶବ୍ଦ ଶୁଣି ]

ବିଦ୍ୟାଧର—( ନମ୍ର ଭାବରେ ଆସି ) ମୁଁ—ମୁଁ—
  ଜାନୁଆର ନୁହେଁ—ମଣିଷ ।

ରଙ୍ଗଲତା—ମଣିଷ ? ହାଃ—ହାଃ—ହାଃ—

ବିଦ୍ୟାଧର—ହଁ, ଏଇ ଦେଖ ଚାହିଁ ସିପେଇ ବାବା ।
  —ଦୁଇ ଗୋଡ଼, ଦୁଇ ହାତ···

ରଙ୍ଗଲତା—ଗୋଟିଏ ମୁଣ୍ଡ । ହେଲେ, ମୁଁ କହିବି, ତୁମେ ନିର୍ମୁଣ୍ଡ ।

ବିଦ୍ୟାଧର—( ଆପଣାର ମୁଣ୍ଡ ଅଣ୍ଡାଳିବାକୁ ଲାଗିଲା )

ରଙ୍ଗଲତା—ହଁ, ଏକ ଅଦ୍ଭୁତ ପ୍ରାଣୀ ବିଶେଷ ।

ବିଦ୍ୟାଧର—କରୁଲ୍—ତରୁଲ୍, ସିପେଇ ସାହେବ ! ମୁଁ ସେଇଆ—ଅଦ୍ଭୁତ ପ୍ରାଣୀ ବିଶେଷ ।

( ଚାଲି ଯାଉଥିଲେ )

ରଙ୍ଗଲତା—ଠିଆ ହୁଅ ଭୂତ ! ବାଃ—ମୁଁ ମୋର ବାଟ ଦେଖେଁ, ତୁମେ ତୁମର ବାଟ ଦେଖ—ଏ ଇଂଗିତ ଦେବାକୁ ବେଶ୍ ମୁଣ୍ଡ ଅଛି ତ ?

ବିଦ୍ୟାଧର—ନାଁ—ନାଁ, ମୋର ମୁଣ୍ଡ ନାହିଁ କି ଗଣ୍ଡି ନାହିଁ—ମତେ ଦଣ୍ଡିବ—ବିକଟେ ଫଳକୁ' ଆଶା ରଖିବ କି ? ( ପୁଣି ଚାଲି ଯାଉଥିଲେ )

ରଙ୍ଗଲତା—ଠିଆ ହୁଅ ! ( ବନ୍ଧୁକ ଉଞ୍ଚାଇ )

ବିଦ୍ୟାଧର—( ଭୟରେ ଠିଆ ହେଲେ ଅନ୍ୟଆଡ଼କୁ ଚାହିଁ )

ରଙ୍ଗଲତା—ଚକାଅ ଏଣିକି !

ବିଦ୍ୟାଧର—( ଭୀତ କଣ୍ଠରେ ) ନ ଚକାଇଲେ ଚଳିବ କି ?

ରଙ୍ଗଲତା—ନାଁ—

ବିଦ୍ୟାଧର—( ବନ୍ଧୁକ ତଳକୁ ଖସାଇବାକୁ ଇଙ୍ଗିତ ଦେଇ ) ତୁମେ—ରଙ୍ଗଲତା ?

ରଙ୍ଗଲତା—ରଙ୍ଗଲତା ନୁହେଁ—ରଙ୍ଗଲାଲ । ଛି, ଛି, ତୁମେ ଏତେ ବଦଳି ଯିବ—ମୋର ଧାରଣା ନ ଥିଲା ।

ବିଦ୍ୟାଧର—ଦୋଷ ହୋଇଛି ।

ରଙ୍ଗଲତା—ସେ ତୁମର ଦୋଷ ନୁହେଁ—ମଣିଷର ଦୋଷ । ମଣିଷ ହୁଏ ସେତେବେଳେ ହୀନ, କାପୁରୁଷ, ଯେତେବେଳେ ସେ କୌଣସି ପାର୍ଥିବ ବସ୍ତୁକୁ ବିଶେଷ ମୂଲ୍ୟବାନ ମନେ କରେ—ଆଉ ତା'ର ଲୋଭରେ ଅପାର୍ଥିବ ଅମୂଲ୍ୟ ରତ୍ନ ଯେଉଁ ସତ୍ୟ, ସେଥିରୁ ହୁଏ ଭ୍ରଷ୍ଟ ।

ବିଦ୍ୟାଧର—ରଙ୍ଗଲତା ।

ରଙ୍ଗଲତା—ଉଁ ହୁଁ······ରଙ୍ଗଲାଲ ।

[ ଏତେବେଳେ ଭାଇ ମାନଙ୍କର କଣ୍ଠସ୍ୱର ଶୁଣାଗଲା ଭିତରୁ ]

ଚୁପ୍, ଭାଇମାନେ ଧାଇଁଛନ୍ତି—ବାପା ଯେ କେଉଁଠି ? ଏ ଆମର କର୍ମ ସ୍ଥାନ—ସମସ୍ତେ ଜାଣନ୍ତି । ଏଠି ରହିବା ନିରାପଦ ନୁହେଁ—କେଉଁଠାକୁ ଯିବା ? ହଁ, ଆସତ । ଭୋଜ ରାଜ୍ୟର ସୀମା ଅଦୂରେ—ସେ ସୀମା ସେମାନେ କଦାପି ଡେଇଁବେନି—ତା'ର ସେ ପଟେ ଆଶ୍ରୟ ନେବା—ଆସ ।

ବିଦ୍ୟାଧର—ତୁମେ ମୋର ଭରସା ।

( ଉଭୟେ ପ୍ରସ୍ଥାନ କଲେ )

[ ଘୋଡ଼ା ଚାଲିଯିବା ପରେ—ଫାସିଆର୍ ଗଛ ଉପରୁ ଅସ୍ତେ ଅସ୍ତେ ଓହ୍ଲାଇ, ସୁନା ତାର-ଅସ୍ଥାନ ଧରି ହସି ହସି ପ୍ରବେଶ କଲା ]

ଫାସ୍ୟାର୍—ହାଃ···ହାଃ···ହାଃ···ଖଣ୍ଟ ବାପକୁ ବଳିଯିବ ଖଣ୍ଟପିଅ । ଜାଣି ନ ପାରୁଣୁ ଯେ ମୁଁ ଏଠାକୁ ଆସି, ଏହି ଟଙ୍କା ବରଗଛରେ ଚଢ଼ି ଛକି ବସିଛି—ଚନ୍ଦ୍ର ସୂର୍ଯ୍ୟ ବି ଜାଣନ୍ତି ନାହିଁ । ଏହି ସୁବର୍ଣ୍ଣ କାଣ୍ଡ-ଅସ୍ଥାନ ଯେବେ ଆମ ଭିତରେ ଛକା ଛକି—ଠକା ଠକି । ଏତେ ସହଜରେ ମୋ ହାତ ମୁଠାକୁ ଆସିଯିବ, ଭାବି ନଥିଲି । ( ଗୋଟାଏ ହଲ୍ଲା ଶୁଣାଗଲା ) ଆସିଗଲେ ତ, ନିର୍ବଂଶିଆ ଗୁଡ଼ାକ—ଯାଏଁ—ପୋତି ପକାଏ ନେଇ, ମୋର ଠିକଣା ଯାଗାରେ । ( ସୁବର୍ଣ୍ଣ ତୀର-ଅସ୍ଥାନ ପ୍ରତି ଲୁବ୍ଧ ଦୃଷ୍ଟି ରଖି ) କଞ୍ଚା

ସୁନା—କି ଦାଉ, ଦାଉ—ଏଇଠକ ସୁନା ମୁଣ୍ଡାରେ ମୋର ସୁନା ଶଗିର ଆଜ ମୁଣ୍ଡ ମରବ—ହେଃ—ହେଃ—ହେଃ···( ଚାଲିଗଲେ )

[ ବିପରୀତ ଦିଗରୁ ଛଅ ଭାଇ ପ୍ରବେଶ କଲେ—କ୍ରୁଦ୍ଧ ଭାବରେ ]

୧ମ ଭାଇ—ଭାଇ ! ମୁଁ ଠିକ୍ ଠଉରେଇଛି, ବୁଢ଼ା ଠିକ୍ ଏଠିକି ଆସିଥିଲା ।

୨ୟ ଭାଇ—ତେବେ ଗଲା କୁଆଡ଼େ ?

୩ୟ ଭାଇ—ଘୋଡ଼ାର ଟାପୁ ଦେଖି ଆସିଛି, ରଙ୍ଗି ଆସିଥିଲା, ଜଣା ପଡ଼ୁଛି ।

୪ର୍ଥ ଭାଇ—ସେହି ବିଦେଶୀଟା ବି—ଏଇ ଦେଖୁନା ହିଁଅ ପୁଅର ମିଶାମିଶି ପାଦଚିହ୍ନ ।

୧ମ ଭାଇ—ଏ ଠିକ୍ ବୁଢ଼ାର ପାଦ ଚିହ୍ନ ଭାଇ !

୪ର୍ଥ ଭାଇ—ତା' ହେଲେ ସେହି ସୁବର୍ଣ୍ଣ କାଣ୍ଡ-ଆସ୍ଥାନ ଯେମିତି ଗୀତମତ ଗୋଟାଏ ଧସ୍ତା ଧସ୍ତି ହୋଇ ଯାଇଛି, ସେମିତି ତ ଜଣା ପଡ଼ୁନି ?—ତେବେ ଗଲେ କୁଆଡ଼େ ?

୨ୟ ଭାଇ—ସୁଆଡ଼େ ଯା'ନ୍ତୁ—ଚାଲ ଖୋଜି ବାହାର କରିବା । ଆଜି ସେହି ସୁବର୍ଣ୍ଣ କାଣ୍ଡ—ଆସ୍ଥାନ ପାଇଁ, ଆପଣା ଭଉଣୀ ଆଜି ସେ ବିଦେଶୀ ତ ଛାର—ବାପର ବି ତଣ୍ଟି କାଟିବାକୁ ପଛେଇବାନି ।

୫ମ ଭାଇ—ଠିକ୍ କହିଛୁ ଭାଇ । ଏତେ ଦିନଯାଏ ବେଠି ଉଗାରି ଖଟି ଖଟି ଆସିଲେ···ଆଜି, ଯିଏ ଯାର ବାଣ୍ଟ ଠିକି ଠିକି କରି ଅଦାୟ କରିନେବା, ଚାଲ ।

ସମସ୍ତେ—ହଁ, ହଁ···ଚାଲ । (ଚାଲିଲେ ଦ୍ରୁତ ଗତିରେ)

---

## ନବମ ଦୃଶ୍ୟ

—ଫାସିଆରି ଘରଅ ଗଣା—

[ ବଡ଼ବୋହୂ, ସାନବୋହୂ ପ୍ରବେଶ କଲେ ]

୨ୟା ବୋହୂ—ତୁମେ କହୁଛ କ'ଣ ବଡ଼ଅପା, ରଙ୍ଗି ଆଉ ଫେରିବ ନି ?

୧ମ ବୋହୂ—ନାଁ—

୩ୟା ବୋହୂ—ତେବେ କ'ଣ ବିଦେଶୀ ସାଙ୍ଗରେ ପଳାଇଯିବ ବୋଲି—ଆମକୁ ଗହଣା କଥା କହି ଗୋଟାଏ ଫିକର କରିଥିଲା ?

୪ର୍ଥା ବୋହୂ—ଏଇ ସୁବର୍ଣ୍ଣ କାଣ୍ଡ-ଆସ୍ଥାନ ପାଇଁ ଦେଖ, କି ନାଟ ଲାଗିଛି !

୧ମା ବୋହୂ—ସାମାନ୍ୟ ଗୋଟାଏ ଲୁହାର ମୂଷଳ ଯେନି—ଯଦୁବଂଶ ଧ୍ୱଂସ ହୋଇଥିଲା—ଆଉ ଇଏ ତ ସୁବର୍ଣ୍ଣ ଅସ୍ଥାନ ।

ଫାସ୍ୟାରି—( ଭିତରୁ ଡାକି ଡାକି ) ରଙ୍ଗି—ରଙ୍ଗି—ରଙ୍ଗି କାହିଁ ?

୧ମା ବୋହୂ—ରଙ୍ଗି ନାହିଁ । ( ଚାଲିଗଲେ )

ଫାସ୍ୟାରି—( ପ୍ରବେଶକରି ) ନାହିଁ ?—ତେବେ ସତେ ସତେ ସେହି ବିଦେଶୀ ସଙ୍ଗେ ପଳାଇଛି ?—ଫାସିଆରିର ସୁନା-ସ୍ୱପ୍ନ ଚୂନାକରି ଦେଇଛି ? ଅସମ୍ଭବ···ମୋର ଧନୁ···ମୋର ବର୍ଚ୍ଛା ( କହୁ କହୁ ଚାଲିଯାଉଥିଲା—ପଛପଟୁ ଗୋଟିଏ ପୁଅ 'କ୍ରୋଧ' ପ୍ରବେଶକରି )

୨ୟା—ତା ପୂର୍ବରୁ ମୁଁ ପଚାରୁଛି, ସୁବର୍ଣ୍ଣ କାଣ୍ଡ-ଅସ୍ଥାନ କାହିଁ ?

[ ଅନ୍ୟ ପୁଅମାନେ ମଧ୍ୟ ପ୍ରବେଶ କଲେ ]

ପୁଅମାନେ—ହଁ, ସୁବର୍ଣ୍ଣ କାଣ୍ଡ-ଆସ୍ଥାନ କାହିଁ ?

ଫାସ୍ୟାରି—କାଣ୍ଡ ?—ଆସ୍ଥାନ ? ହାଃ···ହାଃ···ହାଃ···

( ଠେଲି ପେଲି ଦେଇ ଚାଲିଗଲା )

ପୁଅମାନେ—ଆମେ କଦାପି ଛାଡ଼ିବା ନା—

( ଅନୁଗମନ )

୧ମ ଚୋର—( ପ୍ରବେଶ କରି ) ଏମାନଙ୍କର ମତ ଗତ ତ କିଛି ଭଲ ଜଣା ପଡୁନି—କ'ଣ ହବ ?

୨ୟ ଚୋର—( ପ୍ରବେଶ କରି ) ନିଆଁ—ନିଆଁ—ନିଆଁ ଜଳିବ ।

୩ୟ ଚୋର—( ପ୍ରବେଶ କରି ) ଗୁପ୍ତ ଗନ୍ତାଘରକୁ ପୁଅମାନଙ୍କର ବାଣ୍ଟ ହେବକି, ସେଥିପାଇଁ ଖଞ୍ଜିରେ ବୁଢ଼ା ଜଙ୍ଗଲ ବାଣ୍ଟରେ ନିଆଁ ଲଗାଇ ଦେଇଛି···

ଭିତରୁ—ଆଜ ରକ୍ଷା ନାହିଁ । ଖଞ୍ଜାକୁ ନିଆଁ ଡେଇଁଗ ।

( କୋଳାହଳ କରି ସମସ୍ତଙ୍କର ପ୍ରସ୍ଥାନ )

[ ଭାଇମାନଙ୍କର ପ୍ରବେଶ ]

୨ୟ ଭାଇ—ମୁଁ ବୁଢ଼ାକୁ ମାରିଛି—ମୁଁ ନେବି ଅସ୍ଥାନ ।

୧ମ ଭାଇ—ମୁଁ ବଡ଼ ପୁଅ—ମୋର ବଡ଼ ଅଂଶ ।

୩ୟ ଭାଇ—ମୋର ଯୋଗୁଁ ଅସ୍ଥାନ ପ୍ରତି ତୁମର ଲୋଭ—ମୋର ପ୍ରାପ୍ୟ ।

୪ର୍ଥ ଭାଇ—ମୁଁ ମୂର୍ଚ୍ଛା କରିଥିଲି, ଏଥିଯୋଗୁଁ ଅସ୍ଥାନ ପାଇଲି,—ମୋର ହକ—

୫ମ ଭାଇ—ମୁଁ ଉନ୍ମାଦ କରିଥିଲି, ସେଥିଯୋଗୁଁ ବୁଢ଼ାକୁ ମାରିଲି—ମୁଁ ପାଇବି ।

୬ଷ୍ଠ ଭାଇ—ମତେ ଦେଇ ପକାଅ କହୁଛି । ନାହିଁତ ଏମିତ ଈର୍ଷାନଳ ଜାଳଦେବି ଯେ, ଆପଣା ଆପଣା ଭିତରେ ସମସ୍ତେ ହଣାହଣି ହୋଇ ମରିବ ।

୨ୟ ଭାଇ—ତେବେ ତୁ ଆଗ ମର—

( ୬ଷ୍ଠକୁ ମାରିଦେଲା )

୩ୟ ଭାଇ—ତୁ ପାଇବୁ ମନେ କରିଛୁ ?

( ୨ୟକୁ ମାରିଦେଲା )

[ ଏହାପରି ସମସ୍ତେ ମରାମରି ହୋଇ ମଲେ ]

---

## ଦଶମ ଦୃଶ୍ୟ

—ଭୋଜବାଜ୍ୟସ୍ଥ ପଦ୍ମପୁଷ୍କରିଣୀର ଏକପ୍ରାନ୍ତ ।—

[ ରଙ୍ଗଲତା ପ୍ରବେଶ କଲା ଉଚ୍ଛନ୍ନ ହୋଇ ]

ରଙ୍ଗଲତା—ଭୋଜରାଜ୍ୟରେ ଗଣ୍ଡା ମାଡଛି—ଲୋକେ ଉଚ୍ଛନ୍ନ—ସେ ଗଲେ କୁଆଡେ ?—ଗୋଟାଏ ଧଡ଼ପଡରେ ବାହାରି ଆସିଥିଲେ କର୍ଣ୍ଣ-ସ୍ଥାନରୁ ।—ସୁବର୍ଣ୍ଣ ତୀର-ଅସ୍ଥାନ କଥା ମନେ ନଥିଲା ।—ବେଳ ଗଡ଼ିଗଲେ, ସେଠାକୁ ଯିବୁ, ତୀର-ଅସ୍ଥାନ ସେନା ଜଳଙ୍କ ଯାତ୍ରା କରିବୁ କଥାଥିଲା । ହେଲେ, ଗଲେ କୁଆଡ଼େ ? ହଠାତ୍ ତାଙ୍କୁ ଶୋଷ ଦେଖାଇଲା—ମୋତେ ଗଛ ମୂଳରେ ବସାଇ ଦେଇ, ଜୁଦ ଆରପଟେ ପଦ୍ମପୋଖରୀକୁ ପାଣିପିଇବାକୁ ଗଲେ । ବାହାନ୍ତି ଏଠି ?—ତେବେ କ'ଣ ଶୋଷକୁ ବାହାନା କରି, ପୁଣି ମୋତେ ଧପେଇ—ନା, ନା—ଅସମ୍ଭବ—ଗଣି ଦେଖେଁ—

( ଅଙ୍ଗୁଠି ସାହାଯ୍ୟରେ ଗଣିବାକୁ ଲାଗିଲା )

ଏ କ'ଣ ? ମୁଁ ଯେ ଗଣି ପାରୁନି ? ମନ ସ୍ଥିର ରଖିପାରୁ ନି ?—ସେ କ'ଣ ଭୋଜରାଜ୍ୟର ଭୋଜବାଜ ?—ବିଦ୍ୟାଧର—ବିଦ୍ୟାଧର—

( ଶୋକାକୁଳ ହୋଇ ଚାଲିଗଲେ )

---

## ଏକାଦଶ ଦୃଶ୍ୟ

—ପଦ୍ମ ପୁଷ୍କରିଣୀର ଅପର ପ୍ରାନ୍ତ—

[ ଆଗେ ଆଗେ ମାଲୁଣୀ, ପଛେ ପଛେ ବିଦ୍ୟାଧର ଚାଲିଥାଏ ]

ବିଦ୍ୟାଧର—( ଛନ ଛନ ହୋଇ ଉଠିଲା ରଙ୍ଗିର ଡାକ ଶୁଣି )

ମାଲୁଣୀ—ଛନ ଛନ କାହିଁକି ?—ତୁମେ ବିଦ୍ୟାଧରଙ୍କୁ, ମୁଁ ବିଦ୍ୟାଧରୀ ।

ବିଦ୍ୟାଧର—( ପୁଣି ଡାକଶୁଣି ) ର—ଙ୍ଗି—

ମାଲ୍ଲଣୀ—ଜିଁ ହୁଁ—ମୁଁ—ଏ' ରାଜ୍ୟର ମାଲ୍ଲଣୀ—ପୋଖରୀରୁ ପଦ୍ମ ତୋଳିବାକୁ ଆସିଥିଲି, ଭେଟିଲି ପଦ୍ମଲୋଚନ ! ଆସ, ମୁଁ ଝରରେ ଝରପାଣି ଭରି ରଖିଛି, ତୁମେ ପିଇବ,—ଖାଲି କଣ୍ଠର ତୃଷା ମେଣ୍ଟାଇବ ନି, ଜୀବନର ତୃଷାବି ମେଣ୍ଟାଇବ ।

—ଗୀତ—

ରେ ନାଗର ପରଦେଶିଆ ତୁ...ଆ...
ମୋ ଯୌବନ କୁଞ୍ଜେ ବାରେ ବାରେ ରସି ଆ।'
ମୁଁ ସଜ ଜାଆଁଳୀରେ ସାଜଛି ଶେଯ
ମହକ ଲୁଟେ ମଧୁ ମାସିଆ
ରାତ ପୁହାଇ ବସି ଯା......
ମୋ ଯୌବନ କୁଞ୍ଜେ ବାରେ ବାରେ ରସି ଆ' ।୧।

ଚୁଆ ଚନ୍ଦନ କସ୍ତୁରୀ ବୋଳି,
ଭାଲେ ଦେବି ଫୋଟି ଶତା ଶତରି
ଗଜରା ଗୁନ୍ଥି.. ଝଆଁଳ ଛାତି......
ଭରି ଦେବି ମନ ଖୁସି ଆ
ମୋ ଚିବୁକ ଧରି ହସି ଯା......
ମୋ ଯୌବନ କୁଞ୍ଜେ ବାରେ ରସି ଆ' । ୨ ।

---

## —ଦ୍ୱାଦଶ ଦୃଶ୍ୟ—

### —ଗୋଲୋକ—

[ ନାରାୟଣ ଓ ନାରଦ କଥାବାର୍ତ୍ତା ହେଉଥିଲେ ]

ନାରଦ—କି ଦାରୁଣ ଦୃଶ୍ୟ !—ଏଭଳି ନିଦାରୁଣ ପରିସ୍ଥିତି ଉଆଇବାର ତାତ୍ପର୍ଯ୍ୟ, ପ୍ରଭୁ ?

ନାରାୟଣ—ଜୀବାତ୍ମାର ସ୍ୱକୃତ କର୍ମ ଭୋଗ—ମୋର ଗୁରି କ'ଣ ?

ନାରଦ—ଅର୍ଥାତ୍ ?

ନାରାୟଣ—ଜୀବାତ୍ମା ତ୍ରିଗୁଣ ବିଶିଷ୍ଟ ।—ବର୍ତ୍ତମାନ ସେ ତମ ପ୍ରଧାନ; ସେହି ହେତୁ ବିମୂଢ଼—ଏହି ବେଦନା ଭରା ଦୃଶ୍ୟ ତା'ର ପରିଣାମ ।

ନାରଦ—ବିଦ୍ୟାଧରର ଆଦି, ମଧ୍ୟ ଓ ଅନ୍ତଃକାଳୀନ ଘଟଣାଗୁଡ଼ିକ ଆଲୋଚନା କଲେ—ପରସ୍ପର ମଧ୍ୟରେ ଗୋଟାଏ ସଙ୍ଗତି ବା ସାମଞ୍ଜସ୍ୟ ନାହିଁ—ଏହିପରି ମନେ ହୁଏ ପ୍ରଭୁ ।

ନାରାୟଣ—( ଅଳ୍ପ ହସି ) ତେବେ ଶୁଣ ନାରଦ ! ବିଦ୍ୟାଧର ଯେତେବେଳେ ଶିଶୁଟିପରି ସରଳ, ସୁନ୍ଦର ଥିଲା ସେତେବେଳେ ସେ ଥିଲା ସାତ୍ତ୍ୱିକ ଭାବର ପୂର୍ଣ୍ଣଅଧିକାରୀ—ସେଥିପାଇଁ ଅସ୍ପୃଶ୍ୟ ତ୍ୟାଗରେ ଥିଲା ତା'ର ଅନାବିଳ ଆନନ୍ଦ ।—ତା'ପରି ସଂସାର ପଥରେ ଅବତୀର୍ଣ୍ଣ ହେଲା—ପଥମଧ୍ୟରେ ଲାଗିଲା ଭୋଗ ପିପାସା—ସାତ୍ତ୍ୱିକ ଭାବ ହୋଇ ଗଲା ବିଭ୍ରାନ୍ତ, ମଳିନ—ଷଡ଼େନ୍ଦ୍ରିୟର ତାଡ଼ନା, ପ୍ରବୃତ୍ତିର ଆକର୍ଷଣ ପକାଇଲା ପ୍ରବଳ ପ୍ରଭାବ; ଫଳରେ ସେ ମୃତ୍ୟୁର ଧ୍ୱଂସମୁଖରେ ହେଲା ନିପତିତ । ତଥାପି, ରଜୋଗୁଣର ପ୍ରାଧାନ୍ୟ ଯୋଗୁଁ ଆପଣାକୁ ସେଥିରୁ ମୁକ୍ତ କରି ପାରିଲା ଏବଂ ଲକ୍ଷ୍ୟ ପଥରେ ଅଭିଯାନ ଆରମ୍ଭ କଲା ।—ବର୍ତ୍ତମାନ ଲକ୍ଷ୍ୟ ବସ୍ତୁ ହାସଲ ହୋଇଛି ସତ୍ୟ, କିନ୍ତୁ ଜୀବ ମାତ୍ରକର ପରମ ଲକ୍ଷ୍ୟବସ୍ତୁ ଯେଉଁ ପରମାତ୍ମା, ସେହି ଚିନ୍ତାରୁ ସେ ହୋଇଛି ଭ୍ରଷ୍ଟ—ତେଣୁ ହୋଇଛି ସେ ଅଜ୍ଞାନ ତମିରରେ ଆଚ୍ଛନ୍ନ ଅହମିକା, ଦ୍ୱନ୍ଦ୍ୱ, ଭୟ, ଭ୍ରାନ୍ତି ଆଦି ତା ଚାରିରେ ଉପୁଜିଛି । ଅବଶେଷେ ମାଲ୍ଲଣୀର ମାୟା ଜାଲରେ ପଡ଼ି, ବିଦ୍ୟାଧର କିପରି ଅଧଃପତନର ଚରମ ସୀମାରେ ଉପନୀତ, ତା'ତ ଆଖିରେ ଦେଖି ବୁଝି ପାରୁଥିବ, ନାରଦ !

ନାରଦ—ରଙ୍ଗଲତା କ୍ଷେତ୍ରରେ ସମ୍ପୂର୍ଣ୍ଣ ବିପରୀତ ଭାବର ପରିଚୟ ଦେଖାଯାଏ—ଆଶ୍ଚର୍ଯ୍ୟ ।

ନାରାୟଣ—ଆଶ୍ଚର୍ଯ୍ୟ ନୁହେଁ ନାରଦ ! ପ୍ରବୃତ୍ତିରୁ ନିବୃତ୍ତି ଜାତ ହେଲେ ଜୀବ ଯେଉଁ ଭାବରେ ଊର୍ଦ୍ଧ୍ୱଗତ କରି ଥାଏ, ରଙ୍ଗଲତା ତାହାର ଗୋଟାଏ ବିଶିଷ୍ଟ ନମୁନା ମାତ୍ର ।

( ଅଦୂରେ ଜନ କୋଳାହଳ ଶୁଣାଗଲା )

ନାରଦ—ଏ'କି କୋଳାହଳ ପ୍ରଭୁ ?

ନାରାୟଣ—ଏହି କୋଳାହଳକୁ ଘେନି, ତାକୁ-ହିଁ ଅ କାପର ଅଗ୍ନି ପ୍ରକାଶ କରୁଛି ଏବଂ ଉଦନୁସରେ ଅମ୍ଭର ବିକାଶ ପଥରେ ଅଗ୍ରସର ହେଉଛି, ତା'ର ବିମ୍ବିକ ଶକ୍ତି ବର୍ତ୍ତମାନ ଦେଖିବ, ନାରଦ !

ନାରଦ - ନାରାୟଣ !—

---

## ତ୍ରୟୋଦଶ ଦୃଶ୍ୟ

—ରାଜପଥ—

[ କେତେକ ନାଗରିକ କୋଳାହଳ କରୁ କରୁ ବିଶିପ୍ତ ଭାବରେ ପ୍ରବେଶ କଲେ ]

ନାଗରିକଗଣ—ଗଣ୍ଡା—ଗଣ୍ଡା—ପଳାଇ ଆସ—ପଳାଇ ଆସ ( ପଳାୟନୋଦ୍ୟତ ସମୟରେ ରଙ୍ଗଲତା 'ରଙ୍ଗଲାଲ' ବେଶରେ ଦିଗରୁ ପ୍ରବେଶ କରି ପଥରୋଧ କଲେ)

ରଙ୍ଗଲତା—ପୁରୁଷ ତୁମ୍ଭେମାନେ—ସ୍ଥିର ଗୋଟିଏ ଜନ୍ତୁ ଡରରେ ତା'ର ଉପଦ୍ରବର ପ୍ରତିକାର ନ କରି ଘର, ଦ୍ୱାର ଛାଡ଼ି ପଳାଉଛ ?

୧ମ ନାଃ—ତୁମେ ତ ପୁରୁଷ—ପୁରୁଷ ପଣିଆ ଦେଖାଅ । ଜାନୁଆରଟାର ଆଗରେ ଯାଇ ଠିଆ ହୁଅ ତ ।

୨ୟ ନାଃ—ଆଜି ଯଦି ମାରିପାରି···ତେବେ କଥା ନାହିଁ । ପୁରସ୍କାର, ରାଜଜେମା—ରାଜ୍ୟରୁ ଅଧେ ।

୩ୟ ନାଃ—ଭୋଜରାଜାଙ୍କର ଆଦେଶ, ଏଥିରେ ଧୂଳମଳି ନାହିଁ ।

୧ମ ନାଃ—ରାମ ଶିବଧନୁ ଭାଙ୍ଗି ସୀତାଙ୍କୁ ପାଇଥିଲେ—ଆଜି ତୁମେ ଗଣ୍ଡାର ଶିଙ୍ଗ ଭାଙ୍ଗି ରାଜାଙ୍କୁ ପାଇବ ।

୨ୟ ନାଃ—ଅଦ୍ଭୁତ ଯୌତୁକ—ରାଜ୍ୟରତ୍ନ
( ପୁଣି ନେପଥ୍ୟେ ଗଣ୍ଡାର ଶବ୍ଦ )

ସମସ୍ତେ—ବାପ ରେ !—( ପ୍ରସ୍ଥାନ )

ରଙ୍ଗଲତା—( ସଦନ୍ତେ ) ମୁଁ ଏଠୁ ପାଦୁଲେ ବି ଘୁଞ୍ଚିବି ନି । ଦିନେ ନର ହତ୍ୟାରେ ବ୍ରତୀ ଥାଇ ଯେଉଁ ପର ବଜ୍ର ମୁଷ୍ଟିରେ ଧାରଣ କରିଥିଲି, ଗୁପ୍ତ ଅସ୍ତ୍ର—ଆଜି ନରର ଜୀବନ ରକ୍ଷାରେ ବ୍ରତୀ ହୋଇ, ସେହିପରି ବଜ୍ରମୁଷ୍ଟିରେ ଧାରଣ କରିବି—ଏହି ଆଗ୍ନେୟାସ୍ତ୍ର !—

( ଶବ୍ଦକୁ ଲକ୍ଷ୍ୟକରି ବନ୍ଧୁକ ଉତ୍ତୋଳନ କଲେ—ଆପଣାର ବନ୍ଧୁକ )

—ପଟନିକା—

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ମାଳ୍ପଣୀର ସେହି ଗୃହ ସମ୍ମୁଖ—

[ ଜଣେ ଘୋଷକ ନାଗରୀ ଦେଇ ଦେଇ ପ୍ରବେଶ କଲା ]

ଘୋଷକ—ସମସ୍ତେ ଶୁଣ ! ପାଞ୍ଚ ବର୍ଷ ତଳର କଥା—ଭୋଜରାଜ୍ୟରେ ଗଣ୍ଡାର ଉତ୍ପାତ ହୋଇଥିଲା; ସେହି ଗଣ୍ଡାକୁ ବଧ କରିଥିଲେ, ଜଣେ ବିଦେଶୀ—ନାମ ରଙ୍ଗଲାଲ । ରାଜା ସତ୍ୟ କରିଥିଲେ—ଯିଏ ସେ ଗଣ୍ଡାକୁ ମାରିବ, ତାକୁ ଜେମାଙ୍କ ସଙ୍ଗେ ବିଭାଦେବେ - ଆଉ ଯୌତୁକ ସ୍ୱରୂପ ରାଜ୍ୟରୁ ଅଧେ ଦେବେ । ରାଜା ସେଇ ଅଙ୍ଗୀକୃତ ପୁରସ୍କାର ରଙ୍ଗଲାଲଙ୍କୁ ଯାଚିଥିଲେ । ରଙ୍ଗଲାଲ କହିଲେ ଯେ, ତାଙ୍କର ଗୋଟିଏ ବ୍ରତ ଅଛି—ତାହା ଶେଷ ହୋଇ ଗଲେ—ଉକ୍ତ ପୁରସ୍କାର ଗ୍ରହଣ କରିବେ । ସେହି ଦିନୁ ରଙ୍ଗଲାଲ ରାଜ୍ୟ ପ୍ରାନ୍ତରେ ଗୋଟିଏ ନୂଆ ଶିବ ମନ୍ଦିର ତୋଳାଇ, ସେଇଠାରେ ଅଛୁଆ ପଡ଼ିଛନ୍ତି । କାଲି ବ୍ରତ ପାଳନର ପାଞ୍ଚବର୍ଷ

ପୂର୍ବ—ସେଇ ଉପଲକ୍ଷେ ଶିବ-ମହାଯଜ୍ଞ ହେବ—ଖୁବ୍ ଧୂମ୍ ଧାମ୍, ଜାନିଯାତ୍ରା ହେବ ।

(ପ୍ରସ୍ଥାନ)

[ ଘୋଷକର କଥାକୁ ଦୁଇଜଣ ନାଗରିକ ଶୁଣୁଥାନ୍ତି । ଘୋଷକ ନନାଦ ଦେଇ ପ୍ରସ୍ଥାନ କଲା ]

ମାଲୁଣୀ—( ଫୁଲ ଗୁଚ୍ଛୁ ଗୁଚ୍ଛୁ ପ୍ରବେଶକଲା ) ହେ ଅନାସି—ଶୁଣ, ଆଜ ନାଟତାମସା ?

ନାଗରିକ—ପାନଖିଲେ ଦେ—କହିବ ।

ମାଲୁଣୀ—ନଇସିଆ—ନଇସୀଆର ରସିକପଣ ଦେଖ । ଭୁଣ୍ଡ ନାହିଁ—ଭୁଣ ସୁଆଦକୁ ମନ ।

ନାଗରିକ—ଠିକ୍ ତୋର ପରି ମୁଁ—

ମାଲୁଣୀ—ମୋର ପରି ? ମୋର ପରି କ'ଣରେ ଅଲପେଇସିଆ—

ନାଗରିକ—ଏଇ ଯିମିତ ମାଲୁଣୀ ନାମର ?—ଆଖି ନାହିଁ—ଆଖି ଠାରିବାକୁ ମନ—

ମାଲୁଣୀ—ଆଖି—ଆଖି — ଗାତଅଣା—( ଗୋଡ଼େଇ ଗଲା )

ନାଗରିକ—( ଖଣ୍ଡେଦୂରରେ ପଳେଇଯାଇ ) ଖାଇଲାଲେ ବୁଢ଼ି—

ମାଲୁଣୀ—ହଇରେ—ମୁଁ ବୁଢ଼ୀ—ମୁଁ ବୁଢ଼ୀ ? ତୁ ବୁଢ଼ା ହୋ—ତୋ ଚଉଦ ପୁରୁଷ ବୁଢ଼ାହେଉ—ତୁ ମର—ତୋ ଚଉଦ ପୁରୁଷ ମରନ୍ତୁ—ତୁ ଭୂତ ହୋ—ତୋ ଚଉଦ ପୁରୁଷ ଭୂତ ହେଉନ୍ତୁ, ଗାତ ପଣା ।—କହୁଛୁ କ'ଣନା ବୁଢ଼ୀ—ସତର ପୂର ଷୋଳରେ ଗୋଡ଼ ଦେଇଛି—କହୁଛୁ ମୁଁ ବୁଢ଼ୀ···

( ନାଗରିକ ଚାଲିଗଲେ—ବିଦ୍ୟାଧର ଗାରଡ଼ ରୂପରେ ଭିତରୁ )

( ନେପଥ୍ୟେ ଗାରଡ଼ )—ମେଁ—ଏଁ···

ମାଲୁଣୀ—ସତ, ସତ, ଧର୍ମର ଡାକ—ଶାସ୍ତ୍ରରେ କହୁଛି ପରା—ସମୟ ଦେଖି, ବୟସ ବଢ଼େ—ମନ ଦେଖି ବୟସ ହଟେ ।

( ନେପଥ୍ୟେ ଗାରଡ଼ )—ମେଁ—ଏଁ—

ମାଲୁଣୀ—( ନେପଥ୍ୟକୁ ଦିବ୍ୟ ଦୃଷ୍ଟିରେ ଅନାଇ ) ହଇରେ ଗାରଡ଼ ! କଥାକୁ କଥା ଶାପିଲା ଭଳି, ବୋବାଉ ବଡ଼ ଗୁଡ଼ିଛୁ ଯେ, ତୋ ମନକୁ ମୋ କଥା ଭାରି ପାଇଛି, ନାଁ । ?

( ନେପଥ୍ୟେ ଗାରଡ଼ )—ମେଁ—ଏଁ······

ମାଲୁଣୀ—( ଭାରି ଖୁସି ହୋଇ, ଧୂଳିମୁଠାଏ ମନ୍ତ୍ର କରି ଗାରଡ଼ଆଡ଼କୁ ଫିଙ୍ଗି ଦେଇ ) ଆ—ଆ—ଏଣିକି ଆ—ତୋ ସ୍ୱରୂପ ଦେଖି ଆ—( ବିଦ୍ୟାଧର ସ୍ୱ-ରୂପରେ ପ୍ରବେଶକଲା—ଗାରଡ଼ ଭାବ ତାର ଯାଇ ନ ଥାଏ )

ମାଲୁଣୀ—କହତ ମତେ ଅନାଇ, ତୁ ଯୁବାକୁ—ମୁଁ ଯୁବତୀ କି ନା ?

ବିଦ୍ୟାଧର—ମେଁ—ଏଁ······

ମାଲୁଣୀ—ମେଁ···ଏଁ ? କାହିଁକି ବା—ମଣିଷ ପାଲଟିଲୁ—ମଣିଷ ପରି କଥା କହ ।

ବିଦ୍ୟାଧର—ମେଁ—ଏଁ···

ମାଲୁଣୀ—ଛୁଆ ଲୋ—( ହସି ହସି ବିଡ଼ିଆ ପାନ ଖଣ୍ଡେ ବିଦ୍ୟାଧର ପାଟିରେ ଦେଲା—ବିଦ୍ୟାଧର ଥୁ ଥୁ କରି ଫିଙ୍ଗିଦେଲା) ହୁଁ—ଏତେ ହତାଦର ! ରହ୍ ଥା—(ଭିତରକୁ ଚାଲିଗଲା)

ବିଦ୍ୟାଧର—[ ମୂକଭଳି ଏଣେ ତେଣେ ଚାହୁଁଥାଏ—ତାର ପୂର୍ବ ସ୍ମୃତି ଯିମିତ ଲୋପ ପାଇ ଯାଇଛି ।—ସେହି ସମୟରେ ରଙ୍ଗଲତା ଶିବ-ସ୍ତୁତି ଗାନ କରିବାର ଶୁଣାଗଲା—ବିଦ୍ୟାଧର ଚଞ୍ଚଳିତ ହୋଇ ପଡ଼ିଲା—ଏତିକିବେଳେ ମାଲୁଣୀ ଗୋଟାଏ କୋରଡ଼ା ଧରି ପ୍ରବେଶ କଲା ]

ମାଲୁଣୀ—ଦେଖୁଛୁ ଏ କୋରଡ଼ା ?

ବିଦ୍ୟାଧର—ମେଁ···( ଭୀତ ହେଲା )

ମାଲୁଣୀ—ପିଠି ଛାଲ ଉତାରି ଦେବି, ଆଜ ଗାରଡ଼ କରି ଖନ୍ଦା ଭିତରେ ପକେଇ, ପଥର ଚପେଇ ଦେବି—

ବିଦ୍ୟାଧର—ମେଁ ଏଁ ଏଁ···

( ଶରଣ ପଶିଲାଭଳି ଜଣାଗଲା )

ମାଲୁଣୀ—ବେଶ୍, ମୋ ବୋଲ୍ ମାନ—ମୋ ହାତଧର ।—ଧରିଲୁ ?

ବିଦ୍ୟାଧର—( ପୁଣି ଇତସ୍ତତଃ ହେଲା )

ମାଲୁଣୀ—ପୁଣି ? ( କୋରଡ଼ା ଉଞ୍ଚାଇଲା ବେଳକୁ ବିଦ୍ୟାଧର ତାର ହାତ ଧରିଲା ) ଆରେ କାଲି ଶିବ ମନ୍ଦିରରେ ଯାଗ ହେବ—ଭାରି ଧୂମ ଧାମ—ଯାଇ ଦେଖି ଯିବୁ ନା ? (ଆପଣା ଖିଆଲରେ) ଆଉ ସେଠି ହବ ଆମ ଦୁହିଙ୍କର ମାଳା ବଦଳ—କେତେ ଖିଆ ହେବ, ପିଠା ହେବ —

ମାଲୁଣୀ—( ଭୁଲିପଡ଼ି, ଦେଖେତ ଗାରଡ଼ ନାହିଁ । ରାଗରେ ତା' ପଛେ ପଛେ ଗୋଡ଼େଇଲା )

---

## ଦ୍ୱିତୀୟ ଦୃଶ୍ୟ

—ଶିବ ମନ୍ଦିର—

[ ଶିବ ଲିଙ୍ଗ ନିକଟରେ ରଙ୍ଗଲତା ଧ୍ୟାନ ମଗ୍ନ ଥିଲେ—ତାଙ୍କର ସନ୍ନ୍ୟାସୀ ବେଶ ]

ରଙ୍ଗଲତା— ଗୀତ

ଦେବ ଦେବ ଶଙ୍କର ଭୋଳା ମହେଶ୍ୱର
(ରଖ) ବିନତ ପ୍ରଭୁ ବାରେ ।
ଭବ ଦୁଃଖ ମୋଚନ ଭୂତେଶ ତ୍ରିଲୋଚନ
ଜଟା ଜୁଟେ ଜାହ୍ନବୀ ଝରେ ।
ନିଃସ୍ୱ ସହାୟକ ବିଶ୍ୱ ତ୍ରାସ ହର
କରୁଣା ବିତରିବାରେ
କାମ ଚୂର୍ଣ୍ଣକର କାମନା ପୂର୍ଣ୍ଣକର
ଅପର୍ଣ୍ଣା ବଲ୍ଲଭ ବର୍ଣ୍ଣେ ବିଭୂତରେ ।
ଡିବ୍ ଡିବ୍ ଡମ୍ବରୁ ନାଦ କରେ ଭବ
ବରାଭୟ ଆଶିଷରେ
କ୍ଷମା-କର ମୌଳୀ କୃପା କର ଏବେ
ଭାସେ ସିନ୍ଧୁ ଅକାତରେ ।

ବିଦ୍ୟାଧର—( ବ୍ୟସ୍ତ ଭାବରେ ପ୍ରବେଶ କରି ) ହେ ବାବା ସତ୍ୟନାରାୟଣ । ସତ୍ୟନାରାୟଣ ।—ସତ୍ୟ—

ରଙ୍ଗଲତା—( ଚକ୍ଷୁ ଉନ୍ମୀଳିତ କରି ) କିଏ ?

ବିଦ୍ୟାଧର—ରଙ୍ଗଲତା ।

ରଙ୍ଗଲତା—ତୁମେ ?

ବିଦ୍ୟାଧର—ରକ୍ଷା କର ସେହି ରାକ୍ଷସୀ—ସେହି ଭିଖାରୀ, ମାୟା ଜାଣେ—ମାୟାରୂପ ଧରିବ—ମାୟା ମନ୍ତ୍ର ଫୁଙ୍କିବ—ମତେ ପୁଣି ଗାରଡ଼ କରି ଦେବ—

ରଙ୍ଗଲତା—ଭୟ ନାହିଁ···( ଶିବ ଲିଙ୍ଗ ପଛପଟୁ ତ୍ରିଶୂଳ ଆଣି ଯିବାକୁ ଉଦ୍ୟତ ହେବା ସମୟରେ ମାଲୁଣୀର ପ୍ରବେଶ )

ମାଲୁଣୀ—ଚିହ୍ନିଲ କି ସାଧୁବାବା ? ମୁଁ ମାଲୁଣୀ, ତୁମ ଦିଅଙ୍କୁ ନିତି ଫୁଲ ଯୋଗାଏ—ଏ ମୋର···

ରଙ୍ଗଲତା—ଗେରସ୍ତ ?

ମାଲୁଣୀ—ସାଧୁବାବା ।

ବିଦ୍ୟାଧର—ମିଥ୍ୟା କଥା ।

ମାଲୁଣୀ—ମିଥ୍ୟା କଥା ?

ରଙ୍ଗଲତା—ସାବଧାନ ।

ମାଲୁଣୀ—( ରଙ୍ଗଲତା ଉପରକୁ ଧୂଳି ଫିଙ୍ଗି ଦେଲା )

ରଙ୍ଗଲତା—ହାଃ ହାଃ ହାଃ—ଅଲୋ ମାୟାବିନୀ । ମୁଁ ବି ରମଣୀ—ଦିନେ ଥିଲି ତୋରି ପରି ମାୟାବିନୀ । ତୋ'ମାୟାମନ୍ତ୍ର କି ମତେ କାବୁ କରିବ ?

ମାଲୁଣୀ—କ୍ରୋଧରେ । ହୁଁ—ଅଚ୍ଛା । ( ପ୍ରସ୍ଥାନ )

ବିଦ୍ୟାଧର—ତୁମେ କ'ଣ କଲ, ରଙ୍ଗଲତା ? ଆପଣାର ପରିଚୟ ଦେଲ ତ ? ତୁମର ଏହି ଛଦ୍ମବେଶ ଦେଖି—ସେହି ବ୍ୟଭିଚାରିଣୀ ଗୋଟାଏ କାଣ୍ଡ ଭିଆଇ ବସିବ—ତା' ବୁଝୁଛ ତ ?

ରଙ୍ଗଲତା—ଖୁବ୍—ମହାରାଜ ନିଜେ ଆସି ହାଜର ହେବେ—ମୋର ବଂଶପରିଚୟ ମଧ୍ୟ ଜାଣିବାକୁ ଇଚ୍ଛାକରିବେ, ତା'ବି ବୁଝୁଛି ।

ବିଦ୍ୟାଧର—ବର୍ତ୍ତମାନ ମଧ୍ୟ ସମୟ ଅଛି—ଆସ, ପଳେଇ ଯିବା···

ରଙ୍ଗଲତା—ସତ୍ୟର ଉପାସକ ତୁମେ, ଏକଥା ଭୁଲି ଯିବ ନା···

---

## ତୃତୀୟ ଦୃଶ୍ୟ

—ରାଜପଥ—

[ କେତେକ ନାଗରିକ ଗପ ସପ କରୁ କରୁ ପ୍ରବେଶକଲେ ]

୧ମ ନାଃ—ଆରେ ତୁ କହୁଛୁ କ'ଣ ବା ? ରଙ୍ଗଲାଲ—ରଙ୍ଗଲତା ? ମାଇପିଟାଏ ମାରିଥିଲା ଗଣ୍ଡା-ରାକ୍ଷସକୁ ?

୨ୟ ନାଃ—ରାକ୍ଷସରୁ ଅଧିକ—ତାହା କଥା ନୁହେଁ··· ପୁରାଣକୁ ଚକା—ଦଶଶିରକୁ ବଧ କରିଥିଲେ ରାମଚନ୍ଦ୍ର, ଆଉ ସହସ୍ରଶିରାକୁ ?

୧ମ ନାଃ—ଜାନକୀ ଠାକୁରାଣୀ···(ଓଲଟ ଜଣାଇଲା) ···ହଁ, ତା' ପର ?

୨ୟ ନାଃ—ବିଦ୍ୟାଧରକୁ କିମିତ ଭେଟିବ, ସେଥିପାଇଁ ରଙ୍ଗଲତା ପାଳଥିଲା ଓଂଷା !—ଭେଟିଲା ପରେ ଶ୍ରୀଗୁମୁରେ ପାଇ ସିଧା ସିଧା ହାଜର ହେଲା !

୧ମ ନାଃ—ଆଉ ସବୁ କଥା ଫିଟାଇ କହିଲା—ମାଲୁଣୀର କପାଳ ଫାଟିଲା—ତା'ର ମାଳତୀ ଲତାଟି ମଉଳିଲା ।

୨ୟ ନାଃ—ତୁ ପାଟି ବୁଜୁ ତ !

୧ମ ନାଃ—ହେଲେ, ବିଦ୍ୟାଧର – ରଙ୍ଗଲତାର କ'ଣ ହେଲା, ସେ କଥା କହ—ପାଟି ବୁଜିଲି !

୨ୟ ନାଃ—ଆଜିତ ସଭା ବସିଥିଲା···ସଭାରେ କ'ଣ ଯେ—( ଠାରି ଦେଖାଇଦେଲା ନେପଥ୍ୟକୁ )

୧ମ ନାଃ—ଏଇତ, ସଭା ପଣ୍ଡିତେ—ନସର ପସର ହୋଇ ଧାଇଁଛନ୍ତି ଏଣେ !

୨ୟ ନାଃ—ଖୁସିର ଖବର କିଷ୍ଟେ—ବାହା ଭୋଜିର—

୧ମ ନାଃ—ବାହା-ଭୋଜି ! ହାଃ, ହାଃ, ହାଃ···

୨ୟ ନାଃ—ଝାପରା ? ଆରେ ଓଲା, ରାଜା ପରା ସତ୍ୟ କରିଥିଲେ—ଯିଏ ଗଣ୍ଡାକୁ ବଧ କରିବ, ତାକୁ କେମାଙ୍କ ସଙ୍ଗେ ବିଭା ଦେବେ—ରାଜ୍ୟରୁ ଅଧେ ଦେବେ ?

୧ମ ନାଃ—ଅରେ ଓଲା ବଣସାକୁ ! ମାଇପିଟାକୁ ବାହା ହବ ମାଇପି ? ହାଃ—ହାଃ—ହାଃ—

୨ୟ ନାଃ—ତେବେ ଭାରି ଅଡୁଆ କଥା ହେଲା ।

୧ମ ନାଃ—ସେଇୟା ତ । ରାଜା ଯଦି ସତ୍ୟ ରକ୍ଷା କରୁଛନ୍ତି—ତେବେ କେମାଙ୍କ ବିଭା ହେଉ ନା—ଆଉ କେମା ଯଦି ବିଭା ହେଉଛନ୍ତି, ତା ହେଲେ ରାଜାଙ୍କ ସତ୍ୟ ରକ୍ଷା ହେଉ ନା !

( ସଭା-ପଣ୍ଡିତେ ପ୍ରବେଶ କଲେ )

ସଭା-ପଣ୍ଡିତ—ଠିକ୍ ଅନୁମାନ କରିଛ······ରାଜା, ଆମର ଠିକ୍ ସେମିତ ଦୋଧାଇରେ ପଡ଼ିଥିଲେ, ଯିମିତ ପଡ଼ିଥିଲେ ଦିନେ ରାଜା ରାମଚନ୍ଦ୍ର—ପ୍ରଜାଙ୍କ ମନ ଯୋଗେଇବେ, କି ଠାକୁରାଣୀଙ୍କୁ ତେଜ୍ୟା କରିବେ—

୧ମ ନାଃ—ହେଲେ—ଏଥିରୁ ପାର ଉତାରର କି ବାଟ ଭଲେଟି, ଆମ ରାଜା ?

ସଭା-ପଣ୍ଡିତ—ରାଜା ତ ନିଜ ଅଂଗୀକାରକୁ ବଡ଼ ମଣି କେମାମଣିଙ୍କୁ ବାଜୁଅ ରଖିବେ ବୋଲି ଠିକ୍ କରିଥିଲେ—

୧ମ ନାଃ—ତା'ପର······ତା'ପର ?—

ସଭା-ପଣ୍ଡିତ—ଆଉ ରଙ୍ଗଲତା—ଆଃ ! ଦେଖିଲ ତ ଝିଅ ଖଣ୍ଡେ !—ରାଜାଙ୍କର ଧର୍ମ-ଝିଅ ବସି ରାଜାଙ୍କୁ ଧର୍ମ ନାଗ ଫାଶରେ ବାନ୍ଧି ପକାଇଲା—ତା'ପର ସେହି ସୂତ୍ରରେ ଖଞ୍ଜିଲା ଯେଉଁ ସୂତ୍ର···ସାପ ବି ମଲା, ବାଡ଼ି ବି ଭାଙ୍ଗିଲା ନା ।

୧ମ ନାଃ—ମାନେ ? ବିଦ୍ୟାଧର ସଙ୍ଗେ ଶଯନ୍ତାର ବିବାହ ପ୍ରସ୍ତାବ କରି ବସିଲା ନା କ'ଣ ?

ସଭା-ପଣ୍ଡିତ—ଖାଲି ପ୍ରସ୍ତାବ ନୁହେଁ ହୋ, ଏକା-ବେଳକେ ବାସ୍ତବ ! ହେଇଟି ଶୁଣ !

( ଉତ୍ସବ ଧ୍ୱନି ଶୁଣାଗଲା—ପଣ୍ଡିତେ ଚାଲିଗଲେ )

୧ମ ନାଃ—ବିବାହ ଉତ୍ସବ—ଆଜିଠୁଁ ? ବାଃ······

( ପ୍ରସ୍ଥାନ )

ରଙ୍ଗଲତା—( ପ୍ରବେଶ ପୂର୍ବକ ) ବିଦ୍ୟାଧର ଅଦ୍ୟାପି ବିମୂଢ଼ ।—ସୁବର୍ଣ୍ଣ ତୀର-ଅଧିଷ୍ଠାନ କଥା ତାର ଅଦୌ ମନେ ନାହିଁ—ବିବାହ ପରେ ସେ ଅଧିକର ବିମୂଢ଼ ହେବ, ଆଶ୍ଚର୍ଯ୍ୟ ନୁହେଁ । ମୁଁ ଗୋଟାଏ ଆଳ କରି ସାମୟିକ ବିଦାୟର ବ୍ୟବସ୍ଥା କରିଛି—ମୋର ଉଦ୍ଦେଶ୍ୟ, କାହାରିକୁ ନ ଜଣାଇ ସୁବର୍ଣ୍ଣ ତୀର-ଅଧିଷ୍ଠାନର ସନ୍ଧାନ କରିବି—ଉଦ୍ଧାର କରିବି—ବିଦ୍ୟାଧରକୁ ଭେଟି, ତାର ସତ୍ୟରକ୍ଷା କରାଇବି । ଜୟ ଶ୍ରୀ ସତ୍ୟନାରାୟଣ ।

( ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ରାଜ ଉଦ୍ୟାନ—

[ ସୁଭଦ୍ରା ଶୁଭ୍ରବସ୍ତ୍ର ଭାବରେ ପୁଷ୍ପଭରା ଗୁଳୁଞ୍ଚିଟିଏ ଧରି ସତ୍ୟନାରାୟଣଙ୍କର ଭଜନ-ମନ୍ତ୍ର ପଢ଼ୁ ପଢ଼ୁ ପ୍ରବେଶ କଲେ ଓ ଅନ୍ୟ ଦିଗକୁ ଚାଲି ଯାଉଥିଲେ—ସେହି ସମୟରେ ସତ୍ୟକର ଧନୁର୍ବାଣ ହସ୍ତରେ ସୁଭଦ୍ରାର ପ୍ରବେଶ ଦିଗରୁ ଧାଇଁ ଆସିଲା ]

ସତ୍ୟକର—ମା । ମା ।

ସୁଭଦ୍ରା—କ'ଣ କରେ ?

ସତ୍ୟକର—ସୁନ୍ଦର ହରିଣ ଶିଶୁଟିଏ—ଆମର ଏହି ବେଢ଼ା ପାରେଇ ତେଇଁ ଉଦ୍ୟାନ ଭିତରେ ପଶିଥିଲା ।

ସୁଭଦ୍ରା—ଆଉ ତୁମେ ତାକୁ ଶିକାର କରିଛ, ଏଇଯା ତ ?

ସତ୍ୟକର—ନାହିଁ ମା ! ଯେଉଁ ଶିକାରୀ ତାକୁ ଶିକାର କରିବ ବୋଲି ତା ପଛେ ପଛେ ଗୋଡ଼େଇ ଆମର ପାରେରୀ ଉପରକୁ ଚଢ଼ି ବସିଥିଲା······

ସୁଭଦ୍ରା—ତା'କୁଇ କାଣ୍ଡ ବିନ୍ଧ ହତ୍ୟା କରିଛ ।

ସତ୍ୟକର—ନାହିଁ ମ—ତାକୁ ଧନୁ ଟାଣି, କାଣ୍ଡ ଭିଡ଼ି ଏମିତି ଦେଖାଇ ଦେଲି ଯେ ବିଚରା ଡରିଛେଇ ଗଡ଼ି ପଡ଼ିଲା ପାରେରୀ ଆର ପଟକୁ—ଆଉ ମୁଁ ତ ହସି ହସି ଗଡ଼ିଗଲି—ହିଁ—ହିଁ—ହିଁ ।

ସୁଭଦ୍ରା—( ମୃଦୁକ ହସି ) ଚଗଲା······

ସତ୍ୟକର—ହଁ, ମା । ସେଇ ହରିଣ ଛୁଆଟିକି ମୁଁ ପାଳିବି । ବାନ୍ଧି ରଖିଛି କେତେବେଳୁ—ଭୋକେଇଲାଣି ।—ଯାଏଁ—କେରାଏ ଦୁବଘାସ ଆଣି ତାକୁ ଦିଏ ।

( ଚାଲି ଯାଉଥିଲା )

ସୁଭଦ୍ରା—ଶୁଣ······

[ ସତ୍ୟକର ଆସିଲା—ସୁଭଦ୍ରା ଗୋଟିଏ ଚୁମ୍ବନ ଦେଲା ତା ମସ୍ତକରେ—ସତ୍ୟ ପ୍ରସ୍ଥାନ କଲା]

ଶିଶୁ—ଶିଶୁ—ପଶୁ ହେଉ, ମାନବ ହେଉ, ପରକୁ ଆପଣା କରିନେବା ତା'ର ସ୍ୱଭାବ ।

( ଚାଲି ଯାଉଥିଲେ )

[ ସେହି ସମୟରେ ସତ୍ୟନାରାୟଣଙ୍କ ପୂଜକ ବ୍ରାହ୍ମଣ ପ୍ରବେଶ କଲେ—ସେ ବର୍ତ୍ତମାନ ରାଜଗୁରୁ । ]

ବ୍ରାହ୍ମଣ—ମା !

ସୁଭଦ୍ରା—( ପ୍ରଣାମ କରି ) ମୋତେ—ଗୁରୁଦେବ ?

ବ୍ରାହ୍ମଣ—ହଁ······

ସୁଭଦ୍ରା—କୁହନ୍ତୁ ।

ବ୍ରାହ୍ମଣ—( ଏଣେ ତେଣେ ଅନାଇବାକୁ ଲାଗିଲେ )

ସୁଭଦ୍ରା—ଗୋପନ କଥା ?

ବ୍ରାହ୍ମଣ—ରାଜ୍ୟର କଥା ।

ସୁଭଦ୍ରା—ଅଥଚ ରାଜା ଜାଣିବେ ନା ?

ବ୍ରାହ୍ମଣ—ରାଜ ଅନ୍ତଃପୁରର ମଧ୍ୟ କେହି ନୁହେଁ ।

ସୁଭଦ୍ରା—ମୁଁ ତ ଅନ୍ତଃପୁରର ବାହାର ନୁହେଁ ?

ବ୍ରାହ୍ମଣ—ଦିନେ ଥିଲ ବାହାରେ—ଆଜ ପୁଣି ବାହାରିବାକୁ ପଡ଼ିବ ।

ସୁଭଦ୍ରା—( ଚମକି ପଡ଼ି ) ଗୁରୁଦେବ !

ବ୍ରାହ୍ମଣ—ଶକ୍ତିମୟୀ ତୁମେ—ଶକ୍ତି ନିଜର ପାଶୋରିବ ନି—ତା' ହେଲେ ପୃଥିବୀ ରସାତଳକୁ ଯିବ ।

ସୁଭଦ୍ରା—( ସାତଙ୍କେ ଆକାଶ ଆଡ଼କୁ ଚାହିଁ ) ନିର୍ଘନ, ନିର୍ମଳ ଆକାଶରେ ସହସା ଘନ ଉଦୟର ମଳିନ ବିନ୍ଦୁ, ଗୁରୁଦେବ !

ବ୍ରାହ୍ମଣ—(ସୋଲ୍ଲାସେ) ଘନ ଉଦସ୍ୱର ସଙ୍କେତ—ଦେଖୁଛ ଜନନୀ ? ଆଉ ଭୟ ନାହିଁ, ଆଉ ଭୟ ନାହିଁ—

ସୁଭଦ୍ରା—ଗୁରୁଦେବ !

ବ୍ରାହ୍ମଣ—ଘନ. ଘନ-ଆକାଶ ଘନଘଟାଚ୍ଛନ୍ନ ହେବ—ମୂଷଳ ଧାରରେ ବାରି ବର୍ଷିବ—ପ୍ରବଳ ବନ୍ୟାରେ ମହୀତଳ ଭାସିଯିବ !

ସୁଭଦ୍ରା—ବୁଝିଛି—ଦୀର୍ଘକାଳ ବ୍ୟାପି ଅନାବୃଷ୍ଟି—ରାଜ୍ୟରେ ଦୁର୍ଭିକ୍ଷ, ମଡ଼କ—ସେହି ଦେବ ପ୍ରକୋପକୁ ଉଦ୍ଦେଶ୍ୟ କରି ଗୁରୁଦେବ ଯେ ଚିନ୍ତିତ, ବ୍ୟଥିତ—ଏ ଖିଆଲ ମୋର ନ ଥିଲା ।

ବ୍ରାହ୍ମଣ—ଆଉ ବେ-ଖିଆଲ ହେଲେ ଚଳିବ ନା । ଏ ବିପତ୍ତିର ପ୍ରତିରୋଧ-ବ୍ୟବସ୍ଥା ଏକମାତ୍ର ତୁମରି ହାତରେ ରହିଛି, ଜନନୀ !

ସୁଭଦ୍ରା—ମୋ ହାତରେ ?

ବ୍ରାହ୍ମଣ—ଜନନୀର ଯେଉଁ ମହତ୍ ପ୍ରାଣ ଯେମିତି ରାଜ-ସନ୍ତାନକୁ କରିଛି ନିଜ ସନ୍ତାନଠୁ ଅଧିକ—ସେହି ମହତ୍ ପ୍ରାଣ ଯେମିତି ଆଜି ରାଜ୍ୟର ସନ୍ତାନମାନଙ୍କୁ ମଧ୍ୟ କରିବ ସେହିପରି ଅଧିକୁ ଅଧିକ । ଏତିକି ମାତ୍ର ଭିକ୍ଷା ।

ସୁଭଦ୍ରା—ଭିକ୍ଷା ନୁହେଁ—ଆଦେଶ, ଗୁରୁଦେବ !

ବ୍ରାହ୍ମଣ—ବୃଷ୍ଟି ହେବ······ସେଥିପାଇଁ ରାଜ୍ୟସାରା ଲୋକେ ମିଳି କରୁଛନ୍ତି ଯଜ୍ଞାନୁଷ୍ଠାନ ।

ସୁଭଦ୍ରା—ଜାଣେ ।

ବ୍ରାହ୍ମଣ—ରାଜାଙ୍କର ସେଥିରେ ନାହିଁ ଆନ୍ତରିକ ସହଯୋଗ ।

ସୁଭଦ୍ରା— ଉପଲବ୍ଧି କରିଛି ।

ବ୍ରାହ୍ମଣ—ଆମର ଶିକ୍ଷା, ସଂସ୍କୃତି, ରାଷ୍ଟ୍ର, ସମାଜ, ଅର୍ଥନୀତି, କୂଟନୀତି—ଯାହା କିଛି ଯେମିତି ଆମର ଜାତୀୟତା, ସଭ୍ୟତା—ସବୁର ମୂଳତତ୍ତ୍ୱ, ଧର୍ମ—ତାହା ଯଦି ରାଜା ଭୁଲନ୍ତି, ତେବେ ରାଜାନୁଗତ ଧର୍ମ ରହିବ କିପରି ? ରାଜ୍ୟ ରହିବ କିପରି ?—ସୁତରାଂ ରାଜା ଓ ରାଜ୍ୟର ହିତ ନିମନ୍ତେ ତୁମେ ହେବ ଉଭୟଙ୍କର ଯୋଗସୂତ୍ର—ଭାଙ୍ଗିବ ବ୍ୟବଧାନର ପ୍ରାଚୀର ।

ସୁଭଦ୍ରା—ଭାଙ୍ଗିବି ।

ବ୍ରାହ୍ମଣ—ଆମ୍ଭର ଅନୁଷ୍ଠିତ ଯଜ୍ଞର ଶେଷ ଆହୁତି ଆସନ୍ନ ।

ସୁଭଦ୍ରା—ସେହି ଏକାନ୍ତରେ—ମୋତେ କି ଦାୟିତ୍ୱ ତୁଲାଇବାକୁ ହେବ, ତାହା ନିଃସଙ୍କୋଚରେ ଆଦେଶ କରନ୍ତୁ, ଗୁରୁଦେବ !

ବ୍ରାହ୍ମଣ—ଯଥା ସମୟରେ ଜାଣିପାରିବ, ଜନନୀ ।

ସୁଭଦ୍ରା—ଶ୍ରୀ ସତ୍ୟନାରାୟଣଙ୍କ ନାମରେ ଶପଥ କରୁଛି—ଗୁରୁଦେବଙ୍କର ଆଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି ।

ବ୍ରାହ୍ମଣ—ତୁମର ଇଷ୍ଟଦେବ ସହାୟ ହୁଅନ୍ତୁ ।

( ଆଶୀର୍ବାଦ କଲେ )

---

## ପଞ୍ଚମ ଦୃଶ୍ୟ

—ରାଜପଥ—

[ ନେପଥ୍ୟେ ଉପବାସ-କ୍ଲିଷ୍ଟ ଶିଶୁର କଣ୍ଠଧ୍ୱନି ଓ ରୁଗ୍ଣା ନାରୀର ଆର୍ତ୍ତନାଦ—ଜଣେ ଗୃହସ୍ଥ ସସବ୍ୟସ୍ତେ ପ୍ରବେଶ କଲେ ]

ଗୃହସ୍ଥ—ମୁଠାଏ ଅନ୍ନ—ଟୋପାଏ ପାଣି—ଯାହା ଥିଲା ସଂଚୟ, ସବୁ ସରିଛି—କିଏ ଦୟା କରିବ ?—ସ୍ତ୍ରୀ ରୋଗ ଶଯ୍ୟାରେ, ଶିଶୁ ଉପବାସୀ ।

( ଏହି ସମୟରେ ଜଣେ ପଥିକ ବିପରୀତ ଦିଗରୁ ପ୍ରବେଶ କଲା—ସେ ଦାହକିୟା ସାରି ଶ୍ମଶାନରୁ ଫେରୁଛି )

ଗୃହସ୍ଥ—ଭାଇ, ଏହି ଟଙ୍କାଟି ନିଅ, ମୁଠାଏ ଅନ୍ନ—ଟୋପାଏ ପାଣି ଦିଅ ।

ପଥିକ—( ନୀରବ )

ଗୃହସ୍ଥ—ଏଇଟି ମୋର ସ୍ତ୍ରୀ-ହାତର କଂକଣ—ଶେଷ ସମ୍ବଳ—ଏହାର ବଦଳରେ—

ପଥିକ—( ତଥାପି ନୀରବ )

ଗୃହସ୍ଥ—ଓ ।···ଏତିକିରେ ହବନି—ବେଶ୍, ଶିଶୁବେଳର ଏଇ ଡେଉଁରିଅଟି ଆଣିଛି, ନିଅ—ଏହାରି ବଦଳରେ ଭୋକିଲା ଶିଶୁଟି ପାଇଁ ମୁଠାଏ

ଅନ୍ନ ଅଭ୍ର ତାର ତୃଷ୍ଣା ଜନନୀ ପାଇଁ ଟୋପାଏ ପାଣି—

ପଥିକ—ହାଃ···ହାଃ···ହାଃ । ଗୃହସ୍ଥ, ମୁଁ ଜଣେ ଧନିକ, କୁବେର । ମୋ ଘରେ ଧନ ରତ୍ନର କୁଢ଼ କୁଢ଼ ଭଣ୍ଡାର—ତଥାପି ପଥ୍ୟ ଦେଇ ପାରିଲି ନାହିଁ; ସେଥିପାଇଁ ସ୍ତ୍ରୀ ମଲା—ଶବ ସତ୍କାର କରି ଘରକୁ ଲେଉଟୁଛି ।—କେବଳ ଏକମାତ୍ର ଶିଶୁ ଘରେ—ତାକୁ ପୁଣି ଧରିଛି ବସନ୍ତିକା—ଦେଖେ, ଚିକିତ୍ସାର ବ୍ୟବସ୍ଥା କରି ପାରୁଛି କି ନା । ( ପ୍ରସ୍ଥାନ )

[ ନେପଥ୍ୟ ମିଳିତ କଣ୍ଠ ଧ୍ୱନି—'ରାମ ନାମ ସତ୍ୟ', 'ରାମ ନାମ ସତ୍ୟ' ]

ଗୃହସ୍ଥ—ଅଭ୍ର ଆଶା କରିବା ବିଡ଼ମ୍ବନା । ଆଗେ ସ୍ତ୍ରୀ-ପୁତ୍ରହତ୍ୟା—ପରେ ଆତ୍ମ-ହତ୍ୟା—

( ପ୍ରସ୍ଥାନ )

[ ବିପରୀତ ଦିଗରୁ ସୁଭଦ୍ରା ଓ ଗୁରୁଦେବଙ୍କ ପ୍ରବେଶ ]

ସୁଭଦ୍ରା—ରାଜପ୍ରାସାଦ ବାହାରେ ଏ'କି ଦାରୁଣ ଦୃଶ୍ୟ—କୁହ ଗୁରୁଦେବ ! କାହିଁକି ଏ ବିପ୍ଳବ ? —କ'ଣ କଲେ ରାଜ୍ୟ ରକ୍ଷା ହେବ ?

ଗୁରୁଦେବ—ଯାହାର ଯାହା ଧର୍ମ—ସେହି ଧର୍ମରକ୍ଷା ହେବ, ସେଥିପାଇଁ ପ୍ରୟୋଜନ ଯଜ୍ଞ । ସେହି 'ଯଜ୍ଞ' ସଫଳ ହେବ—ତେଣୁ ପ୍ରୟୋଜନ ମହାବଳି ।

ସୁଭଦ୍ରା—ମହାବଳି !

ଗୁରୁଦେବ—ଆଜି ଯଜ୍ଞାନଳ ଜଳୁନାହିଁ, ଜଳୁଛି ଜଠରାନଳ—ଅନ୍ନ-କ୍ଷୁଧା । ଅନ୍ନ-କ୍ଷୁଧାରୁ ଜନ୍ମ, ମହାକ୍ଷୁଧା । ତା'ର ଲକ୍ଷଣ ଦେଖି ଆସ, ଜନନୀ ।

ସୁଭଦ୍ରା—ଗୁରୁଦେବ ! ଗୁରୁଦେବ !

( ପ୍ରସ୍ଥାନ )

## ଷଷ୍ଠ ଦୃଶ୍ୟ

—କଳିଙ୍ଗ ରାଜପ୍ରାସାଦର ଅଳନ୍ଦ—

[ ଗଭୀର ରାତ୍ରି—ସ୍ତିମିତ ଆଲୋକ ଜଳୁଥାଏ —ହୈମବତୀ ଠିଆ ହୋଇଥାନ୍ତି, କାଠମୂର୍ତ୍ତି ପରି ବାହାରକୁ ଲକ୍ଷ୍ୟକରି । ଶୃଗାଳ, ଶ୍ୱାନର ବିକଟ ଧ୍ୱନି ନୀରବତା ଭଙ୍ଗ କରି ବିଭୀଷିକା ସୃଷ୍ଟି କରୁଥାଏ ]

ହୈମବତୀ—( ମନକୁ ମନ ) ପାଞ୍ଚ ପାଞ୍ଚ ବର୍ଷ ଧରି ଅନାବୃଷ୍ଟି, ଅଜନ୍ମା—ଫଳରେ ମହାମାରୀ, ଦୁର୍ଭିକ୍ଷର ଅବିରାମ ତାଣ୍ଡବ । କଳିଙ୍ଗ-ରାଜ୍ୟ ଗୋଟାଏ ପ୍ରେତ-ରାଜ୍ୟ, ତଥାପି କଳିଙ୍ଗ ବାସୀଙ୍କ ସ୍ୱପ୍ନ-ରାଜ୍ୟରେ ଚାଲିଛି ଆଶା, ନିରାଶା—ସନ୍ଦେହ, ବିଶ୍ୱାସର ପ୍ରବଳ ଦ୍ୱନ୍ଦ୍ୱ—ପ୍ରତି ନିତର ଦୃଶ୍ୟପଟ କେଉଁ ଭୟାବହ ନାଟକର ଅଭିନୟକୁ ଆଗେଇ ନେଇ ଚାଲିଛି—ଯେମିତି ବିପ୍ଳବର ଅଭିମୁଖକୁ । —ଆଜି ରାତ୍ରିର ଗମ୍ଭୀରତା ସୂଚାଇ ଦେଉଛି, ସେହି ନାଟକର ପଞ୍ଚମ ଅଙ୍କ ଅଭିନୟର ଶେଷ ଦୃଶ୍ୟ—ଯବନିକା ପଡ଼ିବାକୁ ଆଉ ବିଳମ୍ବ ନାହିଁ ।

ବିକ୍ରମ—( ପ୍ରବେଶ କଲେ, ଆପାଦ ମସ୍ତକ କୃଷ୍ଣାବରଣରେ ଆବୃତ ହୋଇ ) ଯବନିକା ପଡ଼ିବାର ଶେଷ ଦୃଶ୍ୟର ଶେଷ ପରିଣତି ପାଇଁ ତୁମେ ପ୍ରସ୍ତୁତ ଅଛ, ମହାରାଣୀ ?

ହୈମବତୀ—ମହାରାଜ !

ବିକ୍ରମ—ସମସ୍ତ ଅଳ୍ପ—ସତ୍ୟଜିତ୍ କାହିଁ ?

ହୈମବତୀ—ଶୟନ କକ୍ଷରେ ।

ବିକ୍ରମ—ନିଦେଇଛି ?

ହୈମବତୀ—ନିଦ୍ରାକରେ ।

ବିକ୍ରମ—ତୁମେ ଆଉ ବିଳମ୍ବ କରନାହିଁ—କୃଷ୍ଣପରିଚ୍ଛଦ ଧାରଣକରି, କୃଷ୍ଣ ବେଷ୍ଟଣ ତଳେ ସତ୍ୟଜିତକୁ ଧରି ଶୀଘ୍ର ବାହାରି ଆସ ।

ହୈମବତୀ—ଏହାର ଅର୍ଥ ?

ବିକ୍ରମ—ରାଜପ୍ରାସାଦ ଏହିକ୍ଷଣି ତ୍ୟାଗ କରିବାକୁ ହେବ—ରାଜ୍ୟସୀମା ଛାଡ଼ି ପଳାଇବାକୁ ହେବ, ଅନ୍ଧକାରର ଓଢ଼ଣୀ ତଳେ—ବଞ୍ଚିତ ପାରିଲେ, ଆଉ ରକ୍ଷା ନାହିଁ ।

ହୈମବତୀ—ବିପ୍ଳବର ଆଶଙ୍କା ? ରାଜପୁରୀ ଅବରୋଧର ?

ବିକ୍ରମ—ଗୋଟାଏ ହତ୍ୟାର ।

ହୈମବତୀ—ଏଁ । ( ଆତଙ୍କ ବିସ୍ଫାରିତ ନେତ୍ରରେ ଅନାଇ ରହିଲେ )

ବିକ୍ରମ—ସତ କଥା ରାଣୀ ! ଲୋକାଳୟର ବାହାରେ —ସେହି ନିର୍ଜନ ସ୍ଥାନରେ, ଯେଉଁଠାରେ ଗୁପ୍ତ ପାନ୍ଥ-ବୈଠକ ବସୁଥିଲା—ଯେଉଁଠାରେ ପାଇଥିଲି ସତ୍ୟଜିତ୍ ସମ୍ଭବର ପୂଜା—ମୂକା ମୁଁ, ସେହିଠାରେ ବସିଥିଲା ଆଜି ପ୍ରଜାମାନଙ୍କର ଗୁପ୍ତ ମନ୍ତ୍ରଣା-ବୈଠକ । ସେହି ମନ୍ତ୍ରଣାର ଯାହା ଶେଷ ନିଷ୍ପତ୍ତି......

ହୈମବତୀ—ଅର୍ଥାତ୍...ସତ୍ୟଜିତ୍‌ର ହତ୍ୟା ?

ବିକ୍ରମ—ହଁ, ସେହି ନିଷ୍ପତ୍ତିର ଗୁପ୍ତ ସମ୍ବାଦ ଭିତର ଦେଇନାହିଁ—ଦେଇଛି ମୋର ଗୁପ୍ତଚର । ଅଧିକନ୍ତୁ ସେ ସ୍ୱେଚ୍ଛାପ୍ରଣୋଦିତ ହୋଇ ଗୁପ୍ତ ପଳାୟନର ସମସ୍ତ ଆୟୋଜନ ଠିକ୍ ଠାକ୍ କରି ସୁଡ଼ଙ୍ଗ ବାହାରେ ଅଶ୍ୱ ନେଇ ଅପେକ୍ଷା କରୁଛି— ତୁମେ ଆଉ ହେଳା କରନା—କୁଆଁ ତାରା ଫୁଟି ଦେଖା ଦେଲାଣି ।

ହୈମବତୀ—ଗୁପ୍ତଚର ମିଥ୍ୟା କହୁଛି—ଏ ତା’ର ପ୍ରତାରଣା ।

ବିକ୍ରମ—ମୁଁ ମଧ ପ୍ରଥମେ ଏହିପରି ଭାବର ଅନୁଗତ ହୋଇଥିଲି; ଯେତେବେଳେ ସେ ପରିସ୍ଥିତିର ଗୁରୁତ୍ୱ ଉଲ୍ଲେଖ କରି କହିବାକୁ ଲାଗିଲା...

ହୈମବତୀ—କ’ଣ ?

ବିକ୍ରମ—ଅଜନ୍ମା ବର୍ଷେ ହେଲା ଇନ୍ଦ୍ରଦେବଙ୍କୁ ସନ୍ତୁଷ୍ଟ କରିବା ଲାଗି ରାଜ୍ୟରେ ଯେଉଁ ଯଜ୍ଞ ଅନୁଷ୍ଠାନ ଚାଲିଛି, ତାହା କାଲି ସରିବ—ସେଥିପାଇଁ ନରବଳୀର ପ୍ରୟୋଜନ ।—ସେହି ବଳୀ ହେବ ଦଶବର୍ଷର ଗୋଟିଏ ଶିଶୁ—ଆଉ ସେହି ଶିଶୁ ହେବ ‘ରାଜ-ଶିଶୁ’ ।

ହୈମବତୀ—କୁସଂସ୍କାର । ମାନବର ଏହି କୁସଂସ୍କାର ବିରୁଦ୍ଧରେ ମୁଁ ଠିଆ ହେବି, ମହାରାଜ ।

ବିକ୍ରମ—ଅଥଚ, ପୂଜାର ମୂକା ତୁମେଇ ଦିନେ ସୁସଂସ୍କାର ବୋଲି ଗ୍ରହଣ କରି ଥିଲ ନା, ରାଣୀ ?

ହୈମବତୀ—ରା—ଣୀ—?

ବିକ୍ରମ—ଛାଡ଼—ମଜାର କଥା ଶୁଣ । ଏହି ବଳୀର ବ୍ୟବସ୍ଥା ଦେଇଛନ୍ତି, ଶାସ୍ତ୍ରାଗ୍ରହୀ ନିଜେ ।

ହୈମବତୀ—ରାଜ-ପୁରୋହିତ ?

ବିକ୍ରମ—ସେତିକିରେ କ୍ଷାନ୍ତ ହୋଇ ନାହାନ୍ତି ସେଥି ପଣ୍ଡିତେ । ଏ ବ୍ୟବସ୍ଥାର ଅନ୍ୟଥା ହେଲେ, ଯଜ୍ଞ କେବଳ ପଣ୍ଡ ହେବନାହିଁ—ବିଧିର ପ୍ରତିହିଂସା ସ୍ୱରୂପ ଘୋରତର ବଜ୍ରପାତ ଘଟିବ ରାଜ୍ୟରେ—ଏଇ ଧାରଣା ଦେଶବାସୀଙ୍କ ମନରେ ବଦ୍ଧମୂଳ କରି ଦେଇଅଛନ୍ତି ।

ହୈମବତୀ—ସୁତରାଂ ଏ’ଭଳି ଅନ୍ଧ ବିଶ୍ୱାସ ନେଇ ଅନ୍ଧଲୋକେ ଯେ ମାତି ନ ଉଠିବେ, ଆଶ୍ଚର୍ଯ୍ୟ କ’ଣ !

ବିକ୍ରମ—ଆଉ ରକ୍ଷା ନାହିଁ, ରାଣୀ ! କାରଣ, ହାସଲ ଦାଗରେ ଅନ୍ଧ ବାଟ ଚଳେନି, ଚକ୍ଷୁଷ୍ମାନ ବାଟ ଛୁଟେ—ଏ’କଥା ବରଂ ମୁଁ କହିବ ! ହଁ, ସୁବିଧାବାଦୀ ମାନବର ଆଉ ଗୋଟିଏ ନମୁନା ବାଢ଼ିବି, ଶୁଣିବ ?

ହୈମବତୀ—ଶୁଣିବାର ଧୈର୍ଯ୍ୟ ମୋର ଆଉ ନାହିଁ, ମହାରାଜ !

ବିକ୍ରମ—ତା କହିଲେ ଚଳିବ ନି, ମହାରାଣୀ । ଏ ସଙ୍କଟ ମୁହୂର୍ତ୍ତ—ସଙ୍କଟରେ ଧୈର୍ଯ୍ୟହିଁ ମାନବର ଏକମାତ୍ର ଅବଲମ୍ବନ ।

ହୈମବତୀ—(ନିର୍ବାକ ଭାବରେ ଚାହିଁ ରହିଲେ)

ବିକ୍ରମ—ସତ୍ୟଜିତ୍‌ର ବାର୍ଷିକ ଉତ୍ସବ କଥା ମନେପଡ଼େ ?

ହୈମବତୀ—ପଡ଼େ ।

ବିକ୍ରମ—ଯୌବରାଜ୍ୟରେ ସତ୍ୟଜିତର ଅଭିଷେକ ପ୍ରସଙ୍ଗ ?

ହୈମବତୀ—ହଁ, ଭା'ର ! ଅସ୍ପଷ୍ଟ ମନେ ପଡ଼େ ଯେଉଁ ପ୍ରଜାଟି ଏଇ ଅଭିଷେକର ପ୍ରସ୍ତାବ ଅଗତ କରିଥିଲା, ଭା'ରି କଥା ।

ବିକ୍ରମ—ସେହି ପ୍ରଜା ହିଁ ଅଜର ଗୁପ୍ତ ମନ୍ତ୍ରଣା ବୈଠକରେ ଯୁବରାଜର ହତ୍ୟା ପ୍ରସ୍ତାବ, ଆଗତୁର ହୋଇ ବାଢ଼ିଥିଲା ।

ହୈମବତୀ—(ସଚକିତେ) ଏଁ । ହୁଏତ ସେଇ ଯେ ଶିଶୁଟିକି ହରଣଗୃହ କରି ଯୋଗ ଯିବାକୁ ଆଗତର ନହେବ—ତା କିଏ କହିବ ?

( ଚାଲିଗଲେ ଭିତରକୁ )

ବିକ୍ରମ—ହାଃ ହାଃ ହାଃ—ଧନ୍ୟ ତ ମାନବ ! ଆଉ ଅବସର ନାହିଁ, ଯାଏଁ—ସୁଡ଼ଙ୍ଗ ଦ୍ୱାର ଖୋଲି, ରାଜ୍ୟାନ୍ତରପ୍ରସ୍ଥାନ ବା ମହାପ୍ରସ୍ଥାନର ବାଟ ଉନ୍ମୁକ୍ତ କରି ରଖେ ।

ହୈମବତୀ—( ଏହି ସମୟରେ ବିହ୍ୱଳ ଭାବରେ ପ୍ରବେଶକରି ) ସ...ତ୍ୟଜିତ୍ ?—

( ଅ...ୟ ଆଡ଼େ ଖୋଜିବାକୁ ଲାଗିଲେ )

ବିକ୍ରମ—ଆଃ, ଏତିକି ବେଳୁ ଧୈର୍ଯ୍ୟ ଚ୍ୟୁତ ?—ଦେଖ ଭଲ କରି ଶୟନ କକ୍ଷରେ ।

ସୁଭଦ୍ରା—(ପ୍ରବେଶ କରି) ଶୟନ କକ୍ଷରେ ସତ୍ୟଜିତ୍ ନାହିଁ, ରାଜା !

ବିକ୍ରମ—ତେବେ ?

ସୁଭଦ୍ରା—ଯଥା-ସ୍ଥାନରେ—

ବିକ୍ରମ—ମାନେ ?

ସୁଭଦ୍ରା—ଯଜ୍ଞ-ବେଦିରେ—

ହୈମବତୀ—ତୁମେ ଯୋଗ ଆସିଛ ତ ?

ସୁଭଦ୍ରା—( ନୀରବ )

ବିକ୍ରମ—ବୁଝିଛି । ତୁମେଇ ଚୋରି କରିଚ ସତ୍ୟଜିତ୍‌କୁ ।

ସୁଭଦ୍ରା—ଚୋର ଠାରୁ ଛଡ଼ାଇ ନେଇଚି ସତ୍ୟଜିତ୍‌କୁ !

ବିକ୍ରମ—ସତ୍ୟ ଜି ଉ୍ ରାଜ-ସନ୍ତାନ - ସେଥିରେ ରାଜାର ପୂର୍ଣ୍ଣ ଅଧିକାର ।

ସୁଭଦ୍ରା—ସତ୍ୟଜିତ୍ ରାଜ୍ୟର ସମ୍ପଦ—ସେଥିରେ ରାଜ୍ୟର ପୂର୍ଣ୍ଣ ଦାବୀ ।

ବିକ୍ରମ—ବିଦ୍ରୋହୀ ! ( ଗୁପ୍ତଛୁରିକା ବାହାର କଲେ )

ସୁଭଦ୍ରା—ସାବଧାନ !

[ ତତ୍‌କ୍ଷଣାତ୍ ଛଦ୍ମବେଶୀ ଦୁଇଜଣ ବ୍ୟକ୍ତି ପ୍ରବେଶ ପୂର୍ବକ ରାଜାର ଦୁଇ ପାର୍ଶ୍ୱରେ ଠିଆ ହେଲେ ଓ ସୁଭଦ୍ରାର ଇଙ୍ଗିତ କ୍ରମେ ପ୍ରଣାମ ପୂର୍ବକ ପ୍ରସ୍ଥାନ କଲେ ]

ବିକ୍ରମ—ବିଦ୍ରୋହୀ-ଦଳପତି, ତୁମେ ?

ସୁଭଦ୍ରା—ସେହି ଦଳପତିର ଆଦେଶ, ତୁମେ ଅକ୍ଷରେ ଅକ୍ଷରେ ପାଳିବାକୁ ପ୍ରସ୍ତୁତ ହୁଅ ରାଜା—ତୁମେ ମଧ୍ୟ ରାଣୀ—

ହୈମବତୀ—( ଏତେବେଳଯାଏ କାଠ ପାଲଟି ଯାଇଥିଲେ—ଏହି ସମ୍ବୋଧନରେ ହଠାତ୍ ଭାଙ୍ଗିପଡ଼ି କହିବାକୁ ଲାଗିଲେ ) ଭଉଣୀ ! ତୁମେ ନା ସତ୍ୟଜିତ୍‌ର ମା ?—ତୁମେ ନା ନିଜର ଏକମାତ୍ର ସନ୍ତାନକୁ ବଳୀ ଦେଇ ସତ୍ୟଜିତ୍‌ର ପ୍ରାଣ ରକ୍ଷା କରିଚ ?—ତୁମେଇ ନା ସତ୍ୟଜିତ୍‌ର ଭବିଷ୍ୟତ ଗଢ଼ି ଠିଆ କରିବା ପାଇଁ ନିଜକୁ ଓ ନିଜର ସମସ୍ତ ଉତ୍ସର୍ଗ କରିଚ ?—ତୁମେ ନା ଜଗତକୁ ଗୋଟାଏ ଆଦର୍ଶ ବାଢ଼ିଚ ?—

ସୁଭଦ୍ରା—ଯଦି ଏହା ଆଦର୍ଶ ମଣିଥାଅ ରାଣୀ ! ତେବେ ତୁମେ ବି ଜନନୀ ହୋଇ ଏଥିବଳି ଆଦର୍ଶ ଜଗତକୁ ବାଢ଼ିବ ଆଜି—ନିଜର ଏକମାତ୍ର ସନ୍ତାନ ସତ୍ୟଜିତ୍‌କୁ ବଳୀ ଦେବ, ଶତ ଶତ ସତ୍ୟଜିତ୍‌ର ପ୍ରାଣରକ୍ଷା ହେତୁ—ନିଜକୁ ଓ ନିଜର ସମସ୍ତ ଉତ୍ସର୍ଗ କରିବ, ରାଜ୍ୟର ଭବିଷ୍ୟତ ଗଢ଼ି ଠିଆ କରିବାକୁ ।

ବିକ୍ରମ—ଚମତ୍କାର !······ବ୍ୟକ୍ତିଗତ ଆକ୍ରୋଶର ଦାଉ ସାଧିବାର ଏ ଅଭିନବ ଚକ୍ର ସ୍ୱୟଂ ଚକ୍ରଧାରୀଙ୍କୁ ମଧ୍ୟ ବିସ୍ମିତ କରିବ । ଯାଉ, କାର୍ଯ୍ୟ ସିଦ୍ଧି ପରେ ପୁଣି ଏଠାକୁ ଆସିବାର କାରଣ ?—ବ୍ୟଙ୍ଗ ?

ସୁଭଦ୍ରା—ପ୍ରୟୋଜନ ।

ବିକ୍ରମ—ବିଶେଷ ?

ସୁଭଦ୍ରା—ଯଥାର୍ଥ—ଶୁଣ ରାଜା ରାଣୀ ଦୁହେଁ—କାଲି ଯଜ୍ଞର ଶେଷ ଆହୁତ—ସୂର୍ଯ୍ୟାସ୍ତ ପୂର୍ବରୁ ମହାବଳିଦାନ ।

ବିକ୍ରମ—( ଉଚ୍ଚହାସ୍ୟ ସହ ) ରାଜ-ଶିଶୁ ସଙ୍ଗେ ରାଜା ରାଣୀ ଉଭୟଙ୍କର—ଆମ୍ଭେ ପ୍ରସ୍ତୁତ ।

ହୈମବତୀ—( ଜୋର ଦେଇ ) ସାନନ୍ଦେ ।

ସୁଭଦ୍ରା—ପରିହାସ ନୁହେଁ । ଶୁଣ, କାଲିର ଅନୁଷ୍ଠାନ ଗୋଟିଏ ବିଶେଷ ଅନୁଷ୍ଠାନ—ଏହି ଉପଲକ୍ଷରେ ତୁମେ ରାଜା ରାଣୀ ଯାଜ୍ଞିକର ଆସନ ଗ୍ରହଣ କରିବ—ଘୃତାହୁତ ଅଗ୍ନେ, ସତ୍ୟଜିତଙ୍କୁ ଧାରଣ କରିବ—ବାଦ୍ୟର ସମାରୋହ, ଜନତାର କୋଳାହଳ ଏକ ଅପୂର୍ବ ପରିବେଶ ସୃଷ୍ଟି କରିଥିବ— ସେହି ସମାବେଶ ମଧ୍ୟରେ ଉଭୟ, ସ୍ଥିର, ଚିତ୍ତରେ, ଧୀର ହସ୍ତରେ ଯଜ୍ଞ-ବଳିକୁ ଯଜ୍ଞର ପ୍ରଜ୍ୱଳିତ ହୋମ ଶିଖାରେ ଶେଷ ଆହୁତି ପ୍ରଦାନ କରିବ ।

( ରାଜା-ରାଣୀ କେମିତି ହତଜ୍ଞାନ ହୋଇ ଯାଇଥିଲେ )

---

## ସପ୍ତମ ଦୃଶ୍ୟ

—ପ୍ରାନ୍ତର—

[ ବିଦ୍ୟାଧର ସ୍ୱପ୍ନୋତ୍ଥିତବତ୍ ଧାଇଁ ଆସିଲେ—ସେତେବେଳକୁ ରାତି ପାହିଯାଇ ଥାଏ ]

ବିଦ୍ୟାଧର—ମା ! ମା ! ଗୋଟିଏ ଆଖିରେ ଭର୍ତ୍ସି ଚାହୁଁଛୁ—ଆଉ ଗୋଟିଏ ଆଖିରେ ଆତୁରିଭାବେ ଡାକୁଛୁ—ମୁଁ କର୍ତ୍ତବ୍ୟ ଭୁଲୁଛି, ଏଥିପାଇଁ ତିରସ୍କାର ବାଣୀ—ମୋତେ କୋଳକୁ ନେବ, ଏଥିପାଇଁ ଆକୁଳ ଆହ୍ୱାନ ।—ମୁଁ ଆଉ ଦଣ୍ଡେ ରହିବି ନାହିଁ—ରାତି ପାହି ଗଲାଣି—ମୁଁ ଏହିକ୍ଷଣି ଚିତ୍ରଲତା ଓ ରାଜାଙ୍କ ମେଲାଣି ମାଗି କଳିଙ୍ଗ ଅଭିମୁଖେ ଯାତ୍ରା କରିବି । ମା ! ମା !

( ଗମନୋଦ୍ୟତ )

( ରଙ୍ଗଲତା ପ୍ରବେଶ କଲା ଚୈତ୍ରିକ ବେଶ ପରିଧାନ କରି )

ରଙ୍ଗଲତା—ବାଃ ! ତୁମେ ଏଠି ?

ବିଦ୍ୟାଧର—ରଙ୍ଗଲତା ! ଶେଷରାତ୍ରିର ସ୍ୱପ୍ନ ସତ୍ୟ ହୁଏ, ଲୋକେ କହୁଥାନ୍ତି ।—ମୁଁ ଆଜି ଶେଷ ରାତିରେ ସ୍ୱପ୍ନ ଦେଖିଛି, ମୋର ମୁକ୍ତାଭାଇ ବିପନ୍ନ ମୋର ମାଆ ଡାକୁଛନ୍ତି—ସାରା କଳିଙ୍ଗରେ ଗୋଟିଏ ବିପ୍ଳବର ଦାବାନଳ—

ରଙ୍ଗଲତା—ତା' ବେଶ୍ ତ ! ପୂଜାର ସୁବର୍ଣ୍ଣ ଥାଳ-ଆସ୍ଥାନ ତ ଉଦ୍ଧାର ହେଲା—ଆଉ ଭାବନା କ'ଣ ?—ଏମିତି ଅଧୈର୍ଯ୍ୟ ହେଲେ ବାଟ ଭୁଲିବ ସିନା !

ବିଦ୍ୟାଧର—ତୁମେଇ ମୋର ଧୈର୍ଯ୍ୟ—ତୁମେଇ ମୋର କାର୍ଯ୍ୟର ଏକମାତ୍ର ସହାୟ । ( ରଙ୍ଗଲତା ଚାହିଁ ରହିଲେ ) ଏ କ'ଣ ? ତୁମର ଆଖିର ଦୀପ୍ତି ଯେମିତି ହଠାତ୍ ଲିଭିଗଲା—ମୁଖର ଲାବଣ୍ୟ ହଠାତ୍ ଉଭେଇ ଗଲା—କଥା କ'ଣ ?

ରଙ୍ଗଲତା—( ହସ ଖେଳାଇ ) ମୁଁ ତ ଆଉ ଫେରି ପାରେ ନା !

ବିଦ୍ୟାଧର—ଲତା ! ( ଅଭିଭୂତ ହୋଇ ଧାରଣ କଲା )

ରଙ୍ଗଲତା—ଅଭିଭୂତ ହେବ ନା । କର୍ତ୍ତବ୍ୟ !—ତୁମେ ବାହୁଡ଼ିବ ତୁମ ପଥରେ—ମୁଁ ବାହୁଡ଼ିବି ମୋ ପଥରେ ।

ବିଦ୍ୟାଧର—ତୁମେ ପୁଣି ଲେଉଟିବ କେଉଁଠିକି ?

ରଙ୍ଗଲତା—ଯେଉଁ ଓଁ କାଳି ଭାଙ୍ଗିଛନ୍ତି ମୁଁ ସତ୍ୟନାରାୟଣଙ୍କ ପୂଜା ଉପକରଣ ଉଦ୍ଧାର କରିଛି—ସେଇଠାକୁ ।

ବିଦ୍ୟାଧର—ସେ ଅପନ୍ତରିଆ ବଣବୁଦା ଯାଗାକୁ ଯାଇ ଲାଭ ?

ରଙ୍ଗଲତା—ତୁମକୁ ଏ ଯାଏ କହି ନାହିଁ । ତୁମେ ଗଛ କୋରଡ଼ରେ ଜନିଷ ଗୁଡ଼ିକ ଲୁଚିଥିଲା ବେଳେ ବାପା ଓଡ଼କରେ ଥିଲେ—ସେଠାରୁ ସେ ହରିଡ଼ାଗୁଲ କରି ସେଗୁଡ଼ିକ ଘେନି ପଳାଇ ଥିଲେ ।—ଛଅଭାଇ ସେହି ସୁରାଗ ପାଇ ତାଙ୍କ ପଛରେ ଗୋଡ଼ାଇଲେ—ସେହି ଦୁଙ୍କା ସ୍ଥାନରେ ହେଲା ଭେଟ ।—ପହିଲେ ବାପ ପୁଅଙ୍କ ମଧ୍ୟରେ ଲାଗିଲା ଟଂଠାପଠା—ବାପା ମଲେ ।—ତା' ପର, ଚୋରର ତସ୍କରଙ୍କ ମଧ୍ୟରେ ଯେପରି ସଚରାଚର ହୋଇଥାଏ, ସେହିପରି ବାଣ୍ଟ ବୁଝା ଘେନି

ଭାଇ ମାନଙ୍କ ମଧ୍ୟରେ ହେଲା ଭଲ ଗୋଳ—
ଭାଇମାନେ ବି ମଲେ ।

ବିଦ୍ୟାଧର—ଏତେ ସବୁ ତୁମେ ଜାଣିଲ କିମିତି ?

ରଙ୍ଗଲତା—ହଠାତ୍ ହାଡ଼ କଣ୍ଠା କୁଢ଼ କୁଢ଼ ଦେଖି—
ଆଜ୍ ମୁଣ୍ଡମାଳ ଗଣି । ସେଥିରେହିଁ ହୋଇଥିଲା, ଠାକୁର ଟିକେ ଖୋଜ ଦେଖିବାର ଅସଲ୍ ସଙ୍କେତ ।

ବିଦ୍ୟାଧର—ଆଜ୍ ସେଗୁଡ଼ିକ ଉପରେ ଗୋଟିଏ ହୁଙ୍କା ଠିଆ ହୋଇ ଯାଇଥିଲା···ଆଶ୍ଚର୍ଯ୍ୟ !

ରଙ୍ଗଲତା—କେତେ ବର୍ଷ ତଳର ଘଟଣା, ଟିକିଏ ଖିଆଲ୍ କଲ ?

ବିଦ୍ୟାଧର—ମୋର ତ ମନେ ହୁଏ, ଅନ୍ୟ କେହି ଯେମିତି ଠଉର ନ ପାଇବେ—ସେହି କଥାକୁ ଏ ସତ୍ୟ-ଗୋସାଇଁଙ୍କ ମାୟା ।

ରଙ୍ଗଲତା—ତା'ବି ଆଶ୍ଚର୍ଯ୍ୟ ନୁହେଁ ।

ବିଦ୍ୟାଧର—ହେଲେ, ତୁମେ ଆଜ୍ ସେଠାକୁ ଯିବ ଚାହିଁକି ? କରିବ କ'ଣ ?

ରଙ୍ଗଲତା—ତୁମେ ଯିମିତି ତୁମ ମା'ର ଅକୁଳ ଡାକ ଶୁଣୁଛ, ମୁଁ ଯିମିତି ମୋର ମୃତ ପିତା ଆଜ୍ ଭାଇମାନଙ୍କର କଲବଲ ଆତ୍ମାର ଡାକ ଶୁଣୁଛି । ସେମାନେ ତୁହାଇ ତୁହାଇ କହୁଛନ୍ତି—ରଙ୍ଗୀ, ଏହି ହୁଙ୍କା ସ୍ଥାନରେ ରହିଛି ଆମର ସାରା ଜୀବନର ଲୁଣ୍ଠିତ ଧନ ରତ୍ନ—ତୁ ସେଗୁଡ଼ିକୁ ଉଦ୍ଧାର କର—ଅଭାବଗ୍ରସ୍ତ, ରୋଗ ପୀଡ଼ାଗ୍ରସ୍ତ ଦୁନିଆକୁ ବାଣ୍ଟିଦେ—ଦରିଦ୍ର ନାରାୟଣ ସେବାରେ ବ୍ରତୀ ହ'—ଆମର ମୁକ୍ତିର ବାଟ ଫିଟେଇ ଦେ ।

ବିଦ୍ୟାଧର—ତୁମର ଏହି ସେବା-ବ୍ରତରେ ମୁଁ କ'ଣ କିଛି ଭାଗ ନେଇ ପାରେ ନା ?

ରଙ୍ଗଲତା—ନାଁ—ଦୁନିଆର ହିତ ପାଇଁ ଏକ ଦିଗରେ ଯିମିତି ରହିଛି କର୍ମ ସାଧନା, ଅନ୍ୟ ଦିଗରେ ସିମିତି ରହିଛି ପୂଜା ଅର୍ଚ୍ଚନା—କେହି କାହାରଠୁ ଊଣା ନୁହେଁ, ବରଂ ଦୁଇଟିର ଯୋଗ ଫଳରେ ମାନବର କର୍ତ୍ତବ୍ୟ ସମ୍ପୂର୍ଣ୍ଣ—ଜୀବନ ସାର୍ଥକ । ସୂର୍ଯ୍ୟ ଦେଖା ଦେଲେଣି, ଆଉ ବିଳମ୍ବ ନୁହେଁ—ବିଦାୟ ।

[ ଭିତରକୁ ଯାଇ ସୁନାର ତାର-ଅସ୍ଥାନ ଆଣି ବିଦ୍ୟାଧରଙ୍କୁ ଦେଇ ପ୍ରଣାମ କରି ଚାଲିଗଲେ—ଭିତରୁ ସଙ୍ଗୀତ ଶୁଣାଗଲା ]

ଏ ଯେ ବିଦାୟ ନୁହଁ ରେ
ହୃଦୟ ଗହନେ···
ହୃଦୟର ବନ୍ଧନମୟ
ଆତ୍ମାର ମହାମିଳନ ଛନ୍ଦେ
ମୁକ୍ତିର ପରଦାହ ·····ଏ ଯେ

---

## ଅଷ୍ଟମ ଦୃଶ୍ୟ

—ଯଜ୍ଞ ପ୍ରାଙ୍ଗଣର ଏକାଂଶ—

[ ବାରମର ଦଶବର୍ଷର ଶିଶୁ, ଫୁଲ ଆଭରଣରେ ଦେହ ଗୋଟାକ ମଣ୍ଡିତ—ସୁଭଦ୍ରା ସଙ୍ଗେ ଗପ କରୁ କରୁ ପ୍ରବେଶ କଲେ—ହସ ହସ ମୁଖ—ସରଳ ଭାବ ]

ସତ୍ୟକାମ୍—ମୁଁ ଆଜ୍ ସୁନା ଗହଣା ପିନ୍ଧିବି ନି, ମା !

ସୁଭଦ୍ରା—ନାଁ······

ସତ୍ୟକାମ୍—ସବୁ ଦିନେ ଇମିତି ଫୁଲ ଗହଣା ପିନ୍ଧିବି ।

ସୁଭଦ୍ରା—ହଁ—

ସତ୍ୟକାମ୍—ଏ ଖୋଲା ସ୍ଥାନ—କି ସୁନ୍ଦର ମା ! ମୋ ମନ କେତେ ଆଡ଼େ ଖେଳେଇ ଯାଉଛି—ମା ! ଆମେ ସବୁ ଯଜ୍ଞ ଦେଖିବାକୁ ଯାଉଁଥାଏ—ଚାଲ ମା ! ଠିଆ ହେଲ୍ ତ ?

ସୁଭଦ୍ରା—ହଁ—ଚାଲ ।

ସତ୍ୟକାମ୍—ମା ! ଯଜ୍ଞ କଲେ କ'ଣ ହୁଏ ?

ସୁଭଦ୍ରା—ଠାକୁରେ ଖୁସି ହୁଅନ୍ତି—ବର୍ଷା ହୁଅନ୍ତି—ଫସଲ ହୁଏ—ଲୋକେ ଖାଇପିଇ ବଞ୍ଚନ୍ତି ।

ସତ୍ୟକାମ୍—ମା !

ସୁଭଦ୍ରା—ବାବା !

ସତ୍ୟଜିତ୍—ତୁମେ କହୁଥିଲ, ଆମ ରାଜ୍ୟର ଲୋକେ ନଖାଇ ମରୁଛନ୍ତି ।—ତୁମେ ମୋ ଖାଇବାଟିକ ତାଙ୍କୁ ବାଣ୍ଟି ଦଅଇ ମା—ଦେବ ?—କୁହ ?

ସୁଭଦ୍ରା—( ଆଖି ଛଳ ଛଳ ହୋଇଗଲା )

ସତ୍ୟଜିତ୍—ଛି, ତୁମେ କାନ୍ଦୁଛ ? ଆମେ ଅନ୍ୟପାଇଁ କରୁ ପରପାଇଁ—ନିଜ ପାଇଁ ନୁହେଁ । ପୂର୍ବରୁ ଏହି ସାର କଥାଟି ତୁମେ ପରା ମୋତେ ଶିଖାଇଛ ?

ସୁଭଦ୍ରା—( ଆତ୍ମସମ୍ବରଣ ପୂର୍ବକ ) ସତ୍ୟଜିତ୍ !

ସତ୍ୟଜିତ୍—ମା !

ସୁଭଦ୍ରା—ପ୍ରହ୍ଲାଦର ଗପ ପଢ଼ିଛ—ପ୍ରହ୍ଲାଦର କାମ କରିପାରିବ ?

ସତ୍ୟଜିତ୍—ପ୍ରହ୍ଲାଦ ନିଆଁକୁ ଡେଇଁଥିଲେ—ଏହି କଥା ତ ?

ସୁଭଦ୍ରା—ଆମର ରାଜଗୁରୁ କହୁଛନ୍ତି—ରାଜ୍ୟର ପ୍ରଜାମାନେ କହୁଛନ୍ତି, ଆଜି ଯେଉଁ ଯଜ୍ଞ ହେଉଛି ତା'ର ହୁତୁ ହୁତୁ ନିଆଁକୁ ତୁମେ ଡେଇଁଲେ ଠାକୁରେ ଖୁସି ହେବେ—ରାଜ୍ୟର ଦଶା ଫେରିବ । ତୁମେ ପାରିବ, ଏହା ସାରା ଦୁନିଆର ବିଶ୍ୱାସ ।

ସତ୍ୟଜିତ୍—ଆଉ ତୁମର ବିଶ୍ୱାସ ?

ସୁଭଦ୍ରା—ମୋର ବିଶ୍ୱାସ ?—ମୁଁ—ମା—

ନେପଥ୍ୟେ—(ପ୍ରଜାଗଣ) ବଳିର ସମସ୍ତ ଉପସ୍ଥିତ, ମା !

ସୁଭଦ୍ରା—ବଳି—ବଳି—ଛଣିଦଅ ତୁମର ବଳି !—ପ୍ରଜାନୁରଞ୍ଜନ ସାର କରି ରାଜା ହୁଏଛ ତାଙ୍କର ଏକମାତ୍ର ଉତ୍ତରାଧିକାରୀକୁ ତ୍ୟାଗ କରିପାରନ୍ତି—ପତିଧର୍ମ ସାର କରି ରାଣୀ ହୁଏଛ ତାଙ୍କର ଏକମାତ୍ର ଗର୍ଭଜାତ ସନ୍ତାନକୁ ଉତ୍ସର୍ଗ କରି-ପାରନ୍ତି—ମାତ୍ର, ମୁଁ—ଏଇ ନରମେଧ ଯଜ୍ଞର ସାଫଲ୍ୟ ଦଗରେ ଘାତକର ପ୍ରଧାନ ଅସ୍ତ୍ର ହୋଇ ଥିଲେ ହେଁ—ରକ୍ତ ମାଂସର ଦେହ ଯେବେ ଆତଜାତ କରିଛି ଯେଉଁ ଶିଶୁକୁ, ଅତି ଯତ୍ନରେ ବଢ଼ାଇଛି କୁଢ଼ାଇଛି ଯାହାକୁ—ତା'ଠାରେ ଆଜ ଅସ୍ତ୍ରୋ-ପଚାର କରିବ ?—ଅସମ୍ଭବ !—ବିଦ୍ୟାଧର ମୋର ଏକମାତ୍ର ସନ୍ତାନ । ସେ ଯଦି ଫେରି ଆସେ—ଆଉ ତାକୁ ବଳି ଦେଲେ ଯଦି ଯଜ୍ଞ ସଫଳ ହୁଏ, ତେବେ ତାହା ବରଂ ମୁଁ ସାନନ୍ଦେ କରିବାକୁ ପ୍ରସ୍ତୁତ ଅଛି—ତଥାପି ସତ୍ୟଜିତ୍‌କୁ ମୁଁ କିଛିନା—ବକ୍ଷଚ୍ୟୁତ କରି ପାରିବି ନା ।

ନେପଥ୍ୟେ ବ୍ରାହ୍ମଣ—ଜନନୀ । ଅଙ୍ଗୀକାର ଭୁଲୁଛ ତ ?

ସୁଭଦ୍ରା—( ସରୋଷେ ) ଗୁରୁଦେବ !

ବ୍ରାହ୍ମଣ—( ନେପଥ୍ୟେ ) କର୍ତ୍ତବ୍ୟ !···ଗୀତାର ସାର ଉକ୍ତି—ଜୀବନର ଗତି ମୁକ୍ତି—ଥରେ ସ୍ମରଣ କର !

ସୁଭଦ୍ରା—ଓଃ—( ଦ୍ୱନ୍ଦ ଅନୁଭବ କଲେ )

ସତ୍ୟଜିତ୍—( ହସି ହସି ) ମା ! ତୁମେ ମୋର ଯିମିତି ମା—ଏମାନଙ୍କର ବି ସିମିତି ମା···

ରାଣୀ—( ନେପଥ୍ୟେ ) ଛାଡ଼ି ଦିଅ···ଛାଡ଼ି ଦିଅ ମୋତେ ।

[ ରାଜା ରାଣୀ ପ୍ରବେଶ କଲେ—ଉଭୟଙ୍କର ଯାଜ୍ଞିକର ବେଶ—ରାଜାଙ୍କ ହସ୍ତରେ ଯଜ୍ଞ ସ୍ରୁବ ]

ରାଜା—( ବାଧା ଦେଇ ) ରାଣୀ ! ଦୁର୍ବଳ ହୁଅ ନାହିଁ ।

ରାଣୀ—ରାଜା !

ରାଜା—ମୁଁ ରାଜା—ରାଜସଭାରେ ରାଜଦଣ୍ଡ ଧାରଣ କରିବାକୁ ଯେଉଁପରି ସବଳହସ୍ତ—ଯଜ୍ଞ ସଭାରେ ଯଜ୍ଞ-ସ୍ରୁବ ଧାରଣ କରିବାକୁ ସେହିପରି ସବଳହସ୍ତ ।

ସତ୍ୟଜିତ୍—ମୁଁ ବି ଯୁବରାଜ ।

ରାଣୀ—ସତ୍ୟଜିତ୍ ।

ସତ୍ୟଜିତ୍—ମା ! କର୍ଣ୍ଣରାଜାର ଉପାଖ୍ୟାନ ପଢ଼ି ନ ?

ରାଜା ଓ ରାଣୀ—ଥାଉ, ଥାଉ—

ସତ୍ୟଜିତ୍—ତୁମେ ଉଠିବ ନା—ଅଙ୍ଗରାଜ ଯିମିତି ବ୍ରାହ୍ମଣଙ୍କ ସତ୍ୟପାଳି, ବୃଷକେତନକୁ କରତରେ କାଟିଥିଲେ, କଳିଙ୍ଗରାଜ ସିମିତି ପ୍ରଜା ସତ୍ୟ ପାଳି ସତ୍ୟଜିତ୍‌କୁ ନିଆଁରେ ପକାଇ ଦେବେ ।—ପୁଅକୁ ବଳି ଦେଇ ଦାତା କର୍ଣ୍ଣ ଖୁଆଇଥିଲେ ଗୋଟିଏ ଭିକାରୀ ପେଟକୁ—ଆଉ ରାଜା ବିକ୍ରମଜିତ୍ ଖୁଆଇବେ ରାଜ୍ୟଗୋଟାକର ଭିକାରୀ ପେଟକୁ ।

ରାଜା—ସତ୍ୟଜିତ୍ !

ସତ୍ୟଜିତ୍—ଓଁ ହ୍ରୁଁ···ସତ୍ୟନାରାୟଣଙ୍କ ଡାକ ମା ! ( ସୁଭଦ୍ରାଙ୍କ ପ୍ରତି ) ମା ! ତୁମେ ସତ୍ୟନାରାୟଣଙ୍କ ପାଇଁ ଭଜନ ଗାଅ ତ—ମୁଁ ବି ତୁମ ସାଙ୍ଗରେ ଆଜି ଗାଇବି !

—ଭଜନ—

ସତ୍ୟନାରାୟଣ···ସତ୍ୟନାରାୟଣ···ସତ୍ୟନାରାୟଣ
ଭଜ ଭଜରେ ମନ ସତ୍ୟନାରାୟଣ ।
ନାମ ପିୟୂଷ କର ପାନ ଅନୁକ୍ଷଣ
କୋଟି ତପନ ତାପ ନାଶେ ଅପରୂପ,
ରୂପ ଶୋଭା ଅନୁପମ
ପ୍ରସନ୍ନ ଶୁଭ୍ରତର ମୟୂଖ ସୁଧାକର,
କଣ୍ଠେ କଉସ୍ତୁଭ ମାଳା ମନୋରମ । ୧ ।
ସତ୍ୟ ସାରଳ୍ୟ କରୁଣା ଅହିଂସାର,
ଦିବ୍ୟ ଅବତାର ଧରା-ଭାର-ହର
କାରଣ କର ପ୍ରଭୁ ଶରଣାଗତ ଜନେ,
ଅଭୟ ବର ଦାନେ ସଦା ମୁକ୍ତ କର । ୨ !
ଆରତର କାତର ଉରତର ଡାକେ···
ଟଳଟଳ ଭବ ଆସନ ଦୁଃଖନାଶନ,
ତୁରିତ ତୂରିତ ହରି ପୂରିତ ବିଶ୍ୱପୁରୀ
ଝରିତ ମଙ୍ଗଳ ମହିମାର କେତନ,
ଦିଅ ଦରଶନ ପ୍ରଭୁ ହେ······
ଦିଅ ଦରଶନ ପ୍ରଭୁ ହେ······
ଦିଅ ଦରଶନ······
(ପ୍ରଭୁ) ସତ୍ୟନାରାୟଣ·· ସତ୍ୟନାରାୟଣ ।୩।

---

## ନବମ ଦୃଶ୍ୟ

—ଯଜ୍ଞ ସ୍ଥଳ—

[ ପ୍ରଜାପାଠକ—ଗୁରୁଦେବ—ସମସ୍ତେ ବଳିର ଅପେକ୍ଷାରେ ଠିଆ ହୋଇଥିଲେ । ହୋମାଗ୍ନି ଧୂ ଧୂ ହୋଇ ଜଳୁଥାଏ — ଗୀତର ମୂର୍ଚ୍ଛନାରେ ନାରାୟଣଙ୍କ ଅବଭାବ—ପାଣି ପବନରେ ଯଜ୍ଞ ଛାଇଁ ଲଭୁଗଲା ]

ସୁଭଦ୍ରା—ଜୟ ଶ୍ରୀ ସତ୍ୟନାରାୟଣ !

ସମସ୍ତେ—ଜୟ ଶ୍ରୀ ସତ୍ୟନାରାୟଣ !

ବିଦ୍ୟାଧର—( ବ୍ୟସ୍ତଭାବରେ ସୁବର୍ଣ୍ଣ ତୀର ଓ ଅସ୍ଥାନ ଘେନି ପ୍ରବେଶକରି ) ମା ! ମା !

ସୁଭଦ୍ରା—ବିଦ୍ୟାଧର !

[ ବିଦ୍ୟାଧର ସୁବର୍ଣ୍ଣତୀର ଓ ଅସ୍ଥାନ ରାଜାଙ୍କ ହସ୍ତକୁ ବଢ଼ାଇ ଦେଲେ—ରାଜା ବିଦ୍ୟାଧରକୁ କୋଳକୁ ଟାଣି ନେଲେ ]

ସୁଭଦ୍ରା—( ସତ୍ୟଜିତ୍ ପ୍ରତି ) ଏଇ ତୋର ମୁକା ଭାଇନା—

ସତ୍ୟଜିତ୍—ମୋର ମୁକା ଭାଇନା ! ( ବିଦ୍ୟାଧର କୋଳକୁ ଯାଇ ) ଜୟ ଶ୍ରୀ ସତ୍ୟନାରାୟଣ !

ରାଜା—ଭାଇମାନେ ! ଯେଉଁ ସରଳତାରେ ନାରାୟଣ ସଦା ପ୍ରସନ୍ନ—ସେହି ସରଳ ବିଶ୍ୱାସ ଘେନି, ଆସ—ଆମେ ରାଜା ପ୍ରଜା ମିଳି ଏହି ଯଜ୍ଞ ସ୍ଥାନରେହିଁ କରିବା ଶ୍ରୀ ସତ୍ୟନାରାୟଣଙ୍କ ପୂଜା ! ଜୟ ଶ୍ରୀ ସତ୍ୟନାରାୟଣ !

ଗୁରୁଦେବ—ମୋ'ର ମନୋବାଞ୍ଛା ସିଦ୍ଧ ହୋଇଛି !

ସମସ୍ତେ—ଜୟ ଶ୍ରୀ ସତ୍ୟନାରାୟଣ !

× × × ×

[ ଏହି ସମୟରେ ଗୋଲକରେ ଥାଇଁ ନାରାୟଣ ନାରଦଙ୍କୁ ସସ୍ମିତ ବଦନରେ ପୂଜାସ୍ଥାନ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ ]

ନାରାୟଣ—ଏଥର ବୁଝିଲ ତ, ନାରଦ ?

ନାରଦ—ନାରାୟଣ ! (ପ୍ରଣାମ କଲେ)

ନାରାୟଣ—ପୂଜା ବଢ଼ିଛି—ସିରଣି ବଣ୍ଟା ଚାଲିଛି କେମିତି, ଟିକେ ଦେଖ !

ନାରଦ—( ଢୋକ ଗିଳିଲେ )

ନାରାୟଣ—ସେ କ'ଣ ?—ସିରଣିକୁ ବାସନା କରି ଢୋକ ଗିଳୁଛ ତ ?

ନାରଦ—ହେଲେ, ଠାକୁରଙ୍କ ସିରଣି···ଠାକୁରେ ଯେ ତା'ର ବାସନାରେ ରସନା ଲହ, ଲହ କରିବେ, ତା' ଠିକ୍ ନୁହେଁ ତ···

[ ନାରାୟଣ ସସ୍ମିତ ଦୃଷ୍ଟିପାତ କଲେ— ନାରଦ ପୁଣି ପ୍ରଣାମ କଲେ ]

---

## ଦଶମ ଦୃଶ୍ୟ

—ଶୂନ୍ୟ ପରଦା—

[ ପାଲର ଗାୟକ ଚିନି ବଜାଉ ବଜାଉ ଓ ଗାଉ ଗାଉ ଚଅଁର ମୁଠା ଧରି ପ୍ରବେଶ କଲେ ]

ଗାୟକ—ପୂଜା ସାରି ସିରନି ବାଣ୍ଟିଲ ଜନେ ଜନେ ।
ଦେଖିଅଁ ଆନନ୍ଦ ପ୍ରଭୁ ହଇଲେନ ମନେ ॥
ଅଜକାର ମତ ପ୍ରଭୁ ଶୁଖ ଅବସର
ଅରଦନ ପାଇବ ହେ ଗୀତେର ଉତ୍ତର ॥
ଆମି ମୂଢ଼ମତି ହୀନ କବା ନାମ ଜାନି ।
ଏହିରୂପେ ଯତ ପାଲି ଅପୂର୍ବ କାହିନୀ ॥
ଯାଁର ଘରେ ହୟ ପୂଜା ସାହାବର ନାମ ।
ବଢ଼ାଏ ଦୌଲତ ଆର ଫତେ କରେ କାମ ॥
ସଭା ମଧ୍ୟେ ଆର ବସି ଆଛ ଯତ ଜନ ।
ସବାକାର ହବେ ସିଦ୍ଧ ମନେର ଭାବନ ॥
ଶ୍ରୀ କବି କର୍ଣ୍ଣେତେ ଗାଏ ନାରାୟନ ପାଏ ।
ହରି ହରି ବୋଲ ସର୍ବେ ପାଲି ହଇଲ ସାଏ ॥

—ହରିବୋଲ—

—ଯବନିକା—

# ଭୂମିକା

ପ୍ରଥମ ସଂସ୍କରଣଟି ଯେଉଁ ପାଣ୍ଡୁଲିପିରୁ ମୁଦ୍ରିତ, ତାହା ମୁଁ ପୁନଃପାଠ ଓ ସଂଶୋଧନ କରିପାରି ନ ଥିବାରୁ, ସେହି ସଂସ୍କରଣରେ ଅମାର୍ଜନୀୟ ପ୍ରମାଦ ରହି ଯାଇଥିଲା । ଏଥିପାଇଁ ପାଠକ, ତଥା ଅଭିନୟର ଦର୍ଶକ-ବର୍ଗ ମୋତେ କ୍ଷମା ଦେବେ । ଏହି ସଂସ୍କରଣଟି ଯଥା ସମ୍ଭବ ନିର୍ଭୁଲ ହୋଇଛି ବୋଲି ମୋ'ର ବିଶ୍ୱାସ ।

ବର୍ତ୍ତମାନ ଯୁଗରେ ପୌରାଣିକ ନାଟକର ପ୍ରୟୋଜନ ନାହିଁ ବୋଲି ଅନେକଙ୍କ ଧାରଣା । କିନ୍ତୁ, ଗୋଟାଏ ଦିଗରୁ ବିଶେଷ ପ୍ରୟୋଜନ ଅଛି ବୋଲି ମୁଁ ମନେ କରେ ।

ସ୍ୱାଧୀନତା ହାସଲ କଲାପରେ ଆମର ସମାଜ ଭଙ୍ଗା-ଗଢ଼ା ମଧ୍ୟଦେଇ ଗତି କରୁଛି । ଯେଉଁ କୁସଂସ୍କାର ପ୍ରଭାବବଶତଃ ଆମର ସଂସ୍କୃତି ନିଷ୍ପ୍ରଭ ଓ ପ୍ରାଣ-ପ୍ରାଚୁର୍ଯ୍ୟ ରହିତ ହୋଇ ପଡ଼ୁଛି, ତଥା ସମାଜରେ ନାନା ବିଶୃଙ୍ଖଳା ଉପସ୍ଥିତ ହୋଇଛି, ତାହା ଆମକୁ ନିର୍ମୂଳ କରିବାକୁ ହେବ । ତା' ନ ହେଲେ ଆମର ଅଗ୍ରଗତି ସୁଦୂରପରାହତ; କାରଣ ପ୍ରତ୍ୟେକ ଦେଶ, ବା ଜାତିର ଜାତୀୟତାବିକାଶ ତା'ର କୃଷ୍ଟି, ସଂସ୍କୃତିକୁ ଭିତ୍ତିକରି ସମ୍ଭବପର ହୋଇଥାଏ । ପୁଣି ଯୁଗ ସଙ୍ଗେ ସାମଞ୍ଜସ୍ୟ ରଖି ଆମର ସମାଜ ଗଢ଼ିବାକୁ ହେବ । ସେଥିପାଇଁ ଯୁଗୋପଯୋଗୀ ନାଟକର ପ୍ରୟୋଜନ । ସୁତରାଂ ସାମାଜିକ ନାଟକର ପ୍ରୟୋଜନୀୟତା ବିଶେଷ ଭାବରେ ରହିଛି,—ଏହା ସ୍ୱୀକାର୍ଯ୍ୟ । ମାତ୍ର, ଲୋକଶିକ୍ଷାଦିଗରୁ ବିଚାର କଲେ, ଯୁଗର ଚିନ୍ତାଧାରା-ବିଶିଷ୍ଟ, ଜନପ୍ରିୟ କଥାବସ୍ତୁ ସମ୍ବଳିତ, ଐତିହ୍ୟ ସଂପନ୍ନ ନାଟକର ବିଶେଷ ଆବଶ୍ୟକ । ଏହି ପରିପ୍ରେକ୍ଷିରେ, ପୌରାଣିକ ନାଟକର ସ୍ଥାନ ରହିଛି ସବୁରି ଉପରେ ।

'ଜାନକୀ' ନାଟକରେ ମୁଁ ଯୁଗର ପ୍ରେରଣା, ଜାତୀୟ ପରମ୍ପରା, ତଥା ମନସ୍ତତ୍ତ୍ୱ ବିଶ୍ଳେଷଣ ପ୍ରତି ଯଥାସମ୍ଭବ ଦୃଷ୍ଟିଦେଇଛି । ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ ଯୋଗସୂତ୍ର ଅକ୍ଷୁର୍ଣ୍ଣ ରଖିବାକୁ ହେଲେ ଯେଉଁ ଆଦର୍ଶର ପ୍ରୟୋଜନ, ତା'ର ପ୍ରତୀକ ହେଉଚନ୍ତି 'ରାମଚନ୍ଦ୍ର', ଏହାହିଁ ମୁଁ ଆମୂଳଚୂଳ ଦେଖାଇବାକୁ ଯତ୍ନ କରିଛି । 'ରାଜ-ଲକ୍ଷ୍ମୀ' ଓ 'ସୀତା' ସେହି ଆଦର୍ଶକୁ ରୂପାୟିତ କରିଛନ୍ତି କାର୍ଯ୍ୟରେ, 'କୁଶ-ଲବ' ମାଧ୍ୟମରେ ।... ଏତଦ୍‌ବ୍ୟତୀତ ନାଟକର ଅନ୍ୟାନ୍ୟ ପ୍ରସଙ୍ଗ, ଯଥା ଦୋଷ, ଗୁଣ ନିର୍ଣ୍ଣୟ ପାଠକ ବା ଦର୍ଶକ, ବା ସମାଲୋଚକଙ୍କର ଉପଜୀବ୍ୟ । ମୁଁ ସ୍ରଷ୍ଟା ମାତ୍ର ।

ପରିଶେଷରେ ମୋ'ର ଏତିକି ବକ୍ତବ୍ୟ ଯେ, ନାଟକଟି ଜନସାଧାରଣ ଓ ଜାତିର କିଞ୍ଚିତ୍ ମାତ୍ର କଲ୍ୟାଣ ସାଧନ କରି ପାରିଲେ, ମୋ'ର ଶ୍ରମ ସାର୍ଥକ ମଣିବି ।

। ଇତି ।

**ଲେଖକ**

## —ଚରିତ୍ର ଲିପି—

ଶ୍ରୀ ରାମଚନ୍ଦ୍ର

ଲକ୍ଷ୍ମଣ

ଶତ୍ରୁଘ୍ନ

ବାଲ୍ମୀକି

ବଶିଷ୍ଠ

ହନୁମାନ

ଲବ

କୁଶ

ଶମ୍ଭୁଆ ଧୋବା

କେଶ୍ମା ଧୋବା

ଗୁହକ

୧ମ ଧାଙ୍ଗଡ଼ା

୨ୟ ଧାଙ୍ଗଡ଼ା

ଚାରଣ

ଫକୀର

ସୀତା

ରାଜ-ଲକ୍ଷ୍ମୀ

ଊର୍ମିଳା

ମନ୍ଦୋଦରୀ

ନିକଷା

ଡମୀ ଧୋବଣୀ

ମୁନି କନ୍ୟାଗଣ

ପରିଚାରିକା ଗଣ

ଧାଙ୍ଗଡ଼ୀ ଦୁଇ ଜଣ

ଅନେକ କୁମାରୀ

ନୃତ୍ୟ ଶିଳ୍ପୀଗଣ

# ଜାନକୀ

## ପ୍ରସ୍ତାବନା

[ ରାମାଭିଷେକ ଦୃଶ୍ୟ ]

କୌଶଲ୍ୟା-ନୟନେନ୍ଦୁଂ—ଦଶରଥ-ନୟନାରବିନ୍ଦଂ—
ମାର୍ତ୍ତଣ୍ଡଂ—ସୀତା-ମାନସ-ହଂସଂ — ରାମଂ ରାଜୀବ-ଲୋଚନଂ
ବନ୍ଦେ । ନମାମି ରାମଂ ସୁରକଳ୍ପ-ବୃକ୍ଷଂ—ଧନୁର୍ଦ୍ଧରଂ
ନୀରଦ-ନୀଳ-ଗାତ୍ରଂ — ଲୋକାଭିରାମଂ କମଳାୟତାକ୍ଷଂ—
ଦଶାସ୍ପଦଂ-ଲକ୍ଷଣମୁକ୍ତିଭର୍ତ୍ତା ।

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ଅଯୋଧ୍ୟା ରାଜ ପ୍ରାସାଦର ଶୟନ-କକ୍ଷ—

[ ମହାର୍ଘ ପଲଙ୍କରେ ଜାନକୀଦେବୀ ନିଦ୍ରିତା । ପାର୍ଶ୍ୱଦେଶରେ ରାମଚନ୍ଦ୍ର ଉପବିଷ୍ଟ ଥାଇ ବ୍ୟଜନରତ । କିଛିକ୍ଷଣ ବିତିଗଲା । ରାମଚନ୍ଦ୍ର ଧୀରପଦ-ବିକ୍ଷେପରେ ଗବାକ୍ଷ ନିକଟକୁ ଗଲେ । ଅତି ସନ୍ତର୍ପଣରେ ଆବରଣ ଈଷତ୍ ଉନ୍ମୁକ୍ତ କଲେ । ବାହାରକୁ ଅନାଇ, ତମସାଚ୍ଛନ୍ନ ପ୍ରକୃତିକୁ ନିରୀକ୍ଷଣ କଲେ ଓ ମନକୁ ମନ କହିଲେ । ]

ରାମ—ଗମ୍ଭୀର ରଜନୀ—ନିଦ୍ରିତା ଧରଣୀ—ଆଉ,
ନିଦ୍ରିତା ଧରଣୀ-ସୁତା, ନିଶ୍ଚିନ୍ତେ, ପଲଙ୍କେ ।—

[ ଏହି ସମୟରେ ଦେବୀ ସ୍ୱପ୍ନାବେଶରେ ଉଠି ବସିଲେ ଓ ଆତଙ୍କରେ ଶିହରି, କହିବାକୁ ଲାଗିଲେ ]

ସୀତା—ଏହି, ଏହି ଦଶାନନ—ଦଶନ ବିକାଶି,
ଘୂର୍ଣ୍ଣିତ ଲୋଚନ—ଆସେ ଧାଇଁ ମୋରେ, ଉନ୍ମୁକ୍ତ-କୃପାଣକରେ; ସାକ୍ଷାତ୍ ଶମନ କିବା ଅଶୋକ କାନନେ । ରାମ । ରାମ । ରାମ ।

[ ରାମନାମକୁ ସମ୍ବଳ କରି ସେହିପରି ଭୟ ଦୂର କରିବାକୁ ଲାଗିଲେ, ଯେଉଁପରି ଅଶୋକ କାନନରେ ବନ୍ଦିନୀ ଥାଇ କରୁଥିଲେ ]

ରାମ—ସୀତା । ସୀତା । ( ଦେହ ଧରି ହଲାଇବାକୁ ଲାଗିଲେ )

ସୀତା—ଆଁ—ଏଁ—(ନିଦ୍ରାବିଳ ଅର୍ଦ୍ଧନିମୀଳିତ ଦୃଷ୍ଟି)

ରାମ—ସ୍ୱପ୍ନ ଦେଖୁଥିଲ ?

ସୀତା—ସ୍ୱପ୍ନର ଦେବତା ତୁମେ,
ଥାଉଁ ପାଶେ, ସ୍ୱପ୍ନ ?

ରାମ—ବେଶ୍—ଯାଅ ନିଦ୍ରା, ସ୍ୱପ୍ନମୟୀ,
ନିଦକେ—ନିଶ୍ଚିନ୍ତେ । ( ଶୁଆଇ ଦେବାକୁ ଗଲେ )

ସୀତା—ନୁହେଁ ଏ ପଲଙ୍କେ ।

ରାମ—( ସସ୍ମିତେ ) ଆଉ ?—
ଏ ପର୍ଯ୍ୟଙ୍କେ ମୋ'ର ?

ସୀତା—( ରାମଙ୍କ କୋଳରେ ଢଳିପଡ଼ିଲେ, କୌଣସି
ଉତ୍ତର ନ ଦେଇ )
ରାମ—( କିଛିକ୍ଷଣପରେ ଶଯ୍ୟାରେ ଶୁଆଇ ଦେଲେ,
କହୁଁ କହୁଁ ) ଲଭିନାହିଁ ଲଙ୍କା-ବିଜୟିକା
ଅଦ୍ୟାପି ମୋହର ।—କି କଥା ଦେବୀର— ।
( ବିନ୍ଦୁଆରଟି ଧୀରେ ଧୀରେ ଧାରଣ କଲେ ଓ
ପ୍ରୀତିପୂର୍ଣ୍ଣ ଅଧରରେ ଚୁମ୍ବନ କଲେ; ତା'ପର
ପଲଙ୍କ ତ୍ୟାଗ କଲେ, କହୁ କହୁ )
ସମସ୍ତ ଉତ୍ତୀର୍ଣ୍ଣ—ରଜନୀ ବିଶୀର୍ଣ୍ଣ କ୍ରମେ ।
ଛଦ୍ମ ବେଶେ, ଛଦ୍ମ ନାମେ
ନିର୍ଗତ ହେବି ମୁଁ ନଗର ଭ୍ରମଣେ,—
ନିତ୍ୟ କର୍ତ୍ତବ୍ୟର ପଥେ ।
( ସହସା ପେଚକର କଣ୍ଠରବ ଶୁଣାଗଲା ।
ସୀତା-ଚିତ୍ତ ଆତଙ୍କିତ ହୋଇ ଉଠିଲେ ।
ଆଉଥରେ ସୀତାଙ୍କ ଆଡ଼କୁ ଫେରି ଚାହିଁଲେ—
ତା'ପରେ ଦ୍ରୁତ ନିଷ୍କ୍ରାନ୍ତ ହେଲେ )
[ ଅନ୍ଧକାର ମଧ୍ୟରେ ଦୃଶ୍ୟ ପରିବର୍ତ୍ତିତ ହେଲା ।
କେବଳ ଝିଁ ଝିଁ ଶବ୍ଦ ଶୁଣାଯାଉ ଥିଲା, ରାତ୍ରିର
ଗମ୍ଭୀରତା ସୂଚାଇ । ]

---

## ଦ୍ୱିତୀୟ ଦୃଶ୍ୟ

—ଅଯୋଧ୍ୟାର ପ୍ରାନ୍ତଦେଶ—

[ଅଦୂରେ ବନ୍ଦୀକବସ୍ତି । ରାତ୍ରି ଗମ୍ଭୀର । ଝିଁ କାରର
ଅବିରାମ ଧ୍ୱନି । ଶ୍ରୀରାମଚନ୍ଦ୍ର ଏକାକୀ ନଗର-
ପର୍ଯ୍ୟଟନରେ ବହିର୍ଗତ ]

ରାମ—ସତ୍ୟ, ଅହିଂସା ପ୍ରତୀକ 'ରାମରାଜ୍ୟ' ବୋଲି
ଯାହା ଘୋଷୁଛନ୍ତି ଜନେ—
ତୃପ୍ତ ମୁଁ ଦର୍ଶନେ ତାହା;
ଘରେ ଘରେ ଶୋଭେ ଶାନ୍ତି
ପ୍ରତିମୂର୍ତ୍ତି ଧରି ।
ରାଜା ମୁହିଁ—
'ରାଜ୍ୟ-ଶାସନ ନିଦେଧୟ ଗାଳାର ଆଦର୍ଶ'—
ହେଉ ରାଜନୀତି ମୋ'ର ।
ନଗରର ପ୍ରାନ୍ତ ଏହୁ—ରଜକର ପଲ୍ଲୀ—
[ ଏତିକିବେଳେ ଗୀତ ଶୁଣାଗଲା ]
ସୁନ୍ଦର !—ନ ପାହୁଣୁ ରାତି,
କର୍ତ୍ତବ୍ୟର ଗୀତ;
ସାଙ୍ଗ କର୍ତ୍ତବ୍ୟ ନିଜର—ଯିବି ଗୃହେ ଫେରି ।

---

## ତୃତୀୟ ଦୃଶ୍ୟ

—ଧୋବାତୁଠ—

[ ଧୋବାମାନେ ଲୁଗା କାଚିବାକୁ ବାହାରି
ଥିଲେ—ସେତେବେଳକୁ ରାତି ପାହିଲାଣି ।
'କେମା' ଠାଏ ଠିଆହୋଇ ଗାଉଥିଲା ]

ଓ...ତେଜ ତେଜକା ଲୋ ସେପାରି ପାହାଡ଼
ମଥାନ ଝାପସା ମାରେ
ଓହଳା ସରଗ ସାତ ସନ୍ଧରେ ସେ
ମଶାଲ ଜଳେଇ କୁଆଁରୀ କନିଆ
କୁଆଁରୀ ଚାହାଁ ଥିରି ଥିରି
ଉଠେ କାହା ଅନସାରେ (ଥିରି ଥିରି)—
ମୋ ରମ୍ମା ଚଉଁରି ଲୋ,
ଏ ପାହାନ୍ତି ପହର ସୁଲୁ ସୁଲୁ ବାଆ
ମନ ସଲ ସଲ କରେ ଲୋ,
ମୋ ମନ ସଲ ସଲ କରେ ॥
କୁଆ କାଆ କଲା ତାଳବଣିଆରୁ
ଧୋବଲା ଦଶିଲା ଧାରି
ଚକମକିଆ ଲୋ...
ଫସର ଫାଟିଲା ଚହଟ ଛଇ ସେ
ମଉଳା ଜହ୍ନର ମାଦ ଗର ଗର,
ଲାଜ ଜର ଜର, ଜକା ଜକା ଦିଶେ
ଚେକା ମୁହଁ ତୋର (ଜକ ଜକ),—
ମୋ-ତନୁ ପାଉଲୀ ଲୋ,
ସେ ଲହକା ଚାଲିରେ, ବହକି ଗଲା ମୋ
ଉଗ୍ରୁଟ ଧଇର୍ଯ୍ୟ ଗାର ଲୋ. ଉଗ୍ରୁଟ ଧଇର୍ଯ୍ୟ ଗାର ॥

କର କର ହସେ ଝୁଲ ଝୁଲିବା ଲୋ
 ଖର ଖର ଖର, ବୁଦା
 ଝୁଲ ଝୁଲିକା ଲୋ—
ଧଅଁ ସଅଁ ହୋଇ
 ଗଲେ ଗେଣ୍ଡାଳିଆ ହୁର ଅଡଡ଼ୀରେ,
ଡେଣ୍ଟା କସୁଡ଼ ସେ ଛକା ଛକା
 କରବେ ଥୋମଣୀ ଓଦା ।
ମୋ ଫରକା ଫୁଲ ଲୋ,
 ତୋ କଅଁଳ ପାଦର କମ୍ପଣ ଦେଖି ଯା
କରୁଛି ମୁଁ ଘୃଣା ନିନ୍ଦା ଲୋ, କରୁଛି ମୁଁ ଘୃଣା ନିନ୍ଦା ॥
[ ଧୋବାଲୁଗା ଦେଖାଗଲା । ଶମ୍ଭୁଆ ମନକୁ ମନ କହିବାକୁ ଲାଗିଲା ]

ଶମ୍ଭୁଆ—ଅରେ ମୁଁ ଏକୁଟିଆ ଗୋଟାଏ ଲୋକ, ହଇରାଣ ହେଉଛି—ମାଇକିନାଟା ଦ'ଦନ ହେଲା ଯାଇଛି ଯେ ପିଅଡ଼େ ଯାଇଛି । ସମସ୍ତେ ଲୁଗା କାମ ସାରି ଗଲେଣି—ମୋର ଇଆଡ଼େ ନଅରଟା ସାରା ଲୁଗା ପଡ଼ିଛି—ଆସୁ ଅଜ ।
[ କାମରେ ଲାଗିଲା । ଧୋବଣୀ ବାଁପଦରୁ ଗଣ୍ଠିଲି ମୁଣ୍ଡରେ ନେଇ ପହଞ୍ଚିଲା ]

ଶମ୍ଭୁଆ—ତୁ ବାହାର ଯା, ଏବେ ଏଠୁ ବାହାର ଯା ।
[ ପୋଡ଼ା କାଠଟାଏ ପଡ଼ିଥିଲା, ସେଥିରୁ ଖଣ୍ଡେ ଧରିଲା ]

ଡମୀ—ଅରେ କାହିଁକି ବା ?—ଅରେ କାହିଁକି ?

ଶମ୍ଭୁଆ—ମୋର ହୁକୁମ୍ ।
( ପାଖକୁ ଅଗେଇ ଗଲା )

ଡମୀ—ତୋର ହୁକୁମ୍—ମଲା ମୋର ! ତୁଛାକୁ ଏତେ, ମୁଦ ନାହିଁ ଗୋଡ଼ କସୁଡ଼ୁ କେତେ ?
( କାଠଟା ଫିଙ୍ଗି ଦେଲା )

ଶମ୍ଭୁଆ—କ'ଣ ? ମୋ ସାଙ୍ଗେ ବେହାଲ ?
( କାଣ ମୋଡ଼ିଲା)

ଡମୀ—ଆ-ହା-ହା-ହା, ଏତେ ଜୋରରେ ମୋଡ଼ନା ବା—କାଣ, ଭାଟୀ କଅଁରେ ଫାଲେ ଯାଇ ଫାଲେ ତ ଅଛି, ସେତକ ଖସି ପଡ଼ବ ବା—ଅରେ, ଖସିପଡ଼ିବ ବା ।

ଶମ୍ଭୁଆ—ହାଁ, ତୋର ଏଡ଼େ ମୁହଁ ? କାହିଁଗଲା ମୋର କୁରାଢ଼ି ?

ଡମୀ—ଥାଉ ଥାଉ ହାଣି ଦେ'ନା ବା । 'ନ ଦେଖିଲି ପୁଅ ଦେଖ, ନା କରିଛ କାଢ଼ିଛି ବେଙ୍କ' ।

ଶମ୍ଭୁଆ—ତେବେ ଲୋ ଦୋଗୁଲୁଣୀ—
( ଚୁଲମୁଠା ଧରିବାକୁ ଧାଇଁ ଗଲା )

ଡମୀ—( ରାଗିଯାଇ ) ଏ-ଏ । ମୁହଁ ସମ୍ଭାଳି କଥା କହ । ( ହାତଟା ଦେଖେଇ ) ଦେଖୁଛୁ ତ ଏ ହାତକୁ ? ଅନେଇଥା, ହଁ...... । ଆ-ରେ— କୋଉ ଅକଲରେ ମତେ ତୁ ଦୋଗୁଲୁଣୀ ବୋଲି ଗାଳିଦେଲୁ କହ ତ ? ( ଅଣ୍ଟାରେ ପଣତ କାନି ଭିଡ଼ିବାକୁ ଲାଗିଲା )

ଶମ୍ଭୁଆ—କହିବି ତ—?

ଡମୀ—ହଁ, ହଁ, ସତ କହିବୁ । ସତ-ରାଇଜରେ ଘର କରିଚୁ—ସତ-ନିୟମ ଗାଇ ମୋ ହାତ ଧରିଚୁ— ସେଇ ସତ-ଧରମକୁ ଗୁହାଁ ସତ କହିବୁରେ, ସତ୍ତଆ ।

ଶମ୍ଭୁଆ—( ଡରି )—ତୁ—ତୁ—

ଡମୀ—ଅରେ ମୁଁ କୁକୁର ନୁହେଁ ବା—ତୁ, ତୁ, କରିବୁ । କହ ସଫା ସଫା, ନଇଲେ ଗୁହାଁଥା ଏ ହାତକୁ, ହଁ ।

ଶମ୍ଭୁଆ—ମୁଁ କହୁଛି, କହୁଛି—

ଡମୀ—ବେଶ୍, କହ—

ଶମ୍ଭୁଆ—( ବିକଳ ଭାବରେ ) ତୁ କାଲି ବାପଘର ଗଲୁ—କହିଗଲୁ, ଘାଇ ନେଉଟାଣୀ ଆସିବ ବୋଲି । ରାତିଟା ସେଇଠେଇ କଟେଇ ଦେଇ, ଅଜ ସକାଳୁ ଅସିଲୁ ସେଇଠୁ—

ଡମୀ—ସେଇଠୁ ମୁଁ ହୋଇଗଲି ଦୋଗୁଲୁଣୀ ? ହଇରେ ଏ' ବାପଘରେ ଦିଅ ଗୋଟେ ଦିନ ରହିଲେ ସେଥିରେ ସେ ହୋଇଗଲା ଦୋଗୁଲୁଣୀ ? ଏ ବୁଦ୍ଧି ତୋ ଗଧ ମୁଣ୍ଡରେ ପଶିଲା କେମିତିକା ବା ?

ଶମ୍ଭୁଆ—କ'ଣ ? ମୋର ଗଧମୁଣ୍ଡ ? ତୁଆରେ ଗଧ ବାନ୍ଧିଲି ବୋଲି, ମୁଁ ହେଲି ଗଧ ? ଅଲୋ, ଯେଉଁଠି ଶାସ୍ତ୍ର ବୋଲାହୁଏ, ମୁଁ ସେଇଠି ଏକକାନିଆ ହୋଇ ଶୁଣିଛି ।

ଓମୀ—କଣ ଶୁଣିଛୁ ଯେ ?

ଶମ୍ଭୁଆ—[ ପୋଥିବୋଲା ସ୍ୱରରେ ]
'ନାଗସାପକୁ ପରତଣି ।
ନାରୀ କାନ୍ତ ଯେ ବିପଖଣି ।'

ଓମୀ—ତେଣୁ, ନାରୀକୁ ବିଶ୍ୱାସ କରିବ ନାହିଁ । ତୋ ଶାସ୍ତ୍ର ମୁହଁରେ ଝାଡ଼ୁ । ହଇରେ ଝାଡ଼ୁଖିଆ । ତୋ ଆଖିର ଦେଖା ପଗ୍—ଅଯୋଧାର ରଜା ରାମଚନ୍ଦ୍ର ତାଙ୍କ ଭାରିଯା ସୀତା-ଠାକୁରାଣୀ—ତାଙ୍କୁ ଟେକିରାଇ ନେଲା ରାବଣ—ଚଉଦ ବରଷ କାଲ ବନ୍ଦୀ କରି ରଖିଲା—ସେଇ ରାବଣକୁ ମାରି, ସୀତାଙ୍କୁ ଆଣି, କେତେ ଆଡ଼ମ୍ବରରେ ଅଭିଷେକ ହେଲେ ଆମ ରଜା । ଆଜି ତୁ ମଳକଗୃ ଧୋବାଙ୍ଗଏ, ଏତେ କାଉଆଣ ହେଲୁ ଯେ, ମୋତେ ଅବିଶ୍ୱାସ କରିଲୁ ? କହିଲୁ, ଦୋଗ୍ଚରୁଣୀ ?

ଶମ୍ଭୁଆ—ଚୁପ୍—ଚୁପ୍—

ଓମୀ—କାହିଁକି ଚୁପ୍ ହେବି ନା ? ଆରେ, କାହିଁକି ବା ? ମୁଁ କା'ର ଖାଏ ନା ଧାରେ ?

ଶମ୍ଭୁଆ—ଆଲୋ ଓମୀ । ତୋ ଗୋଡ଼ତଳେ ପଡ଼ୁଚି, ତୁ ଆଉ ପାହିତ୍ରୁଣ୍ଡ କରନା । ରଜାଘର କାନ୍ଥଆଳ ବୁଲୁଥିବ । ଶୁଣିବତ, ଅଇଚ୍ଛାଙ୍କା ଆମ ଦୁଇଜଣଙ୍କୁ ବାନ୍ଧି ନେଇଯିବ; ସିଧା ସିଧା ଶୂଳଆ ପଦାରେ ହାଜର କରିବ । ( ଏଣେତେଣେ ଗୃହିଁଲା )

[ ଅନ୍ତୁଆଳରେ ଥାଇ ରାମଚନ୍ଦ୍ର ସବୁ ଶୁଣୁଥିଲେ; ଗ୍ଲାନ୍ଦି ପରି ଅପସରି ଗଲେ । ]

ଓମୀ—ହେଲେ, ତୁ ମୋତେ ଦୋଗ୍ଚରୁଣୀ ବୋଲି କହିଲୁ ତ ?

ଶମ୍ଭୁଆ—ଓମୀ—

ଓମୀ—ନା-ନା—ତୋ ଘରେ ଆଉ ରହିବନି, ତୋ ଘର ଆଉ କରିବନି ।

( ଭଡ଼ା ଓଟଗ୍ ହୋଇ ଗୃଲଗଲେ )

---

## ଚତୁର୍ଥ ଦୃଶ୍ୟ

—ରାଜୋଦ୍ୟାନ—

[ ରାଜା ପ୍ରବେଶ କଲେ ]

ରାମଚନ୍ଦ୍ର—ଓଃ ।
ଏ' କି ନିନ୍ଦା, ଜନେ
ଘୋଷୁଚନ୍ତି ମନେ ମନେ ?
ସୀତା କଳଙ୍କିନୀ ।
ମୁଁ ପ୍ରଶ୍ରୟପୋଷକ ତାର—
ରାଜା ରାମଚନ୍ଦ୍ର ?

[ ଏତକବେଳେ ଦୂରେ ଚାରଣଗୀତ ଶୁଣାଗଲା
'ଜୟ ତୁ ଜୟ ରାମଚନ୍ଦ୍ର ପ୍ରଜାରଞ୍ଜନ କାରୀ' । ]

ବନ୍ଦକର, ବନ୍ଦକର
ଏ' ବନ୍ଦନା-ଗୀତ ।
ଅଭିନନ୍ଦନର ଛଳେ—
ନିନ୍ଦା ଅପବାଦ ମୋର
ଘୋଷଇ କେବଳ;
ବ୍ୟଙ୍ଗ କରି, କହେ ସ୍ପଷ୍ଟ—
ସୀତା-ସ୍ତ୍ରୈଣ ରାମ—ପ୍ରଜା-ପୀଡ଼କ ରାମ—
ମିଥ୍ୟାବ୍ରତ ରାମ ।

[ ଚାରଣ-ଗୀତର ଦ୍ୱିତୀୟ ପଦ ଶୁଣାଗଲା
'ଦଶରଥ ସୁତ, ସତ୍ୟବ୍ରତ, ଅଯୋଧ୍ୟା-ମୁକୁଟ-ଧାରୀ ।' ]

ନା, ନା, ଗାଅ—
'ପ୍ରଜାନୁରଞ୍ଜନ ରାମ—
ସତ୍ୟବ୍ରତ ରାମ'—
ରହିବି ମୁଁ, ସେଇ ରାମ ହେଇ ଅଭିରାମ—

[ ବାକୀ ପଦତକ କହୁ କହୁ ରାଜ-ଲକ୍ଷ୍ମୀ ବିପରୀତ ଦିଗରୁ ପ୍ରବେଶ କଲେ ]

ରାଜ-ଲକ୍ଷ୍ମୀ—'ରାଜା-ରାମ' ।

ରାମ—କିଏ ?

ରାଜ-ଲକ୍ଷ୍ମୀ—( ଅଧରେ ସ୍ମିତହାସ ଫୁଟାଇ, ସ୍ଥିର ମୂର୍ତ୍ତିରେ ଠିଆ ହୋଇ ରହିଲେ )

ରାମ—କିଏ ଏହୁ ନାରୀ ?
ଚଳ ଚଳ ଶତଦଳ-
ମାନସ-ବିଳାସୀ
କମଳା ଚଞ୍ଚଳା କିବା
ଅଚଳାରେ ଭରା
ଆଖି ଆଗେ—ଆଖିଭରି
ଆଖି-ମନ-ଲୋଭା—
କୁହ,
କିଏ ତୁମେ, ଅପରୂପ ବାଳା ?—
କିବା ନାମ ତବ ?
ରାଜ-ଲକ୍ଷ୍ମୀ—ମୁହିଁ ରାଜବାଳା—
ନାମ—ରାଜ-ଲକ୍ଷ୍ମୀ ମୋର ।
ରାମ—'ରାଜ-ଲକ୍ଷ୍ମୀ'—
ରାଜ-ଲକ୍ଷ୍ମୀ—ହଁ, ରାଜ-ଲକ୍ଷ୍ମୀ ।
ରାମ—ହୁଅଇ ପ୍ରତୀତ—
ରାଜସ-ବାସନା ମୋର ମୂର୍ତ୍ତିମତୀ କିବା ।
ରାଜ-ଲକ୍ଷ୍ମୀ—ନ ମଣ ବିସ୍ମୟ—
ଅଭିଷେକ-ପ୍ରତିଶ୍ରୁତି
ସ୍ମର ବାରେ, ରାଜା !
ଆସିଛି ସମୟ—
ପ୍ରଜା-ପ୍ରୀତି ବଳେ ତବ
ପ୍ରୀତି-ମନ୍ଦାକିନୀ
ଖେଳେ ଘରେ ଘରେ ଆଜ
ଅଯୋଧ୍ୟା ନଗରେ ।
ଫୁଟିଛି ସୁଖର ପଦ୍ମ, ପାଖୁଡ଼ା ମେଲଇ ।
ମୁହିଁ ସଉରଭ ତାର—ଘେନ, ରାଜା ।
ଘେନ ପ୍ରୀତି ମନେ ଏବେ । ( ହାତ ବଢ଼ାଇଲେ )
( ରାମଚନ୍ଦ୍ର ଆଲିଙ୍ଗନ କରିବାକୁ ଉଦ୍ୟତ ହୋଇ
ଅଚୁନକ ଠିଆ ହୋଇଗଲେ )
ରାମ—ସୀତା ! ସୀତା !! ( ବ୍ୟଗ୍ର ଗତିରେ ପ୍ରସ୍ଥାନ )
ରାଜ-ଲକ୍ଷ୍ମୀ—ରାଜା !
( ବିସ୍ମୟ-ବିମୂଢ଼ ହେଲେ, ପରେ ମୃଦୁ ମୃଦୁ
ହସି ପ୍ରସ୍ଥାନ କଲେ )

---

## ପଞ୍ଚମ ଦୃଶ୍ୟ

—ରାଜପଥ—

[ ଚାରଣ ଗୀତ ଗାଇ ଗାଇ ଚାଲିଗଲେ ]

ଜୟ ତୁ ଜୟ ରାମଚନ୍ଦ୍ର ପ୍ରଜା ରଞ୍ଜନ-କାରୀ ।
ଦଶରଥ ସୁତ, ସତ୍ୟବ୍ରତ, ଅଯୋଧ୍ୟା-ମୁକୁଟ-ଧାରୀ ॥
କାକୁସ୍ଥ କୁଳ-କାରଣ ଜ୍ୟୋତି ଦନୁଜ-ଦର୍ପ-ଦାରଣ,
ସତୀ ଅହଲ୍ୟା-ତାରଣ ପ୍ରଭୁ ଭବ-ଦୁଃଖ-ଉଦ୍ଧାରୀ ॥
ରାଜାଧିରାଜ ଜଗତ-ବନ୍ଦନ—
ସନ୍ତ ସଜ୍ଜନ ହୃଦ-ଚନ୍ଦନ ।
ଲଙ୍କାଧିପତି-ମୋକ୍ଷ-ବିଧାନ,
ଜାନକୀ-ଜୀବନ-ତରୀ ॥
ଭୂ-ଭାର ନାଶନେ ଧର ଶାୟକ,
ଶରଣାଗତ ଗତି-ଦାୟକ
ବ୍ରହ୍ମା, ଶଙ୍କର କିଙ୍କର ପଦେ
ମୁନି-ମନ-ବନ-ଚାରୀ ॥

---

## ଷଷ୍ଠ ଦୃଶ୍ୟ

—ଅନ୍ତଃପୁର କକ୍ଷ—

[ ରାମଚନ୍ଦ୍ର ପଦଚାରଣ କରୁଥିଲେ ]

ରାମ—ନୁହେଁ ତ କଳ୍ପନା ?
ଏ ଯେ ସତ୍ୟ ଦିବ୍ୟାଲୋକ ସମ ।
ରାମ-ରାଜ୍ୟ ସତ୍ୟ ଯେବେ ମମ—
ରାଜ-ଲକ୍ଷ୍ମୀ ସତ୍ୟ ତେବେ ସପତ୍ନୀ ସୀତାର !
ଏବେ ସମସ୍ୟା ସମ୍ମୁଖେ—
ରାଜ-ଲକ୍ଷ୍ମୀ, ଅବା ସୀତା !—
ସ୍ୱ-ପତ୍ନୀ ନିନ୍ଦନ୍ତି ଜନେ ଅପବାଦ ଦେଇ,
ସପତ୍ନୀ ନିନ୍ଦିବ ମୁହିଁ ଅପବାଦ ସହି ।
ସୀତା, ପ୍ରିୟା ମୋର;
କିନ୍ତୁ, ରାଜ-ଲକ୍ଷ୍ମୀ, ପ୍ରିୟ—ରାଜା, ପ୍ରଜା ଉଭୟର;
ତେଣୁ ସମାଧାନ ?—
ରାଜନୀତି କୁହେ—
ଗରିଷ୍ଠ ଲଘିଷ୍ଠ ମଧ୍ୟେ ମତଭେଦ ଯହିଁ,

ତହିଁ ଗଉସ୍ପର ମତ ଗ୍ରାହ୍ୟ ସଦାଭାଳେ ।
ସୁତରାଂ, ସିଦ୍ଧାନ୍ତ ସହଜ—
ସପତ୍ନୀର ଅନୁକୂଳେ, ସ୍ୱ-ପତ୍ନୀ ବର୍ଜନ ।—
ହଁ, ସ୍ୱ-ପତ୍ନୀ ବର୍ଜନ !!

ସୀତା—( ଧୀରେ ଧୀରେ ପ୍ରବେଶ କଲେ )
ବାଃ, ତୁମେ ଏଠି ? ଏହି ଗୁପ୍ତକକ୍ଷେ,
ଗୁପ୍ତଭାବେ ରହି ?

ରାମ—( ସାଶ୍ଚର୍ଯ୍ୟେ ) ସୀତା !

ସୀତା—ମୁଁ, ଉବଲ ନା କଣ ?
ଛି, ଛି, ତୁମେ ସୀତା-ପତି—
ସୂର୍ପଣଖା ଯେବେ ଭେଟିଥିଲା ବନେ, ସେବେ
ଅଛି ମନେ ମୋର—
ହସି ତୁଚ୍ଛ କରିଥିଲ ତରୁଣୀ ତାହାର;
ଏବେ ମର ଭୂତ ବୋଲି,
ଡରୁଛ ତା' ଛାୟା ?

ରାମ—କାହିଁଠାରୁ ଛାୟା ବଶୀପିକାମୟୀ ଅତି ।
ଆସ ଗୋ ସମୀପେ, ଆସ ଅନ୍ତର ନିକଟେ ।

ସୀତା—ହେଲେ ତୁମେଇ ତ କହୁଥାଅ ନିତି,
ଅତୀତର ସ୍ମୃତି ମଧୁମୟୀ ଅତି—
ଦୁଃଖ-ଦିନେ ଦୁଃଖ ଯାହା,
ବଢ଼ାଏ ଆନନ୍ଦ ତାହା ସୁଖ-ଦିନେ ମନେ—
ମେଘମୁକ୍ତ ଆକାଶର ଇନ୍ଦ୍ରଧନୁ ଯେସନେ ।

ରାମ—ମେଘଯୁକ୍ତ ମନ ଯା'ର, କି ଆନନ୍ଦ ତା'ର ?

ସୀତା—ଜାଣେ, ରାଜ୍ୟ-ଚିନ୍ତାଭାରେ ଭାରି ତବ ମନ ।
ହେଲେ, ତୁମେ ପୁରୁଷ-ଉତ୍ତମ—
ରବି ସମ ଥାଅ ସଦା
ମେଘୁଁ ବହୁ ଉଚେ ।

ରାମ—ନା, ନା, ସତୀ—
ତୁମେ ଜାଣ ନାହିଁ ତେବେ, ପୃଥିବୀର ରୀତି ।
ପୃଥିବୀର ଯାହା,
ତାହା ଫିଙ୍ଗ ଯେତେ ଉଚେ—
ଆସିବ ଲେଉଟି ନୀଚେ—ପୃଥିବୀର ବୁକେ
ଆକର୍ଷଣେ ତା'ର ।

ସୀତା—ଅବଶ୍ୟ, ପ୍ରମାଣ ତାର
ଦେଇଛନ୍ତି ବାଛି
ବିଶ୍ୱାମିତ୍ର, ଋଷ୍ୟଶୃଙ୍ଗ ତପୋଭଙ୍ଗେ ଯଥା ।
ହେଲେ, ମୋର ପତି, ବିଶ୍ୱ-ପତି—ରାଜା !...

ରାମ—'ରାଜା' !!
ରାଜ-ପଦେ ନାହିଁ ଆଉ ରୁଚେ କାର୍ଯ୍ୟ ମୋର ।
ଆସ ସୀତା ! ଯିବା ଦୁହେଁ
ଘୋର ବନେ ଚାଲି—
ରଚିବା କୁଟୀର ତହିଁ,
ପିନ୍ଧିବା ବଲ୍କଳ—
ଖାଇ ଫଳ, ମୂଳ, ଜଳ
ବଞ୍ଚିବା ଗୋ ସୁଖେ
ରକ୍ଷ ରକ୍ଷ ମେଳେ ଯଥା ବନବାସକାଳେ ।
ଲୋକାରଣ୍ୟ ଏହି ପ୍ରକୃତ ଜଞ୍ଜାଳ—
ନୁହେଁ ଅନୁକୂଳ ଲବେ
ସୀତା ରାମ ପକ୍ଷେ ।

ସୀତା—ଏ'କି ପ୍ରତିକୂଳ ଭାବ
ଜାନକୀ-ବଲ୍ଲଭ ମୁଖେ ?
ତୁମେ ରାଜା—ତୁମେ ତ୍ୟାଗୀ—
ନୁହ ତ ବୈରାଗୀ !

ରାମ—ହୁଁ—

ସୀତା—ରାଜା !
ରାଜ-କାର୍ଯ୍ୟେ କିଛି ଘଟିଛି ପ୍ରମାଦ ?
ହୁଏ ତ ଦଣ୍ଡିଛ ଯା'ରେ ନ୍ୟାଯ୍ୟ ରାଜ-ଦଣ୍ଡେ—
ଅତି ପ୍ରିୟଜନ ସେହି ।
ବ୍ୟଥିତ କିମ୍ପାଇଁ ?
ତୁମେ ରାଜା—
ପ୍ରଜା-ସେବା, ରାଜ-ଧର୍ମ ତବ ।

ରାମ—ସୀତା—ସୀତା !
( ଆଲିଙ୍ଗନ କରିବାକୁ ଉଦ୍ୟତ )

ସୀତା—( ବାଧା ଦେଇ ) ଧୈର୍ଯ୍ୟ, ରାଜା !—
ଏ' କି ହେରେ, ଅଶ୍ରୁବିନ୍ଦୁ
ନୀଳ-ନେତ୍ରୁ ଝରେ ?

ରାମ—ଅଶ୍ରୁ-ବିନ୍ଦୁ ! ନା, ନା,
( ମୁଖ ଫେରାଇ ନେଲେ )
ସୀତା—ଚାହଁ ମୋତେ ଫେର,
ଦିଏ ମୁଁ ପଣତେ ପୋଛି !
ରାମ—( ହସିବାକୁ ଚେଷ୍ଟାକରି )
ନୁହେଁ କିଛି, ଶ୍ରମବିନ୍ଦୁ ତାହା—
ଯାଇଅଛି ଶୁଖି ଆପେ ଦେଇ ଦେଖା କ୍ଷଣେ ।
ସୀତା—ଅସୁସ୍ଥ ଲକ୍ଷଣ ଏହା ।
ନ ରୁହ ଏଠାରେ—
ଆସ ଶୟନ ମନ୍ଦିରେ । ( କର ବଢ଼ାଇଲେ )
ରାମ—( କର ଧରି ପକାଇ ) ସୀତା, କୁହ,
ନ ତେଜିବ ମୋତେ ?
ସୀତା—( ବସିଲେ, ମାନ ଶଙ୍କାଭାବ ଆଖିରେ, ମୁହଁରେ
ଫୁଟି ଉଠୁଥିଲା )
ରାମ—ଉହୁଁନା, ସୁନ୍ଦରୀ—
ସୁସ୍ଥ ମୁହିଁ, ଅତି ସୁସ୍ଥ ।
ସୀତା—ନା—ନା—ଅତୀବ ଅସୁସ୍ଥ ତୁମେ ।
ରାମ—ଅବିଶ୍ୱାସ ମୋତେ ?
ସୀତା—( ରାମଙ୍କ ବୁକୁ ଉପରେ ଅଜାଡ଼ି ହୋଇ
ପଡ଼ିଲେ )
ରାମ—ସୀତା—( ମଥାରେ ହାତ ବୁଲାଇବାକୁ ଯାଇ,
ରହିଗଲେ )
ସୀତା—ସୀତା-ପତି ! ( ବ୍ୟାକୁଳ ଦୃଷ୍ଟିରେ ଚାହିଁଲେ )
ରାମ—( ହାତ ବୁଲାଇ, ବୁଲାଉ ) ହଁ, ଅଛି ମନେ—
ଗର୍ଭ ବାସନା ତୁମର କହିଥିଲ ଦିନେ,
ଯିବ ଦେଖି ସେହି
ମୁନି କନ୍ୟାଗଣେ, ଯେଉଁ
ହୋଇଥିଲେ ସାଥି ତବ ବନବାସ ଦିନେ ।
ସୀତା—ତୁମେଇ କହୁଛ ପ୍ରଭୁ ! ସମ୍ପଦର ଦିନେ,
ଭୁଲିବା ଉଚିତ ନୁହେଁ ବିପଦର ସାଥି ।
ରାମ—ବେଶ୍, ଆଜି ପୂରାଇବି ସେହି ମନସାଧ ତବ ।
ସୀତା—ଆଜି ? ( ଉଠି ବସିଲେ )
ରାମ—ଆପତ୍ତି କି.....?

ସୀତା—ନା, ନା—ଆଜି, ଆଜି । ହେଲା ଭଲ, ଯିବି
ଦୁହେଁ; ମୋର ପୂରିବ ବାସନା, ତୁମେ ଲଭିବ
ବିଶ୍ରାମ—
ଲଭି ଅବ୍ୟାହତି
କୂଟ ରାଜକ ଚିନ୍ତାରୁ । ଆସେଁ ଉଠିବେ ?
ରାମ—ଆସ ତ୍ୱରା ।
ସୀତା—( ଆନନ୍ଦରେ ବନ୍ୟ-ହରିଣୀପରି ଡେଇଁ କୁଦି
ଚାଲି ଯାଉଥିଲେ )
ରାମ—( ଆବେଗ ଭରା ଉଚ୍ଛ୍ୱାସ ସମ୍ଭାଳି ନ ପାରି ଡାକି
ଉଠିଲେ ଉଚ୍ଚ ସ୍ୱରରେ )
ସୀତା !—
ସୀତା—ମୋତେ ?
ରାମ—( କିଛିକ୍ଷଣ ନିରୁତ୍ତର ରହି, ପରେ କହିଲେ,
ଦମ୍ଭରେ ) ନା,—( ସୀତା ଚାଲିଗଲେ । ସହସ୍ର
ବୃଶ୍ଚିକ-ଦଂଶନର ଯନ୍ତ୍ରଣା ଧାରି ଦେବାରୁ ଅଧୀର
ହୋଇ କହି ଉଠିଲେ )
ନା, ନା—ଫେରଆସ, ଫେରଆସ ସୀତା ।
ସତ୍ୟକଥା ଯାହା—( ରହିଗଲେ ଓ ନୀରବରେ
ପଦଚାରଣ କରୁ କରୁ କମ୍ପିତ ଆହ୍ୱାନ-ଘଣ୍ଟା
ବଜାଇଲେ । ଦ୍ୱାର ରକ୍ଷୀ ପ୍ରବେଶ କଲା )
ଲକ୍ଷ୍ମଣ !—
[ ରକ୍ଷୀ ଚାଲିଗଲା ଓ କିଛିକ୍ଷଣ ପରେ ଲକ୍ଷ୍ମଣ
ପ୍ରବେଶ କରି ରାଘବଙ୍କ ପାଦରେ ପ୍ରଣାମ କଲେ ]
ରାମ—ଲକ୍ଷ୍ମଣ !
ଲକ୍ଷ୍ମଣ—ଦେବ !
ରାମ—ଦେବୀ ତୁମଙ୍କରେ ଆଜି ଗୁରୁଭାର ଏକ ।
ଲକ୍ଷ୍ମଣ—ପ୍ରସ୍ତୁତ ଲକ୍ଷ୍ମଣ ସଦା ସେ ଭାର ବହନେ ।
ରାମ—ଯାଅ ତ୍ୱରା, କର ରଥ ଆୟୋଜନ ।
ଲକ୍ଷ୍ମଣ—ଯଥା ଆଜ୍ଞା ଦେବ । ( ଚାଲି ଯାଉଥିଲେ )
ରାମ—ଶୁଣ !
ଦେବୀ ତବ ଯିବେ ଆଜି
କାନନ ବିହାରେ—
ଲକ୍ଷ୍ମଣ—ଆନନ୍ଦର କଥା । ( ଚାଲି ଯାଉଥିଲେ )
ରାମ—ତୁମେ ଯିବ ସଙ୍ଗେ ।

ଲକ୍ଷ୍ମଣ—( ଅବନତ ହେଲେ ଅତୀବ ଆନନ୍ଦରେ )
ରାମ—ଏକା ତୁମେ ଯିବ, ଆନ କେହି ନୁହେଁ ।
ଲକ୍ଷ୍ମଣ—ପରିଚାରୀ କେହି ?
ରାମ—ନା ।
ଲକ୍ଷ୍ମଣ—ଦେବୀ ନକେ ?
ରାମ—ନା ।
ଲକ୍ଷ୍ମଣ—( ବିସ୍ମୟ ବିସ୍ଫାରିତ ନୟନରେ ଚାହିଁଲେ )
ରାମ—ବିସ୍ମିତ ନ ମଣି—
ରାଜ-କାର୍ଯ୍ୟେ ସର୍ବେ ସମର୍ପିତ-ପ୍ରାଣ ।
ଲକ୍ଷ୍ମଣ—( ପ୍ରଣାମ କରି ଚାଲି ଯାଉଥିଲେ )
ରାମ—ଅପେକ୍ଷା ମୁହୂର୍ତ୍ତେ—
ଲକ୍ଷ୍ମଣ—( ଛିଡ଼ା ହେଲେ )
ରାମ—ବନ ପରିକ୍ରମା ଅନ୍ତେ [illegible]ଯିବ ସେହିସ୍ଥାନେ,
ଯହିଁ ବାଲ୍ମୀକି ଆଶ୍ରମ—
ଲକ୍ଷ୍ମଣ—ଦେବ ।
ରାମ—ହିଁ, ଛାଡ଼ିଣ ଆସିବରେ ଦେବୀ, ଆସିବ ଲେଉଟି ।
ଲକ୍ଷ୍ମଣ—(ସ୍ୱଗତ) ପିତା-ଘର ଯିବେ ଦେବୀ ।
( ପ୍ରକାଶ୍ୟେ ) ଛାଡ଼ିଣ ଆଶ୍ରମେ ଦେବୀ—ଆସିବି ଲେଉଟି ।
ରାମ—ଭ୍ରମ ସଂଶୋଧନ କର—
ସୁନ୍ଦର ଅତୀତ ଭ୍ରମ,-ମାୟା ମୃଗ ଲୋଭ ।
ଲକ୍ଷ୍ମଣ—(ଅପ୍ରତିଭ ହୋଇଗଲେ)
ରାମ—(ଲକ୍ଷ୍ୟାନ୍ତର ସଦମ୍ଭେ) ଲକ୍ଷ୍ମଣ !
ଲକ୍ଷ୍ମଣ—ଅଗ୍ରଜ !
ରାମ—କେଉଁ କକ୍ଷ ଏହି ?
ଲକ୍ଷ୍ମଣ—ଗୁପ୍ତ କକ୍ଷ ।
ରାମ—କ'ଣ ହୁଏ ଏଠି ?
ଲକ୍ଷ୍ମଣ—ଗୁପ୍ତ-ମନ୍ତ୍ରଣା ରାଜାର ।
ରାମ—କାହା ସଙ୍ଗେ ?
ଲକ୍ଷ୍ମଣ—ଅତୀବ ବିଶ୍ୱସ୍ତ ଜନ ରାଜାର ଯେ ଅଟେ ।
ରାମ—ବିଶ୍ୱସ୍ତ-ଗୁରୁତ୍ୱ ତେବେ ବୁଝୁଛ ତ ତୁମେ ?
ଲକ୍ଷ୍ମଣ—ପ୍ରଭୁ !—(ଆଉ କ'ଣ କହିବାକୁ ଯାଉଥିଲେ)
ରାମ—ଚୁପ୍, ବୀର ଲକ୍ଷ୍ମଣ ନୁହଇ ବାଚାଳ କଦାପି—
ଅଟେ ମୌନବ୍ରତୀ, ରାମ-ଦାସ ସଦା—
'ଧନ୍ୟ ଲକ୍ଷ୍ମଣ ବୋଲିଣ ଜଗତେ ତା' ଖ୍ୟାତି" ।

ଲକ୍ଷ୍ମଣ—(ଲଜ୍ଜାରେ ଅବନତ ହେଲେ)
ରାମ—ଶୁଣ ମୋ ଆଦେଶ ।
ଆଶ୍ରମ ଅନ୍ତରେ ତୁମେ
ତ୍ୟଜିବ ଜାନକୀ ।
ଲକ୍ଷ୍ମଣ—ପଚାରିଲେ ମାତା, ମୁହିଁ କି ଦେବି ଉତ୍ତର ?
ରାମ—ପୁଣି ବାଚାଳତା ! କହିବ ଏତିକି—
'ପଥ ପଚାରି ପିତା-ଘର ଯିବ,
ଆଉ ଅଯୋଧ୍ୟା ମନେ ନ କରିବ ॥'
ଲକ୍ଷ୍ମଣ—ଦେଖ, ଲକ୍ଷ୍ମଣ ବି ଅଯୋଧ୍ୟାକୁ ମନେ ନ କରିବ । (ଚାଲି ଯାଉଥିଲେ)
ରାମ—(ସରୋଷେ) ଲକ୍ଷ୍ମଣ !
ଲକ୍ଷ୍ମଣ—(ଫେରି ଚାହିଁ) ଆଉ କି ଆଦେଶ ?
ରାମ—ମନେ ରଖ, ନୁହେଁ ଏହା ଜ୍ୟେଷ୍ଠର ଆଦେଶ ଅନୁଜର ପ୍ରତି ।
ଲକ୍ଷ୍ମଣ—ଜାଣେ, ରାଜାର ଆଦେଶ ଏହା ଅନୁଚର ପ୍ରତି ।
ରାମ—ବିଚାରକର ଆଦେଶ ଏହା ଘାତକର ପ୍ରତି—

ଲକ୍ଷ୍ମଣ—[ ମାତାଙ୍କ ପରି ରାମଙ୍କର ଚରଣ ଧୂଳି ନେଇ ଚାଲିଗଲେ । ରାମ ଅଧୀର ହୋଇ 'ସୀତା ସୀତା' ବୋଲି ଶ୍ଳଥ ଭାବରେ ବସି ପଡ଼ିଲେ ]

---

## ସପ୍ତମ ଦୃଶ୍ୟ

—ରାଜୋଦ୍ୟାନ—

[ ଊର୍ମିଳା ଫୁଲ ତୋଳୁଥିଲେ ଓ ଗୀତ ଗାଉଥିଲେ । କିଛିକ୍ଷଣ ପରେ ଶତ୍ରୁଘ୍ନ ପ୍ରବେଶ କଲେ, କାନ୍ଧରେ ଧନୁ, ହାତରେ ତୀର—ଗମ୍ଭୀର ଭାବରେ ପହରା ଦେବାକୁ ଲାଗିଲେ ଟହଲଦାର ପୂର୍ବକ, ଠିକ୍ ଲକ୍ଷ୍ମଣ ସୀତାଙ୍କ କୁଟୀରରେ ପହରା ଦେଉଥିଲା ପଞ୍ଚବଟୀରେ ଥିବା କାଳୀନ । ଊର୍ମିଳାର ଥିଲା ଉଦାସିନୀର ବେଶ, ଶତ୍ରୁଘ୍ନର ମଧ୍ୟ ଇଚ୍ଛାଜୁଟ ବେଶ ]

ଊର୍ମିଳା— ଗୀତ

କାନ୍ତି ପ୍ରବାଳ ଦ୍ରବ୍ୟ ହେମ ସର୍ବାଙ୍ଗ
ବନକୁ କରେ ଉଦ୍ଭାସ,
ପେଣ୍ଡି ପେଣ୍ଡି ହୋଇ ତରୁଯାକ ତାର
ମୁକୁତା ଚମ୍ପୁ ଶୋଭିତ ଯେ ॥
ପୁଣି କ୍ଷେପଇ, ପୁଣି ଚରଇ,
ପୁଣି ସେ ଅବୟବ ଦେଖାଇ
ନାନା ଗୀତରେ ନାନା ଗତି କରନ୍ତେ
କେ ଅବା ନୋହିବ ମୋହିତ ଯେ ।
ରାମ ଆଶ୍ରମର ନିକଟେ ଚରନ୍ତେ
ପଡ଼ିଲା ଜାନକୀ ଦୃଷ୍ଟି
କୁସୁମ ବନରୁ କୁସୁମକୁ
ତୋଳୁଥିଲେ ପଦ୍ମ-ପୟୋଷ୍ଣୀ ଯେ ॥
ହରିଲା ମୃଗ ତାଙ୍କର ମତି,
କହୁଅଛୁ ସେ ବନ୍ଧୁ ଗତି
ଅହେ ଆର୍ଯ୍ୟପୁତ୍ର, ଆସ ଆସ ଦେଖ
ଏ' କନକ ମୃଗ ଚିତ୍ର ଯେ ।
ଶୁଣି ଜାନକୀ ବୋଲନ୍ତି ହେ ଲକ୍ଷ୍ମଣ
ଏହା ବିଚାର ନ କର
ଧରି ଆଣିଲେ ସେ ଭରତକୁ ଦେବା
ନଧରି ପାରିଲେ ମାରି ଯେ ।
ରାମ ଶୁଣି ସୀତାବାର କଲେ—
କୋଦଣ୍ଡରେ ଗୁଣ ବସାଇଲେ ॥

ଶତ୍ରୁଘ୍ନ—ହେଲା ନାହିଁ—ହେଲା ନାହିଁ ।
ଊର୍ମିଳା—ଆରେ, ଏ' କି ଢଙ୍ଗ ତୋର, ଏ'କି ରଙ୍ଗ ?
ଶତ୍ରୁଘ୍ନ—ହେଲେ, ଭାଉଜ—ଯେଉଁ ଢଙ୍ଗେ ଗାଉଥିଲ ଗୀତ,
ଯେଉଁ ରଙ୍ଗେ ବସି ଏ'ଠି ଗୁନ୍ଥୁଥିଲ ମାଳା,
ତା'ରି ଅନେକ ପ୍ରସଙ୍ଗ ରହିଗଲା ବାକୀ ।
ଊର୍ମିଳା—କି ପ୍ରସଙ୍ଗ, ଶୁଣେ ?
ଶତ୍ରୁଘ୍ନ—ତୁମେ ଗାଉଥିଲ ବନବାସ ଗାଥା;
ହେଲେ, ଜ୍ୟେଷ୍ଠ ଗଲେ ଯେବେ ମୃଗ ମାରି ବନେ,
ତେଣେ ଶୁଭିଲା ଶବଦ, ହାହୁ ହାହୁ ଡାକ—
ବୋଇଲେ ଜାନକୀ, ଯାଅରେ ଲକ୍ଷ୍ମଣ,
ପଡ଼ିଲା ବିପତ୍ତି ଏବେ ଉଦ୍ଧାର ତୁ ବେଗେ ।
ଊର୍ମିଳା—ତା'ପରି ।—
ଶତ୍ରୁଘ୍ନ—ନ ଯା'ନ୍ତେ ଲକ୍ଷ୍ମଣ କୁଟୀର ତେଜଣ,
ଙ୍ଗାସିଲେ ଦେବୀ ନାନା ଅପବାଦେ—
କାହିଁ ତାହା ତୁମ ଗୀତେ ?
ଊର୍ମିଳା—ଉଃ ! ଗାଲଖିଆ ।
ଶତ୍ରୁଘ୍ନ—ତା କହିଲେ ଚଳିବ ନାହିଁ । ତୁମେ ଠାକୁରାଣୀ, ବହିତ କୁଟୀରେ ବସି—ମୁଁ ଠାକୁର ସାନ, ଦେଉଛୁ ପହରା ବସି ।
ଊର୍ମିଳା—ତା'ତ ଆଖିରେ ଦେଖୁଛୁ ।
କାନ୍ଧେ ଧନୁ, ବାଉଁଶ ପାଣ୍ଡୁଆ—
ହାତେ ବାଣ, ବାଉଁଶର କଣି—
ପିଠେ ତୂଣ, ବାଉଁଶ ନଳିଆ ।
ଶତ୍ରୁଘ୍ନ—ଅଧିକ ବି—
ଶିରେ ଜଟା ମହମର ପିଣ୍ଡା—
ଅଜିନ ବାସ ଯେ ଛିଣ୍ଡା ଲେଙ୍ଗୁଟା ।
ତା'ପରି···
ଊର୍ମିଳା—ଜ୍ୟେଷ୍ଠ ଯାଉଛନ୍ତି ମୃଗ ମାରି ଦୂରେ—
ଶତ୍ରୁଘ୍ନ—ପଡ଼ିଲା ବିପତ୍ତି ତାଙ୍କୁ ମାରିବାରି କାଳେ ।
ଊର୍ମିଳା—ପଠାଇବା ତୋତେ···
ଶତ୍ରୁଘ୍ନ—ଗାଳିଦେଇ ନାନାମତେ ।
ଊର୍ମିଳା—ହେଲେ, ହାହୁ ହାହୁ ଡାକ କାହିଁ ?
ଶତ୍ରୁଘ୍ନ—ସେଇଯା ତ—[ଅପ୍ରସ୍ତୁତ ହୋଇଗଲେ]—
ସୀତା—(ନେପଥ୍ୟେ)—ଊର୍ମିଳା, ଊର୍ମିଳା···
ଊର୍ମିଳା—ମୋ'ର ହାହୁଡାକ—(ଊର୍ମିଳା ଗୁଞ୍ଜିଗଲେ ଡାକର ବିପରୀତ ଦିଗେ)
ଶତ୍ରୁଘ୍ନ—ଯାଃ !—
ମୋର ଏତେ ସଜବାଜ, ସବୁ ଅକାରଣ ।
କହନ୍ତି ସବବେ ଭାଉଜ-ବୋଉର ଗାଳି—
ଅମୃତରୁଁ ବଳି—ପୋଡ଼ା କପାଳ ମୋର,
ଗେଲରେ ବି ଦିନେ ନ ଶୁଣିଲି ପଦେ ।
[ ସେତେବେଳକୁ ସୀତା ପ୍ରବେଶ କରି ଶତ୍ରୁଘ୍ନର ନାଟରଙ୍ଗ ଦେଖୁଥିଲେ ]

ସୀତା—ଶତ୍ରୁଘ୍ନ !
ଶତ୍ରୁଘ୍ନ—ମୋ ବୋଉଡ଼ାକେ ! (ଧାଇଁ ପଳାଇଲେ)
ସୀତା—ଏହି ତ ସ୍ୱରଗ !
ଦେଖିଛି ଜୀବନ ସାରା ଭାଇ ଭାଇ କଳି,
ଦଶରଥ ଆତ୍ମଜ କଳି-ହରା ଏ ଜଗତ ।
ତେଣୁ ପ୍ରତ୍ୟେକ ଏ' ମୋ'ର—
ନ ପାଇବି ଠାବ
ଠୁଳ କିବା ଜଗତର ପ୍ରୀତି
ଜଗତ-ପତିର ଘରେ ।
ଛାଡ଼,—ଉର୍ମିଳାଟା କାହିଁ ?
ଚିର-ବନ୍ଦନୀ, ବପୁରୀ
ରାଜ ଅନ୍ତଃପୁରେ; ତେଣୁ
ବନ କଥା ଶୁଣି, ବନେ ଯିବ ବୋଲି
ନାଚୁଥିଲା ମନେ;—
ଗଲା କାହିଁ ? ଯାଏଁ ଦେଖେଁ—
[ ଚାଲି ଯାଉଥିଲେ—ଅନ୍ୟ ଦିଗରୁ ରାଜ-ଲକ୍ଷ୍ମୀ ପ୍ରବେଶ କଲେ ]
ରାଜ-ଲକ୍ଷ୍ମୀ—ଠାକୁରାଣି ।
ସୀତା—ରାଜ-ଲକ୍ଷ୍ମୀ ! ଯାଇନାହଁ ତୁମେ ? ଅଛ ସାଥେ ସାଥେ ମୋ'ର ?
ରାଜ-ଲକ୍ଷ୍ମୀ—ଚିର-ସାଥି ପରା ସୀତା ଲକ୍ଷ୍ମୀ ଦୁହେଁ ।
ସୀତା—ଲକ୍ଷ୍ମୀ । ସରସ ସୁନ୍ଦର ସତେ, ରୂପେ ଗୁଣେ ତୁମେ !···(ହସ୍ତ ଧାରଣ)
ରାଜ-ଲକ୍ଷ୍ମୀ—ହେଲେ, ଲକ୍ଷ୍ମୀର ଗାରିମା ଏହି ସୀତା-ଯୋଗୁଁ, ସତ !
ସୀତା—ଛି, ସୀତାନାମ ମୋ'ର—
ଲଙ୍ଗଳ 'ସୀତା'ର ଫଳେ ଜନ୍ମ ବୋଲି ଭବେ ।
ମୋ'ର କେଉଁଠାଏ ସୌନ୍ଦର୍ଯ୍ୟ ?
ରାଜ-ଲକ୍ଷ୍ମୀ—ସୌନ୍ଦର୍ଯ୍ୟ-ଆକର ତୁମେ, ସୌନ୍ଦର୍ଯ୍ୟ ଅଖଣ୍ଡ,
ଶସ୍ୟ-ଶ୍ୟାମଳ ଏ ଧରା
ଆନନ୍ଦ ଆଧାର ।
ଯେଉଁ 'ସୀତା' ଗୁଣେ,
ତା'ର ପ୍ରତିରୂପ ତୁମେ ।
ତୁମେ 'ସୀତା'
ତେଣୁ ତୁମେ ପୃଥିବୀ-ଦୁହିତା,—
ଜନକ-ପାଳିତା-ରାଘବ-ବନିତା !
ସୀତା—କିବାର ପ୍ରଶଂସା ଦେଖେଁ, ତୁମଠାରେ ଭଗ୍ନୀ ! (ହସିଲେ)
ଆସ, ଆଉ ଦିନେ, ଦୁହେଁ କରିବା ଆଳାପ ।
ରାଜ-ଲକ୍ଷ୍ମୀ—ତେବେ ଅକିଞ୍ଚନ ମୋର ହେବ ନାହିଁ ଘେନା ?
ସୀତା—ମୁଁ ନ ଯିବି ବନ ?
ରାଜ-ଲକ୍ଷ୍ମୀ—ଆଜ ନୁହେଁ—ଯିବ ଆଉ ଦିନେ ସଖି, ଯଦି ତୁମ ମନ ।
ସୀତା—ରାଜ-ଲକ୍ଷ୍ମୀ !
ଅତି ସ୍ନେହେ ଅନ୍ଧ ତୁମେ;
ତେଣୁ ଦେଖୁଛ ଅଶୁଭ କିଛି; ହେଲେ,
ଶୁଭାଶୁଭ ନୁହେଁ କିଛି,—
ନମ୍ବୃତ ଭ୍ରୂକୁଟୀ, ଅବା
ଦରହାସ ତା'ର—
ତ୍ୟାଗୀ ମଣି ସମତୁଲ ହୁଅର ନିର୍ଭୀକ;
ମୋର ଜୀବନର ଶିକ୍ଷା ଲଭିଲଛି ଅଙ୍ଗେ ।
ରାଜ-ଲକ୍ଷ୍ମୀ—ତ୍ୟାଗୀ ବୋଲି ସୀତା,
ଅନ୍ତି ଭୋଗୀ ଏ ଜଗତ !
ଏହି ତ୍ୟାଗ ହେଲା, ତ୍ୟଜ ବନର ବିଳାସ !
ସୀତା—( ହାତ ଛାଡ଼ିଦେଇ ) ଏ'କି ଅଘଟନ ?
ତୁମେ ବାଧାଦିଅ ମୋତେ ?
ଓଃ, ବାଧାରେ ଅବାଧ ଗତି, ମନ ଯେ ଉଚ୍ଛନ୍ନ !
ରାଜ-ଲକ୍ଷ୍ମୀ—ଛାଡ଼ି ଏ ଅଟ୍ଟ ପଣ ।
ସୀତା—ଏ ଯେ ସ୍ୱଭାବ-ଲକ୍ଷଣ ।
ସୀତା ପରା ମୁହିଁ ? (ହସିଲେ)
ରାଜ-ଲକ୍ଷ୍ମୀ—ନୁହେଁ ଉପହାସ, ଭଗ୍ନୀ ।
ସୀତା—କି କଥା ଯେ କୁହ ?
ସୀମନ୍ତେ ସିନ୍ଦୂର—
ହାତେ ଶଙ୍ଖା ଲୁହା—
ସଂସାର କରିଲ—
ଜାଣି ନାହିଁ ଅପଚୟ ମୂଲ୍ୟ ?

ଏତେ ଆୟୋଜନ
ହେବ ଅକାରଣ କିନା ?

ରାଜ-ଲକ୍ଷ୍ମୀ—ଥିଲେ ପ୍ରୟୋଜନ ମଧ୍ୟ—

ସୀତା—ନ ଯିବ ମୁଁ ବନ ? ପତି-ପ୍ରୟୋଜନେ ମଧ୍ୟ ?

ରାଜ-ଲକ୍ଷ୍ମୀ—ପତି-ପ୍ରୟୋଜନେ ତବ, କହୁଛି ମିନତି ।

ସୀତା—ପତି-ପ୍ରୟୋଜନେ ?
ଜାଣେ ନାହିଁ କିଏ ତୁମେ ?—ଛାୟା ଅବା କାୟା ?
ମାୟା ଲଗାଇଛ ହେଲେ ଯମକର ତୁଲେ—
ଉପୁଜାଏ ଭ୍ରାନ୍ତି ସେହୁ
ଚପଳ ଗଠନ,—
ଲୋଲୁପ ଅଧର ମଦିର ନୟନ, ଆଉ
କୁଟିଳ କଟାକ୍ଷ ।
ଭାଷ ଗିର, ଯେତେବେ ତାଳ କର୍ଣ୍ଣକୁ ଅମୃତ ।—
ବୁଝିଅଛୁ ଭାବ—
ଥିଲେ ମୁହିଁ, ଥିବେ ମୋର ପତି;
କରି ଆଳ ବନ୍ଧୁ-ପ୍ରୀତି,
ସେହି ସୂତ୍ରେ ଚଳାଇବ ଗୁପ୍ତ-ପ୍ରୀତି
ନିରଙ୍କୁଶ ଗତି
ପତି ସଙ୍ଗେ ମୋର ?
ଯାଅ, ଯାଅ, ଚାଲିଯାଅ ଭଲେ ।
ନହୁବା ସୂର୍ପୀର ଦଶା ନାକେ କାନେ ଦଅାଇବ
ଦେବରର ହସ୍ତେ ।

ରାଜ-ଲକ୍ଷ୍ମୀ—ଭଗ୍ନୀ !...
[ ଉର୍ମିଳା ଭାଉ କାଉ ହଉଥିଲେ ]

ଉର୍ମିଳା—ଦେବୀ ! ଦେବୀ !!
[ ରାଜ-ଲକ୍ଷ୍ମୀ ଉଠିଯାଇ ଥିଲେ ]

ସୀତା—କି ଭଉଣୀ, କାନ୍ଦୁଛ ଯେ ?
ଲକ୍ଷ୍ମଣ କରୁଛନ୍ତି ମନା ?
ଆଚ୍ଛା, ମୁଁ କହୁଛି ଚାଲ ।
ଲକ୍ଷ୍ମଣ—ଲକ୍ଷ୍ମଣ-କଥା କି ଜାଣେ ଉର୍ମିଳା ?

ଉର୍ମିଳା—( ନୀରବ ହୋଇ ଠିଆ ହେଲେ )

ସୀତା—ଚାଲ !

ଉର୍ମିଳା—କହୁଛନ୍ତି ସେହୁ—
ରାଜାଙ୍କ ଆଦେଶ, ତୁମେ ଯିବ ଏକା—
ରାଜା ମଧ୍ୟ ନୁହେଁ ସଙ୍ଗେ ।

ସୀତା—ଭଲ କଥା ।
ନ ଯିବ ମୁଁ ତେବେ ।

ରାମ—( ପ୍ରବେଶି ବାଟଦ୍ୱାର ଦଗରୁ )
ତାହା ହେବ ନାହିଁ, ସୀତା !
ତାହାହେଲେ ପାଇବି ମୁଁ ବ୍ୟଥା ।
[ ଉର୍ମିଳା ଚାଲିଗଲେ ]

ସୀତା—ସତ କଥା, ନାଥ ?

ରାମ—ଜୀବନେ କର୍ତ୍ତବ୍ୟ ଏକ ପଡ଼ିଅଛି ବନ୍ଧା—
ତୁମେ ନ ଗଲେ ବନକୁ, ବଚୁର ହୁଡ଼ିବ ।

ସୀତା—କହୁ ନାହିଁ ତ ବଚୁର
ବର୍ଜନ ସୀତାର ? ( ହସି ହସି )

ରାମ—ସୀତା !

ସୀତା—ଛି, ଧରିଲ ମୋ କଥା ?
ଅଭିନ୍ନ ଯେ ସୀତା-ରାମ ।
ତବ ଦୁଃଖେ ଦୁଃଖୀ ସୀତା,
ତବ ସୁଖେ ସୁଖୀ,
ତବ ଧର୍ମେ ଧର୍ମ ଜାଣେ
ଜନକ ଦୁହିତା ।

ରାମ—ସୀତା ! ସୀତା !! ( ଆଲିଙ୍ଗନ କଲେ )

ସୀତା—ଛାଡ଼ ରାଜା ଛାଡ଼ ମୋହ,—
ତ୍ୟାଗୀ ବୀର ତୁମେ ।
ପୂର୍ବ ତ୍ୟାଗ ସ୍ମର ତବ, ସୁଖେ ପାଳ ରାଜ୍ୟ ।
[ ପଦଧୂଳି ଗ୍ରହଣକରି ସିଧା ସିଧା ଚାଲିଗଲେ— ରାମ କଟାକଦଳୀଗଛ ପରି କଚୁଡ଼ି ହୋଇ ପଡ଼ିଲେ ]

---

## ଅଷ୍ଟମ ଦୃଶ୍ୟ

—ବନ ପଥ—

[ ଧାଙ୍ଗଡ଼ା ଧାଙ୍ଗଡ଼ୀ ଦୁଇଜଣ ନାଚୁଥିଲେ । ନାଚ ମଧ୍ୟରେ ଧାଙ୍ଗଡ଼ା ଧାଙ୍ଗଡ଼ୀର ହାତ ଚିପି ଦେବାରୁ ଧାଙ୍ଗଡ଼ୀ ବସି ପଡ଼ିଲା । ବହୁଦୂରରୁ ଭାସି ଆସୁଥାଏ ରଥର ଘର୍ଘର ଶବ୍ଦ ]

ଧାଙ୍ଗଡ଼ୀ—ଆଃ—

ଧାଙ୍ଗଡ଼ା—କାଣ ହେଲା ବୋ ।

ଧାଙ୍ଗଡ଼ୀ—ବଡ଼େ ଭୁଲିଯିବା ହଉ ବୋ ତୁଇ । ମୋର ହାତ ଟାକେ···

ଧାଙ୍ଗଡ଼ା—କାଣା ହେଲା ଯେ ? ତୋର ହାତଟାକେ ଜୋର୍‌କର ଚିପି ଦେଲି—ଇ କଥା ତ ?

ଅନ୍ୟଧାଙ୍ଗଡ଼ା—ଆରେ ସାମରୁ ।
ବେଲ୍‌ବୁଡ଼ି ଗଲାନ୍ ଯେ, ଯାଉଁ ଯିମା ।

[ ସାମରୁ କିଛି ନ ଶୁଣିଲାପରି ତାର ଧାଙ୍ଗଡ଼ୀର ହାତ ଆଉଁସୁଥିଲା ]

ଆଉଜଣେ ଧାଙ୍ଗଡ଼ୀ—ଆରେ ଶୁଲ୍‌ ତ, ଏ ଭିଁଯୁସ୍ବା । କାଁ ହେଲାରେ ତୋର୍ ଧାଙ୍ଗଡ଼ୀର ? ବେଲ୍ ବୁଡ଼ି-ଗଲାନ୍ ଯେ, ସଭେ ଗଲେନ, ଯାଉଁ ଯିମାଁ ।

ଧାଙ୍ଗଡ଼ା—କିଛି ନାଇନ । ( ତା'ଧାଙ୍ଗଡ଼ୀ ପ୍ରତି ) ଶୁଲ୍‌ ତ । କାଣା ଏନ୍ତା ନାଇ ଶୁଣିଲୁ ବାଗିର ବସିଛୁ ଯେ ।

ଧାଙ୍ଗଡ଼ୀ—ମୁଇଁ ନଯାଏଁ ଗା । [ ଏତିକିବେଳେ ଦଳେ ଧାଙ୍ଗଡ଼ା ଧାଙ୍ଗଡ଼ୀ ପାଟି କରି ଦୌଡ଼ି ଆସିଲେ—ସେମାନେ ଇସାରରେ କହୁଥାନ୍ତି, 'ପଲେଇ ଶୁଲ୍', 'ପଲେଇ ଶୁଲ୍' ]

ଧାଙ୍ଗଡ଼ା—କାଣା ହେଲା ଯେ ?

ଅନ୍ୟମାନେ—ଇ ଆଡ଼କେ ଶୁହ ଦେଖ୍ ତ ?

ଧାଙ୍ଗଡ଼ା—ଇ ବୁଅଗୋ । ( ତାର ଧାଙ୍ଗଡ଼ୀଟା ଚମକି ପଡ଼ିଲା )

ଧାଙ୍ଗଡ଼ୀ—କାଣା ହେଲା ରେ ?

ଧାଙ୍ଗଡ଼ା—ହା'ଦେ ଇଆଡ଼କେ ଶୁହ ଦେଖ୍ ତ, ହାମର ସେଇ ସୁନାର ଜୋମା ସୁନାର ରଥେଁ ଉହ୍ଲାଇ ଆସିଲା, ଆଉ ହାମର ସର୍ଦ୍ଦାର୍ ଗୁହକ ବୁଢ଼ା ତାକେ ଢିଭ ଆସ୍‌ଛେଁ । କେଜାନ୍ ମାଁ କେନ୍ତା ମତଲବ୍‌ଥି ତାହାକା ଆନଛେଁ ଯେ—ଶୁଲ୍ ପଲାମା । ପଲାମା ।

[ ସମସ୍ତେ ପଳାଇ ଗଲେ । ସୀତା ଓ ଗୁହକ ଅନ୍ୟ ଦିଗରୁ ପ୍ରବେଶ କଲେ ]

ସୀତା—ଏମାନେ ମୋତେ ତୋମା ମନେ କରି ପଳେଇ ଗଲେ ନା କ'ଣ ?

ଗୁହକ—ସେନ୍ତା କଥାଟା ମା । ତୁଇ ଠିକ୍ ଠଉରେଇଛୁ । ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ଦୁଇଆଁଖି କାହାକେ ଖାତିର ନାଇ କରନ୍ । ହେଲେଭି କାଁ ହେଲା ମାଁ, ସେମାନଙ୍କର ତୋମାକେ ଜୀବନଥି ଡର୍ ।

ସୀତା—ମୋତେ ବୋଧ ହୁଏ ସେମାନେ ବନଦେବୀ ବୋଲି ମନେ କରିଥିବେ ।

ଗୁହକ—ଖାଲି ଏତିକି ନୁହେଁ ମାଁଇ । ଏମାନେ ଭାବିଛନ୍ ମୁଁଇ ସେମାନଙ୍କରନୁ ଭେଡ଼ିଆଁ ଭେଡ଼ିଆଁ ବାଛିକରି ତୋତେ ଦେମି ବୋଲି ନୁହ ଆଣ୍ଠୁଛେଁ । ଆଉ ତୁଇ ସିମାନଙ୍କର ମୁଡ଼ ନେଇ ଇନ୍ଦ୍ରୁଣୁ ପସ ଶୁଲିଯିବୁ—ଆଉ ବସ୍ତି ଭିତରକେ ନାଇଁ ଯିବୁ ଯେନ୍ତା ।

ସୀତା—ହେଲେ ମୁଁ ଗାଁ ଭିତରକୁ ଯିବି ଗୁହକ । ଏମାନଙ୍କର ଡର ଭାଙ୍ଗିବ । ଅନ୍ଧାରୀ ରାଇଜର ପୁଅ ଝିଅ ଏମାନେ, ଆଲୁଅ ରାଇଜର ଅସଲ ବଳ । ଏତିକି ବେଳୁଁ ଏମାନଙ୍କର ମନର ବଳ ଗଢ଼ି ନପାରିଲେ, ଆମର ରାଷ୍ଟ୍ର, ଯେତେ ଯନ୍ତ୍ର ବଳ, ପଶୁବଳର ଗର୍ବକଲେ ମଧ୍ୟ, ତାହା ଭୁଷୁଡ଼ି ପଡ଼ିବ ।

ଗୁହକ—ରାବନ୍ ରାଇଜ୍ ଥୁଁ ବେଶ ଜାନା ଯାଇଛେ ମାଁ । ତାବନଁ ତ ଆଜ୍ କେଇ ପ୍ରତାପୀ ରାଜା ନାଇଁ ଥାଇ । ହେଲେ ମାଁ । ରାମ ରାଇଜକେ ଯେନ୍ତା ଇ କଲଙ୍କ ନି ଲାଗେ ।

ସୀତା—ଠିକ୍ କଥା କହୁଛ, ଗୁହକ । ଶୁଲ୍······

[ ଲକ୍ଷ୍ମଣ ପ୍ରବେଶ କଲେ ]

ଲକ୍ଷ୍ମଣ—ଦେବୀ ।

ସୀତା—ଓଃ, ବିଳମ୍ବ ହେଉଛି ? ଅଚ୍ଛା ଗୁହକ ! ମୁଁ ରାଜାଙ୍କୁ ଜଣେଇ ଲୋକଶିକ୍ଷାର ବ୍ୟବସ୍ଥା ଶୀଘ୍ର କରୁଛି । ଶିକ୍ଷାର ଆଲୋକ ବିନା ତାହାର କୁସଂସ୍କାର ଦୂର ହେବ,—ଏହା ଅସମ୍ଭବ ।

ଗୁହକ—ମୋର ଘର୍ କେ ବକେ ନାଇ କର୍ ରୁ ମାଁ ?

ସୀତା—ଫେରିବା ବାଟରେ ଅବଶ୍ୟ କରିବି, ଗୁହକ,—

ଗୁହକ—ଭୁଲ୍ ନାଇ ଯାଉ ସେଲ୍ତା ।

ସୀତା—ଗୁହକର ଆତିଥ୍ୟ ଭୁଲି ଗଲେ ଯେ, ରାମାୟଣର ମାହାତ୍ମ୍ୟ ଭୁଲ୍ ହୋଇଯିବ ।

[ ଗୁହକ ନମସ୍କାର କରି ଚାଲିଗଲା ]

---

## ନବମ ଦୃଶ୍ୟ

—ବନପଥ—

[ ରଥର ଘର୍ଘର ଶବ୍ଦ ଶୁଣା ଯାଉଥିଲା । କିଛିକ୍ଷଣ ପରେ ଦେଖାଗଲା ପର୍ବତ ଝରଣା । କୁଳୁ କୁଳୁ ନାଦରେ ଖରସ୍ରୋତା ନଦୀର ଧାରାଟିଏ ବୋହି ଯାଉଛି । ଚାରିଆଡ଼େ ଗଭୀର ଅରଣ୍ୟ । ରଥର ଶବ୍ଦ କ୍ରମଶଃ ନିକଟ ହୋଇ ଆସିଲା ]

ସୀତା—ରଖ ରଖରେ ଲକ୍ଷ୍ମଣ, ରଥ ଏଇଠାରେ ।
(ନଦୀକୁ ଦେଖି) କେଉଁ ନଦୀ ଏ ଲକ୍ଷ୍ମଣ ?

ଲକ୍ଷ୍ମଣ—ନଦୀ ସରସ୍ୱତୀ ।

ସୀତା—ନଦୀ ସରସ୍ୱତୀ ! (ଅଗ୍ରସର ହୋଇ ନଦୀଜଳ ସିକ୍ତ ହେବାକୁ ଲାଗିଲେ; ଏତିକିବେଳେ ସୁମନ୍ତ୍ର ପ୍ରବେଶ କଲେ )

ଲକ୍ଷ୍ମଣ—( ଏକାନ୍ତରେ ) ଘେନିଯାଇ ରଥ ଦୂରେ, କରିବ ଅପେକ୍ଷା ।

ସୁମନ୍ତ୍ର—( ଯଥା ଅଭିବାଦନ ଜଣେଇ ଚାଲିଗଲେ )

ସୀତା—( ଅତି ବିଭୋର ହୋଇ ନଦୀପ୍ରତି )
ମାତଃ ସରସ୍ୱତୀ !
ଖର ସ୍ରୋତ ପରି ତବ, ଦିନ ଯାଇଅଛି ବହି;
ମାନ ସ୍ମୃତି ତା'ର ବେଳା ବାଲିକଣା ସମ
ପଡ଼ିଅଛି ରହି ।
ଏହି ସେ ତଟାଣି, ଯହିଁ
କାନ୍ତ ସଙ୍ଗେ କାନ୍ତା
ଏକାନ୍ତେ ବସିଣ କେତେ କହିଅଛି କଥା !
ଗଭୀର ଅରଣ୍ୟ ତହିଁ
ନିଶାର ଅନ୍ଧକାର ହେଲେ ମୁଖରିତ
ଗୁରୁ ଶାର୍ଦ୍ଦୁଳ ଗର୍ଜନେ,
ଭାଙ୍ଗି ଯାଏ ସ୍ୱପ୍ନ—
କମ୍ପିତ ହୁଅରେ କାନ୍ତା ଜଡ଼ାଏ କାନ୍ତଙ୍କୁ···
ମା ଗୋ !···
କେତେ ରଙ୍ଗେ କେତେ କେଳି ରଚନ୍ତି ତୋ କୂଳେ,
ଭଜନ୍ତି ସନ୍ତାନ ପରି ଢାଳୁଥାଇ ସ୍ନେହ;
ହେଲେ ତୁ ଦେଉଛୁ କୋଳ, ସନ୍ତାପ ନବାର !···
ଲକ୍ଷ୍ମଣ ! ଲକ୍ଷ୍ମଣ ! !
କର, ଆୟୋଜନ ବେଗେ ସେହି ଦିନପରି
କରିବି ମୁଁ ସ୍ନାନ ଆଜ ନିଭୃତେ ଏକାକୀ ।

ଲକ୍ଷ୍ମଣ—ଦେବୀ ! ନାହିଁ ଯୋଗ୍ୟ ପ୍ରସାଧନ ଏଁଠି—
ରାଜଅନ୍ତଃପୁରେ ତାହା ।

ସୀତା—ଓ—ରାଜରାଣୀ ପରି ଏବେ !
ରାଜରାଣୀ ଯୋଗ୍ୟ ପ୍ରସାଧନ, ନାହିଁ ଏ ଅରଣ୍ୟେ ?
( ହସିଲେ )

ଲକ୍ଷ୍ମଣ—ଦେବୀ !

ସୀତା—ନ ହୁଅ ବିବାଦୀ, ଭାଇ,
ଯାଅ ତ୍ୱରା ଏଁଠୁ—
ଆଣ ଇଙ୍ଗୁଦୀର ତେଲ, କରିବି ମର୍ଦ୍ଦନ—
ଛେଲି ଅଣ ବୃକ୍ଷଛାଲି, ହେବ ଅଙ୍ଗବାସ—
ତୋଳିବ ବନର ଫୁଲ, ସାଜିବି ମୁଁ ଗଭା—
କନ୍ଦମୂଳ ଖୋଳି ଅଣ, ସାରିବି ମଣୋହି ।

ଲକ୍ଷ୍ମଣ—ମାତଃ, ଅସ୍ତାଚଳେ ଡୁବେ ରବି
ଲୋହିତ ବରଣେ ।

ସୀତା—(ଚମକି) ଏଁ ! (ଚେଇଁକି ଚକାଇ ଦେଖିଲେ)
ଚିରି ଛାୟା ଆସେ ମାଡ଼ି ଅସୁରର କାୟା—
ଲାଗେ ଭୀତ—ଚାଲ, ଘରେ ଯିବା ଫେରି—

ଲକ୍ଷ୍ମଣ—ଦେବୀ !

ସୀତା—ଲକ୍ଷ୍ମଣ !

ଲକ୍ଷ୍ମଣ—( ନୀରବ )
ସୀତା—ଏ' କଣ ? ନୀରବ କିମ୍ପାଇଁ ?
  କାନନ ବିହାର ଫଳେ ପଡ଼ିଲାକି ମନେ
  ସେଇ ଅତୀତର ସ୍ମୃତି,
  ବନବାସ ମୌନବ୍ରତ କଥା ?
ଲକ୍ଷ୍ମଣ—ଦେବୀ ! ( ଆଖିରେ ଓ ମୁହଁରେ ଫୁଟି
  ଉଠିଥାଏ ବ୍ୟାକୁଳତା କୋହର ଚିହ୍ନ )
ସୀତା—ଲକ୍ଷ୍ମଣ ! ( ସବିସ୍ମୟେ )
ଲକ୍ଷ୍ମଣ—( ଆତ୍ମ ସମ୍ବରଣ କରି ) ଦେବୀ !
  ଘରେ ଯିବେ ଫେରି, ନାହିଁ ଏ ଆଦେଶ ।
ସୀତା—ଆଦେଶ ?
ଲକ୍ଷ୍ମଣ—ନୁହେଁ ଏ ଆଦେଶ ଦେବୀ,
  ବିଚାରକର ବିଚାର ।
ସୀତା—ବିଚାର ?
ଲକ୍ଷ୍ମଣ—ହଁ ମାତା ! ବିଚାରକର ବିଚାର—
  ଦେବୀ ନିର୍ବାସିତା ।
ସୀତା—ନିର୍ବାସିତା ?
ଲକ୍ଷ୍ମଣ—ଦେଖନ୍ତୁ ଏ ଭୂର୍ଜ୍ଜପତ୍ର । (ଭୂର୍ଜ୍ଜପତ୍ର ଦେଖାଇଲେ)
ସୀତା—( ପଢ଼ି ) 'ପଥ ପଚାରି ପିତା ଘର ଯିବ,
  ଆଉ ଅଯୋଧ୍ୟା ମନେ ନ କରିବ !'
ଲକ୍ଷ୍ମଣ—ଦେବୀ ! ପିତାଘର ତବ ବାଲ୍ମୀକି ଆଶ୍ରମ—
  ନୁହେଁ ବହୁ ଦୂର ।
  ଅଦୂରେ ତ୍ୟଜିଣ ଯିବି, ଥିଲା ଏ' ଆଦେଶ ।
ସୀତା—( ବ୍ୟଙ୍ଗ ଭାବରେ ) ଆହୁରି ଆଦେଶ ଥିବ,—
  ଛିନ୍ନଶିର ଘେନି ଯିବ, ପ୍ରମାଣ କାର୍ଯ୍ୟର ।
ଲକ୍ଷ୍ମଣ—ଜନନୀ !
ସୀତା—ବୁଝିଛି ଅନ୍ତର । ଦେନିଯାଅ ରତ୍ନହାର ଏହି,
  ପ୍ରାଣରୁ ଅଧିକ—
  ନିବେଦି ପଦ୍ମରେ ତାଙ୍କ
  କହିବ ଏତିକି—
  ଛିନ୍ନ ଶିରୁଁ ବଳି ଏହା ମଣିବେ ସୀତାର ।
   [ ହାର ଛିଣ୍ଡାଇ ଲକ୍ଷ୍ମଣଙ୍କୁ ଦେଲେ—ଲକ୍ଷ୍ମଣ
   ଆଉ ରହି ନ ପାରି ଝଲି ଝଲି ଚାଲିଗଲେ ]

ସୀତା—ଲକ୍ଷ୍ମଣ ! ଲକ୍ଷ୍ମଣ ! !
  ଶୁଣିରେ ଦେବର ପ୍ରିୟ, ଘେନି ଯାଅ ସଙ୍ଗେ ।
  ନ କର ଛଳନା ।
  ମୋ'ରି ପାଇଁ ତୁମେ ଛାଡ଼ିଥିଲ ସୁଖ,
  ଛାଡ଼ିଣ ଉର୍ମିଳା, ଛାଡ଼ି ଶୟନ ଭୋଜନ
  ଚୌଦ୍ଦ ବର୍ଷ କାଳ;
  ନ ହୁଅ କଠିନ,—ଡାକଇ ଆତୁରେ ଦେବୀ,
  ଆତୁରାଇ ଚିତ୍ରବନ ସେହି ଦିନ ପରି,
  ଯେଉଁ ଦିନ ହରିଥିଲା ମାୟାବୀ ରାବଣ;
  ମାୟାରେ ମୋହରି ତୁମେ କାନ୍ଦିଥିଲ, ଭାଇ,
  ଡକାପାରି 'ମାଆ, ମାଆ',—'ଭାଇ'ରୁ ଅଧିକ ?—
  ଲକ୍ଷ୍ମଣ ! ଲକ୍ଷ୍ମଣ ! !
  ଚାଲିଗଲ, ନ ଶୁଣିଲ ଡାକ ।
  ଶୁଣିବ କିପରି ? ସେ ଯେ ଘାତକ ବଧିର,
  ବଧ୍ୟ ମୁଁ ତାହାରି ।
   [ ଏହି ସମୟରେ ପର୍ବତ ଗୁମ୍ଫାରେ ଶାର୍ଦ୍ଦୁଳର
  ଗର୍ଜନ ଶୁଣାଗଲା । ତାହାର କୁହାଟରେ ଚିତ୍ରବନ
  ଥରିଉଠିଲା ]
  ଏହି ଶାର୍ଦ୍ଦୂଳ ଭୀଷଣ, କରଇ ଗର୍ଜନ—
  ପଲକେ ଆସିବ ଧାଇଁ, ବ୍ୟାଦିତ ବଦନେ—
  କରିବ ଚର୍ବଣ, କରି ଛିନ୍ନ ଭିନ୍ନ ମୋତେ !···
  ଧର ଧର ନାଥ, ଧର ସେହିପରି ବକ୍ଷେ,
  ଧର ଗୋ ଜାପୁଟି ।
   [ ଶାର୍ଦ୍ଦୁଳ ଭୟରେ ସୀତା ନିକଟସ୍ଥ ବଟ
  ବୃକ୍ଷର ଶିଅ ବୋଲି ଯାହାକୁ କୁଣ୍ଢାଇ ପକାଇଲେ,
  ତାହା ଗଛରୁ ଓହଳିଥିବା ଗୋଟାଏ ସାପ । ସୀତା
  ଚିତ୍କାର କରି, ଛିଟିକି ଅଲଗା ହୋଇଗଲେ !
   କିଛିକ୍ଷଣ ଆଖି ମୁଦି ରହିଲେ, ତା' ପରେ—]
  କାହିଁ, କାହିଁ ସେ ଶ୍ୱାପଦ, କାହିଁଗଲା ଲୁଚି ?
  ବଣ୍ୟ ପଶୁ ଗୋଷ୍ଠୀ, କରୁଣା ଅପାର ତା'ର !
  ଦେଖି ନାରୀର ବିପଦ, ଗଲା ସେ ଲେଉଟି—
  ଆଉ, ସଭ୍ୟ ନର ?—କି ତା'ର ଅନ୍ତର—
  ଅନ୍ତର କରଇ ନାରୀ ବିପଦ ଯେ ମଣି ?
  ଛାଡ଼, ଚିର ଅଭାଗିନୀ ସୀତା; ତେଣୁ—

ନିର୍ବାସିତା ଆଜ ।
ହେଲେ, କେଉଁ ଅପରାଧେ ?
ନାହିଁତ ଉଲ୍ଲେଖ ତାହା ଆଦେଶ ପତ୍ରରେ ।
ଅଦ୍ଭୁତ ବିଚାର ।
ଯାହାର ବିଚାର, ନ ଜାଣିଲା ସେହି ଲୋକେ—
ବିଚାରେ ତାହାର ହୋଇଗଲା ଦଣ୍ଡ—
ଚରମ ଯା' ମାନବର ହସ୍ତେ । ସ୍ୱାମୀ !
ଏ'କି ଅବିଚାର ତବ । କ'ଣ, ପତ୍ନୀ ବୋଲି ମୁହିଁ ?
ନାହିଁ ପ୍ରଜା ଅଧିକାର ?
ରାଜା ପରା ତୁମେ, ନ୍ୟାୟ ଦଣ୍ଡଧାରୀ ?
ତେବେ······ଏ'କି ସ୍ୱୈତ ? ରାଜ-ଲକ୍ଷ୍ମୀ ?
ସେହି କି ସପତ୍ନୀ ମୋ'ର ?
ତାହାର କୁହୁକେ ଭୁଲି—ନା, ନା,
ନ ପାରେ ମୁଁ ଚିନ୍ତି;
ଚିତ୍ତରେ ଚିତାର ବହ୍ନି ଉଠିଛି ପ୍ରଜ୍ୱଳି—
ଘୃଣା, ହିଂସା, କ୍ରୋଧ ମିଶି ଖୁଞ୍ଚାଉଛି ତାହା—
ଅସହ୍ୟ, ଅସହ୍ୟ—
ନିଭାଇବ ବକ୍ଷଜ୍ୱାଳା, ଲଭି ଶୀତଳ ଆଶ୍ରୟ
ମାତୃବକ୍ଷ ତଳେ ।

[ ଝମ୍ପ ପ୍ରଦାନ କରିବାକୁ ଯାଇ, କେଉଁ ସ୍ମୃତି-ଦଂଶନରେ ନିରସ୍ତା ହେଲେ ]

କିନ୍ତୁ ପଞ୍ଚମାସ ଗର୍ଭବତୀ ମୁହିଁ,—
ଭ୍ରୂଣହତ୍ୟା କରିବି କେମନ୍ତେ ?
ଓଃ, କେହି କି ନାହିଁ ମୋ' ସାହା,
ଏ ବିଶ୍ୱ ବ୍ରହ୍ମାଣ୍ଡେ ?

[ ଏହି ସମୟରେ ପାହାଡ଼ର ଉପରଭାଗରୁ ବୃକ୍ଷଲତା ଅନ୍ତରାଳରୁ ଗୁରୁଗମ୍ଭୀର ସ୍ୱରରେ ଶୁଣାଗଲା ସ୍ତୋତ୍ରପାଠ । ଧୀରେ ଧୀରେ ବାଲ୍ମୀକି ସୀତାଙ୍କ ନିକଟକୁ ଆସିଲେ । ତାଙ୍କର ଏକ ହାତରେ ଥାଏ କମଣ୍ଡଳୁ, ଅନ୍ୟ ହାତରେ ସମିଧକାଷ୍ଠ । ]

ବାଲ୍ମୀକି—କିଏ ତୁମେ ମାଆ—ଦେବୀର ପ୍ରତିମା
ନଦୀ ଗର୍ଭେ ଦେଉଥିଲ ବିସର୍ଜନ ପ୍ରାଣ ?

ସୀତା—ମୁନିବର । ମୁହିଁ ଅଭାଗିନୀ ସୀତା ।

ବାଲ୍ମୀକି—ସୀତା ? ମୋର ମାନସ-ଦୁହିତା ?

ସୀତା—ପିତା, ନିର୍ବାସିତା ମୁହିଁ ।

ବାଲ୍ମୀକି—ନିର୍ବାସିତା ?—କେଉଁ ଅପରାଧେ ?

ସୀତା—ଜାଣେ ନାହିଁ, ପିତା !

ବାଲ୍ମୀକି—ଜାଣ ନାହିଁ ଅପରାଧ, ଅଥଚ ଦଣ୍ଡିତା ।
ରାମ-ରାଜ୍ୟେ ଏ'କି ଅଘଟନ ? ଚିନ୍ତା ନାହିଁ—
ଚିନ୍ତା-ଯୋଗେ ଜାଣିବି ସମସ୍ତ ।

[ ସୀତା ଉଦ୍‌ଗ୍ରୀବଭାବେ ପ୍ରତୀକ୍ଷା କରିବାକୁ ଲାଗିଲେ—ଧ୍ୟାନାନ୍ତେ ବାଲ୍ମୀକି ପ୍ରସନ୍ନ ଦୃଷ୍ଟିରେ କହିଲେ ]

ସୀତା ମୋର ସତୀ ।
ସୀତା ମୋର ସୁବର୍ଣ୍ଣ ପ୍ରତିମା—
ସୀତା ବାଲ୍ମୀକି ପ୍ରତିଭା—
ସୀତା କାବ୍ୟର ନାୟିକା—
ସୀତା ଆନନ୍ଦ ସଦନ । (ଶ୍ୱାସ ଛାଡ଼ି)
ଆଜ ସେହି ଅଗ୍ନି-ନିକଷିତା ସୀତା,—
ଜନକ ଦୁହିତା—
ବିସର୍ଜିଛି ରାମ ଏକ ଆଦର୍ଶର ମୋହେ ।

ସୀତା—ଆଦର୍ଶ ? (ଅନୁଚ୍ଚ କଣ୍ଠରେ)

ବାଲ୍ମୀକି—ନ ସହିବ ଏହା—
ଦଣ୍ଡଧାରୀ ରାମେ ମୁହିଁ ଦେବି ଅଭିଶାପ ।
( କମଣ୍ଡଳରୁ ଜଳଗ୍ରହଣ କଲେ )

ସୀତା—ନୁହେଁ ଅଭିଶାପ, ଦିଅ ଆଶୀର୍ବାଦ ।
ପତିର ଆଦର୍ଶ ହେଉ ପତ୍ନୀ ସାର ବ୍ରତ ।

[ ଅବନତ ହେଲେ । ବାଲ୍ମୀକିଙ୍କ ଅଭିଶାପ-ମୁଖୀ ଜଳଗଣ୍ଡୂଷ ଆଶୀର୍ବାଦ-ଧାରା ରୂପେ ବର୍ଷିତ ହେଲା ଜାନକୀଙ୍କ ଶିରୋଦେଶରେ ]

—ଯବନିକା—

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ବାଲ୍ମୀକିଙ୍କ ଆଶ୍ରମ—

[ ଲଟା ଦୋଳରେ ଲବକୁଶ ଦୁହେଁ ଦୋଳାୟମାନ ଦୃଶ୍ୟର ଅସ୍ପଷ୍ଟତା ମଧ୍ୟରେ କେବଳ 'କୁଆଁ' କୁଆଁ' ରବ ଶୁଣାଗଲା । ଅନନ୍ତର ସ୍ପଷ୍ଟ ଆଲୋକରେ ଦେଖାଗଲା—ଜାନକୀ ଦୋଳି ନିକଟରେ ଥାଇ ତାହା ଝୁଲାଉଛନ୍ତି ଓ ଗୁଣୁ ଗୁଣୁ ଦୋଳି ଗୀତ ଗାଉଛନ୍ତି । ଆଜି ଏକୋଇଶା ସେଥିପାଇଁ ମୁନିକନ୍ୟାମାନେ ଫଳ ମୂଳାଦି ନାନା ଉପଢୌକନ ନେଇ ପ୍ରବେଶ କଲେ, ତାହା ଦୋଳି ନିକଟରେ ଜମା କଲେ, ଦୋଳିରେ ସସ୍ନେହ ପରଶ ଦେଲେ, ପରିଶେଷେ ଝୁଲଣି ଗୀତରେ ଯୋଗ ଦେଲେ ନିମ୍ନୋକ୍ତ ଭାବରେ— ]

—ଗୀତ—

ସୀତା— ନାନା ନାନାନା ନାନା ନାନାନା
ଝୁଲଝୁଲ ଝୁଲ ଝୁଲ ଝୁଲଝୁଲ,
ଝୁଲ ଜାନକୀ ଆଖିରେ
(ମୁଁ) ସବୁ ଭୁଲେ, ସେ ରୂପଛବି ନିରେଖି ॥
ଝୁଲ ଅଞ୍ଚଳ ନିଧିରେ, ମୋ ହୃଦୟ ଶଙ୍ଖାଳୀ,
ନନ୍ଦନ ତୀରେ ତୀରେ ଝୁଲ. ନ[illegible] ତଳି ରେ,
ମୁଁ ଜନମ ଜନମର ଦୁଃ[illegible] [illegible]ଶୋରେ,
ରାଖିଚି ବୁକୁରେ କାକି ॥ ଝୁଲ ଝୁଲ—

ଋଷିକନ୍ୟା—ସରଯୂ-ପୁଲିନ-ବନ-ଉଟିଆ-ହାତୀରେ
ଅଯୋଧ୍ୟା-ଧର୍ମ-ରତନ-ନବନୀତ ମୂରତିରେ,
ଟୋଲ ଚନ୍ଦ୍ର ବଦନେ ଢେଲେ ହସ ଝଲକି
ଝୁଲଝୁଲ—

ଋଷିକୁମାର—ଜୁଳୁ ଜୁଳୁ ଆଖିପତା ଲାଗିଲା କି ଭାସିରେ,
କୋମଳ କମଳ କଳା ନିଦେ ହେବ ଘାରି ରେ,
ଅଟଳ ରାମ ଶକତି ପଡ଼ିବନି ଥକିରେ ॥
ଝୁଲଝୁଲ—

ବାଲ୍ମୀକି—[ ଅଦୂରେ ଥାଇ ସ୍ମିତ ଦୃଷ୍ଟିରେ ଦେଖୁଥିଲେ ଓ ଗୀତ ଶେଷରେ କହିଲେ— ]
ରାମ-ତନୁଜ ବେନି—ରାମର ପୁଲକ ?—
ଉପୁଜାଏ ଭ୍ରାନ୍ତି ମନେ,—ରବି ଶଶି କିବା ମିଳି
ପଡ଼ିଅଛି ଖସି, ବାଲ୍ମୀକି ଆଶ୍ରମେ ଆଜି !
ଆଉ ଟେଣେ—
ରାମରହିତ ଛବି ହେରେ ଅଯୋଧ୍ୟାନଗରେ—
ଦିବାନିଶି ଅନ୍ଧକାର ଘରେ ଘରେ ପୂରି ।

---

## ଦ୍ୱିତୀୟ ଦୃଶ୍ୟ

—ଶମ୍ଭୁଆର ଘର—

[ ପୂର୍ବଶ୍ରୀ ଆଉ ନାହିଁ । ଶମ୍ଭୁଆ ଖଣ୍ଡେ ଦରପୋଡ଼ା କାଠନିଆଁରେ ପିକା ଲଗାଉ ଲଗାଉ କହିଲା ]

ଶମ୍ଭୁଆ—ଯା'ର ଘର ସେ ଯଦି ନ ବୁଝିଲା, ମୋର କ'ଣ ? ଘର ରହିଲେ କେତେ, ପୋଡ଼ିଗଲେ କେତେ ?

କେମା—( ପ୍ରବେଶ କଲା । ପିଠିରେ ଲୁଗା ଚଣ୍ଡିର ଭିଡ଼ିଥାଏ ) ହଁ ଭାଇ ! ଘର ରହିଲେ କେତେ—ପୋଡ଼ିଗଲେ କେତେ—

[ ଶମ୍ଭୁଆ ହାତରୁ ପିକାଟି କାଢ଼ି ନେଇ ପିଇବାକୁ ଲାଗିଲା । ]

ଶମ୍ଭୁଆ—( ପିକା ଛଡ଼େଇ ନେଇ ) କେମା ! ମୋ ଘର କଥାରେ ତୁ ପାଟି ଫିଟେଇବାକୁ କିଏ ?

କେମା—ପାଟି ଫିଟିବ ନାହିଁ ବୋଲି—

ଶମ୍ଭୁଆ—ମୋ ପିକାଟା ପାଟିରୁ ଛଡ଼େଇ ନେଇଥିଲୁ ? ନିଲଠା ! ଗଲୁ ଗଲୁ ତୋ ପାଇଟିକି । ରାଜା ଓ ରାଇଜର ଦଶା ଦେଖୁଛୁ କ'ଣ, ଆଗୁଣ ବେହେଲ ?

କେମ୍ପା—[ ପିଠିରୁ ବୋଝ ଓହ୍ଲାଇବାକୁ ଲାଗିଲା ]

ଶମ୍ଭୁ ଅ—କାହିଁକି ରେ ବୋଝ ଓହ୍ଲାଇଲୁ ଯେ ?

କେମ୍ପା—ପାଇଛିତ ସାଇବାକୁ ହବ ( ବୋଝ ଉପରେ ବସିଲା )

ଶମ୍ଭୁ ଅ—ବୁଝିଲୁ କେମ୍ପା, ଏଇଟା ଧୋବା ଭୂତ ନୁହଁ—ତୁ ଏଠି ଲୁଗା କାଚରୁ—ଲୁଗାରୁ ମଇଳା ଛଡ଼େଇବୁ ।

[ ହାତରୁ ପିଢା ଖସି ପଡ଼ିଲା, କେମ୍ପା ସେ ପିଢା ଉଠାଇ ନେଇ ]

କେମ୍ପା—ହଁ, ଏଇଟା ଧୋବା ଘର ବୋଲି ବା କିଏ ଆଉ କହିବ ? ଧୋବଣୀ ତ ନାହିଁ ।

ଶମ୍ଭୁ ଅ—କେମ୍ପା !

କେମ୍ପା—ରାଗିଗଲେ କଣ ହବ, ଭାଇ ? ଆପଣା ମନକୁ ପଚାର—ଯେତେ କାଚିଲେ ବି କଳୁଲୁଗା ଆଗପରି ଧୋଧିଆ ଧୋବଲା, ଶୁଭ୍ର ହଉଚକି ?

(ପିଢା ଟାଣିବାକୁ ଲାଗିଲା)

ଶମ୍ଭୁ ଅ—ହୁଁ ଧୋବଣୀର ହାତ ଲାଗୁନାହିଁ ବୋଲି, ନା ? ହେଲେ, ମୋ ଘର କଥାରେ ତୁ ପାଟି ଫିଟେଇବାକୁ କିଏ ?

କେମ୍ପା—( ଠାରି ଦେଖେଇଲା, ଯେ ତା’ ପାଟି ବନ୍ଦ )

ଶମ୍ଭୁ ଅ—ଆରେ, କେମ୍ପା, ବୁଝିଲୁନା—ସେଦିନ ଯେଉଁ କାମର ଭିଡ଼—ସାଆନ୍ତଙ୍କର ତାଗିଦା—ଏକୁଟିଆ ମୁଁ—ଘାଟକୁ ହେବ, ନା, ଭାଟିକୁ ହେବ—ଏତକବେଳେ ଧୋବଣୀଟା ହଲି ହଲି ବାପଘରୁ ଆସିଗଲା—ମୁଁ ହୁଡ଼କରି ପଦେ ହାଣି ଦେଲି—ଧୋବଣୀଟା ହୁଟ୍‌କରି ଘରଛାଡ଼ି ଚାଲିଗଲା । ରଜାଙ୍କ କାନକୁ କେଉଁ ସୁଗ୍‌ରେ ତା’ କହିବା ପଦକ ଗଲା—ରଜା ବି ସେଇ ଶୁଣିବାକୁ ଆଳ କରି ଠାକୁରାଣୀଙ୍କୁ ତେଜ୍ୟା କଲେ । ଏଇ ମଝି କଥାଟିକୁ ନ ବୁଝି ନ ସୁଝି—ଯେମିତି କାଉ ଭାଇମାନେ, ସେମିତି ରାଇଜସାରା ସଭିଏଁ, —ମୋ’ ପେଇଁ ଖାଲି ବଦନାମ ରଟେଇ ଦେଇ ହଉଚନ୍ତି ।—ମୋତେ ପୁଣି ଏକଘରିଆ କରିବେ ବୋଲି ମେଣ୍ଟ ବାନ୍ଧିଥିଲେ, ହେଲେ ସବୁ ମସୁଧା ଫସରଫାଟି ଗଲା, ଯେମିତ ରଜା ତେଙ୍ଗୁରା ଦିଆଇଚନ୍ତି ଯେ, ତାହାର ଘର-କଥାରେ କେହି ରହିବ ନାହିଁ । ଅଉ—ଅଉ ତୁ ଗୋଟାଏ ମେକଡ଼ ଛୁଆ, ମୋ ଘରକଥାରେ ପାଟି ଫିଟେଇବାକୁ କିଏ ?

କେମ୍ପା—ହଁ, ମୁଁ କିଏ ? କେହି ନୁହେଁ—କେହି ନୁହେଁ—( ଶେଷ ପ୍ରାୟ ପିଢାଟିକି ଫିଙ୍ଗିଦେଇ, ଉଠି ଠିଆ ହେଲା । )

ଶମ୍ଭୁ ଅ—କାରେ, ଏଇପାଇଁ ସାଇବାକୁ ବସିଥିଲୁ ପରା—ବାହାର—ବାହାର—

କେମ୍ପା—ଯଉଁ ଧୂଆଁର ଠେଲା, ଅଜକ ହେଲା କରିପାରେ ?—

( ଗଣ୍ଠିଲା ପିଠିରେ ପକେଇ ବାହାରିଲା )

ଶମ୍ଭୁ ଅ—( କୋମଳ କଣ୍ଠରେ ) କେମ୍ପା !

କେମ୍ପା—ଡାକିଲ ଭାଇ ? ମୁଁ ତ ତମ ଘର କଥାରେ ପାଟି ଫିଟେଇବି ନାହିଁ—ମୋତେ ପୁଣି ଡାକୁଛ କାହିଁକି ?

ଶମ୍ଭୁ ଅ—ଆରେ, ରଜାଘର କଥାକୁ କହୁଚି । ଆମ ରଜା କେଡ଼େ ନିଘରିଆ କାମଟାଏ କରି ପକାଇଲେ, ଛାର ଧୋବା ଘରକଥାକୁ ଆଳକରି କହ ତ ? ଆମକୁ ଭଲ ଥରେ ଉକେଇ ପଠେଇ ଥାଆନ୍ତେ ।

କେମ୍ପା—ତା’ ହେଲେ ତ ଆମର ରଜା ସବୁ ରଜାଙ୍କ ସଙ୍ଗେ ସମାନ ହେଇ ଯା’ନ୍ତେ ।

ଶମ୍ଭୁ ଅ—ମାନେ ?

କେମ୍ପା—ପ୍ରଜାର ତୁଣ୍ଡ କଥା ଶୁଣି, ଇମିତି ସବୁ ରଜା ପ୍ରଜାଙ୍କ ଗୁହାରି ମେଣ୍ଟାଇ ଥାନ୍ତି । ହେଲେ, ପ୍ରଜାର ମନ-କଥା ଜାଣି ଯଉଁ ରଜା ପ୍ରଜାଙ୍କ ଗୁହାରି ମେଣ୍ଟାଏ, ତାକୁଇ ସିନା କହିବ ରଜା ! ( ରାଜାଙ୍କ ଉଦ୍ଦେଶ୍ୟରେ ଓଳକି ହେଲା )

ଶମ୍ଭୁ ଅ—କଥାଟାଏ କହିଚୁ, କେମ୍ପା—ସତେରେ ଆମର ରଜା ଠାକୁର-ରଜା ।

( ଭକ୍ତିଭରେ ପ୍ରଣାମ କଣାଇଲା )

---

## ତୃତୀୟ ଦୃଶ୍ୟ

—ଅଯୋଧ୍ୟା । ରାମଚନ୍ଦ୍ରଙ୍କର ଶୟନ-କକ୍ଷ—

[ ରାତ୍ରୀ ବିଷାଦର ଗମ୍ଭୀରତା ଉପରେ ଘୋର ଜଣା ଯାଉଥିଲା । ବିଷଣ୍ଣ ମନରେ ରାମଚନ୍ଦ୍ର ପଲଙ୍କ ଉପରେ ବସିଥିଲେ, ହାତରେ ଥିଲା ସୀତାଙ୍କର ସେହି ଛିନ୍ନ ହାରଟି । ]

ରାମ—(ଦୀର୍ଘ ନିଃଶ୍ୱାସ ତ୍ୟାଗକରି) ଦୀର୍ଘ ଶ୍ୱାସେ ମିଶି—
ଦୀର୍ଘ ଦଶବର୍ଷ ଆଜି ଯାଇଅଛି ବିତି ;
ତଥାପି ଜାନକୀର ସ୍ମୃତି ଅବିଚ୍ଛିନ୍ନ ସୂତେ
ଏହି ଛିନ୍ନ ହାର ସାଥେ
ରହିଅଛି ଗୁନ୍ଥା !
ସୀତା ! ସୀତା ! ! !

[ ଉଦ୍‌ବେଳିତ ଚିତ୍ତରେ ବୁକୁରେ ହାରଟି ସ୍ଥାପନ କରି ଚକ୍ଷୁମୁଦ୍ରିତ କଲେ ]

ତାରା—( ଛାୟା ମୂର୍ତ୍ତି ) ହାଃ, ହାଃ, ହା, ହାଃ—

ରାମ—କିଏ ?

ତାରା—ମୁହିଁ ତାରା ।

ରାମ—( ବିସ୍ମୟେ ) ତାରା ?

ତାରା—ରାଜା, ମନେକର ବାଲେ କପଟ ସମର କଥା ।
କୂଟପଣେ କରି ପତିହୀନା ମୋତେ
କନ୍ଦାଇଲ ଯେତେ,
କାନ୍ଦିବ ସେତିକି ସିନା ସତୀ ଅଭିଶାପେ ।

ମନ୍ଦୋଦରୀ—( ଛାୟା ମୂର୍ତ୍ତି )
ମନ୍ଦୋଦରୀ ଅଭିଶାପ ହେଉ !
ଅପହରି ମୃତ୍ୟୁବାଣ ପତିର ମୋହର,
ବଧି ମନ୍ଦପଣେ,
ବାନ୍ଧିଥିଲ ଯେଉଁ ଶେଲ ସତୀସାଧ୍ୱୀ ବକ୍ଷେ
ତା'ର ପ୍ରତିଶୋଧ ଏହି
ବିଚ୍ଛେଦ-ଯାତନା !

ରାମ—ସତୀ ଅଭିଶାପ-ସ୍ମୃତି !
ନା, ନା, ନୁହେଁ ଅଭିଶାପ,
ଆଶୀର୍ବାଦ ଏହା ରାମ ପକ୍ଷେ ସଦା—
କର୍ତ୍ତବ୍ୟ-ବିମୁଖ ଅଟେ କଦାଚିତ ରାମ
କରଇ ତତ୍ପର କାର୍ଯ୍ୟେ, ଅବସାଦ କାଳେ ।
ରାଜଲକ୍ଷ୍ମୀ ! ରାଜଲକ୍ଷ୍ମୀ !!

[ ଅଦୂରେ ରାଜ-ଲକ୍ଷ୍ମୀ ଦରଦ କଣ୍ଠରେ 'ହାୟ ସୀତା, ହାୟ ସୀତା' ବୋଲି ଗାଉଥିବାର ଶୁଣାଗଲା ]

'ସୀତା'—ହାୟ ସୀତା ବୋଲି
ତୁହାଇ, ତୁହାଇ
କିଏ କାନ୍ଦେ ଅନୁରଣି
ହୃଦତନ୍ତ୍ରୀ ମୋ'ର ?......

[ ଉଦ୍‌ଭ୍ରାନ୍ତ ଭାବେ ନିଷ୍କ୍ରାନ୍ତ ]

---

## ଚତୁର୍ଥ ଦୃଶ୍ୟ

—ରାଜପଥ—

[ ଗଭୀର ଅନ୍ଧକାର ଭେଦକରି ଉଦାସ ବେଶରେ 'ସ୍ତିମିତ-ଜ୍ୟୋତି' ରାଜ-ଲକ୍ଷ୍ମୀ କୋହଭରା କଣ୍ଠରେ ଗାଇ ଗାଇ ରାଜ୍ୟ ଛାଡ଼ି ଚାଲିଯାଉଥିଲେ ]

ରାଜ-ଲକ୍ଷ୍ମୀ— ଗୀତ—

ହାୟ, ହାୟ, ହାୟ,
ହାୟ ସୀତା, ହାୟ ସୀତା !
ପତିବ୍ରତା ଅପକୀର୍ତ୍ତି ଲାଞ୍ଛିତା
(ଆଜି) ନିର୍ବାସିତା ସୀତା !
ସୁଖେ ଦୁଃଖେ ସ୍ୱାମୀ ସଙ୍ଗ ସୋହାଗିନୀ,
ଗିରିର ବନ୍ଧୁର ବନ ଅନୁଗାମିନୀ
ପତିତ ତାରଣୀ ସତୀ ଶିରୋମଣି,
ନିର୍ଦ୍ଦୋଷେ କଳୁଷିତା......ସୀତା ॥
ଶକ୍ତି ସ୍ୱରୂପିଣୀ ଜନକ ଦୁହିତା
ତନୁ କାଞ୍ଚନ ଅନଳେ ଧଉତା
ଚିର ରାମଚନ୍ଦ୍ର ଚରଣେ ଆଶ୍ରିତା
ତ୍ରିଭୁବନ ପ୍ରଶଂସିତା ସୀତା ॥

ରାମ—(ଉନ୍ମାଦ ଭାବରେ) କିଏ ତୁମେ ନାରୀ—
ଏହି ନୀରବ ନିଶୀଥେ, କାନ୍ଦ ବୁକୁ ଫଟା ସ୍ୱରେ,
ସୀତା ନାମ ଧରି ?

ରାଜ-ଲକ୍ଷ୍ମୀ—ମୁହିଁ ରାଜ-ଲକ୍ଷ୍ମୀ ।
ରାମ—ତୁମେ ?
ରାଜ-ଲକ୍ଷ୍ମୀ—ଚାହିଁ ଦେଖ ( ଆହୁରି ପାଖକୁ ଆସିଲେ )
ରାମ—ରାଜ-ଲକ୍ଷ୍ମୀ ! ରାଜ-ଲକ୍ଷ୍ମୀ !
କାହିଁସେ ମୋହନ ରୂପ, ଲାବଣ୍ୟଝଲକ ?
ଏ'କି ବେଶୀଲ୍ଲବ ତବ ଉଦାସିନୀ, ସମ ?
କୁହ—କୁହ······
ରାଜ-ଲକ୍ଷ୍ମୀ—ବିଦାୟ, ନୃପତି !
ରାମ—ତୁମେ ନେଉଛ ମେଲଣି ?
ରାଜ-ଲକ୍ଷ୍ମୀ—ନାହିଁ ଅନ୍ୟ ଗତି !
ରାମ—ନାହିଁ ଅନ୍ୟ ଗତି ?
ରାଜ-ଲକ୍ଷ୍ମୀ—ସୀତା କାୟା, ଲକ୍ଷ୍ମୀ ଛାୟା ତା'ର !
କାୟା ଯାଇଅଛି ଚାଲି,
ଛାୟା ରହିବ କପରି ?
ରାମ—ରାଜଲକ୍ଷ୍ମୀ ! ( ବାଟ ଓଗାଳିଲେ )
ରାଜ-ଲକ୍ଷ୍ମୀ—ଛାଡ଼ ପଥ ରାଜା,
ଯିବି ବହୁଦୂର ମୁହିଁ ।
ରାମ—ନକୁହ ଏସନ ।
ରାଜ-ଲକ୍ଷ୍ମୀ, ସୀତା-ସତୀ—ସପତ୍ନୀ ସେ ଦୁହେଁ ।
ମେଣ୍ଟିବ ସପତ୍ନୀ କଳି—
ସେଥିପାଇଁ କଲି ସ୍ୱ-ପତ୍ନୀ ବର୍ଜନ ;
ଆଉ ତୁମେ ଯିବ ଚାଲି ?
ରାଜ-ଲକ୍ଷ୍ମୀ—ଭ୍ରାନ୍ତ ରାଜା !
ରାମ—ଭ୍ରାନ୍ତ ମୁହିଁ ? ( ଉପହାସ ପୂର୍ବକ )
ସ୍ୱ-ପତ୍ନୀ ବର୍ଜନଅନ୍ତେ,
ରାମରାଜ୍ୟେ ଯେବେ ଘଟିଲା ପ୍ରମାଦ ଘୋର,
ବ୍ରାହ୍ମଣ ଶିଶୁର ଅକାଳ ମରଣ ହେତୁ—
ତେବେ ଧେନି ଖଡ୍ଗ ନିଜକରେ ମୁହିଁ ରାମ
ଛେଦିଲି ଶୂଦ୍ରକ, ତପସ୍ୟା-ନିରତ
କରି, ରାଜନୀତି ଗୋଟି
ଅତୁଳ ବିବେକ-ନୀତି !
ଆଉ ତୁମେ କୁହ—
ଭ୍ରାନ୍ତରାଜା ?

ରାଜ-ଲକ୍ଷ୍ମୀ—ଯେବେ ନାହିଁ ଭ୍ରମ ତବ ନୀତିରେ କଦାପି,
ତେବେ ଭ୍ରମ କମ୍ପା କରି ଉନ୍ମାଦ ସମାନ ?
ନାହିଁ ନିଦ୍ରା—
ନାହିଁ କ୍ଷୁଧା—
ନାହିଁ ପ୍ରୀତି, ସ୍ନେହ
କୁଞ୍ଜ ସ୍ୱଜନେ, ଅବା ପ୍ରାସାଦ ବାହାରେ !
ରାଜକାର୍ଯ୍ୟେ ଢ଼ାଳ ମନ
ଭୁଲିବ ଯାହାକୁ କରି ଥାଅ ପଣ,
ସେହି କରେ ଉଚ୍ଚାଟନ—
'ସୀତା' 'ସୀତା' ବୋଲି ଘନ ସୀତାର ମନ୍ଦିରେ—
ହୁଅ ଅଚେତନ ଲବେ,—
ଲଭିବେ ଚେତନା, କେହି
'ସୀତା' ନାମ ତବ ଉଚ୍ଚାରିଲେ କର୍ଣ୍ଣେ ।
ନୁହ ଭ୍ରାନ୍ତ ତୁମେ ?
ରାମ—ରାଜଲକ୍ଷ୍ମୀ !
ରାଜ-ଲକ୍ଷ୍ମୀ—ଯାହି ଆସେ ରାତି—
ଛାଡ଼ ମୋର ପଥ, ରାଜା—
ଯିବି ବହୁ ଦୂର ।
ତବ ରାଜ୍ୟ ସୀମା ଛାଡ଼ି ।
ରାମ—ବୁଝିଛି ଇଙ୍ଗିତ !
ତୁମେ ରାଜ-ଲକ୍ଷ୍ମୀ ; ତେଣୁ
କରିଛି ମୁଁ ଅବହେଳା ସୀତା ସ୍ମୃତି ଧ୍ୟାୟି ।
ଚିନ୍ତା ନାହିଁ,
ନାଥ ହାରେ—ଚିନ୍ତାସାଥି ମୋର ।
କହୁଛି ସଂକଳ୍ପ—ରାଜ-ଚିନ୍ତା ହେବ
ଧ୍ୟାନ-ଚିନ୍ତା ଏବୁଁ, ଆଉ ରାଜ-ଲକ୍ଷ୍ମୀ—
ରାଜାର ଜୀବନ ସାଥି
ଏକମାତ୍ର ଭବେ ।
ରାଜ-ଲକ୍ଷ୍ମୀ—ମୂଢ଼ ରାଜା !
ତଥାପି ହେ ନପାରିବ ବାନ୍ଧି—
ଗୂଢ଼-ତଥ୍ୟ ଯେବେ ମୋର ନ କର ଉଦ୍ଧାର ।
ରାମ—କିବା ଗୂଢ଼-ତଥ୍ୟ ତବ ?
ରାଜ-ଲକ୍ଷ୍ମୀ—ମୁହିଁ ସୀତା-ଅନୁଚରୀ, ସ୍ୱଭାବ ସଙ୍ଗିନୀ—
ଏକର ବର୍ଜନେ, ଅନ୍ୟର ବର୍ଜନ, ଧ୍ରୁବ ।

ସୀତା ଧରଣୀ ଦୁହିତା ।—
ସୀତାଗୁଣେ ଧରଣୀ ଶୋଭିତା—
ସୀତା ଯେବେ ଉପେକ୍ଷିତା, ତେବେ
ଲକ୍ଷ୍ମୀ-ଶ୍ରୀ ବନ୍ଧନ ସମ୍ଭବ କିପରି, ରାଜା ?
ଆଣ ସୀତାଙ୍କୁ ଫେରାଇ ।

ରାମ—ଚାଲିଯାଅ ଛବି,—

ରାଜ-ଲକ୍ଷ୍ମୀ—(ଚାଲିଗଲେ)

ରାମ—ରାଜଲକ୍ଷ୍ମୀ ! ରାଜଲକ୍ଷ୍ମୀ ! (ଅନୁଧାବନ)

ବଶିଷ୍ଠ—( ସ୍ନାନାନ୍ତେ ଅନ୍ୟ ଦିଗରୁ ପ୍ରବେଶ କରି )
ରାଜା !—

ରାମ—ଗୁରୁଦେବ !

ବଶିଷ୍ଠ—ଫେରିବ ରାଜ୍ୟର ଲକ୍ଷ୍ମୀ,
ମାନ ଉପଦେଶ—
କର ଅଶ୍ୱମେଧ ଯାଗ, ନ କର ବିଳମ୍ବ ।

ରାମ—କିନ୍ତୁ, ଗୁରୁଦେବ !
ଯଜ୍ଞ ଆଚରଣ, ସଦା ସସ୍ତ୍ରୀକର ଧର୍ମ ।

ବଶିଷ୍ଠ—ଧର୍ମ ରକ୍ଷା ହେତୁ, କର ଦାରପରିଗ୍ରହ ।

ରାମ—ଥାଉଁ ସୀତା—? ହାଃ-ହାଃ-ହାଃ—

ବଶିଷ୍ଠ—ରାମ !

ରାମ—ଅନୁମତି, ଦେବ—
ଗଢ଼ିବ ସୁବର୍ଣ୍ଣ ସୀତା ଧ୍ୟାନରେ ଶ୍ରୀରାମ;
ରଖି ବାମେ ଆଚରିବ
ଯଥାଶାସ୍ତ୍ରବିଧି
ଯଜ୍ଞ-ଅନୁଷ୍ଠାନ ରାଜା
ପ୍ରସନ୍ନ ମାନସେ । ( ଅଶୀର୍ବାଦ କାମନା କଲେ )

ବଶିଷ୍ଠ—ତଥାସ୍ତୁ !
[ ଆଶୀର୍ବାଦ ସୂଚକ ହସ୍ତ ପ୍ରସାରଣ କଲେ ]

———

## —ପଞ୍ଚମ ଦୃଶ୍ୟ—

—ଉଦ୍ୟାନ—

[ ଊର୍ମିଳା ଫୁଲ ତୋଳୁ ତୋଳୁ ବିଷାଦର ଗୀତ ଗାଉଥିଲେ । ଶତ୍ରୁଘ୍ନ ବୀର ବେଶରେ ରାଜାଙ୍କ ଅର୍ପିତ ଶାଢ଼ୀ ଧାରଣ ପୂର୍ବକ ପ୍ରବେଶ କଲେ ]

ଶତ୍ରୁଘ୍ନ—ଦେବୀ ! ଦେବୀ !!
ଊର୍ମିଳା—ଶତ୍ରୁଘ୍ନ ?
ଶତ୍ରୁଘ୍ନ—ଶତ୍ରୁଘ୍ନ ମୁଁ ।
ଊର୍ମିଳା—ମାନେ, ଶତ୍ରୁ-ହନ୍ତା ?
ଶତ୍ରୁଘ୍ନ—(ଚପଳ ଭାବରେ ) ଭାଉଜ ଗୋ !—
ସୁମିତ୍ରା ଜନନୀ ଆଜ କି କହିଲେ, ଜାଣ ?
ବାଛି ବାଛି ମୋର ନାମ ଶତ୍ରୁଘ୍ନ ରଖିଲେ,
ଶତ୍ରୁର ନିଧନେ ଯେଣୁ ହୋଇବି ଭାଜନ ।
ଊର୍ମିଳା—ଛି, ହୋଇଛ ବୟସ;
ଛାଡ଼ ଶିଶୁ ଆଚରଣ ।
ଦେଖ ଚାହିଁ ଚାରିଆଡ଼େ
କାନ୍ଦେ ତରୁଲତା—
କାନ୍ଦେ ପଶୁ ପକ୍ଷୀ,
କାନ୍ଦେ କଠିଣ ପାଷାଣ—ସୀତା ସୀତା ବୋଲି !
ନାହିଁ କି ଦରଦ, ନାହିଁ କି ଟୋପାଏ ଲୁହ
ଆଖିକୋଣେ ତୁମ ?
ଶତ୍ରୁଘ୍ନ—ନାହିଁ ଲୁହ; ଅଛି ଲହୁ !
ଊର୍ମିଳା—ଲହୁ ?
ଶତ୍ରୁଘ୍ନ—ହଁ, ହଁ, ଲହୁ—
ସଞ୍ଚିଛି ଯତନେ ମୁହିଁ—
ଊର୍ମିଳା—ଏ କି କହୁଚ ପାଗଳ !
ଶତ୍ରୁଘ୍ନ—ପାଗଳ ମୁଁ ସତ; ହେଲେ ନାହିଁ ପାଗଳାମି ।
ମଣିଷ ମୁଁ—ମଣିଷର ଜନ୍ମ ନୁହେଁ,
କାନ୍ଦିବାକୁ କେବେ;
ମଣିଷର ଧର୍ମ ଅଟେ,
'କର ଅବା ମର'—
ସେହି ଧର୍ମେ ଦୀକ୍ଷିତ ମୁଁ ଏ ଦଶ ବରଷ ।

ଶିଖିଅଛୁ ରାଜନୀତି, ଶିଖିଅଛୁ ଯତ୍ନେ
ହିଂସା-ଅହିଂସାର-ତତ୍ତ୍ୱ ।
ଆଜି ତା ପରୀକ୍ଷା,
ଉର୍ମିଳା—ମାନେ ?
ଶତ୍ରୁଘ୍ନ—ଏହି ଶୁଣ ହ୍ରେଷା-ରବ,
ରଥର ଘର୍ଘର ।
ରହି ନ ପାରେ ମୁଁ ଘରେ—
ଦଅ, ସାଜ ବେଗେ ।
ଉର୍ମିଳା—ଯୁଦ୍ଧ ହେବ ?
ଶତ୍ରୁଘ୍ନ—ଯୁଦ୍ଧ ନୁହେଁ—ଅଶ୍ୱମେଧ ଯାଗ—
ଉର୍ମିଳା—ଅଶ୍ୱମେଧ ଯାଗ ?
ଶତ୍ରୁଘ୍ନ—ହଁ, ଦେଶୁଁ ଦେଶାନ୍ତରେ ଭ୍ରମିବ ଯଜ୍ଞର ଅଶ୍ୱ ।
ମଣ୍ଡି ପାଟ ନେତ ଘଣ୍ଟି, ଦେହଯାକ ସେହି,
ଗୁଳ୍ଲଥିବ ରୁଣୁ ଝୁଣୁ, କଦମ, କଦମ ।
ଉର୍ମିଳା—ତା'ପର ?
ଶତ୍ରୁଘ୍ନ—ଧର ଥିବ ମାଥେ ଏକ ସୁବର୍ଣ୍ଣ ମୁକୁଟ,
ଲେଖାଥିବ ତହିଁ...
ଉର୍ମିଳା—କ'ଣ ?
ଶତ୍ରୁଘ୍ନ—'ରାମଙ୍କ ମହିମା ନୁହେଁ କଳନା—
ବହିଛନ୍ତି ଦୁଷ୍ଟ-ଦଳନ ବାନା ।'
ଉର୍ମିଳା—ତା' ପର ?
ଶତ୍ରୁଘ୍ନ—ବୀର ପଣେ ଯେବେ କେହି
ଧରିବ ସେ ଅଶ୍ୱ—
ବୀର୍ଯ୍ୟର ପରୀକ୍ଷା ହେବ
ତାହାଭୁଲେ ମୋର ।
ଉର୍ମିଳା—ଏଁ, ତୁମର ?
ଶତ୍ରୁଘ୍ନ—ନିଦର୍ଶନ ଏହି ଶାଢ଼ୀ, ରାମଙ୍କ ଅର୍ପିତ—
( ଶାଢ଼ୀ ଦେଖାଇଲେ )
ଦଅ ବାନ୍ଧ, ଭଗ୍ନୀ ।
ଉର୍ମିଳା—ମୁହିଁ ଦେବ ବାନ୍ଧ ? ନୁହେଁ ରାଜା ?
ଶତ୍ରୁଘ୍ନ—ନୁହେଁ ରାଜା, ଏଥିଲୁ ରାଜା ମୋର ଭାଇ ।—
ଭ୍ରାତୃହସ୍ତେ ବାନ୍ଧିବାକୁ ନ ବଳିଲା ମନ ।
ଉର୍ମିଳା—ହେବ ତୁମେ ଭ୍ରାତୃ-ଦ୍ରୋହୀ ?
ଶତ୍ରୁଘ୍ନ—ନୁହେଁ, ଭ୍ରାତୃ-ସ୍ନେହୀ ମଧ୍ୟ ।
ଉର୍ମିଳା—ଶତ୍ରୁଘ୍ନ ।
ଶତ୍ରୁଘ୍ନ—ସତ୍ୟ କଥା ଶୁଣ ।—
ଭ୍ରାତୃଦ୍ରୋହୀ ବିଭୀଷଣ—
ତେଣୁ, ରାବଣ ନିଧନ ।—
ଭ୍ରାତୃସ୍ନେହୀ ଯେ ଲକ୍ଷ୍ମଣ,—
ତେଣୁ, ସୀତା ନିର୍ବାସନ ।
ତୁମେ ବାନ୍ଧ ଦେଲେ ଶାଢ଼ୀ—
ଉର୍ମିଳା—ଆଣିବ ଜାନକୀ ?
ଶତ୍ରୁଘ୍ନ—ତା' ନ ହେଲେ
ଶତ୍ରୁଘ୍ନର ସାକ୍ଷାତ ଏତିକି ।
ଉର୍ମିଳା—ନାମ ଗୁଣେ ଭର କାମ, ଆଶୀଷ ମୋହର ।
( ଶାଢ଼ୀ ବାନ୍ଧିଦେଲେ )

[ ନେପଥ୍ୟେ ଅଭିଯାନର ଅନୁକୂଳ ସୂଚକ ରଣ-ବାଦ୍ୟ ବାଜିବାର ଶୁଣାଗଲା ]

---

## ଷଷ୍ଠ ଦୃଶ୍ୟ

—ତପୋବନର ଏକାଂଶ—

[ ବାଲ୍ମୀକି ଠିଆ ହୋଇଥିଲେ । ଲବ କୁଶ ଗୁରୁ ପାଖରେ ଥିଲେ । ଲବ ଟିକିଏ ଗମ୍ଭୀର-ପ୍ରକୃତି ଓ କୁଶ ଟିକିଏ ଚଞ୍ଚଳ-ମତି । କୁଶ ଅପେକ୍ଷାକୃତ ଉଚ୍ଚିକର ଗେଲବସରିଆ ଜଣା ଯାଉଥିଲା ]

ବାଲ୍ମୀକି—ମାର ବାଣ, ସ୍ଥିର କର ଲକ୍ଷ୍ୟ—
( ଦୁହେଁ ଶର ଫିଙ୍ଗିଲେ )
ସାବାସ୍...... ( ପିଠି ଗୁଡ଼ାଇଲେ )
ଶୁଣ ଲବ-କୁଶ,—
କୁଶ—( ଅସ୍ଥିର ହେଉଥିଲା )
ବାଲ୍ମୀକି—ଆଃ—କୁଶ ।
କୁଶ—( ସ୍ଥିର ହୋଇ ଅନାଇଲା କେତେକ୍ଷଣ )
ବାଲ୍ମୀକି—ଦେଖୁଛ ତ ହାତେ କୁଶ ?
ଏହି କୁଶ-ଜଳେ ଜନ୍ମ ତୋର; ତେଣୁ
'ନାମ ତୋର କୁଶ ।'

ଏବେ ଏହୁ କୁଶ-ଲଗେ ଟିଟି ତୋତେ
କରିବ ଆକଟ ।
କୁଶ—( ଇଙ୍ଗିତରେ-ନାହିଁ ନାହିଁ କଲା )
ବାଲ୍ମୀକି—( ଅଳ୍ପ ହସି ) ଦୁରନ୍ତ ନ ହୋଇ
ଶୁଣ ମୋର କଥା !
କୁଶ—( ଆପଣାକୁ ସଂଯତ କରିବାକୁ ଯାଇ ଆହୁରି
ଅସଂଯତ ହୋଇଯାଏ )
ବାଲ୍ମୀକି—( କୁଶ ମଥାରେ ହାତ ବୁଲାଇ )
କୁଶ ! ଯାଉଛି ମୁଁ ତପ-ସ୍ଥାନେ—
ଆଶ୍ରମେ ହୁଏତ ଫେରିବି ବିଳମ୍ବେ;
ଉପଦେଶ ମୋର—
ନ କରିବ କଳହଗୋଳ ପରସ୍ପର ମଧ୍ୟେ, କମ୍ବା
ଅଳି ଝଲି ମାତା ତୁଲେ,
କରି ଅସ୍ତ ବ୍ୟସ୍ତ ।
କୁଶ—[ ପ୍ରତିକଥା ଶେଷରେ 'ହଁ' ବୋଲି ମୁଣ୍ଡ
ଟୁଙ୍ଗାଉ ଥିଲା ]
ବାଲ୍ମୀକି—ଠିକ୍ ତ, କୁଶ ?
କୁଶ—( ପୁଣି ମୁଣ୍ଡ ଟୁଙ୍ଗାରିଲା )
ବାଲ୍ମୀକି—'ହଁ' ଭରିଲେ ଚଳିବନି—
ରାମାୟଣ, ପଢ଼ି
ଶିଖିଅଛ ରାମ ରାମାନୁଜ-ଭ୍ରାତୃ-ପ୍ରୀତି—
ସେହୁ ଆଦର୍ଶରେ ସଦା
ଗଢ଼ିବ ନିଜକୁ ।
କୁଶ—( ସେ ବି ଆଦର୍ଶ ଗଢ଼ିପାରେ—ଏଇ ଦମ୍ଭରେ
ଯାଇ ଲବ ପାଖରେ ଠିଆ ହେଲା )
ବାଲ୍ମୀକି—ବୁଝିଅଛୁ ଭାବ,—
ପାର ମଧ୍ୟ ତୁମେ ଦୁହେଁ ବାଡ଼ିଣ ଆଦର୍ଶ ।
କୁଶ—( ମଥା ଟୁଙ୍ଗାଇ ସମର୍ଥନ ଜଣାଇଲା )
ବାଲ୍ମୀକି—ଉତ୍ତମ, ଯମଜ ଦୁହେଁ !
ଯମଜର ପ୍ରୀତି
ରାମ-ଲକ୍ଷ୍ମଣୁଁ ଅଧିକ
ଦେଖାଅ ଜଗତେ ।
କୁଶ—( ଲବ ଆଡ଼କୁ ହାତ ବଢ଼ାଇଲା )
ଲବ—( ସଗର୍ବେ ଧାରଣ କଲା )
ବାଲ୍ମୀକି—( ଆନନ୍ଦରେ ) ଯାଏଁ—
ଶେଷ-କୃତ୍ୟ ଦିନ ଆଜ ତପସ୍ୟାର ମୋର…
[ ବାଲ୍ମୀକି ଏକ ଅଡ଼େ, ଦୁଇ ଭାଇ ଅନ୍ୟଆଡ଼େ
ଯାଉଥିଲେ—ବାଲ୍ମୀକି ଫେରିଲେ ]
ହଁ ଦେଖ ! ( ଲବକୁଶ ସାମରିକ ସ୍ୱରରେ
ଠିଆହୋ'ଇ ଅଭିବାଦନ କଲେ )
ଅଭିବାଦନ !—
ଜନନୀ କୁଟୀରେ ଏକା—
ରହିବ ସତର୍କ ।
କୁଶ—( ସଙ୍ଗେ ସଙ୍ଗେ ଧନୁରେ ଟଙ୍କାର ଦେଇ
ଆଦେଶ ପାଳନର ସମର୍ଥନ ଜଣାଇଲା )
ବାଲ୍ମୀକି—( ହସି ) ଜାଣେ, ତୁମଠାରେ ଅଛି
ସୌମିତ୍ରୀ ଲକ୍ଷଣ । ( କୁଶର ଗାଲରେ ଟିପ
ମାରି ଗୁଲିଗଲେ )
କୁଶ—ଭାଇ, ତୁମେ ରହିବ କୁଟୀରେ
ଜନନୀଙ୍କ ପାଶେ ।
ଲବ—ଆଉ ତୁମେ ?
କୁଶ—ଧରି ଧନୁର୍ବାଣ କରେ
ଜଗିବ କୁଟୀର…
ଲବ—କୁଳ ତଉପାଶେ ? ( କୁଣ୍ଢାଇବାକୁ ଯାଉଥିଲା )
କୁଶ—ଭା-ଇ-( ଇଙ୍ଗିତରେ ନେପଥ୍ୟକୁ ଦେଖାଇଲା )
ଲବ—( ଭିଡ଼ି ନେଇ ଯାଉଥିଲା ଅନ୍ୟଆଡ଼େ )
କୁଶ—ଉଁ ହୁଁ—( ସାମରିକ କାଇଦାରେ ଉଭୟେ
ଗୁଲିଗଲେ ଓ ଅନ୍ୟଦିଗରୁ ସୀତା ଓ ରାଜ-ଲକ୍ଷ୍ମୀ
ପ୍ରବେଶ କଲେ । ଉଭୟଙ୍କର ସମାନ ଉଦାସୀନ
ବେଶ ଓ ଭାବ । ସୀତାଙ୍କ ହାତରେ ଫୁଲଭରା
ଗୁଙ୍ଗୁଡ଼ିଟିଏ ଥାଏ । )
ସୀତା—ରାଜ-ଲକ୍ଷ୍ମୀ !
ରାଜ-ଲକ୍ଷ୍ମୀ—ପୂର୍ଣ୍ଣ ?
ସୀତା—ଓଃ, ଭୁଲିଛି,
ତୁମେ ବନ-ଲକ୍ଷ୍ମୀ ଏବେ ।
ରାଜ-ଲକ୍ଷ୍ମୀ—ଭଗ୍ନୀ !

ସୀତା—ହେଲେ, ଭଗ୍ନୀଭାବ ତବ ରହନ୍ତା ଅକ୍ଷୁଣ୍ଣ
ଯେବେ ତ୍ୟଜି ରାଜା, ରାଜ୍ୟ
ନ ଆସନ୍ତେ ବନ ।

ରାଜ-ଲକ୍ଷ୍ମୀ—ତ୍ୟଜି କାୟା, ଛାୟା ତା'ର
ରହିବ କାହିଁର ?

ସୀତା—ଚାଲ ଚାଲ, ବଳୁ କାର୍ଯ୍ୟ—

ରାଜ-ଲକ୍ଷ୍ମୀ—ଟିକିଏ ଅପେକ୍ଷା···

ସୀତା—କ'ଣ ?

ରାଜ-ଲକ୍ଷ୍ମୀ—ଦେହୀ-ଧର୍ମ ପାଳ ତୁମେ ଦେହ-ଧର୍ମ ତୁଲେ,
ତା' ନ ହେଲେ ରାଜା ରାଜ୍ୟ ଯିବ ରସାତଳେ ।

ସୀତା—ମାନେ ?

ରାଜ-ଲକ୍ଷ୍ମୀ—ତୁମେ ଯିବ ଫେରି ରାଜ୍ୟେ—
ରାମର ଘରଣୀ;
ଆଉ ମୁହିଁ ସାଥି ତବ—

ସୀତା—(ଶ୍ଳେଷ ଭାବରେ) ରାଜାର ମହିଷୀ ? (ସରୋଷେ)
ରାଜ-ଲକ୍ଷ୍ମୀ !

ରାଜ-ଲକ୍ଷ୍ମୀ—ଭଗ୍ନୀ !···

ସୀତା—ସ୍ୱ-ପତ୍ନୀ ଅଭାବେ ସାଧିବ ସପତ୍ନୀ ଦାଉ,
ନ ଘଟିବ ଯୋଗ—
ତେଣୁ ଆସିଅଛ
ବାନ୍ଧି ଅଭିସନ୍ଧି ଘେନି—
ଯା, ଯା, ଯା, ହରିହୁଅ ଆଖିଆଗୁ ମାୟାବୀ ରାକ୍ଷସୀ
ବହୁ ମାୟା-ଖେଳ ସୀତା ଦେଖିଛି ଲଙ୍କାରେ—
ଠିଲି ନାହିଁ ଲବେ,
ଠିଲିବ ନାହିଁ ସେ ଏବେ ।
ପତି ତା'ର ଧ୍ୟାନ, ପତି ତା'ର ଜ୍ଞାନ,
ପତି ତା'ର ପ୍ରାଣ ସଦା ।
ପତିର ଆଦର୍ଶ କରି ପତ୍ନୀ ସାବିତ୍ରୀ,
ଗଢ଼ୁଛି ସନ୍ତାନେ ।
ଅନାଚାର ମୂଳକ ହେବରେ ରାଜ୍ୟ ରାଜ୍ୟ ସାରା—
ନାହିଁ ଧର୍ମ, ନାହିଁ ନୀତି,
ନାହିଁ ଶିକ୍ଷାର ଆଲୋକ —
ଅନ୍ଧାର ବିପାକେ ପଡ଼ି ବନ୍ୟ-ପଶୁ ସମ,
ଯାପୁଛନ୍ତି ଦିନ ।—
ସେହି ତମିର ମୁଁ କରାଇବି ନାଶ,
ସନ୍ତାନଙ୍କ ହସ୍ତେ ।

( ଚାଲିଗଲେ ନିଜ କାର୍ଯ୍ୟରେ )

ରାଜ-ଲକ୍ଷ୍ମୀ—(ଡେଣିକି ଅନାଇ, ମନକୁ ମନ କହିଲେ)
ଯହିଁ ସୀତା ତହିଁ ଲକ୍ଷ୍ମୀ !—
ଆଲୋକ କୁମାରୀ ! [ ଆଲୋକ କୁମାରୀ ଅବତୀର୍ଣ୍ଣା
ହେଲେ ]
ଖେଳାଅ ଆଲୋକ ଯେତେ ଗିରି, ଗୁହା, ବନ—
ଖେଳି ଆସୁ 'ରାମ-ରାଜ୍ୟ'
ଅନ୍ଧ କନ୍ଦ ଭରି ।

[ ଆଲୋକ କୁମାରୀ ନୃତ୍ୟ ଆରମ୍ଭ କଲେ—
ବନଖଣ୍ଡ ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଲା ]

---

## ସପ୍ତମ ଦୃଶ୍ୟ

—ଆଶ୍ରମ-କୁଟୀର—

[ ଅନନ୍ଦ ଦୃଶ୍ୟ । ଲବକୁଶର ଧନୁ ତୂଣୀ ଟଙ୍ଗା ହୋଇଥାଏ କାନ୍ଥରେ । ସୀତା ଫୁଲହାର ଗୁନ୍ଥୁଥିଲେ । ଲବ ଓ କୁଶ ନିକଟରେ ବସି ଲକ୍ଷ୍ୟ କରୁଥିଲେ । ପାଖରେ ରହିଥାଏ ବାଲ୍ମୀକିଙ୍କ ଲିଖିତ ରାମାୟଣ ଖେଦା ]

ଲବ—ମା !

ସୀତା—ଧନରେ—

ଲବ—ସୀତା ଭାରି ଦୁଃଖିନୀ, ନା ?

ସୀତା—ଅଦୌ ନୁହେଁ ।

ଲବ—ତୁମ କଥା ନୁହେଁ ମା ! ରାମାୟଣ-ସୀତା କଥା
କହୁଛି ।

ସୀତା—( ସଜଳ ନୟନରେ ମୁଖ ଅବନତ କରି ପୁଣି
ଫୁଲ ଗୁନ୍ଥିବାକୁ ଲାଗିଲେ )

ଲବ—ରାମାୟଣ-ସୀତା ଏଇମିତି ବନ କୁଟୀରରେ
ବସି ହାର ଗୁନ୍ଥୁଥିଲେ, ପତି-ଦେବତା ରାମଚନ୍ଦ୍ରଙ୍କ
ପାଇଁ—ତୁମେ କାହା ପାଇଁ ହାର ଗୁନ୍ଥ, ମା ?

ସୀତା—ଯେଉଁ ଦେବତା ମୋର ଲବକୁଶ ଦୁହିଁଙ୍କୁ
କଲ୍ୟାଣ କରିବେ, ତାଙ୍କର ପାଇଁ ।

କୁଶ—ସେ କିଏ ମା ?

ସୀତା—( ଅଧର ସ୍ପନ୍ଦିତ ହେଲା—ଆତ୍ମସମ୍ବରଣ କରି ) ବଡ଼ ହୁଅ—ବୁଦ୍ଧି ବଢ଼ୁ—ନିଜ ଗୁଣରେ ତାଙ୍କୁ ଚିହ୍ନିବ ।

ଲବ—ସେଦିନ ଜେଜେ କହୁଥିଲେ, ଚୁମ୍ବକ ଲୁହାକୁ ଟାଣିଆଣେ—ଲୁହାପାଖକୁ ଚୁମ୍ବକ ଟାଣି ହୋଇ ଯାଏ ନାହିଁ—

ସୀତା—ସିମିତ ତୁମରି ଟାଣ ପଣରେ ତୁମର ପିତା ତୁମ ନିକଟକୁ ଟାଣି ହୋଇ ଆସିବେ । ( ଟିକିଏ ରହିଗଲେ ) ହଁ, ଲବ ! ତୋର ରାମାୟଣ ବୋଲି ଆଜି ଶୁଣେଇବୁ ନାହିଁ ?

ଲବ—ଖୁବ୍—

କୁଶ—( ଖେଦାଟା ଲବ ସାମନାକୁ ଘୁଞ୍ଚାଇ ଦେଇ, କାନେ କାନେ ) ଜଲ୍‌ଦି ସାର—ଜେଜେ କଥା ମନେ ଅଛି ତ ?

ସୀତା—ତ'ଣ କହୁଚୁ ରଗଲୁ ? ଖାଲି ଖେଳ, ଖେଳ—ଜେଜେଙ୍କର ମୁହଁ ପାଇ—

ଲବ—ମା, ସେ ଦିନ ଯୋଉଠୁ ରହିଲୁ, ସେଇଠୁ ବୋଲିବି ?—

ସୀତା—ହଁ, ସେଇଠୁ ।

କୁଶ—ମା ! ମୁଁ ବି ବୋଲିବି ।

ସୀତା—ରହ, ଗୋଳମାଳ କରନା, କୁଶ ।

ଲବ— —ରାମାୟଣ ଗୀତ—

ତାରି ଗଉତମ ନାରୀ, ଜାହ୍ନବୀ ହୋଇଲେ ପାରି—
ମିଥିଳାରେ କଲେ ଧନୁ ଭଙ୍ଗ;
ଜାନକୀ ବିଭା ହୋଇବା ବାହୁଡ଼ା ବିଜେ କରିବା
ପଥେ ଭେଟ ପର୍ଶୁରାମ ସଙ୍ଗେ ସେ···ସଜ୍ଜନ···
ଶୁଣନ୍ତୁ ଆନନ୍ଦ ହୋଇ ମନ । ପଦ ।
ଚୂର୍ଣ୍ଣ କରି ତାଙ୍କ ଗର୍ବ ଅଯୋଧ୍ୟା ପ୍ରବେଶ ସର୍ବ
ପିତା-ସତ୍ୟ ରକ୍ଷି ବନ ଗଲେ—
କରିଣ ବିରାଧ ନାଶ ବୁଲିଣ ତେର ବରଷ
ପଞ୍ଚବଟୀ ଆଶ୍ରମେ ରହିଲେ ସେ—ସଜ୍ଜନ···
ଶୁଣନ୍ତୁ ଆନନ୍ଦ ହୋଇ ମନ । ୧ ।

ଛେଦ ଅସୁରୀ ଶ୍ରବଣ ଖର ଦୂଷଣ ମାରଣ,
ମାୟା ମୃଗ ଦେଖାଇ ରାବଣ—
କଲାକ ସୀତା ହରଣ ଜଟାୟୁ ହେଲା କାରଣ,
ସୁଗ୍ରୀବ ସଙ୍ଗରେ ମିତ୍ରପଣ ସେ—ସଜ୍ଜନ···
ଶୁଣନ୍ତୁ ଆନନ୍ଦ ହୋଇମନ । ୨ ।
ସୁଗ୍ରୀବ ପରୀକ୍ଷା ଦେବା ସପତ ଶାଳ ଛେଦିବା,
ବାଲୀ ମାରି ସୁଗ୍ରୀବ ସ୍ଥାପିବା—
ହନୁ ସମୁଦ୍ର ଡେଇଁବା ଲଙ୍କାରେ ସୀତା ଖୋଜିବା,
ଲଙ୍କାପୋଡ଼ ଅକ୍ଷୟ ମାରିବା ସେ—ସଜ୍ଜନ···
ଶୁଣନ୍ତୁ ଆନନ୍ଦ ହୋଇ ମନ । ୩ ।
ହୋଇଲା ଅନେକ ରଣ ମାଇଲେ ଅସୁର ଗଣ,
ପୁତ୍ର ଭ୍ରାତ ସହିତେ ରାବଣ—
ଗାଦୀ ଦେଇ ବିଭୀଷଣ ବାହୁଡ଼ିଣ ରାମ-ରାଣ,
ଅଯୋଧ୍ୟାରେ କଲେ ରାଜପଣ ସେ—ସଜ୍ଜନ······
ଶୁଣନ୍ତୁ ଆନନ୍ଦ ହୋଇ ମନ । ୪ ।

କୁଶ—(ଲବକୁ ଚିପି) ଭାଇ—ଶୁଣୁଚୁ···

ଲବ—( କାନ ଡେରିଲା ) କ'ଣ, ଦେଖ ତ···(ଲବ ମଧ ସୀତାଙ୍କୁ ଅନ୍ୟମନସ୍କା ଦେଖି ଉଠିଯାଉ ଥିଲା; ସୀତା ଧ୍ୟାନଭଗ୍ନା ହୋଇ ହାତ ଧରି ବସାଇଲେ । ଦୂରେ ଘଣ୍ଟି ଘାଗୁଡ଼ି ଶବ୍ଦ ଶୁଣା ଯାଉଥାଏ)

କୁଶ—( ଚାଲିଯାଉଥିଲା, ପରେ ଫେରିଆସି ନିଜର ଧନୁଶର ନେଇ ଚାଲିଗଲା )

ସୀତା—ତା'ପର ?

ଲବ—ଲୋକ ମୁଖେ ଅପଯଶ ଶୁଣି ସୀତାଙ୍କୁ ନିର୍ବାସ,

ସୀତା—ଥାଉ, ଥାଉ··· (ବ୍ୟଥିତା ହୋଇ ଚାଲିଗଲେ)

ଲବ—ଏ'କି ଅପରୂପ ଭାବ ଜନନୀର ଆଜି ।
ମୋ' ଜନନୀ-ସୀତା
କ'ଣ ରାମାୟଣ-ସୀତା ?
ଉତ୍ତର-କାଣ୍ଡର ଗାଥା,—
ଲେଖୁଚନ୍ତି ଅଜା,—
ଯେମିତ ଆମରି କଥା ଚାଲିଛି କ୍ରମଶ ।

କୁଶ—( ପ୍ରବେଶ କରୁକରୁ ) ଭାଇ ! ଭାଇ !

ଲବ—କ'ଣ କିରେ ? କିଛି ବିପଦ ?

ଲବ—ଅପରୂପ ନୁହେଁ ସମ୍ପଦ । କି ସୁନ୍ଦର ଘୋଡ଼ାଟିଏ
ଏନେଛି, ଦେଖିବ ଆସ ।

ଲବ—କାହିଁ ?

କୁଶ—ଆଶ୍ରମ ବାହାରେ ଯହିଁ ଲଟା ବଣବୁଦା ନୁହଁ,
ସେଇଠି ଗୋଟାଏ ଲଟାରେ ବାନ୍ଧି ପକେଇ
ଆସିଛୁ । ଦେଖିବ ଆସ, ଭାରି ସୁନ୍ଦର ଘୋଡ଼ା—
କି ସୁନ୍ଦର ସଜବାଜ ହୋଇଚି ।

ଲବ—ମା'ଙ୍କୁ ଏକୁଟିଆ ରଖି ଯିବା ତ ?

କୁଶ—ତା ହେଲେ ଦେଖିବ ନ ତୁମେ ? ଯାଉଚି,
ଛାଡ଼ି ଦେବି—

ଲବ—ନା, ନା—( ମାତାଙ୍କ ଗମନପଥକୁ ଚାହିଁଲା )

କୁଶ—ବେଗି ଆସ—(ଲବର ଧନୁ ଶର ଆଣି ଧରାଇ
ଦେଲା)

ଲବ—(ବାଳକ ସୁଲଭ ଚପଳତା ଦମନ କରି ନ ପାରି
ଚାଲିଗଲା କୁଶ ସାଥିରେ)

---

## ଅଷ୍ଟମ ଦୃଶ୍ୟ

—ଆଶ୍ରମ ବାହାରର ବନ ପଥ—

[ ଶତ୍ରୁଘ୍ନ ଓ କୁଶ ପ୍ରବେଶ କଲେ ]

ଶତ୍ରୁଘ୍ନ—ପୁଣି କହେ,
ଛାଡ଼ି ଦିଅ ଅଶ୍ୱ ।

କୁଶ—ନ ଛାଡ଼ିବି ମୁହିଁ !
ଯେଉଁ ଦମ୍ଭେ କହ ତୁମ୍ଭେ ଘେନିଯିବ ଅଶ୍ୱ,
ସେହି ଦମ୍ଭେ କହେ ମୁହିଁ,
ବାନ୍ଧିଅଛୁ ତାହା ।

ଶତ୍ରୁଘ୍ନ—ଛି !
କଥା ଶୁଣ, ବାବୁ—
ନହୁଅ, ଅଟ୍ଟ;
ନୁହେଁ ଏହା ଖେଳ-ଅଶ୍ୱ ଖେଳିବ ତା ଘେନି ।

ତେବେ, ଧନୁ ଛୁଇଁ କରୁଛି ଶପଥ, —
ଫେରି ରାଜ୍ୟେ, ଅଶ୍ୱ ଏକ ଦେବି ମୁଁ ପଠାଇ ।

କୁଶ—ରାଜ୍ୟେ ଫେରିଗଲେ ସିନା
ଦେବ ତା' ପଠାଇ ?

ଶତ୍ରୁଘ୍ନ—(ସରୋଷେ)
ଦେବ ନାହିଁ ଅଶ୍ୱ ?

କୁଶ—ନା, ନା, ନା—

ଶତ୍ରୁଘ୍ନ—ମାନ ମୋର ବୋଲ,
ନାହିଁ ବେଳ—
ଯିବା ବନ୍ଦରର ଭୁଲି
ବନୁ ବନାନ୍ତର ।

କୁଶ—ବେଶ୍, ଛାଡ଼ି ଅଶ୍ୱ-ଲୋଭ
ହୋଇଯାଅ ଦୂର ।

ଶତ୍ରୁଘ୍ନ—ଅରେ ଅବୋଧ ବାଳକ !
ଏ' ଯେ ଯଜ୍ଞ-ଅଶ୍ୱ ।

କୁଶ—ଅହେ ବୋଧ ! ଜାଣିଲି ଅବର,—
ତୁମେ ତା' ରକ୍ଷକ ।

ଶତ୍ରୁଘ୍ନ—ଶତ୍ରୁଘ୍ନ ମୋ' ନାମ, ଅଟେ
ଶତ୍ରୁର ଘାତକ ।

କୁଶ—ଓ...
ତୁମେ କି ଶତ୍ରୁଘ୍ନ ସେଇ
ରାମ ଚରିତର ?

ଶତ୍ରୁଘ୍ନ—ରାମ ବୈମାତ୍ରେୟ ମୁହିଁ,
ଲକ୍ଷ୍ମଣ ଅନୁଜ ।

କୁଶ—ହେଲେ, ଶତ୍ରୁର ଘାତକ ବୋଲି
ନାହିଁ ତ ବର୍ଣ୍ଣିତ ?

ଶତ୍ରୁଘ୍ନ—ଶିଶୁ ଥିଲି ତେବେ ମୁହିଁ,
ପାଇନି ସୁଯୋଗ ।

କୁଶ—ପାଇଛ ସୁଯୋଗ ଏବେ,
ଛାଡ଼ିବ କାହିଁକି ?

ଶତ୍ରୁଘ୍ନ—ମାଡ଼େ ହସ,—ଶିଶୁ ତୁମେ !
ଶିଶୁ-କରେ ଶୋହେ ପୁଣି
ଶିଶୁ-ଧନୁ ଗୋଟି ।

କୁଶ—ଆହେ ଶିଶୁ-ମତ ।
ବିଶ୍ୱ-ଶିଳ୍ପୀ ଠୁଳ ପରି
ପରମାଣୁ ବକ୍ଷେ ?
ଶତ୍ରୁଘ୍ନ—ବର୍ଣ୍ଣ୍ୟ-ପଶୁ ।
କୁଶ—ସଭ୍ୟ-ନର !
ଶତ୍ରୁଘ୍ନ—ବୁଝୁଛ ପାର୍ଥକ୍ୟ ?
ଲବ—( ପ୍ରବେଶି ) ବୁଝୁଛି ଜଗତ,—
ଆଲୋକ ଅନ୍ଧାର ଭେଦେ ବର୍ତ୍ତମା ସଭ୍ୟର !
କୁହ ତୁମେ ହେଜ ବାରେ, ବିଶ୍ୱର ସନ୍ତାନ,—
ବିଶ୍ୱପତି କେବେ ହେଲେ ଗଢ଼ିଛି ପ୍ରାକାର ?
ତୁମର ସର୍ଜନା ଏହା—ତୁମରି କଳ୍ପନା ।
ତୁମେ ସଭ୍ୟ ନର,
ହେୟ କର ବର୍ଣ୍ଣ୍ୟେ, ତେଣୁ
ବର୍ଣ୍ଣ୍ୟ-ପଶୁ ଆଖ୍ୟା ଦେଇ
ଲଗାଇଛ ଦ୍ୱନ୍ଦ !
ବେଶ୍, ତା'ର ଅବସାନ ଉପସ୍ଥିତ ଆଜ !—
ବର୍ଣ୍ଣ୍ୟ-ପଶୁ ବର୍ଣ୍ଣ୍ୟ-ବଳେ
ଭାଙ୍ଗିବ ପ୍ରାକାର—
ଆଲୋକ ଅନ୍ଧାର ଭେଦ କରିଦେବ ଦୂର ।
ଶତ୍ରୁଘ୍ନ—ନାହିଁ କ୍ଷମା—ଘେନ ଅସ୍ତ୍ର
ହୋଇଛି ପ୍ରସ୍ତୁତ ।
ଲବ—ସାମାନ୍ୟ ଅପେକ୍ଷା ।
କୁଶ ! ଘେନ ଟୀକା ଗୋରଚନା
ଦେଇଛନ୍ତି ମାତା !—
( କୁଶ କପାଳରେ ଲଗାଇ ଦେଲା )
ଶତ୍ରୁଘ୍ନ—'ମାତା' ।
କିଏ ତୁମ ମାତା,
କହରେ ବାଳକ ?
ଲବ—ମାତୃ-ପରିଚୟ ଆମ
ଦେବୁଁ ଧନୁଶରେ—
ନୁହେଁ ରସନାରେ ।
ଶତ୍ରୁଘ୍ନ—ପ୍ରଗଲ୍‌ଭ ବାଳକ !!
ଥାଉ,—ଦିଅ ରଣ, ମାଗେ ମୁହିଁ ।
ଲବ—ବାଛି ନିଅ ଦ୍ୱନ୍ଦୀ ତବ, ଯମଜ ମଧ୍ୟରୁ ।

ଶତ୍ରୁଘ୍ନ—'ଯମଜ' ! ( ସ୍ନେହାଭିଭୂତ ହୋଇଗଲେ
ଦୁହିଁଙ୍କୁ ଦେଖି ଦେଖି )
କୁଶ—ଦେଖ, ବୀର !
ରାମର କନିଷ୍ଠ ତୁମେ—
କନିଷ୍ଠେ ଯୋଗାଏ !
ଶତ୍ରୁଘ୍ନ—ଜ୍ୟେଷ୍ଠ ମୁହିଁ ବଡ଼ କଥା,
ନ ସହିବ ଆଉ !
କୁଶ—ବଡ଼ କାମ ଦେଖିବ ତ
ଆସ ବଡ଼ ସ୍ଥାନେ ।
ଶତ୍ରୁଘ୍ନ—ବେଶ୍
[ ସମସ୍ତେ ଚାଲିଗଲେ ଅନ୍ତରାଳକୁ । ଯୁଦ୍ଧ
କୋଳାହଳ ଶୁଣାଗଲା । ବିପରୀତ ଦିଗରୁ ଲକ୍ଷ୍ମଣ
ପ୍ରବେଶ କଲେ ଦ୍ରୁତ ପଦରେ । ]
ଲକ୍ଷ୍ମଣ—ଏ' କି ତୁମୁଳ ସଂଗ୍ରାମ ।
କିଏ ଯୁଝେ କାହା ସଙ୍ଗେ,
ନ ଯାଏ ତ ଜଣା !
ପର୍ଜନ୍ୟ ଗର୍ଜନ ସମ
କୋଦଣ୍ଡ ଟଙ୍କାର
ମୁହୁର୍ମୁହୁ ପଶି କର୍ଣ୍ଣେ—
କରୁଛି ବିଦୀର୍ଣ୍ଣ !
ଅସ୍ତ୍ରର ଝଲକ ହେଳେ
ବିଦ୍ୟୁତ ସମାନ—
ଝଲସିତ ଚକ୍ଷୁ ମୋ'ର
ନ ପାରେ ମୁଁ ଚାହିଁ…
[ ହନୁମାନ-ଅସ୍ତବ୍ୟସ୍ତ ହୋଇ ପ୍ରବେଶ କଲେ ]
ହନୁ—ଘଟିଛି ପ୍ରମାଦ, ଦେବ !
ରକ୍ଷାକର ଶତ୍ରୁଘ୍ନେ
ରଣସ୍ଥଳେ ଯାଇ !
ଲକ୍ଷ୍ମଣ—( ବେଗେ ପ୍ରସ୍ଥାନ କଲେ )
ହନୁ—ଦେଖିଛି ଲକ୍ଷ୍ମଣ-ଯୁଦ୍ଧ
ମେଘନାଦ ତୁଲେ;
ଦେଖିଛି ରାବଣ ସଙ୍ଗେ
ଶ୍ରୀରାମ-ସଂଘର୍ଷ,—
ଦେଖିଛି ତରଣୀ-ଯୁଦ୍ଧ—

ସବୁରିଙ୍କୁ ବଳି;
ହେଲେ, ସମର ଏସନ,
ଅଦ୍ଭୁତ । ଅଦ୍ଭୁତ ।!
କିଏ ଏ' ଅଦ୍ଭୁତ ଶିଶୁ, କମନୀୟ କାନ୍ତି,
ନମନୀୟ ନୁହେଁ,
ଧରେ ବଜ୍ରଜିଣା ଶକ୍ତି ?
ହର୍ଷ-ବିଷାଦର
ଏ'କି ଦ୍ୱନ୍ଦ୍ୱ ଉପୁଜଇ
ରାମ-ଦାସ ମନେ ?···ଯଦି, ଯଦି
ଏହି ଶିଶୁ ହୟ···
ନା, ନା, ହୁଏ ଭୟ—
ନିଦ୍ରାଜୟୀ, କ୍ଷୁଧାଜୟୀ
ଶ୍ରୀରାମ ଅନୁଜ
ନ ହେବେ ସମର୍ଥ ପରା
ହୋଇ ଶିଶୁଜୟୀ ।
ଯାଏଁ, ପବନରସୁତ ମୁହିଁ
ପବନର ବେଗେ,
ଯେମନ୍ତ ଆସେ ତ୍ୱରା ଏଥି
ଶ୍ରୀମନ୍ତ ରାଘବେ ।

[ ବେଗେ ପ୍ରସ୍ଥାନ ]

କୁଶ—( ଆନନ୍ଦରେ ପ୍ରବେଶି ) ଶତ୍ରୁଘ୍ନ ନିହତ !
ଲବ—( ଆନନ୍ଦରେ ପ୍ରବେଶି ) ନିହତ ଲକ୍ଷ୍ମଣ ।
( ଲବର ରଣ-କ୍ଷୁଧା ମେଣ୍ଟି ନାହିଁ, ଏହାପର ଜଣା ଯାଉଥାଏ )
ଲବ—ବାକି···
ରାମ—(ନେପଥ୍ୟ) ଭାଇରେ ଲକ୍ଷ୍ମଣ । ଭାଇରେ ଶତ୍ରୁଘ୍ନ !···

[ ବିହ୍ୱଳ ଭାବରେ ପ୍ରବେଶ ]

ଲବ—ଠିଆ ହୁଅ !···
ତୁମେ ରାମ ?
ରାମ—(ମୁଗ୍ଧ ଦୃଷ୍ଟିରେ ନିରୀକ୍ଷଣ କରିବାକୁ ଲାଗିଲେ)
ଲବ—ଦେଖୁଚ କ'ଣ ?—ଦିଅ ପରିଚୟ ?
ରାମ—ମୁହିଁ ରାମ—କିଏ ତୁମେ ଅଭିରାମ ?
ଲବ—(ହସି) ରାମର ବୈରୀ—ଦିଅ ରଣ !
ରାମ—ରଣ ?—ତୁମ ସାଥେ ?
ଲବ—ବେଶ,
କର ପଳାୟନ
ଦେଖି ଭ୍ରାତୃଗଣ ଦଶା ।
ରାମ—(ଦେଖି) ଓଃ ! (ଅଶ୍ରୁ ସମ୍ବରଣ କରି)
ରଣୋ-ନ୍ମାଦ ଶିଶୁ !···
ମାଗୁ ରଣ ?—ଦେବି ରଣ—( ଧନୁର୍ଦ୍ଧାରଣ )
ଲବ—ସାବାସ୍—( ଧନୁରୋତ୍ତୋଳନ )
ରାମ—ସାବଧାନ !
ବାରେ ଦେଖ ଅସ୍ତ୍ର ଭାଲେ ଗ୍ରହି ।
ଲବ—ବିଚକ୍ଷଣ ରାମ,—
ତେଣୁ ପ୍ରଚୁରିତ କୀର୍ତ୍ତି,
ମୃତ-ପଶୁଭାଲେ !
'ରାମଙ୍କ ମହିମା କଳିତ ନୁହଇ' ହାଃ-ହାଃ-ହାଃ ।
ରାମ—ଆରେ ଅଳ୍ପମତି ଶିଶୁ !
କରୁ ପରିହାସ
ରାବଣାରି ରାମ ସଙ୍ଗେ ?
ଲବ—ହୁଁ-ହୁଁ,
ପତ୍ନୀ-ବୈରୀ ରାମ ସଙ୍ଗେ ।
ରାମ—'ପତ୍ନୀ-ବୈରୀ !' ପତ୍ନୀ-ସ୍ମୃତି !
ଅରେ ଲବ୍ଧ ଅଗ୍ନି-ଶିଖା !
ତୁମେ—ତୁମେ କି ସେ'
ସୀତାର ତନୟ ମୋ'ର ?
ଲବ—ସୀତାର ତନୟ ସତ୍ୟ,—
"ଲବକୁଶ ଦୁହେଁ ଜାଆଁଳା ଭାଇ
ସାନ ବଡ଼ ବାରି ହୁଅଇ ନାହିଁ ।"—
ହେଲେ, ନୋହୁଁ ସେ-ସୀତାର,
ଯା'ରେ ତୁମେ ରାମାୟଣ-ବୀର
ପଠାଇଚ ବନ !
ରାମ—'ରାମାୟଣ-ବୀର'···
ଲବ—(କର୍ଣ୍ଣପାତ ନ କରି, କହିଯାଉଥାଏ ପୂର୍ବକ୍ରମରେ)
ହାୟ ! ହାୟ !—
ଜନମ ଦୁଃଖିନୀ ସୀତା—
ରାମର ଘରଣୀ—

ଦୁଃଖିନୀ ଅଦୃଷ୍ଟ ସିନା
ରାଜା ବୋଲି ରାମ ।...
ତଥାପି ଅପୂର୍ବ ।...
ପତିର ଆଦର୍ଶ କରେ ପତ୍ନୀ ସାର-ବ୍ରତ ।...
ଓଃ—ସ୍ମରିଲେ ଜାନକୀ କଥା,
ମର୍ମ-ଫଟା ବ୍ୟଥା...( ଆଉ କହି ପାରିଲା ନାହିଁ )

ରାମ—ସ୍ଥିର ହୁଅ ଶିଶୁ ।

ଲବ—ସ୍ଥିର ହେବ ? ନାହିଁ ଲଜ୍ଜା ?
ଯେବେ ମହିମା ବଖାଣ ନିଜ,
ମୂକ-ପଶୁ-ଭଳି
ପ୍ରତିବାଦ ଭୟେ ସଦା ନମ୍ର କି ଜନର ?
ଯାଅ—ଯାଅ ଫେରି ରାମ ।...
ହଁ; ହଁ, ଫେରି ଯାଅ ରାମ ।
ଲଜ ମାଡ଼େ ଯୁଝିବାକୁ
ପତ୍ନୀ-ଘାତୀ ତୁମେ । (ମୁଖ ଫେରାଇ ଠିଆହେଲା )

ରାମ—( ଅନ୍ୟମନସ୍କ ଥାଇ )
ଅବଶ ମୋ ତନୁ—
କରୁ ଖସି ପଡ଼େ ଧନୁ—
ଶିଥିଳ ପଞ୍ଜରୁ ଅବା ଉଡ଼ିଯିବ
ପ୍ରାଣ-ପକ୍ଷୀ
ହୁଅଇ ଆଶଙ୍କା ।...
ତଥାପି ବ୍ୟାକୁଳ ଚିତ୍ତ
ଜାଣିବାକୁ କ୍ଷଣେ,—
କାହାର କୁମର ବେନି ।
ସୀତାର ଅଙ୍କିତ ମୁଖେ,'
ସୀତାର ପ୍ରକୃତି ନେତ୍ରେ,
ବର୍ଣ୍ଣେ, ଗୁଣେ
ରାମ, ରାମାନୁଜ କିବା । ( ଧନୁ ଖସିପଡ଼ିଲା )

କୁଶ—ହାଁ, ହାଁ...ପଡ଼ିଗଲା ଖସି ଧନୁ;
ନିଅ ବେଗେ ତୋଳି,
କର ପଳାୟନ ।

ରାମ—କହ, କହ—
ସତେ କି ରେ ତୁହି ମୋର...?
( କୁଣ୍ଢାଇବାକୁ ଯାଉଥିଲେ )

ଲବ—ହଟିଯାଅ ।
ମାୟା ଲଗାଇ ଏସନ
ମାୟା-ମୃଗ-ଭେଳ ଦେଖାଅ କାହାରେ ?
ଭୁଲିଥିଲେ ରାମ—
ନ ଭୁଲିବେ କୁଶ-ଲବ ।

ରାମ—'ମାୟା-ମୃଗ'—'ମାୟା-ମୃଗ' ଯମଜ ରୂପରେ ।
( ଧନୁ ଧରି )
ଅରେରେ ଦୁର୍ମଦ ଶିଶୁ ।
ଯାହାର ଯମଜ ହୁଅ, ଧର ଧନୁ,
ଖଞ୍ଜି ବାଣ—
ଯମ ଉଚ୍ଛନ୍ନ ନେବାକୁ
ଦୁଇ କୋଳେ ଦୁହେଁ ।

ଲବ—(କୁଶ ପ୍ରତି ) ଆସ, ଭାଇ—

କୁଶ—ନା, ନା, ନା, ତୁମେ ଯୁଦ୍ଧ ଏକା—
ନ ଯୁଝିବି ମୁହିଁ
ପତ୍ନୀ-ଘାତୀ ତୁମେ ।
ଲକ୍ଷ୍ମଣର ଥିଲା ବହୁ ଗୁଣ;
ତେଣୁ ଥିଲା ମୋ' ବାସନା,
କରିଥାନ୍ତି ରଣ ।
ଏହି ରାମ ସଙ୍ଗେ ରଣ ?—
ଲାଗିବ କଳଙ୍କ
ଧନୁରେ,—ନାମରେ,
କାଳେ କାଳେ ମୋର ।
( ତାଚ୍ଛିଲ୍ୟ ଭାବରେ ଗୃହିଲା )

ରାମ—ଓଃ । କଥା-ଶେଲ ଏହି
ବିନ୍ଧେ ଶକ୍ତି-ଶେଲ ନାହିଁ
ରାବଣାସ୍ତ୍ର ବକ୍ଷେ ।
ଛାଡ଼ିଲି ମୁଁ ବାଣ—
( ଧନୁରେ ବାଣ ଖଞ୍ଜିଲେ )

ଲବ—ଛିଃ, ବୀର ପରା ତୁମେ ?
ତୁହ, ଗୁରୁଜନ ମମ—ଘେନ ନମସ୍କାର ।
( ବାଣ ତ୍ୟାଗକଲେ—ତାହା ରାମଙ୍କ ପାଦ ସ୍ପର୍ଶକଲା )

ରାମ—ସନ୍ତୁଷ୍ଟ ଅତୀବ ।
ଏହି ଗଲା ବାଣ ମୋର ଶିର ଚୁମ୍ବି ତବ,
ତାଳ ଆଶୀର୍ବାଦ ! ହୁଅ ଜୟୀ ରଣେ ।
[ ଶଙ୍ଖ ଧ୍ୱନି ମଧ୍ୟରେ ଲବ ନତଶିର ଥାଏ, ରାମ ଆଶୀର୍ବାଦ ସୂଚକ ହସ୍ତ ଟେକି ଥାନ୍ତି ]
[ ଯୁଦ୍ଧାର୍ଥେ ବୀର ଦର୍ପେ ଉଭୟଙ୍କ ପ୍ରସ୍ଥାନ ]
ହନୁ—( ରଘୁଶିବିର ଦଗରୁ ପ୍ରବେଶ ପୂର୍ବକ )
କି କଲ, କି କଲ ଦେବ !
ନିଜ କରେ ନିଜ ମୃତ୍ୟୁ
ନେଲ ସିନା ଟେକି ? ( ପ୍ରସ୍ଥାନ )
ନିକଷା—( ରଘୁଶିବିର ଦଗରୁ ପ୍ରବେଶି ) ହାଃ-ହାଃ-ହାଃ-
ରକ୍ତ—ରକ୍ତ—ରକ୍ତ—
ରାମ-ରକ୍ତ ଖାଇ !!
ରାବଣର ଚିତା ଜଳେ ଦାଉ ଦାଉ,
ମାତା ନିକଷା ଚିତ୍ତାରେ ।
ପୁତ୍ର ହସ୍ତେ କରାଇଣ ପୁତ୍ର-ହନ୍ତା ନାଶ
ଲିଭାଇବି ବକ୍ଷ ଜ୍ୱାଳା ।
[ ଗୁପ୍ତ ସ୍ଥାନରୁ ସିନ୍ଦୂର ବାହାର କରି ]
ଦେବୀଙ୍କ ସିନ୍ଦୂର ଏହି
ଥିଲା ମହୀରାବଣ-ପୁରେ,—
ସଞ୍ଚିଛି ଯତନେ ତାହା,
ଦେବି ଆଜ ଟୀପ ତା’ର
ରାମ ପୁତ୍ର ଭାଲେ—
ହୋଇବ ଭାଜନ ଯେଣୁ ରାଘବ ନିଧନେ ।
ରକ୍ତ ! ରକ୍ତ ! ରକ୍ତ !—( ଚାଲିଗଲା )
[ ଯୁଦ୍ଧର ଭୀଷଣ କୋଳାହଳ ଶୁଣାଗଲା । ଅନ୍ୟଦଗରୁ କୁଶ ପ୍ରବେଶ କଲା ]
କୁଶ—( ହସି ହସି ) ବାଃ ବାଃ ସାବାସ୍, ଭାଇ !
ଏକା ବାଣେ ଧରାଶାୟୀ !
ଲଙ୍କାଜୟୀ ରାମ ! ( ଧାଇଁ ଚାଲି ଗଲେ )
[ ରାମ ବକ୍ଷ-ବିଦ୍ଧ ବାଣକୁ ମୁଠିଧରି, ‘ସୀତା ସୀତା’ ବୋଲି କହୁ କହୁ ପ୍ରବେଶ ପୂର୍ବକ ଟଳି-ଢଳି ପଡ଼ିଗଲେ ]

## ନବମ ଦୃଶ୍ୟ

—ଆଶ୍ରମର ଏକାଂଶ—

[ ସୀତା ପୂର୍ବୋକ୍ତ ଡାକର ପ୍ରତିଡାକ ପୂର୍ବକ ପ୍ରବେଶ କଲେ ଉନ୍ମାଦିନୀପରି ]

ସୀତା—‘ସୀତା’ ! ‘ସୀତା’ !!—
କିଏ ଡାକେ ଆକୁଳିତ ପ୍ରାଣେ ?—କିଏ ?—
ସେହି କଣ୍ଠ ଧ୍ୱନି—
ସେହି କୋହଭରା ଡାକ !—
ଡାକିଥିଲେ ଘନଶ୍ୟାମ
ଘନ, ଘନ ଯେବେ
ହରଣର କାଳେ,
ତେବେ ପଶି ମର୍ମ ରନ୍ଧ୍ରେ ଧାଉଁଥିଲା ମୋତେ,—
ଆସେ ଭାସି ଆଜ
ଶ୍ୟାମଳ ବନାନୀ ଭେଦି,
ଭେଦି ‘ସାମ’ ସିକ୍ତ ବକ୍ଷ
ଉପୁଜାଏ ଛନ୍ଦେ
ସେହି ପ୍ରତିଧ୍ୱନି,—
‘ସୀତା’ ! ‘ସୀତା’ !! ‘ସୀତା’ !!!

ଲବ—( ପ୍ରବେଶି ) ମାତା ! ମାତା !!
ଜିଣିଅଛୁ ଆମେ—
ଘେନ ନମସ୍କାର ! ( ଚରଣ ବନ୍ଦନା କଲା )
କୁଶ—(ହନୁକୁ ଧରି ପ୍ରବେଶି) ଦେଖ ଗୋ ଜନନୀ !
କି ସୁନ୍ଦର କପି ଗୋଟି
ଆଣିଅଛୁ ଧରି ।
ସୀତା—(ଦେଖି) କିଏ ? ହନୁ ?
ହନୁ—(ସୀତାଙ୍କ ଚରଣ ତଳେ ପଡ଼ି) ମାତା !—
ସୀତା—ଏ’ କି ହେବରେ ?
ତୁହ ତୁମେ, ସାଗର-ଲଙ୍ଘନ ବୀର—
ବୀର ମଧୁବନ-ଧ୍ୱଂସୀ,
ଗନ୍ଧମାର୍ଦ୍ଦନ-ବାହକ—
ଏ’ କି ଦଶା ତବ ?
ଶିଶୁର ଖେଳନା ସମ

ଶିଶୁ ଧନୁ-ଗୁଣେ
ଆଜ ଲଭିଛ ବନ୍ଧନ ?
ହନୁ—ମାତା !
ଶିଶୁ ସ୍ନେହ-ଗୁଣେ ବନ୍ଧା
କିଏ ନୁହେଁ ଭବେ ?
ସୀତା—ପୁତ୍ରାଧିକ ମୋର ( କୁଶ ଲବ ପ୍ରତି )
କୁଶ ! ଲବ !
କରିଅଛ କିସ ?
ଏ' ଯେ କେୟସ୍ତ ତବ,
କର ନମସ୍କାର – ଘେନ ଆଶୀର୍ବାଦ
[ ଲବ କୁଶ ହନୁକୁ ନମସ୍କାର କରିବାକୁ ଉଦ୍ୟତ ହେଲାବେଳେ, ହନୁ ସେମାନଙ୍କୁ ବିଶାଳ ବକ୍ଷଦେଶକୁ ଟେକି ନେଇ ବସାଇଲେ ]
ହନୁ—ବୀର କନିଷ୍ଠ ଯୁଗଳ ! ( ଧୁଆଁଗ କଲେ )—
ଅଚ୍ଛା, ଖେଳ ଯାଇ ତେବେଣି !
ଲବ—(ମନକୁ ମନ) ମାତା-ସୀତା କି'ଣ
ରାମାଙ୍ଗିଣୀ-ସୀତା ? ( କୁଶକୁ ଘେନି ଗ୍ଲଲଗଲେ )
ଆସ ଭାଇ !
ସୀତା—( ହନୁର ବ୍ୟାକୁଳତା ଦେଖି )
ହନୁ !
ଛଳ ଜଳ ଆଖି ତବ,—
ଅଯୋଧ୍ୟା ଖବର କିଛି···?
ହନୁ—ମାତା !
ଅଯୋଧ୍ୟାର ନାଥ ଆଜ
ଲୁଣ୍ଠିତ ଧରାରେ,
ନିଜ ପୁତ୍ର ହସ୍ତେ !—
ସୀତା—ହନୁ ! ହନୁ !! ( ବିଚଳିତା ହେଲେ )
ହନୁ—ହଁ, ନିଜ-ଇଚ୍ଛାକ୍ରମେ·········
ସୀତା—ହନୁ !··· ( କାଠ ଭଳି ହୋଇଗଲେ )
ହନୁ—ତୁମେ ଆଦ୍ୟାଶକ୍ତି—
ଜୀବନ ମରଣ ତୁଚ୍ଛ
ତବ ଶକ୍ତି ଖେଳା—
ଭୁଲିଲେ ଏ' ସତ୍ୟ, ମାତା,
ଭୁଲିବ ନିଜକୁ !

ତବ ଶକ୍ତି ଗୁଣେ, ରାମ
ଭାଙ୍ଗିଥିଲେ ଧନୁ—
ତବ ଶକ୍ତିର ପ୍ରଭାବେ,
ନିହତ ରାବଣ !
ଯେଉଁ ଶକ୍ତି କରେ ଧ୍ୱଂସ,
ସେହି ସୃଷ୍ଟିର କାରଣ ।
ନଭୁଲ ଏ' ତଥ୍ୟ,
ଆସ ଧୀର ପଦେ, ମାତା······
(ହନୁ ସୀତାଙ୍କୁ ବାଟ କଢ଼ାଇ ନେଇ ଗଲେ)
ବାଲ୍ମୀକି—(ବିପରୀତ ଦିଗରୁ ପ୍ରବେଶି)
ତପସ୍ୟାର ଅଶ୍ରୁ-ଫଳ—ରାମ-ସୀତା ଯୋଗ—
ଦେଖିଛି ମୁଁ ସ୍ୱପ୍ନ !······
କିନ୍ତୁ, ହେବ କିପରି ତାହା······
ନ ଗଲା ତ ଜଣା ?···
କୁଶ ! ଲବ !!
ସୀତା !!!·· ··· ( ଖୋଜୁ ଖୋଜୁ ଗ୍ଲଲଗଲେ )

---

## ଦଶମ ଦୃଶ୍ୟ

—ଆଶ୍ରମ ବାହାର ବନପଥ—

[ଯେଉଁଠି ରାମ ମହାନିଦ୍ରାମଗ୍ନ, ସେହିଠାକୁ ଶୋକବିହ୍ୱଳା ସୀତା ଧାଇଁ ଆସିଲେ ନାଥ, ନାଥ' ଡାକି ଓ ଅକାଡ଼ ହୋଇ ପଡ଼ିଲେ ତାଙ୍କ ଉପରେ—କିଛିକ୍ଷଣ ପରେ—]

ସୀତା—ଉଠ ଦେବ, ଉଠ—
ତ୍ୟଜ ମାୟା-ନିଦ୍ରା ଏହି ।
ତୁମେ ପରା ସତ୍ୟବ୍ରତ, ସତ୍ୟ-ସନାତନ ?
ପିତୃ-ସତ୍ୟ ଲାଗି
ହେଲେ ତ୍ୟଜିଥିଲ ରାଜ୍ୟ—
ପ୍ରଜା-ସତ୍ୟ ଲାଗି ପୁଣି
ତ୍ୟଜିଲ ସ୍ୱ-ପତ୍ନୀ—
ଆଜ ଏ' କି କପଟିଆ ପଣ ?

ନିଜ-ପୁତ୍ର ହସ୍ତେ ଲଭି କପଟ-ନିଧନ,
କପଟ-ନିଦ୍ରାରେ ହୋଇଛ ମଗନ ?
ଉଠ, ଉଠ ନାଥ !
ଶୁଣ ସତ୍ୟ ଗୀର—
ପତି-ଧର୍ମ କରିଅଛ
ପତ୍ନୀ-ସାର-ଧର୍ମ;
ସେହି ଧର୍ମ ପାଳି ମାତା
ଗଢ଼ିଅଛି ପୁତ୍ର,—
ଉଠ ! ଉଠ !! ନ କର ଛଳନା !
ତୁମେ ସ୍ୱଭାବ-ନିର୍ମଳ,
ରଙ୍ଗ-ରସେ ମାତ୍ର କେବେ କରିଛ ଛଳନା,
ନ ପଡ଼େ କି ମନେ ?
ତେବେ, ଏ' କି ଛଳ-ଗୀତ ତବ ?
ଏଁ, ହୁଏ ଭୟ—
ନିଦ୍ରା ଏହି ନୁହଇ ଛଳନା ?
ଓଃ !

[ ରାମଙ୍କ ଦେହ ଉପରେ ପୁଣି ଅଜାଡ଼ି ହୋଇ ପଡ଼ିଲେ—ବାଲ୍ମୀକି କମଣ୍ଡଳୁ ହସ୍ତେ ପ୍ରବେଶ କଲେ ]

ବାଲ୍ମୀକି—ନ ହୁଅ ଅଧୀର ମାତା !
ଅଭିନ୍ନ ଯେ ସୀତା ରାମ
ଯୁଗେ ଯୁଗେ ଭବେ !
ସୀତା—ପିତା—
ବାଲ୍ମୀକି—ଧର ଶକ୍ତି,—
ପତିକର୍ଣ୍ଣେ କର ମାତା,
ନିଜ ନାମ-ଧ୍ୱନି—
ଉଠିବେ ଶ୍ରୀପତି ଲଭି
ଘନଶ୍ୟାମ କାନ୍ତି !

[ ସୀତା ବାଲ୍ମୀକିଙ୍କ ଚରଣ ବନ୍ଦନା କଲେ ]

ବାଲ୍ମୀକି—ଯାଏଁ ଏବେ,
କରେ ମୋହ ମୁକ୍ତ
ଥାଅ ସହ ଶତ୍ରୁଘ୍ନ, ଲକ୍ଷ୍ମଣେ ! (ପ୍ରସ୍ଥାନ)
ସୀତା—( ରାମଙ୍କ କର୍ଣ୍ଣ ମୂଳରେ )
'ସୀତା' ! 'ସୀତା' !! 'ସୀତା' !!!
ରାମ—( ଉଠିବସି ) ସୀତା !
ସୀତା—ସୀତା-ପତି ! ( ସଙ୍କୁଚିତା ହେଲେ )
ରାମ—ସ୍ୱପ୍ନ ନୁହେଁ ତ ?
ସୀତା—ମୁଁ ପରା ସ୍ୱପ୍ନମୟୀ ତବ ?
ରାମ—ସୀତା !! ( ବୁକୁରେ ଜାପୁଟି ଧରିଲେ )
କୁଶ—( ନେପଥ୍ୟେ ) ତା'ପର ?
ହନୁ—( ନେପଥ୍ୟେ ) ଏହାପରି ଦିନେ ଶ୍ରୀରାମ-ଲକ୍ଷ୍ମଣଙ୍କୁ
    କାନ୍ଧରେ ବସାଇ—

[ ବାଲ୍ମୀକି, ଲକ୍ଷ୍ମଣ, ଶତ୍ରୁଘ୍ନ ପ୍ରବେଶ କଲେ । ରାମ ଓ ସୀତା ବାଲ୍ମୀକିଙ୍କ ଚରଣ ପ୍ରାନ୍ତରେ ଅବନତ ହେଲେ ]

ବାଲ୍ମୀକି—ହନୁ !
ଯେଉଁ ଆସ, ଏଥି ସେହି
ସିଦ୍ଧବାସୀ ବେନି !
ହନୁ—( ଲବ-କୁଶଙ୍କୁ କାନ୍ଧରେ ବସାଇ ହନୁ ପ୍ରବେଶ
    କଲେ ଓ କାନ୍ଧରୁ ଓହ୍ଲାଇଦେଲେ )
ବାଲ୍ମୀକି—ହୁଅ ପଦାନତ ଦୁହେଁ !

[ ଲବ କୁଶ ଶ୍ରୀରାମଙ୍କ ଚରଣ ତଳେ ଅବନତ ହେଲେ ]

କି ଶାସ୍ତି ଦେବ,
ଏ' ଯମ-ରୂପୀ ଯମଜଙ୍କୁ—
ଦିଅ ଏବେ ରାଜା !
ରାମ—ଯମ ଯାଇଛି ପଳାଇ—
ଯମଜର ଶାସ୍ତି ଯାହା,
ଦେଉଅଛି ମୁହିଁ !

[ ଦୁଇ ଶିଶୁଙ୍କୁ କୋଳକୁ ଟେକି ନେଲେ ଏହି ସମୟରେ ଅନ୍ତରାଳରୁ ଶୁଣାଗଲା ସମବେତ କଣ୍ଠରେ ରାମଙ୍କ ବନ୍ଦନା । ସମସ୍ତେ ଆନନ୍ଦରେ ଅଯୋଧ୍ୟା ଅଭିମୁଖରେ ଯାତ୍ରାରମ୍ଭ କଲେ । ହନୁ ତାଳମାରି 'ଜୟ ରାମ' 'ସୀତାରାମ' କହି ନାଚୁଥାଏ । ବାଲ୍ମୀକି-ପ୍ରତିଭା କ୍ଷଣକାଳ ପାଇଁ ବାସ୍ତବର ଅପାତ ମଧୁର ସ୍ପର୍ଶରେ ମୁଗ୍ଧ ହୋଇ ଯାଇଥାଏ । ]

—ଯବନିକା—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଶମ୍ଭୁଆର ଘର—

[ ଘରଟି ଶ୍ରୀ-ଯୁକ୍ତ ଦେଖା ଯାଉଥିଲା । ଶମ୍ଭୁଆ ସଜବାଜ ହୋଇ ପ୍ରବେଶ କଲା ]

ଶମ୍ଭୁଆ—ଡମ୍ଭୀ ! ଏ ଡମ୍ଭୀ !!

ଡମ୍ଭୀ—( ଘରଭିତରୁ ) ଏଁ ? ଆରେ ଗଧ ଭଳି ବଡ଼ ପାଟିକରୁଛୁ କାହିଁକି ବା ?

ଶମ୍ଭୁଆ—ସେ ଗଧ କଥା ଛାଡ଼, ଘୋଡ଼ା କଥା ଏବେ କହ । ଆଜି ଅଶ୍ୱମେଧ ଯାଗ । ସିଅଡ଼େ ଘୋଡ଼ା ଯାଉ ଲଗି ଯିବଣି, ତୁ ବେଗେ ଆ’ଉ ।

ଡମ୍ଭୀ—( ଡମ୍ଭୀ ପ୍ରବେଶି ) ଓଃ, ଲୁଗା ଖଣ୍ଡିକ ପିନ୍ଧେଇ ଦେଲୁ ନା ମଣିଷକୁ । ଗୁଲ—ଠିଆ ହେଲୁ କାହିଁକି ?

ଶମ୍ଭୁଆ—ଡମ୍ଭୀ ! ( ଡମ୍ଭୀ ଅଡ଼କୁ ଚାହିଁ ରହିଲା )

ଡମ୍ଭୀ—ହେଉ !

ଶମ୍ଭୁଆ—ତୋତେ ଆଜି କି ସୁନ୍ଦର ଦିଶୁଛି ବା···

[ କେମ୍ପା ଧୋବା ଏତିକିବେଳେ ବରବେଶରେ ପ୍ରବେଶ କଲା ]

କେମ୍ପା—ଯେମିତି ପାଟରାଣୀ କହିବ ।

ଶମ୍ଭୁଆ—କେମ୍ପା !

କେମ୍ପା—‘ମୋ ଘର କଥାରେ ତୁ ପାଟି ଫିଟେଇବାକୁ କିଏ’ ଏଇଆ ତ ?

ଶମ୍ଭୁଆ—ନାଇରେ କେମ୍ପା । ଏଣିକି ମୁଁ ତୋ ଘର କଥାରେ, ଆଉ ତୁ ମୋ ଘର କଥାରେ, ପାଟି ଫିଟାଫିଟି ହ’ବା । ହେଲେ କେମ୍ପା, ତୁ କେବେ ଘର କରିବୁ କହ ତ ?

କେମ୍ପା—( ନିଜ ବେଶ ଭୂଷା ଆଡ଼କୁ ଦୃଷ୍ଟି ଆକର୍ଷଣ କରି ) ଶମ୍ଭୁଆ ଭାଇ, ସେ କଥା ଆଉ ବାକି ରହିଛି ?

ଡମ୍ଭୀ—ସତେ ?

କେମ୍ପା—ଦେଖିବ ମୋ ଘର ?

ଡମ୍ଭୀ—ସାଙ୍ଗରେ କ’ଣ ବାନ୍ଧି ଆଣିଛୁ ?

କେମ୍ପା—ଆଣିବି ନା ? ସମସ୍ତେ ଯୋଡ଼ ଯୋଡ଼ ହୋଇ ଯାଉ ଦେଖିଯିବେ,—ଆଉ କେମ୍ପା ଯିବ ନିଯୋଡ଼ ?

ଡମ୍ଭୀ—ଆରେ ସେ ଯୋଡ଼ ତୋ’ର କାହିଁ ?

କେମ୍ପା—ଭାରି ଲାଜୁକୀଟାଏ, ଡମ୍ଭୀ-ଅପା ।

ଡମ୍ଭୀ—ଆଲୋ । ଆ’ଲୋ ଏଣେ,—ଲାଜ କରୁଛୁ କାହାକୁ ?

[ ସଙ୍ଗୋଳ ଆଣିବାକୁ ଗଲା । ଫକୀରା ଝିଅ ବେଶରେ ପଶିଥିଲା, ଲାଜେଇ ଲାଜେଇ ]

ଡମ୍ଭୀ—ଏ’ତ ଦେଖୁଛି, ଦେଉଳକୁ ମୁଖସିଆଳ ବାଲି ପଡ଼ୁଛି ।

କେମ୍ପା—ଯୁଗର ଧର୍ମ ପରା !

ଡମ୍ଭୀ—ଯୁଗର ଧର୍ମ ?

କେମ୍ପା—ଏ’ ଯୁଗର ମାଇପେ ହେଲେ ଘରର ମଝି ଖୁଣ୍ଟ—ଆଉ ମିଣିପେ ପାରୁଆଖୁଣ୍ଟ ।

ଶମ୍ଭୁଆ—ମନର କଥା କହୁଛୁ କେମ୍ପା ।

ଡମ୍ଭୀ—ଫେର୍—(ଶମ୍ଭୁଆକୁ ହାତର ଗଡ଼ୁ ଉଞ୍ଚେଇଲା-ଶମ୍ଭୁଆ ଡରି ହରି ଠିଆ ହେଲା ଭଳି ହେଲା । )

ଡମ୍ଭୀ—ଆ’ଲୋ ! ଆ’ !! ତୁ ଆମ କେମ୍ପା ଭାରିଯା—ଲାଜ କରୁଛୁ କାହାକୁ ? ଆ ! ମୁହଁ ଟିକେ ଦେଖା ?

[ ଓଢ଼ଣା କାଢ଼ି ଦେଲା—ଫକୀରା ମାଇକିନା ସାଜିଲେବି ତା’ର ପୂର୍ବ ନାଶ ସେମିତି ଥାଏ ]

ଡମ୍ଭୀ—ଫକୀରା !—ହଇରେ କେମ୍ପା ! ଏ’ କ’ଣ ?

କେମ୍ପା—ବୁଝିଲୁ ଡମ୍ଭୀ-ଅପା ! ଆମର ମନୁଆ ଠାକୁରେ ଆମ ମନକଥା ଜାଣି, ଠାକୁରାଣୀଙ୍କୁ ଘେନି ରାଇଜକୁ ବାହୁଡ଼ିଛନ୍ତି—ଯାଗ ବି କରୁଛନ୍ତି । ଆମେ ଠାକୁରଙ୍କ ମନ-କଥା ଜାଣି ଏ ବରକନିଆଁ ବେଶରେ ଟିକେ ନାଚିବୁ ନା ? ମଉଜ କରିବୁ ନା ?

ଡମ୍ପୀ—ସତେ ? ତୁ ନାଚ ଦେଖେଇବୁ ? ଅଚ୍ଛା ହଉ, ନାଚଲ, ନାଚଲ—ଦେଖିବା ନାଚୁଛୁ । ଗୋଟିଏ ଗୀତ ଗାଇକରି ନାଚ ।

କେମ୍ପା—ତେବେ ଶୁଣ ଆମ ନାଚ-ଗୀତ ।

[ ଫକିର ଓ କେମ୍ପା ଧୋବା ନାଚର ଦାଇକା ଗାଇ ନାଚିବାକୁ ଲାଗିଲେ ]

ଗୀତ

କେମ୍ପା—ଅଣ୍ଟା ଭଙ୍ଗା ଖିଲିକାଭ ଲୋ,
ଅଣ୍ଟା ଭଙ୍ଗା ଖିଲିକାଭ—
ତୋ ଚନ୍ଦ୍ରମା ବଦନ ଚୁହିଁଲେ ନିତ,
ମୋ ସରୁକଙ୍କାଳ ଲୋ ।
ମୋର ଦୁଲ୍‌କି ଦୁଲ୍‌କି ହୁଏ ଚିତ୍ତ ।

ଫକିର—ରଗଡ଼ ମୁଣ୍ଡରେ ବର, ରଙ୍ଗିଅରେ,
ରଗଡ଼ ମୁଣ୍ଡରେ ବର
ତୋ ଫାପୁଲା ମୁହଁକୁ କଜଲଗାର
ମୋ କଳା ମୁଗୁନିରେ ।
ମୋର ପାତଳ ମନକୁ ଖୁର । ୧ ।

କେମ୍ପା—ଜୋର କୂଳେ ବାଇଗବା ଲୋ,
ଜୋର କୂଳେ ବାଇଗବା
ତୋର, ଭମ୍ପାକଡ଼ି ବେଢ଼ା ଲୋଟଣୀ ଶୋଭା
ମୋ ରଙ୍ଗେଇ ଝୁମ୍ପା ଲୋ ।
ଦେଖି, ନ ରସିବେ କେଉଁ ଯୁବା । ୨।

ଫକିର—ଅଡଣ୍ଡି ବାଉଁଶ କେନା ରଙ୍ଗିଅରେ,
ଅଡଣ୍ଡି ବାଉଁଶ କେନା
ତୁ ମାହାଲିଆ କାଢ଼ୁ ଯେତେ ପେଖନା,
ମୋ ଫଟା ରସିକରେ ।
ଖାଲି ଉରସି ମରିବୁ ସିନା । ୩ ।

---

## ଦ୍ୱିତୀୟ ଦୃଶ୍ୟ

—ଉଦ୍ୟାନ—

[ ଏକ ଦଗରୁ ସୀତା, ଅନ୍ୟ ଦଗରୁ ରାଜ-ଲକ୍ଷ୍ମୀ ପ୍ରବେଶ କଲେ । ସୀତା-ଅଙ୍ଗରେ ବେଶଭୂଷାର ସ୍ୱଳ୍ପତା ଓ ରାଜ-ଲକ୍ଷ୍ମୀ-ଅଙ୍ଗରେ ବାହୁଲ୍ୟତା ଲକ୍ଷିତ ହେଉଥାଏ । ରାଜ-ଲକ୍ଷ୍ମୀ ଧାନକେଣ୍ଡାଟିଏ ଧରିଥା'ନ୍ତି । ]

ସୀତା—ଆସ, ରାଜ-ଲକ୍ଷ୍ମୀ—
ଅସ ରାଜ୍ୟ-ଶୋଭା ଧରି;—
ଧନ ଧାନ୍ୟ କରେ ତବ
କ୍ଷିତିର ସମ୍ଭାର ;
କ୍ଷୀର ନୀର ବକ୍ଷେ ପୁଣି
ଜୀବନ ପ୍ରଚୁର ।
ଆଖିରେ ଅଞ୍ଜନ-ପ୍ରୀତି
ମୁଖେ ମଧୁ-ହାସ ;
ପ୍ରତି ପାଦ କ୍ଷେପେ ଶାନ୍ତି;—ସୌଜନ୍ୟ ପ୍ରକାଶ ।

ରାଜ-ଲକ୍ଷ୍ମୀ—ଏ'ତ ଅବଦାନ ତବ
ଦେଇଛ ଅଜାଡ଼ି
ଯାହା କିଛି ରତ୍ନ ତବ
ଗର୍ଭାଧର ଫେଇ ।

ସୀତା—ତଥାପି ମୂରୁଛି ନାହିଁ
ଗର୍ଭାଧର ଗୃବ ।
ସଞ୍ଚିତ୍ତ ଅଲକ୍ଷ୍ୟେ ତାହା
ରତ୍ନାଧିକ ମଣି ।

ରାଜ-ଲକ୍ଷ୍ମୀ—ନାହିଁ ଲୋଡ଼ା, ଭଗ୍ନି…
ରଖି ଯତ୍ନକରି ତାହା ।

ସୀତା—ଛି, ଛି,
ସୀତା-ତ୍ୟାଗୀ, ଲକ୍ଷ୍ମୀ-ଭୋଗୀ—
ଭୁଲୁଛ କିପରି ?…
କୁଶ । ଲବ ।

[ ସେମାନେ ପ୍ରବେଶ କଲେ, ରାଜପୁତ୍ର-ଯୋଗ୍ୟ ଅଳଙ୍କାରରେ ଭୂଷିତ ଥାଇ ]

ଲବ-କୁଶ—ମା !
ସୀତା—କରରେ ପ୍ରଣତ ବାବୁ !—
ରାଜ୍ୟ-ମାତୃକା ଏ—
ମାତା ରାଜ-ଲକ୍ଷ୍ମୀ ତବ ।
[ ଲବକୁଶ ପ୍ରଣାମ କଲେ ]
ରାଜ-ଲକ୍ଷ୍ମୀ—ଭଗ୍ନି !
( ପିଲାମାନଙ୍କୁ ଉଠାଇଲେ )
ସୀତା—ନ କର ସଙ୍କୋଚ !—
ନିଅ ଲକ୍ଷ୍ମୀ,
ନିଅ କୋଳେ !—
ବଢ଼ନ୍ତୁ ଏ ରାଜ-ଶିଶୁ,
ରାଜ-ମନ ଘେନି ।
ରାଜ-ଲକ୍ଷ୍ମୀ—ଲାଗୁଅଛି ଦକା,
ତବ ଚିତ୍ତ ଗତି ଦେଖି···
ସୀତା—ଛି !—ଶୁଣି— !
ଶିଶୁର ମାଧ୍ୟମେ ମାତା
ଗଢ଼େ ମୂଳ-ଭିତ୍ତି ;
ଗଢ଼େ ସୌଧ ରାଷ୍ଟ୍ର-ମାତା
ରାଷ୍ଟ୍ରକୁ ଅନାଇ ।
ରାଜ-ଲକ୍ଷ୍ମୀ—କେଉଁ ବାଳ୍ମୀକିକା ଯେତେବେ—
ସୀତା—ଅଃ ! ଅଯୁନା—ସଦେହେ !
ଯୁଝିବ ସାନନ୍ଦେ ସୀତା
ଅଭଙ୍ଗତା ବଳେ ।
ରାଜ-ଲକ୍ଷ୍ମୀ—ମାଡ଼େ ଡର ଅଦ୍ଭୁତ ଅଧିକ !—
ଲୁହ ଭଗ୍ନି !
ଲୁହ ତବ ମନକଥା ଫେଇ ।
ତୁମେ କାୟା, ମୁହିଁ ଛାୟା—
କାୟା ବିନା···
ସୀତା—ଛାୟା ରହିବ କପର ?
ମାତେନ—
ମୁହିଁ ଗଲେ, ଯିବ ତୁମେ
ଅନୁସରି ମୋତେ ?
ରାଜ-ଲକ୍ଷ୍ମୀ—ସ୍ୱଭାବ-ଲକ୍ଷଣ ଯାହା,
ଲଙ୍ଘିବା କେମନ୍ତେ ?
ସୀତା—ସଂସ୍କାର-ଲକ୍ଷଣ ଏହା—
ନୁହେଁ ସଂସ୍କୃତିର ।
ରାଜ-ଲକ୍ଷ୍ମୀ—ତୁମେ ଭଣ୍ଡାଉଛ ମୋତେ ।
ସୀତା—ଆଦୌ ନୁହେଁ ।
ସଂସ୍କୃତିର ଧର୍ମ ଶୁଣି, ବରିବାର ନିଜକୁ ।
ମାତା ତ୍ୟାଗୀ, ତେଣୁ
ପୁନେ୍ୟ ତାର ସନ୍ତାନ ବଢ଼ଇ ।
ରାଜା ତ୍ୟାଗୀ, ତେଣୁ,
ଧନେ ତାର
ପ୍ରଜା ହୁଏ ସୁଖୀ ;
ସନ୍ନ୍ୟାସୀର ସର୍ବ ତ୍ୟାଗ,
ତେଣୁ, ଧରା ସ୍ୱର୍ଗ !!···
ମୁହିଁ ସୀତା,—
ସୀତାର କର୍ଷଣେ ଯେଣୁ
ଧରା ଶ୍ରୀ-ମଣ୍ଡିତା,
ତେଣୁ, ଲକ୍ଷ୍ମୀ ନୁହେଁ ଛାୟା—
ତ୍ୟାଗୀର ମହିମା······
ସେହି ଲକ୍ଷ୍ମୀ ବଳଶିବ ତେତେ,
ଯେତେ ସୀତା
ରହିବ ଅପ୍ରକାଶ ।
ରାମ—(ନେପଥ୍ୟେ) ସୀତା !
[ ରାଜ-ଲକ୍ଷ୍ମୀ କ'ଣ କହିବାକୁ ଯାଉଥିଲେ, କହି ନ ପାରି ଶିଶୁଦ୍ୱୟଙ୍କୁ କୋଳରେ ଘେନି ଅଶ୍ରୁନୟନରେ ଚାଲିଗଲେ । ସୀତା ତେଣେ ଚାହିଁ ରହିଲେ, ତାଙ୍କର ନୟନ ଛଳ ଛଳ ଦେଖାଗଲା ]
ରାମ—( ପ୍ରବେଶ କରି )
ତୁମେ ଏଠି ? ଉପବନେ ?
( ଯଜ୍ଞକାଳୀନ ବେଶ ଭୂଷାରେ ଭୂଷିତ ଥିଲେ )
ସୀତା—ଜାଣିଲ ନା କ'ଣ—
ପୂର୍ବ କଥା ସ୍ମରି
ତବ ଉପବନେ ଏହି ?
ରାମ—ଛାଡ଼,
ଯଜ୍ଞେ ଯିବା—ଉପସ୍ଥିତ ବେଳ ।

ସୀତା—ହେଲେ, ଜାଣିଥାଅ ରାଜା,—
ତ୍ୟଜିଲେ ଏଥର……

ରାମ—ସୀତା ! ( ରାମ ସୀତାଙ୍କ ହସ୍ତଧାରଣ ପୂର୍ବକ ପ୍ରସ୍ଥାନ କଲେ )

[ ବିପରୀତ ଦିଗରୁ ଉର୍ମିଳା ଦ୍ରୁତପଦେ ପ୍ରବେଶ କଲେ ।]

ଉର୍ମିଳା—କି ଆନନ୍ଦ !…
ଯେଉଁ ବନ-ସାଥି ଯୋଗୁଁ
ବନଚାରୀ ସତୀ
ରାଜପୁରେ ଥାଇ ମଧ୍ୟ,—
ସେହି ରାଜ-ଲକ୍ଷ୍ମୀ
ଜାଣି ପୁର-ନାରୀ-ମନ
କହିଲେ ଯେମିତ—
"କର ଆୟୋଜନ—
ମଣ୍ଡି ହେବେ ସୀତା ଅଙ୍ଗ
ନାନା ଅଳଙ୍କାରେ…
ଦେଲେ ବାଧା,
କହିବ ଏତିକି—
'ରାଜ-ଲକ୍ଷ୍ମୀର ଆଦେଶ' !"
ଯାଏଁ ତ୍ୱରି,
କରେ ଆୟୋଜନ……

[ ସେହି ଦିଗରୁ ଶତ୍ରୁଘ୍ନ ପ୍ରବେଶ କଲେ । ଫୁଲମାଳଟିଏ ଧରିଥାଏ ]

ଶତ୍ରୁଘ୍ନ—ଦେବୀ ! ଦେବୀ !

ଉର୍ମିଳା—ଆଃ…( ବାଧା ଅନୁଭବ କରି ଠିଆହେଲେ)
ମୋତେ ?

ଶତ୍ରୁଘ୍ନ—ଆଉ କାହାକୁ ?
ଦେବର-ପିଅର ବିନା
ନୂଆ-ବୋଉ ଭବେ !

ଉର୍ମିଳା—ହଉ,
ଛାଡ଼ କଥାର ଛଦ୍ମ !
କୁହ,—ନାହିଁ ତର ମୋତେ—

ଶତ୍ରୁଘ୍ନ—ମୁଁ ବି ତରବର !…
ନିଅ ତ ଏ ମାଳା ବେଗେ ।

ଉର୍ମିଳା—ମାନେ ?

ଶତ୍ରୁଘ୍ନ—ଲମ୍ବାଇ ଦେବ ମୋ' ଗଳେ !

ଉର୍ମିଳା—କ'ଣ ?

ଶତ୍ରୁଘ୍ନ—ଅଗୋ ! ମୁଁ ବିଜୟୀ ବୀର—
ବିଜୟର ମାଲ୍ୟ ଦେବ
ଭ୍ରାତା ଗଳେ ଭଗ୍ନୀ ।

ଉର୍ମିଳା—ଲାଜ ନାହିଁ ମୁଖେ ?
କରୁଛ ବଡ଼ାଇ ?
ଶତ୍ରୁ ତୁଲେ ରଣେ,
ଲଭି ପରାଜୟ—
କରୁଅଛ ବିଜୟ-ବଡ଼ାଇ ?

ଶତ୍ରୁଘ୍ନ—ଶିଶୁହସ୍ତେ ପରାଜୟ—
ବିଜୟ-ମଧୁର,—
ଜାଣେ ମାତା ପିତା ବିନା ।

ଉର୍ମିଳା—ତେବେ ଏ ମାଳା କାହିଁକି ?

ଶତ୍ରୁଘ୍ନ—ଆଉ ?

ଉର୍ମିଳା—ଯେଉଁ ଫୁଲ ଫୁଟି ଥାଏ
ବୁଲୁର ଉଦ୍ୟାନେ,
ସେହି ସ୍ନେହ-ଫୁଲ-ମାଳା
ବୀର-ଭ୍ରାତା-ଯୋଗ୍ୟ……
( ଶତ୍ରୁଘ୍ନର ମସ୍ତକ ଆଘ୍ରାଣ କଲେ )

ଶତ୍ରୁଘ୍ନ—( ଫୁଲମାଳା ଉର୍ମିଳାର ପଦତଳେ ଅଞ୍ଜଳି ଦେଇ ନମସ୍କାର କଲେ )

ଉର୍ମିଳା—ମାଣ୍ଡବୀ ! ପ୍ରମିଳା—
( ବେଗେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ରାଜାନ୍ତଃପୁର ବିଳାସ କକ୍ଷ—

[ ପୁରନାରୀଗଣ ସୀତାଙ୍କ ବେଣୀ ପାରି ଦେଉଥିଲେ । ସୀତାଙ୍କର ମୁଖ ହସ ହସ ଦେଖାଯାଉଥିଲା । ପରିଚାରିକାଟିଏ ଠାଏ ବେଦୀ ଉପରେ ବସି ଗାଉଥିଲା…]

ଗୀତ

ଏ' ଦେଶ ଚାହିଁ ସହର କାଏ ନୋହିବ ଲୋଭା ଗୋ
ନିବେଶି ବସିବ ମନ ଜୀବ ବାନ୍ଧବୀ ଗୋ ॥
ନାଗର ଧଇର୍ଯ୍ୟ-ଚୁଡ଼ା, ଚୁଡ଼ାଏ ଲୋଟଣୀ ଜୁଡ଼ା
ଝଡ଼ାଇ ଦେବ ଧଗନ୍ତ ଝୁଲ୍‌ମେଘ ଛବି ଗୋ ॥
ଝଟକ ବିଜୁଳୀ ବଳ ଛଟକ, ତୋର ଛଇଳୀ ଗୋ
ହାଟକ ହାର ଶିଶ୍ୱ ରହିଲା ସେବି ଗୋ ॥
ଶଙ୍କିରେ ସ୍ୱର୍ଣ୍ଣ କଳସେ ଢାଙ୍କି ନୀଳ ହିଁନ ବାସେ
ବଙ୍କିମେ ଚାହିଁଲେ ଢଳି, ଦାସୀ ହେବେ ବାସବୀ ଗୋ ॥

[ ଗୀତ ଶେଷରେ ଶୁଣାଗଲା ଭାଟର ଶ୍ଳୋକ,
ରାମଚନ୍ଦ୍ରଙ୍କର ପ୍ରବେଶ-ବାର୍ତ୍ତା ଜଣାଇ ]

ଶ୍ରୀ ଶ୍ରୀ ଶ୍ରୀ ରଘୁବଂଶାବତଂସ—
ଅଯୋଧ୍ୟା ନରେଶ—ରାବଣାରି ବୀର—
ପ୍ରଜାନୁରଞ୍ଜନ—ଜାନକୀ-ହୃଦୟ-ରଞ୍ଜନ—
ସତ୍ୟ-ସନାତନ—
ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ରୋ ଜୟତୁ ।

[ ପରିଚାରିକାମାନେ ଚାଲିଗଲେ ]

ରାମ—( ପ୍ରବେଶି ) ସୀତା !…
( ଉପବେଶନ କଲେ । ସୀତା ନିକଟରେ )
ସୀତା—କୁହ ଏବେ,
କାହିଁ ସ୍ୱର୍ଣ୍ଣ-ସୀତା ତବ ?
ରାମ—ସ୍ୱର୍ଣ୍ଣ-ମୃଗ ସମ ତାହା
ଯାଇଛି ମିଳାଇ ।

( ସୀତାଙ୍କର ସେହି ପୂର୍ବକଥିତ ରତ୍ନ-ହାରଟି
ପିନ୍ଧାଇ ଦେଲେ )

ସୀତା—( ଜାପୁଟି ଧରିଲେ ସେହି ପ୍ରାଣର ହାରଟି
ବୁକୁରେ ) ହେଲେ, ମାୟା-ମୃଗ ଲଭିଥିଲା
ରାକ୍ଷସର ଦେହ ।
ରାମ—ମାୟା-ସୀତା ଲଭିଅଛି
ମମତାର ଦେହ ।
ସୀତା—ଯାଃ

ରାମ—କୁହ ସୀତା ।
ଦେଇଛ ତ ମାନ-ଦାନ
ମୋତେ ?
ସୀତା—'ଦାନ' ?
ଦାନ ଦେବି,
ନାହିଁ ସ୍ପର୍ଦ୍ଧା ମୋର ।
ବଳୀ-ଭିକ୍ଷା-ଦାନ,—
ପ୍ରମାଣ ଭୀଷଣ ।
ରାମ—( ହସି ) ପେଷିବି ପାତାଳେ—
କାହିଁ, ତୃତୀୟ ଚରଣ ?
ସୀତା—ଦେବାକୁ ପ୍ରକଟ
କେତେବେଳ ତାହା—
ଜନଶ୍ରୁତି, ତୃତୀୟ ଶ୍ରବଣ ଯା'ର ?
ରାମ—ସୀତା ! ( ପରିଚାରିକା ପ୍ରବେଶ କଲା )
ପରିଚାରିକା—ମହର୍ଷି ବଶିଷ୍ଠ । [ବଶିଷ୍ଠ ପ୍ରବେଶ କଲେ]
[ ରାମ ସୀତା ଉଭୟେ ଗୁରୁଦେବ ବଶିଷ୍ଠଙ୍କୁ
ଯଥା-ଅଭିବାଦନ ଜଣାଇଲେ ]
ବଶିଷ୍ଠ—ଜୟ ସୀତା-ରାମ !
ଜୟୀ ହୁଅ ସଦାକୁହେଁ
ବାନ୍ଧି ପତି-ପତ୍ନୀର ଆଦର୍ଶ ।
[ ରାମ ସୀତା ଉଭୟେ ନତ-ଶିରରେ
ଆଶୀର୍ବାଦ ଗ୍ରହଣ କଲେ ]
ରାମ—ପୂର୍ଣ୍ଣ-ଆହୁତିର ବେଳ
ଉପସ୍ଥିତ ଯେବେ,
ତେବେ ଆଦେଶନ୍ତୁ,
ଯିବୁଁ ଯଜ୍ଞ-ସ୍ଥଳେ ।
ବଶିଷ୍ଠ—ରାଜା !
ରାମ—ଗୁରୁଦେବ !
ବଶିଷ୍ଠ—ରାଜଧର୍ମ ଅଟେ ସଦା ବିବେକୀର ଧର୍ମ,—
ଏହି ଜ୍ଞାନେ,
ରାଜ୍ୟ-ସ୍ୱାଧୀନତା
ଦେଇଅଛ ଜନେ ।
ରାମ—ଏହା ଫଳେ—
ଯେଉଁ ଭୁଲ ବୁଝା ବୁଝି—

ଜଞ୍ଜାଳର ମୂଳ—
ନ ରହିବ ତାହା କେବେ
ରାଜା ପ୍ରଜା ମଧ୍ୟେ ।
ବଶିଷ୍ଠ—ମାନ୍ୟ,
ମନ୍ଦଜନେ ଖୋଜୁଥାନ୍ତି
ସୁଯୋଗ ଏହାର ।

ରାମ—କହିବାକୁ ମନ୍ଦକଥା ରାଜାର ବିରୁଦ୍ଧେ, ଏଇଥିପାଇଁ ?
କ୍ଷତି କ'ଣ ?
ମନ୍ଦ ନ ବୁଝିଲେ ରାଜା,
ନିଜ ଦୋଷ ଥିଲେ,
ସୁଧାରିବ ଭଲ ମନେ,
ହେବ ଶୁଦ୍ଧ, ଶକ୍ତ ଆହୁରି ଅଧିକ ।
ବଶିଷ୍ଠ—ସାଧୁ !
ସାଧୁ ରାଜା ।
ରାମ—ନିଃସଂକୋଚରେ କୁହ ଦେବ !—
ଯଦି ଅପବାଦ କେହି କିଛି
ଦେଇଥାଏ ମୋତେ ।
ବଶିଷ୍ଠ—ଯଜ୍ଞ-ସ୍ଥଳେ
ଅଳ୍ପ କେତେ
ପରସ୍ପର ମଧ୍ୟେ
ହେଉଥିଲେ କୁହା କୁହି—
ଆସିଅଛି କର୍ଣ୍ଣେ ।
ରାମ—କେଉଁ କଥା ଦେବ ?
ବଶିଷ୍ଠ—"ରାଜ୍ୟର ମଙ୍ଗଳ ହେତୁ
ଅଶ୍ୱମେଧ ଯଜ୍ଞ ।"
ରାମ—ଅବଶ୍ୟ ।

ବଶିଷ୍ଠ—"ଆଚରିବେ ରାଜା ତାହା
ରାଜ୍ଞୀଙ୍କ ସହିତେ ।"
ରାମ—ରାଜ୍ୟର ପ୍ରତୀକ ରୂପେ
ଏହି ତ ବିଧାନ ।
ବଶିଷ୍ଠ—ମାନ୍ୟ,
"ଶୁଦ୍ଧ-ପୂତ ଭାବେ ଏହା କରିବା ବିଧେୟ ।"—
ରାମ—କୁହନ୍ତି ସେମାନେ ?

ବଶିଷ୍ଠ—ହିଁ, ଏଇ କଥା !
ରାମ—ଏ'ତ ଅତି ଶୁଦ୍ଧ କଥା । ତା'ପର···
ବଶିଷ୍ଠ—'କାୟ-ମନ-ବାକ୍ୟେ ଶୁଦ୍ଧ
ଅଯୋଧ୍ୟା-ମହିଷୀ'—
ଲୋଡ଼ନ୍ତି ପରୀକ୍ଷା ଜନେ ।

ରାମ—ପରୀକ୍ଷା ?
ବଶିଷ୍ଠ—ହିଁ, ଅଗ୍ନିର ପରୀକ୍ଷା ।
ରାମ—ଅଗ୍ନିର ପରୀକ୍ଷା ??

ବଶିଷ୍ଠ—କୁହନ୍ତି ଆବର,—
ଅଗ୍ନି-ପରୀକ୍ଷା ଲଙ୍କାରେ
ବିଶ୍ୱାସ ଅଯୋଗ୍ୟ—
ତେଣୁ, ଦେଖିବେ ସ୍ୱଚକ୍ଷେ,
ଦେବୀ ପଶିବେ ଅନଳେ—
ପ୍ରତ୍ୟକ୍ଷ-ପ୍ରମାଣ ।
ରାମ—( ରୁଷ୍ଟ ଭାବେ ) ଗୁରୁଦେବ ।
ବଶିଷ୍ଠ—ରୁଷ୍ଟ ହେବା—
ନୁହେଁ ରାଜଧର୍ମ୍ମ ।

ରାମ—'ରାଜଧର୍ମ' ।
ରଖ ରାଜ୍ୟ, ରଖ ଧର୍ମ୍ମ,—
ରଖପ୍ରଜା ଅଧିକାର ତବ ।
ଆସ ସୀତା ।
ଯିବା ତହିଁ,
ନାହିଁ ଯହିଁ ରାଜ୍ୟର ଦାୟିତ୍ୱ—
ସମାଜ-ଶାସନ
ଧର୍ମର ବନ୍ଧନ ।—
ନାହିଁ—ପ୍ରଜା-ଅଧିକାର,
ପ୍ରଜା ଆଧିପତ୍ୟ ।

ସୀତା—କ୍ଷାନ୍ତ ହୁଅ ରାଜା !
ତୁମେ ସତ୍ୟପରାୟଣ ।—
ସତ୍ୟ-ଧର୍ମ ଅଟେ
ରଘୁ-କୁଳ କୁଳ-ଧର୍ମ ।
ତୁମେ ରଘୁପତି,

ହେଲେ ବଚନଭମତ
ଲଗିବ କଳଙ୍କ କୁଳେ !
ଆଦର୍ଶ ତୁଟିବ—
ଧର୍ମ ନାଶ ଯିବ—
ବିପ୍ଳବ ଘଟିବ ।
ବିଶ୍ୱ-ସୃଷ୍ଟି ହୋଇ ପିଷ୍ଟ,
ମିଶିଯିବ ଶୂନ୍ୟେ ।

ରାମ—ସୀତା !

ସୀତା—ଆସ ହର୍ଷମନେ, ରାଜା !
ଆସନ୍ତୁ ହେ ଦେବ !
ଦେବି ମୁହିଁ ହସି ହସି
ଅଗ୍ନିର ପରୀକ୍ଷା ।

[ ପ୍ରସ୍ଥାନ ]

---

## ଚତୁର୍ଥ ଦୃଶ୍ୟ

—ରାଜ-ପ୍ରାସାଦର ଅନ୍ତର୍ଗତ ପ୍ରାଙ୍ଗଣ—

[ ଶତ୍ରୁଘ୍ନ ବୀର-ଦୃପ୍ତ ହସ୍ତରେ ଧନୁ ଶର ଘେନି ଦ୍ରୁତ ପ୍ରବେଶ କଲେ ]

ଶତ୍ରୁଘ୍ନ—ଅଗ୍ନି-ପରୀକ୍ଷା ! ଅଗ୍ନି-ପରୀକ୍ଷା !!
ଦେବୀ ଦେବେ ଅଗ୍ନି-ପରୀକ୍ଷା—
ଥାଉଁ ଧନୁଶର
ବୀର ଶତ୍ରୁଘ୍ନର କରେ ?

[ ବୀର ଦର୍ପରେ ପ୍ରସ୍ଥାନ କଲେ । ଲକ୍ଷ୍ମଣ ଅନ୍ୟ ଦିଗରୁ ବୀର ଦର୍ପରେ ପ୍ରବେଶ କଲେ ]

ଲକ୍ଷ୍ମଣ—ଅଗ୍ନି-ପରୀକ୍ଷା ! ଅଗ୍ନି-ପରୀକ୍ଷା !!
ବର୍ଷ, ବର୍ଷ ବାର !
ବର୍ଷ, ଇନ୍ଦ୍ର ! ସେହିପର ଶର,
ଯେଉଁ ପରି ଦିନେ
ଇନ୍ଦ୍ରଜିତେ ଶର ବର୍ଷିଥିଲା
ପ୍ରଳୟ ହୁଂକାରେ…
ଲଭିଥିଲା ଲଙ୍କାପୁରେ
ଅଗ୍ନିର ତାଣ୍ଡବ !—ନା, ନା…
ମୁହିଁ ଇନ୍ଦ୍ରଜିତ-ଜେତା
କରୁଛି ଶାସନ,—
ରହେ, ରହେ, ଝଞ୍ଜ ତବ ନାରକୀ ଗର୍ଜ୍ଜର,
ବହିଯାଉ ଶତ ଧାରେ
ଧୂର୍ଜଟୀର ଗଙ୍ଗା ।
ଶତ ଶତ କପିଳର କୋପାଗ୍ନିକୁ ବଳି
ଆସେ ଯେବେ ବହ୍ନିଶିଖା
ପରୀକ୍ଷିବ ସୀତା,
ତେବେ ରୋଧିବ ତା ଗ୍ରାସ
ଶାଶ୍ୱତ ଉଚ୍ଛ୍ୱାସେ !…
ନତୁବା କାର୍ମୁକ ଏହି
ବିମୁକ୍ତ-ଶାୟକ !!

[ ବେଗେ ପ୍ରସ୍ଥାନ । ଊର୍ମିଳା ଉନ୍ମାଦିନୀ ପରି ପ୍ରବେଶ କଲେ ]

ଊର୍ମିଳା—ତଥାପି ହେ ଦେବ !
ସହସ୍ରାକ୍ଷ ଯେବେ
ନ ବରଷେ ବାରି
ନାହିଁ ଡର;—
ସହସ୍ର ସହସ୍ର ନାରୀ
ଅଯୋଧ୍ୟା ନଗରୀ—
ନା, ନା ଛନ୍ତି ଯେତେ ସତୀ ସାଧ୍ୱୀ
ବିଶ୍ୱବକ୍ଷେ ଆଜି—
ହେବୁଁ ଠୁଳ ସର୍ବେ,
ଢାଳିବୁ ଲୋତକ !—
ଲୋତକ ପ୍ଳାବନେ ଧରା
ପଡ଼ିବ ଉଚ୍ଛୁଳି,—
ଲଭିଯିବ ସ୍ପର୍ଦ୍ଧା, ତାରି—
ଅଗ୍ନିର ଗୋଳକ ।

( ବେଗେ ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

—ପଥ—

[ ଅଯୁସ୍ମତୀମାନେ ସିନ୍ଦୂର, ଶାଢ଼ୀ, ଶଙ୍ଖା ଇତ୍ୟାଦି ଧାରଣ କରିଥିଲେ । ସେମାନେ ସୀତାଙ୍କ ଦୁଇପଟେ ଦୁଇଧାଡ଼ି ହୋଇ ଠିଆ ହୋଇଥିଲେ । ସୀତା ଭିକ୍ଷା ମାଗୁଥିଲେ ଜଣ ଜଣ କରି । ସୀତାଙ୍କର ଥିଲା ରାଜରାଣୀ ବେଶ ]

ସୀତା—ଦିଅ, ଦିଅ ସତୀ ।
ଦିଅ ଭିକ୍ଷା ଅଞ୍ଚଳ ପୂରିଇ ।
ସଜଳ ନୟନେ ସୀତା
ମାଗେ ଆତୁରିଇ,—
ସୀତା ପାଟରାଣୀ—
ଅଯୋଧ୍ୟା ମହିଷୀ—
ହୀରା, ନୀଳା, ପାଟ-ବାସେ
ଫାଟି ପଡ଼େ ଅଙ୍ଗ;
ତଥାପି ହେ
ଦରିଦ୍ରା ସୀତାର,
ଦିଅ ସୀମନ୍ତ ସିନ୍ଦୂର
ଲିଭିବ ସେ ଭାଲେ,—
ଶଙ୍ଖା ପଟେ ଦିଅ ଖୋଲି
ନାହିଁବ କଙ୍କଣ, —
ଅଙ୍ଗ-ବାସୁ ଫାଳେ ଦିଅ
କରିବ ବେଢ଼ଣି;—
ଦିଅ, ସବୁରିକୁ ବଳି
ସତୀର ପରଶ ।
ଅଗ୍ନିର ପରୀକ୍ଷା
ସୀତା ଦେଉଅଛି ଆଜ,—
ଦିଅ, ଦିଅ ଭିକ୍ଷା ମାଗୁଣି ଏତିକି !

[ ଯେ ଯାହାର ଇଚ୍ଛା ଦାନ କଲେ ଓ ବନ୍ଦାପନା କଲେ । ଏତିକିବେଳେ ଡମୀ ଧୋବଣୀ ଅସ୍ତ ବ୍ୟସ୍ତ ହୋଇ ପ୍ରବେଶ କଲା ]

ଡମୀ—ଠାକୁରାଣୀ ! ମୁଁ ଡମୀ ଧୋବଣୀ, ରାଇଜ ଯାକର ମଳକଣ୍ଟୁ,—ଗୋଟିଏ ମୁଣ୍ଡିଆ ମାରିବ, ଏତିକି ଟିକେ ଦୟା କରିବ ନି ତାକୁ ?

[ ଅନ୍ୟମାନେ ଡମୀକୁ ଦେଖି ଘୃଣାରେ ନାକ ଟେକିଲେ ]

ସୀତା—ଦୟାର ଭିଖାରି ସୀତା !
ଦିଅ ଭିକ୍ଷା, ସତୀ
କରେ ଗୋ ମିନତି । ( ହାତ ପାତିଲେ )

ଡମୀ—ଏଁ ! ଭିକ୍ଷା !! ମୁଁ ଦେବି !!! ଠାକୁରାଣୀ ନେବେ ? ଠାକୁରାଣୀ ! ଯଦି ଏତେ ଦୟା ଏ' ଧୋବଣୀଠାରେ, ତେବେ, ଏଇ ହାତର ଲୁହାଟି କାଢ଼ି ଦେଉଛି,......

( କାଢ଼ିବାକୁ ଲାଗିଲା )

ସୀତା—( ବାଧା ଦେଇ ) ସତୀ ! ସତୀ !!

ଡମୀ—ମନା କରନା,—ଗୁହକ ଚଣ୍ଡାଳ ହାତରୁ ଫଳଟିଏ ଖାଇ ତାକୁ ଦୟା କରିଥିଲ,—ଏ' ଡମୀ ଧୋବଣୀ ହାତର ଲୁହାଟି ନାଇ, ତାକୁ ଦୟାକରିବ ନି, ଠାକୁରାଣୀ ?

( ପାଦତଳେ ଥୋଇ ଦେଲା )

ମନା କରନା ! ମନା କରନା !!

ସୀତା—ସତୀ ଶିରୋମଣି ତୁମେ—
ପ୍ରଣମ୍ୟା ସୀତାର ।
ସତୀ !
ବଜ୍ରଲୁହା କରୁ ତବ ଦେଇଅଛ କାଢ଼ି,—
ବଜ୍ର ଅସ୍ତ୍ରେ ନିଜ କରେ
ଖଣ୍ଡି ଦିଅ ସତୀ !

[ ଡମୀ ସୀତାଙ୍କ ହାତରେ ଲୁହା ପଟିଏ ପିନ୍ଧେଇ ଦେଲାବେଳେ ଦୂରରୁ ଦରଦଭରା କଣ୍ଠରେ ଶୁଣାଗଲା ଅଶ୍ରୁଭରା ଗୀତଟିଏ । ]

---

## ଷଷ୍ଠ ଦୃଶ୍ୟ

—ରାଜପଥ—

[ ପୂର୍ବ ଅନୁକ୍ରମରେ ଗାଇ ଗାଇ ଚାଲି ଯାଉଥାଏ
ଜଣେ ଉଦାସି ପଥଚାରିଣୀ । ]

—ଗୀତ—

ଝର ଝର ଅଶ୍ରୁ ବାରି—ଝର ଝର ରେ···ଝର ଝର
ସତୀସିମନ୍ତିନୀ—ଶକ୍ତିମୟୀ ସେ
ନୀରପରାଧିନୀ—ଅଗ୍ନିରେ ପଶେ;
ଲଭିଲ ଦଅରେ ଅନଳ ତ୍ରାଣ,
ନାଶିଲ ଅଶ୍ରୁ ଡାଳି ।—
ଗଗନ ପବନ ବନ ଭୁବନ ଜୀବନ ଭରି—
ଝର ଝର ଅଶ୍ରୁବାରି—
ଥରଥର କମ୍ପନେ ଜାଗ ଉଠଇ
ବକ୍ର ବିକୁଳ ଝଞ୍ଜା—
ଜୀର୍ଣ୍ଣ କର ଏ ଦୁର୍ଦ୍ଦିନ ବନ୍ଧ—ଝଲକ ପଡ଼ରେ ଲଙ୍କା;
କାନ୍ଦେ ଧରଣୀ ଉର୍ମୀ ଆକୁଳିତ
ଅଶ୍ରୁ ସିନ୍ଧୁ ବାରି ।
ଝର ଝର ଅଶ୍ରୁ ବାରି—ଝର ଝର—
[ ଚାଲି ଗଲେ ]

ରାମ—( ବ୍ୟଥିତ ଭାବରେ ପ୍ରବେଶି )
ଅଶ୍ରୁବାରି—
ଅଶ୍ରୁବାରି ଆଜି ଗଗନେ ପବନେ—
ଅଶ୍ରୁବାରି ଆଜି
ଭୂଧରେ କାନନେ—
ଅଶ୍ରୁବାରି ଆଜି
ପ୍ରାସାଦେ କୁଟୀରେ,
ଅଶ୍ରୁବାରି ଝରେ ପ୍ରତି ନେତ୍ର ନେତ୍ର ଭରି···।···
କିନ୍ତୁ, ନାହିଁ କଣିକାଏ ଅଶ୍ରୁ
ରାମ ନେତ୍ରେ ଆଜି···
ବରଂ···
ହର୍ଷବାରି ବଦଳେ ତାର
ପଡ଼ୁଛି ଉଛୁଳି !!···
'ରାମ-ରାଜ୍ୟ' ରାମ ଭବେ
କରିବ ସ୍ଥାପନ—
ଏଥିଲାଗି ପତ୍ନୀ ତ୍ୟାଗ କରିଥିଲି ପତି !—
ସେହି ପତିର ଆଦର୍ଶ
ଅନୁସରି ପତ୍ନୀ
ପାଳି ପାତିବ୍ରତ୍ୟ,
ଦେଉ ଅଛି ହସି ହସି
ଅଗ୍ନିର ପରୀକ୍ଷା !!!
ହାଃ···ହାଃ···ହାଃ···ହାଃ···

---

## ସପ୍ତମ ଦୃଶ୍ୟ

—ଯଜ୍ଞସ୍ଥଳ—

[ ବଶିଷ୍ଠ ଦଣ୍ଡାୟମାନ ଥିଲେ । ରାମ ଉନ୍ମାଦ
ଭାବରେ ପ୍ରବେଶ କଲେ ]

ରାମ—ଗୁରୁଦେବ !
କାହିଁ ଅଗ୍ନି—
କାହିଁ ଅଗ୍ନି-କୁଣ୍ଡ ?
କର ଆୟୋଜନ ବେଗେ—
ଜାଳ, ଜାଳ ତ୍ୱରା !
ପାତାଳୁ ଆଗ୍ନେୟଗିରି ଶୋଷିଆଣ ଅଗ୍ନି;
ଆକାଶୁଁ ଜ୍ୟୋତିଷ୍କମାଳା ଢାଳିଦେଉ ରଶ୍ମି;
କ୍ଷିତୁ ବହ୍ନି ବ୍ରହ୍ମ ତେଜୁଁ
ବ୍ରହ୍ମାଣ୍ଡ ପ୍ରଜ୍ୱଳ;
ତେବେ ବା ଦେଖିବ,
ସତୀତ୍ୱର ତେଜେ ସୀତା
କରିଅଛି ମ୍ଳାନ ସେହି—
ବହ୍ନିମାନ ଶିଖା ।
ଗ୍ଳାନ ଲଭିବ ସୀତାର,—
ରାମ-ରାଜ୍ୟେ ରାଜା-ପ୍ରଜା
ଲଭିବେ ଆରାମ···!!
(ବିକଟଭାବେ ହସ ହସିଲେ )

ବଶିଷ୍ଠ—ନ ହୁଅ
ଅଧୀର ରାମ ।
ଶୁଣ ମୋର ବାଣୀ ।
ଆସିନାହିଁ ଏଥି
ଏବେ ଗୁରୁ ରୂପେ ତବ ।
ଆସିଅଛି ରାଜ୍ୟର ନିର୍ଦ୍ଦେଶେ
ଲୋକ-ପ୍ରତିନିଧି ମୁହିଁ
ରାଜାର ସମୀପେ ।

ରାମ—ବୁଝି ଅଛି ଭାବ ।
ପ୍ରଶ୍ନ ତବ—
'ବିଲମ୍ବ କିମ୍ପାଇ
ଅଗ୍ନିର ପରୀକ୍ଷା ?'

ବଶିଷ୍ଠ—ଅଗ୍ନିର ପରୀକ୍ଷା, ରାମ
ନାହିଁ ପ୍ରୟୋଜନ ।

ରାମ—ନାହିଁ ପ୍ରୟୋଜନ ।।

ବଶିଷ୍ଠ—ପ୍ରଜାଙ୍କ ଗୁହାରି —
ମୁହିଁ ପ୍ରତିହାରୀ ମାତ୍ର ।

ରାମ—ପ୍ରଜାଙ୍କ ଗୁହାରି ?

ବଶିଷ୍ଠ—ଅନୁତପ୍ତ ପ୍ରଜାସର୍ବେ
ଶୋଚନାରେ ଅଛି ।

ରାମ—'ଅନୁତପ୍ତ' ?
ଶୋଚନାରେ ଅଛି ?

ବଶିଷ୍ଠ—ଅଜ୍ଞଜନ ଅଜ୍ଞକଥା
ଭୁଲିଯାଏ ବିଜ୍ଞ ।

ରାମ—ଗୁରୁଦେବ ।

ସୀତା—(ପ୍ରବେଶି) ତଥାପି—
ନ ଭୁଲିବ ସୀତା ।
ସୀତା ନିଜେ
ବରିଅଛି ଅଗ୍ନିର ପରୀକ୍ଷା—
ନୁହେଁ ନିର୍ଦ୍ଦେଶେ କାହାର—
ରାଜାଦେଶେ ଅବା ।......
ତେଣୁ,
ଶକ୍ତି ନାହିଁ କା'ର ନିବାରିବ ଏହା

ବଶିଷ୍ଠ—ମାତା ।
ତ୍ୟଜ ଅଭିମାନ—
ଅଜ୍ଞଜନ ଅଜ୍ଞ-କଥା
ଭୁଲିଯାଏ ବିଜ୍ଞ ।

ସୀତା—'ଅଜ୍ଞଜନ ଅଜ୍ଞକଥା ଭୁଲିଯାଏ ବିଜ୍ଞ' ।

ବଶିଷ୍ଠ—ମାତା । ମାତା ।।

ସୀତା—ଭୁଲିଯାଏ ଯଦି ବିଜ୍ଞ,
ତେବେ ଭୁଲିବ ନିଜକୁ ।
ଅଜ୍ଞଜନ ଅଟେ ସଦା
ବିଜ୍ଞର ରସନା,
ବିଜ୍ଞର ବାସନା ତହିଁ
ଫୁଟଇ ଭାଷାରେ ।
ଅଜ୍ଞ-ଜନ
ବିଜ୍ଞ ହାତେ କ୍ରୀଡ଼ାର ପୁତ୍ତଳୀ;—
ନାଚେ
ଯଥା ବିଜ୍ଞ-ସୂତ୍ରୀ ନଚାଏ ତାହାକୁ ।
ଅଜ୍ଞ ପୁଣି
ଅଜ୍ଞପଣେ ସତ୍ ବୁଝି ଜଗତେ—
ବିଜ୍ଞ ହସ୍ତ ପୁଷ୍ଟ ଯେଣ
ତାର ସାର ଗୁଣ ।
ଭୁଲିଯାଏ ବିଜ୍ଞ ।।

ବଶିଷ୍ଠ—ଯାହା କୁହ ମାତା ।
ଯେଣ ପ୍ରଜାଙ୍କ ଗୁହାରି ।
ଅନୁତପ୍ତ ସର୍ବେ
ଅନୁଶୋଚନାରେ ଅଛି ।

ସୀତା—ଗୁରୁଦେବ ।
ଅନୁଶୋଚନା ବୋଲି ଯା'
କହୁଅଛ ତୁମେ,
ନୁହେଁ ତା' ଶୋଚନା ଲବେ
ଅନୁଶୋଚନା ଅଜ୍ଞାନୀ ଜନର;—
ବିଜ୍ଞାନୀର ଅନୁକମ୍ପା ତାହା
ନାରୀ ପ୍ରତି ଅଜ୍ଞ—
ଜାଣି, ନାରୀ ସଦା ନରପଦେ କରୁଣା ଭିକାରୀ ।

ବଶିଷ୍ଠ—ନ କୁହ ଏସନ, ମାତା !
ନାରୀ ଶକ୍ତିମୟୀ,
ଶକ୍ତିର ପ୍ରେରଣା ସଦା
ନରର ଏ' ଭବେ ।
ସୀତା—ଗ୍ଳଡ଼ ସେ ତୋଷଣ-ନୀତ,
ନୀତକାର ନର !
ନାରୀ-ବ୍ୟଥା,
ନାରୀ-ପ୍ରାଣ,
କି ବୁଝିବ ନର !
ଶୈଶବେ ପିତାର ଘରେ
ବନ୍ଦିନୀ ଯେ ନାରୀ,—
ଯୌବନେ ପତିରେ ହସ୍ତେ
ଖିଅଲ ଖେଳନା ।
ମାତା ଯେବେ,
ଭାଗ୍ୟ ତା'ର ସନ୍ତାନ-ଲକ୍ଷିନା,—
ସବୁର ଉପରେ,
ନାରୀ ହେଲେଛି ସୁନ୍ଦରୀ
ଓଃ ! ମାତା !···ମାତା !!···
ବସୁନ୍ଧରୀ !!!···
[ ଏତକ୍ଷି ବେଳେ ପାତାଳ ଗର୍ଭରୁ ଶୁଣାଗଲା
ଦାରଦାବସ୍ଥା କଣ୍ଠରେ ]

—ଗୀତ—

ଧରଣୀ ଦୁହିତା ଧରଣୀ କୋଳେ
ଫେର ଆ'—ଫେର ଆ'—ଫେର ଆ'—

ସୀତା—ମାତା ! ମାତା !!
ତୁମର ପ୍ରସାଦେ
ପ୍ରସନ୍ନ ଜଗତ ସାରା ।
ତୁମର ଦୁହିତା ଜାନକୀ ମୁଁ—
ଆଜ ହେବ ଅପରଚ
ହେବ 'ପ୍ରସାଦ' ଭିଖାରୀ—
ସହିବ କେମନ୍ତେ ଏହା ?
କୁହ, କୁହ ମାତା !

ହୁଅ ଦ୍ୱିଧା—
ପଶିଯାଉ ଗର୍ଭେ ସୀତା—
[ ପୃଥିବୀ ଦ୍ୱିଧା ହେଲ—ମୂର୍ତ୍ତିଧର ବସୁନ୍ଧରା
ପୃଥିବୀ ଗର୍ଭରୁ ଆବର୍ଭୂତା ହେଲେ—ସୀତାଙ୍କୁ
କୋଳକଲେ—ଧୀରେ ଅନ୍ତର୍ଦ୍ଧାନ ହୋଇ-
ଗଲେ—ବିଭକ୍ତ ପୃଥିବୀ ଯୁକ୍ତ ହୋଇଗଲା ]
ରାମ—( ଚିତ୍କାର କରି ) ସୀତା ! ସୀତା !!
କିଏ ଅଛ ?
ଆଣରେ କାର୍ମୁକ ତୂଣ,—
ବାନ୍ଧିବି ଶାୟକ,
କରି ଖଣ୍ଡ ଖଣ୍ଡ ଧରା
ଉଦ୍ଧାରିବି ସୀତା ।
[ ଲକ୍ଷ୍ମଣ ତତ୍‌କ୍ଷଣାତ୍ ଧନୁ ବଢ଼ାଇ ଦେଲେ—
ରାମ ଶର ଯୋଜନା କରିବାକୁ ଲଗିଲେ । ]

ରାଜ-ଲକ୍ଷ୍ମୀ—(ଲବ କୁଶଙ୍କୁ ଘେନି ପ୍ରବେଶକଲେ—ସେ
ଦୁହେଁ ଥିଲେ ରୋରୁଦ୍ୟମାନ )
ରାଜା !
ରାମ—କିଏ ?
ରାଜ-ଲକ୍ଷ୍ମୀ !
ତୋହର କୁହୁକେ ଭୁଲି,
ସୀତା-ହୀନ ସୀତା-ପତି ଆଜ !
ତୋତେଇ ବଧିବି ଅଗ୍ରେ ।

ରାଜ-ଲକ୍ଷ୍ମୀ—ବଧିବ ସନ୍ତାନେ ।
[ ରାମ ସ୍ତବ୍ଧ ହୋଇଗଲେ ]
ନ ହୁଅ ଅଜ୍ଞାନ, ରାଜା !
ସୀତା-ସତ୍ତ୍ୱ ହେଉ
ସୀତାର ତନୟ-ଯୁଗ୍ମେ—
[ ଲବକୁଶଙ୍କୁ ଆଗେଇ ଦେଲେ । ]
ରାମ— [ ଲୁଣ୍ଠେଇ ପଡ଼ାଇ ]
ସୀତା !······ସୀତା !!······ସୀତା !!!

— ଯବନିକା —

# ଭୂମିକା

୧୯୧୮ ମସିହା । 'ସ୍ୱପ୍ନ' ନାଟକ ପରେ ମୁଁ ଐତିହାସିକ ନାଟକ 'ସେଓଁଜ' ଲେଖା ଆରମ୍ଭ କରିଥାଏ—ବିଷୟ ବସ୍ତୁ ମେବାର୍‌ର ଇତିହାସର ।

କଟକ ମେଡ଼ିକାଲ୍ ସ୍କୁଲ୍‌ର ଛାତ୍ରମାନେ ଏକ ଓଡ଼ିଆ ନାଟକ ଅଭିନୟ କରିବାର ସ୍ଥିର କରିଥାନ୍ତି । ମୋର ଲେଖାର ସନ୍ଧାନ ପାଇ ଡାକ୍ତର ଶ୍ରୀ ଆଶୁତୋଷ ରକ୍ଷିତ ଓ ଡାକ୍ତର ଶ୍ରୀ ସୁରେନ୍ଦ୍ରନାଥ ମିତ୍ର ମୋତେ ଧରି ବସିଲେ ନାଟକଟି ଶୀଘ୍ର ଶେଷକରି ଦେବାକୁ । ତାଙ୍କର ସେ ଆଗ୍ରହ ମୁଁ ଏଡ଼ି ପାରିଲି ନାହିଁ । ଜଣକ ପରେ ଜଣେ ଛାତ୍ର ମୋ ନିକଟରେ ବସି ପ୍ରତିଦିନ ମୋଠାରୁ ଲେଖା ନକଲ କରି ନେଉଥାନ୍ତି । ସାତଦିନ ଭିତରେ ହିଁ ନାଟକର ଲେଖା ଶେଷହେଲା ।

ଛାତ୍ର ଓ ଶିକ୍ଷକ ମାନଙ୍କର ଐକାନ୍ତିକ ଚେଷ୍ଟା ଓ ଅଦମ୍ୟ ଉତ୍ସାହ ଫଳରେ ନାଟକଟି ଅପୂର୍ବ ସାଫଲ୍ୟ ଲାଭ କଲେ । ଏପରିକି ବଙ୍ଗାଳୀ ଦର୍ଶକ ବୃନ୍ଦଙ୍କର ମଧ୍ୟ ଅକୁଣ୍ଠ ପ୍ରଶଂସା ଲାଭକଲେ ।

ଏହି ସଫଳତା କଲିକତାର 'ରାଧାକୃଷ୍ଣ ଥିଏଟର'ର କର୍ମକର୍ତ୍ତାଙ୍କର ଦୃଷ୍ଟି ଆକର୍ଷଣ କଲେ । ତାଙ୍କ ଥିଏଟରରେ ସେତେବେଳେ କେବଳ ବଙ୍ଗାନୁଦିତ ଓଡ଼ିଆ ନାଟକର ଅଭିନୟ ହେଉଥିଲା । ସେମାନେ ଏହି 'ସେଓଁଜ' ନାଟକ ଅଭିନୟ କରି ଆଶାତୀତ ସାଫଲ୍ୟଲାଭ କରିବାରୁ ମୋତେ ତାଙ୍କ ପାଇଁ ଆହୁରି ନାଟକ ଲେଖିଦେବା ପାଇଁ ଧରି ବସିଛନ୍ତି ।

ମୁଁ ଏଥିପାଇଁ ମେଡ଼ିକାଲ୍ ସ୍କୁଲ୍‌ର ଛାତ୍ର ଓ ଶିକ୍ଷକ ତଥା 'ରାଧାକୃଷ୍ଣ ଥିଏଟର'ର ଦଳକୁ ଧନ୍ୟବାଦ ଜଣାଉଛି ।

ବ.ଖିରିବାଦ  
କଟକ—୧୯୨୦

**ଅଶ୍ୱିନୀ**

---

## —ଚରିତ୍ର ଲିପି—

ଶୋଲଙ୍କି—କୁଟମଣ୍ଡଳର ରାଜା

ଦୁର୍ଜ୍ଜୟସିଂହ—କୁଟମଣ୍ଡଳର ସେନାପତି

ସେଓଁଜ—କେନାଓଜ-ରାଜବଂଶଧର

ସୈତରାମ—କେନାଓଜ କନିଷ୍ଠଭ୍ରାତା

ଶିବରାମ—କେନାଓଜ ପୁରାତନ ଭୃତ୍ୟ

ଲଖା—ପାର୍ବତୀୟ ସର୍ଦ୍ଦାର । ମନ୍ତ୍ରୀ, ସେନାପତି, କେନାଓଜ-ରାଜଦୂତ, ସଭାସଦ୍‌ବର୍ଗ, ଦୂତ ଇତ୍ୟାଦି ।

ରଞ୍ଜିଲା—ଶୋଲଙ୍କି କନ୍ୟା,

ବିମଳା—ଶୋଲଙ୍କି ମନ୍ତ୍ରୀକନ୍ୟା,

ମିରା—ଲଖାର ପାଳିତକନ୍ୟା

ତାରା—ମିରାର ସହଚରୀ

ନର୍ତ୍ତକୀଗଣ, ପାର୍ବତୀୟ ବାଳିକାଗଣ ଇତ୍ୟାଦି ।

ସ୍ଥାନ—ଅଂଶିକ କୁଟମଣ୍ଡଳ, ଅଂଶିକ ଲଖାରାଜ୍ୟ ଓ ଅଂଶିକ କେନାଓଜ।

କାଳ—ଏକବର୍ଷମଧ୍ୟରେ

# ସେଓଜି

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ମରୁପାନ୍ତର—

[ ଶିବରାମର ବେଗେ ପ୍ରବେଶ ]

ଶିବରାମ—ଆଉ ଭୟ ନାହିଁ, ସେଓ, ସୈତୁ—ଏଇ ମୁଁ ପାଣି ପାଇଛି ।

[ ସେଓଜି ଓ ସୈତରାମର ବେଗେ ପ୍ରବେଶ ]

ସେଓଜି, ସୈତରାମ—କାହିଁ ପାଣି ?—ଦିଅ ଆମ୍ଭମାନଙ୍କୁ ଶୀଘ୍ର ଶିବକକା !

ସେଓଜି—ଭ୍ରମ ତୁମ୍ଭର, ଶିବକକା—ତୁମ୍ଭର ଚକ୍ଷୁ ତେଜୋହୀନ ହୋଇଗଲାଣି—ମସ୍ତିଷ୍କ ବୁଦ୍ଧିହୀନ ହୋଇଗଲାଣି—ଭ୍ରମ ବୁଝୁଛ—ଭ୍ରମ ଦେଖୁଛ—ସେହି ପାଣି ! ସେହି ପାଣି !

( ବାଲୁକା ରାଶିରେ ମୁଖ ପ୍ରୋଥିତ କରିବା )

ସୈତରାମ—ଏକା ସବୁ ପିଇ ଦିଅନା, ଖାଇନା, ସାନଭାଇ ତୁମ୍ଭର ଯେ ଆକୁଳ ନୟନରେ ଚାହିଁ ଠିଆ ହୋଇଛି—ତା'କୁ ନ ଦେଇ ତୁମେ ଯେ କିଛି ସ୍ପର୍ଶ କରନା, ଖାଇନା !

( ବାଲୁକା ରାଶିରେ ମୁଖ ପ୍ରୋଥିତ କରିବା )

ଶିବରାମ—ଆକାଶ ! ସୁନୀଳ ନୟନରେ ଏ' କି ଦୃଶ୍ୟ ଦର୍ଶନ କରୁଛ ?—ତୁମ୍ଭର ନେତ୍ରରାଶି ସହସା ବାଷ୍ପାକୁଳିତ ହୋଇ ଅଶ୍ରୁଧାରାବର୍ଷଣରେ ସ୍ୱର୍ଗ ମର୍ତ୍ତ୍ୟ ଏକତ୍ର କରି ଦେଉ ନାହିଁ କାହିଁକି ? ପୃଥିବୀ ! ନିର୍ମଳ ହୃଦୟରେ ଏ କି କାତରତା ସହ୍ୟ କରୁଛ ? ତୁମ୍ଭର ହୃଦୟ ସହସା ଦୟା-ବିଗଳିତ ହୋଇ ସ୍ନେହୋତ୍ସ ପ୍ରସ୍ରବଣରେ ସାରାସୃଷ୍ଟି ରସମୟ କରୁନାହିଁ କାହିଁକି ?—ରାଜ୍ୟଭ୍ରଷ୍ଟ—ପିତୃମାତୃହୀନ—ଅନାଥ ବାଳକ ଦୁଇଜଣ ଯେ ଆଜି ତୁମ୍ଭମାନଙ୍କର ଶରଣାପନ୍ନ ।—ତୁମ୍ଭମାନଙ୍କର ଅଶ୍ରୁ କାମନାରେ ଯେ ଓଷ୍ଠାଗତ ପ୍ରାଣ ।

ସେଓଜି—ଉଃ—ପ୍ରା—ଣ—ଗ—ଲା । ଶିବ—କ—କା ! ପ୍ରା—ଣ—ଗ—ଲା—( ମୂର୍ଚ୍ଛାଯିବା )

ସୈତରାମ—କକା ! —ପ୍ରା—ଣ—ଚ—ଲା, କ—କା— ( ମୂର୍ଚ୍ଛାଯିବା )

ଶିବରାମ—ଆଉ ସହ୍ୟ ହେଉନାହିଁ ! ଆଉ ସହ୍ୟ ହେଉ ନାହିଁ ! ପ୍ରକୃତ ! ତୁମ୍ଭେ ଜନନୀ ହୋଇ, ନିଜର ବକ୍ଷୋତ୍ଥିତ ସଦ୍ୟ ପ୍ରସ୍ଫୁଟିତ କମଳ ସଦୃଶ ଶିଶୁ ଦ୍ୱୟଙ୍କୁ, ଅନାୟାସରେ ଭୂପାତିତ କରି ପାଦଦଳନରେ ନିଷ୍ପେଷିତ କରିପାର, ମାତ୍ର ଶିବରାମ—ପୁରୁଷ ହୋଇ—କଠିନ ପ୍ରାଣ ହୋଇ—ନିଜେ ଜନ୍ମଦାତା ନ ହୋଇ—ଏ' ଦୃଶ୍ୟ ଦର୍ଶନ କରିପାରେ ନାହିଁ ! ଏ କାତରତା ସହ୍ୟ କରି ପାରେ ନାହିଁ ।

ସୈତରାମ—ଉଃ—ଶି—ବ—

ଶିବରାମ—କିଛି ଭୟ ନାହିଁ, ସନ୍ତାନଗଣ ! ଜନନୀ ପଛକେ ନିଜର ମୃତ୍ୟୁନ୍ମୁଖ ଶିଶୁକୁ ସ୍ତନ୍ୟଦାନ ନକରୁ; ମାତ୍ର ଶିବରାମ ଆଜି ଶୋଣିତରକ୍ତ—ଅନାଥ ଶିଶୁ ଦ୍ୱୟଙ୍କୁ—ପାନୀୟ ନିମନ୍ତେ ନିଜର ବକ୍ଷୋଦେଶରୁ ରକ୍ତଦାନ କରି, ପ୍ରାଣରକ୍ଷା କରନ୍ତ

ନିଜର ପିଣ୍ଡରୁ ପ୍ରାଣଦାନ କର—ନିଜେ ଧନ୍ୟ ହେବ—ନିଜର ଜନ୍ମ ସାର୍ଥକ ଜ୍ଞାନ କରିବ ।

( ଅସି ନିଷ୍କୋଷିତ କରି ନିଜର ବକ୍ଷଃସ୍ଥଳକୁ ଭେଦ କରିବାକୁ ଉଦ୍ୟତ ହେବାକାଳେ ଚଞ୍ଚଳାର ଜଳପୂର୍ଣ୍ଣପାତ୍ର ହସ୍ତେ ବେଗେ ପ୍ରବେଶ )

ଚଞ୍ଚଳା—ଏହି ନିଅନ୍ତୁ ଜଳ, ମହାଭାଗ !—ମୁମୂର୍ଷୁମାନଙ୍କ ପ୍ରାଣରକ୍ଷା କରନ୍ତୁ ।

ଶିବରାମ—କିଏ ତୁମ୍ଭେ, ଦେବି ?

ଚଞ୍ଚଳା—ପରିଚୟ ନେବାର ସମୟ ବର୍ତ୍ତମାନ ନୁହେଁ, ମହାଶୟ ! ଯା'ନ୍ତୁ ଆଗେ ମୁମୂର୍ଷୁ ମାନଙ୍କ ପ୍ରାଣ ରକ୍ଷା କରନ୍ତୁ । ( ଶିବରାମ ଜଳପାତ୍ର ନେଇ ମୁମୂର୍ଷୁମାନଙ୍କୁ ଜଳ ପିଆଇବା ) ( ସ୍ୱଗତ ) ଆଉ ମୁଁ ଠିଆ ହୋଇ ପାରୁନାହିଁ—ହୃଦ୍‌ଦ୍ୱାର ବନ୍ଦ ହେବାର ସମୟ ଉପସ୍ଥିତ ।

( ଅଲକ୍ଷିତ ଭାବେ ପ୍ରସ୍ଥାନ )

ଶିବରାମ—[ ପାଣି ପିଆଉ ପିଆଉ ] କିଏ କହେ ଜନନୀ ପାଷାଣୀ ?—ଜନନୀ ହୃଦୟରେ ଦୟା ନାହିଁ ?—ଜନନୀ ଯେ ମୋର ଦୟାର ସାଗର ! ସନ୍ତାନ ସକାଶେ ଯେ ଉନ୍ମାଦିନୀ ! ହେ କରୁଣାମୟି ! ସନ୍ତାନ ସହିତ ତୁମ୍ଭର ହୃଦୟ କି ସୂକ୍ଷ୍ମ ଭାବରେ ଗ୍ରଥିତ, ଯେ ସନ୍ତାନ ଯେତେ ଦୂରରେ ଥାଉ—ଯେଉଁ ସ୍ଥାନେ ଥାଉ—ତା'ର କ୍ଷୀଣସ୍ପନ୍ଦନ ତୁମ୍ଭର ହୃଦୟକୁ ଆନ୍ଦୋଳିତ କରେ—ତା'ର ଅସ୍ପଷ୍ଟ କ୍ରନ୍ଦନ ତୁମ୍ଭର ପ୍ରାଣକୁ ଉଦ୍‌ବେଳିତ କରେ—ତୁମ୍ଭେ ତା'ର ଶତ ତିରସ୍କାର ସତ୍ତ୍ୱେ—ଶତ ଅବମାନନା ସତ୍ତ୍ୱେ—ନିଜେ, ସ୍ୱହସ୍ତରେ କରୁଣାବାରି ଧାରଣ ପୂର୍ବକ, ତତ୍‌କ୍ଷଣାତ ତାର ତୃଷ୍ଣା ନିବାରଣ କର—ଅକୃତଜ୍ଞ ସନ୍ତାନର ପ୍ରାଣରକ୍ଷା କର । ଜନନୀ ! ଜନନୀ ! ଏ ଅଧମ ସନ୍ତାନର ସାଷ୍ଟାଙ୍ଗ ପ୍ରଣାମ ଗ୍ରହଣ କର—କାହିଁ ? କାହାରିକୁ ତ ଦେଖୁନାହିଁ ?

( ସେଓଜି ଓ ସୈତରାମ ଉପବେଶନ କରିବା )

ସେଓଜି—କାହାକୁ ଦେଖୁଛ, ଶିବଜକା ?

ଶିବରାମ—ତୁମ୍ଭମାନଙ୍କର ପ୍ରାଣଦାତ୍ରୀଙ୍କୁ ।

ସେଓଜି—ଅମ୍ଭମାନଙ୍କର ପ୍ରାଣଦାତ୍ରୀ ! କିଏ ଶିବଜକା ?

ଶିବରାମ—( ଊର୍ଦ୍ଧ୍ୱକୁ ଅନାଇ ) ନିଶ୍ଚୟ ଏହି ନନ୍ଦନ କାନନ-ବିହାରିଣୀ ।

ସୈତରାମ—ଦେବୀ ?

ସେଓଜି—ନିଶ୍ଚୟ ଦେବୀ, ଭାଇ !—ଧନ୍ୟ ତୁମ୍ଭେ ଶିବଜକା ! ଆଜ ଦେବୀଙ୍କ ଦର୍ଶନ ଲାଭ କରିଛ ! ସାର୍ଥକ ଅମ୍ଭମାନଙ୍କର ଜନ୍ମ—ସ୍ୱୟଂ ଦେବୀ ଆସି ଆମ୍ଭମାନଙ୍କର ପ୍ରାଣରକ୍ଷା କରିଛନ୍ତି ।

ଶିବରାମ—ଆସ, ସେଓ, ସୈତୁ ! ସେହି ପ୍ରାଣଦାତ୍ରୀ—ଜନନୀ ରୂପିଣୀ ଦେବୀଙ୍କ ଚରଣୋଦ୍ଦେଶ୍ୟେ ପ୍ରଣିପାତ ପୂର୍ବକ, ଅମ୍ଭମାନଙ୍କର କୃତଜ୍ଞତା ଜ୍ଞାପନ କରିବା । ( ସମସ୍ତଙ୍କର ପ୍ରଣାମ )

ସୈତରାମ—ଜକା ! ସେହି ଦେବୀଙ୍କ କୃପାରୁ ଆମ୍ଭେମାନେ କଣ ଆଶ୍ରୟ ପାଇବା ନାହିଁ ?

ସେଓଜି—ନିଶ୍ଚୟ ପାଇବା, ଭାଇ ! କରୁଣାମୟୀଙ୍କ କରୁଣାରୁ ଯେତେବେଳେ ପ୍ରାଣ ପାଇଛୁଁ, ସେତେବେଳେ ସାମାନ୍ୟ ଆଶ୍ରୟ ପାଇବା ନାହିଁ ?—ମାତ୍ର ଶିବଜକା ! କ୍ଷତ୍ରିୟ ହୋଇ ଶତ୍ରୁ ସମ୍ମୁଖରୁ ପଳାୟନ—ଅପର ନିକଟରେ ଆଶ୍ରୟ ପ୍ରାର୍ଥନା ! ଏହାଠାରୁ ପ୍ରାଣ ଯିବା ବରଂ ଶ୍ରେୟସ୍କର ଥିଲା ।

ଶିବରାମ—ସେଓ ! ଜ୍ଞାନୀ ହୋଇ ପୁଣି ସେହି କଥା କହୁଛ—ବର୍ତ୍ତମାନ ସୁଦ୍ଧା ତୁମ୍ଭର ଯେ ରଣନୀତି ଶିକ୍ଷା ସମ୍ପୂର୍ଣ୍ଣ ହୋଇନାହିଁ, ଅବିମୃଶ୍ୟକାରୀ ଭାବରେ କାର୍ଯ୍ୟ କରିବା କି ବୀରୋଚିତ ?

ସେଓଜି—ତୁମ୍ଭେହିଁ ମୋ'ର ଗୁରୁ, ଶିବଜକା !—ତୁମ୍ଭେହିଁ ମୋ'ର ଏକମାତ୍ର ସଖା !—ତୁମ୍ଭର ଉପଦେଶ ସର୍ବଥା ପାଳନୀୟ ।

ସୈତରାମ—ଶିବଜକା ! ସତେ କି ଅମ୍ଭେମାନେ ଆଶ୍ରୟ ପାଇବୁଁ ? କେତେ ଦେଶ ବିଦେଶ ବୁଲିଲିଣି, ଆଶ୍ରୟ ପାଇବା ତ ଦୂରର କଥା ସାମାନ୍ୟ ଅନୁକମ୍ପା ସୁଦ୍ଧା କେହି ପ୍ରକାଶ କରି ନାହାନ୍ତି ।

ଶିବରାମ—( ସ୍ୱଗତ ) ହା ବିଧାତଃ ! ଲକ୍ଷ ଲକ୍ଷ ଅନାଥର ଆଶ୍ରୟଦାତା—କର୍ଣ୍ଣାଟକାଧିପତି ଜୟଚନ୍ଦ୍ରଙ୍କ ସୈନ୍ୟମାନେ ଆଜି ସ୍ୱୟଂ ଆଶ୍ରୟପ୍ରାର୍ଥୀ—ସେଥିରେ ପୁଣି ପରାଙ୍ମୁଖ ! ( ପ୍ରକାଶ୍ୟେ ) ପୁତ୍ରଗଣ ! ଈଶ୍ୱର ଯେତେବେଳେ ପ୍ରାଣ ରକ୍ଷା କରିଛନ୍ତି, ଆଶ୍ରୟ ନିଶ୍ଚୟ ଦେବେ—ବର୍ତ୍ତମାନ ଅନ୍ଧାର ହୋଇ ଆସିଲାଣି, ଏପରି ସ୍ଥଳେ ରହିବା କଦାପି ଯୁକ୍ତିସଙ୍ଗତ ନୁହେଁ ।

ସୈତରାମ—କେଉଁଆଡ଼େ ଯିବା ତେବେ, ଶିବକକା ?

ଶିବରାମ—( ସ୍ୱଗତ ) ବାସ୍ତବିକ କେଉଁଆଡେ ଯିବା ? ଚାରିଆଡ଼େ ଯେ ସୁବିସ୍ତୀର୍ଣ୍ଣ ମରୁପ୍ରାନ୍ତର । ମୁଁ ଅନ୍ଧକାରରେ ସମାଚ୍ଛନ୍ନ ।

ଦେଓଜି—( ନେପଥ୍ୟକୁ ଚାହିଁ ) ଶିବକକା ! ଦେଖିଲ, ଅଦୂରରେ ଗୋଟାଏ ଉଚ୍ଚ ପର୍ବତ ପରି କଣ ଜଣା ଯାଉଛି ।

ଶିବରାମ—ବୋଧହୁଏ ସେହି ଦିଗରେ ମରୁଭୂମିର ସୀମାସ୍ଥଳ—ଆଲୋକ ମଧ୍ୟ ଦିଶୁଛି—ଚାଲ ଯିବା ସତ୍ୱର । ( ସମସ୍ତଙ୍କର ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଦୁର୍ଗ ସମ୍ମୁଖ—

[ ଦୁର୍ଜ୍ଜୟ ଓ ଦ୍ୱାରରକ୍ଷକର ପ୍ରବେଶ ]

ଦୁର୍ଜ୍ଜୟ—ଦ୍ୱାରରକ୍ଷକ ! ତୁ ଠିକ୍ କହୁଛୁତ ?

ଦ୍ୱାରରକ୍ଷକ—ଆଜ୍ଞା, ମହିମା ।

ଦୁର୍ଜ୍ଜୟ—ଆଚ୍ଛା, ତୋର ସ୍ଥାନକୁ ତୁ ଯା' ।

( ଦ୍ୱାରରକ୍ଷକର ପ୍ରସ୍ଥାନ )

ଦୁର୍ଜ୍ଜୟ ! ଦୁର୍ଜ୍ଜୟ ! ତୋ'ର ପୁଣି କି ଭାବନା ? କେଉଁ ରଣସ୍ଥଳରେ ତୁ ଅଜେୟ ? ତୋ'ର କଟାକ୍ଷରେ ସୁବିସ୍ତୀର୍ଣ୍ଣ କୁଟମଣ୍ଡଳ ଆଜି ପଦଦଳିତ—ତୋର ମୁଷ୍ଟିମଧ୍ୟରେ ଗୋଲକ୍ଷ ଜଣକେ କ୍ରୀଡ଼ାପୁତ୍ତଳିକା !—ସାମାନ୍ୟ ବାଳିକାଟିଏ କଣ ତୋର ଭୁଜବନ୍ଧନା-ସ୍ପର୍ଦ୍ଧିତ ବହିର୍ଭୂତ ? ତୋର ଦୁର୍ଜ୍ଜୟ ଲାଳସା କଣ ଆଜି ସାମାନ୍ୟ ନାରୀଠାରେ ପରାଭୂତ ?—ଅସମ୍ଭବ—ଏହି ଯେ କାର ପଦଧ୍ୱନି ଶୁଣାଯାଉଛି—

( ଅନ୍ତରାଳକୁ ଯିବା )

( ଚଞ୍ଚଳାର ପ୍ରବେଶ )

ଚଞ୍ଚଳା—କିଏ ସେହି ବିଦେଶିଗଣ ? ଯୁବକ ବୃଦ୍ଧଙ୍କର ଆକାର ଇଙ୍ଗିତରୁ ବେଶ ଜଣା ପଡ଼ୁଛି ଯେ ସେମାନେ ଉଚ୍ଚବଂଶଜାତ ! ନିଶ୍ଚୟ ସେମାନଙ୍କର କୌଣସି ବିପଦ ଘଟିଛି । କାଲି ସଖୀଙ୍କଠାରୁ ସମସ୍ତ ବୁଝି ପାରିବି । ସଖୀଙ୍କୁତ ସେମାନଙ୍କୁ ଆଶ୍ରୟ ଦେବା ନିମନ୍ତେ କହି ଆସିଲି; ମାତ୍ର ସେମାନେ ଯେବେ ଏଣେ ନ ଆସନ୍ତି !—ଏଣେ ନ ଆସି ଯିବେ ବା କେଉଁ ଆଡେ ? ଯାହାହେଉ ଈଶ୍ୱରଙ୍କୁ ଧନ୍ୟ ଯେ ଦୁର୍ଗଶିଖରେ ବୁଲି ବୁଲି ସେମାନଙ୍କୁ ଦେଖି ପାରିଥିଲି । ଓଃ—ଅନେକ ରାତ୍ର ହୋଇ-ଗଲାଣି ! ( ସସବ୍ୟସ୍ତେ ଦୁର୍ଗଦ୍ୱାର ନିକଟକୁ ଯାଇ କରାଘାତ କରୁ କରୁ ) ଦ୍ୱାରଖୋଲ, ପ୍ରହରୀ !

ଦୁର୍ଜ୍ଜୟ—( ପ୍ରବେଶ କରି ) ପ୍ରହରୀର ପ୍ରୟୋଜନ ନାହିଁ, ସୁନ୍ଦରି ! ଯେଉଁ ଦୁର୍ଗଦ୍ୱାରର ତୁମ୍ଭେ ପ୍ରହରୀ—ସେ ଦ୍ୱାର ଖୋଲି ଦେଲେ—ଏ ପ୍ରହରୀ ଏହି ସ୍ଥିର ଦୁର୍ଗଦ୍ୱାର ଏହିକ୍ଷଣି ଖୋଲି ଦେବ ।

ଚଞ୍ଚଳା—କିଏ ? ଦୁର୍ଜ୍ଜୟ !

ଦୁର୍ଜ୍ଜୟ—ଚଞ୍ଚଳା !

ଚଞ୍ଚଳା—ପୁଣି ଆଜି—ନିର୍ଦ୍ଦୟ ହୁଅନା, ଭାଇ !

ଦୁର୍ଜ୍ଜୟ—ନିର୍ଦ୍ଦୟ କିଏ ! ଥରେ ଚିନ୍ତା କରି ଦେଖ, ସୁନ୍ଦରି !

ଚଞ୍ଚଳା—କୁସୁମକୋମଳ ନାରୀହୃଦୟ କଦାପି ନିର୍ଦ୍ଦୟ ହୋଇପାରେ ନା, ଭାଇ !

ଦୁର୍ଜ୍ଜୟ—ଦୁର୍ଜ୍ଜୟପ୍ରତି ଚଞ୍ଚଳାର ତେବେ ଏ'ପରି ନିର୍ଦ୍ଦୟତା କାହିଁକି ?

ଚଞ୍ଚଳା—ଭ୍ରାତାପ୍ରତି ଭଗ୍ନୀର ନିର୍ଦ୍ଦୟତା ? ଅସମ୍ଭବ !

ଦୁର୍ଜ୍ଜୟ—ତେବେ କି ପ୍ରଣୟୀପ୍ରତି ପ୍ରଣୟିନୀର ନିର୍ଦ୍ଦୟତା ସମ୍ଭବ ?

ଚଞ୍ଚଳା—ଦୁର୍ଜ୍ଜୟ !

ଦୁର୍ଜ୍ଜୟ—ଚଞ୍ଚଳା !

ରଞ୍ଜିଲା—ତୁମ୍ଭେକି ସେହି ଦୁର୍ଜ୍ଜୟ ?—ଅକାଳେ ମାତୃ-
ବିୟୋଗ ଘଟିବାରୁ 'ମା ମା' ବୋଲି କାନ୍ଦି କାନ୍ଦି
ଯେତେବେଳେ ଅଧୀର ହୋଇ ପଡ଼ିଲି
ସେତେବେଳେ ଦାସ ଦାସୀ ସ୍ୱଜନମାନେ ନାନା
ପ୍ରଲୋଭନରେ—ନାନା ଆଶ୍ୱାସନାରେ ସାନ୍ତ୍ୱନା
ଦେଉଥିଲେ ମଧ୍ୟ, ଆଶ୍ୱସ୍ତ ନ ହେଲି, ମାତ୍ର
ତୁମ୍ଭର ସାମାନ୍ୟ ପ୍ରବୋଧବାକ୍ୟରେ, ସାମାନ୍ୟ
ଚୁମ୍ବନରେ ସମସ୍ତ ପାଶୋରି ପକାଇଲି, ସବୁ
ଜ୍ୱାଳା ଲିଭାଇ ଦେଲି—ସେହି ମାତୃଶୋକହାରୀ
ସହୋଦର ଭ୍ରାତୃତୁଲ୍ୟ ଦୁର୍ଜ୍ଜୟ କି ତୁମ୍ଭେ ?

ଦୁର୍ଜ୍ଜୟ—ହଁ ସୁନ୍ଦରି ମୁଁ ସେହି ଦୁର୍ଜ୍ଜୟ ।

ରଞ୍ଜିଲା—ତୁମ୍ଭେ ତ ସେହି ଦୁର୍ଜ୍ଜୟ ? ବୟୋ ବୃଦ୍ଧି
ସଙ୍ଗେ ସଙ୍ଗେ ଜ୍ଞାନଚକ୍ଷୁ ଖୋଲିବାରୁ ଯେତେ-
ବେଳେ ଦେଖିଲି—ମୋର ଅନ୍ୟ ଭାଇ ନାହିଁ କି
ଅନ୍ୟ ଭଉଣୀ ନାହିଁ—ପିତା ଆମୋଦ
ପ୍ରମୋଦରେ ମତ୍ତ, ସେତେବେଳେ ଭାରି ନିର୍ଜନତା
ବୋଧ କଲି—ସମବୟସ୍କା ବାଳକ ବାଳିକାଙ୍କ
ସ୍ନେହ ପାଉଥିଲେ ମଧ୍ୟ ସାନ୍ତ୍ୱନା ଲାଭ ନ କଲି,
ମାତ୍ର ତୁମ୍ଭର ଦର୍ଶନରେ କେବଳ ସବୁଦିଗ ପୂର୍ଣ୍ଣ
ଦେଖିଲି, ସ୍ୱର୍ଗୀୟଶାନ୍ତି ଭୋଗ କଲି—ସେହି
ଭ୍ରାତୃଭଗିନୀ ଶୋକହାରୀ ସହୋଦରଭ୍ରାତୃତୁଲ୍ୟ
ଦୁର୍ଜ୍ଜୟ କି ତୁମ୍ଭେ ?

ଦୁର୍ଜ୍ଜୟ—ହଁ ସୁନ୍ଦରି ! ମୁଁ ସେହି ଦୁର୍ଜ୍ଜୟ ।

ରଞ୍ଜିଲା—ତେବେ ତୁମ୍ଭର ସେହି ଆଦରିଣୀ ଭଗ୍ନିରୂପିଣୀ
ରଞ୍ଜିଲା ପ୍ରତି ଆଜ ଏ କି ଦୁର୍ବ୍ୟବହାର ?

ଦୁର୍ଜ୍ଜୟ—ଦୁର୍ବ୍ୟବହାର ? ସୁନ୍ଦରି ! କହି କି ପାରିବ ?
ପୁଷ୍ପ ଯେତେବେଳେ କଳିକାବସ୍ଥାରେ ଥାଏ—
ପୂର୍ଣ୍ଣ ସୌନ୍ଦର୍ଯ୍ୟ ତାର ବିକାଶ କରି ନ ଥାଏ—
ସେତେବେଳେ ଯେ ତାକୁ ସଯତ୍ନେ ଲାଳନ
ପାଳନ କରେ—କ୍ଷଣକାଳ ପାଇଁ ସୁଦ୍ଧା ଏକାକୀ
କରି ନ ଯାଏ—କେଉଁ କାରଣରୁ ସେ ତାହା
କରେ ?—କେଉଁ ଉଦ୍ଦେଶ୍ୟରେ ସେ ଏତେ କଷ୍ଟ
ସହ୍ୟକରେ ?

ରଞ୍ଜିଲା—ପୁଷ୍ପ ପ୍ରସ୍ଫୁଟିତ ହେଲେ ତାହାର ସଦ୍-
ବ୍ୟବହାର କରିବ ବୋଲି ।

ଦୁର୍ଜ୍ଜୟ—ବର୍ତ୍ତମାନ ପୁଷ୍ପ ପ୍ରସ୍ଫୁଟିତ—ସୌନ୍ଦର୍ଯ୍ୟରେ
ବିଭୂଷିତ—ସୌରଭରେ ଆମୋଦିତ—ଅଳିକୁଳ
ଗୁଞ୍ଜନରେ ମୁଖରିତ—

ରଞ୍ଜିଲା—ସେବାକାରୀର ମଧ୍ୟ ସଦ୍‌ବ୍ୟବହାରର
ଉପଯୁକ୍ତ ।

ଦୁର୍ଜ୍ଜୟ—ତେବେ ଦିଅ ଆଜ, ପ୍ରସ୍ଫୁଟିତ କୁସୁମ
ସୁନ୍ଦରି ! ହୀନ ସେବାକାରୀକୁ ତା'ର ଉପଯୁକ୍ତ
ବ୍ୟବହାର କରିବାକୁ—ହୀନ ମସ୍ତକରେ ତାର
ଭାର ବହନ କରି ଧନ୍ୟ ହେବାକୁ ।

ରଞ୍ଜିଲା—ଏହାକି ସଦ୍‌ବ୍ୟବହାର ସେବାକାରୀର,
ଦୁର୍ଜ୍ଜୟ ?

ଦୁର୍ଜ୍ଜୟ—ଏହାଠାରୁ ଅଧିକତର ସଦ୍‌ବ୍ୟବହାର ଆଉ
କଣ ହୋଇ ପାରେ, ସୁନ୍ଦରି ?

ରଞ୍ଜିଲା—ଭାଇ ! ଯେଉଁ ପୁଷ୍ପଟି ଲୋକର ବିଶେଷ
ଆଦରଣୀୟ—ଅତୀବ ଯତ୍ନରେ ଲାଳିତ ପାଳିତ—
ତାହା କି ନିକୋଦ୍ଦେଶ୍ୟରେ ବ୍ୟବହାର ହେଲେ,
ତା'ର ସଦ୍‌ବ୍ୟବହାର ହୁଏ ।

ଦୁର୍ଜ୍ଜୟ—( ସହାସ୍ୟେ ) ହୁଏ ନାହିଁ, ସୁନ୍ଦରି ?

ରଞ୍ଜିଲା—ଭୁଲ ଭୁଲ, ଭାଇ—ତା'ର ସଦ୍‌ବ୍ୟବହାର,
ତା'ର ଉପଯୁକ୍ତ ବ୍ୟବହାର—ସେହି ପୁଷ୍ପ ନିର୍ମାତା,
ତୁମ୍ଭର ଆମ୍ଭର ନିର୍ମାତା, ସେହି ବିଶ୍ୱବିଧାତାଙ୍କ
ଶ୍ରୀଚରଣରାଜୀବରେ ସମର୍ପଣ—ଭକ୍ତିଭରେ ତାଙ୍କ
ଉଦ୍ଦେଶ୍ୟରେ ବିସର୍ଜନ ।

ଦୁର୍ଜ୍ଜୟ—ଖୁବ ଧାର୍ମିକା ତୁମ୍ଭେ ରଞ୍ଜିଲା ! ମାତ୍ର ଏହି
ପ୍ରତ୍ୟାଶୀକୁ—ତୁମ୍ଭର ପ୍ରେମୋନ୍ମାଦକୁ, ଏପରି
ଭାବେ ନିରାଶ କରନା, ସୁନ୍ଦରି !

ରଞ୍ଜିଲା—ଦୁର୍ଜ୍ଜୟ ! ( ଭ୍ରୂକୁଞ୍ଚିତ ବଦନରେ ଗୃହିଁବା )

ଦୁର୍ଜ୍ଜୟ—ବୃଥା ଏ କୁଞ୍ଚନ, ସୁନ୍ଦରି । ଏପରି
ଭ୍ରୂକୁଞ୍ଚନରେ ମଧ୍ୟ ତୁମ୍ଭର ସୌନ୍ଦର୍ଯ୍ୟ ଅଦ୍ଭୁତ ବଢ଼ି
ଉଠୁଛି—ଗୃହଁ ତୁମ୍ଭେ, ତୀବ୍ର ଦୃଷ୍ଟିପାତ କରି
ପ୍ରଣୟି ହୃଦୟରେ ଭୀତ ଉତ୍ପାଦନ କରିବାକୁ,
ମାତ୍ର ତା'ର ହୃଦୟ ଦରି ପ୍ରେମତରଙ୍ଗରେ କଲ୍ଲୋଳ

ପଡ଼ୁଛୁ—ଗୃହିଁ ତୁମ୍ଭେ, ନାସିକା କୁଞ୍ଚନ କର ପ୍ରଣୟିର ପ୍ରେମଦାନ ପରିବର୍ତ୍ତେ ଘୃଣାଦାନ କରିବାକୁ, ମାତ୍ର ସେ ଦାନ ଅପୂର୍ବ ପ୍ରେମ-ପାରିଜାତ-ଗନ୍ଧରେ ମହକି ଉଠୁଛି । ସୁନ୍ଦର । ସୁନ୍ଦର । ଧୀନେ ଦସ୍ୟୁଙ୍କର—କାପଟ୍ୟ ତୁମ୍ଭର ପରିହାର କର ।

ଚଞ୍ଚଳା—କାପଟ୍ୟ ପରିହାର କରିବି—ନା କାପଟ୍ୟ ଆଜଠାରୁ ଧାରଣ କରିବି ? ଦୁର୍ଜ୍ଜୟ ।

ଦୁର୍ଜ୍ଜୟ—ପ୍ରେମମୟି ।

ଚଞ୍ଚଳା—ରୂପ୍‌କର ପାମର । ଶୁଣ ଦୁର୍ଜ୍ଜୟ । ଏତେ ଦିନଯାଏ ତୋତେ ଭାଇ ବୋଲି ସ୍ନେହ କରୁଥିଲି—ତୁ' ଯେ ସାମାନ୍ୟ ଜଣେ କ୍ରୀତଦାସ, ତାହା ଭୁଲି ଯାଇ ତୋତେ ଦେବାଧିକ ପୂଜା କରୁଥିଲି, ମାତ୍ର ଆଜଠାରୁ ସେ ସମ୍ବନ୍ଧ ବିଚ୍ଛିନ୍ନ ହେଲା—ତୁ' । ମୋ'ର କେହି ନୋହୁଁ—ଇଚ୍ଛା କଲେ ମଧ୍ୟ ଏହିକ୍ଷଣି ସାମାନ୍ୟ ପ୍ରହରୀଦ୍ୱାରା ସମ୍ମୁଖରୁ ତାଡ଼ିତ କରିପାରେ ।

ଦୁର୍ଜ୍ଜୟ—ହାଃ ହାଃ ହାଃ—ଚଞ୍ଚଳା । ଜାଣ କି କାହା' ସଙ୍ଗେ ତୁମ୍ଭେ ବାକ୍ୟାଳାପ କରୁଛ ?

ଚଞ୍ଚଳା—ଜଣେ ସାମାନ୍ୟ କର୍ମଚାରୀ ସଙ୍ଗେ—ଜଣେ ସାମାନ୍ୟ ଭୃତ୍ୟ ସଙ୍ଗେ ।

ଦୁର୍ଜ୍ଜୟ—ଭୃତ୍ୟ ସଙ୍ଗେ ନା ପ୍ରଭୁ ସଙ୍ଗେ ? ଦେଖ, ଦେଖ, ଚଞ୍ଚଳା । ଥରେ ଜ୍ଞାନଚକ୍ଷୁ ଖୋଲି ଦେଖ —କାହା ବଳରେ ଅଧୁନା ଏହି ରାଜ୍ୟ ରକ୍ଷିତ—କାହା ବୁଦ୍ଧିରେ ଅଧୁନା ଏହାର ରାଜା ଚାଳିତ—କାହା ଅଧୀନରେ ବର୍ତ୍ତମାନ ତୁମ୍ଭମାନଙ୍କର ବଳବୀର୍ଯ୍ୟ ? ଶୁଣ; ସୁନ୍ଦର । ବର୍ତ୍ତମାନ ସୁଦ୍ଧା ମୁଁ ଅନୁନୟ କରି କହୁଛି, ତୁମ୍ଭର ଏହି ମୁନିଜନ-ମୋହନ ରୂପଯୌବନକୁ ଏ' ଯୁବକକୁ ଅର୍ପଣ କର—ବିନୀମୟରେ ମୋର ପୂଜା ଗ୍ରହଣ କର—ପ୍ରଭୁର ଦାସତ୍ୱ ଅଧିକାର କର ।

ଚଞ୍ଚଳା—ଦୂର ହ, ସମ୍ମୁଖରୁ, ପାମର ।—ପ୍ରହରୀ । ପ୍ରହରୀ ।

[ ପୁନର୍ବାର ଦୁର୍ଗ ଦ୍ୱାରରେ କରାଘାତ କରିବା ]

ଦୁର୍ଜ୍ଜୟ—ବୃଥା ଚିତ୍କାର ନିଷ୍ପ୍ରୟୋଜନ, ସୁନ୍ଦର ।

ଚଞ୍ଚଳା—ବୁଝିଛି, ବୁଝିଛି, ପାମର । ତୋ'ର ଏହି ଷଡ଼ଯନ୍ତ୍ର—ତୋର ଏହି ରଚନା ।

ଦୁର୍ଜ୍ଜୟ—ଯେବେ ବୁଝିଥାଅ ସୁନ୍ଦରି—ତେବେ ବର୍ତ୍ତମାନ ସୁଦ୍ଧା ଅବସର ଅଛି, ବାଛି ନିଅ—ଦୁର୍ଜ୍ଜୟକୁ ହୃଦୟାର୍ପଣ କିମ୍ବା ଦୁର୍ଜ୍ଜୟ କର୍ତ୍ତୃକ ଆପଣାର ଓ ସମସ୍ତ ପରିବାରର ସର୍ବନାଶ ସାଧନ ।

ଚଞ୍ଚଳା—ବୃଥା ଏ ଭୟ ପ୍ରଦର୍ଶନ, ପାମର । ଗୋଲଙ୍କି ନନ୍ଦନୀକୁ ଏପରି ଭାବେ ଆୟତ୍ତ କରିବାକୁ ଚେଷ୍ଟା କରିବା ବୃଥା—ଶୁଣ ପାଷଣ୍ଡ । ଖାଣ୍ଡବାଗ୍ନି ସମ ପ୍ରଳୟାଗ୍ନି ଯେବେ ସମସ୍ତ ପୃଥିବୀକୁ ଭସ୍ମସ୍ତୂପରେ ପରିଣତ କରେ—ନିସ୍ତବ୍ଧ ଶୂନ୍ୟ ସମ ଗ୍ରହତାରା ମୁଖରିତ ସାରାସୃଷ୍ଟି ଯେବେ ଘୋର ନିସ୍ତବ୍ଧତାରେ ପରିଣତ ହୁଏ, ତେବେ ସୁଦ୍ଧା ଦୁର୍ଜ୍ଜୟକୁ ଚଞ୍ଚଳାର ହୃଦୟାର୍ପଣ ଅସମ୍ଭବ । କୁକ୍କୁରକୁ ରାଜାର ସିଂହାସନାର୍ପଣ ଅସମ୍ଭବ ।

ଦୁର୍ଜ୍ଜୟ—ଅସମ୍ଭବ । ଦେଖ ତେବେ କାର୍ଯ୍ୟରେ, ସୁନ୍ଦର ।

( ସ୍ପର୍ଶ କରିବାକୁ ଅଗ୍ରସର ହେବା )

ଚଞ୍ଚଳା—ଭଗବାନ । ଭଗବାନ ।

( ସେଓଁଜର ବେଗେ ପ୍ରବେଶ । )

ସେଓଁଜ—କ୍ଷାନ୍ତ ହଁ, ପାମର ।—ଦୁର୍ଗ ସମ୍ମୁଖରେ ନାରୀପ୍ରତି ଅତ୍ୟାଚାର । ରାଜପ୍ରାସାଦସମ୍ମୁଖରେ ବାଳିକାପ୍ରତି ଅତ୍ୟାଚାର ।—ଆଶ୍ଚର୍ଯ୍ୟ ଏ' ଦୁଃସାହସ । ଆଶ୍ଚର୍ଯ୍ୟ ଏ' ରାଜ୍ୟ । ଆଶ୍ଚର୍ଯ୍ୟ ଏହାର ରାଜା । କିଛି ଭୟ ନାହିଁ, ସୁନ୍ଦରି । ଆଦେଶ କରନ୍ତୁ, କେଉଁଠାରେ ଆପଣଙ୍କୁ ଛାଡ଼ି ଆସିବି ?

ଦୁର୍ଜ୍ଜୟ—ଏତେଦୂର ସାହସ ତୋ'ର, ଅର୍ବାଚୀନ ।

( ସିଟିବାଦନ ଓ ଦୁର୍ଗଦ୍ୱାର ଉନ୍ମୋଚନ କରି କତିପୟ ସୈନିକଙ୍କ ପ୍ରବେଶ । )

ସୈନିକଗଣ । ବାନ୍ଧ ଏହି ଯୁବକକୁ ।

ସେଓଁଜ—ଅସମ୍ଭବ, ସୟତାନ । ଏ' ହସ୍ତରେ ଅସ୍ତ୍ର ଥିବା ଯାଏ—ଏ ବାହୁରେ ଶକ୍ତି ଥିବା ଯାଏ—ଏ' ପିଣ୍ଡରେ ପ୍ରାଣ ଥିବା ଯାଏ—ତାହା ସମ୍ପୂର୍ଣ୍ଣ ଅସମ୍ଭବ ।

ଦୁର୍ଜ୍ଜୟ—ତେବେ ଯୁଦ୍ଧ କର, ଅର୍ବାଚୀନ ।

( ଯୁଦ୍ଧ କରିବା, ଦୁର୍ଜ୍ଜୟ ଓ ତାର୍ ସୈନ୍ୟମାନଙ୍କ ପତନ । )

ଚଞ୍ଚଳା—ଅଦ୍ଭୁତ ଏ ଯୁବକ ।

ସେଉଁଜି—ଚାଲନ୍ତୁ, ସୁନ୍ଦରୀ । କେଉଁଠାକୁ ଯିବେ ଚାଲନ୍ତୁ ।

ଚଞ୍ଚଳା—ମୋର ପଥ ବର୍ତ୍ତମାନ ନିଷ୍କଣ୍ଟକ, ମହାଭାଗ—ଆପଣଙ୍କୁ ଧନ୍ୟ ।—ଆପଣଙ୍କ ବଳବୀର୍ଯ୍ୟ ଓ ସାହସକୁ ମଧ୍ୟ ଧନ୍ୟ ।

ସେଉଁଜି—ଈଶ୍ୱରଙ୍କୁ ଧନ୍ୟବାଦ ଦିଅନ୍ତୁ—ଆମ୍ଭେମାନେ ତାଙ୍କର ଦାସାନୁଦାସ ମାତ୍ର—ତେବେ ମୁଁ ଆସୁଛି ।

( କିଛିଦୂର ଯିବା )

ଚଞ୍ଚଳା—( ସେଉଁଜି ଆଡେ ପ୍ରୀତିପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଛିଡ଼ା ହୋଇ ରହିବା )

ସେଉଁଜି—( ଫେରିଚାହିଁ ) ଆପଣ ଛିଡ଼ା ହୋଇ ରହିଲେ ଯେ ?

ଚଞ୍ଚଳା—ଆପଣ ବୋଧହୁଏ ବିଦେଶୀ ?

ସେଉଁଜି—ହଁ, ମାତ୍ର ମୋ’ ବିଷୟରେ ଚିନ୍ତା କରିବାର କୌଣସି ପ୍ରୟୋଜନ ନାହିଁ । ଦେବୀଙ୍କ କୃପାରୁ ମୁଁ ଓ ମୋ’ର ସହଯାତ୍ରୀଗଣ ଖୁବ୍ ସ୍ୱଚ୍ଛନ୍ଦ୍ୟରେ ଅଛୁଁ ।

ଚଞ୍ଚଳା—ତେବେ ଆସନ୍ତୁ ।

( ପରସ୍ପରକୁ ଚାହିଁ ଚାହିଁ ପ୍ରସ୍ଥାନ । )

ଦୁର୍ଜ୍ଜୟ—( ଧୀରେ ଧୀରେ ଉଠୁ ଉଠୁ ) ଏତେଦୂର—ଏତେଦୂର । ଲିଭିଯାଅ, ଲିଭିଯାଅ, ଗ୍ରହତାରା—ଫୁତ୍କାରେ ଦୀପଶିଖାସମ—ପ୍ରଳୟର ପ୍ରଭଞ୍ଜନ-ଶ୍ୱାସେ । ଘୋଟି ଆସ, ଘୋଟି ଆସ, ଧରାଧାମ—ଘନକାଳେ ନୈଶାକାଶସମ—ଘୋର ନାରକୀୟାନ୍ଧକାରେ । ଦୁର୍ଜ୍ଜୟର ସୁପ୍ତ ଘୃଣାହିଂସା ଆଜ ପଶିବ ସଂଗ୍ରାମେ ଯୁଝିବ ସେ, ଚଞ୍ଚଳାର ନ୍ୟାୟଧର୍ମ ସଙ୍ଗେ—ଅସ୍ତ୍ରେ ଅସ୍ତ୍ରେ ପରସ୍ପର ହେବେ କୋଳାକୋଳି—ରକ୍ତେ ରକ୍ତେ ପରସ୍ପର ହେବେ ବୋଲାବୋଲ ।—ସୈନିକ ।

ସୈନିକ—ସେନାପତେ !

ଦୁର୍ଜ୍ଜୟ—କିଏ ସେ ଯୁବକ ?—ତାହି ସେ ଅଛି ? ଧରିଆଣ, ଶୀଘ୍ର, ଅପେକ୍ଷା ମୁଁ କରୁଛି ସଦନେ ମୋହର—ନା—ମୁଁ ମଧ୍ୟ ବାହାରିଲି ଅନ୍ୱେଷଣେ ତା’ର ।

( ଦୁର୍ଜ୍ଜୟର ଏକ ଦିଗରେ ଓ ସୈନିକମାନଙ୍କର ବିପରୀତ ଦିଗରେ ବେଗେ ପ୍ରସ୍ଥାନ ।)

---

## ତୃତୀୟ ଦୃଶ୍ୟ

—ଗୃହାଭ୍ୟନ୍ତର—

( ବିମଳା ଓ ଶିବରାମର ପ୍ରବେଶ )

ବିମଳା—ଏତେଦିନ ତାଙ୍କ ପାଖରେ ଅଛ ? ଏମାନଙ୍କ ବାପକୁ ତା’ ହେଲେ ତୁମ୍ଭେ କାଖ କରିଛ ?

ଶିବରାମ—ବାପକୁ କାଖ କରିଛି କଣ, ମା ?—ବାପର ଜନ୍ମ ଦେଖିଛି କହନ୍ତୁ ।

ବିମଳା—କିଷ୍ଟୟ-ତା’ ନ ହେଲେ କି ଏହି ଅନାଥବାଳକମାନଙ୍କ ପ୍ରତି ଏତେ ମମତା ଜନ୍ମନ୍ତା ?

ଶିବରାମ—ଓଃ । ସେଓ କେଉଁଆଡ଼େ ଗଲ ? ଏକେ ବିଦେଶ ତହିଁରେ ଅଜାର ରାତି—ଦୁର୍ଗ ଦେଖି ଆସୁଛି ବୋଲି କହି, ଏତେବେଳେ ଯାଏ କେଉଁଆଡ଼େ ରହିଲ ? ସେଉଁ ।

( ନେପଥ୍ୟେ ସେଉଁ ) । କ’ଣ ଶିବକକା ?

ଶିବରାମ—ଆ, ଭିତରକୁ ଆ ।

( ନେପଥ୍ୟେ ସେଉଁ । ) ମୁଁ ଏହି ଦାଣ୍ଡପିଣ୍ଡାରେ ଭାଇନାକୁ ଜଗାଇ ବସିଛି, କକା ।

ଶିବରାମ—ବାହାରକୁ ଯେପରି ଏକା ନ ଯାଉ ।

( ନେପଥ୍ୟେ ସେଉଁ ) ନା, ମୁଁ ଯାଉନାହିଁ ଶିବକକା ।

ଶିବରାମ—ସେଓ ଏତେବେଳେ ଯାଏ ଫେରିଲ ନାହିଁ କାହିଁକି ?

ବିମଳା—ବ୍ୟସ୍ତ ହେବାର କୌଣସି କାରଣ ନାହିଁ—ରାତି ତ ବେଶି ହୋଇ ନାହିଁ ?

ଶିବରାମ—ରାତ ବେଶି କରିବାର ବା ଦରକାର କଣ ?—ରାତି ବେଶି କରିବା ନୁହେଁ ଯେ ଆପଣଙ୍କୁ ଖାଲି କଷ୍ଟ ଦେବା ।

ବିମଳା—ବେଶିହେଲେ ବା କଷ୍ଟ କଣ ? ତା' ପର କୁହ, ଏମାନଙ୍କ ବାପ ମରିଯିବା ପରେ କଣ ହେଲା ?

ଶିବରାମ—ଏମାନଙ୍କ ଅଜା ତେତେବେଳକୁ ଅଶୀ ବର୍ଷର ବୁଢ଼ା—ତହିଁରେ ଦାରୁଣ ପୁତ୍ରଶୋକ ସୁତରାଂ ସେ ଏକ ପ୍ରକାର ଜୀବନ୍ମୃତ—ଆଉ ଏହି ବାଳକଦୁଇଜଣ ସାମାନ୍ୟ ଶିଶୁ—ମା ଦୁଧଛଡ଼ା କହିଲେ ଅତ୍ୟୁକ୍ତି ହେବ ନାହିଁ—ଏ'ପରି—

ବିମଳା—ମା କଣ ତେତେବେଳକୁ ବଞ୍ଚିଥିଲେ ?

ଶିବରାମ—ଈଶ୍ୱରଙ୍କ କୃପାରୁ ସେ ଏ' ସମସ୍ତ ଜନ୍ତ୍ରଣା ଭୋଗକରିବା ପୂର୍ବରୁ ମୁକ୍ତି ଲାଭ କରିଥିଲେ ।

ବିମଳା—ତା'ପର ।

ଶିବରାମ—ଏପରି ଅବସ୍ଥାରେ ରାଜାଙ୍କର ଯେତେ ବିଶ୍ୱାସୀ ଅନୁଗତ ଲୋକ ଥିଲେ, ଏକାବେଳକେ ସମସ୍ତେ ବିଶ୍ୱାସଘାତକ ହୋଇ ଉଠିଲେ, ସୁତରାଂ ଶତ୍ରୁର ପଥ ନିଷ୍କଣ୍ଟକ ହୋଇଗଲା ।

ବିମଳା—ଗଜନଗର ରାଜା କଣ ପୁଣି ଆକ୍ରମଣ କଲା ?

ଶିବରାମ—ଏପରି ସୁଯୋଗ କି କେହି କେବେ ଛାଡ଼େ, ମା ? ତାଙ୍କର ଯେ ପ୍ରଧାନ ପ୍ରତିବନ୍ଧକ ଥିଲେ, ସେ ଅକାଳେ ଅନ୍ତର୍ହିତ ହେବା ଦେଖି ଏଣେ ରାଜ ପରିବାର ମଧ୍ୟ ହୀନତେଜ ହେବା ଜାଣି, ବିଶ୍ୱାସଘାତକମାନଙ୍କ ସାହାଯ୍ୟରେ ଅବାଧେ ପାମର ରାଜ୍ୟାଧିକାର କଲା ।

ବିମଳା—ଏମାନଙ୍କର ଅଜା କଣ ଶତ୍ରୁକୁ ବାଧାଦେବା ନିମନ୍ତେ କୌଣସି ଉପାୟ କରି ନ ଥିଲେ ?

ଶିବରାମ—ଉପାୟକର୍ତ୍ତାଙ୍କ ଉପରେ ସେ ସମ୍ପୂର୍ଣ୍ଣ ନିର୍ଭର କରିଥିଲେ । ହାୟ ! ମନେ ପଡ଼ୁଯାଉଛି, ମା-ଯେଉଁଦିନ ଶତ୍ରୁ ଦେଶ ଆକ୍ରମଣ କଲା, ଠିକ୍ ତହିଁ ପୂର୍ବଦିନ ରାତିରେ ହଠାତ୍ ମୋତେ ଡକାଇ, ହାତ ଧରି ଯେପରି ସେ କହିଲେ-"ଶିବୁ ! ମୋର ଶେଷକାଳ ଉପସ୍ଥିତ, ଆଉ ବିଳମ୍ବ ନାହିଁ; ଏହି ଶିଶୁ ଦୁଇଟିର ଭାର ତୋ'ର ସ୍କନ୍ଧରେ ପଡ଼ିଲା"—ପୁଣି କଣ କହିବେ କହିବେ କରି ମୋ' ଆଡ଼େ ଚାହିଁ ଚାହିଁ ଏ ସଂସାର ଛାଡ଼ି ଚାଲିଗଲେ—ସମସ୍ତଙ୍କୁ ଅନାଥ କରି ଚାଲିଗଲେ ।

ବିମଳା—କି କରୁଣ କାହାଣୀ ?

ଶିବରାମ—ଏ ଜୀବନରେ ସେ ମର୍ମଭେଦୀ ଦୃଶ୍ୟ କେବେ ପାଶୋରି ଯିବନାହିଁ, ମା ।

ବିମଳା—ତା'ପର କ'ଣ ହେଲା ?

ଶିବରାମ—ଆଉ କ'ଣ ହେବ ? ପାପିଷ୍ଠ ରାଜ୍ୟ ଜୟ କରି ସିଂହାସନ ଅପହରଣ କଲା—ମୁଁ ଅନନ୍ୟୋପାୟ ହୋଇ, ଏହି ଶିଶୁ ଦୁଇଟିଙ୍କୁ ଘେନି ତା'ର ଚରଣ ପ୍ରାନ୍ତେ ଥୋଇ ଦେଲି—ମନେ ମନେ ସ୍ଥିର କଲି, ନିଶ୍ଚୟ ଦୟା ହେବ, ଶିଶୁମାନେ ମୋର ଆଶ୍ରୟ ପାଇବେ—ମାତ୍ର କାର୍ଯ୍ୟରେ ଦେଖିଲି କଣ ? ଚଣ୍ଡାଳ ପଦାଘାତରେ ସେମାନଙ୍କୁ ଦୂରରେ ନିକ୍ଷେପ କରିଦେଲା—ମୋର ଶରୀର ମଧ୍ୟରେ ଗୋଟାଏ ଯେପରି ବିଦ୍ୟୁତ୍ ଚମକିଗଲା—ଅଶନି ନିନାଦ ସମ ହୃଦୟ ଗର୍ଜିଉଠିଲା—ସଙ୍ଗେ ସଙ୍ଗେ ବୈଶାଖୀ ମେଘ ସମ ସବୁ ଅକାରଣ ହୋଇଗଲା—ହାୟ, ମୁଁ ଯେ ଏକାକୀ ମୁଁ ଯେ ଉପାୟହୀନ ।

ବିମଳା—( ଅର୍ଦ୍ଧସ୍ୱଗତ ) ସେ କି ମନୁଷ୍ୟ ନା ରାକ୍ଷସ ?

ଶିବରାମ—ସେହିଦିନୁଁ, ଆର୍ଯ୍ୟେ । ମୁଁ ପ୍ରାୟ ଆଜକୁ ପନ୍ଦର ବର୍ଷ ହେଲା ଏମାନଙ୍କୁ ସଙ୍ଗରେ ଘେନି ଦେଶ ବିଦେଶ ବୁଲୁଛି, କେଉଁଠି ଯେବେ ଆଶ୍ରୟ ପାଏଁ ?—କିନ୍ତୁ ଦୁର୍ଭାଗ୍ୟ ଏମାନଙ୍କର, ଯେଉଁଠାକୁ ଯାଉଅଛୁ, ନିରାଶ ହୋଇ ଫେରିବାକୁ ପଡୁଛି ।

ବିମଳା—କାହିଁକି ? ଏତେ ରାଜା ଥାଉଁ ଥାଉଁ ସାମାନ୍ୟ ଆଶ୍ରୟ ସୁଦ୍ଧା ପାଉନାହିଁ ?

ଶିବରାମ—ପାଇବି କିପରି ? ସମସ୍ତେ ଯେ ବୀର୍ଯ୍ୟହୀନ ! ସମସ୍ତେ ଯେ ମୃତପ୍ରାୟ ! ଯେ କ୍ଷତ୍ରିୟ ବୀର୍ଯ୍ୟ କି

ଆଉ କଣ୍ଟ, ଆର୍ଯ୍ୟେ ?—ସେ ଆର୍ଯ୍ୟଧର୍ମ କି ଆଉ ଅଛି, ଆର୍ଯ୍ୟେ ?

( ଭଗ୍ନସ୍ୱର ହୋଇ ନିଶ୍ୱାସ ତ୍ୟାଗ କରିବା )

ବିମଳା—ଭୟ ନାହିଁ, ବୃଦ୍ଧ ! ଏହିଠାରେ ନିଶ୍ଚୟ ଆଶ୍ରୟ ପାଇବ ।

ଶିବରାମ—କରୁଣାମୟୀଙ୍କର କରୁଣାରୁ ଯେତେବେଳେ ପ୍ରାଣ ପାଇଛୁଁ, ତେତେବେଳେ ସାମାନ୍ୟ ଆଶ୍ରୟ ପାଇବା ନାହିଁ ?—ନିଶ୍ଚୟ ପାଇବା ।

( ନେପଥ୍ୟେ ସୈତୁ ) ( କ୍ରନ୍ଦନସ୍ୱରେ ) ଶିବକକା ! ଶିବକକା !

ଶିବରାମ—ଏ କ'ଣ ? ସୈତୁ ଏପରି ଆର୍ତ୍ତନାଦ କରି ଉଠିଲା କାହିଁକି ? ( ଦ୍ରୁତ ବେଗେ ପ୍ରସ୍ଥାନ )

ବିମଳା—ଏ କଣ ? ଏକି ଦୃଶ୍ୟ ? ବିଦେଶି ଗଣ ପ୍ରତି ଏକି ଅତ୍ୟାଚାର ? ପିଶାଚଗଣ ! ତୁମ୍ଭେମାନେ କରୁଛ କଣ ?

[ ସୈତରାମ, ସେର୍ଓଜ ଓ ଶିବରାମଙ୍କୁ ପ୍ରହାର କରୁ କରୁ ସୈନ୍ୟମାନଙ୍କ ଓ ଦୁର୍ଜ୍ଜୟର ପ୍ରବେଶ ]

ସୈତରାମ—କକା ! ଶିବକକା ! ( ଶିବ ରାମକୁ ଆଲିଙ୍ଗନକରି କ୍ରନ୍ଦନ କରିବା )

ଶିବରାମ—ମାର, ମାର, ଯେତେପାର ମୋତେ ମାର—ଶିଶୁ ଦୁଇଟିର ଅଙ୍ଗସ୍ପର୍ଶ କରନାହିଁ । ତୁମ୍ଭେମାନେ ଜାଣ ନାହିଁ, ନିର୍ଦ୍ଦୟଗଣ ! ଏହି କୋମଳାଙ୍ଗ, ଏ ବୃଦ୍ଧ ନିକଟରେ କେତେ ଆଦରଣୀୟ—ଏହି ଶିଶୁପ୍ରାଣ, ଏ ପାଳନକର୍ତ୍ତା ନିକଟରେ କେତେ ମୂଲ୍ୟବାନ !

ବିମଳା—ସେନାପତେ ! ନିର୍ଦ୍ଦୋଷଗଣପ୍ରତି ଏକି ଅତ୍ୟାଚାର ?—ବିଦେଶି ଗଣପ୍ରତି ଏକି ବ୍ୟବହାର ?

ଦୁର୍ଜ୍ଜୟ—ଠିକ ସେହି ବ୍ୟବହାର, ବିମଳା, ଯାହା ତୋର ସଖୀ ଆଜ ମୋ'ପ୍ରତି କରୁଛି—ଠିକ୍ ସେହି ଅତ୍ୟାଚାର ଯାହା ରାଜକେମା ଆଜ ମୋ' ହୃଦୟ ପ୍ରତି କରୁଛି ।

ବିମଳା—କିଛି ମୁଁ ବୁଝିପାରୁନାହିଁ, ସେନାପତେ !

ଦୁର୍ଜ୍ଜୟ—ବୁଝିବାର ଆବଶ୍ୟକତା ନାହିଁ, ନାରୀ !—କେବଳ ମର୍ମେ ମର୍ମେ ଅନୁଭବ କର, ତୁମ୍ଭର ହେତୁ ମାନବ କପରି ପଶୁରେ ପରିଣତ ହୁଏ ? କେବଳ ନୟନେ ନୟନେ ଦର୍ଶନ କର, ତୁମ୍ଭର ହେତୁ ବିବେକ କପରି ପିଶାଚର କାର୍ଯ୍ୟ କରେ ?

ସୈନ୍ୟ—ସେନାପତେ ! ଆଉ କେହି ନାହାନ୍ତି—ସମସ୍ତେ ଧରା ହୋଇଛନ୍ତି ।

ଦୁର୍ଜ୍ଜୟ—ବେଶ, ତେବେ ବନ୍ଦୀମାନଙ୍କୁ ଶୀଘ୍ର ଘେନିଯାଅ—କାଲି ରାଜସଭାରେ ସେମାନଙ୍କୁ ଉପସ୍ଥିତ କରାଇବାକୁ ହେବ ।

ଶିବରାମ—ସେନାପତେ ! ଆମ୍ଭମାନଙ୍କ ଅପରାଧ ?

ଦୁର୍ଜ୍ଜୟ—ତୁମ୍ଭର ବନ୍ଧକୁ ପ୍ରଶ୍ନ କର । ( ସେର୍ଓଜ ଆଡ଼େ ଚାହିଁବା )

ସେର୍ଓଜ—ଅପରାଧ ଆମ୍ଭମାନଙ୍କର ଏ ଜଗତରେ ଜନ୍ମ ହେବା, ଶିବ କକା !

ଶିବରାମ—ସେର୍ଓ !

ସେର୍ଓଜ—କାନ୍ଦନା, ଶିବକକା ! ତୁମ୍ଭେ ଏପରି ବ୍ୟାକୁଳ ହେଲେ ସୈତୁକୁ ସମାଳିବ କିଏ ?

ଶିବରାମ—ଈଶ୍ୱର ! ଆପଣ ଏକମାତ୍ର ଭରସା !

ଦୁର୍ଜ୍ଜୟ—ଘେନିଯାଅ, ସୈନ୍ୟଗଣ !

ସେର୍ଓଜ—ମା ! ଆମ୍ଭମାନଙ୍କର ଅତୀବ ଦୁର୍ଭାଗ୍ୟ ଯେ ଅନ୍ନପୂର୍ଣ୍ଣାଙ୍କ ଅନ୍ନ ଆଜ ଆସ୍ୱାଦନ କରି ପାରିଲୁଁ ନାହିଁ—କିନ୍ତୁ ପରମ ସୌଭାଗ୍ୟ ଯେ ଅନ୍ନପୂର୍ଣ୍ଣାଙ୍କ ଦର୍ଶନରେ ଆଜ ଧନ୍ୟ ହୋଇଛୁଁ । ଆମ୍ଭମାନଙ୍କର ପ୍ରଣାମ ଗ୍ରହଣ କରନ୍ତୁ !

ବିମଳା—( ସ୍ୱଗତ ) ଏ କି ମନୁଷ୍ୟ ନା ଦେବତା ?

ଦୁର୍ଜ୍ଜୟ—ଜଲଦି ଘେନିଯାଅ !

ସେର୍ଓଜ—ମା ! ତୁମ୍ଭର ସଖୀଙ୍କୁ ମଧ୍ୟ ଆମ୍ଭମାନଙ୍କର ପ୍ରଣାମ ଜଣାଇ ଦେବ—ସେ ମାନବୀ ନୁହନ୍ତି—ଦେବୀ !

ସୈନ୍ୟଗଣ—ଚାଲ !

ଶିବରାମ—ଚାଲ, ସେର୍ଓ ! ଆମ୍ଭେମାନେ ସେହି ଦେବୀଙ୍କ ନିକଟକୁ ଯାଉଁଛୁଁ, ତାଙ୍କରି ଆଶ୍ରୟ ଲାଭ ନିମନ୍ତେ ଏହା ଛଳନା ମାତ୍ର ।

ସୈନ୍ୟଗଣ—ଚାଲ, ଚାଲ—( ସୈନ୍ୟଗଣସହ·ବନ୍ଦୀମାନଙ୍କ ପ୍ରସ୍ଥାନ )

କମଳା—ଗୁରୁଦେବ ଗୁରୁଦେବ ନର୍ଦ୍ଦସ୍ୟଗଣ !

( କମଳାର ବେଗେ ପ୍ରସ୍ଥାନ )

ଦୁର୍ଜ୍ଜୟ—ଚଞ୍ଚଳା ! ଚଞ୍ଚଳା ! ନା—ତୋର ପ୍ରତଶୋଧଚଣ୍ଡୀ ପରେ । ବର୍ତ୍ତମାନ ଲାଞ୍ଛନାକାରୀକୁ କି ଲାଞ୍ଛନା ଦେବି ?—ବନ୍ଦୀ-ଗୃହବାସ—କିନ୍ତୁ ସେଥିରେ କି ମୋର ଲାଞ୍ଛନା ଗୋପନ ରହିବ ? ଆଜୀବନ ବନ୍ଦୀ—ସେଥିରେ କି ପ୍ରକାଶ ହେବାର ସମ୍ଭାବନା ନାହିଁ ?—ପ୍ରାଣଦଣ୍ଡ—ଉପଯୁକ୍ତ ଶାସ୍ତି—ମୂଳୋତ୍ପାଟନ ସର୍ବଥା ବିଧେୟ ! ମାତ୍ର ଉପାୟ ? ମିଥ୍ୟାଭିଯୋଗ—ଭୟ କ'ଣ ? ଶୋଲଙ୍କି ନାକେ ବଶୀଭୂତ ।

(କମଳାର ପୁନଃ ପ୍ରବେଶ)

କମଳା—ପ୍ରାର୍ଥନା କରି କହୁଛି ସେନାପତେ ! ବନ୍ଦୀମାନଙ୍କୁ ମୁକ୍ତିଦେଇ ରାଜଧର୍ମ ରକ୍ଷା କରନ୍ତୁ ।

ଦୁର୍ଜ୍ଜୟ—ହାଃ ହାଃ, ମୁକ୍ତ ! [ବେଗେ ପ୍ରସ୍ଥାନ]

କମଳା—(ପଶ୍ଚାଦ୍ଧାବନ) ଏତେଦୂର ! କିନ୍ତୁ ଏହି ମୁକ୍ତ ସକାଶେ ଦିନେ ନା ଦିନେ ତୋତେ ନତଜାନୁ ହେବାକୁ ପଡ଼ିବ, ଦୁର୍ଜ୍ଜୟ ! ( ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ରାଜସଭା—

[ ଶୋଲଙ୍କି, ମନ୍ତ୍ରୀ, ପାରିଷଦମାନେ ଆସୀନ ]

ମନ୍ତ୍ରୀ—ମହାରାଜ ! ତେବେ ବର୍ତ୍ତମାନ ରାଜକାର୍ଯ୍ୟ ଆରମ୍ଭ କରିବାକୁ ଅନୁମତି ପ୍ରଦାନ କରନ୍ତୁ—ଅନେକ କାର୍ଯ୍ୟ ଅଛି ।

ଶୋଲଙ୍କି—ଅଚ୍ଛା ଦେରସିକ ଲୋକତ ।

ପାରିଷଦ—ରସିକିଦେଇ ତୁମର କାର୍ଯ୍ୟ ।

ଶୋଲଙ୍କି—ରାତ ନ ପାହୁଣୁ—

ପାରିଷଦ—ଏ'ତ ଜଣ୍ଣାରାତ, ମହାରାଜ—ରାତ ପାହିଲା କେତେବେଳେ ?

ଶୋଲଙ୍କି—ସତେତ, ରାତ୍ର ପାହିଲା କେତେବେଳେ ! ଆକାଶରେ ତ ଗୋଟାପାଏ ଚାନ୍ଦ ସେମିତ ରହିଛି ! ତୁମ୍ଭେମାନେ ସବୁ ବୈଠକ-ଖାନରୁ ଏତେ ଭରବର ହୋଇ ଧାଇଁ ଆସିଲ କାହିଁକି ?

ମନ୍ତ୍ରୀ—ମହାରାଜ ! ଏପରି ବୈଠକଖାନା କଣ ରାଜାର ଯୋଗ୍ୟ ନୁହେଁ ?

ପାରିଷଦ—ତେବେ ଯେକ ଆସ ସିରାଜ ବାଇଜି !

ଶୋଲଙ୍କି—ଠିକ୍ କହୁଛ, ଠିକ୍ କହୁଛ, ଯେକ ଆସ ସିରାଜ ବାଇଜି ।

ପାରିଷଦ—ଯେକଆସ, ମନ୍ତ୍ରୀ—ଶୀଘ୍ର ଯେକ ଆସ !

ମନ୍ତ୍ରୀ—( ସ୍ୱଗତ ) ଏହି ମୋ'ର ମନ୍ତ୍ରଣା-କାର୍ଯ୍ୟ ! କାହିଁ ରାଜାଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କରନ୍ତି—ନା—ଲମ୍ପଟିକୁ ଲମ୍ପଟାଚରଣରେ ସାହାଯ୍ୟ କରୁଛି ( ଦୀର୍ଘନିଶ୍ୱାସ ତ୍ୟାଗକରି ) ଗୋଲାମର ପୁଣି କର୍ତ୍ତବ୍ୟା-କର୍ତ୍ତବ୍ୟ ବିଚାର କ'ଣ ? ପ୍ରଭୁର ଆଦେଶ ପାଳନହିଁ ତା'ର କର୍ତ୍ତବ୍ୟ । (ପ୍ରସ୍ଥାନ)

[ ଦୁର୍ଜ୍ଜୟ ଓ ବନ୍ଦୀଭାବେ ସେଓଜ, ସୈତରାମ ଓ ଶିବରାମର ପ୍ରବେଶ ]

ଶୋଲଙ୍କି—ଆମ ନର୍ତ୍ତକୀଗଣ ! ଭାଲ ମନ୍ଦ—କର ଫୁର୍ତ୍ତି

ଦୁର୍ଜ୍ଜୟ—ମହାରାଜ !

ଶୋଲଙ୍କି—ଦୁର୍ଜ୍ଜୟ ! ସେନାପତେ !—ହାତରେ କେଇଁ ଆଡ଼େ ?

ଦୁର୍ଜ୍ଜୟ—ରାତରେ !

ପାରିଷଦ—ରାତ ନୁହେଁ ? ବାଇଜି ସିରାଜର ବିଦାୟ ହେଲାଣି, ରାତ ନୁହେଁ ?

ଦୁର୍ଜ୍ଜୟ—ତୁମ୍ଭେ କି ଅନ୍ଧ ?

ପାରିଷଦ—ତେବେ ଜୁହ, ମହାରାଜ ମଧ୍ୟ ଅନ୍ଧ ।

ଶୋଲଙ୍କି—( ସକ୍ରୋଧେ ) କି—ମୁଁ ଅନ୍ଧ ? ଗୁରୁଆଡ଼େ ଦିନ ଭଳି ଜଣା ପଡ଼ୁଛି—ଆକାଶରେ ଚନ୍ଦ୍ର ଧପ୍ ଧପ୍ କରି ଜଳୁଛି, ମୁଁ ଅନ୍ଧ ?

ପାରିଷଦ—କି ସେନାପତେ ?

ଦୁର୍ଜ୍ଜୟ—(ସ୍ୱଗତ) ରାଜାଙ୍କ ନିଶାଖୋୟାଲ ଏ ପର୍ଯ୍ୟନ୍ତ ଛାଡ଼ନାହିଁ । ଦେଖୁଛି—ଏ ମନ୍ଦ ସୁଯୋଗ ନୁହେଁ ।

[ ପ୍ରକାଶ୍ୟେ ] ମହାରାଜ ଗୋଟାଏ ଗୁରୁତର କାର୍ଯ୍ୟ ଅଛି ।

ଶୋଲାଙ୍କି—ଗୁରୁତର କାର୍ଯ୍ୟ !—କି ଗୁରୁତର କାର୍ଯ୍ୟ ?

ପାରିଷଦ—ଶୀଘ୍ର କୁହ, ଶୀଘ୍ର କୁହ—ସେନାପତିଙ୍କ କାର୍ଯ୍ୟ ଆଗେ କରିବା ଦରକାର ।

ଦୁର୍ଜ୍ଜୟ—ମହାରାଜ ! ଏହି ତିନିଜଣ ଗୁପ୍ତଚର କାଲି ରାତିରେ ଆମ୍ଭର ଦୁର୍ଗଦ୍ୱାର ସମ୍ମୁଖରେ ଭ୍ରମଣ କରୁଥିଲେ—ମୁଁ ବାନ୍ଧି ଆଣିଛି ।

ଶୋଲାଙ୍କି—ବେଶ କରିଛ ।

ଦୁର୍ଜ୍ଜୟ—ଏଥର ବିଚାର କରନ୍ତୁ ।

ଶୋଲାଙ୍କି—ବେଶ୍, ଏଥର ବିଚାର କର ।

ଦୁର୍ଜ୍ଜୟ—ମୋ' ବିଚାରରେ ପ୍ରାଣଦଣ୍ଡ ଏମାନଙ୍କର ଉପଯୁକ୍ତ ଶାସ୍ତି ।

ଶୋଲାଙ୍କି - ମୋ' ବିଚାରରେ ମଧ ପ୍ରାଣଦଣ୍ଡ ଏମାନଙ୍କର ଉପଯୁକ୍ତ ଶାସ୍ତି ।

ପାରିଷଦ—ଏହାଠାରୁ କଠିନତର ଶାସ୍ତି କଣ ଆଉ କିଛି ନାହିଁ ?

ଶୋଲାଙ୍କି—ବାସ୍ତବିକ, ଏହାଠାରୁ କଠିନତର ଶାସ୍ତି କଣ ଆଉ କିଛି ନାହିଁ ?

ଦୁର୍ଜ୍ଜୟ—ଏହି ଯଥେଷ୍ଟ ।

ଶୋଲାଙ୍କି—ଆଚ୍ଛା ଏହି ଯଥେଷ୍ଟ ।

ପାରିଷଦ—ହଜୁର ! ଏହି ଯଥେଷ୍ଟ ।

ଦୁର୍ଜ୍ଜୟ —ତେବେ କଣ ଅପରାଧିମାନଙ୍କୁ ଜଲ୍ଲାଦ ହସ୍ତରେ ଅର୍ପଣ କରୁଛି ?

ଶୋଲାଙ୍କି—ଏଥିରେ ଆଉ ଡେରି କରିବାକୁ ଅଛି— ଶୀଘ୍ର, ଶୀଘ୍ର ଅର୍ପଣ କର ।

ପାରିଷଦ—ମାଳ ଜଲ୍ଲାଦକୁ କହିବ, ସେନାପତେ, ଯେପରି ମାଛ କାଟିଲା ଭଳି ଠିକ ଠିକ କରି କାଟନ୍ତି ।

ଶୋଲାଙ୍କି—ନିଶ୍ଚୟ, ନିଶ୍ଚୟ,—ତା' ନ ହେଲେ ଯେବେ ବଞ୍ଚିଉଠନ୍ତି ତେବେ ସର୍ବନାଶ !

ପାରିଷଦ—ସର୍ବନାଶ ବୋଲି ସର୍ବନାଶ—ଏକାବେଳକେ ବ୍ରହ୍ମାଣ୍ଡ ନାଶ ।

ଦୁର୍ଜ୍ଜୟ—ନେଇଯାଅ ବନ୍ଦୀମାନଙ୍କୁ, ସୈନିକଗଣ !

ଶିବରାମ—ମହାରାଜ ! ଦଣ୍ଡିତର ଅପରାଧି ମାନଙ୍କର ବକ୍ତବ୍ୟ କି ଥରେ ଶୁଣିବେ ନାହିଁ ?

ଦୁର୍ଜ୍ଜୟ—ଖୁବ୍ ଶୁଣା ହୋଇଛି—ଆଉ ଶୁଣିବାର ଦରକାର ନାହିଁ ।

ଶୋଲାଙ୍କି—ଖୁବ୍ ଖୁବ୍ ହୋଇଛି ।

ପାରିଷଦ—ଢେର, ଢେର, କହୁଛ—ଶୁଣି, ଶୁଣି କାନ ବହିରା ହୋଇ ଗଲାଣି—ଆଉ ଶୁଣିବାର ପ୍ରୟୋଜନ ନାହିଁ ।

[ ବିମଳାର ପ୍ରବେଶ ]

ବିମଳା—ଅବଶ୍ୟ ଶୁଣିବାର - ପ୍ରୟୋଜନ ଅଛି— ମହାରାଜ ! ଏହି କି ଆପଣଙ୍କର ରାଜଧର୍ମ ?— ଜଣେ ମଦ୍ୟପ ଲମ୍ପଟ ତୁଲ୍ୟ ତୋଷାମଦକାରି ପରିବେଷ୍ଟିତ ହୋଇ—ନିଜର ବିବେକକୁ ସମୁଦ୍ରଜାନଠାରେ ସମର୍ପଣ କରି—ବିଚାରକାର୍ଯ୍ୟରେ ପ୍ରବୃତ୍ତହେବା ? ଏହିକି ଆପଣଙ୍କର ନ୍ୟାୟ ବିଚାର ?—ବନ୍ଦୀର ଅପରାଧ ବିବରଣ ଶ୍ରବଣ ନ କରି—ସାକ୍ଷ୍ୟପ୍ରମାଣର ଆବଶ୍ୟକତା ନ ଲୋଡ଼ି— ରାଜକର୍ମଚାରୀର କପୋଳକଳ୍ପିତ ଦୋଷଦଣ୍ଡରେ ନିରପରାଧକୁ ପୀଡ଼ିତ ଓ କଳୁଷିତ କରିବା— ନିରପରାଧର ପ୍ରାଣଦଣ୍ଡ ବିଧାନରେ ପୁଣି ଦୃଢ଼ପ୍ରତିଜ୍ଞ ହେବା ? ( ଜାନୁପାତ ପୂର୍ବକ ) କନ୍ୟାର ଅନୁନୟ ଥରେ ଶ୍ରବଣ କରନ୍ତୁ, ମହାରାଜ— ସରଳହୃଦୟରେ ଥରେ ବିଚାର କରି ଦେଖନ୍ତୁ, ମହାରାଜ—ଏମାନେ ପ୍ରକୃତରେ ନିର୍ଦ୍ଦୋଷ କି ନା—ବିପଦଗ୍ରସ୍ତ ହେତୁ ଆମ୍ଭମାନଙ୍କର ଆଶ୍ରୟଯୋଗ୍ୟ କି ନା ?

ଦୁର୍ଜ୍ଜୟ—ବିମଳା ! ତୁମେ ଏଠି କାହିଁକି ? ଏ ଅନ୍ତଃପୁର ନୁହେଁ !

ବିମଳା—ମୁଁ ଜାଣେ, ସେନାପତେ ! ଏ ରାଜସଭା !

ଦୁର୍ଜ୍ଜୟ —ତେବେ ନାରୀର ଏଠି କି ପ୍ରୟୋଜନ ?

ବିମଳା—ନରର ବୁଦ୍ଧିଭ୍ରମ ଯୋଗୁଁ ନାରୀର ଏଠି ଖୁବ୍ ପ୍ରୟୋଜନ ।

ଦୁର୍ଜ୍ଜୟ—ନାରୀର କି ଏତେ ପ୍ରଖର ବୁଦ୍ଧି ?

ବିମଳା—ନିଜର ସ୍ଥାନ-କାର୍ଯ୍ୟ ବିବେଚନା କରି ଥରେ ଦେଖି ନିଅ ।

ଦୁର୍ଜ୍ଜୟ—ମହାରାଜ ! ଦେଖନ୍ତୁ ବାଳିକାର ସ୍ପର୍ଦ୍ଧା ।

ଶୋଲଙ୍କି—ଭାରି ସ୍ପର୍ଦ୍ଧାତ ।

ପାରିଷଦ—ନିତାନ୍ତ ଅସହ୍ୟ, ନିତାନ୍ତ ଅସହ୍ୟ ।

ଦୁର୍ଜ୍ଜୟ—ଦଣ୍ଡ ଦେବା ଉଚିତ୍ ।

ଶୋଲଙ୍କି—ନିଶ୍ଚୟ ଉଚିତ୍ ।

ପାରିଷଦ—ପ୍ରାଣଦଣ୍ଡ ଦେବା ଉଚିତ ।

ଶୋଲଙ୍କି—ଠିକ୍ କହୁଛ—ଠିକ୍ କହୁଛ—ପ୍ରାଣଦଣ୍ଡ, ପ୍ରାଣଦଣ୍ଡ ।

ବିମଳା—ମହାରାଜ ।

ଶିବରାମ—ବୃଥା ଅନୁରୋଧ ତ୍ୟାଗ କରନ୍ତୁ, ଦେବୀ—ଆମ୍ଭମାନଙ୍କୁ ଆମ୍ଭମାନଙ୍କର କର୍ମଫଳ ଭୋଗକରିବାକୁ ଦିଅନ୍ତୁ ।

ବିମଳା—ନା, ବୃଦ୍ଧ ! ମୋର ପ୍ରାଣ ଥିବାଯାଏ ଏହା କଦାପି ଘଟିବାକୁ ଦେବି ନାହିଁ ।—ବିଦେଶୀପ୍ରତି ଅତ୍ୟାଚାର—ନିରପରାଧପ୍ରତି ଦଣ୍ଡବିଧାନ—ପୁଣି ରାଜସମ୍ମୁଖରେ—ନିତାନ୍ତ ଅସହ୍ୟ—ଏହା କଦାପି ଘଟିବାକୁ ଦେବି ନାହିଁ ।

ଦୁର୍ଜ୍ଜୟ—ବିମଳା ! ବର୍ତ୍ତମାନ ସୁଦ୍ଧା ମୁଁ ଅନୁରୋଧ କରୁଛି, ତୁମ୍ଭେ ଭିତରକୁ ଯାଅ ।

ବିମଳା—ମୁଁ ମଧ୍ୟ ତୁମ୍ଭର ହସ୍ତଧରି ଅନୁନୟ କରୁଛି, ସେନାପତେ ନିରପରାଧ ମାନଙ୍କୁ ମୁକ୍ତି ଦାନ କର—ରାଜଧର୍ମ ରକ୍ଷାକର ।

ଦୁର୍ଜ୍ଜୟ—ବିମଳା ! ରାଜଦରବାରରେ ବାଳିକାର ଏ'ପରି କଥା ନିତାନ୍ତ ଅମାର୍ଜ୍ଜନୀୟ ।

ବିମଳା—ତେବେ ରାଜ-ସମ୍ମୁଖରେ—ରାଜ-କର୍ମଚାରୀର ନିର୍ଦ୍ଦୋଷ ପ୍ରତି ଏପରି ନୃଶଂସାଚରଣ କି ମାର୍ଜ୍ଜନୀୟ, ସେନାପତେ ?

ଦୁର୍ଜ୍ଜୟ—ଏତେଦୂର ସ୍ପର୍ଦ୍ଧା ତୋର, ବାଳିକା ! କାଣୁ କଣ କରିପାରେ ମୁଁ ?

ବିମଳା—ହାଃ, ହାଃ, ହାଃ, ମୂଷିକ ତୁ, ମୂଷିକ ଗ୍ରେର-କରିବା ଛଡା ଆଉ କଣ କରିପାରେ ?

ଦୁର୍ଜ୍ଜୟ—ମୁଁ ମୂଷିକ ! ଏତେ ଅହଙ୍କାର—ସୈନିକ ! ବାନ୍ଧ ଏହି ବାଳିକାକୁ ।

ଶୋଲଙ୍କି—ଶୀଘ୍ର ବାନ୍ଧ, ଶୀଘ୍ର ବାନ୍ଧ ।

ପାରିଷଦ—ଖୁବ୍ କଷିକରି ବାନ୍ଧ—ବାଘୁଆ ଗଣ୍ଠି ଦେଇ ବାନ୍ଧ ( ସୈନ୍ୟମାନେ ଅଗ୍ରସର ହେଲେ )

ସେଓଜି—ସାବଧାନ, ସୈନିକଗଣ ! ଅଗ୍ନିଉପସ୍ଥିତରେ ଆଶ୍ରୟ-ଦାତ୍ରୀର ଅପମାନ—ଷତ୍ରିୟସମ୍ମୁଖରେ ନିଃସହ ବାଳିକାପ୍ରତି ଅତ୍ୟାଚାର—ଅସହ୍ୟ—ସେଓଜି ପକ୍ଷେ ଏହା ନିତାନ୍ତ ଅସହ୍ୟ ।

ଦୁର୍ଜ୍ଜୟ—ହାଃ, ହାଃ, ହାଃ,—ବୃଥା ଆସ୍ଫାଳନ, ବନ୍ଦୀ ! ସୈନିକଗଣ ଶୀଘ୍ର ବନ୍ଦୀମାନଙ୍କୁ ଘେନିଯାଅ ।

( ସୈନିକମାନେ ପୁନର୍ବାର ଅଗ୍ରସର ହେବା )

ସେଓଜି—ଶିବକଙ୍କା ! କାପୁରୁଷମାନ ତୁମ୍ଭେ କଣ ଦେଖୁଛ ? ସୈତାରାମ ! ନିଶ୍ଚଳ, ନିସ୍ପନ୍ଦ ହୋଇ କଣ ଶୁଣୁଛ ? ଦେବୀତୁଲ୍ୟ ଆଶ୍ରୟ ଦାତ୍ରୀ ଆଜ ଅଶ୍ରିତମାନଙ୍କ ସମ୍ମୁଖରେ ଲାଞ୍ଛିତା, ଅପମାନିତା—ଗର୍ଭଧାରିଣୀ ତୁଲ୍ୟ ଅନ୍ନଦାତ୍ରୀ ଆଜ ସନ୍ତାନ-ସମ୍ମୁଖରେ ଅତ୍ୟାଚାରିତା, ଉତ୍ପୀଡିତା—ମାତ୍ର ଉଠ—ଜ୍ୱଳି ଉଠ—ବାସ୍ପରେ ପରିଣତ କରିଦିଅ ଏହି ଉତ୍ତପ୍ତ ରକ୍ତ-ପ୍ରବାହକୁ—ବଜ୍ରାଧିକ କଠିନ କରିଦିଅ ଷୀପ୍ର ବାହୁ ଯୁଗଳକୁ—ଛିଣ୍ଡାଇଦିଅ ଖଣ୍ଡ ଖଣ୍ଡେ ଏହି ଛାର ପାର୍ଥିବ ବନ୍ଧନକୁ ( ଛିଣ୍ଡାଇ ଦେବା )

[ ଶୋଲଙ୍କି ଓ ପାରିଷଦ ସଭସ୍ତ୍ରେ ଆସନ ତ୍ୟାଗ କରିବା ]

ଶୋଲଙ୍କି—ସେନାପତେ ! ସେନାପତେ !

ଦୁର୍ଜ୍ଜୟ—ଚାହିଁଛ କଣ, ସୈନିକଗଣ ? ଶୀଘ୍ର ବନ୍ଦୀର ପ୍ରାଣନାଶ କର । ( ସୈନିକଗଣ ସେଓଜିଙ୍କ

ଚତୁଷ୍ପାର୍ଶ୍ୱରେ ଅସ୍ତ୍ରୋତ୍ତୋଳନପୂର୍ବକ ଦଣ୍ଡାୟମାନ ହେବା )

ସେଓଜ୍ଞ—ହାୟ୍ ! ଖଣ୍ଡେ ଅସ୍ତ୍ର ଯେବେ ଥାନ୍ତା !—ନା—ଅସ୍ତ୍ରର ଆଉ ପ୍ରୟୋଜନ ନାହିଁ—ଯୁଦ୍ଧର ଆଉ ପ୍ରୟୋଜନ ନାହିଁ—ଶିକାରୀ ମୋତେ ଲକ୍ଷ କରି ସାରିଲଣି—କୁକ୍କୁରମାନେ ମୋତେ ଘେରି ଆସିଲେଣି—ଆଉ ଭୟ ନାହିଁ—ଆଉ ଭୟ ନାହିଁ—ମା, ମା ସୁନ୍ଦର ସୁଯୋଗ ଉପସ୍ଥିତ । ସୁନ୍ଦର ଅବସର ମିଳିଛି—ଏ' ସ୍ଥାନ ତ୍ୟାଗକରି ଶୀଘ୍ର ପଳାଅ ମା ଶୀଘ୍ର ପଳାଅ ।

[ ସେଓଜ୍ଞ ବିମଳା ଆଡ଼େ ଉଦ୍‌ବିଗ୍ନ ଭାବେ ଚାହିଁ ରହିବା ଓ ଚଞ୍ଚଳାର ଦୁଇଖଣ୍ଡି ଅସ୍ତ୍ରହସ୍ତେ ବେଗେ ପ୍ରବେଶ—ସୈନିକଗଣ ସଭୟେ ଦୂରକୁ ଘୁଞ୍ଚିଯିବା । ]

ଚଞ୍ଚଳା—କଦାପି ନୁହେଁ, ବିମଳା—ଏହି ନେ ଧର ତୋର ଅସ୍ତ୍ର—( ଅସ୍ତ୍ରପ୍ରଦାନ ) ବାହୁରେ ଶକ୍ତି ଥିବାଯାଏ ବିଦେଶୀମାନଙ୍କ ଦସ୍ୟୁ-କର-ସ୍ପର୍ଶିତ ହେବାକୁ ଦେବାନାହିଁ—ହୃଦୟରେ ସାହସ ଥିବାଯାଏ ଅତିଥିମାନଙ୍କୁ ନୃଶଂସ ଦ୍ୱାରା ବିନଷ୍ଟ ହେବାକୁ ଦେବାନାହିଁ । ପିଣ୍ଡରେ ପ୍ରାଣ ଥିବାଯାଏ ନିରପରାଧମାନଙ୍କୁ ଅନ୍ୟାୟକାରୀଦ୍ୱାରା ଦଣ୍ଡିତ ହେବାକୁ ଦେବାନାହିଁ !

[ ଚଞ୍ଚଳା ଓ ବିମଳା ଅସ୍ତ୍ରଧାରଣ କରି ବନ୍ଦୀମାନଙ୍କୁ ରକ୍ଷାକରଣୋଦ୍ଦେଶ୍ୟରେ ଛିଡ଼ା ହେବା ଓ ସମସ୍ତେ ଭୟବିହ୍ୱଳନେତ୍ରରେ ଅନାଇ ରହିବା ]

ପଟକ୍ଷେପ

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଗିରିସଂଲଗ୍ନ ଉଦ୍ୟାନ—

[ ସଖୀଗଣ ଗୀତ ଗାଉଥିବା ଓ ପୁଷ୍ପପରିଶୋଭିତା ମିରି ଗୋଟିଏ ପ୍ରସ୍ତର ଉପରେ ବସିଥିବା ]

ସଖୀଗଣ—

ଗୀତ

ଦେଖ ଗିରିକନ୍ଦରେ ଏ'ଫୁଲ୍ ରାଣୀ ।
ଫୁଟିଛି କି ସୁଖେ କାହା ମନ ଜାଣି ॥
ମନ୍ଦ ବହେ ଗନ୍ଧବହ ସୌରଭେ ଆକୁଳ,
କାନ୍ଦ କଳା ସୁଧାକର ସୁଧା ଦେଖି ଢୁଳ,
ଉଭପତ୍ର ଖରେ
ଜଳ ପୋଡ଼ି ମରେ,
ରତି-ରୂପଜିଣା ଦେଖି ରୂପଠାଣି ॥
ଆସ ଆସ ଧୀରେ ଧୀରେ ପ୍ରେମ ବାରି ବନ୍ଧୁ,
ସିଞ୍ଚିଦେବା ବିନ୍ଦୁ ବିନ୍ଦୁ ଶୁଭାଶୀଷ କହି,
ଆସିନାହିଁ ଅଳି
ଚୁମ୍ବିନାହିଁ କଳି
ମଉଳି ନ ଯାଏ ( ଯେପରି ) ସେ' ଫୁଲ୍‌ରାଣୀ ॥

ମିରି—ସହି ! ଫୁଲଗନ୍ଧରେ ବଗିଚାଟି ଯେପରି ମହକି ଉଠୁଛି ।

ତାରା—ହଁ ଲୋ, ତୋ' ଗନ୍ଧରେ ସର୍ଦ୍ଦାରଙ୍କ ଘର ଯେପରି ମହକି ଉଠୁଛି, ଠିକ୍ ସେହିପରି ।

ମିରି—କାହିଁକି ମ, ଏକା ମୋ' ଗନ୍ଧରେ କାହିଁକି ?—ତୋ' ଗନ୍ଧରେ କି ନୁହେଁ ?

ତାରା—ସବୁ ଫୁଲର କି ଗନ୍ଧ ଅଛି ସହି ?

ମିରି—ନ ଥିଲେ ଏତେ ଗନ୍ଧ ହୁଅନ୍ତା କିପରି ?

ତାରା—ଗୋଟିଏ ଚମ୍ପାର ଯେତେ ଗନ୍ଧ, ଶହେ ଯୁଈର କି ତେତେ ଗନ୍ଧ ?—ଗୋଟିଏ ଚନ୍ଦ୍ରର ଯେତେ ତେଜ, କୋଟିଏ ତାରାର କି ତେତେ ତେଜ ?

—ଗୀତ—

କହଲେ, ସଜନୀ ତୋତେ
କି ଦେଇ ଗଢ଼ିଛି ବିହି ।
ନ ପାଏ ଉପମା ଖୋଜି
ତୋ'ର ଉପମା ଯେ ତୁହି ।
କୋଟିତାରା ମଧ୍ୟେ, ସହି
ଏକା ଶଶୀସହ ବହି
ମୋହୁଅଛୁ ମନ ପ୍ରାଣ
ଗିରି ଉପବନ ତୁହି ॥
( ନେପଥ୍ୟେ ଲଖାର 'ମୀରା' 'ମୀରା' ଡାକିବା )
ତାରା—ସହି ! ବାପା ଡାକୁଛନ୍ତି ପରା ।
ମିରା—ଏହି ଯେ ବାପା ତ ଏଣେ ଆସୁଛନ୍ତି ?
[ ଲଖାର ପ୍ରବେଶ ]
ବାପା ! ହଠାତ୍ ଆଜି ଏ' କି ବେଶ ତୁମ୍ଭର ?
ଲଖା—ଆରେ ଲଢ଼ାଇକୋ ବାହାରୁଛୁଁ ରେ, ବେଟି, ଲଢ଼ାଇକେ ।
ମିରା—ପୁଣି ସେହି ଲଢ଼ାଇ, ବାପା ! ତୁମ୍ଭର କ'ଣ ଲଢ଼ାଇ ଛଡ଼ା ଆଉ କିଛି କାମ ନାହିଁ ?
ଲଖା—ଆରେ, ବେଟି ବେଟାଛେଲିଆ ଲଢ଼ାଇ କର୍‌ବା ନାହିଁ ତୋ ଆଉ କର୍‌ବା କ'ଣ ?
ମିରା—ତେବେ, ବାପା ଶବାଗା ବଡ଼ ଭୁଲ କାମ କରିଛନ୍ତି ।
ଲଖା—( ସସ୍ମିତେ ) କୋନ୍ ଭୁଲ କାମ କରିଲାରେ ବେଟି ?
ମିରା—ଜନ୍ତୁଙ୍କ ପ୍ରତ୍ୟେକପିଲା ହାତରେ ଯାଁ'ଖଣ୍ଡା ତରଓ୍ୱାଲ୍ ଧରାଇ ନ ଦେଲେ !—ମୁଣ୍ଡରେ ଯା'ଦି'ଟା ଶିଙ୍ଗ ନ ଦେଲେ !—ପଛରେ ଯା' ଗୋଟାଏ ଲାଞ୍ଜ ନ ଦେଲେ !
ଲଖା—ଏସନ୍ କାହେ ବୋଲୁଛୁରେ, ବେଟି ! ହାମ୍ କାଣ ପଶୁ !
ମିରା—ପଶୁପରି ଲଢ଼ାଇ କରୁଛ, ପଶୁ ନୁହେଁତ କ'ଣ ? ମୁଁ ତ ମନେ କରେ ପଶୁଠାରୁ ଅଧିକର ସ୍ଥାନ ।
ଲଖା—( ସସ୍ମିତେ ) କେସନ୍ କରକେ ବୋଲ୍‌ତୋ, ବେଟି ।
ମିରା—ଅଚ୍ଛା କହିଲ, ବାପା ସବୁ ଜନ୍ତୁମଧ୍ୟରେ କେଉଁ ଜନ୍ତୁ ବଡ଼ ?
ଲଖା—ହାଁଥୀ—ହାଁଥୀ ।
ମିରା—ନା—ନା—ଜଣରେ ନୁହେଁ ?
ଲଖା—ହାଁ—ହାଁ—ଓ ଦନ୍—ତୁ ବୋଲ୍‌ଛିଲୁ, ହାମ୍ ସବ୍ ବଡ଼୍‌ବୋଲ୍ ।
ମିରା—ଆମେମାନେ ଭଲା କାହିଁକି ବଡ଼ ?
ଲଖା—ହାମ୍ ସବ୍ ବୁଦ୍ଧି ବଲ୍‌ସେ ସବ୍‌କେ ବଶ୍ କରନେ ପାରୁଁ ବୋଲ୍ ।
ମିରା—ସେ ଗୋଟିଏ କାରଣ, ସନ୍ଦେହ ନାହିଁ—ମାତ୍ର ଆଉ ଗୋଟିଏ ପ୍ରଧାନ କାରଣ—ଅମ୍ଭମାନଙ୍କର ହିତାହିତଜ୍ଞାନ ଅଛି ବୋଲି ।
ଲଖା—ତୋ' ବାତ୍ ମଇଁ କୁଛ୍ ସମଝି ନାଇ ପାରୁଛୁ, ବେଟି !
ମିରା—ପଶୁ ଯେପରି ଭୋକ କଲେ ନିଜର ପିଲାକୁ ମଧ୍ୟ ଖାଏ ଓ ପାପ-ପୁଣ୍ୟ ବିଚାର ନ କରି ସମସ୍ତଙ୍କୁ ହିଂସା କରେ, ମନୁଷ୍ୟ ସେପରି କରେ ନାହିଁ—ବିଚାର କରି କାମକରେ—ଏହାହିଁ ତା'ର ହିତାହିତ ଜ୍ଞାନ ।
ଲଖା—ବେଟି ! ତୁ ଖୁବ୍ ପାଠ୍ ପଢ଼ିଛୁ—ମଇଁ ଉତେ ନାଇଁ ପାର୍‌ବା—ଅବ୍ ମତେ ଛାଡ଼ ଦେ ମା ।
ମିରା—ବାପା ! କେଉଁଠାକୁ ଯିବ ?
ଲଖା—ଆରେ ଓଇ କୁଟମଣ୍ଡଲ୍‌କୋ ରେ, ବେଟି—ଓଇ କୁଟମଣ୍ଡଲ୍‌କୋ ।
ମିରା—ସେହି ସେନାପତି କି ଅଛି, ବାପା ?
ଲଖା—ଆରେ ଓଇ୍ ସେନାପତି ତ ହାମର ଦୁଷ୍ମନ୍—ଦେଖ୍‌ତ ବେଟି, କେତନା ଦମାକ୍ ତା'ର—ହାମ୍ ତାରସଙ୍ଗ୍ କୁଛ୍ ଝଗଡ଼ା କରିଲା ନାଇ, କେନେ ସେ ହାମାର୍ ସୀମ୍‌ନାକୋ ଅସ୍‌ବା—ହାମାର୍ ପରଜା ଉପର ଯୁଲ୍‌ମ୍ କରବା—ଘର ଖେତ୍ ସବ୍ ଲୋକସାନ କରବା ।
ମିରା—ତୁମେ କି ତା' ସଙ୍ଗେ ଲଢ଼ାଇରେ ପାରିବ, ବାପା ?

ଲଖା—ଦେଖ୍ ମା, ଏଥର ତ୍ ମୁଇଁ ଖୁବ୍ ଲୋକ୍ ଜମା କର୍‌ଲି-ସବୁ ଲୋକ୍‌ଙ୍କୁ ମୁଇଁ ଖୁବ୍ ମତାଇଛେଁ-ବୁଢ଼ା ଶମ୍ଭୁର ଯବ୍ ଇଚ୍ଛାଥାଇବେ ତୋ ଜରୁର୍ ଜୟ ହବା ।

ମିଶ୍ର—ବାପା ! ଯେତେବେଳେ ଯୁଦ୍ଧକୁ ବାହାରିଲଣି, ସେତେବେଳେ ମନା କରି ପାରୁନାହିଁ—ମାତ୍ର ଯୁଦ୍ଧ କାପର ମୋତେ ପଶୁର ଆଚରଣ ବୋଲି ବୋଧ ହୁଏ । ଅଚ୍ଛା ବାପା ! ଥରେ ରଜାର ସହିତ ଦେଖାକରି ଏ ବିଷୟର ମୀମାଂସା କଲେ ଭଲ ହୁଅନ୍ତା ନାହିଁ ?

ଲଖା—ଅରେ, ବେଟି ! ସେ ଉପାୟ କି ଅବ୍ ଅଛେ ? ରଜାଟା ପୁରା ମାତାଲ୍‌ରେ, ପୁରା ମାତାଲ୍ ।

( ସୈନିକର ପ୍ରବେଶ )

ସୈନିକ—ଦଳ୍ ଯାଏ, ସର୍ଦ୍ଦାର—ଚଲ୍ ଚଲ୍ ।

ଲଖା—ଦେ, ମା ବିଦାୟ ଦେ—ଅବ ମୁଇଁ ଠିଆ ହୋଇ ନାଇ ପାର୍‌ବା—ଦେର୍ ହୋ ଯାବା ।

ମିଶ୍ର—ଯାଅ, ବାପା ଜୟୀ ହୋଇ ଫେରିଆସ ।

ଲଖା—ଏଥର, ମା ତୋ'ର ଝାନ୍ ଅଶିର୍ବାଦ୍—ଜରୁର୍ ଜୟ ।

ହବା—ଦେଖ୍, ଭାଗି ତୋର ବହ୍ନାନ୍‌କୋ ଲେକେ ଖୁବ୍ ହୁସିଆରସେ ଥାକ୍‌ବୁ, ସେ ମେର ଜାନ, ମେର କଲିଜା—ମୁଇଁ ଅବ୍ ଆସିଛି ମା ।

ମିଶ୍ର—ଚାଲ, ବାପା ଆମ୍ଭେମାନେ ମଧ୍ୟ ତୁମ ସଙ୍ଗେ ସଙ୍ଗେ କିଛିଦୂର ଯାଉଁ ।

( ସମସ୍ତଙ୍କ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଅନ୍ତଃପୁର—

[ ଶୋଲଙ୍କି ଓ ଚମ୍ପଲାର ପ୍ରବେଶ ]

ଶୋଲଙ୍କି—ତୁ ବଡ଼ ଭୁଲ୍ କାମ କରିଛୁ, ଚମ୍ପଲା !

ଚମ୍ପଲା—କାହିଁକି, ବାପା, କି ଭୁଲ୍ କାମ କରିଛି ?

ଶୋଲଙ୍କି—ସେନାପତି ମନରେ ବଡ଼ କଷ୍ଟ ହୋଇଛି ।

ଚମ୍ପଲା—ସେନାପତିଙ୍କ ମନରେ କଷ୍ଟ ହୋଇଚି ବୋଲି କଣ ଭୁଲ୍ କାମ କରିଛି ?

ଶୋଲଙ୍କି—ତା—ତା ନୁହେଁ ସତ—ତେବେ ଆମର ଏତେ ଅଡୁଆରେ ପଶିବା କି ଦରକାର ଥିଲା ?

ଚମ୍ପଲା—ପିତା ! ରଜାହୋଇ ଆପଣ ଏ ପ୍ରକାର କଥା କହୁଛନ୍ତି ?—ଜଣେ ବିଦେଶୀକୁ ବିନା ଦୋଷରେ ଦୋଷୀ କରିବ—ଆପଣ ବିଚାରକ ହୋଇ, ତାହା ନିଶ୍ଚିନ୍ତ ହୃଦୟରେ ସହ୍ୟ କରିବେ—ଜଣେ ନିର୍ଦ୍ଦୋଷକୁ କଠୋରଦଣ୍ଡରେ ଦଣ୍ଡିତ କରିବ, ଆପଣ ରଜା ହୋଇ ତାହା ସ୍ଥିରଚକ୍ଷୁରେ ଦର୍ଶନ କରିବେ—ଏହା କି କୁଟମଣ୍ଡଳର ରଜନୀତି ? ଏହା କି ରଜା ଶୋଲଙ୍କିର ଯୋଗ୍ୟାଚରଣ ?

ଶୋଲଙ୍କି—ଅଚ୍ଛା ବେଶ୍, ଗୁଡ଼ ଦିଆଗଲା ତ ଗଲା—ମାତ୍ର ସେମାନଙ୍କୁ ଆଶ୍ରୟ ଦେବାର ଭଲା କି ଦରକାର ଥିଲା ?—ପୁଣି ଖାଲି ଆଶ୍ରୟ ଦେବା ନୁହେ, ଏକାବେଳକେ ନେଇ ସୈନ୍ୟଦଳଭୁକ୍ତ କରିଦେବା ।

ଚମ୍ପଲା—ପିତା ! କ୍ଷତ୍ରିୟ ହୋଇ ପୁଣି ଏପରି କଥା କହୁଛନ୍ତି ! ରାଜ୍ୟତାଡ଼ିତ, ଆଶ୍ରୟହୀନ, ପୁଣି ସ୍ୱଜାତୀୟ—ଦୀନହୀନବେଶରେ କ୍ଷତ୍ରିୟ ଦ୍ୱାରରେ ଉପସ୍ଥିତ, କାତରକଣ୍ଠରେ କ୍ଷତ୍ରିୟର ଆଶ୍ରୟପ୍ରାର୍ଥୀ—ଆପଣ କ୍ଷତ୍ରିୟ ହୋଇ ସେ ପ୍ରାର୍ଥନା ପୂର୍ଣ୍ଣରେ ପରାଙ୍‌ମୁଖ—ଆପଣ କ୍ଷତ୍ରିୟ ରଜାହୋଇ ସେ ସାମାନ୍ୟ ଦାନ ଦେବାକୁ କୁଣ୍ଠିତ !—ଧିକ୍ ଧିକ୍, ଆଜି ଶୋଲଙ୍କିକୁ—ଧିକ୍ ଧିକ୍ ଆଜି କୁଟମଣ୍ଡଳକୁ—ଧିକ୍ ଧିକ୍ ଆଜି ସମସ୍ତ କ୍ଷତ୍ରିୟ-କୁଳକୁ ।

ଶୋଲଙ୍କି—ଆଃ—ତୋ ସଙ୍ଗେ କଥା କହିବା, ଚମ୍ପଲା ଏକ ପ୍ରକାର ବିଡ଼ମ୍ବନା ଦେଖୁଛି—ଆରେ, ହିଁଅ ରଜା ଆମେ, ଆୟସ କରିବା । ସେନାପତି, ମନ୍ତ୍ରୀ ଅଛନ୍ତି, ରଜକାର୍ଯ୍ୟ ବୁଝିବେ । ସେମାନେ ଭଲ କଲେ କି ମନ୍ଦ କଲେ, ଆମର ଭଲା ଏତେ ଅଡୁଆରେ ପଶିବା କି ଦରକାର ।

ଚଞ୍ଚଳା—ପିତା ! ପିତା ଟେଟକ୍କ ଲୁହନ୍ତୁ—ବଡ଼ ଲଜ୍ଜା, ବଡ଼ ଲଜ୍ଜା—ରାଜାର କର୍ତ୍ତବ୍ୟ ଅସ୍ମୃସ କରିବା !—ତେବେ ଯେଉଁ ମୁକୁଟରେ ରାଜ ମସ୍ତକ ପରିଶୋଭିତ, ତାହାକି ଅଙ୍ଗାଭରଣ ମାତ୍ର ?—ଯେଉଁ ଦଣ୍ଡରେ ରାଜହସ୍ତ ବିଭୂଷିତ, ତାହାକି ଭ୍ରମଣଯଷ୍ଟି ମାତ୍ର ?—ଯେଉଁ ସିଂହାସନରେ ରାଜାଙ୍କ ବିରାଜିତ, ତାହାକି କୋମଳ-ପୁଷ୍ପଶଯ୍ୟା ମାତ୍ର ?—ମହାରାଜ ! ମହାରାଜ ! ବାସ୍ତବିକ କି ରାଜାର କର୍ତ୍ତବ୍ୟ, ବିଳାସରେ ଜୀବନଯାପନ, ରାଜକାର୍ଯ୍ୟ ବୁଝିବା ନୁହେଁ ?—ବାସ୍ତବିକ କି ରାଜାର କର୍ତ୍ତବ୍ୟ, ଆଳସ୍ୟରେ କାଳହରଣ, ପ୍ରଜାପାଳନ ନୁହେଁ : ପିତା, ପିତା ! ଏପରି ଉପଦେଶ ଦାତା କିଏ ଆପଣଙ୍କର ?—ଏପରି ନୀତି-ଶିକ୍ଷକ କିଏ ଆପଣଙ୍କର ?

ଶୋଲଙ୍କି—ଅଚ୍ଛା, ଚଞ୍ଚଳା ଆଜଠାରୁ ଏବେ ତୁ ମୋ'ର ନୀତି ଶିକ୍ଷକ ହେଲୁ !

ଚଞ୍ଚଳା—ପିତା ! ମୂର୍ଖା କନ୍ୟା ପିତାକୁ କି ଶିକ୍ଷା ଦେଇ ପାରେ ?—ହୀନପ୍ରଜା ରାଜାଙ୍କୁ କି ଉପଦେଶ ଦେଇପାରେ ?

ଶୋଲଙ୍କି—ଯେବେ ନ ଦେଇ ପାରିବୁ ତ, ମୋତେ ଛାଡ଼ ଦେ—ମୋ'ର ଗୋଟାଏ କଥାର ପସନ୍ଦ ହେଉନାହିଁ ? ଓଃ ଖୁବ ଡେରି ହୋଇ ଗଲାଣି, ଚଞ୍ଚଳା !

ଚଞ୍ଚଳା—କାହିଁକି, ପିତା ?—କେଉଁଠାକୁ ଯିବେ କି ? ବର୍ତ୍ତମାନ ରାଜକାର୍ଯ୍ୟ ବୁଝିବାର ସମୟ ନୁହେଁ !

ଶୋଲଙ୍କି—ଆରେ ଏହିତ ସମୟ—ଏହିତ ବେଳ—ଛାଡ଼, ଚଞ୍ଚଳା ପାତ୍ରମନ୍ତ୍ରୀମାନେ ତେଣେ ରହିଁ ବସିଥିବେ—ଏହି ଯେ ତୋର ସେହି ବୁଢ଼ା ଆସିଲାଣି, ଚଞ୍ଚଳା । ( ଚଞ୍ଚଳାର ଅନ୍ୟମନସ୍କଭାବେ ନେପଥ୍ୟକୁ ରହିଁ ରହିବା ) (ସ୍ୱଗତାନ୍ତରେ) ଏହି ସୁଯୋଗ—ଯାଏଁ ଖସିଯାଏଁ ।

( ପ୍ରସ୍ଥାନ )

[ ବିପରୀତ ଦିଗରୁ ଶିବରାମ ପ୍ରବେଶକଲେ ]

ଶିବରାମ—ରାଜା ଏପରିଭାବେ ପଳାଇଗଲେ କାହିଁକି ମା ?

ଚଞ୍ଚଳା—ରାଜା ପଳାଇଗଲେ ! କାହାନ୍ତି ସତେ ପିତା ?

ଶିବରାମ—ଆଜି କଣ ରାଜାଙ୍କୁ ନଜରବନ୍ଦୀରେ ରଖିଥିଲ, ମା ?

ଚଞ୍ଚଳା—ଶୁଣ, ଶିବକକା । କି ଉପାୟ କଲେ ପିତା ମୋର ସତ୍‌ପଥ ଅବଲମ୍ବନ କରିବେ ?

ଶିବରାମ—ମା ! ତୁମ୍ଭପରି ବୁଦ୍ଧିମତୀ ଜନନୀକୁ ଏ' ମୂର୍ଖସନ୍ତାନ କି ଉପଦେଶ ଦେଇପାରେ ? ମୋର ଧ୍ରୁବବିଶ୍ୱାସ, ମା, ତୁମ୍ଭର ଧର୍ମବଳରେ 'ରତ୍ନାକର' ନିଶ୍ଚୟ ଦିନେ 'ବାଲ୍ମୀକିରେ' ପରିଣତହେବ । ତୁମ୍ଭର ସ୍ନେହପୂର୍ଣ୍ଣ ଶାସନରେ ଅବାଧ୍ୟ ସନ୍ତାନ ନିଶ୍ଚୟ ଦିନେ ଆଦର୍ଶ ସ୍ଥାନ ଅଧିକାର କରିବ ।

ଚଞ୍ଚଳା—ରାଜକୁମାରମାନଙ୍କ ସମ୍ବାଦ କଣ, ଶିବକକା ?

ଶିବରାମ—ବଡ଼ ସୁସମ୍ବାଦ, ମା, ତାହାହିଁ ଦେବାକୁ ଧାଇଁ ଆସିଥିଲି ।

ଚଞ୍ଚଳା—କି ସୁସମ୍ବାଦ ?

ଶିବରାମ—ଆଜି କୃତ୍ରିମ ଯୁଦ୍ଧ ହେଉଥିଲା—ଏକଆଡ଼େ ଦୁର୍ଜ୍ଜୟ—ନିଜେ ସେନାପତି—ଓ ଅନ୍ୟ ଆଡ଼େ ସେଓଜ୍ଞ ।

ଚଞ୍ଚଳା—କିଏ ଜିଣିଲା ?

ଶିବରାମ—ସେଓଜ୍ଞ ତ ଜିଣିଲା—ମାତ୍ର ସେ ଯେଉଁ ରଣ କୌଶଳ ଦେଖାଇଲା—ଯେଉଁ ବୀରତ୍ୱ ଦେଖାଇଲା—ଅତି ଚମତ୍କାର—ତାହା ଦୁର୍ଜ୍ଜୟଙ୍କୁ ମଧ୍ୟ ଚମତ୍କୃତ କରି ଦେଇଅଛି ।

ଚଞ୍ଚଳା—ବଡ଼ ଆନନ୍ଦର ବିଷୟ ।

ଶିବରାମ—ଶୈତରାମ ମଧ୍ୟ ମନ୍ଦ ପରିଚୟ ଦେଇ ନାହିଁ । —ଯାହା ହେଉ ଏଥର ମୋ'ର ଆଶା ହେଉଛି, ସେଓଜ୍ଞ ନିଶ୍ଚୟ ଦିନେ ଜୟପତାକା ଉଡ଼ାଇ ଶତ୍ରୁକୁ ତିରସ୍କାର କରିବ—ତା'ର ଅପହୃତ ରାଜ୍ୟ ଅନାୟାସେ ଉଦ୍ଧାର କରିବ ।

ଚଞ୍ଚଳା—ବଡ଼ ଖୁସିର ଖବର ଆଜି ଶୁଣାଇଲ, କକା !
ଏହି ନିଅ ମୋର ଗଳାର ହାର ପୁରସ୍କାର ।
( ହାର ପ୍ରଦାନ )

ଶିବରାମ—ମା, ମା, ଏ ସମସ୍ତ ତୁମ୍ଭର କରୁଣା ।
ତୁମ୍ଭେ ଆଶ୍ରୟ ଦେଇ ନ ଥିଲେ କି ପିଲାମାନେ ମୋର ଆଜି ଏତେ ଦୂର ଉନ୍ନତ ଲାଭକରି ପାରିଥାନ୍ତେ ?—ଏତେ ଆନନ୍ଦ ସମସ୍ତଙ୍କୁ ଦେଇ ପାରିଥାନ୍ତେ ?—ଦୀର୍ଘ ପନ୍ଦର ବର୍ଷ ଧରି ଯେଉଁ ଆଶା ପୋଷଣ କରି ଆସୁଥିଲି ତାହା କି ଆଜି ଏପରି ସ୍ୱପ୍ନାତୀତ ଭାବେ ପୂର୍ଣ୍ଣ ହେବାକୁ ଦେଖି ପାରିଥାନ୍ତି ?

ଚଞ୍ଚଳା—ଜେଜାମାନଙ୍କୁ ମୋର ହୃଦୟର ଆନନ୍ଦ ଜଣାଇ ଦଅ, ଶିବକକା—ଆଜ ମୁଁ ସେମାନଙ୍କୁ ଅଚିରେ ରାଜହସ୍ତରେ ପୁରସ୍କୃତ କରିବି ।

ଶିବରାମ—କି ଆନନ୍ଦ ! କି ଆନନ୍ଦ ! (ବେଗେ ପ୍ରସ୍ଥାନ)

ଚଞ୍ଚଳା—ସେଓଁଜି ! ସେଓଁଜି !

[ ମନ୍ତ୍ରୀର ପ୍ରବେଶ ]

ମନ୍ତ୍ରୀ—ଜେମାଦେଈ ! ଗୁରୁତର ସମ୍ବାଦ !

ଚଞ୍ଚଳା—କି ଗୁରୁତର ସମ୍ବାଦ ?

ମନ୍ତ୍ରୀ—ଲକ୍ଷୀ ପୁନରାକ୍ରମଣ କରୁଛି ।

ଚଞ୍ଚଳା—ରାଜା ଶୁଣିଲେଣି ?

ମନ୍ତ୍ରୀ—ଶୁଣି କହିଲେ—'କରୁ ଆକ୍ରମଣ' ।

ଚଞ୍ଚଳା—ସେନାପତି ?

ମନ୍ତ୍ରୀ—ସେନାପତି କହିଲେ—"ଜେମାଦେଈଙ୍କୁ ଜଣାଅ"—ତାଙ୍କୁ ଆଜି କାଲି କିପରି ଅନ୍ୟମନସ୍କ ଦେଖୁଛି ! ମନେ ମନେ ସବୁବେଳେ, ଯେପରି ଗୋଟାଏ କିଛି ଦୁରଭିସନ୍ଧି ପାଞ୍ଚୁଛନ୍ତି ।

ଚଞ୍ଚଳା—ଅଚ୍ଛା—କିଛି ଭୟ ନାହିଁ—ଆସ, ଆମ୍ଭେମାନେ ପରାମର୍ଶ କରି କାର୍ଯ୍ୟ କରିବା । ( ପ୍ରସ୍ଥାନ )

ମନ୍ତ୍ରୀ—ଭଗବାନ୍ ! ଆଜି ଏକି ଅଭୟବାଣୀ ଶୁଣାଉଛନ୍ତି—ଏହି ବାଳିକା ସାହାଯ୍ୟରେ ରାଜ୍ୟର ଭାଗ୍ୟ-ଲକ୍ଷ୍ମୀ କ'ଣ ପୁଣି ଫେରି ଆସିବ ?

( ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—କକ୍ଷ—

[ ଦୁର୍ଜ୍ଜୟ ଓ ସୈନ୍ୟଗଣ ]

ଦୁର୍ଜ୍ଜୟ—ସୈନ୍ୟଗଣ ! ଆଜି ଅସମୟରେ ତୁମ୍ଭମାନଙ୍କୁ ଆହ୍ୱାନ କରିଛି—ଏ'ଦୀନ କୁଟୀରରେ ଏକତ୍ର କରିଛି—ଦୋଷ ମାର୍ଜନା କରିବ ।

ସୈନ୍ୟ—ସେନାପତେ ! ଆଜି ଏ' କି କଥା କହୁଛନ୍ତି ? ସେନାପତିଙ୍କ ଆହ୍ୱାନ ଯେ ଆମ୍ଭମାନଙ୍କ ପକ୍ଷେ ଆମନ୍ତ୍ରଣ ତୁଲ୍ୟ ।

ଦୁର୍ଜ୍ଜୟ—ଭାଇମାନେ ! ଆଜି ତୁମ୍ଭର ଜ୍ୟେଷ୍ଠଭ୍ରାତାର ଗୋଟିଏ ମିନତି ଅଛି, ତାହା ପୂରଣ କରିବ କି ?

ସୈନ୍ୟ—ଆଦେଶ କରନ୍ତୁ ଦାସମାନଙ୍କୁ, ପ୍ରଭୁ !—ମିନତିର କି ପ୍ରୟୋଜନ ?

ଦୁର୍ଜ୍ଜୟ—ଭାଇମାନେ ! ଜାହା ହେତୁ ତୁମ୍ଭେମାନେ ଏହି ପରିଚ୍ଛଦ ଧାରଣ କରି ଆଜି ସୈନ୍ୟପଦବାଚ୍ୟ ହୋଇଛ ?—ଜାହା ହେତୁ ତୁମ୍ଭେମାନେ ଅଷ୍ଟାଙ୍ଗ ଅସ୍ତ୍ରଚାଳନା ଦେଖାଇ, ବିସ୍ମୟଜନକ ରଣକୌଶଳ ଦେଖାଇ ଦୁର୍ଦ୍ଧର୍ଷ ସୈନ୍ୟ ବୋଲି ଶତ୍ରୁନିକଟରେ ପରିଚିତ ?—କିଏ ତୁମ୍ଭର ଶିକ୍ଷାଦାତା ?—କିଏ ତୁମ୍ଭର ଅନ୍ନଦାତା ?

ସମସ୍ତେ—ସେନାପତି ଦୁର୍ଜ୍ଜୟସିଂହ ।

ଦୁର୍ଜ୍ଜୟ—ସେହି ଦୁର୍ଜ୍ଜୟସିଂହ ଆଜି ଭିକ୍ଷା ଅଭିଳାଷ କରିଛି—ଗୁରୁ ଦକ୍ଷିଣା ସ୍ୱରୂପ କିଞ୍ଚିତ ପ୍ରାର୍ଥନା କରିବ—ତୁମ୍ଭେମାନେ କି ତାହା ପୂରଣ କରିବ ନାହିଁ ?

ସୈନ୍ୟ—ଆଦେଶ କରନ୍ତୁ, ଶୀଘ୍ର ଗୁରୁଦେବ ! ଅଭିଳଷିତ ହେଲେ ପ୍ରାଣ ମଧ୍ୟ ବଳି ଦେବାକୁ ନିଷ୍କୋଷିତ ଏ କୃପାଣ ପ୍ରସ୍ତୁତ ଅଛି ।

ଦୁର୍ଜ୍ଜୟ—ଏତେଦୂର ଅଗ୍ରସର ହେବାର ପ୍ରୟୋଜନ ନାହିଁ, ଭାଇମାନେ ! ମୋ'ର ସାମାନ୍ୟ ଭିକ୍ଷା—ବିପଦେ, ସମ୍ପଦେ ଗୁରୁଙ୍କୁ ଯେପରି ହେୟଜ୍ଞାନ ନ କର—ତାଙ୍କର ଆଦେଶ ସର୍ବଥା ଶିରୋଧାର୍ଯ୍ୟ ଜ୍ଞାନ କର ।

ସୈନ୍ୟ—ଏହି ସାମାନ୍ୟ ଭିକ୍ଷା । ଆସ, ଭାଇମାନେ ଆମ୍ଭେମାନେ ଆଜି ଗୁରୁ-ଦତ୍ତ ଅସ୍ତ୍ର ଧାରଣ କରି, ଗୁରୁଙ୍କ ଚରଣ ସ୍ପର୍ଶ କରି, ପ୍ରତିଜ୍ଞା କରିବା—ଗୁରୁ ଆମ୍ଭର ପ୍ରାଣ—ଗୁରୁ ଆମ୍ଭର ସର୍ବସ୍ୱ ।

ସମସ୍ତେ—( ଦୁର୍ଜ୍ଜୟର ଚରଣ ସ୍ପର୍ଶ କରି ) ଏହି ଆମ୍ଭେମାନେ ପ୍ରତିଜ୍ଞା କରୁଛୁ—ଗୁରୁ ଆମ୍ଭର ପ୍ରାଣ —ଗୁରୁଆମ୍ଭର ସର୍ବସ୍ୱ ।

( ନେପଥ୍ୟେ )—ଜୟ ଦ୍ୱିତୀୟ ସେନାପତି ସେଓଜିଙ୍କ ଜୟ । ଜୟ ସହକାରୀ ସୈତରାମଙ୍କ ଜୟ ।

ଦୁର୍ଜ୍ଜୟ—ଏ କି ଜୟଧ୍ୱନି । ସୈନ୍ୟଗଣ । ତୁମ୍ଭେମାନେ ଟିକିଏ ଅନ୍ତରାଳକୁ ଯାଅ ।

[ ସୈନ୍ୟଗଣଙ୍କ ପ୍ରସ୍ଥାନ ଓ ବିପରୀତ ଦିଗରୁ ସେଓଜି, ସୈତରାମ, ଶିବରାମ ଓ ମନ୍ତ୍ରୀଙ୍କ ପ୍ରବେଶ]

ମନ୍ତ୍ରୀ—ବଡ଼ ଶୁଭ ସମ୍ବାଦ, ସେନାପତେ ।

ଦୁର୍ଜ୍ଜୟ—କି ଶୁଭ ସମ୍ବାଦ ?

ମନ୍ତ୍ରୀ—ତୁମ୍ଭର ପ୍ରିୟତମ ଶିଷ୍ୟ ସେଓଜି ଆଜି ଦ୍ୱିତୀୟ ସେନାପତି ପଦ ଲାଭ କରିଛନ୍ତି—ଆଉ କନିଷ୍ଠଶିଷ୍ୟ ସୈତରାମ ସହକାରୀପଦ ଲାଭ କରିଛନ୍ତି ।

[ସେଓଜି ଓ ସୈତରାମଙ୍କର ଦୁର୍ଜ୍ଜୟର ପଦଧୂଳି ଗ୍ରହଣ ]

ଦୁର୍ଜ୍ଜୟ—(ଆଲିଙ୍ଗନ କରି) ଆଜି ବଡ଼ ଆନନ୍ଦର ଦିନ ଯେ ଶିକ୍ଷା ମୋର ପୁଷ୍ପବତୀ ଓ ସଙ୍ଗେ ସଙ୍ଗେ ଫଳବତୀ ମଧ୍ୟ ହୋଇଛି ।

ଶିବରାମ—କି ଆନନ୍ଦ । କି ଆନନ୍ଦ ।

ଦୁର୍ଜ୍ଜୟ—ବୃଦ୍ଧ ତୁମ୍ଭର ମନସ୍କାମନା ପୂର୍ଣ୍ଣ ହୋଇଛି କି ?

ଶିବରାମ—ଗୁରୁଙ୍କ ଆଶୀର୍ବାଦରେ କ'ଣ ନ ହୋଇ ପାରେ ? କି ଆନନ୍ଦ । କି ଆନନ୍ଦ ।

ମନ୍ତ୍ରୀ—ହେମାଦେଈଙ୍କ—ନା—ରାଜାଙ୍କ ଆଜ୍ଞା ଯେ ଭାବି ଯୁଦ୍ଧରେ ସେଓଜିଙ୍କ ସହିତ ପରାମର୍ଶ କରି ଆପଣ କାର୍ଯ୍ୟ କରିବେ ।

ଦୁର୍ଜ୍ଜୟ—ଏତ ଅତି ସୁଖର ବିଷୟ ।

ମନ୍ତ୍ରୀ—ତେବେ ବର୍ତ୍ତମାନ ଆମ୍ଭେମାନେ ଆସୁଛୁଁ ।

[ ସେଓଜି ଓ ସୈତରାମଙ୍କର ଅଭିବାଦନ ପୂର୍ବକ ମନ୍ତ୍ରୀସହ ପ୍ରସ୍ଥାନ ]

ଶିବରାମ—କି ଆନନ୍ଦ । କି ଆନନ୍ଦ ।

ସମସ୍ତେ—ଜୟ ସେଓଜି, ସୈତରାମଙ୍କ ଜୟ । (ପ୍ରସ୍ଥାନ)

ଦୁର୍ଜ୍ଜୟ—ଦୁର୍ଜ୍ଜୟ । ଆଜି କି ଅପମାନ ଗୃହୁଁ—କାଲି ରାଜସଭାରେ ବୀରମାନଙ୍କ ସମ୍ମୁଖରେ ରାଜହସ୍ତରୁ ପୁରସ୍କାର ଗ୍ରହଣ—ଆଜିପୁଣି ସେନାପତି ପଦରେ ବରଣ—ଏହାଠାରୁ ବଳି ବୀରପକ୍ଷେ ଆଉ କି ଲାଞ୍ଛନା ହୋଇପାରେ ?—ଯେଉଁ ବନ୍ଦୀ ଦିନେ ଦୁର୍ଜ୍ଜୟର କଠୋର ଦଣ୍ଡରେ ଦଣ୍ଡିତ ହେବାକୁ ବସିଥିଲା, ସେ ଆଜି ଦୁର୍ଜ୍ଜୟର ସମକକ୍ଷ—ଉନ୍ନତିର ଚରମ ସୀମାରେ ଉପସ୍ଥିତ, ଅଚିରେ ପ୍ରଭୁ ହେବା ମଧ୍ୟ ସୁନିଶ୍ଚିତ । ତାହାହେତୁ ଏ ସମସ୍ତ ? ତାହା· ହେତୁ ଏ ଲାଞ୍ଛନା ? ଚଞ୍ଚଳା । ଦେଖିବି, କେଉଁ ସୂତ୍ରଧର ତୁହି ?— ଲାଞ୍ଛିତ ଦୁର୍ଜ୍ଜୟ ସମ୍ମୁଖରେ କିପରି ତୋ'ର ମନସ୍କାମନା ପୂର୍ଣ୍ଣ କରିବୁ ? ନାରକୀ ବୃତ୍ତିଚୟ । କିମ୍ଭୂତ ଭାବେ ରହିଛ କାହିଁକି ?— ଜାଗ ଉଠ— ତୁମ୍ଭର ଲେଲିହୀ ବିସ୍ତାର କରି ଶତ୍ରୁକୁ ପୋଡ଼ି ନାରଖାର କରିଦିଅ—ବିଶାଳ କୁଟମଣ୍ଡଳ ଆଜି ପୋଡ଼ି ଭସ୍ମସ୍ତୂପରେ ପରିଣତ ହେଉ । ସୈନ୍ୟଗଣ ।—

[ ସୈନ୍ୟଗଣଙ୍କ ପ୍ରବେଶ ]

ସୈନ୍ୟଗଣ—ସେନାପତେ ।

ଦୁର୍ଜ୍ଜୟ—ଶୁଣ ସର୍ବେ ରାଜାଙ୍କ ବିଚାର—ଯେଉଁ ବାହୁରେ ଏହି ରାଜ୍ୟ ଶତ୍ରୁକବଳରୁ ଏତେ ଦିନ ରକ୍ଷା କଲି—ରାଜାଙ୍କ ଆଦେଶ, ସେହି ବାହୁ ଆଜି ଦ୍ୱିଖଣ୍ଡିତ ହେବ । ଯେଉଁ ଶରୀର ପାତ କରି ବିନା ନିଦ୍ରାରେ, ବିନା ଭୋଜନରେ ରାଜ୍ୟଶ୍ରୀ ବର୍ଦ୍ଧିତ କଲି ରାଜାଙ୍କ ଆଦେଶ, ସେହି ଶରୀର ଆଜି କୁକ୍କୁର ଶୃଗାଳ ସମ୍ମୁଖରେ ନିକ୍ଷିପ୍ତ ହେବ।

ସୈନ୍ୟ—କିନ୍ତୁ ଆମ୍ଭେମାନେ ବୁଝିପାରୁ ନାହୁଁ, ସେନାପତେ ।

ବୁର୍ଦ୍ଧସୂ—ଶୁଣିଛତ ସର୍ବେ, କାହାର ଜୟ ଧ୍ୱନିରେ ଆକାଶ ଅବନୀ ଆଜ ପ୍ରତିଧ୍ୱନିତ ହୋଇଗଲା ?

ସୈନ୍ୟ—ସେଓଜଙ୍କ ଜୟଧ୍ୱନିରେ ।

ବୁର୍ଦ୍ଧସୂ—କିଏ ସେ ସେଓଜ ?—ସେ କି ସାମାନ୍ୟ ଜଣେ ସୈନିକ ନୁହେଁ ?—ତୁମ୍ଭମାନଙ୍କଠାରୁ କେଉଁ ବିଷୟରେ ତାହାର ଅଧିକାର ବେଶୀ ?—ମାତ୍ର ସେ ଆଜ ରାଜ-ପ୍ରସାଦରୁ ସେନାପତି ଉପାଧିରେ ଭୂଷିତ—ତୁମ୍ଭମାନଙ୍କର ଅଧିନାୟକ ବୋଲି ବିଘୋଷିତ ।—କେତେଦୂର ଅପମାନ । ବୀରପ୍ରତି କେତେଦୂର ଅବମାନନା ।

ସୈନ୍ୟଗଣ—ଘୋର ଅବମାନନା । ଘୋର ଅପମାନ ।

ବୁର୍ଦ୍ଧସୂ—ଏହାର କ'ଣ ପ୍ରତିଶୋଧ ନେବା ଉଚିତ ନୁହେ ? ଅପମାନିତ ସିଂହ କି ଅପମାନକାରୀକୁ ବିନା ପ୍ରତିଶୋଧରେ କେବେ ଛାଡ଼ିଦିଏ ?

ସୈନ୍ୟଗଣ—କଦାପି ନୁହେଁ ।

ବୁର୍ଦ୍ଧସୂ—ତେବେ ଆସ, ଭାଇମାନେ ।—ବର୍ତ୍ତମାନ ସୁଯୋଗ ଉପସ୍ଥିତ—ଲଖା ପୁନର୍ବାର ଆକ୍ରମଣ କରିଛି—ଏହି ସୁଯୋଗରେ ଆମ୍ଭମାନଙ୍କର ପ୍ରତିଶୋଧ ନେବାର ଉପାୟ ଚିନ୍ତାକରିବା ଆସ ।

ସୈନ୍ୟଗଣ—ଜୟ ସେନାପତି ବୁର୍ଦ୍ଧସିଂହଙ୍କ ଜୟ ।

---

## ଚତୁର୍ଥ ଦୃଶ୍ୟ

—ପାର୍ବତୀୟ ପ୍ରଦେଶ—

( ଲଖା ଓ ସୈନ୍ୟଗଣ )

ଲଖା—ଆରେ ଇ ଠାନେ—ଇ ପାହାଡ଼୍ କା ନିଚେ ବଡ଼ା ସୁବିଧା ହବା ।

ସୈନ୍ୟ—ହଁ, ସର୍ଦ୍ଦାର । ବଡ଼ା ସୁବିଧା ହବା ।

ଲଖା—ଯେତ୍‌ନା ବଡ଼ା ବଡ଼ା ଚିମା ପାଥିଥର୍ ଅଛେ, ଓସବ୍ ଲକେ ପରବତ୍‌କା ଉପର ଜମା କରଲେ ।

ସୈନ୍ୟ—ବହୁତ ଅଚ୍ଛା, ସର୍ଦ୍ଦାର ।

ଲଖା—ଆରେ ଏକ୍ ବାତ୍ ଶୁନ୍—ହାମେ ଇ ଠାନେ ଅଛେଁ ବୋଲି ଦୁସ୍‌ମନ୍‌କୁ କାନ୍‌ନେ ମତ୍ ଦୋ ।

ସୈନ୍ୟ—ହୋ ସର୍ଦ୍ଦାର । ତୁ କୁଛ୍ ଡର ମତ୍—ହାମ୍ ଓଇ ପାହାଡ଼୍‌କା ମାଫିକ୍ ହୋ ଯାବା ।

ଲଖା—ନେହିଁ ନେହିଁ—ତୁମ୍ ଲୋକ୍ ଚିମା ଚିମା ପାଥିଥର୍‌ସବ୍ ଲେକେ ପାହାଡ଼୍‌କା ଇଠାନେ ଓଠାନେ ଜମା କରଲେ—ଔର ଓଇ ପଥର୍‌କା ପିଛନ୍‌ମେ ଗୁର ପାଞ୍ଚ ଆଦ୍‌ମି କରକେ ଛୁପ୍‌କେ ବୈଠ୍‌ଯାଓ ।

ସୈନ୍ୟ—ଯୋ ହୁକୁମ୍, ସର୍ଦ୍ଦାର ।

ଲଖା—ଔର ଏକ୍ ବାତ୍ ଶୁନ୍—ଚଲ୍‌ଲାଓ ମତ୍—ଚୁପ୍ କରକେ କାମ୍ କରୋ—ହାମ୍ ଦୁସ୍‌ମନ୍‌କା ଖବର୍ ଲେ ଆସ୍‌ବା । (ପ୍ରସ୍ଥାନ)

ସୈନ୍ୟଗଣ—[ ଗୀତ ଗାଇଥିବା ପାହାଡ଼ ଉପରେ ପଥର ନେଇ ଜମାଉଥିବା ]

ଗୀତ

ଚଲ୍ ଚଲ୍ ଭାଇ, ଧର୍ ଧର୍ ଭାଇ, ଚିମାପାଥିଥର୍ ।
ଲେକେ ସବ୍ ଜମା କରୁଁ ପାହାଡ଼୍ ଉପର ॥
ହୁକୁମ୍ ବଡ଼ା ଜୋର୍
ମତ କରନା ଗୋଲ୍
ଦୁସ୍‌ମନ ଦେଖିକେ ଛୁପ୍‌ଯାନା ପଥନ୍ ଭିତର ।

୧ମ ସୈନିକ—ବୋଲ୍ ତୋ ଭାଇ । ଅବ ଦୁସମନ୍ ଆସ୍ ଗଲେ ହାମ୍ ସବ କା କରବା ?

୨ୟ ସୈନିକ—ଆରେ ମଏଁ ତରଓାଲ୍‌କୋ ଫର୍ ଫର୍ ଫର୍ ଘୁମ୍‌କେ ସବ୍ ଦୁସ୍‌ମନ୍‌କା ମୁଣ୍ଡ୍ ଖର୍ ଖର୍ ଖର୍ ଖର୍ କାଟ୍ ଡାଲ୍‌ତା ।

୧ମ ସୈନିକ—ଆରେ ମଏଁ ଧୁନ୍‌କୋ କରନ୍ ତକ୍ ଟାନକେ ଯୋ ଶର୍ ଛୋଡ଼୍‌ତା ଯେ ଏକ ଶର୍‌ମେ ଦଶ ବାଗ୍ରେ ଗିରାଦେତା ।

୨ୟ ସୈନିକ—ଆରେ ମଏଁ ପାହାଡ଼୍ ଉପର ଭାଗ୍‌ତା, ଔର ସବ୍ ରଶିକୋ କାଟ୍‌ଡାଲ୍‌କେ ସବ୍ ଦୁସ୍-ମନ୍‌କୋ ଚୁନ୍ ଚୁନ୍ କର୍‌ଡାଲ୍‌ତା ।

[ ଲଖାର ବେଗେ ପ୍ରବେଶ ]

ଲଖା—ଆରେ ଚୁପ୍ ଚୁପ୍—ଦୁସ୍‌ମନ, ଦୁସ୍‌ମନ—ଘୁସିଆର, ଘୁସିଆର । ଚଲୋ, ଚଲୋ—ସବ୍ ଛୁପ୍ ଯାଓ ।

[ ସମସ୍ତେ ପ୍ରସ୍ତରପଶ୍ଚାଦ୍ଦେଶରେ ଲୁକ୍କାୟିତ ହେବା ]

[ ମନ୍ତ୍ରୀ, ସେଓଜ, ସୈତଗ୍ରାମ, ଶିବଗ୍ରାମ ଓ କତିପୟ ସୈନ୍ୟଙ୍କ ପ୍ରବେଶ ]

ସେଓଜ—କାହାନ୍ତି ମନ୍ତ୍ରୀ ? ଏଠାରେ ମଧ୍ୟ ସେନାପତି ନାହାନ୍ତି ?

ମନ୍ତ୍ରୀ—ସେନାପତେ ! ଦୁର୍ଜ୍ଜୟଙ୍କୁ ମୋ'ର କପଟ ସନ୍ଦେହ ହେଉଛି ।

ସେଓଜ—ସନ୍ଦେହ ହେବାର ତ କାରଣ କିଛି ନାହିଁ ?

ମନ୍ତ୍ରୀ—ଭଲ ଦେଖନ୍ତୁ, କାରଣ ଯଥେଷ୍ଟ ଅଛି କି ନାହିଁ ?

ସେଓଜ—ବେଶ୍—ତା'ଙ୍କୁ ସନ୍ଦେହ ହୋଇପାରେ, ମାତ୍ର ସୈନ୍ୟମାନେ ଗଲେ କେଉଁଆଡ଼େ ? ଅଧିକାଂଶ ସୈନ୍ୟ ସେ ତା'ଙ୍କର ଅଧୀନରେ ଥିଲେ ?

ମନ୍ତ୍ରୀ—ସେନାପତେ ! ନିଶ୍ଚୟ ଏ' ଗୋଟିଏ ଭୀଷଣ ଷଡ଼ଯନ୍ତ୍ର !

ଶିବଗ୍ରାମ—ଭୀଷଣ ଷଡ଼ଯନ୍ତ୍ର ?

ସୈତଗ୍ରାମ—କ'ଣ କରାଯିବ, ଭାଇ ?

ସେଓଜ—ବ୍ୟସ୍ତ ହେବାର ସମୟ ବର୍ତ୍ତମାନ ନୁହେଁ, ଭାଇ !—ସନ୍ଦେହ ଦୂର କରିବା ଆଗେ କର୍ତ୍ତବ୍ୟ । ସୈତଗ୍ରାମ ! ତୁମ୍ଭେ ଉପସ୍ଥିତ ସୈନ୍ୟବୃନ୍ଦଙ୍କୁ ଅଧିକାଂଶ ନେଇ ଏହିଠାରେ ସତର୍କଭାବେ ଶତ୍ରୁର ଆଗମନ ପ୍ରତୀକ୍ଷା କର—ଏ ପଥ ପର୍ବତାକୀର୍ଣ୍ଣ ହେଲେ ମଧ୍ୟ ପାର୍ବତୀୟମାନଙ୍କ ପକ୍ଷେ ସେତେ ଦୁର୍ଗମ ନୁହେଁ—ଆହୁରି ମଧ୍ୟ ବିପକ୍ଷଚକ୍ଷୁରେ ଧୂଳି ନିକ୍ଷେପ କରିବା ନିମନ୍ତେ, ଏହା ଗୋଟିଏ ପ୍ରକୃଷ୍ଟ ଉପାୟ । ମନ୍ତ୍ରୀ ମହାଶୟ ! ସୈତଗ୍ରାମର ସାହାଯ୍ୟ ନିମନ୍ତେ ଆପଣ ଏହିଠାରେ ଅବସ୍ଥାନ କରନ୍ତୁ ।

ମନ୍ତ୍ରୀ—ଯଥା ଆଜ୍ଞା ।

ଶିବଗ୍ରାମ—ମୁଁ ମଧ୍ୟ ଏହିଠାରେ ରହିବି—ସୈତୁଙ୍କୁ ଛାଡ଼ିବାକୁ ମନ ଆଜି ବଳୁ ନାହିଁ କାହିଁକି ?

ସେଓଜ—ତୁମ୍ଭର ଚପଳତା ଭଗ୍ନ ଶିବକକା !

ମନ୍ତ୍ରୀ—ଶିବଭାଇ ! ତୁମେ ନ ଆସିଥିଲେ ଭଲ ହୋଇଥାନ୍ତା—ଏବୟସରେ କି କାହାର ଯୁଦ୍ଧକ୍ଷେତ୍ରକୁ ଆସିବା ଉଚିତ ?

ଶିବଗ୍ରାମ—ଏ ଭାବ ଶକ୍ତ ଦେହ, ମନ୍ତ୍ରୀ !—ଟିପି ଦେଖ, ଲୁହାଠାରୁ ମଧ୍ୟ ଶକ୍ତ ! ଏହା କି କମ୍ ଝଡ଼ ତୋଫାନର ମାଡ଼ ସହିଛି ?—ବୟସର କି ସାଧ୍ୟ ସହଜେ ନଷ୍ଟ କରିବ ?

ସୈତଗ୍ରାମ—ମନ୍ତ୍ରୀ ମହାଶୟ ! ଜାଣନ୍ତି ନାହିଁ ଆପଣ, ଶିବକକା ଏକା ଆମ୍ଭ ଦୁଇଭାଇଙ୍କୁ କାନ୍ଧରେ ବସାଇ ଅନାୟାସରେ ଗୃହପାଞ୍ଚକୋଶ ଦୂର ବହନ କରି ନେଇ ଯାଇପାରେ ।

ସେଓଜ—ବୃଥା ବିଳମ୍ବରେ ପ୍ରୟୋଜନ ନାହିଁ, ସୈତଗ୍ରାମ !—ବର୍ତ୍ତମାନ ମୁଁ ବାହାରିଲି—ଅନୁସନ୍ଧାନ କରିବି, ସେନାପତି ସେବେ ଅନ୍ୟ କେଉଁଠାରେ ଶତ୍ରୁର ଆଗମନ ପ୍ରତୀକ୍ଷା କରୁଥାନ୍ତି !

( ପ୍ରସ୍ଥାନ )

ସୈତଗ୍ରାମ—ମନ୍ତ୍ରୀ ମହାଶୟ ! ମୋ'ର ବିଶ୍ୱାସ ହେଉଛି, ଶତ୍ରୁ ନିଶ୍ଚୟ ଏହି ପଥ ଦେଇ ପ୍ରବେଶ କରିବ ।

ମନ୍ତ୍ରୀ—ଅସମ୍ଭବ ନୁହେଁ ।

ସୈତଗ୍ରାମ—ଶୁଣ, ମନ୍ତ୍ରୀ ! ଗୋଟାଏ କି ଅସ୍ପଷ୍ଟ ଶବ୍ଦ ଶୁଣା ଯାଉଛି—

ଲଖା—( ପର୍ବତ ଉପରୁ ) ଚଳାଓ ପଥର୍ !

ସୈତଗ୍ରାମ—ସାବଧାନ, ସୈନ୍ୟଗଣ !—ପାହାଡ ଉପରେ ଶତ୍ରୁ—ପଥରବୃଷ୍ଟି ଆରମ୍ଭ ହୋଇଛି—ତୁମ୍ଭେମାନେ ଶୀଘ୍ର ଶୀଘ୍ର ଗୋଟିଏ ଗୋଟିଏ ବୃକ୍ଷର ଆଶ୍ରୟ ଗ୍ରହଣ କର ।

[ ସୈନ୍ୟମାନଙ୍କର ବେଗେ ପ୍ରସ୍ଥାନ ]

ପଳାଇ ଆସ, ଶିବକକା—ପଳାଇ ଆସ ଶୀଘ୍ର ମନ୍ତ୍ରୀ ମହାଶୟ !—ବର୍ତ୍ତମାନ ଏ ସ୍ଥାନରେ ରହିବା ଯୁକ୍ତିସଙ୍ଗତ ନୁହେଁ ।

[ ଶିବଗ୍ରାମ, ସୈତଗ୍ରାମ ଓ ମନ୍ତ୍ରୀଙ୍କ ପ୍ରସ୍ଥାନ ]

ଲଖା—( ପର୍ବତ ଉପରୁ ) ଆରେ ମାର୍, ମାର୍—ମଲାଉଛି—ମଲାଇଲା—ଜୋର୍ ମାରୁ, ଜୋର୍

ମାର୍—ବର୍ଚ୍ଛା ମାର୍‌ରେ, ବର୍ଚ୍ଛା ମାର—(କିଛିକ୍ଷଣ ପରେ ) ବସ୍—ବହୁତ୍ ଆଦ୍‌ମି ଖତମ୍—ଅବ୍ ପାହାଡ୍‌ସେ ସବ୍ ଚଲେ ଆଓ—ବିନା ତର୍‌ୱାଲ୍‌ସେ ଲଢ଼ାଇ ନାହିଁ ଚଲ୍‌ବା ।

[ ଲଖା ଓ ସୈନ୍ୟମାନଙ୍କର ଭୂତଳକୁ ଆଗମନ ଓ ଅନ୍ୟଦିଗରୁ ସୈତରାମ ଓ ସୈନ୍ୟମାନଙ୍କ ପ୍ରବେଶ ]

ସୈତରାମ—ମାଭୈ, ସୈନ୍ୟଗଣ ! ପ୍ରାଣପଣେ ଯୁଦ୍ଧ କର—ଶତ୍ରୁ ସମ୍ମୁଖରୁ ପଶ୍ଚାତ୍‌ପଦ ହେବା କ୍ଷତ୍ରିୟର କର୍ତ୍ତବ୍ୟ ନୁହେଁ—ନିଜର କାର୍ଯ୍ୟ କର—ଜୟ କିମ୍ବା ପରାଜୟ ନିୟତିହସ୍ତରେ ।

ଲଖା—ଆରେ, ଛେଲଆ ! ତୁ କି ବେକୁବ୍ ହଲ୍—ନାହିଁ ଦେଖ୍‌ଲ୍, ହାମ୍‌ର କେତ୍‌ନା ଆଦ୍‌ମି ଆଛେ ।

ସୈତରାମ—ଆଦ୍‌ମି ସଙ୍ଗେ କି ଅଛି, ରେ ବର ?—ବୀର ଯେବେ, ସମ୍ମୁଖଯୁଦ୍ଧରେ ପରାକ୍ରମ ଦେଖାଅ ।

ଲଖା—ବହୁତ ଅଚ୍ଛା—ଚଲାଓ ତର୍‌ୱାଲ୍ ।

( ଯୁଦ୍ଧ ଓ ସୈତ୍ୟରାମର ଭୂତଳେ ପତନ )

ସୈତରାମ—( ପଡ଼ି ) ଯୁଦ୍ଧକର, ସୈନ୍ୟଗଣ !—ଶେଷବାୟୁ ନିର୍ଗତ ନ ହେବାପର୍ଯ୍ୟନ୍ତ ସ୍ଥାନ ତ୍ୟାଗ କର ନାହିଁ ।

ଲଖା—ହାମାର୍ ବହୁତ ଆଦ୍‌ମି ମାର୍ ଦେଲରେ—ଏ ବଡ଼ା ଜୋର୍‌ଦାର୍ ଛେଲଆ ।

ସୈ-ସୈନ୍ୟଗଣ—ଯୁଦ୍ଧ କର, ଜଙ୍ଗ୍‌ଲି ।

[ ସୈନ୍ୟମାନଙ୍କର ଯୁଦ୍ଧ ଓ ପରାଜିତ ହୋଇ ପଳାୟନ ]

ଶିବରାମ—( ଅର୍ଦ୍ଧ ପ୍ରବିଷ୍ଟ ହୋଇ ) ଛାଡ଼ିଦିଅ, ମନ୍ତ୍ରୀ ! —ମୋର ସୈତୁ ନିହତ—ଶିଶୁହନ୍ତାକୁ ଏହିକ୍ଷଣି ମୁଷ୍ଟ୍ୟାଘାତରେ ଭୂତଳଶାୟୀ କରିବି ।

ମନ୍ତ୍ରୀ—( ଅର୍ଦ୍ଧପ୍ରବିଷ୍ଟ ହୋଇ ) ଶିବଭାଇ ! କ୍ଷାନ୍ତହୁଅ ।

ଶିବରାମ—ନା, ମନ୍ତ୍ରୀ—ଲାଙ୍ଗୁଳାହତ-ଫଣୀ କଦାପି କ୍ଷାନ୍ତ ହୋଇ ପାରେ ନାହିଁ ।—ହୃତଶାବା-ବ୍ୟାଘ୍ରୀ କଦାପି ସ୍ଥିର ହୋଇ ପାରେ ନାହିଁ ।

( ଶିବରାମର ପ୍ରବେଶ )

ଲଖା—କିଏ ତୁ ବୁଢ୍‌ଢ଼ା

ଶିବରାମ—ତୋ'ର ଯମ, ପଶୁ !—

ଲଖା—ହାଃ ହାଃ ହାଃ—ହାମ୍‌ାର୍ ଯମ୍ ।

ଶିବରାମ—ଯମକି ନୁହେଁ—କାର୍ଯ୍ୟରେ ଦେଖ, ଶିଶୁହନ୍ତା !—ପଶୁ ( ଆକ୍ରମଣ କରିବା ଓ ଲାଖାର ଅସ୍ତ୍ରାଘାତରେ ଭୂପତିତ ହେବା ) ଉଃ—ସୈ—ତୁ—ପ୍ରା—ଣର-ସୈ—ତୁ (ମୂର୍ଚ୍ଛାଯିବା)

ଲଖା—ଅରେ ମିଛେ ମିଛେ କେନେ ଜାନ୍‌ଦିଲରେ, ବୁଢ୍‌ଢ଼ା ?

ସୈନ୍ୟ—ସର୍ଦ୍ଦାର ! ଅବ୍ କା ହୁକୁମ ?

ଲଖା—ଅରେ ଏ ଛେଲ୍‌ଆଠା ଯେମତ୍ ଜୋର୍‌ଦାର୍, ତେମତ୍ ଖୁବ୍-ସୁରତ୍—ରଜାକା ବେଟା ହବାରେ, ରଜାକା ବେଟା ହବା—ଜାନ୍ ଅଛିରେ—ଇନ୍‌କୋ ଲେ ଚଲ୍ ।

ସୈନ୍ୟ—ସର୍ଦ୍ଦାର ! ଦୁଷମନ୍‌କୋ କାହେ ଲେବା ?

ଲଖା—ବାତ୍ କର୍ ମତ୍‌ରେ, ଲେ ଚଲ୍ ।

ସୈନ୍ୟ—ଯୋ ହୁକୁମ ସର୍‌ଦାର୍ ।

[ କେତେକ ସୈନ୍ୟ ସୈତରାମକୁ ନେଇ ପ୍ରସ୍ଥାନ କରିବା ]

ଲଖା—( ନେପଥ୍ୟକୁ ଚାହିଁ, ସଭୟେ ) ଆରେ, ବହୁତ୍ ଆଦ୍‌ମିରେ ଦୁଷ୍‌ମନ୍—ଦୁଷ୍‌ମନ୍—ଭାଗୋ—ଭାଗୋ—

[ ସମସ୍ତଙ୍କର ପ୍ରସ୍ଥାନ ଓ ବିପରୀତଦିଗରୁ ସେଓଜି ଓ କତିପୟ ସୈନ୍ୟଙ୍କ ପ୍ରବେଶ ]

ସେଓଜି—କି ଭୀଷଣ ଷଡ଼ଯନ୍ତ୍ର !—ସମୁଦାୟ ସୈନ୍ୟ ନେଇ ଗୁରୁଦେବ ପଳାୟିତ । କାରଣ କଣ ? ସମସ୍ତ ଶିକ୍ଷିତ ସୈନ୍ୟ ଯେ ତାଙ୍କର ଅଧୀନରେ ଥିଲେ । ବର୍ତ୍ତମାନ ଉପାୟ କଣ ?—ଶତ୍ରୁର ମଧ୍ୟ ଦର୍ଶନ ନାହିଁ କାହିଁକି ? ସୈତରାମ ଗଲା କେଉଁଆଡ଼େ ?

ସୈନ୍ୟ—ସେନାପତେ ! ସେନାପତେ ! ଦେଖନ୍ତୁ ଏଣେ—

ସେଓଜି—ଏ' କଣ ? ଏ' କି ଦୃଶ୍ୟ ?—ଶୁହଅଢ଼େ ଯେ ଅସୁର ସୈନ୍ୟମାନଙ୍କ ମୃତ ଦେହ ! —ସୈତରାମ କାହିଁ—ସୈତରାମ ଗଲା କେଉଁ ଅଢ଼େ ?—ସେ କି ପରାଜିତ ?—ସେ କି ପଳାୟିତ ?—ଅସମ୍ଭବ—କେନାଡ଼ିଜରାଜବଂଶଧର ପକ୍ଷେ ଏହା ଅସମ୍ଭବ !—ସେଓଜିର ଭ୍ରାତା ପକ୍ଷେ ଏହା ଅସମ୍ଭବ !—ତେବେ କାହିଁ ସୈତରାମ ?

ସୈନ୍ୟ—ସେନାପତେ ! ସେନାପତେ ! ଦେଖନ୍ତୁ—

ସେଓଜି—ଏ' କଣ ? ଏ' କଣ ଦେଖୁଛି ? କାହାର ଶବଦେହ, ଏଁ ! —କାହାର ଶବଦେହ ଏ !—ଶିବକକା ! ଶିବକକା ! ( ଅଲିଙ୍ଗନ କରିବା )

ସୈନ୍ୟଗଣ—ସେନାପତେ ! ସେନାପତେ !

[ କାତରଦୃଷ୍ଟିରେ ଶୁହିଁ ରହିବା ]

ସେଓଜି—ଏ' ମୁଁ କଣ କରୁଛି ?—ଶୋକାର୍ତ୍ତ ହୋଇ, ଏ' ମୁଁ କଣ କରୁଛି ?—ମୋର ନେ୍ ଭୀଷଣ କର୍ତ୍ତବ୍ୟ ସମ୍ମୁଖରେ ବର୍ତ୍ତମାନ ! —ମୋର ଯେ ଶତ୍ରୁନିବାରଣ କରିବା ବର୍ତ୍ତମାନ ପ୍ରଧାନକର୍ତ୍ତବ୍ୟ ! ସୈନ୍ୟଗଣ ! ତୁମ୍ଭମାନଙ୍କ ମଧ୍ୟରୁ ଦୁଇଜଣ ମାତ୍ର ଏହି ମୁମୂର୍ଷୁର ପ୍ରାଣରକ୍ଷା କର—ବାକି ସମସ୍ତେ ମୋର ଅନୁବର୍ତ୍ତୀ ହୁଅ । ଉଃ ଶିବକକା ! ଶିବକକା ! —ନା, ଆଜି ମୋର ଅବସର ନାହିଁ—ଆଜି ମୋର ସମୟ ନାହିଁ—ଶତ୍ରୁନିବାରଣ !—ରାଜ୍ୟରକ୍ଷା, କଠୋର କର୍ତ୍ତବ୍ୟ ! !—

( ସସୈନ୍ୟେ ବେଗେ ପ୍ରସ୍ଥାନ )

—ପତନିକା—

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—କକ୍ଷ—

[ରୁଗ୍‌ଣଶଯ୍ୟାରେ ଶିବରାମ ଶାୟିତ ଓ ଚଞ୍ଚଳା ଶିରୋଦେଶରେ ଉପବିଷ୍ଟା ହୋଇ ବ୍ୟଜନ କରୁଥିବା ]

ଶିବରାମ—ଏହି ଯେ ମା, ସେତୁ !—ତୁ ବଡ଼ ଦୁଷ୍ଟ ହେଲୁଣି, ସେତୁ ! ଏତେବେଳଯାଏ କେଉଁଠି ଥିଲୁ ?

ଚଞ୍ଚଳା—କକା ! ତୁ'ନି ହୁଅ—କଥା କହିଲେ ଯେ ଦେହ ଅଧିକ ଖରାପ ହେବ ।

ଶିବରାମ—ଗୁଲ୍‌ଗଲା ମା, ଗୁଲ୍‌ଗଲା—ମୁଁ ଗାଳି ଦେଲି ବୋଲି ବାପା ମୋର ରାଗିକରି ଗୁଲ୍‌ଗଲା ।

ଚଞ୍ଚଳା—ସ୍ଥିର ହୁଅ, କକା ! ଭଲ ହୋଇ ସାରିଲେ ସେତୁକୁ ତୁମର ନିଶ୍ଚୟ ଦେଖିବାକୁ ପାଇବ ।

ଶିବରାମ—ନିଶ୍ଚୟ ଦେଖିବାକୁ ପାଇବି, ମା—ତୁ ସତ କହୁଛୁ ମା ?

ଚଞ୍ଚଳା—ହଁ, କକା ! ତୁମେ ସ୍ଥିର ହୋଇ ଶୁଅ—ଭଲ ହୋଇ ସାରିଲେ ନିଶ୍ଚୟ ଦେଖିବାକୁ ପାଇବ ।

ଶିବରାମ—କାହିଁକି,ମା ! ବାପକୁ ମୋର ଦେଖାଇଲେତ ମୁଁ ଏହିକ୍ଷଣି ଭଲ ହୋଇଯିବି ?—ଏତେ ଔଷଧ ପାଣିରେ ଦରକାର କଣ ? ସେତୁ ଟିକିଏ ହାତ ବୁଲାଇ ଦେଲେତ ମୋ'ର ଘାଆ ସବୁ କାହିଁ ଶୁଖିଯିବ—ଦେହରେ ହାତୀର ବଳ ଆସିବ ।

ଚଞ୍ଚଳା—( ଏକାନ୍ତେ ) ଏ କଥାର କି ଉତ୍ତର ଦେବି ?

( ବିମଳାର ପ୍ରବେଶ )

ଶିବରାମ—ଏହି ଯେ, ମା, ସେତୁ ଆସିଲାଣି—ଆ, ସେତୁ ଆ !

ବିମଳା—ମୁଁ ବିମଳା ଶିବକକା ।

ଶିବରାମ—ବିମଳା !—ସେତୁ ମୋ'ର କାହିଁ, ବିମଳା ?

ବିମଳା—ଶିବଜବା ! ତୁମେ ସ୍ଥିର ହୁଅ—ସେତୁଭାଇ ନିଶ୍ଚୟ ଆସିବ ।

ବିମଳା—ନିଶ୍ଚୟ ଆସିବ, ବିମଳା ?

ବିମଳା—ନିଶ୍ଚୟ ଆସିବ ।

ଚଞ୍ଚଳା—ଶିବଜବା ! ତୁମେ ଏତେ ଅଧୀର ହୁଅନା—ବିମଳା ! ତୁ ଗୋଟିଏ ଗୀତ ଗାଇଲୁ, ଶିବଜବା ଅନେକ ଦିନ ହେଲା ତୋ'ର ଗୀତ ଶୁଣିନାହିଁ ।

ବିମଳା—

—ଗୀତ—

ନିଶ୍ଚା ମନ ଅକାରଣ ଭ୍ରମୁ ଏହି ମାୟାବନ ।
ମାୟାଜାଲେ ଛନ୍ଦ ନିଶ୍ଚା ଘୁଞ୍ଚୁ ସୁଖ-ସନ୍ତରଣ ॥
କେହି ତୋର ନୁହେ ବନ୍ଧୁ
ନିଜ ବୋଲି ଯେତେ ଛନ୍ଦୁ
ଗଲା ବାଟି ନିଶ୍ଚେ ଦିନେ କରିବ ସେ ପଳାୟନ ॥
ପରବାସ ଏ' ସଂସାର
କେହି ନୁହେଁଟି କାହାର
ମିଳାମିଶି ଘୁଞ୍ଚି ରହି କରି ତୁ ଦିନ ଯାପନ ॥
ଭଜ ସଦା ଦୀନନାଥ
ସେହି ଏକା ଦୀନନାଥ ।
ରଖ ମତ୍ତ ପଦେ ତାଙ୍କ, ସୁଖେ ଯେବେ ତୋର ମନ ॥

( ସେଓଜଙ୍କର ପ୍ରବେଶ )

ସେଓଜ—( ସ୍ୱଗତ ) ପ୍ରକୃତରେ ସବୁ ମାୟା—ସୁଖ ଦୁଃଖର ପ୍ରଭେଦଜ୍ଞାନ ଆମ୍ଭମାନଙ୍କର କଳ୍ପନା ପ୍ରସୂତ ମାତ୍ର ।

ଚଞ୍ଚଳା—( ନିକଟକୁ ଆସି ) କୌଣସି ସମ୍ବାଦ ମିଳିଲାକି ?

ସେଓଜ—ନା, ଏ ପର୍ଯ୍ୟନ୍ତ କୌଣସି ସମ୍ବାଦ ମିଳିଲା ନାହିଁ । ମୋର ଦୃଢ଼ ବିଶ୍ୱାସ, ସୈତୁ ଜୀବିତ, ମାତ୍ର ଶତ୍ରୁ କର୍ତ୍ତୃକ ବନ୍ଦୀକୃତ । ଶିବଜବା କିପରି ଅଛି, ଦେବୀ ?

ଚଞ୍ଚଳା—ପୂର୍ବାପେକ୍ଷା ଖୁବ୍ ଭଲ ଅଛି—ଆଶାକରେଁ, ଶୀଘ୍ର ଭଲ ହୋଇଯିବ । ଘାଅ ସବୁ ପ୍ରାୟ ଶୁଖି ଆସିଲାଣି—କେବଳ ବିକାରଟା ଯା ଟିକିଏ ଛାଡ଼ି ନାହିଁ—ତା'ବି ଶୀଘ୍ର ଛାଡ଼ିଯିବ—ରୋଗୀ ଅଚିରେ ରୋଗମୁକ୍ତ ହୋଇଯିବ ।

ସେଓଜ—ତା' ତ ନିଶ୍ଚୟ ହେବ—ଯେଉଁ ଦେବୀଙ୍କ କରୁଣାରେ ଶୁଷ୍କତରୁ ମୁଞ୍ଜରି ଉଠେ—ମରୁଭୂମି ଅର୍ଣ୍ଣବରେ ପରିଣତ ହୁଏ—ସେହି ଦେବୀଙ୍କ ଅହୋରାତ୍ର ସେବାରେ, ପ୍ରାଣପଣ ଯତ୍ନରେ, ରୋଗୀର ଶୀଘ୍ର ରୋଗ ମୁକ୍ତହେବା ବିଚିତ୍ର କଣ ?

ଚଞ୍ଚଳା—ରୋଗୀ କି ଶୋଇଛି, ବିମଳା ?

ବିମଳା—ହଁ, ଶୋଇଛି, ସଖି !

ଚଞ୍ଚଳା—ତେବେ ଏଠାରେ ଗୋଳମାଳ କରିବା ଉଚିତ ନୁହେ । ଆସନ୍ତୁ, ସେନାପତେ ସୈତରାମଙ୍କ ଉଦ୍ଧାର ବିଷୟରେ ପରାମର୍ଶ କରିବା ।

ସେଓଜ—ସେ ବିଷୟ ଭାବିବାକୁ ଯେ ଅବସର ନାହିଁ, ଜେମାଦେଈ ! ହାସିଲମିରରୁ ଏହିକ୍ଷଣି ସମ୍ବାଦ ପାଇଲି, ସେଠାକାର ଅଧିବାସିଗଣ ବିଦ୍ରୋହୀ ହୋଇଛନ୍ତି ।

ଚଞ୍ଚଳା—ହାସିଲମିରବାସିଗଣ ବିଦ୍ରୋହୀ ହୋଇଛନ୍ତି ?

ସେଓଜ—ଏଥିରେ ଆଉ ଆଶ୍ଚର୍ଯ୍ୟର ବିଷୟ କ'ଣ ? ଏ ରାଜ୍ୟ ଉପରେ ଯେ ଦୁର୍ଜ୍ଜୟସିଂହଙ୍କର ଅସୀମ, ପ୍ରଭାବ, ତାହା କାହାକୁ ବିଦିତ ନୁହେଁ ?

ଚଞ୍ଚଳା—ଦୁର୍ଜ୍ଜୟ ତେବେ ଏ ବିଦ୍ରୋହର ଉତ୍ତେଜକାକାରୀ ?

ସେଓଜ—ଏଥିରେ ଆଉ ସନ୍ଦେହ ଅଛି ?

ଚଞ୍ଚଳା—ଆପଣ ଏତେ ଅଳ୍ପ ସୈନ ନେଇ ସେ ବିଦ୍ରୋହ ଦମନ କରିବାକୁ କି ସାହସ କରୁଛନ୍ତି ?

ସେଓଜ—ମୋ'ର ନୂତନ ଶିକ୍ଷିତ ସୈନ୍ୟମାନେ, ବର୍ତ୍ତମାନ ଖୁବ୍ ଯୁଦ୍ଧପଟୁ ହୋଇ ଉଠିଲେଣି, ଜେମାଦେଈ !

ଚଞ୍ଚଳା—ଆପଣଙ୍କ ପରି ବୀରଙ୍କ ଶିକ୍ଷାପ୍ରଭାବରେ ଏପରି ହେବା ଆଶ୍ଚର୍ଯ୍ୟ ନୁହେଁ । ଆପଣ—

ସେଓଜ—ଆଉ ବିଳମ୍ବ କରିବା ଉଚିତ ମନେ କରୁନାହିଁ । ବର୍ତ୍ତମାନ ମୁଁ ଆସୁଛି—ଶିବଜବା ଏ ବିଷୟରେ ଯେପରି କିଛି ନ ଶୁଣନ୍ତି । ବିଦାୟ ।

( ସେଓଜଙ୍କ ଅନ୍ତର୍ଦ୍ଧାନ )

ରଞ୍ଜିଲା – ଜୟୀ ହୋଇ ଫେରି ଆସନ୍ତୁ ।

[ ସେଓ୍ବଙ୍କ ପ୍ରସ୍ଥାନ ଓ ଗମନ ପଥକୁ ରଞ୍ଜିଲା ଚାହିଁ ରହିବା ]

ବିମଳା—କି, ସଖି, କ'ଣ ଦେଖୁଚ ?

ରଞ୍ଜିଲା—ଦେଖୁଚି, ବିମଳା—ମହାପୁରୁଷ—କର୍ତ୍ତବ୍ୟ-ପରାୟଣତାର ଯେମନ୍ତ ଜୀବନ୍ତମୂର୍ତ୍ତି !

ବିମଳା—'ନାସ୍ତିହୃଦୟର ଯେମନ୍ତ ସର୍ବସ୍ୱ' ଏ ଟିକତ ବାକି ରଖିଲ କାହିଁକି ?

ଶିବରାମ—ନା, ସୈନ୍ତୁ ! ଆଉ ମୁଁ ତୋତେ ଛାଡ଼ିଦେବି ନାହିଁ—ତୁ ବଡ଼ ଦୁଷ୍ଟ ହେଲୁଣି !

ରଞ୍ଜିଲା—ବିମଳା ! ପାଖକୁ ଚାଲ ।

[ ରଞ୍ଜିଲା ଓ ବିମଳା ନିକଟକୁ ଯାଇ ସେବା-କାର୍ଯ୍ୟରେ ନିରତା ହେବା ]

---

## ଦ୍ୱିତୀୟ ଦୃଶ୍ୟ

—ପଥ—

[ ସୈନ୍ୟଗଣଙ୍କ ପ୍ରବେଶ ]

୧ମ ସୈନ୍ୟ—ତୁମ୍ଭେମାନେତ ପ୍ରତିଜ୍ଞା କଲ, ସେନାପତି ଯାହା କହିବେ, ତୁମ୍ଭେମାନେ ତାହା କରିବ—ତା'ପର କ'ଣ ହେଲ ?

୨ୟ ସୈନ୍ୟ—ତା'ପର ଆଉ କ'ଣ ହବ—କାନ୍ଦ-ବୋବାଳି !

୧ମ ସୈନ୍ୟ—କାନ୍ଦ ବୋବାଳି ! କାହିଁକି ମ ?

୨ୟ ସୈନ୍ୟ—ଅରେ ତେତେବେଳେ ଥିଲେ ସିନା ଜାଣିଥାନ୍ତୁ ? ଆମେ ମନେ କଲୁଁ, କାଲି ନାହିଁ ଏପରି ଗୋଟାଏ ଯୁଦ୍ଧ ଫୁଦ୍ଧ ହେବ, ଯହିଁରେ କି ଆମକୁ ଇହୁର ଇହଧାମ ବିସର୍ଜନ ଦେବାକୁ ହେବ !

୧ମ ସୈନ୍ୟ—କାହିଁକି ? ତା' ପରି କଣ ହେଲ କି ?

୨ୟ ସୈନ୍ୟ —ତା'ପରତ ଦେଖୁଛୁ, କେମିତିଆ ଯୁଦ୍ଧ—ଭୋଜନ ସଙ୍ଗେ ଯୁଦ୍ଧ—ନିଦ୍ରା ସଙ୍ଗେ ଯୁଦ୍ଧ—

୩ୟ ସୈନ୍ୟ—କହନା, କହନା, ସେ ଯୁଦ୍ଧ କଥା, ଭାଇ—ଯୁଦ୍ଧ କରି କରି ମଣିଷର ପ୍ରାଣ ବାହାରି ଗଲାଣି ।

୪ର୍ଥ ସୈନ୍ୟ—ଆଉ କ'ଣ ଭାଇ ? ଆମ୍ଭେମାନେ ସେମିତିକିଆ ଯୋଦ୍ଧା ବୋଲି ସିନା ଗାଲି ଖଡ଼ରେବି ଚାଲିଛୁ, ବୁଲୁଛୁ !

୧ମ ସୈନ୍ୟ—ଅଚ୍ଛା, ଭାଇ ସେନାପତି ଯେବେ ହୁଅନ୍ତି, ନରପତି ?

୨ୟ ସୈନ୍ୟ—ମୁଁ ତେବେ ହୁଅନ୍ତି ମନ୍ତ୍ରୀପତି ।

୩ୟ ସୈନ୍ୟ—ମୁଁ କିନ୍ତୁ ହୁଅନ୍ତି ଭାଙ୍ଗପତି ।

୪ର୍ଥ ସୈନ୍ୟ—ମୁଁ ତ ବାଟି ବୁଟି ଦଅନ୍ତି ମୁହଁକତି ।

[ ପଞ୍ଚମ ସୈନ୍ୟର ଭାଙ୍ଗ-ଗୋଲା ହସ୍ତେ ପ୍ରବେଶ ]

୫ମ ସୈନ୍ୟ—ଅମେ କଣ ଛାଡ଼ି ଦଅନ୍ତି ? ( କାନୁଦାଂଶ ଖାଇଦେବା )

ସମସ୍ତେ—ଅରେ, ଏକା ମାରିଦେଲାରେ—ଏକା ମାରିଦେଲାରେ !

୫ମ ସୈନ୍ୟ—ଅରେ ନାଅ ହୋ ନାଅ—ଏମିତି ଅକାଳଅଙ୍କ ଭଳି କାହିଁକି ହେଉଛ ?

[ ସମସ୍ତଙ୍କୁ ବାଣ୍ଟିଦେବା ଓ ସମସ୍ତଙ୍କର ଭକ୍ଷଣ ]

୧ମ ସୈନ୍ୟ—ବଢ଼ ଜବର ଭାଙ୍ଗ ଏକା କରିଛୁ, ଭାଇ !

୫ମ ସୈନ୍ୟ—ହଁ, କେମିତକିଆ ଭାଙ୍ଗ ? ସାତେ ସାତ ନିଶା !

ସମସ୍ତେ—ଅଁ' ତୋରେ କି ଅମେ ସାତେ ସାତ ରାଜା କରିଦେବା !

ସୈନ୍ୟଗଣଙ୍କ— ଗୀତ

ଅହା କି ମଜା ଏ' ଭାଙ୍ଗ ନିଶା ।
ଦିନ ଦୁଇପହରକୁ କରେ ଘୋର ନିଶା ॥
ଏ' ଭାବ ମିଠାନିଶା ମିଠାଗୁଣ୍ଡ ହେଲେ ମିଶା
ମିଠା ହସେ ହସୁଥିବ ସାରା ଦିବା ନିଶା ॥
ଯେତେ ଦୁଃଖ ଚିନ୍ତା ଥିବ, କେଉଁଆଡ଼େ ଉଡ଼ିଯିବ,
କି ଯେ ଭାବେ ମଜିଥିବ, ନାହିଁ ତାର ଦିଶା ॥
କୁମ୍ଭକାର ଚକପରି ଘୂରେ ମୁଣ୍ଡ ସୌଁ ସୌଁ କରି
ଗଢ଼େ କେତେ ନୂଆ ଛବି, କେତେ ରଙ୍ଗ ମିଶା ॥

[ ଦୁର୍ଜ୍ଜୟ ଓ ଦୂତର ପ୍ରବେଶ ]

ଦୁର୍ଜ୍ଜୟ—ସୈନ୍ୟଗଣ ! ଆଜ ସୁଯୋଗ ଉପସ୍ଥିତ !

୧ମ ସୈନ୍ୟ—ବାଃ ବାଃ ! ବେଶ୍ ଗାଇ ଜାଣେତ !

୨ୟ ସୈନ୍ୟ—ନାଚ ତ ଟିକିଏ, ରଙ୍ଗିଣୀ !

୩ୟ ସୈନ୍ୟ—ସା—ରି—ଗା—ମା—( ବଜାଇବା )

୪ର୍ଥ ସୈନ୍ୟ—ଆ—ଆ—ଆ—( ଗାଇବା )

୫ମ ସୈନ୍ୟ—ଧିନା ତା ଧିନା ତା ଧିନା ( ନାଚିବା )

ଦୁର୍ଜ୍ଜୟ—ଏମାନେ ତ ମାତାଲ୍ ଦେଖୁଛି—ବର୍ତ୍ତମାନ ଏମାନଙ୍କ ସଙ୍ଗେ ବାକ୍ୟାଳାପ କରିବା ଉନ୍ମତ୍ତତା ମାତ୍ର ! ଦୂତ ! ଏମାନଙ୍କୁ ରାସ୍ତାରୁ ତଡ଼ିଦିଅ ।

ଦୂତ—ଗୁଲ୍ (ଧକ୍କା ମାରିବା )

୧ମ ସୈନ୍ୟ—ତାଳ ପଡୁଛି—ତାଳ ପଡୁଛି ।

୨ୟ ସୈନ୍ୟ—ମିଠା ତାଳ—ମିଠା ତାଳ ।

ସମସ୍ତେ—ଗୋଟେଇ ନିଅ—ଗୋଟେଇ ନିଅ ।

ଦୂତ—ଚଲ୍—ଚଲ୍ ( ଧକ୍କାମାରି ନେଇଯିବା )

ଦୁର୍ଜ୍ଜୟ—ଗୋଟିଏ କଣ୍ଟକ ତ ନିଶ୍ଚୟ କର୍ତ୍ତୃକ ଅପସାରିତ ହୋଇଛି—ଆଉ ଗୋଟିଏ କଣ୍ଟକ ଦୂର କରିବାର ଅଭିସନ୍ଧି ମଧ୍ୟ ଏକପ୍ରକାର କାର୍ଯ୍ୟରେ ପରିଣତ ହୋଇଛି । ଝାପିଲ୍ମୀରର ପ୍ରଜାମାନେ ଠିକ୍ ସମୟରେ ବିଦ୍ରୋହ କରିଛନ୍ତି—ମୋର ଏଠାକାର ସମସ୍ତ ଆୟୋଜନ ମଧ୍ୟ ସମ୍ପୂର୍ଣ୍ଣ ହୋଇଛି । ମୋର ମହାଭୟ ଥିଲା, ସେଓଜ ଯେବେ ନିଜେ ବିଦ୍ରୋହ ଦମନ କରିବାକୁ ନ ଯାଏ;—ମାତ୍ର ସୌଭାଗ୍ୟକୁ ତାହା ଘଟିଛି । ଆଜ ରାତିରେ କୁଟମଣ୍ଡଳରେ ପ୍ରବେଶ କରିବି—ରାଜପ୍ରାସାଦ ଆକ୍ରମଣ କରିବି—ଶୋଲ୍ୟଙ୍କିକୁ ବନ୍ଦୀ କରି, ଗର୍ବିଣୀର ଗର୍ବ ଚୂର୍ଣ୍ଣ କରିବି ।

( ବେଗେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ଉଦ୍ୟାନ—

[ ସୈତରାମ ଗୋଟିଏ ମଣ୍ଡପ ଉପରେ ଆସୀନ ]

ସୈତରାମ—ମୁଁ କେଉଁ ରାଜ୍ୟରେ ? ଏ ରାଜ୍ୟରେ ବନ୍ଦୀ ମଧ୍ୟ ରାଜସୁଖ ଭୋଗକରେ । ମୁଁ ଯେ ସହୋଦରଙ୍କୁ ଛାଡ଼ି ଆସିଛି—ପିତୃତୁଲ୍ୟ ଶିବଜୀକୁ ଦେଖିବାକୁ ପାଉନାହିଁ—ସେଥିରେ ତ ମୋର ମୁହୂର୍ତ୍ତକ ସକାଶେ ସୁଦ୍ଧା କିଛି କଷ୍ଟ ହେଉନାହିଁ । ଧନ୍ୟ ଏ ସ୍ଥାନ—ଧନ୍ୟ ଏହାର ମହିମା ! ( ନେପଥ୍ୟକୁ ଅନାଇ ) ଏହି ମୋର ପ୍ରହରୀମାନେ ଆସୁଛନ୍ତି—ଏଠାରେ ପୁଣି ସ୍ତ୍ରୀମାନେ ପ୍ରହରୀ—ସେମାନେ ବନ୍ଦୀକୁ ଶାନ୍ତି ଦିଅନ୍ତି, ଗୀତ ଶୁଣାଇ—ନାଚ ଦେଖାଇ ।

[ ମୀରାର ଗୀତ ଗାଇ ଗାଇ ପ୍ରବେଶ ]

ଗୀତ

କିବା ରୂପରେ, କିବା ଛଟାରେ,
ଆସି ଏ' ଆଖି ପଥେ ଦେଲ ହେ ଦେଖା ॥
ତୁମ୍ଭ ଚନ୍ଦ୍ରାଛଡ଼ା ଆନ, ନାହିଁ ଆସେ ମୋର ଧ୍ୟାନ
କି ଭାବେ ରହିଲ ପ୍ରାଣେ ଲେଖା ॥
ପିଉଥିଲ ଆନନ୍ଦରେ ଫୁଲମଧୁ ସୁମଧୁର,
ସୁମଧୁର ସମୀରଣେ ଲଭୁଥିଲ ସୁଖ ଦୂର ।
ଜଗାଇଲ କିବା ଭାବ—ତୁମ୍ଭେ ଚିର ଅଭାବ
ଯିବକି ସତେ ଏ ଦୁଃଖ ରେଖା ॥

ମୀରା—କି ବନ୍ଦ ? ଆଜ କିପରି ଅଛ ?
ସୈତରାମ—ସୁନ୍ଦର ।
ମୀରା—କି—ପ୍ରହରୀକୁ ଅପମାନ ?
ସୈତରାମ—ଦୁହାଇ, ଅସୁନ୍ଦର—ଦୁହାଇ
ମୀରା—କି—ମୁଁ ଅସୁନ୍ଦରୀ ?
ସୈତରାମ—( ନୀରବ )
ମିରା—କି—ତୁନିହେଲ ଯେ ?
ସୈତରାମ—ମୋତେ ଯେ ମହିଁ ନଈରେ ଅଣି ପକାଇଲ ପ୍ରହରୀ ।

ମୀରା—ଏହିତ ୮ କ୍ ଡାକ ହୋଇଛି—ଅସ୍ତ୍ର, ବର୍ତ୍ତମାନ
ବୁଝ କିପରି ଅଛ ?

ସେତରାମ—କିପରି ଅଛି ? ପ୍ରହରୀ ! ମୁଁ ନିଜେ ଆଗେ
ଅଛି କି ନାହିଁ, ବୁଝିପାରୁନାହିଁ ।

ମୀରା—ତେବେ କ'ଣ ବୁଝାଇ ଦେବ, ବନ୍ଦୀ !

ସୈତରାମ—ଯା' ଇଚ୍ଛା ତୁମ୍ଭର କର, ପ୍ରହରୀ—ବନ୍ଦୀକୁ
ପ୍ରଶ୍ନ କରିବାର ପ୍ରୟୋଜନ କଣ ?

ମୀରା—ପ୍ରହରୀମାନେ ! ଲଗାଅତ ଅସ୍ତ୍ର କର ଗୋଟା-
କେତେ ବନ୍ଦୀକୁ ?

[ ସଖୀମାନଙ୍କ ଫୁଲଧନୁ ଓ ଶର ହସ୍ତେ ପ୍ରବେଶ
ଓ ଗାଉ ଗାଉ ନାଚୁ ନାଚୁ ବନ୍ଦୀକୁ ଶର ନିକ୍ଷେପ
କରିବା ]

ସଖୀମାନେ— ଗୀତ

ଆମେ ଫୁଲଧନୁ-ଧର—
(ଅମର) ଫୁଲ-ଧନୁ ଫୁଲ-ଶର ।
ଫୁଲେ ସାଜ, ଫୁଲେ ମଜ, ଫୁଲେ ଦଣ୍ଡ ମନୋହର ॥
ଏ ଫୁଲଶରାସନେ ସାଯୁକ ସନ୍ଧାନେ
ନାହିଁ କଣେ ଏ ଭୁବନେ
ନାହିଁ ଯା'ର ତିଳେ ଡର ॥
ଏ ଫୁଲଶର ଘାତେ ପ୍ରମାଣ ହାତେ ହାତେ
ହୀନତେଜ ହୁଏ ବୀର
ଯତିମନ ହର ବର ॥

( ସଖୀମାନଙ୍କ ପ୍ରସ୍ଥାନ )

( ସୈତରାମ ଗୀତ ଶୁଣୁ ଶୁଣୁ ତନ୍ଦ୍ରାବସ୍ଥ ହେବା )

ମୀରା—( ନିକଟରେ ବସି ) କି, ଏଥର ବୁଝି ପାରୁଛ ?

ସୈତରାମ—ହଁ, ପାରୁଛି ।

ମୀରା—କିପରି ଅଛ ?

ସୈତରାମ—ଭଲଅଛି—ମାତ୍ର—

ମୀରା—ମାତ୍ର କଣ ?

ସେତରାମ—କେଉଁଠି ଅଛି ବୁଝିପାରୁ ନାହିଁ ।

ମୀରା—କାହିଁକି ପାରୁନାହିଁ ?

ସେତରାମ—ମର୍ତ୍ତ୍ୟବାସୀ ହୋଇ କିପରି ବୁଝିବ ?

ମୀରା—କାହିଁକି ? ମର୍ତ୍ତ୍ୟବାସୀ ହୋଇ ମର୍ତ୍ତ୍ୟର ବିଷୟ
ବୁଝି ପାରୁ ନାହଁ ?

ସୈତରାମ—ଏ କଣ ମର୍ତ୍ତ୍ୟପୁରୀ ?

ମୀରା—ତେବେ କ'ଣ ସ୍ୱର୍ଗ ?

ସୈତରାମ—ସ୍ୱର୍ଗ କଣ ଦେଖିଛି ?

ମୀରା—ତେବେ ଏ କେଉଁ ସ୍ଥାନ ?

ସୈତରାମ—ଜାଣେ ନାହିଁ ।

ମୀରା—କିପରି ଦେଖୁଛ ?

ସୈତରାମ—ଚତୁର୍ଦ୍ଦିଗ ଯେପରି ଏକ ମଧୁର ଆଲୋକରେ
ଆଲୋକିତ—ଏକ ମନୋହର ଝଙ୍କାରରେ
ଝଙ୍କୃତ—ଏକ ଅପୂର୍ବ ଆମୋଦରେ ଆମୋଦିତ !
—ଆକାଶ ନିର୍ମଳ—ପବନ ସୁଖଗନ୍ଧମୟ—
ଅବନୀ ଶ୍ୟାମଳ ବସନା—ଶ୍ୟାମଳ ଭୂଷଣା !

ମୀରା—ସେଠାରେ କି ଜନ ପ୍ରାଣୀ କେହି ନାହାନ୍ତି ?

ସୈତରାମ—ଅଛନ୍ତି ।

ମୀରା—କିପରି ସେମାନେ ?

ସୈତରାମ—ସମସ୍ତେ ଉଲ୍ଲଙ୍ଗ—ଫଳପୁଷ୍ପ ବିଭୂଷିତ,
ପୁଣି କଥା କହୁଛନ୍ତି, ଯେପରି ବୀଣା ବାଜୁଛି—
ଚାଲୁଛନ୍ତି, ଯେପରି ତାଳେ ତାଳେ ନୃତ୍ୟ
କରୁଛନ୍ତି ।

ମୀରା—ତୁମେ କଣ ସେଠାରେ ରହିବାକୁ ଇଚ୍ଛାକର ?

ସୈତରାମ—ଖୁବ୍ ଇଚ୍ଛା କରେଁ ।

ମୀରା—ସେଠାରେ କ'ଣ ଯୁଦ୍ଧ ଅଛି ?

ସେତରାମ—ହାଃ ହାଃ ହାଃ ।

ମୀରା—ହସିଲ କାହିଁକି ?

ସୈତରାମ—ଯେଉଁଠି, ମୁଁ ଅପରିଚିତ, ବିଦେଶୀ, ଏତେ
ମୋତେ ସମାଦର—ସେଠି, ଯୁଦ୍ଧ ଏ ଶବ୍ଦ ଆଗେ
ରହିବ କିପରି ?

ମୀରା—ତୁମେ ତା'ହେଲେ ସେଠି ରହିବ କିପରି ?

ସୈତରାମ—କାହିଁକି ?

ମୀରା—ତୁମେ ଯେ ବୀର ପୁରୁଷ—ବିନା ଯୁଦ୍ଧରେ ତୁମକୁ
ଭଲ ଲାଗେ ନାହିଁ ।

ସୈତରାମ—ମୁଁ ଆଉ ଯୁଦ୍ଧ ଚାହେଁ ନାହିଁ ।

ମୀରା—ତେବେ ତୁମ୍ଭେ ଚାହଁ କଣ ?

ସୈତରାମ—ମୁଁ ଚାହେଁ, ପ୍ରୀତି, ଶାନ୍ତି !

ମୀରା— ତାହା କଣ ସେ'ଠି ମିଳେ ?

ସୈତରାମ—ଖୁବ୍ ମିଳେ—ଯେଉଁଆଡ଼େ ଆଖି ଫେରାଉଛ, ସେଇଆଡ଼େ ଦେଖୁଛ—କେବଳ ପ୍ରୀତି—ଶାନ୍ତି ।

( ନେପଥ୍ୟେ ) ମୀରା !

ମୀରା—( ଉଠିଆସି ) ବାବା ! ( ଲଖାର ପ୍ରବେଶ )

ଲଖା—କଏଦ ତୋର କେସନ୍ ଅଛିରେ ବେଟୀ ?

ମୀରା—ଖୁବ୍ ଭଲ ଅଛି, ବାବା—ଏହ ଶୋଇଛି ।

ଲଖା—ଦେଖ୍ ବେଟି—ତାକେ ଏସନ୍ କର୍‌କେ ଶୋନେ ମତ୍ ଦେ ! ସେ ଲଢ଼ାଇ କରେ—ତାକେ ଠିକ୍‌ଏ ଠିକ୍‌ଏ ହାମାର୍ ଆଖଡ଼ାକୁ ଘଚ୍ଚଡ଼ଦେଉ ଥିବୁ—ଯେ ଲଢ଼ାଇ ନା କର୍‌ଲେ ତାର୍ ଶରୀର ଭଲ୍ ରହବା ନାଇ ।

ମୀରା—ଲଢ଼ାଇ କଲେ କଣ ଭଲ ରହିବ, ବାବା ?

ଲଖା—ରହବା ନାଇ ? ହାତ୍ ଗୋଡ଼୍ ଖେଲ୍‌ବା—ଯା ଖାବା ତାକେ ହଜମ୍ କର୍‌ବାକେ ଭଲ୍ ହବା—ଅର ଭଲ ରହବା ନାଇ ?

ମୀରା—ନିଷ୍ଟଯ୍, ନିଷ୍ଟଯ୍ ହାତ କଟିଯିବ—ଗୋଡ଼ କଟିଯିବ—ଆଖି ଫୁଟିଯିବ—ସମୟରେ ପ୍ରାଣବ ବାହାରିଯିବ—ଭଲ ରହିବ ନାହିଁ କଣ ?

ଲଖା—ତୋ ସାଥେ ବାତ୍ କର୍‌ବା ବଡ଼ା ମୁସ୍କିଲ୍—ତୋର ଯା ଇଛା ତୁ କର୍ ।

ମୀରା—ଅଚ୍ଛା ବ ବା ! ଫେର କଣ ଯୁଦ୍ଧ କରିବାକୁ ଯିବ ?

ଲଖା –ଅଭି ଆର୍ ନେଇରେ, ମା—ଓ ଲଡ଼୍‌କା ଭଲ ହୋଉଲା ପର୍—ତାକେ ଯବ୍ ହାମାର ହୋକେ ଲଢ଼ାଇ କର୍‌ତେ ରାଜ କରନେ ପାର୍‌ବା, ତବ୍ ଲଢ଼ାଇ କର୍‌ବା ।

ମୀରା—କାହିଁକି ବାବା—ଏହି ଲଡ଼୍‌କାକୁ ନ ନେଲେ କ'ଣ ପାରିବ ନାହିଁ ?

ଲଖା—ବଡ଼ା ମୁସ୍କିଲ୍‌ରେ, ଲଡ଼୍‌କି—ବଡ଼ା ମୁସ୍କିଲ୍—ଜନ୍‌କା ବଡ଼ାଭାଇ ଭାର ଭାର ଯବର୍ ଆଦ୍‌ମି । ଇନ୍‌କୁ ନେଲେ ହାମାର କୁଛ୍‌ଦମ୍ ଆସ୍‌ବା ।

ମୀରା—ନା, ବାବା ! ଯୁଦ୍ଧରେ ଆଉ କାମ ନାହିଁ ।

ଲଖା—ହାମାର ତ ଆର ଇରାଦା ନାଇ—ହାମ୍ ଶୁନ୍‌ଲା—ଓ ଉତ୍କଳଏଉ୍ ଜିନ୍‌କାଲାଗି ଏତ୍‌ନା ଲଢ଼ାଇ, ସୋ ଚଲ୍ ଗିଆଚ—ଅବ୍ କାହେ ଲଢ଼ାଇ କରବା ?

ମୀରା—( ସ୍ୱଗତ ) ଈଶ୍ୱର ଜାଣନ୍ତି ।

ଲଖା—ବନ୍ଦୀକୁ ଖୁବ୍ ହୁସିଆର୍ ସେ ରଖ୍, ବେଟି—ହାମ୍ ଆସ୍‌ଛେ । ( ପ୍ରସ୍ଥାନ )

ମୀରା—ବାବା ! ଯେଉଁ ଅମୂଲ୍ୟ ରତ୍ନଟି ଆଣି ଦେଇଛ—ତାକୁ କି କେବେ ମୁଁ ଅଯତ୍ନ କରିପାରେ ?

[ ମିରା ସୈତରାମ ଆଡ଼େ ଗୁହିଁ ରହିବା ଓ ତାରାର ଗୀତ ଗାଇ ଗାଇ ପ୍ରବେଶ ]

ତାରା— —ଗୀତ—

ମଦାଳସି ! ( ସେତ ) ପଡ଼ଲଣି ଫାନ୍ଦେ ଅପେ ଅସି ।
ବନେ ବନେ ପକ୍ଷି, ଲତା କୋଳେ ବସି,
ଫୁଲେ ଫୁଲେ ମିଶି ଡକୁଛି ।
ପ୍ରେମ ପାରିଜାତ ରେଣୁ ବୋଳି ଅଙ୍ଗେ
ମତ୍ତଆରି ହୋଇ ଦେଖ ଖେଳେ ରଙ୍ଗେ
( ସତେ ) ଚୁମ୍ବକ ରଖିଛି ଆକର୍ଷି !
ମିଛେ ଭ୍ରାନ୍ତ ବସି, ଅରବିନ୍ଦେ ପଶି
ମକରନ୍ଦେ ଶୋଷି ଶ୍ୱାଲସି;
ଦଳ ପରକାଶି, ଅଳ ଦଳ ତୁଷି
ପଳାଇ କି ପାରେ ଲହସି;
ଚନ୍ଦ୍ରମା ବଦନେ ହସି ଉଠୁ ପ୍ରେମେ ହୁଲସି ।
ଖେଳୁ ବନ୍ଧୁ ବେଣୀସମ ଛଟକରେ ବାକସି ।

[ ତାରାର ଗୀତ ଗାଇ ଗାଇ ମୀରାସହ ପ୍ରସ୍ଥାନ ]

---

## ଚତୁର୍ଥ ଦୃଶ୍ୟ

—ଅନ୍ତଃପୁର—

[ ନେପଥ୍ୟେ ତୋପର ଧ୍ୱନି ଓ ବେଗରେ ଶୋଲଙ୍କି ଓ ଚଞ୍ଚଳାର ପ୍ରବେଶ ]

ଶୋଲଙ୍କି—ମୋତେ ଧର ଚଞ୍ଚଳା ?

ଚଞ୍ଚଳା—ପିତା ! ଏତେବେଳେ କି ଭୟ କରିବାର ସମୟ ? [ ପୁନର୍ବାର ତୋପର ଧ୍ୱନି ]

ଶୋଲଙ୍କି—ଏଥର ଠିକ୍ ମୋ ମୁଣ୍ଡରେ ପଡ଼ୁଛି, ଚଞ୍ଚଳା ।

ଚଞ୍ଚଳା—ପିତା ! ସ୍ଥିର ହୁଅନ୍ତୁ ।

ଶୋଲଙ୍କି—ଏକଦମ୍ ସ୍ଥିର ହେବି, ଚଞ୍ଚଳା !

ଚଞ୍ଚଳା—ପିତା ! ଆପଣ ଏଇଠାରେ ଟିକିଏ ବିଶ୍ରାମ କରନ୍ତୁ—ମୁଁ ବାହାରେ ଦେଖି ଆସେ—ଯୁଦ୍ଧ କିପରି ଚାଲିଛି ।

ଶୋଲଙ୍କି—ବାହାରକୁ ଯିବା ପୂର୍ବରୁ—ଭିତରେ ଥାଇ ଦେଖିସାରି ମରଣର ସହିତ ମୋ'ର କିପରି ଯୁଦ୍ଧ ଚାଲିଛି ।

ଚଞ୍ଚଳା—ପିତା ! ବୀର ଆପଣ—ବୀରର ଆଚରଣ କରନ୍ତୁ ।

ଶୋଲଙ୍କି—ମୁଁ ଖୁବ୍ ଯୁଦ୍ଧ କରୁଛି, ଚଞ୍ଚଳା ! ପ୍ରାଣପଣେ ଯୁଦ୍ଧ କରୁଛି । (ପୁନର୍ବାର ତୋପର ଧ୍ୱନି) ଆଉ ଶକ୍ତି ନାହିଁ, ଚଞ୍ଚଳା—ଏଥର ଶେଷ ! ଏଥର ଶେଷ ! (ବସିପଡ଼ିବା)

ଚଞ୍ଚଳା—(ସ୍ୱଗତ) ମୁଁ ଏବେ କରୁଛି କଣ ? ପିତାଙ୍କୁ ଛାଡ଼ି, ଯାଉଛି କିପରି ?

(ନେପଥ୍ୟ କୋଳାହଳ ଓ ଘନ ଘନ ତୋପର ଧ୍ୱନି)

ଶୋଲଙ୍କି—ଚଞ୍ଚଳା—ଚଞ୍ଚ—(ମୂର୍ଚ୍ଛାଯିବା ।)

ଚଞ୍ଚଳା—ଏତେ ନିକଟରେ କୋଳାହଳ କାହିଁକି ? ଶତ୍ରୁମାନେ କି ପଶିଲେ ?

[ ବେଗେ ରକ୍ତାକ୍ତ କଳେବରରେ ବିମଳାର ପ୍ରବେଶ ]

ବିମଳା—ଆଉ ରକ୍ଷା ନାହିଁ, ସଖି—ଆଉ ରକ୍ଷା ନାହିଁ—ଶତ୍ରୁ ଦୁର୍ଗମଧ୍ୟରେ ପ୍ରବେଶ କରିଛି—ଆମ୍ଭର ପ୍ରାୟ ସମସ୍ତ ସୈନ୍ୟ ନିହତ—କେବଳ ଶିବଭକ୍ତ ଶେଷ ଭରସା ମାତ୍ର ।

ଚଞ୍ଚଳା—ତେବେ ତୁ ଏଠି ରହ, ବିମଳା—ଦେ ତୋ'ର ତରବାରି—ମୁଁ ଯଦି ଶିବ ଭକ୍ତଙ୍କୁ କିଛି ସାହାଯ୍ୟ କରିପାରେ ।

ବିମଳା—ବୃଥା ଚେଷ୍ଟା, ସଖି—ବୃଥା ଚେଷ୍ଟା ।

ଚଞ୍ଚଳା—ପ୍ରାଣାନ୍ତେ ଚେଷ୍ଟା ବୃଥା ହୋଇପାରେ ନାହିଁ, ବିମଳା !

[ ଚଞ୍ଚଳା ପ୍ରସ୍ଥାନୋଦ୍ୟତା ହେବା ସମୟରେ ଘନ ଘନ ତୋପଧ୍ୱନି ଓ ବେଗେ ଶିବରାମର ପ୍ରବେଶ ]

ଶିବରାମ—ପଳାନ୍ତୁ, ରାଜମାତେଶ୍ୱରି, ଶୀଘ୍ର ପଳାନ୍ତୁ—ରାଜା କାହାନ୍ତି ?

ଚଞ୍ଚଳା—ଏଇଠାରେ (ଦେଖାଇଦେବା)

ଶିବରାମ—ଶୀଘ୍ର ଏଠୁଁ ଘେନି ପଳାନ୍ତୁ—ଶତ୍ରୁ ପ୍ରବେଶର ଆଉ ମାତ୍ର ବିଳମ୍ବ ନାହିଁ !

ଚଞ୍ଚଳା—ତୁମେ ଯିବ ନାହିଁ ?

ଶିବରାମ—ସେକଥା ପରେ—ଆପଣ ଆଗେ ରାଜାଙ୍କୁ ଘେନି ପଳାନ୍ତୁ—ଯାଅ; ବିମଳା—ଶୀଘ୍ର ଘେନି ଯାଅ । ସୁଡଙ୍ଗ ଦ୍ୱାର ଖୋଲି ଦେଉଛି ।

(ଖୋଲିଦେବା)

ବିମଳା—ଆସ ସଖି, ଜଲଦି ପଳାଇ ଆସ—ଏଠି ରହିବା ରାଜାଙ୍କ ପକ୍ଷେ ଆଦୌ ନିରାପଦ ନୁହେଁ !

[ ସୁଡଙ୍ଗପଥେ ଚଞ୍ଚଳା ବିମଳାର ଶୋଲଙ୍କିଙ୍କୁ ଘେନି ପ୍ରସ୍ଥାନ ଓ ନେପଥ୍ୟ ପୁନର୍ବାର କୋଳାହଳ ]

ଶିବରାମ—ଆଜି ଯୁଦ୍ଧ—ଏକଆଡ଼େ ଶକ୍ତିହୀନ କଙ୍କାଳସାର ରାଜଭକ୍ତ ପ୍ରଜା—ଅନ୍ୟଆଡ଼େ ବଳବୀର୍ଯ୍ୟସମନ୍ୱିତ ରାଜଦ୍ରୋହୀ ସେନାପତି—ଏକଆଡ଼େ କ୍ଷୀଣ ଧର୍ମ ମାତ୍ର ସହାୟ—ଅନ୍ୟଆଡ଼େ ବିଶାଳ ପାଶବିକ ଶକ୍ତି ସହାୟ । ଫଳାଫଳର ବିଚାର କର୍ତ୍ତା ଓ ସାକ୍ଷୀ ଭଗବାନ ! (ନମସ୍କାରକରିବା)

[ ଦୁର୍ଜ୍ଜୟ ଓ ଭଡ଼ସୈନ୍ୟଗଣଙ୍କ ବେଗେ ପ୍ରବେଶ ଓ ଶିବରାମର ସୁଡଙ୍ଗ ପଥ ରୋଧ । ]

ଦୁର୍ଜ୍ଜୟ—କାହିଁ ରାଜା ? ଶୀଘ୍ର ବନ୍ଦୀକର, ସୈନ୍ୟଗଣ ?

ଶିବରାମ—ଅସମ୍ଭବ, ଚୋର ! ଏ, ବୃଦ୍ଧର ପ୍ରାଣ ଥାଉଁ ଥାଉଁ ତାହା ଅସମ୍ଭବ ।

ଦୁର୍ଜ୍ଜୟ—ଏତେ ସ୍ପର୍ଦ୍ଧା !

ଶିବରାମ—ଶିବରାମ ସେ ସ୍ପର୍ଦ୍ଧା ରଖେ ଦୁର୍ଜ୍ଜୟ ।

ଦୁର୍ଜ୍ଜୟ—ବାତୁଳ !

ଶିବରାମ—ବାତୁଳ ଶିବରାମ ନୁହେଁ—ବାତୁଳ ଦୁର୍ଜ୍ଜୟ-ସିଂହ ।

ଦୁର୍ଜ୍ଜୟ—ବାତୁଳ ମୁଖରେ ସାଜେ ଏକା ।

ଶିବରାମ—ବାତୁଳ ମନେ କରିପାରେ ସତ୍ୟ ।

ଦୁର୍ଜ୍ଜୟ—ବୃଦ୍ଧ!

ଶିବରାମ—ଯୁବକ ।

ଦୁର୍ଜ୍ଜୟ—ପାର୍ଥକ୍ୟ ବୁଝିପାରୁଛତ ?

ଶିବରାମ—ଖୁବ୍ ପାରୁଛି, ଦୁର୍ଜ୍ଜୟ ।—ତୁମ୍ଭେ ପାଶବିକ ଶକ୍ତିର ଗର୍ବ କର—ଏ, ବୃଦ୍ଧ ଆଧ୍ୟାତ୍ମିକ ଶକ୍ତିର ଗର୍ବ କରେ—ତୁମ୍ଭେ ନାରକୀୟ ଉତ୍ତେଜନାରେ ଉତ୍‌କ୍ଷିପ୍ତ—ଏ' ବୃଦ୍ଧ ସ୍ୱର୍ଗୀୟ ସାନ୍ତ୍ୱନାରେ ପ୍ରଶମିତ—ତୁମ୍ଭେ ଶାନ୍ତିରେ ଅଶାନ୍ତ—ଏ'ବୃଦ୍ଧ ଅଶାନ୍ତିରେ ମଧ୍ୟ ଶାନ୍ତ—ତୁମ୍ଭେ ରକ୍ଷକର ଭକ୍ଷକ—ଏ'ବୃଦ୍ଧ ଭକ୍ଷକର ମଧ୍ୟ ରକ୍ଷକ ।

ଦୁର୍ଜ୍ଜୟ—ଏତେଦୂର ସାହସ ।

ଶିବରାମ—ପରୀକ୍ଷା କରି ନେଇପାର ।

ଦୁର୍ଜ୍ଜୟ—ବେଶ୍ , ଅସି ନିଷ୍କୋଷିତ କର ।

ଶିବରାମ—ଜୟ ଧର୍ମର ଜୟ ।
[ ଶିବରାମ ଓ ଦୁର୍ଜ୍ଜୟର ଯୁଦ୍ଧ କିନ୍ତୁ ଅନ୍ୟାୟ ଭାବେ ଦୁର୍ଜ୍ଜୟର ସୈନ୍ୟମାନେ ଆକ୍ରମଣ କରିବାରୁ ଶିବରାମ ପଡ଼ିଯିବା ]

ଶିବରାମ—ଏହିକି ତୋର ରଣନୀତି, ଦୁର୍ଜ୍ଜୟ ?

ଦୁର୍ଜ୍ଜୟ—ଯୁଦ୍ଧରେ ପୁଣି ନୀତି କଣ ?—ବନ୍ଦୀକର, ସୈନ୍ୟଗଣ । ମୁଁ ଦେଖେ, ରାଜା କେଉଁଆଡ଼େ ଗଲେ । ( ସୁଡ଼ଙ୍ଗପଥେ ପ୍ରସ୍ଥାନ )
[ ସୈନ୍ୟମାନେ ଶିବରାମକୁ ବନ୍ଦୀ କରିବା ]

ଶିବରାମ—ଓଃ—ରାଜାଙ୍କୁ ରକ୍ଷା କରି ପାରିଲି ନାହିଁ ।—ଈଶ୍ୱର ! ରାଜା ଓ ରଞ୍ଜିଲାକୁ ରକ୍ଷା କରନ୍ତୁ ।—ହାୟ, ସେଓ ! ତୁ ଏଠି ଥିଲେ କି ଅମ୍ଭର ଅନ୍ନଦାତାଙ୍କର ଆଜି ଏ'ପରି ଅବସ୍ଥା ହୋଇଥାନ୍ତା-କାହିଁ ଗଲୁ ସେଓ ?—ତୋ'ର ସକାଶେ ସେ ଆଜି ଏ'ବୃଦ୍ଧ ଅର୍ଦ୍ଧମୃତ ! ହାୟ, ମା ।—କାହିଁକି ଏ ଦୁର୍ଭାଗ୍ୟମାନଙ୍କୁ ଆଶ୍ରୟ ଦେଇ ଥିଲି ? ସେମାନଙ୍କ ହେତୁ ଏତେ ଯନ୍ତ୍ରଣା ଓ ଲାଞ୍ଛନା ଭୋଗ କରିବାକୁ ହେଲା ସିନା ।

ସୈନ୍ୟ—ଚାଲ୍—ଚାଲ୍—ନିର୍ଜ୍ଜନରେ ବସି କାନ୍ଦିବୁ ଚାଲ୍ । ( ସମସ୍ତଙ୍କ ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

—ପ୍ରାନ୍ତର—

[ରଞ୍ଜିଲା କୋଳରେ ମୁଣ୍ଡ ରଖି ଶୋଲଙ୍କି ଶାୟିତ]

ରଞ୍ଜିଲା—ବାବା !

ଶୋଲଙ୍କି—ମା ।

ରଞ୍ଜିଲା—ବଡ଼ କଷ୍ଟ ହେଉଛି, ବାବା ?

ଶୋଲଙ୍କି—ମା-କୋଳରେ ଶୋଇ, କଷ୍ଟ !

ରଞ୍ଜିଲା—ଖାଲି ଭୂଇଁଟା—କାଟୁ ନାହିଁତ ବାପା ?

ଶୋଲଙ୍କି—ମା ! ଘରେ ତ କାହିଁ ଦିନେ ଏ'ପରି ସୁଖଭୋଗ କରିନାହିଁ ?

ରଞ୍ଜିଲା—ବାବା ! ତୁମେ ଭଣ୍ଡାଉଛ—ଯେ କି ଦଣ୍ଡେ ମାତ୍ର ବୈଠକ ଖାନାକୁ ନ ଗଲେ ରହିପାରନ୍ତି ନାହିଁ, ସେ କିପରି ନିର୍ଜ୍ଜନ ପ୍ରାନ୍ତରରେ ସୁଖ ଭୋଗ କରିବ ?

ଶୋଲଙ୍କି—କାହିଁକି, ମା ? ଯେଉଁ କଥାରେ ଅମୀୟ ଝରୁଛି—ଯେଉଁ ସ୍ୱରରେ ବୀଣାର ଲହରୀ ଖେଳୁଛି—ଯେଉଁ କୋଳ ସୁକୋମଳ ଉପାଧାନକୁ ଜିଣିଛି—ପୁଣି ଉପରେ ଯେଉଁ ତାରକା-ଖଚିତ ନୀଳାକାଶ ମହାମୂଲ୍ୟ ଚନ୍ଦ୍ରାତପ ହୋଇଛି—ନିମ୍ନରେ ଯେଉଁ ମସୃଣ ତୃଣ-ପ୍ରାନ୍ତର ସୁକୋମଳ ଶଯ୍ୟା ହୋଇଛି—ସେ ସବୁ ସୁଖସାମଗ୍ରୀ ଯେତେବେଳେ ମୋର ଚାରିଆଡ଼େ ବିଦ୍ୟମାନ, ତେତେବେଳେ ନିର୍ଜ୍ଜନତା ଆସିବ କାହୁଁ ?—ଏଥୁଁ ବଳି

ବୈଠକଖାନାର ସୁଖଭୋଗ କେଉଁ ଗୁଣେ ଅଧିକତର ମା ?

ଚଞ୍ଚଳା—ବାବା ! ବାସ୍ତବିକ କଣ ଏଠାରେ ଏତେ ସୁଖ ଭୋଗ କରୁଛନ୍ତି ?

ଶୋଲଙ୍କି—ମା ! ପ୍ରକୃତରେ ଆଜି ମୋର ଆଖି ଖୋଲିଛି—ମୁଁ ଦେଖି ପାରୁଛି ଯେ ବୈଠକଖାନାର ସୁଖ କୃତ୍ରିମ—ଆଉ ଏଠାକାର ସୁଖ ଅକୃତ୍ରିମ - ଅଧିକତର ଆନନ୍ଦଦାୟକ ।

ଚଞ୍ଚଳା—ବାବା ! ଆଜି ମୋର କି ଆନନ୍ଦ ? ରାଜପ୍ରାସାଦ ଛାଡ଼ିଛି ସତ୍ୟ—ରାଜଭୋଗ ଛାଡ଼ିଛି ସତ୍ୟ—କିନ୍ତୁ ବା'ବାଙ୍କୁ ମୋର ପାଇଛି ।

ଶୋଲଙ୍କି—ମା ! ମୋର ମଧ୍ୟ ଆଜି କି ସୁଖ ? ଐଶ୍ୱର୍ଯ୍ୟ ହରାଇଛି ସତ୍ୟ—ବିଳାସରୁ ବଞ୍ଚିତ ହୋଇଛି ସତ୍ୟ—କିନ୍ତୁ ମା'ରକୋଳ ମୁଁ ପାଇଛି ।

[ ବିମଳାର ପ୍ରବେଶ ]

ବିମଳା—ସହି ! ଶୀଘ୍ର ଏଠୁଁ ଚାଲ, ଆଉ ବିଳମ୍ବ କର ନାହିଁ—ଶତ୍ରୁ ଏଠି ମଧ୍ୟ ଉପସ୍ଥିତ ।

ଶୋଲଙ୍କି—କିଛି ଭୟ ନାହିଁ, ବିମଳା—ଶୋଲଙ୍କି ନିଜେ ବର୍ତ୍ତମାନ ଉପସ୍ଥିତ । [ଉତ୍‌ଥାନ କରିବା]

ବିମଳା – ମହାରାଜ !

ଶୋଲଙ୍କି—ଆଶ୍ଚର୍ଯ୍ୟାନ୍ୱିତା ହେଉଛୁ, ବିମଳା ! ଯେଉଁ ଶୋଲଙ୍କିକୁ ଏତେଦିନ ବିଳାସ-ଭବନରେ ମଦୋନ୍ମତ୍ତ ହୋଇ ପ୍ରେମନୃତ୍ୟ କରିବାକୁ ଦେଖି ଆସିଥିଲୁ—ଯେଉଁ ଶୋଲଙ୍କିକୁ—ରାଜସଭାରେ ତୋଷାମୋଦକାରି ପରିବେଷ୍ଟିତ ହୋଇ ନିଜର ଭାଇ, ବନ୍ଧୁ ପୁତ୍ରାଧିକ ପ୍ରଜାଗଣ ପ୍ରତି ଅତ୍ୟାଚାର କରିବାକୁ ଦେଖି ଆସିଥିଲୁ—ସେ ଶୋଲଙ୍କି ପ୍ରକୃତ ଶୋଲଙ୍କି ନୁହେଁ—ମାୟା ଶୋଲଙ୍କି--ତା'ର ଦେହ ଗୋଟିଏ ଜଡ଼ାବସ୍ଥା ହୋଇଥିଲା—ତା'ର ଆତ୍ମା .ସମ୍ପୂର୍ଣ୍ଣ ଅଜ୍ଞାନତାରେ ବନ୍ଦୀତ ହୋଇଥିଲା—ସୌଭାଗ୍ୟକୁ ମୋର—ଆଜି ମା'ର ଅମୀୟ-ସ୍ପର୍ଶରେ—ସ୍ୱର୍ଗୀୟ ମନ୍ତ୍ରପ୍ରୟୋଗରେ—ସମସ୍ତ ପରିବର୍ତ୍ତିତ ହୋଇଛି—ନରକ ଆଜି ନନ୍ଦନ-କାନନରେ ପରିଣତ ହୋଇଛି—ପୂତି ଗନ୍ଧ ଆଜି ପାରିଜାତ ଗନ୍ଧରେ ପରିଣତ ହୋଇଛି—ଦେହ ମୋର ନବ ଶକ୍ତିରେ ଉତ୍ତେଜିତ ହୋଇ ଉଠିଛି—ଆତ୍ମା ମୋର ନବାଲୋକରେ ଉଦ୍ଭାସିତ ହୋଇ ଉଠିଛି ।

(ନେପଥ୍ୟେ) ଏହି ରାଜା—ଏହି ରାଜା !

ଶୋଲଙ୍କି—ଶତ୍ରୁ ନିକଟବର୍ତ୍ତୀ—ଦେ ମୋତେ ତରବାରି, ବିମଳା ଥରେ ଖେଳ ଦେଖେଁ—ବହୁଦିନ ପୂର୍ବେ ଖେଳିଥିଲି—ସେ ଖେଳ ଆଜି ମୋର ମନେ ଅଛି କି ନାହିଁ ? ( ଅସ୍ତ୍ରଖେଳାଇ ) ବେଶ୍ ମନେ ଅଛି, ବିମଳା—ଆଉ ଭୟ ନାହିଁ !

( ସୈନ୍ୟଗଣଙ୍କ ପ୍ରବେଶ )

ସୈନ୍ୟଗଣ—ଏହି ରାଜା—ଧର !

ଶୋଲଙ୍କି—ଧର, ସୈନ୍ୟଗଣ !

[ ସୈନ୍ୟଗଣ ନିଶ୍ଚଳଭାବରେ ଛିଡ଼ାହେବା ]

ଶୋଲଙ୍କି—ଏ'କଣ ? ତୁମ୍ଭେମାନେ କି କାଷ୍ଠପୁତ୍ତଳିକା ?

ସୈନ୍ୟଗଣ—ମହାରାଜ !

ଶୋଲଙ୍କି—ଯେବେ ମୁଁ ତୁମ୍ଭର ମହାରାଜ—ତେବେ ମହାରାଜଙ୍କ ଆଜ୍ଞା ପାଳନ କର ।

ସୈନ୍ୟଗଣ—କି ଆଜ୍ଞା, ମହାରାଜ ?

ଶୋଲଙ୍କି—ଯୁଦ୍ଧ କର—

ସୈନ୍ୟଗଣ—ମହାରାଜଙ୍କ ସହିତ ଯୁଦ୍ଧ !

ଶୋଲଙ୍କି—ମହାରାଜଙ୍କ ହୁକୁମ ( ସୈନ୍ୟମାନଙ୍କ ସହିତ ଯୁଦ୍ଧ ଓ ସୈନ୍ୟମାନଙ୍କର ପଳାୟନ ) ହେଲାନାହିଁ, ବିମଳା—ଚଞ୍ଚଳା ! ଏ' ଯୁଦ୍ଧରେ ମନ ତୃପ୍ତ ହେଲା ନାହିଁ—ସହସ୍ର ମୂଷିକସହିତ ଏକା ଯୁଦ୍ଧ କରି ଯୁଦ୍ଧା ସିଂହର କି କେବେ ମନ ତୃପ୍ତ ହୁଏ ?

ଚଞ୍ଚଳା—ଆଜି ଏ'କଣ ଶୁଣୁଛି—ଏ'କଣ ଦେଖୁଛି !

ବିମଳା—ସହି ! ସହି ! ଏହି କି ଆମ୍ଭମାନଙ୍କର ମହାରାଜ ?

[ ଦୁର୍ଜ୍ଜୟର ବେଗେ ପ୍ରବେଶ ]

ଦୁର୍ଜ୍ଜୟ—ମହାରାଜ ଆଜି ଯୁଦ୍ଧ କରୁଛନ୍ତି ?

ଶୋଲଙ୍କି—ପସନ୍ଦ ହେଉନାହିଁ, ଦୁର୍ଜ୍ଜୟ ?

ଦୁର୍ଜ୍ଜୟ—(ସହାସ୍ୟେ) ପସନ୍ଦ ଦୁର୍ଜ୍ଜୟ କରବ !

ଶୋଲଙ୍କି—ନର୍ବାଣୋନ୍ମୁଖୀ-ପ୍ରଦୀପ ପକ୍ଷେ ଏ ତେଜ ଆଶ୍ଚର୍ଯ୍ୟ ନୁହେଁ ।

ଦୁର୍ଜ୍ଜୟ—ମଦୋନ୍ମତ୍ତ ପକ୍ଷେ ଏ ପ୍ରଗଲ୍‌ଭତା ଅଶୋଭନୀୟ ନୁହେଁ ।

ଶୋଲଙ୍କି—ଭ୍ରମ ତୋର, ଦୁର୍ଜ୍ଜୟ—ମଦୋନ୍ମତ୍ତ ଆଜ ରାଜା ଶୋଲଙ୍କି ନୁହେଁ, ମଦୋନ୍ମତ୍ତ ଆଜ ସେନାପତି ଦୁର୍ଜ୍ଜୟସିଂହ ।

ଦୁର୍ଜ୍ଜୟ—ତେବେ କଣ ରାଜା ଆଜ ପ୍ରକୃତରେ ଉନ୍ମତ୍ତ ?

ଶୋଲଙ୍କି—ପ୍ରକୃତରେ ଯୁଦ୍ଧୋନ୍ମତ୍ତ ।

ଦୁର୍ଜ୍ଜୟ—ବାକ୍ୟରେ ନା କାର୍ଯ୍ୟରେ ?

ଶୋଲଙ୍କି—(ଅସି ଦେଖାଇ) କାର୍ଯ୍ୟରେ ଯେ ଦେଖାଇବାକୁ ଉଦ୍ୟତ !

ଦୁର୍ଜ୍ଜୟ—ବେଶ, ଦୁର୍ଜ୍ଜୟ ମଧ୍ୟ ଉଦ୍ୟତ । ( ଅସି ନିଷ୍କୋଷିତକରିବା )

ଶୋଲଙ୍କି—ଜୟ ଶିବ ଶଙ୍କର ।

( ଯୁଦ୍ଧ ନିମନ୍ତେ ଅଗ୍ରସର ହେବା )

ଦୁର୍ଜ୍ଜୟ—ନା, ମହାରାଜ ! (ଅସି କୋଷବଦ୍ଧ କରିବା)

ଶୋଲଙ୍କି—ଏ' କଣ, ଭୀରୁ ?

ଦୁର୍ଜ୍ଜୟ—ଭୀରୁ ନୁହେଁ, ମହାରାଜ ! ଆପଣଙ୍କ ସହିତ ତ ମୋର ଶତ୍ରୁତା ନାହିଁ ।

ଶୋଲଙ୍କି—ତେବେ ଶତ୍ରୁତା କାହାର ସହିତ ?

ଦୁର୍ଜ୍ଜୟ—ଆପଣଙ୍କ ନୂତନ ସେନାପତି ସହିତ ।

ଶୋଲଙ୍କି—ନୂତନ ସେନାପତି !—କିଏ ? ସେଓଜି ?

ଦୁର୍ଜ୍ଜୟ—ଆଜ୍ଞା ।

ଶୋଲଙ୍କି—ତା'ର ଦୋଷ ?

ଦୁର୍ଜ୍ଜୟ—ଦୋଷ ତା'ର ! ମୁଁ ଆଜ ଅକପଟରେ ଆପଣଙ୍କ ନିକଟ ପ୍ରକାଶ କରୁଛି, ମହାରାଜ ! ସେ ଆପଣଙ୍କ କନ୍ୟାର ପ୍ରିୟପାତ୍ର !

ଶୋଲଙ୍କି—ସଂଯତ କର ତୋର ରସନା, ଦୁର୍ଜ୍ଜୟ ! ଏଡ଼େ ନରାଧମ ତୁହି—ଏଡ଼େ ପାଷଣ୍ଡ—ମୋ' କନ୍ୟା ପ୍ରତି ବଳାତ୍କାର—କିନ୍ତୁ ବିଧି ତୋର ବାମ ହୋଇଛନ୍ତି—ସୁପ୍ତସିଂହ ଆଜି ଜାଗ୍ରତ ହୋଇଛି ।

ଦୁର୍ଜ୍ଜୟ—ଦୁର୍ଜ୍ଜୟ ମଧ୍ୟ ଉତ୍ତମ ଶିକାରୀ—ଜାଗ୍ରତ ସିଂହ ସମ୍ମୁଖରେ ଶିକାର କରିବାକୁ ଭଲ ପାଏ ।

ଶୋଲଙ୍କି—ବେଶ୍ ତେବେ—ସିଂହ ଜାଗ୍ରତ—କରି୍ ତୋ'ର ଶିକାର । [ ଶୋଲଙ୍କି ଓ ଦୁର୍ଜ୍ଜୟର ଘୋର ଯୁଦ୍ଧ ] କି' ଶିକାରୀ ?—କାହିଁ ତୋର ଶିକାର-କୌଶଳ ?

[ ଦୁର୍ଜ୍ଜୟର ସିଟିବାଦନ ଓ କତିପୟ ସୈନ୍ୟ ଆସି ଶୋଲଙ୍କିଙ୍କୁ ଅଲକ୍ଷିତ ଭାବରେ ବନ୍ଦୀକରିବା]

ଶୋଲଙ୍କି—ଏହିକି ତୋ'ର ରଣ କୌଶଳ କୁକ୍କୁର ?

ଦୁର୍ଜ୍ଜୟ—କୌଶଳ କି ନୁହେଁ ଥରେ ଅନୁଭବ କରି ଦେଖନ୍ତୁ—ଆସ, ଚମ୍ପିଳା !—ହୃଦୟେଶ୍ୱରୀ !

ଚମ୍ପିଳା—ପାମର !

ଶୋଲଙ୍କି—ଯୁଦ୍ଧ କର, ଚମ୍ପିଳା—ଶତ୍ରୁର ମସ୍ତକ ତୋ'ର ଶ୍ରମର ପୁରସ୍କାର ହେଉ—ନଚେତ୍ ନିଜର ଶବ-ଦେହ ଶତ୍ରୁକୁ ପୁରସ୍କାର ଦେ ।

ଦୁର୍ଜ୍ଜୟ—ତେବେ କାର୍ଯ୍ୟରେ ଦେଖନ୍ତୁ, ମହାରାଜ ଶତ୍ରୁର 'କି ପୁରସ୍କାର ?—ଗ୍ଲାଉଦ୍ଦଅ ହେ ଅସି, ସୁନ୍ଦର—ଶୋଭୁ ତବ ମୃଣାଳକୋମଳ ଭୁଜେ—ବୀରର ଏ ବଜ୍ରଶକ୍ତିକର—ତୁଳାମଧ୍ୟେ ମଣିଖଣ୍ଡ ଯଥା ।

ବିମଳା—ନରାଧମ ! ଶୋଭିବ ହେ ତବ ନିଷ୍ଠେ ସଖୀକରେ ମୋର—ମାନ ଦୁଃଖର ବିଷୟ, ଛିନ୍ନ ତାହା ହେବ ଦେହୁଁ ଅସିଘାତେ ଆଗେ ।

ଦୁର୍ଜ୍ଜୟ—ଏତେ ଦର୍ପ ! ( ଅସ୍ତ୍ରୋତ୍ତୋଳନ କରିବା )

ବିମଳା—ଜୟ, ମା ତାରା ! ( ଯୁଦ୍ଧ ଓ ବିମଳାର ପତନ ) ସଖି ! ସଖି !

ଶୋଲଙ୍କି—ଚମ୍ପିଳା ! ଚମ୍ପିଳା !

ଚମ୍ପିଳା—କିଛି ଭୟନାହିଁ, ପିତା—କିଛି ଭୟ ନାହିଁ, ସଖି—ହସ୍ତରେ ଅସ୍ତ୍ର ଥିବାଯାଏ ଶୋଲଙ୍କି ନନ୍ଦିନୀପାଇଁ କିଛି ଭୟନାହିଁ ।

ଦୁର୍ଜ୍ଜୟ—ଥରେ ସଖୀର ଦୁର୍ଦ୍ଦଶା ଦେଖି ଶିଖ ହେ ସୁନ୍ଦର !

ଚମ୍ପିଳା—'ଜୟ କିମ୍ବା ମୃତ୍ୟୁ' ଏହି ଶିକ୍ଷା ମାତ୍ର ଜାଣେ ବୀରବାଳା ।

ଦୁର୍ଜ୍ଜୟ—'ଜୟ କିମ୍ବା ମୃତ୍ୟୁ' !—ଯେବେ ମୃତ୍ୟୁ ଲଭିବ, ପ୍ରେୟସି ତେବେ ଏତେ ଶ୍ରମେ ମୋ'ର କିବା ପ୍ରୟୋଜନ ?

ଚଞ୍ଚଳା—ସାବଧାନ, ନରାଧମ । ଏତେ ଯେବେ ଅନୁକମ୍ପା ତୋର—ଯୁଦ୍ଧେ ଆଗେ ଅନୁକମ୍ପାର ଦେ ପରିଚୟ ।

ଦୁର୍ଜ୍ଜୟ—ଯୁଦ୍ଧ ! ଯୁଦ୍ଧ, ପ୍ରିୟତମା ସଙ୍ଗେ !—ଅସମ୍ଭବ—ଏହି ଅସ୍ତ୍ର ମୋର, ସର୍ବସ୍ୱ ସହିତେ—ପଦତଳେ କଲି ବିସର୍ଜନ ।

ଚଞ୍ଚଳା—ଏହି ଉପହାରକୁ ତୋର, ବାମ ପାଦେ କଲି ପଦାଘାତ ।

ଦୁର୍ଜ୍ଜୟ—ପଦାଘାତ ଉପହାରକୁ ମୋ'ର—ପଦାଘାତ ଦୁର୍ଜ୍ଜୟ ସିଂହକୁ—ପଦାଘାତ ସୁପ୍ତ ସିଂହକୁ ଆଜି ? ଆଉ ନାହିଁ, ଦୟାମାୟା ବନ୍ଧନେ ଶଙ୍କିତ-- ଆଉ ନାହିଁ, ପ୍ରେମ ସ୍ନେହ ମାଦକତା ପାନେ— ଲୁପ୍ତିତ, ସେ ସୌନ୍ଦର୍ଯ୍ୟ, ମୁଗ୍‌ଧ ଯାହା ଦେଖି — କର୍କଶ ସେ ବୀଣାସ୍ୱର, ମୁଗ୍‌ଧ ଯାହା ଶୁଣି--ଅସହ୍ୟ, ଅସହ୍ୟ ଅଧୁନା ମୂରତି ସେହୁ—ଶିରାମାନେ ଦେହ ମୋର ହୁଏ କଣ୍ଟକିତ । ଜାଗ ଉଠ, ଘୃଣାହିଂସା ନବ ତେଜେ ତେଜି—ଜ୍ୱଳି ଉଠ ପ୍ରତିଶୋଧ ଲେଲ ଜିହ୍ୱା ଧରି—ନିଅ ତବ ଚିରସଙ୍ଗୀ ଅସ୍ତ୍ରର ସାହାଯ୍ୟ—ସାଧ ଏବେ ଯଥାଇଚ୍ଛା ବେଗେ ପ୍ରତିଶୋଧ !

[ ଚଞ୍ଚଳାକୁ ଆକ୍ରମଣ କରିବାକୁ ଉଦ୍ୟତ ହେବାକାଳେ ସେଓଜୀର ବେଗେ ପ୍ରବେଶ ]

ସେଓଜୀ—କ୍ଷାନ୍ତ ହୁଅ, କୁବେରି ? କୁତ୍ସିତପଦେ ଲଘୁତା ନ ସାଜେ ।

( ଦୁର୍ଜ୍ଜୟର ଅସିକୁ ଧରିବା ଓ ସମସ୍ତେ ଆଶ୍ଚର୍ଯ୍ୟ ଭାବେ ଚାହିଁ ରହିବା )

—ପତନିକା—

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

—ଉଦ୍ୟାନ—

[ ମୀରାର ଗୀତ ଗାଇ ଗାଇ ପ୍ରବେଶ ]

ଦୟା କର ଦୀନପତି ଦୟା କର ଦୀନାରେ ।
ଧରିଅଛି ପ୍ରାଣ ସ୍ଥିର ତବ ଦାନ-ଆଶାରେ ॥
ଅନ୍ଧକାର ହୃଦ ମମ
କରିଅଛି ନିରମମ
ଲଭିଗଲେ ଆଶାଦୀପ ବଞ୍ଚିବି କି ଆଶାରେ ॥

ମୀରା—(ବିରକ୍ତଭାବେ) ଖାଲି ଯୁଦ୍ଧ—ଯୁଦ୍ଧ—ଯୁଦ୍ଧ—ଚୁଲିପାଇଁସ ଯୁଦ୍ଧ । ତାହିଁ ମଣିଷ ମଣିଷକୁ ଆଦର ଯତ୍ନ କରନ୍ତା—ଖୁଆନ୍ତା-ପିଆନ୍ତା—ଆମୋଦ-ଆହ୍ଲାଦ କରନ୍ତା—ନା ଅଣ ତରବାରି—ହାଣ ଦେକ—ରକ୍ତ ଗଙ୍ଗାରେ ଦାଅ ମେଦିନୀ ଭସାଇ । ଆଜ ଦୀର୍ଘ ଦୁଇ ଦିନ—ଦୀର୍ଘ ଦୁଇ ଯୁଗ ଚାଲି ଗଲା—ତେବେବି ବନ୍ଦୀର ଦେଖା ନାହିଁ । ହାୟ ! ସତେକି ବନ୍ଦୀକୁ ମୋର ଜୀବନର ବନ୍ଦୀ କରି ପାରିବି ? କିଏ ପାଟି କରୁଛି—କାହିଁ ପାଟି କରୁଛି ? ଏହିକି ତୋର ମିଷ୍ଟସ୍ୱର କୋକିଳ ?—କି ଦୁର୍ଗନ୍ଧ—କାହୁଁ ଆସୁଛି—ଏହି କି ତୋର ସୁଗନ୍ଧ ଫୁଲ ? ( ଦୌଡ଼ି ଯାଇ ଫୁଲ ଛିଣ୍ଡାଇବାକୁ ଉଦ୍ୟତା )

( ତାରାର ପ୍ରବେଶ )

ତାରା—ସଖି ! ଏ କଣ କରୁଛ ?

ମୀରା—(ଛାଡ଼ି ଦେଇ) କହନା, ସଖି—ଫୁଲର ଦୁର୍ଗନ୍ଧ ଆଉ ବସାଇ ଦେଲା ନାହିଁ ।

ତାରା—( ହସି ) ଫୁଲର ଦୁର୍ଗନ୍ଧ !—କହ ତୋର ମନର ଦୁର୍ଗନ୍ଧ ବସାଇ ଦେଉ ନାହିଁ—ଫୁଲର ଭଲ କି ଦୋଷ ?

ମୀରା—ଓଃ—ତୁ, ତ ଭାରି ଚତୁର କରି ଜାଣୁ ?

ତାରା—ଆଉ ତୁ ଭାରି ଚତୁର କରି ଜାଣୁ ?

ମୀରା—ମୋ' ବସ୍ତୁର ପର ତୋ ବସ୍ତୁର ?

ତାରା—ହଁ, ସେଥିପାଇଁ ପରା ବନ୍ଦୀକୁ ଲଢ଼ାଇକୁ ଛାଡ଼ିଦେଲୁ ?

ମୀରା—ଦେଖ୍, ତାରା—ବାପା କରକମ ମଣିଷ—ସୂର୍ଯ୍ୟ ଆସି ବୁଡ଼ିବାକୁ ବସିଲେଣି—ଏପର୍ଯ୍ୟନ୍ତ ନିଜେ ତ ଫେରିଲେ ନାହିଁ କି ବନ୍ଦୀକୁ ମୋର ଫେରାଇ ତ ଦେଲେ ନାହିଁ ?

ତାରା—ଅହା ! ବନ୍ଦୀ ନାହିଁ ବୋଲି ଏ କାରାଗାରଟି ଆଜ ଯେପରି କାନ୍ଦୁଛି—( ନେପଥ୍ୟକୁ ଚାହିଁ ) ସହି ! ସହି ! ଦେଖିଲୁ ଏଣେ କିଏ ଆସୁଛି ।

—ଗୀତ—

ଦେଖ ଲୋ, ଧନ ହୃଦ ଶଶି ତୋର ଫେରି ଆସିଛି ।
ଘନାକାଶେ, ଚନ୍ଦ୍ରହାସେ, ଫୁଟି ଉଠିଛି ॥
ବିଷାଦ କାଳିମା ରେଖା
ଆଉ ନ ଦେବଲେ ଦେଖା
ଭରା ଜ୍ୟୋତ, ଭରା ପ୍ରୀତି ମାତି ଉଠିଛି ॥

( ତାରାର ଗାଇ ଗାଇ ପ୍ରସ୍ଥାନ ଓ ସୈତରାମର ପ୍ରବେଶ )

ସୈତରାମ—ମୀରା !

ମୀରା—( ନୀରବ )

ସୈତରାମ—ଯୁଦ୍ଧରୁ ଆସିଲି—ଦେହ କ୍ଳାନ୍ତ—ମନ ବିଷର୍ଣ୍ଣ—ଟିକିଏ ପ୍ରଫୁଲ୍ଲ କରାଇବ ନାହିଁ, ମୀରା ?

ମୀରା—( ନୀରବ )

ସୈତରାମ—କଥା କହୁନାହଁ କାହିଁକି, ସୁନ୍ଦରୀ ?—ବନ୍ଦୀ କି ଆଜ କୌଣସି ଦୋଷ କରିଛି ?

ମୀରା—( ନୀରବ )

ସୈତରାମ—କୁହ ତେବେ, କି ଦୋଷ ବନ୍ଦୀ କରିଛି ?

ମୀରା—( ନୀରବ )

ସୈତରାମ—ତା'ବି କହିବ ନାହିଁ—ନ କହିବତ, ସେ ଦୋଷର କି ମାର୍ଜନା ନାହିଁ ?

ମୀରା—( ନୀରବ )

ସୈତରାମ—ତଥାପି ନୀରବ, ସୁନ୍ଦରୀ !—ତେବେ କି ଦଣ୍ଡ ଦେଉଚ, ଦିଅ ତୁମ୍ଭର ବନ୍ଦୀକୁ, ପ୍ରହରୀ !

( ଜାନୁପାତ ପୂର୍ବକ କରଯୋଡ଼ି ବସିବା )

ମୀରା—( ନିଜର ପୁଷ୍ପ ହାରଟି କାଢ଼ି ସୈତରାମର ହସ୍ତରେ ବାନ୍ଧୁ ବାନ୍ଧୁ ) ଏହି ତୁମ୍ଭର ଦଣ୍ଡ, ବନ୍ଦୀ !

ସୈତରାମ—ଏହି ଦଣ୍ଡ କି ମୋର ଚିରସ୍ଥାୟୀ ହେବ, ପ୍ରହରୀ ?

( ମୁଗ୍ଧନେତ୍ରରେ ପରସ୍ପରକୁ ଚାହିଁ ରହିବା )

( ସଖୀମାନଙ୍କର ପ୍ରବେଶ )

ସଖୀମାନେ— ଗୀତ

ବାନ୍ଧ, ବାନ୍ଧ—ହୃଦସ୍ତେ ହୃଦସ୍ୟଂଛନ୍ଦ ।
ବନ୍ଦୀ ତବ ବଡ଼ ଛନ୍ଦୀ, ଭାଙ୍ଗି ଅଛି ପ୍ରାଣବନ୍ଦ ॥
ଦେଖ, ଦେଖ ସାବଧାନ ନ ପଳାଇ ଯାଏ ପୁଣ
ହୃଦକାରାଗାରେ କରି ବନ୍ଦୀ ଦିଅ ଯେତେ ଗାଳିମନ୍ଦ ॥
ଆସ, ଆସ ସଖୀଗଣେ ଦେଖାଇ ଆଡ଼ନୟନ
ଚଉପାଶେ ବସି ପୁହାଇବା ନିସି ପ୍ରେମ ଅସି କରି ସ୍କନ୍ଧ ॥

(ସଖୀମାନେ ସୈତରାମ ଓ ମୀରାକୁ ଘେରି କ୍ରୀଡ଼ା ହେବା)

( ଲଖାର ପ୍ରବେଶ )

ଲଖା—( ଏକାନ୍ତେ ) ବାନ୍ଧ, ବାନ୍ଧ, ମୀରା—ଔର କସ୍ କରକେ ଅସଲ୍ ବନ୍ଧନ୍ ସେ ତୁହାର୍ ବନ୍ଦୀକୁ ବାନ୍ଧ୍ ।

( ସୈତରାମ ବନ୍ଧନକୁ ଛିନ୍ନ କରି ସଲଜ୍ଜଭାବରେ ଦଣ୍ଡାୟମାନ ଓ ସଖୀଗଣଙ୍କ ବେଗେ ପ୍ରସ୍ଥାନ । )

ମୀରା—( ସଲଜ୍ଜେ ) ବାବା !—ବାବା !

ଲଖା—( ମୀରାକୁ ଆଲିଙ୍ଗନ କରି ) ଅରେ ବେଟି ! ଯଉଁ ଲଢ଼ାଇ ହେଲା !

ମୀରା—ବାବା ! ମୁଁ କଣ ଲଢ଼ାଇ କଥା ପଚାରୁଛି ?

ଲଖା—ଶୁନ୍ ନା ବେଟି—ଲଢ଼ାଇରେ—

ମୀରା—ବାବା ! ସେହି ଲଢ଼ାଇ କଥା ଛଡ଼ା ଆଉ କଣ କିଛି ନାହିଁ ?

ଲଖା—ଅରେ ଦିଲ୍ ଖୁସ୍ କର୍ ଦେଉରେ—ତୁହାର୍ ବନ୍ଦୀ ଲଢ଼ାଇ କର୍ କେ ଦିଲ୍ ଖୁସ୍ କର୍ ଦେଲା ।

ମୀରା—ମୋ'ର ଦିଲ୍ ତ ବାବା ଖୁସ୍ ହେଉନାହିଁ—ଚାଲ, ବାବା ତୁମର ଗୋଡ଼ ହାତ ମୋଡ଼ି ଦେବି—ବଡ଼ କଷ୍ଟ ହେଉଥିବ ।

ଲଖା—ଅରେ କୁଛ୍ ଦରକାର୍ ନେଇରେ, ବେଟି—ହାମ ଜଲ୍ଦି—ମନ୍ଖୁସ୍ ଅଛେ । କୁଟମଣ୍ଡ୍ରକା

କହାଇଦେମ ଯବ୍ ଏ ଲଡ଼୍କା ସର୍ଦାର୍
ହୋଇଥାନ୍ତା—କୁଟମେଣ୍ଡଲ୍ ଆଉ୍ ହାମାର୍
ହୋଇଥାନ୍ତାରେ—ହାମାର୍ ହୋଇଥାନ୍ତା ।
ମୀର—ପୁଣି ସେହି କଥା, ବାବା ! ସେ କଥା ପଛେ
ଭାବବ—ବର୍ତ୍ତମାନ ଭିତରକୁ ଚାଲ—ଟିକିଏ
ବିଶ୍ରାମ କରିବା । (ଗମନୋଦ୍ୟତା)
ଲଖା—ତୋହର ବନ୍ଦୀକୁ ଛାଡ଼୍ ଯାଉଛୁରେ, ବେଟି !
ସ୍ତରାମ—ଚାଲ, ସର୍ଦାର ।
( ଲଖା ଓ ମୀରର ପ୍ରସ୍ଥାନ )
ଓଃ—ଆଜ କୁଟମେଣ୍ଡୁର ନାମୋଚ୍ଚାରଣରେ
କି ସ୍ମୃତି ଜାଗି ଉଠୁଛି, ଭାଇ !—ଶିବଭକ୍ତ !—
( ନେପଥ୍ୟ ଲଖା ) ଆ ବେଟା !
ସୈତରାମ—ଚାଲ, ସର୍ଦାର । ମୀର ! କି ମୋହିନୀଶକ୍ତି
ତୋର ! ( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—କନାଉଜ ପଥ—

[ ଦୁର୍ଜ୍ଜୟର ପ୍ରବେଶ ]

ଦୁର୍ଜ୍ଜୟ—ଏତେ ଅପମାନ ! ଶୋଲଙ୍କି ସର୍ବସମକ୍ଷରେ
ପଦାଘାତ କରି ତଡ଼ି ଦେଲା—ସେଓଜ ଜଣେ
ସାମାନ୍ୟ ସୈନ୍ୟକର୍ତ୍ତୃକ ରାଜ୍ୟସୀମାରୁ ବହିଷ୍କୃତ
କରିଦେଲା ! ବିଦ୍ରୋହୀମାନେ—କି ସୈନ୍ୟ, କି
କୃଷକ ସମସ୍ତେ ଚଞ୍ଚଳା ଓ ସେହି କୁକ୍କୁରର
ସ୍ୱଲୋତ୍ତେଜନାରେ ସମସ୍ୱରେ 'ଜୟ ରାଜା
ଶୋଲଙ୍କିର ଜୟ' ବୋଲି ଚିତ୍କାର କରି ଉଠିଲେ ।
କେତେକ ନୁହେଁ—'ଜୟ ସେନାପତି ସେଓଜଙ୍କ
ଜୟ' ବୋଲି ମଧ୍ୟ ଆକାଶ ଅବନୀ ପ୍ରତିଧ୍ୱନିତ
କରି ଦେଲେ—କର୍ଣ୍ଣକୁହର ମୋ'ର ଗମ୍ଭୀର
ବଜ୍ରନିନାଦତୁଲ୍ୟହାସ୍ୟ ଗର୍ଜି ଉଠିଲା—ମର୍ମରେ
ଯେ କି ଶେଳାଘାତ ହେଲା, ସ୍ପନ୍ଦନ ତାହାର
ଅଦ୍ୟାପି ମୁଁ ଅନୁଭବ କରୁଛି । ( କିଛିକ୍ଷଣ ରହି )
ଏହିକି ସମସ୍ତ ଯନ୍ତ୍ରଣା ?—ନା—ଏହାଠାରୁ
ଅଧିକତର ଯନ୍ତ୍ରଣା ଯେ ପ୍ରାଣକୁ ମୋ'ର
ଉତ୍ପୀଡ଼ିତ କରୁଛି—ମୋ' ପ୍ରତି ବାଳିକାର
ସେହି ତୀବ୍ର ଦୃଷ୍ଟିପାତ—ଘୃଣା ସୂଚକ ହାସ୍ୟ-
ପରେ, ପରେ କୁକ୍କୁର ପ୍ରତି ସେହି ପ୍ରେମମୟ
ସମ୍ଭାଷଣ—ଆନନ୍ଦ ପୂର୍ଣ୍ଣ ଅବଲୋକନ—ଅସହ୍ୟ—
ଅସହ୍ୟ—। ଏହି ମୋ'ର ପ୍ରତିଜ୍ଞା ଆଜ—ଯେଉଁ
ଅଭିସନ୍ଧି ନେଇ ଇଦାନୀଂ କନାଉଜରେ ମୁଁ
ଉପସ୍ଥିତ—ତାହା ସଫଳ ହେଲେ, ଦୁର୍ଜ୍ଜୟ
ଅଜେୟ—ଅନ୍ୟପକ୍ଷେ, ଆତ୍ମହତ୍ୟା—ଦୁର୍ଜ୍ଜୟର
ନାମ ଲୋପସାଧନ ।
[ କନାଉଜ ମନ୍ତ୍ରୀର ପ୍ରବେଶ ]
କନାଉଜ-ମନ୍ତ୍ରୀ—ସେନାପତେ !
ଦୁର୍ଜ୍ଜୟ—ହଠାତ୍ ମୋତେ ସେନାପତି ବୋଲି
ସମ୍ବୋଧନ କଲେ କାହିଁକି, ମନ୍ତ୍ରୀ ମହାଶୟ ?
କନାଉଜ-ମନ୍ତ୍ରୀ—ଆପଣଙ୍କ ପ୍ରସ୍ତାବ ଗୃହୀତ ହୋଇଛି ।
ଦୁର୍ଜ୍ଜୟ—ଗୃହୀତ ହୋଇଛି !—( ସ୍ୱଗତ ) ଜୟ
ଦୁର୍ଜ୍ଜୟ ସିଂହର ଜୟ !
କନାଉଜ-ମନ୍ତ୍ରୀ—କେବଳ ନୁହେଁ, ସେନାପତେ !
ବାଦ୍‌ସାହ ଆପଣଙ୍କର ଏହି ଉପକାର ଯୋଗୁଁ—
ଦୁର୍ଜ୍ଜୟ—କେଉଁ ଉପକାର, ମନ୍ତ୍ରୀ ମହାଶୟ ?
କନାଉଜ-ମନ୍ତ୍ରୀ—କେଉଁ ଉପକାର ?—ଯେଉଁ
ଉପକାର, ଆପଣ ବାଦ୍‌ସାହାଙ୍କ ଶରଣକୁ ସେଓଜ
ଓ ସୈତରାମର ଅନୁସନ୍ଧାନ ଦେବାଦ୍ୱାରା ଏବଂ
ସେମାନେ ସ୍ୱରାଜ୍ୟର ପୁନରୁଦ୍ଧାର ନିମନ୍ତେ
ଶୋଲଙ୍କି ସହିତ କେଉଁ ଅଭିସନ୍ଧି କରୁଅଛନ୍ତି
ତାହା ମଧ୍ୟ ଜଣାଇବା ଦ୍ୱାରା, କରିଅଛନ୍ତି ।
ଦୁର୍ଜ୍ଜୟ—ମନ୍ତ୍ରୀ ମହାଶୟ ! ଏହା ଯେ ମିତ୍ରର କାର୍ଯ୍ୟ ।
କନାଉଜ-ମନ୍ତ୍ରୀ—ସେହିପରି, ସେନାପତେ !
ଉପକାରର ପ୍ରତ୍ୟୁପକାର କରିବା କଣ ମିତ୍ରର
କାର୍ଯ୍ୟ ନୁହେଁ ?
( ନେପଥ୍ୟ ) ଜୟ ସେନାପତି ଦୁର୍ଜ୍ଜୟ ସିଂହଙ୍କ ଜୟ !
କନାଉଜ-ମନ୍ତ୍ରୀ—ଏହି ଦେଖନ୍ତୁ, ସେନାପତେ—
କନାଉଜର ସୈନ୍ୟମାନେ ରାଜକୀୟ ପତାକା
ନେଇ, ଆପଣଙ୍କ ବାଦ୍‌ସାହା-ଅର୍ପିତ ନୂତନ-

ପଦରେ ବରଣ କରିବା ନିମନ୍ତେ ଏଣେ ଆଗମନ କରୁଅଛନ୍ତି ।

ଦୁର୍ଜ୍ଜୟ—ଆପଣଙ୍କର ଏ'ପରି ଅଯାଚିତ ଅନୁଗ୍ରହକୁ ଧନ୍ୟ—ଏଥି ନିମନ୍ତେ ଯେ କି କୃତଜ୍ଞତା ଜ୍ଞାପନ କରିବି, ତାହା ଭାଷାରେ ବର୍ଣ୍ଣନା କରିପାରୁନାହିଁ ।

[ ସୈନ୍ୟମାନଙ୍କ ପ୍ରବେଶ ]

ସୈନ୍ୟଗଣ—ଜୟ ସେନାପତି ଦୁର୍ଜ୍ଜୟସିଂହଙ୍କ ଜୟ ।

କନୋଜ-ମନ୍ତ୍ରୀ—ସୈନ୍ୟଗଣ ! ଯେଉଁ ବୀରଙ୍କୁ ଆଜି ବାଦ୍‌ସାହା ତୁମ୍ଭମାନଙ୍କର ସେନାପତି ପଦରେ ବରଣ କଲେ, ସେ ବୀର ଜଣେ ଅଦ୍ୱିତୀୟ ବୀର—ଅମ୍ଭମାନଙ୍କର ପରମ ବନ୍ଧୁ—ତୁମ୍ଭେମାନେ ନିଶ୍ଚୟ ଏପରି ସେନାପତିଙ୍କ ଅଧିନାୟକତ୍ୱରେ ପରମ ଆନନ୍ଦ ଲାଭ କରିବ—ପରମ-ଉତ୍ସାହରେ କାର୍ଯ୍ୟ କରିବ ।

ସୈନ୍ୟଗଣ—ଜୟ ନୂତନ ସେନାପତିଙ୍କ ଜୟ ।

ଦୁର୍ଜ୍ଜୟ—ସୈନ୍ୟଗଣ ! ତୁମ୍ଭମାନଙ୍କର ବଳ ଯେଣି ରାଜାର ବଳ—ତୁମ୍ଭମାନଙ୍କର ସୁନାମ ଯେଣି ରାଜାର ସୁନାମ; ତୁମ୍ଭେମାନେ ସେହି ସୁନାମ, ସେହି ବଳ ଯେଉଁ ଉପାୟରେ ବର୍ଦ୍ଧିତ କରି ପାରିବ, ସେ ବିଷୟରେ ଏ' ତୁମ୍ଭମାନଙ୍କୁ ସାହାଯ୍ୟ କରିବ ମାତ୍ର । ଆସ, ଭାଇମାନେ !—ଯେଉଁ ବାଦ୍‌ସାହାଙ୍କ କୃପାରୁ ଅମ୍ଭେମାନେ ଆଜି ଏହି ବୀର ପରିଚ୍ଛଦ ଧାରଣ କରି ଆପଣାକୁ ଧନ୍ୟ ମନେ କରୁଛୁଁ—ଯୋଦ୍ଧା ବୋଲି ସମସ୍ତଙ୍କ ନିକଟରେ ପରିଚିତ ହୋଇ ଆପଣାକୁ ଗୌରବାନ୍ୱିତ ମନେ କରୁଛୁଁ, ସେହି ବାଦ୍‌ସାହାଙ୍କ ଜୟଗାନ କରି ଆଜି ଧନ୍ୟ ହେବା ।

ସମସ୍ତେ—ଜୟ ବାଦ୍‌ସାହାଙ୍କ ଜୟ ।

ଦୁର୍ଜ୍ଜୟ—ଆଉଥରେ ଭାଇମାନେ !

ସମସ୍ତେ—ଜୟ ବାଦସାହାଙ୍କ ଜୟ ।

କନୋଜ-ମନ୍ତ୍ରୀ—ଆସନ୍ତୁ, ସେନାପତେ — ଆସ, ସୈନ୍ୟଗଣ !—ବିଳମ୍ବରେ ଆଉ ପ୍ରୟୋଜନ ନାହିଁ ।

ସୈନ୍ୟଗଣ—ଜୟ ବାଦସାହାଙ୍କ ଜୟ—ଜୟ ସେନାପତିଙ୍କ ଜୟ ।

ଦୁର୍ଜ୍ଜୟ—( ସ୍ୱଗତ ) ଦୁର୍ଜ୍ଜୟ ! ଏହିଥର ତୁ ପୂର୍ଣ୍ଣମନସ୍କାମ ।

( ସମସ୍ତଙ୍କ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ରାଜସଭା—

[ ଶୋଲଙ୍କି, ମନ୍ତ୍ରୀ, ସଭାସଦବର୍ଗ ]

ଶୋଲଙ୍କି—ରାଜ୍ୟର କି ଖବର, ମନ୍ତ୍ରୀ ?

ମନ୍ତ୍ରୀ—ସମସ୍ତ ସୁଖବର, ମହାରାଜ—ସମଗ୍ର ପ୍ରଜାମଣ୍ଡଳ ଆଜି ଆପଣଙ୍କର ନ୍ୟାୟ ଓ ଧର୍ମ ଶାସନରେ ମୁଗ୍‌ଧ ହୋଇ ଆପଣଙ୍କର ଯଶୋଗାନ କରି ଆନନ୍ଦରେ ନୃତ୍ୟ କରୁଅଛନ୍ତି ।

ଶୋଲଙ୍କି—ମୋ'ର ଯଶୋଗାନ ମୁଁ ଶୁଣିବାକୁ ଚାହେଁ ନା, ମନ୍ତ୍ରୀ—ବିଦ୍ରୋହୀ ସୈନ୍ୟମାନଙ୍କର କି ଖବର ?

ମନ୍ତ୍ରୀ—ସେମାନେ ବର୍ତ୍ତମାନ ଖୁବ୍ ରାଜଭକ୍ତ,ମହାରାଜ—ସମସ୍ତେ ଆଶଙ୍କା କରିଥିଲେ, ବିଦ୍ରୋହୀମାନେ ନିଶ୍ଚୟ ପ୍ରାଣଦଣ୍ଡରେ ଦଣ୍ଡିତ ହେବେ, ମାତ୍ର ଆପଣଙ୍କର ସୁବିଚାରରେ ସେମାନଙ୍କ ପ୍ରାଣ, ମାନ ଓ ଧନ ରକ୍ଷା ଦେଖି, ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ ଓ ସମସ୍ୱରରେ ଚିତ୍କାର କରି ଉଠିଲେ "ଜୟ ରାଜା ଶୋଲଙ୍କିର ଜୟ"—"ରାଜା ଅମ୍ଭମାନଙ୍କର ଦୀର୍ଘଜୀବୀ ହୋଇନ୍ତୁ" ।

( ନେପଥ୍ୟେ ) ଜୟ ରାଜା ଶୋଲଙ୍କିଙ୍କ ଜୟ ।

ମନ୍ତ୍ରୀ ଓ ସଭାସଦ୍‌ବର୍ଗ । ଜୟ ରାଜା ଶୋଲଙ୍କିଙ୍କ ଜୟ ।

[ ସେର୍ଜର ପ୍ରବେଶ ଓ ଅଭିବାଦନ ]

ଶୋଲଙ୍କି—କି ଖବର, ସେନାପତେ ?

ସେର୍ଜ—ଶିବଜୀ ଇହଧାମରେ ନାହିଁ, ମହାରାଜ !

ଶୋଲଙ୍କି—କିପରି ଜାଣିଲ ?—ତାର ଶବଦେହ କଣ ମିଳିଛି ?

ସେଉଁଲି—ମିଳନ୍ତି ନାହିଁ, ମହାରାଜ—ଦୁର୍ଜ୍ୟ ସିଂହ କର୍ତ୍ତୃକ ବନ୍ଦୀ ହେବାପରେ ଯେଉଁ ସୈନ୍ୟମାନେ ତାଙ୍କ ସେନା ଯାଉ ଯାଉ ପଥରେ ମୃତ୍ୟୁ ଘଟିବାରୁ ଶ୍ମଶାନରେ ନିକ୍ଷେପ କରି ଚାଲି ଯାଇଥିଲେ, ସେମାନଙ୍କୁହିଁ ଶବର ଅନୁସନ୍ଧାନ ନିମନ୍ତେ ପଠାଇଥିଲି, ମାତ୍ର ସେମାନେ ନିରାଶ ହୋଇ ଫେରି ଆସିଲେଣି ।

ଶୋଲାଙ୍କି—ଶବର କଣ କୌଣସି ଚିହ୍ନ ସୁଦ୍ଧା ପାଇଲେ ନାହିଁ ?

ସେଉଁଲି—ନା ମହାରାଜ କୌଣସି ଚିହ୍ନ ସୁଦ୍ଧା ପାଇଲେ ନାହିଁ ।

ଶୋଲାଙ୍କି—ଆଶ୍ଚର୍ଯ୍ୟ !

ସେଉଁଲି—ଏଥିରେ ଆଶ୍ଚର୍ଯ୍ୟର ବିଷୟ କଣ ଅଛି, ମହାରାଜ ?—ଶବଦେହ ମୁକ୍ତ ପଡ଼ିଥିବାରୁ, ନିଶ୍ଚୟ ଶୃଗାଳକୁକ୍କୁର କର୍ତ୍ତୃକ ଭକ୍ଷିତ ହୋଇଥିବ ।

ଶୋଲାଙ୍କି—ମୋର କିନ୍ତୁ ବିଶ୍ୱାସ ହେଉନାହିଁ—ଏହି କେତେକ ଦିନ ମଧ୍ୟରେ ଶୃଗାଳ କୁକ୍କୁର କର୍ତ୍ତୃକ ଶବଟି ଏପରିଭାବେ ଭକ୍ଷିତ ହୋଇଗଲା ଯେ ତାର ସାମାନ୍ୟ ଚିହ୍ନ ସୁଦ୍ଧା ମିଳିଲା ନାହିଁ ?

ସେଉଁଲି—ତେବେ ଆପଣଙ୍କର ବିଶ୍ୱାସ କଣ ?

ଶୋଲାଙ୍କି—ସେ ନିଶ୍ଚୟ ଜୀବିତ ଅଛି !

ସେଉଁଲି—ଜୀବିତ !

ଶୋଲାଙ୍କି—ଆଶ୍ଚର୍ଯ୍ୟ ନୁହେ, ସେଉଁଲି ! ମୋର ଧ୍ରୁବ-ଧାରଣା—ଶିବରାମ କୌଣସି ମହତ୍ ବ୍ୟକ୍ତିଙ୍କ ଆଶ୍ରୟରେ ଅଛି ।

ସେଉଁଲି—( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ) ଈଶ୍ୱର ଜାଣନ୍ତି !

ଶୋଲାଙ୍କି—ମୁଁ ଏଥର ନିଜେ ବୃଦ୍ଧର ଅନୁସନ୍ଧାନ-ଭାର ଗ୍ରହଣ କରୁଛି—ଅଚ୍ଛା, ସୈତରାମର କୌଣସି ସନ୍ଧାନ ପାଇଲ କି ?

ସେଉଁଲି—ସୈତରାମ ନିଶ୍ଚୟ ଲକ୍ଷା କର୍ତ୍ତୃକ ବନ୍ଦୀ ହୋଇଛି ।

ଶୋଲାଙ୍କି—ତେବେ ତୁମ୍ଭେ ବନ୍ଦୀର ଉଦ୍ଧାର ନିମନ୍ତେ ଯତ୍ନ କରୁନାହଁ କାହିଁକି ?

ସେଉଁଲି—କପଟ କରିବି ମହାରାଜ ?

ଶୋଲାଙ୍କି—'କପଟ କରିବି ?' ତୁମ୍ଭେ ବୀର ହୋଇ କହୁଛ 'କପଟ କରିବି' ?—ଶତ୍ରୁର ଦେଶ ଆକ୍ରମଣ କି ତୁମ୍ଭର କର୍ତ୍ତବ୍ୟ ନୁହେଁ ? ଶତ୍ରୁର ବିନାଶ ସାଧନ କି ତୁମ୍ଭର କର୍ତ୍ତବ୍ୟ ନୁହେଁ ? ଏତେ ସୈନ୍ୟର ଅଧିନାୟକତ୍ୱରେ ତେବେ ତୁମ୍ଭର କି ପ୍ରୟୋଜନ ? ଏତେ କଳକୌଶଳ ଶିକ୍ଷାରେ ତେବେ ତୁମ୍ଭର କି ଆବଶ୍ୟକତା ?

ସେଉଁଲି—ମହାରାଜ ! ବନ୍ଦୀ ମୋର ଭ୍ରାତା—ମାତ୍ର ସୈନ୍ୟମାନେ ତ ରାଜସୈନ୍ୟ ।

ଶୋଲାଙ୍କି—ଏହି କି ତୁମ୍ଭର, ଭ୍ରାତୃସ୍ନେହ, ସେଉଁଲି ? ନିଃସହାୟ କନିଷ୍ଠ ଭ୍ରାତା ତୁମ୍ଭର, ଶତ୍ରୁର ଅନ୍ଧକାରମୟ କାରାଗୃହରେ ଅସହ୍ୟ ଲାଞ୍ଛନା ଓ ଯନ୍ତ୍ରଣା ଭୋଗ କରୁଅଛି—ଆଉ ସହାୟସମ୍ପନ୍ନ ଜ୍ୟେଷ୍ଠଭ୍ରାତା ତୁମ୍ଭେ, ସୁସଜ୍ଜିତ ରାଜଭବନରେ ନିଶ୍ଚିନ୍ତ ହୃଦୟରେ ସିମାତୀତ ସମ୍ମାନ ଓ ଆନନ୍ଦ ଉପଭୋଗ କରୁଅଛ । କାହିଁ ଜଣେ ଶିଶୁ 'ଭାଇ ଭାଇ' ବୋଲି ମର୍ମଭେଦୀ ଚିତ୍କାରରେ ଗିରିଗୁହା ନିନାଦିତ ପୂର୍ବକ ଅଶ୍ରୁଧାରା ବର୍ଷଣରେ ନିର୍ଝରିଣୀର କଳେବର ବୃଦ୍ଧି କରୁଅଛି—ଆଉ କାହିଁ ଜଣେ ଯୁବକ ନିଜର ସହୋଦର କନିଷ୍ଠଭ୍ରାତାର ନାମ ପର୍ଯ୍ୟନ୍ତ ବିସ୍ମୃତ ହୋଇ, ଆନନ୍ଦ ମନରେ ରାଜୋଦ୍ୟାନରେ ବିଚରଣ ପୂର୍ବକ, କୃତ୍ରିମ ନିର୍ଝରିଣୀର ସୌନ୍ଦର୍ଯ୍ୟ ଉପଭୋଗ କରୁଅଛି । ଆଶ୍ଚର୍ଯ୍ୟ, ଆଶ୍ଚର୍ଯ୍ୟ ସେଉଁଲି ଯେ ଭ୍ରାତୃଶୋକର ଲେଶମାତ୍ର ଚିହ୍ନ ତୁମ୍ଭର ବଦନ ମଣ୍ଡଳରେ ନାହିଁ ।

ସେଉଁଲି—ମହାରାଜ ! ତେବେ ମୋର ଅନ୍ତଃସ୍ଥଳକୁ ଲକ୍ଷ୍ୟକରି ଦେଖନ୍ତୁ—ଭ୍ରାତୃଶୋକାଗ୍ନି କପଟ ମର୍ମସ୍ଥଳକୁ ପୋଡ଼ି ନାରଖାର କରି ଦେଲାଣି—ଲୌହକଧାରକୁ କପଟ ମଶାଣକାମୟ ମରୁଭୂମିରେ ପରିଣତ କରି ସାରିଲାଣି, ମାତ୍ର ତାହା, ଏ ପରାଧୀନ—ଏ ଦୀନଦାସ, କେବଳ ରାଜକାର୍ଯ୍ୟ ନିଷ୍ଠିକୃତରେ—ନିଜର କର୍ତ୍ତବ୍ୟ ନିଷ୍ଠିକୃତରେ,

ହାସ୍ୟମୁଖରେ ଘୋଡ଼ାଇ ରଖିଛୁ—ସାଗରସମ ଲୁଚାଇ ରଖିଛୁ ।

ଶୋଲଙ୍କି—ସେଓଜି ! ସୈତସିଂହ କି ମୋର ଜଣେ ରାଜକର୍ମଚାରୀ ନୁହେଁ ?—ତାହାର ଉଦ୍ଧାର ସାଧନ କି ତୁମ୍ଭ ପକ୍ଷେ ରାଜକାର୍ଯ୍ୟ ସମ୍ପାଦନ ନୁହେଁ ?

ସେଓଜି—ତାହା ଏ' ଦାସ ଉତ୍ତମରୂପେ ଜାଣେ; ମହାରାଜ !—ମାତ୍ର ଅନେକ କାର୍ଯ୍ୟ ଥିବା ସ୍ଥଳେ; କେଉଁଟି ଆଗେ କର୍ତ୍ତବ୍ୟ, କେଉଁଟି ପରେ କର୍ତ୍ତବ୍ୟ, ତା'ର ବିବେଚନା କରିବା ଉଚିତ ! ବର୍ତ୍ତମାନ ବିଦ୍ରୋହୀ ମାନେ ଅପସୃତ ହୋଇଛନ୍ତି—ରାଜ୍ୟରେ ଶାନ୍ତି ସ୍ଥାପିତ ହୋଇଛି—ଏ ସମୟରେ ସେ କାର୍ଯ୍ୟରେ ହସ୍ତକ୍ଷେପ କଲେ କୌଣସି କ୍ଷତି ନାହିଁ ।

ଶୋଲଙ୍କି—ତେବେ ଏହିକ୍ଷଣି ତୁମ୍ଭେ ସୈନ୍ୟମାନଙ୍କୁ ପ୍ରସ୍ତୁତ ହେବାକୁ ଆଦେଶ ଦିଅ—ଲଖାର ରାଜ୍ୟ ଧ୍ୱଂସ କର—ବନ୍ଦୀକୁ ମୁକ୍ତ କର—ଆଉ ସେ ତସ୍କରକୁ ବାନ୍ଧି ଶୀଘ୍ର ଏଠାକୁ ଘେନିଆସ ।

ସେଓଜି—ଯଥା ଆଜ୍ଞା, ମହାରାଜ !

( ପ୍ରସ୍ଥାନୋଦ୍ୟତ ହେବାକାଳେ ଦ୍ୱାରୀର ପ୍ରବେଶ )

ଦ୍ୱାରୀ—ମହାରାଜ ! କେନାଓଜରୁ ଦୂତ ଆସିଛନ୍ତି ।

ସେଓଜି—କେନାଓଜରୁ ଦୂତ !

ଶୋଲଙ୍କି—ଶୀଘ୍ର ତା'ଙ୍କୁ ପ୍ରବେଶ କରାଅ, ଦ୍ୱାରୀ ।

ଦ୍ୱାରୀ—ଯେ ଆଜ୍ଞା, ମହାରାଜ । ( ଦ୍ୱାରୀର ପ୍ରସ୍ଥାନ )

ଶୋଲଙ୍କି—ମନ୍ତ୍ରୀ ମହାଶୟ ! ଦୂତର ଆସିବାର କାରଣ କିଛି ଅନୁମାନ କରିପାରୁଛ କି ?

ମନ୍ତ୍ରୀ—ନିଶ୍ଚୟ କୌଣସି ଅଶୁଭ ବାର୍ତ୍ତା ଘେନି—

ସେଓଜି—ନିଶ୍ଚୟ ଯୁଦ୍ଧର ଆମନ୍ତ୍ରଣ ଘେନି ।

ଶୋଲଙ୍କି—( ସ ଶ୍ଳେଷେ ) ଯୁଦ୍ଧର ଆମନ୍ତ୍ରଣ ।

ସେଓଜି—( ସ୍ୱଗତ ) ଭଗବାନ ! ଆଶ୍ରୟଦାତାଙ୍କ ସହାୟ ହୁଅ । ( ଦୂତର ପ୍ରବେଶ )

ଦୂତ—ମହାରାଜ ! ଦୂତର ଅଭିବାଦନ ଗ୍ରହଣ କରନ୍ତୁ ।

ଶୋଲଙ୍କି—କୁହ, ଦୂତ—ତୁମ୍ଭର ବାଦସାହାଙ୍କର କି ସମ୍ବାଦ ?

ଦୂତ—ବାଦ୍‌ସାହାଙ୍କ ସମ୍ବାଦ—ଆପଣ ଯେଉଁ ରାଜକୁମାର ଦୁଇଜଣକୁ ଆଶ୍ରୟ ଦେଇଛନ୍ତି, ସେମାନେ କେନାଓଜରୁ ବିତାଡ଼ିତ – କେନାଓଜର ଶତ୍ରୁସ୍ୱରୂପ ।

ଶୋଲଙ୍କି—ବୁଝିପାରିଲି ନାହିଁ ତୁମ୍ଭର କଥା, ଦୂତ !

ଦୂତ—ଆପଣ ସେଓଜି, ସୈତସିଂହ ବୋଲି ଯେଉଁ ଦୁଇଜଣଙ୍କୁ ଆଶ୍ରୟ ଦେଇଛନ୍ତି—ସେମାନେ କେନାଓଜ ରାଜ୍ୟରୁ ବହିଷ୍କୃତ—ସୁତରାଂ କେନାଓଜର ଶତ୍ରୁସ୍ୱରୂପ ।

ଶୋଲଙ୍କି—କେନାଓଜର ଶତ୍ରୁ ସ୍ୱରୂପ କେନାଓଜର ରାଜବଂଶଧର ! ମାତାର ଶତ୍ରୁ କି ନିଜର ଗର୍ଭଜାତ ସନ୍ତାନ ହୁଏ ?

ଦୂତ—କେନାଓଜ ଯେ ବର୍ତ୍ତମାନ ବାଦ୍‌ସାହାଙ୍କ ଅଧୀନରେ, ମହାରାଜ !

ଶୋଲଙ୍କି—ଓଃ ! ତେବେ ମୋର ଭ୍ରମ ହୋଇଛି—ଅପହୃତ ବସ୍ତୁରେ ପ୍ରକୃତ ଅଧିକାରୀ ଅପେକ୍ଷା, ଅପହରଣକାରୀର ବେଶି ଅଧିକାର ଥାଏ !

ଦୂତ—ମହାରାଜ ! ତର୍କରେ ଦୂତର ପ୍ରୟୋଜନ ନାହିଁ । ତା'ର ପ୍ରୟୋଜନୀୟ ଯାହା, ସେ ନିବେଦନ କରି ସାରିଛି—ପୁନରାୟ ମଧ୍ୟ ନିବେଦନ କରୁଅଛି, ଆପଣ ଯେଉଁ ରାଜକୁମାର ଦୁଇଜଣକୁ ଆଶ୍ରୟ ଦେଇଛନ୍ତି ସେମାନେ କେନାଓଜର ଶତ୍ରୁସ୍ୱରୂପ—ଅର୍ଥାତ୍—ବାଦ୍‌ସାହାଙ୍କ ଶତ୍ରୁସ୍ୱରୂପ—

ଶୋଲଙ୍କି—ତେବେ ତୁମ୍ଭର ବାଦ୍‌ସାହ କଣ କହିବାକୁ ଚାହାନ୍ତି ଯେ ଆଶ୍ରୟଦାତା ମଧ୍ୟ ତାଙ୍କର ଶତ୍ରୁ !

ଦୂତ—ଅବଶ୍ୟ, ମହାରାଜ ! ମାତ୍ର ଆପଣ ଯେବେ ସେମାନଙ୍କୁ ବହିଷ୍କୃତ କରିଦିଅନ୍ତି, ତାହା ହେଲେ କୌଣସି ଅସଦ୍ଭାବ ରହିବ ନାହିଁ !

ଶୋଲଙ୍କି—ଯେବେ ବହିଷ୍କୃତ କରି ନ ଦିଏଁ ?

ଦୂତ—ତାହାହେଲେ ଯାହା ସଚରାଚର ଘଟିଥାଏ !

ଶୋଲଙ୍କି—ଯୁଦ୍ଧ !—ଅତି ଉତ୍ତମ—ମାତ୍ର ତୁମ୍ଭର ବାଦ୍‌ସାହାଙ୍କୁ ଏତିକି କହିଦେବ, ଶୋଲଙ୍କି ତାଙ୍କପରି ଡକାଏତ୍ ନୁହେଁ—ନରହତ୍ୟା କରି ଚୌର୍ଯ୍ୟବୃତ୍ତି କରିବା ତାଙ୍କର ସ୍ୱଭାବ ନୁହେଁ—

ସେ ମନୁଷ୍ୟ—ବିବେକୀ—ଅଶ୍ରୟ ସ୍ଥାନରୁ ଅଶ୍ରୟ ଦଅନ୍ତୁ—ପର ସକାଶେ ପ୍ରାଣ ଦଅନ୍ତୁ ।

ଦୂତ—ଠିକ୍ ଏହାପରି କହିବି, ମହାରାଜ । ଦୂତର କାର୍ଯ୍ୟ, ସଂବାଦ ବହନ କରିବା—ସୁସମ୍ବାଦ କିମ୍ବା ଦୁଃସମ୍ବାଦ, ତାହା ବିବେଚନା କରିବା ତାହାର କର୍ତ୍ତବ୍ୟ ନୁହେଁ ! ତେବେ ଯିବା ପୂର୍ବରୁ ଆପଣଙ୍କୁ ଏତିକି ଜଣାଇ ଦେଇଯାଏଁ, ଯେ ଆପଣ ଶୀଘ୍ର ଆତ୍ମରକ୍ଷା କରନ୍ତୁ—ଆମ୍ଭର ସୈନ୍ୟମାନେ ପ୍ରାୟ ଦ୍ୱାରଦେଶରେ ଉପସ୍ଥିତ ।

ଶୋଲଙ୍କି—ଏ ବୃଥା ଭୟ ପ୍ରଦର୍ଶନ, ଦୂତ ।

ଦୂତ—ଆସୁଛି, ମହାରାଜ ! ( ଅଭିବାଦନ )

ଶୋଲଙ୍କି—ଆସ, ଦୂତ !

ସେଓଁଜି—ହାୟ, ମହାରାଜ ! ଏହି ହତଭାଗ୍ୟମାନଙ୍କ ସକାଶେ ଯିନା ଏହି ଯୁଦ୍ଧ ଅଜି ।

ଶୋଲଙ୍କି—ସେଓଁଜି ! ଏ କଣ କହୁଛ ? ତୁମ୍ଭେ ଯେ ବର୍ତ୍ତମାନ ଜଣେ ରାଜକର୍ମଚାରୀ ।

ସେଓଁଜି—( ସ୍ୱଗତ ) ବାସ୍ତବିକ ( ଜାନୁପାତ ପୂର୍ବକ ) କ୍ଷମା କରନ୍ତୁ ମହାରାଜ—ମୁହୂର୍ତ୍ତିକ ନିମନ୍ତେ ଦାସ ତା'ର କର୍ତ୍ତବ୍ୟଜ୍ଞାନ ହରାଇଥିଲା ।

ଶୋଲଙ୍କି—ବେଶ୍, ତେବେ ଉଠ, ନିଜର କାର୍ଯ୍ୟ କର ( ସ୍ୱଗତ ) ହାୟ ! ସୋମନାଥର ଉଦ୍ଧାର ଶୀଘ୍ର କରି ପାରିଲି ନାହିଁ ।

( ନେପଥ୍ୟେ କୋଳାହଳ ) ଜୟ ବାଦ୍‌ସାହଙ୍କର ଜୟ !

ଶୋଲଙ୍କି—ଏଁ କଣ ? ଶତ୍ରୁ ଯେ ନିକଟବର୍ତ୍ତୀ !

ସେଓଁଜି—ଭୟନାହିଁ ମହାରାଜ—ଜାଗ, ସେଓଁଜି ! ଜାଗ, ସୈନ୍ୟଗଣ ! ଗାଅ ଉଚ୍ଚକଣ୍ଠେ 'ଜୟ ରାଜା ଶୋଲଙ୍କିର ଜୟ' ।

ସମସ୍ତେ—ଜୟ ରାଜା ଶୋଲଙ୍କିର ଜୟ !

( ସମସ୍ତଙ୍କର ବେଗେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ରାଜପ୍ରାସାଦ ସମ୍ମୁଖ—

[ ଦୁର୍ଜ୍ଜୟର ପ୍ରବେଶ ]

ଦୁର୍ଜ୍ଜୟ—( ନେପଥ୍ୟକୁ ଚାହିଁ ) ପଳାଅନା, ପଳାଅନା, ସୈନ୍ୟଗଣ—ଛିଡ଼ାହୁଅ—ଯୁଦ୍ଧକର — ସେନାପତିର ମାନ ରକ୍ଷାକର—ବାଦ୍‌ସାହାଙ୍କ ମାନ ରକ୍ଷାକର ।

( ନେପଥ୍ୟେ ) ଜୟ ସେନାପତି ସେଓଁଜିଙ୍କ ଜୟ ।

ଦୁର୍ଜ୍ଜୟ—( ପୂର୍ବବତ୍ ) ଭୟନାହିଁ, ସୈନ୍ୟଗଣ !—ଯୁଦ୍ଧକର—ଏ କଣ ? ସେ କୁକ୍‌କୁରଟା ନାମରେ ଏତେ ଭୟ କାହିଁକି ? ତୁମ୍ଭେମାନେ କି ଯୋଦ୍ଧା ନୁହଁ ? ତୁମ୍ଭର ସେନାପତି କି ବୀର ନୁହେଁ ?—ସାହସ କର—ଦମ୍ଭଧର—ମୁଷ୍ଟିମେୟ ଶତ୍ରୁସୈନ୍ୟ, ସୁଦୃଢ଼ ପ୍ରାଚୀର-ନିକ୍ଷିପ୍ତ-ମୃତ୍ ଭାଣ୍ଡତୁଲ୍ୟ ତୋଟ୍ଟି-ଠାରେ ଖଣ୍ଡ ଖଣ୍ଡ ହୋଇଯିବ ।

( ନେପଥ୍ୟେ ) ଏହି ଶତ୍ରୁ !—ଆକ୍ରମଣ କର—ଜୟ ସେନାପତି ସେଓଁଜିଙ୍କ ଜୟ !

ଦୁର୍ଜ୍ଜୟ—ପ୍ରତି-ଆକ୍ରମଣ କର, ବୀରଗଣ ! ପ୍ରତି-ଆକ୍ରମଣ କର ! ଏ' କଣ ? ପଳାଉଛ—ସେହି କୁକ୍‌କୁରଟା କି ଏଡ଼େ ଭୀଷଣ ଯେ ତା'ର ସନ୍ଦର୍ଶନ ମାତ୍ରେ, ସାମାନ୍ୟ ସର୍ପ ତୁଲ୍ୟ ଚକ୍ଷୁାନ୍ତେଷଣ କରିବାକୁ ବ୍ୟସ୍ତବ୍ୟସ୍ତ ! ଛିଡ଼ାହୁଅ—ଛିଡ଼ାହୁଅ—ସେନାପତିର ଆହ୍ୱାନ ଶ୍ରବଣ କର—ବାଦ୍‌ସାହାଙ୍କ ହୁକୁମ ସ୍ମରଣ କର ।

( ନେପଥ୍ୟେ ) ଏହି ବିଶ୍ୱାସଘାତକ—ଧର—ମାର ।

ଦୁର୍ଜ୍ଜୟ—ସବୁ ଶେଷ ! ଶତ୍ରୁସୈନ୍ୟ ଉପସ୍ଥିତ—ମିତ୍ର-ସୈନ୍ୟ ପଳାୟିତ—ଦୁର୍ଜ୍ଜୟସିଂହ ବର୍ତ୍ତମାନ ଜୀବନ ମରଣର ସନ୍ଧିସ୍ଥଳରେ ଅବସ୍ଥିତ ।

( ନେପଥ୍ୟେ ) ଧର—ମାର—ଜୟ ସେନାପତି ସେଓଁଜିଙ୍କ ଜୟ !

ଦୁର୍ଜ୍ଜୟ—ସେହି କୁକ୍କୁରହସ୍ତରେ ପ୍ରାଣ ଦେବା ଅପେକ୍ଷା—ଆତ୍ମହତ୍ୟା ଶତଗୁଣେ ଶ୍ରେୟସ୍କର ।

( ଆତ୍ମହତ୍ୟା କରିବାକୁ ଉଦ୍ୟତ ହେବା ସମୟେ ସେଓଜଙ୍କ ପ୍ରବେଶ ଓ ହସ୍ତଧାରଣ କରିବା )

ସେଓଜ—ଆତ୍ମହତ୍ୟା ବୀରପକ୍ଷେ ଅଶୋଭନୀୟ, ଗୁରୋ !

ଦୁର୍ଜ୍ଜୟ—ତୋ' ପରି କୁକ୍କୁର ହସ୍ତରେ ହତ ହେବାଠାରୁ ଆତ୍ମହତ୍ୟା ଶତଗୁଣେ ଶ୍ରେୟସ୍କର ।

ସେଓଜ—ବିନାଯୁଦ୍ଧରେ, ବୀର କେବେ ବୀରକୁ ହତ୍ୟା କରେ ନାହିଁ, ଗୁରୋ ।

ଦୁର୍ଜ୍ଜୟ—ମୁଁ ଏକାକୀ ବୋଲି କ'ଣ ତୋର ଏ ପରିହାସ, କୁକ୍କୁର ।

ସେଓଜ—ପରିହାସ ନୁହେ, ଗୁରୋ—ମୁଁ ମଧ୍ୟ ଏକାକୀ, ଏକାକୀ ହିଁ ଯୁଦ୍ଧ କରିବି ।

ଦୁର୍ଜ୍ଜୟ—ଏତେ ସାହସ ତୋର; ?—ବେଶ୍ ତେବେ ଯୁଦ୍ଧକର ।

ସେଓଜ—ମାତ୍ର ଗୋଟିଏ ପ୍ରଶ୍ନ, ଗୁରୁଦେବ ।

ଦୁର୍ଜ୍ଜୟ—କି ପ୍ରଶ୍ନ, କୁକ୍କୁର ?

ସେଓଜ—ଏ' ଯୁଦ୍ଧର କାରଣ କଣ, ପ୍ରଭୋ ?—ପ୍ରଜା ହୋଇ ରାଜାଙ୍କ ବିରୁଦ୍ଧରେ ସୈନ୍ୟଚାଳନ !—ଭୃତ୍ୟ ହୋଇ ପ୍ରଭୁଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ ।—ଏହାକି ଆପଣଙ୍କପରି ବୀରପକ୍ଷେ କମ ଅଗୌରବର ବିଷୟ ?—ଆପଣଙ୍କ ପରି ଜ୍ଞାନୀ ପକ୍ଷେ କମ ଲଜ୍ଜାର ବିଷୟ ?

ଦୁର୍ଜ୍ଜୟ—ସମସ୍ତ ତୋ'ର ସକାଶେ, କୁକ୍କୁର—ତୋର ସକାଶେ ।

ସେଓଜ—ମୋ'ର ସକାଶେ ।

ଦୁର୍ଜ୍ଜୟ—ବ୍ୟଙ୍ଗର ପ୍ରୟୋଜନ ନାହିଁ, କୁକ୍କୁର—ଯୁଦ୍ଧ କର ।

ସେଓଜ—( ଜାନୁପାତ ପୂର୍ବକ ) କ୍ଷମା କରନ୍ତୁ, ଗୁରୁଦେବ । କହନ୍ତୁ ଅକପଟରେ—ଏ ଯୁଦ୍ଧ କି ମୋ'ର ସକାଶେ ?

ଦୁର୍ଜ୍ଜୟ—ନୁହେଁ, କୁକ୍କୁର ?—କିଏ ସେହି ? ଅକାଳେ ଆସି, ମୋର ବାସନାକୁସୁମଟି ପ୍ରସ୍ଫୁଟିତ ହେବା ସମୟରେ, ତାହା ସଜୋରେ ଛିନ୍ନ କରି ନେଲା ?—କିଏ ସେହି ? ଅସମୟରେ ଆସି, ମୋର ଅଧ୍ୟବସାୟ ଚରମ ସୀମାରେ ଉପସ୍ଥିତ ହେବା ବେଳରେ, ତାହା ବଳପୂର୍ବକ ପ୍ରତିରୋଧ କରି ବସିଲା ? ତୁହି—ତୁହି, କୁକ୍କୁର—ତୋହରି ହେତୁ ଦୁର୍ଜ୍ଜୟ ଆଜ ବିଶ୍ୱାସଘାତକ !—ଦୁର୍ଜ୍ଜୟ ଆଜ ନରପିଶାଚ !

ସେଓଜ—ଗୁରୁଦେବ ! ଗୁରୁଦେବ ! ଏତେ ଅପରାଧ ଏ ଅଧମ ଶିଷ୍ୟର !—ଏହା ଯେ ସ୍ୱପ୍ନରେ ସୁଦ୍ଧା ସେ କେବେ ଭାବି ନ ଥିଲା !—କହନ୍ତୁ, କହନ୍ତୁ, ଗୁରୁଦେବ ! ଏ ଅପରାଧର କି ମାର୍ଜନା ନାହିଁ ?

ଦୁର୍ଜ୍ଜୟ—ମାର୍ଜ୍ଜନା !—ଅଛି ତୋର ହତ୍ୟାରେ !

ସେଓଜ—ସାନନ୍ଦେ ସେ ମାର୍ଜନା ଗ୍ରହଣ କରିବାକୁ ପ୍ରସ୍ତୁତ, ଗୁରୁଦେବ ! ଯେବେ ଗୋଟିଏ ପ୍ରାଣୀର ବିନାଶରେ, ଲକ୍ଷ ଲକ୍ଷ ଲୋକର ପ୍ରାଣ ରକ୍ଷା ହୁଏ—ରାଜାପ୍ରଜାର ମିଳନ ହୁଏ—ପ୍ରଭୁ ଭୃତ୍ୟର ସମ୍ବନ୍ଧ ଅକ୍ଷୁଣ୍ଣ ରହେ—ଆଉ ଗୁରୁଙ୍କ ପ୍ରତି ଗୁରୁତର ଅପରାଧର ମାର୍ଜ୍ଜନା ହୁଏ—ତେବେ ଏହିକ୍ଷଣି ସେ ମାର୍ଜ୍ଜନା ଦିଅନ୍ତୁ, ଗୁରୁଦେବ ଏହିକ୍ଷଣି ଏ କଳଙ୍କିତ ପ୍ରାଣ ନାଶ କରନ୍ତୁ, ଗୁରୁଦେବ ! ( ଅସ୍ତ୍ର ପରିତ୍ୟାଗ ପୂର୍ବକ ଅଧୋବଦନ ହେବା ) ନା—ଗୁରୁଙ୍କୁ ନରହତ୍ୟା ପାପରେ କଳଙ୍କିତ ହେବାକୁ ଦେବିନାହିଁ—( ଅସ୍ତ୍ରଧାରଣ କରି ) —ସ୍ୱହସ୍ତେ ଗୁରୁଙ୍କ କାର୍ଯ୍ୟ ସାଧିତ ହେଉ ! ( ଆତ୍ମହତ୍ୟାକରିବାକୁ ଉଦ୍ୟତ )

[ ଶୋଲଙ୍କିର ବେଗେ ପ୍ରବେଶ ]

ଶୋଲଙ୍କି—ସେଓଜି !

ସେଓଜ—କିଏ ମୋତେ ଆହ୍ୱାନ କଲା ? ଗୁରୁଙ୍କ କାର୍ଯ୍ୟରେ କିଏ ମୋତେ ବାଧା ଦେଲା ?

ଶୋଲଙ୍କି—ସେଓଜ !

ସେଓଜ—( ସଚକିତେ ) ଏ ଯେ ମହାରାଜ !

ଶୋଲଙ୍କି—ଏତେ ଦୁର୍ବଳ ତୁମେ, ସେଓଜ ?

ସେଓଜ—( ନୀରବ )

ଶୋଲାଙ୍କି—ଶୁଣ, ସେଓଜି ! ଜଣେ ବିଶ୍ୱାସଘାତକ ରାଜଦ୍ରୋହୀ—ରାଜାର ପ୍ରାଣ ହରଣ କରିବାକୁ ଉଦ୍ୟତ—ରାଜ୍ୟର ସର୍ବନାଶ କରିବାକୁ ପ୍ରସ୍ତୁତ —ଆଉ ତୁମ୍ଭେ, ରାଜକର୍ମଚାରୀ ହୋଇ ରାଜବଳ ସେନାଗଣର ଅଧିନାୟକ ହୋଇ—ବିଶ୍ୱାସ-ଘାତକକୁ ତାହାର ଅଭୀଷ୍ଟ ସାଧନରେ ପ୍ରଶ୍ରୟ ଦେଉଛ—ଗୁରୁ ବୋଲି ସମ୍ମାନ ପ୍ରଦର୍ଶନପୂର୍ବକ—ରାଜଦ୍ରୋହୀକୁ ରାଜା ଓ ରାଜ୍ୟର ସର୍ବନାଶ ସାଧନରେ ପ୍ରଶ୍ରୟ ଦେଉଛ—ଏହିକି ତୁମ୍ଭର ଯୋଗ୍ୟାଚରଣ ସେଓଜି ?

ସେଓଜି—( ନୀରବ )

ଶୋଲାଙ୍କି—ମହାଭାରତର ଯୁଦ୍ଧ କଥା ଥରେ ସ୍ମରଣ କର, ସେଓଜି ! କୁରୁକ୍ଷେତ୍ରରେ ଗୁରୁଶିଷ୍ୟସମ୍ବାଦ ଥରେ ସ୍ମରଣ କର, ସେଓଜି !—ଏ କ୍ଷେତ୍ର ଭୀଷଣ କ୍ଷେତ୍ର—ମାୟା ମମତା ପ୍ରଦର୍ଶନ କରିବାର କ୍ଷେତ୍ର ନୁହେଁ—ପ୍ରେମଭକ୍ତି ପ୍ରଦର୍ଶନ କରିବାର କ୍ଷେତ୍ର ନୁହେଁ—ପାପ-ପୁଣ୍ୟ ବିଚାର କରିବାରକ୍ଷେତ୍ର ନୁହେଁ—କେବଳ ପରୀକ୍ଷାକ୍ଷେତ୍ର—ରାଜଭକ୍ତି ଓ ଦେଶଭକ୍ତି ପରିଚୟ ଦେବାର କ୍ଷେତ୍ର—ମାନସିକ ଶକ୍ତି ଓ ଶାରୀରିକ ଶକ୍ତି ପରିଚୟ ଦେବାର କ୍ଷେତ୍ର —ସର୍ବଶେଷେ କଠୋର କର୍ତ୍ତବ୍ୟପରାୟଣତାର ପରିଚୟ ଦେବାର କ୍ଷେତ୍ର ।

ସେଓଜି—ମହାରାଜ ! କ୍ଷମା କରନ୍ତୁ ଅଧମ ଦାସକୁ—ହୃଦୟରେ କ୍ଷଣିକ ଦୁର୍ବଳତା ହେତୁ, ଦାସ ତାର କର୍ତ୍ତବ୍ୟଜ୍ଞାନ ପୁଣି ହରାଇଥିଲା ।

ଶୋଲାଙ୍କି—ବେଶ, ଏବେ ବନ୍ଦୀକର ବିଶ୍ୱାସଘାତକକୁ !

ସେଓଜି—ବାନ୍ଧ ବିଶ୍ୱାସଘାତକକୁ, ସୈନ୍ୟଗଣ !

[ ସୈନୀକର ଦୁର୍ଜ୍ଜୟକୁ ବନ୍ଦୀକରଣ ]

ଦୁର୍ଜ୍ଜୟ—( ସ୍ୱଗତ ) କାହିଁକି ମୁଁ ଆତ୍ମହତ୍ୟା ନ କଲି ? ଆଶାକୁହୁକିନୀର ମନ୍ତ୍ରରେ କାହିଁକି ମୁଁ ମୁଗ୍ଧହେଲି ?—ଭାଗ୍ୟ ! ଭାଗ୍ୟ !

ଶୋଲାଙ୍କି—କ'ଣ ଭାବୁଛୁ ପାଷଣ୍ଡ ?

ଦୁର୍ଜ୍ଜୟ—ଏ'ପରି ଲାଞ୍ଛନାଠାରୁ ମୃତ୍ୟୁ ଶ୍ରେୟସ୍କର ।

ଶୋଲାଙ୍କି—ମୃତ୍ୟୁଯନ୍ତ୍ରଣା କି ସହ୍ୟ କରି ପାରିବୁ ବୁଝିପାରୁନ ?

ଦୁର୍ଜ୍ଜୟ—ଖୁବ୍ ପାରିବି !—ମୃତ୍ୟୁ ଯନ୍ତ୍ରଣା—କ୍ଷଣିକ ଯନ୍ତ୍ରଣା ମାତ୍ର ।

ଶୋଲାଙ୍କି—ତାହା ଯେବେ ମୁଁ ଚିରସ୍ଥାୟୀ କରିଦିଏ ?

ଦୁର୍ଜ୍ଜୟ—ଅସମ୍ଭବ । ବିଧାତାଙ୍କ ବିଧାନ ଅପରିବର୍ତ୍ତନୀୟ ।

ଶୋଲାଙ୍କି—ତା' ସତ୍ୟ—ମାତ୍ର ସେହି ବିଧାନରେ ଯେବେ ମୃତ୍ୟୁ ଯନ୍ତ୍ରଣା ଚିରସ୍ଥାୟୀ କରିବାର ଉପାୟ ଥାଏ ?

ଦୁର୍ଜ୍ଜୟ—ଅସମ୍ଭବ ।

ଶୋଲାଙ୍କି—ଅସମ୍ଭବ ନୁହେଁ, ପାଷଣ୍ଡ—ତୁମ୍ଭମାନଙ୍କପରି ପାଷଣ୍ଡଙ୍କ ସକାଶେ ସେ ଉପାୟ ଅଛି ।

ଦୁର୍ଜ୍ଜୟ—ଅଛି ?

ଶୋଲାଙ୍କି—ହଁ ଅଛି—ଆଜନ୍ମ ନିର୍ଜ୍ଜନ କାରାବାସ !

ଦୁର୍ଜ୍ଜୟ—ଆଜନ୍ମ ନିର୍ଜ୍ଜନକାରାବାସ ! ତପ୍ତ ତୈଳରେ ଦଗ୍ଧ ହେବାଠାରୁ ଯେ ଏହା ଅଧିକତର ଯନ୍ତ୍ରଣାଦାୟକ—ବିଷାକ୍ତ ସର୍ପ ଦ୍ୱାରା ଦଂଷ୍ଟ ହେବାଠାରୁ ଏହା ଅଧିକତର କଷ୍ଟଦାୟକ । ଅନୁନୟ କରୁଛି, ମହାରାଜ—ମୋର ବିନାଶର ଆଦେଶ ପ୍ରଦାନ କରନ୍ତୁ—ସେ ଯନ୍ତ୍ରଣାରୁ ଅବ୍ୟାହତି ଦିଅନ୍ତୁ ।

ଶୋଲାଙ୍କି—ହାଃ ହାଃ ହାଃ—କିପରି ଯନ୍ତ୍ରଣା ତୋର ଉଦ୍ଭାବନ କରିଛି, ପାମର ?—କିପରି ଦଣ୍ଡ ?

ଦୁର୍ଜ୍ଜୟ—ସେଓଜି ! ସେଓଜି ! କିପାଁ ମୋତେ ହତ୍ୟା ନ କଲ ? ମୁଁ ବା ନିର୍ବୋଧ କିପାଁ ଆତ୍ମହତ୍ୟା ନ କଲି ?

ସେଓଜି—ମହାରାଜ !

ଶୋଲାଙ୍କି—ନା, ସେଓଜି—ଏ ବିଚାରର ସମୟ—ମିନତି ଅନୁନୟ ଶୁଣିବାର ସମୟ ନୁହେଁ—ଯାଅ, ସୈନ୍ୟ ! ବନ୍ଦୀକୁ ଶୀଘ୍ର ନେଇଯାଅ—ଦଣ୍ଡ ତାର ଆଜନ୍ମ ନିର୍ଜ୍ଜନ କାରାବାସ !

ଦୁର୍ଜ୍ଜୟ—ଉଃ ନିର୍ଜ୍ଜନ କାରାବାସ ! ମହାରାଜ ! ମହାରାଜ !

[ ଚଞ୍ଚଳାର ଅସି ହସ୍ତେ ବେଗେ ପ୍ରବେଶ ]

ଚଞ୍ଚଳା—ଏ'ତ ଉପଯୁକ୍ତ ଦଣ୍ଡ ହେଲନାହିଁ, ମହାରାଜ !

ଶୋଲଙ୍କି—କି ଦଣ୍ଡ ଉପଯୁକ୍ତ ହେବ ତେବେ, ଚଞ୍ଚଳା ?—ତୋର ଲାଞ୍ଛନାକାରୀକୁ ତୁହି ତେବେ ଦଣ୍ଡ ଦେ ।

ଚଞ୍ଚଳା—ଦଣ୍ଡଧାରୀ ରାଜା ଯେତେବେଳେ ଉପସ୍ଥିତ—ସେତେବେଳେ ଏ ସାମାନ୍ୟ ବାଳିକା କି ଦଣ୍ଡ ଦେବ ?

ଶୋଲଙ୍କି—ନା, ଚଞ୍ଚଳା—ତୋର ଲାଞ୍ଛନାକାରୀକୁ ତୁହି ଦଣ୍ଡ ଦେ ।

ଚଞ୍ଚଳା—ପ୍ରକୃତରେ କି ତେବେ ଏହି ବାଳିକାକୁ ଲାଞ୍ଛନାକାରୀର ଦଣ୍ଡଭାର ଦେଉଛନ୍ତି, ପିତଃ ?

ଶୋଲଙ୍କି—ହଁ, ଚଞ୍ଚଳା ସାନନ୍ଦେ ପ୍ରଦାନ କରୁଛି—ମୁଁ ଚାହେଁ କଠିନତମ ଦଣ୍ଡ—କଠିନତମ ଶାସ୍ତି । ତୋ'ର ଦଣ୍ଡ ନିଶ୍ଚୟ କଠିନତମ ହେବ ।

ଦୁର୍ଜ୍ଜୟ—କଠିନତମ ଦଣ୍ଡ !—ନିର୍ଜନ କାରାବାସଠାରୁ କଠିନତମ ଦଣ୍ଡ ! ନିର୍ଦ୍ଦୟା ହୁଅନା, ଜେମାଦେଈ ! ତୁମ୍ଭେହିଁ ଦିନେ କହିଥିଲ ଜେମାଦେଈ, 'କୁସୁମ-କୋମଳ ନାରୀ ହୃଦୟ କଦାପି ନିର୍ଦ୍ଦୟ ହୋଇପାରେ ନା, ଭାଇ !

ସେଓଜି—ଦେବୀ କେବେ ଦାନବୀ ହୁଏ ନାହିଁ, ଜେମାଦେଈ ?

ଚଞ୍ଚଳା—ତାହାର କଥା ମୁଁ ଶୁଣିବାକୁ ଚାହେଁନା—ରାଜାଦେଶରେ ମୁଁ ବର୍ତ୍ତମାନ ବିଚାରକ—ମୁଁ ବର୍ତ୍ତମାନ ଦଣ୍ଡଦାତା—ଯାହା ଆଦେଶ କରିବି, ତାହାହିଁ ଅକ୍ଷରେ ଅକ୍ଷରେ ପ୍ରତିପାଳିତ ହେବ ।

ଶୋଲଙ୍କି—ଠିକ୍ କହୁଛୁ, ଚଞ୍ଚଳା !

ଚଞ୍ଚଳା—ଘାତକ !—ନା, ସ୍ୱହସ୍ତରେ ଦୋଷିର ଦଣ୍ଡ ମୁଁ ବିଧାନ କରିବି !

ଶୋଲଙ୍କି—ତାହାହିଁ ଉଚିତ ଚଞ୍ଚଳା !

ଚଞ୍ଚଳା—ଘେନିଆସ ବନ୍ଦୀକୁ, ସୈନ୍ୟଗଣ—( ହସ୍ତ-ବନ୍ଧନ ମୁକ୍ତ କରିବା ) ଯାଅ, ଭାଇ—ତୁମ୍ଭେ ମୁକ୍ତ ।

ସମସ୍ତେ—ମୁକ୍ତ !

[ଆଶ୍ଚର୍ଯ୍ୟଭାବେ ସମସ୍ତେ ଚଞ୍ଚଳାକୁ ଚାହିଁ ରହିବା ]

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

—ଅନ୍ତଃପୁର—

[ ଶୋଲଙ୍କି ଓ ବିମଳା ]

ଶୋଲଙ୍କି—ଦୁର୍ଜ୍ଜୟର ଭାବ ପରିବର୍ତ୍ତିତ ହୋଇଛି, ବିମଳା !

ବିମଳା—ମୁଁ ଶୁଣିଥିଲି, ସେ କୁଆଡ଼େ ପୁଣି ସେଓଜିଙ୍କ ଆଡ଼େ ଯାତା କରିଛନ୍ତି ।

ଶୋଲଙ୍କି—ମୋର ଆଉ ଭୟ ନାହିଁ, ସେ ଭାବ ସାଧୁ ହୋଇ ଗଲାଣି ।

ବିମଳା—ମା ଭଗବତୀ ଜାଣନ୍ତି !

ଶୋଲଙ୍କି—ଯାହାହେଉ, ବିମଳା—ସହି ତୋର ଏକା ଠିକ ବିଚାର କରିଛି !

ବିମଳା—ମୋର ସହୀର କି ତୀକ୍ଷ୍ଣ ବୁଦ୍ଧି,—ଖାଲି ଯା—

ଶୋଲଙ୍କି—'ଖାଲିଯା' କ'ଣ ବିମଳା ?

ବିମଳା—ବିଧାତା ସହୀକି ମୋର, ଯା ପୁରୁଷ କରି ନ ଦେଲେ ?

ଶୋଲଙ୍କି—ନା, ବିମଳା ! ଈଶ୍ୱର ଯାହା କରନ୍ତି ମଙ୍ଗଳ ସକାଶେ, ଚଞ୍ଚଳା ଯେ ମୋର ଏକାଧାରେ ସନ୍ତାନ ଓ ଜନନୀ—ଅଚ୍ଛା ବିମଳା, ମୁଁ ଯେଉଁ କଥା କହିଥିଲି, ମନେ ରଖିଛୁ, କି ?

ବିମଳା—ଖୁବ୍ ମନେ ରଖିଛି, ମହାରାଜ !

ଶୋଲଙ୍କି—ସେହି ଭାବନା ବର୍ତ୍ତମାନ ରାଜ୍ୟଭାବନାକୁ ବଳି ପଡ଼ିଲାଣି ବିମଳା ।

ବିମଳା—ଆପଣ ନିଶ୍ଚିନ୍ତ ରହନ୍ତୁ ! ଆପଣଙ୍କ ମନୋନୀତ ପାତ୍ର ହିଁ ସହୀର ମନୋନୀତ ହେବ ।

ଶୋଲଙ୍କି—ସେଓଜିର ମଧ୍ୟ ଅଭିଳାଷ ବୁଝିବା ଉଚିତ । ସେ ଯେ ବଡ଼ ଗମ୍ଭୀର—ଅଚ୍ଛା, ସେ ବିଷୟରେ କୌଣସି ଆଭାସ କି କେବେ ପାଇଛୁ ?

ବିମଳା—ରହସ୍ୟଚ୍ଛଳରେ ବି କେବେ ନାହିଁ, ମହାରାଜ !

ଶୋଲଙ୍କି—ଏହି ତୋ'ର ସନ୍ଧ୍ୟା ଆସିଲାଣି, ବର୍ତ୍ତମାନ ମୁଁ ଯାଉଛି, ରାଜକାର୍ଯ୍ୟର ସମୟ ହୋଇଗଲାଣି—ପରେ ପୁଣି କଥାବାର୍ତ୍ତା ହେବା । ( ଶୋଲଙ୍କିର ପ୍ରସ୍ଥାନ )

[ ଚଞ୍ଚଳାର ପ୍ରବେଶ ]

ଚଞ୍ଚଳା—କି ସଖି ? ବାପାଙ୍କ ସଙ୍ଗେ କି କଥାବାର୍ତ୍ତା ହେଉଥିଲା କି ?

ବିମଳା—କିଛି ନାହିଁ—ବାପା କହୁଥିଲେ, ବଗିଚାରେ ଗୋଟିଏ ଫୁଲ ଫୁଟିଛି ।

ଚଞ୍ଚଳା—କି ଫୁଲ ସ ?

ବିମଳା—ସେମିତିକା ଫୁଲ କି ଆଉ କେବେ କେଉଁଠି ଫୁଟିଥିଲା ଯେ, ନାଁ କହିବି ?

ଚଞ୍ଚଳା—ଦେଖିବାକୁ କେମିତି ?

ବିମଳା—ପାରିଜାତଠୁଁ ଢେର ଅଧିକ ସୁନ୍ଦର ।

ଚଞ୍ଚଳା—ପାରିଜାତ କ'ଣ ତୁ ଦେଖିଛୁ, ବିମଳା ?

ବିମଳା—ଦେଖିନାହିଁ ବୋଲି ତ ତା' ସଙ୍ଗେ ତୁଳନା କରୁଛି ।

ଚଞ୍ଚଳା—ଅଚ୍ଛା, ଗନ୍ଧ ?

ବିମଳା—ଫୁଲ ଫୁଟିଲେ, ନନ୍ଦନକାନନରେ ବି ଏ'ପରି ଗନ୍ଧ ହୁଏ କି ନାହିଁ ସନ୍ଦେହ ।

ଚଞ୍ଚଳା—ତୁ କଣ ଆଜି ଗଞ୍ଜେଇ ଖାଇଛୁ ବିମଳା ?

ବିମଳା—ମୋ କଥାରେ ତେବେ ଅବିଶ୍ୱାସ ହେଉଛି ?

ଚଞ୍ଚଳା—ତୁ ସେପରି କହୁଛୁ—ଅଚ୍ଛା ଚାଲିଲୁ, କେଉଁଠି ଦେଖେଇବୁ ?

ବିମଳା—ନିଶ୍ଚୟ ଦେଖାଇବି—

ଚଞ୍ଚଳା—ତେବେ ଚାଲ ।

ବିମଳା—ଆଗେ ଶୁଣିସାର—ବାପା କହୁଛନ୍ତି ସେ ଫୁଲଟିକୁ ଉପହାର ଦେବାକୁ ।

ଚଞ୍ଚଳା—କାହାକୁ ସ ?

ବିମଳା—ନିଶ୍ଚୟ ଜଣେ ଯୋଗ୍ୟପାତ୍ରକୁ ।

ଚଞ୍ଚଳା—ଆମର ଗୋବିନ୍ଦ ଜିଉଙ୍କୁ ନା ?

ବିମଳା—ନିଶ୍ଚୟ ନିଶ୍ଚୟ—ଘରଦିଅଁଙ୍କୁ ଛାଡ଼ି ପରଦିଅଁଙ୍କୁ କି କେହି କେବେ ଦିଏ ?

ଚଞ୍ଚଳା—ତେବେ ଶୀଘ୍ର ଦେଇ ଦେଉନାହାନ୍ତି ଫୁଲ ଯେବେ ମଉଳି ଯାଏ ?

ବିମଳା—ତୁମର ସମ୍ମତିକୁ ତ ଅପେକ୍ଷା କରିଛନ୍ତି ।

ଚଞ୍ଚଳା—ହଁ—ତୁ' ଏଡ଼େ ଦୁଷ୍ଟ ହେଲୁଣି, ବିମଳା ? ( ବିମଳାର ଖୋସାକୁ ଧରି ଓଟାରିବା )

[ ସେଓଜିର ପ୍ରବେଶ ]

ସେଓଜି—ଜେମାଦେଈ !

ବିମଳା—( ଅର୍ଦ୍ଧ ସ୍ୱଗତ ) ସବୁଦିନ କଣ ସେହିପରି ଡାକୁଥିବେ ସେନାପତେ ?

ଚଞ୍ଚଳା—( ଅନୁଚ୍ଚସ୍ୱରେ ) ବିମଳା ! ( ପ୍ରସ୍ଥାନ )

ସେଓଜି—ଏ' କଣ ? ଜେମାଦେଈ ଚାଲିଗଲେ କାହିଁକି ବିମଳା ?

ବିମଳା—ଚାଲିଯିବେ ନାହିଁ ?

ସେଓଜି—କାହିଁକି ? ମୋ'ର କି ସମ୍ମାନ ପ୍ରଦର୍ଶନରେ କୌଣସି ତ୍ରୁଟି ହୋଇଛି ?

ବିମଳା—ମୁଁ କି ଜାଣେ, ତ୍ରୁଟି ହୋଇଛି କି ନାହିଁ—ବିଚାର ହେଲା ବେଳେ ବୁଝିବେ ।

ସେଓଜି—( ସ୍ୱଗତ ) ବୁଝିଛି ତୁମର ଭାବ, ବିମଳା—ମାତ୍ର ସେଓଜିର କଠୋର ବ୍ରତ ସମ୍ପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ, ସେ ଦୁର୍ବଳ ଭାବ ପୋଷଣ କରିବା ତା' ପକ୍ଷେ ଅସମ୍ଭବ । ( ପ୍ରକାଶ୍ୟେ ) ବିମଳା ! ଭାରି ଶୁଭସମ୍ବାଦ, ବାଦସାହ ସନ୍ଧିପ୍ରସ୍ତାବ କରି ପଠାଇ ଥିଲେ, ମାତ୍ର ମହାରାଜ, କେନାଉଜ ସିଂହାସନ ପରିତ୍ୟାଗ ନ କଲେ ଏ' ପ୍ରସ୍ତାବ ଗ୍ରହଣ କରିବେ ନାହିଁ ବୋଲି, ଦୂତକୁ ଫେରାଇ ଦେଇଛନ୍ତି । (ସ୍ୱଗତ) ହାୟ ଶିବ କକା କେଉଁ-ଠାରେ ରହିଲ—ଏ' ଶୁଭସମ୍ବାଦ ଯା ନ ଶୁଣି ଗଲ ।

ବିମଳା—ସେ ଯା' ହେଉ, ଆପଣଙ୍କର ଯୁଦ୍ଧକାର୍ଯ୍ୟ ଏଥର ଶେଷ ହେଲାତ ?

ସେଓଜି—କାହିଁ ଶେଷହେଲା, ବିମଳା ?—ମୁଁ ଯେ ଏହିକ୍ଷଣି ଲଖାର ଦେଶ ଆକ୍ରମଣ କରିବାକୁ ବାହାରିଲି ।

ବିମଳା—ଏହିକ୍ଷଣି ?

ସେଠଜୀ—ହଁ ଏହିକ୍ଷଣି—ଆଉ ବିଳମ୍ବ କରିପାରୁ ନାହିଁ—ବିଦାୟ ।

ବିମଳା—ସମ୍ରାଟଙ୍କୁ ବିଦାୟ ଜଣାଇବେ ନାହିଁ ?

ସେଠଜୀ—ତୁମେ ଜଣାଇ ଦେବ ବିମଳା ।

ବିମଳା—ନାହିଁ ବାବୁ, ମୁଁ ପାରିବି ନାହିଁ ।

ସେଠଜୀ—ଆସୁଛି ମୁଁ ।—ବିଦାୟ ! ବିଦାୟ !

( ସେଠଜୀର ପ୍ରସ୍ଥାନ )

ବିମଳା—ଶୁଣନ୍ତୁ—ଶୁଣନ୍ତୁ—ଦୁଇଟା ଯାକ ବିଦାୟ ସମ୍ରାଟଙ୍କ ? ( ଅନୁଗମନ )

---

## ଦ୍ୱିତୀୟ ଦୃଶ୍ୟ

—ଲଖାର ଗୃହ—

[ ସୈତରାମର ପ୍ରବେଶ ]

ସୈତରାମ—ଭାଇସଙ୍ଗେ ଯୁଦ୍ଧ । ଏ ଯେ ଅଶ୍ରୁଦାତାର ଅଭିଳାଷ — ମୁନିବର ଆଦେଶ — ମୋ'ର କର୍ତ୍ତବ୍ୟ ।

[ ଲଖାର ପ୍ରବେଶ ]

ଲଖା—ପରସ୍ତୁତ ଲଡ଼କା ?

ସୈତରାମ—ହଁ ପ୍ରସ୍ତୁତ ହୋଇଛି, ସର୍ଦ୍ଦାର ।

ଲଖା—ଦେଖ୍ ଲଡ଼୍କା—ତୁ ଦୁଶ୍‌ମନ୍‌କୋ ତୁହାର୍ ଭାଇ ବୋଲ୍ ମତ୍ ଖ୍ୟେଲ୍ ଦେବୁ—ହାମାର୍ ନିମକ୍ ଖାଉଛୁ—ବେଇମାନି ମତ୍ କରିବୁ ।

ସୈତରାମ—କିଛି ଭୟ କରନ୍ତୁ ନାହିଁ, ସର୍ଦ୍ଦାର—ଏ କ୍ଷତ୍ରିୟ—କ୍ଷତ୍ରିୟ କଦାପି ବିଶ୍ୱାସଘାତକ ହୋଇ ନ ପାରେ—ଅମ୍ଭେ ଜାଣୁ ସର୍ଦ୍ଦାର—ନିଜର ପ୍ରାଣ ବିନିମୟରେ—ସ୍ୱାର୍ଥ ବିନିମୟରେ—ପ୍ରଭୁର ଆଦେଶ ପାଳନ କରିବାକୁ—ଉପକାରର ପ୍ରତ୍ୟୁପକାର କରିବାକୁ ।

ଲଖା—ତୁ ସଚ୍ଚା 'ଆଦ୍‌ମି—ତୋକେ ହାମାର୍ ଖୁବ୍ ବିଶ୍ୱାସ୍ । ଲେ, ଚଲ୍ । ହାଁମ ମନେ କରଲା ଓ ସେନାପତି ଫଲ୍ଲିଛନି—ଏଥର ହାମ୍ ନିଶ୍ଚିନ୍ତ୍—ନା ପୁଣି ଲଢ଼ାଇ । ଆରେ ଲଢ଼ାଇ ତୋ ଲଢ଼ାଇ, ଏକ୍‌ବାର୍ ହାମର୍ ଦେଶପର୍ ଚଢ଼ାଇ । ( ମୀର୍‌ର ଛିନ୍ନ ପ୍ରାକାରିଣୀ ବେଶରେ ପ୍ରବେଶ) ଏ' କାଣାରେ, ବେଟି ?—ତୋର୍ ଆଜ୍ ଏ କି ଭେସ୍ ?

ମୀର୍—ବାବା ! ମୁଁ ଯୁଦ୍ଧସ୍ଥଳକୁ ଯିବି ।

ଲଖା—ତୁ କାହିଁ ଯିବୁରେ—ଓଠାନେ ଯେ ଲଢ଼ାଇ ହବ ?—

ମୀର୍—ମୁଁ ଜାଣେ, ବାବା—ଯୁଦ୍ଧସ୍ଥଳରେ ଲଢ଼ାଇ ହୁଏ ।

ଲଖା—ମଣିଷ୍ କଟାକଟି ହବାରେ, ମଣିଷ୍ କଟାକଟି ହବ ।

ମୀର୍—ତା ମଧ୍ୟ ମୁଁ ଉତ୍ତମରୂପେ ଜାଣେ, ବାବା ।

ଲଖା—ତୁ କାଣ ମଣିଷ୍ କାଟି ପାରିବୁ ?

ମୀର୍—ଛିଃ—ପଶୁ କାମ ।

ଲଖା—ତବ୍ ତୁ ଯାଇ କାଣ କର୍‌ବୁରେ ?

ମୀର୍—ନାରୀର କାର୍ଯ୍ୟ କରିବି ।

ଲଖା—ଉହାଁ ଔରତ୍‌କର କୁଛ୍ କାମ ନେହିଁରେ, ବେଟି ।

ମୀର୍—ଖୁବ ଅଛି, ବାବା—ତୃଷାତୁରଙ୍କୁ ଜଳଦେବା—କ୍ଷୁଧାତୁରଙ୍କୁ ଖାଦ୍ୟ ଦେବା—ମୁମୂର୍ଷୁଙ୍କର ସେବା ଶୁଶ୍ରୂଷା କରିବା ।

ଲଖା—ତୁହାର ସଙ୍ଗେ କେ ପାର୍‌ବାରେ ବେଟି—ତୁ ନାଛୋଡ଼୍ ବନ୍ଦା—ଆ—ତୁହାର୍ ବନ୍ଦବସ୍ତ କର୍‌ଦେବା । ଅ'ବେଟା—ଦେର ମତ୍ କର ।

( ଲଖାର ପ୍ରସ୍ଥାନ )

ସୈତରାମ—ମୀର୍ !

ମୀର୍—ବନ୍ଦୀ ।

ସୈତରାମ—ତୁମ୍ଭେ କାହିଁକି ସେ ଭୀଷଣସ୍ଥଳକୁ ଯାଉଛ ?

ମୀର୍—ବନ୍ଦୀ ଯେତେବେଳେ ସେ ସ୍ଥଳକୁ ଯାଉଛି—ପ୍ରହରୀର କି ଯିବା ଉଚିତ ନୁହେଁ ?

ସୈତରାମ—ଯେଉଁ ବନ୍ଧନରେ ବନ୍ଦୀ ତୁମ୍ଭର ବନ୍ଧ ମୀର୍,—ସେ ବନ୍ଧନ କି ତାର ଛିନ୍ନ କରିବାର ଶକ୍ତି ଅଛି ?

ମୀର୍—କେ ଜାଣେ ?

ସୈତରାମ—ମୋତେ ଯେବେ ବିଶ୍ୱାସ ନ ହୁଏ, ସର୍ଦ୍ଦାର ଅଛନ୍ତି, ଭୟ କାହିଁକି ?

ମୀର୍—ମୋର ଜିମ୍ମାରେ ଯେତେବେଳେ—ମୁଁ କାହାରିକୁ ବିଶ୍ୱାସ କରିପାରେ ନାହିଁ ।

[ ଭାସ୍କର ପ୍ରବେଶ ]

ଭାସ୍କ—କରିବା ମଧ୍ୟ ଉଚିତ ନୁହେଁ—ସହୁ ସହୁ !
 କୁହ, କୁହ ସତେ, ସତେ କଣ ତୁମେ ଆଜ
 ଯୁଦ୍ଧସ୍ଥଳକୁ ବାହାରିଲ ?

ଭାସ୍କର— ଗୀତ

ଜହ୍ନ, ଜହ୍ନ, ସହୁ ଆଜ କି ସାଜେ ସାଜିଲ ।
କୁସୁମ-କୋମଳ ପ୍ରାଣେ କି ଭାବ ଆଶିଲ ॥
 ଝଲସି ଯାଏ ଯେ ହେଲେ
 ତୁଷାର ଶିଶିର ଜଳେ
କେମନେ ସମର ଦାଉ ସହିବ କହିଲ ॥

[ ସଖୀଗଣଙ୍କ ଗାଉ ଗାଉ ପ୍ରବେଶ ]

ସଖୀଗଣ— ଗୀତ ।

 ତୁମ୍ଭ, ତୁମ୍ଭ, ସହୁ ପ୍ରୀତି—ସ୍ୱାଗତ ଏହୁ ।
 ଅପାର ସେ ପ୍ରୀତି ବଳ ॥
 ପ୍ରୀତିବଳେ, ନଦୀ ହେଲେ
 ଲଙ୍ଘି ଗିରି ଶଇଳେ—
 ସାଗରେ ଦେବାକୁ କୋଳ ॥

ସୈତରାମ—ବାସ୍ତବିକ ଏ ମାୟାପୁରୀ—ତା' ନହେଲେ
 କି ଏ ସ୍ଥାନରେ ରହି ଭାଇ ଆଜ ଭାଇକୁ
 ଭୁଲିଯାଏ—ଭେଟିବା ନୁହେଁ—ଭାଇ ବିରୁଦ୍ଧରେ
 ପୁଣି ଅସ୍ତ୍ର ଧାରଣ କରିବାକୁ ଉଦ୍ୟତ ହୁଏ ?

( ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ଶିବିର—

[ ଶୋଲଙ୍କି ଓ ରଞ୍ଜିଳା ]

ରଞ୍ଜିଳା—ବାବା ! ଗୁଲ ଦେଖିବା—ଯୁଦ୍ଧ କିପରି
 ଗୁଲିଛି ।

ଶୋଲଙ୍କି—ଏତେ ସାହାସ ତୋର, ରଞ୍ଜିଳା ?

ରଞ୍ଜିଳା—ବୀରର କନ୍ୟାପକ୍ଷେ ଏହା ବିଶେଷ କ'ଣ
 ପିତଃ ?

ଶୋଲଙ୍କି—ଅଚ୍ଛା, ରଞ୍ଜିଳା—ତୁ ଯୁଦ୍ଧକୁ ଏତେ ଭଲ
 ପାଉ କାହିଁକି ?

ରଞ୍ଜିଳା—ସିଂହର ଶାବକ କି କେବେ ଶୃଗାଳ ହୁଏ,
 ପିତଃ ?

ଶୋଲଙ୍କି—ରଞ୍ଜିଳା ! ରଞ୍ଜିଳା ! ( ଆଲିଙ୍ଗନ କରି )
 କେଉଁ ଗୁଣରେ ଊଣା ତୁ ମା ?

[ ବିମଳାର ପ୍ରବେଶ ]

ବିମଳା—ମହାରାଜ ! ଗୋଟିଏ ନାରୀ ଆପଣଙ୍କର
 ଦର୍ଶନ ପ୍ରାର୍ଥନା କରୁଛି ।

ଶୋଲଙ୍କି—ନାରୀ ?

ବିମଳା—ଆଜ୍ଞା, ମହାରାଜ ।

ଶୋଲଙ୍କି—ଶତ୍ରୁ ନା ମିତ୍ର ?

ବିମଳା—ଶତ୍ରୁ, ମାତ୍ର ମିତ୍ରଭାବେ ଦେଖା କରିବାକୁ
 ଗ୍ରୁହେଁ ।

ଶୋଲଙ୍କି—ଏ'ପରି କିଏ ସେ ନାରୀ ?—ରଞ୍ଜିଳା !
 କଣ କରିବା ଉଚିତ ?

ରଞ୍ଜିଳା—ବିମଳା ! ପ୍ରକୃତରେ ସେ ନାରୀ ତ ?
 ଛଦ୍ମବେଶୀ ନୁହେଁତ ?

ବିମଳା—ମୋର ସେପରି ସନ୍ଦେହ ଆଗେ ହୋଇଥିଲା—
 ମାତ୍ର ଚେହେରାରୁ ଓ ନାନାଦି ପ୍ରଶ୍ନକରି ଜାଣିଲି,
 ପ୍ରକୃତରେ ସେ ନାରୀ ।

ରଞ୍ଜିଳା—ଯୁବତୀ ନା ବୃଦ୍ଧା ?

ବିମଳା—ଆମ୍ଭମାନଙ୍କର ବୟସର ହେବ ।

ରଞ୍ଜିଳା—ହାତରେ କିଛି ଅଛି ?

ବିମଳା—କିଛି ନାହିଁ ।

ରଞ୍ଜିଳା—ଅଚ୍ଛା ତା' ପ୍ରତି ତୋ'ର କୌଣସି ସନ୍ଦେହ
 ହେଉନାହିଁ ?

ବିମଳା—ମୁଁ ତ ସନ୍ଦେହର କାରଣ କିଛି ଦେଖି
 ପାରୁନାହିଁ ।

ରଞ୍ଜିଳା—ପିତଃ ! ସେ ନାରୀ ସଙ୍ଗେ ସାକ୍ଷାତ କରିବାରେ
 କୌଣସି କ୍ଷତି ଦେଖୁ ନାହିଁ ।

ଶୋଲଙ୍କି—ଅଚ୍ଛା, ଯା ବିମଳା—ତାକୁ ନେଇ ଆ ।

( ବିମଳାର ପ୍ରସ୍ଥାନ )

ରଞ୍ଜିଳା—ଏପରି ନାରୀ କିଏ ସେ ?

[ ବିମଳା ଓ ମୀରାର ପ୍ରବେଶ ]

ମୀରା—ପ୍ରଣାମ, ମହାରାଜ ।

ଶୋଲଙ୍କି—ତୁମ୍ଭେ କିଏ ? ତୁମ୍ଭର ପରିଚୟ ?

ମୀରା—ମୁଁ ଶତ୍ରୁପକ୍ଷୀୟ, ମହାରାଜ ।

ଶୋଲଙ୍କି—ତା’ମୁଁ ଜାଣେ—ମାତ୍ର ତୁମ୍ଭର ଏପରି ସମୟରେ ଏଠାକୁ ଆସିବାର କାରଣ ?

ମୀରା—ମହାରାଜ ! ଶିବିର ମଧ୍ୟରେ ଆପଣ ନିଶ୍ଚିନ୍ତ ମନରେ ଉପବେଶନ କରିଅଛନ୍ତି—ମାତ୍ର ବାହାରର ସମ୍ବାଦ କିଛି ରଖିଛନ୍ତି କି ?

ଶୋଲଙ୍କି—କାହିଁକି ? ବାହାରର କି ସମ୍ବାଦ ? କାହାର ଜୟ ହୋଇଛି ?

ମୀରା—ଏହି ଅପଣମାନଙ୍କର ଚିନ୍ତା—‘କାହାର ଜୟ’ ! ମାତ୍ର ଥରେ ଚିନ୍ତା କରୁଛନ୍ତି କି—ଏହି ଜୟ ସକାଶେ, ଧରଣୀ କିପରି ଶବସ୍ତୂପରେ ଭାରାକ୍ରାନ୍ତ ହେଉଛି—ରକ୍ତବନ୍ୟାରେ ପ୍ଲାବିତ ହେଉଛି—ଶୃଗାଳ କୁକ୍‌କୁରର ଭୀଷଣ ନିନାଦରେ ପ୍ରତିଧ୍ୱନିତ ହେଉଛି ?

ଶୋଲଙ୍କି—ତୁମ୍ଭର କଥା କିଛି ବୁଝି ପା’ରୁନାହିଁ, ବାଳିକା ?

ମୀରା—ମୋ’ କଥା ବୁଝି ପାରିବେ ନାହିଁ, ମହାରାଜ—କେବଳ ସ୍ଥିରକର୍ଣ୍ଣରେ ଶ୍ରବଣ କରନ୍ତୁ, ଅନାଥ ଶିଶୁର ପ୍ରାଣସ୍ପର୍ଶୀ କ୍ରନ୍ଦନଧ୍ୱନି—ଶ୍ରୀହୀନା ବିଧବାର ମର୍ମଭେଦୀ ଆର୍ତ୍ତନାଦ, କିପରି ଦିଗ-ଦିଗନ୍ତ ମୁଖରିତ କରି ଗଗନକୁ ବିଦୀର୍ଣ୍ଣ କରୁଅଛି ! କେବଳ ପଲକହୀନ ନେତ୍ରରେ ଦର୍ଶନ କରନ୍ତୁ, ବନ୍ଧୁର ଶବଦେହ—ଭ୍ରାତାର ଶବଦେହ ଉପରେ ଭ୍ରାତାର ଶବଦେହ—ପୁତ୍ରର ଶବଦେହ ଉପରେ ପିତାର ଶବଦେହ, କିପରି ପର୍ବତ ପ୍ରମାଣ ସ୍ଥାନେ ସ୍ଥାନେ ସ୍ତୂପୀକୃତ ହୋଇ, ଯୁଦ୍ଧକ୍ଷେତ୍ରକୁ ଭୀଷଣ ଶ୍ମଶାନ କ୍ଷେତ୍ରରେ ପରିଣତ କରୁଅଛି ।

ଶୋଲଙ୍କି—ଏ’ କି ପାଗଳ ?

ମୀରା—ପାଗଳ, ପାଗଳ, ମହାରାଜ ! ତା’ ନହେଲେ କି ଆଦର୍ଶ ସୃଷ୍ଟି ଏ’ମାନବ, ଅଜ୍ଞ ନାରକୀୟ ଅନ୍ଧକାରରେ ନିଜର ବିବେକାଲୋକକୁ ସମାଚ୍ଛନ୍ନ କରି, ସମ୍ମୁତାନର କରକବଳରେ ନିଜର ସ୍ୱାଧୀନତାକୁ ବିସର୍ଜନକରି—ପାଶବିକଶକ୍ତିରେ ନିଜକୁ ବଳୀୟାନ୍ ଜ୍ଞାନ କରି, ହିଂସାଦ୍ୱେଷର ଲୀଳାକ୍ଷେତ୍ର—ପ୍ରେତପିଶାଚର ରଙ୍ଗଭୂମି, ଏହି ଯୁଦ୍ଧ କ୍ଷେତ୍ରରେ, ଏତେଦୂର ଆନନ୍ଦ ଉପଭୋଗ କରନ୍ତା—ଏ’ପରି ଉଲ୍ଲାସରେ ନୃତ୍ୟକରି ବୁଲନ୍ତା !

ଶୋଲଙ୍କି—ଚଞ୍ଚଳା ! ଏ ବାଳିକା କ’ଣ କହୁଛି ?

ଚଞ୍ଚଳା—ଠିକ୍ କହୁଛି, ପିତଃ ! ଏହି କି ମାନବର ସ୍ୱଭାବ, ପଶୁତୁଲ୍ୟ ପରସ୍ପରକୁ ହିଂସାଦ୍ୱେଷ କରିବା ? ପରସ୍ପର ମଧ୍ୟରେ ଶତ୍ରୁଭାବ ପୋଷଣ କରିବା ? ଏହାହିଁ ଯେବେ ମନୁଷ୍ୟର ସ୍ୱଭାବ ହୁଏ—ତେବେ କେଉଁଗୁଣରେ ପଶୁଶ୍ରେଷ୍ଠ ଏ’ମାନବ—କେଉଁ ଆଦର୍ଶସୃଷ୍ଟି ଏ’ମାନବ ?

( ମୀରାର ହସ୍ତ ଧାରଣ )

ଆସ, ଭଉଣି ! ଆଜିଠାରୁ ତୁମେ ମୋ’ର ଉପଦେଶ-ଦାତ୍ରୀ । ତୁମ୍ଭେ ମୋର ଚକ୍ଷୁ ଖୋଲି ଦେଇଛ—ଯୁଦ୍ଧକୁ ମୁଁ ଅନ୍ତରର ଶ୍ରଦ୍ଧା କରୁଥିଲି—ବୀରର ପ୍ରଧାନ ଧର୍ମ ବୋଲି ସମ୍ମାନ କରୁଥିଲି—ମାତ୍ର ଆଜିଠାରୁ ସେ ଧାରଣା ପରିବର୍ତ୍ତିତ ହୋଇଛି—ଏହା ଗୋଟିଏ ମହାପାପ—ଅତୀବ ଘୃଣାର ବିଷୟ ।

ମୀରା—ଧନ୍ୟ ଈଶ୍ୱରଙ୍କୁ ! ଧନ୍ୟ ମୋତେ !—ଏତେ-ଦିନେ ମୋର ମତାବଲମ୍ବିନୀ ଗୋଟିଏ ଭଉଣୀ ପାଇଛି ।

ଶୋଲଙ୍କି—ବିମଳା ! ଏ’ କି ଅଭିନୟ ଦେଖୁଛି ?

ବିମଳା—ଅଭିନୟ ନୁହେଁ, ମହାରାଜ—ଯାହା ପ୍ରକୃତ—ଯାହା ହେବା ଉଚିତ, ତାହାହିଁ ଦେଖୁଛନ୍ତି ।

ଶୋଲଙ୍କି—ତୋ’ର ବି ସେହି କଥା ?

ମୀରା—ମହାରାଜ ! ସମସ୍ତେ କି ଆମ୍ଭର ଭାଇ ନୁହନ୍ତି—ସମସ୍ତେ କି ଆମ୍ଭର ବନ୍ଧୁ ନୁହନ୍ତି ?—ବନ୍ଧୁର ରକ୍ତ—ଭାଇର ଶବଦେହ, କିଏ ଦେଖିବାକୁ ଚାହେଁ, ମହାରାଜ—କାହାର ସହ୍ୟ ହେବ, ମହାରାଜ ?

ଚଞ୍ଚଳା—ମହାରାଜ । ଆପଣତ ଦିନେ କହିଛନ୍ତି—ପ୍ରଜାଗଣ ରାଜାର ପୁତ୍ରତୁଲ୍ୟ—ବରଂ ତତୋଽଧିକ !

ପୁତ୍ରର ପ୍ରାଣବଳି ଦେଇ ପ୍ରଜାଙ୍କ ପ୍ରାଣ ରକ୍ଷିବା କର୍ତ୍ତବ୍ୟ—ମାତ୍ର ସେହି ପ୍ରିୟତମ ପ୍ରଜାଙ୍କର ରକ୍ତ ପ୍ରବାହ, ସେହି ପ୍ରାଣାଧିକ ପ୍ରଜାଙ୍କର ଶବଦେହରାଶି, ହୃଦ୍ପିଣ୍ଡନେତ୍ରରେ କିପରି ଆଜ ଦର୍ଶନ କରୁଛନ୍ତି— ପ୍ରଜାବତ୍ସଳହୃଦୟରେ ବା କିପରି ଆଜ ସହ୍ୟ କରୁଛନ୍ତି ?

ଶୋଲଙ୍କି—ଏ ମୁଁ କଣ ଶୁଣୁଛି ?—ମୁଁ କେଉଁଠାରେ ?

ଚମ୍ପଲା—ଆପଣ ଏହିଠାରେ, ମହାରାଜ !—ଆପଣ ଆମ୍ଭମାନଙ୍କର କଥା ଶୁଣୁଛନ୍ତି—ମାତ୍ର ଏହି ଦେବୀଙ୍କ ପ୍ରସାଦରୁ ସମସ୍ତ ଆଜ ପରିବର୍ତ୍ତିତ— ସମସ୍ତ ଆଜ ସ୍ୱର୍ଗୀୟଭାବରେ ଅନୁପ୍ରାଣିତ ।

ଶୋଲଙ୍କି—ଚମ୍ପଲା ! ଚମ୍ପଲା ! ବାସ୍ତବିକ ସମସ୍ତ ଆଜ ସ୍ୱର୍ଗୀୟ ଭାବରେ ଅନୁପ୍ରାଣିତ—ଦେଖ୍, ଚମ୍ପଲା ! ଏହି ଦେବୀଙ୍କ ମହିମାରେ, ଗଗନରେ କି ଗୋଟିଏ ନୂତନ ଆଲୋକ ଉଦ୍ଭାସିତ ହୋଇ ଉଠୁଛି— ଚତୁର୍ଦ୍ଦିଗ କି ଗୋଟିଏ ମଧୁର ସଙ୍ଗୀତରେ ଝଙ୍କାରିତ ହୋଇ ଉଠୁଛି—ମନପ୍ରାଣ କି ଗୋଟିଏ ଅପୂର୍ବ ଆନନ୍ଦରେ ଉନ୍ମତ୍ତ ହୋଇ ଉଠୁଛି । ଆ, ଚମ୍ପଲା, ଆସ ଦେବୀ ! ଆଉ ଯୁଦ୍ଧର ଆବଶ୍ୟକତା ନାହିଁ—ଆଉ ଶତ୍ରୁତାର ପ୍ରୟୋଜନ ନାହିଁ—ରାଜା ଆଜ ରାଜାର ମିତ୍ର—ପ୍ରଜା ଆଜ ପ୍ରଜାର ମିତ୍ର— ଶାନ୍ତି ଆଜ ମାନବର ପ୍ରଧାନ ଉଦ୍ଦେଶ୍ୟ ।

ସମସ୍ତେ—ଜୟ ରାଜା ଶୋଲଙ୍କିର ଜୟ ।

---

## ଚତୁର୍ଥ ଦୃଶ୍ୟ

### —ଯୁଦ୍ଧକ୍ଷେତ୍ର—

[ ସେଓଜର ପ୍ରବେଶ ]

ସେଓଜ—ଯୁଦ୍ଧ ମୋର ବନ୍ଦୀକୁ ଉଦ୍ଧାର କରିବା ନିମନ୍ତେ—ମାତ୍ର ବନ୍ଦୀ ନିଜେ ଶତ୍ରୁର ସେନା- ନାୟକ !—ସେପରି ବନ୍ଦୀର ଉଦ୍ଧାରସାଧନର କି ପ୍ରୟୋଜନ ? ଭାଇ—ଶୁଣିବେ ନା ସେଓଜ ବିଶ୍ୱାସ ଘାତକ, ସ୍ୱାର୍ଥ ପ୍ରାଣଲିପ୍ସୁ କୁକୁରର ମୁଖ ଦର୍ଶନ କରିବାକୁ—ଶୁଣିବେ ନା ସେଓଜ ସେହି କ୍ଷତ୍ରିୟ- କୁଳକଳଙ୍କ ନରାଧମ ଭାଇର ନାମୋଚ୍ଚାରଣ କରିବାକୁ । ଆଜିଠାରୁ ସେତରାମ ମୃତ— ଆଜଠାରୁ ସେଓଜ ନିଷ୍କଳଙ୍କ ।

[ କନୈକ ସୈନିକର ପ୍ରବେଶ ]

ସୈନିକ—ସେନାପତେ ! ସହସା ଶତ୍ରୁ ଶିବିରରେ ଶୁଭ୍ରପତାକା ଉଡ୍ଡୀୟମାନ ହେଲା କାହିଁକି ?

ସେଓଜ—ଶତ୍ରୁ ଶିବିରରେ ଉଡ୍ଡୀୟମାନ ହୋଇଛି ? ତତ୍ପୂର୍ବରୁ ଆମ୍ଭର ଶିବିରରେ ଯେ ଉଡ୍ଡୀୟମାନ ହେବା ଉଚିତ ଥିଲା ?

ସୈନିକ—ସେନାପତେ !

ସେଓଜ—ସେନାପତି ଆଜ ତୁମ୍ଭମାନଙ୍କ ନିକଟରେ ମହାନ୍ ଅପରାଧ କରିଛି, ସୈନ୍ୟଗଣ !

ସୈନିକ—କି ଅପରାଧ, ସେନାପତେ ?

ସେଓଜ—କି ଅପରାଧ ! ସେ ଅପରାଧର ପ୍ରାୟଶ୍ଚିତ୍ତ ନାହିଁ, ସୈନ୍ୟଗଣ !—ଅକାରଣେ ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣବଳି ଗ୍ରହଣ—ସ୍ୱାର୍ଥସାଧନ ନିମନ୍ତେ ଲକ୍ଷ ଲକ୍ଷ ପରିବାରର ସର୍ବନାଶ ସାଧନ ! ସେ କି କମ୍ ଅପରାଧ ?

ସୈନିକ—ସେନାପତେ ! ଏଥିରେ ଆପଣଙ୍କର କି ଅପରାଧ ? ଆପଣ ନ୍ୟାୟ ସକାଶେ ଯୁଦ୍ଧ କରୁଛନ୍ତି ଆମ୍ଭେମାନେ ନିଜର କର୍ମାନୁଯାୟୀ ଫଳ ଭୋଗ କରୁଛୁ ।

ସେଓଜ—ତେବେ ମୋ'ର କର୍ମାନୁଯାୟୀ ଫଳ ଭୋଗ କ'ଣ ?—ଅନ୍ୟାୟ ଯୁଦ୍ଧର ଫଳଭୋଗ କ'ଣ ( ଅନ୍ୟମନସ୍କ ଭାବେ ରହିବା )

[ ସୈତରାମ ପ୍ରବେଶ ]

ସେତରାମ—( ସ୍ୱଗତ ) ମାଁ ! ମାଁ ! ତୁ ମାନବୀ ନା ଦେବୀ ? ଆଶ୍ଚର୍ଯ୍ୟ ତୋର ବାତ୍ସଲ୍ୟଜନନପ୍ରେମ ! ଆଶ୍ଚର୍ଯ୍ୟ ତୋର ହୃଦୟର ସାହସ ! ଏହି ଯେ ଭାଇ ! ( ଅଭିବାଦନ କରି ) ଭାଇ !

ସେଓଜ—( ଚମକିତ ହୋଇ ) ଭାଇ !

ସୈତରାମ—ଭାଇ !

ସେଓଜ—( ସୈତରାମ ଆଡ଼େ ଚାହିଁ ) କିଏ ତୁମେ ?

ସୈତରାମ—ଭାଇ !

ସେଓଜି—ଏ ଯେ ତାହାର ପ୍ରେତାତ୍ମା !—ମୁଖ ରକ୍ତବର୍ଣ୍ଣହୀନ—ଚକ୍ଷୁ କୋଟରଗତ—ନିଶ୍ୱାସରେ ପୂତିଗନ୍ଧ—ସର୍ବାଙ୍ଗରେ ଯେପରି ନାରକୀୟ ଭାବ ।

ସୈତରାମ—ପ୍ରସନ୍ନ—

ସେଓଜି—ପ୍ରସନ୍ନ । ପାପୀପ୍ରତି ପ୍ରସନ୍ନତା । ସମ୍ଭୃତାନର ମୁକ୍ତିଲାଭ । ଅସମ୍ଭବ—ଅସମ୍ଭବ ।

ସୈତରାମ—ଭାଇ !

ସେଓଜି—ମୋତେ ଡାକୁଛୁ ?—ମୋ'ର କି କଣ ତୋ'ର ଦଶା ହେବ ?—ହେବା ଉଚିତ—ତାହାହିଁ ହେବା ଉଚିତ !—ଭାଇ ବୋଲି ବିଶ୍ୱାସଘାତକର ଉଦ୍ଧାର ନିମନ୍ତେ, ରାଜାର ଯେଉଁ ସର୍ବନାଶ—ପ୍ରଜାର ଯେଉଁ ସର୍ବନାଶ—ରାଜ୍ୟର ଯେଉଁ ସର୍ବନାଶ ସାଧନ କରିଛି—ତା'ର ପ୍ରତିଫଳ ଏହାହିଁ ହେବା ଉଚିତ ।

ସୈତରାମ—ଭାଇ !

ସେଓଜି—ଦୂର ହ' ସମ୍ମୁଖରୁ, ବିଶ୍ୱାସଘାତକ !

ସୈତରାମ—ସୈତରାମ କଦାପି ବିଶ୍ୱାସଘାତକ ନୁହେଁ, ଭାଇ ।

ସେଓଜି—ବିଶ୍ୱାସ ଘାତକ ନୁହେଁ ?

ସୈତରାମ—ସେଓଜିର ଭ୍ରାତା କି କେବେ ବିଶ୍ୱାସଘାତକ ହୋଇ ପାରେ ?

ସେଓଜି—ତେବେ ଶତ୍ରୁର ସେନାପତି ପଦରେ କାହାକୁ ଦେଖୁଥିଲି ?

ସୈତରାମ—ଉପକାରର ପ୍ରତ୍ୟୁପକାରକୁ—ପ୍ରାଣଦାତାର ଆଦେଶ-ପାଳନ-କାରୀକୁ—କ୍ଷତ୍ରିୟ ସନ୍ତାନ ସୈତରାମକୁ ।

ସେଓଜି—ଉପଯୁକ୍ତ ଭ୍ରାତା ମୋର ! ( ଆଲିଙ୍ଗନ କରିବାକୁ ଉଦ୍ୟତ ହେବା )

ସୈତରାମ—(ଦୂରକୁ ଘୁଞ୍ଚିଯାଇ) ସ୍ପର୍ଶ କର ନା, ଭାଇ !

ସେଓଜି—କାହିଁକି ନୁହେଁ, ଭାଇ ?

ସୈତରାମ—( ନୀରବ )

ସେଓଜି—କହ, ଭାଇ । କେଉଁ କାରଣରୁ ଏପରି ଉପଯୁକ୍ତ ଭାଇ ସ୍ପର୍ଶଯୋଗ୍ୟ ନୁହେଁ ?

ସୈତରାମ—(ନୀରବ)

ସେଓଜି—ବୁଝିଛି, ମୋତେ କ୍ଷମା କର, ଭାଇ—ଅଜ୍ଞାନତାବଶତଃ ରୂଢ଼ କଥା କହି ତୋ'ମନରେ ଭାରି କଷ୍ଟ ଦେଇଛି ।

ସୈତରାମ—ରୂଢ଼ କାର୍ଯ୍ୟ କରି ଯେ ଏ' ଅଧମ ତୁମ୍ଭଙ୍କୁ କଳଙ୍କିତ କରିଛି ଭାଇ—

ସେଓଜି—ରୂଢ଼କାର୍ଯ୍ୟ, ସୈତରାମ ?

ସୈତରାମ—ଭାଇ । ଏ ଅଧମ ସମାଜପତିତ—

ସେଓଜି—( ଚମକିତହୋଇ ) ସମାଜପତିତ ।

ସୈତରାମ—ଜାଣେ ନା, ଭାଇ—କି ମାୟାରେ ଆକୃଷ୍ଟ ହୋଇ, ଏ ଦୁର୍ବଳ ଅଧମ ନିଜକୁ ଗୋଟିଏ ପାର୍ବତୀୟବାଳିକାର ପ୍ରେମ-ପାରାବାରରେ ନିକ୍ଷେପ କରିଅଛି ।

ସେଓଜି—ସାମାନ୍ୟ ପାର୍ବତୀୟବାଳିକାର ପ୍ରେମ-ପାରାବାରରେ ? ଏତେଦୂର ହୀନଚରିତ—ଏତେଦୂର ଦୁର୍ବଳ ତୁହି ? ଅନୁତାପ କର—ଅନୁତାପ କର ଭାଇ, ଯେବେ ଲୋକାପବାଦରୁ ମୁକ୍ତ ହେବାକୁ ଚାହୁଁ—ଯେବେ ପବିତ୍ର ହିନ୍ଦୁ ସମାଜରେ ପୁନରାୟ ପ୍ରବେଶ କରିବାକୁ ଚାହୁଁ ।

ସୈତରାମ—କ୍ଷମାକର, ଭାଇ । ଏ' ଅଧମର ଆଉ ସେ ଶକ୍ତିନାହିଁ—ସେ ପ୍ରବୃତ୍ତି ମଧ୍ୟ ନାହିଁ ।—ଯେଉଁଦିନ ସେହି ଅପ୍‌ସରାନିନ୍ଦିତ-ରୂପ-ସନ୍ଦର୍ଶନରେ ନିଜର ସ୍ୱାତନ୍ତ୍ର୍ୟ ହରାଇଛି—ଯେଉଁ ଦିନୁ ସେହି ପୀୟୂଷାଧିକ ମଧୁର ପ୍ରେମରେ ବିମଳ ଆନନ୍ଦ ଉପଭୋଗ କରିଛି—ସେହିଦିନୁ ଏ ପୁରାତନ ଜଗତ ନୂତନ ପଥରୁ ଅପସାରିତ ହୋଇଛି—ସଙ୍କୀର୍ଣ୍ଣସମାଜ ତାର ନିର୍ଦ୍ଦିଷ୍ଟ ସୀମା ଅତିକ୍ରମ କରିଛି—ଲୋକାପବାଦ ଗୋଟିଏ ଗୌରବରେ ପରିଣତ ହୋଇଛି ।

ସେଓଜି—ସୈତରାମ । ସୈତରାମ । କଣ ଶୁଣାଉଛୁରେ, ପାପିଷ୍ଠ ?—ତୁହି କିରେ ଭାଇ ମୋର ?—ତୁହି କିରେ କେନାଓଜିରାଜବଂଶଧର ? ତୁହି କିରେ କ୍ଷତ୍ରିୟ ସନ୍ତାନ ?—ସାମାନ୍ୟ ଗୋଟିଏ ଇତର ନାରୀର ବାହ୍ୟିକ ରୂପାକର୍ଷଣରେ ଆକୃଷ୍ଟ ହୋଇ, ଆଡ଼ମ୍ବରପୂର୍ଣ୍ଣବଚନସୁଧାରେ ମୁଗ୍ଧହୋଇ ନିଜର

ଚଣ୍ଡୀରବ—ବଂଶର ଗୌରବ—ସମସ୍ତ ଭାରତର ଗୌରବ—ଏତେବେଳକେ ବିନଷ୍ଟ କରି ଦେଇଛୁ ? କ୍ଷତ୍ରିୟ ହୋଇ ଏତେକ ଶକ୍ତି କା ଘୋର କୋହଲ—ନିଜର ଇନ୍ଦ୍ରିୟଗଣଙ୍କୁ ପରାସ୍ତ କରି, ଆତ୍ମସ୍ୱାଧୀନ କରିବାକୁ—ନିଜକୁ ଧର୍ମପଥରେ ଚାଳିତ କରି, ପାପ ପ୍ରାସରୁ ରକ୍ଷା କରିବାକୁ ? ଧିକ୍, ଧିକ୍ ତୋତେ ହୀନଚରିତ୍ର ! ଧିକ୍, ଧିକ୍ ତୋତେ କୁଳକଳଙ୍କ ! ଧନ୍ୟ ଧନ୍ୟ ତୁମ୍ଭେ, ଶିବ କକା ! ଏ କଳଙ୍କ-କାହାଣୀ ଶୁଣିବା ପୂର୍ବରୁ ଇହଧାମରୁ ବିଦାୟ ନେଇ ଯାଇଛ ! ଆଉ ନୁହେଁ—ଆଉ ଏଠାରେ ରହି ଆପଣାକୁ କଳଙ୍କିତ କରିବା ଉଚିତ ନୁହେଁ । ଆଜଠାରୁ ସୈତରାମ ମୃତ—ଆଜଠାରୁ ସେଓଁଜ ଭ୍ରାତୃଶୂନ୍ୟ—ଆଜଠାରୁ ସେଓଁଜ ନିଶ୍ଚିନ୍ତ ।

( ପ୍ରସ୍ଥାନୋଦ୍ୟତ )

[ ଶୋଲଙ୍କି ଓ ତତ୍ପଶ୍ଚାତ ଲଖା, ଚମ୍ପଲା, ମୀରା, କମଳା, ତାରା ଓ ସୈନ୍ୟଗଣଙ୍କ ପ୍ରବେଶ ]

ଶୋଲଙ୍କି—ଏକା ସେଓଁଜ ନିଶ୍ଚିନ୍ତ ନୁହେ, ସେନାପତେ—ସମସ୍ତେ ନିଶ୍ଚିନ୍ତ ।

ସେଓଁଜ—ମହାରାଜ !

ଶୋଲଙ୍କି—ମୁଁ ସବୁ ଶୁଣିଛି, ସେନାପତେ !—ଆଗେ ଭାଇ, ଭାଇ ମିଳି ଛିଡ଼ା ହୁଅ—ତାପରେ ସମସ୍ତ ବୁଝି ପାରିବ ।

ଲଖା—ଅରେ କୁଚ୍ ଡର୍‌ମତ୍ କର୍ ଲଡ଼କା ! ଅଭ୍ ଏହି ଦୋନୋ ବେଟୀକା ବାସ୍ତେ ସବ୍ ହୋଇକା ଭିତର୍‌କା ବାହାର୍‌କା ଲଢ଼ାଇ ଅଖେର୍ ! ଏଇ ସର୍ଦ୍ଦାର୍, ଜନ୍‌କା ତୀର୍ ଧନୁ ସବ୍ ଫେଙ୍କ୍ ଦେଲ୍ଲି—ଯେଇସା ବେଜ ଜାନ୍ ଥାକ୍‌ବା—ଏଇ ବଡ଼ା ବେଟୀକୁ ତେରି ବାଓଁ ମେ ( ସେଓଁଜର ହସ୍ତରେ ଚମ୍ପଲାକୁ ଅର୍ପଣ କରନ୍ତେ ସେଓଁଜ ଚମକି-ଉଠିବା )

ସେଓଁଜ—ସର୍ଦ୍ଦାର ! ସର୍ଦ୍ଦାର ଏ କଣ କଲ—ମୋର ବ୍ରତ ଯେ ଏ ପର୍ଯ୍ୟନ୍ତ ଉଦ୍‌ଯାପିତ ହୋଇ ନାହିଁ—ମୁଁ ଯେ ପ୍ରତିଜ୍ଞା କରିଛି, ସ୍ୱରାଜ୍ୟୋଦ୍ଧାର ନ କରିବା ପର୍ଯ୍ୟନ୍ତ—କୌଣସି ଲାଳସାକୁ ମନରେ ସ୍ଥାନ ଦେବି ନାହିଁ—ସାମାନ୍ୟ ହେଲେ ସୁଦ୍ଧା, କୌଣସି ପ୍ରକାର ସାଂସାରିକ ବନ୍ଧନରେ ନିଜକୁ ଆବଦ୍ଧ କରିବି ନାହିଁ ।

ଲଖା—ଅରେ ବେଟା ! ତୁ ଭୁଲ୍ ବୁଝ୍‌ଲୁ—ଏ ବନ୍ଧନ୍ ନାହିଁ—ଏ ତେରି ଅଙ୍ଗ୍‌ପୁରଣ୍—ତେରି ବଲ୍—ତେରି କାମ୍‌କା ସହାୟ !

ଚମ୍ପଲା—ପ୍ରଭୋ ! ପ୍ରଭୋ ! ନାରୀକୁ ଏତେଦୂର ହେୟ ଜ୍ଞାନ କରନ୍ତୁ ନାହିଁ—ନାରୀ କି କେବଳ ବିଳାସର ଦାସୀ ହୁଏ ? ନାରୀ କି ନରକର କୀଟ ହୁଏ ? ନାରୀ କି ସ୍ୱର୍ଗର ଅପ୍‌ସରା ହୁଏ ନାହିଁ ? ନାରୀ କି କର୍ମର ସହାୟ ହୁଏ ନାହିଁ ?

ସେଓଁଜ—ମୋତେ କ୍ଷମା କର, ପ୍ରେୟସି ! ମୋର ଭୁଲ ଆଜି ମୁଁ ବୁଝି ପାରିଛି—ନାରୀ ହିଁ ନରର ପ୍ରଧାନ ସହାୟ ! ତୁମ୍ଭପରି ନାରୀ ବିନା ନର କଦାପି ପୂର୍ଣ୍ଣମନସ୍କାମ ହୋଇପାରେ ନାହିଁ ! ଏହି ନାରୀ ନ ଥିଲେ ତୃଷ୍ଣା ତୁରକୁ କିଏ ଆଜି ଜଳ ଦେଇଥାନ୍ତା ?—ନିରାଶ୍ରୟକୁ କିଏ ଆଜି ଆଶ୍ରୟ ଦେଇଥାନ୍ତା ?—ବିପଥଗାମୀକୁ କିଏ ଆଜି ପଥ ଦେଖାଇଥାନ୍ତା ?—ଏହି ମହାମାରି ଯୁଦ୍ଧକୁ କିଏ ଆଜି ନିବାରଣ କରିଥାନ୍ତା ?—ନାରୀ କଦାପି ମର୍ତ୍ତ୍ୟବାସିନୀ ସାମାନ୍ୟ ନାରୀ ନୁହେଁ—ସ୍ୱର୍ଗର ଦେବୀ—ନନ୍ଦନ କାନନ ବିହାରିଣୀ ଅପ୍‌ସରା !

ଲଖା—ଔର ମେରିଜାନ୍—ମେରି ଲଡ଼କୀକୁ ଇନ୍‌କା ବାଓଁମେ ଦେଖ୍‌ବା ( ମୀରାକୁ ସୈତରାମ ହସ୍ତରେ ଅର୍ପଣ ) ଯା, ବେଟି ତୁହାକେ ଆଠ ବରଷ୍ ସେ ମଏ ପାଲ୍‌ଥା—ଆଜ୍ ସେ ତୁହାର୍ ବନ୍ଦୀକା ପାଶ୍ ତୁ ଜନମ୍ ଭର୍ ବନ୍ଦୀ ହୋ ଯା—ଦୋନୋକା ଭିତର୍ ଆଜ୍ ଯେସା ହାନ୍ ଦେଖା ଓସି ହାନ୍ ବରାବର୍ ଲଗାରହେ, ଆଜ୍‌କାଅ ଖୁସିକା ଦିନ୍ ? ରାଜାକା ବେଟୀକୁ ରାଜାକା ବେଟାକା ପାଶ୍ ଦେଖ୍‌କେ ଦିଲ୍ ଖୁସ ହୋଯାତା !

ସେଓଁଜ—( ସ୍ୱଗତ ) ରାଜନନ୍ଦିନୀ ଏ ବାଳିକା !—ଧନ୍ୟ ଈଶ୍ୱର !

ଶୋଲଙ୍କି—ସେଓଁଜ ! ଏଥର ସମସ୍ତ ବୁଝି ପାରିଲତ ?

ସେଓଙ୍କ—ଦାସକୁ କ୍ଷମା କରନ୍ତୁ ମହାରାଜ !

ସେଉତରାମ—( ଏକାନ୍ତେ ) ମୀରା ! ତୁ ରାଜନନ୍ଦିନୀ ?

ମୀରା—( ସସ୍ମିତେ ) ବନ୍ଦୀ ଯେତେବେଳେ ରାଜ-ନନ୍ଦନ—ପ୍ରହରୀଠୁ ଆହୁରି କିଛି ବେଶି ହେବା ଉଚିତ ଥିଲା ?

ଶୋଲଙ୍କି—ଆଜ ମୋର କି ଆନନ୍ଦ ! ମୋତେ ଧନ୍ୟ ଯେ ମୋର ପ୍ରାଣର ସର୍ବସ୍ୱକୁ ଅଭିଲଷିତ ପାତ୍ରରେ ଅର୍ପିତ ହେବାକୁ ଦେଖିଲି ! ଏଥର ତୋ'ପାଇଁ ମୋର ଯା'କିଛି ଭାବନା, କମଳା—ତୁ ମୋର ପ୍ରଧାନ ମନ୍ତ୍ରୀର କନ୍ୟା—ପିତା ତୋର, ମୃତ୍ୟୁକାଳରେ ଏତିକି ଜଣାଇ ଯାଇଥିଲେ ଯେ ଦୁର୍ଜ୍ଜୟ ପ୍ରାପ୍ତବୟସ୍କ ହେଲେ ତା' ସହିତ ତୋର ବିବାହ ଦେବାକୁ—ମାତ୍ର ସେ ଯେ ଏପରି ହୋଇଯିବ କିଏ ଜାଣିଥିଲା ? ଯାହା ହେଉ, ଶୀଘ୍ର ଗୋଟିଏ ଉପଯୁକ୍ତ ପାତ୍ରର ଅନୁସନ୍ଧାନ କରିବାକୁ ହେବ । ହାୟ ଶିବରାମ ! ତୁମ୍ଭେ ଆଜି କେଉଁଠାରେ ରହିଲ ?

( ଶିବରାମ ଓ ଦୁର୍ଜ୍ଜୟ ସିଂହର ପ୍ରବେଶ )

ଶିବରାମ—ଏହି ଯେ ସେଉତରାମ ମୋର, ସେନାପତେ !

ସେଓ ଓ ସେଉତ—ଶିବକକା ! ଶିବକକା !

[ ଉଭୟେ ଶିବରାମକୁ ଦୃଢ଼ାଲିଙ୍ଗନରେ ଆବଦ୍ଧ କରିବା ଓ ସମସ୍ତେ ଅଶ୍ରୁପୂର୍ଣ୍ଣ ଭାବେ ଚାହିଁ ରହିବା]

ଦୁର୍ଜ୍ଜୟ—( ଜାନୁପାତପୂର୍ବକ ) ମହାରାଜ ! ଦାସକୁ କ୍ଷମାକରନ୍ତୁ—ଜେମାଦେଈ !

ରଞ୍ଜିଲା—ଜେମାଦେଈ କିଏ, ଭାଇ ?—ମୁଁ ଯେ ତୁମ୍ଭର ସେହି ସାନ ଭଉଣୀ—ଭଉଣୀ ବୋଲି ଡାକ !

ଦୁର୍ଜ୍ଜୟ—ଏତେ ଅନୁଗ୍ରହ ଦାସପ୍ରତି ! କୁହ ତେବେ, ଭଉଣୀ—ତୁମ୍ଭର ଅଧମ ଭାଇକୁ କି ବାସ୍ତବିକ କ୍ଷମା କରିଛ ?

ରଞ୍ଜିଲା—ସାନ ଭଉଣୀ ପୁଣି ଭାଇକୁ କି କ୍ଷମା କରିବ ?—ଭାଇ ସବୁବେଳେ ଭାଇ—ଗୁରୁଜନ-ପରମ ପୂଜନୀୟ ।

ଦୁର୍ଜ୍ଜୟ—( ସ୍ୱଗତ ) ଉଃ—କି ନରାଧମ ମୁହିଁ ।

ଶୋଲଙ୍କି—ସେନାପତେ ! ଆଜ ଶୋକ-ତାପର ଦିନ ନୁହେଁ—ଆମୋଦ ଆହ୍ଲାଦର ଦିନ—ଭ୍ରାତାର ସହିତ ଭ୍ରାତା ମିଳିତ—ବନ୍ଧୁର ସହିତ ବନ୍ଧୁ ମିଳିତ—ପ୍ରଭୁର ସହିତ ଭୃତ୍ୟ ମିଳିତ । ଏପରି ମିଳନାନନ୍ଦ ଦିନରେ ତୁମ୍ଭର ନିରାନନ୍ଦ ଭାବ ପୋଷଣ କରିବା କି ଉଚିତ ? ଆ, କମଳା, ଈଶ୍ୱର ଆଜ ଅନୁଗ୍ରହ କରିଛନ୍ତି—ତୋର ପିତାର ଇଚ୍ଛା ପୂର୍ଣ୍ଣହେଉ ।

( କମଳାକୁ ଦୁର୍ଜ୍ଜୟ ହସ୍ତରେ ଅର୍ପଣ )

ଦୁର୍ଜ୍ଜୟ—ମହାରାଜ ! ମହାରାଜ !

ଶୋଲଙ୍କି—ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ, ସେନାପତେ ! ଆଜି ଯାହା ଦେଖୁଛ—ତାହା ଅନେକ ଦିନ ପୂର୍ବରୁ ହେବା ଉଚିତ ଥିଲା ।

ଦୁର୍ଜ୍ଜୟ—( ସ୍ୱଗତ ) ଈଶ୍ୱର ! ତୁମ୍ଭର ଅପାର ମହିମା—ମୋତେ କ୍ଷମାକର, ପ୍ରେୟସି ( କମଳା ଉଭୟରେ ପଦଧୂଳି ଗ୍ରହଣ କରିବା ) [ପ୍ରକାଶ୍ୟେ] ସର୍ଦ୍ଦାର ! ତୁମ୍ଭର ଦୁଷ୍ମନକୁ କ୍ଷମାକର !

ଲଖା—ଅରେ ଖମା କାଣ୍ କର୍ବାରେ—ତୁ ଯେ ହାମାର୍ ସବ୍‌ସେ ବଡ଼ା ବେଟା ।

[ ଆଲିଙ୍ଗନ କରିବା ]

ଶିବରାମ—ମହାରାଜ ! କ୍ଷମାକରନ୍ତୁ—[ ଅଭିବାଦନ କରିବା ]

ଶୋଲଙ୍କି—ଉଠ, ଶିବରାମ—ଈଶ୍ୱରଙ୍କୁ ପ୍ରଣାମ କର ।

ଶିବରାମ—ମା, କରୁଣାମୟି !—

ରଞ୍ଜିଲା—ଶିବକକା ! ମୁଁ ତୁମ୍ଭର କୌଣସି କଥା ଶୁଣିବି ନାହିଁ—ତୁମ୍ଭେ ଭାରି ନିର୍ଦ୍ଦୟ—ଆମ୍ଭମାନଙ୍କୁ କି ଏକାବେଳକେ ପାଶୋରି ପକାଇଥିଲ ?

ଶିବରାମ—ହଁ ମା, ମୁଁ ଭାରି ନିର୍ଦ୍ଦୟ—ଭାରି ଅକୃତଜ୍ଞ—ଅଧମ ସନ୍ତାନକୁ କ୍ଷମା କର ମା !

[ ରଞ୍ଜିଲାର ସସ୍ନେହେ ହସ୍ତ ଚୁମ୍ବନ କରିବା ]

ଶୋଲଙ୍କି—ଶିବରାମ ! ଏତେଦିନ ତୁମ୍ଭେ କେଉଁଠାରେ ଥିଲ ?

ଦୁର୍ଜ୍ଜୟ—ମୋର ଭଗ୍ନୀପତି ଗୃହରେ ଥିଲେ, ମହାରାଜ—ସ୍କନ୍ଧପରେ ନରାଧମ ମୁହିଁ ଯେତେବେଳେ ତାଙ୍କ

ବନ୍ଦୀକର ସେନାଯାଏ—ପଥରେ ତାଙ୍କର ମୂର୍ଚ୍ଛିତାବସ୍ଥାକୁ ମୃତ୍ୟୁ ମନେ କରି, ବାହକମାନେ ଜୟପୁର ଗ୍ରାମ ନିକଟବର୍ତ୍ତୀ ଶ୍ମଶାନରେ ନିକ୍ଷେପ କରି ଚାଲିଯାନ୍ତି—

ଶୋଲଙ୍କି—ତା'ପରେ କ'ଣ ହେଲା ?

ଦୁର୍ଜ୍ଜୟ—କିଛିକ୍ଷଣପରେ ସେହି ଗ୍ରାମବାସୀ କେତେଜଣ ଗୋଟିଏ ଶବଦାହ କରିବା ନିମନ୍ତେ ସେହି ଶ୍ମଶାନକୁ ଆସନ୍ତି—ମୋର ଭଗ୍ନୀପତି ମଧ୍ୟ ସେମାନଙ୍କ ମଧ୍ୟରେ ଥିଲେ—

ଶିବରାମ—ଭାଇ ! ବର୍ତ୍ତମାନ ସେ ସବୁ କଥା କାହିଁକି ? ମହାରାଜ ! ସେ ସମସ୍ତ ପରେ ଶୁଣିବେ—ବର୍ତ୍ତମାନ ଆପଣଙ୍କର ସେନାପତି, ମୋର ସନ୍ତାନମାନଙ୍କର ଗୁରୁଦେବ, ଦୁର୍ଜ୍ଜୟ ସିଂହ ଯାହା କହୁଛନ୍ତି—ତାହା ଶୁଣନ୍ତୁ ।

( ନେପଥ୍ୟ ) ଜୟ ରାଜା ସେଓଜିଙ୍କ ଜୟ !

ଶୋଲଙ୍କି—ଏ' କି ଜୟଧ୍ୱନି ?

ଦୁର୍ଜ୍ଜୟ—କେନାଓଜର ଲୋକମାନେ ଆପଣଙ୍କର କର୍ତ୍ତବ୍ୟପରାୟଣ ସେନାପତି—ମୋର ପ୍ରିୟତମ ଶିଷ୍ୟ ସେଓଜିଙ୍କୁ, ତା'ର ନ୍ୟାଯ୍ୟ ରାଜପଦରେ ବରଣ କରିବା ନିମନ୍ତେ ଆଗମନ କରୁଅଛନ୍ତି ।

ଶିବରାମ—ଏ' ସମସ୍ତ, ବୀରଶ୍ରେଷ୍ଠ ଦୁର୍ଜ୍ଜୟ ସିଂହଙ୍କ ହେତୁ ମହାରାଜ !

ଦୁର୍ଜ୍ଜୟ—ନା, ମହାରାଜ—ସେଓଜି ନିଜ ଶକ୍ତିରେ ତା'ର କଣ୍ଟକ ଦୂର କରିଛି—ସେହି ଭୀଷଣ ଯୁଦ୍ଧରେ ପରାସ୍ତ ହୋଇ ବାଦଶାହ ଏତେଦୂର ହତୋତ୍ସାହ ହୋଇ ପଡ଼ିଥିଲେ ଯେ, ଆପଣଙ୍କ ସନ୍ଧିସର୍ତ୍ତ ଶୁଣିବାର ଅବ୍ୟବହିତ ପରେହିଁ ଇହଧାମ ତ୍ୟାଗ କରି ଚାଲିଗଲେ ।

ଶିବରାମ—କିନ୍ତୁ ଦୁର୍ଜ୍ଜୟ ସିଂହ ନ ଥିଲେ, ଏ' କାର୍ଯ୍ୟ ଆଜି ଏ'ପରି ଅନାୟାସରେ ସମ୍ପନ୍ନ ହୋଇ ନ ଥାନ୍ତା ।

ଶୋଲଙ୍କି—ଯାହାହେଉ ଈଶ୍ୱରଙ୍କର ଭାରି ଅନୁଗ୍ରହ ଯେ, ବିନା ଆୟାସରେ ଆମ୍ଭମାନଙ୍କର କାର୍ଯ୍ୟୋଦ୍ଧାର ହୋଇଛି ।

ସେଓଜି—(ସ୍ୱଗତ) ଧନ୍ୟ ଈଶ୍ୱର ! ମୋ'ର ବ୍ରତ ଆଜି ଉଦ୍‌ଯାପିତ ହୋଇଛି । ଏ ସଙ୍ଗେ ମୋର ଗର୍ବ ମଧ୍ୟ ଖର୍ବ ହୋଇଛି । ଦୁର୍ବଳ ଅଧମକୁ ଶ୍ରୀଚରଣରେ ସ୍ଥାନ ଦିଅ, ପ୍ରଭୋ ! ( ପ୍ରଣତ ହେବା )

[ ପ୍ରଜାଗଣଙ୍କ ପ୍ରବେଶ ଓ ଅଭିବାଦନ ]

ପ୍ରଜାଗଣ—ଜୟ ରାଜା ସେଓଜିଙ୍କ ଜୟ !

ଶିବରାମ—ଆଜି କି ଆନନ୍ଦ ! ଦେଖ, ଜୟଚାନ୍ଦ ଦେଖ, ଅଜୟ ସିଂହ ! ଅମର ଧାମରୁ ଥରେ ଚକ୍ଷୁଉନ୍ମୀଳନ କରି ଦେଖ—ତୁମ୍ଭର ଶିଶୁ ଅନାଥ ପୁତ୍ରଦ୍ୱୟ କିପରି ନିଜର କ୍ଷୁଦ୍ର ବାହୁ ବଳରେ—ନିଜର ପ୍ରାଣପଣ ଉଦ୍ୟମରେ—ଆଜି ଅପହୃତ ରାଜ୍ୟର ଉଦ୍ଧାର କରିଛନ୍ତି—ଲକ୍ଷ୍ମୀ ଜନନୀର ସମ୍ମାନ ଫେରାଇ ଆଣିଛନ୍ତି—ନିଜର ବଂଶଗୌରବ ରକ୍ଷା କରିଛନ୍ତି । ସେମାନଙ୍କୁ ତୁମ୍ଭମାନଙ୍କର ଦିବ୍ୟ ଆଶୀର୍ବାଦ ପ୍ରଦାନ କର । ଆସ ପିଲାମାନେ ମୋର, ଥରେ ଦୁଇ କୋଳରେ ଦୁଇଜଣଙ୍କୁ ଘେନି, କେନାଓଜ ସିଂହାସନରେ ବସାଇ ନୟନ ତୃପ୍ତକରେ—ଜୀବନ ଧନ୍ୟ କରେ !

କମଳା—ମୋର ସହୀକୁ କଣ ସିଂହାସନରେ ବସାଇବ ନାହିଁ, ଶିବକକା ?

ତାରା—ମୋର ସହୀକୁ ?

ଶିବରାମ—ଏ' କି ଆନନ୍ଦ ପୁଣି ! ଏ ଯେ ଆନନ୍ଦ ଉପରେ ଆନନ୍ଦ ! ମା ଭଗବାନୀ ଆଜି ମୋର ଜ୍ୟେଷ୍ଠପୁତ୍ରବଧୂ—ଏହି ରତିରୂପ-ଜୀବା ମା ପୁଣି କନିଷ୍ଠପୁତ୍ରବଧୂ ! ଧନ୍ୟ ଈଶ୍ୱର ! ଧନ୍ୟ ତୁମ୍ଭର କରୁଣାକୁ ! ଏ' ବୃଦ୍ଧ ଭାଲରେ ଏତେ ଆନନ୍ଦ ଲେଖିଥିଲେ !

ଶୋଲଙ୍କି—ଆସ, ସର୍ଦ୍ଦାର—ଆସ ଭାଇ, ବନ୍ଧୁ, ପୁତ୍ର କନ୍ୟାଗଣ ସମସ୍ତେ ମିଳି ଆନନ୍ଦୋତ୍ସବରେ ମତ୍ତ ହେବା ଆସ ! ଯାଅ, ସେନାପତେ ଶୀଘ୍ର ଉତ୍ସବର ଆୟୋଜନ କର ।

( ଦୁର୍ଜ୍ଜୟଙ୍କ ପ୍ରସ୍ଥାନ )

ସମସ୍ତେ—ଜୟ ରାଜା ଶୋଲଙ୍କିର ଜୟ । ଜୟ ସର୍ଦ୍ଦାର ଲଖାର ଜୟ । ଜୟ ରାଜା ସେଓଜିର ଜୟ । ରାଜଭ୍ରାତା ସୈତରାମର ଜୟ ।

( ସହସା ତୋପର ଆୱାଜ୍ ଓ ଯୁଦ୍ଧକ୍ଷେତ୍ରଦୃଶ୍ୟ ଗୋଟିଏ ସମୁଜ୍ଜ୍ୱଳ ରାଜସଭା ଦୃଶ୍ୟରେ ପରିଣତ ହେବା ଏବଂ ସମସ୍ତେ ନିଜର ନିଜର ଆସନ ଗ୍ରହଣ କରିବା । )

( ସଖୀଗଣଙ୍କ ପ୍ରବେଶ ଓ ଗୀତ )

ଗାଅ ଆଜି ମିଳି ସର୍ବେ ଆନନ୍ଦରେ ଗୀତ ହେ,
ଏ' ଶୁଭ ମିଳନ ହେ ॥
ଯେ ଯାହାର ପାଇଛନ୍ତି ଅଦ୍ଧା କିବା ମିଳିଛନ୍ତି
କିବା ଶୁଭ ଘଟନ ହେ ॥
ଗାଏ ଚନ୍ଦ୍ର, ଗାଏ ତାରା ଗାଏ ସ୍ନିଗ୍ଧ ବସୁନ୍ଧରା
ଗାଏ ନବେ ତପନ ହେ ॥

—ଯବନିକା—

# କଳାପାହାଡ଼

ବା

# ମୁକୁନ୍ଦଦେବ

— ଐତିହାସିକ ନାଟକ —

# ଭୂମିକା

'ସେଓ଼ଣ୍ଡି' ନାଟକର ଅଶାତୀତ ସାଫଲ୍ୟରେ ମୁଁ ଅନ୍ୟୁର ଐତିହାସିକ ନାଟକ ଲେଖିବାର ମନସ୍ଥ କଲି—ଓଡ଼ିଶା ଇତିହାସର ବିଷୟ ବସ୍ତୁକୁ ମୂଳଦୁଅ କରି। ସର୍ବାଗ୍ରେ ଲକ୍ଷେ ରାଜାର ମହୁଡ଼ମଣୀ—ଉତ୍କଳର ଶେଷ ସ୍ୱାଧୀନ ଗଜପତି ମହାରାଜାଙ୍କର ଇତିହାସକୁ ନାଟ୍ୟରୂପ ଦେବାର ସ୍ଥିର କଲି। କାରଣ ହେଉଛି, ଏହି ସମୟର ଘଟଣାବଳୀ ଓଡ଼ିଆଜାତିର ଏକ ସନ୍ଧିକ୍ଷଣ।

ହିନ୍ଦୁଧର୍ମ୍ମ-ବିଚ୍ୟୁତ-କ୍ରୁର କଳାପାହାଡ଼ ଦ୍ୱାରା ହିନ୍ଦୁର ଧର୍ମ୍ମ ଓ ଦେବତା ଉପରେ ନିର୍ମ୍ମମ ଆଘାତ—ଘର-ଶତ୍ରୁ-ବିଭୀଷଣ-ରୂପୀ ସାମନ୍ତରାଜ ରାମଚନ୍ଦ୍ର ଓ ଶିଖି, ମନାଇ ଦ୍ୱାରା ଜାତିର ପିତାକୁ ଓ ଦେଶମାତୃକାକୁ ଅର୍ଥ ଲୋଭରେ ଯବନ ନିକଟରେ ବଳୀଦାନ—ପ୍ରତିରୋଧ-କଳ୍ପେ ଗଜପତି ମୁକୁନ୍ଦଦେବଙ୍କ ଅପୂର୍ବ ବୀରତ୍ୱର ପରିଚୟ ଦାନ ସଙ୍ଗେ, ନିଜର ପ୍ରାଣ ବିସର୍ଜ୍ଜନ ପ୍ରଭୃତି ବିଷୟ ଯଥାଯଥ ଭାବରେ ଚିତ୍ରଣ କରିବାର ଚେଷ୍ଟା-କରିଛି ଏହି ନାଟକ-ମାଧ୍ୟମରେ।

ବାହାର ଶତ୍ରୁ ଅପେକ୍ଷା ଘର-ଶତ୍ରୁହିଁ ଯେ ଭୀଷଣ—ତା'ର ଦୃଷ୍ଟାନ୍ତ ଉତ୍କଳ ଇତିହାସରେ ବିରଳ ନୁହେଁ। ଦେଶର ଏହି ଜାତୀୟ ଜାଗରଣ ସମୟରେ ଏହିପରି ନାଟକ ପ୍ରତ୍ୟେକ ଓଡ଼ିଆଙ୍କୁ ଉଦ୍‌ବୁଦ୍ଧ କରିବ ବୋଲି ବିଶ୍ୱାସ।

କଟକ

୧୯୬୨ ମସିହା — ଅଶ୍ୱିନୀ

---

## —ଚରିତ୍ର ଲିପି—

ଅକ୍‌ବର—ମୋଗଲ୍ ସମ୍ରାଟ

ମାନସିଂହ—ମୋଗଲର-ପ୍ରଧାନ ସେନାପତି

କଚଲି—ମୋଗଲ-ମନ୍‌ସବ୍‌ଦାର

ବୀରବଲ୍—ମୋଗଲ୍-ବିଦୂଷକ

ତାନ୍‌ସେନ—ମୋଗଲ୍-ସଙ୍ଗୀତାଗ୍ରଣୀ

ମୁକୁନ୍ଦଦେବ—ଓଡ଼ିଶାର ରାଜା

କୋଣ୍ଡ ସାମନ୍ତ ସିଂହାର—ଓଡ଼ିଶାର ସେନାପତି

ରାମଚନ୍ଦ୍ର ଭଞ୍ଜ—ଓଡ଼ିଶାର ସାମନ୍ତ ରାଜା

ଶିଖି ମହାପାତ୍ର, ମନାଇ ମହାପାତ୍ର } —ଓଡ଼ିଶାର ସୈନିକ କର୍ମଚାରୀ

ସୁଲେମାନ୍—ବଙ୍ଗଳାର ନବାବ୍

କଳାପାହାଡ଼—ନବାବଙ୍କ ଜାମାତା ଓ ସେନାପତି

ରହମତ୍—ବଙ୍ଗଳାର ସହକାରୀ ସେନାପତି

ଅବଦୁଲ୍ଲା—ନବାବଙ୍କ ଭ୍ରାତୃଷ୍ପୁତ୍ର

ପଣ୍ଡିତଗଣ, ଜଗୁଆଳିଗଣ, ଦୂତ, ଦ୍ୱାରୀ, ମୋଗଲ ସୈନ୍ୟଗଣ, ପଠାଣ ସୈନ୍ୟଗଣ, ହିନ୍ଦୁ ସୈନ୍ୟଗଣ, ନଗରବାସୀଗଣ, ଶିକାରୀଗଣ, ଇତ୍ୟାଦି।

ଇନ୍ଦୁମତୀ—ମୁକୁନ୍ଦଦେବଙ୍କ ରାଣୀ

ଦୁଲିଆ—ନବାବଙ୍କ ଭ୍ରାତୃଷ୍କନ୍ୟା ଓ କଳାପାହାଡ଼ର ଦ୍ୱିତୀୟା ସ୍ତ୍ରୀ

ତିଲୋତ୍ତମା—କଳାପାହାଡ଼ର ପ୍ରଥମା ସ୍ତ୍ରୀ

ବୃନ୍ଦା—କଳାପାହାଡ଼ର ଜନନୀ

ଫିରୋଜା—ଦୁଲିଆର ସଖୀ

ଗୋଲାପ—ପୁରୁଷବେଶରେ ତିଲୋତ୍ତମା

ଛାୟା-ତିଲୋତ୍ତମା, ଛାୟା-ବୃନ୍ଦା, ନର୍ତ୍ତକୀଗଣ, ପୁରନାରୀଗଣ ଇତ୍ୟାଦି।

---

# କଳାପାହାଡ଼
## ବା ମୁକୁନ୍ଦଦେବ

### ପ୍ରଥମ ଅଙ୍କ

#### ପ୍ରଥମ ଦୃଶ୍ୟ

—ଦିଲ୍ଲୀର ରାଜସଭା—

[ ସିଂହାସନୋପରେ ବାଦ୍‌ସାହ ଅକ୍‌ବର ଏବଂ ସମ୍ମାନାନୁସାରୀ ମାନସିଂହ, ବୀରବଲ ଓ କତଲୁ ଖାଁ ଆସୀନ । ]

ନର୍ତ୍ତକୀମାନଙ୍କର ନୃତ୍ୟ ଓ ଗୀତ—

ବିରାଜେ ଏ ସିଂହାସନେ ଭାରତରାଜ—
ଶୋଭୁଛନ୍ତି ଚତୁପାଶେ ଗୁଣିସମାଜ ।
ପୂର୍ଣ୍ଣିମା ସୁଧାକର ବିରାଜେ କି ଅମ୍ବରେ
ତାରକା ଆବରଣେ ହୋଇଣ ସଜ
ଭ୍ରମରେ ବେଢ଼ିଛନ୍ତି ଅବା ପଙ୍କଜ ।
ଆସ ଆସ, ନାଚ ନାଚ ହରଷିତ ମନେ,
ଜମାଇବା ଭୁବନ ଜୟ ଜୟ ଗାନେ—
ପବନ ହିଲ୍ଲୋଳେ, ଗଗନ ମଣ୍ଡଳେ
ସେ ତାନ ଲହରୀ ପରଶୁ ଆଜ
ହୃଦୟେ ଜଗାଇଣ ନବ ନବ ତେଜ ।

( ନର୍ତ୍ତକୀମାନଙ୍କ ପ୍ରସ୍ଥାନ )

ଅକ୍‌ବର—ଅଭିମାନୀ ଖାଁ ସାହେବ ! ବୃଥା ଅଭିମାନ ଭଞ୍ଜନ କର ।

ବୀରବଲ୍—କିନ୍ତୁ ଜାହାଁପନା ! ଖେୟାଲ୍ ରଖିଥିବେ, ଆମର ଖାଁସାହେବଙ୍କ ହୃଦୟଟି କଠିନାଙ୍ଗୀ ଅତି କଠିନ-ମତି ।

( ସମସ୍ତଙ୍କ ଉଚ୍ଚହାସ୍ୟ )

କତଲୁ—ବୀରବଲ୍ ! ଏ ରଙ୍ଗସ୍ଥଳ ନୁହେଁ, ଏ ସଭାସ୍ଥଳ ।

ବୀରବଲ୍—ମୁଁ ମନେ କରିଥିଲି, ରଣସ୍ଥଳ ! ଯାହା ହେଉ, ଖାଁ ସାହେବ ଭାରି ଉପକାରଟାଏ କଲେ ଏକା ! ତୁମ୍ଭେ ନ ଥିଲେ କି ମୁଁ ଏପରି ପଳାଇ ଆସି ଗଡ଼ ପୂଜିକି ଜାହାଁପନାଙ୍କ ସମ୍ମୁଖରେ ଆଜି ଛିଡ଼ା ହୋଇ ପାରିଥାନ୍ତି ?

ଅକ୍‌ବର—ବୀରବଲ୍ ! ଆମ୍ଭେମାନେ ଓଡ଼ିଶା ଆକ୍ରମଣ କରିବାକୁ ଯାଇ ଦେଖିଲୁଁ ଯେତେବେଳେ ତାହା ଅଧିକାର କରିବା ନିତାନ୍ତ ଦୁଃସାଧ୍ୟ, ସେତେବେଳେ ବାଧ୍ୟହୋଇ ପ୍ରତ୍ୟାବର୍ତ୍ତନ କଲୁ—ସୁତରାଂ କତଲୁ ଖାଁ ତ ନିଜେ ପଳାଇ ଆସିନାହିଁ, ପ୍ରଭୁଙ୍କ ଆଦେଶ ପାଳନ କରିଛନ୍ତି ମାତ୍ର ! ବୀର ଖାଁ ସାହେବ ! ଏ କ୍ଷେତ୍ରରେ ତୁମ୍ଭର ମାନ କରିବା କି ବୀରୋଚିତ ?

କତଲୁ—ଏ ନଫର କିଏ ଜାହାପନା, ନିଜ ସକାଶେ ମାନ କରୁଛି ? ମାନ କରୁଛି ତାଙ୍କର ସକାଶେ, ଯାହାଙ୍କର ସ୍ୱଚ୍ଛ ମାନ ଏ ପର୍ଯ୍ୟନ୍ତ ନିଷ୍କଳଙ୍କ— ଯାହାଙ୍କର ପ୍ରଶସ୍ତ ନାମ ଏ ପର୍ଯ୍ୟନ୍ତ ବିଶ୍ୱବ୍ୟାପୀ ।

ଅକ୍‌ବର—ପ୍ରଭୁଭକ୍ତ ଖାଁ ସାହେବ ! ଏତେଦିନେ ସୁଦ୍ଧା ମୋର ଭାବ ବୁଝିପାରିଲ ନାହିଁ ? ମୋତେ ଚିହ୍ନି ପାରିଲ ନାହିଁ ?

କତଲୁ—ଖୁବ୍ ଚିହ୍ନିଛି, ଖୁବ୍ ବୁଝିଛି, ଜାହାଁପନା ! ଆପଣ କଠିନ ଶୈଳାବୃତ ନୀଳଜଳୋଚ୍ଛ୍ୱାସ ତୁଲ୍ୟ—ଆପଣଙ୍କ ହୃଦୟ କଠିନ ବହିରାବୃତ ତରଳ-ପୟଃପୂର୍ଣ୍ଣ ପାକ ଫଳ—ଆପଣ ଦେଖିବାକୁ ଶାର୍ଦ୍ଦୂଳ ସଦୃଶ ଭୟଙ୍କର, କିନ୍ତୁ ବୁଝିବାକୁ ଦୁଗ୍ଧ-ପୋଷ୍ୟ ଶିଶୁ ଅପେକ୍ଷା ଦୁର୍ବଳ—ଆପଣ ବାହାରେ ତୀକ୍ଷ୍ଣ ରଶ୍ମି-ସୂର୍ଯ୍ୟ ପରି ଦୀପ୍ତି ପ୍ରକାଶ କରନ୍ତି; କିନ୍ତୁ ଅନ୍ତରେ ସୁଧାମୟ ସୁଧାକର ତୁଲ୍ୟ

ଶୀତଳତା ବିତରଣ କରନ୍ତୁ । ଏହାପର ଗର୍ହିତ
ଆପଣଙ୍କୁ—ଏହାପର ରୁଚିତ ଆପଣଙ୍କୁ ।

ବୀରବଲ୍—ଖାଁ ସାହେବ ! ଜାହାଁପନାଙ୍କର ତ ଏଗୁଡ଼ାକ ଭାରି ଦୋଷ ! ଅଚ୍ଛା ବା କେମନ୍ତ କାରିଗର – ଜଳାଶୟଟାକୁ ଗଢ଼ିଲେ ଚରମ ନାଆଁ ଦେଇ, ଫଳ ଫଳାଇଲେ କି ନା ଠିକ୍ ଓଲଟା, ଥଣ୍ଡା ପାଣି ପରି ? ବଡ଼ ଆଶ୍ଚର୍ଯ୍ୟର ବିଷୟ ।

[ ଅକ୍‌ବର ଓ ମାନସିଂହଙ୍କର ମୃଦୁହାସ୍ୟ ]

ଭଗଲ୍—ନିଶ୍ଚୟ ବିଦୂଷକ ! ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ! ରାଜା ସାହେବ ! ଏହା ବିଦୂଷକର ପରିହାସ ନୁହେଁ ।

ଅକ୍‌ବର—( ମାନସିଂହ ଅଡ଼େ ) ବାସ୍ତବିକ ତେବେ ଖାଁ ସାହେବଙ୍କୁ ବଡ଼ ଅପମାନ ବୋଧ ହୋଇଛି ।

ମାନସିଂହ—ତାଙ୍କର ଇଚ୍ଛା ଥିଲା, ମୁକୁନ୍ଦଦେବଙ୍କୁ ଅଗ୍ରେ ପରାଜୟ ସ୍ୱୀକାର କରାଇବା—( ସ୍ୱଗତ ) ଧନ୍ୟ ଧନ୍ୟ ମୁକୁନ୍ଦଦେବ ! ଧନ୍ୟ ତୁମ୍ଭର କ୍ଷତ୍ରିୟଶୋଣିତ । ( ଦୀର୍ଘନିଃଶ୍ୱାସ ତ୍ୟାଗକରି, ପ୍ରକାଶ୍ୟେ ) ତତ୍‌ପରେ ଆପଣଙ୍କ ଇଚ୍ଛାନୁଯାୟୀ ତାଙ୍କ ସଙ୍ଗେ ମିତ୍ରତା କରିଥାନ୍ତେ ।

ଭଗଲ୍—ଶେଷଟା ମଧ୍ୟ ମୋର ଇଚ୍ଛା ନ ଥିଲା ! ଓଡ଼ିଶା ପରି ଶସ୍ୟ-ଶ୍ୟାମଳା, ରତ୍ନାକର-ବିଧୌତ-ଚରଣା, ନାନାବିଧ କାରୁକାର୍ଯ୍ୟ-ବିମଣ୍ଡିତା, ଲକ୍ଷ୍ମୀ ସରସ୍ୱତୀଙ୍କ ନିତ୍ୟ ଲୀଳାଭୂମି—କେଉଁ ମହତ୍ ହୃଦୟ, ଉଚ୍ଚାକାଙ୍କ୍ଷୀ ରାଜା ଅବହେଳାରେ ତ୍ୟାଗକରିବ ? —ସର୍ବୋପରି ତାହାର ସେହି ବୀର-ଦର୍ପ-ଦୃପ୍ତ ରାଜାର ଦର୍ପ ଚୂର୍ଣ୍ଣ ନ କରି ସହଜରେ କ୍ଷାନ୍ତ ହେବ ?

[ସମସ୍ତେ ଅକ୍‌ବରଙ୍କ ଅଡ଼େ ଉଦ୍‌ଗ୍ରୀବ ନେତ୍ରରେ ଚାହିଁବା ]

ଅକ୍‌ବର—ସେନାପତେ ! ଏହାହିଁ କି ରାଜାର ଧର୍ମ ? ଏହାହିଁ କି ବୀରର ବୀରତ୍ୱ ?

ଭଗଲ୍—ଆପଣ ରାଜନୀତିଜ୍ଞ, ପଣ୍ଡିତ—ଆପଣଙ୍କୁ ମୋ'ପରି ଅଜ୍ଞଜନ କ'ଣ ବୁଝାଇବ ? ତେବେ ଜାହାଁପନାଙ୍କୁ ଏତିକି ମାତ୍ର ସ୍ମରଣ କରାଇ ଦେଉଛି, ରାଜାର ଧର୍ମ କି ରାଜ୍ୟ ବୃଦ୍ଧି କରିବା ନୁହେଁ ? ବୀରର ବୀରତ୍ୱ କି ଶତ୍ରୁ ଦମନ କରିବା ନୁହେଁ ?

ସଭାସଦ—ଠିକ୍ କହୁଛ, ସେନାପତେ—ଠିକ୍ କହୁଛ ।

ଅକ୍‌ବର—ଏହା କି ଧର୍ମ ରାଜାର, ସଭାସଦବର୍ଗ ? ଏହା କି ବୀରତ୍ୱ ବୀରର, କହୁଛ ଖାଁ ?—ଯେବେ ଏହାହିଁ ହୁଏ, ତେବେ ଧିକ୍ ସେହି ରାଜଧର୍ମ, ଯାହା ପ୍ରତିବେଶୀ କିମ୍ବା ଦୂରଦେଶୀ ରାଜାର ଧନ ରତ୍ନ-ବୃଦ୍ଧି ଓ ସୁଖ ଶାନ୍ତି ଭୋଗକୁ ନୀଚ ଦସ୍ୟୁ ତସ୍କର ତୁଲ୍ୟ ଅପହରଣ ପୂର୍ବକ ନିଜର ସ୍ୱାର୍ଥସୁଖ ବିଧାନରେ ପ୍ରଦର୍ଶିତ ହୁଏ—ଧିକ୍ ସେହି ବୀରତ୍ୱ ଯାହା ରୋଗୀ, ଶୋକୀ, ଦୀନ, ଦୁଃଖୀ, ଜୀର୍ଣ୍ଣଶୀର୍ଣ୍ଣ ମାନଙ୍କ ଦୀନତା ମୋଚନରେ ଉଚିତ ମାତ୍ର ନିୟୋଜିତ ନ ହୋଇ, ଦୁର୍ବଳ କିମ୍ବା ସମବଳୀର ବଳବୀର୍ଯ୍ୟ ବିନାଶରେ ସମ୍ୟକ୍ ବ୍ୟାପୃତ ହୁଏ ! ଧିକ୍, ଶତଧିକ୍ ସେହି ରାଜଧର୍ମ—ସେହି ବୀରର ବୀରତ୍ୱ ! ଶୁଣ ରାଜନ୍ୟବର୍ଗ ! ଶୁଣ ବୀରଗଣ ! ମୋର ପିତା, ପ୍ରପିତାମହ ମୋତେ ଆଜ ଯେଉଁ ସମ୍ପତ୍ତି ଭୋଗ କରିବାକୁ ଦେଇ ଯାଇଛନ୍ତି, ମୋର ରାଜଭକ୍ତ ପ୍ରଜାଗଣ ମୋତେ ଆଜ ଯେଉଁ ସିଂହାସନ ବିଶ୍ୱାସରେ ସମର୍ପଣ କରିଅଛନ୍ତି, ସେହି ଅମୂଲ୍ୟ ସମ୍ପତ୍ତିର କଳେବର ବୃଦ୍ଧି କରି ରାଜଧର୍ମ ଦେଖାଇବି ନାହିଁ, ସେହି ପବିତ୍ର ସିଂହାସନ ଶତ୍ରୁରକ୍ତରେ ରଞ୍ଜିତ କରି ବୀରର ବୀରତ୍ୱ ଦେଖାଇବି ନାହିଁ—ଦେଖାଇବି, ଶତ୍ରୁ ମିତ୍ରର ପବିତ୍ର ପ୍ରେମସୁଧାରେ ଆଜ ତାହା ପ୍ଲାବିତ କରି—ପୁତ୍ରତୁଲ୍ୟ ପ୍ରଜାମଣ୍ଡଳୀଙ୍କ ସୁଖଶାନ୍ତି ବାବରେ ଆଜ ସିଞ୍ଚିତ କରି—

ସମସ୍ତେ—ସାଧୁ ! ସାଧୁ, ବାଦ୍‌ସାହ ଅକ୍‌ବର !

ମାନସିଂହ—(ସ୍ୱଗତ) ଏହି ସଭାରେ ତ ଏହି ହତଭାଗ୍ୟ ହିନ୍ଦୁ ଆଜି ନିଜକୁ ଭାଗ୍ୟବାନ୍ ମନେ କରୁଛି ! ଏହିତ ବୀରର ପ୍ରଧାନ ସୁଖ, ଯେବେ ସେ ଉପଯୁକ୍ତ ବୀରପୂଜା କରିପାରେ—ଏହିତ ପ୍ରକାର

ପ୍ରଧାନ ସୂତ୍ର, ଯେବେ ସେ ଉପଯୁକ୍ତ ରାଜସେବା କରିପାରେ ।

[ ତାନ୍‌ସେନର ଗୀତ ଗାଇ ଗାଇ ପ୍ରବେଶ ]

—ଗୀତ—

ଜୟ ଅକ୍‌ବର, ଭାରତ-ଈଶ୍ୱର,
    ଜୟ ମୋଗଲ-ଭୂଷଣ ହେ ।
ଜୟ ରାଜେଶ୍ୱର, କରୁଣା ସାଗର,
    ଜୟ ଶାନ୍ତି ନିକେତନ ହେ ।
ନିର୍ଜିତ ଅରାତି ତବ ବୀନା ଅସ୍ତ୍ରାଘାତେ
ବର୍ଦ୍ଧିତ ଆସନ ତବ ବିନା ରକ୍ତପାତେ
ନାହିଁ ଜାତିଭେଦ, ନାହିଁ ଧର୍ମଭେଦ,
    ଭାଇ, ହିନ୍ଦୁ ମୁସଲମାନ ହେ ।
ଶାସନ ପ୍ରଣାଳୀ ତବ ଧର୍ମପ୍ରତିଷ୍ଠିତ
ବିଚାରପଦ୍ଧତି ତବ ନ୍ୟାୟ ନିୟନ୍ତ୍ରିତ
ଦୀନେ ଦୟାକର, ଦୋଷୀ କ୍ଷମାକର,
    ଶାନ୍ତି-ସିଞ୍ଚିତ ଭୁବନ ହେ ।
ପ୍ରସାଦେ ଦ୍ୱିଜେନ୍ଦ୍ର ତବ ମର୍ତ୍ତ୍ୟେ ଅବତୀର୍ଣ୍ଣ
ପରମଆନନ୍ଦ ସ୍ୱରଗ ବିସ୍ତୀର୍ଣ୍ଣ
ତବ କୀର୍ତ୍ତିରାଜି, ସୁଷ୍ମମୟ ଆଜି,
    ବନ୍ଦେ ଶ୍ରୀଚରଣ ହେ ॥

ଅକ୍‌ବର—ଆସ ମିଆଁ ତାନ୍‌ସେନ୍ । ମୋର ବସନ୍ତ ସମୟର କୋକିଳ ।

ତାନ୍‌ସେନ୍—ଖୋଦାବନ୍ଦ ! ଏ ଗରିବ କଣ କେବଳ ବସନ୍ତ ସମୟର କୋକିଳ—ଆଉ କୌଣସି ସମୟର ନୁହେଁ ?

ଅକ୍‌ବର—ନା ନା, ମିଆଁ ତାନ୍‌ସେନ୍ । ତାହା ନୁହେଁ । ମୋର କହିବାର ମତଲବ—ତୁମ୍ଭେ ବସନ୍ତକୁ ଅନୁଧାବନ କର ନାହିଁ, ବସନ୍ତ ତୁମ୍ଭଙ୍କୁ ଅନୁଧାବନ କରେ । ଯେତେ ଦିନ ତୁମ୍ଭେ ମୋ ନିକଟରେ ବର୍ତ୍ତମାନ, ସେତେଦିନ ମୋ ପକ୍ଷେ ବସନ୍ତର ଅବସାନ ଅସମ୍ଭବ । କି ପବିତ୍ର ଓ ମଧୁର ତୁମ୍ଭର ସେହି ସ୍ୱର୍ଗୀୟ ସଙ୍ଗୀତ, ଯାହାର ସୁସ୍ୱରଣରେ ଶୁଷ୍କ ଶ୍ରବଣଦ୍ୱୟ ରସାପ୍ଲୁତ ହୁଏ, ରତ୍ନ ପୁଲକରେ ନାଚି ଉଠେ, ହୃଦୟ ନବତେଜରେ ଉଦ୍ଭାସିତ ହୁଏ । ମୁଁ ଉପଲବ୍‌ଧି କରେ ଯେ, ମୁଁ ଶକ୍ତିହୀନ—ମୋର ଶକ୍ତିଦାତା ସେହିଠାରେ; ମୁଁ ଜ୍ଞାନହୀନ—ମୋର ଜ୍ଞାନଦାତା ସେହିଠାରେ; ମୁଁ ଅନ୍ଧ—ମୋର ଦୃଷ୍ଟିଦାତା ସେହିଠାରେ ।

ତାନ୍‌ସେନ୍—ଏହି ବିନୟ ଯୋଗୁଁ ତ ଆଜି ଆପଣ ଏତେ ଉଚ—ଏହି ମହାନୁଭବତା ଯୋଗୁଁ ତ ଆଜି ଆପଣ ଏତେ ପୂଜ୍ୟ ।

ଅକ୍‌ବର—ବର୍ତ୍ତମାନ ସଭା ଭଙ୍ଗ ହେଉ । କତଲୁ ଖାଁ ! ବୋଧ କରେଁ, ତୁମ୍ଭଙ୍କୁ ( ଓଡ଼ିଶାରୁ ଆସି ) ଅସୁସ୍ଥ କରି ପାରିଛି ।

କତ୍‌ଲୁ ଖାଁ—( ସ୍ୱଗତ ) ମୁକୁନ୍ଦ ଦେବ ! (ପ୍ରକାଶ୍ୟେ) ଖୋଦାବନ୍ଦ ! କସୁର୍ ମାଫ୍ କରିବେ ।

[ ସମସ୍ତେ ପ୍ରସ୍ଥାନୋଦ୍ୟତ ହେଲେ ବାଘାରୁ ଦରଗରୁ ସୈନିକର ବେଗେ ପ୍ରବେଶ ]

ସୈନିକ—ସର୍ବନାଶ ! ସର୍ବନାଶ !

ମାନସିଂହ—କି ସମ୍ବାଦ, ସୈନିକ ?

ସୈନିକ—ସୁଲେମାନ ବିଦ୍ରୋହ କରିଛନ୍ତି ।

ମାନସିଂହ—ସୁଲେମାନ୍ !

ଅକ୍‌ବର—ରାଜା ସାହେବ ! ଆଶ୍ଚର୍ଯ୍ୟର କୌଣସି କାରଣ ନାହିଁ । ଏହା ଯେ ଅବଶ୍ୟମ୍ଭାବୀ, ଏ'କଥା ବହୁପୂର୍ବରୁ ମୁଁ ଅନୁମାନ କରିଥିଲି ।

କତ୍‌ଲୁ ଖାଁ—ଜାହାଁପନା ! ଗୋଲାମର ଗୋସ୍ତାଖି ମାଫ୍ କରି କହନ୍ତୁ—ଏହି କି ସେହି ଆଶ୍ରିତ ନବାବ ନୁହେଁ, ଯାହାକୁ ଆପଣ ଦୟାପରବଶ ହୋଇ ପ୍ରାଣଭିକ୍ଷା—ରାଜ୍ୟଭିକ୍ଷା ସୁଦ୍ଧା ଦାନ କରିଥିଲେ ?

ଅକ୍‌ବର—ଖାଁ ସାହେବ । ଏ ପ୍ରଶ୍ନର ମତଲବ ବୁଝି ପାରିଛି । ତୁମ୍ଭେ କହିବାକୁ ଚାହଁ ଯେ ମୁକୁନ୍ଦଦେବ ମଧ୍ୟ ଦିନେ ଏହିପରି ବିଦ୍ରୋହ କରି ପାରନ୍ତି ।

କତ୍‌ଲୁ ଖାଁ—ଜାହାଁପନା ।

ଅକ୍‌ବର—ଅଚ୍ଛା ବେଶ୍ । ବର୍ତ୍ତମାନ ସୁଯୋଗ ଉପସ୍ଥିତ । ମୁକୁନ୍ଦଦେବଙ୍କ ଏହି ବିଦ୍ରୋହ ଦମନାର୍ଥ ନିମନ୍ତ୍ରଣ

କଶ୍ୟପାତ୍ର—ତାଙ୍କର ବନ୍ଧୁତାର ପରୀକ୍ଷା ଏହିଠାରେ ହେବ ।

କତ୍ଲୁ ଖାଁ—( ସ୍ୱଗତ ) ଶୋଭନାଲ୍ଲା ।

ଆକ୍‌ବର—କତ୍ଲୁ ଖାଁ ! ତୁମେ ମଧ୍ୟ ସହସ୍ରାଧିକ ମୋଗଲସୈନ୍ୟ ନେଇ ମୁକୁନ୍ଦଦେବଙ୍କ ସାହାଯ୍ୟାର୍ଥ ଶୀଘ୍ର ଯାତ୍ରା କର । ମୋର ଧ୍ରୁବ ବିଶ୍ୱାସ, ନବାବ ତାଙ୍କର ଜାମାତା କଳାପାହାଡ଼ ଉପରେ ନିର୍ଭର କରି ନିଶ୍ଚୟ ଏହି ବିଦ୍ରୋହ କରିଛନ୍ତି ।

କତ୍ଲୁ ଖାଁ—ଏହା ନିଶ୍ଚୟ । ( ସ୍ୱଗତ ) କିନ୍ତୁ ମୁଁ ସହକାରୀ—ପୁଣି ମୁକୁନ୍ଦଦେବର । ଏତେ ନୀଚପଦ ମୋର । ଅଚ୍ଛା, ଦେଖାଇବି, କାହାର ସମ୍ମାନ କେତେ ।

ଆକ୍‌ବର—ରାଜାସାହେବ ! ମୁକୁନ୍ଦଦେବଙ୍କ ନିକଟକୁ ଦୂତ ପ୍ରେରଣ କରିବାର ଶୀଘ୍ର ବନ୍ଦୋବସ୍ତ କରନ୍ତୁ । ଆସ ମିଆଁ ତାନ୍‌ସେନ୍ ! ଆସ ବିଦୂଷକ !

( ପ୍ରସ୍ଥାନ )

ବୀରବଲ—ଚାଲନ୍ତୁ, ଜାହାଁପନା ! ମାନଭଞ୍ଜନ ଯାତ୍ରା ଶେଷ ନ ହେଉଣୁ କଂସମାରଣ-ଯାତ୍ରା ଆରମ୍ଭ । ଏକସ୍ୟ ଦୁଃଖସ୍ୟ ନଯାବଦନ୍ତଂ—ଉପସ୍ଥିତଂ ଦ୍ୱିତୀୟଂ ଦେବାନାନ୍ତରେଽପି । ( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

### —ନବତଳ କକ୍ଷ—

[ ମୁକୁନ୍ଦଦେବ ଓ ରାଣୀ କଥାବାର୍ତ୍ତା ହେଉଥିଲେ । ]

ମୁକୁନ୍ଦଦେବ—ପ୍ରିୟେ ! ଦୁଃଖର ପର ସୁଖ—ବିରହର ପର ମିଳନ, କି ମଧୁର ! କି ଆନନ୍ଦଦାୟକ !

ରାଣୀ—ଏହା ସ୍ୱର୍ଗଭୋଗଠାରୁ ଆନନ୍ଦକର—ସୁଧାପାନଠାରୁ ମଧୁର !

ମୁକୁନ୍ଦଦେବ—ଏହି ମାଧୁରୀ, ଏହି ଆନନ୍ଦ କଣ ଚିରସ୍ଥାୟୀ ହେବ, ପ୍ରିୟେ ?

ରାଣୀ—ଏପରି ଅମଙ୍ଗଳ ଚିନ୍ତା କାହିଁକି, ପ୍ରିୟତମ ? ମୋର ଶାନ୍ତିମୟ ପ୍ରାଣକୁ ଏପରି ଉଦ୍‌ବେଳିତ କରୁଛନ୍ତି କାହିଁକି, ପ୍ରାଣେଶ୍ୱର ?

ମୁକୁନ୍ଦଦେବ—ପ୍ରିୟେ ! ମୋର ଗୋଟାଏ କିପରି ଶଙ୍କା ହେଉଛି—କାରଣ ଯେ କଣ, ତାହା ନିଜେ ମୁଁ ନିର୍ଦ୍ଦେଶ କରିବାକୁ ଅକ୍ଷମ ।

ରାଣୀ—କି ଆଶଙ୍କା, ପ୍ରଭୁ ?

ମୁକୁନ୍ଦଦେବ—ମୁଁ ଅନୁକ୍ଷଣ ଅନୁଭବ କରୁଛି, ମୋର କର୍ଣ୍ଣେ କର୍ଣ୍ଣେ ଯେପରି କି କିଏ କହି ଦେଉଛି—ମର୍ମେ ମର୍ମେ ଯେପରିକି କିଏ ଆଘାତ କରିଦେଉଛି—ଏତେ ସୁଖ, ଏତେ ଆନନ୍ଦ ମାନବ ପକ୍ଷେ ଅସମ୍ଭବ—ଏହା କଦାଚ ଦୀର୍ଘକାଳ ସ୍ଥାୟୀ ନୁହେଁ ।

ରାଣୀ—ଆଜି ସହସା ଏ କି ଅନୁଭୂତି, ପ୍ରିୟବର ? ଆନନ୍ଦସୁଧାରେ ସହସା ଏ କି ବିଷାଦ-ଗରଳ—ନୀଳ ନଭୋମଣ୍ଡଳରେ ସହସା ଏ କି କୃଷ୍ଣ ଘନରେଖା—ସୁବିମଳ ପୁଣ୍ୟବକ୍ଷରେ ସହସା ଏ କି ପାପ କଳଙ୍କ ! ହୃଦୟେଶ୍ୱର—ପ୍ରାଣେଶ୍ୱର—

( ଆଲିଙ୍ଗନ କରିବା )

ମୁକୁନ୍ଦଦେବ—ପ୍ରାଣେଶ୍ୱରି ! ହୃଦୟେଶ୍ୱରି ! ସ୍ଥିର ହୁଅ; ଏହା ହୃଦୟର କ୍ଷଣିକ ଦୁର୍ବଳତା ମାତ୍ର—ମନର କ୍ଷଣିକ ଦୌର୍ବଲ୍ୟ ମାତ୍ର ।

ରାଣୀ—ନା ପ୍ରାଣେଶ୍ୱର ! ଏ ଅଶ୍ୱାସନା ମାତ୍ର । ଯେଉଁ ଆପଣ, ହିମାଳୟଠାରୁ ଦୃଢ଼ତର—ପ୍ରଶାନ୍ତ ମହାସାଗରଠାରୁ ସ୍ଥିରତର, ସେହି ଆପଣଙ୍କର ଏପରି ଦୁର୍ବଳତା—ଏପରି ଦୌର୍ବଲ୍ୟ, କ୍ଷଣିକ ହେଲେ ସୁଦ୍ଧା, ସାମାନ୍ୟ କାରଣରେ କି କେବେ ସମ୍ଭବ ? ଏହା ନିଶ୍ଚୟ କୌଣସି ବିପଦାଗମନର ସୂଚନା—ଆଗ୍ନେୟଗିରି ଉଦ୍‌ଗୀରଣର ପୂର୍ବକମ୍ପନ ।

ମୁକୁନ୍ଦଦେବ—ପ୍ରିୟେ ! ଦୁଶ୍ଚିନ୍ତା ତ୍ୟାଗ କର । ଭାବି ଦେଖ, ବର୍ତ୍ତମାନ ଆମ୍ଭମାନଙ୍କର କେଉଁ ଶଙ୍କା ? ସ୍ୱୟଂ ପ୍ରବଳପ୍ରତାପୀ ଦିଲ୍ଲୀଶ୍ୱର ଯେତେବେଳେ ସ୍ୱତଃପ୍ରବୃତ୍ତ ହୋଇ ଆମ୍ଭମାନଙ୍କ ସହିତ ମିତ୍ରତା ସ୍ଥାପନ କରିଅଛନ୍ତି, ଓଡ଼ିଶା ଆକ୍ରମଣ କରି

ମୋଗଲ୍ ଯେତେବେଳେ ଉଚ୍ଛୃଙ୍ଖଳୀସ୍ତୁ ଶକ୍ତ ଅନୁଭବ କରି ପଶ୍ଚାତ୍‌ପଦ ହୋଇଅଛି, ତେତେବେଳେ ଆମର ଆଉ ଭୟ କଣ ? ଆଉ ଚିନ୍ତା କଣ ?

ରାଣୀ—ଆପଣଙ୍କ ପରି ପ୍ରବଳ ପରାକ୍ରାନ୍ତ ବୀର କି କେବେ ଶତ୍ରୁର ସହ୍ୟ ହେବ ?

ମୁକୁନ୍ଦଦେବ—ଏ ଶଙ୍କା ଯଥାର୍ଥ; କିନ୍ତୁ ଅକ୍‌ବର, ମୋଗଲର ଭୂଷଣ—ସମ୍ରାଟମାନଙ୍କର ଆଦର୍ଶ—ମାନବର ପୂଜା-ସାମାଗ୍ରୀ । ସେ ଶତ୍ରୁ ହେଉ, ବା ମିତ୍ର ହେଉ, ବୀରର ପ୍ରକୃତ ମର୍ଯ୍ୟାଦା ଜାଣନ୍ତି—ମହତର ମହତ୍ୱ ବୁଝନ୍ତି; ତାଙ୍କଠାରୁ ଆମ୍ଭମାନଙ୍କର ଆଶଙ୍କା କରିବା ବୃଥା ।

ରାଣୀ—ତେବେ—

ମୁକୁନ୍ଦଦେବ—( ବାଧା ଦେଇ ) ପ୍ରିୟେ ! ଥାଉ ସେ ସବୁ କଥା । ଦେଖ, ଏତେଣି ପଶ୍ଚିମ-ସୂର୍ଯ୍ୟର କିପରି ମଧୁର ହାସ୍ୟ—ଲୋହିତ ପ୍ରକୃତିର କିପରି ମନୋହର ଦୃଶ୍ୟ !

ରାଣୀ—ଶୁଣନ୍ତୁ, ତହିଁରେ ପୁଣି ତରୁଣ ବାଳକ ବାଳିକା ମାନଙ୍କର କି ମଧୁର ସ୍ୱର !

[ ତରୁଣ ବାଳକ ବାଳିକା ମାନଙ୍କର ଗୀତ ଗାଇ ଗାଇ ପ୍ରବେଶ ]

—ଗୀତ—

ବିଳାସ ଭବନେ, ଅଳସ ଜୀବନେ,
ଖୋଜ ତୁମ୍ଭେ ଅକାରଣ
ସୁଖ, ଶାନ୍ତି ସେ ଯେ କର୍ମମୟ ପ୍ରାଣ,
ଆତ୍ମାର ବଳିଦାନ ॥
ଜନନୀ ଜଠରୁ ଜନମି ଭୂତଳେ
ଥିଲ ଯେବେ ଜ୍ଞାନ ହୀନ,
ତୁମ୍ଭର ସେବାରେ ମନଃପ୍ରାଣ ଢାଳି
ତୁମ୍ଭର ଉଦ୍ଦେଶ୍ୟେ ଦେଇ ଆତ୍ମବଳୀ
ଭୁଞ୍ଜିଲା ସୁଖ, ଭୁଞ୍ଜିଲା ଶାନ୍ତି,
ଜନନୀ ତୁମ୍ଭର ଜାଣ । ୧ ।
ଜ୍ଞାନ ଚକ୍ଷୁ ମେଲି ଦେଖିଲ ଅନାଇ
ଭବ ଯେବେ ତମୋମୟ,
ବିଦ୍ୟା ଲାଗି ତବ ଯତ୍ନଶୀଳ ହୋଇ,
ସୁଖ ଲାଗି ତବ ଆତ୍ମସୁଖ ଦେଇ,
ଭୁଞ୍ଜିଲା ସୁଖ, ଭୁଞ୍ଜିଲା ଶାନ୍ତି, ଜନକ ତୁମ୍ଭର ଜାଣ । ୨ ।
ସଂସାରେ ପ୍ରବେଶି ଭାଇ, ବନ୍ଧୁ, ସୁତେ
ହେଲ ଯେତେବେ ବିମଣ୍ଡିତ,
ସୁଖ ଲାଗି ତାଙ୍କ ଚିନ୍ତି ଅନୁକ୍ଷଣ
ନିଜ ସୁଖ ହେଲେ କରି ବିସର୍ଜନ
ଭୁଞ୍ଜିଲ ସୁଖ, ଭୁଞ୍ଜିଲ ଶାନ୍ତି, ଆପଣେ ହେ ନିଜେ ଜାଣ । ୩ ।

[ ରାଜା ଓ ରାଣୀ ଉଭୟେ ମୁଗ୍ଧ ଚିତ୍ତରେ ଗୀତ ଶ୍ରବଣ କରୁଥିଲେ ]

ମୁକୁନ୍ଦଦେବ—(ସ୍ୱଗତ) ଏ ଗୀତର ଭାବ ତ ଚମତ୍କାର ! ମାନବର ପ୍ରଧାନ ଧର୍ମ, କର୍ମ—ମାନବର ଶ୍ରେଷ୍ଠ ଆନନ୍ଦ, ଆତ୍ମାହୁତି !

ରାଣୀ—ପ୍ରିୟତମ ! କ'ଣ ଭାବୁଛନ୍ତି ?

ମୁକୁନ୍ଦଦେବ—ନା ପ୍ରିୟେ ! କିଛି ନାହିଁ । ଏହି ଗୀତର ଭାବଟି ଭାରି ସୁନ୍ଦର । ତାହାହିଁ ଭାବୁଥିଲି ।

ରାଣୀ—ବର୍ତ୍ତମାନ ସନ୍ଧ୍ୟା ହୋଇ ଆସିଲାଣି, ଓହ୍ଲାଇ ଚାଲନ୍ତୁ ।

[ ଦାସୀର ପ୍ରବେଶ ]

ଦାସୀ—ମହାରାଜ ! ଦିଲ୍ଲୀରୁ ଦୂତ ଆସି କହୁଛନ୍ତି, 'ଭାରି ଜରୁର୍ କାମ' ।

ରାଣୀ—'ଜରୁର୍ କାମ' ! ଦିଲ୍ଲୀରୁ ଦୂତ ! ପ୍ରିୟତମ !

ମୁକୁନ୍ଦ—ପ୍ରିୟେ ! ସ୍ଥିର ହୁଅ । ଅଧୀର ହେବାର କୌଣସି କାରଣ ନାହିଁ । ଆମ୍ଭମାନଙ୍କ ପ୍ରଧାନ ଧର୍ମ, କର୍ମ—ପ୍ରଧାନ ଆନନ୍ଦ, ଆତ୍ମାହୁତି ।

( ପ୍ରସ୍ଥାନ )

ରାଣୀ—(ସ୍ୱଗତ) ଏ ପୁଣି କି ନବ-ଭାବ ! ସହସା ଦିଲ୍ଲୀରୁ ଦୂତ ଆସିବାର କାରଣ କ'ଣ ? ପୁଣି କି ବିଦ୍ରୋହ ଉପସ୍ଥିତ ? ବାସ୍ତବିକ କି ତେବେ ମହାରାଜାଙ୍କ ଆଶଙ୍କା ଯଥାର୍ଥ ହେଲା ? ଏହି ମିଳନ-ସୁଖ କ'ଣ ପୁଣି ବିରହ-ବିଷାଦରେ ପରିଣତ ହେବ ? ଏହି ନବତଳ ଗୃହବାସ-ସୁଖ

କିଣ ପୁଣି ବନବାସ-ଦୁଃଖରେ ପରିଣତ ହେବ ?
—ହା ଦାରୁଣ ବିଧି ! ଏହି କି ବୀର-ପତ୍ନୀ
ହେବାର ସୁଖ ?

[ ତରୁଣ ବାଳକ ବାଳିକାମାନଙ୍କର ପ୍ରବେଶ
ଓ ପୂର୍ବୋକ୍ତ ଗୀତ ପୁନର୍ବାର ଗାଇ ଗାଇ ପ୍ରସ୍ଥାନ ]

[ ମୁକୁନ୍ଦଦେବଙ୍କ ପ୍ରବେଶ ]

ମୁକୁନ୍ଦଦେବ—ଆସ ରାଣୀ ! ଆଜି ମୋର ଆନନ୍ଦର ଦିନ ।
ମୋତେ ବୀରପରିଚ୍ଛଦରେ ସଜାଇ ଦେବ ଆସ ।

ରାଣୀ—ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ପ୍ରିୟତମ !
(ଆଲିଙ୍ଗନ କରିବା)

ମୁକୁନ୍ଦଦେବ—ପ୍ରିୟେ ! ତୁମ୍ଭେ ବୀରପତ୍ନୀ ହୋଇ ଏତେ
ଦୁର୍ବଳା ?—ରାଣୀ ! ତୁମ୍ଭେ ବୀରବାଳା, ବୀର-
ହୃଦୟରେ ମତ୍ତ ଉଠ—ବୀର ଗର୍ବରେ ସ୍ଫୀତବକ୍ଷା
ହୁଅ—ବୀର-ବାଣୀରେ ତୁମ୍ଭର ପତିକୁ ଡେକାଇ
ଦିଅ । 'ମାନବର ପ୍ରଧାନ ଧର୍ମ, କର୍ମ—ମାନବର
ପ୍ରଧାନ ସୁଖ, ଆତ୍ମାହୁତି ।'

ରାଣୀ—ପ୍ରିୟତମ ! ଜାଣିଲିଣି, ପ୍ରେମ-ସମ୍ଭାଷଣର
ସମୟ ଅବସାନ ହୋଇଛି—କର୍ତ୍ତବ୍ୟକର୍ମ
କରିବାର ସମୟ ଉପସ୍ଥିତ ହୋଇଛି ।ବେଶ୍—
କିଛି ଭୟ ନାହିଁ । ମୋର ସବୁ ଚିନ୍ତା ବର୍ତ୍ତମାନ
ଚାଲି ଯାଉଛି । କହନ୍ତୁ, ମହାରାଜ ! କି ସମ୍ବାଦ
ଆସିଛି ?

ମୁକୁନ୍ଦଦେବ—ବଙ୍ଗଳାର ନବାବ ସୁଲେମାନ ବିଦ୍ରୋହ
କରିଛି । ସେହି ବିଦ୍ରୋହ ଦମନ କରିବା
ନିମନ୍ତେ ଦିଲ୍ଲୀଶ୍ୱର ମୋତେ ଆମନ୍ତ୍ରଣ କରି
ପଠାଇଛନ୍ତି ।

ରାଣୀ—ବିଳମ୍ବରେ ଆଉ ପ୍ରୟୋଜନ ନାହିଁ । ବର୍ତ୍ତମାନ
ବିଳାସ ସମୟ ଉତ୍ତୀର୍ଣ୍ଣ—କର୍ମ-ସମୟ ଉପସ୍ଥିତ ।
ଏପରି ସମୟରେ ପତିବ୍ରତା ପତ୍ନୀର ଯାହା କର୍ତ୍ତବ୍ୟ,
ତାହା ହିଁ କରିବାକୁ ଅନୁମତି ଦିଅ, ପ୍ରଭୋ !

ମୁକୁନ୍ଦ—( ଆଲିଙ୍ଗନ ପୂର୍ବକ ) ଏହି ତ ବୀର-ପତ୍ନୀର
ଉପଯୁକ୍ତ ବାଣୀ ! ଆସ ପ୍ରିୟତମେ ! 'ମାନବର
ପ୍ରଧାନ ଧର୍ମ, କର୍ମ—ମାନବର ପ୍ରଧାନ ସୁଖ,
ଆତ୍ମାହୁତି' । ( ଉଭୟଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ମନ୍ତ୍ରଣା ଗୃହ—

[ ଅବ୍ଦୁଲ ଓ ରହମତ୍ କଥା କହୁଥିଲେ ]

ଅବ୍ଦୁଲ—ଅଚ୍ଛା, ସେନାପତେ ! ମୁଁ କଣ ବୀର
ନୁହେଁ ? ମୋତେ କଣ ଯୁଦ୍ଧ କରି ଆସେ ନାହିଁ ?

ରହମତ୍—ଆପଣ ସାହାଜାଦା । ଆପଣ ବୀର ନୁହନ୍ତି
ତ ବୀର କିଏ ?—ଆପଣ ଯୁଦ୍ଧ ଜାଣନ୍ତି ନାହିଁତ,
ଯୁଦ୍ଧ ଜାଣେ କିଏ ?—ଆପଣ ସେଦିନ ଏକା
ଚୁପୁଡ଼ାରେ ଗୋଟିଏ ମଶା ମାରିପକାଇ ଥିଲେ—
ଟେଡ଼ିଇ ମାରୁ ମାରୁ ନିଜର ହାତ କାଟି
ପକାଇଥିଲେ ।

ଅବ୍ଦୁଲ—ସେ ତ ସେଦିନର କଥା—ଏତେ
ଦିନଯାଏ ତୁମେ ମନେ ରଖିଛ, ସେନାପତେ ?

ରହମତ୍—ମନେ ରଖିବି ନାହିଁ ? ସାହାଜାଦାଙ୍କ
ଏପରି କୀର୍ତ୍ତି ମନେ ରଖିବି ନାହିଁ ତ, ମନେ
ରଖିବି କ'ଣ ?

ଅବ୍ଦୁଲ—ତୁମେ ତ ଦେଖିଛ, ମୋର ହାତ
କଟିଯିବା ପରେ କିପରି ଝର ଝର ହୋଇ ରକ୍ତ
ବୋହିଗଲା; ମୁଁ କଣ ସେଥିକି ଟିକିଏ ସୁଦ୍ଧା
ଭ୍ରୂକ୍ଷେପ କରିଥିଲି ?

ରହମତ୍—ଟିକିଏ କାହିଁକି, ମୋଟେ ନାହିଁ—ଆପଣ
ଯେ ଏକାବେଳକେ ଆଖି ବୁଜି ମୂର୍ଚ୍ଛା ଯାଇଥିଲେ ।

ଅବ୍ଦୁଲ—ଆଉ କେହି ହୋଇଥିଲେ, ଏକ୍‌ଦମ୍
ମରିଯାଇଥାନ୍ତା ।

ରହମତ୍—ମରିଯାଇଥାନ୍ତା ବୋଲି ମରିଯାଇଥାନ୍ତା,
ଏକାବେଳକେ ଖଣ୍ଡିଆ ଭୂତ ପାଲଟି ଯାଇଥାନ୍ତା !

ଅବ୍ଦୁଲ—ତେବେ କାହିଁକି, ସେନାପତେ ! ମୋର
ଏପରି ବୀରତ୍ୱ ଥାଉଁ ଥାଉଁ, ଚଉଧୁରୀ ସେହି
କାଫେର୍‌ଟା ସଙ୍ଗେ ଦୁଲାଅକୁ ସାଦୀ ଦେଲେ ?

ରହମତ୍—ଜାଣନ୍ତି ନାହିଁ, ସାହାଜାଦା ! ସ୍ତ୍ରୀ ଜାତି ଏକେ
କୋମଳାଙ୍ଗୀ, ତହିଁରେ ପୁଣି ସାହାଜାଦୀ ଅଧିକ
ଅଧିକ ? ତେଣୁ ନବାବ ସାହେବ ମନେ କଲେ,

ଆପଣଙ୍କ ପରି ବୀର ସହିତ ଯେବେ ସାହାଜାଦୀଙ୍କ
ସାଦୀ ହୁଏ, ସେ କଣ ଅଉ ଜାନ୍‌ରେ ରହିବେ ?

ଅବଦୁଲ୍ଲ—(ସାନନ୍ଦେ) ଠିକ୍, ଠିକ୍ କଥା, ସେନାପତେ ! ଦୁଲ୍‌ଆ ଯେପରି ନନ୍ଦିଣୀର ପିତୁଳା । କିନ୍ତୁ ସେନାପତେ ! ଦୁଲ୍‌ଆ ମୋତେ କମ୍‌ହିମ୍ମତ୍ କହେ କାହିଁକି ?

ରହମତ୍—ତାଙ୍କର ଇଚ୍ଛା, ସେ ଆପଣଙ୍କୁ ସାଦୀ—ସାଦୀ ତ ନୁହେଁ, ନକ୍‌ଲା କରିବେ—ସେଥିପାଇଁ ସେ ଥଟ୍ଟାରେ ସେପରି କୁହନ୍ତି ।

ଅବଦୁଲ୍ଲ—( ସାନନ୍ଦେ ) ଥଟ୍ଟା ! ଥଟ୍ଟା ଦୁଲ୍‌ଆ ମୋତେ ଥଟ୍ଟାରେ କମ୍‌ହିମ୍ମତ୍ କୁହେ ? ଜନ୍ତୁ, ଜନ୍ତୁ—ବେଶ୍ କହି ଜନ୍ତୁ—ମୁଁ ବୁଜ୍‌ଦିଲ୍, କମ୍‌ହିମ୍ମତ୍ ବେକୁଫ୍, ନାଦାନ୍ ! ଅଚ୍ଛା ସେନାପତେ ! ଦୁଲ୍‌ଆ ମୋତେ ଦିଲ୍‌ରେ ଭଲ ପାଏ, ଏ କଥା ଖୋଲି କହିବାରେ ତାର ଭୟ କ'ଣ ?

ରହମତ୍—ଭୟ ହେବ ନାହିଁ ? ସେହି କାଫେର୍‌ଟା ଥାଉଁ ଥାଉଁ, ଭୟ ହେବ ନାହିଁ ?

ଅବଦୁଲ୍ଲ—ହାଁ ସଚ୍ଚା ବାତ୍—ତେବେ ଉପାୟ ?

ରହମତ୍—ଉପାୟ ଆପଣଙ୍କ ହାତରେ ।

ଅବଦୁଲ୍ଲ—ମୋ ହାତରେ ? ତେବେ କୁହ—କୁହ, ମୁଁ ନିଶ୍ଚୟ କରିବି—ଦୁଲ୍‌ଆ ସକାଶେ ଏ ଜାନ୍ ଦେଇପାରିବି । ଆହା ! ଦୁଲ୍‌ଆ !

ରହମତ୍—ସାହାଜାଦା ! ବର୍ତ୍ତମାନ ନବାବଙ୍କର ଆସିବା ବେଳ ହୋଇଗଲାଣି—ପରେ ଏ ବିଷୟରେ କଥାବାର୍ତ୍ତା ହେବ ।

ଅବଦୁଲ୍ଲ—ଦୁଲ୍‌ଆ—ଦୁଲ୍‌ଆ ! ( ପ୍ରସ୍ଥାନ )

ରହମତ୍—ଏହି ଅପଗଣ୍ଡ ହାତରେ ହିଁ ମୋର କାର୍ଯ୍ୟସିଦ୍ଧି ହେବ । ଏତେବଡ଼ ଅପମାନ ! ଜଣେ କାଫେର୍, ମୁସଲମାନ୍‌ରାଜ୍ୟର ଶାସକ ହେବ—ମୁସଲମାନ୍ ସେନାବୃନ୍ଦର ଅଧିନାୟକ ହେବ—ଆଉ ମୁଁ ଖାଣ୍ଟି ମୁସଲମାନ୍—ବୀର ସର୍ଦ୍ଦାର—ହେବି କି ନା ଅଧୀନସ୍ଥ କର୍ମଚାରୀ—ହେୟ କାଫେର୍‌ର ଗୋଲାମ ? ଏହା କଦାପି ସହ୍ୟ ହୁଏ ନା—ଏହା ମୁସଲମାନର ମୃତ୍ୟୁ ତୁଲ୍ୟ । ଯାହାହେଉ, କାଲି, କୌଶଳେ ତ ବିଦ୍ରୋହାଗ୍ନି ଜଳାଇଛି—ମୋର ଉଚ୍ଚାକାଙ୍କ୍ଷାର ପ୍ରତିଦ୍ୱନ୍ଦୀ ହୁଏ ତ ଏହି ଅଗ୍ନିରେ ପୋଡ଼ି ନାରଖାର ହୋଇଯିବ, ନଚେତ୍ ନବଗୌରବରେ ଉଦ୍ଭାସିତ ହୋଇଉଠିବ—ମାତ୍ର ବେଶିକ୍ଷଣ ସ୍ଥାୟୀ ହୋଇ ପାରିବ ନାହିଁ, ଯେଣୁ ଅବ୍‌ଦୁଲର ଗୁପ୍ତଛୁରିକା ସତୃଷ୍ଣନୟନରେ ଚାହିଁ ବସିଛି । ଦେଖାଯାଉ—

[ ନବାବଙ୍କର ପ୍ରବେଶ ଓ ରହମତ୍‌ର ଅଭିବାଦନ ]

ନବାବ୍—ରହମତ୍ ! ମୁଁ ଯେଉଁ ଜନରବ ଶୁଣୁଚି, ତାହା କି ସତ୍ୟ ?

ରହମତ୍—କି ଜନରବ, ଖୋଦାବନ୍ଦ୍ ?

ନବାବ୍—ଏ ବିଦ୍ରୋହର ଉତ୍ତେଜନାକାରୀ, ତୁମ୍ଭେ ?

ରହମତ୍—ହଜୁର ଜାହାଁପନା !

ନବାବ୍—ଏ ବିଷୟରେ ସେନାପତି କଳାପାହାଡ଼ଙ୍କ ସହିତ ପରାମର୍ଶ କରିଥିଲ କି ?

ରହମତ୍—କି ପ୍ରୟୋଜନ, ଜାହାଁପନା ? ଆମ୍ଭମାନଙ୍କର କି ସୈନିକ, କି କୃଷକ, କି ବଣିକ ସମସ୍ତେ ମୋଗଲର ଆଧିପତ୍ୟ ସ୍ୱୀକାର କରିବାକୁ ଅନିଚ୍ଛୁକ । ଆପଣ ନିଜେ ଥରେ ଭାବି ଦେଖନ୍ତୁ, ଏହା କି ସ୍ୱାଭାବିକ ନୁହେଁ ? ସମସ୍ତେ ଚାହାନ୍ତି ଜନ୍ମଭୂମି ସ୍ୱାଧୀନ ହେଉ—ତାର ସ୍ୱାଧୀନ ନବାବ ହେଉନ୍ତୁ, ଆପଣ ।

ନବାବ୍—(ସ୍ୱଗତ) ଅଭିଳାଷଟି ଉତ୍ତମ । (ପ୍ରକାଶ୍ୟେ) ମୋର ମଧ୍ୟ ସେହି ଇଚ୍ଛା; କିନ୍ତୁ ପ୍ରତାପୀ ମୋଗଲ୍ ବିରୁଦ୍ଧରେ ଦଣ୍ଡାୟମାନ ହେବାର ଶକ୍ତି କି ଆମ୍ଭମାନଙ୍କର ଅଛି ?

ରହମତ୍—କାହିଁକି ନାହିଁ, ଖୋଦାବନ୍ଦ୍ ? ଆପଣ ତ ଗର୍ବ କରନ୍ତି ଯେ, ସେନାପତି କଳାପାହାଡ଼ଙ୍କ ସାହାଯ୍ୟରେ ସମଗ୍ର ପୃଥିବୀ ଅନାୟାସରେ ଜୟ କରି ପାରିବେ ।

ନବାବ୍—ସୁସମ୍ମତ କାର୍ଯ୍ୟ ହେଲେ, ଏହା ଅସମ୍ଭବ ନୁହେଁ; କିନ୍ତୁ ଏପରି ବିଦ୍ରୋହରେ ସେନାପତି କଳାପାହାଡ଼ର ସମ୍ମତି ନାହିଁ ବୋଲି ଜଣାଯାଏ ।

ରହମତ୍—( ଏକାନ୍ତେ ) ସମ୍ମତ ନାହିଁ ବୋଲି ତ ଏପରି ବିଦ୍ରୋହ ଘଟାଇଛନ୍ତି ।

ନବାବ୍—କଣ କହୁଛ, ରହମତ୍ ? (ସ୍ୱଗତ) ବିଦ୍ରୋହଟା ହୋଇଛି, ଏକେରକମ ଭଲ ହୋଇଛି—କିଏ ଚାହେଁ, ପରାଧୀନ ରହିବାକୁ ? କିନ୍ତୁ କଳାପାହାଡ଼ର ସାହାଯ୍ୟ ବିନା କାର୍ଯ୍ୟୋଦ୍ଧାର କରିବା ଅସମ୍ଭବ । ସେ କଣ ଯୋଗ ଦେବ ନାହିଁ ?

[ କଳାପାହାଡ଼ର ପ୍ରବେଶ ]

( ପ୍ରକାଶ୍ୟେ ) ଏଇ ଯେ ପାହାଡ଼ । ଏବେ ଉପାୟ କଣ ?

କଳାପାହାଡ଼—ଉପାୟ ରହମତ୍ ଅଲି ଜାଣନ୍ତି । ରହମତ୍ ଅଲି । ଅବମୃଶ୍ୟକାରୀ ଭାବରେ ଆପଣ କି ବିପ୍ଳବ ଉପସ୍ଥାପିତ କରିଅଛନ୍ତି—କାହା ବିରୁଦ୍ଧରେ ଏ ବିଦ୍ରୋହ ଘଟାଇଅଛନ୍ତି ? କାହିଁ ସାଗର ତୁଲ୍ୟ ଅଗଣିତ ମୋଗଲ୍ ସେନା—କାହିଁ ଗୋଷ୍ପଦ ତୁଲ୍ୟ ଅମ୍ଭର ମୁଷ୍ଟିମେୟ ମୁସଲମାନ୍ ସୈନ୍ୟ ? କାହିଁ ସମଗ୍ର ଭାରତର ଏକଚ୍ଛତ୍ରାଧିପତି ମୋଗଲ୍ ସମ୍ରାଟ—କାହିଁ ବା ଏଇ କ୍ଷୁଦ୍ର ବଙ୍ଗର ଶାସନକର୍ତ୍ତା ମୁସଲମାନ ନବାବ ?—ଏପରି ବିଦ୍ରୋହରେ ଜୟ ଲାଭ କରିବା କି ସମ୍ଭବ ? ଏହା କି ଅମ୍ଭମାନଙ୍କ ପକ୍ଷେ ସମୁଦ୍ର ଶୋଷଣ ତୁଲ୍ୟ ଦୁଃସାଧ୍ୟ ନୁହେଁ ? ଏହାର ପରିଣାମ ଯେ କେତେଦୂର ଭୟଙ୍କର, ତାହା କଣ ଥରେ ହେଲେ ଚିନ୍ତା କରି ଦେଖିଛନ୍ତି ?

ରହମତ୍—ବୀର ମୁଖରେ ଆଜି ଏ କି ଭୀରୁବାଣୀ—ମୁସଲମାନ ମୁଖରେ ଆଜି ଏ କି କାଫେର୍ ବାକ୍ୟ ?

କଳାପାହାଡ଼—ଏହା କାଫେର୍-ବାକ୍ୟ ସତ୍ୟ, ରହମତ୍; କିନ୍ତୁ ବୀର-ବାକ୍ୟ । ଏପରି ବିଦ୍ରୋହ-ପ୍ରସଙ୍ଗ ଚିନ୍ତା କରିବାକୁ ମଧ୍ୟ କାଫେର୍ମାନେ ଭୀରୁତାର ପରିଚୟ ମନେ କରନ୍ତି । 'କାଫେର୍ !' କାହା ପ୍ରତି ଏଇ ଶ୍ଳେଷ ଆଖ୍ୟା ? ଯେଉଁ ସୁସଭ୍ୟ ହିନ୍ଦୁଜାତି ଦିନେ ସମଗ୍ର ଆର୍ଯ୍ୟଜାତିର ଆଦର୍ଶସ୍ଥଳ ଥିଲେ—ଯାହାଙ୍କଠାରୁ ଆଲୋକ ପାଇ ସମସ୍ତ ଜଗତ୍ ଆଜି ଆଲୋକିତ—ସେଇ ଜାତି କାଫେର୍, ଭୀରୁ, ଅସଭ୍ୟ ?

ନବାବ୍—କଳାପାହାଡ଼ ।

କଳାପାହାଡ଼—ନବାବ ସାହେବ !

ନବାବ୍—ତୁମ୍ଭେ କାହାର ପକ୍ଷ ସମର୍ଥନ କରି କଥା କହୁଅଛ ?

କଳାପାହାଡ଼—ମୋର ପକ୍ଷ ସମର୍ଥନ କରି—ସ୍ୱଜାତିର ପକ୍ଷ ସମର୍ଥନ କରି—

ନବାବ୍—ସ୍ୱଜାତିର, ନା ବିଜାତିର ?

କଳାପାହାଡ଼—( ସ୍ୱଗତ ) ବିଜାତିର । ମୋର ସ୍ୱଜାତି ତେବେ କିଏ ? ମୋର ସ୍ୱଜାତି କି ହିନ୍ଦୁ ନୁହେଁ ? ମୋର ସ୍ୱଜାତି କି ବ୍ରାହ୍ମଣ ନୁହେଁ ? ମୋର ବାସସ୍ଥାନ କି ସେହି ପର୍ଣ୍ଣକୁଟୀର ନୁହେଁ ? ମୋର କି ସେହି ବୃଦ୍ଧା ଜନନୀ ନାହିଁ ? ମୋର କି ସେହି ଧର୍ମନିଷ୍ଠା, ପତିପ୍ରାଣା ଭାର୍ଯ୍ୟା ନାହିଁ ?

(ନେପଥ୍ୟେ)—ଅଛି ।

କଳାପାହାଡ଼—ଅଛି ?

(ନେପଥ୍ୟେ)—ହାଃ, ହାଃ, ହାଃ ।

କଳାପାହାଡ଼—ଏ କି ଅଟ୍ଟହାସ୍ୟ ପୁଣି !—ତେବେ କଣ ନାହିଁ ? ସେମାନେ କଣ ମୃତ ?—ନା, ନା ମୁଁ ମୃତ—ମୁଁ—ଏଁ—ଏଁ, ମୁଁ ଅନୁଭବକାରୀ ତେବେ କିଏ ?

ନବାବ୍—କଳାପାହାଡ଼ ।

କଳାପାହାଡ଼—କଳାପାହାଡ଼ ! କଳାପାହାଡ଼ କିଏ ? ମୁଁ ତ କଳାଚାନ୍ଦ !—ଦେଖୁନାହଁ, ମୁଁ ବ୍ରାହ୍ମଣ, ଉପବୀତଧାରୀ—ନିତ୍ୟ ପୁଷ୍ପଚୟନ କରି ଦେବାରାଧନା କରେଁ—ନିରାମିଷ ଆହାର କରି ଜୀବନଧାରଣ କରେଁ—ମୋର କିମ୍ବା କର୍ମ ସମସ୍ତ ହିନ୍ଦୁ ଭାବରେ ରହିଛି—ନାମ ପରିବର୍ତ୍ତନ ସମ୍ଭବ କିପରି ? ମୋର ନାମ କଳାପାହାଡ଼ ନୁହେଁ—ମୁଁ ମୁସଲମାନ ନୁହେଁ—ମୁଁ ହିନ୍ଦୁ—ମୁଁ କଳାଚାନ୍ଦ ।

ନବାବ୍—କଳାପାହାଡ଼ । ତୁମ୍ଭର ମସ୍ତିଷ୍କ ବୋଧହୁଏ ଠିକ୍ ନାହିଁ ?—ଏ ଗୁଡ଼ାକ ଯେ ପୂର୍ବକଥା ।

କଳାପାହାଡ଼—ପୂର୍ବକଥା ? ବର୍ତ୍ତମାନ ତେବେ ମୁଁ କିଏ ?

ନବାବ୍—ତୁମ୍ଭେ ମୁସଲମାନ୍—ପବିତ୍ର ଇସ୍‌ଲାମ୍ ଧର୍ମାବଲମ୍ବୀ, ନବାବର ଜାମାତା ।

କଳାପାହାଡ଼—ଇସ୍‌ଲାମ୍ ଧର୍ମାବଲମ୍ବୀ ? ନବାବର ଜାମାତା ? ମୁସଲମାନ୍—ହିନ୍ଦୁ ନୁହେଁ ? ହିନ୍ଦୁ—(ସ୍ୱଗତ) ଓଃ ହୋଃ । କି ସ୍ମୃତି ଜାଗି ଉଠୁଛି । ମୁଁ କି ନିଷ୍ଠୁର—କି ପାପୀ । ସ୍ୱାର୍ଥମଦାନ୍ଧ ହୋଇ କି କ୍ରୂର କାର୍ଯ୍ୟ ନ କରିଛି !—ଉପାୟ ?—ଉପାୟ ? ପ୍ରକାଶ୍ୟେ) ଜାହାଁପନା । ବର୍ତ୍ତମାନ ମୋତେ ବିଦାୟ ଦିଅନ୍ତୁ—ମସ୍ତକ ମୋର ଘୂର୍ଣ୍ଣିତ ହୋଇ ଯାଉଅଛି ।

(କଳାପାହାଡ଼ର ପ୍ରସ୍ଥାନ)

ନବାବ୍—ରହିମତ୍, ମୁଁ କିଛି ବୁଝିପାରୁ ନାହିଁ ।

ରହିମତ୍—ଜାହାଁପନା ବୁଝନ୍ତୁ ଅବା ନ ବୁଝନ୍ତୁ, ଯେତେବେଳେ କାଫେର୍‌କୁ ବିଶ୍ୱାସ କରିଛନ୍ତି—କାଫେରକୁ ଦାମାଦ୍ କରିଛନ୍ତି—କାଫେରକୁ ସେନାପତି କରିଛନ୍ତି, ତେତେବେଳେ ଉପାୟ ଚିନ୍ତା କରନ୍ତୁ—ରାଜ୍ୟ ରକ୍ଷା କରନ୍ତୁ ।

ନବାବ୍—ରହିମତ୍ । ତୁମ୍ଭେ ହିଁ ତ ଏ ବିଦ୍ରୋହର କାରଣ ?

ରହିମତ୍—ଅସ୍ୱୀକାର କରୁନାହିଁ, ଜାହାଁପନା ।

ନବାବ୍—ତେବେ ଦାୟୀ କିଏ ବର୍ତ୍ତମାନ ?

ରହିମତ୍—ଖୋଦାବନ୍ଦ୍ । କଳାପାହାଡ଼ ବିନା ଯୁଦ୍ଧକାର୍ଯ୍ୟ ଚଳାଇବା କି ଏକାବେଳକେ ଅସମ୍ଭବ ?—ଆମ୍ଭେମାନେ କି ବୀର ନୋହୁଁ ? ଆମ୍ଭେମାନେ କି ଯୋଦ୍ଧା ନୋହୁଁ ?

ନବାବ୍—ଅଚ୍ଛା, ତୁମ୍ଭଙ୍କୁ ହିଁ ଏ ଯୁଦ୍ଧରେ ସେନାପତି କରାଗଲା, ରହିମତ୍ । ଶୁଣ, ମୋର ପଞ୍ଜା ଦେଉଛି । (ସ୍ୱଗତ) ମାତ୍ର କଳାପାହାଡ଼ର ଏ ପରିବର୍ତ୍ତନ କାହିଁକି ? ବୋଧହୁଏ, କୌଣସି ଅଘଟଣା ଘଟିଛି—ଏହିକ୍ଷଣି ହକିମ୍‌କୁ ଡକାଇ ଚିକିତ୍ସାର ବନ୍ଦୋବସ୍ତ କରିବାକୁ ହେବ । ତାହା ବିନା ଯୁଦ୍ଧ ଜୟ କରିବା କି ସମ୍ଭବ ?—ସେ ଯେ ମୋର ପ୍ରାଣାଧିକା କନ୍ୟା ଗୁଲ୍‌ଅର ସର୍ବସ୍ୱ—ମୋର ସର୍ବସ୍ୱ— (ପ୍ରସ୍ଥାନ)

ରହିମତ୍—ବାଃ ବାଃ—କେୟା ମଜା । କେୟା ମଜା !! ହାମ୍ ସେନାପତି, ହାମ୍ ସେନାପତି—ବୁଢ୍‌ଢା ପାଗଲ୍ ବନ୍‌ଗିଆ, ବୁଢ୍‌ଢା ପାଗଲ୍ ବନ୍‌ଗିଆ । ମାତ୍ର, ସେ ଯେବେ ଭଲ ହୋଇଯାଏ ?—ନା, ନା, ତାର କାନ୍ ଥିବାଯାଏ, ମୁଁ ନିଶ୍ଚିନ୍ତ ହୋଇ ପାରିବି ନାହିଁ ।

---

## ଚତୁର୍ଥ ଦୃଶ୍ୟ

—ଗ୍ରାମ୍ୟପଥ—

[ମୁକୁନ୍ଦଦେବଙ୍କର ସସୈନ୍ୟ ପ୍ରବେଶ । ]

ସୈନ୍ୟଗଣ—ମହାରାଜ । ଭୀଷଣ କ୍ଷୁଧା, ଭୀଷଣ ଜ୍ୱାଳା—ଆଉ ସମ୍ଭାଳି ପାରୁ ନାହୁଁ । ଆଦେଶ କରନ୍ତୁ—ଲୁଟ୍‌ପାଟ୍ କରି ରସଦ ସଂଗ୍ରହ କରିବୁଁ ।

ମୁକୁନ୍ଦଦେବ—ବୀର ସୈନ୍ୟଗଣ । ଏହା କି ସମୀଚୀନ ହେବ ?

୧ମ ସୈନ୍ୟ—ମହାରାଜ । ଏ'ତ ଶତ୍ରୁରାଜ୍ୟ—

ମୁକୁନ୍ଦଦେବ—ଶତ୍ରୁ ରାଜ୍ୟ ସତ୍ୟ; କିନ୍ତୁ ଏହି ଗ୍ରାମବାସୀମାନେ ତ ଆମ୍ଭମାନଙ୍କ ଶତ୍ରୁ ନୁହନ୍ତି ?

୧ମ ସୈନ୍ୟ—ଏହି ଗ୍ରାମବାସୀମାନଙ୍କର ପାଳନକର୍ତ୍ତା ତ ଅମ୍ଭମାନଙ୍କର ଶତ୍ରୁ ?

ମୁକୁନ୍ଦଦେବ—ଏହା ବୋଲି କଣ ନିରୀହ ପ୍ରଜାଗଣ ମଧ୍ୟ ଅମ୍ଭମାନଙ୍କର ଶତ୍ରୁ ?—ଅହା । ଏହି ପ୍ରଜାଗଣ କି କ୍ଳେଶ-ସହିଷ୍ଣୁ !—କେତେ ଶ୍ରମ କରି, କେତେ ଯତ୍ନ କରି, ଅଙ୍ଗ-ସୁଖରେ ସ୍ୱାର୍ଥ ଜଳାଞ୍ଜଳି ଦେଇ ରାଜ୍ୟର ଖାଦ୍ୟ ଯୋଗାନ୍ତି—ରାଜାର ବିଭବ ବଢ଼ାନ୍ତି । କି ଉଦାର ହୃଦୟ ପୁଣି !—ଦିନେ ସୁଦ୍ଧା ଭାଳନ୍ତି ନାହିଁ, ଏ କଠୋର ଶ୍ରମର ସେମାନେ କି ପୁରସ୍କାର ଲାଭ କରନ୍ତି—ଏ ମହତ୍ ଉପକାରର ସେମାନେ କି ପ୍ରତ୍ୟୁପକାର ଲାଭ କରନ୍ତି । ତେତିକି ନୁହେଁ—ଯୁଦ୍ଧ ଉପସ୍ଥିତ

ହେଲେ, ରାଜାଙ୍କୁ ମାନେ, ନ୍ୟାୟାନ୍ୟାୟ—ଧର୍ମାଧର୍ମ ବିଚାର ନ କରି ଅକାତରେ ପତଙ୍ଗ ପରି ସମରାନଳରେ ଆତ୍ମ-ପ୍ରାଣ ବିସର୍ଜନ କରନ୍ତି । ଏପରି ସାଧୁ ପ୍ରଜାଗଣ—ପୁତ୍ରାଧିକ, ପ୍ରାଣାଧିକ ପ୍ରଜାଗଣ କେବେ କି କାହାରି ଘୃଣ୍ୟ ହୋଇ ପାରନ୍ତି ? କେବେ କି କାହାରି ବୈରି-ସାଧନ-ଯୋଗ୍ୟ ହୋଇ ପାରନ୍ତି ?

୧ମ ସୈନ୍ୟ—ମହାରାଜ ! ଆଉ ଯେ ବିଳମ୍ବ ସହି ପାରୁନାହୁଁ ।

ମୁକୁନ୍ଦଦେବ—ତୁମ୍ଭେମାନେ ବହୁତ ବିଳମ୍ବ ସହ୍ୟ କରିଛ—ଆଉ କ୍ଷଣକାଳ ମାତ୍ର ଅପେକ୍ଷା କର—ଦୂତକୁ ଫେରି ଆସିବାକୁ ଦିଅ ।

[ ଆଉ କେତେକ ସୈନ୍ୟସମାବୃତ ହୋଇ ଦୂତର ପ୍ରବେଶ ]

ସୈନ୍ୟଗଣ—ଦୂତ ଫେରି ଆସିଛି, ମହାରାଜ !

[ ମୁକୁନ୍ଦଦେବଙ୍କ ବ୍ୟତୀତ ସମସ୍ତେ ଦୂତକୁ ଘେରି ଠିଆହେଲେ]

କହ, କହ, ଦୂତ ! କି ସମ୍ବାଦ ? ଆମ୍ଭମାନଙ୍କର ଖାଦ୍ୟ ଶକଟ ଆସୁଛି ତ ?

ଦୂତ—( ମୌନ ହୋଇ ରହିବା )

ସୈନ୍ୟଗଣ—ମହାରାଜ !

ମୁକୁନ୍ଦଦେବ—ବୁଝିଛି, ଦୂତ—ଆମ୍ଭମାନଙ୍କର ଆଶା ଦୁରାଶା ହୋଇଛି । (ଭାବି) ବର୍ତ୍ତମାନ ଉପାୟ ? (ପ୍ରକାଶ୍ୟେ) ଯାଅ ସୈନ୍ୟଗଣ ! ତୁମ୍ଭେମାନେ ଯେଉଁ ଅଶ୍ୱ, ଉଷ୍ଟ୍ର, ହସ୍ତୀ ପ୍ରଭୃତି ଆରୋହଣ କରି ଆସିଛ, ସେମାନଙ୍କୁ ବିକ୍ରୟ କରି ଯଥାଲବ୍ଧ ଅର୍ଥରେ ଖାଦ୍ୟ ସଂଗ୍ରହ କର ।

ସୈନ୍ୟଗଣ—(ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ଠିଆହେବା)

ମୁକୁନ୍ଦଦେବ—( ନିଜ ମନେ ) ତା' ପରେ କରିବି କ'ଣ ?—ଯୁଦ୍ଧକାର୍ଯ୍ୟ ଚଳାଇବି କିପରି ? (ପ୍ରକାଶ୍ୟେ) ଯାଅ, ସୈନ୍ୟଗଣ !

ସୈନ୍ୟଗଣ—(ପ୍ରସ୍ଥାନୋଦ୍ୟତ)

ମୁକୁନ୍ଦଦେବ—ମାତ୍ର ସାବଧାନ, ସୈନ୍ୟଗଣ ! ଗ୍ରାମ-ବାସିମାନେ ଯେପରି କୌଣସିଭାବେ ଉତ୍ପୀଡ଼ିତ ନ ହୁଅନ୍ତି ।

ସୈନ୍ୟଗଣ—ଯଥା ଆଜ୍ଞା, ମହାରାଜ !

( ବେଗେ ସୈନ୍ୟମାନଙ୍କ ପ୍ରସ୍ଥାନ )

ମୁକୁନ୍ଦଦେବ—ଆମ୍ଭମାନଙ୍କର ଖାଦ୍ୟଶକଟ ଆସିବାର କୌଣସି ସଙ୍କେତ ପାଇଲ ନାହିଁ, ଦୂତ ?

ଦୂତ—ମହାରାଜ ! ଗାଡ଼ି ଯେ ଆସିଛି, ଏଥିରେ କୌଣସି ସନ୍ଦେହ ନାହିଁ; କାରଣ ଚକ-ଚିହ୍ନ ବେଶ ଜଣା ପଡ଼ୁଛି ।

ମୁକୁନ୍ଦଦେବ—ତେବେ ଗାଡ଼ି ଗଲା କେଉଁ ଆଡ଼େ ?

ଦୂତ—ମୁଁ ଚିହ୍ନ ଅନୁସରଣ କରି ଦେଖିଲି,ଅର୍ଦ୍ଧକୋଶ ଦୂର ପର୍ଯ୍ୟନ୍ତ ଏହିଆଡ଼େ ଚିହ୍ନ ପଡ଼ିଛି ।

ମୁକୁନ୍ଦଦେବ—ତା' ପରି ?

ଦୂତ—ତା'ପରି ସେହି ଚିହ୍ନ ଅସ୍ପଷ୍ଟ ଭାବରେ ଗୋଟିଏ ଜଙ୍ଗଲ ଆଡ଼େ ଯାଇ ଅଦୃଶ୍ୟ ହୋଇଛି ।

ମୁକୁନ୍ଦଦେବ—ଜଙ୍ଗଲ୍ ଆଡ଼େ ? ତେବେ କଣ ଗାଡ଼ିସମେତ୍ ଖାଦ୍ୟସାମଗ୍ରୀ ଲୁଟ୍ ହୋଇଛି ? ଏପରିଭାବରେ ଅଦୃଶ୍ୟ ହେବା କି ଶତ୍ରୁପକ୍ଷର କୌଶଳ, ନା ଭ୍ରମବଶତଃ ଏହା ଘଟିଛି ?—ତୁମେ କ'ଣ ଜଙ୍ଗଲ ଭିତରକୁ ଯାଇଥିଲ ?

ଦୂତ—ଅନ୍ଧକାର ହୋଇଯିବାରୁ ଜଙ୍ଗଲ ମଧ୍ୟରେ ପ୍ରବେଶ କରି ପାରିଲି ନାହିଁ—କାଲି ସକାଳେ ଏହାର ଅନୁସନ୍ଧାନ କରିବି ।

ମୁକୁନ୍ଦଦେବ—( ସ୍ୱଗତ ) ଆଜି ତ ଅଖାଦ୍ୟ ଅନଶନରେ ଉଦର ପରିପୂରିତ ହେବ—କାଲି ସକାଳେ ଉପାୟ କ'ଣ ? ଯୁଦ୍ଧକାର୍ଯ୍ୟ ପୁଣି ଚଳାଇବି କିପରି ? କତଲୁଖାଁ ଏ ପର୍ଯ୍ୟନ୍ତ ଆସିଲେ ନାହିଁ କାହିଁକି ? ତାଙ୍କର ତ ଆଜି ସନ୍ଧ୍ୟା ପୂର୍ବରୁ ଏ ସ୍ଥାନରେ ପହଞ୍ଚିବାର କଥା ଥିଲା ।

[ ଜନୈକ ସୈନିକର ପ୍ରବେଶ ]

ସୈନିକ—ମହାରାଜ ! ଏ ସ୍ଥାନର ଜଣେ ହିନ୍ଦୁ ଜମିଦାର ଆମ୍ଭମାନଙ୍କୁ ବିନା ମୂଲ୍ୟରେ ଖାଦ୍ୟ ଦାନ କରିଅଛନ୍ତି ।

ମୁକୁନ୍ଦଦେବ—ବିନାମୂଲ୍ୟରେ ! ଧନ୍ୟ ଜଗନ୍ନାଥ ! କିଏ ସେ ମହାଜନ ?

ସୈନିକ—ସେ ଭାରି ବୃଦ୍ଧ—ଚାଲିବାର ଶକ୍ତି ନାହିଁ—ମାତ୍ର ଆପଣଙ୍କୁ ସାଦରେ ଅଭ୍ୟର୍ଥନା କରି ଘେନିଯିବା ନିମନ୍ତେ ଯଥାଯୋଗ୍ୟ ଆୟୋଜନ କରୁଛନ୍ତି ।

ମୁକୁନ୍ଦଦେବ—ଏତେ ଅନୁଗ୍ରହ ! ଚାଲ ସୈନ୍ୟଗଣ, ସେମାନଙ୍କର ଆସିବା ପୂର୍ବରୁ ଆମ୍ଭେମାନେ ନିକଟ ଯାଇ ଦାତାଙ୍କୁ ଦର୍ଶନ କରି ଧନ୍ୟ ହେବା ! ଧନ୍ୟ ଜଗନ୍ନାଥ ! ଧନ୍ୟ ତୁମ୍ଭର କରୁଣା ! ତୁମ୍ଭର କରୁଣାରୁ କତଲୁଖାଁ ମଧ୍ୟ ନିଶ୍ଚୟ ଇତିମଧ୍ୟରେ ପହଞ୍ଚି ଯିବେ ।

[ ସମସ୍ତେ ପ୍ରସ୍ଥାନ କଲା ପରେ କତଲୁଖାଁର ବିପରୀତ ଦିଗରୁ ପ୍ରବେଶ ]

କତଲୁ—ପହଞ୍ଚି ଯିବେ କ'ଣ ? ଏହି ଯେ ହାଜର ବନ୍ଦା—ବାଃ ବାଃ ! କେୟା ମଜା ! କେୟା ତୋଫା !—ମୁକୁନ୍ଦଦେବ ! ଏହିଥର କତଲୁଖାଁର ଚାଲାକିଟା ବୁଝିନେ—ନ ଖାଇ ମରିବାର କିପରି ସୁବନ୍ଦୋବସ୍ତ କରି ଦେଇଛି ! ରସଦ୍-ଶକଟ ସମୂହ ମୋର ହସ୍ତଗତ—ସୁତରାଂ ତୋର ଜୀବନ ମୋର ମୁଷ୍ଟିଗତ । ଏହିଥର ଦେଖାଯିବ, କିପରି ବଞ୍ଚିବୁ—କିପରି ଯୁଦ୍ଧ କରିବୁ—ବାଦ୍‌ସାହଙ୍କ ହାତରୁ ଆମ୍ଭମାନଙ୍କ ସମ୍ମୁଖରେ ବୀରଦର୍ପରେ ଖେତାବ୍ ଘେନିଯିବୁ ?—ମୁସଲମାନ୍ ସଭାରେ ଜଣେ କାଫେରର ଏତେ ସମ୍ମାନ, ଖାଣ୍ଟି ମୁସଲମାନ୍ ପକ୍ଷେ ନିତାନ୍ତ ଅସହ୍ୟ । ଆମ୍ଭେମାନେ କଣ ବୀର ନୋହୁଁ ? ବାଦ୍‌ସାହଙ୍କୁ ଏହିଥର ଦେଖାଇବି, ମୁକୁନ୍ଦଦେବ କେଡ଼େ ବୋକା—ସାମାନ୍ୟ ଖାଦ୍ୟ ସଂଗ୍ରହ କରି ନ ପାରି ମରିଗଲା; ଆଉ ମୁଁ କତଲୁଖାଁ, କେଡ଼େ ଚାଲାକ—ଏକା ବିଦ୍ରୋହ ଦମନରେ ସମର୍ଥ ହେଲି । କିନ୍ତୁ ଏକା ପାରିବି ତ ? ବଳରେ ନ ହେଲେ କଳରେ ଦେଖାଯିବ—ସର୍ବାଗ୍ରେ ରହମତ୍‌କୁ କରଗତ କରିବାକୁ ହେବ । ଯାଏଁ, ଆଉ ବିଳମ୍ବ ଉଚିତ ନୁହେଁ । ( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

—ଶୟନ ମନ୍ଦିର—

[ ଦୁଲିଆ ଗୋଟିଏ ମୋତିହାର ଗୁନ୍ଥୁଥିଲା । ଫିରୋଜା ପାଖରେ ବସିଥିଲା । ]

ଫିରୋଜା—ଦୁଲିଆ ! ମୁଣ୍ଡରେ ସିନ୍ଦୁର—ହାତରେ କାଚ—ଦେହରେ ରେଶମି ଶାଢ଼ୀ, ତୋତେ ଏକା ବେଶ୍ ସାଜିଛି ।

ଦୁଲିଆ—ଏ କେତେ ଦିନ ହେଲା, ଫିରୋଜା ! ତାଙ୍କର ହିନ୍ଦୁଭାବ ଦେଖୁଛି କିପରି ।

ଫିରୋଜା—ସେଥିପାଇଁ କ'ଣ ତୋର ଏହି ବେଶ ?

ଦୁଲିଆ—ପତିର ମନୋରଞ୍ଜନ ଯେ ପତ୍ନୀର ମହାକର୍ତ୍ତବ୍ୟ, ଫିରୋଜା ।

ଫିରୋଜା—ଦୁଲିଆ—ସହି ! ତୁହି ଏକା ଜାଣୁ, ପ୍ରକୃତ ପ୍ରେମ କ'ଣ । ତା' ନ ହେଲେ କି ଆଜି କାଫେର୍ ହାତରେ ତୋର ଏହି ବାଦ୍‌ସାହଜାଦୀ ରୂପ ଯୌବନ ଢାଳି ଦେଇଥାନ୍ତୁ ?

ଦୁଲିଆ—ସେପରି କହ ନା ଫିରୋଜା—ସେପରି ଶୁଣିଲେ ମନରେ ମୋ'ର ଭାରି କଷ୍ଟ ହୁଏ । ପ୍ରେମଠାରେ ଜାତି ବିଜାତି କଣ ? ଧନୀ ନିର୍ଧନ କଣ ? କାଫେର ଯବନ କଣ ?

ଫିରୋଜା—ଆଚ୍ଛା—ସେହି ପ୍ରଥମ ଦେଖିଲା ଦିନ ତ ସେ ଏତେ ସୁନ୍ଦର ନ ଥିଲେ ?—ଖାଇବା ବିନା କିପରି ଝଡ଼ି ଶୁଖି ଯାଇଥିଲେ—ପିନ୍ଧିବା ବିନା କିପରି ବଣୁଆ ଭଳି ଦିଶୁଥିଲେ ! ତୁ ତାଙ୍କର କି କି ଗୁଣ ଦେଖି ଭୁଲି ତେତେବେଳେ ମଜି ଯାଇଥିଲୁ ?

ଦୁଲିଆ—ଭିତରର ଆକର୍ଷଣ କଥା ଭିତର ଜାଣେ ସିନା—

ଫିରୋଜା—କେଜାଣି ଲୋ; କିନ୍ତୁ ମୁଁ ହୋଇଥିଲେ ମଜିବା ତ ଦୂରର କଥା—ଆଖି ବି ପକାଇ ନ ଥାନ୍ତି ।

ଦୁଲିଆ—ବର୍ତ୍ତିମାନ ?

ଫିରୋଜା—ବର୍ତ୍ତମାନ ଭଲ ହୋଇଥିଲେ—ତୋତେ କିଏ ଆଉ ଦେଇଥାନ୍ତା ? ଏଡ଼େ ବୀରପୁରୁଷ—ଏଡ଼େ ପଣ୍ଡିତ—ଏଡ଼େ ସାଧୁଲୋକ—କିଏ ଲୋଭ ନ କରନ୍ତା ?

ଦୁଲ୍‌ଆ—ପ୍ରଥମ ଦେଖିଲି ଦିନ କିଣ ତାଙ୍କର ଆଖିର ତେଜ ଓ ଆକାର ଇଙ୍ଗିତରୁ ଏହି ଗୁଣ ଗୁଡ଼ିକ ଜଣା ପଡ଼ୁ ନ ଥିଲା ?

ଫିରୋଜା—ଜହ୍ନକୁ ଜହରତ୍ତକୁ ଚକ୍ଷୁରେ ସିନା—ଆମେ କୁଆ ହୋଇ ତାହାଁ ଚିହ୍ନିବୁ ? ଅଚ୍ଛା ଦୁଲ୍‌ଆ, ତୋର ପରି ଜଣେ ସଉତୁଣୀ ଅଛି ?

ଦୁଲ୍‌ଆ—ହଁ ଅଛି—ତା' ନା' ତିଲୋତ୍ତମା ।

ଫିରୋଜା—ତାକୁ ଅଉ ତୋର ସ୍ୱାମୀ ପଚାରିଲେ ନାହିଁ । ହଁ, କାହିଁକି ପଚାରିବେ ? ଗୋଲାପ ଛାଡ଼ି କିଏ କାହିଁକି ପୋକସୁଙ୍ଘାରେ ବସିବ ମ ?

ଦୁଲ୍‌ଆ—ଅଲୋ, ନା ଲୋ ନା—ତିଲୋତ୍ତମା ଭାରି ପତିବ୍ରତା—ଅଉ ମୋଠାରୁ ବି ସୁନ୍ଦରୀ !—ଅହା ! ଆମେ ଦୁଇ ଭଉଣୀ ଏକାସାଙ୍ଗେ ଥାଉ ଭଲ ! କିନ୍ତୁ ସେ ଭାରି ହିନ୍ଦୁ—ପତି ତାଙ୍କ ଯେତେ ରକମ୍‌କର ବୁଝାଇଲେ, ସେ ଧର୍ମ ଛାଡ଼ିଲେ ନାହିଁ—ଶାଶୁ ବି ମୋର ସ୍ୱାମୀଙ୍କୁ ଅଉ ପାଖ ପୁରାଇ ଦେଲେ ନାହିଁ । ଅହା ! ଶାଶୁ ପାଖରେ ଥାନ୍ତି କି—ତାଙ୍କର ସେବା ଶୁଶ୍ରୂଷା କରୁଥାନ୍ତି କି ।

ଫିରୋଜା—ତୁ ତ ଭାରି ହିନ୍ଦୁ ପାଲଟି ଗଲୁଣି ? ବେଶରେ— ଭୂଷାରେ—ଭାବରେ— ସବୁଥିରେ ହିନ୍ଦୁ ଦେଖାଉଛୁ ।

ଦୁଲ୍‌ଆ—ଦେଖିଲୁ ଫିରୋଜା, ମୁଁ କେତେ ଗୁନ୍ଥି ସାରିଲିଣି—ଅଉ ଭଲ ଲାଗୁନାହିଁ ।

ଫିରୋଜା—ଅଉ ଭଲ ଲାଗିବ କାହିଁକି ? ତାଙ୍କର ଆସିବା ବେଳ ପରି ହୋଇଗଲାଣି । ଯାଏଁ, ତେଣେ ମୋର ବି ଅନେକ କାମ—ବାପାଙ୍କର ପଲଙ୍କ ପୁଣି ସଜଡ଼ା ହୋଇନାହିଁ । (ପ୍ରସ୍ଥାନ)

ଦୁଲ୍‌ଆ—( ସେହି ହାରଟି ଧରି ଗାଉଥିଲା )

ଗୀତ

ବନ୍ଧୁ, କି ଅଉ କାମନା ମୋର ?
ତୁମ୍ଭେ କାହ୍ନୁ କଳା ମୁହିଁ ଗୋପବାଳା
ଏହି ଭାବେ ବାନ୍ଧୁ ଡୋର ।
(ଥରେ) ମୁରଲୀ ବଜାଇ ପରାଣ ମଜାଇ
ଆସ ଏ ହୃଦୟ ବନେ,
ଆଦର ସୁଆଗେ ମଣ୍ଡିଣ ସରାଗେ
ପିଇବି ପୀୟୁଷ ମନେ ।

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—ଗାଅ ଗାଅ ଦୁଲ୍‌ଆ—କି ସେ ଗୀତ ? ( ସ୍ୱଗତରେ ) 'ତୁମ୍ଭେ କାହ୍ନୁ କଳା ମୁହିଁ ଗୋପବାଳା'—

ଦୁଲ୍‌ଆ—ବେଶ୍ ତ ହେଉଛି ।

କଳାପାହାଡ଼—ସେପରି ମଧୁର—ସେପରି ମନୋହର କି ହେଉଛି ?

ଦୁଲ୍‌ଆ—ମୋତେ ତ ବେଶ୍ ଲାଗୁଛି ।

କଳାପାହାଡ଼—ତୁମକୁ ସିନା ବେଶ୍ ଲାଗୁଛି—ଏ କାନକୁ ତ ଅଉ ବେଶ୍ ଲାଗୁ ନାହିଁ ?

ଦୁଲ୍‌ଆ—ତୁମର କାନକୁ ବେଶ୍ ନ ଲାଗିଲେ, ମୋର କ'ଣ ଗଲା ?

କଳାପାହାଡ଼—ମୋର ଗୀତ—ମୋ ପାଇଁ ଗାଉଛ—ମୋତେ ବେଶ୍ ନ ଲାଗିଲେ ଚଳିବ କିପରି ?

ଦୁଲ୍‌ଆ—ଅଚ୍ଛା ବେଶ୍—ତୁମେ ଶୁଣିଲା ଭଳି ବସ—ମୋର ଏହି ହାରଟି ଧାରଣ କର—

କଳାପାହାଡ଼—ନା, ନା, ମୋର ହାର, ମୋତେ ଦିଅ ( ଦୁଲ୍‌ଆର ବାହୁ ପାଶରେ ନିଜ ଗଳଦେଶ ମଣ୍ଡିତ କଲେ )

ଦୁଲ୍‌ଆ—( ଉକ୍ତ ଗୀତ ପୁନର୍ବାର ଗାନ କଲା "ବନ୍ଧୁ କି ଅଉ କାମନା ମୋର ?" )

କଳାପାହାଡ଼—ଦୁଲ୍‌ଆ—ଦୁଲ୍‌ଆ ! ଏପରି ପ୍ରେମ—ଏପରି ଅଦର୍ଶକ ମାନବୀଠାରେ କେବେ ସମ୍ଭବ ? ତୁମ୍ଭେ ମାନବୀ ନୁହଁ, ଦୁଲ୍‌ଆ ! ତୁମ୍ଭେ ଦେବୀ ! ଆସ ହୃଦୟ-ପ୍ରତିମା ମୋର—ଆସ, ଆସ

ପ୍ରେମମୟି ମୋର, ତୁମ୍ଭର ପ୍ରେମାଲିଙ୍ଗନରେ—
ତୁମ୍ଭର ଅନନ୍ତ ପ୍ରେମସୁଧାରେ ମୋତେ ଉନ୍ମତ୍ତ
କରିଦିଅ ! ମୁଁ ଭୁଲିଯାଏ ଯେ, ମୁଁ ହିନ୍ଦୁ ଥିଲି —
ମୋର ଅନ୍ୟ ପତ୍ନୀ ଥିଲା—ମୋର ବୃଦ୍ଧା ଜନନୀ
ଥିଲା । ମୁଁ ଜାତି ହରାଇଛି—ସ୍ତ୍ରୀ ହରାଇଛି—ଜନନୀ
ହରାଇଛି; କିନ୍ତୁ ଆଦର ପାଇଛି—ଯତ୍ନ ପାଇଛି—
ସ୍ନେହ ପାଇଛି—ପ୍ରେମ ପାଇଛି ! ଆଉ କି ଭାବନା
ମୋର—ଆଉ କି ଯାତନା ମୋର ?

ଦୁଲଆ—ହୃଦୟେଶ୍ୱର ! ବୃଥା ପ୍ରଶଂସା କରି ଏ
ଦାସୀକୁ କ୍ଳେଶ ଦେଉଛନ୍ତି କାହିଁକି ? ଏ ଦାସୀ
ପ୍ରେମ ବିଷୟରେ କ'ଣ ଜାଣେ ? ଆଦର
ବିଷୟରେ ବା କ'ଣ ଜାଣେ ? ଏତିକିମାତ୍ର
ଜାଣେ, ତୁମ୍ଭେ ସ୍ୱାମୀ—ଏ ଦାସୀ ତୁମ୍ଭର
ଅଯୋଗ୍ୟା ସ୍ତ୍ରୀ; ତୁମ୍ଭେ ହୃଦୟେଶ୍ୱର—ଏ ଦାସୀ
ତୁମ୍ଭର ଅଯୋଗ୍ୟା ସେବିକା !

କଳାପାହାଡ଼—କି ଉଚ୍ଚ ଭାବ—କି ଗମ୍ଭୀର ପ୍ରେମ—
କି ଅକୃତ୍ରିମ ସ୍ନେହ ! ଏଠାରେ ହିନ୍ଦୁ
ମୁସଲମାନ କ'ଣ ?—ଜାତି ବିଜାତି କ'ଣ ?—
ତିଲୋତ୍ତମା ! କାହିଁ ତୁମ୍ଭର ସେ ଗମ୍ଭୀର ପ୍ରେମ ?
ଦେଖ, ତୁମ୍ଭଠାରୁ ଦୁଲଆ କେତେ ଉଚ୍ଚ !—ମା !
କାହିଁ ତୁମ୍ଭର ସେ ଅକୃତ୍ରିମ ସ୍ନେହ ? ଦେଖ,
ତୁମ୍ଭଠାରୁ ଦୁଲଆର ସ୍ନେହ କେତେ ବେଶି ! ଆସ
ପ୍ରେମମୟି—ଆସ ସ୍ନେହମୟି ! ମୋର ହୃଦୟ
ପ୍ରେମମୟ କରିଦିଅ—ମୋର ସଙ୍କୀର୍ଣ୍ଣ ଭାବ ପ୍ରଶସ୍ତ
କରିଦିଅ ! (ଦୁଲଆକୁ ଆଲିଙ୍ଗନ କଲେ)

ଦୁଲଆ—ପ୍ରାଣେଶ୍ୱର ! ବର୍ତ୍ତମାନ ରାତ୍ର ଯେ ଅନେକ
ହେଲାଣି, ତୁମ୍ଭର ଦେହ ପରା ସୁସ୍ଥ ନାହିଁ ?

କଳାପାହାଡ଼—ଦୁଲଆ ! ଦୁଲଆ ! ପ୍ରେମମୟି !

[ ପ୍ରେମାଲିଙ୍ଗନାବଦ୍ଧ ହୋଇ ଦୁଲଆ
ସ୍ୱାମୀଙ୍କୁ ଶୁଆଇ ପଦସେବା କରି ବସିଲା ]

ହାୟ ! ଏପରି ପ୍ରେମ ଭୁଲି, ବୃଥା ଭାବନାରେ
ଦଗ୍ଧ ହେଉଥିଲି କାହିଁକି ?

[ ସ୍ୱାମୀର ଶୟନାନ୍ତେ ଦୁଲଆର କିଛିକ୍ଷଣ
ପରେ ପ୍ରସ୍ଥାନ । ଛାୟାରୂପେ ତିଲୋତ୍ତମାର
ପ୍ରବେଶ ]

ତିଲୋତ୍ତମା—ପ୍ରଭୋ !

କଳାପାହାଡ଼—କିଏ ତୁମ୍ଭେ ?—ତିଲୋତ୍ତମା ?
ଏଠି କାହିଁକି ? ତୁମ୍ଭର କ'ଣ ଭାବ ପରିବର୍ତ୍ତନ
ହୋଇଛି ? ତୁମ୍ଭେ କଣ ତୁମ୍ଭର ଭ୍ରମ ବୁଝି
ପାରିଛ ? ଆସ, ଆସ ମୋ ସଙ୍ଗେ ପ୍ରିୟେ—
କୌଣସି ଚିନ୍ତା ନାହିଁ ତୁମ୍ଭର—ଯେଉଁ ଭାବରେ
ରହିବାକୁ ଇଚ୍ଛା, ସେହି ଭାବରେ ରହିପାରିବ ।

ତିଲୋତ୍ତମା—ପୁଣି ସେହି ଆଦେଶ ପ୍ରଭୋ ! ହିନ୍ଦୁ
ହୋଇ ଧର୍ମତ୍ୟାଗ କରିବି ? କନ୍ୟା ହୋଇ
ଜନନୀକୁ ତ୍ୟାଗ କରିବି ?

କଳାପାହାଡ଼—ସ୍ତ୍ରୀ ହୋଇ ସ୍ୱାମୀକୁ କିନ୍ତୁ ତ୍ୟାଗ
କରିପାରି ?

ତିଲୋତ୍ତମା—ହିନ୍ଦୁ-ସ୍ତ୍ରୀ କି ତା' ପାରେ, ପ୍ରଭୋ ?
ସ୍ଥୂଳ-ସମ୍ପର୍କ ତ୍ୟାଗରେ କି ପ୍ରକୃତ ତ୍ୟାଗ
ବୁଝାଏ ?

କଳାପାହାଡ଼—ବୁଝାଉ ବା ନ ବୁଝାଉ—ଦୁଲଆକୁ
ଦେଖ, ତାର ପ୍ରେମ କିପରି ଥରେ ବୁଝିଦେଖ—
ମୁଁ ହିନ୍ଦୁ ଭାବରେ ରହିବାକୁ ଇଚ୍ଛାକଲେ, ସେ
ହିନ୍ଦୁଭାବରେ ରହେ—ମୁଁ ମୁସଲମାନ ଭାବରେ
ରହିବାକୁ ଇଚ୍ଛା କଲେ, ସେ ମୁସଲମାନ ଭାବରେ
ରହେ—କିପରି ଅକୃତ୍ରିମ, କିପରି ପବିତ୍ର ପ୍ରେମ
ତା'ର !—ତୁମ୍ଭର ସେପରି ପ୍ରେମ କାହିଁ ? ତୁମ୍ଭର
ସେପରି ଆଦର ଯତ୍ନ କାହିଁ ?

ତିଲୋତ୍ତମା—ହାଃ, ହାଃ, ହାଃ, ! ମୋର ଆଦର
ଯତ୍ନ—ମୋର ପ୍ରେମ ଦେଖିବାକୁ ଚାହାନ୍ତି ?
ଦେଖନ୍ତୁ ତେବେ—ଏହି ହୃଦୟ ମୋ'ର ବିଦୀର୍ଣ୍ଣ
କରି ଦେଉଛି, ଦେଖନ୍ତୁ !

କଳାପାହାଡ଼—(ସାଶ୍ଚର୍ଯ୍ୟେ) ଏ କ'ଣ ? ଏ କ'ଣ
ଦେଖୁଛି ?

ତିଲୋତ୍ତମା—(ହାସ୍ୟ କରି) ଦେଖିଲେ ?

କଳାପାହାଡ଼—ଦେଖିଲି, ଦେଖିଲି ତିଲୋତ୍ତମା—

ତିଲୋତ୍ତମା—କଣ ଦେଖିଲେ ?

କଳାପାହାଡ଼—ମୋର ନାମ—ମୋର ଗର୍ବ—ମୋର ଗଣ୍ଡା !—

ତିଲୋତ୍ତମା—ତେବେ, ମୋର କ ପ୍ରେମ ନାହିଁ ? ମୋର କ ଆଦର ଯତ୍ନ ନାହିଁ ? ବିସ୍ମିତ ହେଉଛନ୍ତି ଯେ !

କଳାପାହାଡ଼—ଅନ୍ତର୍ଦ୍ଦେଶ ଯାର ଏତେ ସୁଧାମୟ ବହିର୍ଦ୍ଦେଶ ତା'ର ଏତେ ତିକ୍ତ କାହିଁକ ?

( ତିଲୋତ୍ତମାର ଅନ୍ତର୍ଦ୍ଧାନ )

[ ଛାୟାରୂପେ ବୃଦ୍ଧା ମାତାର ଆବର୍ଭାବ ]

ବୃଦ୍ଧା—ତିକ୍ତ ହେବ ନାହିଁ ? କାମଲାଳସାରେ ତୋର ରସନା ଯେ ବିକୃତ, କାମାନ୍ଧ !

କଳାପାହାଡ଼—କାମାନ୍ଧ ?

ବୃଦ୍ଧା—ନୋହୁ ?—ତୋର ପ୍ରକୃତ ପ୍ରେମ ଥିଲେ କ ନିଜ ସ୍ତ୍ରୀ ପ୍ରତି କର୍ତ୍ତବ୍ୟ—ନିଜ ବୃଦ୍ଧା ଜନନୀ ପ୍ରତି କର୍ତ୍ତବ୍ୟ—ନିଜ ଧର୍ମ ପ୍ରତି କର୍ତ୍ତବ୍ୟ, ଯୁବତୀର ସାମାନ୍ୟ ରୂପଲାଳସାରେ ମୁଗ୍ଧ ହୋଇ ବିସର୍ଜନ କରିଥାନ୍ତୁ ? ବିଭବର ସାମାନ୍ୟ ସ୍ନିଗ୍ଧ ଜ୍ୟୋତିରେ ଆକୃଷ୍ଟ ହୋଇ ପରିତ୍ୟାଗ କରିଥାନ୍ତୁ ?—ଧିକ୍ ତୋର ପୁରୁଷତ୍ୱ ! ଧିକ୍ ତୋର ପାଣ୍ଡିତ୍ୟ ! ଏହି ଦୁର୍ବଳା, ଜ୍ଞାନହୀନା ନାରୀଠାରୁ ମଧ ତୋର ତେର ଶିଖିବାର ଅଛି !—ହାୟ ! ଏହି ବୃଦ୍ଧାର ତୁ କଏ ?—ଏକମାତ୍ର ସନ୍ତାନ—ଦୁଃଖିର ଧନ—ଅନ୍ଧର ଯଷ୍ଟି !—କିନ୍ତୁ ଏ କ୍ଷୀଣାଙ୍ଗୀ, କ୍ଷୀଣମତି ବୃଦ୍ଧା ଆଜ କରୁଛି କଣ ?—ଧର୍ମ ସାକ୍ଷାତରେ ତୋତେ ବଳ ଦେଉଛି—ସମାଜ ସମକ୍ଷରେ ତୋତେ ତ୍ୟାଗ କରୁଛି—ଏ ସଂସାରକ୍ଷେତ୍ରରେ ତୁ ମୋର କେହି ନୋହୁ—କର୍ତ୍ତବ୍ୟ ଦୃଷ୍ଟିରେ ତୁ ମୋର ପରମ ଶତ୍ରୁ ! ମାତ୍ର, ହୃଦୟ ମଧ୍ୟକୁ ଚୁହିଁ ଦେଖ, ତୋର ସ୍ନେହମୟ ମୂର୍ତ୍ତି, ମୋର ଏକମାତ୍ରଧ୍ୟାନ—ତୋର ମଧୁମୟ ନାମ, ମୋର ଏକ ମାତ୍ର ଜପାମାଳ !

କଳାପାହାଡ଼—ମା, ମା !

ବୃଦ୍ଧା—ମୋହଜାଲ ଭେଦ କରି ଦେଖ—ଅଜ୍ଞାନାନ୍ଧକାର ଦୂର କର ଦେଖ, କଏ ସତ୍ୟ—କଏ ମିଥ୍ୟା ? କଏ ସୁଧା—କଏ ଗରଳ ?

( ବୃଦ୍ଧାର ଅନ୍ତର୍ଦ୍ଧାନ )

କଳାପାହାଡ଼—( ଉତ୍ଥାନ ପୂର୍ବକ ) ମା, ମା—କାହିଁ ? କେହି ତ ନାହିଁ ? ମା, ମା ! ଏହି ପାପୀକି ଆଜ କ'ଣ ଶୁଣାଇଲ ? ଏହି ଅନ୍ଧକୁ ଆଜ କଣ ଦେଖାଇଲ ? ପ୍ରକୃତରେ ମୁଁ କାମାନ୍ଧ—କାମକୁ ପ୍ରେମ ଭାବି, କର୍ତ୍ତବ୍ୟାଜ୍ଞାନ ଭୁଲିଛି—ଶାସ୍ତ୍ର ପାଠକରି, ଧର୍ମନଷ୍ଟ ହୋଇ, ସ୍ତ୍ରୀକୁ ବର୍ଜନ କରିଛି—ଜନନୀକୁ ତୁଚ୍ଛ କରିଛି—ଧର୍ମକୁ ହେୟଜ୍ଞାନ କରିଛି !—ଉପାୟ କ'ଣ ? ଉପାୟ କ'ଣ ? ଉପାୟ, ମୋର ବୃଦ୍ଧା ଜନନୀ ନିକଟକୁ ଫେରିଯାଏଁ—କ୍ଷମା ଭିକ୍ଷା ମାଗିନେବି ! ଜାନୁପାତ ପୂର୍ବକ କ୍ଷମାଭିକ୍ଷା ମାଗିନେବି—ନା–ନା ଫେରିଯିବି କପରି ? ଏ ପାପମୁଖ ନେଇ ଫେରିଯିବି କପରି ? ଏ ପାପଜୀବନରେ ଆଉ ପ୍ରୟୋଜନ ନାହିଁ !

( ଶଯ୍ୟାରେ ମୁଖାବୃତ କରିବା )

[ ଅବ୍‌ଦୁଲର ଛୁରିକା ନେଇ ପ୍ରବେଶ ]

ଅବ୍‌ଦୁଲ—(ସ୍ୱଗତ) କାଳବିଳମ୍ବରେ ଆଉ ପ୍ରୟୋଜନ ନାହିଁ—ଦୁଲିଆ, ଦୁଲିଆ ! ଦେଖ, ମୁଁ ଆଉ ଭୁଜ୍‌ଦିଲ୍ ନୁହେଁ—ମୁଁ ଆଉ କମ୍ ହିମ୍ମତ୍ ନୁହେଁ—ଦେଖ୍, ମୁଁ କପରି ସୁଦିଲ୍—ମୁଁ କପରି ବାହାଦୁର୍ ! ( ଛୁରିକା ଘାତ କରିବାକୁ ଉଦ୍ୟତ)

କଳାପାହାଡ଼—( ଉଠି ବସି ) ଦିଅ, ଦିଅ, ଅବ୍‌ଦୁଲ୍ ! ଏ ପାପଜୀବନଧାରଣରୁ ମୋତେ ଉଦ୍ଧାର କରିଦିଅ !

ଦୁଲିଆ—ସ୍ୱାମୀ—ସ୍ୱାମୀ !—କଏ ? ( ଅବ୍‌ଦୁଲର ହାତକୁ ଧରିବା )

—ଯବନିକା—

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—କୁଟୀର—

[ କଳାପାହାଡ଼ର ମାତା ରୋଗ ଶଯ୍ୟାରେ ଶାୟିତା ଓ ତିଳୋତ୍ତମା ସେବା କାର୍ଯ୍ୟରେ ନିଯୁକ୍ତା ]

ତିଳୋତ୍ତମା—ମା, ମା, ସ୍ଥିର ହେଉନ୍ତୁ ।

ବୃଦ୍ଧା—( ଉନ୍ମତ୍ତଭାବେ ) ଶୁଣ୍, ଶୁଣ୍—ମନଦେଇ ଶୁଣ୍ । ସେ ଭାରି ପାଠ ପଢ଼ିଥିଲା—ଭାରି ପଣ୍ଡିତ ବୋଲି ସମସ୍ତେ ତା'କୁ ମାନୁଥିଲେ—ନିଷ୍ଠାପର ବୋଲି ସମସ୍ତେ ତାକୁ ପୂଜା କରୁଥିଲେ । ତା'କୁ ବାହା ଦେଇଥିଲି—ତା'ର ଗୋଟିଏ ବୋହୂ ଆଣିଥିଲି—ରୂପରେ ଲକ୍ଷ୍ମୀ, ଗୁଣରେ ସରସ୍ୱତୀ ସତୀତ୍ୱରେ ସାକ୍ଷାତ୍ ସାବିତ୍ରୀ ।

ତିଳୋତ୍ତମା—ମା, ମା । ଏଣୁ ତେଣୁ କଣ ଗୁଡ଼ାଏ କହୁଛନ୍ତି ? ଟିକିଏ ଶୋଇ ପଡ଼ନ୍ତୁ ।

ବୃଦ୍ଧା—ମୁଁ ମନା କରୁଥିଲି—ତା'ର ଇଚ୍ଛା ନ ଥିଲା । ଗାଁ ଲୋକେ ମତାଇଲେ—'ନବାବଙ୍କ ଦରବାରକୁ ଯାଇ ନାଲିଶ୍ କର, ତୋର ସମସ୍ତ ଫେରି ପାଇବୁ ।' ସେ ଗଲା—କି ଦୁର୍ଯୋଗରେ ଗଲା ଯେ, ଗୋଟିଏ କଣା ପୁଅଖାଇ ଡାହାଣୀ ହାତୁଡ଼ରେ ପଡ଼ିଗଲା—ଆଉ ଫେରିଲା ନାହିଁ—ମୋର ହୃଦୟ ସଙ୍ଗାଳ ଆଉ ଫେରିଲା ନାହିଁ ।

( କ୍ରନ୍ଦନ )

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—( ଉନ୍ମତ୍ତଭାବରେ ) ଆଉ ଫେରିଲା ନାହିଁ ?—ଫେରିବ କିପରି ? ସେ ଯେ ମୁସଲମାନ ।

ତିଳୋତ୍ତମା—କିଏ ? କିଏ ? ଏ କାହାର ମୂର୍ତ୍ତି ? ପ୍ରାଣେଶ୍ୱର ।

କଳାପାହାଡ଼—( ଅଗ୍ରସର ହୋଇ ) ଖଡ଼ା ରହୋ ଶୟତାନ । ପୁଣି ପ୍ରାଣେଶ୍ୱର ? ହାଃ—ହାଃ—ହାଃ । ବୃଥା ଚେଷ୍ଟା—ପଣ୍ଡ ପରିଶ୍ରମ ।

ତିଳୋତ୍ତମା—ପ୍ରାଣେଶ୍ୱର ।

କଳାପାହାଡ଼—ପୁଣି ଆସିଛୁ, ବାନ୍ଧିବୁ ?—ତୋ'ର ସେହି ମୃଣାଳକୋମଳ ଭୁଜବନ୍ଧନରେ ବାନ୍ଧିବୁ ? ବାନ୍ଧ୍—କିନ୍ତୁ ଏଥର କଳାଚାନ୍ଦ ହୀନଶକ୍ତି ନୁହେଁ । ପୁଣି ଚାହୁଁଛୁ, ହାଣିବୁ ?—ତୋର ସେହି କୁଟିଳ କଟାକ୍ଷରେ ହାଣିବୁ ? ହାଣ—କିନ୍ତୁ ଏଥର କଳାଚାନ୍ଦ କୋମଳ ହୃଦୟ ନୁହେଁ ।

ତିଳୋତ୍ତମା—ପ୍ରାଣେଶ୍ୱର । ମୁଁ ଯେ ତିଳୋତ୍ତମା ।

କଳାପାହାଡ଼—ତିଳୋତ୍ତମା । ପ୍ରାଣପ୍ରିୟା ତିଳୋତ୍ତମା । —ଆସ, ଆସ—ନା, ନା, ଛୁଅଁ ନା—ମୁଁ ଜାତି ହରାଇଛି, ଧର୍ମ ଛାଡ଼ିଛି, ଅଖାଦ୍ୟ ଖାଇଛି, ଅନାଚାର କରିଛି—ମୋତେ ଛୁଅଁ ନା—ମୋତେ ଛୁଅଁ ନା ।

ତିଳୋତ୍ତମା—ପ୍ରାଣେଶ୍ୱର । ପ୍ରାଣେଶ୍ୱର । ( ଛୁଇଁବାକୁ ଅଗ୍ରସର ହୋଇ, ବୃଦ୍ଧା ଅଡ଼େ ଦୃଷ୍ଟି ପଡ଼ିବାରୁ ) ମା, ମା, ଦେଖନ୍ତୁ ଆପଣଙ୍କର ହୃଦୟ-ସଙ୍ଗାଳ ପ୍ରକୃତରେ ଆଜି ଫେରି ଆସିଛନ୍ତି ।

ବୃଦ୍ଧା—ଶୁଣ୍ ମା । ସେ ଧର୍ମ ତ୍ୟାଗ କଲା, ମୁସଲମାନ୍ ହେଲା, ଗୋମାଂସ ଖାଇଲା, ତାର ଇହକାଳ ସମସ୍ତ ନଷ୍ଟ କଲା ।

କଳାପାହାଡ଼—ବାସ୍ତବିକ ସମସ୍ତ ନଷ୍ଟ କଲା—ଗୋମାଂସ ଖାଇ ସମସ୍ତ ନଷ୍ଟକଲା । କିଏ ଖୁଆଇଲା ? ( ଊର୍ଦ୍ଧ୍ୱ ଦୃଷ୍ଟି ହୋଇ ) ଏହି ଦେଖ, ସେହି ରାକ୍ଷସୀ ହସୁଛି—ମୋତେ ଅଖାଦ୍ୟ ଖୁଆଇଛି ବୋଲି ହସୁଛି—ମୋର ଜାତି ନେଇଛି ବୋଲି କରତାଳି ଦେଇ ନାଚୁଛି । ଏହି—ଏହି ମୋ ଅଡ଼େ ପୁଣି ଧାଇଁଛି—ମୁଖବ୍ୟାଦାନ କରି ଧାଇଁଛି, ମୋତେ ଗିଳିବ ବୋଲି—ମୋତେ ଖାଇବ ବୋଲି—ମା, ମା, ମୋତେ ଧର ମା—ମୋତେ ଲୁଚା ମା । ( ବୃଦ୍ଧାକୁ ଆଲିଙ୍ଗନ କରିବାକୁ ଅଗ୍ରସର ହେବାରୁ )

ବୃଦ୍ଧା—ଛୁଅଁ ନା—ଛୁଅଁ ନା—ମୋର ଜାତି ନେ ନା —ମୋର ଧର୍ମ ନେ ନା !—ବୋହୁ ! ବୋହୁ ! ମୋ ପାଖକୁ ଆହୁରି ଘୁଞ୍ଚି ଆ—ମୋ କୋଳକୁ ଆ —ଛୁଇଁବ, ଛୁଇଁବ ।

ତିଲୋତ୍ତମା—(ସ୍ୱଗତ) ହା ସମ୍ରାଜ ! ତୋର ବନ୍ଧନ କି ଏଡ଼େ କଠିନ ? ତୋ ସକାଶେ ମାତା ପୁତ୍ରକୁ ସ୍ପର୍ଶ କରି ପାରୁ ନାହିଁ—ପତ୍ନୀ ପତିକୁ ସ୍ପର୍ଶ କରିପାରୁ ନାହିଁ ।

କଳାପାହାଡ଼—ମା, ମା ! ପୁଣି ସେହି ରାକ୍ଷସୀ ଧାଇଁ ଆସୁଛି—ତୋ କଳାକୁ, ରଖ ମା—ତୋ ଚାନ୍ଦକୁ, ରଖ ମା ।

ବୃଦ୍ଧା—(ଉଠି ବସି) କ'ଣ କହିଲୁ ? କ'ଣ କହିଲୁ ? ଆହୁରି ଥରେ ଶୁଣା—ଆହୁରି ଥରେ କହ, ତୁ କଳାଚାନ୍ଦ—ମୋର ଅଞ୍ଚଳର ନିଧି—ନୟନର ମଣି—ଅନ୍ଧର ଯଷ୍ଟି !—ନା ନା—ତୁ ଭଣ୍ଡ—ତୁ ମିଥ୍ୟାବାଦୀ ! କଳାଚାନ୍ଦତ ବହୁଦିନୁ ମରିଛି—କଳାଚାନ୍ଦ ତ ଏ ସଂସାରରେ ଆଜି ନାହିଁ !—ହାୟ କଳାଚାନ୍ଦ ! ବୃଦ୍ଧାର ଶକ୍ତି—ଅବଳାର ସହାୟ—ଦୀନର ସମ୍ବଳ—କାହିଁ ଗଲୁ ବାପ ?—ଆ, ଆ ବାପ !

କଳାପାହାଡ଼—ମରିଗଲା ?—ମରିଗଲା ? ସ୍ତ୍ରୀ ପ୍ରତି ଅତ୍ୟାଚାର କରି ମରିଗଲା ? ଜନନୀ ପ୍ରତି ଅତ୍ୟାଚାର କରି ମରିଗଲା ?—ଦଣ୍ଡେ ମାନ ଅଟକାଇ ରଖି ପାରିଲା ନାହିଁ ? ଦଣ୍ଡ ଦେଇ ବିଦାୟ କରି ପାରିଲା ନାହିଁ ? ମରିଗଲା ?—ଫାଙ୍କି ଦେଇ ମରିଗଲା ?

ତିଲୋତ୍ତମା—ପ୍ରାଣେଶ୍ୱର ! ପ୍ରାଣେଶ୍ୱର !—ଓଃ କି ଦାରୁଣ ଦୃଶ୍ୟ ! ମାତା ଉନ୍ମାଦିନୀ—ପତି ଉନ୍ମାଦ —ସଂସାର ଉନ୍ମାଦ—ଏ ଉନ୍ମାଦମୟ ଜୀବନରେ ତେବେ କି ପ୍ରୟୋଜନ ?—ବଜ୍ର ! ତୁମ୍ଭେ କି ଉନ୍ମାଦ ହୋଇ ନାହଁ ? ସାଗର ! ତୁମ୍ଭେ କି ଉନ୍ମାଦ ହୋଇ ନାହଁ ? ହୁଅ—ଶୀଘ୍ର ଉନ୍ମାଦ-ନୃତ୍ୟରେ ନାଚି ଉଠ—ଶୀଘ୍ର ଉନ୍ମାଦଗର୍ଜନରେ ଗର୍ଜି ଉଠ ମୋର ଉନ୍ମାଦମୟ ଜୀବନକୁ ଉନ୍ମୋଚନ କରିଦିଅ ।

କଳାପାହାଡ଼—( ତିଲୋତ୍ତମାକୁ ଲକ୍ଷ୍ୟ କରି ) କିଏ ତୁ ? କିଏ ତୁ ?—ମା, ମା, ସେହି ରାକ୍ଷସୀ—ପୁଣି ସେହି ରାକ୍ଷସୀ ! ମୋତେ ଗ୍ରାସି କରି ମାଡ଼ୁଛି, ମା—ମୋତେ କୋଳକୁ ନେ, ମା—ମୋତେ ରକ୍ଷା କର, ମା ।

ବୃଦ୍ଧା—( ନିକଟକୁ ଧାବମାନ ହୋଇ ) କୋଳକୁ ନେବି, ବାପ—ରକ୍ଷା କରିବି, ବାପ—ଆଉ ଡର ନାହିଁ, ବାପ—ଏଁ ଏଁ ! ତୁ କିଏ ? ତୁ କି କଳାଚାନ୍ଦ ? ନା—ନା—ତୁ ତ କଳାଚାନ୍ଦ ନୋହୁଁ—ତୁ ଯେ ମୁସଲମାନ୍—ତୁ ଯେ କଳାପାହାଡ଼ !

( ପୁଣି ଶଯ୍ୟାରେ ଉପବେଶନ କଲେ )

କଳାପାହାଡ଼—କଳାପାହାଡ଼—କଳାପାହାଡ଼ ! ସେ ତ ସେଦିନ ମରିଗଲା—ମୁଁ ନିଜେ କବର ଦେଇ ଆସିଲି !—ମା, ମା, ମୁଁ କଳାଚାନ୍ଦ—ମୁଁ କଳାପାହାଡ଼ ନୁହେଁ—ମୁଁ ହିନ୍ଦୁ, ମୁଁ ମୁସଲମାନ୍ ନୁହେଁ ।

ବୃଦ୍ଧା—ମୁସଲମାନ୍ ନୋହୁଁ ? ହିନ୍ଦୁ—ହିନ୍ଦୁ ହେଉ ? ହୋଇ ପାରିବୁ ତ ?

କଳାପାହାଡ଼—ହିନ୍ଦୁ ହୋଇ ନାହିଁ ? ହିନ୍ଦୁ ହେବି !—ମା, ମା, ମୁଁ ହିନ୍ଦୁ ହେବି—ହୋଇ ପାରିବି ନାହିଁ, ମା ?

ବୃଦ୍ଧା—କାହିଁକି ହୋଇ ପାରିବୁ ନାହିଁ, ବାପ ? ତୁ କାନ୍ଦ—ଖାଲି କାନ୍ଦ—ତୋର ଲୁହରେ ସବୁ ପାପ ଧୋଇଯିବ—ସବୁ କଳଙ୍କ ଲିଭିଯିବ !—ସେହି ପତିତପାବନ, କଳଙ୍କ ଭଞ୍ଜନ, ନୀଳାଚଳ ବିହାରୀ ଚକାଡୋଳାଙ୍କ ପାଖକୁ ଯା'—ତାଙ୍କର ଶ୍ରୀଚରଣ କମଳ ସ୍ପର୍ଶ କରି, ତାଙ୍କର ପୁଣ୍ୟ ନାମ ଧ୍ୟାନ କରି, ନିଜର ଦେହ, ମନ, ପ୍ରାଣ ସମସ୍ତ ଉତ୍ସର୍ଗ କରି ଦେ—ନିଶ୍ଚୟ ବର ମିଳିବ—ନିଶ୍ଚୟ ଉଦ୍ଧାର ପାଇବୁ ।

କଳାପାହାଡ଼—ନିଶ୍ଚୟ ବର ମିଳିବ ? ନିଶ୍ଚୟ ଉଦ୍ଧାର ପାଇବି ?—ବାଃ ବାଃ—ତେବେ, କାନ୍ଦିବି—କାନ୍ଦି କାନ୍ଦି ଆକାଶ ପାତାଳ ଏକାକାର

କରିଦେବି—ନୀଳାଚଳକୁ ଯିବି—ଏହିକ୍ଷଣି ଯିବି—ଚକାଡୋଳାକୁ ଆଲିଙ୍ଗନ କରି ଏକ ଧ୍ୟାନରେ, ଏକ ମନରେ କହିବି, 'ମା ପଠାଇଛନ୍ତି, ମୋତେ ବର ଦିଅ—ମୋତେ ଉଦ୍ଧାର କର—ମୋତେ ହିନ୍ଦୁ କର' । କିନ୍ତୁ ମା ! ଫେରିଆସିଲେ କାଖ କରିବୁ ତ ?

ବୃଦ୍ଧା—କାଖ କରିବି ନାହିଁ ? ମୋର ପୁଅକୁ ମୁଁ କାଖ କରିବି ନାହିଁ ?—କିନ୍ତୁ ଏ ଜଗତରେ କି ଆଉ କରିବି ? ଏ ଦେହରେ କି ଆଉ କରିବି ? ଏ ପ୍ରାଣରେ କି ଆଉ କରିବି ?—ବାପ ! ବାପ ! କାହିଁ ଅଛୁ, ବାପ ? ତୋ'ର ବୁଢ଼ୀ ମା'କୁ—ତୋର ସତୀ ସ୍ତ୍ରୀକୁ ଛାଡ଼ି କାହିଁ ଅଛୁ, ବାପ ? ଥରେ ଦେଖା ଦେଇ ଆଖି ଧନ୍ୟ କର, ବାପ—ଥରେ କଥା କହି କାନ ପବିତ୍ର କର, ବାପ—ଥରେ ସ୍ପର୍ଶକରି ପ୍ରାଣ ଶୀତଳ କର, ବାପ ! କିପରି କରିବି ? କାହୁଁ ଆସିବ ? ସେ କି ଅଛି ? ସେ କି ଜୀବିତ ?—ମୁଁ ଅଛି, ସେ ଜୀବିତ ନାହିଁ ? ଉଃ—ସେ ଜୀବିତ ନାହିଁ ! ବୋହୂ ! ବୋହୂ ! ସେ ଜୀବିତ ନାହିଁ କ—ଳା—ଗୁ—ଦ— (ମୃତ୍ୟୁ)

ତିଳୋତ୍ତମା—ମା ! ମା ! ଏ କ'ଣ ହେଲ ? ଏ କ'ଣ ହେଲ ! ଆଖି ମୁଦିଲ କାହିଁକି ?

କଳାପାହାଡ଼—ଶୁଅ ମା, ଶୁଅ—ମୁଁ ଏହିକ୍ଷଣି ଯାଉଛି—ଜଗନ୍ନାଥଙ୍କଠାରୁ ବର ଆଣିବି—ହିନ୍ଦୁ ହେବି—ତୁ କାଖ କରିବୁ—ବାଃ ବାଃ ! ମା କାଖ କରିବ—ମା କୋଳକୁ ନେବ !—

( ବେଗେ ପ୍ରସ୍ଥାନ )

ତିଳୋତ୍ତମା—ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! କେଉଁଆଡ଼େ ଯାଉଛନ୍ତି ? କେଉଁଆଡ଼େ ଯାଉଛନ୍ତି ? ଏ ଦୁଃଖିନୀକୁ ଏକାକିନୀ କରି କେଉଁଆଡ଼େ ଯାଉଛନ୍ତି ? ( ଭୂତଳେ ପତିତା ହେଲେ )

[ ଦୁଲିଆ ଓ ଫିରୋଜାର ପ୍ରବେଶ ]

ଦୁଲିଆ—ପ୍ରାଣେଶ୍ୱର ! ପ୍ରାଣେଶ୍ୱର କାହାନ୍ତି ? ଫିରୋଜା ! କହ କହ, କାହାନ୍ତି ପ୍ରାଣନାଥ ?—ଏହି ତ ସେ କୁଟୀର—ହା ପ୍ରାଣନାଥ !

( ମୂର୍ଚ୍ଛିତା ହେଲେ )

ଫିରୋଜା—ସହି ! ସହି ! ସ୍ଥିର ହୁଅ ।

ତିଳୋତ୍ତମା—କିଏ ଏହି ପାଗଳିନୀ ?

ଫିରୋଜା—ସତୀ ! ତୁମ୍ଭର ନାମ କଣ ତିଳୋତ୍ତମା ?

ତିଳୋତ୍ତମା—ହଁ, ଏହି ହତଭାଗିନୀର ନାମ ତିଳୋତ୍ତମା ।

ଦୁଲିଆ—( ସଚେତ ହୋଇ ) ତିଳୋତ୍ତମା ! ଭଉଣି ! କାହାନ୍ତି ?—କାହାନ୍ତି ସେ ? ମୋତେ ଶୀଘ୍ର ଥରେ ଦେଖାଅ, ଭଉଣୀ !—ମୋତେ ଶୀଘ୍ର ଥରେ ଦେଖାଅ, ଭଉଣି !

ତିଳୋତ୍ତମା—( ସ୍ୱଗତ ) ଏହି କି ସେହି ଭାଗ୍ୟବତୀ ?—ଏ କି ମୁସଲମାନ୍ ? ପତିବିଚ୍ଛେଦରେ ଏତେଦୂର ଉନ୍ମାଦିନୀ—

ଦୁଲିଆ—ଭଉଣି ! ଭଉଣି ! ତୁନି ହେଲ କାହିଁକି ? ଭାବୁଛ କି ପ୍ରାଣନାଥଙ୍କୁ ତୁମ୍ଭଠାରୁ କାଢ଼ିନେବାକୁ ଆସିଛି ? ନା—ନା ଭଉଣୀ, ଖାଲି ଥରେ ଦେଖିବି ବୋଲି ଧାଇଁ ଆସିଛି—ଖାଲି ଥରେ ପଦଧୂଳି ନେବି ବୋଲି ଧାଇଁ ଆସିଛି—ଥରେ ଦେଖାଅ—ଥରେ ଆଣିଦିଅ, ଭଉଣି ! ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ଆସ ଆସ ପ୍ରଭୁ ! ଦୀନା ଅକିଞ୍ଚନା ପ୍ରତି ଦୟାକର, ନାଥ ! ତୁମ୍ଭ ବିନା ଯେ ଏ ଅବଳା ସମସ୍ତ ଅନ୍ଧକାର ଦେଖୁଛି—ସମସ୍ତ ବିଷୟରେ ଅଶାନ୍ତି ଅନୁଭବ କରୁଛି !

ତିଳୋତ୍ତମା—ଭଉଣି ! ଭଉଣି ! ପ୍ରକୃତରେ ତୁମେ ମୋର ଭଉଣୀ ! ତୁମେ ମୁସଲମାନ୍ ନୁହଁ, ତୁମେ ହିନ୍ଦୁ—ତୁମ୍ଭେ ପତିବ୍ରତା—ତୁମେ ସାଧ୍ୱୀ !—ହା ସମାଜ ! ଯେବେ ତୋର ବନ୍ଧନ ନଥା'ନ୍ତା—ହା ଧର୍ମ ! ଯେବେ ତୋର ଭୟ ନଥା'ନ୍ତା, ତାହାହେଲେ ଥରେ ହିନ୍ଦୁ-ମୁସଲମାନ୍ ପ୍ରଭେଦ ଭୁଲିଯାଇ—ଈଶ୍ୱର-ଆଲ୍ଲା ପାର୍ଥକ୍ୟ ଭୁଲିଯାଇ, ଏହି ସତୀଶିରୋମଣିକୁ ଆଲିଙ୍ଗନ କରନ୍ତି—ଜୀବନ ଧନ୍ୟ କରନ୍ତି—ଜନ୍ମ ସାର୍ଥକ କରନ୍ତି !

ଦୁଲିଆ—ଭଉଣି ! ଭଉଣି ! ଏ ଅଭାଗିନୀର କି ଏତେ ଭାଗ୍ୟ ହେବ, ତୁମ୍ଭପରି ଦେବୀରୂପା ଭଗିନୀର

ଅଲିଙ୍ଗନ ସୁଖ ଅନୁଭବ କରିବାରେ କ୍ଷମ ହେବ ? ଗ୍ରଡ଼—କୁହ ଭଉଣି, କାହାନ୍ତି ପ୍ରାଣନାଥ ? ଯାଅ, ଥରେ ଘର ଭିତରକୁ ଯାଇ ଡାକିଆଣ—ଏ' କି ଦୃଶ୍ୟ ?—ଭଉଣି—ଭଉଣି । ଏ କ'ଣ ଦେଖୁଛି ?

ତିଲୋତ୍ତମା—ଭଉଣି । ମା କଣ ଆଉ ଅଛନ୍ତି ? ସେଣେ ପତି ନୀଳାଚଳବାସୀ—ଏଣେ ମାତା ବୈକୁଣ୍ଠବାସିନୀ ।

ଦୁଲ୍ଅା—ମା ନାହାନ୍ତି ? ମା ଆଉ ଇହଧାମରେ ନାହାନ୍ତି ? ହାୟ ମା—ଏ ନଷ୍ଟ କନ୍ୟା ତୁମକୁ କି ଯାତନା ନ ଦେଇଛି ? ଥରେ ଭଲ ଜୀବିତାବସ୍ଥାରେ ଦେଖା ଦେଇଥାନ୍ତି—ଥରେ ଭଲ କରୁଣା ଭିକ୍ଷା ମାଗି ନେଇଥାନ୍ତି—ଥରେ ଭଲ ବଧୂ ବଧୂ ଡାକ ଶୁଣି କାନ ପବିତ୍ର କରିଥାନ୍ତି ।—ଉଃ । କି ଦାରୁଣ ବେଦନା ! କି ମର୍ମଭେଦୀ ଯନ୍ତ୍ରଣା !—ପତି ନୀଳାଚଳବାସୀ—ମାତା ବୈକୁଣ୍ଠବାସିନୀ—ଦୁଇଟି ଅବଳା ନାରୀ ମାତ୍ର, ସଂସାରବାସିନୀ !—ଫିରୋଜା ! ତୁ ଫେରି ଯା—ମୁଁ ଆଉ ଦଣ୍ଡେ ରହିବି ନାହିଁ—ପତିଙ୍କର ଅନୁଗାମିନୀ ହେବି—ଦେଖା ନ ହେଲେ, ମାତାଙ୍କ ଅନୁଗାମିନୀ ହେବି—ବିଦାୟ—

( ବେଗେ ପ୍ରସ୍ଥାନ )

ଫିରୋଜା—ସହି ! ସହି ! ( ପଶ୍ଚାତ୍ ଅନୁଧାବନ )

ତିଲୋତ୍ତମା—ଭଉଣି ! ଭଉଣି ! ଏ କି ପାତିବ୍ରତ୍ୟ, ଏ କି ପତିପ୍ରେମ ଦେଖାଇ ଗଲୁ, ଭଉଣି !—ଯାଅ ଭଉଣି । ନିର୍ବିଘ୍ନରେ ଚାଲିଯାଅ—ଶୀଘ୍ର ମିଳନ ଘଟିବ । ମା—ମା । ଆଶୀର୍ବାଦ କର, ସ୍ୱାମୀଙ୍କ ମନସ୍କାମନା ପୂର୍ଣ୍ଣ ହେଉ—ଏ ଅଭାଗିନୀ ହସି ହସି ତୁମ୍ଭ ନିକଟକୁ ଚାଲିଯାଉ ।

( ଶଯ୍ୟାନିକଟରେ ବସିଲେ )

---

## ଦ୍ୱିତୀୟ ଦୃଶ୍ୟ

—ଯୁଦ୍ଧ କ୍ଷେତ୍ରସ୍ଥ ଶିବିର—

[ ସୁଲେମାନ ଉତ୍ତେଜିତ ଭାବରେ ବୁଲୁଥିଲେ ]

ସୁଲେମାନ—କହ, କହ, ଦୂତ ! କୌଣସି ସନ୍ଧାନ କଣ ମିଳିଲା ନାହିଁ ?

ଦୂତ—ଖୋଦାବନ୍ଦ୍ । ନା, କୌଣସି ସନ୍ଧାନ ମିଳିଲା ନାହିଁ ।

ସୁଲେମାନ—ଅସମ୍ଭବ—ପୁଣି ଅନୁସନ୍ଧାନ କର । ଦୁଲ୍ଅା ମୋର ନାହିଁ ? କଳାପାହାଡ଼ ମୋର ନାହିଁ ?—ଅସମ୍ଭବ—ଅସମ୍ଭବ—

(ନେପଥ୍ୟେ)—ଜୟ ମୁକୁନ୍ଦଦେବଙ୍କ ଜୟ !

ସୁଲେମାନ—ଏ କି ଜୟଧ୍ୱନି ?

[ ଦ୍ୱିତୀୟ ଦୂତର ପ୍ରବେଶ ]

୨ୟ ଦୂତ—ଖୋଦାବନ୍ଦ । ମୁକୁନ୍ଦଦେବ ଶିବିର ଆକ୍ରମଣ କରିଛନ୍ତି ।

ସୁଲେମାନ—ସେନାପତି କ'ଣ ନାହାନ୍ତି ?—ଅସ୍ମମାନଙ୍କର ସୈନ୍ୟମାନେ କ'ଣ ନାହାନ୍ତି ?

୨ୟ ଦୂତ—କେହି ନାହାନ୍ତି । କାହାରିକୁ ଦେଖୁନାହିଁ । ଏହି ଦେଖନ୍ତୁ ଜାହାଁପନା ! ଶତ୍ରୁ ସୈନ୍ୟ କ୍ରମେ ନିକଟବର୍ତ୍ତୀ ହେଉଛନ୍ତି—ଏହି ଶୁଣନ୍ତୁ ଶତ୍ରୁ-ସୈନ୍ୟଙ୍କର ଜୟୋଲ୍ଲାସ ଧ୍ୱନି ।

(ନେପଥ୍ୟେ)—ଜୟ ଜଗନ୍ନାଥଙ୍କର ଜୟ—ଜୟ ମୁକୁନ୍ଦଦେବଙ୍କର ଜୟ ।

ସୁଲେମାନ୍—ଏ କି ସମସ୍ୟା—ବହମତ୍ ଅଛି ନାହିଁ ?—ସେ କହିଗଲା ଯେ, ସେ ଅସ୍ମମାନଙ୍କର ସମସ୍ତ ସୈନ୍ୟ ନେଇ ଗିରିସଙ୍କଟଠାରେ ଶତ୍ରୁର ଆକ୍ରମଣ ଅପେକ୍ଷା କରୁଛି ? ସେଠାରେ କ'ଣ ସେ ନାହିଁ ? ସମସ୍ତେ କଣ ପରାସ୍ତ ଓ ପଳାୟିତ ? ନା—ଭୀଷଣ ଷଡ଼ଯନ୍ତ୍ର !—ଏହି ଯେ ସୈନ୍ୟ-ମାନେ ମୋତେ ଲକ୍ଷ କରି ଧାବିତ ହେଉଛନ୍ତି—ମୋର ଦେହରକ୍ଷୀମାନେ ସୁଦ୍ଧା କଣ ନାହାନ୍ତି ?

ଡାକ ଦୂତ, ଶୀଘ୍ର ଡାକ—ମୋତେ ଖଣ୍ଡେ ତରବାରି—ମୋତେ ଖଣ୍ଡେ ତରବାରି—

[ ଦୂତର ପ୍ରସ୍ଥାନ ଓ ସୁଲେମାନ ଉତ୍ତେଜିତ ଭାବରେ ନେପଥ୍ୟକୁ ଚାହିଁ ରହିଲେ ]

ଦୂତ—( ପ୍ରବେଶ କରି ) ସର୍ବନାଶ ! ସର୍ବନାଶ—କେହି ନାହାନ୍ତି—ଖଣ୍ଡେ ଅସ୍ତ୍ର ସୁଦ୍ଧା ନାହିଁ ।

ସୁଲେମାନ୍—କେହି ନାହାନ୍ତି ? ଖଣ୍ଡେ ଅସ୍ତ୍ର ସୁଦ୍ଧା ନାହିଁ ? କି ଭୀଷଣ ଷଡ଼ଯନ୍ତ୍ର ! କଳାପାହାଡ଼ ! କଳାପାହାଡ଼ ! ମୁଁ କି ବେକୁବ କରିଛି ? ରହମତକୁ ବିଶ୍ୱାସକରି କି ବେକୁବ କରିଛି ? ଦୁଲଆ—ଦୁଲଆ—ଅନ୍ତଃପୁରରେ କଣ ତୋତେ ଦିନରେ ଦେଖି ପାରିବ ନାହିଁ ? ଅବ୍‌ଦୁଲ୍—

[ ଉତ୍କଳୀୟ ସୈନ୍ୟମାନଙ୍କର ପ୍ରବେଶ ]

ସୈନ୍ୟଗଣ—ଏହି ଯେ—ଏହି ଯେ ନବାବ୍ !—ଆକ୍ରମଣ କର ।

ସୁଲେମାନ୍ ଖଣ୍ଡେ ତରବାରି—ଖଣ୍ଡେ ତରବାରି !

ସୈନ୍ୟଗଣ—ହାଣି ପକାଅ—ବେଶ୍ ସୁବିଧା ମିଳିଛି ।

[ ବିନାଶ କରିବାକୁ ଉଦ୍ୟତ ଓ ମୁକୁନ୍ଦଦେବଙ୍କ ପ୍ରବେଶ ]

ମୁକୁନ୍ଦଦେବ—ସାବଧାନ ସୈନ୍ୟଗଣ ! ଶତ୍ରୁ ନିରସ୍ତ୍ର—ଏକାକୀ—ଏହା କଣ ଦୃଷ୍ଟିଗୋଚର ହେଉନାହିଁ ? ତୁମ୍ଭେମାନେ କ୍ଷତ୍ରିୟ ନା ଚଣ୍ଡାଳ ?—ଆସନ୍ତୁ ନବାବ୍ ସାହେବ ! ଦୋଷ ମାର୍ଜନା କରନ୍ତୁ—ଏହି ଅସି ଧାରଣ କରନ୍ତୁ—( ତରବାରି ଦେଇ ) ଯୁଦ୍ଧରେ ଅଗ୍ରସର ହେଉନ୍ତୁ ।

ସୁଲେମାନ୍—କିଏ ତୁମ୍ଭେ ମହାନୁଭବ ବୀର ? ତୁମ୍ଭେହିଁ କ'ଣ ମୁକୁନ୍ଦଦେବ ? ତୁମ୍ଭେ ଏଡ଼େ ମହତ୍ !

ମୁକୁନ୍ଦଦେବ—ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ, ନବାବ୍ ସାହେବ—ଏହାହିଁ କ୍ଷତ୍ରିୟର ସାଧାରଣ ରଣ-ନୀତି ।

ସୁଲେମାନ୍—ମୁଁ ଯେ ଏକାକୀ ।

ମୁକୁନ୍ଦଦେବ—କିଛି ଭୟ ନାହିଁ, ନବାବ୍ ସାହେବ୍—ମୁଁ ଏକାକୀ ହିଁ ଆପଣଙ୍କ ସହିତ ଯୁଦ୍ଧ କରିବି । ଦ୍ୱନ୍ଦଯୁଦ୍ଧ ଚାଲୁଥିବାଯାଏ ଏହି ସୈନ୍ୟବୃନ୍ଦ କେଶାଗ୍ରପରିମିତ ଭୂମି ସୁଦ୍ଧା ଅଗ୍ରସର ହେବେ ନାହିଁ ।

ସୁଲେମାନ୍—କି ଉଦାର ହୃଦୟ !

ମୁକୁନ୍ଦଦେବ—ନବାବ୍‌ସାହେବ୍ ! ବୃଥା ପ୍ରଶଂସା ତ୍ୟାଗ କରନ୍ତୁ—ବୀର ଆପଣ, ବୀରର କାର୍ଯ୍ୟ କରନ୍ତୁ—ବୃଥା ଚିନ୍ତାରେ କାଳକ୍ଷେପ କରିବା ବୀରର କର୍ମ ନୁହେଁ ।

ସୁଲେମାନ୍—ବାସ୍ତବିକ୍ ! ମୁଁ ବୀରର କାର୍ଯ୍ୟ ହିଁ କରିବି !—ତେବେ ପ୍ରସ୍ତୁତ ହେଉନ୍ତୁ ।

ମୁକୁନ୍ଦଦେବ—ମୁଁ ପ୍ରସ୍ତୁତ—ଅଗ୍ରସର ହେଉନ୍ତୁ ।

( ଉଭୟେ ଯୁଦ୍ଧ କରୁ କରୁ ସୁଲେମାନ୍‌ର ପତନ )

ସୈନ୍ୟଗଣ—ଜୟ ମୁକୁନ୍ଦଦେବଙ୍କର ଜୟ—ଜୟ ବାଦ୍‌ସାହ ଆକବରଙ୍କର ଜୟ ।

ମୁକୁନ୍ଦଦେବ—ସୈନ୍ୟଗଣ ! ନବାବଙ୍କୁ ବନ୍ଦ କରି ମୋର ଶିବିରକୁ ନେଇଚାଲ । ( ସ୍ୱଗତ ) କି ବିଶ୍ୱାସଘାତକତା ! କଉଲ୍, ରହମତ୍‌ର କି ଭୀଷଣ ଷଡ଼ଯନ୍ତ୍ର । ଭାଗ୍ୟକୁ ଗୁପ୍ତଚିଠିଟି ଖଣ୍ଡ ହସ୍ତଗତ ହୋଇଥିଲା—ନହେଲେ ତ ସର୍ବନାଶ ହୋଇଥିଲା ! ବର୍ତ୍ତମାନ ସେମାନଙ୍କର ଅଭିସନ୍ଧି ବୋଧହୁଏ ଏକତ୍ର ମୋତେ ଆକ୍ରମଣ କରିବା । ଯାଏଁ, କାଳବିଳମ୍ବର ପ୍ରୟୋଜନ ନାହିଁ—ଅଳ୍ପ ସୈନ୍ୟ ମୋର—ଶୀଘ୍ର ସାବଧାନ ହେବାକୁ ହେବ ।

( ପ୍ରସ୍ଥାନ )

ସୁଲେମାନ୍—ହାୟ ! ମୋତେ ନ ମାରି ଚାଲିଗଲ କାହିଁକି ? ମୋର ଦୁଲଆ ନାହିଁ—ମୋର କଳାପାହାଡ଼ ନାହିଁ—ମୋର ବିଜୟଲକ୍ଷ୍ମୀ ନାହିଁ—ମୋର ସୁଖ-ଶାନ୍ତି ନାହିଁ—କାହିଁପାଇଁ ଅଉ ଏ ଜୀବନ ଧାରଣ କରିବି ? ରହମତ୍ ! ଉଃ—ଥରେ ଯେବେ ଦେଖା ହୁଅନ୍ତା—ଥରେ ଯେବେ ହାତରେ ପାଆନ୍ତି, ଏହି ମୁଷ୍ଟ୍ୟାଘାତରେ ସିଦ୍ଧେବେଶ ତୋ'ର ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦିଅନ୍ତି ପରା ! ବୃଥା ଚିନ୍ତା—ବୃଥା ଆଶା—ସମସ୍ତ ଖୋଦାଙ୍କ ଇଚ୍ଛା ! ସୈନ୍ୟଗଣ, କେଉଁଠାକୁ ନେଇ ଯିବ—ନେଇ ଚାଲ । ( ବନ୍ଦୀ ଭାବରେ ପ୍ରସ୍ଥାନ )

[ ରହମତ୍ ଓ କତଲୁଖାଁର ପ୍ରବେଶ ]

କତଲୁ ଖାଁ—ଅଲ୍ଲା ସାହେବ ! ତୁମ୍ଭର କଣ୍ଟକ ତ ଦୂର ହେଲା—ମୋ'ର କଣ୍ଟକ ଦୂର କରିବାର କ ଉପାୟ ସ୍ଥିରୁଛନ୍ତ ବର୍ତ୍ତମାନ ?

ରହମତ୍—ବଡ଼ ସୁନ୍ଦର ଉପାୟଟା ହୋଇଥିଲା—ଟିକିଏକରେ ତ ମାଟି ହୋଇଗଲା । ସେହି ଗୁପ୍ତ ଚିଠିଖଣ୍ଡ ମୁକୁନ୍ଦହାତରେ ପଡ଼ ନ ଥିଲେ, ଖାଇବା ବିନା ତ ସେ ମରଯାଇଥାନ୍ତା—ଆଉ ନବାବ୍ ସାହେବ୍ ଅମ ହାତରେ ବନ୍ଦୀ ହୋଇଥାନ୍ତା, ନ ହୋଇ ମୁକୁନ୍ଦ ହାତରେ ବନ୍ଦୀ ହେଲା ।

କତଲୁ ଖାଁ—ତୁମ୍ଭେ ଚିଠିରେ କଣ ଲେଖିଥିଲ କ ?

ରହମତ୍—ତୁମ୍ଭେ ଯେଉଁ ଖାଦ୍ୟଶଙ୍କଟ ସମୂହ ଲୁଟ୍‌କର ଅଣିଥିଲ, ତାହା ମୁଁ କ ଭାବେ ଅନ୍ଧାରରେ ଲୁଗ୍ଭଇ ରଖିଛୁ—ତୁମ୍ଭର ସୈନ୍ୟ ସହିତ ମୋ'ର ସୈନ୍ୟ ମିଳତ କରିବାର କ କ ବନ୍ଦୋବସ୍ତ କରିଛୁ—ନବାବଙ୍କ ମନରେ ମିଥ୍ୟା ବିଶ୍ୱାସ ଜନ୍ମାଇ, ଶିବିରରେ ତାଙ୍କୁ ଏକା ବାହାର ଆସିବାର କ ଉପାୟ କରିଛୁ, ଇତ୍ୟାଦ ଇତ୍ୟାଦ ।

କତଲୁ ଖାଁ—କାହା ହାତରେ ସେ ଚିଠି ପଠାଇଥିଲ ?

ରହମତ୍—ଅବ୍‌ଦୁଲ୍ ହାତରେ—ସେଟା ଏଡ଼େ ବୋକା, ମୁକୁନ୍ଦକୁ ତୁମ୍ଭେ ମନେକରି ତା' ହାତରେ ଚିଠିଖଣ୍ଡ ଦେଇଆସିଲା ।

କତଲୁ ଖାଁ—ବଡ଼ ଭୁଲ କାମ ତ କରିଛୁ—ଆଚ୍ଛା, ଯାଉନେ ଦେ—ବର୍ତ୍ତମାନ ଉପାୟ କଣ ?

ରହମତ୍—ଗୁପ୍ତ-ହତ୍ୟା ।

କତଲୁ ଖାଁ—ମାନ, କରିବ କଏ ?

ରହମତ୍—ଅବ୍‌ଦୁଲ୍ । ( ଅବ୍‌ଦୁଲର ପ୍ରବେଶ )

ଅବ୍‌ଦୁଲ୍—ଏହି ଯେ ମୁଁ ହାଜର, ବନ୍ଦା—ଦୁଲଅ କାହିଁ, ସେନାପତେ ! ଦୁଲଅ କାହିଁ ? ତୁମେ ଯେ କହିଥିଲ, ଗୁପ୍ତ ଚିଠିଖଣ୍ଡ ଦେଇ ଅସିଲେ ଦୁଲଅକୁ ଦେବ—କାହିଁ ? ଦଅ, ଦଅ,—ମେର ଜାନ୍ ଦୁଲଅକୁ ଦଅ ।

କତଲୁ ଖାଁ—ଏହିପରି ତୁମ୍ଭର ପତ୍ରବାହକ, ବନ୍ଧୁ ?

ରହମତ୍—ହଁ, ଏହା ଦ୍ୱାରାହିଁ ଗୁପ୍ତହତ୍ୟା କରାଇବ ବୋଲି ମନେ କରିଛୁ ।

କତଲୁ ଖାଁ—ପୁଣି ଏହି ବୋକାଟା ହାତରେ ନା ? ମୁକୁନ୍ଦକୁ ମାରିବାକୁ ଯାଇ ତୁମ୍ଭଙ୍କୁ ସାଫ୍ କର ନ ଦେଇ ବସେ ଏଥର !

ରହମତ୍—ଏଥର ଆଉ ଭୟ ନାହିଁ—କାରଣ ସେ ବେଶ୍ ଚଳ୍ପି ଅସିଛୁ । ଦେଖ ସାହାଜାଦା ! ଅଉ ଗୋଟିଏ କାମ ଯଦ କର ପାରିବୁ, ତାହାହେଲେ ଦୁଲଅକୁ ନିଶ୍ଚୟ ପାଇବ ।

ଅବ୍‌ଦୁଲ୍—ନା, ନା ସେନାପତେ ! ତୁମ କଥା ଅଉ ଶୁଣିବ ନାହିଁ—ତୁମ କାମ ଅଉ କରିବ ନାହିଁ । ଦୁଲଅ—ଦୁଲଅ—ମେର ଜାନ୍—ମେର ପିଅରେ ।

ରହମତ୍—ସାହାଜାଦା ! ଏଥର ଏହି ଭଦ୍ର ଲୋକଙ୍କୁ ସାକ୍ଷୀ କର କହୁଛୁ, ଅଉ ଗୋଟିଏ କାମ କରଦେଲେ, ନିଶ୍ଚୟ ପାଇବ ।

ଅବ୍‌ଦୁଲ୍—ନିଶ୍ଚୟ ପାଇବ ? ମେର ଜାନ୍‌କୁ ନିଶ୍ଚୟ ପାଇବ ? ତେବେ କ କାମ ଶୀଘ୍ର କୁହ । ଦୁଲଅ—

ରହମତ୍—ଏହି ଛୁରିକାଟି ନିଅ—ଯେଉଁ ଲୋକକୁ ଗୁପ୍ତ ଚିଠାଉ ଖଣ୍ଡ ଦେଇ ଅସିଥିଲ, ତାହାକୁ ହିଁ ଗୁପ୍ତହତ୍ୟା—

ଅବ୍‌ଦୁଲ୍—ଏଁ ! ଗୁପ୍ତ-ହତ୍ୟା ପୁଣି !—ସେନାପତି ! ସେ ଦନର ଗୁପ୍ତହତ୍ୟା କଥା ଯେ ମନେ ପଡ଼ ଯାଉଛୁ—ଯେମିତକା ଧରା ପଡ଼ ଯାଇଥିଲ—ତଚା ଜାଣିଥିଲେ—ଭାଗ୍ୟକୁ ସିନା—

ରହମତ୍—ତେବେ ବାଟ ଦେଖନ୍ତୁ—ଦୁଲଅ ନାମ ଭୁଲିଯା'ନ୍ତୁ—

ଅବ୍‌ଦୁଲ୍—ଦୁଲଅ ନାମ ଭୁଲିଯିବ ? କଛୁ ପର୍ବାୟ ନାହିଁ, ସେନାପତେ ! ଏହିକ୍ଷଣି ଦଅନ୍ତୁ, ସାଫ୍ କର ଦେଇ ଅସୁଚ । କନ୍ତୁ—

ରହମତ୍—ପୁଣି କନ୍ତୁ ତେବେ, ଦୁଲ—

ଅବ୍‌ଦୁଲ୍—ନା-ନା ସେନାପତେ ! ଅଉ ଭୟ ନାହିଁ—କନ୍ତୁ ଦୁଲଅକୁ ଦେବ ତ ?

ରହମତ୍—ନିଶ୍ଚୟ ହେବ—କିନ୍ତୁ ଖୁବ୍ ସାବଧାନରେ ଏ କାର୍ଯ୍ୟ କରିବାକୁ ହେବ—ସେଦିନ ପରି ଯେମ୍‌ତିକା ଆଉ ଧରା ପଡ଼ି ନ ଯାଅ—

ଅବ୍‌ଦୁଲ୍ଲା—( ଗୁପ୍ତ ଛୁରିକା ଦେଖି ) କିଛି ଭୟ ନାହିଁ—ଏ କାମ ମୁଁ ଅତି ସହଜରେ ହାସଲ କରି ପାରିବି—ଦେଖୁ ନାହଁ, ମୁକୁନ୍ଦ ଦେବ ଗୋଟିଏ ଅଙ୍ଗୁରି ଦେଇଛନ୍ତି—କହିଛନ୍ତି, ଏହି ଅଙ୍ଗୁରି ଦେଖାଇଲେ ତାଙ୍କର ସୈନ୍ୟମାନେ କେହି ମୋତେ ଅଟକାଇବେ ନାହିଁ ।

କଲାଲ୍—କାଚ୍ କାଚ୍—କ୍ୟା ମଜା—କ୍ୟା ତୋଫା !

ଅବ୍‌ଦୁଲ୍ଲା—କିନ୍ତୁ ଦୁଲ୍‌ଆକୁ ଦେବ ତ ?

ରହମତ୍—କେତେଥର ଆଉ କହିବି ?

ଅବ୍‌ଦୁଲ୍ଲା—ତେବେ ମୁଁ ବାହାରିଲି—ଦୁଲ୍‌ଆ ! ଦୁଲ୍‌ଆ ! ମେରି ଜାନ୍—ମେରି ପିଆରେ ! ଆଉ ଗୋଟିଏ କଥା, ସେନାପତେ ।

ରହମତ୍—କି କଥା ? ଯେଉଁ ବାଦ୍‌ସା ବେଗମ୍ ହେବା କଥା କହୁଥିଲ ?

ଅବ୍‌ଦୁଲ୍ଲା—କରିବ ତ ?

ରହମତ୍—କେତେ ଆଉ କହିବି—କାମ ସାରି ନା ଆଗେ ।

ଅବ୍‌ଦୁଲ୍ଲା—ବାଃ—ଦୁଲ୍‌ଆ ହେବ ବେଗ୍‌ମ—ମୁଁ ହେବି ବାଦ୍‌ସା—ନା ସେନାପତେ ! ଦୁଲ୍‌ଆ ହେବ ବାଦ୍‌ସା—ମୁଁ ହେବି ବେଗମ୍ ।

ରହମତ୍—ତାହା ହିଁ ହେବ ।

ଅବ୍‌ଦୁଲ୍ଲା—ଏଥର ବାହାରିଲି—ଦୁଲ୍‌ଆ ! ଦୁଲ୍‌ଆ ! ( ପ୍ରସ୍ଥାନ )

କଲାଲ୍—ବେଶ୍ ମଥା-ପାଗଲଟିଏ ତ ଯୋଗାଡ଼ କରିଛ ?

ରହମତ୍—ଏହି ପାଗଲାମି ମୁହିଁ ବଢ଼ାଇଛି—ଦେଖୁଛତ, କେତେ କାମରେ ଆସୁଛି ?

କଲାଲ୍—ଦେଖ ରହମତ୍ ! ମୁକୁନ୍ଦଦେବକୁ ମୁଁ ଏଠି ଜୀବନ୍ତ କେବେହେଁ ଛାଡ଼ିଦେବି ନାହିଁ । ସେ ବଞ୍ଚିଲେ, ବାଦ୍‌ସାହା ସମସ୍ତ ଜାଣିପାରିବେ—ତାହାହେଲେ ମୋର ଦଶା ଯେ କ'ଣ ହେବ, ତା'ତ ବେଶ୍ ବୁଝି ପାରୁଛ ।

ରହମତ୍—କୌଣସି ଚିନ୍ତା ନାହିଁ—ଅବ୍‌ଦୁଲ୍ ଏଥର ସବୁ ପରିଷ୍କାର କରି ଦେଇ ଆସିବ । ଖାଁସାହେବ, ନବାବଙ୍କର ଆଜ କି ଦୁର୍ଦ୍ଦଶା !

କଲାଲ୍—ବଡ଼ କଷ୍ଟ ହେଉଛି, ନା ଅଲି ସାହେବ ? କିନ୍ତୁ ଯେତେବେଳେ ସିଂହାସନରେ ବସିଥିବ—ବାଇଜି, ସିରାଜି ଚୁଲୁଥିବ—ସେତେବେଳେ ଏ କଷ୍ଟ ହେବ ତ ?

ରହମତ୍—କଷ୍ଟ ହେବ, ଯେବେ ନବାବ ବଞ୍ଚିଥିବ ।

କଲାଲ୍—ମନର କଥା କହିଛ, ବନ୍ଧୁ ! ଆସ ବନ୍ଧୁ—ଥରେ ପରସ୍ପର ମଧ୍ୟରେ କୋଲାକୋଳି ହୋଇ ( ପରସ୍ପରକୁ ଆଲିଙ୍ଗନ କଲେ ) ଆମ୍ଭର ବନ୍ଧୁ-ପ୍ରେମ ଦ୍ୱିଗୁଣିତ କରିଦେବା !

---

## ତୃତୀୟ ଦୃଶ୍ୟ

—ବାରବାଟୀ ଦୁର୍ଗ—

[ ଶିଙ୍ଗ ଓ ମନାଇର ପ୍ରବେଶ ]

ଶିଙ୍ଗ—ମଣି ଭାଇ ! କି ଜୁଟ୍‌ଜୁଟିଆ ଅନ୍ଧାର—ଏପରି ମେଘୁଆ ଅନ୍ଧାର ରାତି ଜନ୍ମଭିରି ଆଉ କେବେ ଦେଖି ନାହିଁ ।

ମନାଇ—ମେଘ ବି ଟୋପିଏ ଟୋପିଏ ପଡ଼ିଲାଣି ।

ଶିଙ୍ଗ—ଉଃ କି ଅନ୍ଧାର ! ଏତେ ରାତି ହେଲାଣି—ଏତେବେଳଯାଏ ଫେରୁ ନାହିଁ କାହିଁକି ?

ମନାଇ—କେଇ ଘଡ଼ି ରାତି ଏମିତି ହୋଇଛି ଯେ, ଏତେ ଡେରି ହେଉଛି ? ମାଲୁମ ହେଉଛି, ଘଡ଼ିଏ ରାତି ବି ପରା ହୋଇନାହିଁ ।

ଶିଙ୍ଗ—କିନ୍ତୁ ଦେଖିଲୁ, କି ଅନ୍ଧାର—କି ନିଶୂନ—ଯେମିତିକା ନିଶାରାତି ।

ମନାଇ—ବୁଝିଲୁ ନା, ଶିଙ୍ଗ ଭାଇ ! ଏ ନିଶ୍ଚୟ ଈଶ୍ୱରଙ୍କର ବରଦ୍—ତା ନ ହେଲେ କି ଏପରି ସୁବିଧାଟାଏ ଆଜ ମିଳିଥାନ୍ତା ?

ଶିଖି—ସ୍ୱା ଆଜ୍ ପଚୁରୁଛୁ—ଏ ଅନ୍ଧାର ଯେମିତିକା ତା'ରିପାଇଁ ହୋଇଛୁ ।

ମନାଇ—ଦେଖ ଶିଖି ଭାଇ । ତୁ ସେନାପତି ହେଲେ, ସ୍ୱାଙ୍କପରି ତୋ ଆଖି ଯେମିତିକା ଓଲଟି ନ ପଡ଼େ ।

ଶିଖି—ମଣି ଭାଇ, ମୋତେ ପୁଣି ସ୍ୱା କହୁଛୁ ?—ମିଛ ନାହିଁ, ମଣି ଭାଇ । ରାଜାଙ୍କ ଯୋଗୁଁ ସିନା ଆମେ ଏ କାମ କରିବାକୁ ବସିଛୁ ?

ମନାଇ—ତା ନୁହେଁ କ'ଣ ? ବାହାରୁ ଜଣେ କାହାକୁ ଆଣି ସେନାପତି କରିଥାନ୍ତେ, ସେ ସହି ହୋଇଥାନ୍ତା—ଆମର ସାତ ପଚ୍ଛର ଫଚ୍ଛ—ଟୋକାଟାଏ—ଏକାବେଳକେ ଆମ ଉପରକୁ ଚଢ଼ିଯିବ, ସ୍ୱା କ'ଣ ରକ୍ତ ମାଂସ ଦେହରେ ସହିହେବ ?

ଶିଖି—ଏତେ ଅପମାନ । ଆମଠୁ କଣ ସେ ବେଶି କାଣିଲାବାଲା, ନା ବେଶି ପଢ଼ିଲାବାଲା ? ଖାଲି ପାଟିଟାଏ ଅଛି—ଦି'ପଦ ତରକ ତାରକରେ କହିପାରେ, ଏତିକି ଯା—ଏ ଯୁଦ୍ଧରେ ଭଲା ସେ କି' ବୀରପଣିଆଟା ଏ ଦେଖାଇଲା ?

ମନାଇ—ବୀରପଣିଆ ଭିତରେ କଣ ନା—ବୁଢ଼ା ସେନାପତି ଯେମିତି ଧରାଶାୟୀ ହେଲେ, ଏ ବାହାଦୁରି ଦେଖାଇ ସୈନ୍ୟମାନଙ୍କୁ ଛୁଣ୍ଡେଇ ଯୁଦ୍ଧ ପଡ଼ିଆ ଆଡ଼େ ଦୌଡ଼ିଲେ—ଆମେମାନେ ଘରର ପୁଅ, ଘରକୁ ଫେରିଗଲୁଁ ।

ଶିଖି—ଯେମିତି ଫେରିଗଲୁ, ସେମିତି ବଞ୍ଚିଗଲୁ—ସେମିତି କେତେ ଲୋକ ପ୍ରାଣ ପାଇଗଲେ । ତା'ର କଣ ଫେରିଲା ବେଳକୁ ଗୋଟିଏ ସୁଦ୍ଧା ଲୋକ ବଞ୍ଚିଥିଲା ? ନିଜେ ତ ଦରମରା ହୋଇ ଯାଇଥିଲା । ଏଥିରେ ଯେ ରାଜାଙ୍କର କି ଲାଭ, ବେଶ୍ ବୁଝୁଛୁ; କିନ୍ତୁ ରାଜା ଆମର ତା' ନ ବୁଝି, କହିଲେ କି ନା, ଅମ୍ଭେମାନେ ଭୀରୁ—କାପୁରୁଷ, ସେ ବୀର—ସାହସୀ—ସୁତରାଂ ସେନାପତି ।

ମନାଇ—ନିଜେ ସାହସୀ ତ ଏବେ ଯାଇଛନ୍ତି, ଦେଖି ନା ଫେରୁଛନ୍ତି କି ନାହିଁ—

ଶିଖି—ନ ଫେରେ କି—

ମନାଇ—ଆରେ ଚୁପ୍, ଚୁପ୍—ଗୋଟାଏ ଖଡ୍ ଖଡ୍ ଶବ୍ଦ କଣ ଶୁଭୁଛି—ଆସିଗଲା ନା କ'ଣ—ଟିକିଏ ଅଡ଼େଇ ଠିଆହେବା ଚାଲ ।

ଶିଖି—କାହିଁକି ମ ? ଏକଦମ୍ କାମ ଶେଷ କରିଦେଲେ ତ ଛୁଟି ।

[ ଦୁଲିଅର ପ୍ରବେଶ ]

ଦୁଲିଅ—ଉଃ । କି ଅନ୍ଧାର—

ଶିଖି—( ଛୁରିକା ଘାତ ଓ ଉଭୟଙ୍କ ପ୍ରସ୍ଥାନ )

ଦୁଲିଅ—ଉଃ । ( ପଡ଼ି ) ପ୍ରାଣଗଲା—ଫିରୋଜା । ପ୍ରାଣ ଗଲା—ପ୍ରାଣେଶ୍ୱର ।

[ ଫିରୋଜା ଓ ଗୋଲାପ ପ୍ରବେଶ ]

ଫିରୋଜା—କିଏ ତୁମ୍ଭେ ବାଳକ ? ତୁମ୍ଭର ନାମଟି ତ ବେଶ୍—ଦୁଲିଅକୁ ଚିହ୍ନିଲ କିପରି ?

ଗୋଲାପ—ମୋର ଯେ ବଙ୍ଗଳାଦେଶରେ ଘର—ନବାବଙ୍କର କନ୍ୟାକୁ ଚିହ୍ନିବି ନାହିଁ ?

ଫିରୋଜା—ଅମ୍ଭେମାନେ ଆଉ କିଛି ଦିନ ଏହି ଚଟିରେ ରହିଥିଲେ, ସେ ଭଲ ରକମ୍ ସୁସ୍ଥ ହୋଇଥାନ୍ତେ—କିନ୍ତୁ, ସେ କଣ ମାନିଲେ ? ଟିକିଏ ଚାଲିବାର ଶକ୍ତି ହେଲାକ୍ଷଣି, ଦେଖ, କିପରି ବାଟ ଘାଟ, ରାତି ଅନ୍ଧାର ନ ମାନି ବାହାରି ପଡ଼ିଲେ । ମୁଁ ଯେତେ କହିଲି—ଏପରି ସମୟରେ, ପୁଣି ସ୍ତ୍ରୀଲୋକ ହୋଇ ବାହାରିବାଟା ଠିକ୍ ନୁହେଁ—ସକାଳ ହେଉ, ବାହାରିବା—ସେ କି ମାନିଲେ ? ଏବେ ଦେଖ ନା, ସାଙ୍ଗ ଛାଡ଼ି ଦେଇ କୁଆଡ଼େ ଯେ ଆଗଭରି କେତେଦୂର ଗଲେଣି—ଅଚ୍ଛା, ତୁମେ ଆମ ସଙ୍ଗେ ଯିବ ନା ? ଗଲେ ଭଲ ହୁଅନ୍ତା—ଭାରି ଉପକାର ହୁଅନ୍ତା ।

ଗୋଲାପ—ମୁଁ ବି ତ ଜଗନ୍ନାଥ ଦର୍ଶନକୁ ବାହାରିଛି—ତେବେ ଯେମିତିକା ଅନ୍ଧାର ଦେଖୁଚି, ବାଟରେ ଚୋର ଡକାଏତଙ୍କର ଯେଉଁ ଭୟ ଶୁଣୁଚି—

ଫିରୋଜା—ସେଥିପାଇଁ ତ ତୁମ୍ଭର ସାଙ୍ଗ ଲୋଡ଼ୁଚି, ବାଳକ ।

ଗୋଲାପ—କି ଆଶ୍ଚର୍ଯ୍ୟ—ସତେ ସତେ ମୋତେ ଭାରି ଅଡୁଆ ଲାଗୁଛି—ଆପଣମାନେ ନବାବଘର ଲୋକ

ହୋଇ, ପୁଣି ସ୍ତ୍ରୀଲୋକ ହୋଇ, ଏକା ବାହାରିଛନ୍ତି କିପରି ?

ଫିରୋଜା—(ସ୍ୱଗତ) ପ୍ରେମରେ ପଡ଼ିଲେ ଲୋକେ ଏହିପରି ହୁଅନ୍ତି—ତୁମେ ତା'ର ମର୍ମ କାହୁଁ ବୁଝିବ, ବାଳକ ? ( ପ୍ରକାଶ୍ୟେ ) ବାଳକ ! ସେ ଅନେକ କଥା ।

ଗୋଲାପ—ଯାଉ—ଆପଣ ଯେତେବେଳେ ଆମର ନବାବଙ୍କ ଘରର ଲୋକ ହୋଇ ଅନୁରୋଧ କରୁଛନ୍ତି, ନିଶ୍ଚୟ ଯିବି—ଯା' ଥାଉ କପାଳେ ।

ଫିରୋଜା—ଆସ ଭାଇ, ବେଗେ ଆସ—ସମ୍ରାଟ ମୋ'ର ପାଗଳୀଙ୍କ ପରି କୁଆଡ଼େ ଯେ ଛାଡ଼ି ଚାଲିଗଲେଣି—

ଦୁଲଅ—(ବ୍ୟଥାକାତରରେ) ପ୍ରାଣେଶ୍ୱର । ପ୍ରାଣେଶ୍ୱର ।

ଗୋଲାପ—କାହାର ଆର୍ତ୍ତନାଦ ?

ଫିରୋଜା—ଦେଖ—ଦେଖ, ଏ ଯେ ସମ୍ରାଟର କଣ୍ଠସ୍ୱର ପରି ଜଣା ପଡ଼ୁଛି ।

ଦୁଲଅ—ଟିକିଏ ପାଣି—ଫିରୋଜା । ଟିକିଏ ପାଣି—

ଫିରୋଜା—ସମ୍ରାଟ ! ସମ୍ରାଟ । କଣ ହେଲା ତୁମର ? (ଦୁଲଅକୁ କୁଣ୍ଢାଇ ଧରିବାକୁ ଯାଇ ଦେଖି) ଏ କ'ଣ ? ସମ୍ରାଟଙ୍କ ଦେହରୁ ରକ୍ତ ବାହାରୁଛି ନା କଣ ?

ଗୋଲାପ—ରକ୍ତ !—ଟିକିଏ ଆଲୋକ—

[ସେନାପତିଙ୍କର ଆଲୋକ ହସ୍ତରେ ପ୍ରବେଶ]

ସେନାପତି—ଆଲୋକ କିଏ ମାଗୁଛ, ପଥିକ ?

ଗୋଲାପ—ଜାଣେ ନାହିଁ କେଉଁଠୁ ରକ୍ତ ବାହାରୁଛି, ଫିରୋଜା ?

ଫିରୋଜା—ହାତରୁ ବାହାରୁଛି ।

ଗୋଲାପ—ଧନ୍ୟ ଜଗନ୍ନାଥ । କିଛି ଭୟ ନାହିଁ—(ନିଜର ପରିଧେୟ ପଗଡ଼ିରୁ ଛିଣ୍ଡାଇ) ଏହି କନା ନେଇ ଶୀଘ୍ର କ୍ଷତସ୍ଥଳ ବାନ୍ଧିଦିଅ ।

ଦୁଲଅ—ଉଃ—ଭାରି ତୃଷା । ଟିକିଏ ପାଣି ।

ସେନାପତି—ମୁଁ ପାଣି ଆଣି ଦେଉଛି । (ସ୍ୱଗତ) ତା'ର ଏ ନୃଶଂସାଚରଣ—ପୁଣି ଦୁର୍ଗ ସମ୍ମୁଖରେ ? (ଦୁର୍ଗଦ୍ୱାର ଆଲୋଚନା କରି ସେନାପତିଙ୍କର ପ୍ରସ୍ଥାନ )

ଫିରୋଜା—ସମ୍ରାଟ ! ସମ୍ରାଟ । କଥା କୁହ—ସମ୍ରାଟ ମୋର ବଞ୍ଚିବ ତ, ଗୋଲାପ ?

ଗୋଲାପ—କୌଣସି ଭୟ ନାହିଁ—ଈଶ୍ୱରଙ୍କୁ ଧନ୍ୟବାଦ୍ ଯେ, ଛୁରୀ ଲକ୍ଷ୍ୟସ୍ଥଳ ଭେଦ କରି ନାହିଁ ।

ଦୁଲଅ—ପ୍ରାଣେଶ୍ୱର । ପ୍ରାଣେଶ୍ୱର—ଉଃ, ଭାରି ତୃଷା । ଟିକିଏ ପାଣି—

ଗୋଲାପ—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଏ କି ମାନବୀ—ନା ଦେବୀ ? ଏତେ ପ୍ରେମ ।

[ ରାଣୀ ଓ ସେନାପତିଙ୍କର ପ୍ରବେଶ ]

ସେନାପତି—ମହାଦେଈ । ଆପଣ କଷ୍ଟ କରି କାହିଁକି ଆସୁଛନ୍ତି ?

ରାଣୀ—କାହିଁକି, ସେନାପତେ ? ଏଥିରେ କ୍ଷତି କଣ ? ସ୍ତ୍ରୀଲୋକ ପ୍ରତି ଛୁରିକା ପ୍ରୟୋଗ—ପୁଣି ଦୁର୍ଗ ସମ୍ମୁଖରେ—ଏହା କି କମ୍ ଆଶ୍ଚର୍ଯ୍ୟର ବିଷୟ—ରାଜାର ଅନୁସନ୍ଧାନ କରିବା କି ଉଚିତ ନୁହେଁ ? ସେ ଯେତେବେଳେ ଅନୁପସ୍ଥିତ ତାଙ୍କ ପରିବର୍ତ୍ତେ ମୋର କରିବା କି ଉଚିତ ନୁହେଁ ?—କୁହ ସେନାପତେ । କାହିଁ ସେ ବାଳିକା ?

ଦୁଲଅ—ଉଃ—ପ୍ରାଣ ଗଲା । ପାଣି—

ରାଣୀ—( ନିକଟକୁ ଯାଇ ) ଏହି ନିଅ ପାଣି । ( ପାଣି ପିଆଇବା ) ସେନାପତେ । ତୁମ୍ଭେ ଶୀଘ୍ର ପୋଇଲିମାନଙ୍କୁ ଏଠାକୁ ଡକାଇ ଆଣ—ଏମାନଙ୍କୁ ନଅର ଭିତରକୁ ନେଇଯାଇ ଶୁଶ୍ରୂଷା କରିବାକୁ ହେବ । (ସେନାପତିଙ୍କର ପ୍ରସ୍ଥାନ)

ଦୁଲଅ—ମା ! ତୁମ୍ଭେ ଯେ ହିନ୍ଦୁ ।

ରାଣୀ—କାହିଁକି ମା—କୌଣସି—

ଦୁଲଅ—ମୁଁ ଯେ ମୁସଲମାନ୍, ମା ।

ରାଣୀ—ହିନ୍ଦୁ ମୁସଲମାନର ଭେଦ ଏ ସମୟରେ କ'ଣ, ମା ?

ଦୁଲଅ—ମୁଁ ଯେ ମା, ଶତ୍ରୁ ଦେଶର—

ରାଣୀ—ଭୟ କଣ ? ବିପଦ୍‌ଗ୍ରସ୍ତକୁ ଉଦ୍ଧାର କରିବା ହିଁ କ୍ଷତ୍ରିୟର କାର୍ଯ୍ୟ—ନିରାଶ୍ରୟକୁ ଆଶ୍ରୟ ଦେବା ହିଁ

କ୍ଷତ୍ରିୟର କର୍ତ୍ତବ୍ୟ । ଏଥିରେ ଜାତ-ବିଜାତି ନାହିଁ—ଧର୍ମାଧର୍ମ ନାହିଁ—ଶତ୍ରୁ-ମିତ୍ର ନାହିଁ ।

ଦୁଲ୍ଅ—କି ମହତ୍ ଏହି କ୍ଷତ୍ରିୟ-ହୃଦୟ ! ମା ! ମୋର ଶକ୍ତି ହୋଇଛି—ମୋର ଧନ୍ୟବାଦ୍ ଗ୍ରହଣ କରନ୍ତୁ । ଫିରୋଜା, ଜୀବନଦାତ୍ରୀଙ୍କୁ ଧନ୍ୟବାଦ ଦେ—ଚାଲ—ଆଉ ବିଳମ୍ବ ସହ୍ୟ ହେଉନାହିଁ—ପ୍ରାଣେଶ୍ୱର ! କେତେବେଳେ ତୁମ୍ଭର ଦେଖା ପାଇବି ?

ରାଣୀ—ଏ କ'ଣ ? ଆପଣ ଏତେ ରାତିରେ କେଉଁଆଡ଼େ ଯିବେ ? ଆପଣଙ୍କର ସ୍ୱାମୀ କ'ଣ ଆପଣଙ୍କୁ ଏକାକିନୀ କରି କେଉଁଆଡ଼େ ଚାଲି ଯାଇଛନ୍ତି ?

ଫିରୋଜା—ମା ! ସେ ବହୁତ କଥା—

ରାଣୀ—ଯାହା ହେଉ, ମୁଁ ତ ଆପଣମାନଙ୍କୁ ଏତେବେଳେ କଦାପି ଛାଡ଼ିଦେବି ନାହିଁ । ଆପଣମାନଙ୍କ ଆକାର ଇଙ୍ଗିତରୁ ବେଶ୍ ଜଣାପଡ଼ୁଛି—ଆପଣମାନେ ସମ୍ଭ୍ରାନ୍ତବଂଶୀୟ ।—ନିଶ୍ଚୟ ଆପଣମାନଙ୍କର କୌଣସି ଦୁର୍ଘଟନା ଘଟିଛି; ସୁତରାଂ ଗୋଟାଏ ସୁବ୍ୟବସ୍ଥା ନକରିବା ଯାଏ ମୁଁ କଦାପି ଛାଡ଼ିଦେବି ନାହିଁ—ତା'ପରେ ମୋର ଦୁର୍ଗ ସମ୍ମୁଖରେ ବିଦେଶୀ ପ୍ରତି ଏପରି ନୃଶଂସାଚରଣ—ଏହାର ସବିଶେଷ ଅନୁସନ୍ଧାନ ନ କରି—ଏହାର ସମୁଚିତ ପ୍ରତିବିଧାନ ନ କରି—ବିପଦ୍‌ଗ୍ରସ୍ତଙ୍କୁ ଛାଡ଼ିଦେବି କିପରି, କହନ୍ତୁ ?—ପ୍ରଜାଗଣ କହିବେ କ'ଣ ? ରାଜାମାନେ ବା କହିବେ କ'ଣ ? ବିବେକ ଅବା ମୋର କହିବ କଣ ?—ଜଗନ୍ନାଥଙ୍କ ରାଜ୍ୟ, ଗୋଟାଏ ପାପ-ରାଜ୍ୟ—ମୁକୁନ୍ଦଦେବଙ୍କ ଶାସନ, ଗୋଟାଏ ଅଶାସନ ।

ଦୁଲ୍ଅ—ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ଏହି ମୁଁ ଯାଉଛି—ଓ ଫିରୋଜା—ଆଉ ମୁଁ ଅପେକ୍ଷା କରି ପାରୁନାହିଁ ।

ଗୋଲାପ—(ସ୍ୱଗତ) ଦୁଲ୍ଅ ! ଦୁଲ୍ଅ ! ତୁ ମାନବୀ ନୋହୁ, ଦେବୀ ।

ରାଣୀ—(ସ୍ୱଗତ) ଏ ଯେ ମୋର ସମ-ବିରହିଣୀ—ବିଧାତଃ ! ମିଳନ ସଙ୍ଗେ ସଙ୍ଗେ ବିରହ ସୃଷ୍ଟି କଲେ କାହିଁକି—ସୁଖ ସଙ୍ଗେ ସଙ୍ଗେ ଦୁଃଖର ସୃଷ୍ଟି କଲେ କାହିଁକି ?

ଫିରୋଜା—ମା ! ଆମ୍ଭମାନଙ୍କୁ ବିଦାୟ ଦିଅନ୍ତୁ ।

ରାଣୀ—ନା, ମା ! କଦାପି ଦେଇ ନ ପାରେ—ଆପଣମାନଙ୍କର ହସ୍ତ ଧାରଣ କରୁଛି—ଆପଣମାନେ ମୋର ଆଜି ଅତିଥି ହେଉନ୍ତୁ—ଏହି ଦାସୀମାନେ ମୋର ଆସିଗଲେଣି ।

[ଦାସୀମାନଙ୍କ ସହିତ ସେନାପତିଙ୍କ ପ୍ରବେଶ]

ଦୁଲ୍ଅ—ପ୍ରାଣଦାତ୍ରୀଙ୍କର ଯେତେବେଳେ ଏତେ ଅନୁରୋଧ, ତାହା ଉପେକ୍ଷା କରିବା ମୋ ପକ୍ଷେ ଦୁଃସାଧ୍ୟ ।

ରାଣୀ—ସେନାପତେ ! ଏହି ବାଳକର ବନ୍ଦୋବସ୍ତ ତୁମ୍ଭର ଉପରେ ।

ଦୁଲ୍ଅ - ମା ! କାଲି ପ୍ରଭାତ ହେଲାକ୍ଷଣି କିନ୍ତୁ ଆମ୍ଭମାନଙ୍କୁ ଛାଡ଼ିଦେବେ ।

ରାଣୀ—ସେତ କାଲିର କଥା—ଆଜି ଆଗେ ଏ ଅକିଞ୍ଚନକୁ ଅତିଥିସେବା କରିବାର ସୁଯୋଗ ଦିଅନ୍ତୁ ।

ଦୁଲ୍ଅ—ମା, ମା ! ଆପଣ ମାନବୀ ନୁହନ୍ତି, ଦେବୀ !

ରାଣୀ—ଏଥିରେ ପ୍ରଶଂସାର ବିଷୟ କଣ ଅଛି, ମା ? ଏହା ଯେ ଆମ୍ଭମାନଙ୍କର ନିତ୍ୟ ନୈମିତ୍ତିକ କର୍ମ—ସହଚରୀଗଣ ! ଯୁବାଙ୍କୁ ସଯତ୍ନରେ ଧାରଣ କରି ଆନୟନ କର ।

[ ଦୁଲ୍ଅଙ୍କୁ ଦାସୀମାନେ ଧରିଲେ ]

ଦୁଲ୍ଅ—କିଛି ପ୍ରୟୋଜନ ନାହିଁ, ମା ! ମୋର କୌଣସି କଷ୍ଟ ହେଉନାହିଁ—ମୁଁ ବେଶ୍ ଚାଲି ପାରିବି ।

[ ସମସ୍ତଙ୍କର ଦୁର୍ଗମଧ୍ୟେ ପ୍ରବେଶ ]

## ଚତୁର୍ଥ ଦୃଶ୍ୟ

—ଶିବିର—

[ ମୁକୁନ୍ଦଦେବ ଓ ସୁଲେମାନ କଥା ହେଉଥିଲେ ]

ମୁକୁନ୍ଦଦେବ—ନବାବ୍ ସାହେବ ! ମୁଁ ରହମତର ପତ୍ରରୁ ସମସ୍ତ ବୁଝି ପାରିଛି—ଏ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର । ସେମାନଙ୍କର ଗୁପ୍ତ-ଅଭିପ୍ରାୟ, ଆପଣଙ୍କୁ ଶତ୍ରୁ ହସ୍ତରେ ନିପାତିତ କରି ରାଜ୍ୟରୁ ବଞ୍ଚିତ କରିବା—ଆଜ ମୋତେ ସମ୍ମାନ ଓ ଜୀବନରୁ ବଞ୍ଚିତ କରିବା । ଆପଣ ତ ଆମୂଳଚୂଳ ସମସ୍ତ ଶୁଣିଲେ—

ସୁଲେମାନ—ବର୍ତ୍ତମାନ ଉପାୟ ?

ମୁକୁନ୍ଦଦେବ—ଆପଣଙ୍କ ନିଜ ବିଷୟରେ କିଛି ଚିନ୍ତା ନାହିଁ—ଯେତେବେଳ ପର୍ଯ୍ୟନ୍ତ ମୁଁ ଜୀବିତ ଅଛି, ଆପଣଙ୍କର ରାଜ୍ୟପ୍ରାପ୍ତି ନିଃସନ୍ଦେହ । ବର୍ତ୍ତମାନ ମୁଁ ସନ୍ଧିସର୍ତ୍ତି ଜଣାଇବା ନିମନ୍ତେ ଓ କଳାଲର ବିଶ୍ୱାସଘାତକତା ସମ୍ବନ୍ଧେ ବାଦ୍‌ସାହଙ୍କୁ ପତ୍ର ଲେଖିଛି—ତାଙ୍କର ଉତ୍ତର ଆସିବା ଯାଏ ଆମ୍ଭମାନଙ୍କୁ ଏହିଠାରେ ଅବସ୍ଥାନ କରିବାକୁ ହେବ ।

ସୁଲେମାନ୍—କିନ୍ତୁ, ଆପଣଙ୍କୁ ଖୁବ୍ ସାବଧାନଭାବରେ ରହିବାକୁ ହେବ, ମହାରାଜ—କାରଣ ମୋଗଲ ଓ ପଠାଣ ସୈନ୍ୟ ବର୍ତ୍ତମାନ ଏକତ୍ର—ଆପଣଙ୍କର ସୈନ୍ୟସଂଖ୍ୟା ମଧ୍ୟ ଅତି ଅଳ୍ପ ।

ମୁକୁନ୍ଦଦେବ—ସଂଖ୍ୟାରେ ବେଶୀ କିଛି ଆସେ ଯାଏ ନାହିଁ, ନବାବ ସାହେବ ! ଅଳ୍ପ ସୈନ୍ୟ ହେଉନ୍ତୁ ପଛକେ, ସେମାନେ ଯେବେ ହୃଦୟଙ୍ଗମ କରନ୍ତି ଯେ, ସେମାନେ ନ୍ୟାୟଯୁଦ୍ଧ କରୁଛନ୍ତି, ତାହା-ହେଲେ ସେହି ପରିମିତ ସୈନ୍ୟଦ୍ୱାରା ଯେଉଁ କାର୍ଯ୍ୟ ସାଧିତ ହେବ, ତାହା ଅପରିମିତ ସୈନ୍ୟଦ୍ୱାରା ମଧ୍ୟ ହେବା ଅସମ୍ଭବ । ପରନ୍ତୁ—କଳାଲର ଛଳ କୌଶଳ ମୋତେ ବେଶ୍ ଜଣାଅଛି—ରହମତ୍‌ର ଯାହା କିଛି ବିଦ୍ୟାବୁଦ୍ଧି ସମସ୍ତ ଆପଣଙ୍କଠାରୁ ଶୁଣିଲି; ତେଣୁ ସେଥିସକାଶେ ମୁଁ ବେଶୀ ଚିନ୍ତିତ ନୁହେଁ । ଆପଣ ବର୍ତ୍ତମାନ ବିଶ୍ରାମ କରନ୍ତୁ—ରାତ୍ର ଅନେକ ହୋଇଗଲାଣି ।

ସୁଲେମାନ୍—ଆପଣ ନିଦ୍ରା ଯିବେ ନାହିଁ ?

ମୁକୁନ୍ଦଦେବ – ମୋ ବିଷୟରେ କୌଣସି ଚିନ୍ତା କରନ୍ତୁ ନାହିଁ, ନବାବ ସାହେବ । ( ଗମନୋଦ୍ୟତ )

ସୁଲେମାନ—ଆଲୋକ ତେବେ ଲିଭାଇ ଦେଉଛି ?

ମୁକୁନ୍ଦଦେବ—ଆପଣଙ୍କର ଯେବେ କୌଣସି କଷ୍ଟ ନ ହୁଏ, ସ୍ୱଚ୍ଛନ୍ଦରେ ଲିଭାଇ ଦେଇ ପାରନ୍ତି—ବରଂ ଏହା ପ୍ରୟୋଜନ ।

ସୁଲେମାନ୍—ଅଭିବାଦନ, ମହାରାଜ ।

ମୁକୁନ୍ଦଦେବ—ଅଭିବାଦନ, ନବାବ ସାହେବ ।

( ମୁକୁନ୍ଦ ଦେବଙ୍କର ପ୍ରସ୍ଥାନ )

ସୁଲେମାନ୍—ମନୁଷ୍ୟର ଭାଗ୍ୟ ପରିବର୍ତ୍ତନ ଏହିପରି । କେତେବେଳେ ରାଜ-ସିଂହାସନରେ—ସୁଖର ଚରମସୀମାରେ; କେତେବେଳେ ଭଗ୍ନ-ଶଯ୍ୟାରେ—ଦୁଃଖର ଚରମ ସୀମାରେ । ବିଚିତ୍ର, ଚିନ୍ତାତୀତ, ସ୍ୱପ୍ନାତୀତ ପରିବର୍ତ୍ତନ । ମନୁଷ୍ୟ ଭାବିଥାଏ ଏକ ପ୍ରକାର, କାର୍ଯ୍ୟରେ ହୁଏ ଅନ୍ୟ ପ୍ରକାର !—ଭାବିଥିଲି, ଯୁଦ୍ଧ ଜିଣିବି—ସ୍ୱାଧୀନ ନବାବ ହେବି—ସ୍ୱାଧୀନ ରାଜ୍ୟ ଭୋଗିବି; କାର୍ଯ୍ୟରେ ହେଲା କ'ଣ ନା—ପରାଜିତ, ପରାଧୀନ, ବନ୍ଦୀକୃତ, ସାମାନ୍ୟ ତୃଣଶଯ୍ୟାର ମଧ୍ୟ ଅନଧିକାରୀ—ହାୟ ! କି ଦାରୁଣ ପରିବର୍ତ୍ତନ । ଆଜ ଯେ ଭାବି ପାରୁ ନାହିଁ—ଦୁଲିଆ ! ଦୁଲିଆ ! ତାହାଁ ଗଲ୍ ମା ? କଳାପାହାଡ଼ ! କଳାପାହାଡ଼ ! କେଉଁ ଆଡ଼େ ନିରୁଦ୍ଦେଶ ହୋଇଗଲ ? ତାହାଁଙ୍କ ଏପରି ଭାବରେ ଚାଲିଗଲ ? ତୁମର ମନ୍ତ୍ରଣା ରଖିଲି ନାହିଁ ବୋଲି କଣ କ୍ରୋଧଭରେ ମୋତେ ପରିତ୍ୟାଗ କରି ଚାଲିଗଲ ? ତୁମ୍ଭେ ଥିଲେ କି—ତୁମ୍ଭର କଥା ଶୁଣିଥିଲେ କି—ରହମତ୍—ପାପିଷ୍ଠ, ନାରକୀ ଆଜି ମୋର ଏହି ଦଶା କରିଥାନ୍ତା ?—ବଙ୍ଗଳାର

ନବାବ୍ ଆଜି ସାମାନ୍ୟ ବନ୍ଦୀ ଭାବରେ ଭୂତଳ-
ଶାୟୀ ହୋଇଥାନ୍ତା ? ଉଃ ! ଭାବ ଭାବ ମୁଣ୍ଡ ଯେ
ମୋର ଖାର୍ ହୋଇ ଗଲାଣି । (ଶୟନ)

[ ଅବ୍ଦୁଲାର ପ୍ରବେଶ ]

ଅବଦୁଲା—ଏହି ତ ମୁକୁନ୍ଦଦେବର ତମ୍ବୁ—ଉଃ କି
ଅନ୍ଧାର ! କାହିଁ ? କେଉଁଠି ଶୋଇଛି ?—
ଦୁଲିଆ ! ତୁ ପରା ସେଦିନ ନରହନ୍ତା ବୋଲି
ଗୋଇଠାମାର ଦଣ୍ଡ ଦେଇଥିଲୁ ? —ଆଜି ଦେଖ୍,
ସେନାପତି କପଟ ମୋ ସଙ୍ଗେ ସାଦ ଦେବେ
ବୋଲି ତୋତେ କଏଦ୍ ଖାନାରେ ରଖିଛି—
ଟଙ୍କା ବ ବନ୍ଦୀ ହୋଇଛନ୍ତି ? ଭଲ ହୋଇଛି—
କିନ୍ତୁ, ମନଟା ମୋର କେମିତି ହେଉଛି,
କାହିଁକି ?—ରହମତ୍ କହୁଛି, ମୁଁ ହେବ
ବାଦ୍ସାହା—ଦୁଲିଆ ହେବ ବେଗମ୍—ନା, ନା,
ମୁଁ ହେବ ବେଗମ୍—ଦୁଲିଆ ହେବ ବାଦ୍ସାହା;
ଅର୍ଥାତ୍ ଦୁଲିଅ ବାଦ୍ସାହା ପରି ହୁକୁମ୍ ଦେବ,
ମୁଁ ବେଗମ୍ ପରି ତାମିଲ୍ କରିବି । ବାଃ—ବାଃ
କେଡ଼ୁ ମଜା—ଲାଓ ସିରାଜ—ହୁକ, ହୁକ,
କାମଟା ଆଗେ ଫତେହେଉ—କାହିଁ ? କେଉଁଠି
ଶୋଇଛି ?—ଏହି ଯେ ନାକ ଡାକୁଛି—ଆଉ
ଡେରିରେ କାମ ନାହିଁ ।

( ବକ୍ଷସ୍ଥଳରେ ଛୁରୀକାଘାତ କଲା )

ସୁଲେମାନ୍—ଉଃ—ଜାନ୍ ଗିୟା, ଜାନ୍ ଗିୟା—
ଅବ୍ଦୁଲା—କିଏ ? କିଏ ?—କାହାର କଣ୍ଠସ୍ୱର ?
ସୁଲେମାନ୍—ଉଃ—ଦୁ – ଲିଆ—
ଅବ୍ଦୁଲା—କିଏ ? କିଏ ?—ଟଙ୍କା ?
ସୁଲେମାନ୍—କିଏ ତୁହି ? କାହାର ସ୍ୱର ? ଅବ୍ଦୁଲ ?
ଅବ୍ଦୁଲା—ଟଙ୍କା ! ଟଙ୍କା ! ମୁଁ କଣ କଲି ?

( ଆଲିଙ୍ଗନ କଲା )

ସୁଲେମାନ୍—ଅବ୍ଦୁଲ୍ ! ଅବ୍ଦୁଲ୍ ! (ଆଲିଙ୍ଗନ କରି)
ତୁ ଠିକ୍ କରିଛୁ—ମୁଁ ଜାଣେ, ତୁ ମୁକୁନ୍ଦକୁ
ମାରିବାକୁ ଆସିଥିଲୁ; କିନ୍ତୁ ଠିକ୍ ହୋଇଛି—
ମୋର ସ୍ୱପ୍ନ ଆଜି ସତ୍ୟ ହୋଇଛି—ମୋର ପାପର
ଆଜି ପ୍ରାୟଶ୍ଚିତ୍ତ ହୋଇଛି । ଶୁଣ, ବେଟା ! ମୋର
ପାପ-କାହାଣୀ ଆଜି ଶୁଣ—ମୋତେ ଶାନ୍ତିରେ
ମରିବାକୁ ଦେ—
ଅବ୍ଦୁଲା—ଟଙ୍କା ! ଟଙ୍କା !
ସୁଲେମାନ୍—ଶୁଣ୍, ଶୁଣ୍ ବେଟା—ମୋର ଶକ୍ତି ଯେ
କ୍ଷୀଣୁ କ୍ଷୀଣତର ହୋଇ ଆସୁଅଛି !—ତୁ ମୋର
ଜ୍ୟେଷ୍ଠଭାଇର ଏକମାତ୍ର ବେଟା, ଆଉ ଦୁଲିଆ
ଏକମାତ୍ର ବେଟୀ—ତୋର ଅଳ୍ପ ବୟସରେ
ପିତୃବିୟୋଗ ଘଟିଲା—ମୁଁ ତୋର ଅଭିଭାବକ
ହେଲି; ମାତ୍ର ରାଜ୍ୟଲାଳସାରେ ତୋତେ ଅପଗଣ୍ଡ
କଲି—ତୁ ପ୍ରାପ୍ତବୟସ୍କ ହେଲାବେଳେ ରାଜ୍ୟରେ
ରାଷ୍ଟ୍ର କରିଦେଲି, ତୁ ପାଗଳ—ସୁତରାଂ ମୋର ଆଶା
ପୂର୍ଣ୍ଣ ହେଲା—ଦୁଲିଆକୁ ପିଲାଟି ଦିନରୁ କନ୍ୟାତୁଲ୍ୟ
ଦେଖି ଆସୁଥିବାରୁ, ଦୁଲିଆ ଜାଣୁଥିଲା, ମୁଁ ତାର
ଜନ୍ମଦାତା—ତୁ ମଧ୍ୟ ସେଇୟା ଜାଣୁଥିଲୁ—
ଅବ୍ଦୁଲା—ଦୁଲିଆ ମୋର ସହୋଦରା ଭଗିନୀ ?—
ଟଙ୍କା ! ଟଙ୍କା ! ଉଃ, କି ପାଷଣ୍ଡ ମୁଁ ? ଟଙ୍କା !
ଟଙ୍କା !—ରହମତ୍—
ସୁଲେମାନ୍—ବୁଝିି ପାରୁଛି ବେଟା—ରହମତ୍‌ର
ଶିକ୍ଷାରେ ହିଁ ତୁ ଏ କାମ କରିବାକୁ ଆସିଥିଲୁ
—କିନ୍ତୁ ସାବଧାନ । ବିଶ୍ୱାସଘାତକ—ବିଶ୍ୱାସ-
ଘାତକ ସେ—ତାକୁ ଆଉ ଯେପରି ବିଶ୍ୱାସ ନ
କରୁ !—ବର୍ତ୍ତମାନ ମୋର ଉପଦେଶ,
କଳାପାହାଡ଼ର ସନ୍ଧାନ କର—ଦୁଲିଆର ସନ୍ଧାନ
କର—ସ୍ୱରାଜ୍ୟ ଉଦ୍ଧାର କର !
ଅବ୍ଦୁଲା—ଟଙ୍କା ! ଟଙ୍କା ! ଉଃ ! ମୁଁ କି କାମ କଲି ?
ରହମତ୍—ରହମତ୍ ! ଦେଖାଇବି—ଦେଖାଇବି,
ଅବ୍ଦୁଲ କପଟ ନରପିଶାଚ ! କପଟ ନରହନ୍ତା !
ଦୁଲିଆ—ଦୁଲିଆ ! ମୋତେ ଭାଇବୋଲି କ୍ଷମା
କର !—ଟଙ୍କା ! ଟଙ୍କା ! ମୋତେ ଅଯୋଗ୍ୟ
ସନ୍ତାନ ବୋଲି କ୍ଷମା କର !
ସୁଲେମାନ୍—ପୁତ୍ର ମୋର ! କ୍ଷମାଭିକ୍ଷାର ପ୍ରୟୋଜନ
ନାହିଁ—ଏହା ଦୈବଦଣ୍ଡ—ଏହା ମୋର ପାପର
ପ୍ରାୟଶ୍ଚିତ୍ତ—ତୋର କୌଣସି ଦୋଷ ନାହିଁ ।
ଆଜଠୁଁ ମୋର ଛୁଟି—ତୋର ହେତୁ ଆଜଠୁଁ
ଏ ପାପଭାରରୁ ମୁଁ ମୁକ୍ତ । ଦୁଲିଆ—ଦୁଲିଆ —

କଳାପାହାଡ଼—କଳାପାହାଡ଼ । ବଡ଼ ଦୁଃଖ ଅନ୍ତିମକାଳରେ ତୁମ୍ଭମାନଙ୍କୁ ଥରେ ଦେଖିପାରିଲି ନାହିଁ; କିନ୍ତୁ ବଡ଼ ଆନନ୍ଦ ଯେ, ଅବ୍ଦୁଲ୍‌କୁ କୋଳରେ ପାଇଛି ।—ଅବ୍ଦୁଲ୍ ! ଜୀବିତା-ବସ୍ଥାରେ ତୋତେ କେବେ ଆଦର କରିନାହିଁ—ମରଣ କାଳରେ ଥରେ ଆଲିଙ୍ଗନ କରି ମନତୃପ୍ତ କରେ—ପ୍ରାଣ ଶୀତଳ କରେ । ( ଅବ୍ଦୁଲ୍‌କୁ ଆଲିଙ୍ଗନ କଲେ ) ଅ—ବ୍—ଦୁ—ଲ—କ—ଳା—ପା—ହା—ଡ଼ । ( ମୃତ୍ୟୁ )

ଅବ୍ଦୁଲ୍—ଚାଚା ! ଚାଚା ! ନା, ନା ଯାଅ ଚାଚା—ସେହି ଅମରଧାମକୁ ଚାଲିଯାଅ, ଗ୍ରହତାରାଙ୍କ ସଙ୍ଗେ ଆଉ ଗୋଟିଏ ଉଜ୍ଜ୍ୱଳ ଗ୍ରହରୂପେ ସେଠାରେ ଜ୍ୱଳି ଉଠ—ମୁଁ ସେହି ସମୁଜ୍ଜ୍ୱଳ ଆଲୋକାଗାରରୁ ଆଲୋକରଶ୍ମି ଗ୍ରହଣ କରି—ସେହି ମହାଶକ୍ତ୍ୟାଧାରରୁ ଶକ୍ତିଧାରା ଗ୍ରହଣ କରି, ଜୀବନପଥରେ ଅଗ୍ରସର ହୁଏଁ—ଆଦିଷ୍ଟ କର୍ମ-ସାଧନରେ ପ୍ରବୃତ୍ତ ହୁଏଁ ।—ବହ୍ମମଭ୍—ବହ୍ମମଭ୍ ! ପାପିଷ୍ଠ ! ନାରକୀ ! ତୋର ଶିକ୍ଷାଦାନ, ତୋର ମନ୍ତ୍ରଣାଦାନ—ତୋତେହିଁ ଆଜି ଦାନ କରିବି, ତୋରଠାରେ ଆଜି ପରୀକ୍ଷା କରିବି । ଆସ ଚାଚା—( ଶବ ଗ୍ରହଣ କରି ) ତୁମ୍ଭର ପବିତ୍ର ଶରୀର ଆଉ କାହାରିକୁ ସ୍ପର୍ଶ କରିବାକୁ ଦେବି ନାହିଁ—ସ୍ୱ-ସ୍କନ୍ଧରେ ବହନ କରି ଏହି ପୃଥିବୀର ପବିତ୍ର ଗର୍ଭରେ ଚିରନ୍ଦନପାଇଁ ଶାୟିତ କରି-ଦେବି—ତା’ ପରେ, କର୍ତ୍ତବ୍ୟପାଳନ—ପ୍ରତିଶୋଧ—ଅନୁସନ୍ଧାନ—ଶତ୍ରୁନିପାତ—( ପ୍ରସ୍ଥାନ )

[ ମୁକୁନ୍ଦଦେବଙ୍କର ବେଗେ ପ୍ରବେଶ ]

ମୁକୁନ୍ଦଦେବ—ନବାବ୍ ସାହେବ ! ଉଠନ୍ତୁ—(ସ୍ୱଗତଃ) ଯା ଦେଖିଲି, ଏଠାରେ ରହିବା ଆଦୌ ଶ୍ରେୟସ୍କର ନୁହେଁ । ଏବେ ମୋଗଲ ଓ ପଠାଣ ସୈନ୍ୟ ମିଶି ମୋର ସୈନ୍ୟର ତିନିଗୁଣ ହେବ—ତହିଁରେ ବିଶ୍ୱାସଘାତକମାନେ, ସେମାନଙ୍କ ମନରେ ଏହି ମିଥ୍ୟାଭାବ ଜାଗ୍ରତ କରାଇ ଦେଇଛନ୍ତି, ମୁଁ ଜଣେ କାଫେର୍, ଆସିଛି ମୁସଲମାନମାନଙ୍କ ଉପରେ ଅତ୍ୟାଚାର କରିବାକୁ—ସୁତରାଂ ସେମାନେ ଯେ ଖୁବ୍ ଉତ୍ସାହର ସହିତ ଯୁଦ୍ଧ କରିବେ, ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଏପରି ଅବସ୍ଥାରେ ମୋର ଲୋକକ୍ଷୟ ଛଡ଼ା ଅନ୍ୟ କିଛି ହିଁ ଫଳ ଦେଖୁନାହିଁ । ମୋତେ ନିଜେ ଦିଲ୍ଲୀ ଯିବାକୁ ହେବ—ସମସ୍ତ କଥା ଜଣାଇ ଅଧିକ ସୈନ୍ୟ ଆଣିବାକୁ ହେବ । (ପ୍ରକାଶ୍ୟେ) ନବାବ୍ ସାହେବ୍ ! ଉଠନ୍ତୁ—ନବାବ୍ (ଦେଖି)—ଏ କଣ ? ନବାବ୍ କାହାନ୍ତି ? ବନ୍ଦୀ କାହିଁ ? ବନ୍ଦୀ କି ପଳାୟିତ ?—ଦ୍ୱାରରକ୍ଷକ !

[ ଦ୍ୱାରରକ୍ଷକର ଆଖି ମଳି ମଳି ପ୍ରବେଶ ]

ଦ୍ୱାରରକ୍ଷକ—ମହା—

ମୁକୁନ୍ଦଦେବ—ବନ୍ଦୀ କାହିଁ ?

ଦ୍ୱାରରକ୍ଷକ—ବନ୍ଦୀ ? ଏ—ହି—( ଦେଖି, ସ୍ୱଗତ ) ବନ୍ଦୀ କାହିଁ ? (ପ୍ରକାଶ୍ୟେ) ମହାରାଜ !

ମୁକୁନ୍ଦଦେବ—ବନ୍ଦୀ କାହିଁ ?

ଦ୍ୱାରରକ୍ଷକ—ଦୋହାଇ ମହାରାଜ ! ଏ ଅଧିନ କ୍ଳାନ୍ତି ହେତୁ ଶୋଇପଡ଼ିଥିଲା ।

ମୁକୁନ୍ଦଦେବ—କଣ କହିଲୁ ? କ୍ଳାନ୍ତି ହେତୁ ଶୋଇ ପଡ଼ିଥିଲୁ !—ଓଡ଼ିଆ ମୁଖରେ ଆଜି ‘କ୍ଳାନ୍ତି’ ପଦ ଉଚ୍ଚାରଣ—ଓଡ଼ିଆ ମୁଖରେ ଆଜି ‘ଶୟନ’ ପଦୋଚ୍ଚାରଣ !—ଏହି କି ସେହି ଓଡ଼ିଆ, ଯାହାଙ୍କ ବଳରେ ବିପୁଳ ଓଡ଼ିଶାଖଣ୍ଡ ଆଜିପର୍ଯ୍ୟନ୍ତ ଦୁର୍ଦ୍ଧାନ୍ତ ମୋଗଲ ପଠାଣର ମହାକରାଳ ଗ୍ରାସରୁ ସୁରକ୍ଷିତ ? ଏହି କି ସେହି ଓଡ଼ିଆ, ଯାହାଙ୍କ ଧମନୀରେ ଗୌରବମଣ୍ଡିତ କେଶରୀ-ଗଙ୍ଗବଂଶର ଉତ୍ତପ୍ତ ରକ୍ତପ୍ରବାହ ଅଦ୍ୟାପି ଧାବିତ ?—ତେବେ—ତେବେ ଆଜି ଏ କି ପରିଚୟ ? ନିଜର ବିବେକ ସମ୍ମୁଖରେ—ଅପର ଜାତି ସମ୍ମୁଖରେ—ସମଗ୍ର ଜଗତ୍ ସମ୍ମୁଖରେ, ଆଜି ନିଜର ଜାତୀୟ ଗୌରବର ଏ କି ପରିଚୟ ?—ଜାଗରଣ ସମୟରେ ନିଦ୍ରା—କର୍ତ୍ତବ୍ୟ ସମୟରେ ଆଳସ୍ୟ—ଯୁଦ୍ଧ ସମୟରେ ଅବସାଦ !—କି ପତନ ! କେଶରୀ-ଗଙ୍ଗବଂଶୀୟ ଓଡ଼ିଆର କି ଅଧଃପତନ !

ଗ୍ରହ ତାରା ! ଆଜ ତୁମ୍ଭର ସମୁଜ୍ଜ୍ୱଳ ଆଲୋକରେ କଣ ଦେଖାଇଲ ? ସମୀରଣ ! ଆଜ ତୁମ୍ଭର ଗମ୍ଭୀର ହିଲ୍ଲୋଳରେ କଣ ଶୁଣାଇଲ ? ଓଡ଼ିଆର 'ଲକ୍ଷ୍ମୀ'—ଓଡ଼ିଆର 'ଶଯ୍ୟନ'—ପୂର୍ବ ଜାତୀୟ-ଗୌରବର କି ଆଜଠାରୁ ଅବସାନ ? ପୂର୍ବ-ପ୍ରତିଷ୍ଠିତ ମାତୃ-ପୂଜାର କି ଆଜଠାରୁ ଶେଷ ?—ଏ କଣ ଶୁଣୁଛି ?—ଏ କଣ ଦେଖୁଛି ?—ଗଗନ ଭାଲରେ ଏ କି ଭୀଷଣ ଶବ୍ଦ ଉଚ୍ଛ୍ୱାସିତ ହୋଇ ଉଠୁଛି ?—ପବନ ହିଲ୍ଲୋଳରେ ଏ କି ଆର୍ତ୍ତନାଦ ଭାସି ଆସୁଛି ?—ଓଡ଼ିଆର ଜାତୀୟତା, ନୀଳାଚଳର ଅତଳ ସମୁଦ୍ରଗର୍ଭରେ ନିମଜ୍ଜିତ—ଓଡ଼ିଆର ସ୍ୱାଧୀନତା, ଦଶାଶ୍ୱମେଧଘାଟର ପ୍ରସ୍ତରଖଣ୍ଡ ପରି ଚୂର୍ଣ୍ଣୀଭୂତ ॥

( ନେପଥ୍ୟେ ସୈନ୍ୟଗଣ )—ମହାରାଜ ! ମହାରାଜ !

ମୁକୁନ୍ଦଦେବ—ଜାଗ, ଜାଗ ମୁକୁନ୍ଦ ଦେବ ! ପ୍ରାଣର ଶେଷ ବାୟୁ ନିର୍ଗତ ହେବା ପର୍ଯ୍ୟନ୍ତ ଓଡ଼ିଆର ଗୌରବ—ଓଡ଼ିଆର ସ୍ୱାଧୀନତା ରକ୍ଷା କର !

( ବେଗେ ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

—ଜଗନ୍ନାଥଙ୍କ ମନ୍ଦିର ସମ୍ମୁଖ—

[ କଳାପାହାଡ଼ ଓ ପଣ୍ଡିତଗଣ ]

କଳାପାହାଡ଼—ପ୍ରଭୁ ! ପ୍ରଭୁ ! କେତେଦିନେ ଆଉ ଏ ପାପ-ଜୀବନ ପ୍ରତି ଦୟା ହେବ ? ଡାକି ଡାକି ଦେହରୁ ରକ୍ତ ଶୁଖି ଗଲାଣି—ହୃଦୟରୁ ତେଜ କମିଗଲାଣି—ଆଉ ଯେ ଡାକି ପାରୁ ନାହିଁ, ପ୍ରଭୋ ! ଦେଖା ଦିଅ, ପତିତପାବନ ! ଦୀନ ପ୍ରତି ଦୟା କର ଦୀନନାଥ !

୧ମ ପଣ୍ଡିତ—ରେ ଯବନ ! କାହିଁକି ବୃଥାରେ ଏଠି ପଡ଼ିଛୁ—ଏ'ତ ଆଉ ଗିର୍ଜା ନୁହେଁ କି ମସ୍‌ଜିଦ୍ ନୁହେଁ ଯେ, ବାଇବଲ ଗୋଟାଏ ଗୋଲ, ସବୁ ଏକାକାର ହୋଇଯିବେ ?

କଳାପାହାଡ଼—ମହାଶୟ, ମୁଁ ତ ହିନ୍ଦୁ ଥିଲି—ଚୈତନ୍ୟଦେବ ଯେ ଯବନକୁ ମଧ୍ୟ ହିନ୍ଦୁ କରିଥିଲେ ।

୨ୟ ପଣ୍ଡିତ—ଅହେ, ଚୈତନ୍ୟ ଦେବଙ୍କ କଥା ଯେ କହିଲ, ସେ କ'ଣ ଆମ ପରି ବାଲ୍‌ବଚ୍ଚାବାଲା ଥିଲେ ?—ଲଙ୍ଗୁଳିଦାସ—ତୁମେ ଖିରସ୍ତାନ ହେଲେ କେତେ, ମୁସଲମାନ ହେଲେ କେତେ—ତାଙ୍କର ତ ଆଉ ଜାତିପତିକୁ ଭୟ ନ ଥିଲା ? ପୁଣି ଦେଖ, ମୁକ୍ତି ମଣ୍ଡପର ସଭ୍ୟମାନେ କାହାର ବେଠିଆ ଭଣ୍ଡାରି ନୁହନ୍ତି ଯେ, ଖାଲି ଖାଲି ସବୁ କରି ମୀମାଂସାଟାଏ କରିଦେବ ? କିଛି ପକାଅ—କିଛି ବାହାର କର—ତୁମେ ତ ଆଉ ନ ଥିଲା ଘରର ଲୋକ ନୁହେଁ ?

କଳାପାହାଡ଼—ପ୍ରଭୋ ! ପ୍ରଭୋ ! ଏ କ'ଣ ଶୁଣାଉଛନ୍ତି ? ଏ ପାପ କର୍ଣ୍ଣକୁ ପୁଣି କଳୁଷିତ କରୁଛନ୍ତି କାହିଁକି ?—ପବିତ୍ର ହିନ୍ଦୁଧର୍ମକୁ ଏପରି ଭାବରେ ନିନ୍ଦିତ କରୁଛନ୍ତି କାହିଁକି ?

୨ୟ ପଣ୍ଡିତ—ଭାରି ଧର୍ମଭାବ ତ ? ଗୁଲ୍‌ହେ—ଏଠି ଛିଡ଼ା ହେଲେ କ'ଣ କିଛି ମିଳିବ ? ମଣ୍ଡପରେ ବସିଥିଲେ, ଏତେବେଳକୁ ଦୁଇ ପଇସା ହୋଇ ଯାଆନ୍ତାଣି ।

୧ମ ପଣ୍ଡିତ—ଦେଖ୍ ଯବନ ! ତୋର ଆଉ ଏଠି ପଡ଼ି ରହିବାର କିଛି ଦରକାର ନାହିଁ । ଥରେ ଯେ ହିନ୍ଦୁଧର୍ମ ତ୍ୟାଗ କଲା, ପୁନର୍ବାର ଗ୍ରହଣ କରିବାର ତାର ଅଧିକାର ନାହିଁ ।

କଳାପାହାଡ଼—ଏଡ଼େ ନିଦାରୁଣ ଏହି ଧର୍ମ ! ନା, ମହାଶୟଗଣ—ଆଉ ଥରେ ସରଳହୃଦୟରେ ବିଚାର କରି ଦେଖନ୍ତୁ—ଏ' ପାପୀ ବକ୍ଷସ୍ଥଳରେ ହାତ ଦେଇ କହୁଛି—ଏ' ପାତକୀ ଚକାଡୋଳାଙ୍କ ପବିତ୍ର ନାମୋଚ୍ଚାରଣ କରି କହୁଛି, ଏ ଅକିଞ୍ଚନ ଯଥାର୍ଥ ହିଁ ଅନୁତପ୍ତ—ଏ' ଦୋଷୀ ତାହାର ପାପ ପାଇଁ ଯେ କୌଣସି ଦଣ୍ଡାଦେଶ ପାଳନ କରିବାକୁ ପ୍ରସ୍ତୁତ;—ଥରେ ମାତ୍ର ଦୟା କରି ଅନୁମତ ଦିଅନ୍ତୁ—ଥରେ ମାତ୍ର ମାର୍ଜନା କରି

ଆଜ୍ଞା କରନ୍ତୁ, ଏ ଅଧମ ପୁନର୍ବାର ତା'ର ଦରିଦ୍ର ମାତାର ଚରଣ ସେବା କରି ପାରିବ—ଏ ଭାଗ୍ୟହୀନ ପୁନର୍ବାର ତାର ସତୀ ସ୍ତ୍ରୀର ଆଲିଙ୍ଗନ ଲାଭ କରି ପାରିବ—

୨ୟ ପଣ୍ଡିତ—ଆହେ, ଶୁଣିଲ ହେ—କ'ଣ କଥାଟା ଶୁଣୁଛ ? ଏ ବେହିପୁଅ କଣ କହୁଛି ବାହାର କରିବ ଯେ, ଏତେ ଶୁଣିବା ?

କଳାପାହାଡ଼—ଆପଣ କଣ ପଣ୍ଡିତ ନୁହନ୍ତି ? ପଣ୍ଡିତଙ୍କର କି ଏହା ଯୋଗ୍ୟ ଆଚରଣ ?

୨ୟ ପଣ୍ଡିତ—ଆହେ, ଶୁଣ ହେ—ଏ ଲୁଆଡ଼େ ପଣ୍ଡିତ ? ଅରେ ବେହିପୋ । ଆମେ ପଣ୍ଡିତ ନୋହୁଁ, କଣ ତୁ ପଣ୍ଡିତ ? ଟଙ୍କା ଫଙ୍କା—ଅସର୍ଫି ଫଙ୍କା—ଦେଖିବୁ, ପଣ୍ଡିତପଣିଆ ବାହାରିବ କି ନାହିଁ ? ଶାସ୍ତ୍ରରୁ ପ୍ରାୟଶ୍ଚିତ୍ତ ବିଧାନ ବାହାରିବ କି ନାହିଁ ?

କଳାପାହାଡ଼—ବିଗ୍ରହର ଉତ୍କୋଚ ଉପରେ ନିର୍ଭର କରେ, ବିବେକ ଉପରେ ନୁହେଁ—ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅର୍ଥ ଉପରେ ନିର୍ଭର କରେ, ଅନୁତାପ ଉପରେ ନୁହେଁ ? ଏହି କି ସେହି ହିନ୍ଦୁଧର୍ମ—ଏହି କି ସେହି ସର୍ବପୁରାତନ, ନାନାଶାସ୍ତ୍ରାଲଂକୃତ, ନାନା ଅବତାର ପରିଶୋଭିତ ହିନ୍ଦୁଧର୍ମ ? ଏହାର ପରିଣାମ ଏହି ?—ଅସମ୍ଭବ—ଅସମ୍ଭବ—ପ୍ରଭୋ । ପ୍ରଭୋ । ପରୀକ୍ଷା ରଖନ୍ତୁ—ଦୀନ ପ୍ରତି ଦୟା କରନ୍ତୁ—ଦୁର୍ଭାଗ୍ୟ ପ୍ରତି ପ୍ରସନ୍ନ ହୁଅନ୍ତୁ ।

୨ୟ ପଣ୍ଡିତ—ଯବନ ତ ବେଶ୍ ଭକ୍ତ । ଯବନ ତ ବେଶ୍ ଶାସ୍ତ୍ର ଜାଣେ ।

୧ମ ପଣ୍ଡିତ—ଆହେ ଶୁଣିଲ ହେ । ଯବନଟାର ମୁହଁ ରୋଜ ସକାଳୁ ଦେଖିଲାଦିନୁ ରୋଜଗାରପତି ସବୁ ବନ୍ଦ—ଏଟାକୁ ତଡ଼ି ନ ଦେଲେ ଆଉ ମଙ୍ଗଳ ନାହିଁ । ଜଗୁଆଳମାନେ । ତୁମ୍ଭେମାନେ କଣ ଦେଖିପାରୁ ନାହଁ, ଗୋଟାଏ ଯବନ ଏଠି ମାସେ ହେଲା ପଡ଼ି ସିଂହଦ୍ୱାର ଅପବିତ୍ର କରି ଦେଲାଣି ?—ତୁମ୍ଭେମାନେ ଦ୍ୱାର ଜଗିଛ କଣ ?

୧ମ ଜଗୁଆଳ—ଆପଣମାନେ ପଣ୍ଡିତ ହୋଇ ଯେତେବେଳେ କିଛି ନ କହନ୍ତି, ଆମ୍ଭେମାନେ ମୂର୍ଖଲୋକ କିପରି ତଡ଼ି ଦେବୁ ? ପୁଣି ଶୁଣୁଥିଲୁ, ମୁକ୍ତିମଣ୍ଡପ ସଭାକୁ ସେ କଣ ଦରଖାସ୍ତ କରିଛି ?

୧ମ ପଣ୍ଡିତ—ଅରେ ଦରଖାସ୍ତ ନାମଞ୍ଜୁର ହୋଇଛି । ବର୍ତ୍ତମାନ ତଡ଼ିଦେଇ ପାର ।

୨ୟ ପଣ୍ଡିତ—ଦିଅ, ଏହିକ୍ଷଣି ତଡ଼ିଦିଅ—ବେହିପୁଅ ଭାରି ଗୁଳିକ—ଟଙ୍କା ଖରଚ ନ କରି, ମାମଲା ଫଇସଲ କରି ନେବ ।

କଳାପାହାଡ଼—ପ୍ରଭୋ । ପ୍ରଭୋ । ଏ ପାପୀ ବଡ଼ ଆଶା କରି ଆସିଛି, ନିରାଶ କରନ୍ତୁ ନାହିଁ—ଆପଣଙ୍କର ସେବାକାରୀଙ୍କୁ ସୁମତି ଦାନ କରନ୍ତୁ—ପାପୀକୁ ଉଦ୍ଧାର କରନ୍ତୁ ।

୧ମ ଜଗୁଆଳ—ଆହେ ଧର୍ମବୀର । ଉଠ—ରାସ୍ତା ଛାଡ଼ିଦିଅ ।

୨ୟ ପଣ୍ଡିତ—ଅରେ ସେ କଣ ଯାତ୍ରୀ ହୋଇଛି ଯେ, ମାଗିଲାଭଳି କଥା କହୁଛୁ । ବଜା ନା ବେହିପୁଅକୁ, ଅଚ୍ଛାକରି ଗୋଟା କେତେ—

୧ମ ଓ ୨ୟ ଜଗୁଆଳ—ମାର, ବେହିପୁଅକୁ—ମାର ମାର ବେହିପୁଅକୁ । (ମାରିବା)

କଳାପାହାଡ଼—ପ୍ରଭୋ । ପ୍ରଭୋ । ଏହି ଶାସ୍ତି କି ଆଦେଶ କଲେ ?—ଆପଣ କରୁଣାନିଧାନ ହୋଇ ଏହି ଦଣ୍ଡ କି ବ୍ୟବସ୍ଥା କଲେ ?—ହେଉ—ହେଉ, ଏହି ଦଣ୍ଡ ଏ ପାପୀ ସାନନ୍ଦେ ଉପଭୋଗ କରିବ—ଏହି ଶାସ୍ତି ଏ ଦୋଷୀ ସାନନ୍ଦେ ଗ୍ରହଣ କରିବ—ଏତକ ଯେବେ ଆଦେଶ କରନ୍ତି, ଏଥିରେ ଏ ପାପୀର ପ୍ରାୟଶ୍ଚିତ୍ତ ହେବ—ଏଥିରେ ଏ ସମାଜପତିତ ପୁନର୍ବାର ସମାଜରେ ପ୍ରବେଶ କରି ପାରିବ ।

୧ମ ପଣ୍ଡିତ—ଅରେ, ବେହିପୁଅ କଣ ଗାଳେଇଲାଣି ? ମୂର୍ଚ୍ଛାର ଭଳି ଶୋଇଲାଣି ? ଅରେ ଓଟାର ବାହାର କରରେ, ବେହିପୁଅକୁ ।

[ ମାରିବା ସମୟରେ ଦୁଲିଅର ପ୍ରବେଶ ]

ଦୁଲିଅ—ପ୍ରାଣେଶ୍ୱର । ପ୍ରାଣେଶ୍ୱର । ଏ କି ଦୁର୍ଗତି ।—ଏ କି ଭୀଷଣ ବ୍ୟାପାର । ( ଆଲିଙ୍ଗନ କଲେ )

୨ୟ ପଣ୍ଡିତ—ଅରେ, ବେହ୍ନପୁଅ ମାଇକିନିଆ ବି ଗୋଟାଏ ରହିଛି ରେ—ମାର, ମାର ବେହ୍ନପୁଅକୁ, ଅଚ୍ଛାକରି ମାର—ସେ ଛିଣ୍ଡାଳକୁ ବି ମାର ।

[ ପ୍ରହୃତ ହୋଇ ଦୁଲିଆ ମୂର୍ଚ୍ଛିତା ହେଲା । ଫିରୋଜାର ପ୍ରବେଶ ]

ଫିରୋଜା—ନରାଧମ ! ରାକ୍ଷସ ! ତୁମ୍ଭେମାନେ କରୁଛ କ’ଣ ?

୨ୟ ପଣ୍ଡିତ—ଆହୁରି ଗୋଟାଏ ରେ—ମାର୍—ମାର୍ । ( ପ୍ରହାର କଲେ )

[ ଗୋଲପର ପ୍ରବେଶ ]

ଗୋଲପ—ଏ କି ଅଦ୍ଭୁତ କାଣ୍ଡ ! ସ୍ୱୟଂ ନୀଳାଚଳନାଥଙ୍କ ସମ୍ମୁଖରେ ଏ କି ଅତ୍ୟାଚାର ! ନାରୀ ପ୍ରତି ଅତ୍ୟାଚାର—ଭକ୍ତ ପ୍ରତି ଅତ୍ୟାଚାର ? ଅସହ୍ୟ—ଅସହ୍ୟ !—ପଣ୍ଡାଗଣ ! ପଣ୍ଡିତଗଣ ! ଏହି କି ତୁମ୍ଭମାନଙ୍କର ଶାସ୍ତ୍ରାଲୋଚନାର ନିଦର୍ଶନ ? ଏହି କି ତୁମ୍ଭମାନଙ୍କର ଧର୍ମାଚରଣର ଉଦାହରଣ ? ଏହିପରି ଭାବରେ କି ତୁମ୍ଭେମାନେ ହିନ୍ଦୁ-ଧର୍ମର ମାହାତ୍ମ୍ୟ ବଢ଼ାଉଛ ? ଏହିପରି ଭାବରେ କି ତୁମ୍ଭେମାନେ ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରୁଛ ?—ଧିକ୍ ! ଶତ ଧିକ୍ ! ପଣ୍ଡିତ ମାନଙ୍କର ଆଜି ଏ କି ଜଡ଼ତା ?—ପଣ୍ଡା ମାନଙ୍କର ଆଜି ଏ କି ନୀଚତା ?—ହେ ଆର୍ଯ୍ୟ ! ହେ ଧର୍ମଭୀରୁ ! ନିବୃତ୍ତ ହୁଅ—ଅନୁତାପ କର—କ୍ଷମା ଭିକ୍ଷା ମାଗିନିଅ ।

୨ୟ ପଣ୍ଡିତ—ଅରେ ବାଃ ରେ, ପିଲ୍ଲି—ପିଲ୍ଲିର୍ ତ ବେଶ୍ ତେଜ ଅଛି ? ମାର, ମାର—ଏ ବି ଜଣେ ତାଙ୍କରି ସାଙ୍ଗ । [ ଗୋଲପକୁ ପ୍ରହାର ]

ଗୋଲପ—ପ୍ରଭୋ ! ନୀଳାଦ୍ରିନାଥ ! ଆଜି ଏ କି ଅଦ୍ଭୁତ ଲୀଳା ଦେଖାଉଛନ୍ତି ?

୧ମ ପଣ୍ଡିତ—ଅରେ ଅରେ—ଯବନଟା ଫେର୍ ଉଠିଲାଣି ରେ—

[ କଳାପାହାଡ଼କୁ ମାରିବାକୁ ଯିବାରୁ ]

ଗୋଲପ—ମାର, ଯେତେ ପାର ମୋତେ ମାର; କିନ୍ତୁ ଅପର ପ୍ରତି ଅତ୍ୟାଚାର ଦେଖି ପାରିବି ନାହିଁ—ହିନ୍ଦୁଜାତିର ଏତେଦୂର ଅଧଃପତନ ସହ୍ୟ କରି ପାରିବି ନାହିଁ—

[ ଗୋଲପ କଳାପାହାଡ଼କୁ ଅଟକାଇବାରୁ ଓ ତାକୁ ପଣ୍ଡାମାନେ ମାରିବାରୁ ସେ ତଳେ ପଡ଼ିଗଲା ]

କଳାପାହାଡ଼—( ସକ୍ରୋଧେ ଉଠି ) ଏହି କି ହିନ୍ଦୁଜାତି ! ଏହି କି ହିନ୍ଦୁ ଧର୍ମ !—ଏତେଦୂର ନୀଚାଶୟ, ଏତେ ନୀଚପ୍ରାଣ !—ଆଉ ସହ୍ୟକରି ପାରେ ନାହିଁ—ନିଜ ପ୍ରତି ଅତ୍ୟାଚାର ହେଉଥିଲା, ସହ୍ୟ କରୁଥିଲି—ଆତ୍ମୀୟଜନ ମାନଙ୍କ ପ୍ରତି ଅତ୍ୟାଚାର ହେଲା, ତାହା ମଧ୍ୟ ସହ୍ୟ କଲି—ଶେଷରେ, ଅପରଜନ ପ୍ରତି—ଆମ୍ଭମାନଙ୍କ ରକ୍ଷାକର୍ତ୍ତ୍ରୀ ପ୍ରତି ଅତ୍ୟାଚାର ! ଅସହ୍ୟ—ଅସହ୍ୟ—ନିତାନ୍ତ ଅସହ୍ୟ !

୨ୟ ପଣ୍ଡିତ—ଅରେ, ବେହ୍ନପ ରାଗିଗଲାଣିରେ—ପଳାଇ ଆସ—ପଳାଇ ଆସ—

( ପଳାୟନୋଦ୍ୟତ )

କଳାପାହାଡ଼—ପଳାଅ ନା, ମୂଷିକଗଣ ! ପଳାଅ ନା—ବର୍ତ୍ତମାନ ତୁମ୍ଭମାନଙ୍କର କୌଣସି ଶଙ୍କା ନାହିଁ—ପ୍ରହାରକରି ମୋର ହସ୍ତର ମର୍ଯ୍ୟାଦା ହ୍ରାସ କରିବାକୁ ଚାହେଁ ନାହିଁ—ଏହା ମଧ୍ୟ ତୁମ୍ଭମାନଙ୍କର ପାପର ଯୋଗ୍ୟ ପ୍ରାୟଶ୍ଚିତ୍ତ ନୁହେଁ । ତୁମ୍ଭମାନଙ୍କର ପ୍ରାୟଶ୍ଚିତ୍ତ କଣ ଭାବୁଛି, ଶୁଣିବ ?—ତୁମ୍ଭମାନଙ୍କ ଧର୍ମ ପ୍ରତି କେଉଁ ବ୍ୟବସ୍ଥା ଚିନ୍ତା କରୁଛି, ଶୁଣିବ ?—ତୁମ୍ଭମାନଙ୍କ ମୂର୍ତ୍ତି ପ୍ରତି କେଉଁ ଦଣ୍ଡ ବିଧାନ କଳ୍ପନା କରୁଛି ଶୁଣିବ ? ଛିଡ଼ା ହୁଅ—କର୍ଣ୍ଣ ସଚେତ କର—ଚକ୍ଷୁ ପଲକହୀନ କର—ହୃଦୟ ସ୍ପନ୍ଦହୀନ କର !

ସମସ୍ତେ—ଏଁ, ଏଁ—ଏ କ’ଣ ?—ଏ କ’ଣ ?

ଗୋଲପ—ସ୍ଥିର ହେଉନ୍ତୁ, ପ୍ରଭୋ ! ସ୍ଥିର—

କଳାପାହାଡ଼—ଶୁଣ, ନରପିଶାଚଗଣ ! ତୁମ୍ଭେମାନେ ଯେଉଁ ଅତ୍ୟାଚାର ଆଜି ଏହି ନିରୀହ ବାଳିକାଗଣ ପ୍ରତି ପ୍ରଦର୍ଶନ କଲ—ଯେଉଁ ନୃଶଂସ ବ୍ୟବହାର ଏହି ନିର୍ଦ୍ଦୋଷ ବାଳକ ପ୍ରତି ପ୍ରକାଶ

କଲ, ଠିକ୍ ସେହି ଅତ୍ୟାଗ୍ଭର—ଠିକ୍ ସେହି ବ୍ୟବହାର, ଯାହା ମୁଁ ନିଜ ଅଙ୍ଗେ ଅଙ୍ଗେ ଭୋଗ କରିଛି—ମର୍ମେ ମର୍ମେ ଅନୁଭବ କରିଛି—ପ୍ରତ୍ୟେକ ହିନ୍ଦୁ ବାଳିକା ପ୍ରତି ଦେଖାଇବି—ପ୍ରତ୍ୟେକ ହିନ୍ଦୁ ବାଳକ ପ୍ରତି ଦେଖାଇବି—ପ୍ରତ୍ୟେକ ହିନ୍ଦୁ ବୃଦ୍ଧ ପ୍ରତି ଦେଖାଇବି ।

ଗୋଲାପ—ଶାନ୍ତ ହେଉନ୍ତୁ, ପ୍ରଭୋ ! ଶାନ୍ତ—

କଳାପାହାଡ଼—ଚେତକା ନୁହେଁ, ସ୍ୱପ୍ନସରଣି ! ଯେଉଁ ଜାତିର ଅଙ୍କ ଏହି କୀର୍ତ୍ତି—ଯେଉଁ ଧର୍ମର ଅଙ୍କ ଏହି ଶିକ୍ଷା, ସେହି ଧର୍ମର ଆରାଧ୍ୟଦେବତା—ପ୍ରାଣଶୂନ୍ୟ, ଜଡ଼ତାପୂର୍ଣ୍ଣ କାଷ୍ଠପୁତ୍ତଳିକା, ଅଗ୍ନିରେ ଚର୍ଣ୍ଣ ବିଚୂର୍ଣ୍ଣ କରିଦେବି—ସେହି ଜାତିର ଗର୍ବର ଧନ ଏହି, ଏହି ମହାକୀର୍ତ୍ତି, ମହାମନ୍ଦିର, ଅଗ୍ନିରେ ଧ୍ୱସ୍ତବିଧ୍ୱସ୍ତ କରିଦେବି—ସେହି ଜାତିର ମହାତୀର୍ଥ, ଏହି ପୁଣ୍ୟକ୍ଷେତ୍ର ପୁରୀଧାମ, ଅଗ୍ନିରେ ଜ୍ୱାଳରୂପୀ ସମୁଦ୍ରଗର୍ଭରେ ନିମଜ୍ଜିତ କରିଦେବି ! —ସମଗ୍ର ରାଜ୍ୟ ସେତେବେଳେ ମୃତପ୍ରାୟ ହୀନତେଜ ହୋଇ ଦେଖିବ, ସମଗ୍ର ଭାରତବର୍ଷ ସେତେବେଳେ ଅଗ୍ନେୟଗିରି ସମ ପ୍ରକମ୍ପିତ ହୋଇ ଦେଖିବ, ପୃଥିବୀ ସେତେବେଳେ ପଲକହୀନ ନେତ୍ରରେ ଅସ୍ତମିତ ହୋଇ ଦେଖିବ—ରକ୍ତପ୍ରବାହରେ ବଙ୍ଗୋପସାଗର ରକ୍ତ ରଞ୍ଜିତ ହୋଇ ଯାଇଛି—ଶବାଲିଙ୍ଗନରେ ପୃଥିବୀ ରସାତଳଗାମିନୀ ହୋଇ ଯାଇଛି—ଭୌତିକାସ୍ପାରେ, ପବନ ସ୍ଥିରଗତି ହୋଇ ଯାଇଛି !—ସମସ୍ତେ ସମସ୍ୱରରେ ଚିତ୍କାର କରି ଉଠିବେ, ଆକାଶ ଅବନୀ ପ୍ରତିଧ୍ୱନିତ ହୋଇ ଉତ୍ତର କରିବ, ହିନ୍ଦୁର ଜାତି ନାହିଁ—ହିନ୍ଦୁର ଧର୍ମ ନାହିଁ—ହିନ୍ଦୁର ପୁତ୍ତଳିକା ନାହିଁ—ହିନ୍ଦୁର ମହାକୀର୍ତ୍ତି ମହାମନ୍ଦିର ନାହିଁ—

ଗୋଲାପ—ପ୍ରଭୋ ! ପ୍ରଭୋ !

[ ସମସ୍ତେ ସ୍ତବ୍ଧଭାବେ ରହିଁ ରହିଲେ ]

—ଯବନିକା ପତନ—

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ମନ୍ତ୍ରଣାଗୃହ—

[ ଅକ୍‌ବର ଓ ବୀରବଲ୍ ଅସୀନ ]

ଅକ୍‌ବର—ଏତେଦୂର ପ୍ରତାରକ । ଏତେଦୂର ବିଶ୍ୱାସଘାତକ ।

ବୀରବଲ—ବୁଝନ୍ତୁ—ଭାବନ୍ତୁ ଏଥର, ଜାହାଁପନା ! ବିଶ୍ୱାସ କରୁଥିଲେ ପରା ?

ଅକ୍‌ବର—ନିହାତ । ବିଶ୍ୱାସ ବିନା ରାଜ୍ୟଶାସନ ଅସମ୍ଭବ ।

ବୀରବଲ—କିନ୍ତୁ, ବିହୁଥିକ ବେଳେ ସେ ନୀତିର ବିପରୀତ—

ଅକ୍‌ବର—କିପରି ? ତୁମ୍ଭଙ୍କୁ କଣ ମୁଁ ବିଶ୍ୱାସ କରେ ନାହିଁ ? ତୁମ୍ଭେ ଯେ ମୋର ପ୍ରଧାନ ସଭାସଦ୍ ।

ବୀରବଲ୍—ପ୍ରଧାନ ସଭାସଦ୍, ସତ୍ୟ—ଯେତେବେଳ ପର୍ଯ୍ୟନ୍ତ ଏହି ପୋଷାକ ପିନ୍ଧିଥାଏଁ, ଏହି ସଭାଗୃହରେ ଥାଏଁ । ବିଶ୍ୱାସ କରନ୍ତି ସତ୍ୟ—ଯେତେବେଳ ପର୍ଯ୍ୟନ୍ତ ଏକା କଥାବାର୍ତ୍ତା କରୁଥାଏଁ, ଅନ୍ୟ କାହାର ବକ୍ତୃତା ଶୁଣି ନ ଥାନ୍ତି ।

ଅକ୍‌ବର—( ହାସ୍ୟକରି ) ବିଦୂଷକ । ତୁମ୍ଭର ବିଦୂଷୀ କଥାର ଗୂଢ଼ାର୍ଥ ବୁଝିବା ପ୍ରକୃତରେ ମୋ ପକ୍ଷେ ଦୁଃସାଧ୍ୟ ।

ବୀରବଲ—ତା'ତ ହେବ । ଗରିବର କଥାଗୁଡ଼ାକ ପରା ଲାଗିଲା—ଜାକ୍ ଜମକ୍ ହେଲେ ସିନା ବାଦ୍‌ସାହଙ୍କ ଲାଗି ଦୁଅନ୍ତା ?

ଅକ୍‌ବର—(ହାସ୍ୟ କରି) ଅଚ୍ଛା, କଥା କଣ ?

ବୀରବଲ—କଉଲ୍‌ର କଥା ଥରେ ମନେ କରନ୍ତୁ ।

ଅକ୍‌ବର—ବର୍ତ୍ତମାନର କଥା ନା ?

ବୀରବଲ୍—ନା, ନା ଅତୀତର କଥା—ସେହି ମାନଭଞ୍ଜନ ଯାତ୍ରା ସମୟର କଥା—ବିଦ୍ରୋହକର

କଥାଗୁଡ଼ାକ ଯେତେବେଳେ ପରିହାସ ବୋଲି ଉଡ଼ାଇ ଦେଉଥିଲେ ।

ଅକ୍‌ବର—( ହାସ୍ୟ କରି ) ବାସ୍ତବିକ, ବହୁଷଙ୍କର ବହୁରୂପୀ କଥା ବୁଝିବା ସହଜ ନୁହେଁ । (ଗମ୍ଭୀର ଭାବେ) ବୀରବଲ୍ ! ଏହି କି ସେହି ବ୍ୟକ୍ତି—ଯାହାକୁ ମୁଁ ବାଲ୍ୟକାଳରୁ ପୁତ୍ରତୁଲ୍ୟ ସ୍ନେହ କରି ଆସୁଥିଲି ? ଏହି କି ସେହି ଆଶ୍ରିତ—ଯାହାକୁ ମୁଁ ସାମାନ୍ୟ ସୈନିକ ପଦରୁ ଉଚ୍ଚ ସେନାପତି ପଦରେ ଅଧିଷ୍ଠିତ କରାଇଥିଲି ?—ସେହି ବ୍ୟକ୍ତି ଆଜି ଏତେଦୂର ନିମକ୍‌ହାରାମ ହେବ—ଏତେଦୂର ରାଜଦ୍ରୋହୀ ହେବ—ଚିନ୍ତାରେ ମୋ'ର କେବେ ଉଦିତ ହୋଇ ନାହିଁ—ନା, ନା ସ୍ୱପ୍ନରେ ସୁଦ୍ଧା ନୁହେଁ । ମାନ ବହୁଷଙ୍କ, ତାହାର ଏପରି ଆଚରଣ ତ କେବେ ଦେଖି ନାହିଁ ?

ବୀରବଲ୍—ଦେଖିବେ କିପରି ? ତେତେବେଳେ ଯେ ହିନ୍ଦୁ ସାଦେବୀ ତାଙ୍କର ହୃଦୟାସନ ଅଧିକାର କରି ନ ଥିଲେ ?

[ ମୁକୁନ୍ଦ ଦେବଙ୍କର ପ୍ରବେଶ ]

ମୁକୁନ୍ଦଦେବ—ଅଭିବାଦନ, ବାଦ୍‌ସାହ !

ଅକ୍‌ବର—ଅଭିବାଦନ, ମହାରାଜ ! କିନ୍ତୁ, ମହାରାଜ ! ମୋତେ ଆପଣ ମିତ୍ର ବୋଲି ସମ୍ବୋଧନ ନ କରି, ବାଦସାହା ବୋଲି ସମ୍ବୋଧନ କଲେ କାହିଁକି ?

ମୁକୁନ୍ଦଦେବ—ଆପଣଙ୍କ ପରି ବାଦ୍‌ସାହାର ମିତ୍ର-ଯୋଗ୍ୟ କି ଏହି କାଙ୍ଗାଳ ?

ଅକ୍‌ବର—କାଙ୍ଗାଳ, ଆପଣ, ଆପଣଙ୍କର ଜଗନ୍ନାଥଙ୍କ ନିକଟରେ—ମୋ ନିକଟରେ ଆପଣ ବୀରଶ୍ରେଷ୍ଠ, ସ୍ୱାଧୀନ ରାଜା, ପ୍ରକୃତ ବନ୍ଧୁ ।

ମୁକୁନ୍ଦଦେବ—କ୍ଷମା କରନ୍ତୁ, ମିତ୍ର ! ଏ ଗୁଡ଼ାକ ଅଯଥା ପ୍ରଶଂସା—ଏହା ଶୁଣିଲେ ମୋର ଭାରି କଷ୍ଟ ହୁଏ ।

ଅକ୍‌ବର—ମୋର ମଧ୍ୟ ଭାରି କଷ୍ଟ ହୁଏ ଯେ, ମୁଁ ବୀରର ଯଥୋଚିତ ପ୍ରଶଂସା କରିପାରୁ ନାହିଁ—ଗୁଣିର ଯଥୋଚିତ ଗୁଣ ଗାନ କରି ପାରୁ ନାହିଁ ! କ୍ଷୁଦ୍ର, ମିତ୍ର ! କେଉଁ ମିତ୍ର ନିଜର ସ୍ୱାର୍ଥ-ତ୍ୟାଗପୂର୍ବକ—କେଉଁ ବନ୍ଧୁ ନିଜର ପ୍ରାଣ ତୁଚ୍ଛ ଜ୍ଞାନକରି, ସନ୍ଧି ସର୍ତ୍ତ ଗଠେଇ, ପୁଣି ଭିନ୍ନ ଧର୍ମାବଲମ୍ବୀ ବନ୍ଧୁର ଏତେଦୂର ଉପକାର କରିଥାଏ ?

ମୁକୁନ୍ଦଦେବ—ବାଦ୍‌ସାହ !

ଅକ୍‌ବର—ପୁଣି ?

ମୁକୁନ୍ଦଦେବ—ମିତ୍ର ! ଉପକାର ତ କରି ପାରି ନାହିଁ ।

ଅକ୍‌ବର—କାହିଁପାରି ନାହାନ୍ତି କିପରି ? ଉଲ୍ଲ ଓ ରହମତ୍‌ର ବିଶ୍ୱାସଘାତକତା ଏବଂ ନିଜର ସ୍ୱଳ୍ପ ସୈନ୍ୟ ହେତୁ ଯୁଦ୍ଧ ଜୟ କରି ପାରିନାହାନ୍ତି ସତ୍ୟ; କିନ୍ତୁ ଚେଷ୍ଟା କି ଛାଡ଼ିଛନ୍ତି ? ସେହି ଉଦ୍ଦେଶ୍ୟରେ ହିଁ ତ ଆପଣଙ୍କର ଏଠାକୁ ଆଗମନ ।

ମୁକୁନ୍ଦଦେବ—ଛାଡ଼ନ୍ତୁ, ସେ କଥା ମିତ୍ର ! ଆଜ୍ଞା ମୋତେ ବିଦାୟ ଦିଅନ୍ତୁ—ମୁଁ ଯୁଦ୍ଧ ଜୟ ନ କରିବା ପର୍ଯ୍ୟନ୍ତ—ବିଶ୍ୱାସଘାତକ ମାନଙ୍କୁ ଆପଣଙ୍କ ନିକଟକୁ ନ ପଠାଇବା ପର୍ଯ୍ୟନ୍ତ, ମୋର ଶାନ୍ତି ନାହିଁ ।

ଅକ୍‌ବର—ନା, ମିତ୍ର ! ଆଜି ମୁଁ କଦାପି ଛାଡ଼ିଦେବି ନାହିଁ । ଆପଣ ଆଉ କିଛି ଦିନ ଏଠାରେ ବିଶ୍ରାମ କରି ପୂର୍ଣ୍ଣ ବଳ ଲାଭ କରି ପାରନ୍ତୁ ।

[ ମାନସିଂହଙ୍କର ପ୍ରବେଶ ]

ମାନସିଂହ—ଜାହାଁପନା ! ମାତ୍ର ଦଶସହସ୍ର ସୈନ୍ୟ ସଂଗୃହୀତ ହୋଇଛନ୍ତି ।

ମୁକୁନ୍ଦଦେବ—ଯଥେଷ୍ଟ ହୋଇଛି—ମୋର ନିଜର ସୈନ୍ୟମାନଙ୍କୁ ଆସିବାକୁ ମଧ୍ୟ ସ୍ୱଦେଶକୁ ସମ୍ବାଦ ପଠାଇଛି ।

ମାନସିଂହ—( ସ୍ୱଗତଃ—ଦୀର୍ଘ ନିଶ୍ୱାସ ତ୍ୟାଗ କରି ) 'ସ୍ୱଦେଶ' ! 'ନିଜର ସୈନ୍ୟ' !—ଏଥିଁ ବଳି ରାଜାର ଆଉ କି ଗର୍ବ ଥାଇପାରେ ? ଏଥିଁ ବଳି ରାଜାର ଆଉ କି ସୌଭାଗ୍ୟ ହୋଇପାରେ ?

ମୁକୁନ୍ଦଦେବ—ମହାରାଜ ! ସମସ୍ତେ ପ୍ରସ୍ତୁତ ହୋଇଛନ୍ତି କି ?

ମାନସିଂହ—( ସ୍ୱଗତଃ ) 'ମହାରାଜ' ! କିଏ ମହାରାଜ ? ଏହି ପରାଧୀନ ? ଏହି ପରମୁଖାପେକ୍ଷୀ ? ଧିକ୍ ! ଧିକ୍ ମୋତେ—ଏହି କ୍ଷତ୍ରିୟ-କୁଳାଙ୍ଗାର ପ୍ରତି ଏପରି ସମ୍ବୋଧନରେ ରାଜପଦର କେବଳ ଅମର୍ଯ୍ୟାଦା—କେବଳ ଅବମାନନା ! (ପ୍ରକାଶ୍ୟେ) ମହାରାଜ ! ସମସ୍ତେ ପ୍ରସ୍ତୁତ !

ମୁକୁନ୍ଦଦେବ—ମିତ୍ର ! ସମସ୍ତେ ଯେତେବେଳେ ପ୍ରସ୍ତୁତ—ବୃଥା ସମୟ ନଷ୍ଟ କରିବା ଉଚିତ ମନେ କରୁନାହିଁ ।

ଅକ୍‌ବର—ମିତ୍ର ! ବନ୍ଧୁର କଥା ରକ୍ଷା କରିବା କଣ ଉଚିତ ନୁହେଁ ?

ମୁକୁନ୍ଦଦେବ—ମିତ୍ର ! କ୍ଷମା କରନ୍ତୁ—ବନ୍ଧୁର କାର୍ଯ୍ୟ ଆଗେ କରିସାରେ—ତା ପରେ ଯେତେଦିନ ଇଚ୍ଛା ବସାଇ ପାରନ୍ତି, କୌଣସି ଆପତ୍ତି କରିବି ନାହିଁ ।

ଅକ୍‌ବର—ମିତ୍ର, ମିତ୍ର ! ପ୍ରକୃତରେ ଆପଣ ମୋର ମିତ୍ର । ଆସନ୍ତୁ ମିତ୍ର, ଥରେ ମିତ୍ର-ପ୍ରେମରେ ମାତିଯାଉଁ ।

ମୁକୁନ୍ଦଦେବ—ଏ ଅକିଞ୍ଚନର ଆଜ କି ସୌଭାଗ୍ୟ, ବିଶାଳ ଭାରତେଶ୍ୱରଙ୍କ ମିତ୍ରତାଲିଙ୍ଗନ ଲାଭ କରିବାକୁ ସମର୍ଥ ହୋଇଛି !

ଅକ୍‌ବର—ଏ ଅକିଞ୍ଚନର ଆଜ କି ସୌଭାଗ୍ୟ, ବିଶାଳ ହିନ୍ଦୁଜାତିର ମସ୍ତକମଣି ମିତ୍ରତାଲିଙ୍ଗନ ଲାଭ କରିବାକୁ ସମର୍ଥ ହୋଇଛି ! ଆସନ୍ତୁ ମିତ୍ର, ମୋର ବୈଠକଖାନାକୁ ଆସନ୍ତୁ !

ମୁକୁନ୍ଦଦେବ—ଆସନ୍ତୁ, ମହାରାଜ ! ଆସନ୍ତୁ, ବାହୁବଳ !

( ଅକ୍‌ବର ଓ ମୁକୁନ୍ଦଙ୍କର ପ୍ରସ୍ଥାନ )

ମାନସିଂହ—( ସ୍ୱଗତଃ ) ମୁକୁନ୍ଦ ଦେବ, କ୍ଷତ୍ରିୟ—ଏ ମାନସିଂହ ମଧ୍ୟ କ୍ଷତ୍ରିୟ ! କିନ୍ତୁ, ଜଣେ ମିତ୍ର—ଜଣେ ଗୋଲାମ ! ଜଣେ ସିଂହାସନରେ—ଜଣେ ପଦତଳେ ! ଆକାଶ ପାତାଳ ପ୍ରଭେଦ—ସ୍ୱର୍ଗ ନରକ ପ୍ରଭେଦ !

ବୀରବଲ—ମିତ୍ର, ଦୁଃଖ କାହିଁକି ? ଆସନ୍ତୁ ନା, ଆମ୍ଭେ ଦୁହେଁ ମଧ୍ୟ ପରସ୍ପର ମଧ୍ୟରେ କୋଳାକୋଳି ହେବା—ପ୍ରଭୁ ପ୍ରଭୁ ମଧ୍ୟରେ ହୁଏ, ଭୃତ୍ୟ ଭୃତ୍ୟ ମଧ୍ୟରେ କଣ ହୁଏ ନାହିଁ ?

ଦ୍ୱାରୀ—ମହାରାଜ ! ପଣ୍ଡିତଜୀ ! ବାଦ୍‌ସାହା ଅପେକ୍ଷା କରୁଛନ୍ତି ।

ମାନସିଂହ—ଅପେକ୍ଷା କରୁଛନ୍ତି, ନା ହୁକୁମ କରୁଛନ୍ତି ? —(ସ୍ୱଗତ) କି ଲଜ୍ଜା ! କି ଲଜ୍ଜା ! ଏହି କ୍ଷତ୍ରିୟ ବୀର୍ଯ୍ୟ, ଏହି କ୍ଷତ୍ରିୟ ତେଜ, ସମସ୍ତ କଣ ଗୋଲାମୀରେ ବ୍ୟୟିତ ହେବାକୁ ଥିଲା ?

ବୀରବଲ—ଚାଲ ହେ ମିତ୍ର ! ହୁକୁମ ପରୁଆନା ଜାରିହେଲାଣି ଯେ ! ( ଦ୍ୱାରୀ ଆଡ଼େ ) ମିତ୍ର ! ଅଗ୍ରଗାମୀ ହୁଅ—ଆହେ, ସଙ୍କୁଚିତ ହେଉଛ କାହିଁକି ? ତୁମେ ବି ଚାକର—ଆମେ ବି ଚାକର —ତୁମେ ବାଦ୍‌ସାହାଙ୍କର ଦ୍ୱାର ଜଗ—ଆମେ ନ ହୁଏ ବାଦ୍‌ସାହାଙ୍କର ମିଜାଜ୍ ଜଗୁ—ଏହି ତ ପ୍ରଭେଦ ! ଚାଲ, ଚାଲ—ମିତ୍ର ! (ଦ୍ୱାରୀର ସ୍କନ୍ଧରେ ହସ୍ତ ପ୍ରଦାନ ପୂର୍ବକ ପ୍ରସ୍ଥାନ )

ମାନସିଂହ—ଠିକ୍ କହିଛନ୍ତି, ବାହୁବଳ ! (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

—ରଙ୍ଗାଳୟ—

[ ରହମତ୍, ତକିଆ ଆସୀନ ଓ ଛଦ୍ମବେଶରେ ଅବଦୁଲ୍ଲା ସରାପ ଯୋଗାଉଥିଲା ]

ରହମତ୍—ଗ୍ଲେକର୍ ! ତେରା ନାମ କ୍ୟା ?

ଅବ୍‌ଦୁଲ୍ଲା—ହାମାରା ନାମ—ହାମ୍ୟାରା ନାମ—ଗ୍ଲେକ୍ଲୁର୍ !

ରହମତ୍—ଆରେ ବେକୁଫ୍ ! ହାମ୍ ବୋଲ୍‌ତେହେଁ, ଗ୍ଲେକର୍—ତେରା ନାମ କ୍ୟା, ଗ୍ଲେକର୍ ?

ଅବ୍‌ଦୁଲ୍ଲା—ଆପ୍ ଯେଇସା ବଖତ୍ ବୋଲ୍‌ତେହେଁ ଗ୍ଲେକର୍—ହାମାରା ନାମ କିଆ ଅଓର୍ କୁଛ୍ ହୋ ସେକ୍‌ତା ?

ରହମତ୍—ତେ ଅଚ୍ଛା ଗ୍ଲେକର୍ ହୋ—ଅଚ୍ଛା, ତେରା ନାମ ଜଲିଲ୍ !

ଅବ୍‌ଦୁଲ୍ଲା—ହଜୁର୍, ଖୋଦାବନ୍ଦ ! ମେରା ନାମ ଜଲିଲ୍ !

ରହମତ୍—ଅଚ୍ଛା ଜଲିଲ୍, ହାମ୍ କ୍ୟା ହୁଆ ?

ଅବ୍‌ଦୁଲ୍ଲା—ଅପ୍ ନବାବ୍ ହୁଆ ।

କଉଲ୍ଲ—ହାମ୍ ?

ଅବ୍‌ଦୁଲ୍ଲା—ଅପ୍ ବାଦ୍‌ସା ।

ରହମତ୍—ନେଇଁ ହାମ୍ ବାଦ୍‌ସା ।

କଉଲ୍ଲ—ନେଇଁ, ହାମ୍ ବାଦ୍‌ସା ।

ରହମତ୍—ଜଲ୍ଲିଲ୍—ଢେ ଠିକ୍ କର୍‌କେ ବୋଲ୍, ହାମ୍ କ୍ୟା ?

କଉଲ୍ଲ—ଜଲ୍ଲିଲ୍ ! ଢେ ସଚ୍ଚାବାତ୍ ବୋଲ୍ ହାମ୍ କ୍ୟା ?

ଅବ୍‌ଦୁଲ୍ଲା—ଅଚ୍ଛା, ହାମ୍ ସମ୍‌ଝା ଦେତେହେଁ, କୈସା ଠଇରଏ । ( ରହମତ୍‌କୁ ଦେଖାଇ ) ଅପ୍ ନବାବକେ ମାର୍‌କେ ନବାବ୍ ହୁଆ—ଅପ୍ ନବାବ୍ ହୋ । ଦେଖୋ, ଔର ( କଉଲ୍ଲକୁ ଦେଖାଇ ) ଏ ବାଦ୍‌ସାକୋ ଠକାକେ ଅପ୍‌କୋ ନବାବ୍ ବନାୟା—ଏ ବାଦ୍‌ସା ହୋ ।

ରହମତ୍ ଓ କଉଲ୍ଲ—( ଅବ୍‌ଦୁଲ୍ଲାର ପିଠି ଥାପୁଡ଼ାଇ ) ଅରେ ଠିକ୍‌ବୋଲ୍ଲା—ଅରେ ସଚ୍ ବୋଲ୍ଲା ! ଅଚ୍ଛା ସ୍ଲୋକ୍‌ସ୍ ହୋ—ଢେ ଅଚ୍ଛା ସ୍ଲୋକ୍‌ସ୍ ହୋ ! ( ନେପଥ୍ୟକୁ ଚାହିଁ ) ବାଃ ବାଃ ! ଅରେ ଏ ବାଇଜୀ ଲୋକ କାହାଁସେ ଅତେହେଁ ? କୋନ୍ ବୋଲ୍ଲାୟା ?

ଅବ୍‌ଦୁଲ୍ଲା—ହାମ୍‌ନେ ।

ରହମତ୍ ଓ କଉଲ୍ଲ—ଅଚ୍ଛା ସ୍ଲୋକ୍‌ସ୍ ହୋ—ଢେ ଅଚ୍ଛା ସ୍ଲୋକ୍‌ସ୍ ହୋ । ଅରେ ସିରାଜ ଲର୍ଡ—ଟପ୍ ଲର୍ଡ—ଗାଓ ବାଇଜୀ ଲୋକ—ଖୁବ୍ ମିଠା ଗାନା ଗାଓ । ଏସେହି ମଜା ଲଗ୍‌ରହେ—

[ ନର୍ତ୍ତକୀଙ୍କ ପ୍ରବେଶ ଓ ଗୀତ ]

—ଗୀତ—

ବାଣୀ ବାଜ, ନର୍ତ୍ତୀ ସାଜ, ଝୁଲ୍ ଫୁଲ୍ ଖେଳୁ ସତ ଆଜ ।
ଢାଳ ସୁଧାରସ, ପ୍ରେମରଞ୍ଜଣୀ ରସ,
ପ୍ରେମେ ମାତି ପିଅ ପ୍ରେମରାଜ ।

ରୁହୁ ରୁହୁ ତାନେ, ରୁଣୁଝୁଣୁ ସ୍ୱନେ
ମାର ରତି ଫୁଲ୍‌ସାଜେ ଫୁଲ୍ଲ ମନେ
ନାନା ରଙ୍ଗେ, ନାନା ଭଙ୍ଗେ, ନାନା ଅଙ୍ଗେ
ପ୍ରାଣେ ପ୍ରାଣେ ନାଚେ ଗାଏ ଆଜ ॥

[ ନର୍ତ୍ତକୀଗଣ ଗୀତ ଗାଉଥିବା ସମୟରେ ଅବ୍‌ଦୁଲ୍ ମଦ ଦେଉଥିଲ୍ଲା—ରହମତ୍ ଓ କଉଲ୍ଲ ପାନ କରୁ କରୁ କ୍ରମେ କ୍ରମେ ନିଦ୍ରାଭିଭୂତ ହେଲେ ]

ଅବ୍‌ଦୁଲ୍ଲା—( ଛଦ୍ମବେଶ ପରିତ୍ୟାଗ କରି ) ଯାଅ, ବାଇଜୀଗଣ ! ଆଉ ତୁମ୍ଭମାନଙ୍କର ପ୍ରୟୋଜନ ନାହିଁ ।

ନର୍ତ୍ତକୀଗଣ—ଯେ ଆଜ୍ଞା, ସାହାଜାଦା ! (ପ୍ରସ୍ଥାନ)

ଅବ୍‌ଦୁଲ୍ଲା—ଏଥର ମୋର କାର୍ଯ୍ୟ ମୁଁ କରେଁ—(ଛୁରିକା ବାହାର କରି ) ଏହି—ଏହି ଛୁରୀ, ରହମତ୍ । ଏହି ଛୁରୀ ଦେଇଥିଲ୍ଲ—ଏହି ଛୁରୀ ଘେନି, ଦିନେ ଭ୍ରାତୃ ତୁଲ୍ୟ କଳାପାହାଡ଼ଙ୍କୁ ହତ୍ୟା କରିବାକୁ ଯାଇଥିଲ, ସହୋଦରା ଦୁଲ୍ଲିଆର ସର୍ବନାଶ କରିବାକୁ ଯାଇଥିଲ—ଖୋଦା ରକ୍ଷା କରିଥିଲେ; ମାତ୍ର ବର୍ତ୍ତମାନ ଭରିଛୁ କିଏ ? ତୋହାର ନିର୍ମଳ ରକ୍ତରେ ଏହାର ଫଳକ ରଞ୍ଜିତ କରିଛୁ ସିନା ! ଏଣା ସଙ୍ଗେ ନରରକ୍ତ, ରାଜରକ୍ତ, ପିତୃରକ୍ତ ଶୋଷଣ କରିଛୁ ସିନା !—ହାଃ ! ହାଃ ! ହାଃ !—ପିତାର ଉପଯୁକ୍ତ ପୁତ୍ର ମୁଁ—ରାଜାର ଉପଯୁକ୍ତ ପ୍ରଜା ମୁଁ ! ଅଉ ଦେଖ, ଯେଉଁ ବନ୍ଧୁର ଉପଦେଶରେ ଏହିପରି ଉପଯୁକ୍ତ ମୁଁ ହୋଇଛି, ସେହି ବନ୍ଧୁର ଉପରି ଉପଯୁକ୍ତ ବନ୍ଧୁ ମୁଁ ।

[ ରହମତ୍‌କୁ ଛୁରିକାଘାତ କରିବା ସମୟରେ ନେପଥ୍ୟରୁ ପିସ୍ତଲାଘାତ ହୋଇ ଭୂପତିତ ହେଲ୍ଲ ଓ ସଙ୍ଗେ ସଙ୍ଗେ କଳାପାହାଡ଼ର ପ୍ରବେଶ ]

( ରହମତ୍ ଓ କଉଲ୍ଲ ସଭୟେ ଦଣ୍ଡାୟମାନ ହେଲେ )

କଳାପାହାଡ଼—ନବାବ ସାହେବ ! ଶୀଘ୍ର ଜାଗ୍ରତ ହେଉନ୍ତୁ—ଏ କିଏ ? ନବାବ କାହାନ୍ତି ? ଏ ଯେ ରହମତ୍ ଅଲ୍ଲି !

ଅବ୍‌ଦୁଲ୍ଲା—ଉଃ—ବିଶ୍ୱାସଘାତକର ଋଣ ପରିଶୋଧ କରି ପାରିଲି ନାହିଁ—ମନସ୍କାମନା ପୂର୍ଣ୍ଣ କରି ପାରିଲି ନାହିଁ—ଉଃ ! ଉଃ !

କଳାପାହାଡ଼—କିଏ ? କିଏ ?—ଏ ଯେ ଅବ୍ଦୁଲ ?

ଅବ୍ଦୁଲ—ଏ କାହାର ସ୍ୱର ?

କଳାପାହାଡ଼—ଅବଦୁଲ୍ !

ଅବ୍ଦୁଲ—କଳାପାହାଡ଼ ! ଭାଇ ! ସତେ, ସତେ ତୁମ୍ଭେ ଫେର ଅସିଛ ?

କଳାପାହାଡ଼—ଓଃ ! ମୁଁ କଣ କଲି, ଭାଇ ?

ଅବ୍ଦୁଲ—ତୁମେ କିଛି କର ନାହିଁ, ଭାଇ—ମୋର ପାପର ପ୍ରାୟଶ୍ଚିତ୍ତ ହୋଇଛି ।

କଳାପାହାଡ଼—କି ପାପର ପ୍ରାୟଶ୍ଚିତ୍ତ, ଭାଇ ?

ଅବ୍ଦୁଲ—କି ପାପର ପ୍ରାୟଶ୍ଚିତ୍ତ ?—ମୋର ମହାପାପର ପ୍ରାୟଶ୍ଚିତ୍ତ କି ହୋଇଛି ? ଏ ପାପୀର ପ୍ରାଣନାଶରେ କି ତାର ସମୁଚିତ ପ୍ରାୟଶ୍ଚିତ୍ତ ହୋଇଛି ?

କଳାପାହାଡ଼—ଭାଇ ! ଭାଇ ! କି ପାପ ?

ଅବ୍ଦୁଲ—କି ପାପ ? ସେ ପାପର କଥାରେ ପାପ—ସେ ପାପର ଶ୍ରବଣରେ ପାପ ।

କଳାପାହାଡ଼—ଉତ୍କଣ୍ଠା ଆଉ ବଢ଼ାଅ ନା, ଭାଇ ! ଶୀଘ୍ର କୁହ, କି ପାପ ?

ଅବ୍ଦୁଲ—ଉଃ—କି ପାପ ! ଏକା ସଙ୍ଗେ ନରହତ୍ୟା—ରାଜହତ୍ୟା—ପିତୃହତ୍ୟା !

କଳାପାହାଡ଼—କଣ ? କଣ କହୁଲ, ଅବଦୁଲ୍ ?—ନବାବ୍ ନାହାନ୍ତି ? ପିତା ନାହାନ୍ତି ?

ଅବ୍ଦୁଲ—ଅଛନ୍ତି, ଅଛନ୍ତି, ଭାଇ—ଏହି ଊର୍ଦ୍ଧ୍ୱ ଗଗନକୁ ଚାହାନ୍ତୁ, ଶଶୀ-ତାରକା ମଧ୍ୟରେ ଲକ୍ଷ୍ୟ କରନ୍ତୁ—କେମନ୍ତ ଦିବ୍ୟମୂର୍ତ୍ତି ଧାରଣକରି ଦିବ୍ୟାସନରେ ଉପବେଶନ ପୂର୍ବକ ଦିବ୍ୟ କିରଣ ବିକିରଣ କରୁଛନ୍ତି—ଏଁ ଏଁ ! ମୋ ପ୍ରତି ଏ କି ଭ୍ରୂକୁଟି ? ଏ କି ଅଧର ଦଂଶନ ?

କଳାପାହାଡ଼—ଅବ୍ଦୁଲ୍ !

ଅବ୍ଦୁଲ—ବୁଝିଛି, ବୁଝିଛି ଭାଇ—ଭାଇ ! ମୋତେ ଛୁରିକା ଦିଅ—ଶୀଘ୍ର ଛୁରିକା ଦିଅ—ବିଶ୍ୱାସଘାତକର ଦଣ୍ଡ ହୋଇ ନାହିଁ—ପାପ ପ୍ରବୃତ୍ତିକର ଶାନ୍ତି ହୋଇ ନାହିଁ—( ଉଠିବାକୁ ଚେଷ୍ଟାକରି ପୁନଶ୍ଚ ପଡ଼ିଗଲେ ) ଉଃ ! ହେଲା ନାହିଁ—କର୍ତ୍ତବ୍ୟ ମୋର ପାଳନ କରିପାରିଲି ନାହିଁ ।

କଳାପାହାଡ଼—କି କର୍ତ୍ତବ୍ୟ, ଭାଇ ?

ଅବ୍ଦୁଲ—ବିଶ୍ୱାସଘାତକର ଶାସ୍ତି—ପାପୀ ରହିମତର—

କଳାପାହାଡ଼—ବୁଝିଛି ସମସ୍ତ, ଭାଇ ! ଏହି ପାପିଷ୍ଠ ରହିମତ ହିଁ ସର୍ବନାଶର କାରଣ—ବୋଲି ହୁଏ ?

[ ସୈନିକର ପ୍ରବେଶ ]

ସୈନିକ—ହଜୁର୍, ଜାହାଁପନା !

କଳାପାହାଡ଼—ବନ୍ଦୀ କର—( କତଲୁ ଅଡ଼କୁ ଚାହିଁ ) ତୁମ୍ଭେ କିଏ ?

କତ୍ଲୁ—ମୁଁ—ମୁଁ—କ—କ—

କଳା—କିଏ ତୁ, ଜଲ୍ଦି କହ !

କତ୍ଲୁ—ହଜୁର୍, ଜାହାଁପନା—ମୁଁ କତ୍ଲୁ ।

ସୈନିକ—ଜାହାଁପନା ! ଏ ମୋଗଲ ସେନାପତି—ବିଶ୍ୱାସଘାତକତା କରି ଅମ୍ଭମାନଙ୍କ ସଙ୍ଗରେ ମିଶିଛି—ସେନାପତିଙ୍କର ଭାରି ଦୋସ୍ତ ।

କଳାପାହାଡ଼—ଏ' ବି ଜଣେ ବିଶ୍ୱାସଘାତକ ? ତେବେ ଦୋସ୍ତକୁ ଦୋସ୍ତର ସହିତ କରିମିଳିତ କରିଅ ।

[ ସୈନିକର କତ୍ଲୁକୁ ବନ୍ଦୀ କରିବା ]

ହାୟ ! ନବାବଙ୍କୁ ଆଉ ଦେଖିପାରିଲି ନାହିଁ—ଅବଦୁଲ୍ ! ଭାଇ ! ମୁଁ କି କାମ କଲି ? ( ଅବ୍ଦୁଲକୁ ଆଲିଙ୍ଗନ କଲେ )

ଅବ୍ଦୁଲ—ଭାଇ ! ଖେଦର କୌଣସି ପ୍ରୟୋଜନ ନାହିଁ—ମୋତେ ଶାନ୍ତିରେ ଯିବାକୁ ଦିଅ । ଭୁଲିଅ କାହିଁ, ଭାଇ ? ସେ ଯେ ମୋର ସହୋଦରା ଭଗିନୀ—ହାୟ ! ମୁଁ ତା' ପ୍ରତି କି ଅନ୍ୟାୟ ବ୍ୟବହାର ନ କରିଛି—ସେ ମୋତେ ଭ୍ରାତା ବୋଲି କେତେ ଆଦର, କେତେ ଯତ୍ନ କରିଛି—ମାତ୍ର, ମୁଁ ପାପିଷ୍ଠ, ପାପଲାଳସା ତୃପ୍ତି ନିମନ୍ତେ ତାକୁ କେତେ ଯନ୍ତ୍ରଣା, କେତେ କ୍ଲେଶ ନ ଦେଇଛି ! ଉଃ ! କି ମହାପାପ ମୋ'ର—ଏହାର କି କ୍ଷମା ଅଛି ?

[ ଗୋଲାପ ସହ ଦୁଲଆର ପ୍ରବେଶ ]

ଦୁଲଅ—ଅବଶ୍ୟ ଅଛ—କିଏ ଏହ ମୁମୂର୍ଷୁ ?

କଲାପାହାଡ଼—(ହଠାତ୍ ଉଠି) ଦୁଲଅ ! ମୁଁ ମହାପାପ କରଛି—ସର୍ବନାଶ କରଛି ।

ଦୁଲଅ—କି ସର୍ବନାଶ ?—କି ମହାପାପ, ପ୍ରାଣେଶ୍ୱର ?

ଅବ୍‌ଦୁଲ—କିଛି ନାହିଁ, ଭଉଣି ।

ଦୁଲଅ—କିଏ ? ଭାଇ ?—(ନିକଟକୁ ଯିବା)

ଅବ୍‌ଦୁଲ—ନା, ନା, ଭଉଣି—ତୋର ଶତ୍ରୁ—ତୋ ପର ଦେବୀତୁଲ୍ୟ । ଭଉଣୀର 'ଭାଇ' ବୋଲି ଗର୍ବକରିବା କି ଏ ରାକ୍ଷସ ପକ୍ଷେ ସମ୍ଭବ ?

ଦୁଲଅ—ଅବ୍‌ଦୁଲ—ଭାଇ । ଅଜି ଏ' କି ଦୁର୍ଦ୍ଦଶା ତୁମ୍ଭର ? (ଅଲିଙ୍ଗନ କଲା)

ଅବ୍‌ଦୁଲ—ଏ ମୋର ସୁଦଶା, ଭଉଣି—ଆ' ଭଉଣୀ ମୋର—ପ୍ରାଣର ଦୁଲିଅ ମୋର ! ଜୀବନ ଥାଉ ଥାଉ କେବେ ହେଲେ ଆଦର କରି ନାହିଁ—ଏହ ମହାଯାତ୍ରା କାଳେ ଥରେ ଚୁମ୍ବନ କରି ଜୀବନ ସାର୍ଥକ କରେ ।

ଦୁଲଅ—ଭାଇ ! ଭାଇ ! ଏଇ ଦୁର୍ଲଭ ଅମୃତ ପାନ କରାଇ ପୁଣି କାହିଁକି ହରଣ କରି ନେଉଛ ? ବାସ୍ତବିକ କି ତୁମ୍ଭର କନିଷ୍ଠା ଭଗିନୀକୁ ଭ୍ରାତୃ-ହୀନା କରି ଚାଲି ଯାଉଛ ? ତୁମ୍ଭର ପବିତ୍ର ଭ୍ରାତୃ-ପ୍ରେମରୁ ଏକାବେଳକେ ବଞ୍ଚିତ କରୁଛ ?

କଲାପାହାଡ଼—ପ୍ରାଣେଶ୍ୱରି । ମୋ'ର ହେତୁ ଅଜି ଏହ ସର୍ବନାଶ ତୁମ୍ଭର ।

ଦୁଲଅ—କିପରି, ପ୍ରାଣେଶ୍ୱର ?

କଲାପାହାଡ଼—ମୋର ପିସ୍ତଲର ଆଘାତରେ ଅବ୍‌ଦୁଲ୍‌ର ଆଜି ଏହ ଦୁର୍ଦ୍ଦଶା ସିନା ।

ଦୁଲଅ—ଆପଣଙ୍କର ପିସ୍ତଲର ଆଘାତରେ !

ଅବ୍‌ଦୁଲ—ଭଉଣି । ତାହା ଦେବ-ପ୍ରେରିତ—ମୋର ପାପର ପ୍ରାୟଶ୍ଚିତ୍ତ—ପ୍ରକୃତ ହତ୍ୟାକାରୀ ମୋ'ର—ଯା'ର ଶିକ୍ଷାରେ ପିତୃହନ୍ତା ମୁହିଁ—

ଦୁଲଅ—ଭାଇ ! ଭାଇ ! କଣ କହୁଛ ?

ଅବ୍‌ଦୁଲ—ଏହ—ଏହ ନାରକୀ, ନର ପିଶାଚ (ରହମତକୁ ଦେଖାଇ)—ଦୁଲଅ ! ଦୁଲଅ ! ମୋର କର୍ତ୍ତବ୍ୟ—ତୁମ୍ଭମାନଙ୍କର ଅନୁସନ୍ଧାନ—ସ୍ୱଜ୍ୟୋଦ୍ଧାର—ପୂର୍ଣ୍ଣ ହୋଇଛି, ବାକି ପ୍ରଧାନ କର୍ତ୍ତବ୍ୟ—ତୋର ପିତୃ ଭ୍ରାତୃ ହତ୍ୟାର ପ୍ରତିଶୋଧ—ନାରକୀ ରହମତର ଉପଯୁକ୍ତ ଶାସ୍ତି—

କଲାପାହାଡ଼—ସେ ଭାର ମୁଁ ନେଉଛି, ଭାଇ ।

ଅବ୍‌ଦୁଲ—ଏବେ ମୁଁ ନିଶ୍ଚିନ୍ତ, ଭାଇ । ମୋତେ କ୍ଷମାକର, ଭଉଣି—ଟିକିଏ ତୋ କୋଳରେ ସ୍ଥାନ ଦେ, ଦୁଲି— (ମୃତ୍ୟୁ)

ଦୁଲଅ—ହାୟ ! ପିତା ନାହାନ୍ତି ? ତାଙ୍କୁ ହରାଇଛି—ପିତୃପ୍ରତିମ ସହୋଦରଙ୍କୁ ଫେରି ପାଇ, ପୁଣି ହରାଇଲି—ଏକାସଙ୍ଗେ ପିତୃ ଭ୍ରାତୃ ସ୍ନେହରୁ ବଞ୍ଚିତ ହେଲି ସିନା ?

କଲାପାହାଡ଼—ପ୍ରାଣେଶ୍ୱରି ! କିଛି ଚିନ୍ତା କରନାହିଁ—ଏହ ନରପିଶାଚମାନଙ୍କର ଶୋଣିତ ବର୍ଷଣରେ ଆମ୍ଭମାନଙ୍କର ତପ୍ତପ୍ରାଣ ଶୀତଳ ହେବ ।

ଗୋଲାପ—ଜନାବ୍ । ରକ୍ତ ପାତରେ ତପ୍ତପ୍ରାଣ ଶୀତଳ କରିବେ ?—ରକ୍ତପାତ ଯେ ଖୋଦାଙ୍କ ଅଭିପ୍ରେତ ନୁହେଁ ।

କଲାପାହାଡ଼—ଏହ ସାମାନ୍ୟ ରକ୍ତପାତ ଖୋଦାଙ୍କ ଅଭିପ୍ରେତ ନୁହେଁ ? ଯେଉଁ ରକ୍ତପାତର ଅବତାରଣା ମୁଁ କରିବାକୁ ଉଦ୍ୟତ, ସେ ରକ୍ତପାତ ତୁଳନାରେ ଏହା ଯେ ବିନ୍ଦୁର ବିନ୍ଦୁ ମାତ୍ର ।

ଗୋଲାପ—ପ୍ରଭୋ ! ଏ' ପ୍ରତିଜ୍ଞା ତ୍ୟାଗ କରନ୍ତୁ—ଏ' ନୃଶଂସ ଚିନ୍ତାରୁ ବିରତ ହେଉନ୍ତୁ । ମନୁଷ୍ୟ ହୋଇ ରାକ୍ଷସୋଚିତ କାର୍ଯ୍ୟ କରିବେ—ବିବେକୀ ହୋଇ ପଶୁର କାର୍ଯ୍ୟ କରିବେ ? ସ୍ୱର୍ଗର ଦେବତାମାନେ କହିବେ କ'ଣ ? ପାତାଳର ନାଗଗଣ କହିବେ କ'ଣ ? ମର୍ତ୍ତ୍ୟର ଜୀବଗଣ କହିବେ କ'ଣ ?

କଲାପାହାଡ଼—ହାଃ ହାଃ—ବାଳକ ! ନିନ୍ଦା ଭୟରେ ମୋର ପ୍ରତିଜ୍ଞା ମୁଁ ତ୍ୟାଗ କରିବି ?—ବାସୁକି ଯେବେ ସହସ୍ର ଜିହ୍ୱାରେ ମୋ'ର ନିନ୍ଦାବାଦ

ଘୋଷଣା କରେ—ବ୍ରହ୍ମା ଯେବେ ଚତୁଃମୁଖରେ ମୋର କୁତ୍ସା ଗାନକରେ—ଜୀବଗଣ ଯେବେ ସାରାସୃଷ୍ଟି ବ୍ୟାପି ମୋର କଳଙ୍କ ରଟନା କରନ୍ତି—ତଥାପି, ମୋର ପ୍ରତିଜ୍ଞା—ଅଟଳ, ଅଚଳ, ସ୍ଥିର ।

ଗୋଲାପ—ନିନ୍ଦା-ଭୟ ଯେବେ ନାହିଁ ପ୍ରଭୋ—ଧର୍ମ-ଭୟ ତ ଅଛି ?—ନିଜର ହୃଦୟ ପ୍ରତି ଥରେ ଲକ୍ଷ୍ୟ କରନ୍ତୁ—ଦୟା-ମାୟାର କ୍ରନ୍ଦନ ଥରେ ଶ୍ରବଣ କରନ୍ତୁ—ଅନୁକମ୍ପାର ସ୍ପର୍ଶ ଥରେ ଅନୁଭବ କରନ୍ତୁ, କପରି ଦୃଢ଼ପ୍ରତିଜ୍ଞ ଆପଣ—କପରି କଠିନପ୍ରାଣ ଆପଣ ଅଟଳ, ଅଚଳ, ସ୍ଥିର ରହିବେ ?

କଳାପାହାଡ଼—ବାଳକ ! ଚୁପ୍‌କର !—ହୃଦୟ ! କମ୍ପିତ ହେଉଛ କାହିଁକି ? ମନ୍ଦର ଗିରିତୁଲ୍ୟ ଦ୍ରବୀଭୂତ ହୁଅ—ନାରକୀୟ ବୃତ୍ତିଚୟ ! ନିସ୍ପନ୍ଦ ହୋଇ ରହିଛ କାହିଁକି ? ଘୃତାହୁତ ସମ ଦାଉ ଦାଉ କରି ଜ୍ୱଳି ଉଠ—କୋମଳ ବୃତ୍ତିଚୟ ପୋଡ଼ି ନାରଖାର ହୋଇଯାଉ—ସାଂସାରିକ ବନ୍ଧନ ଛିନ୍ନ ଭିନ୍ନ ହୋଇ ଶୂନ୍ୟ ସଙ୍ଗେ ମିଶିଯାଉ—ମୋର ଶ୍ୱାସରେ ଝଞ୍ଜାବାତ ବୋହୁ—ସମୁଦ୍ର ବଜ୍ର-ନିର୍ଘୋଷିତ ହେଉ—ମୁଁ ନରହନ୍ତା ହୁଏ—ନରପିଶାଚ ହୁଏ—ନରରକ୍ତ ଲୋଲୁପ ହୁଏ—ମୋର ଭୀଷଣ ପ୍ରତିଜ୍ଞା ମୁଁ ପାଳନ କରିବି—ହିନ୍ଦୁର ଧର୍ମ, ଧର୍ମ ଥିବାଯାଏ ଲୁପ୍ତ କରିବି—ହିନ୍ଦୁର ରାଜ୍ୟ, ରାଜ୍ୟ ଥିବାଯାଏ ରସାତଳଗାମୀ କରିବି—ହିନ୍ଦୁର ଜାତି, ଜାତି ଥିବାଯାଏ ବିଧ୍ୱସ୍ତ କରିବି ।

କତଲୁ—ଖୋଦାବନ୍ଦ ! ଏ ନଫରର ଜାନ୍ ରକ୍ଷା ହେଲେ—ଆପଣଙ୍କର ଏହି ସୁମହତ୍ ଉଦ୍ଦେଶ୍ୟ ସାଧନରେ ଏ ଗୋଲାମ୍ ଯଥେଷ୍ଟ ସାହାଯ୍ୟ କରିବ ।

ରହମତ୍—ଏ ନଫରର ମଧ୍ୟ ସେହି ଅଭିଳାଷ, ଖୋଦାବନ୍ଦ୍ ।

କଳାପାହାଡ଼—( ସ୍ୱଗତଃ ) ଏପରି ସହାୟତାର ପ୍ରୟୋଜନ । ମୋର ଉଦ୍ଦେଶ୍ୟ ସାଧନ ନିମନ୍ତେ, ବିଶ୍ୱାସଘାତକର ବନ୍ଧୁତ୍ୱ ଆବଶ୍ୟକ—ଅତତାୟୀର ମିତ୍ରତା ଆବଶ୍ୟକ । ( ପ୍ରକାଶ୍ୟେ ) କତଲୁ ! ତୁମ୍ଭର ଜାନ୍ ମୁଁ ରକ୍ଷା କଲି—ତୁମ୍ଭେ ଅଜିଠାରୁ ମୋର ପ୍ରଧାନ ସେନାପତି ।

କତ୍‌ଲୁ—ଯୋ ଆଜ୍ଞା । ଯୋ ହୁକୁମ୍ ଖୋଦାବନ୍ଦ୍ ।

( ଅଭିବାଦନ କରିବା )

ରହମତ୍—ଏ ଗୋଲାମର ଜାନ୍ ରକ୍ଷା କରନ୍ତୁ, ଜାହାଁପନା ।

କଳାପାହାଡ଼—ଅଚ୍ଛା, ତୁମ୍ଭର ମଧ୍ୟ ଜାନ୍ ରକ୍ଷା କଲି ।

ଦୁଲିଆ—କିନ୍ତୁ, ମୁଁ ରକ୍ଷା କରିପାରେ ନା, ଜାହାଁପନା ! ବିଶ୍ୱରଙ୍କର ସମ୍ମୁଖରେ ଆତତାୟୀର ପ୍ରାଣରକ୍ଷା—କନ୍ୟା ସମ୍ମୁଖରେ ପିତୃହନ୍ତାର ପ୍ରାଣରକ୍ଷା—ଭଗିନୀ ସମ୍ମୁଖରେ ଭ୍ରାତୃହନ୍ତାର ପ୍ରାଣରକ୍ଷା ? ଅସମ୍ଭବ—ଅସମ୍ଭବ—ଅସମ୍ଭବ—

କଳାପାହାଡ଼—ଅଚ୍ଛା ପ୍ରାଣେଶ୍ୱରୀ ! ତୁମ୍ଭେ ହିଁ ବିଚାର କରି ରହମତର ଦଣ୍ଡ ବିଧାନ କର ।

ଦୁଲିଆ—ମୁଁ ବିଚାର କରି ଦଣ୍ଡବିଧାନ କରିବି—କି ଦଣ୍ଡବିଧାନ କରିବି ? କି ଦଣ୍ଡ ଉପଯୁକ୍ତ ହେବ ?—ମୁଁ ଯେ କିଛି ଠିକ୍ କରିପାରୁ ନାହିଁ ? ପ୍ରାଣେଶ୍ୱର, ତୁମ୍ଭେହିଁ ବିଚାର କରି ଦଣ୍ଡାଦେଶ କର ।

କଳାପାହାଡ଼—ନା, ପ୍ରାଣେଶ୍ୱରୀ ! ତୁମ୍ଭର ପିତୃ-ଭ୍ରାତୃ-ହତ୍ୟାକାରୀର ପ୍ରାଣଦଣ୍ଡ ତୁମ୍ଭେ ହିଁ ବିଧାନ କର । ବର୍ତ୍ତମାନ ବନ୍ଦୀକୁ ନେଇଯାଅ, ସୈନିକ—ଉପଯୁକ୍ତ ଦଣ୍ଡାଦେଶ ନ ହେବା ପର୍ଯ୍ୟନ୍ତ ନିର୍ଜନ, ଅନ୍ଧକାର କାରାଗୃହରେ ନିକ୍ଷେପ କର । ଯାଅ କତଲୁ, ତୁମ୍ଭେ ମଧ୍ୟ ସଙ୍ଗେ ସଙ୍ଗେ ଯାଅ ।

ରହମତ୍—ସାହାଜାଦୀ । ସାହାଜାଦୀ ।

[ କତଲୁ ଓ ସୈନିକର ବନ୍ଦୀକୁ ନେଇ ପ୍ରସ୍ଥାନ ]

ଦୁଲିଆ—ହାୟ, ଭାଇ ! କାହିଁକି ତୁମ୍ଭର ଭଗିନୀକୁ ଛାଡ଼ି ଚାଲିଗଲ ? ( ଅବଦୁଲକୁ ଆଲିଙ୍ଗନ କଲା )

କଳାପାହାଡ଼—ବୃଥା-ଶୋକର ବର୍ତ୍ତିମାନ ସମୟ ନୁହେଁ, ପ୍ରାଣେଶ୍ୱର—ପ୍ରତିହିଂସା—ପ୍ରତିହିଂସା—ପ୍ରତିହିଂସା— ( ବେଗେ ପ୍ରସ୍ଥାନ )

ଦୁଲ୍ଅା—ଠିକ୍ କହୁଛ, ପ୍ରାଣେଶ୍ୱର—ପ୍ରତିହିଂସା—ପ୍ରତିହିଂସା—ପ୍ରତିହିଂସା— ( ବେଗେ ପ୍ରସ୍ଥାନ )

ଗୋଲ୍ଷପ—ଭଉଣି ! ଭଉଣି !—ପ୍ରଭୋ ! ପ୍ରଭୋ ! ଏହି କି କର୍ତ୍ତିବ୍ୟ ତୁମ୍ଭମାନଙ୍କର ?

( ଅନୁଧାବନ )

---

## ତୃତୀୟ ଦୃଶ୍ୟ

—ଅନ୍ତଃପୁର—

[ ତିଲୋତ୍ତମା ଏକାକୀ ବସି ଚିନ୍ତାକରୁଥିଲେ ]

ଗୋଲ୍ଷପ—ହାୟ ! ତାଙ୍କୁ ତ କୌଣସିମତେ ବୁଝାଇ ପାରିଲି ନାହିଁ—ଦୁଲ୍ଅା ହିଁ ଯେବେ କିଛି କରିଇ ପାରେ । ଯାହାହେଉ, ଦୁଲ୍ଅାକୁ କେତେକ ପରିମାଣରେ ଶାନ୍ତ କରି ପାରିଛି । ନରହତ୍ୟାର ପ୍ରତିଶୋଧ ନରହତ୍ୟା—ସ୍ୱଜନ ହତ୍ୟା-ଜନିତ ଶୋକର ଶାନ୍ତି ହତ୍ୟାକାରୀର ହତ୍ୟାରେ ! ଅସମ୍ଭବ—ଆମ୍ଭମାନଙ୍କର ଶୋକର ଶାନ୍ତି, ସେହି ଶାନ୍ତିନିଦାନଙ୍କ ଚିନ୍ତାରେ—ଆମ୍ଭମାନଙ୍କ ପ୍ରତି ଅନିଷ୍ଟାଚରଣର ପ୍ରତିଶୋଧ, ଅନିଷ୍ଟକାରୀର ଇଷ୍ଟସାଧନରେ ।

ଗୋଲ୍ଷପର— ଗୀତ

ଅନାଥର ନାଥ ସଦୟେ ମୋ'ର ଅଶାନ୍ତି ନିବାର ଆଜ ।
ଏ ମରୁ ପରଶି ପ୍ରାନ୍ତର ଦେଖେ ଶ୍ୟାମଳ ସ୍ୱରୂପ ସାଜ ॥
ରୋପିଥିଲି କେତେ କାମନା ବାସନା,
ଫଳ ଫୁଲେ ପାଦ କରିବି ବନ୍ଦନା,
କିଏ ସେ ବାଧୀ ଭାଙ୍ଗିଦେଲା ସବୁ ଅନାଥା ହୋଇଲି
ଆଜ ॥

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—କି ସ୍ମୃତି ଜାଗି ଉଠୁଛି—କି ଛବି ପ୍ରତିଫଳିତ ହେଉଛି । ଗୋଲ୍ଷପ୍ !

ଗୋଲ୍ଷପ—ଜନାବ୍ !

କଳାପାହାଡ଼—ସତ୍ୟ କହ, ତୁ କିଏ ?

ଗୋଲ୍ଷପ—ଏ ଗୋଲାମ୍ ତ ଅନେକଥର ପରିଚୟ ଦେଇଛି, ଜନାବ୍ !

କଳାପାହାଡ଼—ମୋର କିନ୍ତୁ ବିଶ୍ୱାସ ହେଉନାହିଁ !—ତୋର ବଙ୍ଗଳାରେ ଘର—ଜାତିରେ ହିନ୍ଦୁ—ପୁଣି ନିଷ୍ଠାପର ବ୍ରାହ୍ମଣ; ଅଥଚ ବିଧର୍ମୀ ମୁସଲ୍‌ମାନର ଗୋଲାମି କରୁଛୁ—ଆଶ୍ଚର୍ଯ୍ୟ !

ଗୋଲ୍ଷପ—ଜନାବ୍ ! ଏଥିରେ ଆଶ୍ଚର୍ଯ୍ୟର ବିଷୟ କ'ଣ ଅଛି ? ମୁସଲମାନର ଗୋଲାମି କଲେ ହିନ୍ଦୁ ମୁସଲମାନ ହୁଏ ନାହିଁ—ବିଜାତିର ସେବା କଲେ ଜାତିର ପରିବର୍ତ୍ତିନ ଘଟେ ନାହିଁ—ନିଜର ଜାତୀୟତା, ନିଜର ଧାର୍ମିକତ୍ୱ, ନିଜର ଆଚରଣ, ବ୍ୟବହାର ଓ ମନୋଭାବ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ—ବିଶେଷତଃ, ମୁଁ ପ୍ରେମର ଦାସ—ଯେଉଁଠି ଆଦର ଯତ୍ନ ପାଏ, ସେହିଠି ଗୋଲାମି କରେ ।

କଳାପାହାଡ଼—ଗୋଲ୍ଷପ ! ତୁ ଏ ସବୁ ବଡ଼ ବଡ଼କଥା ଶିଖିଲୁ କେଉଁଠୁ ?

ଗୋଲ୍ଷପ—ତା' ଜାଣେ ନାହିଁ, ଜନାବ୍ ! ମାତ୍ର ଏହାହିଁ ମୋର ଦୃଢ଼ ଧାରଣା—ଏହାହିଁ ମୋର ଧ୍ରୁବ ବିଶ୍ୱାସ ।

କଳାପାହାଡ଼—ଅଚ୍ଛା, ତୁ ଏଠି ଆଦର ଯତ୍ନ ପାଉଛୁ ?

ଗୋଲ୍ଷପ—ଖୁବ୍ ।

କଳାପାହାଡ଼—କିପରି ଜାଣିଲୁ ?

ଗୋଲ୍ଷପ—ଏହି ଯେ, ପ୍ରଭୁ ହୋଇ ଗୋଲାମ୍ ସଙ୍ଗେ ଏପରି ମିଷ୍ଟାଳାପ କରୁଛନ୍ତି—ଏହିଥିରୁ ।

କଳାପାହାଡ଼—ବେଶ୍—ତାହାହେଲେ ତ ବିନିମୟରେ ତୋର ମୋତେ ଭଲ ପାଇବା ଉଚିତ ।

ଗୋଲ୍ଷପ—ଖୁବ୍ ଉଚିତ—ପୂଜା କରିବା ଉଚିତ ।

କଳାପାହାଡ଼—ତେବେ, ମୁଁ ଯାହା କହିବି, ତୁ କରିବୁ ?

ଗୋଲ୍ଷପ—ଅବଶ୍ୟ, କର୍ତ୍ତିବ୍ୟାକର୍ତ୍ତିବ୍ୟ ବିବେଚନା କରି—

କଳାପାହାଡ଼—ତାହା ହେଲେ ତୁ ମୋର ଉପଯୁକ୍ତ ଗୋଲାମ୍ ନୋହୁଁ ।

ଗୋଲାପ—ତେବେ ମୋତେ ବିଦାୟ ଦିଅନ୍ତୁ ।

କଳାପାହାଡ଼—ବିଦାୟ ? ତୋତେ ?—ଅସମ୍ଭବ ।

ଗୋଲାପ—ଏହି ତ ମୋର ଉପଯୁକ୍ତତା ସ୍ୱୀକାର କରୁଛନ୍ତି—ମୋ' ପ୍ରତି ଅଗାଧ ସ୍ନେହର ନିଦର୍ଶନ ଦେଖାଉଛନ୍ତି ।

କଳାପାହାଡ଼—ସତ୍ୟ ଗୋଲାପ ! ତୋର ସେହି ଗୋଲାପ-କମନୀୟ ବଦନରେ—ତୋର ସେହି ଗୋଲାପ-ସୌରଭମୟ କଥୋପକଥନରେ କି ମଧୁରିମା ଅଛି, କି ମାଦକତା ଅଛି—ମୋର ମନ ପ୍ରାଣ ଯେପରି ଏକାବେଳକେ ତୋରିଠାରେ ବିକୀତ, ତୋରି-ଠାରେ ନିହିତ ।

ଗୋଲାପ—ଗୋଲାମ ପ୍ରତି ଏତେଟା ମେହେରବାନି ଜନାବ ?

କଳାପାହାଡ଼—ମନେ କର ନା ଗୋଲାପ, ଯେ ହିନ୍ଦୁର ସେହି ପାପ-କ୍ଷେତ୍ରରେ ମୋ' ଲାଗି ଯେଉଁ ଦୁଃସହ ଯନ୍ତ୍ରଣା ସହ୍ୟ କରିଥିଲୁ, ଯେଉଁ ମହାବଳି ଦେବାକୁ ଅଗ୍ରସର ହୋଇଥିଲୁ, ସେଥି ନିମନ୍ତେ କୃତଜ୍ଞତାର ନିଦର୍ଶନ ସ୍ୱରୂପ ତୋ ପ୍ରତି ଏହି କୃତ୍ରିମ ସ୍ନେହ ବା ପ୍ରେମ ପ୍ରକାଶ କରୁଛି—ତୋତେ ଦେଖିବା ମାତ୍ରକେ, ମୋର ପାଷାଣ ହୃଦୟ କି ଗୋଟାଏ ଅକୃତ୍ରିମ ମମତାରେ ଦ୍ରବୀଭୂତ ହୋଇ-ଯାଉଛି—ମୁଁ ଅନୁକ୍ଷଣ ଅନୁଭବ କରୁଛି, ତୁ ଯେପରି ମୋର ସୁଖ—ତୁ ଯେପରି ମୋର ଶାନ୍ତି । ଗୋଲାପ୍, ଗୋଲାପ୍ । ଏତେ ସ୍ନେହ, ମମତା ବୋଧହୁଏ ମୋର ଅନ୍ୟ କାହାରି ଠାରେ କେବେ ଜନ୍ମିନାହିଁ । ଅଚ୍ଛା ଗୋଲାପ । ତୁ'ତ ଆମ ପାଖରେ ଏତେଦିନ ରହିଲୁଣି, କାହିଁ ଦିନେ ତ ଦରମା ମାଗିନାହୁଁ, କି ସେ ବିଷୟରେ କଥା ଛଳରେ ବି କାହାରିକୁ କିଛି କହିନାହୁଁ ? ତୋର କଣ କେହି ନାହିଁ ?

ଗୋଲାପ—ମୋର ସମସ୍ତେ ଅଛନ୍ତି, ଜନାବ—କିନ୍ତୁ ଈଶ୍ୱରଙ୍କ ଅନୁଗ୍ରହରୁ ଏ ପର୍ଯ୍ୟନ୍ତ କୌଣସି ଅଭାବ ହୋଇନାହିଁ ।

କଳାପାହାଡ଼—ତୁ ତାହାହେଲେ ଏକପ୍ରକାର ସୌଖୀନ ଗୋଲାମ୍—ଏପରି ଗୋଲାମ୍ ନ ହୋଇଥିଲେ କି ତୋ'ଠାରୁ ମୁଁ ଏତେ ଆନନ୍ଦ ଲାଭ କରୁଥାନ୍ତି—ଏତେ ଶାନ୍ତି ପାଉଥାନ୍ତି ? କିନ୍ତୁ ମୋର ତ ତୋତେ ପୁରସ୍କାର ଦେବା ଉଚିତ ।

ଗୋଲାପ—ବର୍ତ୍ତମାନ ସେ ବିଷୟରେ ଏତେ ଚିନ୍ତା କାହିଁକି, ଜନାବ୍—ଅଭାବ ବେଳେ ନିଶ୍ଚୟ ମାଗି ନେବି ।

କଳାପାହାଡ଼—ଅଚ୍ଛା, ବେଶ୍ ।

[ ଖୋଜାର ପ୍ରବେଶ ]

ଖୋଜା—ଜାହାଁପନା । ଦୂତ ଅସିଛନ୍ତି—ଭାରି ଜରୁରି କାମ ।

[ ଦୁଲଆର ପ୍ରବେଶ ]

ଦୁଲଆ—କି ଜରୁରି କାମ ?

କଳାପାହାଡ଼—ମୁଁ ଏହିକ୍ଷଣି ଜାଣି ଆସୁଛି, ପ୍ରାଣେଶ୍ୱରୀ ।

[ ଖୋଜା ଓ କଳାପାହାଡ଼ର ପ୍ରସ୍ଥାନ ]

ଗୋଲାପ—ବେଗମ ସାହେବା ।

ଦୁଲଆ—ପୁଣି ସେହି ଡାକ ?

ଗୋଲାପ—ଭୁଲ ହୋଇଛି, ଭଉଣି ।—ଭଉଣି । ମୁଁ ଯାହା କହିଥିଲି, ମନେ ରଖିଛନ୍ତି କି ?

ଦୁଲଆ—ଖୁବ୍ ମନେ ରଖିଛି, ଭାଇ—ଯଥାସମ୍ଭବ ଚେଷ୍ଟା ମଧ୍ୟ କରୁଛି —

ଗୋଲାପ—ଆପଣ ତ—

ଦୁଲଆ—ପୁଣି ଆପଣ ?

ଗୋଲାପ—ଆଜି ଭାରି ଭ୍ରମ ହେଉଛି, ଭଉଣି—ଛାଡ଼, ତୁମେ ତ ଜାଣ ଭଉଣି, କୌଣସି ଧର୍ମର ଭଲ୍ ମନ୍ଦ ସେହି ଧର୍ମାବଲମ୍ବୀ କେତେକ ଲୋଭୀ, ସ୍ୱାର୍ଥପର ବ୍ୟକ୍ତିଙ୍କ କାର୍ଯ୍ୟରେ ବିଚାର୍ଯ୍ୟ ନୁହେଁ ।

ଦୁଲଆ—ତାହା ମୁଁ ଭଲ ରୂପେ ଜାଣେ, ଭାଇ—ଯାହା ମଧ୍ୟ ଜାଣି ନ'ଥିଲି, ତାହା ତୁମଠାରୁ ଭଲରୂପେ ଶିଖିଛି, ଭାଇ । ଶୁଣ ଭାଇ, ଯଦ୍ୟପି ମୁଁ ମୁସଲମାନ୍,

ତଥାପି ହିନ୍ଦୁଧର୍ମକୁ ନିଜର ବୋଲି ଜାଣେ— ଯଦ୍ୟପି ସ୍ୱାମୀ ମୋର ହିନ୍ଦୁ-ଦ୍ୱେଷୀ, ତଥାପି ହିନ୍ଦୁଧର୍ମ ପ୍ରତି ମୋର ପୂର୍ଣ୍ଣ ସହାନୁଭୂତି ଅଛି— ହିନ୍ଦୁ-ମୁସଲମାନ, କାଫେର-ଯବନ ଭିନ୍ନାଖ୍ୟାରେ ଭିନ୍ନାର୍ଥରେ ପରିଗଣିତ ହେଲେ ସୁଦ୍ଧା, ମୋ ଦୃଷ୍ଟିରେ ସମାନ ଜାତି, ସମାନ ବର୍ଣ୍ଣ, ସମାନ ଧର୍ମ ।

ଗୋଲାପ—ଏହି ଭାବ, ଏହି ଚିନ୍ତା ଯେବେ ତାଙ୍କଠାରେ ଜନ୍ମନ୍ତା, ଭଉଣି !

ଦୁଲଆ—କିନ୍ତୁ ଚିନ୍ତା ନାହିଁ ଭାଇ, ଖୋଦାଙ୍କ ଇଚ୍ଛାରେ, ସବୁ ଘଟି ପାରେ – ଜଗନ୍ନାଥଙ୍କ କୃପାରେ ସବୁ ହୋଇପାରେ ।

ଗୋଲାପ—ଆମ୍ଭମାନଙ୍କର ଯତ୍ନ ମଧ୍ୟ ଆବଶ୍ୟକ ।

ଦୁଲଆ—ସେତ ଠିକ୍—କିନ୍ତୁ ଭାଇ, ସ୍ୱାମୀ ଯେ ହିନ୍ଦୁ ହୋଇ ସ୍ୱଜାତିର ଧ୍ୱଂସ ସାଧନ ନିମନ୍ତେ ଏତେଦୂର ଉନ୍ମତ୍ତ—ଏଥି ନିମନ୍ତେ କି ସ୍ୱଜାତି ଦାୟୀ ନୁହେଁ ? ସ୍ୱଜାତିର କି ଦୋଷ ନାହିଁ ?

ଗୋଲାପ—ନିଶ୍ଚୟ ଦାୟୀ—ଅବଶ୍ୟ ଦୋଷ ଅଛି; କିନ୍ତୁ ସ୍ୱଜାତିର ଯାହା କୁସଂସ୍କାର, ଯାହା ଆବର୍ଜନା ତାହା ଦୂର କରିବା ମନୁଷ୍ୟର କର୍ତ୍ତବ୍ୟ ।

ଦୁଲଆ—ପ୍ରଧାନ କର୍ତ୍ତବ୍ୟ । ମୋର କର୍ତ୍ତବ୍ୟ ମନେ ପଡ଼ୁଛି, ଭାଇ—ପ୍ରତିହିଂସା—ଭ୍ରାତୃ-ପିତୃ-ହତ୍ୟାର ପ୍ରତିଶୋଧ ।

ଗୋଲାପ—ପୁଣି ସେହି ନାରକୀୟ ଚିନ୍ତା, ଭଉଣୀ ? ରକ୍ତପାତର ପ୍ରତିଶୋଧ, ସେହି ରକ୍ତପାତରେ ? —ଯେଉଁ ରକ୍ତପାତ ହେତୁ ପାପ, ସେହି ରକ୍ତପାତ କରି ପାପ ଅର୍ଜନ କରିବ ? ଯେଉଁ ରକ୍ତପାତ ହେତୁ ଅଶାନ୍ତି, ସେହି ରକ୍ତପାତ କରି ଅଶାନ୍ତି ଦ୍ୱିଗୁଣିତ କରିବ ? —ଭଉଣି ! ଏପରି ଭାବରେ ପ୍ରତିଶୋଧ ଚିନ୍ତା ଏକାନ୍ତ ପାଶବିକ, ନିତାନ୍ତ ଅସ୍ୱାଭାବିକ—ଏପରି ଉପାୟରେ ଶାନ୍ତି କାମନା କରିବା ଭ୍ରମ— ମହାଭ୍ରମ ।

ଦୁଲଆ—ସେହି ନରହନ୍ତା କ'ଣ ତେବେ ପିତୃ-ଭ୍ରାତୃ-ରକ୍ତ ପାନ କରି ନିଶ୍ଚିନ୍ତ ମନରେ ଦିନ ଯାପନ କରୁଥିବ, ଆଉ ମୁଁ କନ୍ୟା ହୋଇ—ଭଗିନୀ ହୋଇ, ନିଶ୍ଚିନ୍ତଭାବରେ ତାହା ଦେଖୁଥିବି ?

ଗୋଲାପ—ଭଉଣି ! ପାପୀ କଦାପି ନିଶ୍ଚିନ୍ତ ହୋଇ ପାରେନାହିଁ—ମୃତ୍ୟୁରେ ବରଂ ନିଶ୍ଚିନ୍ତ ହୁଏ । ଅହୁରି ମଧ୍ୟ ଦୋଷୀର ଦୋଷ ସମ୍ବନ୍ଧରେ, କିମ୍ବା ପାପୀର ଦଣ୍ଡ ସମ୍ବନ୍ଧରେ ଚିନ୍ତିତ ହେବା ଆମ୍ଭମାନଙ୍କର କାର୍ଯ୍ୟ ନୁହେଁ । ପାପ-ପୁଣ୍ୟର ଯେ ବିଚାରକର୍ତ୍ତା—ଦଣ୍ଡ-ପୁରସ୍କାରର ଯେ ବିଧାନକର୍ତ୍ତା, ତାଙ୍କୁହିଁ ଆମ୍ଭମାନଙ୍କ ଅତ୍ୟାଚାରର ବିଚାର-ଭାର ଦେଇ, ପାପୀର ଦଣ୍ଡ-ଭାର ଦେଇ ନିଶ୍ଚିନ୍ତ ହେବା ଉଚିତ—ତାଙ୍କଠାରେ ମଧ୍ୟ ଅଟଳ ବିଶ୍ୱାସ ରଖିବା କର୍ତ୍ତବ୍ୟ ଯେ, ସେହି ଏକା ଦୁଃଖହାରୀ, ଆମ୍ଭମାନଙ୍କ ଦୁଃଖମୋଚନ କରିବେ – ସେହି ଏକା ଶାନ୍ତିଦାତା, ଆମ୍ଭମାନଙ୍କ ବ୍ୟଥିତ ପ୍ରାଣକୁ ଶାନ୍ତିମୟ କରିବେ ।

ଦୁଲଆ—ଭାଇ ! ଏ ତମୋମୟ ଗଗନରେ କିଏ ତୁମ୍ଭେ ଦିବାକର—ଏ ମରୀଚିକାମୟ ମରୁ-ଦେଶରେ କିଏ ତୁମ୍ଭେ ଜଳାର୍ଣ୍ଣବ ?

ଗୋଲାପ—କେହି ନୁହେଁ, ମୁଁ ତୁମ୍ଭର ଚିରାନୁଗତ ଭାଇ, ଭଉଣି !

ଦୁଲଆ—ଖୋଦା ! ବାସ୍ତବିକ ତୁମ୍ଭେ ଦୁଃଖହାରୀ— ବାସ୍ତବିକ ତୁମ୍ଭେ ଶାନ୍ତିଦାତା ।

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—ଭାରି ଶୁଭ ସମ୍ବାଦ, ଦୁଲଆ !

ଦୁଲଆ—କି ଶୁଭ ସମ୍ବାଦ, ପ୍ରାଣେଶ୍ୱର ?

କଳାପାହାଡ଼—ମୁକୁନ୍ଦଦେବ ବଙ୍ଗଦେଶ ଆକ୍ରମଣ କରିଛି ।

ଦୁଲଆ—ତେବେ, ଶୁଭ ସମ୍ବାଦ କ'ଣ ?

କଳାପାହାଡ଼—ଏହା କି ଶୁଭ ସମ୍ବାଦ ନୁହେଁ ? ମୁକୁନ୍ଦଦେବ ହିନ୍ଦୁଜାତିର ମୁକୁଟମଣି—ହିନ୍ଦୁ-ଧର୍ମର ଏକଛତ୍ରାଧିପତି । ସେହି ହିନ୍ଦୁ-କୁଳ-ତିଳକକୁ ଆଜି ଯୁଦ୍ଧ ଭୂମିରେ ଶାୟିତ କରି ପାରିଲେ କିମ୍ବା

ଜହ୍ଲାଦର କୃପାଣରେ ଦ୍ୱିଖଣ୍ଡିତ କରି ପାରିଲେ —ମୋର ପ୍ରତିଶୋଧ ଜ୍ୱାଳା କସ୍ତୁଭ୍ ପରିମାଣରେ ଶୀତଳ ହେବ ।

ଦୁଲ୍ଆ—ପ୍ରାଣେଶ୍ୱର ! ଏ ରାକ୍ଷସୀ ପ୍ରତିଜ୍ଞା ବିସର୍ଜନ କରନ୍ତୁ—ଆପଣ ଜ୍ଞାନୀ ହୋଇ କର୍ତ୍ତବ୍ୟ-ଜ୍ଞାନ ହରାନ୍ତୁ ନାହିଁ ।

ଗୋଲାପ—ଆପଣ ଧାର୍ମିକ ହୋଇ ଧର୍ମ-ଜ୍ଞାନ ହରାନ୍ତୁ ନାହିଁ ।

କଳାପାହାଡ଼—ହାଃ ହାଃ ହାଃ—ହିନ୍ଦୁ—ହିନ୍ଦୁ ତୁ ଗୋଲାପ୍ ! ହିନ୍ଦୁ ହୋଇ, ତୋ'ର ଏହି ଧର୍ମ-ଜ୍ଞାନ କଥା ପରି ?

ଗୋଲାପ୍—ଜନାବ୍ ! ଯେପରି ପକ୍ଷପାତିତ୍ୱ ଥିଲେ କି ଏ ନଫର୍ ହିନ୍ଦୁ ହୋଇ, ହିନ୍ଦୁଦ୍ରୋହିର ଅଜ ଦାସତ୍ୱ ସ୍ୱୀକାର କରିଥାନ୍ତା ?

କଳାପାହାଡ଼—( ସାଶ୍ଚର୍ଯ୍ୟେ ଚାହିଁଲେ )

ଗୋଲାପ—ପୁଣି କହନ୍ତୁ, ଜନାବ୍ ! ଆପଣ ତ ପ୍ରତିଜ୍ଞା କରିଛନ୍ତି, ଯେଉଁଠାରେ ହିନ୍ଦୁ ଦେଖିବେ—ଶିଶୁ ହେଉ, ବାଳକ ହେଉ, ବୃଦ୍ଧ ହେଉ, ତାର ସର୍ବନାଶ କରିବେ—ଏ ଗୋଲାମ୍ ପ୍ରତି ତେବେ ଏତେ ଅନୁଗ୍ରହ କାହିଁକି ?

କଳାପାହାଡ଼—'ଏତେ ଅନୁଗ୍ରହ କାହିଁକି ?'

ଦୁଲ୍ଆ—ପ୍ରାଣେଶ୍ୱର ! ଶ୍ରୀଚରଣ ଧରି ଅନୁନୟ କରୁଛି, ଏ ନାରକୀ ପ୍ରତିଜ୍ଞା ତ୍ୟାଗ କରନ୍ତୁ ।

ଗୋଲାପ—ଏ ଗୋଲାମର ମଧ୍ୟ ଶ୍ରୀଚରଣରେ ସେହି ମିନତି, ଜନାବ୍ ।

କଳାପାହାଡ଼—( ସ୍ୱଗତଃ ) ନା, ନା, ହୃଦୟ ! କୋମଳ ହୁଅ ନା । (ପ୍ରକାଶ୍ୟେ) ଦୁଲ୍ଆ ତୁମ୍ଭେ ହାରେମବାସିନୀ—ଗୋଲାପ ! ତୁ ଗୋଲାମ୍— ତୁମ୍ଭ ଉଭୟଙ୍କର ନ୍ୟାଯ୍ୟ ପ୍ରଦେଶ, ଅନ୍ତଃପୁର —ଅଲୋଚ୍ୟ ବିଷୟ,ଗୃହ—ଏ' ଜଟିଳ ବିଷୟରେ କୌଣସି ଅଧିକାର ନାହିଁ । ଯାଏଁ, ମୋତେ ଶୀଘ୍ର ପ୍ରସ୍ତୁତ ହେବାକୁ ହେବ । ( ପ୍ରସ୍ଥାନ )

ଦୁଲ୍ଆ—( କଳାପାହାଡ଼ର ଗମନ ପଥକୁ ଚାହିଁ ବ୍ୟଥିତ ହେଲ )

ଗୋଲାପ—ଭଉଣି ! ବୃଥା ଚିନ୍ତା ତ୍ୟାଗ କର—ବର୍ତ୍ତମାନ ଚିନ୍ତା କରି ଦେଖ ଥରେ, ପୁରୁଷ ଚକ୍ଷୁରେ ସ୍ତ୍ରୀଜାତି କେତେ ନୀଚ—ପତ୍ନୀର କର୍ତ୍ତବ୍ୟ କେତେ ସଙ୍କୀର୍ଣ୍ଣ ।

ଦୁଲ୍ଆ—ଭାଇ ! ଭାଇ !

ଗୋଲାପ—ଆସ ଭଉଣି ! ପୁରୁଷ ସ୍ତ୍ରୀକୁ ଯେତେ ହୀନ ମନେ କରୁ—ପତି ପତ୍ନୀକୁ ଯେତେ ଅପଦାର୍ଥ ଜ୍ଞାନ କରୁ, ସ୍ତ୍ରୀର ଉପଯୁକ୍ତ ଧର୍ମ କରିବ ଆସ— ପତ୍ନୀର ଉପଯୁକ୍ତ କାର୍ଯ୍ୟ କରିବ ଆସ ।

ଦୁଲ୍ଆ—କୁହ ଭାଇ, କି ଉପଯୁକ୍ତ କାର୍ଯ୍ୟ କରିବି ?

ଗୋଲାପ—କି ଉପଯୁକ୍ତ କାର୍ଯ୍ୟ ?—ତୁମ୍ଭର କାର୍ଯ୍ୟ ପତିଙ୍କୁ ପାପ-ଗ୍ରାସରୁ ଉଦ୍ଧାର କରିବା—ବିପଥ ଗମନରୁ ରକ୍ଷା କରିବା ।

ଦୁଲ୍ଆ—ଭାଇ ! ପତି ଦେବତା—ସେ ପାପୀ ହେଲେ ମଧ୍ୟ, ପତ୍ନୀର ଦେବତା, ପୂଜାର ସାମଗ୍ରୀ—ତେଣୁ ତାଙ୍କର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବି କିପରି ?

ଗୋଲାପ—ଭଉଣି ! ପତ୍ନୀର କର୍ତ୍ତବ୍ୟ ତେବେ ତୁମ୍ଭେ ଅବହେଳା କରୁନାହିଁ କି ?

ଦୁଲ୍ଆ—କିପରି, ଭାଇ ? ପତ୍ନୀର କର୍ତ୍ତବ୍ୟ ପତିଙ୍କୁ ପ୍ରେମଦାନ—ତାହା କଣ ପୂର୍ଣ୍ଣମାତ୍ରାରେ କରି ନାହିଁ ?

ଗୋଲାପ—କାହିଁ କରିଛ ? ଏହି କି ପ୍ରକୃତ ପ୍ରେମଦାନ ? ତୁମ୍ଭର ପ୍ରକୃତ ପ୍ରଣୟ ଥିଲେ କି, ପତି ତୁମ୍ଭର ପାପ-ଗ୍ରାସାଭିମୁଖରେ ଆଜି ଏପରି ଦ୍ରୁତଗତିରେ ଧାବମାନ ହେଉଥାନ୍ତେ ?—ତୁମ୍ଭର ପ୍ରକୃତ କର୍ତ୍ତବ୍ୟ ବୋଧ ଥିଲେ କି, ସ୍ୱାମୀ ତୁମ୍ଭର ବିପଥଗାମୀ ହେବାକୁ ଆଜି ଏପରି ଉନ୍ମତ୍ତ ହୋଇ ଉଠୁଥାନ୍ତେ ? ଭଉଣି ! ପତ୍ନୀର ସେହି ପ୍ରକୃତ କର୍ତ୍ତବ୍ୟଜ୍ଞାନ, ଯାହା ତାକୁ ଉତ୍ତେଜିତ କରେ, ନିଜର ପ୍ରାଣବଳୀଦ୍ୱାରା ପତିଙ୍କୁ ସୁପଥରେ ଚାଳନ କରିବାକୁ—ସେହି ପ୍ରକୃତ ପ୍ରଣୟ, ଯାହା ତାକୁ ଉତ୍ସାହିତ କରେ, ନିଜର ସୁଖ ଶାନ୍ତି ବିସର୍ଜନ

ଦ୍ୱାରା ପତିକୁ ପବିତ୍ର ସୁଖଶାନ୍ତିରେ ସ୍ଥାପନ କରିବାକୁ ।

ବୁଲିଆ—ଗୋଲାପ୍ ! ଗୋଲାପ୍ ! ଛଦ୍ମବେଶରେ କିଏ ତୁମ୍ଭେ, ଭାଇ ? ମୋର ଆବଦ୍ଧ ଚକ୍ଷୁ ପ୍ରକୃତରେ ଆଜି ଉନ୍ମୁକ୍ତ କରିଦେଲ—ମୋର ତମୋମୟ ହୃଦୟ ପ୍ରକୃତରେ ଆଜି ଆଲୋକିତ କରିଦେଲ—ଆସ ଭାଇ, ମୋତେ ପତ୍ନୀର ଉପଯୁକ୍ତ କାର୍ଯ୍ୟ ଶିକ୍ଷା ଦେବ, ଆସ ।

ଗୋଲାପ—ଚାଲ ଭଉଣି, ଏ ଗୋଲାମକୁ ଗୋଲାମର ଉପଯୁକ୍ତ କାର୍ଯ୍ୟ ଶିକ୍ଷା ଦେବ, ଚାଲ ।

( ଉଭୟଙ୍କର ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ଶିବିର—

[ ଚିନ୍ତିତ ମୁକୁନ୍ଦଦେବ ଦ୍ରୁତ ପଦସଞ୍ଚାରଣ କରୁଥିଲେ ]

ମୁକୁନ୍ଦଦେବ—ମୋର ଉତ୍କଳୀୟ ସୈନ୍ୟଗଣ ଏ ପର୍ଯ୍ୟନ୍ତ ଆସି ପହଞ୍ଚିଲେ ନାହିଁ କାହିଁକି ? ଆଉ ତ ସେମାନଙ୍କ ଅପେକ୍ଷାରେ ସ୍ଥିର ରହିପାରୁ ନାହିଁ । କଳାପାହାଡ଼ର ଆକ୍ରମଣ ଯେ ପ୍ରତିମୁହୂର୍ତ୍ତରେ ଆଶଙ୍କା କରୁଛି ।

( ନେପଥ୍ୟ )—( ଉତ୍କଳୀୟ ସୈନ୍ୟଗଣଙ୍କ ଆର୍ତ୍ତନାଦ ଶୁଣାଗଲା )

ଏ କ'ଣ ? ଏ' କି ଆର୍ତ୍ତନାଦ ? ଜଗନ୍ନାଥ ଭରସା ! ( ପ୍ରସ୍ଥାନୋଦ୍ୟତ )

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—'ଜଗନ୍ନାଥ ଭରସା'—ଆସ ମୁକୁନ୍ଦ ଦେବ, ହିନ୍ଦୁ-କୁଳ-ତିଳକ—ଯବନ ହସ୍ତରେ ଆଜି ବନ୍ଦୀ ହେବ ଆସ । ସ୍ୱ-ହସ୍ତରେ କାଲି ଶୀତଳ-ଶୋଣିତ ତର୍ପଣ କରି ମୋର ପ୍ରତିହିଂସା-ବହ୍ନି କିୟଦଂଶରେ ନିର୍ବାପିତ କରିବି ।

ମୁକୁନ୍ଦଦେବ—କିଏ ତୁମ୍ଭେ ? ତୁମ୍ଭେ ମନୁଷ୍ୟ, ନା ରାକ୍ଷସ ?

କଳାପାହାଡ଼—ମୁଁ ରାକ୍ଷସ—ଚିହ୍ନିପାରୁ ନାହିଁ କଳା-ପାହାଡ଼-ରାକ୍ଷସକୁ ?

ମୁକୁନ୍ଦଦେବ—କଳାପାହାଡ଼—ତୁମ୍ଭେ ?

କଳାପାହାଡ଼—ହାଃ ହାଃ ହାଃ—କଳାପାହାଡ଼କୁ ଚିହ୍ନି ପାରୁନାହଁ ? ତୁମ୍ଭେ ହିନ୍ଦୁ ହୋଇ କଳାପାହାଡ଼କୁ ଜାଣିପାରୁ ନାହଁ ?—ହାଃ ହାଃ ହାଃ—

ମୁକୁନ୍ଦଦେବ—ଏ କି ନାରକୀୟ ମୂର୍ତ୍ତି ଧାରଣ କରିଛ, ସେନାପତେ ?

କଳାପାହାଡ଼—ନାରକୀୟ-ମୂର୍ତ୍ତି ନିଜେ ମୁଁ ଧାରଣ କରିଛି, ନା ନାରକୀୟ-ମୂର୍ତ୍ତି ତୁମ୍ଭର ଏହି ହିନ୍ଦୁ ଭାଇମାନେ ଆଜି ମୋତେ ଧାରଣ କରାଇଛନ୍ତି ?

ମୁକୁନ୍ଦଦେବ—କିଛି ମୁଁ ବୁଝିପାରୁନାହିଁ, ସେନାପତେ !

କଳାପାହାଡ଼—ବୁଝିବାର ଆବଶ୍ୟକ ନାହିଁ, ମୁକୁନ୍ଦ ଦେବ ! ରକ୍ତ, ରକ୍ତ—ଖାଲି ହିନ୍ଦୁର ରକ୍ତ—ହିନ୍ଦୁର ରକ୍ତ—

ମୁକୁନ୍ଦଦେବ—ଏ କି ଭୀଷଣ ମୂର୍ତ୍ତି !—କପୋଳଦେଶ କି ଗୋଟାଏ ବିଜାତୀୟ ଘୃଣାରେ କୁଞ୍ଚିତ—ନେତ୍ରଯୁଗଳ କି ଗୋଟାଏ ପୈଶାଚିକ କ୍ରୋଧରେ ରଞ୍ଜିତ—ଆପାଦମସ୍ତକ କି ଗୋଟାଏ ଅସ୍ୱାଭାବିକ ସ୍ପନ୍ଦନରେ ସ୍ପନ୍ଦିତ । ସେନାପତେ, ବୀର ତୁମ୍ଭେ—ପ୍ରକୃତିସ୍ଥ ହୁଅ ।

କଳାପାହାଡ଼—ପ୍ରକୃତିସ୍ଥ ହେବି, ମୁକୁନ୍ଦ—ତୋ'ର ରକ୍ତପାନ କରିସାରି—ହିନ୍ଦୁଜାତିର ଧ୍ୱଂସ ସାଧନ କରିସାରି—ହିନ୍ଦୁଧର୍ମର ମୂଳୋତ୍ପାଟନ କରିସାରି ।

ମୁକୁନ୍ଦଦେବ—ତୁମ୍ଭେ କି ବିଧର୍ମୀ—ନା ଚଣ୍ଡାଳ ?

କଳାପାହାଡ଼—ମୁଁ ଚଣ୍ଡାଳ !—ଯେଉଁ ଜାତିରେ ମୋର ଜନ୍ମ, ସେହି ଜାତି ପ୍ରତି ମୁଁ ଚଣ୍ଡାଳ—ଯେଉଁ କ୍ଷେତ୍ରରେ ମୋର ଦେହ ମନର ପ୍ରଥମ ଶୌର୍ଯ୍ୟ-କରଣ, ସେହି କ୍ଷେତ୍ର ପ୍ରତି ମୁଁ ଚଣ୍ଡାଳ ।

ମୁକୁନ୍ଦଦେବ—(ସ୍ୱଗତଃ) କି ଚଣ୍ଡାଳ ! ତ୍ୟକ୍ତ-ଧର୍ମୀ ହେଲେ କଣ ଲୋକ ଏହିପରି ପିଶାଚ ହୁଏ ?

କଳାପାହାଡ଼—ମୁକୁନ୍ଦଦେବ ! ବଳସ୍ତ ନିଷ୍ପ୍ରୟୋଜନ ? ଶୀଘ୍ର ଆତ୍ମସମର୍ପଣ କର—ହୃଦୟ-ରକ୍ତ-ପିପାସା କ୍ରମେ ଅସହ୍ୟ ହୋଇ ଉଠୁଛି ।

ମୁକୁନ୍ଦଦେବ—ହାଃ ହାଃ ହାଃ—ସେନାପତେ, ମୋତେ କଣ ଦୁର୍ବଳ ଶିଶୁ ବୁଝିଛ, ନା ସ୍ତ୍ରୀ, କାପୁରୁଷ ଭାବିଛ ?

କଳାପାହାଡ଼—ବୀର—ସାହସୀ—ପୁଣି ସବଳ ଯୁବକ । ମାତ୍ର—

ମୁକୁନ୍ଦଦେବ—ମାତ୍ର କଣ ?

କଳାପାହାଡ଼—ଉପାୟହୀନ ।

ମୁକୁନ୍ଦଦେବ—ଉପାୟହୀନ, ମୁକୁନ୍ଦଦେବ ?

କଳାପାହାଡ଼—ଏ କଥା କେବଳ ମୋତେ ଜଣା ।

ମୁକୁନ୍ଦଦେବ—ଜାଣ, ସେନାପତେ—ଶକ୍ତିଏ ତରବାରି ସାହାଯ୍ୟରେ, ଏକା ମୁକୁନ୍ଦଦେବ ସହସ୍ର ସହସ୍ର ସୈନ୍ୟ ବିପକ୍ଷରେ, କର୍ତ୍ତବ୍ୟ ରଣରେ ଦଣ୍ଡାୟମାନ ହୋଇପାରେ ?

କଳାପାହାଡ଼—(ସସ୍ମିତେ) ସେ ସାହାଯ୍ୟ ପାଇଲେ ତ ?

ମୁକୁନ୍ଦଦେବ—କିଏ ଅଛ—

[ କଉଲ୍ଲ ଓ ମୋଗଲଗଣର ପ୍ରବେଶ ]

କଉଲ୍ଲ—ହାଜର ବନ୍ଦା ।

ମୁକୁନ୍ଦଦେବ—ଏ ଯେ କଉଲ୍ଲ ! ଏ କ'ଣ ମୋଗଲଗଣ ?

( ନେପଥ୍ୟେ )—ଓଃ ମହାରାଜ ! ପଳାନ୍ତୁ, ପଳାନ୍ତୁ—ବିଶ୍ୱାସଘାତକତା—ବିଶ୍ୱାସଘାତକତା ।

ମୁକୁନ୍ଦଦେବ—ଏ କ'ଣ ଶୁଣୁଛି ? ଏ ଯେ ମୋର ଉତ୍କଳୀୟ ସୈନ୍ୟମାନଙ୍କର ଆର୍ତ୍ତନାଦ !

(ନେପଥ୍ୟେ)—ଉଃ ! ପ୍ରାଣଗଲା—ପ୍ରାଣ ଗଲା—

ମୁକୁନ୍ଦଦେବ—ଏ ଯେ ମୁମୂର୍ଷୁର ଆର୍ତ୍ତନାଦ !—ଭୟନାହିଁ, ସୈନ୍ୟଗଣ ! ( ପ୍ରସ୍ଥାନୋଦ୍ୟତ )

କଉଲ୍ଲ—( ଅସି ନିଷ୍କୋଷିତ କରି ) ଧୀରେ, ମୁକୁନ୍ଦଦେବ ।

କଳାପାହାଡ଼—ହାଃ ହାଃ ହାଃ—ମୁକୁନ୍ଦଦେବ ! କାହିଁ ତୁମ୍ଭର ତରବାରି ? କାହିଁ ତୁମ୍ଭର ଉତ୍କଳୀୟ ସୈନ୍ୟ ? ଆଜ କାହା ଅଧୀନରେ ତୁମ୍ଭର ମୋଗଲ ସୈନ୍ୟ ?—ବୃଥା ଅସ୍ଫାଳନ—ବୃଥା ଦାମ୍ଭିକତା ! କଉଲ୍ଲ, ତୁମର କାର୍ଯ୍ୟ କର ।

[ କଉଲ୍ଲ ବନ୍ଦୀ କରିବାକୁ ଉଦ୍ୟତ ହେବାରୁ ]

ମୁକୁନ୍ଦଦେବ—ସାବଧାନ ! ଶୃଗାଳ ହୋଇ ସିଂହର ଗାତ୍ର ସ୍ପର୍ଶ କରିବାକୁ ସାହସ ?

କଳାପାହାଡ଼—ବଡ଼ ଲଜ୍ଜା, ମୁକୁନ୍ଦଦେବ ! ବଡ଼ ଲଜ୍ଜା—ଶୃଗାଳ ହସ୍ତରେ ଆଜ ସିଂହର ବନ୍ଧନ-ଯୋଗ !

ମୁକୁନ୍ଦଦେବ—( ସ୍ୱଗତଃ ) ମୋର ମତିଭ୍ରମ ଘଟିଛି; ଭାବଣି ମୁଁ ଭୁଲି ଯାଇଛି ଯେ, ଉପାୟ ହୀନ ସିଂହକୁ ଛାର ଶୃଗାଳ ମଧ୍ୟ ପଦାଘାତ କରି ଚାଲିଯାଏ ।

କଳାପାହାଡ଼—କଉଲ୍ଲ ! ଛିଡ଼ା ହେଲ କାହିଁକି ? ତୁମ୍ଭର କାର୍ଯ୍ୟ ତୁମ୍ଭେ କର ।

କଉଲ୍ଲ—( ସଭୟେ ନିକଟକୁ ଯାଇ ଧୀରେ ଧୀରେ ବନ୍ଧନ ପୂର୍ବକ ) ଏଥର ବୁଝ ସମସ୍ତେ, କିଏ ସିଂହ—କିଏ ଶୃଗାଳ ?

ମୁକୁନ୍ଦଦେବ—(ସ୍ୱଗତଃ) ଅଦୃଷ୍ଟର ଲିପି ଅଖଣ୍ଡନୀୟ ।

କଳାପାହାଡ଼—ସେନାପତେ ! ବନ୍ଦୀକୁ ବନ୍ଦୀ-ଶାଳାକୁ ନେଇଯାଅ—ଆଉ ହୁକୁମ ମୋର, ବିନା ଅନୁମତିରେ ବନ୍ଦୀ ସହିତ କେହି ଦେଖା ସାକ୍ଷାତ ବା କଥାବାର୍ତ୍ତା କରିପାରିବ ନାହିଁ ।

କଉଲ୍ଲ—ଯୋ ହୁକୁମ୍, ଜନାବ୍ ! ଚଲିୟେ, ରାଜା ସାହେବ !

ମୁକୁନ୍ଦଦେବ—ଯିବା ଆଗେ କହିଯାଏଁ ମୋଗଲଗଣ ! ଏହି କି ତୁମ୍ଭମାନଙ୍କର ରାଜଭକ୍ତି, ଏହି କି ତୁମ୍ଭମାନଙ୍କର ମନୁଷ୍ୟତ୍ୱ—ରାଜାର ଅନ୍ନ ଖାଇ, ରାଜାର ଆଶ୍ରୟରେ ପ୍ରତିପାଳିତ ହୋଇ, ରାଜାର ବିରୁଦ୍ଧରେ ଅସ୍ତ୍ରଧାରଣ କରିବା—ଆଶ୍ରୟଦାତାର ସର୍ବନାଶ ସାଧନରେ ତତ୍ପର ହେବା ?

[ ମୋଗଲଗଣ ନୀରବ ରହିଲେ ]

କଳାପାହାଡ଼—ଜଲଦି ଲେ ଯାଓ ।

ମୁକୁନ୍ଦଦେବ—( ଯାଉଁ ଯାଉଁ ) ଆଜ ଏ' କି ପରିଚୟ ତୁମ୍ଭମାନଙ୍କର, ବୀରଗଣ ? ଆଜ ଏ' କି ନୀଚତା

ତୁମ୍ଭମାନଙ୍କର, ମୋଗଲ୍‌ଗଣ ?—ପ୍ରକୃତରେ ଯେବେ ତୁମ୍ଭେମାନେ ମୋଗଲ୍ ହୋଇ ଥାଅ, ପ୍ରକୃତରେ ଯେବେ ତୁମ୍ଭେମାନେ ପବିତ୍ର ଇସ୍‌ଲାମ୍-ଧର୍ମାବଲମ୍ବୀ ବୀର ହୋଇଥାଅ, ହୀନତା ତ୍ୟାଗ କର—ବିଶ୍ୱାସଘାତକତା ବର୍ଜନ କର—ପିତୃ-ତୁଲ୍ୟ ରାଜାଙ୍କ ସପକ୍ଷେ, ବୀରଦର୍ପେ ଅସ୍ତ୍ର ଧାରଣ କର—ତତ୍ତୁଲ୍ୟ ଅନ୍ନଦାତାଙ୍କ ମଙ୍ଗଳ ନିମନ୍ତେ, ଆତ୍ମବିସର୍ଜନ କର ।

ମୋଗଲ୍‌ଗଣ—ମହାରାଜ । ମହାରାଜ !

କଳାପାହାଡ଼—ଜଲ୍‌ଦି ଲେ ଯାଓ, ସେନାପତେ ।

[ କତ୍‌ଲୁର ମୁକୁନ୍ଦଦେବଙ୍କୁ ସବଳରେ ଟାଣି ନେଇ ପ୍ରସ୍ଥାନ ]

କଳାପାହାଡ଼—ମୋଗଲ୍‌ଗଣ । ତୁମ୍ଭେମାନେ କି ଧର୍ମ-ଦ୍ରୋହୀ ? ତୁମ୍ଭେମାନେ କି ହେୟ କାଫେର୍ ? କାଫେର୍ କଥାରେ ବିଶ୍ୱାସ ସ୍ଥାପନ କରୁଛ ? କାଫେର୍ କଥାରେ ଉନ୍ମତ୍ତ ହୋଇ ଉଠୁଛ ?—ଜାଣ, ଭାଇମାନେ । ଏହି ହେୟ କାଫେରର ଉଦ୍ଦେଶ୍ୟ କ'ଣ ?—ପବିତ୍ର ଇସ୍‌ଲାମ୍ ଧର୍ମାବଲମ୍ବୀ-ମାନଙ୍କୁ ଅପବିତ୍ର କାଫେରାଧୀନ କରିବା—ସେମାନଙ୍କ ପ୍ରାଣାଧିକ ପବିତ୍ର ଇସ୍‌ଲାମ୍ ଧର୍ମକୁ ହେୟ, ଅପବିତ୍ର କାଫେର୍ ଧର୍ମରେ ପରିଣତ କରିବା ।

ମୋଗଲ୍‌ଗଣ—ଏତେ ହିମ୍ମତ୍ କାଫେରର !

କଳାପାହାଡ଼—ଆହୁରି ଶୁଣ, ଭାଇମାନେ । ତୁମ୍ଭମାନଙ୍କ ବାଦ୍‌ସାହା ଅକବରଙ୍କ ସହିତ ମୋର କୌଣସି ଶତ୍ରୁତା ନାହିଁ—ତାଙ୍କ ସହିତ ଶତ୍ରୁତା, ନବାବ ସୁଲେମାନଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଅନ୍ତର୍ହିତ ହୋଇଛି । ବାଦସାହା ଅକ୍‌ବର ବର୍ତ୍ତମାନ ତୁମ୍ଭମାନଙ୍କର ଯେପରି ବାଦ୍‌ସାହା, ମୋର ମଧ୍ୟ ସେହିପରି ବାଦ୍‌ସାହା । ଜୟ ବାଦ୍‌ସାହା ଅକ୍‌ବରଙ୍କର ଜୟ !

ମୋଗଲ୍‌ଗଣ—ଜୟ ବାଦ୍‌ସାହା ଅକ୍‌ବରଙ୍କର ଜୟ !

କଳାପାହାଡ଼—ତେବେ ଆସ, ଭାଇମାନେ—ସ୍କନ୍ଧର ସହିତ ସ୍କନ୍ଧ ମିଳିତ କର—ହସ୍ତର ସହିତ ହସ୍ତ ମିଳିତ କର, ସମସ୍ୱରେ, 'ଅଲ୍ଲା ହୋ ଅକ୍‌ବର' ଚିତ୍କାରରେ ଗଗନ ମେଦିନୀ ବିଦୀର୍ଣ୍ଣ କର, କାଫେର୍ ଜାତିର ବିନାଶ ସାଧନରେ ଦୃଢ଼-ପ୍ରତିଜ୍ଞ ହେବା—କାଫେର୍-ଧର୍ମର ଉଚ୍ଛେଦ ବିଷୟରେ ବଦ୍ଧପରିକର ହେବା—କାଫେର୍-ନାମର ଲୋପ ଚେଷ୍ଟାରେ ଯତ୍ନଶୀଳ ହେବା ।

ମୋଗଲ୍‌ଗଣ—ଆଦେଶ କରନ୍ତୁ ନବାବ ସାହେବ୍ ! ଆମ୍ଭେମାନେ ସମସ୍ତେ ପ୍ରସ୍ତୁତ୍ ।

କଳାପାହାଡ଼—ବର୍ତ୍ତମାନ ତୁମ୍ଭେମାନେ ଆମୋଦ କର, ସ୍ଫୂର୍ତ୍ତିକର—ସିରାଜି, ବାଈଜି—

( ପ୍ରସ୍ଥାନ )

ମୋଗଲ୍‌ଗଣ—ୟା ଅଲ୍ଲା । କେୟା ତୋଫା । କେୟା ମଜା । ଲାଓ ବାଈଜି । ଲାଓ ସିରାଜି ।

[ ମୋଗଲ୍‌ଗଣ ସିରାଜି, ବାଈଜି ଅଣାଇ ଆମୋଦପ୍ରମୋଦ କରୁ କରୁ ପ୍ରସ୍ଥାନ—ଗୁପ୍ତ ସ୍ଥାନରୁ କଳାପାହାଡ଼ର ପୁନଃ ପ୍ରବେଶ ଓ ଉପହାସେ ମୋଗଲ୍‌ମାନଙ୍କୁ ଦେଖୁଥିବା ]

କଳାପାହାଡ଼—ଏହିଥର ହିନ୍ଦୁ-ରାଜା ପ୍ରକୃତ ବନ୍ଦୀ—ହିନ୍ଦୁ ଧର୍ମରାଜ ମୋର ସମ୍ପୂର୍ଣ୍ଣ କବଳରେ । କାଲି ହିନ୍ଦୁ-ରକ୍ତପାତର ସୂଚନା—ମୋର ପ୍ରତିଜ୍ଞା ପୂରଣର ପ୍ରାରମ୍ଭ । ଯାଏ, ବର୍ତ୍ତମାନ କିଛିକାଳ ବିଶ୍ରାମ କରେ ।

[ ଗୋଲ୍‌ପର ପ୍ରବେଶ ]

ଗୋଲ୍‌ପ—ବିଶ୍ରାମ କି କରି ପାରିବେ, ଜନାବ୍ ?

କଳାପାହାଡ଼—କାହିଁକି ନ ପାରିବି, ଗୋଲ୍‌ପ୍ ପରି ଗୋଲାମର ସେବାରେ କାହାର ଶ୍ରାନ୍ତି ବିଦୂରିତ ନ ହେବ ? ଗୋଲ୍‌ପ୍ ପରି ଗୋଲାମର ଯତ୍ନରେ କାହାର କ୍ଲେଶ ଉପଶମିତ ନ ହେବ ?

ଗୋଲ୍‌ପ—ମାତ୍ର ହୃଦୟର କ୍ଲେଶ, ହୃଦୟର ଶାନ୍ତି ଅପନୋଦନ କରି ପାରିବେ କି ?

କଳାପାହାଡ଼—ଗୋଲ୍‌ପର ଗୋଲ୍‌ପୀ-ମୁଖ ବିଲୋକନରେ, ଗୋଲ୍‌ପର ଗୋଲ୍‌ପୀ-କଥା ଶ୍ରବଣରେ ସବୁ ଚିନ୍ତା ଭୁଲିଯାଏ—ସବୁ ଶୋକ ଦୂର ହୋଇଯାଏ ।

ଗୋଲାପ—ମାନ୍ଦ ଗୋଲାପ ପ୍ରସ୍ଫୁଟିତ ଥିଲେ ତ ରୂପ ବିକଶିବ—ଗନ୍ଧ ଚହଟାଇବ ?

କଳାପାହାଡ଼—ମୋର ଗୋଲାପ୍ ଯେ ସଦା ପ୍ରସ୍ଫୁଟିତ । ଏଁ । ସତେ, ସତେ ଆଜ ଏପରି ମ୍ଳାନମୁଖ କାହିଁକି, ଗୋଲାପ୍ ?

ଗୋଲାପ—କୀଟ ଦଂଶୁଛି, ଜନାବ ।

କଳାପାହାଡ଼—କୀଟ । କି କୀଟ ? କାହିଁ, ଗୋଲାପ୍ ?

ଗୋଲାପ—ଜନାବ । ନିଜେ ଜନ୍ମଦାତା ହୋଇ, ପଚାରୁଛନ୍ତି ପୁଣି ?

କଳାପାହାଡ଼—ମୁଁ ?—ପ୍ରହେଳିକା ଛାଡ଼ ଗୋଲାପ୍ ।

ଗୋଲାପ—ତେବେ କହନ୍ତୁ ଜନାବ୍, କାହାକୁ ଆଜ ଆପଣ ଅନ୍ଧକାର କାରାଗୃହରେ ନିକ୍ଷେପ କରିଛନ୍ତି ?—ତାହାକୁ ଆପଣ କାଲି ଅସ୍ପୃଶ୍ୟ ଜହ୍ଲାଦ୍ ହସ୍ତରେ ବିନଷ୍ଟ କରିବାକୁ ଉଦ୍ୟତ ?—କାହାର ପବିତ୍ର ନାମ ଲୋପରେ ହିନ୍ଦୁର ହାହା-ରବ ଶୁଣିବାକୁ ଉତ୍କଣ୍ଠିତ ?

କଳାପାହାଡ଼—( ସସ୍ମିତେ ) ବନ୍ଦୀ ହିନ୍ଦୁ-ରାଜ ମୁକୁନ୍ଦଦେବ, ଗୋଲାପ୍ ।

ଗୋଲାପ—'ବନ୍ଦୀ ହିନ୍ଦୁ-ରାଜ ମୁକୁନ୍ଦଦେବ' ଏହି ପଦଗୁଡ଼ିକ ଏତେ ସହଜରେ ଉଚ୍ଚାରଣ କରି ପାରିଲେ ? ଜିହ୍ୱା ସଙ୍କୁଚିତ ହୋଇଗଲା ନାହିଁ ?—ହିନ୍ଦୁର ପ୍ରାଣ-ସର୍ବସ୍ୱ ଧର୍ମରାଜଙ୍କ ନିଧନ ଚିତ୍ର ଏତେ ସହଜରେ ଅଙ୍କନ କରିନେଲେ ?—ଶରୀର ରୋମାଞ୍ଚିତ ହୋଇ ଉଠିଲା ନାହିଁ—ହିନ୍ଦୁର ଗଗନଭେଦୀ ଆର୍ତ୍ତନାଦ ଏତେ ସହଜରେ ସହ୍ୟ ବୋଧ କରିନେଲେ ? ହୃଦୟ କମ୍ପିତ ହୋଇ ଉଠିଲା ନାହିଁ ?—ଜନାବ୍ । ଜନାବ୍ ।

କଳାପାହାଡ଼—ଗୋଲାପ୍ । ତୁ ମୁସଲମାନମାନଙ୍କ ମଧ୍ୟରେ ରହି ସୁଦ୍ଧା ଏ ପର୍ଯ୍ୟନ୍ତ ହିନ୍ଦୁ-ଭାବ ଛାଡ଼ି ନାହୁଁ ?

ଗୋଲାପ—ଜନାବ୍ । ମେଘାବୃତ ହେଲେ ସୁଦ୍ଧା, ସୂର୍ଯ୍ୟ କି କେବେ ଉଷ୍ଣତା ପରିହାର କରେ ?—ରାହୁଗ୍ରସ୍ତ ହେଲେ ସୁଦ୍ଧା ଶଶାଙ୍କ କି କେବେ ଶୀତଳତା ବିସର୍ଜନ କରେ ?

କଳାପାହାଡ଼—ତେବେ ଦୁଃଖ କର ବାଳକ, ହିନ୍ଦୁ-ରାଜ ବନ୍ଦୀ—ତେବେ ଅଶ୍ରୁପାତ କର ବାଳକ, ଧର୍ମ-ରାଜର ଶିରଚ୍ଛେଦନ ହେବ—ତେବେ ସଙ୍କାପ୍ରାନ ହ' ବାଳକ, ହିନ୍ଦୁ-ନାମ ଅଚିରେ ଏ ଧରାଧାମରୁ ଉତ୍ପାଟିତ ହେବ ।

ଗୋଲାପ—ଜନାବ୍ । ଜନାବ୍ ।

କଳାପାହାଡ଼—ମୁଁ ନାଗୁର୍, ବାଳକ । ମୁଁ ହିନ୍ଦୁର ରାଜ୍ୟ ଧ୍ୱଂସ କରିବି—ହିନ୍ଦୁର ଜାତି ଧ୍ୱଂସ କରିବି—ହିନ୍ଦୁର ଧର୍ମ ଧ୍ୱଂସ କରିବି, ଏହାହିଁ ମୋର ପ୍ରତିଜ୍ଞା—ମୋର କର୍ତ୍ତବ୍ୟ ।

ଗୋଲାପ—ତେବେ ମୋର କର୍ତ୍ତବ୍ୟ ମୋତେ କରିବାକୁ ଦିଅନ୍ତୁ, ଜନାବ୍ ।

କଳାପାହାଡ଼—ତୋର କର୍ତ୍ତବ୍ୟ ?

ଗୋଲାପ—ମୋର କର୍ତ୍ତବ୍ୟ କିଛି ନାହିଁ ? ହିନ୍ଦୁ ହୋଇ, ମୋର କର୍ତ୍ତବ୍ୟ କିଛି ନାହିଁ ? ଜଣେ ହିନ୍ଦୁ-ଦ୍ୱେଷୀ ହିନ୍ଦୁର ସର୍ବନାଶ କରିବ, ମୁଁ ହିନ୍ଦୁ ହୋଇ ତାହା ନିଶ୍ଚିନ୍ତ ହୃଦୟରେ ସହ୍ୟ କରିବି ?—ଅସମ୍ଭବ—ଅସମ୍ଭବ ।

କଳାପାହାଡ଼—ହାଃ ହାଃ—ବାଳକ, ତୋର ଶିଶୁ-ଚପଳତା ଏ ପର୍ଯ୍ୟନ୍ତ ଯାଇ ନାହିଁ, ଦେଖୁଛି । ଯାହାହେଉ ଗୋଲାପ ତୋର ସ୍ୱଧର୍ମ ପ୍ରତି ଏପରି ଦୃଢ଼ ବିଶ୍ୱାସ ଦେଖି ମୁଁ ଭାରି ଖୁସି ହେଲି ।

ଗୋଲାପ—( ସ୍ୱଗତଃ ) ମୁଁ ତ ଭାରି ଭୁଲ କାମ କରି ପକାଇଲି—ଉତ୍ତେଜନାରେ ମୋର ମନୋଭାବ ଯେ ବ୍ୟକ୍ତ କରିପକାଇଲି । ( ପ୍ରକାଶ୍ୟ ) ଜନାବ୍ । ମୋ'ର ଧୃଷ୍ଟତା ମାର୍ଜନା କରନ୍ତୁ ।

କଳାପାହାଡ଼—ନା, ନା, ଗୋଲାପ । ତୋର ମାର୍ଜନା-ଭିକ୍ଷା ହିଁ ଧୃଷ୍ଟତା ।

ଗୋଲାପ—ପ୍ରଭୋ, ପ୍ରଭୋ । ତେବେ, ତେବେ—

କଳାପାହାଡ଼—କହ, କହ କଣ କହିବାକୁ ଚାହୁଁ ।

ଗୋଲାପ—( ଉଦ୍‌ବେଳିତ ହୃଦୟ ହେବା )

କଳାପାହାଡ଼—କହ, କହ ଗୋଲାପ—କିଛି ଭୟ ନାହିଁ ତୋର ।

ଗୋଲାପ—( ଅସ୍ୱସ୍ତ୍ୟମ ଭଙ୍ଗୁ କରୁ ) ଜନାବ୍ । କାଲି ହିନ୍ଦୁ-ରାଜାଙ୍କ ରକ୍ତପାତ ହେବ—ହିନ୍ଦୁ ଧର୍ମର ସର୍ବନାଶ ହେବ—

କଳାପାହାଡ଼—ହଁ, ତା'ତ ହେବ ।

ଗୋଲାପ—ସେହି ସର୍ବନାଶ ହେବା ପୂର୍ବରୁ ଏହି ହତଭାଗ୍ୟ ହିନ୍ଦୁ ଥରେ ସଜୀବ ରାଜଦର୍ଶନ କାମନା କରେ ।

କଳାପାହାଡ଼—କାଲି ବଧଭୂମିରେ ଦେଖି ପାରିବୁ ।

ଗୋଲାପ—ନା, ନା, ଜନାବ୍ । ଏ ହତଭାଗ୍ୟର ଧର୍ମ ବିଷୟରେ କିଛିତ ଉପଦେଶ ଓ ମନ୍ତ୍ର ନେବାର ଅଛି—

କଳାପାହାଡ଼—ତୋର ତ ଭାରି ଧର୍ମମତ ଦେଖୁଛି, ଗୋଲାପ ? ( ସ୍ୱଗତଃ ) ମୋର' ବି ଏହିପରି ଦିନେ—ଅନ୍ଧବିଶ୍ୱାସ—ଅନ୍ଧବିଶ୍ୱାସ—(ପ୍ରକାଶ୍ୟେ) ଆଚ୍ଛା, କେତେବେଳେ ସାକ୍ଷାତ୍ କରିବାକୁ ଚାହୁଁ ?

ଗୋଲାପ—ଆଜି ରଜନୀରେ, ବନ୍ଦୀଶାଳାରେ—ଏକାକୀ ସାକ୍ଷାତ ହେଲେ—

କଳାପାହାଡ଼—ଅସମ୍ଭବ—ଅସମ୍ଭବ । ବନ୍ଦୀର ସହିତ ନିର୍ଜନାଳାପ—ପୁଣି ରଜନୀରେ, ଏହା ମୋର ଆଜ୍ଞା ଓ ନୀତିବିରୁଦ୍ଧ ।

ଗୋଲାପ—ଜନାବ୍—ଜନାବ୍ । ଗୋଲାମର ଦୀର୍ଘକାଳ ଗୋଲାମୀ-ସଞ୍ଚିତ ପ୍ରାପ୍ୟ ଇନାମସ୍ୱରେ ଏତିକି ମାତ୍ର ଅନୁଗ୍ରହ—

କଳାପାହାଡ଼—ଅନୁଗ୍ରହ—ଅନୁଗ୍ରହ ନୁହେ ଗୋଲାପ୍ । ତୋର ପ୍ରାପ୍ୟ ଯେ ଅତି ତୁଚ୍ଛ—ଅତି ତୁଚ୍ଛ ।— ଯା', ଏହିକ୍ଷଣି ମୋର ନାମାଙ୍କିତ ପଞ୍ଜା ମୁଁ ତୋତେ ଦେଉଛି ।

ଗୋଲାପ—ଜୟ ନବାବ ବାହାଦୁରଙ୍କ ଜୟ ।

( ଉଭୟଙ୍କର ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

—କାରାଗୃହ—

[ ବନ୍ଦୀ ମୁକୁନ୍ଦଦେବ ]

ମୁକୁନ୍ଦଦେବ—ଯାଅ ଯାମିନୀ । ଭାରି ଭାଗ୍ୟବତୀ ତୁମ୍ଭେ—ନିଷ୍କଳଙ୍କ ଭାବରେ ମୋ ନିକଟରୁ ଆଜି ବିଦାୟ ନେଇ ପାରିଛ । ଆସ ଉଷାଦେବୀ । ଲଜ୍ଜା କାହିଁକି ?—ମୁଁ ଜାଣେ ତୁମ୍ଭେ ସ୍ୱଚ୍ଛମନା, ମାତ୍ର କରିବ କ'ଣ ? ଅଧର୍ମର ଅଧୁନା ଅଧିକାର— ଅନ୍ୟାୟର ଅଧୁନା ଶାସନ । କାନ୍ଦୁଛ କାହିଁକି ? ବୃଥାରେ ଲୋତକପାତ କରୁଛ କାହିଁକି ? ମନେ କରିଛ କଣ, ଏତଦ୍ୱାରା ତ୍ୟକ୍ତଧର୍ମୀର ସ୍ୱଧର୍ମାବଲମ୍ବୀ ପ୍ରତି ଅନୁକମ୍ପା ହେବ ?—ବିଶ୍ୱାସଘାତକର ଶାଣିତ କୃପାଣ ଶାଣଶୂନ୍ୟ ହେବ ?—ମୋର ଶୀତଳ ରକ୍ତ-ପ୍ରବାହ ପ୍ରତିରୁଦ୍ଧ ହେବ ? ଅସମ୍ଭବ—ହେ ଜଗନ୍ନାଥ । ମୋତେ କ'ଣ ବିନା ଯୁଦ୍ଧରେ ଏହିପରି ବନ୍ଦୀକୃତ ଛାଗ, ମେଷତୁଲ୍ୟ ପ୍ରାଣବଳି ଦେବାକୁ ହେବ—ଭୀରୁ କାପୁରୁଷ ତୁଲ୍ୟ ? ଓଃ । କ୍ଷତ୍ରିୟ ହୃଦୟରେ କି ଯନ୍ତ୍ରଣା—ବୀର ମର୍ମରେ କି ବେଦନା ।

[ ଗୋଲାପର ଅସିହସ୍ତେ ପ୍ରବେଶ ]

ଗୋଲାପ—ଏ ଦୀନ ପ୍ରାଣରେ କି ଯାତନା—

ମୁକୁନ୍ଦଦେବ—( ସାଶ୍ଚର୍ଯ୍ୟେ ) ତୁମ୍ଭେ କିଏ, ବାଳକ ?

ଗୋଲାପ—ମୁଁ ଜଣେ ହତଭାଗ୍ୟ ହିନ୍ଦୁ, ଧର୍ମ-ରାଜ ।

ମୁକୁନ୍ଦଦେବ—ଏହି ମୁସଲମାନ ପରିବାର ମଧ୍ୟରେ କି ତୁମ୍ଭର ବାସ ?

ଗୋଲାପ—ଆଜ୍ଞା, ଧର୍ମ-ରାଜ ।

ମୁକୁନ୍ଦଦେବ—ତେବେ ହିନ୍ଦୁ ବୋଲି ପରିଚୟ ଦେଇ ବନ୍ଦୀ ସଙ୍ଗେ ବ୍ୟଙ୍ଗ କରୁଛ କାହିଁକି, ବାଳକ ?

ଗୋଲାପ—ବ୍ୟଙ୍ଗ ନୁହେ, ମହାରାଜ । ବିଶ୍ୱାସ କରନ୍ତୁ ।

ମୁକୁନ୍ଦଦେବ—ବିଶ୍ୱାସ କରିବି ? ହସ୍ତରେ ତରବାରି— ନିଶୀଥରେ ଆଗମନ—ବନ୍ଦୀର ସହିତ ନିର୍ଜନ

ଧାଷାଡ—ବିଶ୍ୱାସ କରବ ? ନିଶ୍ଚୟ ତୁମ୍ଭେ ଗୁପ୍ତ-ହତ୍ୟା କରିବାକୁ ପ୍ରେରିତ ।

ଗୋଲାପ—ଗୁପ୍ତଭାବେ ରକ୍ଷା କରିବାକୁ ପ୍ରେରିତ, ମହାରାଜ ।

ମୁକୁନ୍ଦଦେବ—ଗୁପ୍ତଭାବେ ରକ୍ଷା ।

( ଅଣ୍ଟୁଙ୍ଗୀଭାବେ ଗୃହିବା )

ଗୋଲାପ—ଅଧମକୁ ବିଶ୍ୱାସ କରନ୍ତୁ, ଧର୍ମ-ରାଜ !

ମୁକୁନ୍ଦଦେବ—କିପରି ବିଶ୍ୱାସ, ବାଳକ ?—ଯେଉଁପରି ବିଶ୍ୱାସ ନିଜର ଅଧୀନସ୍ଥ କର୍ମଚାରୀ ମାନଙ୍କଠାରେ ସ୍ଥାପନ କରି ଆଜି ଏହି ଦୀନହୀନ ଲୁଣ୍ଠିତ ଜୀବନ ଯାପନ କରୁଅଛି, ଠିକ୍ ସେହିପରି ବିଶ୍ୱାସ କି ? ଭୋ’ ପ୍ରଭୁ—ବାଳକ ପ୍ରତି—ଶତ୍ରୁ-ଗୃହବାସୀ ପ୍ରତି—ଅସମ୍ଭବ, ଅସମ୍ଭବ !

ଗୋଲାପ—( ନତଜାନୁ ଓ ଅବନତ ମସ୍ତକ ହୋଇ ) ପ୍ରଭୋ ! ପ୍ରଭୋ ! ଅଧମକୁ ବିଶ୍ୱାସ କରନ୍ତୁ !

ମୁକୁନ୍ଦଦେବ—( ସ୍ୱଗତଃ ) ସରଳମତି ଏ ବାଳକ । ( ପ୍ରକାଶ୍ୟେ ) ଆଚ୍ଛା ବାଳକ, ଉଠ; ମାତ୍ର, କୁହ—କିଏ ସେ ଉଦାରହୃଦୟ, ମୋତେ ଆଜି ରକ୍ଷା କରିବା ନିମନ୍ତେ ଏତେଦୂର ଅଗ୍ରସର ? କିଏ ସେ ଦୟାବାନ୍, ମୋତେ ଆଜି ଉଦ୍ଧାର କରିବା ନିମନ୍ତେ ଏତେଦୂର ଉତ୍କଣ୍ଠିତ ?

ଗୋଲାପ—ସେହି ଏକା ଉତ୍କଣ୍ଠିତ—ସେହି ଏକା ଅଗ୍ରସର ମହାରାଜ । ଉଦାରଭାବେ ଯାହାଙ୍କର ଉଚ୍ଚ-ନୀଚ, ବୃହତ୍-କ୍ଷୁଦ୍ର ଆଜି ସମଦୃଷ୍ଟିରେ ଲାଳିତ-ପାଳିତ—ଦୟାରେ ଯାହାଙ୍କର ଗଗନରେ ଗ୍ରହତାରା, ଅବନୀରେ ଫଳପୁଷ୍ପ ଆଜି ଜୀବର ଭରଣ-ପୋଷଣ ନିମନ୍ତେ ନିୟୋଜିତ ।

ମୁକୁନ୍ଦଦେବ—ବିଶ୍ୱାସ ହୋଇଛି, ବାଳକ ! ତୁମ୍ଭେ ସାମାନ୍ୟ ବାଳକ ନୁହଁ—ତୁମ୍ଭେ ଦେବଦୂତ, ପାପୀକୁ ଉଦ୍ଧାର କରିବା ନିମନ୍ତେ ପ୍ରେରିତ । ( ଉର୍ଦ୍ଧ୍ୱକୁ ଗୃହିଁ ) ହେ ଉଦାର ହୃଦୟ ! ହେ ଦୟାଶୀଳ ! ପାଦପଦ୍ମେ ଏ ଅଧମର ସବିନୟ ପ୍ରଣିପାତ ଗ୍ରହଣ କର ! (ଅବନତମସ୍ତକ ହୋଇଲେ) ବାଳକ ! ତୁମ୍ଭେ ମଧ୍ୟ ମୋର ପ୍ରଣମ୍ୟ ।

( ଅବନତ ମସ୍ତକ ହେଲେ )

ଗୋଲାପ—ଏ ଅକିଞ୍ଚନକୁ କ୍ଷମା କରନ୍ତୁ, ଧର୍ମ-ରାଜ ! ଏ ଅକିଞ୍ଚନ ତା’ର କର୍ତ୍ତବ୍ୟ ପାଳନ କରୁଛି ମାତ୍ର ।

ମୁକୁନ୍ଦଦେବ—ଧନ୍ୟ ବାଳକ ! ଧନ୍ୟ ତୁମ୍ଭର କର୍ତ୍ତବ୍ୟବୋଧ ! ମାତ୍ର, ବାଳକ ! ମୁଁ କ୍ଷତ୍ରିୟ, ବୀର—ମୋର କି ସାମାନ୍ୟ ଚୋର, କାପୁରୁଷ ପରି ପଳାୟନ କର୍ତ୍ତବ୍ୟ ?

ଗୋଲାପ—କଦାପି ନୁହେଁ ।

ମୁକୁନ୍ଦଦେବ—ତେବେ ?

ଗୋଲାପ—( କୋଷ ମୁକ୍ତକରି ଅସ୍ତ୍ର ପଦତଳେ ପ୍ରଦାନ କଲା ) ଏହି ନିଅନ୍ତୁ ମହାରାଜ ! ଯେଉଁ ସହାୟର ଅଭାବରେ ଆପଣଙ୍କ ପରି ବୀର ଆଜି ଏହିପରି ଦୁର୍ଦ୍ଦଶାଗ୍ରସ୍ତ ।

ମୁକୁନ୍ଦଦେବ—ପ୍ରକୃତ ବୀର ତୁମ୍ଭେ, ବାଳକ—ଯେହେତୁ ବୀରର ମନୋଭାବ ବୁଝି, ବୀରର ପ୍ରଧାନ ଅଭାବ ମୋଚନ କରି ପାରିଛ । ( ଅସ୍ତ୍ର ଗ୍ରହଣ କରି ) ଆସ ଅସ୍ତ୍ର । ବୀରର ଏକମାତ୍ର ଶକ୍ତି—କ୍ଷତ୍ରିୟର ଏକମାତ୍ର ଅବଲମ୍ବନ । (ଚୁମ୍ବନ)

ଗୋଲାପ—ମହାରାଜ ! ମହାରାଜ ! ନିର୍ଦ୍ଦିଷ୍ଟ ସମୟ ମୋ’ର ଉତ୍ତୀର୍ଣ୍ଣ ହୋଇ ଯାଉଛି—ଏହି ଯେ ପ୍ରହରୀ ମାନଙ୍କ ପଦଧ୍ୱନି ଶୁଣାଯାଉଛି ।

( ଗୋଲାପର ପ୍ରସ୍ଥାନ )

[ ଦୁଇଜଣ ପ୍ରହରୀର ପ୍ରବେଶ ]

୧ମ ପ୍ରହରୀ—ଏ କ’ଣ ? ବନ୍ଦୀ ଯେ ମୁକ୍ତ । ହସ୍ତରେ ଯେ ତରବାରି । ଭାଇମାନେ—ଭାଇମାନେ—ଧାଇଁପଡ଼—ଧାଇଁପଡ଼—

ମୁକୁନ୍ଦଦେବ—ଭୟ ନାହିଁ, ପ୍ରହରୀଗଣ ! ବନ୍ଦୀ ମୁକ୍ତ ସତ୍ୟ, ମାତ୍ର ପଳାୟନ-ପର ନୁହେ ।

୧ମ ପ୍ରହରୀ—ଠିଆହୋଇ ଦେଖୁଚ କ’ଣ—ଧର ନା—ତରବାରିଟା କାଢ଼ିନିଅ ନା—

ମୁକୁନ୍ଦଦେବ—ପ୍ରାଣ ଥିବାଯାଏ ନୁହେଁ—

( ଯୁଦ୍ଧ ଓ ପ୍ରହରୀଗଣଙ୍କ ପଳାୟନ )

ମୁକୁନ୍ଦଦେବ—ଏଁଥର ପଥ ମୋର ନିଷ୍କଣ୍ଟକ ।

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—ମାତ୍ର କଳାପାହାଡ଼ ସମ୍ମୁଖରେ ବର୍ତ୍ତମାନ । ବୃଥା ଆଶା, ବନ୍ଦୀ । ବୃଥା ଆଶା—

ମୁକୁନ୍ଦଦେବ—ସଫଳ ଆଶା ଯେ, ପାହାଡ଼କୁ ଉଲ୍ଲଙ୍ଘନ କରିବାର ଆନନ୍ଦ ମିଳୁଛି ।

କଳାପାହାଡ଼—ଏତେ ଗର୍ବ !

[ ଉଭୟଙ୍କ ଯୁଦ୍ଧ ହେଉଥିବା ସ୍ଥଳେ କଲ୍ଲୁ ଓ ସୈନ୍ୟମାନେ ପ୍ରବେଶ କରି କଳାପାହାଡ଼କୁ ସାହାଯ୍ୟ କଲେ । ]

ମୁକୁନ୍ଦଦେବ—( ଯୁଦ୍ଧ କରୁ କରୁ ଅସ୍ତ୍ର ଭଗ୍ନ ହୋଇଯିବାରୁ ) ଉପାୟ ? ଉପାୟ ? ଜଗନ୍ନାଥ ଭରସା ।

ଗୋଲପ—ଜଗନ୍ନାଥ ଭରସା—ଏହି ନିଅନ୍ତୁ ଅନ୍ୟ ଅସ୍ତ୍ର ।

[ ମୁକୁନ୍ଦଦେବଙ୍କୁ ଅସ୍ତ୍ର ପ୍ରଦାନ ]

କଳାପାହାଡ଼—ଏ କ'ଣ ? ଏ ଯେ ଗୋଲପ—ବିଶ୍ୱାସଘାତକ !

ମୁକୁନ୍ଦଦେବ—ଯୁଦ୍ଧ ! ଯୁଦ୍ଧ !

[ ପୁନରପି ଯୁଦ୍ଧ ଓ ସମସ୍ତଙ୍କୁ ପରାଜିତ କରି ମୁକୁନ୍ଦଦେବଙ୍କର ପ୍ରସ୍ଥାନ ]

ଗୋଲପ—ଧନ୍ୟ ବୀର ମୁକୁନ୍ଦଦେବ ! ଧନ୍ୟ ପ୍ରଭୁ ଜଗନ୍ନାଥ !

କଳାପାହାଡ଼—ଧର, ଧର—ଅନୁଧାବନ କର—

( କେତେକ ପଶ୍ଚାଦ୍ଧାବନ କଲେ )

କି ଆଶ୍ଚର୍ଯ୍ୟ ! ମୁକୁନ୍ଦଦେବ ଏକାକୀ ଆମ୍ଭମାନଙ୍କୁ ପରାସ୍ତ କରି ଚାଲିଗଲା ?

କଲ୍ଲୁ—ଏଇ ନେମକହାରାମ ବାସ୍ତେ, ଖୋଦାବନ୍ଦ । ଏଇ ନେମକହାରାମ ବାସ୍ତେ ।

ଗୋଲପ—( କଲ୍ଲୁ ଆଡ଼େ ) ଯୁବକ, ତୁମେ ତାହା କ'ଣ ସ୍ଥିର ହୋଇ ଦେଖୁଥିଲ ?

କଳାପାହାଡ଼—(ସକ୍ରୋଧେ) ନରାଧମ ! ବିଶ୍ୱାସଘାତକ ! ଏହି କି ମୋର ସ୍ନେହଦାନର ଶୁଭମସ୍ତୁ ? ଏହି କି ମୋର ଆଶ୍ରୟ-ଦାନର ପ୍ରତିଫଳ ?

ଗୋଲପ—ଗୋଲାମର କର୍ତ୍ତବ୍ୟ ଏ ଗୋଲାମ୍ କରୁଛି, ଜନାବ୍ ।

କଳାପାହାଡ଼—ମୁନିବ ପ୍ରତି ବିଶ୍ୱାସଘାତକତା କରି ?

ଗୋଲପ—ମୁନିବର ଧର୍ମ ରକ୍ଷା କରି, ଜନାବ୍ ।

କଳାପାହାଡ଼—ହିନ୍ଦୁର ପ୍ରାଣନାଶ ହିଁ ମୋର ଧର୍ମ ।

ଗୋଲପ—ଅଧର୍ମ, ଜନାବ୍ ।

କଳାପାହାଡ଼—ତୋ ପକ୍ଷେ ହୋଇପାରେ ।

ଗୋଲପ—ସମସ୍ତ ଜଗଦ୍‌ବାସୀଙ୍କ ପକ୍ଷେ, ଜନାବ୍ ।

କଳାପାହାଡ଼—ମାତ୍ର ମୋ ପକ୍ଷେ ନୁହେ ।

ଗୋଲପ—ତେବେ କ'ଣ ଆପଣ ଜଗଦ୍‌ବାସୀ ନୁହନ୍ତି ?

କଳାପାହାଡ଼—ପ୍ରୟୋଜନ ନାହିଁ ।

ଗୋଲପ—ହିନ୍ଦୁର ରକ୍ତପାତରେ ତେବେ କି ପ୍ରୟୋଜନ ?

କଳାପାହାଡ଼—ତୋ ସହିତ ବୃଥା ଆଳାପଠାରୁ ଅଧିକତର ପ୍ରୟୋଜନ । କିଏ ଅଛ, ବାନ୍ଧ ଏହି ବିଶ୍ୱାସଘାତକକୁ । ମୁଁ ସ୍ୱହସ୍ତେ, ପ୍ରଥମେ ଏହି ହିନ୍ଦୁର ରକ୍ତପାତ କରି ମୋର ପ୍ରତିଜ୍ଞାପାଳନର ଭୂମିକା ସମ୍ପାଦନ କରିବି ।

କଲ୍ଲୁ—ଏଥିଥର ଏ ଯୁବକ କ'ଣ କରୁଛି ଦେଖ ।

( ଧରିବାକୁ ଯିବା )

ଗୋଲପ—ସାବଧାନ, ବିଶ୍ୱାସଘାତକ, କୁକ୍କୁର !—ଜନାବ୍ ! ଅନ୍ୟ ତାହାର ପ୍ରୟୋଜନ ନାହିଁ, ଏ ଗୋଲାମ୍ ଖୁସିରେ ମୁନିବର ହୁକୁମ ତାମିଲ କରିବ ।

କଳାପାହାଡ଼—(ସ୍ୱଗତତଃ) ହୃଦୟ ! କୋମଳ ହେଉଛ କାହିଁକି ? କଠିନ ହୁଅ—ପାଷାଣଠାରୁ କଠିନତର ହୁଅ !—ଦୟା-ମାୟା ! ବିଶ୍ୱାସଘାତକ ତୁମ୍ଭେମାନେ—ତୁମ୍ଭମାନଙ୍କ ସହିତ ମୋ'ର ଆଉ କୌଣସି ସମ୍ବନ୍ଧ ନାହିଁ—ଏହିକ୍ଷଣି ଦୂର

ହୋଇଯାଅ ।—ହିଂସା-ଦ୍ୱେଷ । ଆସ, ଆସ—ହୃଦୟାସନ ସଜାଡ଼ି, ଗୀଳିବାର ଦେଉଛି, ସ୍ନାନରେ ତହିଁରେ ଅଧିଷ୍ଠାନ କର—ମୁଁ ହିନ୍ଦୁର ରକ୍ତ ବଳି ଦେବି । ( ପ୍ରକାଶ୍ୟେ ) ଶୀଘ୍ର ପ୍ରସ୍ତୁତ ହ' ବିଶ୍ୱାସଘାତକ ! (ଖଡ୍‌ଗ ଧାରଣ କଲେ)

ଗୋଲାପ—ଏହି ଯେ ପ୍ରସ୍ତୁତ ହୋଇଛି, ପ୍ରଭୋ ! (ଜାନୁପାତପୂର୍ବକ) ଜଗନ୍ନାଥ ! ପ୍ରଭୁଙ୍କର ମଙ୍ଗଳ କରନ୍ତୁ—ଏ' ଦୀନାକୁ ଆଶ୍ରୟ ଦିଅନ୍ତୁ !

କଳାପାହାଡ଼—ଆଶ୍ଚର୍ଯ୍ୟ ଏ' ବାଳକ ! ନା—(ଖଡ୍‌ଗୋତ୍ତୋଳନ କଲେ; କିନ୍ତୁ ଖଡ୍‌ଗ ହସ୍ତଚ୍ୟୁତ ହେଲା) ଏ କ'ଣ ହେଲା ? ଖଡ୍‌ଗ ମୋର ହସ୍ତଚ୍ୟୁତ ହେଲା କାହିଁକି ? ସର୍ବାଙ୍ଗ ଯେ କମ୍ପୁଛି—ହୃଦୟ ଯେ କମ୍ପୁଛି—ପୃଥିବୀ ଯେ କମ୍ପୁଛି—ଆକାଶ ଯେ କମ୍ପୁଛି—ସମସ୍ତ ସୃଷ୍ଟି ଯେ କମ୍ପୁଛି—ଏ' କି ଦୁର୍ବଳତା—କଳାପାହାଡ଼ର ଆଜ ଏ'କି ଦୁର୍ବଳତା—ସାମାନ୍ୟ ଗୋଟିଏ ବାଳକ ପ୍ରତି ଏ'କି ମମତା—ସାମାନ୍ୟ ଗୋଟିଏ ଭୃତ୍ୟ ପ୍ରତି ଏ'କି ଆକର୍ଷଣ ! ଅସମ୍ଭବ—ଅସମ୍ଭବ—କିଏ ଅଛ, ଦିଅ ମୋର ଖଡ୍‌ଗ !—ଖଡ୍‌ଗ—ଝଟ୍—( କରିମ୍ କର୍ତ୍ତୃକ ଖଡ୍‌ଗ ପ୍ରଦାନ ) ରୁହେ ମୁହିଁ ହିନ୍ଦୁର ରକ୍ତ ! ହିନ୍ଦୁର ମାଂସ !! ହିନ୍ଦୁର ଧ୍ୱଂସ !!! (ଖଡ୍‌ଗୋତ୍ତୋଳନ କଲେ)

ଗୋଲାପ—ଥରେ ଶେଷଦେଖା ଦେଖାଦିଅ, ପ୍ରଭୋ !

[ କଳାପାହାଡ଼ ଓ ଗୋଲାପ ପରସ୍ପରକୁ ମନ୍ତ୍ରମୁଗ୍ଧବତ୍ ଚାହିଁ ରହିବା ଓ କଳାପାହାଡ଼ ହସ୍ତରୁ ଖଡ୍‌ଗ ଭୂପତିତ ହେବା ]

—ଯବନିକା—

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

—ଶିବିର—

[ ମୁକୁନ୍ଦଦେବ ଓ ଦେହରକ୍ଷୀ ]

ମୁକୁନ୍ଦଦେବ—ଦେହରକ୍ଷୀଗଣ ! ମୋର ଶତ୍ରୁ ହୋଇଛି—ପଥ ଛାଡ଼ିଦିଅ—ପୁଣି ଯୁଦ୍ଧ କରିବି ।

ଦେହରକ୍ଷୀ—ମହାରାଜ ! ନିଜ ପ୍ରତି ଥରେ ଦୃଷ୍ଟିପାତ କରନ୍ତୁ ।

ମୁକୁନ୍ଦଦେବ—ନିଜପ୍ରତି ଦୃଷ୍ଟିପାତ ? କାର୍ଯ୍ୟବେଳେ ନିଜପ୍ରତି ଦୃଷ୍ଟିପାତ ? କ୍ଷତ୍ରିୟଠାରେ କି ଏହା ସମ୍ଭବ ? ମୁକୁନ୍ଦଦେବ ଠାରେ ଏହା ଅସମ୍ଭବ ।

ଦେହରକ୍ଷୀ—ଶିଖି ମନାଇଙ୍କଦ୍ୱାରା ତ ଯୁଦ୍ଧକାର୍ଯ୍ୟ ବର୍ତ୍ତମାନ ବେଶ୍ ଚାଲୁଛି ।

ମୁକୁନ୍ଦଦେବ—ଶିଖି ମନାଇଙ୍କ ଉପରେ ନିର୍ଭର କରି ନିଶ୍ଚିନ୍ତ ରହିବି ?—ସେହି ଦାରିଦ୍ର୍ୟ-ଜ୍ଞାନଶୂନ୍ୟ, ମୂର୍ଖଙ୍କ ଉପରେ ନିର୍ଭରକରି ନିଶ୍ଚିନ୍ତ ରହିବି ?—ହାୟ, ହାୟ ! ଉପଯୁକ୍ତ ସମୟରେ ଆସି ଯେବେ ସେମାନେ ଏଠାରେ ଉପସ୍ଥିତ ହୋଇଥାନ୍ତେ, ତାହାହେଲେ ମୋତେ ଆଜ ଏପରି କ୍ଷତ ବିକ୍ଷତ, ରକ୍ତରଞ୍ଜିତ ଦେହରେ ଦେଖୁଥାନ୍ତ କି ? ବିଜୟ-ଲକ୍ଷ୍ମୀ ଅନାୟାସରେ, ବିନା ଲୋକନାଶରେ ଏତେବେଳକୁ ବରିତା ହୋଇ ସାରିଥାନ୍ତେ ପିନା ! ଛାଡ଼—ଦିଅ ମୋର ତରବାରି—ଆଉ ବିଳମ୍ବ ସହ୍ୟ କରି ପାରୁନାହିଁ ।

( ନେପଥ୍ୟେ କୋଲାହଳ )

କାହିଁ—କାହିଁ ତରବାରି—

( ଉତ୍ତେଜିତ ଭାବେ ଠିଆହୋଇ ରକ୍ଷୀ ହସ୍ତରୁ ଅସ୍ତ୍ର କାଢ଼ିନେବା )

ମୁକୁନ୍ଦଦେବ—ଜୟ ଜଗନ୍ନାଥଙ୍କ ଜୟ !

ନେପଥ୍ୟେ—ଜୟ ଜଗନ୍ନାଥଙ୍କ ଜୟ !

ମୁକୁନ୍ଦଦେବ—ଏ କ'ଣ ? ଏ ଯେ ଆମ୍ଭ ସୈନ୍ୟମାନଙ୍କ ଜୟଧ୍ୱନି ? ଏମାନେ ବିଜୟୀ ନା ପରାଜିତ ?

[ ଶିଖି, ମନାଇ ଓ ସୈନ୍ୟମାନଙ୍କ ପ୍ରବେଶ ]

ଶିଖି—ଆମ୍ଭେମାନେ ଜୟୀ ମହାରାଜ । ଏହି ଦେଖନ୍ତୁ ଶତ୍ରୁ ଶିବିରକୁ ଅନାଇ—ଶ୍ୱେତପତାକା ଉପରି ଉତ୍ତୋଳିତ-କର ପ୍ରସାରଣ ପୂର୍ବକ ଶାନ୍ତିଭିକ୍ଷା କାମନା କରୁଅଛି ।

ମନାଇ—ଅନାନ୍ତୁ ତେଣେ ପୁଣି, ସ୍ୱୟଂ ଶତ୍ରୁ-ଶିରୋମଣି କପରି ନତମସ୍ତକରେ, ଧୀର ପଦବିକ୍ଷେପରେ ସନ୍ଧି-ଭିକ୍ଷା କାମନାପୂର୍ବକ ଶ୍ରୀଚରଣୋଦ୍ଦେଶ୍ୟରେ ଆଗମନ କରୁଅଛନ୍ତି ।

ମୁକୁନ୍ଦଦେବ—( ସ୍ୱଗତଃ ) ଆଶ୍ଚର୍ଯ୍ୟ—କଳାପାହାଡ଼ ଏତେ ଶୀଘ୍ର ପରାଜିତ । (ପ୍ରକାଶ୍ୟେ) ଧନ୍ୟ ସହକାରୀଗଣ—ଧନ୍ୟ ସୈନ୍ୟଗଣ—ତୁମ୍ଭମାନଙ୍କ ହେତୁ ମୋର ଆଜି ଏହି ଗୌରବ—ମୋର ଆଜି ଏହି ବିଜୟ ।

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—ଅଭିବାଦନ, ମହାରାଜ ।

ମୁକୁନ୍ଦଦେବ—ଅଭିବାଦନ, ସେନାପତେ ।

କଳାପାହାଡ଼—ଧନ୍ୟ ମହାରାଜ ! ଆପଣଙ୍କ ବଳ ବୀର୍ଯ୍ୟ, ରଣ କୌଶଳକୁ ଶତଧନ୍ୟ । ଏହି ଭାରତବର୍ଷରେ ଏପରି ବୀର କ୍ୱଚିତ୍ ଦେଖାଅଛି, ଯେ କି ଏପରି ଭାବରେ ନିଜର ଶରୀରକୁ ତୃଣ ଜ୍ଞାନକରି, ନିଜର ପ୍ରାଣକୁ ତୁଚ୍ଛ ଜ୍ଞାନକରି ଦୃପ୍ତ-ସିଂହ ତୁଲ୍ୟ ଅଗଣିତ ସୈନ୍ୟ ବିରୁଦ୍ଧରେ ଏକାକୀ ଯୁଦ୍ଧରେ ପ୍ରବୃତ୍ତ ହୁଏ !—ଶକ୍ତିଶାଳୀ ଦିଲ୍ଲୀଶ୍ୱର ଆକ୍‌ବର ଯେ ଆପଣଙ୍କଠାରେ ପରାଜୟ ସ୍ୱୀକାର କରିଅଛନ୍ତି, ଏହା ଶ୍ରବଣର ସ୍ତୋକବାକ୍ୟ ନୁହେଁ—ଏହା ନିଜର ଅନୁଭୂତ—ନିଜର ପରୀକ୍ଷା ।

ମୁକୁନ୍ଦଦେବ—ବୀର ! ଏ ଅକିଞ୍ଚନକୁ ଯେଉଁ ଗୁଣାଳଙ୍କାରରେ ଭୂଷିତ କଲେ, ତାହାର ଯୋଗ୍ୟପାତ୍ର ଆପଣ ନିଜେ । ଆପଣଙ୍କ ପରି ଯୁଦ୍ଧପଟୁ, ରଣକୁଶଳ ବୀର ଭାରତବର୍ଷରେ କାହିଁକି, ସମଗ୍ର ପୃଥିବୀରେ ମଧ୍ୟ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱୟଂ ଦିଲ୍ଲୀଶ୍ୱର ଯେ କି ହେତୁ ବିଦ୍ରୋହ ଦମନାର୍ଥେ ମୋତେ ଆମନ୍ତ୍ରଣ କରି ସୁଦ୍ଧା କିଞ୍ଚିନ୍ତ ନ ହୋଇ ସସୈନ୍ୟେ ଆପଣଙ୍କୁ ମୋର ସାହାଯ୍ୟାର୍ଥେ ପ୍ରେରଣ କରିଥିଲେ, ଏହା ମୁଁ ବର୍ତ୍ତମାନ ଉତ୍ତମ ରୂପେ ବୁଝି ପାରୁଛି ।

ଶିଖି—ଈଶ୍ୱରଙ୍କୁ ଧନ୍ୟବାଦ ଯେ, ବୀରର ସହିତ ଆଜି ବୀରର ମିଳନ—ମଣିର ସହିତ ଆଜି କାଞ୍ଚନର ମିଳନ—

ସମସ୍ତେ—ଜୟ ମହାରାଜ ମୁକୁନ୍ଦଦେବଙ୍କର ଜୟ । ଜୟ ସେନାପତି କଳାପାହାଡ଼ଙ୍କର ଜୟ !

ମୁକୁନ୍ଦଦେବ—ଜୟ ଦିଲ୍ଲୀଶ୍ୱର ଆକବରଙ୍କର ଜୟ ।

ସମସ୍ତେ—ଜୟ ଦିଲ୍ଲୀଶ୍ୱର ଆକବରଙ୍କର ଜୟ ।

କଳାପାହାଡ଼—ଆସନ୍ତୁ ମହାରାଜ ! ମିତ୍ରଭାବରେ ଆଜି ମୋର ଆତିଥ୍ୟ ଗ୍ରହଣ କରିବେ ।

ମୁକୁନ୍ଦଦେବ—ସନ୍ଧି-ସର୍ତ୍ତ ଆଗେ ଲେଖାହୋଇ ଦିଲ୍ଲୀଶ୍ୱରଙ୍କ ନିକଟକୁ ପ୍ରେରିତ ହେଉ !—ଭଲକଥା, ସେନାପତେ ! ଏହି ସନ୍ଧି-ସର୍ତ୍ତ ଲେଖା ହେବା ପୂର୍ବେ ବିଶ୍ୱାସଘାତକ କତ୍‌ଲୁକୁ ମୋତେ ଅର୍ପଣ କରିବାକୁ ହେବ—ଦିଲ୍ଲୀଶ୍ୱର ସନ୍ଧିସର୍ତ୍ତ ଶୁଣିବା ପୂର୍ବେ ନରାଧମର ମସ୍ତକ ନିଷ୍ଟସ୍ତ ଦେଖିବାକୁ ଇଚ୍ଛା କରିବେ ।

ଶିଖି—କତ୍‌ଲୁ ଯେ ନିହତ, ମହାରାଜ !

ମୁକୁନ୍ଦଦେବ—କତ୍‌ଲୁ ନିହତ ? ତେବେ କାହିଁ ତା'ର ଛିନ୍ନ ମସ୍ତକ ?

ଶିଖି—ତାର ମୃତ ଶରୀର ଅନ୍ତର୍ହିତ ।

ମୁକୁନ୍ଦଦେବ—ଅନ୍ତର୍ହିତ କପରି ? ( ସ୍ୱଗତଃ ) ସନ୍ଦେହ ହେଉଛି ।

ଶିଖି—ମୁଁ ଅନୁସନ୍ଧାନ କରି ବୁଝିଲି—ତା'ର କେତେକ ବିଶ୍ୱାସୀ ଅନୁଚର ମାନେ ସେମାନଙ୍କ ପ୍ରଭୁର ମସ୍ତକ ଛେଦନ ଭୟରେ ତାର ଶବ ଦେହ କେଉଁଠାରେ ପୋତି ପକାଇଛନ୍ତି ।

ମୁକୁନ୍ଦଦେବ—( ସ୍ୱଗତଃ ) ବିଶ୍ୱାସ ହେଉନାହିଁ—
ମୋତେ ଥରେ ନିଜେ ଅନୁସନ୍ଧାନ କରି
ଦେଖିବାକୁ ହେବ ।

[ ଦିଲ୍ଲୀଦୂତର ପ୍ରବେଶ ]

ଦୂତ—ଜୟ ମହାରାଜ ମୁକୁନ୍ଦଦେବଙ୍କର ଜୟ !

ମୁକୁନ୍ଦଦେବ—ଦିଲ୍ଲୀର କି ସମ୍ବାଦ ଦୂତ ? ଅଚ୍ଛା ଏହି
ଶିବିରକୁ ଚାଲ ।

( ଦୂତର ପ୍ରସ୍ଥାନ )

ଶିଖି, ମନାଇ ! ସେନାପତିଙ୍କ ସମାଦର କରି
ମୋର ସେହି ପ୍ରଶସ୍ତ ଶିବିରକୁ ନେଇଯାଅ, ମୁଁ
ଏହିକ୍ଷଣି ଆସୁଛି ।

( ମୁକୁନ୍ଦଦେବଙ୍କ ପ୍ରସ୍ଥାନ )

ଶିଖି—ନବାବ ସାହେବ ! ଦିଲ୍ଲୀରୁ ଦୂତ ଆସିବାର
କାରଣ କ'ଣ କିଛି ଅନୁମାନ କରୁଛନ୍ତି କି ?

କଳାପାହାଡ଼—ବୋଧହୁଏ ଯୁଦ୍ଧର ଫଳାଫଳ ଜାଣିବା
ନିମନ୍ତେ—

ଶିଖି—ତା' ଗୋଟିଏ କାରଣ ହୋଇପାରେ—ତେବେ
ଅନ୍ୟ କାରଣ ବାଦ୍‌ସାହାଙ୍କ ଜନ୍ମ ଦିବସ
ଉପଲକ୍ଷେ ଏଥର ଯେଉଁ ମହୋତ୍ସବ ହେଉଛି,
ସେଥିରେ ଯୋଗ ଦେବା ନିମନ୍ତେ ନୁହେଁ ତ ?

ମନାଇ—ବାଃ ବାଃ ! ତା'ହେଲେ ତ ବିନା ଚକ୍ରି
ପାତରେ କାମ ହାସଲ—

କଳାପାହାଡ଼—ଅନୁମାନ ଉପରେ ନିର୍ଭର କରି
ଆମ୍ଭମାନଙ୍କର ଆନନ୍ଦ ପ୍ରକାଶ କରିବା ଉଚିତ
ନୁହେଁ । ବର୍ତ୍ତମାନ ଯଥାସ୍ଥାନକୁ ଚାଲ । ଏପରି
ଭାବରେ ଏଠାରେ କଥାବାର୍ତ୍ତା କରିବାକୁ
ଦେଖିଲେ କେହି ସନ୍ଦେହ କରିପାରେ । ଆମ୍ଭ-
ମାନଙ୍କର ଗୁପ୍ତ-ମନ୍ତ୍ରଣା ଅତି ଗୋପନରେ,
ସାବଧାନରେ କରିବାକୁ ହେବ !

ଶିଖି—ଚାଲନ୍ତୁ, ନବାବ୍ ସାହେବ !

ମନାଇ—( ସ୍ୱଗତଃ ) ଆହା ! ସେନାପତି ଉପାଧି
ମନାଇ ମହାନ୍ତି କେବେ ପାଇବେ ?

[ ସମସ୍ତଙ୍କର ପ୍ରସ୍ଥାନ ]

---

## ଦ୍ୱିତୀୟ ଦୃଶ୍ୟ

—ଅରଣ୍ୟ—

[ ଗୋଲାପ ସନ୍ନ୍ୟାସୀ ବେଶରେ ପ୍ରବେଶ କଲା ]

ଗୋଲାପ—ଆଜି ନିର୍ବାସିତ ହୋଇ—ଅରଣ୍ୟବାସୀ
ହୋଇ ସୁଦ୍ଧା, ମୁଁ ମହାସୁଖୀ—ମୋ ମନରେ
ମହାନନ୍ଦ ଯେ, ପ୍ରଭୁଙ୍କୁ ନରହତ୍ୟା ପାପରୁ ରକ୍ଷା
କରି ପାରିଛି—ଧର୍ମ-ରାଜଙ୍କ ପ୍ରାଣରକ୍ଷା କରି
ପାରିଛି; କିନ୍ତୁ ଯୁଦ୍ଧ ଶେଷ ନ ହେବା ଯାଏ—
ଧର୍ମ-ରାଜ ସ୍ଥାନ ତ୍ୟାଗ ନ କରିବା ଯାଏ ନିଶ୍ଚିନ୍ତ
ହୋଇପାରୁ ନାହିଁ ।

[ ଫିରୋଜାର ପ୍ରବେଶ ]

ଫିରୋଜା—ନିଶ୍ଚିନ୍ତ ହେବାର ଆଉ ଉପାୟ ନାହିଁ,
ଗୋଲାପ !

ଗୋଲାପ—କାହିଁକି ? କି ଖବର, ଫିରୋଜା ? ଯୁଦ୍ଧର
ସମ୍ବାଦ କ'ଣ ?

ଫିରୋଜା—ସନ୍ଧି ହୋଇଛି—ମୁକୁନ୍ଦଦେବ ବାଦସାହଙ୍କ
ଜନ୍ମୋତ୍ସବ ଉପଲକ୍ଷେ ଦିଲ୍ଲୀଯାତ୍ରା କରିଅଛନ୍ତି ।

ଗୋଲାପ—ତେବେ ତ ଏହା ସୁସମ୍ବାଦ, ଫିରୋଜା !

ଫିରୋଜା—ସୁସମ୍ବାଦ ହୋଇଥାନ୍ତା, ଯେବେ
ମୁକୁନ୍ଦଦେବଙ୍କ ସହକାରୀମାନେ ବିଶ୍ୱାସଘାତକତା
କରି ନ ଥାନ୍ତେ ।

ଗୋଲାପ—କି ବିଶ୍ୱାସଘାତକତା ?

ଫିରୋଜା—ମୁକୁନ୍ଦଦେବ ସହକାରୀମାନଙ୍କୁ ସନ୍ଧି-ସର୍ତ୍ତ
ଅନୁଯାୟୀ ପଠାଣ ସୈନ୍ୟମାନଙ୍କୁ ନିରସ୍ତ୍ର କରି
ରାଜ୍ୟରେ ଶାନ୍ତି ସ୍ଥାପନ କରିବା ନିମନ୍ତେ ଆଦେଶ
ଦେଇଗଲେ । ସେମାନେ କିନ୍ତୁ ରାଜାଙ୍କ ଚାଲି-
ଯିବାର ଠିକ୍ ପରେ ନିଜର ସୈନ୍ୟମାନଙ୍କୁ
ନିରସ୍ତ୍ର କରି, ପଠାଣ ସୈନ୍ୟମାନଙ୍କୁ ସଶସ୍ତ୍ର
ସ୍ୱଦେଶାଭିମୁଖରେ ପ୍ରେରଣ କରିଅଛନ୍ତି । ସତ୍ୟ
କହୁଥିଲେ, ଏହି ସନ୍ଧି, କପଟ-ସନ୍ଧି ! ନବାବଙ୍କର
ଉଦ୍ଦେଶ୍ୟ, ମୁକୁନ୍ଦଦେବଙ୍କୁ କୌଣସି ମତେ
ସ୍ଥାନାନ୍ତରିତ କରି ନିଜର୍ ଉଦ୍ଦେଶ୍ୟ ସାଧନ

କରିବା—ସେହି ପୈଶାଚିକ ପ୍ରତିଜ୍ଞା ପାଳନ କରିବା ।

ଗୋଲାପ—ଜଗନ୍ନାଥଙ୍କର କି ଇଚ୍ଛା ସେ ଜାଣନ୍ତି—ଅଚ୍ଛା ଫିରୋଜା ! ମୁକୁନ୍ଦଦେବ ଏତେ ତୀକ୍ଷ୍ଣ ବୁଦ୍ଧି ରାଜନୀତିଜ୍ଞ ହୋଇ ସୁଦ୍ଧା ଶତ୍ରୁର କପଟତା ବୁଝି ପାରିଲେ ନାହିଁ ?

ଫିରୋଜା—କପଟତା ବୁଝିବାକୁ ଅବସର ମିଳିଲା କେଉଁଠି ? ବାଦ୍‌ସାହାଙ୍କ ନିମନ୍ତ୍ରଣ ଯେ ସବୁ ପଣ୍ଡ କଲା ।

ଗୋଲାପ—ବର୍ତ୍ତମାନ ଉପାୟ କ'ଣ, ଫିରୋଜା ? ଆମ୍ଭେମାନେ ଜୀବିତ ଥାଉଁ ଥାଉଁ କଣ, କଳାର୍ ଅମ୍ଭମାନଙ୍କର ଏପରି କ୍ରୂର କାର୍ଯ୍ୟରେ ବ୍ରତୀ ହେବେ ?—ଯାହାନ୍ନାମରେ ପତିତ ହେବେ ?

ଫିରୋଜା—ଖୋଦାଙ୍କର କି ଇଚ୍ଛା, ଗୋଲାପ ?

ଗୋଲାପ—ଯେ ଇଚ୍ଛା ଖୋଦାଙ୍କର ହେଉ, ଅମ୍ଭମାନଙ୍କର କର୍ତ୍ତବ୍ୟ ଅମ୍ଭେମାନେ କରିବା ଚାଲ, ଫିରୋଜା ।

ଫିରୋଜା—ଆସ, ଗୋଲାପ—ସମ୍ରାଜ୍ଞୀ ଯେ ତୁମ୍ଭଙ୍କୁ ପ୍ରତୀକ୍ଷା କରୁଅଛନ୍ତି ।

[ ଉଭୟେ ଗମନୋଦ୍ୟତ ହେବାକାଳେ ]

ଗୋଲାପ—ଫିରୋଜା ! ଦେଖିଲ, ଏ ଦୁଇଜଣ କିଏ ଏଣୁ ଆସୁଛନ୍ତି—ଚିହ୍ନା ଚିହ୍ନା ବୋଧ ହେଉଛନ୍ତି ।

ଫିରୋଜା—ଏ ଯେ କତ୍‌ଲୁ, ରହମତ୍—କତ୍‌ଲୁ ବଞ୍ଚିଲା କିପରି ? ସେ ଯେ ମୃତବୋଲି ରଷ୍ଟ୍ର ହୋଇଥିଲା ?

ଗୋଲାପ—ରହମତ୍ ପରା କାରାଗାରରେ ବନ୍ଦୀ ହୋଇଥିଲା ?

ଫିରୋଜା—ହଁ—କିନ୍ତୁ କିଛିଦିନ ପୂର୍ବେ ତାହାର ପଳାୟନ ସମ୍ବାଦ ରଷ୍ଟ୍ର ହୋଇଥିଲା—ଦରିଦ୍ର ପ୍ରହରୀ ସେଥିନିମନ୍ତେ ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲା ।

ଗୋଲାପ—ଦରିଦ୍ର ପ୍ରହରୀ ବଦଳରେ କତ୍‌ଲୁର ସେହି ଦଣ୍ଡରେ ଦଣ୍ଡିତ ହେବା ଉଚିତ ଥିଲା—ଏ' ବିଷୟରେ ନିଶ୍ଚୟ ତାର ସହାୟତା ଅଛି । ଏହି ଯେ ସେମାନେ ଆସି ଗଲେଣି—ସେମାନଙ୍କ ହାବଭାବରୁ ବେଶ ବୁଝା ଯାଉଛି, ଆପଣା ମଧ୍ୟରେ କୌଣସି ଗୁପ୍ତ ପରାମର୍ଶ ଚାଲିଛି—ଟିକିଏ ଅନ୍ତରାଳକୁ ଯାଇ ଶୁଣିବା ଚାଲ ।

[ ଗୋଲାପ ଓ ଫିରୋଜା ଲୁକ୍‌କାୟିତ ହେବା—କତ୍‌ଲୁ ଓ ରହମତ୍‌ର କଥୋ କଥୋ ପ୍ରବେଶ ]

କତ୍‌ଲୁ—ରହମତ୍ ! ଖୋଦାଙ୍କ ଇଚ୍ଛାରେ ବୋଧହୁଏ, ଅମ୍ଭେମାନେ ପରସ୍ପରଙ୍କର ମନସ୍କାମନା ପୂର୍ଣ୍ଣ କରି ପାରିବା ।

ରହମତ୍—କିପରି ?

କତ୍‌ଲୁ—ଦୂତଠାରୁ ଶୁଣିଲ ତ—ମୁଁ ଏହି ଓଡ଼ିଶା ଆକ୍ରମଣ ଅଭିଯାନରେ କଳାପାହାଡ଼ର ପ୍ରଧାନ ସହାୟ ହେବି ?

ରହମତ୍—ହଁ ତା'ତ ଶୁଣିଲି ।

କତ୍‌ଲୁ—ତେବେ ଆଉ କଥା ଅଛି ନା—କଳାପାହାଡ଼ର ମୁଁ ପରମ ବିଶ୍ୱାସୀ ହେବି—ସେହି ସୁଯୋଗରେ ତୁମ୍ଭର କଣ୍ଟକ ଦୂର କରିଦେବି ।

ରହମତ୍—ବାଃ ବାଃ—ତୋଫା—ତୋଫା ।

କତ୍‌ଲୁ—ଆଉ ଶୁଣ—ମୁକୁନ୍ଦଦେବ, କଳାପାହାଡ଼ର ବିଶ୍ୱାସଘାତକତା ଓ ସ୍ୱଦେଶାକ୍ରମଣବାର୍ତ୍ତା ଶୁଣି ନିଶ୍ଚୟ ବ୍ୟସ୍ତବସ୍ତ ହୋଇ ଏଠାରେ ଆସି ପହଞ୍ଚିବ ।

ରହମତ୍—ତା' ହେଲେ କ'ଣ ହେବ ?

କତ୍‌ଲୁ—ତା'ର ସହାୟତା କରିବ ବୋଲି ତା' ମନରେ ଖୁବ୍ ବିଶ୍ୱାସ ଜନ୍ମାଇ ମୋର କଣ୍ଟକ ଦୂର କରିଦେବ ।

ଫିରୋଜା—(ଅନ୍ତରାଳେ)—ଉଃ ଖୋଦା !

ରହମତ୍—(ଚମକିତ ହୋଇ) କିଏ ? କାହାର ସ୍ୱର ?

( ଜଙ୍ଗଲ ମଧ୍ୟକୁ ଧାବିତ ହେବା )

କତ୍‌ଲୁ—ନିଶ୍ଚୟ ଶତ୍ରୁ—ଶୀଘ୍ର ବିନାଶ କର—ଅମ୍ଭମାନଙ୍କର ସମସ୍ତ ଗୁପ୍ତ ମନ୍ତ୍ରଣା ଶୁଣିଛି ନିଶ୍ଚୟ । ( ଧାବିତ ହେଲେ )

[ ଫିରୋଜା ଓ ଗୋଲାପର ବେଗେ ପ୍ରବେଶ ]

ଫିରୋଜା—ଗୋଲାପ ! ରକ୍ଷାକର—ରକ୍ଷାକର !

ଗୋଲାପ—ଫିରୋଜା ! ଅଲ୍ଲାଙ୍କୁ ଡାକ—ସେହି ରକ୍ଷା କରିବେ ।

[ ଗୋଲାପ ଯୁଦ୍ଧ କରିବା ନିମନ୍ତେ ପ୍ରସ୍ତୁତ ହେଲା । କତ୍ଲୁ ଓ ରହମତ୍‌ର ବେଗେ ପ୍ରବେଶ ]

କତ୍ଲୁ—ଏହି ଦୁଷ୍ମନ୍—

ରହମତ୍—ଏ ଯେ ଫିରୋଜା !

କତ୍ଲୁ—ରହମତ୍ ! ନିକାଶ କର—ବିଳମ୍ବରେ ଅମଙ୍ଗଳ ଘଟିପାରେ ।

ଗୋଲାପ—ଫିରୋଜା ! ତୁମ୍ଭେ ନିଶ୍ଚିନ୍ତମନରେ ମୋର ପଶ୍ଚାତ୍‌ରେ ରୁହ—ମୋର ଜୀବନ ଥିବାଯାଏ ତୁମ୍ଭର କୌଣସି ଭୟ ନାହିଁ ।

ରହମତ୍—ବାଃ, ଜଙ୍ଗଲ୍‌ର ତ ଭାରି ସାହସ !

ଗୋଲାପ—ଯୁଦ୍ଧକର, ନରାଧମଗଣ ।

[ ଯୁଦ୍ଧ କରୁ କରୁ ଗୋଲାପର ଦାଢ଼ି ଖସି ପଡ଼ିବା ]

କତ୍ଲୁ—ଏ ଯେ ଗୋଲାପ ! ମାର, ମାର ଶୀଘ୍ର, ରହମତ୍ ! ଏ ଜଣେ ଭୀଷଣ ବାଳକ ।

[ ଘୋର ଯୁଦ୍ଧ ଚଳୁଥିବା ସମୟରେ ଗୋଲାପର ଅସ୍ତ୍ର ଭଗ୍ନ ହେବା ]

ଫିରୋଜା—ଏଥର ଶେଷ—ହା ଖୋଦା !

( ମୂର୍ଚ୍ଛିତା ହେବା )

ଗୋଲାପ—( ଭଗ୍ନାସ୍ତ୍ରରେ ଯୁଦ୍ଧ କରୁ କରୁ ନେପଥ୍ୟକୁ ଚାଲିଯିବା ) ଜଗନ୍ନାଥ ! ଫିରୋଜାର ପ୍ରାଣ ରକ୍ଷାକର ।

କତ୍ଲୁ—ଏଥର ନିରସ୍ତ୍ର ହ' ବାଳକ !

ରହମତ୍—ଏଥର ଜାହାନମ ଦେଖ ।

[ ଏହି ସମୟରେ କେତେଗୁଡ଼ିଏ ତୀର ଆସି ରହମତ୍ ଓ କତ୍ଲୁକୁ ବିଦ୍ଧ କଲା ]

କତ୍ଲୁ ଓ ରହମତ୍—ଉଃ ! (ଉଭୟେ ଭୂପତିତ ହେଲେ)

[ ଶିକାରୀଗଣଙ୍କ ପ୍ରବେଶ ]

ଶିକାରୀ—ଅରେ ବୋଧେ ନେଉଚେ—ଅରେ ଦ'ଟା ମଣିଷ୍‌ରେ—ପଳା—ପଳା ! (ପ୍ରସ୍ଥାନ)

ଗୋଲାପ—ଭଗବାନ ! ବାସ୍ତବିକ ତୁମ୍ଭେ ଦୀନନାଥ—ଫିରୋଜା ! ଉଠ, ଦେଖ, ଖୋଦା କିପରି ମେହେରବାନ୍—କିପରି ଅମ୍ଭମାନଙ୍କୁ ଶତ୍ରୁ କବଳରୁ ରକ୍ଷା କରିଅଛନ୍ତି ।

ଫିରୋଜା—ଧନ୍ୟ ଖୋଦା ! ଧନ୍ୟ ତୁମ୍ଭର ମେହେର୍ବାନି ! ( ଉଭୟଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—କକ୍ଷ—

[ ଦୁଲଆ ଚନ୍ତାନ୍ୱିତଭାବେ ଉପବିଷ୍ଟା ]

ଦୁଲଆ—ହାୟ ପିତା ! ଆଜି ତୁମ୍ଭର ଜନ୍ମଦିନ—କେତେ ଉତ୍ସବ ଲାଗିଥାନ୍ତା—କେତେ ଆନନ୍ଦ ପାଉଥାନ୍ତି । ମାତ୍ର କାହିଁ ସେ ସବୁ ? ଚାରିଆଡ଼େ କେବଳ ଆଜି କ୍ରନ୍ଦନ ଧ୍ୱନି—ଶୋକର ବିଷାଦ ମୂର୍ତ୍ତି । କାହାପାଇଁ ଆଜି ଏହି ଦୃଶ୍ୟ ? କାହାପାଇଁ ଆଜି ଏପରି ଆର୍ତ୍ତନାଦ ?—ରହମତ୍ । ପାପିଷ୍ଠ ! ଉଃ, ସେ ଯେ ପଳାୟିତ—ସେ ଯେ ଯନ୍ତ୍ରଣା-ମୁକ୍ତ—ଏହି କି ଖୋଦାଙ୍କ ବିଚାର ?

[ ଗୋଲାପର ପ୍ରବେଶ ]

ଗୋଲାପ—ଠିକ୍ ବିଚାର, ଭଉଣୀ ।

ଦୁଲଆ—କିପରି ?

ଗୋଲାପ—ଜାହାନମକୁ ପ୍ରେରିତ ହୋଇ୍ ?

ଦୁଲଆ—ବନ୍ଦରୁ ମୁକ୍ତ କି ଜାହାନମକୁ ପ୍ରେରଣ ?

ଗୋଲାପ—ଆପାତତଃ ରହମତ୍ ପକ୍ଷେ ତାହାହିଁ ଘଟିଛି ।

ଦୁଲଆ—ପରିହାସ ନୁହେଁ, ଗୋଲାପ ।

ଗୋଲାପ—ପରିହାସ ବେଗମ ସଙ୍ଗେ ? ଏହି ନବାବ ଆସୁଛନ୍ତି—ଶୁଣିବୁ ସବୁ, ମୁଁ ଅନ୍ତରାଳକୁ ଯାଏଁ ।

[ ଗୋଲାପର ପ୍ରସ୍ଥାନ—କଳାପାହାଡ଼ ଓ ଫିରୋଜାର ପ୍ରବେଶ ]

କଳାପାହାଡ଼—କତ୍ଲୁ ମଧ୍ୟ ନିହତ, ଫିରୋଜା ?

ଫିରୋଜା—ଏହାସଙ୍ଗେ ଦୁଇଜଣ, ଜାହାଁପନା ।

ଦୁଲ୍‌ଅ—ଅନ୍ୟ ଜଣେ କିଏ ନହଉ, ଫିରୋଜା ?

ଫିରୋଜା—ସେହି ନରପିଶାଚ—ତୁମ୍ଭର ପିତୃ-ଭ୍ରାତୃ-ହନ୍ତା ରହମତ୍ ।

ଦୁଲ୍‌ଅ—ରହମତ୍ ? ଧନ୍ୟ ଖୋଦା !

କଳାପାହାଡ଼—ଉଃ ! କତଲୁ ନହଉ—ମୋର ପ୍ରଧାନ ସହାୟ ନହଉ—ମୁକୁନ୍ଦର ପ୍ରଧାନ ଅରି ନହଉ—ଏବେ ଉପାୟ କ'ଣ ?

ଫିରୋଜା—ଜାହାଁପନା ! କତଲୁ ସକାଶେ ଏତେ ଦୁଃଖ କାହିଁକି ? ସେ ଯେ ବିଶ୍ୱାସଘାତକ—ଆପଣଙ୍କ ବିରୁଦ୍ଧରେ ମଧ୍ୟ ଷଡ଼ଯନ୍ତ୍ର କରୁଥିଲା ।

କଳାପାହାଡ଼—ମୋ ବିରୁଦ୍ଧରେ ?—ଯାଉ, ମୋତେ ବର୍ତ୍ତମାନ ପ୍ରସ୍ତୁତ ହେବାକୁ ହେବ ।

ଦୁଲ୍‌ଅ—ଧନ୍ୟ ଖୋଦା ! ଉଭୟ ବିଶ୍ୱାସଘାତକ ଏକାବେଳକେ ନହଉ, ଗୋଲପ !

କଳାପାହାଡ଼—କାହିଁ ଗୋଲପ ?

ଦୁଲ୍‌ଅ—(ଜିହ୍ୱା ଦଂଶନାନ୍ତେ) ସେ କାହିଁ ? ଆଉ ସେ ଏ ସ୍ଥାନରେ କାହିଁ ଆସିବ ? ସେ ଯେ ନିର୍ବାସିତ ।

କଳାପାହାଡ଼—(ଦୀର୍ଘ ନିଃଶ୍ୱାସ ତ୍ୟାଗକରି) ସୁନ୍ଦର ବାଳକ !—ଯାଉ, ମୋତେ ଆଜ ଯେପରି ହେଲେ ଓଡ଼ିଶାଭିମୁଖରେ ଯାତ୍ରା କରିବାକୁ ହେବ !—ଭୟ କଣ ? କତଲୁ ପରିବର୍ତ୍ତେ ଶିଙ୍ଘ, ମନାଇ ପରି ମୁକୁନ୍ଦର ପ୍ରଧାନ ଅରିମାନଙ୍କର ସହାୟତା ଲାଭ କରିଛି ।

ଦୁଲ୍‌ଅ—ପ୍ରାଣେଶ୍ୱର ! ଓଡ଼ିଶାକ୍ରମଣରୁ କ୍ଷାନ୍ତ ହେଉନ୍ତୁ—ହିନ୍ଦୁର ଦୁଷ୍କର୍ମର ଶାସ୍ତି ହିନ୍ଦୁ ନିଜେ ପାଇବ—କତଲୁ ରହମତର ଘଟଣାରୁ ଅରେ ଦେଖନ୍ତୁ । ଖୋଦା ନିଶ୍ଚୟ ପାପୀକୁ ଦଣ୍ଡ ଦେବେ ।

କଳାପାହାଡ଼—ହାଃ, ହାଃ, ପ୍ରାଣେଶ୍ୱରୀ ! ଖୋଦାଙ୍କୁ କି କେବେ ଦେଖିଛ ? ତାଙ୍କର କି ଆମ ପରି ଅଙ୍ଗ ପ୍ରତ୍ୟଙ୍ଗ ଅଛି—ଆମ ପରି କାର୍ଯ୍ୟ କରିବାର ଶକ୍ତି ଅଛି ?

ଦୁଲ୍‌ଅ—କାର୍ଯ୍ୟ କରିବାର ଶକ୍ତି ଥାଉ ବା ନ ଥାଉ—ଅଙ୍ଗ ପ୍ରତ୍ୟଙ୍ଗ ଥାଉ ବା ନ ଥାଉ, ମୋର କିନ୍ତୁ ଧ୍ରୁବ ବିଶ୍ୱାସ ଯେ, ସେ ଅଛନ୍ତି ।

କଳାପାହାଡ଼—ଭ୍ରମ, ଭ୍ରମ—ମହାଭ୍ରମ । ଯେବେ ଥାଆନ୍ତି, ସେ ଗୋଟିଏ ମହାନ୍ ଜଡ଼ପିଣ୍ଡ ମାତ୍ର—କାର୍ଯ୍ୟ କରିବାର ଶକ୍ତି ନାହିଁ—ସବୁ କାର୍ଯ୍ୟ ଆମ୍ଭେମାନେହିଁ କରୁ । ଯାଉ, ଏସବୁ ତର୍କରେ ପ୍ରୟୋଜନ ନାହିଁ । ମୋତେ ଶୀଘ୍ର ପ୍ରସ୍ତୁତ ହେବାକୁ ହେବ । ମୋର ପ୍ରତିଜ୍ଞା ମୁଁ ପାଳନ କରିବି—ହିନ୍ଦୁର ରକ୍ତ—ହିନ୍ଦୁର ମାଂସ—ହିନ୍ଦୁର ଧ୍ୱଂସ । ( ବେଗେ ପ୍ରସ୍ଥାନ )

ଦୁଲ୍‌ଅ—ଗୋଲପ ! ଭାଇ !

[ ଗୋଲପର ପ୍ରବେଶ ]

ଗୋଲପ—ବେଗମ୍ ! ଭଉଣି !

ଦୁଲ୍‌ଅ – ବର୍ତ୍ତମାନ ଉପାୟ କ'ଣ ?

ଗୋଲପ—ଉପାୟ ସେହି ଜଗନ୍ନାଥ କରିଦେବେ ।

ଦୁଲ୍‌ଅ—ବାସ୍ତବିକ ଭାଇ, ଉପାୟ ସେ ଜଗନ୍ନାଥ କରିଦେବେ । ମୁଁ ପିନା ଏକା ବିଶ୍ୱାସଘାତକ ରହମତର ପ୍ରାଣନାଶ କରିଥାଆନ୍ତି; ମାତ୍ର ଏକା ସଙ୍ଗେ ଦୁଇଜଣ ବିଶ୍ୱାସଘାତକର ଏପରି ଭାବରେ ପ୍ରାଣନାଶ କରିବା ଖୋଦା ବା ଜଗନ୍ନାଥଙ୍କ ବିନା ଅନ୍ୟ କାହାଦ୍ୱାରା ସମ୍ଭବ ହୋଇଥାନ୍ତା ? ବର୍ତ୍ତମାନ ମଧ୍ୟ ସେହି ଏକମାତ୍ର ଭରସା ।

ଗୋଲପ—ଅବଶ୍ୟ, ସେ ଉପାୟ କରିଦେବେ; କିନ୍ତୁ ଆମ୍ଭେମାନେ କାର୍ଯ୍ୟ କରିବା ।

ଦୁଲ୍‌ଅ—ତେବେ ଗାଅ ଗୋଲପ, ସେହି ମହିମାମୟ ଈଶ୍ୱରଙ୍କର ଗୋଟିଏ ସ୍ତୁତି—ଶୁଣି ମନପ୍ରାଣ ପ୍ରଫୁଲ୍ଲ ହେଉ ।

ଗୋଲପ— —ଗୀତ—

ପତିତପାବନ, ଜଗତମୋହନ,
ଜଗନ୍ନାଥ ନାମ ପବିତ୍ର ପୀୟୁଷ,
ସେ ସୁଧା ସାନନ୍ଦେ, ପିଅ ହେ ପ୍ରେମିକ,
ନ ମାନି ଜାତି ବିଜାତି ଲେଶ ।

ସେହି ଆଲ୍ଲା, ସେହି ଯୀଶୁ, କୃଷ୍ଣ,
ଯେମନ୍ତ ଯେ ଭଜେ, ହୁଅନ୍ତି ହେ ତୁଷ୍ଟ,
ବୃଥା ଦ୍ୱନ୍ଦ୍ୱେ ଭାଇ, ନ କର ପ୍ରବେଶ,
ଶାନ୍ତି ଶାନ୍ତି ବୋଲି ମାଗ ହେ ଆଶିଷ ।
( ଦୂରେ କଳାପାହାଡ଼କୁ ଦେଖି )
ଏହି ଯେ, ନବାବ ଏଣେ ଆସୁଛନ୍ତି ।
( ଗୋଲପର ପ୍ରସ୍ଥାନ )

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—କିଏ ଗାଉଥିଲା, ଦୁଲଈ ? ଏ ଯେ ଗୋଲପର କଣ୍ଠସ୍ୱର ପରି ବୋଧ ହେଉଥିଲା ।

ଦୁଲଈ—ଆପଣ କ'ଣ ଗୋଲପକୁ ସ୍ୱପ୍ନ ଦେଖୁଛନ୍ତି, ପ୍ରାଣେଶ୍ୱର ?

କଳାପାହାଡ଼—ଗୋଲପ୍‌କୁ ମୁଁ ଅହୋରାତ୍ର ସ୍ୱପ୍ନ ଦେଖୁଛି, ଦୁଲଈ । ସ୍ଥିର ଗୋଲମ୍ ହୋଇ, ମୋ ପରି ପାଷାଣ-ହୃଦୟ ଉପରେ ସେ ଯେ କି ପ୍ରଭାବ ବିସ୍ତାର କରିଥିଲା, ଅଦ୍ୟାପି ମୁଁ ଅନୁଭବ କରୁଛି, ଯେପରି କି ମୁଁ ତାର ଗୋ—ଲ—ସ୍ଥଡ଼, ପ୍ରାଣେଶ୍ୱର । ବର୍ତ୍ତମାନ ଭାରି ଶୁଭସମ୍ବାଦ ।

ଦୁଲଈ—କି ଶୁଭସମ୍ବାଦ, ପ୍ରାଣେଶ୍ୱର ?

କଳାପାହାଡ଼—ରାମଚନ୍ଦ୍ର ଭଞ୍ଜ ମୋର ସହାୟତା କରିବେ ବୋଲି ଲିଖି, ମନାଇକୁ ଦୂତରୂପେ ପଠାଇଛନ୍ତି ।

ଦୁଲଈ—ଏ-ପୁଣି କେଉଁ ନରାଧମ ?

କଳାପାହାଡ଼—ନରାଧମ ନୁହେଁ, ସୁନ୍ଦରୀ । ସେ ସାରଙ୍ଗ-ଗଡ଼ାଧୀଶ୍ୱର—ମୁକୁନ୍ଦଦେବର ସାମନ୍ତରାଜା ।

ଦୁଲଈ—ପ୍ରଣେଶ୍ୱର—

କଳାପାହାଡ଼—ନା, ନା ତୁମ୍ଭର କୌଣସି ମନ୍ତ୍ରଣା ଶୁଣିବେ ନା—ମୋର ସୈନ୍ୟମାନେ ପ୍ରସ୍ତୁତ—ମୋତେ ଏହିକ୍ଷଣି ଯାତ୍ରା କରିବାକୁ ହେବ । ବିଦାୟ—

ଦୁଲଈ—ଏହିକ୍ଷଣି ?

କଳାପାହାଡ଼—ହଁ, ହଁ ଏହିକ୍ଷଣି— ( ପ୍ରସ୍ଥାନ )

ଦୁଲଈ—( ଦୀର୍ଘନିଃଶ୍ୱାସ ତ୍ୟାଗକରି ) ଖୋଦା ! ଏବେ ଉପାୟ କ'ଣ ?—ପ୍ରାଣେଶ୍ୱର—ପ୍ରାଣେଶ୍ୱର— ( ଅନୁଧାବନ )

[ ଗୋଲପର ପ୍ରବେଶ ]

ଫିରୋଜା—ଗୋଲପ୍ । ଶୁଣିଲୁ ତ ସବୁ ?

ଗୋଲପ—କିଛି ବ୍ୟସ୍ତ ହେବାର ପ୍ରୟୋଜନ ନାହିଁ, ଫିରୋଜା । କହୁଛି ତ, ସେ ତାଙ୍କର କର୍ତ୍ତବ୍ୟ ପାଳନ କରୁଛନ୍ତି, ଆମ୍ଭେମାନେ ଆମ୍ଭମାନଙ୍କର କର୍ତ୍ତବ୍ୟ ପାଳନ କରିବା ।

ଫିରୋଜା—କିନ୍ତୁ ଉଦ୍ଦେଶ୍ୟ ସାଧନ କରି ପାରିବା କି ?

ଗୋଲପ—ଅସ୍ତ୍ର ବଳଦାନରେ ନିଶ୍ଚୟ ସାଧିତ ହେବ ।

ଫିରୋଜା—ଆମ୍ଭେମାନେ ତ ସେ ବିଷୟରେ ସର୍ବଦା ପ୍ରସ୍ତୁତ ।

ଗୋଲପ—ଅସ୍ତ୍ର-ଧାରୀରୂପେ ପ୍ରସ୍ତୁତ ହେଲେ ଚଳିବ ନାହିଁ, ଫିରୋଜା । ଆମ୍ଭମାନଙ୍କୁ ଏପରି ପ୍ରସ୍ତୁତ ହେବାକୁ ହେବ, ଏପରି କାର୍ଯ୍ୟ କରିବାକୁ ହେବ, ଯାହା କି କୋମଳାଙ୍ଗୀ ନାରୀଚରିତ୍ର ପକ୍ଷେ ଅତୀବ ଦୁଃସାଧ୍ୟ—ଏକାନ୍ତ ଅଲୌକିକ ।

[ ଯୋଦ୍ଧୃବେଶରେ ଦୁଲଈର ପ୍ରବେଶ ]

ଦୁଲଈ—ସେହି ଅଲୌକିକ କାର୍ଯ୍ୟ କରିବାକୁ ବାହାରିଛି, ଗୋଲପ ।

ଫିରୋଜା—ଏ କି ପରିଚ୍ଛଦ ତୁମ୍ଭର, ବେଗମ୍ ସାହେବା ?

ଦୁଲଈ—ଏହିପରି ପରିଚ୍ଛଦରେ ବର୍ତ୍ତମାନ ପ୍ରୟୋଜନ, ଫିରୋଜା—ଯା' ଫିରୋଜା ତୁ ମଧ୍ୟ ଏହିପରି ସଜ୍ଜିତ ହୋଇ ଆ' । କି ଭାଇ, ଏ ପରିଚ୍ଛଦ ତୁମ୍ଭର ମନୋନୀତ ହେଉଛି କି ?

ଗୋଲପ—ଖୁବ୍ ମନୋନୀତ ହେଉଛି, ଭଉଣି । ଏହା ହିଁ ଯେ ବର୍ତ୍ତମାନ ଖୋଦାଙ୍କର ଅଭିପ୍ରେତ—ଜଗନ୍ନାଥଙ୍କର କାର୍ଯ୍ୟ ସାଧନ ନିମନ୍ତେ ଏପରି ପରିଚ୍ଛଦ ବର୍ତ୍ତମାନ ଆବଶ୍ୟକ । ଆସ ଫିରୋଜା ! ଆମ୍ଭେମାନେ ମଧ୍ୟ ଏହିପରି ସଜ୍ଜିତ ହୋଇ ପ୍ରଭୁଙ୍କୁ ରକ୍ଷା କରିବା—ଧର୍ମର ସହାୟତା କରିବା ।

ସମସ୍ତେ—ଆଲ୍ଲା ହୋ ଅକ୍‌ବର । ଜୟ ଜଗନ୍ନାଥଙ୍କର ଜୟ । ( ବୀରଦର୍ପେ ପ୍ରସ୍ଥାନ )

———

## ଚତୁର୍ଥ ଦୃଶ୍ୟ

—ପାର୍ବତୀୟ ଜଙ୍ଗଲ—

[ ରାଣୀ ଓ ସୈନ୍ୟଙ୍କର ପ୍ରବେଶ ]

ରାଣୀ—ସୈନ୍ୟଗଣ ! ଶତ୍ରୁ ନିକଟବର୍ତ୍ତୀ—ଅତଏବ ତୁମ୍ଭେମାନେ ଉଚ୍ଚୈଃସ୍ୱରେ 'ଜୟ ଜଗନ୍ନାଥ' ରବରେ ଦିକ୍ ବିଦିକ୍ କମ୍ପିତ କରି ଏହି ପର୍ବତର ଅପର ପାର୍ଶ୍ୱରେ ନିଶ୍ଚଳ ଭାବରେ ଅବସ୍ଥାନ କର ।

ସେନାପତି—ଏ କିପରି ଆଦେଶ, ମହାଦେଈ ?

ରାଣୀ—ବୁଝାଇବାର ଅବସର ନାହିଁ, ସେନାପତେ !

ସେନାପତେ—ଯଥା ଆଜ୍ଞା, ମହାଦେଈ !

ସମସ୍ତେ—"ଜୟ ଜଗନ୍ନାଥଙ୍କର ଜୟ"—"ଜୟ ମୁକୁନ୍ଦଦେବଙ୍କର ଜୟ" ।

[ ସୈନ୍ୟମାନଙ୍କର ବେଗେ ପ୍ରସ୍ଥାନ ]

ନେପଥ୍ୟେ—'ଅଲ୍ଲା ହୋ ଆକ୍‌ବର,—'ଜୟ କଳାପାହାଡ଼ ଙ୍କ ଜୟ'

ରାଣୀ—ଧ୍ୱନିର ଠିକ୍ ପ୍ରତିଧ୍ୱନି ହୋଇଛି—ବର୍ତ୍ତମାନ ଗୁପ୍ତଭାବେ ରହିବା ଉଚିତ ।

(ରାଣୀଙ୍କର ବେଗେ ପ୍ରସ୍ଥାନ)

[କଳାପାହାଡ଼ ଓ ସୈନ୍ୟମାନଙ୍କର ଦ୍ରୁତ ପ୍ରବେଶ]

କଳାପାହାଡ଼—ଏଇଥର ଶତ୍ରୁର ଦର୍ଶନ ମିଳିଛି—( ଚାରିଆଡ଼େ ଚାହିଁ ) କାହିଁ ଶତ୍ରୁ ? କାହାରିକୁ ତ ଦେଖୁ ନାହିଁ ? ଶବ୍ଦ ତେବେ ଆସିଲା କେଉଁଆଡୁ ? ସୈନ୍ୟଗଣ ! ଥରେ ଏହି ଆଡ଼େ ଯାଇ ଦେଖିଲ !

ସୈନ୍ୟଗଣ—ଆଉ ଯେ ଚାଲିବାର ଶକ୍ତି ନାହିଁ, ଜନାବ୍ ! ଉଃ, ଭାରି ତୃଷା—ଭାରି ତୃଷା !

କଳାପାହାଡ଼—( ସ୍ୱଗତଃ ) ମୋର ମଧ୍ୟ ସେହି ଦଶା ! ( ଦୀର୍ଘନିଃଶ୍ୱାସ ତ୍ୟାଗ କରି )—ଏବେ ଉପାୟ କ'ଣ ?—କି ଭ୍ରମ କଲି ? ପଥ ନ ଚିହ୍ନି, କେବଳ ଶବ୍ଦ ଲକ୍ଷ୍ୟ କରି ଶତ୍ରୁର ଅନୁସରଣ କଲି କାହିଁକି ? ରାମଚନ୍ଦ୍ର ଓ ଶିଖି ମନାଇମାନଙ୍କ ସହିତ ପରାମର୍ଶ ନ କରି ଏପରି ଦୁଃସାହସ କରିବାକୁ ଗଲି ବା କାହିଁକି ? ସେମାନେ ଯେ ସେହି ନିର୍ଦ୍ଦିଷ୍ଟ ପ୍ରାନ୍ତରରେ ଆମ୍ଭମାନଙ୍କୁ ଅପେକ୍ଷା କରୁଥିବେ ।

ସୈନ୍ୟ—ଆଉ ଯେ ଆମ୍ଭେମାନେ ସହ୍ୟ କରିପାରୁ ନାହୁଁ, ନବାବ୍ ସାହେବ୍ !

[ କ୍ଳାନ୍ତଭାବେ କେତେକ ଉପବେଶନ କଲେ—କେତେକ ଶୋଇପଡ଼ିଲେ ]

କଳାପାହାଡ଼—ବିଷମ ସମସ୍ୟା !

ନେପଥ୍ୟେ—'ଜୟ ଜଗନ୍ନାଥଙ୍କର ଜୟ !'

କଳାପାହାଡ଼—ପୁଣି ସେହି ଶବ୍ଦ ! ( ନିରୀକ୍ଷଣ କରି ) କାହୁଁ ଆସୁଛି ? (ରାଣୀ ଓ ସୈନ୍ୟମାନଙ୍କ ପ୍ରବେଶ) ଏହି ଯେ ଶତ୍ରୁ, ସୈନ୍ୟଗଣ !—ଏ କି ମୂର୍ତ୍ତି ! ଏ ଯେ ରଣଚଣ୍ଡୀ !

ରାଣୀ—ଆକ୍ରମଣ କର, ସୈନ୍ୟଗଣ !

କଳାପାହାଡ଼—ଉଠ ବୀରଗଣ ! ଶତ୍ରୁ ଦେଖା ଦେଇଛି—ଉଠ, ଅସ୍ତ୍ର ଧାରଣ କର ।

ମୁସଲମାନ୍ ସୈନ୍ୟଗଣ—( ଉଠିବାକୁ ଚେଷ୍ଟା କରି ମଧ୍ୟ ଉଠିପାରୁ ନ ଥିଲେ )

ଉତ୍କଳୀୟ-ସୈନ୍ୟଗଣ— ମାର— ମାର— ବେଶ୍ ସୁଯୋଗ ମିଳିଛି ।

ରାଣୀ—କ୍ଷାନ୍ତ ହୁଅ, ସୈନ୍ୟଗଣ ! ଶତ୍ରୁ କ୍ଳାନ୍ତ—ନିରସ୍ତ୍ର—ସମ୍ପୂର୍ଣ୍ଣ ଅପ୍ରସ୍ତୁତ—ସେମାନଙ୍କୁ ପ୍ରସ୍ତୁତ ହେବାକୁ ଆଗେ ଅବସର ଦିଅ ।

ଉ-ସୈନ୍ୟଗଣ—ମହାରାଣୀ ! ମହାରାଣୀ !

ରାଣୀ—କ୍ଷାନ୍ତ ହୁଅ ।

ମୁ-ସୈନ୍ୟଗଣ—ମା, ମା ! ଦୟା କରି ଯେବେ ଅବସର ଦେଇଛନ୍ତି, ପ୍ରାଣ ଦେଇ ଦୟାର ପୂର୍ଣ୍ଣତା ସମ୍ପାଦନ କରନ୍ତୁ ! ଟିକିଏ ପାଣି—ବଡ଼ ତୃଷା, ମା—ବଡ଼ ପିପାସା !

ରାଣୀ—ସୈନ୍ୟଗଣ ! ତୃଷାତୁରଙ୍କ ମନସ୍କାମନା ପୂର୍ଣ୍ଣ କର ।

ସେନାପତି—ଏମାନେ ଯେ ଶତ୍ରୁ, ମହାଦେଈ !

ରାଣୀ—ବର୍ତ୍ତମାନ କେବଳ ମିତ୍ର, ସେନାପତେ !

ମୁ-ସୈନ୍ୟଗଣ—ଉଃ, ବଡ଼ ତୃଷା—ପ୍ରାଣ ଗଲା !

ରାଣୀ—ଦିଅ ସେନାପତେ । ତୃଷାତୁରଙ୍କୁ ପାନୀୟ ଦିଅ—କ୍ଷୁଧାତୁରଙ୍କୁ ଖାଦ୍ୟ ଦିଅ—ମୁମୂର୍ଷୁଙ୍କ ପ୍ରାଣ ରକ୍ଷା କର—ଶତ୍ରୁ-ମିତ୍ର ବିଚାରର ସମୟ ବର୍ତ୍ତମାନ ନୁହେ ।

ସେନାପତି—ଆମ୍ଭମାନଙ୍କଠାରେ ପାନୀୟ ଓ ଖାଦ୍ୟ ଶେଷ ପ୍ରାୟ ।

ରାଣୀ—ତେବେ ମୋର ଯାହା ଖାଦ୍ୟ ଓ ପାନୀୟ ଅଛି, ଅକାତରେ ତାହା ବିତରଣ କରିଦିଅ ।

ମୁଃ-ସୈନ୍ୟଗଣ—ମା, ମା । କିଏ ତୁମ୍ଭେ ନାରୀରୂପିଣୀ ଦେବୀ ? ତୁମ୍ଭର ବଚନ-ସୁଧାରେ ଯେ ଆମ୍ଭମାନଙ୍କର କ୍ଷୁଧା, ତୃଷା ଦୂର ହୋଇ ଯାଉଛି, ମା ।

( ଉତ୍କଳୀୟ ସୈନ୍ୟଗଣ ସମସ୍ତଙ୍କୁ ଜଳ ଓ ଖାଦ୍ୟ ପ୍ରଦାନ କଲେ )

କଳାପାହାଡ଼—ନୟନ । ଆଜ ଏ କି ଦୃଶ୍ୟ ଦେଖୁଛୁ ? ହୃଦୟ । ଆଜ ଏ କି ଶାନ୍ତି ଅନୁଭବ କରୁଛୁ ?

ରାଣୀ—ଏଥର ବୋଧହୁଏ ଆପଣମାନେ ଯୁଦ୍ଧ କରିବାକୁ ପ୍ରସ୍ତୁତ ।

କଳାପାହାଡ଼—ଯୁଦ୍ଧ ?

ରାଣୀ—ଆଶ୍ଚର୍ଯ୍ୟ ହେଉଛନ୍ତି ଯେ ?

କଳାପାହାଡ଼—ପ୍ରାଣଦାତ୍ରୀଙ୍କ ସହିତ ଯୁଦ୍ଧ ।

ରାଣୀ—ଆପଣ କ'ଣ ତେବେ ଯୋଦ୍ଧା ନୁହନ୍ତି ? ରଣନୀତି ଅବଗତ ନୁହନ୍ତି ?

କଳାପାହାଡ଼—ଅବଶ୍ୟକ ମଧ୍ୟ ନାହିଁ । ପ୍ରାଣଦାତ୍ରୀ ଜନନୀଠାରେ ପରାସ୍ତ ହେଲେ ସୁଦ୍ଧା, ସନ୍ତାନ କେବେ ଲଜ୍ଜାବୋଧ କରେ ନାହିଁ, ମା ।

[ ରାମଚନ୍ଦ୍ର ଓ ଶିଖି ମନାଇଙ୍କର ପ୍ରବେଶ ]

ରାମଚନ୍ଦ୍ର—ମୁଁ କିନ୍ତୁ ଲଜ୍ଜା ବୋଧ କରେ, ନବାବ୍ ସାହେବ୍ ।—ଏହି କି ଆପଣଙ୍କର ପ୍ରତିଜ୍ଞା-ପାଳନ ? ଏହି କି ଆପଣଙ୍କର ମିତ୍ରଠାରେ ଅଙ୍ଗୀକାର ପ୍ରତିପାଳନ ?—ବୀରଶ୍ରେଷ୍ଠ ହୋଇ ସାମାନ୍ୟ ନାରୀଠାରେ ଅବନତମସ୍ତକ ? ଶିଖି, ମନାଇ । କଳାପାହାଡ଼ଙ୍କର କି ଦାମ୍ଭିକତା ଦେଖି ତାଙ୍କର ସହାୟତା ନିମନ୍ତେ ଏତେଦୂର ଅଗ୍ରସର ହେଲି ?—କଳାପାହାଡ଼ଙ୍କର କି ସାହସ ଦେଖି ସାହାଯ୍ୟ କରିବା ନିମନ୍ତେ ମୋତେ ପୁଣି ଆମନ୍ତ୍ରଣ କରିଥିଲ ?

କଳାପାହାଡ଼—(ସ୍ୱଗତଃ) ବାସ୍ତବିକ, ମୋହମୁଗ୍ଧ ହୋଇ ମୋର କର୍ତ୍ତବ୍ୟ ଯେ ମୁଁ ଅବହେଳା କରୁଛି । ଧ୍ୱଂସ—ଧ୍ୱଂସ—ମୁକୁନ୍ଦର ଧ୍ୱଂସ—ହିନ୍ଦୁର ଧ୍ୱଂସ । ( ପ୍ରକାଶ୍ୟେ ) ରାଜାସାହେବ ! କ୍ଷମା କରନ୍ତୁ—କ୍ଷଣିକ ଦୌର୍ବଲ୍ୟ ହେତୁ କର୍ତ୍ତବ୍ୟଜ୍ଞାନ ହରାଇଥିଲି । ବର୍ତ୍ତମାନ ଆପଣଙ୍କୁ ଧନ୍ୟବାଦ ଯେ, ଆପଣ ମୋତେ ପୁନର୍ବାର ଜାଗରିତ କରି ଦେଇଛନ୍ତି । ସୈନ୍ୟଗଣ ! ଶତ୍ରୁ ନାଶକର—( ରାଣୀଙ୍କ ଆଡ଼େ ଚାହିଁ ) ନିଷ୍ପଳ ଭାବରେ କ'ଣ ଦେଖୁଛ, ରାଣୀ ? ମୁଁ ଯେ ଯୁଦ୍ଧ କରିବାକୁ ଉଦ୍ୟତ ?

ରାଣୀ—ନା, ନା, ତୁମ୍ଭେ ଉଦ୍ୟତ ନୁହଁ—ଶତ୍ରୁ ଉଦ୍ୟତ ନୁହେଁ—ମିତ୍ର, ମିତ୍ର । ଅଛି ଦେଖୁଛି—ନିଷ୍ପଳ ଭାବରେ ଦେଖୁଛି, ମିତ୍ର ଆଖ୍ୟାର ଅର୍ଥ ଠିକ୍ ବିପରୀତ । ଶତ୍ରୁ ମିତ୍ର ହୁଏ, ମିତ୍ର ଶତ୍ରୁ ହୁଏ ।

ରାମଚନ୍ଦ୍ର—କିନ୍ତୁ ଏହାର ପଥପ୍ରଦର୍ଶକ, ଶିକ୍ଷକ କିଏ—ଜାଣ କି, ରାଣୀ ?

ଶିଖି—ଜାଣି ନ ଥାଅ ଯେବେ—

ମନାଇ—ମୋ'ଠାରୁ ଶୁଣ—

ରାଣୀ—ବିଶ୍ୱାସଘାତକଗଣ—

ରାମଚନ୍ଦ୍ର—ବିଶ୍ୱାସଘାତକ ଆମ୍ଭେମାନେ ନୋହୁଁ, ରାଣୀ—ବିଶ୍ୱାସଘାତକ, ତୁମ୍ଭର ମୁକୁନ୍ଦଦେବ ।

ରାଣୀ—ବିଶ୍ୱାସଘାତକ ମୁହଁରେ ସାଜେ ଏକା ।

ରାମଚନ୍ଦ୍ର—ବିଶ୍ୱାସଘାତକର ବାଣୀ ମୁହଁରେ ସାଜେ କିନା ।

ରାଣୀ—ମିଥ୍ୟାବାଦୀ ।

ରାମଚନ୍ଦ୍ର—ମିଥ୍ୟାବାଦୀ । ହାଃ ହାଃ, ରାଣୀ—କେଉଁ ନ୍ୟାୟରେ ବିଶ୍ୱାସଘାତକ ମୁକୁନ୍ଦଦେବ ଆଜି ସାରଙ୍ଗଗଡ଼ର ସ୍ୱାଧୀନତା ଅପହରଣ କରିଅଛନ୍ତି ? କେଉଁ ବିଚାରରେ ଏହି ସ୍ୱାଧୀନ ନରପତିଙ୍କୁ ଅଧୀନ କର୍ମଚାରୀ ଅପେକ୍ଷା ହେୟ ଜ୍ଞାନ କରିଅଛନ୍ତି ?

ରାଣୀ—ଅବଶ୍ୟ ତୁମ୍ଭର ବିଦ୍ରୋହ ଭାବ ଦେଖି, ବିଶ୍ୱାସଘାତକ !

ରାମଚନ୍ଦ୍ର—କିପରି ? କେଉଁ ଭାବେ ଦେଖି ?

ରାଣୀ—ବର୍ତ୍ତମାନ ଯେଉଁ ଭାବେ ମୁଁ ଦେଖୁଛି—ଯେପରି ସମସ୍ତେ ଦେଖୁଛନ୍ତି ।

ରାମଚନ୍ଦ୍ର—ଏତେ ସ୍ପର୍ଦ୍ଧା ସାମାନ୍ୟା ନାରୀ ହୋଇ ? ତେବେ, କାହାର ନ୍ୟାଯ୍ୟ କାହାର ଅନ୍ୟାଯ୍ୟ, ଏହିଠାରେ ତାର ମୀମାଂସା ହେଉ ।

ରାଣୀ—ଶୁଣ ଧର୍ମ-ରାଜଙ୍କ ସୈନ୍ୟଗଣ ! ଧର୍ମ-ରାଜ ନିଜେ ଆଜ ଅନୁପସ୍ଥିତ—ଅଧୀନସ୍ଥ ସାମନ୍ତରାଜା ଓ କର୍ମଚାରୀଗଣ ବିଦ୍ରୋହୀ—ତୁମ୍ଭମାନଙ୍କର ଅଧିନାୟକ ସାମାନ୍ୟା ନାରୀ ମାତ୍ର—ଏପରି ସ୍ଥଳେ ତୁମ୍ଭମାନଙ୍କର କର୍ତ୍ତବ୍ୟ, ତୁମ୍ଭେମାନେ ନିଜେ ବିବେଚନା କରି, କର୍ତ୍ତବ୍ୟପଥରେ ଅଗ୍ରସର ହୁଅ ।

ଉ-ସୈନ୍ୟଗଣ—ମୁକୁନ୍ଦଦେବଙ୍କ ପକ୍ଷେ ଆମ୍ଭେମାନେ ପ୍ରାଣପଣେ ଯୁଦ୍ଧ କରିବୁ, ମହାରାଣୀ ! 'ଜୟ ମହାରାଜ ମୁକୁନ୍ଦଦେବଙ୍କର ଜୟ !'

ରାମଚନ୍ଦ୍ର—ସାରଙ୍ଗଗଡ଼ବାସୀ ! ତୁମ୍ଭମାନଙ୍କର ମଧ୍ୟ ସେହି ବିଚାର—ନ୍ୟାଯ୍ୟ ପକ୍ଷ ତ୍ୟାଗକରି ଅନ୍ୟାଯ୍ୟ ପକ୍ଷରେ ଯୁଦ୍ଧ କରିବାକୁ ଅଗ୍ରସର ?

୧ମ ସୈନ୍ୟ—ଆମ୍ଭେମାନେ ନ୍ୟାଯ୍ୟ ଅନ୍ୟାଯ୍ୟ ଜାଣୁନା, ରାଜାସାହେବ ! ଯାହାଙ୍କ ଅନ୍ନରେ ଆମ୍ଭେମାନେ ପ୍ରତିପାଳିତ—ଯାହାଙ୍କ ଶିକ୍ଷାରେ ଆମ୍ଭେମାନେ ଶିକ୍ଷିତ, ତାଙ୍କରି ପକ୍ଷେ ଆମ୍ଭେମାନେ ପ୍ରାଣ ଦେବାକୁ ଅଗ୍ରସର ।

କଳାପାହାଡ଼—କୌଣସି ଭୟନାହିଁ, ରାମଚନ୍ଦ୍ର ଦେବ—ଆଜଠାରୁ ଆପଣ ଓଡ଼ିଶାର ରାଜା !—କିନ୍ତୁ, ହାଃ—ହାଃ—

ରାଣୀ—ଅଗ୍ରସର ହୁଅ, ସୈନ୍ୟଗଣ !—ଥରେ ଜଗନ୍ନାଥଙ୍କ ନାମ ଉଚ୍ଚାରଣ କରି କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅ ।

ଉ-ସୈନ୍ୟଗଣ—ଜୟ ଜଗନ୍ନାଥଙ୍କର ଜୟ—ଜୟ ରାଜା ମୁକୁନ୍ଦଦେବଙ୍କର ଜୟ !

ମୁ-ସୈନ୍ୟଗଣ—ଅଲ୍ଲାହୋ ଆକ୍‌ବର—ଜୟ ନବାବ୍ କଳାପାହାଡ଼ କ ଜୟ—ଜୟ ରାଜା ରାମଚନ୍ଦ୍ର କ ଜୟ !

[ ଘୋର ଯୁଦ୍ଧ କରୁ କରୁ ଉତ୍କଳୀୟ ସୈନ୍ୟମାନଙ୍କୁ ହଟାଇ ହଟାଇ ନେପଥ୍ୟକୁ ନେଇଯିବା ]

ନେପଥ୍ୟେ—ଅଲ୍ଲା ହୋ ଆକ୍‌ବର୍ !

ରାଣୀ—ଯୁଦ୍ଧକର, ସୈନ୍ୟଗଣ ! କେବେ ପଶ୍ଚାତ୍‌ପଦ ହୁଅ ନାହିଁ—ଓଡ଼ିଆ ନାମ କଳଙ୍କିତ କର ନାହିଁ—ଓଡ଼ିଆ ଜାତିକୁ କଳଙ୍କିତ କରନାହିଁ ! ମର, ମର ସେହିପରି ମର—ନିଜର କର୍ତ୍ତବ୍ୟ କର—ଜୟ ପରାଜୟ ନିୟତି ହସ୍ତରେ !

ନେପଥ୍ୟେ—ଅଲ୍ଲା ହୋ ଆକ୍‌ବର—ଜୟ ନବାବ୍ କଳାପାହାଡ଼ କ ଜୟ—ଜୟ ମହାରାଜ ରାମଚନ୍ଦ୍ର କ ଜୟ !

ରାଣୀ—ଜୟ ମହାରାଜ ରାମଚନ୍ଦ୍ର କ ଜୟ ! ଅସହ୍ୟ—ଅସହ୍ୟ—ପ୍ରାଣ ଥାଉ ଥାଉ ଏହା ଅସହ୍ୟ !

( ବେଗେ ପ୍ରସ୍ଥାନ )

[ ମୁସଲମାନ ସୈନ୍ୟଙ୍କର ଦ୍ରୁତ ପ୍ରବେଶ ]

ମୁସଲମାନ୍ ସୈନ୍ୟଗଣ—ରାକ୍ଷସୀ ନାରୀ ! ଖୋଦା—ଖୋଦା ! ( ବେଗେ ପଳାୟନ କଲେ )

---

## ପଞ୍ଚମ ଦୃଶ୍ୟ

—ଦୁର୍ଗସ୍ଥ ପୁଷ୍କରଣୀ ତଟ—

[ ରାମଚନ୍ଦ୍ରର ଛିନ୍ନମସ୍ତକ-ହସ୍ତେ ରାଣୀଙ୍କର ପ୍ରବେଶ ]

ରାଣୀ—ହାଃ ହାଃ ହାଃ—ଶୃଗାଳ ! ସିଂହର ଅନୁପସ୍ଥିତରେ ସିଂହନୀ ସମ୍ମୁଖରେ ଆସ୍ଫାଳନ ? ତା'ର ପ୍ରତିଫଳ ମାତ୍ର ପାଇଛୁ !—ଆଉ ମୋ ହସ୍ତରେ ତୋର ପ୍ରୟୋଜନ ନାହିଁ—ତୋ' ପରି ବିଶ୍ୱାସଘାତକର ଛିନ୍ନମସ୍ତକ ସ୍ପର୍ଶରେ ମଧ୍ୟ ପାପ ଅଛି—ଯା', ଏହି ଶୁଷ୍କ ପ୍ରାନ୍ତରରେ ଲୋଟୁଥା', ଯେ ପର୍ଯ୍ୟନ୍ତ ନରମାଂସଭୋଜୀଙ୍କ ଭୋଜ୍ୟସାମଗ୍ରୀ ନ ହୋଇଛୁ ! ( ନିକ୍ଷେପ କଲେ )

ବାଳ, ଶିଖି ମନାଇ—ସେମାନଙ୍କର ମଧ୍ୟ ଏହି ପରି ଦଶା ଅନିବାର୍ଯ୍ୟ ।

[ ସୈନିକର ପ୍ରବେଶ ]

୧ମ ସୈନ୍ୟ—ସର୍ବନାଶ, ମହାରାଣୀ ।

ରାଣୀ—କି ସର୍ବନାଶ, ସୈନିକ ?

୧ମ ସୈନ୍ୟ—ପଠାଣମାନେ ପୁଣି ଫେରିଛନ୍ତି ।

ରାଣୀ—ଭୟ କ'ଣ ? ପୁଣି ଯୁଦ୍ଧ କର ।

[ ଦ୍ୱିତୀୟ ସୈନିକର ସୋଦ୍‌ବେଗେ ପ୍ରବେଶ ]

୨ୟ ସୈନ୍ୟ—ଅମ୍ଭେମାନେ ପରାସ୍ତ, ମହାରାଣୀ ।

ରାଣୀ—ଲଜ୍ଜା ନାହିଁ ? ପରାସ୍ତ ପଦ ଉଚ୍ଚାରଣ କରିବାକୁ ଲଜ୍ଜାନାହିଁ ? ଏ' ଓଡ଼ିଆ ଜାତି ହୁଏତ ଜୟପଦ ଉଚ୍ଚାରଣ କରିବ, ନଚେତ୍ ଚିରକାଳ ସକାଶେ ନିଶ୍ଚଳ, ନିସ୍ପନ୍ଦ ହୋଇଯିବ ।

[ ତୃତୀୟ ସୈନିକର ପ୍ରବେଶ ]

୩ୟ ସୈନ୍ୟ—ସେନାପତି ନିହତ, ମହାରାଣି ।

ରାଣୀ—ସେନାପତି ନିହତ । ଜଗନ୍ନାଥ ! ଏ' କି ବାର୍ତ୍ତା ଶୁଣୁଛି । କୌଣସି ଭୟ ନାହିଁ, ସୈନ୍ୟଗଣ ! ଯେ ପର୍ଯ୍ୟନ୍ତ ମୁଁ ଜୀବିତା, ତୁମ୍ଭମାନଙ୍କର କୌଣସି ଭୟ ନାହିଁ—ଅଗ୍ରସର ହୁଅ—ଯୁଦ୍ଧ କର—ଜୟ କିମ୍ବା ମରଣକୁ ଆମନ୍ତ୍ରଣ କର ।

(ଅଗ୍ରସର ହେବାକାଳେ ପୁର-ନାରୀଗଣଙ୍କ ପ୍ରବେଶ)

ପୁର-ନାରୀଗଣ—ମହାରାଣି ! ରକ୍ଷାକର—ଶତ୍ରୁ ଗୃହ ମଧ୍ୟରେ ।

ରାଣୀ—ଭୟ କଣ ବୀର-ରମଣୀ ଗଣ—ଅସ୍ତ୍ର ଧାରଣ କର—ବୀର ଦର୍ପେ ଶତ୍ରୁ ସମ୍ମୁଖରେ ଦଣ୍ଡାୟମାନ ହୁଅ—ଶତ୍ରୁ ପ୍ରତିହତ ହୋଇ ଫେରିଯାଉ, ନଚେତ୍ ଅମ୍ଭମାନଙ୍କର ଶବାଲିଙ୍ଗନ କରି ପ୍ରବେଶ କରୁ ।

[ କଳାପାହାଡ଼ର ପ୍ରବେଶ ]

କଳାପାହାଡ଼—ଶବାଲିଙ୍ଗନ କରି ପ୍ରବେଶ କରିବ—ଏତେ ଘାଣ୍ଟିଲ ? ସାମାନ୍ୟ ମୂଷିକର ମସ୍ତକ ଛେଦନ କରିଛ ବୋଲି, ଏହି ଅହଙ୍କାର ?

ରାଣୀ—କଳାପାହାଡ଼ ! ତୁମ୍ଭେ ବୋଧହୁଏ ଜାଣ ନାହିଁ—କ୍ଷତ୍ରିୟରମଣୀଙ୍କୁ ଆତ୍ମସମର୍ପଣ କରିବାକୁ ହେଲେ, କପରି ଭାବେ ସେ ତାହା କରେ ।

କଳାପାହାଡ଼—ଖୁବ୍ ଜାଣେ, ରମଣୀ !—ତବେ ମଧ୍ୟ ଏହିଠାରେ ପରୀକ୍ଷା କରି ନିଅ—ସୈନ୍ୟଗଣ ! ରମଣୀମାନଙ୍କୁ ବନ୍ଦୀକର ।

( ସୈନ୍ୟମାନେ ଅଗ୍ରସର ହେବା )

ରାଣୀ—ସାବଧାନ, ମୂଷିକଗଣ ।

ମୁସଲମାନ୍ ସୈନ୍ୟଗଣ—(ତେଜରେ ଅଭିଭୂତ ହେବା)

କଳାପାହାଡ଼—କୌଣସି ଲୁଣ୍ଠା ନାହିଁ—ଅଗ୍ରସର ହୁଅ—ଅତ୍ୟାଚାର କର—ପ୍ରତିଶୋଧ ନିଅ—ହିନ୍ଦୁ—ହିନ୍ଦୁ—ହିନ୍ଦୁର ସର୍ବନାଶ କର ।

[ ସୈନ୍ୟଗଣ ଅସ୍ତ୍ରଚାଳନା କରିବାକୁ ଉଦ୍ୟତ ]

ରାଣୀ—ଭଉଣୀଗଣ ! ଏହି ସ୍ୱଚ୍ଛତୋୟା ପୁଷ୍କରିଣୀ ବର୍ତ୍ତମାନ ଅମ୍ଭମାନଙ୍କର ଏକମାତ୍ର ଆଶ୍ରୟ ।

କଳାପାହାଡ଼—ପୁଷ୍କରିଣୀ ବେଷ୍ଟନ କର—ସୈନ୍ୟଗଣ !

ନେପଥ୍ୟେ—ସର୍ବନାଶ—ସର୍ବନାଶ !

କଳାପାହାଡ଼—ଏ' କଣ ? କି ସର୍ବନାଶ ?

[ ଶିଖି ଓ ମନାଇଙ୍କର ବେଗେ ପ୍ରବେଶ ]

ଶିଖି—କିଏ ତିନିଜଣ ଯୁବକ ଆସି ଅମ୍ଭମାନଙ୍କର ବସଦ୍ ଓ ବାରୁଦ ଶିବିର ପୋଡ଼ି ଛାରଖାର କରି ଦେଲେଣି—ଶ୍ରାନ୍ତ ସୈନ୍ୟମାନଙ୍କ ମଧ୍ୟରୁ ପ୍ରାୟ ଅର୍ଦ୍ଧେକ ହାଣି ନଷ୍ଟ କରି ଦେଲେଣି ।

କଳାପାହାଡ଼—ଆଉ ତୁମ୍ଭେ ଯୁବକମାନେ କଣ ସେ ଦୃଶ୍ୟ ନିଶ୍ଚଳ ଭାବରେ ଦେଖି ଖବର ଦେବାକୁ ଧାଇଁ ଆସିଲ ?

ମନାଇ—ନବାବ୍ ସାହେବ ! ସେ ଯୁବକମାନଙ୍କର ତେଜ ଓ ଉତ୍ସାହ ଦେଖିଲେ କହିବେ ନାହିଁ ସେମାନେ ତିନିଜଣ—ସେମାନେ ତିନି ତେ—ତିନି ସହସ୍ର । ଏହି ଶୁଣନ୍ତୁ ଅଭିନାଦ—ଏହି ଦେଖନ୍ତୁ ଅଗ୍ନି ଶିଖା—

କଳାପାହାଡ଼—କି ସର୍ବନାଶ ।

ମୁସଲମାନ୍ ସୈନ୍ୟଗଣ—ଅଲ୍ଲା ହୋ ଅକ୍‌ବର !

[ରମଣୀମାନଙ୍କୁ ଛାଡ଼ି ସମସ୍ତଙ୍କର ବେଗେ ପ୍ରସ୍ଥାନ]

ରାଣୀ—ଏ’ କି ସମ୍ବାଦ ?—ସ୍ୱୟଂ ଜଗନ୍ନାଥ କି ଭ୍ରାତା ଭଗିନୀ ସଙ୍ଗେ ଅସ୍ମମାନଙ୍କ ରକ୍ଷା କରିବା ନିମନ୍ତେ ଏପରି ଭାବେ ଆବିର୍ଭୂତ ହୋଇଛନ୍ତି ?

ନେପଥ୍ୟେ—ଅଲ୍ଲା ହୋ ଅକ୍‌ବର !

ରାଣୀ—ଏ’ତ ପଠାଣମାନଙ୍କର ଜୟୋଲ୍ଲାସଧ୍ୱନି !—ତେବେ କଣ ଯୁବକଗଣ ପରାଜିତ ? ନା, ନା ଅସ୍ମମାନଙ୍କର ସମ୍ମାନ ରକ୍ଷା କରିବାପାଇଁ ନୀଳାଚଳନାଥଙ୍କର ଯେ ଏହା ଛଳନା ମାତ୍ର—ଭଗିନୀଗଣ, ଆଉ ବିଳମ୍ବରେ ପ୍ରୟୋଜନ ନାହିଁ—ଯବନସ୍ପୃଷ୍ଟ ହେବା ପୂର୍ବରୁ ଏହି ପବିତ୍ର ଶରୀର ପୁଷ୍କରିଣୀ-ନିହିତ କରିଦେବା ଚାଲ !

ପୁର-ନାରୀଗଣ—ଜୟ ମା ଭଗବତୀ ! ( ପୁଷ୍କରିଣୀକୁ ଡେଇଁ ପଡ଼ିବା )

( ନେପଥ୍ୟେ ଗୋଲାପ )—ଜୟ ଜଗନ୍ନାଥଙ୍କ ଜୟ !

ରାଣୀ—( ଦୀର୍ଘ ନିଃଶ୍ୱାସ ତ୍ୟାଗକରି ) ପରିହାସ ! ଜଗନ୍ନାଥଙ୍କ ନାମୋଚ୍ଚାରଣ କରି ପରିହାସ ! ଦେଖି ଆସି ଯବନଗଣ ! ତୁମ୍ଭମାନଙ୍କର ବନ୍ଦୀ ହେବାକୁ କେତେଜଣ ମାତ୍ର ବାକି !

[ ଦୁଲ୍‌ଆ, ଗୋଲାପ ଓ ଫିରୋଜାର ପ୍ରବେଶ ]

ଦୁଲ୍‌ଆ—କାହାନ୍ତି ରାଣୀ ?

ରାଣୀ—ଏହି ପୁଷ୍କରିଣୀ ଜଳରେ, ଯବନ !

ଗୋଲାପ—ରାଣୀ ! ରାଣୀ ! ( ନିକଟବର୍ତ୍ତୀ ହୋଇ )

ରାଣୀ—(ସ୍ୱଗତଃ) ପ୍ରାଣେଶ୍ୱର ! ଏ’ ଜୀବନରେ ଆଉ ମିଳନ ହେଲ ନାହିଁ—ମୋର ଆଶଙ୍କା କାର୍ଯ୍ୟରେ ପରିଣତ ହୋଇଛି ! ଏତକ ମିନତି, ଜଗନ୍ନାଥ ! ହୁଏତ ପ୍ରାଣେଶ୍ୱର ଶତ୍ରୁଜୟକରି ସ୍ୱାଧୀନତା ରକ୍ଷା କରନ୍ତୁ, ନଚେତ୍ ଯୁଦ୍ଧ କରୁ କରୁ ସାନନ୍ଦେ ସ୍ୱର୍ଗଧାମକୁ ଚାଲି ଆସନ୍ତୁ !

ଦୁଲ୍‌ଆ—ରାଣୀ ! ରାଣୀ ! ଶାନ୍ତ ହେଉନ୍ତୁ—ମୁଁ ଯେ ଦୁଲ୍‌ଆ !

ଗୋଲାପ—ମୁଁ ଯେ ଗୋଲାପ !

ଫିରୋଜା—ମୁଁ ଯେ ଫିରୋଜା !

ରାଣୀ—ତୁମ୍ଭେମାନେ ! ଆଜ ଏ ରଣବେଶରେ କାହିଁକି ଏଠାରେ ?

ଦୁଲ୍‌ଆ—ଆଶ୍ରୟଦାତ୍ରୀଙ୍କ ସହାୟତା ନିମନ୍ତେ !

ରାଣୀ—ଖୁବ୍ ସହାୟତା କରିଛ, ଭଗିନୀମାନେ ! ତୁମ୍ଭମାନଙ୍କ ଯୋଗୁଁ ଆଜ ଅସ୍ମମାନଙ୍କର—କ୍ଷତ୍ରିୟ ରମଣୀଙ୍କର ମାନ ସମ୍ଭ୍ରମ ସମସ୍ତ ରକ୍ଷା ପାଇଛି—ଧନ୍ୟବାଦ—ଆଉ ମୁଁ ବିଳମ୍ବ କରିପାରୁ ନାହିଁ !

ନେପଥ୍ୟେ—ଅଲ୍ଲା ହୋ ଅକ୍‌ବର !

ରାଣୀ—ଏହି ଶୁଣ ଶତ୍ରୁ କୋଳାହଳ—ଅଭିବାଦନ—ଅଭିବାଦନ !

[ ପୁଷ୍କରିଣୀରେ ପତନ ଓ କଳାପାହାଡ଼, ଶିଖି, ମନାଇ ଓ ପଠାଣ ସୈନ୍ୟଗଣଙ୍କର ବେଗେ ପ୍ରବେଶ ]

କଳାପାହାଡ଼—କାହିଁ ରାଣୀ ?

ଦୁଲ୍‌ଆ—ଏହି ପୁଷ୍କରିଣୀ ମଧ୍ୟରେ !

[ ସମସ୍ତେ ପୁଷ୍କରିଣୀଆଡ଼େ ନିସ୍ତବ୍ଧ ଓ ଆଶ୍ଚର୍ଯ୍ୟ ଭାବେ ଚାହିଁ ରହିବା ଓ ଗୋଲାପ ପ୍ରଭୃତିଙ୍କ ଅନ୍ତର୍ଦ୍ଧାନ ]

ଯବନିକା ପତନ !

---

## ପଞ୍ଚମ ଅଙ୍କ

### ପ୍ରଥମ ଦୃଶ୍ୟ

—ବିରଜାମନ୍ଦିର ସମ୍ମୁଖ—

ନେପଥ୍ୟେ—ଅଲ୍ଲା ହୋ ଅକ୍‌ବର !

[ ମୁକୁନ୍ଦଦେବଙ୍କ ବେଗେ ପ୍ରବେଶ ]

ମୁକୁନ୍ଦଦେବ—ସୈନ୍ୟଗଣ ! ଜାଗ—ପ୍ରାତଃକାଳୀନ ପକ୍ଷୀ-କୂଜନ ସଙ୍ଗେ ସଙ୍ଗେ ଶତ୍ରୁମାନଙ୍କର ହୁଙ୍କାର ଧ୍ୱନି ଶ୍ରୁତିଗୋଚର ହେଉଣି—ଆଉ ଆଳସ୍ୟରେ କାର୍ଯ୍ୟ ନାହିଁ—ଯାମିନୀ ସଙ୍ଗେ ସଙ୍ଗେ ନିଦ୍ରାକୁ ବିସର୍ଜନ ଦିଅ !

ସୈନ୍ୟଗଣ—(ବେଗରେ ପ୍ରବେଶ) ଜୟ ଜଗନ୍ନାଥଙ୍କ ଜୟ—ଜୟ ଗଜପତି ମୁକୁନ୍ଦଦେବଙ୍କ ଜୟ ।

ନେପଥ୍ୟେ—ଅଲ୍ଲା ହୋ ଆକ୍‌ବର—ଜୟ ନବାବ୍ କଳାପାହାଡ଼ଙ୍କ ଜୟ ।

ମୁକୁନ୍ଦଦେବ—ଆଉ ସହ୍ୟ ହେଉ ନାହିଁ—ଆସ ସୈନ୍ୟଗଣ—ମା'ଙ୍କର ନାମ ଉଚ୍ଚାରଣ କରି ଅନ୍ତିମବାର ଭୀଷଣ ରଣରେ ପ୍ରବୃତ୍ତ ହେବା ଆସ । ଏହି ଦିବସ ଆମ୍ଭମାନଙ୍କର ଜୟବାର୍ତ୍ତା ବହନ କରି ଦେଶରୁ ଦେଶାନ୍ତରକୁ ଚାଲିଯାଉ—ନଚେତ୍ ଆମ୍ଭମାନଙ୍କର ଶବଦେହ ଦର୍ଶନ କରି ଶରଦ ଯାମିନୀରେ ପରିଣତ ହେଉ ।

ସୈନ୍ୟଗଣ—ଗଜପତିଙ୍କ ଜୟ ହେଉ ।

ମୁକୁନ୍ଦଦେବ—(ଅଗ୍ରସର ହୋଇ) ଏ' କି ଦୃଶ୍ୟ ? ଏ' କି ଲାଞ୍ଛନା ? ମା—ମା—ଅଜି ତୋର ଏ' କି ଦୁର୍ଦ୍ଦଶା ? କାହିଁ ତୋର ସେହି ସୂକ୍ଷ୍ମ କାରୁକାର୍ଯ୍ୟ ମଣ୍ଡିତ ମନ୍ଦିରର ତୋରଣଦେଶ ? କାହିଁ ତୋର ସେହି ମନ୍ଦିରର ସ୍ଥାନେ ସ୍ଥାନେ ଖୋଦିତ ପ୍ରତିମୂର୍ତ୍ତିର ସୁନ୍ଦର ଦୃଶ୍ୟ ? କି ସର୍ବନାଶ । ଉଃ— ଏ' କି ବିଭତ୍ସ ଦୃଶ୍ୟ । ପୁଣି କାହିଁ ମୂର୍ତ୍ତିଟିଏ ଛିନ୍ନ ହସ୍ତପଦ । କାହିଁ ମୂର୍ତ୍ତିଟିଏ ପ୍ରସ୍ତରମାତ୍ର ଅବଶିଷ୍ଟ । କାହିଁ ମୂର୍ତ୍ତିଟିଏ ଏକାବେଳକେ ଅନ୍ତର୍ହିତ । କଳାପାହାଡ଼ । କଳାପାହାଡ଼ । ଅଜି ତୁମ୍ଭର ଏ' କି କୀର୍ତ୍ତିରହିଗଲା ?

[ ଶିଙ୍ଘ ଓ ମନାଇଙ୍କର ସସୈନ୍ୟେ ପ୍ରବେଶ ]

ଶିଙ୍ଘ—ଏ କ୍ଷତି ସମ୍ପୂର୍ଣ୍ଣ ହୋଇ ନାହିଁ, ରଜାସାହେବ ।

ମନାଇ—ଶ୍ରୀ କ୍ଷେତ୍ରରେ ମଧ୍ୟ ସମ୍ପୂର୍ଣ୍ଣ ହେବା ଅସମ୍ଭବ ।

ମୁକୁନ୍ଦଦେବ—ତୁମ୍ଭମାନଙ୍କର ମରଣରେହିଁ ସମ୍ପୂର୍ଣ୍ଣ ହେବା ସମ୍ଭବ, ବିଶ୍ୱାସଘାତକଗଣ ।

ମନାଇ—ହାଃ ହାଃ ହାଃ । ଆମ୍ଭମାନଙ୍କର ମରଣରେ, ନା ତୁମ୍ଭର ମରଣରେ ?

ଶିଙ୍ଘ—ତୁମ୍ଭର ମରଣ ଯେ ବାଞ୍ଛନୀୟ, ରଜା ସାହେବ । ତୁମ୍ଭର ବିଶ୍ୱାସୀ କୋନସିଂହ ଯାହା ପ୍ରତି ବିଶେଷ ଅନୁଗ୍ରହ ଯୋଗୁଁ ଅଜି ଅମ୍ଭେମାନେ ରାଜଦ୍ରୋହୀ, ଉଦ୍‌ଭ୍ରାନ୍ତ ସାଙ୍ଗକରି ସାରିଲେଣି—ତୁମ୍ଭର ଅଦରଣୀୟା ପ୍ରିୟତମାରାଣୀ, ଯାହାଙ୍କ ସହିତ ମିଳନଆଶା-ଅବକାଶରେ ପ୍ରତି ମୁହୂର୍ତ୍ତ ତୁମ୍ଭର ହୃଦୟକୁ ଉତ୍‌ଫୁଲ୍ଲ କରୁଥିବ, ଇହଧାମରେ ଆଉ ନାହାନ୍ତି ।

ମୁକୁନ୍ଦଦେବ—ରାଣୀ ନାହାନ୍ତି । (ନୀରବ)

ସୈନ୍ୟ—ମହାରାଣୀ ନାହାନ୍ତି । ମହାରାଜ—

ମୁକୁନ୍ଦଦେବ—ଜାଗ, ମୁକୁନ୍ଦ ଦେବ—ଜାଗ ସୈନ୍ୟଗଣ, ନିଜର କର୍ତ୍ତବ୍ୟ ପଥରେ ଅଗ୍ରସର ହୁଅ—ଶୋକର ସମୟ ବର୍ତ୍ତମାନ ନୁହେ, ବିଶ୍ୱାସଘାତକଗଣ । ତୁମ୍ଭେମାନେ ଉତ୍ତମରୂପେ ଜାଣ, ମୁକୁନ୍ଦ ଦେବ ଏ ବାହୁରେ କେତେ ଶକ୍ତି ଧାରଣ କରେ —ଏହି ଅସ୍ତ୍ର କିପରି ଭାବରେ ଚାଳନ କରିପାରେ ?

ଶିଙ୍ଘ—ସେଥିସକାଶେ ଅମ୍ଭେମାନେ ପ୍ରସ୍ତୁତ, ମହାରାଜ ।

ମୁକୁନ୍ଦଦେବ—ତେବେ ଆକ୍ରମଣ କର ସୈନ୍ୟଗଣ ।

( ଯୁଦ୍ଧକରିବା ଏବଂ ପଠାଣସୈନ୍ୟମାନଙ୍କର ପଳାୟନ ଓ ଶିଙ୍ଘ ମନାଇଙ୍କର ପତନ )

ବିଶ୍ୱାସଘାତକ ଗଣ ! ଏହିଥର ତୁମ୍ଭମାନଙ୍କର ଉପଯୁକ୍ତ ପୁରସ୍କାର ଗ୍ରହଣକର । (ହତ୍ୟାକରିବାକୁ ଯିବା) ନା ତୁମ୍ଭମାନଙ୍କ ପରି ନୀଚ୍ଛଶୟମାନଙ୍କ ରକ୍ତରେ ମୋର ଅସି କଳଙ୍କିତ କରିବି ନାହିଁ— ଏହା ମଧ୍ୟ ତୁମ୍ଭମାନଙ୍କର ଉପଯୁକ୍ତ ଶାସ୍ତି ନୁହେ । ତୁମ୍ଭମାନଙ୍କର ଶାସ୍ତି, ଏହି ଅଙ୍ଗ-ପ୍ରତ୍ୟଙ୍ଗ-ବିହୀନ ପ୍ରତିମୂର୍ତ୍ତି ତୁଲ୍ୟ ଖଣ୍ଡ ଖଣ୍ଡ ହେବା ଉଚିତ— ଶ୍ରୀ-ହୀନ କାରୁକାର୍ଯ୍ୟ ତୁଲ୍ୟ ହେବା ବାଞ୍ଛନୀୟ । ସୈନ୍ୟଗଣ । ଏ' ନରାଧମମାନଙ୍କୁ ବନ୍ଦୀକରି ଶିବିରକୁ ନେଇଯାଅ ।

[ ସୈନ୍ୟମାନଙ୍କର ବନ୍ଦୀ ଦୁହିଙ୍କୁ ନେଇ ପ୍ରସ୍ଥାନ ]

ହା । ପ୍ରିୟେ । କେତେ ଆଶା କରିଥିଲି, ଦିଲ୍ଲୀରୁ ପ୍ରତ୍ୟାଗତ ହୋଇ ତୁମ୍ଭର ଦର୍ଶନ ଲାଭ କରିବି;

କିନ୍ତୁ, କିଏ ଜାଣିଥିଲା ଯେ, ନିଜର ବିଶ୍ୱାସୀ ସୈନ୍ୟଗଣ ଏପରି ବିଶ୍ୱାସ-ଘାତକ ହେବେ— ଶତ୍ରୁର ଚାପଟ୍ୟରେ ଏପରି ଦୁର୍ଦ୍ଦଶା ଘଟିବ ।

ଦ୍ୱାସ୍ଥ—( ପ୍ରବେଶ କରି ) ମହାରାଜ ! କଟକରୁ ଦୂତ ଆସିଛି ।

ମୁକୁନ୍ଦଦେବ—ଶତ୍ରୁର ଗୁପ୍ତ-ସମ୍ବାଦ ବର୍ତ୍ତମାନ ଶୁଣିବାକୁ ହେବ ?

( ସମସ୍ତଙ୍କର ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଶିବିରସ୍ଥ ଶୟନ ଗୃହ—

[ ମୁକୁନ୍ଦଦେବ ଓ ଦୂତର ପ୍ରବେଶ ]

ମୁକୁନ୍ଦଦେବ—ଶୁଣାଅ ଶୁଣାଅ ଦୂତ—ଅନ୍ତର ଥରେ ଶୁଣି ନିଜକୁ ଧନ୍ୟ ମନେ କରେଁ—ରାଣୀ ! ତୁମ୍ଭର ବିଚ୍ଛେଦରେ ଆଉ ମୋ'ର ଖେଦ ନାହିଁ— ତୁମ୍ଭେ ବୀରର ଉପଯୁକ୍ତ ପତ୍ନୀ—ପତିର ଅନୁପସ୍ଥିତିରେ ପତ୍ନୀର ଯାହା କର୍ତ୍ତବ୍ୟ, ତୁମ୍ଭେ ତାହାହିଁ ପାଳନ କରି ଇହଲୀଳା ସାଙ୍ଗ କରିଅଛ । କିନ୍ତୁ ରାମଚନ୍ଦ୍ର ବିଶ୍ୱାସଘାତକ, ଦୂତ ?

ଦୂତ—ଆଜ୍ଞା ମହାରାଜ ! ତାଙ୍କର ହେତୁରୁ ଅମ୍ଭମାନଙ୍କର ଆଜି ଏହି ଦୁର୍ଦ୍ଦଶା ।

ମୁକୁନ୍ଦଦେବ—ରାମଚନ୍ଦ୍ର ! ଦେଶବାସୀ ହୋଇ ଆଜି ଦେଶର କି ସର୍ବନାଶ କରିଛ ? ତୁମ୍ଭର ଯଦି ମୋ ପ୍ରତି କୌଣସି ବ୍ୟକ୍ତିଗତ ବିଦ୍ୱେଷ ଥିଲା, ତାର ପ୍ରତିଶୋଧ, ମୋତେ ବିନାଶ କରି ସମ୍ପନ୍ନ ନ କଲ କାହିଁକି ? ନିରୀହ ଦେଶବାସୀଙ୍କର ରକ୍ତ-ପ୍ରବାହରେ ସିନା ସ୍ୱଦେଶକୁ ଆଜି ପ୍ଳାବିତ କରି ଦେଇଛ—ଦେଶବାସୀଙ୍କ ପରମଧନ, ଶ୍ରେଷ୍ଠ ଗୌରବ, ପୂଜାର ସାମଗ୍ରୀ, ସ୍ୱାଧୀନତାକୁ ସିନା ଶତ୍ରୁ କବଳରେ ଆଜି ଅର୍ପଣ କରି ଦେଇଛ— ସର୍ବୋପରି ହିନ୍ଦୁର ଗର୍ବର ଧନ, ସେହି ଅମୂଲ୍ୟ ସମ୍ପଦ ସନାତନ ଧର୍ମକୁ ସିନା ଧର୍ମଦ୍ରୋହୀର କ୍ରୀଡ଼ାସାମଗ୍ରୀ ଆଜି କରି ଦେଇଛ ? ଯାଅ ଦୂତ ! ସୈନ୍ୟମାନଙ୍କୁ ପ୍ରସ୍ତୁତ ହେବାକୁ ଆଦେଶ ଦିଅ— ମୁଁ ଏହିକ୍ଷଣି ଯାତ୍ରା କରିବି, ଦେଶର, ଧର୍ମର ଏପରି ଲାଞ୍ଛନା ଆଉ ଉଲେମାନ ସହ୍ୟ ହେଉ ନାହିଁ ।

ଦୂତ—ମହାରାଜ ! ବର୍ତ୍ତମାନ ରାତ୍ରିକାଳ—ପ୍ରଭାତ ପର୍ଯ୍ୟନ୍ତ ଅପେକ୍ଷା କଲେ ଭଲ ହୁଅନ୍ତା ନାହିଁ ?

ମୁକୁନ୍ଦଦେବ—ପ୍ରଭାତ ପର୍ଯ୍ୟନ୍ତ ଅପେକ୍ଷା ! ଏତେ ଦୀର୍ଘକାଳ ଅସହ୍ୟ, ଅସହ୍ୟ ! ଯାଅ, ଦୂତ ! ମୋର ଆଜ୍ଞା ପାଳନ କର ।

[ ଦୂତର ପ୍ରସ୍ଥାନ ]

କଳାପାହାଡ଼ ! କଳାପାହାଡ଼ ! ତୁମ୍ଭେ ପରା ଦିନେ ହିନ୍ଦୁ ଥିଲ—ନିଷ୍ଠାପର ଭାବରେ ହିନ୍ଦୁଧର୍ମ ଆଚରଣ କରୁଥିଲ—ଆଜି ଏ' କି କାର୍ଯ୍ୟ ତୁମ୍ଭର ? ହେଉ ହିନ୍ଦୁର ସର୍ବନାଶ—ହିନ୍ଦୁ ଧର୍ମର ସର୍ବନାଶ, ଆଜି ତୁମ୍ଭର ମହାବ୍ରତ ହୋଇଛି ! ଓଃ—

[ ସୈନ୍ୟମାନଙ୍କର କ୍ଳାନ୍ତଭାବେ ପ୍ରବେଶ ]

ଏହି ଯେ ସୈନ୍ୟମାନେ ଉପସ୍ଥିତ—ସୈନ୍ୟଗଣ ! ମୁଁ ଏହିକ୍ଷଣି ଯାତ୍ରା କରିବି, ତୁମ୍ଭେମାନେ ପ୍ରସ୍ତୁତ ?

୧ମ ସୈନ୍ୟ—( କ୍ଳାନ୍ତଭାବେ ) ମହାରାଜ ! ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ ।

ମୁକୁନ୍ଦଦେବ—ଏ' କଣ ? ତୁମ୍ଭମାନଙ୍କର ସେ ଉଦ୍ୟମ ଓ ଉତ୍ସାହ ଦେଖୁନାହିଁ କାହିଁକି ?

୧ମ ସୈନ୍ୟ—ମହାରାଜ ! ଅମ୍ଭେମାନେ ଅତ୍ୟନ୍ତ କ୍ଳାନ୍ତି ବୋଧ କରୁଛୁଁ ।

ମୁକୁନ୍ଦଦେବ—କ୍ଳାନ୍ତି ! କ୍ଳାନ୍ତି !

୧ମ ସୈନ୍ୟ—ପ୍ରଭାତ ପର୍ଯ୍ୟନ୍ତ—

ମୁକୁନ୍ଦଦେବ—ଅବସର ଚାହଁ ? ଅବସର, ଅବସର— ହାଃ ହାଃ—ଯାଅ, ଯାଅ, ସ୍ୱଚ୍ଛନ୍ଦେ ଗ୍ରହଣ କର— ଶର ଅବସର ( ସ୍ୱଗତ ) ଜାଣେ ନା, ଜାଣେ ନା, କି ଦୁର୍ବଳତାରେ କାଳେ ମୁହିଁ ମଧ୍ୟ ଅବସନ୍ନ ।

ସୈନ୍ୟଗଣ—ମହାରାଜ ! ଅମ୍ଭେମାନେ ପ୍ରସ୍ତୁତ ।

ମୁକୁନ୍ଦଦେବ—ନା, ଯାଅ, ବିଶ୍ରାମ କର । ମହାରାଜ ତୁମ୍ଭର ନିଜେ ଅଜି ବିଶ୍ରାମପ୍ରାର୍ଥୀ ।

[ ସମସ୍ତଙ୍କ ପ୍ରସ୍ଥାନ ]

[ ଶିଖି ଓ ମନାଇର ଧୀର ପଦ ବିକ୍ଷେପରେ ଛୁରିକାହସ୍ତରେ ପ୍ରବେଶ ]

ଶିଖି—ଭାଇ । ଅସ୍ତେ ଅସ୍ତେ ।

ମନାଇ—ଭାଇ । କେଉଁଠି ଶୋଇଛି, ଦେଖିବା ଚାଲ ।

ଶିଖି—ତୁ ଚୁପ୍ କର ନା, ମୁଁ ଦେଖୁଛି ।

ମନାଇ—ଏହି ନାକ ଘଡ଼୍ ଘଡ଼୍ ଶୁଭୁଛି—ବାଃ, ବାଃ—ଗାଢ଼ ନିଦ୍ରା ।

ଶିଖି—ମୁଁ ଆହୁରି ଗାଢ଼ କରି ଦେଉଛି ଦେଖ୍ ନା ।

ମନାଇ—ଭାଇ, ମୋତେ ଛୁରି ଦେ—ମୋର ପ୍ରାଣର ଜ୍ୱାଳାଟା ତଳ ମୁଁ ନିଜ ହାତରେ ଲିଭାଇ ଦିଏ ।

ଶିଖି—ନା ଭାଇ, ଖୁଣୀକୁ ଖୁନ୍ କରିବାକୁ ଦେ—ତାର ଲକ୍ଷ୍ୟ ଅବ୍ୟର୍ଥ, ହୃଦୟ ଅଟଳ—ଆହୁରି ଦେଖ୍ ପ୍ରହରୀର ରକ୍ତ ପାନକରି ଏହି ଛୁରି କିପରି ପୁନର୍ବାର ରକ୍ତ-ଲାଲସାରେ ଦୃଢ଼-ମୁଷ୍ଟିବଦ୍ଧ ହୋଇଛି ।

ମନାଇ—ଭାଇ, ଭାଇ । ଏ’ କି ମୂର୍ତ୍ତି ତୋର ?

ଶିଖି—ଚୁପ୍— ( ପ୍ରସ୍ଥାନ )

( ନେପଥ୍ୟେ ମୁକୁନ୍ଦଦେବ )—ଉଃ ପ୍ରାଣଗଲା—ଜଗନ୍ନାଥ । ତୁମର ଇଚ୍ଛା ପୂର୍ଣ୍ଣ ହେଉ ।

---

## ତୃତୀୟ ଦୃଶ୍ୟ

—ପୁରୀ ରାସ୍ତା—

[ ନାଗରିକଗଣଙ୍କ ପ୍ରବେଶ ]

୧ମ ନାଗରିକ—ଭାଇ । ଚାଲ ପଳାଇବା—ଆଉ ଏ’ ସ୍ଥାନରେ ରହି ହେବ ନାହିଁ ।

୨ୟ—ତେବେ, ଭାଇ ଟିକିଏ ରହ—ଘରେ ମୁଁ ବହୁତ ସୁନା ରୁପା ଛାଡ଼ି ଆସିଛି, ନେଇ ଆସେ ।

୧ମ—ବେଶ୍, ଯା ପ୍ରାଣଟି କି ଦେଇଆ’ ।

୨ୟ—ପ୍ରାଣଟି ଦେବି ?—ଏ ଅମୂଲ୍ୟ ପ୍ରାଣଟି ଦେବି ? ତେବେ ମୋର ଦରକାର ନାହିଁ । ଚାଲ ପଳାଇବା ।

୩ୟ—ଭାଇ, ମୋର ଯେ ଘରେ ପିଲାମାନେ ରହିଗଲେ ।

୧ମ—ରହିଗଲେ ତ ଆଉ କଣ କରିବୁ ? ସେମାନଙ୍କର କପାଳ ସେମାନେ ଭୋଗ କରିବେ—ଆଗେ ନିଜ ପ୍ରାଣ ବଞ୍ଚା ।

ନେପଥ୍ୟେ—ଅଲ୍ଲା ହୋ ଅକ୍‌ବର୍—ଜୟ ନବାବ୍ କଳାପାହାଡ଼ କି ଜୟ ।

ସମସ୍ତେ—ଅରେ ଭାଇରେ, ଅଇଲା କଳାପାହାଡ଼—ଭାଙ୍ଗିଲା ଲୁହାର ବାଡ଼ ।

[ ପଳାୟନ ସମୟରେ ବୁଲିଆ, ଗୋଲାପ ଓ ଫିରୋଜାର ପ୍ରବେଶ ଓ ସେମାନଙ୍କୁ ଅଟକାଇବା ]

ଗୋଲାପ—ଛିଡ଼ା ହୁଅ ଭ୍ରାତୃଗଣ ।

ସମସ୍ତେ—ଦୋହାଇ ସିପାହି ସାହେବ୍ । ଆମ୍ଭମାନଙ୍କର ପ୍ରାଣରକ୍ଷା କର—ଅମ୍ଭମାନଙ୍କ ପ୍ରାଣରକ୍ଷା କର ।

୧ମ—ହେ ମହାପ୍ରଭୁମାନେ । ମୋର ଭିଟାମାଟି ସବୁ ନିଅ ପଛକେ, ମୋତେ ପ୍ରାଣରେ ମାର ନାହିଁ ।

୨ୟ—ମୋର ସୁନା ରୁପା ଯାହା ଅଛି ଦେଉଛି ପଛକେ, ମୋର ପ୍ରାଣଟି ରକ୍ଷାକର ।

୩ୟ—ମୋ ପିଲାପିଲିଙ୍କୁ ନିଅ ପଛକେ, ମୋ ପ୍ରାଣଟି ରଖ ।

ଗୋଲାପ—କଣ କହିଲ ଭ୍ରାତୃଗଣ । ଏହି ଛାର ପ୍ରାଣ ସକାଶେ ନିଜର ପୁତ୍ରକଳତ୍ରାଦିଙ୍କୁ ଶତ୍ରୁ ସମ୍ମୁଖରେ ବଳୀ ଦେବାକୁ ଉଦ୍ୟତ—ନିଜର ମନୁଷ୍ୟତ୍ୱକୁ ପର୍ଯ୍ୟନ୍ତ ବଳୀ ଦେବାକୁ ଉଦ୍ୟତ—ଧିକ୍—ତୁମ୍ଭେମାନେ ମନୁଷ୍ୟ, ନା ମନୁଷ୍ୟ ଦେହଵିଶିଷ୍ଟ ପଶୁ ମାନେ ? ଆତ୍ମ-ସୁଖକୁ ପ୍ରଧାନ ସୁଖ ମନେ କରି—ନିଜର ବିବେକକୁ ମହାନ୍ ଜଡ଼ପିଣ୍ଡ ଜ୍ଞାନ କରି—ଆପଣାର ସର୍ବନାଶ—ଦେଶର ସର୍ବନାଶ

—ଧର୍ମର ସର୍ବନାଶ କରିବାକୁ ଉଦ୍ୟତ, ଧିକ୍ ତୁମ୍ଭର ପୁରୁଷତ୍ୱକୁ—ଧିକ୍ ତୁମ୍ଭର ଜୀବନକୁ ।
[ ସମସ୍ତେ ଭୟ-ବିହ୍ୱଳ ନେତ୍ରରେ ପରସ୍ପରକୁ ଅନାଇ ରହିବା ]

ଦୁଲଅ—ଭୟ ନାହିଁ ଭ୍ରାତୃଗଣ । ଆମ୍ଭେମାନେ ତୁମ୍ଭମାନଙ୍କର ମିତ୍ର ।

ସମସ୍ତେ—ମିତ୍ର !

[ ଆଶ୍ଚର୍ଯ୍ୟ ଭାବରେ ଦୁଲଅକୁ ଚାହିଁବା ]

ଦୁଲଅ—ହଁ ଭାଇମାନେ, ମିତ୍ର—ତୁମ୍ଭମାନଙ୍କର ସାହାଯ୍ୟପ୍ରାର୍ଥୀ ।

୧ମ—ସାହାଯ୍ୟ—ଆମ୍ଭମାନଙ୍କର ତ କିଛି ନାହିଁ ।

ଦୁଲଅ—ତୁମ୍ଭମାନଙ୍କର ସବୁ ଅଛି, ଭ୍ରାତୃଗଣ । ଦେହରେ ଶକ୍ତି ଅଛି—ହୃଦୟରେ ସାହସ ଅଛି—ମନରେ ଦୃଢ଼ତା ଅଛି—ଆମ୍ଭେମାନେ ସେହି ସମସ୍ତର ସାହାଯ୍ୟ ଚାହୁଁ ।

୨ୟ—ମହାପ୍ରଭୁମାନେ ! ଆମର ତ ସେ ସବୁ କିଛି ନାହିଁ—ଆମ୍ଭମାନଙ୍କୁ ଏତେ ଜଞ୍ଜାଳରେ ପକାଉଛନ୍ତି କାହିଁକି ?

ଦୁଲଅ—କାହିଁକି ? ତୁମ୍ଭେମାନେ କି ଅନ୍ଧ ନା ବଧିର ? ଏହି ଦେଖ ତୁମ୍ଭମାନଙ୍କର ବାସଗୃହ ସବୁ କିପରି ଅଗ୍ନି ଲାଗି ଦାଉ ଦାଉ ହୋଇ ଜ୍ୱଳି ଉଠିଲାଣି । ଏହି ଦେଖ ତୁମ୍ଭମାନଙ୍କର ପବିତ୍ର ଦେବ ମନ୍ଦିର ସବୁ କିପରି ଧ୍ୱସ୍ତ ବିଧ୍ୱସ୍ତ ହୋଇ ପ୍ରସ୍ତରସ୍ତୂପରେ ପରିଣତ ହେଲାଣି । ଏହି ଶୁଣ ପୁଣି, ତୁମ୍ଭମାନଙ୍କର ପୁତ୍ର-କଳତ୍ରାଦିଙ୍କର ଆର୍ତ୍ତନାଦରେ ମେଦିନୀ କିପରି କମ୍ପିତ ହେବାକୁ ଲାଗିଲାଣି—ଗଗନ କିପରି ବିଦୀର୍ଣ୍ଣ ହେବାକୁ ଲାଗିଲାଣି—ଉଠ—ଜାଗ—ଅସ୍ତ୍ର ଧାରଣକର ।

ସମସ୍ତେ—କିଏ ? କିଏ ? ତୁମ୍ଭେମାନେ, ଆମ୍ଭମାନଙ୍କୁ ଆଜି ଜାଗରିତ କରିଦେଲ ?

( ନେପଥ୍ୟେ )—ଆଲ୍ଲାହୋ ଅକ୍‌ବର !—

ଦୁଲଅ—ଏହି ଶୁଣ ଶତ୍ରୁର ଜୟୋଲ୍ଲାସ ଧ୍ୱନି—ଆସ, ଯେ ଯାହା ପାଅ, ଘେନି ଶତ୍ରୁ ନିବାରଣ କରିବା ଆସ ।

ଗୋଲ୍ଲପ—ତେବେ ଭୁହ ସମସ୍ୱରରେ ଥରେ, ଜୟ ଜଗନ୍ନାଥଙ୍କ ଜୟ ।

ସମସ୍ତେ—'ଜୟ ଜଗନ୍ନାଥଙ୍କ ଜୟ ।'

[ ବେଗେ ପ୍ରସ୍ଥାନ ]

— —

## ଚତୁର୍ଥ ଦୃଶ୍ୟ

—ଜଗନ୍ନାଥଙ୍କ ମନ୍ଦିର—

[ ପଣ୍ଡାଗଣ ସଶଙ୍କ ଭାବରେ ପ୍ରହରଣ ହସ୍ତରେ ଦଣ୍ଡାୟମାନ ]

୧ମ ପଣ୍ଡା—ଭାଇ ! ଆଉ ରକ୍ଷା ନାହିଁ, ଏହି ଯେ ଯବନଗଣ କ୍ରମେ ନିକଟବର୍ତ୍ତୀ ହେଲେଣି ।

୨ୟ ପଣ୍ଡା—ଶତ୍ରୁସେନା ଯେ ପଙ୍ଗପାଳ ପରି ମାଡ଼ି ଆସୁଛନ୍ତି ।

( ନେପଥ୍ୟେ )—'ଆଲ୍ଲା ହୋ ଅକ୍‌ବର ।'

୩ୟ ପଣ୍ଡା—ଜଗନ୍ନାଥ ! ଆପଣ ନିଜେ ନିଜକୁ ଏଥର ରକ୍ଷା କରନ୍ତୁ—ଆମ୍ଭମାନଙ୍କର ଆଉ ଶକ୍ତି ନାହିଁ ।
( ସମସ୍ତେ ପଳାୟନୋଦ୍ୟତ )
[ ଦୁଲଅ, ଗୋଲ୍ଲପ ଓ ନାଗରିକଗଣଙ୍କ ପ୍ରବେଶ ]

ଦୁଲଅ—ଖୁବ୍ ଶକ୍ତି ଅଛି ଭ୍ରାତୃଗଣ । ତୁମ୍ଭେମାନେ ଇଷ୍ଟ ଦେବଙ୍କ ନାମ ଉଚ୍ଚାରଣ କରି ଇଷ୍ଟଦେବଙ୍କ କାର୍ଯ୍ୟରେ ଦୃଢ଼ରୂପେ ଦଣ୍ଡାୟମାନ ହୁଅ ।

୧ମ ପଣ୍ଡା—କିଏ ତୁମ୍ଭେମାନେ ?—ତୁମ୍ଭେମାନେ କି ଦେବ-ପ୍ରେରିତ ?

୨ୟ ପଣ୍ଡା—ଭାଇ ! ନିଶ୍ଚୟ ଏମାନେ ଜଗନ୍ନାଥଙ୍କ ପ୍ରେରିତ ।

ସମସ୍ତେ—ଜୟ 'ଜୟ ଜଗନ୍ନାଥଙ୍କ ଜୟ ।'

ନେପଥ୍ୟେ—'ଆଲ୍ଲା ହୋ ଅକ୍‌ବର ।'

[ କଳାପାହାଡ଼ ଓ ସୈନ୍ୟମାନଙ୍କ ପ୍ରବେଶ ]

କଳାପାହାଡ଼—ବୃଥା ଆଶା ହିନ୍ଦୁଗଣ । ପଦଦଳିତ ଫଣୀର ଦଂଶନରୁ ଅଜ ନିଜକୁ ରକ୍ଷା କରିବ —ପ୍ରଜ୍ୱଳିତ କ୍ରୋଧାଗ୍ନି-ଗ୍ରାସରୁ ଅଜ ତୁମ୍ଭମାନଙ୍କ ଅରାଧ୍ୟ ଦେବତାଙ୍କୁ ରକ୍ଷା କରିବ ? ଦେଖ ଗୃହିଁ, ଚତୁର୍ଦ୍ଦିଗ କିପରି ଶ୍ମଶାନରେ ପରିଣତ ହେଲାଣି —ହିନ୍ଦୁ-ଶବାଲିଙ୍ଗନରେ ପୃଥିବୀ କିପରି ଭାରାକ୍ରାନ୍ତ ହେଲାଣି—ହିନ୍ଦୁ-ରକ୍ତପ୍ରବାହରେ ଜଳଧି କିପରି ରକ୍ତ-ରଞ୍ଜିତ ହେଲାଣି ! ଶୁଣ ତେଣେ ହିନ୍ଦୁର 'ହା ହା'ରବ ସମୁଦ୍ର ଗର୍ଜନକୁ ପ୍ରତିହତ କରି ଗଗନ-ପୃଷ୍ଠରେ ପ୍ରତିଧ୍ୱନିତ ହେବାକୁ ଲାଗିଲାଣି— ହିନ୍ଦୁର ପବିତ୍ର ଦେବ ମନ୍ଦିରରେ ଶଙ୍ଖ ଘଣ୍ଟା ପରିବର୍ତ୍ତେ ପିଶାଚର କରତାଳି ବାଜି ଉଠିଲାଣି ! ଅଜ ବୃଥା ଆଶା—ଅଜ ବୃଥା ଆଶା ।

୧ମ ପଣ୍ଡା—ରକ୍ଷା କରନ୍ତୁ ନବାବ୍ ସାହେବ । ଅମ୍ଭମାନଙ୍କର ସର୍ବସ୍ୱ ଗ୍ରହଣ କରନ୍ତୁ—ଏହି ମନ୍ଦିରଟି ମାତ୍ର ରକ୍ଷା କରନ୍ତୁ ।

କଳାପାହାଡ଼—ମନ୍ଦିର ରକ୍ଷା କରିବ ?—ଯେଉଁ ମନ୍ଦିର ହେତୁ ଅଜ ଶ୍ରୋତ୍ରିୟ ବ୍ରାହ୍ମଣ, ଚଣ୍ଡାଳରେ ପରିଣତ—ବିବେକୀ ମନୁଷ୍ୟ, ପିଶାଚରେ ପରିଣତ—ସେହି ମନ୍ଦିର ରକ୍ଷା କରିବ ?

ଗୋଲାପ—ନବାବ ସାହେବ୍ ! ଦୋଷୀର ଦଣ୍ଡବିଧାନ କରନ୍ତୁ—ଅକାରଣରେ ମନ୍ଦିର ନଷ୍ଟ କରିବେ କାହିଁକି ?

କଳାପାହାଡ଼—ଏହି ତ ଦୋଷୀର ଦଣ୍ଡବିଧାନ ।

ଦୁଲିଆ—ଏ' ଯେ ହିନ୍ଦୁ-ଧର୍ମପ୍ରତି ଦଣ୍ଡବିଧାନ ।

କଳାପାହାଡ଼—ଏହି ତ ମୋର ଉଦ୍ଦେଶ୍ୟ—ହିନ୍ଦୁର ରକ୍ତ—ହିନ୍ଦୁର ମାଂସ—ହିନ୍ଦୁର ଧ୍ୱଂସ ।

ଦୁଲିଆ—ନବାବ୍ ସାହେବ !

କଳାପାହାଡ଼—ଆଉ ମୁଁ କିଛି ଶୁଣିବାକୁ ଗୃହେଁ ନା— ମୋର ପ୍ରତିଜ୍ଞା ମୁଁ ପାଳନ କରିବି । ସୈନ୍ୟଗଣ ! ମନ୍ଦିର ମଧ୍ୟରେ ପ୍ରବେଶ କର, ପ୍ରତ୍ୟେକ ଦେବ ଦେବୀ ମୂର୍ତ୍ତିକୁ ଖଣ୍ଡ ଖଣ୍ଡ କରି ନଷ୍ଟ କର— ହିନ୍ଦୁର ସେହି ଗର୍ବର ଧନ ପରମାରାଧ୍ୟ ଦେବତା ଜଗନ୍ନାଥଙ୍କୁ ଟାଣି ଘେନିଆସ—ହିନ୍ଦୁ ଶିଳ୍ପିର ଶିଳ୍ପନୈପୁଣ୍ୟର ପରାକାଷ୍ଠା ଏହି ମହାମନ୍ଦିରକୁ ସମତଳ ଭୂମିରେ ପରିଣତ କରିଦିଅ ।

ଗୋଲାପ—କିନ୍ତୁ ଅମ୍ଭମାନଙ୍କ ପିଣ୍ଡରେ ପ୍ରାଣ ଥାଉଁ ଥାଉଁ ନୁହେଁ, ନବାବ୍ ସାହେବ ।

କଳାପାହାଡ଼—କି, ଏତେଦୂର ସ୍ପର୍ଦ୍ଧା ! ତେବେ ଅଗ୍ରସର ହୁଅ—

( ଯୁଦ୍ଧହେବା—ପଣ୍ଡା ଓ ନାଗରିକ ଗଣଙ୍କ ପଳାୟନ )

ଅଉ କାହିଁକି ଯୁବକ ଗଣ ? ଏବେ ନିରସ୍ତ ହୁଅ ।

ଗୋଲାପ—କଦାପି ନୁହେ ( ଯୁଦ୍ଧ ଓ ଅଘାତ ପ୍ରାପ୍ତ ହୋଇ ପତନ )

କଳାପାହାଡ଼—ଛାଡ଼ ଦିଅ ପଥ ଯୁବକ ! ପ୍ରବେଶ କର ସୈନ୍ୟଗଣ !

ଦୁଲିଆ—ମୋର ଜୀବନ ଥାଉଁ ଥାଉଁ କଦାପି ନୁହେ ।

କଳାପାହାଡ଼—ଯୁବକ ! ତୁମ୍ଭର ସଙ୍ଗିର ଦଶା ଦେଖିଲ ତ ? ତେବେ କାହିଁକି ବୃଥାରେ ପ୍ରାଣ ହରାଇବ ?

ଗୋଲାପ—(ପଡ଼ି) ଭାଇ ! ଦେହରେ ଶକ୍ତି ଥିବାଯାଏ, ହୃଦୟରେ ସାହସ ଥିବାଯାଏ ଶତ୍ରୁକୁ ସୂଚ୍ୟଗ୍ର ଭୂମି ସୁଦ୍ଧା ଅଗ୍ରସର ହେବାକୁ ଦିଅନାହିଁ ।

ଦୁଲିଆ—ମୋର ପ୍ରତିଜ୍ଞା, ମୁଁ ପ୍ରାଣ ଥିବାଯାଏ ଅକ୍ଷରେ ଅକ୍ଷରେ ପାଳନ କରିବି, ଭାଇ !

କଳାପାହାଡ଼—ଆଉ କ୍ଷମା ନାହିଁ, ସୈନ୍ୟଗଣ ! ଆକ୍ରମଣ କର !

[ ସୈନ୍ୟମାନଙ୍କର ଆକ୍ରମଣ ଓ କଳାପାହାଡ଼ ଦୁଲିଆକୁ ଅଘାତ କରି ମନ୍ଦିର ମଧ୍ୟରେ ପ୍ରବେଶ ]

ଫିରୋଜା—( ପ୍ରବେଶ କରି ) ସଖି, ସଖି !

ଦୁଲିଆ—(ପଡ଼ି) ଓଃ ପ୍ରାଣଗଲା ! ପ୍ରାଣେଶ୍ୱର ! ଓଃ ଭାରି ତୃଷା—ଫିରୋଜା ! ଟିକିଏ ପାଣି !

ଫିରୋଜା—ଗୋଲାପ ! ଗୋଲାପ ! ଦେଖ, ଦେଖ ସଖୀର କି ଦୁର୍ଦ୍ଦଶା !

ଗୋଲାପ—(ଉଠ) ଭଉଣି ! ଭଉଣି !

ଜୁଲିଅ—ଉଃ ଟିକିଏ ପାଣି, ଗୋଲାପ—ପ୍ରାଣେଶ୍ୱର !

ଗୋଲାପ—ଶତ୍ରୁଗଣ ଆହାନ୍ତି ? ଏହି ଜୟ କୋଳାହଳ ଶୁଭୁଛି । ଫିରୋଜା ! ସଖୀଙ୍କୁ ଧର, ଏ ସ୍ଥାନ ନିରାପଦ ନୁହେଁ ।

[ ଜୁଲିଅଙ୍କୁ ଧରି ଗୋଲାପ ଓ ଫିରୋଜାର ପ୍ରସ୍ଥାନ ]

---

## ପଞ୍ଚମ ଦୃଶ୍ୟ

### —ସାଗର ତଟ—

[ ଚିତାଗ୍ନି ଧୂ ଧୂ ହୋଇ ଜଳୁଥିବା, ହିନ୍ଦୁଗଣ ଜନସ୍ରୋତ ରୁହିଁ ରହିଥିବା, ମୁସଲମାନଗଣ ମହାନନ୍ଦେ ଜଗନ୍ନାଥ ମୂର୍ତ୍ତି ଧାରଣ କରି କଳାପାହାଡ଼ ନିକଟରେ ଦଣ୍ଡାୟମାନ ହୋଇଥିବା ]

କଳାପାହାଡ଼—ଜ୍ୱଳ, ଜ୍ୱଳ ଚିତା—ଆହୁରି ଧୂ ଧୂ କରି ଜ୍ୱଳି ଉଠ—ହିନ୍ଦୁର ଅସ୍ଥି ଚୋବାଉଛ—ହିନ୍ଦୁର ରକ୍ତ ପାନ କରୁଛ—ହିନ୍ଦୁର ମଜ୍ଜା ଏବେ ଶୋଷଣ କର । ତୁମ୍ଭର ଜ୍ୱାଳା ଶାନ୍ତ ହେବ; ମୋର ମଧ ଜ୍ୱାଳା ଶାନ୍ତ ହେବ । ହଁ ସୈନ୍ୟଗଣ, ଅଗ୍ନି ଲହ ଲହ ଜିହ୍ୱା ବିସ୍ତାର କରି ଜ୍ୱଳି ଉଠିଲାଣି, ହଁ ବେଗେ ନିକ୍ଷେପ କର ହିନ୍ଦୁର ସେହି ଗର୍ବର ଧନ—ହିନ୍ଦୁର ସେହି ପ୍ରାଣର ପ୍ରାଣ, ଏହି ଜଡ଼ପିଣ୍ଡ କାଷ୍ଠ ପୁତ୍ତଳିକାକୁ ! ନିମିଷରେ ହିନ୍ଦୁର ସର୍ବସ୍ୱ ଭସ୍ମୀଭୂତ ହୋଇଯିବ—ମୋର ମନସ୍କାମନା ପୂର୍ଣ୍ଣ ହେବ । (ଅଟ୍ଟହାସ୍ୟ)

[ ସୈନ୍ୟଗଣ ଅଲ୍ଲା ହୋ ଆକ୍‌ବର ଚିତ୍କାର କରି ଜଗନ୍ନାଥ ମୂର୍ତ୍ତିକୁ ଅଗ୍ନିରେ ନିକ୍ଷେପ କରିବା । ]

ହିନ୍ଦୁଗଣ—ଜଗନ୍ନାଥ ! ଜଗନ୍ନାଥ !

[ ଗୋଲାପର ବେଗେ ପ୍ରବେଶ ]

ଗୋଲାପ—ବୃଥା ଏତଦନର ନିଷ୍ପ୍ରୟୋଜନ, ନିଷ୍କର୍ମୀଗଣ ! ( ଅଗ୍ନି ମଧ୍ୟରେ ଝମ୍ପ ପ୍ରଦାନପୂର୍ବକ ଜଗନ୍ନାଥଙ୍କୁ ରକ୍ଷା କରିବା ) ରକ୍ଷା କରିପାରନ୍ତି, ପ୍ରଭୁ—ସେମାନେ ପ୍ରଭୁଙ୍କ ଭ୍ରାତୃଗଣ !

ହିନ୍ଦୁଗଣ—( ଧାରଣ କରି ) ଜୟ ଜଗନ୍ନାଥଙ୍କ ଜୟ !

( ବେଗେ ପ୍ରସ୍ଥାନ )

ଗୋଲାପ—ଉଃ—ଆଉ ଠିଆ ହୋଇ ପାରୁନାହିଁ

( ଉପବେଶନ )

କଳାପାହାଡ଼—କିଏ ? କିଏ ତୁମ୍ଭେ ଅଦ୍ଭୁତ ବାଳକ ?

ଗୋଲାପ—ପ୍ରଭୁ !

କଳାପାହାଡ଼—ଏ ଯେ ଗୋଲାପ ?

ଗୋଲାପ—( ପଗଡ଼ି ଖସାଇ ) ପ୍ରାଣେଶ୍ୱର !

( ଶୋଇ ପଡ଼ିବା )

କଳାପାହାଡ଼—ଏ ଯେ ତିଲୋତ୍ତମା ! ତିଲୋତ୍ତମା ! ତିଲୋତ୍ତମା ! ପ୍ରାଣେଶ୍ୱରୀ !

( ଅଗ୍ରସର ହେବା )

ତିଲୋତ୍ତମା—ପ୍ରାଣେଶ୍ୱର ! ଦାସୀର କାର୍ଯ୍ୟ ଶେଷ ହୋଇଛି—ଦାସୀକୁ ବିଦାୟ ଦିଅନ୍ତୁ !

କଳାପାହାଡ଼—ବିଦାୟ ଦେବି !

ତିଲୋତ୍ତମା—ଆଉ ଯେ ଉପାୟ ନାହିଁ ।

କଳାପାହାଡ଼—ଉପାୟ ନାହିଁ !

ତିଲୋତ୍ତମା—ବୃଥା ଚିନ୍ତା ତ୍ୟାଗ କରନ୍ତୁ, ପ୍ରଭୋ ! ଏ ଦାସୀ ପ୍ରତି ଯେବେ କିଛିମାତ୍ର ଅନୁଗ୍ରହ ଥାଏ, ତେବେ ଏ ଦୀନାକୁ ଶାନ୍ତି-ଭିକ୍ଷା ପ୍ରଦାନ କରନ୍ତୁ ।

କଳାପାହାଡ଼—ଶାନ୍ତି-ଭିକ୍ଷା ପ୍ରଦାନ କରିବି ! ଏହି ଅଶାନ୍ତ-ହୃଦୟ ବହନ କରି ?

ତିଲୋତ୍ତମା—ପ୍ରଭୋ ! ଏ ନୃଶଂସ କାର୍ଯ୍ୟରୁ ନିବୃତ୍ତ ହୁଅନ୍ତୁ—ଦୀନବନ୍ଧୁ ଜଗନ୍ନାଥଙ୍କ କୃପା କାମନା କରନ୍ତୁ, ଏ ଅଶାନ୍ତି ଅଚିରେ ଗୁଚିଯିବ ।

କଳାପାହାଡ଼—ଅସମ୍ଭବ ! ଯାର ଶିର ପ୍ରଫୁଲ୍ଲ ପ୍ରଭୁଭକ୍ତ ଗୋଲାପ ନାହିଁ, ତାର ଶାନ୍ତି ଅସମ୍ଭବ !—ଯାର ଧର୍ମନିଷ୍ଠା କର୍ତ୍ତବ୍ୟପରାୟଣ ତିଲୋତ୍ତମା ନାହିଁ, ତାର ଶାନ୍ତି ଅସମ୍ଭବ !

ତିଲୋତ୍ତମା—ପତିପରାୟଣା, ଦେବୀତୁଲ୍ୟା ଜୁଲିଅ ଥିବାଯାଏ ସମସ୍ତ ସମ୍ଭବ, ପ୍ରାଣେଶ୍ୱର ! ହାୟ

ଦୁଲ୍‌ଅ ! ଭଗିନୀ ମୋର ! ତୋତେ ଥରେ ଅନ୍ତିମ କାଳରେ ଯା ଦେଖି ନ ପାରିଲି !

[ ଅହତ ହୋଇ ଦୁଲ୍‌ଅର ପ୍ରବେଶ ]

ଦୁଲ୍‌ଅ—କାହିଁ ପ୍ରାଣେଶ୍ୱର ! ଏହି ଯେ !—ବହୁ ଭାଗ୍ୟ ଏ ଦାସୀର, ସ୍ୱାମୀଙ୍କ ଚରଣ ଦର୍ଶନ କରି ପାରିଛି ।

କଳାପାହାଡ଼—ଦୁଲ୍‌ଅ ! ଏଠି କପରି ତୁମ୍ଭେ, ଦୁଲ୍‌ଅ ? ତୁମ୍ଭର ଏ କି ବେଶ ? ତୁମ୍ଭର ଏ କି ଦୁର୍ଦ୍ଦଶା ?

ଦୁଲ୍‌ଅ—ଏ' ମୋର ସୁଦଶା, ପ୍ରଭୋ ! ପତିଙ୍କର ଏପରି ଦୁର୍ଦ୍ଦଶା ଦର୍ଶନଠାରୁ ପତ୍ନୀ ପକ୍ଷରେ ଏହା ସୁଦଶା, ପ୍ରଭୋ ! ଉଃ ଆଉ ଯେ ବସି ପାରୁ ନାହିଁ—ଗୋଲପ ! ( ଶୋଇପଡ଼ିବା )

କଳାପାହାଡ଼—ଦୁଲ୍‌ଅ ! ଦୁଲ୍‌ଅ !—ନା— ତିଲୋତ୍ତମା ! ତିଲୋତ୍ତମା !—ନା

ଦୁଲ୍‌ଅ—ତିଲୋତ୍ତମା ! କାହିଁ ? କାହିଁ ?

ତିଲୋତ୍ତମା—ଏହି ଯେ, ଭଉଣି !

ଦୁଲ୍‌ଅ—କାହିଁ ? ଏ ଯେ ଗୋଲପ ! ଗୋଲପ ! ଗୋଲପ – ଏ' କଣ ?

ତିଲୋତ୍ତମା—ତୋର ତିଲୋତ୍ତମାକୁ ଚିହ୍ନି ପାରୁ ନାହୁଁ, ଭଉଣି ?

ଦୁଲ୍‌ଅ—ତିଲୋତ୍ତମା ! ଭଉଣି ! ଭଉଣି !

[ ଶୟନାବସ୍ଥାରେ ପରସ୍ପରକୁ ଆଲିଙ୍ଗନକରିବା ]

ତିଲୋତ୍ତମା—ଆ, ଭଉଣି ! ଆମ୍ଭମାନଙ୍କ କର୍ତ୍ତବ୍ୟ ଶେଷ ହୋଇଛି—ଏବେ ଶାନ୍ତି ଦେବତାଙ୍କର ଆଶ୍ରୟ ଗ୍ରହଣ କରିବା, ଆ—ପ୍ରାଣେଶ୍ୱର ! ଦାସୀମାନଙ୍କୁ ବିଦାୟ ଦିଅନ୍ତୁ—ଜଗନ୍ନାଥ !— ସ୍ୱାମୀଙ୍କୁ ସୁମତି ଦିଅନ୍ତୁ ! ( ମୃତ୍ୟୁ )

ଦୁଲ୍‌ଅ—ସ୍ୱାମୀଙ୍କ ମଙ୍ଗଳ ହେଉ—ବିଦାୟ— ପ୍ରାଣେଶ୍ୱର ! ( ମୃତ୍ୟୁ )

କଳାପାହାଡ଼—ହାଃ ହାଃ ହାଃ ! ସମସ୍ତେ ନିଶ୍ଚିନ୍ତ— କଳାପାହାଡ଼ ମଧ୍ୟ ନିଶ୍ଚିନ୍ତ ! ତୁ କିଏ ? ଭୟ ନାହିଁ ତୋର ? କଳାପାହାଡ଼କୁ ଭୟ ନାହିଁ କାହାର ? ଦେଖ୍—ଦେଖ୍ ଚାହିଁ— ଏହି ହସ୍ତରେ ହିନ୍ଦୁର ରକ୍ତ—ଏହି ହସ୍ତରେ ହିନ୍ଦୁର ମାଂସ— ଏହି ହସ୍ତରେ ତିଲୋତ୍ତମାର ରକ୍ତ—ଏହି ହସ୍ତରେ ଦୁଲ୍‌ଅର ରକ୍ତ !—ଭୟ ନାହିଁ ତୋର ? ଏକି ମୂର୍ତ୍ତି ! ଏ ଯେ ମୁଖବ୍ୟାଦାନ କରି ଗ୍ରାସ କରିବାକୁ ଧାଇଁ ଆସୁଛି ?—ରହ, ରହ, ଟିକିଏ ରହ ( ଚକ୍ଷୁ-ମୁଦ୍ରିତ କରିବା ) ଏକି ଅଟ୍ଟହାସ୍ୟ ! ଏ' କି ଆର୍ତ୍ତନାଦ ! ଚୁପ୍ କର, ଚୁପ୍‌କର ( କର୍ଣ୍ଣ ଚୃପିଧରିବା)—ଏ' କି ଯନ୍ତ୍ରଣା !—ଶାନ୍ତ ହୁଅ— ଶାନ୍ତହୁଅ ( ବକ୍ଷଃସ୍ଥଳ ଚୃପି ଧରିବା) ନା, ନା— ଏ' ସ୍ଥାନରେ ଅସମ୍ଭବ !—ଏ' ଧାମରେ ଅସମ୍ଭବ ! ( ବେଗେ ପ୍ରସ୍ଥାନୋଦ୍ୟତ ହେବାକାଳେ ମୁକୁନ୍ଦ-ଦେବଙ୍କ ଛିନ୍ନ-ମସ୍ତକ ହସ୍ତରେ ଶିଖି ଓ ମନାଇର ପ୍ରବେଶ )

ଶିଖି—(ମସ୍ତକ ଦେଖାଇ) ଏ' ଧାମରେ ସମସ୍ତ ସମ୍ଭବ, ନବାବ୍ ସାହେବ !

କଳାପାହାଡ଼—( ସଭୟେ ଦୂରକୁ ଘୁଞ୍ଚିଯିବା )

ମନାଇ—ଭୟ ନାହିଁ, ନବାବ୍ ସାହେବ—ଏ-ମୃତ ମସ୍ତକ !

କଳାପାହାଡ଼—ମୃତ-ମସ୍ତକ ! ମୃତ-ମସ୍ତକ ! ଏ' ଯେ ଜୀବନ୍ତ ! ଏ' କି ପୈଶାଚିକ ଦୃଷ୍ଟିପାତ ! ଏ' କି ମୁଖବ୍ୟାଦାନ ! ( ଚକ୍ଷୁ ମୁଦ୍ରିତ କରି ) ଘେନି-ଯାଅ, ସମ୍ମୁଖରୁ ଘେନି ଯାଅ !

ଶିଖି—ଘେନିଯିବି ! ପୁରସ୍କାର ନ ପାଇ ଘେନିଯିବି ?

ମନାଇ—କେବେ ନୁହେଁ—କେବେ ନୁହେଁ !

କଳାପାହାଡ଼—ତେବେ ଘେନିଯାଅ, ସୈନ୍ୟଗଣ ! ଏହି ରାଜ-ଦ୍ରୋହୀ—ଦେଶ-ଦ୍ରୋହୀ—ଜାତି-ଦ୍ରୋହୀ ଦୁଇଜଣଙ୍କୁ ଉପଯୁକ୍ତ ପୁରସ୍କାର ଦେଇ ଘେନିଅସ ।

ଶିଖି ଓ ମନାଇ—ନବାବ୍ ସାହେବ୍ !

କଳାପାହାଡ଼—ଘେନିଯାଅ—ଘେନିଯାଅ--ଘେନିଯାଅ !

[ ସୈନ୍ୟଗଣ ଶିଖି ଓ ମନାଇଙ୍କୁ ଘେନିଯିବା ]

କଳାପାହାଡ଼—ହାଃ ହାଃ ହାଃ ! କିପରି ପୁରସ୍କାର ! ମୁକୁନ୍ଦ ! ଚାହଁ ନା—ସେପରି ଭାବରେ ଚାହଁ ନା ! ମୁଁ ହିନ୍ଦୁ-ଦ୍ରୋହୀ ନୁହେ—ମୁଁ ହିନ୍ଦୁ-ଭକ୍ତ

ଗୋଲ୍ଲପ 'ନୁହେଁ । ବୁଲଅ । ଅସ୍ତ୍ରେ ଲୁହ—
ଚିତ୍କାର କର ନା—ମୁଁ ପତ୍ନୀ-ଘାତୀ ନୁହେଁ—ମୁଁ
ନରପିଶାଚ ନୁହେଁ । ତିଲୋତ୍ତମା ! ନମ୍ର ହୁଅ—
ତିରସ୍କାର କରନା—ମୁଁ ସ୍ତ୍ରୀ-ତ୍ୟାଗୀ ନୁହେଁ—ମୁଁ
ଧର୍ମ-ତ୍ୟାଗୀ ନୁହେଁ—( ରହି ) କଣ ? କଣ
ଶୁଣୁଛି ? ମୁହିଁ ସ୍ତ୍ରୀ-ତ୍ୟାଗୀ—ମୁହିଁ ସ୍ତ୍ରୀ-ହତ୍ୟାକାରୀ
ମୁହିଁ ଧର୍ମ-ତ୍ୟାଗୀ ! ଏ'କଣ ? ଏ' କଣ ଦେଖୁଛି ?
ଏ' ଯେ ଜ୍ୱଳନ୍ତ ଅଗ୍ନି କୁଣ୍ଡ—ଏ' ଯେ ତପ୍ତତୈଳ-
ପୂର୍ଣ୍ଣ କଟାହ—ମୋର ନିମନ୍ତେ !—ମୋର ଦଣ୍ଡ
ନିମନ୍ତେ । ଅସମ୍ଭବ ! ଅସମ୍ଭବ ! ମୁଁ କି ଦୋଷୀ—
ମୋର ଦଣ୍ଡହେବ ? ମୁଁ କି ପାପୀ—ମୋର
ଶାସ୍ତି ହେବ ? ମୁଁ ଯେ ନିର୍ଦ୍ଦୋଷ, ମୋର ନିଷ୍କୃତି
ଅବଶ୍ୟକ—ମୁଁ ଯେ ଧର୍ମାତ୍ମା, ମୋର ପୁରସ୍କାର
ଆବଶ୍ୟକ ।

[ ଶିଖି ଓ ମନାଇର ଛିନ୍ନ-ମସ୍ତକ ଧାରଣ
କରି ଜନୈକ ସୈନିକର ପ୍ରବେଶ ]

ସୈନ୍ୟ—ଏହି ନିଅନ୍ତୁ ଆପଣଙ୍କର ପୁରସ୍କାର ।

[ ନିଃକ୍ଷେପ କରି ପଳାୟନ ]

କଳାପାହାଡ଼—ମୋର ପୁରସ୍କାର !—ତାହାର ଅଧିକାର
ନାହିଁ !—ତାହାର ପ୍ରାପ୍ୟ ନୁହେ !—ହିଂସା
ହେଉଛି ?—ମୋ ପରି ଉପଯୁକ୍ତ ହୋଇ
ପାରିବ ? ମୋ ପରି କର୍ତ୍ତବ୍ୟପରାୟଣ ହୋଇ
ପାରିବ ? ହାଃ ହାଃ ହାଃ ପାରିବ ନାହିଁ—
ସାମର୍ଥ୍ୟ ନାହିଁ !—ତେବେ ଲୋଭ କାହିଁକି ?
ହିଂସା କାହିଁକି ? ଖାଲି ଦେଖିଯାଅ—ମୋର
ଏହି ସ୍ତୁପୀକୃତ ପୁରସ୍କାର ଖାଲି ଦେଖିଯାଅ—
ତିଲୋତ୍ତମାର ଶବ-ଦେହ ମୋର ପୁରସ୍କାର—
ବୁଲଅର ଶବ-ଦେହ ମୋର ପୁରସ୍କାର—ଶିଖି
ମନାଇର ମସ୍ତକ ମୋର ପୁରସ୍କାର—ମୁକୁନ୍ଦ-
ଦେବର ମସ୍ତକ ମୋର ପୁରସ୍କାର—ହିନ୍ଦୁର
ଶିଳ୍ପ-ନାଶ ମୋର ପୁରସ୍କାର—ହିନ୍ଦୁର ସ୍ୱାଧୀନତା-
ନାଶ ମୋର ପୁରସ୍କାର—

( ଉନ୍ମାଦଭାବେ ନିଷ୍କ୍ରାନ୍ତ )

—ଯବନିକା ପତନ—

# ଉତ୍ସର୍ଗ ପତ୍ର

ଓଡ଼ିଶାରେ
ବ୍ୟବସାୟୀ ଭାବେ ନାଟକ ଦଳର
ପ୍ରଥମ ସୃଷ୍ଟି କର୍ତ୍ତା,
ଓଡ଼ିଆ ନାଟକର ଉତ୍ସାହଦାତା
ମୋର ପିତୃସ୍ଥାନୀୟ, ପରମ ପୂଜନୀୟ,
ବଲଙ୍ଗା ନିବାସୀ
**ଶ୍ରୀଯୁକ୍ତ ବନମାଳୀ ପତି ମହୋଦୟଙ୍କ**
ଚରଣକମଳରେ
ଭକ୍ତିର ନିଦର୍ଶନ ସ୍ୱରୂପ ଏହି ରାଜଭକ୍ତ
**'ଗୋବିନ୍ଦ ବିଦ୍ୟାଧର'**
ସମର୍ପିତ ହେଲା ।

ଆଶୀର୍ବାଦାକାଙ୍କ୍ଷୀ
**ଅଶ୍ୱିନୀ**

---

# ମୋ' କଥା

ଓଡ଼ିଶା ଇତିହାସରେ, 'ଗୋବିନ୍ଦ ବିଦ୍ୟାଧର'ଙ୍କ ଚରିତକୁ ଏକ ବିଶ୍ୱାସଘାତକ—ଲୋଭୀ—ରାଜଦ୍ରୋହୀ ବୋଲି ଚିତ୍ରଣ କରାଯାଇଛି; ଏତେବଡ଼ ରାଜନୀତିଜ୍ଞ ନିସ୍ୱାପର, ମହାରାଜ ପ୍ରତାପରୁଦ୍ରଦେବଙ୍କ ପ୍ରଧାନ ମନ୍ତ୍ରୀ ଏପରି ହୋଇ ପାରନ୍ତି ବୋଲି ବିଶ୍ୱାସ ହୁଏନା ।

ଇତିହାସରେ ଅନେକ ସ୍ଥଳରେ ଚରିତ୍ର ପ୍ରତି ଯଥାଯଥ ସମ୍ମାନ ଦିଆଯାଇ ନ ଥାଏ ବୋଲି ମୋର ଧାରଣା । ସେଥିପାଇଁ ମୁଁ ଅନ୍ୟାନ୍ୟ ଇତିହାସ ପାଠ କରି ଯାହା ଜାଣିଛି ସେଥିରେ 'ଗୋବିନ୍ଦ ବିଦ୍ୟାଧର'ଙ୍କ ଚରିତ ଯେ ଏକ ମହାନ୍ ଆଦର୍ଶ ସ୍ୱରୂପ ଏଥିରେ ସନ୍ଦେହର ଅବକାଶ ନାହିଁ । ତାଙ୍କପରି ବିଜ୍ଞ, ରାଜନୀତିଜ୍ଞ, ପ୍ରଭୁଭକ୍ତ, ସର୍ବତ୍ୟାଗୀ ମାନବ ଓଡ଼ିଆ ଜାତିର ଗୌରବ । ମୁଁ ସେହି ଚରିତକୁ ସାଧାରଣରେ ନାଟକ-ମାଧ୍ୟମରେ ଉପସ୍ଥାପିତ କରିବାର ଆଗ୍ରହକୁ ଦମନ କରି ପାରିଲି ନାହିଁ ।

ବାଗରବାଦ
କଟକ ।

ବିନୀତ
ଅଶ୍ୱିନୀ

ରଚନା—୧୯୬୧ ମସିହା ।
ପ୍ରଥମ ପ୍ରକାଶ—୧୯୬୨ ମସିହା ।

# — ଚରିତ୍ର ଲିପି —

କଲୁଆ ଦେବ···ଉତ୍କଳ-ରାଜ ( ପ୍ରତାପରୁଦ୍ରଦେବଙ୍କ ଜ୍ୟେଷ୍ଠପୁତ୍ର )

କଖରୁଆ ଦେବ ··· କଲୁଆଦେବଙ୍କ କନିଷ୍ଠଭ୍ରାତା

ଗୋବିନ୍ଦ ବିଦ୍ୟାଧର ··· ପ୍ରତାପରୁଦ୍ରଦେବଙ୍କ ମନ୍ତ୍ରୀ

ଅର୍ଜ୍ଜୁନ ବିଦ୍ୟାଧର ··· ଗୋବିନ୍ଦଙ୍କ ପୁତ୍ର

ବୀରେନ୍ଦ୍ର ··· ରାଜ-ଘାତକ

ରଣଜିତ୍ ··· ଜନୈକ ପ୍ରଜା

ମୁକୁନ୍ଦ ··· ରାଜ ସେନାପତି

ଗୋବର୍ଦ୍ଧନ ··· ମନ୍ତ୍ରୀଙ୍କ ଶ୍ୟାଳକ

ସନ୍ୟାସୀ, ସୈନ୍ୟଗଣ, ଘାତକ, ପ୍ରଜାଗଣ, ଋଷିଗଣ ଇତ୍ୟାଦି ।

ରାଣୀ ··· ପ୍ରତାପରୁଦ୍ର ଦେବଙ୍କ ବିଧବା ମହିଷୀ

ଜଗଦମ୍ବା ··· ଗୋବିନ୍ଦ ବିଦ୍ୟାଧରଙ୍କ ପତ୍ନୀ

ରଙ୍ଗିଲି ··· ଜନୈକ ରାଜକର୍ମଚାରୀଙ୍କ କନ୍ୟା

କମଳା ··· ଗୋବିନ୍ଦ ବିଦ୍ୟାଧରଙ୍କ କନ୍ୟା

ପଦ୍ମା ··· ରାଣୀଙ୍କ ଦାସୀ

ସଖୀଗଣ, ପ୍ରତିବେଶିନୀ ଇତ୍ୟାଦି ।

# ଗୋବିନ୍ଦ ବିଦ୍ୟାଧର

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ଅନ୍ତଃପୁର—

[ ରାଣୀ ଚିନ୍ତାନ୍ୱିତା ଭାବରେ ବସିଥିଲେ ]

ରାଣୀ—( ଦୀର୍ଘ ନିଃଶ୍ୱାସ ତ୍ୟାଗ ପୂର୍ବକ ) ପାଞ୍ଚବର୍ଷ ପରେ ଆଜି ପୁଣି ସେହିଦିନ ଉପସ୍ଥିତ । ଆକାଶରେ ସୂର୍ଯ୍ୟ ସେହିପରି ଉଜ୍ଜ୍ୱଳ କିରଣ ବିକୀରଣ କରୁଛି— ଶୂନ୍ୟରେ ପବନ ସେହିପରି ସ୍ୱେଚ୍ଛାଗତି କରୁଛି—ଅବନୀରେ ପ୍ରକୃତି ସେହିପରି ସୌନ୍ଦର୍ଯ୍ୟ ବିକାଶ କରୁଛି, ମାତ୍ର ଏ ହୃଦୟର ସେ ସୌନ୍ଦର୍ଯ୍ୟ କାହିଁ ?—ଇଚ୍ଛାର ସେ ସ୍ୱାଧୀନତା କାହିଁ ?— ସମସ୍ତ ଯେ ସେହି ରୁଦ୍ରପ୍ରତାପଙ୍କ ଅସ୍ତ ସଙ୍ଗେ ସଙ୍ଗେ ଅସ୍ତମିତ ହୋଇଛି ।

[ କଲ୍ୟୁ ଓ କଥରୁୟୁଦେବଙ୍କ ପ୍ରବେଶ ]

କଲ୍ୟୁ ଓ କଥରୁୟୁ—ଏହି ଯେ, ମା ଆମ୍ଭେମାନେ ଆସିଛୁ ।

[ ରାଣୀ ସସ୍ନେହେ ଦୁଇଜଣଙ୍କୁ ଜାନୂପରିଭାବେ କରୁ କରୁ ଦୁଇ ପାର୍ଶ୍ୱରେ ଛିଡ଼ା କରାଇବା ]

ରାଣୀ—ତୁମ୍ଭେମାନେ ଆସିଛ ବୋଲି—ଏ' ନୈରାଶ୍ୟ-କାଶରେ ତୁମ୍ଭେ ଦୁଇଟି ନକ୍ଷତ୍ର ଉଦିତ ହୋଇଛ ବୋଲି—ସଂସାର ସାଗରେ ଏ' ନିଃସହାୟ ନାବିକ ହତାଶ ହୋଇନାହିଁ—ଜୀବନପୋତ ଚଳାଇବାରେ ଏକ ପ୍ରକାର ସକ୍ଷମ ହୋଇଛି ।

କଲ୍ୟୁ—ମା । କାହିଁକି ଆମ୍ଭମାନଙ୍କୁ ଡକାଇ ପଠାଇଲ ?

ରାଣୀ—ଜାଣୁ, ବାପ କି ଦିନ ଆଜି ?

କଲ୍ୟୁ—ସ୍ୱର୍ଗୀୟ ପିତାଙ୍କର ସାମ୍ବତ୍ସରିକ ଶ୍ରାଦ୍ଧଦିନ ଆଜି ।

କଥରୁୟୁ—ମା । ବାପା କଣ ଆଜି ସ୍ୱର୍ଗରୁ ଆସିବେ ?

ରାଣୀ—( ଦୀର୍ଘନିଶ୍ୱାସ ତ୍ୟାଗପୂର୍ବକ ) ସ୍ୱର୍ଗର ଦେବତା କି ପାପମର୍ତ୍ତ୍ୟକୁ କେବେ ଆସେ ବାପ ? ଯିବ, କଲ୍ୟୁ ତୋର ଆଜି କି କର୍ତ୍ତବ୍ୟ ?

କଲ୍ୟୁ—ପିତାଙ୍କ ଗୁଣାନୁକରଣରେ ସନ୍ତାନ କେତେଦୂର ସକ୍ଷମ ହୋଇଛି, ତାହାହିଁ ମାତାଙ୍କ ନିକଟରେ ପରୀକ୍ଷା ଦେବା କର୍ତ୍ତବ୍ୟ ।

ରାଣୀ—ପିତାଙ୍କ ପରି କି ହୋଇ ପାରିବୁ, କଲ୍ୟୁ ?

କଥରୁୟୁ—ମା । ମୁଁ ହୋଇ ପାରିବି । ମୋତେ ମୁକୁଟ ପିନ୍ଧାଇଦେ—ସିଂହାସନରେ ବସାଇ ଦେ—ଆଉ ହାତରେ ଗୋଟାଏ ତରବାରୀ ଦେ, ଦେଖିବୁ ମୁଁ ଠିକ୍ ବାପାଙ୍କ ଭଳି ଦିଶିବି କି ନାହିଁ ?

ରାଣୀ—ଅଚ୍ଛା ଆ, ତୁ ଏହି ସିଂହାସନରେ ବସ, ମୁଁ ତୋତେ ତୋର ଜନକଙ୍କ ମୁକୁଟ ପିନ୍ଧାଇ ଦେଉଛି, ଆଉ ତୋର ସେହି ନାଲି ତରବାରୀ ହାତରେ ଦେଉଛି (ସସ୍ନେହେ କୋଳକୁ ନେଇ ) କହ କଲ୍ୟୁ, ସତେ କି ତୋର ପିତାଙ୍କ ପରି ତୁ ହୋଇ ପାରିବୁ ?

କଲ୍ୟୁ—ମାଗୋ । ତୁମ୍ଭପରି ସତୀ ଗର୍ଭରେ ଯେବେ ମୋର ଜନ୍ମ ହୋଇ ଥାଏ—ସେହି ସ୍ୱର୍ଗୀୟ ରାଜର୍ଷି ପିତାଙ୍କ ରକ୍ତ ଯେବେ ମୋର ଧମନୀରେ ଖେଳୁଥାଏ—ଜଗତ୍ପତି ଜଗନ୍ନାଥ ଯେବେ ସର୍ବଦା ସୁଦୟା ରଖିଥାନ୍ତି—ତେବେ ଏହା ନିଶ୍ଚୟ— ଧ୍ରୁବସତ୍ୟ—ପିତାଙ୍କପରି କାହିଁକି, ପିତାଙ୍କଠାରୁ

ଅଦ୍ଭୁତ ତେଜୋମୟ—ଅଦ୍ଭୁତ କାନ୍ତିମାନ୍ ହେବ । ଯେଉଁ ଓଡ଼ଶାଖଣ୍ଡ ପିତା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କରି ଅଛନ୍ତି, ତାହା ମୁଁ ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ବିସ୍ତୃତ କରିବି—ଯେଉଁ ଶତ୍ରୁମାନଙ୍କୁ ପିତା କେବଳ ରାଜ୍ୟସୀମାରୁ ବହିଷ୍କୃତ କରିଅଛନ୍ତି, ସେମାନଙ୍କୁ ମୁଁ ଇହଧାମରୁ ବହିଷ୍କୃତ କରିବି—ଯେଉଁ ଜାତୀୟତା ପିତା କେବଳ କ୍ଷୀଣ ତେଜରେ ଜାଗରିତ କରିଅଛନ୍ତି, ତାହା ମୁଁ ଅଦ୍ଭୁତ ପ୍ରଦାନରେ କୋଟି-ସୂର୍ଯ୍ୟତେଜରେ ପ୍ରଦୀପ୍ତ କରିବି । ମା, ମା, ଶକ୍ତିମୟି ! ଏ କ୍ଷୀଣାଙ୍ଗ ସନ୍ତାନକୁ, କେବଳ ତୁମ୍ଭର ପଦରଜ ପ୍ରଦାନ କର—ତୁମ୍ଭର ଆଶୀର୍ବାଦ ପ୍ରଦାନ କର—

[ ଗୋବିନ୍ଦ ବିଦ୍ୟାଧରଙ୍କ ପ୍ରବେଶ ]

ଗୋବିନ୍ଦ ବିଦ୍ୟାଧର—ପିତାର ଉପଯୁକ୍ତ ପୁତ୍ର ! ମା, ସନ୍ତାନକୁ ପଦରଜ ପ୍ରଦାନ କରନ୍ତୁ—ଆଶୀର୍ବାଦ ପ୍ରଦାନ କରନ୍ତୁ ।

ରାଣୀ—(କଲୁୟୁକୁ ଧରି) ବତ୍ସରେ ! ହୃଦୟର ଧନରେ ! ତୋତେ ଯେ ଦିବାରାତ୍ର ଆଶୀର୍ବାଦ କରୁଛି—ବର୍ତ୍ତମାନ ଅଧିକ କି ଆଶୀର୍ବାଦ କରିବି ? ତେବେ, ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା, ତୁ ଯେପରି ତୋର ପିତାପରି ତାଙ୍କର ଶ୍ରୀଚରଣରେ ଚିରଦାସ ହୋଇ ରହୁ—ତୋର ଯଶଃ-ଖ୍ୟାତି ସୌରଭ ସମାନ ଚତୁର୍ଦ୍ଦିଗ ଆମୋଦିତ କରୁ—

କଥରୁୟୁ—ମା, ମୁଁ କିନ୍ତୁ ଦାସ ହେବି ନାହିଁ—ରାଜା ହେବି ।

ଗୋବିନ୍ଦ ବିଦ୍ୟାଧର—ରାଜାର ପୁତ୍ର ରାଜା ହୁଏ, ଭାଇ !

କଥରୁୟୁ—ଅଚ୍ଛା, ମନ୍ତ୍ରିଭାଇ, ତୁମେ ମୋର ମନ୍ତ୍ରି ହେବ ନା ?

ଗୋବିନ୍ଦ ବିଦ୍ୟାଧର—ଏ ଯେ ଦାସର ପରମ ସୌଭାଗ୍ୟ !—ମାତ୍ର ଏ ବୃଦ୍ଧ କ'ଣ ସେତେଦିନ ଯାଏ ବଞ୍ଚିଥିବ, ଭାଇ ?

କଥରୁୟୁ—(କ୍ରନ୍ଦନସ୍ୱରେ) ମା, ଦେଖିଲୁ, ମନ୍ତ୍ରୀଭାଇ କଣ କହୁଛନ୍ତି ?

ରାଣୀ—ଦେଖ ଗୋବିନ୍ଦ, ତୁମେ ଏପରି କଥା କହି ମନରେ କଷ୍ଟ ଦେବ ନାହିଁ ।

ଗୋବିନ୍ଦ ବିଦ୍ୟାଧର—ମା ! ମା ! ପ୍ରକୃତରେ କି ଏ ଅଧମ ଦାସ ଆପଣଙ୍କ ଗର୍ଭଜାତ ସନ୍ତାନ—ଏମାନେ ସହୋଦର ଭ୍ରାତା ! ଆସ ଭାଇ ଏ ଅକିଞ୍ଚନର କୋଳକୁ ଥରେ ଆସ—( କଥରୁକୁ କୋଳ କରି ) ଆସ, ଭାଇ ଏ କ୍ଷୀଣାଙ୍ଗର ଦକ୍ଷିଣ ପାର୍ଶ୍ୱକୁ ଥରେ ଆସ ( କଲୁୟୁକୁ ପାର୍ଶ୍ୱକୁ ନେଇ ) ଯେତେଦିନ ଦେହରେ ଶକ୍ତି ଥିବ—ଯେତେଦିନ ହୃଦୟରେ ସାହସ ଥିବ—ଏ ବୃଦ୍ଧ ଏହିପରି ଭାଇର ପାର୍ଶ୍ୱେ ପାର୍ଶ୍ୱେ ରହିବ—ଏହିପରି ଭାଇକୁ କୋଳେ ତାଖେ କରି ବୁଲିବ !

ରାଣୀ—ଗୋବିନ୍ଦ, ଜ୍ୟେଷ୍ଠ ତନୟ ମୋର ! ତୁମ୍ଭର ହେତୁ ପିନା ଏ ଅନାଥ କୋରକଦ୍ୱୟ ଆଜ ମୁକୁଳିତ—ରୂପ-ସୌରଭରେ ଏ ଅନାଥିନୀ କୋଳ ଆଜ ଆମୋଦିତ—

ଗୋବିନ୍ଦ ବିଦ୍ୟାଧର—ମା ! ଏପରି କହି ଆଶ୍ରିତ ସନ୍ତାନକୁ ଅନ୍ତର କରି ଦେଉଛନ୍ତି କାହିଁକି ? କନିଷ୍ଠ ଭ୍ରାତାମାନଙ୍କ ପ୍ରତି ଜ୍ୟେଷ୍ଠ ଭ୍ରାତାର ଯାହା କର୍ତ୍ତବ୍ୟ, ତାହାହିଁ ଏ ଦାସ ପାଳନ କରୁଛି ମାତ୍ର ! ମା ! ଆଜି ଗୋଟିଏ କଥା କହିବାକୁ ଆସିଛି—

ରାଣୀ—କି କଥା ?

ଗୋବିନ୍ଦ ବିଦ୍ୟାଧର—କଲୁୟୁଦେବ ବର୍ତ୍ତମାନ ପ୍ରାପ୍ତ-ବୟସ୍କ—ସର୍ବ ଗୁଣରେ ଅଳଙ୍କୃତ—ସୁତରାଂ ରାଜ୍ୟଶାସନଭାର ସ୍ୱହସ୍ତରେ ଗ୍ରହଣ କରିବାର ଉପଯୁକ୍ତ । ତେଣୁ—

ରାଣୀ—ତେଣୁ ଯା' କରିବା ଉଚିତ ରାଜକାର୍ଯ୍ୟ ବିଷୟରେ ପଣ୍ଡିତେଣ ଗୋବିନ୍ଦ ଉତ୍ତମରୂପେ ଜାଣେ—ଏ ଜ୍ଞାନହୀନା ବିଧବା ସଙ୍ଗେ ପରାମର୍ଶର କି ପ୍ରୟୋଜନ ?

ଗୋବିନ୍ଦ ବିଦ୍ୟାଧର—ମା ! ଜନନୀ ଯେ ସ୍ୱଭାବତଃ ବୁଦ୍ଧିମତୀ ଓ ଜ୍ଞାନ-ମୟୀ—ପୁତ୍ର ଯେତେ ଜ୍ଞାନୀ ହେଉ—ଯେତେ ବିଚକ୍ଷଣଶୀଳ ହେଉ—ମାତାଠାରୁ

ତାଁର ବିସ୍ତୀର୍ଣ୍ଣ ନିଶ୍ଚୟ ଅଳ୍ପ—ମାଆଠାରୁ ତାଁର ଜ୍ଞାନ ଓ ବୁଦ୍ଧି ନିଶ୍ଚୟ କମ୍ । ମାତାର ଉପଦେଶ ବିନା—ମାତାର ଆଦେଶ ବିନା, ପୁତ୍ରର କି କୌଣସି କାର୍ଯ୍ୟ କରିବା ବିଧେୟ ?

ରାଣୀ—ଗୋବିନ୍ଦ ! ତୁମ୍ଭ ସହିତ କଥାରେ ପାରିବା ମୁସ୍କିଲ—ତୁମ୍ଭର ଇଚ୍ଛା ପୂର୍ଣ୍ଣ ହେଉ ।

କଲ୍ୟାଣ—ମା ! ଏ ଶିଶୁ ମସ୍ତକରେ ଆଜ ଯେଉଁ ବିଶାଳଭାର ଅର୍ପଣ କରୁଛନ୍ତି, ତାହା କି ସେ ଏକାକୀ ବହନ କରିବାକୁ ସକ୍ଷମ ?

ରାଣୀ—ତୋର ଜ୍ୟେଷ୍ଠ ସହୋଦର ତୁଲ୍ୟ ଗୋବିନ୍ଦ ଯେ ସହାୟ ଅଛି—ଚିନ୍ତା କ'ଣ ?

କଲ୍ୟାଣ—ଏଥର ମୁଁ ନିଶ୍ଚିନ୍ତ, ମା—ଉପରେ ଗୋବିନ୍ଦ ଭରସା—ନିମ୍ନରେ ମଧ୍ୟ ଗୋବିନ୍ଦ ଭରସା !

ଗୋବିନ୍ଦ ବିଦ୍ୟାଧର—କଲ୍ୟାଣ ଦେବ !

କଲ୍ୟାଣ—ମନ୍ତ୍ରୀଭାଇ !

ଗୋବିନ୍ଦ ବିଦ୍ୟାଧର—ଏ'ତ ପ୍ରତାପରୁଦ୍ରଙ୍କ ତନୟର ଉପଯୁକ୍ତ କଥା ହେଲା ନାହିଁ ?

କଲ୍ୟାଣ—କାହିଁକି ନୁହେଁ ଭାଇ ?

ଗୋବିନ୍ଦ ବିଦ୍ୟାଧର—'ଉପରେ ଗୋବିନ୍ଦ ଭରସା' ନିଶ୍ଚୟ—ମାତ୍ର ନିମ୍ନରେ କିଏ କା'ର ଭରସା ? କିଏ କା'ର ସହାୟ ? କାହାର ବାହୁବଳରେ ତୁମ୍ଭର ପିତା ଓ ପ୍ରପିତାମହଗଣ ଆଜ କ୍ଷୀଣକାୟ ଉତ୍କଳ ଭୂମିର କଳେବର ବୃଦ୍ଧି କରି ଯାଇ ଅଛନ୍ତି ? କାହାର ଧର୍ମ-ପ୍ରଭାବରେ ଆଜ ସେମାନେ ପ୍ରପୀଡ଼ିତ ଉତ୍କଳଭୂମିକୁ ସୁଖ-ଶାନ୍ତିର ନିଳୟ କରି ଯାଇ ଅଛନ୍ତି ? ସମସ୍ତ ନିଜର, ଧର୍ମ ଓ ବାହୁ ବଳରେ, କଲ୍ୟାଣ ଦେବ !—ତୁମ୍ଭେ ସେହି ଆତ୍ମନିର୍ଭରଶୀଳ କର୍ମ-ବୀରମାନଙ୍କର ତନୟ—ତୁମ୍ଭେ ସେହି ସ୍ୱାଧୀନଚେତା ବୀରପୁରୁଷ ଗଣଙ୍କ ବଂଶଧର—ତୁମ୍ଭର ଧମନୀରେ ସେମାନଙ୍କର ଉଷ୍ଣ ରକ୍ତ ପ୍ରବାହ ଅଦ୍ୟାପି ଭୀମବେଗରେ ଧାବିତ ହେଉଅଛି—ତୁମ୍ଭର ଅସ୍ଥି ମଜ୍ଜାରେ ସେମାନଙ୍କର ଅପ୍ରତିହତ କ୍ଷତ୍ରିୟ-ତେଜ ଅଦ୍ୟାପି ବିଦ୍ୟୁଲ୍ଲତା ସମ କ୍ରୀଡ଼ା କରୁଅଛି । କାରି—ନିଜର ଅଭ୍ୟନ୍ତରକୁ ସୂକ୍ଷ୍ମ ଦୃଷ୍ଟିରେ ପରିମାପ କରି ଦେଖ—ଯେଉଁ ସିଂହାସନ ତୁମ୍ଭେ ଆଜ ଅଲଙ୍କୃତ କରିବାକୁ ଯାଉଅଛ, ତାହା କେତେ କ୍ଷୁଦ୍ର, ତୁମ୍ଭର ଉଚ୍ଚାଭିଳାଷ ତାହାଠାରୁ କେତେ ବେଶି !—ଯେଉଁ କର୍ମକ୍ଷେତ୍ରରେ ତୁମ୍ଭେ ଆଜ ଅବତୀର୍ଣ୍ଣ ହେବାକୁ ଯାଉଅଛ, ତାହା କେତେ ସଂକୀର୍ଣ୍ଣ, ତୁମ୍ଭର ଶକ୍ତି ତଦପେକ୍ଷା କେତେ ବିଶାଳ !

କଲ୍ୟାଣ—ତୁମ୍ଭେହିଁ ମୋର ଗୁରୁ—ତୁମ୍ଭେହିଁ ମୋର ଉପଦେଷ୍ଟା, ମନ୍ତ୍ରୀଭାଇ ! ( ଜାନୁପାତ ପୂର୍ବକ ) ଆଶୀର୍ବାଦ କର, ମା—ଆଶୀର୍ବାଦ କର, ସ୍ୱର୍ଗୀୟ ପିତୃଦେବ, ଉତ୍ତରାଧିକାରୀ ବୋଲି ଯେଉଁ ସିଂହାସନ ଆଜ ପ୍ରକୃତରେ ଆରୋହଣ କରିବାକୁ ଯାଉଅଛି, ତାହା ଯେପରି ନିଜର ଶକ୍ତି ପ୍ରୟୋଗରେ ଉତ୍ତରୋତ୍ତର ବୃଦ୍ଧି କରେ—ରାଜା ବୋଲି ଯେଉଁ ରାଜ-ମୁକୁଟ ଆଜ ପ୍ରକୃତରେ ଧାରଣ କରିବାକୁ ଯାଉଅଛି, ତାହା ଯେପରି ନିଜର ଧର୍ମ ପ୍ରଭାବରେ ଦିନୁଁ ଦିନୁଁ ଉଜ୍ଜ୍ୱଳତର କରେ—ବୀର ବୋଲି ଯେଉଁ କ୍ଷୁରଧାର-କୃପାଣ ଆଜ ପ୍ରକୃତରେ କଟିଦେଶରେ ଲମ୍ବିତ କରିବାକୁ ଯାଉଅଛି, ତାହା ଯେପରି ନିଜର ବୀରୋଚିତ ବ୍ୟବହାରରେ ଅଧିକତର ଶାଣିତ କରେଁ ।

ଗୋବିନ୍ଦ ବିଦ୍ୟାଧର—ଜୟ ମହାରାଜ କଲ୍ୟାଣ ଦେବଙ୍କ ଜୟ !

( କଲ୍ୟାଣଦେବ ଦଣ୍ଡାୟମାନ ହେବା )

କଥରୁଯ—ମୋ'ର ଜୟ, ମନ୍ତ୍ରୀ ଭାଇ ?

ଗୋବିନ୍ଦ ବିଦ୍ୟାଧର—( ସସ୍ମିତେ ) ଜୟ ମହାରାଜ କଥରୁଯ ଦେବଙ୍କ ଜୟ !

( ନେପଥ୍ୟେ )—ଜୟ ମହାରାଜ କଲ୍ୟାଣଦେବଙ୍କ ଜୟ !

ଗୋବିନ୍ଦ ବିଦ୍ୟାଧର—ଏହି ଯେ ମା, ସଭାର ନିର୍ଦ୍ଧାରଣ ଘଟେ, ସମସ୍ତେ ଆଜ କଲ୍ୟାଣଦେବଙ୍କୁ ପ୍ରକୃତ-ରାଜପଦରେ ବରଣ କରିବା ନିମନ୍ତେ ସଭାଗୃହରେ ମିଳିତ ହେଲେଣି ।

ରାଣୀ—ଗୋବିନ୍ଦ ! ଆଜ କି ଆନନ୍ଦର ଦିନ—ପୂର୍ଣ୍ଣ—

ଗୋବିନ୍ଦ ବିଦ୍ୟାଧର—ଅତୀତଚିନ୍ତା ମନରେ ଆଉ ଆଣନ୍ତୁ ନାହିଁ, ମହାରାଣି !

ରାଣୀ—ଉଚିତ ମଧ୍ୟ ନୁହେଁ—ଚାଲ, ବାପା ତୁ ରାଜସିଂହାସନରେ ଆଜି ରାଜ-ଦଣ୍ଡ ଧରି ବସିବୁ—ତୋ'ର ଦୁଃଖିନୀ ଜନନୀ ସେ ଦୃଶ୍ୟ ଦେଖି ନୟନ ମନ ସାର୍ଥକ କରିବ—ତାପିତ ପ୍ରାଣ ଶୀତଳ କରିବ ।

କଅଁଳକୁମର—ମା ! ମୁଁ ସିଂହାସନରେ ବସିବି ନାହିଁ ?

ରାଣୀ—ଏ' ସିଂହାସନର କାମ ଆଗେ ଶେଷ କରି ସାରି, ବାପ !

[ କଅଁଳକୁମରଙ୍କୁ କୋଳ କରିବା ଅନ୍ତେ, ସମସ୍ତଙ୍କ ପ୍ରସ୍ଥାନ ]

---

## ଦ୍ୱିତୀୟ ଦୃଶ୍ୟ

—ଗୋବିନ୍ଦର ଉକ୍ତ—

[ ଜଗଦମ୍ବା ଓ ଗୋବର୍ଦ୍ଧନ ]

ଜଗଦମ୍ବା—ଗୋବରା ! ତୁ କେବେ ମଣିଷ ହେବୁଟି ?

ଗୋବର୍ଦ୍ଧନ—କାହିଁକି, ନାନୀ ? ମୁଁ କଣ ବର୍ତ୍ତମାନ ପଶୁ ?

ଜଗଦମ୍ବା—ପଶୁଠାରୁ ତ ଅଧିକ ହୀନ ! ସାମାନ୍ୟ ପିମ୍ପୁଡ଼ି ସେବି ଦେଖ ପେଟ ସକାଶେ ଦିନ ରାତି ଖଟୁଛି—ଆଉ ତୁ—

ଗୋବର୍ଦ୍ଧନ—ମୋ'ର ତ ଆଉ ପେଟର ଚିନ୍ତା ନାହିଁ ନ ନୀ ?

ଜଗଦମ୍ବା—ସବୁଦିନ କଣ ଏହିପରି ଚଳୁଥିବ ?

ଗୋବର୍ଦ୍ଧନ—ନାନୀ ଥିବାଯାଏ ତ ଚଳୁଥିବ !

ଜଗଦମ୍ବା—ତା' ପର ?

ଗୋବର୍ଦ୍ଧନ—ତା' ପର ଗୋବର୍ଦ୍ଧନ ଯେବେ ଖତମ୍—

ଜଗଦମ୍ବା—( କାନରେ ଅଙ୍ଗୁଳି ଦେଇ ) ରାମ୍—ରାମ୍—ରାମ୍—

ଗୋବର୍ଦ୍ଧନ—କଥା ଯେବେ ପକାଇଲୁ, ନାନୀ ତେବେ ଠିକ୍ ଜାଣିଥା—ତୋ ଆଗେ ଯେବେ ଯାଏଁ ତ ଉତ୍ତମ—ତା' ନ ହେଲେ ତୋ' ସଙ୍ଗେ ସଙ୍ଗେ ଯିବାଟି ନିଶ୍ଚୟ—ନିଶ୍ଚୟ—ନିଶ୍ଚୟ !

ଜଗଦମ୍ବା—ରାମ୍—ରାମ୍—ରାମ୍—ପୁଣି ସେହି କଥା ! ( ଅଙ୍ଗୁଳି କାଢିନେଇ ) ଛିଃ—ଛିଃ—ଛିଃ—ଗୋବରା ତୁ ଏଡ଼େଟି ହେଲୁଣି—ଟିକିଏ ହୋଇ ତୋର ଅକଲ ହେଲା ନାହିଁ—ହାୟ ! ପିତୃକୁଳର ଗୋଟିଏ ବୋଲି ସନ୍ତାନ ତୁହି—ତୁ ପୁଣି ଏପରି ହେଲୁ ! ମା ଭଗବତୀ ! ଗୋବରାକୁ ଅମର ସଦ୍ ବୁଦ୍ଧି ଦିଅ ମା—

ଗୋବର୍ଦ୍ଧନ—ସେ ବର ପଛେ ମାଗିବୁ, ନାନୀ !—ତୋ'ତେ ଯେଉଁ ବର ମାଗୁଛି, ତା' ଆଗେ ଦେଇସାରିକି—ତା' ପରି ଭାରି ଦରକାରି—ଭାରି ଜରୁରି—

ଜଗଦମ୍ବା—ନିତି ନିତି ଭଲ ଟଙ୍କା ଗୁଡ଼ାକ କାହିଁକି ଉଡ଼ାଉଛୁ ? ଆଜି ପୁଣି ଏତେ ଗୁଡ଼ାଏ ଟଙ୍କା କ'ଣ କରିବୁ ?

ଗୋବର୍ଦ୍ଧନ—କଣ କରିବି, ନାନୀ ! ଆଜି ଅଭି ଟଙ୍କା ନ ଉଡ଼ିଲେ—ପାଞ୍ଚ ଟଙ୍କା ଯେବେ ପାଞ୍ଚ ଘୋଡ଼ା ହୋଇ ଘରେ ଆଜି ନ ପଶୁଛି, ତେବେ ଏ' ମୁଣ୍ଡ—

ଜଗଦମ୍ବା—ଥାଉ ଥାଉ—ମୁଣ୍ଡ ଓପାଡ଼ିବାର ଦରକାର ନାହିଁ, କି ପାଞ୍ଚ ଗୁଣ୍ଡ ପାଞ୍ଚଶ' ହେଲେ ବି ମୋ'ର ଘୋଡ଼ାର ଦରକାର ନାହିଁ ! ଗୋବରାରେ ! ଭାଇ ରେ ! ଧନ ରେ ! ତୁ କଥା ଶୁଣ, ସେ ଜୁଆଖେଳ ଛାଡ଼ି ଦେ—ତୁ ପଛେ କିଛି ନ କର—ସେ ଖରାପ ଖେଳରେ ଆଉ ମାତ ନାହିଁ, କି ସେ ଖରାପ ସାଙ୍ଗରେ ଆଉ ପଡ଼ ନାହିଁ ।

ଗୋବର୍ଦ୍ଧନ—ତେବେ ତଣ୍ଟି ମୋର କାଟିଦେ, ନାନୀ—ତଣ୍ଟିମୋର—

ଜଗଦମ୍ବା—( କାନରେ ହାତଦେଇ ) ରାମ, ରାମ,—( ଅଙ୍ଗୁଳି କାଢ଼ି ନେଇ ) ତୋ ମୁହଁରେ କଣ ଟିକିଏ ହୋଇ ବାଇସ ନାହିଁ, ଗୋବରା ? ସେ ଅଲକ୍ଷଣା କଥା କଣ ତୋ' ଜିଭ ଅଗରେ ଥିଆ ? ଏଣିକି ଆଉ ତୋତେ କିଛି କହିବି ନାହିଁ—

କି ସେ ଅମଙ୍ଗଳିଆ କଥା ଶୁଣିବ ନାହିଁ ?
( ଅର୍ଦ୍ଧସ୍ୱଗତ ) ହାୟ ! ମା-ବାପାଥିଲେ କଣ ତୁ
ଆସି ଆଜ ପରଘରେ ରହନ୍ତୁ, ଗୋବରା—ତୋର
ଏପରି ଦଶା ହୁଅନ୍ତା, ଗୋବରା ?

ଗୋବର୍ଦ୍ଧନ—କଣ କହୁଛୁ, ନାନୀ—ସାରା କଥା—
ଦେଖୁ କି ନାହିଁ ? ନ ଦେଖିଲେ, ଯାଉଛୁ ଅଣ୍ଟାସୁତା
ବନ୍ଧା ପକାଇ ବାଜି ମାରି କରିବ—ଆଜ ମୋର
ବୁଧବୃହସ୍ପତି ଯୋଗ—ଅବଧାନ କହୁଛନ୍ତି, ଆଜ
ଯାହା ଖେଳିବ, ଶହେ ଗୁଣ ହୋଇ ଆସିବ—
ଏମିତି ସୁଯୋଗ କି ଛାଡ଼ିବାକୁ ଅଛି ?

ଜଗଦମ୍ବା—ଏହି ଅବଧାନ ଦେଖୁଛୁ, ସବୁ ସତ୍ୟାନାଶର
ମୂଳ ! ତା'ର ଶିକ୍ଷାରେ ପଡ଼ି ଗୋବରା ମୋର
ସତ୍ୟାନାଶ ହେବାକୁ ବସିଲାଣି । ଥରେ ସେ
ନିରବଂଶିଆ ଦେଖା ପଡ଼ନ୍ତା କି—ହାଣ୍ଡୁ ପିଠାରେ
ପଶ୍ମ ତାର ଅବଧାନଗିରି ଛଡ଼ାଇ ଦିଅନ୍ତି !

ଗୋବର୍ଦ୍ଧନ—ନାନୀ ! ସେ ଅବଧାନଙ୍କୁ ନିନ୍ଦା କର
ନାହିଁ—ସେ ଯାହା କୁହେ ତାହା ଫଳେଟି ।

ଜଗଦମ୍ବା—ମୁଣ୍ଡ ଗଣ୍ଡି ଫଳେ ।

ଗୋବର୍ଦ୍ଧନ—ଦେଖିବୁ ନାହିଁ, ନାନୀ—ତୁ
ଯେତେବେଳେ ରାଣୀ ହେବୁ—ଭେଣେଇ
ସେତେବେଳେ ରାଜା—
( ନେପଥ୍ୟେ ଗୋବିନ୍ଦଙ୍କୁ ଦେଖି ଚମକି ପଡ଼ିବା )

[ ଗୋବିନ୍ଦ ବିଦ୍ୟାଧରର ପ୍ରବେଶ ]

ଗୋବିନ୍ଦ ବିଦ୍ୟାଧର—ରାଜା ଆଜ ଗୋବିନ୍ଦଙ୍କ—

ଗୋବର୍ଦ୍ଧନ—ଦେଖ, ନାନୀ—ଅବଧାନକଥା ଫଳିଲା
କି ନାହିଁ ? ଜୟ ରାଜା ଭେଣେଇଙ୍କ ଜୟ—ଜୟ
ରାଣୀ ନାନୀଙ୍କ ଜୟ !—ଜୟ ରାଜଶ୍ୟାଳକ
ଗୋବର୍ଦ୍ଧନଙ୍କ ଜୟ !

[ ଗୋବିନ୍ଦ ଭ୍ରୂକୁଞ୍ଚିତ ନୟନରେ ଗୋବର୍ଦ୍ଧନଙ୍କୁ ଅନାଇବା ]

ଗୋବର୍ଦ୍ଧନ—ଆଉ କଣ ଗୋବର୍ଦ୍ଧନ କାହାକୁ ଡରୁଛି ?
—ଭେଣେଇ ତା'ର ରାଜା—ନାନୀ ତା'ର
ରାଣୀ—ନିଜେ ସେ ରାଜ-ଶ୍ୟାଳକ !

ଗୋବିନ୍ଦ—ଗୋବର୍ଦ୍ଧନ !

ଗୋବର୍ଦ୍ଧନ—ଅବଧାନ କଣ କେବେ ମିଛ କୁହେ ?
ଦେଖ୍ ନାନୀ ଅବଧାନ କଥା ଫଳିଲା କି ନାହିଁ ?

ଗୋବିନ୍ଦ—( ସ୍ୱଗତଃ ବିରକ୍ତଭାବେ ) ଆଜ ପୁଣି ସେହି
ଅବଧାନ କଥା !—ସେହି ଜ୍ୟୋତିଷୀ କଥା !—
( ପ୍ରକାଶ୍ୟେ ବିରକ୍ତ ଭାବେ ) ଗୋବର୍ଦ୍ଧନ !
( ପରେ ) ଶୁଣ କଳିଆ ବୌ, ଆଜଠାରୁ
କଳ୍ପଦେବ ନିଜ ହାତରେ ଶାସନଭାର ଗ୍ରହଣ
କଲେ—ମୁଁ ଏକ ମହାଦାୟିତ୍ୱ ଭାରରୁ
ରକ୍ଷାପାଇଲି ।

ଜଗଦମ୍ବା—ଯାହା ହେଉ ଆମ୍ଭମାନଙ୍କର ଗୋଟିଏ
ମହାଚିନ୍ତା ତେବେ ଦୂର ହେଲା ।

ଗୋବର୍ଦ୍ଧନ—( ସ୍ୱଗତଃ ) ମୋ'ର ଯେ ମହାଚିନ୍ତା
ବଢ଼ିଲା !—ଭେଣେଇ ରାଜା ହେଲେ ନାହିଁ—
ରାଜ୍ୟ-ଭାର ଛାଡ଼ି ଦେଲେ, ନାନୀ ରାଣୀ ହେଲା
ନାହିଁ—ଗୋବର୍ଦ୍ଧନ ନିଜକୁ ରାଜଶ୍ୟାଳକ
ବୋଲି ଡକାଇଲା ନାହିଁ ! ସବୁ ଯେ ଭଣ୍ଡୁର
ହୋଇଗଲା—ଅବଧାନ କଥା କଣ ତେବେ ମିଛ
ହେଲା ? ଅମ୍ଭେମାନେ ତ ରୋଜ ହାତେ ହାତେ
ଫଳ ପାଉଅଛୁଁ—ନା—ଅବଧାନ କଥା ନିଶ୍ଚୟ
ସତ—ନିଶ୍ଚୟ ଭେଣେଇ ରାଜା—ନିଶ୍ଚୟ ନାନୀ
ରାଣୀ—ନିଶ୍ଚୟ ଗୋବର୍ଦ୍ଧନ ରାଜ-ଶ୍ୟାଳକ—

ଗୋବିନ୍ଦ—ନିଜେ ନିଜେ କଣ ବକୁଛୁ ପାଗଳ ?

ଜଗଦମ୍ବା—ତା' କଥା ଭଲ ପରୁଛ—ସେହି କଥା
ବୋଧ ହୁଏ ଭାବୁଥିବ । କିଏ ସେ ଅବଧାନ
କେଜାଣି—ଏଣୁ ତେଣୁ କହି ଗୋବରାର ମୁଣ୍ଡ
ବିଗାଡ଼ି ଦେଲାଣି—

ଗୋବିନ୍ଦ—ଅଳସୁଆ ଲୋକଙ୍କର ତ ସେପରି କଥାରେ
ମୁଣ୍ଡ ବିଗିଡ଼ିବାର କଥା—ସାବଧାନ,
ଗୋବର୍ଦ୍ଧନ ! ଅଦୃଷ୍ଟବାଦୀର କୌଣସି କଥା
ଘୃଣାକ୍ଷରେ ମୋ ନିକଟରେ ଆଉ ଯେପରି କେବେ
ଉଚ୍ଚାରିତ ନ ହୁଏ ।

ଗୋବର୍ଦ୍ଧନ—( ସ୍ୱଗତ ) ଅବଧାନ କଥା କଣ ତେବେ
ମିଛ ହେଲା ?

ଗୋବିନ୍ଦ ବିଦ୍ୟାଧର—ଆସ, କନଅବେଳୀ ଏହି ଦୀର୍ଘ ପାଞ୍ଚବର୍ଷ ପରେ ଆଜ ଅମ୍ଭେମାନେ ରାଜା ପାଇଛୁଁ—ଅନାଥ ସନ୍ତାନଗଣ ଆଜ ନାଥ-ଯୁକ୍ତ ହୋଇଛନ୍ତି—ଏପରି ଆନନ୍ଦ ଦିନରେ ରାଜଭକ୍ତ ପ୍ରଜାଗଣଙ୍କ ଯାହା କର୍ତ୍ତବ୍ୟ, ତାହାହିଁ କରିବା ଆସ—

( ଗୋବିନ୍ଦର ପ୍ରସ୍ଥାନ )

ଗୋବର୍ଦ୍ଧନ—(ସ୍ୱଗତ) ଅବଧାନ କଥା କଣ ମିଛ ହେଲା ?

ଜଗଦମ୍ବା—ଆ, ଗୋବରା—ତୋର କପାଳ ଆଜ ଫିଟିଛି—ପାଞ୍ଚଟଙ୍କା ମାଗୁଥିଲୁ—ଦଶ ଟଙ୍କା ବକ୍‌ସିସ ପାଇଲୁ—

ଗୋବର୍ଦ୍ଧନ—( ସ୍ୱଗତ ) ଆଜ ବକ୍‌ସିସ—ଅବଧାନ କଥା ମିଛ ହେଲା ?

ଜଗଦମ୍ବା—ଆ, ପାଗଳ ।

ଗୋବର୍ଦ୍ଧନ—ବାସ୍ତବିକ ମୁଁ ପାଗଳ ହୋଇ ଗଲିଣି ।—ଅବଧାନ କଥା ମିଛ ହେଲା ?—ଅବଧାନ କଣ ଭୁଲ ଗଣିଛି ?—ସେ ତ ଭୁଲ ଗଣେ ନାହିଁ—ତେବେ କାହିଁକି ଏପରି ହେଲା ?—ଏହିକ୍ଷଣି ଯାଉଛି—ପୁଣି ଗଣାଇବି—ଦେଖିବି, ଅବଧାନ ପାଗଳ, କି ମୁଁ ପାଗଳ, କି ଅପର ସମସ୍ତେ ପାଗଳ । ( ବେଗେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ସହର ଦ୍ୱାର—

[ ଅର୍ଜୁନର ପ୍ରବେଶ ]

ଅର୍ଜୁନ—ଆଜତ ନଗରରେ ଭାରି ଧୁମ୍ ଧାମ୍ ଦେଖୁଛି । ସଙ୍ଗୀତ ସ୍ୱହସ୍ତରେ ରାଜ୍ୟ-ଭାର ନେଉଛନ୍ତି ବୋଲି ଏତେ ଆନନ୍ଦ । ଯାହା ହେଉ ମୋର ପରମ ସୌଭାଗ୍ୟ ଯେ ଆଜ ଏହି ଉତ୍ସବଦିନରେ ଗୁରୁ-ଗୃହ-କାର୍ଯ୍ୟ ସମାପନ କରି, ଘରକୁ ଫେରି ଆସିଛି । ଏହି ମୋର ଘର—ମୋର ଜନ୍ମସ୍ଥାନ—ବହୁଦିନ ପରେ ଆଜ ଏଠାରେ ପ୍ରଥମ ପଦାର୍ପଣ ବୋଲି ମନରେ କି ଆନନ୍ଦ ହେଉଛି—ସଙ୍ଗୀତ ବୋଧହୁଏ ମଣିମୟ ସିଂହାସନରେ, ଆଜ ପ୍ରକୃତ ରାଜାରୂପେ ଉପବେଶନ କରି ଏତେଦୂର ଆନନ୍ଦ ଉପଭୋଗ କରୁ ନଥିବେ । ଅବା ନର୍ତ୍ତକୀମାନଙ୍କ ସୁମଧୁର କଣ୍ଠଧ୍ୱନିରେ ନଗର ମୁଖରିତ ମାତ୍ର ବହୁଦିନୁଁ ଅଶ୍ରୁତ ପିତା-ମାତାଙ୍କର ପ୍ରେମପୂର୍ଣ୍ଣ ସମ୍ଭାଷଣ ତୁଳନାରେ ସେ ସଙ୍ଗୀତ ମୋତେ କର୍କଶତର ବୋଧ ହେବ । ସମସ୍ତ ନଗର ବାସୀ ପୁଣି ନାନା ସୁସ୍ୱାଦୁ ଲେହ୍ୟ ପେୟରେ ପରିତୃପ୍ତ—ମାତ୍ର ସେ ସମସ୍ତ ଖାଦ୍ୟ କି ବହୁଦିନ ଅଦୃଷ୍ଟ ପିତା-ମାତା ଭାଇ-ବନ୍ଧୁଙ୍କର ସ୍ନେହ ସୁଧା ସଙ୍ଗେ ସମାନ ହେବ ? ଅସମ୍ଭବ—ଯାଏଁ ସ୍ୱର୍ଗଧାମରେ ପ୍ରବେଶ କରେ—ଅମୃତାସ୍ୱାଦନ କରି ପିପାସିତ ପ୍ରାଣ ତୃପ୍ତ କରେଁ—

( ପ୍ରସ୍ଥାନୋଦ୍ୟତ ହେବାକାଳେ ଗୋବର୍ଦ୍ଧନର ପଶ୍ଚାଦ୍ଦିଗରୁ ପୁନଃ ପ୍ରବେଶ )

ଗୋବର୍ଦ୍ଧନ – ବାଃ, ବାଃ, ସିଧା ସିଧା ଘର ଭିତରକୁ ପଶି ଯାଉଛନ୍ତି—ଯେମିତିକି ଘରର ଜୋଇଁ ପୁଅ । ଆହେ ଭଦ୍ରସୀନ ଧାଗ୍ଗା ରସିକ ଶେଖର ! ଏ'ଟା ପିତୃ-ଗୃହ ନୁହେଁ କି ଶ୍ୱଶୁର-ମନ୍ଦିର ନୁହେଁ ।

ଅର୍ଜୁନ —କିଏ ଆପଣ ?

ଗୋବର୍ଦ୍ଧନ—ଚେହେରା ଦେଖି ଜାଣି ପାରୁ ନାହାନ୍ତି ଆପଣ ?

ଅର୍ଜୁନ—କ୍ଷମାକରନ୍ତୁ—ମୁଁ ତ ଆପଣଙ୍କୁ ଚିହ୍ନି ପାରୁନାହିଁ—

ଗୋବର୍ଦ୍ଧନ—ଚିହ୍ନିବେ କିପରି, ଆମେ ଥିଲାବେଳେ ତ ଆପଣଙ୍କର ଜନ୍ମ ହୋଇ ନ ଥାଏ !

ଅର୍ଜୁନ—ଆପଣ କଣ ତେବେ ମନେ କରୁଛନ୍ତି, ମୁଁ ଚୋର ?

ଗୋବର୍ଦ୍ଧନ—ରାମଚନ୍ଦ୍ରଃ—ଆପଣ ସାଧୁ—ସଦ୍‌ବ୍ୟକ୍ତି—ସଜ୍ଜନ—ଯେତେ ଅଳଂକାର ଅଛି, ସବୁ-ଟିକାକନ୍ତୁ !

ଅର୍ଜୁନ—ଏ' ଯେ ନିଜର ଘର !

ଗୋବର୍ଦ୍ଧନ—ନମସ୍କାର—ତା'ତ ମନେ କରିବେ—
ଆପଣଙ୍କ ପରି ସାଧୁ ଲୋକର କି ଆତ୍ମପର ଜ୍ଞାନ
ଥାଏ ? ସୁଦୃଷ୍ଟି ପଣ୍ଡିତ ମାନଙ୍କେ ଯେ ସବୁ
ଆପଣାର କରି ନିଅନ୍ତି—ଅଚ୍ଛା ବେଶ୍ ବେଶ୍
ବର୍ତ୍ତିମାନ ମହାଶୟ, ଟିକିଏ ଅନୁଗ୍ରହ କରି
ବିଦାୟ ହେବେ କି ? ମୋର ଗୋଟାଏ ଜରୁରି
କାମ ଅଛି, ତା' ନ ହେଲେ, ଅତିଥିସତ୍କାରଟା
ଉତ୍ତମରୂପେ ଦେଖାଇ ଦିଅନ୍ତି । କି ଚୁପ୍ କରି
ଛିଡା ହେଲେ ଯେ ?

ଅର୍ଜ୍ଜୁନ—ମୁଁ ତ କିଛି ବୁଝିପାରୁ ନାହିଁ ।

ଗୋବର୍ଦ୍ଧନ—ତେବେ କି କିତାନ୍ତ ବୁଝିବେ ? ଅରେ
ନବୀନା ନବୀନା !

[ ଗୋବିନ୍ଦ ଓ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—ଗୋବରି । କଣ ହୋଇଛି ?

ଗୋବର୍ଦ୍ଧନ—ଦେଖ, ଦେଖ, ନାନି !

ଅର୍ଜ୍ଜୁନ—ମା ! ମା ! ବାବା ! ବାବା !

( ନମସ୍କାର କରିବା )

ଗୋବିନ୍ଦ—ଏ' ଯେ ଅର୍ଜୁନ !

ଜଗଦମ୍ବା—ଗୋବରି ! ଏ'ଯେ ତୋର ଭଣଜା !

ଗୋବର୍ଦ୍ଧନ—ଭଣଜା !

ଅର୍ଜୁନ—( ସମସ୍ତଙ୍କୁ ପ୍ରଣାମନ୍ତେ ଗୋବର୍ଦ୍ଧନକୁ ପ୍ରଣାମ
କରୁ କରୁ ) ମାଉଁ । କ୍ଷମା କରିବେ—ଚିହ୍ନି ପାରି
ନ ଥିଲି ।

ଗୋବର୍ଦ୍ଧନ—( ସ୍ୱଗତଃ ) ଖାସି ଭଲ୍ଲ ତ । (ପ୍ରକାଶ୍ୟେ)
ମୁଁ ଏତା ଦୋ ଦୋ ଶଙ୍କା କରିଥିଲି, ଭଣଜା—
ତେବେ କ'ଣ କି ନା, କେବେ ଦେଖି ନାହିଁ କି
ନା ?—

ଗୋବିନ୍ଦ ବିଦ୍ୟାଧର—ଆଜି କି ଆନନ୍ଦ, କନିଅ ବୌ !

ଜଗଦମ୍ବା—ଏ' ଯେ ଆନନ୍ଦ ଉପରେ ଆନନ୍ଦ !

( ଗୋବର୍ଦ୍ଧନ ବ୍ୟତୀତ ସମସ୍ତଙ୍କ ପ୍ରସ୍ଥାନ )

ଗୋବର୍ଦ୍ଧନ—ଏହି ମୋର ନାନୀର ସତ୍ପୁତ୍ରଣୀ ପୁଅ—
ଅର୍ଜୁନ—( ଦୀର୍ଘ ନିଶ୍ୱାସ ତ୍ୟାଗ ପୂର୍ବକ ) ଅଚ୍ଛା,
ଖାଏଁ ଆରେ ମୋର କାମ ସାରେଁ—ଅବଧାନ
କଥା ମିଛ ହେଲା ? ( ବେଗେ ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ରାଜୋଦ୍ୟାନ—

[ କେତେକ ସହଚରୀଗଣ ଗୀତ ଗାଇ ଗାଇ
କମଳାକୁ କନ୍ୟା ବେଶ କରୁଥିବା ]

—ଗୀତ—

କମଳା—ଏଙ୍କି ସାଜେ ଅଜ ସଜାଅ, ସଜନି ?

୧ମା ସହଚରୀ—ରୂପ ବଢ଼ିବ,

୨ୟା ସହଚରୀ—ବାସ ଚହଟିବ

ସମସ୍ତେ—ଅସିବେ ଲୋ ତ୍ୱରି ତୋର ଗୁଣମଣି ।

କମଳା—ରୂପେ, ଗନ୍ଧେ, ରସି ଖାଲି,
ଅସେ ଲୋ ଯେବେ ସେ ଅଳି,

୧ମା ସହଚରୀ—କି ଭାବନା ତହିଁ,

୨ୟା ସହଚରୀ—କରି ଗୋ ତୁ ସହି ।

ସମସ୍ତେ—ପଡ଼ିଲେ ତୋର ଫାନ୍ଦେ,
ଚିରଫାନ୍ଦେ, ବନ୍ଧା ସେ ଧନୀ ॥

[ ସଖୀର ପ୍ରବେଶ ]

ସଖୀ—ଅଲୋ ! କଣ ନିଠେଇ ନିଠେଇ କାମ
କରୁଛ ସବୁ—ହିଁଅରତ ମୁଣ୍ଡ ବନ୍ଧା ଏ ପର୍ଯ୍ୟନ୍ତ
ସରିଲା ନାହିଁ ।

୨ୟା ସହଚରୀ—ମ ! ତୁ ଏତେ ଟାଉ ଟାଉ ହେଉଛୁ
କାହିଁକି ? ତୋର ଜୋଇଁ ଆସିଲେ କଣ ଦଣ୍ଡେ
ଛିଡା ହୋଇ ପାରିବ ନାହିଁ ?

୩ୟା ସହଚରୀ—ଦଣ୍ଡେ କାହିଁକି ମ, ପହରେତ ଛିଡ଼ା
ହୋଇଥିବ ?

୪ର୍ଥା ସହଚରୀ—ଫେରି ଗଲେ ଏବେ ଆମକୁ କି
ଲଗାଅଛି ?

ସଖୀ—ହଁ ଲୋ, ତୁମରି ସବୁ ଏତେ ବଡ଼ କଥା—
କୋଇଁ କଣ ମୋର ଭଲ ଲାଗି ଅସୁଛି କି ?

୩ୟା ସହଚରୀ—ଶଏ, ଷାଠିଏ ଗଣି ଦେଇଛି ପରି ।

୪ର୍ଥା ସହଚରୀ—ଅଲୋ ସେଇ ଆମରି କଥା ଗୁଞ୍ଜର ।

୧ମା ସହଚରୀ—ତମରି ଜାଇଜ ବୋଲି ଜାଣିଛ ନା ?

୨ୟା ସହଚରୀ—ଏହିତ ବର ଆସି ଗଲଣି—ଆସ,
ଆସ ବର କନିଆକୁ କୋଡ଼ରେ ଆଣିବା ଆସ ।
( ସମସ୍ତଙ୍କ ପ୍ରସ୍ଥାନ, ଓ ବରକନ୍ୟାଙ୍କୁ ଧରି ଗୀତ
ଗାଇ ଗାଇ ପୁନଃ ପ୍ରବେଶ କରିବା )

ଅହାକି ମଧୁର ମିଳନ— ମିଳନ୍ତି ରତନେ ରତନ
ସୁର ଶଶୀ କିବା ପାଇଅଛି ଶୋଭା
ନୀଳ ନଭ ଅଙ୍ଗ ଭୂଷଣ ॥
ଧର ଲୋ ମଧୁର ତାନ— ଗାଅ ଲୋ ମଙ୍ଗଳ ଗାନ
ତାଳେ ତାଳେ ନାଚ ପବନ
ସିଞ୍ଚ ସୁଧାବିନ୍ଦୁ ବଦନ
ମାତି ଉଠୁ ତିନି ଭୁବନ ପୁଲକିତ କର ପରାଣ ॥

୩ୟା ସହଚରୀ—ଦିଅ ଏବେ ହାତ ଗଣ୍ଠି ପକାଇ ଦିଅ ।
[ ହସ୍ତ-ବନ୍ଧନ କାର୍ଯ୍ୟ ଆରମ୍ଭ ହେବା ସମୟରେ
କଲ୍ୟୁ ଓ ରଙ୍ଗିଲକୁ ଦେଖି ସମସ୍ତଙ୍କ ସଭୟେ
ପ୍ରସ୍ଥାନ ]
[ ରଙ୍ଗିଲର ପ୍ରବେଶ ]

ରଙ୍ଗିଲ—ଖେଳ ଲୋ, ଖେଳ ସବୁ—ଅହା !
ଗୁଲଗଲେ—ହାତ ଗଣ୍ଠିଟା ପଡ଼ି ପାରିଲା ନାହିଁ !
[ କଲ୍ୟୁ ଦେବର ପ୍ରବେଶ ]

କଲ୍ୟୁ—( ସସ୍ମିତେ ) ଆମପାଇଁ ତେବେ ବାକି
ରହିଲା କଣ ରଙ୍ଗିଲ ?

ରଙ୍ଗିଲ—( ଚମକିତ ହେବା )

କଲ୍ୟୁ—ଏଣିକି ତୁମେ ଭାର ପ୍ରକୃତ ଛଡ଼ା ହେଉଛ
ରଙ୍ଗିଲ !

ରଙ୍ଗିଲ—ମହାରାଜ !

କଲ୍ୟୁ—ଏ ପୁଣି ଆଜ କି ନୂତନ ଡାକ ରଙ୍ଗିଲ ?

ରଙ୍ଗିଲ—ବନ୍ଧୁ ଯେ ଆଜ ମହାରାଜ !

କଲ୍ୟୁ—କିନ୍ତୁ ରଙ୍ଗିଲ ନିକଟରେ ଯେ, ସେହି ବନ୍ଧୁ—
ଚିରଦିନ ମଧ୍ୟ ସେହି ବନ୍ଧୁ ରହିବ ।

ରଙ୍ଗିଲ—( ଦୀର୍ଘ ନିଶ୍ୱାସ ତ୍ୟାଗ କରିବା )

କଲ୍ୟୁ—ମନେ କରଛ କି ରଙ୍ଗିଲ—ଆଜ ରାଜକାର୍ଯ୍ୟ
ବିଷୟରେ ସ୍ୱାଧୀନ ହେଲି ବୋଲି, ତୁମ୍ଭ
ନିକଟରେ ମଧ୍ୟ ସ୍ୱାଧୀନ ହେଲି ?—ଅସମ୍ଭବ—
ପ୍ରଥମ ସ୍ୱାଧୀନତାରେ ଯେଉଁ ପରିମାଣରେ ସୁଖ,
ଦ୍ୱିତୀୟ ସ୍ୱାଧୀନତାରେ ଯେ ସେହି ପରିମାଣରେ
ଦୁଃଖ !—ପ୍ରଥମ ସ୍ୱାଧୀନତା ରାଜାର ଯେତେ
ଦୂର ଆକାଙ୍କ୍ଷିତ—ଦ୍ୱିତୀୟ ସ୍ୱାଧୀନତା ଯେ
ପ୍ରେମିକର ତେତେଦୂର ଘୃଣିତ । ମୁଁ ଆଜ
ଉତ୍କଳର ସ୍ୱାଧୀନ ରାଜା ସତ୍ୟ, କିନ୍ତୁ ରଙ୍ଗିଲର
ଅଧୀନସ୍ଥ ଦାସାନୁଦାସ ମାତ୍ର ।

ରଙ୍ଗିଲ—ଏ ଅଧୀନା ଯେ ସାମାନ୍ୟ ଜଣେ ପ୍ରଜା—
ଦାସୀର ମଧ୍ୟ ଅଯୋଗ୍ୟା—ତାକୁ ଏତେ
ଉଚ୍ଚାସନ କି ସାଜେ ପ୍ରଭୋ ?

କଲ୍ୟୁ—ରଙ୍ଗିଲ ! ଏହିକି ତୁମ୍ଭର ପ୍ରକୃତ ପ୍ରଣୟ ?
ଆମ୍ଭମାନଙ୍କ ମଧ୍ୟରେ ରାଜା-ପ୍ରଜା-ଭାବ—
ଉଚ୍ଚ-ନୀଚ ଭାବ ? ଏ ପାର୍ଥିବ ରାଜ୍ୟ ସହିତ
ଆମ୍ଭମାନଙ୍କର କି ସମ୍ବନ୍ଧ ? ଏ ପାର୍ଥିବ ପଦ-
ମର୍ଯ୍ୟାଦାରେ ଆମ୍ଭମାନଙ୍କର କି କାର୍ଯ୍ୟ ?
ଆମ୍ଭେମାନେ କି ଯେ ପବିତ୍ର ପ୍ରେମ-ରାଜ୍ୟବାସୀ—
ସେଠାରେ କି ଭେଦାଭେଦ ଅଛି ? ସମସ୍ତେ ଯେ
ସମାନ—ସମସ୍ତେ ଯେ ଏକାକାର ।

ରଙ୍ଗିଲ—ପ୍ରକୃତରେ କି ଆମ୍ଭେମାନେ ସେ ରାଜ୍ୟ-ବାସୀ
ହୋଇ ପାରିବୁ, ବନ୍ଧୁ ?

କଲ୍ୟୁ—ଆଜନ୍ମରୁ ତ ସେ ରାଜ୍ୟ-ବାସୀ ହୋଇଛୁଁ ।

ରଙ୍ଗିଲ—ଚିରଦିନ ସକାଶେ କି ସେହି ଦାବି ଅକ୍ଷୁର୍ଣ୍ଣ
ରହିବ ?

କଲ୍ୟୁ—ଏପରି ଆଶଙ୍କା କାହିଁକି ରଙ୍ଗିଲ ? ଆଜ ମୁଁ
ରାଜ୍ୟ-ଭାର ସ୍ୱହସ୍ତରେ ଗ୍ରହଣ କରିଛି ବୋଲି
ଚାରିଆଡ଼େ ମହୋତ୍ସବ—ଚାରିଆଡ଼େ ଜୟ ଜୟ
ଧ୍ୱନି—ମାତ୍ର ମୋର ହୃଦୟ କି ସେ ଧ୍ୱନିରେ
ତିଳେ ସୁଦ୍ଧା ଉତ୍ଫୁଲ୍ଲିତ ହେଉଛି—ପ୍ରାଣ କି
ଆନନ୍ଦରେ ଥରେ ହେଲେ ନାଚି ଉଠୁଛି ?

ରଙ୍ଗିଲ—କାହିଁକି ଏ ଅଶାନ୍ତି ବନ୍ଧୋ ?

କଲ୍ୟୁ—କାହିଁକି ? ପିପାସିତ ପ୍ରାଣର ଯାହା
ଆକାଙ୍କ୍ଷା—ସେ ଯେ ଅଦ୍ୟାପି ନିକଟେ ଥାଇଁ
ଥାଇଁ ଦୂରେ—ହୃଦୟର ଯାହା ମଣ୍ଡନ ସେ ଯେ
ଅଦ୍ୟାପି ସମ୍ମୁଖରେ ଥାଇଁ ଥାଇଁ ପରୋକ୍ଷେ ।

ରଙ୍ଗିଲ—ଏତେ ଅନୁଗ୍ରହ ଏ ଅଧୀନାପ୍ରତି—ଈଶ୍ୱର କି
ସତେ ଏ ଅନୁଗ୍ରହ କରିବେ ?

ଭଲ୍ୟୁ—କିଛି ଭୟ ନାହିଁ ରଙ୍ଗିଲା । କେହି ଆଉ ବାଧା ଦେଇ ପାରିବେ ନାହିଁ—ମୁଁ ବର୍ତ୍ତମାନ ସ୍ୱାଧୀନ ।

[ ରାଣୀର ପ୍ରବେଶ ]

ରାଣୀ—( ସ୍ୱଗତ ) ତଥାପି—ତଥାପି ପରାଧୀନ ଛୁ, ଭଲ୍ ! ( ପ୍ରକାଶ୍ୟେ ) ଭଲ୍, ଯା ତୋର ସଙ୍ଗାତ ଆସିଛି ।

ଭଲ୍ୟୁ—ସଙ୍ଗାତ ଆସିଛି ! (ପ୍ରସ୍ଥାନ)

ରାଣୀ—ଆ, ରଙ୍ଗିଲା ! ତୋ ସଙ୍ଗେ ଅନେକ କଥାଅଛି ! (ଉଭୟଙ୍କ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

—ଗୋବିନ୍ଦର ଗୃହାଭ୍ୟନ୍ତର—

[ଗୋବର୍ଦ୍ଧନର କୋଷ୍ଠୀହସ୍ତେ ପ୍ରବେଶ]

ଗୋବର୍ଦ୍ଧନ—ନାଣୀ ! ନାଣୀ ! ଆଉ ମୋର ଭୟ-ନାହିଁ—ଭେଣେଇ ଯେତେ ତଡ଼ନ୍ତୁ ପଛକେ ଲକ୍ଷ୍ମୀ ଆସି ନିଶ୍ଚୟ ଭେଣେଇଙ୍କ ଗୋଡ଼ତଳେ ଠିଆ, କାଣ—ଅବଧାନ ନିଜ ଗଡ଼ ବିଷୟରେ ଯା' କିଛିଏ ହୋ ହୋ ମନା ହେଉଥିଲା, ଭେଣେଇଙ୍କ କୋଷ୍ଠି ଦେଖି ଏକାବେଳକେ ସ୍ଥିର ଜବାବ ଦେଇଛି—ନିଶ୍ଚୟ ଭେଣେଇ ରାଜା ହେବ—ବାଃ ବାଃ ନାଣୀ ତେବେ ନିଶ୍ଚୟ ରାଣୀ ହେବ—ଗୋବର୍ଦ୍ଧନ ନିଶ୍ଚୟ ରାଜ-ଶ୍ୟାଳକ ହେବ—ହୁହ—କୋଷ୍ଠୀଟା ଆଗେ ନାଣୀ ଜମା କରି ଦିଏ—ଭେଣେଇ ଯେବେ ଦେଖନ୍ତି, କିମ୍ବା କେହି କହି ଦିଏ—ନାଣୀ କାହିଁ ?

( ଅନ୍ୟ ଦିଗେ ପ୍ରସ୍ଥାନ )

[ କିଛିକ୍ଷଣ ପରେ ବିପରୀତ ଦିଗରୁ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—ଏତେ ପଣ୍ଡିତ ହୋଇ ଘରକରଣୀ ବୁଦ୍ଧି ଅବେଁ। ତାଙ୍କର ନାହିଁ—ସେ କହନ୍ତି, ଗୋବରା ନିହାତ ଅପଦାର୍ଥ; କିନ୍ତୁ ସେହି ଅପଦାର୍ଥ ଭିତରେ ଯେଉଁ ଟିକ ପଦାର୍ଥ ଅଛି ତା'ର ଏତିକି ଚିକେ ଭଲ ନିଜ ପାଖରେ ଥାନ୍ତା ? ଗୋବରା ଠିକ୍ କଥା କହୁଛି—ଭେଣେଇ ହାତର ଲକ୍ଷ୍ମୀକୁ ଗୋଡ଼ରେ ପେଲି ଦେଉଛନ୍ତି—ଯାଚିଗୁଞ୍ଜି ନିଜର କ୍ଷମତାକୁ ପରକୁ ବଢ଼େଇ ଦେବାର କି ଦରକାର ଥିଲା ? ହେଉ ସେ ଅଧିକାରୀ—ହେଉ ଆମେ ବାଶ୍ଵାସୀ ପ୍ରଜା—ଆମେତ କିଛି କାଢ଼ି ଖାଇ ଯାଉନଥିଲୁ, କି ସେ ତ, ଦିଅ, ଦିଅ ବୋଲି ଜୋର ଜୁଲମ କରୁ ନ ଥିଲେ—ସେପରି ଉପରେ ପଡ଼ି ଯାଚି ଗୁଞ୍ଜି ହେବାର ଦରକାର କ'ଣ ଥିଲା ? ନିଜ ଇଚ୍ଛାରେ କାମ କରୁଥିଲୁ, ସେ କେଡ଼େ ସୁଖ—ବର୍ତ୍ତମାନ ସିନା ପର ଇଚ୍ଛାରେ ବସିବ—ପର ଇଚ୍ଛାରେ ଠିଆ ହେବ—ପର ଇଚ୍ଛାରେ ଚାଲିବ ।

[ ଗୋବିନ୍ଦ ବିଦ୍ୟାଧରଙ୍କ ପ୍ରବେଶ ]

ଗୋବିନ୍ଦ ବିଦ୍ୟାଧର—କନିଅ ବୌ ! ଅଜି ଠିକ୍ କରି ଆସିଲି !

ଜଗଦମ୍ବା—କ'ଣ ଠିକ୍ କରି ଆସିଲ ?

ଗୋବିନ୍ଦ ବିଦ୍ୟାଧର—ବାହାଘର !—

ଜଗଦମ୍ବା—କା'ର ?

ଗୋବିନ୍ଦ ବିଦ୍ୟାଧର—ଅମର ଅଜୁର !

ଜଗଦମ୍ବା—ଗୋବରାର ?

ଗୋବିନ୍ଦ ବିଦ୍ୟାଧର—ବାହାଘରତ ଖେଳ ଘର ନୁହେଁ, କନିଅ ବୌ ? ସ୍ତ୍ରୀ ଯେ ଲତା ସଙ୍ଗେ ସମାନ—ଗଛ ମଜବୁତ ନ ହେଲେ, ତା ଦେହରେ କି ଲତାକୁ ବେଢ଼େଇ ଦେବା ଉଚିତ ?

ଜଗଦମ୍ବା—( ସ୍ୱଗତଃ ) ମୋର ଗୋବରା କି ତେବେ ଅମଜବୁତ ? ( ଦୀର୍ଘନିଃଶ୍ୱାସତ୍ୟାଗକରି, ପ୍ରକାଶ୍ୟେ) ଅଚ୍ଛା, କନିଅ କେଉଁଠି ଠିକ୍ କଲ ?

ଗୋବିନ୍ଦ ବିଦ୍ୟାଧର—ଅମର କୋଟାଲ-ଝିଅ ।

ଜଗଦମ୍ବା—ରଙ୍ଗିଲା ? ବେଶ୍ ଝିଅଟିଏ ଏକା—ଅଚ୍ଛା, ଆମର ରାଜାଙ୍କ ସହିତ ପରା ତା'ର ଲୁଅଡ଼େ ବାହା ହେବାର କଥା ହେଉଥିଲା !

ଗୋବିନ୍ଦ ବିଦ୍ୟାଧର—ରାଜାଙ୍କର ଭାରି ଇଚ୍ଛା ଥିଲା—ଏ' ବିଷୟରେ ମଧ୍ୟ ମେ ଭାରି ଜିଦ୍ କରିଥିଲେ—

ମାତ୍ର ରାଣୀ ରାଜି ହେଲେ ନାହିଁ—ଆମ୍ଭେମାନେ ମଧ୍ୟ ମତ ଦେଲୁ ନାହିଁ ।

ଜଗଦମ୍ବା—କାହିଁକି ଦେଲ ନାହିଁ ? ସେ କି ରାଜାଙ୍କ ଲାଏକ ନୁହେଁ । କେଉଁ ଗୁଣରେ ସେ ଊଣା ?

ଗୋବିନ୍ଦ ବିଦ୍ୟାଧର—କୋଠିକିରେ ଗୋଟିଏ କହିଲେ ଚଳେ—ମାତ୍ର ରାଜାଙ୍କ ଲାଗି ବଂଶ ମର୍ଯ୍ୟାଦାଡ଼ ଦେଖିବାକୁ ଅଛି--ଜଣେ ସାମାନ୍ୟ ରାଜ-କର୍ମଚାରୀ ସଙ୍ଗେ କି ଗଙ୍ଗବଂଶୀୟ ରାଜାର ବୈବାହିକ ସମ୍ବନ୍ଧ କରିବା ଉଚିତ ?

ଜଗଦମ୍ବା—ସେ ଯାହା ହେଉ, ରାଜା ଆମର କିନ୍ତୁ ତାଙ୍କୁ ଦଣ୍ଡେ ନ ଦେଖିଲେ ରହିପାରିବେ ନାହିଁ ।

ଗୋବିନ୍ଦ ବିଦ୍ୟାଧର—ବାଧ୍ୟ ହୋଇ ରହିବାକୁ ହେବ—ରାଜାଙ୍କର ମର୍ଯ୍ୟାଦା ଖାତିରରେ—ବଂଶର ମର୍ଯ୍ୟାଦା ଖାତିରରେ ଅଳ୍ପ-ସୁଖ ବଳି ଦେବାକୁ ହେବ । ଛାଡ଼, ବର୍ତ୍ତମାନ ବିବାହର ଆୟୋଜନ ଶୀଘ୍ର କରିବାକୁ ହେବ ।

ଜଗଦମ୍ବା—ଦିନ କେବେକୁ ହୋଇଛି ?

ଗୋବିନ୍ଦ ବିଦ୍ୟାଧର—ସେ ବିଷୟ ଠିକ୍ କରିବା ନିମନ୍ତେ ଏହିକ୍ଷଣି ସାର୍ବଭୌମଙ୍କୁ ଡକାଇ ପଠାଇଛି, ବୋଧହୁଏ ସେ ଆସିଲେଣି—ମୁଁ ଯାଏଁ । ( ପ୍ରସ୍ଥାନ )

ଜଗଦମ୍ବା—ଗୋବିନ୍ଦ ମୋର ହେଲା ଅମଜବୁତ୍, ଆଉ ଅଜୁ ହେଲା ମଜବୁତ୍—'ହାୟ' ଅଜୁ ବାହା ହେବ—ବୋହୂ ଆସିବ—ମନ ଖୁସିରେ ବୁଲିବ ବୁଲିବ—ଗୋବିନ୍ଦ ସିନା ମୋର ମୁହଁ ଶୁଖେଇ ବୁଲିବ—ଆଖିର ଲୁହ ଆଖିରେ ମାରିବ !

[ ଅର୍ଜୁନର ପ୍ରବେଶ ]

ଅର୍ଜୁନ—ମା !

ଜଗଦମ୍ବା—( ନୀରବ )

ଅର୍ଜୁନ—ଏ କ'ଣ ମା, ତୋତେ ଯେ ଆଜି ଭାରି ବିମର୍ଷ ଦେଖୁଛି !

ଜଗଦମ୍ବା—ମୋର ଦେହଟା ଆଜି କାହିଁକି ଭଲ ଲାଗୁ ନାହିଁ ।

ଅର୍ଜୁନ—ଏତେ ବେଳଯାଏ ଯେ ମୋତେ କହୁ ନାହୁଁ ?

ଜଗଦମ୍ବା—ନା—ଏମିତି'ତ ବେଶୀକିଛି ହୋଇନାହିଁ ।

ଅର୍ଜୁନ—ନ ହେଲେ କଣ ହେଲା—ମୁହଁ'ତ ଶୁଖିଛି—ମା ଯେବେ ମୋର ଟିକିଏ ହେଲେ କଷ୍ଟ ପାଇବ—ତେବେ ମୋର ଏତେ କବିରାଜୀ ପଢ଼ି କି ଫଳ ?

ଜଗଦମ୍ବା—ଟିକିଏ ମୁଣ୍ଡ ବିନ୍ଧୁଛି—ସେଥିପାଇଁ ଏତେ ବ୍ୟସ୍ତ କାହିଁକି ?

ଅର୍ଜୁନ—ମୁଣ୍ଡ ବିନ୍ଧୁଛି ?—ରହ' ମୁଁ ଏହିକ୍ଷଣି ଔଷଧ ନେଇ ଆସୁଛି । ଓଃ ମାର କି କଷ୍ଟ ହେଉଛି ? (ପ୍ରସ୍ଥାନୋଦ୍ୟତ)

ଜଗଦମ୍ବା—ଔଷଧ ଖୁଆଇ ଖୁଆଇ ମୋତେ ସାରିଲୁଣି, ଅଜୁ ?—ନା—ମୁଁ ଆଉ ଔଷଧ ଖାଇବି ନାହିଁ ।

ଅର୍ଜୁନ—ଏ' ଲଗାଇବା ଔଷଧ, ମା—ଖାଇବାର ନୁହେଁ—ଟିକିଏ ରହ—ମୁଁ ଏହିକ୍ଷଣି ନେଇ ଆସୁଛି—ଓଃ ମାର କି କଷ୍ଟହେଉଛି ! (ବେଗେ ପ୍ରସ୍ଥାନ)

ଜଗଦମ୍ବା—ଏହି ଦେଖ—ବାହା କଥା ଶୁଣି କେଡ଼େ ଖୁସି !—ବାହା ହେଲେ ନ ଜାଣେ କଣ ନ ହେବ ?

[ଗୋବର୍ଦ୍ଧନର ପ୍ରବେଶ]

ଗୋବର୍ଦ୍ଧନ—ନାନୀ ।

ଜଗଦମ୍ବା—(କ୍ରନ୍ଦନ ସ୍ୱରରେ) ଗୋବିନ୍ଦରେ ! (ଆଲିଙ୍ଗନ କରିବା)

ଗୋବର୍ଦ୍ଧନ—କାନ୍ଦୁଛୁ, କାହିଁକି ନାନୀ ? ନିଶ୍ଚୟ ହେବ ।

ଜଗଦମ୍ବା—ନିଶ୍ଚୟ ହେବଟି ? ଚଞ୍ଚଳ ହେବ ନା ?

ଗୋବର୍ଦ୍ଧନ—ଭିଣେଇ ଯେପରି ଚାଲିଛନ୍ତି, ସେଥିରେ କି ଚଞ୍ଚଳ ହେବାର ଉପାୟ ଦେଖୁଛୁ ନାନୀ ?

ଜଗଦମ୍ବା—ନିଜେ ଚେଷ୍ଟା କଲେ କଣ ଚଞ୍ଚଳ ହେବ ନାହିଁ ?

ଗୋବର୍ଦ୍ଧନ—ଅବଧାନବି ଠିକ୍ ସେହିପରି କହୁଥିଲେ--ଯତ୍ନ କଲେ ରତ୍ନ ମିଳେ—ଉଦ୍ୟମ କଲେ ନିଶ୍ଚୟ ଜୟ ହେବ ।

ଜଗଦମ୍ବା—ତୁ ତେବେ ଆଉ ହେଲା କର ନା, ଗୋବର୍ଦ୍ଧ—ଅଜୁ ବୋହୂ ଆଣିବା ପୂର୍ବରୁ ତୋ'ର ଯେପରି ବୋହୂ ଆସେ ।

ଗୋବର୍ଦ୍ଧନ—ବୋହୂ ! କି ବୋହୂ, ନାନୀ ?

ଜଗଦମ୍ବା—ଗୋବର୍ଦ୍ଧରେ ! ତୋ'ର ବୋହୂ କେବେ ଆସିବରେ ?

ଗୋବର୍ଦ୍ଧନ—ନାନୀ ! ତୋର କଣ ମୁଣ୍ଡ ଅଜ ଖରାପ ହୋଇଛି ?

[ ଅର୍ଜୁନର ପୁନଃ ପ୍ରବେଶ ]

ଅର୍ଜୁନ—ହଁ ମାମୁଁ ! ମା'ର ମୁଣ୍ଡ ଅଜ ଖରାପ ହୋଇଛି—ତୁମେ ମା' ସଙ୍ଗେ ଏତେ ବକାବକି କର ନାହିଁ—ମୁଁ ଔଷଧ ଲଗାଇ ଦିଏ ।

ଗୋବର୍ଦ୍ଧନ—ଦେ ଅଜୁ ! ଭଲକରି ଔଷଧ ଲଗାଇଦେ । (ସ୍ୱଗତ) କଣ କରୁଛି, କୋଉଁଠା ଲୁଚାଇ ରଖୁଛି କେଜାଣି ?

ଅର୍ଜୁନ—ଚାଲ ମାମୁଁ ! ଚାଲ ଗୋଟାଏ ବାଉଁଶ ନେଇ ଆସିବା—ଉଃ, ମାର କି କଷ୍ଟ ହେଉଛି ! (ଗୋବର୍ଦ୍ଧନର ପ୍ରସ୍ଥାନ ଓ ଅର୍ଜୁନର ଜଗଦମ୍ବା କପାଳରେ ଔଷଧ ଲଗାଇ ଦେଉଥିବା )

ଜଗଦମ୍ବା—ଗୋବର୍ଦ୍ଧ ! ଯା ତୁ ଜଲଦି ଯା—ବୋହୂ ନେଇ ଆ'—ତୋ'ର ଶୁଖିଲା ମୁହଁ ମୁଁ ଦେଖି ପାରିବି ନାହିଁରେ—

ଅର୍ଜୁନ—(ସ୍ୱଗତ) ଉଃ ମାର ମୁଣ୍ଡ ଭାରି ବିଗିଡ଼ିଛି ! ଅଉ କି ଔଷଧ ଦେଲେ ଭଲ ହେବ ( ଔଷଧ ଲଗାଉଥିବା ବେଳେ ଗୋବର୍ଦ୍ଧନର ପ୍ରବେଶ ଓ ବାଉଁଶ କରିବା, ଏବଂ ସଙ୍ଗେ ସଙ୍ଗେ ଗୋବିନ୍ଦ ବିଦ୍ୟାଧରର ପ୍ରବେଶ )

ଜଗଦମ୍ବା—ସେ ଶୁଖିଲା ମୁହଁ ମୋତେ ଆଉ ଦେଖାନାରେ—

( ଗୋବିନ୍ଦକୁ ଦେଖି ଅର୍ଜୁନକୁ କୁଣ୍ଢାଇବା )

ଗୋବିନ୍ଦ—ଶୁଖିଲା ମୁହଁ ଅଉ ଦେଖିବାକୁ ହେବ ନାହିଁ, ବଡ଼ଅ ବୌ ।—ମୁଁ ଦିନ ଠିକ୍ କରି ଆସିଲିଣି—ଶୀଘ୍ର ବୋହୂ ଆସିବ ।

ଜଗଦମ୍ବା—(ବିମର୍ଷ ଭାବେ ରହିବା)

ଗୋବିନ୍ଦ—ମୋ କଥା ସତ ମାନ, ବଡ଼ଅ ବୌ ! ମନ ପ୍ରଫୁଲ୍ଲ କର—ବୋହୂ ଚାଲି ଆସିବ । —ଆହା ! ଅଜୁ ପ୍ରତି ବଡ଼ଅ ବୌର କି ସ୍ନେହ ! ଗର୍ଭଧାରିଣୀ ଜନନୀର ବୋଧହୁଏ ସନ୍ତାନ ପ୍ରତି ଏତେ ମମତା ହେବ ନାହିଁ ।

[ ଜଗଦମ୍ବା ସକୋପ ଦୃଷ୍ଟିରେ ଗୋବିନ୍ଦ ବିଦ୍ୟାଧରକୁ ଚାହିଁ ରହିବା ]

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ବିଳାସ କକ୍ଷ—

[ କଳ୍ପସୁ ଦେବ ସୁରାପାତ୍ର ଧରି ଆସୀନ ଓ ଗୋବର୍ଦ୍ଧନର ସୁରା ପରିବେଷଣ ]

କଳ୍ପସୁ—ଦିଅ, ଗୋବର୍ଦ୍ଧନ—ଆହୁରି ଦିଅ !

ଗୋବର୍ଦ୍ଧନ—ଏହି ଦେଉଛି, ମହାରାଜ !

( ପୁଣି ସୁରା ଦେଲା )

କଳ୍ପସୁ—ଆଃ—ଏତେ ଅଳ୍ପ କାହିଁକି ?

ଗୋବର୍ଦ୍ଧନ—ଆପଣ ଯେ ଅନେକ ପିଇଲେଣି !

କଳ୍ପସୁ—ପିଇଲେ କଣ ଅଉ ପିଅନ୍ତି ନାହିଁ ?

ଗୋବର୍ଦ୍ଧନ—ସହି ପାରିଲେତ ହେବ ?

କଳ୍ପସୁ—ହାଃ ହାଃ ହାଃ—ଏହି ସାମାନ୍ୟ ଦ୍ରବ୍ୟର ପ୍ରକ୍ରିୟା ସହି ପାରିବି ନାହିଁ ? ମାତୃ-ଆଜ୍ଞା ପାଳନ ନିମନ୍ତେ—ନିଜର ବଂଶ ମର୍ଯ୍ୟାଦା ରକ୍ଷା ନିମନ୍ତେ —ରଙ୍ଗିଲାର—ମୋ'ର ଆବାଲ୍ୟସଖି ରଙ୍ଗିଲାର —ମୋର ପ୍ରାଣ ପ୍ରିୟତମା ରଙ୍ଗିଲାର ଚିର-ବିଚ୍ଛେଦ ଯନ୍ତ୍ରଣା ସହି ପାରୁଛି—ରାଜକୀୟ କାର୍ଯ୍ୟ ସମ୍ପାଦନ ନିମନ୍ତେ—ପ୍ରଜାମାନଙ୍କର ମନୋରଞ୍ଜନ ନିମନ୍ତେ —ନିତ୍ୟ ନିତ୍ୟ କେତେ ସୁଖ ବଳି ଦେଉଛି, କେତେ ତାପ କ୍ଲେଶ ସହି ପାରୁଛି—ଏହି

ସାମାନ୍ୟ ରସର ମୁହୂର୍ତ୍ତିକ ପ୍ରତିଷ୍ଠା ସହି ପାରିବ ନାହିଁ ।

ଗୋବର୍ଦ୍ଧନ—ମହାରାଜ !

କଲ୍ୟ—ନା—ତୁମେ ଏଣିକି ଭାରି କୃପଣ ହେଲଣି ।

ଗୋବର୍ଦ୍ଧନ—ବେଶ୍, ତେବେ ଦେଖନ୍ତୁ ମୁଁ ଗିଲାସ ଗିଲାସ ଭର୍ତ୍ତିକରି ଦେଉଛି ।

କଲ୍ୟ—ଗିଲାସ, ଗିଲାସ ଭର୍ତ୍ତିକରୁଛ କ'ଣ, ଗୋବର୍ଦ୍ଧନ ? ପିମ୍ପା ପିମ୍ପା ଭର୍ତ୍ତିକର—ପୋଖରୀ ପୋଖରୀ ଭର୍ତ୍ତି କର—ନଦୀ ନଦୀ ଭର୍ତ୍ତିକର—ସାଗର ସାଗର ଭର୍ତ୍ତିକର—ମୁଁ ପିଇବି—ମୁଁ ଗାଧୋଇବି—ବୁଡ଼ିବି—ସମସ୍ତ ଜ୍ୱାଳା ଲିଭାଇବି ।

ଗୋବର୍ଦ୍ଧନ—ମହାରାଜ ! କେତେ ଅଦ୍ଭୁତ କେତେ କେତେ ଅପ୍‌ସରୀ ଭଳି ରାଜକନ୍ୟାଙ୍କ ବିବାହ ପ୍ରସ୍ତାବ ଆସୁଛି—ସେହି ସାମାନ୍ୟ ପ୍ରଜା କନ୍ୟା ପାଇଁ ଏତେ ଅଧୀର କାହିଁକି ?

କଲ୍ୟ—ଚୁପ୍ କର ! ମୋତେ ମୋର ମାନସୀ ପ୍ରତିମାକୁ ଧ୍ୟାନ କରିବାକୁ ଦିଅ ।

ଗୋବର୍ଦ୍ଧନ—ଏତେ ଭଲ ପା'ନ୍ତି ? ହାୟ ! ଉପାୟ କଣ ?

କଲ୍ୟ—ଉପାୟ ! କି ଉପାୟ ? କହ ଗୋବର୍ଦ୍ଧନ, କି ଉପାୟ କଲେ ରଙ୍ଗିଲିକୁ ମୋର ପାଇବି—କି ତ୍ୟାଗ ସ୍ୱୀକାର କଲେ ମୋ'ର ପ୍ରାଣ ପ୍ରିୟତମାକୁ ମୁଁ ପାଇବି ?—ଉଃ ସେ ଯେ ପରିଣୀତା—ସେ ଯେ ପରକୀୟା ।

ଗୋବର୍ଦ୍ଧନ—ଆପଣ ଏତେ ଅସ୍ଥିର ହେଉନ୍ତୁ ନାହିଁ ।

କଲ୍ୟ—ମୁଁ ଯେ ଆଉ ସ୍ଥିର ହୋଇପାରୁ ନାହିଁ । ମା ଯେଉଁଦିନ ମନାକରିବାରୁ—ସମସ୍ତ ସ୍ୱଜନମାନେ ଯେଉଁଦିନ ମୋର ମତର ବିରୁଦ୍ଧରେ ଦଣ୍ଡାୟମାନ ହେବାରୁ—ରଙ୍ଗିଲିର ସହିତ ମୋର ବିବାହ ପ୍ରସ୍ତାବ ଚିରଦିନ ପାଇଁ ଭାଙ୍ଗିଗଲା, ମୋର ମସ୍ତକରେ ବଜ୍ରପାତଠାରୁ ଭୀଷଣତର ଯନ୍ତ୍ରଣା ହେଲା ସତ୍ୟ—ହୃଦୟରେ ଶେଲାଘାତ୍ ଠାରୁ ଦାରୁଣତର ବେଦନା ଅନୁଭବ କଲି ସତ୍ୟ—ମାତ୍ର ଏତେଦୂର ଅସ୍ଥିର ହୋଇ ନ ଥିଲି—ଏତେଦୂର ନିରାଶ ହୋଇ ନ ଥିଲି । ଦିନ ଦିନ କରି କାଳସ୍ରୋତ ଯେତେ ଅତୀତ ଗର୍ଭକୁ ବୋହି ଯାଉଛି—ଆମ୍ଭମାନଙ୍କ ମଧ୍ୟରେ ବ୍ୟବଧାନର ଅସ୍ତିତ୍ୱ କ୍ରମେ କ୍ରମେ ଯେତେ ବଢ଼ି ଯାଉଛି—ମୋ'ର ଅସ୍ଥିରତା ସେହି ପରିମାଣରେ ବଢ଼ୁଛି—ମୁଁ ଅନୁଭବ କରୁଛି, ଦାୟିତ୍ୱ, କର୍ତ୍ତବ୍ୟ-ପୂର୍ଣ୍ଣ ସଂସାର ଯେପରି ଏକ ଆଡ଼େ—ମୋ'ର ପ୍ରାଣ-ପ୍ରିୟତମା ରଙ୍ଗିଲି ଯେପରି ଅନ୍ୟଆଡ଼େ ।

ଗୋବର୍ଦ୍ଧନ—ମହାରାଜ ! ସେ ନିଶ୍ଚୟ ତେବେ ଆପଣଙ୍କୁ ଏହି ପରିମାଣରେ ଭଲ ପା'ନ୍ତି ?

କଲ୍ୟ—ଏହି ପରିମାଣରେ ? ଏହା ଯେ ଅତି ସାମାନ୍ୟ—ବିନ୍ଦୁର ବିନ୍ଦୁ ମାତ୍ର ।

ଗୋବର୍ଦ୍ଧନ—ତେବେ ଆପଣ ବାହା ନ କରି ବଡ ଖରାପ କାମ କରିଛନ୍ତି ।

କଲ୍ୟ—ଖରାପ କାମ କରି ନାହିଁ, ଗୋବର୍ଦ୍ଧନ—ଖରାପ କାମ କରୁଛି—ଏହାଠାରୁ ଅଧିକତର ଖରାପ କାମ ମଧ୍ୟ କରିବାକୁ ଯାଉଛି । କେଉଁ ଧୀମାନ୍ ବୁଦ୍ଧି ବିବେକ ଥାଉଁ ଥାଉଁ ମଧୁପାନ ଛାଡ଼ି ସୁରାପାନରେ ନିଜର ତୃଷା ନିବାରଣ କରିବାକୁ ଧାଏଁ ?—କେଉଁ ମନୁଷ୍ୟ, ମନୁଷ୍ୟତ୍ୱ ଥାଉଁ ଥାଉଁ ଅର୍ଜ୍ଜୁନପରି ବନ୍ଧୁ ଛାଡ଼ି ଗୋବର୍ଦ୍ଧନର ବନ୍ଧୁତ୍ୱ ଲାଭ କରିବାକୁ ଇଚ୍ଛା କରେ ? ଅଳ୍ପ ମାତ୍ରାର ଅବାଧ ହୋଇଥିଲେ—ବିବେକ ପ୍ରତି କଟାକ୍ଷ କରିଥିଲେ ବୋଧ ହୁଏ ଏତେଦୂର ଖରାପ କାମ କରି ନ ଥାନ୍ତି—ବୋଧ ହୁଏ ଆଜ ପ୍ରାଣ ଶାନ୍ତିମୟ ହୋଇଥାନ୍ତା ।

ଗୋବର୍ଦ୍ଧନ—(ଦୁଃଖିତ ସ୍ୱରେ) ମହାରାଜ !

କଲ୍ୟ—କିଛି ଚିନ୍ତା କରନାହିଁ, ଗୋବର୍ଦ୍ଧନ—ତୁମ୍ଭେ ବର୍ତ୍ତମାନ ମୋର ସର୍ବସ୍ୱ । ଏ ନୈରାଶ୍ୟରେ ତୁମ୍ଭେହିଁ ଏକମାତ୍ର ଧ୍ରୁବତାରା—ଏ ପିପାସାରେ ସୁରାହିଁ ଏକମାତ୍ର ଶାନ୍ତି—( ଏକ ହାତରେ ଗୋବର୍ଦ୍ଧନକୁ ଧାରଣ ଓ ଅନ୍ୟ ହାତରେ ସୁରାପାତ୍ର ଧାରଣ )

[ ଗୋବିନ୍ଦ ବିଦ୍ୟାଧରଙ୍କ ପ୍ରବେଶ ]

ଗୋବିନ୍ଦ—ମହାରାଜ !

କଲ୍ୟୁ—ହାଃ—ହାଃ—ହାଃ— କପଟ ମହାରାଜ ମୁହିଁ—ମୋର ରାଜସଭା ଏହି ପ୍ରମୋଦ ଭବନରେ —ମୋର ମନ୍ତ୍ରୀ ଏହି ଗୋବର୍ଦ୍ଧନ—ମୋର ରାଜ ଚିହ୍ନ ଏହି ସୁରାପାତ୍ର !

ଗୋବିନ୍ଦ—ଗୋବର୍ଦ୍ଧନ ! ଏହି ତୋର ରାଜ ରକ୍ଷଣ ? ହଟିଯା' ଏ' ସ୍ଥାନରୁ ନରାଧମ—

[ ଗୋବର୍ଦ୍ଧନ ସଭୟରେ ପ୍ରସ୍ଥାନୋଦ୍ୟତ ]

କଲ୍ୟୁ—ଏଠାରେ ମଧ୍ୟ ତୁମ୍ଭର ଆଧିପତ୍ୟ ବିସ୍ତାର କରିବାକୁ ଚାହଁ ବୃଦ୍ଧ ? ରାଜାର ରାଜ୍ୟ ଅଧିକାର କଲ—ପ୍ରଭୁର ପ୍ରଭୁତ୍ୱ ଅପହରଣ କଲ— ପ୍ରେମିକାର ପ୍ରେମିକକୁ ବଞ୍ଚିତ କଲ—ତଥାପି ତୁମ୍ଭର ଲାଳସା ପୂରିଲା ନାହିଁ ଯେ, ଗୋଟାଏ ମାତାଲର ସାମାନ୍ୟ ସୁରାପାନରେ ଲୋଭ ବଳାଇଲ —ତାହାର ମୁହୂର୍ତ୍ତିକ ନିଶା-ସୁଖରେ ବ୍ୟାଘାତ ଦେବାକୁ ଧାଇଁ ଆସିଲ ?

ଗୋବିନ୍ଦ—ମହାରାଜ ! ଆପଣଙ୍କ ମନ ବୋଧହୁଏ ବର୍ତ୍ତମାନ ସ୍ଥିର ନାହିଁ ।

କଲ୍ୟୁ—ଖୁବ୍ ସ୍ଥିର ଅଛି, ବୃଦ୍ଧ—ମୁଁ ଠିକ୍ ଚିହ୍ନି ପାରୁଛି, ତୁମ୍ଭେ ସେହି ମନ୍ତ୍ରୀ ଯେ କି ରାଜାକୁ କେବଳ ସାକ୍ଷୀଗୋପାଳ କରି ସମଗ୍ର ରାଜ୍ୟ ଉପରେ ନିଜର କ୍ଷମତା ବିସ୍ତାର କରିଛ—ତୁମ୍ଭେ ସେହି ପରାମର୍ଶ ଦାତା ଯେ କି ଅନାଥା ରାଜମାତାକୁ ଛଳନାରେ ଭୁଲାଇ ଅନାୟାସରେ ନିଜର ସ୍ୱାର୍ଥ ସିଦ୍ଧ କରିଛ—ତୁମ୍ଭେ ସେହି ଶଠ, ଦସ୍ୟୁ, ଯେ କି ଅଭିଭାବକ ଛଳନାରେ ଏହି ସ୍ଥାନକୁ ଆସି କୁଳଲେଶ୍ୱରର ଦୁର୍ଦ୍ଦଶା ଦର୍ଶନରେ ପରମ ଆନନ୍ଦ ଉପଭୋଗ କରୁଛ !

ଗୋବିନ୍ଦ—ଜଗନ୍ନାଥ ! ଜଗନ୍ନାଥ ! ଆଜି ଏ' କ'ଣ ଶୁଣୁଛି—ଆକାଶ ! ତୁମ୍ଭେ ମୋ' ମୁଣ୍ଡ ଉପରେ ଭାଙ୍ଗି ପଡୁ ନାହଁ କାହିଁକି ? ପୃଥିବୀ ! ତୁମ୍ଭେ ମୋର ପାଦତଳୁ ଘୁଞ୍ଚି ଯାଉ ନାହଁ କାହିଁକି ? ବିଦ୍ୟୁତ୍ ! ମୋର ରକ୍ତ ଝଲସି ଦେଉ ନାହଁ କାହିଁକି ? ବଜ୍ର ! ମୋର କର୍ଣ୍ଣ କୁହର ବଧିର କରି ଦେଉ ନାହଁ କାହିଁକି ? ଗୋବିନ୍ଦ ଆଜି ଶଠ, ଦସ୍ୟୁ !—ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ଆଜି ସ୍ୱାର୍ଥପର, ବିଶ୍ୱାସଘାତକ !

କଲ୍ୟୁ—ବାଃ ବାଃ ! ବେଶ୍ ଅଭିନୟ ଦେଖାଉଛ ତ, ବୃଦ୍ଧ ? ଦିଅ, ଗୋବର୍ଦ୍ଧନ ! ବୃଦ୍ଧକୁ ବକ୍‌ସିସ୍ ଦିଅ !

ଗୋବିନ୍ଦ—ମହାରାଜ ! ( ନିଜ ମନେ ) ନା— ବର୍ତ୍ତମାନ କୌଣସି କଥା କହିବା ଉଚିତ ନୁହେଁ—ଏ ସ୍ଥାନ ତ୍ୟାଗ କରିବାହିଁ ବିଧେୟ ।

( ପ୍ରସ୍ଥାନୋଦ୍ୟତ )

କଲ୍ୟୁ—କି ଚାଲି ଯାଉଛ ଯେ ?—ଦିଅ, ଗୋବର୍ଦ୍ଧନ ! ଶୀଘ୍ର ବକ୍‌ସିସ୍ ଦିଅ !

ଗୋବିନ୍ଦ—ମହାରାଜ ! ଢେର ବକ୍‌ସିସ୍ ପାଇଛି— ବର୍ତ୍ତମାନ ଦାସକୁ ବିଦାୟ ଦିଅନ୍ତୁ !

କଲ୍ୟୁ—ତା' ହୋଇପାରେ ନା—ଉପଯୁକ୍ତ ବକ୍‌ସିସ୍ ନ ଦେଇ ମୁଁ କଦାପି ବିଦାୟ କରିପାରେ ନାହିଁ—

( ଗଲାଧକ୍କା ଦେବାକୁ ଉଦ୍ୟତ ହେବା ବେଳେ ରାଣୀଙ୍କ ପ୍ରବେଶ )

ରାଣୀ—ଆନତ କର ତୋ'ର ହସ୍ତ, ମୂର୍ଖ !—ଗୋବିନ୍ଦ ! ଏ'କି ବ୍ୟାପାର ଆଜି !

ଗୋବିନ୍ଦ—କିଛି ନାହିଁ, ମହାରାଣି ! ଆପଣ ବର୍ତ୍ତମାନ ଭିତରକୁ ଚାଲନ୍ତୁ—

ରାଣୀ—ନା, ଗୋବିନ୍ଦ ! ମୁଁ ସମସ୍ତ ବିଷୟ ନ ଶୁଣି— ତାର ସମ୍ୟକ୍ ବିଧାନ ନ କରି ଏ' ସ୍ଥାନ ତ୍ୟାଗ କରିପାରେ ନାହିଁ । କହ ମୂର୍ଖ, ତୋ'ର ଆଜି ଏ'କି ଆଚରଣ ? କାହା ବିରୁଦ୍ଧରେ ହସ୍ତୋତ୍ତୋଳନ କରିଥିଲୁ—କାହାକୁ ଗଲାଧକ୍କା ଦେବାକୁ ଅଗ୍ରସର ହୋଇଥିଲୁ—ଜାଣୁ ନା କିଏ ସେହି ମହାଜନ ?

କଲ୍ୟୁ—ଜାଣେ ମା, ସେହି ମହାଜନ ସେ, ଯେ କି ଏକାଧାରେ ଶଠ, ଦସ୍ୟୁ, ବିଶ୍ୱାସଘାତକ !

ରାଣୀ—( ସକ୍ରୋଧେ ) କଲ୍ୟ ।

କଲ୍ୟାଣ—ମା !

ରାଣୀ—ଏଡ଼େ ମୂର୍ଖ—ଏଡ଼େ ନରାଧମ ତୁହି ! ଯାʼଙ୍କ ହେତୁ ତୁ ଆଜ ମନୁଷ୍ୟ-ପଦବାଚ୍ୟ ହୋଇଛୁ—ଯାʼଙ୍କ ହେତୁ ତୁ ଆଜ ରାଜ-ପଦରେ ପ୍ରତିଷ୍ଠିତ ହୋଇଛୁ—ଯାʼଙ୍କ ହେତୁ ପ୍ରଜାଗଣ ଆଜ ତୋର ଜୟଗାନ କରୁଛନ୍ତି—ତାଙ୍କର ଲାଞ୍ଛନା—ତାଙ୍କର ଅବମାନନା — ନିଜ ହସ୍ତରେ — ମୋର ସମ୍ମୁଖରେ ! ଅସହ୍ୟ—ନିତାନ୍ତ ଅସହ୍ୟ !

ଗୋବିନ୍ଦ—ମହାରାଣୀ ! ସ୍ଥିର ହେଉନ୍ତୁ—ମହାରାଜ ଯେ ବର୍ତ୍ତମାନ ହିତାହିତ ଜ୍ଞାନ ଶୂନ୍ୟ !

କଲ୍ୟାଣ—ବକ୍ତା କିଏ ହୋଇପାରେ, ବୃଦ୍ଧ—

ରାଣୀ—ଦୂରହ' ସମ୍ମୁଖରୁ, ପାଷଣ୍ଡ ! ତୋʼର ମୁଖ ଦର୍ଶନରେ ମଧ୍ୟ ପାପ ।

କଲ୍ୟାଣ—( ଯାଉଁ ଯାଉଁ ) ତୋʼର ଭାଗ୍ୟ ଭେକ-କପାଳ, ବୃଦ୍ଧ !

( ଗୋବର୍ଦ୍ଧନ ସହିତ ପ୍ରସ୍ଥାନ )

ରାଣୀ—ଗୋବିନ୍ଦ ! ଗୋବିନ୍ଦ ! ଏହି କି ଶିକ୍ଷା—ଏହି କି ଉପଯୁକ୍ତତା, ମୂର୍ଖର—ଯାହା ଦେଖି, ଏହି ବିଶାଳ ରାଜ୍ୟ ଭାର—ଲକ୍ଷ ଲକ୍ଷ ନିରୀହ ପ୍ରଜାଗଣଙ୍କର ରକ୍ଷଣା ବେକ୍ଷଣ ଭାର—ତାʼ ହସ୍ତରେ ସମର୍ପଣ କରିଅଛ ! ଏହିକ୍ଷଣି ତାକୁ ସିଂହାସନ-ଚ୍ୟୁତ କର—ଏହିକ୍ଷଣି ତାକୁ ରାଜ୍ୟ ସୀମାରୁ ଦୂର କରି ଦିଅ—ସର୍ବାଗ୍ରେ, ମୁହିଁ ଜଣେ ସ୍ୱଦେଶ ହିତୈଷୀ ପ୍ରଜା ଯେ କି ଏ ରାଜ-ବିଦ୍ରୋହ ଉତ୍ତେଜନା କରିବାକୁ ବୃଦ୍ଧାଙ୍ଗୁଷ୍ଠିରେ ସର୍ବ ସମକ୍ଷରେ ଦଣ୍ଡାୟମାନ—

ଗୋବିନ୍ଦ—ମା ! ସ୍ଥିର ହେଉନ୍ତୁ—ସନ୍ତାନ କʼଣ ମା ନିକଟରେ ସମୟେ ସମୟେ ଦୋଷ କରେ ନାହିଁ—ସାନ ଭାଇ କʼଣ ବଡ଼ ଭାଇ ନିକଟରେ ବେଳେ ବେଳେ ଅପରାଧ କରେ ନାହିଁ ? ଏଥି ନିମନ୍ତେ କି ମା ଭାଇର ଯଥାକ୍ରମେ ସନ୍ତାନ ଓ କନିଷ୍ଠ ଭ୍ରାତା ପ୍ରତି କ୍ରୋଧାନ୍ଧ ହେବା ଉଚିତ ?—ବରଂ ଦୁଃଖ କରିବା ଉଚିତ—ଚିନ୍ତା କରିବା ଉଚିତ, କେଉଁ ଉପାୟରେ ତାʼର ସଂଶୋଧନ ହେବ—କେଉଁ ଉପାୟରେ ତାʼର ଭବିଷ୍ୟତ ମଙ୍ଗଳମୟ ହେବ ।

ରାଣୀ—ଗୋବିନ୍ଦ ! ଗୋବିନ୍ଦ ! ଏତେ ମହତ୍ ତୁମ୍ଭେ ? ଅଧମ ସନ୍ତାନ ପାଇଁ ମାʼକୁ ତାʼର କ୍ଷମା କର !

ଗୋବିନ୍ଦ—ମା ! ଏʼ ଦୀନ ସନ୍ତାନ ସହିତ ଆଜି ଏʼ କି ଆଚରଣ ? ଏ ଯେ ତୁମ୍ଭର ଚରଣରେ ଚିରଦାସ, ମା !

ରାଣୀ—କୁହ, ଗୋବିନ୍ଦ ! ରଙ୍ଗିଲାର ସହିତ ବିବାହ ପ୍ରସ୍ତାବ ଭାଙ୍ଗିଯିବାରୁ କʼଣ କଲ୍ୟାଣର ମୋʼର ଏହି ଦଶା ହେଲା ?

ଗୋବିନ୍ଦ—ତାʼଙ୍କ ପରି ଜ୍ଞାନୀ ଓ ବିବେକୀ ଲୋକର ଏହି ସାମାନ୍ୟ ବିବାହ କାରଣରୁ ଏପରି ଅଧଃପତନ ଘଟିବା ସମ୍ଭବ ବୋଧ ହେଉନାହିଁ—

ରାଣୀ—ତେବେ କି କାରଣ ଅନୁମାନ କରୁଅଛ ?

ଗୋବିନ୍ଦ—ଏହି ଗୋବର୍ଦ୍ଧନହିଁ ସବୁ ଅନର୍ଥର ମୂଳ !

ରାଣୀ—ଗୋବର୍ଦ୍ଧନ ?

ଗୋବିନ୍ଦ—ନିଶ୍ଚୟ, ମହାରାଣି ! ଏଥିଲାଗି ମୁହିଁ ଦୋଷୀ—ଆଜ ସେ ମୂଳୋତ୍ପାଟନ କରୁଛି— (ପ୍ରସ୍ଥାନ)

ରାଣୀ—ଗୋବିନ୍ଦ ! ତୁମ୍ଭେହିଁ ନିଃସହାୟାର ଏକମାତ୍ର ସହାୟ ।

---

## ଦ୍ୱିତୀୟ ଦୃଶ୍ୟ

—କକ୍ଷ—

[ ରଙ୍ଗିଲାର ପ୍ରବେଶ ]

ରଙ୍ଗିଲା—ଆଜ ଅନେକ ଫୁଲ ତୋଳିଛି—ଯାଏଁ ବସି ବସି ଯୋଡ଼ିଏ ଭଲ ହାର ଗୁନ୍ଥେ—ଗୋଟିଏ ହାର ପ୍ରଭୁ ତାଙ୍କର ଇଷ୍ଟ ଦେବତାଙ୍କୁ ପିନ୍ଧାଇବେ—ଆଉ ଗୋଟିଏ ହାର ମୋର ଇଷ୍ଟ-ଦେବତାଙ୍କୁ ମୁଁ ପିନ୍ଧାଇବି ।

ଗୀତ

ଆଜ ଦେବି ଉପହାର ।
ଅତି ଯତନେ ଗୁନ୍ଥା ପ୍ରାଣ ଦେଇ ଗୁନ୍ଥା
ଏ କୁସୁମ ହାର ।
(ଯେବେ) ତରୁଣ ଅରୁଣ କିରଣେ ଭୁବନ
ହସୁଥିଲା ମନ୍ଦ ମନ୍ଦ,
ଶିଶିର ସିକ୍ତ ଶୀତଳ ସମୀରେ
ଲଭୁଥିଲା ମହାନନ୍ଦ,
(ତେବେ) ଭକ୍ତ ପ୍ରାଣହ୍ରଦେ ତୋଳି ଧୀରପଦେ
ଗୁନ୍ଥିଛି ଏ ହାର ।

[ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—ବେଶ୍ ବେଶ୍ ବୌ—ବସି ବସି ଗୀତ ଗାଉଥାଅ—ହାର ଗୁନ୍ଥୁଥାଅ—ପାଇଟି କରିବାକୁ ତ ପୋଇଲିଟିଏ ରଖିଦେଇଛ, ଭାବନା କଣ ?

ରଙ୍ଗିଲି— ମା ! କନ୍ୟା ସଙ୍ଗେ ମାତାର ଏପରି ବ୍ୟଙ୍ଗ କି ସାଜେ ? ଆଦେଶ କର ମା, କି କାମ ବାକି ଅଛି କରିବାକୁ ହେବ ?

ଜଗଦମ୍ବା—କି କାମ ବାକି ଅଛି କରିବାକୁ ହେବ ! ନିତି ନିତି କି କାମ କର ତା ପରା ଭୁଲି ଗଲ ? ହଁ ଭୁଲି ଯିବ ନାହିଁ କାହିଁକି—ଗୋଟିଏ ପୁଅର ଗୋଟିଏ ବୋହୂ—ଗେହ୍ଲାବୋହୂ—ମୁଁ ତ ଛତରଖାଇ ଗୋଟାଏ ପଡ଼ିଛି—ଗଣ୍ଡାଏ ଯେମିତି ଖାଇବି—କାମ ବି ସେମିତି କରିଦେବି ।

ରଙ୍ଗିଲି—ମା ! କାହାକୁ କ'ଣ କହୁଛନ୍ତି ? କାହାର ଏ ଘର—କାହା ସକାଶେ ଏ ଦାସୀ ! କ୍ଷମା କର ମା, ଆଜ ପ୍ରତ୍ୟୁଷରୁ ସବୁ କାମ ସାରି ଦେଇଛି—

ଜଗଦମ୍ବା—ପ୍ରତ୍ୟୁଷ-ପଷ୍ଟୁଷ ! ଦେଖାଇ ହେଉଛି ଭାରି କାମ କରିଥାଲି ଆଜ ମୁଁ ଅଳସେଇ ! କାଲି ବେଶି ରାତି ଯାଏ ଜଗିଥିଲି ବୋଲି ସକାଳକୁ ଟିକିଏ ନିଦ ଲାଗି ଯାଇଥିଲା—ଏଥିପାଇଁ ବୁଢ଼ୀ ହେଉଛି କଣ ନା, ପ୍ରତ୍ୟୁଷରୁ—ଏ ଭାରି ସକାଳୁ

ଜଟିଳବାଲା—ନେ'ମ, ମୋର କାଏ ସ୍ୱାସ୍ଥ୍ୟଭଙ୍ଗ ଏତେ ବଢ଼ିବ ବଢ଼ିବ ହେବ—

( ବେଗେ ପ୍ରସ୍ଥାନ )

ରଙ୍ଗିଲି—କୌଣସି ଉପାୟରେ ତ ମାଙ୍କ ମନ ପାଇଲି ନାହିଁ—ହାୟ ! ମୋ ମନରେ ଭାରି କଷ୍ଟ ଯେ ମାଙ୍କୁ ସନ୍ତୁଷ୍ଟ କରି ପାରୁ ନାହିଁ—

[ ଅର୍ଜୁନର ପ୍ରବେଶ ]

ଅର୍ଜୁନ—କି ପ୍ରିୟେ ! ଛିଡ଼ାହୋଇ କଣ ଭାବୁଛ ?

ରଙ୍ଗିଲି—କିଛି ନାହିଁ ।

ଅର୍ଜୁନ—ଆମ ପାଖରେ ମିଛ ?

ରଙ୍ଗିଲି—ଅଚ୍ଛା, ବୈଦ୍ୟ ମହାଶୟ ! ମୁହଁ ଦେଖି ରୋଗ ଧରୁଛ ବେଶ—ମାତ୍ର ତାର ଔଷଧ ତିଆରି କରି ପାରିବ ନା ?

ଅର୍ଜୁନ—ଏହା ଘର ଔଷଧ—ସ୍ୱାମୀକୁ ବଶ କରିବା ଔଷଧ ତ ?

ରଙ୍ଗିଲି—ହେଲା ନାହିଁ—ହେଲା ନାହିଁ—ସ୍ୱାମୀ ତ ନିକେ ବଶ—ବଶ୍ କରିବା ଔଷଧର ପୁଣି ଦରକାର କଣ ?

ଅର୍ଜୁନ—ହଁ—ଏତେ ଗର୍ବ—ଜାଣ, ମନେ କଲେ ଅଇଛାରେ ମୁଁ ତୁମକୁ ତ୍ୟାଗ କରିପାରେ ।

ରଙ୍ଗିଲି—ଅଚ୍ଛା, କ୍ରୋଧ ସମ୍ବରଣ କର—ବର୍ତ୍ତମାନ କହିଲ, କି ଉପାୟ କଲେ ମାଙ୍କୁ ମୁଁ ସନ୍ତୁଷ୍ଟ କରି ପାରିବି ।

ଅର୍ଜୁନ—( ହାସ୍ୟକରି ) ମାଙ୍କୁ ସନ୍ତୁଷ୍ଟ କରିବ କଣ ? ସେ ତ ସନ୍ତାନ ପ୍ରତି ସର୍ବଦା ସନ୍ତୁଷ୍ଟ ।

ରଙ୍ଗିଲି—ତେବେ ଏ' ଦୀନା କନ୍ୟା ପ୍ରତି ମା ଏପରି ବିମୁଖ କାହିଁକି ?

ଅର୍ଜୁନ—ମା ସନ୍ତାନ ପ୍ରତି ବିମୁଖ ! ଅସମ୍ଭବ ! ତୁମ୍ଭେ ବୁଝି ପାରୁ ନାହଁ ।

ରଙ୍ଗିଲି—କିପରି ?

ଅର୍ଜୁନ—ଜାଣ, ସଙ୍ଗାତ ଆଜ ମୋତେ ଡକାଇ ପଠାଇ ଥିଲେ ।

ରଙ୍ଗିଲି—ସେଥିପାଇଁ କଣ ମାମୁ ତୁମକୁ ଘରେ ଖୋଜୁଥିଲେ ?

ଅର୍ଜୁନ—ହଁ ।

ରଙ୍ଗିଲା—ତାହାଙ୍କୁ ଡକାଇ ଥିଲେ ?

ଅର୍ଜୁନ—ଗୋଟିଏ ରୋଗୀର ଚିକିତ୍ସା କରିବା ନିମନ୍ତେ—

ରଙ୍ଗିଲା—କିପରି ଦେଖିଲ ?

ଅର୍ଜୁନ—ଦେଖିଲି କେଉଁଠି ? ମୋତେ ଯେ ବର୍ତ୍ତମାନ ଯିବାକୁ ହେବ—

ରଙ୍ଗିଲା—କେଉଁଠି ସେ ରୋଗୀ ?

ଅର୍ଜୁନ—ବାଲେଶ୍ୱରରେ—

ରଙ୍ଗିଲା—ବାଲେଶ୍ୱର ! ଏତେ ଦୂର—ସେଇଥିପାଇଁ ପରା କହୁଥିଲି, ମନେ କଲେ ଅଇଚ୍ଛିକା ମୁଁ ତୁମ୍ଭଙ୍କୁ ତ୍ୟାଗ କରିପାରେ ?

ଅର୍ଜୁନ—କେମିତି, ମୁଁ କଥା ଅନୁସାରେ କାମ କରେ କି ନାହିଁ ?

ରଙ୍ଗିଲା—ଏତେ ଦୂରକୁ ଯିବ ନା ?

ଅର୍ଜୁନ—ରୋଗୀ ଦେଖିବାକୁ ହେଲେ ଦୂର କଣ, ନିକଟ କଣ ?

ରଙ୍ଗିଲା—ରାଜ୍ୟରେ ଆଉ କଣ କେହି ବୈଦ୍ୟ ନଥିଲେ ?

ଅର୍ଜୁନ—ରୋଗୀ ଜଣେ ସଙ୍ଗାତଙ୍କ ଘର ଆତ୍ମୀୟ—ଆଉ ସଙ୍ଗାତଙ୍କ ଭାଗ୍ୟ ଯଦି ଯେ ମୋ ଦ୍ୱାରା ତାଙ୍କର ଚିକିତ୍ସା ହୁଏ । ଏତେ ପ୍ରବୀଣ ବୈଦ୍ୟ ଥାଉଁ ଥାଉଁ ସଙ୍ଗାତ ଯେ ମୋ ଉପରେ ଏ ଭାର ଦେଲେ, ଏଥିରୁ କଣ ବୁଝି ପାରୁଛ—ପ୍ରେମ-ବନ୍ଧନ ଅଚ୍ଛେଦ୍ୟ । ମା, ବାପଙ୍କର କଥାତ ଦୂରେ—ଯେ ଯାହାକୁ ଥରେ ସୁନଜରରେ ଦେଖି ଥାଏ ତାକୁ କି ସେ କେବେ ଠେଲି ଦେଇପାରେ ? ସତେ ପ୍ରିୟେ, ମୋର ଆଜି ଭାରି ଆନନ୍ଦ ହେଉଛି—

ରଙ୍ଗିଲା—ପ୍ରିୟତମ !

ଅର୍ଜୁନ—ସତେ . ପ୍ରିୟେ—ତୁମକୁ ବିବାହ କରିବା ଦିନୁଁ ମୋ ପ୍ରତି ସଙ୍ଗାତଙ୍କ ଯେପରି ବ୍ୟବହାର ଦେଖୁଥିଲି, ସେଥିରେ ମନରେ ବଡ଼ କଷ୍ଟ ହେଉଥିଲା—ମୁଁ ବରାବର ଚିନ୍ତା କରୁଥିଲି 'ହାୟ ହାୟ ଏହିପରି ବିବାହ ନିମନ୍ତେ ପିଲା ଦିନରୁ ସଙ୍ଗାତ ସଙ୍ଗାତ ଭିତରେ ଅପଡ଼ ହେଲା ।'

ରଙ୍ଗିଲା—ହଉ, ଥାଉ ଥାଉ ଆମର ଶୁଣିବାର ଦରକାର ନାହିଁ ।

ଅର୍ଜୁନ—ଶୁଣନା—ମୁଁ ଆହୁରି ଭାବୁଥିଲି—ଯଦି ଏ' ବିବାହ ଉଲଟି ଯିବାର ହୋଇଥାନ୍ତା, ତାହାହେଲେ ପରା ମୁଁ ଆନନ୍ଦର ସହିତ ଏଥିରେ ସମ୍ମତି ଦେଇଥାନ୍ତି ।

ରଙ୍ଗିଲା—ହାଁ, ଏତେଦୂର !—ଏହିପରା ତୁମ୍ଭର ସ୍ତ୍ରୀ ପ୍ରତି ଅନୁରାଗ ?

ଅର୍ଜୁନ—ପ୍ରକୃତରେ, ପ୍ରିୟେ—ବିବାହ ଦିନୁଁ ଏ' ଯାବତ ଆନନ୍ଦ ପାଇବା ଠାରୁ ବରଂ ଦୁଃଖ ପାଉଥିଲି—ଏତେ ଦିନର ବନ୍ଧୁତ୍ୱ—ଖାଲି ଗୋଟାଏ ସାମାନ୍ୟ ବିବାହ ସକାଶେ ଭାଙ୍ଗି ଯିବାକୁ କି କମ୍ ପରିତାପର ବିଷୟ ?

ରଙ୍ଗିଲା—ତୁମେ ତେବେ ମୋତେ ବାପ-ଘରକୁ ପଠାଇ ଦେଇ ବନ୍ଧୁଙ୍କୁ ନେଇ ବହୁନାହଁ ?

ଅର୍ଜୁନ—ସତକରି କହିଲି ପ୍ରିୟେ, ତୁମ୍ଭେ କଣ ତାଙ୍କୁ ଏକାବେଳକେ ପାଶୋରି ଗଲ—ପିଲାଦିନୁଁ ପରସ୍ପର ମଧ୍ୟରେ ଏତେ ବନ୍ଧୁତ୍ୱ—ଏତେ ପ୍ରୀତି—ସବୁ କଣ ଏହି ସାମାନ୍ୟ ବିବାହ କାରଣରୁ ଏକାବେଳକେ ଭାଙ୍ଗିଗଲା ?

ରଙ୍ଗିଲା—ମୁଁ ଏତେକଥା ଜାଣେ ନାହିଁ—ଯାଏଁ ତେଣେ ମା ଖୋଜୁଥିବେ ।

ଅର୍ଜୁନ—ଯାହା ହେଉ ପ୍ରିୟେ—ମୋର ଆଜି ଭାରି ଆନନ୍ଦ ଯେ ଆମ୍ଭମାନଙ୍କର ବନ୍ଧୁତ୍ୱ ନଷ୍ଟ ନ ହୋଇ ସେହିପରି ଉଜ୍ଜ୍ୱଳ ରହିଅଛି । —ଆଜି ଯେତେବେଳେ ସଙ୍ଗାତ ଆଦର-ଯତ୍ନ କରି ପାଖରେ ବସାଇଲେ—ପୂର୍ବପରି ପରସ୍ପର ମଧ୍ୟରେ ନାନା ରଙ୍ଗ ରହସ୍ୟ ଚାଲିଲା, ମୋର ମନେ ହେଲା—ମୁଁ ଯେପରି ନନ୍ଦନକାନନରେ ବୁଲୁଛି—ଅପ୍ସରା ମାନଙ୍କ କଥାବାର୍ତ୍ତା ଶୁଣୁଛି—ମୁଁ ଆଜି ବେଶ୍ ବୁଝୁଛି, ପ୍ରିୟେ ଯେ ଯାହାକୁ ଥରେ

ଭଲ ପାଏ ହଜାର ବିଘ୍ନ ସତ୍ତ୍ୱେ ସେ ତାକୁ କେବେ ଛାଡ଼ିପାରେ ନାହିଁ—ସୁତରାଂ ମା ଝିଅର, ବାପ ପୁଅର କଥା କଣ କହୁଛ, ମଣିଷ କି କେବେ ମଣିଷକୁ ଘୃଣା କରିପାରେ ? ଯାଏଁ, ବର୍ତ୍ତମାନ ବନ୍ଧୁଙ୍କ କାର୍ଯ୍ୟରେ ବାହାରେ ।

(ପ୍ରସ୍ଥାନୋଦ୍ୟତ)

ରଙ୍ଗିଲି—ବର୍ତ୍ତମାନ କ'ଣ ବାହାରିଲ—ଖାଇ ନାହିଁ ପିଇ ନାହିଁ—ଲୁଗାପଟା ଜିନିଷ ପତ୍ର କିଛି ସଜାଇ ହୋଇ ନାହିଁ ।

ଅର୍ଜୁନ—ତୁମେ ସେ ସବୁ ଶୀଘ୍ର କରି ଦିଅ—ମୁଁ ଔଷଧ ପତ୍ର ଠିକ୍ ଠାକ୍ କରିଦିଏ—ରୋଗୀର କଥା—ବିଳମ୍ବ କଲେ ଚଳିବ କି ? (ପ୍ରସ୍ଥାନ)

ରଙ୍ଗିଲି—ଏହି ଦେବୋପମ ସ୍ୱାମୀଙ୍କ କି ମୁଁ ଦାସିର ସୁଦ୍ଧା ଯୋଗ୍ୟା ? କି ସରଳ ବିଶ୍ୱାସ ! କି ନିଷ୍କପଟ ବନ୍ଧୁତ୍ୱ ! କି ପବିତ୍ର ପ୍ରେମ ! ଯାଏଁ, ମୋର ଯାହା କର୍ତ୍ତବ୍ୟ, ମୁଁ କରେ ।

---

## ତୃତୀୟ ଦୃଶ୍ୟ

—ପୁଷ୍ପ-ବାଟିକା—

[ ସଖୀମାନଙ୍କ ପ୍ରବେଶ ]

୧ମ ସଖୀ—ଆଜି ମଲ୍ଲିଙ୍କ ବଗିଚାରେ ତ ଭାରି ଫୁଲ ଫୁଟିଛି ।

୨ୟ ସଖୀ—ସତେ କି ଗୁହିଅଡ଼େ ଯେପରି ହସ ଖେଳ ଲୁଣ୍ଠା ହୋଇଛି ।

୩ୟ ସଖୀ—ରାଜା-ରାଣୀ ଖେଳ ଏଣି ଆଜି ବେଶ୍ ଯେନେଇବ—

୪ର୍ଥ ସଖୀ—( ପ୍ରବେଶ କରି ) ଆଲୋ ଅଲୋ ଛୁଡ଼ି ହୋଇଛ କଣ ? ରାଜା ରାଣୀ ଯେ ବିଜେ କଲେଣି—

୧ମ ସଖୀ—ଆସ ଆସ ବନ୍ଦେଇବାକୁ ହବ ପରା ? ( ସଖୀଗଣ, ଭିତରକୁ ଯାଇ ଫୁଲ-ରାଜା ଫୁଲ-ରାଣୀ ବେଶଧାରଣ କରିଥିବା କଥଳୁସ୍ୱ ଓ କମଳାକୁ ପରିବେଷ୍ଟନ କରି ଗୀତ ଗାଇ ଗାଇ ପ୍ରବେଶ କରିବା )

ଗୀତ

ବିଜେ କର ଧୀରେ ରାଜା ରାଣୀ—
ଜଳଦରସ୍ୱନେ      କମ୍ପାଇ ଭୁବନେ
ଗର୍ଜି ଉଠୁ ଜୟ ଜୟ ବାଣୀ ।
ଦୀନ ହୀନ ଆମ୍ଭେ      ପ୍ରଜାଗଣ ଭବେ
କିବା ଅଛି ଦେବୁଁ ଉପହାର ।
ଦୟାକରି ଆସିଛ କୁଟୀରେ ଯେବେ
ଧର ଭକ୍ତି ହାର ଦେଉଁ ଆଣି ॥
ତବ ଯୋଗ୍ୟାସନ      ରତ୍ନସିଂହାସନ
କାହୁଁ ଦେବା ଆମ୍ଭେ, ହୋଇ ଅକିଞ୍ଚନ
ଦେଉଛୁଁ ହେ ପାତ,      ଏ ଦରିଦ୍ର ଘାତ
ବସ ବସ ଦେଇ ଆଶୀର୍ବାଣୀ ॥

[ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—ସଞ୍ଜ ଆସି ହେଲଣି—ତୁମମାନଙ୍କର ଖେଳ କ'ଣ ଭାଙ୍ଗିବ ନାହିଁ ?

କମଳା—ମା ! ସଞ୍ଜତ ହୋଇ ନାହିଁ—

ଜଗଦମ୍ବା—କାଲୋ ! ତୁ ତ କଣ ଭାରି ବଡ଼ି ବଡ଼ି କଥା କହି ଶିଖିଲୁଣି ? କଥା ଉପରେ କଥା—ଯା ଘରକୁ ଯା—

କଥଳୁସ୍ୱ—ନୂଆ ବୌ ! ଆଜି ଏତେ ରାଗ କାହିଁକି ?

ଜଗଦମ୍ବା—ରାଗ ? ମଲ୍ଲମ, ରାଗିଲି କେତେବେଳେ ! ବଡ଼ ଲୋକଙ୍କୁ ସବୁ ସୁନ୍ଦର—ଗରିବ ଲୋକ ହସି କରି କଥା କହିଲେବି ସେ ହେଲା ରାଗ—

କଥଳୁସ୍ୱ—ନୂଆବୌ ! ତୁମର କଣ ଆଜି ମୁଣ୍ଡ ଠିକ୍ ନାହିଁ ?

ଜଗଦମ୍ବା—ଗରିବ ଲୋକଙ୍କର ଅଛି ମୁଣ୍ଡଅଛି, ଠିକ୍‌ରହିବ ? ଦେଖ କଥ, ତୁମେ ବଡ଼ଲୋକ—ରାଜାପିଲା—ଗରିବ ଲୋକ ସଙ୍ଗେ ମିଶିବା ତୁମର ଉଚିତ ନୁହେଁ—

କଥଳୁସ୍ୱ—ଆଜି ଏ କଣ କହୁଛ, ନୂଆବୌ ?

ଜଗଦମ୍ବା—ତୁମର ମା ପରା କହୁଛନ୍ତି, ଗୋବରା ସଙ୍ଗେ ସାଙ୍ଗ ହୋଇ ରାଜା ବିଗିଡ଼ି ଗଲେ—କମଳ ତ ଗୋବରା ଭଣିଜା—ମୁଁ ତ ଗୋବରା ଭଉଣୀ—ଆମ ସଙ୍ଗେ ମିଶିଲେ ତୁମେ ଯଦି ବିଗିଡ଼ି ଯାଅ ।

କଥରୁସୁ—ନୂଆବୌ । କଣ କହୁଛ, ମୁଁ ବୁଝିପାରୁ ନାହିଁ ?

ଜଗଦମ୍ବା—ତୁମେ ବୁଝ ଆଉ ନ ବୁଝ, ମୁଁ ସାରକଥା କହି ଦେଉଛି—ଏଣିକି ଆଉ ତୁମେ ଆମ ଘରକୁ ଆସିବ ନାହିଁ କି କମଳ ଆଉ ତୁମ ଘରକୁ ଯିବ ନାହିଁ—ଚାଲରେ କମଳ ଚାଲ । (ହାତ ଧରି ଟାଣିନେଇ ଯିବା ସମୟରେ କମଳା କଥରୁସୁ ଆଡ଼େ ବାରମ୍ବାର ଶୋକ-ଦୃଷ୍ଟି ନିକ୍ଷେପ କରୁଥିବା )

କଥରୁସୁ—ସବୁ ! ସବୁ ! ଆଜଠୁଁ କଣ ଆମର ଖେଳ ଭାଙ୍ଗି ଗଲା । ( ଦୁଃଖରେ ସଖୀମାନଙ୍କ ଉପରେ ଢଳିପଡ଼ି ପ୍ରସ୍ଥାନ )

[ ଗୋବର୍ଦ୍ଧନ ଓ ଜଗଦମ୍ବାର ପ୍ରବେଶ ]

ଗୋବର୍ଦ୍ଧନ—ଚୁପ୍ !

ଜଗଦମ୍ବା—ଗୋବରାରେ !

ଗୋବର୍ଦ୍ଧନ—ଫେର, ଚୁପ୍ କରନା !

ଜଗଦମ୍ବା—ମୁଁ ଯେ ଚୁପ୍‌କରି ପାରୁନାହିଁ ରେ ଗୋବରା ?

ଗୋବର୍ଦ୍ଧନ—ତୁ ଯଦି ଏମିତି ହେଉ, ତାହାହେଲେ ଆଉ ମୁଁ ଆସିବି ନାହିଁ—

ଜଗଦମ୍ବା—( ଲୁହ ପୋଛୁ ) ନା, ଗୋବରା ! ତୁ ଏପରି କହନା, ତୋତେ ନ ଦେଖିଲେ ଯେ ମୁଁ ବଞ୍ଚି ପାରିବି ନାହିଁରେ !

ଗୋବର୍ଦ୍ଧନ—ସେଥିପାଇଁ ତ କହୁଛି—ମୋତେ ଯେବେ ରୋଜ୍ ଦେଖିବାକୁ ଚାହୁଁ—ମୁଁ ଯେଉଁପରି କହୁଛି ତୁ ସେହିପରି କର ।

ଜଗଦମ୍ବା—କହ ଗୋବରା, କଣ କରିବାକୁ ହେବ ? ତୁ ଯାହା କହିବୁ ମୁଁ ତାହାହିଁ କରିବିରେ ।

ଗୋବର୍ଦ୍ଧନ—ଦେଖ୍, ଭେଣେଇ ମୋତେ ବାହାର କରି ଦେଇଛନ୍ତି ବୋଲି ତୁ ଯେପରି ତାଙ୍କ ସଙ୍ଗେ କଳି ନ କରୁ—କି ତାଙ୍କୁ ଗାଳି ନ ଦେଉ ।

ଜଗଦମ୍ବା—ଆଉ କଣ ପ୍ରଶଂସା କରିବି ?

ଗୋବର୍ଦ୍ଧନ—ତା' ଯେବେ ପାରୁତ ଅତି ଉତ୍ତମ ।

ଜଗଦମ୍ବା—ମୁଁତ ପାରିବି ନାହିଁରେ !

ଗୋବର୍ଦ୍ଧନ—ଫେର—ତା' ହେଲେ—

( ପ୍ରସ୍ଥାନୋଦ୍ୟତ )

ଜଗଦମ୍ବା—ହଉ, ହଉ ତୁ ଯା' କହିବୁ ମୁଁ ତାହାହିଁ କରିବି—କିନ୍ତୁ କହ ଗୋବରା ତୁ କେଉଁଠି ରହିବୁରେ—ତୋର ଖିଆ ପିଆ କିଏ ବୁଝିବରେ—

ଗୋବର୍ଦ୍ଧନ—ହାଃ—ହାଃ—ହଃ—ରାଜା ଯେ ସମସ୍ତଙ୍କୁ ଲୁଚାଇ ଲୁଚାଇ ଏତେ ନୂଆ ନୂଆ ଦାସୀ ଚାକର ରଖିଛନ୍ତି, କାହାପାଇଁ ? ନଗର ବାହାରେ ନୂଆ କୋଠାଟାଏ ଯେ ତିଆରି ହୋଇଛି, କାହା ପାଇଁ ? ମୋ'ର—ମୋ'ର ଚେହେରା—ମୋ'ର ବେଶଭୂଷାରୁ କଣ କିଛି ବୁଝି ପାରୁ ନାହୁଁ ? ସତେ ନାନି ! ରାଜାର ପାଖିଆ ଲୋକର ଏତେ ସୁଖ—'ରାଜା'ର ନ ଜାଣେ କି ସୁଖ ?—ଭେଣେଇଟା କି ବୋକା—ମନେ କଲେ ରାଜଗାଦିଟା ତାଙ୍କର—ବର୍ତ୍ତମାନବି ଯେମିତି ସୁବିଧା ମିଳୁଛି—

ଜଗଦମ୍ବା—ଆହା ! ଗୋବରାର ଆମର କି ବୁଦ୍ଧି—ତାଙ୍କଠି ଭଲା ଏତକି ଟିକେ ଥାନ୍ତା ?

ଗୋବର୍ଦ୍ଧନ—ସେତକିଟିକେ ବୁଦ୍ଧିଥିଲେ କଣ ଆଜି ତାଙ୍କର ଏପରି ଦଶା ହୋଇଥାନ୍ତା, ନାନି ? ରାଜା ଏତେ ଅପମାନ କଲେ, ଶେଷକୁ ବେକରେ ହାତଦେଇ ତଡ଼ି ଦେବାକୁ ବସିଲେ, ତେବେ ବି ଭଲା ଟିକିଏ ରାଗିଥାନ୍ତେ—ପୁଣି କହିଲେ କି ନା 'ପୁଅ ଦୋଷ କଲେ କଣ ବାପର ରାଗିବା ଉଚିତ ।'

ଜଗଦମ୍ବା—ଗୋବରା ଆଉ ପୁଅ ନୁହେଁ—ଶତ୍ରୁ—ଯେତିକି ଭଲ ସେହି ସାପଖିଆ ଅର୍ଜୁନା—ଆଉ

ସେ ମହନ୍ତି ରଜା—ଦେଖ, ସେ ସିଣ୍ଡିର ପୁଣି କି କଥା !—'ଗୋବରା ମୋ ପୁଅକୁ ସାଇନ୍ସ' ସେ'ବ ମଚ୍ଛୀ ହୋଇ ବୁଝିଲେ କଣ ନା, 'ସବୁଦୋଷ ନନ୍ଦୀ ଘୋଷ'—ହଁ ହୋ ଅସହ୍ୟା ଉପରେ ବାଣୀ ବିକ୍ରେଇ ବି ଟାଣ ହୁଏ—ନା, ଗୋବରା ମୁଁ ଆଉ ଏଠି ରହିବି ନାହିଁ, ଚାଲ୍—

ଗୋବର୍ଦ୍ଧନ—ପୁଣି ସେହି କଥା—ତା, ହେଲେ ମୁଁ—
(ପ୍ରସ୍ଥାନୋଦ୍ୟତ)

ଜଗଦମ୍ବା—କଣ କରୁଛୁ କର୍—ତୋର, ସବାଶେଷ ସବୁ ସହୁଛି ।

ଗୋବର୍ଦ୍ଧନ—ଜାଣୁ ନାନୀ ମୋର ଏକା ଜିଦରେ—ଦେଖାଇବି, ଅବଧାନ କଥା ସତ କି ମିଛ—ଗୋବର୍ଦ୍ଧନ ମଜବୁତ୍ କି ଅଜୁ ମଜବୁତ୍ ? ମୋ ପାଇଁ ନାନୀକୁ ଅପମାନ ସହିବାକୁ ହେଲା—'ଗଛ ମଜବୁତ୍ ନ ହେଲେ ତା' ଉପରେ କି ଲତା କେବେ ବେଢ଼ଇବା ଉଚିତ୍'—ଏହା କଣ ଭୁଲିଗଲୁ ନାନୀ !

ଜଗଦମ୍ବା—ଏହା ଫେର ଜୀବ ଥାଉଁ ଥାଉଁ ଭୁଲିବି ?

ଗୋବର୍ଦ୍ଧନ—ସେହି ଜିଦରେ, ସେହି ଉଦରେ ଜାଣୁ ନାନୀ ଗୋବର୍ଦ୍ଧନ ଆଜ ଜୁଆ ଘୁଡ଼ି ରୁକ୍‌ଶି ନେଇଛି ।

ଜଗଦମ୍ବା—ଅହା ! ଗୋବରା ମୋର କି କଷ୍ଟ ନ କରୁଛି ?

ଗୋବର୍ଦ୍ଧନ—ହାଃ ହାଃ ହାଃ—ଗୋବରା କଷ୍ଟ କରୁଛି ନା ଅଭ୍ୟାସ କରୁଛି—ପ୍ରଥମ ରୁକ୍‌ଶି ଥିଲା ରାଜାଙ୍କ ଦରବାର—କିନ୍ତୁ ବର୍ତ୍ତମାନ ଏକଦମ୍ ଭେଣ୍ଡୋଇଙ୍କ ଉପରେ—ଶୁଣିଛୁତ ମୋ ପାଇଁ କେମିତି ତାଙ୍କ ଗାଳି ଖାଇବାକୁ ହେଲା ?

ଜଗଦମ୍ବା—ଆଚ୍ଛା ସେ କାହିଁକି ଯେ ଏତେ ଅପମାନ ପାଇ ମୁହଁ କିଛି କହୁନାହାନ୍ତି, କିଛି ବୁଝି ପାରୁ ନାହିଁ ।

ଗୋବର୍ଦ୍ଧନ—ଛାଡ଼ିଦେ ନାନୀ, ସେ କିଛି ନ କହନ୍ତୁ କି ନ କରନ୍ତୁ—ମୁଁ ସବୁ କରିଦେଉଛି । ଯେଉଁ ଫାସ ବସେଇଲଣି ନାନୀ ସେଥିରେ କି ଆଉ ବାକୀ କିଛି ରହୁଛି—ତୁ' ଖାଲି ଡୋର ଟାଣିବାକୁ ସଙ୍ଗେ ସଙ୍ଗେ ଥିଲେ ହେଲା । ରହ, ଭେଣେଇ ଆସୁଛନ୍ତି ପରା ? ମୁଁ ତେବେ ଆସୁଛି, ନାନୀ—ପୁଣି କାଲି (ସ୍ୱଗତଃ) ବଡ଼ ମଜା ଲାଗିଛି—ଜୁଆ ଖେଳରେ କି ଏ ମଜା ଅଛି ?

(ଗୋବର୍ଦ୍ଧନର ପ୍ରସ୍ଥାନ)

[ଗୋବିନ୍ଦ ବିଦ୍ୟାଧରର ପ୍ରବେଶ]

ଗୋବିନ୍ଦ—କନିଆବୌ ! କମଳାକୁ କଣ କହିଲକି ? ସେ ଘରେ ବସି କାନ୍ଦୁଛି—ଆଉ କଥା ମଧ୍ୟ କହୁନାହିଁ ଶୁଣିଲି ରୁଷି କରି ବସିଛି, ରାଣୀମା ଯେତେ ଡାକିଲେ ମୁହଁ ଖୋଲୁ ନାହିଁ ।

ଜଗଦମ୍ବା—ମୋର ତ ସବୁ ଦୋଷ—ମୁଁ ତ ସେହିଦିନୁ କହୁଛି—ମୋତେ ପୁରୀ ପଠେଇଦିଅ—ଜଗନ୍ନାଥ ଦର୍ଶନ କରିବି, ନିଶ୍ଚିନ୍ତ ରହିବି—ଏତେ ଜଞ୍ଜାଳ ଆଉ ସମ୍ଭାଳି ପାରିବି ନାହିଁ ।

ଗୋବିନ୍ଦ—ଜଞ୍ଜାଳତ ନିଜେ ଲଗାଇ ଦେଉଛ, ସମ୍ଭାଳିବା ବେଳକୁ ଏତେ ବ୍ୟସ୍ତ ହେଉଛ କାହିଁକି ?

ଜଗଦମ୍ବା—ହଁ କହିବ ନାହିଁ କାହିଁକି ? ବାପଘରେ ଥିଲେ କଣ—(କାନ୍ଦିବା)

ଗୋବିନ୍ଦ—ଏହିଥର ଟପ ଟପ ହୋଇ ବର୍ଷା ଆରମ୍ଭ ହେଲାଯେ ! ତୁମେ ଯା' କରୁଛ କର, ମୁଁ ଆଉ ଏ' ଘରେ ରହିବି ନାହିଁ ।

ଜଗଦମ୍ବା—ତୁମେ କାହିଁକି ରହିବନାହିଁ—ତୁମର ପୁଅ ଅଛି ବହୁ ଅଛି । ମୋତେ ବାହାର କରି ଦେଲେତ ଲଟି ଯିବ—ସେହି ଝିଅଟିକ ପାଇଁ ସିନା । (କାନ୍ଦିବା)

ଗୋବିନ୍ଦ—କନିଆ ବୌ ! ପ୍ରକୃତରେ ତୁମେ କିଛି ବୁଝିପାରୁ ନାହିଁ; ଗୋବରାକୁ ଯେ ବାହାର କରି ଦେଲ ତା' କଣ ମନଖୁସିରେ—ମୋ'ର କଣ କଷ୍ଟ ହେଉନାହିଁ ?—କଣ କରିବ—ନିଜର

କର୍ତ୍ତବ୍ୟ ବିବେଚନାରେ ଅନେକ ସମୟରେ ଏହିପରି କାମ କରିବାକୁ ହୁଏ । ଆଜି ଅଜୁ ଯଦି ଏପରି କରିଥାନ୍ତା, ତାକୁ ମୁଁ ଖାଲି ବାହାର କରି ଦେଇ ନଥାନ୍ତି—ସଙ୍ଗେ ସଙ୍ଗେ ଉଚିତ ଦଣ୍ଡ ମଧ୍ୟ ଦେଇଥାନ୍ତି । ଦେଖ, ରାଜାଙ୍କ ଯୁନକରରେ ପଡ଼ିବ ବୋଲି ତା'କୁ ମୁଁ ରାଜାଙ୍କ ପାଖୁଁ ଲେକ କରିଦେଲି—ଶେଷକୁ ତାଙ୍କର ମୁଣ୍ଡ ଗଲା—ଏ' କି କମ୍ ଅପରାଧ ? ଗୁଡ଼—ଯେ ଯେପରି କରିବ ସେ ସେପରି ଫଳ ପାଇବ—ମୋର ଯା' କର୍ତ୍ତବ୍ୟ ମୁଁ କରି ଯାଉଛି । ଅସ ଘରକୁ ଅସିଲି—ରାତି ହୋଇ ଗଲାଣି । ଆଜି ଅର୍ଜୁନଟା ଘରେ ନାହିଁ ବୋଲି କେମିତି ଅଲଗା ଅଲଗା ଲାଗୁଛି ।

(ପ୍ରସ୍ଥାନ)

ଜଗଦମ୍ବା—ଗୋବରାରେ ! ତୋର ପାଇଁ ଖାଲି ଜୀବ କାନ୍ଦୁଛି ବହୁଛି—ଅଜୁପାଇଁ ଘର ଅଲଗା ଅଲଗା ଲାଗୁଛି—ଗୋବରା ପାଇଁ ନୁହେଁ । ମନ ହେଉଛି ଘରେ ନିଆଁ ଲଗାଇ ଦିଅନ୍ତି । (ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

—ପୁଷ୍କରଣୀତୀର—

[ ରଙ୍ଗିଲା—କଳସୀଟିକୁ ପୁଷ୍କରଣୀ ତଟରେ ରଖି ଦେଇ ସୂର୍ଯ୍ୟାସ୍ତ ଦେଖୁ ଦେଖୁ ଗାଉଥିବା ]

ଗୀତ

କରମେ ଯା'ଲିଖନ, କେ କରିବ आନ
ନିୟତିର ଅଧୀନ ଏ' ଛାର ପରାଣ ।
ଏହିଯେ ସୁରଯ ଦେଖୁଛି ଗଗନେ
ଆମୋଦେ ଉନ୍ମାଦ, ସରୋଜିନୀ ସନେ
ନିୟତିର ଟାଣେ ବିଷାଦର ଘନେ
ଡୁବିବ ଡୁବାଇ ପ୍ରେୟସୀ ପରାଣ ॥

କାହିଁ ଲୁଚିଗଲ ଦେବ ! ସରୋଜିନୀ ଯେ ମଳିନ ମଳିନ ମଉଳି ଯାଉଛି । ହାୟ ! ବିରହ-ଯନ୍ତ୍ରଣା ଯେ କି ଯନ୍ତ୍ରଣା ତା' ଦିନକ ବିରହରେ ଅଜି ମୁଁ

ବେଶ୍ ବୁଝିପାରୁଛି—ଏ'ତ ଦିନେ ନୁହେଁ, ମାସେ, ବର୍ଷେ, ଯୁଗେ ।

[ କଲ୍ୟୁଦେବଙ୍କ ପ୍ରବେଶ ]

କଲ୍ୟୁ—ସତେ ରଙ୍ଗିଲା ! ମାସେ—ବର୍ଷେ—ଯୁଗେ—

ରଙ୍ଗିଲା—( ସଶବ୍ୟସ୍ତେ ଉଠିଣାଟାଣି ଗମନୋଦ୍ୟତା ହେବା )

କଲ୍ୟୁ—( ସମ୍ମୁଖରେ ଛିଡ଼ାହୋଇ ) ରଙ୍ଗିଲା ! ( ତୁଇ ଭଙ୍ଗିରେ ଏହିପରି ସମ୍ବୋଧନ କରିବା )

ରଙ୍ଗିଲା—ବାଟଛାଡ଼ି ଦିଅନ୍ତୁ, ମହାରାଜ !

କଲ୍ୟୁ—ଏହିକି ତୁମ୍ଭର ପୂର୍ବ ପ୍ରେମ—ପୂର୍ବ ବନ୍ଧୁତ୍ୱ, ରଙ୍ଗିଲା !

ରଙ୍ଗିଲା—ଅବଳାକୁ ବାଟ ଛାଡ଼ି ଦିଅନ୍ତୁ, ମହାରାଜ !

କଲ୍ୟୁ—ଏହି କେତେଦିନ ମଧ୍ୟରେ ସବୁ କଣ ଭୁଲିଗଲ, ରଙ୍ଗିଲା ?

ରଙ୍ଗିଲା—( ନୀରବ )

କଲ୍ୟୁ—ରଙ୍ଗିଲା ! ରଙ୍ଗିଲା ! ମନେ କି ପଡ଼େ ନା ସେ ଉତ୍ସବ ଦିନର କଥା ? ଏକାକିନୀ ଆମ୍ଭର ଉଦ୍ୟାନରେ ଭ୍ରମଣ କରୁ କରୁ ସଚକିତେ ମୋତେ ଦେଖି ଯେତେବେଳେ ମହାରାଜ ବୋଲି ସମ୍ବୋଧନ କରି ଉଠିଲ—ତେତେବେଳେ ମୁଁ କଣ କହିଥିଲି—ହସି ହସି କି ଉତ୍ତର ଦେଇଥିଲି—'ମହାରାଜ ଯେ ରଙ୍ଗିଲା ନିକଟରେ ସେହି ବନ୍ଧୁ—ଚିରଦିନ ମଧ୍ୟ ସେହି ବନ୍ଧୁ ରହିବ'—ତୁମ୍ଭେ ତାହା ଶୁଣି କି ଭାବ ପ୍ରକାଶ କରିଥିଲ—କି ଆନନ୍ଦ ଅନୁଭବ କରିଥିଲ ?

ରଙ୍ଗିଲା—( ଦୀର୍ଘ ନିଃଶ୍ୱାସ ତ୍ୟାଗ କରିବା )

କଲ୍ୟୁ—ଭୁଲି କି ଗଲ ପୁଣି—ତୁମ୍ଭେ ଯେତେବେଳେ ଭୟ କଲ, ରାଜ୍ୟ-ଶାସନ ଭାର ନିଜ ହସ୍ତରେ ଗ୍ରହଣ କଲି ବୋଲି ରାଜ୍ୟ ମୋହରେ ମୁଗ୍ଧ ହୋଇ ତୁମ୍ଭଙ୍କୁ ଯଦି ଭୁଲିଯାଏଁ, ତେତେବେଳେ ତୁମ୍ଭର ଆଶ୍ୱାସନା ପାଇଁ ତୁମ୍ଭର ବିଶ୍ୱାସ ପାଇଁ କଣ କରିଥିଲି—କପଟତା ତ୍ୟାଗ କରି ହୃଦୟର ଯାହା କିଛି ଗୁପ୍ତକଥା ସମସ୍ତ ପ୍ରକାଶ କରିଥିଲି !—ତୁମ୍ଭେ

ଶୁଣି କହୁଥିଲ—ଏତେ ଅନୁଗ୍ରହ ଏ ଦାସୀ ପ୍ରତି ! ଈଶ୍ୱର କି ସତେ ଏ' ଅନୁଗ୍ରହ କରିବେ ?

ରଙ୍ଗିଲା—( ଘନ ଘନ ଦୀର୍ଘ ନିଶ୍ୱାସ ତ୍ୟାଗ କରିବା )

କଳ୍ପସୁ—ଅତୀତର ଅଜ୍ଞାତର କଥା କି ଥରେ ମନେ ପଡ଼ୁ ନାହିଁ, ରଙ୍ଗିଲା ? ସେହି ଏକା ସଙ୍ଗେ ପାଠ ପଢ଼ିବା—ଏକାସଙ୍ଗେ ଖେଳ ଖେଳିବା—ଏକା-ସଙ୍ଗେ ଫୁଲ ତୋଳି ହାର ଗୁନ୍ଥି ପରସ୍ପରକୁ ପିନ୍ଧାଇ ଦେବା—ରଙ୍ଗିଲା ! ରଙ୍ଗିଲା !

ରଙ୍ଗିଲା—ବନ୍ଧୁ ! ବନ୍ଧୁ—( ଓଢ଼ଣା କାଢ଼ିଦେଇ ସହସା ବାକ୍‌ରୁଦ୍ଧ ହେବା )

କଳ୍ପସୁ—ଡାକ ଡାକ, ରଙ୍ଗିଲା ! ଅନେକ ଦିନ ପରେ ସେହି ମଧୁର ଡାକ ପୁଣି ଶୁଣୁଛି ।

ରଙ୍ଗିଲା—( ଓଢ଼ଣୀଟାଣି ) ମହାରାଜ ! ଅବଳାକୁ ପଥଭ୍ରଷ୍ଟ ଦିଅନ୍ତୁ—ଦୁର୍ବଳାକୁ ରକ୍ଷା କରନ୍ତୁ ।

କଳ୍ପସୁ—ଏ' କଣ, ରଙ୍ଗିଲା ? ପୁଣି କାହିଁକି ମଧୁ ପରିବର୍ତ୍ତେ ତିକ୍ତ-ରସ ଢାଳିଦେଲ—ଜ୍ୟୋସ୍ନା ପରିବର୍ତ୍ତେ ଅମା-ନିଶାର ଅନ୍ଧକାର ପ୍ରକାଶ କଲ ?

ରଙ୍ଗିଲା—( ଓଢ଼ଣା ଟାଣି ) ମହାରାଜ ! ପର-ନାରୀ ସଙ୍ଗେ ଏପରି ବ୍ୟବହାର କି ସାଜେ ?

କଳ୍ପସୁ—ପର-ନାରୀ ! ରଙ୍ଗିଲା ମୋର ପର-ନାରୀ—ନା, ରଙ୍ଗିଲା, ସେପରି କୁହନା ।

ରଙ୍ଗିଲା—ମହାରାଜ ! ବିଦ୍ୱାନ ଆପଣ—ଧାର୍ମିକ ଆପଣ—

କଳ୍ପସୁ—ଦିନେ ତାହା ଥିଲି ସତ୍ୟ, ମାତ୍ର ଆଜି ଆଉ ନାହିଁ—ଆଜି କେବଳ ରଙ୍ଗିଲାର ପ୍ରେମାକାଙ୍କ୍ଷୀ, ରଙ୍ଗିଲାର ପ୍ରେମପ୍ରାର୍ଥୀ ।

ରଙ୍ଗିଲା—କାହିଁକି, ମହାରାଜ ? ରାଜାକୁ ପ୍ରଜାର ଯେପରି ପ୍ରେମ ଦେବା ଉଚିତ—ବନ୍ଧୁକୁ ବନ୍ଧୁର ଯେପରି ପ୍ରେମଦେବା ଉଚିତ, ତା'ତ ଏ' ଦୀନା ପୂର୍ଣ୍ଣମାତ୍ରାରେ ଅର୍ପଣ କରୁଛି—

କଳ୍ପସୁ—ସ୍ୱାମୀକୁ ସ୍ତ୍ରୀର ଯେପରି ପ୍ରେମ ଦେବା ଉଚିତ—ତାହା କାହିଁ ଦେଉଛ, ରଙ୍ଗିଲା ?

ରଙ୍ଗିଲା—( ଈଷତ୍ କୋପ ପ୍ରକାଶ କରି ) ମହାରାଜ ! କଳ୍ପସୁ—ବୁଝି ପାରୁଛି ରଙ୍ଗିଲା, ଧର୍ମ-ଦୃଷ୍ଟିରେ ଏପରି କଥା ଅନୁଚିତ ହୋଇଛି, କିନ୍ତୁ ପୂର୍ବ-ବନ୍ଧୁତ୍ୱ ଦୃଷ୍ଟିରେ ଏହା କଦାପି ଅନ୍ୟାୟ ନୁହେଁ—

ରଙ୍ଗିଲା—ଘୋରତର ଅନ୍ୟାୟ, ମହାରାଜ ! ପର-ନାରୀ ହୋଇ ଅପରର ମୁଖ ଦର୍ଶନ କରିବା ମଧ୍ୟ ପାପ ! ତଥାପି ସେ ପାପ ଯେ ଅଧୁନା ବରଣ କରୁଛି—ନାରୀଜନୋଚିତ-ଲଜ୍ଜା ଯେ ତ୍ୟାଗ କରୁଛି, ତାହା କେବଳ ପୂର୍ବ-ପ୍ରେମ ଓ ବନ୍ଧୁତ୍ୱାକର୍ଷଣରେ—ସହୋଦରୋପମ ଭ୍ରାତୃ ଜ୍ଞାନରେ—

କଳ୍ପସୁ—ଏତେ କଥା-ଶୁଣିବା ଆଉ ଭଲ ଲାଗୁନାହିଁ, ରଙ୍ଗିଲା ! ଶୁଣ ରଙ୍ଗିଲା ! ତୁମ୍ଭପାଇଁ, ମୁଁ ରାଜ୍ୟ, ସ୍ନେହ, ଭକ୍ତି, ଧର୍ମ ସମସ୍ତ ତ୍ୟାଗ କରୁଛି—ଏହି ହୃଦୟାସନ ଅଦ୍ୟାପି ଶୂନ୍ୟ କରି ରଖିଛି—ଆସ ଅଧିଷ୍ଠାତ୍ରୀ ଦେବୀ ହୋଇ ସାନନ୍ଦେ ତହିଁ ଉପବେଶନ କର—ତୁମ୍ଭର କିଙ୍କରର ଅଜୀବନ ସେବା-ପୂଜା ଗ୍ରହଣ କର—

ରଙ୍ଗିଲା—( ନୀରବ )

କଳ୍ପସୁ—କିଛି ଭୟ କରନା, ରଙ୍ଗିଲା—ପ୍ରେମିକ-ପ୍ରେମିକାର ବାସ ପ୍ରେମ-ରାଜ୍ୟରେ—ପ୍ରେମିକ-ପ୍ରେମିକାର ଖାଦ୍ୟ, ପ୍ରେମ-ମଧୁ—ଏ' ପାର୍ଥିବ-ଅଭାବ, ପାର୍ଥିବ-କଳଙ୍କ ସେମାନଙ୍କୁ ସ୍ପର୍ଶ କରି ପାରିବ ନାହିଁ, କି କୌଣସି କ୍ଳେଶ ଦେଇ ପାରିବ ନାହିଁ !

ରଙ୍ଗିଲା—( ନୀରବ )

କଳ୍ପସୁ—ଆସ, ରଙ୍ଗିଲା—( ହସ୍ତ ଧାରଣ କରିବାକୁ ଉଦ୍ୟତ )

ରଙ୍ଗିଲା—( ଦୂରକୁ ଘୁଞ୍ଚିଯାଇ ) ଏହି କି ବଲ୍ଲଳେଶ୍ୱର କଳ୍ପସୁଦେବ ?

କଳ୍ପସୁ—ବଲ୍ଲଳେଶ୍ୱର କଳ୍ପସୁଦେବ ବହୁଦିନୁ ମୃତ, ରଙ୍ଗିଲା—ବର୍ତ୍ତମାନ ଯାହାକୁ ଦେଖୁଛ, ସେ ରଙ୍ଗିଲେଶ୍ୱର କଳ୍ପସୁ ଦେବ ! ଆସ ରଙ୍ଗିଲା—ଆସ, ପ୍ରିୟେ ! ( ହସ୍ତଧାରଣ କରିବାକୁ ପୁନ-ରୁଦ୍ୟତ )

ରଙ୍ଗିଲା—ଭଗବାନ ! ଭଗବାନ ! ରକ୍ଷାକର, ରକ୍ଷାକର !

ଭଲ୍ୟୁ—ହାଃ ହାଃ ହାଃ—ଭଗବାନର ମଧ ଆଜ ସାଧ ନାହିଁ ରଙ୍ଗିଲା ! ରଙ୍ଗିଲାକୁ ମୋର ଆଜ କେହି ଛାଡ଼ିନେଇ ପାରିବ ନାହିଁ—ପ୍ରେମିକ ପ୍ରେମିକାକୁ ଆଜ କେହି ବିଚ୍ଛିନ୍ନ କରିପାରିବ ନାହିଁ ! ଆସ, ପ୍ରିୟେ ! ( ହସ୍ତଧାରଣ କରିବା )

ରଙ୍ଗିଲା—କାହିଁଅଛ, ନାଥ ? ମହାରାଜ ! ମହାରାଜ !

( ପତନ ଓ ମୂର୍ଚ୍ଛା ଯିବା )

[ ଜଗଦମ୍ବାର ବେଗେ ପ୍ରବେଶ ]

ଜଗଦମ୍ବା—ଏହି କ୍ଷଣେ 'ମହାରାଜ, ମହାରାଜ' ଡାକ—ଏହି ଦେଖ ପୁଣି—

( ଭଲ୍ୟୁ ଦେବର ବେଗେ ପ୍ରସ୍ଥାନ )

[ ଗୋବିନ୍ଦ ବିଦ୍ୟାଧରର ପ୍ରବେଶ ]

ଗୋବିନ୍ଦ—ସତେ, ସତେ—କାହିଁ କାହିଁ କଳାଅବୌ ?

ଜଗଦମ୍ବା—ଯାଃ—ମହାରାଜତ ପଳାଇଗଲେ !

ଗୋବିନ୍ଦ—କିଏ ? ଭଲ୍ୟୁ ଦେବ ? ନା—ନାଃ—

ଜଗଦମ୍ବା—ନା—ନା ତ ଆଉ କଣ ଗୋବର୍ଦ୍ଧନ ? ଦେଖ ଏଣେ ତୁମ୍ଭର ସତୀ କପଟ ଆମକୁ ଦେଖି ସତୀ ହୋଇ ଶୋଇ ପଡ଼ିଛନ୍ତି—ଆମେ ଭାଇ ଭଉଣୀ ପରି ସବୁଥିରେ ଦୋଷୀ—ଦେଖ, ଦେଖ, ଏଥର ନିଜ ଆଖିରେ ଦେଖ—

ଗୋବିନ୍ଦ—ଏ' କଣ ସତ, କଳାଅବୌ ?

ଜଗଦମ୍ବା—ଆଉକଣ ମିଛ ?

[ ଗୋବିନ୍ଦ ବିଦ୍ୟାଧର ବ୍ୟଥିତ ହୃଦୟର ଅଭିନୟ କରି ଜଗଦମ୍ବାର ସ୍କନ୍ଧ ଦେଶରେ ମସ୍ତକ ସ୍ଥାପନକରିବା ଓ ଜଗଦମ୍ବା ଗର୍ବିତ ଭାବେ ଆନନ୍ଦ ପୂର୍ଣ୍ଣ ଦୃଷ୍ଟିରେ ସମ୍ମୁଖକୁ ଚାହିଁ ରହିବା ]

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—କକ୍ଷ—

[ ଗୋବିନ୍ଦ ଓ ଜଗଦମ୍ବାର ପ୍ରବେଶ ]

ଗୋବିନ୍ଦ—କଳାଅବୌ ! ବୋହୂକୁ ଏତେ ଗାଳି ଦେଲି—ଏତେ ଭୟ ଦେଖାଇଲି—ତଥାପି ସେ ତ ତାର ଦୋଷ ସ୍ୱୀକାର କରୁ ନାହିଁ—ତାର ଏକା କଥା, 'ଦୀନା କନ୍ୟାକୁ ଯେବେ ବିଶ୍ୱାସ କରନ୍ତି—ତେବେ ନିଶ୍ଚୟ ଜାଣନ୍ତୁ ସେ କାୟ, ମନ, ବାକ୍ୟରେ କଦାପି ଅସତୀ ନୁହେଁ ।'

ଜଗଦମ୍ବା—ସତୀଆପଣ ଦେଖେଇ ହେଉଛି ! ଯେବେ ସତୀ, ତେବେ ସବୁ କଥା ଖୋଲି କହୁ ନାହିଁ ? ଖାଲି ଆଖି ପତାରେ ପାଣିଟିକକ ଲୁଗୁଇ ରଖିଛି କାହିଁକି ?—ଦେଖ, ତୁମେ ସେ ଲୁହ ଧାରରେ ଅଁଭ ତନ୍ତ୍ରି ଯାଅ ନାହିଁ ।

ଗୋବିନ୍ଦ—ମୁଁ ଅକାରଣରେ ଗାଳି ମନ୍ଦ କରି ନାହିଁତ ?

ଜଗଦମ୍ବା—ତେବେ କଣ ମୁଁ ମିଛୁଆ ?—ମୋତେ ବିଦାୟ କରି ଦେଉନାହଁ ? ତୁମେ ଆଖିରେ ଯା ଦେଖିଲ ତା କଣ ମିଛ ?—ଆଖିକୁ ଓପାଡ଼ି ପକାଉ ନାହଁ ?

ଗୋବିନ୍ଦ—ରାଜା କୁ-ଅଭିପ୍ରାୟରେ ଆସି ଥାଇ ପାରନ୍ତି—ଏହା ବୋଲି ବୋହୂ ଯେ ଖରାପ ଉଦ୍ଦେଶ୍ୟରେ ସେଠାକୁ ଯାଇଥିଲା ତାର ପ୍ରମାଣ କଣ ? ଯଦିବା ଯାଇଥିଲା, ତେବେ ମୂର୍ଚ୍ଛାଗଲା କାହିଁକି ?

ଜଗଦମ୍ବା—ଏହି ପରି ତୁମ୍ଭର ମନ୍ଦୀ-ବୁଦ୍ଧି ! ଏତକ ବୁଝି ପାରୁନାହଁ—ଚୋର ନିତି ଚୋରି କରୁଥାଏ; ଯେତେବେଳେ ଧରି ପଡ଼ିଯାଏ, ସେତେବେଳେ ସେ ସାହସ କରି ଦୌଡ଼ି ପଳାଏ—ନାହିଁତ ଯେ ବାଟ ବନ୍ଦ ଥିଲେ, ଭୟରେ ମୂର୍ଚ୍ଛା ଯାଏ; ପୁଣି ପିଲା ଦିନୁ ଯେ ରାଜାଙ୍କୁ ଦଣ୍ଡେ ନ ଦେଖିଲେ ରହିପାରୁ ନ ଥିଲା, ସେ ଖରାପ ଉଦ୍ଦେଶ୍ୟ ନାହିଁ

ଉଦ୍ଦେଶ୍ୟରେ କେବେ ସେଠାକୁ ଯାଇପାରେ ?
କି, ଏହା କଣ ମନକୁ ଆସୁନାହିଁ ?

ଗୋବନ୍ଦ—( ହସି ) ଜନନୀ ! ତୁମ୍ଭର ଯେପରି ପ୍ରଖର ବୁଦ୍ଧି ତୁମେ ପୁରୁଷ ହୋଇଥିଲେ ନିଶ୍ଚୟ ଜଣେ ସର୍ବୋତ୍କୃଷ୍ଟ ମନ୍ତ୍ରୀ ହୋଇ ପାରଥାନ୍ତ !

ଜଗଦମ୍ବା—ମନ୍ତ୍ରୀ ହୋଇପାରିଥାନ୍ତି—ନା ମନ୍ତ୍ରୀ ରଖି ପାରିଥାନ୍ତି ?

ଗୋବନ୍ଦ—( ସହାସ୍ୟେ ) ବାସ୍ତବିକ ତୁମେ ରାଜା ହୋଇ ପାରିଥାନ୍ତ !

ଜଗଦମ୍ବା—ରାଣୀ କ'ଣ ବୁଦ୍ଧିମାନ ହୋଇପାରେ ନାହିଁ ?

ଗୋବନ୍ଦ—( ସହାସ୍ୟେ ) ତେବେ କ'ଣ ଇତି ମଧ୍ୟରେ କୌଣସି ରାଜା ସଙ୍ଗେ କଥାବାର୍ତ୍ତା ଠିକ୍ କରି ସାରିଲଣି ନା କ'ଣ ?

ଜଗଦମ୍ବା—କଥାବାର୍ତ୍ତା ତେରଦିନୁଁ ଠିକ୍ କରି ଆକାଶକୁ ଅନାଇ ବସିଛୁ, ପ୍ରଭୋ !

ଗୋବନ୍ଦ—ବୁଝିପାରିଲି ନାହିଁ ତୁମ୍ଭର କଥା । ଦେବୀ !

ଜଗଦମ୍ବା—କାହିଁକି ପ୍ରଭୋ ? ନ୍ୟାୟ, ଧର୍ମ, କ୍ଷମତା ଶ୍ମରଣ କରି ବିଚାର କରି ଦେଖନ୍ତୁ, ମୋର କଥା ଯଥାର୍ଥ କି ନୁହେଁ ।

ଗୋବନ୍ଦ—( ସବିସ୍ମୟେ ) ଆଜି ଏ' କଣ କହୁଛ, ଜନନୀ ଦେବୀ ?

ଜଗଦମ୍ବା—ଯାହା ଉଚିତ ତାହାହିଁ କହୁଛି, ପ୍ରଭୋ ! ଭୁଲି କି ଗଲ ସେ ଦିନ, ଯେଉଁଦିନ ବୟୋଜ୍ୟେଷ୍ଠ, ପଣ୍ଡିତ ଶ୍ରେଷ୍ଠ- ପ୍ରତାପରୁଦ୍ରଦେବଙ୍କ ମନ୍ତ୍ରୀ ତୁମ୍ଭେ—କେତେ ସମ୍ମାନ—କେତେ ଗୌରବର ଅଧିକାରୀ ହୋଇ ସୁଦ୍ଧା, ବିନା ଦୋଷରେ ସାମାନ୍ୟ ଜଣେ ମଦ୍ୟପ ଲମ୍ପଟୀ କର୍ତ୍ତୃକ ଅପମାନିତ ହେଲ—ଗଳାଧକ୍କା ଖାଇବାର ଉପଯୁକ୍ତ ବିବେଚିତ ହେଲ ? ସେହି ମୂର୍ଖ ନରାଧମ ଆଜି ପର୍ଯ୍ୟନ୍ତ ଉତ୍କଳର ପବିତ୍ର ସିଂହାସନରେ ନିର୍ଭୀକ ଭାବରେ ଉପବେଶନ କରିଛି—ଆଉ ତୁମ୍ଭେ ନ୍ୟାୟବାନ୍, ଧାର୍ମିକ, କ୍ଷମତାପନ୍ନ ହୋଇ ସୁଦ୍ଧା ଅଦ୍ୟାପି ତା'ର ମନ୍ତ୍ରୀ ହୋଇ ରହିଛ । ଅଦ୍ୟାପି ତା'ର ପଦଲେହନ କରୁଛ ! ମୁଁ ତୁମ୍ଭର ସ୍ତ୍ରୀ—ତୁମ୍ଭେ ମୋର ଏକ ମାତ୍ର ସ୍ୱର୍ଗ—ତଥାପି ତୁମ୍ଭଙ୍କୁ ତ୍ୟାଗ କରିବାକୁ ମୋ'ର ମନ ବଳୁଛି ।

ଗୋବନ୍ଦ—ଧୈର୍ଯ୍ୟ ଧର—ଧୈର୍ଯ୍ୟ ଧର ଜନନୀ ଦେବୀ !

ଜଗଦମ୍ବା—ଧୈର୍ଯ୍ୟ ଧରିବି ? ମନେକର ଥରେ କି ଘଟଣା ପୁଣି କାଲି ଘଟିଗଲା ? ଯାହାହେତୁ ଗୋଟିଏ ଅବଳା ବାଳିକାର ଆଜି ସର୍ବନାଶ ହୋଇଗଲା ?—ଯାହାହେତୁ ତୁମ୍ଭର ସୁପ୍ରତିଷ୍ଠିତ ବଂଶ-ଗୌରବ ଆଜି ସମୂଳେ ବିନଷ୍ଟ ହୋଇଗଲା ? ଯାହାହେତୁ ଏହି ଦୁର୍ଦ୍ଦଶା—ସେହି ନରାଧମ, ଲମ୍ପଟ ବର୍ତ୍ତମାନ ସୁଦ୍ଧା ନିର୍ଭୀକ ଭାବେ ପ୍ରମୋଦ-ଭବନରେ ଆନନ୍ଦ ଉପଭୋଗ କରୁଛି—ଆଉ ତୁମ୍ଭେ ନ୍ୟାୟବାନ୍, ଧାର୍ମିକ କ୍ଷମତାପନ୍ନ ହୋଇ ସୁଦ୍ଧା ତାହା ଅକ୍ଳେଶରେ ସହ୍ୟ କରୁଛ ! ମୁଁ ନାରୀ—ସ୍ୱଭାବତଃ କୋମଳହୃଦୟ—ମୋ' ହୃଦୟରେ ମଧ୍ୟ ପ୍ରତିହିଂସା ବହ୍ନି ଦାଉ ଦାଉ କରି ଜ୍ୱଳି ଉଠୁଛି ।

ଗୋବନ୍ଦ—( ଭାବି ) ସ୍ଥିରହୁଅ ଜନନୀ । ମୁଁ ଠିକ୍ କଲି ଅଜୁ ଫେରି ଆସିଲେ ଏ' ସ୍ଥାନ ତ୍ୟାଗ କରି ଚାଲିଯିବା—

ଜଗଦମ୍ବା—ଏହିକି ତେବେ ତୁମ୍ଭର ନ୍ୟାୟ, ଧର୍ମ ଓ କ୍ଷମତା ?

ଗୋବନ୍ଦ—କ'ଣ କରିବି, ଜନନୀ—ମହାରାଜା କି ପିତୃ ସମାନ ନୁହନ୍ତି ? ମହାରାଣୀ କି ମାତୃ ସମାନ ନୁହନ୍ତି ? ବିଶେଷତଃ ମୋର ଆଶୈଶବ ପାଳନ କର୍ତ୍ତା—ମୋର ଅନ୍ନଦାତା, ସେହି ଦେବୋପମ ପ୍ରତାପରୁଦ୍ର ଦେବଙ୍କ ମୁଖ ଯେତେବେଳେ ମନେ ପଡ଼େ—ମୋର ହୃଦୟ ଏକ ଅପୂର୍ବ କୃତଜ୍ଞତାରେ ପୂର୍ଣ୍ଣ ହୋଇ ଉଠେ—ମୁଁ ସମସ୍ତ ପାଶୋରି ଯାଏଁ—ଜନନୀ ଦେବୀ । ଅମର କର୍ମଫଳ ଆମକୁ ଭୋଗ କରିବାକୁ ଦିଅ ।

[ ରଙ୍ଗିଲାର ଉନ୍ମାଦିନୀ ଭାବେ ପ୍ରବେଶ ]

ରଙ୍ଗିଲା—ବାବା ! ବାବା ! ଏ' କଥା କଣ ସତ ? ଦେଖନ୍ତୁ ଏ' ପତ୍ର—ମୋର ଆଖିର ଦୋଷ ନୁହେଁ ତ ?—ମୋର ବୁଦ୍ଧିର ଭ୍ରମ ନୁହେଁତ ?—

ଜଗଦମ୍ବା—କି ପତ୍ର, ବୌ ?

ଗୋବିନ୍ଦ—କି ପତ୍ର ?—କାହିଁ ? ଦେଖେଁ—( ପତ୍ର ପାଠ କରୁକରୁ କ୍ରମେ କ୍ରମେ ବ୍ୟାକୁଳିତ ଅଭିନୟ କରି ) "ଷ୍ତ୍ରୀପଣି ଷଡ଼ଯନ୍ତ୍ର—ମୋର ଅଶାତ୍ୟାଗ କରିବ"—କାର ? 'ତୁମ୍ଭର ଅଜୁ !' ଅଜୁ ଲେଖିଛି, ଅଜୁର ଅଶା ତ୍ୟାଗ କରିବ ? ଏ' କଣ ? ମୁଁ ଯେ କିଛି ବୁଝି ପାରୁ ନାହିଁ—

ଜଗଦମ୍ବା—ବୁଝିବାକୁ କଣ ଆଉ ବାକୀ ଅଛି ପ୍ରଭୋ ?

ରଙ୍ଗିଲା—ତେବେ କଣ ସେ ନ.ହାନ୍ତି ? ଏ' କଥାସତ ? ( ପତନ ଓ ମୂର୍ଚ୍ଛା )

ଗୋବିନ୍ଦ—କନିଅ ବୌ ! କନିଅ ବୌ ! ସତେ କଣ ଅଜୁର ଅଶାତ୍ୟାଗ କରିବ ? ( ହତାଶ ଭାବରେ ବସି ପଡ଼ିବା )

ଜଗଦମ୍ବା—ପ୍ରଭୋ ! ପ୍ରଭୋ ! ଏ' କଣ ମୂର୍ଚ୍ଛା ଯିବାର ସମୟ ? ଏ' କଣ ହତାଶ ହେବାର ସମୟ ? ହୃତ-ଶାବା ବ୍ୟାଘ୍ରୀ କି ମନ ଦୁଃଖରେ କେବେ ମୂର୍ଚ୍ଛା ଯାଏ ? ଲଙ୍ଗୁଳାହତ-ଫଣୀ କି ହତାଶ ହୋଇ କେବେ ଶୋଇପଡ଼େ ? ଉଠ, ଜାଗ—ପ୍ରତିଶୋଧ ନିଅ ! ତୁମ୍ଭର ବକ୍ଷସ୍ଥଳରେ ସେ ପଦାଘାତ କରିଛି—ତୁମ୍ଭେ ତା'ର ହୃତପିଣ୍ଡ ଛିଣ୍ଡାଇ ଦେଇ ଅସ—ତୁମ୍ଭର ପ୍ରାଣର ଧନ ସେ ଲୁଣ୍ଠନ କରିଛି—ତୁମ୍ଭେ ତାର ସର୍ବସ୍ୱ ଲୁଣ୍ଠନ କରି ନାରଖାର କରିଦିଅ—ତେବେ ଯଦି ଜ୍ୱଳନ୍ତ ବହ୍ନିର କିଞ୍ଚିତ ଉପଶମ ହୋଇପାରେ—ଜୀବନବ୍ୟାପୀ ଜ୍ୱାଳାର କିଞ୍ଚିତ ଅବସାନ ହୋଇପାରେ ।

ଗୋବିନ୍ଦ—କ'ଣ କହୁଛ, କନିଅ ବୌ ? ମୁଁ ଯେ କିଛି ଭାବି ପାରୁନାହିଁ ।

ଜଗଦମ୍ବା—ଭାବିବାକୁ ଯେ କିଛି ନାହିଁ, ପ୍ରଭୋ ! କେବଳ ଅବସାଦ ପରିତ୍ୟାଗ କର—ସଙ୍କୁଚିତ-ପକ୍ଷ ବିସ୍ତାର କର—ଶିକାର ଅତି ନିକଟରେ ଅଛି—ପ୍ରତିହିଂସା-ସାଧନର ସୁନ୍ଦର ସୁଯୋଗ ଉପସ୍ଥିତ—ଆଉ ହେଲା କରନାହିଁ—ଉଠ—( ଉଠାଇବା ) ଲମ୍ଫ ଦିଅ—ମୁଁ ତୁମ୍ଭଙ୍କୁ ପଦେ ପଦେ ସାହାଯ୍ୟ କରୁଛି ।

ଗୋବିନ୍ଦ—କନିଅବୌ ! କନିଅବୌ ! ମିଛ କଥା—ଅଜୁ ମୋର ଅଛି—ଏ ନିଷ୍ଟୟ ଜାଲ-ପତ୍ର—ମୁଁ ଠିକ ବୁଝି ଅସୁଛି— (ବେଗେ ପ୍ରସ୍ଥାନ)

ଜଗଦମ୍ବା—( ସ୍ୱଗତ ) ଅଉ ଠିକ୍ ଛେଳା ବୁଝିବ ( ପ୍ରକାଶ୍ୟେ ) ଉଠି ଅସ, ବନ୍ଧୁ—ହତାଶ ହେଲେକି ଖାଲି ଚୁଲିବ ? ପ୍ରତିଶୋଧ ଚିନ୍ତା କର ।

ରଙ୍ଗିଲା—( ଉଠିବସି ) ଅଉ କି ପ୍ରତିଶୋଧ ଚାହିଁ ମା ?—ମା'ର ମନସ୍କାମନା ତ ପୂର୍ଣ୍ଣ ହୋଇଛି ।

ଜଗଦମ୍ବା—ବନ୍ଧୁ !

ରଙ୍ଗିଲା—ହାଃ ହାଃ ହାଃ—ମା'ର ମନସ୍କାମନା ପୂର୍ଣ୍ଣ ହୋଇଛି—ମା'କୁ ସନ୍ତୁଷ୍ଟ କରି ପାରିଛି—ତୁମେ ଠିକ୍ କହିଥିଲ ପ୍ରଭୋ ! 'ଆମର ବୁଝିବା ଭୁଲ—ମା ଯେ ସନ୍ତାନ ପ୍ରତି ସର୍ବଦା ସନ୍ତୁଷ୍ଟ'—ନୁହେଁ, ମା ?

ଜଗଦମ୍ବା—ବନ୍ଧୁ ! କଣ ଏଣୁ ତେଣୁ ବକୁଛ ?

ରଙ୍ଗିଲା—'ମନୁଷ୍ୟ କେବେ ମନୁଷ୍ୟକୁ ଘୃଣା କରିପାରେ ନାହିଁ—ସଙ୍ଘାତ ସଙ୍ଘାତ ଭିତରେ କେବେ ଅପଡ଼ ହୁଏ ନାହିଁ !'—ଠିକ୍ କଥା—ସେହି ନିଷ୍କପଟ ବନ୍ଧୁତ୍ୱର ଅଜି କି ସୁନ୍ଦର ପୁରସ୍କାର—ସେହି ସରଳ ବିଶ୍ୱାସର ଆଜି କି ସୁନ୍ଦର ପରିଣାମ—ହାଃ ହାଃ ହାଃ—

ଜଗଦମ୍ବା—ବନ୍ଧୁ ! ତୁମ୍ଭର କଣ ଲଜ୍ଜା ନାହିଁ ?

ରଙ୍ଗିଲା—ଲଜ୍ଜା ! କାହୁଁ ଅସିବ ? ତୁମେ ପରା ସବୁ କାଢ଼ି ନେଇଛ ?

ଜଗଦମ୍ବା—ବନ୍ଧୁ !

ରଙ୍ଗିଲା—ନା—ନା, ମୁଁ ଭୁଲ କହୁଛି—ଅଧେ ତୁମେ ନେଇଛ— ଅଧେ ରାଜା ନେଇଛନ୍ତି ।

ଜଗଦମ୍ବା—କ'ଣ କରୁଛ ବନ୍ଧୁ ? ଚୁଲି ଯାଅ ଏଠୁ ।

ରଙ୍ଗିଲ—ଯାଉଛି, ମା ଯାଉଛି—ଚନ୍ଦନପାଇଁ ଯାଉଛି—ହାଃ ହାଃ—ହାଃ— ( ପ୍ରସ୍ଥାନ )

[ ଜଗଦମ୍ବା ରଙ୍ଗିଲକୁ ଚୁମ୍ବନେନେ ଗୃହଁ ରହିବା ଓ ଜଣେ ପ୍ରତିବେଶିନୀର ପ୍ରବେଶ ]

ପ୍ରତିବେଶିନୀ—ଆହା ! କି ସୁନ୍ଦର ପିଲାଟିଏ—ରୂପରେ ଯେମିତି ଗୁଣରେ ବି ସେମିତି !

ଜଗଦମ୍ବା—ହାୟରେ—ଅଜୁରେ ! ତୁ କୁଆଡ଼େ ଗଲୁ କି ରେ—ଅଜୁରେ ( କାନ୍ଦିବାର ଅଭିନୟ କରିବା )

ପ୍ରତିବେଶିନୀ—କାନ୍ଦନା, ମା—ନ କାନ୍ଦ ବା କପର —ସତଭଉଣୀ-ପୁଅ କଣ ପୁଅ ନୁହେଁ ?

ଜଗଦମ୍ବା—ହାୟ ମୋ ଅଜୁରେ। ତୋତେ ଛାଡ଼ି ମୁଁ କେମିତି ବଞ୍ଚିବି ଅଜୁକିରେ [ କପଟ କାନ୍ଦିବାର ଅଭିନୟ କରିବା ଓ ପ୍ରତିବେଶିନୀ 'କାନ୍ଦନା କାନ୍ଦନା କହି ସାନ୍ତ୍ୱନା କରୁଥିବା' ]

---

## ଦ୍ୱିତୀୟ ଦୃଶ୍ୟ

— ଗଳିରାସ୍ତା —

[ ଗୋବର୍ଦ୍ଧନର ପ୍ରବେଶ ]

ଗୋବର୍ଦ୍ଧନ—କାହିଁ ନାନୀ ? ଏତେବେଳ ଯାଏ ଅସୁନାହିଁ କାହିଁକି ? ଉଃ କି ଅନ୍ଧାର ! ମୋର ବାହାରେ ଭିତରେ ଚାରିଆଡ଼େ ଯେପରି ଘୋଟି ରହିଛି । ( କାନ ଡେରି ) ଏହି ନାନୀ ଅସୁଛି ପରା !

[ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—କାହିଁ ତୁ ଗୋବରା ? ମୋତେ ଯେ କିଛି ଦିଶୁ ନାହିଁ ।

ଗୋବର୍ଦ୍ଧନ—ଏହି ଯେ ମୁଁ ନାନୀ ।

ଜଗଦମ୍ବା—ଉଃ ଅଜି କି ଅନ୍ଧାର !

ଗୋବର୍ଦ୍ଧନ—ଏହିପରି ଅନ୍ଧାର ଦିନ ରାତି ଆମମାନଙ୍କର ଦରକାର ନାନୀ ।

ଜଗଦମ୍ବା—ବଦ୍ମାଶଟା ଯେପରି କିଛି କିଛି ବୁଝି ପାରିଛି, ଗୋବର୍ !

ଗୋବର୍ଦ୍ଧନ—କାହିଁକି ? ମୁଁ'ତ ଅବିକଳ ଅଜୁର୍ ଅକ୍ଷର ଲେଖିଥିଲି—

ଜଗଦମ୍ବା—ସେଥିରୁ କଣ ସନ୍ଦେହ କରୁଛି ? ଛାଡ଼—ଚିଠିଟା ଏକା ବେଶ ସମୟରେ ପଠାଇଥିଲୁ—କିନ୍ତୁ କଣ ହେବ ? 'ମୋତେ ଯେତେ ମାଡ଼ିବୁ ମାଠ, ମୁଁ ସେହି ଦର ପୋଡ଼ା କାଠ !'

ଗୋବର୍ଦ୍ଧନ—ସତେ ନାନୀ ! ଏପରି ମଣିଷ ମୁଁ ଦୁନିଆରେ ଆଉ ଗୋଟିଏ ଦେଖି ନାହିଁ ।

ଜଗଦମ୍ବା—ଗୋବରା । ତୋତେ କେହି ସନ୍ଦେହ କରି ନାହାନ୍ତି ତ ?

ଗୋବର୍ଦ୍ଧନ—ହାଃ—ହାଃ—ହାଃ—ଗୋବର୍ଦ୍ଧନ ପରି ବୁଦ୍ଧି ହେଲେତ ଗୋବର୍ଦ୍ଧନକୁ ସନ୍ଦେହ କରିବ —ଶୁଣ ନାନୀ ! ଅଜି ଯେତେବେଳେ ନଗରମୟ ରାଷ୍ଟ୍ର ହୋଇଗଲା—ମହାରାଜା ଷଡ଼ଯନ୍ତ୍ର କରି ଅର୍ଜୁନକୁ ମରାଇଛନ୍ତି, ତେତେବେଳେ ସେ ଆଶ୍ଚର୍ଯ୍ୟ ପ୍ରକାଶ କରି ସମସ୍ତଙ୍କୁ ଡାକି କହିଲେ ଯେ ଅର୍ଜୁନକୁ ହତ୍ୟା କରିବାର ଆଦେଶ ସେ ଆଦୌ ଦେଇ ନାହାନ୍ତି—ଏ ନିଶ୍ଚୟ ଅନ୍ୟ କାହାରି କାର୍ଯ୍ୟ—

ଜଗଦମ୍ବା—ତା' ପର କଣ ହେଲା ?

ଗୋବର୍ଦ୍ଧନ—ସୁତରାଂ ସମସ୍ତଙ୍କର ସନ୍ଦେହ ମୋ ଉପରେ ପଡ଼ିଲା ।

ଜଗଦମ୍ବା—ତୁ ସେଠୁ କଣ କଲୁ ?

ଗୋବର୍ଦ୍ଧନ—ମୁଁ ସେଠୁ ହୁକୁମନାମା ଖଣ୍ଡିକ ପଢ଼ିଦେଲି ।

ଜଗଦମ୍ବା—ତା ପର କ'ଣ ହେଲା ?

ଗୋବର୍ଦ୍ଧନ—ରାଜା ମେଘ ଗର୍ଜ୍ଜନରେ କହି ଉଠିଲେ 'ଏ' ଜାଲ-ହୁକୁମ' ।

ଜଗଦମ୍ବା—ତା ପର ତୁ କଣ କଲୁ ?

ଗୋବର୍ଦ୍ଧନ—ମୁଁ ତୁନି କରି ହୁକୁମ-ନାମା ଖଣ୍ଡିକ ସମସ୍ତଙ୍କ ଆଗରେ ଥୋଇ ଦେଲି—ଶେଷକୁ ରାଜାଙ୍କ ହାତକୁ ବଢ଼ାଇ ଦେଲି ।

ଜଗଦମ୍ବା—ସେଠୁ କ'ଣ ହେଲା ?

ଗୋବର୍ଦ୍ଧନ—ନିଜର ଦସ୍ତଖତ ଦେଖି ରାଜାତ ଛାନିଅ—ଭାଗ୍ୟକୁ ଅମେ ବୁଦ୍ଧିର କାମ କରି ଶାଦା କାଗଜରେ ଦସ୍ତଖତଟି କରାଇ ରଖି ଥିଲୁଁ ?

ଜଗଦମ୍ବା—ସେ କିଛି କହିଲେ ନାହିଁ ?

ଗୋବର୍ଦ୍ଧନ—କାଏ ଭେଣେଇ ନା ? ହୁକୁମ ନାମା ଖଣ୍ଡିକ ନ ଦେଖିବା ଯାଏ ତ ମୋ ଆଡ଼େ କଟ୍ ମଟ୍ କରି ଚାହିଁ ଥିଲେ—ଯେମିତ ସେଖଣ୍ଡିକ ଦେଖିଛନ୍ତି—ରାଜାଙ୍କ ଆଡ଼କୁ ଚାହିଁ ଗୋଟାଏ ଲମ୍ବା ଚୌଡ଼ା ନିଃଶ୍ୱାସ ଛାଡ଼ି ମୁଣ୍ଡରେ ହାତ ଦେଇତ ବସି ପଡ଼ିଲେ ।

ଜଗଦମ୍ବା—ତେବେ ବି ସୁଦ୍ଧା ତାଙ୍କ ଉପରେ ରାଗିଲେ ନାହିଁ ?

ଗୋବର୍ଦ୍ଧନ—ରାମ କୃଷ୍ଣଃ ! ଆଜି କାଲି ଭଲା କେମିତ ଦେଖୁଛୁ ?

ଜଗଦମ୍ବା—ଖାଲି ଅକୁଅକୁ ବୋଲି ଡକା ପାରୁଛନ୍ତି—ଅଉ ଥାଇ ଥାଇ ମୂର୍ଚ୍ଛା ଯାଉଛନ୍ତି—ଏଇ କାମ—ଅଟେ ଭଲା କୁହନ୍ତେ 'ପ୍ରତିଶୋଧ—ପ୍ରତିଶୋଧ' ।

ଗୋବର୍ଦ୍ଧନ—ଏତେ ପରିଶ୍ରମ ସବୁ କଣ ମାଟି ହୋଇ ଗଲା, ନାନୀ ?

ଜଗଦମ୍ବା—ତେବେ ତୋର ଅବଧାନ କଥା କ'ଣ ମିଛ ହେଲା ଗୋବରା ?

ଗୋବର୍ଦ୍ଧନ—କଣ ? ଅବଧାନ କଥା ମିଛ ହବ ? ଅଉ କ'ଣ କିଛି ଉପାୟ ନାହିଁ ?

ଜଗଦମ୍ବା—ଏହାଠୁ ବଳି ଅଉ କି ଉପାୟ କରି ପାରିବୁ ଗୋବରା ?

ଗୋବର୍ଦ୍ଧନ—ଆଜି ଯା, ନାନୀ—ରାତି ଅନେକ ହେଲାଣି—କାଲି ଗୋଟାଏ ଉପାୟ ଭାବି ନିଶ୍ଚୟ ଠିକ୍ କରିବି ।

ଜଗଦମ୍ବା—ଯେତେ ଚଞ୍ଚଳ ପାରୁ, ଠିକ୍ କର—ଗୋବରା ଆଜି ତୁ କେଉଁଠି ରହିବୁ ?

ଗୋବର୍ଦ୍ଧନ—ଯେଉଁଠି ସୁବିଧା ଦେଖିବି ।

ଜଗଦମ୍ବା—ସାବଧାନ ହୋଇ ରହୁଥିବୁ ।

ଗୋବର୍ଦ୍ଧନ—ମୋ ପାଇଁ କିଛି ଭାବନା ନାହିଁ ନାନୀ—ଭାବିବୁ ଯଦି ଖାଲି ଭେଣେଇଙ୍କ ପାଇଁ ଭାବ—ଭାବିବୁ ବା କାହିଁକି ? ଅବଧାନ କଥା ନିଶ୍ଚୟ ଫଳିବ ।

ଜଗଦମ୍ବା—ଈଶ୍ୱର ଜାଣନ୍ତି ।

( ବିପରୀତ ଦିଗରେ ଉଭୟଙ୍କ ପ୍ରସ୍ଥାନ )

[ ଗୁପ୍ତ ସ୍ଥାନରୁ କମଳାର ପ୍ରବେଶ ]

କମଳା—ଆହୁରି ପୁଣି କ'ଣ କରିବାକୁ ଯାଉଛନ୍ତି ? ମା, ମା ! ଏଡ଼େ ରାକ୍ଷସୀ ତୁହି ! ମାମୁଁ, ମାମୁଁ ! ଏଡ଼େ ପିଶାଚ ତୁମ୍ଭେ ! ତୁମ୍ଭମାନଙ୍କ ହେତୁ ଅଳୁଭାଇ ମୋର, ଏ ସଂସାରରେ ଆଉ ନାହିଁ । ଭାଇ ! ଭାଇ ! କେଉଁଠାକୁ ଚାଲିଗଲ ? ସାନ ଭଉଣୀକୁ ତୁମର ଏତେ ଆଦର, ଏତେ ଯତ୍ନ କରୁଥିଲ, ତାକୁ କାହିଁକି ସାଙ୍ଗରେ ନ ନେଇ ଚାଲିଗଲ ? ( କାନ୍ଦିବା )

[ ରଙ୍ଗିଲାର ପ୍ରବେଶ ]

ରଙ୍ଗିଲା—ମା ଏତେ ରାତିରେ କୁଆଡ଼େ ଯାଇଥିଲେ ? ନିଶ୍ଚୟ ପୁଣି କୌଣସି ଷଡ଼ଯନ୍ତ୍ର ଚାଲିଛି ।—ଛାଡ଼, ମୋର ଅଉ ସେଥିରେ କି ପ୍ରୟୋଜନ—ମୋର ଅଉ ଏ ସଂସାର ସହିତ କି ସମ୍ବନ୍ଧ ?—ସ୍ତ୍ରୀର ଯାହା ଗୌରବର ସାମଗ୍ରୀ, ତାହା ଯେତେ-ବେଳେ ଚୂର୍ଣ୍ଣିଭୂତ—ସ୍ତ୍ରୀର ଯେ ପ୍ରଧାନ ଭରସା, ସେ ଯେତେବେଳେ ଅନ୍ତର୍ହିତ—ସେତେବେଳେ ଏ ଜୀବନରେ ମଧ୍ୟ ମୋର ଅଉ କି ପ୍ରୟୋଜନ ? କାହିଁ ପାଇଁ ଅଉ ଏ ନିଃସହାୟ କଳଙ୍କିତ-ପ୍ରାଣ ବହନକରି ଆପଣାକୁ ଓ ପରକୁ କଷ୍ଟ ଦେବି ? ଯାଏଁ, ଯେତେ ଶୀଘ୍ର ପାରେ ପତିଙ୍କ ସଙ୍ଗେ ମିଳିତ ହୁଏ ! ଆହା କମଳ ସଙ୍ଗେ ଟିକିଏ ଦେଖା ହୋଇଥାନ୍ତା—କେଉଁଠି ସେ ଶୋଇଛି, ଖୋଜି ପାଇଲି ନାହିଁ—ଖାଲି ବାବାଙ୍କ ବିଷୟରେ ତାକୁ ସାବଧାନ କରିଥାନ୍ତି—

କମଳା—କିଏ ? ନୂଆ ବହୂ !

ରଙ୍ଗିଲା—ଏହି ଯେ କମଳ ! ତୁମେ ଏତେବେଳେ ଏଠି କାହିଁକି ଭଉଣି ?

କମଳା—ଜୁହନା, ନାନୀ ! ( କାନ୍ଦିବା )

ରଙ୍ଗିଲା—ମୁଁ ଜାଣେ ଭଉଣୀ, ତୁମେ ମା'ଙ୍କ ପଛେ ପଛେ ଆସିଥିଲ !

କମଳା—ନାନୀ ! ( ଭୁଣ୍ଡେଇ ପକାଇ କାନ୍ଦିବା )

ରଙ୍ଗିଲା—ମୋ' କଥାଟିକ୍ କି ନା ବୁଝିଲଲ ?

କମଳା—ନାନୀ ! ମା, ମାମୁଙ୍କ ଦଶା କଣ ହେବ ?

ରଙ୍ଗିଲା—( ଦୀର୍ଘନିଃଶ୍ୱାସ ତ୍ୟାଗକରି) ଈଶ୍ୱର ଜାଣନ୍ତି ! —ମୁଁ ଆଜି ଯାଉଛି, କମଳ !

[ କମଳାକୁ ଆଲିଙ୍ଗନ କରି କାନ୍ଦିବା ]

କମଳା—କେଉଁଠାକୁ ଯାଉଛ ନାନୀ ?

ରଙ୍ଗିଲା—ଯେଉଁଠାକୁ ତୁମର ଭାଇ ଯାଇଛନ୍ତି, ଭଉଣି !

କମଳା—ମୋତେ ବି ସେଠାକୁ ନେଇଚାଲ, ନାନୀ !

ରଙ୍ଗିଲା—ନା, କମଳ ! ତୁମର ସେଠାକୁ ଯିବାର ସମୟ ଆସି ନାହିଁ—ତୁମର ଏ'ଠି ଅନେକ କାମ—ଦେଖ, ଭଉଣି ! ବାବାଙ୍କ ପାଇଁ ମୋର ଭାରି ଭୟ !

କମଳା—ତେବେ କଣ ବାବାଙ୍କୁ ମୋର ହରାଇବି ନାନୀ !

ରଙ୍ଗିଲା—ତୁମେ ସାବଧାନ ହେଲେ କିଛି ଭୟନାହିଁ—ଏତିକି କଥା ଖାଲି କହିଯିବି ବୋଲି ତୁମକୁ ଖୋଜୁଥିଲି—ବର୍ତ୍ତମାନ ମୁଁ ଆସୁଛି, ସକାଳ ହୋଇ ଯିବ ! (ପ୍ରସ୍ଥାନ)

କମଳା—ନୂଆ ବୌ, ନୂଆ ବୌ ! ଶରଦନ ପାଇଁ କଣ ତୁମ କମଳକୁ ଛାଡ଼ି ଚାଲି ଯାଉଛ ? ଯାଅ, ନୂଆ ବୌ ! ଆନନ୍ଦରେ ତାଙ୍କ ନିକଟକୁ ଚାଲିଯାଅ ! ତୁମେ ଠିକ୍ କହୁଛ, ମୋର ଏଠାରେ ଅନେକ କାମ—ବାବାଙ୍କ ପାଇଁ ଭାରିଭୟ—କିନ୍ତୁ ଏ' ବାଳିକା ଏକା କଣ କରି ପାରିବ ? ତେବେ ପ୍ରାଣ ଥିବାଯାଏ କମଳା ଅଙ୍ଗୁଠି ତା'ର ପିତାର ପ୍ରହରୀ ହୋଇ ରହିବ—ବଉଳକୁ ମଧ୍ୟ କହିଦେବି ସେ ମହାରାଜା ଓ ରାଣୀମାଙ୍କ ପ୍ରହରୀ ହୋଇ ରହିବ—ମା ! ତୁମେ ଆମ୍ଭର ଧୂଳିଖେଳ ଭାଙ୍ଗି ଦେଇଛ—କିନ୍ତୁ ଏ' ଖେଳ କେବେଭାଙ୍ଗି ପାରିବ ନାହିଁ ! (ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

—ଉଦ୍ୟାନ—

[ କଲ୍ୟସୁଦେବ ଭ୍ରମଣ କରୁଥିବା ]

କଲ୍ୟସୁ—ମୁଁ ହୁକୁମ ଦେଇଛି !—ମୁଁ ଦସ୍ତଖତ କରିଛି !—ନିଶ୍ଚୟ ନୁହେଁ—ନିଶ୍ଚୟ ତାହା ଜାଲ୍—ନିଶ୍ଚୟ ତାହା ମିଥ୍ୟା—ତାହିଁ ସେ କାଗଜ ? କିଏ ଅଛି ?

[ ଜନୈକ ଦେହରକ୍ଷୀର ପ୍ରବେଶ ]

ଦେହରକ୍ଷୀ—ମହାରାଜ !

କଲ୍ୟସୁ—କାହିଁ ସେ କାଗଜ ?

ଦେହରକ୍ଷୀ—କେଉଁ କାଗଜ, ମହାରାଜ ?

କଲ୍ୟସୁ—ତୁ ଜାଣୁନା ? ଉପରେ ଚନ୍ଦ୍ର-ତାରା—ଶୂନ୍ୟରେ ପକ୍ଷୀ-ପତଙ୍ଗ—ନିମ୍ନରେ ବୃକ୍ଷ-ଲତା, ସମସ୍ତେ ଜାଣନ୍ତି, ତୁ ଜାଣୁନା ?

ଦେହରକ୍ଷୀ—ମହାରାଜ !

କଲ୍ୟସୁ—ମୁଁ କପରି ଖଣ୍ଡେ ଧଳା କାଗଜରେ ଖାଲି ଗୋଟିଏ ଦସ୍ତଖତ କରିଦେଲି—ସଙ୍ଗେ ସଙ୍ଗେ ଗୋଟିଏ ଲୋକର—ଲୋକ ପରି ଲୋକର—ମୋ'ର ପୁଣି ଅବାଲ୍ୟ ସହଚରର ମୁଣ୍ଡଚ୍ଛେଦ ହୋଇଗଲା !

ଦେହରକ୍ଷୀ—ମହାରାଜ !

କଲ୍ୟସୁ—ତେତିକ ନୁହେଁ—ଗୋଟିଏ ଅବଳା ବାଳିକାର—ସାଧ୍ୱୀ ସ୍ତ୍ରୀର—ମୋ'ର ଅବାଲ୍ୟ ସଖୀର—ସେହି ରଙ୍ଗିଲାର ସର୍ବନାଶ ହୋଇଗଲା —ତା ନାମରେ ଚିରଅଡ଼େ ହିଚାରିଣୀ କଳଙ୍କ ରହି

ଗଲା—ତାର ମୁଣ୍ଡର ସିନ୍ଦୂର ଶରଦ୍ଦନ ପାଇଁ କେଉଁଆଡ଼େ ଉଡ଼ିଗଲା !

ଦେହରକ୍ଷୀ—ମହାରାଜ !

କଲ୍ପସୁ—ମୁଁ ଠିକ୍ କରିଥିଲି, ଅଜୀବନ କୁମାର ରହିବି—ସାରା ଜୀବନ ନିଷ୍ଠଲରେ ବସି ମୋର ମାନସୀ-ପ୍ରତିମାକୁ ଧ୍ୟାନ କରୁଥିବି—କିନ୍ତୁ କିଏ ସେ ଆସି ମୋ ଉପରେ ପୂର୍ଣ୍ଣ ଅଧିକାର କରି ବସିଲା, ମୋତେ ଅନ୍ୟପଥ ଦେଖାଇଦେଲା—ମୁଁ ଦୁର୍ବଳ, ତାର କଥାରେ ସମ୍ମତ ହେଲି, ତାର କଥାରେ ଚାଲିଲି—ସୁତରାଂ ଦେଶ୍ ତ୍ୟାଗି କରିଛି—ଦେଶ ପାପ ଅର୍ଜନ କରିଛି—କିନ୍ତୁ ପ୍ରତିଫଳ କି ପାଇଛି ? କିଛି ତ ଏ' ପର୍ଯ୍ୟନ୍ତ ପାଇ ନାହିଁ । ଉଃ । ମୋର କି ଦଶା ହେବ ? ମୋର କି ଗତି ହେବ ? ( ଭୂମିରେ କମ୍ପିବା )

ଦେହରକ୍ଷୀ—ମହାରାଜ । ସ୍ଥିର ହେଉନ୍ତୁ ।

କଲ୍ପସୁ—ହାଃ ହାଃ ହାଃ—ସ୍ଥିର ହେବି ? ଏହି ଅସ୍ଥିର ହୃଦୟକୁ ବହନ କରି ?

ଦେହରକ୍ଷୀ—ମହାରାଜ !

କଲ୍ପସୁ—ଦେଖ, ଦେଖ, ରକ୍ଷୀ ! ଏହି ତାରକାଖଚିତ-ବିଶାଳ ଆକାଶ କିପରି ମୋର ମୁଖାବଲୋକନ ମାନଙ୍କେ ସ୍ପନ୍ଦିତ ହେଉଛି—ଏହି ମୃଦୁ ମନ୍ଦ ଦକ୍ଷିଣା ପବନ କିପରି ମୋର ଗାତ୍ର ସ୍ପର୍ଶ ମାନଙ୍କେ ଝଟିକା ବେଗ ଧାରଣ କରୁଛି—ଏହି ସର୍ବଂସହା-ପୃଥିବୀ କିପରି ମୋର ଚରଣତଳସ୍ପର୍ଶ ମାନଙ୍କେ ଆଲୋଡ଼ିତ ହେଉଛି—କିପରି ଅସ୍ଥିର ମୁହିଁ !—କିପରି ଅସ୍ଥିର ମୋର ସର୍ବାଙ୍ଗ ! ( କମ୍ପିବା )

[ ଗୋବଦ୍ଧନର ପ୍ରବେଶ ]

ଗୋବଦ୍ଧନ—ମହାରାଜ !

କଲ୍ପସୁ—କିଏ ? ମନ୍ତ୍ରୀ ଭାଇ ? କାହିଁ ସେ କାଗଜ ? ଠିକ୍ ମୋହର ଦସ୍ତଖତ୍ ? ଜାଲ୍ ନୁହେଁତ ? ତୁମ୍ଭେ ଠିକ୍ ପରୀକ୍ଷା କରି ଦେଖିଛତ ? କାହିଁ ଆଉ ଥରେ ମୋତେ ଦେଖାଅ ?

ଗୋବଦ୍ଧନ—ମହାରାଜ । ଯାହା ହେବାର ହୋଇଛି—ଉତରକୁ ଚାଲନ୍ତୁ—ମା ସେ ଭାବି ବ୍ୟସ୍ତ ହେଉଛନ୍ତି ।

କଲ୍ପସୁ—କାହିଁ ତୁମେତ ବ୍ୟସ୍ତ ହେଉ ନାହଁ ? ତୁମର ପୁତ୍ର ଯାଇଛି—ତୁମର ପୁତ୍ରବଧୂ କଳଙ୍କିନୀ ଓ ଦେଶତ୍ୟାଗିନୀ ହୋଇଛି—ଆପଣାର ସୁପ୍ରତିଷ୍ଠ ବଂଶ-ଗୌରବ ଓ ସମ୍ମାନ ସମୂଳେ ଉତ୍ପାଟିତ ହୋଇଛି—କାହିଁ ତୁମେତ ତିଳେମାତ୍ର ବ୍ୟସ୍ତ ହେଉ ନାହଁ ?

ଗୋବଦ୍ଧନ—କାହିଁକି ବ୍ୟସ୍ତ ହେବି, ମହାରାଜ ?—ମୁଁ ଯେ ରାଜାଙ୍କ ପାଇଛି—ରାଜାର ଉପକାରାର୍ଥ—ଦେଶର ଉପକାରାର୍ଥ—ଅକାତରେ ଲକ୍ଷ ଲକ୍ଷ କୋଟି କୋଟି ପ୍ରାଣ ବଳି ଦିଆଯାଏ—ମୁଁ ଯେବେ ଦୁଇଟି ମାତ୍ର ପ୍ରାଣବଳିଦ୍ୱାରା—ନିଜର ସାମାନ୍ୟ ବଂଶ ମର୍ଯ୍ୟାଦା ବଳିଦ୍ୱାରା, ରାଜାର ପରମ ଉପକାର କରି ପାରିଲି—ଦେଶର ପ୍ରଭୂତ କଲ୍ୟାଣ ସାଧନ କରି ପାରିଲି—ତେବେ ଆଉ ଭାବନା କାହିଁକି ? ବ୍ୟସ୍ତହେବାର କାରଣ କଣ ?

କଲ୍ପସୁ—ମନ୍ତ୍ରୀଭାଇ । ମନ୍ତ୍ରୀଭାଇ । ଏ ବଜ୍ରତୀକ୍ଷ୍ଣ ଛୁରିକା ଆଉ ପ୍ରୟୋଗ କର ନାହିଁ—ଏଥିର ମଧୁର ବିଷଜ୍ୱାଳା ପୁଣି ନିତାନ୍ତ ଅସହ୍ୟ—ଉଃ, ଘୋର ଜ୍ୱାଳା—ଘୋର ଯନ୍ତ୍ରଣା—ରକ୍ଷାକର—ରକ୍ଷାକର—ମୁଁ ପରା ତୁମ୍ଭର ସାନଭାଇ—ତୁମେ ପରା ମୋତେ କାଖ କରିଛ—ତୁମେ ପରା ମୋତେ ମଣିଷ କରିଛ—ଟିକିଏ ଦୟା ହେଉ ନାହିଁ—ଟିକିଏ ଅନୁକମ୍ପା ହେଉନାହିଁ ? ହାତ ଧରୁଛି—ଗୋଡ଼ ଧରୁଛି—ଅବୋଧ ଶିଶୁକୁ—

ଗୋବଦ୍ଧନ—ମହାରାଜ । ମହାରାଜ । ଏ'କଣ କରୁଛନ୍ତି ? ଏ' କୋଳରେ, ଏ' ଦେହରେ ଯେ ଆପଣଙ୍କର ଚିରଅଧିକାର—ଆସନ୍ତୁ ଏ' କୋଳକୁ, ମହାରାଜ ! ( ଆଲିଙ୍ଗନ କରିବାକୁ ଯିବା )

କଲ୍ପସୁ—ଛୁଇଁ ନାହିଁ ଭାଇ । ଦେଖ, ଦେଖ—କିଏ ସେହି ? ନିଷ୍ଠୁର ସେହି ଗୋବର୍ଦ୍ଧନ—ନିଷ୍ଠୁର ସେହି ପାପିଷ୍ଠ ।

ଗୋବିନ୍ଦ—କାହିଁ ? କେଉଁଠି ?

କଲ୍ୟୁ—ସେହିଠି—ସେହି ଜଙ୍ଗଲଭିତରେ—ଦେଖି ପାରୁନାହଁ—ଧିଅ ମୋତେ ଡରବାଏ—ମୁଁ ଖନ୍ କରି ଆସେ—ନଚେତ୍ ସେ ଏହିକ୍ଷଣି ତୁମକୁ ଖୁନ୍ କରିବ—ମୋତେବି ଖୁନ୍ କରିବ ।

( ଗମନୋଦ୍ୟତ )

ଗୋବିନ୍ଦ—ମହାରାଜ ! କେହି ନାହାନ୍ତି, ଆପଣ ସ୍ଥିର ହେଉନ୍ତୁ ।

କଲ୍ୟୁ—କାହିଁ ଅଜିତ ଦିଶୁ ନାହିଁ ? ତେବେ କଣ ସେ ଚାଲିଗଲା ? କାଲି ତାକୁ ଧରି ଅଣ, ମନ୍ତ୍ରି—ମହାରାଜାଙ୍କ ହୁକୁମ—ସେହି ମୋର ସର୍ବନାଶ କରୁଛି ।

ଗୋବିନ୍ଦ—ଅଚ୍ଛା କାଲିକାର କଥା କାଲି ହେବ—ଆପଣ ବର୍ତ୍ତମାନ ଭିତରକୁ ଚାଲନ୍ତୁ ।

କଲ୍ୟୁ—ନା, ମନ୍ତ୍ରିବର ମୁଁ ଭିତରକୁ ଯିବନାହିଁ—ମା ଗାଲିଦେବେ ।

ଗୋବିନ୍ଦ—ନା, ମହାରାଜ ! ମା ଗାଲି ଦେବେ ନାହିଁ—ଗାଲିଦେଲେ ମୁଁ ଅଛି ।

କଲ୍ୟୁ—ସମସ୍ତ ପ୍ରଜା ଯେ ମୋ ବିରୁଦ୍ଧରେ ବର୍ତ୍ତମାନ ଦଣ୍ଡାୟମାନ ?

ଗୋବିନ୍ଦ—( ସହାସ୍ୟେ ) ଭୟ କ'ଣ ?

କଲ୍ୟୁ—ଭୟ ହେବ ନାହିଁ ? ତୁମେ ବୃଦ୍ଧ—ନିଃସହାୟ—ଏକା କ'ଣ କରିବ ?

ଗୋବିନ୍ଦ—ଏକା କ'ଣ କରିବ ? ଜାଣନ୍ତି ନାହିଁ, ମହାରାଜ ! ଏ'ବୃଦ୍ଧ ସ୍ୱର୍ଗୀୟ ପିତାଙ୍କ ଅନୁଗ୍ରହରେ କେତେ ଶକ୍ତି ଧାରଣ କରିଛି ! ସମସ୍ତ ଉତ୍କଳ-ସେନା ଏ ବୃଦ୍ଧର ଇଙ୍ଗିତରେ ଚାଲନ୍ତି—ସମସ୍ତ ପ୍ରଜା ଏ ନିଃସହାୟର ଚରଣ ପ୍ରାନ୍ତରେ ଅବନତ ! ସମଗ୍ର ଉତ୍କଳଖଣ୍ଡ ଏ ରାଜ-ଭକ୍ତର ମୁଷ୍ଟି ମଧ୍ୟରେ ଅବସ୍ଥିତ ?

କଲ୍ୟୁ—ତେବେ ଏ ଦୁର୍ବଳ କନିଷ୍ଠ ଭାଇକୁ ଆଶ୍ରୟ ଦେବ ତ, ଭାଇ ?

ଗୋବିନ୍ଦ—ମହାରାଜ ! ମହାରାଜ ! ( ଆଲିଙ୍ଗନ କରି ) ଅଜ କି ଆନନ୍ଦ ! ପୁତ୍ରକୁ ହରାଇ, ରାଜାଙ୍କୁ ପାଇଛି—ନିଜର ବଂଶ ବଳି ଦେଇ, ରାଜ-ବଂଶ ରକ୍ଷା କରିଛି ! (ସମସ୍ତଙ୍କର ପ୍ରସ୍ଥାନ)

[ ଗୋବର୍ଦ୍ଧନର ପ୍ରବେଶ ]

ଗୋବର୍ଦ୍ଧନ—ଏତେ ଦୂର ! ଯେଉଁ ଗୋବର୍ଦ୍ଧନ ନ ହେଲେ ଦଣ୍ଡେ ଚଳୁ ନ ଥିଲା—ସେହି ଗୋବର୍ଦ୍ଧନ ବର୍ତ୍ତମାନ ଜାତି-ଶତ୍ରୁ ! ଭାଗ୍ୟେ ଅନ୍ୟ କାହାରି ନଜରରେ ପଡ଼ି ନାହିଁ—ତା ନ ହେଲେତ ଦଫାରଫା ହୋଇଥାନ୍ତା ! ଏବେ ଉପାୟ କଣ ? ଭେଣେଇଙ୍କର ମଧ୍ୟ କୌଣସି ପରିବର୍ତ୍ତନ ସମ୍ଭାବନା ଦେଖୁ ନାହିଁ ! ଅବଧାନ କଥା କଣ ତେବେ ମିଛ ହେଲା ? କଦାପି ନୁହେଁ ! ଯାଏଁ, ନାନୀ ସଙ୍ଗେ ପରାମର୍ଶ କରେଁ ।

( ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—କକ୍ଷ—

[ ଅର୍ଜୁନ ଓ ବୀରେନ୍ଦ୍ର ]

ଅର୍ଜୁନ—ମୋର କିନ୍ତୁ ବିଶ୍ୱାସ ହେଉନାହିଁ ଯେ ସଙ୍ଗାତ ଏପରି ଷଡ଼ଯନ୍ତ୍ର କରିବ ।

ବୀରେନ୍ଦ୍ର—ଆପଣଙ୍କ ପରି ସରଳ ଲୋକତ ବିଶ୍ୱାସ କରି ପାରିବ ନାହିଁ ।

ଅର୍ଜୁନ—ଆପଣ କଣ ବିଶ୍ୱାସ କରନ୍ତି ଯେ ସାମାନ୍ୟ ଗୋଟିଏ ସ୍ତ୍ରୀ ପାଇଁ ଲୋକ ଏତେଦୂର ନୀଚ କାର୍ଯ୍ୟ କରିପାରେ ?

ବୀରେନ୍ଦ୍ର—( ମନ୍ଦହାସ୍ୟ କରିବା )

ଅର୍ଜୁନ—ହସିଲେ ଯେ ?

ବୀରେନ୍ଦ୍ର—ଆପଣ, ଦେଖୁଛି ସଂସାର ମଧ୍ୟରେ ଆଦୌ ପ୍ରବେଶ କରି ନାହାନ୍ତି ।

ଅର୍ଜୁନ—ସଂସାର ମଧ୍ୟରେ ପ୍ରବେଶ କଲେ କଣ ଦେଖିବାକୁ ହୁଏ ଯେ ଲୋକ ସାମାନ୍ୟ ସ୍ତ୍ରୀ ଲୋଭରେ ନରହତ୍ୟା, ନିଜର ସଙ୍ଗାତକୁ ପର୍ଯ୍ୟନ୍ତ ହତ୍ୟା କରିବାକୁ କୁଣ୍ଠିତ ନୁହେଁ ? ନା, ନା ତା

ନାହିଁକି ହେବ ? ଯଦି ଏ ଷଡ଼ଯନ୍ତ୍ର ସତ୍ୟ ହୁଏ—
ଆପଣତ ମୋର ଅପରିଚିତ—ଆପଣ ନାହିଁକି
ରାଜାଦେଶ ଭୁଲ୍ଲ କରି—ନିଜର ପ୍ରାଣକୁ ଉତ୍ସର୍ଗ
କରି, ଅପରର ପ୍ରାଣରକ୍ଷା କରିବାକୁ ଉଦ୍ୟତ ?
ଏ' ସଂସାର କଦାପି ପାପମୟ ନୁହେଁ—ସଙ୍ଗୀତ
ଯେବେ ଏହି ନୀଚ ଷଡ଼ଯନ୍ତ୍ରକାରୀ ହୋଇଥାନ୍ତି,
ତେବେ ସେ ନିଶ୍ଚୟ ଉନ୍ମାଦ ।

ବୀରେନ୍ଦ୍ର—ନିଶ୍ଚୟ ଉନ୍ମାଦ କହିବାକୁ ହେବ ।

ଅର୍ଜୁନ—ତେବେ ଆଉ କ'ଣ ? ଉନ୍ମାଦ ଯେ ବେଳେ
ବେଳେ ପିତୃ-ମାତୃ-ହତ୍ୟା, ଆତ୍ମ-ହତ୍ୟା ପର୍ଯ୍ୟନ୍ତ
କରି ବସେ—ସଙ୍ଗୀତକୁ ଯେ ହତ୍ୟା କରିବାକୁ
ଆଦେଶ ଦେବ, ସେଥିରେ ବିଚିତ୍ରତା କ'ଣ ?
କିନ୍ତୁ—

ବୀରେନ୍ଦ୍ର—କିନ୍ତୁ କ'ଣ ?

ଅର୍ଜୁନ—ମୁଁ ତ ଉନ୍ମାଦର ଲକ୍ଷଣ କିଛି ଦେଖି ଆସି ନ
ଥିଲି—ହଠାତ୍ କିଣ ଏହି ପରିବର୍ତ୍ତନ ଘଟିଛି,
ନା ମୁଁ ବୁଝି ପାରି ନ ଥିଲି ? ହାୟ ! ହାୟ !
ସଙ୍ଗୀତ ଉନ୍ମାଦ ହୋଇଛନ୍ତି । ଏହିକ୍ଷଣି ମୋତେ
ବିଦାୟ ଦିଅନ୍ତୁ—ସଙ୍ଗୀତଙ୍କ ପାଇଁ ମନ ବଡ଼
ବ୍ୟାକୁଳ ହେଉଛି !

ବୀରେନ୍ଦ୍ର—ଆପଣ ନିଜେ ଯେ ଉନ୍ମାଦ, ଦେଖୁଛି !

ଅର୍ଜୁନ—ବାସ୍ତବିକ, ସଙ୍ଗୀତ ଉନ୍ମାଦ ଜାଣି, ମୁଁ
ଉନ୍ମାଦ ହେଉଛି । କିପରି ସେ ସୁସ୍ଥମନା ହେବେ
—କିପରି ସେ ଆରୋଗ୍ୟ ଲାଭ କରିବେ, ଏହାହିଁ
ବର୍ତ୍ତମାନ ଏକମାତ୍ର ଚିନ୍ତା—(ନିଜ ମନେ) ଖାଲି
ଚିନ୍ତା କଲେ ତ ଚଳିବ ନାହିଁ—ରୀତିମତ
ଚିକିତ୍ସା କରିବାକୁ ହେବ—ଯତ୍ନ କରିବାକୁ
ହେବ—(ପ୍ରକାଶ୍ୟେ) ଶୀଘ୍ର ମୋତେ ବିଦାୟ
ଦିଅନ୍ତୁ—ଆଉ ଯେ ବିଳମ୍ବ କରି ପାରୁନାହିଁ ।

ବୀରେନ୍ଦ୍ର—ବୈଦ୍ୟ ମହାଶୟ ! ଆପଣ କିଣ ସେ
ଉନ୍ମତ୍ତତା ଆରୋଗ୍ୟ କରି ପାରିବେ ?

ଅର୍ଜୁନ—କାହିଁକି ନ ପାରିବି ? ତେବେ ଉନ୍ମତ୍ତତାର
କାରଣ କିଣ ତାହା ମୋତେ ଆଗେ ନିର୍ଣ୍ଣୟ
କରିବାକୁ ହେବ ।

ବୀରେନ୍ଦ୍ର—ନିର୍ଣ୍ଣୟ କରିବାକୁ କ'ଣ ଆଉ ବାକି ଅଛି ?

ଅର୍ଜୁନ—ରୋଗୀ ନ ଦେଖି ?

ବୀରେନ୍ଦ୍ର—ଆପଣ କ'ଣ ଜାଣନ୍ତି ନାହିଁ, ଆପଣଙ୍କ ସ୍ତ୍ରୀ
ହେତୁ ଆପଣଙ୍କ ସଙ୍ଗୀତ ଉନ୍ମାଦ ?

ଅର୍ଜୁନ—(ହାସ୍ୟକରି) ଆପଣ କିଣ କହୁଛନ୍ତି ? ଏହା କି
ଗୋଟିଏ ଉନ୍ମତ୍ତତାର କାରଣ ହୋଇପାରେ ?
ଆପଣ ଯେ ଚିକିତ୍ସାଶାସ୍ତ୍ର ରଦ୍ କରି ଦେବେ
ଦେଖୁଛି ।

ବୀରେନ୍ଦ୍ର—ଅଚ୍ଛା କହିଲେ, ସେ କି ଆପଣଙ୍କ ସ୍ତ୍ରୀକୁ
ଭଲ ପାନ୍ତି ନାହିଁ ?

ଅର୍ଜୁନ—ଖୁବ୍ ଭଲପାନ୍ତି—ଭଲ ପାଇବେ ନାହିଁ ?—
ପିଲାଦିନୁ ଏକା ସଙ୍ଗେ ଖେଳି ଆସିଛନ୍ତି—ଏକା
ସଙ୍ଗେ ବଢ଼ି ଆସିଛନ୍ତି—ଗୋପନରେ ପରସ୍ପର
ମଧ୍ୟରେ ବିବାହ ହେବାର କଥା ମଧ୍ୟ ହୋଇଥିଲା
—ଭଲ ପାଇବେ ନାହିଁ ?—ମୁଁ ଯେବେ
ବିବାହ ପୂର୍ବରୁ ସେସବୁ କଥା ଜାଣିଥାନ୍ତି, ତାହା-
ହେଲେ ପରା ଯେ କୌଣସି ମତେ ସେମାନଙ୍କୁ
ମିଳାଇ ଥାନ୍ତି—ବର୍ତ୍ତମାନ ମଧ୍ୟ ବିବାହ ଯେବେ
ଉଲଟି ଯିବାର ହୁଅନ୍ତା, ତାହାହେଲେ ପରା
ମହାନନ୍ଦରେ ତାଙ୍କର ଜିନିସ ତାଙ୍କୁ ଫେରାଇ
ଦିଅନ୍ତି ! ଆହା ଯେ ଯାହାର ସେ ତାହାର
ହେଲେ କେତେ ଆନନ୍ଦ ନ ହୁଏ—ମୁଁ ମୋର
ସଙ୍ଗୀତକୁ ପାଉ ନ ଥିଲି ବୋଲି, ମନ କେଡ଼େ
ବ୍ୟାକୁଳ ହେଉଥିଲା—କିନ୍ତୁ କ'ଣ ହେବ ?
ବର୍ତ୍ତମାନ ଯେ ପାଇ ନ ପାଇଲା ଭଳି—ମହାଶୟ
ଜଣେ ଲୋକ ଦିଅନ୍ତୁ, ମୁଁ ଏହିକ୍ଷଣି ଯାତ୍ରା କରିବି
—ସଙ୍ଗୀତ ପାଇଁ ମନ ବଡ଼ ବ୍ୟାକୁଳ ହେଉଛି !
ଶୀଘ୍ର ତାଙ୍କର ଚିକିତ୍ସା କରିବାକୁ ହେବ ।

ବୀରେନ୍ଦ୍ର—ବୈଦ୍ୟମହାଶୟ ! ଯେପରି ଦେଖୁଛି ନିଜେ
ଆପଣ ଉନ୍ମାଦ ହୋଇ ଯାଇଛନ୍ତି—ଉନ୍ମାଦର
ପୁଣି ଚିକିତ୍ସା କରିବେ କିଣ ?

ଅର୍ଜୁନ—ବାସ୍ତବିକ, ତାଙ୍କପାଇଁ ମନ ବଡ଼ ବ୍ୟାକୁଳ
ହେଉଛି । ଅନୁରୋଧ—

(ନେପଥ୍ୟେ)—ରାମଙ୍କୁ ଫେର ଜ୍ୱର ହେଲା, ଜ୍ୱର ଆସିଲା ।

ଅର୍ଜୁନ—ଫେର୍ ଜ୍ୱର ଆସିଲା—ସେ ଔଷଧ ତେବେ ମାନିଲା ନାହିଁ—ଅଚ୍ଛା, ଚାଲ, ମା ମୁଁ ଅନ୍ୟ ଔଷଧ ଦେଉଛି । ( ପ୍ରସ୍ଥାନ )

ବୀରେନ୍ଦ୍ର—ଏ' ମନୁଷ୍ୟ ନା ଦେବତା ! ଏ'ପରି ସରଳତା, ଏ'ପରି ଅକୃତ୍ରିମତା, ମୁଁ ତ ଅନ୍ୟ କୌଣସିଠାରେ, କେବେ ଦେଖିନାହିଁ । ହାୟ ମହାରାଜ ! ତାହାଙ୍କୁ ଅପଣ ହତ୍ୟା କରିବାକୁ ବସିଥିଲେ ?—ତାହାଙ୍କୁ ଅପଣ ହେୟ ଜଲ୍ଲାଦ କରରେ ନିକ୍ଷେପ କରିଥିଲେ ? ଘାତକମାନଙ୍କ ମଧ୍ୟରେ ମୋତେ ଶ୍ରେଷ୍ଠତମ ଜାଣି ମୋ' ଉପରେ ଏହି ଭାର ନ୍ୟସ୍ତ କରିଥିଲେ—କିନ୍ତୁ ଦେଖନ୍ତୁ ଏ' ପାଷାଣ ହୃଦୟ ଆଜ କିପରି ତରଳି ଯାଇଛି—ନିଜର ଭରଣ-ପୋଷଣର ଏକମାତ୍ର ଉପାୟ,ରାଜ-ଗୃହୀରେ କିପରି ସେ ପଦାଘାତ କରୁଛି—ପୁଣି ଦୃଢ଼ ପ୍ରତିଜ୍ଞା କରୁଛି—ଯେତେଦିନ ପ୍ରାଣଥିବ, ଏହି ଦେବତାଙ୍କ ସେବା-ପୂଜା ତା'ର ଏକମାତ୍ର ଧର୍ମ—ଏହି ମହାଜନଙ୍କ ରକ୍ଷଣା-ବେକ୍ଷଣ ତାର ଏକମାତ୍ର କର୍ତ୍ତବ୍ୟ । ଯାହା ହେଉ, ରାଜ୍ୟମୟତ ରାଷ୍ଟ୍ର ହୋଇଗଲାଣି ଯେ ମନ୍ତ୍ରୀ ଗୋବିନ୍ଦବିଦ୍ୟା-ଧରଙ୍କ ପୁତ୍ର ମହାରାଜାଙ୍କ ଷଡ଼ଯନ୍ତ୍ରରେ ନିହତ ହୋଇଛନ୍ତି—ସୁତରାଂ ମହାରାଜା ଦୃଢ଼ ବିଶ୍ୱାସ କରିଥିବେ, ଯେ ତାଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପ୍ରତିପାଳିତ ହୋଇଛି—ମାତ୍ର ବର୍ତ୍ତମାନ କି ଉପାୟରେ ଏ' ମହାଜନଙ୍କୁ ରକ୍ଷା କରୁଛି ? ଯା'ଙ୍କ କୃପାରେ ଏ' ଅଧମ ଆଜ ସଦ୍‌ବୁଦ୍ଧି ଲାଭ କରୁଛି, ତାଙ୍କର ଅନୁଗ୍ରହରେ ସେ ନିଶ୍ଚୟ ଉପାୟ ଅବିଷ୍କାର କରିବାକୁ ସକ୍ଷମ ହେବ ।

( ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

—ବହିର୍ଦ୍ୱାର ଓ ପାର୍ଶ୍ୱସ୍ଥ ଗଳିରାସ୍ତା—

[ ବିପରୀତ ଦିଗରୁ କଥରୁଦ୍ର ଓ କମଳାର ପ୍ରବେଶ ]

ଗୀତ

ଅଶାର ଦେବତା ! ଆଶା କି ମୋହର
ସତେ ହେ କରିବ ପୂରଣ—
ଗୃହକର୍ମୀ ମୁହିଁ, ଅଶାବାନ୍ଧି ଅଣେ
ଧରିଛି ଏ'ଘର ଜୀବନ ।
ନିଶାକର ସମ ଉଇଁ ହୃଦେ ମମ
ଢାଳିଦିଅ ଯେବେ ଜ୍ୟୋତି-ସୁଧା-ଧାର,
ଜାଣି ନ ପାରଇ ଭାସି ଯାଏ ତାହିଁ—
ସତେ କି କିଣା ସ୍ୱପନ !

କଥରୁଦ୍ର—କିଏ, କମଳା ନା ?

କମଳା—ହଁ, ମୁଁ—ଭାଇ କଣ କରୁଛନ୍ତି ?

କଥରୁଦ୍ର—ଘରେ ତ ଶୋଇଲେ, ମୁଁ ଆସିଲି—ବାବା !

କମଳା—ବାବା ବି ଶୋଇଲେ, ମୁଁ ଆସିଲି !—ବାବା ଆଜ ଯେପରି ଶୋଇଛନ୍ତି, ବଉଳ ! ସେପରି ସୁଆଡ ତାଙ୍କର ମୁଁ ଆଉ କେବେ ଦେଖିନାହିଁ ।

କଥରୁଦ୍ର—ଏ' କେତେ ଦିନ ହେଲା ତାଙ୍କରତ ଆଉ କଷ୍ଟର ସୀମା ନାହିଁ ?—ଏକେ ପୁତ୍ର ଶୋକ—ତହିଁରେ ଭାଇଙ୍କର ଏପରି ଦଶା, ସେ ଚିନ୍ତା—ତେଣେ ରାଜ୍ୟଭାରଦାକା—ସେ ଏକା, ବୃଦ୍ଧ, କେତେ ସମାଳିବେ—କ୍ଳାନ୍ତ ହୋଇ ପଡ଼ିବେ ନାହିଁ ?

କମଳା—ଅଚ୍ଛା, ଭାଇ ! ରାଜା ତ ଆଉ ସେପରି ଏକା ତରିଆଲ ଧରି ନିଦ ବାଉଳାରେ ବଗିଚାକୁ ଦୌଡ଼ି ଯାଉ ନାହାନ୍ତି ?

କଥରୁଦ୍ର—ଏହି ପାଞ୍ଚ ଛଅ ଦିନ ହେଲା, ସେପରି ଆଉ ନାହିଁ—ତା' ନ ହେଲେ କି ଘୋଡ଼ା ଚଢ଼ି ଆସି ପାରୁ ଥାଆନ୍ତି, କଗୁଆଲ ଗୁଡ଼ାକ ବେଳେ ବେଳେ ସେପରି ଚଢ଼ୁଥିଆନ୍ତି ହୁଅନ୍ତି—ତେବେ

ନିଦବାଉଳାରେ ମଧ୍ୟ 'ଗୋବର୍ଦ୍ଧନ, ଗୋବର୍ଦ୍ଧନ' ଡାକ ତାଙ୍କର ବନ୍ଦ ନାହିଁ ।

କମଳା—ସତେ, ବଉଳ ! ମାମୁଁ ଆଜ୍ ମା ପାଇଁ ଭ୍ରମର ଓ ମୋର ଭାଇ ଦୁହିଁଙ୍କର ସର୍ବନାଶ—ସେମାନେ ଯଦି ଅପର କେହି ହୋଇଥାନ୍ତେ, ଏତେବେଳକୁ ସବୁ କଥା ପ୍ରକାଶ କରି ଦେଇ ସାରନ୍ତେଣି ପରା ।

କଥରୁସ୍ନୁ—ଦେଖ କେଡ଼େ ନିଷ୍ଠୁର—ଅମର ସାଙ୍ଗ ହୋଇ ଖେଳିବାଟା ବି ସେମାନଙ୍କର ସହ୍ୟ ହେଲା ନାହିଁ !

କମଳା—ଈଶ୍ୱର ଏକା ଯା' କରନ୍ତି, ମଙ୍ଗଳ ପାଇଁ—ସେ ଖେଳ ଭାଙ୍ଗି ନ ଥିଲେ କି ଆଜି ଆମେ ଏ' ଖେଳରେ ମାତି ଥାନ୍ତୁ ?

କଥରୁସ୍ନୁ—ହଁ, ତା ଠିକ୍—

କମଳା—ବର୍ତ୍ତିମାନ ଯାଅ, ରାତି ଅନେକ ହୋଇଗଲାଣି—ମା ଖୋଜି ପାରନ୍ତି ।

କଥରୁସ୍ନୁ—ଏଡ଼େ ଚଞ୍ଚଳ ଚାଲିଯିବି, ବଉଳ ?

କମଳା—ବର୍ତ୍ତିମାନ କାମର ସମୟ—ଖେଳ ମନେ କଲେ କି ଚଳିବ ?

କଥରୁସ୍ନୁ—(ଦୀର୍ଘନିଶ୍ୱାସ ଛାଡ଼ି) ବଉଳ ! (ପ୍ରସ୍ଥାନ)

କମଳା—ତୁମେ ଚନ୍ଦ୍ର, ମୁଁ ଯେ ବାମନ, ବଉଳ !

(ନେପଥ୍ୟ)—କମଳା !

କମଳା—(ସଚକିତେ) ମା ! ( ଜଗଦମ୍ବାର ପ୍ରବେଶ )

ଜଗଦମ୍ବା—କି ଲୋ ଏତେ ରାତିରେ ଏଠି କ'ଣ କରୁଥିଲୁ ?

କମଳା—ପରସ୍ତ୍ରା କରିବାକୁ ଅସିଥିଲି ।

ଜଗଦମ୍ବା—ଘରେ କ'ଣ ଯାଗା ନାହିଁ ଯେ ତୁ ଦାଣ୍ଡକୁ ଆସିଥିଲୁ ?

କମଳା—ଅସିଥିଲି !

ଜଗଦମ୍ବା—କି ଲୋ ? ତୁ'ତ ଦିନକୁ ଦିନ ଯେତେ ବଢ଼ୁଛୁ, ତେତିକି କ'ଣ ନିର୍ଲଜ୍ଜ ହେଉଛୁ ?

କମଳା—ତୋ ପଣ ଆଜି ନୁହେଁ, ମା !

ଜଗଦମ୍ବା—(ଚମକି) କାଲେ, ଏଣିକି କ'ଣ ଖାସ୍ ବଡ଼ ବଡ଼ି କଥା କହୁଛୁ ? ସେହି ଗଣ୍ଡଟା କ'ଣ ତୋ' ଠି କିଛି ମନ୍ତ୍ର ଝାଡ଼ି ଖାଉଛୁ କି ଲୋ ? ଭଲ ଯୋଗରେ ଗୋଟାଏ ଛୁଣ୍ଡାଲୀ ଘରେ ପଶିଥିଲା ଯେ ସବୁ ସତ୍ୟାନାଶ କରିଦେଲା—ସେ ଅଲକ୍ଷଣୀ ଯାଇଛି ନା ପାପ ଯାଇଛି ।

କମଳା—ପାପ ଯାଇ ନାହିଁ, ମା—ପାପ ଅସୁଛି—ମା ! ତୁ ଗାଳିଦେ—ମାର୍—ଯା' ଇଚ୍ଛା ତା' କର ପଛକେ, ଯେଉଁଥିରେ ମାତିଛୁ, ତା ଛାଡ଼ି ଦେ !

ଜଗଦମ୍ବା—କି ଲୋ, ମୁଁ କେଉଁଥିରେ ମାତିଛି ? କଣ ଛାଡ଼ି ଦେବି ? ଛୋଟ ମୁହଁରେ ବଡ଼ କଥା—କିଛି ନ କହିଲାରୁ, ମୁଣ୍ଡରେ ଚଢ଼ୁଛୁ—ବହୁ କାଳ ତୋ' ବାପକୁ କହି ତୋତେ ମାଡ଼ ଖୁଆଉଛି—କିପରି ତୁ କଥା ମାନୁ ନାହୁଁ—ଏକା ରାତିରେ ଦାଣ୍ଡକୁ ଅସୁଛୁ ?

କମଳା—( ସ୍ୱଗତ ) ମନକଥା ପ୍ରକାଶ କରି ବଡ଼ ଭୁଲ କରିଛି । ( ପ୍ରକାଶ୍ୟେ ) ମା ! ମୋତେ କ୍ଷମା କର, ଆଜି ମୁଁ ଘର ବାହାରକୁ ଆସିବି ନାହିଁ କି ତୋ କଥା ଏଡ଼ିବି ନାହିଁ ।

ଜଗଦମ୍ବା—ଚାଲ, ଭିତରକୁ ଚାଲ ! ( କମଳାର ପ୍ରସ୍ଥାନ) କମଳା କ'ଣ କିଛି କିଛି ଟେର ପାଇଛି ? —ତା'କୁ ଏଥର ଜଗି ଜଗି କାମ କରିବାକୁ ହେବ—କାହିଁ ଗୋବରା ଏତେବେଳ ଯାଏ ଅସିଲା ନାହିଁ ? ଆଜିବି କଣ ନିଷ୍ଫଳ ହେଲା ? ଯାଏଁ, ଦେଖେ ଟୋକା ଶୋଇଲାଣି କି ନାହିଁ ?

( ଜଗଦମ୍ବାର ପ୍ରସ୍ଥାନ )

[ ଗୋବର୍ଦ୍ଧନର କଲ୍ୟାଣଦେବଙ୍କ ଛିନ୍ନ ମସ୍ତକ-ହସ୍ତେ ବେଗେ ପ୍ରବେଶ ]

ଗୋବର୍ଦ୍ଧନ—ନାନୀ ! ନାନୀ ! ଜଲ୍‌ଦି ଦ୍ୱାର ଖୋଲ —ବେଗେ ଧାଇଁଆ'—କାମ ଆଜି ଫତେ !

[ ଜଗଦମ୍ବାର ଦ୍ୱାର ଖୋଲି ବେଗେ ପ୍ରବେଶ ]

ଜଗଦମ୍ବା—କିଏ, ଗୋବର୍ଦ୍ଧନ ? ଚୁପ କର—ଚୁପ୍‌କର —କମଳୀଟା ଜଗିଛି !

ଗୋବର୍ଦ୍ଧନ—ଚୁପ୍ କରିବି, ନାନୀ । ଚୁପ୍ କରିବି— ଦେଖିଲୁ କ'ଣ ଆଣିଛି ?—ହାଃ ହାଃ ହାଃ ।

ଜଗଦମ୍ବା—( ସଭୟେ ଚାହିଁ ରହିବା )

ଗୋବର୍ଦ୍ଧନ—ଠିକ୍ ମୁଣ୍ଡଟି, ନାନୀ ?

ଜଗଦମ୍ବା—ଏକାବେଳକେ ମୁଣ୍ଡଟା କାଟି ଆଣିଛୁ ?

ଗୋବର୍ଦ୍ଧନ—ହାଃ ହାଃ ହାଃ—ଆଣିବି ନାହିଁ ? ତୁ ଜାଣିଛୁ କିପରି—ମୁଁ ବା କିଷ୍ଟିନ୍ତି ରହିବି କିପରି —ଦେଖିଲୁ, ନାନୀ ! ଏ' ରକ୍ତ କି ଗରମ ?

( ମୁଣ୍ଡର ରକ୍ତ ଲଗାଇବାକୁ ଯିବା )

ଜଗଦମ୍ବା—ଏ' କଣ କରୁଛୁ ଗୋବରା ?

ଗୋବର୍ଦ୍ଧନ—ନାନୀ ! ତୁ ଦେଖ ଆଗେ ।

ଜଗଦମ୍ବା—( ହାତଧରି ) ଗୋବରା ! ତୁ ଏପରି ପାଗଳଙ୍କ ଭଳି କାହିଁକି ହେଉଛୁ ?

ଗୋବର୍ଦ୍ଧନ—ହାଃ ହାଃ ହାଃ—ପାଗଳ ! ପାଗଳ ମୁଁ ? ପାଗଳ ହେଲେ କାମ ହୁଅନ୍ତା କିପରି ? ଏଥର ଅବଧାନ ଯା କହୁଛି, ନିଶ୍ଚୟ ଫଳିବ— ନୁହେଁ, ନାନୀ ?

ଜଗଦମ୍ବା—ହଉ ତୁ ଚାଲ୍ ଆଗେ ମୁଣ୍ଡଟା ଫୋପାଡ଼ି ଦେ—ରକ୍ତ ଲାଗିଛି ଧୋଇ ପକା ।

ଗୋବର୍ଦ୍ଧନ—ହାତପାପୁଲିରୁ ରକ୍ତ ଛାଡ଼ିବ ତ, ନାନୀ— ମୁଠାରୁ ମୁଣ୍ଡଟା ଖସିବ ତ ?

ଜଗଦମ୍ବା—ଚାଲ୍ ବଗିଚା ପୋଖରୀକୁ ଚାଲ୍—ମୁଁ ସବୁ କରି ଦେଉଛି ।

ଗୋବର୍ଦ୍ଧନ—( ସ୍ୱଗତ—ଛିନ୍ନ ମୁଣ୍ଡ ଦେଖୁ ଦେଖୁ ) ହାଃ ହାଃ, ଗୋବର୍ଦ୍ଧନ କେମିତିକା ଶିକାରୀ ? ଯେମିତି ଗୋବର୍ଦ୍ଧନ ଗୋବର୍ଦ୍ଧନ ବୋଲି ଜଙ୍ଗଲ ଆଡ଼କୁ ଧାଇଁ ଆସିଛି, ସେମିତି ସଙ୍ଗେ ସଙ୍ଗେ ପଛଆଡ଼ୁ ତଲୱାର୍‌ର ଗୋଟାଏ ଚୋଟରେ ମୁଣ୍ଡ ଅଲଗା—ଗଣ୍ଡି ଅଲଗା ।

ଜଗଦମ୍ବା—କଣ ବକୁଛୁ ଗୋବରା ? ମରଦ ପିଲା ହୋଇ ତୋର କଣ ଟିକିଏ ସାହସ ନାହିଁ ? ଦେଖିଲୁ ମୁଁ ମାଇକିନିଆଟା ହୋଇ ମୋର କେଡ଼େ ସାହସ ?

ଗୋବର୍ଦ୍ଧନ—ହାଃ ହାଃ ହାଃ—ମୋର ସାହସ ନାହିଁ, ତୋର ସାହସ ଅଛି ? ଦେଖ ଦେଖ, ମୋର ସାହସର କିପରି ଜ୍ୱଳନ୍ତ ପ୍ରମାଣ ।

( ମୁଣ୍ଡଟା ଦେଖାଇବା )

ଜଗଦମ୍ବା—ସେହିଟାକୁ ବାର ବାର ଏତେ ଦେଖାଉଛୁ କାହିଁକି ?—ଚାଲ୍ ଫୋପାଡ଼ି ଦେବୁ ।

ଗୋବର୍ଦ୍ଧନ—ଏହିଟି ଚାହିଁ ପାରୁ ନାହୁଁ—ହାଃ ହାଃ ହାଃ ହାଃ ।

ଜଗଦମ୍ବା—କେଡ଼େ ଜୋର ହସୁଛୁ, ଗୋବରା ? ମିଜାଜ ଥଣ୍ଡା କର—ଆଉ ଯା ଯା କରିବାକୁ କହିଥିଲି, କରିଛୁ ନା ?

ଗୋବର୍ଦ୍ଧନ—ଠିକ୍ ଠିକ୍ କରିଛି, ନାନୀ ! କହିଲୁ ଏଥର ମୁଁ ମଜବୁତ୍ କି ନୁହେଁ ? ଅବଧାନ କଥା ସତ କି ମିଛ ?—( ରହି ) କିଏ ସେ ନାନୀ, ଦେଖିଲୁ ଦେଖିଲୁ—ମୋତେ କଟ୍ ମଟ୍ କରି ଚାହିଁଛି—ଦାନ୍ତ ବଡ଼ମଡ଼୍ କରି ଗ୍ରେବାଉଛି—

( ଉପରକୁ ଚାହିଁବା )

ଜଗଦମ୍ବା—ଆଉ ତୁ ଏମିତି ଏଠି ଛିଡ଼ା ହ' ନା, ଗୋବରା—ଏ' ମୁଣ୍ଡ ଫୋପାଡ଼ି ନ ଦେଲେ, କି ଏ' ରକ୍ତ ଧୋଇ ନ ଦେଲେ, ତୋର ମୁଣ୍ଡ ଠିକ୍ ରହିବ ନାହିଁ ।

ଗୋବରା—ଦେଖ୍ ଦେଖ୍, ନାନୀ ! ପୁଣି ଦାନ୍ତ କାମୁଡ଼ୁଛି—ପୁଣି କଟ୍‌ମଟ୍ କରି ଚାହୁଁଛି—

ଜଗଦମ୍ବା—ଆ, ଆ ( ଗୋବର୍ଦ୍ଧନ ସେହିପରି ଚାହିଁଥିବା —ଜଗଦମ୍ବା ହସ୍ତଧରି ଘେନି ଯିବା )

[ କେତେକ ସୈନିକ ସହିତ ମୁକୁନ୍ଦର ପ୍ରବେଶ ]

୧ମ ସୈନ୍ୟ—ସେନାପତେ ! କ'ଣ ଯେ କହୁଛନ୍ତି, ଅମ୍ଭେମାନେ କିଛି ବୁଝି ପାରୁନାହୁଁ ।

ମୁକୁନ୍ଦ—ତୁମ୍ଭ ମାନଙ୍କୁ ବୁଝାଇବି କ'ଣ, ସୈନ୍ୟଗଣ ! ମୁଁ ସେ ନିଜେ ବୁଝିବାକୁ ଅକ୍ଷମ ।

୨ୟ ସୈନ୍ୟ—ମନ୍ତ୍ରୀ ମହାଶୟ ଖୁଣୀ ! ଯେ କି ରାଜାଙ୍କ ମଙ୍ଗଳ ସକାଶେ ପୁତ୍ର ହତ୍ୟା ପର୍ଯ୍ୟନ୍ତ ସହିପାରନ୍ତି, ସେ ନିଜେ ରାଜ-ହତ୍ୟାକାରୀ ।

ସୈନ୍ୟଗଣ—ଅସମ୍ଭବ ।

ମୁକୁନ୍ଦ—ପୃଥିବୀ ପ୍ରଳୟ ହୋଇଗଲେ ମଧ୍ୟ ଅସମ୍ଭବ ।

୧ମ ସୈନ୍ୟ—ତେବେ ଆପଣ ରାଣୀମାଙ୍କୁ ଭାବରନ୍ତି ଆଦେଶ ଦେବାକୁ ଅନୁରୋଧ କରୁ ନାହାନ୍ତି କାହିଁକ ?

ମୁକୁନ୍ଦ—ତାହା କ'ଣ ଛାଡ଼ୁଛ ? ଯୁକ୍ତ ତର୍କ ମଧ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇନାହିଁ—ଶେଷେ ଯେଉଁ ପ୍ରମାଣ ସେ ଦେଖାଇଲେ—

୨ୟ ସୈନ୍ୟ—ଆମ୍ଭେମାନେ ଦେଖିଛୁ ପ୍ରଭୋ । ତଥାପି କିନ୍ତୁ ବିଶ୍ୱାସ ହେଉ ନାହିଁ ।

ମୁକୁନ୍ଦ—ଘଟନା ଯେପରି, ସେଥିରେ ସନ୍ଦେହ ହୋଇପାରେ—ଛାଡ଼—ଦେଖ, ସୈନିକଗଣ । ଧର୍ମର ଜୟ ସର୍ବତ୍ର—ସୁତରାଂ ଆମ୍ଭେମାନେ ରାଜାଦେଶ ଅବଜ୍ଞା କରିବା କାହିଁକ ?

୧ମ ସୈନ୍ୟ—ମନ୍ତ୍ରୀମହାଶୟ ମଧ୍ୟ କର୍ତ୍ତବ୍ୟବୁଦ୍ଧିରେ ବିରକ୍ତ ହୁଅନ୍ତି ।

ମୁକୁନ୍ଦ—ତାକ, ଆଉ ବିଳମ୍ବ କରିବା ଉଚିତ ନୁହେଁ ?

୨ୟ ସୈନ୍ୟ—ଦ୍ୱାର ଖୋଲ୍—ଦ୍ୱାର ଖୋଲ୍ ।

( ନେପଥ୍ୟେ )—କିଏ ତୁମ୍ଭେ ?

ମୁକୁନ୍ଦ—ଏ'ତ କମଳାର କଣ୍ଠସ୍ୱର !—କିଏ ଭଉଣୀ ?

କମଳା—( ନେପଥ୍ୟେ )—ହଁ, ମକୁ ଭାଇ କି ? ( ଦ୍ୱାରଖୋଲି ) ଏତେ ରାତିରେ କୁଆଡ଼େ ଭାଇ ?

ମୁକୁନ୍ଦ—ଭାରି ଜରୁରି କାମ—ବାପା କ'ଣ କରୁଛନ୍ତି ?

କମଳା—ବାପା ଆଉ ଏତେବେଳେ କରିବେ କ'ଣ ?—ସବୁବେଳେ କାମ କରୁଥାନ୍ତେ କି ? ତାଙ୍କର ଦଣ ଆଉ ଦେହ ନୁହେଁ ? ଟିକିଏ ବି ଦଣ ଫୁରସତ୍ ନେବେ ନାହିଁ ?

ମୁକୁନ୍ଦ—ମୁଁ ଜାଣେ, ଶୋଇଛନ୍ତି ଯେ—କିନ୍ତୁ ଭାରି ଜରୁରି କାମ, ଗଲ୍ ଉଠାଇ ଦେବୁ ।

କମଳା—ବାପା ଯେ କାହିଁକି ଗୃହକାର୍ଯ୍ୟ ଛାଡ଼ ଦେଉ ନାହାନ୍ତି ମୁଁ କିଛି ବୁଝି ପାରୁ ନାହିଁ—

( ପ୍ରସ୍ଥାନ )

ମୁକୁନ୍ଦ—କି ପିତୃସ୍ନେହ ?

୧ମ ସୈନ୍ୟ—ସେନାପତେ । ଆମ୍ଭେମାନେ ଏ' କାର୍ଯ୍ୟ କରି ପାରିବୁ ନାହିଁ ।

ମୁକୁନ୍ଦ—କର୍ତ୍ତବ୍ୟ—କର୍ତ୍ତବ୍ୟ—ପାଷାଣଠାରୁ କଠିନ ସେ—ପର୍ବତଠାରୁ ସୁଦୃଢ଼ ସେ—ଭ୍ରାତୃଗଣ । ଥରେ ମନ୍ତ୍ରୀ ମହାଶୟଙ୍କ ଉଦାହରଣରୁ ଶିକ୍ଷା କର—ଏହି ଯେ ମନ୍ତ୍ରୀ ମହାଶୟ ଏଣେ ଆସୁଅଛନ୍ତି ।

ସୈନ୍ୟଗଣ—ମନ୍ତ୍ରୀ ମହାଶୟ ନିଶ୍ଚୟ ନିର୍ଦ୍ଦୋଷ ସେନାପତେ ।

ମୁକୁନ୍ଦ—ଈଶ୍ୱର ତାହାହିଁ କରନ୍ତୁ ।

[ ଗୋବିନ୍ଦ ଓ ଅଲକ୍ଷିତଭାବେ କମଳାର ପ୍ରବେଶ ]

ଗୋବିନ୍ଦ—( ଆଖି ମନ୍ଥୁ ମନ୍ଥୁ ) କି ଖବର, ମୁକୁନ୍ଦ ? ଏତେ ରାତିରେ କେଉଁ ଆଡ଼େ ? ଏତେ ସେନ୍ୟ କାହିଁକି ? ରାଜ-ଭବନରେ କୌଣସି ଅନିଷ୍ଟ ଘଟି ନାହିଁ ତ ? ମହାରାଜ ଶୋଇଛନ୍ତି ତ ?

[ ମୁକୁନ୍ଦର ପତ୍ରଦାନ ଓ ଗୋବିନ୍ଦର ବ୍ୟଗ୍ରଭାବେ ପାଠ କରିବାକୁ ଆରମ୍ଭ କରିବା ]

[ ଜଗଦମ୍ବାର ଅଲକ୍ଷିତଭାବେ ସଭୟେ ଧୀରେ ଧୀରେ ପ୍ରବେଶ]

କମଳା—( ହଠାତ୍ ଦେଖି ) ଏହି ଯେ ମା ।

ଜଗଦମ୍ବା—( ଚମକି ) ମୁଁ ପାଇଖାନା ଯାଇଥିଲି ବୋଲି, ଲୁଗା ପାଲଟୁ ଥିଲି—ହଠାତ୍ ଗୋଳମାଳ ଶୁଣି ଧାଇଁ ଆସିଲି ।

ଗୋବିନ୍ଦ—( ପାଠ କରୁ କରୁ ) ଖୁନ୍ କରିଛନ୍ତି । ( ଚମକି ) ଖୁନ୍ ।

କମଳା—( ଚମକି ) ଖୁନ୍ । କି ଖୁନ୍ ବାବା ?

ଗୋବିନ୍ଦ—( ପୁନର୍ବାର ପାଠକରିବା ) ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ଆଜ ରାତରେ ବଗିଚ୍ଛରେ ମହାରାଜ କଳ୍ୟାଣ ଦେବଙ୍କୁ ଖୁନ୍ କରିଛନ୍ତି—

କମଳା—ଖୁନ୍ ।

ଜଗଦମ୍ବା—(ଦୃଢ଼ସ୍ୱରରେ) ଖାଲି ଖୁନ୍ ନୁହେଁ—ସେ ଖୁନ୍ ପୁଣି କରିଛି କିଏ, ଶୁଣ୍ ।

କମଳା—କିଏ କହୁଛି, ବାବା ? କୁହ, ବାବା ! ଦଣ୍ଡ ସେ କଟିି, ବାବା ?

ଗୋବିନ୍ଦ—ସ୍ଥିର ହ, ମା—ଭୟର କାରଣ କିଛି ନାହିଁ —"ଖୁନ୍ କରିବାର ଯଥେଷ୍ଟ ପ୍ରମାଣ ମଧ୍ୟ ମିଳିଅଛି" । ( ହାସ୍ୟକରି ) ପ୍ରମାଣ ମଧ୍ୟ ମିଳି ସାରିଛି—"ତାଙ୍କୁ ଏହିକ୍ଷଣି ଏହି ପଦ ପ୍ରାପ୍ତି ମାତ୍ରେ ବାନ୍ଧି ଘେନି ଆସ—ରାଣୀ" ।

କମଳା—ବାବା ! ବାବା ! ( ଗୋବିନ୍ଦଙ୍କୁ କୁଣ୍ଢାଇ ଧରିବା )

ଜଗଦମ୍ବା—ଏତେଦୂର ସାହସ, ରାଣ୍ଡିର !

ଗୋବିନ୍ଦ—ଅମ୍ଭ-ଜ୍ଞାନ-ଶୂନ୍ୟ ହୁଅନା, କନିଅ ବୌ ! (କମଳାକୁ) ଯା ତୁ, ମା—ତୋର ମା, ପାଖକୁ ଯା—ମୁଁ ବର୍ତ୍ତମାନ ରାଜାଦେଶ ପାଳନ କରେ । ଚାଲ, ମୁକୁନ୍ଦ ! ତୁମ ହାତରେ ଜଞ୍ଜିର ଦେଖୁଛି ଯେ, ବୋଧ ହୁଏ ବାନ୍ଧିବାକୁ ହୁକୁମ ହୋଇଛି ?

ମୁକୁନ୍ଦ—ମନ୍ତ୍ରୀ ମହାଶୟ !—

ଗୋବିନ୍ଦ—( ସହାସ୍ୟେ ) ରାଜକାର୍ଯ୍ୟରେ ତ୍ରୁଟି କର ନାହିଁ, ସେନାପତେ ! ମୁଁ ବର୍ତ୍ତମାନ ଦୋଷୀ—ଦୋଷୀପ୍ରତି ଯାହା କର୍ତ୍ତବ୍ୟ ତା କରିବା ଉଚିତ ।

( ହସ୍ତ ବଢ଼ାଇ ଦେବା )

ସୈନ୍ୟଗଣ—ମନ୍ତ୍ରୀମହାଶୟ !

ଗୋବିନ୍ଦ—ରାଜ-କର୍ମଚାରୀଗଣ ! ରାଜ କାର୍ଯ୍ୟରେ ଏତେଦୂର ଅବହେଳା ? ଅଚ୍ଛା, ରାଜାଦେଶ ପାଳନ ନିମନ୍ତେ ନିଜେ ନିଜେ ବାନ୍ଧିହେଉଛି —ଚାଲ—ଆସୁଛି, ମା !

କମଳା—ବାବା ! ବାବା ! ( ଆଲିଙ୍ଗନ କରିବା )

ଗୋବିନ୍ଦ—ଯା, ମା ପିତାର କଥାର ଅବାଧ୍ୟ ହ'ନା—କନିଅ ବୌ !—ତୁମେ ଏପରି ଭାବେ ଚାହୁଁଛ କାହିଁକି ? ଧୈର୍ଯ୍ୟ ହରାଅ ନାହିଁ—ମୁଁ ନିର୍ଦ୍ଦୋଷ ହୋଇ ବର୍ତ୍ତମାନ ଫେରି ଆସୁଛି—କିଛି ଭୟ କର ନା—ଚାଲ ସୈନ୍ୟଗଣ ! ହାୟ ! କଳ୍ପତରୁଦେବ ଆଜି ଇହଧାମରେ ନାହାନ୍ତି ।

[ ସୈନ୍ୟମାନଙ୍କ ସହିତ ଗୋବିନ୍ଦର ପ୍ରସ୍ଥାନ ]

କମଳା—ବାବା ! ଏ' କଣ ହେଲା ! ( ମୂର୍ଚ୍ଛାଯିବା )

ଜଗଦମ୍ବା—ଏହିପରି ଉକ୍ତି ଶୁଣିବି ବୋଲି କଣ ଏତେ କାଣ୍ଡ କଲି ? ପୁତ୍ରହତ୍ୟା—ସତୀର ଅପବାଦ—ରାଜ-ହତ୍ୟା—ଶେଷେ ନିଜର ସ୍ୱାମୀଙ୍କୁ ପର୍ଯ୍ୟନ୍ତ ଖୁନୀ ପ୍ରମାଣ କରାଇଲି, କ'ଣ ଏହି ଉକ୍ତି ଶୁଣିବି ବୋଲି, 'ହାୟ କଳ୍ପତରୁଦେବ ଆଜି ଇହଧାମରେ ନାହାନ୍ତି' ? ଗୋବର୍ଦ୍ଧନ ! ଗୋବର୍ଦ୍ଧନ ! ଆହୁରି ନିଆଁ ଜାଳ, ଆହୁରି ନିଆଁ ଜାଳ, ମୁଁ ଆହୁରି ଜୋରରେ ତୁଫାନ ଆଣେ—ଆହୁରି ଜୋରରେ ଝଡ଼ ଆଣେ—ତାଠ ଭାଙ୍ଗି ଉଡ଼ା ତାଠ ଭାଙ୍ଗି ଉଡ଼ା !

କମଳା—( ହଠାତ୍ ଉଠି ) ନୂଆ ବୌ ! ନୂଆ ବୌ ! ସତ କହୁଛି, ଚେଷ୍ଟା କଲେ ବାବାଙ୍କୁ ମୋର ରକ୍ଷା କରି ପାରିବ ! ବାବା ! ବାବା !

( ପ୍ରସ୍ଥାନୋଦ୍ୟତ )

ଜଗଦମ୍ବା—କୁଆଡ଼େ ଯାଉଛୁ, କମଳ ( ହାତଧରିବା )

କମଳା—ହାତ ଛାଡ଼, ରାକ୍ଷସୀ ( ଛଡ଼ାଇନେବା )

[ ପରସ୍ପରକୁ ନିରୀକ୍ଷଣରେ ଚାହିଁ ରହିବା ]

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

—କାରାଗାର—

[ କଥରୁଦ୍ରୟ ଓ ରାଣୀଙ୍କର ପ୍ରବେଶ ]

କଥରୁଦ୍ରୟ—ମା ! ମନ୍ତ୍ରୀଭାଇଙ୍କୁ ଦେଖାଦେବାକୁ ଏତେ କୁଣ୍ଠିତ ହେଉଛ କାହିଁକି, ମା ?

ରାଣୀ—ମନ୍ତ୍ରୀ ଭାଇ ! କିଏ ତୋର ମନ୍ତ୍ରୀଭାଇ, କଥ ?

କଥରୁଦ୍ରୟ—କାହିଁକି, ମା ? ଗୋବିନ୍ଦ କି—

ରାଣୀ—ଗୋବିନ୍ଦ !—କେଉଁ ଗୋବିନ୍ଦ ?

କଥରୁଦ୍ରୟ—ଯେଉଁ ଗୋବିନ୍ଦଙ୍କୁ, ମା, ପିତା ଥାଉଁ ଥାଉଁ ନିଜର ସନ୍ତାନତୁଲ୍ୟ ଦେଖି ଆସୁଥିଲେ—ପିତାଙ୍କ

ଅନ୍ତେ ନିଜ ସନ୍ତାନମାନଙ୍କର ଭାର—ନିଜ ରାଜ୍ୟ-ଭାର ନିଃସନ୍ଦେହେ ଅର୍ପଣ କରିଥିଲି—ସବୁ ବିଷୟରେ କି ରାଜନୈତିକ, କି ଗାର୍ହସ୍ଥ୍ୟ—ପ୍ରଧାନ ପରାମର୍ଶଦାତା ମନେ କରୁଥିଲି—

ରାଣୀ—ଆଉ ସେହି ଗୋବିନ୍ଦ ଏତେ ସ୍ନେହ—ଏତେ ସମ୍ମାନ—ଏତେ ବିଶ୍ୱାସର ବିନିମୟରେ କି ପୁରସ୍କାର ଦେଇଅଛି ? କି ଉପହାର ଦେଇଅଛି ? ପ୍ରଜାଙ୍କ ରାଜ-ରକ୍ତ—ଭ୍ରାତାକୁ ଭ୍ରାତୃ-ରକ୍ତ—ମାତାକୁ ପୁତ୍ର-ରକ୍ତ ।

କଥରୁଦ୍ର—ମା ! ମନ୍ତ୍ରୀ ଭାଇଙ୍କ ଦୋଷ ସମ୍ବନ୍ଧେ ମୋର ବର୍ତ୍ତମାନ କିପରି ସନ୍ଦେହ ହେଉଛି ।

ରାଣୀ—ସନ୍ଦେହ ! ଏତେ ସ୍ପଷ୍ଟ ପ୍ରମାଣ ପାଇ ସୁଦ୍ଧା !

କଥରୁଦ୍ର— ସ୍ପଷ୍ଟ ପ୍ରମାଣ ମଧ୍ୟରେ ତ ମା—ମନ୍ତ୍ରୀଭାଇଙ୍କ ନାମାଙ୍କିତ ସେହି ଛୁରି ଓ ନିଜ ବ୍ୟବହୃତ ସେହି ଜାମା !

ରାଣୀ— ଏହାଠାରୁ ସ୍ପଷ୍ଟତର ପ୍ରମାଣ ଆଉ କଣ ହୋଇ ପାରେ ? ବିଶେଷତଃ ବନ୍ଦୀ ଯେତେବେଳେ ନିଜର ନିର୍ଦ୍ଦୋଷତା ସମ୍ବନ୍ଧେ ଏକାବେଳକେ ନିରୁତ୍ତର ।

କଥରୁଦ୍ର—ବନ୍ଦୀ ତ କହୁଛି ଯେ ସେ ଘଟଣାରାତ୍ରରେ ଗୃହରେ ନିଦ୍ରିତ ଥିଲେ—କମଳାର ଉକ୍ତି ମଧ୍ୟ ବିଚାର କରି ଦେଖିଲେ, ସେ ଉକ୍ତି ସତ୍ୟ ବୋଲି ଜଣାଯାଏ ।

ରାଣୀ—ଝିଅ କଥାରେ ବିଶ୍ୱାସ ! ଆଚ୍ଛା (ହସି) କମଳା ଯେ କହୁଥିଲା, 'ସେଦିନ ଯେପରି ଶୋଇଥିଲେ ସେପରି ଶୁଅ ସେ କେବେ ଶୁଅନ୍ତି ନାହିଁ' ଏଥିରୁ କଣ ବୁଝା ଯାଉଅଛି ?

କଥରୁଦ୍ର—ସନ୍ଦେହ ହୋଇ ପାରେ, ମାତ୍ର କମଳାର କଥା ଅନୁସାରେ ଥରେ ଗୋବର୍ଦ୍ଧନଙ୍କୁ କି ପରୀକ୍ଷା କରିବା ଉଚିତ ନୁହେଁ ?

ରାଣୀ—ତୋର ଦେଖୁଛି, କଥ ଅଦ୍ୟାପି କମଳା ପ୍ରତି ଭାରି ଟାଣ ରହିଛି । କିନ୍ତୁ ସାବଧାନ । ଏ ସଂସାରରେ ବିଶ୍ୱାସରେ କେବଳ ବିଷ ମିଳେ—ଅଜ୍ଞ ଯେବେ କଲିକୁ ବିଶ୍ୱାସ କରି ଥା'ନ୍ତି—ଗୋବିନ୍ଦଙ୍କୁ ଶଠ, ଦସ୍ୟୁ ବୋଲି ଗ୍ରହଣ କରିଥାନ୍ତି, ତେବେ ସ୍ନେହର ପୁତ୍ରକୁ ମୋର କଦାପି ହରାଇ ନ ଥାନ୍ତି—'ହା ପୁତ୍ର' ! ବୋଲି ସବୁଦିଗ ଅନ୍ଧାର ଦେଖୁ ନଥାନ୍ତି । ଚାଲ୍, କଥ ଫେରି ଚାଲ—ତୋର ମିନତି ମୁଁ ରଖି ପାରିବି ନାହିଁ । ଓଃ—

କଥରୁଦ୍ର—ମା ! ଶତ୍ରୁ ହେଉ ବା ମିତ୍ର ହେଉ—ମୃତ୍ୟୁନ୍ମୁଖ ବ୍ୟକ୍ତିର ଆଶା କି ଅପୂର୍ଣ୍ଣ ରଖିବା ଉଚିତ ?

ରାଣୀ—କଥ ! କଥ ! ଏତେ କୋମଳ ହୃଦୟ ତୋର ! ନା କଥ, ସଂସାର ପକ୍ଷେ, ବିଶେଷତଃ ରାଜାପକ୍ଷେ ଏତେ ହୃଦ କୋମଳତା କଦାପି ଉଚିତ ନୁହେଁ—ଚାଲ ଫେରି ଚାଲ—ଶିକ୍ଷାକର, କଥ ! ଦୋଷୀ ପ୍ରତି କିପରି ପାଷାଣ-ହୃଦୟ ହେବାକୁ ହୁଏ ।

କଥରୁଦ୍ର—ମା !

ରାଣୀ—ପୁଣି—ଆଚ୍ଛା, ମୁଁ ବାହାରେ ଅପେକ୍ଷା କରୁଛି —ତୁ ପଦେ କି ଦିପଦ କଥା କହି ଶୀଘ୍ର ଆ' ।

କଥରୁଦ୍ର—ମା ! ତୁମ ସଙ୍ଗେ ଦେଖା କରିବାକୁ ଯେ—

ରାଣୀ—ନା, କଥ—

କଥରୁଦ୍ର—କି ପାଷାଣୀ ହୋଇଛ, ମା ? ରକ୍ଷକ !

[ ରକ୍ଷକର ପ୍ରବେଶ ]

ରକ୍ଷକ—ମହାରାଜ !

କଥରୁଦ୍ର—ଦ୍ୱାର ଖୋଲ୍ ।

[ପ୍ରହରୀର ଦ୍ୱାରୋନ୍ମୋଚନ ଓ ହସ୍ତ-ପଦ-ବଦ୍ଧ ଗୋବିନ୍ଦର ଧୀରେ ଧୀରେ ପ୍ରବେଶ ]

ଗୋବିନ୍ଦ—ମା ଆସିଛନ୍ତି—ମା ଆସିଛନ୍ତି—କାହିଁ ମା —କାହିଁ ମା ?

କଥରୁଦ୍ର—( ନିରୁତ୍ତର )

ଗୋବିନ୍ଦ—ଅନ୍ଧାରେ ରହି ରହି ମୋତେ ଯେ ସବୁ ଅନ୍ଧାର ଦିଶୁଛି ମା, ଟିକିଏ କଷ୍ଟ କରି ଛୁଡ଼ା ହେଉନ୍ତୁ ମା—( ଆଖିମଳିବା )

କଥରୁଦ୍ର—ମନ୍ତ୍ରୀଭାଇ !

ଗୋବିନ୍ଦ—କାହାର କଣ୍ଠସ୍ୱର ? ( ଦେଖି ) କିଏ ? କଥ ?—ନା ମହାରାଜ—

କଥଳୁସ୍ୱ—ନା, ମନ୍ତ୍ରୀଭାଇ ମୁଁ ତୁମ୍ଭର ସେହି କଥ ।

ଗୋବିନ୍ଦ—ଏହି ଯେ—ଏହି ଯେ ମୋର ଭାଇ—ଆସ, ଆସ ଭାଇ ମୁହୂର୍ତ୍ତିକ ପାଇଁ ରାଜା-ପ୍ରଜା-ଭାବ—ଦଣ୍ଡଦାତା ଅପରାଧୀ-ଭାବ ଭୁଲିଯାଇ ଏ ତାପିତ ଅଙ୍ଗ ଶୀତଳ କର—ଏ ତୃଷିତ ପ୍ରାଣ ତୃପ୍ତକର ।

କଥଳୁସ୍ୱ—(ଆଲିଙ୍ଗନ କରିବାକୁ ଯାଇ) ରକ୍ଷୀ ! ଭାଇର ବନ୍ଧନ ମୋଚନ କରିଦେ ।

ଗୋବିନ୍ଦ—ନା, ଭାଇ ! ରାଜକାର୍ଯ୍ୟ-ଆଜ୍ଞାର ସୀମା ଏତେଦୂର ଲଙ୍ଘନ କରିବା ଉଚିତ ନୁହେଁ—କୁହ, କଥ ! ମା କାହାନ୍ତି ?

କଥଳୁସ୍ୱ—( କ୍ରନ୍ଦନ କରିବା )

ଗୋବିନ୍ଦ—ବୁଝିଛି, ଭାଇ ଏ ଅଧମ ସନ୍ତାନ ପ୍ରତି ମାଙ୍କର କରୁଣା ହେଲା ନାହିଁ—ହାୟ ! ମୃତ୍ୟୁପୂର୍ବେ ଅନ୍ତରେ ମାତୃ-ଦର୍ଶନ-ସୁଖ ସୁଦ୍ଧା ଏ ଦୀନ ଭାଗ୍ୟରେ ଘଟିଲା ନାହିଁ ।

( ଦୀର୍ଘନିଶ୍ୱାସ ତ୍ୟାଗ କରିବା )

[ ମୁକୁନ୍ଦର ପ୍ରବେଶ ]

ମୁକୁନ୍ଦ—ମହାରାଜ ! ମା ଡାକୁଛନ୍ତି ।

କଥଳୁସ୍ୱ—ରୁହ, ସେନାପତେ !

ଗୋବିନ୍ଦ—ନା, ଭାଇ ! ମାତୃ-ଆଜ୍ଞା ଲଙ୍ଘନ କରିବା ଉଚିତ ନୁହେଁ—ମାଙ୍କୁ ଏତିକି କହିଦେବ, ଭାଇ—ମୋର ମୃତ୍ୟୁ ପରେ ଯେମନ୍ତ ସେ ନିଶ୍ଚିନ୍ତ ନ ହୁଅନ୍ତି—ପ୍ରକୃତ ହତ୍ୟାକାରୀକୁ ଧରିବାକୁ ଯତ୍ନବତୀ ହୁଅନ୍ତି—ଏଥିପାଇଁ ମା'ଙ୍କ ସଙ୍ଗେ ଦେଖା କରିବାର ବିଶେଷ ପ୍ରୟୋଜନ ଥିଲା ।

କଥଳୁସ୍ୱ—କୁହ, ମନ୍ତ୍ରୀ-ଭାଇ ! ପ୍ରକୃତରେ କିଏ ହତ୍ୟାକାରୀ ?

ଗୋବିନ୍ଦ—କିପରି ଜାଣିବି ? ଅନୁସନ୍ଧାନ କରିବାର ଅବସର ପାଇଥିଲେ ଅବଶ୍ୟ ଅବିଷ୍କାର କରିଥାନ୍ତି ।

କଥଳୁସ୍ୱ—ଯାହାହେଉ, ଭାଇ ଗୋବର୍ଦ୍ଧନ ଉପରେ ବର୍ତ୍ତମାନ କାହିଁକି ମୋର ପୂର୍ଣ୍ଣ ସନ୍ଦେହ ହେଉଛି ?

ଗୋବିନ୍ଦ—ପ୍ରଣାମ କରୁଛି ମିଳ ନାହିଁ—ଗଡ଼, ମୋ ପ୍ରତି ବିଗ୍ରହ ଠିକ ହୋଇଛି—ମୁଁ ବିଗ୍ରହକ ହୋଇଥିଲେ ମଧ୍ୟ ଏହାହିଁ କରିଥାନ୍ତି—ତେବେ—

କଥଳୁସ୍ୱ—ତେବେ କ'ଣ, ମନ୍ତ୍ରୀଭାଇ ?

ଗୋବିନ୍ଦ—ସମ୍ୟକ ଅନୁସନ୍ଧାନ ହେବା ପୂର୍ବରୁ କିମ୍ବା ରହସ୍ୟଭେଦ ସମ୍ପୂର୍ଣ୍ଣ ନ ହେବା ପୂର୍ବରୁ ଦଣ୍ଡାଦେଶ ଦେବାଟା ଉଚିତ ହୋଇ ନାହିଁ—ବିଶେଷତଃ ମୃତ୍ୟୁଦଣ୍ଡ ।

କଥଳୁସ୍ୱ—ମୁଁ କ'ଣ ରହିତ କରି ପାରିବି ନାହିଁ ?

[ ଜନୈକ ସୈନିକର ପ୍ରବେଶ ]

ସୈନିକ—ମହାରାଜ ! ରାଣୀମାଙ୍କ କଡ଼ା ହୁକୁମ—ଆପଣ ଆଉ ଭଲେମାନ ବିଳମ୍ବ କରି ପାରିବେ ନାହିଁ ।

ଗୋବିନ୍ଦ—ଯାଅ, ଭାଇ—ଆଜ୍ଞା ଲଙ୍ଘନ କର ନାହିଁ—ମୋର ଆଶୀର୍ବାଦ ଗ୍ରହଣ କର—ମାଙ୍କୁ ପ୍ରଣାମ ଜଣାଇ ଦିଅ—କମଳା—ନା ଥାଉ ।

କଥଳୁସ୍ୱ—କମଳାକୁ କିଏ ଦେଖିବ, ମନ୍ତ୍ରୀଭାଇ !

ଗୋବିନ୍ଦ—ପ୍ରୟୋଜନ ନାହିଁ—ତୁମର ଦୃଷ୍ଟି ଥିଲେହିଁ ହେଲା ।

କଥଳୁସ୍ୱ—ଭାଇ ! (ଦୀର୍ଘନିଃଶ୍ୱାସ ତ୍ୟାଗ କରିବା)

ଗୋବିନ୍ଦ—ଯାଅ, ଭାଇ ! ଆଉ ବିଳମ୍ବ କର ନାହିଁ ।

କଥଳୁସ୍ୱ—ଆଶ୍ଚର୍ଯ୍ୟ ମନ୍ତ୍ରୀଭାଇ ! ଏତେ ବଡ଼ ବିପଦରେ ପଡ଼ି—କାଲି ମୃତ୍ୟୁ ଜାଣି ସୁଦ୍ଧା, ଏତେଦୂର ସ୍ଥିରମତି ତୁମ୍ଭେ !

ଗୋବିନ୍ଦ—ଭାଇ ! ବିପଦ ଓ ମୃତ୍ୟୁ ବିରୁଦ୍ଧରେ ଯେ ଏ ବୁଦ୍ଧି ପରାସ୍ତିତ ! ଘୋର ସେହି ମୃତ୍ୟୁ ଓ ବିପଦ—ସେଥିପାଇଁ ଏ ବୁଦ୍ଧିର ତେତେ ଦୁଃଖ ନାହିଁ—ତେତେ ଚିନ୍ତା ନାହିଁ—ଯେତେ ଦୁଃଖ—ଯେତେ ଚିନ୍ତା—ତାର କୋଳରେ ପିଠିରେ ମଣିଷ କରି ଉଲ୍ଲସିଦେବପାଇଁ ! ହାୟରେ ଉଲ୍ଲସିଦେବ !

[ ଅନ୍ୟ ସୈନ୍ୟର ପ୍ରବେଶ ]

ସୈନିକ—ମହାରାଜ ! ଶୀଘ୍ର ଆସନ୍ତୁ ।

ଗୋବିନ୍ଦ—(ଅଗ୍ରସରି) ଯାଅ, ଭାଇ ! ମାତୃ-ଅଜ୍ଞା ଆଜ ଲଙ୍ଘନ କରନାହିଁ—ହେ ଈଶ୍ୱର ! ଏ' ଅନାଥ ରାଜ-ବଂଶରେ ଆଉ ଯେପରି କୌଣସି ବିପଦ ନ ଘଟାଅ—ଏହି ରାଜ-ବଂଶଧରଙ୍କୁ ଯେପରି ଦୀର୍ଘାୟୁ ଓ ଶକ୍ତିମାନ କର—ଯାଅ, ଭାଇ—ଦ୍ୱାର ବନ୍ଦକର, ରକ୍ଷୀ ! (ପ୍ରସ୍ଥାନ)

କଥରୁଦ୍ର—ସେନାପତେ ! ମନ୍ତ୍ରୀଭାଇ କଦାପି ଦୋଷୀ ନୁହନ୍ତି ।

[ ରାଣୀଙ୍କର ପ୍ରବେଶ ]

ରାଣୀ—ଆ, କଥ ! ତୋତେ କେହି ବିଗୁର କରିବାକୁ କହୁନାହିଁ ।

କଥରୁଦ୍ର—ମା ! ମା ! ( ମା କୋଳରେ ମୁହଁକୁ ଲୁଗୁଇବା )

ରାଣୀ—ଦେଖ, ସେନାପତେ ! କାଲି ଅତି ପ୍ରତ୍ୟୁଷରେ ଯେପରି କାର୍ଯ୍ୟଶେଷ ହୁଏ ।

କଥରୁଦ୍ର—ମା ! ମା ! ଆଉ କିଛିଦିନ ପାଇଁ ସେ ଦଣ୍ଡ ରହିତ କରନ୍ତୁ—ଥରେ ଭଲକରି ଅନୁସନ୍ଧାନ କରନ୍ତୁ ! (କାନ୍ଦିବା)

ରାଣୀ—ଆ, କଥ ! ଏତେ କୋମଳ ତୁ ! ଶିକ୍ଷାକର ରାଜା ହେଲେ କିପରି ପାଷାଣ-କଠିନ ହେବାକୁ ହୁଏ । (କଥରୁଦ୍ର ଓ ରାଣୀଙ୍କର ପ୍ରସ୍ଥାନ)

ମୁକୁନ୍ଦ—ହାୟ ! ଯେ ମୋର ଆଶ୍ରୟଦାତା—ଯେ ମୋର ଉନ୍ନତିର ଏକମାତ୍ର କାରଣ—ତାଙ୍କୁ କାଲି, ନିଜ ସମ୍ମୁଖରେ, ନିଜ ହସ୍ତରେ ଏକପ୍ରକାର ବଧ କରିବାକୁ ହେବ—ଓହୋ ! କର୍ତ୍ତବ୍ୟର କି କଠୋର ଶାସନ ! (ପ୍ରସ୍ଥାନ)

ରକ୍ଷୀ—(ପହରା ଦେବା) ଓହୋ !

---

## ଷୋଡ଼ଶ ଦୃଶ୍ୟ

—କାରାଗାର ନିକଟବର୍ତ୍ତୀ ସ୍ଥାନ—

[ ଗୋବର୍ଦ୍ଧନର ପ୍ରବେଶ ]

ଗୋବର୍ଦ୍ଧନ—କାହିଁ ? ଭେଣେଇଙ୍କରତ କିଛି ପରିବର୍ତ୍ତନ ଦେଖିଲି ନାହିଁ ? କଣ କରିବି ? ବର୍ତ୍ତମାନ ତାଙ୍କୁ ରକ୍ଷା କରୁଛି କିପରି ? ମୁକ୍ତ କରି ଦେବି ? (ଭାବି) କିନ୍ତୁ ଯେପରି ଦେଖୁଛି—ସେପରି କଲେ, ସେ ବି ରକ୍ଷା ପାଇବେ ନାହିଁ କି ମୁଁ ବି ନୁହେଁ—କି ନାଗରୀ ବି ନୁହେଁ—ତେବେ କରୁଛି କଣ ?

[ ଦାସୀର ପ୍ରବେଶ ]

ଦାସୀ—କି ? ତୁମେ ଏଠି ! ମୁଁ ତୁମକୁ ଖୋଜି ଖୋଜି ହଇରାଣ ହୋଇ ଗଲିଣି—ଭଲ ନାଗର ଏକା !—

ଗୋବର୍ଦ୍ଧନ—ଅଚ୍ଛା, ପଦ୍ମ—ରାଣୀଙ୍କ ପାଖେ ତୋର କି ଖଟଣୀ ?

ଦାସୀ—( ଉଚ୍ଚସ୍ୱରରେ ) ଖଟଣୀ ?

ଗୋବର୍ଦ୍ଧନ—ଅସ୍ତେ ଅସ୍ତେ—ଅସ୍ତ ଆ, ଏଣିକି ଆ ।

ଦାସୀ—ନା ନା—ତୁମେ ଖାଲି ତୁମର କାମଟା ବେଗ୍ ବାଗେଇ ନେଉଛ ।

ଗୋବର୍ଦ୍ଧନ—ଏତେ ଉଚ୍ଚବର ହେଉଛୁ କିଆଁ ? ବାହା ହୋଇଗଲେ କଣ ଏତେ ମଜଳ ଆଉ ରହିବ ? ( ଆଡ଼ ନୟନରେ ଚାହିଁବା )

ଦାସୀ—ସତେ ? ଏପରି ନାଗର ନ ହେଲେ କି ମୋ ମନ ଚୋରି କରିବ ?

ଗୋବର୍ଦ୍ଧନ—ଆ, ଏ ଏଣିକି ଆ ।

( ଉଭୟଙ୍କର ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—କକ୍ଷ—

[ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—କମଳୀ ! କମଳୀ ! ( ରୁଦ୍ଧ ଦ୍ୱାରରେ କରାଘାତ କରିବା ) କମଳୀ ! କମଳୀ ! ( କାନଡେରି ) କାହିଁ ? ସ୍ୱରଶବ୍ଦ କିଛି ନାହିଁ ? କଣ ହେଲା କମଳୀର ମୋର କ'ଣ ହେଲା ? ଘର କାହିଁ, ଘର ଗୋବରା ନେଇ ଯାଇଛି—ଏ' ଘରକେ କଣ ନହେବ ନାହିଁ ? ( ନିଜ ଘରରେ ଅକୃତକାର୍ଯ୍ୟ ହୋଇ ) କମଳା ! କମଳା ! କ'ଣ କରିବି ? କିଏ ଅଛ—ଧାଇଁପଡ଼—କବାଟ ଫିଟାଇ ଦିଅ—କମଳୀର ମୋର କ'ଣ ହେଲା ? —କମଳୀର ମୋର କ'ଣ ହେଲା ?

[ ଗୋବର୍ଦ୍ଧନର ପ୍ରବେଶ ]

ଗୋବର୍ଦ୍ଧନ—ଏ କ'ଣ କରୁଛ, ନାଣୀ ?

ଜଗଦମ୍ବା—ଜଲଦି କବାଟ ଫିଟାରେ, ଗୋବରା !—କମଳୀର ମୋର କଣ ହେଲା ? କମଳୀର—

ଗୋବର୍ଦ୍ଧନ—କମଳୀର ଉତାର ହବ କଣ ?—ଘର ଭେଙ୍କିତ କୁମ୍ଭୀର ହୋଇଛି, ଆଉ ହବ କ'ଣ ?

ଜଗଦମ୍ବା—ତାକୁ ମାରି ପକା ନା ରେ ଗୋବରା ? ସେ ପିଲା ମଣିଷ—ମୋତେ ପଛକେ—

ଗୋବର୍ଦ୍ଧନ—କଣ ଗୁଡ଼ାଏ ବକୁଛୁ ନାଣୀ ? କମଳୀକୁ କଣ ମାରି ପକାଉଛି ?

ଜଗଦମ୍ବା—କାହିଁ ? ସେ ତ ଡାକ ଡାକ ମୋଟେ ଆଉ ଶୁଣୁ ନାହିଁ ?

ଗୋବର୍ଦ୍ଧନ—ମୁଁ ପରା ମନାକରିଛି—ମୁଁ ନଥିଲା ବେଳେ ଡକା ଡକି କରିବୁ ନାହିଁ, କି ସେ ଦ୍ୱାର ମୁହଁକୁ ବି ଯିବୁନାହିଁ ?

ଜଗଦମ୍ବା—( କାନ୍ଦିବା )

ଗୋବର୍ଦ୍ଧନ—ଦେଖୁଛି, ତୁ ସବୁ ସାରିବୁ, ନାଣୀ ! ଆପେ ମରିବୁ ମୋତେବି ମାରିବୁ !

ଜଗଦମ୍ବା—ସେପରି କହନା ତୁ ଗୋବରା ! ତୋର ଖାଇଁକି ଲୁଚ ମୁଁ ପଚାରି କଣ ବସିଛି । ସ୍ୱାମୀ ସ୍କୁଲକୁ ଯିବାକୁ ବସିଲେଣି—ତେବେବି ଦେଖ, ସ୍ତ୍ରୀ ଆଖିରେ ଟୋପିଏ ଲୁହ ନାହିଁ—ଗୋଟିଏ ବୋଲି ଝିଅ, ମାସେ ହେଲା ଅନ୍ଧାର ଘରେ ବନ୍ଦ—ତେବେ ବି ଦେଖ, ମା ହସିଖେଳି ଦିନ କଟାଉଛି ।

ଗୋବର୍ଦ୍ଧନ—ଗୋବର୍ଦ୍ଧନ କ'ଣ ଆଉ ନିଶ୍ଚିନ୍ତ ହୋଇ ବସିଛି ? ତାର ନାଣୀ ପାଇଁ—ତାର ଭେଣେଇ ପାଇଁ ସେ କ'ଣ କରିଛି ? ସତୀର କଳଙ୍କ ରଟାଇଛି—ସ୍ୱାମୀର ପ୍ରାଣନାଶ କରାଇଛି—ଆପେ ରାଜ-ହତ୍ୟା କରିଛି—ପ୍ରୟୋଜନ ହେଲେ ଆହୁରି ମଧ୍ୟ ଅସାଧ୍ୟ ସାଧନ କରିବାକୁ ପ୍ରସ୍ତୁତ ଅଛି । ମୋର ପ୍ରତିଜ୍ଞା, ନାଣୀ ! ମୁଁ ମରେ ବା ବଞ୍ଚେ ଦେଖାଇବି, ଅବଧାନ କଥା ସତ କି' ମିଛ ?—ଭେଣେଇ ରାଜା ହେବ କି' ନା—ଆଉ ନାଣୀ ମୋର ରାଣୀ ହେବ କି' ନା ?

ଜଗଦମ୍ବା—ସେ ରଜା ରାଣୀ—ଅବଧାନ କଥା ଚୁଲିକୁ ଯାଉ, ଗୋବରା ! ତୁ କହ, ତାକୁ ବଞ୍ଚାଇ ପାରିବୁତ ?

ଗୋବର୍ଦ୍ଧନ—ତୋର ଗୋବରା ଥିବା ଯାଏ ତୁ କିଛି ଚିନ୍ତା କରନା, ନାଣୀ—ମୁଁ ସବୁ କରି ଦେଉଛି —ତୁ ଖାଲି ସାହସ କର—ଦମ୍ଭ ଧର ।

ଜଗଦମ୍ବା—କହ, ଗୋବରା ମୋର ସାହସ—ମୋର ଦମ୍ଭ କି ଆଉ କାହାରିଠାରେ ଅଛି ? କେଉଁ ନାରୀ, ନାରୀ ହୋଇ ଏତେହିର ଦମ୍ଭ ଧରିପାରେ ?

ଗୋବର୍ଦ୍ଧନ—ତେବେ ବେଳେ ବେଳେ କାହିଁକି ଏତେ ହଲ୍‌ଚଲ୍ ଯାଉ ?

ଜଗଦମ୍ବା—କାହିଁ ? କେତେବେଳେ ?

ଗୋବର୍ଦ୍ଧନ—ଏହି ବର୍ତ୍ତମାନ—"କମଳୀ, କମଳୀ" ବୋଲି ଯେତେବେଳେ ଉଚ୍ଛନ୍ନ ହେଉଥିଲୁ—ମୁଁ କି' କମଳୀକୁ ମାରିବି ବୋଲି ଘରେ ବନ୍ଦ କରିଛି ? ତାର ଯେପରି ସ୍ୱଭାବ ଦେଖିଛୁତ, ରାଣୀ ଯିନା ତା କଥାରେ କାନ ଦେଲେ ନାହିଁ—ତା ନ ହେଲେ କ'ଣ ସେ ଆଉ ବାକୀ କିଛି ରଖିଥାନ୍ତା ?

ଜଗଦମ୍ବା—ଠିକ୍ କଥା ଗୋବର—ଠିକ୍ କଥା ।

ଗୋବର୍ଦ୍ଧନ—'ଠିକ୍ ଗୋବର ଠିକ୍ କଥା !' ଜାଣୁଛ ତ ଏତେ ଉଚ୍ଛନ୍ନ ହେଉଥିଲ୍ କାହିଁ ?

[ ପଦ୍ମାର ପ୍ରବେଶ ]

ଜଗଦମ୍ବା—ଏ' କିଏ ଗୋବର ?

ଗୋବର୍ଦ୍ଧନ—ନାନୀ । ମୋତେ ଭାରି ଭୋକ କଲାଣି —ଜଲଦି ଖାଇବାର ଅଂଶ—କମଳାର ବି ଖାଇବାର ଅଂଶ—ଯା, ଯଲଦି ଯା ।

[ ଜଗଦମ୍ବାର ପ୍ରସ୍ଥାନ ]

ପଦ୍ମା—ନାହିଁ, ମୁଁ ପାରିବି ନାହିଁ ।

ଗୋବର୍ଦ୍ଧନ—ତେବେ ଆସିଲ୍ କାହିଁକି ?

ପଦ୍ମା—ମୋତେ ମାଫ୍ କର ।

ଗୋବର୍ଦ୍ଧନ—( ନିରୁତ୍ତର )

ପଦ୍ମା—ଗୋଡ଼ ଧରୁଛି ।

ଗୋବର୍ଦ୍ଧନ—( ଗୋଡ଼ରେ ଠେଲି ଦେଇ ) ଏଇ ପରା ତୋର ପେରେମ—

ପଦ୍ମା—ମୋତେ ଯେ ଡର ମାଡ଼ୁଛି ।

ଗୋବର୍ଦ୍ଧନ—ଡର ମାଡ଼ିଲେ ପେରେମ ହୁଏ ନାହିଁ । ଜାଣୁ, ବିଲ୍ୱମଙ୍ଗଳ କରି ଥିଲେ କଣ ? ଘୋର ବେଶ୍ୟା ଲାଗି ମଡ଼ା ଧରି ନଦୀ ପାରି ହୋଇଥିଲେ —ସାପଲାଞ୍ଜ ଧରି ପାଚେରୀ ଡେଇଁ ଥିଲେ— ଆଉ ତୁ ମୋ ଲାଗି—ମୁଁ ଯେ ଜଣେ କେଡ଼େ ବଡ଼ ଲୋକ ହେବାକୁ ଯାଉଛି—ଏତିକ କାମ କରି ପାରିବୁ ନାହିଁ ?

ପଦ୍ମା—ତେବେ ଏହି ଷ୍ଟ୍ରେରଠା ରଖ—ସେହି ଔଷଧ ଗୁଣ୍ଡା ଦିଅ—ସେ ରୋଜ ସକାଳୁ ଉଠି ପାଣି ପିଅନ୍ତି—ପାଣିରେ ମିଶାଇ ରଖିଥିବି ।

ଗୋବର୍ଦ୍ଧନ—ଏ'ତ ଖୁବ୍ ଭଲ ଉପାୟ ! ସାପ ମରିବ ଅଥଚ ବାଡ଼ି ଭାଙ୍ଗିବ ନାହିଁ । ତୁ'ତ ନିଜେ ଜାଣିପାରିବୁ ନାହିଁ ଯେ ତୁ କ'ଣ କରୁଛୁ ? ଷ୍ଟ୍ରେରଠା ବି ପାଖରେ ଥାଉ, ଦରକାର ବେଳେ କାମରେ ଆସିପାରେ ।

ପଦ୍ମା—କିନ୍ତୁ—

ଗୋବର୍ଦ୍ଧନ—ଫେର୍ କିନ୍ତୁ କ'ଣ ?

ପଦ୍ମା—( ଅଭିମାନ କରିବା )

ଗୋବର୍ଦ୍ଧନ—ଗୁମାନ କରନା, ପ୍ରିୟେ । ଗୋବର୍ଦ୍ଧନ ଯେ ତୁମର କିଣା ଚାକର ।

ପଦ୍ମା—( ସୁର କରି ) ସତେ କି—

ଗୋବର୍ଦ୍ଧନ—ଆଉ ଆଉ—ବର୍ତ୍ତମାନ ପ୍ରେମର ସମୟ ନୁହେଁ—କାମର ସମୟ ।

ପଦ୍ମା—ଠିକ୍ ଠିକ୍—ଦେଖ, ଯିବା ପରେ ମୁଁ ଖାଲି ଦିନରାତି ତୁମକୁ ଚାହିଁ ବସିଥିବି—ଆଉ ଗୀତ ଗାଉଥିବି ।

ଗୋବର୍ଦ୍ଧନ—ଆହା ବଧୂମୁଖୀ ! ମୋ ପାଇଁ କେତେ ପେରେମ ଜମାଇ ରଖିଛ !

( ଚିବୁକ ସ୍ପର୍ଶ କରିବା )

ପଦ୍ମା—ବନ୍ଧୁ ! ବନ୍ଧୁ ! ଦାସୀକୁ ଏତେ ଭଲପାଅନ୍ତୁ— ହାୟ ! ମୁଁ ଯେ ଏ' ପର୍ଯ୍ୟନ୍ତ ବନ୍ଧୁଙ୍କ କାମ କରି ସାରି ନାହିଁ । ( ପ୍ରସ୍ଥାନ )

ଗୋବର୍ଦ୍ଧନ—ଆଜ କାରାଗାର ସମ୍ମୁଖରେ ଯେପରି ଦେଖିଲି, ମହାରାଜା ଭେଣେଇଙ୍କ ମୃତ୍ୟୁ-ଦଣ୍ଡ ଦେବାକୁ ଏକାବେଳକେ ନାମଙ୍ଗ—କେବଳ ରାଣୀଙ୍କ ସକାଶେ କିଛି କରିପାରୁନାହାନ୍ତି— ରାଣୀଙ୍କୁ ନିକାଶ କରିଦେଲେ ସବୁ ଅଡ଼ୁଆ ଛିଣ୍ଡିଯିବ । ମହାରାଜା ନିଶ୍ଚୟ ଭେଣେଇଙ୍କୁ ଖଲାସ କରିଦେବେ—ନା ଆହୁରି ରାଗି ଯିବେ ? କାହିଁକି ? ବରଂ ଦୃଢ଼ବିଶ୍ୱାସ କରିବେ ଯେ ଭେଣେଇ କଲ୍ୟାଣଦେବଙ୍କୁ ହତ୍ୟା କରି ନାହାନ୍ତି—ବାଃ ! ବାଃ ! କେମିତିକା ଉପାୟ ? ଗୋବର୍ଦ୍ଧନର କି କମ୍ ସାଫ୍ ମୁଣ୍ଡ ? ନାନୀ ! ନାନୀ !—

[ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—କିରେ କ'ଣ ?

ଗୋବର୍ଦ୍ଧନ—କାହିଁ ଖାଇବାର ଅଂଶ ମ ?

ଜଗଦମ୍ବା—ଏ'ଠାକୁ ଆଣିବୁ ? ମୁଁ ଯେ ସେ ଘରେ ଯାଗା କରି ସାରିଲିଣି ।

ଗୋବର୍ଦ୍ଧନ—ଆଚ୍ଛା ହଉ, ଚାଲ—ମୁଁ କମଳୀକୁ ନେଇ ଯାଉଛି । [ ଜଗଦମ୍ବାର ପ୍ରସ୍ଥାନ ]

ଗୋବର୍ଦ୍ଧନ—( ଦ୍ୱାର ଉନ୍ମୋଚନ କରିବା—କମଳୀ ଗୋଟିଏ ଶଯ୍ୟା ଉପରେ ଶୋଇଥିବା ) କମଳୀ ! କମଳୀ ! ( ଉଚ୍ଚ ) କମଳୀ ! କମଳୀ ! ଶୁଣୁନାହିଁ ଯେ ! ( ଦେହରେ ହାତ ଦେଇ ) ଦେହ ଥଣ୍ଡା ବୋଧ ହେଉଛି କାହିଁକି ? କମଳୀ କମଳୀ—ନାକରେ ଯେ ନିଶ୍ୱାସ ନାହିଁ—କମଳୀ କମଳୀ—ଏ'କଣ ହେଲା—ଏ'କଣ ହେଲା ?କମଳୀ,କମଳୀ ! ମୁଁ କ'ଣ କଲି ? ମୁଁ କ'ଣ କଲି ? କମଳୀ,କମଳୀ ! ଓଃ ହୋଃ ଓଃ ହୋଃ ! କମଳୀ—କମଳୀ ! ସତେ କ'ଣ ତୁ ନାହୁଁ ? ସତେ କ'ଣ ତୁ ନାହୁଁ ? ତୋତେ କ'ଣ ମାରିଲି କମଳୀ ? ତୋତେ—ଓଃ ହୋଃ ! ( କାନ୍ଦିବା ) ନା—ଏତେବେଳେ କାନ୍ଦିବାର ସମୟ ନୁହେଁ—ଧୈର୍ଯ୍ୟ ଧରିବା ଉଚିତ ।

( ନେପଥ୍ୟେ )—ଗୋବରା ! ଗୋବରା ! କମଳୀକୁ ନେଇ ଜଲଦି ଆ' ।

ଗୋବର୍ଦ୍ଧନ—କ'ଣ କରିବି ? ନାନୀ ଜାଣିଲେତ ଏହିକ୍ଷଣି ହାଟ ବସାଇଦେବ—ସବୁ ଭଣ୍ଡୁର ହୋଇଯିବ—କଣ କରିବି ?

( ନେପଥ୍ୟେ )—ଗୋବରା ! ଗୋବରା ! ତେଉଁ କାହିଁକି କରୁଛୁ ମ ? କମଳୀ କଣ ଉଠୁ ନାହିଁ ? ହଉ ତୁ ଏଠିକି ଆ, ମୁଁ ଯାଉଛି ।

ଗୋବର୍ଦ୍ଧନ—କଣ କରିବି ? ( ଭାବି ) ଅଚ୍ଛା, ଅଜ ରାତିକି ସକାଶେ ଏହି ଉପାୟ କରେଁ ( ତାଙ୍କୁ ବନ୍ଦକରି ଗମନ କାଳେ )

[ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—କମଳୀ କାହିଁ ?

ଗୋବର୍ଦ୍ଧନ—ସେ ଖାଇବ ନାହିଁ, ମନା କଲା ।

ଜଗଦମ୍ବା—ରାଗରେ ତ ସେପରି ରୋଜ କହୁଥାଏ—ତୁ ଯା, ମୋତେ ରୁଟିଟା ଦେ ?

ଗୋବର୍ଦ୍ଧନ—କାହିଁକି ମିଛେ ମିଛେ ତାକୁ ବ୍ୟସ୍ତ କରିବୁ, ନାନୀ ! ଅଜ ଅଉ ରାଗ ଫାଗ ନାହିଁ ଯେ—ଭାରି ସୁନା ଝିଅ ପାଲଟି ଗଲଣି—

ଜଗଦମ୍ବା—ତେବେ ଅଉ ଗୃହ ବନ୍ଦ କରିବାର ଦରକାର କ'ଣ ?

ଗୋବର୍ଦ୍ଧନ—ସେ ନିଜେ କହିଲା ଗୃହ ବନ୍ଦକରିବାକୁ ।

ଜଗଦମ୍ବା—କାହିଁକି ?

ଗୋବର୍ଦ୍ଧନ—କେଜାଣି—କହିଲାତ—ମୁଁ ବି ତା ସଙ୍ଗେ ବେଶୀ ଜିଗର କଲି ନାହିଁ—କାହିଁକି ନା ସେ କହିଲା 'ମାମୁ ! କେତେଦିନ ହେଲା ଭଲ ନିଦ ହୋଇନାହିଁ, ଅଜ ଶୋଇବି—ତୁମେ ବିରକ୍ତ କରନାହିଁ, ମାକୁ ବି କହିବ, ବିରକ୍ତ କରିବ ନାହିଁ ।'

ଜଗଦମ୍ବା—ଅଖିଅଟା ଶୋଇଲା—ଅଚ୍ଛା ତୁ ଆ, ଆଗେ ଖାଇ ସାର । (ପ୍ରସ୍ଥାନ)

ଗୋବର୍ଦ୍ଧନ—ରାତିଟାତ ଏକରକମ କଟିଯିବ ବୋଲି ବୋଧ ହେଉଛି—ତା' ପରେ କରିବି କ'ଣ ?—ହାୟ କମଳୀ ! ତୋତେ କ'ଣ ମୁଁ ମାରିଲି ?

---

## ତୃତୀୟ ଦୃଶ୍ୟ

—ଆଶ୍ରମ—

[କାଳରାତ୍ରୀ । ରଙ୍ଗିଲା ଶୋଇଥିବା—ସନ୍ନ୍ୟାସୀ ଏକଦୃଷ୍ଟେ ଗୃହିଁ ବସିଥିବା—ବଦ୍ରୁୟର ଚମକି ଉଠିବା ]

ସନ୍ନ୍ୟାସୀ—ବଦ୍ରୁର ! ଅତ୍ପୁର ଥରେ—ଓଃ କି ସୁନ୍ଦର ! କି ସୁନ୍ଦର ! ରଙ୍ଗିଲା !

ରଙ୍ଗିଲା—( ଆଖି ମଳି ମଳି ଉଠି ବସି ) ସତେ ତୁମେ ଫେରି ଅସିଛ ? କାହିଁ ? କାହିଁ ? ( ବଜ୍ରନାଦ ) ବାପ୍‌ରେ କି ଗର୍ଜନ !

ସନ୍ନ୍ୟାସୀ—( ବଦ୍ରୁୟର ) ରଙ୍ଗିଲା !

ରଙ୍ଗିଲା—କିଏ ? ବାବା ? ମୁଁ ଗୋଟାଏ ଭାରି ଦୁଃସ୍ୱପ୍ନ ଦେଖି ଉଠିବସିଲି—ବାବା ! ଅଜ କି ଭୀଷଣ ରାତି !

ସନ୍ନ୍ୟାସୀ—କହନା, ରଙ୍ଗିଲ—ବିଶ୍ୱ ଯେପରି ପ୍ରଳୟ ହେବାକୁ ବସିଛି ।

ରଙ୍ଗିଲ—ବାବା ! ଏତେବେଳ ଯାଏ ସେ ଶୋଇ ନାହାନ୍ତି ?

ସନ୍ନ୍ୟାସୀ—ଆଜ ବିଶ୍ୱମଧ୍ୟରେ କିଏ ସୁପ୍ତ, ରଙ୍ଗିଲ ? ସୁପ୍ତ ମଧ୍ୟ ଆଜ ଜାଗ୍ରତ ।

ରଙ୍ଗିଲ—( ବିଦ୍ୟୁତ୍ ଓ ମେଘଗର୍ଜନ ) ବାପ୍‌ରେ କି' ବିଦ୍ୟୁତ୍—କି' ଗର୍ଜନ ।

ସନ୍ନ୍ୟାସୀ—ସତେ, ରଙ୍ଗିଲ ! ଏପରି ଭୟଙ୍କର ରାତ୍ରି ମୁଁ ଜୀବନରେ ଆଉ କେବେ ଦେଖି ନାହିଁ—ସନ୍ନ୍ୟାସୀର ପର୍ଯ୍ୟନ୍ତ ଆଜ ଧୈର୍ଯ୍ୟଚ୍ୟୁତ ଘଟିଛି ।

ରଙ୍ଗିଲ—ବାବା ! ବିଶ୍ୱ କେବେ ଆଜ ନିଶ୍ଚୟ ପ୍ରଳୟ ହେବ ।

ସନ୍ନ୍ୟାସୀ—ରଙ୍ଗିଲ କରୁଣା କଲେ କିନ୍ତୁ ସବୁ ଶାନ୍ତ ହୋଇଯିବ ।

ରଙ୍ଗିଲ—( ସବିସ୍ମୟେ ଚାହିଁ ରହିବା )

ସନ୍ନ୍ୟାସୀ— ଆଶ୍ଚର୍ଯ୍ୟର କାରଣ କିଛି ନାହିଁ, ସୁନ୍ଦରୀ ! ତୁମ୍ଭର ସେହି ମଧୁରେକ୍ଷଣ ପାତନରେ, ତୁମ୍ଭର ସେହି ଅପୂର୍ବ ଯୌବନ ସୌରଭରେ ଭସ୍ମୀଭୂତ ମଦନ ପୁନର୍ଜାଗ୍ରତ ହୋଇଛି—ଭୀଷଣା ପ୍ରକୃତି ସାହାଯ୍ୟରେ ଆଜ ସେ ଗର୍ବିତ ଶଙ୍କରର ହୃଦୟ ମଧ୍ୟ ପୁନରଧିକାର କରିବସିଛି । ନିରାଶ୍ରୟର ଏକମାତ୍ର ଆଶ୍ରୟ,ଅଧୁନା ତୁମ୍ଭର ସୁକୋମଳାଲିଙ୍ଗନ—ଦରିଦ୍ରର ଏକମାତ୍ର ଭରସା, ଅଧୁନା ତୁମ୍ଭର ଅଧରଚୁମ୍ବନ ।

ରଙ୍ଗିଲ—ବାବା ! ବାବା ! ଏଗୁଡ଼ାକ କ'ଣ କହୁଛନ୍ତି ?

ସନ୍ନ୍ୟାସୀ—କିଛି ଭୟ କର ନା, ରଙ୍ଗିଲ ! ଏବେ ଏ' ନିର୍ଜନ ଆଶ୍ରମ, ତହିଁପରେ ପ୍ରକୃତିଦେବୀ ଅନୁଗ୍ରହ କରି ଯବନିକା ଟାଣି ଦେଇଛନ୍ତି—ସଂସାର-ବାସୀର କଥା ତ ଦୂରେ—ଅନ୍ତରୀକ୍ଷ-ବାସୀ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଗୁପ୍ତ ରହସ୍ୟ ଭେଦ କରିବା ଦୁଷ୍କର ।

ରଙ୍ଗିଲ—ବାବା ! ଏହି ପାପ-ଲାଲସା ତୃପ୍ତି ଲାଗି କଣ ଜୀବନ ଦାନ କରିଥିଲେ ? ଏହି ପାଶବିକ ପ୍ରବୃତ୍ତି ଚରିତାର୍ଥ ଲାଗି କଣ ଆତ୍ମହତ୍ୟା ମହାପାପ ବୋଲି ବୁଝାଇଥିଲେ ? ଯେତେବେଳେ ମୁଁ ଡୁବି ଅଜ୍ଞାନ ହୋଇଥିଲି—ମୋର କୌଣସି ଜ୍ୱାଳା ଯନ୍ତ୍ରଣା ନ ଥିଲା—ପରମଶାନ୍ତି ଅନୁଭବ କରୁଥିଲି—ସେତେବେଳେ ଆପଣ କି' ଶକ୍ତି ସଞ୍ଚାର କଲେ ଯେ ମୋର ପୁନର୍ଜ୍ଜୀବନ ହେଲା—ନିର୍ବାପିତ ଅଗ୍ନି ଯେମନ୍ତ ପୁନରାୟ ହୁ ହୁ କରି ଜ୍ୱଳି ଉଠିଲା—ମାତ୍ର ଆପଣଙ୍କର ସାରଗର୍ଭ ବଚନ-ସୁଧାରେ ତାହା ପ୍ରଶମିତ ହୋଇ-ଯାଇଥିଲା—ସୁତରାଂ ମନେ କରିଥିଲି ଉଷର ଭୂମିରେ ଉଷ୍ଣଭୂମି ଏଠାରେ ମଧ୍ୟ ପ୍ରକୃତ ଶାନ୍ତି ମିଳେ; କିନ୍ତୁ ଆଜି ଦେଖୁଛି, ଭୁଲ ଧାରଣା—ଏ' ପାପରେ ଶାନ୍ତି ଅସମ୍ଭବ !—ଶାନ୍ତି କେବଳ ପରପାରରେ !—ଅଭାଗୀକୁ ବିଦାୟ ଦିଅନ୍ତୁ, ବାବା ! [ ଗମନୋଦ୍ୟତ ]

ସନ୍ନ୍ୟାସୀ—ଏ' ଭୀଷଣ ସମୟରେ କେଉଁଠାକୁ ବାହାରିଲ ରଙ୍ଗିଲ ?

ରଙ୍ଗିଲା—ଯେଉଁଠାରୁ ଏ ଅଭାଗୀକୁ ଆଣିଥିଲେ, ବାବା !

[ ରଙ୍ଗିଲର ଗମନ ପଥରେ ବାଧା ଦେଇ ]

ସନ୍ନ୍ୟାସୀ—ନା, ରଙ୍ଗିଲ ! ନିଷ୍ଠୁର ହୁଅନା—ଶୁଣ, ସୁନ୍ଦରୀ ! ଆଜି ପର୍ଯ୍ୟନ୍ତ ତୁମ୍ଭଙ୍କୁ ସାମାନ୍ୟ ପର୍ଣ୍ଣ-କୁଟୀରରେ ଆଶ୍ରୟ ଦେଉଥିଲି—ଏଣିକି ହୃଦୟ-ମନ୍ଦିରରେ ତୁମ୍ଭର ମଣିମୟ ସିଂହାସନ; ସାମାନ୍ୟ ବନ୍ୟ ଫଳ ମୂଳ ଆହାର କରିବାକୁ ଦେଉଥିଲି—ଏଣିକି ପ୍ରେମ-ପୀୟୁଷ ତୁମ୍ଭର ନିତ୍ୟ ଭୋଜନ ।

ରଙ୍ଗିଲ—ବାବା !

ସନ୍ନ୍ୟାସୀ—ନା, ସୁନ୍ଦରି ! ଆଉ ସେପରି ସମ୍ବୋଧନ କର ନାହିଁ । ଆଜକୁ ଦଶବର୍ଷ ଯାବତ୍ ନିର୍ଜନ କୁଟୀରରେ ବାସ କରି—ବନ୍ୟ ଫଳ-ମୂଳ ଭକ୍ଷଣ କରି—ଝରଣାର ଜଳ ପାନ କରି, ଯେଉଁ ଶାନ୍ତି ଅନ୍ୱେଷଣ କରୁଥିଲି—ତାହାର ସନ୍ଧାନ ନିମିଷରେ ଆଜି ପାଇଅଛି—ତାହା ତୁମ୍ଭର ସେହି ବିମ୍ବାଧରରେ—ତାହା ତୁମ୍ଭର ସେହି ସୁକୋମଳ ଆଲିଙ୍ଗନରେ ଲୁକ୍କାୟିତ । ସେହି

ଆଲିଙ୍ଗନ-ସୁଖ—ସେହି ଅଧରସୁଧା ଦାନ କର, ପ୍ରାଣେ ଦୟାକର ସୁନ୍ଦର !—ଅକିଞ୍ଚନର ଅକିଞ୍ଚନ ପୂର୍ଣ୍ଣ କର, ସୁନ୍ଦର !

(ଅବନତ ହେବା)

ରଙ୍ଗିଲି—ବାବା ! ବାବା !—ନା—ଆଉ ଏ ସ୍ଥାନରେ ରହିବା ଉଚିତ ନୁହେଁ । ( ଗମନୋଦ୍ୟତା )

ସନ୍ନ୍ୟାସୀ—ନା, ସୁନ୍ଦର ! ( ଧରିବା )

ରଙ୍ଗିଲି—ଭଣ୍ଡ ! ( ଛଡ଼ାଇବାକୁ ଚେଷ୍ଟା କରିବା )

ସନ୍ନ୍ୟାସୀ—ବୃଥା ଚେଷ୍ଟା, ସୁନ୍ଦର । ( ଆକର୍ଷଣ କରିବା ଓ ଘନ ଘନ ବିଦ୍ୟୁତ୍ ଚମକିବା ଓ ମେଘ-ଗର୍ଜନ ହେବା )

ରଙ୍ଗିଲି—ଜ୍ୱଳ, ଜ୍ୱଳ, ବିଦ୍ୟୁତ୍ ! ଦାବାଗ୍ନି ସମ ଜ୍ୱଳି ଉଠ—ଗର୍ଜ ଗର୍ଜ ବଜ୍ର ! ଗ୍ରହ ଘର୍ଷଣ ନିନାଦରେ ଗର୍ଜି ଉଠ—ବର୍ଷ ବର୍ଷ, ବାରି ! ପ୍ରଳୟ ଧାରରେ ବର୍ଷି ଯାଅ—ପୃଥିବୀ ରସାତଳେ ଯାଉ—ବିଶ୍ୱ ବାରିଧିମଧ୍ୟସ୍ଥ-ପୋତ ସମ କମ୍ପି ଉଠୁ—ନିର୍ଜୀବ ସଜୀବ ହୋଇ ଧାଇଁ ଆସୁ—ଗୋଟିଏ ଅବଳା ନାରୀ—ହିନ୍ଦୁ ବିଧବାନାରୀ ଆଜି ଭଣ୍ଡ-ତପସ୍ୱୀ କବଳରେ—ଗୋଟିଏ ନର-ରାକ୍ଷସ କବଳରେ ।

ସନ୍ନ୍ୟାସୀ—ବୃଥା ଆସ୍ଫାଳନ, ସୁନ୍ଦର । ( ଧାରଣ କରିବା )

( ବୀରେନ୍ଦ୍ରର ବେଗେ ପ୍ରବେଶ )

ବୀରେନ୍ଦ୍ର—ବୃଥା ଆସ୍ଫାଳନ ନୁହେଁ, ରାକ୍ଷସ !

( ଅର୍ଜୁନର ପ୍ରବେଶ )

ଅର୍ଜୁନ—କାହିଁ ତୁମ୍ଭେ, ଭାଇ ? ଉଃ କି ଅନ୍ଧକାର—ବାହାରେ—ଯେପରି—ଭିତରେ ମଧ୍ୟ ସେହିପରି !

ରଙ୍ଗିଲି—( ଚମକିତ ସ୍ୱରେ ) କାହାର କଣ୍ଠ ସ୍ୱର ଏ ?

ସନ୍ନ୍ୟାସୀ—କିଏ ତୁମ୍ଭେମାନେ । ଏ ସନ୍ନ୍ୟାସୀର ଆଶ୍ରମ ।

ଅର୍ଜୁନ—ଏ ସନ୍ନ୍ୟାସୀର ଆଶ୍ରମ, ଭାଇ ! ପ୍ରଣାମକର-ପ୍ରଣାମକର ।

( ଲମ୍ବ ହୋଇ ପ୍ରଣାମ କରିବା )

ରଙ୍ଗିଲି—(ସ୍ୱଗତ) ଠିକ୍ ସେହିପରି ସ୍ୱର ତ !

ବୀରେନ୍ଦ୍ର—କହ, ଭଣ୍ଡ ! ତାହା ଉପରେ ଅତ୍ୟାଚାର କରୁଥିଲୁ ? କାହିଁ ତୁମ୍ଭେ ମା ?

ଅର୍ଜୁନ—ଭାଇ ! ତୁମ୍ଭେ କଣ ପାଗଳ ହେଲଣି ? ସନ୍ନ୍ୟାସୀଙ୍କ ଆଶ୍ରମରେ ସ୍ତ୍ରୀଲୋକ ଆସିବ କାହୁଁ ?

ରଙ୍ଗିଲି—(ସ୍ୱଗତ) ଠିକ୍ ସେହିପରି ସ୍ୱର । କଥାରେ ମଧ୍ୟ ଠିକ୍ ସେହିପରି ସରଳତା !

ସନ୍ନ୍ୟାସୀ—ଆଶ୍ରମରେ ଅନ୍ୟ ସ୍ତ୍ରୀଲୋକ କେହି ନାହାନ୍ତି, କେବଳ ମାତାଜି ସେଠି ଠିଆ ହୋଇଛନ୍ତି ।

ଅର୍ଜୁନ—ମାତାଜି ବି ଅଛନ୍ତି । ପ୍ରଣାମକର ପ୍ରଣାମକର—ଗାର୍ହସ୍ଥ୍ୟ ପରେ ଏମାନେ ବୋଧହୁଏ ସନ୍ନ୍ୟାସଗ୍ରହଣ କରିଅଛନ୍ତି ।

( ପ୍ରଣାମ କରିବାକୁ ଯିବାବେଳେ )

ରଙ୍ଗିଲି—ମିଥ୍ୟା କଥା—ମୁଁ ଗୋଟିଏ ଅବଳା ବାଳିକା—ହିନ୍ଦୁ ବିଧବା ନାରୀ ।

(ଲୁକ୍କାୟିତଭାବେ ସନ୍ନ୍ୟାସୀର ପ୍ରସ୍ଥାନ)

ବୀରେନ୍ଦ୍ର—ତେବେବେ ଭଣ୍ଡ ! ଭାଇ ! ଶୀଘ୍ର ଚକମକିଟା ଦିଅ ତ ?

ଅର୍ଜୁନ—( ଚକମକି ଦେବା ) ନିଅ ଭାଇ—ସନ୍ନ୍ୟାସୀ ହୋଇ ମିଛକଥା—ପୁଣି ଏପରି କୁତ୍ସିତାଚରଣ !

ରଙ୍ଗିଲି—( ସ୍ୱଗତ ) ଠିକ୍ ସେହିପରି କଥାର ଠାଣିତ ?

ବୀରେନ୍ଦ୍ର—( ନିଆଁ ଲଗାଇ ) କାହିଁ ଭଣ୍ଡ ? କେଉଁଠାକୁ ଗଲା ? ଭାଇ ! ତୁମେ ବାଳିକାଟିକୁ ରକ୍ଷାକର—ମୁଁ ସେ ପାପିଷ୍ଠକୁ ଏହିକ୍ଷଣି ବାନ୍ଧି ନେଇ ଆସୁଛି ।

( ବେଗେ ପ୍ରସ୍ଥାନ )

ଅର୍ଜୁନ—ପୁଣି ବର୍ଷା ଆରମ୍ଭ ହୋଇଛି—ବେଶୀ ଭିଜ ନା, ଭାଇ, ଜ୍ୱର ହୋଇପାରେ ।

ରଙ୍ଗିଲି—(କ୍ଷୀଣ ସ୍ୱରେ) କିଏ ଆପଣ ? ( ବିଦ୍ୟୁତରେ ଦେଖି—ସ୍ୱଗତ ) ସେ କାହିଁକି ହେବେ ? ସ୍ୱର୍ଗର ଦେବତା ମର୍ତ୍ତ୍ୟକୁ ଆସିବ କିପରି ?

ଅର୍ଜୁନ—କିଛି ଭୟ କର ନା,—ବାଳିକା—ମୁଁ ଅଛି ।

ରଙ୍ଗିଲି—( ସ୍ୱଗତ ) ମୁଁ ସ୍ୱପ୍ନ ଦେଖୁ ନାହିଁ ତ ? (ପ୍ରକାଶ୍ୟେ) ମହାଶୟ !—

ଅର୍ଜୁନ—କଣ ଗୃହଁ ବାଳକା ? ଘରକୁ ଯିବାକୁ ? ଟିକିଏ ରୁହ—ଭାଇ ଅସି ଯାଆନ୍ତୁ ।

ରଙ୍ଗିଲା—କିଏ ତୁମ୍ଭେ, ମହାଶୟ, ଘରର ମାୟା ପୁଣି ଜନ୍ମାଇ ଦେଉଛ ? କିନ୍ତୁ ଏ ଅଭାଗୀର—

ଅର୍ଜୁନ—କାହିଁକି, ବାଳକା ? ତୁମ୍ଭର କଣ କେହି ନାହିଁ ?

ରଙ୍ଗିଲା—କେହି ନାହିଁ କାହିଁକି ? କିନ୍ତୁ ଯେ ଅବଳାର ଏକମାତ୍ର ବଳ—ସତୀର ଏକମାତ୍ର ଅବଲମ୍ବନ—ସେ ଯେ— (କାନ୍ଦିବା)

ଅର୍ଜୁନ—ବୁଝିଛି, ବାଳକା (ସ୍ୱଗତ) ଆହା ! ରଙ୍ଗିଲା ମଧ୍ୟ ଏହିପରି କାନ୍ଦୁଥିବ—(ପ୍ରକାଶ୍ୟେ) କାନ୍ଦନା, ବାଳକା । ଏ ଦେହ ତ କଳ ଛଡ଼ା ଆଉ କିଛି ନୁହେଁ ? ଅଚ୍ଛା, ବାଳକା । ତୁମ୍ଭର ସ୍ୱାମୀର କି ରୋଗ ହୋଇଥିଲା ?

ରଙ୍ଗିଲା—ରୋଗ ? ଏ ଅଭାଗୀ ଯେ ତାଙ୍କର ରୋଗ ।

ଅର୍ଜୁନ—କଣ କହୁଛ, ବାଳକା ? ମଣିଷ କି କେବେ ମଣିଷର ରୋଗ ହୋଇପାରେ ?—ଜ୍ୱର ହୋଇଥିବ—କି ଅଉ କିଛି ହୋଇଥିବ, ତା ନ ହେଲେ କି ମଣିଷ ପାଇଁ ମଣିଷ ମରେ ? ଔଷଧ ଚିକିତ୍ସା ହୋଇଥିଲା ତ ?

ରଙ୍ଗିଲା—ମହାଶୟ ! କିଏ ଆପଣ ? (ଅନୁଚ୍ଚସ୍ୱରେ) ଛଦ୍ମବେଶୀ କେହି ନୁହନ୍ତି ତ ?

ଅର୍ଜୁନ—(ସ୍ୱଗତ) ଛଦ୍ମବେଶୀ ! ଏ ବାଳକା ଜାଣିଲା କିପରି ? ଏଣେ ଘୋଡ଼ାଘୋଡ଼ିରେ ବି ଧରା ପଡ଼ିଗଲି । ମୁଁ ତ ବୀର ଭାଇକୁ କହୁଛି, ଯେ ସତ ନିଶ୍ଚେ ଦିନେ ନା ଦିନେ ପ୍ରକାଶ ପାଇବ । ନିଆଁକୁ ହଜାର ବାନ୍ଧିଲେ କଣ ନିଜରୂପ ନ ଦେଖାଇ ଛାଡ଼ିବ ?

ରଙ୍ଗିଲା—ମହାଶୟ ! ଦୋଷ କ୍ଷମା କରିବେ—ମୋର ମତି ବର୍ତ୍ତମାନ ସ୍ଥିର ନାହିଁ—କଣ କହୁ କହୁ, କଣ କହି ପକାଉଛି ।

ଅର୍ଜୁନ—ନା, ନା । ତୁମେ ତ ଏଣୁ ତେଣୁ କିଛି କହୁ ନାହିଁ । ଯାହା ସତ, ତାହାହିଁ କହୁଛ ।

ରଙ୍ଗିଲା—ତେବେ କଣ ଆପଣ ନିଶ୍ଚୟ ଛଦ୍ମବେଶୀ ? (ସ୍ୱଗତ) ଅଦ୍ଭୁତ୍ ! ଅଦ୍ଭୁତ ଥରେ—ତା ପରେ ଯାହା ମନେ କରୁଛି, ଯେବେ ତାହାହିଁ ହୁଏ, ତେବେ—ତେବେ—

ଅର୍ଜୁନ—ଏତେ ଅଧୀର ହେଉଛ କାହିଁକି, ବାଳକା ? —ତୁମର କଣ କେହି ନିରୁଦ୍ଦେଶ ହୋଇ ଯାଇଛନ୍ତି ?

ରଙ୍ଗିଲା—(ସ୍ୱଗତ) ଠିକ୍ ଯେହି ସ୍ୱର । (ପ୍ରକାଶ୍ୟେ) ମହାଶୟ ! ଏ ବାଳକାର ଧୃଷ୍ଟତା ମାର୍ଜନା କରି ଥରେ ସ୍ୱରୂପ ପ୍ରକାଶ କରନ୍ତୁ—ଛପଟତା ତ୍ୟାଗ କରି ଥରେ ଆତ୍ମ-ପରିଚୟ ପ୍ରଦାନ କରନ୍ତୁ—

ଅର୍ଜୁନ—ବାଳକା ! ତୁମର କଣ୍ଠସ୍ୱର ଶୁଣି ମୋର ନାନା କଥା ମନେ ପଡ଼ି ଯାଉଛି—ସେଥିପାଇଁ ତୁମ୍ଭପ୍ରତି ମୋ' ମନ ଭାରି ଆକୃଷ୍ଟ ହେଉଛି । ଆତ୍ମ-ପରିଚୟ ପ୍ରକାଶ ପାଇଲେ ମୋର ପରିଣାମ ଯେ କି ଭୟଙ୍କର, ତା ନିଜେ ମୁଁ ଭାବି କଣ୍ଟକିତ ହେଉଛି, ତଥାପି ତୁମ୍ଭପାଖରେ ପ୍ରକାଶ କରିବାକୁ ମୁଁ କୁଣ୍ଠିତ ନୁହେଁ, କିନ୍ତୁ ତାହା ଜାଣି ତୁମେ କଣ କରିବ ?

ରଙ୍ଗିଲା—(ସ୍ୱଗତ) କଣ କରିବ ? ସ୍ୱର୍ଗ ଯେ ହାତରେ ପାଇବି । "ଆତ୍ମ-ପରିଚୟ ପ୍ରକାଶ ପାଇଲେ ପରିଣାମ ଭୟଙ୍କର"—ତେବେ କଣ ସ୍ୱାମୀ ମୋର ଛଦ୍ମ ବେଶ ଧାରଣ କରିଛନ୍ତି ? କିପରି ଜାଣିବି ?

ଅର୍ଜୁନ—ବାଳକା ! ନୀରବ ହେଲ କାହିଁକି ? ତୁମ୍ଭର କଥା ଯେ ମୋତେ ବଡ଼ ମଧୁର ଲାଗୁଥିଲା— ତୁମେ କଣ ମୋ ଉପରେ ରାଗ କଲ ? ତେବେ ଦେଖ ମୋତେ—

[ ଅଲେକ ହସ୍ତେ ବୀରେନ୍ଦ୍ରର ପ୍ରବେଶ ]

ବୀରେନ୍ଦ୍ର—ସେ ଭଣ୍ଡ କେଉଁ ଆଡ଼େ ପଳାଇଗଲା, ଭାଇ ?

[ ଅର୍ଜୁନ ଛଦ୍ମବେଶ ତ୍ୟାଗକରି ଛିଡ଼ାହେବା ]

ବୀରେନ୍ଦ୍ର—(ଅର୍ଜୁନକୁ ଦେଖି) ଏ କଣ ? ଏ' କଣ, ଭାଇ ?

ରଙ୍ଗିଲା—( ସାବେଗରେ ) ପ୍ରାଣେଶ୍ୱର ! ପ୍ରାଣେଶ୍ୱର !
( ଆଲିଙ୍ଗନ )

ଅର୍ଜୁନ—ରଙ୍ଗିଲା ! ରଙ୍ଗିଲା ! ପ୍ରାଣେଶ୍ୱରୀ—ପ୍ରେମମୟି !
( ପରସ୍ପରକୁ ଆଲିଙ୍ଗନ )

ବୀରେନ୍ଦ୍ର—ଧନ୍ୟ, ଈଶ୍ୱର ! ଅଲୌକିକଭାବେ, ଆଜି ପତି-ପତ୍ନୀର ମିଳନ ଘଟାଇ ଦେଲେ; ସେହିପରି ଅଲୌକିକଭାବେ, ରାଜା-ପ୍ରଜାର—ବନ୍ଧୁ-ବନ୍ଧୁର—ପିତା-ପୁତ୍ରର ମିଳନ କେବେ ଘଟାଇଦେବେ !
( କରୁଣଭାବେ ଚାହିଁ ରହିବା )

---

## ଚତୁର୍ଥ ଦୃଶ୍ୟ

—ଶ୍ମଶାନ—

[ ବନ୍ଦୀଭାବେ ଗୋବିନ୍ଦ, ଘାତକ ଓ ବନ୍ଦନ କରୁ କରୁ ସୈନ୍ୟଗଣଙ୍କର ପ୍ରବେଶ ]

ଗୋବିନ୍ଦ—ଛି, ଭାଇମାନେ ! ତୁମ୍ଭେମାନେ ବୀର ହୋଇ କାନ୍ଦୁଛ ?

ସୈନ୍ୟଗଣ—ପ୍ରଭୋ ! ପ୍ରଭୋ ! (କାନ୍ଦିବା)

ଗୋବିନ୍ଦ—ଛି ! ଛି ! ଯେଉଁ ବୀରଗଣ ଉଦ୍‌ଗୀରଣ-ପରାୟଣ ଶତ ଶତ ତୋପ ସମ୍ମୁଖକୁ ହର୍ଷୋତ୍‌ଫୁଲ୍ଲ ବଦନରେ ଧାଇଁ ଯାଆନ୍ତି - ଯେଉଁ ବୀରଗଣ ନିଷ୍କୋଷିତ ଶତ ଶତ କୃପାଣ ସମ୍ମୁଖରେ ପରମୋତ୍ସାହରେ ରଣ-କୌଶଳ ଦେଖାନ୍ତି—ସେହି ବୀରଗଣ ଆଜି ଗୋଟିଏ ଅପରାଧୀର ଦଣ୍ଡହେତୁ ବ୍ୟଥିତ—ଗୋଟିଏ ଘୃଣ୍ୟ ରାଜ-ହତ୍ୟାକାରୀର ପ୍ରାଣ-ଦଣ୍ଡହେତୁ ଅଶ୍ରୁସିକ୍ତ !

ରଣଜିତ୍—ପ୍ରଭୋ ! ଏ'କି ରାଜ-ହତ୍ୟାକାରୀର ପ୍ରାଣ-ଦଣ୍ଡ ? ଏ'କି ଅପରାଧୀର ଦଣ୍ଡ ? (ସମସ୍ତଙ୍କ ଉଦ୍‌ଭ୍ରାନ୍ତଭାବେ ଚାହିଁ ରହିବା ) ଏଯେ ନିରପରାଧର ଦଣ୍ଡ !—ଏଯେ ରାଜ-ପ୍ରତିଷ୍ଠାତାର ପ୍ରାଣ-ଦଣ୍ଡ !

ସମସ୍ତେ—ଠିକ କହୁଛ ଭାଇ ! ଠିକ୍ କହୁଛ !

ଗୋବିନ୍ଦ—ସୈନ୍ୟଗଣ ! ତୁମ୍ଭମାନଙ୍କର ଆଜି ଏକି ଆଚରଣ ? ଏକି ବିଦ୍ରୋହଭାବ ? ଯେଉଁମାନେ କର୍ତ୍ତବ୍ୟସମୟରେ ରାଜାଦେଶପାଳନ ନିମନ୍ତେ ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟ ଅବହେଳେ ବିସର୍ଜନ କରନ୍ତି—ଯେଉଁମାନେ ରଣକ୍ଷେତ୍ରରେ ରାଜୋଦ୍ଦେଶ୍ୟ ସାଧନ ନିମନ୍ତେ ମୃତ୍ୟୁର କରାଳ ମୂର୍ତ୍ତିକୁ ଅବଲୀଳାକ୍ରମେ ଆଲିଙ୍ଗନ କରନ୍ତି—ସେହି ବୀରମାନଙ୍କ ମୁଖରେ ଆଜି ଏ'କି ବାକ୍ୟ—ସେହି ରାଜ-ଭକ୍ତମାନଙ୍କ ହୃଦୟରେ ଆଜି ଏକି ଭାବ ?

ରଣଜିତ୍—ପ୍ରଭୋ ! ଆମ୍ଭେମାନେ ଧର୍ମର ଦାସ—ଅଧର୍ମର ନୋହୁଁ ?

ଗୋବିନ୍ଦ—ରାଜଦ୍ରୋହ କି ଧର୍ମ ?

ରଣଜିତ୍—ରାଜା ଅଧର୍ମାଚରଣ କଲେ କଦାପି ରାଜ-ପଦବାଚ୍ୟ ନୁହେଁ ?

ଗୋବିନ୍ଦ—ଅପରାଧିକୁ ଦଣ୍ଡଦେବା କି ରାଜାର ଅଧର୍ମ ?

ରଣଜିତ୍—ଏ'ଯେ ନିରପରାଧର ଦଣ୍ଡ !

ଗୋବିନ୍ଦ—ପ୍ରମାଣ ?

ରଣଜିତ୍—ଆପଣଙ୍କର ସୌମ୍ୟ ମୂର୍ତ୍ତି ! ଆମ୍ଭମାନଙ୍କର ଧ୍ରୁବ ବିଶ୍ୱାସ !

ଗୋବିନ୍ଦ—( ହାସ୍ୟ କରି ) ରଣଜିତ୍ ! ବିଶ୍ୱାସ ଉପରେ କି କେବଳ ରାଜନୀତି ତିଷ୍ଠି ପାରେ ?—ମନୋହର ଗୋଲାପରେ କି ବିଷାକ୍ତ କୀଟ ଲୁକ୍କାୟିତ ନ ଥାଏ ?

ରଣଜିତ୍—ପ୍ରଭୋ ! ଆପଣଙ୍କପରି ବିଜ୍ଞବ୍ୟକ୍ତିଙ୍କ ସହିତ ତର୍କରେ ପାରିବା ଏ' ମୂର୍ଖମାନଙ୍କ ପକ୍ଷେ ଅସମ୍ଭବ—ତଥାପି ସ୍ଥିର ଜାଣନ୍ତୁ, ପ୍ରଭୋ—ଏହା ଆମ୍ଭ-ମାନଙ୍କ ଦୃଢ଼ ବିଶ୍ୱାସ ! ଆପଣ ନିରପରାଧ—ସୁତରାଂ ଆପଣଙ୍କର ଏ ଦୁର୍ଦ୍ଦଶା ଆମ୍ଭେମାନେ କଦାପି ସହ୍ୟ କରିପାରିବୁ ନାହିଁ !

ସମସ୍ତେ—ପ୍ରାଣ ଥାଉଁ ଥାଉଁ କଦାପି ନୁହେଁ, ଭାଇ !

ଗୋବିନ୍ଦ—ଭାଇମାନେ ! ଏ ଅଧମପ୍ରତି ଏତେ ସ୍ନେହ ! ନରହନ୍ତା—ରାଜହନ୍ତା ଜାଣି ସୁଦ୍ଧା ଏତେ ଭକ୍ତି !

ରଣଜିତ୍—ଯେବେ ବିଶ୍ୱାସ ନ ହୁଏ, ତେବେ ଏହିକ୍ଷଣି ଆଦେଶ କରନ୍ତୁ, ପ୍ରଭୋ ! ଆମ୍ଭେମାନେ ତରବାରି-ସାହାଯ୍ୟରେ ବକ୍ଷୋଦେଶ ବିଦୀର୍ଣ୍ଣ କରି ଦେଉଛୁ

ଦେଖିବେ ସେଠାରେ ତାହାର ମୂର୍ତ୍ତି ପୂଜା ପାଉଛି—ତାହାର ନାମ ନିତ୍ୟ ଜପାମାଳ ହୋଇଛି—

ସମସ୍ତେ—ଆଦେଶ କରନ୍ତୁ ପ୍ରଭୋ । ( ଅସିନିଷ୍କୋଷିତ-କରିବା )

ଗୋବିନ୍ଦ—କ୍ଷାନ୍ତ ହୁଅ ଭାଇମାନେ । ଏ ଅଧମ ଅତୀବ ଭାଗ୍ୟବାନ ଯେ ରାଜହନ୍ତା, ନରହନ୍ତା ହୋଇସୁଦ୍ଧା ତୁମ୍ଭମାନଙ୍କ ସ୍ନେହ ଓ ଭକ୍ତି-ସମ୍ପଦସୁଖରୁ ତିଳେମାତ୍ର ବଞ୍ଚିତ ହୋଇନାହିଁ—ସୁତରାଂ ଏ' ଅଧମର ଗୋଟିଏ ଅନୁରୋଧ କି ରକ୍ଷା କରିବ ନାହିଁ ?

ସମସ୍ତେ—ଅନୁରୋଧ କଣ ପ୍ରଭୋ ? ଆଦେଶ କରନ୍ତୁ ।

ରଣଜିତ୍—ଆପଣ ମୁଖମାତ୍ର କଲେ ଏହି ଘାତକର ଖଡ୍‌ଗ ଯେବେ ଆମ୍ଭ ସମସ୍ତଙ୍କ ଉପରେ ପଡ଼େ, ତେବେ ମଧ୍ୟ ସାନନ୍ଦେ ସମସ୍ତେ ପ୍ରସ୍ତୁତ ପ୍ରଭୋ ।

ସମସ୍ତେ—ସାନନ୍ଦେ ସମସ୍ତେ ପ୍ରସ୍ତୁତ ପ୍ରଭୋ ।

ଗୋବିନ୍ଦ—ମତ ସ୍ଥିରକର, ଭାଇମାନେ—ଏପରି ଉତ୍ତେଜିତ ହେଲେ ଏ ଅଧମର କୌଣସି ଅନୁରୋଧ ନାହିଁ ।

ରଣଜିତ୍—ଅଚ୍ଛା, ପ୍ରଭୋ । ଆମ୍ଭେମାନେ ସ୍ଥିର ହେଉଛୁଁ ।

ଗୋବିନ୍ଦ—ତେବେ ପ୍ରତିଜ୍ଞା କର ଭାଇମାନେ, ଏ ଅଧମ ଯେଉଁ ଅନୁରୋଧ କରିବ, ତାହା ପ୍ରାଣ ମୂଲ୍ୟରେ ମଧ୍ୟ ପ୍ରତିପାଳନ କରିବାକୁ କୁଣ୍ଠିତ ହେବ ନାହିଁ ।

ସମସ୍ତେ—ଏହି ଆମ୍ଭେମାନେ ଚରଣ ସ୍ପର୍ଶ କରି ପ୍ରତିଜ୍ଞା କରୁଛୁ—ଈଶ୍ୱରଙ୍କ ନାମନେଇ ଶପଥ କରୁଛୁଁ—ପ୍ରାଣପଣେ ପ୍ରତିଜ୍ଞା ପାଳନ କରିବୁ ।

ଗୋବିନ୍ଦ—ତୁମ୍ଭେମାନେ ଉତ୍ତମରୂପେ ଜାଣ, ଭାଇମାନେ ଆମ୍ଭମାନଙ୍କ ସ୍ୱର୍ଗୀୟ ମହାରାଜ ପ୍ରତାପଚନ୍ଦ୍ରଦେବ ଓ ତାଙ୍କର ପୂର୍ବପୁରୁଷମାନେ ବହୁ ଯତ୍ନ ଓ ଆୟାସରେ ମାତୃଭୂମିକୁ ଯେଉଁ ସୁଖ-ଶାନ୍ତି ଦାନ କରି ଯାଇଥିଲେ, ତାହା ତାଙ୍କ ଅନ୍ତେ ଯୁବରାଜ, ଅଳ୍ପ ବୟସ୍କଥିବା ହେତୁ ଓ ବହିଃ ଶତ୍ରୁମାନଙ୍କ ଚିରକାଳ ଏ' ରତ୍ନଭଣ୍ଡାର ପ୍ରତି ଲୋଲୁପ ଦୃଷ୍ଟି ଥିବା ହେତୁ, ନିଶ୍ଚୟ ଏକାବେଳେକେ ନଷ୍ଟ ହୋଇଯାଇଥାନ୍ତା—ମାତ୍ର ତୁମ୍ଭେମାନେ ରାଜ-ଭକ୍ତ—ଦେଶାନୁରକ୍ତ ବୋଲି, ଏ' ଯାବତ୍ ସେହି ସୁଖ ଶାନ୍ତି ସେହିପରି ଅକ୍ଷୁଣ୍ଣ ରହିଅଛି ବରଂ ଦିନୁ ଦିନୁ ବୃଦ୍ଧି ପାଇ ଆସୁଅଛି ।

ରଣଜିତ୍—କିନ୍ତୁ ଆଜିଠାରୁ ତା'ର ଅବସାନ, ପ୍ରଭୋ !

ଗୋବିନ୍ଦ—ତୁମ୍ଭେମାନେ କଣ ତେବେ ଦେଶଦ୍ରୋହୀ ?

ରଣଜିତ୍—ସେ ଆଖ୍ୟା ଉତ୍କଳୀୟ ପକ୍ଷେ ଅସହ୍ୟ ପ୍ରଭୋ ।

ଗୋବିନ୍ଦ—ତେବେ ?

ରଣଜିତ୍—କହନ୍ତୁ ପ୍ରଭୋ । କର୍ଣ୍ଣଧାରବିହୁନେ ନୌକା କି କେବେ ଚାଲି ପାରେ ?

ଗୋବିନ୍ଦ—ନୌକା ତ' ଏକାବେଳକେ କର୍ଣ୍ଣଧାର ବିହୀନ ନୁହେଁ—କାରଣ ରାଣୀ ଅଛନ୍ତି—କଥଞ୍ଚିତ୍ ଦେବ ମଧ୍ୟ ଅବିଳମ୍ବେ ଉପଯୁକ୍ତ ହୋଇ ଉଠିବେ ।

ରଣଜିତ୍—ତେବେ ନୌକା ଯେପରି ଚାଳିତ ହେବ ସେହିପରି ଚାଲିବ ।

ଗୋବିନ୍ଦ—ଏହିଠି ମୋର ଅନୁରୋଧ ଭାଇମାନେ । ନୌକାକୁ ଧୀରସ୍ଥିର ହୋଇ ଚାଲିବାକୁ ଦେବ—ସରଳ କଥାରେ, ତୁମ୍ଭେମାନେ ନିଜ ନିଜ କାର୍ଯ୍ୟ ମନେ କରି ସେହିପରି ଉଦ୍ୟମ କରିବ, ସେହି-ପରି ଭକ୍ତିର ସହିତ କାର୍ଯ୍ୟ କରିବ, ଯେମନ୍ତ କି ଏ'ପର୍ଯ୍ୟନ୍ତ ଦେଶରେ ଯେଉଁ ଶାନ୍ତି—ପ୍ରଜାମାନଙ୍କ ମଧ୍ୟରେ ଯେଉଁ ପ୍ରୀତି ଦେଖି ଆସିଅଛି, ତାହା ଚିରକାଳ ଅତୁଟ ରହେ—କ୍ରମେ କ୍ରମେ ବୃଦ୍ଧି ମଧ୍ୟ ପାଏ । ଆଉ ବିଶେଷ ଦୃଷ୍ଟି ରଖିବ, ଭାଇ-ମାନେ ଯେମନ୍ତ କି ରାଜ-ପରିବାର ମଧ୍ୟରେ ଅନ୍ୟ କୌଣସି ଦୁର୍ଘଟନା ନ ଘଟେ ।

ସମସ୍ତେ—ପ୍ରଭୋ ! ପ୍ରଭୋ !

ଗୋବିନ୍ଦ—ଭାଇମାନେ । ଏହି ଅନୁରୋଧଟି ରକ୍ଷା କଲେ ମୁଁ ନିଶ୍ଚିନ୍ତ ମନରେ ଇହଧାମରୁ ବିଦାୟ

ଯେକ ପାଇବ—ଅନ୍ୟଥା ମୋର ମୁକ୍ତି ଅସମ୍ଭବ ହୋଇ ଉଠିବ ।

[ ମୁକୁନ୍ଦର ପ୍ରବେଶ ]

ରଣଜିତ୍—ସେନାପତେ ! ଆଜି କି' ଦୃଶ୍ୟ ଦେଖାଉଛ—କି' କାର୍ଯ୍ୟ କରିବାକୁ ବସିଛ ?—

ମୁକୁନ୍ଦ—ଚଣ୍ଡାଳ, ଚଣ୍ଡାଳାଧମ-କାର୍ଯ୍ୟ କରିବାକୁ ଅସିଛି ତୁମ୍ଭର ସେନାପତି, ରଣଜିତ୍—ଏକାଧାରେ ନରହତ୍ୟା—ପ୍ରଭୁହତ୍ୟା—ପିତୃହତ୍ୟା ।—

ଗୋବନ୍ଦ—ମୁକୁନ୍ଦ—ନା ସେନାପତେ ! ନିର୍ଦ୍ଦିଷ୍ଟ ସମୟ ଉତ୍ତୀର୍ଣ୍ଣ ପ୍ରାୟ ।

ମୁକୁନ୍ଦ—ପ୍ରଭୋ ! ( କାନ୍ଦିବା )

ଗୋବନ୍ଦ—ସେନାପତେ ! ଏହିକି ତୁମ୍ଭର କର୍ତ୍ତବ୍ୟ-ପରାୟଣତା ? ଏହିକି ତୁମ୍ଭର ରାଜ-ଭକ୍ତି ? ଅସ, ଘାତକ ତୁମ୍ଭର କାର୍ଯ୍ୟ କର ।

ଘାତକ—ହୁକୁମ୍, ସେନାପତେ ।

ମୁକୁନ୍ଦ—ନରାଧମ !

ଘାତକ—ଅମ୍ଭେ ହୁକୁମର ଚାକର, ସାଆନ୍ତେ—ଭାଇ-ହେଲେ କ'ଣ—ବାପ ହେଲେ କ'ଣ—ମା ହେଲେ କ'ଣ—ଅମେ ହୁକୁମ ତାମିଲ୍ କରିବାକୁ ବରାବର ହାଜର ସାଆନ୍ତେ ।

ଗୋବନ୍ଦ—ଶୁଣ, ସେନାପତେ ।

ରଣଜିତ୍—ଉଃ କି ପାଷାଣ ହୃଦୟ !

ଘାତକ—କ'ଣ କରିବା, ସାଆନ୍ତେ ! ଚାକିରୀ କରୁଛୁ, ନିମକ ଖାଉଛୁ, ହୁକୁମ ନ ମାନିବା କିପରି ?

ଗୋବନ୍ଦ—ଦେଖ, ଦେଖ, ସମସ୍ତେ ପ୍ରଭୁଭକ୍ତି ଓ କର୍ତ୍ତବ୍ୟ ପରାୟଣତାର କି' ଜୀବନ୍ତ ପ୍ରତିମୂର୍ତ୍ତି ! ଶୀଘ୍ର ଅଦେଶ କର, ସେନାପତେ—ସମୟ ଉତ୍ତୀର୍ଣ୍ଣ ପ୍ରାୟ ।

[ ଅଣ୍ଟୁମାଡ଼ି ବସିବା ]

ସମସ୍ତେ—ପ୍ରଭୋ ! ପ୍ରଭୋ ! କ'ଣ କରୁଛନ୍ତି ? ଗୁଲ୍, ସମସ୍ତେ ଏ' ରାଜ୍ୟରେ ଆଉ ଦଣ୍ଡେ ରହିବା ନାହିଁ ।

ଗୋବନ୍ଦ—ଏହିକି ତୁମ୍ଭମାନଙ୍କର ପ୍ରତିଜ୍ଞା, ଭ୍ରାତୃଗଣ ?

ସମସ୍ତେ—ଉଃ ( କାନ୍ଦିବା )

ଗୋବନ୍ଦ—ଦିଅ ଅଦେଶ ସେନାପତେ ।

ମୁକୁନ୍ଦ—କର୍ତ୍ତବ୍ୟ ତୁମ୍ଭର କର, ଘାତକ ! ଏହି ମୋର ଶେଷ କର୍ତ୍ତବ୍ୟ । ( ପ୍ରସ୍ଥାନ )

ଗୋବନ୍ଦ—( ଊର୍ଦ୍ଧ୍ୱଦୃଷ୍ଟି ହୋଇ ) ଦେଶର ମଙ୍ଗଳ-ହେଉ—ରାଜାର ମଙ୍ଗଳ ହେଉ—ରାଜ୍ୟର ମଙ୍ଗଳ ହେଉ ।

ଘାତକ—ଜୟ ମହାରାଜ କୁଳଲେଶ୍ୱରଙ୍କର ଜୟ ! ( ଖଡ୍ଗୋତ୍ତୋଳନ )

ସମସ୍ତେ—ଉଃ ( ପ୍ରସ୍ଥାନୋଦ୍ୟତ )

[ ରଥରୁଦ୍ର ଦେବଙ୍କ ବେଗେ ପ୍ରବେଶ ଓ ସଙ୍ଗେ ସଙ୍ଗେ ମୁକୁନ୍ଦର ମଧ୍ୟ ପ୍ରବେଶ ]

ରଥରୁଦ୍ର—ବନ୍ଦ କର, ଘାତକ !—ଅସ, ଭାଇ ।

[ ଉଠାଇ ବନ୍ଧନ ମୁକ୍ତ କରିଦେବା ]

ସମସ୍ତେ—ଜୟ ମହାରାଜଙ୍କ ଜୟ—ଜୟ ମନ୍ତ୍ରୀ ମହାଶୟଙ୍କ ଜୟ ।

ଗୋବନ୍ଦ—ଏ' କି ହୁକୁମ, ମହାରାଜ ! ରାଜ-ହନ୍ତା କ'ଣ ଧରା ପଡ଼ିଛି ? ନା ପୁଣି ମାତୃକଥାରେ ଅବାଧ ହୋଇଛ ?

ରଥରୁଦ୍ର—କ୍ଷମାକର, ମନ୍ତ୍ରୀଭାଇ ! ଶୀଘ୍ର ଅସ—ଗୋବର୍ଦ୍ଧନ ସର୍ବନାଶ କରୁଛି—ମାଙ୍କର ଅଣା ଅତି ଅଳ୍ପ—ଏ'ଥର ସମସ୍ତେ ସ୍ଥିର ବିଶ୍ୱାସ କରିଛନ୍ତି, ସେହି ପାପିଷ୍ଠ ଭାଇଙ୍କ ମୋର ହତ୍ୟା କରିଛି ।

[ ବେଗେ ପ୍ରସ୍ଥାନୋଦ୍ୟତ ହେବାବେଳେ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—ହାଃ ହାଃ ହାଃ—କମଳୀକୁ ତ କଣ ଛାଡ଼ୁଛ ?

ଗୋବନ୍ଦ—( ଅର୍ଦ୍ଧ ସ୍ୱଗତ ) କନିଅ ବୌ !

ଜଗଦମ୍ବା—ସେ ଏକା ତାହିଁକି ମାରିବ ? ମୁଁ କଣ ତା'ସଙ୍ଗେ କଣେ ନୁହେଁ ?

ରଥରୁଦ୍ର—କଣ କହୁଛ ନୂଆବୌ—କିଏ କା'କୁ, ମାରୁଛି ?

ଜଗଦମ୍ବା—ଏହି ଯେ କଥା ! ତୁମେ ମୋର କମଳୀକୁ କଡ଼ କଲ ପାଉଥିଲ—ନା ?

କଥରୁଦ୍ର— କମଳାର କଣ ହୋଇଛି, ନୂଆବୌ ?

ଜଗଦମ୍ବା—( ଗୋବିନ୍ଦ ଆଡ଼େ ଚାହିଁ ) ସ୍ୱାମୀଙ୍କ ମୂର୍ତ୍ତି-ଧରି ତୁମ୍ଭେ ଏଠି କିଏ ଛିଡ଼ା ହୋଇଛ ?

ଗୋବିନ୍ଦ—କନିଆବୌ !

ଜଗଦମ୍ବା—ଠିକ୍ ସେହିପରି ତ ଡାକୁଛ—ତେବେ କ'ଣ ତୁମେ ଅଛ ?

ଗୋବିନ୍ଦ—ହଁ ଅଛି; କନିଆବୌ !

ଜଗଦମ୍ବା—ଅଛ ? ଅଛ ଯେବେ, କାହିଁ, ତୁମ୍ଭର ସ୍ୱରରେ ତ ବଜ୍ରନିର୍ଘୋଷ ହେଉ ନାହିଁ ? ଚକ୍ଷୁରୁ ତ ଅଗ୍ନ୍ୟୁଦ୍ଗୀରଣ ହେଉ ନାହିଁ ?—ସର୍ବାଙ୍ଗର ଆଗ୍ନେୟଗିରି ସମ କମ୍ପି ଉଠୁ ନାହିଁ ?

ଗୋବିନ୍ଦ—ଏ' କଣ କହୁଛ, କନିଆବୌ ? ମୁଁ ଯେ କିଛି ବୁଝି ପାରୁ ନାହିଁ ।

ଜଗଦମ୍ବା—ହଃ ହାଃ ହାଃ—ବୁଝିବ କିପରି ? ମୋର ସ୍ୱାମୀ ହୋଇଥିଲେ ସିନା ବୁଝନ୍ତେ ।

ଗୋବିନ୍ଦ—ବୁଝିଛି ବୁଝିଛି, କନିଆବୌ ! ତୁମେ ମୋ ସକାଶେ ଏକା ବେଳକେ ଉନ୍ମାଦିନୀ ହୋଇ ଯାଇଛ ।

ଜଗଦମ୍ବା—ତୁମ ସକାଶେ ଉନ୍ମାଦିନୀ ? ହାଃ ହାଃ ହାଃ—ଏଇଯା ବୁଝିଲ ପରା—ଯେ ନିଜ ହାତରେ ସ୍ୱାମୀକୁ ଶୂଳ ଦେଇ ପାରେ, ତା'ର ଏକମାତ୍ର ସନ୍ତାନକୁ ନ' ଖୁଆଇ ମାରି ପ ରେ—

କଥରୁଦ୍ର—କାହାକୁ ?—କାହାକୁ, ନୂଆବୌ ?

ଜଗଦମ୍ବା—ତୁମର ଆଦରିଣୀ କମଳୀ, କିଅ—ତା'କୁ ଅନ୍ଧାର ଘରେ ବନ୍ଦୀକରି ମଧ୍ୟ ମାରିପ ରେ—ସେ ପୁଣି କାହାର ସକାଶେ ଉନ୍ମାଦିନୀ ହେବ ?

କଥରୁଦ୍ର—ଏ' କ'ଣ ଶୁଣୁଛି ? ସତ କହୁଛ, ନୂଆବୌ, ବଉଳ ମୋର ଏ ସଂସାରରେ ଆଉ ନାହିଁ ?

ଗୋବିନ୍ଦ—କମଳୀ ମୋର ନାହିଁ ?—ନା, ବର୍ତ୍ତମାନ ଶୋକ କରିବାର ସମୟ ନୁହେଁ—ମୁକୁନ୍ଦ ! ତୁମ୍ଭେ ମା'ଙ୍କୁ ଘରକୁ ନେଇ ଯାଅ—ମହାରାଜ ! ଶୀଘ୍ର ଆସନ୍ତୁ—ମୁଁ ଦେଖେଁ ରାଣୀମାଙ୍କ ଅବସ୍ଥା କଣ ହେଲା ?       ( ବେଗେ ପ୍ରସ୍ଥାନ )

କଥରୁଦ୍ର—ଓଃ ହୋଃ—ବଉଳ ମୋର ନାହିଁ !

ଜଗଦମ୍ବା—ଦେଖିଲ, ଦେଖିଲ—କେମିତି ପଳାଇ-ଗଲେ—ଏ' କୁଆଡ଼େ ସ୍ୱାମୀ ? ସ୍ୱାମୀକୁ ମୋର ଦେଖିବ—ଦେଖ; କି ଭୀଷଣମୂର୍ତ୍ତି ଧରି ଛିଡ଼ା ହୋଇଛନ୍ତି—ଏକ ହାତରେ ଗୋଟାଏ ଲୁହାର ଶିକୁଳି—କେବଳ କଣ୍ଟାମୟ—ଅନ୍ୟ ହାତରେ ଗୋଟିଏ ତୀକ୍ଷ୍ଣ ଲୌହ ଶଳାକା—ନିଆଁରେ ପାଚି ରହିଛି—ମୋର ହାତ ଗୋଡ଼ ଖୁବ୍ କସି ବାନ୍ଧିବେ, ଆଉ ସେହି ଶଳାକାରେ ଠାଁ ଠାଁ କରି ଚିଆଁ ଦେବେ—ଓଃ ହୋଃ—ଭାରି ପୋଡ଼ୁଛି—ଭାରି କାଟୁଛି—ପାଣି !—ପାଣି ! ( ପଳାୟନ ସମୟରେ ଖଣ୍ଡେ କାଗଜ ତଳେ ପଡ଼ିବା )

ମୁକୁନ୍ଦ—ଅଟକାଅ—ଅଟକାଅ       ( ପଶ୍ଚାଦ୍ଧାବନ )
( କଥରୁଦ୍ର ଛଡ଼ା ସମସ୍ତଙ୍କର ପ୍ରସ୍ଥାନ )

କଥରୁଦ୍ର—ଏ' କଣ ? ଏ' କି କାଗଜ ଖଣ୍ଡେ ପଡ଼ିଗଲା ? ଦେଖେଁ ଦେଖେଁ ( ଫିଟାଇଦେଖି ) ଏ' ଯେ କମଳୀର ଲେଖା !

"ବଉଳ !

ମନରେ କେତେ ଆଶା ଥିଲା, କିନ୍ତୁ ବିଧି ତାହା ପୂର୍ଣ୍ଣ କଲେ ନାହିଁ । ସେ ଯାହା ହେଉ, ମୋ ମନରେ ବଡ଼ ଦୁଃଖ ରହିଗଲା ଯେ ଶେଷକୁ ତୁମ୍ଭେ ମଧ୍ୟ ମୋତେ ଅବିଶ୍ୱାସ କଲ—"ଅବିଶ୍ୱାସ !" ତୁମ୍ଭେ ନିଶ୍ଚୟ ଆଶ୍ଚର୍ଯ୍ୟ ବୋଧ କରିବ—ମାତ୍ର ମନେ କର—ବିଗ୍ରହ ସମୟରେ ଅଧିକାଂଶ ସଭ୍ୟ ଯେତେବେଳେ କିଛି ଉଠିଲେ, ମନ୍ତ୍ରୀ ନିଶ୍ଚୟ ହତ୍ୟାକାରୀ, ପିତା ମଧ୍ୟ ଯେତେ-ବେଳେ କୌଣସି ପ୍ରତିବାଦ ନ କରି ନିରୁତ୍ତର ହୋଇ ରହିଲେ—ତେତେବେଳେ ମୁହିଁ ଏକା ଅଗ୍ରସର ହୋଇ କହିଲି 'ପିତା ନିର୍ଦ୍ଦୋଷ—

ଗୋବର୍ଦ୍ଧନଙ୍କ ହତ୍ୟାକାଣ୍ଡ—ସେ ଧୃତ ହେଲେ ସତ୍ୟାସତ୍ୟ ନିଶ୍ଚୟ ପ୍ରକାଶ ପାଇବ—ସମସ୍ତେ ମୋତେ ହସି ଉଡ଼ାଇ ଦେଲେ—ତୁମ ଆଡ଼କୁ ଚାହିଁଲି—ବିଶ୍ୱାସ ଥିଲା, ତୁମେ ମୋର ପ୍ରସ୍ତାବ ସମର୍ଥନ କରିବ—ତୁମେ ମୋତେ ସାହାଯ୍ୟ କରିବ—କିନ୍ତୁ ହାୟ ! କଣ ଦେଖିଲି ?—ତୁମେ ଥରେ ମାତ୍ର ମୋ ଆଡ଼କୁ ଚାହିଁ, ଅଧୋବଦନରେ ବସି ରହିଲ—ସୁତରାଂ ମୁଁ ନିରାଶ ହୋଇ ଧୀରେ ଧୀରେ ପ୍ରସ୍ଥାନ କଲି । କି ଯେ ଯାତନା ଅନୁଭବ କଲି, ଉଃ—ଆଉ ଯେ ଲେଖି ପାରୁ ନାହିଁ” ଉଃ—ବଉଳ ! ବଉଳ ! ଏଇଥିପାଇଁ କ’ଣ ତୁମେ ପ୍ରାଣ ତ୍ୟାଗ କଲ ? ମୋର ଭ୍ରମ ଯେ ମୁଁ ପରେ ବୁଝି ପାରିଥିଲି—ଆଜ କେତେ ଆଶା କରିଥିଲି, ତୁମ ପିତାଙ୍କୁ ନେଇ ତୁମ ସଙ୍ଗେ ଦେଖା କରିଥାନ୍ତି—ମୋର ଅପରାଧ ନିମନ୍ତେ କ୍ଷମା ମାଗି ନେଇଥାନ୍ତି—ମାତ୍ର ଆଜ ଏ କଣ ଘଟିଲା ? ହାୟ ! କାହିଁକି ସେତେବେଳେ ଲୋକଙ୍କ କଥାରେ ଭୁଲି ଗଲି—ଯାହାଙ୍କୁ ତିଳେ ମାତ୍ର ସନ୍ଦେହ କରିବା ପାପ ମନେ କରୁଥିଲି, ତାଙ୍କୁ କାହିଁକି ସେ ସମୟରେ ପୂର୍ଣ୍ଣ ସନ୍ଦେହ କଲି ? ଉଃ ବଉଳ ! ବଉଳ !

( ହତାଶଭାବେ ରହିବା )

( ନେପଥ୍ୟେ )—ବୃଥା ଚେଷ୍ଟା । ସୈନ୍ୟଗଣ ! ଲସ୍ ନିଶ୍ଚୟ କେଉଁଆଡ଼େ ଭାସି ଗଲାଣି ।

ତଥାଗୁପ୍ତ—ଏ କ’ଣ ଶୁଣୁଛି ? ନୂଆବୌ କ’ଣ ସତେ ସତେ ତାଙ୍କର ଜ୍ୱାଳା ଲିଭାଇ ଦେଲେ ? ମୋର ଜ୍ୱାଳା ଏବେ ମୁଁ ଲିଭାଉଛି କିପରି ?

—ପଟକ୍ଷେପ—

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

—କୁଟୀର ସମ୍ମୁଖ—

[ ରଙ୍ଗିଲା ଓ ଅର୍ଜ୍ଜୁନ କଥାବାର୍ତ୍ତା ହେଉଥିବା ]

ରଙ୍ଗିଲା—ଦେଖ, ଛଦ୍ମବେଶଟା ଏବେ ବେଳକେ ତ୍ୟାଗ କରିବା ଉଚିତ ହେଉ ନାହିଁ ।

ଅର୍ଜ୍ଜୁନ—କପଟତା ଆଉ ସହ୍ୟ ହେଉନାହିଁ, ପ୍ରିୟେ ।

ରଙ୍ଗିଲା—କ’ଣ କରିବ, କପାଳ ଦୋଷରୁ ରାଜା ବି ଘୋଡ଼ା-ସଇସ ସାଜେ ।

ଅର୍ଜ୍ଜୁନ—ନା ପ୍ରିୟେ ଅଉ ଏଠାରେ ମନ ବଳୁ ନାହିଁ ।

ରଙ୍ଗିଲା—କାହିଁକି ପ୍ରିୟତମ ? ଏପରି ମନୋରମ ସ୍ଥାନ କ’ଣ ଭଲ ଲାଗୁନାହିଁ ।

ଅର୍ଜ୍ଜୁନ—ଏହାଠାରୁ ଅଧିକତର ମନୋରମ ସ୍ଥାନକୁ ଯିବାକୁ କ’ଣ ଭଲ ଲାଗିବ ନାହିଁ ?

ରଙ୍ଗିଲା—ଏହାଠାରୁ ଅଧିକତର ମନୋରମ ସ୍ଥାନ କ’ଣ ଏ ସଂସାରରେ ଅଛି ?

ଅର୍ଜ୍ଜୁନ—ତୁମେ କ’ଣ ଏ ସ୍ଥାନକୁ ଏତେଦୂର ମନୋରମ ମନେକର ?

ରଙ୍ଗିଲା—କୁହ ପ୍ରିୟତମ ! କେଉଁଠାରେ ପ୍ରକୃତିର ଏପରି ନଗ୍ନ ସୌନ୍ଦର୍ଯ୍ୟ ଦେଖିବାକୁ ମିଳିବ ? କାହିଁ ନିର୍ଝରିଣୀଟିଏ ଝର ଝର ଶବ୍ଦରେ ବନସ୍ଥଳୀ ମୁଖରିତ କରି ପର୍ବତ ପୃଷ୍ଠଦେଇ ତରତର ହୋଇ ଓହ୍ଲାଇ ଆସୁଛି—କାହିଁ ତରୁଣୀ ଲତାଟିଏ କୁଞ୍ଜଦ୍ୱାରେ ଉଙ୍କି ଝୁଙ୍କି ମାରୁ ମାରୁ ଫୁଲ ପୁଷ୍ପ ସୌରଭରେ ଚତୁର୍ଦ୍ଦିଗ ଆମୋଦିତ କରୁଅଛି—କାହିଁ ବିହଙ୍ଗମଟିଏ ସୁମଧୁର ସଙ୍ଗୀତରେ ପ୍ରାଣ ମନ ଉନ୍ମତ୍ତ କରୁ କରୁ ଯେଣେ ଇଚ୍ଛା ତେଣେ ଉଡ଼ୁଛି ବସୁଛି । ଆହା ! କି ମନୋହର ଦୃଶ୍ୟ ! ଯେଉଁଆଡ଼େ ଆଖି ଫେରାଅ, ସୌନ୍ଦର୍ଯ୍ୟର ଭଣ୍ଡାର—ଯେଉଁଆଡ଼େ କାନ ଡେରୁ, ସଙ୍ଗୀତର

ପ୍ରବାହ—ଚକ୍ଷୁ ନିମୀଳିତ କର, ଶତଫଳକରେ ମହିମାମୟ ଶବ୍ଦ ।

ଅର୍ଜୁନ—( ହାସ୍ୟକରି ) ପ୍ରିୟେ ! ଏହି ସମସ୍ତ କି ପ୍ରକୃତିର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ?

ରଙ୍ଗିଲା—ନୁହେଁ, ପ୍ରିୟତମ ?

ଅର୍ଜୁନ—ତେବେ ଏହି ସୌନ୍ଦର୍ଯ୍ୟାନୁଭବକାରୀ ମନୁଷ୍ୟର ସ୍ଥାନ କେଉଁଠି ?

ରଙ୍ଗିଲା—ଅବଶ୍ୟ ମନୁଷ୍ୟର ସ୍ଥାନ ସର୍ବୋଚ୍ଚରେ—ମନୁଷ୍ୟକୁ ପ୍ରକୃତିର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ ବୋଲିବାକୁ ହେବ—ମାତ୍ର—

ଅର୍ଜୁନ—ମାତ୍ର କଣ ?

ରଙ୍ଗିଲା—ସମସ୍ତେ ଯେବେ ତୁମପରି ହୁଅନ୍ତି ।

ଅର୍ଜୁନ—ମୁଁ କ'ଣ ତେବେ ମନୁଷ୍ୟର ବାହାରେ, ପ୍ରିୟେ ? ନା, ନା, ତୁମ୍ଭର ବୁଝିବାର ଭ୍ରମ—ତୁମେ ଯେପରି—ମା, କମଳୀ ମଧ୍ୟ ସେହିପରି—ମୁଁ ଯେପରି—ମାମୁଁ, ସଙ୍ଗାତ ମଧ୍ୟ ସେହିପରି ।

ରଙ୍ଗିଲା—ତେବେ ଜଣେ କାହିଁକି ନରରକ୍ଷକ—ଜଣେ କାହିଁକି ନରହନ୍ତା ? ଜଣେ କାହିଁକି ସ୍ୱାର୍ଥତ୍ୟାଗୀ—ଜଣେ କାହିଁକି ସ୍ୱାର୍ଥପର ?

ଅର୍ଜୁନ—'ସ୍ୱାର୍ଥପର' କିମ୍ବା 'ନରହନ୍ତା' ହେବା ଯେ ମନୁଷ୍ୟର ପ୍ରକୃତି ତାହା କଦାପି ମନେ କରନା—ସୁସ୍ଥକାୟ ମନୁଷ୍ୟ ପକ୍ଷେ ଏହା ଏକ ପ୍ରକାର ବ୍ୟାଧି ମାତ୍ର ।

ରଙ୍ଗିଲା—ଶାରୀରିକ ବ୍ୟାଧିପରି ଏହାର କୌଣସି ପ୍ରତିକାର ଅଛି ?

ଅର୍ଜୁନ—ନିଶ୍ଚୟ ଅଛି—ଧର, ଜଣେ ମୋତେ ଘୃଣା କରୁଛି, ମୁଁ ଯଦି ତାକୁ ଘୃଣା ନ କରି ଭଲପାଏ—ମୋତେ ମାରୁଛି, ମୁଁ ଯଦି ଓଲଟି ତାକୁ ନ ମାରି, କୁଣ୍ଢାଇ ପକାଏ—ତା ହେଲେ କଣ ସେ ମୋତେ ଭଲ ନ ପାଇ—କୁଣ୍ଢାଇ ନ ପକାଇ—ସ୍ଥିର ରହି ପାରିବ ? ତୁମେ ଫେରି ଚାଲ, ନିଶ୍ଚୟ ଦେଖିବ, ସଙ୍ଗାତ ଅନୁତପ୍ତ ହୋଇଥିବ—ମା, ମାମୁଁ ନିଜର ଭୁଲ ବୁଝିପାରି ଅଶ୍ରୁପାଣିରେ ମେଦିନୀ ତିନ୍ତାଉଥିବେ ।

ରଙ୍ଗିଲା—ପ୍ରିୟତମ ! କି ଉଦାରଭାବ ତୁମ୍ଭର ?

ଅର୍ଜୁନ—ବୀରଭାଇ ଆଜ କେଉଁଆଡ଼େ ଯାଇଛି ? ଏତେବେଳଯାଏ ଦେଖାନାହିଁ କାହିଁକି ? ଏହି ବୀରଭାଇର କଥାତ ଶୁଣିଛ ପ୍ରିୟେ—ସେ କେଡ଼େ ନରପିଶାଚ ନ ଥିଲା—ନିଜ ହାତରେ କେତେ କେତେ ନରହତ୍ୟା ନ କରିଛି—କିନ୍ତୁ ଆଜ ଦେଖ, ସେ କରୁଛି କ'ଣ ?—ପରପାଇଁ ପ୍ରାଣ ଉତ୍ସର୍ଗ କରିଦେଇଛି—ଅସ୍ମମାନଙ୍କର ଚିନ୍ତା ବର୍ତ୍ତମାନ ତା'ର ଏକମାତ୍ର ଚିନ୍ତା ହୋଇଛି ।

[ ବୀରେନ୍ଦ୍ରର ପ୍ରବେଶ ]

ବୀରେନ୍ଦ୍ର—କାହା ହେତୁ ଏ ସମସ୍ତ ? ଚୈତନ୍ୟଦେବ ନ ଥିଲେ, ଜଗାଇ ମାଧାଇଙ୍କ ଚୈତନ୍ୟୋଦୟ ହୋଇଥାନ୍ତା କିପରି ?

ଅର୍ଜୁନ—ଏତେବେଳଯାଏ କେଉଁଠି ଥିଲ, ଭାଇ ?

ବୀରେନ୍ଦ୍ର—ମୁଁ ଆଜ ଟିକିଏ ସେ ଗାଁ ଆଡ଼କୁ ଯାଇଥିଲି ।

ଅର୍ଜୁନ—ସେ ଗାଁର ଅନେକ ଲୋକ ପରା କଷ୍ଟରେ ଥାନ୍ତି ? ସମ୍ବାଦ କିଛି ପାଇଲ ନାହିଁ ?

ବୀରେନ୍ଦ୍ର—ପାଇଛି—ଚାଲ, ଖାଉଁ ଖାଉଁ କହିବି ।

ଅର୍ଜୁନ—କାହିଁକି, ଆଗେ କହି ସାର ନା ?

ବୀରେନ୍ଦ୍ର—ମୋତେ ଯେ ଭାରି ଭୋକ କଲାଣି ।

ଅର୍ଜୁନ—ତେବେ ଶୀଘ୍ର ଆସ, ଭାଇ ! ଚାଲ, ପ୍ରିୟେ !

( ଅର୍ଜୁନ ଓ ରଙ୍ଗିଲାର ପ୍ରସ୍ଥାନ )

ବୀରେନ୍ଦ୍ର—ଦୁଃସମ୍ବାଦ ପ୍ରକାଶ କରୁଛି କିପରି ? ହାୟ ! ହାୟ ! ଶେଷେ ଗୋବିନ୍ଦ ବିଦ୍ୟାଧର ପରି ମହାଜନ ଏହି ନୀଚ କାର୍ଯ୍ୟ ସ୍ୱହସ୍ତରେ ସମ୍ପାଦନ କଲେ—ନ କରିବେ ବା କିପରି—ରକ୍ତ ମାଂସର ଶରୀର ଧାରଣ କରି ପୁତ୍ରହତ୍ୟା କିଏ ସହ୍ୟ କରିପାରେ—ପୁଣି ଅର୍ଜୁନ ପରି ପୁତ୍ରର ହତ୍ୟା ! ହାୟ ! ମୁଁ ଚଣ୍ଡାଳ କାହିଁକି ତାଙ୍କୁ ଗୋପନରେ

ପୁଣି ଜୀବିତ ଥିବା ସମ୍ବାଦ ପ୍ରଦାନ ନକଲି ? ମୋର ଇଚ୍ଛାଥିଲା, ବିଚ୍ଛେଦନ ପରେ ରାଜା ଅନୁତପ୍ତ ହେଲେ ବନ୍ଧୁକୁ ନେଇ ଉପସ୍ଥିତ କରନ୍ତି, ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରନ୍ତି—କିନ୍ତୁ କ୍ରୁର ବିଧି ସବୁ ପଣ୍ଡ କରିଦେଲା—ଓଃ—

( ନେପଥ୍ୟେ )—ଆସ ଭାଇ ।

( ବୀରଭଦ୍ରର ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଗଳିରାସ୍ତା—

[ କଥାରୁଦ୍ର ଦେବଙ୍କ ପ୍ରବେଶ ]

କଥାରୁଦ୍ର—ଆଜ୍ଞୁର କ'ଣ ଲେଖିଥିଲି, ବଜିଲ ?—"ଏ' ସଂସାରରେ ଯାଙ୍କୁ ଧ୍ରୁବତାରା ମନେ କରି ଜୀବନ-ପୋତ ଚଳାଉଥିଲି, ସେ ଯେତେବେଳେ ବିଚଳିତ ହେଲେ, ସେତେବେଳେ ଆଉ ତାହାକୁ ଲକ୍ଷ୍ୟ କରି ଚଳାଇବି—ଆପଣାଙ୍କର ବିପଦ ସମ୍ମୁଖୀନ ହେବାଠାରୁ ଏହିଠାରେ ଭେଳା ବୁଡ଼ାଇଦେବା ଶ୍ରେୟସ୍କର ମନେ କଲି"—ହାୟ ବଜିଲ ! କ'ଣ କଲି ? ଅରେ ଭଗ୍ନ ତୁମର ଅମୂଲ୍ୟ ଭେଳାକୁ ବୁଡ଼ାଇଦେବା ପୂର୍ବରୁ ମୋତେ ମନୋଭାବ ଜଣାଇ ଥାନ୍ତ—କାହିଁକି ଜଣାଇବ ? ତୁମେ ବେଶ୍ କରିଛ—ପୁଷ୍ପ କୀଟକୁ ଯେବେ ଯେତେବେଳେ ଆଶ୍ରୟ ଦେଇଛି, ସେତେବେଳେ ତା'ର ପ୍ରତିଫଳ ନିଶ୍ଚୟ ସେ ଭୋଗ କରିବ—ତୁମେ ସ୍ୱର୍ଗର ସ୍ନିଗ୍ଧ ଜ୍ୟୋତି ଏ' ପାପସ୍ପର୍ଶରେ କଳଙ୍କିତ ହେବ କାହିଁକି ? ତୁମେ ମନ୍ଦାକିନୀର ସ୍ୱଚ୍ଛଧାରା, ଏ' ମୃତ୍ତିକା ସ୍ପର୍ଶରେ ମଳିନ ହେବ କାହିଁକି ? ହାୟ ! ହାୟ ! ଏ' ସ୍ଥାନ ଦର୍ଶନ ମାତ୍ରେ କି ସ୍ମୃତି ଜଗି ଉଠୁଛି—ଏହି ସେହି କୋଳାହଳ ଶୂନ୍ୟ ନିର୍ଜ୍ଜନ ସ୍ଥାନ—ଏହି ସେହି ରାତ୍ରି ସମୟ—ଏହିଠାରେ, ଏହି ସମୟରେ କେତେ କେତେ ନିର୍ଜ୍ଜନ ସାକ୍ଷାତ୍—କେତେ କେତେ ନିର୍ଜ୍ଜନାଳାପ ହୋଇ ଯାଇଛି—ବର୍ତ୍ତମାନ କିନ୍ତୁ କାହିଁ ସେ ସବୁ ?—ଦେବତା ନାହିଁ, ଶୂନ୍ୟ ମନ୍ଦିର ଯେପରି ପଡ଼ିଥାଏ ହୋଇଛି—ପ୍ରାଣ ନାହିଁ, ମୃତ ଜଡ଼ ପିଣ୍ଡ ଯେପରି ପଡ଼ି ରହିଛି ।

[ ପ୍ରସ୍ଥାନ ପରେ, ଗୋବର୍ଦ୍ଧନର ପ୍ରବେଶ ]

ଗୋବର୍ଦ୍ଧନ—ଅବଧାନ କଥା ମିଛ ହୋଇଗଲା—ଗୋବରର ନାଗୀ ଖୋଲି ଯାଇଛି—ଗୋବର୍ଦ୍ଧନର ସ୍ୱପ୍ନ ଭାଙ୍ଗି ଯାଇଛି । ଏ' କଣ ଦେଖୁଛି ? ରାଜନଅରର ଏପରି ଦୁର୍ଦ୍ଦଶା କାହିଁକି ?—ନିକଟରେ ଯେଉଁ ମନ୍ଦିରଟି ଥିଲା, ତାହା ଗଲା କେଉଁଆଡ଼େ ? ଧ୍ରୁବ—କି ଗୋଟାଏ ତୀବ୍ର ସ୍ୱର ଭାସି ଆସୁଛି—କ'ଣ କହୁଛି ? "ମନୁ, ଏ' ସମସ୍ତ ତୁମରି କୀର୍ତ୍ତି !" ମୋର କୀର୍ତ୍ତି—କିଏ ତୁମେ ? କିଏ ତୁମେ ? ଏଁ, ଏଁ—ଏ' ଯେ କମଳା ! କମଳା ! କମଳା ! ଏ' ତୋର କି ମୂର୍ତ୍ତି ? ଚକ୍ଷୁରେ ଯେପରି ବିଦ୍ୟୁତ୍ ଖେଳୁଛି—ଭାବ ଭଙ୍ଗିରେ ଯେପରି ପିଶାଚ ହାର ମାନୁଛି—ଯା ତୁ କମଳି—ଏଠୁଁ ଯା, ମୁଁ ଯେ ତୋର ମାମୁଁ—ମୋତେ ତୋର ଏପରି ମୂର୍ତ୍ତି ଦେଖାନା—ଏ' କଣ—ଏ' କଣ—ଏ' କଣ କରୁଛୁ, କମଳି—କମଳି ! କମଳି ! ସେ ଯେ ତୋ'ର ମା—ତୁ ନିଜ ହାତରେ ତାକୁ ଜ୍ୱଳନ୍ତା ଅଗ୍ନି କୁଣ୍ଡକୁ ଠେଲି ଦେଉଛୁ ? ଏ'କି ଅଟ୍ଟହାସ୍ୟ—ଏ' କି କରତାଳି ପୁଣି—ତୁ କି ପିଶାଚୀ ହୋଇଛୁ, କମଳି ? ଏ' କିଏ ? ରକ୍ତାକ୍ତ କଳେବରରେ ଏ' ଭୀଷଣ ମୂର୍ତ୍ତି କିଏ ? ହସ୍ତରେ ଏ' କି ଅଗ୍ନି-ମୟ ଦଣ୍ଡ ? ମୋତେହିଁ ଲକ୍ଷ୍ୟ କରି ଯେ ଧାଇଁ ଆସୁଛି—(ରହି) ଏ' ଯେ ମହାରାଜ !—ମହାରାଜ ! ମହାରାଜ ! ଓଃ—କେଉଁଆଡ଼େ ଯିବି—କେଉଁଆଡ଼େ ପଳାଇବି—ଚାରିଆଡ଼େ ଯେ ଲେଲିହାନ ଅଗ୍ନି ଶିଖା ପ୍ରଜ୍ୱଳିତ—ଚାରିଆଡ଼େ ଯେ ତୀକ୍ଷ୍ଣ ଅଗ୍ନିମୟ ଦଣ୍ଡ ପ୍ରସାରିତ ? କେଉଁଠି ଆଶ୍ରୟ ନେବି—କେମନ୍ତେ ରକ୍ଷା ପାଇବି ?

( ବେଗେ ପଳାୟନ )

[ କଥରୁଦ୍ରସ୍ୱ ଦେବଙ୍କ ପ୍ରବେଶ ]

କଥରୁଦ୍ରସ୍ୱ—ମୋର ଯେ ଏ' ସ୍ଥାନ ଛାଡ଼ିଯିବାକୁ ମନ ବଳୁନାହିଁ—ବଉଳ ! ବଉଳ !

[ ପଦ୍ମାର ଛୁରିକା ହସ୍ତେ ପ୍ରବେଶ ]

ପଦ୍ମା—ହିଁ, ଏତେଦୂର—ପଦ୍ମାକୁ ଛାଡ଼ି ବଉଳରେ ଆଶ୍ରୟ ? ପଦ୍ମା କେବେ ଆଖି ଥାଉଁ ଥାଉଁ ଏହା ଦେଖି ପାରିବ ନାହିଁ—ଜୀବ ଥାଉଁ ଥାଉଁ ଏହା ସହି ପାରିବ ନାହିଁ—ଯେ ପଦ୍ମାର ଆଶ୍ରୟ ନ ନିଏ—ତା'ର ଆଶ୍ରୟ ଏହି ଛୁରି ଅଗରେ ।

( କଥରୁଦ୍ରସ୍ୱକୁ ଛୁରିକାଘାତ )

କଥରୁଦ୍ରସ୍ୱ—କିଏ ? କିଏ ? ଉଃ—ଗୋ—ବ—ର୍ଦ୍ଧ—ନ ।

ପଦ୍ମା—ଏ' ଯେ ଗୋବର୍ଦ୍ଧନ ବୋଲି ଡାକିଲା । ଏ' କଣ ଗୋବର୍ଦ୍ଧନ ନୁହେଁ ? ତେବେ କିଏ ? ( ଦେଖି ) ଏ' ଯେ ମହାରାଜ !—ମହାରାଜ ! ମହାରାଜ !

କଥରୁଦ୍ରସ୍ୱ—( ନୀରବ )

ପଦ୍ମା—( ଛୁଡ଼ାଦେଇ ) ମୁଁ କ'ଣ କଲି ?—ନା, ଅନୁତାପର ସମୟ ବର୍ତ୍ତମାନ ନୁହେଁ—କେବଳ ପ୍ରତିହିଂସା—ପ୍ରତିହିଂସା ! ଯାହାପାଇଁ ପଦ୍ମା ଆଜି ନାରୀର ନାରୀତ୍ୱ ବିସର୍ଜ୍ଜନ କରିଛି—ଯାହାପାଇଁ ପଦ୍ମା ଆଜି ନର-ହନ୍ତ୍ରୀ, ରାଜ-ହନ୍ତ୍ରୀ ମଧ୍ୟ ହୋଇଛି—ତା'ର ରକ୍ତପାନ ନ କରିବାଯାଏ, ପଦ୍ମାର ତୃଷ୍ଣା କଦାପି ନିବାରିତ ହେବ ନାହିଁ—ପଦାଶ୍ରୟ ପ୍ରାର୍ଥୀ ପଣୀ ବର୍ତ୍ତମାନ ଶୋଣିତ ପ୍ରାର୍ଥୀ ।

( ବେଗେ ପ୍ରସ୍ଥାନ )

[ ବୀରେନ୍ଦ୍ରର ପ୍ରବେଶ ]

ବୀରେନ୍ଦ୍ର—ଏହିତ ମନ୍ତ୍ରୀ ମହାଶୟଙ୍କ ଘର ଦଖିଲଣି । ହଠାତ୍ ପିତା-ପୁତ୍ର ମିଳନରେ ବିପଦ ଘଟି-ପାରେ—ସୁତରାଂ ଦେଖା ହେବା ପୂର୍ବରୁ ପିତାଙ୍କୁ ପ୍ରସ୍ତୁତ କରାଇ ନେବା ଉଚିତ । ( ପ୍ରସ୍ଥାନ )

[ ଅର୍ଜ୍ଜୁନ ଓ ରଙ୍ଗିଲର ପ୍ରବେଶ ]

ଅର୍ଜ୍ଜୁନ—ପ୍ରିୟେ ! ପ୍ରିୟେ ! ଏ' କଣ ହତ ?—ମନୁଷ୍ୟ ଏମାନ୍ତ ଏତେ ନୀଚ ହୋଇପାରେ ?

ରଙ୍ଗିଲ—ଏ'ତ କଛି ନୁହେଁ ।

ଅର୍ଜ୍ଜୁନ—ଥାଉ ତେବେ ପ୍ରିୟେ, ଆଜି ଅଗ୍ରସର ହେବାକୁ ମନ ବଳୁନାହିଁ ।

ରଙ୍ଗିଲ—ଆସିବାକୁ ଇଚ୍ଛାକ ହେଉଥିଲେ ପରା ?

ଅର୍ଜ୍ଜୁନ—କିନ୍ତୁ ଆଜି ସେ ଆଗ୍ରହ ନାହିଁ । ମୁଁ ଯେତେ ଯେତେ ଅଗ୍ରସର ହେଉଛି, ପ୍ରିୟେ—ମନୁଷ୍ୟର ଜୀବନ ତାହିଁକି ତେତେ ତେତେ ଜଟିଳ ବୋଧ ହେଉଛି—ସମାଜ ତାହିଁକି ତେତେ ତେତେ କୁହେଳିକାମୟ ଦିଶୁଛି ।

ରଙ୍ଗିଲ—ଅନ୍ଧାର ଭିତରକୁ ଗଲନ୍ତୁ—ଯାହା ଶୁଣିଲେ, ସେତ କିଛି ନୁହେଁ ।

ଅର୍ଜ୍ଜୁନ—ନା ପ୍ରିୟେ । ପ୍ରୟୋଜନ ନାହିଁ । ମୁଁ ଭୁଲ କରିଥିଲି, ଯେ ମନୁଷ୍ୟ ପ୍ରକୃତିର ସର୍ବୋତ୍କୃଷ୍ଟ ସୌନ୍ଦର୍ଯ୍ୟ—ଗଲ ତୁମ୍ଭର ସେହି ନିର୍ଜ୍ଜନ ସ୍ଥାନକୁ ଫେରି ଗଲି—ସେଠାରେ ପ୍ରକୃତିର ଶୋଭା ଦେଖି ଦେଖି—ପ୍ରକୃତିର ସମ୍ପଦ ଭୋଗ କରି କରି—ଜୀବନର ଶେଷାଂଶ ଆନନ୍ଦରେ କଟାଇ ଦେବା ।

ରଙ୍ଗିଲ—ନା, ପ୍ରାଣେଶ୍ୱର—ଆସିଛନ୍ତି ଯେତେବେଳେ ପିତାଙ୍କ ଦର୍ଶନ ନ କରି ଫେରିବାଟା କଦାପି ଉଚିତ ନୁହେଁ—ପୁଣି ତାଙ୍କର ଏପରି ଶୋକ ସମୟରେ ତୁମ୍ଭେହିଁ ଏକମାତ୍ର ସାନ୍ତ୍ୱନା ।

ଅର୍ଜ୍ଜୁନ—ଭୁଲ ଭୁଲ, ପ୍ରିୟେ । କେହି କାହାର ନୁହନ୍ତି—ସମସ୍ତେ ଦୁଇ ଦିନର—ଆଜି ଯାହାକୁ ସାନ୍ତ୍ୱନାର କାରଣ ବୋଲି ମନେ କରୁଛ, କାଲି ସେ ମହାନ୍ ଅଶାନ୍ତିର କାରଣ ହୋଇ ପଡ଼ିବ—ମୋର ସଙ୍ଗାତ—ମୋର ମା—ମୋର ଭଉଣୀ—ଆଜି କ'ଣ ସେମାନେ ମୋର ଅଛନ୍ତି, ମୋର ସାନ୍ତ୍ୱନାର କାରଣ ଅଛି ?—ସେମାନେ ଅମରଧାମରେ, ଶାନ୍ତିନିକେତନରେ—ମୁହିଁ ମର୍ତ୍ତ୍ୟ ଧାମରେ—ଦୁଃଖାର୍ଣ୍ଣବରେ । ବାବା ଜାଣନ୍ତି, ମୁଁ ମୃତ—ସୁତରାଂ ବେଶ ହୋଇଛି, କାରଣ ମୋତେ ପାଇ ଯେବେ ପୁଣି ହରାନ୍ତି ! ହରାଇବେତ ଦିନେ ନିଶ୍ଚୟ—ତେବେ ତାଙ୍କର କେବଳ ଅଶାନ୍ତି ବଢ଼ିବା ସାର ହେବ ସିନା ?

ରଙ୍ଗିଲ—ଆପଣ କ'ଣ କହୁଛନ୍ତି ?

ଅର୍ଜୁନ—ବକୁନାହିଁ କଛି—ଯାହା ଭୁଝୁଛି ତାହାହିଁ କହୁଛି ।

ରଙ୍ଗିଲା—( ଶବକୁ ଦେଖି ) ଏ' କଣ ? ଏଠାରେ ଏ' ଗୋଟାଏ କଣ ପଡ଼ିଛି ? ଏଯେ ମନୁଷ୍ୟ ମୂର୍ତ୍ତି ! ( ନିକଟକୁ ଯାଇ ) ହାୟ ହାୟ ! ଏ' ଯେ ମୃତ !

ଅର୍ଜୁନ—ମୃତ ! ମନୁଷ୍ୟ ମୂର୍ତ୍ତି ! ରାସ୍ତାରେ ପଡ଼ି ମରିଛି—ହାୟ ! ହାୟ ! ଏହାକି ମନୁଷ୍ୟ ହୃଦୟ ? ଏହାକି ମନୁଷ୍ୟ ସମାଜ ? କୋଟି କୋଟି ଜୀବିତ ଥାଉ ଥାଉ—ଲକ୍ଷ ଲକ୍ଷ ପ୍ରାଣୀ ସୁଖ ସମ୍ଭୋଗରେ ଜୀବନ ଯାପନ କରୁ କରୁ ଗୋଟିଏ ପ୍ରାଣ ଆଜି—ସେମାନଙ୍କର ଭାଇ ଆଜି, ନିଃସହାୟ, ବୃନ୍ତଚ୍ୟୁତ ପୁଷ୍ପତୁଲ୍ୟ—ଜଘନ୍ୟ ଭାବେ ରାସ୍ତାରେ ପଡ଼ି, ପଚି ସଡ଼ି ଯାଉଛି, କାହାରି ଭ୍ରୂକ୍ଷେପ ସୁଦ୍ଧା ନାହିଁ !

ରଙ୍ଗିଲା—( ବସି ଦେଖି ) ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ଏ'ଯେ କଥରୁଦ୍ର ଦେବ !

ଅର୍ଜୁନ—( ବସି ) କଥରୁଦ୍ର ଦେବ ! ମହାରାଜ !—ଉତ୍କଳର ଭାଗ୍ୟ ବିଧାତା ଆଜି ଏପରି ଭାବେ ଧୂଳିରେ ଲୁଣ୍ଠିତ—ଯାହାଙ୍କର ଶୟନ-ମନ୍ଦିର ଦଶର୍କ ପ୍ରହରୀ ବେଷ୍ଟିତ ସ୍ୱର୍ଣ୍ଣ-ଅଟ୍ଟାଳିକାରେ ନିର୍ମ୍ମାଣିତ—ଶୟନ ରଚନା ସୁକୋମଳ ପୁଷ୍ପ ଶଯ୍ୟାରେ ନିରୂପିତ—ସେ ଆଜି ଧୂଳିରେ ଧୂସରିତ—ନୃଶଂସଭାବେ ପଥଭ୍ରଷ୍ଟ ପାନ୍ଥତୁଲ୍ୟ ନିହତ ! ହା ମନୁଷ୍ୟ ! ଏହାକି ତୁମ୍ଭର ବିବେକ ? ଏହାକି ତୁମ୍ଭର ମନୁଷ୍ୟତ୍ୱ ?—ତୁମ୍ଭର ମସ୍ତକର ମଣି, ତୁମ୍ଭର ହୃଦୟର ହାର, ତୁମ୍ଭେ ପାଦତଳେ ନିକ୍ଷେପ କରିଛ—ପାଦ ଦଳନରେ ନିଷ୍ପେଷିତ କରୁଛ । ନା ପ୍ରିୟେ ! ଆଉ ମୁଁ ଅଗ୍ରସର ହେବାକୁ ଚାହେଁନା—ମୋର ନୀଳାକାଶ ଘନାବୃତ କରିବାକୁ ଚାହେଁନା—ଫେରି ଚାଲ, ତୁମ୍ଭର ସେହିସ୍ଥାନ ପ୍ରକୃତରେ ପ୍ରକୃତର ଶ୍ରେଷ୍ଠ ସୌନ୍ଦର୍ଯ୍ୟ—ସେହିଠାରେ ପ୍ରକୃତରେ ପ୍ରକୃତର ସର୍ବୋତ୍କୃଷ୍ଟ ଲୀଳା ।

[ କେତେକ ରକ୍ଷୀଙ୍କର ପ୍ରବେଶ ]

୧ମ ରକ୍ଷୀ—କାହାନ୍ତି ମହାରାଜ ? କେଉଁଆଡ଼େ ଗଲେ—

ରଙ୍ଗିଲା—ଏହି ଯେ, ଏହି ଯେ ମହାରାଜ !

୨ୟ ରକ୍ଷୀ—ଏଁ ଏଁ—ଏ କ'ଣ ଦେଖୁଛି !

ଅର୍ଜୁନ—ଆଉ ଦେଖିବ କଣ ? ସ୍ୱାର୍ଥାନ୍ଧ-ମାନବର ସ୍ୱାର୍ଥପରତାର ଏହାହିଁ ସର୍ବୋତ୍କୃଷ୍ଟ ନିଦର୍ଶନ ।

୧ମ ରକ୍ଷୀ—ଆରେ ଧର ଧର ! ଏହିମାନେ ମାରିଛନ୍ତି ।

୨ୟ ରକ୍ଷୀ – ଆରେ ସେହିତ ଗୋବର୍ଦ୍ଧନ ।

୩ୟ ରକ୍ଷୀ—ଦେଖୁନା, ଦାସୀଟା ପରି ସାଙ୍ଗେ ସାଙ୍ଗେ ଅଛି ।

୧ମ ରକ୍ଷୀ—ଠିକ୍, ଠିକ୍ ! ଗୋବର୍ଦ୍ଧନ ଆଉ ଦାସୀକୁ ଧରିବା ପାଇଁ ହୁକୁମ ଜାରି ହୋଇଥିଲା ।

୨ୟ ରକ୍ଷୀ—ଏଥର ଧରାପଡ଼ିଛନ୍ତି—ବେଶ ବଦଳେଇ ଆଉ କେତେଦିନ ଲୁଚି ରହିବ ବାପଧନ ?

୩ୟ ରକ୍ଷୀ—ହାୟ ! ହାୟ ! ରଜାଙ୍କୁ ଏପରି ଭାବେ ମାରିଦେଲା !

୧ମ ରକ୍ଷୀ—ମାର ଶଳାକୁ ( ପ୍ରହାର )

୨ୟ ରକ୍ଷୀ—ମାର ଶାଳୀକୁ—ମାର ଶାଳୀକୁ (ପ୍ରହାର)

ରଙ୍ଗିଲା—ତୁମ୍ଭେମାନେ ଏ' କଣ କରୁଛ ? ଆମ୍ଭେମାନେ ଯେ—

ଅର୍ଜୁନ—କିଛି ଆପତ୍ତି କରନା, ପ୍ରିୟେ ! ମନୁଷ୍ୟ ଯେ ପଶୁର ଅଧମ !

୧ମ ରକ୍ଷୀ—ପଶୁର ଅଧମ—ଦେବଟି ଧମାଧମ ?

( ପ୍ରହାର )

ରଙ୍ଗିଲା—ହାୟ ! ହାୟ ! ଏହାହିଁ କପାଳେ ଥିଲା !

ରକ୍ଷୀଗଣ—ଚାଲ—ଚାଲ—

[ ଶବ ଦେହ ବହନ ପୂର୍ବକ ଉଭୟଙ୍କୁ ପ୍ରହାର କରି କରି ଘେନିଯିବା ]

---

## ତୃତୀୟ ଦୃଶ୍ୟ

—ଶୟନକକ୍ଷ—

[ ରାଣୀ ରୋଗଶଯ୍ୟାରେ ଶାୟିତା ]

ରାଣୀ—କଥ କାହିଁ, ଗୋବନ୍ଦ ? ଏତେବେଳ ହେଲାଣି ଫେରୁନାହିଁ କାହିଁକି ? ତୁମେ ଲୋକ ପଠାଇଛତ ?

ଗୋବନ୍ଦ—ପଠାଇଛି, ମା—ଆପଣ ସ୍ଥିର ହୁଅନ୍ତୁ—ସେ ଏହିକ୍ଷଣି ଫେରିବେ । ବୁଲି ବୁଲି ବୋଧହୁଏ ( କମଳା କଥା ମନେ ପଡ଼ିବାରୁ ରହିଯାଇ ଉଦ୍‌ବେଗର ଆତ୍ମସମ୍ବରଣ କରିବା ) ହୁଏତ କେଉଁଠାକୁ ଆଜ ବାହାର ଯାଇଥିବେ—ଏହିକ୍ଷଣି ଫେରିବେ—କିଛି ଭୟ କରନ୍ତୁ ନାହିଁ ।

ରାଣୀ— ଭୟ କରିବ ନାହିଁ !—ସେହି ପୁତ୍ର-ହନ୍ତା ଯେ ଅଦ୍ୟାପି ଜୀବିତ ଅଛି—ଉଃ ହୋଃ—

ଗୋବନ୍ଦ—ଆଉ ବେଶୀ ଦିନ ନୁହେଁ, ମା—ଯେପରି ବନ୍ଦୋବସ୍ତ ହୋଇଛି, ସେଥିରେ ଖୁବ୍ ଶୀଘ୍ର ଧରାପଡ଼ିବାର ସମ୍ଭାବନା ।

ରାଣୀ—କିନ୍ତୁ ମୋର କଲ୍ୟାଣକୁ ଫେରି ପାଇବାର ସମ୍ଭାବନା ନାହିଁ, ଗୋବନ୍ଦ— କଲ୍ୟାଣ—କଲ୍ୟାଣ—( କାନ୍ଦିବା )

ଗୋବନ୍ଦ—ମା ! ମା ! ଆପଣ ଏପରି ଅଧୀର ହେଲେ, ସନ୍ତାନ ମାନେ ଆପଣଙ୍କର ଧୈର୍ଯ୍ୟଧରି ରହିବେ କିପରି ?

ରାଣୀ—ଆଉ ଲଜ୍ଜା ଦିଅନା, ଗୋବନ୍ଦ ! ଶିଖାଅ, ଶିଖାଅ କିପରି ଧୈର୍ଯ୍ୟ ଧରିବାକୁ ହୁଏ !—ଏଭଳି ବୃଦ୍ଧ ବୟସରେ, ସ୍ତ୍ରୀ ପୁତ୍ର-କନ୍ୟା ହୀନ ହୋଇ—ସଂସାରରେ ଯାବତୀୟ ସୁଖ-ଶାନ୍ତି ଶୂନ୍ୟ ହୋଇ—ପର ସେବାରେ କିପରି ମନପ୍ରାଣ ଢାଳିବାକୁ ହୁଏ !– ନିଜର କର୍ତ୍ତବ୍ୟପାଳନରେ କିପରି ଏକନିଷ୍ଠ ହେବାକୁ ହୁଏ !—ଗୋବନ୍ଦ ! ଗୋବନ୍ଦ ! ତୁମ୍ଭେ ମନୁଷ୍ୟ ନା ଦେବତା—ତୁମ୍ଭକୁ ମୋ ପ୍ରଣାମ—

ଗୋବନ୍ଦ – ମା ! ମା ! ସନ୍ତାନପ୍ରତି ଏ'କି ଅବୈଧାଚରଣ କରୁଛନ୍ତି ? ସନ୍ତାନକୁ କ୍ଷମା କରନ୍ତୁ, ମା ! ( ପ୍ରଣତ ହେବା )

ରାଣୀ—( ଉଠାଇ ) କୁହ, କୁହ ଗୋବନ୍ଦ ! ତୁମେ ମୋତେ କ୍ଷମା କରିଛତ ? ତୁମ୍ଭପ୍ରତି ମୁଁ ଯେଉଁ ଅବୈଧାଚରଣ କରିଥିଲି, ତା' ପାଇଁ ମୋ ପ୍ରତି ତୁମ୍ଭର କୌଣସି କ୍ରୋଧ ନାହିଁତ ?

ଗୋବନ୍ଦ—ମା ! ମା ! ଏ'କଣ କହୁଛନ୍ତି ? ସନ୍ତାନର କି ମା ପ୍ରତି କେବେ କ୍ରୋଧ ହୁଏ ? ମା ବରଂ ସନ୍ତାନକୁ ଯେତିକି ମାରେ, ସନ୍ତାନ ମାକୁ ସେତିକି କୁଣ୍ଢାଇ ଧରେ—ତା'ପରି, ମା ଦୋଷୀ ପ୍ରତି ବିଗ୍ରହର ଯାହା କର୍ତ୍ତବ୍ୟ, ତାହାହିଁ ଆପଣ କରିଥିଲେ !

ରାଣୀ—ନା, ନା, ଗୋବନ୍ଦ—ପୁତ୍ର—ଶୋକାତୁର ହୋଇ ମୁଁ ଘୋର ଅନ୍ୟାୟ କରିବାକୁ ବସିଥିଲି—ତାହା ଭାବିଲା ବେଳକୁ ଦେହ କଣ୍ଟକିତ ହେଉଛି—ସମ୍ପଦେ, ବିପଦେ ଯେ ମୋର ପ୍ରକୃତ ବନ୍ଧୁ, ତାହାର—

ଗୋବନ୍ଦ—ମା ! ସ୍ଥିର ହୁଅନ୍ତୁ—ଅତୀତ-ବିଷୟ ଚିନ୍ତାରେ ମନ ବ୍ୟାକୁଳ କରିବାର କି ପ୍ରୟୋଜନ ? ଆପଣ ଯାହା କରିଥିଲେ, ତାହା ମନୁଷ୍ୟ ମାତ୍ରଙ୍କ ପକ୍ଷେ ସ୍ୱାଭାବିକ ।

ରାଣୀ—ନା, ଗୋବନ୍ଦ—ଅସ୍ୱାଭାବିକ—ପ୍ରକୃତ ମନୁଷ୍ୟ ଯେ—ହିତାହିତ ଜ୍ଞାନ ଯା'ର ଅଛି—ସେ ପୁତ୍ର-ଶୋକରେ ମଧ୍ୟ କଦାପି କର୍ତ୍ତବ୍ୟ-ଜ୍ଞାନ ଶୂନ୍ୟ ହୁଏନାହିଁ—ସ୍ୱାର୍ଥ ଦୃଷ୍ଟିରେ କେବଳ ନିର୍ଦ୍ଦୋଷର ପୁଣି ଉପକାରୀର ମଧ୍ୟ, ପ୍ରାଣ ନାଶ କରିବାକୁ ଧାଇଁ ଯାଏ ନାହିଁ—ସେ ଅସ୍ତ୍ର-ବଳ ଦେଇ ଅପକାରୀର ସୁଦ୍ଧା ଉପକାର କରେ ପୁତ୍ର ଶୋକ ଭୁଲିଯାଇ ପୁତ୍ରହନ୍ତା କୁ ସୁଦ୍ଧା ସାଦର ଆଲିଙ୍ଗନ କରେ !

ଗୋବନ୍ଦ—ମା ! ସେ ସବୁ ବୃଥାଚିନ୍ତାରେ ମନ ଏତେ ବିଚଳିତ କରନ୍ତୁ ନାହିଁ—ଯେପରି ଦୁର୍ବଳ ଆପଣ; ଅଳ୍ପ ମାନସିକ ଉତ୍ତେଜନାରେ—

[ ଜନୈକ ରକ୍ଷୀର ପ୍ରବେଶ ]

ରକ୍ଷୀ—ସର୍ବନାଶ, ସାଆନ୍ତେ ।

ଗୋବିନ୍ଦ—( ଅନୁଚ୍ଚସ୍ୱରେ ) କି ସର୍ବନାଶ ? ଅସ୍ତେ-ଅସ୍ତେ—

ରାଣୀ—କି ସର୍ବନାଶ କହ, ରକ୍ଷକ ? ନାଥ କାହିଁ ମୋର ? ନାଥ'ର ମୋର କିଛି ହୋଇ ନାହିଁତ ?

ଗୋବିନ୍ଦ—ଏ'କି ଅମଙ୍ଗଳ ଚିନ୍ତା, ମହାରାଣୀ ? ସେ ଦୀର୍ଘାୟୁ ହେଉନ୍ତୁ—ଚାଲ ଭିତରିକି ।

ରକ୍ଷୀ—ଆଉ ଯିବ କିଏ, ସାଆନ୍ତେ ? ମହାରାଜ ଖୁନ ହୋଇଛନ୍ତି ।

ରାଣୀ—'ମହାରାଜ ଖୁନ୍ ହୋଇଛନ୍ତି' ? ନାଥ ମୋର ଏ' ସଂସାରରେ ଆଉ ନାହିଁ ? ( ମୂର୍ଚ୍ଛା ଓ ମୃତ୍ୟୁ )

ଗୋବିନ୍ଦ—ମହାରାଜ ଖୁନ୍ ।

( ହତାଶଭାବ ଧାରଣ କରିବା )

ରକ୍ଷୀ—ଆଜ୍ଞା ମହାରାଜ !

ଗୋବିନ୍ଦ—ଅସମ୍ଭବ—ଅସମ୍ଭବ—ତୁ ମିଥ୍ୟା କହୁଛୁ—ତୁ ରାଜାଙ୍କ ନାମରେ ମିଥ୍ୟା ରଟନା କରୁଛୁ—ତୋର ମିଥ୍ୟା ସମ୍ବାଦ ଦାନରେ ରାଜ-ମାତାଙ୍କର ଅଧୁନା ଏ ଦୁର୍ଦ୍ଦଶା; ତୋର ଶାସ୍ତି—

( ବେକ ଚିପିଧରିବା )

ରକ୍ଷୀ—ଦୋହାଇ, ଦୋହାଇ ସାଆନ୍ତେ—ଖୁନୀକୁ ଯେ ଆମ୍ଭେମାନେ ଧରି ଆଣିଛୁଁ ।

ଗୋବିନ୍ଦ—ଖୁନୀ ଧରାପଡ଼ିଛି ।—ତେବେ କ'ଣ ଏହା ସତ୍ୟ ?—ମହାରାଜ ଖୁନ୍ ?—ନାଥବନ୍ଧୁ ମୋର ଇହଧାମରେ ଆଉ ନାହିଁ ? ( ରହି ) ରକ୍ଷକ ! କାହିଁ ସେ ଖୁନୀ ? କିଏ ସେ ଖୁନୀ ?

ରକ୍ଷୀ—ଆଉ କିଏ ହବ ସାଆନ୍ତେ—ଯା ନାଁରେ ହୁଲିଆ । ଜାରି ହୋଇଛି ।

ଗୋବିନ୍ଦ—ତେବେ ସେହି ପାଷଣ୍ଡ—ଗୋବର୍ଦ୍ଧନ ?

( କ୍ରୋଧରେ ସ୍ଫୀତବକ୍ଷ ହେବା )

ରକ୍ଷୀ—ଆଜ୍ଞା, ସାଆନ୍ତେ—ସେ ମାଇକିନିଆଁ ମଧ୍ୟ ସାଙ୍ଗେ ସାଙ୍ଗେ ଥିଲା, ଧରାପଡ଼ିଛି ।

ଗୋବିନ୍ଦ—ନେଇଆସ ଉଭୟଙ୍କୁ ଏହି ସ୍ଥାନକୁ—ନା, ନା, ସେମାନଙ୍କୁ ଜୀବନ୍ତାବସ୍ଥାରେ ଦେଖି ସହ୍ୟକରି ପାରିବି ନାହିଁ—ଯା, ରକ୍ଷୀ ଏହି ଆଦେଶ-ପତ୍ର ଲେଖି ଦେଉଛି, ଶୀଘ୍ର ସେନାପତିଙ୍କୁ ଦେ—ନରାଧମ ମାନଙ୍କର ଛିନ୍ନ ମସ୍ତକ ଏହିକ୍ଷଣି ମୋତେ ଦେଖାଇବାକୁ ହେବ ।

ରକ୍ଷୀ—ଯେ ଆଜ୍ଞା, ସାଆନ୍ତେ ।

ଗୋବିନ୍ଦ—( ରାଣୀଙ୍କ ଆଡ଼େ ଚାହିଁ ) ମା ! ମା !—ଓଃ ହୋଃ—

( ନେପଥ୍ୟେ )—ବୋଲ ହରି—ହରି ବୋଲ ।

ଗୋବିନ୍ଦ—ଏହି ଯେ ମହାରାଜ ମୋର—ଏହି ଯେ ନାଥ ମୋର— ( ବେଗେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ପ୍ରାସାଦ ସମ୍ମୁଖ—

[ ବୀରେନ୍ଦ୍ରର ପ୍ରବେଶ ]

ବୀରେନ୍ଦ୍ର—କାହାନ୍ତି ମନ୍ତ୍ରୀ ମହାଶୟ ? କେଉଁଠାରେ ଅଛନ୍ତି ? ଚିହ୍ନାଇ ଦେଲେ ସୁଦ୍ଧା ରକ୍ଷୀମାନେ ତ ଚିହ୍ନୁ ନାହାନ୍ତି—ମୋତେ ବିଶ୍ୱାସ କରୁ ନାହାନ୍ତି—କ'ଣ କରିବି ? ମୋର ପ୍ରାଣପ୍ରିୟତମ, ଏତେ ଅୟାସରକ୍ଷିତ ନୌକା କଣ କୂଳରେ ଲାଗୁ ଲାଗୁ ବୁଡ଼ିଯିବ ? ଏହି ମନ୍ତ୍ରୀ ମହାଶୟ ।

[ ଗୋବିନ୍ଦର ଶୋକପରିଚ୍ଛଦ ଧାରଣ ପୂର୍ବକ ପ୍ରବେଶ ]

ଗୋବିନ୍ଦ—ଆଜିଠୁଁ ମୋର ଛୁଟି—

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ରକ୍ଷା କରନ୍ତୁ—ରକ୍ଷା କରନ୍ତୁ ।

ଗୋବିନ୍ଦ—କିଏ ? କିଏ ? ବୀରେନ୍ଦ୍ର ! ତୁମେ ଜୀବିତ ଅଛ ? ଏ' ସଂସାରରେ ଅଛ ?—ଏତେଦିନ ଦେଖା ନ ଦେଇ, ଆଜ ଦେଖା ଦେବାକୁ ଧାଇଁ ଆସିଲ କାହିଁକି ? ଓଃ ହୋଃ କି ସ୍ମୃତି ଜାଗି ଉଠୁଛି ! କି ବୃଶ୍ଚିକ-ଦଂଶନ ଅନୁଭବ କରୁଛି ! ଆଜିକୁ ଏକ ବର୍ଷ ଅତୀତ ହୋଇଗଲା ଏ'ବେ

ଦନେଇ କେବେ ଅନୁଭବ କରି ନ ଥିଲି ? ଆଜି ଏ'କି ଅନୁଭୂତି ଅଜୁ ! ଅଜୁ ! ଓଃ ହୋଃ—

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ଆଦେଶ ପ୍ରତ୍ୟାହାର କରି ଆପଣଙ୍କର ପୁତ୍ର ଓ ପୁତ୍ର-ବଧୂର ପ୍ରାଣ ରକ୍ଷା କରନ୍ତୁ ।

ଗୋବିନ୍ଦ—କିଛି ଦୋଷ ନାହିଁ ତୁମ୍ଭର, ବୀରେନ୍ଦ୍ର—ତୁମ୍ଭେ ତୁମ୍ଭର କର୍ତ୍ତବ୍ୟ ପାଳନ କରିଅଛ । ଅତୀବ ନିର୍ମମ ସେ କର୍ତ୍ତବ୍ୟ—ତା'ର ଉପାସକ ବୋ'ଲି, ଦେଖ, ପିତା ହୋଇ, ବୃଦ୍ଧ ହୋଇ ସୁଦ୍ଧା, ଏକମାତ୍ର ପୁତ୍ର ଓ କନ୍ୟାର ବିଚ୍ଛେଦ ଯନ୍ତ୍ରଣା ଅମ୍ଳାନ ବଦନରେ ଅଦ୍ୟାବଧି ସହ୍ୟ କରିଅଛି —କିନ୍ତୁ ଏଣିକି ଆଉ ପାରିବି ନାହିଁ—ମୋର ଉଦ୍ଦେଶ୍ୟ ବଜ୍ରାନଳରେ ଭସ୍ମୀଭୂତ ହୋଇଛି—ମୋର ଶକ୍ତି ବାଷ୍ପସମାନ କେଉଁଆଡ଼େ ଅନ୍ତର୍ହିତ ହୋଇଛି—ମୁଁ ବର୍ତ୍ତମାନ ତୃଣଠାରୁ ବଳି ଲଘୁ—ସାମାନ୍ୟ ଫୁତ୍କାର କର, ଦେଖିବ କେଉଁ ଅଜ୍ଞାତ ଦୂରଦେଶକୁ ଉଡ଼ି ଚାଲିଯିବି ।

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ମୋତେ ଉନ୍ମାଦ ଜ୍ଞାନ କରନ୍ତୁ ନାହିଁ—ସେମାନେ ଜୀବିତ ଅଛନ୍ତି । କେବଳ ଆପଣ ଆଦେଶ କଲେ, ସେମାନେ ପ୍ରାଣଦଣ୍ଡରୁ ରକ୍ଷା ପାଇବେ ।

ଗୋବିନ୍ଦ—ମୋତେ ତେବେ କଣ ଉନ୍ମାଦ ଜ୍ଞାନ କରିଛ ବୀରେନ୍ଦ୍ର ? କଦାପି ତା ମନେ କରନା—ମୋର ବିବେକ, ବୁଦ୍ଧି ସମସ୍ତ ଠିକ୍ ସେହିପରି ନିର୍ମଳ ଓ ଉଜ୍ଜ୍ୱଳ ଅଛି—କେବଳ ଶକ୍ତି ନାହିଁ—ବାର୍ଦ୍ଧକ୍ୟ ହେତୁ ନୁହେଁ, କିମ୍ବା ସାଂସାରିକ ସୁଖାଭାବ ହେତୁ ନୁହେଁ—ହେତୁ, ମୋର ଉଦ୍ଦେଶ୍ୟସାଧନର ସହସା ପଥାବରୋଧ । କିଏ ସେ ଅବରୋଧ କାରୀ ? ସେହି କାଳସର୍ପ !—ଯା'କୁ ଦୁଧ ପିଆଇ, କୋଳରେ ଶୁଆଇ, ନିଜଘରେ ବଢ଼ାଇ ଥିଲି—ବୀରେନ୍ଦ୍ର ! ବୀରେନ୍ଦ୍ର ! ଥରେ, ଦେଖିତ—ତୁମେ ଅତି ସୁଦକ୍ଷ ଘାତକ—ନରାଧମର ଶିରଚ୍ଛେଦନ ସେମାନେ କରି ପାରିଲେ କି ନାହିଁ ?

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ମୋତେ ବିଶ୍ୱାସ କରନ୍ତୁ ପୁତ୍ର ଆପଣଙ୍କର ଜୀବିତ ଅଛି ।

ଗୋବିନ୍ଦ—ଜୀବିତ ? ହାଃ ହାଃ ହାଃ—ତୁମ୍ଭେ ନିଶ୍ଚୟ ଉନ୍ମାଦ ହୋଇ ଯାଇଛ ।

ବୀରେନ୍ଦ୍ର—ବିଶ୍ୱାସ କରନ୍ତୁ ପ୍ରଭୋ !

ଗୋବିନ୍ଦ—ମୋତେ ଏତେ ଦୁର୍ବଳ-ମତି ମନେ କର ନା ବୀରେନ୍ଦ୍ର ! ମୋର ବର୍ତ୍ତମାନ ସୁଦ୍ଧା ବେଶ୍ ବୋଧଶକ୍ତି ଅଛି—ମୁଁ ଭଲ ବୁଝିପାରୁଛି ଯେ ଏ' ସଂସାର ସଙ୍ଗେ ମୋର ତିଳେମାତ୍ର ସମ୍ବନ୍ଧ ନାହିଁ,—ସମସ୍ତ ବନ୍ଧନ ଛିନ୍ନ ହୋଇଛି—ମୋର ସମସ୍ତ କର୍ତ୍ତବ୍ୟ ଶେଷ ହୋଇଛି—ଏଠାରେ ମୋର କୌଣସି ପ୍ରୟୋଜନ ନାହିଁ ।

ବୀରେନ୍ଦ୍ର—ଈଶ୍ୱରଙ୍କ ନାମରେ ଶପଥ କରି କହୁଛି, ପ୍ରଭୋ ପୁତ୍ର ଆପଣଙ୍କ ଜୀବିତ ଅଛି ।

ଗୋବିନ୍ଦ—ଜୀବିତ ଯଦି, କାହିଁ ସେ ? ହାଃ ହାଃ ମୋତେ ଭଣ୍ଡାଇ ପାରିଲ ନାହିଁ - ଏ' ପ୍ରତାପରୁଦ୍ର-ଦେବଙ୍କ ମନ୍ତ୍ରୀକୁ ଭୁଲାଇବା କି ସହଜକଥା ?

ବୀରେନ୍ଦ୍ର—ପ୍ରଭୁ ! ସେ ଯେ ଶ୍ମଶାନ ଭୂମିରେ ।

ଗୋବିନ୍ଦ—ଉନ୍ମାଦ ! ଏତକ କଣ ବୁଝି ପାରୁନାହଁ ? ପ୍ରାଣାନ୍ତେ ମନୁଷ୍ୟର ଶବ ସେହିଠାକୁ ଯାଏ—କିନ୍ତୁ ମୁଁ ପ୍ରାଣ ଥାଉଁ ଥାଉଁ ଯାଉଛି—କାରଣ ଏ' କର୍ତ୍ତବ୍ୟହୀନ ପ୍ରାଣ ମୃତପ୍ରାଣ ସଙ୍ଗେ ସମାନ ।

ବୀରେନ୍ଦ୍ର—ପ୍ରଭୋ ! ରକ୍ଷିମାନେ ଯେ ଗୋବର୍ଦ୍ଧନ ଓ ପଦ୍ମା ଭ୍ରମରେ ଆପଣଙ୍କର ପୁତ୍ର ଓ ପୁତ୍ରବଧୂକୁ ବାନ୍ଧିଅଛନ୍ତି । ବିଶ୍ୱାସ କରନ୍ତୁ ସେମାନେ ଜୀବିତ ଅଛନ୍ତି—କେବଳ ଶୀଘ୍ର ରକ୍ଷା କରନ୍ତୁ ।

ଗୋବିନ୍ଦ—ଠିକ୍ କହୁଛ, ବୀରେନ୍ଦ୍ର ! ଏହା କଣ ସତ ? ମୋର ପୁତ୍ର, ପୁତ୍ରବଧୂ ଜୀବିତ ଅଛନ୍ତି ? ନା, ନା, ମିଥ୍ୟାକଥା—ମିଥ୍ୟାକଥା—ଏତେ ଆନନ୍ଦ ଯେ ଅସମ୍ଭବ—ଅସମ୍ଭବ !

ବୀରେନ୍ଦ୍ର—ପ୍ରଭୋ ! ବିଶ୍ୱାସ କରନ୍ତୁ—( ଆଣ୍ଠୁମାଡ଼ି ବସିବା )

ଗୋବିନ୍ଦ—ସତ କହୁଛ, ବୀରେନ୍ଦ୍ର ? ସେମାନେ ଜୀବିତ ଅଛନ୍ତି—ମୋର ଅଜୁ ଅଛି—ମୋର

ପୁତ୍ରବଧୂ ଅଛି—କାହିଁ ? କାହିଁ ? ଦେଖାଅ, ଦେଖାଅ—

ବୀରେନ୍ଦ୍ର—ଏହି ଆଡ଼େ ଶୀଘ୍ର ଆସନ୍ତୁ ।

ଗୋବିନ୍ଦ—କେଉଁ ଆଡ଼େ ? ମୋତେ ଧରି ନେଇ ଚାଲ, ମୁଁ ଯେ ପଥ ଦେଖି ପାରୁନାହିଁ ।

[ ବେଗେ ପ୍ରସ୍ଥାନେ ଦ୍ୟତ ହେବାକାଳେ ମୁକୁନ୍ଦର ବେଗେ ପ୍ରବେଶ ]

ମୁକୁନ୍ଦ—କାର୍ଯ୍ୟ ଶେଷ, ପ୍ରଭୋ । ସେମାନଙ୍କ ପାପ-ରକ୍ତରେ ଏ ପୁଣ୍ୟ ତରବାରି କଳଙ୍କିତ କରିବାକୁ ହୋଇ ନାହିଁ—ପିସ୍ତର ଗୁପ୍ତ ଛୁରିକା ଘାତରେ ନରାଧମ ପ୍ରାଣତ୍ୟାଗ କରିଛି—ଧନ୍ୟ ଧନ୍ୟ ପାପିଷ୍ଠ ଆତ୍ମହତ୍ୟା କରି ସ୍ୱ-ପାପର ପ୍ରାୟଶ୍ଚିତ୍ତ କରିଛି ।

ବୀରେନ୍ଦ୍ର—ଓଃ ହୋଃ—ଏତେ କରି ସୁଦ୍ଧା ବଞ୍ଚାଇ ପାରିଲି ନାହିଁ—ଭାଇ ! ଭାଇ !

( ବେଗରେ ପ୍ରସ୍ଥାନ )

ଗୋବିନ୍ଦ—( କରୁଣସ୍ୱରରେ ) ମୁକୁନ୍ଦ !

ମୁକୁନ୍ଦ—ଏତେ କାତର କାହିଁକି, ପ୍ରଭୋ ? ଆପଣ ଯେ ଛିନ୍ନ ମସ୍ତକ ପର୍ଯ୍ୟନ୍ତ ଦେଖିବାକୁ ଇଚ୍ଛା ପ୍ରକାଶ କରିଥିଲେ ।

ଗୋବିନ୍ଦ—ଓଃ ହୋଃ ( ରହି ) କୁହ, ମୁକୁନ୍ଦ, ଚିତା ଜ୍ୱଳାଗଲାଣି ତ ?

ମୁକୁନ୍ଦ—ଜ୍ୱଳିବାର ଉପକ୍ରମ ହେଉଥିଲା ।

ଗୋବିନ୍ଦ—ଯାଅ ଯାଅ ତେବେ, ଶୀଘ୍ର ଭୀମ ବେଗେ ଜ୍ୱଳିବାର ବନ୍ଦୋବସ୍ତ କରିଦିଅ—ଅଧିକ କାଷ୍ଠ ଘୃତ ସଂଗ୍ରହ ନିମନ୍ତେ ଆଦେଶ କରିଦିଅ ।

ମୁକୁନ୍ଦ—ଏ କି ଆଦେଶ, ପ୍ରଭୋ !

ଗୋବିନ୍ଦ—ଯାଅ, ଦ୍ୱିରୁକ୍ତି କରନା ।

[ ମୁକୁନ୍ଦର ଧୀରେ ଧୀରେ ପ୍ରସ୍ଥାନ ]

ହାଃ ହାଃ ହାଃ—ଆଜଠୁଁ ଯେ ମୋର ଛୁଟି । ପୁଣି କାର୍ଯ୍ୟରେ ଲଗାଇବ, ଏତେ ସାହସ କାର ? ବୀରେନ୍ଦ୍ର ଗୋଟାଏ ଭୀଷଣ ଷଡ଼ଯନ୍ତ୍ର କରିଥିଲା—କିନ୍ତୁ ଈଶ୍ୱର ଦୟାମୟ, ମୋତେ ଆଜି ରକ୍ଷା କଲେ । ଏ କ'ଣ—ତୁମ୍ଭେମାନେ ବିଦ୍ରୂପ କରୁଛ ଯେ । ପୁତ୍ର ବିନାଶରେ ମୁଁ ଆନନ୍ଦ ଅନୁଭବ କରୁଛି ବୋଲି ?—ପ୍ରକୃତ ନିୟମର ବିରୁଦ୍ଧାଚରଣ କରୁଛି ବୋଲି ? ହାଃ ହାଃ ହାଃ—ତା ହେଲେ ତୁମ୍ଭେମାନେ ଗୋବିନ୍ଦକୁ ଆଦୌ ଚିହ୍ନି ନାହଁ—ଯେ ଯେ ସମ୍ପୂର୍ଣ୍ଣ ପରିପିତ-ପ୍ରାଣ—ଗଙ୍ଗବଂଶର ଅମୂଲ୍ୟ ଆଧେୟ, ସେ ସାମାନ୍ୟ ଆଧାର ମାତ୍ର—ପ୍ରାଣପକ୍ଷୀ ଉଡ଼ି ଚାଲିଯାଇଛି, ଏ ଜଡ଼ ପିଞ୍ଜରଟାଏ କେବଳ ଏଠାରେ ପଡ଼ି ରହିଛି । ଅଙ୍କୁ ସଙ୍ଗେ ଆତ୍ମ ମିଳନ ହୋଇଥିଲେ, କିଛିଦିନ ପୁଣି ଏ ବିଶ୍ୱାସହନ୍ତା ସଂସାରରେ ରହିବାକୁ ପଡ଼ି-ଥାନ୍ତା—ମାୟା-ମମତାକର୍ଷଣ ଯୋଗୁଁ ନୁହେଁ—ପୁତ୍ର ପ୍ରତି ପିତାର କର୍ତ୍ତବ୍ୟାନୁରୋଧ ଯୋଗୁଁ—ମାତ୍ର ଏ ଜଡ଼ପିଣ୍ଡ ଦ୍ୱାରା କି କାର୍ଯ୍ୟ ସାଧିତ ହୋଇ ପାରିଥାନ୍ତା ?—ଛାଡ଼—ଚାଲ, ମନ ସେହିଆଡ଼େ ଚାଲ, ଯେଉଁଆଡ଼େ ତୁମର ନିତ୍ୟାରାଧ୍ୟ ଦେବତାମାନେ ଚାଲି ଯାଇଛନ୍ତି—ଏଠାରେ ସେମାନଙ୍କ ପ୍ରତି ତୋର ଯେଉଁ କର୍ତ୍ତବ୍ୟ ଥିଲା, ସେଠାରେ ମଧ୍ୟ ସେମାନଙ୍କ ପ୍ରତି ତୋର ସେହି କର୍ତ୍ତବ୍ୟ ରହିବ—ସେମାନେ ସ୍ୱର୍ଗକୁ ଗଲେ, ତୋର ସ୍ୱର୍ଗରେ ସ୍ଥାନ—ନରକକୁ ଗଲେ, ନରକରେ ସ୍ଥାନ ।

[ ପ୍ରସ୍ଥାନୋଦ୍ୟତ ହେବାକାଳେ ରଣଜିତ୍ ଓ ଭୟପ୍ରକାଶକ ମୁକୁନ୍ଦର ପ୍ରବେଶ ]

ସମସ୍ତେ—ଜୟ ମହାରାଜ ଗୋବିନ୍ଦ ବିଦ୍ୟାଧରଙ୍କର ଜୟ ।

ଗୋବିନ୍ଦ—ଏ କି ଆଚରଣ, ଭ୍ରାତୃଗଣ ?

ରଣଜିତ୍—ମହାରାଜ !—

ଗୋବିନ୍ଦ—ଏ କି ସମ୍ବୋଧନ, ଭାଇ ?—ଅଧମକୁ କ୍ଷମା କର ଭାଇ । ମହାଯାତ୍ରାକାଳେ ଏପରି ସମ୍ବୋଧନ କରି, ଯନ୍ତ୍ରଣା ଦିଅନା, ଭାଇ ।

ରଣଜିତ୍—ମହାରାଜ ! ତେବେ ଅମ୍ଭମାନଙ୍କୁ ମଧ୍ୟ ଆପଣଙ୍କର ଅନୁଗାମୀ ହେବାକୁ ଦିଅନ୍ତୁ ।

ଗୋବିନ୍ଦ—ତୁମ୍ଭେମାନେ କାହିଁକି ମୋର ଅନୁଗାମୀ ହେବ ? ଏ' ସଂସାରରେ ଯେ ତୁମ୍ଭମାନଙ୍କର ଅନେକ କର୍ତ୍ତବ୍ୟ ଅଛି—ବିଶେଷତଃ ତୁମ୍ଭମାନଙ୍କର ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁ ପ୍ରଭୃତି ଜୀବିତ ଅଛନ୍ତି—ସେମାନେ ଯେ ତୁମ୍ଭମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି ।

ରଣଜିତ୍—ତେବେ ଆପଣ କିପରି ସଂସାର ତ୍ୟାଗ କରୁଛନ୍ତି—ଏବା ଆପଣଙ୍କର ଉପରେ ଯେ ଆମ୍ଭମାନଙ୍କପରି କୋଟି କୋଟି ପ୍ରାଣ ନିର୍ଭର କରୁଛି ।

ଗୋବିନ୍ଦ—ଭ୍ରାତୃଗଣ ! ସେହିପରି ନିର୍ଭରଶୀଳ—ସେହିପରି ପରମୁଖାପେକ୍ଷୀ ହୋଇ କଣ ଚିରଦିନ ରହିଥିବ—ସ୍ୱାବଲମ୍ବନ କଣ ଶିକ୍ଷା କରିବ ନାହିଁ ? ପ୍ରକୃତ ମନୁଷ୍ୟତ୍ୱର ପରିଚୟ ଦେବାକୁ କଣ ଗର୍ବାନୁଭବ କରିବ ନାହିଁ ? ବର୍ତ୍ତମାନ ସୁଯୋଗ ମିଳିଛି, ଭ୍ରାତୃଗଣ, ତୁମ୍ଭେମାନେ ମିଳିତ ହୁଅ—ରାଜ-ମୁକୁଟକୁ କେବଳ ସାକ୍ଷୀ କରି, ସ୍ୱାୟତ୍ତ ଶାସନରେ ଯତ୍ନଶୀଳ ହୁଅ ।

ରଣଜିତ୍—ଏ' ବିଷୟରେ ଯେ ଅମ୍ଭେମାନେ ସମ୍ପୂର୍ଣ୍ଣ ଅନ୍ଧକାରରେ, ପ୍ରଭୋ—ପ୍ରଦୀପଧର ପଥ ନ ଦେଖାଇଲେ, ଅମ୍ଭେମାନେ ଠିକ୍ ପଥରେ ଚାଲିବୁ କିପରି କୁହନ୍ତୁ ?

ଗୋବିନ୍ଦ—ସେ ସାହାଯ୍ୟ କରିବାକୁ ମୁକୁନ୍ଦ ନିଶ୍ଚୟ ସକ୍ଷମ ହେବ ।

ମୁକୁନ୍ଦ—ମହାରାଜ ! ଏ' ହୀନଦାସକୁ କ୍ଷମା କରନ୍ତୁ—ସେ ନିତାନ୍ତ ଦୁର୍ବଳ ଓ ଅକ୍ଷମ ।

ରଣଜିତ୍—ମହାରାଜ ! ଅମ୍ଭେମାନେ କ'ଣ ଆପଣଙ୍କର ହୀନ ସନ୍ତାନ ନୋହୁଁ ?—ହୀନ କ୍ଷୀଣ ପୁତ୍ରମାନଙ୍କୁ ନିରାଶ୍ରୟ କରି ପିତାର କଣ ସ୍ୱେଚ୍ଛାମତେ ଚାଲିଯିବା ଉଚିତ ?

ଗୋବିନ୍ଦ—ବୁଝିଲି ଭ୍ରାତୃଗଣ ! ଏ' ସଂସାରରେ ମୋର କର୍ତ୍ତବ୍ୟ ଶେଷ ହୋଇନାହିଁ । ଭୁଲି ଯାଇଥିଲି ଯେ ଜୀବନ ଥିବାଯାଏ ଲୋକର କର୍ତ୍ତବ୍ୟ ଶେଷ ହୁଏ ନାହିଁ । କିନ୍ତୁ ତୁମ୍ଭମାନଙ୍କର କଣ ଏ' ବୃଦ୍ଧ ପ୍ରତି ଲେଶମାତ୍ର ଅନୁକମ୍ପା ହେଉନାହିଁ—ତା'ର କି ଆଉ ଶକ୍ତି ଅଛି—ଲଘୁ ଭାର ପର୍ଯ୍ୟନ୍ତ ବହନ କରିବାର ସାମର୍ଥ୍ୟ କି ଅଛି ?

( ନେପଥ୍ୟେ )—ଅଛି ?

ଗୋବିନ୍ଦ—ଅଛି ?

[ ସମସ୍ତେ ସେହିଆଡ଼େ ଚାହିଁବା ଓ ଅର୍ଜ୍ଜୁନ ରଙ୍ଗିଲି ସହ ବୀରେନ୍ଦ୍ରର ପ୍ରବେଶ ]

ବୀରେନ୍ଦ୍ର—ଏହି ଯେ ଆପଣଙ୍କର ଶକ୍ତି ଓ ସାମର୍ଥ୍ୟ, ପ୍ରଭୋ !

[ ଗୋବିନ୍ଦ ଅର୍ଜ୍ଜୁନକୁ ଆଲିଙ୍ଗନ କରିବା ଓ ରଙ୍ଗିଲିର ମସ୍ତକ ଆଘ୍ରାଣ କରିବା । ]

ସମସ୍ତେ—ଜୟ ମହାରାଜ ଗୋବିନ୍ଦ ବିଦ୍ୟାଧରଙ୍କ ଜୟ । ଜୟ ଯୁବରାଜ ଅର୍ଜ୍ଜୁନ ବିଦ୍ୟାଧରଙ୍କ ଜୟ । ଜୟ ଯୁବରାଜ୍ଞୀଙ୍କ ଜୟ ।

ଗୋବିନ୍ଦ—ଜଗନ୍ନାଥ ! ଏ' କି ଲୀଳା ତୁମ୍ଭର ? ବୀରେନ୍ଦ୍ର ! ଏ'କି ବିଚିତ୍ର ଘଟଣା ? ମୁଁ ଯେ କିଛି ବୁଝିପାରୁ ନାହିଁ ।

ବୀରେନ୍ଦ୍ର—ମହାରାଜ । ଯେଉଁ ସମୟରେ ଏ' ଆପଣମାନଙ୍କୁ କେତେକ ସୈନ୍ୟମାନେ ଧରି ନେଇଯାନ୍ତି, ଠିକ୍ ସେହି ସମୟରେ ପାପିଷ୍ଟ ଓ ପାପିଷ୍ଠା ସେନାପତି କର୍ତ୍ତୃକ ଧୃତ ହୁଅନ୍ତି ।

ମୁକୁନ୍ଦ—କ୍ରମବିଭେଃ ତା' ହେଲେ ଏ' ଆପଣମାନଙ୍କୁ ସୈନ୍ୟମାନେ ବନ୍ଦୀକରି ବନ୍ଦୀଶାଳାରେ ରଖିଥିଲେ ?

ଗୋବିନ୍ଦ—ତୁମେ କଣ ମୋର ଆଦେଶ ପାଇ ସେଠାକୁ ଯାଇ ନ ଥିଲ ?

ମୁକୁନ୍ଦ—ପ୍ରକୃତ ଅସାମୀଗଣ ଧରା ପଡ଼ିବାରୁ, ମୁଁ ନିଜେ ଯିବା ଅନାବଶ୍ୟକ ମନେ କରି ସୈନିକଙ୍କୁ ନିର୍ଦ୍ଦୋଷ ବନ୍ଦୀଗଣଙ୍କୁ ମୁକ୍ତି ଦେବାକୁ ଆଦେଶ କରିଥିଲି ।

ବୀରେନ୍ଦ୍ର—ମୁକ୍ତିଲାଭ କରି, ସେମାନେ ମହାନଦୀର ଗୋଟିଏ ନିର୍ଜନ କୂଳରେ ଉପବେଶନ କରି-ଥିଲେ—ମୁଁ ଆତ୍ମହତ୍ୟା କରିବାକୁ ଯିବାବେଳେ ଦର୍ଶନ ଲାଭ କଲି—

ଗୋବିନ୍ଦ—ଜଗନ୍ନାଥ ! ତୁମ୍ଭର ଉଦ୍ଦେଶ୍ୟ ତୁମ୍ଭଙ୍କୁହିଁ ଜଣା ! ହାୟ ! ଆଜି ଯଦି ରାଜପରିବାରବର୍ଗ ଜୀବିତ ଥା'ନ୍ତେ !

ରଣଜିତ୍—ଜୟ ମହାରାଜ—

ଗୋବିନ୍ଦ—ନୀରବ ହୁଅ, ଭ୍ରାତୃଗଣ—ସେପରି ସମ୍ବୋଧନ କରି ଆନନ୍ଦ ଉଲ୍ଲାସ ପ୍ରକାଶ କର ନାହିଁ । ମୁଁ ଦୀନ ଦାସ ମାତ୍ର—ଆସ, ସମସ୍ତେ ଶୋକସନ୍ତପ୍ତ ହୃଦୟରେ ରାଜ ପରିବାରଙ୍କ ସଦ୍‌ଗତି କାମନା କରିବା ଆସ ।

[ ସମସ୍ତେ ହାତ ଯୋଡ଼ିକରି ଊର୍ଦ୍ଧ୍ୱକୁ ଚାହିଁ ରହିବା ]

—ଯବନିକା—

# ଉତ୍କଳ-ଗୌରବ

( ପ୍ରତାପରୁଦ୍ର ଦେବ )

— ଐତିହାସିକ ନାଟକ —

# ପଦେ ଅଧେ

ଏହି ନାଟକଟି ଆଜକୁ ପ୍ରାୟ ପାଞ୍ଚବର୍ଷ ତଳେ ଲେଖା ହୋଇଥିଲା । ସେହି ସମୟରେ ରେଭେନ୍ସା କଲେଜରେ ମଧ୍ୟ ଏହା ଅଭିନୀତ ହୋଇଥିଲା । ଅଭିନୟ ସନ୍ଦର୍ଶନ କରି ଯୁବକ ସମ୍ପ୍ରଦାୟ କ୍ଷୁବ୍ଧ ହେଲଭଳି ଜଣା ଯାଇଥିଲା ।

ନାଟକଟିର ମର୍ମ ବର୍ତ୍ତମାନ ପ୍ରକୃତ ଭାବରେ ଗ୍ରହଣକରି ରସାସ୍ୱାଦନ କରିବେ ବୋଲି ମୋ'ର ବିଶ୍ୱାସ ।

'ଲାଳସା' (**passion**) ମାନବପକ୍ଷରେ ଇଞ୍ଜିନର ଶକ୍ତି (**power**) ଭଳି ମୁଁ ମନେ କରେଁ । ଯେଉଁ ମନୁଷ୍ୟ ଯେତକି ଅଦ୍ଭୁତ କାର୍ଯ୍ୟ କରିଛି, ତା'ର ସେତକି **passion** ମୂଳରେ ଅଛିବୋଲି ମୋ'ର ଧାରଣା । 'ବିଶ୍ୱ-ପ୍ରେମିକତା'ର ମୂଳରେ ଯେ 'ଲାଳସା' ତୀବ୍ରଭାବେ ବିଦ୍ୟମାନ ଏହା କଦାପି ଅସ୍ୱୀକାର କରି ପାରିବ ନାହିଁ । 'ପଦ୍ମ'ର ଜନ୍ମ 'ପଙ୍କ' ମଧ୍ୟରେ—'ଉଦ୍ଭିଦ'ର ସାରବତ୍ତା ଓ ମାଧୁର୍ଯ୍ୟ ନିର୍ଭର କରେ ମୂଳରେ ଦେବା 'ସାର' ଉପରେ । 'କାମୁକ', 'ଲମ୍ପଟ', 'ଉଚ୍ଛୃଙ୍ଖଳ' ଯେଉଁମାନେ, ସେହିମାନେହିଁ ଜାଣନ୍ତି ସିନା 'ଶୃଙ୍ଖଳା', 'ସଂଯମ' ଓ 'ପ୍ରେମ'ର ପ୍ରକୃତ ମାଧୁରୀ ଓ ମହତ୍ତ୍ୱ କଣ ଏବଂ ତାହାର ପ୍ରକୃତ ମର୍ଯ୍ୟାଦା ରକ୍ଷାକରିବାକୁ ? 'ସ୍ୱାର୍ଥପରହିଁ' ଜାଣେ 'ତ୍ୟାଗ'ର ମହତ୍ତ୍ୱ ଓ ମର୍ଯ୍ୟାଦା—ଏବଂ ସେ ନିଜେ ମଧ୍ୟ ଦିନେ ଆଦର୍ଶ ତ୍ୟାଗୀ ହୋଇ ଜଗତକୁ ସ୍ତମ୍ଭିତ କରିପାରେ ।

ଏହି ନାଟକଟିର ଅନ୍ତର୍ନିହିତ ନୀତି (**principle**) ଏହାହିଁ ବୋଧହୁଏ ।

ଏଥିର ସନ୍ନିବେଶିତ ଗୀତ ଗୁଡ଼ିକ ନୂତନ ରଚିତ ।

ପରିଶେଷରେ ମୋର ପରମବନ୍ଧୁ ଜମିଦାର ଓ ଅନରେରି ମାଜିଷ୍ଟ୍ରେଟ ବାବୁ ବିମଳାଚରଣ ରାୟ-ଚୌଧୁରିଙ୍କୁ ମୋ'ର ଆନ୍ତରିକ ଧନ୍ୟବାଦ । ସେ ସ୍ୱତଃ ପ୍ରବୃତ୍ତ ହୋଇ ଏହାର ପ୍ରଥମ ସଂସ୍କରଣର ପ୍ରକାଶଭାର ଗ୍ରହଣ ନ କରିଥିଲେ ଏହା ବୋଧହୁଏ ଏହିପରି ଅପ୍ରକାଶିତ ଓ ହତାଦର ଅବସ୍ଥାରେ ଅନିର୍ଦ୍ଦିଷ୍ଟ କାଳ ପଡ଼ି ରହି ଥାନ୍ତା । ଇତି ।

**ଅଶ୍ୱିନୀ**

ରଚନା—୧୯୨୭ । ପ୍ରଥମପ୍ରକାଶ—୧୯୩୨

---

## —ଚରିତ୍ର ଲିପି—

ପ୍ରତାପରୁଦ୍ର ଦେବ ... ଓଡ଼ିଶାର ରାଜା
ଗୋବିନ୍ଦବିଦ୍ୟାଧର ... ଓଡ଼ିଶାର ମନ୍ତ୍ରୀ (ପ୍ରଥମେ ସେନାପତି)
ଅନନ୍ତସିଂହ ... ଓଡ଼ିଶାର ସେନାପତି
ମୁକୁନ୍ଦ ... ଓଡ଼ିଶାର ସୈନିକ
ସମରେନ୍ଦ୍ର ଓଡ଼ିଶାର ସହକାରୀ ସେନାପତି
ଜଗନ୍ନାଥଦାଶ ... ଭାଗବତ ରଚୟିତା
କୃଷ୍ଣରାୟ ... ଭିଜାନଗରର ରାଜା
ଖାଁ ସାହେବ, ମୋସାହେବ, ସେନାପତି ଇତ୍ୟାଦି,
କୃଷ୍ଣା ... ଓଡ଼ିଶାର ରାଜଜେମା
ଚମ୍ପା ... କୃଷ୍ଣାର ପ୍ରଧାନା ସହଚରୀ
ମୁକ୍ତା (ଉନ୍ମାଦନୀ) ... ମୁକୁନ୍ଦର ବାଲ୍ୟ ସହଚରୀ

ସଖୀଗଣ, ନର୍ତ୍ତକୀ ଇତ୍ୟାଦି ।

---

# ଉତ୍କଳ-ଗୌରବ

---

## ପ୍ରଥମ ଅଙ୍କ

**ଦୃଶ୍ୟ :**—ବାରବାଟୀ ଦୁର୍ଗ ରାଜଭବନ ସଂଲଗ୍ନ ସଭାଗୃହ ।

[ ଏକ ଦିଗରୁ ମୁକୁନ୍ଦ ଓ ଅନ୍ୟ ଦିଗରୁ ସମରେନ୍ଦ୍ର ପ୍ରବେଶ ପୂର୍ବକ ପରସ୍ପରକୁ ଅତିକ୍ରମ କରି ଯିବାବେଳେ ସମରେନ୍ଦ୍ର ମୁକୁନ୍ଦକୁ ଧକ୍କା ଦେଲେ ]

ମୁକୁନ୍ଦ—( କ୍ରୁଦ୍ଧ ସିଂହାବଲୋକନରେ ଫେରି ଚାହିଁ ପ୍ରସ୍ଥାନୋଦ୍ୟତ )

ସମରେନ୍ଦ୍ର—ଜଳଙ୍କା ନା ଅନ୍ଧ ?

ମୁକୁନ୍ଦ—ଯା, ଯା—ମାନେ ମାନେ ଚାଲିଯା—

ସମରେନ୍ଦ୍ର—କ'ଣ ?—ଧକ୍କା ଦେଇ 'ମାନେ ମାନେ ଚାଲିଯା'—

ମୁକୁନ୍ଦ—ଭଲରେ କହୁଚି ଭାଇ, କଣ୍ଟା ବାଡ଼ରେ ଲଙ୍ଗା ପକାଇ କଜିଆ କର ନାହିଁ—

ସମରେନ୍ଦ୍ର—କି ? ମୁଁ 'କଣ୍ଟାବାଡ଼ରେ ଲଙ୍ଗା ପକାଇ କଜିଆଁ' କରୁଛି ? ଅଇଲୁ ମୋ' ସା'ନ୍ତ ପାଖକୁ—

ମୁକୁନ୍ଦ—ତୋ' ସା'ନ୍ତ ? ଅନନ୍ତ ସିଂହ ?—ସେହି ?—ଛାଡ଼—ନମସ୍କାର, ଭାଇ—ଯା, ତୋ' କାମକୁ ତୁ ଯା—ଛାମୁଙ୍କ ବିଜେ କରିବା ବେଳ ହୋଇ ଗଲାଣି ।

ସମରେନ୍ଦ୍ର—କି ରେ, ତୁ ତ ଭାରି ବଢ଼ି ବଢ଼ି କହି ଚାଲି ଯାଉଛୁ—ମୋ' ସା'ନ୍ତ 'ଖଣ୍ଡ' ?—ସେନାପତି ଅନନ୍ତ ସିଂହ 'ଜୁଆଚୋର' ?—

[ ଅନନ୍ତ ସିଂହଙ୍କ ପ୍ରବେଶ ]

ଅନନ୍ତ—କିଏ 'ଜୁଆଚୋର', ସମରେନ୍ଦ୍ର ?

ସମରେନ୍ଦ୍ର—ସେନାପତି ଅନନ୍ତ ସିଂହ—ନିଜ କାନରେ ଏଥର ଶୁଣନ୍ତୁ—

ମୁକୁନ୍ଦ—ମିଥ୍ୟା କଥା ।

ଅନନ୍ତ—ଚୁପ୍ କର, ନରାଧମ—ମନେ କରିଚୁ ପରା ମୁଁ କିଛି ଶୁଣି ନାହିଁ—ମୁକୁନ୍ଦ । ସେଦିନ ଆଉ ନାହିଁ—ବର୍ତ୍ତମାନ ମୁଁ ଭାଗ୍ୟଚକ୍ରର ଶୀର୍ଷଦେଶରେ—ତୋ'ର ପ୍ରଭୁର ଆସନରେ ।—ଅବଶ୍ୟ ହେଲେ—

ମୁକୁନ୍ଦ—'ପଦସେବା କରାଇ ପାରେ' ଏହି କଥା ତ ? କିନ୍ତୁ କର୍ତ୍ତବ୍ୟଚାଳିତ ଏ'ଦାସ ହାସ୍ୟମୁଖରେ ତତୋଧିକ ନୀଚ କାର୍ଯ୍ୟ କରିବାକୁ ପ୍ରସ୍ତୁତ ।

ଅନନ୍ତ—ତେବେ କେଉଁ କର୍ତ୍ତବ୍ୟଚାଳନାରେ ପ୍ରଭୁର ଅବମାନନା—

ମୁକୁନ୍ଦ—କରନାହିଁ ମୁକୁନ୍ଦ, ଅନ—( ଜିହ୍ୱାଦଂଶନ ପୂର୍ବକ ) ନା, ସେନାପତେ—କରିଚି ତୁମ୍ଭର—ନା, ନା, ଆପଣଙ୍କର—

ଅନନ୍ତ—କି, ମୋ' ସମ୍ମୁଖରେ ମୋ'ର ଅବମାନନା—ଊର୍ଦ୍ଧ୍ୱତନ କର୍ମଚାରୀ ମୁହିଁ, କାହିଁ ଆଦର ଅଭ୍ୟର୍ଥନାରେ ଆପ୍ୟାୟିତ ହେଉଥାନ୍ତି—ନା, ଇତର-ବ୍ୟବହାରରେ ଅପମାନିତ ହେଉଚି—ଜାଣୁ, କ'ଣ କରିପାରେ ସେନାପତି ମୁଁ ?—

ସମରେନ୍ଦ୍ର—ଥରେ କାମରେ ଦେଖାଇ ଦିଅନ୍ତୁ ନା, ସେନାପତେ !

ମୁକୁନ୍ଦ—କୁକ୍କୁର—

ସମରେନ୍ଦ୍ର—( ଉପୃରେ ଘଞ୍ଚି ଯାଇ ) ଶୁଣନ୍ତୁ, ଶୁଣନ୍ତୁ, ସା'ନ୍ତେ—

ଅନନ୍ତ—ଏତେ ସ୍ପର୍ଦ୍ଧା ତୋ'ର !—ମୋ ସମ୍ମୁଖରେ ମୋ'ର ରକ୍ଷୀକୁ ପଦାଘାତ !—ମୋତେ ପଦାଘାତ !—ଆଦେଶ ମୋ'ର, ଏହିକ୍ଷଣି ଅସ୍ତ୍ର ତୋ'ର ପରିତ୍ୟାଗ କର—!

ସମରେନ୍ଦ୍ର—'ଏହିକ୍ଷଣି'—

ମୁକୁନ୍ଦ—ଏ' ଆଦେଶ ପାଳନ କରିବାକୁ ମୁଁ ଏକାନ୍ତ ଅକ୍ଷମ—

ଅନନ୍ତ—'ଅକ୍ଷମ' — ମୋ'ର ଆଦେଶ ପାଳନ କରିବାକୁ—

ମୁକୁନ୍ଦ—ଅନନ୍ତ ସିଂହଙ୍କ ଆଦେଶ ପାଳନ କରିବାକୁ—

ଅନନ୍ତ—ଏ' ସେନାପତିର ଆଦେଶ—

ସମରେନ୍ଦ୍ର—'ସେନାପତିର'—

ମୁକୁନ୍ଦ—ଅଭିଯୋଗ ?

ଅନନ୍ତ—ସାମାନ୍ୟ ଜଣେ ସୈନିକକୁ କୈଫିୟତ୍ ଦେବାକୁ ସହସ୍ର ସହସ୍ର ସେନାର ଭାଗ୍ୟ-ବିଧାତା ସେନାପତି କେବେ ବାଧ୍ୟ ନୁହେଁ—

ସମରେନ୍ଦ୍ର—'ବାଧ୍ୟ ନୁହେଁ'—

ମୁକୁନ୍ଦ—ଦୋଷ ହୋଇଚି—( ଅସ୍ତ୍ର ତ୍ୟାଗ ) କିନ୍ତୁ ଶୀଘ୍ର ଅନ—ନା, ସେନାପତେ, ମୋତେ ରାଜ-ସମ୍ମୁଖରେ ଉପସ୍ଥାପିତ କରିବାକୁ ହେବ—

ଅନନ୍ତ—ବନ୍ଦୀର ସେ ପରାମର୍ଶ ଦେବାର ଅଧିକାର ନାହିଁ ।

ସମରେନ୍ଦ୍ର—ଆଦୌ ନାହିଁ—

ମୁକୁନ୍ଦ—ରାଜନୀତିର ବି ନାହିଁ ?

ଅନନ୍ତ—ହାଃ ହାଃ ହାଃ—ବନ୍ଦୀ ପକ୍ଷେ ବର୍ତ୍ତମାନ ଏହା ଅନଧିକାର ଚର୍ଚ୍ଚା ନୁହେଁ କି ?

ସମରେନ୍ଦ୍ର—'ଅନଧିକାର ଚର୍ଚ୍ଚା'—

ମୁକୁନ୍ଦ—( କୌଣସିମତେ ଆତ୍ମସମ୍ବରଣ କରି ) ମା—ର୍ଜ—ନା—, ସେନାପତେ !

ସମରେନ୍ଦ୍ର—ସା'ନ୍ତେ—ଏ' ନରମା କଥାରେ କେବେ ନଇଁମି ଯିବେ ନାହିଁଟି—ଜାଣିଛନ୍ତି ତ କା'ର ଚେଲା

ଏ'—ସେହି ସୌମ୍ୟମୂର୍ତ୍ତି, ଶଳେଇ ବୈଷ୍ଣବ ଗୋବିନ୍ଦ—

ମୁକୁନ୍ଦ—( ଅସ୍ତ୍ର ବାହାର କରି ) ପାଷଣ୍ଡ ! ବର୍ବର ! —( ସମରେନ୍ଦ୍ର ପ୍ରତି ଉତ୍ତୋଳନ କଲେ )

ସମରେନ୍ଦ୍ର—( ଭୟରେ କମ୍ପିତ ହେଲା )

ଅନନ୍ତ—( ମୁକୁନ୍ଦର ଅସ୍ତ୍ରାଘାତକୁ ଅସ୍ତ୍ରଦ୍ୱାରା ବାଧା-ଦେଇ ) ସାବଧାନ !—

[ ଏତିକିବେଳେ ଗୋବିନ୍ଦ ବେଗେ ଉପସ୍ଥିତ ହେଲେ]

ଗୋବିନ୍ଦ—କ୍ଷାନ୍ତହୁଅ !—( ବିରତ କରାଇଲେ ) କଥା କ'ଣ ଅନନ୍ତ ?

ସମରେନ୍ଦ୍ର—( ପଳାୟନପର ହୋଇ, ପଳାଇ ନ ପାରି, ହତାଶଭାବେ ଠିଆ ହେଲା ଯେମନ୍ତ )

ଅନନ୍ତ—( ବ୍ୟଙ୍ଗଭାବେ ) ଆପଣଙ୍କର ଶିଷ୍ୟ—କର୍ମଗୁରୁ ମହାଶୟଙ୍କ ପଗୁରୁ—

ଗୋବିନ୍ଦ—କ୍ରୋଧ ସମ୍ବରଣ କର, ଅନନ୍ତ !—ମୁକୁନ୍ଦ ! ( କ୍ରୁଦ୍ଧଭାବେ ଚାହିଁଲେ ମୁକୁନ୍ଦ ଆଡ଼େ )

ମୁକୁନ୍ଦ—( ଏତେ କ୍ରୁଦ୍ଧ ହୋଇଥିଲେ ଯେ କଥା କହିବାକୁ ଅକ୍ଷମ ହେଲେ )

ଗୋବିନ୍ଦ—ଦେ ତୋ'ର ତରବାରି, ନରପିଶାଚ— ( ତରବାରି କାଢ଼ିନେଲେ )

ମୁକୁନ୍ଦ—ପ୍ର—( ତଥାପି କହି ପାରିଲେ ନାହିଁ )

ଗୋବିନ୍ଦ—ଉଃ—କ୍ରୋଧାବେଶରେ ଏ' ପର୍ଯ୍ୟନ୍ତ ବୁଦ୍ଧି କଣ୍ଠ ରୁଦ୍ଧ !—ବର୍ବର—( ଆହୁରି କ୍ରୁଦ୍ଧ ହେବାକୁ ଯାଇ ହଠାତ୍ ସ୍ନେହଜଡ଼ିତ କୋମଳସ୍ୱରେ ଡାକିଲେ ) ମୁକୁନ୍ଦ—

ମୁକୁନ୍ଦ—ପ୍ରଭୁ—ଦେବତା ମୋ'ର—( ଗୋବିନ୍ଦଙ୍କ ଚରଣଧାରଣ କଲେ )

ଗୋବିନ୍ଦ—ଧୈର୍ଯ୍ୟ—ଧୈର୍ଯ୍ୟ ମୁକୁନ୍ଦ ( ପିଠିରେ ହାତ ବୁଲାଇଲେ )

ମୁକୁନ୍ଦ—ଧୈର୍ଯ୍ୟ ! ଧୈର୍ଯ୍ୟ !—ଅଗ୍ନି-ଗୋଲକର ପ୍ରାଣଘାତୀ ଯନ୍ତ୍ରଣାଠାରୁ ଯେ ଅଧିକତର ଯନ୍ତ୍ରଣା ଅନୁଭବ କରୁଚି, ପ୍ରଭୁ—

ଗୋବିନ୍ଦ—ମୁକୁନ୍ଦ !—

ମୁକୁନ୍ଦ—ପ୍ରଭୁ ! ପ୍ରଭୁ ! ଏହି ବର୍ବର, ପାଷଣ୍ଡ ( ସମରେନ୍ଦ୍ରଙ୍କୁ ଦେଖାଇ ) ଆପଣଙ୍କୁ, ଦେବତାଙ୍କୁ ମୋ'ର—ଯା' ବୋଲ୍—

ସମରେନ୍ଦ୍ର—(ସଭୟେ ଅନନ୍ତର ପୃଷ୍ଠଦେଶରେ ଆପଣାକୁ ଲୁଚାଇବାକୁ ଯତ୍ନକଲା)

ଗୋବିନ୍ଦ—ଚୁପ୍, ଚୁପ୍—ତୋତେ ତ ମୁଁ ପଚାରି ନାହିଁ କହୁ;—ଆଚ୍ଛା, ଯାଅ, ବର୍ତ୍ତମାନ ଯେ ଯା'ର କାର୍ଯ୍ୟକୁ—

[ ମୁକୁନ୍ଦ ଓ ସମରେନ୍ଦ୍ର ଧୀରେ ଧୀରେ ପ୍ରସ୍ଥାନ କରୁଥିଲେ ]

ଅସ, ଅନନ୍ତ— (ଅନ୍ୟଦନଙ୍କ ପ୍ରସ୍ଥାନ କରୁଥିଲେ)

ଅନନ୍ତ—(ଯାଉ ଯାଉ) ଭାଇ ସା'ନ୍ତେ, କଥା କିଛି ନାହିଁ—ସମରେନ୍ଦ୍ର ଆଉ ମୁକୁନ୍ଦ ପରସ୍ପର ମଧ୍ୟରେ କ'ଣ କଥା କହା କହି ହେଉଥିଲେ—ଏହି ସମୟରେ ମୁଁ ଆସି ପହଁଚି ଯାଏ—ପହଁଚ ତ ଗଲି—ଯାଏଁ କେଉଁଆଡ଼େ—ବାପ୍‌ରେ ବାପ୍—ନଜରଟା ପଡ଼ିଚ ଯେମିତିକା ମୋ ଆଡ଼େ—ବାଘ ପରି ତ ସାଏଁକରି ଛୁଟିଆସି, ଲୁଦା ମାରି ଉପରେ ଏକାବେଳକେ ହାଜର—ଝଣାର୍ କରି ଅସ୍ତ୍ରଟା ବାହାର କରି—

ମୁକୁନ୍ଦ—( ଦ୍ରୁତବେଗେ ଫେରିପଡ଼ି ) ସତ୍ୟକଥା, ସେନାପତେ ?—ସତ୍ୟ ପାଳି ଦବାକରି ଅଦ୍ୟାପି ଉଦ୍ଧତ—ଅଦ୍ୟାପି ପୃଥିବୀ ସତ୍ୟେ ପ୍ରତିଷ୍ଠିତ—ମନୁଷ୍ୟର ସତ୍ୟବ୍ରତ ହୋଇଛି କି ଲୁପ୍ତ ?

ଗୋବିନ୍ଦ—ମୁକୁନ୍ଦ ! ( କ୍ରୁଦ୍ଧ ଦୃଷ୍ଟିରେ ଗ୍ରହିଁଲେ, ପ୍ରସ୍ଥାନେଙ୍ଗିତ କରି)

ମୁକୁନ୍ଦ—ପ୍ରଭୁ ! ( ବହୁକଷ୍ଟେ ଆତ୍ମସଂଯମପୂର୍ବକ ସେହି ଆଦେଶ ପାଳନ କରି, ଅଗ୍ରସର ହେଲେ )

ଗୋବିନ୍ଦ—ତା'ପର, ଅନନ୍ତ—

ଅନନ୍ତ—ତତ୍‌କ୍ଷଣାତ୍ ମୁଁ ଅସ୍ତ୍ରତ୍ୟାଗ କରିବାକୁ ଆଦେଶ କଲି—

ମୁକୁନ୍ଦ—(ହଠାତ୍ ଫେରିଗ୍ରହିଁ) ମିଥ୍ୟା କଥା—ମିଥ୍ୟା—

ଗୋବିନ୍ଦ—ପୁଣି—

ମୁକୁନ୍ଦ—( ଧୈର୍ଯ୍ୟ ଧରି ନ ପାରି ) ପ୍ରଭୁ—ପ୍ରଭୁ—ମୋତେ ଅସ୍ତ୍ରାଘାତ କରନ୍ତୁ—ଖଣ୍ଡ ଖଣ୍ଡ କରି କାଟି କୁକ୍‌କୁର ଶୃଗାଳ ସମ୍ମୁଖରେ ନିକ୍ଷେପ କରନ୍ତୁ, ତଥାପି ମୋ'ର ଯନ୍ତ୍ରଣା ନାହିଁ—ଶୋଚନା ନାହିଁ—ସାନନ୍ଦେ ସମସ୍ତ ସହ୍ୟ କରିବାକୁ ପ୍ରସ୍ତୁତ;—ମାତ୍ର ମିଥ୍ୟାବାଦିତା, କପଟତା, ଭଲେ ମୁଣ୍ଡା ସହ୍ୟ କରି ପାରିବି ନାହିଁ, ପ୍ରଭୁ—ଭଲେ ମୁଣ୍ଡା—

ଗୋବିନ୍ଦ—ସେନାପତି ତୋତେ ଅସ୍ତ୍ରତ୍ୟାଗ କରିବାକୁ ଆଦେଶ କରିଥିଲେ ?—

ମୁକୁନ୍ଦ—କରିଥିଲେ—ସେ ଆଦେଶ 'ସେନାପତି'ର ଆଦେଶ ବୋଲି ବିନା ବାକ୍ୟବ୍ୟୟରେ ମଧ୍ୟ ପ୍ରତିପାଳନ କରିଥିଲି ।

ଗୋବିନ୍ଦ—ତେବେ କା' ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳିତ ହେବାକୁ ଦେଖିଥିଲି ?—

ମୁକୁନ୍ଦ—ଏହି ବର୍ବରଟାର ବିରୁଦ୍ଧରେ—(ସମରେନ୍ଦ୍ରଙ୍କୁ ଦେଖାଇ ଦେଲେ)

ସମରେନ୍ଦ୍ର—ଏଁ—(ଭୟରେ ଚମକି ଉଠି ଚର୍ତ୍ତ୍ୱନ୍ୱେଷଣ କଲା ପରି)

ଅନନ୍ତ—ପ୍ରକାରାନ୍ତରେ ମୋ'ର ବିରୁଦ୍ଧରେ ନୁହେଁ କି, ଭାଇ ସା'ନ୍ତେ ?

ସମରେନ୍ଦ୍ର—( ଆଶ୍ରୟ ପାଇଲା ପରି, ଅନନ୍ତ ପ୍ରତି ଅନୁଚ୍ଚସ୍ୱରରେ ) ସେହି କଥା—ସେହି କଥାଟି, ମୋ' ସା'ନ୍ତେ—

ଗୋବିନ୍ଦ—( କ'ଣ ଗୋଟାଏ ଦୁରଭିସନ୍ଧିର ଗନ୍ଧ ଯେମନ୍ତ ଆଘ୍ରାଣ କରି, ମୁକୁନ୍ଦ ଆଡ଼େ ଗ୍ରହିଁ ପଚାରିଲେ ) କାରଣ ?

ମୁକୁନ୍ଦ—ସେ ଆପଣଙ୍କୁ କୁତ୍ସିତ ଭାଷାରେ—

ସମରେନ୍ଦ୍ର—(ସଭୟେ) ଏଁ, ଏଁ—କେତେବେଳେ—କେତେବେଳେ—

ମୁକୁନ୍ଦ—(ଅଧିକ କ'ଣ କହିବାକୁ ଯାଉଥିଲେ)

ଗୋବିନ୍ଦ—ଚୁପ୍—(ବୋଲି ବାଧାଦେଲେ)]

ସମରେନ୍ଦ୍ର—( ଲମ୍ବ ହୋଇ ଗୋଡ଼ତଳେ ପଡ଼ି ) ଦୋହାଇ—ଦୋହାଇ, ବଡ଼ ସେନାପତେ—'କୁତ୍ସିତ' ଛାଡ଼—କୁ-କୁ—କୁଭାଷା ବି ଏଁ ପାଟିରୁ—

ଗୋବିନ୍ଦ—( ସସ୍ମିତେ ) ଉଠ, ଉଠ, ସମରେନ୍ଦ୍ର—
(ମୁକୁନ୍ଦ ପ୍ରତି) ମାନ୍ଦ ତୁ ଦଣ୍ଡ ଦେବାକୁ କିଏ ?

ସମରେନ୍ଦ୍ର—ପଚାରିବେଟି—ସେହି କଥା ପଚାରିବେଟି, ବଡ଼ ସା'ନ୍ତେ—

ଅନନ୍ତ—ତେଜିତଙ୍କ ନୁହେଁ—ମୋ' ସମ୍ମୁଖରେ, ସେନାପତି ସମ୍ମୁଖରେ, ଜଣେ ସାମାନ୍ୟ କର୍ମ୍ମଗୃହୀ ହୋଇ ଏପରି ଔଦ୍ଧତ୍ୟ ପ୍ରକାଶ—

ସମରେନ୍ଦ୍ର—ଅସହ୍ୟ, ନିତାନ୍ତ ଅସ—

ଗୋବିନ୍ଦ—ଚୁପ୍ କର, ପାଜି !

ସମରେନ୍ଦ୍ର—ଏଁ—ଏଁ—ଚୁପ୍, ଚୁପ୍—ଏକଦମ୍ ଚୁପ୍
(ଭୟରେ ଦୂରକୁ ଘୁଞ୍ଚିଗଲା)

ଗୋବିନ୍ଦ—ମୁକୁନ୍ଦ ! ଅନ୍ୟ ଦୋଷ ତୋ'ର ଥାଉ ବା ନ ଥାଉ, ଏହି ଔଦ୍ଧତ୍ୟହିଁ ତୋ'ର ଗୁରୁତର ଦୋଷ—ଏକାନ୍ତ ଅମାର୍ଜ୍ଜନୀୟ । କିଏ କ'ଣ କହିଲା, କଲା, ତୋ'ର ଊର୍ଦ୍ଧ୍ୱତନ କର୍ମ୍ମଗୃହୀ ନିକଟରେ ଅଭିଯୋଗ କରିବା ଉଚିତ ଥିଲା—ସେ ବିଚାର କରି—

ସମରେନ୍ଦ୍ର—ଦଣ୍ଡ ଦେଇ ଥାନ୍ତେ—

ଗୋବିନ୍ଦ—(ସମରେନ୍ଦ୍ରକୁ କ୍ରୁଦ୍ଧନେତ୍ରରେ ଚାହିଁଲେ)

ସମରେନ୍ଦ୍ର—(କାନ ମୋଡ଼ି ଗାଲରେ ଚଟକଣି ଖାଇ ପାଚିଭୁଜ ଠିଆହେଲା)

ମୁକୁନ୍ଦ—ଦୋଷ ହୋଇଛି—କ୍ଷମା କରନ୍ତୁ, ପ୍ରଭୁ—
(କ୍ଷମାପ୍ରାର୍ଥନା କରିବାକୁ ଯାଉଥିଲେ)

ସମରେନ୍ଦ୍ର—(ସଗର୍ବେ ଏଥର ଠିଆ ହୋଇ ମୁକୁନ୍ଦ ଆଡ଼େ ଚାହିଁଲା)

ଗୋବିନ୍ଦ—( ବାଧାଦେଇ ) ନା, ନା, ଯା ତୋ'ର ଊର୍ଦ୍ଧ୍ୱତନ କର୍ମ୍ମଗୃହୀ ସେନାପତିଙ୍କ ଚରଣ ଧରି, ଆଗେ କ୍ଷମା ମାଗି ନେ—

[ମୁକୁନ୍ଦ ଆହତଫଣୀ ପରି ଫଣା ବିସ୍ତାର କଲେ, ମାତ୍ର ମନ୍ତ୍ରମୁଗ୍ଧବତ୍ ତତ୍କ୍ଷଣାତ୍ ଅନନ୍ତ ଆଡ଼େ ନତମସ୍ତକରେ ଅଗ୍ରସର ହେଲେ]

ସମରେନ୍ଦ୍ର—(ସ୍ୱଗତ) ଯୁଆପରେ ମୋର ହାତଧରି କ୍ଷମା ମାଗିବାକୁ କହିବେ ନା କଣ ? ( ଆନନ୍ଦିତ ହେବାକୁ ଯାଇ, ହଠାତ୍ ) ନାହିଁରେ ବାବା—'ଅତ ଦରକାର ନାହିଁ ସରକାରଙ୍କୁ'—ଏତିକିରେ କୌଣସିମତେ ଖସି ଗଲେଇ ମଙ୍ଗଳ—

ଅନନ୍ତ—(ମୁକୁନ୍ଦ ଚରଣ ଧରିବାକୁ ଯା'ନ୍ତେ, କେଉଁ ସୁହୃଦ୍‌ଭାବରେ ଅନୁପ୍ରାଣିତ ହୋଇ ପରି, ଆଲିଙ୍ଗନ କରି, କ'ଣ ଯେ କହିବାକୁ ଯାଉଥିଲେ, ମାତ୍ର ନିରସ୍ତ ହୋଇ ଆପଣାକୁ ବିଚ୍ଛିନ୍ନ କରି ନେଇ, କହିଲେ ) ଆଉ ଦିନେ ଏ'ପରି ଗର୍ହିତ ଆଚରଣ ଯେମନ୍ତ ଦୃଷ୍ଟ ନ ହୁଏ, ମୁକୁନ୍ଦ !

ମୁକୁନ୍ଦ—ଓଃ-(କଟା ଘା'ରେ ଲୁଣଛିଟାର ଜ୍ୱାଳା ବୋଧ କରୁଁ କରୁଁ ସ୍ୱ-ସ୍ଥାନରେ ଆସି ଠିଆ ହେଲେ )

ଗୋବିନ୍ଦ—ସମରେନ୍ଦ୍ର !

ସମରେନ୍ଦ୍ର—( ସ୍ୱଗତ ) ଯା' ଭାବିଥିଲି—( ଭୟ ଓ ଗର୍ବରେ ଅଭିଭୂତ ହେଉଥିଲା )

ଗୋବିନ୍ଦ—ଅପରକୁ ସମ୍ମାନଦାନରେ ନିଜର ସମ୍ମାନ ବୃଦ୍ଧିପାଏ ସିନା—ମେଘ ସୂର୍ଯ୍ୟକୁ ଆବୃତ କରେ ସତ୍ୟ, କିନ୍ତୁ ପରକ୍ଷଣରେ ଦୀପ୍ତି ଓ ତେଜ ତା'ର ଦ୍ୱିଗୁଣିତ କରିଦିଏ ନାହିଁ କି ? ଯାଅ, ଭାଇ ଭାଇରେ ମିଳି ଠିଆ ହୁଅ—

[ ସମରେନ୍ଦ୍ର ସଭୟେ, କିନ୍ତୁ ବାଧ୍ୟକ ଅଗ୍ରହରେ ଏବଂ ମୁକୁନ୍ଦ ଅତ୍ୟନ୍ତ ଅନିଚ୍ଛା ସତ୍ତ୍ୱେ, ପରସ୍ପରକୁ ଆଲିଙ୍ଗନ କଲେ ]

ଏହି ମିଳନହିଁ ପ୍ରଧାନ ଦୁର୍ଗ, ଭାଇମାନେ—ଜଗତରେ ଏପରି ଶକ୍ତି ନାହିଁ, ଏପରି ଅସ୍ତ୍ର ନାହିଁ, ଯାହା ଏ' ଦୁର୍ଗର ଅଭେଦ୍ୟ ପ୍ରାଚୀରକୁ ସୂଚ୍ୟଗ୍ର ପରିମାଣ ସୁଦ୍ଧା ଭେଦ କରିବାକୁ କ୍ଷମ ହେବ । ଆସ, ଭାଇ—ଆମ୍ଭେମାନେ ସମସ୍ତ ବାଦ ବିସମ୍ବାଦ ଭୁଲିଯାଇ—ବ୍ୟକ୍ତିଗତ ସମସ୍ତ ସ୍ୱାର୍ଥ, ପାର୍ଥକ୍ୟ ଆମ୍ଭର ଜନ୍ମଭୂମିର କଲ୍ୟାଣଯଜ୍ଞରେ ଆହୁତି ଦେଇ—ସମ-ବଳରେ, ସମ-ପ୍ରାଣରେ, ସ୍ୱ-ଜାତିର କୀର୍ତ୍ତିସ୍ତମ୍ଭ ଆହୁରି ସମୁନ୍ନତ ଓ ସୁଦୃଢ଼ କରିବାକୁ ଯତ୍ନଶୀଳ ହେବା—ନା, ନା—ଉତ୍ତରୋତ୍ତର ତା'ର ବୃଦ୍ଧି ଓ ପ୍ରସାରର ଚେଷ୍ଟା କରିବା । କ୍ଷଣପୂର୍ବେ, ବଙ୍ଗଳାର ଗର୍ବିତ ନବାବ ହୋସେନ୍ ଖାଁ ଏହି ସ୍ତମ୍ଭବିରୁଦ୍ଧରେ ପ୍ରତିହତ

ହୋଇ ଅବନତମସ୍ତକରେ ଯେଉଁପରି ଫେରି ଯାଇଛନ୍ତି, ବିଦେଶୀ ସମସ୍ତ ଶତ୍ରୁ ସେହିପରି ପ୍ରତିହତ ହୋଇ—ନା, ନା ତା'ର ସୁଦୂର ପ୍ରସାରିତ ବିଜୟବୈଜୟନ୍ତୀ ଅବଲୋକନ ମାତ୍ରକେ ସଚକିତେ ଫେରି ଯା'ନ୍ତୁ—ଉତ୍କଳର ଇତିହାସ ଚିରକାଳ ଏହି ଗୌରବ ବକ୍ଷରେ ଧାରଣ କରି, ବିଶ୍ୱଜଗତରେ ଅକ୍ଷୟ ଖ୍ୟାତି ଅର୍ଜନ କରୁ।—ଜୟ ଗଜପତି ପ୍ରତାପରୁଦ୍ର ଦେବଙ୍କର ଜୟ।

ସମସ୍ତେ—ଜୟ ଗଜପତି ପ୍ରତାପରୁଦ୍ର ଦେବଙ୍କର ଜୟ।

(ନେପଥ୍ୟେ ବାଦ୍ୟଧ୍ୱନି)

ଗୋବିନ୍ଦ—ଏହି ଯେ ମହାରାଜ ବିଜେ କଲେଣି। ଯାଅ, ଯେ ଯା'ର କାର୍ଯ୍ୟକୁ ସମରେନ୍ଦ୍ର, ମୁକୁନ୍ଦ।

(ସମସ୍ତଙ୍କର ପ୍ରସ୍ଥାନ)

[ ବାଦ୍ୟଧ୍ୱନି କ୍ରମେ ପ୍ରତାପରୁଦ୍ରଦେବ ମହା ସମାରୋହରେ ସଭାସଦ୍‌ବର୍ଗ, ଗୋବିନ୍ଦ, ଅନନ୍ତ, ମୁକୁନ୍ଦ, ସମରେନ୍ଦ୍ର ଓ ଅନ୍ୟାନ୍ୟରକ୍ଷିଗଣ ସହ ପ୍ରବେଶ କଲେ ଓ ଯଥାସ୍ଥାନ ଅଧିକାର କଲେ। ସମରେନ୍ଦ୍ର ଓ ମୁକୁନ୍ଦ ଯଥାକ୍ରମେ ଅନନ୍ତ ଓ ଗୋବିନ୍ଦ ପାର୍ଶ୍ୱରେ ଠିଆ ହେଲେ। ବନ୍ଦୀଗଣ ପ୍ରବେଶ କଲେ ବନ୍ଦନା-ଗୀତି ଗାଇ ]

ବନ୍ଦୀଗଣ— ଗୀତ

ଜୟ ଶ୍ରୀ ପ୍ରତାପ। ଜୟ ରୁଦ୍ର(ପ୍ର)ତାପ।
ଜୟ, ଜୟ, ଉତ୍କଳ-ଭୂପ।
ଉତ୍କଳ-ଗଗନ ଛୁରିତ କିରଣ—
ଜ୍ୟୋତିର୍ମୟ ଭାସ୍କର-ରୂପ।
ଅରାତି ତିମିର ଅସି ଝଲକରେ—
ପଳାଇଛି ଦୂରେ ସଭୟ ଅନ୍ତରେ;
ପୁଲକେ ପୁଲକେ ଭରିଛି ମେଦିନୀ
ମଙ୍ଗଳର ଉଠଇ ଧୂପ।
ନବ ନବ ସ୍ୱରେ, ରାଗିଣୀ, ଝଙ୍କାରେ—
ଖେଳେ ବାଣୀ-ତା'ର ତବ ପ୍ରସାଦରେ;
ଭକ୍ତି-ଭାଗୀରଥୀ ବୁହାଇ ଅନ୍ତରେ
ଧରିଅଛ ଅମର-ରୂପ।

(ପ୍ରସ୍ଥାନକଲେ)

ପ୍ରତାପରୁଦ୍ର—ସଭାସଦ୍‌ବର୍ଗ। ଆଜ ଭାରି ଆନନ୍ଦର ଦିନ—ଶ୍ରୀ ଜଗନ୍ନାଥ ଦେବଙ୍କ କୃପାରୁ ଆମ୍ଭେମାନେ ଗୋଟାଏ ପ୍ରବଳ-ପରାକ୍ରାନ୍ତ ଶତ୍ରୁକୁ ଦମନ କରିବାକୁ କ୍ଷମ ହୋଇଛୁଁ—ହୋସେନ୍ ଖାଁ ଚିରକାଳ ସକାଶେ ଜାଣି ଯାଇଛି, ଓଡ଼ିଆ ଜାତି ଯେ-ସେ ଜାତି ନୁହେଁ, ଗୋଟାଏ ଦୁର୍ଲଙ୍ଘ୍ୟ-ହିମାଚଳ—ଓଡ଼ିଆର ରକ୍ତ ଉଷ୍ଣ-ବୈତରଣୀ—।

ସମସ୍ତେ—ଜୟ ରୁଦ୍ର-ପ୍ରତାପ ପ୍ରତାପରୁଦ୍ର ଦେବଙ୍କର ଜୟ।

ପ୍ରତାପ—ଆଜ ବିଜୟୋତ୍ସବ ଲାଗି ଏ' ଯେଉଁ ସଭା ଆହୂତ ହୋଇଛି, ଏହାର ଉଦ୍ଦେଶ୍ୟ ଯେ କେବଳ ଜୟୋଲ୍ଲାସ ପ୍ରକାଶ ପୂର୍ବକ ତୁଚ୍ଛ ଆମୋଦ-ପ୍ରମୋଦରେ ରତହେବା, ତାହା ନୁହେଁ—ସେଥି ସଙ୍ଗେ ସଙ୍ଗେ ଯେଉଁ ବୀରମାନଙ୍କର ପ୍ରାଣପାତରେ ବା ପ୍ରାଣପଣ ଉଦ୍ୟମ ଓ ବିବିଧ ସମର କୌଶଳରେ, ଉତ୍କଳରେ ବିଜୟଲକ୍ଷ୍ମୀ ଆଜ ବରିତା ହୋଇଛନ୍ତି, ସେମାନଙ୍କୁହିଁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ ଓ ପୁରସ୍କାର ପ୍ରଦାନ ପୂର୍ବକ ଆପଣା ଆପଣାକୁ ଧନ୍ୟ ମଣିବା—ଦେଶ ଓ ଜାତିକୁ ଗୌରବରେ ମଣ୍ଡିତ କରିବା।

[ ସମସ୍ତେ ପରସ୍ପର ମଧ୍ୟରେ ମହାରାଜଙ୍କର ପ୍ରଶଂସା ଇଙ୍ଗିତରେ ପ୍ରକାଶ କରୁଥିଲେ ]

ସମସ୍ତେ—ଜୟ ଗଜପତି ପ୍ରତାପରୁଦ୍ରଦେବଙ୍କର ଜୟ।

ପ୍ରତାପ—ଗୋବିନ୍ଦ। ସର୍ବାଗ୍ରେ ମୁଁ ତୁମ୍ଭର ପ୍ରଶଂସା ନ କରି ରହିପାରୁ ନାହିଁ—ତୁମ୍ଭର ଅଦ୍ଭୁତ, କର୍ତ୍ତବ୍ୟନିଷ୍ଠା, ଧୈର୍ଯ୍ୟ ଓ ଜାରଭମାନଙ୍କରେ ମୁଁ ମୁଗ୍ଧ ହୋଇଛି—ଆଜଠାରୁ ତୁମ୍ଭେ ଶାରଙ୍ଗଗଡ଼ର ଅଧିନାୟକ ପଦରେ ବରିତ ହେଲ—ସେଠାକାର ସମସ୍ତ ରାଜକାର୍ଯ୍ୟ ସ୍ୱାଧୀନଭାବେ ପରିଚାଳନାର ଭାର ତୁମ୍ଭ କରେ ଅର୍ପିତ ହେଲା—ଏହି ନଅ ରାଜ-ନିଦର୍ଶନ—( ଗୋଟିଏ ଶିରସ୍ତ୍ରାଣ ପ୍ରଦାନ କଲେ )

ଗୋବିନ୍ଦ—( ଅବନତ ହୋଇ ) ଜାଣେ ସଦା ଏ' ଦାସ—ରାଜାର କାର୍ଯ୍ୟ, ନିଜର କାର୍ଯ୍ୟ—ଦେଶର

କଲ୍ୟାଣ, ନିଜର କଲ୍ୟାଣ ।—ଏ'ଦାସ ମଧ୍ୟରେ—ନା—ସମସ୍ତ ଦେଶବାସୀ ମଧ୍ୟରେ ଏହି ଭାବରହିଁ ଯେମନ୍ତ ଦିନୁଦିନ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ଉଠୁ, ଏହି ପୁରସ୍କାର ମାତ୍ର ମାଗୁଛି ଶ୍ରୀଚରଣେ—ଏହି ଆଶୀର୍ବାଦ ମାତ୍ର କରନ୍ତୁ ଏ' ଅଧୀନେ ।

ପ୍ରତାପ—ଧନ୍ୟ, ଧନ୍ୟ, ଗୋବିନ୍ଦ ! ଧନ୍ୟ ତୁମ୍ଭର ମହତ୍ ହୃଦୟକୁ—ଧନ୍ୟ ତୁମ୍ଭର ରାଜ-ଭକ୍ତି ଓ ଦେଶ-ଭକ୍ତିକୁ ।

ସମସ୍ତେ—ଜୟ ଶାରଙ୍ଗଗଡ଼ାଧିନାୟକ ଗୋବିନ୍ଦ-ବିଦ୍ୟାଧରଙ୍କ ଜୟ ।

ସମରେନ୍ଦ୍ର—(ଅତି ବିବର୍ଣ୍ଣଭାବେ ଅନନ୍ତକୁ ଅବଲୋକନ କରୁଥିଲେ )

ପ୍ରତାପ—ଅନନ୍ତ ସିଂହ ! ତୁମ୍ଭେ ଅତି ଅଳ୍ପ ବୟସରେ ଯେଉଁ ବୀରତ୍ୱ ଓ ଅଦମ୍ୟ ସାହସ ଦେଖାଇଚ, ସେଥିର ପୁରସ୍କାର ସ୍ୱରୂପ ତୁମ୍ଭଙ୍କୁ ସେହି ଯୁଦ୍ଧ-ସ୍ଥଳରେହିଁ ଅନ୍ୟତମ ସେନାପତି ପଦରେ ଉନ୍ନୀତ କରିଥିଲି—ବର୍ତ୍ତିମାନ ଗୁପ୍ତଚରମାନଙ୍କଠାରୁ ଶୁଣି ଆନନ୍ଦିତ ହେଲି, ତୁମ୍ଭର କୌଶଳରେ ହିଁ ମୋ'ର ଜୀବନରକ୍ଷା ହୋଇଛି । ସୁତରାଂ—( ହଠାତ୍ ରହିଗଲେ, ଗମ୍ଭୀରଭାବେ ମୁକୁନ୍ଦର ବିଚଳିତ ଭାବ ସମସ୍ତଙ୍କ ଅଲକ୍ଷ୍ୟେ ପର୍ଯ୍ୟବେକ୍ଷଣ କରିବାକୁ ପରି )

ସଭାସଦ୍‌ଗଣ—( ପ୍ରତାପଙ୍କ ଆଡ଼େ ଉଦ୍‌ଗ୍ରୀବ ନେତ୍ରରେ ଗୁହିଁ ରହିଥିଲେ )

ମୁକୁନ୍ଦ—(ଅନୁଚ୍ଚସ୍ୱରେ ଗୋବିନ୍ଦପ୍ରତି) 'ଜୀବନରକ୍ଷା'-କା'ର କୌଶଳରେ, ପ୍ରଭୁ ?

ଗୋବିନ୍ଦ—( ଭ୍ରୂକୁଞ୍ଚନଦ୍ୱାରା ତାଙ୍କୁ ନିରସ୍ତ କରିବାକୁ ଲାଗିଲେ )

ମୁକୁନ୍ଦ—( କିନ୍ତୁ ନିରସ୍ତ ନ ହୋଇ ଏକାନ୍ତେ ) ଆପଣଙ୍କର କୌଶଳରେ ନୁହେଁକି ?—ଆପଣଙ୍କର ଶିକ୍ଷାମତେ ମୁଁ ଶତ୍ରୁ ସଙ୍ଗେ ନାନା ଗୁପ୍ତ ଖେଳ, ଗୋଟାଏ ପର୍ବତ ପୃଷ୍ଠରେ ଅଟକାଇ ରଖିବାକୁ ଯିନା—

ଗୋବିନ୍ଦ—( ଏକାନ୍ତେ ) ଏଣେ କପଟ ଭଣ ଯେ ଘଟିଥିଲି, ତା' କ'ଣ ଗୁପ୍ତଚରଙ୍କଠାରୁ ତୋଠେ ବେଶୀ ଜଣା ?—

ମୁକୁନ୍ଦ—କିନ୍ତୁ—

ଗୋବିନ୍ଦ—(ଭ୍ରୂକୁଞ୍ଚନ କଲେ)

ମୁକୁନ୍ଦ—( ବାଧ୍ୟ ହୋଇ ନିରସ୍ତ ହେଲେ )

ପ୍ରତାପ—( ମନେ ମନେ ହସିଲେ ) ହଁ, ସୁତରାଂ ସେତିକି ପୁରସ୍କାର ଯଥେଷ୍ଟ ଜ୍ଞାନ ନ କରି, ଅଧିକତର କିଛି ଦେବାକୁ ମନସ୍ଥ କରିଛି—ଏଥିରେ ଯଦି କାହାର କୌଣସି ଆପତ୍ତି ଥାଏ—

ମୁକୁନ୍ଦ—(ଉତ୍ତେଜିତ ହୋଇ ଉଠିଲେ)

ପ୍ରତାପ—(ଲକ୍ଷ୍ୟ କରି ମୃଦୁ ମୃଦୁ ହସିଲେ )

ଗୋବିନ୍ଦ—(ମୁକୁନ୍ଦକୁ ନିରସ୍ତ କରି) ଗୁଣିର ଗୁଣର ପୁରସ୍କାର, ଅମ୍ଭ ସମସ୍ତଙ୍କର ପୁରସ୍କାର, ମହାରାଜ !

ପ୍ରତାପ—ସମସ୍ତଙ୍କର କ'ଣ ଏହି ଅଭିମତ ?

ମୁକୁନ୍ଦ—ମୁଁ କିନ୍ତୁ—( କହିବା ସମୟରେହିଁ ସମସ୍ତେ ପାଟିକରି ଉଠିଲେ )

ସମସ୍ତେ—ଜୟ ଗଜପତି ପ୍ରତାପରୁଦ୍ର ଦେବଙ୍କ ଜୟ !

ପ୍ରତାପ—ତେବେ ଆସ, ଅନନ୍ତସିଂହ, ( ନିଜର କଟିଦେଶରୁ ତରବାରୀ ଦାନ କରି ) ଆଜିଠାରୁ ମୁଁ ତୁମ୍ଭଙ୍କୁ ସାମନ୍ତ ଉପାଧିରେ ଭୂଷିତ କଲି—ଆଉ ସେହି ସମ୍ମାନସୂଚକ ଉପାଧିର ଯୋଗ୍ୟତିକ, ବିଶାଳ ଉତ୍କଳର ରାଜଧାନୀ କଟକର ଅଧିନାୟକତ୍ୱ ଅର୍ପଣ କଲି । ( ମୁକୁନ୍ଦ ଆଡ଼େ ବକ୍ରଦୃଷ୍ଟିରେ ଗୁହିଁଲେ )

ମୁକୁନ୍ଦ—ଓଃ—( ଆହତ ଫଣି ପରି ଫଣା ବିସ୍ତାର କରି ଅବନତ ହେଲେ )

ସମସ୍ତେ—( କେବଳ ମୁକୁନ୍ଦକୁ ଛାଡ଼ି ) ଜୟ କଟକର ଅଧିନାୟକ ସାମନ୍ତ ଅନନ୍ତ ସିଂହଙ୍କର ଜୟ !

ସମରେନ୍ଦ୍ର—( ଶ୍ଳେଷ ପୂର୍ଣ୍ଣ ନେତ୍ରରେ ମୁକୁନ୍ଦ ଆଡ଼େ ଗୁହିଁଲା )

ମୁକୁନ୍ଦ—( ଦୃଷ୍ଟି ବିନିମୟ ହୁଅନ୍ତେ ଅତ୍ୟଧିକ ଅପମାନବୋଧରେ ଦନ୍ତେ ଦନ୍ତ ଘର୍ଷଣ କଲେ ଯେମନ୍ତ )

ପ୍ରତାପ—( ସ୍ମିତମୁଖେ ) ମୁକୁନ୍ଦ ! ତୁମ୍ଭେ ଏହି ରଣରେ ତୁମ୍ଭର ପିତୃଙ୍କ ଅନୁକରଣ କରି ଯେଉଁ କର୍ତ୍ତବ୍ୟ-ନିଷ୍ଠା ଓ ନିଃସ୍ୱାର୍ଥ-ପରତା ଦେଖାଇଥିଲ, ସେଥିରେ ମୁଁ ପରମ ତୃପ୍ତି ଲଭ କରିଛି—ତା'ର ପୁରସ୍କାର ସ୍ୱରୂପ ତୁମ୍ଭଙ୍କୁ ମୁଁ ମୋ'ର ପ୍ରଧାନ ଦେହରକ୍ଷୀ ପଦ ପ୍ରଦାନ କଲି—ଏହି ନିଅ, ତା'ର ଯୋଗ୍ୟ ନିଦର୍ଶନ—( ମୁକୁନ୍ଦକୁ ଗୋଟିଏ କୋଷବଦ୍ଧ ଅସି ପ୍ରଦାନ କଲେ ) ବର୍ତ୍ତମାନ ଠାରୁ ଏହାର ସଦ୍ ବ୍ୟବହାର କରିପାର ।

ମୁକୁନ୍ଦ—( ଅତି ସାବଧାନରେ ଦୀର୍ଘ ନିଶ୍ୱାସ ଛାଡ଼ି ) ଯଥା ଆଜ୍ଞା, ମହାରାଜ !

[ପ୍ରତାପଚନ୍ଦ୍ର ତାହା ଲକ୍ଷ୍ୟକରି ସାମାନ୍ୟ ହସିଲେପରି]

( ମୁକୁନ୍ଦ ପଶ୍ଚାଦ୍ଦେଶକୁ ଯାଉ ଯାଉ ହଠାତ୍ ନେପଥ୍ୟେ ଆପଣା ପ୍ରତିକାର ବଦ୍ଧ ଦୃଷ୍ଟି ଦେଖି, ଚମକି ଉଠିଲେ ଓ ଆତ୍ମସଂଯମ କରୁ କରୁ ପୁରାତନ ତରବାରି ତ୍ୟାଗ ପୂର୍ବକ ନୂତନ ତରବାରି ଧାରଣ କରି ବୀରୋଲ୍ଲାସରେ ଦଣ୍ଡାୟମାନ ହେଲେ )

ପ୍ରତାପ—ସମରେନ୍ଦ୍ର ! ତୁମ୍ଭେ ସାମାନ୍ୟ ଜଣେ ସୈନିକ ହୋଇ ଆଜି ଯେଉଁ ଉପକାର କରିଚ, ତା'ର ତୁଲ୍ୟ ପୁରସ୍କାର ଏ ଜଗତରେ ନାହିଁ—ତୁମ୍ଭରି ହେତୁ ମୋ'ର ପ୍ରାଣାଧିକା କନ୍ୟା ଜୀବିତା ଅଛି ।

ମୁକୁନ୍ଦ—( ସାଶ୍ଚର୍ଯ୍ୟେ ଚାହିଁଲେ )

ପ୍ରତାପ—ସଭାସଦ୍‌ଗଣ ! ଆପଣମାନେ ଜାଣନ୍ତି ନାହିଁ ବୋଧହୁଏ, କପର ଗୋଟାଏ ଦୁର୍ଘଟଣାରୁ ଏହି ବୀର ସମରସିଂହ ଅତ୍ୟାଶ୍ଚର୍ଯ୍ୟ ବୁଦ୍ଧି କୌଶଳରେ, ଆପଣମାନଙ୍କର ଏକମାତ୍ର ଜେମାଦେଈଙ୍କର ପ୍ରାଣରକ୍ଷା କରିଅଛି ।

ମୁକୁନ୍ଦ—( ଅଧିକର ଆଶ୍ଚର୍ଯ୍ୟାନ୍ୱିତ ହେଲେ )

ସମସ୍ତେ—ଧନ୍ୟ, ଧନ୍ୟ, ସମରସିଂହ ! ଆମ୍ଭମାନଙ୍କର ଜେମାଦେଈ ଦୀର୍ଘାୟୁ ଲଭ କରନ୍ତୁ !

ପ୍ରତାପ—ଆମ୍ଭେମାନେ ଯୁଦ୍ଧାନ୍ତେ ପୁରୀଧାମରେ ଅବସ୍ଥାନ କରୁଥିବା ବେଳେ, ଦିନେ ଗୋଧୂଳି ସମୟରେ ସଖୀମାନଙ୍କୁ ଘେନି ଜେମାଦେଈ ମହାନଦୀରେ ଜଳକେଳି କରୁଥିଲେ, ସେହି ସମୟରେ ଗୋଟାଏ କୁମ୍ଭୀର—

ମୁକୁନ୍ଦ—( ହଠାତ୍ ଉଚ୍ଚୈଃସ୍ୱରେ ) 'କୁମ୍ଭୀର !' ତେବେ କ'ଣ ସେହି ଘଟଣା—( ସମ୍ମୁଖକୁ ଅଗ୍ରଗମନ କଲେ )

ପ୍ରତାପ—ପ୍ରକାଣ୍ଡ କୁମ୍ଭୀର, ଯା'ର ଗଳ୍ପ ଦେଖି, ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଚି, ଅଦୂରେ ବଣଗୁଡ଼ା ମଧ୍ୟରେ ଲୁଚି ରହିଥିଲା—ଜେମାଦେଈ ମେଳ ଛାଡ଼ି ଟିକିଏ ଅନ୍ତର ହେବା ମାତ୍ରେ, ସେହି ଭୀଷଣ ଜନ୍ତୁଟା ତତ୍‌କ୍ଷଣାତ୍ ପାଣିରେ ପାଣିରେ ଛୁଟି ଆସିଲା, ସଙ୍ଗେ ସଙ୍ଗେ ସମରସିଂହର ଗୁଳି ମଧ୍ୟ—

ମୁକୁନ୍ଦ—ମିଥ୍ୟା କଥା, ମହାରାଜ !—ମିଥ୍ୟା—

ପ୍ରତାପ—ମିଥ୍ୟା କଥା !

ମୁକୁନ୍ଦ—ଏ' ଅଧୀନ ଦିନେ ସନ୍ଧ୍ୟା ସମୟରେ କର୍ତ୍ତବ୍ୟ ନିର୍ଦ୍ଧାରଣ ମତେ ଦୁର୍ଗର ଚତୁର୍ଦ୍ଦିଗ ପର୍ଯ୍ୟବେକ୍ଷଣ କରି ବୁଲୁ ବୁଲୁ ହଠାତ୍ ଜଙ୍ଗଲ ଦିଗରେ କେତେ ଗୁଡ଼ିଏ ସ୍ତ୍ରୀଲୋକଙ୍କର ଆର୍ତ୍ତନାଦ ଶୁଣି ଧାଇଁ ଯାଏ—ସେମାନଙ୍କ ମଧ୍ୟରୁ ଜଣେ ( କି ପୂର୍ବସ୍ମୃତି ଉଦିତ ହେବାରୁ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲେ ) ମୋତେ ଦେଖି, ମୋ' ନିକଟକୁ ଧାଇଁଆସି, କହିଲେ "ସିପାହସାହେବ ! ଗୋଟାଏ ଭାରି ମସ୍ତ କୁମ୍ଭୀର—ଅଭଙ୍କା କାମୁଡ଼ ଥା'ନ୍ତା" ମୁଁ ସେମାନଙ୍କୁ "ପଳାନ୍ତୁ, ପଳାନ୍ତୁ" ବୋଲି କହି ସେହି ସ୍ଥାନରେ ପ୍ରକୃତ ଘଟନା କ'ଣ ଦେଖିବାକୁ ଠିଆ ହେଲି, ଦେଖିଲି, ପ୍ରକୃତରେ ଗୋଟାଏ ଭୀଷଣ କୁମ୍ଭୀର ସେହି ସ୍ତ୍ରୀଲୋକମାନଙ୍କର ଗାଧୋଇବା ତୁଠରେ ଭାସି ଉଠିଲା—ମୁଁ ତତ୍‌କ୍ଷଣାତ୍ ଗୁଳିକଲି—ଜନ୍ତୁଟା ଅଦୃଶ୍ୟ ହୋଇଗଲା, ଆହତ ହୋଇଥିଲା କି ନା—

ଅନନ୍ତ—ନା, ହୋଇ ନ ଥିଲା—ଏ ଘଟଣାଟି ଆମ୍ଭର ବର୍ଣ୍ଣିତ ଘଟଣାର ପୂର୍ବ ଘଟଣା ନିଶ୍ଚୟ—କାରଣ ଶିକାରୀ ଥରେ ଯେଉଁଠାରେ ଶିକାର

ଦେଖିଥାଏ, ଠିକ୍ ସେହି ସ୍ଥାନକୁ ସେ ସର୍ବଦା
ଲକ୍ଷ୍ୟ ରଖିଥାଏ—

ପ୍ରତାପ—ନାହିଁ, ଏ' କଥାତ ଶୁଣି ନ ଥିଲି । ଯାହା
ହେଉ, ଶୁଣି ସୁଖୀହେଲି ମୁକୁନ୍ଦ, ତୁମ୍ଭର କର୍ତ୍ତବ୍ୟ
ପାଳନରେ ସେ ଧନ ଖୁବ୍ ଜାଗରୁକ ଥିଲି;
କିନ୍ତୁ ସଙ୍ଗେ ସଙ୍ଗେ ଗୋଟିଏ ବିଷୟରେ ଭାରି
ଦୁଃଖିତ, ଯୁବକ, କଥାଟା ଆନୁପୂର୍ବିକ ନ ଶୁଣି
—ବିଷୟଟି ନ ଭାବି, ନ ଚିନ୍ତି ରାଜା ସମ୍ମୁଖରେ,
ଏତେ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ସମ୍ମୁଖରେ, କଥାଟା
ମୋର ନ ସରୁଣୁ, ନିର୍ଭୟରେ ହଠାତ୍ "ମିଥ୍ୟା
କଥା" ବୋଲି ଯେ ପାଟି କରି ଉଠିଲ, ଏଇଟା
ଉଚିତ ହୋଇଚକି ? କ୍ଷଣପୂର୍ବେ ତୁମ୍ଭର ଏପରି
କେତେକ ଅସଂଯତ ଭାବ ଯେ ଲକ୍ଷ୍ୟ ନ କରିଚ,
ତା'ନୁହେଁ, ମାତ୍ର ତାହା ଯୌବନସୁଲଭ ବୋଲି
ଉପେକ୍ଷା କରୁଥିଲି, କିନ୍ତୁ ବର୍ତ୍ତମାନ ଭୟ ହେଉଚି,
ପ୍ରଶ୍ରୟ ଦାନରେ ଅନତିବିଳମ୍ବେ ଔଦ୍ଧତ୍ୟରେ
ପରିଣତ ହେବା ଅସମ୍ଭବ ନୁହେଁ; ଅତଏବ
ମୋର ଉପଦେଶ, ଯୁବକ, ସଂଯମୀ ହେବାକୁ
ଚେଷ୍ଟାକର—ସର୍ବାଗ୍ରେ ରାଜ-ମର୍ଯ୍ୟାଦା ଶିକ୍ଷାକର ।

ମୁକୁନ୍ଦ—ଧୃଷ୍ଟତା କ୍ଷମା କରନ୍ତୁ, ମହାରାଜ !

ପ୍ରତାପ—ତୁମ୍ଭର ବୟସ ଦୃଷ୍ଟିରେ ଏ' ଚପଳତା
ମାର୍ଜନା କଲି—ଆଉ ଦିନେ ଏ'ପରି ଆଚରଣ
ଯେପରି ଦେଖିବାକୁ ନ ହୁଏ—ରାଜ-ମର୍ଯ୍ୟାଦା
ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଅଭ୍ୟାସ
କର ।

ମୁକୁନ୍ଦ—( ସ୍ୱସ୍ଥାନକୁ ଅସୁ ଅସୁ ନିଜ ମନେମନେ )
ମାତ୍ର ପ୍ରବଞ୍ଚନା କି ତା'ର ମୂଳଭିତ୍ତି ?

ପ୍ରତାପ—ଆସ, ସମରେନ୍ଦ୍ର—ଆଗେ ମୋତେ ତୁମକୁ
ଆଲିଙ୍ଗନ କରିବାକୁ ଦିଅ—ହେ ପୁଣ୍ୟପ୍ରତିମ !
ଆଜିଠାରୁ ତୁମେ ସହକାରୀ ସେନାପତିପଦ ପ୍ରାପ୍ତ
ହେଲ ।

ସଭାସଦ୍—( ସବିସ୍ମୟେ ମନେ ମନେ ଚିତ୍କାର କରି
ଉଠିଲେ ପରି )—ମହାରାଜ !—ମହାରାଜ !

ପ୍ରତାପ—( ମୃଦୁ ମୃଦୁ ହସି ) ଏହି ନିଅ ତା'ର
ଯୋଗ୍ୟ ନିଦର୍ଶନ—ମୋ'ର ବିଶ୍ୱାସ, ସେନାପତି
ଅନନ୍ତସିଂହଙ୍କ ଅଭିଭାବକତ୍ୱରେ, ତୁମ୍ଭେ ଶୀଘ୍ର
ଯୋଗ୍ୟତର ହୋଇ ଅଚିରେ ତା'ର ଯୋଗ୍ୟ
ବ୍ୟବହାର କରି ପାରିବ ।

( ସମରେନ୍ଦ୍ରକୁ ତରବାରି ଦାନ କଲେ )

ସମରେନ୍ଦ୍ର—( ମୁକୁନ୍ଦକୁ ଚାହିଁ ) ଧୃଷ୍ଟତା କ୍ଷମା କରନ୍ତୁ,
ମହାରାଜ !—ଜୟ ମହାରାଜାଙ୍କ ଜୟ !—ଜୟ
ସହକାରୀ ସେନାପତି ସମରେନ୍ଦ୍ରଙ୍କ ଜୟ !

ମୁକୁନ୍ଦ—( ମନେ ମନେ ) ଏ' ଯେ ପ୍ରବଞ୍ଚନା,
ମିଥ୍ୟାବାଦିତାର ଜୟ !

ସମରେନ୍ଦ୍ର—( ନିଜସ୍ଥାନକୁ ଆସି ମୁକୁନ୍ଦକୁ ସଗର୍ବେ
ଚାହିଁଲ )

ମୁକୁନ୍ଦ—( ଅନ୍ୟଆଡ଼େ ମୁଖ ଫେରାଇ ନେଲେ ) ଓଃ
—ଅନ୍ୟାୟର ଉନ୍ନତି କେତେ ଦ୍ରୁତଗତିରେ !

ପ୍ରତାପ—ବର୍ତ୍ତମାନ ସଭା ଭେବେ—( ସହସା ଜଗନ୍ନାଥ
ଦାସଙ୍କର ମୁକୁନ୍ଦର ପଶ୍ଚାଦ୍ଦେଶ ଦେଇ,
ପ୍ରବେଶ )

ଜଗନ୍ନାଥ—'ଅଧର୍ମର ବୃତ୍ତି ବଢ଼େ ବହୁତ
ଯିବାବେଳେ ଯାଏ ମୂଳ ସହିତ ।'

ମୁକୁନ୍ଦ—ମିଥ୍ୟା କଥା—

ଜଗନ୍ନାଥ—'ମିଥ୍ୟା କେବେ ନୁହେଁ ବଚନ
ଜ୍ଞାନ ଅଛଇ ପ୍ରମାଣ ।'

ମୁକୁନ୍ଦ—( ସଲଜ୍ଜେ ଓ ସବିସ୍ମୟେ ଚାହିଁଲେ )

ପ୍ରତାପ—( ମୁକୁନ୍ଦ ଆଡ଼େ ତିରସ୍କାର ପୂର୍ଣ୍ଣ ନେତ୍ରରେ
ଚାହିଁଲେ ) ଆସନ୍ତୁ, ଆସନ୍ତୁ, ଦେବ—ବହୁ
ସୌଭାଗ୍ୟ ଏ' ପାପୀର, ସାକ୍ଷାତ୍ ଭଗବଦ୍ଦର୍ଶନ
ଲାଭ କଲି—ହଠାତ୍ ଏ' ପାପୀ ପ୍ରତି ସୁଦୟା—

ଜଗନ୍ନାଥ—'ଭକ୍ତହୃଦୟେ ଭଗବାନ ।
କରନ୍ତି ସଦା ବିଚରଣ ।
ତେଣୁ ପ୍ରଣାମ ଭକ୍ତେ କଲେ ।
ପ୍ରଣାମ ବଇକୁଣ୍ଠେ ମିଳେ ।'

( ପ୍ରତାପରୁଦ୍ରଦେବଙ୍କ ଚରଣତଳେ ପ୍ରଣାମ କଲେ)

ପ୍ରତାପ—ପ୍ରଭୁ ! ପ୍ରଭୁ ! ଏ କି ଆଚରଣ ତବ ?

ଜଗନ୍ନାଥ—'ଘେନ ଏ' ପ୍ରଣତି ଦାସର ।
ସଭାର ସର୍ବ ନାଗରର ।'
( ଲମ୍ବ ହୋଇ ସମସ୍ତଙ୍କୁ ପ୍ରଣାମ କଲେ )

ପ୍ରତାପ—ଆସନ୍ତୁ, ଆସନ୍ତୁ, ଦେବ ! ଏହି ସ୍ଥାନ ମଣ୍ଡନ କରନ୍ତୁ ।

ଜଗନ୍ନାଥ—'ଦାସର ଦାସ ମୁଁ ଅଟଇ ।
ପଦ ସେବାରେ ନିତ୍ୟଥାଇ ।'
[ ଭୂମିରେ ଉପବେଶନ କରନ୍ତେ, ସମସ୍ତେ ସେହିପରି କଲେ ]

ପ୍ରତାପ—ଭଗବନ୍ ! ବାସ୍ତବିକ ଆପଣଙ୍କ ମହତ୍ତ୍ୱରେ ଏ' ଦାସ ମୁଗ୍ଧ ।

ଜଗନ୍ନାଥ—'ଏସନ ନ କହ ନରେଶ ।
ଉପୁଜେ ମନେ ବହୁକ୍ଳେଶ ।'

ପ୍ରତାପ—( ଜଗନ୍ନାଥଙ୍କ ଚରଣଧୂଳି ନେଇ, ଗଦ୍‌ଗଦ କଣ୍ଠେ ) ଭଗବନ୍ ! ଭଗବନ୍ ! ଏ' ଦୀନ ଶିଶୁକୁ ପ୍ରକୃତରେ କି କ୍ଷମା କରିଚନ୍ତି ?

ଜଗନ୍ନାଥ—'ଶିଶୁର ସମାନ ଯେ ଜନ ।
ଅଟଇ ସେହି ଭଗବାନ ।'
( ଆଲିଙ୍ଗନ କଲେ )

ପ୍ରତାପ—ଭଗବନ୍ ! ଭଗବନ୍ ! ଏତେ ଦୟା ଏ' ନିଷ୍ଠୁର ପ୍ରତି ! କୁଟମତି ମୁହିଁ, କୁଟାଭ୍ୟାସ ଦୋଷରୁ ସିନା, ସରଳ ନିଷ୍କଳଙ୍କ ଆପଣଙ୍କୁ ସେହି ଅମାନୁଷିକ ନିର୍ଯାତନା—ସେହି ଦୁଃସହ ଯନ୍ତ୍ରଣା—

ଜଗନ୍ନାଥ—'ଭକତ ଲୋଡ଼ଇ କଷଣି ।
ଲଭିବାକୁ ଟି ଭଗବାନ ।'

ପ୍ରତାପ—ପ୍ରଭୋ ! ପ୍ରଭୋ ! ଶୁଣ, ଶୁଣ, ସଭାସଦ୍‌ଗଣ ! ଆମ୍ଭେମାନେ ନିର୍ଯାତନା କରି ଆନନ୍ଦ ଉପଭୋଗ କରିଥାଉଁ—କିନ୍ତୁ ଭଗବନ୍ ଆମ୍ଭମାନଙ୍କର ନିର୍ଯାତନାରେ ଆନନ୍ଦ ଉପଭୋଗ କରିଥାନ୍ତି ।

ଜଗନ୍ନାଥ—( ପୋଥି ଫିଟାଇ ଫିଟାଇ )
'ଶୁଣି ଏବେ ଭୋ ନରନାଥ ।
କରିଚି ପୂର୍ଣ୍ଣ ଭାଗବତ ।'

ପ୍ରତାପ—ଓଃ—କି ମୂଢ଼ ମୁହିଁ—ଭଗବାନଙ୍କ ଆଗମନ କାରଣ ଏପର୍ଯ୍ୟନ୍ତ ପଚାରିବାକୁ ଭୁଲି ଯାଇଚି ।

ଜଗନ୍ନାଥ—'ଶୁଣ ପରୀକ୍ଷ ନରନାଥ ।
ଦ୍ୱାଦଶ ସ୍କନ୍ଧ ଭାଗବତ ।'

ପ୍ରତାପ—ଭଗବନ୍ ! ଏ' ଅମୂଲ୍ୟ ପବିତ୍ର ଗ୍ରନ୍ଥ ଏଠାରେ ପାଠ ଯୋଗ୍ୟ ନୁହେଁ ।

ଜଗନ୍ନାଥ—'ପବିତ୍ର ଅପବିତ୍ର ଜ୍ଞାନ ।
ଜୀବର ଅଟେ ଭ୍ରମ ଜ୍ଞାନ ।
ଯେଠାରେ ଯେ ଭାବେ ଭଜିବ ।
ହରି ଦୟାଳୁ ଦେଖାଦେବ ।'
( ପୋଥି ବାନ୍ଧି ଗମନୋଦ୍ୟତ )
'ଭାଳାଭାଳ ନାହିଁ ଆବର ।
ଭାଳର କର୍ତ୍ତା ଦାମୋଦର ।
ରଖିଲନ୍ତୁ ଯଥା ଇଚ୍ଛା ନାଥ ।
ଅଟଇ ସଦା ସନମତ ।'

ପ୍ରତାପ—ଆସ, ଆସ, ଭକ୍ତଗଣ ! ପ୍ରକୃତରେ ଆଜି ଆମ୍ଭମାନଙ୍କର ବିଜୟୋତ୍ସବ—ପାଶବିକ ଶକ୍ତିର ଦଳନରେ ତା'ର ଆରମ୍ଭ, ମାତ୍ର ଅଜ୍ଞାନଶକ୍ତିର ଦମନରେ ତା'ର ପରିସମାପ୍ତି—ତା'ର ସାର୍ଥକତା ।
( ସମସ୍ତଙ୍କ ପ୍ରସ୍ଥାନ )
[ କୃଷ୍ଣା କ'ଣ ଗୋଟାଏ ଲକ୍ଷ୍ୟ କରି ଏଣେ ତେଣେ ଚାହିଁ ଚାହିଁ ପ୍ରବେଶ କଲେ, ପଛେ ପଛେ ଚମ୍ପାର ମଧ୍ୟ ପ୍ରବେଶ ]

ଚମ୍ପା—ଜେମାଦେଈ ! ଜେମାଦେଈ ! ତେଣେ—କେଉଁଆଡ଼େ—

କୃଷ୍ଣା—ହିଁ—ନା—( ଇତସ୍ତତଃହେବା ) ତୁ କଣ୍ଟେ ଭୁଲି କରିଥିଲୁ—ସେ ଦିନ ଏଇ 'ମୁ—'
( ଲଜ୍ଜାରେ ନାମୋଚ୍ଚାରଣ କରି ପାରିଲେ ନାହିଁ ପରି )

ଚମ୍ପା—ନା, ଜେମାଦେଈ, ସେଦିନ ସମରେନ୍ଦ୍ର—

କୃଷ୍ଣା—ନା—ନା ( ମାତ୍ର ସମାଳି ନେଇ ) ଅଚ୍ଛା, ଆଜି କେଉଁଦିନ ତ କୁମ୍ଭୀର ଗୋଳ ହୋଇ ନ ଥିଲା—ସେଇ ଥରକ ଯା—ସେହି କୁମ୍ଭୀରଟା

ପରି ଗୁଳି ଖାଇ ଦୁଇଦିନ ପରେ ମରି ଭାସି ଉଠିଥିଲା ।

ଚମ୍ପା—ଜେମାଦେଈ ! ଅଗ ଘଟଣା ତମେ ଜାଣି ନାହିଁ —ମୁଁ ବି କହି ନ ଥିଲି, କାଳେ ଡରରେ ଆଉ ଗାଧୋଇ ନ ଯାଅ—ଆହୁରି ଶୁଣିଲ ତ, ସେନାପତି ଅନନ୍ତସିଂହ ସଭାରେ କ'ଣ କହିଲେ ?

କୃଷ୍ଣା—କିନ୍ତୁ—( କ'ଣ କହିବାକୁ ଯାଉଥିଲେ )

ଚମ୍ପା—କଥାଟା ଆଉ କିଛି ନୁହେଁ, ଏହି ଘଟଣା ଘଟିବାର ଦୁଇ କି ତିନି ଦିନ ଆଗେ, ମୁଁ, ମଲ୍ଲି, ଶୋଭି—

କୃଷ୍ଣା—ମଲ୍ଲି, ଶୋଭି ଥିଲେ ?

ଚମ୍ପା—( ସଭୟେ ସ୍ୱଗତ ) ପଶୁରି ଭୁଲିବ ନା କ'ଣ ? ( ସମ୍ଭାଳି ନେଇ ) ହିଁ, ହିଁ, ମଲ୍ଲି, ଶୋଭି—ନା, ନା—କିଏ ତ, ସେ ଦିନ—ଯା' ମ—ପୋଡ଼ା ମନେ କି ଥାଏ—ତେବେ, ଜେମାଦେଈ ମୁଁ ଏକା ନିଶ୍ଚେ ନୁହେଁ—ଛାଡ଼, କିଏ ଦୁଇ ଜଣ, ଆଉ ମୁଁ —ଠିକ୍ ସେହିପରି ମୁହିଁ ପଞ୍ଚିବେଲେ, ସେହି ତୁଠକୁ ଲଗା କାଟିବାକୁ ଆସିଥିଲା—କୁହନା, ଜେମାଦେଈ ସେହି ପୋଡ଼ାଟା—

କୃଷ୍ଣା—ଆଚ୍ଛା ମୁଁ କ'ଣ ସେଦିନ ?—

ଚମ୍ପା—( ନିଜର ତ୍ରୁଟି ହେତୁ ନିଜକୁ ତିରସ୍କାର କରି ) ସେଦିନ ତୁମେ ଯେ ବାହାରିକି ଆସି ନ ଥିଲ—ହିଁ—ହିଁ—ତୁମର ଦିହ କ'ଣ—

କୃଷ୍ଣା—'ଦିହ' ! ଏ' ବର୍ଷକ ମଧ୍ୟରେ ଦିନେ ହେଲେ ତ କେବେ—

ଚମ୍ପା—( ଭୀତା ହୋଇ କିନ୍ତୁ ସମ୍ଭାଳି ନେଇ ) ତେବେ ଅନ୍ୟ କେଉଁ କଥା—କଣ—ହୋଇ—?

କୃଷ୍ଣା—ହିଁ, ଅନେକଦିନ ତଳର କଥା କି ନା ?—

ଚମ୍ପା—କହିଲି ଭଲା—ଠିକ୍ କି ସବୁ ମନେ ଥାଏ ?

କୃଷ୍ଣା—ତା' ନୁହେଁ କ'ଣ ? କାଠର ମଞ୍ଜି ସିନା ବହେ—ପଲଶୀ ଗୁଡ଼ାକ—

ଚମ୍ପା—(ଚମକି ଉଠିଲା) ଜେମାଦେଈ ! ଜେମାଦେଈ ! ମୋତେ କ'ଣ ଅବିଶ୍ୱାସ—

କୃଷ୍ଣା—( ନିଜର ଅସାବଧାନତା ବୁଝି ପାରି ) ଛି, ଚମ୍ପା, ଛଳରେ ମୁଁ ସେମିତିକା—

ଚମ୍ପା—(ଦୀର୍ଘ ନିଶ୍ୱାସ ଛାଡ଼ି, ପ୍ରକାଶ୍ୟେ ଗଦ୍‌ଗଦସ୍ୱରରେ) କିନ୍ତୁ, ଛଳରେ ବି ଏମିତିକା କଳଙ୍କ ଯେ ଚମ୍ପା ଉପର—

କୃଷ୍ଣା—( ହାତ ଧରି ) ଚମ୍ପା ! ମୋ'ର ଦୋଷ—

ଚମ୍ପା—ଛି ଜେମାଦେଈ ! ମୁଁ ଯେ ତମର ପୋଇଲି-ଟାଏ—

କୃଷ୍ଣା—ହିଁ, ସେ ଦିନତ ତମମାନଙ୍କ ସାଙ୍ଗରେ ମୁଁ ନ ଥିଲି—ତା' ପରେ କ'ଣ ହେଲାଟି ?

ଚମ୍ପା—କୁହନା, ଜେମାଦେଈ—ପୋଡ଼ା କୁମ୍ଭୀରଟା ଯେମିତିକା ଗୋଡ଼ ଜଗି, ବାହିଁ ଛକି ରହିଥିଲା, ତୁଠରେ ଗୋଡ଼ ଦେଇଚୁ କି ନାହିଁ, ପରି ଗୋଡ଼େଇ ଆସିଲା—ଭାଗ୍ୟେ ମୁକୁନ୍ଦ ଥିଲା ବୋଲି—

କୃଷ୍ଣା—ସେ ଦିନ ବି ସେହି 'ମୁକୁନ୍ଦ'—(କହି ପକାଇ ଜିହ୍ୱାଦଂଶନ କଲେ )

ଚମ୍ପା—( ହଠାତ୍ ଚମକି ଉଠି କୃଷ୍ଣା ଆଡ଼େ ମ୍ଳାନ ମୁଖେ ଚାହିଁଲା ) ଜେମାଦେଈ—

କୃଷ୍ଣା—ନା ଲୋ ନା, ତୋତେ ମୁଁ ମିଛେଇ କହୁ ନାହିଁ ଯେ—

ଚମ୍ପା—( ଆହୁରି ମ୍ଳାନମୁଖେ ସାଗ୍ରହେ ଚାହିଁଲା )

କୃଷ୍ଣା—( ସଲଜ୍ଜେ ଅନ୍ୟ ଆଡ଼େ ଚାହିଁ ) ଭୁଲ କ'ଣ ମଣିଷର ହୁଏ—

( ହଠାତ୍ ଲକ୍ଷ୍ୟବସ୍ତୁ ପ୍ରତି ଦୃଷ୍ଟି ପଡ଼ିବାରୁ କ୍ଷାନ୍ତ ହେଲେ )

ଚମ୍ପା—( ଭୀତା ହୋଇ ) ନାହିଁ, ନାହିଁ, ଜେମାଦେଈ ମୁଁ କେବେ ଭୁଲ କରି ନାହିଁ—ମୁଁ ନିସ୍ତୋମ କରି କହୁଚି—ଦିହ ଛୋଇଁ—

କୃଷ୍ଣା—( ସେହି ଲକ୍ଷ୍ୟବସ୍ତୁ ପ୍ରତି ମନପ୍ରାଣ ଢାଳିଦେଇ ଥିଲେ, ଚମ୍ପା ଲୋଇଁବାମାନେ କହି ଉଠିଲେ )—ଛାଡ଼ିଦେ—ତୁ ଏ'ଠୁ—( ଜିହ୍ୱାଦଂଶନ କଲେ )

ଚମ୍ପା—( ଅତ୍ୟନ୍ତ ମ୍ଳାନା ହେବାକୁ ଲାଗିଲା )

କୃଷ୍ଣା—ନା’ ମ, ଗୁଲ ଯିବା—( ଯିବାକୁ ଉଦ୍ୟତ ହୋଇ ହଠାତ୍ ଗୋଟିଏ ଛବି ନିକଟକୁ ଦୌଡ଼ି ଯାଇ ) ବେଶ୍ ଛବିଟିଏ, ନା, ଚମ୍ପା—

ଚମ୍ପା—( ସ୍ୱଗତ ) ଏଁ—ଏ’ କଣ ? କଥା ନେବାର ଫିକର ନା କ’ଣ ?—ଅବଲମ୍ବେ – ଏହିଷଣି— ସାବଧାନ କରିଦେବା ଉଚିତ ନୁହେଁକି ?—କ’ଣ କରେଁ—( ପ୍ରକାଶ୍ୟେ ) ଜେମାଦେଈ । ଯୁଆଡ଼ୁ କେତେ ଭଲ ଭଲ ଛବି ଅଛି—ଦେଖୁଥାଅ କି—

କୃଷ୍ଣା—( ଚମ୍ପାର ଯିବାର ଅଭିପ୍ରାୟ ବୁଝିପାରି ସାନନ୍ଦେ) ସତେ ? ସତେ ?—

ଚମ୍ପା—ଦେଖିନିଅ—ପରଖି କରିନିଅ—ମୋ’କଥା ସତ କି ମିଛ—ମୁଁ ଯେତୋଇ କି ମିଛୋଇ— ଏହିଥିରୁ—

କୃଷ୍ଣା—ପୁଣି ସେହିକଥା, ଚମ୍ପା—ମୁଁ କି କେବେ ହେଲେ ତୋତେ ଅପତିଆରି କରିଛି—କହିଲୁ, କେଉଁଦିନ ଭଲା —

ଚମ୍ପା—ସତ, ସତ କହୁଛତ, ଜେମା—( ମାତ୍ର କୃଷ୍ଣାର ନିଟମ୍ପାତ୍ର ଭାବରେ ଶଙ୍କାନ୍ୱିତା ହେବାକୁ ଲାଗିଲା )

କୃଷ୍ଣା—( ଛବି ଦେଖୁଥିଲାବେଳେ ଚମ୍ପା ଗଲା କି ନାହିଁ, ଲୁଚେଇ ଲୁଚେଇ ଚାହୁଁଥିଲେ—ହଠାତ୍ କେଉଁଟି ଚିତ୍ରପଟ ଦେଖି ) ଏ’ ସୁବର୍ଣ୍ଣ-କେଶରୀଙ୍କ—ଏ’ ଗୌରବଙ୍କ—ଏ’ ନନ୍ଦକାର —( ସେହି ଭାବରେ ମୁକୁନ୍ଦ ସହିତ ବୋଧହୁଏ ନିଜକୁ ଚିନ୍ତାକରି ନେଇ ) ଓଃ, ଅଭାଗିନୀ— ପ୍ରତ୍ୟାଖ୍ୟାତା—( ଦୀର୍ଘନିଃଶ୍ୱାସ ଛାଡ଼ି, ପୁଣି ଅନ୍ୟାନ୍ୟ ଚିତ୍ର ଦେଖିବାକୁ ଲାଗିଲେ, କିନ୍ତୁ ମନଟା ଅସ୍ଥିର ହୋଇ ଉଠିଥିଲା )

ଚମ୍ପା—(ସ୍ୱଗତ ) ନା, ନା—ମୁଁ ଏ’ପରି ଭାବେ ଛାଡ଼ିଗଲେ ଆହୁରି ସନ୍ଦେହ ହୋଇପାରେ—ମୋ’ ଉପରେ—( ପ୍ରକାଶ୍ୟେ ) କିଛି ଡର ନାହିଁ, ଜେମାଦେଈ—କେହି ଭିତରକୁ ଆସିବେ ନାହିଁ —ମୁଁ ବି ଯାଉ ନାହିଁ ।

କୃଷ୍ଣା—( ଏହି ‘ନାହିଁ’ ଶବ୍ଦ ଶୁଣିଚମକି ନାହିଁ ) ଯା, ଯା—ସେନାପତିଙ୍କୁ କହି ଏକାବେଳକେ ସାବଧାନ କରି ଦେଇ ଆ—ଭିତରକୁ ଯେପରି କେହି—( କିନ୍ତୁ କିନ୍ତୁ ସଙ୍କୁଚିତା ହେଉଥିଲେ ପରି )

ଚମ୍ପା—( ଏହିପରି ଉକ୍ତିରେ ବିସ୍ମୟାଭିଭୂତା ହେଉଥିଲା )

କୃଷ୍ଣା—ଆଉ କିଛି ନୁହେଁ ମ—ବୁଝିଲୁ ନା— ‘ସାବଧାନର ବିନାଶ ନାହିଁ—’

ଚମ୍ପା—ଠିକ୍ କହିଚ, ସହି—‘ସାବଧାନ’ର ବିନାଶ ନାହିଁ— ( ବେଗେ ପ୍ରସ୍ଥାନ )

କୃଷ୍ଣା—( ଲକ୍ଷ୍ୟବସ୍ତୁ ନିକଟକୁ ଦୌଡ଼ି ଯାଇ ) ଏହି ତରବାରି !—ସେହି ବୀରଙ୍କର !—ନାମ ଯେ ଖୋଳା ଅଛି !—ଖୋଳରେ ଛାଡ଼ି ଯାଇଚନ୍ତି, ନା ପ୍ରେମର ନିଦର୍ଶନ ରଖିଯାଇଚନ୍ତି ?

( ବକ୍ଷରେ ଧାରଣ କରି ଚୁମ୍ବନ କଲାବେଳେ ମୁକୁନ୍ଦର ବେଗେ ପ୍ରବେଶ ଓ ଜେମାଦେଈଙ୍କୁ ଦେଖି ପ୍ରସ୍ଥାନ କରୁ କରୁ ପୁଣି ଫେରି ଚାହିଁଲେ; କୃଷ୍ଣା ମୁଗ୍ଧନୟନରେ ଚାହିଁଥିଲେ—ଯନ୍ତ୍ରଚାଳିତା ପରି ତରବାରିଟି ମୁକୁନ୍ଦ ଆଡ଼େ ଉତ୍ତୋଳିତ କରି ଦେଲେ । ମୁକୁନ୍ଦ ଧୀରେ ଧୀରେ ଆସନ୍ତେ, କୃଷ୍ଣା ଲଜ୍ଜାରେ ଅନ୍ୟ ଆଡ଼େ ଚାହିଁଲେ । ମୁକୁନ୍ଦ କମ୍ପିତ କଳେବରରେ ଜାନୁପାତପୂର୍ବକ ତରବାରିର ମୁଠା ଧାରଣ କଲେ, ହଠାତ୍ କି ଗୋଟାଏ ଠକ୍କାରେ ତରବାରିଟି କେବଳ ଖୋଳ ଚାଲିଗଲେ; ଖୋଳଟି ଜେମାଦେଈଙ୍କ ହାତରେ ରହିଗଲା—ପରେ କୃଷ୍ଣା ଚମକି ଉଠିଲେ )

କୃଷ୍ଣା—ଏଁ, ଏଁ—କ’ଣ କଲି—ଛାଡ଼ି ଦେଇ ପାରିଲି ନାହିଁ ଯେ—କରୁଛି କ’ଣ ?—କରୁଛି କ’ଣ ?

(ହଠାତ୍ ଚମ୍ପାର ପ୍ରବେଶ)

ଚମ୍ପା—ରକ୍ଷୀ ଗୁରୁଜଣ—

କୃଷ୍ଣା—ରକ୍ଷୀ । (ରକ୍ଷୀ ଭୟରେ ସ୍ଥିତ ହସ୍ତ ଗୌରବପରି ଖୋଳଟା ନିକ୍ଷେପ କରି ବେଗେ ପ୍ରସ୍ଥାନ କଲେ ପରି )

ଚମ୍ପା—ଈଶ୍ୱରଙ୍କ କ'ଣଟାଏ ପକାଇ ଦେଇ ଗଲେ, କେମାଦେଈ ? ଏ' ଯେ ତରବାରିର ଖୋଲଟାଏ ! କା'ର କା'ର ନାମ ? (ପଢ଼ି) ମୁକୁନ୍ଦ—

(କହୁ କହୁ ବିସ୍ଫାରିତ ନେତ୍ରରେ କିଛିକ୍ଷଣ ରହିଁ) ହାଃ—ହାଃ—ହାଃ

(ଭୀଷଣ ଭାବରେ ହସି ଉଠିଲା)

—ଯବନିକା—

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ରାଜୋପବନ ସମ୍ମୁଖସ୍ଥ ଅପରିସର ରାସ୍ତା—

[ ଗୋଟିଏ ଉନ୍ମାଦିନୀର ଗୀତ ଗାଇ ଗାଇ ପ୍ରବେଶ ]

ଗୀତ

ମୁହିଁ ଉନ୍ମାଦିନୀ—ମୋ'ର ନାମ ଉନ୍ମାଦିନୀ ।
ସାଗରେ ସରିତ ପରି ଧାଏଁ ଉନ୍ମାଦିନୀ ॥
ଲଙ୍ଘି ପାହାଡ଼ ପର୍ବତ ଅବିରାମ ଧାଏଁ ସ୍ରୋତ—
ନାହିଁ ତରଙ୍ଗ ସଙ୍କୁଳ— ନାହିଁ ଉଚ୍ଛ୍ୱାସ କଲ୍ଲୋଳ—
ତଥାପି ମୁଁ ତରଙ୍ଗିଣୀ—
କଲ୍ଲୋଳିନୀ—ଉନ୍ମାଦିନୀ ॥

[ ମୁକୁନ୍ଦ ଅତି ସାବଧାନ ହୋଇ ଗୋପନେ ଗୋପନେ ପ୍ରବେଶ କରୁଥିଲେ ]

ଉନ୍ମାଦିନୀ—ଫେର—ଫେର—

ମୁକୁନ୍ଦ—(ହଠାତ୍ ଚମକି ଠିଆ ହେଲେ)

ଉନ୍ମାଦିନୀ—ଉନ୍ମାଦିନୀ—ଉନ୍ମାଦିନୀ ମୁଁ—ହୁଃ—ହୁଃ—ହୁଃ— (ଦ୍ରୁତ ପ୍ରସ୍ଥାନ କଲା)

ମୁକୁନ୍ଦ—କିଏ ଏହି ଉନ୍ମାଦିନୀ !—ଠିକ୍ କହୁଛି—ଫେରିଯାଏଁ—ଫେରିଯାଏଁ—ମହାରାଜଙ୍କ ସମସ୍ତ ଖୋଲି କହିବି—ସତ୍ୟ କହିବି—କର୍ତ୍ତବ୍ୟ କରିବି—ଖୋଲଟା ମଧ୍ୟ ସହଜେ ଫେରି ପାଇବି—କିନ୍ତୁ, ଏଥିରେ ଯେ ଜେମାଦେଈଙ୍କ ମର୍ଯ୍ୟାଦା ନଷ୍ଟ—ମର୍ଯ୍ୟାଦା—ରାଜ-ମର୍ଯ୍ୟାଦା—ଏହି କୃତ୍ରିମ ମର୍ଯ୍ୟାଦା କ୍ଷତି ଭୟରେ ସତ୍ୟର ନଗ୍ନ-ସୌନ୍ଦର୍ଯ୍ୟ ମୋତେ ଆଜି ଆପାଦମସ୍ତକ ଆବୃତ କରି, କଦର୍ଯ୍ୟ କରିବାକୁ ପଡ଼ୁଛି ସିନା—ମିଥ୍ୟା ପ୍ରବଞ୍ଚନାର ଅସାର ହାସ୍ୟ-ଲାସ୍ୟରେ ଆପଣାକୁ ଆଜି ଜଗତ୍ ସଙ୍ଗେ ଭସାଇ ଦେବାକୁ ପଡ଼ୁଛି ସିନା !—

ଉନ୍ମାଦିନୀ—(ନେପଥ୍ୟ, ଅତିଦୂରରେ) ଆଉ ବିଳମ୍ବ ନୁହେଁ—ଫେର—ଫେର—

ମୁକୁନ୍ଦ—ସେହି, ସେହି ଉନ୍ମାଦିନୀ—ନା, ନା ଏ'ଯେ ହୃଦୟର କେଉଁ ଗମ୍ଭୀରତମ ପ୍ରଦେଶର ପ୍ରତିଧ୍ୱନି—ଫେରି ଯାଏଁ—ଫେରି ଯାଏଁ—ଆସ୍ତ୍-ମର୍ଯ୍ୟାଦା—ସତ୍ୟର ମର୍ଯ୍ୟାଦା—

ଚମ୍ପା—( ନେପଥ୍ୟ ) ରକ୍ଷା କରିବ—ଫେରିଯାଇ—ହାଃ—ହାଃ—ହାଃ—

[ଚମ୍ପାର ଏହିପରି ଅଟ୍ଟହାସ୍ୟ କରୁ କରୁ ପ୍ରବେଶ]

ମୁକୁନ୍ଦ—(ପ୍ରଥମେ ଚମକି ଉଠିଲେ) କିଏ ?—କିଏ ? (ସଭୟେ ରହିଲେ)

ଚମ୍ପା—( ବ୍ୟଙ୍ଗଭାବେ ) ଚନ୍ଦ୍ରିକା—(ଆଉ କ'ଣ କହିଥା'ନ୍ତା, ମାତ୍ର ମୁକୁନ୍ଦର ଦର୍ଶନରେ କାପରି କାମୋନ୍ମତ୍ତ ହୋଇ ଯେମନ୍ତ ମିନତିଭାବେ କହିଲା) ମୁକୁନ୍ଦ ! ମୁକୁନ୍ଦ !

ମୁକୁନ୍ଦ—(ଅବଜ୍ଞାଭରେ) ପୁଣି—ପୁଣି ତୁ ସପୁତାଣୀ—

ଚମ୍ପା—ସପୁତାଣୀ ମୁଁ ହୋଇ ନାହିଁ, ମୁକୁନ୍ଦ—ସପୁତାଣୀ ମୋତେ କରାଅ ନାହିଁ, ପ୍ରିୟ—(ଚରଣ ଧାରଣ କଲା)

ମୁକୁନ୍ଦ—ରାକ୍ଷସୀ— ! (ଦୂରେ ନିକ୍ଷେପ କରି ପଳାୟନ କଲେ)

ଚମ୍ପା—ରାକ୍ଷସୀ । —ହାଃ—ହାଃ—ହାଃ—ସେହି ରାକ୍ଷସୀ ଯେ ଆଜ ପାଇଛୁ କବଳେ—ମୁକୁନ୍ଦ ! ମୁକୁନ୍ଦ ! ଶୁଣିଯାଅ—ଶୁଣିଯାଅ—(ଉଚ୍ଚୈଃସ୍ୱରରେ) ବିପଦର କଥା ଥରେ—ଥରେ—( ସ୍ୱଗତ ) ଫେରିଚ—( ପ୍ରକାଶ୍ୟେ, ଅତି କାତରଭାବେ ଘୋର ବିପଦ !—ଘୋର ବିପଦ !—

[ ମୁକୁନ୍ଦର ବେଗେ ପୁନଃ ପ୍ରବେଶ ]

ମୁକୁନ୍ଦ—କି ବିପଦ ? (ଚମ୍ପାକୁ ନିରୀକ୍ଷଣ କଲେ)

ଚମ୍ପା—ବିପଦ ବୋଲି ବିପଦ !

ମୁକୁନ୍ଦ—କାହିଁ ? କ'ଣ ହୋଇଛି ?—କା'ର ?—

ଚମ୍ପା—ଯା'ର ଅନ୍ନ ଖାଉଚ—ଯା'ର ରକ୍ଷକ ବୋଲି ଗର୍ବକରୁଚ—

ମୁକୁନ୍ଦ—ମୁକୁନ୍ଦ ଥାଉ ଥାଉ ପ୍ରଭୁର ବିପଦ !

ଚମ୍ପା—ପ୍ରଭୁ ନୁହେଁ—ପ୍ରଭୁ ନୁହେଁ—ପ୍ରଭୁ-କନ୍ୟାର—

ମୁକୁନ୍ଦ—ପ୍ରଭୁ-କନ୍ୟାର—!

ଚମ୍ପା—ହଁ—ହଁ—ହେମାଦେଈଙ୍କର—

ମୁକୁନ୍ଦ—ହେମାଦେଈଙ୍କର—କି ବିପଦ ?—କେଉଁଠି ?—କିଏ ଘଟାଇଛି—?

ଚମ୍ପା—( କେବଳ ହସିବାକୁ ଲାଗିଲା )

ମୁକୁନ୍ଦ—କୁହ, କୁହ,—ଚରଣ ଧରୁଚି ( ଚରଣ ଧାରଣ )

ଚମ୍ପା—(ପୁଣି କାମାତୁରା ହୋଇ ) ପ୍ରିୟତମ ! ପ୍ରିୟ—!

ମୁକୁନ୍ଦ—ସର୍ବନାଶ !—ଓଃ ପ୍ରଭୁ-କନ୍ୟାର ବିପଦ ! —ହେମାଦେଈଙ୍କ ବିପଦ !—କିଏ ସେ ବିପଦକାରୀ !—( ଉନ୍ମତ୍ତଭାବେ ପ୍ରସ୍ଥାନୋଦ୍ୟତ ହେଲେ )

ଚମ୍ପା—( ଉଚ୍ଚୈଃସ୍ୱରରେ ) ଏହି ତୋ ସମ୍ମୁଖରେ—

ମୁକୁନ୍ଦ—( ଫେରି ପଡ଼ି ) କାହିଁ—କାହିଁ—?

ଚମ୍ପା—( ମୁକୁନ୍ଦ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି )— ହାଃ—ହାଃ—ହାଃ

ମୁକୁନ୍ଦ—ପରିହାସ !—ପିଶାଚୀ—( କ୍ରୋଧ ଓ ଘୃଣାବ୍ୟଞ୍ଜକ ଦୃଷ୍ଟିରେ ଚାହିଁ ଅସି ନିଷ୍କୋଷିତ କରିବାକୁ ଉଦ୍ୟତ ହେଲେ )

ଚମ୍ପା—ଖୋଲନ୍ତା କିନ୍ତୁ—

ମୁକୁନ୍ଦ—( ହଠାତ୍ ରହିଗଲେ )

ଚମ୍ପା—କି 'ହସ' ଏଥର ? ( ଉଚ୍ଚ ହାସ୍ୟରେ ଗଗନ ବିଦୀର୍ଣ୍ଣ କରିଦେଲା )

ମୁକୁନ୍ଦ—ଉତ୍ତମ ! ଉତ୍ତମ !—କାହିଁ ସେ ଖୋଲ— ଦଣ୍ଡ, ଦଣ୍ଡ, ମର୍ଯ୍ୟାଦା ରକ୍ଷାକର—ରାଜହେମାଙ୍କ ମର୍ଯ୍ୟାଦା ରକ୍ଷାକର—ତୁମେ ଠିକ୍ କହୁଚ, ଉତ୍ତମ —'ଘୋର ବିପଦ'—ପ୍ରଭୁ-କନ୍ୟାଙ୍କର 'ଘୋର-ବିପଦ'—ହେମାଦେଈଙ୍କର ଘୋର ବିପଦ !— ଆଉ, ସେହି ବିପଦକାରୀ, ମୁହିଁ—ମୁହିଁ ନିଜେ— ଏହି ଅଧମ—!

ଚମ୍ପା—ବେଶ୍, ବୁଝିଚତ ଏଥର—ନମସ୍କାର—ମୋ'ର ତେଣେ ଅନେକ କାମ—( ପ୍ରସ୍ଥାନୋଦ୍ୟତା )

ମୁକୁନ୍ଦ—ନା, ନା, ଏ' ବି ଗୋଟାଏ କାମ—ଏ' ଯେ ପ୍ରଧାନ କାମ—ସଖୀର କାମ—ହେମାଦେଈଙ୍କ କାମ—ରାଜାଙ୍କର କାମ—ରକ୍ଷାକର, ମର୍ଯ୍ୟାଦା ରକ୍ଷାକର—ରାଜ-ମର୍ଯ୍ୟାଦା ରକ୍ଷାକର—ରାଜ-ମର୍ଯ୍ୟାଦା !—ରାଜ-ମର୍ଯ୍ୟାଦା—!

ଚମ୍ପା—ଏହି 'ରାକ୍ଷସୀ', 'ସର୍ବନାଶୀ'ଟା ଦ୍ୱାରା ?—

ମୁକୁନ୍ଦ—ନା, ନା, ଉତ୍ତମ ! ଉତ୍ତମ ! ( ହାତ ଧରି ପକାଇ ) ବର୍ତ୍ତମାନ କର୍ତ୍ତବ୍ୟ—କର୍ତ୍ତବ୍ୟ— କର୍ତ୍ତବ୍ୟର ଅନୁରୋଧରେ ସବୁ ଭୁଲି ଯାଅ, ଉତ୍ତମ !

ଚମ୍ପା—ଭୁଲି ଯିବି—ଭୁଲି ଯିବି, ପ୍ରିୟତମ—ତୁମର ପରଶରେ—ତୁମର ଆଲିଙ୍ଗନରେ — ତୁମର ଚୁମ୍ବନରେ ! ( ଆଲିଙ୍ଗନ କରି ଚୁମ୍ବନ କରିବାକୁ ଯାଉଥିଲା )

ମୁକୁନ୍ଦ—ପିଶାଚୀ— ! ( ପଦାଘାତରେ ଦୂରେ ନିକ୍ଷେପ କରି ପ୍ରସ୍ଥାନ କରୁଥିଲେ )

ଚମ୍ପା—ପଦାଘାତ ! ଓଃ—ଏ' ଯେ ପଦାଘାତ' ପରେ ପଦାଘାତ !—ନା, ନା, 'ପ୍ରେମିକ ପ୍ରେମିକା'ର ମିଳନାଘାତ, ଏକା ସଙ୍ଗେ ପରା !—ନାଗୁଣୀର ଅଙ୍ଗେ !!

ମୁକୁନ୍ଦ—( ଫେରି ଅସି ) 'ନାଗୁଣୀ' !—'ନାଗୁଣୀ' ! —କରିବ ଦଂଶନ ନିଶ୍ଚେ ବହିଲେ ଜୀବତ—

ତୁହି, ତୁହିଲେ ସର୍ପିଣୀ—ଅଟୁ ଜେମାଙ୍କର ବିଶ୍ୱସ୍ତ ସଙ୍ଗିନୀ—ଜାଣୁ ତେଣୁ ତାଙ୍କ ଯେତେ ଗୁପ୍ତ କଥା—ଜାଣୁଅଛୁ ପୁଣି—ପାପବାସନା ସେଦିନ ତୋ'ର—ନ କଲି ମୁଁ ତୃପ୍ତ ବୋଲି—'କୁମ୍ଭୀରର ହନ୍ତା' ପଦେ, ବରିତଟି ସମରେନ୍ଦ୍ର ଆଜ, କୌଶଳେ ତୋହର—ହାଃ—ହାଃ—ହାଃ—ଅରେ ରେ ପିଶାଚୀ ! କୁମ୍ଭୀରର ହନ୍ତା ସିନା ସମରେନ୍ଦ୍ର ତୋ'ର—'କୁମାରୀର ହନ୍ତା' ଦେଖି ଯା' ମୁକୁନ୍ଦ ଏବେ ( ଭୀଷଣଭାବ ଧାରଣ କଲେ)

ଚମ୍ପା—( ଆତଙ୍କରେ ଶିହରି ଉଠିଲା ) ମୁକୁନ୍ଦ—ମୁକୁନ୍ଦ—

ମୁକୁନ୍ଦ—ନା, ନା, ବଧିର, ବଧିର ମୁକୁନ୍ଦ-ଶ୍ରବଣେ, ଆଜ ଅବଳାର କାକୁତି-ମିନତି—କର୍ତ୍ତବ୍ୟର କଠିନ ନିର୍ଦ୍ଦେଶେ ବଧିବ ପରାଣ ତୋ'ର—ତୁହି, ତୁହି ଅଟୁ ମର୍ଯ୍ୟାଦାର—ରାଜ-ମର୍ଯ୍ୟାଦାର ପଥେ କଣ୍ଟକ ବିଶାଳ !

ଚମ୍ପା—ମୁହିଁ—ମୁହିଁ କଣ୍ଟକ ବିଶାଳ ?—(ପ୍ରଥମେ ଭୀତା ହେଉଥିଲା, କିନ୍ତୁ ପରେ ପରେ କଣ ମନେ ପଡ଼ିବାରୁ ଉଲ୍ଲସିତା ହୋଇ ଉଠିଲା )

ମୁକୁନ୍ଦ—ହିଁ, ହିଁ, ଜୀବନ୍ତ କଣ୍ଟକ ତୁହି—ଏହି ଦେଉଛୁ ଉପାଡ଼ି ( କେଶ ଗୁଚ୍ଛ ଧରି ପୁଣି ଅସି ନିଷ୍କୋଷିତ କରିବାକୁ ଗଲେ )

ଚମ୍ପା—କିନ୍ତୁ ସେହି ଖୋ-ଳ-ଟା-କି—

ମୁକୁନ୍ଦ—'ଖୋଳ'—'ଖୋଳ'—( ଛାଡ଼ି ଦେଲେ )

ଚମ୍ପା—ହାଃ,ହାଃ, ହାଃ, ପ୍ରକୃତରେ କଣ୍ଟକ-ବିଶାଳ—ଖୋଳରୂପ ନୁହେଁ କି ଜୀବନ୍ତ—?

[ ମୁକୁନ୍ଦ ମନ୍ତ୍ରମୁଗ୍ଧବତ୍ ନିଶ୍ଚଳ ହୋଇଗଲେ ]

ଚମ୍ପା—ଭାବୁଛ ଆଉ କ'ଣ ବୀରବର ?—ହତ୍ୟା କର—ଏହି ନିଅ ଅସି, ନିଜେ ମୁହିଁ ବାହାର କରି ଦେଉଛି ( ଅସି ବାହାର କରି ଦେଲା )

ମୁକୁନ୍ଦ—ଦିଅ ଦିଅ ଅସି ସେହି, ଆମୂଳ ପ୍ରବେଶି ବକ୍ଷଦେଶେ ମୋ'ର !

( ବକ୍ଷଦେଶ ଦେଖାଇଲେ )

ଚମ୍ପା—ହାଃ ହାଃ ହାଃ—ଦେବି ଏତେ ସହଜରେ, ଏତେ କଷ୍ଟେ ଉପାର୍ଜିତ ଯେ ମହା ସମ୍ପଦ !

ମୁକୁନ୍ଦ—ହତ୍ୟା—ହତ୍ୟା—ପ୍ରାଣହତ୍ୟା ଏକମାତ୍ର ଆକାଙ୍କ୍ଷା ମୋହର—! ( ମିନତିପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ )

ଚମ୍ପା—( ଅର୍ଦ୍ଧସ୍ୱଗତ ) ଦେବି, ଦେବି, ସେହି ହତ୍ୟା—ନୁହେଁ ନିଜ ହାତେ—ପଦାଘାତର ପ୍ରତିଶୋଧ ନେବି, ନେବି—ନୁହେଁ ନିଜ ପଦାଘାତେ । ପ୍ରେମ ଯା'ର ଉନ୍ମାଦ ଅଧୁନା—ଯା'ର ହେତୁ ଉପେକ୍ଷିତ ଉପଯାଚିତ ଅଙ୍ଗ ମୋର ତା'ରି ପଦାଘାତେ—ତା'ରି କରେ ଦିଆଇବି ମରଣ ଅଧିକ ! ପରିଶେଷେ ପ୍ରେମିକ-ପ୍ରେମିକା, ରାଜଦଣ୍ଡେ ଯେବେ ଭଜିବେ ମିଳନ—ଗାଇବି ମିଳନ-ଗୀତ ନାଚି ଧେଇ ଧେଇ—ଅଟ୍ଟହାସେ ଥର ଥର ଥରିବ ମେଦିନୀ !

ମୁକୁନ୍ଦ—କିବା ପଢ଼ ଆନ—ନ କର, ନ କର, ବିଳମ୍ବ—

ଚମ୍ପା—ଦେଖୁଚ ତ, ବୀର—ଚମ୍ପା କଣ୍ଠେ କପଟ ମୋହ ଖାପଟା ସଙ୍ଗେ ଏକାବେଳକେ ଖାପି ରହିଚି !

ମୁକୁନ୍ଦ—ଅସହ୍ୟ ଅସହ୍ୟ ବ୍ୟଙ୍ଗ ଏହି—ଦିଅ ଦିଅ—ନଚେତ୍ ଆପଣା ହସ୍ତେ—

ଚମ୍ପା—(ନିରସ୍ତ କରାଇ) ଛି, ବୀର—ଏପରି ଆତ୍ମହତ୍ୟା କି ବୀର ପକ୍ଷେ—

ମୁକୁନ୍ଦ—ଖୁବ୍, ଖୁବ୍ ଶୋଭନୀୟ, ଅଯେ ! ମର୍ଯ୍ୟାଦାର ନାଶଠାରୁ—( ଆତ୍ମହତ୍ୟା କରିବାକୁ ଉଦ୍ୟତ ହେଲେ )

ଚମ୍ପା—ଅଃ, ସେହି ମର୍ଯ୍ୟାଦାର ରକ୍ଷା ପାଇଁତ ମୁଁ ଏତେ ହରବର—

ମୁକୁନ୍ଦ—କ'ଣ—କ'ଣ କହିଲ, ଅଯେ ! ମୁଁ ଯେ—କିଛି ବୁଝି ପାରୁ ନାହିଁ !

ଚମ୍ପା—ବୁଝିବ ପରେ, ଆଗେ ଆସିଲ—

ମୁକୁନ୍ଦ—( ବୋକାପରି ଚାହିଁ ରହିଲେ )

ଚମ୍ପା—କେଉଁଠାକୁ ? ଯେଉଁଠାରେ ସୁନ୍ଦରୀ ସଖୀ ମୋ'ର ( ଟିକିଏ ଇଙ୍ଗିତ କରି ) ତୁମର ପଥକୁ ଅନାଇ—

ମୁକୁନ୍ଦ—(ତେଉଁ ଆକର୍ଷଣରେ ପଦେ ଅଗ୍ରସର ହେଲେ)

ଚମ୍ପା—ଆସ, ଆସ, ବେଗେ—

ମୁକୁନ୍ଦ—ନା, ନା—କ୍ଷମା କର—କ୍ଷମା କର ( ଭୟରେ କମ୍ପିଲେ )

ଚମ୍ପା—ସଖୀ ମୋ'ର ତା'ହେଲେ ବିପଦଟାକୁ ଆଲିଙ୍ଗନ କରି—

ମୁକୁନ୍ଦ—( ଚମକି ) କିନ୍ତୁ ମର୍ଯ୍ୟାଦାକୁ ଯେ ଡେଇଁ ପାରିବି ନାହିଁ, ଆର୍ଯ୍ୟେ—କର୍ତ୍ତବ୍ୟର ତାଡ଼ନାରେ ସୁଦ୍ଧା ନୁହେଁ—ସତ୍ୟର ଅବମାନନାରେ ମଧ୍ୟ ନୁହେଁ !—ଯେଣୁ ପ୍ରଭୁପତ୍ନି ତା'ର—ଅଧିପତ୍ୟ ତା'ର—ଏତେ ବେଶି—ଏତେ ଉଚ୍ଚ—ଲୋକ-ଚକ୍ଷୁରେ—ସମାଜ ଚକ୍ଷୁରେ—ସମଗ୍ର ବିଶ୍ୱ ଚକ୍ଷୁରେ—!

ଚମ୍ପା—ତେବେ ତୁମେ ତୁମର ମର୍ଯ୍ୟାଦାକୁ ଆଲିଙ୍ଗନ କରି ଥାଅ—ଖୋଳଟାକୁ ଆଲିଙ୍ଗନ କରି ସଖୀ ମୋର—

ମୁକୁନ୍ଦ—ଖୋଳ ! ଖୋଳ ! ମହାବିପଦ ! ଚାଲ, ଚାଲ, ଯଥାଇଚ୍ଛା, ବେଗେ ଘେନି ଚାଲ—

ଚମ୍ପା—ଆସ, ଆସ ବୀର ଏଣେ, ବେଗେ !

[ ଉଭୟେ ପ୍ରସ୍ଥାନ କଲେ ଓ ବିପରୀତ ଦିଗରୁ ସମରେନ୍ଦ୍ରର ପ୍ରବେଶ ]

ସମରେନ୍ଦ୍ର—ହାଃ ହାଃ ହାଃ—ମୂଷା ଏଥର ଠିକ୍ ଯନ୍ତାରେ ପଡ଼ିଛି—ସେନାପତି ସାଆନ୍ତେ—

[ ଅନନ୍ତର ଗମ୍ଭୀରଭାବେ ପ୍ରବେଶ ]

ସମରେନ୍ଦ୍ର—ଆଃ, ଏତେ ପଛେଇ ପଡ଼ୁଛନ୍ତି କାହିଁକି ?

ଅନନ୍ତ—ପଛେଇ ପଡ଼ିଲେହିଁ ମଙ୍ଗଳ, ସମରେନ୍ଦ୍ର !

ସମରେନ୍ଦ୍ର—ତୁମର ସିନା ଦଣ୍ଡଟା ମୁଣ୍ଡ—ମୋ'ର ବାବା ଗୋଟିଏ—

ଅନନ୍ତ—ବର୍ତ୍ତମାନ ସୁଦ୍ଧା ସମୟ ଅଛି—

ସମରେନ୍ଦ୍ର—ଛୁଚୁନ୍ଦ୍ରା ଗିଳିସାରି—

ଅନନ୍ତ—ଫେରାଇ ଅଣିଲେ ହୁଅନ୍ତା ନାହିଁ— ( ଚିନ୍ତାନୋଦ୍ୟତ )

ସମରେନ୍ଦ୍ର—'ହାଣି କୁରାଢ଼ି ବେକକୁ ଆଣି' ସିନା—

ଅନନ୍ତ—ସେପରି ସରଳ ସତ୍ୟବାଦୀ, ନିର୍ଭୀକ, ବୀରପୁରୁଷ—

ସମରେନ୍ଦ୍ର—ଏ' ସୁର ବଦଳାଇ କେଉଁଦିନୁ ସେନାପତେ ?

ଅନନ୍ତ—ନୀରବରେ ଯେଉଁଦିନୁ ମିଥ୍ୟାର ନିର୍ଯାତନା, ସତ୍ୟକୁ ସାନନ୍ଦେ ସହ୍ୟ କରିବାକୁ ଦେଖିଚି—ସମରେନ୍ଦ୍ର ! ସମରେନ୍ଦ୍ର ! ବର୍ତ୍ତମାନ ସୁଦ୍ଧା ସମୟ ଅଛି, ନିବୃତ୍ତ ହୁଅ—ମିଥ୍ୟା ଉପରେ ଯେଉଁ ସୌଧ ଆଜ ପ୍ରତିଷ୍ଠିତ—ସତ୍ୟରେ ତାହା ଦୃଢ଼ୀଭୂତ ହେବାକୁ ଦିଅ—

ସମରେନ୍ଦ୍ର—ସେନାପତେ ! ଏ'ପରି ଅସମ୍ଭବ କଥା କିପରି ସମ୍ଭବ କରାଉଛନ୍ତି—ତେଲରେ ତେଲ ମିଶେ ସିନା – ପାଣିରେ କି—

ଅନନ୍ତ—ସମରେନ୍ଦ୍ର !—

ସମରେନ୍ଦ୍ର—ଭାବି ଦେଖନ୍ତୁ, ସେନାପତେ ! ଆମର ଉନ୍ନତି ବାଟରେ ଏ' ଗୋଟାଏ କାଳିଆ ଗୋଖୁର ସାପ ନୁହେଁ କି ?

ଅନନ୍ତ—ସତ୍ୟ, କିନ୍ତୁ ବିଷହୀନ—ବିଷଥିଲେ ମଧ୍ୟ, ଆଘାତ ନ କଲେ କଦାପି ସେ—

ସମରେନ୍ଦ୍ର—ମାନ୍ଦ ଏ' ଯେ ମଣିଷର ପ୍ରକୃତି । କେତେବେଳେ କ'ଣ—ନିଶ୍ଚିନ୍ତ ହେବା କି—

ଅନନ୍ତ—ଠିକ୍ ଠିକ୍ କହୁଚ ସମରେନ୍ଦ୍ର—ସର୍ପଠାରୁ ମଧ୍ୟ ଭୟଙ୍କର—ବିନା ଅପରାଧରେ ସୁଦ୍ଧା—ଓଃ—ନିଜ ପ୍ରକୃତିରୁ ଯେ ନିଜେ ମୁଁ ଅନୁଭବ କରି ଦେଖି ପାରୁଚି—ଉପାୟ ?—ଉପାୟ ?—

ସମରେନ୍ଦ୍ର—( ହସି ) ଉପାୟତ ମୁଁ କରି ରଖିଚି—ଏକାବେଳକେ ରୋଗର ଶେଷ୍—

ଅନନ୍ତ—ଶେଷ୍—ଶେଷ୍—ବେଶ୍ କହିଛ, ସମରେନ୍ଦ୍ର !

ସମରେନ୍ଦ୍ର—ତା'ପର ସାଧୁ ହୁଅ—ଋଷି ହୁଅ—ଯୋଗୀ ହୁଅ—ଯା'ଇଚ୍ଛା—

ଅନନ୍ତ—ସମରେନ୍ଦ୍ର—ସମରେନ୍ଦ୍ର—କି ପୁରସ୍କାର ଦେବି ମୁଁ ତୁମ୍ଭଙ୍କୁ—

ସମରେନ୍ଦ୍ର—ଦେବ—ଦେବ—ବ୍ୟସ୍ତ କାହିଁକି—ସେ ପର କଥା—ଆସ, ଆସ, କାମଟା ଆଗେ—

ଅନନ୍ତ—ପାରିବ।—ପାରିବାତ, ସମରେନ୍ଦ୍ର ?

[ ଚମ୍ପାର ବେଗେ ପ୍ରବେଶ ]

ଚମ୍ପା—ନ ପାରିବାଭଳି କାମ କି ଏ' ସଂସାରରେ ଅଛି ?

ଅନନ୍ତ—କିଏ ? କିଏ ? ତୁ ?—ତୁ ଏଥିମଧ୍ୟରେ ?—ତେବେ, ତେବେ, ଅସମ୍ଭବ ମଧ୍ୟ ସମ୍ଭବ ନିଶ୍ଚୟ !

(ବେଗେ ପ୍ରସ୍ଥାନ)

ସମରେନ୍ଦ୍ର—ସବୁ ଠିକ୍ ତ—

ଚମ୍ପା—ଫସୁଛିଚ ପୁଣି ?

ସମରେନ୍ଦ୍ର—ଚାଲ ଚାଲ ତେବେ, କେଉଁଠି କ'ଣ—

( ପ୍ରସ୍ଥାନୋଦ୍ୟତ )

ଚମ୍ପା—(ଅଭିମାନଭରେ ଯେପରି ଠିଆ ହେଲା)

ସମରେନ୍ଦ୍ର—କି, ଠିଆ ହେଲୁ ଯେ ?

ଚମ୍ପା—ମୋତେ ଭସାଇ ଦେବ ନାହିଁତ ? (ଏଣେ କିନ୍ତୁ ମୃଦୁ ମୃଦୁ ହସୁଥିଲା)

ସମରେନ୍ଦ୍ର—ଆହା ! ତୋର ଏପରି ରୂପକୁ, ଯୌବନକୁ—

[ଚମ୍ପା ଯେପରି ଭାରି ଉଲ୍ଲସିତା ହୋଇ ଉଠିଲା]

ଚମ୍ପା—ଆଜି ଗୁଣକୁ— ? କହିଲ ଭଲା, ମୋ' ପରି ଆଉ ଜଣେ କେହି ଅଛି ନା—ସେହି କୁମ୍ଭୀର କଥାଟାରୁ ପରଖ କରି ନିଅନା ?—ଯାହାଯୋଗୁଁ ତୁମର ଆଜି ଏତେ ଉନ୍ନତି !—

ସମରେନ୍ଦ୍ର—ଆଜି ସେ କଥା କାହିଁକି ? ସ୍ତ୍ରୀର ଚରିତ୍ର ନେଇ ତ ପୁରୁଷର ଭାଗ୍ୟ— ?

ଚମ୍ପା—(ମୁରୁକି ମୁରୁକି ହସି) ଏପରି ଭାଗ୍ୟ କି ସତେ ମୋ'ର—

ସମରେନ୍ଦ୍ର—ହେବ କ'ଣ, ଚମ୍ପା ପ୍ରିୟତମେ—ହୋଇ ସାରିଲଣି, କହ ?

ଚମ୍ପା—ସତେ ?—ସତେ ?

ସମରେନ୍ଦ୍ର—ଏଥର ମୁଁ ସେନାପତି ହେବି ଯେତେବେଳେ—

ଚମ୍ପା—କ'ଣ କହୁଚ ?

ସମରେନ୍ଦ୍ର—ସାତେସାତ୍ ଚମ୍ପିକୁ ସେନାପତିଆଣୀ— ( ଚୁମ୍ବନ କରିବାକୁ ଗଲା କିନ୍ତୁ ଚମ୍ପା ନିଜକୁ ଛଡ଼ାଇ ନେଲା ) ଯା' ମ—

ଚମ୍ପା—ଏତେ ଆଶା ତୋ'ର ! ( ମନେ ମନେ କହୁ କହୁ ବିଦ୍ରୂପହାସ୍ୟରେ ନିଜର ମନୋଭାବ ଆହୁରି ପ୍ରକାଶ କରିବାକୁ ଯାଇ, ନିଜକୁ ସଂଯତ କରିନେଲା )—ଛି, ରାଗିଗଲ କି ? ( ସାଙ୍ଗିଲାଉ ସାଙ୍ଗିଲାଉ) ବୁଝିଲ ନା—ଜେମାଦେଈ ମନେ କରିଥିଲେ, ମୁଁ ଡରି ମରିବି—କିନ୍ତୁ ଅସ୍ତ୍ରଖଣ୍ଡ ଯେ ମୋ ହାତରେ ରହିଛି, ତା' ଆଉ ଧନମଣିଙ୍କର ଖିଆଲ ନାହିଁ !

ସମରେନ୍ଦ୍ର—ରହିବ କିପରି ? ଧନମଣି ଯେ ମୁକୁନ୍ଦା ପ୍ରେମରେ ଏକାବେଳକେ ମଜ୍‌ଗୁଲ୍—

ଚମ୍ପା—( ଈର୍ଷାରେ ଯେପରି ଜଳିଉଠି ) ଓଃ—କି ଦମାକ୍—ଚମ୍ପା ଚମ୍ପା ବୋଲି ଯାହା ସଙ୍ଗେ ପାଣି ଚଳୁ ନ ଥିଲା—ମିଣ୍ଟେଇ, ବଦ୍‌ମାସ୍ ବୋଲି ଗୋଇଠାମାରି—ଓଃ—କା' ଲାଗି—

( ମୁକୁନ୍ଦର କଥା ଓ ପଦାଘାତ ମନେ ପଡ଼ିଯିବାରୁ ନିଜ ଅଙ୍ଗକୁ ଗୁହିଁ ଫୁଲି ଫୁଲି ଉଠୁଥିଲା )

ସମରେନ୍ଦ୍ର—ଏକାବେଳକେ ନଅର ମନା କରିଦେଲେ—ହାୟ ! ମୋ ସକାଶେ ତୋତେ କେତେ କଷ୍ଟ ସହିବାକୁ ନ ପଡୁଚି—(ଅଉଁସି ଦେଇ ଦେଇ ) ଅଚ୍ଛା, ଜେମାଦେଈର ରାଜାଙ୍କୁ ସତ ଘଟଣାଟା—

ଚମ୍ପା—( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ବିଦ୍ରୂପାତ୍ମକ ହାସ୍ୟ କଲେ ) ହଁ, କହିଲେ ଖାଲି ହେଲା—ପ୍ରମାଣ କରି ପାରିଲେତ ?

ସମରେନ୍ଦ୍ର—ମାତ୍ର ସେଦିନ ମୁକୁନ୍ଦା ଯେମିତିକା ସତକଥାଟା କହି ପକାଇଥିଲା—ଭାଗ୍ୟକୁ ଅନନ୍ତ ସିଂହ ନ ଥିଲେ—

ଚମ୍ପା—ଅଚ୍ଛା, ଅନନ୍ତ ସିଂହକୁ ଆଜିକାଲି ଏମିତିକା ଘୁଡ଼୍ ଘୁଡ଼୍ ମାଡ଼୍ ମାଡ଼୍, ଦେଖୁଚ କାହିଁକି ?

ସମରେନ୍ଦ୍ର—ତାଙ୍କର ମୁଣ୍ଡ କ'ଣ ଆଉ ମୁଣ୍ଡ ହୋଇ-ଅଛି ? ଯେଉଁ ବୋଝ ମୁଣ୍ଡ ଉପରେ ଲଦା ହେଲାଣି—ମୋ ମୁଣ୍ଡରେ କ'ଣ କମ୍ ତ କି ?—ଏ ସବୁ ଫନ୍ଦି ଫିକରକୁ ସମସ୍ତ ମିତ୍ରଥାନ୍ତି ନା, ସେ ଚଳାଇ ନେଉ ନ ଥିଲେ ? ଭାଗ୍ୟେ, ମହାରାଜ ସେହିପରି ଗୋଟାଏ ହୁକୁମ କରି ଦେଇଥିଲେ ବୋଲି ସିନା ।

ଚମ୍ପା—କିନ୍ତୁ ଅନନ୍ତସିଂହ ଏମିତିକା ଚିହ୍ନା ହେଲେ ତ ସବୁ ମୁସ୍କିଲ୍ ! ( କ'ଣ ଭାବିବାକୁ ଲାଗିଲା )

ସମରେନ୍ଦ୍ର—କିଛି ଚିନ୍ତା ନାହିଁ, ଚମ୍ପା—ମୁଁ ଠିକ୍ ଆଣିଦେଇଛି—

ଚମ୍ପା—ନା, ନା, ଅସୁରି ଦରକାର—ମୋତେ ପରୀକ୍ଷା କରି ଦେଖିବାକୁ ହେବ । ( ଦ୍ରୁତ ପ୍ରସ୍ଥାନ )

ସମରେନ୍ଦ୍ର—ବେଶ୍ ତ—ମାନେ, ଏମିତିକା ଘୋଡ଼ା-ଗମନା କାହିଁକି, ଠିକ ଏ ବଉଳଗମନା ହୁଅ ।

( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

### —କୃଷ୍ଣାର ଶୟନ କକ୍ଷ—

[ ବେଶ୍ ସୁସଜ୍ଜିତ । ପଶ୍ଚାତରେ ଗବାକ୍ଷ ମଧ୍ୟ-ଦେଇ ଉଦ୍ୟାନ ଦେଖାଯାଉ ଥିଲା—ପ୍ରଭାତୀ-କାରଣବେଳା । ସଖୀଗଣ କିଏ ଏସ୍ରାଜ, କିଏ ବେହେଲା ଧରି ନାନା ଭଙ୍ଗିରେ ଉପବେଶନ ପୂର୍ବକ ଗୀତ ଗାଉଥିଲେ, ଜଣେ ମଧ୍ୟ ନୃତ୍ୟ କରୁଥିଲା ]

ଗୀତ

ଅମେ ଗୁଲ୍‌ଚ୍ ଭାସି ହସି, ହସି ।
ଢେଉରେ, ଢେଉରେ ଉଠି, ବସି ॥
କନକ ପ୍ରଭାତ କନକ ହିଲ୍ଲୋଳେ
ଖେଳାଏ ତରଙ୍ଗ ପରଶେ ମୃଦୁଳେ;—
ଅନିଳ ଚଞ୍ଚଳ ବୋହି ପରିମଳ,
କରେ ଗୋ ଅକୁଳ ଭସାଇ ଦୁ'କୂଳ;
କେ ସେ ଇଙ୍ଗିତେ ଉଛୁଳାଏ ହସି—
ଖେଳଇଲେ, ଯାଏତ ଖସି, ଖସି ॥

ମୁକୁନ୍ଦ—କାହିଁ ? ଏଠିବି ତ ହେମାଦେଈଙ୍କୁ ଦେଖୁ ନାହିଁ—ଏମାନଙ୍କୁ ପଚାରିବି କି ? ନା, ନା—ଏ' ଯେ ଗୋପନୀୟ—କି ମୂର୍ଖ ମୁଁ, ସେହି ସଖୀ ତ ଏହି ଗୁପ୍ତ କଥା ଜାଣେ—ତା'ରି ଦ୍ୱାରା ଆଣାଇ ନେଇଥିଲେ ତ ସବୁ ଦିଗ ରକ୍ଷା ହୋଇ ଥା'ନ୍ତା—ହାୟ ! କି ଆବେଗରେ ସିନା—। କାହିଁ ଗଲା ସେ—'ଏଠି ଥାଅ' ବୋଲି କହି ?—କେଉଁଠି ପାଉଛି—ନା, ନା', ତାକୁ ଖୋଜି ସମସ୍ତ ନଷ୍ଟ କରିବାଠାରୁ, ହେମାଦେଈଙ୍କ ସଙ୍ଗେ ବରଂ ଗୋପନରେ—ନା, ନା, ମୁଁ ଫେରି ଯାଏଁ, ଫେରି ଯାଏଁ—ସେହି ସଖୀ ଦ୍ୱାରାହିଁ—

[ ଏହି ସମୟରେ ସୁସଜ୍ଜିତା କୃଷ୍ଣା ବିପରୀତ ଦିଗରୁ ପ୍ରବେଶ କଲେ ଓ ମୁକୁନ୍ଦ ମନ୍ତ୍ରମୁଗ୍ଧବତ୍ ଅନାଇ ରହିଲେ ]

ସଖୀଗଣ—( ଗୀତ ଗାଇବାର ଉଦ୍‌ଯୋଗ କଲେ )

କୃଷ୍ଣା—( ଇଙ୍ଗିତରେ ସଖୀମାନଙ୍କୁ ସ୍ଥାନତ୍ୟାଗ କରିବାକୁ ଆଦେଶ କଲେ, ସଖୀମାନେ ନୀରବରେ ନିଜ ନିଜ ଯନ୍ତ୍ରାଦି ନେଇ ଗୋଟାଏ ଦିଗରେ ପ୍ରସ୍ଥାନ କଲେ । କୃଷ୍ଣା ଗୋଟିଏ ସୁସଜ୍ଜିତ ଆସନରେ କିଛି କ୍ଷଣ ବସି, ଦୀର୍ଘ ନିଶ୍ୱାସ ତ୍ୟାଗ କରୁ କରୁ )—ଓଃ—କି ବିଶ୍ୱାସଘାତକୀ ।

ମୁକୁନ୍ଦ—( ହଠାତ୍ ସ୍ୱପ୍ନୋତ୍‌ଥିତବତ୍ ) ନା, ନା, ବିଶ୍ୱାସଘାତକୀ ନୁହେଁ, ହେମା—( କୃଷ୍ଣା ନିକଟକୁ ଧାଇଁ ଆସିଲେ )

କୃଷ୍ଣା—କିଏ ? କିଏ ? ( ଆତଙ୍କରେ ଶିହରି-ଉଠି ପଛକୁ ଘୁଞ୍ଚିଗଲେ )

ମୁକୁନ୍ଦ—ଭୟର କାରଣ ନାହିଁ, ହେମାଦେଈ—ମୁଁ—( ସ୍ୱଗତ ) ଓଃ, ରାଜମର୍ଯ୍ୟାଦା ଯେ ଭୁଲିଲି ( ଅଣ୍ଟୁମାଡ଼ି ପ୍ରଣାମ ପୂର୍ବକ ) ଏ' ଅଧୀନ—( ଜିହ୍ୱା ଦଂଶନ ପୂର୍ବକ ) ନା, ନା, ଅଧମ—ଦାସାନୁଦାସ—ସେବକ—ମୋର, ନା, ନା, ଅଧମର, ସେବକର ନାମ—ମୁକୁନ୍ଦ—

କୃଷ୍ଣା—ମୁକୁନ୍ଦ ତୁମ୍ଭେ ! ତୁମ୍ଭର ନାମ—ମୁକୁନ୍ଦ !

ମୁକୁନ୍ଦ—ହଁ, ହଁ, ନା, ନା—ଆଜ୍ଞା, ଆଜ୍ଞା—ମଣିମା—

କୃଷ୍ଣା—ଅସମ୍ଭବ—ଅସମ୍ଭବ —

ମୁକୁନ୍ଦ—ସେହି ଖୋଲଷ୍ଟା ହିଁ—

କୃଷ୍ଣା—( କେଉଁ ସ୍ମୃତିଦଂଶନରେ ମୁଖ ବିବର୍ଣ୍ଣ କରିଦେଲେ )

ମୁକୁନ୍ଦ—(ହଠାତ୍ ରହି ଯାଇ ଓ କୃଷ୍ଣାର ବିବର୍ଣ୍ଣଭାବ ଦେଖି ଜିଭ୍ କାମୁଡ଼ି ସ୍ୱଗତ) ଏଁ, ଏଁ, ନ ପଡ଼ୁ ରୁଣୁ ନାମ କହି, ପ୍ରମାଣ ଦେଇ, ମର୍ଯ୍ୟାଦା ନଷ୍ଟ କଲି ନା କ'ଣ ?—(ପ୍ରକାଶ୍ୟେ) କ୍ଷମାକରନ୍ତୁ ମହାଦେଈ—ପ୍ରକୃତରେ ମୁହିଁ—ନା, ନା, ଏ ଅଧୀନ—ଅଧମ—ମୁକୁନ୍ଦ ।

କୃଷ୍ଣା—ପ୍ରକୃତ ମୁକୁନ୍ଦ ନୁହଁ ତୁମ୍ଭେ—ତୁମ୍ଭେ ନିଶ୍ଚୟ ଜାଲ୍—ଜାଲ୍—

ମୁକୁନ୍ଦ—ଜାଲ୍, ଜାଲ୍—(ଠିଆ ହୋଇ) ସତ୍ୟ ଛଡ଼ା ମିଥ୍ୟା କେବେ—ନା—ନା (ସ୍ୱଗତ) ମର୍ଯ୍ୟାଦା—ମର୍ଯ୍ୟାଦା—( ଆଣ୍ଠୁ ମାଡ଼ି ବସି, ପ୍ରକାଶ୍ୟେ ) ଧୃଷ୍ଟତା—ପ୍ରଗଲ୍ଭତା—ଅସଂଭଦ୍ରତା—ମାର୍ଜନା—

କୃଷ୍ଣା—ସତ୍ୟ, ସତ୍ୟକି ସେହି ମୁକୁନ୍ଦ ତୁମ୍ଭେ । ଯାହାକୁ, ଦିନେ କେତେକ ସଖୀଙ୍କ ମେଳରେ ଜଳକେଳି କଲାବେଳେ, କୁମ୍ଭୀର ଗ୍ରାସରୁ ମୋତେ ରକ୍ଷା କରି—ନା, ନା, ରକ୍ଷାତ ନୁହେଁ—ଅନ୍ୟ କେଉଁ ଭୀଷଣତର କୁମ୍ଭୀର ଗ୍ରାସରେ ଯେପରି ନିକ୍ଷେପ କରି, କ୍ରୂର ମଧୁର ଭାବେ, ଏ' ନୟନ ଓ ହୃଦୟ ପଥେ ମୋର ଗୋଟାଏ ଚମକ ଖେଳାଇ ଦେଇ, କେଉଁ ଘନାନ୍ତରାଳରେ ଲୁଚି ଯିବାକୁ ଦେଖିଥିଲି—?

ମୁକୁନ୍ଦ—(ସଲଜ୍ଜେ ମସ୍ତକାବନତ କଲେ)

କୃଷ୍ଣା—ତୁମ୍ଭେ କି ସେହି ମୁକୁନ୍ଦ, ଯେ କି, ସେ ଦିନ ସଭାରେ ପୁରସ୍କାର ତା'ର ଗୋଟାଏ ପ୍ରତାରକ, ଶୃଗାଳପର ପୁଚ୍ଛୋତ୍ତୋଳନ ପୂର୍ବକ ନେଇ ପଳାଇ ଯିବାକୁ ଦେଖି ପିଞ୍ଜରାବଦ୍ଧ କେଶରୀ ପରି ନୀରବ ହୁଙ୍କାରରେ ଯେପରି ସମସ୍ତ ବାହାର ଅନ୍ତର ମୋ'ର ପ୍ରକମ୍ପିତ କରି ଦେଇଥିଲ ?—

ମୁକୁନ୍ଦ—(ଦୀର୍ଘନିଃଶ୍ୱାସ ତ୍ୟାଗ କଲେ)

କୃଷ୍ଣା—ସତେ, ସତେ କି ତୁମ୍ଭେ ସେହି ବୀର, କାନ୍ତିବ୍ୟଞ୍ଜିତ ସୁନ୍ଦର ଯୁବକ, ଯାହାର ସେଦିନକାର ସେହି କ୍ଷଣିକ ସଂସ୍ପର୍ଶରେ ମୁଁ ଯେ କି ଆବେଗ ଓ ତାଡ଼ନାରେ ଦିନରାତି ଭୁଲି କେତେ କେତେ ଚିନ୍ତା ଓ ସ୍ୱପ୍ନ ରାଜ୍ୟ ମଧ୍ୟ ଦେଇ ଭାସି ଚାଲିଲି—ଚାଲିଥା'ନ୍ତି ଆଜି ପର୍ଯ୍ୟନ୍ତ—ଏହି ମୁହୂର୍ତ୍ତ ପର୍ଯ୍ୟନ୍ତ—ନା, ନା ଚିରଦିନପାଇଁ, ଯଦି ବାଧା ଦେଇ ନ ଥାନ୍ତା—ଦୈବବାଣୀ ସମ—ମର୍ଯ୍ୟାଦା—ରାଜ-ମର୍ଯ୍ୟାଦା—କେଉଁ ବହିର୍ଦେଶେ ଥାଇ !

ମୁକୁନ୍ଦ—ସେହି ମର୍ଯ୍ୟାଦା—ରାଜ-ମର୍ଯ୍ୟାଦା ରକ୍ଷାକରିବା ଉଦ୍ଦେଶ୍ୟରେହିଁ ଏଠାକୁ ଆଗମନ, ସେହି ମୁକୁନ୍ଦର ।

କୃଷ୍ଣା—'ମର୍ଯ୍ୟାଦା ରକ୍ଷା' କରିବା ଉଦ୍ଦେଶ୍ୟରେ, ନା ମର୍ଯ୍ୟାଦା ନାଶ କରିବା ଉଦ୍ଦେଶ୍ୟରେ, ଚୋର—

ମୁକୁନ୍ଦ—'ମର୍ଯ୍ୟାଦା ନାଶ'—'ମର୍ଯ୍ୟାଦା ନାଶ'—( ସହସା ବଜ୍ରପାତନରେ ଯେପରି କିଛିକ୍ଷଣ ଜ୍ଞାନହୀନ ହେଲେ)—ମହାଦେଈ, ମହାଦେଈ ବିଶ୍ୱାସ କରନ୍ତୁ—ମୁହିଁ ସେହି ମୁକୁନ୍ଦ—ପ୍ରକୃତରେ—(ଅତୀବ ବିନମ୍ର ଭାବରେ କୃଷ୍ଣା ଆଡ଼େ ଚାହିଁ ରହିଲେ)

କୃଷ୍ଣା—ବାଃ, ବାଃ ସ୍ୱର ବଦଳାଇ ବେଶ ଅଭିନୟ କରି ଜାଣତ ?

ମୁକୁନ୍ଦ—ମହାଦେଈ ! ମହାଦେଈ ! ଏ ଶ୍ଳେଷବାକ୍ୟ ପ୍ରୟୋଗ ବିଧାନୁ—ନିଅ ଅସ୍ତ୍ର କାଟିଦେଇ ମୋର—ବିଦ୍ଧ ବକ୍ଷେ ନିଜ କରେ—କର ନାଶ ପ୍ରାଣ ତ୍ୱରା ମମ—

କୃଷ୍ଣା—ଏତେ ଯେବେ ମହତ୍ତ୍ୱ ତୋହର—କେଉଁ ନୀଚ ପ୍ରାଣେ, ନୀଚ ଅଭିଳାଷେ ପଶିଛୁରେ ଅନ୍ତଃପୁରେ ମୋର—ଏକାକିନୀ ମୁହିଁ—ନାହାନ୍ତି ସଙ୍ଗିନୀ—

ମୁକୁନ୍ଦ—ସେତିକି, ସେତିକି, ମହାଦେଈ—ନ କର ଛଳନା—ବିନା ଆଦେଶରେ, ଚନ୍ଦ୍ର ସୂର୍ଯ୍ୟ ନ ପଶେ ଯେଠାବେ—କିବା ଶକ୍ତି ଦାସାନୁଦାସର ତହିଁ—

କୃଷ୍ଣା—କହିବାକୁ ତେବେ ଗୃହୁଁ, ମିଥ୍ୟାବାଦୀ—ଓଡ଼ାଇଛୁ ସଂଗୋପନେ ଏହିଭାବେ ମୁହିଁ ?

ମୁକୁନ୍ଦ—( ସ୍ୱପ୍ନୋତ୍ଥିତବତ୍ ଚମକି ଉଠି ) ଏଁ—ଏଁ—ଏଁଙ୍କ କଥା ଶୁଣୁଅଛୁ ମୁହିଁ—ଜେମାଦେଈ—ଜେମାଦେଈ—

କୃଷ୍ଣା—କାମୁକ—ଲମ୍ପଟ—କିଏ ଅଛ—ଶୀଘ୍ର—
(ପ୍ରସ୍ଥାନୋଦ୍ୟତ)

ମୁକୁନ୍ଦ—ତେବେ କ'ଣ ମିଥ୍ୟାରେ ଭୁଲିଲ ମୋତେ—

କୃଷ୍ଣା—'ମିଥ୍ୟାରେ ଭୁଲିଲି' ! ( ଏହି କଥାଟିର ଯେମନ୍ତ ଅନ୍ତଦେଶସ୍ଥ ଗୋଟାଏ ଅର୍ଦ୍ଧରୁଦ୍ଧ ଦ୍ୱାର ସମ୍ପୂର୍ଣ୍ଣ ଖୋଲିଗଲା)—କିଏ ?—କିଏ ?—

ମୁକୁନ୍ଦ—ଆପଣଙ୍କର—ଗ୍ରାମୁକର ସଖୀ—

କୃଷ୍ଣା—ନାମ ?—ନାମ ?—

ମୁକୁନ୍ଦ—ଜାଣେ ନା, ଜେମାଦେଈ—କି ନାମ—ଓଃ, ମୁକୁନ୍ଦ—ମୁକୁନ୍ଦ—କି ଭ୍ରମରେ—

କୃଷ୍ଣା—କ'ଣ କହିଲ—?

ମୁକୁନ୍ଦ—'ଜେମାଦେଈ ଆପଣଙ୍କର ସେହି ଖୋଲଟା ଯୋଗୁଁ ଭାରି ବିପଦରେ—'

କୃଷ୍ଣା—ବୁଝିଚି, ବୁଝିଚି—ଚମ୍ପା ଦୁଷ୍ଟାର କାର୍ଯ୍ୟ ଏହି—ଆପଣ କ'ଣ ଅପଣଙ୍କର ଖୋଲଟା ଫେରି ପାଇ ନାହାନ୍ତି ?—ସନ୍ଧ୍ୟାରେ ତ ସେହିଦିନ ମୁଁ ପକାଇ—ନା, ନା ଥୋଇଦେଇ, ସେହି ମୁହୂର୍ତ୍ତେ—

ମୁକୁନ୍ଦ—ତେବେ—ତେବେ ଅପଣଙ୍କ ପାଖରେ ନ ଥିଲା ?

କୃଷ୍ଣା—ଏ'ସବୁ ବିଶ୍ୱାସ କରିବା ପୂର୍ବରୁ ଥରେ ଅନୁସନ୍ଧାନ—

ମୁକୁନ୍ଦ—କରିଥିଲି,—କିନ୍ତୁ ଖୋଜି ନ ପାଇବାରୁ—(ଲଜ୍ଜାରେ ମୁଖାବନତ କଲେ)

କୃଷ୍ଣା—ସେହି ଦୁଷ୍ଟା ତେବେ ନିଶ୍ଚୟ—ବେଶ୍, ମଗାଇ ପଠାଇଲ ନାହିଁ ?

ମୁକୁନ୍ଦ—କ୍ଷମା, କ୍ଷମା, ଜେମାଦେଈ—ଜାଣେ ନାହିଁ, କେଉଁ ଆବେଗରେ—ନା, ନା, ସେହି ଦୁଷ୍ଟାର ଛଳନାରେ ଭୁଲି ସିନା—ଜେମାଦେଈ । ଜେମାଦେଈ । ମଗାଇଥିଲେ ମଧ୍ୟ, ସେହି ଦୁଷ୍ଟା ହାତରେହିଁ ମଗାଇ ଥାନ୍ତି ସିନା—

କୃଷ୍ଣା—ଓଃ, ନିଶ୍ଚୟ ଗୋଟାଏ କିଛି ବିପଦ ତେବେ—

ମୁକୁନ୍ଦ—'ବିପଦ'—'ବିପଦ'—ମୁହିଁ ସେ 'ବିପଦ' ସଙ୍କଟରେ ଏବେ—ଓଃ, କି ଅଦୂରଦର୍ଶୀ ମୁହିଁ—ମର୍ଯ୍ୟାଦା ରକ୍ଷା କରିବାକୁ ଅସି—

କୃଷ୍ଣା—(ନେପଥ୍ୟକୁ ଚାହିଁ) ଏଁ, ଏଁ—କିଏ, କିଏ ଏମାନେ—(ମୁକୁନ୍ଦ ଆଡ଼େ ଚାହିଁ ମର୍ଯ୍ୟାଦା ନାଶ ଭୟରେ ଅଧୀର ହେଲେ ପରି)

ମୁକୁନ୍ଦ—ଧୈର୍ଯ୍ୟ, ଧୈର୍ଯ୍ୟ, ଜେମାଦେଈ—ମର୍ଯ୍ୟାଦା ରହିବ ଚିର ଅକ୍ଷୁଣ୍ଣ ତୁମ୍ଭର—ଯାବତ ମୁକୁନ୍ଦ ପିଣ୍ଡେ ଧରିଛି ପରାଣ—( ଡେଇଁ ଉଠି ଜଳାକବାଟିର ଲୁହାଗଜ ଦୁଇଟା ଉଠାଇ ଦେଇ ଆର ପାଖକୁ ଡେଇଁପଡ଼ି, ସେହି ଦୁଇଟା ପୁଣି ଯଥା ସ୍ଥାନରେ ଲଗାଇଦେଲେ—କୃଷ୍ଣା ସାଶ୍ଚର୍ଯ୍ୟେ ଚାହିଁଥିଲେ ) କ୍ଷମ, ଅପରାଧ ମୋ'ର । (ବୀରଦର୍ପେ ପ୍ରସ୍ଥାନ କଲେ)

କୃଷ୍ଣା—(ମୁଗ୍ଧ ଦୃଷ୍ଟିରେ ଚାହିଁ) ନା, ନା, ଅପରାଧିନୀ ମୁହିଁ, ବୀର—ଫେରି—ଫେରି—( ଜଳାକବାଟି ଆଡ଼େ ଦୌଡ଼ି ଗଲେ )

[ସମରେନ୍ଦ୍ର ଓ ଚମ୍ପାର ବେଗେ ପ୍ରବେଶ]

ସମରେନ୍ଦ୍ର ଓ ଚମ୍ପା—କାହିଁ, କାହିଁ ଚୋର ?—( ସେହି ଜଳା କବାଟି ବାଟେ ଅନାଇ ବିସ୍ମିତ ହେଲେ)

ଚମ୍ପା—ଡେଇଁ ପଳାଇଲା ନା କଣ ?

ସମରେନ୍ଦ୍ର—କେଉଁ ବାଟେ ?—

[କୃଷ୍ଣା କ୍ରୁଦ୍ଧ ଦୃଷ୍ଟିରେ ଚାହିଁଥିଲେ]

ଚମ୍ପା—କିଛି ନେଇଗଲା କାମ କରି ନାହିଁ, ଜେମା-ମଣିମା—ଏହି ଦେଖନ୍ତୁ ନା ପ୍ରତିନିଧି ଅନନ୍ତ ସିଂହଙ୍କ ଆଦେଶ ପତ୍ର—

କୃଷ୍ଣା—ବିଶ୍ୱାସଘାତିନୀ—କାଳନାଗୁଣୀ—
( ଘୃଣାଭରେ ପ୍ରସ୍ଥାନ କଲେ )

ଚମ୍ପା—ସେହି କାଳନାଗୁଣୀର କାଳଦଂଶନ ଏବେ ସମ୍ଭାଳ—

ସମରେନ୍ଦ୍ର—କିପରି ଗଳ୍ପ ?

ଚମ୍ପା—ହଁ, ସେଇଠି ଭୂତପରି ଠିଆ ହୋଇ ଥାଅ—ଯାଇ, ବେଗେ ଖୋଜ, କାହିଁ ଯେବେ ଅସ ନା—
[ ସମରେନ୍ଦ୍ର ପ୍ରସ୍ଥାନ କରିବାକୁ ଯାଇ ଦ୍ୱାର ବନ୍ଦ ଦେଖି ଫେରିଲେ ]

ସମରେନ୍ଦ୍ର—ଚମ୍ପା !—ସର୍ବନାଶ !—ଦ୍ୱାର ଯେ ବାହାରଆଡୁ କଳା !

ଚମ୍ପା—ଏଁ—( ପ୍ରତ୍ୟୁତ୍ପନ୍ନମତି ବଳରେ ) ମ'—ଭାଙ୍ଗି ଦେଇ ପାରୁ ନାହଁ ? କେମିତିକା ମିଣିପ ତୁମେ ? ଏଇଥିପାଇଁ ପରା— ( ମୁରକି ହସିଲେ )

ସମରେନ୍ଦ୍ର—( କେଉଁ ଉତ୍ତେଜନାରେ ଧକ୍କା ମାରି ଭାଙ୍ଗିବାକୁ ଚେଷ୍ଟା କଲେ, କିନ୍ତୁ ବିଫଳ ଓ କ୍ଳାନ୍ତ ହେବାକୁ ଲାଗିଲେ )

ଚମ୍ପା—ମ'—ଟିକିଏ ହୋଇ କ'ଣ ତୁମର ବୁଦ୍ଧିଶୁଦ୍ଧି ନାହିଁ—ସେହି ଜଳାକବାଟି ବାଟେ ଗଳିଯାଇ ପାରୁ ନାହଁ—ତୁମ ସାମନାରେ ପରା—

ସମରେନ୍ଦ୍ର—ଠିକ୍ ଠିକ୍ ( ମୁଣ୍ଡ ଟଳାଇ ) ଚମ୍ପା ! କିଛି ଯେ ଗଳି ନାହିଁ ।

ଚମ୍ପା—ମର, ଓଲୁ ! ସେହି ଲୁହା ବାଡ଼ ଗୁଡ଼ାକ ଓଟାରି ବାହାର କରିଦଅନା ଆଗେ—

ସମରେନ୍ଦ୍ର—ଚମ୍ପା, ( ସେଥିରେ ମଧ୍ୟ ବିଫଳ ହୋଇ ) ଖାଲି ଖୋଲିବାକୁ ଆସି, ନିଜେ ସେହି ଖାଲରେ—?

ଚମ୍ପା—ପଡ଼ି ମର, ମର୍ ତୁହି—ମୁଁ ବେଣ୍ଟକର ମାଟି ଚଲାଇ ଦେଉଛି—

ସମର—ଚମ୍ପା !—ଚମ୍ପା !—ପ୍ରାଣେଶ୍ୱରୀ—
( ବିକଳରେ ଗୁହାଁରିଲେ )

[ ରାଜା ଓ କୃଷ୍ଣାଙ୍କ ଆସିବାର ପରେ ପରେ କେତେକ ସୈନ୍ୟ ସହ ଅନନ୍ତସିଂହଙ୍କ ପ୍ରବେଶ ]

ପ୍ରତାପ—ଏତେ କଥା—କାହିଁ ସେ ନରାଧମ ?

କୃଷ୍ଣା—ଏହି ଘରେ—(ସମରେନ୍ଦ୍ରକୁ ଦେଖାଇ ଦେଲେ)

ପ୍ରତାପ—ମୁହିଁ ତା'ର ଦେଖିବା ମଧ୍ୟ ଅନୁଚିତ—

ଚମ୍ପା—ଏହି ବାଟେ ପଳାଇଛି, ମହାରାଜ !—ଏହି ବାଟେ, ସେନାପତେ !

କୃଷ୍ଣା—ସେହି ଦାସୀଟା ବି—( ରାଜାଙ୍କ କାନେ କାନେ କ'ଣ କହିଲେ )

ପ୍ରତାପ—ସଙ୍ଗେ, ସଙ୍ଗେ ଅଛି ନା ?—ରକ୍ତ ଥରେ ପରି ମୁହଁରେ ଲାଗିଛି—ସେନାପତେ ! ସେ ଦିନ କୁମ୍ଭୀର କଥା ମୁକୁନ୍ଦ ଯେଉଁପରି କହୁଥିଲେ, ତାହାହିଁ ପ୍ରକୃତ ଘଟଣା—ତୁମ୍ଭେ ମଧ୍ୟ ଭୁଲ ବୁଝିଥିଲ;—ଏହି ପାପିୟସୀ ତା'ର ପାପ ପ୍ରଣୟ ସାର୍ଥକ କରିବା ଉଦ୍ଦେଶ୍ୟରେ—ଛାଡ଼—ମା, ସେହି ପାପିଷ୍ଠାକୁ ବାହାର କରି ଦେବାଆଗରୁ ଏ' କଥା ମୋତେ ନ ଜଣାଇଲ କାହିଁକି ? ଦେଖ, ଦୟା କରି ଛାଡ଼ି ଦେବାର ପ୍ରତିଫଳ ସମ୍ପ୍ରତାନ କିପରି ଭାବରେ ଦେଇଥାଏ—ଓଃ—କମ୍ ସାହସ ତ ନୁହେଁ ତା'ର !—

ଚମ୍ପା—ମହାରାଜ ! ପ୍ରକୃତ ଚୋର କିଏ, ଥରେ ବିଚାର କର—( ସମରେନ୍ଦ୍ର ଆଡ଼େ ) ଖୋଲନ୍ତା—ଖୋଲନ୍ତା—

ସମରେନ୍ଦ୍ର—(ସଭୟେ ଅନନ୍ତ ଆଡ଼େ ଦେଖାଇ ଦେଲେ)

ପ୍ରତାପ—ଶୀଘ୍ର ବନ୍ଦୀ କରି ଏମାନଙ୍କୁ ଏ ସ୍ଥାନରୁ ନେଇ ଯାଅ, ଅନନ୍ତ ସିଂହ !—( ପ୍ରସ୍ଥାନୋଦ୍ୟତ ହେଲେ )

ଚମ୍ପା—ସେନାପତେ—ସେନାପତେ—କାହିଁ ସେହି ଖୋଲନ୍ତା—

କୃଷ୍ଣା—ଚାଲ, ଚାଲ, ବାବା !—ଆଉ ଏ' ସ୍ଥାନରେ—
( ଉଭୟେ ପ୍ରସ୍ଥାନ କଲେ )

ଚମ୍ପା—ଅଣ, ଅଣ—ବେଗେ ଅଣି ଦେଖାଅ—ମହାରାଜାଙ୍କୁ, ଲୁହ ଲୁହାଇ—କିଏ ଚୋର—କିଏ ଚୋରଣୀ—

ଅନନ୍ତ—( ଅନ୍ୟମନସ୍କ ଥାଇ ) ବାନ୍ଧ, ବାନ୍ଧ ଦୁହିଙ୍କୁ, ସୈନିକ !

ସମରେନ୍ଦ୍ର—ମୁଁ—ମୁଁ—ମୁଁ ଯେ—ସ-ମ—ସ-ମ-ରେ ।

ଚମ୍ପା—ଏ’ କଣ କରୁଛ, ଅନନ୍ତ ସିଂହ ?—ମୁଁ ଯେ ଚମ୍ପା—।

ଅନନ୍ତ—( ସେହିପରି ଅନ୍ୟମନସ୍କଭାବେ ) ରାଜାଙ୍କର ଆଦେଶ— ।—ହାଃ—ହାଃ—ହାଃ—( ଜୋର ଗୋଳରେ ହସିଉଠିଲେ—ସେହି ହସରେ ଯେମନ୍ତ ସେ ନିଜକୁ ନିଜେ ବିଦ୍ରୂପ କରୁଥିଲେ )

ଚମ୍ପା—( କୁଞ୍ଚାସି ହିନା ପରି ଗୁହିଁ ରହିଲେ )

ସମରେନ୍ଦ୍ର—( ଚମ୍ପାର କାନଭିତରେ ମନ୍ତ୍ର ଗୁଞ୍ଜିବାକୁ ଲଗିଲେ )

—ଯବନିକା—

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

— ପ୍ରମୋଦକାନନ —

[ ସଖୀଗଣ ମଧ୍ୟରୁ କେତେକ ଫୁଲ ଗୁଙ୍ଗୁଡ଼ରେ ଫୁଲ ତୋଳି ଆଣି ଦେଉଥିଲେ, କେତେକ ବସି ବସି ହାର ଗୁନ୍ଥୁଥିଲେ, କେତେକ କେବଳ ନିରୀକ୍ଷଣ କରୁଥିଲେ । ସମସ୍ତେ କିନ୍ତୁ ସମଭାବରେ ଓ ସମସ୍ୱରରେ ଗୋଟିଏ ସଙ୍ଗୀତର ଝଙ୍କାରରେ ଉଦ୍ୟାନଟି ପୂର୍ଣ୍ଣ କରି ଦେଇଥିଲେ ]

ଗୀତ

ଆମେ ଗାଉ ଗାନ, ଗୁନ୍ଥୁ ମାଳ ।
ଫୁଟିଲେ, ଫୁଟିଲେ ଗୋ ସଞ୍ଜ ସକାଳ ॥
ଫୁଲ ପରି ଫୁଟି ଫୁଲ ପରି ଶୋଭ
ମୃଦୁଳ ପବନେ ଦୋହଲି ଥାଉ;
ପୁଲକେ ପୁଲକେ ଦେ ଅସି କି ତାନ
କି ମାନ ତୋଳେ, ଖେଳାଏ ମନ—
ଯେତୁ ନ ଯେତୁ ମାଳ ଆମର
ଗୁନ୍ଥୁଥିବୁଟି ସଞ୍ଜ ସକାଳ ॥

[ଏହି ସମୟରେ କୃଷ୍ଣାର ପ୍ରବେଶ]

କୃଷ୍ଣା—କ’ଣ କରୁଛ ତୁମ୍ଭେମାନେ ? ଏତେବେଳେ କି ହାର ଗୁନ୍ଥିବାର ବେଳ ?

୧ମା ସଖୀ—ମଣିମାଙ୍କ ହୁକୁମ୍ ହୋଇଥିଲା ବୋଲି—

କୃଷ୍ଣା—ହୁକୁମ୍ କରିଥିଲି ?—ବେଶ୍—ବେଶ୍—ଗୁନ୍ଥ ଗୁନ୍ଥ—ଦେଖେଁ କେମିତକା—

୧ମା ସଖୀ—(ହାରଟି ଆଣି ଦେଖାଇଲେ)

କୃଷ୍ଣା—( ସାଗ୍ରହେ ନେଇ ) ଯେନି ଯା’ ଏଠୁଁ—

ସଖୀଗଣ—(ସଭୟେ ଗୁହିଁରହିଲେ)

କୃଷ୍ଣା—ଚଳି ଯାଅ ସମସ୍ତେ—ମୋ’ର ହୁକୁମ୍ (ସଖୀଗଣ କ୍ଷୁଣ୍ଣମନେ ପ୍ରସ୍ଥାନ କଲେ) କି’ ସମ୍ବାଦ ପାଉଛୁ ! କି’ ବିଗୁର ହେଲା ! କେହି ତ ଫେରିଲେ ନାହିଁ । ଯା’କୁ ପଠାଇଲି—ଏହି ଯେ ଅନନ୍ତ ଭାଇ—।

[ଅନନ୍ତର ବେଗେ ପ୍ରବେଶ]

କୃଷ୍ଣା—କି ସମ୍ବାଦ,—କୁହ—ଶୀଘ୍ର ଶୀଘ୍ର ଭାଇ ?

ଅନନ୍ତ—ଶୁଭସମ୍ବାଦ, କେମାଦେଈ ! ମୁକୁନ୍ଦ ନିର୍ଦ୍ଦୋଷ ପ୍ରମାଣିତ ହୋଇ, ମୁକ୍ତ—

କୃଷ୍ଣା—‘ମୁକ୍ତ’ ! ଭାଇ ! ଭାଇ ! ସତ କହୁଚତ ? ‘ମୁକ୍ତ’—ଆଉଥରେ—ଆଉଥରେ—

ଅନନ୍ତ—ହଁ, ‘ମୁକ୍ତ’, କେମାଦେଈ—ମୁକୁନ୍ଦ ନିର୍ଦ୍ଦୋଷ ପ୍ରମାଣିତ ହୋଇ ମୁକ୍ତ ଲାଭ କରିଛି—ଆଉ ଚମ୍ପା, ସମରେନ୍ଦ୍ର ପ୍ରାଣଦଣ୍ଡରେ ଦଣ୍ଡିତ ହୋଇ, ବର୍ତ୍ତମାନ କାରାଗାରରେ—।

କୃଷ୍ଣା—(ଅତ୍ୟଧିକ ଆନନ୍ଦୋଚ୍ଛ୍ୱାସରେ ରୁଦ୍ଧଶ୍ୱାସ ହୋଇ, କେଉଁ ପ୍ରବାହରେ ଯେ ଭାସି ଯାଉଥିଲେ )

ଅନନ୍ତ—( କୃଷ୍ଣାର ଅବସାଦ-ଭାବରେ ଭୀତହୋଇ, ଧାରଣ କରିବାକୁ ଯାଉଥିଲେ ) କେମାଦେଈ—କେମାଦେଈ—

କୃଷ୍ଣା—( ସ୍ୱପ୍ନାଚ୍ଛନ୍ନବତ୍ ) ହଁ, ମୋର ଭାଇ ଭଯ଼ ଥିଲା, ସେନା—ନା—ଭାଇ—ସେଦିନ ତୁମେ ଯଦି ସତ କଥାଟା—

ଅନନ୍ତ—ପ୍ରକାଶ କରିବାଠାରୁ ସଂଗୋପନରେ ବରଂ କି ଯେ ଆନନ୍ଦ ମୁଁ ଅନୁଭବ କରିଥିଲି—!

କୃଷ୍ଣା—ସେଦିନ ସଭାରେ ସମରେନ୍ଦ୍ରର ପକ୍ଷ ସମର୍ଥନ କରି ଯେଉଁ ଭାବେ ତୁମ୍ଭଙ୍କୁ ଯୁକ୍ତି କରିବାକୁ ଦେଖିଥିଲି—

ଅନନ୍ତ—ସେଥିରେ ଅପର ଚ'ଣ—ନିଜେ ମୁଁ ନିଜକୁ ବିଶ୍ୱାସ କରି ପାରୁ ନାହିଁ, ସେହି କୁକ୍କୁରଟାର ସଂସର୍ଗ ଏତେ ସହଜେ ଓ ବେଗେ ଏଡ଼ି ପାରିବି ବୋଲି—ଓଃ, ଜେମାଦେଈ ! ମୁକୁନ୍ଦ ପ୍ରତି ମୁଁ ଯେ କି ଅନ୍ୟାଯ଼ କରିଚି—

କୃଷ୍ଣା—କରିଥାଅ ଯେବେ, ଏହିଥିରେହିଁ ତାର ପ୍ରତିକାର ହୋଇଗଲା ନାହିଁ କି ?

ଅନନ୍ତ—ଅଣୁମାତ୍ରାରେ ନୁହେଁ, ଜେମାଦେଈ— ଅନ୍ଧକାର ଘଟଣାଟି କେବଳ ତୁମ୍ଭର—ତୁମ୍ଭର ଯତ୍ନର ପ୍ରତିଫଳ, ଜେମାଦେଈ ।

କୃଷ୍ଣା—( ଗୋଟାଏ ସ୍ୱାଭାବିକ ଲଜ୍ଜାରେ ଗଣ୍ଡଦେଶ ରଞ୍ଜିତ ହୋଇଗଲା, କିନ୍ତୁ ତାହା ତତ୍‌କ୍ଷଣାତ୍ ଅତି ସାବଧାନରେ ଦମନ କରିନେଲେ ) ଯତ୍ନକ୍କ ମନୁଷ୍ୟର କର୍ତ୍ତବ୍ୟ ନୁହେ, ଭାଇ !—ଯାହାହେଉ, ଭାଗ୍ୟକୁ ଖୋଲଟା ତୁମ ହାତରେ ପଡ଼ିଥିଲା ବୋଲି ସିନା—

ଅନନ୍ତ—ଭାଗ୍ୟକୁ ରାଜାଙ୍କ ଆଗରେ ଅଭିଯୋଗ କଲାବେଳେ ସେଟାକୁ ଘରେ ଛାଡ଼ି ଯାଇଥିଲି ବୋଲି, ରକ୍ଷା !

କୃଷ୍ଣା—ମୁକୁନ୍ଦର ନାମ ତ ଅବଶ୍ୟ ପ୍ରକାଶ କରିଥିବ—

ଅନନ୍ତ—ଦୈବ ସହାଯ଼, ଜେମାଦେଈ ! ମୋ' ଭିତରେ ଭିତରେ ଡେଡେବେଳକୁ କି ଯୁଦ୍ଧ ଯେ ଲାଗିଯାଇଥିଲା, ବାତୁଳାରେ ହେଉ କି ଅନ୍ୟ କେଉଁ ତାଡ଼ନାରେ ହେଉ, ମୁକୁନ୍ଦ କହୁ କହୁ 'ସମରେନ୍ଦ୍ର' ବୋଲି କହି ପକାଇଥିଲି—ପରେ ପରେ କଥାର ଅସାମଞ୍ଜସ୍ୟ ଭଯ଼ରେ କିଂକର୍ତ୍ତବ୍ୟମୂଢ଼ ହେଲାବେଳକୁ, 'ଆସ ମୋ ସଙ୍ଗେ' ଆଦେଶ କରି, ମହାରାଜ ଅସ୍ତବ୍ୟସ୍ତ ହୋଇ ଏଣେତ ଉଠି ଆସିଲେ—

କୃଷ୍ଣା—ଓହୋ ! ସେଇଥିପାଇଁ ପିତା ମୋର ବିବରଣାନୁଯାଯ଼ୀ କୁମ୍ଭୀର ଘଟଣା ପ୍ରସଙ୍ଗରେ ସମରେନ୍ଦ୍ର ଓ ରମ୍ଭାର କୁଅଭିସନ୍ଧି କଥାଟା ଏତେ ସହଜରେ ବିଶ୍ୱାସ କରି ନେଇଥିଲେ—ଆଉ ସେମାନଙ୍କୁ ବିନା ପ୍ରଶ୍ନରେ ଏକାବେଳକେ ବନ୍ଦୀ କରିବାକୁ ଆଦେଶ ଦେଇଥିଲେ ।

ଅନନ୍ତ—(ସ୍ୱଗତ) ଓଃ, କୁମ୍ଭୀର ଘଟଣା ପ୍ରସଙ୍ଗରେ ଯେ ମୁଁ କୁମ୍ଭୀରର ଗ୍ରାସ ଅନୁଭବ କରୁଚି ।

କୃଷ୍ଣା—ଈଶ୍ୱରଙ୍କୁ ଧନ୍ୟବାଦ, ଯେ ସନ୍ଧୁଦଗ ରକ୍ଷା ହୋଇ, ପ୍ରକୃତ ଦୋଷୀ ଦଣ୍ଡିତ ହୋଇଚି— ଅଚ୍ଛା, ରମ୍ଭି ନିଶ୍ଚଯ଼ ଖୁବ୍ ଜେରା କରିଥିବ ?

ଅନନ୍ତ—ଜେର୍ ବୋଲି ଜେରା—ମୁକୁନ୍ଦର ପ୍ରକୃତି ତ ଜାଣ—ସତ୍ୟ ନିମିତ୍ତ ମୃତ୍ୟୁକୁ ସୁଦ୍ଧା ଯେ ଭଯ଼ କରେ ନାହିଁ—

କୃଷ୍ଣା—ପ୍ରକୃତ ଘଟଣା ସବୁ କହି ପକାଇଲେ ପରା ?

ଅନନ୍ତ—ଭାଗ୍ୟକୁ, ଆତ୍ମ-ମର୍ଯ୍ୟାଦା କ୍ଷୁଣ୍ଣରୁ ହେଉ, ବା ରାଜ-ମର୍ଯ୍ୟାଦା ବିଚ୍ୟୁତି ଭଯ଼ରେ ହେଉ, ବା ଆମ୍ଭମାନଙ୍କର ତୀବ୍ର କଟାକ୍ଷ ଯୋଗୁଁ ହେଉ, କହୁ କହୁ ହଠାତ୍ ସୁରଟା ବଦଳାଇ ନେଲା— ମାନେ, 'ନେଇ ଆଣି ଥୋଇ ଜାଣିଲେ ତ' ହେବ —କଥା ଗୁଡ଼ାକ ଏମିତିକା ଅଡୁଆ ତଡୁଆ କରି ପକାଇଲା ଯେ—

କୃଷ୍ଣା—ପିତାତ ନିଶ୍ଚଯ଼ ସନ୍ଦେହ କରିଥିବେ !—

ଅନନ୍ତ—ବିଚାର ଶେଷରେ ଏହିପରି ମନ୍ତବ୍ୟ ପରା ପ୍ରକାଶ କରିଥିଲେ—'ପ୍ରମାଣାଭାବରୁ ମୁକୁନ୍ଦକୁ ମୁକ୍ତି ଦିଆଗଲା ସତ,—କିନ୍ତୁ ତା'ର ଆଚରଣ ସନ୍ଦେହ ଜନକ—

କୃଷ୍ଣା—( ସ୍ୱଗତ ) ମୋ'ର ଆଚରଣ—?

ଅନନ୍ତ—'ସୁତରାଂ ତା'କୁ ସାଧାରଣ ସୈନିକ୍ ପଦକୁ ଅବନତ କରି ଗଲା ।'

କୃଷ୍ଣା—( ହଠାତ୍ ଅସଂଯତ ଭାବେ ) ଏ' ଅପମାନ ମୁକୁନ୍ଦପରି ବୀର ସହ୍ୟ କରି ପାରିବ ତ ?

ଅନନ୍ତ—ମୁଁ ଅନେକ ବୁଝାଇ ଧୈର୍ଯ୍ୟ ଧରିବାକୁ ସମ୍ମତ କରାଇଛି, ଜେମାଦେଈ ।

କୃଷ୍ଣା—ଖାଲି ସେତିକିରେ ନିଶ୍ଚିନ୍ତ ହେବା କି—( ହଠାତ୍ କେଉଁ ଲଜ୍ଜାବଶରେ ଅବନତ ହେଲେ )

ଅନନ୍ତ—କଦାପି ଉଚିତ ନୁହେଁ, ଜେମାଦେଈ—ଏ' କଥା ମନେ ମନେ ପାଞ୍ଚି ରଖିଛି, ସୁବିଧା ପାଇଲେହିଁ ପୂର୍ବ ପଦରେ—ନା,—ନା—ଅଧିକ-ତର ସମ୍ମାନିତ ପଦରେ ତା'କୁ ପ୍ରତିଷ୍ଠିତ କରିବା ପାଇଁ ମହାରାଜଙ୍କଠାରେ ଯଥାସାଧ୍ୟ ଶକ୍ତିପ୍ରୟୋଗ କରିବାକୁ କୁଣ୍ଠିତ ହେବି ନାହିଁ । ଜାଣନ୍ତି ନାହିଁ, ଜେମାଦେଈ, କେତେ ରଣରେ ମୁକୁନ୍ଦଠାରେ ମୁଁ ଋଣୀ—ତା'ର ମଣି ହରଣ କରି ସିନା—ଏ' କଣ, ମହାରାଜ ଏ'ପରି ବ୍ୟସ୍ତ ସ୍ତ ହୋଇ ଏଣେ—

[ ପ୍ରତାପରୁଦ୍ର ଦେବଙ୍କର ବେଗେ ପ୍ରବେଶ ]

ପ୍ରତାପ—ଏହିତ ସେନାପତି – ଏଠାକୁ ଡକାଇବା ନିମନ୍ତେ ଏହିକ୍ଷଣି ଯେ ଲୋକ ପଠାଇ, ଆସୁଛି—( କୃଷ୍ଣା ଗମନୋଦ୍ୟତ ) ଚାଲି ଯା ନା, ମା—ଟିକିଏ ମାତ୍ର ଅପେକ୍ଷା—( କୃଷ୍ଣା ଭୀତିପୂର୍ଣ୍ଣ ହୃଦୟରେ ଠିଆ ହେଲେ ) ଜାଣତ, ଅନନ୍ତ ସିଂହ । ତୁମ୍ଭଙ୍କୁ ମୁଁ ପୁତ୍ରାଧିକ ଜ୍ଞାନ କରେ ବୋଲି ଅନ୍ତଃପୁର ପ୍ରବେଶରେ ମଧ୍ୟ ଅଧିକାର ଦେଇଛି ।

ଅନନ୍ତ—( ବିସ୍ମୟ ଓ ଭୟରେ ଚମକିତ ହେଲେ )

ପ୍ରତାପ—ସୁତରାଂ ପୁତ୍ରୋଚିତ ବ୍ୟବହାର ତୁମ୍ଭପକ୍ଷେ କର୍ତ୍ତବ୍ୟ ନୁହେଁ କି ?

ଅନନ୍ତ—( ସହସା ଅବନତ ହୋଇ ) ମହାରାଜ ! ମୋ'ର ସମସ୍ତ ଦୋଷ—ବରଂ ମୁକୁନ୍ଦ ନିର୍ଦ୍ଦୋଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରତାପ—( ସାଶ୍ଚର୍ଯ୍ୟେ ) ଅନନ୍ତ !—

ଅନନ୍ତ—ପ୍ରକୃତରେ, ପ୍ରଭୁ—ମୋର ପଦ-ମର୍ଯ୍ୟାଦା ଦୃଷ୍ଟିରେ, ସେହି ପାପିଷ୍ଠ ସମରେନ୍ଦ୍ରକୁ ଯଦି ଏତେଦୂର ପ୍ରଶ୍ରୟଦାନ—

ପ୍ରତାପ—ପ୍ରଶ୍ରୟଦାନର ପ୍ରତିଫଳତ ସେଦିନ ବେଶ ଉପଭୋଗ କରିଛ—'ପାଷଣ୍ଡ', 'ବର୍ବର', 'ବିଶ୍ୱାସଘାତକ'—ମୁଖରେ ଯା' ଆସିଛି—

ଅନନ୍ତ—ସତ୍ୟକଥା କହୁଛି, ମହାରାଜ !—ସତ୍ୟ—ଓଃ—ସେହି କଠୋର ସତ୍ୟ ଗୁଡ଼ିକ ଯଦି ସତ୍ୟ ବୋଲି ଅଲଙ୍ଘନ କରି ଥା'ନ୍ତି, ତା' ହେଲେ ଜଣେ ସତ୍ୟନିଷ୍ଠ ବୀର—

ପ୍ରତାପ—ଭୁଲ, ଭୁଲ, ଅନନ୍ତ—ସେପରି ଅଲଙ୍କାରର ଯୋଗ୍ୟ ସେହି ଦୁଷ୍ଟହୃଦ ମୁକୁନ୍ଦ କଦାପି ନୁହେଁ—ଓଃ, କି ଭ୍ରମରେ ତା'କୁ ଏତେବଡ଼ ପୁରସ୍କାର ସେଦିନ—

ଅନନ୍ତ—ସାମାନ୍ୟ—ଅତି ସାମାନ୍ୟ ସେହି ପୁରସ୍କାର, ମହାରାଜ—ତା'ର ଯୋଗ୍ୟ ପୁରସ୍କାର—ଯେଉଁ ପଦର ବର୍ତ୍ତମାନ ମୁହିଁ ଅଧିକାରୀ, ସେହି ପଦହିଁ ତାର ପ୍ରାପ୍ୟ—ନା—ନା—ଏ ପଦ ମଧ୍ୟ ତା'ର କାର୍ଯ୍ୟର ଉପଯୁକ୍ତ ପୁରସ୍କାର ନୁହେଁ, ମହାରାଜ !

ପ୍ରତାପ—ଅନନ୍ତ ! ମୁକୁନ୍ଦ ସପକ୍ଷରେ ଯୁକ୍ତି କରି କରି ତୁମ୍ଭେ କ'ଣ ଏକାବେଳକେ ମୁକୁନ୍ଦଗତ ପ୍ରାଣ ହୋଇ ଯାଇଛ ?

ଅନନ୍ତ— 'ମୁକୁନ୍ଦ'—'ମୁକୁନ୍ଦ' ମୋର ପ୍ରାଣ, ମହାରାଜ !—ମହାରାଜ ! ମୋତେ ମୁକୁନ୍ଦର ଉପସ୍ଥିତ-ପଦହିଁ ଦାନ କରନ୍ତୁ—ନା—ସମରେନ୍ଦ୍ରର ପଦ—ନା, ନା ତହୁଁ ହୀନ—ତହୁଁ ହୀନ-ପଦ ଯଦି ଥାଏ, ସମ୍ଭବ ହୋଇପାରେ—ଦଅନ୍ତୁ—ଦଅନ୍ତୁ—

( ପଦପ୍ରାନ୍ତେ ଅବନତ ହେଲେ )

ପ୍ରତାପ—(ଉଠାଇ) ଅନନ୍ତ ! ବାତୁଳ ପରି କ'ଣ ଗୁଡ଼ାଏ ଏଣୁ ତେଣୁ ବକୁଛ—ସାମାନ୍ୟ ଗୋଟାଏ ସୈନ୍ୟ ପାଇଁ ଏତେ ବିଚଳିତ ତୁମ୍ଭେ ? ଗୋଟାଏ କ୍ଷୁଦ୍ର ପ୍ରସଙ୍ଗ ଘେନି ଯଦି ସାରା ଜୀବନଟା କଟାଇ ଦିଅ, ସୁନ୍ଦରୀ ମୃଦୁ ଯେ କେତେ କେତେ

ଗୁରୁତର ସମସ୍ୟା ଲହରି ପରେ ଲହରି ପରି ଉପସ୍ଥିତ ହେଉଛି, ତା'ର ଚିନ୍ତା କରିବ କେତେ-ବେଳେ ?—ଏ'ପରି ଭାବ ପ୍ରବଣ ହେଲେ ରାଜକାର୍ଯ୍ୟ ସଂପାଦନ କି ସମ୍ଭବ ହେବ ?—ଶାସନର ଦାୟିତ୍ୱ ବହନ କରି, ବ୍ୟକ୍ତିଗତ ଚିନ୍ତାରେ ଏପରି କାଳକ୍ଷେପ—

ଅନନ୍ତ—( ଆତ୍ମ ସଂଯମ କରି ) ଅନ୍ୟାୟ କରିଛି, ମହାରାଜ—ମାର୍ଜନା—

ପ୍ରତାପ—ଶୁଣ, ଅନନ୍ତ—ତୁମ୍ଭରି ଯୋଗୁଁ ଅନ୍ତଃପୁରର ମାନ ଆଜି ରକ୍ଷିତ ।

ଅନନ୍ତ—( ସ୍ୱଗତ ) ନା, ନା, ମୁହିଁତ ଭନେ—( ଅର୍ଦ୍ଧପ୍ରକାଶ୍ୟେ ) ନା, ନା—ଏକମାତ୍ର ଚିନ୍ତା ମୋର—ସାର ଚିନ୍ତା—'ଦାୟିତ୍ୱ ବହନ' ।—'ରାଜକାର୍ଯ୍ୟ ସଂପାଦନ'—

ପ୍ରତାପ—ହଁ, ଏହିପରି ଉଜ୍ଜ୍ୱଳ ଦୃଷ୍ଟିହିଁ ଗୁହେଁ—ସେହି ଅନ୍ତଃପୁରର ମାନ ସୁରକ୍ଷା ପାଇଁ, ଅନ୍ତଃପ୍ରବେଶକାରୀଙ୍କୁ ଆଜି ତୁମ୍ଭରି କରେ—

ଅନନ୍ତ—ମହାରାଜ !—( ବିସ୍ଫାରିତ ନେତ୍ରରେ ଗୁହିଁ ଅବନତ ହେଲେ )

ପ୍ରତାପ—ଏଥିରେ ଆଶ୍ଚର୍ଯ୍ୟ ବା ଲଜ୍ଜାର କଥା କଣ ଅଛି, ଅନନ୍ତ—ଏ' ଦାୟିତ୍ୱ ବହନ କରିବାକୁ ତୁମ୍ଭେ ଏକା କ୍ଷମ ସିନା !

ଅନନ୍ତ—( ନୀରବ )

ପ୍ରତାପ—ଜାଣେ, ଏ'ଅତି ଗୁରୁଭାର, ମାତ୍ର ଉପାୟାନ୍ତର ନାହିଁ ।

କୃଷ୍ଣା—( ସମୁଦ୍ର ବକ୍ଷରେ ନାନା ଭଙ୍ଗିରେ ଦୋଦୁଲ୍ୟ-ମାନ ତରୀ ପରି ସମସ୍ତ ଶୁଣୁଥିଲେ, ଶେଷେ ସମାଳି ନ ପାରି କହି ପକାଇଲେ ) ପିତା ! ପିତା ! ତେବେ କଣ କନ୍ୟାକୁ—

ପ୍ରତାପ—ଅବିଶ୍ୱାସ ! ତୋତେ, ମା—ଅସମ୍ଭବ—ଅସମ୍ଭବ—ନମିଲୀର ନିର୍ମଳତାକୁ ଅବିଶ୍ୱାସ କରିପାରେ, କିନ୍ତୁ ତୋର ନିର୍ମଳତାକୁ—

କୃଷ୍ଣା—( କେଉଁ ଦୂର ଲହରୀର ଶିଖର ଦେଶରୁ ପତିତା ହୋଇ ଯେପରି ) ନା, ପିତା—ଏତେ ବିଶ୍ୱାସ—

ପ୍ରତାପ—କରିବା ଉଚିତ ନୁହେଁ କାହାରିକୁ—କିନ୍ତୁ ମୁଁ କ'ଣ ପାଗଳ ନ ବୁଝି କେବେ କାର୍ଯ୍ୟ କରେ ?

କୃଷ୍ଣା—( କେଉଁ କମ୍ପିତ ଚିତ୍ତରେ ) ତେବେ, ତେବେ, କନ୍ୟାକୁ ଆପଣଙ୍କର ଅଦେୌ—

ପ୍ରତାପ—ଖୁବ୍ ଚିହ୍ନିଛି—ମୋର ସନ୍ତାନ—ମୋର ରକ୍ତ, ମାଂସ, ମନ, ପ୍ରାଣର ସତ୍ତା ନେଇ ଗୋଟିଏ ପ୍ରତିମୂର୍ତ୍ତି—ସ୍ୱହସ୍ତରେ ଲାଳିତ ପାଳିତ—

କୃଷ୍ଣା—ପିତା ! ପିତା ! ( ହଠାତ୍ କେଉଁ କାରଣରୁ ସତ୍ୟ ପ୍ରକାଶରେ ବାଧାବଶତଃ ଗୋଟାଏ ଦୁର୍ଦ୍ଦିନ ଭାବ କିପରି ଅନୁଭବ କଲେ )

ପ୍ରତାପ—ମା ମୋର ! ଅନେକ କଥା, ଭଲ, ମନ୍ଦ—ମିଥ୍ୟା, ସତ୍ୟ—ପ୍ରତି ମୁହୂର୍ତ୍ତ ଏ' ହୃଦୟସାଗରରେ ବୁଦ୍‌ବୁଦ ପରି ଉଠୁଛି, ଲୀନ ହେଉଛି—କେତେ କେତେ ଭାବ ରାଶି, ତରଙ୍ଗ ପଛେ ତରଙ୍ଗ ପରି ଆସି ଧକ୍‌କା ଦେଇ, ଉଦ୍‌ବେଳିତ କରୁଛି—ମାତ୍ର ସେ ସମସ୍ତ ତୁଚ୍ଛ କରି, ବେଳା ଭୂମି ପରି ଆମ୍ଭମାନଙ୍କୁ ନିଶ୍ଚିତ ଅଟଳ, ଅଚଳ ଭାବେ ସ୍ଥିର ସ୍ଥିର ହୋଇ ରହିବା କର୍ତ୍ତବ୍ୟ ନୁହେ କି ? ଅତୀତକୁ ଅତୀତ ଗର୍ଭରେହିଁ ଶାୟିତ କରିଦେବା ଉଚିତ—ପ୍ରତି ମୁହୂର୍ତ୍ତ ଭବିଷ୍ୟତ ଚିନ୍ତା ଭବିଷ୍ୟତ ଚିନ୍ତା—ବର୍ତ୍ତମାନର ଅଣୁ ପରମାଣୁ ସେହି ଚିନ୍ତାରେ ବ୍ୟାପୃତ କରିଦେବା ଆବଶ୍ୟକ ସିନା—ତେବେ ଯାଇଁ ମନୁଷ୍ୟର ଅଗ୍ରଗତି—ଜୀବନରେ ବିଜୟ ଡଙ୍କା—ଚରମରେ ଚିର ଶାନ୍ତି—

[ କୃଷ୍ଣା ଓ ଅନନ୍ତ ଉଜ୍ଜ୍ୱଳ ଦୃଷ୍ଟିରେ ପ୍ରତାପ ଆଡ଼େ ଗୁହିଁ ନିର୍ବାକ୍ ହୋଇ ରହିଲେ—ଉତ୍କର୍ଣ୍ଣରେ ତଥାପି କଅଣ ଶୁଣୁଥିଲେ ଯେମନ୍ତ ]

ପ୍ରତାପ—(କୃଷ୍ଣାର ହସ୍ତ ଆଣି ଅନନ୍ତର ହସ୍ତରେ ମିଳାଇଦେଲେ) ଏହି ମୋ'ର ବର୍ତ୍ତମାନର ଉଦ୍ଦେଶ୍ୟ ! (ଉଭୟେ ମନ୍ତ୍ର ମୁଗ୍ଧ ପରି ନୀରବରେ ପ୍ରତାପରୁଦ୍ରଙ୍କ ଚରଣରେ ପ୍ରଣାମ କଲେ )

କୃଷ୍ଣା—( ହଠାତ୍ କି ଗୋଟାଏ ଅନୁଭୂତିରେ ଉତ୍‌କ୍ଷିପ୍ତା ହୋଇ ) ପିତା ! ପିତା !—( କିନ୍ତୁ ଲଜ୍ଜାରେ ସଙ୍କୁଚିତା ହୋଇ ଦ୍ରୁତ ପ୍ରସ୍ଥାନ କଲେ )

ପ୍ରତାପ—ମା—ମା—( କିଛିକ୍ଷଣ ଚୁହିଁ ସ୍ମିତ ମୁଖ ହେଲେ, ପରେ ଗାମ୍ଭୀର୍ଯ୍ୟ ଧାରଣ ପୂର୍ବକ ) ଶୁଣ ସେନାପତେ !—ପର ମୁହୂର୍ତ୍ତର କର୍ତ୍ତବ୍ୟ ମୋର—ବିଜୟନଗର-ରାଜ ଆଜକୁ ସପ୍ତାହ କାଳ ହେଲା ଆମ୍ଭର ଦାକ୍ଷିଣାତ୍ୟ ପ୍ରଦେଶର ଅଧିକାଂଶ ଅଧିକାର କରି ବସିଛି—ଆମ୍ଭର ବହୁ ସୈନ୍ୟ ନିହତ—ରାୟ ରାମାନନ୍ଦ ବନ୍ଦୀ ।

ଅନନ୍ତ—( ସଲଜ୍ଜେ ମୁଖ ଫେରାଇଥିଲେ, କିନ୍ତୁ ଏହି କଥାରେ ଚମତ୍କୃତ ହେଲେ ) ବନ୍ଦୀ—! ଆଦେଶ କରନ୍ତୁ, ମହାରାଜ ! ଏହି ମୁହୂର୍ତ୍ତରୁ ସସୈନ୍ୟ ସେ ଅଞ୍ଚଳକୁ ଅଗ୍ରସର ହେବା ପାଇଁ ମୁଁ ପ୍ରସ୍ତୁତ ।

ପ୍ରତାପ—ଅଧୀର ହୁଅ ନାହିଁ, ଯୁବକ—ଆବଶ୍ୟକ ମନେକରିଥିଲେ ବହୁ ପୂର୍ବରୁ ତାହା ହୋଇ ସାରନ୍ତାଣି—

ଅନନ୍ତ—ତେବେ—

ପ୍ରତାପ—ଉପାୟ ? ଉପାୟ ଯେ ବହୁଦିନୁ ସ୍ଥିରୀକୃତ ହୋଇଯାଇଛି, ସେନାପତେ ।

ଅନନ୍ତ—ତେବେ କ'ଣ ଏଥି ପୂର୍ବରୁ ଆକ୍ରମଣର ସମ୍ବାଦ—

ପ୍ରତାପ—ଆଶଙ୍କା କରିଥିଲି, ଅନନ୍ତ !—

ଅନନ୍ତ—କି' ଉପାୟ ହୋଇଛି, ଶୁଣିପାରେ କି—

ପ୍ରତାପ—ବାଧା ? - କାର୍ଯ୍ୟରେ ପରିଣତ ହେବା ପରେ ?—

ଅନନ୍ତ – କାର୍ଯ୍ୟରେ ପରିଣତ ହୋଇ ଯାଇଛି !

ପ୍ରତାପ—ହଁ—ଏହି ଯେ ପୁରସ୍କାର ଛଳରେ ତୁମ୍ଭଙ୍କୁ ବାରବାଟୀର ଭାର ଅର୍ପଣ—ଗୋବିନ୍ଦଙ୍କୁ ସାରଙ୍ଗ ଗଡ଼ର ଅଧିନାୟକ ପଦରେ ବରଣ—

ଅନନ୍ତ – (ସାଶ୍ଚର୍ଯ୍ୟେ ଚୁହିଁ) ମହାରାଜ !—

ପ୍ରତାପ—(ସସ୍ମିତେ) କ'ଣ, ପଚାର—

ଅନନ୍ତ—ତଥାପି ଏ' ଜଟିଳତା ଭେଦ କରିବାକୁ ଏ' ଅଧୀନ ନିତାନ୍ତ ଅକ୍ଷମ, ମହାରାଜ ! ଏ' ଅର୍ବାଚୀନ ବାହିଁକି, ବହୁ ରାଜ ସଭାସଦ୍ ଅକ୍ଷମ ହେବେ—! ଧୃଷ୍ଟତା ମାର୍ଜନା କରି କହନ୍ତୁ, ମହାରାଜ !— ଯେଉଁ ସମ୍ମାନରେ ଅଧୀନ ଆଜି ଭୂଷିତ, ସେହି ସମ୍ମାନ ନ୍ୟାୟତଃ ଗୋବିନ୍ଦ ବିଦ୍ୟାଧରଙ୍କର ପ୍ରାପ୍ୟ ନୁହେଁ କି ?

ପ୍ରତାପ—(ସସ୍ମିତେ) ଖାଲି ସମ୍ମାନର ବିଚାର କରିଥିଲେ ଆଜି କି ଉପାୟ କରିଥାନ୍ତି, ଅନନ୍ତ ? ହଠାତ୍ ଯଦି ଶତ୍ରୁ ଉତ୍ତର ଦିଗରୁ ଆକ୍ରମଣ କରେ—ବିଶେଷତଃ, ଏହି ଦକ୍ଷିଣାକ୍ରମଣ ବାର୍ତ୍ତା ପାଇବା ମାତ୍ରେ ହୋସେନ ଖାଁ କେବେହେଲେ ସ୍ଥିର ହୋଇ ରହି ପାରିବ କି ?—କୌଣସି ସନ୍ଧି, କୌଣସି ଯତ୍ନର ଭୟ କ'ଣ ସେହି ଲୋକକୁ କଦାପି ଅଟକାଇ ରଖିପାରିବ ?—ମାତ୍ର ଆକ୍ରମଣ କଲେ, ସେ ନିଶ୍ଚୟ ବାରବାଟୀ ଅତିକ୍ରମ ନ କରି ଶାରଙ୍ଗ ଗଡ଼ ଆକ୍ରମଣ କରି ପାରିବ ନାହିଁ—ସୁତରାଂ ତୁମ୍ଭଠାରୁ ଖୁବ୍ ବାଧା ପାଇ ସୁଦ୍ଧା ପରାସ୍ତ ନ ହୋଇ ଅତିକ୍ରମ କଲେ ବି ଗୋବିନ୍ଦଙ୍କ ପରି ଧୀର ସ୍ଥିର କର୍ତ୍ତବ୍ୟନିଷ୍ଠ କୌଶଳୀ ସେନା-ପତି ଏହି ଅବସର ଭିତରେ ନାନା ଉପାୟ ଉଦ୍ଭାବନ ପୂର୍ବକ, ସ୍ୱଳ୍ପ ସୈନ୍ୟ ସାହାଯ୍ୟରେ ମଧ୍ୟ ଜୟ କରିବାକୁ ନିଶ୍ଚୟ ସମର୍ଥ ହେବ ।

ଅନନ୍ତ—ଉପାୟ ଠିକ୍ ଚିନ୍ତାକରିଛନ୍ତି, ମହାରାଜ !— କିନ୍ତୁ ସେ-ଆପଣ ଯଦି ମନୁଷ୍ୟ-ପ୍ରକୃତି-ସୁଲଭ ଅସୂୟା ପରବଶ ହୋଇ—

ପ୍ରତାପ—ଅସମ୍ଭବ—ଭାବିଛ କି ଅନନ୍ତ, କୌଣସି କାର୍ଯ୍ୟ ପରୀକ୍ଷା ନ କରି ମୁଁ ସେଥିରେ ହସ୍ତକ୍ଷେପ କରେ—ସୁନାକୁ ନ ପୋଡ଼ାଇ ମୁଁ ତାହାର ମୂଲ୍ୟ ନିର୍ଦ୍ଧେଶ କରେ—ଗୋବିନ୍ଦ ତୁଳ୍ୟ କର୍ତ୍ତବ୍ୟ-ନିଷ୍ଠ ବୀର କ୍ୱଚିତ ଦେଖିଛି, ଯେ କି ମାନ, ଅପମାନ,—ଧର୍ମ, ଅଧର୍ମ—ଜୀବନ, ମୃତ୍ୟୁ, କର୍ତ୍ତବ୍ୟ ସମ୍ମୁଖରେ ତୁଚ୍ଛ ଜ୍ଞାନ କରେ !—ଏହି ମୁକୁନ୍ଦକୁ ମଧ୍ୟ ସେହିପରି—ଯାଉ, ଏହିକ୍ଷଣି ମୋତେ ଯାତ୍ରା କରିବାକୁ ହେବ – ସେନାପତେ ! ସମସ୍ତ ସୈନ୍ୟଙ୍କୁ ବର୍ତ୍ତମାନ ଯୁଦ୍ଧାର୍ଥ ପ୍ରସ୍ତୁତ କରାଅ

ଶ୍ରେଣୀବଦ୍ଧ ହେବା ପାଇଁ ଆଦେଶ ଦିଅ—ମୁଁ ନିଜେ ପର୍ଯ୍ୟବେକ୍ଷଣ କରି ସୈନ୍ୟ ମୋର ବାଛି ନେବି ।

ଅନନ୍ତ—ଯଥା ଆଜ୍ଞା— (ପ୍ରସ୍ଥାନ)

ପ୍ରତାପ—ଆଉ ବାକି ରହିଲା କଣ ? ( ଚିନ୍ତିତ ମସ୍ତକରେ କିଛିକ୍ଷଣ ବିଚରଣ କଲେ) ନା, ଏଠାର କର୍ତ୍ତବ୍ୟ ଶେଷ ହୋଇଛି—ଯାଏ, ତେଣେ ସଭାସଦ୍‌ଗଣ ଉପସ୍ଥିତ ହୋଇ ସାରି-ଥିବେ । (ପ୍ରସ୍ଥାନ)

[ କୃଷ୍ଣାର ପ୍ରବେଶ ]

କୃଷ୍ଣା—ଏଠାର କର୍ତ୍ତବ୍ୟ ଶେଷ ହୋଇଛି ଆପଣଙ୍କର, ପିତା—ଆପଣଙ୍କର ଭବିଷ୍ୟତ୍ ଚିନ୍ତାଅନୁଯାୟୀ—କିନ୍ତୁ ମୋର ଭବିଷ୍ୟତ୍ ଚିନ୍ତା ଯେ ଅନ୍ୟରୂପ—ଆପଣଙ୍କର କର୍ତ୍ତବ୍ୟ ସ୍ରୋତରେ ଭାସି ଯିବ କିପରି, ପିତା—!

[ଉତ୍ତପ୍ତ ମସ୍ତିଷ୍କରେ କିଛିକ୍ଷଣ ବିଚରଣ କରୁ କରୁ ଗୋଟାଏ ବେଦୀ ଉପରେ କ୍ଳାନ୍ତ ହୋଇ ବସି ପଡ଼ିଲେ । ଏହି ସମୟରେ ଜଣେ ସଖୀ ଅଙ୍ଗଭଙ୍ଗି କରି ଗୀତ ଗାଉ ଗାଉ ପ୍ରବେଶ କଲା—କୃଷ୍ଣା ଟିକିଏ ତନ୍ଦ୍ରାବିଷ୍ଟା ହୋଇ ପଡ଼ିଲେ ]

ଗୀତ

ହୋଇଥାଏ ଯଦି ମନ ବେଦନା—
ଶିର ବେଦନା—।
ବେଦନା କିପାଁ ଲୋ, ସହି ?—
କାଦନା—ତୁହି କାନ୍ଦନା ॥
ଝିର ଝିର, ଥିର ଥିର
ଛପି ଛପି, ମରମରେ—
ବାଇବ ବଇଁଶୀ ଧୀର, ଧୀର—
କି ମୋହନ ସ୍ୱରେ—;
ଝୋଡ଼ି ଦେବ ବାସନା
ହେବୁ ତୁହି ଆନମନା
ସପନେ ସମ୍ଭିବୁ, ଆସିବେ ଲୋ ବଜାଇ ବାଜଣା ॥

[ନେପଥ୍ୟେ ଯୁଦ୍ଧ ବାଦ୍ୟ ଓ କୋଳାହଳ ଶୁଣାଗଲା]

କୃଷ୍ଣା—(ଚମକି ଉଠି) ଏ' କି କୋଳାହଳ !—ମୁକ୍ତି—ମୁକ୍ତି (ପୁଣି କୋଳାହଳ) ଓଃ—ପିତାଙ୍କର ଯୁଦ୍ଧ ଯାତ୍ରା—ଯୁଦ୍ଧର ସୂଚନା ମାତ୍ର—କିନ୍ତୁ, ଅନ୍ତରରେ ମୋର ଯେ ସ୍ୱାର୍ଥର ଯୁଦ୍ଧ ଲାଗି ଗଲାଣି ।

[ ଯୋଦ୍ଧୃବେଶରେ ପ୍ରତାପରୁଦ୍ରଙ୍କର ପ୍ରବେଶ ]

ପ୍ରତାପ—ବିଦାୟ ଦେ, ମା ! (କୃଷ୍ଣାକୁ ଆଲିଙ୍ଗନ କରି) ଛି, ମା ଏତେ ବ୍ୟାକୁଳା ହେଉଛୁ !—ଏଁ, ଏତେ କମ୍ପିତା ହେଉଛୁ କାହିଁକି ?

କୃଷ୍ଣା—(କମ୍ପିତା ହୋଇ) ପିତା—ପିତା—

( ନେପଥ୍ୟେ )—ଜୟ ମହାରାଜ ପ୍ରତାପରୁଦ୍ରଦେବ-ଙ୍କର ଜୟ !

କୃଷ୍ଣା—(ଅତୀବ ଆନନ୍ଦରେ ଯେପରିକି) ଜୟ !—ଜୟ !—

ପ୍ରତାପ—(ଚୁମ୍ବନ କରି) ଏହିଥର ଜୟ ମୋର ସୁନିଶ୍ଚିତ, ମା—

କୃଷ୍ଣା—(ଅସ୍ପଷ୍ଟ ଭାବରେ) ମୋର—ମୋର ଜୟ, ପିତା—('ପିତା' ଡାକଟି କେବଳ ଶୁଣି, ପ୍ରତାପ ଯାଉଁ ଯାଉଁ ଫେରଆସି ପୁନରାୟ ଚୁମ୍ବନ କରି ପ୍ରସ୍ଥାନ କଲେ—କୃଷ୍ଣା ବ୍ୟଥିତ ଭାବରେ ସେହି-ଆଡ଼େ ଚାହିଁ ଠିଆ ହେଉ ହେଉ ବାତାହତ ପ୍ରାୟ ପଡ଼ିଗଲେ—)

---

## ଦ୍ୱିତୀୟ ଦୃଶ୍ୟ

—ଗୋଟାଏ ପୁରାତନ ଅତି ଜୀର୍ଣ୍ଣ କକ୍ଷ—

[ବାହାରେ ମୁକୁନ୍ଦ ଏକାକୀ ବସି ନିଜର ସେହି ପୁରାତନ ଅସ୍ତ୍ରର କଳଙ୍କ ମାର୍ଜ୍ଜନା କରୁଥିଲେ—ଖୋଲଟି ନିକଟରେ ପଡ଼ି ରହିଥାଏ । ]

ମୁକୁନ୍ଦ—ଯୁଦ୍ଧଯାତ୍ରାର କୋଳାହଳ—ଯୁଦ୍ଧବାଦ୍ୟର ଉନ୍ମାଦଧ୍ୱନି— ଯୋଦ୍ଧାର ଯୁଦ୍ଧୋଦ୍‌ବେଗ, ମୋତେ ଉତ୍‌କ୍ଷିପ୍ତ କରି ଦେଉଛି !—ଏହି ଜୀର୍ଣ୍ଣ ଅସ୍ତ୍ର ଖଣ୍ଡିକ ଘେନି ଶତ୍ରୁ ସମ୍ମୁଖକୁ ଧାବିତ ହେବାକୁ ତାଡ଼ିତ କରୁଛି !—କିନ୍ତୁ—କିନ୍ତୁ—ବାର୍ଦ୍ଧକ୍ୟ ଥାଉଁ

ଥାଉଁ ମୁଁ ଯେ ଦଣ୍ଡ୍ୟ ହୀନ—ବୀର୍ଯ୍ୟ ଥାଉଁ ଥାଉଁ ମୁଁ ଯେ ବୀର୍ଯ୍ୟହୀନ—ଜୀବନ ଥାଉଁ ଥାଉଁ ମୁଁ ଯେ ମୃତ-କଳ୍ପ ! ତଥାପି— କେଉଁ ସୁଖେ ଯାପୁଅଛି ଦିନ—ଏହି ଜୀର୍ଣ୍ଣ କୁଟୀରେ ?—ଦୀର୍ଣ୍ଣ ବସନେ—ଶୀର୍ଣ୍ଣ ଅଶନେ (ଦୀର୍ଘ ନିଃଶ୍ୱାସ ଛାଡ଼ି) କାହିଁ ଥିଲି ମହାରାଜାଙ୍କର ଦେହ-ରକ୍ଷୀ—କାହିଁ ଆଜି ଜଣେ ସାମାନ୍ୟ ଦ୍ୱାର-ରକ୍ଷୀ—କା'ର ଆଶାରେ ?—କେଉଁ ଆଶାରେ ?—(ଖୋଲିଟି ଉପରେ କିଛିକ୍ଷଣ ନୟନ ପୂରାଇ, କାହାର ମୂର୍ତ୍ତି ଯେପରି ପ୍ରତିଫଳିତ ହେବାକୁ ଦେଖି ଚୁମ୍ବନ କଲେ) ପ୍ରଣୟ—ପ୍ରଣୟ—କିନ୍ତୁ ଏ' ଯେ ଆକାଶ, ପାତାଳ ମଧ୍ୟରେ ପ୍ରଣୟ !—ଦେବତା, ମାନବ ମଧ୍ୟରେ ପ୍ରଣୟ ! ଏହା କି ସମ୍ଭବ ?—ସମ୍ଭବ—ସମ୍ଭବ—ଏହା ଯେ ସତ୍ୟ—ସତ୍ୟ-ଜ୍ୟୋତି-ଦିବାକର ଯେପରି—ଉଦେ, ଅସ୍ତ ଉଦେ ଆଉ ଅନୁକ୍ଷଣ, ବର୍ଷଇ କିରଣ—ଉଚ୍ଚ, ନୀଚ କରି ସମଜ୍ଞାନ—କିନ୍ତୁ, କିନ୍ତୁ—ନିମ୍ନେ ରହିଛି ଗୋପନେ—ରହୁ ସମ ସଦା ପାର୍ଥିବ ମଳିନ ସେହି ମର୍ଯ୍ୟାଦା—ମର୍ଯ୍ୟାଦା—ମର୍ଯ୍ୟାଦା ! (କି ଗୋଟାଏ ହତାଶ-ଭାବରେ ଭାଙ୍ଗିପଡ଼ୁଥିଲେ)

[ ଅନନ୍ତର ପ୍ରବେଶ ]

ଅନନ୍ତ—କ'ଣ ଭାବୁଚ, ଭାଇ ?

ମୁକୁନ୍ଦ—(ନ ଚିହ୍ନି ପାରି ହଠାତ୍) କିଏ ?—(ଲଜ୍ଜିତ ହୋଇ) ଅନ—ନା, ନା, ସେନାପତେ—( ସସବ୍ୟସ୍ତେ ଉଠି ଅଭିବାଦନ କଲେ)

ଅନନ୍ତ—( ଉଠାଇ ) ଭାଇ, ଭାଇ—ଏପରି କଲେ ଆଉ ମୁଁ—

ମୁକୁନ୍ଦ—ଏ' କ'ଣ କହୁଚ, ଭାଇ—ନା, ସେନାପତେ !—ଯେତେ ହେଲେ ଆପଣ—

ଅନନ୍ତ—ମୁକୁନ୍ଦ—ଭାଇ ମୋ'ର—! (ଆଲିଙ୍ଗନ କଲେ)

ମୁକୁନ୍ଦ—ଲକ୍ଷ ଲକ୍ଷ ସୈନ୍ୟର ଅଧିନାୟକ ହୋଇ, ସାମାନ୍ୟ ଜଣେ ଦ୍ୱାରରକ୍ଷକ ସଙ୍ଗେ ଏ'ପରି ବ୍ୟବହାର କି —

ଅନନ୍ତ—ଯୁକ୍ତି ସଙ୍ଗତ, ଅନ୍ୟ ରକ୍ଷକ ସଙ୍ଗେ ନ ହୋଇ ପାରେ—କିନ୍ତୁ ମୁକୁନ୍ଦ ସଙ୍ଗେ ଯେ—(ବାଧ-ପକାଇଦେଲେ ପରି)

ମୁକୁନ୍ଦ—ଭୁଲ, ଭୁଲ, ସେନାପତେ—ମୁକୁନ୍ଦ ରାଜ-ମର୍ଯ୍ୟାଦା ରକ୍ଷା କରି ଜାଣେ—ସେଥିପାଇଁ ହୃଦୟର ମର୍ଯ୍ୟାଦା ଆଜି ସେ ବିସର୍ଜନ କରି ପାରିଛି—

ଅନନ୍ତ—ପ୍ରେମ ପର୍ଯ୍ୟନ୍ତ ?—

ମୁକୁନ୍ଦ—ପ୍ରେମ ?—(ସବିସ୍ମୟେ କେତେ କ୍ଷଣ ନିସ୍ତବ୍ଧ ହୋଇ ଗଲେ)

ଅନନ୍ତ—ଆଶ୍ଚର୍ଯ୍ୟ ଭାବେ ଚାହିଁଚ କ'ଣ—ବିସର୍ଜନ କରି ପାରିଚକି ?

ମୁକୁନ୍ଦ—ତା' କ'ଣ ମନୁଷ୍ୟ ପାରେ, ଭା—?

ଅନନ୍ତ—କେ ଜାଣି, ତୁମେ ଯଦି ମନୁଷ୍ୟର ବାହାର ହୋଇଥାଅ !

ମୁକୁନ୍ଦ—ଅସମ୍ଭବ — ଅସମ୍ଭବ — ସେହି ପ୍ରେମହିଁ ମୋତେ ଜୀଆଇ ରଖିଛି—ମୋ'ର ଭୂତ, ବର୍ତ୍ତମାନ, ଭବିଷ୍ୟତକୁ ଗୋଟାଏ କେଉଁ ମଧୁର ଆଲୋକରେ ଆଲୋକିତ କରି ରଖିଛି ସିନା !

ଅନନ୍ତ—ଏ' ଅଧମଠାରେ ତେବେ ବିପରୀତ ଭାବ କାହିଁକି ? ଭାଇ—ଭାଇ—ମୋ' ସମ୍ବନ୍ଧେ ସେହିପରି 'ଭୂତ, ବର୍ତ୍ତମାନ, ଭବିଷ୍ୟତକୁ ମଧୁର ଆଲୋକରେ ଆଲୋକିତ' କରି ଦେଉ ନାହଁ କାହିଁକି—'ଭାଇ', 'ଭାଇ' ବୋଲି ଡାକି ଥରେ ଏ' ଦଗ୍ଧ ହୃଦୟରେ ଶାନ୍ତିବାରି ସିଞ୍ଚି ଦେଉ ନାହଁ କାହିଁକି ?—

ମୁକୁନ୍ଦ—(ସ୍ୱଗତ) ଏଁ, ଏଁ—ମୁଁ କେଉଁ ମୋହାବେଶରେ ମନୋଭାବ ମୋ'ର ପ୍ରକାଶ କରି ପକାଉ ଥିଲି !

ଅନନ୍ତ—ଭାବୁଚ କ'ଣ ଏତେ, ଭାଇ ?—'ଭାଇ' ବୋଲି ଡାକିଲେ ରାଜ ମର୍ଯ୍ୟାଦା ମୋ'ର ନଷ୍ଟ ହେବ, ଏହି କଥା ତ ? କିନ୍ତୁ ପ୍ରକୃତ ପ୍ରେମର ମର୍ଯ୍ୟାଦା ସବୁ ଦଳି ମଥି ଦିଏ ନାହିଁକି ?

ମୁକୁନ୍ଦ—'ଦଳି ମଥି' ଦିଏ ? ପ୍ରକୃତ କହୁଛ ? ମିଥ୍ୟା ନୁହେଁ ତ ? ପ୍ରତାରଣା କରୁ ନାହଁ ତ ?

ଅନନ୍ତ—ଭାଇ ! ଭାଇ ! ବିଶ୍ୱାସ କର, ଭାଇ—ଭୁଲି ଯାଅ ଅତୀତ-କଥା—ବନ୍ଧୁକୁ ବନ୍ଧୁ ବୋଲି ଆଲିଙ୍ଗନ ଦିଅ—ଭାଇକୁ ଭାଇ ବୋଲି ଗ୍ରହଣ କର ( ଆଲିଙ୍ଗନ କଲେ )

ମୁକୁନ୍ଦ—ଭାଇ ! ଭାଇ ! ଓଃ—ମୋ ଭିତରୁ ଆଜି ଗୋଟାଏ ହିମାଳୟର ଭାର ଉଠାଇ ଦେଲି—ଗୋଟାଏ ନୂତନ ଦ୍ୱାର ଉନ୍ମୁକ୍ତ କରି ଦେଲି ଯେପରି—କି ଯେ ଆଲୋକର ବନ୍ୟା ମାଡ଼ି ଆସୁଛି—ଚକ୍ଷୁ ମୋର ଝଲସି ଯାଉଛି—ମନ ଆବେଗରେ ନାଚି ଉଠୁଛି—କଣ୍ଠ ଆଉ ରୋଧ କରି ରଖି ପାରୁନାହିଁ—'ଜୟ ପ୍ରେମର ଜୟ !' —'ଜୟ ପ୍ରେମର ଜୟ !'—

ଅନନ୍ତ—କି ଆନନ୍ଦ—କି ଆନନ୍ଦ—ପ୍ରକୃତରେ କେଡ଼େ ମୂର୍ଖ ଆମ୍ଭେମାନେ—ମିଥ୍ୟାର କ୍ଷଣିକ ବାହ୍ୟାଡ଼ମ୍ବର ପୂର୍ଣ୍ଣ ଆପାତ ମଧୁର କଥାରେ ଭୁଲି, ସତ୍ୟକୁ ପରମଶତ୍ରୁ ଜ୍ଞାନରେ କେଉଁ ଅନ୍ଧକାର ପୁରୀ ମଧ୍ୟରେ ଆବଦ୍ଧ କରି ରଖିଥାଉଁ ସିନା ! ଆସ, ଭାଇ ସେହି ସରଳ ନିଷ୍କପଟ ବନ୍ଧୁତ୍ୱ ସାହାଯ୍ୟରେ ଆଜି ଉଚ୍ଚ ନୀଚ ଭେଦାଭେଦ ଭୁଲି ଯାଇ, ବନ୍ଧୁ, ବନ୍ଧୁ—ଭାଇ, ଭାଇ ବୋଲି ପୁନର୍ମିଳନ ସୁଖ—

ମୁକୁନ୍ଦ—ମିଳନ ! ମିଳନ !—ଏତେ ଆନନ୍ଦ—ଏତେ ସୁଖ—ଏ' ଜୀବନରେ କି ସମ୍ଭବ ?—ନା, ନା, ଭାଇ ! ପ୍ରେମ ପଥରେ ମର୍ଯ୍ୟାଦା ଯେପରି ଗୌରୀ-ଶଙ୍କର ପରି ଶୃଙ୍ଗୋତ୍ତୋଳନ କରି ଠିଆ ହୋଇଛି !

ଅନନ୍ତ—ପୁଣି ସେହି କଥା ? ବ୍ରହ୍ମାଣ୍ଡ ପରି ପ୍ରତିବନ୍ଧକ ହେଲେ ମଧ୍ୟ ପ୍ରେମର ଉତ୍ତପ୍ତ ସ୍ପର୍ଶରେ ଯେ ଅଣୁ ପରମାଣୁରେ ପରିଣତ ହୋଇ, ସମତଳ ହୋଇଯାଏ—

ମୁକୁନ୍ଦ—'ସମତଳ ହୋଇଯାଏ !'—'ସମତଳ'—ମୁକୁନ୍ଦ ! ମୁକୁନ୍ଦ !—ନାଚ—ନାଚ—ଗାଅ—ଗାଅ—'ଜୟ ପ୍ରେମର ଜୟ !'

ଅନନ୍ତ—ଭାଇ ! ଭାଇ ! ଗୋଟାଏ ଭାରି କଥା ଭୁଲି ଆସିଛି— ( ଗମନୋଦ୍ୟତ ଓ ଫେରି ) ହଁ,—ଭାଇ ତୁମେ ଘରେ ଖାଇବ ନାହିଁ, ଆଜି ନିମନ୍ତ୍ରଣ—

ମୁକୁନ୍ଦ—ଆଉ କି ନିମନ୍ତ୍ରଣ, ଭାଇ ?—କେଉଁଠି କ'ଣ ଖୁଆଇବ ?—ଆଉ ତ ଯେ କ୍ଷୁଧା ମୋ'ର ନାହିଁ, ଭାଇ—ଅଭିଶ୍ଚ ପୂରି ଯାଇଛି—ନିଶ୍ୱାସ ମାରିବାର ପଥ ପର୍ଯ୍ୟନ୍ତ ରୁଦ୍ଧ ହୋଇ ଯାଇଛି ।

ଅନନ୍ତ—କହିବାକୁ ଭୁଲି ଯାଇଥିଲି, ଭାଇ—ଆଜି-କାର ନିମନ୍ତ୍ରଣ ଗୋଟାଏ ବିଶିଷ୍ଟ ନିମନ୍ତ୍ରଣ—ଓଡ଼ିଶାର ପ୍ରବଳ ପ୍ରତାପୀ ରାଜାଧିରାଜ ପ୍ରତାପ-ରୁଦ୍ରଦେବଙ୍କ ଏକମାତ୍ର କନ୍ୟା—

ମୁକୁନ୍ଦ—କୃଷ୍ଣା ନିମନ୍ତ୍ରଣ କରିଛନ୍ତି ?—ଏତେ ଅନୁଗ୍ରହ ?—

ଅନନ୍ତ—ଭାଇ ! ସେହି ଅନୁଗ୍ରହ' ଏ' ଅଧମ ଏତେ ସହଜେ ଲାଭ କରିବ—ଏପରି ଅଯାଚିତ ଭାବେ —ଏତେ ସୌଭାଗ୍ୟ—

ମୁକୁନ୍ଦ—କି ସୌଭାଗ୍ୟ, ଅନନ୍ତ ?

ଅନନ୍ତ—ଜେମାଦେଈଙ୍କ ପରିଣୟ—

ମୁକୁନ୍ଦ—'ପରିଣୟ'—'ପରିଣୟ'—କ'ଣ କହିଲ, ଭାଇ—ସ୍ପଷ୍ଟ କରି କୁହ—ପରିଣୟ ?—ପରିଣୟ ?—କା'ର ?—କା' ସଙ୍ଗେ ?

ଅନନ୍ତ—ଏ' ହତଭାଗ୍ୟ ସଙ୍ଗେ, ଭାଇ—

ମୁକୁନ୍ଦ—( ବାକ୍‌ରୁଦ୍ଧ ହେଲେ ପରି )

ଅନନ୍ତ—ବିଶ୍ୱାସ କର, ଭାଇ—ମୁଁ ଅବଲମ୍ବେ ଫେରି-ଆସି ସବୁ କହୁଛି, ଭାଇ ! (ବେଗେ ପ୍ରସ୍ଥାନ )

ମୁକୁନ୍ଦ—( ହତାଶ ଦୃଷ୍ଟିରେ ଚାହିଁ ଚାହିଁ ଲୁପ୍ତ ଜ୍ଞାନ ହୋଇ ପଡ଼ିଗଲେ ଓ କୃଷ୍ଣାକୁ କେଉଁ ସ୍ୱପ୍ନରେ ଦେଖି ଡାକିବାକୁ ଲାଗିଲେ, ବିହ୍ୱଳଭାବେ) କୃଷ୍ଣା—କୃଷ୍ଣା'—

[ ଠିକ୍ ସେତିକିବେଳେ ଗାଇ ଗାଇ ଉନ୍ମାଦନୀର ପ୍ରବେଶ ]

ଗୀତ

ଭୁଲନା—ଭୁଲନା ସେ 'କୃଷ୍ଣା' ଧରାରେ ।
ଯେ ଦେଲା ସର୍ବସ୍ୱ 'ସଖୀ'ରେ ହେଳାରେ ॥
ବୀରର ମର୍ଯ୍ୟାଦା ରକ୍ଷୁ—ଯାଉ ନିଜ ପ୍ରାଣୀ—
ସତୀର ମର୍ଯ୍ୟାଦା ରକ୍ଷୁ—ଯାଉ ନିଜ ମାନ –
କି ସେ ଭାନ ?—
ମର୍ମ୍ମେ ମର୍ମ୍ମେ ବାଜ ଉଠିଲା ଝଙ୍କାରେ ॥

ଉନ୍ମାଦନୀ—ଉଠ, ବୀର—ବୀରର ମର୍ଯ୍ୟାଦା ରକ୍ଷା-କର—ସତୀର ମର୍ଯ୍ୟାଦା—

ମୁକୁନ୍ଦ—(ଚମକି ଉଠି) ସତୀର ମର୍ଯ୍ୟାଦା—ବୀରର ମର୍ଯ୍ୟାଦା । କିଏ—କିଏ—ତୁମ୍ଭେ—?

( ଉନ୍ମାଦନୀ ବେଗେ ପଳାୟନକଲା )

ସେହି—ସେହି ଉନ୍ମାଦନୀଟା ନା—?

( ଅନୁଧାବନ କରୁଥିଲେ )

[ ହଠାତ୍ କୃଷ୍ଣ-ବସନାବୃତ୍ତା କୃଷ୍ଣା ପ୍ରବେଶ କଲେ, ମୁକୁନ୍ଦ ସ୍ଥାଣୁବତ୍ ଠିଆ ହୋଇଗଲେ ]

କୃଷ୍ଣା—( ଧୀର ସ୍ୱରେ ) ହଁ, ହଁ, ସେହି ଉନ୍ମାଦନୀଟା —ଘରେ ପଶିଥିଲା ନା ?—ବାହାରିଗଲା ଏହିବାଟେ—

( ସଭୟେ ନେପଥ୍ୟକୁ ଗ୍ରହୁଁଥିଲେ )

ମୁକୁନ୍ଦ—( ପ୍ରଥମେ ବିଶ୍ୱାସ କରି ପାରି ନ ଥିଲେ ) କିଏ ? କିଏ ?—କୃଷ୍ଣା—କୃଷ୍ଣା—ପ୍ରେ—ମ—

( ସାବେଗେ କୃଷ୍ଣାଆଡ଼େ ଅଗ୍ରସର ହେଲେ )

କୃଷ୍ଣା—ଚୁପ୍—ଚୁପ୍—ବୋଧହୁଏ ସେ—

ମୁକୁନ୍ଦ—ନା, ନା, ଆଉ ମୁଁ ସମ୍ଭାଳି ପାରୁନାହିଁ—

କୃଷ୍ଣା—ମୁଁ କ'ଣ ପାରୁଛି, ପ୍ରେମମୟ ?—ପ୍ରତି ମୁହୂର୍ତ୍ତି ଭବିଷ୍ୟତର ଚିନ୍ତାକୁ ସମ୍ବଳ କରି ବର୍ତ୍ତିମାନର ଅଣୁ ପରମାଣୁ ସୁଦ୍ଧା ଭାବ ସାର୍ଥକଭାବରେ ବ୍ୟୟ କରିବାକୁ ଯେ ମୁଁ ଭୁଲିଗଲା ନୁହେଁ, ଏହା କ'ଣ ଏହି ବେଶ ଭୂଷା—ଭାବ ଇଙ୍ଗିତରୁ ବୁଝିପାରୁ ନାହଁ, ପ୍ରେମମୟ ?—ମୋ'ର ଧନ, ସମ୍ପଦ—ଲଜ୍ଜା, ସଙ୍କୋଚ—ମାନ, ସମ୍ଭ୍ରମ—ପିତା, ମାତା—ସମସ୍ତ ଆଜି ଅତିକ୍ରମ କରି—ଦକ୍ ବିଦକ୍ ଜ୍ଞାନଶୂନ୍ୟା ହୋଇ ଧାଇଁ ଆସିଛି— କେବଳ ତୁମ୍ଭର ପ୍ରେମ ପାରାବାରର ସଙ୍ଗମ ଲାଭ କରିବି ବୋଲି ସିନା—ମୋ'ର ସମସ୍ତ—ତୁମ୍ଭର ସେହି ହୃଦୟର ଅନନ୍ତ ଗାଳମାରେ ମିଳାଇ ଦେବି ବୋଲି ସିନା—

ମୁକୁନ୍ଦ—ପ୍ରାଣେଶ୍ୱରୀ—ପ୍ରେମ—

(ଆଲିଙ୍ଗନ କରିବାକୁ ଯିବାବେଳେ)

( ନେପଥ୍ୟେ ଅଟ୍ଟହାସ୍ୟରେ ଉନ୍ମାଦନୀ )—ସତୀ !— ସତୀ ! —ସତୀର ମର୍ଯ୍ୟାଦା—

(ଏହାପରେ କିଛୁ କିଛୁ ହସିଉଠିଲା)

ମୁକୁନ୍ଦ—(ନିରସ୍ତ ହୋଇ) 'ସତୀ !'—'ସତୀ !'—

କୃଷ୍ଣା—କି ସତୀ, ପ୍ରିୟତମ ?

ମୁକୁନ୍ଦ—ଶୁଣିକି ପାରିଲ ନାହିଁ—ସେହି—ସେହି ଉନ୍ମାଦନୀଟା—କ୍ଷଣେ କ୍ଷଣେ ମୋତେ ଉନ୍ମାଦ କରି କାହିଁ ଉଭାଇ ଯାଏ ?—କୃଷ୍ଣା—କୃଷ୍ଣା—

କୃଷ୍ଣା—(ଧରିବାକୁ ଗଲେ) ପ୍ରିୟତମ—

ମୁକୁନ୍ଦ—ନା, ନା, ଛୁଅଁ ନା—ଛୁଅଁ ନା—(ଯେପରି ସେହି ଧ୍ୱନି ଯେମନ୍ତ ହୃଦୟ ମଧ୍ୟରେ ପ୍ରତିଧ୍ୱନିତ ହେଉଥିଲା)

କୃଷ୍ଣା—ଏ' କି କଥା, ପ୍ରିୟତମ ?

ମୁକୁନ୍ଦ—କୃଷ୍ଣା—କୃଷ୍ଣା—ତୁମ୍ଭେ କି—ତୁମ୍ଭେ କି ପରିଣୀତା ? କୁହ—କୁହ—ଏ' କଥା ମିଥ୍ୟା—ସମ୍ପୂର୍ଣ୍ଣ—

କୃଷ୍ଣା—ସମ୍ପୂର୍ଣ୍ଣ ମିଥ୍ୟା, ପ୍ରେମମୟ ! କିଏ ଏ'ପରି ମିଥ୍ୟା କଥା କହି, ପ୍ରତାରଣା—

ମୁକୁନ୍ଦ—ସେହି ଅନନ୍ତ—ପାଷଣ୍ଡ—ବର୍ବର—ନା, ନା—ସେତ 'ଭାଇ', 'ଭାଇ' ବୋଲି—ନା, ନା, ଏ ଗୁପ୍ତ-ହତ୍ୟା—ଗୁପ୍ତ-ହତ୍ୟା ଛଦ୍ମବେଶରେ ଆଜି ପ୍ରତିଶୋଧ !—ପ୍ରତିଶୋଧ—!!

କୃଷ୍ଣା—(କେଉଁ କୃତଜ୍ଞତାର ତାଡ଼ନାରେ ବୋଧହୁଏ ସତୀବ୍ୟକ୍ତି କରିବାକୁ ଉତ୍କ୍ଷିପ୍ତା ହୋଇ ଉଠିଲେ)

ପ୍ରିୟତମ—ଅନନ୍ତର କୌଣସି ଦୋଷ ନାହିଁ—
ପିତାଙ୍କର ଉଦ୍ଦେଶ୍ୟ ଯାହା—

ମୁକୁନ୍ଦ—ଅନନ୍ତ ସଙ୍ଗେ ପରିଣୟ ?

କୃଷ୍ଣା—କାର୍ଯ୍ୟରେ କିନ୍ତୁ ପରିଣତ—(ସତ୍ୟପ୍ରକାଶ ଓ ଗୋପାନର ଦ୍ୱନ୍ଦ୍ୱରେ ଯେପରି କିଂ କର୍ତ୍ତବ୍ୟ ବିମୂଢ଼ା ହୋଇ ଗଲେ)

ମୁକୁନ୍ଦ—ହୋଇନାହିଁ—ହୋଇନାହିଁ—କି ଅନନ୍ଦ ! —କି ଆନନ୍ଦ !—(ହସି ହସି ଅସ୍ଥିର ହୋଇଗଲେ ପରି)

( ଦୂର ନେପଥ୍ୟରୁ ଶୁଣାଗଲା )— 'ସତ୍ୟ' — 'ସତ୍ୟ'—

ମୁକୁନ୍ଦ—( ଚମକିତ ହେଲେ ) 'ସତ୍ୟ' ?—'କି ସତ୍ୟ' ?—ପିତୃ ସତ୍ୟ—! ( କୁଳୀଶ ନିନାଦ ଯେପରି ଅନୁଭବ କଲେ)

କୃଷ୍ଣା—ଏ' କି ଶବ୍ଦ ?—ଏ' ଯେ ଘନ ଘନ ବିଜୁଳି—ଘଡ଼ଘଡ଼ି—ମୂଷଳଧାରରେ ବୃଷ୍ଟି ମଧ୍ୟ ଆରମ୍ଭ ହୋଇଛି ।

ମୁକୁନ୍ଦ—କାହିଁ ?—କାହିଁ ?—

କୃଷ୍ଣା—(ଦ୍ୱାର ଖୋଲି ଦେଖାଇଲେ)—କି ବିପ୍ଳବ !

ମୁକୁନ୍ଦ—ହାଃ, ହାଃ, ହାଃ,—ଭିତରର ବିପ୍ଳବକୁ ମୋ'ର ଜିଣି ପାରିଛି କି ?

କୃଷ୍ଣା—ତେବେ ଏହି ସୁଯୋଗ—ଏହି ସୁଯୋଗ, ପ୍ରିୟତମ—ଆସ, ଆସ—ଭିତରର ସମସ୍ତ କୋଳାହଳ ଏହି ବାହାରର କୋଳାହଳ ସଙ୍ଗେ ଆଜି ମିଶାଇ ଦେବା—

ମୁକୁନ୍ଦ—ପାରିବା—ପାରିବା ତ—?

କୃଷ୍ଣା—ଧର—ଏହି କର ମୋ'ର ଧର ପ୍ରିୟତମ—
(ହାତ ବଢ଼ାଇ ଦେଲେ)

ମୁକୁନ୍ଦ—(କମ୍ପିତ ହସ୍ତରେ ଧରୁଥିଲେ)

( ନେପଥ୍ୟେ ଅତିଦୂରରୁ ଉନ୍ମାଦିନୀ )—ସତ୍ୟ—ସତ୍ୟର ମର୍ଯ୍ୟାଦା !

ମୁକୁନ୍ଦ—ମର୍ଯ୍ୟାଦା—ସତ୍ୟର ମର୍ଯ୍ୟାଦା—ପିତୃସତ୍ୟର ମର୍ଯ୍ୟାଦା—ବୀର—ବୀର ସତ୍ୟନିଷ୍ଠ ମୁହିଁ—ପ୍ରିୟ—ନା, ନା, କୃଷ୍ଣା—ନା, ନା, ଜେମାଦେଈ—ଯାଅ ଚାଲି—ଚାଲି ଯାଅ ସମ୍ମୁଖରୁ—ତୁମ୍ଭେ ପରିଣୀତା—ତୁମ୍ଭେ—ନା, ନା, ଆପଣ—

କୃଷ୍ଣା—ନୁହେଁ ପରିଣୀତା—ଅଦ୍ୟାପି ଅବସର—

ମୁକୁନ୍ଦ—ନା, ନା—ଅନନ୍ତ କହି ଯାଇଛି—ମୋତେ ନିମନ୍ତ୍ରଣ କରି ଯାଇଛି—ହାଃ, ହାଃ,—ମୁଁ ଯିବି, ନିମନ୍ତ୍ରଣ ରକ୍ଷା କରିବି—ବନ୍ଧୁର ନିମନ୍ତ୍ରଣ—ଯାଅ—ଯାଅ—ନା, ନା, ଆସନ୍ତୁ—(ମୁହଁ ବୁଲାଇ ଦେଲେ)

କୃଷ୍ଣା—ମୋତେ କ'ଣ ଅବିଶ୍ୱାସ ?

ମୁକୁନ୍ଦ—ବିଶ୍ୱାସ କରୁଛି, ଭଉଣି !—ଏ' ପର୍ଯ୍ୟନ୍ତ ଏ' ବିବାହ ଘଟିନାହିଁ—ମାତ୍ର ପିତାଙ୍କର ଉଦ୍ଦେଶ୍ୟ ଯେତେବେଳେ—ପିତା କରିଚନ୍ତି 'ସତ୍ୟ' ଯେତେବେଳେ—ତୁମ୍ଭର ସମ୍ମତି ଥାଉ ବା ନ ଥାଉ—ଅଚ୍ଛା, ତୁମେ କ'ଣ ସମ୍ମତି ଦେଇ ?—କୌଣସି ଆପତ୍ତି—ନା—ନା—ମୁଁ କ'ଣ କରୁଛି—ଯାଅ—ଯାଅ, କୃଷ୍ଣା—ଭଉଣି—ନା, ନା, ଅସନ୍ତୁ—ଆସନ୍ତୁ, ଜେମାଦେଈ ( କି ଯାତନାରେ ଯେ କଲବଲ ହେଉଥିଲେ, ତାହା ସେହି ଏକା ଜାଣୁଥିଲେ ସିନା )

କୃଷ୍ଣା—ସତ୍ୟ କଥା, ପ୍ରିୟତମ ! ତେତେବେଳେ ଲେଶ ମାତ୍ର ଆପତ୍ତି ସୁଦ୍ଧା କରିବାକୁ କ୍ଷମ ହୋଇ ନ ଥିଲି—ପିତାଙ୍କର କି ଗୋଟାଏ କଥା-ମୋହରେ ଏତେଦୂର ଆତ୍ମ ଜ୍ଞାନ-ଶୂନ୍ୟା ହୋଇ ଯାଇଥିଲି ଯେ ଯନ୍ତ୍ରଚାଳିତ ପରି ତାଙ୍କର ନିର୍ଦ୍ଦେଶ ଅନୁସାରେ ସ୍ୱଚ୍ଛନ୍ଦେ କାର୍ଯ୍ୟ କରି ପକାଇ ଥିଲି—ପରେ ହଠାତ୍ ସେହି ମୋହଟା କଟିଯାଇ ଜ୍ଞାନର ବିକାଶ ହେଲା ଯେତେବେଳେ ମସ୍ତକ ମୋ'ର ଚୁଲିଲ ଚକପରି ଘୂର୍ଣ୍ଣିତ ହେବାକୁ ଲାଗିଲା ସିନା—ସଂସାର ଅନ୍ଧକାରମୟ ଦିଶିଲା ସିନା—ଉନ୍ମାଦିନୀ ପରି ନାନା ଆଡ଼େ ବୁଲି ବୁଲି ଏହିଠାରେ ସମସ୍ତ ବିସର୍ଜ୍ଜନ କରିଦେବି ବୋଲି ଯେ ଧାଇଁ ଆସିଛି—ପ୍ରିୟତମ—ପ୍ରିୟତମ—

ମୁକୁନ୍ଦ—ସ୍ଥିର ହୁଅ—ସ୍ଥିର ହୁଅ, ଜେମାଦେଈ ! ଆତ୍ମହତ୍ୟା କରିବାକୁ ମନ ବଳାଅ ନାହିଁ—

ଗୋଟାଏ ଉନ୍ମାଦନାରେ 'ପିତୃ ସତ୍ୟ' ଲଙ୍ଘନ କରିବାକୁ ଉଦ୍‌କ୍ଷିପ୍ତ ହୋଇ ଉଠ ନାହିଁ—ସତ୍ୟର ମର୍ଯ୍ୟାଦାକୁ ପଦଦଳିତ କର—

କୃଷ୍ଣା—ମର୍ଯ୍ୟାଦା—ମର୍ଯ୍ୟାଦା—ଦିନେ ମୋ'ର ସେ ଗର୍ବିଥିଲି—ପ୍ରେମର ଶୀର୍ଷ ଦେଶରେ ସ୍ଥାନ ତା'ର ନିରୂପିତ କରିଥିଲି—କିନ୍ତୁ, ପ୍ରେମମୟ ! ପ୍ରେମର ପ୍ରସ୍ରବଣ ଭେତେବେଳେ କ୍ଷୀଣ ଧାରରେ ବହୁଥିଲା ସିନା—ମର୍ଯ୍ୟାଦାର ଗୁରୁଭାର ଭେଦ କରି ଉଠିବାର ଶକ୍ତି କି ଥିଲା ?—ବର୍ତ୍ତିମାନ ଯେ ତାଲକମେ ତାହା ସ୍ଫୀତ ହୋଇ ଉଠିଛି—ପିତାଙ୍କର ଏହି ଶ୍ରଦ୍ଧାହୋଦ୍ଦେଶ୍ୟ-ଶୋଧନରେ ହଠାତ୍ ଶତଧାରରେ ଆଜି ପ୍ରବାହିତ ହେଉଛି । ପ୍ରବଳ ବନ୍ୟାରେ, ସାମାନ୍ୟ ଶୀଳା ଖଣ୍ଡିତ ହୁଏ—କାହିଁ, କେତେ ପାହାଡ଼, ପର୍ବତ—ଦେଶ, ମହାଦେଶ ପ୍ଲାବିତ କରି, ଏହି ମହାସାଗରରେ ଆଜି ମିଳିବାକୁ ଧାଇଁ ଆସିଛି ସିନା । ଦେଖ, ଦେଖ ତୁହିଁ, ପ୍ରିୟତମ—ଚତୁର୍ଦ୍ଦିଗ କିପରି ଶୂନ୍ୟ—ମହାଶୂନ୍ୟ—ଅଣୁ ପରମାଣୁର ଅସ୍ତିତ୍ୱ ସୁଦ୍ଧା ନାହିଁ । ବିଶ୍ୱ ଏକାବେଳକେ ମହାପ୍ରଳୟ-ଜଳଧି ଗର୍ଭରେ ଲୀନ ହୋଇ ଯାଇଛି—ଅନନ୍ତ-ବାସରେ ଭାସମାନ, ଅର୍ଦ୍ଧନିମିଳିତ ନୟନ, ପ୍ରସାରିତ-ଦୀର୍ଘବାହୁ ପ୍ରେମର-ପ୍ରତିମୂର୍ତ୍ତି 'ମୁକୁନ୍ଦ' ତୁମ୍ଭେ,—ଆଉ ସେହି ପଦାମ୍ବୁଜ-ସେବା-ନିରତା ଭାଗ୍ୟବତୀ 'କୃଷ୍ଣା' ମୁହିଁ—।

ମୁକୁନ୍ଦ—ତ'ଣ ଦେଖାଇଲି, କୃଷ୍ଣା !—କି ଭାବ ଜଗାଇ ଦେଲି ? କୃଷ୍ଣା—ନା, ନା, କ୍ଷେମାଦେଈ—କ୍ଷେମାଦେଈ—କୁହ, କୁହ ସତ୍ୟକଥା ଥରେ,—ସତ୍ୟର ମର୍ଯ୍ୟାଦା ରକ୍ଷା ପାଇଁ—ବୀରର ମର୍ଯ୍ୟାଦା ରକ୍ଷା ପାଇଁ, ଉଭୟେ ଲକ୍ଷ୍ମୀ ଲକ୍ଷ୍ମୀ-ପତି କ'ଣ ସେହି ଅନନ୍ତ ଶୟନର ଅନନ୍ତ ସୁଖନିଦ୍ରା ବିସର୍ଜ୍ଜନ ଦେଇ କେତେ କେତେ ବିନିଦ୍ର ବିରହ ରାତିର ଯୁଗଯୁଗାନ୍ତକାଳ ଏହି ଶୋକ ଦୁଃଖପୂର୍ଣ୍ଣ ଧରାଧାମରେ ଯାପନ କରି ନାହାନ୍ତି ? କ୍ଷେମାଦେଈ ! କ୍ଷେମାଦେଈ ! ପ୍ରକୃତରେ ଆଜି ମୋତେ ରକ୍ଷପ୍ରାନ ଭରିଚ—ସେହି ଦିବ୍ୟାଲୋକରେ ନିଜେ ତୁହିଁ ଦେଖ ଥରେ, ପ୍ରେମ ବୋଲି ଯେଉଁ ସ୍ରୋତରେ ଆମ୍ଭେ ଏତେଦିନ ଭାସି ବୁଲିଚୁ, ତାହାକି ପ୍ରକୃତ ପ୍ରେମ ?—ତାହା ଗୋଟାଏ ଲାଲସା—ଭୀଷଣ ଆସୁର-ଲାଲସା ନୁହେଁ କି ?—ତାର ପ୍ଲାବନରେ ବିଶ୍ୱ ରସାତଳ ଗର୍ଭେ ଲୀନ ହୋଇଯାଏ—ତା'ର ନିଶ୍ୱାସରେ ପ୍ରଳୟର ଝଞ୍ଜା ମାତି ଉଠେ ।—ଆଉ ପ୍ରେମ—ପ୍ରେମ—ତା'ର ଉଚ୍ଛ୍ୱାସରେ ବିଶ୍ୱ ରସାତଳ ଗର୍ଭରୁ ଉତ୍ତୋଳିତ ହୁଏ—ତା'ର ପ୍ରଶ୍ୱାସରେ ମଳୟାନିଳ ଖେଳି ବୁଲେ—ତା'ର ଜ୍ୟୋତିରେ ମର୍ଯ୍ୟାଦା ଭାସ୍ୱର ହୋଇ ଉଠେ, ମଳିନ ହୁଏ ନାହିଁ—କର୍ତ୍ତବ୍ୟ ପଥ ଆଲୋକିତ ହୋଇ ଉଠେ, ଅନ୍ଧକାରରେ ଆବୃତ ହୁଏ ନାହିଁ ।—

କୃଷ୍ଣା—କିନ୍ତୁ ମୋର ଆଲୋକ, ଅନ୍ଧକାର—ମୋ'ର ପଥ, ବିପଥ ଯେ ଏକ ମାତ୍ର ତୁମ୍ଭେ, ପ୍ରେମମୟ !
(ଚରଣେ ଧାରଣ କଲେ)

ମୁକୁନ୍ଦ—ଛାଡ଼—ଛାଡ଼—ପଥ !—ପଥ !—କାହିଁ ପଥ ମୋ'ର ?—ଏ' ଯେ ଗୁରୁଅଡ଼େ ସେହି ଜଲାକବାଟିର ଲୌହଶୃଙ୍ଖଳମାଳା !—ନା, ନା, ତାହାଠାରୁ ଯେ କଠିନତର ପ୍ରତିବନ୍ଧକ !—ମୁକୁନ୍ଦର କି ଶକ୍ତିର ଅତୀତ ?—

କୃଷ୍ଣା—ରକ୍ଷାକର—ରକ୍ଷାକର, ପ୍ରେମ—( ଦୃଢ଼ଭାବେ ଧରିଲେ )

ମୁକୁନ୍ଦ—ରକ୍ଷା—ରକ୍ଷା କରିବ ମୁକୁନ୍ଦ ନିଶ୍ଚେ ଆଜି—କେବଳ ରାଜ-ମର୍ଯ୍ୟାଦା ନୁହେଁ—ସତ୍ୟରମର୍ଯ୍ୟାଦା—ବୀରର-ମର୍ଯ୍ୟାଦା—।
( ଆପଣାକୁ କୌଣସିମତେ ମୁକ୍ତ କରି ବେଗେ ପ୍ରସ୍ଥାନ କଲେ )

କୃଷ୍ଣା—ଉଃ—( ଗୋଟାଏ କେଉଁ ପ୍ରତିଘାତରେ ମୂର୍ଚ୍ଛିତାପ୍ରାୟ ହେଲେ )

[ ଅନନ୍ତର ସୋଲ୍ଲାସେ ବେଗେ ପ୍ରବେଶ ]

ଅନନ୍ତ—ବାସନା ପୂର୍ଣ୍ଣ ହୋଇଚି, ଭାଇ—ରାଜାଦେଶ—ପୂର୍ବ ପଦ ତୁମ୍ଭେ ଫେରି ପାଇଚ—ଉଃ, କି ବର୍ଷା—ବିଜୁଳି—ଘଡ଼ଘଡ଼ି—।

କୃଷ୍ଣା—ଅସ, ଅସ,—ନାରୀର ମର୍ଯ୍ୟାଦା ରକ୍ଷା କରିବାକୁ ଭୁଲିଯାଅ ନାହିଁ—(ମୁକୁନ୍ଦଜ୍ଞାନରେ ଅନନ୍ତର ଚରଣ ଧରିବାକୁ ଗଲେ )

ଅନନ୍ତ—ନାରୀର ମର୍ଯ୍ୟାଦା !—କେଉଁଠି ମୁଁ ? ଏ' କ'ଣ ?

କୃଷ୍ଣା—(ଅନନ୍ତକୁ ଦେଖି) ଏଁ—ଏଁ—ଏ' ଯେ— ( ମୂର୍ଚ୍ଛିତା ହୋଇ ପଡ଼ିଗଲେ )

ଅନନ୍ତ—ଭୟ ନାହିଁ—ଭୟ—କିଏ ?—କିଏ ?— ନୟନ ! ଧର ବହ୍ନି ଶିଖା ସେହି—ତେଜେ ଯା'ର ଜଳି ଯାଏ କ୍ଷଣେ, ବିଶ୍ୱ ବ୍ରହ୍ମାଣ୍ଡ ଅଖିଳ— ମସ୍ତିଷ୍କ ! କରିଥିଲ ଏକାଠାବେ ସର୍ବ ସ୍ନାୟୁ କୁଳ କେନ୍ଦ୍ରୀଭୂତ ଯଥା ବିଶ୍ୱ, ନାଭି ପଦ୍ମେ ଅନନ୍ତ ବ୍ରହ୍ମର । ବୁଝି ଦେଖ—ଗୁହିଁ ଦେଖ—ଏ' କି କୃଷ୍ଣା ! ରାଜକେମା କୃଷ୍ଣା ? ମୋ'ର ସହଧର୍ମିଣୀ କୃଷ୍ଣା ?

[ ବିସ୍ମୟ, କ୍ରୋଧ ଓ ଶୋକାକୁଳଭାବରେ ଗୁହିଁ ରହିଲେ ]

—ଯବନିକା—

---

## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

—କକ୍ଷ—

[ ମଳିନବେଶା କୃଷ୍ଣା ଏକାକିନୀ ମୌନ ଭାବେ ବସି କ'ଣ ଚିନ୍ତା କରୁଥିଲେ—କେତେବେଳେ ଭୟରେ ଶିହରି ଉଠୁଥିଲେ—କେତେବେଳେ ବା ବିମର୍ଷ ଭାବ ଧାରଣ କରୁଥିଲେ—ସେହି ଭାବୋଦ୍ଦୀପକ ମୃଦୁ ମୃଦୁ ବାଦ୍ୟ ଧ୍ୱନି ଘରଟିକୁ ତରଙ୍ଗାୟିତ କରି ରଖିଥିଲା । ଅନନ୍ତ ସିଂହ ଅଲକ୍ଷେ ଧୀର ପଦ କ୍ଷେପେ ପ୍ରବେଶ କଲେ ଓ ମୃଦୁ କର ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ଡାକିଲେ— ]

ଅନନ୍ତ—କୃଷ୍ଣା !

କୃଷ୍ଣା—(ଭୀତା ଓ ଚମକିତା ହୋଇ ଘୁଞ୍ଚି ଠିଆହେଲେ)

ଅନନ୍ତ—ପ୍ରାଣେଶ୍ୱରି ।

କୃଷ୍ଣା—'ପ୍ରାଣେଶ୍ୱରି' !—ହାଃ ହାଃ ହାଃ —

ଅନନ୍ତ—ବୁଝିଛି—ବୁଝିଛି ମନୋଭାବ ତୁମ୍ଭର — ସମ୍ବୋଧନରେ ମଧ୍ୟ ମୋ'ର ଅଧିକାର ନାହିଁ— ଯେ ପର୍ଯ୍ୟନ୍ତ ସେହି ତସ୍କରଟା—

କୃଷ୍ଣା—'ତସ୍କର'—'ତସ୍କର'—

(ବିସ୍ମୟାବିଷ୍ଟ ନେତ୍ରରେ ଗୁହିଁଲେ)

ଅନନ୍ତ—ଓଃ—ସେହି ତସ୍କର-ଭୟ ସତେ ସତେ କ'ଣ—

କୃଷ୍ଣା—ଦୂର ହେବ—ଥାଉଁ ଏ' ଜୀବନ । ( ଶ୍ଳେଷ ପୂର୍ଣ୍ଣ ନେତ୍ରରେ ଗୁହିଁଲେ )

ଅନନ୍ତ—ଜୀବନ ଭୟରେ ସେ ପଳାଇଛି, ପ୍ରାଣେ—

କୃଷ୍ଣା—ମାତ୍ର ମୋର ଭୟ କ'ଣ—(ହଠାତ୍ ସଲଜ୍ଜେ ମୁଖ ଫେରାଇ ନେଇ ମାଟି ସଙ୍ଗେ ମିଶିବାକୁ ଯାଉଥିଲେ )

ଅନନ୍ତ—ମୃତ୍ୟୁ ସୁନିଶ୍ଚିତ ଜାଣି କେହି କି କେବେ—

କୃଷ୍ଣା—(ଚମକିତା ହୋଇ) 'ମୃତ୍ୟୁ' !—'ମୃତ୍ୟୁ' !— ଅସମ୍ଭବ—ଅସମ୍ଭବ—ମୃତ୍ୟୁ ନାହିଁ, ମୃତ୍ୟୁ ହୋଇ ପାରେ ନାହିଁ—

ଅନନ୍ତ—'ପାରେ ନାହିଁ'—ଠିକ୍ କହିଛ—ମୃତ୍ୟୁ ସଙ୍ଗେ ଯୁଦ୍ଧ କରିବାକୁ ଯେମନ୍ତ ସେ ଅଜୀବନ ପ୍ରସ୍ତୁତ—କି ଅଲୌକିକ ଶକ୍ତି ତାର—ଏଡ଼େ ଏଡ଼େ କଠିନ ଲୌହ ଦଣ୍ଡ ଗୁଡ଼ାକ ସେଦିନ କେତେ ଅନାୟାସରେ ବଙ୍କାଇ, ପୁଣି ସିଧା କରି ଦେଇ ଗୁଲିଗଲା ସିନା—

କୃଷ୍ଣା—ହାଃ, ହାଃ - ଏହାଠାରୁ କଠିନତର ଦଣ୍ଡକୁ ଯେ ସେଦିନ ଅନାୟାସେ ତରିମାର କରି— ( କହୁ କହୁ କି ଧକ୍କାରେ ରହିଗଲେ )—

ଅନନ୍ତ—ଆଶ୍ଚର୍ଯ୍ୟ—ଆଶ୍ଚର୍ଯ୍ୟ ତାର ଦୁଃସାହସ !—ଏତେ ସତର୍କ ପ୍ରହରୀ ଥାଉଁ ଥାଉଁ,—ପର୍ବତପରି ଉଚ୍ଚ ପ୍ରାଚୀର ପରିବେଷ୍ଟିତ ରାଜପୁରୀ ମଧ୍ୟରେ ପ୍ରବେଶ କରି,—ଏହି ମୁଁ ଫେରି ଯାଉଁ ଯାଉଁ, କେତେ

ବା ସମସ୍ତ ପାଇଲୁ, ସେଥି ମଧ୍ୟରେ, ଏକୁଟିଆ ତୁମକୁ ବନ୍ଧନ କରି,—ନିଶ୍ଚୟ କେଉଁ ଅଦୃଶ୍ୟ ଶକ୍ତି ପ୍ରଭାବରେ—

କୃଷ୍ଣା—(ନିର୍ଲିପ୍ତ ଭାବେ) 'ଅଦୃଶ୍ୟ ଶକ୍ତି'—ପ୍ରକୃତରେ 'ଅଦୃଶ୍ୟ' ଶକ୍ତି—ପ୍ରଭାବ ତାର ଦୃଷ୍ଟିର ଅତୀତ—କଳ୍ପନାର ଅତୀତ—ତା'ପାଖରେ ଏକା ସମ୍ଭବ—ନୁହେଁ କି ?

ଅନନ୍ତ—(ସ୍ୱଳ୍ପ ସନ୍ଦିଗ୍ଧ ଭାବେ ଚାହିଁଲେ) କିନ୍ତୁ ଏ ଦୁଃସାହସ ତା'ର ତୁମରି ଯୋଗୁଁ ବଢ଼ି ଯାଇଥିଲା ସିନା—ମୋର ମଧ୍ୟ ଦୋଷ କିଛି କମ୍ ନୁହେଁ—ପୂର୍ବୋପକାରର କୃତଜ୍ଞତାରେ ଯଦି ଏତେ ଦୂର ଅନୁପ୍ରାଣିତ ହୋଇ ନ ଥାନ୍ତି, ତାହା ହେଲେ କି ଏପରି କୃତଘ୍ନତା—

କୃଷ୍ଣା—'କୃତଘ୍ନତା' !—ଘୋର କୃତଘ୍ନତା !

(ଦୀର୍ଘନିଶ୍ୱାସ ତ୍ୟାଗକଲେ)

ଅନନ୍ତ—(କ୍ରୋଧାବିଷ୍ଟ ହେଲେ) ସର୍ପ—ସର୍ପ ସେହି—ଦଂଶନ କରିବା ତା'ର ପ୍ରକୃତି । ଅଜ୍ଞ ଗୁଣ୍ଡୁଚି, ତସ୍କର—ସେ ଦିନ ଘଟିବ ତୋ'ର ସେହି ଦୁଷ୍ଟିନ୍ତ ପାପ ଲାଳସା—ଓଃ ! ମୁଁ କି ଗୋଟାଏ ହୃଦୟାବେଗରେ ଲକ୍ଷ୍ୟ କରି ପାରି ନ ଥିଲି ସିନା !

କୃଷ୍ଣା—ଥାଉ—ଥାଉ—ସେହି ସ୍ମୃତି—ଶେଲ ସମ ବିନ୍ଧୁଅଛି ମର୍ମେ—ଓଃ, କି ଜ୍ୱାଳା—ନିଜ ରକ୍ତେ ନିଜ ରକ୍ତେ ପରି ଲିଭାନ୍ତି ଏ'କ୍ଷଣି—କିନ୍ତୁ—କିନ୍ତୁ, ଲିଭିବ କି—ଲିଭିବ କି—

ଅନନ୍ତ—ଲିଭିବ ନିଶ୍ଚୟ—କୃଷ୍ଣା ! କୃଷ୍ଣା ! ଏହି ପ୍ରତିଜ୍ଞା ମୋହର—ଯେଉଁ ଠାରେ ଥାଉ ସେ ତସ୍କର—ଅନଳେ, ଅନିଳେ ବ୍ୟୋମେ ଅବା—ଜୀବିତ ବା ମୃତ—ଆଣିବି ମୁଁ ଖୋଜି କ୍ଷଣେ—ଦେବି ଉପହାର—ନା—ନା—ସ୍ୱହସ୍ତେ ବିଦାରି ବକ୍ଷ, ରକ୍ତ ଗଙ୍ଗା କରିବି ବାହାର—ସେହି ରକ୍ତ କରି ଅଞ୍ଜଳି ଅଞ୍ଜଳି—ଭୀମ ସମ ବୋଳିବି ମୁଁ—(ଆଉ କହି ନ ପାରି କୃଷ୍ଣାର ବେଣୀରେ ବୋଳିବାର ଅଭିନୟ କଲେ )

କୃଷ୍ଣା—ପାଇବ—ପାଇବ କି ସନ୍ଧାନ ତାହାର ?—ଆଣି—ଆଣି ଦେବ କି ସାକ୍ଷାତେ ସତେ ? ମୁକ୍ତକେଶୀ ଆଜଠାରୁ କୃଷ୍ଣା ତେବେ ଜାଣ—!

(ବେଣୀ ମୁକୁଳାଇ ଦେଲେ)

ଅନନ୍ତ—କୃଷ୍ଣା—କୃଷ୍ଣା—ଥାଅ ଯେନି ସେହି ତୃଷ୍ଣା—ବାହାରିଲି ଏହିକ୍ଷଣି ଅନ୍ୱେଷଣେ ତା'ର—

(ପ୍ରସ୍ଥାନୋଦ୍ୟତ)

[ ବେଗେ ଦୂତର ପ୍ରବେଶ ]

ଦୂତ—ସେନାପତେ ! ସର୍ବନାଶ—

ଅନନ୍ତ—କରିବି ସ୍ୱହସ୍ତେ ମୁହିଁ—ରକ୍ତ—ରକ୍ତ—ରକ୍ତ—(ବେଗେ ପ୍ରସ୍ଥାନ କଲେ)

ଦୂତ—ସର୍ବନାଶ, ଜେମାଦେଈ—ହୋସେନ୍ ଖାଁ—

[ ନେପଥ୍ୟେ ଗୁଡ଼ୁମ୍ ଗୁଡ଼ୁମ୍ ଶବ୍ଦ ]

ଦୂତ—(ପ୍ରସ୍ଥାନ କରୁ କରୁ) ଏହି—ଶୁଣନ୍ତୁ, ଶୁଣନ୍ତୁ, ଜେମାଦେଈ !

କୃଷ୍ଣା—ଶୁଣିବି ପଶ୍ଚାତେ—ନିର୍ବାପିତ କରି ଅଗେ—ତୃଷ୍ଣା—ତୃଷ୍ଣା—ତୃଷ୍ଣା—!

[ ଅଟ୍ଟହାସ୍ୟପୂର୍ବକ କି ଯେ ଲାଳସାପୂର୍ଣ୍ଣ ଦୃଷ୍ଟିରେ ଚାହିଁ, ଅପଣାର ମୁକୁଳିତ ବେଣୀ ସାଉଁଳିବାକୁ ଲାଗିଲେ ]

---

## ଦ୍ୱିତୀୟ ଦୃଶ୍ୟ

—ଅପରିସର ରାସ୍ତା—

[ସନ୍ତ୍ରସ୍ତେ ସମରେନ୍ଦ୍ର ଓ ଚମ୍ପା ପ୍ରବେଶ କଲେ ]

ସମରେନ୍ଦ୍ର—ଚମ୍ପା ! ଏ ଯୁଦ୍ଧ ଗୋଳମାଳରେ କୌଣସି ମତେ ତ 'ବନ୍ଦୀ'ଙ୍କୁ ମୁକୁଳା ପାଇଲୁ—ଏବେ କାନ୍ତାରରେ ପଡ଼ିବା ନାହିଁ ତ ?

ଚମ୍ପା—ନ'—ସିଣିପ ହୋଇ—

ସମରେନ୍ଦ୍ର—ମାଇପି—ମାଇପି, ମୁଁ ଚମ୍ପା—ସିଣିପ—

(ଚମ୍ପାକୁ ଅଙ୍ଗୁଳି ନିର୍ଦ୍ଦେଶ କଲ)

ଚମ୍ପା—ଚୁଲି, ଚୁଲି, ତେବେ ହେଉଛି—ଖାଁ ସାହେବ ତେଣେ ହାଁ କରି—

ସମରେନ୍ଦ୍ର—ଗୃହିଣୀ ବସିଥିବେ ତ ବୁଝିଲି—କିନ୍ତୁ—

ଚମ୍ପା—'କିନ୍ତୁ' ଫେର କ'ଣ—

ସମରେନ୍ଦ୍ର—ସେ କାନ୍ଦୁରିଆ ହଁ। ନୁହେଁ ତ—?

ଚମ୍ପା—ବାପାଭାଇଟା କେଉଁ ଅକାଳରେ ତୁମକୁ ମିଶିପ କରି ଗଢ଼ିଥିଲା କେଜାଣି ?

ସମରେନ୍ଦ୍ର—ବାପାଭାଇର ସେହି ଭୁଲ ଆମେ ଠିକ୍ କରି ନେଲେ ହୁଅନ୍ତା ନାହିଁ, ଚମ୍ପା ?

ଚମ୍ପା—ଆମେ ଆଜି କରୁଚୁ କ'ଣ କି ?—ସେନାପତି ହେବାର—

ସମରେନ୍ଦ୍ର—'ସେନାପତି' !—

ଚମ୍ପା—ଚମକି ଉଠିଲ ଯେ ?

ସମରେନ୍ଦ୍ର—ପୁଣି—( ନାକ କାନ ମୋଡ଼ି ଗାଲରେ ଚଟକଣି ଖାଇ ) ସହକାରୀ ସେନାପତିଙ୍କୁ ତ ଏ' ଫଳ ?

ଚମ୍ପା—ତୁମର ବୁଦ୍ଧି ଦୋଷରୁ ସିନା । ଖୋଳଟା ଯଦି ଅନନ୍ତ ସିଂହକୁ ବିଶ୍ୱାସ କରି ଦେଇ ନ ଥା'ନ୍ତ—ଆଜି ସେ ଅସ୍ତ୍ରଟା ଯଦି ମୋ ହାତରେ ଯେତେବେଳେ ଥା'ନ୍ତା—ତା' ହେଲେ ସିଂହ ଉପରେ ଆଜି ହାତୀ ଚଢ଼ିଥାନ୍ତା କି ?—ହାୟ ! ତୁମେ ଏଡ଼େ ଗର୍ଦ୍ଦଭ—

ସମରେନ୍ଦ୍ର—କେମିତି ?—ତୁମେ ଯେତେବେଳେ 'ସିଂହ'—

ଚମ୍ପା—ଅନନ୍ତସିଂହର ଚିହ୍ନ ଭାବ ଦେଖି ମୁଁ ସନ୍ଦେହ କଲାବେଳେ ତୁମେ ନ ବୁଝି ନ ସୁଝି କେମିତିକା କହୁଥିଲ—'ଖୁବ୍ ଅଣ୍ଡି ଦେଇଚି'—

ସମରେନ୍ଦ୍ର ସେଇଥିପାଇଁ ତ କହୁଚି—ଏ' ଦେହଟା ପରି ବୁଦ୍ଧିଟା ମୋ'ର ଯଦି ହୋଇ ନ ଥା'ନ୍ତା—

ଚମ୍ପା—ଯେତେବେଳେ ଯେମିତିକା—କଣ ଗୁଣ୍ଡି ଦେଉ ନାହିଁ ?

ସମରେନ୍ଦ୍ର—କିନ୍ତୁ ସେ ଦିନକା ଭଳି ଯେମିତିକା ଆଉ ଗୁଣ୍ଡି ନ ଦିଅ—ଦେଖିଲ,—ଘା'ଟା ଏ' ଯାଏଁ—

ଚମ୍ପା—ଛି, ପ୍ରାଣେଶ୍ୱର ! ସେହି ଛୋଟ କଥାଟା ଏଡ଼େ କରି ଧରିଚ ନା ?—ତୁମେ ପରା ସେନାପତି ହେଲେ ମୁଁ ହେବି ସେନାପତିଆଣୀ—

ସମରେନ୍ଦ୍ର—ତା—ତା—ମୁଁ କହୁଚି କଣ'କି—ପଦାଟା ଓଲଟେଇ ଦେଲେ ହୁଅନ୍ତା ନାହିଁ ? ସବୁ ଯେତେବେଳେ ଓଲଟା—ମଣିମାଙ୍କ—ମଣିମା କାହିଁକି—ବାପାଭାଙ୍କର ବି ରୁଦ୍ରାମଣାରୁ ବୁଝିବାକୁ ତ ଆଉ ବାକି କିଛି ନାହିଁ ।

ଚମ୍ପା—ମଙ୍ଗଳଦାଟା ତୁମର କ'ଣ ଶୁଣେ—( ହଠାତ୍ ଯୁଦ୍ଧର କୋଳାହଳ ଶୁଣି ଓ ଅଦୂରେ ଅନନ୍ତକୁ ଦେଖି )

ସମରେନ୍ଦ୍ର—ଚମ୍ପା—ଚମ୍ପା—ପଳେଇଆ—ପଳେଇଆ—

[ ଉଭୟଙ୍କର ସଭୟେ ବେଗେ ପ୍ରସ୍ଥାନ ]

[ ଅନନ୍ତସିଂହର ବେଗେ ପ୍ରବେଶ ]

ଅନନ୍ତ—ଉପାୟ କ'ଣ ? ପଠାଣେ ଏବେ ଦୁର୍ଦ୍ଧର୍ଷ ହୋଇ ଉଠିଲେ—ଗଡ଼ ରକ୍ଷାର କି ଉପାୟ କରୁଚି ?—ନା, ନା, ସର୍ବାଗ୍ରେ ପ୍ରତିଜ୍ଞା ରକ୍ଷା କର୍ତ୍ତବ୍ୟ ମୋ'ର— ରକ୍ତ— ରକ୍ତ— ମୁକୁନ୍ଦର ରକ୍ତ—

[ ଜନୈକ ସୈନିକର ପ୍ରବେଶ ]

୧ମ ସୈନିକ—ସେନାପତେ ! ସର୍ବନାଶ—ଶତ୍ରୁ ଗୁପ୍ତପଥର ସନ୍ଧାନ ପାଇଛି ।

ଅନନ୍ତ—ମୁକୁନ୍ଦର ସନ୍ଧାନ ?—

୨ୟ ସୈନିକ—ଆଉ ରକ୍ଷା ନାହିଁ, ସେନାପତେ ! ଶତ୍ରୁ ରାଜପୁରୀ ମଧ୍ୟରେ ପ୍ରବେଶ କରିଛି—

ଅନନ୍ତ—କିନ୍ତୁ, ମୁକୁନ୍ଦ—ମୁକୁନ୍ଦ—?

[ ତୃତୀୟ ସୈନିକର ପ୍ରବେଶ ]

୩ୟ ସୈନିକ—ସେନାପତେ ! ଜେମାଦେଈ ଶତ୍ରୁ କବଳେ—

ଅନନ୍ତ—ମୁକୁନ୍ଦ କବଳେ ନୁହେଁ ତ—?

( ଅସି ଉନ୍ମୋଚନ କରି ବେଗେ ପ୍ରସ୍ଥାନୋଦ୍ୟତ )

[ ମୂର୍ଚ୍ଛିତାକୁମାରୀସ୍କନ୍ଧେ କ୍ଷତବିକ୍ଷତ ଦେହେ ମୁକୁନ୍ଦର ପ୍ରବେଶ ]

ମୁକୁନ୍ଦ—ମୁକୁନ୍ଦ କବଳେ ପଡ଼ିଅଛି ବାଳା—ରକ୍ଷିତ ନାରୀର ମାନ—ରକ୍ଷିତ ମର୍ଯ୍ୟାଦା ରାଜାର ଅମ୍ବର—ପରାମର୍ଶ ବନ୍ଧୁ, ଘେନ ଶୀଘ୍ର ପଳାଅ ଏ'ଠା'ରୁ ( ଅନନ୍ତର ଚରଣପ୍ରାନ୍ତେ ଶୁଆଇ ଦେଲେ )

( ନେପଥ୍ୟେ ଯୁଦ୍ଧ କୋଳାହଳ ) ତରବାରୀ—
ଖଣ୍ଡେ ତରବାରୀ—ବନ୍ଧୁ ! ବନ୍ଧୁ !—ଭଗ୍ନ ମୋର
ଅସି ଖଣ୍ଡ ଖଣ୍ଡ ରଣେ ।

( ନେପଥ୍ୟେ )—'ଅଲ୍ଲା ହୋ' ରବ — ( ଗୁଡ଼ୁମ୍ ଗୁଡ଼ୁମ୍ ଶବ୍ଦ )

ଏହ—ଏହ ଯେ ଅସନ୍ତି ଧାଇଁ—କ୍ଷୁଧିତ ଶାର୍ଦ୍ଦୁଳ
ସମ—ଶିକାର ସନ୍ଧାନେ—ଅସି — ଅସି —
[ ଅନନ୍ତ ନିର୍ବାକ ନିଶ୍ଚଳ ହୋଇ ଦେଖୁଥିଲେ ।
ଅନନ୍ତର ହସ୍ତରୁ ଅସି କାଢ଼ିନେଇ ]

ମୁକୁନ୍ଦ— କ୍ଷମ ଅପରାଧ, ଭାଇ—ଅସ, ସୈନ୍ୟଗଣେ—
[ କି ଯାଦୁରେ ଯେପ୍ରେ ସୈନ୍ୟଗଣଙ୍କୁ ବଶକରି ଦେଇ ପ୍ରସ୍ଥାନ କଲେ ]

ଅନନ୍ତ—ମୁକୁନ୍ଦ ! ମୁକୁନ୍ଦ !—ଭାଇ—ଭାଇ—!
(ସେହି ଅଦ୍ଭୁତ କ୍ଲୈବ ଆକର୍ଷଣରେ ଅନୁଧାବନୋଦ୍ୟତ ହେଲେ)

କୃଷ୍ଣା—( ଚେତନା ଲାଭ କରି ) ଏଁ—ଏଁ—
କେଉଁଠାରେ ମୁହିଁ—

ଅନନ୍ତ—( ଫେରି ଅସି ) ଭୟ ନାହିଁ—ଭୟ ନାହିଁ, କୃଷ୍ଣା !

କୃଷ୍ଣା—କିଏ—କିଏ—ତେବେ କି ସ୍ୱପ୍ନ (ମୂର୍ଚ୍ଛିତା ପ୍ରାୟ ହେଲେ)

ଅନନ୍ତ—ସ୍ୱପ୍ନ—ସ୍ୱପ୍ନ, କୃଷ୍ଣା ! ସ୍ୱପ୍ନ ପରି ଅସି, ସେ ଯେ ସ୍ୱପ୍ନ ପରି ସତେ ଯାଇଅଛି ଚାଲି ?

(ନେପଥ୍ୟେ)—ଅଲ୍ଲାହୋ ଆକ୍‌ବର !—

ଅନନ୍ତ—ଉଠ, ଉଠ, କୃଷ୍ଣା—ପ୍ରିୟତମେ—ନିରାପଦ ନୁହେଁ ସ୍ଥାନ (କୃଷ୍ଣାଙ୍କୁ ଧରିବାକୁ ଗଲେ)

କୃଷ୍ଣା—କିଏ—କିଏ—ଛୁଅଁ ନା, ଛୁଅଁ ନା ମୋତେ—

ଅନନ୍ତ—କୃଷ୍ଣା ! କୃଷ୍ଣା !—କୃଷ୍ଣା କି ତୁମ୍ଭର—

କୃଷ୍ଣା—'ଲଭ ନାହିଁ ?'—ଲଭିବ କିପରି—କିଏ ଲଭିଇବ ?—( ନେପଥ୍ୟେ ମୁକୁନ୍ଦଙ୍କୁ ଉଦ୍ଦେଶ୍ୟ କରି ରହିଁ ଠିଆ ହେଲେ)

ଅନନ୍ତ—କ୍ଷମାକର, କୃଷ୍ଣା—ଭୁଲିଥିଲି ପ୍ରତିଜ୍ଞା ନିଜର,
ସାମାନ୍ୟ ଆବେଗେ—ରକ୍ତ—ରକ୍ତ—ରକ୍ତ
ସେହି ତସ୍କରର—

(ନେପଥ୍ୟେ)—'ଅଲ୍ଲାହୋ' ଆକ୍‌ବର—

ଅନନ୍ତ—ଚାଲ,ଚାଲ, କୃଷ୍ଣା ! ଅଟେ ନିରାପଦ ସ୍ଥାନେ—

କୃଷ୍ଣା— ସିଂହ-ଶିଶୁ ମୁହିଁ—ନ ଲୋଡ଼ଇ କେବେ ଶୃଗାଳର କର—

ଅନନ୍ତ—କୃଷ୍ଣା ! କୃଷ୍ଣା !—ଓଃ ! କି ଶେଲ ବିନ୍ଧିଲି ଅଜ୍ଞ ମରମେ ମୋହର—(କ୍ଷୋଭିତ ଅଶ୍ୱପରି ବେଗେ ପ୍ରସ୍ଥାନ କଲେ)

କୃଷ୍ଣା—(କେଉଁ ବନ୍ଧୁବିକାର ଛାୟା ସମ୍ମୁଖେ ଯେମନ୍ତ ଦେଖିବାକୁ ପାଇ) ଅନନ୍ତ !—ସେନାପତେ !—
ଫେର—ଫେର—(ଅନୁଧାବନ କଲେ)

---

## ତୃତୀୟ ଦୃଶ୍ୟ

—ଦୁର୍ଗ ନିକଟସ୍ଥ ଶିବିର—

[ ଶିବିରରେ ଖାଁ ସାହେବ କେତେକ ମୋସାହେବଙ୍କ ସଙ୍ଗେ ନୃତ୍ୟ, ଗୀତ ଓ ପାନାଦିରେ ମତ୍ତ ଥିଲେ । କ୍ଷଣକାଳ ପୂର୍ବେ ଗୋଟାଏ ଭୀଷଣ ଖଣ୍ଡ ଯୁଦ୍ଧରେ ଶତ୍ରୁପକ୍ଷ ପରାସ୍ତ ହୋଇ ଯାଇଥିବାରୁ ଏବଂ ରାତ୍ରିର ଅନ୍ଧକାର କ୍ରମେ ଘନୀଭୂତ ହୋଇ ଆସୁଥିବାରୁ ଯୁଦ୍ଧର ଆଶଙ୍କା ନ ଥିଲା । ]

ନର୍ତ୍ତକୀ— ଗୀତ

ମେରି ପିଆଲି ରଙ୍ଗେଲି—
ମେରି ଓଠୋ—ରଙ୍ଗେଲି—
ରଙ୍ଗେଲି ବୋଲି ମେରା—
ରଙ୍ଗେ ଯୌବନ ଖେଲି ॥
କିଆବାତ ?—କିଆବାତ୍ ?—ଅଓ ମେରିସାଥ୍—
ଅଖିମେ ଲାଲି ଗୋଲି—
ଦଲ୍‌ମେ ଲାଲି ଖୋଲି ;
ଦୁନିଆକୋ ଛୋଡ଼ୋ—ଅସ୍‌ମାନ୍‌ମେ ଚଢ଼ୋ—
ହାମ୍‌ସେ ମିଲି ଖେଲି—କଏସି ରଙ୍ଗେଲି ॥

(ସମସ୍ତେ ନିଶାରେ ଲୁପ୍ତ-ଜ୍ଞାନ ହେବା ଦେଖି ନର୍ତ୍ତକୀର ପ୍ରସ୍ଥାନ)

[ ଅଲକ୍ଷ୍ୟେ ସମରେନ୍ଦ୍ର ଚମ୍ପାବେଶରେ ଓ ଚମ୍ପା ସମରେନ୍ଦ୍ର ବେଶରେ ନିମ୍ନୋକ୍ତ ଭାବେ କଥୋପକଥନ କରୁ କରୁ ପ୍ରବେଶ କଲେ]

ସମରେନ୍ଦ୍ର—(ସଭୟେ) ଚମ୍ପା !

ଚମ୍ପା—ମୁଁ ଚମ୍ପା ?

ସମରେନ୍ଦ୍ର—ନା, ନା—(କାନ ମୋଡ଼ି ଚଟକଣି ଖାଇ) ସମରେନ୍ଦ୍ର—ସମ—

ଚମ୍ପା—ଅଚ୍ଛା, ଖାଁ ସାହେବ ତ ତମର ମୁଚ୍ଛଟା ଦେଖିଥିବେ ?—

ସମରେନ୍ଦ୍ର—ତା—ତା—

ଚମ୍ପା—କିଛି ଭୟ ନାହିଁ—ମୁଁ କହିଦେବି—କ'ଣ କି, ଏହି ଜଲମା ପଡ଼ିଲାବେଳେ ଦୁଇ ହାତରେ ମୁଚ୍ଛଟା ସାଉଁଳୁ—ସାଉଁଳୁ—

ସମରେନ୍ଦ୍ର—(ଉତ୍ତେଜିତ ହୋଇ) ହଁଉ ପଡ଼ୁଚି—ଠିକ୍ କହୁଚୁ ଚମ୍ପା—

ଚମ୍ପା—ପୁଣି ଚମ୍ପା—(ଦାନ୍ତ କାମୁଡ଼ି ଆଖି ଦେଖାଇ)

ସମରେନ୍ଦ୍ର—(କାନ ମୋଡ଼ି ଚଟକଣି ଖାଇ ଗୋଡ଼ ଧୂଳି ମୁଣ୍ଡରେ ନେଇ) ଆଉ ନୁହେଁ—ଆଉ ନୁହେଁ—କିନ୍ତୁ ମୁଚ୍ଛଟା ମୋର ଯଦି ଦେଖି ପକାନ୍ତି—

ଚମ୍ପା—ଭଲ କରି ଘୋଡ଼େଇ ରଖିପାରୁନା—

ସମରେନ୍ଦ୍ର—କାହିଁକି, ଚ—( ଜିଭ କାମୁଡ଼ି ଓ ସେହିପରି ଚଟକଣି ଖାଇ) କହି ଦେବି—'ତୁମର ଯେ ସବୁ ଓଲଟା'—

ଚମ୍ପା—ଚୁପ୍—ଖାଁ ସାହେବ ଚେଇଁଲେଣି ପରା—ଦେଖ, ସାବଧାନ—କଥା କହିବ ନାହିଁଟି !

ସମରେନ୍ଦ୍ର—(ସଭୟେ) ଚ—ମ୍ପା—

ଚମ୍ପା—ପୁଣି—(ଭୟ ଦେଖାଇ)

ସମରେନ୍ଦ୍ର—( ପାଟି ଅଠା ଅଠା କରି ଇଙ୍ଗିତରେ ଯେମିତକା କରିଲେ ) 'ଆଉ କହିବାର ଶକ୍ତି ଯେ ନାହିଁ—'

ଚମ୍ପା—କେମିତକା ମିଣିପଟାମ !

ସମରେନ୍ଦ୍ର—(ଇଙ୍ଗିତରେ ନିଜର ବେଶ ଦେଖାଇଲେ କେବଳ )

[ ଇତି ମଧ୍ୟରେ ଖାଁ ସାହେବ, ନିଶା ଛାଡ଼ ଛାଡ଼ ହେବାରୁ କି କ'ଣ ଉଠି ବସିଥିଲେ ]

ଖାଁ ସାହେବ—ଗାର୍ଡ—ଗାର୍ଡ—

[ ଚମ୍ପା ଓ ସମରେନ୍ଦ୍ର ଅଗ୍ରସର ହେଲେ, ମାତ୍ର ସମରେନ୍ଦ୍ର ଲଜ୍ଜାବତୀ ଲତାଟି ପରି ଚମ୍ପାକୁ ଚମ୍ପକବୃକ୍ଷ ସମାନ ଜଡ଼େଇ ରହିଥାଏ ]

ଚମ୍ପା—(ନିର୍ଭିକ ଭାବେ) ବନ୍ଦେଗି—ବନ୍ଦେଗି—

ଖାଁ ସାହେବ—ଆଦାବ୍, ଆଦାବ୍—ଆସ୍ୟେ, ଆସ୍ୟେ—(ଅନ୍ୟାନ୍ୟ ମୋସାହେବମାନଙ୍କୁ)—ବେ ଲୁ ବ୍ ! କମ୍‌ବକ୍ତ ! ନିକ୍‌ଲୋ, ଭାଗୋ ଇହିଁସେ—

[ ମୋସାହେବଗଣ ଉଠି; ଆଖି ମଳୁ ମଳୁ, ସମରେନ୍ଦ୍ରକୁ ଟେରେଇ ଗୃହୁଁ ଗୃହୁଁ ପ୍ରସ୍ଥାନ କଲେ ]

ଖାଁ ସାହେବ—( ସମରେନ୍ଦ୍ର ଆଡ଼େ ଟେରେଇ ଗୃହୁଁ ଗୃହୁଁ ) ଯେ କେଉଁ ଅଉରତ୍—

ଚମ୍ପା—ଅଜ୍ଞ, ସାଥିଁ ନ୍ତେ—

ଖାଁ ସାହେବ—ଖାସା ଅଉରତ୍—ଉସିକା ବାସ୍ତେ ହାମ୍‌ଲୋଗ୍‌କା କାହା ଆଜ୍ ଫଉେଜ୍‌ଆ—

ଚମ୍ପା—ଆପଣଙ୍କର ଦୟା—

ଖାଁ ସାହେବ—ଏ' ଲଡ଼ାଇ ଆଖିର୍ ହୋନେକା ବାଦ୍ ଆପ୍ ଦୋନୋକା ବାସ୍ତେ ନବାବ୍‌କା ପାଶ୍ କୋଶିସ୍ କରେଙ୍ଗେ ଯେସା ଆପ୍ ଦୋନୋକୋ ଏକ୍ ଏକଠୋ ବଡ଼ା ଜାଗୃିର୍ ମିଲ୍ ଯାଏ—

ଚମ୍ପା—ତା'ତ ମିଳବ, ଆପଣ ଯେତେବେଳେ ଅନୁଗ୍ରହ କରିଚନ୍ତି— କିନ୍ତୁ ସେ ଯେଉଁ ପ୍ରାର୍ଥନାଟା —ବିବର ମୋର—(ସମରେନ୍ଦ୍ରକୁ ଚିମୁଟି ଦେଇ) କହୁ ନାହଁ—ତୁମର ପ୍ରାର୍ଥନା କଣ—?

ସମରେନ୍ଦ—( ଏକାନ୍ତେ ଚମ୍ପାକୁ ) କହୁଚ କହୁଚ, ଚମ୍ପା—ଚିମୁଟି ରକ୍ତ ବାହାର କରିଦେଲ୍ ଯେ—

ଚମ୍ପା—ପୁଣି—(ଇଙ୍ଗିତରେ ଶାସନ କଲେ )

ଖାଁ ସାହେବ—କିଆ ମାଙ୍ଗ୍‌ତେହୋ, ପିଆର୍—ମାଙ୍ଗୋ, ମାଙ୍ଗୋ—

ସମରେନ୍ଦ୍ର—(ଏକାନ୍ତେ) ଚମ୍ପା, 'ପିଅର' କଣ—?

ଚମ୍ପା—ଅଃ—ଦେଖିଲ, ଖାଁ ସାହେବ ତୁମକୁ କେତେ ଭଲପାନ୍ତି !—ମନ କଥା ଖୋଲି କହିବାରେ ଲାଜ କଅଁ ?

ସମରେନ୍ଦ୍ର—ମନ କଥା ଖୋଲୁ ଖୋଲୁ, ନାଶଦାଢ଼ି ଯଦି ଖୋଲି ପଡ଼େ—

ଖାଁ ସାହେବ—କୁଛ୍ ଡରିଏ ମତ୍—ତୁମ୍‌ହାରି ୱାସ୍ତେ ହାମ୍ ଜାନ୍ ଦେନେକୁ ତୟାର ହୁଁ—

ଚମ୍ପା—(ସମରେନ୍ଦ୍ର ସଙ୍ଗେ ପରାମର୍ଶ କରିବାର ଛଳନା କରି) ହଁ—'ପିଅର' କହୁଚନ୍ତି କି—ଆଗେ ସେହି ଦୁଇଟା କାଫେରର ଜାନ୍ ଆଣି ନ ଦେବାଯାଏ—

ଖାଁ ସାହେବ—(ହୋ ହୋ କରି ହସି) ଓଇ ଦୋନୋ କାଫେର୍—ଅନନ୍ତ ଔର ମୁକୁନ୍ଦ—ଏତ ଥୋଡ଼ାଇ ବାତ୍ ହେ—ମେରି ପିଅରେ, ହାମ୍ ହୁଡ୍‌କା ମୁହୁଁସେ ସବ୍ ସୁନା—ଓ ଦୋନୋ ଅପ୍‌କା ସତୀତ୍ୱ ନଷ୍ଟ୍ କର୍‌ନେକା ୱାସ୍ତେ ଯେସା କସୈଦ୍ କିଏଥେ, ହାମ୍ ଓଦୋନୋକା ଜାନ୍ ଲେନେକା ୱାସ୍ତେ ଓଇସି କବର୍‌ମେ କସୈଦ୍ କର୍‌କେ ରଖେଙ୍ଗେ ।

ଚମ୍ପା—ବହୁତ୍ ବହୁତ୍ ସଲାମ (ପ୍ରସ୍ଥାନୋଦ୍ୟତ)

ସମରେନ୍ଦ୍ର—(ସେହିପରି ସଲାମ୍ କରୁ କରୁ ପ୍ରସ୍ଥାନୋଦ୍ୟତ)

ଖାଁ ସାହେବ—ଏ କିଆ ବାତ୍, ପିଅରି—କାହାଁ ଯାତେ ହୋ—(ଅଞ୍ଚଳ ଧରିଲେ)

ସମରେନ୍ଦ୍ର—(ସଭୟେ) ଚମ୍ପା—

ଖାଁ ସାହେବ—'ଚମ୍ପକ୍', 'ଚମ୍ପକ୍',—ଅଃ—କିଆ ଖୁବ୍‌ସୁରତ୍ ନାମ୍—ଅଇୟେ ମେରି ଚମ୍ପକ୍‌ବିବି (ଅଲିଙ୍ଗନ ଉଦ୍ଦେଶ୍ୟରେ ଅଗ୍ରସର ହେଲେ) [ସମରେନ୍ଦ୍ର ସଭୟେ ଚମ୍ପାକୁ ଜଡ଼େଇ ଧରିଲେ]

ଚମ୍ପା—ମ, ତୁମର ସତୀତ୍ୱ କଅଣ ଗୁଲି ଯାଉଚି ?

ଖାଁ ସାହେବ—କଭି ନେଇଁ, ବିବି ସାହେବ—କୁଛ୍ ଡରିଏ ମତ୍—ହାମ୍ ଭାରି ହୁସିଆର ଅଦ୍‌ମି—କହିଁ କୋଇ ଫାଁକା ଉଙ୍କା ରହେଗା ନେହିଁ—ଅଇୟେ, ମିଆଁ ସାହେବ ।

ଚମ୍ପା—ମୁସ୍କିଲ୍ । (ହଲଦ୍ଦ ଶୁଖିଗଲା ପରି)

ଖାଁ ସାହେବ—(ସସ୍ମିତେ ଚମ୍ପା ପ୍ରତି) କିଆ ଦେଖ୍‌ତେ-ହୋ ମିଆଁ ସାହେବ—ହାମ୍ ଇସିମେ ମୁଛ୍‌ଦାଢ଼ି ପକାୟା—ହାମ୍‌କୁ ବହୁତ୍ କଦର୍ ମାଲୁମ୍‌ହେ—(କହୁ କହୁ ସମରେନ୍ଦ୍ର ପାଖକୁ ଲାଗି ଆସିଲେ)

ଚମ୍ପା—ଆମ ପାଖେ କଦରର କ ଦରକାର, ସାହେବ—ସେହି ପ୍ରାର୍ଥନାଟି ପୂର୍ଣ୍ଣ କଲେତ ଚିରକାଳ ପାଜରେ ଗୋଲମ ହୋଇ ରହିବୁଁ ?

ଖାଁ ସାହେବ—ଆଗେ ନମୁନାଟ ବତ୍‌ଲାଓ—(ଅଲିଙ୍ଗନ କରିବାକୁ ଉଦ୍ୟତ)

ସମରେନ୍ଦ୍ର—ଚମ୍ପା—(ଚମ୍ପାକୁ କୁଣ୍ଢାଇ ପକାଇଲା)

ଚମ୍ପା—(ଖାଁ ସାହେବଙ୍କୁ ବାଧାଦେଇ, ଉପସ୍ଥିତ ବୁଦ୍ଧିବଳରେ) ବିବିମେରୀ ବୋଲତା ସବ୍‌ତୋ ବନ୍ଦ ହେ, ମଗର ଅପ୍‌କା ଆଁଖତ ଖୋଲା ହେ—

ଖାଁ ସାହେବ—(ହୋଃ ହୋଃ କରି ହସି) ଓଇ ଖ୍ରାସେ ସତୀତ୍ୱ ନିକଲ୍ ଯାତା ?—ବହୁତ୍ ଖୁସି ହାମ୍ ଆଁଖ୍ ବି ବନ୍ଦ କର୍ ଦେତେ ହେଁ—

ଚମ୍ପା—(ସମରେନ୍ଦ୍ରକୁ ଟାଣି ନେଇ ପ୍ରସ୍ଥାନ କରୁଥିଲା)

ଖାଁ ସାହେବ—ଆୟେ ମେରି ଜାନ୍—ମେରି ପ୍ୟାରେ (କହୁ କହୁ ଅନ୍ଧ ଭାବେ ଅଲିଙ୍ଗନ ଉଦ୍ଦେଶ୍ୟରେ ହନ୍ତାଡ଼ୁ ହନ୍ତାଡ଼ୁ, ସ୍ତୀତଦସ୍ତ, ପଳାୟନରତ ସମରେନ୍ଦ୍ରକୁ ହଠାତ୍ ଧରି ପକାଇ କାମାତୁର ଭାବେ ଗାଢ଼ ଚୁମ୍ବନ କରିବାକୁ ଯାଇ ତାର ଦାଢ଼ିରୁ ଫୁଲାଏ କାମୁଡ଼ି ଦେଲେ)

ସମରେନ୍ଦ୍ର—ଉଃ, ଜୁଃ, ମରିଗଲି, ମରିଗଲି, ମୁଁ ଚମ୍ପା—(ନସରପସର ହୋଇ ଉଠି ପଡ଼ି ଧାଇଁ ପ୍ରସ୍ଥାନ କଲା)

ଖାଁ ସାହେବ—ୱ୍ୟାକ୍ ଥୂ—ତୋବା-ତୋବା—ଧରେ ପକ୍‌ଡ଼ୋ—ୱ୍ୟାକ୍ ଥୂ—ମାରୋ—ୱ୍ୟାକ୍ ଥୂ—ଯେରା ପାନି, ପାନି—ୱ୍ୟାକ୍ ଥୂ—ୱ୍ୟାକ୍ ଥୂ—(ବାନ୍ତି କରିବାକୁ ଲାଗିଲେ ପରି)

---

## ଚତୁର୍ଥ ଦୃଶ୍ୟ

—ଯୁଦ୍ଧକ୍ଷେତ୍ରର ଏକଦୃଶ୍ୟ—

[ଗୋଟାଏ ଭୀଷଣ ଝଟିକାପରେ ଶାନ୍ତ ବିରାଜିତ—କିନ୍ତୁ ବିଭୀଷିକାର ଛାୟା ଅଦ୍ୟାପି ଅନ୍ତର୍ହିତ ହୋଇ ନାହିଁ—ଅନନ୍ତସିଂହ ରକ୍ତାକ୍ତ ମୁକୁନ୍ଦକୁ କୋଳରେ ଧାରଣ କରି ଉପଚାର କରୁଥିଲେ, ବାହ୍ୟପ୍ରକୃତିର ସେହି ଭାବ ଅନ୍ତରରେ ଅନୁଭବ କରୁ କରୁ ଯେମନ୍ତ—]

ମୁକୁନ୍ଦ—ମୋର ତରବାରି !—(ଉତ୍ତେଜିତ ହୋଇ ଉଠି ବସୁଥିଲେ)

ଅନନ୍ତ—ସ୍ଥିର ହୁଅ, ଭାଇ !

ମୁକୁନ୍ଦ—ଯୁଦ୍ଧ—ଯୁଦ୍ଧ—

ଅନନ୍ତ—ଶେଷ ହୋଇଚି, ଭାଇ !

ମୁକୁନ୍ଦ—ଆଲିବର୍ଦ୍ଦି—?

ଅନନ୍ତ—ପଳାଇଚି—

ମୁକୁନ୍ଦ—ପଳାଇଚି—ହାଃ—ହାଃ—ହାଃ (ହଠାତ୍ କେଉଁ ଉତ୍ତେଜନାରେ ଏହିପରି ହସି ଉଠିଲେ)

ଅନନ୍ତ—ଏତେ ଜୋରରେ ହସନା, ଭାଇ !—ଏ' ପର୍ଯ୍ୟନ୍ତ ରକ୍ତସ୍ରାବ ଯେ ବନ୍ଦହୋଇ—

ମୁକୁନ୍ଦ—ରକ୍ତ !—ରକ୍ତ ! (ଅନନ୍ତ ଆଡ଼େ କେଉଁ ଉଜ୍ଜ୍ୱଳ ଦୃଷ୍ଟିରେ ଚାହିଁଲେ, କେଉଁ ଗତକଥା ସ୍ମରଣ କରି ଯେମନ୍ତ)

ଅନନ୍ତ—(ଚମକି ଉଠିଲେ, କେଉଁ ସ୍ମୃତିର ଦଂଶନରେ)

ମୁକୁନ୍ଦ—ହାଃ—ହାଃ—ହାଃ — କେମିତିକା ତା'ର ଛୁରିରେ ତା'ରି ନାକକୁ ବୁହାଇଚି, ଭାଇ—

[ଅନନ୍ତ ମୁକୁନ୍ଦକୁ କି ଗୋଟାଏ ଘୃଣାରେ କୋଡ଼ରୁ ଅପସାରିତ କରି ଦେଲେ]

ଅନନ୍ତ—କିନ୍ତୁ, ମୋ'ର ବନ୍ଧୁତ୍ୱ ଗୁପ୍ତଛୁରିକାରେ ଯେ ମୋ'ର ବକ୍ଷୋଦେଶରୁ ବୁହାଇଚୁ, ପାଷଣ୍ଡ ! (କି ଏକ ପୈଶାଚିକ ଭାବ ଧାରଣ କଲେ)

ମୁକୁନ୍ଦ—(କିଛି ବୁଝି ନ ପାରି) ଭାଇ—ଭାଇ—

ଅନନ୍ତ—ନା, ନା—'ରକ୍ତ' !—'ରକ୍ତ' !—'ରକ୍ତ' !—

ମୁକୁନ୍ଦ—ହଁ, ଭାଇ ! ଆଉ ସେ କଥା କାହିଁକି ?—ସେ ଯେ ପଳାଇଗଲା !

ଅନନ୍ତ—ପଳାଇଗଲା ଶତ୍ରୁସିନା—କିନ୍ତୁ ସମ୍ମୁଖେ ଯେ ମିତ୍ର ମୋ'ର—ଶୁଣେଁ ମୁହିଁ—'ମିତ୍ର ରକ୍ତ'—ସେହି ବନ୍ଧୁ ରକ୍ତ, ଯା'କୁ ଆଶ୍ରୟ ଦେଇଚି, ନିଜକୋଳେ, କାରାଗାରେ କରି ନାହିଁ ବନ୍ଦୀ !—ଯା'ର ରକ୍ଷିଅଛି ପ୍ରାଣ, ତୁଚ୍ଛ କରି ନିଜ ପ୍ରାଣ, କରିନାହିଁ ହତ୍ୟା ପାଇଣ କବଳେ !

ମୁକୁନ୍ଦ—ଭାଇ, ଭାଇ—ନା,—ନା—ମାରି—ମାରି—ମୁଁ ଯେ ଦେଶାନ୍ତରରୁ ଯୁଦ୍ଧବାର୍ତ୍ତା ଶୁଣି ଧାଇଁ ଆସିଥିଲି, ବୀରର ମର୍ଯ୍ୟାଦା ରକ୍ଷା କରିବା ଆଶାରେ—ପ୍ରାଣ ବିସର୍ଜନ କରି, ନାରୀର ମର୍ଯ୍ୟାଦା, ସତୀର ମର୍ଯ୍ୟାଦା ରକ୍ଷା କରିବା ଲୋଭରେ—

ଅନନ୍ତ—'ସତୀର ମର୍ଯ୍ୟାଦା'—'ନାରୀର ମର୍ଯ୍ୟାଦା', ଧ୍ୱଂସ କରିଥାଉ, ପାଷଣ୍ଡ ?

ମୁକୁନ୍ଦ—ଧ୍ୱଂସ କରିଥାଉ—? ଅସମ୍ଭବ—ଅସମ୍ଭବ—(ଠିଆହେଲେ ଦମ୍ଭରେ)

ଅନନ୍ତ—ସେ ଦିନ କଥା କ'ଣ ଭୁଲିଗଲୁ, ପାଷଣ୍ଡ—ଯେଉଁଦିନ ମୋର ବିବାହ କଥା ଶୁଣି, ମୋର ଯିବା ପଛେ ପଛେ, ଟିକିଏ ସୁଦ୍ଧା କାଳବିଳମ୍ବ ନ କରି, ଅନ୍ତଃପୁର ମଧ୍ୟରେ ଚୋରପରି ପ୍ରବେଶ କରି, ମୋର ଧର୍ମପତ୍ନୀକୁ ବନ୍ଧନପୂର୍ବକ ସେହି କୁଡ଼ିଆ ଘରେ ତୋ'ର—

ମୁକୁନ୍ଦ—ମିଥ୍ୟା କଥା—ମିଥ୍ୟା କଥା—(ମାତ୍ର କମ୍ପିତ ହେଉଥିଲେ)

ଅନନ୍ତ—ହାଃ, ହାଃ, ତୁ କଣ ଜାଣିଥିଲୁ, ପାଷଣ୍ଡ, ମୁଁ ଫେରି ଆସିବି ବୋଲି ! ଓଃ—ଏ' ପର୍ଯ୍ୟନ୍ତ ମୋର କର୍ଣ୍ଣେ କର୍ଣ୍ଣେ, ମର୍ମ୍ମେ ମର୍ମ୍ମେ ଧ୍ୱନିତ ହେଉଚି—କୃଷ୍ଣାର ସେହି କାତର ଧ୍ୱନି—'ନାରୀର ମର୍ଯ୍ୟାଦା ରକ୍ଷା କର, ନାରୀର ମର୍ଯ୍ୟାଦା ରକ୍ଷା କର'—

ମୁକୁନ୍ଦ—'ନାରୀର ମର୍ଯ୍ୟାଦା ରକ୍ଷାକର' !—ଠିକ୍ ଏହିପରି କାତର ଧ୍ୱନି !—କୃଷ୍ଣା !—କେମା-ଦେଈ ! (ବୋଲି ଚିତ୍କାର କରି କହିଗଲେ)

ଅନନ୍ତ—ହାଃ, ହାଃ, ହାଃ—ସତ୍ୟବାଦୀ ବୋଲି ଯଦି
ଗର୍ବ କରୁ—ଏହି ତୋ'ର ସତ୍ୟବାଦିତା ।
ଗୋଟିଏ ସାମାନ୍ୟା ନାରୀ ଲାଳସାରେ ଆଜି,
ମହତ୍ତ୍ୱ ସମସ୍ତ ଆଜି ବିସର୍ଜନ ଦେଇଚୁ । ହାୟ !
ଦେବତା ବୋଲି ଯା' ପାଇଁ ଭଜେ—

ମୁକୁନ୍ଦ—ସତ୍ୟ—ସତ୍ୟକଥା ତେବେ ଶୁଣ, ଭାଇ—

ଅନନ୍ତ—ନିର୍ଲଜ୍ଜ ! ଏତେ ସାହସ ଅଛି ତୋର—ସତ୍ୟ
କହି, ସତ୍ୟର ମର୍ଯ୍ୟାଦା—

ମୁକୁନ୍ଦ—'ମର୍ଯ୍ୟାଦା !'—'ମର୍ଯ୍ୟାଦା' । (କିଂ କର୍ତ୍ତବ୍ୟ
ବିମୂଢ଼ ହେଲେ)

ଅନନ୍ତ—ହଁ, ହଁ, ଏକାସଙ୍ଗେ—ସତ୍ୟର ମର୍ଯ୍ୟାଦା—
ନାରୀର ମର୍ଯ୍ୟାଦା—ରାଜ-ମର୍ଯ୍ୟାଦା—ରକ୍ଷା-
କରିବାର ସାହସ ଅଛି କି ?

ମୁକୁନ୍ଦ—(କି ଗୋଟାଏ ଦ୍ୱନ୍ଦମଧ୍ୟରେ ଉନ୍ମାଦ ପ୍ରାୟ
ହେଲେ, ଅବଶେଷେ କହିବାକୁ ଲାଗିଲେ) ମୁହିଁ
ଦୋଷୀ—ମୁହିଁ ଦୋଷୀ, ଭାଇ ! ଦିଅ ଦିଅ ବକ୍ଷେ
ଛୁରିକା ମୋହର, ବାହାରୁ ରୁଧିର—ଶାନ୍ତ କର
ତୃଷ୍ଣା-ଜ୍ୱାଳା ତବ—ଶାନ୍ତ ହେଉ ହୃଦ-ଜ୍ୱାଳା
ମୋର— ।

ଅନନ୍ତ—( ଅଧିକତର ବ୍ୟଙ୍ଗଭାବେ ) 'ହୃଦ-ଜ୍ୱାଳା
ମୋ'ର' !—ହାଃ, ହାଃ, କହ, କହ, କିବା
ଜ୍ୱାଳା ତୋ'ର—

ମୁକୁନ୍ଦ—ଓଃ—ମୋର ମରଣ ନ ହେଲା କାହିଁକି—
ଅନନ୍ତ ! ଅନନ୍ତ ! ଭାଇ ମୋର—ଯଦି କେବେ
କିଛି ଉପକାର କରିଥାଏ, ଆଜି ତାର କୃତଜ୍ଞତା
ସ୍ୱରୂପ କିଛି ଦେବାର ଥାଏ, ଦିଅ, ଦିଅ ମୋତେ
ବିଦାୟ ଦିଅ—ଚିର-ବିଦାୟ—ଚିର—

ଅନନ୍ତ—ଦେବି, ଦେବି ମାତ୍ର ଜ୍ୱାଳାର କାରଣ
କହିବକି, ବନ୍ଧୋ—କେମନ୍ତେ ଉନ୍ମାଦିନୀ
ତବ ପ୍ରେମେ ?—ହାଃ—ହାଃ—ହାଃ—

ମୁକୁନ୍ଦ—ଭାଇ—ଭାଇ—(ଚରଣପ୍ରାନ୍ତେ ପତିତ ହେଲେ)

ଅନନ୍ତ—(ସେହି କୌତୁକ ହଠାତ୍ ସନ୍ଦେହରେ
ପରିଣତ ହେବାରୁ) ନା—ନା, ଆଉ—କ୍ଷମା
ନାହିଁ—କ୍ଷମା ନାହିଁ—ସତ୍ୟକହି, ସତ୍ୟର
ମର୍ଯ୍ୟାଦା ରକ୍ଷାକର ଆଗେ ।

ମୁକୁନ୍ଦ—(ସ୍ୱଗତ) ଓଃ—ଏ' ଯେ ମର୍ଯ୍ୟାଦା, ମର୍ଯ୍ୟାଦା
ମଧ୍ୟରେ ପ୍ରତିଦ୍ୱନ୍ଦିତା—'ସତ୍ୟର ମର୍ଯ୍ୟାଦା'
ଏକଦିଗେ—ଅନ୍ୟଦିଗେ 'ରାଜ-ମର୍ଯ୍ୟାଦା'—
'ନାରୀର ମର୍ଯ୍ୟାଦା'— ।

ଅନନ୍ତ—କହ, କହ, ଆଉ ସତ୍ୟ କହ—କହିଦିଅ—
ନତୁବା ଆଜୀବନ ଏହିପରି ଜ୍ୱାଳା ଭୋଗ
କରିବାର ବ୍ୟବସ୍ଥା—

ମୁକୁନ୍ଦ—କହିଲେ କି'ଣ ଶାନ୍ତି ଦେବ ? — ଚିର ଶାନ୍ତି—?

ଅନନ୍ତ—ଚିର ଶାନ୍ତି !—ଚିର-ବିଦାୟ !—ଚିର-
ବିଦାୟ !—

ମୁକୁନ୍ଦ—ବେଶ୍ ଅସି ବାହାର କର ମୋ ବକ୍ଷୋ-
ଦେଶରେ ତେବେ ଧାରଣ କର—

ଅନନ୍ତ—(ତତ୍କ୍ଷଣାତ୍ କରି ଅସି ନିଷ୍କୋଷିତ କରି ଧାରଣ
କଲେ)

ମୁକୁନ୍ଦ—( ଜଡ଼ିତ ସ୍ୱରରେ ) ଉନ୍ମାଦିନୀ ସତ୍ୟ
ରାଜ-ବାଳା—

ଅନନ୍ତ—'ଉନ୍ମାଦିନୀ ସତ୍ୟ ରାଜ-ବାଳା' !—ଉନ୍ମାଦିନୀ
କୃଷ୍ଣା !—ଉନ୍ମାଦିନୀ ପ୍ରେମେ ତବ !—(ଅସି ମାଡ଼ି
ମାଡ଼ି ଦେଉଥିଲେ )

[କୃଷ୍ଣାର ବେଗେ ପ୍ରବେଶ]

କୃଷ୍ଣା—କାହିଁ—କାହିଁ, ମୁକୁନ୍ଦ ମୋ'ର— ?

ଅନନ୍ତ—ଏହି—ଏହି ଯେ ତସ୍କର, ପ୍ରା—ଣେ —
ନା—ନା—( କପଟ ଶ୍ଳେଷପୂର୍ଣ୍ଣ ଦୃଷ୍ଟିରେ ଚାହିଁ
ରହିଲେ )

କୃଷ୍ଣା—(ମୁକୁନ୍ଦ ବକ୍ଷରେ ଅନନ୍ତର ଅସି ଓ ରକ୍ତାକ୍ତ
ମୁଖଭାବ ଦେଖି ଚିତ୍କାରିଲେ) ଅନନ୍ତ !

ଅନନ୍ତ—ହାଃ—ହାଃ—ହାଃ—ଭାର ତୃଷ୍ଣା—ଭାର
ତୃଷ୍ଣା—ନା, କୃଷ୍ଣା ?

[କୃଷ୍ଣା ଅତି କାତର ଭାବେ ଗୋଡ଼ ଧରିଲେ]

ଅନନ୍ତ—(କେଉଁ ପ୍ରସନ୍ନଭାବରେ ଯେମନ୍ତ) କିଛି ଭୟ
ନାହିଁ, କୃଷ୍ଣା !—ଲଭିଲବ ତୃଷ୍ଣା ହୃଦ—
ଫଟାଇବ ବେଣୀ ବୁହାଇ ରକ୍ତର ଧାରା ।

ମୁକୁନ୍ଦ—କର, କର ତୁମ୍ଭ ପ୍ରତିଜ୍ଞା ପାଳନ ।

ଅନନ୍ତ—ହାଃ—ହାଃ—ହାଃ—ଅସହ୍ୟ— ଅସହ୍ୟ—
ନୁହେବରେ ତସ୍କର ? ମାଏ—ଅସୁର ଅସହ୍ୟ,
କରିବବ ମୁହିଁ, ଛଳେ ଛଳେ ବଦାଇବ ବକ୍ଷ
ତୋର, ନଖାଘାତେ ଯେବେ—ନୁହେଁ
ଅସିଘାତେ—। (ଅସି ନିକ୍ଷେପ କରିଦେଲେ)

କୃଷ୍ଣା—ଓଃ—(ମୂର୍ଚ୍ଛିତାପ୍ରାପ୍ତ ହୋଇ ପଡ଼ିଗଲେ)

ଅନନ୍ତ—ଛି, ଛି,—ଏହିପରି ଦମ୍ଭତବ—କୃଷ୍ଣା—?
(କି ମହୋଲ୍ଲାସରେ ମୁକୁନ୍ଦର ବକ୍ଷସ୍ଥଳେ କୃଷ୍ଣାର
ବେଣୀ ସ୍ପର୍ଶକରାଇଲେ)

ମୁକୁନ୍ଦ—(କେଉଁ ତଡ଼ିତସ୍ପର୍ଶେ ଯେପରି ଚମକି ଉଠିଲେ
ଓ କୃଷ୍ଣାମଧ ଚମକି ଉଠିଲେ)

ଅନନ୍ତ—(ନାଚି ଉଠିଲେ) କି ଆନନ୍ଦ—କି ଆନନ୍ଦ—
ଭୀମସେନ ! ଶଠ ଦୁଃଶାସନ ରକ୍ତେ ଯଦି
ବାନ୍ଧଥାନ୍ତ କୃଷ୍ଣାବେଣୀ—ପାଇଥାନ୍ତ କି ହେ
ଆନନ୍ଦ ଏମନ୍ତ—ପାଉଅଛି ଯାହା ମୁହିଁ—
ପ୍ରେମିକର ପ୍ରେମପୂର୍ଣ୍ଣ ବକ୍ଷେ ପ୍ରେମିକାର ମୁକ୍ତକେଶ
ନିବେଶି ଲମ୍ବିତ—ଭ୍ରାତା ବୋଲି କର କ୍ଷମା,
ଭାଇ ଭଗ୍ନୀ ମୋର ।

କୃଷ୍ଣା—(ଲଜ୍ଜାଭରରେ ଯେପରି ଅବନତା ହୋଇଗଲେ)
ମୁକୁନ୍ଦ—(ଉଠି ଆବେଗଭରେ) ଭାଇ ! ଭାଇ !

ଅନନ୍ତ—ଭ୍ରାତାର କର୍ତ୍ତବ୍ୟ ଭ୍ରାତା କରଅଛି, ଭାଇ—
ଦେଖେଁ ତେଣେ ଯୁଦ୍ଧର ବାରତା—( କୌଣସି
ଉତ୍ତରକୁ ଅପେକ୍ଷା ନ କରି ଅସି ହସ୍ତେ ବେଗେ
ପ୍ରସ୍ଥାନ କଲେ)

ମୁକୁନ୍ଦ— ସଙ୍ଗେ ନିଅ, ସଙ୍ଗେ ନିଅ, ଭାଇ !—
( ଉଠିବାକୁ ଚେଷ୍ଟା )

କୃଷ୍ଣା—ଶକ୍ତିହୀନ ତୁମ୍ଭେ, ପ୍ରି—ୟ—(ଧାରଣ)
ମୁକୁନ୍ଦ—ଛାଡ଼ିଦେ—ଛାଡ଼ିଦେ, ରାକ୍ଷସୀ !—

କୃଷ୍ଣା—ପ୍ରଭୋ ! ପ୍ରଭୋ ! ଦାସୀ ତବ ମୁହିଁ—ନ ଠେଲ
ଚରଣେ—ନାହିଁ ଅନ୍ୟ ଗତି ମୋର—ରକ୍ଷା'କର,
ରକ୍ଷାକର ନାରୀର ମର୍ଯ୍ୟାଦା ।

ମୁକୁନ୍ଦ—'ନାରୀର ମର୍ଯ୍ୟାଦା'—'ନାରୀର ମର୍ଯ୍ୟାଦା' !—
ଅନନ୍ତ—ଅନନ୍ତ—
(ଛଡ଼ାଇ ନେଇ ପ୍ରସ୍ଥାନୋଦ୍ୟତ ହେଲେ)

କୃଷ୍ଣା—(କାମାତୁରଭାବେ ଧରି) ନ କର ହେ କ୍ଷୁଣ୍ଣ
'ପ୍ରେମର ମର୍ଯ୍ୟାଦା' ସ୍ୱତନ୍ତ୍ର ସୁନ୍ଦର ସଦା—
କୋମଳ ଅଚଳ—

ମୁକୁନ୍ଦ—(ସେହି ମାଧୁରୀ ଅନୁଭୂତିରେ ନିଶ୍ଚଳ ହେଲେ
ପରି )

( ନେପଥ୍ୟେ ଉନ୍ମାଦିନୀ )— ସତ୍ୟର ମର୍ଯ୍ୟାଦା—
ସତ୍ୟର ମର୍ଯ୍ୟାଦା—( କହି ଗାଇବା )

ଗୀତ

ସତ୍ୟ— ସତ୍ୟ— ସତ୍ୟ !
ସତ୍ୟଲାଗି ହରିଶ୍ଚନ୍ଦ୍ର
ତ୍ୟାଗୀ-ପତ୍ନୀ-ପୁତ୍ର ।।
ସତ୍ୟ-ବୀର—ବୀରରାମ
ତୁଚ୍ଛ କଲେ— ସବୁ ଆରାମ—
ବନବାସୀ—ମହାସୁଖୀ —
ପାଳି, ପିତୃ-ସତ୍ୟ ।।
ଶିଶୁପୁତ୍ର—ବୃଷକେତୁ
କିବା ତା'ର— ଜ୍ଞାନ ହେତୁ—
ଦେଲା ମାଂସ—ହସି—ହସି—
ଧନ୍ୟ, ପିତୃ-ସତ୍ୟ ।।

ମୁକୁନ୍ଦ—(ମୋହ ଭାଙ୍ଗିଗଲା—ଚମକି ଉଠି) 'ପିତୃ-
ସତ୍ୟ'—'ପିତୃ-ସତ୍ୟ'ର ମର୍ଯ୍ୟାଦା—ରଖିବି—
ରଖିବି ମୁହିଁ—ବୀର ସତ୍ୟସନ୍ଧ—ଉପାସ୍ୟ—ଏ'
ଯେ ଅନ୍ଧକାର—ଘୋର ଅନ୍ଧକାର—ଚତୁର୍ଦ୍ଦିଗେ
ମୋ'ର—ନା, ନା, ପ୍ରଳୟର ଘନ ଅନ୍ଧକାର—
ବାହାରେ ଅନ୍ତରେ—

କୃଷ୍ଣା—ସେହି ଅନ୍ଧକାରେ ମୁହିଁ ଜ୍ୟୋତି ସିନା ତବ—
ପ୍ରିୟତମ ! ପାଇଅଛି ବହୁଯତ୍ନେ ନିଧି—ନ ଛାଡ଼ିବି
କ୍ଷଣେ—ପିଇବି ପୀଯୂଷ କଣ୍ଠଭରି ଅବିରାମ ।

ମୁକୁନ୍ଦ—ନା, ନା—ନୁହେଁ ପୀଯୂଷ—ରକ୍ତ, ରକ୍ତ
ମୋ'ର ମାଗୁଛୁ, ରାକ୍ଷସୀ ! ଦେବି, ଦେବି ଆନନ୍ଦେ
ଜାନୁ—ମେଣ୍ଟାଇବି ତୃଷ୍ଣା ତୋର—କହିବି

ଉନ୍ମୁକ୍ତ ମର୍ଯ୍ୟାଦାର ପଥ—'ସତ୍ୟର' 'ନାରୀର'
—'ଗୀତାର'—ଏକାସଙ୍ଗେ—ଅନ୍ତ ଅନ୍ତେ—
ଅନନ୍ତର ବକ୍ଷେ ।—ଅନନ୍ତ କାଳକୁ । (ସୋଲ୍ଲାସେ
ଅସି ଘେନି ଆତ୍ମହତ୍ୟା ପାଇଁ ଉଦ୍ୟତ ହେଲେ)

ଉନ୍ମାଦନୀ—(ପ୍ରବେଶ କରି) ଏହିଟି ଉପାୟ ଏକମାତ୍ର
ଯେବେ—ଏହି ରକ୍ତେ ମେଣ୍ଟୁ ସେ ଲାଳସା—
ବହୁମୂଲ୍ୟ ରକ୍ତବିନ୍ଦୁ ନ କର ନିଷ୍ଫଳ—(ସଙ୍ଗେ
ସଙ୍ଗେ ଅସି କାଢ଼ିନେଇ ଆତ୍ମହତ୍ୟା କଲେ)

ମୁକୁନ୍ଦ—କିଏ ? —କିଏ ?—ଉନ୍ମାଦନୀ—କିଏ ?—
କିଏ ?—(ସବିସ୍ମୟେ ଚାହିଁ ରହିଲେ)

କୃଷ୍ଣା—ଏଁ, ଏଁ—(ସଭୟେ ଚାହିଁ ଠିଆ ହେଲେ)

ଉନ୍ମାଦନୀ—କର୍ମେ ଅଗ୍ରସର, ହୁଅ, ପ୍ରାଣେଶ୍ୱର ।—
କର ରକ୍ଷା ସେହି ଶିକ୍ଷା—ସତ୍ୟର ମର୍ଯ୍ୟାଦା—
ପ୍ରାଣର ମର୍ଯ୍ୟାଦା ।

ମୁକୁନ୍ଦ—ତୁମେ ?—ତୁମେ ?—ମୁକ୍ତା—ମୋର
ବାଲ୍ୟ-ସହଚରୀ—ପ୍ରାଣର ସଙ୍ଗିନୀ—ଏଠି କିପରି
ତୁମ୍ଭେ ?—ଏ' କି ବେଶ ? ଏ' କି ଭାବ ?

ଉନ୍ମାଦନୀ—ନାନା ଭାବେ, ନାନା ବେଶେ, ନାନା
ଦେଶେ, ଧାଏଁ ନାହିଁକି ସତତ, କାଳର
ମାହାତ୍ମ୍ୟେ ?—ଅବସ୍ଥାର ବଶେ—?

ମୁକୁନ୍ଦ—ତୁମ୍ଭେ କି ସେହି ମୁକ୍ତା ମୋର । ନୟନର
ମୁକ୍ତା । ହୃଦୟର ମୁକ୍ତା । ଉଃ—ଉଃ—ଏ' ଯେ
ନିର୍ଯ୍ୟାତିତା, ଉତ୍ପୀଡ଼ିତା ମୁକ୍ତା ମୋର—
ମୋ'ରି ଲାଗିସିନା—ପ୍ରାଣେଶ୍ୱରୀ—ପ୍ରାଣେଶ୍ୱରୀ—
କହ—କହ—ଏଠାରେ କିପରି ?—କାହିଁ
ସୁଦୂର ତୈଲଙ୍ଗ ଦେଶ—କାହିଁ—

ଉନ୍ମାଦନୀ—ହାଃ, ହାଃ—ପ୍ରାଣେଶ୍ୱର । ପ୍ରାଣେଶ୍ୱର ।
ସୁଦୂର ତୈଲଙ୍ଗ କିବା—ବ୍ରହ୍ମାଣ୍ଡର ଏକ
କୋଣେ ମୁହିଁ, ଅନ୍ୟ କୋଣେ ଥାନ୍ତ ଯଦି
ତୁମ୍ଭେ—କେହି ନ ପାରନ୍ତେ ରୋଧି ସଂସର୍ଗ
ତୁମ୍ଭର—ଏବେ କାମ୍ୟାଗ୍ନିର ମଧ୍ୟ ରହିବି ତୁମ୍ଭର—
ରହିବି ତୁମ୍ଭରି—ମୁହିଁ ଯେ ତୁମ୍ଭରି, ପ୍ରାଣେଶ୍ୱର—

'ସତ୍ୟ' ଏକା ଦେବତା ମୋହର—'ସତ୍ୟ',
ଜୀବନେ ମରଣେ—।।

ମୁକୁନ୍ଦ—ମୁକ୍ତା—ମୁକ୍ତା—ପ୍ରାଣେଶ୍ୱରୀ—ଏ' କି
ଚାତୁରୀ ଖେଳିଲି—ମୂଢ଼ ମୋ'ର ସଙ୍ଗେ—ନ
ଦେଇ ଗୋ ପରିଚୟ ଲଭେ—

ଉନ୍ମାଦନୀ—ପରିଚୟ କାର୍ଯ୍ୟେ, କାର୍ଯ୍ୟେ—ଦେଇ
ନାହିଁ କି ହେ ଚିର ସଙ୍ଗିନୀ ତୁମ୍ଭର ।

ମୁକୁନ୍ଦ—ଦେବୀ—ଦେବୀ ତୁମ୍ଭେ, ମୁକ୍ତା ।—ମାତ୍ର,
କଲି କିନା ପଣ୍ଡ କାର୍ଯ୍ୟ, ଆତ୍ମହତ୍ୟା ଦୋଷେ ।

ଉନ୍ମାଦନୀ—ଆତ୍ମହତ୍ୟା । ହାଃ, ହାଃ—କିଏ କହେ
ଆତ୍ମହତ୍ୟା, ପ୍ରଭୋ ।—ସତୀ ଅଙ୍ଗ ସାର ସ୍ୱାମୀର
ସାହାଯ୍ୟ କଲେ—ସ୍ୱାମୀର ସାଧନ-ଯଜ୍ଞ ପୂର୍ଣ୍ଣାହୁତି
ବେଳେ—ଦେଇଅଛି ଛାର ରକ୍ତ ବଳି—ରୁଧିର
ଲୋଲୁପା ଲାଳସା ସମକ୍ଷେ—।

ମୁକୁନ୍ଦ—ମୁକ୍ତା—ମୁକ୍ତା—(ଉନ୍ମାଦଭଳି କୁଣ୍ଢାଇ ପକାଇ-
ଗଲେ ପରି)

କୃଷ୍ଣା—'ରୁଧିରଲୋଲୁପା' । 'ରୁଧିର ଲାଳସା' ।—ରୁଧିର
—ରୁଧିର—ହାଃ—ହାଃ—ହାଃ—ଦିଅ, ଦିଅ
ଛୁରିକା, ଭଗିନୀ—ନା, ନା—ନିଜ ନଖେ, ନିଜ
ଦନ୍ତେ, ନିଜ ବକ୍ଷ କରି ବିଦାରଣ, ନିଜ ରକ୍ତେ
କୃଷ୍ଣା ମେଣ୍ଟାଇବ ତୃଷ୍ଣା—ହାଃ, ହାଃ, ହାଃ,—

ଉନ୍ମାଦନୀ—ଛି, ଭଗିନୀ, ଭୁଲନା, ଭୁଲନା,—ସତୀ-
ଶକ୍ତି ତବ—ସତ୍ୟର ମହିମା—

କୃଷ୍ଣା—(ଉଚ୍ଚହାସ୍ୟ କରି) 'ସତ୍ୟର ମହିମା' ।—
'ସତୀ-ଶକ୍ତି ତବ' । ଦେଖାଇବି, ଦେଖାଇବି
ରକ୍ତଦାନେ ସେହି—ରଞ୍ଜାଇ ପଦ୍ମିନୀ-ବକ୍ଷ
ଚିରକାଳ ପାଇଁ—

ଉନ୍ମାଦନୀ—ଛି, ଭଗିନୀ । ରକ୍ତେ ଆଉ ନାହିଁ ପ୍ରୟୋ-
ଜନ—ଲଭି ଅଛି ଲାଳସାର ବହ୍ନି—ଜାଗ ଏବେ
ନବପ୍ରାଣେ, ଧରି ନବ ଶକ୍ତି—ନବ ତେଜେ
ମତାଅ ଅବନୀ, ନବଭାବେ ମାତି ।—ଉଠ, ଉଠ,
ଯାଅ—ନ କର ଅଳସ—ଚିଢ଼ି ହୃଦେ ତପତେଜ

ଅବସାଦ—ପିଅ ନବ ନବ ମଦ, ଢାଳୁଅଛୁ ମୁହିଁ—ନାଚ ନବ ନବ ତାଳେ, ତାଳ ଦିଏ ମୁହିଁ—ମୁହିଁ ଉଲ୍ଲଙ୍ଗିନୀ—ମୁହିଁ ଉନ୍ମାଦିନୀ—ଚିର-ସତ୍ୟର ସଙ୍ଗିନୀ !! (କେଉଁ ଉନ୍ମାଦନାରେ ଏହିପରି ମାତନ୍ତି ଠକ୍‌କରି ରହିଗଲେ—କିନ୍ତୁ ବଦନରେ କି ଯେ ଆଭା ଝଲକିଉଠିଲା)

ମୁକୁନ୍ଦ—ମୁକ୍ତା—।—(ବୋଲି ଚିତ୍କାର ପୂର୍ବକ କେଉଁ ଉଚ୍ଚକ ସ୍ୱର୍ଗରେ ଯେପରି ହୃଦିକୁ ଘୂଞ୍ଚିଗଲେ)

କୃଷ୍ଣା—ନା, ନା—ରକ୍ତ—ରକ୍ତ—ରକ୍ତ—( କେଉଁ ରକ୍ତର ପ୍ଲାବନ ଯେମନ୍ତ ଚାରିଆଡ଼େ ଦେଖିବାକୁ ଲାଗିଲେ )

—ଯବନିକା—

---

## ପଞ୍ଚମ ଅଙ୍କ

### ପ୍ରଥମ ଦୃଶ୍ୟ

—କୃଷ୍ଣାର କକ୍ଷ—

[ ଜଗନ୍ନାଥଦାସ ତନ୍ମୟ ହୋଇ ନିଜ ରଚିତ ଭାଗବତର ଦଶମସ୍କନ୍ଧ ରାସଲୀଳା ପାଠ କରୁଥିଲେ—କେତେକ ସଖୀ ସେହି ଭାବରେ ମଜ୍ଜି ଯାଇଥିଲେ—କେତେକ ପରସ୍ପର ମଧ୍ୟରେ ଅଙ୍ଗଭଙ୍ଗୀ ଦ୍ୱାରା ଥଟ୍ଟା ପରିହାସ କରୁଥିଲେ—ମଧ୍ୟେ ମଧ୍ୟେ କିନ୍ତୁ ସମସ୍ତେ ସମସ୍ୱରରେ 'ହରିବୋଲ' ଦେଉଥିଲେ—ଅଦୂରରେ ଅନୁଚ ଗାଲିଚାମଣ୍ଡିତ ଆସନରେ, ସାଧାରଣ-ବେଶା କୃଷ୍ଣା କେତେବେଳେ ଭାଗବତ ବୋଲା ଶୁଣୁଥିଲେ—କେତେବେଳେ ଅନ୍ୟମନସ୍କା ହେଉ-ଥିଲେ—କେତେବେଳେ ବା ତନ୍ଦ୍ରାବସ୍ଥା ହେଉ-ଥିଲେ—ହଠାତ୍ ଚିତ୍କାର କରି ଉଠିଲେ]

କୃଷ୍ଣା—ରକ୍ତ—ରକ୍ତ·—

ସଖୀମାନେ—କେମାଦେଈ ! କେମାଦେଈ !

[ ସମସ୍ତେ କୃଷ୍ଣା ପାଖକୁ ଧଡ଼ପଡ଼ ହୋଇ ଧାଇଁଗଲେ ]

[ ଭାଗବତ ବୋଲା କିନ୍ତୁ ଅବିରାମ ଗତିରେ ଚାଲିଥାଏ ]

କୃଷ୍ଣା—(ବିସ୍ମାରିତ ନେତ୍ରରେ ଚାହିଁ) ଏହି—ଏହି —

୧ମା—କିଏ ?—କିଏ, କେମାଦେଈ—?

କୃଷ୍ଣା—'ମୁକ୍ତା' !—

୧ମା—ମୁକ୍ତା ! ପାଖକୁ ଆ', ତୁ—

ମୁକ୍ତା—ମୁଣ୍ଡ ଚିପି ଦେବି, କେମାଦେଈ ? (ମୁଣ୍ଡ ଧାରଣ)

କୃଷ୍ଣା—କିଏ ?—କିଏ ତୁ ? (ମୁକ୍ତା ଆଡ଼େ ଚାହିଁଲେ)

ମୁକ୍ତା—ମୁଁ ପରା ମୁକ୍ତା—ମୁଣ୍ଡ କାଟୁ—

କୃଷ୍ଣା—କ'ଣ ହେଉଚି ?—କାହିଁ ?—କିଏ କହିଲା ? —(ମୁକ୍ତାର ହାତ ଛଡ଼ାଇ ଦେଲେ ଓ ସମସ୍ତଙ୍କୁ ଠେଲି ଦେଲେ) ଭାଗବତ ବୋଲା କ'ଣ ସରିଗଲାଣି ?

୧ମା—ଏହି ପରା ଗୋସେଇଁ ପଢ଼ୁଚନ୍ତି—

କୃଷ୍ଣା—ତୁମେମାନେ ଶୁଣୁ ନାହଁ ଯେ !—ଏଁଠି ଏମିତି ଭିଡ଼ ହୋଇଚ କାହିଁକି ?

୧ମା—ମଣିମା ! କି ସ୍ୱପ୍ନ ଦେଖି ଏମିତିକା ପାଟି କରି ଉଠିଲେ—

କୃଷ୍ଣା—'ପାଟି କରି ଉଠିଲି' ! କେତେବେଳେ ? ତୁମ୍ଭମାନଙ୍କୁ ଭୂତ ଲାଗିଚି ନା କ'ଣ ?

[ ଇତିମଧ୍ୟରେ ଜଗନ୍ନାଥଦାସେ "ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ଦଶମସ୍କନ୍ଧେ" ଇତ୍ୟାଦି କହିସାରି ଶେଷକୁ ପାଟିକରି ଉଠିଲେ 'ହରିବୋଲ' ଓ ପୋଥିରେ ଡୋର ଦେବାକୁ ଲାଗିଲେ ]

କୃଷ୍ଣା—(ସେହି ସଙ୍ଗେ ସଙ୍ଗେ) 'ହରିବୋଲ' (ଉଠିଯାଇ ମାଟିରେ ମୁଣ୍ଡଲଗାଇ ପ୍ରଣାମ କଲେ)

ସମସ୍ତେ—'ହରିବୋଲ' (ସେହିପରି କହି, ପ୍ରଣାମ କଲେ)

ଜଗନ୍ନାଥ—(ସମସ୍ତଙ୍କୁ ପ୍ରଣାମ କରୁ କରୁ)

ଗୋପୀଭାବରେ ମଜ୍ଜିଥିଲେ ।
ଅବଶ୍ୟ ଗୋପୀନାଥ ମିଳିଲେ ॥

କୃଷ୍ଣା—(ଜଗନ୍ନାଥଙ୍କ ପ୍ରତି) ପ୍ରଭୋ ! (ସଖୀମାନଙ୍କ ପ୍ରତି) ଯାଅ, ତୁମେମାନେ—ବେଗେ ସଞ୍ଜ ସିଧା ସଜାଡ଼ି ଆଣ ।

[ ସଖିମାନଙ୍କର ପ୍ରସ୍ଥାନ ]

ଜଗନ୍ନାଥ —(ପୋଥି ବାନ୍ଧିସାରି କାଖରେ ଜାକିଲେ)

କୃଷ୍ଣା—ପ୍ରଭୋ ! ଏ' ଜଗତରେ କି ଶାନ୍ତି ଅଛି ?

ଜଗନ୍ନାଥ—ଉଦ୍ଧବ କେତେ ତୁ ପଚ୍ଛୁ ।
ମନ ଅଟଇ ମୋ'ର ଗୁରୁ ॥

କୃଷ୍ଣା—ମନ ଯଦି ଶାନ୍ତିର ସ୍ଥାନ—କାହିଁ କୌଣସି ଉପାୟରେ ତ ମନକୁ ସାନ୍ତ୍ୱନା ଦେଇ ପାରୁ ନାହିଁ—ପ୍ରତ୍ୟହ ଭଗବଦ୍-ଗ୍ରନ୍ଥ ସାକ୍ଷାତ ଭଗବାନଙ୍କ ଶ୍ରୀମୁଖରୁ ଶ୍ରବଣ କରୁଛି—ଦିବାରାତ୍ର ଦେବଦେବୀ ପୂଜା ଓ ଲୋକହିତ ବ୍ରତରେ ଆପଣାକୁ ଉତ୍ସର୍ଗ କରି ଦେଇଛି—ତଥାପି କାହିଁ, ସ୍ଥିରତା ତ ଦଣ୍ଡକ ସକାଶେ ଆଣି ପାରୁ ନାହିଁ, ପ୍ରଭୋ !

ଜଗନ୍ନାଥ— ଦର୍ପଣେ ଲାଗିଲେ କଳଙ୍କ ।
ବିଡ଼ମ୍ବନା ଦେଖିବା ମୁଖ ॥

କୃଷ୍ଣା—ସେ କଳଙ୍କ ଛଡ଼ାଇବାର ଉପାୟ କ'ଣ ନାହିଁ ?

ଜଗନ୍ନାଥ—କରିବା ଚେଷ୍ଟା ନାନା ମତେ ।
ଫଳ ଫଳିବା ତାଙ୍କ ହାତେ ॥

କୃଷ୍ଣା—ଏ' ପାପିୟସୀ ପ୍ରତି କ'ଣ ତାଙ୍କର ଦୟା ହେବ ନାହିଁ ?

ଜଗନ୍ନାଥ— ପାପୀ ଯେ ତାଙ୍କ ପ୍ରିୟଧନ ।
ତାହାରିଠାରେ ସଦା ମନ ॥

କୃଷ୍ଣା—କିପରି, କିପରି ପ୍ରଭୋ ?

ଜଗନ୍ନାଥ—'ମୁଁ ପାପୀ' ଜ୍ଞାନ ଉପୁଜିଲା ।
ଭବରୁ ସେହି ନିସ୍ତରିଲା ।

କୃଷ୍ଣା—'ମୁଁ ପାପୀ'—ଏ' ଜ୍ଞାନ ତ ମୋ'ର ଉପୁଜିଛି ।

ଜଗନ୍ନାଥ—ଆଲୋକ ଆସିଅଛି ଯେବେ ।
ଅନ୍ଧାର ପଳାଇବ ତେବେ ॥

କୃଷ୍ଣା—ଭଗବନ୍—ଭଗବନ୍—ଭାରି କ୍ଷୀଣାଲୋକ—ସେଥିରେ ଏ' ନରକପୁରୀର ଅନ୍ଧକାର ଦୂରହେବା ଅସମ୍ଭବ ।

ଜଗନ୍ନାଥ—ନ ହୁଅ ଅସ୍ଥିର ବାୟାଣି ।
କାଳେ ପ୍ରଚଣ୍ଡ ଦିନମଣି ॥

କୃଷ୍ଣା—ସେ ସମୟ କି ମୋ'ର ସତେ ଆସିବ ପ୍ରଭୋ ?

[ ଜନୈକ ସଖୀର ପ୍ରବେଶ ]

ସଖୀ—ସେନାପତି ଅନନ୍ତ ସିଂହ ଫେରି ଆସିଚନ୍ତି ।

କୃଷ୍ଣା—( ବ୍ୟସ୍ତହୋଇ ଉଠି ଧାଇଁଲେ ) କାହାନ୍ତି ? କାହାନ୍ତି ?

[ ଅନନ୍ତ ସିଂହଙ୍କ ପ୍ରବେଶ ]

ଅନନ୍ତ—କୃଷ୍ଣା—କୃଷ୍ଣା—

[ ଏଥିପୂର୍ବରୁ ସଖୀମାନେ ଛଞ୍ଚା ଘେନି ଆସି, ଜଗନ୍ନାଥ ଦାସଙ୍କୁ ଅନ୍ୟ ବାଟେ ଘେନି ଯାଇଥିଲେ ]

କୃଷ୍ଣା—ପ୍ରଭୋ ! ପ୍ରଭୋ ! ( ଚରଣ ଧାରଣ )

ଅନନ୍ତ—ଏ'କି ଆଚରଣ, କୃଷ୍ଣା ? ( ଉଠାଇଲେ )

କୃଷ୍ଣା—ମାର୍ଜନା—ମାର୍ଜନା, ପ୍ରଭୋ !

ଅନନ୍ତ—ନା, ନା—'ଭାଇ', 'ଭାଇ' ବୋଲି ଡ'କ, କୃଷ୍ଣା !

କୃଷ୍ଣା—ଭୁଲି ଯାଅ, ଭୁଲି ଯାଅ ପୂର୍ବକଥା—ଦାସୀକୁ—

ଅନନ୍ତ—ଛି, ତୁମ୍ଭେ ଯେ ଭଉଣୀ ମୋର—

କୃଷ୍ଣା—ବଡ଼ାଅନା, ବଡ଼ାଅନା ପାପମାନ୍ଦା ଅଭି ପାପିୟସୀର, ପ୍ରଭୋ !—( ଅତ୍ୟନ୍ତ ଅଶାନ୍ତ ଭୋଗ କରୁଥିଲେ ) ଓଃ—ଏ' ପାପର କ'ଣ ପ୍ରାୟଶ୍ଚିତ୍ତ ଅଛି ?

ଅନନ୍ତ—ପ୍ରାୟଶ୍ଚିତ୍ତ ହୋଇଚି, କୃଷ୍ଣା !

କୃଷ୍ଣା—'ପ୍ରାୟଶ୍ଚିତ୍ତ ହୋଇଚି !' ମୋର ପାପର—?

ଅନନ୍ତ—ପାପର ନୁହେଁ, କୃଷ୍ଣା—ଭ୍ରମର—

କୃଷ୍ଣା—'ଭ୍ରମ'ର !—କି 'ଭ୍ରମ' ? 'ଭ୍ରମ' ଅବା 'ପାପ' ଯେଉଁ ନାମେ ହେଉ ଅଭିହିତ—କୁହ—କୁହ—ପ୍ରାୟଶ୍ଚିତ୍ତ ତା'ର ଅଛି—ହୋଇଚି କି ?—ପ୍ରଭୋ ! ପ୍ରଭୋ ! ଭଣ୍ଡାଅନା—ଭଣ୍ଡାଅନା ଦାସୀକୁ ତୁମ୍ଭର—

ଅନନ୍ତ—ଛି, ଭଉଣି !—

କୃଷ୍ଣା—( ପୁଣି ବ୍ୟଥିତା ହୋଇ ) ପ୍ରଭୋ—ପ୍ରଭୋ—

ଅନନ୍ତ—ପୁଣି— ? ଭାଇ ବୋଲି ଡାକ, କୃଷ୍ଣା—ଶୁଣ, ଭଉଣି—ମହାରାଜା ଯେ ସେଦିନ କି ପବିତ୍ରଭାବ ପୋଷଣ କରି ଆମ୍ଭ ଦୁହିଁଙ୍କ କର ମିଳାଇ ଦେଇଥିଲେ, ତାହା ମୁଁ ଆମ୍ଭେମାନେ ଯୌବନସୁଲଭ ଚପଳତା ବଶତଃ ସେ ଭାବେ ନ ବୁଝି, ଅନ୍ୟ ଭାବେ ଯେଉଁ ଚାହିଁଥିଲୁ ସିନା—ଓଃ ତାଙ୍କର କି ଅଗାଧ ବିଶ୍ୱାସ ଯେ ଏ ପାଷାଣ୍ଡ ପ୍ରତି—

କୃଷ୍ଣା—ଥାଉ, ଥାଉ—ପୂର୍ବସ୍ମୃତି ଜଗାଇ ଆଉ ଲଜ୍ଜା ଦିଅନା—ଲଜ୍ଜା—

ଅନନ୍ତ—ନିଜେ ଯେ ଲଜ୍ଜିତ, ତା'ର ପୁଣି ଲଜ୍ଜାଦେବାର କ୍ଷମତା କାହିଁ, କୃଷ୍ଣା ! ଶୁଣ, ଶୁଣ, କୃଷ୍ଣା ! ମହାରାଜ ପବିତ୍ର ଭ୍ରାତା ଭଗିନୀ ଜ୍ଞାନରେହିଁ ଆମ୍ଭ ଦୁଇ ଜଣଙ୍କୁ ମିଳାଇ ଦେଇ ଥିଲେ—ଓଃ, କନ୍ୟାର ରକ୍ଷଣଭାର ଏ ରାକ୍ଷସ ଉପରେ ସିନା—

କୃଷ୍ଣା—ପ୍ରଭୋ ! ପ୍ରଭୋ ! ମିଥ୍ୟାର ଅବତାରଣା କରି ସତ୍ୟର ମର୍ଯ୍ୟାଦା ନଷ୍ଟ କର ନାହିଁ—ଶ୍ରୀପଦେ ସ୍ଥାନ ଦେଇ ଏ ଅଭାଗିନୀର—

ଅନନ୍ତ—ଭଉଣି ! ଭଉଣି ! ବିଶ୍ୱାସ କର—ଏହି ଯେ ମହାରାଜାଙ୍କ ଶ୍ରୀହସ୍ତଲିଖିତ ପତ୍ର ! ( ପତ୍ର ଦାନ )

କୃଷ୍ଣା—( କମ୍ପିତ ହସ୍ତରେ ପଢ଼ିବାକୁ ଲାଗିଲେ ଓ ନାନାଭାବର ସୂଚନା ଦେଲେ ) ଭାଇ ! ଭାଇ ! ଓଃ—ଏ ଯେ ଗୋଟାଏ ଜଟିଳ ରହସ୍ୟ !—

ଅନନ୍ତ—କିନ୍ତୁ ଈଶ୍ୱର ଆମ୍ଭମାନଙ୍କୁ ବଞ୍ଚାଇଛନ୍ତି, କୃଷ୍ଣା ! ଏଠା ଯୁଦ୍ଧ ଶେଷ ହେବା ମାତ୍ରେ ମୋ' ଭିତରେ ଗୋଟାଏ ମହାଯୁଦ୍ଧ ଆରମ୍ଭ ହେବାକୁ ଲାଗିଲା—ସେଦିନ ସିନା କି ଗୋଟାଏ ଆବେଶ ଓ ଆବେଗରେ କାର୍ଯ୍ୟ କରିଥିଲି, କିନ୍ତୁ ପର ମୁହୂର୍ତ୍ତେ—ଯୁଦ୍ଧର ଅବସାନ ସଙ୍ଗେ ସଙ୍ଗେ—ମୋ ଭିତରେ ଗୁରୁଅଜ୍ଞ ଯେମନ୍ତ କେଉଁମାନେ ହୁଙ୍କାର କରି ଉଠିଲେ—'ଅନନ୍ତ ! ତୁ ସିନା ତୋ'ର ମହତ୍ତ୍ୱ ଦେଖାଇଲୁ, କିନ୍ତୁ ସଙ୍ଗେ ସଙ୍ଗେ ଗୋଟିଏ ବାଳକାର, ରାଜକୁମାରୀର, ସର୍ବନାଶ କଲୁ ନାହିଁ କି ? ମୁକୁନ୍ଦ ସଙ୍ଗେ, ଗୋଟାଏ ସାମାନ୍ୟ ସୈନିକ ସଙ୍ଗେ, ତୁ ମିଳାଇ ଦେବାକୁ କିଏ ? ରାଜା ଯଦି ଅମତ ହୁଅନ୍ତି—ରାଜସମ୍ମାନର ଅମର୍ଯ୍ୟାଦା କଲୁ ନାହିଁକି ?—ପିତା ଯଦି ସତ୍ୟ କରିଥା'ନ୍ତି—ପିତୃ-ସତ୍ୟର ଗୌରବ ନଷ୍ଟ କଲୁ ନାହିଁ କି ?'—ଠିକ୍ ଏହି ସମୟରେ ମହାରାଜଙ୍କ ଠାରୁ ମୋତେ ଯୁଦ୍ଧାହ୍ୱାନ ଆସେ—ମୁଁ ସାହ୍ଲାଦେ ତତ୍କ୍ଷଣାତ୍ ଯାତ୍ରା କଲି—ବିଜୟନଗରର ଶତ୍ରୁ ଧ୍ୱଂସ କରିବାର ଲାଳସାରେ ନୁହେଁ, ବରଂ ମହାରାଜଙ୍କୁ ସମସ୍ତ ସତ୍ୟ ଘଟଣା ପ୍ରକାଶ କରି, ଏହାର ଗୋଟିଏ ବିହିତ କରିବାର ଲାଳସାରେ—ଏଥିଲାଗି ଯଦି ପ୍ରାଣଦଣ୍ଡ ଭୋଗ କରିବାକୁ ପଡ଼ିଥାନ୍ତା, ତା'ମଧ୍ୟ ହାସ୍ୟମୁଖରେ ବରଣ କରିବାକୁ ମୁଁ ପ୍ରସ୍ତୁତ ଥିଲି—

କୃଷ୍ଣା—ଭାଇ— ଭାଇ !

ଅନନ୍ତ—ଯାଉ, ଗୋଟିଏ ଶୁଭ ସମ୍ବାଦ, ଭଉଣି !—ଏଠା ଯୁଦ୍ଧ ଜୟର ପୁରସ୍କାର ସ୍ୱରୂପ ମୁକୁନ୍ଦ ସେନାପତି ପଦ ପ୍ରାପ୍ତ ହୋଇଛନ୍ତି ।

କୃଷ୍ଣା—( ଲଜ୍ଜାବନତା ହେଲେ ଓ ହୃଦୟର ଅତି ଗଭୀର ସ୍ତରରେ ଯେଉଁ ଆନନ୍ଦ ଖେଳିଗଲା, ତାହା ଓଷ୍ଠାଧରର ଈଷତ୍ କମ୍ପନରେ ଜଣାଗଲା ମାତ୍ର )

ଅନନ୍ତ—ଆହୁରି ଶୁଣି ସୁଖୀ ହେବ, ଭଉଣି, ଉପାୟ ମଧ୍ୟ କରିଆସିଛି, ମୁକୁନ୍ଦ ସଙ୍ଗେ ତୁମ୍ଭର—

କୃଷ୍ଣା—(ଅନନ୍ତ ପ୍ରତି ଅଧର ଦଂଶନ ପୂର୍ବକ କୁଟିଳ କଟାକ୍ଷ କରିବେ କ'ଣ, ପ୍ରତି ଧକ୍କାରେ ଯେପରି ସେ'ଠି ଆଉ ରହିପାରିଲେ ନାହିଁ—ଦ୍ରୁତ ପ୍ରସ୍ଥାନ କଲେ )

ଅନନ୍ତ—( କିଛିକ୍ଷଣ ସେହି ଆଡ଼େ ଚାହିଁ ରହି ) କି ଆନନ୍ଦ !—ଓଃ ମୁକୁନ୍ଦକୁ ଯେ ଖବର ଦେଇ ନାହିଁ ।

( ପ୍ରସ୍ଥାନ )

[ ସଖୀମାନେ ସୁସଜ୍ଜିତା ହୋଇ ଗୀତ ଗାଇ ଗାଇ ପ୍ରବେଶ କଲେ ]

—ଗୀତ—

ଆଜ ତ ମାଣବା ନାହିଁ ମନା ।
ନାଚବା ଗାଇବା ତା-ନା-ନା-ନା ॥
ଭଙ୍ଗିତ ବନ୍ଧ—
ଫିଟିଗଲ ଛନ୍ଦ—
ଛୋଡ଼ ପଡ଼ିଲାଣି ତନା ଘନା ॥
ଦୁନିଆ ଭର—
କାହାକୁ ଡର—
ମିଳିଲେ ମହୁସ୍ଥା ଦନା, ଦନା ॥

କୃଷ୍ଣା—( ପ୍ରବେଶ କରି, ଆନନ୍ଦରେ ମତୁଆଲ ହୋଇ ) ଗାଅ, ଗାଅ—ଆଜ ମନ ଖୋଲ ଗାଅ—ପ୍ରାଣ ଖୋଲ ଗାଅ (ଗୀତ ଶୁଣୁ ଶୁଣୁ ବିଭୋର ହେଲେ)

୧ମ ସଖୀ—( ଗୀତାନ୍ତେ ) ଜେମାଦେଇ ଶୋଇ ପଡ଼ିଲେ ନା କ'ଣ ?

କୃଷ୍ଣା—( ଚମକି ଉଠି ) ମୁକ୍ତା ! ମୁକ୍ତା ! (ଲଜ୍ଜିତା ହେଲେ )

---

## ଦ୍ୱିତୀୟ ଦୃଶ୍ୟ

—ମୁକୁନ୍ଦର ଗୃହ ସମ୍ମୁଖସ୍ଥ ରାସ୍ତା—

[ ମୁକୁନ୍ଦ ଓ ସମରେନ୍ଦ୍ର କଥାବାର୍ତ୍ତା କରୁ କରୁ ପ୍ରବେଶ କଲେ ]

ସମରେନ୍ଦ୍ର—ସାମନ୍ତେ !

ମୁକୁନ୍ଦ—ପୁଣି 'ସାମନ୍ତେ' ? ମୁଁ ଯେ ତୋର ଭାଇ, ସମରେନ୍ଦ୍ର—

ସମରେନ୍ଦ୍ର—ନା, ନା—

ମୁକୁନ୍ଦ—ତା'ହେଲେ ମୋ ସଙ୍ଗେ ତୋ'ର କୌଣସି—

ସମରେନ୍ଦ୍ର—ନା, ନା—ତଉଦଅନା—ତୁମକୁ ଛାଡ଼ ଯେ—

ମୁକୁନ୍ଦ—ପୁଣି 'ତୁମକୁ'—?

ସମରେନ୍ଦ୍ର—ଭାଇ ! ଭାଇ ! ଏତେ ଆପଣାର ତୁହ—

ମୁକୁନ୍ଦ—ପୁଣି ସେହି 'ଆପଣାର' କହୁଚୁ ?—ଆରେ, ଏ' ଦୁନିଆରେ ଆପଣାର ବୋଲି ଯାକୁ ଭାବୁ, ସେହି ଯେ ତୋର—

ସମରେନ୍ଦ୍ର—'ଇଣ୍ଟିକଥା'—ଠିକ୍ କହୁଚୁ, ଭାଇ !—ସେହି କୃଷ୍ଣା ଚମ୍ପିକୁ ଆପଣାର ଭାବ ସିନା, ତୋ'ପରି ବନ୍ଧୁକୁ—

ମୁକୁନ୍ଦ—ଭୁଲ, ଭୁଲ, ଭାଇ—ଏ' ବନ୍ଧୁକୁ ତୋ'ର, ତା'ହେଲେ ଆଦୌ ଶକ୍ତି ନାହୁଁ—କୃଷ୍ଣା ଚମ୍ପି ତ ଘର—ନରକର ସମ୍ଭାବନ ବୋଧ ହୁଏ ତା' ସଙ୍ଗେ—( କହୁ କହୁ ଅନ୍ୟମନସ୍କ ହେଲେ )

ସମରେନ୍ଦ୍ର—ନା, ନା, ଭାଇ ସ୍ୱର୍ଗର ଦେବତା ବୋଧହୁଏ—ବୋଧହୁଏ କାହିଁକି—ନିଶ୍ଚୟ ସବୁ ହେବ ନାହିଁ—ଯେଉଁ ଭାଇର ପ୍ରାଣନାଶ କରିବାକୁ ନବହନ୍ତା ମୁହିଁ ଶତ୍ରୁ ସଙ୍ଗେ ମିଶି, ଷଡ଼ଯନ୍ତ୍ର କରିଥିଲି, ସେହି ଦେବତାଧିକ ଭାଇ ଯୋଗୁଁ ସିନା ବିଶ୍ୱାସଘାତକ ମାନଙ୍କର ଗୁପ୍ତଚ୍ଛୁରିକା ଗ୍ରାସରୁ ଏ' ପାପୀ ନାରକୀ ଆଜି ପ୍ରାଣ ପାଇଛି—ଆଶ୍ରୟ ପାଇଛି—ଜୀବିକା ଉପାର୍ଜନର ଆଶା ମଧ୍ୟ—

ମୁକୁନ୍ଦ—ବୃଥା ପ୍ରଶଂସାରେ ପ୍ରୟୋଜନ ନାହିଁ, ଭାଇ—ପ୍ରଭୁଙ୍କୁ ଡାକ, କିପରି ସେ ବର୍ତ୍ତମାନ ତୋ'ର ଜୀବିକାର ଉପାୟ କରିଦେବେ ।

ସମରେନ୍ଦ୍ର—ଅନ୍ୟ ପ୍ରଭୁ ମୁଁ ଜାଣେ ନାହିଁ, ଭାଇ—ମୋ'ର ପ୍ରଭୁ ଯେ, ସେ ମୋ'ର ସମ୍ମୁଖରେ । ( ପ୍ରଣାମ କରିବାକୁ ଗଲେ)

ମୁକୁନ୍ଦ—ଛି, ଭାଇ—ଏ'ପରି କହି ପରସ୍ପର ପାପମାତ୍ରା ବଢ଼ାଇ ଦେ'ନା—ସେନାପତି ଫେରି ଆସନ୍ତୁ, କୁହାପୋଛା କରି ନିଶ୍ଚୟ ତୋତେ—

ସମରେନ୍ଦ୍ର—ଭାଇ ! ଭାଇ ! ଅନନ୍ତଙ୍କୁ ଏ' ପାପମୁଖ ଦେଖାଇବି କିପରି ?—କି ଗୁଣ ଦେଖି ବା ମୋ'ର—

ମୁକୁନ୍ଦ—ଏ' ଯୁଦ୍ଧରେ କ'ଣ ମୁଁ କିଛିହେଲେ ପୁରସ୍କାର-ଯୋଗ୍ୟ ଗୁଣ ଦେଖାଇ ନାହିଁ, ଭାଇ ?—ତା'ର ବିନିମୟରେ ତୋତେ ନିଶ୍ଚୟ ଗୋଟିଏ ପଦ—

ସମରେନ୍ଦ୍ର—ମୁକୁନ୍ଦ ! ମୁକୁନ୍ଦ ! ତୁମ୍ଭେ ଏତେ ମହତ୍ !

ମୁକୁନ୍ଦ—'ମହତ୍' । 'ମହତ୍ !—ଭାଇ ! ଭାଇ ! ହାତଧରୁଚି ତୋ'ର—ଏ' ଶବ୍ଦଟି ଆଉ କେବେ ପ୍ରୟୋଗ ନ କରୁ ଯେମନ୍ତ—ଏହାର ଗୋଟିଏ ଗୋଟିଏ ଅକ୍ଷର ଗୋଟାଏ ଗୋଟାଏ ଶୂଳ ପରି ମୋର ମର୍ମସ୍ଥଳକୁ ଛିନ୍ନ, ଭିନ୍ନ କରୁଛି— (କିଛିକ୍ଷଣ ନୀରବ ରହି ପରେ ହଠାତ୍)— ଭାଇ ! ତୁ ଘରେ ଥା କି, ମୁଁ ସେନାନିବାସ ପରିଦର୍ଶନ କରି ଆସେଁ । (ଗମନୋଦ୍ୟତ)

ସମରେନ୍ଦ୍ର—ଏ' ଗଳଗ୍ରହଟାକୁ ନେଇ ଯେତିକି ହଇରାଣ ସିନା—ତା'କୁ ଅନ୍ୟ ଉପାୟରେ ମୁକ୍ତ ଦେଲେ ହୁଅନ୍ତା ନାହିଁ, ଭାଇ ;

( ଦୌଡ଼ି ପ୍ରସ୍ଥାନ କଲା )

ମୁକୁନ୍ଦ—'ମୁକ୍ତି !' ଓଃ ମୁକ୍ତା—ମୁକ୍ତା !—ମୋର ମୁକ୍ତି କି ନାହିଁ ?—ନା—ନା—ତୁହି ଯେ ମୋର ମୁକ୍ତି ! —ତୋ'ର ସ୍ମୃତି ଯେ ମୋର ମୁକ୍ତି !— ତୁହି ଯେ ଜୀବନେ ମରଣେ ମୋ'ର ହୃଦୟର ଚିରୋଜ୍ଜ୍ୱଳ ମୁକ୍ତା ! ( ପ୍ରସ୍ଥାନୋଦ୍ୟତ )

ନେପଥ୍ୟେ—ଜୟ ସେନାପତି ମୁକୁନ୍ଦଙ୍କ ଜୟ !

ମୁକୁନ୍ଦ—ଏ' କଣ !—

[ ସୈନିକଗଣସହ ଅନନ୍ତ ସିଂହଙ୍କ ପ୍ରବେଶ ]

ମୁକୁନ୍ଦ—ସେନାପତି—!

ଅନନ୍ତ—ପୁଣି ସେହି ସମ୍ବୋଧନ, ଭାଇ ?

ମୁକୁନ୍ଦ—ଭାଇ ! ଭାଇ ! ( କୁଣ୍ଢାଇ ପକାଇଲେ )

ଅନନ୍ତ—ବେଶ୍—ଏ' ଡରବାଘ ଆଉ ପଗଡ଼ି ଧରିଲ— ବୋହି ବୋହି ମୋ' ହାତ ପରିଶ୍ ହୋଇଗଲାଣି ।

ମୁକୁନ୍ଦ—( ସାଶ୍ରୁନେତ୍ରେ ଚୁହିଁଲେ )

ଅନନ୍ତ—ଚୁହୁଁଚ କ'ଣ ?—ତୁମେ ଯେ ସାରଙ୍ଗଗଡ଼ର ସେନାପତି !

ମୁକୁନ୍ଦ—'ସାରଙ୍ଗଗଡ଼ର ସେନାପତି !'—ଗୋବିନ୍ଦ- ବିଦ୍ୟାଧର—?

ଅନନ୍ତ—ସେ ଯେ ବର୍ତ୍ତମାନ ମନ୍ତ୍ରୀ !—ଆମ୍ଭର ବୁଢ଼ା ମନ୍ତ୍ରୀ କ'ଣ ଆଉ ଅଛନ୍ତି !

ମୁକୁନ୍ଦ—ନାହାନ୍ତି !

ଅନନ୍ତ—ପିଶାଚ କୃତ୍ତିବାସ, ଗୋପନରେ ଶିବିରରେ ପଶି, ସାମାନ୍ୟ ପଶୁପରି ନିଜହସ୍ତରେ ତାଙ୍କୁ ବଧ କରିଛି । ଏହି ସମ୍ବାଦରେ ହଠାତ୍ କୌଣସି ପ୍ରକାର ବିଶୃଙ୍ଖଳା ଘଟିବା ଆଶଙ୍କାରେ କଥାଟା ରାଜାଙ୍କର କଠିନାଦେଶରେ ଗୋପନ ରଖା ହୋଇଥିଲା ମାତ୍ର ।

ମୁକୁନ୍ଦ—( କର ତାଳୁରେ ଅଙ୍ଗୁଳି ସଂଚାଳନ କରୁ କରୁ କ୍ରୁଦ୍ଧଦୃଷ୍ଟିରେ )—ଏ' ପର୍ଯ୍ୟନ୍ତ ପିଶାଚଟା ଜୀବିତ ଅଛି ନା ?

ଅନନ୍ତ—ନାଁ, ନାଁ ଏବେ ଧରିଲ—

ମୁକୁନ୍ଦ—( ମୁକୁନ୍ଦ ଗ୍ରହଣକରି ) ଭାଇ ! ଭାଇ ! ସେହି ପିଶାଚର ରକ୍ତରେ ଏ' ଅସିର ଉଦ୍‌ବୋଧନ କିମ୍ବା ସମ୍ପାଦନ କଲେ ହୁଅନ୍ତା ନାହିଁ ?

ଅନନ୍ତ—ସେ ତୁମର ଦେଖାର କଥା, ତୁମେ ଭଲ ବୁଝିବ—ଛାଡ଼, ଆସିଲେ ଅନେକ ଗୁରୁତର କଥା ଅଛି ।

ମୁକୁନ୍ଦ—ମୋତେ ଯେ ସେନାନିବାସ ପରିଦର୍ଶନ—

ଅନନ୍ତ—ବେଶ୍ ଚାଲିନା—ବାଟରେ ଯାଉଁ ଯାଉଁ ତ ଭଲହେବ ( ମୁକୁନ୍ଦର କାନ୍ଧରେ ହାତ ପକାଇ ଉଭୟେ ପ୍ରସ୍ଥାନୋଦ୍ୟତ )

ସୈନ୍ୟଗଣ—ଜୟ ସେନାପତି ଶ୍ରୀମୁକୁନ୍ଦଙ୍କ ଜୟ !

ଅନନ୍ତ—ଭାଇ ! ତୁମର ପୂର୍ବ ନା'ଟି କଣେଟି । କିନ୍ତୁ 'ତେଲେଙ୍ଗା ମୁକୁନ୍ଦ' ନା'ଟି ତୁମର ଆଉ ଯାଉ ନାହିଁ । ମହିମା ଅମର ଅଛି। ଆଖ୍ୟା ଦେଇ ଦେଲେଣି—ଅଚ୍ଛା, ଭାଇ ! ମୁକ୍ତାଦେବୀଙ୍କ ଘର ପରା ତୁମର ଏକା ଗାଁରେ ?

ମୁକୁନ୍ଦ—( ଦୀର୍ଘନିଃଶ୍ୱାସ ଛାଡ଼ିଲେ, କିନ୍ତୁ ହୃଦୟଭାବ ଜାଣିବାକୁ ଦେଲେ ନାହିଁ ) ହଁ—( ବହୁକଷ୍ଟେ ଉତ୍ତରଟି ଦେଲେ )

ଅନନ୍ତ—ତା' ସଙ୍ଗେ କ'ଣ ବିବାହ ତୁମର—

ମୁକୁନ୍ଦ—( ସଂଯତ କରି ନେଇ ସହଜଭାବରେ କହିବାକୁ ଚେଷ୍ଟା କଲେ, ହୋଇ ନ ଥିଲା—ସେ ଥିଲା ଭାରି ବଡ଼ଲୋକର ଝିଅ ମୁଁ ଥିଲି ଭାରି ଗରିବ— ମୋ ସଙ୍ଗେ ତାର ଘନିଷ୍ଠତା ଦେଖି, ତା'ର

ବାପ ନାନା ଷଡ଼ଯନ୍ତ୍ର କରି ମୋତେ ନିର୍ବାସିତ କରାଇଥିଲେ ଆଜି ତା'ପ୍ରତି କି ଯେ ଅମାନୁଷିକ ଅତ୍ୟାଚାର କରିଥିଲେ—। ( ଆଖି ଛଳ ଛଳ ହୋଇ ଉଠିଥିଲା )

ଅନନ୍ତ—ପ୍ରକୃତରେ, ଭାଇ ଏପରି ନିଃସ୍ୱାର୍ଥ ପ୍ରେମ ଏ' ଜଗତରେ ଦୁର୍ଲଭ ।

ମୁକୁନ୍ଦ—ଏ' ପାପୀ ତା'ର ମର୍ଯ୍ୟାଦା କ'ଣ ବୁଝିବ ? ( ଲୁହ ପୋଛି ପକାଇଲେ )

ଅନନ୍ତ—ଏ' କଣ କରୁଛି ମୁଁ । ( ଚମକି ଉଠିଲେ )

ମୁକୁନ୍ଦ—ଏ'ପରି ଚମକି ଉଠିଲ କାହିଁକି, ଭାଇ ?

ଅନନ୍ତ—ଭାଇ ! ଭାଇ ! କ୍ଷମା କର—ଏ' ଅତୀତ କଥା ଉତ୍‌ଥାପନ କରି ତୁମ ମନରେ ଭାରି କଷ୍ଟ ଦେଇଛି ।

ମୁକୁନ୍ଦ—କୌଣସି କଷ୍ଟ ନାହିଁ, ଭାଇ—ମୁକ୍ତା ଯେ ବର୍ତ୍ତମାନ ମୋର ହୃଦୟର ମୁକ୍ତା—ତା'ର ସମ୍ବନ୍ଧ ଆଲୋଚନାରେ ସେ ଯେ ମୋ'ର ବାଟ କଢ଼ାଇ ଚାଲିଛି—ଆସ, ଭାଇ ! (ପ୍ରସ୍ଥାନ)

ଅନନ୍ତ—ମୁକୁନ୍ଦର ଏ'ପରି ଭାବନା ମୋ'ର ଉଦ୍ଦେଶ୍ୟର ମହାନ୍ ପ୍ରତିବନ୍ଧକ—କୃଷ୍ଣା ସଙ୍ଗେ ତା'ର ପରିଣୟ ଯେ ଅବଶ୍ୟ କର୍ତ୍ତବ୍ୟ ମୋ'ର ।

( ପ୍ରସ୍ଥାନ )

[ ସମରେନ୍ଦ୍ର ପ୍ରବେଶ କଲେ ]

ସମରେନ୍ଦ୍ର—କି ଆନନ୍ଦ—ମୁକୁନ୍ଦ ସେନାପତି—ମୁକୁନ୍ଦ ସେନାପତି !—ଏ' କଣ ମୁକୁନ୍ଦ ପୁଣି ଫେରିଲା କାହିଁକି—ସଙ୍ଗେ ଅନନ୍ତ ଯେ ( ଦ୍ରୁତ ପ୍ରସ୍ଥାନ କଲେ )

[ ମୁକୁନ୍ଦ ଶଶବ୍ୟସ୍ତେ ଫେରି ଆସିଲେ—ପଛେ ପଛେ ଅନନ୍ତ ]

ମୁକୁନ୍ଦ—ଅନନ୍ତ ! ଅନନ୍ତ ! ଏ'କଥା ଯଦି ତୁମେ ପୁଣି କୁହ, ତା ହେଲେ ଜାଣିବି ତୁମପରି ଦ୍ୱିତୀୟ ଶତ୍ରୁ ଆଉ ମୋ'ର ନାହିଁ—( ଅନନ୍ତ ଶାନ୍ତ କରୁଥିଲେ ) ଏହି ନିଅ ଫେରାଇ ତୁମର ତରବାରି, ଆଉ ଶିରସ୍ତ୍ରାଣ—ଏ' ପଦରେ ମୋ'ର ଲେଶମାତ୍ର ପ୍ରୟୋଜନ ନାହିଁ ।

ଅନନ୍ତ—ତା ଯା'ଙ୍କର ଦାନ ତାଙ୍କୁ ଫେରାଇ ଦେବନା—?

ମୁକୁନ୍ଦ—ହାତ ଧରି କହୁଛି, ଭାଇ ! ଏ' ପବିତ୍ର ସ୍ମୃତିରେ ମୋ'ର, ଏ'ପରି କହି ଆଉ କଳଙ୍କ ଯେପରି ଲେପନ ନ କର—

ଅନନ୍ତ—ହେଲା, ମୋ'ର ଦୋଷ । ( ଗମନୋଦ୍ୟତ ହେଲେ )

ମୁକୁନ୍ଦ—ଭାଇ ! ଗୋଟାଏ ଉତ୍ତେଜନାରେ ଭାରି କଟୁ କଥା କହି ପକାଇଛି—( ହାତଧରି ପକାଇବା )

ଅନନ୍ତ—ଏ' ଓଲଟା କଥା କିପରି ମ ?

( ପ୍ରସ୍ଥାନ କରୁଥିଲେ )

ମୁକୁନ୍ଦ—ହଁ, ସମରେନ୍ଦ୍ର କଥାଟା—

ଅନନ୍ତ—ମୁଁ କ'ଣ କରିପାରିବି ଭଲା—ତା' ବିରୁଦ୍ଧରେ ତ ଅଭିଯୋଗର ହିମାଳୟ । ( ମନେ ମନେ ହସି ଚାଲିଯିବାର ଛଳନା କରୁଥିଲେ ପରି )

ମୁକୁନ୍ଦ—ଭାଇ ! ସେ ଭାରି ଅନୁତପ୍ତ—ପୂର୍ବ କଥା ପାଶୋରି ଯାଇ ତା'କୁ ଯଦି ଗୋଟାଏ କାମରେ ରଖାଇ ଦିଅନ୍ତ—ଆଜି ସେଥିଲାଗି ମୋତେ ଯାହା—

ଅନନ୍ତ—କିପରି ସମ୍ଭବ ?—ଅଚ୍ଛା, କରାଇ ଦେଲେ ମୋ'ତେ କ'ଣ ଦେବ—?

ମୁକୁନ୍ଦ—ଯାହା ମାଗିବ—

ଅନନ୍ତ—ଯାହା ମାଗିବି—।

ମୁକୁନ୍ଦ—ଏହି ମୁଁ ହାତ ଦେଉଛି ।

ଅନନ୍ତ—ବେଶ୍—କାହିଁ ସେ ?—

ମୁକୁନ୍ଦ—ମୋ'ର ଘରେ—

ଅନନ୍ତ—ମୁଁ ଆଜି ବ୍ୟବସ୍ଥା ନ କରି ଛାଡ଼ୁଛି—କିନ୍ତୁ, ଦେଖ, ଭାଇ ପ୍ରତିଜ୍ଞାଟି ତୁମର ଯେପରି ପାଶୋରି ନ ଯାଅଟି ।

ମୁକୁନ୍ଦ—ଯାହା ମାଗିବାର, ଏହିକ୍ଷଣି କୁହନା ଭାଇ—ଏଥିପାଇଁ ଯଦି ଅଙ୍ଗଦାନ କରିବାକୁ ହୁଏ—

ଅନନ୍ତ—(ସସ୍ମିତେ) ତା' ହେଲେ ମୋ'ର କ'ଣ ଟିକିଏ ହୋଇ ଆତ୍ମସମ୍ମାନ ଜ୍ଞାନ ନାହିଁ, ଭାଇ—

ମୁକୁନ୍ଦ—କି ଧନ୍ୟବାଦ ତୁମକୁ ଦେବି, ଭାଇ ?

ଅନନ୍ତ—ବହୁତ୍ ସମୟ ଅଛି, ଭାବ ଟିକିଏ ରଖ ନା—?

[ ଉଭୟଙ୍କର ବିପରୀତ ଦିଗେ ପ୍ରସ୍ଥାନ ବେଳେ ଅନନ୍ତ ମୁକୁନ୍ଦ ଆଡ଼େ ସସ୍ମିତେ ଚାହିଁ ଚାଲିଗଲେ]

[ ମୁକୁନ୍ଦର ପୁନଃ ପ୍ରବେଶ ]

ମୁକୁନ୍ଦ—ମ, ମ—ମୁଁ ଯେ ଉତ୍ସବର ଗୁରୁଟା ଛାଡ଼ି ଆସିଲି—

[ କୃଷ୍ଣାର ଯୋଦ୍ଧୃବେଶେ ଦ୍ରୁତ ପ୍ରବେଶ ]

କୃଷ୍ଣା—(କାତରଭାବେ) ସର୍ବନାଶ, ସେନାପତେ !—

ମୁକୁନ୍ଦ—( ନିର୍ବାକ୍ ଭାବେ ଚାହିଁଲେ )

କୃଷ୍ଣା—( ସଲଜ୍ଜେ ମୁଖ ଫେରାଇ, ଅନୁଚ୍ଚସ୍ୱରେ ) ଚାହାନ୍ତି ଅନନ୍ତ ସିଂହ ?—( କିନ୍ତୁ ସ୍ଥାନ ଛାଡ଼ି, ଛାଡ଼ି ପାରୁ ନ ଥିଲେ )

ମୁକୁନ୍ଦ—( କିପରି ବିଭ୍ରାନ୍ତ ଓ ସ୍ୱେଦାପ୍ଳୁତ ହୋଇ ) ଅନନ୍ତସିଂହ—ହଁ—ଏହିଠି—ବର୍ତ୍ତିମାନ ନା, ନା—ଏହିଆଡ଼େ—

କୃଷ୍ଣା—ଭାଗ୍ୟ ସର୍ବନାଶ !—ପିତା ବନ୍ଦୀ—!

ମୁକୁନ୍ଦ—ପିତା ବନ୍ଦୀ !—

[ ଅନନ୍ତ ସିଂହଙ୍କ ବେଗେ ପ୍ରବେଶ ]

କୃଷ୍ଣା—(ସକାତରେ) ପିତା ବନ୍ଦୀ—କ'ଣ କରାଯିବ ଭାଇ ?

ଅନନ୍ତ—କିଛି ଚିନ୍ତା ନାହିଁ, ଭଉଣି—ମୁଁ ମୁକୁନ୍ଦକୁ ଅବିଲମ୍ବେ ପଠାଇ ଦେଉଛି—ଉଃ, କି ବିଶ୍ୱାସ-ଘାତକ ସେହି କୃଷ୍ଣରାଏ—ସବୁ ହେଲା—ପୁଣି ଯୁଦ୍ଧ !—ମହାରାଜ ଯାହା କହୁଥିଲେ, ତାହା ଯେ ଅକ୍ଷରେ ଅକ୍ଷରେ ସତ୍ୟ ଦେଖୁଛି—ଚାଲ, ଭଉଣି—

କୃଷ୍ଣା—ନା—ନା—ମୁଁ ଫେରି ଯିବି ନାହିଁ—ମୁଁ ଯିବି ବୋଲି ତ ପ୍ରସ୍ତୁତ ହୋଇ ଆସିଛି—ପିତା ନିଶ୍ଚେ ମୋତେ ଦେଖିବାକୁ ବ୍ୟାକୁଳ ହେଉ-ଥିବେ !

ଅନନ୍ତ—ବେଶ୍, ମୁଁ ବନ୍ଦୋବସ୍ତ କରି ଦେଉଛି—ମୁକୁନ୍ଦ ! ଯାଅ ତୁମେ ଶୀଘ୍ର ପ୍ରସ୍ତୁତ ହୋଇ ଆସ—ମୁଁ ସେନା-ନିବାସକୁ ଥରେ—

କୃଷ୍ଣା—ଶୀଘ୍ର, ଶୀଘ୍ର ଚାଲ, ଭାଇ—( ଉଭୟଙ୍କ ପ୍ରସ୍ଥାନ)

ମୁକୁନ୍ଦ—ମୁକୁନ୍ଦ ! ମୁକୁନ୍ଦ !—ମୁକ୍ତା—ମୁକ୍ତା—ଅଲୀକ—ଅଲୀକ—( ବେଗେ ପ୍ରସ୍ଥାନ )

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଦାକ୍ଷିଣାତ୍ୟ ଯୁଦ୍ଧକ୍ଷେତ୍ରସ୍ଥ ଉତ୍କଳ ଶିବିର—

[ ସୁସଜ୍ଜିତା କୃଷ୍ଣା ଆନନ୍ଦରେ ଗଦ୍‌ଗଦ ହୋଇ ପ୍ରବେଶ କଲେ—ପଛେ ପଛେ ପ୍ରତାପ । ପ୍ରତାପର ପୂର୍ବ ପ୍ରତାପ ଯେମନ୍ତ ମଳିନ ହୋଇ ଯାଇଛି ]

ପ୍ରତାପ—ଏତେ ହସୁଛୁ, କୃଷ୍ଣା ?

କୃଷ୍ଣା—( ଆହୁରି ହସିବାକୁ ଲାଗିଲେ )

ପ୍ରତାପ—ଛି, କୃଷ୍ଣା—ହସି ହସି ପେଟ ତୋ'ର ଫାଟିଯିବ ଯେ—

କୃଷ୍ଣା—ଯାଉ—ଯାଉ—ପ୍ରାଣ ସୁଦ୍ଧା—ନା, ନା, ତା'ହେଲେ ହସିବ କିଏ ?—ହସାଇବ କିଏ ?

( ଆହୁରି ସଜୋରରେ ହସିବାକୁ ଲାଗିଲେ )

ପ୍ରତାପ—ଏ' କଣ, କୃଷ୍ଣା ? ମୁଣ୍ଡ ତୋ'ର ଖରାପ ହୋଇଯାଇଛି ନା କ'ଣ ?

କୃଷ୍ଣା—କହିଲି, ବାବା ! ଆଜିକା ଭଳି ଦିନ ଆଉ ମିଳିବ ନା ? ( ହସିବା )

ପ୍ରତାପ—ଏ' କେତେଟା ଦିନରେ ତୁ ଏମିତିକା ବେହିଆ ପାଲଟି ଗଲୁଣି ନା ?

କୃଷ୍ଣା—କ୍ଷମା କର, କ୍ଷମା କର, ବାବା—ମୁଁ ଯେ ଅଦେଖୀ ସମ୍ଭାଳି ପାରୁ ନାହିଁ— (ହାସ୍ୟ କରିବା)

ପ୍ରତାପ—କିଛି ମୁଁ ବୁଝି ପାରୁ ନାହିଁ ତୋ'ର ମତି ଗତି—ଏ' ଗୋଟାଏ ରୋଗ ନା କ'ଣ—ଆଗେତ ଏ'ପରି ଲକ୍ଷଣ କେବେ ଦେଖା ନ ଥିଲା—କାହିଁ, ଏଠିକିତ—କାଲି—ପରଦିନ—କାହିଁକି, ଏହି ଘଡ଼ିକ ଆଗେ ତ ଅଜ, କିନ୍ତୁ—

କୃଷ୍ଣା—( ହସୁ ହସୁ ) ହଠାତ୍ !—ହଠାତ୍, ବାବା ! —କେମିତିକା ଏକାବେଳକେ ହଠାତ୍ ବଦଳି ଗଲା—ସବୁ ଶୁନ୍‌ଶାନ୍—ଆଉ କ'ଣ ଶତ୍ରୁ କାହାରି ଉପରେ ଅତ୍ୟାଚାର କରିବାକୁ ଧାଇଁ ଆସୁଚି ?—ଘର ଦ୍ୱାର ଜାଳି ପୋଡ଼ି ଦେଉଚି ? —ପିଲା ଛୁଆ ହାଣି କାଟି ପକାଉଚି ?— ଦୋକାନ ବଜାର ଲୁଟ୍‌ପାଟ୍ କରି ନେଉଚି ?— ବାଲବାଚ୍ଛି ଓଗାଡ଼ି ଦେନି ପଳାଉଚି ?— କେମିତିକା—କେମିତିକା, ବାବା—ଗୋଟାଏ ଫୁଙ୍କରେ ଯେମିତିକା ସବୁ ଚୁପ୍ ଚୁପ୍ !—ନୁହେଁ, ବାବା ?—ହାଃ—ହାଃ—ହାଃ—

( ହସି ଅସ୍ଥିର ହୋଇଗଲା )

ପ୍ରତାପ—ସେଇଥିପାଇଁ ଏତେ ଖୁସୀ ତୁ, ମା ?— ତା' ହେଲେ ସେ ପାପଣ୍ଡକୁ ଆଦୌ—

କୃଷ୍ଣା—ଚିହ୍ନି ନାହିଁ ?—ମୁଁ ?—ହାଃ - ହାଃ— ହାଃ—( ହସିବାକୁ ଲାଗିଲେ )

ପ୍ରତାପ—(ବିରକ୍ତିରେ) ଯା, ଯା, ଭିତରକୁ ଗଲୁ— ଭାରି ବେହିଆ ତୁ ପାଲ୍‌ଟି ଗଲୁଣି ।

କୃଷ୍ଣା—(ହସୁ ହସୁ ) ଯାଉଚି, ଯାଉଚି, ବାବା—କିନ୍ତୁ, ବାବା, ଯେଉଁ ଦକ୍ଷିଣୀ ପାଟ କଥା କହିଥିଲ—

ପ୍ରତାପ—ହଁ, ହଁ, ମନେଅଛି ମୋ'ର—ଗଲୁ— ଗଲୁ ତୁ—

କୃଷ୍ଣା—( ହସୁ ହସୁ ) ତା' ହବ ନାହିଁ—ଏହିକ୍ଷଣି ଯେ ମୋ'ର ଦରକାର ।

ପ୍ରତାପ—ଏହିକ୍ଷଣି ! କୃଷ୍ଣା ! କୃଷ୍ଣା ! ବୁଦ୍ଧି ଶୁଦ୍ଧି କ'ଣ ତୋ'ର ସବୁ ଲୋପ ପାଇଲାଣି—ବର୍ତ୍ତମାନ କଣ ତୋ'ର ଆମୋଦ ପ୍ରମୋଦ କରିବାର ବେଳ ?—କାହିଁ ଲୋକେ ଖାଇବାକୁ ନ ପାଇ ମରୁଛନ୍ତି—ପିନ୍ଧିବାକୁ ନ ପାଇ ଲୁଚୁଛନ୍ତି—

କୃଷ୍ଣା—( ହସୁ ହସୁ ) ମୋ'ର ସେଥିରେ କ'ଣ ?— ମୋ'ର ପାଟ ଦରକାର !

ପ୍ରତାପ—ଏହିକ୍ଷଣି ତୁ ଶତ୍ରୁର ଅତ୍ୟାଚାର ବନ୍ଦ ଅଛି ବୋଲି, ଖୁସୀ ହେଉଥିଲୁ ପରା ?—ନିଶ୍ଚେ ତୋ'ର ମୁଣ୍ଡ ବିଗିଡ଼ି ଯାଇଛି । କ'ଣ କରୁଛି—

କୃଷ୍ଣା—( କ୍ରନ୍ଦନର ସୁର କରି ) ଉଁ—ଉଁ—ମୁଁ କାନ୍ଦିବି—ମୋତେ ପାଟ ଆଣି ନ ଦେଲେ— ଉଁ—ଉଁ—

ପ୍ରତାପ—ମା ! ମା !—

କୃଷ୍ଣା—( ସେହିପରି କାନ୍ଦୁଥିଲେ )

ପ୍ରତାପ—ଏ' ତୋ'ର କ'ଣ ହେଲା, ମା ?—କାନ୍ଦନା, ମା—ମୁଁ ଏହିକ୍ଷଣି ଅଣାଇ ଦେଉଛି—

କୃଷ୍ଣା—(ହସି ହସି ) ଆଉ ଫୁଲର ହାର, ବାବା ?—

ପ୍ରତାପ—କୃଷ୍ଣା—କୃଷ୍ଣା—

କୃଷ୍ଣା—(ସେହିପରି ହସି ହସି ) ଠିକ୍ ଯେମିତିକା ମୁଁ ବରାଦ୍ କରିଥିଲି, ବାବା—

ପ୍ରତାପ—ଏତେ ସଉକିନ୍ ତୁ କେବଠୁଁ—

କୃଷ୍ଣା—( କେବଳ ଜୋରେ ହସିବାକୁ ଲାଗିଲେ ) 'ସଉକିନ୍'—'ସଉକିନ୍'—

ପ୍ରତାପ—କାହିଁ ଦନେତ କେବେ—!—ଏ' କ'ଣ ପାଗଲାମି ?—

କୃଷ୍ଣା—ଆଣିଦେବ ନାହିଁ, ବାବା—ଉଁ—ଉଁ (ଜଗର-ଧରି କାନ୍ଦିଲେ )

ପ୍ରତାପ—ଅଣାଇ ଦେବି, ଅଣାଇ ଦେବି, ମା—ତୁ ଆଉ—

କୃଷ୍ଣା—ଉଁ ହୁଁ—ତା' ହବନାହିଁ—ତୁମେ ଅସ— ଏହିକ୍ଷଣି—ମୋ'ର ସାମ୍‌ନାରେ ବରାଦ୍ କରିବ— ହୁଁ—

ପ୍ରତାପ—(ସ୍ୱଗତ) ଏ' ନିଶ୍ଚୟ ବୟସର ରୋଗ—!

( ଦୀର୍ଘନିଃଶ୍ୱାସ ତ୍ୟାଗକଲେ )

କୃଷ୍ଣା—ଭାବୁଚ ଏତେ କ'ଣ, ବାବା ? ମୁଁ କ'ଣ ସହଜେ ଛାଡୁଚି ?

( ସେହିପରି ହସୁ ହସୁ ପ୍ରତାପଙ୍କ ହାତ ଧରି ଟାଣି ନେଇ ଗଲେ )

[ ମୁକୁନ୍ଦ ଓ ସମରେନ୍ଦ୍ରର ପ୍ରବେଶ ]

ମୁକୁନ୍ଦ—ସମରେନ୍ଦ୍ର ! ଭାଇ ! ତୋ'ର ଯୋଗୁଁ ଆଜ ମୁଁ ମୁକ୍ତ ବନ୍ଦୀ ସିନା ।

ସମରେନ୍ଦ୍ର—ଦୈବ ସହାୟ, ଭାଇ—ଆଜ୍ଞ, ଯଦିବା ମୋ'ର ଯୋଗୁଁ ହୋଇଥାଏ ଭାଇ, ନିଜର ଶିକ୍ଷା ଦାନର ପ୍ରତିଦାନ ଦେଖି ନିଜେ ଆଶ୍ଚର୍ଯ୍ୟ ବୋଧ କରୁନାହଁ କି ?

ମୁକୁନ୍ଦ—ମୋ'ର ଗୋଟାଏ ମହାଶିକ୍ଷା ଆଜି ଲାଭ ହୋଇଛି, ଭାଇ—ଭାଗ୍ୟ ଯେ କେତେବେଳେ କା'କୁ କଣ କରେ, ତା' ଆଗରୁଁ ବୁଝିବା ଦୁରୂହ ।

ସମରେନ୍ଦ୍ର—କିନ୍ତୁ ମୁଁ ବୁଝିଛି, ଭାଇ—ସବୁ ସଂସର୍ଗର ପ୍ରଭାବ—ସେହି ଦୁଷ୍ଟା ରମ୍ଭାର ସଂସର୍ଗ ଦୋଷରେ ସିନା—

ମୁକୁନ୍ଦ—ଠିକ୍ କହୁଛୁ ଭାଇ—ସଂସର୍ଗର ପ୍ରଭାବ ! ( ସ୍ୱଗତ ) ମୁକ୍ତା !—ମୁକ୍ତା ! ତୁମ୍ଭର ସଂସର୍ଗ ଗୁଣରେ ସିନା ମୁଁ ଏପର୍ଯ୍ୟନ୍ତ ମୋ'ର ମର୍ଯ୍ୟାଦା ରକ୍ଷା କରିବାକୁ ସମର୍ଥ ହୋଇଛି !—ମୁକ୍ତା ! ମୁକ୍ତା ! ମୋ'ର ଜୀବନମରଣେ ହୃଦୟର ସମୁଜ୍ଜ୍ୱଳ ମୁକ୍ତା ! ( ଊର୍ଦ୍ଧ୍ୱକୁ ଏକ ଉଜ୍ଜ୍ୱଳ ଦୃଷ୍ଟିରେ ଚାହିଁ ରହିଲେ )

ସମରେନ୍ଦ୍ର—ମହାରାଜ ଏଣେ ଆସୁଛନ୍ତି, ଭାଇ !

ମୁକୁନ୍ଦ—ଅନନ୍ତସିଂହ ଯେ ! କଟକରୁ ହଠାତ୍ ଆଗମନର କାରଣ ?

ସମରେନ୍ଦ୍ର—ଯଥାଶୀଘ୍ର ଆସିବାପାଇଁ ରାଜାଦେଶରେ ସ୍ୱତନ୍ତ୍ରଭାବେ ଦୂତ ପଠା ହୋଇଥିଲା ଯେ !—

ମୁକୁନ୍ଦ—ମୋ'ର ବନ୍ଦୀହେବା ଯୋଗୁଁ ପରା ?—

[ ଶଶବ୍ୟସ୍ତେ ପ୍ରତାପରୁଦ୍ରଦେବ ଓ ଅନନ୍ତସିଂହଙ୍କ ପ୍ରବେଶ ମୁକୁନ୍ଦ ଓ ସମରେନ୍ଦ୍ର ଅଭିବାଦନ କଲେ ]

ପ୍ରତାପ—ଅନନ୍ତ ! ଆଉ ବିଳମ୍ବ ନୁହେଁ—ଆଜ—ଏହିକ୍ଷଣି—ତୁମ୍ଭ ସଙ୍ଗେ ମୁଁ ଏକମତ—ନିଶ୍ଚୟ ସେ ପ୍ରେମୋନ୍ମାଦନା—ଏହି ଯେ ମୁକୁନ୍ଦ—ମୁକୁନ୍ଦ ! ତୁମ୍ଭେ ମୋ' ଶିବିରକୁ ଯାଇ ଅପେକ୍ଷା କର !

[ ମୁକୁନ୍ଦ ଓ ସମରେନ୍ଦ୍ର ପ୍ରସ୍ଥାନ କଲେ ]

ଓଃ—ନରପିଶାଚ ପୁଣି ସନ୍ଧି ପ୍ରସ୍ତାବ ପଠାଇ-ଥିଲା, କୁତ୍ସାର ସହିତ ବିବାହକୁ, ଗୋଟିଏ ଏବଂ ଏକମାତ୍ର ସନ୍ଧିସର୍ତ୍ତ କରି—କୁତ୍ସିତ୍ ! ଯୁଦ୍ଧାନଳରେ ମୋର ଯଥା ସର୍ବସ୍ୱ—ମୋ'ର ରାଜ୍ୟର ଯଥା ସର୍ବସ୍ୱ ଅବଲୀଳାରେ ବରଂ ଆହୁତି ପ୍ରଦାନ କରି ପାରେ, ମାତ୍ର ତୋ ପରି ପିଶାଚ ହସ୍ତରେ କନ୍ୟା ସମର୍ପଣ—ଅସମ୍ଭବ, ଅସମ୍ଭବ ! ଅନନ୍ତ ! ଆଉ ବିଳମ୍ବ ନୁହେଁ—ଶୀଘ୍ର ବିବାହର ଆୟୋଜନ କର—କନ୍ୟାର ଅଭିଳାଷ ପୂର୍ଣ୍ଣ ହେଉ—ମୁଁ ମଧ୍ୟ ନିଶ୍ଚିନ୍ତ ହୁଏ ।

( ବେଗେ ପ୍ରସ୍ଥାନ କଲେ )

ଅନନ୍ତ—ପୂର୍ଣ୍ଣମନସ୍କାମ ଏତେଦିନେ ମୁହିଁ—ଚୂର୍ଣ୍ଣ ବାଧାବିଘ୍ନ ଯେତେ—ମୁକ୍ତ ପ୍ରେମବିହଙ୍ଗମ ଅନନ୍ତର ବକ୍ଷେ ।

[ ମୁକୁନ୍ଦ ଶଶବ୍ୟସ୍ତେ ପୁନର୍ବାର ପ୍ରବେଶ କଲେ ]

ମୁକୁନ୍ଦ—ଭାଇ ! ଭାଇ ! ରକ୍ଷା କର—ରକ୍ଷା କର—ବଞ୍ଚାଅ—ବଞ୍ଚାଅ ଏ' ଅଧମକୁ ! ଓଃ—ଏ'ପାପ ପ୍ରାଣ ମୁଁ ଧାରଣ କରି ରହିଛି କିପରି ?—ହାୟ ! ଯେଉଁ ଶତ୍ରୁ ତା'ର ବିଜୟ ପଥରେ ପ୍ରଧାନ କଣ୍ଟକ ମନେ କରି, ମୋତେ ଉତ୍ପାଟିତ କରିବାକୁ ବସିଥିଲା, ସେ ବା ହଠାତ୍ ବନ୍ଦୀ ମୁକ୍ତ କଲା କାହିଁକି, ବିନା ଯୁଦ୍ଧରେ ?—କ'ଣ ଏହି ଜୀବନ୍ମୃତ୍ୟୁ ଯନ୍ତ୍ରଣା ମୁଁ ଭୋଗ କରିବି ବୋଲି—ତିଳେ—ତିଳେ—ପଳେ—ପଳେ—? ଭାଇ ! ଭାଇ ! ସହାୟ ହୁଅ ମୋର—ଏ' ବିବାହ-ଗ୍ରାସରୁ ମୋତେ ରକ୍ଷାକର—!

ଅନନ୍ତ—ମୁକୁନ୍ଦ ! ଭାବ ଦେଖ—ଏହି ଅମୂଲ୍ୟ ସମୟଟା କ'ଣ ବୃଥାରେ—ଅସାର ଚିନ୍ତାରେ କେବଳ ଅତିବାହିତ କରିଦେବା ଉଚିତ ?—ସାରା ଜୀବନଟାକୁ ଗୋଟାଏ ସୁସ୍ଥ ମନୁଷ୍ୟୋଚିତଭାବରେ ପରିଣତ କରିଦେବ ସିନା !—

ଯେତେ ଗୌରବମୟ ହେଲେ ମଧ୍ୟ ଅତୀତ,
ଅତୀତ—ଅତୀତର ଶବାଳିଙ୍ଗନରେ ଉନ୍ମତ୍ତ
ହୋଇ ବର୍ତ୍ତମାନକୁ ଉପେକ୍ଷା କରଦିଅ ନାହିଁ,
ଭାଇ !—ପ୍ରତି-ମୁହୂର୍ତ୍ତ, ଭବିଷ୍ୟତ୍ ଚିନ୍ତା—
ସାର ଭବିଷ୍ୟତ୍ ଚିନ୍ତା !

ମୁକୁନ୍ଦ—ଭାଇ ! ଭାଇ ! ମୋ'ର ଭବିଷ୍ୟତ୍‌ଚିନ୍ତା—
ମୁକ୍ତି—ମୁକ୍ତି !! —ମୋ'ର ବର୍ତ୍ତମାନର ଚିନ୍ତା
'ମୁକ୍ତି'—ମୋର ଅତୀତର ଚିନ୍ତା 'ମୁକ୍ତି'—ସେ
ଯେ ମୋ'ର ହୃଦୟର ମୁକ୍ତି—ଜୀବନର ମୁକ୍ତି
—ମରଣର ମୁକ୍ତି ! ଭାଇ ! ଭାଇ ! କାଢ଼ି ନିଅ
ନାହିଁ, ଭାଇ—ବଞ୍ଚିତ କର ନାହିଁ, ଭାଇ—
ମୋ'ର ସେହି ଅମୂଲ୍ୟ ମୁକ୍ତି—ଜୀବନ ମରଣର
ମୁକ୍ତି—ବରଂ, ସାହାଯ୍ୟ କର, ଭାଇ—
ଜ୍ୟୋତରେ ତା'ର—ପବିତ୍ର ସ୍ମୃତିରେ ତା'ର,
ଜୀବନମରଣ ମୋ'ର ପବିତ୍ର, ଜ୍ୟୋତିର୍ମୟ
କରିବାକୁ ଦିଅ, ଭାଇ !

ଅନନ୍ତ—କିନ୍ତୁ ଏହି ସ୍ମୃତିର ସାରତ୍ୱ କେତେ ଭଲା ?
—କେତେଦିନ ବା ସ୍ଥାୟୀ ?—ତା'ତ ବିଚାର
କରିବା ଉଚିତ ।

ମୁକୁନ୍ଦ—ଭାଇ ! ଭାଇ ! ହାତ ଧରୁଛି—ଉର୍ଦ୍ଧ୍ୱ କର,
ଉର୍ଦ୍ଧ୍ୱବହୁଳି'ତ ହୃଦୟର ମର୍ଯ୍ୟାଦା ନଷ୍ଟ କର ନାହିଁ
—ମୋତେ ବରଂ ବିଦାୟ ଦିଅ, ଭାଇ—ଚିର
ବିଦାୟ—( ଗମ୍ଭୀରଭାବେ ଯେତେବେଳେ ପ୍ରସ୍ଥାନୋ-
ଦ୍ୟତ ହେଲେ )

ଅନନ୍ତ—ମୁକୁନ୍ଦ !

ମୁକୁନ୍ଦ—ଭାଇ !

ଅନନ୍ତ—କଥା ମାନ—ଏହି ଦୁର୍ବଳତାଟା ଛାଡ଼,
ଫିଙ୍ଗିଦିଅ—ଅସମ୍ମତ ହୁଅ ନାହିଁ—ମୋ'ର
ଅନୁରୋଧ—ମୋ'ର ପ୍ରାର୍ଥନା—

ମୁକୁନ୍ଦ—ଭାଇ ! ଭାଇ ! ( ଅନୁନୟ କରିବାକୁ ଯାଇ,
କେଉଁ ଅବେଗଭରେ ବେଗେ ପଳାଇ
ଯାଉଥିଲେ )

ଅନନ୍ତ—( ବାଧାଦେଇ ) ଶୁଣ—ତୁମ୍ଭେ ବିବାହ
କରିବାକୁ ବାଧ୍ୟ—

ମୁକୁନ୍ଦ—'ବାଧ୍ୟ' !—ବାଧ୍ୟ ଯେବେ—ବାଧ୍ୟ ଏହି
ପ୍ରାଣ-ଶୂନ୍ୟ ପିଣ୍ଡ ମମ—ପାଳିବାକୁ ନିର୍ଦ୍ଦେଶ
ତୁମ୍ଭର ! ( କହୁ କହୁ ଆତ୍ମହତ୍ୟା କରିବାକୁ
ଉଦ୍ୟତ ହେଲେ ପରି )

ଅନନ୍ତ—( ବାଧା ଦେଇ ) ହାଃ ହାଃ ହାଃ—ମୁକୁନ୍ଦ !
ଏତେ ସହଜେ ଆପଣାକୁ ମୁକ୍ତ କରିପାରିବ
କି—ମୋ'ଠାରେ ଆବଦ୍ଧ ସେହି ପ୍ରତିଜ୍ଞା ପାଶରୁ
ମୁକ୍ତ ହୋଇ ନ ପାର ?

ମୁକୁନ୍ଦ—ପ୍ରତିଜ୍ଞା !—କି ପ୍ରତିଜ୍ଞା ମୋର !—

ଅନନ୍ତ—( ହସି ) ଏତେ ଶୀଘ୍ର ଭୁଲିଗଲ ନା ?—
ସମରେନ୍ଦ୍ରକୁ ନାମ କରାଇ ଦେଲେ—ହାଃ ହାଃ—

ମୁକୁନ୍ଦ—ଭାଇ ! ଭାଇ !—( ମୂର୍ଚ୍ଛିତ ପ୍ରାୟ ହେଲେ )

ଅନନ୍ତ—ମୁକୁନ୍ଦ ! ବୀର ତୁମ୍ଭେ—ମନୁଷ୍ୟ ତୁମ୍ଭେ—
ମନୁଷ୍ୟର କାର୍ଯ୍ୟ କର—ବୀରର କାର୍ଯ୍ୟ କର—

ମୁକୁନ୍ଦ—( ଝଞ୍ଜା ଲଭିକରି ଯେମନ୍ତ ) ମୁକ୍ତି ! ମୁକ୍ତି !
—ମୁକ୍ତ କର ଦ୍ୱାର—ମୁକ୍ତ କର ମୋତେ—
( ଛିନ୍ନବନ୍ଧନ ବନ୍ଦୀ ଭଳି ରକ୍ଷୀ ଭୟରେ
ପଳାଉଥିଲେ ଓ ଅନନ୍ତ ଅନୁସରଣ କରୁଥିଲେ
ଠିକ୍ ପ୍ରହରୀପରି । )

[ ଫୁଲହାରଶୋଭିତା କୃଷ୍ଣା ଗୋଟିଏ
ହାରଧରି ପ୍ରତାପରୁଦ୍ର ଦେବଙ୍କ ସଙ୍ଗେ ପ୍ରବେଶ
କଲେ ]

କୃଷ୍ଣା—( ହସୁ ହସୁ ) ଏତେ ବିଳମ୍ବରେ ପିତା
ଏ'ଗ୍ରୋଗ ଚଢ଼ିଲେ, ବାବା—ଭାଗ୍ୟକୁ ଅନନ୍ତ
ଭାଇ ଆସି ନ ଥିଲେ, ଆହୁରି ବିଳମ୍ବ ବୋଧ-
ହୁଏ—

ପ୍ରତାପ—କୃଷ୍ଣା, କୃଷ୍ଣା—ଝିଅଏ ହୋଇ କଣ ଲାଜ
ସରମ କି ତୋ'ର ନାହିଁ—ତୋ ବାପ ସଙ୍ଗେ
କି—

କୃଷ୍ଣା—ସତ କଥା କ'ଣ ତେବେ କହିବ ନାହିଁ,
ବାବା ?—ବେଶ ଏଣିକି ମନା କର ଦିଅ, ଆଉ
କେବେ—

ପ୍ରତାପ—ତୋ ବାପର କଥା ତେବେ କ'ଣ—

କୃଷ୍ଣା—ଶୁଣିବି, ଶୁଣିବି, ବାପା—କିନ୍ତୁ ବେଳେ ବେଳେ ଶୁଣିବି ନାହିଁ—ବାବା, ବାବା—ଏତେ ଅତ୍ୟାଚାର—ଏତେ ରକ୍ତପାତ—

ପ୍ରତାପ—ଲୁଚିଛି, ଲୁଚିଛି, ମା—ଏହି ଯୁଦ୍ଧ ଦେଖିବା ଦ୍ୱାରା ହିଁ—

କୃଷ୍ଣା—ମୋ'ର ମନ ଖରିଉଛି—ହାଃ ହାଃ ହାଃ—କଟକର ଯୁଦ୍ଧକୁ ବଳିଯିବନା ଆରେ ? ଶତ୍ରୁ-କବଳରେ ପଡ଼ି, ମୋତେ ଯେତେବେଳେ—ନା, ନା, ପିତା ଏ' ଯୁଦ୍ଧ ସ୍ୱାଷଣୋତମ—ଏହାର ତୁଳନା ନାହିଁ—ତୁଳନା ନାହିଁ—

( କେଉଁ ଆତଙ୍କରେଯେପରି ପଳାଇ ଗଲେ )

ପ୍ରତାପ—କୃଷ୍ଣା—କୃଷ୍ଣା—ଓଃ, କନ୍ୟା ମୋର ଏତେ ବିଚଳିତା !—ହେବାର କଥା—ରକ୍ତପାତ ଦର୍ଶନରେ, ବିଶେଷତଃ ନିଜର ପ୍ରଜାମାନଙ୍କର, କିଏ ବିଚଳିତ ନ ହେବ ?—କିନ୍ତୁ ଶତ୍ରୁର ଏତେ ଅତ୍ୟାଚାର କାହାର ଦୋଷରୁ ?—ମୋହ'ର ନୁହେଁ କି ? ରାମାନନ୍ଦ ! ରାମାନନ୍ଦ ! ଏଥିସକାଶେ ତୁମ୍ଭେର ଦାୟୀ—ତୁମ୍ଭର ଧର୍ମୋପଦେଶ ମୋତେ ଆଜି ଶିଥିଳ କରି ଦେବାରୁ ଶତ୍ରୁ ସୁବିଧା ପାଇ ଗଲା ସିନା—ମୋତେ, ସେହି ଅପ୍ରତିହତ ପ୍ରତାପକୁ ପୁଣି ବନ୍ଦୀ କରିବାକୁ ଷମହେଲା ସିନା—ପ୍ରତାପ ! ପ୍ରତାପ ! ଉଠ, ଉଠ—ଭୈରବ ହୁଙ୍କାରରେ ଥରେ, ତୋ'ର ସେହି ପୂର୍ବ ବଳ-ବୀର୍ଯ୍ୟ-ମାହାତ୍ମ୍ୟ ଘେନି ସମର-କ୍ଷେତ୍ରରେ ପ୍ରବେଶ କର—କୃଷ୍ଣାର ଦୁଃଖ କେଉଁଆଡ଼େ ମୋଡ଼ି ଉଡ଼ିଯିବ ! ରାମାନନ୍ଦ ! ରାମାନନ୍ଦ ! ଏ' ମିଥ୍ୟାକଥା—ପ୍ରେମଦ୍ୱାରା ଦୁଷ୍ଟର ଦମନ—ଅସମ୍ଭବ— ( ପ୍ରସ୍ଥାନ କଲାବେଳେ—ଏହି ସମୟରେ ବରବେଶଧାରୀ ମୁକୁନ୍ଦ ପ୍ରବେଶ କଲେ, କେତେକ ପାରିଷଦ ସଙ୍ଗେ) ଆସ, ଆସ ମୁକୁନ୍ଦ—ବୀରସନ୍ତାନ—ଏ' ମୋର ପ୍ରାଣରକ୍ଷାର ପୁରସ୍କାର—ରାଜ ପୁରସ୍କାର—ଉପେକ୍ଷା କରି, ମର୍ଯ୍ୟାଦା ନଷ୍ଟ କରି ପାରିବ ନାହିଁ ।

ମୁକୁନ୍ଦ—( ସ୍ୱଗତ ) ମର୍ଯ୍ୟାଦା !—ମର୍ଯ୍ୟାଦା !—ମୁକ୍ତା !—ମୁକ୍ତା !—

[ ମୁକୁନ୍ଦ ଯେପରି କ୍ଷୁର୍ଣ୍ଣ କ୍ଷୁବ୍ଧଚିତ୍ତ ମନରେ ଗୋଟାଏ କୋଣରେ ଯାଇ ଠିଆ ହେଲେ ]

[ ନେପଥ୍ୟେ, ଦୂରରେ ବିବାହ ବାଦ୍ୟ ଶୁଣାଗଲା ]

ପ୍ରତାପ—ଅନନ୍ତ ! ଅନନ୍ତ ! କାହିଁ ସେ—ବାଜା ଅଣାଇଲା କିଏ—ଗୋପନରେ ଏ' କାର୍ଯ୍ୟ ସମ୍ପନ୍ନ ହେବା ଉଚିତ ଥିଲା—ଶୀଘ୍ର—ଶୀଘ୍ର ଯାଅ—ବନ୍ଦ କରାଅ—ବନ୍ଦ—

[ କନ୍ୟାବେଶୀ କୃଷ୍ଣା ବେଗେ ପ୍ରବେଶ କଲେ ]

କୃଷ୍ଣା—ବନ୍ଦ କାହିଁକି କରାଇବ, ବାବା—ମୋର ବିବାହ—ରାଜକୁମାରୀ ବିବାହ—ଆନନ୍ଦୋତ୍ସବ ହେବନାହିଁ କିପରି ? ( କିନ୍ତୁ କେଉଁ ଆବେଗ ସମ୍ଭାଳି ନ ପାରି ଯେମନ୍ତ ପିତାଙ୍କ କୁଣ୍ଢାଇ ମୁଣ୍ଡାଇ କାନ୍ଦି ପକାଇଲେ )

ପ୍ରତାପ—କୃଷ୍ଣା—କୃଷ୍ଣା—( କାନ୍ଦିପକାଇଲେ ) ମା ! ମା ! ମନରେ କିଛି କଷ୍ଟ କର ନାହିଁ, ମା—ଯୁଦ୍ଧ ଶେଷ ହେଲାକ୍ଷଣି ମହାସମାରୋହରେ ଉତ୍ସବ ନିଶ୍ଚେ ମୁଁ କରାଇବି, ମା—

କୃଷ୍ଣା—( ସମ୍ଭାଳି ନେଇସାରି ଯେମନ୍ତ ) ସେପରି ବାହ୍ୟିକ ଉତ୍ସବରେ କି ପ୍ରୟୋଜନ, ବାବା ?—ପ୍ରଜାର, ସୁଖସାନ୍ତି—ଦେଶର ସୁଖଶାନ୍ତି—ଆମ୍ଭର ପ୍ରଧାନ ଉତ୍ସବ ନୁହେଁ କି ? ( ମୁକୁନ୍ଦ ନିକଟକୁ ଦୌଡ଼ିଯାଇ ) ଏପରି କ୍ଷୁର୍ଣ୍ଣମନରେ ଠିଆହୋଇଛ କିପରି, ବୀର ?—ଆଜି ଯେ ବିବାହ—ଆନନ୍ଦ କର—ନୃତ୍ୟ କର—( ଗୋଟାଏ ରୁଦ୍ଧାବେଗ ଝର ଝର ହୋଇ ନେତ୍ରକଧାରରେ ବହିଗଲା ଯେପରି )

ପ୍ରତାପ—ମା, ମା—( କୃଷ୍ଣା ଆଡ଼େ ସବିସ୍ମୟେ ଚାହିଁଲେ )—ଏ' କଣ—ଏକି କୋଳାହଳ—ଏତେ ବାଦ୍ୟଧ୍ୱନି—!

କୃଷ୍ଣା—ମୋର—ମୋର ବିବାହ ବାଦ୍ୟ, ବାବା—

[ ସହସା ଅନନ୍ତ ଓ କୃଷ୍ଣରାୟ ପରସ୍ପରକୁ 'କୃତଘ୍ନ—ପିଶାଚ' ଆଦି କହି କହି ଓ ଯୁଦ୍ଧ କରୁ କରୁ ପ୍ରବେଶ କଲେ ]

କୃଷ୍ଣରାୟ—ନିମନ୍ତ୍ରଣ କରି ଏତେଦୂର ଅପମାନ !—ଏହି ସେ ରାଜା !—ଛି, ଛି ଲଜ୍ଜାନାହିଁ—ନିଜର କନ୍ୟାକୁ ପଠାଇ—

ପ୍ରତାପ—ସଂଯତ କର ରସନା ତୋ'ର, ନରାଧମ—

[ ଅସି ଘେନି ଆସିଲେ ]

ଅନନ୍ତ—ପିଶାଚ—(ବଧ କରିବାକୁ ଉଦ୍ୟତ ହେଲେ)

କୃଷ୍ଣା—( ହସି ହସି ) ନିରସ୍ତ୍ର ହୁଅ ଅନନ୍ତ ଭାଇ—ବନ୍ଧୁଜନ ପ୍ରତି ଏପରି ବ୍ୟବହାର କି ଉଚିତ—ପିତା ! ଜାମାତାଙ୍କୁ ତୁମ୍ଭର ବରଣ କରି ଘେନି-ଆସିବ ନାହିଁ ?—

ଅନନ୍ତ ଓ ପ୍ରତାପ—କୃଷ୍ଣା—କୃଷ୍ଣା—

କୃଷ୍ଣା—( କୃଷ୍ଣରାୟ ପ୍ରତି ) ସମ୍ମାନ ପ୍ରଦର୍ଶନରେ ତ୍ରୁଟି ଘଟିଚି, ବନ୍ଧୁ—କିନ୍ତୁ ପ୍ରଣୟ ଖାତିରରେ କ'ଣ କ୍ଷମାକରିବ ନାହିଁ ?—( କହୁ କହୁ ଆପଣାର ମୁଦି କୃଷ୍ଣରାୟଙ୍କ ଅଙ୍ଗୁଳିରେ ପିନ୍ଧାଇ ଦେଲେ ) —ଆସ, ନାଥ ପିତାଙ୍କର ପଦେ ପ୍ରଣାମ କରି ଆଶୀର୍ବାଦ କାମନା କରିବା, ଆସ ( କୃଷ୍ଣରାୟ ବିସ୍ମୟରେ ଅବାକ୍ ହୋଇ ଯାଇଥିଲେ—କୃଷ୍ଣାଙ୍କ ଆକର୍ଷଣରେ ଯନ୍ତ୍ରଚାଳିତ ପରି ଯାଇ, ଯୁଗଳରେ ପ୍ରତାପ ରୁଦ୍ରଦେବଙ୍କର ଚରଣ ବନ୍ଦନା କଲେ ଯେମନ୍ତ )

ପ୍ରତାପ—ଅନନ୍ତ ! ମୁକୁନ୍ଦ ! ମୋତେ ଧର—ମୁଁ ଯେ—

[ ଅନନ୍ତ ପ୍ରତାପଙ୍କୁ ଧାରଣ କଲେ ଓ ମୁକୁନ୍ଦ ଆସି ପାର୍ଶ୍ୱରେ ଠିଆ ହେଲେ ]

କୃଷ୍ଣା—ପିତା ! ପିତା ! ଧୃଷ୍ଟତା ବା ଦୁର୍ବଳତା, ଯା କୁହ, କନ୍ୟାକୁ ମାର୍ଜନା କର, ପିତା—( କୃଷ୍ଣରାୟଙ୍କୁ କେଉଁ ଘୃଣାସୂଚକ ଦୃଷ୍ଟିରେ ଚାହିଁ ) ଏହି ଘୃଣିତ ଶତ୍ରୁର ନୃଶଂସତା, ନିରୀହ ପ୍ରଜାଙ୍କର କାତରତା, ସହ୍ୟ କରି ନ ପାରି, ଶେଷରେ ବନ୍ଦୀମାନଙ୍କର ପ୍ରାଣନାଶ ଆଶଙ୍କା କରି, କାଲି, ଗୋପନରେ, ଶତ୍ରୁ ଶିବିରକୁ ଏକାକିନୀ ଯାଇ, ତାଙ୍କର ପ୍ରେରିତ ସନ୍ଧି ପ୍ରସ୍ତାବରେ ରାଜ-ପ୍ରତିଭୂରୂପେ ସମ୍ମତି ଦେଇ ଆସିଥିଲି, ବାବା—କେତେକ ନୁହେଁ, ଏହିପରି ଭାବରେ ଆସିବାକୁ ମଧ୍ୟ ଅନୁନୟ କରି ଆସିଥିଲି । ପିତା ! ପିତା ! ଏହି ଛାର ରକ୍ତମାଂସ ବିନିମୟରେ ଯଦି ଦେଶ ଶାନ୍ତି ଲାଭକରେ, ତା' ଠାରୁ ବଳି ଆନନ୍ଦର ବିଷୟ କଣ ଅଛି, ପିତା ? ଭାଇ ! ଭାଇ ! ତ୍ୟାଗର ମହତ୍ତ୍ୱସୁଖ କ'ଣ ତୁମେଇ ଏକା ଭୋଗ କରିବ—ମୁକୁନ୍ଦ ! ସେନାପତେ ! ମର୍ଯ୍ୟାଦାର ଉଜ୍ଜ୍ୱଳ ମୁକୁଟ କ'ଣ ତୁମେଇ ଏକା ପିନ୍ଧିବ ?

କୃଷ୍ଣରାୟ—ଏ' କଣ ଦେଖୁଛି—ଶୁଣୁଛି—

ପ୍ରତାପ—କୃଷ୍ଣା—କୃଷ୍ଣା ମୋର !—

ଅନନ୍ତ—ଦେବୀ !—ଦେବୀ !—(ମନେମନେ ଯେମନ୍ତ ସାଷ୍ଟାଙ୍ଗ ପ୍ରଣିପାତ କଲେ )

ମୁକୁନ୍ଦ—ସେହି ଦେବୀଙ୍କର ଚରଣ ବନ୍ଦନା କରିବାକୁ ଦିଅ, ଭାଇ—( ସତେ ସତେ ପ୍ରଣିପାତ କରିବାକୁ ଯାଉଥିଲେ )

କୃଷ୍ଣା—( ବାଧାଦେଇ ) ନା, ନା, ଭାଇ, ଦେବୀ ତବ ଦିବ୍ୟ ଧାମେ ଏହି ( ଊର୍ଦ୍ଧ୍ୱକୁ ଦେଖାଇଲେ ) ମୁକ୍ତା ! ମୁକ୍ତା ! ମୁକ୍ତ ସିନା ପ୍ରେମ-ଧାରା ବିଶ୍ୱେ, ପ୍ରେମ-ରକ୍ତେ ତବ—

କୃଷ୍ଣରାୟ—କିନ୍ତୁ ହେ ଗୌରବମୟି ! ମୁକ୍ତ ଆଜି ଅନ୍ଧର ନୟନ—ମୁକ୍ତ ପାଷାଣର ବକ୍ଷ—ତବ ଗୌରବ ପରଶେ ! ଧନ୍ୟ, ଧନ୍ୟ, ତୁମ୍ଭେ "ଉତ୍କଳ-ଗୌରବ !!"

ପ୍ରତାପ—ନା, ନା, ପୁଣି—କନ୍ୟା ଯେ ମୋ'ର ବିଶ୍ୱର ଗୌରବ ! ରାମାନନ୍ଦ ! ରାମାନନ୍ଦ ! ତୁମ୍ଭର ଚୈତନ୍ୟଦେବ, ଜଗାଇ, ମାଧାଇପ୍ରସଙ୍ଗ ଅତିମାନବ-କଳ୍ପନା ନୁହେଁ ତ—? ଏ' ଯେ ବାସ୍ତବ—ବାସ୍ତବରେ ଦେଖିଅଛି ମୁହିଁ—ଏକାଠାରେ, ରକ୍ତମାଂସ ଦେହେ !

—ଯବନିକା—

# ଭୂମିକା

ବରେଣ୍ୟ କବିଙ୍କର 'ନନ୍ଦକେଶରୀ'ରେ ଉତ୍କଳ-ସମ୍ରାଟଙ୍କର ଗୁଣବତୀ କନ୍ୟା ନନ୍ଦକାର ଚରିତ୍ର ଚିତ୍ରଣ ଇତିହାସର କଳଙ୍କ ଓଡ଼ିଆ ବୁକୁରେ ଏହା ଦାରୁଣ ଆଘାତ ଦିଏ ।

ସେତେବେଳର ପାରିପାର୍ଶ୍ୱିକ ଅବସ୍ଥା ବିଶ୍ଳେଷଣ କରି ମୁଁ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛି ତାହାହିଁ 'କେଶରୀ-ଗଙ୍ଗ' ନାଟକରେ ରାଜଜେମା ନନ୍ଦକାର ପ୍ରକୃତ ରୂପ ବୋଲି ପାଠକ ଓ ଦର୍ଶକଙ୍କୁ ନିବେଦନ କରୁଛି । ଦେଶ ସକାଶେ ଜାତି ସକାଶେ ନନ୍ଦକାର ତ୍ୟାଗ-ପୂତ-ଦାନ ପ୍ରକୃତରେ ଅତୁଳନୀୟ ।

ବିନୀତ
ଲେଖକ

---

# ଚରିତ୍ର ଲିପି

ସୁବର୍ଣ୍ଣକେଶରୀ ... ... ଉତ୍କଳ ସମ୍ରାଟ
ବାସୁଦେବ ... ... ଉତ୍କଳ ମନ୍ତ୍ରୀ
ବୀରେନ୍ଦ୍ର ... ... ଉତ୍କଳ ସେନାପତି
ଗୌରଗଙ୍ଗ ... ... କର୍ଣ୍ଣାଟ-ଅଧୀଶ୍ୱର

ପାରିଷଦଗଣ, ଋଷୀ, ଦୂତ, ଦ୍ୱାରୀ, ଉତ୍କଳ ସୈନିକଗଣ, ଗୁପ୍ତଚର, କର୍ଣ୍ଣାଟ ସୈନିକଗଣ, କର୍ଣ୍ଣାଟ ସେନାପତି, କର୍ଣ୍ଣାଟ ମନ୍ତ୍ରୀ ଇତ୍ୟାଦି ।

ନନ୍ଦକା ... ... ସୁବର୍ଣ୍ଣକେଶରୀଙ୍କର କନ୍ୟା
ଶାରଦା ... ... ବାସୁଦେବଙ୍କର କନ୍ୟା
ସୁଭଦ୍ରା ... ... ଗୌରଗଙ୍ଗଙ୍କର ମାତା
ବୈଷ୍ଣବୀ ... ... ଛଦ୍ମବେଶିନୀ ଶାରଦା
ଚମ୍ପା ... ... ନନ୍ଦକାର ସହଚରୀ

ସଖୀଗଣ ଇତ୍ୟାଦି ।

---

# କେଶରୀ-ଗଙ୍ଗ

---

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ଓଡ଼ିଶାର ରାଜସଭା—

[ ନନ୍ଦକାର ଜନ୍ମଦନ ଉପଲକ୍ଷେ ରାଜକାର୍ଯ୍ୟ ବନ୍ଦଥିବାରୁ କେତେକଜଣ ରାଜାନୁଗ୍ରହପ୍ରାର୍ଥୀ ତୋଷାମୋଦକାରୀ ସହିତ ମହାରାଜ ସୁବର୍ଣ୍ଣ-କେଶରୀ ଆସୀନ ]

ସୁବର୍ଣ୍ଣ—ଆଜ ମୋର କନ୍ୟାର ଜନ୍ମଦନ, ଆଜ ମହୋତ୍ସବର ଦନ ।

୧ମ ତୋଷା—ଏହି ଯେ ସ୍ତୋତୃଗଣ ମହୋତ୍ସବରେ ମହାରାଜାଙ୍କ ସ୍ତୁତିଗୀତ ଗାଇଗାଇ ଏଣେ ଆସୁଛନ୍ତି,

—ଗୀତ—

( ଅଜ )  କେଶରୀ କୁଳ ମଣ୍ଡନ
କେଶରୀ କୁଳଭୂଷଣ
ଜୟି ଉତ୍କଳଗଗନ
ଭାତରେ ସୁଖ କାରଣ ।
ଗାଅ ହେ ଜୟଗାନ, ବନ୍ଦ ହେ ଶ୍ରୀଚରଣ ॥
ଦବ୍ୟଜ୍ୟୋତି ଜାଲେ ହେର, ପଳାୟିତ ଅନ୍ଧକାର—
ଶ୍ୟାମଳାଭ ଅନୁର୍ବର, ଫଳ ଫୁଲେ ପୂର୍ଣ୍ଣାଗାର ॥
ସେହି ହେ ଦୀନ ତାରଣ, ସେହି ହେ ଭୟ ବାରଣ
ଗାଅ ହେ ଜୟଗାନ, ବନ୍ଦ ହେ ଶ୍ରୀଚରଣ ॥
ବୀରଦର୍ପ ଦାପେ ପୁଣ ନର୍ଜିତ ଅଶ୍ରିତଗଣ;
ହରିତ ତାପ କାରଣ, ଆନନ୍ଦେ ଭରା ଭୁବନ ॥
ସେହି ହେ ଶିଷ୍ଟ ପାଳନ, ସେହି ହେ ଦୁଷ୍ଟ ଦମନ
ଗାଅ ହେ ଜୟଗାନ, ବନ୍ଦ ହେ ଶ୍ରୀଚରଣ ॥

ତୋଷା—ବନ୍ଦ କଲ କାହିଁକି ? ଆହୁରି ଗାଅ ।

ସୁବର୍ଣ୍ଣ—ଥାଉ ଥାଉ—ଏ'ସବୁ ମୌଖିକ—ଏ'ସବୁ ଭଣ୍ଡାମି ।

୧ମ-ତୋଷା—ଅନ୍ୟ କାହାରି ପାଖରେ ହୋଇପାରେ ମଣିମା ।

୨ୟ-ତୋଷା—ଆମ୍ଭ ନକଟରେ ଯେ ମଣିମା ଙ୍କ ଅମୂଲ୍ୟ-ନଧି—

୧ମ-ତୋଷା—ସହସ୍ର ଜିହ୍ୱାରେ ମଧ ବାସୁକୀ ବର୍ଣ୍ଣନା କରିବାକୁ ଅକ୍ଷମ ।

୨ୟ-ତୋଷା—ବର୍ଣ୍ଣନା କରିବ କଣ ଭାଇ ? କଳ୍ପନାରେ ଆଣିବା ଯେ ଏକାବେଳକେ ଅସମ୍ଭବ ।

ସୁବର୍ଣ୍ଣ—( ସସ୍ମିତେ ) ପ୍ରକୃତରେ ତୁମ୍ଭେମାନେ ମୋତେ ଏତେ ଭଲପାଅ ?

୧ମ-ତୋଷା—ମଣିମା ! ଏ'ପରି ପ୍ରଶ୍ନ ପୁଣି ଆଜ ଶୁଣିବାକୁ ହେଲା ।

୨ୟ-ତୋଷା—ହରି ହରଙ୍କ ମଧ୍ୟରେ ପ୍ରଭେଦ ଘଟିପାରେ—ମାତ୍ର ମଣିମା ଆଉ ଏ' ଅଧିନ ମାନଙ୍କ ମଧ୍ୟରେ ପ୍ରଭେଦ ଘଟିବା ଏକାବେଳକେ ଅସମ୍ଭବ ।

୧ମ-ତୋଷା—ସୃଷ୍ଟି ପ୍ରଳୟ ହୋଇଗଲେ ମଧ ଅସମ୍ଭବ ।

ସୁବର୍ଣ୍ଣ—ଅସମ୍ଭବ—ଅସମ୍ଭବ, ଗୃହ୍ଟୁକାରଟଣ ! ମୋର ନନ୍ଦକା ଛଡ଼ା ଅନ୍ୟ କାହାରି ପକ୍ଷେ ଏତେହିଁ ଭଲ ପାଇବା ଏକାବେଳକେ ଅସମ୍ଭବ ।

ତୋଷା—( ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ) ତା'—ତା'—

[ ବାସୁଦେବଙ୍କର ପ୍ରବେଶ ]

ବାସୁଦେବ—( ପ୍ରଣାମ କରି ) ମହାରାଜ ।

ସୁବର୍ଣ୍ଣ—( ସସ୍ମିତେ ) ଅଚ୍ଛା, ମନ୍ତ୍ରି । ତୁମ୍ଭେ ଭଲ ମୋତେ କେତେଦୂର ଭଲ ପାଅ ?

ବାସୁଦେବ—ବୁଝିପାରିଲି ନାହିଁ, ମହାରାଜ ।

ସୁବର୍ଣ୍ଣ—ତୁମ୍ଭେ ମୋତେ କେତେଦୂର ଭଲପାଅ ?

ବାସୁଦେବ—ଏ’ କି ପ୍ରଶ୍ନ ମହାରାଜ ?

ସୁବର୍ଣ୍ଣ—କାହିଁକି ? ଏଥିରେ ଆଶ୍ଚର୍ଯ୍ୟର ବିଷୟ କଣ ଅଛି ?

ବାସୁଦେବ—( ନୀରବ )

ସୁବର୍ଣ୍ଣ—ମୋତେ ଭଲ ପାଇବା କ’ଣ ଆଶ୍ଚର୍ଯ୍ୟର ବିଷୟ ?

ବାସୁଦେବ—ଏ’ ବିଷୟରେ ପ୍ରଶ୍ନକରିବା ଯେ ଆଶ୍ଚର୍ଯ୍ୟର ବିଷୟ, ମହାରାଜ ।

୧ମ-ତୋଷା—ହେବ ନାହିଁ, ମହାରାଜ । ଯେ ଆଦୌ ଭଲ ନ ପାଏ, କିମ୍ବା ସାମାନ୍ୟ ଭଲ ପାଏ, ତା’ ପକ୍ଷେ ଏ’ପରି ପ୍ରଶ୍ନ ଆଶ୍ଚର୍ଯ୍ୟର ବିଷୟ ହେବ ନାହିଁ ?

ବାସୁଦେବ—( ପ୍ରଥମ ପାରିଷଦପ୍ରତି ଭ୍ରୂକୁଞ୍ଚିତ କରି ) ମହାରାଜ । ସେ ପ୍ରଶ୍ନର ପରେ ମୀମାଂସା ହେବ—ଆଜି ଶୁଭ ଦିନରେ ଗୋଟିଏ ଶୁଭ ସମ୍ବାଦ ଆଗେ ଶ୍ରବଣ କରନ୍ତୁ ।

ସୁବର୍ଣ୍ଣ—କି ଶୁଭ ସମ୍ବାଦ ?

ବାସୁଦେବ—କର୍ଣ୍ଣାଟାଧୀଶ୍ୱର ଭୈରବଗଙ୍ଗ ଦେବ ଦୂତ ପ୍ରେରଣ କରିଅଛନ୍ତି ।

ସୁବର୍ଣ୍ଣ—(ସସ୍ମିତେ) କ’ଣ ଯୁଦ୍ଧାର୍ଥ ? ଓଡ଼ିଶା ଭ୍ରମଣରୁ ଫେରି ଯାଇ ଏ’ଦେଶ ପ୍ରତି ଲୋଭ ବଳିଲି କି ? ଯାହା ହେଉ ଭାରି ଶୁଭ ସମ୍ବାଦ, ମନ୍ତ୍ରି—ସେ ଜାଣିଯା’ନ୍ତୁ ଯେ ସୁବର୍ଣ୍ଣ କେଶରୀ ବୃଦ୍ଧ ହେଲେ ମଧ କେଶରୀ ।

ତୋଷା—ମଣିମା । ନିଶ୍ଚୟ ସେ ବାତୁଳ ।

ବାସୁଦେବ—ଆପଣମାନେ ଟିକିଏ ତୁନି ହେଉନ୍ତୁ, ମହାଶୟଗଣ । ମହାରାଜ । ଏ’ ଯୁଦ୍ଧାର୍ଥ ଦୂତପ୍ରେରଣ ନୁହେଁ ।

ସୁବର୍ଣ୍ଣ—ତେବେ କଣ ବିବାହାର୍ଥ ?

ବାସୁଦେବ—ଆଜ୍ଞା ମହାରାଜ, ବିବାହାର୍ଥ ।

ସୁବର୍ଣ୍ଣ—ବିବାହାର୍ଥ । (ହାସ୍ୟକରିବା)

ତୋଷା—ବିବାହାର୍ଥ ? ( ହାସ୍ୟକରିବା )

ସୁବର୍ଣ୍ଣ—ତାଙ୍କର କଣ ଏପରି କେହି ଆତ୍ମୀୟା ଅଛନ୍ତି, ଯାହାଙ୍କୁ ଆଦୌ ପାତ୍ର ମିଳୁ ନାହାନ୍ତି ? ନଚେତ୍ ଏ’ ବୃଦ୍ଧବୟସରେ ମୋତେ କନ୍ୟାଦେବାକୁ ମନ ବଳାଇ କିପରି ? ସେ କାହୁଁ ଶୁଣିଲେ ଯେ ଆଜକୁ ଷୋଡ଼ଶ ବର୍ଷ ସ୍ତ୍ରୀ ବିୟୋଗାନ୍ତେ, ପୁନରାୟ ଦାରପରିଗ୍ରହ କରିବାକୁ ମୁଁ ଉଦ୍ୟତ ?

୧ମ-ତୋଷା—ମଣିମା ! ସ୍ୱାମୀ ଏ’ପରି କ’ଣ ବୃଦ୍ଧ ହୋଇଛନ୍ତି ?

୨ୟ-ତୋଷା—ଆମ ସାହିର ଅଭିନନ୍ଦ, ବୁଢ଼ୀ ମଲାପରେ ଯେଉଁ ବୟସରେ ବିବାହକଲା, ତା’ ଦେଖିବାକୁ ଗଲେ ତ ସ୍ୱାମୀ ନିହାତି ପିଲା ।

୧ମ-ତୋଷା—ଆରେ ଭାଇ, ସ୍ୱାମୀଙ୍କ ବୟସରେ ଲୋକେ ତ ବିବାହ କରିନାହାନ୍ତି ।

ସୁବର୍ଣ୍ଣ—ଚୁପ୍‌କର, ତୋଷାମଦକାରିଗଣ । କୁହ ମନ୍ତ୍ରି, ବିବାହ ବୟସ ଥାଉ ବା ନ ଥାଉ, ମୋର ପୁନର୍ବାର ବିବାହ କରିବାର କି ପ୍ରୟୋଜନ ? ଇନ୍ଦ୍ରିୟ ଲାଲସା ତୃପ୍ତି ନିମନ୍ତେ ?—ସେ ଲାଲସା ଯା’ର ଯୌବନରେ ଯୁଦ୍ଧା ନ ଥିଲା, ଏ’ବୟସରେ କାହୁଁ ଆସିବ ? ସନ୍ତାନ ନିମନ୍ତେ ? ସେ ଆଶା ତ ଈଶ୍ୱର ପୂର୍ଣ୍ଣ କରିଛନ୍ତି—ପୁଣି ଏପରି ଗୋଟିଏ ରତ୍ନ ଦେଇଅଛନ୍ତି, ଯା’ଙ୍କ ମୋ’ପକ୍ଷେ ଦିବାର ଆଲୋକ—ନିଶାର ଶାନ୍ତି—ପିଣ୍ଡର ପ୍ରାଣ ହୋଇ ରହିଛି ।

ବାସୁଦେବ—ଏ’ପରି ଅମୂଲ୍ୟ ରତ୍ନ—ପ୍ରାଣାଧିକା କନ୍ୟାର ତୃପ୍ତି ସାଧନ କି ପିତାର କର୍ତ୍ତବ୍ୟ ନୁହେଁ, ମହାରାଜ ?

ସୁବର୍ଣ୍ଣ—ନିଜର ପ୍ରାଣ ବିନିମୟରେ ମଧ କର୍ତ୍ତବ୍ୟ—କୁହ, ମନ୍ତ୍ରି ! ନନ୍ଦିକା ମୋର କେଉଁ ବିଷୟରେ ଅତୃପ୍ତା—ତାର ଯେ ପୁଣି ଆଜି ଜନ୍ମ ଦିନ—ସେ କଣ ଶୁଣେ ? ରାଜ୍ୟମୂଲ୍ୟରେ ଯଦ୍ୟପି ତାହା କିଣିବାକୁ ହୁଏ, ଏହିକ୍ଷଣି ଆଣି ଯୋଗାଅ ।

ବାସୁଦେବ—ମହାରାଜ ! ସେ ଅତୀବ ଦୁର୍ଲ୍ଲଭ ପଦାର୍ଥ ।

ସୁବର୍ଣ୍ଣ—ଅତୀବ ଦୁର୍ଲ୍ଲଭ ।

ବାସୁଦେବ—ମାତ୍ର ଈଶ୍ୱରଙ୍କ କୃପାରୁ ବର୍ତ୍ତମାନ ଅତୀବ ସୁଲଭ ହୋଇଅଛି ।

ସୁବର୍ଣ୍ଣ—ମୋର ତେବେ ଅତୀବ ସୌଭାଗ୍ୟ—ଯାଅ ମନ୍ତ୍ରି, ଶୀଘ୍ର ନେଇଆସ, ନଚେତ୍ ମୁଁ ଯାଇଁ ନେଇ ଆସିବି ।

ବାସୁଦେବ—କୌଣସି କ୍ଳେଶର ପ୍ରୟୋଜନ ନାହିଁ, ମହାରାଜ—ଏହି ଦ୍ୱାରଦେଶରେହିଁ ଉପସ୍ଥିତ ଅଛି ।

ସୁବର୍ଣ୍ଣ—ଦ୍ୱାରଦେଶରେ ଉପସ୍ଥିତ ଅଛି । ଭିତରକୁ ତେବେ ଏ ପର୍ଯ୍ୟନ୍ତ ନେଇ ଆସିନାହିଁ କାହିଁକି ? (ବାସୁଦେବଙ୍କ ପ୍ରସ୍ଥାନ) ଏପଦ କି ସେ ଦୁର୍ଲ୍ଲଭ ପଦାର୍ଥ, ପାରିଷଦଗଣ ?

୧ମ-ତୋଷା—କେଜାଣି ମଣିମା, ଏ'ପରି କି ସେ ଦୁର୍ଲ୍ଲଭ ପଦାର୍ଥ ? ଆମ ରାଜ୍ୟରେ କଣ ନାହିଁ ? ଯେଉଁ ହୀରାର ପାହାଡ଼ ସବୁ ଅଛି—

ସୁବର୍ଣ୍ଣ—ହୀରାର ପାହାଡ଼ !—ମୂର୍ଖ—(ହାସ୍ୟ କରିବା)

୨ୟ-ତୋଷା—ମଣିମା ! ସେ ନିହାତ ମୂର୍ଖ । ହୀରାର ଗଛକୁ କହୁଛି—

ସୁବର୍ଣ୍ଣ—ତୁମେ ଦେଖୁଛ ଗଜମୂର୍ଖ—ହୀରାର ଗଛ ?

ଉଭୟେ—ମହାରାଜ ! ଅମ୍ଭେମାନେ ମୂର୍ଖଲୋକ, ହୀରାଫିରା କଣ ଜାଣୁ ?

[ ବାସୁଦେବଙ୍କ ପୁନଃ ପ୍ରବେଶ ]

ସୁବର୍ଣ୍ଣ—କାହିଁ ସେ ଦୁର୍ଲ୍ଲଭ ପଦାର୍ଥ, ମନ୍ତ୍ରି ?

ବାସୁଦେବ—(ଶିକ ଦେଖାଇ) ଏହି ସେ ଦୁର୍ଲ୍ଲଭ ପଦାର୍ଥ, ମହାରାଜ ।

ସୁବର୍ଣ୍ଣ—ଏ' ଯେ ଗୋଟିଏ ପ୍ରତିରୂପ ।

ବାସୁଦେବ—କିନ୍ତୁ ଦୁର୍ଲ୍ଲଭ ପଦାର୍ଥ, ମହାରାଜ ।

ସୁବର୍ଣ୍ଣ—ଦେଖେଁ ( ଛବିନେଇ ଦେଖି ଦେଖି ) ଏ' ଯେ କେଶରୀଗଙ୍ଗଙ୍କ ପ୍ରତିରୂପ ।

ବାସୁଦେବ—ସୁତରାଂ ଅତୀବ ଦୁର୍ଲ୍ଲଭ ପଦାର୍ଥ, ମହାରାଜ ।

ସୁବର୍ଣ୍ଣ—( ନିକ୍ଷେପ କରି ) ମନ୍ତ୍ରି ! ଏ ପଦାର୍ଥ କଦାପି ମୋର କନ୍ୟାର ଆକାଙ୍କ୍ଷିତ ହୋଇ ନ ପାରେ ।

ବାସୁଦେବ—ଖୁବ୍ ଆକାଙ୍କ୍ଷିତ ମହାରାଜ ! ପୁଣି ଅତୀବ ଆବଶ୍ୟକ—ଥରେ ଭାବି ଦେଖନ୍ତୁ, ମହାରାଜ ।

ସୁବର୍ଣ୍ଣ—ଭାବି ଦେଖିବି କ'ଣ ମନ୍ତ୍ରି ? ମୋର କନକଲତାର ଯେ ମୁହିଁ ଜନ୍ମଦାତା ।

ବାସୁଦେବ—ସେହିହେତୁ କହୁଛି, ମହାରାଜ ! ତାଙ୍କର ଲକ୍ଷ୍ୟ ସ୍ଥଳକୁ ତାଙ୍କୁ ପହୁଞ୍ଚାଇ ଦିଅନ୍ତୁ ।

ସୁବର୍ଣ୍ଣ—ଲକ୍ଷ୍ୟସ୍ଥଳ ! ତାର ଲକ୍ଷ୍ୟସ୍ଥଳ ମୁହିଁ ଛଡ଼ା ଅନ୍ୟ କିଏ ହୋଇ ପାରେ ?

ବାସୁଦେବ—ଜନ୍ମସ୍ଥାନକୁ ଲକ୍ଷ୍ୟକରି, ଲତା କେବେ ଧାଏଁ ନାହିଁ, ମହାରାଜ ।

ସୁବର୍ଣ୍ଣ—ତେବେ କ'ଣ ଧାଏଁ ଊର୍ଦ୍ଧ୍ୱ ଭାବେ ବିପରୀତ ଦିଗକୁ ଲକ୍ଷ୍ୟକରି ?

ବାସୁଦେବ—ଆଜ୍ଞା, ମହାରାଜ ! ଊର୍ଦ୍ଧ୍ୱ ଭାବେ ବିପରୀତ ଦିଗସ୍ଥ ସହକାର ତରୁକୁ ଲକ୍ଷ୍ୟକରି ।

ସୁବର୍ଣ୍ଣ—ମାତ୍ର ମୋର ଲତାପକ୍ଷେ ଏହା ଅସମ୍ଭବ ।

ବାସୁଦେବ—ତେବେ ଯେ ପ୍ରକୃତିର ନିୟମ ଅସମ୍ଭବ ହେବ, ମହାରାଜ ।

ସୁବର୍ଣ୍ଣ—ମୋର ଲତା ପକ୍ଷେ ଏହାହିଁ ବିଶେଷତ୍ୱ, ମନ୍ତ୍ରି ।

ବାସୁଦେବ—ଅସମ୍ଭବ ।

ସୁବର୍ଣ୍ଣ—ସମ୍ଭବ ।

ପାରିଷଦ—ନିଶ୍ଚୟ ସମ୍ଭବ ।

ବାସୁଦେବ—ତେବେ ଥରେ ପରୀକ୍ଷାକରି ଦେଖନ୍ତୁ, ମହାରାଜ—

ସୁବର୍ଣ୍ଣ—ପରୀକ୍ଷା ! ମୋର କନ୍ୟାକୁ ମୁଁ ପରୀକ୍ଷା କରିବି ? ମୁଁ ଯେ ଦର୍ପଣରେ ଦେଖିଲା ଭଳି ତାର ଅଭ୍ୟନ୍ତର ଦେଖି ପାରୁଛି ।

ବାସୁଦେବ—ଅନୁଗ୍ରହ ପୂର୍ବକ ଥରେ ଭଲ କରି ଦେଖନ୍ତୁ ।

ସୁବର୍ଣ୍ଣ—ମନ୍ତ୍ରି ! ତୁମ୍ଭେ ଜନ୍ମଦାତା ହୋଇ, ଏ'ପରି କଥା କହୁଛ ? ସନ୍ତାନ ପ୍ରତି ସନ୍ଦେହ କରିବି ?

ପିତା ହୋଇ ପିତୃ-କନ୍ୟା ମଧ୍ୟରେ ଯେଉଁ ସ୍ୱର୍ଗୀୟ ମାଧୁରୀଟିକ ଅଛୁ, ତାହା କ'ଣ ଥରେ ହେଲେ କେବେ ଏ ପର୍ଯ୍ୟନ୍ତ ଆସ୍ୱାଦନ କରିନାହିଁ ? ହାୟ ! ହାୟ ! କାହିଁକି କରି ନାହିଁ ? ସମସ୍ତେ କଣ ପାରନ୍ତି ନାହିଁ ? (ଭାବି) କିପରି ପାରିବେ ? ଏ' ସଂସାରରେ ତେବେ ଜଣେ ଧନୀ, ଜଣେ ଦରିଦ୍ର ହୁଅନ୍ତି କାହିଁକି ? ଜଣେ ସୁଖୀ, ଜଣେ ଦୁଃଖୀ ହୁଅନ୍ତି କାହିଁକି ? ମୋର ଗୋଟିଏ ମହାଭ୍ରମ ଆଜ ଦୂର ହୋଇଗଲା—ମୋର ଧାରଣା ଥିଲା, ସବୁ ପିତା ମୋ'ପରି ସୁଖୀ—କିନ୍ତୁ ଦେଖୁଛି, ଏ' ସୌଭାଗ୍ୟ ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ ।

ବାସୁଦେବ—ମହାରାଜ ! ଥରେ ଅନ୍ଧ-ବିଶ୍ୱାସ ତ୍ୟାଗକରି—

ସୁବର୍ଣ୍ଣ—ଥାଉ ମନ୍ତ୍ରି ! ଯେଉଁ ନିର୍ମଳ ପ୍ରେମ-ସ୍ରୋତରେ ଆମ୍ଭେ ବୁଲୁଛି ପିତୃ-କନ୍ୟା ମହାନନ୍ଦରେ ବିମଳ ସୁଧାପାନ କରୁଁ କରୁଁ ଦିନ୍ ବାଦିନ୍ ଜ୍ଞାନଶୂନ୍ୟ ହୋଇ ଏକାବେଳେ ଭାସି ଯାଉଛୁ—ତୁମ୍ଭେ ଏ'ପରି କଳଙ୍କମୟ ପ୍ରଶ୍ନ ଦ୍ୱାରା ତାହା ଆବିଳ କରି ଦିଅ-ନାହିଁ—ତୁମ୍ଭର ସେହି ଲକ୍‌ଲକାୟିତ ପର୍ବତ ତୁଲ୍ୟ ଭୀଷଣ ପ୍ରସ୍ତାବ ଦ୍ୱାରା ପରସ୍ପରକୁ ଭିନ୍ନ ଭିନ୍ନ କରି ଦିଅ ନାହିଁ ।

ବାସୁଦେବ—ମହାରାଜ ! ଥରେ ରାଜ୍ୟର ଭବିଷ୍ୟଦଶା—

ସୁବର୍ଣ୍ଣ—ତୁନି ହୁଅ ମନ୍ତ୍ରି ! ତୁମ୍ଭେ ଯେ କି ପ୍ରାଣସ୍ପର୍ଶି-ଶେଳାଘାତ କରୁଛ ତାହା କଣ ବୁଝିପାରୁ ନାହଁ ? ମନେ କରୁଛ, ତୁମେ ଦୂରେ ବେଳାରେ ଠିଆହୋଇ କେବଳ ଗୋଟିଏ ପ୍ରଶ୍ନ କରୁଛ, ମାତ୍ର ପ୍ରଶ୍ନୋଚ୍ଚାରଣରେ ଧୀରପବନରେ ଯେଉଁ ସ୍ପନ୍ଦନ-ଟିକ ଜାତ ହେଉଛି, ତାହା ଅଭ୍ୟନ୍ତରଣେ ବହୁ ବାଧା ବିଘ୍ନ ସତ୍ତ୍ୱେ ମୋର ହୃଦୟକୁ ଯେ କି ଦାରୁଣାଘାତ କରୁଛି, ତାହା କଣ ବୁଝି ପାରୁ ନାହଁ ?—ଥରେ ହସ୍ତାର୍ପଣ କର ( ମନ୍ତ୍ରିର ହସ୍ତକୁ ବୁକୁରେ ଦେଇ ) ବୁଝିପାରିବ—ତୁମ୍ଭର ସର୍ବାଙ୍ଗ କିପରି ଭୂମିକମ୍ପ ତୁଲ୍ୟ କମ୍ପି ଉଠିବ—ତୁମ୍ଭର ହୃଦୟ କିପରି ଚପଳା ତୁଲ୍ୟ ଚମକି ଉଠିବ ।

ବାସୁଦେବ—ମହାରାଜ ! ମହାରାଜ ! ନୀତିକଠୋର ଦାସକୁ କ୍ଷମା କରନ୍ତୁ !

ସୁବର୍ଣ୍ଣ—ଓଃ ! ହୃଦୟରେ କି ଝଟିକା ପ୍ରବାହିତ ହୋଇଯାଉଛି—ସମ୍ମୁଖରେ କି ଉତ୍ତାଳ ତରଙ୍ଗ-ମାଳା ଗର୍ଜି ଉଠୁଛି—ଆଉ ରକ୍ଷାନାହିଁ—ଆଉ ରକ୍ଷାନାହିଁ !—( ଆତ୍ମ ସମ୍ବରଣ କରି ) ଏଁ ମୁଁ କ'ଣ କରୁଛି ?—ମୋର କନ୍ୟାର ଯେ ଆଜ ଜନ୍ମଦିନ—ଏ' ଆନନ୍ଦ ଦିନରେ ଏପରି ନିରାନନ୍ଦଭାବ ପୋଷଣ କରିବା କି ଉଚିତ ? ନନ୍ଦିକା ! ନନ୍ଦିକା ! ପ୍ରାଣାଧିକା କନ୍ୟା ମୋର !

(ବେଗେ ପ୍ରସ୍ଥାନ)

୧ମ-ଚୋପା—ଓଃ ! ମନ୍ତ୍ରୀବୁଢ଼ା ଆଜ କି ଅଣାଟାଏ ମାଟିକରି ଦେଲା !

୨ୟ-ଚୋପା—ଚାଲ ହେ ଶୀଘ୍ର, ନ ହେଲେ ଗାଲ ଗୁଡ଼ାଏ ପୁଣି ଲାଭ ହେବ ।

( ଉଭୟଙ୍କର ପ୍ରସ୍ଥାନ )

ବାସୁଦେବ—ଏତେଦିନେ ଯାହା ମନେ ମନେ ପାଞ୍ଚୁଥିଲି, ସୌଭାଗ୍ୟକୁ ତାହା ଆଜ କାର୍ଯ୍ୟରେ ପରିଣତ ହୋଇଛି—ମାତ୍ର, ରାଜାଙ୍କର ଏପରି ଖିଆଲକୁ ଉପାୟ କଣ ? ତାଙ୍କୁ ବର୍ତ୍ତମାନ କି ସମ୍ବାଦ ଦେଇ ବିଦାୟ କରୁଛି—ହାତର ଲକ୍ଷ୍ମୀ ସିନା ଗୋଡ଼ରେ ଠେଲି ଦିଆଯିବ ! ନା ବାସୁଦେବ ମନ୍ତ୍ରୀ ଥାଉଁ ଥାଉଁ ତାହା କଦାପି ଘଟିବ ନାହିଁ । (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

—ଉଦ୍ୟାନ—

[ ନନ୍ଦିକାର ଧୀରେ ଧୀରେ ପ୍ରବେଶ ]

ନନ୍ଦିକା—ଆଜ ମଧ୍ୟ ମୋର ଜନ୍ମଦିନ—କିନ୍ତୁ କାହିଁ ସେ ଆନନ୍ଦ ? ଆଗେ ଏହି ଉତ୍ସବରେ ମୁଁ କେତେ ଉତ୍ସବ ଅନୁଭବ କରୁ ନ ଥିଲି ? ପ୍ରତ୍ୟେକ ଥର ମନେ ହେଉଥାଏ, ଏହି ଉଦ୍ୟାନଟି ଯେପରି ନୂତନ ନୂତନ ବେଶ ଧାରଣ କରି, ମୋ

ସମ୍ମୁଖରେ ନୂତନ ନୂତନ ଭଙ୍ଗିରେ ନୃତ୍ୟ କରୁଛନ୍ତି—କୋକିଳମାନେ ଯେପରି ନୂତନ ନୂତନ କଣ୍ଠରେ ନୂତନ ନୂତନ ଗାନ ଗାଇକି କରି ମୋ କର୍ଣ୍ଣରେ ଅପୂର୍ବ ସୁଧା ଢାଳୁଛନ୍ତି—ସଖୀମାନେ ଯେପରି ନୂତନ ନୂତନ ହାସ୍ୟ କଉତୁକ ଓ ନୃତ୍ୟ ଗୀତରେ ମୋତେ କେଉଁ ଆନନ୍ଦମୟ ଭୁବନକୁ ନେଇ ଯାଉଛନ୍ତି—କିନ୍ତୁ ଏଥର କାହିଁ ସେ ଭାବ ? ସେହି ଉଦ୍ୟାନ—ସେହି କୋକିଳ—ସେହି ସଖୀମାନେ ଅଛନ୍ତି, ମାତ୍ର ସମସ୍ତେ ଯେପରି ପ୍ରାଣହୀନ—ସମସ୍ତ ଯେପରି ପୁରାତନ ।

[ ଶାରଦାର ଗୋଟିଏ ଛବି ହସ୍ତରେ ପ୍ରବେଶ ]

ଶାରଦା—ଗୋଟିଏ ନୂତନ ଜିନିଷ ଆଣିଛି ସହି ।

ନନ୍ଦକା—( ଦେଖି ଦେଖି ) ଏ ଚିତ୍ରପଟ କାହିଁ ଆଣିଲୁ ସହି ?

ଶାରଦା—ବାପା ଦେଇ ପଠାଇଛନ୍ତି—ଏଥର ଏହାହିଁ ତୋ'ର ଜନ୍ମଦିନର ଭେଟି—ଏକାବେଳକେ ଠିକଣାରୁ ଆଣିଛି ସହି । ଏହାକି ଗୋଟାଏ ନୂତନ ଜିନିଷ ନୁହେଁ ?

ନନ୍ଦକା—(ଚିତ୍ରପଟ ଦେଖି ଦେଖି ସ୍ୱଗତ) ପ୍ରକୃତରେ ଏହାହିଁ ଏଥର ନୂତନ ଜିନିଷ । ହାୟ । କେତେ ଯୁଗ ପରେ ପ୍ରତିକୃତିରେ ଆଜ ସେହି ମୂର୍ତ୍ତି ଦେଖୁଛି—ପ୍ରକୃତରେ କେବେ ଦେଖିବି—ସତେକି ଏପରି ସୌଭାଗ୍ୟ ହେବ ?

ଶାରଦା—ଆଉ ଚିନ୍ତା କାହିଁକି ସହି ? ହୃଦୟ ନିମନ୍ତ୍ରଣ ନେଇ ଆସିଲାଣି ।

ନନ୍ଦକା—( ମନୁଷ୍ୟ ହୋଇ ଚିତ୍ରପଟ ଦେଖୁଥିବା )

ଶାରଦା—କି ? ଚୋରଟାକୁ ମନ-ପ୍ରାଣ ଏକାବେଳକେ ଢାଳି ଦେଲୁ ଯେ ?

ନନ୍ଦକା—ଜାଣି ଶୁଣି କି ଚୋରକୁ କେହି ଧନରତ୍ନ ଢାଳି ଦିଏ—

ଶାରଦା—ତେବେ କଣ ଚୋର ଚୋରି କରି ନେଇଛି ?

ନନ୍ଦକା—ଚୋରର କାମ ଚୋରି କରିଛି ।

ଶାରଦା—ତେବେ ରଜାର କାମ ରଜା କରୁ ନାହିଁ ?

ନନ୍ଦକା—କୋଟାଳର କାମ ଆଗେ କୋଟାଳ କରି ସାରୁ ତ ?

ଶାରଦା—ମନେ କରୁଛୁ କଣ ଚୋରଟା ଭାରି ଚାଲାକ ?

ନନ୍ଦକା—ମୋର କୋଟାଳର ପରି ଟିକିଏ ମୋଟା ବୁଦ୍ଧି ।

ଶାରଦା—ହଁ, ଏହିକ୍ଷଣି ଯେବେ ଧରି ଆଣେଁ ?

ନନ୍ଦକା—( ଖୁଦାମାରି ) ତେବେ ଏହି ବକ୍‌ସିସ୍ ।

[ ସଖୀମାନଙ୍କର ଗୀତ ଗାଇ ଗାଇ ପ୍ରବେଶ । ]

ଗୀତ

ଦିଅ ସହି ଯାହା ଇଚ୍ଛା ଦିଅ ପୁରସ୍କାର,
ହାତ ପାତି ନେବା ହସି ନ କରି ବିଚାର ॥
ତୁମ ସୁଖେ ସୁଖୀ ସିନା, ତୁମ ଦୁଃଖେ ଦୁଃଖୀ,
ତୁମ ଭାବେ ମଜ୍ଜି ଥାଉ ସଦା ବିଧୁମୁଖି ।
ନାହିଁ ଆଶା, ପ୍ରତି ଆଶା ବିନା ତବ ପ୍ରେମ ଆଶା,
ସେହି ଆଶେ ଅଛୁଁ ଗୃହିଁ ସେବା ଅକର୍ବାର ।

ସଖିଗଣ—ଠିକ୍ ହୋଇଛି, ଠିକ୍ ହୋଇଛି, ହାତେ ହାତେ ଫଳ ପାଇଛୁ ।

ଶାରଦା—ଅଳ୍ପେ ପଞ୍ଚ ।

୧ମା ସଖୀ—କ-ଅ-ଣ ?

ଶାରଦା—ଜେମାଦେଈ ଏଣିକି ଆଉ ଆମକୁ ଚାହାନ୍ତି ନାହିଁ । ( ନନ୍ଦକା ଶାରଦାକୁ ଚିମୁଟି ଦେବା )

୨ୟା-ସଖୀ—ସତେତ ? ସେହି ଛବି ଆଡ଼କୁ ଖାଲି କାହିଁକି ଚାହିଁ ବସିଛନ୍ତି ?

ନନ୍ଦକା—ତୋର ମୁଣ୍ଡ ଗଣ୍ଡି କରୁଛନ୍ତି ( ଦ୍ୱିତୀୟାର ବାଳ ଟାଣିଦେବା )

ସଖୀମାନେ—ଦେଖେଁ ଦେଖେଁ ଜେମାଦେଈ—ସେଥିରେ କି ମୋହନ ମୂର୍ତ୍ତି ଅଛି ଯେ, ଆମଠୁଁ ତୁମକୁ କାଢ଼ି ନେଉଛି ।

ନନ୍ଦକା—ନିଅ, ନିଅ—କଣେ ନେବ ନା ବାଣ୍ଟିକୁଣ୍ଟି ନେବ ?

[ ଛବି ଦେଇସାରି ପ୍ରସ୍ଥାନୋଦ୍ୟତା ଓ ଅଦୂରେ ପିତାର ଆଗମନ ଦେଖି ଛିଡ଼ାହେବା ]

ସଖୀମାନେ—ଜେମାଦେଈ । ଫେରାଇ ନିଅ ଫେରାଇ ନିଅ—ନିଶ୍ୱାସ ପକାଅ ନାହିଁ । ବାନର ଗଳାରେ

କି ଏ' ମୁକ୍ତାହାର ସାଜବ ? ( ହାତରେ ଦେବାକୁ ଚେଷ୍ଟା କରିବା, ନ ନେବାରୁ ଅଞ୍ଚଳ ମଧ୍ୟରେ ଗୁଞ୍ଜି ଦେବା )

୨ୟା-ସଖୀ—ପଞ୍ଚ, ରାଜା ଆସୁଛନ୍ତି ।

୧ମା-ସଖୀ—ଆସଲୋ—ପଳାଇ ଆସଲୋ ।

ନନ୍ଦକା—ରୁହନା—

ସମସ୍ତେ—ନା, ନା—

ଶାରଦା—ମୁଁ ବି ଟିକିଏ ପାଖଛଡ଼ା ହୋଇଯାଏଁ ।

( ପ୍ରସ୍ଥାନ )

[ସମସ୍ତଙ୍କର ପ୍ରସ୍ଥାନ ଓ ସୁବର୍ଣ୍ଣକେଶରୀଙ୍କ ପ୍ରବେଶ]

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! କନ୍ୟା ମୋର ! ( କୁଣ୍ଢାଇ ପକାଇବା )

ନନ୍ଦକା—ବାବା ! ବାବା ! ଏ'କଣ ?

ସୁବର୍ଣ୍ଣ—ତୁ କଣ ମତେ ଛାଡ଼ି ଯିବୁ, ନନ୍ଦ ?

ନନ୍ଦକା—ବାବା !

ସୁବର୍ଣ୍ଣ—ତୁ ଛାଡ଼ିଗଲେ ମୁଁ ଯେ ବଞ୍ଚି ପାରିବି ନାହିଁ, ନନ୍ଦ !

ନନ୍ଦକା—ଏ' କଣ କହୁଛ ବାବା ? ତୁମ୍ଭର ମୁଣ୍ଡ କଣ ଆଜି ଖରାପ ହୋଇଛି ?

ସୁବର୍ଣ୍ଣ—ସତେ, ମା ମୋର ମୁଣ୍ଡ ଆଜି ଖରାପ ହୋଇଛି । ବାସୁଦେବ ମନ୍ତ୍ରୀ ମୋର ମୁଣ୍ଡ ଖରାପ କରି ଦେଇଛନ୍ତି ?

ନନ୍ଦକା—ବାସୁଦେବ ମନ୍ତ୍ରୀଭାଇ ମୁଣ୍ଡ ଖରାପ କରି ଦେଇଛନ୍ତି ?

ସୁବର୍ଣ୍ଣ - ହଁ, ମା, ବାସୁଦେବ ମନ୍ତ୍ରୀଭାଇ । ସେ କହନ୍ତି, ତୁ ଆଉ ମୋତେ ସେପରି ଭଲ ପାଉନା—ଯେତେ ତୋର ବୟସ ହେଉଛି, ସେତେ ତୁ ମୋତେ ଛାଡ଼ି ଚାଲି ଯାଉଛୁ—କିନ୍ତୁ ମୁଁ ଯେ ଠିକ୍ ବିପରୀତ ଭାବ ଅନୁଭବ କରୁଛି, ନନ୍ଦ !

ନନ୍ଦକା—ବାବା ! ମନ୍ତ୍ରୀଭାଇଙ୍କ ମଧ୍ୟ କଣ ମୁଣ୍ଡ ଖରାପ ହୋଇଯାଇଛି ?

ସୁବର୍ଣ୍ଣ—ତୋର ତ ମୁଣ୍ଡ ଖରାପ ହୋଇନାହିଁ, ନନ୍ଦ ? ସୂତିକା ଗୃହରେ, ମାତୃ କୋଡ଼ରେ, ତୋତେ ଯେପରି ଦେଖି ଆସିଥିଲି—ମାତୃବିୟୋଗାନ୍ତେ ନିଜ କୋଡ଼ରେ ନିଜର ଶଯ୍ୟା ପାର୍ଶ୍ୱରେ ଯେପରି ଦେଖି ଆସିଥିଲି, ଠିକ୍ ସେହିପରି ଅଛୁ ତ ନନ୍ଦ ? —ଠିକ୍ ସେହିପରି ସରଳ ନିର୍ମଳ ପ୍ରଫୁଲ୍ଲ ଅଛୁ ତ ନନ୍ଦ ?

ନନ୍ଦକା—ବାବା ( ମୁଖ ବିବର୍ଣ୍ଣ କରିଦେବା )

ସୁବର୍ଣ୍ଣ—ସହସା ଏ' କି ଭାବପରିବର୍ତ୍ତନ ତୋର, ନନ୍ଦ ? ଗଣ୍ଡସ୍ଥଳରୁ ଆଭା ହଠାତ୍ ଖସି ପଡ଼ିଲା କାହିଁକି ? ଓଷ୍ଠଦେଶରୁ ଉଜ୍ଜ୍ୱଳତା ହଠାତ୍ ଉଡ଼ିଗଲା କେଉଁଆଡ଼େ ? ତୁ ଏ'ପରି ଭାବେ କମ୍ପୁଛୁ କାହିଁକି ନନ୍ଦ ?

ନନ୍ଦକା—ବାବା [ କୁଣ୍ଢାଇବାକୁ ଚେଷ୍ଟା କରିବା ବେଳେ ଶିରପଟ ଖସି ପଡ଼ିବା—ସୁବର୍ଣ୍ଣ ହଠାତ୍ ଦୂରକୁ ଘୁଞ୍ଚିଯିବା । )

ସୁବର୍ଣ୍ଣ—ନନ୍ଦ ! ନନ୍ଦ !

ନନ୍ଦକା—ବାବା !

ସୁବର୍ଣ୍ଣ—ଆଉ ଲୁଚ ନା—ପ୍ରମାଣ ମିଳିଛି । ଆଉ ମୋର ସନ୍ଦେହ ନାହିଁ । ମନ୍ତ୍ରୀ ଠିକ୍ କହିଛନ୍ତି, ଅତୀବ ଦୁର୍ଲ୍ଲଭ ପଦାର୍ଥ—ଏହାହିଁ ମୋର କନ୍ୟାପକ୍ଷେ ଅତୀବ ଦୁର୍ଲଭ ପଦାର୍ଥ—ନନ୍ଦ ! ନନ୍ଦ ! ସତେ ସତେ କ'ଣ ଏଣିକି ଆଉ ମୁଁ ତୋ'ର କେହି ନୁହେଁ—ଜନ୍ମ ଦେଇଥିଲି—ମାତୃ ବିୟୋଗାନ୍ତେ, ଦିନରାତି ଭୁଲି ତୋତେ ବଢ଼ାଇ ଥିଲି—ତାପ କ୍ଲେଶ ଭୁଲି ସୁଖୀ କରାଉଥିଲି—ତା'ର କଣ ଏହି ପ୍ରତିଦାନ ପାଇବି ବୋଲି ? ଆଦର କରୁଥିଲି, ଅନାଦର ପାଇବି ବୋଲି ? ସ୍ନେହ କରୁଥିଲି, ଘୃଣା ପାଇବି ବୋଲି ? ମୁଁ ତୋର କେହି ନୁହେଁ ? ମୁଁ ତୋର କେହି ନୁହେଁ ? ସବୁ ତୋର ସେହି ଅପରିଚିତ, ସେହି ବିଦେଶୀ ଯୁବକ !

ନନ୍ଦକା—ବାବା ! ଏ'କି କଥା କହୁଛନ୍ତି ? ମୋର ବାବାର ମୁଁ କେହି ନୁହେଁ ?

ସୁବର୍ଣ୍ଣ—ସେହି ଯୁବକ ତେବେ ତୋର କେହି ନୁହେଁ ?

ନନ୍ଦକା—( ନୀରବ )

ସୁବର୍ଣ୍ଣ—ତୁନି ହେଲୁ ଯେ !

ନନ୍ଦିକା—ବାବା !

ସୁବର୍ଣ୍ଣ—ମୁଁ ଛଳନା, ଗୁରୁତର ଗୃହେଁନା, ନନ୍ଦ—ମୁଁ ଗୃହେଁ ସ୍ପଷ୍ଟ କଥା—କହ, କିଏ ତୋ'ର ସର୍ବସ୍ୱ—ଏହି ଜୀର୍ଣ୍ଣକଙ୍କାଳସାର ପିତା, ନା—ସେହି ସବଳ ସୁଠାମ ଯୁବକ ?

ନନ୍ଦିକା—(ସ୍ୱଗତ) ଏ' କି ପରୀକ୍ଷା କ୍ଷେତ୍ରରେ ଆଣି ପକାଉଛନ୍ତି, ପିତା ?

ସୁବର୍ଣ୍ଣ—କଣ କହୁଛୁ ନନ୍ଦ ?

ନନ୍ଦିକା—ବାବା !

ସୁବର୍ଣ୍ଣ—ଅଚ୍ଛା ଥାଉ, ତୁ ବର୍ତ୍ତମାନ ଟାଳରେ ବୁଡ଼ି ଗଲୁଣି—ଓଠ ତୋର ଶୁଖି ଗଲାଣି, କାଲି ମୋତେ ଉତ୍ତର ଦେବୁ । ( ପ୍ରସ୍ଥାନ )

ନନ୍ଦିକା—( ଦୀର୍ଘନିଶ୍ୱାସ ତ୍ୟାଗ କରି ) କି ଉତ୍ତର ଦେବି ? ଏଣେ ବିବେକ ସତ୍ୟ ପ୍ରକାଶ କରିବାକୁ ତାଡ଼ନା କରୁଛି—ତେଣେ ଲଜ୍ଜା ସତ୍ୟ ଗୋପନ କରିବାକୁ ପରାମର୍ଶ ଦେଉଛି !—ବିଚାର ମଧ୍ୟ ସ୍ଥଳରେ ରହି କି ସ୍ଥିର କରୁଛି ? ଉପଦେଶର ସହାୟତା ଆବଶ୍ୟକ ।

[ ପ୍ରସ୍ଥାନୋଦ୍ୟତା ଓ ଶାରଦାର ପୁନଃ ପ୍ରବେଶ ]

ଶାରଦା—ସହି ବାବାଙ୍କ ସଙ୍ଗେ କି କଥାବାର୍ତ୍ତା ହେଉଥିଲା କି ? ମୁହଁଟା କାହିଁକି ଶୁଖି ଯାଇଛି ? ବାବା କ'ଣ ମନା କଲେ କି ?

ନନ୍ଦିକା—ମୋ ବାପା ତ ଏବେ ତୋ' କଥାରେ ହଁ କରୁଛନ୍ତି ।

ଶାରଦା—କିନ୍ତୁ ସେତ ଆଉ ଯୁବାଙ୍କ ପରି ( ଛବି ଦେଖାଇ) ହଁ କରୁନାହାନ୍ତି ?

ନନ୍ଦିକା—କାହିଁକି ମ ? କ'ଣ ବିଗିଡ଼ି ଗଲା କି ? ତୋ ମୁହଁ ଦେଖି କାହିଁ କିଛିତ ଜଣା ପଡ଼ୁ ନାହିଁ ?

ଶାରଦା—'ହଁ' 'ନାହିଁ' । ଉଭୟ ଯେ ମୋ ପକ୍ଷେ ସମାନ ସହି !

ନନ୍ଦିକା—ସତେ ?

ଶାରଦା—ହୁଁହେଁ—

—ଗୀତ—

ସେ ଯେ ଉଇଁଥିଲା ଉଷା ଉରଣେ,
ମିଞ୍ଜି ମିଞ୍ଜି ମିଞ୍ଜି ମଞ୍ଜୁ କିରଣେ ॥
ଥିଲି ମୁଁ କାନନେ ଗୃହିଁ ଅନମନେ
ପିକ ପିଉଗାନେ ଢାଳି ମନ ପ୍ରାଣେ
(ସେ ଯେ) ଚୋରପରି ଆସି ଆଖି ଚିପି ହସି
ବସିଲା (ବିଜନେ) ହୃଦୟ ଦୋଳିରେ ॥

ନନ୍ଦିକା—ତୁହି ପ୍ରକୃତରେ ସୁଖୀ, ଶାରଦା ।

(ପ୍ରସ୍ଥାନୋଦ୍ୟତା)

ଶାରଦା—ଛାଡ଼ି ଯାଉଛ ଯେ ?

ନନ୍ଦିକା—( ନେବାକୁ ଯାଇ ନ ନେଇ ) ସହି !

[ ଦୀର୍ଘନିଶ୍ୱାସ ତ୍ୟାଗ କରି ପ୍ରସ୍ଥାନ ]

ଶାରଦା—ମନ ଦମ୍ଭ କର—ମନ ଦମ୍ଭ କର (ଅନୁଗମନ)

---

## ତୃତୀୟ ଦୃଶ୍ୟ

—ଅସ୍ତ୍ରଶସ୍ତ୍ର ସୁସଜ୍ଜିତ କକ୍ଷ—

ବୀରେନ୍ଦ୍ର—(ଅସ୍ତ୍ରଶସ୍ତ୍ର ଦେଖୁ ଦେଖୁ) ବୀରର ଅଙ୍ଗାଭରଣ ଏହି ଅସ୍ତ୍ରଶସ୍ତ୍ର କେତେଦିନ ଏହିପରି କକ୍ଷର ଭୂଷଣ ହୋଇ ରହିଥିବ—(ଗୋଟିଏ ଅସ୍ତ୍ର ଆଣି ପରୀକ୍ଷା କରୁ କରୁ ଯଥାସ୍ଥାନରେ ଥୋଇଦେଇ ) ଥାଉ, ଏହିପରି ଭୂଷଣ ହୋଇ ରହିଥାଉ—ସେମାନଙ୍କର ଭାର ବହନକରିବାକୁ ଏ' ଶରୀର ଅକ୍ଷମ ହୋଇ ପଡ଼ିଲାଣି—ସେମାନଙ୍କର କଠିନ ସ୍ପର୍ଶ ସହ୍ୟ କରି-ବାକୁ ଏ' ହୃଦୟ ଅଶକ୍ତ ହୋଇ ଗଲାଣି—ବୀରର ସେ ସାହାସ କାହିଁ, ଯାହା ଅସ୍ତ୍ରର ଝଣ ଝଣ ଶବ୍ଦରେ ଝଲକି ଉଠୁ ଥିଲା ? ସେ କ୍ରୋଧ କାହିଁ, ଯାହା ଶତ୍ରୁର ହେି, ହେି ରେବରେ ରଞ୍ଜିତ ହୋଇ ଉଠୁଥିଲା ? ସମସ୍ତ ଯେ ଅଧୁନା ଅନିନ୍ଦ୍ୟ ସୁନ୍ଦରୀ ନନ୍ଦିକାର ସୌନ୍ଦର୍ଯ୍ୟ ଦର୍ଶନାବଧି ଲୁପ୍ତପ୍ରାୟ—ଜାଗରଣରେ ଏକମାତ୍ର ଚିନ୍ତା ନିଦ୍ରାରେ ଏକମାତ୍ର ସ୍ୱପ୍ନ, ନନ୍ଦିକା—ସୁନ୍ଦରୀ ନନ୍ଦିକା—ରାଜକୁମା ନନ୍ଦିକା ! ଆଶା କି ମୋର କେବେ ପୂର୍ଣ୍ଣ ହେବ ?

ରାଜା ତ ଦୂତଙ୍କୁ ଫେରାଇ ଦେଲେ, ମନ୍ତ୍ରୀ ପୁଣି ତାଙ୍କୁ ରଖିଲେ କାହିଁକି ? ନିଶ୍ଚୟ—( ଦୂରରେ ଶାରଦାର ଆସିବା ଦେଖି )

ଏଃ, ପେତ୍ନୁଣିଟା ଆସିଲାଣି (ବିରକ୍ତ ଭାବେ ବ୍ୟସ୍ତତାର ଅଭିନୟ କରିବା ବେଳେ ଶାରଦାର ପ୍ରବେଶ )

ଶାରଦା—ପ୍ରାଣେଶ୍ୱର ! ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ?

ବୀରେନ୍ଦ୍ର —(ବ୍ୟଙ୍ଗଭାବେ ସ୍ୱଗତ) ଏତେବ୍ୟସ୍ତ ହେଉଛନ୍ତି କାହିଁକି ? ( ପ୍ରକାଶ୍ୟେ ) କାହିଁ ? କେଉଁଠି ?

ଶାରଦା—ଏହିତ ମୁହିଁ, ହାତ, ଗୋଡ଼ କହି ଦେଉଛି ।

ବୀରେନ୍ଦ୍ର—( ବ୍ୟଙ୍ଗଭାବେ ସ୍ୱଗତ ) ମୁହିଁ, ହାତ, ଗୋଡ଼ କହି ଦେଉଛି ! ( ପ୍ରକାଶ୍ୟେ ) କାହିଁ, ମୁଁତ କିଛି ଶୁଣି ପାରୁନାହିଁ ?

ଶାରଦା—କାନ ଥାଇ ଯେ ତୁମ୍ଭେ କାଲ ।

ବୀରେନ୍ଦ୍ର—ମୁଁ କାଲ, ଆଉ ତୁମେ ଭାରି ଭଲ ?

ଶାରଦା—ଦେଖିଲ, ଭଲ କି ନୁହେଁ !

ବୀରେନ୍ଦ୍ର—ହଁ, ହଁ, କୁଳଟାମାନଙ୍କ ମଧ୍ୟରେ ଭଲ ।

ଶାରଦା—କୁଳବତୀଙ୍କୁ ଯେବେ କୁଳଟା ବୋଲି କୁହାଯାଏ, ତେବେ ମୁଁ ଭଲ କୁଳଟା ।

ବୀରେନ୍ଦ୍ର—କୁଳବତୀ କେବେ କୁ-ଭାବେ ପରପୁରୁଷ ନିକଟକୁ ଆସେ ନାହିଁ ।

ଶାରଦା—ନିଶ୍ଚୟ, ସୁ-ଭାବେ ନିଜ ପୁରୁଷ ନିକଟକୁ ଆସେ ।

ବୀରେନ୍ଦ୍ର—ତେବେ ନିଜ ପୁରୁଷ ନିକଟକୁ ଯାଉନାହିଁ କାହିଁକି ?

ଶାରଦା—ଏହି ଯେ ନିଜ ପୁରୁଷ ନିକଟକୁ ଆସିଛି, ପ୍ରଭୁ !

ବୀରେନ୍ଦ୍ର—ଶାରଦା !

ଶାରଦା—ପ୍ରାଣେଶ୍ୱର !

ବୀରେନ୍ଦ୍ର—ଶିଶୁଭାବ କ'ଣ ତୁମ୍ଭର ଏ' ପର୍ଯ୍ୟନ୍ତ ଗଲା ନାହିଁ ? ସେହି ପିଲାଦିନର ଖେଳ ବେଳେ ଅଜ୍ଞାନ ଅନ୍ଧ ହୋଇ ମୋ ସଙ୍ଗେ ଯେଉଁ ଭାବେ ଖେଳୁଥିଲ, ଠିକ୍ ସେହି ଭାବେ ଆଜି ମଧ୍ୟ ଖେଳିବ ?

ଶାରଦା—ଆଜି ମଧ୍ୟ ଖେଳିବି କ'ଣ ପ୍ରଭୋ ? ଅଙ୍ଗୀବନ ଖେଳିବି ।

ବୀରେନ୍ଦ୍ର—ଥରେ ଜ୍ଞାନଚକ୍ଷୁ ମେଲି ଦେଖ ।

ଶାରଦା—ପରିଷ୍କାର ଦେଖୁଛି, ପ୍ରାଣେଶ୍ୱର ! ପିଲାଦିନୁ ତୁମକୁ ଯାହା ଅର୍ପଣ କରିଛି, ତାହା ଫେରାଇ ଆଣିବାର କ୍ଷମତା ଆଉ ମୋରନାହିଁ ।

ବୀରେନ୍ଦ୍ର—ତୁମର ଫେରାଇ ଆଣିବାର କ୍ଷମତା ଥାଉ, ବା ନଥାଉ, କିନ୍ତୁ ମୁଁତ ତାହା ଗ୍ରହଣ କରିନାହିଁ ।

ଶାରଦା—ମୋ'ର କାମ ମୁଁ କରିଛି, ପ୍ରଭୋ !

ବୀରେନ୍ଦ୍ର—ଦେଖ, ଶାରଦା ! ଏ' ପର୍ଯ୍ୟନ୍ତ ଆମର ବିବାହ ହୋଇନାହିଁ ।

ଶାରଦା—ବିବାହ ହୋଇ ନାହିଁ ?

ବୀରେନ୍ଦ୍ର—ଲୌକିକଭାବେ କି ହୋଇଛି ?

ଶାରଦା—ଲୌକିକତାର କି ପ୍ରୟୋଜନ, ପ୍ରାଣେଶ୍ୱର ?

ବୀରେନ୍ଦ୍ର—ଏ' ସଂସାରରେ ବାସ କରିବାକୁ ହେଲେ ତାହା ଯେ ଖୁବ୍ ଅବଶ୍ୟକ ।

ଶାରଦା—କାହିଁ, ମୁଁ ତ କିଛି ଆବଶ୍ୟକତା ଦେଖୁନାହିଁ—ବୃକ୍ଷ ସଙ୍ଗେ ଲତାର ମନ ମିଳିଲା, ଲତା ଯାଇ ବୃକ୍ଷକୁ ଆଲିଙ୍ଗନ କଲା—ହରିଣ ସଙ୍ଗେ ହରିଣୀର ମନ ମିଳିଲା, ଉଭୟେ ପୁରୁଷ ସ୍ତ୍ରୀ ଭାବେ ମହାନନ୍ଦରେ ବିଚରଣ କଲେ—ଏଥିରେ ପୁଣି ଲୌକିକତାର କି ପ୍ରୟୋଜନ ?

ବୀରେନ୍ଦ୍ର—ବେଶ, ତେବେ ଆମ୍ଭମାନଙ୍କର ତ ମନ ମିଳିନାହିଁ ?

ଶାରଦା—ମିଥ୍ୟା କଥା, ପିଲାଦିନର କଥା ଥରେ ସ୍ମରଣ କର, ଆଉ ସେ ନିଭୃତ ନିକୁଞ୍ଜର କଥା ଥରେ ମନେ କର ?

ବୀରେନ୍ଦ୍ର—କେତେବେଳେ କ'ଣ ହୋଇଯାଇଥିବ, ତାହା କ'ଣ ଆଜି ଯାଏ ମନେ ଅଛି ?

ଶାରଦା—ଏତେ ଚଞ୍ଚଳ ପାଶୋରି ପକାଇଲ ? ହଉ, ତୁମେ ଭୁଲି ପାରିବ, ମୁଁତ ଆଉ ଭୁଲିନାହିଁ—ଭୁଲି ମଧ୍ୟ ପାରିବ ନାହିଁ ।

ବୀରେନ୍ଦ୍ର— ବର୍ତ୍ତମାନ ତ ମନ ମିଳୁନାହିଁ ।

ଶାରଦା—ଏଥିରେ ମୋର କି ଦୋଷ ? ତୁମର ମନର ଦୃଢ଼ତା ନାହିଁ ବୋଲି କ’ଣ କାହାର ମନର ଦୃଢ଼ତା ନାହିଁ ?

ବୀରେନ୍ଦ୍ର—( ସ୍ୱଗତ ) ଭଲ ଜଞ୍ଜାଳ ।

ଶାରଦା—ମୁଁ ବର୍ତ୍ତମାନ ଆସୁଛି, ପ୍ରାଣେଶ୍ୱର ! ବାପା ସହଙ୍କୁ ଖଣ୍ଡିଏ ପତ୍ର ଲେଖିଛନ୍ତି, ଶୀଘ୍ର ଦେବାକୁ ହେବ ।

ବୀରେନ୍ଦ୍ର—କାହାକୁ ? ହେମାଦେଈଙ୍କୁ ?

ଶାରଦା—ହଁ, ମୁଁ ଆସୁଛି । ( ପ୍ରସ୍ଥାନୋଦ୍ୟତା )

ବୀରେନ୍ଦ୍ର—( ବାଧାଦେଇ ) ଆସିଲ କି ନାହିଁ, ଏପରି ତରବର ହୋଇ ଚାଲି ଯାଉଛ, ପ୍ରାଣେଶ୍ୱରି ?

ଶାରଦା—ଦିନାନ୍ତେ ଥରେ ପ୍ରାଣେଶ୍ୱରଙ୍କ ଦର୍ଶନ ଲଭି, ତା’ତ ହେଲା—ଆଉ ବର୍ତ୍ତମାନ ଏଠାରେ ଦାସୀର କି ପ୍ରୟୋଜନ, ଗୋଟାଏ ଜରୁରି କାର୍ଯ୍ୟ—ସେଥିରେ କି ମୁଁ ଠିଆହୋଇ ରହିପାରେ ?
( ପ୍ରସ୍ଥାନୋଦ୍ୟତା )

ବୀରେନ୍ଦ୍ର—ଏହି ପରା ତୁମର ସ୍ୱାମିଭକ୍ତି ?

ଶାରଦା—କାହିଁକି, ପ୍ରଭୋ ? କେଉଁଠାରେ ଊଣା ହୋଇଛି ? ଦୟାକରି ଥରେ ଶିଖାଇ ଦିଅ, ପ୍ରଭୋ !

ବୀରେନ୍ଦ୍ର—ସ୍ୱାମିର ଅନୁମତି ନ ନେଇ ସ୍ତ୍ରୀର କ’ଣ ସ୍ୱାଧୀନ ଭାବେ ଚାଲି ଯିବା ଉଚିତ ?

ଶାରଦା—ସବୁଦିନତ ମୁଁ ଏହିପରି ଚାଲି ଯାଇ ଆଏ, ପ୍ରଭୋ ! କାହିଁ ଦିନେତ ଆପତ୍ତି କର ନାହିଁ ?

ବୀରେନ୍ଦ୍ର—ମୁଁ ପରୀକ୍ଷା କରୁଥିଲି ।

ଶାରଦା—ଛି, ପ୍ରଭୋ ! ଏ ମୂଢ଼ାକୁ ପୁଣି ପରୀକ୍ଷା !

ବୀରେନ୍ଦ୍ର—ପ୍ରାଣେଶ୍ୱରି ! ଆଜି ମୁଁ ତୁମକୁ ଛାଡ଼ିବି ନାହିଁ ।

ଶାରଦା—ଛାଡ଼ିବ କ’ଣ ପ୍ରାଣେଶ୍ୱର ! ଏ ଦାସୀ ଯେ ତୁମ ଶ୍ରୀଚରଣରେ ଚିରଦିନ ପାଇଁ ବନ୍ଧା । ପ୍ରାଣେଶ୍ୱର ! ମୁଁ ଆଗେ ପତ୍ରଟା ସହଙ୍କୁ ଦେଇ ଆସେ ।

ବୀରେନ୍ଦ୍ର—ତାହା ଯେବେ ନିତାନ୍ତ ଜରୁରି, ମୋତେ ଦିଅ, ମୁଁ ଏହିକ୍ଷଣି ଲୋକ ଦୌଡ଼ାଇ ଦେଉଛି ।

ଶାରଦା—ଏ ଗୋଟିଏ ଗୁପ୍ତ ପତ୍ର ।

ବୀରେନ୍ଦ୍ର—ମୋତେ କ’ଣ ଅବିଶ୍ୱାସ ହେଉଛି ?

ଶାରଦା—ଅବିଶ୍ୱାସ ? ସ୍ୱାମିଙ୍କୁ ଅବିଶ୍ୱାସ ! ମାତ୍ର—

ବୀରେନ୍ଦ୍ର—ମାତ୍ର କ’ଣ ?

ଶାରଦା—ପିତାଙ୍କ ଆଦେଶ ଯେ ମୁଁ ନିଜେ ନେଇ-ଯିବି—ସହୁ ଛଡ଼ା ଅନ୍ୟ କାହାରିକୁ ଦେବି ନାହିଁ । ଏପରି କ’ଣ, ଏ କଥା ମଧ୍ୟ କାହାରିକୁ ପ୍ରକାଶ କରିବି ନାହିଁ ।

ବୀରେନ୍ଦ୍ର—ଏହିତ ମୋତେ କହି ସାରିଲଣି ।

ଶାରଦା—ସ୍ୱାମୀଙ୍କୁ କି ସ୍ତ୍ରୀ କିଛି ଗୋପନ କରିପାରେ ?

ବୀରେନ୍ଦ୍ର—ସ୍ତ୍ରୀ ପ୍ରତି କି ସ୍ୱାମୀ କେବେ ବିଶ୍ୱାସଘାତକ ହୋଇ ପାରେ ?

ଶାରଦା—ଯେଉଁ ଲୋକ ହସ୍ତରେ ପଠାଇବେ, ସେ ଯେବେ ଅବିଶ୍ୱାସୀ ହୁଏ ?

ବୀରେନ୍ଦ୍ର—ମୋର କ’ଣ ଏତିକି ଟିକିଏ ଦାୟିତ୍ୱ ଜ୍ଞାନ ନାହିଁ ? ତୁମର ସହୁ କ’ଣ ମୋର ସହୁ ନୁହେଁ—ତୁମର ପିତା କ’ଣ ମୋର ପିତା ନୁହଁନ୍ତି ? ତୁମର ମଙ୍ଗଳ କ’ଣ ମୋର ମଙ୍ଗଳ ନୁହେଁ ?

ଶାରଦା—ପ୍ରାଣେଶ୍ୱର ! ଦାସୀର ଦୋଷ ମାର୍ଜନା କରନ୍ତୁ ।

ବୀରେନ୍ଦ୍ର—ପ୍ରାଣେଶ୍ୱରି ! ଏଠାକୁ ଆସିବା ଦିନୁ ତୁମର ଗୀତ ମୁଁ ଦିନେ ହେଲେ ମନଦେଇ ଶୁଣି ନାହିଁ—ଗୋଟିଏ ଗାଇବ କି ? ଆଜି ମନ ପ୍ରାଣ ଦେଇ ଶୁଣିବି ।

ଶାରଦା—ପ୍ରାଣେଶ୍ୱର ! ଏତେ ଅନୁଗ୍ରହ ଏ ଦାସୀ ପ୍ରତି !

ବୀରେନ୍ଦ୍ର—ପ୍ରାଣେଶ୍ୱରି ! ପତ୍ରଟି ଦିଅ, ମୁଁ ଶୀଘ୍ର ଲୋକଦ୍ୱାରା ପଠାଇ ଦିଏଁ—ଜରୁରି ପତ୍ର କିନା ? ( ପତ୍ର ଘେନି ପ୍ରସ୍ଥାନ କାଳେ ) ହଁ ପ୍ରାଣେଶ୍ୱରି, ସେ ଘରେ ତୁମର ବୀଣା ଅଛି, ତାକୁ ଟିକିଏ ବଜାଇ ଗାଇବ—ଏବା ସଙ୍ଗେ ତୁମର ବୀଣା ବଜାଇବା ଓ ଗୀତ ଗାଇବା ଶୁଣିବି ।

ଶାରଦା—ଅଚ୍ଛା, ଯାଅ ତୁମ୍ଭେ ଶୀଘ୍ର ଆସ, ମୁଁ ବୀଣାର ସ୍ୱର ବାନ୍ଧି ଠିକ୍ କରୁଛି ।

ବୀରେନ୍ଦ୍ର—ଅଚ୍ଛା ( ଯାଉଁ ଯାଉଁ ) ଦେଖ, ବେଶ ଜଳଜଳ ବାଜିବ, ପଚେଶ୍ୱର ! ( ପ୍ରସ୍ଥାନ )

ଶାରଦା—ଆଜି ପତିଙ୍କର କି ସୁଆଗ—କି ଗୀତ ଗାଇବି ? 'ଆଜି ଦେବି ଉପହାର'—ନା, ନା —'କେତେଦିନେ ପାଇଛୁ ହେ' ନା, ନା— 'ବନ୍ଧୁ କି ଆଜି କାମନା ମୋର'—ନା, ନା— କି ଗୀତ ଗାଇଲେ ମୋର ପତିଙ୍କୁ ଭଲ ଲାଗିବ ? ( ଗଳା ଝାଡ଼ି ) କାହିଁ ? ଗଳାର ସ୍ୱରତ କାହିଁକି ପରିଷ୍କାର ହେଉନାହିଁ ?—ବୀଣାର ସ୍ୱର ଦେଖେଁ କିପରି ହେଉଛି । ( ପ୍ରସ୍ଥାନ )

[ ବୀରେନ୍ଦ୍ରର ପୁନଃ ପ୍ରବେଶ ]

ବୀରେନ୍ଦ୍ର—ଏତେଦୂର ଷଡ଼ଯନ୍ତ୍ର । ବୁଝିଛି, ବୃଦ୍ଧ । ତୋର ସ୍ୱାର୍ଥପଥରେ ଜେମାଦେଈ ଗୋଟିଏ ପ୍ରଧାନ ଅନ୍ତରାୟ—ତାଙ୍କୁ ହସ୍ତାନ୍ତର ନ କଲେ ଶାରଦାର ସହିତ ମୋର ବିବାହ ଅସମ୍ଭବ । କିନ୍ତୁ ଏତିକି କ'ଣ ବୁଝିପାରୁ ନାହୁଁ, ବୃଦ୍ଧ । ସୁନ୍ଦରୀ ଛାଡ଼ି ଅସୁନ୍ଦରୀ ପତ୍ନୀ କେହି କେବେ କାମନା କରେ ?—ରାଜଜେମା ଛାଡ଼ି ପ୍ରଜା-କନ୍ୟା କେହି କେବେ ବିବାହ କରିବାକୁ ଚାହେଁ ? ମୋତେ ଆଶ୍ରୟ ଦେଇ ଥିଲୁ ବୋଲି କ'ଣ ମୋ ଉପରେ ଆଜୀବନ ଆଧିପତ୍ୟ କରୁଥିବୁ ?—ଯେତେଦିନ ତୋର ଅଧୀନ ଥିଲି, ତେତେଦିନ ତୋର ପ୍ରଭୁତ୍ୱ ମାନୁଥିଲି—ବର୍ତ୍ତମାନ ମୁଁ ସ୍ୱାଧୀନ, ତୋ ପରି ଜଣେ ଉଚ୍ଚପଦସ୍ଥ ରାଜକର୍ମଚାରୀ—ଅବସ୍ଥାରେ ଯେପରି ଉନ୍ନତ ହୋଇଛି, ଅଭିଳାଷରେ ମଧ୍ୟ ସେହିପରି ଉନ୍ନତ ହେବି । ସୁନ୍ଦରୀକୁ ସୁନ୍ଦରୀ ପାଇବି—ରାଜ୍ୟ ସମ୍ପଦରେ ମୋର ଚିର ଅଧିକାର ହେବ ।

[ ଶାରଦାର ବୀଣା ହସ୍ତେ ପ୍ରବେଶ ]

ଶାରଦା—ପ୍ରଭୋ । ଆଜି ବୀଣାଟା କାହିଁକି ବାଜୁନାହିଁ —ଗଳାର ସ୍ୱର କାହିଁକି ଖେଳୁ ନାହିଁ ? କୌଣସି ଗୀତ କାହିଁକି ମନେ ପଡ଼ୁନାହିଁ ?

ବୀରେନ୍ଦ୍ର—ତୁମର କଥାବାର୍ତ୍ତା ହିଁ ଗୀତ, ପ୍ରାଣେଶ୍ୱରୀ । ଚାଲ, ଆଜି ମୋତେ ରନ୍ଧି ଦେବ—ତୁମର ରନ୍ଧନ ଖାଇ ମୁଁ ଧନ୍ୟ ହେବି ।

ଶାରଦା—ମୋର ରନ୍ଧନ ଖୁଆଇ ମୁଁ ଧନ୍ୟ ହେବି, ପ୍ରାଣେଶ୍ୱର ।

ବୀରେନ୍ଦ୍ର—ଚାଲ ତେବେ ଶୀଘ୍ର ଚାଲ ।

ଶାରଦା—( ବୀଣା ଥୋଇ ଦେଇ, ହାତଧରି ) ଆସ ପ୍ରଭୁ ।

ବୀରେନ୍ଦ୍ର—ବୀଣାଟା ଛାଡ଼ିଗଲ ଯେ ?

ଶାରଦା—ଭୁଲି ଯାଉଛି, ପ୍ରାଣେଶ୍ୱର ।

ବୀରେନ୍ଦ୍ର—ଚାଲ, ମୁଁ ନେଇ ଯାଉଛି । ( ସ୍ୱଗତ ସ୍ତ୍ରୀ'କୁ କିଛିକ୍ଷଣ ଅଟକାଇ ରଖିବା ଦରକାର ।

( ଶାରଦାର ହାତ ଧରି ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ଦୁର୍ଗ ଓ ତନ୍ନିକଟସ୍ଥ କୁଞ୍ଜବନ—

[ ବାସୁଦେବ ଦୁର୍ଗଆଡ଼କୁ ଲକ୍ଷ୍ୟକରି ସେହି କୁଞ୍ଜବନରେ ଲୁକ୍‌କାୟିତ ଭାବେ ଦଣ୍ଡାୟମାନ ]

ବାସୁଦେବ—କାହିଁ, ସଞ୍ଜ ତ ହୋଇ ଗଲାଣି, ଜେମା-ଦେଈ ଆସିଲେ ନାହିଁ କାହିଁକି ? ଶାରଦା କଣ ଆସି ନାହିଁ ? ଏହି ଯେ ଜେମାଦେଈ ।

[ ନନ୍ଦିକାର ପ୍ରବେଶ ]

ନନ୍ଦିକା—ମନ୍ତ୍ରି ଭାଇ ! ମୁଁ ଠିକ୍ କରିଛି ।

ବାସୁଦେବ—କ'ଣ ଠିକ୍ କଲ ?

ନନ୍ଦିକା—ତୁମେ ମନା କରିଦିଅ ।

ବାସୁଦେବ—ତାହାହେଲେ କ'ଣ ତୁମ୍ଭେ ଚିରଦିନ କୁମାରୀ ରହିବ ?

ନନ୍ଦିକା—କ୍ଷତି କ'ଣ ?

ବାସୁଦେବ—କ୍ଷତି ଲାଭ ଜାଣେ ନାହିଁ—ସଂସାରରେ ଥାଇ ଯାହା କରଣୀୟ ତାହା କିପରି ଅବହେଳା କରିବ ?

ନନ୍ଦିକା—ମୋର ପିତାଙ୍କର ମନରେ କଦାପି କଷ୍ଟ ଦେଇପାରିବି ନାହିଁ ।

ବାସୁଦେବ—ପିତା ଯେ ବାର୍ଦ୍ଧକ୍ୟ ହେତୁ ଭୁଲ ବୁଝୁଛନ୍ତି ।

ନନ୍ଦକା—ବାର୍ଦ୍ଧକ୍ୟ ହେତୁ ମୋତେହିଁ ଏକମାତ୍ର ଅବଲମ୍ବନ ମନେ କରୁଛନ୍ତି ।

ବାସୁଦେବ—ବିବାହ ହେଲେତ ସେଥିରେ ବ୍ୟାଘାତ ଘଟିବ ନାହିଁ ।

ନନ୍ଦକା—ଖୁବ୍ ଘଟିବ ଭାଇ !—ମୋର କର୍ତ୍ତବ୍ୟ ତାହାହେଲେ କେତେ ପରିମାଣରେ ବାଣ୍ଟି ହୋଇଯିବ—ମୋର ଆଦର ଯତ୍ନ କେତେ ପରିମାଣରେ ବିଭକ୍ତ ହୋଇଯିବ—ସେହି ଏକ ମନରେ, ଏକ ପ୍ରାଣରେ କି ପିତୃ-ସେବା କରି ପାରିବି ? ବିଶେଷତଃ, ପୁଣି ମୁଁ ଏଠୁଁ ଅନ୍ତର ହୋଇଯିବି—ତା' ଉପରେ ତେତେବେଳେ ପିତା ମୋର ନିର୍ଭର କରି ରହିବେ ?

ବାସୁଦେବ—କେମାଦେଈ ! ଭାବୁଛ କି ସୁବର୍ଣ୍ଣ-କେଶରୀଙ୍କ ପରେ ଏହି ରାଜସିଂହାସନର ଦଶା କ'ଣ ହେବ ?

ନନ୍ଦକା—ରାଜ-ଶୂନ୍ୟ ହେବ ।

ବାସୁଦେବ—ତେବେ ?

ନନ୍ଦକା—ମୋର କି ଶକ୍ତି ଅଛି ?

ବାସୁଦେବ—ତୁମ୍ଭେ ସତ୍ପାତ୍ରରେ ଅର୍ପିତା ହେଲେ କି ତାହା ହେବ ?

ନନ୍ଦକା—କେଶରୀବଂଶ ତ ଆଉ ରହିବ ନାହିଁ ?

ବାସୁଦେବ—ନାମ ପରିବର୍ତ୍ତନ ଘଟିପାରେ ସତ୍ୟ, କିନ୍ତୁ ରାଜ-ଶୂନ୍ୟତା ତ ଘଟିବ ନାହିଁ ? ରାଜ୍ୟ ଅରାଜକତାରୁ ତ ରକ୍ଷା ପାଇବ ?

ନନ୍ଦକା—ବୁଝିପାରୁଛି, ମନ୍ତ୍ରି ଭାଇ ! ତୁମେ ତାହିଁକି ଏ' ବିବାହରେ ଏତେ ଜଗର କରୁଛ—କିନ୍ତୁ ମୁଁ ନାଚାର ।

ବାସୁଦେବ—ସେପରି ଉଦାସୀନା ହେଲେ କି ଚଳିବ ?—ଏଣେ ତୁମର ଏକମାତ୍ର ବୃଦ୍ଧ ପିତା—ତେଣେ ଯେ ତୁମର ଲକ୍ଷ ଲକ୍ଷ ସନ୍ତାନ-ଗଣ; ଏଣେ ତୁମେ ଜଣକର ଜୀଅଲ ମାତ୍ର ରକ୍ଷା କରିବ—ତେଣେ ଯେ ତୁମେ ଲକ୍ଷ ପ୍ରାଣୀର ପ୍ରାଣ ରକ୍ଷା କରିବ; ସୁତରାଂ ବିଚାର କରି ଦେଖ, ଏପରି ସ୍ଥଳେ ତୁମର କର୍ତ୍ତବ୍ୟ କ'ଣ ?

ନନ୍ଦକା—ତେବେ କି ଉପଦେଶ ଦେଉଛ, ଭାଇ ?

ବାସୁଦେବ—ମୋର ଆଜକାର ପତ୍ରରୁ ଅବଶ୍ୟ ବୁଝି ପାରିଥିବ ।

ନନ୍ଦକା—ପତ୍ର ।

ବାସୁଦେବ—ଶାରଦା ହାତରେ ଯେଉଁ ପତ୍ର ପଠାଇଥିଲି ।

ନନ୍ଦକା—ଶାରଦା ହାତରେ ?

ବାସୁଦେବ—ପତ୍ର କ'ଣ ପାଇନାହିଁ ?—ଶାରଦା କ'ଣ ଆସିନାହିଁ ?

ନନ୍ଦକା—ନାହିଁ, କେହିତ ଆସିନାହିଁ ?

ବାସୁଦେବ—ତୁମେ ତେବେ ଜାଣିଲ କିପରି ମୁଁ ଏଠାରେ ତୁମକୁ ଅପେକ୍ଷା କରୁଛି ?

ନନ୍ଦକା—ମୁଁ ଦୁର୍ଗ ଶିଖରରେ କର୍ତ୍ତବ୍ୟ ବିଷୟ ଚିନ୍ତା କରୁଁ କରୁଁ ବୁଲୁଥିଲି, ହଠାତ୍ ତୁମକୁ ଦେଖି ଓହ୍ଲାଇ ଆସିଲି ।

ବାସୁଦେବ—ତେବେ ଶାରଦୀ ଗଲା କେଉଁଆଡ଼େ ? ପତ୍ରଖଣ୍ଡ କ'ଣ କଲା ? ସେଥିରେ ଯେ ଅନେକ ଗୁପ୍ତ କଥା ଲେଖାଥିଲା !

ନନ୍ଦକା—ବୋଧହୁଏ ସେନାପତିଙ୍କ ଘରକୁ ଯାଇଥିବ, ଗଳ୍ପ କରୁଁ କରୁଁ ବସି ପଡ଼ିଥିବ । ଅଚ୍ଛା ଭାଇ ! ସହର ବିବାହଟା ଶୀଘ୍ର ସାରି ଦେଉନାହିଁ କାହିଁକି ? ସେନାପତି କ'ଣ ରାଜ ହେଉ ନାହାନ୍ତି ?—ସେ ନିଶ୍ଚୟ ରାଜ ହେବେ । ପିଲାକୁଁ ଏତେ ଘନିଷ୍ଠତା—ପୁଣି ତୁମ୍ଭଯୋଗୁଁ ମଣିଷ—ରାଜ ନ ହୋଇ ଯିବେ କେଉଁ-ଆଡ଼େ ?—ତୁମେ ଖାଲି ମନ ଦେଉ ନାହିଁ ।

ବାସୁଦେବ—ସେ ଚିନ୍ତାଠାରୁ ଏ'ଚିନ୍ତା ଯେ ଅଧିକ କେମାଦେଈ ! ( ଅନ୍ୟମନସ୍କ ଭାବେ ) ମୋର ବଡ଼ ସନ୍ଦେହ ହେଉଛି ।

ନନ୍ଦକା—ସନ୍ଦେହ କରିବାର କ'ଣ ଅଛି ?

ବାସୁଦେବ—ସେ ଯେ ଭାରି ଦୁଷ୍ଟ—ଚିଠିଖଣ୍ଡ ଯେବେ କେଉଁଠି ପକାଇ ଦେଇଥାଏ ?

ନନ୍ଦକା—କ୍ଷତି କ'ଣ ?

ବାସୁଦେବ—କ୍ଷତି ଖୁବ୍ ଅଛି, କେମାଦେଈ ।

ନନ୍ଦକା—କାହିଁକି ? କଣ ଲେଖା ଥିଲା କି ?

ବାସୁଦେବ—ସେଥିରେ ଏ'ପରି କଥା ଲେଖାଥିଲା, ତାହା ଯେବେ ରାଜା କୌଣସିମତେ ଜାଣି ପାରନ୍ତି, ମୋର ଏ' ରାଜ୍ୟରେ ବାସ କରିବା ଏକାବେଳକେ ଦୁରୂହ ହୋଇ ପଡ଼ିବ । ମାତ୍ର କ'ଣ ହେଲା ? ଶାରଦା କେଉଁଆଡ଼େ ଗଲା ?

ନନ୍ଦକା—ସ୍ଥିର ହୁଅ, ଭାଇ ! ସେ ଏହିକ୍ଷଣି ଆସିଯିବ । (ସ୍ୱଗତ) ରହ ଟୋକି, ମୋତେ ଥଟ୍ଟା କରୁଥିଲୁ—ଆଜି ତୋର ମଜା ବାହୁଡ଼ୁଛି ।

ବାସୁଦେବ—କ୍ଷେମାଦେଈ ! ତୁମେ ଯାଅ—ମୁଁ ଦେଖେଁ, ଶାରଦା କେଉଁଆଡ଼େ ଗଲା—ପତ୍ର କ'ଣ କଲା ।

[ ସୁବର୍ଣ୍ଣ କେଶରୀଙ୍କର ପ୍ରବେଶ ]

ସୁବର୍ଣ୍ଣ—ଏହି ଯେ ପତ୍ର !—ନରାଧମ ! ବିଶ୍ୱାସଘାତକ ।

[ ଅସି ନିଷ୍କୋଷିତ କରି ହତ୍ୟା କରିବାକୁ ଯିବା ]

ନନ୍ଦକା—ବାବା ! ବାବା ! ( ହସ୍ତ ଧାରଣ କରିବା )

—ଇତି—

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—କାରାଗାରର ତୋରଣ ଦେଶ—

ସୁବର୍ଣ୍ଣ—ଏତେ ବିଶ୍ୱାସଘାତକତା—ପିତା କନ୍ୟା ମଧ୍ୟରେ ବିଚ୍ଛେଦ ଜନ୍ମାଇ ଦେବା ! 'ପିତା ବୃଦ୍ଧ, ଅସ୍ଥିରମତି, ସ୍ନେହାଧିକ୍ୟ ହେତୁ ରାଜ୍ୟର ଭାବି ମଙ୍ଗଳ ବିଷୟ ଚିନ୍ତା କରିବାକୁ ଅକ୍ଷମ, ତୁମ୍ଭେ ପ୍ରାପ୍ତବୟସ୍କା—ଧର୍ମ ରକ୍ଷାକର, ରାଜ୍ୟ ରକ୍ଷାକର—ପ୍ରୟୋଜନ ହେଲେ ପିତାର ଅବାଧ୍ୟ ହେବାକୁ ମଧ୍ୟ କୁଣ୍ଠିତ ହୁଅନାହିଁ ।'—ଓଃ ! କି ବିଶ୍ୱାସଘାତକତା—ମୋର ପ୍ରାଣାଧିକାକୁ ମୋଠାରୁ ବିଚ୍ଛିନ୍ନ କରିନେବା !—ଏହା ଯେ ପ୍ରାଣବଧାପେକ୍ଷା ଗୁରୁତର ! ପୁଣି ଲେଖାଅଛି—'ଏଥର ମୋର ଜନ୍ମ ଦିନର ଭେଟି ଗ୍ରେଡ଼ରଙ୍କଙ୍କର ସେହି ଚିତ୍ରପଟ, ଯାହା ଶାରଦା ହାତରେ ପଠାଇଥିଲି, ଏହାର ସାଧୁ ଉଦ୍ଦେଶ୍ୟ ତୁମ୍ଭେ ବେଶ୍ ବୁଝିପାରିଥିବ ।' ଓଃ କି ଭୟଙ୍କର !—ନ ବୁଝି ନ ସୁଝି ମୋର କନ୍ୟାକୁ ସିନା ଦୋଷୀ କରିଥିଲି—ସୁଧାରେ କି ଗରଳ ଆଣି ନରାଧମ ମିଶାଇ ଦେଇଥିଲା ପୁଣି ସେନାପତି କହୁଥିଲେ, ବିବାହ ପ୍ରସ୍ତାବ ନେଇ କର୍ଣ୍ଣାଟରୁ ଦୂତ ଆସିବା, ମନ୍ତ୍ରୀଙ୍କର କୌଶଳ । ନିଶ୍ଚୟ ସ୍ୱାର୍ଥସିଦ୍ଧି ନିମନ୍ତେ ବାସୁଦେବ ଏହି ଷଡ଼ଯନ୍ତ୍ରକାରୀ—ଧନ୍ୟ ଈଶ୍ୱର ! ଗ୍ରେଡ଼ରକୁ ଯଥା ସମୟରେ ଧରାଇ ଦେଇ'ଛ—ମୋର କନ୍ୟାକୁ ଶଇତାନର କବଳରୁ ରକ୍ଷା କରିଛ । ରକ୍ଷି ! ଯା, ଶୀଘ୍ର ସେନାପତି ଓ ଜହ୍ଲାଦକୁ ଡାକି ନେଇ ଆ—ପାପ-କଳଙ୍କକୁ ଏ' ପୁଣ୍ୟ-ପୀଠରୁ ଯେତେ ଶୀଘ୍ର ଦୂର କରାଯାଏ ସେତେ ମଙ୍ଗଳ ।

[ ନନ୍ଦକାର ପ୍ରବେଶ ]

ନନ୍ଦକା—ଏ' କଳଙ୍କିନୀକୁ ମଧ୍ୟ ସେହି ଦଣ୍ଡ ଦେଉନ୍ତୁ, ପିତଃ !

ସୁବର୍ଣ୍ଣ—ତୁ ପୁଣି ଏଠି କାହିଁକି, ନନ୍ଦ ?

ନନ୍ଦକା—ପୁଣ୍ୟ-ପୀଠରୁ ଯେତେବେଳେ କଳଙ୍କ ଦୂର କରିବାକୁ ବ୍ୟବସ୍ଥା କରୁଛନ୍ତି, ସେତେବେଳେ ଆଉ ଗୋଟିଏ କଳଙ୍କ ବାକି ରହିଯିବ କାହିଁକି ପିତଃ ?

ସୁବର୍ଣ୍ଣ—କଳଙ୍କ ସ୍ପର୍ଶରେ ଯେ ନିଷ୍କଳଙ୍କ ମୁହୂର୍ତ୍ତିକ ପାଇଁ କଳଙ୍କିତ ହୋଇଥିଲା ମା !

ନନ୍ଦକା—ଭୁଲ୍ ପିତା, ଏ' କଳଙ୍କ ସ୍ୱାଭାବିକ—ଚିରସ୍ଥାୟୀ ।

ସୁବର୍ଣ୍ଣ—ସ୍ୱାଭାବିକ, ଚିରସ୍ଥାୟୀ ?

ନନ୍ଦକା—ଆଜ୍ଞା ପିତଃ ! କର୍ଣ୍ଣାଟ ରାଜ ପ୍ରତି ଅନୁରାଗର ପ୍ରଗାଢ଼ାକର୍ଷଣ ଦେଖି, ମନ୍ତ୍ରୀ ଏପରି ପତ୍ର ଲେଖିଥିଲେ ।

ସୁବର୍ଣ୍ଣ—ପ୍ରକୃତ କହୁଛୁ ?

ନନ୍ଦକା—ସୁବର୍ଣ୍ଣ କେଶରୀ-ନନ୍ଦନୀ ନନ୍ଦକା, ମିଥ୍ୟା କହିବାକୁ ଜାଣେ ନାହିଁ, ପିତଃ ।

ସୁବର୍ଣ୍ଣ—ତେବେ ତୋର ପିତାକୁ ତୁ ଭଲ ପାଉନା ?

ନନ୍ଦକା—ମୋର ପିତାକୁ ମୁଁ ଭଲ ପାଏ ନାହିଁ ?

ସୁବର୍ଣ୍ଣ—( ସସ୍ମିତରେ ) ତେବେ ମୁଁ କେଉଁ କଥା ବିଶ୍ୱାସ କରିବ ?—ତୋର କଥାର ଯେ ତୁ ନିଜେ ପ୍ରତିବାଦ କରୁଛୁ ?

ନନ୍ଦକା—ଅଚ୍ଛା, ପିତଃ ! ଆପଣ ମୋତେ ଭଲ ପାଆନ୍ତି ବୋଲି କ'ଣ ଆଉ କାହାରିକୁ ଭଲ ପାଆନ୍ତି ନାହିଁ ?

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! ଏ କି ପ୍ରଶ୍ନ କରୁଛୁ ? ତୁ କଣ ତୋର ପିତାର ହୃଦୟ ଏ ପର୍ଯ୍ୟନ୍ତ ବୁଝି ପାରିନାହୁଁ ନନ୍ଦ ? ଏହି ହୃଦୟ ଯଦି ବିଚ୍ଛିନ୍ନ କରିବାର କ୍ଷମତା ଥାନ୍ତା, ତାହାହେଲେ ଦେଖାନ୍ତି—ଏପରି ତିଳେ ସ୍ଥାନ ସେଠାରେ ନାହିଁ, ଯାହା କି ତୋର ଅଧିକୃତ ନୁହେଁ ।

ନନ୍ଦକା—ଅସମ୍ଭବ !

ସୁବର୍ଣ୍ଣ—ତୁ ଅସମ୍ଭବ କହୁଛୁ, ନନ୍ଦ ?

ନନ୍ଦକା—ପିତଃ ! ନିଶ୍ଚୟ ଆପଣ ଅତିରକ୍ତ ସ୍ନେହ ମୋହରେ ଜ୍ଞାନ-ଶୂନ୍ୟ ହୋଇଛନ୍ତି ।

ସୁବର୍ଣ୍ଣ—ନା, ନନ୍ଦ ! ତୁ କେବଳ ଦୋଷୀ-ପ୍ରତି ଦୟାପରବଶ ହୋଇ ବିବେକ-ଶୂନ୍ୟ ହୋଇଛୁ ।

ନନ୍ଦକା—ଅଚ୍ଛା, ପିତଃ ! ମୋର ଯେତେବେଳେ ଜନ୍ମ ହୋଇ ନ ଥିଲା, ସେତେବେଳେ କ'ଣ ଆପଣ କାହାରିକୁ ଭଲ ପାଉ ନ ଥିଲେ ?

ସୁବର୍ଣ୍ଣ—ନନ୍ଦ ! ସେ ପୂର୍ବକଥା ମନେ ପକାନା—ତୋର ମା ଯେ ମୋର ହୃଦୟ ପୂର୍ଣ୍ଣ କରି ରଖିଥିଲା । ( ଦୀର୍ଘ ନିଶ୍ୱାସ ତ୍ୟାଗ କରିବା )

ନନ୍ଦକା—ଯେତେବେଳେ ବିବାହ କରି ନ ଥିଲେ ?

ସୁବର୍ଣ୍ଣ—ଥାଉ ନନ୍ଦ ! କାହିଁକି ଏ ସବୁ ଅତୀତ-କଥା ମନେ ପକାଉଛୁ ?—ମୋର ପିତା ମାତା ଯେ ମୋତେ କେତେ ଆଦର ଯତ୍ନ କରୁଥିଲେ, ଆଉ ମୁଁ ଯେ ସେମାନଙ୍କୁ କେତେ ଭଲ ପାଉଥିଲି ତାହା ଏହି ଜନ୍ମରେ କି ବର୍ଣ୍ଣନା କରିବ ?

ନନ୍ଦକା—ବିବାହ ବେଳେ ପିତା ମାତା କଣ ବଞ୍ଚି ଥିଲେ ?

ସୁବର୍ଣ୍ଣ—ନିଜେ ଯେ ସେମାନେ ବିବାହ ଦେଇଥିଲେ—( ଦୀର୍ଘନିଶ୍ୱାସ ତ୍ୟାଗ କରିବା ) କିନ୍ତୁ ତହିଁରେ ଅଲ୍ପଦିନ ଏ ସଂସାରରେ ଥିଲେ ।

ନନ୍ଦକା—ସେ କେତେଦିନ ନିଶ୍ଚୟ ସେମାନେ ବଡ଼ ଦୁଃଖରେ ଜୀବନ ଯାପନ କରିଥିବେ ।

ସୁବର୍ଣ୍ଣ—କାହିଁକି, ନନ୍ଦ ? ବରଂ ସେ କେତେଦିନ ପରମ ସୁଖରେ ଥିଲେ ।

ନନ୍ଦକା—କିପରି, ପିତାଃ ? ବିବାହ ଦ୍ୱାରା ନିଶ୍ଚୟ ସେମାନଙ୍କ ପ୍ରତି ଆପଣଙ୍କର ଅନୁରାଗ ହ୍ରାସ ପାଇଥିବ ।

ସୁବର୍ଣ୍ଣ—ହେଲେବା—ତଥାପି, ପିତା ମାତା କ'ଣ ପୁତ୍ରର ସୁଖ ଦେଖିବେ ନାହିଁ ? ପୁତ୍ରର ସୁଖ ଯେ ପିତ ମାତାର ପରମ ସୁଖ ।

ନନ୍ଦକା—ମୋର ପିତା ତେବେ ସ୍ୱାର୍ଥପର କାହିଁକି ?

ସୁବର୍ଣ୍ଣ—ସ୍ୱାର୍ଥପର !

ନନ୍ଦକା—ନିଜ ମୁଖରେ ସ୍ୱୀକାର କଲେ କି ନା ଭାବି ଦେଖନ୍ତୁ ।

ସୁବର୍ଣ୍ଣ—( ନୀରବ )

ନନ୍ଦକା—ଆଉ, ଏକ ହୃଦୟରେ ଆପଣ ଏକରୁ ଅଧିକଙ୍କୁ ଭଲ ପାଇଛନ୍ତି କି ନା, ଭାବି ଦେଖନ୍ତୁ । ମୋତେ ସମ୍ପୂର୍ଣ୍ଣ ହୃଦୟ ଦାନ କଲେ ସୁଦ୍ଧା ଆପଣଙ୍କ ପିତା ମାତା ଓ ପତ୍ନୀ ନିମନ୍ତେ ଅଦ୍ୟାପି କିଞ୍ଚିତ ହେଲେ ସ୍ଥାନ ରଖିଛନ୍ତି କି ନା ଚିନ୍ତାକରି ଦେଖନ୍ତୁ ।

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! ତୁ ମୋତେ ଏତେ ତର୍କରେ ଆଣି ପକାଇ ଦେଲୁଣି ? କିନ୍ତୁ ଯଥାର୍ଥ କହୁଛୁ ନନ୍ଦ ! ତୋ ବିନା ଯେ ମୁଁ ଦଣ୍ଡେ ବଞ୍ଚି ପାରିବ ନାହିଁ ।

ନନ୍ଦକା—ଛିଃ ବାବା, ପୁଣି ସେହି କଥା ?—ଏଥି-ପାଇଁତ କହୁଥିଲି ଆପଣ ଅତିରକ୍ତ ସ୍ନେହ ମୋହରେ ଜ୍ଞାନଶୂନ୍ୟ ହୋଇଛନ୍ତି ।

ସୁବର୍ଣ୍ଣ—ତୋର କଥା ହେଲା, ନନ୍ଦ ! ମୁଁ ପ୍ରକୃତରେ ଜ୍ଞାନଶୂନ୍ୟ—ଅନ୍ଧ; ମାତ୍ର ତୁହ ମୋର ଚକ୍ଷୁ—ତୁହ ମୋର ଜ୍ଞାନଦାତ୍ରୀ ।

ନନ୍ଦକା—କ୍ଷମା କରନ୍ତୁ ପିତା, ଏ' ଅଧମାକୁ ଏଡ଼େ ଉଚ୍ଚ ପଦ ଦଅନ୍ତୁ ନାହିଁ—ଏ' ଅଧମାକୁ କେବଳ ବିଶ୍ୱାସ କରନ୍ତୁ ।

ସୁବର୍ଣ୍ଣ—ତୋତେ କି କେବେ ଅବିଶ୍ୱାସ କରି ପାରେ, ମା ?

[ ଜହ୍ଲାଦ ଓ ସେନାପତିର ପ୍ରବେଶ ]

ନନ୍ଦକା—ଏପରି ଦୃଢ଼ ବିଶ୍ୱାସର ଯେବେ ଏ' ଅଧୀନା ଅଧିକାରିଣୀ ତେବେ ପ୍ରକୃତରେ ଜାଣନ୍ତୁ ପିତଃ ! ମନ୍ତ୍ରୀ ନିର୍ଦ୍ଦୋଷ ।

ସୁବର୍ଣ୍ଣ—ନିର୍ଦ୍ଦୋଷ !

ନନ୍ଦକା—ନିର୍ଦ୍ଦୋଷ, ପିତଃ !

ସୁବର୍ଣ୍ଣ—ତେବେ କିଏ ଏ' ପତ୍ର ଜାଲ୍ ?

ନନ୍ଦକା—ଏକପ୍ରକାର ତାହାହିଁ ।

ସୁବର୍ଣ୍ଣ—କିପରି ?

ନନ୍ଦକା—କାରଣ ମୋର ମନୋଭାବହିଁ ଭାଷାରେ ଅନ୍ୟଦ୍ୱାରା ବ୍ୟକ୍ତ ହୋଇଛି ।

ସୁବର୍ଣ୍ଣ—( ଆଶ୍ଚର୍ଯ୍ୟଭାବେ ନନ୍ଦକାକୁ ଚାହିଁ ରହିବା )

ନନ୍ଦକା—ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ, ପିତଃ ! ମୁଁ ଅଗନ୍ତୁ କହୁଛି ଯେ କର୍ଣ୍ଣାଟାଧୀଶ୍ୱର ପ୍ରତି ମୋର ପ୍ରଗାଢ଼ାକର୍ଷଣ ଦେଖି ମନ୍ତ୍ରୀ ଏ' କାର୍ଯ୍ୟ କରିଛନ୍ତି ।

ସୁବର୍ଣ୍ଣ—ତୁ ତୋର ପିତାର ଅବାଧ୍ୟ ହୋଇଥାନ୍ତୁ ?

ନନ୍ଦକା—ହେବାରତ କିଛି ବିଚିତ୍ରତା ନ ଥିଲା ।

ସୁବର୍ଣ୍ଣ—ବୁଝିଛି ନନ୍ଦ ! ତୁ ମନ୍ତ୍ରୀଙ୍କ ନିର୍ଦ୍ଦୋଷ ପ୍ରମାଣ କରିବା ନିମନ୍ତେ ସମସ୍ତ ଦୋଷ ନିଜ ମସ୍ତକରେ ନେଉଛୁ !—ଅଚ୍ଛା, ସେନାପତେ ! ନରାଧମକୁ ଗଳା ଧକ୍କା ଦେଇ ରାଜ୍ୟ ସୀମାରୁ ବାହାର କରିଦିଅ ।

ସେନାପତି—ଯଥା ଆଜ୍ଞା !

ନନ୍ଦକା—ସେନାପତେ ! ( କ୍ରୁଦ୍ଧ ନେତ୍ରରେ ଚାହିଁବା ) ପିତଃ !

ସୁବର୍ଣ୍ଣ—ନା ନନ୍ଦ ! ମୁଁ ଆଉ ତୋ କଥା କିଛି ଶୁଣିବି ନାହିଁ,—ତୋର ତର୍କ-ଜାଲ ଭୟାନକ—ଅ' ମା, ମୋ ସଙ୍ଗେ ଅ' ।

ନନ୍ଦକା—ବାବା !

ସୁବର୍ଣ୍ଣ—ମାର୍ଜନା କରିବାକୁ ଚାହୁଁ ? ନା, ନା—ତାହାହେଲେ ଯେ ତୋ'ର ସର୍ବନାଶ ହେବ—ମୋର ସର୍ବନାଶ ହେବ ! ଅ ମା ! ( ପ୍ରସ୍ଥାନୋଦ୍ୟତ କିନ୍ତୁ ନନ୍ଦକା ଛିଡ଼ା ହେବା ) ଛିଡ଼ା ହେଲୁ ଯେ ? ଦେଖା କରିବାକୁ ଚାହୁଁ ? ନା, ନା—ତୋତେ ଦେଖିବାକୁ ପର୍ଯ୍ୟନ୍ତ ଦେବି ନାହିଁ—ତାର ଦୃଷ୍ଟିରେ ଗରଳ ଅଛି—ଅ ମା, ( ନନ୍ଦକା ତଥାପି ଛିଡ଼ା ହୋଇ ରହିବା )—ପିତାର କଥା ଶୁଣ ! ( ଏଥର ନନ୍ଦକା ଗମନୋଦ୍ୟତା ହେବା ଓ ଉଭୟଙ୍କର ପ୍ରସ୍ଥାନ )

ବୀରେନ୍ଦ୍ର—ରକ୍ଷି ! ଯା ବନ୍ଦୀକୁ ମୁକ୍ତ କରି ଦେ—ଆଉ କହିଦେ 'ମହାରାଜାଙ୍କର ହୁକୁମ, ଆପଣ ନିର୍ବାସିତ'—( ସ୍ୱଗତ ) ଗଳାଧକ୍କା ଦେଇ ବାହାର କରି ଦେବାଟା ମୋ ପକ୍ଷେ ସୁନ୍ଦର ଦିଶିବ ନାହିଁ ! ( ପ୍ରକାଶ୍ୟେ ) ଯା, ଛିଡ଼ା ହୋଇ ରହିଲୁ କାହିଁକି ? ( ରକ୍ଷିର ପ୍ରସ୍ଥାନ ) ହରିଣାକ୍ଷୀ ମୋତେ ରକ୍ତ କଷାୟିତ ନେତ୍ରରେ ଚାହିଁଲା, ମାତ୍ର ମୋ ହୃଦୟରେ ଯେପରି ଫୁଲ ଶର ହାଣି ଦେଲା—ସୁକେଶୀ ମୋତେ କର୍କଶ ସ୍ୱରରେ 'ସେନାପତେ' ବୋଲି ସମ୍ବୋଧନ କଲା, ମାତ୍ର ମୋ କର୍ଣ୍ଣରେ ଯେପରି ସୁଧାରସ ଢାଳିଦେଲା—ଦିଅ, ଦିଅ ସୁନ୍ଦରୀ ! ଯେତେଇଚ୍ଛା ପଦାଘାତ ପର୍ଯ୍ୟନ୍ତ ଦିଅ, ମୁଁ ଚନ୍ଦନ ଲେପନ ବୋଲି ଆନନ୍ଦରେ ଅଧୀର ହେବି—ତେବେ ଏତିକି ମାତ୍ର ଦୟାକର ସୁନ୍ଦରି, ତବ ଶ୍ରୀଚରଣ ପଙ୍କଜରେ ଏ' ଅକିଞ୍ଚନ ଦୀନ ଦାସ ବୋଲି ଚିରଦିନ ସ୍ଥାନ ପାଏ ।

[ ରକ୍ଷୀର ପ୍ରବେଶ ]

ରକ୍ଷୀ—ମୁକ୍ତ କରି ଦେଇଛି ସେନାପତେ !

ବୀରେନ୍ଦ୍ର—ହୁକୁମ ଶୁଣାଇଛୁ ?

ରକ୍ଷୀ—ଆଜ୍ଞା ।

ବୀରେନ୍ଦ୍ର—କିଛି କହିଲେ ?

ରଘୀ—କହିଲେ, "ତୋର ସେନାପତି ଦୀର୍ଘଜୀବୀ ହେଉନ୍ତୁ ।"

ବୀରେନ୍ଦ୍ର—ହୁଁ—କାହିଁ ଗଲେ ?

ରଘୀ—ଛୁଡ଼ାତ ହୋଇଥିଲେ ।

ବୀରେନ୍ଦ୍ର—ଯା, ଦେଖ, କ'ଣ କରୁଛନ୍ତି ?

ରଘୀ—ରଜାଙ୍କର ହୁକୁମ ସେ କେବେ ଅମାନ୍ୟ କରିବେ ନାହିଁ—ମାତ୍ର ଏପରି ମନ୍ତ୍ରୀ ଆଉ ପାଇବା ନାହିଁ, ସେନାପତେ । [ ରଘୀର ପ୍ରସ୍ଥାନ ]

ବୀରେନ୍ଦ୍ର—ଯା । ( ସ୍ୱଗତ ) ପ୍ରାଣବଧ ହୋଇଥିଲେ କଣ୍ଟକ ଏକାବେଳକେ ଦୂରୀଭୂତ ହୋଇଥାନ୍ତା—ଏ' ମଧ୍ୟ ମନ୍ଦ ଶାସ୍ତି ହୋଇନାହିଁ—ନିର୍ବାସନ, ଲୋକର ଜୀବନ୍ମୃତ୍ୟୁ ତୁଲ୍ୟ; ଯେହେତୁ, ଶକ୍ତି ଥାଉଁ ଥାଉଁ ଲୋକ ଶକ୍ତିଶୂନ୍ୟ ହୋଇପଡ଼େ—ଅଧିକନ୍ତୁ ମଧ୍ୟ ମନ୍ତ୍ରୀ ଯେତେବେଳେ ଜାଣିପାରିବେ ଯେ ରାଜକେମା ନନ୍ଦିନୀ ମୋତେ ବରମାଲ୍ୟ ଅର୍ପଣ କରିଛନ୍ତି, ତେତେବେଳେ ଯେଉଁ କଷ୍ଟ ସେ ଅନୁଭବ କରିବେ—ଯଦ୍ୟପି ତାଙ୍କୁ କଷ୍ଟ ଦେବା ମୋର ଇଚ୍ଛା ନୁହେ—ତାହା ମରଣରେ କଦାପି କର ପାର ନ ଥାନ୍ତେ ।—ଦେଖ, ବୃଦ୍ଧ ! ତୋ'ର ଈପ୍ସିତ ଜାମାତା ଉପରେ ଅଚିରେ ରାଜ-ଜାମାତା ହେଉଛି—ତୋ'ର ଆଶ୍ରୟବର୍ଦ୍ଧିତ ବୀର ଉପରେ ଓଡ଼ିଶାର ଭାବୀ ଭାଗ୍ୟ-ବିଧାତା ହେଉଛି !

[ ଶାରଦାର ବେଗେ ପ୍ରବେଶ ]

ଶାରଦା—ଅସମ୍ଭବ, ବିଶ୍ୱାସଘାତକ । ( ବୀରେନ୍ଦ୍ର ପ୍ରସ୍ଥାନୋଦ୍ୟତ ) ଛିଡ଼ା ହ, ପ୍ରତାରକ ! ଥରେ ଦେଖିଯା, ତୋ ଯୋଗୁ ଗୋଟିଏ କନ୍ୟା ଉପରେ ତା'ର ଜନ୍ମ ଦାତାକୁ ଜୀବନ୍ତ-ସମାଧି ଦେଇଛି—ଥରେ ଶୁଣି ଯା, ତୋର ଯୋଗୁଁ ଗୋଟିଏ ସଖୀ ଉପରେ ତା'ର ବାଲ୍ୟସଖୀର ସୁଖ ପଥରେ ପ୍ରଧାନ କଣ୍ଟକ ହୋଇଛି—ଥରେ ବୁଝି ଯା, ତୋ' ଯୋଗୁଁ ଗୋଟିଏ ସାମାନ୍ୟ ପ୍ରଜା ଉପରେ ପ୍ରକାଣ୍ଡ ସାମ୍ରାଜ୍ୟର ଭବିଷ୍ୟତ୍ ଗଭୀର ଅନ୍ଧକାରରେ ଆଚ୍ଛନ୍ନ କରି ଦେଇଛି ।

ବୀରେନ୍ଦ୍ର—ଦୂର ହ' ପାଗଳ । ( ପ୍ରସ୍ଥାନୋଦ୍ୟତ )

ଶାରଦା—( ବାଧାଦେଇ ) ପାଗଳ ମୁଁ ନୁହେଁ, ବିଶ୍ୱାସଘାତକ—ପାଗଳ ତୁହି, ଯେଣୁ ବାମନ ହୋଇ ଚନ୍ଦ୍ରକୁ ଆଶା କରୁଛୁ ।

ବୀରେନ୍ଦ୍ର—ହିଂସା କର ନା, ଶାରଦା—ବାମନ ଆଜି ଚନ୍ଦ୍ର ଧରିବାକୁ ସକ୍ଷମ ହୋଇଛି ।

ଶାରଦା—ସକ୍ଷମ ହୋଇଛି ?

ବୀରେନ୍ଦ୍ର—ସକ୍ଷମ ହୋଇଛି କି ନା, କାର୍ଯ୍ୟରେ ଦେଖି ପାରିବୁ ।

ଶାରଦା—ସତେ ?—ତେବେ ତ ମୋର ଆନନ୍ଦ, ସ୍ୱାମୀ ସାମାନ୍ୟ ଉନ୍ନତ ହେଲେ ମଧ୍ୟ ସ୍ତ୍ରୀର ଯେ ମହାନନ୍ଦ ।

ବୀରେନ୍ଦ୍ର—ଦୂର ହ' କୁଳଟା—ପର ପୁରୁଷକୁ ସ୍ୱାମୀ ସମ୍ବୋଧନ କରିବାକୁ ଲଜ୍ଜା ହେଉନାହିଁ ?

ଶାରଦା—ପରସ୍ତ୍ରୀକୁ ସ୍ତ୍ରୀ ସମ୍ବୋଧନ କରିବାକୁ ଲଜ୍ଜା ହେଉନାହିଁ, ପ୍ରତାରକ ?

ବୀରେନ୍ଦ୍ର—ହାଃ, ହାଃ, ହାଃ, ତୁମ୍ଭେ ଯେ ଅବିବାହିତ ?

ଶାରଦା—ତୁ ଯେ ବିବାହିତ !

ବୀରେନ୍ଦ୍ର—କା' ସଙ୍ଗେ ?

ଶାରଦା—ଯା' ସଙ୍ଗେ କଥା କହୁଛୁ—ଯା'କୁ ପ୍ରତାରଣା କରିଛୁ—ଯା'ର ସର୍ବନାଶ କରିଛୁ ।

ବୀରେନ୍ଦ୍ର—ହାଃ, ହାଃ, ହାଃ—ସେହି ପୂର୍ବକଥା ! ଭୁଲିଯା, ଭୁଲିଯା ଶାରଦା, ସେହି ପୁରାତନ କଥା—ଆଜି ମୁଁ ଅଳ୍ପମତି ବାଳକ ନୁହେଁ କି ତୁ ମଧ୍ୟ ଜ୍ଞାନହୀନ ଶିଶୁ ନୋହୁ—ଉଭୟେ ବର୍ତ୍ତମାନ ପ୍ରାପ୍ତ ବୟସ୍କ—ସେହି ଧୂଳିଖେଳ କି ଆହାର ପକ୍ଷେ ଶୋଭା ଦିଏ ?—ତୁ ତୋ'ର ପଥ ଅନ୍ୱେଷଣ କର—ମୁଁ ମୋର ପଥ ଅନ୍ୱେଷଣ କରେ । ( ବୀରେନ୍ଦ୍ରର ପ୍ରସ୍ଥାନ )

ଶାରଦା—ଏତେଦୂର । ଏତେଦୂର ! ସରଳ ବିଶ୍ୱାସର ଏହି ପୁରସ୍କାର—

[ ବାସୁଦେବର ପ୍ରବେଶ ]

ବାସୁଦେବ—ପ୍ରତିଶୋଧ ନେ, ଅଭାଗି ! ପ୍ରତିଶୋଧ ନେ—ବୃଥା ଚିନ୍ତାରେ କାଳ ହରଣ ନିଷ୍ପ୍ରୟୋଜନ ।

ଶାରଦା—ବାବା, ବାବା !

ବାସୁଦେବ—ଯେଉଁ ସରଳବିଶ୍ୱାସର ସୁଯୋଗ ନେଇ, ବିଶ୍ୱାସଘାତକ ଆଜ ତୋର ନିଜର ଓ ପିତାର ସର୍ବନାଶ--ସର୍ବୋପରି ତୋ'ର ସତୀର ଓ ରାଜ୍ୟର ସର୍ବନାଶ କରିଛି—ଠିକ୍ ସେହି ସରଳ ବିଶ୍ୱାସ, ସେହି ଅଟଳ ବିଶ୍ୱାସ ଅଚିରେ ବିଶ୍ୱାସଘାତକ ମନରେ ଜନ୍ମାଇ ଦେ, ସେହି ସୁଯୋଗରେ ତା'ର ସର୍ବନାଶ କର—ବିଶ୍ୱାସଘାତକତାର ଉପଯୁକ୍ତ ଶାସ୍ତି ପ୍ରଦାନ କର ।

ଶାରଦା—ବାବା, ବାବା, ଏ' ଅଧମାକୁ କ୍ଷମାକର ( ପଦଦ୍ୱୟ ଧାରଣ କରିବା )

ବାସୁଦେବ—କ୍ଷମା ? ଯା କରିଛୁ, ମୂଢ଼ା ! ତା'ର କ୍ଷମା ନାହିଁ—ବିଶେଷତଃ, ବାସୁଦେବ ମନ୍ତ୍ରୀପକ୍ଷେ ତାହା ଏକାବେଳକେ ଅସମ୍ଭବ, ମାତ୍ର ସେ ଆଜ କ୍ଷମା କରିଛି—ଯାଚ୍ଞା ପୂର୍ବରୁ ତୋ'ର ପ୍ରାର୍ଥନା ପୂର୍ଣ୍ଣ କରିଛି । ( ଶାରଦାକୁ ଉଠାଇବା )

ଶାରଦା—ବାବା, ବାବା !

ବାସୁଦେବ—ପ୍ରଥମେ ପ୍ରତିଜ୍ଞା କରିଥିଲି, ଶାରଦା, ତୋତେ ଉପଯୁକ୍ତ ଶାସ୍ତି ଦେବି—କଠୋର ଶାସ୍ତି ଦେବି—ଠିକ୍ ପର ମୁହୂର୍ତ୍ତେ କି ଗୋଟାଏ ତରଙ୍ଗ ଆସି ଧକ୍କା ଦେଲା, ବିଚଳିତ ହୋଇ ସ୍ଥିରକଲି—ଦେଖା ନ ଦେଇ ଚାଲି ଯିବି, ମାତ୍ର ଅବଶେଷେ ପ୍ରବଳ ଝଟିକା ପ୍ରବାହରେ ହୃଦୟ କ୍ଷୁବ୍ଧ ବିକ୍ଷୁବ୍ଧ ହେବାକୁ ଲାଗିଲା ଉପର୍ଯ୍ୟୁପରି ଉତ୍ତାଳ ତରଙ୍ଗାଘାତରେ ପ୍ରତିଜ୍ଞା ଏକା ବେଳକେ ଉନ୍ମୂଳିତ ହୋଇଗଲା—ଆଉ ମୁଁ ସ୍ଥିର ଥାଇ ନ ପାରି, ତୋ'ରିଠାରେ ପୁଣି ଆଶ୍ରୟ ନେବାକୁ ଧାଇଁ ଆସିଲି ।

ଶାରଦା—ବାବା, ବାବା !

ବାସୁଦେବ—ମନେ ପଡ଼ିଗଲା, ମା ! ତୋ'ର ସେହି ଶିଶୁ-କମନୀୟ ବଦନ, ତୋର ସେହି ଶିଶୁ-ସରଳ ହୃଦୟ—ସର୍ବୋପରି ତୋର ସେହି ଦୁଃଖିନୀ ଜନନୀର ଅନ୍ତିମ ଅଶ୍ରୁସିକ୍ତ-ବାଣୀ "ଏହିଟି ମୋର ପବିତ୍ର ସ୍ମୃତି ଚିହ୍ନ"—ମା, ମା ତୁ ଶତ କଳଙ୍କରେ କଳଙ୍କିତ ହେଲେ ସୁଦ୍ଧା, ମୋ ଚକ୍ଷୁରେ ତୁ ନିଷ୍କଳଙ୍କ ଚନ୍ଦ୍ରମା ।

ଶାରଦା—ବାବା, ବାବା ! ଏତେ ଦୟା ! ଏତେ ସ୍ନେହ !—ହାୟ, ହାୟ ଏ' ଅଭାଗୀ କଳଙ୍କିନୀ ଆଜ କରିଛି, କଣ ? ଏ' ଅମୂଲ୍ୟ ଦାନର କି ପ୍ରତିଦାନ ଦେଇଛି ?—ହାୟ !

ବାସୁଦେବ—(ବାଧାଦେଇ) ଯା ଘଟିବା'ର ତ ଘଟିଛି, ଶାରଦା, ସେ ସବୁ କଥା ଚିନ୍ତାରେ କାଳକ୍ଷେପ କରିବା ବର୍ତ୍ତମାନ କର୍ତ୍ତବ୍ୟ ନୁହେଁ—ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ, ଅଧୁନା କେଉଁ ଉପାୟରେ ଜେମାଦେଈ ଗୈରବଗଙ୍କ ସଙ୍ଗେ ମିଳିତା ହେବେ—ଭାବୀ ଦୁର୍ଦ୍ଦଶା-ଗ୍ରାସରୁ ରାଜ୍ୟ-ରକ୍ଷା ପାଇବ—ମାତ୍ର ସେ ବିଷୟରେ ଚେଷ୍ଟା କରିବା ପୂର୍ବରୁ ସେନାପତି ବିଶ୍ୱାସ ଘାତକତାର ଉପଯୁକ୍ତ ଶାସ୍ତି ପାଇବା ଆବଶ୍ୟକ, ନଚେତ୍ ଆମ୍ଭମାନଙ୍କର ଉଦ୍ଦେଶ୍ୟ ପୁଣି ପଣ୍ଡ ହେବାର ସମ୍ଭାବନା ।

ଶାରଦା—ଏ' ସବୁ କିପରି ହେବ, ବାବା ? ତୁମ୍ଭେ ଯେ ନିର୍ବାସିତ ।

ବାସୁଦେବ—ତୋ'ରି ଦ୍ୱାରା ସମସ୍ତ ସାଧିତ ହେବ, ମା !

ଶାରଦା—ବାବା !

ବାସୁଦେବ—କିଛି ଭୟ ନାହିଁ, ମା ! ମୁଁ ବୁଝିପାରୁଛି, ତୋର ଶିଶୁ-ସରଳତା ଭାଙ୍ଗିଯାଇଛି—ମନରେ ଦୃଢ଼ତା ଆସିଛି—ବର୍ତ୍ତମାନ ତୋତେ ସମ୍ପୂର୍ଣ୍ଣ ବିଶ୍ୱାସ କରାଯାଇ ପାରେ—ତୋ'ରି ଦ୍ୱାରାହିଁ ଏହି କାର୍ଯ୍ୟ ସାଧିତ ହେବ—ଆ ମା ! ରାଜାଙ୍କ ପାଳନରେ ମୋର ବିଳମ୍ବ ଘଟୁଛି—ତୋତେ

କିପରି ଜଣେ ଜୀବନ ଦେଇଦେବାକୁ ହେବ, ତା ଶିଖାଇଦେବି ।
ଏ' ଜନ୍ମଭୂମି—(ଟିକିଏ ରହି) ନା—ଜନ୍ମଭୂମି
ମୋତେ ତ୍ୟାଗକରି ପାରେ, ଚିରଦିନପାଇଁ ସ୍ଥାନ
ନଦେଇ ପାରେ—କିନ୍ତୁ ଜନ୍ମଭୂମି ମୋର—
ଜନ୍ମଭୂମିର କଲ୍ୟାଣ ସାଧନ ମୋର ମହାବ୍ରତ—
ଏକମାତ୍ର ବ୍ରତ । (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

—କର୍ଣ୍ଣାଟ ରାଜଭବନ—

ଗ୍ରୈରଗଙ୍ଗ—ମନ୍ତ୍ରି, ଆଉ ବିଳମ୍ବ କାହିଁକି ?—
ଦୂତଠାରୁ ଆମ୍ଭମାନଙ୍କର ଅପମାନର ବିଷୟ
ଆମୂଳ ଚୂଳ ଶୁଣିଲ—ଏଥିରେ କି ଅପମାନିତ
ସିଂହ କେବେ ପ୍ରତିଶୋଧ ନ ନେଇ ରହି
ପାରେ ?

ମନ୍ତ୍ରୀ—ମହାରାଜ ବିଚାର କରି କାର୍ଯ୍ୟ କରିବା ଉଚିତ ।

ଗ୍ରୈରଗଙ୍ଗ—ଆଉ କି ବିଚାର କରିବି ମନ୍ତ୍ରି ? ଆମ୍ଭର
ଦୂତ ଗଲା, ତାକୁ ଆଦର ସମ୍ମାନ ନାହିଁ, ଥରେ
ଦେଖା ବି ଦେଲେ ନାହିଁ—ଜଣେ ବୃଦ୍ଧ ଆମ୍ଭର
ପକ୍ଷ ସମର୍ଥନ କରି ଯୁକ୍ତିସଙ୍ଗତ କଥାପଦ କହିଲା
ବୋଲି ପ୍ରାଣ ଦଣ୍ଡରେ ଦଣ୍ଡିତ ହେଲା—
ଏଥିଁ ବଳି ଆମ୍ଭମାନଙ୍କ ପ୍ରତି ଆଉକି ଅଧିକତର
ଅପମାନ ହୋଇ ପାରେ ?

ମନ୍ତ୍ରୀ—ଏ' ପରି ଅପମାନର ପ୍ରତିଶୋଧ କଣ ତାଙ୍କର
ରାଜ୍ୟ ଆକ୍ରମଣ କରିବା ?

ଗ୍ରୈରଗଙ୍ଗ—ରାଜା କ'ଣ ଏହିପରି ଭାବେ ରାଜାର
ପ୍ରତିଶୋଧ ନିଏ ନାହିଁ, ମନ୍ତ୍ରି ?

ମନ୍ତ୍ରୀ—ବାତୁଳ ସେ ରାଜା, ଯେ ଏପରି ଭାବେ
ପ୍ରତିଶୋଧ କାମନା କରେ । କଣିକର ସ୍ୱାର୍ଥସିଦ୍ଧି
ନିମନ୍ତେ ଲକ୍ଷ ଲକ୍ଷ ପ୍ରାଣ ବଳି ଦିଆଯିବ କିନା !

ଗ୍ରୈରଗଙ୍ଗ—ଏ' ପାପ ଆମ୍ଭଙ୍କୁ କଦାପି ସ୍ପର୍ଶ କରିବ
ନାହିଁ, ମନ୍ତ୍ରି ?

ମନ୍ତ୍ରୀ—ଉଭୟ ପକ୍ଷକୁ ସ୍ପର୍ଶ କରିବ, ମହାରାଜ !
ଯେହେତୁ ଉଭୟେ ସ୍ୱାର୍ଥାନ୍ଧ—ସ୍ୱାର୍ଥସିଦ୍ଧି ନିମନ୍ତେ
ଲକ୍ଷ ଲକ୍ଷ ନିରୀହ ପ୍ରାଣୀ ବଧ କରିବାକୁ
ଉଦ୍ୟତ ।

ଗ୍ରୈରଗଙ୍ଗ—ତେବେ ତୁମ୍ଭ ମତରେ କିପରି ଭାବେ
ଅପମାନର ପ୍ରତି ଶୋଧ ନେବା ଉଚିତ ?

ମନ୍ତ୍ରୀ—ମୁଣ୍ଡ ନାହିଁତ ମୁଣ୍ଡ ବଥେଇବାର ଔଷଧର
କି ପ୍ରୟୋଜନ, ମହାରାଜ ? ଆମ୍ଭେ ବିବାହ ପ୍ରସ୍ତାବ
କରି ପଠାଇଥିଲୁ, ସେ ଅସମ୍ମତ ହେଲେ—ଆମ୍ଭେ
ଭିକ୍ଷା ମାଗି ପଠେଇ ଥିଲୁ ସେ ଦେଲେ ନାହିଁ
—ଏଥିରେ ଆଉ ଅପମାନ କ'ଣ ?

ଗ୍ରୈରଗଙ୍ଗ—ଅଚ୍ଛା ବେଶ, 'ଦେଲେ ନାହିଁ'ତ ଅପମାନ
କ'ଣ—ମାତ୍ର ଦୂତକୁ ଦେଖା ନ ଦେବା—ଆମ୍ଭ
ନିମନ୍ତେ ଗୋଟିଏ ବୃଦ୍ଧକୁ ବିନା ଦୋଷରେ
ପ୍ରାଣ ଦଣ୍ଡ ଦେବା—କେଉଁ ସମ୍ମାନର
ବିଷୟ ? ଆମ୍ଭର କ'ଣ ଆଦୌ ଆତ୍ମସମ୍ମାନ ଜ୍ଞାନ
ନାହିଁ ?

ମନ୍ତ୍ରୀ—ଏପରି ଆଚରଣ ନିଶ୍ଚୟ ତାଙ୍କର ଅମନୁଷ୍ୟତ୍ୱର
ଓ ଅସଭ୍ୟତାର ପରିଚାୟକ, ମାତ୍ର ସେଥିପାଇଁ
ଆମ୍ଭେମାନେ ଅମନୁଷ୍ୟ ଓ ଅସଭ୍ୟ ହେବାକୁ
ଯିବା କାହିଁକି, ମହାରାଜ ?

ଗ୍ରୈରଗଙ୍ଗ—ଏ' କିପରି ନୂତନ କଥା, ମନ୍ତ୍ରି !
ହିଂସାର ପ୍ରତିହିଂସା ନେବା କି କ୍ଷତ୍ରିୟର ଧର୍ମ
ନୁହେଁ ? ପୁଣି କ୍ଷତ୍ରିୟ ଯେଉଁ ରମଣୀକୁ କାମନା
କରେ ତା'କୁ ବଳ ପୂର୍ବକ ବିବାହ କରିବାର କି
ବିଧି ନାହିଁ ?

ମନ୍ତ୍ରୀ—କେଉଁ କାଳେ ଥିଲା—ବର୍ତ୍ତମାନ କିନ୍ତୁ ଏ'ପରି
ଆଚରଣ କ୍ଷତ୍ରିୟ-ଶକ୍ତିର ଅପବ୍ୟବହାର ମାତ୍ର ।
ନୈତିକ ଦୃଷ୍ଟିରେ ଥରେ ବିଚାର କରି ଦେଖନ୍ତୁ,
ଏହା କି କ୍ଷତ୍ରିୟ-ଶକ୍ତିର ଗୌରବ ?

ଗ୍ରୈରଗଙ୍ଗ—ଏ' ନୂତନ ମନ୍ତ୍ରଣା କାହୁଁ ଶିଖିଲ,
ମନ୍ତ୍ରି ? ଯେପରି ଦେଖୁଛି ତୁମ ମତରେ ଯୁଦ୍ଧ ମଧ୍ୟ
କ୍ଷତ୍ରିୟ ପକ୍ଷେ ଏକାନ୍ତ ଅନୁଚିତ ।

ମନ୍ତ୍ରୀ—ନିଶ୍ଚୟ ଅନୁଚିତ, ମହାରାଜ !

ଚୋଡଗଙ୍ଗ—ତୁମ ମାନଙ୍କର ଧର୍ମ-ନୈତିକ ଦୃଷ୍ଟିରେ ହୋଇପାରେ—ମାତ୍ର ରାଜ-ନୈତିକ ଦୃଷ୍ଟିରେ କଦାପି ନୁହେଁ !

ମନ୍ତ୍ରୀ—ଉଭୟତଃ ଅନୁଚିତ ମହାରାଜ !

ଚୋଡଗଙ୍ଗ—ଶିଷ୍ଟର ପାଳନ ନିମନ୍ତେ ଦୁଷ୍ଟର ଦଳନ ତେବେ କିପରି କରାଯିବ ମନ୍ତ୍ରି ?

ମନ୍ତ୍ରୀ—କେବଳ ପାଶବିକ ଶକ୍ତିର ପ୍ରୟୋଗରେ କି କରାଯାଇ ପାରେ ?

ଚୋଡଗଙ୍ଗ—ଅନ୍ୟ ଉପାୟ, ନାହିଁ ବୋଲି—

ମନ୍ତ୍ରୀ—ଉପାୟ ଅବଶ୍ୟ ଅଛି, ମାତ୍ର ଆମ୍ଭମାନଙ୍କର ସେ ହୃଦୟ ସେ ଉଦାରତା ମଧ୍ୟ ନାହିଁ ।

ଚୋଡଗଙ୍ଗ—କିପରି ?

ମନ୍ତ୍ରୀ—ଚୈତନ୍ୟଦେବ ଓ ନିତ୍ୟାନନ୍ଦ ପ୍ରଭୁଙ୍କ କଥା ଥରେ ସ୍ମରଣ କରନ୍ତୁ, କେଉଁ ବଳରେ ଜଗାଇ ମାଧାଇ ପରି ଦୁର୍ଜନଙ୍କୁ ସେମାନେ ଦମନ କରିଥିଲେ ?

ଚୋଡଗଙ୍ଗ—ସେ ଧର୍ମନୀତି କଥା କାହିଁକି ? ରାଜନୀତି କଥା କୁହ ।

ମନ୍ତ୍ରୀ—ମହାରାଜ ! ଆପଣ କଣ ମନେ କରନ୍ତି ରାଜନୀତି ଓ ଧର୍ମନୀତି ପୃଥକ୍ ? କଦାପି ନୁହେଁ, ମହାରାଜ ! ଧର୍ମ ବ୍ୟତୀତ ରାଜନୀତି ତିଷ୍ଠିବା ଏକାବେଳେ ଅସମ୍ଭବ ।

ଚୋଡଗଙ୍ଗ—ମନ୍ତ୍ରି ! ଏ'ପରି ଉଚ୍ଚ କଥା ଓ ଉଦାର ଭାବ, କଥାରେ ସହଜ ମାତ୍ର କାର୍ଯ୍ୟରେ ଅସମ୍ଭବ ।

ମନ୍ତ୍ରୀ—ଏହି ଅସମ୍ଭବହିଁ କ୍ରମେ ସମ୍ଭବ ହୋଇ ଆସୁଛି, ମହାରାଜ ! କେତେ କେତେ ଜଟିଳ ବିଷୟ ଯାମିନୀର ଘୋର ଅନ୍ଧକାରରେ ଆଚ୍ଛନ୍ନ ଥିଲା, ବର୍ତ୍ତମାନ ଉଷାର ଅସ୍ପଷ୍ଟାଲୋକରେ ପ୍ରତୀୟମାନ ହେବାକୁ ଲାଗିଲାଣି—ଆଉ ଯେଉଁ ଯେଉଁ ବିଷୟମାନ ଅଦ୍ୟାପି ଲୁକ୍କାୟିତ ଅଛି ଦିବାର ସ୍ପଷ୍ଟାଲୋକରେ ଅଚିରେ ପ୍ରକାଶିତ ହେବ । ଦେଖନ୍ତୁ ମହାରାଜ ! ଯେଉଁ ପାଶବିକ ବଳକୁ କ୍ଷତ୍ରିୟମାନେ ପ୍ରଧାନ ବଳ ବୋଲି ଜ୍ଞାନ କରି ଆସୁଥିଲେ, ସେ ବଳ ଅଧୁନା ସୁସଭ୍ୟ ମନୁଷ୍ୟ ସମାଜରେ ହେୟ, ଘୃଣ୍ୟ ଶକ୍ତି ବୋଲି ପରିଣତ ହେଲାଣି । କେତେଟା କ୍ଷତ୍ରିୟ-ଯୁବକ ପୂର୍ବପରି ଆପଣାର ପାଶବିକ ଶକ୍ତିରେ ଗର୍ବାନ୍ୱିତ ହୋଇ ପର-କନ୍ୟାକୁ—ଅପସରା-ବିନିନ୍ଦିତ ରୂପ-ଯୌବନ-ସମ୍ପନ୍ନା ହେଲେ ମଧ୍ୟ, "ବୀରର ଏକାନ୍ତ ବାଞ୍ଛନୀୟ" ହେଲେ ମଧ୍ୟ—ବଳ ପୂର୍ବକ ସ୍ୱ-ପତ୍ନୀ କରିବା ନିମନ୍ତେ ଧାବମାନ ହେଉଛନ୍ତି ? କେତେ-ଜଣ କ୍ଷତ୍ରିୟ ରାଜା, ରାଜ୍ୟ ଲାଳସାରେ ଅନ୍ଧ ହୋଇ ନିଜର ଆସୁରିକ ଶକ୍ତି ପ୍ରୟୋଗରେ କେବଳ, ନୀତିପରାୟଣ ସମାଜ ଚକ୍ଷୁରେ ଧୂଳି ନିକ୍ଷେପ କରି, ଅତୀବ ହୀନଶକ୍ତି ରାଜାର ମଧ୍ୟ ରାଜ୍ୟ ଓ ସ୍ୱାଧୀନତାପହରଣରେ ସକ୍ଷମ ହେଉ-ଛନ୍ତି ? ଅଳ୍ପ ଦିନପରେ ଦେଖିବେ, ମହାରାଜ ! ଅପମାନର ଗୁରୁତର କାରଣ ଥିବା ସତ୍ତ୍ୱେ ଏକ ରାଜା କେବେ ଅପର ରାଜାର ରାଜ୍ୟ ନାଶଦ୍ୱାରା ଅପମାନର ପ୍ରତିଶୋଧ ନେବ ନାହିଁ—ଘୋର ବିବାଦରେ ଲୁପ୍ତ-ଜ୍ଞାନ ଯୁଦ୍ଧା ମନୁଷ୍ୟ କେବେ ଅସ୍ତ୍ର ପ୍ରୟୋଗ ଦ୍ୱାରା କଳହର ମୀମାଂସା କରିବାକୁ ଉତ୍କ୍ଷିପ୍ତ ହେବନାହିଁ; ଦୋଷୀ ନିଜ ଦୋଷ-ସକାଶେ ଲଜ୍ଜିତ ଓ ଅନୁତପ୍ତ ହେବ—ଦଣ୍ଡଦାତା ଏକ ମହାଭାବରେ ଅନୁପ୍ରାଣିତ ହୋଇ 'କ୍ଷମାହିଁ ପରମ ଧର୍ମ' ଆଚରଣ କରିବେ । ସମସ୍ତେ 'ମୁଁ, ସେ ସମାନ'—'ମୋର, ତାର ସମାନ'—ସମସ୍ତେ 'ଏକ ମାତା ପିତାର ସନ୍ତାନ' ଜ୍ଞାନରେ ପାପ-ମର୍ତ୍ତ୍ୟକୁ ସ୍ୱର୍ଗଧାମରେ ପରିଣତ କରିଦେବେ ।

ଚୋଡଗଙ୍ଗ—ମନ୍ତ୍ରି ! ଏ' କଳ୍ପିତ ଯୁଗର କଥା—ଏତେ ଦୂର ଉଦାରତା ଏ' ଯୁଗରେ ଅସମ୍ଭବ ! ବର୍ତ୍ତମାନ ସେନାପତିଙ୍କୁ ସୈନ୍ୟ-ସଜ୍ଜା ନିମନ୍ତେ ଶୀଘ୍ର ଆଦେଶ ଦିଅ—ଓଡ଼ିଶା ଆକ୍ରମଣର ଯଥାବିଧି ଆୟୋଜନକର;—ଯୁଦ୍ଧ ଦ୍ୱାରାହିଁ ଅପମାନର ପ୍ରତିଶୋଧ ନେବାକୁ ହେବ—ପ୍ରତିହିଂସା ଦ୍ୱାରାହିଁ କର୍ଣ୍ଣାଟର ମାନ ରକ୍ଷା କରିବାକୁ ହେବ,

ଲଘୁହେଉ ଗୁରୁ ହେଉ ଅପମାନ ଅସହ୍ୟ—
କର୍ଣ୍ଣାଟରାଜ ପକ୍ଷେ ନିତାନ୍ତ ଅସହ୍ୟ ।

ମନ୍ତ୍ରୀ—ରାଣୀମାନଙ୍କର ମତ ଥରେ ବୁଝିବାର ଉଚିତ
ନୁହେ କି ?

କେଶରୀଗଙ୍ଗ—ରାଣୀମାନଙ୍କ ମତ । (ସ୍ୱଗତ) ମାତୃ-ଆଦେଶ
ନ ନେଇ ମୁଁ ଯେ କୌଣସି କାର୍ଯ୍ୟ କରେ ନାହିଁ—
( ପ୍ରକାଶ୍ୟେ ) ଅଚ୍ଛା ମୁଁ ବୁଝିବି—କିଛି ଭୟ
ନାହିଁ, ତୁମ୍ଭେ ନିଜେ ବୁଝିଆସିପାର ।

( ମନ୍ତ୍ରୀର ପ୍ରସ୍ଥାନ )

ମା ନିଶ୍ଚୟ ମତ ଦେବେ—ତାଙ୍କର ଏକାନ୍ତ
ଅଭିଳାଷ, ସେହି କନ୍ୟାଯାଚଞ୍ଚା ଦ୍ୱାରା ସେ
କାମନା ପୂର୍ଣ୍ଣ ହେଲାନାହିଁ—ଅନ୍ୟ ଉପାୟରେ
ନିଶ୍ଚୟ ମୋତେ ପୂର୍ଣ୍ଣ କରିବାକୁ ଆଦେଶ ଦେବେ ।
କି ଆନନ୍ଦ !—ଯୁଦ୍ଧ । ଯୁଦ୍ଧ, କ୍ଷତ୍ରିୟର ଏକମାତ୍ର
ଆନନ୍ଦ । ଦୀର୍ଘ କାଳପରେ ଗୋଟିଏ ସୁଯୋଗ
ମିଳିଛି—ଛାଡ଼ିବାର କଦାପି ଉଚିତ ନୁହେଁ—
ଅପମାନ ଗୁରୁ ହେଉ ଲଘୁ ହେଉ, କିମ୍ବା ଆଦୌ
ନ ହେଉ, ମୋତେ ଘୋର ଅପମାନିତ ବୋଲି
ସର୍ବ ସମକ୍ଷରେ ପ୍ରଚାର କରିବାକୁ ହେବ—
ସୈନ୍ୟମାନଙ୍କୁ ଉତ୍ତେଜିତ ଓ ଯୁଦ୍ଧୋନ୍ମତ୍ତ
କରିବାକୁ ହେବ ।—ଯୁଦ୍ଧ—ଯୁଦ୍ଧ—କିନ୍ତୁ
ମୋର ଏତେଦୂର ଉଦ୍ଦେଶ୍ୟ ନୁହେଁ, ଯେତେଦୂର
ଉଦ୍ଦେଶ୍ୟ ଯୁଦ୍ଧ—ଯୁଦ୍ଧ—ଯୁଦ୍ଧ, 'କେକୀକୁ
ବରଷା'—'ଚକୋରକୁ ଚନ୍ଦ୍ରିକା ।' (କେଶରୀଗଙ୍ଗଙ୍କ
ପ୍ରସ୍ଥାନୋଦ୍ୟତବେଳେ ଦୂତର ପ୍ରବେଶ )

ଦୂତ—ମହାରାଜ ! ଓଡ଼ିଶାମନ୍ତ୍ରୀ ବାସୁଦେବ ଦର୍ଶନ
ପ୍ରାର୍ଥନା କରୁଛନ୍ତି ।

କେଶରୀଗଙ୍ଗ—ଓଡ଼ିଶା ମନ୍ତ୍ରୀ ବାସୁଦେବ ? ସେ ପରା
ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲେ ?

ଦୂତ—ସେ ଦଣ୍ଡ ରହିତ କରାଇ, ନିର୍ବାସନ-ଦଣ୍ଡରେ
ପରିବର୍ତ୍ତିତ ହୋଇଛି ।

କେଶରୀଗଙ୍ଗ—ତେବେ ନିଶ୍ଚୟ ସେ ମୋର ଆଶ୍ରୟ ଓ
ସହାୟ ପ୍ରାର୍ଥନାକରିବାକୁ ଆସିଛନ୍ତି । ମହାନନ୍ଦ—
ମହାନନ୍ଦ—ମା ଅସମ୍ମତ ହେଲେ ମଧ୍ୟ ଚିନ୍ତା
ନାହିଁ—ନିରାଶ୍ରୟ, ଉତ୍ପୀଡ଼ିତ ନିମନ୍ତେ କ୍ଷତ୍ରିୟ
ସର୍ବସ୍ୱାନ୍ତ ହେଲେ ମଧ୍ୟ ଜଗତରେ ନିନ୍ଦନୀୟ
ନୁହେଁ—ଯାଅ, ଦୂତ । ତାଙ୍କୁ ସାଦରେ ଶୀଘ୍ର
ଏଠାକୁ ଘେନି ଆସ । ( ଦୂତର ପ୍ରସ୍ଥାନ ) ଯୁଦ୍ଧ !
ଯୁଦ୍ଧ !—ମହାନନ୍ଦ ! ମହାନନ୍ଦ !

[ ବାସୁଦେବଙ୍କର ପ୍ରବେଶ ଓ ଅଭିବାଦନ ]

ଆସ ମନ୍ତ୍ରି । ତୁମ୍ଭର କୌଣସି ଭୟନାହିଁ—
ଆଜିଠାରୁ ଏହି ରାଜପ୍ରାସାଦ ତୁମ୍ଭର ଗୁପ୍ତସ୍ଥାନ—
କର୍ଣ୍ଣାଟରାଜ ତୁମ୍ଭର ଶରୀର ରକ୍ଷକ ।

ବାସୁଦେବ—ଧନ୍ୟ ମହାରାଜ ! ଏ ଦୀନ ଦାସ ପ୍ରତି
ଏତେ ଦୟା ! ଅଯାଚିତ ଭାବେ ଏତେଦୂର
ରାଜାନୁଗ୍ରହ ଲାଭ କରିବା ଏ ଦୀନ ଦାସର ପରମ
ସୌଭାଗ୍ୟ ।

କେଶରୀଗଙ୍ଗ—ଏ କ୍ଷତ୍ରିୟଧର୍ମର ମଧ୍ୟ ପରମ ସୌଭାଗ୍ୟ
ଯେ, ନିଃସହାୟ ନିରାଶ୍ରୟକୁ ଆଶ୍ରୟ ଦେଇ
ପାରୁଛି । ମୁଁ ତୁମ୍ଭ ବିଷୟରେ ଦୂତ ମୁଖରୁ ସମସ୍ତ
ଶୁଣିଛି । ଆମ୍ଭ ନିମନ୍ତେ ତୁମ୍ଭେ ଯେଉଁ ଗଞ୍ଜନା
ଲାଞ୍ଛନା ସହୁଛ ତାହା ଆମ୍ଭମାନଙ୍କୁ ଏକାନ୍ତ ଅସହ୍ୟ
ବୋଧ ହୋଇଛି—ତୁମ୍ଭେ ନ ଆସିଥିଲେ ମଧ୍ୟ,
ଓଡ଼ିଶା ଆକ୍ରମଣ କରି ଅପମାନକାରୀକୁ ଆମ୍ଭେ
ଉପଯୁକ୍ତ ଶାସ୍ତି ଦେବାକୁ ପ୍ରସ୍ତୁତ ଥିଲୁଁ ।

ବାସୁଦେବ—ଏ'ତ ସମସ୍ତ ରାଜ୍ୟପ୍ରତି ଦଣ୍ଡବିଧାନ
ହେବ, ମାହାରାଜ !

କେଶରୀଗଙ୍ଗ—ଏଥି ନିମନ୍ତେ କି ଆମ୍ଭେ ଦାୟୀ ?

ବାସୁଦେବ—ରାଜନୈତିକ କଥା ଛାଡ଼ିଦେଲେ ଆମ୍ଭେ
ତ ବିବେକୀ, ମନୁଷ୍ୟ !

କେଶରୀଗଙ୍ଗ—ତେବେ ତୁମ୍ଭେ କ'ଣ ଚାହଁ ?

ବାସୁଦେବ—ମହାରାଜ ! ଏ ଅକିଞ୍ଚନ ଗୋଟିଏ
ଦାସାନୁଦାସ—ସାମାନ୍ୟ ପ୍ରଜା; ସୁତରାଂ
ବ୍ୟକ୍ତିଗତ ଅପମାନ ବା ଅନାଦରର ପ୍ରତି-
ଶୋଧନେବା ପାଇଁ ଗୋଟିଏ ବିଶାଳ ରାଜ୍ୟାଧୀଶ୍ୱରଙ୍କ
ବିରୁଦ୍ଧରେ, ଲକ୍ଷଲକ୍ଷ ପ୍ରଜାପାଳକଙ୍କ ବିରୁଦ୍ଧରେ ନିଜେ
ଅଗ୍ରସର ହେବାକୁ କିମ୍ବା ଅନ୍ୟ କାହାରିକୁ

ଉତ୍ତେଜିତ କରିବାକୁ ଅନ୍ୟାୟ ମନେକରେ—
ମହାପାପ ଜ୍ଞାନ କରେ ।

ଗୌରଗଙ୍ଗ—ତେବେ ମୋ ନିକଟକୁ ଆସିବାର ଅଭିପ୍ରାୟ ?

ବାସୁଦେବ—ଆପଣ ଜଣେ ସର୍ବଗୁଣାଲଙ୍କୃତ, ଉଚ୍ଚାଶୟ ରାଜା, ଶ୍ରୀଚରଣରେ ଦର୍ଶନମାନେ ଯାହାଙ୍କର ହୃଦୟ-ପ୍ରତିଭା ସମ୍ୟକ୍ ବିଦିତ ହୋଇଛନ୍ତି । ବର୍ତ୍ତମାନ ଆପଣ ଏକମାତ୍ର ଭରସା—ଏକମାତ୍ର କର୍ଣ୍ଣଧାର, ଭାବୀ ଅରାଜକତା-ଗ୍ରାସରୁ ଓଡ଼ିଶାକୁ ରକ୍ଷାକରିବା ନିମନ୍ତେ ଏକମାତ୍ର ଉପଯୁକ୍ତ ବୀର ।

ଗୌରଗଙ୍ଗ—ଏ’ ପୁଣି କି କଥା ବୃଦ୍ଧ ? ତୁମ୍ଭେ କ’ଣ ପ୍ରଭୁଭକ୍ତିର ଛଳନା କରୁଥିଲ ?

ବାସୁଦେବ—ନା’ ମହାରାଜ । ଛଳନା ଏ’ ବୃଦ୍ଧ ପକ୍ଷେ ଅସମ୍ଭବ—ରାଜଦ୍ରୋହିତା ଏ’ ରାଜଭକ୍ତ ପକ୍ଷେ ମହାପାପ । ଏ’ ଦୀନ ଦାସ ଅଜ ପ୍ରଭୁଙ୍କର ବିରୁଦ୍ଧେ ଅଗ୍ରସର ହେଉନାହିଁ—ମହାରାଜାଙ୍କ ବିପକ୍ଷେ ଅସ୍ତ୍ର ଧାରଣ କରୁନାହିଁ—ଅଗ୍ରସର ହେଉଛନ୍ତି, ସର୍ବବିଧ ସାହାଯ୍ୟ ଓ ଶକ୍ତି ନେଇ ଅଗ୍ରସର ହେଉଛନ୍ତି, ପ୍ରଭୁଙ୍କର ଖିଆଲ ବିରୁଦ୍ଧେ, ମହାରାଜାଙ୍କ ସ୍ୱେଚ୍ଛାଚାରିତା ବିରୁଦ୍ଧେ ।

ଗୌରଗଙ୍ଗ—ଏକା କଥା ମନ୍ତ୍ରି । ଏକାକଥା ।

ବାସୁଦେବ—କିପରି, ମହାରାଜ ? ପ୍ରଥମ ଭାବରେ ବ୍ୟକ୍ତିଗତ ସ୍ୱାର୍ଥ ରହୁଛି, ଦ୍ୱିତୀୟ ଭାବରେ ସାଧାରଣ ସ୍ୱାର୍ଥ—ସାଧାରଣ ସ୍ୱାର୍ଥ ନିମନ୍ତେ କାର୍ଯ୍ୟ କରିବା ଓ ନିଜ ସ୍ୱାର୍ଥ ନିମନ୍ତେ କାର୍ଯ୍ୟ କରିବା କଦାପି ଏକା କଥା ନୁହେଁ, ସମ୍ପୂର୍ଣ୍ଣ ଭିନ୍ନ । ଗୋଟିକରେ ସ୍ୱର୍ଗ, ଅନ୍ୟଟିରେ ନରକ—ଗୋଟିକରେ ସୁଧା, ଅନ୍ୟଟିରେ ଗରଳ ।

ଗୌରଗଙ୍ଗ—ଆଚ୍ଛା ! ମହାରାଜାଙ୍କର କି ସ୍ୱେଚ୍ଛାଚାରିତା ବିରୁଦ୍ଧେ ଅଗ୍ରସର ହେବାକୁ ଚାହଁ ?

ବାସୁଦେବ—ଶୁଣନ୍ତୁ ତେବେ, ମହାରାଜ । ମହାରାଜ ସୁବର୍ଣ୍ଣ କେଶରୀ ବାର୍ଦ୍ଧକ୍ୟ ଜନିତ ଖିଆଲ ବଶତଃ ହେଉ ବା ଅତିରିକ୍ତ ସ୍ନେହ କାରଣରୁ ହେଉ, ତାଙ୍କର କନ୍ୟାକୁ ବିବାହ ଦେବା ନିମନ୍ତେ ଏକାନ୍ତ ଅନିଚ୍ଛୁକ—ନାନା ଯୁକ୍ତିତର୍କ ଓ ଉପଦେଶ ସତ୍ତ୍ୱେ ସେ ସମ୍ପୂର୍ଣ୍ଣ ଅସମ୍ମତ । ଏହି କନ୍ୟା ତାଙ୍କର ସନ୍ତାନ ଓ ଉତ୍ତରାଧିକାରିଣୀ । ସେ ବର୍ତ୍ତମାନ ପ୍ରାପ୍ତବୟସ୍କା ଓ ବିବାହ ହେବାର ଉପଯୁକ୍ତା । ପିତୃ ଇଚ୍ଛାରେ କୁମାରୀ ରହିବା ଆପତ୍ତି ଜନକ ନ ହେଲେ ସୁଦ୍ଧା, ରାଜନୀତି ହିସାବରେ ଘୋର ଆପତ୍ତି ଜନକ; ଯେ ହେତୁ, ସୁବର୍ଣ୍ଣକେଶରୀଙ୍କ ଅନ୍ତେ ଓଡ଼ିଶା ନିଃସହାୟ ଓ ଶକ୍ତିଶୂନ୍ୟ ହେବା ସୁନିଶ୍ଚୟ । ସୁତରାଂ, ଏକମାତ୍ର ଉପାୟ, ରାଜ-ଦୁହିତା ଯେବେ ସତ୍ପାତ୍ରରେ ଅର୍ପିତ ହୁଅନ୍ତି; ଏହି ହେତୁ ମୋର ଏଠାକୁ ଆଗମନ ।

ଗୌରଗଙ୍ଗ—ଆମ୍ଭଙ୍କୁ ତେବେ କଣ କରିବାକୁ କହୁଛ ?
—ଆମ୍ଭେତ ପ୍ରସ୍ତାବ ପଠାଇ ଥିଲୁ ।

ବାସୁଦେବ—ଅଉଥରେ ପଠାନ୍ତୁ, ଏତିକି ପ୍ରାର୍ଥନା ।

ଗୌରଗଙ୍ଗ—ଆଉ ଥରେ ।

ବାସୁଦେବ—ପ୍ରଣୟ ଦୃଷ୍ଟିରେ କହୁଛି ମହାରାଜ ।—ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ଜାଣି, ଏ’ କଥା କହିବାକୁ ସାହସ କରୁଛି, ମହାରାଜ !

ଗୌରଗଙ୍ଗ—ମନ୍ତ୍ରୀ । କ୍ଷତ୍ରିୟ କଣ ଏତେ ଦୁର୍ବଳ ? ସାମାନ୍ୟ ଗୋଟିଏ ନାରୀ ପ୍ରତି ଆକୃଷ୍ଟ ବୋଲି, ନିଜର ମାନ, ସମ୍ଭ୍ରମ ଜଳାଞ୍ଜଳି ଦେବାକୁ କୁଣ୍ଠିତ ହେବ ନାହିଁ ? ଥରେ ଯାଚଞ୍ଚା କରିଥିଲି, ଅବନତ ହୋଇଥିଲି—ବେଶ୍ ପ୍ରତିଫଳ ପାଇଛି—ଯଥେଷ୍ଟ ଅପମାନିତ ହୋଇଛି । ବର୍ତ୍ତମାନ କାହିଁ ସେ ଅପମାନର ପ୍ରତିଶୋଧ ନେବି, ନା ପୁନରାୟ ଅବନତ ହେବାକୁ ଯିବି—ପୁନରାୟ ଅପମାନିତ ହେବାକୁ ଯିବି ?

ବାସୁଦେବ—(ସ୍ୱଗତ) ଉଭୟ ଶଙ୍କଟ । ଜଣେ ବାର୍ଦ୍ଧକ୍ୟ ହେତୁ ଭ୍ରମାନ୍ଧ ଜଣେ ଯୌବନ ହେତୁ ଉଦ୍ଧତ ।

[ ସୁଭଦ୍ରାର ମନ୍ତ୍ରୀସହ ପ୍ରବେଶ ]

ମନ୍ତ୍ରୀ—ବିଚାର କରି କାର୍ଯ୍ୟ କରନ୍ତୁ ମା । କାହିଁ ଓଡ଼ିଶା ପରି ସୁବିଶାଳ ରାଜ୍ୟ, କାହିଁ କର୍ଣ୍ଣାଟପର

ଷୁଦ୍ରରାଜ୍ୟ—ପ୍ରତିଦ୍ୱନ୍ଦ୍ୱିତାରେ କି ଅମ୍ଭେମାନେ ସମର୍ଥ ହେବୁଁ, ମହାରାଣୀ ?

ସୁଭଦ୍ରା—ମୁଁ କିଛି ଶୁଣିବାକୁ ଚାହେଁନାହିଁ, ପ୍ରତିଶୋଧ ନିଅ—ଏଥିରେ ଯେବେ ମୃତ୍ୟୁଘଟେ—ରାଜ୍ୟ ଛାରଖାରରେ ଯାଏ, ସେ ଶ୍ରେୟସ୍କର। ପ୍ରତିଶୋଧ ନିଅ—କନ୍ୟା-ପିତାର ଏତେ ଗର୍ବ ! ଆମ୍ଭଙ୍କୁ ଭିକ୍ଷୁକ ଠାରୁ ତୁଚ୍ଛ ଜ୍ଞାନ କଲା, ଦୂତକୁ ଦେଖା ଦେବାର ଦୂରେ ଥାଉ ଅପମାନ କରି ତଡ଼ିଦେଲା ! ଦୂତକୁ ଅପମାନ କଲାନାହିଁ ଯେ ଆମ୍ଭଙ୍କୁ ଅପମାନ କଲା; ପୁଣି ଦେଖ, କି ନିଷ୍ଠୁରତା—ଜଣେ ବୃଦ୍ଧ, ନିଜର ମନ୍ତ୍ରୀ ଆମ୍ଭ ପକ୍ଷ ଘେନି ଦୁଇପଦ କହିଥିଲା ବୋଲି, ପ୍ରାଣ ଦଣ୍ଡରେ ଦଣ୍ଡିତ ହେଲା । ଏତେ ଗର୍ବ । ଏତେ ଅହଙ୍କାର । ପ୍ରତିଶୋଧ ନିଅ—ପ୍ରତିଶୋଧ ନିଅ ।

ଗୈରଗଙ୍ଗ—( ସ୍ୱଗତ ) ମହାନନ୍ଦ । ( ପ୍ରକାଶ୍ୟେ ) ମା କିଛି ଚିନ୍ତା କର ନାହିଁ, ତୁମ୍ଭର ଅଧମ ସନ୍ତାନ ତୁମ୍ଭର ମନସ୍କାମନା ନିଶ୍ଚୟ ପୂର୍ଣ୍ଣ କରିବ ।

ସୁଭଦ୍ରା—ତୁ ଯେବେ ମୋର ପ୍ରକୃତ ସନ୍ତାନ ହୋଇଥାଉ—ଗଙ୍ଗବଂଶର ନିର୍ମଳରକ୍ତ ଯେବେ ତୋର ଧମନୀରେ ପ୍ରକୃତ ଖେଳୁଥାଏ—ତେବେ ପ୍ରତିଜ୍ଞା କର, ମାତୃ-ଅପମାନର ପ୍ରତିଶୋଧ, ଓଡ଼ିଶା ଧ୍ୱଂସ—କର୍ଣ୍ଣାଟ ଅପମାନର ପ୍ରତିଶୋଧ, ଓଡ଼ିଶା ତୋମାର ପରିଣୟ !

ଗୈରଗଙ୍ଗ—ଶ୍ରୀଚରଣ ସ୍ପର୍ଶକରି ( ପାଦ ଧରିବା ) ପ୍ରତିଜ୍ଞା କରୁଛି, ମା ! ମାର ମନସ୍କାମନା ପୂର୍ଣ୍ଣ କରିବି ।

ସୁଭଦ୍ରା—ଏ' କିଏ ? ( ବାସୁଦେବଙ୍କୁ ଦେଖି, ବାସୁଦେବ ଅଭିବାଦନ କରିବା )

ଗୈରଗଙ୍ଗ—ଏହି ସେହି ଓଡ଼ିଶା-ରାଜମନ୍ତ୍ରୀ—ନାମ ବାସୁଦେବ, ଯେକି ଆମ୍ଭପକ୍ଷ ନେଇ ରାଜାଙ୍କୁ କହିଥିଲେ । ସୌଭାଗ୍ୟକ୍ରମେ ପ୍ରାଣଦଣ୍ଡରେ ଦଣ୍ଡିତ ନ ହୋଇ, ନିର୍ବାସିତ ହୋଇଛନ୍ତି ।

ସୁଭଦ୍ରା—ହାୟ ! ପର ସଙ୍କାଶେ କେତେ ଯନ୍ତ୍ରଣା ଭୋଗ କରିବାକୁ ହେଲା ! ବର୍ତ୍ତମାନ ସବୁ ଭୁଲି ଯାଆନ୍ତୁ ମହାଶୟ, ଏ' ଦୀନ-ଭବନକୁ ନିଜର ଘର ବୋଲି ମନେ କରନ୍ତୁ !

ବାସୁଦେବ—ଏହି ଉଦାରତା ନିମନ୍ତେ ଶତକୋଟି ଧନ୍ୟବାଦ ଗ୍ରହଣ କରନ୍ତୁ, ମହାରାଣି ।

ସୁଭଦ୍ରା—ଆମ୍ଭର କର୍ତ୍ତବ୍ୟ ଅମ୍ଭେ କରୁଛୁଁ, ମହାଶୟ ! ବର୍ତ୍ତମାନ କହନ୍ତୁ, କିପରିଭାବେ ଅପମାନର ପ୍ରତିଶୋଧ ନେଲେ ଆପଣଙ୍କର ମନସ୍କାମନା ପୂର୍ଣ୍ଣ ହେବ ?

ବାସୁଦେବ—ମହାରାଣି !

ଗୈରଗଙ୍ଗ—( ବାଧାଦେଇ ) ସେ ଭାରି ପ୍ରଭୁଭକ୍ତ, ମା—ଏତେ ଦୂର ଯେ, ପ୍ରଭୁଙ୍କ ବିରୁଦ୍ଧେ କୌଣସି ପ୍ରକାର ଚିନ୍ତା କରିବାକୁ ମଧ୍ୟ ପାପ ମନେ କରନ୍ତି ।

ସୁଭଦ୍ରା—ତା' ସ୍ୱାଭାବିକ ।

ଗୈରଗଙ୍ଗ—କିନ୍ତୁ,

ସୁଭଦ୍ରା—କିନ୍ତୁ କ'ଣ ?

ଗୈରଗଙ୍ଗ—ସେ ମଧ୍ୟ ତୁମ୍ଭପରି ଚାହାନ୍ତି ଯେ, ଓଡ଼ିଶାଜେମା କର୍ଣ୍ଣାଟର ବଧୂରୂପେ ଆଗମନ କରନ୍ତୁ ।

ସୁଭଦ୍ରା—ସାଧୁ-ଉଦ୍ଦେଶ୍ୟକୁ ଆପଣଙ୍କର ଧନ୍ୟବାଦ ମହାଶୟ । ଆଜିଠାରୁ ଆପଣ କର୍ଣ୍ଣାଟର ଅନ୍ୟତମ ମନ୍ତ୍ରୀ ହେଲେ—ଉଭୟ ମନ୍ତ୍ରୀଙ୍କର ସାହାଯ୍ୟରେ ଆମ୍ଭର ଉଦ୍ଦେଶ୍ୟ ସଫଳ ହେଉ । ଜୟ ଗଙ୍ଗାମାଈଙ୍କ ଜୟ ।

ଗୈରଗଙ୍ଗ ଓ ମନ୍ତ୍ରୀ—'ଜୟ ଗଙ୍ଗାମାଈଙ୍କ ଜୟ ।'

ସୁଭଦ୍ରା—ଆ' ପୁନ—ଯାଅ ମନ୍ତ୍ରୀ, ତୁମ୍ଭର ଭାଇଙ୍କର ପରିଚର୍ଯ୍ୟା କର ।

ଗୈରଗଙ୍ଗ—( ସ୍ୱଗତ ) ମହାନନ୍ଦ ! ଯୁଦ୍ଧ !

( ସୁଭଦ୍ରା ଓ ଗୈରଗଙ୍ଗଙ୍କର ପ୍ରସ୍ଥାନ )

ମନ୍ତ୍ରୀ—ଆସ ଭାଇ !

ବାସୁଦେବ—( ସ୍ୱଗତ ) ଉଭୟ-ସଙ୍କଟ । ( ଦୀର୍ଘ ନିଶ୍ୱାସ ତ୍ୟାଗ କରିବା )

[ ମନ୍ତ୍ରୀ ଓ ବାସୁଦେବର ପ୍ରସ୍ଥାନ ]

## ତୃତୀୟ ଦୃଶ୍ୟ

—କକ୍ଷ—

[ ବୀରେନ୍ଦ୍ରର ଚିନ୍ତିତ ଭାବରେ ପ୍ରବେଶ ]

ବୀରେନ୍ଦ୍ର—ପଥର ପରିଷ୍କାର ହେଲା, ମାତ୍ର କି ଉପାୟରେ ଉଦ୍ଦେଶ୍ୟ ସଫଳ କରୁଛି ? ସ୍ୱଜାତ ସ୍ୱେଚ୍ଛାରେ କେବେ ପ୍ରସ୍ତାବ ପଠାଇବେ ନାହିଁ— ସେମାନେ କ'ଣ ଇଚ୍ଛା ପ୍ରକାଶ କରିବେ ନାହିଁ ? ସେ ଦିନର ମାର୍ତ୍ତଣ୍ଡର ପ୍ରଚଣ୍ଡ ତାପ ଦେଖି ଭୟ ହେଉଛି, ମାତ୍ର ପରେ ପରେ ବର୍ଷାର ଶୀତଳ ଧାରାରେ ପ୍ରଶମିତ ହେବାର ଆଶା ହେଉଛି । ଅଚ୍ଛା, ଏ' ଚେହେରା, ଏ' ପରିପାଟି ଦେଖି କଣ ସେ ମୁଗ୍ଧ ହୋଇ ନାହାନ୍ତି ? ଶାରଦାଟା ପରି ଗୋଇଠା ଖାଇ ସୁଦ୍ଧା ଅଠାପରି ଲାଗି ରହିଥିଲା । ଏ' ଚେହେରାରେ ନିଶ୍ଚୟ ଗୋଟିଏ ଆକର୍ଷଣୀ ଶକ୍ତି ଅଛି—ଏ' ଭାବଭଙ୍ଗୀରେ ନିଶ୍ଚୟ ଗୋଟାଏ ମାଦକତା ଅଛି; ଥରେ ଖାଲି ଭଲ କରି ଦେଖାଇବାର ସୁଯୋଗ ପାଇଲେ ହେଲା— ରସବସିଆ, ମନଖୁସିଆ କଥା ଶୁଣାଇବାର ସୁବିଧା ପାଇଲେ ହେଲା—ଚୁମ୍ବକ ପରି ପରା ଟାଣି ଆଣିବ; କିନ୍ତୁ କି ଉପାୟରେ ସୁବିଧାଟା ପାଉଛି ?

( ଭାବନା )

[ ନେପଥ୍ୟେ ଗୀତ—ଆଉ କି ଶୁଣିବ ପରାଣ ମୋହିବ ]

କିଏ ଗୀତ ଗାଉଛି ? ବାଃ ! ଗଳାରେ ହ ଉଦେଇ ବାହାର କରିଦେ, ଗୋଳମାଳ କରିବାକୁ କଣ ସ୍ଥାନ ମିଳୁନାହିଁ ।—କି ଉପାୟରେ ସୁଯୋଗ ମିଳିବ ? ( ଭାବନା )

[ ନେପଥ୍ୟେ ପୁନରାୟ ଗୀତ ]

ବୀରେନ୍ଦ୍ର—( ସମ୍ବୋଧେ ) ଦାସୀ ।

[ ଦାସୀର ପ୍ରବେଶ ]

ଦାସୀ—ଯେତେ ମନାକଲେ ସେ ଆଦୌ ଶୁଣୁନାହିଁ, ସାଆନ୍ତେ ।

ବୀରେନ୍ଦ୍ର—ତୋର କଣ ହାତ ନାହିଁ ?

ଦାସୀ—ମାଡ଼କୁ ତ ଭୟ କରୁନାହିଁ, କହୁଛି "ଭିକ ନଦିଅ ପଛକେ, ସାଆନ୍ତଙ୍କ ସଙ୍ଗେ ଥରେ ଦେଖା କରାଇ ଦିଅ" ।

ବୀରେନ୍ଦ୍ର—ଏପରି କିଏ ସେ ଭିକାରୀ ?

ଦାସୀ—ଗୋଟିଏ ଯୁବତୀ ବୈଷ୍ଣବୀ—ଗୁରୁ ଛଅ ଦିନ ହେଲା ଏ' ସହରକୁ ଆସିଛି—ଭଲ ଗୀତ ଗାଏ ବୋଲି ସମସ୍ତେ ଖୁବ୍ ଭଲପା'ନ୍ତି—ନଅରକୁ ମଧ୍ୟ ଯା'ଆସ କରେ ।

ବୀରେନ୍ଦ୍ର—ନଅରକୁ ଯା' ଆସ କରେ ?

ଦାସୀ—ଆଜ୍ଞା ନଇତ, ସାଆନ୍ତେ ।

ବୀରେନ୍ଦ୍ର—ନଇତ ? ବୈଷ୍ଣବୀର ଗଳାତ ମନ୍ଦ ନୁହେଁ— ଅଚ୍ଛା ଡାକିଆଣିଲୁ, ଗୋଟିଏ ଅଧେ ଶୁଣିବା ।

ଦାସୀ—ଯେ ଆଜ୍ଞା ।

ବୀରେନ୍ଦ୍ର—ହଠାତ୍ ମନରେ ଏ' କି ଉଲ୍ଲାସ ଜାତ ହେଉଛି ? ଆଶା ଆଶ୍ୱାସ ଦେଉଛି, ଏ' ବୈଷ୍ଣବୀ ଦ୍ୱାରା ଯେମନ୍ତ ମୋର ମନସ୍କାମନା ପୂର୍ଣ୍ଣ ହେବ ।

[ ବୈଷ୍ଣବୀର ପ୍ରବେଶ ]

ବୈଷ୍ଣବୀ—'ରାଧେକୃଷ୍ଣ' ।

ବୀରେନ୍ଦ୍ର—( ଅଷ୍ଟର୍ଯ୍ୟ ଭାବେ ଚାହିଁ ରହିବା ) (ସ୍ୱଗତ) ଚିହ୍ନା ଚିହ୍ନା ବୋଧ ହେଉଛି କିପରି ?

ବୈଷ୍ଣବୀ—ରାଧେକୃଷ୍ଣ । ( ଗୀତ ଗାଇଲେ ) ଆଉ କି ଶୁଣିବ···

ବୀରେନ୍ଦ୍ର—ପ୍ରଣାମ, ବୈଷ୍ଣବୀ !

ବୈଷ୍ଣବୀ—ଯୁଗଳ-ପ୍ରେମ ଲାଭ କର ।

ବୀରେନ୍ଦ୍ର—( ସ୍ୱଗତ ) ବାଃ ! ବେଶ ଆଶୀର୍ବାଦତ ! ( ପ୍ରକାଶ୍ୟେ ) ଆପଣଙ୍କ ନିବାସ କେଉଁଠି ?

ବୈଷ୍ଣବୀ—ରାଧାର ନିବାସ, ସେଇ ରସରାଜଙ୍କ ହୃଦକୁଞ୍ଜ ଛଡ଼ା ଅନ୍ୟ କେଉଁଠି ହୋଇପାରେ ?

—ଗୀତ—

ଆଉ କି ଶୁଣିବ, ପରାଣ ମୋହିବ
ସେ ମୋହନ ମୁରଲୀ ମଧୁର ଗାନେ ?
ନୟନେ ଦେଖିବ, ହୃଦରେ ଲେଖିବ
ସେ ଶ୍ୟାମସୁନ୍ଦର ଜଗତ ପ୍ରାଣେ ।

ବୀରେନ୍ଦ୍ର—( ସ୍ୱଗତ ) ବେଶ ରସିକା ତ ? ଆପଣ ଦେଖୁଛି ଭାରି ପ୍ରେମିକା ।

ବୈଷ୍ଣବୀ—ମାତ୍ର ପ୍ରେମିକ ଚଡ଼ାମଣି ଛଡ଼ା ରାଧା-ପ୍ରେମ ବୁଝିବାର କ୍ଷମତା ଅନ୍ୟ କା'ର ଅଛି ?

—ଗୀତ—

ରାଧାର ପୀରତ, ରାଧାର ସୁରତ,
ପ୍ରେମିକ ବିନା କେ ବୁଝିବ ଆନ ?

ବୀରେନ୍ଦ୍ର—( ସ୍ୱଗତଃ ) ନିଶ୍ଚୟ ଏ' ଝିଅ-ପ୍ରେରିତା । ( ପ୍ରକାଶ୍ୟେ ) ଆପଣ କ'ଣ ବାଲ୍ୟକାଳରୁ ବୈଷ୍ଣବୀ ?

ବୈଷ୍ଣବୀ—ସେକଥା ଆଉ ପଚାରନ୍ତୁ ନାହିଁ—ସେ ଶଠ-ଲମ୍ପଟ କଣ ଘରେ ରହିବାକୁ ଦେଲେ ?

—ଗୀତ—

ସେ ଯେ ବଡ଼ ଶଠ, କପଟ, ଲମ୍ପଟ
ଘରେ ମୋତେ ତଳେ ଦେଲା କି ସ୍ଥାନ ?

ବୀରେନ୍ଦ୍ର—(ସ୍ୱଗତ) କି ସୌଭାଗ୍ୟ ମୋର । (ପ୍ରକାଶ୍ୟେ) ଆପଣ କ'ଣ 'ଭିକ୍ଷା' ବର୍ତ୍ତମାନ ଜୀବିକାର ଏକମାତ୍ର ଉପାୟ ଅବଲମ୍ବନ କରିଛନ୍ତି ?

ବୈଷ୍ଣବୀ—କ'ଣ କରିବି, ନିରୁପାୟ ବୋଲି । ସେହି ଚୌର-ଶିରୋମଣି ପରି ମୋର ଅନ୍ୟ ସବୁ ଉପାୟ ଚୋରିକରି ନେଲେ ।

—ଗୀତ—

ନିରୁପାୟ କରି କଲା ଗୋ ଭିକାରୀ,
ଚୌର-ଶିରୋମଣି ସେ ଚୌର ଜାଣ ।

ବୀରେନ୍ଦ୍ର—(ସ୍ୱଗତ) କି ଆନନ୍ଦ । (ପ୍ରକାଶ୍ୟେ) ଅଚ୍ଛା ମୁଁ ଯଦି ଉପାୟ କରି ଦିଏଁ ?

ବୈଷ୍ଣବୀ—କି' ଉପାୟ ?—ମିଳନୋପାୟ କରି-ଦେବେ ? ପାରିବେତ ? ଯେବେ ପାରନ୍ତି, ମୁଁ ଅନ୍ତରର ସହିତ ଆଶୀର୍ବାଦ କରିବି, ଆପଣ ଅଚିରେ ଯୁଗଳ-ପ୍ରେମ ଲାଭ କରିବେ ।

—ଗୀତ—

ଭେଟାଇଣ ଦେଲେ, କାହିଁ ସେ କହିଲେ,
ଲଭିବ ଯୁଗଳ-ପ୍ରେମ ହେ ପ୍ରାଣେ ।

ବୀରେନ୍ଦ୍ର—ବୈଷ୍ଣବି । ଏ' ଦୀନ ଅକିଞ୍ଚନର କି ଏତେ ସୌଭାଗ୍ୟ ହେବ ଯେ, ସେ ଅଚିରେ ଯୁଗଳ-ପ୍ରେମ ଲାଭ କରିବ ?

ବୈଷ୍ଣବୀ—ଭୟ କାହିଁକି ? ବାଟରେ କ'ଣ ଚନ୍ଦ୍ରା-ବଳୀର ବାଧା ଅଛି ?

ବୀରେନ୍ଦ୍ର—( ସ୍ୱଗତ ) ମନର ଭାବ ବେଶ୍ ବୁଝିଛି ତ—ରସିକା କିନା । ( ପ୍ରକାଶ୍ୟେ ) ଥିଲା, ମାତ୍ର ଆପଣଙ୍କ ଆଶୀର୍ବାଦରେ ସେ ଭୟ ଆଉ ନାହିଁ, କିନ୍ତୁ—

ବୈଷ୍ଣବୀ—କିନ୍ତୁ କ'ଣ ?

ବୀରେନ୍ଦ୍ର—ଦୂତୀ ପାଇଲେ ତ ?

ବୈଷ୍ଣବୀ—ରାଧାର କୁଞ୍ଜ ଜାଣିଲେ ଦୂତୀର କ'ଣ ଅଭାବ ହେବ ?

ବୀରେନ୍ଦ୍ର—( ସ୍ୱଗତ ) ମହାନନ୍ଦ । ( ପ୍ରକାଶ୍ୟେ ) ଆସ ତେବେ ମୁଁ କୁଞ୍ଜର ସନ୍ଧାନ କହି ଦେଉଛି !

ବୈଷ୍ଣବୀ—ରାଧେକୃଷ୍ଣ !

( ପୂର୍ବ ଗୀତର ପୁନରାବୃତ୍ତି )

ଆଉ କି ଶୁଣିବି, ପରାଣ ମୋହିବ
ସେ ମୋହନ ମୁରଲୀ ମଧୁର ଗାନେ ?
ନୟନେ ଦେଖିବି, ହୃଦୟେ ଲେଖିବି
ସେ ଶ୍ୟାମସୁନ୍ଦର ଜଗତ ପ୍ରାଣେ ॥

( ଉଭୟଙ୍କର ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ପୁଷ୍କରିଣୀ ତୀର—

[ ନନ୍ଦିକା ଚିନ୍ତିତା ଭାବେ ଉପବେଶନ କରିଥିବା ]

ନନ୍ଦିକା—କି ଉପାୟ କରୁଛି ? ଶାରଦା ଯେପରି କହୁଥିଲା, ହୁଏତ ଏ ପୁନରାୟ ବିବାହ ପ୍ରସ୍ତାବ ଘେନି ଆସିବ ? ବାପୁଭାଇ ଯେତେବେଳେ ଜଗିଛନ୍ତି ଧରିଛନ୍ତି, ସେ କି ଆଉ ଛାଡ଼ିବାର ପାତ୍ର ? ହାୟ, କାହିଁକି ମୁଁ କନ୍ୟା ହୋଇ ଜନ୍ମ ହେଲି ? ପୁତ୍ର ହୋଇଥିଲେ ଅନ୍ତ କାହାରିକୁ କୌଣସି କ୍ଲେଶ

ଦେଉ ନ ଥା'ନ୍ତି ।—ଅଚ୍ଛା, ନାରୀ କ'ଣ ପୁରୁଷ ପରି କାର୍ଯ୍ୟ କରି ପାରେ ନାହିଁ ? ନାରୀ ନର ମଧ୍ୟରେ ସୃଷ୍ଟି କୌଶଳର କିଞ୍ଚିତ ବୈଷମ୍ୟ ଥିଲେ ସୁଦ୍ଧା ଉଭୟତ ସମାନ ଦୋଷ ଗୁଣ ବିଶିଷ୍ଟ; ସୁତରାଂ ମୁଁ ଚେଷ୍ଟା କଲେ କ'ଣ ରାଜ୍ୟ ଶାସନ କରି ପାରିବି ନାହିଁ ?

( ଚିନ୍ତିତ ଭାବେ ବସି ରହିବା )

[ ସଖୀମାନଙ୍କର ଗୀତ ଗାଉ ଗାଉ ପ୍ରବେଶ ]

—ଗୀତ—

କିମ୍ପା ବିଷାଦିନୀ କହଲୋ ରଙ୍ଗିନି !
କିମ୍ପା ଗୋ ଅଧରେ ନାହିଁ ହସ-ରେଖା !
ବଦନ ଶୁଖିଛି, କେଶ ଝାଉଁଳିଛି,
ସର୍ବାଙ୍ଗେ କାଳିମା ଦେଇଛି ଦେଖା ।
ଫୁଟିଅଛି ଜୁହି ରାଜ ଉପବନେ,
ରାଜ ଭୋଗ ତୋର ସଦା ଶ୍ରୀଚରଣେ,
ଝୁଲୁଛି ସୁମନେ ଦକ୍ଷିଣା ପବନେ,
ମୋହିତ ପରାଣେ ଅଳିର ଗୁଞ୍ଜନେ
କି ହେଲା, କିମ୍ପାଇ ନାହିଁ ହସ ମନେ ?
ଭାଲେକି ତୋହର ହେଲା ଦୁଃଖରେଖା ।

ନନ୍ଦିକା—ତୁମ୍ଭେମାନେ ଏଠାକୁ ପୁଣି କାହିଁକି ଆସିଲ ?

୧ମ ସଖୀ—ମନ୍ତ୍ରିମାଙ୍କ ହୁକୁମ ଯେ ଜେମାଦେଈଙ୍କୁ ଆମ୍ଭେମାନେ ଏକୁଟିଆ କାହିଁ ରହିବାକୁ ଦେବୁ ନାହିଁ ?

ନନ୍ଦିକା—ତା'ହେଲେ ମୁଁ ଯାଉଛି, ଘରେ କବାଟ କିଳି ରହିବ ।

[ ଦଣ୍ଡାୟମାନ ହୋଇ ପ୍ରସ୍ଥାନୋଦ୍ୟତା ]

ସମସ୍ତେ—ନା, ଜେମାଦେଈ ! ସେପରି କରନା ।

ବୈଷ୍ଣବୀ—( ନେପଥ୍ୟେ ) ରାଧେକୃଷ୍ଣ !

୨ୟ ସଖୀ—ଏହି ଯେ, ସେହି ବୈଷ୍ଣବୀ ଆସିଲାଣି ।

୩ୟ ସଖୀ—ଦେଈ ତା'ର ଗୀତ ଆଉ କଥାବାର୍ତ୍ତା ଶୁଣିବାକୁ ଭଲପା'ନ୍ତି ।

୧ମ ସଖୀ—ଭଲ ତେବେ, ଦେଈଙ୍କ ମନ ଭୁଲାଇବାକୁ ଯେ କେହି ଜଣେ ହେଲେ ରହିଲେ ହେଲା ।

[ ସଖୀମାନଙ୍କର ପ୍ରସ୍ଥାନ ପରେ ବୈଷ୍ଣବୀର ପ୍ରବେଶ ]

ବୈଷ୍ଣବୀ—ରାଧେକୃଷ୍ଣ ! ଭିକ ମୁଠେ ମିଳୁ ?

ନନ୍ଦିକା—ଏତେ ସକାଳୁ ଭିକ ମିଳିବ ନାହିଁ ।

ବୈଷ୍ଣବୀ—( ଧୀରେ ) ଦର୍ଶନଟି ମିଳିବ ?

ନନ୍ଦିକା—ସକାଳୁ ଭିକାରୁଣୀ ମୁହଁଟା କିଏ ଚାହିଁବ ଲୋ ?

ବୈଷ୍ଣବୀ—(ଦୀର୍ଘନିଃଶ୍ୱାସ ଛାଡ଼ି) ଭିକାରୁଣୀଟାକୁ ତେବେ କ'ଣ ତଡ଼ି ଦେଉଛ ?

ନନ୍ଦିକା—ବାଧ ହୋଇ ।

ବୈଷ୍ଣବୀ—ହଉ, ରାଧେକୃଷ୍ଣ ! ( ପ୍ରସ୍ଥାନୋଦ୍ୟତା )

ନନ୍ଦିକା—( ମାନକରି ) ଅଲୋ କେଉଁ ଗାଡ଼ମୁହିଁକୁ ଯାଉଛୁ, ପୋଡ଼ାମୁହିଁ ? ପୋଡ଼ାମୁହିଁ ! ତିଳକ ନାଇ, ମାଳ ଝୁଲାଇ ବୈଷ୍ଣବୀ ସାଜିଛି ! (ଟାଣିବା)

ବୈଷ୍ଣବୀ—ଓଃ-ହୋଃ—ଛାଡ଼—ଛାଡ଼—ପ୍ରାଣଗଲା—ପ୍ରାଣଗଲା—

ନନ୍ଦିକା—ଏ ପ୍ରାଣ ଗଲେ, ତୋର ମଙ୍ଗଳ ।

ବୈଷ୍ଣବୀ—ତୁମରି ହାତରେ ତ ରହିଛି ।

ନନ୍ଦିକା—ହୁଁ—ପୋଡ଼ାମୁହିଁ ! ( ଖୁନ୍ଦାମାରି ) କହ ଏବେ, ଅଭିସାରର କି ଫଳ ?

ବୈଷ୍ଣବୀ—ରାଧାର ଅଭିସାର ହୁଏ ନା !

ନନ୍ଦିକା—ତେବେ କ'ଣ ହୁଣ୍ଡା ବାର୍ତ୍ତା ଘେନି ଯାଇଥିଲୁ ?

ବୈଷ୍ଣବୀ—ହୁଣ୍ଡା ବାର୍ତ୍ତା ଘେନି ଆସିଛି ନା !

ନନ୍ଦିକା—ଓହୋ !—ଅଚ୍ଛା, କି ବାର୍ତ୍ତା ଆସିଛି ?

ବୈଷ୍ଣବୀ— —ଗୀତ—

(ରାଧେ) ଶ୍ୟାମ କି ଆଉ ବଞ୍ଚିବ ?
କୁଞ୍ଜଦ୍ୱାରେ ଥାଇ ଅନାଇ ଅନାଇ
ନିଶ୍ଚୟ ସେ'ତ ସରିବ ।
ପବନେ ପତର ହେଲେ ମର ମର,
ନୂପୁର କ୍ୱଣ କି ଗୁହେଁ ତର ତର
ନ ଦେଖି କାହାକୁ, କପାଳେ କରକୁ
କଚାଡ଼େ, "ହାରେ ଦଇବ" ।

ନନ୍ଦକା—ଆଉ ସେଭକ,—ସହି ! ସହି ! ସତେ
କ'ଣ ସେନାପତି ମୋ'ର ଆଶାରେ ଏତେ
ଅନାସ୍ଥା ଭିଆଇଛନ୍ତି ?
ବୈଷ୍ଣବୀ—ଯ୍ୟା କ'ଣ ବୁଝିବାକୁ ବାକୀ ଅଛି ?
ନନ୍ଦକା—ମୁଁ ଯେ ବିଶ୍ୱାସ କରି ପାରୁ ନାହିଁ, ସହି !
ବୈଷ୍ଣବୀ—ତୁମେ ବିଶ୍ୱାସ କରିବ କ'ଣ, ମୋତେ ଯେ
ସ୍ୱପ୍ନପରି ବୋଧ ହେଉଛି ! ସତେ, ସହି ! ତାଙ୍କର
ଏପରି କୁ-ଭାବ ମୁଁ ଘୃଣାକ୍ଷରେ ସୁଦ୍ଧା କେବେ
ଜାଣିପାରି ନ ଥିଲି—ବର୍ତ୍ତମାନ ବେଶ୍ ବୁଝି
ପାରୁଛି, ଯେ କାହିଁକି ସେ ଏଣିକି ଏଣିକି
ମୋତେ ଦେଖିଲେହିଁ ଉଡ଼ୁଥିଲେ—ଆଉ
ସେଦିନ, ଅଯାଚିତ ଭାବେ ଏତେ ଆଦର ସୁଆଗ
କରିଥିଲେ !—ହାୟ ! ମୋ'ର ସରଳ ବିଶ୍ୱାସ
ଯୋଗୁଁ ପିନା ଆଜି ଏହି ସର୍ବନାଶ ଉପସ୍ଥିତ !
ନନ୍ଦକା—ପୁଣି ସେହି କଥା ?—ଯାହା ଘଟିବାର
ଘଟିଛି, ବର୍ତ୍ତମାନ ସେନାପତିଙ୍କର ଏ ପାଗଲାମି
କିପରି ଛାଡ଼ିବ, ତାର ବ୍ୟବସ୍ଥା କରିବା ଉଚିତ ।
ବୈଷ୍ଣବୀ—ତା' ତୁମେ ଜାଣ; ମାତ୍ର ମୁଁ ଚାହେଁ
ବିଶ୍ୱାସଘାତକତାର ପ୍ରତିଶୋଧ— ପାଗଲାମି ବଢ଼ୁ
ବା ଛାଡ଼ୁ—ମୁଁ ଚାହେଁ ପ୍ରତିଶୋଧ । ଏ ବିଷୟରେ
ତୁମେହିଁ ଏକମାତ୍ର ସହାୟ—ମୋତେ ନିରାଶ
କର ନା ସହି—ମୋତେ ସାହାଯ୍ୟ କର !
ନନ୍ଦକା—ଧୈର୍ଯ୍ୟ ଧର, ସହି ! ମୁଁ ତ ଅନ୍ୟ କିଛି
କହୁନାହିଁ—ପ୍ରତିଶୋଧ ନେବାକୁହିଁ କହୁଛି ।
ବୈଷ୍ଣବୀ—ମୋତେ ସତ୍ୟକରି କୁହ, ସହି !—
ବିଶ୍ୱାସଘାତକକୁ ଉପଯୁକ୍ତ ଦଣ୍ଡ ଦେବାକୁ କଦାପି
କୁଣ୍ଠିତ ହେବ ନାହିଁ ? କି ଦଣ୍ଡ ଦେବ ? କି
ଶାସ୍ତି ତାର ଉପଯୁକ୍ତ ହେବ ?—ଭାବିଛକି ?
ଭାବି ନ ଥାଅ ଯେବେ, ଆଉ ଥରେ ଅପରାଧର
ଗୁରୁତ୍ୱ ବିବେଚନା କରି, ଦଣ୍ଡ ଉଦ୍ଭାବନ
କର—ପିଶାଚ ସେ କରିଛି କଣ ? ଗୋଟିଏ
ସରଳା ଅବଳାର ଇହକାଳ ପରକାଳ ନଷ୍ଟ
କରିଛି—ରାଜକୁମାର ସୁଖ ପଥରେ କଣ୍ଟକ-
ନିକ୍ଷେପ କରିଛି—ପ୍ରଭୁ-ଭୃତ୍ୟମଧ୍ୟରେ ବିବାଦ
ଜଲାଇ ଦେଇଛି—ସୁବର୍ଣ୍ଣ ରାଜ୍ୟକୁ
ଭସ୍ମାବଶେଷରେ ପରିଣତ କରିବାକୁ ବସିଛି !
ତୁମେ ଜାଗ—ଉଠ ! ସୈତାନ ଭାବରେ ନିଜକୁ
ଅନୁପ୍ରାଣିତ କର—ପୈଶାଚିକ ଦୃଷ୍ଟିରେ ଚତୁର୍ଦ୍ଦିଗ
ନିରୀକ୍ଷଣ କର—ଶତ ଶିଖାରେ ରୋଷାଗ୍ନି ବିସ୍ତାର
କର—ସଗର-ସନ୍ତାନ ତୁଲ୍ୟ ପାପିଷ୍ଠ ଭସ୍ମୀଭୂତ
ହୋଇଯାଉ—ଗୁରୁ-ପାପଭାରରୁ ଏ ଧରାଧାମ
ମୁକ୍ତି ଲଭ କରୁ—
ନନ୍ଦକା—ତୁ ଏପରି ପାଷାଣୀ କେଉଁଦିନୁ ହେଲୁ,
ଶାରଦା ?
ବୈଷ୍ଣବୀ—ଯେଉଁ ଦିନୁ ତାର ପିତା ନିର୍ବାସିତ
ହେଲେଣି—ତା'ର ସଖୀର ସୁଖ-ପଥରେ କଣ୍ଟକ
ପଡ଼ିଲାଣି—ସ୍ୱରାଜ୍ୟର ଭବିଷ୍ୟତ ଅମଙ୍ଗଳ
ମେଘରେ ଢାଙ୍କି ଆସିଲାଣି—
ନନ୍ଦକା—ସହି ! ତାଙ୍କପ୍ରତି କ'ଣ ତୋ'ର ଟିକିଏ
ହେଲେ ମମତା ନାହିଁ ? ତୁ'ତ ଜାଣୁ, ଗୋପନରେ
ଅନ୍ତଃପୁର-ପ୍ରବେଶର କି ଦଣ୍ଡ ?
ବୈଷ୍ଣବୀ—ମୃତ୍ୟୁ ! ମାତ୍ର ପାପିଷ୍ଠ ପକ୍ଷେ, ଏ ଯେ ଅତି
ଲଘୁ-ଦଣ୍ଡ, ସହି !
ନନ୍ଦକା—ଏହାଠାରୁ ଗୁରୁତର ଦଣ୍ଡ ଦେବ—ତୋ'ର
ସମ୍ମୁଖରେ ଦେବ—ତୋ'ର ଦ୍ୱାରା ଦଆଇବ—
ଦେଇ ପାରିବୁ କି ?—ସହି ପାରିବୁ କି ?
ବୈଷ୍ଣବୀ—ରାଜାଦେଶରେ, ପିତୃ ଇଚ୍ଛାରେ ଓ
କର୍ତ୍ତବ୍ୟାନୁରୋଧରେ, ନିଶ୍ଚୟ ପାରିବ ! (ସ୍ୱଗତ)
କିନ୍ତୁ— [ ବ୍ୟଥିତ ଭାବାଭିନୟ ]
ନନ୍ଦକା—ଲୁହ ଗଡ଼ାଇଲୁ ଯେ ?
ବୈଷ୍ଣବୀ—(ଲୁହ ପୋଛି) କିଛି ନାହିଁ, ସହି—କେବଳ
ପ୍ରତିଶୋଧ—ପ୍ରତିଶୋଧ—
( ନେପଥ୍ୟେ "ଜୟମହାରାଜ ସୁବର୍ଣ୍ଣ କେଶରୀଙ୍କ ଜୟ" ! )
ବୈଷ୍ଣବୀ—ଏ କ'ଣ ? ମହାରାଜ ଦ୍ରୁତପଦରେ ଏଣେ
ଧାଉଁଛନ୍ତି କାହିଁକି ? ମୁଁ ଆସୁଛି, ସହି !
ନନ୍ଦକା—ନା ସହି ! ଚାଲି ଯା' ନା—ମୋତେ
ଏକୁଟିଆ ଦେଖିଲେ ଯେ ବାବା ବିରକ୍ତ ହେବେ
—ପୁଣି ମାତାଜୀ ସଙ୍ଗେ ମୋର ଭାରି ଭାବ

ବୋଲ୍ ସେଡ ଖୁସି ହୁଅନ୍ତ—ନୁହେଁ ? ପୋଡ଼ା ମୁଁହ—ମାଡାଜୀ ସାଜନ୍ତି । ( ଖୁଦାମାରବା ।— ନେପଥ୍ୟକୁ ଗୃହିଁ ) ଏ' କ'ଣ ? ପିତା ଏ'ପରି ବ୍ୟାକୁଳ ଭାବେ ଧାଇଁଛନ୍ତି କାହିଁକି ?

[ ସୁବର୍ଣ୍ଣ କେଶରୀଙ୍କ ବେଗେ ପ୍ରବେଶ ]

ସୁବର୍ଣ୍ଣ—ନନ୍ଦକା । ନନ୍ଦକା ।

ନନ୍ଦକା—ବାବା । ବାବା । (ଆଲିଙ୍ଗନାବଦ୍ଧ ହୋଇ) ଏ'ପରି କାତର ହେଉଛନ୍ତି କାହିଁକି, ବାବା ?

ସୁବର୍ଣ୍ଣ—ସର୍ବନାଶ ଉପସ୍ଥିତ ମା । ସର୍ବନାଶ ଉପସ୍ଥିତ ।

ନନ୍ଦକା—କି ସର୍ବନାଶ, ବାବା ?

ସୁବର୍ଣ୍ଣ—ଗୈରବଙ୍ଗ ଓଡ଼ିଶା ଆକ୍ରମଣ କରନ୍ତି ।

ନନ୍ଦକା ଓ ବୈଷ୍ଣବୀ } (ସ୍ୱଗତ) ଆକ୍ରମଣ କରନ୍ତି । (ପରସ୍ପରକୁ ବିସ୍ମୟ ନେତ୍ରରେ ଗୃହିଁବା )

ନନ୍ଦକା—( ସ୍ୱଗତ ) ମନ୍ତ୍ରୀଙ୍କର କୌଶଳ କ'ଣ ବ୍ୟର୍ଥ ହୋଇଛି ?

ସୁବର୍ଣ୍ଣ—କ'ଣ କରିବି, ମା ?

ନନ୍ଦକା—ଏତେ ଅଧୀର କାହିଁକି, ପିତଃ ?

ସୁବର୍ଣ୍ଣ—କେବଳ ତୋ'ର ସକାଶେ, ନନ୍ଦ ।

ନନ୍ଦକା—(ସ୍ୱଗତ) ଆକ୍ରମଣର କାରଣ କଣ ଅପମାନର ପ୍ରତିଶୋଧ ନେବା—ନା, ମୋତେ ବଳପୂର୍ବକ ହରଣ କରିନେବା ?—ମୋ' ପ୍ରତି ଯେବେ ପ୍ରଣୟାସକ୍ତ ଥିଲେ, ମନ୍ତ୍ରୀଙ୍କ ଉପଦେଶାନୁଯାୟୀ କାର୍ଯ୍ୟ ନକଲେ କାହିଁକି ? ଅଥବା ଅଭିମାନ ତାଙ୍କର ଏତେ ଦୂର ପ୍ରବଳ ଯେ, ପ୍ରଣୟ ସମ୍ମୁଖରେ ସୁଦ୍ଧା ସେଥିରୁ ଟିକିଏ ବଳି ଦେଇ ପାରିଲେ ନାହିଁ ?

ସୁବର୍ଣ୍ଣ—ନନ୍ଦ ।

ନନ୍ଦକା—( ଭାବି ସ୍ୱଗତ ) ଛାଡ଼—ଯେଉଁ କାରଣରୁ ସେ ଆକ୍ରମଣ କରନ୍ତୁ, ସେ ବର୍ତ୍ତମାନ ଶତ୍ରୁ— ରାଜ୍ୟର ଶତ୍ରୁ—ପିତାର ଶତ୍ରୁ—ମୋର ମଧ୍ୟ ଶତ୍ରୁ ।

ସୁବର୍ଣ୍ଣ—କ'ଣ ଭାବୁଛୁ, ମା ? ମୋତେ ବଞ୍ଚା, ମା !

ନନ୍ଦକା—ଏତେବଡ଼ ବୀର ହୋଇ ଏତେ ଦୁର୍ବଳ ବାବା !

ସୁବର୍ଣ୍ଣ—ତୁହି ଯେ ମୋର ସମସ୍ତ ବଳ, ମା !

ନନ୍ଦକା—ମନୋଭାବ ବୁଝି ପାରୁଛି ପିତଃ । କୌଣସି ଚିନ୍ତା ନାହିଁ—ଜୀବନ ଥାଉଁ ଥାଉଁ ଏ' ପିତୃ-ଶରୀରରେ ଅନ୍ୟ କାହାର ଅଧିକାର ନାହିଁ, ପିତଃ ।

ସୁବର୍ଣ୍ଣ—ତେଣିକି ଆଶ୍ୱାସନା ଗୃହେଁ ମା ।—ଆ, ମା । ତୋତେ ଗୋଟିଏ ନିରାପଦ ସ୍ଥାନରେ ରଖିବାର ବନ୍ଦୋବସ୍ତ କରିଦେବି ।

ନନ୍ଦକା—ଏ'କି କଥା, ପିତଃ । କେଶରୀ-କନ୍ୟା ହୋଇ, ଶୃଗାଳ ପରି ଗର୍ତ୍ତରେ ଲୁଚି ରହିବି କିପରି ?

ସୁବର୍ଣ୍ଣ—ତୁ'ତ ଆଉ ଯୁଦ୍ଧ ସ୍ଥଳକୁ ଯିବୁ ନାହିଁ, ମା ?

ନନ୍ଦକା—ଆବଶ୍ୟକ ହେଲେ, ଯିବନାହିଁ କାହିଁକି ? ବର୍ତ୍ତମାନ ଆପଣମାନେ ଯୁଦ୍ଧସ୍ଥଳକୁ ଗଲେ, ଦୁର୍ଗରକ୍ଷାଦି ସମ୍ବନ୍ଧେ କିଞ୍ଚିତ ସାହାଯ୍ୟ କରି-ପାରିବି ତ ?

ସୁବର୍ଣ୍ଣ—ପାଗଳାମି କର ନା ମା—ତୁ ଏ ସବୁ ବିଷୟରେ କ'ଣ ଜାଣୁ ?

ନନ୍ଦକା—ନ ଜାଣିଲେ ଶିଖି ନେବି—ଲଘୁ-ଭାର ଗୋଟିଏ କଣ୍ଟ ଦଅନ୍ତୁ ପିତଃ—ରାଜ୍ୟର ଏ ବିପଦ ବେଳେ ମୁଁ କଦାପି ନିଶ୍ଚିନ୍ତ ହୋଇ ରହି ପାରିବି ନାହିଁ । (ଅର୍ଦ୍ଧସ୍ୱଗତ) ଓଃ, ଶତବୃଶ୍ଚିକ ଦଂଶନରେ ଯେ ହୃଦୟ ମୋର ଜ୍ୱଳି ଉଠୁଛି, ଯେତେବେଳେ ଅନୁଭବ କରୁଛି ମୋ'ର ହେତୁ ଆଜ ରାଜ୍ୟର ଓ ରାଜାର ସର୍ବନାଶ ଉପସ୍ଥିତ ।

ସୁବର୍ଣ୍ଣ—ମାତାଜୀ । ଶିଷ୍ୟାକୁ ତୁମର ଟିକିଏ ବୁଝାଅ ।

ବୈଷ୍ଣବୀ—ଶିଷ୍ୟାମୋର ଠିକ୍ ବୁଝିଛି, ମହାରାଜ ।— ମୁଁ ଆଉ ଅଧିକ ବୁଝାଇବି କଣ ?

ସୁବର୍ଣ୍ଣ—ତୁମେ ପରା ବୈଷ୍ଣବୀ ! ଯୁଦ୍ଧ କରିବ ? ଜୀବହିଂସା କରିବ ?

ବୈଷ୍ଣବୀ—ଖୁବ୍ କରିବି, ମହାରାଜ ! ଅବଶ୍ୟ କହୋଇ ପଡ଼ନ୍ତୁ !—ବର୍ତ୍ତିମାନ' ବନାଦୋଷରେ ରାଜା ଅମ୍ଭମାନଙ୍କର ବିପଦ ଗ୍ରସ୍ତ, ବାନୀମେଘରେ ରାଜ୍ୟ ଉପରେ ବଜ୍ର ପଡ଼ିଛି—କିଏ ନିଶ୍ଚିନ୍ତ ହୋଇ ବସି ପାରିବ, ମହାରାଜ ? ଏ ବୈଷ୍ଣବୀ ମଧ୍ୟ ତୁଳ-ମାଳ ପକାଇବଟି, ଢାଲ-ତରବାରୀ ଧରିବାକୁ ଉଦ୍ୟତ—'ରାଧେକୃଷ୍ଣ' ପରିବର୍ତ୍ତେ, 'ହାଣ, ମାର, ଧର' ଶବ୍ଦରେ ମେଦିନୀ କମ୍ପାଇବାକୁ ପ୍ରସ୍ତୁତ ।

ସୁବର୍ଣ୍ଣ—ଏ'କି ଜାଗରଣ ଆଜ !

ନନ୍ଦକା ଓ ବୈଷ୍ଣବୀ—ଜୟ ମହାରାଜ ସୁବର୍ଣ୍ଣ କେଶରୀଙ୍କର ଜୟ !

ସୁବର୍ଣ୍ଣ—ଆଜ ମୋର ପରାଜୟର ଭୟ ନାହିଁ । ଯେତେବେଳେ ପ୍ରାସାଦରେ ମୋର ଏ'ପରି ଶକ୍ତିର ଜନ୍ମ ହୋଇଛି—ରାଜ୍ୟରେ ମୋର ଏପରି ପ୍ରଭାବତୀର ଆବିର୍ଭାବ ହୋଇଛି--ତେତେବେଳେ, ଆଉ ଭୟ କଣ ?—ଏ' ଦୁର୍ବଳ ସନ୍ତାନର ଜୟ ସୁନିଶ୍ଚିତ । ଆସ ମାତୃଗଣ ! ତୁମ୍ଭମାନଙ୍କର ସ୍ୱର୍ଗୀୟ ସ୍ପର୍ଶରେ ଏ କ୍ଷୀଣ ଶକ୍ତି ଆଜ ନବତେଜରେ ଉତ୍ତେଜିତ ହୋଇ ଉଠୁ !

[ଉଭୟ ପାର୍ଶ୍ୱରେ ଦୁଇ ଜଣଙ୍କୁ ଧରି ଠିଆହେବା]

ନନ୍ଦକା ଓ ବୈଷ୍ଣବୀ—'ଜୟ ମହାରାଜ ସୁବର୍ଣ୍ଣ କେଶରୀଙ୍କ ଜୟ' !

[ ସୁବର୍ଣ୍ଣ ମସ୍ତକ ନତକରିବା ]

—ଡ୍ରପ୍—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଯୋଦ୍ଧୃବେଶେ ନନ୍ଦକା ଓ ବୈଷ୍ଣବୀ ଯୁଦ୍ଧ ଦର୍ଶନ କରୁଥିବା ]

ବୈଷ୍ଣବୀ—ସଖି ! ଦେଖ, ଦେଖ, ଯୁଦ୍ଧ ଏଥର କିପରି ଭୀଷଣ-ଭାବ ଧାରଣ କଲାଣି ।

ନନ୍ଦକା—ମୃତ୍ୟୁ ଯେପରି କରାଳ-ବଦନ ବ୍ୟାଦାନ କରି ଧାଇଁ ଆସିଲାଣି ।

ବୈଷ୍ଣବୀ—ଦେଖ, ଦେଖ—କାହିଁ ପଦାତିକ ପଦାତିକ ମଧ୍ୟରେ ହସ୍ତା ହସ୍ତି—କାହିଁ ଅଶ୍ୱାରୋହୀ ଅଶ୍ୱାରୋହୀ ମଧ୍ୟରେ ଧ୍ୱସ୍ତା ଧ୍ୱସ୍ତି—କାହିଁବା ଅସାମଞ୍ଜସ୍ୟ ଭାବେ ପରସ୍ପର ମଧ୍ୟରେ କୁସ୍ତା କୁସ୍ତି ।

ନନ୍ଦକା—କାହିଁ ଦେଖ ପୁଣି, ଅଶ୍ୱଖୁର ତଳେ ପଦାତିକର ଭୀଷଣ ନିଷ୍ପେଷଣ—କାହିଁ ଅଶ୍ୱ ଅଶ୍ୱାରୋହୀ ମଧ୍ୟରେ ଭୀଷଣ ଆକର୍ଷଣ—କାହିଁବା କବନ୍ଧ କବନ୍ଧ ମଧ୍ୟରେ ଭୀଷଣ ସଂଘର୍ଷଣ !—

ବୈଷ୍ଣବୀ—ଶୁଣ, ଶୁଣ—ଅସ୍ତ୍ରର ଝଣ ଝଣ ଶବ୍ଦରେ—ଅଶ୍ୱର ହ୍ରେଷା ରବରେ—ହସ୍ତିର ବୃଂହିତରେ, କର୍ଣ୍ଣ କୁହର କିପରି ବିଦୀର୍ଣ୍ଣ ହୋଇ ଯାଉଛି ।

ନନ୍ଦକା—ଆହତର ସ୍ୱଣ, ଭୀତର ଭୟ ବିହ୍ୱଳ ଚିତ୍କାରରେ —ମୁମୂର୍ଷୁର ଆର୍ତ୍ତନାଦରେ, ମର୍ମସ୍ଥଳ କିପରି ବିଦୀର୍ଣ୍ଣ ହୋଇ ଯାଉଛି—

ବୈଷ୍ଣବୀ—ଦେଖ, ଦେଖ, ଗଗନ ମଣ୍ଡଳ କିପରି ଅସ୍ତ୍ରଶସ୍ତ୍ରଜାଲରେ ଆଚ୍ଛନ୍ନ ହୋଇ ଯାଉଛି ।

ନନ୍ଦକା—ସଖି, ଦେଖ ପୁଣି—ପୃଥିବୀ ପୃଷ୍ଠ କିପରି ରକ୍ତବନ୍ୟାରେ ପ୍ଲାବିତ ହୋଇ ଯାଉଛି—

ବୈଷ୍ଣବୀ—ହାୟ, ସୂର୍ଯ୍ୟଦେବ ଭୟରେ ଯେପରି ଲୁଚି ଯାଉଛନ୍ତି—

ନନ୍ଦକା—ଲଜ୍ଜାରେ ଯେପରି ପାତାଳ ପ୍ରବେଶ କରୁଛନ୍ତି ।

ବୈଷ୍ଣବୀ—ସଖି ! ଦେଖିଲ୍ ଅନାଇ, ଅଶ୍ୱପୃଷ୍ଠେ ବୀର ବିକ୍ରମେ କିଏ ସେ ଯୁଦ୍ଧ କ୍ଷେତ୍ରରେ ପ୍ରବେଶ କରୁଛନ୍ତି ?

ନନ୍ଦକା—ମହିଷ-ବାହନ ଯମ କି ଆଜି ପିଶାଚ ଭାବେ ଆଗମନ କରୁଛନ୍ତି ।

ବୈଷ୍ଣବୀ—ଏ' ଯେ ତୁମର ସେହି ମନ ଗ୍ଳେର ।

ନନ୍ଦକା—ହେୟ, ନର-ହନ୍ତା ।

ବୈଷ୍ଣବୀ—ଏ' କି ଭାବ ଆଜି, ସଖି ?

ନନ୍ଦକା—ମନୁଷ୍ୟ ପକ୍ଷେ ଯେଉଁ ଭାବ ସ୍ୱାଭାବିକ, ସଖି ।

ବୈଷ୍ଣବୀ—ଯୁଦ୍ଧ ଯେ ମନୁଷ୍ୟର ବିକ୍ରମ, ଦମ୍ଭ ଓ କୌଶଳର ପରିଚାୟକ—

ନନ୍ଦକା—ଅତ୍ୟାଚାର, ଉତ୍ପୀଡ଼ନ ଓ ହତ୍ୟାର ଯେ ପ୍ରଧାନ ପ୍ରତିପୋଷକ ।

ବୈଷ୍ଣବୀ—ଏ' ଗୁଡ଼ାକ ଆନୁଷଙ୍ଗିକ ।

ନନ୍ଦକା—ତେବେ ପ୍ରଶଂସନୀୟ କିପରି ?

ବୈଷ୍ଣବୀ—ଦୋଷ ଅପେକ୍ଷା ଗୁଣର ମାତ୍ରା ଅଧିକ ବୋଲି ।

ନନ୍ଦକା—ବିଷକଣିକା-ମିଶ୍ରିତ ଅମୃତ-ଭାଣ୍ଡ ତେବେ ନିନ୍ଦନୀୟ କାହିଁକି ?

ବୈଷ୍ଣବୀ—ହଠାତ୍ ତୁମର ଏ'କି ପରିବର୍ତ୍ତନ, ସଖି ? —ଯୁଦ୍ଧ କରିବ ବୋଲି ଯୁଦ୍ଧ ପୋଷାକ ପିନ୍ଧିଛ —ହସ୍ତରେ ଅସ୍ତ୍ରଧାରଣ କରିଛ—ସହସା ଏ'କି ପରିବର୍ତ୍ତନ ତୁମର ?

ନନ୍ଦକା—ଏହି ମୁହୂର୍ତ୍ତେ ମୁଁ ସବୁ ତ୍ୟାଗକଲି, ସଖି—(ଅସ୍ତ୍ର ନିକ୍ଷେପ) ଏହି କି ସେ' ଯୁଦ୍ଧ—ଲୋକରେ ଯା'ର ଏତେ ପ୍ରଶଂସା ? ହତ୍ୟାବ୍ୟାପାର ଛଡ଼ା ଏହା ଅଧିକ କେଉଁ ବିଷୟରେ ? କଂସାଇ ଠାରୁ ମନୁଷ୍ୟ ଶ୍ରେଷ୍ଠ କେଉଁ ଗୁଣରେ ?

ବୈଷ୍ଣବୀ—( ସସ୍ମିତେ ) ବେଶ, ମୋର ବେକ ତା' ହେଲେ ଧାରଣକର ।

ନନ୍ଦକା—ସଖି ! ସଖି ! ତୋ'ର କ'ଣ ଆଖି ଖୋଲୁ ନାହିଁ ?—ନାରୀ-ହୃଦୟରେ କଣ ବ୍ୟଥା ଲାଗୁ-ନାହିଁ ? ଜଣେ ଉନ୍ମତ୍ତ ହୋଇ ତୀକ୍ଷ୍ଣାସ୍ତ୍ର ପ୍ରହାର କରୁଛି—ଅନ୍ୟଜଣେ ଭୀଷଣ ଚିତ୍କାର କରି ଭୂ-ପତିତ ହେଉଛି; ଜଣେ ଜୟୋଲ୍ଲାସରେ ନୃତ୍ୟ କରି ବୁଲୁଛି— ଅନ୍ୟଜଣେ ମୃତ୍ୟୁ-ଯନ୍ତ୍ରଣାରେ ଆର୍ତ୍ତନାଦ କରି ଲୋଟୁଛି; ଜଣେ ବୀର-ଗର୍ବେ ଅଶ୍ୱ ଝପ୍‌ଟାଇ ଦେଉଛି—ଅନ୍ୟଜଣେ ଦଳିତ-ବିଦଳିତ ହୋଇ ପ୍ରାଣ ବିସର୍ଜନ କରୁଛି; କି ବିଭତ୍ସତା ! ସଖି, ସଖି ! ଏ ଜଘନ୍ୟ ଦୃଶ୍ୟ ଦର୍ଶନରେ କି ତୋର ମନ ବିଗଳିତ ହେଉ-ନାହିଁ ? ଶତ୍ରୁ ହେଉ, ମିତ୍ର ହେଉ, ସମସ୍ତେ କ'ଣ ମନୁଷ୍ୟ ନୁହନ୍ତି ? ସମସ୍ତେ କ'ଣ ଭାଇ ବନ୍ଧୁ ନୁହନ୍ତି ? ସମସ୍ତେ କ'ଣ ଏକ ପରମାତ୍ମାର ଅଂଶ ନୁହନ୍ତି ? ବିବାଦ, ମନୋମାଳିନ୍ୟ ଘଟିଲେ —ଅନ୍ୟ ଉପାୟରେ କ'ଣ ମୀମାଂସା କରିବାର ଉପାୟ ନାହିଁ ?—ଏହି ରାକ୍ଷସୀ ଯୁଦ୍ଧ କି ଏକମାତ୍ର ଉପାୟ ?—ସଖି ! ଯୁଦ୍ଧବିଷୟରେ ମୋର ଯେଉଁ ମହତ ଧାରଣା ଥିଲା, ତାହା ଆଜି ଯୁଦ୍ଧର ଏ' ବିଭତ୍ସଦୃଶ୍ୟ ଦର୍ଶନରେ ପରିବର୍ତ୍ତିତ ହୋଇଛି । ଏ' ଯୁଦ୍ଧ, ଯୁଦ୍ଧ ନୁହେଁ—ଗୋଟିଏ ହତ୍ୟାକାଣ୍ଡ —ମନୁଷ୍ୟର ପଶୁତ୍ୱର ନିଦର୍ଶନ ।

ବୈଷ୍ଣବୀ—ପ୍ରକୃତ କହିଛ, ସଖି ! ତୁମ କଥାରେ ସତେ ଆଜି କିପରି ଗୋଟିଏ ନୂତନ-ଭାବ ଜାଗି ଉଠୁଛି —ମୁଁ ମଧ୍ୟ ଏ' ପୋଷାକ, ଏ'ଅସ୍ତ୍ର ଜନ୍ମପରି ପରିତ୍ୟାଗ କଲି—ଯେଉଁ ଛଦ୍ମବେଶ ମୁଁ ଧାରଣ କରିଥିଲି, ତାହାହିଁ ଯେମନ୍ତ ମୃତ୍ୟୁ ପର୍ଯ୍ୟନ୍ତ ମୋର ପ୍ରକୃତ ଭୂଷଣ ହେଉ ।

ନନ୍ଦକା—ଚାଲ, ସଖି ! ଓହ୍ଲାଇ ଚାଲ—ଏ' ଦୃଶ୍ୟ ଆଉ ସହ୍ୟ ହେଉ ନାହିଁ ।

ବୈଷ୍ଣବୀ—ସନ୍ଧ୍ୟା ମଧ୍ୟ ହୋଇ ଆସିଲାଣି ।

[ ନେପଥ୍ୟେ "ଜୟ ମହାରାଜ ସୁବର୍ଣ୍ଣକେଶରୀ-ଙ୍କର ଜୟ ।" ]

ବୈଷ୍ଣବୀ—ଆମ୍ଭମାନଙ୍କର ଜୟହୋଇଛି !—ଏହି ଯେ ପିତା ଆସୁଛନ୍ତି ।

[ ସୁବର୍ଣ୍ଣ କେଶରୀଙ୍କ ପ୍ରବେଶ ]

ସୁବର୍ଣ୍ଣ—ନନ୍ଦ ! ଆମ୍ଭମାନଙ୍କର ଜୟ ହୋଇଛି ।

ବୈଷ୍ଣବୀ—"ଜୟ ମହାରାଜ—

ନନ୍ଦକା—ଚୁପ୍ !

ସୁବର୍ଣ୍ଣ—ଏ' କଣ ନନ୍ଦ !—ଜୟରେ ଆନନ୍ଦ ପ୍ରକାଶ କରିବାକୁ ବାଧା ଦେଉଛୁ କାହିଁକି ?—ଏହା କଣ ଉଚିତ ନୁହେଁ ?

ନନ୍ଦକା—ଯେଉଁମାନଙ୍କର ପ୍ରାଣମୂଲ୍ୟରେ ଏହି ଜୟ ଅଳ୍ପ କ୍ରୀତ ହୋଇଛି ସେମାନଙ୍କ ପାଇଁ କାନ୍ଦିବା କ'ଣ ଉଚିତ ନୁହେଁ, ପିତଃ ?

ସୁବର୍ଣ୍ଣ—ନନ୍ଦ ! ତୁ ଭାରି କୋମଳ-ହୃଦୟା !

ନନ୍ଦକା—ହୃଦୟଟି ସ୍ୱଭାବତଃ କୋମଳ, ପିତଃ ?

ସୁବର୍ଣ୍ଣ—ବୀର କିନ୍ତୁ ପାଷାଣ-ହୃଦୟ ହୁଏ ।

ନନ୍ଦକା—ଏ ଅସ୍ୱାଭାବିକ ଭାବ ଧାରଣ କି ଉଚିତ,ପିତଃ ?

ସୁବର୍ଣ୍ଣ—ଉଚିତ ଅନୁଚିତ, ତୁ ପୁରୁଷ ହୋଇଥିଲେ ବୁଝିଥାନ୍ତୁ—ପ୍ରକୃତ ବୀର ଯେ, ସେ ଯେତେବେଳେ ଯୁଦ୍ଧୋନ୍ମତ୍ତ ହୋଇ ଉଠେ, ସେତେବେଳେ ହୃଦୟ ତାର ସ୍ୱଭାବତଃ ପାଷାଣଠାରୁ କଠିଣତର ହୁଏ—ବାହୁ ଦ୍ୱୟ ବଜ୍ରଠାରୁ ଦୃଢ଼ତର ହୁଏ—ଚକ୍ଷୁ ଅଗ୍ନିସ୍ଫୁଲିଙ୍ଗ ଉଦ୍‌ଗୀରଣ କରେ—ରକ୍ତ ଦୃଷ୍ଟି ତାର ଆନନ୍ଦ ଉତ୍ପାଦନ କରେ—ଆର୍ତ୍ତନାଦ ତା'କୁ କର୍ଣ୍ଣାମୃତ ଦାନ କରେ—ମୃତ୍ୟୁ ଯନ୍ତ୍ରଣା ପ୍ରାଣକୁ ତା'ର ଆଶ୍ୱାସନା ଦିଏ; ସେ ଏକ ଅପୂର୍ବ ଭାବ—ସେ ଭାବ ବାକ୍ୟରେ ଅପ୍ରକାଶ୍ୟ—ବିଶେଷତଃ କୋମଳାଙ୍ଗୀ ନାରୀଙ୍କୁ ବୁଝାଇବା ଅସମ୍ଭବ ।

ନନ୍ଦକା—ଶୁଣିବାକୁ ମଧ୍ୟ, ନାରୀ ହେୟଜ୍ଞାନ କରେ ।

ସୁବର୍ଣ୍ଣ—ମୁଁ ତ ସେଥିଯୋଗୁଁ ଆଗରୁ କହୁଥିଲି—ତୁ ଏ'ସବୁ ସହି ପାରିବୁ ନାହିଁ ।

ନନ୍ଦକା—ନରର ପଶୁତ୍ୱ ନର କେବେ ସହ୍ୟ କରିପାରେ ନାହିଁ, ପିତଃ !

ସୁବର୍ଣ୍ଣ—ପଶୁତ୍ୱ ନୁହେଁ, ମା ! ଏହାହିଁ ବୀରତ୍ୱ ।

ନନ୍ଦକା—ଯେବେ ନରର ଏହାହିଁ ବୀରତ୍ୱ ହୁଏ, ତେବେ ଈଶ୍ୱରଙ୍କୁ ଧନ୍ୟବାଦ, ଯେ ନାରୀଙ୍କୁ ସ୍ତ୍ରୀତ୍ୱ ଦେଇଛନ୍ତି ।

ସୁବର୍ଣ୍ଣ—(ସ୍ୱଗତ) ଆହା ! ମା ମୋର କୋମଳ ପ୍ରାଣରେ ବଡ଼ ଆଘାତ ପାଇଛି । ( ପ୍ରକାଶ୍ୟେ ) ଆ, ମା ! ଏଥର ଆଉ ତୁ ଯୁଦ୍ଧ ବେଳେ କେବେ ଉପରକୁ ଆସିବୁ ନାହିଁ—ତୋତେ ଏ'ପରି ଗୋଟିଏ ସ୍ଥାନକୁ ପଠାଇ ଦେବି, ଯେଉଁଠାରେ କି ଯୁଦ୍ଧର କୋଳାହଳ ପର୍ଯ୍ୟନ୍ତ ଶ୍ରୁତିଗୋଚର ହେବନାହିଁ ।

ନନ୍ଦକା—ବାବା ! କେଶରୀ-କନ୍ୟା ମୁଁ—ଶୃଗାଳପରି କି ଲୁଚି ରହି ପାରେ ?

ସୁବର୍ଣ୍ଣ—ଏହି ଯୁଦ୍ଧ ଦେଖିତ ଏ'ପରି ବ୍ୟାକୁଳା ହେଉଛୁ—

ନନ୍ଦକା—ଆଶୀର୍ବାଦ କର, ବାବା ! ମୁଁ ଏହିପରି ବ୍ୟାକୁଳା ହୁଏଁ ।

ସୁବର୍ଣ୍ଣ—ବ୍ୟାକୁଳା ହେଲେ ତୁ ଆଗେ ଦେଖି ପାରିବୁ କିପରି—ଯୁଦ୍ଧ ସ୍ଥଳକୁ ଯିବାତ ଦୂରର କଥା ?

ନନ୍ଦକା—ବାବା ! ମୁଁ ଯେତେ ବ୍ୟାକୁଳା ହେବି, ସେତେ ବୀର ବିକ୍ରମରେ ଯୁଦ୍ଧ କରିପାରିବି ।

ସୁବର୍ଣ୍ଣ—( ସହାସ୍ୟେ ) ଯୁଦ୍ଧ କରି ପାରିବୁ ? ପାଗଳି ! ଏହିକ୍ଷଣି ପରା କହୁଥିଲୁ ଯୁଦ୍ଧ କରିବା ପଶୁତ୍ୱ ?

ନନ୍ଦକା—ମୁଁ ସେହି ପଶୁତ୍ୱ ସଙ୍ଗେ ଯୁଦ୍ଧ କରିବି, ବାବା !

ସୁବର୍ଣ୍ଣ—( ସସ୍ମିତେ ) ସେ କିପରି, ପାଗଳି ?

ନନ୍ଦକା—କାହିଁକି, ବାବା ? ନର ଯେତେବେଳେ ନରକୁ ହତ୍ୟା କରିବାକୁ ଉଦ୍ୟତ ହେବ, ନାରୀ ଯାଇ ମଧ୍ୟସ୍ଥଳରେ ଠିଆ ହେବ,—ନର ଯେତେବେଳେ ମୁମୂର୍ଷୁର ଆର୍ତ୍ତନାଦରେ ଉଲ୍ଲାସ ପ୍ରକାଶ କରିବ, ନାରୀ ଅଶ୍ରୁ ବିସର୍ଜନ କରି ମୁମୂର୍ଷୁଙ୍କୁ ନିଜ କୋଡ଼ରେ ସ୍ଥାନ ଦେବ,—ନର ଯେତେବେଳେ ନରହତ୍ୟା କରି ବୀରତ୍ୱ ଦେଖାଇବ, ନାରୀ ନିଜର ବକ୍ଷସ୍ଥଳ ଦାନ କରି ବୀରତ୍ୱ ଦେଖାଇବ ! ପିତା, ପିତା ! ଆଜଠୁଁ ଏହିପରି ଯୁଦ୍ଧ କରିବି ।

ସୁବର୍ଣ୍ଣ—ପାଗଳି ! ତୋତେ ଆଉ ପାରିଲି ନାହିଁ—ଆ, ଟିକିଏ ବିଶ୍ରାମ କରିବ । ନନ୍ଦ ! ଶୁଣିଛୁ ନା, ସେନାପତି ବଡ଼ ଗୁରୁତର ଭାବେ ଆହତ ହୋଇଛନ୍ତି ?

ବୈଷ୍ଣବୀ—ଗୁରୁତର ଭାବେ ?

ସୁବର୍ଣ୍ଣ—ଭୟ ନାହିଁ ।

ନନ୍ଦକା—ଯାଅ ବୈଷ୍ଣବ ! ଥରେ ଦେଖିଆସ—ସେ ବୈଷ୍ଣବୀକୁ କିଛି ଭଲ ପାଉଛନ୍ତି, ପିତା ।

ସୁବର୍ଣ୍ଣ—ବର୍ତ୍ତମାନ ଦୁର୍ଗ ବାହାରକୁ ଯିବା ଉଚିତ ନୁହେଁ—ଆସ, ବୈଷ୍ଣବ !

ବୈଷ୍ଣବୀ—ଚାଲନ୍ତୁ ମହାରାଜ ! ( ନନ୍ଦକା ଓ ସୁବର୍ଣ୍ଣର ପ୍ରସ୍ଥାନ ) ଗୁରୁତର ଭାବେ ଆହତ ହୋଇଛନ୍ତି ? ହୃଦୟ ! ଏ'ପରି କୋମଳ ହେଉଛୁ କାହିଁକି ? ପ୍ରତିହିଂସା—ପ୍ରତିହିଂସା ! ନା, ନା—( ଭାବି ) ସତ୍ୟ ଯେ ନୂତନ ପ୍ରକାର ଯୁଦ୍ଧ କରିବାକୁ ଯାଉଛୁ—ମୁଁ କ'ଣ ନୂତନ ପ୍ରକାର ପ୍ରତିହିଂସା ସାଧନ କରି ପାରେ ନାହିଁ ? ସତ୍ୟ ! ସତ୍ୟ ! ଆଜି କି ନୂତନ ଭାବ ଜାଗରିତ କରି ଦେଇଛ ?

( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଶିବିର—

[ ଚୈତ୍ରଗଙ୍ଗ ଅସ୍ଥିରଭାବେ ପଦଚାରଣା କରୁଥିଲେ ]

ଚୈତ୍ରଗଙ୍ଗ—ପରାଜୟ ! ପରାଜୟ ! କି ଲଜ୍ଜା—କ୍ଷତ୍ରିୟ ପକ୍ଷେ କି ଘୃଣାର ବିଷୟ ! ମୃତ୍ୟୁ ବରଂ—ପରାଜୟ ପଦୋଚ୍ଚାରଣ କ୍ଷତ୍ରିୟ ପକ୍ଷେ ଏକାନ୍ତ ଅସହ୍ୟ !

[ ମନ୍ତ୍ରୀଙ୍କର ପ୍ରବେଶ ]

ମନ୍ତ୍ରୀ—ମହାରାଜ କି ଏ'ପର୍ଯ୍ୟନ୍ତ ଜାଗ୍ରତ ?

ଚୈତ୍ରଗଙ୍ଗ—କି ଶାନ୍ତିରେ ଶୋଇବି, ମନ୍ତ୍ରୀ ?

ମନ୍ତ୍ରୀ—'ଜୟ ପରାଜୟ' ଉଭୟ ସମାନ, ମହାରାଜ !

ଚୈତ୍ରଗଙ୍ଗ—ଉଭୟ ସମାନ—ହାଃ, ହାଃ, ହାଃ, ! ତେବେ କେଉଁ ଆଶାରେ ଯୋଦ୍ଧା ଯୁଦ୍ଧ କରେ, ମନ୍ତ୍ରୀ ?

ମନ୍ତ୍ରୀ—ଯେଉଁ ଆଶାରେ ଯୁଦ୍ଧକରୁ ମହାରାଜ ! ଏ' ଯୁଦ୍ଧ କେବଳ ନରହତ୍ୟା ଛଡ଼ା ଆଉ କିଛି ନୁହେଁ—କାରଣ, ଯେଉଁ ଯୋଦ୍ଧା ଯେତେ ନରହତ୍ୟା କରିପାରେ, ସେ ସେତିକି ବୀରବୋଲି ଖ୍ୟାତି ଲାଭ କରେ ।

ଚୈତ୍ରଗଙ୍ଗ—ମନ୍ତ୍ରି ! ତୁମ୍ଭର ଏ'ସ୍ଥାନରେ ମନ୍ତ୍ରଣା ଦେବା କାର୍ଯ୍ୟ ନୁହେଁ—ଏ'କେବଳ ଅନଧିକାର ଚର୍ଚ୍ଚା—ଯାଅ, ସେନାପତିଙ୍କୁ ଡାକିଦିଅ ।

ମନ୍ତ୍ରୀ—ବର୍ତ୍ତମାନ ?

ଚୈତ୍ରଗଙ୍ଗ—ହଁ ବର୍ତ୍ତମାନ, ଏହି ରାତ୍ରିରେ !

ମନ୍ତ୍ରୀ—ଈଶ୍ୱର ! କେବେ ଏହି ପଶୁବୃତ୍ତିକି ମନୁଷ୍ୟ ହୃଦୟରୁ ଅପସାରିତ କରିଦେବେ ?

( ପ୍ରସ୍ଥାନୋଦ୍ୟୋତ )

ଚୈତ୍ରଗଙ୍ଗ—ହଁ ଭଲକଥା, ତୁମେ ଏହିକ୍ଷଣି—ଅଚ୍ଛା, ଅତି ପ୍ରତ୍ୟୁଷରୁ କର୍ଣ୍ଣାଟକୁ ଫେରି ଯାଇ ବାସୁଦେବ ମନ୍ତ୍ରୀଙ୍କୁ ଶୀଘ୍ର ଏଠାକୁ ପ୍ରେରଣ କର ।

ମନ୍ତ୍ରୀ—ଯେ ଆଜ୍ଞା ! (ସ୍ୱଗତ) ଧନ୍ୟ ଈଶ୍ୱର—ମୋତେ ଏହି ପାପ-ଦର୍ଶନରୁ ରକ୍ଷା କରିଛନ୍ତି ! ( ପ୍ରସ୍ଥାନ )

ଚୈତ୍ରଗଙ୍ଗ—ବାସୁଦେବ ଦ୍ୱାରା ଅନେକ ସନ୍ଧାନ ମିଳିପାରେ ; ମାତ୍ର ସେ ଯେବେ ବିଶ୍ୱାସଘାତକତା କରେ—ଅସମ୍ଭବ, ଦୁଇ କୁଳରୁ ତାହା ହେଲେ ସେ ବଞ୍ଚିତ ହେବ ! ବର୍ତ୍ତମାନ କିପରି ଭାବେ ଆକ୍ରମଣ କରୁଛି ?—କେଉଁ ଦିଗରୁ କଲେ ସୁବିଧା ହେବ ? (ଭାବି) ଏହି କାଠଯୋଡ଼ି ନଦୀ କୌଣସି ମତେ ଲଙ୍ଘନ ନକଲେ ଆଉ ଉପାୟ ନାହିଁ; କିନ୍ତୁ କିପରି କରିବି ?—ଏହା ଯେ ସୁଦୃଢ଼ ଦୁର୍ଗପ୍ରାଚୀର ପରି ସମସ୍ତ ସହରକୁ ବେଷ୍ଟନ କରି ରହିଛି—ପୁଣି ସଶସ୍ତ୍ର ଶତ୍ରୁ ସୈନ୍ୟ ଦିବା ରାତ୍ର ତତ୍ପରତାରେ ପାଦଚାରଣା କରୁଛନ୍ତି—ଉପାୟ କଣ ? (ଭାବିବା)

[ ସେନାପତିର ପ୍ରବେଶ ]

ସେନାପତି—ଅଭିବାଦନ, ମହାରାଜ !

ଚୈତ୍ରଗଙ୍ଗ—ତୁମ୍ଭେ କ'ଣ ଶୋଇଥିଲ, ସେନାପତି ?

ସେନାପତି—ଏ'କି ଶୋଇବା ବେଳ, ମହାରାଜ ! ମୁଁ ଗୁପ୍ତବେଶରେ ଶତ୍ରୁର କ୍ରିୟାକଳାପ ନିରୀକ୍ଷଣ କରିବାକୁ ଯାଇଥିଲି ।

ଚୈତ୍ରଗଙ୍ଗ—କ'ଣ ଦେଖିଲ ?

ସେନାପତି—ଏହି ସୁଯୋଗ ।

ଚୈତ୍ରଗଙ୍ଗ—ସମସ୍ତେ କ'ଣ ନିଦ୍ରିତ ?

ସେନାପତି—ଜୟୋଲ୍ଲାସରେ ଉନ୍ମତ୍ତ ସେମାନଙ୍କର ବିଶ୍ୱାସ, ଶତ୍ରୁ ଶିବିରରେ କଦାପି ଆକ୍ରମଣ କରିବ ନାହିଁ ।

ଭୈରବଗଙ୍ଗ—ତେବେ ଏହି ସୁଯୋଗ, ସେନାପତେ, ଏହି ସୁଯୋଗ ।

ସେନାପତି—ଆପଣ ଅଧୀର ହେଉନ୍ତୁନାହିଁ—ଆଉ ଗୋଟିଏ ଶୁଭ ସମ୍ବାଦ—ସେମାନଙ୍କର ସେନାପତି ଗୁରୁତର ଭାବେ ଆହତ ହୋଇଅଛନ୍ତି ।

ଭୈରବଗଙ୍ଗ—(ସାନନ୍ଦେ) ଆହତ ? ହାଃ ହାଃ ହାଃ—ଆଉ ବିଳମ୍ବ କରନାହିଁ, ସେନାପତେ । ଡାକ ସୈନ୍ୟଗଣଙ୍କୁ—ବଜାଅ ଦୁନ୍ଦୁଭି—ଗାଅ ଉଚ୍ଚ କଣ୍ଠେ, 'ଜୟ କର୍ଣ୍ଣାଟପତିଙ୍କ ଜୟ' ।

ସେନାପତି—ମହାରାଜ ! ଧୀର ସ୍ଥିର ହୋଇ କାର୍ଯ୍ୟ କରିବାକୁ ହେବ । ଆମ୍ଭମାନଙ୍କୁ ଅତି ଗୋପନରେ କାର୍ଯ୍ୟ କରିବାକୁ ହେବ—ଆପଣ ଶୀଘ୍ର ପ୍ରସ୍ତୁତ ହୁଅନ୍ତୁ, ମୁଁ ତେଣେ ବନ୍ଦୋବସ୍ତ କରୁଛି ।

ଭୈରବଗଙ୍ଗ—ମୁଁ ସର୍ବଦା ପ୍ରସ୍ତୁତ, ସେନାପତେ । ଯୁଦ୍ଧ—ଯୁଦ୍ଧ—ମୋର ଜାଗରଣରେ ଏକମାତ୍ର ଚିନ୍ତା, ନିଦ୍ରାରେ ଏକମାତ୍ର ସ୍ୱପ୍ନ । (ପ୍ରସ୍ଥାନ)

ସେନାପତି—ଧନ୍ୟ ବୀର ।

[ପ୍ରସ୍ଥାନ ଓ କେତେକ ସୈନ୍ୟଙ୍କର ପ୍ରବେଶ]

୧ମ ସୈନିକ—ଭାଇ ! ବସେଇ ଉଠେଇ ଦେଲେ ନାହିଁ, ପୁଣି ଡାକରା ପଡ଼ିଲାଣି ।

୨ୟ ସୈନିକ—କହନା ଭାଇ ! ମୋର ଗୋଡ଼ ହାତ ତ ଆଉ ଚଳୁନାହିଁ ।

୩ୟ ସୈନିକ—ଦିନଯାକ ଯୁଦ୍ଧ କରି କରି ମଣିଷ କ'ଣ କ୍ଲାନ୍ତ ହୋଇ ପଡ଼ିବ ନାହିଁ ?

୧ମ ସୈନିକ—ଅଚ୍ଛା, ମହାରାଜାଙ୍କର କ'ଣ ଟିକିଏ ବିଶ୍ରାମ କରିବାକୁ ମନ ବଳୁନାହିଁ ?

୨ୟ ସୈନିକ—ଚୁଲି ହେ, ଏଠି ଟିକିଏ ଶୋଇ ପଡ଼ିବା—ସମସ୍ତେ ଉଠନ୍ତୁ, ଯିବା ।

[ ଭୈରବଗଙ୍ଗଙ୍କ ବେଗେ ପୁନଃ ପ୍ରବେଶ ]

ଭୈରବଗଙ୍ଗ—ଭ୍ରାତୃଗଣ ! ଆଜି ଏ'କି ଇତର ଭାବ ତୁମ୍ଭମାନଙ୍କର ?—ଆଳସ୍ୟ, ନିଦ୍ରା—ଏହା କି ତୁମ୍ଭମାନଙ୍କର ଭୂଷଣ ?—ବୀରଠାରେ କି କେବେ ଶୋଭା ପାଏ ? ଏ' ଭାରି କଠିନ ପ୍ରାଣ, ସୈନ୍ୟଗଣ ! ଏଥିରେ ସୁପ୍ତି ନାହିଁ—ଏଥିରେ ଶାନ୍ତି ନାହିଁ—ଏଥିରେ ବିଳାସିତା ନାହିଁ । ଏ' ଏକ ଅପୂର୍ବ ପ୍ରାଣ—ଆନନ୍ଦ ପାଏ, ଚିର ଜାଗରଣରେ—ଶାନ୍ତି ପାଏ, ଅହୋରାତ୍ର ପରିଶ୍ରମରେ—ମୁକ୍ତିଲାଭ କରେ, ନିଜର ଉଦ୍ଦେଶ୍ୟ ସାଧନରେ ।

୧ମ ସୈନିକ—ମହାରାଜ ।

ଭୈରବଗଙ୍ଗ—ଯେବେ ତୁମ୍ଭେମାନେ ନିତାନ୍ତ କ୍ଲାନ୍ତ—କଷ୍ଟ ଚିନ୍ତାନାହିଁ, ମୁଁ ନିଜେ ଗାତ୍ର ମର୍ଦ୍ଦନ ଦ୍ୱାରା ସେ କ୍ଲାନ୍ତି ଅପନୋଦନ କରିବାକୁ ପ୍ରସ୍ତୁତ । ସଙ୍କୋଚର କୌଣସି କାରଣ ନାହିଁ, ସୈନ୍ୟଗଣ ! —ଏ ସଂଗ୍ରାମ ସ୍ଥଳ, ସମସ୍ତେ ବର୍ତ୍ତିମାନ ସମାନ । ଉଚ୍ଚ, ନୀଚ ଜ୍ଞାନ ଏ' କ୍ଷେତ୍ରରେ ଅକର୍ତ୍ତବ୍ୟ—ମହତ୍ ଉଦ୍ଦେଶ୍ୟ କେବଳ ଏଥିରେ ସଫଳ ହେବାର ସମ୍ଭାବନା ।

ସୈନ୍ୟଗଣ—ଆଉ କ୍ଲାନ୍ତି ନାହିଁ ମହାରାଜ ! ଆମ୍ଭେମାନେ ନବଶକ୍ତି ଲାଭ କରୁଛୁଁ ଜୟ ମହାରାଜ—

ଭୈରବଗଙ୍ଗ—ଚୁପ୍ ଚୁପ୍, ଧୀରେ ଧୀରେ ମୋତେ ଅନୁସରଣ କର, ସୈନ୍ୟଗଣ ।

[ ଭୈରବଗଙ୍ଗଙ୍କ ପଛେ ପଛେ ସମସ୍ତଙ୍କ ଧୀରେ ଧୀରେ ପ୍ରସ୍ଥାନ ]

---

## ତୃତୀୟ ଦୃଶ୍ୟ

—କକ୍ଷ—

[ ନନ୍ଦକାର ଶିବିର କାନ୍ଥରେ ଝୁଲୁଥିବା ଓ ସେନାପତି ଶଯ୍ୟାରେ ଅର୍ଦ୍ଧଶାୟିତ ଭାବେ ଉପବେଶନ କରିଥିବା ]

ସେନାପତି—କିଏ ସେ ବୈଷ୍ଣବୀ ? ମୋ ପ୍ରତି ତାର ଏତେ ଅନୁଗ୍ରହ କାହିଁକି ? ସେ କି ଦେବ-ପ୍ରେରିତା ?—ସେ' ନ ଥିଲେ ମୋର ପ୍ରାଣ

ପାଇବା ଯେ କୃଷ୍ଣର ହୋଇଥାନ୍ତା—ଦିନରାତ୍ର ପାଖେ ପାଖେ ରହି, ମୋର ଯେପରି ସେବା ଶୁଶ୍ରୂଷା କରୁଛି, ସ୍ତ୍ରୀ ବୋଧହୁଏ ସ୍ୱାମୀର ସେପରି ସେବା କରେ ନାହିଁ—ମା ବୋଧହୁଏ ରୁଗ୍ଣ ସନ୍ତାନର ସେପରି ଶୁଶ୍ରୂଷା କରେ ନାହିଁ । ବୈଷ୍ଣବୀକୁ କି ପୁରସ୍କାର ଦେବି ? କି ପୁରସ୍କାର ଦେଲେ ପ୍ରାଣଦାନର ଉପଯୁକ୍ତ ବିନିମୟ ହେବ ?—ଏହି ଯେ ମୋର ପ୍ରାଣଦାତ୍ରୀ । ଆସ, ଆସ ବୈଷ୍ଣବ !

[ ବୈଷ୍ଣବୀର ଗାଇ ଗାଇ ପ୍ରବେଶ—ସେନାପତି ସାଷ୍ଟାଙ୍ଗେ ଗୃହିଁ ରହିଥିବା ]

ବୈଷ୍ଣବୀ— —ଗୀତ—

ସେ ଯେ କୁଞ୍ଜକାନନ ମୋତେ କରୁଛି ମନା ।
କେମନ୍ତେ ବଞ୍ଚିବ ମୁହିଁ କେମନ୍ତେ କହନା ?
ଯେ ଭାନେ, ଯେ ବୋଲେ,
ବଂଶୀ ବାଜୁ ଗୋ କାନନେ;
'ରାଧା, ରାଧା' ବୋଲି ପଶେ ମୋ ଶ୍ରବଣେ,
ଆକୁଳ କରେ ଗୋ ପ୍ରାଣ ଦିଏ ବେଦନା ॥

ସେନାପତି—ଏତେ ଅନୁରାଗ—ଏତେ ଅନୁଗ୍ରହ ତୁମ୍ଭର ବୈଷ୍ଣବ ?—ବୈଷ୍ଣବ, ବୈଷ୍ଣବ !—
( ଉଠିବାକୁ ଚେଷ୍ଟା କରିବା )

ବୈଷ୍ଣବୀ—ବସ, ବସ—ତୁମେ ଯେ ବର୍ତ୍ତମାନ ଖୁବ୍ ଭାରି ଦୁର୍ବଳ । ଏହି ମୁଁ ବସୁଛି ।
( ଶଯ୍ୟାର ଏକପ୍ରାନ୍ତେ ଉପବେଶନ କରିବା )

ସେନାପତି—ବୈଷ୍ଣବ ! ବୈଷ୍ଣବ ! କୁହ, ତୁମେ କିଏ ?

ବୈଷ୍ଣବୀ—କହୁଛିତ, ମୁ କଣେ କୃଷ୍ଣ-ପ୍ରେମୋନ୍ମାଦିନୀ ଭିଖାରୁଣୀ ।

—ଗୀତ—

କୃଷ୍ଣ ମୋର ପ୍ରାଣ, କୃଷ୍ଣ ମୋର ଧ୍ୟାନ,
କୃଷ୍ଣ କୃଷ୍ଣ ବୋଲି ସଦା ଉଚାଟନ,

ସେନାପତି—ଏ'ଦୀନ ପାପୀ ପ୍ରତି ଏତେ କୃପା ହେଲା କିପରି ?

ବୈଷ୍ଣବୀ—କୃପା !—

—ଗୀତ—

କୃପା ଯେ ମାଗଇ, ତାହାଁ ସେ ଦେବଇଁ,
ଦୀନାହୀନା ମୁହିଁ, କୃପାର ଭିଖାରୀ ।

ସେନାପତି—ବୈଷ୍ଣବ ! ଏତେ ଉଦାର ତୁମ୍ଭେ !—ଓଃ ! ଏ' ପାପ ମନରେ ଆଜ କି ତାପର ଉଦୟ ହେଉଛି ?

ବୈଷ୍ଣବୀ—ତେବେ—

—ଗୀତ—

ସେହି ତାପ ହର, ତାଙ୍କୁ ଚିନ୍ତାକର,
ସବୁ ପାପ ତାପ କରିବେ ହର ।

ସେନାପତି—ତୁମ୍ଭେ ଯେ ଏ' ଅଧମର ଦୀକ୍ଷାଗୁରୁ, ବୈଷ୍ଣବ—କୁହ, ବୈଷ୍ଣବ ! ଗୁରୁଙ୍କୁ ମୋର କି ଦକ୍ଷିଣା ଦେବୀ ?

ବୈଷ୍ଣବୀ—ଦକ୍ଷିଣା !

—ଗୀତ—

ଭଜ ରାଧେକୃଷ୍ଣ, କର ମନ ତୁଷ୍ଟ
ପୁରସ୍କାର ମୋର, ହେବ ହେ ଯଥେଷ୍ଟ ।

ସେନାପତି—ନା, ନା, ବୈଷ୍ଣବ ! ତୁମ୍ଭଙ୍କୁ କୌଣସି ଗୋଟିଏ ମୂଲ୍ୟବାନ ପଦାର୍ଥ ପୁରସ୍କାର ନେବାକୁ ହେବ ।

ବୈଷ୍ଣବୀ— —ଗୀତ—

ସେହି ନାମ ଧନ; ଅତି ମୂଲ୍ୟବାନ
ଆନ ଧନେ ମୋର ନାହିଁ ପ୍ରୟୋଜନ;
ଭଜ ରାଧେକୃଷ୍ଣ, ଜପ ହରେକୃଷ୍ଣ,
ରାଧାକୃଷ୍ଣ ପ୍ରେମେ ହୋଇ ଏକନିଷ୍ଠ ।

ସେନାପତି—ନା, ନା, ମୋର ଯାହା ଯାହା ମୂଲ୍ୟବାନ ପଦାର୍ଥ ଅଛି, ସେଥି ମଧ୍ୟରୁ ତୁମକୁ ଗୋଟାଏ କାଛି ବାଛି ନେବାକୁ ହେବ ।

ବୈଷ୍ଣବୀ—ଏହି ଘୃର ଭିକାରୁଣୀ ପ୍ରତି ଏତେ ଅନୁଗ୍ରହ ?

ସେନାପତି—କାହିଁ ଅନୁଗ୍ରହ ? ବୈଷ୍ଣବ ! ତୁମେ ଯେଉଁ ଅନୁଗ୍ରହ କରିଛ, ସେ ଅନୁଗ୍ରହ ବିନିମୟରେ ଯେ ଏ' ପୃଥିବୀରେ ଅଦେୟ କିଛି ନାହିଁ ବୈଷ୍ଣବ—କୁହ, ବୈଷ୍ଣବ ! କି ପୁରସ୍କାର ନେବ ?

ବୈଷ୍ଣବୀ—ଏଇତ ଅନୁରୋଧ ଯେବେ,–ଏହି ଚନ୍ଦ୍ରପଟ୍ଟଟି ପୁରସ୍କାର ଦିଅ ।

ସେନାପତି—( ଚନ୍ଦ୍ରପଟ୍ଟକୁ ଗୃହିଁ ସ୍ୱଗତ ) ଏ' ଯେ ନନ୍ଦକାର ଚନ୍ଦ୍ରପଟ୍ଟ—ସେହି ପ୍ରାଣପ୍ରିୟତମାର ଚନ୍ଦ୍ରପଟ୍ଟ !—ଯା'ଲାଗି ଅଶ୍ରଦ୍ଧାଭାଜନ ମୋର, ନିଜେ ମୁହିଁ ଷଡ଼ଯନ୍ତ୍ର କରି ନିର୍ବାସିତ କରାଇଛି—ଗୋଟିଏ ଅବୋଧ ସହଚରୀ, ଗୁପ୍ତପରଣୀତା ସରଳା ବାଳିକାର ଇହକାଳ ପରକାଳ ନଷ୍ଟ କରିଛି । ଏତେଦିନ କେମନ୍ତେ ସେ ମୋହନ-ମୂର୍ତ୍ତିକୁ ପାଶୋରି ରହିଥିଲି ? କେମନ୍ତେ ସେ ମଧୁର ନାମକୁ ସ୍ମୃତି ପଟ୍ଟରୁ ପର୍ଯ୍ୟନ୍ତ ଲିଭାଇ ଦେଇଥିଲି ?—ଏ'ତ ସେହି ବୈଷ୍ଣବୀ—ସେହି ରସିକା ଶିରୋମଣି—ପ୍ରଥମ ସାକ୍ଷାତରେ ଯେ ରତି ହୃଦୀ ବୋଲି ଜ୍ଞାନାକାଶରେ ଉଦିତା ହୋଇଥିଲା—ପ୍ରଥମ କଥା ବାର୍ତ୍ତାରେ ଯେ କାମଲାଳସା ମୋର ଶତଗୁଣେ ବଢ଼ାଇ ଦେଇଥିଲା, ସେହି ବୈଷ୍ଣବୀ, ପୁଣି ଶେଷେ କି ଯାଦୁ କରି ଦେଇଥିଲା—କି ମନ୍ତ୍ର ପ୍ରୟୋଗ କରି ଦେଇଥିଲା, ଯେ ପୂର୍ବଭାବ—ପୂର୍ବଚିନ୍ତା ମୁଁ ବିସ୍ମୃତିର କେଉଁ ଅତଳ ଗର୍ଭରେ ଏକାବେଳେକେ ନିମଜ୍ଜିତ କରି ଦେଇଥିଲି,—ମାନସୀ ପ୍ରତିମା ନନ୍ଦକାର ନାମ ପର୍ଯ୍ୟନ୍ତ ପାଶୋରି ପକାଇ ଥିଲି ! (ପ୍ରକାଶ୍ୟେ) ବୈଷ୍ଣବ ! ବୈଷ୍ଣବ ! ଏ' ଚନ୍ଦ୍ରପଟ୍ଟ କାହିଁକି ମାଗିଲ ?—ଜାଣ ତ ତୁମ୍ଭେ ଏ' ଚନ୍ଦ୍ରପଟ୍ଟ ମୋ ପକ୍ଷେ କେତେଦୂର ମୂଲ୍ୟବାନ ପଦାର୍ଥ ?

ବୈଷ୍ଣବୀ—ମୂଲ୍ୟବାନ ବୋଲିତ ମାଗିଲି ।

ସେନାପତି—ତୁମେ ପରା ମୋତେ ଭେଟାଇବ ବୋଲି କଥା ଦେଇଥିଲ—ଲାଭ କରାଇ ଦେବବୋଲି ପ୍ରତିଜ୍ଞା କରିଥିଲ ? ଆଜ ଏ'କି ବିପରୀତ ଆଚରଣ ତୁମ୍ଭର ?—ସ୍ମୃତି ପର୍ଯ୍ୟନ୍ତ କାଢ଼ି ନେବାକୁ ବସିଅଛ ? ତୁମ୍ଭେ କି ତୁମ୍ଭର ପ୍ରତିଜ୍ଞା ଭୁଲିଗଲ ? ଅନୁଗ୍ରହକୁ ଏକାବେଳକେ ବର୍ଜିତ କଲ ?

ବୈଷ୍ଣବୀ—ସେନାପତେ !—

ସେନାପତି—'ସେନାପତେ' ବୋଲି ସମ୍ବୋଧନ କରି ତୁନି ହେଲ କାହିଁକି ? କୁହ, କୁହ ବୈଷ୍ଣବ ! ତୁମ୍ଭର କଥା ଅପ୍ରୀତିକର ହେଲେ ମଧ୍ୟ ମୋ ପକ୍ଷେ କର୍ଣ୍ଣାମୃତ ତୁଲ୍ୟ ।

ବୈଷ୍ଣବୀ—ସେନାପତେ ! ତୁମେ ଭୁଲିଯାଅ ।

ସେନାପତି—ତୁମେତ ଭୁଲାଇ ଦେଇଥିଲ, ବୈଷ୍ଣବ ! —ତୁମର ପବିତ୍ର ସଂସର୍ଗରେତ ମୁଁ କେଉଁ ପବିତ୍ର ଭାବରେ ମଜ୍ଜି ଯାଇଥିଲି ! ହଠାତ୍ ପୁଣି କାହିଁକି ସେ ପୂର୍ବଭାବ ଜାଗି ଉଠିଲା ?—ଚନ୍ଦ୍ରପଟ୍ଟ ଦର୍ଶନରେ କି ଏହା ଘଟିଲା ? ନା, ନା ସେ ଭାବ ଭୁଲିବାର ନୁହେଁ—ବୈଷ୍ଣବ ! ବୈଷ୍ଣବ ! ଜାଣେ ମୁଁ—ଯାହା ମୁଁ ନିଜେ କରିବାକୁ ଯାଉଛି —ଯାହା କରିବାକୁ ତୁମ୍ଭଙ୍କୁ ମୁଁ ଅନୁରୋଧ କରୁଛି, ତାହା ସିଦ୍ଧାନ୍ତର ବିରୁଦ୍ଧ—ଅତୀବ ଅନ୍ୟାୟ; ମାତ୍ର ମୁଁ ଶକ୍ତିହୀନ—ମୋତେ ଦୟାକର, ବୈଷ୍ଣବ ! ତୁମର ସେଇ ରସିକାଭାବ ପୁନର୍ବାର ପ୍ରକାଶ କର, ରସମୟି !

ବୈଷ୍ଣବୀ—ସେନାପତେ ! ତୁମ୍ଭେ ନା ବୀର—ତୁମ୍ଭେ ନା ଯୋଦ୍ଧା !

ସେନାପତି—ସେ ଗର୍ବ କାଲୁ, ନାରୀ ଖର୍ବ କରିଛି, ବୈଷ୍ଣବ !

ବୈଷ୍ଣବୀ—ଏହି କି ତୁମ୍ଭର ମନୁଷ୍ୟତ୍ୱ ?

ସେନାପତି—ମନୁଷ୍ୟତ୍ୱ ଯେ ବହୁଦିନୁ ହରାଇଛି, ବୈଷ୍ଣବ ! ଯେଉଁଦିନୁ ( ମୁଣ୍ଡ ତଳକୁ କରିବା ) —ଓଃ ହୋଃ ! କି ଅତୀତ ସ୍ମୃତି ଜାଗ୍ରତ ହେଉଛି !

ବୈଷ୍ଣବୀ—ଯେବେ ବାଧା ଥାଏ, ଶୁଣିବାର କୌଣସି ପ୍ରୟୋଜନ ନାହିଁ ସେନାପତେ !

ସେନାପତି—ନା ବୈଷ୍ଣବ ! ତୁମେ ମୋର ହିତା-କାଙ୍‌କ୍ଷିଣୀ—ତୁମେ ମୋର ପ୍ରାଣରକ୍ଷା କରିଛ; ତୁମକୁ କିଛି ଲୁଚାଇବି ନାହିଁ—ଗୁପ୍ତକଥା ପ୍ରକାଶ କରି, ଭାର ମଧ୍ୟ ଟିକିଏ ଲାଘବ କରିଦେବି ।

ବୈଷ୍ଣବୀ—କରୁଣାନିଧିଙ୍କର କରୁଣା ଲଭିବର ।

ସେନାପତି—ଶୁଣ ବୈଷ୍ଣବ ! ମୁଁ ଯେତେବେଳେ ନିତାନ୍ତ ଶିଶୁ—ନିତାନ୍ତ ନିଃସହାୟ—ନିରାଶ୍ରୟ କରି ପିତା ମାତା ମୋତେ ତ୍ୟାଗକରି ଇହଧାମରୁ ଚାଲିଗଲେ, କରୁଣାମୟଙ୍କ କୃପାରୁ ଏହି ରାଜ୍ୟର ପୁରାତନ ମନ୍ତ୍ରୀ ବୃଦ୍ଧ ବାସୁଦେବ—ଯାଙ୍କୁ ଚଣ୍ଡାଳ ଆଜି ନିର୍ବାସନ ରୂପ ଜୀବନ୍ମୃତ୍ୟୁ ଯନ୍ତ୍ରଣା ଦେଇଛି—ମୋତେ ଆଶ୍ରୟ ଦେଲେ, କାଳ ସର୍ପ ଆଣି ଘରେ ପୋଷିଲେ ( ବୈଷ୍ଣବୀ ଶିହରି ଉଠିବା ) ଏ' ତ ମୁଖବନ୍ଧ ବୈଷ୍ଣବ ! ତା'ପରେ ଶୁଣ, ତାଙ୍କର ସେତେବେଳେ କୌଣସି ସନ୍ତାନାଦି ହୋଇ ନ ଥିବାରୁ ମୋତେ ପୁତ୍ର ନିର୍ବିଶେଷରେ ପାଳନ କରିବାକୁ ଲାଗିଲେ—ମୋତେ ଯେତେବେଳେ ଆଠବର୍ଷ, ତାଙ୍କର ଗୋଟିଏ କନ୍ୟା ଜାତ ହେଲା—ତା'ର ନାମ ଶାରଦା ।

ବୈଷ୍ଣବୀ—( କାନ୍ଦିବା )

ସେନାପତି—ନାମ ଶୁଣି କାନ୍ଦିଲ ଯେ—ତାକୁ ଜାଣ ତୁମେ ଚିହ୍ନ ? ସେ ଭାରି ଅଭାଗୀ !—ଶୁଣ,କ୍ରମେ କ୍ରମେ ବୟୋବୃଦ୍ଧି ହେଲା—ଉଭୟେ ଭ୍ରାତା ଭଗିନୀ ଜ୍ଞାନରେ ଖେଳିବାକୁ ଲାଗିଲୁ—ଜ୍ଞାନ ବୃଦ୍ଧି ସଙ୍ଗେ ସଙ୍ଗେ ପୁଣି ପରସ୍ପର ମଧ୍ୟରେ ଅପର ଭିନ୍ନ ଭାବର ସଞ୍ଚାର ହେଲା—ମନ୍ତ୍ରୀ ମଧ୍ୟ ସେହି ଭାବବୃଦ୍ଧିକୁ ପ୍ରଶ୍ରୟ ଦେଲେ—ସୁତରାଂ, ମୋତେ କୋଡ଼ିଏ ବର୍ଷ, ତାକୁ ବାରବର୍ଷ ବୟସରେ—ଉଭୟଙ୍କର ମଧ୍ୟରେ ଏକପ୍ରକାର ଗାନ୍ଧର୍ବ ବିବାହ ହୋଇଗଲା ।

ବୈଷ୍ଣବୀ—ସ୍ବାମି ! ସ୍ବାମି ! (ଆତ୍ମସଂବରଣ କରିବା)

ସେନାପତି—ଏପରି ସମ୍ବୋଧନ କରି ଉଠିଲ କାହିଁକି, ବୈଷ୍ଣବ ?

ବୈଷ୍ଣବୀ—ମୋର ମଧ୍ୟ ଠିକ୍ ସେହିପରି ବୟସରେ ବିବାହ ହୋଇଥିଲା, ସେନାପତି !

ସେନାପତି—ଅତି ଗୋପନରେ ଏ' କାର୍ଯ୍ୟ ହୋଇଥିଲା—ମନ୍ତ୍ରୀମହାଶୟ ଏ ପର୍ଯ୍ୟନ୍ତ ଘୁଣାକ୍ଷରରେ ସୁଦ୍ଧା ସେ ବିଷୟ କିଛି ଜାଣନ୍ତି ନାହିଁ—ଆମ୍ଭେମାନେ କିଛିଦିନ ବଡ଼ ଆନନ୍ଦରେ ଦିନଯାପନ କରିବାକୁ ଲାଗିଲୁଁ; ମୁଁ ଯେତେବେଳେ ରାଜ-ସେନା ସମ୍ପ୍ରଦାୟ ଭୁକ୍ତ ହୋଇଥାଏ—ଦିନାନ୍ତେ ଯେତେବେଳେ ଶ୍ରାନ୍ତ, କ୍ଲାନ୍ତ ହୋଇ ଫେରି ଆସେ, ମୋର ସ୍ତ୍ରୀ—

ବୈଷ୍ଣବୀ—କିଏ, ମୁହିଁ ?—(ଆତ୍ମସଂବରଣ କରିବା)

ସେନାପତି—ତୁମକୁ ବଡ଼ ଅଧୀର ଦେଖୁଛି ବୈଷ୍ଣବ ! କ'ଣ, ବନ୍ଦ କରିବି ?

ବୈଷ୍ଣବୀ—ନା, ନା, କୁହ କୁହ—ଅନୁରୋଧ କରୁଛି, କୁହ ।

ସେନାପତି—ସେ ବୀଣା ବଜାଇ, ତାରସ୍ବରରେ ଗାନ କରେ—ଠିକ୍ ତୁମରି କଣ୍ଠ, ତୁମପରି ସୁଗାୟିକା—ମୁଁ ଆନନ୍ଦ ରାଜ୍ୟକୁ ଭାସିଯାଏଁ । କିନ୍ତୁ ବିଧି ବାମ ହେଲେ—ରାଜକୋମା ନନ୍ଦିକା ସହସା ରୂପ ଯୌବନର ଭାର ନେଇ ମୋ ନୟନ ସମ୍ମୁଖରେ ଉପସ୍ଥିତା ହେଲେ—ମୁଁ ମଧ୍ୟ ସେହି ସମୟରେ ସେନାପତି ମରି ଯିବାରୁ, ରାଜାନୁଗ୍ରହରେ ଓ ମନ୍ତ୍ରୀଙ୍କ ଯତ୍ନରେ ସେନାପତି ହେଲି—ମନରେ ଗୋଟାଏ କି ଉଚ୍ଚ ଦୁରଭିଳାଷର ଉଦୟ ହେଲା !

ବୈଷ୍ଣବୀ—ହା, ଈଶ୍ବର !

ସେନାପତି—ସୁତରାଂ ଆଶ୍ରମଦାତାଙ୍କ ଅଧୀନରେ ରହିବାକୁ ଆଉ ଇଚ୍ଛା ହେଲା ନାହିଁ—ଶାରଦା କବଳରୁ ମଧ୍ୟ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ, କୌଶଳରେ ମନ୍ତ୍ରୀଙ୍କ ଅନୁମତି ନେଇ ଏହିଠାରେ ବାସସ୍ଥାନ ନିରୂପଣ କଲି ।

ବୈଷ୍ଣବୀ—କି ବିଶ୍ବାସଘାତକତା !

ସେନାପତି—ଏ'ତ କିଛି ହୋଇନାହିଁ—ଶୁଣ, ମନ୍ତ୍ରୀ-ମହାଶୟ ମୋତେ ସେହିପରି ଭଲ ପାଉଥାନ୍ତି—ଶାରଦା ମଧ୍ୟ ନିଃସନ୍ଦେହରେ ପ୍ରତ୍ୟହ—ଅନେକ-ଥର ଅପମାନ ଓ ଘୃଣାର ଭାବ ପ୍ରକାଶ କଲେ ମଧ୍ୟ, ସ୍ବାମୀ ଜ୍ଞାନରେ ଯିବା ଆସିବା କରୁଥାଏ ।

ବୈଷ୍ଣବୀ—ଉଃ, କି ଭୟଙ୍କର !

ସେନାପତି—ମୁଁ କିନ୍ତୁ ଅନ୍ୟ ଭାବରେ ମଜ୍ଜିଥାଏଁ । ସର୍ବଦା ଚିନ୍ତା କରୁଥାଏଁ, ଭଲ ଭାବେ ହେଉ—ମନ୍ଦଭାବେ ହେଉ, ମୋତେ ଏ'ମାନଙ୍କ କବଳରୁ ରକ୍ଷା କରିବାକୁ ହେବ—ବିଧି ମଧ୍ୟ ଅନୁକୂଳ ହେଲେ । ଧନେ— (ସୈନିକର ପ୍ରବେଶ)

ସୈନିକ—ସର୍ବନାଶ, ସେନାପତି । ଶତ୍ରୁ ନଗର ମଧ୍ୟରେ ପ୍ରବେଶ କରିଛି ।

ସେନାପତି—ନଗର ମଧ୍ୟରେ ପ୍ରବେଶ କରିଛି ?—କିପରି ପ୍ରବେଶ କଲା ? ଆଉ ଶୁଣିବାର ସମୟ ନାହିଁ—ବୈଷ୍ଣବି । ବିଦାୟ ହେଉଛି—କଥା ଶେଷକରି ପାରିଲି ନାହିଁ—ପୁନର୍ବାର ଦେଖା ହେଲେ କହିବି—ଅନୁରୋଧ କରୁଛି, ମୋର ପାପ-କାହାଣୀ ଶୁଣି ମୋତେ ଘୃଣା କରିବ ନାହିଁ—ମୋତେ ରାଜକୋମାଙ୍କ ସଙ୍ଗେ ଭେଟାଅ —ମୁଁ ହାତ ଧରୁଛି, ମୋତେ ରକ୍ଷା କର—ମୋତେ ରକ୍ଷାକର—ବିଦାୟ, ବିଦାୟ ।—

(ପ୍ରସ୍ଥାନ)

ବୈଷ୍ଣବୀ—ସତ୍ୟ ଯେ କହୁଥିଲେ "ଏ' ପାଗଳାମି"—ନିଶ୍ଚୟ ଏ' ପାଗଳାମି, ବଡ଼ ପାଗଳାମି—ଏ' ପାଗଳାମି ଛଡ଼ାଇବାର ଔଷଧ ନାହିଁ । ଅନୁତାପ ରୂପ ଶାସ୍ତି ବିଧାନର ଉପାୟ କରୁଥିଲି; ହେଲା ନାହିଁ—ପିତାଙ୍କର ଶାସ୍ତି କରଣୀୟ—ତାହାହିଁ ଉପଯୁକ୍ତ ଶାସ୍ତି—ଉଃ ! ମୁଁ କଣ କରୁଥିଲି ? ପିତାଙ୍କ ଆଜ୍ଞା ଅବଜ୍ଞା କରି ଅନ୍ୟ ପ୍ରକାର କିପରି କରିବାକୁ ଯାଉଥିଲି ? ମନ ! ଅଦ୍ୟାପି କଣ ତୁ ଦୃଢ଼ ହୋଇ ନାହୁଁ ?—ପିତୃହନ୍ତା ପ୍ରତି ତୁ ଅଦ୍ୟାବଧି ଦୟା ପ୍ରକାଶ କରିବାକୁ କଣ ଅକୁଣ୍ଠିତ ? ଆଉ ନୁହେ—ଯାଅ, ପ୍ରେମ, ସ୍ନେହ —ହର କୋପାନଳରେ ମଦନ ସମାନ ଭସ୍ମୀଭୂତ ହୋଇଯାଅ !—ଜାଗିଉଠ ଘୃଣା, ହିଂସା—ସମସ୍ତ ଶୟତାନ ପ୍ରବୃତ୍ତି ଯେନ ଜାଗି ଉଠ !—କନ୍ୟା ଆଜି ପ୍ରତିଶୋଧ ନେବ, ପିତୃହନ୍ତା ପ୍ରତି !

(ବେଗେ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

—ଯୁଦ୍ଧସ୍ଥଳ—

[ କ୍ଳାନ୍ତିଯୁକ୍ତ ସୈନ୍ୟଗଣଙ୍କର ପ୍ରବେଶ ]

୧ମ ସୈନ୍ୟ—ଉଃ । ମଣିଷ ଟିକିଏ ନିଶ୍ୱାସ ମାରିଲା ଅସି ।

୨ୟ ସୈନ୍ୟ—ଆଉ ଗୋଡ଼ାଇ ନାହାନ୍ତି ତ ?

୩ୟ ସୈନ୍ୟ—ନା, ନା, କେହି ନାହାନ୍ତି—ଟିକିଏ ବସ ମ !

[ ସମସ୍ତେ ଉପବେଶନ କରିବା ]

୧ମ ସୈନ୍ୟ—ଭାଇ । କପାଳରେ ନିଶ୍ଚୟ କାଉ ଉଡ଼ିଲାଣି !

୨ୟ ସୈନ୍ୟ—ଧଡ଼ରେ କଣ ଆଉ ପ୍ରାଣ ଅଛି ?

୩ୟ ସୈନ୍ୟ—କାହିଁକି ଭଲା ଆମେ କାଲି ଘୁସିଆର ନ ହେଲୁଁ ?

୧ମ ସୈନ୍ୟ—କିଏ ଜାଣିଥିଲା, ଭାଇ, ଭାଙ୍ଗ ନିଶାଟା ଏତେ ଜବର ହେବ ବୋଲି ?

୨ୟ ସୈନ୍ୟ—ଚର ଗୁଡ଼ାକ ବା କ'ଣ ହୁସିଆର ନ ଥିଲେ ?

୩ୟ ସୈନ୍ୟ—ଅରେ ଭାଇ ! କାଲି କ'ଣ କେହି ବାକୀ ଥିଲେ ? ଜିତିଲୁ ବୋଲି ଲଗାମ ଯେମିତି ଟିକିଏ ଢିଲା ହୋଇଛି, ଆଉ କଣ କେହି ବାକୀ ରହିଛନ୍ତି ?

୨ୟ ସୈନ୍ୟ—ମୁଁ ମନେ କରିଥିଲି, ଭାଇ ! ସେଗୁଡ଼ାକ ପଳେଇ ଗଲେଣି—ପ୍ରାଣ ଥାଉଁ ଥାଉଁ ଆଉ ଫେରୁ ନାହାନ୍ତି ।

୧ମ ସୈନ୍ୟ—ନା ଦେଖ, ଏକାବେଳକେ କାଛା ଭିତରେ ଅସି ହାଜର !

୨ୟ ସୈନ୍ୟ—ରାଜା ତ ଶୁଣିବେଣି ?

୩ୟ ସୈନ୍ୟ—ଶୁଣିବେଣି କ'ଣ—ଦେଖିଲି କିଏ ଏଣେ ଆସୁଛନ୍ତି ?

[ ଭୟକମ୍ପିତ କଳେବରରେ ସମସ୍ତେ ଛିଡ଼ାହେବା ]

[ ସୁବର୍ଣ୍ଣ କେଶରୀଙ୍କର ପ୍ରବେଶ ]

ସୈନ୍ୟଗଣ—ଦୁହାଇ, ମହାରାଜ ! ଦୁହାଇ, ମହାରାଜ !

ସୁବର୍ଣ୍ଣ—( ବଜ୍ର ସ୍ୱରରେ ) କିଏ ତୁମ୍ଭର ମହାରାଜ, ଫେରୁଦଳ ?

ସୈନ୍ୟଗଣ—ମହାରାଜ ! ମହାରାଜ !

ସୁବର୍ଣ୍ଣ—କେଶରୀ କେବେ ଫେରୁଦଳର ରାଜା ହୁଏ ନାହିଁ ! ଶୃଗାଳଗଣ ! ବାଟ ଛାଡ଼ିଦିଅ—କେଶରୀ ଆଜ ଏକାକୀ ଶତ୍ରୁ ସଙ୍ଗେ ଯୁଦ୍ଧ କରିବାକୁ ବାହାରିଛି ।

ସୈନ୍ୟଗଣ—ମହାରାଜ ! ମହାରାଜ !

ସୁବର୍ଣ୍ଣ—ମନେ କରୁଛ କି, ଭୀରୁଗଣ ! ଏହି ଗଳିତ-ନଖର-ଦଶନ କେଶରୀ ଆଜ ଦୁଃସାହସ କରୁଛି ? ଏ' ଦୁଃସାହସ ନୁହେଁ—କଦାପି ତା ମନେକର ନାହିଁ; ମନେ ଯଦି କରିଥାଅ, ତେବେ ଏହିକ୍ଷଣି ପରୀକ୍ଷା କରି ନେଇ ପାର—ଶତ ଶତ ବଳ-ବୀର୍ଯ୍ୟସମ୍ପନ୍ନ ଯୁବକ ତୁମ୍ଭେମାନେ ଏକ ପାର୍ଶ୍ୱେ ଛିଡ଼ା ହୁଅ, ଅନ୍ୟ ପାର୍ଶ୍ୱେ ଏହି ଜରାଜୀର୍ଣ୍ଣ କଙ୍କାଳସାର କେଶରୀ ଏକାକୀ ଛିଡ଼ା ହେଉଛି ।

[ ବୀର ବିକ୍ରମେ ଦଣ୍ଡାୟମାନ ହେବା ]

ସୈନ୍ୟଗଣ—ମହାରାଜ ! ମହାରାଜ !

ସୁବର୍ଣ୍ଣ—ଏ' କ'ଣ ? ଯୁବକ ତୁମ୍ଭେମାନେ—ବଳିଷ୍ଠ ତୁମ୍ଭେମାନେ ସାହସ ହେଉ ନାହିଁ ? ଦମ୍ଭ ହେଉ-ନାହିଁ ?—ହେବ କିପରି ? ଫେରୁ ଦଳର ଏତେ ସାହସ ହେବ କିପରି ? ବାଟ ଛାଡ଼ିଦିଅ, ଭୀରୁ-ଗଣ ! ମୁଁ ଏକାକୀ ଯୁଦ୍ଧ କରିବି—କେଶରୀ ଜୀବିତ ଥାଉଁ ଥାଉଁ, ଶତ୍ରୁ କେବେ ତାର ଗହ୍ୱର ଅଧିକାର କରି ପାରିବ ନାହିଁ ।

[ ବେଗେ ପ୍ରସ୍ଥାନୋଦ୍ୟତ — ବୀରେନ୍ଦ୍ରର ବେଗେ ପ୍ରବେଶ ]

ବୀରେନ୍ଦ୍ର—ମହାରାଜ ! ମହାରାଜ ! ସ୍ଥିର ହେଉନ୍ତୁ !

ସୁବର୍ଣ୍ଣ—ସ୍ଥିର ହେବାକୁ କହୁଛ, ସେନାପତେ ? ସ୍ଥିର ହେବି ?

ବୀରେନ୍ଦ୍ର—ମହାରାଜ ! ମହାରାଜ ! ସ୍ଥିର ହେଉନ୍ତୁ !

ସୁବର୍ଣ୍ଣ—ସ୍ଥିର ହୋଇ ଦେଖିବି କ'ଣ ?—ଯେଉଁ ଓଡ଼ିଆମାନଙ୍କର ପିତୃ-ପିତାମହ ଅହୋରାତ୍ର ଅକ୍ଳାନ୍ତ ପରିଶ୍ରମ କରି ବିନା ନିଦ୍ରାରେ ବିନାଭୋଜନରେ ମାତୃଭୂମି ପାଇଁ ସ୍ୱାଧୀନତା ଧନ ଅର୍ଜନ କରି ଯାଇଥିଲେ, ସେହି ଓଡ଼ିଆମାନେ ଆଜ ବିଳାସୀ, ଅଳସ, ଅପଟ ହୋଇ ଅବଲୀଳାକ୍ରମେ ସେହି ସ୍ୱାଧୀନତା ଧନ ଶତ୍ରୁ କରପୁଟରେ ଅର୍ପଣ କରୁ-ଛନ୍ତି—ଯେଉଁ ଓଡ଼ିଆଜାତିର ପୂର୍ବପୁରୁଷମାନେ ଦିନେ ଶିଳ୍ପନୈପୁଣ୍ୟର ପରାକାଷ୍ଠା ଖଣ୍ଡଗିରି, କୋଣାର୍କ, ଭୁବନେଶ୍ୱର ଓ ପୁରୀର ମନ୍ଦିର ନିର୍ମାଣ କରି ଜଗତକୁ ସ୍ତମ୍ଭିତ କରି ଆସୁଥିଲେ, ସେହି ଓଡ଼ିଆଜାତି ଆଜ ଅରାତି କର୍ତ୍ତୃକ ସେହି ଅମୂଲ୍ୟ ସମ୍ପଦର ଧ୍ୱଂସ ଦେଖିବାକୁ ତିଳେମାତ୍ର କୁଣ୍ଠିତ ହେଉ ନାହିଁ ? ଯେଉଁ ଓଡ଼ିଆ ବୀରଗଣ ଦିନେ ସମ୍ମୁଖ ସମରରେ କେଶରୀବିକ୍ରମରେ ଯୁଦ୍ଧ କରି ଆନନ୍ଦ ଉପଭୋଗ କରୁଥିଲେ, ସେହି ଓଡ଼ିଆ-ମାନଙ୍କର ବଂଶଧର ଗଣ ଆଜ ଶୃଗାଳ-ସମ ପୁଚ୍ଛୋତ୍ତୋଳନ ପୂର୍ବକ ପଳାୟନରେ ଆନନ୍ଦ ଉପଭୋଗ କରୁଛନ୍ତି—ଏହାହିଁ କ'ଣ ସ୍ଥିରହୋଇ ଦେଖିବି, ସେନାପତେ ?

ସୈନ୍ୟଗଣ—ମହାରାଜ ! ଆପଣଙ୍କର ଶ୍ରୀଚରଣ ଧରି ଅନୁନୟ କରୁଛୁ, ଏ' ଅଧମ ଦାସମାନଙ୍କୁ ଏହି ପ୍ରଥମ ଥର ପାଇଁ କ୍ଷମା କରନ୍ତୁ ।

ବୀରେନ୍ଦ୍ର—ଏ' ଅଧମ ମଧ୍ୟ ସେମାନଙ୍କର ପକ୍ଷ ନେଇ ପ୍ରାର୍ଥନା କରୁଛି, ମହାରାଜ !

ସୁବର୍ଣ୍ଣ—ତେବେ ଯାଅ, ବୀରଗଣ ! ପ୍ରକୃତ ଯେବେ ତୁମ୍ଭେମାନେ ଉତ୍କଳର ସନ୍ତାନ ହୋଇ ଥାଅ—ଓଡ଼ିଆ ବୋଲି ପରିଚୟ ଦେବାରେ ଗୌରବ ଅନୁଭବ କରୁଥାଅ, ତେବେ ମାତୃଭୂମି ରକ୍ଷା କରିବା ନିମନ୍ତେ—ଓଡ଼ିଆ ନାମ ସାର୍ଥକ କରିବା ନିମନ୍ତେ ଯୁଦ୍ଧ ଭୂମିକୁ ଅଗ୍ରସର ହୁଅ—ବୀର ଦର୍ପେ ଶତ୍ରୁ ସମ୍ମୁଖରେ ଦଣ୍ଡାୟମାନ ହୁଅ—ସମଭାବେ, ସମସ୍ୱରେ ଥରେ ଚିତ୍କାରକରି

ହଠ 'ଶରୀରଂ ବା ପାତୟେତ୍, କାର୍ଯ୍ୟଂ ବା ସାଧୟେତ୍' ।

ସୈନ୍ୟଗଣ—ଶରୀରଂ ବା—

ବୀରେନ୍ଦ୍ର—ଚୁପ୍—ମହାରାଜ । ଶତ୍ରୁମାନେ ଅଦୂରରେ ଅଛନ୍ତି, ଶତ୍ରୁର ଶ୍ରେଣୀ ଏଠାକୁ ଧାଇଁ ଆସିପାରନ୍ତି । ସୈନ୍ୟସଂଖ୍ୟାରେ ସେମାନେ ପ୍ରାୟ ଦୁଇଗୁଣ ହେବେ—ସୁତରାଂ ଆମ୍ଭେମାନେ ଶୀଘ୍ର ଗୋଟିଏ ଉଚ୍ଚସ୍ଥାନ ଅଧିକାର ନ କଲେ, ସୁବିଧା ହେବ ନାହିଁ । ଆଦେଶ ଦିଅନ୍ତୁ, ଆମ୍ଭେମାନେ ନିଃଶବ୍ଦରେ ଶତ୍ରୁର ଅଲକ୍ଷରେ ସେପରି ଗୋଟିଏ ସ୍ଥାନ ଅଧିକାର କରୁଁ ।

ସୁବର୍ଣ୍ଣ—ଅଚ୍ଛା, ତାହାହିଁ ହେଉ—ତୁମ୍ଭେ ସୈନ୍ୟମାନଙ୍କୁ ନେଇ ଶୀଘ୍ର ଯାତ୍ରା କର—ମୁଁ ଦୁର୍ଗ-ରକ୍ଷାର ସୁବ୍ୟବସ୍ଥା କରି ଶୀଘ୍ର ଫେରୁଛି ।

[ ସୁବର୍ଣ୍ଣକେଶରୀଙ୍କର ପ୍ରସ୍ଥାନ ]

ବୀରେନ୍ଦ୍ର—(ସ୍ୱଗତ) ଦୁର୍ଗ କଥାରୁ ଦୁର୍ଗ-ଦେବୀ ଯେ ମନେ ପଡ଼ି ଯାଉଛନ୍ତି—( ପ୍ରକାଶ୍ୟେ ) ଚାଲ ସୈନ୍ୟଗଣ !

[ ସୈନ୍ୟମାନଙ୍କର ସହିତ ଅନ୍ୟଦିଗେ ପ୍ରସ୍ଥାନ ]

---

## ପଞ୍ଚମ ଦୃଶ୍ୟ

—ଯୁଦ୍ଧକ୍ଷେତ୍ରର ଅପରାଂଶ—

[ କର୍ଣ୍ଣାଟ-ସେନାପତି ଓ କର୍ଣ୍ଣାଟ ସୈନ୍ୟଗଣ ଦଣ୍ଡାୟମାନ ]

୧ମ-ସୈନ୍ୟ—କାହିଁ, ସେନାପତି । ଗୋଟିଏ ସୁଦ୍ଧା ଶତ୍ରୁସେନା ଦେଖା ଯାଉ ନାହାନ୍ତି ତ ?

ସେନାପତି—ତୁମ୍ଭେମାନେ ତ ଗୋଡ଼ାଇ ଥିଲ, ହଠାତ୍ ରହିଗଲ କାହିଁକି ?

୧ମ-ସୈନ୍ୟ—ସେମାନେ ଏହି ଜଙ୍ଗଲର ମୋଡ଼ରେ କେଉଁଆଡ଼େ ଯେ ଉଭେଇ ଗଲେ, ଆମ୍ଭେମାନେ ଏପର୍ଯ୍ୟନ୍ତ ଖୋଜି ଖୋଜି ପାଉନାହୁଁ ।

ସେନାପତି—ମହାରାଜ କେଉଁଆଡ଼େ ଗଲେ ?

୨ୟ-ସୈନ୍ୟ—ମହାରାଜ କେତେକ ସୈନ୍ୟ ନେଇ ଦୁର୍ଗ ଅଭିମୁଖରେ ଧାଇଁଥିଲେ—

ସେନାପତି—ମୁଁ ଠିକ୍ ଏ ସ୍ଥାନର ଧାରଣା କରୁଁ କରୁଁ ପଛକୁ ପଡ଼ିଗଲି, ତୁମ୍ଭେମାନେ ଇତିମଧ୍ୟରେ ଏପରି ଥକ୍କାମାରି ରହିଗଲ ?

୧ମ-ସୈନ୍ୟ—ଯା' ବା ଖୋଜିଥା'ନ୍ତୁ, ଆପଣଙ୍କୁ ନ ଦେଖିବାରୁ ଗୋଡ଼ ଆଉ ଆଗ ମାଡ଼ିଲା ନାହିଁ ।

ସେନାପତି—ଅଚ୍ଛା ଏହି ଟେପ ଉପରକୁ ଉଠିଲି, ସେଠାରୁ ନିଶ୍ଚୟ ଶତ୍ରୁ-ସେନା ଦେଖାଯିବେ—ଆତ୍ମର ମଧ୍ୟ ଯୁଦ୍ଧ ଓ ଆଶ୍ରୟ ନିମନ୍ତେ ଏହା ଭାରି ନିରାପଦ ସ୍ଥାନ ।

[ ସୈନ୍ୟମାନଙ୍କର ଅଗ୍ରସର ହେବା ]

ନେପଥ୍ୟେ ବୀରେନ୍ଦ୍ର—ଚଳାଅ ପଥର !

[ ପ୍ରସ୍ତରବୃଷ୍ଟି ନିକ୍ଷେପ ]

ସେନାପତି—ହଟିଆସ, ସୈନ୍ୟଗଣ । ଶୀଘ୍ର ହଟିଆସ—ଉପରେ ଶତ୍ରୁ !

[ କର୍ଣ୍ଣାଟ-ସୈନ୍ୟମାନଙ୍କ ମଧ୍ୟରୁ ଅନେକେ ଭୂପତିତ ହେବା ଓ ବୀରେନ୍ଦ୍ରର ସସୈନ୍ୟେ ପ୍ରବେଶ କରିବା ]

ବୀରେନ୍ଦ୍ର—ଅନୁଧାବନ କର, ସୈନ୍ୟଗଣ । ଶତ୍ରୁ-ସେନା ଅତି ଅଳ୍ପ ।

ସେନାପତି—ପଳାଅ, ପଳାଅ, ସୈନ୍ୟଗଣ !—ଆଉ ଉପାୟ ନାହିଁ—ଆଉ ଉପାୟ ନାହିଁ ।

[ କର୍ଣ୍ଣାଟ ସୈନ୍ୟମାନେ ପଳାୟନୋଦ୍ୟତ-ବେଳେ ଗୌରଗଙ୍ଗଙ୍କର ସସୈନ୍ୟେ ପ୍ରବେଶ ]

ଗୌରଗଙ୍ଗ—ଭୟ ନାହିଁ, ସୈନ୍ୟଗଣ !—ଫେର—ଫେର, ଯୁଦ୍ଧ କର—ଶତ୍ରୁ-ସେନା ସ୍ତୂପରୁ ଓହ୍ଲାଇବା ପର୍ଯ୍ୟନ୍ତ ମୁଁ ଅପେକ୍ଷା କରୁଥିଲି—ଏଥର ସମସ୍ତେ ସମତଳ ଭୂମିରେ—ସମ୍ମୁଖ ଯୁଦ୍ଧରେ ଅଗ୍ରସର ହୁଅ ।

କର୍ଣ୍ଣାଟ-ସୈନ୍ୟ—"ଜୟ ଗୌରଗଙ୍ଗଦେବଙ୍କର ଜୟ"

ବୀରେନ୍ଦ୍ର—( ସ୍ୱଗତ ) ଏତେ ସୈନ୍ୟ । ( ପ୍ରକାଶ୍ୟେ ) କର ଆକ୍ରମଣ, ସୈନ୍ୟଗଣ—ଜୟ କିମ୍ବା ମୃତ୍ୟୁ ଆମ୍ଭମାନଙ୍କର ପଣ ହେଉ ।

[ ଉତ୍କଳୀୟ ସୈନ୍ୟଗଣ ନିଶ୍ଚଳଭାବେ ଠିଆହେବା ]

କର୍ଣ୍ଣାଟ-ସୈନ୍ୟ—ମାର, ମାର ( ଆକ୍ରମଣ କରିବାକୁ ଧାଇଁବା )

ସ୍ୱୈରଗଙ୍ଗ—କ୍ଷାନ୍ତ ହୁଅ, ବୀରଗଣ । ଶତ୍ରୁ-ସେନାଙ୍କୁ ଆଗେ ପ୍ରସ୍ତୁତ ହେବାକୁ ଅବସର ଦିଅ ।

ସେନାପତି—ଅମ୍ଭେମାନେ ଅପ୍ରସ୍ତୁତ ଥିବା ଅବସ୍ଥାରେ, ସେମାନେ ଯେ ଆମ୍ଭମାନଙ୍କୁ ଆକ୍ରମଣ କରିଥିଲେ, ମହାରାଜ ।

ସ୍ୱୈରଗଙ୍ଗ—ସେମାନେ ସ୍ୱୈର କରିଥିଲେ ବୋଲି କ'ଣ ଅମ୍ଭେମାନେ ମଧ୍ୟ ସ୍ୱୈର କରିବା, ସେନାପତେ ?

ବୀରେନ୍ଦ୍ର—କାହୁଁ ପ୍ରକୃତ ସ୍ୱୈର କିଏ, ଥରେ କହନ୍ତୁ ମହାରାଜ ? ରାତ୍ରରେ, ଗୋପନରେ, ଅତର୍କିତା-ବସ୍ଥାରେ—ବନ୍ଧ ଉଲ୍ଲଙ୍ଘନ ପୂର୍ବକ ଆକ୍ରମଣ—ସେ କି ସ୍ୱୈର ନୁହେଁ ?

ସ୍ୱୈରଗଙ୍ଗ—କିଏ କହେ ସ୍ୱୈର ? ତାହା କୌଶଳ ମାତ୍ର ।

ସେନାପତି—ମହାରାଜ । ଅପ୍ରସ୍ତୁତ ଅବସ୍ଥାରେ ଶତ୍ରୁ ନାଶ କରିବା, କୌଶଳ ନୁହେଁ ?

ସ୍ୱୈରଗଙ୍ଗ—କିପରି ? ସମାନ କ୍ଷେତ୍ରରେ, ସମାନ ବଳରେ ସମ୍ମୁଖଯୁଦ୍ଧକାମନାରେ ଉଭୟ ପକ୍ଷ ଦଣ୍ଡାୟମାନ—ଏକପକ୍ଷ ଉନ୍ନିଦ୍ରାଃସ୍ଥ, ଅନ୍ୟ ପକ୍ଷ ବିଳାସି—ଏକପକ୍ଷ ଯୁଦ୍ଧୋଦ୍ୟତ, ଅନ୍ୟପକ୍ଷ୍ୟ ଅବସାଦଗ୍ରସ୍ତ—ଏପରି ଅବସ୍ଥାରେ ଶତ୍ରୁନାଶ କି କୌଶଳ ? ଏହା ନରହତ୍ୟା—ନରହତ୍ୟା ।

ବୀରେନ୍ଦ୍ର—( ସହାସ୍ୟେ ) ଆପଣ ତେବେ କାହାକୁ କୌଶଳ କହନ୍ତି ?

ସ୍ୱୈରଗଙ୍ଗ—ଶତ୍ରୁ ଯେବେ ସମାନ-କ୍ଷେତ୍ର—ସମାନ ଅଧିକାର ନଦେଇ ଅବୈଧ ଯୁଦ୍ଧରେ ପ୍ରବୃତ୍ତ ହୁଏ, ଶତ୍ରୁର ସେହି ଅବୈଧତା ନାଶକରି, ତାକୁ ସମାନ କ୍ଷେତ୍ରରେ—ସମାନ ଅଧିକାରରେ ଆନୟନୋପାୟର ନାମ କୌଶଳ—ମୁଁ ତାହାହିଁ କରିଥିଲି । ଯାଉ, ଏବେ ପ୍ରସ୍ତୁତ ହୁଅ ବୀର ।

ବୀରେନ୍ଦ୍ର—( ସ୍ୱଗତ ) ସମ୍ମୁଖେ ସାଗର ପ୍ରମାଣ ସୈନ୍ୟ—ପଶ୍ଚାତରେ ଦାବାନଳପ୍ରାୟ ନୂରୂପୀ ସ୍ତୁପରାଶି—ଉପାୟ କଣ ? ଉପାୟ କଣ ?

ସ୍ୱୈରଗଙ୍ଗ—ସେନାପତେ । ଅଉ ଭାବୁଛ କଣ ? ଆତ୍ମ-ସମର୍ପଣ, ଅଧୁନା ଏକମାତ୍ର ଉପାୟ ।

ବୀରେନ୍ଦ୍ର—ଆତ୍ମସମର୍ପଣ ?

ସ୍ୱୈରଗଙ୍ଗ—ଉପାୟ ନାହିଁ—ବୃଥାରେ ପ୍ରାଣ ଦେବା ଅପେକ୍ଷା ଆତ୍ମସମର୍ପଣ ଶତଗୁଣେ ଶ୍ରେୟସ୍କର—ସୈନ୍ୟଗଣ । ବିନା ଅସ୍ତ୍ର ପ୍ରୟୋଗରେ ସମସ୍ତଙ୍କୁ ବନ୍ଦୀକର । ( କର୍ଣ୍ଣାଟ-ସୈନ୍ୟଗଣ ବେଷ୍ଟନ କରିବାକୁ ଅଗ୍ରସର ହେଲେ । ଉତ୍କଳୀୟ ସୈନ୍ୟପ୍ରତି ) ତୁମ୍ଭମାନଙ୍କର ଅସ୍ତ୍ର ସମୂହ ଅର୍ପଣ କର, ବୀରଗଣ ।

[ ବୀରେନ୍ଦ୍ର ଅଧୋବଦନରେ ଛିଡ଼ାହେବା ଓ ଉତ୍କଳୀୟ ସୈନ୍ୟଗଣ ଅସ୍ତ୍ର ଅର୍ପଣ କରିବାକୁ ଉଦ୍ୟତ ହେବାବେଳେ ସୁବର୍ଣ୍ଣକେଶରୀଙ୍କର ସସୈନ୍ୟେ ବେଗେ ପ୍ରବେଶ ]

ସୁବର୍ଣ୍ଣ—ଧୀରେ, ଭ୍ରାତୃଗଣ । ଧୀରେ ବେଷ୍ଟନକର, ସ୍ୱୈରଗଣ—

ଉତ୍କଳ ସୈନ୍ୟଗଣ—ମହାରାଜ । ମହାରାଜ ।

ସୁବର୍ଣ୍ଣ—ଫେରୁଦଳର ମହାରାଜ କେଶରୀ କେବେ ହୋଇପାରେ ନାହିଁ, ଭ୍ରାତୃଗଣ ।

ଉତ୍କଳ ସୈନ୍ୟ—ଉପାୟାନ୍ତର ନ ଦେଖି, ଆତ୍ମସମର୍ପଣ--

ସୁବର୍ଣ୍ଣ—ଚୁପକର, ଶୃଗାଳଗଣ । ଏହି ଲଜ୍ଜାଜନକ ପଦ ଉଚ୍ଚାରଣ କରିବା ପୂର୍ବେ ଜିହ୍ୱା ତୁମ୍ଭମାନଙ୍କର ସଙ୍କୁଚିତ ହୋଇଗଲା ନାହିଁ । ଶତ୍ରୁ ସମ୍ମୁଖରେ ଅବନତି ସ୍ୱୀକାର କରିବା ପୂର୍ବେ ପ୍ରାଣବାୟୁ ତୁମ୍ଭମାନଙ୍କର ଶୂନ୍ୟ ସଙ୍ଗେ ମିଶିଗଲା ନାହିଁ ? ଏହିପରି ଭାବେ ବିଦେଶୀ ସମ୍ମୁଖରେ ବୀରତ୍ୱର ପରିଚୟ ଦେବାକୁ ଦଣ୍ଡାୟମାନ ହେଲ, କେଶରୀ-ସୈନ୍ୟଗଣ—ଏହିପରି ଭାବେ ଜାତୀୟ ଗୌରବର ପରିଚୟ ଦେବାକୁ ଗର୍ବ ବୋଧ କଲ, କେଶରୀ-ଓଡ଼ିଆଗଣ ? ଧିକ, ଧିକ ତୁମ୍ଭମାନଙ୍କୁ—ଧିକ, ଧିକ, ଆଜି ତୁମ୍ଭମାନଙ୍କର କ୍ଷତ୍ରିୟ-ଜୀବନକୁ । ସ୍ୱୈର-ଗଣ । ପ୍ରକୃତରେ ଯେବେ ତୁମ୍ଭେମାନେ ବୀର

ହୋଇଥାଅ, ତେବେ ବୀରର ସହିତ ଯୁଦ୍ଧ କରି ବୀରତ୍ୱର ପରଚୟ ଦିଅ—କେଶରୀ ସହିତ ଯୁଦ୍ଧ-କରି ନିଜର ସମ୍ମାନ ରକ୍ଷାକର ।

ଗୈରଗଙ୍ଗ—ଏହିତ ବୀରର ଉପଯୁକ୍ତ ବାଣୀ ।

କର୍ଣ୍ଣାଟ ସୈନ୍ୟ—ଜୟ ଗୈରଗଙ୍ଗଙ୍କର ଜୟ ।

ଉତ୍କଳୀୟ ସୈନ୍ୟ—ଜୟ ସୁବର୍ଣ୍ଣକେଶରୀଙ୍କର ଜୟ ।

[ ଉଭୟପକ୍ଷ ଯୁଦ୍ଧରେ ପ୍ରବୃତ୍ତ ହେବାକାଳେ ନନ୍ଦକାର ବେଗେ ପ୍ରବେଶ ]

ନନ୍ଦକା—କ୍ଷଣକାଳପାଇଁ କ୍ଷାନ୍ତ ହେଉନ୍ତୁ, ବୀରଗଣ ।

ସୁବର୍ଣ୍ଣ—ମା ! ମା ! ତୁ ଏଁଠି କାହିଁକି ? ହେ ବୀରଗଣ । କ୍ଷଣକାଳ ପାଇଁ ଅପେକ୍ଷା କର, ମାକୁ ମୋର ଟିକିଏ ନିରାପଦ ସ୍ଥାନକୁ ପଠାଇବାର ଅବସର ଦିଅ ।

ଗୈରଗଙ୍ଗ—କିଛି ଆପତ୍ତି ନାହିଁ, ବୀର ! ନାରୀର ସମ୍ମାନ ସର୍ବାଗ୍ରେ ରକ୍ଷଣୀୟ ।

ସୁବର୍ଣ୍ଣ –ଆ, ମା—

ନନ୍ଦକା—ବାବା ! କିଛି ଭୟ କରନ୍ତୁ ନାହିଁ—ମୁଁ ଏ ପାଶବିକ ହତ୍ୟାକାଣ୍ଡ ଦେଖିବାକୁ ଭଳେମାନ ଠିଆ ହେବି ନାହିଁ—କେବଳ ଗୋଟିଏ ପ୍ରଶ୍ନର ଉତ୍ତର ଶୁଣି ସାରିଲେ, ସାନନ୍ଦେ ଏ'ସ୍ଥାନ ତ୍ୟାଗ କରିବି ।

ସୁବର୍ଣ୍ଣ—କି ପ୍ରଶ୍ନ ? କାହାକୁ ?

ନନ୍ଦକା—ଉଭୟ ପକ୍ଷକୁ ! ହେ ବୀରଗଣ ! ଅନୁଗ୍ରହ ପୂର୍ବକ ଥରେ କହିବେ କି ଉଭୟ ମହାଜନ, ଆଜ କେଉଁ କାରଣରୁ ଏହି ହତ୍ୟାକାଣ୍ଡରେ ପ୍ରବୃତ୍ତ, କେଉଁ କାରଣରୁ ଲକ୍ଷ ଲକ୍ଷ ପ୍ରାଣ ବଳି ଦେବାକୁ ଆଜ ଉଦ୍ୟତ ?—ସର୍ବାଗ୍ରେ କର୍ଣ୍ଣାଟପତିଙ୍କର କି ଉତ୍ତର ?

ଗୈରଗଙ୍ଗ—ଆପଣଙ୍କର ପିତାଙ୍କୁ ପଚାରନ୍ତୁ ।

ନନ୍ଦକା—ପଚାରିବି କଣ, ବୀରେନ୍ଦ୍ର ! ମୁଁ ଜାଣେ, ଆପଣ ଗୃହାଗତ, ଅପମାନର ପ୍ରତିଶୋଧ ନେବାକୁ ଓ ବଳପୂର୍ବକ ପିତୃବକ୍ଷରୁ କନ୍ୟାକୁ ଛିନ୍ନ କରି ନେବାକୁ । ଅଉ—(ସୁବର୍ଣ୍ଣ ଆଡ଼େ ଚାହିଁ) ଆପଣ ଗୃହାଗତ, ମହାରାଜ ! ରାଜ୍ୟ, ସଂସାର, ପ୍ରାଣଗଲେ ସୁଦ୍ଧା କନ୍ୟାକୁ ନିଜବକ୍ଷରେ ଘୋଟି ରଖିବାକୁ ।

ସୁବର୍ଣ୍ଣ—ମା ! ମା ! କନ୍ୟା ମୋର—(ଆଲିଙ୍ଗନ କରିବାକୁ ଯିବା)

ନନ୍ଦକା—ଅସ୍ଥିର ହେଉନ୍ତୁ ନାହିଁ, ମହାରାଜ ! ଏହାହିଁ ଯେବେ ଆପଣ ମାନଙ୍କର ବିବାଦର କାରଣ ହୁଏ, ତେବେ ହେ ବୀରଗଣ ! ଏହି କଳହର ମୀମାଂସା ଅନ୍ୟ ଉପାୟରେ କି ସମ୍ଭବ ହୋଇ ପାରେ ନାହିଁ ?

ଗୈରଗଙ୍ଗ—ଏହି ଯୁଦ୍ଧହିଁ ଏକମାତ୍ର ଉପାୟ, ଆର୍ଯ୍ୟେ !

ସୁବର୍ଣ୍ଣ—ମା ! ତୁ ଏଠୁଁ ଚାଲିଯା—

ନନ୍ଦକା—ଏତେ ଲୋକ ନିଯୋଗରେ ତେବେ କି ପ୍ରୟୋଜନ ?

ଗୈରଗଙ୍ଗ—ଯୁଦ୍ଧ, ତା' ନ ହେଲେ ସମ୍ଭବ ହେବ କିପରି ?

ନନ୍ଦକା—ଆପଣମାନେ ଯେ ସ୍ୱାର୍ଥ ପାଇଁ ଯୁଦ୍ଧ କରୁଛନ୍ତି ?

ଗୈର—ସ୍ୱାର୍ଥ ଛଡ଼ା କେହି କେବେ ଯୁଦ୍ଧ କରେ ନାହିଁ, ଆର୍ଯ୍ୟେ !

ନନ୍ଦକା—ଏ' ନିରୀହ ପ୍ରଜାଗୁଡ଼ାଙ୍କର ତେବେ ଏଥିରେ କି ସ୍ୱାର୍ଥ ?

ଗୈରଗଙ୍ଗ—ରାଜାର ସ୍ୱାର୍ଥହିଁ ପ୍ରତ୍ୟେକ ରାଜଭକ୍ତ ପ୍ରଜାର ସ୍ୱାର୍ଥ ।

ନନ୍ଦକା—ମାତ୍ର ଏ'ଠାରେ ରାଜାର ସ୍ୱାର୍ଥ କି ବ୍ୟକ୍ତିଗତ ନୁହେଁ ?—ସମଗ୍ର ରାଜ୍ୟରତ ଦୂରର କଥା, କୌଣସି ଜଣେ ସୁଦ୍ଧା ପ୍ରଜାର ଏଥିରେ କି ତିଳେ ମାତ୍ର ସ୍ୱାର୍ଥ ଅଛି ?

ଗୈରଗଙ୍ଗ—( ସ୍ୱଗତ ) ବିଦୁଷୀ ଏ' ବାଳିକା ।

ସୁବର୍ଣ୍ଣ—ମା ! ତୁ ଚାଲିଯା—ଏ' ସବୁ ରାଜନୈତିକ ବିଷୟ ଭାରି ଜଟିଳ—ତୁ କ'ଣ ବୁଝିବୁ ?

ନନ୍ଦକା—ନୀରବ ହେଲେ କାହିଁକି, କର୍ଣ୍ଣାଟେଶ୍ୱର ?—ମହାରାଜ ! ଆପଣ ମଧ୍ୟ ଉତ୍ତର ଦିଅନ୍ତୁ ।

ସୁବର୍ଣ୍ଣ—ମୋର ଉତ୍ତର ?—ତୁ ଘରକୁ ଚାଲିଯା ।

ନନ୍ଦକା—ଶୁଣନ୍ତୁ, କର୍ଣ୍ଣାଟେଶ୍ୱର ! ଶୁଣନ୍ତୁ ମହାରାଜ ! ନିତାନ୍ତ ଯେବେ ଯୁଦ୍ଧରେ ବ୍ୟକ୍ତିଗତ କଳହକୁ

ମୀମାଂସା କରିବାକୁ ଚାହାନ୍ତି—ପାଶବିକ ଉପାୟରେ ନିଜର ପ୍ରାଧାନ୍ୟ ଦେଖାଇବାକୁ ଇଚ୍ଛା କରନ୍ତି, ତେବେ ଏହି ସାମାନ୍ୟ ଅନୁରୋଧ ରକ୍ଷା କରନ୍ତୁ—ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଉନ୍ତୁ, ପରସ୍ପର ମଧ୍ୟରେ ବଳ କସାକସି ହେଉନ୍ତୁ—ବୃଥାରେ, ନିଜର ସ୍ୱାର୍ଥ ସିଦ୍ଧି ଲାଗି ଅପରର ସ୍ୱାର୍ଥ ନାଶ କରି, ଇହକାଳରେ କଳଙ୍କ ଅର୍ଜନ କରନ୍ତୁ ନାହିଁ—ପର କାଳରେ ମଧ୍ୟ ନରକ ଭୋଗ ବାସନା ରଖନ୍ତୁ ନାହିଁ ।

ଭୈରବଗଙ୍ଗ—ଠିକ୍ କହୁଛନ୍ତି, ଆର୍ଯ୍ୟେ ।

ସୁବର୍ଣ୍ଣ—ଠିକ୍ କହୁଛୁ, ମା । ( ଉଭୟେ ଦ୍ୱନ୍ଦ ଯୁଦ୍ଧରେ ପ୍ରବୃତ୍ତ ହେବା)

ନନ୍ଦିକା—ଆଉ ଥରେ କ୍ଷଣକାଳପାଇଁ ଅପେକ୍ଷା କରନ୍ତୁ, ବୀରଗଣ । ମୋତେ ଜାଣିବାକୁ ଦିଅନ୍ତୁ—ଏ'ପରି ଦ୍ୱନ୍ଦ ଯୁଦ୍ଧ କି ରଣନୀତି ଅନୁମୋଦିତ ? ଏକଆଡ଼େ ଜଣେ ବଳବୀର୍ଯ୍ୟ ସମ୍ପନ୍ନ ଯୁବକ, ଅନ୍ୟଆଡ଼େ ଜଣେ କଙ୍କାଳସାର ବୃଦ୍ଧ ।

ଭୈରବଗଙ୍ଗ—ବେଶ୍ ପିତାଙ୍କୁ ଆପଣଙ୍କର ତେବେ ପରାଜୟ ସ୍ୱୀକାର କରିବାକୁ ଅନୁରୋଧ କରନ୍ତୁ ।

ସୁବର୍ଣ୍ଣ—ସେନାପତେ ! ଜେମାଦେଈଙ୍କୁ ନେଇଯାଅ—ଯୁଦ୍ଧକର, ସୈନ୍ୟଗଣ !

ଭୈରବଗଙ୍ଗ—ବେଶ୍ ଯୁଦ୍ଧକର

[ ଉଭୟ ପକ୍ଷ ପରସ୍ପର ବିରୁଦ୍ଧେ ଅସ୍ତ୍ରୋତ୍ତୋଳନ କରିବା ]

ନନ୍ଦିକା—ନିତାନ୍ତ ଯେବେ ଯୁଦ୍ଧ କରିବେ, ବୀରଗଣ ! ତେବେ ଯୁଦ୍ଧର ଯେ ମୂଳ କାରଣ—ତା'ର ପରିଣାମ ଆଗେ ଏହାହିଁ ହେଉ—

[ନନ୍ଦିକା ମଧ୍ୟଭାଗକୁ ଚାଲିଯାଇ ଗୁପ୍ତ ଛୁରିକାଦ୍ୱାରା ବକ୍ଷସ୍ଥଳ ଭେଦ କରିବାକୁ ଉଦ୍ୟତା ହେବା ]

ସୁବର୍ଣ୍ଣ—ନନ୍ଦି ! ନନ୍ଦି !

ଭୈରବଗଙ୍ଗ—ଆର୍ଯ୍ୟେ ! ଆର୍ଯ୍ୟେ !

—ଯବନିକା—

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

—ଦୁର୍ଗପ୍ରାଚୀର—

ସୁବର୍ଣ୍ଣ—ଆଜକୁ ଏକପକ୍ଷ ଅତୀତ ହୋଇଗଲା, ତଥାପି ଶତ୍ରୁ ସେହିପରି ଦୁର୍ଗବେଷ୍ଟନ କରି ରହିଛି । ଆଉ—କେତେଦିନ ସେହିପରି ବେଷ୍ଟନ କରି ରହିଥିବ—ମା ଜଗଦମ୍ବାଙ୍କ ପ୍ରଦତ୍ତ ଏହି ମଣିଟି ଯେତେଦିନ ମୋ ନିକଟରେ ଅଛି, ତେତେଦିନ ଏ ଦୁର୍ଗ ଅଭେଦ୍ୟ—ଜଗତରେ ଏପରି ଅସ୍ତ୍ର ସସ୍ତ୍ର ନାହିଁ, ଏପରି ଶକ୍ତି ନାହିଁ—ଯଦ୍ୱାରା ଏ ଦୁର୍ଗର କଣିକାଏ କ୍ଷତିସାଧନ ହୋଇ ପାରେ । ମୋର ପ୍ରଧାନ ଭୟ ବର୍ତ୍ତମାନ, ଯଦି ଖାଦ୍ୟାଭାବ ଘଟେ—ମୁଁ ଯେପରି ଦେଖୁଛି, ଖୁବ୍ କସାକସିରେ ଆଉ ତିନି ଚାରିଦିନ ମାତ୍ର ଚାଲିପାରେ—ତା'ପରେ କଣ କରିବି ? ସେନାପତି ସୁଡ଼ଙ୍ଗ ପଥରେ ଅଣାଇବାର ଚେଷ୍ଟା କରୁଛନ୍ତି—ମାତ୍ର ସେ ପଥରେ କେତେ ଆସି ପାରିବ ? ଯୋଗାଡ଼ ବା କାହୁଁ ଏତେ କରିବେ ? ଦୁର୍ଗ ଦ୍ୱାର କଦାପି ମୁଁ ଉନ୍ମୁକ୍ତ କରିବି ନାହିଁ—ମୋର ପ୍ରାଣର ଧନକୁ ଶତ୍ରୁକବଳରେ କଦାପି ଅର୍ପଣ କରି ପାରିବି ନାହିଁ । ଏ' ଜୀବନ ଯିବ ପଛକେ, ରାଜ୍ୟବାସୀ ସମସ୍ତେ ହା ଅନ୍ନ ହା ଅନ୍ନ ବୋଲି କ୍ଷୁଧାଜ୍ୱାଳାରେ ଦଗ୍ଧ ହୋଇ ମରିବେ ପଛକେ—ନନ୍ଦିକାକୁ କଦାପି ଅନ୍ତରକରି ପାରିବି ନାହିଁ । ହାୟ ! ବାଳା ମୋର ସେଦିନ ଯେବେ ତାର ବାଲ୍ୟ-ଚପଳତା ନେଇ ଉପସ୍ଥିତ ହୋଇ ନ ଥାନ୍ତା, ସେହି ଦିନହିଁ ଯୁଦ୍ଧର ମୀମାଂସା ହୋଇ ଯାଇଥାନ୍ତା—ଶତ୍ରୁକୁ ଏଠାରେ ଏ'ପରି ଭାବେ ଦୁର୍ଗବେଷ୍ଟନ କରିବାକୁ ଦେଖି ନ ଥାନ୍ତି । ପର ଯୁଦ୍ଧରେ କର୍ଣ୍ଣାଟର ବିପୁଳ ବାହିନୀ ଆସି ପହଞ୍ଚିବାରୁ, ବାଧ୍ୟ ହୋଇ ସିନା ମୋତେ ଏହିପରି ଘୃଣ୍ୟ ଆଶ୍ରୟ ଗ୍ରହଣ କରିବାକୁ ହୋଇଛି ? ( ନେପଥ୍ୟକୁ ଅନାଇ ) ଏହି

ଗୈରବଗଙ୍ଗ କେତେକ ସୈନ୍ୟମାନଙ୍କ ସଙ୍ଗେ
କି ବିଷୟରେ କଥାବାର୍ତ୍ତା କରୁ କରୁ ଏଣେ
ଆସୁଛୁ—ମୁଁ ଟିକିଏ ଗୋପନରେ ବସି ଶୁଣେ ।
[ ସୁବର୍ଣ୍ଣ ଗୋପନରେ ଅବସ୍ଥାନ କରିବା ।
ଗୈରବଗଙ୍ଗର ସସୈନ୍ୟେ ପ୍ରବେଶ କରିବା ]

ଗୈରବଗଙ୍ଗ—ସୈନ୍ୟଗଣ ! ମୁଁ କାଲି ସ୍ୱପ୍ନ ଦେଖିଛି—
ମା ଭାଗୀରଥି ଯେପରି ମୋତେ ବର ଦେଉଛନ୍ତି—
ମୁଁ ନିଶ୍ଚୟ ଜୟଲାଭ କରିବି । ଆଉ କିଛିଦିନ
ତୁମ୍ଭେମାନେ ଧୈର୍ଯ୍ୟ ଧର, ନଚେତ୍ ଏତେ କଷ୍ଟ
ସବୁ ଅକାରଣ ହେବ ।

୧ମ ସୈନ୍ୟ—ମହାରାଜ ! ଯେପରି ଦେଖା ଯାଉଛି
ଆଜି ଏକପକ୍ଷ କ'ଣ ଆଉ ଏକ ମାସରେ ମଧ୍ୟ
ଦୁର୍ଗ ଦଖଲ କରିବା ଅସମ୍ଭବ ।

ସୁବର୍ଣ୍ଣ—( ସ୍ୱଗତ ) ଈଶ୍ୱର ଜାଣନ୍ତି—ଏହି ଭାବହିଁ
ଦୃଢ଼ ହେଉ ।

ଗୈରବଗଙ୍ଗ—କଦାପି ନୁହେଁ, ସୈନ୍ୟଗଣ !—
ଗୁପ୍ତଚର ଆଜି ସମ୍ବାଦ ଦେଇଛି, ଦୁର୍ଗ ମଧ୍ୟରେ
ଖାଦ୍ୟ ସାମଗ୍ରୀ ଶେଷପ୍ରାୟ—ଖୁବ୍ ଜୋର
ଦୁଇଦିନ ମାତ୍ର ଯାଇପାରେ ।

ସୁବର୍ଣ୍ଣ—( ସ୍ୱଗତ ) ଗୁପ୍ତଚର ଏ ସମ୍ବାଦ ପାଇଲା
କିପରି ?

୧ମ ସୈନ୍ୟ—ଆମ୍ଭେମାନେ ଯେ ଆଜକୁ ଦୁଇଦିନ
ଉପବାସୀ ରହି ସାରିଲୁଣି, ମହାରାଜ !

ସୁବର୍ଣ୍ଣ—(ସ୍ୱଗତ) ଦୁଇଦିନ ଉପବାସୀ ?

ଗୈରବଗଙ୍ଗ—କିଛି ଚିନ୍ତାନାହିଁ, ମୁଁ ଖାଦ୍ୟ ସଂଗ୍ରହ
ବିଷୟରେ ଯଥାସାଧ୍ୟ ଚେଷ୍ଟା କରୁଛି । ଆଜି
ତୁମ୍ଭେମାନେ ନିଶ୍ଚୟ ପୂର୍ଣ୍ଣ ଭୋଜନ ପାଇବ ।

୨ୟ ସୈନ୍ୟ—କ୍ଷୁଧାଜ୍ୱାଳା ଶାନ୍ତ ହେଲେ, ଅନ୍ୟାନ୍ୟ
ଜ୍ୱାଳା ସହ୍ୟ କରିବାକୁ ଆମ୍ଭେମାନେ ସାନନ୍ଦେ
ସମ୍ମତ, ମହାରାଜ !

ଗୈରବଗଙ୍ଗ—ଗୋଟିଏ ବିଷୟରେ କିନ୍ତୁ ତୁମ୍ଭମାନଙ୍କୁ
ଖୁବ୍ ସାବଧାନ ହେବାକୁ ପଡ଼ିବ, ସୈନ୍ୟଗଣ !
—ବାହାରରୁ ଯେପରି କୌଣସି ଖାଦ୍ୟ ସାମଗ୍ରୀ
ଭିତରକୁ ନ ଯାଏ ।

୧ମ ସୈନ୍ୟ—କିପରି ଯିବ, ମହାରାଜ ! ଦୁର୍ଗ ଦ୍ୱାରତ
ବନ୍ଦ—ତହିଁରେ ଆମ୍ଭେମାନେ ସର୍ବଦା ସତର୍କ
ରହିଛୁଁ—ପିମ୍ପୁଡ଼ିର ପର୍ଯ୍ୟନ୍ତ ବିନା ନଜରରେ
ଯିବାର ସୁବିଧା ନାହିଁ କହିଲେ ଚଳେ ।

ଗୈରବଗଙ୍ଗ—ଗୁପ୍ତଚର କହୁଥିଲା ଗୋଟିଏ ସୁଡ଼ଙ୍ଗପଥ
ଅଛି, କିନ୍ତୁ ଦୁର୍ଭାଗ୍ୟର ବିଷୟ, ଏ ପର୍ଯ୍ୟନ୍ତ
ତାର ଅନୁସନ୍ଧାନ ପାଇ ପାରି ନାହିଁ ।

ସୁବର୍ଣ୍ଣ—( ସ୍ୱଗତ ) ଏତେ ଖବର ପାଇ ସାରିଛନ୍ତି ?
ସୁଡ଼ଙ୍ଗର ଦ୍ୱାର ପାଇଲେ ଯେ ଆମ୍ଭମାନଙ୍କର
ନିଶ୍ୱାସପଥ ଏକା ବେଳକେ ରୁଦ୍ଧ ହୋଇଯିବ—
ମା ଚଣ୍ଡି ! କୃପାକର, ମା !

୧ମ ସୈନ୍ୟ—ତେବେ ମହାରାଜ ! ଆମ୍ଭମାନଙ୍କ ମଧ୍ୟରୁ
କେତେ ଜଣଙ୍କୁ ଏହି ସୁଡ଼ଙ୍ଗ ପଥର ଅନୁସନ୍ଧାନ
ଭାର ଦିଅନ୍ତୁ ।

ଗୈରବଗଙ୍ଗ—ସେନାପତିଙ୍କ ଉପରେ ମୁଁ ସେ ଭାର
ଦେଇଅଛି । ସେ ବାଛିକରି କରି ଲୋକ ନିଯୁକ୍ତ
କରିବେ—ତୁମ୍ଭେମାନେ ବର୍ତ୍ତମାନ ତୁମ୍ଭମାନଙ୍କର
କର୍ତ୍ତବ୍ୟ ସ୍ଥାନକୁ ଯାଇପାର ।

ସୈନ୍ୟଗଣ—ଜୟ ମହାରାଜ ଗୈରବଗଙ୍ଗଙ୍କର ଜୟ !
ମହାରାଜ ! ପ୍ରାର୍ଥନା, ଆମ୍ଭମାନଙ୍କୁ ଶୀଘ୍ର ଖାଦ୍ୟ
ଯୋଗାନ୍ତୁ—ଏହି ଦେଖନ୍ତୁ ଆମ୍ଭମାନଙ୍କର
ଚାଲିବାର ଶକ୍ତି ସୁଦ୍ଧା ନାହିଁ !
[ କ୍ଳାନ୍ତ ଭାବେ ସୈନ୍ୟମାନଙ୍କର ପ୍ରସ୍ଥାନ ]

ଗୈରବଗଙ୍ଗ—ବାସ୍ତବିକ୍ ଏମାନେ ଚଳତ୍‌ଶକ୍ତିହୀନ—
ସେନାପତି ଖାଦ୍ୟର କି ଆୟୋଜନ କଲେ ?

ସୁବର୍ଣ୍ଣ—(ସ୍ୱଗତ) ମୋର ଗୁପ୍ତଚର କ'ଣ ଶୋଇଛି ?
ଶତ୍ରୁମାନେ ଦୁଇଦିନ ଉପବାସୀ, ଏ ସମ୍ବାଦ ମୁଁ
ଆଗରୁ କାହିଁକି ନ ପାଇଲି ! ଯାଏଁ ଏହିକ୍ଷଣି
ଦୁର୍ଗଦ୍ୱାର ଖୋଲିଦିଏଁ—ଯୁଦ୍ଧ ଘୋଷଣା କରି-
ଦିଏଁ । ସୁନ୍ଦର ସୁଯୋଗ ମିଳିଛି—କିନ୍ତୁ ଏହା
କି ବୀରପକ୍ଷେ ଯୋଗ୍ୟାଚରଣ ହେବ ? ବର୍ତ୍ତମାନ
ଯେ ସେମାନଙ୍କର ଜୀବନ ମରଣ ସମସ୍ୟା ?
ହେଉ, ମୋର ନନ୍ଦିକା ପାଇଁ ମୁଁ ନୀତି ଅନୀତି
ମାନିବାକୁ ଚାହେଁନାହିଁ—ଯେ କୌଣସି ମତେ

ଶତ୍ରୁ ନିବାରଣ କର୍ତ୍ତବ୍ୟ—ଏହିପରି ଯିବ ?
ନା-ଆଗେ ଜାଣିବା ଉଚିତ, ଯେବେ ସେମାନଙ୍କର
ଖାଦ୍ୟର କୌଣସି ଅପ୍ରୟୋଜନ ହୋଇ ଯାଇଥାଏ ।

ଗୈରଗଙ୍ଗ—ସହରରେ, ଗ୍ରାମରେ କେଉଁଠାରେ ତ
କିଛି ମିଳୁ ନାହିଁ—କର୍ଣ୍ଣାଟକୁ ମଧ୍ୟ ଲୋକ ପଠାଇଲି,
ଜଣେ ସୁଦ୍ଧା ଫେରିଲା ନାହିଁ, କାହିଁକି ? ଆଜ
ଯେବେ ସୈନ୍ୟମାନଙ୍କୁ ଖାଦ୍ୟ ଯୋଗାଇ ନ
ପାରେଁ, ତେବେ ତ ଅନାହାରରେ ଆମ୍ଭମାନଙ୍କୁ
ମରିବାକୁ ହେବ । ଉଃ । କି ଯାତନା ! ଶତ୍ରୁକୁ
ଅନଶନରେ ରୁଦ୍ଧଶ୍ୱାସ କରି ମାରିବାକୁ ଯାଇ,
ଆପଣାକୁ କ'ଣ ସେହିପରି ଭାବରେ ମରିବାକୁ
ହେବ ? ଉଃ । କି ବେଦନା ।

ସୁବର୍ଣ୍ଣ—(ସ୍ୱଗତ) ଈଶ୍ୱରଙ୍କୁ ଧନ୍ୟବାଦ ଦେବି, ଯେବେ
ଗୈରିର ଶାସ୍ତି ଗୈରି ଏହିପରି ଭାବେ ନିଜ
ହସ୍ତରେ ଲାଭକରେ ।

[ ସେନାପତିର ପ୍ରବେଶ ]

ସେନାପତି—ମହାରାଜ । ମହାରାଜ । ସର୍ବନାଶ ।

ଗୈରଗଙ୍ଗ—କି ସର୍ବନାଶ ?

ସେନାପତି—ବାସୁଦେବ ମନ୍ତ୍ରୀ କର୍ଣ୍ଣାଟରୁ ବହୁ ଖାଦ୍ୟ
ଶକଟ ନେଇ ଆସୁଥିଲେ—ଦୁର୍ଗର ଅଦୂର ଜଙ୍ଗ-
ଲରେ ସମସ୍ତ ଶକଟ ଲୁଟ୍ ହୋଇ ଯାଇଛି ।

ସୁବର୍ଣ୍ଣ—( ସ୍ୱଗତ ) ବାସୁଦେବ ମନ୍ତ୍ରୀ ?

ଗୈରଗଙ୍ଗ—ଲୁଟ୍ ହୋଇଗଲା । ଦିନବେଳେ ?

ସେନାପତି—ଠିକ୍ ପ୍ରଭାତ ପୂର୍ବରୁ ।

ଗୈରଗଙ୍ଗ—କାହିଁ ବାସୁଦେବ ?

ସେନାପତି—ଅନୁସନ୍ଧାନରେ ଲାଗିଛନ୍ତି ।

ଗୈରଗଙ୍ଗ—ଆମ୍ଭେମାନେ ଏପର୍ଯ୍ୟନ୍ତ ଖବର ପାଇ
ନଥିଲୁ କାହିଁକି ?

ସେନାପତି—ଅତି ପ୍ରତ୍ୟୁଷରୁ ମୁଁ ଯେତେବେଳେ
ଆପଣଙ୍କ ଠାରୁ ବିଦାୟ ନେଇ ଖାଦ୍ୟ ସନ୍ଧାନ
ନିମନ୍ତେ ବାହାରେ, କିଛି ଦୂର ଯିବାପରେ ତାଙ୍କୁ
ଶିବିର ଆଡ଼କୁ ଦୁଃଖିତ ଅନ୍ତରରେ ଆସିବାର
ଦେଖେ—ସେ ମୋ ନିକଟରେ ସମସ୍ତ ବର୍ଣ୍ଣନା
କରିବାରୁ କତିପୟ ସୈନ୍ୟ ନେଇ ଆମ୍ଭେ ଦୁଇ-
ଜଣ ଶତ୍ରୁର ଅନ୍ୱେଷଣରେ ପ୍ରବୃତ୍ତ ହେଲୁଁ ।
କୌଣସି ସନ୍ଧାନ ନ ପାଇ ମୁଁ ବର୍ତ୍ତମାନ ଫେରି
ଆସୁଛି ।

ଗୈରଗଙ୍ଗ—ସେନାପତେ ! ମୋର ଭାରି ସନ୍ଦେହ
ହେଉଛି, ଏଥିରେ ନିଶ୍ଚୟ ବାସୁଦେବର ଷଡ଼ଯନ୍ତ୍ର
ଅଛି—କାହିଁ ସେ ନରାଧମ ?

ସୁବର୍ଣ୍ଣ—( ସ୍ୱଗତ ) ନରାଧମ ଶତ୍ରୁଙ୍କ ଯୋଗ
ଦେଇଛି !—କିନ୍ତୁ ଈଶ୍ୱର ଉପଯୁକ୍ତ ଶାସ୍ତିର
ବିଧାନ କରି ଦେଲେଣି ।

ଗୈରଗଙ୍ଗ—କୁହ, ସେନାପତେ ! କାହିଁ ସେ
ନରାଧମ ?

ସେନାପତି—ସେ ବର୍ତ୍ତମାନ ସୁଦ୍ଧା ଅନ୍ୱେଷଣରେ
ବ୍ୟାପୃତ—ରାଣୀମାନଙ୍କଠାରୁ ଗୋଟିଏ ପତ୍ର
ଆଣିଥିଲେ, ତାହା ମୋ ହାତରେ ଆପଣଙ୍କ
ନିକଟକୁ ପଠାଇ ଦେଇଛନ୍ତି ।

ଗୈରଗଙ୍ଗ—(ପତ୍ରଦେଖି) ମା ନିଶ୍ଚୟ ମୋ' ଉପରେ
ଅକୃତକାର୍ଯ୍ୟତା ନିମନ୍ତେ ବିରକ୍ତ ହୋଇଥିବେ ।
ହାୟ ! ଏ' ପର୍ଯ୍ୟନ୍ତ ମୁଁ ମାତୃ-ବାଞ୍ଛା ପୂର୍ଣ୍ଣ କରି
ପାରିଲି ନାହିଁ ? ସେନାପତେ ! ଏ' ପତ୍ର ମୁଁ
ପାଠକରି ପାରିବି ନାହିଁ, ତୁମ୍ଭେ ଏହା ପାଠକରି
କେବଳ ଏହାର ସାର ମର୍ମ ମୋତେ ଶୁଣାଅ ।
( ପତ୍ରଦାନ ଓ ସେନାପତି ମନେ ମନେ ପଢ଼ିବା)
ଉଃ । କି ମର୍ମାନ୍ତିକ ଯନ୍ତ୍ରଣା ଅନୁଭବ କରୁଛି !
ବାସୁଦେବ ନିଶ୍ଚୟ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର
କରିଛି—ଏହି ଯେ ନରାଧମ ଏଣେ ଆସୁଛି ।
( ବାସୁଦେବର ପ୍ରବେଶ ) ବିଶ୍ୱାସ ଘାତକ !
( ଗୈରଗଙ୍ଗ ମୁଖ ଫେରାଇ ଛିଡ଼ାହେବା )

ବାସୁଦେବ—ମହାରାଜ । ଅଧମକୁ କ୍ଷମା କରନ୍ତୁ—
ଈଶ୍ୱରଙ୍କୁ ସାକ୍ଷ୍ୟକରି କହୁଛି—ଶ୍ରୀଚରଣସ୍ପର୍ଶକରି
କହୁଛି, ଅଧମ କଦାପି ବିଶ୍ୱାସ ଘାତକ ନୁହେଁ ।

ସୁବର୍ଣ୍ଣ—ନିଶ୍ଚୟ ବିଶ୍ୱାସଘାତକ ! (ସ୍ୱଗତ) ଏହି ସେହି
ବିଶ୍ୱାସଘାତକ, ତା'ର ଦର୍ଶନ ମାତ୍ରକେ ମୋର
କ୍ରୋଧବହ୍ନି ଶତଶିଖା ଧାରଣ କରୁଛି ।

ଗ୍ରୈବଗଙ୍ଗ—( ଗୃହଅଡ଼େ ଚାହିଁ ) ନିଶ୍ଚୟ ଏ ଦୈବବାଣୀ—ଏ' କ'ଣ ସେନାପତେ ! ତୁମ୍ଭର ମୁଖ ବିବର୍ଣ୍ଣ ହୋଇଗଲା କାହିଁକି ? ପତ୍ରରେ କ'ଣ ଲେଖା ଅଛି କି ?

ସେନାପତି—ପତ୍ରରେ ଆପଣଙ୍କୁ ଫେରିଯିବା ନିମନ୍ତେ ଲେଖା ଅଛି ।

ଗ୍ରୈବଗଙ୍ଗ—ଫେରିଯିବାକୁ ? ମା ନିଶ୍ଚୟ ମୋତେ କାପୁରୁଷ ଓ ଦୁର୍ବଳ ଜ୍ଞାନ କରି ସାରିଲେଣି ।

ସେନାପତି—ନା, ମହାରାଜ ! ସେ ଲେଖିଛନ୍ତି—"ମୁଁ ପ୍ରଥମେ କ୍ରୋଧ ବଶତଃ ତୋତେ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ଆଦେଶ ଦେଇଥିଲି; ମାତ୍ର ବର୍ତ୍ତମାନ ଭାବି ଦେଖୁଛି, ଯୁଦ୍ଧ ଦ୍ୱାରା ଏ'ପରି ସାଧୁ ଉଦ୍ଦେଶ୍ୟ ସାଧିତ କରିବା ନିତାନ୍ତ ଅନ୍ୟାୟ—ମୁଁ ଆଉ ଥରେ ଓଡ଼ିଶାରାଜାଙ୍କ ନିକଟ ଦୂତ ପଠାଇବି, ନଚେତ ନିଜେ ଯାଇ—"

ଗ୍ରୈବଗଙ୍ଗ—ଥାଉ ଥାଉ, ଶୁଣିବାର ଆଉ ପ୍ରୟୋଜନ ନାହିଁ—ଏହା ନିଶ୍ଚୟ ଏହି ନରାଧମର କୌଶଳ ।

ସୁବର୍ଣ୍ଣ—ନିଶ୍ଚୟ କୌଶଳ ।

ଗ୍ରୈବଗଙ୍ଗ—( ଗୃହଆଡ଼େ ଚାହିଁ ) କିଏ ପ୍ରତ୍ୟୁତ୍ତର ଦେଉଛି ? ଏହା ନିଶ୍ଚୟ ଦୈବବାଣୀ ।

ବାସୁଦେବ—ମହାରାଜ !

ଗ୍ରୈବଗଙ୍ଗ—ଚୁପ୍ କର ନରାଧମ !

ସେନାପତି—ଆହୁରି ମଧ୍ୟ ଲେଖିଅଛନ୍ତି, "ବାସୁଦେବ ମନ୍ତ୍ରୀ ଭାରି ସଜ୍ଜନ—ତାଙ୍କର ଉଦ୍ଦେଶ୍ୟ ଅତି ମହତ୍—ତାଙ୍କୁ କଦାପି ଅବମାନନା କରିବୁ ନାହିଁ—ତାଙ୍କର ପରାମର୍ଶ ଘେନି ସର୍ବଦା କାର୍ଯ୍ୟ କରିବୁ—ଏହା ମାତୃ-ଆଦେଶ" ।

ଗ୍ରୈବଗଙ୍ଗ—ଏ' ମାତୃ-ଆଦେଶ ନୁହେଁ ସେନାପତେ ! ଏ' ବିଶ୍ୱାସଘାତକର ଛଳନା ! ବାପ-ମାତା କେବେ ପୁତ୍ରକୁ ତା'ର ଫେରି ଯିବାକୁ ଆଦେଶ ଦିଏ ନାହିଁ—ବୀରପୁତ୍ର ଜୟୋତ୍‌ଫୁଲ୍ଲ ବଦନରେ ମାତୃ-ଦର୍ଶନ କରେ, ନଚେତ୍ ଚିରଦିନ ସକାଶେ ସେ ସୁଖରୁ ବଞ୍ଚିତ ହୁଏ ! ମା ! ମା ! କି କୁକ୍ଷଣରେ ବିଶ୍ୱାସ ଘାତକକୁ ଆଶ୍ରୟ ଦେଇଥିଲ, ମା ?

ବାସୁଦେବ—ମହାରାଜ ! ଥରେ ବିଚାର କର—

ଗ୍ରୈବଗଙ୍ଗ—ଚୁପ୍ କର, ନରାଧମ !—ସେନାପତେ ! ଏହି ବିଶ୍ୱାସଘାତକକୁ ବନ୍ଦୀକରି ଯୁଦ୍ଧ ଶେଷ ପର୍ଯ୍ୟନ୍ତ ସତର୍କ ପ୍ରହରୀ ଦ୍ୱାରା ରକ୍ଷାକର—ଯୁଦ୍ଧ ଶେଷରେ ତା'ର ବିଚାର ହେବ ।

ବାସୁଦେବ—(ସ୍ୱଗତ) ଦୀନବନ୍ଧୁ ! ସଂସାରରେ ଜଣେ ସାଧୁ ଉଦ୍ଦେଶ୍ୟ ଘେନି କାର୍ଯ୍ୟ କରିବାକୁ ଗଲେ, ତା'ର କ'ଣ ପଦେ ପଦେ ଏହିପରି ବିପଦ ଘଟିଥାଏ ? ଯାହା ଇଚ୍ଛା, ଶାସ୍ତି ଦିଅ ପ୍ରଭୋ ! ଏ' ଜୀବନ ଥିବା ପର୍ଯ୍ୟନ୍ତ କର୍ତ୍ତବ୍ୟ ପାଳନରେ ଯେପରି ତ୍ରୁଟି ନ ଘଟାଏ ।

ସେନାପତେ—ଚାଲନ୍ତୁ, ମନ୍ତ୍ରୀ ମହାଶୟ !

ଗ୍ରୈବଗଙ୍ଗ—ବନ୍ଦୀକରି ଘେନିଯାଅ ।

ବାସୁଦେବ—ପଳାଇବାର ଆଶଙ୍କା କରୁଛନ୍ତି ? ଆଶ୍ରୟ-ଦାତାଙ୍କର ଆଦେଶ ଏ' ଅଧୀନ ଅକ୍ଷରେ ଅକ୍ଷରେ ପାଳନ କରିବ, ମହାରାଜ ! ତେବେ ଯିବା ପୂର୍ବେ ଏତିକି ମାତ୍ର ପ୍ରାର୍ଥନା, ମହାରାଜ ! ଅଧମ ପ୍ରତି ଥରେ ସୁବିଚାର କରନ୍ତୁ—ବିଶ୍ୱାସ ଘାତକ ବୋଲି ପଦାଘାତ କରନ୍ତୁ ନାହିଁ ।

ଗ୍ରୈବଗଙ୍ଗ—ଚାଲିଯା ସମ୍ମୁଖରୁ ନରାଧମ ! ସେନାପତେ ! ଶୀଘ୍ର ଘେନିଯାଅ ।

( ସେନାପତି ଓ ବାସୁଦେବଙ୍କର ପ୍ରସ୍ଥାନ )

ସୁବର୍ଣ୍ଣ—ଉପଯୁକ୍ତ ଶାସ୍ତି ହୋଇଛି—ଠିକ୍ ଦଣ୍ଡ ଦେଇଛ, ଗ୍ରୈବଗଙ୍ଗ !

ଗ୍ରୈବଗଙ୍ଗ—କିଏ କହୁଛ ?—ଏହି ଯେ ସୁବର୍ଣ୍ଣ-କେଶରୀ ! ଓଡ଼ିଶାର ରାଜା ! ମହାରାଜ ! ଏହି କି ଆପଣଙ୍କର ବୀରତ୍ୱ ?—ଏହି କି ଆପଣଙ୍କର ରଣକୌଶଳ ?—ଗ୍ରୈବ ଉଡାଏତଙ୍କ ପରି ପ୍ରାଣରକ୍ଷା ଭୟରେ ଆତ୍ମଗୋପନ କରିବା—ଶୃଗାଳ ପରି ସିଂହ ଭୟରେ ଗର୍ତ୍ତ ମଧ୍ୟରେ ଲୁଚି ରହିବା ?

ସୁବର୍ଣ୍ଣ—ଗ୍ରୈବ ! ଯେଉଁ ଗୁଣରେ ତୋର ନାମ ସାର୍ଥକ କରିଛୁ, ସେହି ଗୁଣରେ ଅପରକୁ ଭୂଷିତ କରିବାକୁ ଏତେ ଆଗ୍ରହ କାହିଁକି ? ଭୁଲି କି ଗଲୁ ସେହିଦିନ,

ଶ୍ୱେର ! ଯେଉଁ ଦିନ କାଠଯୋଡ଼ିବନ୍ଧ ଲଙ୍ଘନ କରି ଲୁଚି ଲୁଚି ସହର ମଧ୍ୟରେ ପ୍ରବେଶ କରିଥିଲ—ତକା ଏତ ଭଲ ବିପୁଳ ସୈନ୍ୟ ଘେନି ସ୍ୱଳ୍ପ ସୈନ୍ୟକୁ ମୋର ଧ୍ୱଂସ କରିବାକୁ ଆସିଥିଲ ?

ଶ୍ୱେରଗଙ୍ଗ—କର୍ଣ୍ଣାଟବୀର କଦାପି ଅନ୍ୟାୟ ଯୁଦ୍ଧ ଜାଣେନାହିଁ, ଓଡ଼ିଶାରାଜ । ସେଦିନ କାଠଯୋଡ଼ିବନ୍ଧ ଲଙ୍ଘନ କରିଥିଲି, କେବଳ ସମର କ୍ଷେତ୍ରରେ—ସମଭୂମିରେ ଉଭୟ ପକ୍ଷର ସମାବେଶ ନିମନ୍ତେ, ସ୍ୱଳ୍ପ ସୈନ୍ୟକୁ ଧ୍ୱଂସ ?—ଧ୍ୱଂସ ତ ନୁହେଁ—କେବଳ ବନ୍ଦୀ କରିବାକୁ ଉଦ୍ୟତ ହୋଇଥିଲି—ବାଧ୍ୟ ହୋଇ, ଯେତେବେଳେ ଆତ୍ମସମର୍ପଣ କରିବାକୁ ଅନିଚ୍ଛୁକ ହେଲେ ।

ସୁବର୍ଣ୍ଣ—ଆତ୍ମସମର୍ପଣ ? ବୀରଠାରୁ ଏହା ଆଶା କରିଥିଲ—ସିଂହଠାରୁ ଏହା କାମନା କରିଥିଲ ? ତୁମର ଯଦି ବନ୍ଧ ଲଙ୍ଘନ କରିବା କୌଶଳ ହୁଏ—ମୋର ସ୍ୱଳ୍ପ-ସୈନ୍ୟ ହେତୁ ବିପୁଳ-ସୈନ୍ୟ ବିରୁଦ୍ଧରେ ଦୁର୍ଗାଶ୍ରୟ ଗ୍ରହଣ କରିବା କ'ଣ କୌଶଳ ନୁହେଁ ? ତୁମ୍ଭେ ଯଦି ବୀର, ଦୁର୍ଗ ଭେଦକରି ପ୍ରବେଶ କର ।

ଶ୍ୱେରଗଙ୍ଗ—ଏତେ କ୍ଲେଶର କି ପ୍ରୟୋଜନ ମହାରାଜ ! ଆପଣ ନିଜେ ଯେ ଅନତିବିଳମ୍ବେ ଆମ୍ଭମାନଙ୍କୁ ଆମନ୍ତ୍ରଣ କରି ଭିତରକୁ ଘେନିଯିବେ ?

ସୁବର୍ଣ୍ଣ—ଅନ୍ୟ କାହାକୁ ଏ' ମୌଖିକ ସାହସ ଦେଖାଇଥିଲେ ସାଜନ୍ତା—କାରଣ, ତୁମ୍ଭମାନଙ୍କର ପ୍ରକୃତ ଅବସ୍ଥା ବର୍ତ୍ତମାନ ମୋତେ ବେଶ ଜଣା ।

ଶ୍ୱେରଗଙ୍ଗ—ହାଃ, ହାଃ, ହାଃ ! ମନେ କରିଛନ୍ତି କି ଖାଦ୍ୟ-ଶକଟ ଲୁଟ ହୋଇଛି ବୋଲି, ଆମ୍ଭେମାନେ ଅଚିରେ ଦୁର୍ଗାବରୋଧ ତ୍ୟାଗ କରି ଚାଲି ଯିବୁଁ ?—କଦାପି ନୁହେଁ—ମୃତ୍ୟୁ ବରଂ ଶ୍ରେୟସ୍କର, ପରାଜୟ କଳଙ୍କ ଘେନି ଶ୍ୱେରଗଙ୍ଗ କଦାପି କର୍ଣ୍ଣାଟ ପ୍ରତ୍ୟାବର୍ତ୍ତନ କରିବ ନାହିଁ ।

ସୁବର୍ଣ୍ଣ—ତେବେ ମନେ କରିଛ ପରା, ଦୁର୍ଗ ମଧ୍ୟରେ ଖାଦ୍ୟ ସାମଗ୍ରୀ ଶେଷ ପ୍ରାୟ ବୋଲି, ଆମ୍ଭେମାନେ କ୍ଷୁଧାଜ୍ୱାଳାରେ କାତରହୋଇ ଦୁର୍ଗଦ୍ୱାର ଖୋଲି ଦେବୁଁ—ଆତ୍ମସମର୍ପଣ କରିବୁଁ ? ବୃଥା ଆଶା ! ଅନଶନରେ ମରିବୁଁ ବରଂ, ଶତ୍ରୁକୁ ଦୁର୍ଗାର୍ପଣ ଅସମ୍ଭବ ।

ଶ୍ୱେରଗଙ୍ଗ—ଦେଖା ଯାଉ, କା'ର କେତେ ଶକ୍ତି । ଜୟ ଗଙ୍ଗାମାଣିକ୍ୟ ଜୟ !

ସୁବର୍ଣ୍ଣ—ଜୟ ମା ଚଣ୍ଡୀ କି ଜୟ !

( ଉଭୟଙ୍କର ବିପରୀତ ଦିଗରେ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଉଦ୍ୟାନ—

ନନ୍ଦିକା—ଏହି ଯୁଦ୍ଧ-ପ୍ରବୃତ୍ତି, ମନୁଷ୍ୟର ଏହି ହିଂସା-ଭାବ, କି ସ୍ୱାଭାବିକ—? କି ଯୁବା କି ବୃଦ୍ଧ, କି ଜ୍ଞାନୀ, କି ମୂର୍ଖ ସମସ୍ତେ—ଦେଖୁଛି ଏଥିରେ ସମାନ ସୁଖ ଅନୁଭବ କରୁଛନ୍ତି, ସମାନ ଗର୍ବ ପ୍ରକାଶ କରୁଛନ୍ତି ? ଯୁଦ୍ଧରେ ମନୁଷ୍ୟର ସାହସ ବୀରତ୍ୱର ପରିଚୟ ମିଳେ—କିନ୍ତୁ କିପରି ବୀରତ୍ୱ ଓ ସାହସ ସେ ?—ଯେପରି ବୀରତ୍ୱ ଓ ସାହସ, ବନ୍ୟ-ପଶୁ, ବିଦାରଣକ୍ଷମ ନଖର ଦଶନ ଚାଳନାରେ ପ୍ରଦର୍ଶନ କରେ—ଯେପରି ସାହସ ଓ ବିକ୍ରମ, ସୟତାନ ପରିଦେଧା ସୌନ୍ଦର୍ଯ୍ୟ ବିନାଶ ସାଧନରେ ପ୍ରକାଶ କରେ । ଏହି ସୟତାନ ପ୍ରବୃତ୍ତିକୁ ଘେନି, ମନୁଷ୍ୟ କିପରି ନିଜକୁ ଜ୍ଞାନୀଶ୍ରେଷ୍ଠ ବୋଲି ପରିଚୟ ଦେଉଛି ? ଏହି ପାଶବିକ ଭାବ ଘେନି, କିପରି ନିଜକୁ ଜୀବ-ଶ୍ରେଷ୍ଠବୋଲି ପ୍ରଶଂସା କରୁଛି ?

[ ଦୁଇଜଣ ସୈନିକଙ୍କର ପ୍ରବେଶ ]

୧ମ ସୈନ୍ୟ—( ଖାଦ୍ୟ ଦେଖାଇ ) ମା ! ଦେଖନ୍ତୁ, ଆମ୍ଭମାନଙ୍କର ଖାଦ୍ୟ ପରିମାଣ ଦିନୁ ଦିନ ଯେପରି ହ୍ରାସ ହେବାକୁ ଲାଗିଲାଣି ସେଥିରେ

ନିଶ୍ଚୟ ଅମ୍ଭମାନଙ୍କୁ ଦିନେ ଦୁଇଦିନ ମଧ୍ୟରେ ଉପବାସରେ ମରିବାକୁ ହେବ ।

୨ୟ ସୈନ୍ୟ—ମା ! ଆପଣ ରାଜାଙ୍କୁ ଏ'କଥା ଥରେ ଭଲକରି ବୁଝାଇ ଦିଅନ୍ତୁ ।

୧ମ ସୈନ୍ୟ—ଆପଣ ଏ' ଦୀନମାନଙ୍କର ଏକମାତ୍ର ଭରସା—ଆପଣଙ୍କ ହେତୁ ଅମ୍ଭେମାନେ ଅନେକ କ୍ଳେଶ ଓ ବିପଦରୁ ରକ୍ଷା ପାଇଛୁ ମା ।

ନନ୍ଦିକା—କାହିଁ ତୁମ୍ଭମାନଙ୍କୁ ରକ୍ଷା କରିଛି, ସୈନ୍ୟଗଣ ? ମୋର କି ସେ ଶକ୍ତି ଅଛି ?—ଯେବେ ଥା'ନ୍ତା, ଆଜି କ'ଣ ତୁମ୍ଭେମାନେ ଏହି ଅନ୍ଧକୂପ ସମ ଦୁର୍ଗ ମଧ୍ୟରେ ଅବଦ୍ଧ ରହି ଶ୍ୱାସରୁଦ୍ଧ ହେଉଥା'ନ୍ତ—ଆଜି ବାହାରେ ତୁମ୍ଭମାନଙ୍କର ଶତ୍ରୁମାନେ ଏ' ଦୃଶ୍ୟ ଦର୍ଶନ କରି ଆନନ୍ଦ ଅନୁଭବ କରୁଥାନ୍ତେ ?—ମୋର ଯେବେ ତିଳେ ମାତ୍ର ସାମର୍ଥ୍ୟ ଥା'ନ୍ତା, ଆଜି କ'ଣ ତୁମ୍ଭେମାନେ 'ହା ଅନ୍ନ' 'ହା ଅନ୍ନ' ବୋଲି ଚିତ୍କାର କରି ଅର୍ଦ୍ଧମୃତପ୍ରାୟ ହୋଇଥା'ନ୍ତ,—ଆଜି ବାହାରେ ତୁମ୍ଭମାନଙ୍କର ଶତ୍ରୁମାନେ ସେ କ୍ରନ୍ଦନ ଶ୍ରବଣ କରି ଆନନ୍ଦରେ ନୃତ୍ୟକରି ବୁଲୁଥାନ୍ତେ ? ଏହି ପ୍ରାଚୀରକୁ ଅନାଅ, ସୈନ୍ୟଗଣ ! ଏହାର ପ୍ରତ୍ୟେକ ପ୍ରସ୍ତର ଖଣ୍ଡ, ନିର୍ଜୀବ-କଠିନ ହେଲେ ମଧ୍ୟ, ତୁମ୍ଭମାନଙ୍କର ଶୋକ ଧ୍ୱନିର ପ୍ରତିଧ୍ୱନି କରୁଛି—ତୁମ୍ଭମାନଙ୍କର ଦୁର୍ଦ୍ଦଶା ଦର୍ଶନରେ ନିଶ୍ଚଳ ନିସ୍ପନ୍ଦ ହୋଇ ଯାଉଛି—କିନ୍ତୁ ମନୁଷ୍ୟ ସଜୀବ, କୋମଳ-ହୃଦୟ ହୋଇ ଆଜି କରୁଛି କ'ଣ ?—ସ୍ୱ-ଜାତିର, ନିଜର ଭାଇର ଦୁର୍ଦ୍ଦଶା ଦେଖି, ଆନନ୍ଦରେ ପାଗଳପ୍ରାୟ ହେଉଛି—କାତର ପୂର୍ଣ୍ଣ ଚିତ୍କାରକୁ ସଙ୍ଗୀତ ସମ ସ୍ୱ-କର୍ଣ୍ଣରେ ଗ୍ରହଣ କରି, ମର୍ମରେ ଯେପରି ଶାନ୍ତି ଉପଭୋଗ କରୁଛି ? ହେ ସୈନ୍ୟଗଣ ! ଈଶ୍ୱରଙ୍କୁ ଡାକ—ତାଙ୍କ ବିନା ଏ' ସଂସାରରେ ଅନ୍ୟ କେହି ନାହାନ୍ତି, ଯେ ଏହି ମହାମାରୀ ଯୁଦ୍ଧ ନିବାରଣ କରି ପାରିବେ—ମନୁଷ୍ୟ ହୃଦୟର ଏହି ପାଶବିକତା ଓ ସୟତାନ-ଭାବ ବହିଷ୍କୃତ କରି ପାରିବେ—( ଆଣ୍ଠୁ ମାଡ଼ି ବସି ) 'ହେ ଜଗଦୀଶ ! ମନୁଷ୍ୟକୁ ବିବେକ ଦେଇଛନ୍ତି—ବୁଦ୍ଧି ଦେଇଛନ୍ତି—ହୃଦୟ ଦେଇଛନ୍ତି, ଶକ୍ତି ଦେଇ ନାହାନ୍ତି କାହିଁକି ? ସେହି ଶକ୍ତି ଅଭାବରୁ ଦେଖନ୍ତୁ, ତୁମ୍ଭର ସୃଷ୍ଟିର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ, ଏହି ମହାନୁଭବ ଜୀବଶ୍ରେଷ୍ଠ—ମନୁଷ୍ୟ କିପରି ହେୟ, ନୀଚ, ପଶୁତୁଲ୍ୟ ଆଚରଣ କରୁଛନ୍ତି—କିପରି ଜଘନ୍ୟ କ୍ରୂର ପିଶାଚ ତୁଲ୍ୟ କାର୍ଯ୍ୟ କରୁଛନ୍ତି ! କୃପା କରନ୍ତୁ, ଦୀନବନ୍ଧୁ ! ମନୁଷ୍ୟକୁ ଶକ୍ତି ଦାନ କରନ୍ତୁ—ମନୁଷ୍ୟକୁ ମନୁଷ୍ୟ କରନ୍ତୁ !' (ପ୍ରଣାମ କରିବା)

ସମସ୍ତେ—(ପ୍ରଣାମ କରି) ଜୟ ଜଗତ୍‌ପତି ଜଗନ୍ନାଥଙ୍କର ଜୟ !

[ ଗୁପ୍ତଚରର ବେଗେ ପ୍ରବେଶ ]

ଗୁପ୍ତଚର—ଭୟ ନାହିଁ, ସୈନ୍ୟଗଣ ! ଈଶ୍ୱର ଅନୁଗ୍ରହ କରିଛନ୍ତି ।

୧ମ ସୈନ୍ୟ—କହ ଚର ! କି ଅନୁଗ୍ରହ କରିଛନ୍ତି ?

ଗୁପ୍ତଚର—ପ୍ରଚୁର ଖାଦ୍ୟ ସଂଗୃହୀତ ହୋଇଛି ।

ନନ୍ଦିକା—ଧନ୍ୟ ଈଶ୍ୱର !

ସୈନ୍ୟଗଣ—ଜୟ ଜଗନ୍ନାଥଙ୍କର ଜୟ—ମା, ମା ! ଆପଣଙ୍କର ପ୍ରାର୍ଥନା ବଳରେ ଅମ୍ଭମାନଙ୍କର ମନସ୍କାମନା ପୂର୍ଣ୍ଣ ହୋଇଛି ।

ନନ୍ଦିକା—କରୁଣାମୟଙ୍କର ଇଚ୍ଛାରେ ସବୁ ହୋଇପାରେ—ତାଙ୍କୁ ଧନ୍ୟବାଦ ଦିଅ ।

ସୈନ୍ୟଗଣ—ଜୟ କରୁଣାସାଗର ଜଗନ୍ନାଥଙ୍କର ଜୟ ! ( ସୈନ୍ୟମାନଙ୍କର ପ୍ରସ୍ଥାନ )

ଗୁପ୍ତଚର—ମା ! ଏଥର ଅମ୍ଭମାନଙ୍କର ଜୟ ସୁନିଶ୍ଚିତ ।

ନନ୍ଦିକା—ଯେତେ ଖାଦ୍ୟ ସଂଗ୍ରହ ହୋଇଛି, ସେଥିରେ କେତେଦିନ ଯାଇପାରେ ?

ଗୁପ୍ତଚର—ଏକ ପକ୍ଷରୁ କଦାପି କମ୍ ନୁହେ ।

ନନ୍ଦିକା—ବେଶ୍, ତା'ପରେ କି ବନ୍ଦୋବସ୍ତ ହୋଇଛି ? ତଥାପି ଯେବେ ଶତ୍ରୁ ବେଷ୍ଟନ କରି ରହେ ?

ଗୁପ୍ତଚର—ଅସମ୍ଭବ ! ସେମାନଙ୍କର ସମସ୍ତ ଖାଦ୍ୟ-ସାମଗ୍ରୀ ଯେ ଅମ୍ଭମାନଙ୍କର ହସ୍ତଗତ ?

ନନ୍ଦକା—ତେବେ ଏ' ସଂଗୃହୀତ ଖାଦ୍ୟ-ସାମଗ୍ରୀ କଣ ଶତ୍ରୁର ?

ଗୁପ୍ତଚର—ଆଜ୍ଞା, ଜେମାଦେଈ !

ନନ୍ଦକା—ତା' ହେଲେ 'ଲୁଣ୍ଠିତ' ନକହି 'ସଂଗୃହୀତ' କହୁଛ କାହିଁକି ?

ଗୁପ୍ତଚର—ମା, ଏ' କ'ଣ ଏକପ୍ରକାର କୌଶଳ ନୁହେଁ ?

ନନ୍ଦକା—କୌଶଳ ?—ଅଜ୍ଞାତସାରେ ଅପରର ଧନ ହରଣ କରି ନେବା କୌଶଳ ? ନିର୍ଦ୍ଦୟଭାବେ କ୍ଷୁଧାର୍ତ୍ତଠାରୁ ଖାଦ୍ୟ କାଢ଼ି ନେବା, କୌଶଳ ? ପଶୁଭାବେ ଅପରର ସ୍ୱାର୍ଥ ନାଶ କରି ନିଜର ସ୍ୱାର୍ଥସିଦ୍ଧି କରିବା, କୌଶଳ ?—ହା ମାନବ ! ହାୟ ତୁମ୍ଭର ସମାଜ !

ଗୁପ୍ତଚର—ଆଉ ମୁଁ ଠିଆ ହୋଇ ପାରୁ ନାହିଁ, ଜେମାଦେଈ !

ନନ୍ଦକା—ଆବଶ୍ୟକ ମଧ୍ୟ ନାହିଁ !—ହା ମାନବ !

[ ନେପଥ୍ୟେ ଶାରଦାର ଗୀତ ]

—ଗୀତ—

ସାଧେ କି ମୁଁ ହୋଇଛି ଗୋ ପାଷାଣୀ ?

[ ଗୁପ୍ତଚରର ପ୍ରସ୍ଥାନ ]

ନନ୍ଦକା—ଏହି ଜଣେ ଆସୁଛି—ପ୍ରକୃତରେ ଯେ କୋମଳାଙ୍ଗୀ, ପ୍ରକୃତରେ ଯେ କୋମଳହୃଦୟା—ଜିଘାଂସା-ପ୍ରବୃତ୍ତି ହେତୁ, ଆଜି ସେ କେତେ ଦୂର କଠିନ-ପ୍ରାଣା—କେତେଦୂର୍ କଠିନ-ହୃଦୟା !

[ ଶାରଦାର ଗୀତ ଗାଇ ଗାଇ ପ୍ରବେଶ ]

—ଗୀତ—

ସାଧେ କି ମୁଁ ହୋଇଛି ଗୋ ପାଷାଣୀ ?
ସବୁ ସୁଖ ସବୁ ଆଶା, ଦେଇଛି ଯେ ହାଣି ।
ଏ' ହୃଦୟ ଉର୍ବର କ୍ଷେତ୍ର, ସୁଶୋଭିତ ଲତା ପତ୍ର,
ହସୁଥିଲା ମନ୍ଦ ମୃଦୁ ମାଳାକାଶେ ଗୁହିଁ ଇନ୍ଦୁ,
କ୍ଷଣେ ହେଲା ଉସରତ କି ବେଗ କେଜାଣି ।

ନନ୍ଦକା—ଶାରଦା ! ଫିଙ୍ଗିଦେ ଏ' ସାଜ—ଏ' ସାଜ ତୋର ଯୋଗ୍ୟନୁହେ ।

ଶାରଦା—କାହିଁକି ନୁହେଁ, ସଖି ?

ନନ୍ଦକା—ଯେଉଁ ଉଦ୍ଦେଶ୍ୟରେ ତୁ ଧାରଣ କରିଛୁ, ତା'ର କି ଏ' ଯୋଗ୍ୟ ସାଜ ?

ଶାରଦା—ସଖି ! ଏହାହିଁ ଯୋଗ୍ୟ ସାଜ—କାରଣ ସାଜର ଉଦ୍ଦେଶ୍ୟ ଆକର୍ଷଣ କରିବା !

ନନ୍ଦକା—ତୋ'ର ଉଦ୍ଦେଶ୍ୟ କ'ଣ, ଖାଲି ଆକର୍ଷଣ କରିବା ?

ଶାରଦା—କଦାପି ନୁହେଁ—ପତଙ୍ଗକୁ ଅଗ୍ନିରେ ନିପାତିତ କରି ତିଳେ ତିଳେ ଦଗ୍ଧ କରିବା ! ଅନୁରୋଧ କରୁଛି, ସଖି ! ଥରେ ମାତ୍ର ତୁମ୍ଭର ପ୍ରଜ୍ୱଳିତ ଶିଖା ବିସ୍ତାର କର—ତୁମ୍ଭର ଦାହିକା-ଶକ୍ତି ବିକାଶ କର—ମୁଁ ତୁମ୍ଭର ଜ୍ୟୋତି-ଗୁଣ-ଗାନ କରି ପତଙ୍ଗକୁ ଭୁଲାଇ ଘେନି ଆସେଁ—ତା' ପରେ—ତା' ପରେ—ହତଭାଗ୍ୟ ମୃତ୍ୟୁଯନ୍ତ୍ରଣାରେ ଛଟ୍ ପଟ୍ କରିବାକୁ ଲାଗିବ; ଆଉ ମୁଁ, ସେ ଦୃଶ୍ୟ ଦେଖି, ଆନନ୍ଦରେ ଧେଇ ଧେଇ ହୋଇ ନାଚି ବୁଲିବି—

ନନ୍ଦକା—ଶାରଦା ! ଶାରଦା ! ତୁ ଏଡ଼େ ପିଶାଚୀ ହୋଇଛୁ !

ଶାରଦା—ସାଧେ କି ହୋଇଛି, ସଖି ? ବାଧ୍ୟରେ ! ବାଧ୍ୟରେ ! ଅନୁରୋଧ କରୁଛି, ସଖି ! ଏ' ଭାବ ମୋର ଆଉ ପରିବର୍ତ୍ତିତ କରିଦିଅ ନାହିଁ—ମୁଁ ପ୍ରତିଜ୍ଞା କରିଛି, ପିତାଙ୍କର ଅଭିଳାଷାନୁଯାୟୀ ମୋର ପିତୃ-ନିର୍ଯ୍ୟାତନର ପ୍ରତିଶୋଧ ଏହିପରି ଭାବେ ମୁଁ ସାଧନ କରିବି ।

ନନ୍ଦକା—ଏତେଦୂର ! ଅଚ୍ଛା, ଆଜି ତୋର ମନସ୍କାମନା ପୂର୍ଣ୍ଣ କରୁଛି !

ଶାରଦା—ଧନ୍ୟ ସଖି ! ଏ' ଅନୁଗ୍ରହର କି କୃତଜ୍ଞତା ଜ୍ଞାପନ କରିବି ?

ନନ୍ଦକା—କାମ ହୋଇ ନ ସରୁଣୁ ?—ଆଜି କ'ଣ ତାଙ୍କୁ ଏଠାକୁ ଆଣି ପାରିବୁ ?

ଶାରଦା—ଆଜି କାହିଁକି ? କହିଲେ, ଏହିକ୍ଷଣି ଆଣି-ପାରିବି ।

ନନ୍ଦକା—ଅଚ୍ଛା, ଯା—ଯିବାବେଳେ ତମ୍ପୋଲୁଡ଼ାକୁ ଦେଇଯିବୁ !

ଶାରଦା—ଅଚ୍ଛା । ( ସ୍ୱଗତ ) ମନ ! ଦୃଢ଼ ହୁଅ—ପ୍ରତିଶୋଧ ! ପ୍ରତି ଶୋଧ !

[ ଶାରଦାର ପ୍ରସ୍ଥାନ ]

ନନ୍ଦକା—ମାନବ ଯେତେ ହିଂସାପରାୟଣ ହେଉ—ଯେତେ ପିଶାଚ ହେଉ, ଘୃଣା କରିବା କଦାପି ଉଚିତ ନୁହେଁ । ମୋର କ୍ଷୁଦ୍ର ହୃଦୟରେ ଯେତେ ଶକ୍ତି ଅଛି, ସମସ୍ତ ପ୍ରୟୋଗ କରି ଚେଷ୍ଟା କରିବି—ମନୁଷ୍ୟ କପରି ପଶୁତ୍ୱ ବିସର୍ଜନ କରିବ, ମନୁଷ୍ୟ କପରି ପ୍ରକୃତ ମନୁଷ୍ୟ ହେବ !

[ ଚମ୍ପାର ପ୍ରବେଶ ]

ନନ୍ଦକା—ଚମ୍ପା—ଶୁଣ ! ( କାନରେ କହିବା )

ଚମ୍ପା—( ହସିବା )

ନନ୍ଦକା—ହସ'ନା—ଯା' କହୁଛି, ତା' କର ।

ଚମ୍ପା—ଯେ ଆଜ୍ଞା !

ନନ୍ଦକା—ଆଉ ଶୁଣ, ମୋର ଇଙ୍ଗିତ ମାତ୍ରେ, ତୁମ୍ଭେମାନେ ଯେପରି ଏଠାରେ ଉପସ୍ଥିତ ହେବ !

[ ଚମ୍ପାର ପ୍ରସ୍ଥାନ ]

ନନ୍ଦକା—ଚାଲ୍, ମୋର ମଧ୍ୟ ଟିକିଏ କାମ ଅଛି ।

( ନନ୍ଦକାର ପ୍ରସ୍ଥାନ )

[ଶାରଦା ଓ ସୁସଜ୍ଜିତ ହୋଇ ବୀରେନ୍ଦ୍ରର ପ୍ରବେଶ]

ଶାରଦା—ଏମିତ ଗ୍ରେରପରି ହେଉଛନ୍ତି କାହିଁକି ?

ବୀରେନ୍ଦ୍ର—ଅଜ୍ଞେ, ଅଜ୍ଞେ—ଗ୍ରେରକରିବାକୁ ଯାଉଛି, ଗ୍ରେରପରି ହେବନାହିଁ ?

ଶାରଦା—'ବିବାହ' ଅର୍ଥ କ'ଣ ଗ୍ରେର ?

ବୀରେନ୍ଦ୍ର—ପାଟି କରନା, ବୈଷ୍ଣବୀ !—ରାଜାଙ୍କ ଅଜ୍ଞାତସାରେ ପରା ଏ' କାମ ହେଉଛି ?

ଶାରଦା—ଆସ, ଚଞ୍ଚଳ ଆସ—ଯେମାଦେଈ ଯେ ଅନାଇ ଅନାଇ ବିରକ୍ତ ହେଉଥିବେ ।

ବୀରେନ୍ଦ୍ର—ତୁମେ ଟିକିଏ ଆଗ ବଢ଼ିଚାଲ୍, ଦେଖ କେହି ଜଗୁଆଳୀ ଅଛି କି ନାହିଁ ।

ଶାରଦା—ଆପଣ କ'ଣ ମତେ ମୂର୍ଖ ମନେ କରୁଛନ୍ତି ?

ବୀରେନ୍ଦ୍ର—ଅସମ୍ଭବ—ତୁମ୍ଭେ ସ୍ୱତନ୍ତ୍ରବୁଦ୍ଧିହୋଇ ନଥିଲେ କି ଯୁଗଳ-ମିଳନ ଏତେ ସହଜରେ ଘଟୁଥାନ୍ତା ?—ତେବେ ଜାଣତ ବୈଷ୍ଣବ ! ଏହି କାନ୍ଥ ପଥର ଗୁଡ଼ାକର ମଧ୍ୟ କାନ ଅଛି ! ରାଜା ଯେବେ ଘୁଣାକ୍ଷରରେ ଏ'କଥା ଜାଣି ପାରନ୍ତି, ତେବେ ତୁମ୍ଭର ଆଉ ମୋ'ର ଦଶା ଯେ କ'ଣ ହେବ ତା' ଟିକିଏ ଭାବୁଛ କି ?

ଶାରଦା—( ସ୍ୱଗତ ) ତୋ'ର ପ୍ରାଣନାଶ—ମୋର ପ୍ରତିହିଂସା ସାଧନ ।

[ ନନ୍ଦକାର ସୁସଜ୍ଜିତା ହୋଇ ପ୍ରବେଶ ]

ନନ୍ଦକା—ଦୂତ ! ଏତେ ବିଳମ୍ବ କଲ କାହିଁକି ?—ମୁଁ ଯେ ରସ-ରାଜଙ୍କର ବିରହ-ଜ୍ୱାଳା ଆଦୌ ସହି ପାରୁନାହିଁ ?

ବୀରେନ୍ଦ୍ର—କ୍ଷମାକର, କ୍ଷମାକର ସୁନ୍ଦରୀ ! ଅଧମ କିଙ୍କର ଯେ ତୁମ୍ଭର ସେବାରେ ସଦା ନିଯୁକ୍ତ !

[ ବୀରେନ୍ଦ୍ର ଅବନତ ହେବା ]

ନନ୍ଦକା—ବୈଷ୍ଣବ ! ମୋର ଆଜ ଆନନ୍ଦର ଦିନ—ଏ'ପରି ଦିନରେ କାହାରିକୁ ମଳିନ ବେଶରେ ଦେଖିବା ଉଚିତ ନୁହେଁ ।

ବୀରେନ୍ଦ୍ର—ନିଶ୍ଚୟ ନୁହେଁ ।

ନନ୍ଦକା—ଚମ୍ପା !

[ ଚମ୍ପାର ପ୍ରବେଶ ]

ଚମ୍ପା—କେମାଦେଈ !

ନନ୍ଦକା—ଯା, ବୈଷ୍ଣବୀକୁ ନେଇ ଯା—ବେଶ୍ ଭଲକରି ସଜାଇ ନେଇ ଆ' ।

ଶାରଦା—ଜେମାଦେଈ ! ଏ' ବୈଷ୍ଣବୀଟାକୁ ସଜାଇବାର କି ପ୍ରୟୋଜନ ?

ନନ୍ଦକା—ଖୁବ୍ ପ୍ରୟୋଜନ ଅଛି, ବୈଷ୍ଣବ ! କୁହ ପ୍ରେମ-ରାଜ, ଯେଉଁ ବୈଷ୍ଣବୀ ଯୋଗୁଁ ଆଜ ପ୍ରେମିକ ପ୍ରେମିକାର ମିଳନ ସମ୍ଭବ ହୋଇଛି—ତାଙ୍କୁ କ'ଣ ଏ'ପରି ଦୀନ ମଳିନ ବେଶରେ ଦେଖିବା ଉଚିତ ?

ବୀରେନ୍ଦ୍ର—କଦାପି ନୁହେଁ—ଯାଅ ବୈଷ୍ଣବ ! ମୋର ମଧ୍ୟ ସେହି ଅନୁରୋଧ—ଅବହେଳା କରନାହିଁ !

ଶାରଦା—(ଏକାନ୍ତେ ନନ୍ଦକାକୁ) ହାତଧରି ଅନୁରୋଧ କରୁଛି, ସହି ! ପ୍ରତିଶୋଧ ନେବାକୁ ଯେପରି

ଭୁଲି ନ ଯାଅ—ପ୍ରହରୀମାନଙ୍କୁ ଖବର ଦିଅ ହୋଇଛି—ନା ମୁଁ ଦେବି ?

ନନ୍ଦିକା—( ଏକାନ୍ତେ ବିରକ୍ତିସହ ) ତୁ ଯା'ନା !

ଶାରଦା—( ଏକାନ୍ତେ ) ଯାଉଛି ! ( ସ୍ୱଗତ ) ମୋର ଏ' ବେଶରେ ଆଉ କି ପ୍ରୟୋଜନ ? ବରଂ ଯେଉଁ ବେଶରେ ମୋତେ ଦେଖିଲେ ନରାଧମର ଦଣ୍ଡ ଯନ୍ତ୍ରଣା ଅଧିକ ବର୍ଦ୍ଧିତ ହେବ, ସେହି ବେଶ ଧାରଣ କରିବାହିଁ ଶ୍ରେୟସ୍କର—କିନ୍ତୁ, ଓଃ ! ମନ ! ଦୃଢ଼ ହୁଅ !

[ ଚମ୍ପାସହ ପ୍ରସ୍ଥାନ ]

ନନ୍ଦିକା—ସେନାପତେ ! ତୁମ୍ଭେ କି'ଣ ପ୍ରକୃତରେ ମୋତେ ଭଲପାଅ ?

ବୀରେନ୍ଦ୍ର—ଏଥିରେ ପୁଣି ସନ୍ଦେହ ଅଛି, ସୁନ୍ଦରୀ ?

ନନ୍ଦିକା—ତୁମେ ଯଦି ମୋତେ ବିବାହ କର, ପୁଣି ତା'ର ପରି କର ?

ବୀରେନ୍ଦ୍ର—କା'ପରି ?

ନନ୍ଦିକା—ଭୁଲିକି ଗଲ, ଯା'କୁ ପିଲାଦିନୁ ଭଲପାଉଥିଲ—ଗାନ୍ଧର୍ବ ମତେ ବିବାହ କରିଥିଲ ?

ବୀରେନ୍ଦ୍ର—( ସଭୟେ ) ମୁଁ—ବି-ବା-ହ କରିଥିଲି ?

ନନ୍ଦିକା—ଦାଈ ଆଗରେ ପେଟ ଲୁଚାଇଲେ କି'ଣ ହେବ ? ତୁମେ କି'ଣ ଜାଣ ନାହିଁ, ସେ ମୋର ପ୍ରାଣର ସହଚରୀ ଥିଲା ?

ବୀରେନ୍ଦ୍ର—ସେ ନିଶ୍ଚୟ ମିଛ କହିଛି, ସୁନ୍ଦରି !—ମୁଁ ରାଜକେମାର ପ୍ରଣୟପ୍ରାର୍ଥୀ, ଏହି ହିଂସାରେ ସେ ସେପରି କହିଥିବ ।

ନନ୍ଦିକା—ତେବେ କଣ ସେ ମିଥ୍ୟାବାଦିନୀ ?

ବୀରେନ୍ଦ୍ର—ନିଶ୍ଚୟ ମିଥ୍ୟାବାଦିନୀ, ସୁନ୍ଦରି !

ଶାରଦା—( ନେପଥ୍ୟେ ) ମୋ ସମ୍ମୁଖରେ ମୋତେ ମିଥ୍ୟାବାଦିନୀ କହିବାକୁ ସାହସ କରୁଛୁ ନରାଧମ ?

ବୀରେନ୍ଦ୍ର—ଏ' କା'ର କଣ୍ଠସ୍ୱର !

ନନ୍ଦିକା—କା'ର କଣ୍ଠସ୍ୱର ପରି ବୋଧ ହେଉଛି ?

ବୀରେନ୍ଦ୍ର—ଏ'ଯେ ଶାରଦାର କଣ୍ଠସ୍ୱର ପରି ବୋଧ-ହେଉଛି ! ( ଅର୍ଦ୍ଧ ସ୍ୱଗତ ) ସେ ଏଠାକୁ କିପରି ଆସିଲା ? ସେ କି ମୃତ ?—ଏ'କି ତାର ପ୍ରେତାତ୍ମାର କଣ୍ଠସ୍ୱର ?

ନନ୍ଦିକା—ବୁଦ୍ଧିପାଉଛତ, ସେନାପତେ ?—ତୁମ୍ଭେ ଠିକ୍ ଠିକ୍ କୁହ, ନହେଲେ ଘୋର ବିପଦରେ ପଡ଼ିବ ।

ବୀରେନ୍ଦ୍ର—ସୁନ୍ଦରି ! ସୁନ୍ଦରି ! ଏହି ସୌନ୍ଦର୍ଯ୍ୟ-ଲାଳସାରେ ବୀରେନ୍ଦ୍ର ଆଜି ପତ୍ନୀ-ତ୍ୟାଗୀ ହୋଇଛି—ଆଶ୍ରୟଦାତାର ଜୀବନ୍ମୃତ୍ୟୁର କାରଣ ହୋଇଛି—କେମାଦେଈଙ୍କର ବିବାହ-ପଥରେ କଣ୍ଟକ ହୋଇଛି ।

ନନ୍ଦିକା—ଏହି ନଶ୍ୱର କ୍ଷଣସ୍ଥାୟୀ ପାର୍ଥିବ, ବିକୃତ ଶରୀର ଲୋଭରେ ବୀରେନ୍ଦ୍ର ପରି ବୀର ଆଜି ଏତେଦୂର ଘୃଣ୍ୟ, ଜଘନ୍ୟ କାର୍ଯ୍ୟ କରୁଛି ?

ବୀରେନ୍ଦ୍ର—ଜାଣେ ନାହିଁ ସୁନ୍ଦରି ! ସେ ସୌନ୍ଦର୍ଯ୍ୟରେ କି ଉନ୍ମାଦନା ଅଛି !

ନନ୍ଦିକା—ଏ' ସୌନ୍ଦର୍ଯ୍ୟର ଉନ୍ମାଦନା ନୁହେଁ ମୂର୍ଖ ! ଏ' ତୋର କାମ-ଚକ୍ଷୁର ଉନ୍ମାଦନା—ତୋ'ର ବିଭବ-ଲାଳସାର ଉନ୍ମାଦନା ।

ବୀରେନ୍ଦ୍ର—ନା, ସୁନ୍ଦରି ! ଏ'ମୋର ହୃଦୟର ଉନ୍ମାଦନା ।

ନନ୍ଦିକା—ହୃଦୟର ଉନ୍ମାଦନା ? ତେବେ ଆସ, ମୋତେ ଆଲିଙ୍ଗନ କର ।

[ ନନ୍ଦିକା ଦ୍ୱାରକୁ ଘୁଞ୍ଚିଯାଉଥିବା ଓ ବୀରେନ୍ଦ୍ର ଅଗ୍ରସର ହେଉଥିବା, ଶେଷେ ନନ୍ଦିକା କଙ୍କାଳ-ମୂର୍ତ୍ତିରେ ପରିଣତ ହେବା ଓ ବୀରେନ୍ଦ୍ର ନିରସ୍ତ ହେବା ]

ନିରସ୍ତ ହେଲ କାହିଁକି ? ମୁଁ ତ ସେହି ସୁନ୍ଦରୀ—ମୁଁ ତ ସେହି ଚିର-ବାଞ୍ଛିତା ତୁମର—ଯା'ଲାଗି ସ୍ତ୍ରୀକୁ ତ୍ୟାଗ କରିଛ—ପିତୃତୁଲ୍ୟ ଆଶ୍ରୟଦାତାଙ୍କୁ ନିର୍ବାସିତ କରିଛ—ସ୍ୱ-ରାଜ୍ୟର ସର୍ବନାଶ ସାଧନ କରିଛ ।

ବୀରେନ୍ଦ୍ର—ଏହି କି ସେହି ସୌନ୍ଦର୍ଯ୍ୟ, ଯା'ର ପ୍ରଲୋଭନରେ ମୁଁ ଏତେଦୂର କାର୍ଯ୍ୟ କରୁଛି ?—ଏ'ଯେ ଆବରଣ ମାତ୍ର ! ତେବେ ସୌନ୍ଦର୍ଯ୍ୟ,

କୁତ୍ସିତତା ମଧ୍ୟରେ ପ୍ରଭେଦ କେଉଁଠି, ଉଭୟର
ମୂଳବସ୍ତୁ ଯେତେବେଳେ ଏହି ସ୍ଥୂଳ କଙ୍କାଳ-
ମୂର୍ତ୍ତି ? ( ବିସ୍ମୟ ନେତ୍ରରେ ଚାହିଁ ରହିବା )

ନନ୍ଦିକା—ରାଜ୍ୟର ଲୋଭ ଯେବେ କରିଥାଅ
ସେନାପତେ—ଅର୍ଥର ଲୋଭ ମଧ୍ୟ କରିଥାଅ,
ତେବେ ଏହି ମୋହ ଯବନିକା ଉଠାଇ ଦେଉଛି,
ଏହାର ଅପର ପାର୍ଶ୍ୱକୁ ଥରେ ଅବଲୋକନକର ।

[ପଞ୍ଚ ପରିବର୍ତ୍ତିତ, ଶ୍ମଶାନ ଦୃଶ୍ୟ-ଏକସ୍ଥାନରେ
ଗୋଟିଏ ଦରିଦ୍ର ଓ ଗୋଟିଏ ଧନୀର ଶବ ଦେହ
ରକ୍ଷିତ ]

ବୀରେନ୍ଦ୍ର—ଏ' କ'ଣ ଦେଖୁଛି ?—ଏହି କି ଧନର
ପରିଣାମ ? ମୃତ୍ୟୁପରେ ଧନୀ-ଦରିଦ୍ର ଏକ-
ଶଯ୍ୟାରେ ଶାୟିତ ।

ନନ୍ଦିକା—ଏ ଶ୍ମଶାନ କ୍ଷେତ୍ର, ଭାଇ ପବିତ୍ର କ୍ଷେତ୍ର,
ସେନାପତେ ! ଏଠାରେ ଧନୀ-ଦରିଦ୍ର ମଧ୍ୟରେ
ପାର୍ଥକ୍ୟ ନାହିଁ—ସୁଖୀ-ଦୁଃଖୀ ମଧ୍ୟରେ ପ୍ରଭେଦ
ନାହିଁ—କ୍ଷୁଦ୍ର-ବୃହତ, ଉଚ୍ଚ-ନୀଚ, ସମସ୍ତେ
ସମାନ ।

ବୀରେନ୍ଦ୍ର—ଜେମାଦେଈ ! ଜେମା ଦେଈ ! ଆଜ କି
ନୂତନ ଦୃଶ୍ୟ ଦେଖାଇଲେ ? କି ନୂତନ ଭାବ
ଜଗାଇ ଦେଲେ ? କହନ୍ତୁ ଜେମାଦେଈ ! ସ୍ତ୍ରୀର
ପ୍ରକୃତ ସୌନ୍ଦର୍ଯ୍ୟ କେଉଁଠାରେ ?—ଏ'
ସଂସାରରେ ପ୍ରକୃତ ସମ୍ପଦ କେଉଁ ବସ୍ତୁ ?

ନନ୍ଦିକା—ପ୍ରକୃତ ସମ୍ପଦ—ତୃପ୍ତି, ଶାନ୍ତି ! ସ୍ତ୍ରୀର ପ୍ରକୃତ
ସୌନ୍ଦର୍ଯ୍ୟ—ଶାରଦାକୁ ସ୍ମରଣ କର, ତା'ର
ସରଳତା ଓ ସରଳ ବିଶ୍ୱାସ ବିଷୟ ଥରେ
ଚିନ୍ତାକର—ଆହୁରି ମଧ୍ୟ ବୈଷ୍ଣବୀର ଅକ୍ଳାନ୍ତ ଓ
ନିଃସ୍ୱାର୍ଥ ସେବା ଶୁଶ୍ରୂଷା ବିଷୟ ଥରେ ଭାବି
ଦେଖ, ସଂପୂର୍ଣ୍ଣ ଭାବେ ଉପଲବ୍ଧି କରି
ପାରିବ ।

[ ପରିବର୍ତ୍ତିତ ପଟର ପତନ ଓ ନନ୍ଦିକାର ପୂର୍ବ
ବେଶରେ ଆଗମନ ]

ବୀରେନ୍ଦ୍ର—ଓଃ, ଶାରଦା ! ଶାରଦା ! ଏ' ନରାଧମ
କରିଛି କ'ଣ ? ଓଃ ! ( ସ୍ୱଗତ ) କି ବୃଶ୍ଚିକ-
ଦଂଶନ ଅନୁଭବ କରୁଛି—ଓଃ ।

ନନ୍ଦିକା—ଆଜି ଭାବିଲେ ହେବ କ'ଣ ? ଯା' କରିଛ,
ତା'ର ଫଳ ଏବେ ଭୋଗ କର ।

ବୀରେନ୍ଦ୍ର—ଜାଣେନାହିଁ, ଜେମାଦେଈ ! ଏ'ପାପ-
ଜୀବନରେ ଆଉ କି ଯନ୍ତ୍ରଣା ଲେଖିତ ଅଛି—କି
ଫଳଭୋଗ ନିର୍ଦ୍ଦିଷ୍ଟ ଅଛି ?

ନନ୍ଦିକା—ଯା' ତୁମର ସ୍ତ୍ରୀର ପ୍ରତି କରିଛ ବା ଯା'
ତୁମର ଆଶ୍ରୟ ଦାତାଙ୍କ ପ୍ରତି କରିଛ ତାର ଫଳ
ଭୋଗିତ କରିବ—ମାତ୍ର ରାଜଜେମା ପ୍ରତି
ବର୍ତ୍ତମାନ ଯେଉଁ ଅବୈଧ-ଚରଣ କରିଛ, ତାର
ଫଳ-ଭୋଗ କ'ଣ, କିଛି ଭାବୁଛ କି ?

ବୀରେନ୍ଦ୍ର—ଭାବୁଛି ଜେମାଦେଈ ! ରାତ୍ରିରେ,
ଗୋପନରେ ରାଜାନ୍ତଃପୁରରେ ପ୍ରବେଶ—ଜେମାଙ୍କ
ସହିତ ନିର୍ଜନ ସାକ୍ଷାତ୍, ତାର ଫଳଭୋଗ—
ମୃତ୍ୟୁ ।

ନନ୍ଦିକା—ସେ ଦଣ୍ଡ ଗ୍ରହଣ କରିବାକୁ ତୁମ୍ଭେ ତେବେ
ପ୍ରସ୍ତୁତ ?

ବୀରେନ୍ଦ୍ର—ନିଶ୍ଚୟ ପ୍ରସ୍ତୁତ, ଜେମାଦେଈ ! ମୋର
ଦୋଷର ଗୁରୁତ୍ୱ ତୁଳନାରେ ଏ' ଶାସ୍ତି କିମ୍ବିତ୍କର
ମାତ୍ର ।

ନନ୍ଦିକା—ମୁଁ କିନ୍ତୁ ଏହାଠାରୁ କଠିନତର ଶାସ୍ତି
ଦେବି, ସେନାପତେ ।

ବୀରେନ୍ଦ୍ର—ଦିଅନ୍ତୁ ଜେମାଦେଈ ! ଯେତେହିଁର
କଠିନତର ଶାସ୍ତି ଆପଣ ଉଦ୍ଭାବନ କରିପାରନ୍ତି
—ତଥାପି ଏ' ନରାଧମର ଅପରାଧ ନିଶ୍ଚୟ
ଗୁରୁତର ହେବ ।

ନନ୍ଦିକା—[illegible]ଏ ଅଛ, ବାନ୍ଧ ଏହି ନରାଧମକୁ ।
( ଦୁଇଜଣ ସୈନିକଙ୍କର ସହିତ ପ୍ରବେଶ ଓ
ବୀରେନ୍ଦ୍ରକୁ ବନ୍ଧନ ) ସେ ଦୁଷ୍ଟା ବୈଷ୍ଣବୀ କେଉଁ-
ଆଡ଼େ ଗଲା ? ତାକୁ ମଧ୍ୟ ବାନ୍ଧି ନେଇଆସ

[ ଓଢ଼ଣା ଦେଇଥିବା ଶାରଦାକୁ ଘେନି ଦୁଇଜଣ ସଖୀର ପ୍ରବେଶ ]

ବୀରେନ୍ଦ୍ର—ବୈଷ୍ଣବୀକୁ କ୍ଷମାକରନ୍ତୁ, ଜେମାଦେଈ—ସେ ନିର୍ଦ୍ଦୋଷ—

ନନ୍ଦକା—ଚୁପକର । ଉଭୟେ ଦୋଷୀ—ଉଭୟଙ୍କୁ ଏକତ୍ର ବାନ୍ଧି ସମୁଚିତ ଶାସ୍ତି ଦେବାକୁ ହେବ ।

ଶାରଦା—ସହି । ସହି ।—ଦଅ, ଦଅ ସହି । ଏ ଅଭାଗୀର ମଧ୍ୟ ସମସ୍ତ ଅଶାନ୍ତି ଦୂର କରିଦଅ ।

ବୀରେନ୍ଦ୍ର—ଏ'ଯେ ଶାରଦା ।—ଶାରଦା । ଶାରଦା । ( ଅଗ୍ରସର ହେବା )

ନନ୍ଦକା—ସ୍ଥିର ହୁଅ—ମୁଁ ଆଗେ ଦଣ୍ଡ ଦେଇ ସାରେ । ( ମାଳା ବଦଳାଇବା )

ବୀରେନ୍ଦ୍ର—( ଅବନତ ହୋଇ ) ଦେବି । ଦେବି କ୍ଷମାକର, କ୍ଷମାକର ।

ନନ୍ଦକା—( ଉଠାଇ ) ଏ' ପ୍ରାର୍ଥନା ଯା'ଙ୍କୁ କରିବା ଉଚିତ, ତା'ଙ୍କୁ କର, ସେନାପତେ ।

ବୀରେନ୍ଦ୍ର—ଠିକ୍ କହୁଛନ୍ତି, ଜେମାଦେଈ :—ଶାରଦା । ପ୍ରିୟେ ।—

ଶାରଦା—ପ୍ରାଣେଶ୍ୱର । ( ଆଲିଙ୍ଗନ କରିବା )

ବୀରେନ୍ଦ୍ର—କୁହ ପ୍ରିୟେ । ତୁମର ଆଉ କ୍ରୋଧ ନାହିଁତ ? ମୂର୍ଖ ସ୍ୱାମିକୁ ତୁମ୍ଭେ କ୍ଷମା କରିଛତ ?

ଶାରଦା—( ଗଦ ଗଦ ସ୍ୱରେ ) ଏ' ଦାସୀକୁ କ୍ଷମାକର, ପ୍ରଭୋ । ( ପଦଧୂଳି ନେଇ ) ଆସ ପ୍ରଭୋ । ଯେ କି ଉଭୟଙ୍କୁ କ୍ଷମା କରି ପାରିବେ, ତାଙ୍କର ଚରଣ ବନ୍ଦନା କରିବା ଆସ । ( ଉଭୟେ ଅବନତ ହେବା )

ନନ୍ଦକା—( ଉଠାଇ ) ଛି ସହି । ଯେ କି ସମସ୍ତଙ୍କୁ କ୍ଷମା କରିପାରନ୍ତି, ତାଙ୍କୁ ପ୍ରାର୍ଥନା କରିବା ଚାଲ ।

ସମସ୍ତେ—ଜୟ ମଙ୍ଗଳମୟ ପରମେଶ୍ୱରଙ୍କର ଜୟ ।

ଶାରଦା—( ସ୍ୱଗତ ) ହା ପିତଃ, କାହିଁ ତୁମ୍ଭେ ?

ନନ୍ଦକା—ଗାଅ ସଖୀଗଣ— ( ନନ୍ଦକାର ପ୍ରସ୍ଥାନ )

ସଖୀଗଣ— ଗୀତ

ଆଜି, କୋମଳେ ମଧୁରେ, ଆଲୋକେ ସ୍ୱରରେ
ଡାକୁଛି ମଙ୍ଗଳ ଗାନ ।
ଆଜି, ସଘନେ ଗଗନେ, ପବନେ ଭୁବନେ
ଉଠୁଛି ସେ ଗୀତ ତାନ ।
ଅନ୍ତଃ ସଲିଳା ଆଜି, ବରଷା ପ୍ରବାହେ ମଜ୍ଜି
ଲଙ୍ଘି ପର୍ବତରାଜି, ନାଚୁଛି ଧାଉଁଛି ସାଗର ସଙ୍ଗେ
ମିଶାଇଦେବ ତା' ପ୍ରାଣ ।
ବାହୁ ପ୍ରସାରି ନାଗର, ନାଗରୀ ଧରିବ କରେ କର
ଚୁମ୍ବନ ଭଙ୍ଗେ, ରଞ୍ଜିତ ରଙ୍ଗେ ହେଲା
ଆଜି ପ୍ରାଣେ ପ୍ରାଣ ଦାନ ।

[ ସଖୀମାନଙ୍କର ପ୍ରସ୍ଥାନ ଓ ନନ୍ଦକାର ପତ୍ର ହସ୍ତେ ପ୍ରବେଶ ]

ନନ୍ଦକା—ସେନାପତେ । ଭାରି ଦୁଃସମ୍ବାଦ । ବାସୁଦେବ ମନ୍ତ୍ରୀ ମୃତ୍ୟୁ ମୁଖରେ—ଥରେ ସେ ଆମ୍ଭମାନଙ୍କୁ ଦେଖିବାକୁ ଚାହାନ୍ତି; ମୋତେ ଓ ଶାରଦାକୁ ଲେଖିଛନ୍ତି—ତଥାପି, ତୁମ୍ଭଙ୍କୁ ଯିବାକୁ ହେବ—ବର୍ତ୍ତମାନ ମାନ ଅଭିମାନର ସମୟ ନୁହେଁ, ଆସ ଦେଖିବା କିପରି ସେ ରକ୍ଷା ପାଇବେ ।

ବୀରେନ୍ଦ୍ର—ଆଶ୍ରୟଦାତାଙ୍କୁ କ'ଣ ରକ୍ଷାକରି ପାରିବି ? ଏତେ ସୌଭାଗ୍ୟ ହେବ ମୋର ? ଆସନ୍ତୁ ଶୀଘ୍ର, ଜେମାଦେଈ । ( ବେଗେ ପ୍ରସ୍ଥାନ )

ଶାରଦା—ପିତା । ପିତା ।

ନନ୍ଦକା—ବ୍ୟସ୍ତ ହ'ନା ସହି । ନିଜର ଉପଦେଶ ନିଜେ ପାଳନ କର । ( ଉଭୟଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ଶିବିରସ୍ଥ କାରାଗାର—

[ ବାସୁଦେବ ଏକାକୀ ]

ବାସୁଦେବ—ବିଚିତ୍ର ବିଧାନ ତୋ'ର, ବିଧି । ପାପ ଉଦ୍ଦେଶ୍ୟ ସାଧନର ପଥ ଯେତିକି ସରଳ ଓ ସୁଗମ କରି ଦେଉ, ସାଧୁ ଉଦ୍ଦେଶ୍ୟ ସାଧନର ପଥ ସେତିକି ବନ୍ଦ ଓ ଦୁର୍ଗମ କରି ଦେଉ ।

ବୀରେନ୍ଦ୍ର ଅନାୟାସେ ତା'ର ପାପ କାର୍ଯ୍ୟ ସମ୍ପନ୍ନ କରି ପାରିଲା—ରାଜାମାନେ ଅକାରଣେ ଲକ୍ଷ ଲକ୍ଷ ଲୋକର ପ୍ରାଣନାଶ କରିପାରିଲେ—ଆଉ ମୁଁ ନିଜକୁ ବିପନ୍ନକରି ସୁଦ୍ଧା ଗୋଟିଏ ମାତ୍ର ପ୍ରାଣ ରକ୍ଷାକରି ପାରିଲି ନାହିଁ, ଶତ ଚେଷ୍ଟା କରି ସୁଦ୍ଧା ସତ୍‌କାର୍ଯ୍ୟ ସାଧନ ପଥରେ ପଦେ ମାତ୍ର ଅଗ୍ରସର ହୋଇ ପାରିଲି ନାହିଁ । ଛାଡ଼, ବର୍ତ୍ତମାନ ଉପାୟ କ'ଣ ? ରାଜାଙ୍କର ଯେପରି ଭାବ ଦେଖୁଛି, ସେଥିରେ ମୋର ପ୍ରାଣ ନାଶର ଆଦେଶ ଦେବା ମଧ୍ୟ ତାଙ୍କ ପକ୍ଷେ ବିଚିତ୍ର ନୁହେଁ; ମାତ୍ର ମୃତ୍ୟୁ ପୂର୍ବରୁ କ'ଣ ମୋର ଉଦ୍ଦେଶ୍ୟ ସଫଳ କରି-ପାରିବିନାହିଁ ?—କିପରି ପାରିବି ? ସହାୟ ଶୂନ୍ୟ, ଏକା କିପରି ପାରିବି ? ଯେଉଁ ଶାରଦାକୁ ମୋର ପ୍ରଧାନ ସହାୟ ମନେ କରିଥିଲି—ସେତ ଏ ପର୍ଯ୍ୟନ୍ତ ସାମାନ୍ୟ ପ୍ରତିଶୋଧ କାର୍ଯ୍ୟଟିକ ସାଧନ କରି ପାରିଲା ନାହିଁ, ଗୋଟାଏ ପ୍ରଧାନ ଅନ୍ତରାୟ ଅଦ୍ୟାପି ଦୂରୀଭୂତ ହୋଇ ପାରିଲା ନାହିଁ । ବିଶ୍ୱାସଘାତକଟା ଆଜି ପ୍ରାଣରୁ ହେଉ ବା ରାଜ୍ୟରୁ ହେଉ ନିର୍ବାସିତ ହୋଇଥିଲେ, ମୁଁ ନିଃଶଙ୍କଭାବେ ଗୁପ୍ତବେଶ ଧାରଣ ପୂର୍ବକ ଏ ରାଜ୍ୟ ମଧ୍ୟରେ ଅବସ୍ଥାନ କରିପାରିଥାନ୍ତି ଓ ମୋର କାର୍ଯ୍ୟୋଦ୍ଧାର ଅତି ସହଜରେ ହୋଇ ଯାଇଥାନ୍ତା—ଶତ୍ରୁ ଶିବିରରେ ଏପରି ଭାବେ ପ୍ରବେଶ କରି ଏ ଲାଞ୍ଛନା ଆଜି କଦାପି ମୋତେ ଭୋଗ କରିବାକୁ ପଡ଼ି ନ ଥାନ୍ତା—ଓଃ ! ଜଣକର କୃତଘ୍ନତା ଓ ବିଶ୍ୱାସଘାତକତାରେ ଅପରର କି ସର୍ବନାଶ ହୋଇପାରେ ! ସମଗ୍ର ରାଜ୍ୟର କି ଅନିଷ୍ଟ ଘଟିପାରେ !

[ ବୀରେନ୍ଦ୍ର ଓ ଦୂତର ପ୍ରବେଶ ]

ବୀରେନ୍ଦ୍ର—କାହାନ୍ତି, ପିତା ?

ଦୂତ—ଏହି ଯେ, ସେନାପତେ !

ବାସୁଦେବ—ଏ' କିଏ ?

ବୀରେନ୍ଦ୍ର—ରକ୍ଷିମାନେ କେହି କେଉଁ ଉଠିବେ ନାହିଁ ତ ?

ଦୂତ—କିଛି ଭୟ କରିବେ ନାହିଁ, ସେନାପତେ ! ମୁଁ ଭାଙ୍ଗରେ ଧୂତୁରାମଞ୍ଜି ମିଶାଇ ଦେଇ ସମସ୍ତଙ୍କୁ ବେହୋସ କରି ଦେଇଛି ।

ବୀରେନ୍ଦ୍ର—ଶୁଙ୍ଖଳ ? ଚାବିଟା ?

ଦୂତ—ଏହି ନିଅନ୍ତୁ, ସେନାପତେ !

ବାସୁଦେବ—ଏ'ଯେ, ସେହି କୃତଘ୍ନ—ନରାଧମ !

ବୀରେନ୍ଦ୍ର—ଆଉ ଦେଖ, ସେମାନଙ୍କୁ ନିଃଶବ୍ଦରେ ଆସିବାକୁ କହିଦେବୁ ।

ଦୂତ—ଯେ ଆଜ୍ଞା । ( ପ୍ରସ୍ଥାନୋଦ୍ୟତ )

ବାସୁଦେବ—ଦୂତ ! ଦୂତ ! ମୁଁ କାହାକୁ ପତ୍ର ଦେଇଥିଲି—ଆଉ ତୁ କେଉଁ ପିଶାଚକୁ ସଙ୍ଗରେ ଘେନି ଆସିଛୁ ?

ଦୂତ—ମନ୍ତ୍ରୀ ମହାଶୟ !

ବାସୁଦେବ—ଚୁପ୍‌କର, ନରାଧମ !—ମୁଁ ସମସ୍ତ ବୁଝିଛି, ଏ ସଂସାର କେବଳ ବିଶ୍ୱାସଘାତକତାର କ୍ଷେତ୍ର ।

ଦୂତ—ସେନାପତେ !

ବୀରେନ୍ଦ୍ର—ଯା ତୁ ଦୂତ । ମୁଁ ତାଙ୍କୁ ସମସ୍ତ ବୁଝାଇ ଦେଉଛି—ତେଣେ ଯେ ସାମାନ୍ୟ ଅସାବଧାନତାରେ ମହତ ବିପଦର ଆଶଙ୍କା । (ଦୂତର ପ୍ରସ୍ଥାନ) ପିତା ! ପିତା !

ବାସୁଦେବ—'ପିତା' ! ଗୋଟାଏ ନୂତନ ଚକ୍ରାନ୍ତ ତୋ'ର ବିଶ୍ୱାସଘାତକ, ନା ?

ବୀରେନ୍ଦ୍ର—ଚକ୍ରାନ୍ତ ନୁହେଁ, ପିତା—ଅଧମ ପୁତ୍ରକୁ କ୍ଷମାକରନ୍ତୁ ।

ବାସୁଦେବ—ସିଂହ ତୋର କପାଳକୁ ଶକ୍ତିଶୂନ୍ୟ, ଶୃଗାଳ—ନଚେତ୍ 'ପିତା' 'କ୍ଷମା' ବୋଲି ପରିହାସ କରିବା ପୂର୍ବରୁ, ଜିହ୍ୱା ତୋର କଣ୍ଠ ଦେଶରୁ ଉତ୍ପାଟିତ ହୋଇ ପାରନ୍ତାଣି—ଦେହ ତୋର କୁକ୍କୁର ଶୃଗାଳର ଭୋଜ୍ୟସାମଗ୍ରୀ ହୋଇ ସାରନ୍ତାଣି ।

ବୀରେନ୍ଦ୍ର—ମୋର ପାପର ଗୁରୁତ୍ୱ ତୁଳନାରେ, ଏ ଶାସ୍ତି ଯେ ଅତି ଲଘୁ, ପିତଃ ! ଯେବେ ଏପରି ଲଘୁ-ଶାସ୍ତିରେ ମୋର ପାପ-କଳଙ୍କ ଧୌତ

ହୋଇପାରେ, ତେବେ ଏହିକ୍ଷଣି ସେ ଶାସ୍ତି ଦାନ କରନ୍ତୁ, ପିତଃ ।

ବାସୁଦେବ—ଅସହ୍ୟ । ଏତେଦୂର ବ୍ୟଙ୍ଗ ଅସହ୍ୟ । ମନ ହେଉଛି, ଏହି ଲୌହଦଣ୍ଡ ସବୁ ମସ୍ତକ୍ୟା-ଘାତରେ ଖଣ୍ଡ-ବିଖଣ୍ଡ କରିଦେଇ, ପଦାଘାତରେ ନରାଧମର ଅସ୍ଥିସମୂହ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦିଅନ୍ତୁ ।

ବୀରେନ୍ଦ୍ର—ତାହାହିଁ କରନ୍ତୁ, ପିତଃ । ଅଧୁର ମଧ୍ୟ ଲୌହଦଣ୍ଡ ଉପରେ ବୃଥା ଶକ୍ତିକ୍ଷୟ ନ କରି—ସମସ୍ତ ଶକ୍ତି ଏ ନରାଧମ ଉପରେ ପ୍ରୟୋଗ କରନ୍ତୁ, ପିତଃ ।

( ବାସୁଦେବ ଚେଷ୍ଟକପାଳିତ ନୟନରେ ଗୃହିଁ ରହିବା ଓ ବୀରେନ୍ଦ୍ର ଧୀରେ ଧୀରେ ଯାଇ କାରାଦ୍ୱାର ଉନ୍ମୁକ୍ତ କରିଦେବା )

ଏବେ ଯଥା-ଶାସ୍ତି ଦିଅନ୍ତୁ ପିତଃ । ( ଅଣ୍ଟୁମାଡ଼ି ବସିବା । ବାସୁଦେବ ଅଷ୍ଟର୍ଯଭାବେ ଗୃହିଁ ଠିଆ ହେବା )

[ ନନ୍ଦକା ଓ ଶାରଦାର ପ୍ରବେଶ ]

ନନ୍ଦକା—ଦିଅ ଏବେ ଉପଯୁକ୍ତ ଶାସ୍ତି, ମନ୍ତ୍ରୀଭାଇ ।

ବାସୁଦେବ—ଏ କ'ଣ ଦେଖୁଛି, କେମାଦେଈ ? ଏହି କି ସେହି ବୀରେନ୍ଦ୍ର ?

ନନ୍ଦକା—ହଁ ଭାଇ, ଏହି ସେହି ବୀରେନ୍ଦ୍ର—ତୁମ୍ଭର ପୁତ୍ରାଧିକ ଲାଳିତ-ପାଳିତ ସେହି ବୀରେନ୍ଦ୍ର—ତୁମ୍ଭର ଏକମାତ୍ର ଦୁହିତାର ହୃଦୟ-ସର୍ବସ୍ୱ ସେହି ବୀରେନ୍ଦ୍ର—ତୁମ୍ଭର ବହୁମନ୍ୟ, ଅମିତତେଜା ସେହି ବୀରେନ୍ଦ୍ର ।

ବୀରେନ୍ଦ୍ର—କେମାଦେଈଙ୍କ କରୁଣାରୁ କିନ୍ତୁ ସେହି ବୀରେନ୍ଦ୍ର ଆଜ ତୁମ୍ଭର ଶ୍ରୀଚରଣତଳେ, ପିତଃ ।

ବାସୁଦେବ—କେମାଦେଈ । କେମାଦେଈ । ତୁମ୍ଭେ ମାନବୀ ନା ଦେବୀ ?

ବୀରେନ୍ଦ୍ର—ଦେବୀ, ପିତଃ ।

ବାସୁଦେବ—( ବୀରେନ୍ଦ୍ରକୁ ଆଲିଙ୍ଗନ କରି ) ନିଶ୍ଚୟ ଦେବୀ, ବୀରେନ୍ଦ୍ର । ଦେବୀ ଛଡ଼ା ଅନ୍ୟ କିଏ ଏ'ପରି ଅପୂର୍ବ ମିଳନ ଘଟାଇ ପାରେ ?

ବୀରେନ୍ଦ୍ର—ପାପୀକୁ ମଧ୍ୟ ଏ'ପରି ଭାବେ କିଏ ଉଦ୍ଧାର କରିପାରେ, ପିତଃ ?

ଶାରଦା—ଏ'ପରି ହିଂସା ଶୂନ୍ୟ ପ୍ରତିହିଂସା ମଧ୍ୟ କିଏ ସାଧନ କରିପାରେ, ପିତଃ ?

ନନ୍ଦକା—ବୃଥା ବାକ୍ୟାଳାପରେ ବର୍ତ୍ତମାନ ସମୟ ନୁହେଁ, ଭାଇ । ଏ' ସ୍ଥାନ ତ୍ୟାଗ କରିବା ଆଗେ ଆବଶ୍ୟକ ।

ବାସୁଦେବ—ନା, କେମାଦେଈ । ମୁଁ ତ୍ୟାଗକରି ପାରିବି ନାହିଁ—ତା' ହେଲେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏକାବେଳକେ ପଣ୍ଡ ହୋଇ ଯିବ ।

ବୀରେନ୍ଦ୍ର—ତେବେ କେମାଦେଈଙ୍କୁ ପତ୍ର ଦେଇଥିଲେ କ'ଣ ଏ ଶତ୍ରୁଶିବିରରେ ବନ୍ଦୀଭାବେ କେବଳ ସାକ୍ଷାତ୍ କରିବାକୁ ?

ବାସୁଦେବ—ମୋର ସ୍ୱାର୍ଥପାଇଁ କ'ଣ ମୁଁ କେମା-ଦେଈଙ୍କୁ ପତ୍ର ଦେଇଥିଲି ?

ନନ୍ଦକା—ତେବେ ଆପଣଙ୍କର ଅଭିପ୍ରାୟ ?

ବାସୁଦେବ—ଅଭିପ୍ରାୟ ? ଏହା ପଚାରୁଛ, କେମା-ଦେଈ ? ଏହି ମହାମାରୀ ଯୁଦ୍ଧ କ'ଣ ଏହିପରି ଭାବେ ଚାଲିଥିବ—ରାଜା ରାଜ-ରକ୍ତ ଲାଲସାରେ ଧାବିତ ହେଉଥିବେ—ପ୍ରଜା ପ୍ରଜା-ରକ୍ତ ଲାଲ-ସାରେ ଧାବିତ ହେଉଥିବେ ? ଭାରତର ପୁଣ୍ୟ-ପୀଠ ସର୍ବଶ୍ରେଷ୍ଠ ଏହି ଉତ୍କଳଭୂମି କ'ଣ ଗୋଟିଏ ବିଶାଳ ବଧଭୂମିରେ ପରିଣତ ହୋଇ ରହିଥିବ ?

ନନ୍ଦକା—ତୁହ ଭାଇ । ମନୁଷ୍ୟର ଏହି ପାଶବିକ ଭାବକୁ ଉପାୟ କ'ଣ ? ତାହା ବାରୁଙ୍କ ଦଣ୍ଡାୟମାନ ହେବାର ପ୍ରତ୍ୟକ୍ଷ ଫଳତ ଅଙ୍ଗେ ଅଙ୍ଗେ ଅନୁଭବ କରୁଛ ।

ବାସୁଦେବ—ଏହା ବୋଲି କଣ ସତ୍‌କାର୍ଯ୍ୟରୁ ଏକା-ବେଳକେ ନିବୃତ୍ତ ହେବା ଉଚିତ, କେମାଦେଈ ? —ମୃତ୍ୟୁ ବରଂ—ମୃତ୍ୟୁଠାରୁ ଅଧିକତର ଯନ୍ତ୍ରଣା ଥାଏ ଯେବେ, ତାହା ମଧ୍ୟ ବରଣୀୟ—ତଥାପି ମନୁଷ୍ୟର ଏପରି ଦୁର୍ଦ୍ଦଶା ଦର୍ଶନ, ଅସହ୍ୟ । ଅସହ୍ୟ । ଆସ କେମାଦେଈ । ଶକ୍ତିସୀମା ଅତିକ୍ରମ କରି ଚେଷ୍ଟା କରିବା, ମନୁଷ୍ୟ କିପରି ଦୁର୍ଦ୍ଦଶା-

ଗ୍ରାସରୁ ମୁକ୍ତ ଲାଭ କରିବ—କିପରି ଚିରଶାନ୍ତି ଲାଭ କରିବ ।

ନନ୍ଦକା—ଉପାୟ ?

ବାସୁଦେବ—ଉପାୟ ତୁମ୍ଭର ହାତରେ—ତୁମ୍ଭଙ୍କୁହିଁ ସାହସ କରିବାକୁ ହେବ—ତୁମ୍ଭଙ୍କୁହିଁ ବାଧା ବିଘ୍ନ ଅତିକ୍ରମ କରି ଦୃଢ଼ଭାବେ ଅଗ୍ରସର ହେବାକୁ ହେବ—ପାରିବ କି ?

ନନ୍ଦକା—ମନ୍ତ୍ରୀଭାଇ । ଏହି ଯୁଦ୍ଧ ନିବାରଣ ନିମନ୍ତେ ମୋତେ ଯେବେ ପ୍ରାଣଦେବାକୁ ହୁଏ, ତା' ମଧ୍ୟ ମୁଁ କରିବାକୁ ପ୍ରସ୍ତୁତ ।

ବୀରେନ୍ଦ୍ର—ଆମ୍ଭମାନଙ୍କର ଜୀବନ ଯିବା ପୂର୍ବରୁ କିନ୍ତୁ ତାହା କଦାପି ଘଟିବାକୁ ଦେବୁଁ ନାହିଁ, ଜେମାଦେଈ ।

ଶାରଦା—କଦାପି ନୁହେଁ ।

ବାସୁଦେବ—ଜେମାଦେଈଙ୍କ ପ୍ରାଣ ଯେବେ ପଣ ହୁଏ, ତେବେ ଆମ୍ଭମାନଙ୍କର ଏ' ଯୁଦ୍ଧ ନିବାରଣରେ କି ପ୍ରୟୋଜନ ? ଉଦ୍ଦେଶ୍ୟ ମଧ୍ୟ ସାଧିତ ହେବ କିପରି ?

ନନ୍ଦକା—କୁହ, ମନ୍ତ୍ରୀଭାଇ । ସାଧୁ-କାର୍ଯ୍ୟରେ ବିଳମ୍ବ କରିବା କଦାପି ଉଚିତ ନୁହେଁ ।

ବାସୁଦେବ—ବର୍ତ୍ତିମାନ ଆଉ ସମୟ ନାହିଁ—ଏହିପତ୍ର ଲେଖି ରଖିଛି, ନେଇ ଯା'ନ୍ତୁ—ପଢ଼ି,ବିବେଚନା କରି ଦେଖିବେ, ମୋର ମତ ଯୁକ୍ତି-ସଙ୍ଗତ କି ନୁହେଁ । ମୋତେ ବନ୍ଦୀ କରି ଯାଅ ବୀରେନ୍ଦ୍ର ।

ଶାରଦା—ପିତା ।

ବାସୁଦେବ—ବର୍ତ୍ତିମାନ ମୋ ପାଇଁ ବୃଥା-ଶୋକର ସମୟ ନୁହେଁ, ଶାରଦା । କାର୍ଯ୍ୟର ସମୟ । ଏହି ଦେବୀଙ୍କ ଉପରେ ଆମ୍ଭମାନଙ୍କର କାହିଁକି, ସମସ୍ତ ରାଜ୍ୟର ଭାଗ୍ୟ ସମ୍ପୂର୍ଣ୍ଣ ନିର୍ଭର କରୁଛି—ତୁମ୍ଭେମାନେ ତାହାଙ୍କୁ ଉତ୍ସାହ ଦିଅ—ସାହାଯ୍ୟ କର ।

ବୀରେନ୍ଦ୍ର—ହାୟ । ହାତରେ ପାଇ, ପାଇ ପାରିଲୁ ନାହିଁ ।

ବାସୁଦେବ—ଅଧୀର ହେଉଛ, ବୀରେନ୍ଦ୍ର ? ତୁମପକ୍ଷେ କି ଏହା ଶୋଭାପାଏ ? କାର୍ଯ୍ୟ—କାର୍ଯ୍ୟ—କାର୍ଯ୍ୟ । ଯାଅ, ଅଧିକକ୍ଷଣ ଏଠାରେ ରହିବା ଆଉ ଉଚିତ ନୁହେଁ । (ସମସ୍ତଙ୍କର ପ୍ରସ୍ଥାନ ) ଈଶ୍ୱର ! ସତେକି ଆଶା ମୋର ପୂର୍ଣ୍ଣ ହେବ ? ନିଶ୍ଚୟ ହେବ, ତା' ନ ହେଲେ ଏ' ମଙ୍ଗଳ ସୂଚନା ହୁଅନ୍ତା କାହିଁକି ?—

---

## ଚତୁର୍ଥ ଦୃଶ୍ୟ

—କକ୍ଷଦ୍ୱାର—

[ ଭୈରବସିଙ୍ଗର ପ୍ରବେଶ ]

ଭୈରବସିଙ୍ଗ—କାଲି ସ୍ୱପ୍ନ ଦେଖିଥିଲି, ମା ଜାହ୍ନବୀ ଯେପରି ଆଶ୍ୱାସନା ଦେଉଛନ୍ତି, ଆଉ ଚିନ୍ତା କରନା, ଦୁର୍ଗଦ୍ୱାର ନିଶ୍ଚୟ ଖୋଲିବ'—କାହିଁ ? ରାତ୍ରି ଆସି ଚତୁର୍ଥ ଯାମ ଅତିକ୍ରମ କରିବାକୁ ବସିଲାଣି—ଆଉ କେତେବେଳେ ଖୋଲିବ ?—ସ୍ୱପ୍ନ ! ସ୍ୱପ୍ନ ମନର ଭ୍ରାନ୍ତି—ମନର ବିକାର ମାତ୍ର; ତଥାପି କାହିଁକି ସେ ମରୀଚିକା ପଛେ ପଛେ ମନ ଥରକୁ ଥର ଧାଉଁଛି ? ଆଶା । ଆଶା-କୁହୁକିନୀ ସେ—ତା'ର କୁହୁକରେ ପଡ଼ି ମନୁଷ୍ୟ ଶୂନ୍ୟରେ ମନ୍ଦିର ଗଢ଼େ, ତାହାରି ପ୍ରଲୋଭନରେ ପଡ଼ି ମନୁଷ୍ୟ ଅସାଧ୍ୟ ସାଧନ କରିବାକୁ ମଧ୍ୟ ଧାଇଁଯାଏ । ( ଦୂତର ପ୍ରବେଶ ) କି ସମ୍ବାଦ ?

ଦୂତ—ମହାରାଜ ! ଦୁର୍ଗଦ୍ୱାର ଖୋଲିବାରତ କୌଣସି ଲକ୍ଷଣ ଦେଖିଲି ନାହିଁ ?

ଭୈରବସିଙ୍ଗ—ଅଚ୍ଛା, ତୋର ନିର୍ଦ୍ଦିଷ୍ଟ ସ୍ଥାନକୁ ତୁ ଯା ।

ଦୂତ—ଯେ ଆଜ୍ଞା ।                    ( ଦୂତର ପ୍ରସ୍ଥାନ )

ଭୈରବସିଙ୍ଗ—ଓଃ । ଗୋଟାଏ ମିଥ୍ୟା-ସ୍ୱପ୍ନରେ ବିଶ୍ୱାସ କରି, ମୁଁ କି ଭ୍ରାନ୍ତ ହୋଇଥିଲି ? ଛାଡ଼, ମୋତେ କାଲି ସକାଳେ ଯେ କୌଣସି ମତେ ଛାଉଣି ଉଠାଇ ନେବାକୁ ହେବ । ଏଣେ ସୈନ୍ୟମାନେ ଖାଦ୍ୟାଭାବରେ ମୃତପ୍ରାୟ—ଆଉ ଖାଦ୍ୟାହରଣର

ମଧ୍ୟ କୌଣସି ସମ୍ଭାବନା ନାହିଁ; ତେଣେ ମାତାଙ୍କର ଅମୋଘ ଆଦେଶ-ପନ୍ଥ ! ମାତା ସ୍ୱେଚ୍ଛାରେ ହେଉ, ବା ଅପର କାହାର ପରାମର୍ଶରେ ହେଉ, ଯେତେବେଳେ ଫେରି ଯିବାକୁ ଆଦେଶ ଦେଇଛନ୍ତି, ତେତେବେଳେ ଫେରି ଯିବାକୁ ମୁଁ ବାଧ୍ୟ—ହାୟ ! ଜୟ-ଗୌରବ ଅର୍ଜନ ନ କରି ମୋତେ ଫେରିବାକୁ ହେଲା ! ଦୀର୍ଘଶ୍ୱାସ ଘାତକ ! ଓଃ ହୋଃ, ଛାଡ଼—ବୃଥା ଚିନ୍ତାରେ ମସ୍ତିଷ୍କ ଉତ୍ତପ୍ତ କରିବା ନିଷ୍ପ୍ରୟୋଜନ । ଯାଏଁ ରଜନୀର ଶେଷଯାମଟିକ ଶଯ୍ୟାରେ ଟିକିଏ କଟାଇ ଦିଏଁ ।

( ଗୌରଗଙ୍ଗଙ୍କର ପ୍ରସ୍ଥାନ )

[ ନନ୍ଦକାର ପ୍ରବେଶ ]

ନନ୍ଦକା—ଏହିତ ଗୌରଗଙ୍ଗଙ୍କର ଶିବିର ! କାହାନ୍ତି ସେ ? ବୋଧହୁଏ ନିଦ୍ରା ଯାଉଥିବେ । ଉଠ, ବୀର ! ଆଜ ନିଦ୍ରା କାହିଁକି ? ଭାଗ୍ୟ ତୁମ୍ଭର ପ୍ରସନ୍ନ ହୋଇଛି, ଓଡ଼ିଶାର ଭାଗ୍ୟବିଧାତାଙ୍କର ଭାଗ୍ୟମଣି ଆଜ ତୁମ୍ଭ କରେ ।—ମୁଁ କି ଠିକ୍ କାମ କରୁଛି ? ପିତାଙ୍କର ବିନାନୁମତିରେ ଯେଣି ଆସିବା—ତାଙ୍କର ନିଦ୍ରିତା-ବସ୍ଥାରେ ପୁଣି ଲୁଚାଇ ଆଣିବା—ଏହା କଣ ଚୋର ନୁହେ ? ତେବେ କଣ ମୁଁ ଚୋରଣୀ ହେଲି ?—ମୋର ଉଦ୍ଦେଶ୍ୟତ ଏହି ମଣି ନୁହେଁ, କିମ୍ବା ଏହା ସାହାଯ୍ୟରେ କାମ-ଲାଳସା ତୃପ୍ତିସାଧନ ନୁହେଁ ? ମୋର ଉଦ୍ଦେଶ୍ୟ ଯେ ଅନ୍ୟରୂପ—ରଜା ରଜା ମଧ୍ୟରେ ଶତ୍ରୁତା ନିବାରଣ—ଯୋଦ୍ଧା ଯୋଦ୍ଧା ମଧ୍ୟରେ ମୈତ୍ରୀ ସ୍ଥାପନ । ପିତାଙ୍କୁ କହି ଆଣି-ଥିଲେ ତ ଭଲ ହୋଇଥାନ୍ତା—ଅନୁନୟ ବିନୟ ପୂର୍ବକ ଯାଚଞ୍ଚା କରିଥିଲେ ତ ମୋର ମନସ୍କାମନା ସେ ପୂର୍ଣ୍ଣ କରିଥାନ୍ତେ ? ଅସମ୍ଭବ—ଅସମ୍ଭବ—ସେ ନିଶ୍ଚୟ ବାତୁଳ ବୋଲି ମୋତେ ଉପେକ୍ଷା କରିଥାନ୍ତେ । ଅଚ୍ଛା, ଏହି ମଣି ନେଇ ମୁଁ ଶତ୍ରୁକୁ ଦେବି, ସେ ଯେବେ ବିଶ୍ୱାସ ଘାତକତା କରେ ? ତେବେ ରାଜ୍ୟର ଦଶା କଣ ହେବ ? ପିତାଙ୍କର ଦଶା ? ( ଭାବି ) ଛିଃ, ବିଶ୍ୱାସଘାତକତାର ଆଶଙ୍କା ଅସମ୍ଭବ । ଏ' ଯୁଦ୍ଧ ଯେ ମୋର ବିବାହ ଯେଣ—ମୁଁ ଯଦି ନିଜେ ନିଜକୁ ଅର୍ପଣ କରେ, ତାହା ହେଲେ କୌଣସି ବିବାଦ ରହିବାର କଥା ନୁହେ,—ଆହୁରି ମଧ୍ୟ ଆମ୍ଭେମାନେ ଯେ ପରସ୍ପର ପ୍ରତି ଆକୃଷ୍ଟ, ତା' ପୁରୀକ୍ଷେତ୍ରରେ ପ୍ରଥମ ଦର୍ଶନବେଳେ, ପରସ୍ପରକୁ ଗୋପନ ଗୋପନ ଚାହିଁବାରେ ବେଶ୍ ପ୍ରମାଣିତ ହୋଇଛି—ତେବେ, ଆଶା ମୋର କଦାପି ଦୁରାଶା ହୋଇ ନ ପାରେ । ଆଉ ଗୋଟିଏ କଥା, ମଣିଟା ନ ଆଣି ଏ' କାର୍ଯ୍ୟ କରିଥିଲେ ତ ଭଲ ହୋଇଥାନ୍ତା । ସେ ଯେବେ କଥାରେ କେବଳ ବିଶ୍ୱାସ ନ କରନ୍ତି—ସେ ବିଶ୍ୱାସ କଲେ ସୁଦ୍ଧା, ପିତା ଯେବେ ଶତ୍ରୁତା ତ୍ୟାଗ ନ କରନ୍ତି ?—ମୁଁ ଆପଣାକୁ ଅର୍ପଣ କରିବା ପରେ କ'ଣ କାମାତା, ସଙ୍ଗେ ସେ ଯୁଦ୍ଧ କରନ୍ତେ ? ଏ'କଥା ତାଙ୍କ ପକ୍ଷେ କିଛି ବିଚିତ୍ର ନୁହେ, ଯେମନ୍ତ ସେ ମୋ ପ୍ରତି ଆକୃଷ୍ଟ । ମଣିଛଡ଼ା ହେଲେ କଣ ବର୍ତ୍ତିମାନ ଯୁଦ୍ଧ କରିବାର ସମ୍ଭାବନା ଅଛି ? ଇଚ୍ଛା ଥିଲେ ମଧ୍ୟ ଶକ୍ତିହୀନା—ଉପାୟହୀନା । ହେ ଈଶ୍ୱର ! ମୋତେ ଶକ୍ତି ଦିଅନ୍ତୁ—ମୁଁ ନିଜ ପାଇଁ କିଛି କରୁ ନାହିଁ—ଯାହା କରୁଛି, ରଜାଙ୍କ ସକାଶେ, ପ୍ରଜାଙ୍କ ସକାଶେ, ରାଜ୍ୟର ସକାଶେ ! କାହାନ୍ତି ଗଙ୍ଗଦେବ ? ଏହିତ ସେହି ପ୍ରଶସ୍ତ ଶିବିର, ନା ଏହାଠାରୁ ଅନ୍ୟ କୌଣସି ଅଧିକତର ପ୍ରଶସ୍ତ ଶିବିର ଅଛି ?

( ଅନ୍ୱେଷଣ କରୁ କରୁ ପ୍ରସ୍ଥାନ )

[ ଗୌରଗଙ୍ଗଦେବଙ୍କର ପ୍ରବେଶ ]

ଗୌରଗଙ୍ଗ—ନା, ଆଜ ନିଦ୍ରା ହେବ ନାହିଁ—ପ୍ରଭାତ ଦେଖା ଦେଲାଣି, ଅନ୍ଧକାର ପଳାଇବାକୁ ବସିଲାଣି—ପ୍ରକୃତିରାଣୀ, ମୃଦୁ ହାସ୍ୟ କରିଉଠିଲେଣି; ମାତ୍ର ମୋ ହୃଦୟ ଗାଢ଼ ଅମାନିଶାରେ ଯେମନ୍ତ ଆଚ୍ଛନ୍ନ ହୋଇ ଆସୁଛି—ସୁଖ ଯେମନ୍ତ ଚିର ସନ୍ଧ୍ୟାଗ୍ରାସରେ ଶୀଘ୍ର ଲୁଚି ଲୁପ୍ତ

ହୋଇଯାଉଛି । ଦକ୍ଷିଣା ପବନ ବୋହିବାକୁ ଲାଗିଲାଣି—ପକ୍ଷୀ ପ୍ରଭୃତି ଗାଇଲେଣି—ତରୁଲତା ଆନନ୍ଦରେ ନୃତ୍ୟ କରିଉଠିଲେଣି; କିନ୍ତୁ ମୋ ହୃଦୟ କଷ୍ଟଜ୍ୱାଳାରେ ଯେମନ୍ତ ଜ୍ୱଳି ଯାଉଛି— ସର୍ବାଙ୍ଗ ଯେମନ୍ତ ପୋଡ଼ି ଜାରଖାର ହୋଇ ଯାଉଛି—ହାୟ । ଏତେ କ୍ଳେଶ—ଏତେ ଶ୍ରମ ପରେ ମୋତେ ନୈରାଶ୍ୟ ହୋଇ ସ୍ୱଦେଶକୁ ଫେରିବାକୁ ହେଲା—ଓଃ । ଏହାଠାରୁ ଯେ ମୃତ୍ୟୁ ଶ୍ରେୟସ୍କର ।

[ ଖୋଜିଖୋଜି ନନ୍ଦକାର ପୁନଃ ପ୍ରବେଶ—
ହଠାତ୍ ଶେରଗଙ୍ଗଙ୍କୁ ଦେଖି ଛିଡ଼ାହେବା ]

ନନ୍ଦକା—( ସ୍ୱଗତ ) ଏହି ତ ସେହି ବୀର ପୁରୁଷ ! ହୃଦୟ ! ଦମ୍ଭ ଧର । ଈଶ୍ୱର ! ସହାୟ ହୁଅନ୍ତୁ ।

ଶେରଗଙ୍ଗ—ଏ କିଏ ? ଏ' କି ଜ୍ୟୋତିଃପୁଞ୍ଜରେ ଶିବିରର ଅନ୍ଧକାର ବିଦୂରିତ ହୋଇଗଲା ? ଉଷାର ଛବି ତ ଏ ପର୍ଯ୍ୟନ୍ତ ଆକାଶରେ ପ୍ରକଟିତ ହୋଇନାହିଁ ? ଏ କି ମୂର୍ତ୍ତି ? ଏହା କି ପ୍ରକୃତ, ନା ସ୍ୱପ୍ନ ?

ନନ୍ଦକା—ମହାରାଜ ।

ଶେରଗଙ୍ଗ—'ମହାରାଜ' ବୋଲି ଯେ ଡାକୁଛି— କଥା କହୁଛି ! ନିଶ୍ଚୟ ତେବେ ସ୍ୱପ୍ନ ନୁହେଁ— କିଏ ତୁମେ ? ଦେବୀ ନା ମାନବୀ ?

ନନ୍ଦକା—ମୁଁ ଗୋଟିଏ ଅବଳା ବାଳିକା, ମହାରାଜ ।

ଶେରଗଙ୍ଗ—ଏପରି ସମୟରେ ଶତ୍ରୁ ଶିବିରକୁ ଆସିବାର କାରଣ ?—ତୁମର ଉଦ୍ଦେଶ୍ୟ କିପରି ?

ନନ୍ଦକା—ଅବଶ୍ୟ ସୁ-ଉଦ୍ଦେଶ୍ୟ, ମହାରାଜ ।

ଶେରଗଙ୍ଗ—ସୁ-ଉଦ୍ଦେଶ୍ୟ ?—( ନିରୀକ୍ଷଣ କରି ) କିଏ ଆପଣ ? ଆପଣ ନା ରାଜନନ୍ଦିନୀ ? ଆପଣଙ୍କର ନାମ କା ନନ୍ଦକା ? ଆପଣ ଏଠାକୁ ଗୋପନରେ ଆସିଛନ୍ତି କାହିଁକି ? କହନ୍ତୁ, ଆପଣଙ୍କର କି ଉଦ୍ଦେଶ୍ୟ ?

ନନ୍ଦକା—ଉଭୟ ପକ୍ଷର ମିଳନବିଧାନ ମୋର ଉଦ୍ଦେଶ୍ୟ ମହାରାଜ ।

ଶେରଗଙ୍ଗ—ଯୁଦ୍ଧ କ୍ଷେତ୍ରରେ ତ ? ତା'ହେଲେ, ପିତା ଆପଣଙ୍କର ନ ଆସି, ଆପଣଙ୍କୁ ପଠାଇ ଦେଲେ କାହିଁକି ? ସେ କ'ଣ ମନେ କରନ୍ତି, ମୁଁ ଏତେ ଦୁର୍ବଳ ଯେ ନାରୀର ସାମାନ୍ୟ ରୂପରେ ଆକୃଷ୍ଟ ହୋଇ ନିଜେ ପରାଜୟ ସ୍ୱୀକାର କରିବି— ଦୁର୍ଗାବରୋଧ ତ୍ୟାଗ କରି ଚାଲିଯିବି ? ଅସମ୍ଭବ —ଅସମ୍ଭବ ।

ନନ୍ଦକା—ମହାରାଜ ! ସିଂହତୁଲ୍ୟ ସବଳ ଓ ପରାକ୍ରାନ୍ତ ହୋଇ ଦୁର୍ବଳ ଶିଶୁ ତୁଲ୍ୟ ଏତେ ଅସ୍ଥିର ଓ ଅଧୀର ଆପଣ ?

ଶେରଗଙ୍ଗ—ଅସ୍ଥିର ଓ ଅଧୀର କାହିଁପାଇଁ, ଆର୍ଯ୍ୟେ ? ଆଜିକୁ ପ୍ରାୟ ଏକ ପକ୍ଷ ଅତୀତ ହେବାକୁ ବସିଲା —ଆଉ କେତେ କାଳ ଆମ୍ଭେମାନେ, ବିନା ଭୋଜନରେ, ବିନା ନିଦ୍ରାରେ ଆଳସ୍ୟ ଓ ଉତ୍କଣ୍ଠା ସହିତ ଫେରୁ ଦଳର ବିଳ ମୁଖକୁ ଅନାଇ ବସି ରହିଥିବୁ ?

ନନ୍ଦକା—ଯେବେ ଜାଣନ୍ତି, ମହାରାଜ ! ସେମାନେ ଫେରୁଦଳ—ପ୍ରାଣ ଭୟରେ ଗର୍ତ୍ତରେ ଲୁଚି ରହିଛନ୍ତି, ତେବେ ସିଂହ-ପରାକ୍ରାନ୍ତ ଆପଣମାନେ ଏତେ ତାପ କ୍ଳେଶ ସହ୍ୟ କରିବାର କି ପ୍ରୟୋଜନ ?

ଶେରଗଙ୍ଗ—ଖୁବ୍ ପ୍ରୟୋଜନ ଅଛି, ଆର୍ଯ୍ୟେ । ସେମାନେ ନିଜ ମୁଖରେ ଥରେ ନିଜକୁ 'ଫେରୁ' 'ଭୀରୁ' ବୋଲି ସ୍ୱୀକାର କରନ୍ତୁ; ତାହା ଶୁଣି ଆମ୍ଭେମାନେ ସାନନ୍ଦେ ଗୃହାଭିମୁଖେ ପ୍ରସ୍ଥାନ କରିବୁଁ ।

ନନ୍ଦକା—ଅଚ୍ଛା ଧରନ୍ତୁ, ସେମାନେ ସ୍ୱୀକାର କଲେ, ସେଥିରେ ଆପଣଙ୍କର ଲାଭ ?

ଶେରଗଙ୍ଗ—ଲାଭ କ୍ଷତି ଆପଣ ନାରୀ ହୋଇ କଣ ବୁଝିବେ ? ନର ତା'ର ଅର୍ଥ ବୁଝେ—ବୀର, ତାର ମାଧୁରୀ ଆସ୍ୱାଦନ କରେ । ଯାଉ, କହନ୍ତୁ କି ଉଦ୍ଦେଶ୍ୟରେ ଆପଣଙ୍କର ଏଠାକୁ ଆଗମନ ?

ନନ୍ଦକା—ମହାରାଜ ! ଆପଣଙ୍କର ଶତ୍ରୁତାର କାରଣ ଯେବେ ଏହିଠାରେ ମାଟିର ଦେହ ହୁଏ—

ଆପଣମାନଙ୍କର ଯୁଦ୍ଧର କାରଣ ଯେବେ ସୃଷ୍ଟିର ଏହି ଦୋଷଯୁକ୍ତ ଜୀବହୁଏ, ଯାହାପାଇଁ ଲକ୍ଷ ଲକ୍ଷ ନର ଆଜ ପତଙ୍ଗପରି ସମରାନଳରେ ପ୍ରାଣ ବିସର୍ଜନ କରୁଛନ୍ତି—ଯାହାପାଇଁ ଶତଶତ ନାରୀ ଆଜ ହେସ୍ତୁ ବୈଧବ୍ୟ-ଜୀବନ ବହନ କରି ଜୀବନ୍ମୃତ୍ୟୁ-ଯାତନା ଅନୁଭବ କରୁଛନ୍ତି, ତେବେ ସେହି ପାପିଷ୍ଠା, ହତଭାଗିନୀ ଆଜ ସ୍ୱତଃ ପ୍ରବୃତ୍ତ ହୋଇ ଆପଣାକୁ ଶ୍ରୀପଦ୍ମରେ ଅର୍ପଣ କରୁଛି ।

[ ଗୈରବଗଙ୍ଗଙ୍କ ପଦଦେଶରେ ବିନୀତ ଭାବେ ଜାନୁପାତ ହେବା ]

ଗୈରବଗଙ୍ଗ—( ହୃଦୟକୁ ଘୁଞ୍ଚିଯାଇ, ସବିସ୍ମୟେ ଚାହିଁ ରହିବା )

ନନ୍ଦକା—ବିଶ୍ୱାସ ଯେବେ ନ ହୁଏ, ତା'ର ନିଦର୍ଶନ ସ୍ୱରୂପ ଏହି ଅମୂଲ୍ୟ ମଣିଟି ଅର୍ପଣ କରୁଛି, ଦେଖନ୍ତୁ । ଜାଣନ୍ତି କି ମହାରାଜା । ଏହି ମଣିଟି ପିତାଙ୍କର କେତେଦୂର ଆଦରଣୀୟ ? ଏହା ତାଙ୍କର ହୃଦୟର ମଣି—ପ୍ରାଣର ସର୍ବସ୍ୱ—ଏଥିରେ ତାଙ୍କର, ତାଙ୍କର କାହିଁକି ସମଗ୍ର ରାଜ୍ୟର ଶୁଭାଶୁଭ ନିହିତ ଅଛି; ଏହି ଜଗଦମ୍ବା-ଦତ୍ତ ମଣି ଯୋଗୁଁ ଆଜ ଆପଣଙ୍କପରି ବୀର ମଧ୍ୟ ଦୁର୍ଗ ମଧ୍ୟରେ ପ୍ରବେଶ କରିବାକୁ ଅକ୍ଷମ । ବର୍ତ୍ତମାନ ଦୁର୍ଗ ମଧ୍ୟରୁ ମଣିଟି ଚାଲି ଆସିଛି, ସଙ୍ଗେ ସଙ୍ଗେ ଦୁର୍ଗର ସମସ୍ତ ଶକ୍ତି ମଧ୍ୟ ଚାଲି ଆସିଛି—ମହାରାଜ । ରାଜ୍ୟରେ ମହାବିପଦ ବର୍ତ୍ତମାନ ଉପସ୍ଥିତ—ଏ' ବିପଦରେ ଆପଣହିଁ ଏକମାତ୍ର କର୍ଣ୍ଣଧାର । ଅନୁନୟ କରୁଛି, ମହାରାଜ । ବିବାଦ ବିସମ୍ବାଦ ଭୁଲିଯା'ନ୍ତୁ—ଶତ୍ରୁତା ତ୍ୟାଗ କରନ୍ତୁ—ରାଜା ରାଜା ମଧ୍ୟରେ ସବୁ ପାର୍ଥକ୍ୟ ଘୁଞ୍ଚିଯାଉ—ପିତା ପୁତ୍ର ମଧ୍ୟରେ ଅପୂର୍ବ ସ୍ନେହଭାବ ଜାଗିଉଠୁ ।

ଗୈରବଗଙ୍ଗ—ଥାଉ, ଥାଉ । ଆଉ ଶୁଣାଇ କର୍ଣ୍ଣ ଅପବିତ୍ର କରି ଦେ'ନା । ଅରେ ରେ କୁଳଟା । ଏହି କଣ ରୀତି ତୋର ? ସାମାନ୍ୟ କାମ-ଲାଳସା ତୃପ୍ତି ନିମନ୍ତେ ଏଡ଼େ ଗର୍ହିତ ଆଚରଣ ? କନ୍ୟା ହୋଇ ପିତୃ-ହତ୍ୟା କରିବାକୁ ଉଦ୍ୟତ, ପ୍ରଜାହୋଇ ରାଜ-ହତ୍ୟା କରିବାକୁ ଉଦ୍ୟତ, ଦେଶର ଅନ୍ନ ଜଳରେ ପ୍ରତିପାଳିତ ହୋଇ ଦେଶ-ଦ୍ରୋହୀ ହେବାକୁ ଅକୁଣ୍ଠିତ । ଓଃ, ତୋ' ପ୍ରତି ମୋର କି ଭ୍ରାନ୍ତ ଧାରଣା ଥିଲା ? ବିଦୁଷୀ ବୋଲି ତୋତେ ଯେ ଦିନେ ଭାରି ପ୍ରଶଂସା କରି ଥିଲି—ଦେବୀ ବୋଲି ମନେ ମନେ ସ୍ତବ ସ୍ତୁତି ପର୍ଯ୍ୟନ୍ତ କରିଥିଲି । ଓଃ, କି ଦୁଷ୍ଟା ତୁହି । ସୌରଭମୟ କୁସୁମ ମଧ୍ୟରେ କି କାଳ-ନାଗିନୀ ତୁହି ।

ନନ୍ଦକା—ମହାରାଜ । ବୃଥାରେ କଳଙ୍କ ଅର୍ପଣ କରି ଅଭାଗୀକୁ କଳୁଷିତା କରନ୍ତୁ ନାହିଁ; ଯେବେ ଏ' ଅଧମାର ସାମାନ୍ୟ କାମ ଲାଳସା ଥା'ନ୍ତା—ଯେବେ ଏ' ଅଧମାର ବିବାହ ମୁଖ୍ୟ ଉଦ୍ଦେଶ୍ୟ ହୋଇଥା'ନ୍ତା, ତେବେ ସେ ଏହିଯୁଦ୍ଧ ହେବା ପୂର୍ବରୁ—ରାଜା ଓ ରାଜ୍ୟକୁ ସଙ୍କଟାପନ୍ନ କରିବା ପୂର୍ବରୁ କଣ୍ଠାଟରେ ଉପସ୍ଥିତ ହୋଇ ପାରିଥାନ୍ତା—ଗୈରବଗଙ୍ଗଙ୍କୁ ଶତ୍ରୁରୂପେ ଦେଖିବା ପୂର୍ବରୁ ନିଜର ଅନ୍ତରଙ୍ଗ ବନ୍ଧୁ କରନେଇ ପାରିଥାନ୍ତା । ଏ' ଅଧମାକୁ ବିଶ୍ୱାସ କରନ୍ତୁ ମହାରାଜ । ଯେବେ ଏ' ଅଧମାକୁ କଳୁଷିତ ପ୍ରେମ ଦୃଷ୍ଟିରେ—

ଗୈରବଗଙ୍ଗ—ସଂଯତ କର ରସନା ତୋର, କଳଙ୍କିନି ! ମନେ କରୁଛୁକି, ପ୍ରଥମ-ଦୃଷ୍ଟିରେ କଳୁଷିତ ଅସଂଯତ ହୋଇଥିଲି ବୋଲି ସଂଯମଶକ୍ତି ମୋର ଏକାବେଳକେ ଲୋପପାଇଛି ? କଦାପି ତା' ସ୍ୱପ୍ନରେ ସୁଦ୍ଧା ମନେ କରନାହିଁ, ପାପିୟସି । ବୀରର ପ୍ରକୃତ ବୀରତ୍ୱ ଯେ ସେହିଠାରେ । ଯା'ର ସେ ଶକ୍ତି ନାହିଁ, ଶାରୀରିକ ବଳ ତାର ଅକାରଣ । ଶାରୀରିକ ବଳ ଅସୁରିକ ବଳ ମାତ୍ର । ଅରେ ରେ କୁଳଟା । ଆଜକୁ ମାସାବଧି କାଳ ବିନା ନିଦ୍ରାରେ, ବିନା ଭୋଜନରେ, ସମସ୍ତ ସୁଖ ବିସର୍ଜନ କରି ଯୁଦ୍ଧକଲି—ଉଦ୍ଦେଶ୍ୟ କଣ, କାମଲାଳସା-ତୃପ୍ତି ସାଧନ ? ଗୋଟିଏ ବାଳିକାର ସୌନ୍ଦର୍ଯ୍ୟ ଉପଭୋଗ ? ଛିଃ-ଛିଃ, ରାଜନନ୍ଦିନୀ ! ବୀରବାଳା ହୋଇ ଏ' ଭାବ ମନରେ ତୋ'ର

ସ୍ଥାନ ଦେବାକୁ ସକ୍ଷମା ହେଲ ? ଧିକ ତୋତେ ପାପିୟସି !

ନନ୍ଦକା—କଣ୍ଠ ! ଏ' କ'ଣ ଶୁଣୁଛୁ ? ହୃଦୟ ! ଏ' କ'ଣ ଅନୁଭବ କରୁଛୁ ?

ଶେରଗଙ୍ଗ—କିଛି ଭୟ ନାହିଁ, ପାପିୟସି ! ତୁହ ତୋର ପିତୃ-ଶକ୍ତ ଏହିକ୍ଷଣି ସାନନ୍ଦେ ଯେନ ଯାଇପାରୁ—ଶେରଗଙ୍ଗ ଏତେ ନୀଚମନା ନୁହେଁ, ଯେ ସାମାନ୍ୟ ଗୋଟିଏ ନାରୀ ସଙ୍ଗେ ବିଶ୍ୱାସ-ଘାତକତା କରିବାକୁ ଅଗ୍ରସର ହେବ ! ତୁ ତୋର ପିତାର ଅଜ୍ଞାତସାରେ ଅନାୟାସେ ଯଥାସ୍ଥାନରେ ଏହି ଅମୂଲ୍ୟ ଦ୍ରବ୍ୟଟି ରଖି ଦେଇ ନିଶ୍ଚିନ୍ତା ହୋଇପାରୁ ! ମୁଁ ଗୃହେନା ଗୋଟିଏ କାମୁକା ସାହାଯ୍ୟରେ ମୋର ଉଦ୍ଦେଶ୍ୟ ସାଧନ କରିବାକୁ ! ସାହସୀ ଯେବେ ତୋ'ର ପିତା, ନିଜେ ସେ ଦୁର୍ଗଦ୍ୱାର ଖୋଲି ବାହାରନ୍ତୁ—ମୁଁ ଗୃହେ ନ୍ୟାୟ ରଣ—ନ୍ୟାୟ ସମର !

ନନ୍ଦକା—ମହାରାଜ ! ଏତେ ମହତ୍ ହୃଦୟ ଯେବେ ଆପଣ, ଏ' ଦାସୀପ୍ରତି ଅନ୍ୟାୟ ବିଚାର କରନ୍ତୁ ନାହିଁ—ବିବାହ ଯେବେ ମୁଖ୍ୟ ଉଦ୍ଦେଶ୍ୟ ନ ହୋଇ, କେବଳ ଯୁଦ୍ଧ ମୁଖ୍ୟ ଉଦ୍ଦେଶ୍ୟ ହୋଇ-ଥାଏ, ତେବେ ସେ ଆସୁରିକ ଲାଲସା ତ୍ୟାଗ କରନ୍ତୁ, ବୃଥା ଧ୍ୱଂସରୁ ରାଜ୍ୟ ରକ୍ଷା କରନ୍ତୁ !

ଶେରଗଙ୍ଗ—ମୋତେ ଏହି ଅନୁରୋଧ କରିବା ଠାରୁ ପିତାଙ୍କୁ କଲେତ ଭଲ ହୁଅନ୍ତା ?

ନନ୍ଦକା—ଠିକ୍ କଥା ! କିନ୍ତୁ, ପିତାଙ୍କୁ ଏ'ପାପ ମୁଖ ଦେଖାଇବି କିପରି ? ସେ ମନେ କରିବେ କ'ଣ ? ସେ କ'ଣ ଜାଣି ସାରିବେଣି ? ନା, ନା, ବର୍ତ୍ତମାନ ସୁଦ୍ଧା ସମୟ ଅଛି—ସେ ଶୋଇଥିବେ !

[ ନନ୍ଦକା ପ୍ରସ୍ଥାନୋଦ୍ୟତା ଓ ଦୂତର ବେଗେ ପ୍ରବେଶ ]

ଦୂତ—ମହାରାଜ ! ଦୁର୍ଗ ମଧ୍ୟରେ ଚହଳ ପଡ଼ି ଗଲାଣି —ଦୁର୍ଗଦ୍ୱାର ମଧ୍ୟ ଖୋଲିଛି—ସୈନ୍ୟମାନେ ଆଦେଶ ମାତ୍ର ଅପେକ୍ଷା କରୁଛନ୍ତି !

ନନ୍ଦକା—କଣ୍ଠା ପଡ଼ୁଛି ? ଆଉ ରକ୍ଷା ନାହିଁ—ଓଃ, ହୋଃ (ପତନ)

ଶେରଗଙ୍ଗ—ଦୂତ ! ଏହି ଦ୍ରବ୍ୟ ସହିତ (ମଣିଦେଇ) ଏହି ନାରୀଙ୍କୁ ଶିବିକାରୋହଣ କରାଇ ସସମ୍ମାନେ ସୁବର୍ଣ୍ଣ କେଶରୀଙ୍କର ନିକଟକୁ ଘେନ ଯାଅ—ମୁଁ ଖଣ୍ଡେ ପତ୍ର ଦେଉଛି, ତାଙ୍କୁ ଦେବ—ଉତ୍ତର ଆସିଲେ, ଅମ୍ଭର କାର୍ଯ୍ୟରେ ଅମ୍ଭେ ଅଗ୍ରସର ହେବା; ତତ୍ ପୂର୍ବରୁ ଦୁର୍ଗ ମଧ୍ୟରେ ପ୍ରବେଶ କରିବା ଦୂରେ ଥାଉ, ଦୁର୍ଗଅଡ଼େ କେହି ପାଦେ ସୁଦ୍ଧା ଅଗ୍ରସର ହୋଇ ପାରିବ ନାହିଁ । ତୁମ୍ଭେ ଶିବିକାର ଆୟୋଜନ ଶୀଘ୍ର କର—ମୁଁ ପତ୍ର ଲେଖି ଦେଉଛି ।

( ଉଭୟଙ୍କର ବିପରୀତ ଦିଗରେ ପ୍ରସ୍ଥାନ )

ନନ୍ଦକା—(ଉଠି) ନିରାଶ ହେବାର ସମୟ ଏ' ନୁହେଁ —ବର୍ତ୍ତମାନ ସୁଦ୍ଧା ସମୟ ଅଛି—ପିତାଙ୍କୁ ସତ୍ୟ କଥା କହିଲେ, ଉଦ୍ଦେଶ୍ୟ ଯଦି ସଫଳ ହୁଏ— ମୋତେ କଳଙ୍କିନୀ ଦୋଷ ଅର୍ପଣ କରିବେ ? ରାଜ୍ୟମୟ ନିନ୍ଦା ହେବ ? କ୍ଷତି କଣ ? ମୁଁ ଯେବେ ସାମାନ୍ୟ ନିନ୍ଦା ବା କଳଙ୍କ ବିନିମୟରେ ଏହି ମହାମାରୀ ଯୁଦ୍ଧ ବନ୍ଦ କରି ପାରେଁ—ରାଜ୍ୟର ମଙ୍ଗଳ ସାଧନ କରିପାରେଁ—ତେବେ ମୋର ଖେଦ କାହିଁକି ? ମୋ'ଠାରୁ କିଏ ଆଉ ଧନ୍ୟ ? ମାତ୍ର ପିତା ଯେବେ ସ୍ନେହଦୃଷ୍ଟିରେ ମୋତେ ନ ଦେଖନ୍ତି—ମୋ କଥାରେ କର୍ଣ୍ଣପାତ ନ କରି ଯୁଦ୍ଧରୁ ସ୍ଥଗିତ ନ ହୁଅନ୍ତି—ତେବେ ଉପାୟ— ଉପାୟ କ'ଣ ? କାହିଁ ଅଛ, ମନ୍ତ୍ରୀଭାଇ ! କହି ଦିଅ କି ଉପାୟ କରିବି ?

( ବ୍ୟଥିତ ହେବା )

---

—ଡ୍ରପ—

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

—ଦୁର୍ଗାଭ୍ୟନ୍ତର—

[ ଶାରଦା ଓ ବୀରେନ୍ଦ୍ର ଉପବିଷ୍ଟ ]

ଶାରଦା—ରାତ୍ରି ଭିତରେ ଶତ୍ରୁ ଛାଉଣି ଉଠାଇ ନେଇ ଚାଲିଯିବେ ବୋଲି କହୁଥିଲେ—କାହିଁ ?—ଖରା ମାଣ୍ଡି ଆସିଲାଣି, ଗୋଟିଏବି ତମ୍ବୁ ଖସା ହେବାର ଲକ୍ଷଣତ ଦେଖାନାହିଁ ?

ବୀରେନ୍ଦ୍ର—ଗୁପ୍ତଚର ବୋଧ ହୁଏ ଭୁଲ କହିଛି—କିମ୍ବା ମୋର ଶୁଣିବାକୁ ଭୁଲ ହୋଇଥିବ—ଆଜି ରାତିରେ ହୋଇପାରେ ?—ଯାହା ହେଉ ଶତ୍ରୁ ଯେ ଅବିଳମ୍ବେ ଦୁର୍ଗାବରୋଧ ତ୍ୟାଗ କରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ—ଖାଦ୍ୟାଭାବ କି କମ ଅଭାବ ।

ଶାରଦା—ସମ୍ରାଟଙ୍କର ଏ'ପର୍ଯ୍ୟନ୍ତ ଦେଖା ନାହିଁ କାହିଁକି ? ଆମକୁ ଖୁବ୍ ଭୋରରୁ ଆସିବାକୁ କହିଦେଇ—ରାତି ଥାଉଁ ଥାଉଁ ଯେବେ ହୁଏତ, ଭଲ—ଏବେ କାହାନ୍ତି ? ଏ' ପର୍ଯ୍ୟନ୍ତ ନିଜର ବି ଦେଖା ନାହିଁ ।

ବୀରେନ୍ଦ୍ର—ତୁମେ ଯେ ଏକାବେଳକେ ଅସମ୍ଭାଳ,—ଟିକିଏ ବେଶି ବେଳଯାଏ ଶୋଇ ପଡ଼ିଥିବେ, କିମ୍ବା ଅନ୍ୟ କୌଣସି କାମରେ ଲାଗି ଯାଇଥିବେ—ତେଣୁ ବିଳମ୍ବ ହେଉଥିବ—ଏଥିରେ ଏତେ ଉଚ୍ଚାଟ ? ଆମେତ ଏମିତ କିଛି ବେଶିବେଳ ହେଲା ଆସି ନାହୁଁ ।

ଶାରଦା—ତୁମେ ସମ୍ରାଟଙ୍କର କଥା ଜାଣ ନାହିଁ ବୋଲି ସେପରି କହୁଛ । ସେ ଠିକ୍ ସମୟରେ ଠିକ୍ କାର୍ଯ୍ୟ କରିଥାନ୍ତି—ଆଜି ଏପରି ବ୍ୟତିକ୍ରମ କାହିଁକି ? ଏହା ତାଙ୍କର ଜୀବନରେ ପ୍ରଥମ ବୋଲି ମୋର ମନେ ହେଉଛି—ମୋର ଭାରି ଭୟ ହେଉଛି, ସମ୍ରାଟଙ୍କର କୌଣସି ଅସୁସ୍ଥତା ଘଟି ନାହିଁତ ? ତା' ହୋଇଥିଲେ, ଏଠାକୁ କାହାରିକୁ ହେଲେ ପଠାଇଥାନ୍ତେ ନିଶ୍ଚୟ ।

ବୀରେନ୍ଦ୍ର—ତୁମେ, ସ୍ତ୍ରୀଲୋକମାନେ ତିଳକୁ ତାଳ କରି ବସ—କିଏ ଟିକିଏ ଅଳ୍ପ ଅଳ୍ପ ବିଳମ୍ବ ହେଲା ତ କହିବ, ସେ ଆଉ ଇହଧାମରେ ନାହିଁ—ତୁମ୍ଭେମାନେ ଏକ ବିଚିତ୍ର ସୃଷ୍ଟି ।

ଶାରଦା—ଯେତିକି ସୁଚିତ୍ର ସୃଷ୍ଟି ତୁମେ, ପୁରୁଷ ?

ବୀରେନ୍ଦ୍ର—ନୋହୁଁ ?

ଶାରଦା—କ'ଣ କହନ୍ତି ପୁଣି—

ବୀରେନ୍ଦ୍ର—ରାଗି ଗଲକି ?

ଶାରଦା—ବିଚିତ୍ର କ'ଣ ?

ବୀରେନ୍ଦ୍ର—ସାମାନ୍ୟ କଥାରେ ?

ଶାରଦା—ବିଚିତ୍ର ସୃଷ୍ଟି ପରି !

ବୀରେନ୍ଦ୍ର—ପ୍ରକୃତରେ ତୁମ୍ଭେ ନାରୀ, ବିଚିତ୍ର ସୃଷ୍ଟି !—ପ୍ରିୟେ ! ପ୍ରିୟେ ! ( ଆଲିଙ୍ଗନ କରିବାକୁ ଉଦ୍ୟତ )

ଶାରଦା—( ବାଧାଦେଇ ) ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ଏ କ'ଣ କରୁଛ ? ଭୁଲିକି ଗଲ ଆମ୍ଭମାନଙ୍କର ପ୍ରତିଜ୍ଞା ? ଅମ୍ଭେମାନେ ଯେ ବ୍ରତ ସଙ୍କଳ୍ପ ହୋଇଛୁଁ—ସମ୍ରାଟ ଯେ ପର୍ଯ୍ୟନ୍ତ ତାଙ୍କର ଅଭିଳଷିତ ପାତ୍ରରେ ଅର୍ପିତ ନ ହୋଇଛନ୍ତି—ରାଜା, ରାଜା ସଙ୍ଗେ ଯେ ପର୍ଯ୍ୟନ୍ତ ମିଳିତ ନ ହୋଇଛନ୍ତି—ଆମ୍ଭମାନଙ୍କର ମିଳନ ଅସମ୍ଭବ—ପରସ୍ପର ମଧ୍ୟରେ ଆଲିଙ୍ଗନ ମଧ୍ୟ ଅସମ୍ଭବ ?

ବୀରେନ୍ଦ୍ର—ନିଶ୍ଚୟ ଅସମ୍ଭବ ପ୍ରେୟସି ! କ୍ଷଣିକ ବିସ୍ମରଣ ଯୋଗୁଁ ମୋତେ କ୍ଷମା କର, ପ୍ରେୟସି ! କୁହ, ପ୍ରିୟେ ! କି ଉପାୟରେ ଅମ୍ଭେମାନେ କୃତକାର୍ଯ୍ୟ ହେବା ?

ଶାରଦା—ଉପାୟ ! ଉପାୟକର୍ତ୍ତାଙ୍କ ହାତରେ—ତେବେ ବାବା ଉପାୟ ନିମନ୍ତେ ସମ୍ରାଟଙ୍କୁ ଯେଉଁ ପତ୍ର ଦେଇଥିଲେ, ନିଶ୍ଚୟ ସେଥିରେ କୌଣସି ଗୋପନ ପରାମର୍ଶ ଅଛି—ସେହି ପରାମର୍ଶାନୁଯାୟୀ କାର୍ଯ୍ୟ କରିବାକୁ ସମ୍ରାଟ ବୋଧହୁଏ ଆମ୍ଭମାନଙ୍କୁ ଡକାଇ ପଠାଇଛନ୍ତି—କାହିଁ ? ସମ୍ରାଟଙ୍କର ଦେଖାନାହିଁ କାହିଁକି ?

ବୀରେନ୍ଦ୍ର—ବେଳବିତ ଅନେକ ହୋଇଗଲାଣି—ଦେଖ, ଏପରି ସ୍ଥାନରେ ଆମ୍ଭମାନଙ୍କର ବେଶିକ୍ଷଣ ରହିବାଟା କଦାପି ଉଚିତ ନୁହେଁ ।

ଶାରଦା—ବିଶେଷତଃ ମୋ'ପକ୍ଷେ—ଯେତେବେଳେ ନିର୍ବାସିତର କନ୍ୟା ମୁହିଁ । ତାହାରିକୁ ଦେଖୁନାହିଁ ଯେ ଖବରଟା ନିଆଯା'ନ୍ତା ।

ବୀରେନ୍ଦ୍ର—ଅଚ୍ଛା, ବର୍ତ୍ତମାନ ଚାଲ, ସନ୍ଧ୍ୟା ସମୟରେ ଜେମାଦେଈ ଯେତେବେଳେ ବଗିଚାକୁ ବୁଲିବାକୁ ଆସିବେ, ସେତିକିବେଳେ ଆସିବା ।

ଶାରଦା—ମୋ'ର ମନ କାହିଁକି କିପରି ଗୁଡ଼େଇ-ଗୁଡ଼େଇ ହେଉଛି—ଜେମାଦେଈଙ୍କ କଥା ଦେଇ କଥା କେବେ ଏପରିଭାବେ ଖିଙ୍କନ୍ତି ନାହିଁ ?

ବୀରେନ୍ଦ୍ର—ତୁମର ଖାଲି ସବୁବେଳେ ଅମଙ୍ଗଳ ଚିନ୍ତା—ଚାଲ, ପରେ ଆସିବା । ପରମେଶ୍ୱର । ଏ'ମହତ୍ ଉଦ୍ଦେଶ୍ୟ ସାଧନରେ ଯେତେବେଳେ ବ୍ରତୀ କରାଇଛନ୍ତି, ତେତେବେଳେ ଉପାୟ କହିଦେଇ, ଧନ୍ୟ କରନ୍ତୁ !

ସୁବର୍ଣ୍ଣ—( ନେପଥ୍ୟେ ) କାହିଁ, କାହିଁ କନ୍ୟା ମୋର ?

ଶାରଦା—ଏ କ'ଣ ? ମହାରାଜ ଏପରି କ'ଣ କହୁଛନ୍ତି ?

ବୀରେନ୍ଦ୍ର—ଜେମାଦେଈଙ୍କର କ'ଣ ହେଲା କି ?

[ ସୁବର୍ଣ୍ଣକେଶରୀଙ୍କର ପ୍ରବେଶ ]

ସୁବର୍ଣ୍ଣ—କାହିଁ, କାହିଁ କନ୍ୟା ମୋର ? ତୁ' କିଏ ?

ଶାରଦା—ଏ' ଅଭାଗିନୀ ଶାରଦା, ମହାରାଜ !

ସୁବର୍ଣ୍ଣ—ଶାରଦା ?—ତୁ ଏଠି ? ତେବେ ? କାହିଁ କନ୍ୟା ମୋର କାହିଁ ଲୁଚିଛୁ ? ପ୍ରତିଶୋଧ ନେବାକୁ ଆସିଛୁ କି ? ଦେ, ଦେ, ଶାରଦା ! ମୋର ପ୍ରାଣ ପିତୁଳାକୁ ଫେରାଇ ଦେ—ମୁଁ ତୋତେ ଏ' ନଅର ଆଉ ମନା କରିବି ନାହିଁ—ତୋ'ର ପିତାକୁ ସ୍ୱଦେଶକୁ ଫେରି ଆସିବାକୁ ଏହିକ୍ଷଣି ହୁକୁମ ଦେଉଛି ।

ବୀରେନ୍ଦ୍ର—ମହାରାଜ ! ମହାରାଜ ! ପ୍ରକୃତିସ୍ଥ ହୁଅନ୍ତୁ ! କହନ୍ତୁ ଘଟଣା କ'ଣ—ଜେମାଦେଈ କ'ଣ ଉଆସ ମଧ୍ୟରେ ନାହାନ୍ତି ?—ନିଶ୍ଚୟ ଥିବେ ।

ସୁବର୍ଣ୍ଣ—ତୁମ୍ଭେ କ'ଣ ତେବେ ଠିକ୍ ଜାଣ, ଶାରଦା ଗ୍ରେପ୍ତ କରନାହିଁ ? ଚାଲ, ଚାଲ ବୀରେନ୍ଦ୍ର, ମୁଁ ତୁମ୍ଭଙ୍କୁ ଅନ୍ଧର ଉଚପଦ ଦେବି—ଖାଲି ଥରେ ଦେଖାଇ ଦିଅ, ମା ମୋର କେଉଁଠି ଲୁଚିକରି ଶୋଇଛି—ଡାକି ଡାକି ଥକି ଗଲିଣି, ଅଦୌ ଉତ୍ତର ପାଉନାହିଁ—ମା, ମା, (ବ୍ୟଥିତ ହେବା)

ଶାରଦା—ସତ୍ୟ । ସତ୍ୟ । (ବ୍ୟଥିତ ହେବା)

[ ଦୂତର ବେଗେ ପ୍ରବେଶ ]

ଦୂତ—ମହାରାଜ ! ସର୍ବନାଶ ଉପସ୍ଥିତ—ଦୁର୍ଗଦ୍ୱାର ଉନ୍ମୁକ୍ତ !

ବୀରେନ୍ଦ୍ର—ଦୁର୍ଗଦ୍ୱାର ଉନ୍ମୁକ୍ତ !

ସୁବର୍ଣ୍ଣ—ଦୁର୍ଗଦ୍ୱାର ଉନ୍ମୁକ୍ତ ? ତେବେ କ'ଣ ମା ମୋର ଦୁର୍ଗ ବାହାରକୁ ଯାଇଛି ? ଦ୍ୱାର ଖୋଲିଲା କିପରି ? ( କାମାରେ ମଣି ରହିବାର ସ୍ଥାନ ସନ୍ଧାନ କରି ) ଏ'କଣ ? ମୋର ମଣି କାହିଁ ? ମଣି ଗଲା କେଉଁଆଡ଼େ ? ମଣି ସହିତ ମା କି ମୋର ଅପହୃତା ହୋଇଛି ? ଯାଅ ସେନାପତେ ! ଶତ୍ରୁ ଯେବେ ମଣି ସହିତ ମୋର ହୃଦୟର ମଣିକୁ ହରଣ କରି ନେଇଥାଏ, ଅନୁନୟ କରି କହିବ—ସେ ପ୍ରସ୍ତର ଖଣ୍ଡରେ ମୋର ଆଉ ପ୍ରୟୋଜନ ନାହିଁ—ଏ' ଦୁର୍ଗ ସ୍ୱଚ୍ଛନ୍ଦରେ ସେ ଅଧିକାର କରି ପାରନ୍ତି—ଉତ୍କଳ-ସିଂହାସନ ନିର୍ବିବାଦରେ ଭୋଗ କରି ପାରନ୍ତି; ବିନିମୟରେ ଏତିକି କେବଳ ଦାନ କରନ୍ତୁ—ଦରିଦ୍ରର ଏକ-ମାତ୍ର ନିଧିକୁ ଫେରାଇ ଦିଅନ୍ତୁ—ବୃଦ୍ଧର ଏକମାତ୍ର ଅବଲମ୍ବନକୁ ପ୍ରତ୍ୟର୍ପଣ କରନ୍ତୁ । ଯାଅ ଯାଅ, ସେନାପତେ । ଯାଅ, ଶାରଦା ନା, ନା, ତୁମ୍ଭେମାନେ ଫେରିଆସ—ନିଜେ ମୁଁ ଯାଏଁ—ମୋର ଆକୁଳ ମିନତିରେ ମା ମୋର ନିଶ୍ଚୟ

ଉଦ୍ଧାର ପାଇବ—ହୃଦୟ-ମଣିକୁ ମୋର ଲୁଣ୍ଠାଇ ନେଇ ଆସିବ—ନନ୍ଦ ! ନନ୍ଦ ! ନୟନର ମଣି-ମୋର—ପ୍ରାଣର ଧନ ମୋର !

( ବେଗେ ପ୍ରସ୍ଥାନ )

ଶାରଦା—ସନ୍ଧ ! ସନ୍ଧ ! ( କାନ୍ଦିବା )

ବୀରେନ୍ଦ୍ର—ଏ'କଣ କାନ୍ଦିବାର ସମୟ, ଶାରଦା ? ଆସ ଖୋଜିବା, କାହିଁ ଲୁଚିଛନ୍ତି ଦେବୀ-ପ୍ରତିମା ଅମ୍ଭର ? ( ବେଗେ ଉଭୟଙ୍କର ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଗ୍ରେବରଙ୍ଗଙ୍କ ଶିବିର—

ସୁଭଦ୍ରା—ଏ' କ'ଣ ଶୁଣୁଛି ବାସୁଦେବ ? ନନ୍ଦକା ଏତେଦୂର ହୀନ ଚରିତ୍ର ?—ସାମାନ୍ୟ କାମ ଲାଲସାରେ ଆପଣାର ପିତାର, ରାଜ୍ୟର, ଜାତିର ମଧ୍ୟ ସର୍ବନାଶ କରିବାକୁ ଉଦ୍ୟତା ହୋଇଥିଲା ?

ବାସୁଦେବ—( ସ୍ୱଗତ ) ଏ'ଯେ ହିତରେ ଅହିତ ଘଟିଲା, ଦେଖୁଛି ?

ଗ୍ରେବରଙ୍ଗ—ମା, ମୋତେ ଗାଳି ଦେଉଥିଲ ପରା, ଦେଖିଲତ ବୃଦ୍ଧର ବୁଦ୍ଧିକି ? କିପରି କୌଶଳରେ ଗୋଟିଏ ବାରବିଳାସିନୀକୁ—

ବାସୁଦେବ—ତେତିକି କହନ୍ତୁ, ମହାରାଜ ! ପବିତ୍ରାତ୍ମା ଜେମାଦେଈଙ୍କପ୍ରତି ଏ'ପରି ଅପବିତ୍ର କଥା ବ୍ୟବହାର କରନ୍ତୁ ନାହିଁ । ଓଃ, ଏ' ଯେ ବିଷଧାରା ପରି ଶ୍ରବଣ ମଧ୍ୟରେ ପ୍ରବେଶ କରୁଛି—ଶେଲ ସଦୃଶ ମର୍ମ୍ମକୁ ଆଘାତ କରୁଛି ? ( ସ୍ୱଗତ ) ହାୟ ! କାହିଁକି ମୁଁ ଜେମାଦେଈଙ୍କୁ ଏ'ପରି ଦୁଃସାହସିକ କାର୍ଯ୍ୟରେ ବ୍ରତୀ କରାଇଲି ? କଳଙ୍କ-ମାତ୍ର ତାଙ୍କର ସାର ହେଲା ସିନା ! ଓଃ, ଏଥି ପୂର୍ବରୁ ମୋର ମରଣ ନ ହେଲା କାହିଁକି ? ( ପ୍ରକାଶ୍ୟେ ) ମହାରାଜ ! ମହାରାଜ ! ମୁଁ ମୁକ୍ତି ଚାହେଁ ନାହିଁ—ମୋତେ ପ୍ରାଣଦଣ୍ଡ ଦିଅନ୍ତୁ ! ମା ! ମା ! ବାଧା ଦିଅନ୍ତୁ ନାହିଁ ! ନା—

ଗ୍ରେବରଙ୍ଗ—ପ୍ରାଣଦଣ୍ଡ ଚାହୁଁ, ବୃଦ୍ଧ ? ଦେବି ନାହିଁ—ଯେଣୁ ଏହି ମୁକ୍ତି ତୋର ପ୍ରାଣଦଣ୍ଡାପେକ୍ଷା ଗୁରୁତର ଦଣ୍ଡ ହେବ ।

ବାସୁଦେବ—ଠିକ୍ କହୁଛନ୍ତି, ମହାରାଜ ! ଅତୀବ ଗୁରୁତର ଦଣ୍ଡ; ତଥାପି ମୁଁ ମୁକ୍ତି ଚାହେଁ—(ସ୍ୱଗତ) ଜୀବନର ଶେଷବାୟୁ ନିର୍ଗତ ହେବା ପର୍ଯ୍ୟନ୍ତ, ଜେମାଦେଈଙ୍କୁ ରକ୍ଷା କରିବା ମୋର ପ୍ରଧାନ କର୍ତ୍ତବ୍ୟ ।

ଗ୍ରେବରଙ୍ଗ—କ'ଣ ଭାବୁ'ଛୁ, ପାଷଣ୍ଡ ?

ସୁଭଦ୍ରା—ଗ୍ରେବ !

ଗ୍ରେବରଙ୍ଗ—ମା !

ସୁଭଦ୍ରା—ଏହିକାରେ ତୋର ମନୁଷ୍ୟତ୍ୱ—ଏହିକାରେ ତୋ'ର ବୀରତ୍ୱ ? ଅଦ୍ୟାବଧି ଆତ୍ମସଂଯମ କରିବାକୁ ଶିଖିଲୁ ନାହିଁ ?—ଗୋଟିଏ ଦେଶ-ହିତୈଷୀ, ପକ୍ୱମତି, ପକ୍ୱକେଶ ବୃଦ୍ଧ, ରାଜ-ପରିବାର ଓ ରାଜ୍ୟର ମଙ୍ଗଳ ସକାଶେ, ଆପଣାକୁ ବିପନ୍ନ କରି ସୁଦ୍ଧା ଅହୋରାତ୍ର ଚେଷ୍ଟିତ—ଆଜି ତୁ ଯୌବନ-ସୁଲଭ ଚପଳତା ବଶତଃ ଇତର ଭାବେ ତାଙ୍କୁ ତିରସ୍କାର କରିବାକୁ ଅକୁଣ୍ଠିତ ? ରାଜା ତୁହି, ଶତ ଶତ ପ୍ରଜାର ପାଳକ ତୁହି—ଧୀର, ସ୍ଥିର ଓ ସଂଯତ ଭାବେ କାର୍ଯ୍ୟ କରିବା ତୋ'ର ଉଚିତ ନୁହେ କି ? ଏତିକି ତୋ'ର ବୁଝିବା ଉଚିତ, ମନ୍ତ୍ରୀ ମହାଶୟ କ'ଣ ଜାଣିଥିଲେ, ଯେ ସେ ଯାହାପାଇଁ ଜୀବନ ଉତ୍ସର୍ଗ କରିବାକୁ ଯାଉଅଛନ୍ତି, ସେ ଜଣେ ବାରବିଳାସିନୀ—

ବାସୁଦେବ—ମା ! ମା ! ପ୍ରତ୍ୟାହାର କରନ୍ତୁ ସେ ବିଶେଷଣ—ନୀଳନଭ ଗାତ୍ରରେ ଘନ-ରେଖା ଅଙ୍କିତ କରିଦିଅନ୍ତୁ ନାହିଁ, ସୁବିମଳ ପୁଣ୍ୟ ବକ୍ଷରେ ପାପ-କଳଙ୍କ ଲେପନ କରି ଦିଅନ୍ତୁ ନାହିଁ—ସେ ଯେ ନିଷ୍କଳଙ୍କ ଚନ୍ଦ୍ରମା ! କଳଙ୍କ ଯାହା ମନେ କରୁଛନ୍ତି ସେ କେବଳ ମୁହିଁ—ଏ' ପାପିଷ୍ଠ—ଏ' ନରାଧମ !

ଶୈରଗଙ୍ଗ—ମୋତେ ଗାଳିଦିଅ ପଛକେ, ମା—ଠିକ୍ ଜାଣିଥାଅ, ଏ' ଗୋଟାଏ ନୂତନ ଗୁରୁଙ୍ଗ—କଦାପି ଭୁଲିଯାଅ ନାହିଁ, ମା ।

ସୁଭଦ୍ରା—ମୁଁ ତୁମ୍ଭର କଥା କିଛି ବୁଝି ପାରୁ ନାହିଁ ।

ବାସୁଦେବ—ଶୁଣନ୍ତୁ ତେବେ ମା ! ଯେଉଁ କାର୍ଯ୍ୟ ହେତୁ ଜେମାଦେଇ ଆଜି କଳଙ୍କିନୀ, ସେହି କାର୍ଯ୍ୟର ପ୍ରବର୍ତ୍ତକ ଏ' ଅଧମ । ଯେତେବେଳେ ଦେଖିଲି, ଉଭୟ ପକ୍ଷ କୌଣସି ମତେ ଆପଣା ଆପଣାର ଜିଦ୍ ତ୍ୟାଗ କରିବେ ନାହିଁ—ଦିନୁ ଦିନୁ ରୋଗ ଓ ଖାଦ୍ୟାଭାବରେ ଶତ ଶତ ପ୍ରାଣୀ ପ୍ରାଣ ହରାଉ ଅଛନ୍ତି, ଅଥଚ ତତ୍ପ୍ରତି କୌଣସି ଦଳପତିର ଭ୍ରୂକ୍ଷେପ ସୁଦ୍ଧା ନାହିଁ—ସର୍ବସ୍ୱାନ୍ତ ହେଲେ ମଧ୍ୟ ସେମାନେ ଆପଣା ଆପଣାର ଆତ୍ମ-ଗରିମା ରକ୍ଷା କରିବାକୁ ତତ୍ପର—ଆଉ ମୋର ଜୀବନାଶା ମଧ୍ୟ ଅତ୍ୟଳ୍ପ; ସେତେବେଳେ ବାଧ୍ୟ ହୋଇ ଜେମାଦେଈଙ୍କୁ ଏହି କାର୍ଯ୍ୟରେ ପ୍ରବର୍ତ୍ତାଇଲି । ମନେ କରିଥିଲି, ପ୍ରେମିକ ପ୍ରେମିକାର ମିଳନ ହେବ—ଶତ୍ରୁ ଶତ୍ରୁର ମିଳନ ହେବ—ରାଜ୍ୟର ଭବିଷ୍ୟତ୍ ମଙ୍ଗଳମୟ ହେବ—ଫଳତଃ, ଆପଣଙ୍କର ଓ ମୋର ଆଶା ଫଳବତୀ ହେବ;—ଦେଖୁଛି ଏବେ, ଏ' ଯେ ହିତରେ ଅହିତ ଘଟିଲା ।

ସୁଭଦ୍ରା—କ'ଣ କହୁଛ ତୁ, ଶୈର ?

ଶୈରଗଙ୍ଗ—କନ୍ୟା ପକ୍ଷେ କି ଏହା ଶୋଭନୀୟ, ମା ! ସହସ୍ର ଉପଦ୍ରବ ହେଲେହେଁ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ପିତାର, ରାଜାର ଓ ରାଜ୍ୟର ଭାଗ୍ୟ-ଲକ୍ଷ୍ମୀ ଅପହରଣ ପୂର୍ବକ ଶତ୍ରୁର କରପୁଟରେ ଅର୍ପଣ କରିବା ?

ବାସୁଦେବ—ଶତ୍ରୁକୁ ମିତ୍ରଭାବେ ଆଲିଙ୍ଗନ କରିବା, ସ୍ୱାର୍ଥ ନିମନ୍ତେ କାଳକବଳରୁ ଜୀବମାନଙ୍କୁ ରକ୍ଷା କରିବା, ସ୍ୱାର୍ଥ ନିମନ୍ତେ ମଙ୍ଗଳ ସାଧନ କରିବା, ସ୍ୱାର୍ଥ ନିମନ୍ତେ—ଏହା ଅକିଞ୍ଚିତ୍କର କାଞ୍ଚନ ନୁହେଁ କି ?

ଶୈରଗଙ୍ଗ—ଏହି କାଞ୍ଚନ-ପ୍ରୟାସୀ, ଶୈରଗଙ୍ଗ କଦାପି ହୋଇ ନ ପାରେ—ଉଦ୍ଦେଶ୍ୟ ଯାହାହେଉ, ଉତ୍କୋଚରେ ବଶୀଭୂତ ହେବା କର୍ଣ୍ଣାଟ-ରାଜାପକ୍ଷେ ଅସମ୍ଭବ ।

ବାସୁଦେବ—ମହାରାଜ ! ଯୁଦ୍ଧ କି ତେବେ ଆପଣଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ?

ଶୈରଗଙ୍ଗ—ଯୁଦ୍ଧରେ ପ୍ରବୃତ୍ତ ହେଲେ, ଯୋଦ୍ଧାର ଯେପରି ଉଦ୍ଦେଶ୍ୟ ସାଧାରଣତଃ ହୋଇଥାଏ ।

ସୁଭଦ୍ରା—ବୁଝିଛି, ବୁଝିଛି ମୂର୍ଖ ! ତୁ ରଣମଦମତ୍ତ ହୋଇ ରାଜନନ୍ଦିନୀ ମସ୍ତକରେ କଳଙ୍କ ଅର୍ପଣ କରିଛୁ—ଏହି ମହାଜନଙ୍କୁ ମଧ୍ୟ ହତ୍ୟା କରିବାକୁ ବସିଥିଲୁ !—ଆରେ ମୂର୍ଖ ! ମନେ କରୁଛୁ କି ତୁହି, ପାଶବିକ ବଳରେ କେବଳ ବୀରତ୍ୱର ପରିଚୟ ମିଳେ ? ଆତ୍ମାଭିମାନ ରକ୍ଷାରେ କି କେବଳ ସଂଯମର ପରିଚୟ ମିଳେ ?—ଭୁଲ, ଭୁଲ ମୂର୍ଖ ! ପ୍ରକୃତ ବୀରତ୍ୱ—ପ୍ରକୃତ ସଂଯମ ଯେବେ ଦେଖିବାକୁ ଚାହୁଁ, ଏହି ମହାଜନଙ୍କର କାର୍ଯ୍ୟ ପ୍ରତି ଲକ୍ଷ୍ୟ କର—ମୃତ୍ୟୁ ଗ୍ରାସରେ ପତିତ ହୋଇ ସୁଦ୍ଧା ମହତ୍ ଉଦ୍ଦେଶ୍ୟ ସାଧନରୁ କିପରି ତିଳେମାତ୍ର ବିଚଳିତ ହୋଇ ନାହାନ୍ତି—ସ୍ୱ-ରାଜ୍ୟର ସମସ୍ତ ନିନ୍ଦା ଧାରଣ କରି ସୁଦ୍ଧା ଅବନତ ମସ୍ତକରେ କିପରି ନିର୍ବାସନ ଯାତନା ସହ୍ୟ କରିଅଛନ୍ତି ? ଅନୁତାପ କର, ମୂର୍ଖ ! ନିଜର ଆଚରଣ ନିମନ୍ତେ ପରିତାପ କର—ଚାଲ, ମନ୍ତ୍ରୀ ! ନିଜେ ମୁଁ ଉତ୍କଳ-ରାଜାଙ୍କ ନିକଟକୁ ଯିବି—ଜାନୁପାତ ପୂର୍ବକ ରାଜନନ୍ଦିନୀଙ୍କୁ ବଧୂ ରୂପେ ଭିକ୍ଷା କରିବି ।

ଶୈରଗଙ୍ଗ—ମା ! ମା ! ଏ' କଣ କରୁଛ ?

ସୁଭଦ୍ରା—ତୋତେ ମଧ୍ୟ ମୋ ସଙ୍ଗେ ଯିବାକୁ ହେବ—ତୋ'ର ଆଚରଣ ପାଇଁ ତୁ ନିଜେ କ୍ଷମା ଭିକ୍ଷା ମାଗିନେବୁ ।

ଶୈରଗଙ୍ଗ—ମା !

ସୁଭଦ୍ରା—ଏ' ମାତୃ-ଆଦେଶ । ଆ' ମୋ ସଙ୍ଗେ—ଆସ ମନ୍ତ୍ରୀ । ( ବାସୁଦେବଙ୍କ ସହ ପ୍ରସ୍ଥାନ )

ଶୈରଗଙ୍ଗ—ଉଃ ! ବୀର ହୃଦୟରେ କି ଶେଲାଘାତ !

( ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

[ ଦୁର୍ଗାଭ୍ୟନ୍ତର ]

ସୁବର୍ଣ୍ଣ—ମୁଁ ଯେ କିଛି ବୁଝିପାରୁନାହିଁ, ବୀରେନ୍ଦ୍ର ! କେଉଁ କାରଣରୁ ନନ୍ଦ ମୋର ଏପରି ହୀନାଚରଣ କଲା ? ପୁଣି ଚୈତ୍ର ଲେଖିଛି—ସେ ଦୁଷ୍ଟଚରିତ୍ରା, ଖଳର ବାମ-କଳଦ୍ୱାରେ ପିତା, ରାଜା ଓ ରାଜ୍ୟର ସର୍ବନାଶ କରିବାକୁ ବସିଥିଲା—ଏହା କି ସତ୍ୟ ? ମୋ ନନ୍ଦ ପକ୍ଷେ କି ଏହା ସମ୍ଭବ ? ମୁଁ ଯେ କିଛି ସ୍ଥିର କରି ପାରୁନାହିଁ ?

ବୀରେନ୍ଦ୍ର—ମହାରାଜ ! ଚୈତ୍ରର କଥାରେ ବିଶ୍ୱାସ କରୁଛନ୍ତି ? ସେହି ଅପବିତ୍ର ପତ୍ରକୁ ଶତଖଣ୍ଡରେ ଛିଣ୍ଡାଇ ନ ପକାଇ ଏ' ପର୍ଯ୍ୟନ୍ତ ହାତରେ ଧରି ଠିଆ ହୋଇଛନ୍ତି ? ଚୈତ୍ର, ଚୈତ୍ର—ଧର୍ମର ମର୍ଯ୍ୟାଦା ସେ କାହୁଁ ବୁଝିବ ? ଅମୂଲ୍ୟ ରତ୍ନର ବ୍ୟବହାର ସେ କାହୁଁ ଜାଣିବ ? ମହାରାଜ ! ଜ୍ୟୋତିର୍ମୟୀ ଦେବୀ—ପଶୁକୁ ସେ ମନୁଷ୍ୟ କରିପାରନ୍ତି—ଏ'ପରି ନୀଚତା ତାଙ୍କ ପକ୍ଷେ ଏକାବେଳକେ ଅସମ୍ଭବ ! ଯଦ୍ୟପି ସେ ଅପରି-କର ଅଜ୍ଞାତସାରରେ ମଣି ଗ୍ରହଣ କରିଥା'ନ୍ତି, ନିଶ୍ଚୟ ଜାଣନ୍ତୁ ମହାରାଜ, ସେ କୌଣସି ମହଦୁଦ୍ଦେଶ୍ୟ ସାଧନ ନିମନ୍ତେ—ପିତା, ରାଜା ଓ ରାଜ୍ୟର ମଙ୍ଗଳ ନିମନ୍ତେ—ଘୋର ପାପ-ଗ୍ରାସରୁ ପୁଣ୍ୟଭୂମିକୁ ରକ୍ଷା କରିବା ନିମନ୍ତେ ।

ସୁବର୍ଣ୍ଣ—ଏତେ କଳ୍ପନା ନିଷ୍ପ୍ରୟୋଜନ—ନନ୍ଦଠାରୁ ଏହିକ୍ଷଣି ସମସ୍ତ ଶୁଣାଯିବ ! ଯାହାହେଉ, ଅତୀବ ସୌଭାଗ୍ୟ ମୋର, ଯେ କନ୍ୟାକୁ ମୋର ଫେରି ପାଇଛି । ବୀରେନ୍ଦ୍ର ! ସେ କଳଙ୍କିନୀ ହେଉ ବା ଅକଳଙ୍କିନୀ ହେଉ, ଏ' ସଂସାରରେ ମୋର ଏକମାତ୍ର ଆନନ୍ଦଦାୟିନୀ । ତା'ର ସ୍ନେହ-ସୁଧା ପାନ କରି ଏ' ପର୍ଯ୍ୟନ୍ତ ଜୀବିତ ଅଛି ସିନା ?

[ ଶାରଦାର ବେଗେ ପ୍ରବେଶ ]

ଶାରଦା—ମହାରାଜ ! ( କାନ୍ଦିବା )

ସୁବର୍ଣ୍ଣ—ଏ' କ'ଣ ଶାରଦା ? କାନ୍ଦୁଛୁ ଯେ ? ସଖୀ ତୋ'ର କ'ଣ ଡାକ ଶୁଣିଲା ନାହିଁ ? ସିଡ଼ିଟାରୁ ଓହ୍ଲାଇଲା ନାହିଁ ? ବୃଦ୍ଧପିତାକୁ ତା'ର ଦେଖିବାକୁ ଧାଇଁ ଆସିଲା ନାହିଁ ? କାହିଁକି ? ଦୋଷ କରିଛି ବୋଲି ? ହେଲାତ ହେଲା, ଏଥିପାଇଁ ଏତେ ଭୟ କାହିଁକି ? ଏତେ ଲଜ୍ଜା କାହିଁକି ? ସେ କି ମୋର କନ୍ୟା ନୁହେଁ—ମୁଁ କି ତା'ର ଜନ୍ମଦାତା ନୁହେଁ ? ଯା, ଯା ଶାରଦା ! ସଖୀକୁ ତୋ'ର ଏହିପରି ବୁଝାଇ ସୁଝାଇ ଘେନି ଆ—ନା, ନା, ନିଜେ ଯାଏ ମୁଁ—ନିଜେ ବୁଝାଇ ସୁଝାଇ ଘେନି ଆସିବି । ଝିଅ ମୋର ଭୟ କରୁଛି, ମୁଁ ଡାକୁଛି ତା'କୁ ତିରସ୍କାର କରିବି ବୋଲି—ହାୟ ! ମାତୃହୀନା ବାଳା ମୋର ତୁ' କି ତୋର ପିତାର ହୃଦୟ ଜାଣି ନାହୁଁ ? ସମସ୍ତ ସଂସାରକୁ ସେ ଯେ ଏକଆଡ଼େ ଥୋଇଛି—ଏକା ତୋତେ ଯେ ଅନ୍ୟ ଅଡ଼େ ଥୋଇଛି ! ପୂର୍ବଟିକୁ ସେ ଅନାୟାସେ ବିସର୍ଜନ କରିପାରେ, କିନ୍ତୁ ପରଟିକି ଯେ ତା'ର ରକ୍ତସଙ୍ଗେ ମିଶିଛି !

( ପ୍ରସ୍ଥାନୋଦ୍ୟତ )

ଶାରଦା—ମହାରାଜ—

ସୁବର୍ଣ୍ଣ—ଅ, ଅ, ଶାରଦା ! ଦେଖିବୁ, ତୁ ଏତେ ତକାତକି କଲୁ—ଏତେ ହଲାହଲି କଲୁ—ହୁଁ କି ଚୁଁ କଲୁନାହିଁ; କିନ୍ତୁ ମୁଁ କିଛି କରିବି ନାହିଁ—କେବଳ ସ୍ପର୍ଶ କରିବି—ଗୋଟିଏ ଚୁମ୍ବନ ଦେବି—ମୃଦୁସ୍ୱରେ ଡାକିବି, ନନ୍ଦ !—ଆଉ ସଖୀ ତୋ'ର ଉଲ୍ଲସି ହୋଇ ଉଠିବ—କିପରି ମୋତେ ବେଢ଼ାଇ ଧରିବ ।

ଶାରଦା—ମହାରାଜ !

ସୁବର୍ଣ୍ଣ—ଅ, ଅ ହେଲା କରନା ଶାରଦା !

( ବେଗେ ପ୍ରସ୍ଥାନ )

ବୀରେନ୍ଦ୍ର—କ'ଣ ହୋଇଛି ? ତୁମେ ଏ'ପରି ଅଧୀର ହେଉଛ କାହିଁକି ?

ଶାରଦା—ଅଧୀର ହେଉଛି କାହିଁକି ? ଭାବିଲାବେଳକୁ ଯେ ହୃଦୟ ବିଦୀର୍ଣ୍ଣ ହେଉଛି—କହିଲା ବେଳକୁ ଯେ ରସନା ସଙ୍କୁଚିତ ହେଉଛି !

ବୀରେନ୍ଦ୍ର—ଜଳଣ୍ଠା ଆଉ ବଢ଼ାଅନା ପ୍ରିୟେ ! କୁହ କ'ଣ ହୋଇଛି ? ହେମାଦେଈଙ୍କର କୌଣସି ଅସୁସ୍ଥତା ଘଟି ନାହିଁତ ?

ଶାରଦା—ସନ୍ଧି ! ସନ୍ଧି ! ( କାନ୍ଦବା )

ବୀରେନ୍ଦ୍ର—କ'ଣ ଘଟିଛି, ପ୍ରିୟେ ? ହେମାଦେଈଙ୍କର କି ଅମଙ୍ଗଳ ଘଟିଛି ?

ଶାରଦା—ଅମଙ୍ଗଳ କି ମଙ୍ଗଳ ଜାଣେନାହିଁ, ପ୍ରଭୁ ! ସଖୀ ଇହଧାମରେ ଆଉ ନାହାନ୍ତି ! ସନ୍ଧି ! ସନ୍ଧି ! ( କାନ୍ଦବା )

ବୀରେନ୍ଦ୍ର—ଇହଧାମରେ ଆଉ ନା-ହା-ନ୍ତି ?

( ସୁବର୍ଣ୍ଣକେଶରୀଙ୍କର ପ୍ରବେଶ )

ସୁବର୍ଣ୍ଣ—ନାହିଁ—ରହିବ କିପରି ? ଏତେ ସୁଖ କି ମାନବ ପକ୍ଷେ କେବେ ସମ୍ଭବ ? ମୁଁ ସମସ୍ତ ସୁଖ ଏକାକୀ ଭୋଗ କରିବି ବୋଲି ଆଶା କରିଥିଲି, କିପରି ହେଲା ? ମୂଳରୁ ଏକାବେଳକେ ଶେଷ ! ଯାହାର ଯାହା ପ୍ରାପ୍ୟ ତାହା ଦେଇ ସିନା ନିଜେ ଭୋଗ କରିଥିଲେ ଚଳିଥାନ୍ତା ?—ସମସ୍ତଙ୍କୁ ଠକାଇ ନିଜେ ଏକା ସମୁଦାୟ ଭୋଗ କରିବାକୁ ଗଲି, ଠକିବି ନାହିଁ ?—ନୁହେଁ କି ବୀରେନ୍ଦ୍ର ? ତୁ କ'ଣ କହୁଛୁ, ଶାରଦା ? ଏ' କଣ ? ତୁ ଏପରିଭାବେ ଚୁହିଁଛୁ କାହିଁକି ?—କ'ଣ କହିଲୁ ? ମୁଁ ତୋ'ର ସଖୀକୁ ହତ୍ୟା କରିଛି ? ନା, ନା, ମୁଁ ହତ୍ୟା କରିନାହିଁ—ତା' କେବେ ମନେ କରନା—ତୋର କଣ ଏହା ବିଶ୍ୱାସ ହେଉଛି ? ସେ ଯେ ମୋର କନ୍ୟା—ଏକମାତ୍ର ସନ୍ତାନ ! ମୁଁ ଯେ ତାକୁ ପ୍ରାଣଠାରୁ ଭଲପାଏ !—କିଏ କହିଲା, କନ୍ୟା ମୋର ନାହିଁ ? ସେ ତ ଅଛି—ଟିକିଏ ନିଦରେ ଶୋଇ ପଡ଼ିଛି ନା ? ଚୁଲ୍, ଦେଖିବୁ ସେ ଉଠି ସାରିବଣି ।

ଶାରଦା—ମହାରାଜ ! ମହାରାଜ !

ସୁବର୍ଣ୍ଣ—ନାହିଁ ? ମରିଛି ? କ'ଣ କହିଲୁ, ମରିଛି ?—କିଏ ମାରିଛି ? କିଏ ସେ ହତ୍ୟାକାରୀ ? (ନେପଥ୍ୟକୁ ଚୁହିଁ) ଏହି ଯେ ସେହି ହତ୍ୟାକାରୀ ! ଏହି ଯେ ସେହି ଶୈର, ଏଣେ ଆସୁଛି ! ପଳାଇ ଆସ—ନା, ନା, ତୁମ୍ଭେମାନେ ପଳାଅ—ମୁଁ ରହିବି—ମୁଁ ମରିବି—ମୁଁ ମଲେ ନନ୍ଦକୁ ମୋର ପାଇବି ।

ବୀରେନ୍ଦ୍ର—ମହାରାଜ ! ପ୍ରକୃତିସ୍ଥ ହୁଅନ୍ତୁ ।

( ନେପଥ୍ୟ)—ଜୟ ସୁବର୍ଣ୍ଣ କେଶରୀଙ୍କର ଜୟ !

ସୁବର୍ଣ୍ଣ—ପଳାଅ—ପଳାଅ—ଆଉ ରକ୍ଷାନାହିଁ—ଆଉ ରକ୍ଷା ନାହିଁ ।

[ ସୁଭଦ୍ରା ବାସୁଦେବ ଓ ଶୈରଗଙ୍ଗର ପ୍ରବେଶ ]

ସୁଭଦ୍ରା ଓ ବାସୁଦେବ—ଜୟ ମହାରାଜା ସୁବର୍ଣ୍ଣକେଶରୀଙ୍କର ଜୟ !

( ବାସୁଦେବଙ୍କର ଅଭିବାଦନ )

ଶୈରଗଙ୍ଗ—( ସ୍ୱଗତ ) ମିତ୍ର ମୁଖରେ ଶତ୍ରୁର ଜୟୋଚ୍ଚାରଣ—କି ଲଜ୍ଜା !

ସୁବର୍ଣ୍ଣ—କିଏ ? ବାସୁଦେବ ?—ତୁମେ କ'ଣ ନରହନ୍ତା ପକ୍ଷରୁ ଘାତକ ହୋଇ ଆସିଛ ?—କର, କର, ହତ୍ୟାକର ମୁଁ ପ୍ରସ୍ତୁତ ହୋଇଛି !

ସୁଭଦ୍ରା—ମହାରାଜ ! ମହାରାଜ ! ଏ' କିପରି କଥା କହୁଛନ୍ତି ? ଆମ୍ଭେମାନେ ଯେ ଆପଣଙ୍କୁ ବୈବାହିକ ବୋଲି ବରଣ କରିବାକୁ ଆସିଛୁ ।

ସୁବର୍ଣ୍ଣ—ବୈବାହିକ ? କିଏ ?—କା'ର ବିବାହ ?

ସୁଭଦ୍ରା—ମହାରାଜ ଏହି ନିର୍ବୋଧ ଶିଶୁକୁ ତାର ଚପଳତା ସକାଶେ କ୍ଷମା କରନ୍ତୁ—କନ୍ୟାରତ୍ନ ସମ୍ପ୍ରଦାନ କରି ନିଜ ସନ୍ତାନ ବୋଲି ଆଲିଙ୍ଗନ କରନ୍ତୁ ! ( ଶୈରଆଡ଼େ ) କ୍ଷମା ପ୍ରାର୍ଥନା କର, ମୂର୍ଖ !

ଶୈରଗଙ୍ଗ—( ସ୍ୱଗତ ) ମା ! ମା ! କି ଦୀନତା ଅବଲମ୍ବନ କରୁଛ ମା !—ଏହାଠାରୁ ଯେ ବୀରପକ୍ଷେ ମରଣ ଶ୍ରେୟସ୍କର ମା !

ସୁବର୍ଣ୍ଣ—ମୋର କନ୍ୟାର ବିବାହ ?—ଏ' ନିଶ୍ଚୟ ତୁମର ଷଡ଼ଯନ୍ତ୍ର, ବାସୁଦେବ ! ତୁମେ ଦେଖୁଛି ନନ୍ଦର ବିବାହ ନ ଦେଇ ଛାଡ଼ିବ ନାହିଁ ! ହଉ ହଉ, ଏଥର ମୁଁ ଆଉ ମନା କରିବି ନାହିଁ—ଶୀଘ୍ର ଆୟୋଜନ କର । କି ଆନନ୍ଦ —ହାୟ ! ତା'ର ମା ଥା'ନ୍ତା କି ?—ମୁଁ ନିଜେ ତାକୁ ସଜାଇ ଦେଉଅଛି । ( ବେଗେ ପ୍ରସ୍ଥାନ )

ବାସୁଦେବ—ଜୟ ସୁବର୍ଣ୍ଣ—

ଶାରଦା—ପିତା ! ପିତା ! ଏ' କ'ଣ କରୁଛନ୍ତି ? ଜାଣି କି ପାରୁ ନାହାନ୍ତି, ମହାରାଜ ଯେ ଉନ୍ମାଦ ?

ବାସୁଦେବ—ଉନ୍ମାଦ ! ଏ' କ'ଣ କାନ୍ଦୁ ଛୁ ଯେ ?

ବୀରେନ୍ଦ୍ର—ହେମାଦେଈ କି ଅଛନ୍ତି, ପିତଃ ?

ବାସୁଦେବ—ବୁଝିପାରୁ ନାହିଁ, ବୀରେନ୍ଦ୍ର !

ବୀରେନ୍ଦ୍ର—ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ, ହେମାଦେଈ ଯେ ଇହଧାମରୁ ଚାଲି ଗଲେଣି ପିତଃ !

ବାସୁଦେବ ଓ ସୁଭଦ୍ରା—ଇହଧାମରୁ ! ଚୈତ୍ର—

ସୁଭଦ୍ରା—(ସ୍ୱଗତ) କପର ଘଟିଲା ?

ବାସୁଦେବ—ଆକାଶ ! ସ୍ଥିର ହୋଇ ରହିଛ କପର, ଖଣ୍ଡଖଣ୍ଡ ହୋଇ ମୋ ମୁଣ୍ଡ ଉପରେ ପଡୁନାହଁ କାହିଁକି ?—ମେଦିନୀ ! ହସୁଛ କପର, ତୁମେ ଦୀର୍ଣ୍ଣ ବିଦୀର୍ଣ୍ଣ ହୋଇ ମୋତେ ଗ୍ରାସ କରୁନାହଁ କାହିଁକି ?—ମୁଁ ଯେ ଶୁଣି ପାରିବି ନାହିଁ, ହେମାଦେଈ ଇହଧାମରେ ନାହାନ୍ତି—ମୁଁ ଯେ ସହ୍ୟ କରି ପାରିବି ନାହିଁ, ମୋର ସାଧନାର ଉଦ୍ଦେଶ୍ୟ ଅନ୍ତର୍ହିତ ହୋଇଛି—ନା, ନା ମିଥ୍ୟା କଥା, ମିଥ୍ୟାକଥା—ମୋର ହେମାଦେଈ ଅଛନ୍ତି—ମୋର ସାଧନାର ଉଦ୍ଦେଶ୍ୟ ଅନ୍ତର୍ହିତ ହୋଇନାହିଁ !

( ବେଗେ ପ୍ରସ୍ଥାନ )

ଶାରଦା—ବାବା ! ବାବା ! ( ଅନୁଧାବନ )

ବୀରେନ୍ଦ୍ର—ଉଃ—କାହିଁ ଗଲ, ଦେବ ? ( ପ୍ରସ୍ଥାନ )

ସୁଭଦ୍ରା—ଚୈତ୍ର ! ଚୈତ୍ର ! କ'ଣ କଲୁରେ ତୁ ?—ଶେଷେ କ'ଣ ନାରୀ-ହତ୍ୟା କଲୁ ?

ଚୈତ୍ରଗଙ୍ଗ—ସଙ୍ଗରେତ ସତର୍କ ପହରୀ ପଠାଇଥିଲ ?

ସୁଭଦ୍ରା—ଏଡ଼େ କଠୋର ହୃଦୟ ତୋର ?—ତୁ କ'ଣ ଏଡ଼େ ନିର୍ମମ ? ତୋର ହୃଦୟରେ କ'ଣ ପ୍ରେମର ସୁସ୍ନିଗ୍ଧଧାର ସୁଧା ପ୍ରବାହିତ ହେଉନାହିଁ ? ଗୋଟିଏ ବାଳିକା ତୋର ପ୍ରେମରେ ବିମୁଗ୍ଧା ହୋଇ ନିଜର ପିତା, ରାଜା ଓ ରାଜ୍ୟକୁ ଭୁଲିଗଲା—ଅବଶେଷେ ତୋ ପାଇଁ ଆତ୍ମବିସର୍ଜ୍ଜନ କଲା—କାହିଁ ତୁ ପାଗଳ ପ୍ରାୟ ଉନ୍ମତ୍ତ ହୋଇ ଉଠନ୍ତୁ—'ହା ପ୍ରାଣେଶ୍ୱର ! ହା ପ୍ରାଣେଶ୍ୱର !' ବୋଲି ଗଗନ ମେଦିନୀ ବିଦୀର୍ଣ୍ଣ କରି ଦିଅନ୍ତୁ—ନା ଧୀର ଗମ୍ଭୀର ସ୍ୱରେ କହୁଛୁ, 'ସଙ୍ଗରେତ ସତର୍କ ପ୍ରହରୀ ପଠାଇଥିଲ' ?

ଚୈତ୍ରଗଙ୍ଗ—ମା ! ମା ! ସୁଭଦ୍ରା-ତନୟକୁ କ'ଣ ଏତେ ଦୁର୍ବଳଜ୍ଞାନ କରନ୍ତି ଯେ ସେ ଗୋଟିଏ କାମୁକା, ଚରିତ୍ରହୀନା ନାରୀପାଇଁ ବିଚଳିତ ହେବ !—ଅନୁଶୋଚନା କରିବ ? ତୁମ୍ଭେହିଁ କୁହ, ମା ! ଏହାକି ତୁମ୍ଭର ତନୟ ପକ୍ଷେ ଶୋଚନୀୟ ? ଆନନ୍ଦ କର, ମା ! ପାପୀୟସୀ ଆତ୍ମହତ୍ୟା କରିନାହିଁ, ଯେ ଭବ-ଯନ୍ତ୍ରଣାରୁ ମୁକ୍ତିଲାଭ କରିଅଛି !

[ ବାସୁଦେବର ପତ୍ରହସ୍ତେ ପ୍ରବେଶ ]

ବାସୁଦେବ—ଓଃ ହୋଃ—ଏ' ଯେ ନିଜ ଶୋଣିତରେ ଲେଖା ! [ ସୁବର୍ଣ୍ଣକେଶରୀଙ୍କର ପ୍ରବେଶ ]

ସୁବର୍ଣ୍ଣ—କି ପତ୍ର, ବାସୁଦେବ ? ମୋର ନନ୍ଦ କ'ଣ ଲେଖିଛି ? ମୁଁ କି ଶୁଣି ସହ୍ୟକରି ପାରିବି ? ନା, ନା, ପଢ଼ନା—ହାତ ଧରୁଛି, ବାସୁଦେବ, ପଢ଼ନା !

ବାସୁଦେବ—ମହାରାଜ ! ଏ'ପତ୍ର ଯେ ଶୁଣିବା ଉଚିତ—ଆଜି ହେମାଦେଈ ଯେଉଁ ଆଦର୍ଶ ରଖି ଯାଇଛନ୍ତି, ସେଥି ନିମନ୍ତେ ଆମ୍ଭମାନଙ୍କର ଆନନ୍ଦ ପ୍ରକାଶ କରିବା ଉଚିତ—ଜୀବନକୁ ଧନ୍ୟ ମନେ କରିବା ଉଚିତ ?

ସୁବର୍ଣ୍ଣ—କ'ଣ କହୁଛ, ମନ୍ତ୍ରି ! ସତେ ? ସତେ ? ତେବେ ପଢ଼, ପଢ଼—ମୁଁ ଶୁଣିବି, ଆନନ୍ଦ ପ୍ରକାଶ କରିବି—ଆନନ୍ଦ—ଓଃ ହୋଃ—ସେ ଯେ ନାହିଁ ? ମୋର ନନ୍ଦୀ ଯେ ମୋ' କୋଳରେ ନାହିଁ—ଓଃ ହୋଃ ( ବ୍ୟଥିତ ହେବା )

ସୁଭଦ୍ରା—ଉଃ ! କି କରୁଣ ଦୃଶ୍ୟ ! ଚୈତ୍ର, ଚୈତ୍ର ! କ'ଣ କରୁଛୁରେ ତୁ ? ପଢ଼, ପଢ଼, ବାସୁଦେବ ! —ପତ୍ରରେ କ'ଣ ଲେଖା ଅଛି ?

ଗୈରଗଙ୍ଗ—( ସ୍ୱଗତ ) ମା'ଙ୍କର ଏତେ ବ୍ୟସ୍ତ ହେବାର କାରଣ ମୁଁ କିଛି ବୁଝି ପାରୁନାହିଁ—ଯାହାହେଉ ଈଶ୍ୱରଙ୍କୁ ଧନ୍ୟବାଦ, ଯେ କର୍ଣ୍ଣାଟାଧିପତିଙ୍କୁ ଶତ୍ରୁ ସମକ୍ଷରେ ଅବନତି ସ୍ୱୀକାର କରିବାକୁ ହୋଇନାହିଁ ।

ବାସୁଦେବ—ଶୁଣନ୍ତୁ, ସମସ୍ତେ—

"ପିତଃ ! ଅନ୍ତିମକାଳରେ ଥରେ ଶ୍ରୀଚରଣ ବନ୍ଦନା କରିବାର ପ୍ରବଳ ବାସନା ଥିଲା, କେବଳ କର୍ତ୍ତବ୍ୟବୁଦ୍ଧି ଉପରେ ପାରିଲି ନାହିଁ, କ୍ଷମା କରିବେ । ମନେ କରିଥିବେ, ବାବା ! ମୁଁ ମଣି ହରଣ କରିଥିଲି—ପିତା, ରାଜା ଓ ରାଜ୍ୟକୁ ବିପନ୍ନ କରିବାକୁ ବସିଥିଲି—କେବଳ କାମଲାଳସା ତୃପ୍ତି ନିମନ୍ତେ; କିନ୍ତୁ ତାହା ଭ୍ରମ । ମୋ'ଠାରେ ଯେବେ ଏ' ପର୍ଯ୍ୟନ୍ତ ତିଳେମାତ୍ର ବିଶ୍ୱାସ ଥାଏ, କେଶରୀ ନନ୍ଦନୀକୁ କଦାପି ଏତେ ହେୟଜ୍ଞାନ କରିବେ ନାହିଁ—ମୋ'ର ପ୍ରକୃତ ଉଦ୍ଦେଶ୍ୟ ଥିଲା—ମହାମାରୀ ଯୁଦ୍ଧ ଉପରେ ନିବାରିତ ହୋଇ, ରାଜା ରାଜା ମଧ୍ୟରେ, ପ୍ରଭୁ ଭୃତ୍ୟ ମଧ୍ୟରେ ମିଳନ ଘଟିବ—ସ୍ୱରାଜ୍ୟର ଭବିଷ୍ୟତ ମଙ୍ଗଳମୟ ହେବ—ମାତ୍ର ବିଧିର ବିଧାନ କିଏ ଖଣ୍ଡାଇବ ? ଏ'ଅଭାଗିନୀର ଧ୍ରୁବ ଧାରଣାଥିଲା ( ସମସ୍ତଙ୍କର ମଧ୍ୟ ଏହିପରି ଧାରଣା ଥିଲା ) ଯେ ଗୈରଗଙ୍ଗଙ୍କର ଯୁଦ୍ଧର ପ୍ରଧାନ କାରଣ, ଏ' ଅଭାଗିନୀ; ମାତ୍ର ଏ' ଧାରଣା ଯେ ସମ୍ପୂର୍ଣ୍ଣ ଅଲୀକ, ସ୍ୱପ୍ନରେ ସୁଦ୍ଧା ତାହା କିଏ ଭାବିଥିଲା । ତାଙ୍କର ଲେଶମାତ୍ର ଅନୁରାଗ ଏ' ଅଭାଗିନୀ ପ୍ରତି ନାହିଁ—ସେ ଏକପ୍ରକାର ଯୁଦ୍ଧୋନ୍ମତ୍ତ—ଯେମନ୍ତ କି ଯୁଦ୍ଧହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।"

ସୁଭଦ୍ରା—ଏହା କି ସତ୍ୟ, ଗୈର ? ( ଗୈର ମୁଖାବନତ କରିବା ) ଓଃ ହୋଃ !

ବାସୁଦେବ—ଶୁଣନ୍ତୁ, ମା । "ସେ ଯେତେବେଳେ ମୋର କୌଣସି କଥାରେ ବିଶ୍ୱାସ ନ କରି ମୋତେ ଆପଣଙ୍କ ନିକଟକୁ ପଠାଇ ଦେଲେ, ତେତେବେଳେ ମୋର ମନରେ ଯେଉଁ ଯାତନା ହେଲା ତାହା ବର୍ଣ୍ଣନାତୀତ—ତଥାପି ମନକୁ ଦୃଢ଼କରି ଭାବିଲି "ମହତ୍ ଉଦ୍ଦେଶ୍ୟ ସାଧନ ନିମନ୍ତେ ସମୟେ ସମୟେ ଯେତେବେଳେ ପ୍ରାଣବିସର୍ଜନ କରିବାକୁ ହୁଏ, ତେତେବେଳେ ଛାର କଳଙ୍କିନୀ ଅପବାଦରେ କି ଭୟ ? ବେଶ, ଫେରିଯିବି ପିତାଙ୍କ ଚରଣ ଧରି ଅନୁନୟ କରି କହିବି,—'ଯୁଦ୍ଧରୁ ନିବୃତ୍ତ ହେଉନ୍ତୁ,—ମାତ୍ର ସେ ଯେବେ ଗୈରଗଙ୍ଗଙ୍କ କଥାରେ ମୋତେ କଳଙ୍କିନୀ ମନେକରି ବିଶ୍ୱାସ ନ କରନ୍ତି—କିମ୍ବା ଫେରିଯାଇ ଦ୍ୱିଗୁଣ ହିଂସାରେ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି—ତା'ହେଲେ ଉପାୟ କ'ଣ ?'

ସୁବର୍ଣ୍ଣ—ଏ ଯେ ମନର କଥା ଲେଖିଛି ?—

ବାସୁଦେବ—"କୌଣସି ଉପାୟ ସ୍ଥିର କରି ନ ପାରି, ବାସୁଭାଇ, ଯେ ମୋର ପ୍ରଧାନ ମନ୍ତ୍ରଦାତା, ତାଙ୍କ ସଙ୍ଗେ ପରାମର୍ଶ କରିବାର ମଧ୍ୟ କୌଣସି ସୁଯୋଗ ନ ପାଇ ଏହାହିଁ ସ୍ଥିରକଲି—ଆତ୍ମବିସର୍ଜନ ଏକମାତ୍ର ଉପାୟ—ସୁତରାଂ ଏହି ଧୀରବର ଅଙ୍ଗୁରୀ ସାହାଯ୍ୟରେ ତାହାହିଁ ମୁଁ କରିଅଛି । ମୁଁ ଆତ୍ମହତ୍ୟା କରିନାହିଁ, ପିତଃ !—ଦେଶର ମଙ୍ଗଳ ନିମନ୍ତେ, ରାଜା ଓ ପ୍ରଜାର ମଙ୍ଗଳ ନିମନ୍ତେ ଆତ୍ମବିସର୍ଜନ କରିଛି ମାତ୍ର—ଏତଦ୍ୱାରା ନିଶ୍ଚୟ ଗୈରଗଙ୍ଗଦେବ ଆଉ ଯୁଦ୍ଧର କାରଣ ଦର୍ଶାଇ ପାରିବେ ନାହିଁ—ଆପଣ ମଧ୍ୟ ସେ ବିଷୟରେ ହତୋତ୍ସାହ ହେବେ; ଆଉ କେଶରୀ-ବଂଶ ପ୍ରତି କଳଙ୍କ—ମୁଁ ଜୀବିତ ଥିବା ଦ୍ୱାରା ତାହା ଯଦି କେହି ମନେ କରନ୍ତେ—ଅନାୟାସରେ ଅପସାରିତ ହେବ—

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! ଓଃ ହୋଃ—

ବାସୁଦେବ—"ଆଉ ଗୋଟିଏ ବିଶେଷ ନିବେଦନ, ପିତଃ ! ଏ' ଅଭାଗୀ ଗୈରଗଙ୍ଗଙ୍କୁ ତା'ର ମନପ୍ରାଣ ଅର୍ପଣକରି ଦେଇଅଛି—ତେଣୁ ଏତିକି ପ୍ରାର୍ଥନା, ତାଙ୍କୁ ଯେପରି ଶତ୍ରୁ ବୋଲି ହେୟଜ୍ଞାନ ନ କରନ୍ତି —ବରଂ ଜାମାତା ଓ ନିଜର ସନ୍ତାନ ବୋଲି ହୃଦୟରେ ସ୍ଥାନ ଦିଅନ୍ତି । ଏତିକି କହିଲିହିଁ

ବାସୁଦେବଙ୍କ ମନସ୍କାମନା ପୂର୍ଣ୍ଣ ହେବ—ଏ'
ଅଭାଗୀର ଆତ୍ମା ମଧ୍ୟ ମୁକ୍ତିଲାଭ କରିପାରିବ ।"
ଅଭାଗୀ 'ନନ୍ଦା'

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! ମା ! ମା !
( ଚିଠିକୁ ଆଲିଙ୍ଗନ କରିବା )

ସୁଭଦ୍ରା—ଶୁଣିଲୁଟି ସମସ୍ତ ଭୈରବ । କାହା ପ୍ରତି ତୁ କି ବ୍ୟବହାର କରିଛୁ ? ଏ'ଯେ ସାକ୍ଷାତ୍ ଦେବୀ । ହାୟ, ହାୟ, ପାଶବିକ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ କି ପାପ ଅର୍ଜନ କରିଛୁ, ପାପିଷ୍ଠ !

ଭୈରବଙ୍କ—(ସ୍ୱଗତ) ପ୍ରକୃତରେ ଯେ ଏ' ଦେବୀ ! ମୁଁ କରିଛି କ'ଣ ? ସୁରାଭିଭୂତ ହୋଇ ସିନା ଏହି ଦୁଷ୍କାର୍ଯ୍ୟ କଲି ? ଓଃ ହୋଃ ! (ପ୍ରକାଶ୍ୟେ) ମା ! ମା ! ଅଧମ ସନ୍ତାନକୁ କ୍ଷମାକର—ପିତଃ ! ପିତଃ ! ପାପିଷ୍ଠ ପ୍ରତି ଦଣ୍ଡ ବିଧାନ କରନ୍ତୁ !
( ଅଶ୍ରୁ ମାର୍ଜି ବସିବା )

ସୁବର୍ଣ୍ଣ—ମୋର ମା'ର ହୁକୁମ—ମୁଁ ତୋତେ ଏହି ଦଣ୍ଡଦେଲି ( ଟାଣିନେଇ ଆଲିଙ୍ଗନ କରିବା )

ବାସୁଦେବ—ଜୟ 'କେଶରୀ ଗଙ୍ଗଙ୍କର ଜୟ' !

ସୁଭଦ୍ରା—ଏ' ଯେ ହରଷେ ବିଷାଦ ମର୍ଜି !

---

## ଚତୁର୍ଥ ଦୃଶ୍ୟ

—ରାସ୍ତା—

[ ଭକ୍ତଗଣଙ୍କ ଗୀତ ]

କ୍ଷମାରେ ନିତ୍ୟମନ ଅନିତ୍ୟରେ
ମଜ୍ଜି ହଜି କରୁ ଭାବନା ।
କିଛି ତୋର ରହିବ ନାହିଁ ରହି ନାହିଁଟି ସୁନାଦାନା ।
ସ୍ତ୍ରୀ ପୁତ୍ର ପରିବାର ଶତ୍ରୁ ମିତ୍ର ଏକାକାର
ମାୟାର ମିଥ୍ୟା ଡୋରେ ଗୁନ୍ଥାସିନା ।
ତୁହି ମୁହିଁ ଅହଙ୍କାର ଧନଜନ ସମ୍ଭାର
କିଛି ସେ କାହାର ନୁହେଁ, ଛାଡ଼ ଭାଇ ଛାର କାମନା ।
ଆସିଛୁରେ ଏକା, ଯିବୁରେ ତୁ ଏକା
ଛାଡ଼ ଭବଦନ୍ଦା ସାଥିକର ବନ୍ଧୁ ଭାବନା—
ଏଡ଼ିବୁଟି ଯେବେ ଯମ ଯାତନା ।
[ ଭକ୍ତଗଣଙ୍କ ପ୍ରସ୍ଥାନ ]

[ ସୁବର୍ଣ୍ଣ କେଶରୀ ପ୍ରବେଶ କରି ଶୁଣୁଥିବା ]

ସୁବର୍ଣ୍ଣ—ଏହି ଭକ୍ତଗଣ ଯାହା ଗାଇଗଲେ, ତାହା ମୁଁ ଅକ୍ଷରେ ଅକ୍ଷରେ ବର୍ତ୍ତମାନ ବେଶ୍ ଅନୁଭବ କରୁଛି । ଏ'ସଂସାରମିଥ୍ୟା—ଏଠାକାର ସମସ୍ତ ମିଥ୍ୟା—ମୋରକନ୍ୟା—ମୋର ସ୍ତ୍ରୀ—ପ୍ରକୃତରେ କି ସେମାନେ ମୋର ? ଏତେ ସ୍ନେହ, ଏତେ ମମତା,ସେ ସବୁକି ସତ୍ୟ ? ମାୟା, ମାୟା ! ଶତ୍ରୁତା ମିଥ୍ୟା, ମିତ୍ରତା ମଧ୍ୟ ମିଥ୍ୟା ! ଭୈରବ ସହିତ ମୋର ଯେପରି ସମ୍ବନ୍ଧ, ନନ୍ଦକାର ସହିତ ମଧ୍ୟ ସେହିପରି ସମ୍ବନ୍ଧ—କେହି କାହାର ନୁହନ୍ତି—କାହାର ସକାଶେ ମଧ୍ୟ କେହି ଅପେକ୍ଷା କରେ ନାହିଁ—ପ୍ରତ୍ୟେକେ ତାଂର କର୍ତ୍ତବ୍ୟ ଶେଷକରି, ଯେଉଁ ମହାର୍ଣ୍ଣବରୁ ଆସିଥାନ୍ତି ସେହି ମହାର୍ଣ୍ଣବକୁ ଫେରିଯା'ନ୍ତି । ଏ'ସଂସାର ତେବେ କ'ଣ ? —କେବଳ କର୍ତ୍ତବ୍ୟର କ୍ଷେତ୍ର । ସୁଖ ଦୁଃଖ କ'ଣ ?—କିଛିନୁହେଁ, ମନୁଷ୍ୟର କଳ୍ପନା ମାତ୍ର । ମନୁଷ୍ୟ ଯେତେବେଳ ପର୍ଯ୍ୟନ୍ତ ଜ୍ଞାନ ବଶତଃ ହେଉ ବା ଅଜ୍ଞାନ ବଶତଃ ହେଉ, ନିଜର କର୍ତ୍ତବ୍ୟ କରିଯାଉଥାଏ, ତେତେବେଳ ପର୍ଯ୍ୟନ୍ତ ତାର ମନ ନିର୍ବିକାର ରହିଥାଏ—ଏ'ପରି କଳ୍ପନା ଆଦୌ ସେଠାରେ ସ୍ଥାନପାଏ ନାହିଁ । ନନ୍ଦକା ଓ ବାସୁଦେବଙ୍କ ଦୃଷ୍ଟାନ୍ତ ଦେଖ—ଅମ୍ଳାନ ବଦନରେ, ନିର୍ବିକାର ଚିତ୍ତରେ ଉଭୟେ କିପରି ସମ୍ପଦ ଓ ବିପଦକୁ ସମାନ ଭାବେ ଆଲିଙ୍ଗନ କରିଅଛନ୍ତି—ଉଭୟଙ୍କର ଏକମାତ୍ର ଧ୍ୟାନ 'ଶରୀରଂ ବା ପାତୟେୟମ୍,କାର୍ଯ୍ୟଂବା ସାଧୟେୟମ୍' । କର୍ତ୍ତବ୍ୟ ! କର୍ତ୍ତବ୍ୟ ! ତୁହି ଜୀବର ଏକମାତ୍ର ଆରାଧ୍ୟ ଦେବତା— ଏହି ମାୟା ସଂସାରରେ ମୁକ୍ତିଦାତା ! ମା ମା ! ମୋର ଚକ୍ଷୁ ଆଜି ଉନ୍ମିଳିତ କରି ଦେଇଛୁ ! ବର୍ତ୍ତମାନ ବେଶ ବୁଝି ପାରୁଛି ମା !—ତୋର ସେହି କଥା, 'ଆପଣ ଅତିରିକ୍ତ ସ୍ନେହମୋହରେ ଅନ୍ଧ-ଜ୍ଞାନ-ଶୂନ୍ୟ ହୋଇଛନ୍ତି'— ହାୟ ! ସେତେବେଳେ ଯଦି ମୋର କର୍ତ୍ତବ୍ୟ ଥା'ନ୍ତା ! ଛାଡ଼, ଭୁଲ୍, ମନ ! ଏ ବୃଦ୍ଧ ବୟସରେ

ତୋ'ର ଯାହା କର୍ତ୍ତବ୍ୟ, ତାହାହିଁ ପାଳନ କରିବୁ—'ହରିବୋଲ୍' 'ହରିବୋଲ୍' (ପ୍ରସ୍ଥାନ)

[ ବାସୁଦେବର ପ୍ରବେଶ ]

ବାସୁଦେବ—ମହାରାଜ କାହିଁ ଗଲେ ? ଗୌରଚାଙ୍କୁ ରାଜ୍ୟାର୍ପଣ କରିବା ପରେ ସେ କିପରି ଉଦାସୀନ ଜଣାଯାଉଥିଲେ—ସେ କି ସଂସାର-ତ୍ୟାଗୀ ହେଲେ ? ହେଲେ ଯଦି, ମୋତେ କାହିଁକି ଛାଡ଼ିଗଲେ ?

ସୁବର୍ଣ୍ଣ—( ପ୍ରବେଶ କରି ) ପ୍ରୟୋଜନ ଅଛି ବୋଲି ।

ବାସୁଦେବ—ଏହି ଯେ ମହାରାଜ !—ମହାରାଜ ! ମହାରାଜ !

ସୁବର୍ଣ୍ଣ—ବାସୁଦେବ ! ମୋର କର୍ତ୍ତବ୍ୟ କି ମୁଁ ପାଳନ କରିବି ନାହିଁ ?

ବାସୁଦେବ—ମୋତେ ତେବେ ସଙ୍ଗରେ ନେଇ ନାହାନ୍ତି କାହିଁକି ? ମୁଁ ମଧ୍ୟ ବୃଦ୍ଧ ହୋଇଛି ।

ସୁବର୍ଣ୍ଣ—ଗୌର ନିତାନ୍ତ ଶିଶୁ—ଅଦ୍ୟାପି ରାଜକାର୍ଯ୍ୟ ବିଷୟରେ ଅପରିପକ୍ୱ—ସୁତରାଂ ରାଜ୍ୟର ମଙ୍ଗଳ ସକାଶେ ତୁମ୍ଭଙ୍କୁ ଏ ସଂସାର କ୍ଷେତ୍ରରେ କିଛିଦିନ ରହିବାକୁ ହେବ—ଆଉ ମୁଁ ଅପେକ୍ଷା କରି ପାରୁନାହିଁ—ଅନ୍ୟ-ଚିନ୍ତା ମନରେ ସ୍ଥାନଦେଇ ପାରୁନାହିଁ—'ହରିବୋଲ୍'—'ହରିବୋଲ୍'—

[ ବେଗେ ପ୍ରସ୍ଥାନ ]

ବାସୁଦେବ—ମହାରାଜ ! ମହାରାଜ !

[ ଅନୁଧାବନ ]

---

## ପଞ୍ଚମ ଦୃଶ୍ୟ

—ନନ୍ଦିକାର ସମାଧି କ୍ଷେତ୍ର—

[ ଗୌରଚାଙ୍ଗ ଏକାକୀ ]

ଗୌରଚାଙ୍ଗ—ପ୍ରିୟେ ! କ୍ଷମା କି କରିବ ନାହିଁ ? ତୁମେ ଯେ ସ୍ୱେଚ୍ଛାରେ ଏ ଦୀନ ଅକିଞ୍ଚନକୁ ବରଣ କରିଥିଲ ? ଦେଖ ପ୍ରିୟେ ! ମୋର ଆଉ ସେ ସ୍ୱର୍ଣ୍ଣ ପରିଚ୍ଛଦ ନାହିଁ—ସେ ସ୍ୱର୍ଣ୍ଣ ଅସ୍ତ୍ର ଶସ୍ତ୍ର ନାହିଁ—ସେ ନାରକୀୟ ପ୍ରବୃତ୍ତି ମଧ୍ୟ ନାହିଁ । ମୁଁ ସମସ୍ତ ବିସର୍ଜନ କରି ଆସିଛି—ଆଜୀବନ ପାଇଁ ସମସ୍ତ ତ୍ୟାଗ କରି ଆସିଛି—କେବଳ ଅନୁଗ୍ରହ ପାଇବି ବୋଲି—ତୁମର ସୁଧାମୟ ଆଲିଙ୍ଗନ ଲାଭ କରିବି ବୋଲି । ମୋର ଯୁଦ୍ଧ ବାସନା, ଅଧୁନା ପ୍ରେମ ବାସନାରେ ପରିଣତ ହୋଇଛି—ମୋର ବିଜୟ ଲାଳସା, ଅଧୁନା ପରାଜୟ ଲାଳସାରେ ପରିଣତ ହୋଇଛି । ତୁହ, ପ୍ରିୟେ ! ଆଉ ତୁମର ମୋ ପ୍ରତି କ୍ରୋଧ ନାହିଁତ ? ସେ ଦିନ ଗର୍ବଭରେ ଯେଉଁ କଟୂକ୍ତି କହିଥିଲି, ତାହା ପାଶୋରି ଯାଇଛକି ?—କୁହ ପ୍ରିୟେ ! ଏପରି ପାଷାଣୀ ହୋଇ ରହିଛ କାହିଁକି ?—ଅଭିମାନିନି ! ( ଚୁମ୍ବନ କରିବା )

[ ଶାରଦାର ପ୍ରବେଶ ]

ଶାରଦା—ମହାରାଜ ! ମହାରାଜ ! ଏ କ'ଣ କରୁଛନ୍ତି ? ଏ ଯେ ପ୍ରସ୍ତରଖଣ୍ଡ !

ଗୌରଚାଙ୍ଗ—ପ୍ରସ୍ତରଖଣ୍ଡ ? ହାଃ, ହାଃ, ହାଃ ! ଏ ଯେ ଘନୀଭୂତ ପ୍ରେମ ରାଶି ଦେଖ, ଦେଖ, ଶାରଦା ! ମୋର ଆଲିଙ୍ଗନରେ କୋମଳ ହୋଇଛି କି ନାହିଁ—ମୋର ଚୁମ୍ବନରେ ତାହା ତରଳି ଯାଇଛି କି ନାହିଁ ।

ଶାରଦା—ଓଃ, ସତ୍ୟ, ସତ୍ୟ ? ମର୍ତ୍ତ୍ୟକୁ ସ୍ୱର୍ଗକରି ପୁଣି ସ୍ୱର୍ଗକୁ ଚାଲିଗଲ କାହିଁକି ?

( ଫୁଲହାର ପିନ୍ଧାଇ ଦେବା )

[ ବୀରେନ୍ଦ୍ରର ପ୍ରବେଶ ]

ବୀରେନ୍ଦ୍ର—ଜୀବନରେ ଏ ଦୋଳିବାପରି ବିଶ୍ୱକର୍ମୀ ଦର୍ଶନ ଲାଭ କରିବା କି ସମ୍ଭବ, ପ୍ରିୟେ ?

[ ବାସୁଦେବଙ୍କର ପ୍ରବେଶ ]

ବାସୁଦେବ—ଏହିତ ମହତ୍ତ୍ୱ । ନିଷ୍କାମ କର୍ମ ଯେ ଜଗତରେ ସାରକର୍ମ ।

[ ସୁଭଦ୍ରାର ପ୍ରବେଶ ]

ସୁଭଦ୍ରା—ସେଥିପାଇଁତ ଆଜି ତୁମ୍ଭେ ଧନ୍ୟ, ବାସୁଦେବ !

ବାସୁଦେବ—ଧନ୍ୟ ଏହି ଦେବୀ, ନନ୍ଦିକା ! ସମସ୍ତେ ସମସ୍ୱରରେ କୁହ ଥରେ, 'ଜୟ ନନ୍ଦିକା

ଦେବୀଙ୍କର ଜୟ' । 'ଜୟ ନନ୍ଦତା ଦେବୀଙ୍କର ଜୟ !'

[ ଅପ୍‌ସରମାନଙ୍କର ଊର୍ଦ୍ଧ୍ୱଦେଶୁଁ ପୁଷ୍ପବୃଷ୍ଟି କରୁ କରୁ ଓହ୍ଲାଇବା ]

—ଗୀତ—

ଧୀରେ ବହ ସମୀରଣ
ତାପିତ-ହୃଦୟେ କେମା ନିଦ୍ରାରେ ମଗନ ।
ଚନ୍ଦ୍ରମା ଶୀତଳ-କରେ ତାପଜ୍ୱାଳା ପେଙ୍ଗି ହରେ
ପ୍ରହରୀ ତାରକା ରକ୍ଷୀ ସମାଧି ଭବନ ।

ଜଗତ ଜନଙ୍କ ହିତେ ତପତ ବାରି ସମ୍ପାତେ
ଯେ ପ୍ରାଣ କାନ୍ଦେ ନିରତେ ପ୍ରଫୁଲ୍ଲ ଆନନ ।
ଶ୍ୟାମଳିତ ଉର୍ବର ସ୍ନେହପ୍ରୀତ ସ୍ୱଚ୍ଛାଧର
ସେ ହୃଦୟ ଅନିବାର ପ୍ରବାହିତ ପ୍ରସ୍ରବର
ଏ ସମାଧି, ମହାନଦୀ ! ଧର ବକ୍ଷେ ଏ' ରତନ ।

( ସମସ୍ତେ ଅବନତ ହେବା )

ଓଁ ଶାନ୍ତିଃ ! ଶାନ୍ତି ! ଶାନ୍ତି !

ଯବନିକା ପତନ

# କୋଣାର୍କ

— ଜାତୀୟ ନାଟକ —

**ଶ୍ରୀ ପ୍ରାଣକୃଷ୍ଣ ପରିଜା, ଆଇ. ଇ. ଏସ୍.**

ସୁହୃଦ୍ ବରେଷୁ ।

ପ୍ରିୟ ସୁହୃଦ୍ !

ତୁମେ ମୋ'ର ମଝିଆଭାଇ ଶ୍ରୀମାନ୍ ଶରତକୁମାର ହାତରେ, ଉତ୍କଳମଣି ଶ୍ରୀଯୁକ୍ତ ଗୋପବନ୍ଧୁ ଦାସଙ୍କ ରଚିତ **ଧର୍ମପଦ** ନାମକ ପୁସ୍ତକ ଖଣ୍ଡି ପଢ଼ି, ସେହି ବିଷୟରେ ଗୋଟିଏ ନାଟକ ଲେଖିବାକୁ କହି ପଠାଇଥିଲ । ମୁଁ ସେହି ପ୍ରେରଣାର ଫଳ ମାତ୍ର ତୁମକୁ ଉପହାର ଦେଲି, ଗ୍ରହଣ କଲେ ସୁଖୀ ହେବି । ଇତି ।

ତୁମର

**ଅଶ୍ୱିନୀ**

---

## ଚରିତ୍ରଲିପି

### ପୁରୁଷ

| | |
|---|---|
| ନରସିଂହ ଦେବ | ଓଡ଼ିଶାର ରାଜା |
| ଶିବେଇ ସାଆନ୍ତରା | ଓଡ଼ିଶାର ପାତ୍ର |
| ବିଷ୍ଣୁ ମହାରଣା | ପ୍ରଧାନ ଭାସ୍କର |
| ଧର୍ମା | ପ୍ରଧାନ ଭାସ୍କରଙ୍କର ପୁତ୍ର |

ମନ୍ତ୍ରୀ, ସଭାସଦ୍‌ଗଣ, ଭାସ୍କରଗଣ,
ବାଳକଗଣ, କୋଲଅଗଣ ଇତ୍ୟାଦି

### ସ୍ତ୍ରୀ

| | |
|---|---|
| ମହାରାଣୀ | ଓଡ଼ିଶାର ରାଣୀ |
| ସର | ଜନୈକ ଭାସ୍କର-ବାଳିକା |

ଧର୍ମା-ମା, ସର-ମା ଓ ମାହାରୀଗଣ ।

---

# କୋଣାର୍କ

## ପ୍ରସ୍ତାବନା

[ ଅନ୍ଧରରେ କୋଣାର୍କର ସେହି ଭୁବନ ବିଖ୍ୟାତ ମନ୍ଦିର ଦେଖାଯାଉଥିବ ]

ଗୀତ

ଜାଣି କାଳସିନ୍ଧୁ          ମହାସିନ୍ଧୁ ବକ୍ଷେ—
କେ ତୁମ୍ଭେ ହେ ମହାମହିମ !
                    ମହିମା କାର ଅନୁପମ
ପ୍ରସ୍ତର ଇଙ୍ଗିତେ (ଆଜି) ଜଗତ ସମକ୍ଷେ ।

ଯୁଗ-କୀଟ-ଦଷ୍ଟ ତବ ପୃଷ୍ଠାରେ ପୃଷ୍ଠାରେ
                    ଲିଭି ନାହିଁ, ଲିଭି ନାହିଁ
ଓଡ଼ିଆର ସେ କୀର୍ତ୍ତିତ କଳା କୌଶଳ କାହାଣୀ;
ଭଗ୍ନ ମୂରତିର ଛନ୍ଦ ପରତେ, ପରତେ
                    ଲିଭି ନାହିଁ, ଲିଭି ନାହିଁ
ଓଡ଼ିଆର ସେ ବନ୍ଦିତ ବିଶ୍ୱ ବିଜୟ-ସଙ୍ଗିଣୀ;

ଜାଗ, ଜାଗ, ଭାଙ୍ଗ ଉଠାଅ ମୂର୍ଚ୍ଛନା,
ଜଗାଅ ଝଙ୍କାରେ ବିଶ୍ୱର ସ୍ପନ୍ଦନା—
ସୁପ୍ତ ଶିଳ୍ପ ଆଜି କର ହେ ଭାସ୍ୱର
ମଥିତ ଗୌରବେ ଗରବେ ଉଦ୍ଧର;
ରଞ୍ଜିତ ଅତୀତ ଯେଣେ ଉଦୁ ହେ ପ୍ରଭାତେ
ଉଜ୍ଜ୍ୱଳି ଉଜ୍ଜ୍ୱଳତର ଉପସ୍ଥିତ ବକ୍ଷେ ॥

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

—ପଲ୍ଲିଗ୍ରାମର ଛୁଟୁଥିବା କୁଞ୍ଜ—

[ କୁଞ୍ଜର ଗୋଟିଏ ନିଭୃତ କୋଣରେ ଏକ ସୁଗଠିତ କାୟ, ଗୌରବର୍ଣ୍ଣ, ଦ୍ୱାଦଶବର୍ଷୀୟ ବାଳକ ଶିଳାଖଣ୍ଡ ଧ୍ୟାନ କି ଏକ ସ୍ତୂପତିକାର୍ଯ୍ୟରେ ନିବଷ୍ଟ-ଚିତ୍ତ—ଅନିବଦ୍ଧ-ଦୃଷ୍ଟି ଏକ ବାଳିକା, ପ୍ରାୟ ସମବୟସ୍କା, ପରମାସୁନ୍ଦରୀ, ମୃଦୁଧ୍ୱନିରେ ଗାନ କରୁଥିଲା— ]

ଗୀତ

ସର—ଯେ ସୁରେ ବାଜଇ ତବ ହୃଦୟ ଯନ୍ତର,
ସେ ସୁରେ ଗାଇବି ବୋଲି ବିକଳ ଅନ୍ତର;
(କିନ୍ତୁ) ଏ କି ବିଡ଼ମ୍ବନା—
ଜଡ଼ିତ ରସନା—କଣ୍ଠେ ଉଠେ ନାହିଁ ସ୍ୱର ।
ଯୁଗ, ଯୁଗ ସାରି କଲି ମୁଁ ସାଧନା;
ସୁର, ତାଳ, ଲୟ—ନାହିଁଟି କଳନା;
ବିଫଳ—ବିଫଳ (ଏବେ)
ସବୁ ଆରାଧନା—ଏ' କି (ତବ) ମୋହନ ମନ୍ତର ।

[ ହଠାତ୍ ଗାନଟି ବନ୍ଦ ହୋଇଯିବାରୁ ଶିଳ୍ପିର ଶୃଙ୍ଖଳିତ ଯନ୍ତଟି ନିୟମଭ୍ରଷ୍ଟ ହୋଇଗଲା ]

ଧର୍ମ୍ମା—ଚୁ, ଚୁ—କ'ଣ କଲ ତୁମେ, ସର ?
ସର—ମ'—ମୁଁ ତ ହୁରଛଡ଼ା ହୋଇ ରହିଛି—
ଧର୍ମ୍ମା—ରହିଚ ତୁମେ ସିନା—ତୁମର ଗାନ ଯେ—
ସର—ଓ ହୋ ! ଭିତରେ ଭିତରେ ତମର ଅଜକାଲି ଭାରି ଖେଳୁଚି, ନା ?
ଧର୍ମ୍ମା—ଖାଲି କଣ ଖେଳୁଚି ?
ସର—ଆଉ କ'ଣ ଖେଳାଉଚି ?
ଧର୍ମ୍ମା—ନହାଣ ତେବେ ମୋର ଏମ୍ତି ଖସଡ଼ିଗଲା କାହିଁକି ?
ସର—ଭାଗ୍ୟେ ନିଜେ କଣ୍ଟୁଡ଼ି ହୋଇ ପଡ଼ନାହଁ ?

ଧର୍ମ୍ମା—ଅହା !—ଦେଖିଲ କେଡ଼େ ଦାଗଟାଏ ପଡ଼ିଗଲା—
( ଶିଳାଖଣ୍ଡ ପ୍ରତି ବାଳକାର ଦୃଷ୍ଟି ଆକର୍ଷଣ କରିବା )
ସର—ତୁମ ଦାହ ମୁଣ୍ଡରେତ ପଡ଼ିନାହିଁ ?
ଧର୍ମ୍ମା—ତା' ହୋଇଥିଲେ ବରଂ ସହ୍ୟ ହୋଇଥାନ୍ତା ।
ସର—ସତେ ? ତେବେ ଏତେ ଗୁଡ଼ାଏ ପୋଥି ପଢ଼ିବା ଅକାରଣ ହେଲା ସିନା ?—
ଧର୍ମ୍ମା—ହୋଇଥାନ୍ତା, ଯେବେ ତୁମପରି ଗୋଟିଏ ସୁଗାୟିକା ସଙ୍ଗିନୀ ମୋର ନ ଥାନ୍ତା ।
ସର—ହୁଁ—ମୋ'ର ଗୀତ ସଙ୍ଗେ ତୁମ ପୋଥିର ଏତେ ଘନିଷ୍ଠ ସମ୍ବନ୍ଧ ?—
ଧର୍ମ୍ମା—ଠିକ୍ ପ୍ରାଣସଙ୍ଗେ ପିଣ୍ଡର ଯେପରି ସମ୍ବନ୍ଧ, ସର ।
ସର—ପିଣ୍ଡକୁ ଛାଡ଼ି କ'ଣ ପ୍ରାଣ ବାହାରିଯାଏ ନାହିଁ ?
ଧର୍ମ୍ମା—ହେଲେ, ସେ ସୌନ୍ଦର୍ଯ୍ୟ କି ଆଉ ପିଣ୍ଡର ରହେ ?
ସର—ଓ ହୋ ! ଏତେଦିନେ ବୁଝିଲି, କାହିଁକି ତମର କାମ ଗୁଡ଼ିକ ଆଜକାଲି ଭାରି ସୁନ୍ଦର ହେଉଛି ।
ଧର୍ମ୍ମା—ସୁନ୍ଦର ହେଉଛି କି ଅସୁନ୍ଦର ହେଉଚି, ତା ତୁମେ ଜାଣ—ମାତ୍ର ଯାହା କରୁଚି, ସେଥିରେ ମୋର ଭାରି ଆନନ୍ଦ ହେଉଚି—

[ ଅଲକ୍ଷ୍ୟେ ଧର୍ମ୍ମା-ମାଆ ପ୍ରବେଶ ]

ସର—ଏହି ତ ମୋର ଗୀତର କରାମତି ।
ଧର୍ମ୍ମା—ନିଶ୍ଚୟ ।
ସର—ପୋଥି ଛାଡ଼ି ତେବେ ଗୀତ ଶିଖୁ ନାହଁ ?—
ଧର୍ମ୍ମା—ପିଣ୍ଡ ଥିଲେ ପ୍ରାଣ କାର୍ଯ୍ୟ କରିବ ସିନା ?
ସର—( ସୋତ୍ସାହେ ) ଠିକ୍—ଠିକ୍—ଏଣିକି—କେହି ଆଉ କାହାରିକୁ ଛାଡ଼ି ରହି ପାରିବା ନାହିଁ—ନା, ଭାଇ ?
ଧର୍ମ୍ମା—ପୃଥିବୀ ପ୍ରଳୟ ହୋଇ ଗଲେ ମଧ ନୁହେଁ ।

[ ସସ୍ନେହେ ପରସ୍ପର ପ୍ରତି ଚାହିଁ ରହିବା ]

ଧର୍ମ୍ମା-ମା—(ସ୍ୱଗତ) ପ୍ରଭୁ, ଜଗନ୍ନାଥ ! ସତେ କ'ଣ—

( ଦୀର୍ଘନିଶ୍ୱାସ ତ୍ୟାଗ )

ଧର୍ମ୍ମା—( ହଠାତ୍ ଶିଳାଖଣ୍ଡ ଉପରେ ଦୃଷ୍ଟି ପଡ଼ିବାରୁ ) ହଁ, ହଁ, ସରିଛି ମୋର,—ଗାଇବଟି—ଟିକିଏ ବାକି ରହିଗଲା, ସାରି ଦିଏଁ ।

ସର—( ସ୍ନେହବିଜଡ଼ିତ ସ୍ୱରରେ ଗାଇବାକୁ ଲାଗିଲା )

ଗୀତ

ମୁହିଁ ତୁମ୍ଭର ତୁମ୍ଭେ ଗୋ ମୋ'ର—
ବଂଶୀ ବୋଲଇ ଏ ସ୍ୱନ ମୋ'ର ।
ସେ ସ୍ୱନ ଲହର        ଖେଳେ ବାହାର
ବିଶ୍ୱସାରା ଜାହିଁ ଅନ୍ତ ତା'ର—
ଅନ୍ତ ମୁଁ ତୁମ୍ଭ ତୁମ୍ଭେ ଯେ ମୋ'ର ।

ଧର୍ମ୍ମା—( ନିବିଷ୍ଟଚିତ୍ତରେ କାର୍ଯ୍ୟ କରିବାକୁ ଲାଗିଲା—କିଛିକ୍ଷଣ ପରେ ହଠାତ୍ ଗୀତର ମଧ୍ୟସ୍ଥଳେ ଚିତ୍କାର କରି ଡେଇଁ ଉଠିବାରୁ ବାଳକାଟିର ଗାନରେ ବାଧା ପଡ଼ିଲା ) ସର, ସର । ଦେଖ, ଦେଖ—କେଡ଼େ ସୁନ୍ଦର ହୋଇଛି । ସ୍ୱପ୍ନରେ ବି ମୁଁ ଏମିତିକା କଳ୍ପନା କରି ନ ଥିଲି—( ମୂର୍ତ୍ତିଟି ଅତି ସାଗ୍ରହରେ ଦେଖିବାକୁ ଲାଗିଲା )

ସର—ବାସ୍ତବରେ ଯେ ମୁଁ ଏମିତିକା କଳ୍ପନା କରିପାରୁ ନାହିଁ, ଗୀତଟା 'ସୋମ୍'ରେ ନ ପହଁଚୁଣୁ ତୁମେ ଏ'ପରି ସୁର ଧରି, ଭଲ ଠୁକି ଠିଆ ହେବ ?

ଧର୍ମ୍ମା—(ଅପ୍ରସ୍ତୁତ ଭାବେ) ମୋ'ର ଆଉ କି ସୋମ୍ ବେସୋମ୍ ଜ୍ଞାନ ଥିଲା, ସର ?

ସର—ନିଶ୍ଚୟ ତା' ହେଲେ ତମେ ମୋର ଗୀତ ଶୁଣୁ ନ ଥିଲ ।

ଧର୍ମ୍ମା—ତୁମର ଗୀତ ଯେ ମୋ'ର ଏହି ଦଶା କରିଥିଲା, ସର—ତୁମେ ଗାଉଥିଲ ଆଉ ମୋ ଭିତରେ ଭିତରେ କେଉଁ ବସନ୍ତର ଦ୍ୱାର ଖୋଲି ଯାଉଥିଲା - ଆଖିଆଗେ କେଉଁ ଶରତର ଶୋଭା ଖେଳି ବୁଲୁଥିଲା;—ଏହି ମୂର୍ତ୍ତିଟି ମୁହିଁ ଦେଖିଛି ଥରେ—ଯେମିତିକା ସେହି ସବୁ ରୂପ ରସ ମାଧୁରୀ ଏକାବେଳକେ ଠୁଳି, ଗଳି ଟିମ୍ ଟିମ୍ ହୋଇ ରହିଛି । ( ହଠାତ୍ ମୁହଁ ଶୁଖାଇ ) ସର, ସର—ଆଉଟିକିଏ ଗାଅ—

ସର—ନା—

ଧର୍ମ୍ମା—ସରିଛି ପରା !—ଦେଖିଲ, ଆଉ ଟିକିଏ—

ସର—ଅଚ୍ଛା, ବେଶ୍—ମୋ'ଗୁଣ ପଚାଅ ଆଗେ ।

ଧର୍ମ୍ମା—ଗୁଣ ? ହଉ, କଂଗୁଣ, କୁହ ?

ସର—ଅଉ ବେଭାଲଅଗିର କରିବ ନାହିଁ ।

ଧର୍ମ୍ମା—( ହସି ) ଅଚ୍ଛା—ମୋ ସର-ଗୁଣ, ଅଉ କେବେ—

ସର—ହେଲା ଯେ—( ଗଳାଝାଡ଼ି ପୁନରାୟ ଗାଇବା )

ଗୀତ

ଗାଉଥିବ ହସି, ପାଶେ ପାଶେ ବସି,
ଏହିତ ମୋ' ସଖା କାମନା ବାସନା ।
ନୟନେ, ନୟନେ, ମୂରତି ମୋହନେ,
ହେଉଥିବ ସଦା କାମନା ବାସନା ॥
ନିମିଷକ ପାଇଁ ଯଦି ସଖା ମୋ'ର,
ହୋଇଯାଅ ତୁମ୍ଭେ ପାଶରୁ ଅନ୍ତର—
ଲଭପାଏ ଦୀପ ଶିଖା କ୍ଷଣକରେ,
ବାଟତ ଅନ୍ଧାରେ ଦିଶେନା ଦିଶେନା ॥
ଆସ ଆସ ସଖା, ହୃଦୟେ—
ଆସ ଆସ ଶୂନ୍ୟ ଆଳୟେ—
ଯେଉଁପରି ମନ ସଜାଡ଼ି ଆସନ,
ବସ, ବସ ନାହିଁ ମୋ' ମନା;
ତୁଟିଯାଉ ମୋହ ମୋହର,
ଚାଲିଯାଉ ଦୂରେ ଅନ୍ଧାର,
ଜଳି ଉଠୁ ଦୀପ ଉଜ୍ଜ୍ୱଳ ଉଜ୍ଜ୍ୱଳ—
ଏହିତ ମୋ ସଖା କାମନା ବାସନା ।

[ ଧର୍ମ୍ମା ଗୀତ ସଙ୍ଗେ ସଙ୍ଗେ ନିଜ କାମ ସାରି ନିବିଷ୍ଟ ମନେ ସରର ଗୀତ ଶୁଣୁଥିଲା ]

ଧର୍ମ୍ମା-ମା—ଗୀତ ନ ହେଲେ କି କାମ—

ସର—( ସାଗ୍ରହେ ) କେବେ ସରିପାରିବ ନାହିଁ, ମାଉସି । ମୁଁ ନ ଗାଇଲେ ।

ଧର୍ମ୍ମା—ବୋଉ । ବୋଉ । ସତେ, ସତେ ଗୀତର କି ଗୋଟାଏ ମୋହିନୀ ଶକ୍ତି ଅଛି,—

ଧର୍ମ୍ମା-ମା—ତା' ଏ ଗୀତରେ ନାହିଁ, ବାପ ?

ଧର୍ମ୍ମା—( ପ୍ରଶ୍ନପୂର୍ଣ୍ଣ ଦୃଷ୍ଟିରେ ଚାହିଁବା )

ସର—( ମୁହଁଟି ଗମ୍ଭୀର କରିଦେବା )—

ଧର୍ମ୍ମା-ମା—(ହସି) ଅଙ୍ଗୁର ରସ ମିଠା, ସତ—କିନ୍ତୁ କେତେ ବେଳଯାଏ, କହନ୍ତ, ବାପ ?

ଧର୍ମ୍ମା—( ସୋତ୍ସୁକେ ଚାହିଁବା )

ସର—( ମୁହଁ ବୁଲାଇଦେବା )

ଧର୍ମ୍ମା-ମା—ଯେତେବେଳଯାଏ ଜିଭରେ ଲଗି ରହିଥାଏ—ନୁହେଁ କି ?

ଧର୍ମ୍ମା—ହଁ, ବୌ—

ଧର୍ମ୍ମା-ମା—ଏ' ଗୀତ କ'ଣ—

ଧର୍ମ୍ମା—ଠିକ୍—ଠିକ୍ କହୁଚୁ, ବୌ—ସର ଗୀତ ଗାଉଥିବା ଯାଏ, ମୁଁ ଯେମିତିକା କେଉଁ ସ୍ୱପ୍ନ-ରାଇଜକୁ ଉଡ଼ି, ଉଡ଼ି ଉଠିଯାଉ ଥାଏ—ଆଉ ସେହି ଗୀତଟି ବନ୍ଦ କଲାକ୍ଷଣି, ଗୋଟାଏ ଭାରି ଅନ୍ଧାରିଆ ଗୁହାଭିତରେ ଯେମିତିକା ନଇଁକିନା ପଡ଼ିଯାଏ ।

ସର—( ସଗର୍ବେ ଚାହିଁ ) ଏହିତ ମୋର ଗୀତର କରାମତି !

ଧର୍ମ୍ମା-ମା—କିନ୍ତୁ କେତେ ସାମାନ୍ୟ, କହିଲୁ ମା—ଯେଉଁ ବିଜୁଳି ଜଳଉଠି ଅନ୍ଧାର ଦୂର କରିବା ଦୂରେଥାଉ, ତାକୁ ଅଧିକ ଦୁଇଗୁଣ ବଢ଼ାଇ ଦିଏ, ତା'ର ଗୋଟାଏ କି ଗର୍ବ—କି କରାମତି !

ଧର୍ମ୍ମା—ତେବେ କ'ଣ ଏମିତିକା ଗୀତ ଅଛି ବୋଉ, ଯା'ର କରାମତି କେବେହେଲେ କମିଯାଏ ନାହିଁ—ସବୁଦିନ ସମାନ ରହିଥାଏ ?

ଧର୍ମ୍ମା-ମା—ଦନ୍ତୁ, ଦନ୍ତୁ, ବଢ଼ୁଥାଏରେ, ବାପ—

ଧର୍ମ୍ମା—କହ, କହ ବୌ ! କି ସେ ଗୀତ ?—କେଉଁଠି ଶୁଣିବାକୁ ମିଳେ ?—କିଏ ସେ ଗାୟକ ?

ଧର୍ମ୍ମା-ମା—ଏ' ଭାରି ବିଚିତ୍ର ଗୀତ, ବାପ—ନିଜେ ଗାଇ ନିଜେ ଶୁଣିବାକୁ ହୁଏ ।

ସର—ଏଁ !—( ବିସ୍ମୟଭରେ ଚାହିଁବା )

ଧର୍ମ୍ମା-ମା—ତା'ର ଥାନ ପୂର୍ଣ୍ଣି—(ବାହାରିଯିବା)

ଧର୍ମ୍ମା—ଥମିଗଲୁ କାହିଁକି, ବୌ ? କହ—ଯେତେବଡ଼ ଦୁର୍ଗମ ଥାନ ହେଉ ପଛକେ, ମୁଁ ନିଶ୍ଚୟ ଯିବି—ସର ! ତୁମକୁ ବି ଯିବାକୁ ହେବ—ଦେଖ, ଆଉ ସଙ୍ଗୀତ ଶିଖିବାକୁ ମନା କରିବ ନାହିଁ—ତୁମେ ଯେମିତିକା ଶିଖାଇବ—

ଧର୍ମ୍ମା-ମା—କିନ୍ତୁ ବାପ—ସେ ସଙ୍ଗୀତ ତ କେହି ଶିଖାଏ ନାହିଁ; ଅଧିକ ତୁ ବଡ଼ ନ ହେଲେ ସେ ଶିଖିପାରିବୁ ନାହିଁ ।

ଧର୍ମ୍ମା—କାହିଁକି ପାରିବି ନାହିଁ, ବୌ ?—ମୁଁ କ'ଣ ବଡ଼ ହୋଇ ନାହିଁ ?—ଧ୍ରୁବ, ପ୍ରହ୍ଲାଦ କ'ଣ ମୋ'ଠୁଁ ବଡ଼ ଥିଲେ ?—ନା, ନା, ବୌ, ସେ କଥା କହ ନାହିଁ । କେମିତି ଶିଖିବାକୁ ହୁଏ—କାହିଁ ଶିଖିବାକୁ ହୁଏ—କହିଦେ, ବୌ ! ତୋ'ର ହାତ ଧରୁଛି—ତୋ'ର ଗୋଡ଼ ଧରୁଛି—

ଧର୍ମ୍ମା-ମା—ଧନରେ ମୋ'ର—ବାପରେ ମୋ'ର—( ଚୁମ୍ବ ଖାଇ ) ଠାକୁରେ ତୋତେ ଆୟୁଷ ଦେଇଥାନ୍ତୁ—ତୁଇ ପାରିବୁ—ତୁଇ ନାଁ ରଖିବୁ !—ଆ, ଖାଇ ସାରିବୁ—

ଧର୍ମ୍ମା—ତେବେ ନୁହେଁ—ମୁଁ ଏ' ଅଶ୍ରୁତ ଗୀତ ନ ଶିଖିବାଯାଏ ଏଠୁଁ ପାଦୁଲେଇ ହୁଙ୍କିବି ନାହିଁ—ସର ! ତୁମେ ଥିରହୋଇ ଠିଆ ହୋଇଚ କ'ଣ ?—ମାଉସୀ ସଙ୍ଗେ ଲଗାଅ ନା—ଏମିତିକା ଗୀତ ଶିଖିବାକୁ କି ତମର ମନ ବଳୁନାହିଁ ?

ସର—ଶିଖିବା ତ ଦୂରର କଥା—ଶୁଣିବାକୁ ମଧ୍ୟ ମୁଁ ଚାହେଁ ନାହିଁ ।

ଧର୍ମ୍ମା—ଏ' କିପରି କଥା, ସର ?—ତୁମେ ଗାୟିକା ହୋଇ—

ସର—ଯେଉଁ ଗୀତ ଗାଇ ତୁମକୁ ଶୁଣାଇ ପାରିବି ନାହିଁ—ସେ ଗୀତ ଶିଖିବାରେ ଫଳ ?

ଧର୍ମ୍ମା—ନିଜେ ଗାଇ ନିଜେ ଶୁଣିବ—ଏତେ ସୁବିଧା ଯେଉଁ ଗୀତର—ତା'କୁ ଛାଡ଼ିବାକୁ ତୁମର ମନ ବଳୁଚି ନା ?

ସର—ମୋର ଆନନ୍ଦ ପାଇଁ ତ ମୁଁ ଗାଏ ନାହିଁ ।

ଧର୍ମା—ଓ ହୋ—ତୁମର ପ୍ରଶଂସା ପାଇଁ ତେବେ ତୁମେ ଗାଅ, ନା ?

ସର—ସ୍ୱାର୍ଥପର ।

ଧର୍ମା—ବେଶ୍ ହେଲା—ଗୋଡ଼ ମାଲିସ୍ ତ ଆଉ ଏଣିକି କରିବାକୁ ପଡ଼ିବ ନାହିଁ ?

ସର—ଏତେ କଥା । ଗୋଡ଼ର ଧୂଳି ତେବେ ଆଜିଠୁଁ ଏ' ଅଭାଗୀର ସାର ହେଉ—

[ ବାଳକର ଗୋଡ଼ଧୂଳି ମସ୍ତକରେ ଦେଇ ପ୍ରସ୍ଥାନୋଦ୍ୟତା ]

ଧର୍ମା-ମା—ସର ! ସର ! ମା' ମୋ'ର—( ଧରିବାକୁ ଯିବା )

ସର—ନା, ମାଉସି—( କ୍ଷିପ୍ରଗତିରେ ବାଳକ-ମାତାର ଚରଣ ସ୍ପର୍ଶ କରି ମସ୍ତକରେ କର ସଞ୍ଚାଳନ ପୂର୍ବକ ପ୍ରସ୍ଥାନ )

ଧର୍ମା-ମା—ଧର୍ମୁ ? ଡାକ୍—ଡାକ୍ । ଦେଖିଲୁ, କେଡ଼େ ଅଭିମାନରେ ଝିଅଟା କାନ୍ଦେ—

ଧର୍ମା—ବୌ ! ଭାରି ନାକକାନ୍ଦୁଣୀ ସେ—ତା'ର ତ କଥା କଥାକେ ଲୁହ—କଥା କଥାକରେ ରୁଷା—ଡାକିଲେ ଅଭିକା ଲାଞ୍ଜ ଅହୁରି ମୋଟ—

ଧର୍ମା-ମା—ଛି, ବାପ—ଦେଖିଲୁ କେତେ ସେ ତୋତେ ଭଲପାଏ ।

ଧର୍ମା—ହଁ, ଏତେ ଭଲପାଏ ଯେ, ମୋ ଭଲ ଆଉ ତାକୁ ଭଲ ଲାଗିବ ନାହିଁ ? ଭାରି ହିଂସକୁଡ଼ି ସେ, ବୌ—ତା' କଥା—

ଧର୍ମା-ମା—ହିଂସକୁଡ଼ି ନୁହେଁରେ ବାପ—ଅଭିମାନିନୀ; ଅଭିମାନିନୀ ସେ ଗୋଟାଯାକ ସେ ତୋତେ ନିଜର କରିନେବାକୁ ଚାହେଁ—

ଧର୍ମା—ଏ କ'ଣ ଏକୁଟିଆବାହ୍ନା କଥା ନୁହେଁ, ବୌ ?

ଧର୍ମା-ମା—( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ) ଏ' କଥା ତୁ କ'ଣ ବୁଝିବୁରେ ପିଲା ?

ଧର୍ମା—ଛାଡ଼ ସେ ସବୁ କଥା, ବୌ—କହ, ମୁଁ କେମିତି ସେ ଗୀତ ଶିଖିବି—

ଧର୍ମା-ମା—ଯା, ତାକୁ ଆଗେ ଡାକିଆଣି—ଦୁହେଁ ଏକାସଙ୍ଗେ ବସିବ, ଖାଇବ—ତା' ପରେ—

ଧର୍ମା—ସେ' କଣ, ସହଜେ ଆସିବ କି, ବୌ ? ଅହୁରି ଯେତେବେଳେ ଏ' ଗୀତ କଥା ଶୁଣିବାକୁ ସେ ମନା କରନ୍ତି, ତା' ସାମ୍ନାରେ ମୋତେ କେମିତି ସେ କଥା କହିବୁ ଭଲା—?

ଧର୍ମା-ମା—ତୁ ଭାରି ଦୁଷ୍ଟ ହେଲୁଣି—କାହିଁକି ଭଲା ଏତେ ଟାଣ, ଟାଣ କରି କହିବାକୁ ଗଲୁ—ଆହା, ଝିଅଟା ମୋ'ର—

ଧର୍ମା—ବୌ, ତୁ କହିଦେ କି—ମୁଁ ହାତ, ଗୋଡ଼ଧରି, ନାହିଁ ତ ଟାଣି ଓଟାରି ତାକୁ ନେଇ ଆସିବି ।

ଧର୍ମା-ମା—ପୁଣି ସେହି ଚଗଲା କଥା—

ଧର୍ମା—ବୌ ! ତୁ ସବୁ କଥା ଅଦୌ ଜାଣୁନା—ଯେତେ ରାଗିଥାଉ ପଛକେ ମୁଁ ଡାକିଲେ ଯଦି "ସର"—ଆଉ କି ସେ ସବୁ ରହୁଚି, ଏକା-ବେଳକେ ତରଳି ଯିଏ—

ଧର୍ମା-ମା—ଚଗଲା । ( ସ୍ୱଗତ ) ଚଗଲାଟାର କଥା ଶୁଣି ହସିବି, ନା କାନ୍ଦିବି—ଠାକୁରେ କ'ଣ ସତେ,—ହାୟ ! ଆଜି ଯଦି ସେ ଏଠି ଥା'ନ୍ତେ—( ଦୀର୍ଘ ନିଃଶ୍ୱାସ ତ୍ୟାଗକରିବା )

ଧର୍ମା—ବୌ ! କହନା—କେମିତି ସେ ଗୀତ—

ଧର୍ମା-ମା—ଆରେ, ବାପ ! କହିଲି ପରା—ସେ ଗୀତ କେହି କାହାରିକୁ ଶିଖାଏ ନାହିଁ—ନିଜେ ଗାଇ ନିଜେ ଶୁଣିବାକୁ ହୁଏ । ତୁ ତୋ'ର ବାପ ଭଳି ହେବୁ ଯେତେବେଳେ, ଆପେ ଆପେ ପରା ସେ ଗୀତ ତୋ ମନରେ ଉଚ୍ଛୁଳି ଉଠିବ—ତା' ତାଳରେ ତୁ କି ଆଉ ଘର ସଂସାରର ମାୟା ରଖି ପାରିବୁ ?—ତୋର ହୀନକପାଳୀ ବୌ'ର ସ୍ନେହଫାନ୍ଦ କି ଆଉ ସେତେବେଳେ ତୋତେ ( କାନ୍ଦପକାଇବା )—ନା, ନା, ଜଗନ୍ନାଥ ସେ ବୁଦ୍ଧି ନ ଦିଅନ୍ତୁ—ତୋତେ ମୁଁ ଛାଡ଼ିପାରିବି ନାହିଁ ରେ—ସେ ଆଜି ବ ୧୨ ର୍ଷ ହେଲା ଘର ସଂସାର, ପୁଅ-ମାଇପ ଭୁଲି ରହିଲେଣି—ମୁଁ ଭୁଲି ରହିଚି ସିନା ତୋ'ର ଏହି ଚାନ୍ଦମୁହଁ ବଳଟିକ ଚାହିଁ ।—

ଧର୍ମ୍ମା—ଓଃ ! ପିତା ! ପିତା ! ମୋର ଜନ୍ମ ସଙ୍ଗେ ସଙ୍ଗେ କ'ଣ—

ଧର୍ମ୍ମା-ମା—ସେ ଭାଗ୍ୟ ବା କାହିଁ ତୋ'ର ପିତାର ହୋଇଥିଲା ରେ ବାପ—ତୁ ଯେ ଅଠମାସରଟି ଗର୍ଭରେ ଥାଉ—

ଧର୍ମ୍ମା—ଜନ୍ମ ସୁଦ୍ଧା ମୋ'ର ହୋଇ ନଥିଲା !—ଓଃ ! ( ଅଶ୍ରୁ ସମ୍ବରଣ )

ଧର୍ମ୍ମା-ମା—ମନେପଡ଼ିଯାଉଛି ରେ ସେଦିନ ପଣ—ତୋର ବାପ ସୁଅଦର୍ଶିଆ କରିବ ବୋଲି କେତେ ଆଶା କରିଥାଏ—ସବୁ ଅୟୋଜନ ଠିକ୍ ଠାକ୍—ରାତିପାହିଲେ ହେଉଛି—ସଖୀଳ କେମିତିକା ହବ ବୋଲି ଆଖିରେ କାହାରି ନିଦ ନାହିଁ—ରାତି ଘଡ଼ିଏ କି ଦି' ଘଡ଼ି ଅଛି—ଆଉ ସମ୍ଭାଳି ପାରିଲି ନାହିଁ—ଉଠି, ଯେ ଯା ଯୋଗାଡ଼ରେ ଲାଗିଯାଇଛୁ—ଏଣେ କେତେବେଳେ ଯେ ସିନ୍ଦୁରା ଫାଟିଛି—ଆଉ ସଙ୍ଗେ ସଙ୍ଗେ ନାଗରା ବାଜିଛି—

ଧର୍ମ୍ମା—ଯୁଦ୍ଧକୁ ଡକରା ପଡ଼ିଲା ପରା ?—ତେବେ କ'ଣ ବାପା ମୋ'ର ଯୁଦ୍ଧକୁ ଯାଇ—

ଧର୍ମ୍ମା-ମା—ଅରେ ବାପ, ଏ' ଯେ ଯୁଦ୍ଧରୁ ଅଧିକ—ଯୁଦ୍ଧ ହୁଏ ସିନା ଲୋକ ଲୋକ ଭିତରେ, କି ଦେଶ ଦେଶ ଭିତରେ, କି ଜାତି ଜାତି ଭିତରେ; କିନ୍ତୁ ଏ ଯେଉଁ ଯୁଦ୍ଧ—ଏ' ଏକ ଭୟାନକ ଯୁଦ୍ଧ—ଦେବତା ସଙ୍ଗେ ମାନବର ଦ୍ୱନ୍ଦ୍ୱ । ମହାରାଜାଙ୍କର ହୁକୁମ୍ ହେଲା—ଗାଁ ଗାଁ, ଘର ଘର, ଜଣ ଜଣ କରି ଜଣାଇ ଦିଆଗଲା—

"ଆସ ଯେ ଯେଉଁଠି ଅଛ ଭାଇ ବନ୍ଧୁ ସର୍ବେ
ପିଲା ବୁଢ଼ା ଭେଣ୍ଡା ଅବା ନାହିଁଟି ବିଚାର
ଛୁଣ୍ଡାହୁଅ ଯାଇଁ ତୁଣ୍ଡେ ଚନ୍ଦ୍ରଭାଗା ତୀରେ;
ହେବ ତିଆରି ସେଠାରେ,
ଦରିଆ ମଝିରେ,
ସାତତାଳ ପାଣି ଯହିଁ ଖେଳେ,
ଦେଉଳ ଏମନ୍ତ,
ଲୁଚି କମ ଦେଖି ଯାର,
ନିନ୍ଦିବେ ଅଳକାପୁରୀ ଦେବତା ସକଳ ।

ଧର୍ମ୍ମା—ବୌ ! ବୌ ! କେଉଁଆଡ଼େ ଚନ୍ଦ୍ରଭାଗା ?—କେତେଦୂରରେ ? କେମିତିକା ମନ୍ଦିର ସେ ?—କେତେ ସୁନ୍ଦର ହୋଇ ନଥିବ ! ଦେଶର ସବୁ ବଢ଼ାଇ ମିଶି ଗଢ଼ିଛନ୍ତି ଯେତେବେଳେ—ବାର ବର୍ଷକାଳ, ଘର ଦ୍ୱାର ଭୁଲି ଦିନ ରାତି କାମ-ହୋଇଚି ଯେତେବେଳେ, ସେତେବେଳେ କି କାମ ସେ ହୋଇ ନ ଥିବ ! କାମ ସରିଚି ନା ବୌ ?—

ଧର୍ମ୍ମା-ମା—( ନିଶ୍ୱାସ ଛାଡ଼ି ) କାମ ସରିଥିଲେ ତ ବାପା ତୋର ଫେରି ଥାନ୍ତେ ରେ—

ଧର୍ମ୍ମା—ବାପା ଫେରିଥାନ୍ତେ ! ( ସାଶ୍ରୁଙ୍କେ ମାତାଆଡ଼କୁ ଚାହିଁ ରହିବା )

ଧର୍ମ୍ମା-ମା—ଏମିତି ଚମକି ଉଠିଲୁ କାହିଁକି ରେ ବାପ ? ( କୋଳକୁ ଟାଣି ଆଣି ବାଳକ ଗାତ୍ରରେ ଛେପ ପକାଇବା )

ଧର୍ମ୍ମା—( ହଠାତ୍ ସ୍ୱପ୍ନୋତ୍‌ଥିତବତ୍ ) ବୌ ! ବୌ ! ଆଉଥରେ କହ—"ବାପା ଫେରିଥାନ୍ତେ"—"ବାପା ଫେରିଥାନ୍ତେ" ।

ଧର୍ମ୍ମା-ମା—ହଁରେ ବାପ—ନିଶ୍ଚୟ ଫେରିଥାନ୍ତେ ।

ଧର୍ମ୍ମା—ନିଶ୍ଚୟ ଫେରିଥାନ୍ତେ !—(ଡେଇଁ ଉଠିବା)

ଧର୍ମ୍ମା-ମା—ଜଗନ୍ନାଥ କରନ୍ତୁ, ଜଲ୍‌ଦି ସେ ଫେରି ଆସନ୍ତୁ—ଓଃ—ବାପାକୁ ଦେଖିବାକୁ—

ଧର୍ମ୍ମା—ବାପାକୁ କେବେ ଦେଖିନି, ବୌ ? ( କରତାଳିଦେଇ ନାଚି ନାଚି ) ବାଃ—ବାପା ମୋର ବଞ୍ଚିଛନ୍ତି—ବାପା ମୋର ଦେଉଳ ଗଢ଼ୁଛନ୍ତି—ବାପା ମୋର ଜଲ୍‌ଦି ଫେରି ଆସିବେ !—( ରାମା, ଶାମା ପ୍ରଭୃତି ବାଳକବୃନ୍ଦର ପ୍ରବେଶ ) ରାମାଭାଇ !—ଶାମାଭାଇ ! ଆଉ ମୋତେ ଅଣବାବୁଆ ବୋଲି ଗାଳି ଦେଇ ପାରିବ ନାହିଁ—ବାପା ମୋର ବଞ୍ଚିଛନ୍ତି—ବାପା ମୋର ଦେଉଳ ଗଢ଼ୁଛନ୍ତି—ବାପା ମୋର ଜଲ୍‌ଦି ଫେରି ଆସିବେ !—ବୌ ! ବୌ ! ମୁଁ ବାପାଙ୍କ ପାଖକୁ ଯିବି—କାମ ଦେଖିବି—କେତେ କଥା ଶିଖିବି—ଜଲ୍‌ଦି ବାପାଙ୍କୁ ଫେରାଇ ଆଣିବି ।

ଧର୍ମ୍ମା-ମା—(ସ୍ୱଗତ) ପିଲାଟା ମୁଣ୍ଡରେ ଏ' ଖରାପ ଖିଆଲ ପଶିଥିଲା କପରି ? ମୋ'ରି ତ ଦୋଷ—ମୁହିଁ ତ ସେ ବିଷୟରେ କିଛି ହେଲେ କେବେ କହୁନାହିଁ—(ପ୍ରକାଶ୍ୟେ) ଅଚ୍ଛା ବାପ ! ତୋ ମନରେ ଯଦି କେବେ କିଛି ସନ୍ଦେହ ହୋଇଥିଲା, କାହିଁକି ମୋତେ—

ଧର୍ମ୍ମା—ବୌ ! ବୌ ! କଥା ସତ ହୋଇଥିଲେ, ତୋ' ମନରେ କେତେ କଷ୍ଟ ଦେଇ ନ ଥାନ୍ତି ଭଲା ?—ଗୁରୁ ପରା ଆମକୁ ବରାବର ମନା କରଥାନ୍ତି—"ମା, ବାପ ମନରେ କେବେ ହେଲେ କଷ୍ଟ ଦେବ ନାହିଁ । ସେମାନେ ଦେବତା ସଙ୍ଗେ ସମାନ !"

ଧର୍ମ୍ମା-ମା—ମହଯାଏଁରେ, ଧନରେ ମୋର । (କୋଳକୁ ଟାଣିଆଣି ଚୁମ୍ବେଖାଇବା) ପିଲାମାନେ ! ତୁମେମାନେ ଧନକୁ ମୋ'ର ଏମିତିକା କହି କଷ୍ଟଦେବା ଆଗରୁ, ମୋତେ ପଚାରି ଥରେ ବୁଝିଲ ନାହିଁ କାହିଁକି ?

ରାମା—ମାଉସି ! ଆମେ ଗେଲରେ କହୁଥିଲୁ ନା ?—ସାଇ-ପଡ଼ୋଶୀ ସମସ୍ତେ ତ ସେଇକଥା—

ଧର୍ମ୍ମା-ମା—କହିବେ ତ—ଏ'ତ ଆଜି ତୁମର ବାପ ଖୁଡ଼ୁଡ଼ାଙ୍କ ଭଳି ଖାଲି କାରିଗର ନୁହନ୍ତି—ଏ' ହେଲେ ସମସ୍ତଙ୍କ ଉପରେ ସର୍ଦ୍ଦାର—

ଧର୍ମ୍ମା—ସର୍ଦ୍ଦାର !

ଧର୍ମ୍ମା-ମା—ସବୁ ଝୁଙ୍କି ଏ'ଙ୍କ ମୁଣ୍ଡରେ । ଘଡ଼ିଏ ଖଣ୍ଡେ ଲେଖିବାକୁ ବି ଫୁର୍ସତ୍ ନ ଥାଏ—ବର୍ଷକେ ବୁଇବର୍ଷକେ ଥରେ ଘରକୁ ଫେରିଆସିବା କଥା ପଚାରେ କିଏ ? ଦାନା, କନା-ପଟା, ଭଲ-ମନ୍ଦ ଖବରତ ସବୁ ରଜାଙ୍କ ଲୋକେ ବୁଝିବେ—ତାଙ୍କରି ପାଖରୁ ପୁଣି ଯେତିକି ଖବର ମିଳିବ ସେତିକି—ହାୟ ! ମୋ'ର ସିନା ପୋଡ଼ା-କପାଳ—

ଧର୍ମ୍ମା—ତୋ'ର ପୋଡ଼ାକପାଳ, ବୌ ?—ତୋଠୁଁ ଭାଗ୍ୟବତୀ କେବେ କିଏ, ବୌ ?—ବାପା ମୋର ସର୍ଦ୍ଦାର—ବାପାଙ୍କ ମୁଣ୍ଡରେ ସବୁ ଝୁଙ୍କି —ସ୍ୱାଠୁଁ ବଳି ଭାଗ୍ୟ ଆମର ଅଛି ନା ?

ଶାମା—ଆ' ରାମାଭାଇ, ଢ଼ଳୁର ହେଉଛି—ତଦନ ପୋଖରୀରେ ଭାରି ମାଛ ବଢ଼ିଲାଣିରେ, ଧରମା—ଧରିଯିବୁ ଯେବେ ବେଗେ ଆ ।

ଧର୍ମ୍ମା—ନା, ଭାଇ—ମୁଁ ବାପାଙ୍କ ପାଖକୁ ବାହାରିଛି—ବାପାଙ୍କୁ କେମିତି ଦେଖିବି ବୋଲି ମନ ଯେ ମୋ'ର ଆଜି କାହିଁରେ ନାହିଁ ।

ରାମା—ଆସ ହେ—ଏ' ଏକଜିଦିଆ କ'ଣ ଆସିବ କି ?

ଶାମା—(ଏକାନ୍ତେ) ରାମା ଭାଇ ! ଆଜି ତ ସେ ଟୋକାର ଦେଖା ନାହିଁ କାହିଁକି ?

ରାମା—(ଏକାନ୍ତେ) ନ ଆସିଥିବ ପୁଣି ?—ଚାଲ୍, ଚାଲ—  (ବାଳକମାନଙ୍କର ପ୍ରସ୍ଥାନ)

ଧର୍ମ୍ମା—ବୌ ! ବୌ ! ଆଉ ମୋ' ଗୋଡ଼ ତଳେ ଲାଗୁନାହିଁ—ମତେ ଜଲ୍‌ଦି ରାସ୍ତା ବତାଇ ଦେ—ମୁଁ ସିନା ଏ'ଠି—ମୋ ମନ ଯାଇ ବାପାଙ୍କ ପାଖରେ—ବାପା ଦେଖିବାକୁ କେମିତିକା, ବୌ ?—ମୋତେ ଚିହ୍ନି ପାରିବେ ତ ?—କ'ଣ କହିଲେ ବାପା ମୋତେ—

ଧର୍ମ୍ମା-ମା—(ନୀରବରେ ଲୁହ ପୋଛିବା)

ଧର୍ମ୍ମା—ଛି, ବୌ ! କାନ୍ଦୁଛୁ ?—ଥାଉ, ଥାଉ—ମୁଁ କ'ଣ ବାପାଙ୍କୁ ଚିହ୍ନି ପାରିବି ନାହିଁ ? ବାପା କି ନ ଚିହ୍ନି ମୋତେ ରହି ପାରିବେ ?—

ଧର୍ମ୍ମା-ମା—(ସ୍ୱଗତ) ଦେଖ, ଦେଖ, ନାଥ—
ତୁମରି ଶ୍ରୀମୁଖ-ଶୋଭା—
ତୁମରି ବରଣ-ଆଭା—
ଫଳିଅଛି ଦରପଣେ କିବା,
ନବନୀତ ଏହି ଶିଶୁ ଅଙ୍ଗେ ଅଙ୍ଗେ—

(ପ୍ରକାଶ୍ୟେ)—ଛି, ପାଗଳ !—

ଧର୍ମ୍ମା—ସତେ, ସତେ ବୌ, ମୁଁ ପାଗଳ ହୋଇଯିବି, ଯଦି ବାପାଙ୍କ ପାଖକୁ ଜଲ୍‌ଦି ମୋତେ—(ହଠାତ୍ ତୁନିହୋଇ ଶୁଣିବାର ଅଭିନୟ କରିବା)

ଧର୍ମ୍ମା-ମା—(ସ୍ୱଗତ) ଅଚ୍ଛା ଜଗରି ଧରିଲା ତ—

ଧର୍ମ୍ମା—ବୌ ! ବୌ ! ଶୁଣିଲୁ—ଶୁଣିଲୁ—କି ଗୋଟାଏ ସଙ୍ଗୀତ ଭାସି ଆସୁଛି—ନା ?

ଧର୍ମ୍ମା-ମା—(ସ୍ୱଗତ) ମୁଁ ଚଣ୍ଡାଳୁଣୀ କ'ଣ କଲି ? (ପ୍ରକାଶ୍ୟେ) କାହିଁ ?—କେଉଁଠି ?—କିଛିତ ନାହିଁ—ଆ ଅଇଲୁ, ଭାତ ଗଣ୍ଡାକ ଦେଖେଣେ ଖୁଣ୍ଡି ଯିବଣି ।

ଧର୍ମ୍ମା—ବୌ ! ବୌ ! ତୁ କଣ ଏହି ସଙ୍ଗୀତ କଥା କହୁଥିଲୁ ?—

ଧର୍ମ୍ମା-ମା—କାହିଁ ?—କେଉଁଠି ମ ?—ଆ' ଅଇଲୁ—

ଧର୍ମ୍ମା—ତୁ କଣ କିଛି ଶୁଣିପାରୁ ନାହୁଁ, ବୌ ?—ତୁନିହୋଇ ଥରେ କାନ ଡେରିଲୁ, କେମିତିକା ପବନରେ ମିଳେଇ ମିଳେଇ ଆସୁଛି—ଯେମିତିକା ଖୁବ ଦୂରରୁ—କେଉଁ ଅଜଣା ରାଇଜରୁ ଭାସି ଭାସି ଆସୁଛି । ସର ଥା'ନ୍ତା କି ? (ହଠାତ୍) ବୌ ! ବୌ ! ମୁଁ ଯାଉଚି, ସରକୁ ଡାକି ଆଣେ, ସେ ଅଇଛିକା ବୁଝେଇ ଦବ, କି ଗୀତ—କେଉଁଠୁ—ଆହା ! ସରକୁତ ମୁଁ ଏ' ପର୍ଯ୍ୟନ୍ତ କହି ନାହିଁ—ଶୁଣିଲେ ସେ ଯେ କେଡ଼େ ଖୁସି ହେବ !—ସର ! ସର ! ବାପା ମୋର ବଞ୍ଚିଛନ୍ତି—ବାପା ମୋ'ର ଜଲ୍‌ଦି ଫେରି ଆସିବେ—(ନାଚି ନାଚି ପ୍ରସ୍ଥାନ)

ଧର୍ମ୍ମା-ମା—ସତେ ସତେ ପିଲାଟା ପାଗଳ ହେଲା ନା କ'ଣ ?—କେମିତି ତାକୁ ଭଣ୍ଡାଭଣ୍ଡି କରି ରଖିଚି—ମୁଁ ଚଣ୍ଡାଳୁଣୀ ଅଛାକଥା ପଢ଼ାଇଲି ଅଜ—ବାପା ତା'ର ଠିକ୍ ଏହିପରି ବେଳେ ବେଳେ ବାତୁଳା ହୁଏ, ପୁଅ ଆଉ ଭଲ ହେବ କେଉଁଠୁ— ! (ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ) ଯାଏଁ ପିଲାଟାକୁ କେମିତ ଭଣ୍ଡାଭଣ୍ଡି କରି—ରହ, ସରକୁ ତ ଯାଇଚି ଡାକି, ଡାକି ଆଣୁ, ତା'ରି ହାତରେ ସବୁ କଥା—ଆହା ! ଦୁହିଁଙ୍କ ଭିତରେ ଅଇଛିକା ଛଡ଼ାଛଡ଼ି—ଅଇଛିକା ପୁଣି ମିଳାମିଳି—ପ୍ରେମର ଗୀତ ଏହିପରି ସିନା ! (ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ପ୍ରସ୍ଥାନ )

[ ବାଳିକା-ମାତା ଓ ବାଳିକାର ପ୍ରବେଶ ]

ସର-ମା—କଲେ—ଅଜ ଖେଳେହୁର ମୋତେ ଭୋଗାଡ଼ିରୁ କି ? ଏ' ତୁଟିଅନା କଣ ଗୋଟାକ ତ ବୁଲଇ ମାଇଲୁଣି—କାହିଁ ସେ କୁଞ୍ଜବନ ?—କୁଞ୍ଜବନରେ କୁଞ୍ଜଲୀଳା ଲାଗିଛି ପରା ! କାହିଁଗଲା ସେ ଛେଉଣ୍ଡ ?—

[ବାଳକର ସାନନ୍ଦେ ନାଚି ନାଚି ପ୍ରବେଶ]

ଧର୍ମ୍ମା—ଆଉ ମୁଁ ଛେଉଣ୍ଡ ନୁହେଁ, ମାଉସି—ବାପା ମୋ'ର ବଞ୍ଚିଛନ୍ତି —ବାପା ମୋର ଦେଉଳ ଗଢ଼ୁଛନ୍ତି—ବାପା ମୋ'ର—ଏ' କଣ ସର ? ତୁମେ କେଉଁ ଉଠୁନାହିଁ ଯେ—ମୋ ସଙ୍ଗେ ସଙ୍ଗେ ତାଳଦେଇ ନାଚୁନାହିଁ ଯେ ? ଏଁ, ମେ ର ଏମିତିକା ସୁ-ଖବର ତୁମକୁ ଦେଲି—ହସ ବି ଟିକିଏ ନାହିଁ ? ମୁହଁଟା ହାଣ୍ଡିକରି ଠିଆହୋଇଚ ? —ଏଡ଼େ ହିଂସୁକି ନା ତୁମେ ?

[ ବାଳିକା ବାଳକାନ୍ତର ଗୋପନୋଦ୍ଦେଶ୍ୟରେ ମୁହଁ ବୁଲାଇଦେବା ]

ହଁ, ମୁହଁ ପୁଣି ବୁଲାଇ ଜାଅ ହେଉଚି—

ସର—(କାନ୍ଦପକାଇବା ଓ ବାଳକ ଝିଙ୍କିବାକୁ ଯାଇ ନିରସ୍ତହେବା)

ଧର୍ମ୍ମା—ସର ! କାନ୍ଦୁଚ ? ଛି ଛି, ସର ! ସେହି କଥାଟା ଗୋଟାଏ ଗଣ୍ଠି କରି ବସିଚ ନା ? ମୋର ସରଟି ପରା— (ସସ୍ନେହେ ଚୁମ୍ବନ କରିବାକୁ ଯିବା)

ସର-ମା—(ସକୋପରେ ଟାଣି ଆଣି) ହାଁ, ହାଁ,—ଏତେ ଦମାକ୍ ତୋ'ର ଟୋକା ? ଟିକିଏ ଲାଜ-ସରମ ବି ନାହିଁ ?—କାରେ, ତାକୁ କ'ଣ କରି ପାଇଲୁ କି ?—ସେ କ'ଣ—

ଧର୍ମ୍ମା—ଏ' କଣ କହୁଚ, ମାଉସି ?

ସର-ମା—କହୁଚି ତୋ' ମୁଣ୍ଡ ଅଉ ଗଣ୍ଡି ! ଅରେ ସାପଖିଆ, ବାଡ଼ପଡ଼ା ! ତୋତେ କଣ ଖୋଜି ଖୋଜି ମରିବାକୁ ଥାନ ମିଳିଲା ନାହିଁ ? ହାଟୁଆ ବାଟୁଆ ଘରେ ଏ'କି କଥା ଲୋ ମା ! ଏ, ମଲାଟାପାଇଁ ମଣିଷ ଦାଣ୍ଡଘାଟ କରିପାରିଲା ନାହିଁ—ଯେଉଁଠିକି ଯାଅ, ସେହିକଥା—ଅଲୋ ଟୋକି ! ତୁ ପୁଣି କେଲୁଣୀଙ୍କ ଭଳି ଗୀତ ଶିଖିଲୁ କେଲୁଣୀଙ୍କ ଭଳି ଗୀତ ଶିଖିଲୁ କେଉଁଦିନୁ ମ ?—କାହିଁ ସେ ତୋଟା ?—ମଲା ମୋର୍'—କୁଞ୍ଜବନରେ'କୁଞ୍ଜଲୀଳା—

ଧର୍ମ୍ମା—ମାଉସି ! ମାଉସି ! ଯା' ତା' ଗୁଡ଼ାଏ ବକିଯାଅ ନାହିଁ—କିଏ କଣ କହୁଚି—

ସର-ମା—ସବୁ ମିଛ—ସବୁ ମିଛ—ଆରେ ସତଅ ଗାଉପଣା ! ଆଖିରେ ଯା ଦେଖିଲୁ ତା ବି ମିଛ ? —ଓ ହୋ ! ପିଲା ଝିଟେନାକୁ—ଗାଲ ଚିପିଦେଲେ ଦୁଧ ବାହାରିବ, ଦେଖ ଏ'ଙ୍କର ଗୁଣ—ଆରେ କାଳିଆ ଭୁଆଁ ! କୃଷ୍ଣ ହେବୁ ଯଦି, ଗୋପପୁରକୁ ଯା—ଏ' ଗେରସ୍ତିଆ ଗାଁରେ ସେ ସବୁ ଚଳିବ ନାହିଁ—

ଧର୍ମ୍ମା—ମାଉସି ! ମାଉସି ! ପୁଅଟାକୁ ତୁମର—

ସର-ମା—ଯା, ଯା, ଯା !—ତେର ତେର ପୁଅ ଦେଖିଚି—ସେ ଘରଭାଙ୍ଗାଇ ପାଖେ ହଲେଇ ହବୁ ଟପ ସୁନ୍ଦର ଦିଶିବ—ଲୁଅଡ଼େ କଣ କରି ଟଗୋଟାଏ—

ଧର୍ମ୍ମା—ସେତିକିରେ କ୍ଷମାଦିଅ, ମାଉସି—ଆଉ ଦଣ୍ଡେ ମୁଁ ଠିଆ-ହେବି ନାହିଁ—ସ-ର !—ନା—ନା—ଓଃ ! (ଫେରିଗୃହଁ ବେଗେ ପ୍ରସ୍ଥାନ)

[ଇତିମଧ୍ୟେ ବାଳିକା-ମାତା, ବାଳକ କଥା ଶେଷ ନ କରୁଣୁ, ବାଳକର ଗଠିତ ସେହି ପ୍ରସ୍ତର ମୂର୍ତ୍ତିଟା ଦେଖି କୁଞ୍ଜବନ ମଧ୍ୟେ ହଠାତ୍ ପ୍ରବେଶ କଲା]

ସର—ଭାଇ ! ଭାଇ—(ଆଖିରେ ଆଖି ମେଳ ହେବାରୁ, ଅନୁଧାବନ କରୁ କରୁ ଅତ୍ୟଧିକ ଆବେଗରେ ପତନ ଓ ବାଳିକା-ମାତାର ବେଗେ ପ୍ରବେଶ)

ସର-ମା—ଏଁ, ଏଁ, ଝିଅଟା କେମିତି ପଡ଼ିଗଲା କାହିଁକି ? ଟୋକାଟା ମାରିକରି ପଳାଇଲା ନା, କ'ଣ ? ସର ! ସର !

ସର—ନା, ନା, ଝୁଣ୍ଟି ପଡ଼ିଥିଲି, ବୋଉ !

( ହଠାତ୍ ଉଠିବା )

ସର-ମା—ମିଛକଥା, ମିଛକଥା—ରହ, ରହ, ଶ୍ୟାମା ଶାମାକୁ କହି ତା'ର ଠେଙ୍ଗିଣି ଅଣ୍ଟା ଭାଙ୍ଗି ଦେଉଚି !

ସର—ନା, ନା, ବୋଉ !—ସେ—( ଆବେଗ ଓ ଲଜ୍ଜାରେ କୁଣ୍ଠିତ ହେବା )

ସର-ମା—ରଖ; ରଖ ତୋ'ର ସେ ଛିଣ୍ଡାଳିଗିରି ! ତୋଟାର ସନ୍ଧାନ ଏଥର ପାଇଲିଣି ଯେ—ମୂର୍ତ୍ତି ଦେଖ, ପୁଣି ଗଢ଼ାହୋଇଚି, ଠିକ୍ ଏକାବେଳେ ଟୋକିର ନକଲ—

ସର—ବୋଉ, ବୋଉ ! (ଏହି ଅଜ୍ଞାତପୂର୍ବ ଦୃଶ୍ୟରେ ବିହ୍ୱଳିତ ହୋଇ କାନ୍ଦିବା )

ସର-ମା—( ଲୁହ ଦେଖି ) ହଁ—ଏତେଦୂର !—ରହ, ରହ, ଶ୍ୟାମା, ଶାମାକୁ କହି ବଣ ଗୋଟାପାକ ଯଦି ପୋଡ଼ି ନ ଦେଇଚି, ମୋ ନା' ସରଅ-ମା ନୁହେଁ—ଆ' ଟୋକି—

(ମୂର୍ତ୍ତି ସହିତ ସରକୁ ଟାଣି ଘେନି ପ୍ରସ୍ଥାନ)

[କିଛିକ୍ଷଣ ପରେ ବିପରୀତ ଦିଗରୁ ବାଳକ-ମାତାର ପ୍ରବେଶ ]

ଧର୍ମ୍ମା-ମା—ଏତେବେଳଯାଏ କ'ଣ କରୁଚି ଟୋକା ?

ଧର୍ମ୍ମା—(ପ୍ରବେଶକରି) ଏହି ଯେ ବୋଉ ! ଘରେ ତାଲଦେଇ କୁଆଡ଼େ ଯାଇଥିଲୁ କି ?

ଧର୍ମ୍ମା-ମା—ତେର ଦେଖି, ତୋତେଇ ତ ଡାକିବାକୁ ବାହାରିଥିଲି, ବାପ—ସର କାହିଁ ? ମୁହଁ ତୋ'ର ଏମିତି ଶୁଖିଯାଇଛି ଯେ ?—ସର ଅଇଲା ନାହିଁକି ? ଭାରି ଅଭିମାନ ହୋଇଛି ତା'ର—ନା ? ଅଚ୍ଛା ମୁଁ ନିଜେ ଅରଓଲ ତା' ଘରକୁ ଯାଇ—

ଧର୍ମ୍ମା—ନା, ନା, ବୋଉ ! ତୁ ଆଉ ତା' ଘରକୁ ଯିବୁ ନାହିଁ—

ଧର୍ମ୍ମା-ମା—ଛି, ଏମିତି ରାଗନ୍ତି କି ?—ଦେଖିଲୁ, ତା ମନରେ—

ଧର୍ମ୍ମା—ତା' ମନରେ କିଛି କଷ୍ଟନାହିଁ, ବୋଉ ! ( ଆକୁଳସ୍ୱରେ ) କଷ୍ଟନାହିଁ ! କଷ୍ଟ ନାହିଁ ! —ଓଃ—( କାନ୍ଦପକାଇବା )

ଧର୍ମ୍ମା-ମା—କାନ୍ଦିଲୁ ଯେ ?—

ଧର୍ମ୍ମା—ତାକୁ ଅଙ୍କ କନ୍ଦାଇଚି ବୋଲି—ନା, ନା ଆଉରି କନ୍ଦାଇବି, ଯଦି ମୁଁ ଏଠି ରହେ !—ବୋଉ ! ବୋଉ ! ମତେ ଆଜ—ନା, ଏହିକ୍ଷଣି ବିଦାୟ କରିଦେ—ମୁଁ ବାପାଙ୍କ ପାଖକୁ ଚାଲିଯାଏ—ମୋର ପାଇଁ ସିନା—(କାନ୍ଦପକାଇବା )

ଧର୍ମ୍ମା-ମା—ଥାଉ, ଥାଉ, ବାପ—ତୁନି ହ'—
(ବାଳକର ଲୁହ ପୋଛୁ ପୋଛୁ ଦୀର୍ଘନିଃଶ୍ୱାସ ଛାଡ଼ି)
ପ୍ରୀତିର ସ୍ରୋତ ଏହିପରି ସିନା ! କେତେବେଳେ
ହସାଏ, କେତେବେଳେ କନ୍ଦାଏ—କ୍ଷଣକେ
ମିଳାଏ, କ୍ଷଣକେ ଛଡ଼ାଏ—କିନ୍ତୁ ଜଭଯ୍ୟରେ କି
ଗୋଟାଏ ଆନନ୍ଦ ନ ଥାଏ ?—ଅହା ! ସତେ କି
ଠାକୁରେ ମୋର ଧର୍ମ୍ମ ଆଜ ସରକୁ—

ଧର୍ମ୍ମା—ବୌ । ବୌ ! ଜାଲ ଦେ ନା,—ଜାଲ
ଦେନା—ଯେଉଁନିଆଁ ଲଭାଇବାକୁ ଯାଉଛୁ,ତାକୁ
ଫୁଙ୍କି ଜାଲ ଦେନା !—ଆଉ ଏଠି ଦଣ୍ଡେ ମୁଁ
ରହିପାରିବି ନାହିଁ, ବୌ—ଜଲ୍‌ଦି ବିଦାୟ
କରିଦେ । ବାପାଙ୍କୁ ଦେଖି ଦେଖି, ବାପାଙ୍କ ସଙ୍ଗେ
କାମ କରୁ କରୁ, ବାପାଙ୍କର ସେହି ସବୁ-ପାଶୋରା
ଗୀତ ଶୁଣି ଶୁଣି, ମୁଁ ସବୁ ଭୁଲିଯିବି, ସବୁ—ଯା
ଦେଖୁଚି, ଯା ନ ଦେଖୁଚି—ଯା ବୁଝୁଚି, ଯା
ନ ବୁଝୁଚି—ତେବେ ବି, ତେବେ ବି ମୋ'ର
ସ-ର-କୁ କି—(କ୍ରନ୍ଦନ)

ଧର୍ମ୍ମା-ମା—ରହ, ବାପ—ମୁଁ ଏହିକ୍ଷଣି ସରକୁ ଧରି—
( ପ୍ରସ୍ଥାନୋଦ୍ୟତା )

[ ସରର ବେଗେ ପ୍ରବେଶ ]

ସର—ଧରିବାକୁ ହେବନାହିଁ, ମାଉସି—ସେ ଯେ
ଆପେ ଆପେ ଧରା ଦେଉଛି—କିଏ ଅଟକାଇ
ରଖିବ ?—କା'ର ଏଡ଼େ କ୍ଷମତା ?—ମାନ
ଅଭିମାନ ବେଳେ ବେଳେ ବାଧା ଦିଏ—ନା ନା,
ବାଧା ତ ନୁହେଁ—ଏ' ଯେ ଆକର୍ଷଣର ପ୍ରତି-
ଆକର୍ଷଣ— ଘାତର ପ୍ରତି-ଘାତ, ନୁହେଁ ଭାଇ ?
ତୁମେଇ ତ ଦିନେ ମୋତେ ପୋଥିପଢ଼ି
ବୁଝାଉଥିଲ, ଏ' ବିଶ୍ୱ ସମ୍ଭବ କେବଳ ଏଇଥିପାଇଁ
ସିନା ?

ଧର୍ମ୍ମା-ମା—ଅସ, ଘରକୁ ଆସିଲ, ଭାଗ୍ୟବାନ୍ତାଙ୍କ ତେଣେ
ଶୁଙ୍ଖି ନିର୍ମାଲ୍ୟ ହୋଇ ଯିବଣି !—ସର, ଲକ୍ଷ୍ମୀଟିଅଟି
ମୋର—ମୁଣ୍ଡ ଖା, ଆଉ ପଳେଇ ଯିବୁ
ନାହିଁ--ସେ ଅଡ଼ବାୟୁଟାର କଥା କାହିଁକି ଶୁଣୁ ?
ଅସ ବୁଢ଼େଁ, ହାତ ଧରାଧରି ହୋଇ ଆସିଲ—

(ସର ବାଳକର ହାତ ଧରିବା) (ସ୍ୱଗତ)
ଜଗନ୍ନାଥ ! ସତେ କି'ଣ (ଦୀର୍ଘନିଃଶ୍ୱାସ ତ୍ୟାଗ)
—ଅସ, ବେଗେ ଆସିବ, ମୁଁ ତେଣେ ବଢ଼ାବଢ଼ି
କରେ ଯାଇଁ । (ପ୍ରସ୍ଥାନ)

ସର—ଭାଇ ! ଭାଇ ! ଭୁଲିଯାଅ, ଭୁଲିଯାଅ—
ମୋ'ର ପାଇଁ, ମୋତେଇ ଗୁହିଁ—ବୌ'ର ସେହି
ନିର୍ଦ୍ଦୟ ବ୍ୟବହାର !

ଧର୍ମ୍ମା—(ବିସ୍ଫାରିତ ନେତ୍ରରେ ଏ ପର୍ଯ୍ୟନ୍ତ ସରକୁ ଗୁହିଁ
ରହିଥିଲା— ତା'ପରେ ସସ୍ମିତେ କହିଲା )
ସେହି ନିର୍ଦ୍ଦୟ ବ୍ୟବହାର ଯୋଗୁଁ ସରର ଏହି
ସଦୟ ବ୍ୟବହାର ସିନା ?

ସର—ଆଉ ଲଜ୍ଜା ଦିଅନା, ଭାଇ—

ଧର୍ମ୍ମା—ଲଜ୍ଜାର ବନ୍ଧକୁ ନିଜେ ଭାଙ୍ଗି, ପୁଣି ଲଜ୍ଜାର ଭୟ ?

ସର—ଭାଇ, ଭାଇ—

ଗୀତ

ସେ ଯେ ତୁମ୍ଭର ଗୁଣେ, ତୁମ୍ଭର ଟାଣେ,
ଚାଲଇ ତରୀ ଖରେ ଉଜାଣେ ।
ଜାଣେ ନା, ଜାଣେ ନା    କେ ମନା ଅମନା —
ଭାସିଯାଏ କାହିଁ    ନାହିଁ ମୋତେ ଜଣା —
ସମ୍ପିଛି ପ୍ରାଣ, ଏତିକି ଜାଣେ ।

ଧର୍ମ୍ମା—(ତେଳିଉଠି) ଶୁଣ, ଶୁଣ, ସର—ସେହି
ସଙ୍ଗୀତ—ସେହି ମହାସଙ୍ଗୀତ !—ତୁମ୍ଭର ଏହି
ସାମାନ୍ୟ ସଙ୍ଗୀତକୁ କେଉଁ ଅତଳ ଗର୍ଭରେ
ଡୁବାଇ ଦେଇ, କିପରି ମୂର୍ଚ୍ଛନା ତା'ର ଦିଗ୍-
ଦିଗନ୍ତ ମୁଖରିତ କରିଉଠୁଛି ! ଓଃ—ହୃଦୟ-
ତନ୍ତ୍ରୀରେ ଏ'କି ଝଙ୍କାର—ଆଉ ଯେ ଠିଆହୋଇ
ପାରୁନାହିଁ—ବାବା—ବାବା—
( ବେଗେ ପ୍ରସ୍ଥାନ )

ସର—ଭାଇ, ଭାଇ ! ( କିଛିଦୂର ଅନୁଧାବନ କରି )
ଛାଡ଼ି ଯାଅ ନା—ଛାଡ଼ି ଯାଅ ନା, ଭାଇ—ମୁଁ ଯେ
ତୁମର ଅନୁଗାମିନୀ ହେବି ବୋଲି, ସମସ୍ତ ଛାଡ଼ି
ଆସିଚି—ବିଶ୍ୱାସ କର, ଭାଇ—ବୌ ବର୍ତ୍ତମାନ
ବାଧା ଦେବାକୁ ଧାଇଁ ଅସିବ—ସମସ୍ତ ସଂସାର

ଧାଇଁ ଆସିବ—କିନ୍ତୁ ତୁମର ଆକର୍ଷଣ ନିକଟରେ ଯେ ତାହା କାମ୍ପିଉଠିବ ମାତ୍ର—ଛାଡ଼ିଦିଅ ଦିଅ ନା—ଛାଡ଼ିଦିଅ ନା ସେ ରକ୍ତ,—ଭାଇ—ଥରେ ମାନବର ଯାଇଥିଲ ବୋଲି କ'ଣ ଏହି ପରିଣାମ ତା'ର ? ନା' ତ—ବୌଭିର ବ୍ୟବହାର ? ନା' ତ—ତେବେ, ତେବେ—ଓଃ ହୋ ! ବୁଝିଲି, ବୁଝିଲି—ମାଉସୀ ଯେଉଁ ସଙ୍ଗୀତର କଥା କହୁଥିଲେ, ସେ ମହାସଙ୍ଗୀତର ସନ୍ଧାନ ପାଇ, ମୋ'ର 'ସାମାନ୍ୟ' ସଙ୍ଗୀତକୁ ଉପେକ୍ଷା କରି ଚାଲିଯାଉଛ, ଭାଇ !—ଭାଇ ! 'ପିଣ୍ଡ', 'ଶକ୍ତି', 'ପ୍ରଳୟ'—ଏ' ଗୁଡ଼ାକ କଣ ଖାଲି କଥାର କଥା ? ପ୍ରାଣହୀନ ତୁଚ୍ଛ ବସ୍ତୁ ?—ତେବେ ସେହି ତୁଚ୍ଛ ବସ୍ତୁ ଯେଉଁ ଗଠିତ ପ୍ରାଣର ଅଉ କି ପ୍ରୟୋଜନ ?—ବିଶ୍ୱର ଅଣୁ ପରମାଣୁ ସଙ୍ଗେ ମିଶାଇଦେଲେ ବରଂ କାହାର କାର୍ଯ୍ୟରେ ଲାଗିପାରେ— ( ଗମ୍ଭୀରଭାବେ ପ୍ରସ୍ଥାନୋଦ୍ୟତା )

[ ଜଣେ ବିଦେଶୀ ଗୋପନଭାବେ, ଭୟେ ଭୟେ ପ୍ରବେଶକରିବା ]

ବିଦେଶୀ—( ଅନୁଚ୍ଚସ୍ୱରରେ ) ହେ ଟୋକା—ହେ ଟୋକା—

ସର—କିଏ ଡାକିଲା ? କିଏ ବାଧା—? ( ଫେରି ରୁହିଁବା )

ବିଦେଶୀ—( ଅନୁଚ୍ଚସ୍ୱରରେ ) ବିଶୁ ମହାରଣା ଘର କେଉଁଠା ? ଅଳ୍ପେ ଜଲଦି ବତାଇ ଦେ—ସେମ୍ତିକା ଗୋଟାଏ ଲୁଚୁଖବର—ନା, ନା, କିଛି ନୁହେଁ,—ତା' ପୁଅ ନାଁ ଧରିମା—

ସର—ହଁ, ହଁ—କି ଖବର ?—କୁହ ମୋତେ—ଭଲଖବର ତ ?

ବିଦେଶୀ—ତୁ ତା'ର କଣ ହଉ କି ?—ନା' ତ—ସେ କହୁଚି, ପୁଅଟିଏ ଅଉ ଭାରଯା ଛଡ଼ା ଘରେ ତାର କେହି ନାହାନ୍ତି ।

ସର—ନା, ନା, ମୁଁ ବି ଜଣେ—ମୋ କଥା କ'ଣ—ନା, ନା—ମୁଁ କେହି ନୁହେଁ, ମୁଁ କେହି ନୁହେଁ—ତେବେ ବି—କୁହ, କୁହ, କିଏ ଖବର ଦେଇଚି ? କିଏ କହି ପଠାଇଚି ? ଧର୍ମା ଭାଇର ବାପ ? କିପରି ଅଛନ୍ତି ? ସବୁ ମଙ୍ଗଳ ତ ? ଅଚ୍ଛା ତୁମେ ଠିଆ ହୁଅ, ମୁଁ ଏହିକ୍ଷଣି ଯାଇ ଡାକି ଆଣୁଚି—ନା, ନା, ଡେରି ହେବ—ତୁମେ ମୋ ସଙ୍ଗେ ସଙ୍ଗେ ଆସ—( ଗମନୋଦ୍ୟତା ହୋଇ ସକାତରେ ) ନା, ନା, ମୁଁ ତ ଯାଇ—

ବିଦେଶୀ—ଯିବାର କିଛି ଦରକାର ନାହିଁ, ହିଁଅ—ଖାଲି ଘରଟା କେଉଁଠି ବତାଇ ଦେଲେ ହେଲା ।

ସର—ଏହି ଆଡ଼େ ଯାଇ—ଏମିତି ବଙ୍କେଇ ( ଦେଖାଇବା ) ପଥୁରିଆ ସାହିର ଠିକ୍ ଯଉଁ ମୁଣ୍ଡଘରଟା—

ବିଦେଶୀ—ଦେଖ୍—ମୋତେ ଦେଖିଲୁ, କି ମୁଁ ପଚାରୁଥିଲି ବୋଲି ଯେମିତି କାହାକୁ ଆଗେ କିଛି ନ କହୁ । ( ବିଦେଶୀର ପ୍ରସ୍ଥାନ )

ସର—ଏମିତି କାହିଁକି କହୁଚି ଏ' ବିଦେଶୀ ?—କି ଲୁଚୁ ଖବର ?—ଭଲ ଖବର ତ ? ଜାଣିବାକୁ ଯେ ମନ ଭାରି ବ୍ୟାକୁଳ ହେଉଚି—କଣ ଆପଦ ବିପଦ କିଛି—ଜଗନ୍ନାଥ ନ କରନ୍ତୁ !—ଯାଏଁ, ଯାଏଁ, ଶୁଣି ଆସେ—ଏହି ଯେ, ଏହି ଯେ ଭାଇ ଏଣେ ଆସୁଚି—ସେ ବିଦେଶୀ ଗଲା କେଉଁଆଡ଼େ ?—ପଥ ହୁଡ଼ିଗଲା ନା କଣ ?—ଯାଏଁ, ଖୋଜି ତାକୁ ବେଗେ ଏଠାକୁ ଘେନି ଆସେ—( ବେଗେ ପ୍ରସ୍ଥାନ )

[ ବାଳକର ବିଷଣ୍ଣଭାବେ ପ୍ରବେଶ ]

ଧର୍ମା—"ମା'ର କଥାର ଅବାଧ୍ୟ !" ବୌ ! ବୌ ! ଏ'କଥା ଆଜ ତୋ' ମୁହଁରୁ ମୋତେ ଶୁଣିବାକୁ ହେଲା ! ବିଶ୍ୱ ପ୍ରଳୟ ହୋଇଯିବ ବରଂ, ଏ' କଳଙ୍କ କଦାପି ମୁଁ ସହି ପାରିବି ନାହିଁ;—କିନ୍ତୁ ବାପାଙ୍କୁ ଦେଖିବାକୁ ଯେ—ନା, ନା, ଏ' ଆବେଗ ମୋତେ ଦମନ କରିବାକୁ ହେବ—ମାତୃ-ଆଦେଶ ନ ହେବା ପର୍ଯ୍ୟନ୍ତ, ଧୈର୍ଯ୍ୟ ଧରି ଯେ କୌଣସିମତେ ମୋତେ ରହିବାକୁ ହେବ ।

—ସରକୁ—ହାୟ ! ସେତେବେଳେ କି ଆବେଗରେ ଭାସି ଯାଇ ତା' ମନରେ କି କଷ୍ଟ ନ ଦେଇ ଥିଲି !—କାହିଁ ସେ ? ଥରେ ଦେଖା —ନା, ନା, ତା' ସଙ୍ଗେ ତ ଆଉ ଦେଖା କରିପାରିବି ନାହିଁ—ମୋ'ର ପାଇଁ ସିନା ବାସୁରକୁ ବୌଠୁ ତା'ର ଗାଳି ମନ୍ଦ ଖାଇବାକୁ ପଡ଼ୁଛି—ସାଇ ପଡ଼ୋଶୀମାନଙ୍କଠାରୁ ପାଞ୍ଚ କଥା ଶୁଣିବାକୁ ହେଉଛି—( ଫେର, କୁଞ୍ଜମଧ୍ୟକୁ ଚାହିଁ ) କାନ୍ତୁ, କାନ୍ତୁ, ଆଉ କି ଏ' ଥାନକୁ—ନା, ନା, ମୋତେ ଦମ୍ଭ ଧରିବାକୁ ହେବ !—ପରର ମଙ୍ଗଳ ପାଇଁ ସବୁ ସୁଖ ଜଳାଞ୍ଜଳି ଦେବା ମହା କର୍ତ୍ତବ୍ୟ !—

[ ସ୍ୱଦେଶୀର ପ୍ରବେଶ ]

ସ୍ୱଦେଶୀ—ହେ ଟୋକା ! ଶୁଣ୍ ଶୁଣ୍—ଏଇ ଟୋକା ନା ? ( ଫେର ଚାହିଁ) କାହିଁ ଗଲା ସେ ଟୋକା—

ଧର୍ମ୍ମା—( ଫେର ଚାହିଁବା )

ସ୍ୱଦେଶୀ—ଅନ୍ତର୍ଦ୍ଧାନ ହୋଇଗଲା ନା, କଣ ? ମୋର ନିଶ୍ଚେ ମତିଭ୍ରମ ହୋଇ ଗଲାଣି—ତା' ନ ହେଲେ କି ପଥୁରିଆ ସାହି ବୋଲି, ମେଥର ସାହିରେ ଯାଇ ହାଜର ହୋଇଥାନ୍ତି ? ଭାଗ୍ୟେ ଟୋକାଟା—ରହ ! ( ନିକଟକୁ ଯାଇ ) ତୋ ନାଁ' କ'ଣରେ ଟୋକା ?

ଧର୍ମ୍ମା—ମୋ ନାଁ' ଧରମା—

ସ୍ୱଦେଶୀ—ବଂଶୁ ମହାରଣା—

ଧର୍ମ୍ମା—ମୋର ବାପର ନାଁ, ମୁଁ ତାଙ୍କର ପୁଅ—ତାଙ୍କୁ କଣ—

ସ୍ୱଦେଶୀ—ଠିକ୍ ନକଲ୍ ଏକାବେଳକେ ତା ! ତୋର ବୌ ଭଲ ଅଛିରେ ?

ଧର୍ମ୍ମା—ହଁ, ଭଲ ଅଛି—କୁହ, ତୁମେ କିଏ ? କେଉଁଠା ଲୋକ ? ବାପାଙ୍କୁ କଣ ଚିହ୍ନ ? ବାପାଙ୍କ କଥା—

ସ୍ୱଦେଶୀ—ଚୁପ୍, ଚୁପ୍—ମୁଁ ସବୁ କଥା କହୁଚି—( ଏଣେତେଣେ ଚାହିଁ ) ( ବିକଳରେ ) ଆରେ ବାପ, ଚନ୍ଦ୍ରଭାଗାରେ—

ଧର୍ମ୍ମା—( ଚେଇଁଉଠି ) 'ଚନ୍ଦ୍ରଭାଗା' ! 'ଚନ୍ଦ୍ରଭାଗା' ! —ତୁମେ କ'ଣ ଚନ୍ଦ୍ରଭାଗାରୁ ଆସୁଚ ? ବାପାଙ୍କ ଖବର ?—ଯୁଦ୍ଧ କ'ଣ ସରିଗଲାଣି ? ବାପା କେବେ—

ସ୍ୱଦେଶୀ—ଚୁପ୍, ଚୁପ୍—ଯୁଦ୍ଧ ?—କେଉଁଠି ?—କେବେ ?

ଧର୍ମ୍ମା—କାହିଁକି ? ଚନ୍ଦ୍ରଭାଗାରେ ?

ସ୍ୱଦେଶୀ—ଓହୋ !—ହଁ ରେ ବାପ, ଯୁଦ୍ଧ ନୁହେ କ'ଣ ?—ପାଣି ସଙ୍ଗେ ଯୁଦ୍ଧ—ପଥର ସଙ୍ଗେ ଯୁଦ୍ଧ—ଏ' କି କମ୍ ଯୁଦ୍ଧ ? ଏ' କି ସରିବାର ?

ଧର୍ମ୍ମା—ସରିବାର ନୁହେଁ !—ଏମିତିକା ଯୁଦ୍ଧ ସେ ? ଆଚ୍ଛା, ମଉସା ! କି ସଙ୍ଗୀତ ସେଠାରେ ଶୁଣି ଭଲ, ତୁମେମାନେ ଘର ଦ୍ୱାର ପୁଅ ମାଇପ ଏକାବେଳକେ ପାଶୋରି ଯାଇଚ ?

ସ୍ୱଦେଶୀ—( ଶ୍ଳେଷଭାବେ ) କହନା, କହନା, ବାପ ! ସେ ସଙ୍ଗୀତ କଥା—ଯଉଁ ତାନ, ମାନ, ଗର୍ଜନ ! ଶୁଣିଲେ ଯେମିତି—ପାଣିଭିତରେ ବି ସେମିତି —ଆମେମାନେ ନିଜକୁ ପରି ପାଶୋରି ଯାଇଥିଲୁ ! —ସେଠାକୁ ନ ଗଲେ କି ସେ କଥା ବୁଝି ପାରିବୁ ?—ରହ, ମୁଁ ବେଶୀ ବେଳ ଆଉ ରହିପାରିବି ନାହିଁ. ବାପା—

[ ଇତସ୍ତତଃ ସଭୟେ ଚାହିଁବା ]

ଧର୍ମ୍ମା—ଓହୋ ! ତୁମେ ସେ ଆନନ୍ଦ-ପୁରୀକୁ ଫେରିଯିବାକୁ ଉଚ୍ଛନ୍ନ ହେଉଚ ପରି ? ମୋତେ କି ସାଙ୍ଗରେ—? ନା, ନା,—

ସ୍ୱଦେଶୀ—ଆରେ, ଆରେ, ବାପ ! ସେ ଯମ-ପୁରୀକୁ ଯିବାର ନାଁ' ଧର ନା—ନାଁ ଧର ନା—

ଧର୍ମ୍ମା—ଏ' କଣ କହୁଚ, ମଉସା ? ତୁମେ ବୀର, ଯୋଦ୍ଧା ହୋଇ—

ସ୍ୱଦେଶୀ—ବର୍ତ୍ତିଲେ ତ ?

ଧର୍ମ୍ମା—ତୁମେ କଣ ତା' ହେଲେ ପଳାଇ ଆସିଛ ?

ସ୍ୱଦେଶୀ—ଏକା ନିଃଶ୍ୱାସରେ ବାପ, ଏକା ନିଃଶ୍ୱାସରେ —ପ୍ରାଣଟାକୁ—( ଧକେଇବା )

ଧର୍ମ୍ମା—ପ୍ରାଣଟାକୁ ରହ ବଞ୍ଚାଇବା ଲୋଭରେ କ'ଣ ଯୁଦ୍ଧ କ୍ଷେତ୍ରରୁ ପଳାୟନ ?

ସ୍ୱଦେଶୀ—ମାଏ [illegible] ବାଜିଲେ, ବାପ—

ଧର୍ମ୍ମା—କଣ ପନ୍ଦରଦିନ ବାକି ?

ସ୍ୱଦେଶୀ—ସେ କଥା କହିଲା ବେଳକୁ କୋଡ଼ିଏ ଖାଲି ଭିତରୁ ଉଚ୍ଛୁଳ ଉତ୍କଣ୍ଠରେ, ବାପ—ବାର ବର୍ଷ କାଳ ଦିନ ନାହିଁ ରାତି ନାହିଁ, କାମ କରି କରି, କୌଣସି ମତେ ଯଦି ଦେଉଳଟି ଗଢ଼ିଲି—ମୁଣ୍ଡି ଆଉ ମରେ ନାହିଁ ।

ଧର୍ମ୍ମା—ମୁଣ୍ଡି ମରେ ନାହିଁ ? ତେବେ କଣ କାହାର ମୁଣ୍ଡ ନାହିଁ ?

ସ୍ୱଦେଶୀ—ରାଜାଦେଶରେ ଶୀଘ୍ର ତାହାହିଁ ହେବରେ ବାପ ।

ଧର୍ମ୍ମା—ହେବ। ଖୁବ୍ ଉଚିତ ।

ସ୍ୱଦେଶୀ—ଏଁ, ଏଁ—କଣ କହିଲୁ ରେ ? ଜଣେ ନୁହେଁ, ଦୁଇଜଣ ନୁହେଁ—ଏ' ଯେ ଶହ ଶହ—ବାର ଶହ ବଢ଼େଇର ।

ଧର୍ମ୍ମା—ବାର ଶହ ଗୁଡ଼ି ବାରହଜାର ବଢ଼େଇର ମୁଣ୍ଡକାଟ ହେଲେ ବି କୌଣସି କଷ୍ଟ ନାହିଁ—ଗୋଟାଏ ଜାତି ଯଦି ଉଚ୍ଛନ୍ନଯାଏ ସେଥିରେ ବି ଟିକିଏ ହେଲେ ଦୁଃଖ ନାହିଁ । ଓଃ, ଦେଉଳଟା ଗଢ଼ି ମୁଣ୍ଡି ମାରିବାକୁ ମୁଣ୍ଡ ନାହିଁ—ଯୋଦ୍ଧା ହୋଇ ଯୁଦ୍ଧରେ ଜିଣିବାର ଶକ୍ତି ନାହିଁ ?

ସ୍ୱଦେଶୀ—ଆରେ, ଏ ତ ଗୋଟାଏ ଅସୁରିଆ ପିଲା—ସ୍ୱା ବାପ କାନ୍ଦ କରି ଖବର କ'ଣ—

ଧର୍ମ୍ମା—'ବାପା' !—'ବାପା' ! ସତେ ସତେ ବାପାତ ସେଠି କାମ କରୁଛନ୍ତି—ବାପା କ'ଣ—

ସ୍ୱଦେଶୀ—ତୋ'ର ବାପ ଯେ ସର୍ଦ୍ଦାର—

ଧର୍ମ୍ମା—ବାପା ସର୍ଦ୍ଦାର—ଅଥଚ ମୁଣ୍ଡିମରି ହୋଇପାରୁ ନାହିଁ ?—ବୌ ! ବୌ ! ଆଉ ମୁଁ ତୋ' କଥା ମାନିପାରିବି ନାହିଁ—ଏହିକ୍ଷଣି ବାହାରିଲି—ଏ' ଯୁଦ୍ଧ, ମହାଯୁଦ୍ଧ—ବାପା ଘୋର ବିପଦରେ—୧୨୦୦ ଜଣ—ନା, ନା ଗୋଟାଏ ଜାତି ଘୋର ବିପଦରେ—ମୁଁ ବାହାରିଲି—ମୋ'ର ସମସ୍ତ ଶକ୍ତି ଦାନ କରି ବାପାକୁ ମୋର—ଜାତିକୁ ମୋର ଉଦ୍ଧାର କରି ଫେରି ଆସିବି ।

ସ୍ୱଦେଶୀ—ଆରେ ପିଲା ! ତୁ' ଏକା କଣ କରି-ପାରିବୁ ରେ ?

ଧର୍ମ୍ମା—ଅଭିମନ୍ୟୁ ତ ପିଲା ଥିଲେ—ସପ୍ତରଥୀ ସଙ୍ଗେ ଏକା ଯୁଦ୍ଧ କରି ଜଗତକୁ ସେ ସ୍ତମ୍ଭିତ କରି-ଥିଲେ—ମୁଁ ଏକା ନ ପାରିବି କାହିଁକି ? ନିଶ୍ଚୟ ପାରିବି । ଏହି ଶୁଣ—ଏହି ଶୁଣ—ସେହି ମହା-ସଙ୍ଗୀତର ମହା-ଉଦ୍ବୋଧ ଧ୍ୱନି—ଭେରୀର ଭୈରବ ନିନାଦ ତୂର୍ଯ୍ୟ ସାମରିକର ସମରୋଚ୍ଛ୍ୱାସ—ଗୁରୁ ଗମ୍ଭୀର ନିନାଦରେ କିଏ ଯେମନ୍ତ ଆହ୍ୱାନ କରି କହୁଛି, 'ଧର୍ମୁ', ଧର୍ମୁ, ଅଗ୍ରସର ହ'—ଅଗ୍ରସର ହ'—ମହାବିପଦରେ ପିତା ତୋ'ର ଜାତି ତୋ'ର—ପିତୃ-କାର୍ଯ୍ୟ ଉଦ୍ଧାର କର, ଜାତିର-କାର୍ଯ୍ୟ ସାଧନ କର"—ଏହି ଶୁଣ, ଏହି ଶୁଣ—୧୨୦୦ ଜଣର—ସମସ୍ତ ଶିଳ୍ପୀର ସମକଣ୍ଠୋଚ୍ଚାରିତ କାତର କ୍ରନ୍ଦନ—ନା, ନା ଏ' ଯେ ଗୋଟାଏ ଜାତିର ଆହ୍ୱାନ—ଗୋଟାଏ ଦେଶର ଆଦେଶ—ଗୋଟାଏ ବିଶ୍ୱଜଗତର ପ୍ରେରଣା । ମୋ'ର ବ୍ରତ—ମୋ'ର କାର୍ଯ୍ୟ—ମୋ'ର ଧର୍ମ—(ନେପଥ୍ୟେ ଉତ୍ସାହସୂଚକ ବାଦ୍ୟ ଓ ସଙ୍ଗେ ସଙ୍ଗେ ସରବ ଉତ୍ସାହଗୀତ ଶୁଣୁ ଶୁଣୁ ଉତ୍ତେଜିତ ହେବା )

(ନେପଥ୍ୟେ ସ୍ୱର)— —ଗୀତ—

ହୁଅ ଧନ୍ୟ ! ହୁଅ ଗଣ୍ୟ !—ହୁଅ ବୀର ବରେଣ୍ୟ !
ତୁମ୍ଭ କୀର୍ତ୍ତି—ତୁମ୍ଭ ପ୍ରୀତି—କରୁ ବିଶ୍ୱବରେଣ୍ୟ ।

ସ୍ୱଦେଶୀ—( ଢୁଲିଯାଇଥିଲା )

[ ନିହାଣ ମୁଗୁରାଦି ଆବଶ୍ୟକ ହତିଆର ହସ୍ତେ ସ୍ୱରର ପ୍ରବେଶ ]

ସ୍ୱର—ଆଉ ସମୟ ନାହିଁ, ବୀର—ଅଗ୍ରସର ହୁଅ । ଏହି ଧର ତୁମ୍ଭର ଯଥାଯୋଗ୍ୟ ଅସ୍ତ୍ରଶସ୍ତ୍ର—(ଅସ୍ତ୍ରପ୍ରଦାନ)

ଗୀତ

ଗିରି ଶୃଙ୍ଗ କାଟି, କରି ସମତଳ—
ସାଗର ଶୁଖାଇ, ଦେଖ ରସାତଳ—
ଧରା ଛେଦ—ଅଭ୍ର ଭେଦ—
ତୋଳ ସ୍ତମ୍ଭ ବରେଣ୍ୟ ।

ଧର୍ମ୍ମା —( ସାଶ୍ରୁନେତ୍ରେ ଚାହିଁ ରହିଥିବା )

ସର —ଉଠ, ମାତ, ଅଗ୍ରସର ହୁଅ, ବୀର—ଯୁଦ୍ଧ—ଯୁଦ୍ଧ—

ଧର୍ମ୍ମା—ଏ'କି ଭୈରବୀ-ମୂର୍ତ୍ତି !

ସର —ମୁଁ ଯେ ତୁମର ସର, ଭାଇ—ଆଉ ଢିଲ ବିଲମ୍ବ କର ନାହିଁ—ଶତ, ଶତ ପ୍ରାଣୀ ଯେ ତୁମର ଆଗମନ ଆଶାରେ ଉତ୍କଣ୍ଠିତ-ପ୍ରାଣ !

ଧର୍ମ୍ମା —ସର—ସର—ସ୍ନେହମୟୀ ମୋର ! —ଶୁଣିଚ କି ଭେରୀ—

ସର—ସବୁ ଶୁଣିଚି ଭାଇ ! —ଜଗନ୍ନାଥ ଭରସା —ଆମ୍ଭମାନଙ୍କର କେବଳ, କାର୍ଯ୍ୟ—କାର୍ଯ୍ୟ—

ଧର୍ମ୍ମା—ଠିକ୍ କହୁଚ, ଭଉଣୀ ! କାର୍ଯ୍ୟ—କାର୍ଯ୍ୟ—କିନ୍ତୁ ଏ' କାର୍ଯ୍ୟର ସହାୟ ତୁମେ ସିନା ?—ଓ ହୋ ! ମୋ'ର ପାଇଁ ତୁମକୁ କେତେ କଷ୍ଟ—ନା, ନା, ଭଉଣୀ ଅଉ ତୁମେ ମୋ ସଙ୍ଗେ—କିନ୍ତୁ, କିନ୍ତୁ, ମୁଁ ଯେ ତୁମକୁ ଛାଡ଼ି ରହିପାରିବି ନାହିଁ, ଭଉଣୀ ! ସର—ସର—କୁହ, ମୋତେ କ୍ଷମା କରିବ ? ମୁଁ ଯେ ତୁମର ଏହି ପ୍ରାଣସ୍ପର୍ଶୀ ସଙ୍ଗୀତକୁ ତୁଚ୍ଛ ଜ୍ଞାନ କରୁଚି—ସ୍ନେହମୟୀ ତୁମ୍ଭଙ୍କ ଉପେକ୍ଷା—

ସର —ଭାଇ ! ଭାଇ ! ମୋତେ ବରଂ କ୍ଷମା କର—ଜାଣି ନଥିଲି ଯେ, ଏ' ଦେହ ସାମାନ୍ୟ ଧୂଳିମାଟି ନୁହେଁ—ସେହି ମହାଶକ୍ତିର ଗୋଟାଏ ସମୁଜ୍ଜ୍ୱଳ-ରଶ୍ମି ! —ଏହି ସଙ୍ଗୀତ ମୋ'ର ସ୍ୱତନ୍ତ୍ର କିଛି ନୁହେଁ—ତୁମର ସେହି 'ମହାସଙ୍ଗୀତ'ର ଗୋଟାଏ ସୁଧାମୟ ସଞ୍ଜୀବନୀ ପ୍ରତିଧ୍ୱନି ମାତ୍ର !

ଧର୍ମ୍ମା—ଆଉ କି ଭୟ ମୋର—ଏହି ସୁଧାମୟ ସଞ୍ଜୀବନୀ ପ୍ରତିଧ୍ୱନିରେ ଯେତେବେଳେ ମୋ'ର ନିତ୍ୟ ଅବଗାହନ—ନିଜେ ଦାନବ-ଦଳନୀ ଅଭୟା-ମୂର୍ତ୍ତି ଯେତେବେଳେ ମୋ'ର ଚିର ସହଚରୀ ? ଆସ, ଆସ, ପ୍ରାଣମୟି, ସ୍ନେହମୟି ! ଆଉ ବିଳମ୍ବ ନିଷ୍ପ୍ରୟୋଜନ—

ସର—କ୍ଷମା କର, ଭାଇ—ଅଉ ତ ମୁଁ ତୁମ ସଙ୍ଗେ ଯାଇ ପାରିବି ନାହିଁ—

ଧର୍ମ୍ମା—(ଚମକି ଉଠି) ସର !—

ସର—ସଖୀକୁ ସଖୀର କାର୍ଯ୍ୟ କରିବାକୁ ଦିଅ, ସଖା ! —ଆଜି ତୁମେ ଯାଉଚ ଯୁଦ୍ଧ କରିବା ପାଇଁ—ଜାତିର ପ୍ରାଣରକ୍ଷା କରିବା ପାଇଁ—ଦେଶର ମାନ ବଢ଼ାଇବା ପାଇଁ—ଜଗତର କଲ୍ୟାଣ ସାଧନ କରିବା ପାଇଁ; ମାତ୍ର ଏଠାକାର ତୁମ୍ଭର ଯୁଦ୍ଧ ଚଳାଇବ କିଏ ?—ତୁମର ଜଗତର କଲ୍ୟାଣ ସାଧନ କରିବ, କିଏ ? —ତୁମର ଗୃହର ମାନ ବଢ଼ାଇବ କିଏ ? —ତୁମର ବୌ'ର ପ୍ରାଣରକ୍ଷା କରିବ କିଏ ?

ଧର୍ମ୍ମା—ସର ! ସର !—

ସର—କର୍ତ୍ତବ୍ୟ ! କର୍ତ୍ତବ୍ୟ !—ଭାଇ ! ଭାଇ ! ଏହି କର୍ତ୍ତବ୍ୟ-ଆଦେଶରେ ତୁମେ ଯେତିକି ଦୂରେ ଚାଲିଯାଉଚ—ଯେତିକି ଆଖିର ଅନ୍ତରାଳ ହୋଇଯାଉଚ, ମୁଁ ଯେମନ୍ତ ସେତିକି ଆଖି ଆଗରେ, ସେତିକି ନିକଟରେ ତୁମକୁ ଦେଖି ପାରୁଚି ! ଆଜି ତୁମେ ଜାତିର—ଦେଶର—ଅପରର ବୋଲି, ମୋ'ର ଯେମନ୍ତ ଅଧିକ ନିଜର—ହୃଦୟର—ପ୍ରାଣର ହୋଇ ଉଠୁଚ ! ଭାଇ ! ଭାଇ ! ସତେ, ସତେ ଆଜି ମୋ' ଭିତରେ କି ଗୋଟାଏ ନୂତନ ଭାବ-ସମୁଦ୍ର ମାଡ଼ି ଆସୁଛି, ତା' ମୁଁ ଜାଣୁଛି, ଆଉ ମୋ'ର ମନ ଜାଣୁଛି ।

ଗୀତ

କି ବୀଣା ବାଜେ    କି ସୁର ବିରାଜେ
ମୁହିଁ ଜାଣେ ମୋ'ର ମନ ଜାଣେ ।
କି ଯେ ସେ ଗୀତ    ଉଠେ ଦିଶି ମାତ
ମୁହିଁ ଜାଣେ ମୋ'ର ମନ ଜାଣେ ।
ଯେତିକି ଭାବେ ନୁହଁ ତୁମ୍ଭେ ମୋ'ର,
ସେତିକି ଜାଗେ ଅଟ ଗୋ ମୋହର—
ଏ' ଯେ କି ଭାବନା    କି ମହା ଚେତନା
ମୁହିଁ ଜାଣେ ମୋ'ର ମନ ଜାଣେ ।

ଧର୍ମ୍ମା—ଭଉଣି ! ଭଉଣି ! (ଆଲିଙ୍ଗନ କରିବା)

[ବାଳକ-ମାତାର ଅର୍ଘ୍ୟାଦି ନେଇ ପ୍ରବେଶ]

ଧର୍ମ୍ମା-ମା—ଆହା ! ଏ' ଯେ ଯୁଗଳ-ମୂର୍ତ୍ତି—

ଧର୍ମ୍ମା—ବୌ ! ବୌ !

ଧର୍ମ୍ମା-ମା—ଧନରେ ମୋ'ର (ହୃଦୟକୁ ଆଲିଙ୍ଗନ କରିବା )

ସର—ବିଳମ୍ବ କରନା, ମାଉସି !

ଧର୍ମ୍ମା-ମା—ଆ'ରେ ଧନ ! ଏ ଶୁଭ ଅନୁକୂଳରେ ଆଉ ଫେରାଇବି ନାହିଁ—ଏଇଠି ସେହିପରି ସଜାଇ ଦିଏ—ମଥୁରା ବିଜେ ବେଳେ ଗୋପାଳକୁ ଯଶୋଦାରାଣୀ ଯେଉଁପରି ସଜାଇ ଦେଇଥିଲେ—

[ ବାଳକକୁ ସଜାଇବାକୁ ଲାଗିଲେ ]

ସବୁ— ଗୀତ

ସଜାଅ, ସଜାଅ, ସେ ସାଜେ ସଜାଅ
ଯେ ସାଜେ ସାଜି ମୋହନ,
ମଥୁରା ବିଜୟେ ଚଳିଥିଲେ ରଥ—
ଘର୍ଘର ହୁଁକାରେ କମ୍ପାଇଣ ପଥ,
କମ୍ପିତ ଶତ୍ରୁ, କମ୍ପିତ ଧରା, ଶୁଣି ସେ ବିଜୟ ଘୋଷ ॥

ଦେବାଙ୍ଗନାଗଣ—ଗାଅ ହେ ବିଜୟ ମଙ୍ଗଳ ସଙ୍ଗୀତ
ଧର ହେ ଉଚ୍ଚେ ତାନ୍ ।
ଶଙ୍ଖ, ହୁଳହୁଳି, ଘନ କରତାଳି
ବଢ଼ାଉ ବୀର ମାନ୍ ॥

ସର— ବଜାଅ, ବଜାଅ, ସେ ବାଜା ବଜାଅ,
ଯେ ବାଜା ଶୁଣି, ଅହବେ
ସୁଭଦ୍ରା ସନ୍ତାନ ଧାଇଁ ଥିଲା ହେଲେ,
ଅଗ୍ରିତ ଦୁର୍ଜ୍ଜୟ, ସପ୍ତରଥୀ ମେଳେ—
ସେ କି ଧର୍ଷଣ, ସେ କି ମର୍ଷଣ, ଥରହର
ବିଶ୍ୱସାରା ॥

ଦେବାଙ୍ଗନାଗଣ—ଗାଅ ହେ ବିଜୟ ମଙ୍ଗଳ ସଙ୍ଗୀତ
ଧର ହେ ଉଚ୍ଚେ ତାନ୍,
ଶଙ୍ଖ, ହୁଳହୁଳି, ଘନ କରତାଳି
ବଢ଼ାଉ ବୀର-ମାନ୍ ।

ସର— ଜଗାଅ, ଜଗାଅ, ସେ ଜାଗେ ଜଗାଅ,
ଯେ ଜାଗେ ଜାଗି ଯୋଗେଶ—
ସବଂଶେ ସଗର କରିଥିଲେ ନାଶ
ଆଗ୍ନେୟ ଉଦ୍‌ଗାରେ ଜଳୁଥାଇ ଦେଶ
ସେ କି ସ୍ପନ୍ଦନ, ସେ କି ଗର୍ଜ୍ଜନ, ଜାଗରିତ
ନାରାୟଣ ॥

ଦେବାଙ୍ଗନାଗଣ—ଗାଅ ହେ ବିଜୟ ମଙ୍ଗଳ ସଙ୍ଗୀତ
ଧର ହେ ଉଚ୍ଚେ ତାନ୍ ।
ଶଙ୍ଖ, ହୁଳହୁଳି, ଘନ କରତାଳି
ବଢ଼ାଉ ବୀର ମାନ୍ ॥

ଧର୍ମ୍ମା-ମା—ଆଶୀର୍ବାଦ କରେ ରେ ସଙ୍ଗାଳି ଦେବକୀ-ନନ୍ଦନ କଂସ-ରାକ୍ଷସକୁ ବିନାଶ କରି ପିତାଙ୍କୁ ତାଙ୍କର ଯେପରି ଉଦ୍ଧାର କରିଥିଲେ, ଅଜ୍ଞାନ ରାକ୍ଷସକୁ ବିନାଶ କରି ତୋ'ର ପିତାକୁ ନା—ଗୋଟାଏ ଜାତିକୁ—ତୋର ଦେଶକୁ ସେହିପରି ଉଦ୍ଧାର କର ! ( ସରପ୍ରତି ) ଆ' ମା—ଶ୍ରୀମତୀ ଆଉ ଯଶୋଦା ରାଣୀ ପିନା ଶୋକାଶ୍ରୁ ବୁହାଇ—କ୍ରନ୍ଦନରୋଳ ଉଠାଇ, ବ୍ରଜମୋହନଙ୍କୁ ବିଦାୟ ଦେଇଥିଲେ—ଆମ୍ଭେମାନେ ଆନନ୍ଦରୋଳ ଉଠାଇ, ଆନନ୍ଦାଶ୍ରୁ ବୁହାଇ, ପ୍ରାଣମୋହନକୁ ଆମର ବିଦାୟ ଦେବା—

ଧର୍ମ୍ମା—ବୌ ! ବୌ ! କ୍ଷମାକର—ମୂଢ଼ ମୁହିଁ ମାତୃ ଆଜ୍ଞା ନ ନେଇ— ( ଜାନୁପାତ ପୂର୍ବକ )

ଧର୍ମ୍ମା-ମା—( ସସ୍ମିତେ ) ସେ ଅଭାବ, ଏହୁ ମା ମୋ'ର ପୂରାଇଚି ରେ ବାପ ! ( ସରକୁ ଚୁମ୍ବନ କରି )— ଦେଖ୍, ବାପ ମୋର—ଯେ କୌଣସି କାମ କରିବା ଆଗରୁ, ଜରୁର ହେଉ ପଛକେ, ଭାବି ଚିନ୍ତି କରିବା ଉଚିତ—ଖାଲି ଗୋଟାଏ ଆବେଗରେ ଝାସିଦିବା ଠିକ୍ କି ?

ଧର୍ମ୍ମା—ସେଥିରେ ଯେଉଁ ଦମ୍ଭ ଆବଶ୍ୟକ, ତାହା, ଏହୁ ଦେବୀ ପ୍ରତିମା—

ସର—ବିଳମ୍ବ ହେଉଚି, ଭାଇ—

ଧର୍ମ୍ମା—ସର ! ସର ! ଏ ଅମୂଲ୍ୟ ଶିକ୍ଷାର ମର୍ଯ୍ୟାଦା କାର୍ଯ୍ୟରେ ଦେଖାଇ ତୁମର ମର୍ଯ୍ୟାଦା ବଢ଼ାଇବି, ସର !—ବୌ ! ବୌ ! ସନ୍ତାନକୁ ବିଦାୟ ଦେ— ( ଅବନତ ହେବା )

ଧର୍ମ୍ମା-ମା—ଆଶୀର୍ବାଦ କରୁଚିରେ, ଧନ—ବିଜୟୀ ହୋଇ ପିତା ସଙ୍ଗେ ତୋ'ର ଶୀଘ୍ର ଘରକୁ ଫେରିଆ'—

ସର-ମା—( ନେପଥ୍ୟେ ) କାହିଁ ଗଲ ସେ ଟୋକା ? ମୋତେ ଟିକିଏ କହନାହ ଲାଗିଗ କି ନାହିଁ— ( ପ୍ରବେଶ କରି ) ଏହି ଯେ କଦମ୍ବ ମୂଳରେ ଯୁଗଳେ ଯୁଗଳେ—କି, ଭଉଣୀ—ତୁମେ ବି—

ସର—ବୌ ! ବୌ ! ତୋ'ର ଗୋଡ଼ ଧରୁଚି—ଏ' ଶୁଭବେଳେ—

ସର-ମା—ତୁମେତ ବେଶ୍ ନବରଙ୍ଗ ଲଗେଇଚ, ଧର୍ମ୍ମା ବୌ—ତୁମେ ବେମହନ୍ତଅଣୀ ବୋଲି କଣ, ସମସ୍ତେ—

ଧର୍ମ୍ମା—ଆଉ ତୁମର ଭୟନାହିଁ, ମାଉସି—ଏ' ଗ୍ରାମରୁ ଯେ ମୁଁ ଏହିକ୍ଷଣି ବିଦାୟ ନେଉଚି—

ସର-ମା—କେଉଁ ଗାଁକୁ ଯାଉଚୁରେ, ଗାଁଅଣା ?

ସର—ଯେଉଁ ଗାଁରୁ ଲୋକେ ମୁଣ୍ଡା ମୁଣ୍ଡା ଘାସ ଅଣିଥାନ୍ତି, ବୌ ।

ସର-ମା—କି ଲୋ ! ତୋ'ର ତ ଭାରି ମୁହଁ ବଢ଼ି ଗଲାଣି—ଦେବି ଯେ—

ଧର୍ମ୍ମା-ମା—ଥାଉ, ଥାଉ, ଭଉଣୀ—ପିଲାଟା ଯାହା କହୁଚି—

ସର-ମା—ମଲା ମୋ'ର ଯାଉରୀ ! କଲୋ— କେଉଁଠିକି ପଠାଇ ଦେଉଚୁ କି ?

ଧର୍ମ୍ମା-ମା—( ଗଦ୍‌ଗଦ କଣ୍ଠେ ) ତା' ବାପ ପାଖକୁ—

ସର-ମା—ଚନ୍ଦ୍ରଭାଗାକୁ ? ଅଲୋ, ଅଲୋ, ତୁ କଣ କହୁଚୁ ?—ତୁ କଣ ଶୁଣି—

ଧର୍ମ୍ମା-ମା—ଭଉଣି, ଭଉଣି, ! ସେ କଥା କହି ଲୁହ-ଦ୍ୱାର ମୋ'ର ଖୋଲି ଦିଅ ନାହିଁ—ଅଶୀର୍ବାଦ କର—ପିଲା ମୋର—

ସର-ମା—'ହାଣମୁହଁକୁ ଯାଉ' ଏହିକଥା କହିବି ନା ? —ତୁ ପୁତୁଖାଇ ବୋଲି କଣ ଦୁନିଆ ଯାକ ସେଇଆ ?—ଆଁଲୋ ଟୋକା—

( ଗମନୋଦ୍ୟତା ହେଲେ )

ଧର୍ମ୍ମା—ତୁମର ଅଶୀର୍ବାଦ ନ ନେଇ ମୁଁ କେବେ ଛାଡ଼ିବି ନାହିଁ, ମାଉସି ! ( ଚରଣ ଧରିବା )

ସର-ମା—ଅରେ—ଅରେ, କ'ଣ କଲୁରେ, ଟୋକା —ଛାଡ଼, ଛାଡ଼, ମୁଁ କି ଅଶୀର୍ବାଦ କରିବି ରେ— ସେ ହାଣମୁହଁକୁ ତୋତେ ବାଟ ନ ମିଳୁ—

ଧର୍ମ୍ମା—ନା, ନା, ମାଉସି ! ସେପରି କୁହ ନାହିଁ— ହାଣମୁହଁରେ ଯେ ଆଜି ମୋ'ର ପିତା—ମୋ'ର ଜାତି—ମୋର ଦେଶ !

ସର-ମା—ମଲା ମୋର—ତୁ ମାଙ୍କଡ଼ ଛୁଆଟା, ଯାଇ କଣ ଉଦ୍ଧାର ଅଣିବୁ ?

ଧର୍ମ୍ମା—ତୁମ ଅଶୀର୍ବାଦରେ, ମାଉସି—ନିଶ୍ଚୟ ଅଣିବି—

ସର-ମା—ଅରେ ଟୋକା—ଏଡ଼େ ସାହସ ନା ତୋର ?—ଅଲୋ ଧର୍ମ୍ମା ବୌ—ତୋର କ'ଣ ଟିକିଏ ଅକଲ ନାହିଁ ? —ଜାଣି ଶୁଣି ଯମ ମୁହଁକୁ ପିଲାଟାକୁ ପିନା—ଅହା !—( ସସ୍ନେହ ଦୃଷ୍ଟିରେ ବାଳକକୁ କ୍ଷଣକାଳ ନିରୀକ୍ଷଣ କରିବା ) ଅଲୋ ପୁତୁଖାଇ, ତୁ କରୁଚୁ କ'ଣ—ପୁଅଟାକୁ ଯମ ସଙ୍ଗେ ନଢ଼ିବାକୁ ପେଲି ଦେଉଚୁ—ବେକରେ ଗୋଟାଏ ଡେଉଁରିଆ ଫେଉଁରିଆ ବି ବାନ୍ଧି ଦେଇ ନାହୁଁ ?—ମ, କାଲି ତ କପିଳାମାକୁ ଦେଇ ପକାଇଲି—ସେଇ ହୁକୁମୀ ଡେଉଁରିଆ ଯୋଡ଼ିକରୁ କେତେ ସାଇତ ସାଇତ ଗୋଟିଏ ଲୁଗୁରି ରଖିଥିଲି—ଏମିତ ବିପଦରେ କେହି କେବେ ପଡ଼ିଲେ—କ'ଣ କରୁଛୁ ? ଜାଣି ଶୁଣି ପୁଅଟାକୁ କେମିତ—ଅଇଲୁ, ଅଇଲୁ ସର ! ତୋର ଡେଉଁରିଅଟା—( ଫିଟାଇ ନେଇ ଧର୍ମ୍ମା ବେକରେ ପିନ୍ଧାଇ ଦେଇ ଚୁମ୍ବନ କରିବା )

ଧର୍ମ୍ମା—( ପଦଧୂଳି ନେଇ ) ଏହିତ ମୋ'ର ବିଜୟ କବଚ, ମାଉସି !

ସର—( ନତଜାନୁ ହୋଇ ) ବୌ, ବୌ ! —ମା'କୁ ମୋ'ର ଏତେ ଦିନେ ଚହ୍ନିଲି ପିନା !

ଧର୍ମ୍ମା-ମା—ପାଷାଣୀ ମୁଁ—ପାଷାଣ ଛାତିରେ ସବୁ ଦେଖୁଚି, ସବୁ ଶୁଣୁଚି—

( ଦୃଢ଼ତା ବ୍ୟଞ୍ଜକ ଦୃଷ୍ଟିରେ ଗ୍ରହିବା )

[ ଦାସ ଭ୍ରମର ପିଠିରେ ଗୋଟାଏ ବୁଜୁଲା ବାନ୍ଧି ଓ ଠେଙ୍ଗାଟାଏ ଧରି ସୁମା, ଶାମା ଆଦି ଧର୍ମାର ସଙ୍ଗୀମାନଙ୍କ କର୍ତ୍ତୃକ ଭର୍ତ୍ସିତ ହୋଇ ପ୍ରବେଶ ]

୧ମ ବାଳକ—ବଦ୍‌ମାସ ! ଶଣ୍ଢ ! ଧରମାକୁ ଆମର ତୁ କେଉଁଠାକୁ ଘେନି ଯିବୁରେ ?—ଧରମା ! ଧରମା ! ତୁ କଣ ସତେ ଛୁପିକରି ଆମକୁ ଅଜ ଛାଡ଼ି ଚାଲି ଯାଉଛୁ ? କେତେ କଥା ତ ତୋତେ ନିତି ନିତି କହୁଥାଉଁ—କାହିଁ ଦିନେ ତ ତୁ ଆମ ଉପରେ ରାଗି ନାହୁଁ ?—ତୋତେ ମେଳରେ ନ ନେଲେ ଯେ ଆମର ଜମେ ନାହିଁ—ଆଜ ତୁ ନ ଥିଲୁ, କେମନ୍ତିକା ଅଲଗା ଅଲଗା ଲାଗୁଥିଲା ସିନା !

୨ୟ ବାଳକ—ସର ! ସର ! ତୁ କଣ ଉତ୍ତର ଦେଉଛୁ ? ଆମେ ହସାକଲୁ ବୋଲି ? —ଏ' କଣ ଆମର ମନର କଥା ?

୩ୟ ବାଳକ—ସରିଆ ବୋଉ ! ତୁମେ ଆମର କଥାରେ ଧରମାକୁ ଏମ୍‌ତିକା ଗାଳମନ୍ଦ କଲ ଯେ, ଧରମା ଆଜ ଗାଁ ଛାଡ଼ି ଆମକୁ ଛାଡ଼ି— ( ବାଳକମାନେ କାନ୍ଦି ପକାଇବା )

୧ମ ବାଳକ—ଧର୍ମା ବୌ ! ତୁମେ ପରି ମା— କେମ୍‌ତିକା ଛାତି ତୁମର ? ମା, ହୋଇ ପୁଅକୁ ଯମ ମୁହଁକୁ—

ଧର୍ମା—ଯମ ମୁହଁକୁ ଯାଉନାହିଁ, ଭାଇମାନେ--ଯମମୁହଁରୁ ଆମର ବାପ, ଦାଦା, ଭାଇ, ବନ୍ଧୁଙ୍କ ଉଦ୍ଧାର କରିବାପାଇଁ ଯାଉଛି । ତୁମେମାନେ ହସି ହସି ମୋ'ର ଜୟକାମନା କରି ମୋତେ ବିଦାୟ ଦିଅ ।
[ ଆଲିଙ୍ଗନ କରିବାକୁ ଯିବାବେଳେ ]

ବାଳକଗଣ—ଭାଇ ! ଭାଇ ! —( ଦଉଡ଼ିଯାଇ ଦୃଢ଼-ଭାବେ ଆଲିଙ୍ଗନ କରିବା )

ସରି—ଛି, ଭାଇମାନେ ! ଏତେବେଳେ କି କାନ୍ଦିବା ଉଚିତ ? କୁହ ସମସ୍ତେ, 'ଧରମା ଭାଇର ଜୟ' ।

ବାଳକଗଣ—ଜୟ ଧରମାର ଜୟ ।

ଧର୍ମା—ଆସୁଛି, ଭାଇମାନେ ।

ବାଳକଗଣ—ଭା-ଇ । ଭା-ଇ— ( କାନ୍ଦିପକାଇ ପୁଣି ଆଲିଙ୍ଗନ କରିବାକୁ ଯିବାବେଳେ )

୧ମ ବାଳକ—ନା, ଭାଇ । ଆସ ଆମ୍ଭେମାନେ ଫୁଲ ତୋଳି ଭାଇକୁ ଆମର ଜୟମାଳା ଆଗରୁଁ ପିନ୍ଧାଇ ଦେବା । ( ବାଳକମାନଙ୍କ ପ୍ରସ୍ଥାନ )

ଧର୍ମା—ଆସୁଛି, ବୌ । —ସରି ! ବିଦାୟ—
[ ଧର୍ମା ନିଜର ମା' ଓ ମାଉସୀଙ୍କ ଠାରୁ ବିଦାୟ ନେଇ ପରେ ସରିଠାରୁ ବିଦାୟ ନେଇ ପ୍ରସ୍ଥାନ ]

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ସମୁଦ୍ର—

[ ସମୁଦ୍ର ଗର୍ଭରେ ଦଧିକୁମ୍ଭଶୂନ୍ୟ ସେହି ସୁଗଠିତ ମନ୍ଦିରଟି ଦେଖା ଯାଉଥିଲା । ଅସ୍ତଗାମୀ ସୂର୍ଯ୍ୟର ଲୋହିତ ରଶ୍ମିରେ ସ୍ନାତହୋଇ ମାନବର ଅକୃତ-କାର୍ଯ୍ୟତାକୁ ବିଦ୍ରୂପ କଲା ଭଳି ଜଣାପଡ଼ୁଥିଲା । କାରିଗରମାନେ ଦୈନିକ କାର୍ଯ୍ୟ ସାରି ଚାଲି ଯାଉଛନ୍ତି—ଗୋଟିଏ ବାଳକ କେବଳ ଉନ୍ମନରେ ସେହି ଦେଉଳର ଅଗ୍ରଭାଗକୁ ଚାହିଁ କେତେ କ'ଣ ଭାବିବାକୁ ଦେଖା ଯାଉଥିଲା । କିଛିକ୍ଷଣ ପରେ ଅତି ଚିନ୍ତାରେ ଅବସନ୍ନପ୍ରାୟ ହୋଇ ଗୋଟିଏ ଶିଳାଖଣ୍ଡ ଉପରେ ବସିପଡ଼ିଲା —ନିଜର କପୋଳଦେଶକୁ ଦକ୍ଷିଣକର ତାଳୁରେ ମର୍ଦ୍ଦନ କରୁ କରୁ ଦୀର୍ଘନିଃଶ୍ୱାସ ତ୍ୟାଗ କଲା । ]

ଧର୍ମା—କିଛି ଠିକ୍ କରିପାରୁ ନାହିଁ । ( ପୁଣି କେତେ କ'ଣ ଭାବିବାକୁ ଲାଗିଲା—ଅବଶେଷରେ ଠିଆ-ହୋଇ, ସେହି ମନ୍ଦିରର ଭିତର ବାହାର, ଏ' ପାଖ ସେ ପାଖ, କେତେ କ'ଣ ପରୀକ୍ଷା କରିକା

ପରେ ମନ୍ଦରର ଚୂଡ଼ାଟିକୁ ସ୍ଥିର ଦୃଷ୍ଟିରେ ଚାହିଁ ଠିଆହେଲା )

[ ବସୁର ହାତ ଧରିଥିବା ଧନ ପ୍ରବେଶ ]

ବସୁ—କିଏ ସେ ପିଲା ?—ଆଜକୁ ଅଠ ଦଶଦିନ ହେବ, ଆମେ ସବୁ କାମ ସାରି ଚାଲିଗଲାପରେ—( ଖୋଜୁ ଖୋଜୁ ) ଠିକ୍ ଏଇଭଳିବେଳେ ଅଜା କ'ଣ ଅସି ନାହିଁ ?—( ଦେଖି ) ଏହି, ଏହି ଯେ—ଉଃ ! କି ଲଜ୍ଜାରେ ଚାହିଁ ଠିଆ ହୋଇ ରହିଛି—( ହାତ ଧରିଥିବା ଥୋଇଦେଇ, ଅଗ୍ରସର ହୋଇ ପଛଅଡ଼ୁ ଧୀରେ ସ୍ପର୍ଶକରି ) ଆରେ ବାପ—

ଧର୍ମା—( ସେହିପରି ନିଶ୍ଚଳଭାବରେ ଚାହିଁ ରହିଥିଲା )

ବସୁ—( ଆଉଥରେ ସ୍ପର୍ଶକରି ) ବାପ !

ଧର୍ମା—( ହଠାତ୍ ଚମକିଉଠି ) କିଏ ? ବାବା—ବା—(ଆତ୍ମସମ୍ବରଣ କଲା )

ବସୁ—'ବାବା' !—ଡାକ, ବାପ !—ଠିକ୍ ସେହି ଡାକ—ସେହି କଣ୍ଠସ୍ୱର—( ବାଳକ ପଳାୟନ-ପଥ ଖୋଜିବା ) କେତେ କଳ୍ପନାରେ, କେତେ ସ୍ୱପ୍ନରେ ଯେ ମୁଁ ଶୁଣି ଅସ୍ଥିର ହୋଇ ଅଧେ ଆଖି ବୁଜା, ଅଧେ ଖୋଲା, ତେଇଁ ଉଠେ—'କାହିଁ କାହିଁ' ବୋଲି ଚାରିଆଡ଼େ ପାଗଳପରି ଧାଇଁ ଖୋଜି ବୁଲିଛି ! ( ବାଳକ ପଳାୟନୋଦ୍ୟତ ହେଲା ) ପଳାନା—ପଳାନା, ବାପ—( ଧରି ) ତୋତେ ଦେଖିଲାଦିନୁ ଯେ—

ଧର୍ମା—ଛାଡ଼ ଦିଅ—ଛାଡ଼ ଦିଅ ! (ଛଡ଼ାଇବାକୁ ଚେଷ୍ଟା କରିବା )

ବସୁ—ଛାଡ଼ ଦେବି—ଛାଡ଼ ଦେବିରେ ବାପ, ଚିର-ଦିନପାଇଁ—ଆଜି ଯିବ ପାହିଲେ, କାଲି ଯେ କାଳ-ପ୍ରଭାତ—

ଧର୍ମା—'କାଳ-ପ୍ରଭାତ' !—'କାଲି' !—'ଆଜିରାତ ପାହିଲେ' !—ଅସମ୍ଭବ, ଅସମ୍ଭବ—ମୋ'ର ଭାଗ୍ୟେ ଯେ 'ପାହି' ନାହିଁ, ବାବା !

( ବେଗେ ପ୍ରସ୍ଥାନ )

ବସୁ—'ବାବା'—'ବାବା'—ଠିକ୍ ସେହି ଡାକ—ସେହି କଣ୍ଠସ୍ୱର—'ବାବା'—'ବାବା' !—ଉଃ ଚାଲିଗଲା, ଚାଲିଗଲା ! ( ନେପଥ୍ୟକୁ ଉତ୍କଣ୍ଠାପଣେ ଚାହିଁ ରହିଲେ ) କିଏ ସେହି ?—ପ୍ରକୃତରେ କି ସେହି ମୋ'ର ?—ଅସମ୍ଭବ, ଅସମ୍ଭବ—ମରୁ-ମରୀଚିକାରେ ଜଳଆସିବ କାହୁଁ ? କିନ୍ତୁ,କିନ୍ତୁ—ତଥାପି ପିଲାଟାକୁ ଦେଖିଲା ଦିନୁ, କେତେ କ'ଣ ସ୍ମୃତି ଯେ ଉଠୁଛି ଲହରୀପରେ ଲହରୀପରି ମୋତେ ଆଲୋଡ଼ିତ କରୁଛି--ଆହା ! ଟୋକାଟାର ଆଖି ଦି'ଟା ଯେମିତକା ଠିକ୍ ତାରି ନକଲ—ସେହିପରି ଚଳ ଚଳ—ସେହିପରି ଉଜ୍ଜ୍ୱଳ !—କଳାଡୋଳା ଯୋଡ଼ିକ,ମାନସମୋହିନୀକୁ ମୋ'ର ଲୁଚାଇ ରଖିଛି ଯେମିତି !—ହାୟ ! ( ଦୀର୍ଘ-ନିଃଶ୍ୱାସ ତ୍ୟାଗପୂର୍ବକ ) ଆଜକୁ ବାର ବର୍ଷ ଗତ ହୋଇଗଲା, ପ୍ରତିବର୍ଷ ମନେ ହେଉଥାଏ—ଆଉ ବେଶୀ ଦିନ ନୁହେଁ—ଏହି କାମ ଶେଷ ହେଲା ବୋଲି—ଶୀଘ୍ର ଘରକୁ ଫେରିଯିବି—କେତେ ଯୁଗର ଅମାନିଶାପରେ ପୁଣି ପୂର୍ଣ୍ଣଚନ୍ଦ୍ରୋଦୟ ଦର୍ଶନ କରିବି—ସଙ୍ଗେ ସଙ୍ଗେ ଯେଉଁ ସୁଧାର ଆଶାରେ କେବଳ, ଆମ୍ଭେ ଦୁହେଁ ତୃଷିତ କରିଥିଲୁ—ତାହା ସମ୍ମୁଖେ ସଞ୍ଚିତହେବାକୁ ଦେଖିବୁ ! ଆହା ! କେତେଟିଏ ସେ ହୋଇ ନ ଥିବ ? ବାର ବର୍ଷର—ଠିକ୍ ଏହି ପିଲାଟି ପରି !—ଏ'ନୁହେଁ ତ ? ଅସମ୍ଭବ—ସେ ଏଠାକୁ ଆସିବ କିପରି ?—ନା, ନା—ନିଶ୍ଚୟ ସେହି ମୋ'ର—ଉଃ ! ମତ ବୋଧହୁଏ ମୋ'ର ସ୍ଥିର ନାହିଁ !—( ସାମାନ୍ୟ ଉଚ୍ଚଉପାନ୍ତ ଗୋଟିଏ ଶିଳାଖଣ୍ଡ ଉପରେ ବସି-ବାକୁ ଯାଉଥିଲା ବେଳେ ଧର୍ମାର ପଶ୍ଚାଦ୍ଦିଗରୁ ପୁନଃ ପ୍ରବେଶ )

ଧର୍ମା—ମିସ୍ତ୍ରିଏ !

ବସୁ—( ଫେରିଚାହିଁ ) ଏହି—ଏହି ଯେ—ଅ' ଅ' ବାପ—ମୋତେ ସେହି 'ବାବା' 'ବାବା' ବୋଲି ଡାକ—ତୋ'ର ଡାକରେ ଯେ—ଅଚ୍ଛା, ବାପ ସତକରି କହିନା ଭଲା—

ଧର୍ମ୍ମା—ତା' ହେଲେ ମୁଁ ଗୁଲିଲି—

ବିଶୁ—( ବାଧା ଦେଇ ଦେଇ ) ନା, ନା, ବାପ —
ସେ କଥା କହନାହିଁ—ମୁଁ କିଛି ପଚ୍ଚରିବି ନାହିଁ
—କିଛି ଜାଣିବାକୁ ଚେଷ୍ଟା ସୁଦ୍ଧା କରିବିନାହିଁ
—ଖାଲି ତୁ ମୋ' ଆଗରେ ଠିଆ ହୋଇଥା—
ଆଉ ଡାକୁଥା' ସେହି ମଧୁର ଡାକ, 'ବାବା'
'ବାବା'—ଡାକ, ଡାକ, ବାପ ।

ଧର୍ମ୍ମା—ଏତେ ଅଧୀର ହେଲେ କିନ୍ତୁ—

ବିଶୁ—( ଅତି ଅତୁରଭାବେ ) ବାପ ! ବାପ ! ତୁହି
ଯେ ମୋତେ ଅଧୀର କରିଚୁ ବାପ !—କାଲି
ମୃତ୍ୟୁ—

ଧର୍ମ୍ମା—ମୃତ୍ୟୁ ! ( ନିଜପ୍ରତି ଧିକ୍‌କାରସୂଚକ ଭାବ
ପ୍ରକାଶ କରିବା )

ବିଶୁ—ହଁରେ, ବାପ । 'ମୃତ୍ୟୁ'—ମୃତ୍ୟୁ ଜାଣି ସୁଦ୍ଧା ମୁଁ
ଏତେ ଅଧୀର ନୁହେଁ, ଯେତେ ଅଧୀର—

ଧର୍ମ୍ମ—( ସ୍ୱଗତ ) ଓଃ—ମୃତ୍ୟୁ ! କିପରି ପିତୃକାର୍ଯ୍ୟ
ଉଦ୍ଧାର କରିବି । (ପ୍ରକାଶ୍ୟେ) ଅଚ୍ଛା ମୁଁ 'ବାବା'
ବୋଲି ଡାକିବି ଯଦି ଦୟାକରି ଏହି ଶିଳ୍ପ
ସମ୍ବନ୍ଧୀୟ କେତେଗୁଡ଼ିଏ ସନ୍ଦେହ ମୋ'ର ମୋଚନ
କରି ଦିଅନ୍ତି—

ବିଶୁ—(ସସ୍ମିତେ) ଏହି ଛାର କଥା—ପଚ୍ଚର, ପଚ୍ଚର,
ବାପ—ଯେତେ ସନ୍ଦେହ ତୋ'ର ଅଛି—ଯେତେ
ଗୁପ୍ତଜ୍ଞାନ ହେଇ ପଛକେ—ଏଂପରି କ'ଣ ତା
ଉପରେ ଆତ୍ମପ୍ରତିଷ୍ଠା ପର୍ଯ୍ୟନ୍ତ ଯଦି ମୋ'ର ନିର୍ଭର
କରୁଥାଏ, ତଥାପି ତାହା ମୁଁ ତୋତେ ସାନନ୍ଦେ
ଦାନ କରିବି—ଅମ୍ଳାନ ଚିତ୍ତରେ ସମସ୍ତ ସନ୍ଦେହ
ମୋଚନ କରିଦେବି—ବିନିମୟରେ ଗ୍ରହିବି,
ଶୁଣିବି କେବଳ ସେହି 'ବାବା' 'ବାବା' ଡାକ ।
—ଡାକ୍—ଡାକ୍—

ଧର୍ମ୍ମା—ବାବା ! ବାବା !—

ବିଶୁ—ଓଃ, କି ତୃପ୍ତି !—କହ, ବାପ ! କି ତୋ'ର
ପ୍ରଶ୍ନ ?

ଧର୍ମ୍ମା—ବାବା ! ଏହି ବଧିନକତର ମାଧ୍ୟାକର୍ଷଣ
ବନ୍ଦୁକ୍ଟା—

ବିଶୁ—'ମାଧ୍ୟାକର୍ଷଣ' ।

ଧର୍ମ୍ମା—ହଁ, ବାବା ! ମାଧ୍ୟାକର୍ଷଣ ବନ୍ଦୁକ୍ଟା ଦେଉଳର
ଠିକ୍ ମଝାମଝି ରହିଲେ କି ଏଠାରେ ଚଳିବ ?

ବିଶୁ—କିଏ ତୁହି, ବାଳକ ? (ଆପାଦମସ୍ତକ ନିରୀକ୍ଷଣ
କରିବା) ଏ' କଥା ତୁ ଜାଣିଲୁ କିପରି, ଟୋକା ?

ଧର୍ମ୍ମା—କାହିଁକି ବାବା, ପୋଥି ପଢ଼ି ।

ବିଶୁ—ପୋଥି ପଢ଼ି ! ଏପରି ପୋଥି ତ, ଏ ବାରଶ
ବଢ଼େଇ ଭିତରେ ଏକା ମୋ ଛଡ଼ା—

ଧର୍ମ୍ମା—ତୁମର ପ୍ରତିଜ୍ଞା ତୁମେ ପାଳନ କର, ବାବା !
ନାହିଁ ତ ମୁଁ ଆଉ 'ବାବା' ବୋଲି—

ବିଶୁ—ନା, ନା, ବାପ ! ସେପରି କହନା—ସେ
ସୁଧାରୁ ମୋତେ ବଞ୍ଚିତ କରନା—ଆସନ୍ନ ମୃତ୍ୟୁ—

ଧର୍ମ୍ମା—'ମୃତ୍ୟୁ' ! ( ଅସ୍ଥିର ହେବା )

ବିଶୁ—ହଁରେ ବାପ ! ଆସନ୍ନ ମୃତ୍ୟୁ ଯନ୍ତ୍ରଣା ମୋ'ର
ଭୁଲାଇ ଦେଇଚି, ତୋ'ର ସେହି 'ବାବା' 'ବାବା'
ଡାକ ଯିନା—

( ବାଳକକୁ ମୁଗ୍‌ଧ ନେତ୍ରରେ ଗୃହିଁ ରହିବା )

ଧର୍ମ୍ମା—କୁହ, କୁହ, ବାବା—ମୋର ପ୍ରଶ୍ନର କି
ସମାଧାନ ?—ଆଉ ଯେ ବିଳମ୍ବ—

ବିଶୁ—ନା, ବାବା, ଆଉ ବିଳମ୍ବ କରିବି ନାହିଁ—
କହ, କହ, କି ପ୍ରଶ୍ନ ତୋ'ର ?

ଧର୍ମ୍ମା—ଦଧିନଉତିର ମାଧ୍ୟାକର୍ଷଣ ବନ୍ଦୁକ୍ଟା
ଦେଉଳର ଠିକ୍ ମଝାମଝି ରହିଲେ କି ଏଠାରେ
ଚଳିବ ?

ବିଶୁ—( ସସ୍ମିତେ ) ନିୟମ ସବୁଠାରେ ସମାନ,
ବାପ—ଏ' ଅତି ଲଘୁ ସମସ୍ୟା ! ଦେଉଳର
ଭୂମିର କେନ୍ଦ୍ର ସଙ୍ଗେ ଦଧିନଉତିର ମାଧ୍ୟାକର୍ଷଣ
ବନ୍ଦୁକ୍ଟି ଠିକ୍ ଲମ୍ବଭାବେ ନ ରହିଲେ ଛିରତା କି—

ଧର୍ମ୍ମା—ତା' ଜାଣେ, କିନ୍ତୁ ଦେଉଳର ଘନକେନ୍ଦ୍ର
ଏହି ଲମ୍ବରେଖା ମଧ୍ୟରେ ରହିଲେ ତ ?

ବିଶୁ—ଦେଉଳଟି ସମପରିମିତଭାବେ ଗଢ଼ା ଯେତେ-
ବେଳେ, ତା' ରହିବା ତ ସ୍ୱାଭାବିକ ?

ଧର୍ମ୍ମା—ସେହିଟା କଳ୍ପନା କରୁଛନ୍ତି ଯିନା—

ବିଶୁ—ବାସ୍ତବରେ ତା' ହେଲେ ଦଧିନଉତି ପର୍ଯ୍ୟନ୍ତ
ଦେଉଳଟି ଠିଆ ହୋଇଛି କିପରି ?

ଧର୍ମ୍ମୀ—ବର୍ଦ୍ଧନଶୀଳ ବା ରହୁନାହିଁ କାହିଁକି ?

ବିଶ୍ୱ—ସେ ଆମର ଅଦୃଷ୍ଟ ।

ଧର୍ମ୍ମୀ—'ଅଦୃଷ୍ଟ' !—ବାବା ! ବାବା ! ଆପଣ କାରିଗର ହୋଇ ଏପରି କଥା କହୁଚନ୍ତି—'ଅଦୃଷ୍ଟ' !

ବିଶ୍ୱ—( ଦୀର୍ଘନିଃଶ୍ୱାସ ଛାଡ଼ି ) ବିଶ୍ୱପରି କାରିଗର ଆଜି ଯେଉଁଠି ପରାସ୍ତ, ସେଠି ଅଦୃଷ୍ଟ ନୁହେଁ ତ ଆଉ କ'ଣ ?

ଧର୍ମ୍ମୀ—ବାବା ! ବାବା ! ଏ କଥା କ'ଣ ବିଶ୍ୱପରି କାରିଗର ଭ୍ରମରେ ସୁଦ୍ଧା ଚିନ୍ତାକରି ପାରେ ?—ଅଦୃଷ୍ଟ ! ଅଦୃଷ୍ଟ !—ଶୁଣ, ବାବା ! ଅତଳ ସମୁଦ୍ର-ଗର୍ଭରେ ଏ' ଯେଉଁ ଆଜି ବିଶାଳ ମନ୍ଦିରର ପତ୍ତନ ହୋଇଚି, ଯା'ର ସମ୍ଭବ ଅତୀତର କେଉଁ ଘନାନ୍ଧକାରରେ ଲୁକ୍କାୟିତ ଥିଲା—କା'ର ପ୍ରୟାସରେ ବାବା ? ଆପଣଙ୍କର ନୁହେଁ କି ?—ମନ୍ଦିରର ଗାଏ ଗାଏ ଆଜି ଏ' ଯେଉଁ ବିଚିତ୍ର ଶିଳ୍ପଚାତୁରୀ ପରିଶୋଭିତ, ଯାହାର ସମ୍ଭବ ଗୋଟାଏ ଅଳୀକ ସ୍ୱପ୍ନରେ ପର୍ଯ୍ୟବସିତ ଥିଲା—କାହାର କୌଶଳରେ, ବାବା ? ଆପଣଙ୍କର ନୁହେଁ କି ?—ପ୍ରକୃତରେ, ବାବା—ଆପଣ-ମାନେ ଯେ କି ଆବେଗ ଓ ତାଡ଼ନାରେ, କି ସଙ୍ଗୀତର ମୂର୍ଚ୍ଛନାରେ—ଓଡ଼ିଆର ବିଶ୍ୱବନ୍ଦିତ ଏହି କଳାକୀର୍ତ୍ତି ଆଜି ମୂର୍ତ୍ତି କରିବାକୁ କ୍ଷମ ହୋଇଛନ୍ତି, ତାହା ମୋ'ର ଏ' କ୍ଷୁଦ୍ର ମସ୍ତିଷ୍କ ଧାରଣା କରିବାକୁ ଏକାବେଳକେ ଅକ୍ଷମ !—କେବଳ ମୋ'ର ସ୍ୱ-ଜାତିର—ମୋ'ର ଦେଶ-ବାସୀର ଏହି କୀର୍ତ୍ତି ଯେତିକି ଅବଲୋକନ କରୁଚି—ଯେତିକି ବିଶ୍ଳେଷଣ କରୁଚି—ମୋ' ହୃଦୟ ସେତିକି କେଉଁ ଉଲ୍ଲାସ ଲହରୀରେ ନାଚି ଉଠୁଚି—ମୋ'ର ମର୍ମ ସେତିକି କେଉଁ ସଙ୍ଗୀତର ଝଙ୍କାରରେ ଝଙ୍କାରିତ ହେଉଚି !—ବାବା, ବାବା ! ତୁମେ କାରିଗର—ଅଦୃଷ୍ଟର ହାରି ଦେଇ କର୍ମହୀନ ହୁଅନାହିଁ । ଥରେ ହେଲା ନାହିଁ—ଦୁଇଥର ହେଲା ନାହିଁ—ଶହେଥର ହେଲା ନାହିଁ—ସହସ୍ରଥର ହେଲା ନାହିଁ—ଅବସାଦ କ'ଣ ? ଚେଷ୍ଟା—ଚେଷ୍ଟା—ଆଜୀବନ ଚେଷ୍ଟା—ବିଚାରର ପରୀକ୍ଷା କାର୍ଯ୍ୟରେ—କାର୍ଯ୍ୟର ପରୀକ୍ଷା ବିଚାରରେ !—ଅମୁକ କାର୍ଯ୍ୟ ବିଫଳ ହେଲା, ତା'ର କାରଣ ଅନୁସନ୍ଧାନ କରିବା ଉଚିତ ନୁହେଁ କି ? ଦେଖ, ବାବା ! ବିଚାର କରି ଥରେ, ଏହି ମୂର୍ତ୍ତି ଟା ମାରିବାମାନେ ଘନକେନ୍ଦ୍ର ସ୍ଥାନଭ୍ରଷ୍ଟ ହେଉଚି କି ନାହିଁ ?

ବିଶ୍ୱ—ଅସମ୍ଭବ—ଅସମ୍ଭବ—ଏ' ବିଶ୍ୱ ମହାରଣାର କାର୍ଯ୍ୟ ନ ହୋଇ ଅନ୍ୟ କାହାର ହୋଇଥିଲେ ସମ୍ଭବ ହୋଇଥାନ୍ତା ।

ଧର୍ମ୍ମୀ—ତେବେ ସୁଦ୍ଧା ଥରେ ପରୀକ୍ଷା—

ବିଶ୍ୱ—ପରୀକ୍ଷା—(ହସି) ଆରେ, ବାପ ! ତୁ ବୋଧ-ହୁଏ ବିଶ୍ୱ ମହାରଣାର ନାମ ଆଦୌ ଶୁଣି ନାହୁଁ—ତା'ର ଗଣନା କେବେ ହେଲେ ଭୁଲ ହୁଏ ନାହିଁ—ତା'ର କାର୍ଯ୍ୟରେ ତିଳେ ହେଲେ ତ୍ରୁଟି ନ ଥାଏ !—ଯା' ଦେଖ—ତୋ'ର ଯେତେ ବିଦ୍ୟା-ବୁଦ୍ଧି ଅଛି, ସବୁ ପ୍ରୟୋଗ କରି ପରୀକ୍ଷା କର, କେଉଁଠାରେ ଯଦି ଅଣୁ ମାତ୍ରାରେ ସୁଦ୍ଧା କୌଣସି ତ୍ରୁଟି ପାଉ ।

ଧର୍ମ୍ମୀ—ତ୍ରୁଟି ପାଇଅଛି, ବାବା !

ବିଶ୍ୱ—ତ୍ରୁଟି ପାଇଅଛୁ ?—ବିଶୁର ?—ତୁହି ?—ପିଲାଟାଏ ?—ଯେଉଁ ବିଶୁ, କୌଣସି ସମସ୍ୟାର ସାମାନ୍ୟ ବିବରଣୀ ଶୁଣିବା ମାତ୍ରେ ଭାସ୍କର-ମାନଙ୍କର ତ୍ରୁଟି ଧରାଇ ଦିଏ ସେହି ବିଶୁ, ଭାସ୍କର ଶିରୋମଣି, ତ୍ରୁଟି ରଖିବ ନିଜ କାର୍ଯ୍ୟରେ, ସ୍ୱହସ୍ତ ସମ୍ପାଦିତ—ଆଉ ତ୍ରୁଟି ଧରାଇ ଦେବ, ଜଣେ ସ୍ୱଳ୍ପମତି, ଜ୍ଞାନହୀନ, ମୂଢ଼, ଶିଶୁମାନେ ?

ଧର୍ମ୍ମୀ—ତଥାପି ଅନୁରୋଧ, ବାବା—ଥରେ ଆସି ପରୀକ୍ଷାକରି ଦେଖନ୍ତୁ—

ବିଶ୍ୱ—ପରୀକ୍ଷା ?—ମୋର ଭୁଲର ?—ବିଶୁର ଭୁଲ ! ବିଶୁର ମୁହଁ ଉପରେ ଏ'କଥା କହିବାକୁ—

ଧର୍ମ୍ମୀ—ମୋର ଭୁଲ କି ନୁହେଁ, ସେହି କଥା ପରୀକ୍ଷା କରିବାକୁ କହୁଛି, ବାବା !

ବିଶୁ—ପୁଣି ଥଣ୍ଟା ? 'ବାବା' ବୋଲି ଡାକିବାକୁ
ଅନୁମତି ଦେଲି ବୋଲି କଣ ଏ' ପରିହାସ ?—
ଏତେ ଗର୍ବ ତୋ'ର ? ଏତେ ଅହଙ୍କାର ?
( ସକ୍ରୋଧେ କିଛିକ୍ଷଣ ଚୁହିଁଲା ପରେ ) ଯା' ଯା
ଟୋକା—ତୁହି ବୋଲି ଆଜି ବିଶୁକୁ ଏ' କଥା
କହିଗଲୁ ।

ଧର୍ମା—ବାବା ! ବାବା ! କ୍ଷମା କର—ଦୋଷ
ହୋଇଛି । ( ପଦପ୍ରାନ୍ତେ ଅବନତ ହେବା )
( ସ୍ୱଗତ ) ଅଜ୍ଞାତେ ପିତାର, ପିତୃତୁଷ୍ଟି ସମାଧାନ,
କାର୍ଯ୍ୟ ଥିଲା ମୋର—

ବିଶୁ—( ସସ୍ନେହେ ଉଠାଇ ଉଠାଇ ) ଉଠ, ଉଠ,
ବାପ ! କ୍ଷମା ଯେ ଆଉ ମାଗିବାକୁ ହେବନାହିଁ—
ତୋର ଏହି 'ବାବା' 'ବାବା' ଡାକ, ଆଉ ସେହି
ଆଖି ଯୋଡ଼ିକ ଯେ ସବୁ ଭୁଲାଇ ଦେଇଚି—
ମୋ'ର ସବୁ କାଢ଼ି ନେଇଚି !—ଆ' ଆ' ବାପ—
ଏହି ମରଣକାଳେ—
( ଆଲିଙ୍ଗନ କରିବାକୁ ଯିବା )

ଧର୍ମୁ—( ସ୍ୱଗତ ) 'ମରଣକାଳେ' ! ଓଃ !
( ବେଗେ ପ୍ରସ୍ଥାନ )

ବିଶୁ—ଯା' ନା—ଚାଲି ଯା' ନା, ବାପ !—ତୁ କ'ଣ
ରାଗିଗଲୁ, ବାପ ?—ଯିବୁ, ଯିବୁ—କଥା ତୋ'ର
ଶୁଣିବୁ—ଭଲଭଲ କରି ପରୀକ୍ଷା କରି ଦେଖିବୁ—
ଆ' ଆ' ବାପ—ଆଜି ରାତିକ ମାତ୍ର ଅବସର—
ଅବସର ? ଅବସର କାହିଁ ?—ନା—( ହାତଅର
ଉଠାଇଲେ ) ମୋତେ ଆଜି ଅବିଶ୍ରାନ୍ତ ଚେଷ୍ଟାକରି
ଏହି ରାତିକ ଭିତରେ ଯେ କୌଣସିମତେ 'ମୁକ୍ତି'
ମାରିବାକୁହିଁ ହେବ—ତା' ନ ହେଲେ କାଲି
ସକାଳେ ମୁଣ୍ଡକାଟ—ଏକା ମୋ'ର ନୁହେଁ, କି
ଦୁଇଜଣର ନୁହେଁ—ଏ' ଯେ ଶତ, ଶତ—
ସହସ୍ର, ସହସ୍ର ଜଣର ମୁଣ୍ଡକାଟ—ଗୋଟାଏ
କାତର—ସମସ୍ତ ଶିଳ୍ପିର—ଓଃ ! ମୋ'ର ଏତେ
ପୋଥି ପଢ଼ିବା—ଏତେ ଖ୍ୟାତି ଅର୍ଜନ କରିବା
କ'ଣ ସବୁ ଅକାରଣ ହୋଇଗଲା ?—ଟୋକାଟା
କହୁଚି, ମୁକ୍ତି ମାରିବା ମାତ୍ରେ ଘନକେନ୍ଦ୍ର
ସ୍ଥାନଭ୍ରଷ୍ଟ ହେଉଚି—ଏ' ଅତି ସୂକ୍ଷ୍ମ ବିଚାର !
ସେ ଟୋକାଟା ଏ' ଦୁରୂହ ବିଜ୍ଞାନ ତଥ୍ୟ ଜାଣିଲା
କେଉଁଠୁ ? ଏ'ପରି ପୋଥିତ ଆଉ କାହାରି ଘରେ
ନାହିଁ ? ମୂଢ଼—ପ୍ରକୃତରେ କି ଏହା ଘଟୁଚି ?—
କେଉଁଠାରେ କ'ଣ କିଛି ମୋଡ଼ ରହିଯାଇଛି ?
ମୋ'ର ଭୁଲ ହୋଇଛି ?—ଭୁଲ ! ବିଶୁର
ଭୁଲ !—ବିଶୁ ଭୁଲରେ ବି ଯାହା କରେ, ତାହା
ମଧ୍ୟ ନିର୍ଭୁଲ ହୁଏ !—ଜାଣୁନା କାରେ, ବିଶୁ
କାହାର ବଂଶଧର ?—
ଯେଉଁ ବିଶ୍ୱକର୍ମା
ଗଢ଼ିଛନ୍ତି ନୀଳାଚଳଧାମେ—
ସୁରଶିଳ୍ପ ଶିଳ୍ପକଉଶଳ
କରି ପରାଭୂତ,
ହିନ୍ଦୁର ସର୍ବସ୍ୱ ଧନ
ମହାକୀର୍ତ୍ତି ମହାମନ୍ଦିର ସେ
ବିଶ୍ୱର ବନ୍ଦିତ;—
ଯେଉଁ ବିନ୍ଧାଣିର
ବିନ୍ଧାଣ ଗାରିମା
ଅଦ୍ୟାପି ରକ୍ଷିତ ଟେକି
ଏକାମ୍ର କାନନେ
ଏକଲିଙ୍ଗ ସୌଧଶିଖା—
ଗଗନ ବିଦାରି
ଫଣିଫଣା ଯଥା
ଜଟାଧର ଶିରେ;—
ଯେଉଁ ଭାସ୍କରର
ଭାସ୍କର୍ଯ୍ୟ କୌଶଳ
ପ୍ରତିଭାତ ସ୍ତରେ ସ୍ତରେ
ବିରଜାଙ୍କ ଦ୍ୱାରେ,
ଠୁଳ ଯେତେକ ଅଳଙ୍କାର
ସୌନ୍ଦର୍ଯ୍ୟ ନିକର,
ଜନନୀ ପ୍ରସାଦେ, ମର୍ତ୍ତ୍ୟଧାମେ ଏହି;—
ତାଙ୍କରି ପବିତ୍ର ବଂଶେ
ଜନ୍ମିଅଛି ମୁହିଁ—
ତାଙ୍କରି ଶୋଣିତ ବହେ

ଅଙ୍ଗେ ଅଙ୍ଗେ ମୋର—
ପ୍ରତି ଶିରାରେ ଶିରାରେ,
ପ୍ରତି ଲୋମକୂପେ—
କରିପାରେ କେବେ କି ସେ ଭ୍ରମ ?
ଜ୍ଞାନ, ବୁଦ୍ଧି, କଉଶଳେ
ବଳିଯିବ ଏମନ୍ତ ଭାସ୍କର,
ଅଛି କି ଜଗତେ ?
କ୍ଷୁଦ୍ର ବାଳକ ଗୋଟାଏ—
ନିର୍ବୁଦ୍ଧି, ନିରେଖ—
ଦେଖିନାହିଁ 'ଅ' 'ଆ' ମୁଖ,
କହିଲା ସଦମ୍ଭେ—ମୁଖେ ପୁଣି ମୋ'ର,
'ଧରିଅଛି ବୁଦ୍ଧି'—ମୋ'ର ବୁଦ୍ଧି ।
ଓଃ—ଶେଲ ସମ ବାଜିଲା ମରମେ;
କି ଯେ ବ୍ୟଥା !—କି ଯେ ଜ୍ୱାଳା ।

[ ବାକ୍ୟରେ ପ୍ରକାଶ କରିବାକୁ ଅସମର୍ଥ ହୋଇ ଭାବଭଙ୍ଗୀ ଦ୍ୱାରା ଅନୁଭବ କରିବାର ଭାବ ପ୍ରକାଶ କଲେ ]

କାହିଁଛନ୍ତି ଶିଳ୍ପିଗଣ ?
ଆସ ବେଗ କରି—
କର ସାହାଯ୍ୟ ପ୍ରଦାନ,
କୃତକାର୍ଯ୍ୟ ଏହିଥର ଅମ୍ଭେ;—
କରିବି ସ୍ଥାପନ—ପୂର୍ଣ୍ଣ ହେବ କାର୍ଯ୍ୟ—
ଦେଖାଇବି ସେ ବାଳକେ
ଜ୍ଞାନର ଗାରିମା ମୋ'ର—ନିର୍ଭୁଲ ବାସ୍ତୁର ।
ଓଃ !—ଧ୍ୱନିତ ଅଦ୍ୟାପି, ଉକ୍ତି ସେହି—
କର୍ଣ୍ଣେ, କର୍ଣ୍ଣେ ମୋ'ର—ମର୍ମ୍ମେ, ମର୍ମ୍ମେ ଯେସନେ—
'ବୁଦ୍ଧି ପାଇଅଛି'—'ବୁଦ୍ଧି ପାଇଅଛି' ।

[ କାରିଗର ମାନଙ୍କର ପ୍ରବେଶ ]

୧ମ କାରିଗର—ବିଶୁ !—

ବିଶୁ—ଏହି ଯେ ଭାଇମାନେ ମୋର !—
ଆସ, ଆସ, ଭ୍ରାତୃଗଣ
ଶେଷ ପ୍ରୟାସ ଆମ୍ଭର,
ମରଣ ପ୍ରୟାସ,—
ଲାଗିବା କାର୍ଯ୍ୟରେ—
ତୋଳିବା ଆହୁରି ଥରେ;
ଦୃଢ଼ ବିଶ୍ୱାସ ମୋହର,
କୃତକାର୍ଯ୍ୟ ହେବା ନିଶ୍ଚେ;—
ଶୋଭିବ ମସ୍ତକ—
ମୁଗ୍ଧ ହେବେ ଚରାଚର
ବୁଦ୍ଧିର କୌଶଳେ—
ଅମର କୀରତି ଆମ୍ଭ,
ରହିବ ଭୂତଳେ ।

୧ମ କାରିଗର—ଛାଡ଼ ସେହି ବୃଥାକଥା—
କହ, ଅଛି
ଉପାୟ ଯେବେ କି କିଛି—
ହେଲେଣି ଅକୃତକାର୍ଯ୍ୟ ?

ଧର୍ମ୍ମା—( ଭନ୍ତୁ, କାହ୍ନୁ ପ୍ରବେଶ )
ଲୋଟିବ ମସ୍ତକ ଧରାବକ୍ଷେ ଏହି—
କି ଶୋଚନା ସେଥିପାଇଁ ?
ଆସିଅଛୁ ରଣକ୍ଷେତ୍ରେ
ଯୁଦ୍ଧର ନିମନ୍ତେ—
ଜିଣିଲେ ବିଜୟ-ଟୀକା,
ମଲେ ସ୍ୱର୍ଗବାସ;—
ଆତ୍ମସମର୍ପଣ—ଦୁର୍ବଳତା ଜ୍ଞାନେ
ପଳାୟନ ଯୁଦ୍ଧକ୍ଷେତ୍ରୁ ମୃତ୍ୟୁର ସମାନ—
ଯୋଗ୍ୟ କି ଆମ୍ଭର,
ଥାଉଁ ଏ ପରାଣ,
ବହି ମାନବର ଦେହ ?

ସମସ୍ତେ—କିଏ, କିଏ ଏ' ଅଦ୍ଭୁତ ବାଳକ !
( ସାଶ୍ଚର୍ଯ୍ୟେ ଚାହିଁଲେ )

ବିଶୁ—( ହିଂସାପୂର୍ଣ୍ଣ ନେତ୍ରରେ ଚାହିଁ—ସ୍ୱଗତ )
'ଆତ୍ମ-ସମର୍ପଣ !'
ଅସମ୍ଭବ—ଅସମ୍ଭବ,
ଜ୍ଞାନହୀନ ଶିଶୁଠାରେ ?—
'ପଳାୟନ' !—'ପଳାୟନ' !
ଅସମ୍ଭବ—ଅସମ୍ଭବ,
ସାମାନ୍ୟ ଶିଶୁର ଭୟେ ?

( ପ୍ରକାଶ୍ୟେ ) ଆସ, ଆସ ଭ୍ରାତୃଗଣ !
ତ୍ୟଜ ଅବସାଦ—କରବା ପ୍ରୟାସ—
୧ମ କାରଗର—ବିଶୁ ! କାହିଁକି ଏ’ ବୃଥା ଚେଷ୍ଟାରେ ଆଉ ଆମ୍ଭମାନଙ୍କୁ ମତାଉଛୁ ? ଚେଷ୍ଟା କରି କରିତ ଚେଷ୍ଟାର ଫଳ ଦେଖିଥିବ ବେଶି ସାରିଲଣି— ବରଂ ଆଜ ଘଡ଼ିଟା—
୨ୟ କାରଗର—ଯାହା କହୁଚୁ, ଭାଇ—ଠିକ୍‌ଏ ମଉଜରେ କଟାଇଲେ କାମ୍—ମୁଣ୍ଡକୁ ପାଣି ଛଡ଼େଇ ଦେଇ ପାରିବୁ ନା ଆଉ ବାକୀ ଅଛି ?
ଧର୍ମ୍ମା—ଏ’କି ବାକ୍ୟ ତବ
ହୋଇ ଶିଳ୍ପି-ବଂଶଧର ?
ବୀର ତୁମ୍ଭେ—ବୀରର ସନ୍ତାନ,
ବୀର-ରକ୍ତ ଖେଳେ ଧମନୀରେ !—
ଉଠ, ଉଠ ନ କର ବିଳମ୍ବ—
ଉଠ ମାତ ସ୍ମରି ପୂର୍ବବଳ;
ତ୍ୟଜ ଅବସାଦ—
ଥରେ ମାତ୍ର, ଥରେ ମାତ୍ର ଆଉ—
ଶିଶୁର ପ୍ରାର୍ଥନା—କାକୁତି ମିନତି—
ପଶହେ ସଂଗ୍ରାମେ,
ଦେଖା ସେହି ବୀର୍ଯ୍ୟ ଶୌର୍ଯ୍ୟ—
ସେହି ଉଦ୍ଦୀପନା କଉଶଳ,
ଅଗ୍ରସର ଏବେ ହୁଅ
ଯାହା ବଳେ ଅଜ;—
ବାକୀ ସ୍ୱଳ୍ପ ସିନା ?
ଏହିପରି ରଣରଙ୍ଗ
ଦେଲେ ବ ଅଧୁନା,
ସ୍ତମ୍ଭୀଭୂତ ହୋଇ ବିଶ୍ୱ
କହିବ ବିସ୍ମୟେ,
‘ଅସମ୍ଭବ ହୋଇଗ ସମ୍ଭବ’;—
ମାତ୍ର, କର ଯଦି ଉଦ୍‌ଯାପନ ବ୍ରତ—
କବନ୍ଧ ସମାନ
ଏହି ଦୃଶ୍ୟ-କଣ୍ଠୁ ଦେହେ
ସ୍ଥାପହେ ମସ୍ତକ,
ଜୀବନ୍ତ ଜାବନ ସିନା
ଲଭିବ ଏ’ ଅନ୍ତେ—
ମର ହୋଇ ମର୍ତ୍ତ୍ୟେ ସିନା
ରହିବ ଅମର !
ହେବ, ହେବ ସମ୍ମୁଖେ ଅମ୍ବର,
ନୁହେଁ ବହୁଦୂର—
ଫିଟିଛି ଦୁର୍ଗର ଦ୍ୱାର;
ନ ଫେର—ନ ଫେର,
ହୁଅ ଅଗ୍ରସର,
କର ଅଧିକାର,—
ଉଡ଼ାଅ ବିଜୟ ଧ୍ୱଜା,
ବଜାଅ ବିଜୟ ଡଙ୍କା—
ବିଜୟ ମୁକୁଟ ଶିର
ଧେନ ହେ ମସ୍ତକେ !
ବିଶୁ—( ସ୍ୱଗତ ) ଓଃ—କି ଲୁହାଳିଆ କଥା ଏ’ ଟୋକାର !—
[ ଶିବେଇ ସାଁନ୍ତରାର ପ୍ରବେଶ ]
ଶିବେଇସାଁନ୍ତରା—ବିଶୁ ! ଏ କ’ଣ କହୁଚ’ ବୁଝିଲି ? —ମୋ’ ମୁଣ୍ଡରେ, ଭାଇ, ଆଉ କିଛି ପଶୁ ନାହିଁ । ଆରେ ଟୋକା ! ତୁ ଯେବେ ପାରିବୁ ତ କର ।
୨ୟ କାରଗର—ବୁଝିକରି ହବ ବା କ’ଣ ?—ସେ କରି ଦେଉନା—କଣ କହୁଚୁ, ବିଶୁଭାଇ ?
୧ମ କାରଗର—ଠିକ୍ କହୁଚୁ, ଭାଇ !
ବିଶୁ—( ସ୍ୱଗତ ) ଓଃ ! କି ଲଜ୍ଜା ! କି ଅପମାନ ! ( ପ୍ରକାଶ୍ୟେ ) ତୁ’ କଣ ପାରିବୁ ଟୋକା ?
ଧର୍ମ୍ମା—ବିଶ୍ୱରରେ ଦେଖେ ଯେବେହୁଁର,
ହୋଇବ ସଫଳ ।
ବିଶୁ—( ସ୍ୱଗତ ) ‘ହୋଇବ ସଫଳ’—
ପରିସ୍ତ ଦେବେ କି
ବିଶ୍ୱଜୟୀ ବିଶୁ ଅଜ,
ଶିଶୁ ସଙ୍ଗେ ରଣେ ?
ଶିବେଇସାଁନ୍ତରା—ଅଉ ଭାବୁଚୁ କ’ଣ, ବିଶୁ ? ଟୋକାଟା କାମରେ ଦେଖାଉ ନା ?
ଧର୍ମ୍ମା—ଏହି କି ଆଦେଶ, ଶିଶୁପ୍ରତି ତବ ?

୧ମ କାରଗର—ଆରେ ତମତମାଳିଆ କଥା ଛାଡ଼ । ପାରବୁଡ କର, ନାହିଁତ ଏଁଠୁ ଗୁଲିଯା' ।

ଶିବେଇସାଁନ୍ତସ୍—ହଁ, ହଁ, କଣ୍ଟାଗୀରେ ଅଉ ଲୁଣ ଛୁଣ୍ଟା ଦେ'ନା ।

ଧର୍ମ୍ମା—( ବଶୁ ନିକଟକୁ ଯାଇ, ଅବନତ ହୋଇ ) ଦଅ ଗୋ ଆଦେଶ, ପିତଃ ! କର ହେ ଆଶୀଷ—

ବଶୁ—( ପ୍ରକାଶ୍ୟେ ) ଆଶୀଷ । ( ସ୍ୱଗତ ) ଆଶୀଷ ମୋହର—ମୃତ୍ୟୁ ତୋ'ର ! ( ପ୍ରକାଶ୍ୟେ ) ଭାଇ-ମାନେ ! ତୁମ୍ଭେମାନେ କ'ଣ ପାଗଳ ହେଲ ? ପିଲାଟାଏ, ଗାଲ ଚିପିଦେଲେ ଦୁଧ ବାହାରିବ, ତା'ଉପରେ ତୁମେମାନେ କାରଗର ହୋଇ, ଜାଣିଲା ଶୁଣିଲା ଲୋକ ହୋଇ—ନିର୍ଭର କର ନିଶ୍ଚିନ୍ତ ହେଉଚ ନା ?

୧ମ କାରଗର—ଆରେ ଭାଇ, ଆମେତ ବସ୍ତୁକାଚ୍ଛ ନିଶ୍ଚିନ୍ତ, ମରଣ ନିଶ୍ଚିନ୍ତ ଜାଣି ବରଂ ସେ ଯଦି ପାରିଲା—

ବଶୁ—( ସ୍ୱଗତ ) 'ପାରିଲା' । ଏ' ନିବୁଦ୍ଧିଆ ଟୋକାଗଣ୍ଡ ।—

ପାର ନାହିଁ ଯାହା ମୁହିଁ,
ସୁପଣ୍ଡିତ ଶାସ୍ତ୍ରେ—
ଆଜୀବନ ଜୟ-ଲକ୍ଷ୍ମୀ
ବନ୍ଦୀ ଯା'ର କାର୍ଯ୍ୟେ ।

( ପ୍ରକାଶ୍ୟେ ) ଭାଇମାନେ ! ପାଗଳ କି ହୋଇ-ଅଛ ତୁମ୍ଭେ ?—

୧ମ କାରଗର—ହଁ, ଅମେ ପାଗଳ—ଆମକୁ ଛାଡ଼ିଦିଅ—ତୁମେ ବୁଝେଁ ବୁଝା ବୁଝି ହେଉଥାଅ । ଅସ ହେ, ଅଜ ପା'ଚକପାଁଶିଟା ଭଲ କରି ମସଲା ମସଲି ଦେଇ ତିଆରକରି ମନମଜ୍ଜକରେ ଗୁଡ଼ିଟା କଟାଇ ଦେବା । —ମରିଗଲେ ଅଉ କି ଏ' ଯୋଗ ମିଳିବ ?

[ ବଶୁ ଓ ଧର୍ମ୍ମା ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ ]

ଧର୍ମ୍ମା—( ସ୍ୱଗତ ) 'ମରିଗଲେ' । ( ପ୍ରକାଶ୍ୟେ, ଅତି କାତର ଓ ବ୍ୟସ୍ତ ଭାବେ ନତଜାନୁ ହୋଇ ) ଆଦେଶ, ପିତଃ !

ବଶୁ—( ଶ୍ଳେଷଭାବେ ) 'ପିତଃ' — 'ପିତଃ'—କିଏ ତୋର ପିତା ?—କିଏ ତୁହି ? ବଶୁ ସଙ୍ଗେ ପ୍ରତିଦ୍ୱନ୍ଦୀ—

ଧର୍ମ୍ମା—ପିତା ସଙ୍ଗେ 'ପ୍ରତିଦ୍ୱନ୍ଦୀ' ।—
( କ୍ଷଣକାଳ ରହି ) ହଁ, ହଁ, ପିତା—
ପ୍ରତିଦ୍ୱନ୍ଦୀ ମୁହିଁ, ପିତୃକାର୍ଯ୍ୟ ସମାଧାନେ ।

ବଶୁ—( ସ୍ୱଗତ ) 'ପ୍ରତିଦ୍ୱନ୍ଦୀ ମୁହିଁ' ।
'ପିତୃକାର୍ଯ୍ୟ ସମାଧାନେ' ।
ଓଃ—କି ବଜ୍ରରୂପ ପିତୃନାମ ଛଳେ !—
ଅସହ୍ୟ ! ଅସହ୍ୟ !

ଧର୍ମ୍ମା—ପିତଃ ! ଦଅ ଗୋ ଆଦେଶ—

[ ବଶୁ ପ୍ରସ୍ଥାନୋଦ୍ୟତ ହେବାକାଳେ, ଧର୍ମ୍ମା ବଶୁର ଚରଣ ଧରିବା; କିନ୍ତୁ ବଶୁ ଉପେକ୍ଷା କରି ଗୁଲିଯିବାରୁ ଧର୍ମ୍ମା କିଛିକ୍ଷଣ ନିର୍ବାକ ହୋଇ ରହି, କମେ ଉତ୍ତେଜିତ ହୋଇ ଧୀରେ ଧୀରେ ଠିଆ ହେବା ]

ଧର୍ମ୍ମା—ଅହଙ୍କାର—ଅହଙ୍କାର ଏହି,
ଯୋଗ୍ୟ ତବ ପିତା !—
ଅହଙ୍କାର ଅଟେ
ବୀରର ସାହସ, ଦମ୍ଭ, ବଳ
ସମର ପ୍ରାଙ୍ଗଣେ ।—
ଅହଙ୍କାର—ଅହଙ୍କାର ମୋ'ର, ପିତା !
ତବ ପୁତ୍ର ମୁହିଁ—

( ଅବନତ ହୋଇ ) ମା ଗୋ ! ଦଅ ପଦରଜ ତବ—
ଶାଣିତ କୃପାଣ ମୋ'ର !—
ଆଶୀର୍ବାଦ ତବ—
ଅଭେଦ୍ୟ କବଚ ଦୃଢ଼ !—
ପଶେ ରଣାଙ୍ଗନେ—
ଯୁଦ୍ଧେ, ବୀରଗର୍ବେ ମୁହିଁ—
ସୁଭଦ୍ରା-ସନ୍ତାନ ଯେହ୍ନେ,
ସପ୍ତରଥୀ ମଧ୍ୟେ ।

( ଉଠି, ଠିଆହୋଇ ) ଅସ, ଅସ, ପୂର୍ବ ପୁରୁଷ ସକଳ !
ଡାକଇ ସାଦରେ,—

ଓଁଙ୍କାରିଣ ଦିବ୍ୟପଥେ ତବ,
ଶୋଧିତ ସ୍ୱ-କରେ
ସେହି, ସେହି
ଶିଳ୍ପସ୍ତମ୍ଭ ଗାତ୍ରେ—
ଗଠିତ ହୃଦୟ-ରକ୍ତେ ଯାହା
ଖଣ୍ଡଗିରି, ପୁରୀ,
ବିରଜା, ଭୁବନେଶ୍ୱରେ;—
ଆସ ତ୍ୟଜି ଦିବ୍ୟଧାମ ତବ;
କ୍ଷଣକାଳ ପାଇଁ,—
ବିରାଜ ମସ୍ତକେ, ବିରାଜ ଏ ଶିଳ୍ପକରେ !—
ଦିଅ ସେହି ଶକ୍ତି, ସେହି ନିର୍ମାଣ-କୌଶଳ—
ବଳେ ଯା'ର,
କରେ ପୂର୍ଣ୍ଣ ମନ୍ଦିରର ଚୂଡ଼ା,
ପୂର୍ଣ୍ଣକରେ ପିତୃକାର୍ଯ୍ୟ—
ଜାତି-କାର୍ଯ୍ୟ ମୋ'ର !

[ ନେପଥ୍ୟେ ଅତି ଦୂରଦେଶରୁଁ ସବର ସଙ୍ଗୀତ—'ହୁଅ ଧନ୍ୟ—ହୁଅ ଗଣ୍ୟ—ହୁଅ ବୀର ବରେଣ୍ୟ' ପବନ ହିଲ୍ଲୋଳରେ ଭାସି ଭାସି ଆସୁଥିଲା ]

ଧର୍ମ୍ମା—( କେତେକ୍ଷଣ ଉନ୍ମନା ହୋଇ ସେହି ସଙ୍ଗୀତ ଶୁଣୁ ଶୁଣୁ ଉତ୍ସାହିତ ହୋଇ ଉଠିଲା )
ସବ ! ସବ ! ଏତେ ଦୂରେ ଥାଇ,
ଏତେ ନିକଟରେ !—
ସତ୍ୟ, ମହାଶକ୍ତି ତୁମ୍ଭେ
କାର୍ଯ୍ୟର ସଙ୍ଗିନୀ !—
ମହା ସଙ୍ଗୀତ ଧ୍ୱନିତ
ତୁମ୍ଭର ସଙ୍ଗୀତେ ।

( ସୋତ୍ସାହେ କାର୍ଯ୍ୟ କରିବାକୁ ଲାଗିଲା )

---

## ଷୋଡ଼ଶ ଦୃଶ୍ୟ

—ମନ୍ଦିର—

[ ମନ୍ଦିରର ଚୂଡ଼ାଟି ସ୍ଥାପିତ ହୋଇଯାଇଛି । ଧର୍ମ୍ମା ଗୋଟାଏ ପ୍ରସ୍ତରସ୍ତୂପ ଉପରେ ତନ୍ଦ୍ରାଭିଭୂତ ହୋଇ ସ୍ୱପ୍ନ ଦେଖୁଥିଲା—ସବ ଯେପରି ବିଜୟମାଲ୍ୟ ନେଇ ଗାନ କରୁ କରୁ ତା'ର ଗଳାରେ ପିନ୍ଧାଇ ଦେବାକୁ ଆସିଛି—

ସବ— ଗୀତ

ଆସିଛି, ଆସିଛି, ସଖା ! ପିନ୍ଧାଇବି ଗଳେ;
ସଜାଇବି ବୀର-ବକ୍ଷ, ଗଜରବ-ମାଳେ ।
ଫୁଲ ମଲ୍ଲୀ ତାରାଦଳ ଏ ଫୁଲ ଦେଇଛନ୍ତି ତୋଳି,
ମଳୟ, ସୁରଭି କିବା—ସୁଧାକର, ସୁଧା ଢାଳି—
ଅଧର ହସଟି ମୋ'ର ଗୁନ୍ଥିଛି ଏ ମାଳେ ॥

—ଏହି ସମୟରେ ସ୍ୱପଣି କାଳପୁରୁଷ ପରି ଜଣେ କିଏ ଗୁପ୍ତ ଛୁରିକା ହସ୍ତରେ ଅସି ମଧ୍ୟସ୍ଥଳରେ ଠିଆହେଲା;—ଧର୍ମ୍ମା ଚିତ୍କାର କରି ଚେଇଁ ଉଠିଲା—ଏହା ପୂର୍ବରୁ ବିଶୁ ଛୁରିକା ହସ୍ତରେ ପ୍ରବେଶକରି ଧର୍ମ୍ମାର ଅଲକ୍ଷ୍ୟରେ ତା'ର ପଶ୍ଚାତଦେଶରେ ଠିଆହୋଇ ତାକୁ ହତ୍ୟା କରିବାକୁ ଉଦ୍ୟତ ହୋଇଥିଲା ]

ଧର୍ମ୍ମା—ବାବା ! ବାବା ! ( ଆଖି ମଳୁମଳୁ ଚାରିଆଡ଼େ ନିରୀକ୍ଷଣ କରି )

ବିଶୁ—'ବାବା' ! 'ବାବା' ! ( ଉତ୍ତୋଳିତ ଛୁରିକା ସ୍ୱତଃ ଅବନତ ହୋଇଗଲା ) ( ନିଜ ମନେ )
ନା,—ନା—ତୁହି—ତୁହି— ( ବାଳକର ଅଲକ୍ଷେ ପୁଣି ଛୁରିକା ଉଠାଇଲା ବେଳେ )

ଧର୍ମ୍ମା—( ପିତାକୁ ଦେଖି ) ବାବା ! ବାବା !
( ପଦପ୍ରାନ୍ତେ ଅବନତ ହୋଇ )
ପିତୃ-କାର୍ଯ୍ୟ ହେର ହୋଇଛି ସମ୍ପନ୍ନ—
ପିତୃ-ନାମେ ଆଜ ବାଜଇ ଦୁନ୍ଦୁଭି ।
ପିତୃ-ଅହଂକାର—ପିତାର ମୋହର
ବଂଶର ଗାରିମା, ରହିଲା ଅକ୍ଷୁଣ୍ଣ—
ନା, ନା, ଉଜ୍ଜ୍ୱଳୁ ଉଜ୍ଜ୍ୱଳ ତର

ହେଉ ବନ୍ଦୁ ବନ୍ଧୁ,
ନବୀନ ତପନ ଯଥା ତେଜେ କ୍ରମେ କ୍ରମେ
ଲଭେ ପରଣତ ମହା ପ୍ରଚଣ୍ଡ ମାର୍ତ୍ତଣ୍ଡେ;—
ଆଅ, ପିତା !—ଆଅ କୋଳେ ଦୋଳି,
ଦିଅ ଚୁମ୍ବ—ଦିଅ ସୁଧା,
ସେହି ସୁଧାଧରୁ ତବ !—
ଲଭିଯାଉ କ୍ଷୁଧା, ତୃଷା ସୁଦୀର୍ଘ ସଞ୍ଚିତ—
ଭୁଲିଯାଏଁ କ୍ଷଣେ ମୁହିଁ ନିଜକୁ ନିଜର ।

ବଶୁ—ଅଁ, ଅଁରେ ଧନ ମୋର !—
ହୃଦୟର ଧନ—ଜୀବନର ଧନ ( ଛୁରିକା ବାଳକର ଅଲକ୍ଷ୍ୟେ ହାତରୁ ଖସିପଡ଼ିବା ଓ ବଶୁ ଆଗ୍ରହସହକାରେ କୋଳ କରିବାକୁ ଯାଇ )
ନା, ନା—ଦୂର ହ—ଦୂର ହ—

ଧର୍ମ୍ମା—ପିତା !—ପିତା ! କିମ୍ପା ଏ ଭର୍ତ୍ସନା ?
କିପାଇଁ ବଞ୍ଚିତ ଶିଶୁ ପିତୃ-କୋଳ ସ୍ପର୍ଶୁ ?
କିବା ଦୋଷ, କହ ପିତା ! କରିଅଛି ପଦେ ?—
( ପିତୃଚରଣ ଧାରଣ )

ବଶୁ—( ସସ୍ନେହେ ଉଠାଇ ଉଠାଇ ) ଉଠ, ଧନମଣି !
—ଅଁରେ ପୁତ୍ର ମୋ'ର—( କୋଳ କରିବାକୁ ଯାଇ ହଠାତ୍ ଘୃଣା ଓ କ୍ରୋଧ ସହ ଦୂରେ ଫିଙ୍ଗି ଦେଇ ) ପୁତ୍ର ! ପୁତ୍ର !—କିଏ ପୁତ୍ର କା'ର ?
କା'ର ପିତା କିଏ ?
ଦୂର' ହ—ଦୂର' ହ; ସମ୍ମୁଖୁ ମୋହର;
( ଅନୁଚ୍ଚସ୍ୱରେ ) କୁସୁମର ଛଳେ—ଓହୋ, ବଜ୍ର ଯେସନେ ହାଣୁଛୁରେ ଶିରେ !

ଧର୍ମ୍ମା—'ବଜ୍ର' !—ପିତୃ-ଶିରେ ! 'ହାଣୁଚ ମୁଁ'—ପୁତ୍ର ?
ପିତା ! ପିତା ! ଏ' କି ଉକ୍ତି ତବ ?
ବଜ୍ର ଯେସନେ ସତେ ସତେ
ହାଣିଲି ମୋ ଶିରେ !
ପିତା ! ପିତା !—( କରୁଢ଼ ହୋଇ ପଡ଼ିବା )

ବଶୁ—( ସସ୍ନେହେ ଉଠାଇ ) ପୁତ୍ର ! ପୁତ୍ର !
ସତେ କି'ରେ ପୁତ୍ର ତୁହି ମୋ'ର—
ମୁହିଁ ପିତା ତୋ'ର ?

ଧର୍ମ୍ମା—ପିତା ! ପିତା !
( ସାନନ୍ଦେ ) ଆଅ ବକ୍ଷେ—ଦିଅ ଚୁମ୍ବ—

ବଶୁ—ଦୂର ହ—ଶତ୍ରୁ—ଶତ୍ରୁ ତୁହି—

ଧର୍ମ୍ମା—'ଶତ୍ରୁ' ! 'ଶତ୍ରୁ' ! ( ଜଡ଼ୀଭୂତପ୍ରାୟ ହେବା )

ବଶୁ—ହଁ' ରେ, ଶତ୍ରୁ—ଶତ୍ରୁ—
ଆସିଅଛୁ ଗୁପ୍ତବେଶେ—ବାଳକର ବେଶେ,
ଗ୍ରାସିବୁ ସବଳେ ଏହି
ଉନ୍ନତ ମସ୍ତକ ମୋ'ର !

ଧର୍ମ୍ମା—ଉନ୍ନତ ମସ୍ତକ ! ଗ୍ରାସିବି ସବଳେ !
ପିତା ! ପିତା ! ଉନ୍ମତ୍ତ ଉନ୍ମତ୍ତ ମୁହିଁ !
ଓହୋ ! ଭ୍ରମିତ ମସ୍ତକ କୁମ୍ଭାରର ଚକ ଯେସନେ—
ଏହି—ଏହି—ହେର—ହେର—
ଭ୍ରମୁଛି ଦିଗନ୍ତ ସାରା—ଭ୍ରମୁଛି ଜଗତ—
ଅସ୍ଥିର, ଅସ୍ଥିର ମୁହିଁ,
ଅସ୍ଥିର ଚରଣ ମୋ'ର,
ଅସ୍ଥିର ଧରଣୀବକ୍ଷ—
ଧର—ଧର, ପିତା—ତୁମ୍ଭେ ମୋ'ର;
ନତୁବା—ପଡ଼ିଲି—
ପଡ଼ିଲି ମୁଁ, ପୁତ୍ର ତବ, କାଳ-ଉର୍ମ୍ମି ମୁଖେ ।
[ ପତନୋନ୍ମୁଖ ]

ବଶୁ—ପୁତ୍ର !—ପୁତ୍ର ମୋର ! ( ଆଲିଙ୍ଗନ କଲେ )

( ନେପଥ୍ୟେ )—ବଶୁ ! ବଶୁ ! ଏତେବେଳ ଯାଏ—

ବଶୁ—( ଚମକି ଉଠିବା )

ଧର୍ମ୍ମା—( ନିର୍ବାକ୍ ଭାବେ ଶୁଣିବାକୁ ଲାଗିଲା )

( ନେପଥ୍ୟେ )—ବଶୁ ! ବଶୁ ! କ'ଣ କରୁଛୁରେ
ମୂଢ଼ ?
କେଉଁ ମନ୍ତ୍ରେ ମୁଗ୍ଧ ତୁହି
ଭୁଲିଛୁରେ ସତ୍ୟ ?—

ଧର୍ମ୍ମା—'ସତ୍ୟ' !

( ନେପଥ୍ୟେ )—ସର୍ପ-ଶିଶୁ ପୋଷା ପୁଣି ଧରିଛୁରେ
କୋଡ଼େ ?

ଧର୍ମ୍ମା—ଏ କି ଉକ୍ତି, ଶିଳ୍ପିଗଣ ମୁଖେ ?

ବଶୁ—ସର୍ପ-ଶିଶୁ !—ସର୍ପ-ଶିଶୁ ! (ବାଳକକୁ ଠେଲିଦେଲେ)

ଧର୍ମ୍ମା—ପିତା !—ପିତା !—

ବିଶୁ—( ଛୁରିକା ଉଠାଇ ନେଇ ମାରିବାକୁ ଉଦ୍ୟତ )
ଧର୍ମ୍ମା—ଏ’ କି ଦେଖେଁ ପିତୃକରେ—ପିତା !—
ପିତା !—ନା, ନା—( ପିତାର ପାଦପ୍ରାନ୍ତେ ଆଣ୍ଠୁମାଡ଼ି ବସି )
ମାର—ମାର, ପିତା !
କର ସତ୍ୟ ରକ୍ଷା—
ହସି, ହସି ଦେବି ଛାର
ପ୍ରାଣ, ତବ କରେ !
ପଢ଼ିଛି ପୁରାଣେ, ଶାସ୍ତ୍ରେ—
ପିତୃ-ସତ୍ୟ—ସତ୍ୟକରି କ୍ଷଣେ,
ଶ୍ରୀରାମ ଭୁଞ୍ଜିଲେ ସୁଖେ
ବନବାସ-କଷ୍ଟ;
ସେହୁ ପିତୃ-ଅଜ୍ଞା ଧରି ଶିରେ,
ଶ୍ରୀ ପରଶୁରାମ
କାଟିଲେ ଜନନୀ-ଶିର
ଆନନ୍ଦ-ହୃଦୟେ;
ମୁହିଁ କିବା ଛାର—
ଛାର ଏହୁ ପ୍ରାଣ ବିନିମୟେ
ଲଭନ୍ତି ସନ୍ତୋଷ,
ସ୍ୱର୍ଗାଦପି ଗରୀୟାନ୍
ପିତା ଯେବେ ମୋ’ର—
ଏଥୁଁ ବଳି କିବା ସୁଖ
ଅଛି ଏହୁ ଭବେ ?
କିନ୍ତୁ ଜାଣିକି ପାରିବି, ପିତା !
କିବା ଦୋଷ ମୋର ?—
ନା, ନା, ନୁହେଁ କର୍ତ୍ତବ୍ୟ ପୁତ୍ରର—
ପିତା ପ୍ରତି ଏହୁପରି
ପ୍ରଶ୍ନ ବ୍ୟବହାର;—
ଦିଅ ଦଣ୍ଡ, ଦିଅ ପିତା !
ମୁହିଁ ଉଦ୍ଧତ ସନ୍ତାନ—ଅବାଧ୍ୟ ପିତାର !
( ମୁଣ୍ଡ ନୁଆଁଇଲା )
(ନେପଥ୍ୟ)—ଶୀଘ୍ର, ଶୀଘ୍ର ବିଶୁ !
ବିଶୁ—ନା, ନୁହେଁ ବିଳମ୍ବ ଆଉ ! (ଛୁରିକା ପ୍ରାୟ ଭଙ୍ଗ କରିବାକୁ ଯାଉଥିଲେ)
ଧର୍ମ୍ମା—(ଗୃହିଁ) ସାମାନ୍ୟ ବିଳମ୍ବ, ପିତା !—କ୍ଷମ ଅପରାଧ !—ମାତା ସଙ୍ଗେ—
ବିଶୁ—( ଚମକି ) ମାତା !—
ଧର୍ମ୍ମା—ହଁ, ପିତା ! ମାତା ସଙ୍ଗେ ହେଲେ ଦେଖା
କହିବେ ଏତିକି,
ସାରି ପିତୃ-କାର୍ଯ୍ୟ—ଜାତି-କାର୍ଯ୍ୟ—ଦେଶ-କାର୍ଯ୍ୟ,
ମରିଛି ତା’ ପୁତ୍ର—
ବିଶୁ—(ଧର୍ମୀକୁ ନିରୀକ୍ଷଣ କରି ନିଜ ମନେ) ‘ପୁତ୍ର’ !—
ଧର୍ମ୍ମା—ନା—ନା—ଯାଇଅଛି ଦିବ୍ୟଧାମେ !
ଆଉ ସରିଲୁ ମୋ—ର—
(ଭଗ୍ନସ୍ୱର ହୋଇ କାନ୍ଦ ପକାଇଲା)
ବିଶୁ—(ସା’ବେଗେ ଚିନ୍ତା କରୁ କରୁ) ‘ପୁତ୍ର’ ! —‘ମାତା’ !
(ପ୍ରକାଶ୍ୟେ)—କିଏ ?—କିଏ ‘ମାତା’ ତୋ’ର—
କହ, କହରେ ବାଳକ ?
ସତେ, ସତେ କିରେ ‘ପୁତ୍ର’ ତୁହି ମୋ’ର ?
ନାମ କି ‘ଧରମା’ ତୋ’ର ?
ଧର୍ମ୍ମା—ପିତା ! ପିତା !
ଧର୍ମ୍ମା ନାମେ ପରିଚିତ
ଭାଗ୍ୟଧର ମୁହିଁ !
ବିଶୁ—ତେବେ—ତେବେ
ତୁହି—ତୁହି କି ମୋହର—
( ଛୁରିକା ହସ୍ତସ୍ଖଳିତ ହେବା )
ଦେଖେଁ—ଦେଖେଁ—ଅଙ୍ଗୁଷ୍ଠି ତୋହର ?
( ବାଳକର ଅଙ୍ଗୁଠି ନେଇ ଦେଖି ) ଏ’ ଯେ—
ଏ’ ଯେ—
ବିବାହ-ଅଙ୍ଗୁଷ୍ଠି ମୋର !—
ପ୍ରିୟେ ! ପ୍ରିୟେ !—ପୁତ୍ର ! ପୁତ୍ର !
( ଆଲିଙ୍ଗନ କରି ଥରେ ପୁତ୍ର ମୁଖ, ଥରେ ଅଙ୍ଗୁଷ୍ଠିକୁ ଘନ ଘନ ଚୁମ୍ବନ କରିବା )
ବାପ ! ବାପ ! !—ଏ’କି ବ୍ୟବହାର ତୋ’ର ?
ପିତାସଙ୍ଗେ ଛଳନା କି—
ଧର୍ମ୍ମା—ପିତା ! ପିତା !—
କ୍ଷମାକର ଦୋଷ ମୋ’ର—

ଜାଣେ ନା—ଜାଣେ ନା—କି ଭାବ ଅବେଶେ
କରିଥିଲି ପ୍ରତିଜ୍ଞା ଭୀଷଣ
ମନେ, ମନେ ଏହି—
ପିତୃ-କାର୍ଯ୍ୟ ଆଗେ ମୁହିଁ କରିବି ସମ୍ପନ୍ନ,
ପୁତ୍ର ବୋଲି ପରିଚୟ ଦେବି ତେବେ ପରେ,—
ନହୁବା 'ବିଶୁର ପୁତ୍ର' କେହି
ନ ଥିଲା, ବା ନ ଥିବ ଏ ଭବେ ।
ବିଶୁ—ଅନ୍ତରେ ବିଶୁର ପୁତ୍ର
ପ୍ରକୃତରେ ତୁହି ।—
ପୁତ୍ର ମୋର—(ଆଲିଙ୍ଗନ କରିବା) ମାତ୍ର—
କାର୍ଯ୍ୟାନ୍ତେ ନ ଦେଲୁ ପରିଚୟ କିମ୍ପା ?—
ନା, ନା—ଏ' ଯେ ଅପରାଧ ମୋର,
ଦେଲି ଅବସର କାହିଁ ?
ଓହୋଃ !—ପୁତ୍ର—ପୁତ୍ର—ଧର୍ମ୍ମୁ—ଧର୍ମ୍ମୁ—
[ ଦୃଢ଼ ଆଲିଙ୍ଗନ କରିବା ]
(ନେପଥ୍ୟ)—ବିଶୁ ! ବିଶୁ !
ବିଶୁ—(ସଭୟେ) ଏଁ—ଏଁ—'ବିଶୁ'—'ବିଶୁ' ।
(ନେପଥ୍ୟ)—ବିଶୁ ! ବିଶୁ !
ବିଶୁ—ପୁଣି ସେହି 'ବିଶୁ'—'ବିଶୁ' !—
'ବିଶୁ' ନାହିଁ—'ବିଶୁ' ନାହିଁ—
ଏହି—ଏହି—
ଆସୁଛନ୍ତି ଏଣେ ଧାଇଁ,
କ୍ଷୁଧିତ ଶ୍ୱାପଦ ଦଳ,
ଲକ୍ଷ୍ୟ ଯେତେକ କରଣ ଶିକାର ।
ପୁତ୍ର !—ପୁତ୍ର ମୋର ! (ପୃଷ୍ଠଭାଗେ ଲୁଚାଇବା)
ନା, ନା ଚାଲି ବେଗେ ଏଠୁଁ,
ନୁହେଁ ନିରାପଦ ସ୍ଥାନ—
( ବେଗେ ପ୍ରସ୍ଥାନ ଉଦ୍ୟତ )
ଧର୍ମ୍ମ—   କିମ୍ପା, ପିତା !
ଏ ଯେ ଭ୍ରାତୃବର୍ଗ ତବ ?
ବିଶୁ—   ନୁହେଁ ଭ୍ରାତୃବର୍ଗ—ଶତ୍ରୁ ! ଶତ୍ରୁ !
[ କାରିଗରମାନଙ୍କର ପ୍ରବେଶ ]
୧ମ କାରିଗର—ଶତ୍ରୁ !—ଶତ୍ରୁ !
ଶତ୍ରୁ, ମିତ୍ର ପରି ଏବେ ?—

ବିଶୁ—( କରଯୋଡ଼ି ) ଭ୍ରାତୃବର୍ଗ ! କ୍ଷମ ଅପରାଧ;
ଜ୍ଞାନଗର୍ବୀ ପିତା ଆଜ,
ଅଜ୍ଞାନ ଅନ୍ଧାରେ
ତୋଳିଥିଲା ଖଡ୍‌ଗ ସିନା
ସତ୍ୟ-ସ୍କନ୍ଧେ—ଆତ୍ମ-ସ୍କନ୍ଧେ—
ନିଜ ପୁତ୍ର-ସ୍କନ୍ଧେ ।
ଆହା ! ଏ ଯେ ଚୋଟିକ ସନ୍ତାନ ମୋର—
ବଂଶର ଭୂଷଣ !—ନା, ନା—
ଜାତିର ପ୍ରଦୀପ—ଦେଶର ଭାସ୍କର ।
ହେର, ହେର, ଭ୍ରାତୃଗଣ !
କିବା ଶ୍ୟାମ କଳେବର,
ଶିଶୁ ନଟବର—
ନିଭଙ୍ଗଠାଣିରେ ଜଣା
ସମ୍ମୁଖେ ଅମ୍ବର;—
କିନ୍ତୁ ଅଙ୍ଗି ମୁଦ ହେବ ସେହି—
ଗିରିଗୋବର୍ଦ୍ଧନ-ଧାରୀ,
ପୂତନା-ବିନାଶୀ, କଂସାସୁର-ଦର୍ପହାରୀ,
ବରିଷ୍ଠ-ପୁରୁଷ ! ( ତନ୍ମୟ ହୋଇଯିବା )
ଧର୍ମ୍ମ—ପିତା—ପିତା !
ବିଶୁ—( ସ୍ୱପ୍ନୋତ୍‌ଥିତବତ୍ ) ନେ'ରେ ପଦଧୂଳି—
ଏମାନେ ଯେ ପିତୃବନ୍ଧୁ ତୋର,
ପିତାର ସମାନ !—( ବାଳକ ଅବନତ ହେଲା )
ଭାଇମାନେ, କର ଆଶୀର୍ବାଦ—
ଦୀର୍ଘଜୀବୀ ହେଉ ବତ୍ସ ।
[ କାରିଗରମାନେ ବିଶୁର ଭାବରେ ମଜ୍ଜିଯାଇ ଆଶୀର୍ବାଦ କରିବାକୁ ଯାଉଥିଲେ ]
ଜନୈକ କାରିଗର—( ପ୍ରବେଶ କରି ) କ'ଣ କରୁଛ, ଭାଇମାନେ ? ତୁମେମାନେ ବି ଭୁଲିଗଲ ନା କ'ଣ ?
ସମସ୍ତେ—ଠିକ୍ କହୁଚୁ ଭାଇ ! ଠିକ୍ କହୁଚୁ, ଭାଇ !
—ବିଶୁ, ତୁ କଣ ଆମକୁ ବି ଫୁଣ୍ଡା କରି ପାଇଲୁ ?
ବିଶୁ—ଭାଇମାନେ ! ଏହି ଶିଶୁ ରଖିଅଛି ଟେକ ସିନା,
ଦେଶର ମର୍ଯ୍ୟାଦା—ଜାତିର ମର୍ଯ୍ୟାଦା—

ଶିଳ୍ପୀର ମର୍ଯ୍ୟାଦା—ତୁମର ମର୍ଯ୍ୟାଦା,
କ୍ଷୁଦ୍ର-ବୁଦ୍ଧି ବଳେ ତାର !
( ସମସ୍ତଙ୍କର ଉତ୍ତେଜନା ଭାବ ପ୍ରଶମିତ ନ ହେବାର ଦେଖି )

ବିଶୁ—ଭାଇମାନେ, ନୁହଁ ଅନ୍ୟମନ—
ଏ'କି ନୁହେଁ ସନ୍ତାନ ତୁମର ?

୧ମ କାରିଗର—ବିଶୁ !
ତୁହି ନା ଅଗ୍ରଣୀ ଏହି କାର୍ଯ୍ୟେ ?
ତୁହି ନା ଗୋପନେ, ଜଣେ ଜଣେ
ଦେଇଥିଲୁ ପରାମର୍ଶ,
କରିବାକୁ ନାଶ
ବିଘ୍ନ ଗୋଟି ଏହି—କଣ୍ଟକ ଅଙ୍କୁର,
ମର୍ଯ୍ୟାଦା ପଥରେ—ବିଜାଣୀ କୁଳରେ ?
କ୍ରୂରକାର୍ଯ୍ୟେ ଏହି, ପୁଣି
ବ୍ରତୀ ନ ହୁଅନ୍ତେ କେହି,
ନିଜହସ୍ତେ ନେଲୁ ଭାର
କରିବାକୁ ନାଶ;—
ଏବେ ଏ'କି ବ୍ୟବହାର,
ଜାଣି ନିଜ ପୁତ୍ର ?

ବିଶୁ—ଭାଇ ! ଭାଇ ! ନିଜଗୁଣେ
କର କ୍ଷମା ଦୁର୍ବଳତା ମୋର—
( ଜାନୁପାତ ପୂର୍ବକ କରଯୋଡ଼ି ବସିବା )

୨ୟ କାରିଗର—(ଉଚ୍ଚହାସ୍ୟ କରି) ଦୁର୍ବଳତା ?କ୍ଷମ ?
ଏ' ଦୁର୍ବଳତାର କ୍ଷମା
ଅଛି କି ଏ' ଭବେ ?
ଅରେ ରେ, ପାମର !
ଆଜ ଯଦି ଏ' ବାଳକ
ନ ହୋଇ ତୋହର ପୁତ୍ର,
ହୋଇଥାନ୍ତା ମୋ'ର—
ଛାଡ଼ି ଦିଅନ୍ତୁ କି ବଳେ ?
ତୋଟି ଚିପି କରେ—
ଛୁରୀ ଅବା ବିଦ୍ଧ ବକ୍ଷେ—
କାଳାଗ୍ନିରେ ଫିଙ୍ଗ ଅବା
କୁମ୍ଭୀରର ଗ୍ରାସେ,
ମାରି ଥା'ନ୍ତୁ ତ ନିଶ୍ଚୟ ?
ଜାଳିଥାନ୍ତୁ ପିତୃହୃଦେ ଯେଉଁ
ଯାତନାର ବହ୍ନି—
ଜ୍ୱାଳା ତା'ର ମର୍ମେ ମର୍ମେ
ବୁଝନ୍ତୁ କି ଏବେ ?

ସମସ୍ତେ—ଠିକ୍ ଠିକ୍ କହୁଛୁରେ ଭାଇ !

୧ମ କାରିଗର—ଅଛୁରି ମନେ କି ପଡ଼େ, ବିଶୁ !
ସେହି ଉତ୍ତେଜନା—ଉଦ୍ଦୀପନା ତୋ'ର,
ଘଡ଼ିକର ଆଗେ—
"ରାଜା ଜାଣିଲେ ବାରତା—
ସାମାନ୍ୟ ଗୋଟାଏ ଶିଶୁ,
ଅଜଣା ଅଶୁଣା—
କରିଛି ସମ୍ପନ୍ନ କାର୍ଯ୍ୟ,
ଦୁଃସାଧ୍ୟ ଅତୀବ ବାରଶତ ପକ୍ଷେ—
ପ୍ରାଣଦଣ୍ଡ ଅବ୍ୟାହତ ଦେବେ କି ଅମ୍ଭଙ୍କୁ ?"

ବିଶୁ—(ବିକଳସ୍ୱରେ) ଭାଇ ! ଭାଇ !

୧ମ କାରିଗର—ଛାଡ଼ ସବୁକଥା—କହ, ବିଶୁ ଖୋଲି,
ଜାଣିଯାଉଁ ସର୍ବେ—
"ବାରଶହ ବଢ଼େଇରେ ଦାୟୁ—
କି ପୁଅରେ ଦାୟୁ" ତୋ'ର ?

ଧର୍ମ୍ମା—"ବାରଶ'ରେ ଦାୟୁ" ନିଶ୍ଚେ, ପିତୃବ୍ୟ ସକଳ !

ବିଶୁ—(ବିକଳସ୍ୱରେ) ବାବା ! (ଆଲିଙ୍ଗନ କରିବା)

୧ମ କାରିଗର—ବିଶୁ ! ସମ୍ମତି ଶିଶୁର ବାକ୍ୟେ
ଅଛି କି ତୋହର ?
( କ'ଣ କହିବାକୁ ଯାଉଥିଲା )

ଧର୍ମ୍ମା—ନ କର ସନ୍ଦେହ ଲେଶ—
ଦେଖିଯାଅ ସ୍ୱଚକ୍ଷେ ସରବେ—
ପିତୃ-ବାକ୍ୟ—ପିତୃ-ସତ୍ୟ
କାର୍ଯ୍ୟେ ପରିଣତ ଅକ୍ଷରେ, ଅକ୍ଷରେ !

ବିଶୁ—ନା, ନା, ବାପ—ନ କହ ଏସନ—
ନ ଛାଡ଼ିବି କ୍ଷଣେ—
ରଖିବି ଘୋଡ଼ାଇ ତୋତେ ଅଞ୍ଚଳର ମଧ୍ୟ,
ସହିବି ଯାତନା ଯେତେ,
ଅସୁରେ ଅଗଣତ !

ଧର୍ମ୍ମା—ପିତା !—
ଏ’ କି ଯୋଗ୍ୟ ବାକ୍ୟ ତବ ?
ବିଶ୍ୱ—ଯୋଗ୍ୟାଯୋଗ୍ୟ ନ ବୁଝଇ କିଛି,
ବୁଝିଅଛି ସାର ମାତ୍ର—
‘ପୁତ୍ର’ !—‘ପୁତ୍ର’ !—‘ପୁତ୍ର’ !
୧ମ କାରିଗର—କି’ଣ କହୁଛୁରେ, ଟୋକା ?—
ଆଉ ଆମେ ଟିଆହୋଇ ପାରିବୁ ନାହିଁ—
ବିଶୁ—ହୁର ହ’, ସ୍ୱପ୍ନର ଦଳ !—
ସମସ୍ତେ—( ସକ୍ରୋଧେ ) କି ?—
ଧର୍ମ୍ମା—କ୍ଷମାକର, ପିତୃବ୍ୟସକଳ !
ଉନ୍ମାଦ ଜନକ ମୋର
କ୍ଷଣକାଳ ପାଇଁ !
ପିତା ! ଜ୍ଞାନୀ ତୁମ୍ଭେ,
ଆବେଗେ ବିଗ୍ରହ ନ ଦିଅ ଭସାଇ !
ସନ୍ତାନର ସୁଖ
କାମନା ପିତାର ଯେବେ,
କେଉଁ ସୁଖ ଏଥୁଁ ବଳି
ଭୁଞ୍ଜିପାରେ ପୁତ୍ର ?—
ଆସି ଅଛି ଅନ୍ଧକାରେ ମୁହିଁ,
ଯିବି ଚାଲି ଅନ୍ଧକାରେ,
ଅନ୍ଧକାର କରି ଚିରସଙ୍ଗୀ ମୋର !—
କହ, ପିତା—କିବା ଭାଗ୍ୟ, ଯେବେ
ଅନ୍ଧକାରେ ସେହୁ—
ଘୋର ଅନ୍ଧାରେ, ଅନ୍ଧାରେ,
ଅନ୍ଧାର ପିଚ୍ଛିଳ ପଥେ
ଉଠି ଧୀରେ ଧୀରେ,
ତୋଳିପାରେ ମହାଦୀପ
ଅନ୍ଧକାର ଶିରେ—
ଜାଳିପାରେ ଶିଖା ଦିବ୍ୟ
ଅନ୍ଧକାର ବକ୍ଷେ—
କରିପାରେ ସମୁଜ୍ଜ୍ୱଳ
ଜ୍ଞାନର ମନ୍ଦିର,
ନା, ନା—ପିତୃ-କୁଳ ଆଉ
ଶିଳ୍ପି-କୁଳ ମୋ’ର ?

କହ, କହ ପିତା ! ପୁଣି
କିବା ଭାଗ୍ୟ, ଯେବେ
ମଧ୍ୟାହ୍ନ ଭାସ୍କର ତେଜେ
କରିପାରେ ଦୂର !
ଦେଶର ଅନ୍ଧାର—ବିଶ୍ୱର ଅନ୍ଧାର ତଥା,
ଅନନ୍ତ ଅମର ?
ବିଶୁ—‘ଅନନ୍ତ ଅମର ତୁହି ଅଟୁ ମୋ’ର !
ତୁହି ମୋର ଚିର ଜ୍ୟୋତି,
ଅନ୍ଧକାର ବକ୍ଷେ !
ଧର୍ମ୍ମା—କିପାଁ ତେବେ ବାଧା ଆଉ ?
ବିଶୁ—ନ ଦେବିରେ ଭଲେ !
ଚାଲିରେ ହୃଦିରେ
ଅନନ୍ତର ପଥେ ସେହୁ—
ଅନନ୍ତର ଯାତ୍ରୀ ଅମ୍ଭେ,
ଅନନ୍ତ ଅମର ଅଟଁ ଦମ୍ପତି ଅମ୍ବର !
ଧର୍ମ୍ମା—ପିତା ! ପିତା !
ଏ’କି ଅସ୍ୱାଭାବିକ କଥା ତବ ?
ଦୁର୍ବଳ ଅଜ୍ଞାନ ଏତେ
ନୁହେଁ ପିତା ମମ—
ସାମାନ୍ୟ ପାର୍ଥିବ ଲୋଭେ
ଭୁଲି ଯିବ ପ୍ରତିଜ୍ଞା ନିଜର—
ସ୍ୱଜାତି ସ୍ୱଧର୍ମେ,
ଦେବ ବିସର୍ଜନ ଶତ୍ରୁର କବଳେ !
ବିଶୁ—ବାବା ! ବାବା !
ଧର୍ମ୍ମା—ନା, ନା ପିତା—
ମମତା-ରାକ୍ଷସୀ ମୋହେ—ନଭୁଲ କଅଁତେ;
କଣ୍ଟକ ସେ କର୍ତ୍ତବ୍ୟର ପଥେ,
ଧର୍ମ୍ମ-ଯଜ୍ଞେ ମହାବିଘ୍ନ ଘୋର;—
ସଂହାର—ସଂହାର—
ନାହିଁଟି ନିସ୍ତାର !
[ ନେପଥ୍ୟେ ଗୀତ ଶ୍ରୁତ ହେବା ]
ଗୀତ
“ଗିରିଶୃଙ୍ଗ କାଟି କର ସମତଳ,
ସାଗର ଶୁଖାଇ ଦେଖ ରସାତଳ—
ଧରି ଛେଦି—ଅଭ୍ର ଭେଦି—ତୋଳ ସ୍ତମ୍ଭ ବରେଣ୍ୟ !”

ମହାଗୀତ—ମହାଗୀତ—
ଜାଗ୍ରତ ସାହାରେ !—
ମହାଜ୍ୟୋତ—ମହାଜ୍ୟୋତ—
ଅନ୍ତରେ ବାହାରେ !—
ଏହ—ଏହ—
ବିଜୟ ଶଙ୍ଖ ଯେ ମୋ'ର—
ହୁଳହୁଳ ଘନ କରତାଳ
ଆସେ ତାଳେ ତାଳେ ନାଚ
ଉର୍ମ୍ମିର କଲ୍ଲୋଳେ,—
ନାଚେ ସୁରଗଙ୍ଗନା, ନାଚେ ବିଶ୍ୱସାରି
ମହୋଲ୍ଲାସେ କବା—
ଉଚ୍ଛୁଳ ପଡ଼ଇ ମହୀ,
ଶୂନ୍ୟ, ମହାଶୂନ୍ୟ—
'ଜୟ ଜୟ' ଗାନେ ।
ଗାଅ ଅବିରାମ,
ଉଡେ ଉଡାଅ ବସନା—
ହୃଦୟ କନ୍ଦର ଭର
ଉଠୁ ସେହ ତାନ—
'ଜୟ ପିତା, ଜୟ ମାତା,'
ଜୟ ଚରାଚର ବିଶ୍ୱବାସୀଗଣ—
ଜୟ—ଜୟ—ଜୟ—
'ଜୟ ଜଗଦ୍ୱୀଶ ହରେ'

[ ସମୁଦ୍ରବକ୍ଷକୁ ଡେଇଁ ପଡ଼ିବା ]

[ ସମସ୍ତେ ନିର୍ବାକ୍ ଓ ନିସ୍ପନ୍ଦହୋଇ କିଛିକ୍ଷଣ ରୁହିଁ ରହିବା ]

ବିଶୁ—ବାବା ! ବାବା !—

[ ସାଗରରେ ପତନୋନ୍ମୁଖ ହେବା ]

ସମସ୍ତେ—ଅସମ୍ଭବ—ଅସମ୍ଭବ, ବିଶୁ !
ସ୍ମର ତୋ'ର ପ୍ରତିଜ୍ଞାର କଥା !
[ବିଶୁକୁ ଧାରଣ କରିବା ଓ ସେ ମୁର୍ଚ୍ଛା ଯାଇଥିବା]

---

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

—ମନ୍ଦିର ସମ୍ମୁଖସ୍ଥ ବେଳା-ଭୂମି—

[ଚନ୍ଦ୍ରାତପ-ମଣ୍ଡିତ ରାଜସଭାର ଉପଯୋଗୀ ଆସନମାନ ଯଥା ସ୍ଥାନରେ ସ୍ଥାପିତ । ମନ୍ଦିରର ତୋରଣଦେଶ ପର୍ଯ୍ୟନ୍ତ ପଥଟି ପତାକାଦିରେ ସୁସଜ୍ଜିତ । ଏକ କୋଣରେ ବିରଙ୍ଗ ବସନପରିହିତ କେତେଗୁଡ଼ିଏ ଶିଳ୍ପୀ ଠିଆ ହୋଇଥିଲେ; ତନ୍ମଧ୍ୟରେ ବିଶୁ ସୁସଜ୍ଜିତ ହୋଇ ସୁଦ୍ଧା କପରି ଶ୍ରୀହୀନ ଓ ଅଦ୍ଭୁତ ଦେଖା ଯାଉଥିଲା—ସର୍ବଦା ଅନ୍ୟମନସ୍କ, ଯେମନ୍ତ କି ଅସ୍ୱାଧୀନ, ଶରୀରଟି କେବଳ ଠିଆ ହୋଇଛି ।]

[ ଶିବେଇସାଁନ୍ତରାଙ୍କ ପ୍ରବେଶ ]

ଶିବେଇ—ତୁମ୍ଭେମାନେ ସଜବାଜ ହୋଇ ସାରିଲ ତ ?

୧ମ କାରିଗର—ହଁ—

ଶିବେଇ—( ବିଶୁ କାନ୍ଧରେ ହାତ ଦେଇ ) ବିଶୁ ! ତୋତେ ଏହିଠି ଠିଆ ହେବାକୁ ପଡ଼ିବ !

ବିଶୁ—ହୁଁ ।

ଶିବେଇ—ମହିମା ସଭାମଣ୍ଡପକୁ ବିଜେ କରିବା ମାତ୍ରକେ—

ବିଶୁ—ହୁଁ ।

ଶିବେଇ—କିଛି ନ ଶୁଣି, 'ହୁଁ' ?

ବିଶୁ—ହୁଁ ।

ଶିବେଇ—ଏହପରି ଭାବେ ଅଭିବାଦନ କରିବାକୁ ହେବ । ( ବତାଇ ଦେବା )

ବିଶୁ—ହୁଁ ।

ଶିବେଇ—କପରି, କହ ?

ବିଶୁ—ହୁଁ ।

ଶିବେଇ—ଠିଆ ହୋଇ ରହିଲୁ ଯେ ?

ବିଶୁ—ହୁଁ ।

ଶିବେଇ—ବିଶୁ ! ବିଶୁ ! (କୋଳରେ ହଲାଇବା)

ବିଶୁ—ଏଁ—ଏଁ—( ଗାଢ଼ନିଦ୍ରାବ୍ୟାଘାତରେ ଯେପରି କହୁଥାନ୍ତି )

ଶିବେଇ—ବିଶୁ ! ଶୁଣିଲୁ ଏଣେ—(ହଲାଇବା)

ବିଶୁ—( ଚପରି ଏବଂ ଅର୍ଥଶୂନ୍ୟ ଦୃଷ୍ଟିରେ ଚାହିଁ, ପରେ କାହାକୁ ଖୋଜିବା )

ଶିବେଇ—କାହାକୁ ଖୋଜୁଛୁ, ବିଶୁ ?

ବିଶୁ—ଏହିଠି—ଏହିଠି ଥିଲା—

[ ସେହି ମନ୍ଦିର ଚୂଡ଼ାକୁ ଇଙ୍ଗିତ କରି ଚାହିଁ ରହିବା ]

ଶିବେଇ—ପୁଣି ପାଗଳାମି, ବିଶୁ ?

ବିଶୁ—( ଉଚ୍ଚହାସ୍ୟ କରିବା ) ହାଃ—ହାଃ—ହାଃ—

ଶିବେଇ—ବିଶୁ ! ବିଶୁ !

ବିଶୁ—ହଁ, ହଁ—ମୁଁ ବିଶୁ—ଧରମାର ପିତା ।

କହିନାହିଁ ପୁଣି ମୋର ?

'ଦୁର୍ବଳ ଅଙ୍କନ ଏତେ

ନୁହେଁ ପିତା ମମ—

ସାମାନ୍ୟ ପାର୍ଥିବ ଲୋଭେ

ଭୁଲିଯିବ ପ୍ରତିଜ୍ଞା ନିଜର ।'

ହାଃ—ହାଃ—ହାଃ—

ଶିବେଇ—ପୁଣି ତ ସେହି ପାଗଳାମି !

ବିଶୁ—ହାଃ—ହାଃ—ହାଃ—

କହି ନାହିଁ ଧର୍ମା ମୋ'ର ?

ପାଳି ନାହିଁ ଅକ୍ଷରେ ଅକ୍ଷରେ ?

'ଅବେଗେ ବିଶୁର ନ ଦଅ ଡୁବାଇ ।'—

ହାଃ—ହାଃ—ହାଃ—

୧ମ କାରିଗର—ଭାଇ ! ଭାଇ ! ଅକାଦାନଟା ଭଲ ସମ୍ଭାଳି ଯା !

ବିଶୁ—( କାତରସ୍ୱରେ ) କାହିଁକି ? କାହିଁକି ?—

ତା'ପରେ କ'ଣ ହେବ ? ତା'ପରେ କ'ଣ—

ଶିବେଇ—ସର୍ବନାଶ—

ବିଶୁ—ସର୍ବନାଶ ! ସତେ, ସତେ ସର୍ବନାଶ କରିଗଲା, ସା'ନ୍ତେ—ନା, ନା 'ଅନନ୍ତ ଅମର ମୁହିଁ—

ଅନନ୍ତ ଅମର ସମ୍ବଳ ଆମର'—

ହାଃ—ହାଃ—ହାଃ—

୧ମ କାରିଗର—ବିଶୁ ! ଏହି ପରା ତୋ'ର ପ୍ରତିଜ୍ଞା-ପାଳନ ?—ଗୋଟାଏ ଶିଶୁର ସାହସ ବି—

ବିଶୁ—ନାହିଁ ମୋହଠାରେ ?—

ଶିଶୁର ଜନକ ମୁହିଁ—

ଶିଶୁର କୋମଳ ଅଙ୍ଗ

ସ୍ୱହସ୍ତେ ଛେଦଣି—

କରି ଖଣ୍ଡ ଖଣ୍ଡ, ରାନ୍ଧିଅଛି ବହୁ ଯତ୍ନେ—

ଦେଇଅଛି ଭୁଞ୍ଜିବାକୁ

କ୍ଷୁଧାତୁର ଗଣେ;—

କରିଅଛି ନିଜ କ୍ଷୁଧା ନାଶ

ସେହି ରକ୍ତ ମାଂସେ—

ଶିଶୁର ମୋହର !

ହାଃ—ହାଃ—ହାଃ—

ନାହିଁ ଏତିକି ସାହସ,

ଅତଏବ ମନସ୍ତୁଷ୍ଟି ହେତୁ

କରିବି ନର୍ତ୍ତନ—ଗାଇ ପଦେ ଅଧେ ଏବା ?

ସମସ୍ତେ—ବିଶୁ ! ବିଶୁ ! (ନେପଥ୍ୟେ ବାଦ୍ୟଧ୍ୱନି)

ଶିବେଇ—ଏହି ଯେ ମଣିମା ବିଜେକଲେଣି—ଚୁପ୍ —ଚୁପ୍—

ବିଶୁ—ମୁଁ ହୋଇ ପାରିବି ନାହିଁ, ସା'ନ୍ତେ !

ଏ' ଯେ 'ବିଜୟ ବାଜଣା'—

'ଶଙ୍ଖ ହୁଳହୁଳି'—'ଘନ କରତାଳି',

ନେବ ବୋଲି ବିଶୁ ପୁରସ୍କାର ଆଜ

ପ୍ରଭୁଙ୍କ ଠାରୁ,

ତା'ର ମହତ କାର୍ଯ୍ୟର—

ଅଦ୍ଭୁତ—ଅଦ୍ଭୁତ ଭବେ !

ହାଃ—ହାଃ—ହାଃ—

ସା'ନ୍ତେ ! ସାନ୍ତେ !—

ମୁଁ କ'ଣ ମୂର୍ତ୍ତି ମାରି ନାହିଁ ?

ଶିବେଇ—ନିସ୍ତବ୍ଧ—

ବିଶୁ—ତେବେ ଦେଖିଲ, ଦେଖିଲ—ଚମ୍ପତ ସେହି ଦେଉଳ ଚୂଡ଼ାରେ ବସି ମୋତେ ଖେଳେଇ ହେଉଛି—

ଶିବେଇ—କଏ ? କଏ ? କାହିଁ ?—ଛି, ବିଶୁ ! ତୁ ତେଣେ ଅଉ ଚୁହାଁନା—

ବିଶୁ—ଠିକ୍ କହୁଚ, ସାଆନ୍ତେ—ଏଣିକି ମୋ' ଛଡ଼ା ମୁଁ ଆଉ କାହାରିକି ଚୁହିଁବି ନାହିଁ । ( ନିଜକୁ ପର୍ଯ୍ୟବେକ୍ଷଣ କରୁ କରୁ ) ଏଁ—ଏଁ—ମୋତେ ଭଲକରି ସଜାଇ ଦେଇନାହଁ କାହିଁକି ?—ମୁଁ ଯେ ମଣିମାଙ୍କ ଶ୍ରୀକରୁ ପୁରସ୍କାର ନେବି—

ଶିବେଇ—ବେଶ୍ତ ସାଜିଚୁ—

ବିଶୁ—ସତେ ? ସତେ ?

ଶିବେଇ—ଖାଲି ମଣିମାଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ଭଲକରି ସଜାଇ କହି ପାରିଲେ ହେଲା ।

ବିଶୁ—ସେଇଥି ପାଇଁତ କହୁଚି—ଭିତରଟା ମୁଁ ଖୁବ୍ ଭଲକରି ସଜାଇ ରଖିଚି—ବାହାରଟା ଖାଲି ଭଲକରି ସଜାଇ ଦେଲେ, ବାହାର ଭିତର ଯୋଡ଼ସନ୍ଧି ପରା ଠିକ୍ ମିଶିଯିବ ।

ଶିବେଇ—ଏତେବେଳକେ ବିଶୁର କଥାପରି ଗୋଟାଏ କଥା ଶୁଣାଗଲା ।

ବିଶୁ—'ବିଶୁ'ର ନୁହେଁ—'ବିଶୁ'ର ନୁହେଁ, ସାଆନ୍ତେ—ଏ' ଧର୍ମା-ବାପର ।

ଶିବେଇ—ଦେଖ୍, ତା' କଥା ଆଉ ଥରକୁ ଥର ମନରେ ପକାନା ।

ବିଶୁ—ସାଆନ୍ତେ ! ସାଆନ୍ତେ ! ସେ କଥା କୁହନାହିଁ—ତା' ହେଲେ ମୁଣ୍ଡ ପୁଣି ଭାଙ୍ଗି ପଡ଼ିବଟି—

ଶିବେଇ—ବିଶୁ ! ତୋ' ହାତ ଧରୁଚି—

ବିଶୁ—ନା, ନା—ମୁହିଁ ଗଢ଼ିଚି—ବିଶୁ ଗଢ଼ିଚି—ବିଶୁର କାରିଗରି—ବିଶୁର ଜ୍ଞାନରେ ମୁଣ୍ଡି ମରଚି ।

ଶିବେଇ—ହଁ, ସେହି କଥା—(ନେପଥ୍ୟେ ବାଦ୍ୟଧ୍ୱନି) ଏହି ଯେ, ବାଦ୍ୟଧ୍ୱନି ଅତି ନିକଟରେ ।

ବିଶୁ—ହାଃ—ହାଃ—ହାଃ—ମୋ'ର ବିଜୟ ଦୁନ୍ଦୁଭି—ବିଶୁର ବିଜୟଧ୍ୱନି ! ( ନାଚିଉଠିବା )

ଶିବେଇ—ବିଶୁ !

ବିଶୁ—ହାଃ—ମୋ'ର ବିଜୟଧ୍ୱନିରେ ମୁଁ ନାଚିବି ନାହିଁ, ସାଆନ୍ତେ ?

ଶିବେଇ—ମୁଁ' ତ ପୁରସ୍କାର ପାଇବ—ତାହିଁ—

ବିଶୁ—ଠିକ୍ ଠିକ୍, ଏ' ପୁରସ୍କାରରେ ନାଚିବାକୁ ହୁଏ ପରା ! ଉଁ—ଉଁ— ( ନାଚିବା )

[ ନେପଥ୍ୟେ ବାଦ୍ୟଧ୍ୱନି ]

ଶିବେଇ—ଏହି ଯେ ବାଦ୍ୟଧ୍ୱନି ଅତି ନିକଟରେ !—ଦେଖ୍ ତୋତେ କିଛି କରିବାକୁ ହେବ ନାହିଁ—ଆମେ ଯେଉଁପରି କରିବୁ, ତୁ ଠିକ୍ ସେହିପରି କରିବୁ ।

ବିଶୁ—ଠିକ୍ ସେହିପରି କରିବି, ସାଆନ୍ତେ !—ଧର୍ମା ଯେ ମୋତେ ଠିକ୍ ସେହିପରି କରିବାକୁ କହୁଚି ।—ସାଆନ୍ତେ ! ସାଆନ୍ତେ ! ଦେଖିଲ, ଦେଖିଲ, କେତେ ଚଗଲା ଟୋକା ସେ—ଅପେ ଡେଇଁବା ବାହାନା କରି, ମୋତେ ଟାଣିଆଣି ଦରିଆ ଭିତରକୁ ପେଲିଦେଇ, ନିଜେ ଶୁଖିଲାରେ ତୁଳସୀ ଗଛଟି ପରି ଠିଆ ହୋଇଚି—ଆହା ! ସତେ ଯେମିତିକା କିଛି ଜାଣେ ନାହିଁ । ଦେଖିଲ, ଦେଖିଲ, ପୁଣି ଯେତିକି ମୁଁ କଲବଲ ହେଉଚି—ସେତିକି ଟଏ ଠୋ ଠୋ କରି ହସୁଚି—

ଶିବେଇ—ପୁଣି ପାଗଳାମି ?

ବିଶୁ—ପାଗଳାମି ! ପାଗଳାମି ! ମୁଁ ପାଗଳାମି କରୁଚି ?—ମୁଁ ବିଶୁ—ଧର୍ମାର ବାପ ? ସାଆନ୍ତେ ! କୁହ, କୁହ—କ'ଣ କଲେ ପାଗଳାମି ହେବ ନାହିଁ ?

ଶିବେଇ—ମୁଁ ଯେମିତିକା କହିବି, କରିବି—ତୁ ଠିକ୍ ସେମିତିକା କହିବୁ, କରିବୁ—

[ ନେପଥ୍ୟେ ପୁଣି ବାଦ୍ୟଧ୍ୱନି ]

ଏହି ଯେ ମଣିମା ବିଜେ କରୁଛନ୍ତି ।

ବିଶୁ—'ଏହି ଯେ ମଣିମା ବିଜେ କରୁଛନ୍ତି ।'

ଶିବେଇ—( ଶ୍ରେଣୀବଦ୍ଧ କରି ଠିଆ କରାଉ କରାଉ ) ବିଶୁ ! ତୁ ପ୍ରଥମ—

ବିଶୁ—( ବଦ୍ରୂପ କରୁ କରୁ ) 'ବିଶୁ, ତୁ ପ୍ରଥମ ।'

ଶିବେଇ—ଶାମ, ତୁ ଦ୍ୱିତୀୟ । ( ବିଶୁପାର୍ଶ୍ୱରେ ଠିଆ କରାଇବା )

ବିଶୁ—( ତଥାନୁକରଣ ) 'ଶାମ ତୁ ଦ୍ୱିତୀୟ' ।

ଶିବେଇ—ବିଶୁ !

ବିଶୁ—'ବିଶୁ !'

ଶିବେଇ—କ'ଣ କରୁଚୁ ତୁହ ?

ବିଶୁ—'କ'ଣ କରୁଚୁ ତୁହ ?'

ଶିବେଇ—ନା, ନା ତୋତେ କିଛି କରିବାକୁ ହେବ ନାହିଁ ?

ବିଶୁ—'ନା, ନା, ତୋତେ କିଛି କରିବାକୁ ହେବ ନାହିଁ ?'

[ ବାଦ୍ୟଧ୍ୱନି ନିକଟବର୍ତ୍ତୀ ହେବା ଓ ଜନୈକ ରାଜକର୍ମଚାରୀଙ୍କ ପ୍ରବେଶ ]

ରାଜକର୍ମଚାରୀ—ମହାରାଣୀ ଓ ମଣିମା ବିଜେ କରୁଛନ୍ତି—ତୁମେମାନେ ବର୍ତ୍ତମାନ ଏଠାରୁ ଚାଲିଯାଅ ।

ଶିବେଇ—ଚାଲିଆସ, ସମସ୍ତେ ।

ବିଶୁ—'ଚାଲିଆସ, ସମସ୍ତେ ।'

ଶିବେଇ—ବିଶୁ ! ବିଶୁ !

ବିଶୁ—'ବିଶୁ ! ବିଶୁ' ( ଶିବେଇ ବିଶୁକୁ, ବିଶୁ ମଧ୍ୟ ସେହିପରି ଶିବେଇକୁ ଧାରଣ କରି ପ୍ରସ୍ଥାନ । ଶିଳ୍ପିଗଣ ପରସ୍ପରକୁ ନିରାଶା-ସୂଚକ ଇଙ୍ଗିତ କରୁ କରୁ ପ୍ରସ୍ଥାନ )

[ ବାଦ୍ୟକ୍ରମେ ମାହାରୀଗଣ ସହ ମହାରାଣୀ ବିଜେ କରି ମନ୍ଦିର ମଧ୍ୟରେ ପ୍ରବେଶ କଲେ । ତତ୍ପରେ ସଭାସଦ୍‌ଗଣ ଓ ପୁରୋହିତ ସହ ମହାରାଜାଙ୍କ ପ୍ରବେଶ । କେବଳ ପୁରୋହିତ ଓ ମହାରାଜା ମନ୍ଦିର ମଧ୍ୟରେ ପ୍ରବେଶ କଲେ—ସଭାସଦ୍‌ଗଣ ଯେ ଯାହାର ପଦାନୁଯାୟୀ ଆସନ ଗ୍ରହଣ କଲେ—ମନ୍ତ୍ରୀ ମଣ୍ଡପ ଉପରେ ଠିଆ ହେଲେ । ]

ମନ୍ତ୍ରୀ—ସଭାସଦ୍‌ଗଣ ! ଆଜି ଭାରି ଆନନ୍ଦର ଦିନ । ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏତେକାଳ ପରେ କାର୍ଯ୍ୟରେ ପରିଣତ ହୋଇଚି । ଏ ଯେଉଁ ମହାକୀର୍ତ୍ତି ସମ୍ମୁଖରେ ମୂର୍ତ୍ତି ହେବାକୁ ଦେଖୁଛନ୍ତି, ତାହା କେବଳ କାରୁକାର୍ଯ୍ୟ ନିମନ୍ତେ ଯେ ଜଗତ୍ ବିଖ୍ୟାତ ହେବ, ତାହା ନୁହେଁ—କିମ୍ବା ଦେବତାଙ୍କ ମନ୍ଦିର ବୋଲି ଯେ କ୍ଷେତ୍ର ଓ ଧର୍ମର କେବଳ ମାହାତ୍ମ୍ୟ ବଢ଼ାଇବ, ତାହା ନୁହେଁ—ସଙ୍ଗେ ସଙ୍ଗେ ରାଜନୈତିକ ହିସାବରେ ଦେଶର ଗୋଟିଏ ମହା ହିତ ସାଧନ କରିବ—ବହିରା-କ୍ରମଣରୁ ଦେଶକୁ ରକ୍ଷା କରିବା ନିମନ୍ତେ ଗୋଟିଏ ପ୍ରଧାନ ଦୁର୍ଗ ହୋଇ ରହିବ ।

ସଭାସଦ୍‌ଗଣ—କିପରି ? କିପରି ?

ମନ୍ତ୍ରୀ—ମହାରାଜାଙ୍କ କୌଶଳରେ ଉକ୍ତ ମନ୍ଦିର ମଧ୍ୟରେ ଏପରି ଶକ୍ତିଶାଳୀ ଚୁମ୍ବକ-ପ୍ରସ୍ତର ସଂରକ୍ଷିତ ହୋଇଅଛି, ଯାହାର ଆକର୍ଷଣରେ ବହୁ ଦୂରବର୍ତ୍ତୀ ଯେ କୌଣସି ଅର୍ଣ୍ଣବପୋତ, ଯେତେ ବୃହତ୍ ହେଉ ନା କାହିଁକି, ଏକାବେଳକେ ଛିନ୍ନ ଭିନ୍ନ ହୋଇ ଖଣ୍ଡ ଖଣ୍ଡ ପଟାଛନରେ ପରିଣତ ହୋଇଯିବ ।

ସଭାସଦ୍‌ଗଣ—ଜୟ ମହାରାଜ ଶ୍ରୀ ଶ୍ରୀ ନରସିଂହ ଦେବଙ୍କର ଜୟ ।

[ ନେପଥ୍ୟେ ମାହାରୀମାନଙ୍କ ଗୀତଧ୍ୱନି ଶ୍ରୁତହେବା ]

ମନ୍ତ୍ରୀ—ବର୍ତ୍ତମାନ ମନ୍ଦିରମଧ୍ୟରେ ବିଗ୍ରହ ପ୍ରତିଷ୍ଠା-କାର୍ଯ୍ୟ ଆରମ୍ଭ ହୋଇଚି । ଆମ୍ଭମାନଙ୍କର ଭକ୍ତିଭରେ ସେ କାର୍ଯ୍ୟରେ ଯୋଗଦେବା ଉଚିତ ।

[ ସମସ୍ତେ ନତମସ୍ତକରେ ଗୀତ ଶୁଣିବାକୁ ଲାଗିଲେ—ମାହାରୀମାନେ ଗୀତ ଗାଇ ଗାଇ ମନ୍ଦିରର ବେଢ଼ା ପରିକ୍ରମା କଲେ ]

ମାହାରୀଗଣ— ଗୀତ

ଗାଅ ଲୋ ମଙ୍ଗଳ ଦେଇ କରତାଳି
ମଙ୍ଗଳେ ଭୁବନ ପଡ଼ୁ ଗୋ ଉଛୁଳି ।
ବଜାଏ କି ଶଙ୍ଖ ନୀଳାମ୍ବୁ ସୁନ୍ଦରୀ—
ମେଖଳା-ଅଙ୍ଗନା ଦିଏ ହୁଳ ହୁଳି—
ସଲଜେ ଅନିଳ ଟାଳେ କି ଅଞ୍ଚଳି,
ଆରତି ସଜାଏ ସୁରବାଳା ମିଳି ॥

[ ମନ୍ତ୍ରୀ ଶିଳ୍ପିମାନଙ୍କୁ ଡାକିଆଣିବା ନିମନ୍ତେ ଜନୈକ ଦୌବାରିକକୁ ଆଦେଶ କଲେ । ଗୀତାନ୍ତେ ଶିଳ୍ପିମାନେ ପ୍ରବେଶ କଲେ । ବିଶୁ, ପ୍ରାଣଦଣ୍ଡେ ଦଣ୍ଡିତ-ବ୍ୟକ୍ତି ବଧଭୂମିକୁ ନୀତହେବା ପ୍ରାୟ, ଏକପାର୍ଶ୍ୱରେ ଶିବେଇ ଓ ଅନ୍ୟପାର୍ଶ୍ୱରେ ପ୍ରଥମଶିଳ୍ପି କର୍ତ୍ତୃକ ଧୃତ ହୋଇ ପ୍ରବେଶ କଲେ । ସଭାସଦ୍‌ଗଣ ସାନୁକମ୍ପ-ଦୃଷ୍ଟିରେ ବିଶୁର ଅବସ୍ଥା

ଦେଖି ପରସ୍ପର ମଧ୍ୟରେ ନାନାପ୍ରକାର ଭାବଭଙ୍ଗୀ କରିବାକୁ ଲାଗିଲେ ]

ମନ୍ତ୍ରୀ—ଶିବେଇ, ବିଶୁ ଓ ଅପର ଶିଳ୍ପିଗଣ ! ଆଜି ତୁମ୍ଭେମାନେ ପ୍ରାଣପାତ ପରିଶ୍ରମ କରି ଯେଉଁ ଅସାଧ୍ୟସାଧନ କରିଅଛ, ସେଥିରେ ଯେ କେବଳ ତୁମ୍ଭମାନଙ୍କ ଶିଳ୍ପଚାତୁରୀର ପରାକାଷ୍ଠା ପ୍ରଦର୍ଶିତ ହୋଇଛି, ତାହା ନୁହେଁ—ତୁମ୍ଭମାନଙ୍କର ବଂଶ-ମର୍ଯ୍ୟାଦା ଯେ କେବଳ ବର୍ଦ୍ଧିତ ହୋଇଛି, ତାହା ନୁହେଁ—ଆଜି ଗୋଟାଏ ଜାତି, ଗୋଟାଏ ଦେଶ, ଜଗତରେ—ସବୁ ସମାଜରେ—ସବୁ ଯୁଗରେ ଆଦର୍ଶ ସ୍ଥାନ ଅଧିକାର କରିବାକୁ କ୍ଷମ ହୋଇଛି ।

ବିଶୁ—(ହଠାତ୍) ମୋ'ର କୌଶଳରେ, ମନ୍ତ୍ରୀମହାଶୟ ! ବିଶୁର କୌଶଳରେ !—ହାଃ—ହାଃ—ହାଃ—

ଶିବେଇ—ବିଶୁ ! ବିଶୁ !

ବିଶୁ—ହଁ—ହଁ—ମୁଁ ବିଶୁ—ମୁଁ ସେହି ବିଶୁ—

( ଶିବେଇ ବିଶୁର ପାଟି ଚାପି ଧରିବା )

[ ନେପଥ୍ୟେ ବାଦ୍ୟଧ୍ୱନି ଓ ଦେହରକ୍ଷୀ ମାନଙ୍କର ପ୍ରବେଶ ]

ମନ୍ତ୍ରୀ—ମହାରାଜ ବିଜେ କଲେଣି—ବିଶୁ ମୁଣ୍ଡରେ ପାଣି ଦେଇ, ତା'କୁ ଟିକିଏ ବାନ୍ଧିଦିଅ—ଏ' ପର୍ଯ୍ୟନ୍ତ ତା'ର ମତିଭ୍ରମ ଯାଇନାହିଁ ଦେଖୁଛି । ଯାଅ, ସମସ୍ତେ ଯଥାନିର୍ଦ୍ଧାରଣମତେ ଯେ ଯାହାର ସ୍ଥାନ ଅଧିକାର କର ।

[ ବାଦ୍ୟକ୍ରମେ ଯଥାରୀତିରେ ମହାରାଜାଙ୍କ ପ୍ରବେଶ । ବିଶୁ ଛଡ଼ା ସମସ୍ତେ ଠିଆହେବା ଓ ମହାରାଜାଙ୍କ ସିଂହାସନୋପରି ଉପବେଶନ ସଙ୍ଗେ ସଙ୍ଗେ ସମସ୍ତେ ଆସନ ପୁନର୍ଗ୍ରହଣ କରିବା;— ବିଶୁ ନିର୍ନିମେଷ ଦୃଷ୍ଟିରେ ସେହି ମନ୍ଦିରର ଅଗ୍ରଭାଗକୁ ଚାହିଁ ରହିଥିବା ]

ସମସ୍ତେ—ଜୟ ମହାରାଜ ଶ୍ରୀ ଶ୍ରୀ ନରସିଂହ ଦେବଙ୍କର ଜୟ !

ନରସିଂହଦେବ—ସଭାସଦ୍‌ଗଣ ! ଶିଳ୍ପିଗଣ ! ଏହି ମନ୍ଦିରଟି ବର୍ତ୍ତମାନ ମୋ ମନରେ କି ଗୋଟାଏ ଅନନୁଭୂତପୂର୍ବ ନୂତନ ଭାବ ଜାଗରିତ କରି ଦେଉଛି—ବର୍ତ୍ତମାନ ମୁଁ ମୋ'ର ଏହି ମହାକୀର୍ତ୍ତି, ମହାମନ୍ଦିରକୁ ଗୋଟାଏ ସର୍ବଶ୍ରେଷ୍ଠ ଦେବାଳୟ ବା ଶିଳ୍ପ କୌଶଳର ପରାକାଷ୍ଠା ବା ଶତ୍ରୁର ପ୍ରାଣ-କଣ୍ଟକ ବୋଲି ଯେତେ ଗର୍ବ ଅନୁଭବ କରୁନାହିଁ —ଯେତେ ଗର୍ବ ଅନୁଭବ କରୁଛି, ରଣୋନ୍ମାଦିନୀ, ବିଶ୍ୱଗ୍ରାସିନୀ, ଅଜେୟା ପ୍ରକୃତିର ତାଣ୍ଡବ-ନୃତ୍ୟ ବିରୁଦ୍ଧରେ ମାନବ ଆଜି ଜ୍ଞାନ, ବୁଦ୍ଧି ଓ ଶକ୍ତି ପ୍ରଭାବରେ ଗୋଟାଏ ମୂର୍ତ୍ତିମନ୍ତ ବିଜୟସ୍ତମ୍ଭ ସ୍ଥାପନ କରି ପାରିଛି ବୋଲି !—ଆସ ଶିଳ୍ପିଗଣ—ମୋ'ର ବିଜୟୀ ବୀର ଯୋଦ୍ଧୃବୃନ୍ଦ ! ମୁଁ ତୁମ୍ଭମାନଙ୍କୁ ଜନ୍ମଭୂ-ବିଶ୍ୱସମ୍ମୁଖରେ ସ୍ୱହସ୍ତରେ ପୁରସ୍କୃତ କରି ଆଜି ଦେବତାର ପରିଭବ ବିଘୋଷିତ କରିବି—ନିଜେ ଧନ୍ୟ ହେବି—ଜାତିକୁ ମୋ'ର ଧନ୍ୟ କରିବି—ଦେଶକୁ ମୋର ଧନ୍ୟ କରିବି ।

ମନ୍ତ୍ରୀ—ଶ୍ରୀ ଶିବେଇ ସା'ନ୍ତରା ! ଆସ ଏଣେ—

ରାଜା—ନା, ନା—ସର୍ବାଗ୍ରେ ବିଶୁ—ଯା'ର ଜ୍ଞାନବଳେ ଆଜି ମନ୍ଦିରର କାର୍ଯ୍ୟ ପୂର୍ଣ୍ଣ ହୋଇଛି—ମୋ'ର ମନସ୍କାମନା ପୂର୍ଣ୍ଣ ହୋଇଛି—ମୋର ମାନ, ଗୌରବ-ଯାହା କିଛି ସମସ୍ତ ପୂର୍ଣ୍ଣ ହୋଇଛି ।

ମନ୍ତ୍ରୀ—ଶ୍ରୀ ବିଶୁ ମହାରଣା—

ବିଶୁ—[ ଏକଦୃଷ୍ଟିରେ କ'ଣ ଦେଖୁଥିଲା ଓ ହୃଦୟ ମଧ୍ୟରେ ଏକ ଅଭୂତପୂର୍ବ ଯନ୍ତ୍ରଣା ଅନୁଭବ କରୁଥିଲା ]

୧ମ ଶିଳ୍ପୀ—ବିଶୁ ! ବିଶୁ !

ବିଶୁ—ନା, ନା—ମୁଁ କରିନାହିଁ—ମୁଁ—

ଶିବେଇ—ବିଶୁ ! ପ୍ରଭୁଙ୍କର ଡକରା ହେଉଛି—

ବିଶୁ—ପ୍ରଭୁ ! ରକ୍ଷାକର—ରକ୍ଷାକର—ମୁଁ—

(ଶିଳ୍ପିମାନେ ଟେକିନେବାକୁ ଉଦ୍ୟତ ହେଲାବେଳେ)

ରାଜା—ଓଃ ! ଏକାବେଳକେ ବଦ୍ଧ-ପାଗଳ ହୋଇ-ଯାଇଛି !—ଅତିଶୟ ଚିନ୍ତାହେତୁ କି ଏହି ଭ୍ରମ ଜନ୍ମିଛି ? ନା, ନା—ମୁଁ ଯେଉଁ ମୁଣ୍ଡକାଟ ଭୟ ଦେଖାଇଥିଲି, ସେହି ଭୟରୁ ନିଶ୍ଚୟ ଏହି ବିକାର । ଏ' ପର୍ଯ୍ୟନ୍ତ କ'ଣ ସେ ଭୟ ଦୂରୀଭୂତ

ହୋଇନାହିଁ ?—ବତ୍ସ ! ବୀ ! କିଛି ଭୟ ନାହିଁ ।

ବିଶୁ—ଭୟ ନାହିଁ ? ଭୟ ନାହିଁ ?—ମଣିମା ! ମଣିମା ! ତେବେ ମୁଁ ନିର୍ଭୟ ?

ନରସିଂହଦେବ—ହଁ, ତୁ ନିର୍ଭୟ ।

ବିଶୁ—ମୋତେ ଛାଡ଼ିଦିଅ—ମୁଁ ନିର୍ଭୟ (ପୁଣି ଦେଉଳ ଆଡ଼େ ଗୃହିଁ)—ନା, ନା, ମନା କର ନା—ମନା—

ନରସିଂହ ଦେବ—ବିଶୁ ! ସେଠାରେ ଏପରି ଭୟର କାରଣ କ'ଣ ଦେଖୁଚ ? ଏ'ତ ତୁମର କାର୍ଯ୍ୟ—ତୁମର କୀର୍ତ୍ତି । ତୁମର ନାମ ମୁଣ୍ଡରେ ଧରି ମନ୍ଦରଟି ଠିଆ ହୋଇଚି ସିନା ?—ଏହ ନିଅ—

[ ଶିଳ୍ପିମାନେ ବିଶୁକୁ ମହାରାଜାଙ୍କ ନିକଟକୁ ଘେନିଗଲେ ]

ତୁମ୍ଭର ଏହ ମହତ୍‌କାର୍ଯ୍ୟର ଯତ୍‌କିଞ୍ଚିତ ପୁରସ୍କାର ।

[ ନାନାବିଧ ବହୁମୂଲ୍ୟ ସାମଗ୍ରୀ ପୂର୍ଣ୍ଣ ଗୋଟିଏ ପାତ୍ର ବିଶୁ ହସ୍ତରେ ପ୍ରଦାନ କଲେ ]

ବିଶୁ—( ଧାରଣା ମାତ୍ରେ ନିକ୍ଷେପ କରି ) ପୋଡ଼ିଗଲି—ପୋଡ଼ିଗଲି—ଜ୍ୱଳନ୍ତା ଅଙ୍ଗାର ଗୁଡ଼ାଏ—ଜ୍ୱଳନ୍ତା—ଉଃ । ପାଣି—ପାଣି—

( ଦିକ୍‌ବିଦିକ୍ ଜ୍ଞାନଶୂନ୍ୟ ହୋଇ ପ୍ରସ୍ଥାନୋଦ୍ୟତ )

[ ଧର୍ମ୍ମା-ମାତାର ସେହ ଦିଗରୁ ପ୍ରବେଶ ]

ଧର୍ମ୍ମା-ମା—ପାଣିରେ କି ଲିଭିବ, ପ୍ରଭୁ ?

ବିଶୁ—( ଧର୍ମ୍ମା ମାକୁ ଦେଖି ) କିଏ ? କିଏ ?—

( ମୂର୍ଚ୍ଛିତ ହୋଇ ପତନ )

ଧର୍ମ୍ମା-ମା—ପ୍ରଭୁ ! ପ୍ରଭୁ ! ( ନିଜକୋଡ଼ରେ ଧାରଣ କରି )—ଏ' ନିଅଁ ଯେ ଆପଣ ନିଜେ ଜାଳିଛନ୍ତି—ଲିଭିବାର ଉପାୟ ଆପଣଙ୍କର ନିଜ ହାତରେ ସିନା !—ସତକଥା, ପ୍ରଭୁ ! ଆପଣଙ୍କର ପଦ ପାଇଲି ଯେତେବେଳେ—ମୋ'ର ପୁତ୍ରର କୀର୍ତ୍ତି ଶୁଣିଲି ଯେତେବେଳେ, ମୋ'ର ଚକ୍ଷୁ ଆନନ୍ଦାଶ୍ରୁରେ ପ୍ଳାବିତ ହୋଇଗଲା—ହୃଦୟ କି ଆବେଗଭରେ ନୃତ୍ୟ କରି ଉଠିଲା !—ସେ ଯେ କି ଆନନ୍ଦ, କି ଉଚ୍ଛ୍ୱାସ, ତାହା ଏହ କୀର୍ତ୍ତି ସ୍ୱଚକ୍ଷୁରେ ଦର୍ଶନ କରି ଶତସହସ୍ର ଗୁଣେ ଯେପରି ବଢ଼ି ଉଠୁଛି—ଏ' ସାଗରର ବୋଧହୁଏ ଧରି ରଖିବାର କ୍ଷମତା ନାହିଁ—ନା, ନା—ସାଗରର ବୋଧହୁଏ ନାହିଁ । ( କ୍ରମେ କ୍ରମେ ଉତ୍ତେଜିତା ହୋଇ ଉଠୁଥିବା ) ପ୍ରଭୁ ! ପ୍ରଭୁ ! ଉଠ—ଉଠ ! ସତ୍ୟକଥା ପ୍ରକାଶ କର ! ମିଥ୍ୟାବରଣରେ ଘୋଡ଼ିହୋଇ ନିଜେ ଦଗ୍ଧ ହୁଅ ନାହିଁ—ନିଜର ସମ୍ମାନ ଓ ଗୌରବ ଦଗ୍ଧ କରିଦିଅ ନାହିଁ—

ଶିଳ୍ପିଗଣ ! ସତ୍ୟାଗ୍ରହୀ ତୁମ୍ଭେ—
କାହିଁ ଭୟ, ସତ୍ୟ ପ୍ରକାଶନେ ?
ସତ୍ୟ—ଜ୍ଞାନ ବଳେ ଭବ
ନିର୍ମିତା ପ୍ରକୃତ,
ସତ୍ୟ-ଶ୍ରମେ ସିନା ଏ' ସୌଧ ନିର୍ମିତ !—
ଯେ ସତ୍ୟ-କାରଣେ
ପିତୃ-ହସ୍ତେ ପୁତ୍ର-ଶିର
କରିଇଛି ନାଶ—
ନା, ନା—ବୀର-ଶିଶୁ ମୋ'ର
ଯେ ସତ୍ୟ-ଗୌରବେ,
ସ୍ୱ-ହସ୍ତେ ସ୍ୱ-ଦେହ କରିଛି ଅର୍ପଣ
ଏହ ନୀଳସିନ୍ଧୁ-ବକ୍ଷେ—
ସେହ ସତ୍ୟ ଭିକ୍ଷୁଅଛି ଦଳିତ ଚରଣେ,
ହୋଇ ଜ୍ଞାନୀ—ହୋଇ ମାନୀ—
ହୋଇ ସତ୍ୟ-ସନ୍ଧ—ବୀର—ବିବେକୀ-ମନୁଷ୍ୟ ?

ନରସିଂହ ଦେବ—( ଉତ୍ତେଜିତ ହୋଇ ) କିଏ ଏହ ନାରୀ ?

ଧର୍ମ୍ମା-ମା—ମହାରାଜ ! ସତ୍ୟ-କଥା ଶୁଣ ଏବେ—
ଏ' ଯେଉଁ କୀର୍ତ୍ତି-ସ୍ତମ୍ଭ
ରଚିତ ସମ୍ପୂର୍ଣ୍ଣେ,
ପୂର୍ଣ୍ଣ ମାତ୍ର କୌଶଳେ, ଶିଶୁର—
ଦ୍ୱାଦଶ ବର୍ଷୀୟ—ପୁଣି ଅତି କୋମଳାଙ୍ଗ,
ମାତା ମୁହିଁ ତା'ର—

ପିତା ଏହି ଭାଗ୍ୟବାନ୍ । ( ବିଶୁକୁ ଝୁଣ୍ଠାଇବା )
ଉଠ, ଉଠ, ବୀର !

ବିଶୁ—( କି ଏକ ଅର୍ଥଶୂନ୍ୟ ଦୃଷ୍ଟିରେ ନିରୀକ୍ଷଣ କରି )
ନା, ନା—ମୁଁ, ମୁଁ—
(ଅର୍ଦ୍ଧୋତ୍‌ଥିତ ହୋଇ ପୁଣି ପଡ଼ି ଅଚେତନ ହେବା)

ଧର୍ମା-ମା—( ବିକଳ ଭାବେ ଚାହିଁ ) ପ୍ରଭୁ ! ପ୍ରଭୁ !
( ଧାରଣ କରିବା )

ନରସିଂହ ଦେବ—କି ପ୍ରହେଳିକା ଏ ?

[ ଧର-ମା'ର ସବର ଶବଦେହ ବହନ କରି ପାଗଳିନୀ ହୋଇ ପ୍ରବେଶ—ଗୋଟାଏ ଦୁର୍ଗନ୍ଧରେ ସମସ୍ତେ ହଠାତ୍ ଅସ୍ଥିର ହୋଇ ଉଠିଲେ—ରକ୍ଷୀଗଣ ତଡ଼ିଦେବାକୁ ଯାଉଥିଲେ—ମହାରାଜ ଇଙ୍ଗିତ ଦ୍ୱାରା ନିରସ୍ତ କରାଇଲେ ]

ଧର-ମା—ଏ' ପ୍ରହେଳିକା ତୁମେ କାହୁଁ ବୁଝିବ, ମହାରାଜ ?—କିନ୍ତୁ ମୁଁ ବୁଝିଛି—ମୋର' ରକ୍ତ ପରା ! ମୋ'ର ମାଉଁସ ପରା ! ତା' ନାଡ଼ୀକଥା ଜାଣି ପାରିବ ନାହିଁ ?—ସେ ଯେ ଧର୍ମାକୁ ଭଲପାଏ ଏ' କଥା କ'ଣ ମୋତେ ଅଛପା ? ଧର୍ମା ଯେ ମୋ ପୁଅ, ଏ' କଥା କ'ଣ ମୋ ଅନ୍ତର କହେ ନାହିଁ ?—ଆଗୋ ପିଲାର ମା ହୋଇ ପିଲାକୁ କି କେହି ହେଳା କରିପାରେ— ? ଖାଲି ସେହି ଲୋକନିନ୍ଦା ଭୟରେ ସିନା !—ଦେଖ, ଦେଖ, ସେଦିନ ସେହି ଡେଉଁରିଆଟା ସବୁ ବେକରୁ ଖସାଇ ପିଲାଟା ବେକରେ ବାନ୍ଧିଦେଲା ବୋଲି, ଗାଁ ଯାକ ଯେଉଁ ଟାହିଲି, ଟାପରା—ବୁଆର ବଳ ପଣ ଉଆଁଇ ଦେଲେ ନାହିଁ ! ନା, ଆଉ ମୁଁ ମାନିବି ନାହିଁ—ଆଉ ମୁଁ ଶୁଣିବି ନାହିଁ !—ସର ! ସର ! ଦେଖ୍ ତୋ' କଥା ରଖିଛି କି ନାହିଁ—ଧର୍ମା ସଙ୍ଗେ ନିଶ୍ଚେ—ଏହି ଯେ ଧର୍ମା-ବୋଉ—ଏଁ ଧର୍ମା-ବାପ କି ? ବାଃ—ବାଃ ! ବେଶ୍ ହୋଇଛି—ଧର୍ମା କାହିଁ ? ଆଲୋ ଧର୍ମା-ବୋଉ ! ତୁଅ କାହିଁ ମ ?—କେଉଁଠି ଅଛି ?—ତୁ ପୁତୁଖାଇ କ'ଣ କହିବୁ କି ? ଯମ ମୁହଁକୁ ପେଲିଦେବୁ ପଛକେ ତେବେ ବି—ର'—ର'—ମୁଁ ପୁଅଟାକୁ ଆଗେ ଖୋଜି ଆଣେ—( ଉନ୍ମାଦିନୀ ଭାବେ ପ୍ରସ୍ଥାନ )

ଧର୍ମା-ମା—ସର ! ସର ! ତୁ' ବି ଅଉ ନାହୁଁ ?—ସେହି ଜ୍ୱର କ'ଣ ଅବଶେଷେ ତୋର କାଳ-ଜ୍ୱର ହେଲା ? ( ଶୂନ୍ୟଦୃଷ୍ଟିରେ ଚାହିଁଥିବା—ଅଶ୍ରୁଧାରା ସ୍ୱତଃ ପ୍ରବାହିତ ହେବା )

ନରସିଂହ ଦେବ—ଏ' ପୁଣି କେଉଁ ନାରୀ—ଶିଶୁ-ଶବ ବକ୍ଷେ ? ଶିବେଇ ! କଥା କ'ଣ ?

ଶିବେଇ—(ନତଜାନୁ ହୋଇ) ମହାରାଜ ! ମହାରାଜ ! ପ୍ରକୃତରେ ଆମ୍ଭେମାନେ ଦୋଷୀ !—ଏହି ଦେଉଳର ଚୂଡ଼ା ଆମ୍ଭେମାନେ କେହି ସ୍ଥାପନ କରି ପାରିଲୁ ନାହିଁ; ମାତ୍ର ବିଶୁର ଶିଶୁ-ପୁତ୍ର ଧରମା ଅନାୟାସରେ ତାହା ନିମିଷକରେ କରିଦେଲା ! ସେହି ହିଂସାରେ—

ନରସିଂହ ଦେବ—ମାରିଅଛ ତା'କୁ ? ଲଜ୍ଜା ନାହିଁ କହିବାକୁ ?—କାହିଁ ସେହି ଶିଶୁ ? ଆଣ ଏହି-ଠାରେ—ମନ୍ତ୍ରୀ, ଆଣ'ଅ ସେ ଶିଶୁ—

ଶିବେଇ—( ଅବନତ ମସ୍ତକରେ ଠିଆହେବା ଓ ମନ୍ତ୍ରୀ, ଶିଳ୍ପିଗଣସଙ୍ଗେ କଥାବାର୍ତ୍ତା କରୁଥିବା )

ନରସିଂହ ଦେବ—ଓଃ—କି ଅଲୌକିକ କଥା !—ଲୌକିକ-ଶକ୍ତିର ବହିର୍ଭୂତ କି ତେବେ ଏହି କାର୍ଯ୍ୟ ଥିଲା ?—ନା—ନା—ଶିଶୁ ହେଲେ ମଧ୍ୟ ସେ'ତ ମନୁଷ୍ୟ !—ଶିଶୁ ହେଉ, ବୃଦ୍ଧ ହେଉ, ମନୁଷ୍ୟ ଦ୍ୱାରାହିଁ ଏହି କୀର୍ତ୍ତି ମୋ'ର ସ୍ଥାପିତ ହୋଇଛି । କାହିଁ—କାହିଁ ସେହି ଶିଶୁ ? ଆଣ ତ୍ୱରା—

[ ଜନୈକ ନୋଳିଆର ପ୍ରବେଶ ]

ନୋଳିଆ—(ସଭୟେ) ମହିମା ! ଜାଲରେ ଗୋଟାଏ ପିଲାମୁର୍ଦ୍ଦାର—

ଧର୍ମା-ମା—'ମୁର୍ଦ୍ଦାର' ! ମୋ'ର ଧର୍ମାର କି ?—
[ ଆକୁଳ ନେତ୍ରରେ ଚାହିଁବା ]

ନରସିଂହ ଦେବ—ମୁର୍ଦ୍ଦାର ! କାହିଁ ?—କାହିଁ ?—
ଆରେରେ ରାକ୍ଷସ ଦଳ !
ଏହି କି ସେ ବୀର-ଶିଶୁ—

ପୋଡ଼ି ହୁଂସାନଳେ ତବ,
ପୋତିଥିଲ ନେଇ ସମୁଦ୍ର ଗର୍ଭରେ ?—
ନା, ନା—ଅସମ୍ଭବ—ଅସମ୍ଭବ—
ମରି ନାହିଁ ସେହୁ—ମରି ପାରେ ନାହିଁ,
ଅଭୂତ ବାଳକ—ଅମ୍ବର, ଅମ୍ବର
ସେ ଯେ ସେନାପତି ମୋର
ପ୍ରକୃତିର ଦ୍ୱନ୍ଦ୍ୱେ !
କାହିଁ ସେହୁ ବୀର-ଶିଶୁ ?—
ଆଣ ତ୍ୱରା—
ଅଣାଅ—ଅଣାଅ, ମନ୍ତ୍ରୀ !
ତୋଷିବି ସ୍ୱ-କରେ ମୁହିଁ
ଦେଇ ପୁରସ୍କାର;
ତା' ପର—ତା'ପର—
ଏହୁ ଲୋଭୀ କୁକ୍‌କୁରର ଦଳେ—
ତା'ର ହସ୍ତେ ଦଅଇବି
ଯୋଗ୍ୟ ପୁରସ୍କାର—

ମନ୍ତ୍ରୀ—( ଶିବେଇ ଓ କେତେକ ଶିଳ୍ପିପ୍ରତି ) ଗୁଲ୍, ଗୁଲ୍—ମୁଁ ସେ କଥା ମାନିବି ନାହିଁ—ନିଜ ଇଚ୍ଛାରେ କି କେହୁ କେବେ ମରିପାରେ ? ଯଦି ମାରି ନ ଥାଅ, ନିଶ୍ଚୟ କେଉଁଠି ଲୁଚାଇ ରଖିଛ—
[ ଏହୁ ସମୟରେ କୋଳିଆମାନେ ସେହୁ ଶବଦେହଟିକୁ ଆଣି ରାଜାଙ୍କ ସାକ୍ଷାତରେ, ସମୁଦ୍ରତୀରରେ ରଖିଦେଲେ—ଶିଳ୍ପିଗଣ ସଭୟେ ଚିତ୍କାର କରି ଉଠିଲେ—'ଏହୁ—ଏହୁ' ]

ଧର୍ମ୍ମା-ମା—ବାବା ! ( ଶିଶୁର ମୃତଦେହ ଉପରେ ପତିତ ହେବା )

ନରସିଂହଦେବ—( ସିଂହାସନରୁ ଓହ୍ଲାଇ ଶିଶୁଟିକୁ ଦେଖୁ ଦେଖୁ ) ଓଃ !—( ଶିଳ୍ପି ମାନଙ୍କପରେ ଦୃଷ୍ଟି ପଡ଼ିବାରୁ )
କିଏ ଅଛ ?—ବାନ୍ଧ ଏହୁ ଶିଳ୍ପିଗଣେ !
ଘେନିଯାଅ ବଧଭୂମେ—
କାଟି ଜଣେ ଜଣେ
କର ସ୍ତୂପ ଗଣ୍ଡି ଏକ ଠାବେ,
ମୁଣ୍ଡ ଅନ୍ୟ ଠାବେ—
ରକ୍ତ-ସ୍ରୋତେ ଭାସୁ ଏ ମେଦିନୀ—
ରକ୍ତ-ରାଗେ ଲୁଚିଯାଉ ସମୁଦ୍ରର ଆଭା
ମାତି ଉଠୁ ଗଗନର ଶୋଭା
ସିନ୍ଦୂରର ରାଗେ—
ରକ୍ତ—ରକ୍ତ—
ରକ୍ତ ଚତୁର୍ଦ୍ଦିଗେ—
ରକ୍ତ-ତେଜ ଖେଳି ବୁଲୁ
ବାହାରେ ଅନ୍ତରେ !

ମନ୍ତ୍ରୀ ଓ ସଭାସଦ୍‌ଗଣ—(ସଭୟେ) ମହାରାଜ !

ନରସିଂହଦେବ—( ନିରୀକ୍ଷଣ କରୁ କରୁ ) ଓଃ—
ଏହୁ କି ସେ ପ୍ରତିଭାର ପ୍ରତିମୂର୍ତ୍ତି,
ଲୁଣ୍ଠିତ ଧରାରେ—
ମୋ'ର ଗରବର ଧନ—
ରାଜ୍ୟର ସମ୍ପଦ—
ଈଶ୍ୱର ବିଭବ !
ଆରେ ରେ, ରାକ୍ଷସଗଣ !
ଦେଖ ଥରେ ନର-ଚକ୍ଷୁ ଖୋଲି,
କରିଅଛ କିସ ?—
ମଥା-ମଣି ମଥିଅଛ କିନା
ପଶୁର ସମାନ ?—
ସାମାନ୍ୟ ଉଦର ପାଇଁ,
ସ୍ଥୂଳ ସମ୍ପଦର ଲୋଭେ
ଦେଇଅଛ ବିସର୍ଜନ କିନା
ମନୁଷ୍ୟତ୍ୱ ନିଜ ?—
ଆରେରେ, ପିଶାଚଗଣ !
ମାଗିଥାନ୍ତ ଯେବେ
ସମଗ୍ର ସାମ୍ରାଜ୍ୟ ମୋ'ର,
ସ୍ୱାଧୀନତା ସୁଖ ମଧ୍ୟ
ତହିଁ ସଙ୍ଗେ ଯେବେ,
ଦେଇଥାନ୍ତି ଆନନ୍ଦରେ,
ଆନନ୍ଦରେ କରି ସେବା
କାଟୁଥାନ୍ତି ଦିନ—
ଏହି ଶିଶୁର ଜୀବନ ମାତ୍ର
ପାଇଥିଲେ ଭିକ୍ଷା !

ଧର୍ମ୍ମା-ମା—ମହାରାଜ !
କିପାଁ ଦୁଃଖ—କିପାଇଁ ଶୋଚନା ତବ ?
କିଏ କହେ ମରିଅଛି ପୁତ୍ର ମୋ'ର ?—
ବୀର ପୁତ୍ର ମୋର—
ସେନାପତି ତବ ପ୍ରକୃତିର ଦ୍ୱନ୍ଦ୍ୱେ—
ପ୍ରକୃତ ସଂଗ୍ରାମେ ସିନା
ଦିଏ ପଦାଘାତ ପ୍ରକୃତିର ଶିରେ,
ପୁଣି ବକ୍ଷେ ତା'ର
ପୋତିଣ ସଦମ୍ଭେ ବିଜୟ-ପତାକା,
ନିଦ୍ରା ଯାଇଅଛି କ୍ଷଣେ—
ଅନନ୍ତ ଶଯ୍ୟାରେ,
ଯେସନ୍ତେ ନାରାୟଣ,
କ୍ଳାନ୍ତ—ଶ୍ରାନ୍ତ—ଅବସନ୍ନ ଅତି
ଅବତାର ଶେଷେ ।
[ ଦିବ୍ୟ ଦୀପ୍ତିରେ ସୂର୍ଯ୍ୟ ଠିଆହେବା ]
ନରସିଂହଦେବ—ମା ! ମା ! କିଏ ତୁମ୍ଭେ ?—
ତୁମ୍ଭେ କି ବିଶ୍ୱ-ଜନନୀ,
ମାନବୀ ଆକାରେ ?
ଅଣ, ଅଣ ଶୀଘ୍ର, ମନ୍ତ୍ରୀ ।
ପାମରର ଦଳେ—
ଦିଅ ବଳୀ ଏହିଠାରେ, ମାତାର ସମ୍ମୁଖେ !
ଧର୍ମ୍ମା-ମା—ତୁମ୍ଭର ଲୋଲୁପା ନୁହେଁ, ମାତା ତବ
ମହାରାଜ !
ମାତୃ-ସ୍ଥାନେ ଅଜି
ସମ୍ମାନିତା ଯଦି ଦୀନା ପ୍ରଜା ତବ—
ଏତିକି ମିନତି
ପୁତ୍ରଠାରେ ତା'ର, ଦିଅ କ୍ଷମା
ଶିଳ୍ପିଗଣ ପ୍ରାଣ—
କର ରକ୍ଷା ତ୍ୟାଗର ମହିମା,
ଧର୍ମ୍ମର ମୋହର !
ବୀର ସେନାପତି ତବ
ଦେଖାଇ ଜଗତେ,
ଯୁଦ୍ଧ ଜୟ ଲକ୍ଷ୍ୟ ତା'ର
ଜୀବନ-ସଂଗ୍ରାମେ !—
ବିଜୟ-ମୁକୁଟ ଶୋଭୁ
ଜାତିର ମସ୍ତକେ—
ଦେଶର ମସ୍ତକେ—
ବିଶ୍ୱର ମସ୍ତକେ ।
ଶିଳ୍ପିଗଣ ଓ ଶିବେଇ ସାଁନ୍ତରା—ମା ! ମା !—
( ସାଷ୍ଟାଙ୍ଗେ ପ୍ରଣାମ କରିବା )
ନରସିଂହ ଦେବ—ବିଶ୍ୱର-ଜନନୀ—ମା ! ମା !
କର କ୍ଷମା—ଦୋଷୀ ମୁହିଁ—
( ଅବନତ ହେବା )
ଧର୍ମ୍ମା-ମା—ମହାରାଜ ! ମହାରାଜ !
ନରସିଂହ ଦେବ—ମୋର ନିର୍ଦ୍ଦେଶୁଁ ସିନା
ଶିଶୁ ଆଜି ତ୍ୟଜି ଅଛି—
ଧର୍ମ୍ମା-ମା—ନା, ନା—ନ କହ ଏସନ ।
ମୋ'ର ପୁତ୍ର ଅଟେ
ଅନନ୍ତ ଅମର—
ଅନନ୍ତର ବକ୍ଷେ
ଲଭୁଛି ବିଶ୍ରାମ ।
ନରସିଂହ ଦେବ—ମା ! ମା !
ମୂଢ଼ମତି ପୁତ୍ର ତୋ'ର ମୁହିଁ—
ଘେନ, ଘେନ ପ୍ରଣାମ ସାଷ୍ଟାଙ୍ଗ !
( ପ୍ରଣାମ କରିବା )
[ ସମସ୍ତେ ସାଷ୍ଟାଙ୍ଗ ପ୍ରଣାମ କରିବା ]
ଧର୍ମ୍ମା-ମା—ରକ୍ଷାକର—ରକ୍ଷାକର,
ମୁହିଁ ଦୀନା-ପ୍ରଜା ତବ !—
[ ବିଶୁ ନିକଟ ଦୌଡ଼ିଯାଇ ]
ପ୍ରଭୁ ! ପ୍ରଭୁ !
ନିଶ୍ଚିନ୍ତେ କିପରି
ଯାଇଅଛ ନିଦ୍ରା ?
ଦେଖ, ଦେଖ—ଜଗତ ଜାଗ୍ରତ ଆଜି
ତବ ପୁତ୍ର ଗୁଣେ—
( ବିଶୁକୁ ଉଠାଇ ଉଠାଇ ) ଉଠ, ଉଠ ପ୍ରଭୁ !
କର ଆନନ୍ଦର ଧ୍ୱନି—
କର ଜୟଗାନ—
ଅସିଅଛି ବୀର-ପୁତ୍ର

ପିତାପାଶେ ଫେର,
ଜୟମାଲ୍ୟ ପିନ୍ଧ ।
ନିଅ କୋଳେ ତୋଳି,
ଦିଅ ସ୍ନେହଦାନ—
ଯୋଗ୍ୟପୁରସ୍କାର ତା'ର,
ପିତୃ-ଦତ୍ତ-ପୁଜେ ।

( ଅପେ ଅପେ ଅଶ୍ରୁ ବୋହି ଯାଉଥିବା )

ବସୁ—( ଉଠି ) ପୁତ୍ର ! ପୁତ୍ର ! କାହିଁ ? କାହିଁ ?

ଧର୍ମା-ମା—ଏହି ଯେ ଧର୍ମୁ ତୁମର—

[ ଧର୍ମାର ଶବ ଦେହକୁ ଦେଖାଇ ଦେବା ]

ବସୁ—ଧର୍ମା—ଧ—( ସେହି ମୃତଦେହ ଉପରେ ପତିତ ହୋଇ ତାକୁ ଦୃଢ଼ାଲିଙ୍ଗନ କରିବା ) ପିତା-ପୁତ୍ରର ମିଳନ ! ମୁଁ ହସିବି !—ମୁଁ ଗାଇବି ! —ମୁଁ ନାଚିବି । —ବୀରପୁତ୍ର ମୋ'ର—ସତ୍ୟ-ସନ୍ଧ ପୁତ୍ର ମୋର !—ଧର୍ମ-ନିଷ୍ଠ ଧର୍ମୁ ମୋର !

ନରସିଂହଦେବ—( କାନ୍ଦ ପକାଇଲେ ଓ ମନ୍ତ୍ରୀକୁ ଡାକି ଏକାନ୍ତେ କହିଲେ ) ସୁସଜ୍ଜିତ କରି ମୋ'ର ହସ୍ତୀଦନ୍ତ ନିର୍ମିତ ପାଲିଙ୍କିଟି ଶୀଘ୍ର ଏଠାକୁ ଅଣାଅ ।

[ ସର-ମାର ପ୍ରବେଶ ]

ସର-ମା—ବାଃ—ବେଶ୍, ଭଉଣି ! ପୁଅକୁ ଏଠି ଲୁଚାଇ ରଖି ଝିଅଟାକୁ ମୋ'ର ଏତେ ହଇରାଣ କରୁଚ ନା ?

ଧର୍ମା-ମା—( କୁଣ୍ଢାଇ ପକାଇ ) ଆଉ ହଇରାଣ କରିବି ନାହିଁ, ଭଉଣି ! ଆଉ ଲୁଚାଇ ରଖିବି ନାହିଁ—ସେ' କି ଲୁଚି ରହି ପାରେ ? ସରକୁ ଛାଡ଼ି କି' ସେ ରହିପାରେ ? —ଦେଖିଲ—ଦେଖିଲ, କେମିତି ସରକୁ ନେବାକୁ ଧାଇଁ ଆସିଚ । —ଆହା, ସର ବି ତାକୁ ଦଣ୍ଡେ ଛାଡ଼ି ରହି ପାରିଲା ନାହିଁ ।

ସର-ମା—କେମିତି ରହି ପାରିବ ? ସର ସରି ତା'ର—ଜୋର କରି କେତେ ଟାଣି ରଖିବ ? ( ସରର ଶବ-ଦେହକୁ ନେଇ ଧର୍ମାର ଶବ-ଦେହ ନିକଟରେ ରଖିଦେବା )

ଧର୍ମା-ମା—ଭଉଣି ! ଭଉଣି ! ଜ୍ୱରବେଳେ ସବୁ କହି ନ ଥିଲା—'ଭାଇ ପାଖକୁ ଯିବ—ଆଉ ରହି ପାରିବ ନାହିଁ—ମୋତେ ସେଠାକୁ ଘେନି ଚାଲ' ? ଏ ଗୁଡ଼ାକ କ'ଣ ସତ ନୁହେଁ ?—ଆମେ ସିନା 'ବାଉଳା ବକୁଚି' ବୋଲି ଉଡ଼ାଇ ଦେଉଥିଲୁ ।

ସର-ମା—ତୁ ପୁତ୍ରଖାଇ ସିନା ଉଡ଼ାଇ ଦେଉଥିଲୁ—ମୁଁ ପିଲାର ମା ହୋଇ କି ତା' ପାରିଲି ନା ପାରିବ ?—ଦେଖିଲୁ ଝିଅର କଥା ରହିଲା କି ନାହିଁ—କାଖ କରି ତାକୁ ଏକା ନିଃଶ୍ୱାସକରେ ଏଠାକୁ ଧାଇଁ ଆସିଚ କି ନାହିଁ ?—ଛାଡ଼, ଛାଡ଼—ଆସିଲ ( ବସୁ ପ୍ରତି ) ମ' କେମନ୍ତକା ମଣିଷ ତୁମେ—ଉଠ, ଉଠ—ଉଠିଲ, ପୁଅର ବାହାଘର—

ବସୁ—ପୁଅର ବାହାଘର ! ( ଚମକି ଠିଆ ହେବା )

ସର-ମା—ହଳଦ ସାରି ଦେବା, ଆସିଲ, ଆସିଲ !——( ହୁଳହୁଳି ଦେଇ ଦୁଇଜଣଙ୍କୁ ମିଳାଇ ଦେଇ ଚୁମ୍ବ ଖାଇବା )

ଧର୍ମା-ମା—ବାଃ—ବାଃ—'ବାହାଘର'— 'ବାହାଘର' ! —ଏତେ ଧନେ ମୋ'ର—( ଶବ ନିକଟରେ ବସିପଡ଼ି ଚୁମ୍ବ ଖାଇବା )

ବସୁ—(ଉନ୍ମାଦ ଭାବେ ) ପୁଅର ମୋର ବାହାଘର—ମୁଁ ନିଶ୍ଚିନ୍ତ ହୋଇ ବସିଚି କିପରି ?—ବାଜା କାହିଁ ?—ରୋଷୁଣି କାହିଁ ? ରହ, ରହ ମୁଁ ଜାତି ଭାଇଙ୍କୁ ନିମନ୍ତ୍ରଣ କରି ଘେନି ଆସେ ତ—( ଯିବାକୁ ଉଦ୍ୟତ ହୋଇ ଏବଂ ଦେଖି ) ଏହି ଯେ ଭାଇମାନେ ମୋର ! ଆସ, ଆସ—ମୋ'ର ଧର୍ମାର ଆଜି ବାହାଘର—ତୁମର ପୁଅର ବାହାଘର ମ !—ଏଁ ! —ଏପରି ମୁହଁ ଶୁଖାଇ ଦେଇଛ କାହିଁକି ? ହସ—ନାଚ—ସେ ଯେ ତୁମର ମାନ ରଖିଚ—ତୁମର ପ୍ରାଣ ରଖିଚ !—କହିଲ, ଏହି ଦେଉଳର ମୂର୍ତ୍ତି କ'ଣ ଆମେ ମାରି ପାରିଲୁ ? ସେ କେମିତି ଦଣ୍ଡକରେ ମାରି ଦେଲା—ଆମର ମାନ ରଖିଲା—ଜାତିର ମାନ ରଖିଲା

ଦେଶର ମାନ ରଖିଲ । ଆମେ କ'ଣ ତା'ର ମାନ ରଖିବା ନାହିଁ ?

[ ଶିଳ୍ପିମାନେ ଲଜ୍ଜାବନତ ହେବା ]

ନରସିଂହ ଦେବ—ବିଶୁ । ବିଶୁ । ତୋତେ ଗୋଟାଏ କାମ କରିବାକୁ ହେବ ।

ବିଶୁ—ରହ ମ, ମୋର ପୁଅର ବାହାଘର !

ନରସିଂହଦେବ—ତୋ'ର ପୁଅର ଗୋଟିଏ ପ୍ରସ୍ତର-ମୂର୍ତ୍ତି ମୋତେ ଆଜି ଖୋଳି ଦେବାକୁ ହେବ—ଠିକ୍ ତା'ର ଅନୁରୂପ—

ବିଶୁ—ମୋ'ର ପୁଅର ପ୍ରସ୍ତର ମୂର୍ତ୍ତି ! ଧର୍ମାର ?

ନରସିଂହ ଦେବ—ହଁ, ସେହି ଝିଅଟିର ମଧ୍ୟ—

ବିଶୁ—ହାଃ—ହାଃ—ସେହି ଝିଅଟିର ମଧ୍ୟ ? ମୁଁ ଏହିକ୍ଷଣି—ଏହି ଦଣ୍ଡକରେ ମୋର ପୁଅ ଆଉ ଝିଅ-ବୋହୂଟିର ମୂର୍ତ୍ତି ଖୋଳି ଦେଉଚି, ସାଆନ୍ତେ—( ପଥରଟିଏ କାହିଁ ଖୋଜି ଆଣି ଅଙ୍ଗୁଳିରେ ଗଢ଼ିବାର ଅଭିନୟ କରିବା )

୧ମ ସଭାସଦ୍—ମହାରାଜ ! ବିଶୁ ବର୍ତ୍ତମାନ ପାଗଳ—ଆଦେଶ ହେଲେ, ଅନ୍ୟ କେଉଁ ଶିଳ୍ପୀ ଦ୍ୱାରା—

ନରସିଂହ ଦେବ—ଅସମ୍ଭବ ! ଅସମ୍ଭବ !—ଏ କାର୍ଯ୍ୟ ବିଶୁ ଛଡ଼ା ଅନ୍ୟ କାହାର ପକ୍ଷେ ଅସମ୍ଭବ । ଆଚ୍ଛା, ବିଶୁ ଭଲ ହୋଇ ଗଲେ—

୧ମ ସଭାସଦଗଣ—କିନ୍ତୁ, ଶବ କୁ ଚେଚେଦନ—

ନରସିଂହ ଦେବ—ଅବଶ୍ୟ ରଖିବାକୁ ହେବ—ଯେ କୌଣସି ଉପାୟରେ ରଖିବାକୁ ହେବ—ମୋ'ର ଉଦ୍ଦେଶ୍ୟ, ସଭାସଦ୍‌ଗଣ—ଏହି ବାଳକର ପ୍ରତି-ମୂର୍ତ୍ତି ମୁଁ ଦେଉଳର ସମ୍ମୁଖରେ ଅନ୍ୟ ଏକ ଦେଉଳ ନିର୍ମାଣ କରାଇ ତନ୍ମଧ୍ୟରେ ପ୍ରତିଷ୍ଠା କରିବି—ତାର ପୂଜା ମଧ୍ୟ ଠିକ୍ ଦେବତାଙ୍କ ପୂଜାପରି, ନା, ନା ତାହାଠୁ ଅଧିକତର ଭାବେ ନିତ୍ୟ ସମ୍ପାଦିତ ହେବ !—ମାନବର ଏହି ଅପରାଜିତ-ଶକ୍ତି ନିକଟରେ ମଧ୍ୟ ପ୍ରବଳ ଦୈବ-ଶକ୍ତି ଯେ ପରାଭୂତ, ତାହାର ଏ ଗୋଟାଏ ସ୍ମୃତି-ସ୍ତମ୍ଭ !—କି ମନୁଷ୍ୟ, କି ଦେବତା ସମସ୍ତେ ଅବନତ ମସ୍ତକରେ ଏହି ଅଦ୍ଭୁତ ମାନୁଷୀ-ଶକ୍ତିର ମହିମା ଗାନ କରୁ କରୁ ସ୍ତମ୍ଭିତ ଓ ଭକ୍ତିରେ ଅଭିଭୂତ ହୋଇଯିବେ ।

[ ଏହି ସମୟରେ ପ୍ରବଳୋଚ୍ଛ୍ୱାସରେ ସମୁଦ୍ର ଲହରୀ ମାଡ଼ିଆସି, ଶବ ଦୁଇଟିକୁ ଭସାଇ ନେଇଗଲା—ଧର୍ମା-ମା ଓ ସର-ମା ଏବଂ ବିଶୁ 'ଧର୍ମୁ', 'ଧର୍ମୁ'—'ସର ସର' ଡାକୁ ଡାକୁ କିଛି ଦୂର ଅନୁଧାବନ କଲେ—ଅନ୍ୟାନ୍ୟ ଶିଳ୍ପିଗଣ ଧାଇଁ ଯାଇ ମୂର୍ଚ୍ଛିତପ୍ରାୟ ସେମାନଙ୍କୁ ଘେନି ଆସିଲେ—ମହାରାଜ ସବିସ୍ମୟେ ସମସ୍ତ ଦେଖୁଥିଲେ—ପରେ ହଠାତ୍ କହି ଉଠିଲେ ]

ନରସିଂହଦେବ—ଶିଶୁ ! ଶିଶୁ ! ଯାଅ, ଯାଅ—ଉଦ୍ଧାର କର—ଉଦ୍ଧାର କର—

[ ନିଜେ ମଧ୍ୟ ଦୌଡ଼ି ଯିବା—ସେହି ସମୟରେ ମନ୍ତ୍ରୀର ପ୍ରବେଶ ]

ମନ୍ତ୍ରୀ—ମହାରାଜ ! ମହାରାଜ ! ଏ କ'ଣ କରୁଛନ୍ତି ?

( ଧାରଣ କରିବା )

ନରସିଂହଦେବ—ଶିଶୁ ! ଶିଶୁ ! ମୋତେ ଛାଡ଼ିଦିଅ—ମୋତେ—

[ ମନ୍ଦିର ମଧ୍ୟରୁ ସହସା ପୁରୋହିତର ବେଗେ ପ୍ରବେଶ ]

ପୁରୋହିତ—ମହାରାଜ ! ସର୍ବନାଶ—ଗୋଟାଏ ଜଳୋଚ୍ଛ୍ୱାସରେ ଦେବ-ବିଗ୍ରହ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା ।

ନରସିଂହଦେବ—ଏଁ ! —ଏ—କ'ଣ କହିଲ, ଗୁରୁଦେବ ?

[ ମହାରାଣୀଙ୍କର ବ୍ୟସ୍ତ-ସମସ୍ତ ଭାବେ ପ୍ରବେଶ ]

ମହାରାଣୀ—ପ୍ରଭୋ ! କେଉଁ ଦୋଷରୁ ଆଜି ଏହି ଅମଙ୍ଗଳର ସୂଚନା ?—

ନରସିଂହଦେବ—ଏଁ ! ଏଁ ! ରାଣି—ରାଣି ! (କଳ୍ପନା ନେତ୍ରେ ଦେଖୁଁ ଦେଖୁଁ )—ଏ କ'ଣ ଦେଖୁଚି ? ଏ କ'ଣ ?—ମନ୍ଦିରଟି ଯେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ୁଚି—ମୋ'ର କୀର୍ତ୍ତି ଯେ କଳାରେ, କଳାରେ ଲୋପ ପାଉଚି । ରାଣି—ରାଣି ! ଏହି

ମୋ'ର ଗର୍ବର ପୁରସ୍କାର—ଏହି ମୋ'ର ଅହଂକାରର ପୁରସ୍କାର !

[ ଅତି ବିକଳଭାବରେ ଅବସ୍ଥାନ କରିବା ]

ରାଣୀ, ପୁରୋହିତାଦି—ସ୍ଥିର ହୁଅନ୍ତୁ, ମହାରାଜ !

[ ସହସା ସମୁଦ୍ର ବକ୍ଷ ପ୍ରାନ୍ତରେ ଗୋଟିଏ କ୍ଷୀଣ ଜ୍ୟୋତି ଦେଖାଗଲା ଓ ମୃଦୁ ମୃଦୁ ସଙ୍ଗୀତ ଭାସି ଆସିବାକୁ ଲାଗିଲା ]

ଧର୍ମ୍ମା-ମା—ଶୁଣ—ଶୁଣ, ଭଉଣି ! ନା, ନା—ସମୁଦୁଣି, ସମୁଦୁଣି,—ଶୁଣ, ଶୁଣ—ଭମର ସବୁ ଗାଉଛି—ଆଜି ଧର୍ମ୍ମୁ ମୋର ମୂର୍ତ୍ତି ଗଢ଼ୁଛି—ରୋଜ ଯେମିତିକା କୁଞ୍ଜବନରେ ତୁମେ ବସି କରୁଥାନ୍ତି ! ( ଚାହିଁ ରହିବା )

ସର-ମା—ଦେଖ, ଦେଖ ମ—ଅବିକଳ ସରର ମୂର୍ତ୍ତିଟି ଗଢ଼ିଛି— ( ଚାହିଁ ରହିବା )

ବିଶୁ—କାହିଁ ? କାହିଁ ?—ମୋତେ ଦେଖାଅ—ମୋତେ ଦେଖାଅ—ମୁଁ ପରା ସେମାନଙ୍କର ମୂର୍ତ୍ତି ଗଢ଼ିବି—ମହାରାଜା ହୁକୁମ କରିଛନ୍ତି ଯେ—( ଶିଳାଖଣ୍ଡଟି ନେଇ ଧର୍ମ୍ମା ମା ଆଉ ସର-ମା ନିକଟକୁ ଯାଇ ) କାହିଁ—କାହିଁ ? ହଉ—ହଉ, ନ ଦେଖାଅ—ନ ଦେଖାଅ !—ମନେ କରୁଚ, ମୁଁ ପରା ଦେଖୁ ନାହିଁ ?—ଏହି—ଏହି—( ଆଖି ବୁଜି )—ଯୁଗଳେ ଯୁଗଳେ ଜନ୍ମ, ଯୁଗଳ ମୂରତି ! —ଠିଆ ହୁଅ, ଠିଆ ହୁଅ—ସେହିପରି ଠିଆ ହୁଅ—ମୁଁ ମୂର୍ତ୍ତି ଗଢ଼ିବି—ମୂର୍ତ୍ତି—( ପଥରରେ ଅଙ୍ଗୁଳି ଚାଳନ ପୂର୍ବକ ମୂର୍ତ୍ତି ଗଢ଼ିବାକୁ ଲାଗିଲା ଯେମିତି )

ନରସିଂହଦେବ—(ନିର୍ବାକ୍, ନିସ୍ପନ୍ଦ ଭାବରେ ସବୁ ଦେଖୁଥିଲେ ) ପାଗଳ—ପାଗଳ ଏହି ମାନବ ଜାତି—ଠିକ୍ ଶିଶୁପରି ପାଗଳ, ମୋ'ରି ପରି ଗର୍ବୀ, ଏହି ମା' ମାନଙ୍କ ପରି ଅନ୍ଧ—ଉଦ୍ୟତ ଅଗ୍ନି ବାଷ୍ପ ବର୍ଷିବାକୁ—ଚୂର୍ଣ୍ଣ କରିବାକୁ—ସମ୍ପୂର୍ଣ୍ଣ ଲୁପ୍ତ କରିବାକୁ ଗୋଟାଏ ବିରାଟ କ୍ଷମତା, ସାମାନ୍ୟ ରକ୍ତମାଂସ ଜ୍ଞାନରେ ! ଏ' ଯେ ପ୍ରକୃତି-ପୁରୁଷର ଲୀଳା—ବାଳକ-ବାଳିକାର ଅଭିନୟ କ୍ଷଣକାଳ ପାଇଁ ମର୍ତ୍ତ୍ୟଧାମେ ସିନା ! ମା, ମା—ମାତୃଗଣ ! —ଏ' ନୁହେଁ ତବ ସାମାନ୍ୟ ଶିଶୁର ଖେଳା, ଗାଉଛି ପ୍ରକୃତି ସୁଲଳିତ ସ୍ୱରେ, ଗଢ଼ୁଛି ପୁରୁଷ ସେହି ତାଳେ ତାଳେ, ବିଶ୍ୱବକ୍ଷେ ନିର୍ମିତ ତାହାର—ପ୍ରକୃତିର ଛବି—ମାନସୀ ପ୍ରତିମା ତା'ର—ଏହି ଶୂନ୍ୟ—ମହାଶୂନ୍ୟ—କୁଞ୍ଜବନ ଭବ୍ୟ—ନିତ୍ୟ-ଲୀଳା-ସ୍ଥଳୀ !—ସଭାସଦ୍‌ଗଣ ! ମୋ'ର ମହାନନ୍ଦ—ମୋ'ର ଦିବ୍ୟ-ଚକ୍ଷୁ ଖୋଲୁଛି—ମୋ'ର ଜ୍ଞାନାକାଶ ଉନ୍ମୁକ୍ତ ହୋଇଛି—ଆଜ ମୁଁ ବୁଝିପାରୁଛି, ଏହି 'କୋଣାର୍କ' ମୋ'ର ପ୍ରକୃତ 'କୋଣାର୍କ' ନୁହେଁ—ଗୋଟାଏ ଧୂଳିମାଟିର 'କୋଣାର୍କ' !—ଏହାର ଶକ୍ତି ମିଥ୍ୟା—ଏହାର ସୌନ୍ଦର୍ଯ୍ୟ ମିଥ୍ୟା—ଏହାର ଦେବ-ଦେବୀ, ବିଗ୍ରହ ମିଥ୍ୟା !—ମୋ'ର ପ୍ରକୃତ କୋଣାର୍କ ଦେଖିବ ? —ଦେଖ ସେହିଠାରେ [ ପୂର୍ବ୍ବୋକ୍ତ ସେହି ଜ୍ୟୋତିଅଡ଼େ ଅଙ୍ଗୁଳି ନିର୍ଦ୍ଦେଶ କରିବା—ମୃଦୁ ମୃଦୁ ଗୋଟାଏ ସଙ୍ଗୀତ ଭାସି ଆସୁଥିବା;—ସମସ୍ତେ ସେହିଅଡ଼େ ଚାହିଁ ଅସ୍ଥିର ହେବା—ବିଶୁ କେବଳ ନିଜ କାର୍ଯ୍ୟରେ ଲାଗିଥିବା ]

—ଯବନିକା ପତନ—

# ଓଡ଼ିଆ-ଝିଅ

— ଐତିହାସିକ ନାଟକ —

## ଉତ୍ସର୍ଗ

ଏହି ନାଟକଟିର ମୂଳଧନ ପାଇଁ ଯାହାଙ୍କଠାରେ ଋଣୀ,

ସେହି ମହାଜନ

**ଚକ୍ରଧର ମହାପାତ୍ରଙ୍କୁ**

ଏହି

**ନାଟକଟି**

ଦେଇ

ଋଣର କଣ୍ଠିତ ପରିଶୋଧ କାମନା କରେ ।

**ଅଶ୍ୱିନୀ**

## ଭୂମିକା

ଏହି ନାଟକର କଥାବସ୍ତୁ, ଶ୍ରୀମାନ୍ ଚକ୍ରଧର ମହାପାତ୍ରଙ୍କ ପ୍ରଣୀତ ‘ବଳାଙ୍ଗୀ’ ଉପନ୍ୟାସରୁ ସଂଗୃହୀତ । ପ୍ଲଟ୍’ ବିଷୟରେ, ନାଟକ ଦୃଷ୍ଟିରେ ମୁଁ ଟିକିଏ ସ୍ୱାତନ୍ତ୍ୟ ଅବଲମ୍ବନ କରିଅଛି । ‘ବଳାଙ୍ଗୀ’ ‘ପୂର୍ଣ୍ଣଚନ୍ଦ୍ର’-ଙ୍କର ଅବାଂଛିତ ସଖୀ······କିନ୍ତୁ, ସେହି ସଖ୍ୟତା ଯେ ପରସ୍ପର ମଧ୍ୟରେ କାମୋଦ୍ଦୀପନା କରି ନାହିଁ କେଉଁ, କାମୋଦ୍ଦୀପକ ଯୌବନରେ ମଧ୍ୟ ପରିଲକ୍ଷିତ ହୁଏ । ( ଅବଶ୍ୟ ଯୌବନ-ରୂପଙ୍କ ଯେ ନାହିଁ, ତା’ ନୁହେଁ ) ଅହୁର ପ୍ରମାଣ ମିଳେ, ‘ପୂର୍ଣ୍ଣଚନ୍ଦ୍ର’ଙ୍କର ‘ଚନ୍ଦ୍ରମାଳୀ’ ପ୍ରତି ଲାଳସାପୂର୍ଣ୍ଣ ହୃଦୟ-ବିକାଶରେ ସେହି ଲାଳସାପେକ୍ଷା ‘ବଳାଙ୍ଗୀ’କୁ ବାନ୍ଧିବା ପ୍ରୟାସରେ, ବ୍ୟର୍ଥ-ମନୋରଥ ହୋଇଚନ୍ତି ‘ପୂର୍ଣ୍ଣଚନ୍ଦ୍ର’, ପୂର୍ଣ୍ଣ ମାତ୍ରାରେ ।

ପକ୍ଷାନ୍ତରେ, ‘ବଳାଙ୍ଗୀ’ ମେଣ୍ଟାଇଛି ସେହି ପିପାସ ସିନା, ଶୁଭଙ୍କର ପୀୟୂଷ-ରୂପ ‘ଚନ୍ଦ୍ରମାଳ’ କୁ ବାନ୍ଧି ନିଜେ ‘ପୂର୍ଣ୍ଣଚନ୍ଦ୍ର’ କରେ । ‘ବଳାଙ୍ଗୀ’, ‘କବି’ର ମାନସୀ କବିତା-ରାଣୀ—କଳ୍ପନାର ରାଜ୍ୟ କବି ଯେଣୁ ।······‘ଚନ୍ଦ୍ରମାଳୀ’, ‘କବି’ର ସଙ୍ଗିନୀ, ଚନ୍ଦ୍ରକଳ୍ପ—ତା’ର ସମସ୍ତ ଚନ୍ଦ୍ର ମଳିନ ହୋଇଯାଇଛି, ଶେଷ-ଚନ୍ଦ୍ର ଦର୍ଶନରେ, ନାଟକର ଯବନିକା-ପାତ ଯହିଁ ।

ଲେଖକ

## ଚରିତ୍ରଲିପି

| | | | |
|---|---|---|---|
| ପୂର୍ଣ୍ଣଚନ୍ଦ୍ର | ନରସିଂହପୁରର ରାଜା | ମାଳତୀ | ଭାନୁମଙ୍ଗରାଜଙ୍କ କନ୍ୟା |
| ଭାନୁମଙ୍ଗରାଜ | ନରସିଂହପୁରର ବୃଦ୍ଧ ସେନାପତି | ବଳାଙ୍ଗୀ | ଭାନୁମଙ୍ଗରାଜଙ୍କ ପୌତ୍ରୀ |
| ବଜ୍ରଧର | ଅନୁଗୁଳର ରାଜା | ସୁବ୍ରତୀ | ନରସିଂହପୁରର ପ୍ରଜା |
| ସୁବ୍ରତ | ନରସିଂହପୁରର ପ୍ରଜା | ଚନ୍ଦ୍ରମାଳୀ | ବଜ୍ରଧରଙ୍କ ଏକମାତ୍ର କନ୍ୟା |
| ରାଣୀମା | ନରସିଂହପୁରର ରାଜମାତା | କବି, ମନ୍ତ୍ରୀ, ସୈନ୍ୟ, ସହଚରୀ ଗଣ ଇତ୍ୟାଦି । | |

# ଓଡ଼ିଆ-ଝିଅ

## ପ୍ରଥମ ଅଙ୍କ

—'ଅସ୍ତ' ବା ନରସିଂହପୁର ଗଡ଼ର ଘୋର ଅରଣ୍ୟ—

[ 'ରକ୍ତଗଡ଼' ପାହାଡ଼ ତଳପାଖର୍ଧି ସ୍ଥାନ— ମଞ୍ଚଟାଏ ବନ୍ଧା ହୋଇଛି—ଦୁଇଜଣ କିଶୋର, କିଶୋରୀ ଶିକାର ବେଶରେ ପ୍ରବେଶ କଲେ, ବନ୍ଧୁକ ହସ୍ତେ ]

କିଶୋର—ଘୋଡ଼ାଟାକୁ ତୁମର, ସେହି ଏକା ଗଛରେ ବାନ୍ଧି ଦେଇ ଆସିଲ ନା ?

କିଶୋରୀ—ମୋର ହୋର୍ ନାହିଁ—ଫିଟାଇ, ଅଲଗା ......( ଫେରୁଥିଲେ )

କିଶୋର—( ଅଲକ୍ଷ୍ୟେ ପରିଚ୍ଛଦର ଏକାଂଶକୁ ଭିଡ଼ି ବାଧା ଦେଉଥିଲେ )

କିଶୋରୀ—( ଆପଣାର ଆବେଗରେ କହି ଯାଉଁ ଯାଉଁ )—ଯଉଁ କାମୁଡ଼ାକାମୁଡ଼ି—ବିଡ଼ପାର୍ ସେଦିନ......( ଅଟକିବାରୁ ) ମ'—(ଛଡ଼ାଇ-ବାକୁ ଲାଗିଲେ )

କିଶୋର—( ରୁହି କେଉଁ ମତ୍ତ ଦୃଷ୍ଟିରେ, ମନ୍ଦହାସ ରେଖାଟିଏ ଟାଣି ଅଧର ପ୍ରାନ୍ତରେ, ମୃଦୁ ମୃଦୁ ଶିରର ସଞ୍ଚାଳନରେ କହିଲେ ) ନା'...... ( କିଛିକ୍ଷଣ ଉତ୍ତାରେ ) ଆମେ ଫେରି ଲାଗି, ଲାଗି ଅସୁ ଛୁଁ......

କିଶୋରୀ—( ଫଗୁ ମୁଠାଏ, ସେହି ମସୃଣ ଗଣ୍ଡ-ଦେଶରେ କିଏ ବୋଳି ଦେଲା କି ଆଉ )

କିଶୋର—( ଛାଡ଼ିଦେବା ଉଦ୍ଦେଶ୍ୟରେ ପରି )...ଏ' ...ମୁଁ କହୁଥିଲି କ'ଣ କି,—ଶୁଭ ଅନୁକୂଳ-ରେ ଆଜି ଫେରିବାଟା କାହାରି ହେଲେ ଠିକ୍ କି ?

କିଶୋରୀ—( ମୁହଁଯାକ ଅଧରର ନେସ୍ତି ହୋଇଗଲା ଯେମନ୍ତ; କିନ୍ତୁ ସେହି ବେହିଆ ମୁହଁରେ କହିଲେ ) ଅନୁକୂଳ ?—ସେ'ତ ଭୁଇଁ ଗ୍ଲୋଇଁଲା ଧନୁ କର ବାହାରି ସାରିଣି, ରାଜା—ଚଉଦ ବର୍ଷ ହେଲା ଆଜକୁ ?

କିଶୋର—ଜୀବନର ଅନୁକୂଳ ନୁହେଁ ଗୋ !— ଆଜିର ଶିକାର-ଅନୁକୂଳ ।

କିଶୋରୀ—( ଏଭଳି ଅଟ୍‌କାରେ ଖଟ୍‌କା ନ ଖାଇ ଯେମନ୍ତ ) ଜୀବନର ଦଣ୍ଡା ବାଟରୁ ଅଲଗା ତ କିଛି ନୁହେଁ ସେ, ଆଉ ?—

କିଶୋର—ଟିକିଏ ଅଡ଼ବାଙ୍କ, ନା ?—

କିଶୋରୀ—ଆମର ଖାଲି 'ସେହି ଅଡ଼ବାଙ୍କ'ରେ, ବାଟ ହୁଡ଼ି, ପଥ ନ ବାଛେଇଲେ, ହେଲା—

କିଶୋର—ତୁମେ ଭାରି ହୁସିଆର ତ ?—

କିଶୋରୀ—ହେଁ ହୁସିଆର ହୁଅନ୍ତି, କ'ଣ ଶିକାର ହେବାକୁ ତୁମ ଭଳି—ଶିକାର କରିବାକୁ ଆସି ନାହେଁ ?—

କିଶୋର—ଅଃ—ସେଦିନ ସେମିତିକା ଲୋଭେଇ ଗଲି ନା, ସେଭଳି ସୁନ୍ଦର ଶିକାରଟିଏ ପାଇ ?—

କିଶୋରୀ—ଯା' ହେଉ—ଆପଣାର ଭଦର ନ ବୁଝି, ଲୋଭଟାକୁ ସେମିତିକା ବାଢ଼ି ଦେବା, ଗର୍ ହୁସିଆର ନୁହେଁ ଆଉ କ'ଣ ?

କିଶୋର—ଠିକ୍ ତୁମର 'ହୋବି' ନ ଥିଲେ ଭଲ ନୁହେଁକି ? ଆଚ୍ଛା, କହିଲ, ରାଣି—ସେତେ ଦାନ୍ତ କେବେ ଦେଖିଛ ନା ?

କିଶୋରୀ—ନୁହନା, ମୁଁ ଶିକାର କରି ଦେଉଛି— ତହୁଁ ବଳ ବଢ଼ିଆ ଦାନ୍ତଟାଏ ଦନେ ।

କିଶୋର—ହଁ……ମୁଁ ପାରିଲି ନାହିଁ……ତୁମେ…

କିଶୋରୀ—ମୋ'ରିତ ପାରିବାର କଥା—ମୁହିଁତ ପାରିବି ।—

କିଶୋର—'ସନନ୍ଦ' 'ଫନନ୍ଦ' ତୁମର ସେ ଭଲ କିଛି ଅଛି ନା, କଣ ?

କିଶୋରୀ—ନିଶ୍ଚୟ ।……ଦୈବ ଅନୁଗ୍ରହରୁ ।—

କିଶୋର—କ'ଣ, 'ବଳାଙ୍ଗୀ' ବାଉଁଶବୁଦାମୂଳେ ଜନ୍ମ ବୋଲି ?

କିଶୋରୀ—'ବଳାଙ୍ଗୀ' ନାମ ତ, ତେଣୁ ।—ବଳାଙ୍ଗୀ ମୁହିଁ—

କିଶୋର—ତା' ହେଲେତ ଅଛୁରି ବଳାଙ୍ଗ ମୁହିଁ;— ଯେଣୁ କୋଚିଲା ଗଛମୂଳେ ଜନ୍ମ ମୋ'ର ।— 'କୋଚିଲ' ଶ୍ରଦ୍ଧାନାମ—'ପୂର୍ଣ୍ଣଚନ୍ଦ୍ର' ରାଜନାମ ସିନା ?

କିଶୋରୀ—ଯେତେ ହେଲେ, ହାତୀତ ମାରିବାକୁ ଭାଜନ ନୁହଁ ଆଜି ?

କିଶୋର—ଅଜି କ'ଣ କୋଚିଲାଖାଇ ?

କିଶୋରୀ—ନିଶ୍ଚୟ—କୋଚିଲାଖାଇର ଭୋଜ୍ୟ ସିନା କୋଚିଲା ଫଳ ?

କିଶୋର—ବାଉଁଶ, ଭୋଜ୍ୟପରି ହାତୀ ଫଳର ?— ହାଃ—ହାଃ—

[ ହସି ହସି ଗଡ଼ିଗଲେ କି ଅଜି ]

[ ଅନତିଦୂରେ ଜନକୋଳାହଳ ଶୁଣାଗଲା ]

କିଶୋରୀ—ଶୁଣୁଛ ନା 'ହାଙ୍କୋଳି', ରାଜା ?

କିଶୋର—ଏତେ ପାଖକୁ ଖେଦି ଆସିଲେଣି । ଉଠି ଆସିଲି ବେଗେ ସିଂହାସନକୁ, ରାଣି ।

[ ମୁହୂର୍ତ୍ତକପାଇଁ କି ଗୋଟାଏ ଝଲକର ବାକ୍ୟମସୃ ହୋଇଗଲା ଉଭୟଙ୍କର ରହସ୍ୟାକୁଳ ଦୃଷ୍ଟିରେ ……ପରମୁହୂର୍ତ୍ତେ ଉଠି ବସିଲେ ଦହେଁ ତରବର ହୋଇ ଖାଡ଼ଉପରେ 'ରାଜା, ରାଣୀ' ଭଳି……ସଙ୍ଗେ ସଙ୍ଗେ ନଳୀ ଉଞ୍ଚାଇ ଟାକି ରହିଲେ ଶିକାରକୁ ]

ପୂର୍ଣ୍ଣଚନ୍ଦ୍ର—କିସୁନ୍ଦର ଗୁଣ୍ଡୁଣ୍ଡି ହାତୀଟିଏ……

[ ଦାଗିବାକୁ ଯାଉଥିଲେ ]

ବଳାଙ୍ଗୀ—( ଅଟକାଇ ) ପୁଣି ମୂର୍ଖପଣିଆ—

ପୂର୍ଣ୍ଣଚନ୍ଦ୍ର—ନିଜେମାରି ବାହାଦୁରିଟା ନେବ ପରା ?

ବଳାଙ୍ଗୀ—( ଟିପମାରି ବିପରୀତଆଡ଼କୁ ଦେଖାଇ ଦେଲେ )

ପୂର୍ଣ୍ଣଚନ୍ଦ୍ର—ବାପରେ ! ହାତୀର ପଲ !

ବଳାଙ୍ଗୀ—ଚୁପ୍

[ କିଛିକ୍ଷଣ ଚୁପ୍‌ଚାପ୍ ହୋଇ ବସିରହିଲେ ଦହେଁ —ସେହିଆଡ଼େ ଚାହିଁ,—ପୁଣି କୋଳାହଳ ଶୁଣାଗଲା ]

ପୂର୍ଣ୍ଣଚନ୍ଦ୍ର—'ମଶ୍ ମଶ୍' ।…ହୁସିଆର !

[ ଲକ୍ଷ୍ୟ ସ୍ଥିରକଲେ ]

ବଳାଙ୍ଗୀ—ବାଘ ନିଶ୍ଚେ— ( ସେହିପରି ଲକ୍ଷ୍ୟ ସ୍ଥିରକଲେ )

ପୂର୍ଣ୍ଣଚନ୍ଦ୍ର—ବାଘୁଣୀ ହେଲେ, କିନ୍ତୁ ମୋର ଶିକାର, କହି ରଖୁଛି…

[ ଯୁବତୀଟିଏ ଅଗେ, ଅଗେ ପଛେ ପଛେ ଯୁବକଟିଏ ପ୍ରବେଶ କଲେ, ଗଛ-ବୃଛ ଭାଙ୍ଗି, ଦଳମଥି ଯେମନ୍ତ ]

ଯୁବତୀ—ଯଦି "ନାରୀ" ହୁଏ, ରାଜା ?

ଯୁବକ—"ନର" ହୁଏ, ରାଣି ?

[ ପୂର୍ଣ୍ଣଚନ୍ଦ୍ର ଓ ବଳାଙ୍ଗୀ ଅବାକ୍ ଭାବେ ପରସ୍ପର ପ୍ରତି ଚାହିଁଲେ, ସେଭଳି ବାସ୍ତବ୍ୟାଭାସରେ ମଧ୍ୟ ଅନନ୍ଦର ଆଭାସ ଯେ ନଥିଲା ତା ନୁହେଁ ]

ଯୁବତୀ—କହ, ରାଜା ମଣିଷ ଶିକାର କ'ଣ ପଶୁ ଶିକାରକୁ ବଳି ଅଧିକ ମଜାର ନୁହେଁରେ ?

ଯୁବକ—ତୁ' ବଣ ଜଙ୍ଗଲରେ—ନଖାଇ, ନପିଇ— ହାତଗୋଡ଼ ଭାଙ୍ଗି, ଦେହମୁଣ୍ଡ ଛେଚି— ବେଳେବେଳେ 'ଖୁରଣ୍ଟ'ଟାଏ ବି ଶିକାର କରିବାକୁ ପାଉ ନାହୁଁ……

ଯୁବତୀ—ଅଜ୍ଞ, ତୋ'ର ପଡ଼ୋଶୀ, ଅନୁଗୁଳରାଜା, ସେହି ବଜ୍ରଧରଟା ତୋର ଗାଁ ଭିତରେ, ଦିନ ଦ୍ୱିପହରେ, ପଲ ପଲ କରି ପିଲା କବିଲାଙ୍କୁ ତୋ'ର ଛିଙ୍କିଆଣି, ପଦା କରି ଦେଇ—

ଯୁବକ ଓ ଯୁବତୀ—(ସମସ୍ୱରେ ଚିତ୍କାର କରି ଉଠିଲେ) ମଜା ଲୁଟୁଚିରେ !

ପୂର୍ଣ୍ଣଚନ୍ଦ୍ର—ତୁମେମାନେ ଚନ୍ଦଗଡ଼ର ପ୍ରଜା ?

ଯୁବକ—'ହାଲତ୍' ଦେଖି, ଚିହ୍ନି ପାରୁନାହଁରେ ? [ ଅପଣାର କଙ୍କାଳସାର ଦେହ ଦେଖାଇଲେ ]

( ନେପଥ୍ୟେ ଅନତି ଦୂରେ )—ରହିଗୁ ତ, ରହ— ନାହିଁତ, କାନ୍‌ରେ ମାରିପକା ଏକଦମ୍, ରାଜା—

ଯୁବତୀ—ନିତି ନିତି ଏଠି ଶିକାର କରିବାକୁ ଅସୁଚୁ —ଆମେ ଜନ୍ତୁ-ଜାନୁଆ ଜୁଟାଇଦେଇ ତୋର ଅମୋଦ ଦେଖୁଚୁ—କିନ୍ତୁ, ଆଜି ପ୍ରାଣ ବିକଳରେ ଧାଇଁ ଅସିଚୁ, ବିଲ୍‌କୁଲ୍ ସହି ନପାରି—ତୋର ଏହି ଅମୋଦଟାକୁ ଭାଙ୍ଗିଚୁ, ସାଥିରେ ଅମର ଭିଡ଼ଚୁ—ନାହିଁତ, ଚୋଡ଼ିଭିଲେ ତୋର, ମୁଣ୍ଡକଚୁଡ଼ ଜୀବନ ମୂଲ୍‌ଚୁ ଦେବୁଁ, ଯଦି ପୂଜା ଅମର ଘେନା ନ ହୁଏ—ପଥର ଦାଅଁ ଭଳି ପଥର ତୁ ପାଲ୍‌ଟି ରହୁ !—

ପୂର୍ଣ୍ଣଚନ୍ଦ୍ର—ମା ! ପଥର-ଦାଅଁ ତ ହେଲେ ସ୍ତୁତି ଭକ୍ତି ଅଭୟ-ବର ଦେଇଥାନ୍ତି, କିନ୍ତୁ ତା'ର କରିବାକୁ ଯେ ଶକ୍ତି ମୋର ନାହିଁ, ମା !—ତୁମ ପକ୍ଷେ ବର୍ତ୍ତମାନ ମୁଁ ନିର୍ଜୀବକୁ ବଳ, ନିର୍ଜୀବ, ମା ! ଟୋପାଏ ଲୁହ ଅଖି କୋଣରେ ଅଣିବାର ଜୁ ନାହିଁ, ମା—

ବଲାଙ୍ଗୀ—ରାଜା !—

ପୂର୍ଣ୍ଣଚନ୍ଦ୍ର—ଜାଣେ, ରାଣି—କହିବ ତୁମେ, ବର୍ଗୀ-କାଳାନ୍ତକ, ରାଜା ମଦନଧ୍ୱଜର ପୁତ୍ର ମୁହିଁ—

ଯୁବକ—ଜୀବନ ଥାଉଁ, ଥାଉଁ

ବଲାଙ୍ଗୀ—'ଜୀବନ୍ତ-ମରଣ' କଥା ଅମର ଜଣା ମୋତେ, ରାଜା—ବର୍ଗୀ ଅମର ବର୍ଗ ନଷ୍ଟ କରି ଦେଇଚୁ—ରାଜ୍ୟଟାକୁ ସାରଶୂନ୍ୟ—ଶକ୍ତିଶୂନ୍ୟ କରିଦେଇଚୁ—ତଥାପି—

ପୂର୍ଣ୍ଣଚନ୍ଦ୍ର—ତଥାପି ମୋର ଚିନ୍ତା ନଥିଲା, ରାଣି— ଯଦି ପିତୃ-କଳ୍ପ, ପିତୃ-ବନ୍ଧୁ, ସେନାପତି ଭାନୁ-ମଙ୍ଗରାଜ ଆଜି—

ବଲାଙ୍ଗୀ—ଯେଥାଶାସ୍ତ୍ରୀ ହୋଇ ନ ଥା'ନ୍ତେ—?

ପୂର୍ଣ୍ଣଚନ୍ଦ୍ର—କହିଲ, ରାଣି—ଏକା ସେହି ମଙ୍ଗରାଜ— ଶହେ, ଲକ୍ଷେ, କୋଟି କୋଟି 'ଅଗ୍ରେ' ବୀରଙ୍କ ସଙ୍ଗେ ସମାନ ନୁହନ୍ତି କି ? ଶୁଣିଚ ତ ସେଦିନ, ରାଣି ବର୍ଗୀଙ୍କ ଅତ୍ୟାଚାରରେ ଜରଜର ହୋଇ, ମରମର ଅବସ୍ଥାରେ ପ୍ରଜାମାନେ ଯେତେବେଳେ ମେଳ ବାନ୍ଧି, ବର୍ଗୀଦଳପତିଙ୍କୁ ଆମନ୍ତ୍ରଣକରି ଡାକିଆଣି ପ୍ରକାଶ୍ୟ ସଭାରେ, ରାଜମୁକୁଟ ପିନ୍ଧାଇ ଦେବାକୁ ଉଦ୍ୟତ ହୋଇଥିଲେ—ଏହି ଅଶୀତିବର୍ଷର ପକ୍ୱକେଶ, ଲୋଳଚର୍ମ୍ମ, ଏକମାତ୍ର ସନ୍ତାନ—ତୁମର ପିତା, ବୀରମ୍ବୁନ୍ଦର ସଦ୍ୟ ନିମ୍ପି ହତ୍ୟାଶେଲବକ୍ଷେ,—ଆବଲୁଁ ତ ହେଲେ ନାହିଁକି—ବିଦ୍ୟୁତ୍ ଚମକାଇ ଯେତ୍ତେ—ସେହି ସଭାସ୍ଥଳେ—ରାଜାଙ୍କୁ, ପିତାଙ୍କୁ ମୋର, ସେନା —ଲକ୍ଷ୍ମଣେ ଯଥା ମରୁତନନ୍ଦନ—ମେଘନାଦର ରୁଦ୍ଧ କାରାଗାରେ ?—ପଡ଼ିଲା ଚଡ଼କ ବର୍ଗୀର ମସ୍ତକେ—ରକ୍ଷାହେଲା ରାଜ୍ୟ, ରାକ୍ଷସ ଗ୍ରାସରୁ ! ମାମା ମୋର କହିଚନ୍ତି କାନେ କାନେ, ରାଣି— ନିଯୁମ କରିଲ, ପାଦକୁଆଁରି—ବନାମଙ୍ଗରାଜେ, ଯୁଦ୍ଧର କାମ ଯେତ୍ତେ, ନ ଉଚାରେ ରସନାରେ !

ବଲାଙ୍ଗୀ—ଠିକ୍ ସେହିପରି 'ନିଯୁମ' ମଧ୍ୟ, ମୋତେ ମୋ'ର ମାମା କରାଇ ନେଇଛନ୍ତି, ରାଜା—ଏ' ଜୀବନଟି ମୋର, ରାଜାର ଲାଗି—ରାଜ୍ୟର ଲାଗି !—ଶୁଣ, ଭାଇମାନେ—ଅଜି ଯେଉଁ ମାଳତୀ ସୁନ୍ଦରୀ, ଅପଣାର ସ୍ୱାମୀକୁ ବଳଦେଇ, ସତୀତ୍ୱର ଅସ୍ଥା ନରଗି ରାଜା ଓ ରାଜ୍ୟର ରକ୍ଷା ନିମନ୍ତେ, ଏକୁଟିଆ, ପ୍ରସୂତୀ ଅବସ୍ଥାରେ, ଘୋର ଅରଣ୍ୟେବାଟେ, ଘୋଡ଼ାଙ୍ଘପଟାଇ ସେନାପତି ଭାନୁମଙ୍ଗରାଜଙ୍କୁ ଶତ୍ରୁର ଗୁପ୍ତସମ୍ବାଦ ଦେବାକୁ ଧାଇଁ ଯାଇଥିଲେ, ସେହି ମହାମାମସ୍ୱୀଙ୍କ କନ୍ୟା

'ବଲାଙ୍ଗୀ' ମୁହିଁ ।—ଆଜ ସେହି ଅଦ୍ୱିତୀୟ ମହାବୀର ଭାନୁମଙ୍ଗରାଜଙ୍କ ପୌତ୍ରୀ ମୁହିଁ—ଆଜି ସେ ପରାକ୍ରମହୀନା ଅବସ୍ଥାରେ—ସେ ଆପଣମାନଙ୍କର ବଳ, ସାହାଯ୍ୟ, ଆଶୀଷ ଦେଇ ରାଜକାର୍ଯ୍ୟରେ ଅଗ୍ରସର ହେବାକୁ କୃତସଂକଳ୍ପ ।—ରାଜ୍ୟର ସେବାଦାସୀ ରୂପେ—ଅଦେଶକର, ରାଜା—ପଥ କଢ଼ାଅ, ଭାଇମାନେ,—ପରୀକ୍ଷା କରି ଦେଖେଁ ଥରେ—ପ୍ରକୃତରେ ବୀରାଙ୍ଗନା ପ୍ରଗଲା-ରକ୍ଷିତ ଏହି 'ଅରାଟ' କି ନୁହେଁ ? ଦେଶପ୍ରେମିକା 'ଶକୁନ୍ତଳାର'—ଜନ୍ମଭୂମି ଏହି ନରସିଂହପୁର କି ନୁହେ ?

[ ବୃଦ୍ଧ ଭାନୁ ମଙ୍ଗରାଜ ଉଦ୍‌ଭ୍ରାନ୍ତ ଅସିକରେ ସହସା ଆବିର୍ଭୂତ ହେଲେ ]

ମଙ୍ଗରାଜ—ଆଉ ବର୍ଗୀହନ୍ତା ଭାନୁମଙ୍ଗରାଜର ପ୍ରାଣର ଅଚ୍ଛେଦ୍ୟ, ଅଜେୟ ଏହି 'ଜୟପୁର' କି ନୁହେଁ ?

ବଲାଙ୍ଗୀ—ବାବା ! ( କୁଣ୍ଢାଇ ପକାଇଲେ )

ପୂର୍ଣ୍ଣଚନ୍ଦ୍ର—ବାବା, ତୁମେ ଏଠି—ଏଭଳି—

ଯୁବକ ଓ ଯୁବତୀ—ଚାଲ, ଚାଲ—ଘର ଘର ବୁଲି ଖବର ଦେବାରେ—ଜଣାଇବା ସଭିଙ୍କୁ—ସେନାପତି ଆମର ଲଢ଼ିବରେ—ସେନାପତି ଆମର ଲଢ଼ିବରେ (ଚାଲିଗଲେ ଭାରି ଖୁସିରେ ।)

ମଙ୍ଗରାଜ—( କାହାପ୍ରତି ଭ୍ରୂକ୍ଷେପ ନ କରି, ବୁଲାଇ ଦେଖିବାକୁ ଲାଗିଲେ ଆପଣାର ଅସିକି ) ବାଃ ବାଃ ବେଶ୍ ଧରୁଛି ତ ? ଭୟନାହିଁ ଭୟନାହିଁ—ମୁଁ ବେଶ୍ ଲଢ଼ିଁ ପାରିବି—ବେଶ୍ ମଣିଷ କାଟି ପାରିବି; କଟ୍‌କଟ୍—ପଟ୍‌ପଟ୍—ତେବେ ବି, ତେବେ ବି, ଏହି ମୁଠା ମୋର ଯେତିକି କସୁଛି, ତେତିକି ଖସି ଖସି ଯାଉଛି କାହିଁକି ? ( କପଟ ବ୍ୟଥିତ ହେବାକୁ ଲାଗିଲେ ) ।

ପୂର୍ଣ୍ଣଚନ୍ଦ୍ର—କିଏ ତୁମକୁ ଲଢ଼ିବାକୁ କହୁଛି, ବାବା—ମଣିଷ କାଟିବାକୁ ?

ମଙ୍ଗରାଜ—( ପୂର୍ବବତ୍ ଭ୍ରୂକ୍ଷେପ ନ କରି ) ହାୟ ! ହାୟ ! ମୋର 'ମୁକୁନ୍ଦ'କୁ—ପ୍ରାଣର କୁମରକୁ ଖଣ୍ଡ ଖଣ୍ଡ କରି କାଟି ବର୍ଗୀମାନେ ଏହି କୁକୁଟା-ଯାକ ସେଇଁ ଭଳି ଅଜାବନ ଅଶୁଖା ଖଣ୍ଡିଆ ଘା ମାନ ଖାଇ ଦେଇଚନ୍ତି—ମୁଁ ବି ଠିକ୍ ସେହିଭଳି କରିଚ ସିନା—ଅନ୍ୟର କରିବ ସିନା—ପ୍ରତ୍ୟେକ ପିତୃ-ମାତୃ ବକ୍ଷରେ, ଏହି ଅସି ମୁନରେ ।

ବଲାଙ୍ଗୀ—ବାବା ! ଶୋଇବ ଚାଲ—ମା ଖୋଜି ଖୋଜି ବ୍ୟସ୍ତ ହେଉଥିବେ ! ଚିହ୍ନା କାହିଁକି, ବାବା ?—ମୁଁ ତ ସେଇଁଚ—ମଙ୍ଗରାଜର ଅଲ୍ଲୀ କନ୍ୟା—'ବଲାଙ୍ଗୀ' ।

ମଙ୍ଗରାଜ—( ଚାହିଁ ବଲାଙ୍ଗୀ ମୁଖକୁ ) 'ମୁକୁନ୍ଦ' !—'ମୁକୁନ୍ଦ' !—ମୋର ପ୍ରାଣର, ହୃଦୟର ସର୍ବସ୍ୱ 'ମୁକୁନ୍ଦ'—ସେହି ଆଖି ତୋଳାରେ ! ସେହି ଚାହାଁଣି ଛଟାରେ ! ସେହି ବଦନମଣ୍ଡଳରେ ! ସେହି ହାବ ଭାବରେ !

ପୂର୍ଣ୍ଣଚନ୍ଦ୍ର—ଚାଲନ୍ତୁ, ବାବା—ଆପଣ ଯେ ଭାରି ଥକିଛନ୍ତି ।

ମଙ୍ଗରାଜ—'ଥକିଛି' ? 'ଥକିଛି' ? ଭାନୁ ମଙ୍ଗରାଜ ଆଜି ଥକିଛି ? 'ସ୍ଥିର ଭାନୁ' ଆଜି କମ୍ପୁଛି ? ମନେରଖ ! ମନେରଖ ! ଦେଖିଯାଅ, ଦେଖିଯାଅ—ଶୁଣିଯାଅ, ଶୁଣିଯାଅ—ତୁମର ଶିଶୁ-ପୁତ୍ର 'ପୂର୍ଣ୍ଣଚନ୍ଦ୍ର' କହୁଛି—ଧୀର, ବୀର ଭାନୁ-ମଙ୍ଗରାଜ—ତୁମର ଅକଳନ୍ତା ବଳର ଅଧିନାୟକ—'ଥକିଛି' 'କମ୍ପୁଛି' !—

ପୂର୍ଣ୍ଣଚନ୍ଦ୍ର—ବାବା—ବାବା—

ମଙ୍ଗରାଜ—( ଆପଣାର ଭାବରେ ) ହାଃ ହାଃ—ଗଡ଼ଜାତର ରାଜାପ୍ରଜା ଯେତେବେଳେ ବର୍ଗୀ-ଡରରେ, ବଣ, ଜଙ୍ଗଲ, ଗିରିଗୁହା ଭରିଦେଲେ ନାଡ଼ରରେ; ସିଂହର ବିକ୍ରମରେ, ଛାତିଫୁଲାଇ, ସପରିବାରେ, ଆପଣାର ବାସଘରେ ଏକୁଟିଆ ରହିଥିଲା କିଏ—ଏହି ଭାନୁମଙ୍ଗରାଜ ନା ? ସାମ୍ନାସାମ୍ନି—ଆଖି ପିଛୁଡ଼ା ନ ପକାଇ, ଯୁଦ୍ଧ ସୈନ୍ୟ-ତରଙ୍ଗ-ସଂକୁଳିତ ବର୍ଗୀସର୍ଦ୍ଦାରକୁ ଭେଟିବାକୁ ସାହସ ବାନ୍ଧିଥିଲା—ନା, ନା, ତା'ର ଖଣ୍ଡା ନୁଆଁଇ ନତଜାନୁ ହେବାକୁ ଆଦେଶ କରିଥିଲା କିଏ—ଏହି ଭାନୁମଙ୍ଗରାଜ ନା ? ହାଃ

ହାଃ—ପିଲା ବଳଟେନାକୁ—ଦୁଧ ଦାନ୍ତ ପଡ଼ି-
ନାହିଁ—କହୁଛ ଆଜ—ଭାନୁ ଥରୁଛ,—'ସ୍ଥିର-
ଭାନୁ' କମ୍ପୁଛ । ( ବୀରାଙ୍ଗନା ବେଶରେ ତରୁଣୀ
ମାଳତୀ-ସୁନ୍ଦରୀ ଅସିହସ୍ତେ ପ୍ରବେଶ କଲେ )

ମାଳତୀ—ଥର, ଥର ମୁଁ ଧାଇଁ ଆସିଛି, ବାବା—
ଖୋଲ, ଖୋଲ—ଆଜ ଲେଢ଼ା ହୋଇଛ ପରା,
ଏହି ଢାଲ, ଏହି ଭାଲ ? ( ଏକହାତରେ
ଢାଲ ଓ ଅନ୍ୟ ହାତରେ ଭାଲ ଉଞ୍ଚାଇ ମର୍ଦ୍ଦିନୀ-
ମୂର୍ତ୍ତିରେ ଠିଆ ହେଲେ )

ବଳାଙ୍ଗୀ—ମା—ମୋ ! ବୋଲି, ମାଳତୀ ନିକଟକୁ
ଦୌଡ଼ି ଆସିଲେ ଓ ନିବାରିବାକୁ ଲାଗିଲେ
ଯେମନ୍ତ )

ମଙ୍ଗରାଜ—ଲଢ଼ିବ କି ଶତ୍ରୁ ସଙ୍ଗେ ଝିଅ ?—ପୁଣି ?—

ମାଳତୀ—ଦେହରକ୍ଷୀ, ଜଗୁଆଳ ହୋଇ ଏଥର,
ବାବା !—

ମଙ୍ଗରାଜ—କା'ର ?—ମୋର ?

ମାଳତୀ—ହଁ, ମୋର 'ମଙ୍ଗରାଜ'ର ।

ମଙ୍ଗରାଜ—ମଙ୍ଗରାଜର ? ମଙ୍ଗରାଜ ଏଥର ଲୋଡ଼ିବ
'ଜଗୁଆଳ', 'ଦେହ ରଖାଳି'—ସମର
ପ୍ରାଙ୍ଗଣେ ?

ମାଳତୀ—ମୋର କର୍ତ୍ତବ୍ୟ ମୁଁ କରିବି, ବାବା !

ମଙ୍ଗରାଜ—ମଙ୍ଗରାଜର କର୍ତ୍ତବ୍ୟ ତୁଚ୍ଛ କରି ? ତୁମେ
ସେହି ମାଳତୀସୁନ୍ଦରୀ ନା ?—ଯାର ସୌନ୍ଦର୍ଯ୍ୟ-
ରକ୍ଷାଲାଗି—ଜୀବନର ସୌନ୍ଦର୍ଯ୍ୟ ତା'ର ହସି ହସି
ଦେଇଥିଲା ବଳୀ, ମୋ'ର ବୀର ମୁକୁନ୍ଦସୁନ୍ଦର—
ଅଙ୍ଗପ୍ରତ୍ୟଙ୍ଗ ନିଜର, ଖଣ୍ଡ ଖଣ୍ଡ କରି ବର୍ଗୀର
ନିର୍ଲ୍ଲଜ ଖଣ୍ଡାର ଫଳକେ ?

ମାଳତୀ—ସେହି ଖଣ୍ଡାର ଫଳକେ—ସେହି ମୁହୂର୍ତ୍ତେ
—ଖଣ୍ଡ ବିଖଣ୍ଡ ହୋଇ ନାହିଁକି କେଉଁ
ଅନ୍ତର୍ନିହିତ ଅସୌନ୍ଦର୍ଯ୍ୟ ମୋହର—ମୋହ-
ଜଡ଼ତା—ଲଜ୍ଜା-ସଙ୍କୋଚ—ଭୟ-ଭ୍ରାନ୍ତି ? ଉଠି
ନାହିଁକି ତେଜସ୍ୱୀ, କେଉଁ ନବୋଜ୍ଜ୍ୱଳ,
ରୂପସମ୍ଭାରେ ଝଳି ?

ମଙ୍ଗରାଜ—ସେହି ବୀରାଙ୍ଗନା—ଅସୁର-ମର୍ଦ୍ଦିନୀମୂର୍ତ୍ତି
ଏବେ ସୁଦ୍ଧା ନାଚୁଛି ଏହି ଅବୟବେ—ଜୀର୍ଣ୍ଣ,
ଶୀର୍ଣ୍ଣ, ତୁର୍ଣ୍ଣ ଅସ୍ଥି !—ହେର, ହେର—ଥର-
ହର ପର୍ବତକାନନ—ସ୍ତମ୍ଭିତ ପଶୁପକ୍ଷୀଗଣ,
ଅଦ୍ୟାପି ସ୍ମର ସେ ଦୃଶ୍ୟ—ଅଦ୍ଭୁତ, ଭୀଷଣ !—
ନା ନା, ନପାରେ ସ୍ମର ସେ ଛବି—କଲି ନାଶ
ଯେବେ ଶତ ଶତ ବର୍ଗୀ—ଏକାକିନୀ ବାଡ଼ବା
ସମାନ—ବହି ଶତ୍ରୁର ବିପୁଳ ସାଗର
କଲ୍ଲୋଳେ !—

ମାଳତୀ—'ଆତ୍ମପ୍ରକାଶ' କରୁଛି ତ ଏବେ—ଡରି—
ଧୂମକେତୁସମ 'ଉନ୍ମୁକ୍ତ ଗଗନେ'—ବିପୁଳ
ପୁଚ୍ଛରେ ଝାଡ଼ିବାକୁ ଅଶାନ୍ତ ଭୁବନ—ଥାଇ
ଗହଣେ ଭାନୁର—କର୍ତ୍ତବ୍ୟେ ମଙ୍ଗରାଜର ମିଶାଇ
ଆପଣାର !—

ମଙ୍ଗରାଜ—'ମଙ୍ଗରାଜ' ଜୀବିତ ଥାଉଁ ଥାଉଁ, ଲୋଡ଼ିବ
ନାହିଁତ କର୍ତ୍ତବ୍ୟ କାହାର ?

ମାଳତୀ—ନୁହେ ମାଳତୀର ?

ମଙ୍ଗରାଜ—ନୁହେଁ ସମର-ପ୍ରାଙ୍ଗଣେ ।

ମାଳତୀ—ଅବଦ୍ଧ କି ମୁହିଁ ତେବେ ଗୃହର ପ୍ରାଙ୍ଗଣେ ?

ମଙ୍ଗରାଜ—ବଳାଇ ଯା' ନା ଝିଅ—ବଳାଇଯା'ନା
—ଯା' ଅଛି ଶକ୍ତି-ସୀମା ତୋ'ର !—

ମାଳତୀ—ନାରୀର ଶକ୍ତି-ସୀମା ଜଣା ନରକୁ ?—ନୁହେଁ
ନାରୀକୁ ? ନାରୀର ଭାଗ୍ୟ ନିୟନ୍ତା ଏ ବିଶ୍ୱ-
ସମାଜେ—ନର ?—ନୁହେଁ ନାରୀ ନିଜେ ?
ନରର ପିଠିର ବୁଜୁଳା ଗୋଟା—ନାରୀ, ଜୀବନ
ପ୍ରଗତରେ ?—ନୁହେଁ ସହଯାନୀ ?

ମଙ୍ଗରାଜ—କ'ଣ ଗୁଡ଼ାଏ ବକି ଯାଉଛ ତୁମେ,
ମାଳତୀ ?

ମାଳତୀ—ମୁଁ କ'ଣ ଖାଲିକଥା ଗୁଡ଼ାଏ ବକି ଯାଉ-
ନାହିଁ, ବାବା ? କୋଟି କୋଟି ମୂକ ନାରୀ-
ଜୀବନର ମର୍ମ କଥା ଖୋଲି କହି ଦେଉ ନାହିଁ
ଆଜ ? ଏ'କଣ ଖାଲି କଥା ନୁହେଁ, ବାବା ?
ସ୍ୱାମୀସଙ୍ଗେ ଅଶ୍ୱପୃଷ୍ଠେ ଯାଉଁ ଯାଉଁ ଚଢ଼ିଗଲି
ହାବୁଡ଼େ ବର୍ଗୀର ଯେବେ—ପଣି ମୋତେ କେଉଁ

ଲୋଟିନାଥ—ମହୋଜ୍ଜ୍ୱଳ ହୀରା-ମଣିଖଣ୍ଡ ଅବା—
କିନ୍ତୁ, କିନ୍ତୁ ଚୁମ୍ବିଲେ ଅଧରେ ମୃତ ଜଡ଼ପିଣ୍ଡ
ଦେହେ—ଫୁଟିଲେ ନାହିଁକି ପ୍ରାଣପଣେ ?—
ଶେଷେ ବିସର୍ଜିଲେ ନାହିଁ କି ଅମୂଲ୍ୟ ପରାଣ,
ଅକୁଣ୍ଠିତ ଚିତ୍ତେ, ସେହି ଶ୍ରେଷ୍ଠ ତସ୍କରଙ୍କ ହସ୍ତେ ?

ମଙ୍ଗରାଜ—ଏହିତ ପୁରୁଷର କର୍ତ୍ତବ୍ୟ ।

ମାଳତୀ—ସେହିଭଳି ନାରୀର କି କର୍ତ୍ତବ୍ୟ ନୁହେଁ—
ଆପଣାକୁ ଜଡ଼ପିଣ୍ଡ, ସେହି ମହୋଜ୍ଜ୍ୱଳ ହୀରା-
ମଣିଖଣ୍ଡଠାରୁ ଆହୁରି ଉଜ୍ଜ୍ୱଳତର ଅଧିକତର
ମୂଲ୍ୟବାନ୍ କରିବା ?

ମଙ୍ଗରାଜ—ମା !—

ମାଳତୀ—ଆମେବି ସଜୀବ ମନୁଷ୍ୟ—ଆମର ବି ଶକ୍ତି
ସାମର୍ଥ୍ୟ ଅଛି—ଆମେ ବି ପାରୁ ଉତ୍ସର୍ଗିବାକୁ ପ୍ରାଣ,
ସ୍ୱାମୀର ପ୍ରାଣରକ୍ଷା ଉଦ୍ଦେଶ୍ୟେ—ସୁନ୍ଦର, ସମୁଜ୍ଜ୍ୱଳ,
ଅମୂଲ୍ୟ ରତ୍ନଖଣ୍ଡ ବୋଲି, ପ୍ରଶଂସାରେ ଭୁଲି
ପୁରୁଷର, ପୁରୁଷର ଗଳଦେଶରେ ଜଡ଼ରତ୍ନହାର
ହୋଇ ଝୁଲି, ମାନବର ଅଗ୍ରଗତିରେ ପଦେ ପଦେ
ଭାର ହେବାକୁ ଯିବା କାହିଁକି ? ନିନ୍ଦା ପ୍ରଶଂସା
ସମଜ୍ଞାନ କରି—ଅମୂଲ୍ୟ, ସଚେତନ ମାନବ-
ସୌନ୍ଦର୍ଯ୍ୟର ସମୁଜ୍ଜ୍ୱଳତା ବିକାଶ କରୁ କରୁ—
ଦୁହେଁ—ସ୍ୱାମୀ, ସ୍ତ୍ରୀ,—ଭାଇ, ଭଗ୍ନୀ,—ନର,
ନାରୀ—ହାତ ଧରାଧରି ହୋଇ, ବାଟକାଢ଼ି, ନ
ଚାଲିବା କାହିଁକି, ହସି ହସି ତମିରର ପରପାରେ,
କେଉଁ ଚିରନ୍ତନ ଆଲୋକର ରାଜ୍ୟ—ପୂର୍ଣ୍ଣତା
ଅଭିମୁଖେ ?

ବଳାଙ୍ଗୀ—( ତନ୍ମୟ ହୋଇ ଶୁଣୁ ଶୁଣୁ ଏକାବେଳେ
ନିଶ୍ଚଳା ହୋଇ ଯାଇଥା'ନ୍ତି )

ମଙ୍ଗରାଜ—ଏ'କି ଅନ୍ଧପୁଟୁଳି ଆଜି ଆଖିରୁ ମୋର
ଖସାଇ ଦେଲୁ, ମା—ତୋର ଏହି ନବୀନ
ମାତୃମୂର୍ତ୍ତି ଦର୍ଶନରେ,—ନବୀନ ଜୀବନରେ
ନବୀନ ତେଜରେ ଆଜି ମାତି ଉଠୁଛି, କେଉଁ
ନିର୍ଜୀବ-ସନ୍ତାନ—ତେଜୋହୀନ ବୃଦ୍ଧ ଭାନୁ
ମଙ୍ଗରାଜ ମୁହିଁ !—ଅସ, ମା—ରଣାକବର

ରୂପିଣୀ—କର ମୋତେ ରକ୍ଷା ଏହି ଉତ୍ପୀଡ଼କ,
ନରହନ୍ତା ଦସ୍ୟୁର ବିପକ୍ଷେ, ଯୁଦ୍ଧ ଅଭିଯାନେ ଏହି
( ଅସି ଉତ୍ତୋଳନ କଲେ )

[ ନେପଥ୍ୟେ ଯୁବକ ଯୁବତୀ ଓ ଅନ୍ୟସମସ୍ତେ
'ମଙ୍ଗରାଜଙ୍କର ଜୟ' ଘୋଷି ଉଠିଲେ ]

ରାଣୀ—ମଙ୍ଗରାଜ ! ( ସହସା ପ୍ରବେଶ କଲେ )

ମଙ୍ଗରାଜ—ରାଣୀ ମା !

ରାଣୀ—ଏ' ତୁମର କେଉଁ ଧୃଷ୍ଟତା ? ତୁମେଇ ନା
ଏ'ରାଜ୍ୟର ଭାଗ୍ୟ ନିୟନ୍ତା ? ତୁମରି ଉପରେ ନା
ରାଜା ମନ୍ଦରଧର ନିର୍ଭର କରି ହସି ହସି ସ୍ୱର୍ଗକୁ
ଚାଲି ଯାଇଥିଲେ, ତାଙ୍କର ରାଜ୍ୟ ଓ ରାଜ-
ପରିବାରର ସମସ୍ତଭାର ଟେକିଦେଇ ତୁମରି
କରେ ?

ମଙ୍ଗରାଜ—ଏ'କି କଟୂକ୍ତି, ମା ?

ରାଣୀ—କଟୁଶାସ୍ତି ମଧ ଦେବାକୁ ଯେ ଧାଇଁ ଆସିଚି ମୁଁ,
ଜ୍ୟେଷ୍ଠ ସନ୍ତାନର ଜ୍ଞାନେ !—

ମଙ୍ଗରାଜ—କି ଅପରାଧ, ମା—ନା, ନା, ଶାସ୍ତି ଆଗେ
ଯା' ଦେବାର ଦେଇ ସାରିଚ, ମା ? ( ମଙ୍ଗରାଜ
ଅବନତ ହେଲେ—ରାଣୀ ଅସି କାଢ଼ିନେଇ ଦୂରେ
ଫିଙ୍ଗି ଦେଲେ )

ମଙ୍ଗରାଜ—ମା, ମା—ଏବେ ମରଣକୁ ବଳି ଶାସ୍ତି,
ମା—ବର୍ଜନ କରିଥିଲି ଅସି ମୁହିଁ—କୁପୁତ୍ରକୁ
ବର୍ଜନ କଲାଭଳି ପିତା—କିନ୍ତୁ ଆଜି ଏ
ଦୁର୍ଦ୍ଦିନରେ, ଦେଶ, କାଳ, ପାତ୍ର ବିବେଚନାରେ,
ଆବଶ୍ୟକ ବୋଲି, ଦେଶ-ମାତୃକା ବୋଧରେ
ଅନୁପ୍ରାଣିତ ହୋଇ ଖାଲି, ବକ୍ଷୋଦେଶରେ ଯେ
ପୁଣି ଧାରଣ କରିଥିଲି, ତା ନୁହେଁ—ମୋ'ର ଏହି
ଅଙ୍ଗ ଯଷ୍ଟିର, କେଉଁ ଅଚ୍ଛେଦ୍ୟ ପ୍ରତ୍ୟଙ୍ଗ ବିଶେଷ
ସେ, ମା—ପ୍ରାଣ-ତନ୍ତ୍ରୀର କେଉଁ ଅବର୍ଜନୀୟ
ଝଙ୍କାର ବିଶେଷ ସେ, ମା—ତା'ର ଅଭାବ,
ଅପୂର୍ଣ୍ଣ, ମୋତେ ଯେପରି ମୃତ-କଳ୍ପ କରି
ଦେଇଥିଲା—ସୁସ୍ଥ କାୟକୁ ମୋର ଅସୁସ୍ଥକରି
ପକାଇଥିଲା !—ତାକୁଇ ଏ' ବୁକୁରେ ଛୁଆଁଇଲି
ମାତ୍ରେ—ଚୁମ୍ବନଟିଏ ଦେଲାମାତ୍ରେ—ଶତହାତ

ମଙ୍ଗରାଜର ଯୌବନ ଯେମନ୍ତ ଏଭାସଙ୍ଗେ ଆଜ ଫେରି ପାଇଛି, ମା—ମା ! ମା ! ନିର୍ବେସ୍ନା ହୁଅନା, ମା—ମୋତେ ମୋର ଶକ୍ତିଟିକ ପ୍ରତ୍ୟର୍ପଣ କର—ମୁଁ ଦେଖିନିଏଁ—ବର୍ଗୀଙ୍କୁ ବଳ କେତେ ବଳୀ, ସେହି ରାଜା ବଜ୍ରଧର !—ମୁକୁନ୍ଦ ପ୍ରତି ଅତ୍ୟାଚାରକୁ ବଳ, କେତେ ବେଶି କରିପାରେ ସେ, ସନ୍ତାନଗଣ ପ୍ରତିମୋର !—

ରାଣୀ—ଯେତେ ବେଶି କରୁ ନା କାହିଁକି ଅତ୍ୟାଚାରୀ ସେହି, ଅତ୍ୟାଚାରକୁ ତୁମର ନ ବଳିବ କଦାପିତେ !

ମଙ୍ଗରାଜ—ମୋ'ର ଅତ୍ୟାଚାର ?

ରାଣୀ—ହଁ—ହଁ—ତୁମର ଅତ୍ୟାଚାର—ଦିନକର ନୁହେଁ—ଦୁଇ ଦିନର ନୁହେଁ—ଏ' ଯେ ଯୁଗ, ଯୁଗର ଅତ୍ୟାଚାର—ଦେହେ, ମନେ, ପ୍ରାଣେ—ଜଣକ ପ୍ରତି ନୁହେଁ, କି ଦୁଇଜଣ ପ୍ରତି ନୁହେଁ—ଖାଲି ନରପ୍ରତି ନୁହେଁ, କି ନାରୀପ୍ରତି ନୁହେଁ—ଯଥା ଶତ୍ରୁ ପ୍ରତି—ତଥା ମିତ୍ରପ୍ରତି—ସମଗ୍ର ମାନବ ଜାତି ପ୍ରତି !

ମଙ୍ଗରାଜ—ଏପରି କଥା ତ, ମା—

ରାଣୀ—ସ୍ୱପ୍ନରେ ମୁଦ୍ଧା, ମୁଁ ଯେ କେବେ କଳ୍ପନା କରିନଥିଲି, ସେନାପତେ ! କିନ୍ତୁ ପଲକେ, ପଲକେ ଆଜି ନିରୀକ୍ଷଣ କରୁଛି—ମର୍ମେ ମର୍ମେ, ଆଜି ଅନୁଭବ କରୁଛି—

ମଙ୍ଗରାଜ—କଣ, କଣ ସେ, ମା ?

ରାଣୀ—ଶୁଣିପାରୁ ନାହିଁ, ରାଜ୍ୟସାରା ହାହାକାର—ଦେଖିପାରୁ ନାହିଁ, କେଉଁ ମହାଶ୍ମଶାନକୁ ବଳି, ମହାନଗରୀଗୋଷ୍ଠୀ—ଓଃ ତାହାହେତୁ ତାହା-ହେତୁ, ଏ' ସର୍ବନାଶ ଆଜି—ବାସ କରିବାକୁ ଲୋକଙ୍କର ଗୃହଟିଏ ଖଣ୍ଡେ ନାହିଁ—ଜମିଚଷିବାକୁ କଣେ କେଣ୍ଡା ଦେଶରେ ନାହିଁ—କେଉଁଠୁ କଣ କିଣି ଖାଇବେ, ତାର ବି କୁ ନାହିଁ—ତହିଁପରେ, ଜୁଲୁମ୍—ରାଜକୋଷ ବୃଦ୍ଧି ହେବ କପରି ?

ମଙ୍ଗରାଜ—ଏ'ତ ଅପରିହାର୍ଯ୍ୟ ପରିଣାମ, ମା—ଏତେ ବଡ଼ ଯୁଦ୍ଧ ପରେ, ପରେ, ଏପରି ଘଟିବାଟା—

ରାଣୀ—ଜାଣିଥିଲି ଯଦି ଏପରି ଘଟିଥାଏ—ଯୁଦ୍ଧ ତେବେ ଆଦୌ କଲ କାହିଁକି, ମଙ୍ଗରାଜ ? ମୁଁ ଦେଖିଛି—କି ସେ ଉନ୍ମାଦନା—କି ସେ ଉତ୍ତେଜନା,—ଜଣିଲେ 'ମାରତି'—'ମଲେ ସ୍ୱର୍ଗବାସ'—ଏହି ମନ୍ତ୍ରବଳେ ଯେତେକେ, ସମ୍ପୂର୍ଣ୍ଣ ନବ-ତେଜ, ନବ-ବଳ—କ୍ଲାନ୍ତ ଅବସନ୍ନ ପ୍ରଜା-ମାନେ, ଭୁଲି ଖିଅପିଆ—ଘୋର ଦୁଃଖାବସ୍ଥା—ଜୀବନ ମୂର୍ଚ୍ଛିଦେଇ, ଅନୁସରିଥିଲେ ପଦେ ପଦେ ତୁମକୁ—ଗାଇଥିଲେ ଉଚ୍ଚକଣ୍ଠେ, କମ୍ପାଇ ଗିରି-ବନ—'ଜୟ ମଙ୍ଗରାଜଙ୍କ ଜୟ' !—ଓଃ, କି ସେ ଦର୍ପ—କି ସେ ଅହଂକାର—କି ସେ ଧ୍ୱଂସଲୀଳା ! ହିଂସ୍ରପଶୁ, ପକ୍ଷୀରେ ଏବଳି ହିଂସା-ଦ୍ୱେଷ କେବେ ଦେଖାଯାଏ କି ନାହିଁ, ସନ୍ଦେହ—ହେଲେ ବି, ସେତ କଣକୁ ଜଣେ—ଖୁନ୍‌ଖାରାପ୍ କରି ଛାଡ଼ି ଦିଏ, କି ନିତାନ୍ତପକ୍ଷେ, ମାରି ପଳାଇ ଯାଏ; କିନ୍ତୁ, ଏ' ଯେ ଗୋଷ୍ଠିକୁ ଗୋଷ୍ଠି—ନା, ନା, ଜଣେ ଇଚ୍ଛାମାନେ, ଲକ୍ଷଛପି, ଶହେ ଜଣକୁ, ସହସ୍ର ଜଣକୁ, ସମସ୍ତ ମାନବ ଜାତିକୁ ଧ୍ୱଂସକରି ଦେଇପାରେ ଆଖିପିଛୁଡ଼ାକେ—ଯଥା ପ୍ରାଣେ, ତଥା ଧନେ, ମାନେ, ଅନ୍ନେ !—କହିପାର, ଏ' ଅମର ବୁଦ୍ଧିର ଲଢେଇ—କୌଶଳ—କିନ୍ତୁ, ଅମର ଯେତିକି 'କୌଶଳ, ଲଢେଇ' କଣ ଧ୍ୱଂସ ନିମନ୍ତେ ଖାଲି ?

ମଙ୍ଗରାଜ—ଧ୍ୱଂସ ନିମନ୍ତେ ଖାଲି, ଅମର ଜଡ଼ତା—ସ୍ୱାର୍ଥପରତା—ସ୍ୱାର୍ଥପରତା !

ରାଣୀ—ଏହି ଦେହ ବିନିମୟରେ ସିନା ?

ମଙ୍ଗରାଜ—ବିଶ୍ୱମାନବଙ୍କତା—ସ୍ୱାର୍ଥର ସମୁଜ୍ଜ୍ୱଳତା ବୃଦ୍ଧି କରିବାକୁ ହେଲେ, ତା'କୁ ଯେତିକି ଛେଲାଯାଏ, ତେତିକି ସମ୍ଭବ ହୁଏ ସିନା ?

ରାଣୀ—ଛେଲା, ଛେଲା ସମସ୍ତ ଯଦି ଛେଲା ହୋଇଗଲା ? ଆଉ ଦେଖ, ଯେ ଭଲ ନିପୁଣ ଦାଷ ତାହାଗର ହେଲେ, ବିନା ଖଞ୍ଜୁରେ ମଧ୍ୟ ଉଜ୍ଜ୍ୱଳତା ବିକଶିତ କରିପାରେ—

ମଙ୍ଗରାଜ—ତା ମାନୁଛି, ମା !

ରାଣୀ—ଯଦି ମାନୁଷ ତା—ଚଳିବାକୁ ଯା ତା
ହାତରେ ଛାଡ଼ିଦେବା ଅନ୍ୟାୟ ନୁହେଁକି ?
ଆହୁରି ଶୁଣ ! କେଡ଼େ ଅନ୍ୟାୟ ଅତ୍ୟାଚାରକି
ତୁମର !—ଅଜ୍ଞ ନିରୀହ ଲୋକ ଗୁଡ଼ାକୁ ଗୋଟାଏ
କିଛି କରିବାକୁ ମତାଇବା ପୂର୍ବରୁ, ଆଗପଛ କଥା
ଭଲକରି ବୁଝାଇଦିଅ କି କେବେ ?—ବରଂ
ଖୁବ୍ ସାବଧାନରେ, ସତ୍ୟ ଯେତେଟା ଗୋପନ
ରଖିପାର ଅଣି ତହାଡ଼େ, ତା'ହିଁ କର,
ସରଳତା ଓ ସରଳ ବିଶ୍ୱାସର ସୁଯୋଗ ନେଇ
ତାଙ୍କର—'ଦେଶ-ପ୍ରୀତି' 'ଜାତି-ପ୍ରୀତି' 'ମଲେ
ସ୍ୱର୍ଗବାସ' 'ଜିଣିଲେ ଗୌରବ' ପ୍ରଭୃତି ଉତ୍ତେଜକ
ମୋଦକରେ ଆପଣା ଭୁଲାଇ, ଅସ୍ୱାଭାବିକ
ତେଜରେ ତେଜାଇ, ପେଲିଦିଅ କାହିଁକି କେଉଁ
ପ୍ରାଣନାଶୀ ପ୍ରଜ୍ୱଳିତ ଅଗ୍ନିକୁଣ୍ଡମଧ୍ୟକୁ ?
ତେତିକି ନୁହେଁ, ତୋଳ କେଉଁ ଦିବ୍ୟ ପ୍ରାସାଦ
ସେହି ଭସ୍ମସ୍ତୂପ ଉପରେ, ପଞ୍ଚୋପଚାରରେ ପୂଜନାହିଁ
କି ନିତ ନିତ ସ୍ୱାର୍ଥ-ବିଗ୍ରହକୁ ନିଜର ?

ମଙ୍ଗରାଜ—ମା—ମା !

ରାଣୀ—ଏ' ଅତ୍ୟାଚାରର ପରିମାଣ କଣ କମହେବ
କେବେ, ବର୍ଗୀର ସେହି କ୍ଷଣିକ ସାମାନ୍ୟ
ଅତ୍ୟାଚାର ତୁଳନାରେ ?—ଯା' କି ଗୋଟାଏ
ଅଧେ କେଉଁଠି ଖୁନ୍ ଖରାପ କରି ଛାଡ଼ିଦେବା—
କି, ପୁଳାଏ କେଉଁଠି ଚୋରି ଚମାରି କରି
ମାରିନେବା—

ମଙ୍ଗରାଜ—( କେବଳ ଚାହିଁଥିଲେ ଅବାକ୍ ହୋଇ )

ରାଣୀ—ଆହୁରି ଯେ ବାହାରିଚ, ଗାଁ ଗଣ୍ଡାରେ ଯେ
କେହି ପିଲାବୁଢ଼ା ରହି ଯାଇଛନ୍ତି—ତୁଣ୍ଡେଇ
ତୁଣ୍ଡେଇ ବଜ୍ରଧର ସଙ୍ଗେ ଲଢ଼ିବାକୁ—ତା'ର
ସେହି କଳ୍ପିତଙ୍କର ଅତ୍ୟାଚାର ଦମନ କରିବା
ଛଳରେ—ଅପରୀପ୍ରନ୍ତ ଘୋର ଅତ୍ୟାଚାରର
ବିଧାନ କରୁନାହଁ କି, ସେହି କାର୍ଯ୍ୟରେ ? ମଡ଼ା
ଉପରେ ଖଣ୍ଡା ଚୋଟ ବସାଇବାକୁ ଧାଇଁ
ଯାଉନାହଁ କି, ଅବହେଳେ ? ଆପଣାର ରାଜ୍ୟର
ମୂଳୋତ୍ପାଟନ କରିବାକୁ ଉନ୍ମତ୍ତ ହୋଇ ଉଠୁନାହଁ
କି, ଅଚରେ ?—

[ ଯୋଦ୍ଧୃ ବେଶରେ ଯୁବକ ଓ ଯୁବତୀ ପୁଣି ପ୍ରବେଶ କଲେ ]

ଯୁବକ—ମା ! ଆମେ କଣ ତ୍ୟକ୍ତ-ସନ୍ତାନ ହୋଇ
ତୋର ବରାବର ରହିଥିବୁ, ମା ? କି ଦୋଷରୁ,
ମା ? ଅନ୍ୟାନ୍ୟଙ୍କ ଭଳି ତୋର ସନ୍ତାନ ତ,
ମା ? ତୋର ପାଇଁତ ଜାନ୍, ମାନ୍ ସର୍ବସ୍ୱ ଦେଇଛୁ
ଅପର ଭାଇ ଭଉଣୀଙ୍କ ଭଳି । କେଉଁ ଭାଗ୍ୟ
ଦୋଷରୁ ତେବେ ବିଚ୍ଛିନ୍ନ ହୋଇ, ଅପଦସ୍ଥ,
ଅତ୍ୟାଚାରିତ ହେଉଥିବୁ, ତୋର ପଡ଼ୋଶୀ
ହାତରେ !—ତୋର ଆଖି ସାମ୍ନାରେ !—ଆଉ,
ତୁ ମା ହୋଇ ସୁଖରେ ଚାହିଁ ଦେଖୁଥିବୁ—
ଗେଲବସର କରୁଥିବୁ ଆନଭାଇଙ୍କୁ ଆମର,
କୋଳେ, କାଖେ ନଚାଇ, କୁଦାଇ ?

ରାଣୀ—ପିଲାମାନେ, ମୋତେ ବିକଳ କରଦିଅନା—
ଅଳପ ଖଟାଇ ଟିକିଏ ତଳେଇ ଦେଖିବାକୁ ଦିଅ
ବିଷୟମାନ—ବିଚାର କରି ଦେଖେଁ—ପରାମର୍ଶ
କରି ଦେଖେଁ—ଏହି ମହାମାରୀ ଯୁଦ୍ଧ ଛଡ଼ା—
ଅନ୍ୟ କୌଣସି ଉପାୟରେ, ମୀମାଂସା କରାଯାଇ
ପାରେ କି ନାହିଁ ?

ଯୁବକ—ଆମେ କିନ୍ତୁ ସବୁର୍ ସହି ପାରିବୁ ନାହିଁ,
ମା—ଆମର ମନକୁ ଯାହା ପାଇବ, ଆମେ
କରିବାକୁ ଚାଲିଲୁ; ପ୍ରାଣ ଉପରେ ପଡ଼ିଛି—
ଆମେ ନିଶ୍ଚିନ୍ତ ଥାଇ ପାରିବୁ ନାହିଁ - ଏଥିରେ
ଶତ୍ରୁ ମରୁ କି ମିତ୍ର ମରୁ—କିମ୍ବା, ଆମ ଭିତରେ,
ଆମେ ହଣାକଟା ହୋଇ ମରୁ—

ଯୁବତୀ—ଆହୁରି ଶୁଣ, ମା—ଆମର ରକ୍ତମାଂସର
ଦେହ—ଏକା ମା-ପେଟର ଭାଇ ଭଉଣୀ
ଆମେ—ଏମାନେ ତୋର ଦୁଧ ପିଇ, ହେଣ୍ଡିମାରି
ବୁଲିବେ—ଆଉ ଆମେ ଖାଇବାକୁ ନ ପାଇ ଶୁଖି
ଛଟପଟ ହୋଇ ମରିବୁ—ଏହା କେବେ ହ'ବ
ନାହିଁ—ତୁ ଯା' ମନେ ବିଚାର, ମା—

ରାଣୀ—ଶତ୍ରୁକୁ କ'ଣ ଘରେ ଆଣି ଭର୍ତ୍ତି କରିବ ?

ଯୁବତୀ—ସେତିକି ତ ନୁହେଁ—ଶତ୍ରୁ ସଙ୍ଗେ ମିଶି,
ଶତ୍ରୁଗୁଣ ତେଜରେ ଅତ୍ୟାଚାର କରିବାକୁ
ଛାଡ଼ିବୁ ନାହିଁ—ଆପଣାର ଭାଇ ଭଉଣୀଙ୍କ ଠେଇଁ ?
ଆପଣାର ରକ୍ତମାଂସ ଠେଇଁ ?

ଯୁବକ—ଯଦି ମୀମାଂସା ଚଞ୍ଚଳ ନ ହୁଏ—ଏହି
ସଂକଳ୍ପ ଅମର ।

[ ଯୁବତୀକୁ ଟାଣିନେଇ ଚାଲିଗଲେ ]

ରାଣୀ—( ମଙ୍ଗରାଜଙ୍କ ଆଡ଼େ ଚାହିଁଲେ )

ମଙ୍ଗରାଜ—ଦିଅନ୍ତୁ, ମା—ମଙ୍ଗରାଜର ସେହି ପୂର୍ବାଧିକ
ପ୍ରିୟତମ 'ଶାବେଳ'ଟି ଫେରାଇ—ଦିଅନ୍ତୁ ଗୋ
ଅବତାର କରେ ଟିକେ, ଅଭୟ-ବରଦା-
ରୂପିଣୀ !—ନବୋନ୍ମାଦନାରେ—କେଉଁ
ନବୋତ୍ସାହରେ ମାତିଉଠେ ମୁହିଁ !—
ଦେଖେଁ—ନିମିଷକେ ଖଣ୍ଡ ଖଣ୍ଡ 'ଅରାଟ'କୁ
ମିଶାଇ—ଅଖଣ୍ଡ 'ଅରାଟ' କରୁଛି, କି ନାହିଁ ?

ମାଳତୀ—ଏ ଝିଅଟାକୁ ତୁମର ମଧ୍ୟ ସେହିଭଳି ଅଭୟ
ଆଶିଷ ଦିଅ, ମା—ସେହିଭଳି ଦୟାକର, ମା—

ରାଣୀ—ପୂର୍ଣ୍ଣଚନ୍ଦ୍ର !

[ କେଉଁ ବ୍ୟାକୁଳ ଦୃଷ୍ଟିରେ ଚାହିଁଲେ ]

ପୂର୍ଣ୍ଣଚନ୍ଦ୍ର—ମା !—ଯୁଦ୍ଧ ଛଡ଼ା କି ଅନ୍ୟ ଉପାୟ
ସତେ ସତେ—

ରାଣୀ—ଅଛି, ଅଛି, ବାବା ?—ଜାଣୁ, ଜାଣୁ ତୁ
କାହିଁ ? ତୋର ବାବା ଯେ ଯୁଦ୍ଧ ଡରରେ ବସିବ
ଖୋଲର ବଣ ଜଙ୍ଗଲରେ ଯାଇ ଆଶ୍ରୟ
ନେଉଥିଲେ, ତା ନୁହେଁ, ବାବା—କେବଳ,
କେବଳ ଏହି ଅତ୍ୟାଚାରର ବାଭ୍ରାଷିକାର ଅସହ୍ୟ
ବୋଧରେ, ବାବା—

ପୂର୍ଣ୍ଣଚନ୍ଦ୍ର—ମା ! ଯଦି ଅନୁମତି ଦିଅ—ମୁଁ ନିଜେ
ଅନୁଗୁଳ ରାଜା ବଜ୍ରଧରଙ୍କ ନିକଟକୁ ଯିବି—
ବଜ୍ରକଣ୍ଠରେ ବଡ଼, ପଚାରିବି—କେଉଁ ନ୍ୟାୟରେ,
ଅଧିକାର କରିଛନ୍ତି ରାଜ୍ୟ ସେ ଆମର ? ଆଉ, ଏ
ଭଳି ଅତ୍ୟାଚାର, ନିରୀହ ପ୍ରଜାଗଣଙ୍କ ପ୍ରତି
କରିବାର ଉଦ୍ଦେଶ୍ୟ କ'ଣ ?—

ରାଣୀ—( ମଙ୍ଗରାଜଙ୍କ ଆଡ଼େ ଚାହିଁଲେ )

ମଙ୍ଗରାଜ—ଦୁନିଆଟା ଏତେ ସରଳ ନୁହେଁ, ବାବା !
ଯେତେ ସରଳ ଭାବୁଛ, ସରଳ କୋମଳ ମନରେ
ତୁମର ! ସେହି କପଟୀ, ଅତ୍ୟାଚାରୀ, ଉତ୍ତର ଯା'
ଦେବାର, ଦେବ ସିନା—ଅତ୍ୟାଚାର ମୁଖେ—
ନବନୀତ ଏହି ଶ୍ରୀଅଙ୍ଗେ—ଶିରରେ, ଶିରରେ ।

ରାଣୀ—ନା, ନା—ମୁଁ ଛାଡ଼ିଦେଇ ପାରିବି ନାହିଁ
କେଣିକି, ତୋତେ ବାବା ?

ପୂର୍ଣ୍ଣଚନ୍ଦ୍ର—ମା, ମା ! ପଶୁ-ଗହଣରେ ଥାଇ, ଥାଇ, ପଶୁ-
ଶିକାର କରି କରି, ଜୀବନର ଏହି କେତୋଟା
ଦିନରେ ଯା, ଉପଲବ୍ଧି କରିଛି, ସେଥିରେ
ଦେଖିଛି—ହିଂସ୍ର, ବନ୍ୟପଶୁ—ସେମାନଙ୍କ
ଭିତରେ ମଧ୍ୟ ମନୁଷ୍ୟର ଅନେକ ସୁପ୍ରବୃତ୍ତି
ଉଦ୍‌ବୁଦ୍ଧ କରାଯାଇପାରେ, ସାମାନ୍ୟ ଚେଷ୍ଟାରେ
—ଆଉ ଏ'ତ ସଭ୍ୟ ମନୁଷ୍ୟ—ଯେତେ
ଅତ୍ୟାଚାରୀ ହେଲେ ମଧ୍ୟ, ପଶୁତ ନୁହନ୍ତି ?—
ମୋର ବିଶ୍ୱାସ—ମୁଁ ନିଶ୍ଚେ ମନୁଷ୍ୟ ସଙ୍ଗେ,
ମନୁଷ୍ୟର ଜବାବ୍ ସବାଲ୍ କରିପାରିବି !

ମଙ୍ଗରାଜ—ବାବା ! ଆହୁରି ଅଭିଜ୍ଞତା ବଢ଼ିଲେ
ଦେଖିବ—ପଶୁର ପଶୁତ୍ୱ ବିନାଶ କରିବା ଯେତେ
ସହଜ—ମନୁଷ୍ୟର ପଶୁତ୍ୱ ବିନାଶ କରିବା
ତେତେ ସହଜ ନୁହେଁ—

ପୂର୍ଣ୍ଣଚନ୍ଦ୍ର—ତୁମେଇତ କହୁଛ, ସେନାପତେ, ଗର୍ବଭରେ
—ବର୍ଗୀ-ଆକ୍ରମଣ କାଳେ, ରାଜ୍ୟସାରା ରାଜାପ୍ରଜା
ଯେତେବେଳେ ପ୍ରାଣାକୁଳରେ ବଣ ଜଙ୍ଗଲ
ଆଶ୍ରୟ କଲେ—ତୁମେ ଏକା ଦମ୍ଭଧର ରାଜ୍ୟ
ମନ୍ଦିରେ ସ୍ତମ୍ଭଭଳି ଠିଆହୋଇ ରହିଥିଲ—ନା,
ନା—ସାମ୍ନା ସାମ୍ନି ଭେଟିଥିଲ ବର୍ଗୀକୁ
ଅକୁତୋଭୟରେ—ତା'ର ଉତ୍ତୋଳିତ କୃପାଣକୁ
ପାଦସ୍ପର୍ଶ କରାଇଥିଲ, ଗୋଟାଏ ଇଙ୍ଗିତରେ !—
ବର୍ତ୍ତମାନ ମୁଁ ପଚାରେଁ, ତାହାବେଳେ ଏହା କରି
ପାରିଥିଲ ? ଆପଣାର ମନୁଷ୍ୟତ୍ୱବଳେ ଯଥା—

ତଥା, ସେହି ପଶୁ-ପ୍ରକୃତ ବର୍ଗୀ ଯେ ମନୁଷ୍ୟ, ଏହି ବିଶ୍ୱାସ କଲେ, ନୁହେଁ କି ?

ମଙ୍ଗରାଜ—( କୌଣସି ଉତ୍ତର ଦେଇ ପାରିଲେ ନାହିଁ ହଠାତ୍ )

ପୂର୍ଣ୍ଣଚନ୍ଦ୍ର—ମା ! ଆଜିର ମୁଁ ଦେଖାଇବାକୁ ଚାହେଁ କାର୍ଯ୍ୟରେ, ପିତା ମୋର ଶେଷ ଉପରେ, କି ପ୍ରାଣ ଉପରେ, କି ତୁମର କହିବା ଅନୁଯାୟୀ ଅତ୍ୟାଚାରୀର ଶାସ୍ତିଟିକା ଅସହ୍ୟ ବୋଧହେବ, ବଣ ଜଙ୍ଗଲରେ ଯେ ଆଶ୍ରୟ ଖୋଜୁଥିଲେ, ତା' ନୁହେଁ; ସେ ଖୋଜୁଥିଲେ, ମନୁଷ୍ୟତ୍ୱର ଗୋଟାଏ ମହନୀୟ-ଭାବାବେଶରେ ! ମୁଁ ସେଇଟା ଦେଖାଇବି— ମନ୍ଦରଧରର ସେହି ମନୁଷ୍ୟତ୍ୱର ମହନୀୟଭାବା-ଦର୍ଶରେ, ଭେଟି ବଜ୍ରଧରେ !—ବଜ୍ରହୁଙ୍କାରେ ଲିଭାଇବି କାଳିମା, ଯାହା ବୋଳିଛନ୍ତି ଲୋକେ, ପିତୃଦେବଙ୍କେ ମୋର !—କରିବି ସମୁଜ୍ଜ୍ୱଳ ବଂଶର ଗାରିମା—ବୃଷଭାଙ୍କିତ ପତାକା ତଥା, ରାଜ୍ୟର ଅମ୍ବର !

ରାଣୀ—ମନୋବାଞ୍ଛା ତୋର ପୂର୍ଣ୍ଣ ହେଉ, ବାବା !

ମଙ୍ଗରାଜ—ରାଣୀମା—ରାଣୀମା !—

ରାଣୀ—ନା, ନା, ମଙ୍ଗରାଜ—ମନୁଷ୍ୟ ସଙ୍ଗେ ହେଉ ଆଜି ମନୁଷ୍ୟର ଲଢ଼ାଇ—

ବଳାଙ୍ଗୀ—ମୋର ବାଞ୍ଛା କଣ ପୂର୍ଣ୍ଣ କରିବ ନାହିଁ, ମା ?—

ରାଣୀ—ତୁ କେଉଁଠାକୁ ଯିବୁ, ମା ?—

ମାଳତୀ—ମନାକର ନାହିଁ, ମା—ପୂର୍ଣ୍ଣଚନ୍ଦ୍ର ଯେ 'ରାଜା' ତାର—

ରାଣୀ—ମଙ୍ଗରାଜ ! ଶୁଭ-ଯାତ୍ରାର ଶୀଘ୍ର ଆୟୋଜନ କର— ( ଚାଲିଗଲେ ସମସ୍ତେ )

[ ଏକାନ୍ତେ ପୂର୍ଣ୍ଣଚନ୍ଦ୍ର ଓ ବଳାଙ୍ଗୀ ]

ପୂର୍ଣ୍ଣଚନ୍ଦ୍ର—ତୁମେ କେଉଁଠାକୁ ଯିବ, ରାଣୀ ? ତୁମେ ଯେ ଗୋଟାଏ ଅଜୁଆ ହେବ ?—

ବଳାଙ୍ଗୀ—ପଶୁ-ଶିକାର ବେଳେ ସାଥି ନ କଲେ ନ ଚଳେ—ମଣିଷ ଶିକାର ବେଳକୁ 'ଅଜୁଆ' ?

ପୂର୍ଣ୍ଣଚନ୍ଦ୍ର—ବୁଝଁ ନା ତୁମେ, କି ଦାୟିତ୍ୱ ଘେନି, ମୁଁ ଯାଉଛି—

ବଳାଙ୍ଗୀ—ମୋ'ର ଦାୟିତ୍ୱ ପରା କିଛି କମ୍ ତ ? ନରର ସେହି ଅହଂକାର ଯେ ମୁଁ ଚୂର୍ଣ୍ଣ କରିବାକୁ ଯିବି— ନା'ର ମୋର ସେହି ବାସନା ଯେ ପୂର୍ଣ୍ଣ କରିବି— ନର, ନାରୀ ପାଇଁ ସ୍ଥିର ପ୍ରାଣତ୍ୟାଗ କଲେ ସୁଦ୍ଧା, ନାରୀ, ନରପାଇଁ କ'ଣ ତ୍ୟାଗ କରି ନ ପାରେ !—

ପୂର୍ଣ୍ଣଚନ୍ଦ୍ର—( ଚାହିଁରହିଲେ ସ୍ଥିରଦୃଷ୍ଟିରେ )

ବଳାଙ୍ଗୀ—( ଅଶ୍ୱବଲ୍ଗା ଫିଟାଇ ଦେଇ ପୂର୍ଣ୍ଣଚନ୍ଦ୍ର କରେ ) ହଉ, ଧରିଲ ତୁମର ଘୋଡ଼ାର ଲଗାମଟା—

ପୂର୍ଣ୍ଣଚନ୍ଦ୍ର—ମୁଁ ଘୋଡ଼ୀର ଲଗାମଟା ତୁମ ହାତରେ—

ବଳାଙ୍ଗୀ—ତୁମେ ଚଢ଼ନା ଆଗେ !—

ପୂର୍ଣ୍ଣଚନ୍ଦ୍ର—ମୋତେ ବିଦାୟ କରି ଦେଇ, ଭାଗେ ନା କ'ଣ ?—

ବଳାଙ୍ଗୀ—ତୁମେତ ଯିବ ତୁମବାଟେ—ଅତ୍ୟାଚାରୀଙ୍କୁ ଭେଟିବାକୁ !—

ପୂର୍ଣ୍ଣଚନ୍ଦ୍ର—ଆଉ ତୁମେ ?

ବଳାଙ୍ଗୀ—ଅତ୍ୟାଚାରୀଙ୍କୁ ସଙ୍ଘୋଳିବାକୁ !—

( କହୁ କହୁ ଆପଣାର ଘୋଡ଼ାର ଲଗାମଟି ଫିଟାଇ ବିପରୀତ ଦିଗେ ଯିବାକୁ ଉଦ୍ୟତା ହେଲେ )

ପୂର୍ଣ୍ଣଚନ୍ଦ୍ର—ରାଣି !

ବଳାଙ୍ଗୀ—ରାଜା !

( ଥରେମାତ୍ର ଫେରି ଚାହିଁ ଅଶ୍ୱ ଛୁଟାଇ ଦେଲେ )

—ଯବନିକା—

# ଦ୍ୱିତୀୟ ଅଙ୍କ

—ଅନୁକୂଳ ଗଡ଼ ରାଜୋଦ୍ୟାନ—

[ ଚିତ୍ରମାଳୀ ଗୋଟିଏ ଚିତ୍ରଅଙ୍କନରେ ମନ ପ୍ରାଣ ଢାଳି ଦେଇଥିଲେ—ଅଦୂରେ କବି ଗାଇ ଗାଇ ଯାଉଥିଲେ ]

କବି— —ଗୀତ—

କିଏ ସେ ? କିଏ ସେ ସୁନ୍ଦର ମୂରତି ?
ଯାହାଲାଗି ନିତି ଏତେ ଗୋ ଆରତି ।।
ତୁହେଁ କେହି ଦେଖିବ ସ୍ୱରୂପ—ଆଙ୍କି ଚିତ୍ରପଟେ—
କେହିବା ଛନ୍ଦର ସେହିରୂପ—ଗାଇ ସଙ୍ଗୀତଟେ
କିନ୍ତୁ, ସେ ଯେ କିଏ ? କାହିଁ ସେ ? କାହିଁଟି ?
କେ କହି ପାରିବ ତାହାର ବସତି ।।

[ ଗୀତଟି ଶେଷ ହେଉଣୁ ନ ହେଉଣୁ ଚିତ୍ରମାଳୀ ଧାଇଁ ଆସିଥିଲେ କବି ନିକଟକୁ ]

ଚିତ୍ରମାଳୀ—କବି !
କବି—ଚିତ୍ରକରେ !
ଚିତ୍ରମାଳୀ—ପୁଣି ? ତୁମର ମତଲବ କ'ଣ ?
କବି—ଯା' ତୁମର ମତଲବ, ସୁନ୍ଦରୀ ।
ଚିତ୍ରମାଳୀ—ମୋର ମତଲବତ ମୁଁ ଜାଣେ ନା—
କବି—ମୋ'ର ମତଲବ କ'ଣ ମୁଁ ଆଉ ଜାଣେ ?
ଚିତ୍ରମାଳୀ—ଏତେ ମନା ସତ୍ତ୍ୱେ—ତୁମେ ଏଠାକୁ ନିତି ଆସ କାହିଁକି ?
କବି—ତୁମେ ଏଠି ନିତି ବସ କାହିଁକି ?
ଚିତ୍ରମାଳୀ—ଚିତ୍ର ଅଙ୍କିବାକୁ—
କବି—ମୁଁ ବି ଆସେ, ଗୀତ ଗାଇବାକୁ ।
ଚିତ୍ରମାଳୀ—ଘରେ ବସି, ପାରନ୍ତ ?—
କବି—ତୁମେ ବି ଏ' ଖୋଲା ବଗିଚାକୁ ନ ଆସି, ହିଲ୍‌ମିଲ୍‌ଆ ଘର ଭିତରେ, ଗାଲିଚା ଉପରେ ବସି, ପାରନ୍ତ ।
ଚିତ୍ରମାଳୀ—ମୁଣ୍ଡରେ ଯେ କିଛି ଖେଳେ ନାହିଁ ସେଠି—ତୁଳିର ହାତରେ ଚୁଲେ ନାହିଁ ଠିକ୍—
କବି—ମୋ'ର ବି ଠିକ୍ ସେହି ଦଶା ଗୋ, ସେହି ଦଶା—ସ୍ୱର ଆଦୌ ଖୋଲେ ନାହିଁ—
ଚିତ୍ରମାଳୀ—ବେଶ୍, ଆଉ କେଉଁ ଖୋଲା ଜାଗାକୁ ଯାଇ, ତୁମର ସେହି ଭେରେଣ୍ଡା-କଣ୍ଠ ଖୋଲିଲେ ହୁଅନ୍ତା ନାହିଁ ?
କବି—ହଉ, ତେବେ ଗାଇବି ନାହିଁ ଆଉ—
ଚିତ୍ରମାଳୀ—ଏ' ଠା' ବି ମାଡ଼ିବ ନାହିଁ ଆଉ—
କବି—ନା, ନା, ସେ କଥା କୁହ ନାହିଁ—ତା ହେଲେ ଯେ ମୁଁ ବଞ୍ଚି ପାରିବି ନାହିଁ ଗୋ ।
ଚିତ୍ରମାଳୀ—ତୁନି ହୋଇ ବସି ପାରିବ ?
କବି—ଅବଶ୍ୟ, ତୁମେ ଆଖି ସାମ୍‌ନାରେ ଥିଲେ ।
ଚିତ୍ରମାଳୀ—ଆଖି ଉହାଡ଼ ହେଲେ ?
କବି—ସାତତାଳ ପାଣିତଳେ ଲୁଚି ରହିଲେ ବି, ବଡ଼ିକୁ ମୋ'ର ଏଡ଼ି ପାରିବ ନାହିଁ ପରା ।
ଚିତ୍ରମାଳୀ—ଚିତ୍ରଟା ମୋର ଆଙ୍କି, ଶେଷ କରିବାକୁ ଦେବ ନାହିଁ, ଦେଖୁଛି—
କବି—ଶେଷ କ'ଣ ଚିତ୍ରର କେବେ ହୁଏ, ଚିତ୍ରକରେ ?
ଚିତ୍ରମାଳୀ—ତୁମର ଗୀତର ସିନା ନାହିଁ ?

( ଚିତ୍ର ଆଙ୍କିବାକୁ ଲାଗିଲେ )

କବି— —ଗୀତ—

ବୃଥା ଏ ଗରବ ସିନା—ତୁମ୍ଭର ଲଳନା—
କାହିଁ ଆଦି—କାହିଁ ଅନ୍ତ—କେ କରେ କଳନା ।।
ଯେତେ ଚାଲ୍ ଆଗେ ଆଗେ—
ପଡ଼ିଅଛ କେଉଁଭାଗେ,
ଧରିଚ, ଧରିଚ ବୋଲି, ମନେ ହୁଏ ସତତ—
ଡାହାଣୀ-ଅଲିଅ ପରା, ଯାଏ ମୋତେ ଜଣା ।।

ଚିତ୍ରମାଳୀ—ଡାହାଣୀ-ଅଲିଅ ! ଦେଖିଲ ଦେଖିଲ, ମୁଁ ପାଖକୁ ଲାଗି ଲାଗି ଆସିଲିଣି, କି ନାହିଁ ( ଚିତ୍ରଟି ଦେଖାଇଲେ )
କବି—ଏଇତ ମଜା !—ଧରାଦେଇ, ଧରା ଦେଉ ନଥିବ—ତୁମେ ଛୁଇଁ ଛୁଇଁପାରୁ ନଥିବ—କହିଲ, କହିଲ ଯେଉଁ ଅସ୍ପଷ୍ଟକୁ ସେହି ଅସ୍ପଷ୍ଟ କି ନୁହେଁ ? ସ୍ୱେତ ଚିତ୍ର ଘର—ଯେଉଁ ଜୀବନ୍ତ ମନୁଷ୍ୟର ଛାୟାପାତ ଏ', ସେ'ତ କେଉଁ ଅସ୍ପଷ୍ଟର ପ୍ରତିମୂର୍ତ୍ତି ଟିଏ ।—

ଅସ୍ପଷ୍ଟ ଗର୍ଭରୁ ଆସି, ଅସ୍ପଷ୍ଟ ଆଲୋକରେ ଖେଳି, କେଉଁ ଅସ୍ପଷ୍ଟ ଭିତରେ ମିଳାଇ ଯାଏ ।

ଶନ୍ଦମାଳୀ—ଲବ୍‌, ବୁଝିଲି—ତୁମର ଅସ୍ପଷ୍ଟ ଗୀତ ଶୁଣି ଶୁଣି—ମୋର ଶନ୍ଦକୁ ସ୍ପଷ୍ଟ କରିପାରୁ ନାହିଁ, ଅଙ୍କଯାଏ—ସାବଧାନ—ତୁମେ ଯଦି ଆଜି ଏ' ଦାଣ୍ଡ ମାଡ଼, କି ଦଣ୍ଡେ ଏଠି ରୁହ—ନିଶ୍ଚେ ଗ୍ଲାମୁରେ ଜଣାଇ, ତୁମର ଅସ୍ତିତ୍ୱ ଲୋପ କରାଇ ଦେବି ।—

ଲବ—ନିଶ୍ଚେ ଜାଣିଥାଅ ତାହେଲେ, ତୁମେ ଦିନରାତି, ଶୋଇଲା, ବସିଲାବେଳେ—ମୋର ଗୀତରେ ଅସ୍ତବ୍ୟସ୍ତ ହୋଇ ପଡ଼ିବ—କହିଲି ଭଲା, ମୁଁ ଏଠି ଥାଇ, ଗାଇଲାବେଳେ—ତୁମେ ଯେଉଁଭଳି ଥିରହୋଇ କାମ କରୁଥାଅ—ମୁଁ ଏଠି ନଥାଇ, ନ ଗାଇଲାବେଳେ, ସେଭଳି କରିପାର କି ?

ଶନ୍ଦମାଳୀ—ଦେଖୁଚି, ମୋତେଇ ଏ' ଉଦ୍ୟାନ ଛାଡ଼ି ଯିବାକୁ ହେଲା । ( ଶନ୍ଦଟିକୁ ଘେନି ଚାଲିଗଲେ )

ଲବ—କିନ୍ତୁ, ଛାଡ଼ି ରହିଯାଇବ କି ଏ' ମାନସୋଦ୍ୟାନକୁ ?

—ଗୀତ—

ଏ' ମାନସୋଦ୍ୟାନେ—ଦେଖ ଗୋ ନିରେଖି—
ଗାନେ, ମାନେ କେଉଁ ବନ୍ଧା ତୁମେ, ସଖି ॥
ଟନ୍ଦେ ଟନ୍ଦେ ତୁମେ ଖୋଜ ଯେ ମୋହନ—
ଗାନେ, ଗାନେ ମୁହିଁ ଖୋଜଇ ତେସନ;
ତୁମର ମୋହନ ପ୍ରୀତି—ଫୁଟନ୍ତା ଫୁଲଟି—
ହୃଦେ ହୃଦେ ଥିଲେ, ବାସନା ମହକି ॥

[ ଗାଇ ଗାଇ ଲବ ଚାଲିଗଲେ କେଉଁ ଉଦାସୀର ଭାବେ ]

ଶନ୍ଦମାଳୀ—(ଧାଇଁଆସି ବାଉଳା ହୋଇ) ଲବ ! ଲବ ! ଗାଅ —ଗାଅ, ଖୋଲିଦିଅ ତୁମର ଲବତାର ଉତ୍ସ—ବହିଯାଉ ସ୍ରୋତ—ଭରିଉଠୁ ଶନ୍ଦ—ଶନ୍ଦଭରି ଆଙ୍କେ ମୁହିଁ, ମୋ'ର ମୋହନର ଶନ୍ଦ । କାହିଁ—କାହିଁ ତୁମେ ? (ଦାଣ୍ଡକୁ ବାହାରି ପଡ଼ୁଥିଲେ )

ଲବ—( ପ୍ରବେଶ ପୂର୍ବକ ) ମୋତେ ଡାକୁଥିଲେ, ସୁନ୍ଦରି ?

ଶନ୍ଦମାଳୀ—ଆସ,ଆସ, ଲବ—ଗାଅ, ଗାଅ—ମରମର ଗୀତ—ମରମରେ ପଶି—ମରମର ଶନ୍ଦ ଅଙ୍କ କରିବି ଜୀବନ୍ତ ।—

ଲବ—ଚାଲଗୋ ନିକୁଞ୍ଜେ ଧନି—ଗାଇବି ତୁମର ଗୀତ, ତୁମର ରୂପ ଗୁଣି—

—ଗୀତ—

ବାଇବି ବାଁଶୀ—ତୋଳି ତାନ ମାନ ।
ବୋହିବ ଯମୁନା—ଭାଙ୍ଗି କୂଳ ମାନ ॥

[ ଗାଇ ଗାଇ ଶନ୍ଦମାଳୀ ସଙ୍ଗରେ ପ୍ରସ୍ଥାନ କଲେ ]

ଶନ୍ଦମାଳୀ—( ମର୍ମରେ କେଉଁ ମୋହନ ବଂଶୀର ତାନ ଖେଳି ଉଠୁନା କରିଦେଇଥିଲା )

[ ଲବର ଗୀତ ଯଦିଓ ଅସ୍ପଷ୍ଟ ଶୁଣାଯାଉ ଥିଲା, କି ମୋଟେ ଶୁଣାଯାଉ ନଥିଲା, ଚେଷ୍ଟା କିନ୍ତୁ ସ୍ଥାନଟିକୁ ସରଗରମ୍ କରି ରଖିଥିଲା—ଠିକ୍ ସେହି ସମୟରେ ରାଜାବଜ୍ରଧରଙ୍କ ସଙ୍ଗେ ପୂର୍ଣ୍ଣଚନ୍ଦ୍ର ପ୍ରବେଶ କଲେ ]

ପୂର୍ଣ୍ଣଚନ୍ଦ୍ର—ଆଜି ଶେଷ ଦିନ, ରାଜା—

ବଜ୍ରଧର—କୈଫିୟତ୍ ଦେବାର ତ ?

ପୂର୍ଣ୍ଣଚନ୍ଦ୍ର—ଯା'ମନେକରି ପାରନ୍ତି ଆପଣ ।

ବଜ୍ରଧର—ବେଶ୍, ବେଶ୍, ମୋ'ର ବି ଯା'ଶେଷ-ଦେଖାଇବାର ଅଛି, ତା'—

ପୂର୍ଣ୍ଣଚନ୍ଦ୍ର—କିନ୍ତୁ, ଆଉ ଦଣ୍ଡେ ଯେ ମୁଁ ଅପେକ୍ଷା କରିପାରୁ ନାହିଁ—

ବଜ୍ରଧର—ଦରକାର ବି ନାହିଁ—ଖାଲି ଏହିପଟ ଦେଖାଇବାକୁ ତ ବାକିଥିଲା ନଅବର !

ପୂର୍ଣ୍ଣଚନ୍ଦ୍ର—ଅନ୍ଦର ମହଲର ଉଦ୍ୟାନଟି ଏ' ପରା ?

ବଜ୍ରଧର—ବାହାର ସଙ୍ଗେ କେମିତିକା ଯୋଗାଯୋଗ ରହିଚି, ଦେଖୁଚତ ?

ପୂର୍ଣ୍ଣଚନ୍ଦ୍ର—(ଆପଣା ମନେ) ମଣିଷର ବାହାର ଅନ୍ଦର ଠିକ୍ ଏହିଭଳି ନା ?

ବଜ୍ରଧର—କଣ ଭାବୁଛ ? ପସନ୍ଦ ହେଉ ନାହିଁ ?

ପୂର୍ଣ୍ଣଚନ୍ଦ୍ର—ଖୁବ୍ ହୋଇଛି, ରାଜା—ଗୁଲୁଛୁ ସଭାକୁ—

ବଜ୍ରଧର—କାହିଁକି ? ଏଇଠି କଥାବାର୍ତ୍ତା କଲେ ମନ୍ଦ କ'ଣ ?

ପୂର୍ଣ୍ଣଚନ୍ଦ୍ର—ରାଜନୀତି କଥା—ରାଜସଭାରେ ହେବା ଉଚିତ୍ ନୁହେଁ କି ?

ବଜ୍ରଧର—ମୋ'ର ସେମିତିକା ବାର-ବଗୁର କିଛି ନଥାଏ—ତେବେ, ତୁମର—ଯେମିତିକା ଇଚ୍ଛା—

ପୂର୍ଣ୍ଣଚନ୍ଦ୍ର—( ରହସ୍ୟ କିଛି ଭେଦନ ନ କରି ପାରି ) ଉଃ, କି ଗୋଳମାଳ ଏଠି !—

ବଜ୍ରଧର—ଭାରି—ନା ?

ପୂର୍ଣ୍ଣଚନ୍ଦ୍ର—ଆଃ କି ସୁନ୍ଦର ସ୍ୱର !

[ ନେପଥ୍ୟେ କବି ଗାଉଥିଲେ ]

ଗୀତ

ଅନାଇ, ଅନାଇ—ପଥ ଚୁହିଁ ଚୁହିଁ—
କ୍ଳାନ୍ତ ହେଲିଣି ଗୋ—କଥା ଫୁଟୁନାହିଁ—

ପୂର୍ଣ୍ଣଚନ୍ଦ୍ର—କିଏ ? କିଏ ସେ, ରାଜା ? କ୍ଳାନ୍ତ କାହିଁକି ? କାହା ପଥ ଚୁହିଁ, ଚୁହିଁ ?

ବଜ୍ରଧର—ବାସ୍ନାଟାଏ !—ବାସ୍ନା-ଖେଯାଲରେ ତା'ର କ'ଣ ଯେ କେତେ ବେଳେ—

ପୂର୍ଣ୍ଣଚନ୍ଦ୍ର—ବାସ୍ନା, ବାସ୍ନା ?—ଅଚ୍ଛା, ଏଇଠି ବସିଲେଡ ବେଶ୍ ହୁଅନ୍ତା—ଏହି ବେଦୀ ଉପରେ—ଗଛର ଛାଇରେ ପଡ଼ିଛି—ସୁନ୍ଦର ବାଅ ବି ବୋହୁଛି—

ବଜ୍ରଧର—ଅସୁନ୍ଦର କେଁ କଟରଟା ଯା'......

ପୂର୍ଣ୍ଣଚନ୍ଦ୍ର—ଅଡୁଅ କରୁଛ ?—ନାହିଁ—ନାହିଁ—

[ ନେପଥ୍ୟେ ପୁଣି କବି ଗାଇଲେ ]

ଗୀତ

କେ ଶୁଣିବ ମୋ'ର ମରମର ଗାନ ।
ପୂର୍ଣ୍ଣଚନ୍ଦ୍ର ବିନା କେ ରଖିବ ମାନ ॥

ପୂର୍ଣ୍ଣଚନ୍ଦ୍ର—( କେମିତିକା ଅସ୍ଥିର ହୋଇ ଉଠିଲେ ) 'ପୂର୍ଣ୍ଣଚନ୍ଦ୍ର' ବିନା !

ବଜ୍ରଧର—ନାଃ, ଏଠି ରହି ଥୋଇ ଦେବେ ନାହିଁ—ଚୁଲ—ଚୁଲ, ରାଜା ବେଗେ ବାହାର୍......

ପୂର୍ଣ୍ଣଚନ୍ଦ୍ର—ସୁନ୍ଦର ଫୁଲ ଫୁଟିଛି, ରାଜା !—ଆଃ—ଏ' କି ଫୁଲ, ରାଜା ?—ବାସବି ବେଶ୍ ମହକୁଛି—!...

ବଜ୍ରଧର—ବୋଇଲି ବି ମନ୍ଦ ଗାଉ ନାହିଁତ ।

ପୂର୍ଣ୍ଣଚନ୍ଦ୍ର—ନା,ନା—କୁଅ—କୁଅ—କୁଅ ରାବୁଛି !—ରାଜା, ରାଜା,—ଯଦି ଠିକ୍ ନିର୍ଦ୍ଦିଷ୍ଟ ବେଳେ, ସୀମାନାର ଠିକ୍ ନିର୍ଦ୍ଦିଷ୍ଟ ଥାନରେ ଯାଇଁ ପହଞ୍ଚି ନପାରେ—

ବଜ୍ରଧର—କ'ଣ ସଙ୍କେତାନୁଯାୟୀ ?

ପୂର୍ଣ୍ଣଚନ୍ଦ୍ର—ହଁ, ହଁ, ମଙ୍ଗରାଜଙ୍କର !—କାଣ୍ଡେନ୍ତିଭ, କାହିଲ ମଣିଷ ସେ, ରାଜା—ବର୍ଷ-ଲଗାଁ ମାର୍ଗେ ଜଳ ଉଠିବେ ନାହିଁ ନା ? ନିରୀହ ପ୍ରଜା କେତୁଟା—ଅମର୍ ହେଉ, ବା ଅପଣଙ୍କର ହେଉ ମଙ୍ଗିରେ ପୋଡ଼ି ମରିବେ ସିନା !—ଯା'ଙ୍କ ପାଇଁ, ମୋ'ର ଆଜ ମନୁଷ୍ୟତ୍ୱ ଗର୍ବରେ, ଗ୍ଲାନି ଫଳାଇ, ଏଠାକୁ ଧାଇଁ ଅସିବା,—ତାଙ୍କର ସର୍ବନାଶ ଭିଆଇବ ଦିନା—ମୋ'ର ହେଲା ଯୋଗୁଁ—ମୋ'ର ଆଳସ୍ୟ ଯୋଗୁଁ ?—

ବଜ୍ରଧର—ନାଃ, ଆଉ ବିଳମ୍ବ କରିବା ଠିକ୍ ନୁହେଁ ତ !—( ଗମନୋଦ୍ୟତ ) ହେଲେ ପରା—

ପୂର୍ଣ୍ଣଚନ୍ଦ୍ର—ରାଜା, ରାଜା, ମୁଁ ସମୁଝି ପାରୁନାହିଁ—କାହିଁକି ଲୋକେ ଅପଣଙ୍କୁ ଅତ୍ୟାଗ୍ରୁହୀ ବୋଲି କହୁଥାନ୍ତି ?—ପରମ ଶତ୍ରୁ ଜାଣି ସୁଦ୍ଧା ଯେଉଁ ମିତ୍ରୋଚିତ, ନା, ନା ତହୁଁ ଅଧିକ ସମାଦର ମୋ ପ୍ରତି ଦେଖାଇଲେ—ମୋ'ର ରାଜ୍ୟରେ ମୁଁ ଜୀବନରେ କେବେ ହେଲେ ଏ'ଭଳି ସମ୍ମାନ ପାଇଛି, ବା ପାଇବି ବୋଲି ମୋ'ର ବିଶ୍ୱାସ ହେଉନାହିଁ !—ଅପଣ ଯେ ରାଜର୍ଷି, ଏ' କଥା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରିବ ଆଜ,—ତା' ନ ହୋଇଥିଲେ କି, କେଉଁ ଅପତ୍ୟ-ନିର୍ବିଶେଷରେ ସ୍ନେହାଦର ପୂର୍ବକ ମୋତେ ଅପଣଙ୍କର ଦୁର୍ଗା-ଭ୍ୟନ୍ତରର, ନଅର ଭିତରର ଅତି ଗୋପ୍ୟ, ଏହି ଗୁପ୍ତ ଭଣ୍ଡାର ଦେଖାଇବାକୁ ଉଲ୍ଲସିତ ହୋଇଥାନ୍ତେ ଏବେହିଁ ?

ବଜ୍ରଧର—କିନ୍ତୁ, ସେହି ଗୁପ୍ତ-ଭଣ୍ଡାରର ଗୁପ୍ତ-ରତ୍ନ ଖୋଲି ଦେଖାଇବାକୁ କୁଣ୍ଠିତ ହୋଇ ନାହିଁ ତଳେ ସୁଦ୍ଧା ?

ପୂର୍ଣ୍ଣଚନ୍ଦ୍ର—ରାଜା ! ଏତେ ସରଳ, ଆପଣ ?

ବଜ୍ରଧର—(ହସି ଉଠିଲେ) ତୁମେ ପଶୁ-ପ୍ରକୃତି ମଙ୍ଗ-ରାଜଙ୍କ 'ଚହଣରେ ଥାଇ ଥାଇ' ସେହି, ବଣ୍ୟ, ହିଂସ୍ରଭାବର କଳ୍ପନା ଓ ଅନୁଭୂତି କରି ଆସିଛ କିନା, ସେଇଥିପାଇଁ ମନୁଷ୍ୟର ସ୍ୱଭାବଟା ଅସ୍ୱାଭାବିକ ଜଣା ଯାଉଛି ତୁମକୁ ?

ପୂର୍ଣ୍ଣଚନ୍ଦ୍ର—ରାଜା—

ବଜ୍ରଧର—ଛାଡ଼, କଥା ତୁମେ ପକାଇବାରୁ ମନର କଥାଟା କହିପକାଇଲି ସିନା, ବନ୍ଧୁ—ଯା' ହେଉ, ମଙ୍ଗରାଜ ଏକା ତୁମର ରାଜ୍ୟର ସ୍ତମ୍ଭଟିଏ।

ପୂର୍ଣ୍ଣଚନ୍ଦ୍ର—ସ୍ତମ୍ଭଟିଏ !—ନା, ନା, ମୋତେ ରାଜଦ୍ରୋହୀ କରି ତୋଳ ନାହିଁ, ରାଜା—ଶୀଘ୍ର ବିଦାୟ କରି ଦିଅ—ଯେତିକି ମୁଁ ଆପଣଙ୍କ ସଙ୍ଗେ ମିଶୁଛି—ଆପଣଙ୍କ କଥାବାର୍ତ୍ତା ଶୁଣୁଛି—ବାର-ବାର ଦେଖୁଛି—ମୋ ମନରେ କାହିଁକି ସେତିକି ଅବିଶ୍ୱାସ ଜନ୍ମୁଛି, ସେହି 'ମଙ୍ଗରାଜ' ପ୍ରତି !—ଘୃଣା ହେଉଛି ସେହି ଅମଣିଷଟା ପ୍ରତି ।

ବଜ୍ରଧର—'ବର୍ଗୀ' ଯେ ବାରବାର ଦେଶ ଆକ୍ରମଣ କରୁଥିଲା ତୁମର—କାହାଯୋଗୁଁ ?—କାହାର ଗୁପ୍ତ ନିମନ୍ତ୍ରଣ ବଳରେ ?

ପୂର୍ଣ୍ଣଚନ୍ଦ୍ର—କ'ଣ, ଭାନୁମଙ୍ଗରାଜର ?

ବଜ୍ରଧର—ନନା ସିନା ତୁମର ଭାଇ ସରଳିଆ ଲୋକ ବୋଲି, ଭାବୁଥିଲେ ଅନ୍ୟପ୍ରକାର !—ଗୋଟାଏ କଥାରୁ ବୁଝିପାରୁ ନାହିଁ, ଏହି 'ମଙ୍ଗରାଜ' ସପରିବାରେ ନିଶ୍ଚିନ୍ତରେ ଆପଣା ଘରେ ରହି ଦ୍ରବ୍ୟ ଭୋଜନ ଚଢ଼ାଉଥା'ନ୍ତି—ଅପର ସମସ୍ତେ ରାଜା ପ୍ରଜା ଯେତେବେଳେ, ବଣ ଜଙ୍ଗଲରେ ଲୁଚି, ଭୋକ ଶୋଷରେ ଛଟ୍ ପଟ୍ ହେଉଥାନ୍ତି ? ଆମେ କ'ଣ ରାଜା କି ? ଆମର କ'ଣ ଅଛି ପାତ୍ର ମନ୍ତ୍ରୀ, ସୈନ୍ୟ, ସେନାପତି ଅଛନ୍ତି କି ? ତୁମର 'ସାତବୀର'ର କେଉଁ ବୀର ସଙ୍ଗେ ଯୋଝା ହେବ ଭଲା ସେ ? କାହାର କାଣିଅଙ୍ଗୁଠିକି ସରି ହେବ ନା ଅଛେ !? ରାଜଭକ୍ତ ! ତେବେ, ତେବେ ସେମିତିକା ଚାଲେଇ ବୈଷ୍ଣବ ଦେଖିଛି ଏ' ଜୀବନରେ, ରାଜା !—

ପୂର୍ଣ୍ଣଚନ୍ଦ୍ର—ନା, ନା—ମଙ୍ଗରାଜ—ତାହେଲେ ତାଙ୍କର ଏକମାତ୍ର ପୁତ୍ର ମୁକୁନ୍ଦ—ପୁତ୍ରବଧୂ, ମାଳତୀ-ସୁନ୍ଦରୀଙ୍କୁ, ଏଭଳି କ୍ରୂରଭାବେ ଧର୍ଷିତ ହେବାକୁ କଦାପି ଦେଇ ନ ଥା'ନ୍ତେ !—

ବଜ୍ରଧର—ଆହା ! ସେମାନେ ଦେବତା ! ( ନମସ୍କାର କରିବାକୁ ଯାଉଁଲେ ନାହିଁ ସେମାନଙ୍କ ଉଦ୍ଦେଶ୍ୟରେ ) ଘୃଣାକ୍ଷରେ ଯଦି ଏହି ଷଡ଼ଯନ୍ତ୍ର କଥା—ଛାଡ଼—

ପୂର୍ଣ୍ଣଚନ୍ଦ୍ର—କ'ଣ ? କ'ଣ କହିଲେ ଆପଣ ?

ବଜ୍ରଧର—ସେଥିରୁ ଆଉ ମିଳିବ କ'ଣ ? ଯା' ହେଉ, ଈଶ୍ୱର ଯା' କରନ୍ତି, ମଙ୍ଗଳ ସକାଶେ—ମୁକୁନ୍ଦକୁ ନେଇଯାଇ ନାହାନ୍ତି ଯେ, ବୁଢ଼ାର ବିଷଦାନ୍ତ ଛେଚି ଦେଇଛନ୍ତି—ହେ ଈଶ୍ୱର !

[ ପ୍ରଣାମ କଲେ ]

ପୂର୍ଣ୍ଣଚନ୍ଦ୍ର—ଏ'କଣ କହୁଛନ୍ତି ଆପଣ ? ମୋର ଯେ ଦେହ ମୁଣ୍ଡ ଗରମ ହୋଇ ଉଠୁଛି ।

ବଜ୍ରଧର—ଥଣ୍ଡାହୁଅ, ବାପ ! ଅଜ ରାଜା, ପୂର୍ଣ୍ଣଚନ୍ଦ୍ର ନ ହୋଇ, ହୋଇଥାନ୍ତା ସିନା—

ପୂର୍ଣ୍ଣଚନ୍ଦ୍ର—'ମୁକୁନ୍ଦ ମଙ୍ଗରାଜ' ? ( କ୍ରୋଧଭରେ ) ରାଜା—ରାଜା !—ଏଭଳି ବୃଥା ଦୋଷାରୋପ, —ଜଣେ ବିଶ୍ୱସ୍ତ, ଆଜୀବନ ପ୍ରଭୁ ଭକ୍ତ ବୃଦ୍ଧ, ଅଥର୍ବ ଭୃତ୍ୟ ପ୍ରତି—ଆଉ ତା'ର ଆଶୈଶବ ପିତୃ-ସ୍ନେହରେ ବର୍ଦ୍ଧିତ, ପ୍ରଭୁ-ସନ୍ତାନ ସମ୍ମୁଖେ କରିବାର ଦଣ୍ଡ କ'ଣ, ଜାଣ, ରାଜା ?

ବଜ୍ରଧର—ମୁଣ୍ଡକାଟ ତ ?

ପୂର୍ଣ୍ଣଚନ୍ଦ୍ର—ଓଃ—ଯଦି—ଯଦି—

ବଜ୍ରଧର—ମୁଣ୍ଡଟାଏ ଦେବିନା, କ'ଣ ?

ପୂର୍ଣ୍ଣଚନ୍ଦ୍ର—ମୂର୍ଖ ! ସେଭଳି କୂଟ ଉଦ୍ଦେଶ୍ୟ ଯଦି ଥାନ୍ତା, ଅମିତ-ତେଜା, ସମଗ୍ର ସାମ୍ରାଜ୍ୟର ବଳ-କାର୍ଯାଧିକାରୀ ଭାନୁମଙ୍ଗରାଜର—ନିଜେ ସେତ

ସ୍ୱଚ୍ଛନ୍ଦେ ସିଂହାସନାରୋହଣ କରି,—ରାଜା ହୋଇ ପାରଥାନ୍ତେ, ଆନନ୍ଦରେ—ବିନା ଦ୍ୱନ୍ଦରେ ।

ବଜ୍ରଧର—ଖୁବ୍ ପୁରସ୍କାରଟାଏ ମିଳି ଗଲା ଯା’ହେଉ—ତୁ, ତ—ନାତୁଣୀଟା ଯୋଗୁଁ—ବୁଢ଼ା ବି ଅନ୍ଧ—ଟୋକା ବି ଅନ୍ଧ ।

ପୂର୍ଣ୍ଣଚନ୍ଦ୍ର—‘ନାତୁଣୀ’ । କିଏ ?—ବଳାଙ୍ଗୀ ?

ବଜ୍ରଧର—ବଳାଙ୍ଗୀ, କି ବିବଳାଙ୍ଗୀ—ମୋତେ କି ଜଣା, ବାବୁ ?—ଶୁଣିଛି ବୁଢ଼ାର ଗୋଟିଏ ନାତୁଣୀ ଅଛି—ଆଉ ରାଜାଙ୍କ ସଙ୍ଗେ ତାର ଅବାଧଗତି—ଅବାଧ—

ପୂର୍ଣ୍ଣଚନ୍ଦ୍ର—‘ପ୍ରୀତି’ ନା ?

ବଜ୍ରଧର—ଖାଲି ଘନିଷ୍ଠ ବୋଲି—

ପୂର୍ଣ୍ଣଚନ୍ଦ୍ର—ଘନିଷ୍ଠ ବୋଲି ଘନିଷ୍ଠ ?—ଝିଅପିଅ ହେଲେ ବି ଛାଡ଼ମାଡ଼ ନଥାଏ ପରା ?

ବଜ୍ରଧର—ଚୁ, ଚୁ—ଅଜି ଛାଡ଼ିଯାଇଚ ସିନା ଅଭ୍ୟା-ଗତଙ୍କୁ ସଙ୍ଖୋଳିବାକୁ—

ପୂର୍ଣ୍ଣଚନ୍ଦ୍ର—( ଅବାକ୍ ଭାବେ ଚାହିଁଲେ )

ବଜ୍ରଧର—ଏଥର ଫେରି ଗଲେ କିନ୍ତୁ, ରାଜା—ଆଉ ‘ଛାଡ଼ମାଡ଼’ର ଡର ନ ଥିବ ଯେ—ହଁ, ଶୁଭ-ନିମନ୍ତ୍ରଣରେ ଯେମିତିକା ବାଦ୍ ନ ଯାଅ, ବନ୍ଧୁ—ଶତ୍ରୁ ବୋଲି । ହାଃ—ହାଃ—କେଜାଣି, ଫିସାଦିଆ ବୁଢ଼ାକୁ ବଳିଲେଣି ?

ପୂର୍ଣ୍ଣଚନ୍ଦ୍ର—ରାଜା ! ରାଜା !

ବଜ୍ରଧର—ହଁ, ବେଳ ତୁମର ଉଚ୍ଛୁର ହୋଇ ଯାଉଚି—ମୁଁ ଯାନ-ବାହାନର ଆୟୋଜନ କରିଦିଏଁ, ନିଜେ ବେଗେ ଯାଇ—ତୁମେ ଠିକ୍ ସମୟରେ ଯାଇ ପହଁଚି ନପାରିଲେ, ଏ’ ଉଦ୍ୟାନଟି କ’ଣ ଆଉ ଉଦ୍ୟାନ ହୋଇ ରହିବ ? ଆହା ମୋର କଣ୍ଠ-ମାଳି, ଚନ୍ଦ୍ରମାଳୀର ଉଦ୍ୟାନଟି ବୋଲି, ଯେତିକି ଭାବନା ସିନା—ସାରା ରାଜ୍ୟଟାକୁ ବଳି ।

ପୂର୍ଣ୍ଣଚନ୍ଦ୍ର—( ଆପଣାମନେ ) ‘ଚନ୍ଦ୍ରମାଳୀ’ । ଛାଡ଼—ମୋ’ର ପ୍ରଶ୍ନର ଉତ୍ତର ତ—

ବଜ୍ରଧର—ଦଖଲ ସୀମାନା ଛାଡ଼ିଦେବା କଥା ତ ? ତୁମେ ମୋର ସୀମାନାକୁ କେତେ ଦୂର ମାଡ଼ି ଆସିବାକୁ ଚାହ ?

ପୂର୍ଣ୍ଣଚନ୍ଦ୍ର—( ଅବାକ୍ ଭାବେ ଚାହିଁଲେ )

ବଜ୍ରଧର—ଆଉ ନିରୀହ ପ୍ରଜାଗଣ ପ୍ରତି ଅତ୍ୟାଚାରର କଥା ?—ତୁମର ଭାନୁମଙ୍ଗରାଜକୁ ବଳି ଯାଉ ନାହିଁତ ?

ପୂର୍ଣ୍ଣଚନ୍ଦ୍ର—ଖୁବ୍ ଉତ୍ତର ପାଇଛି ରାଜା—ଆସୁଛି ମୁଁ ।—

ବଜ୍ରଧର—ଟିକିଏ ଅପେକ୍ଷା—

ପୂର୍ଣ୍ଣଚନ୍ଦ୍ର—ନା, ନା ଆଉ ବଳାନ୍ତୁ ନାହିଁ—ଜାଣନ୍ତି ତ ପଶୁ-ପ୍ରକୃତି ସେ—

ବଜ୍ରଧର—ମୁହିଁତ ମନୁଷ୍ୟ ପ୍ରକୃତି--ମୋ’ରତ ଗୋଟାଏ ବିବେକ, ବିବେଚନା ଅଛି—ଯାନବାହାନର ସୁବିଧାଟା ନ କରି ଦେଇ ଛାଡ଼ି ଦେଉଚି କେମିତି ? ନିମନ୍ତ୍ରିତ ଅତିଥି ଘରକୁ ଆସିବା—ସତ୍କାରର ଭାଗ୍ୟ ଘଟିବା—ଗୃହ-ସ୍ୱାମୀର ମହାସୌଭାଗ୍ୟ ନୁହେଁ କି ?

ପୂର୍ଣ୍ଣଚନ୍ଦ୍ର—( ଲଜ୍ଜାବନତ ହୋଇଗଲେ ପରା )

ବଜ୍ରଧର—ଏଇଠି ଅପେକ୍ଷା କରିବ କି—? ନା ନା—କଷ୍ଟ ହେବ—ଉଆସ ଭିତରକୁ—ଓଃ, ମୁଁ ଭାରି ଆପଣାର କରି ପକାଉଛି, ରାଜା—

ପୂର୍ଣ୍ଣଚନ୍ଦ୍ର—ନା, ନା—କାଏଦା କଟକଣାରେ ଭାରି ପରକର ପକାଉଛନ୍ତି···

ବଜ୍ରଧର—ବେଶ୍ ଚଟକଣାଟାଏ ଦେଇଛ, ବାବା—( ଚାଲିଗଲେ ଆନନ୍ଦ ଭରେ )

ପୂର୍ଣ୍ଣଚନ୍ଦ୍ର—(ଉଆସ ଭିତରକୁ ଯାଉଁ ଯାଉଁ) ଚନ୍ଦ୍ରମାଳୀ !

[ ନେପଥ୍ୟେ ରୁଣୁ ଝୁଣୁ ଶୁଣାଗଲା ସହଚରୀମାନଙ୍କର ]

ପୂର୍ଣ୍ଣଚନ୍ଦ୍ର—ଆସୁଛନ୍ତି, ନା କଣ ? ବାହାରିଯାଏଁ, ବାହାରି ଯାଏଁ······ରହିଯାଏଁ ନା—ଛି, ଛି, (ଯାଉଁ ଯାଉଁ) ଅଚ୍ଛା, ଏହି କୁଞ୍ଜ ଆଢ଼ୁଆଳରେ—

[ ଆତ୍ମଗୋପନ କଲେ । କେତେକ ସହଚରୀ
ପ୍ରବେଶ କଲେ ଉଦ୍ୟାନ ଓଲାଉ, ଓଲାଉ ]

ଗୀତ

ଓଲାଇ ଦେବାଗୋ ଗୁଲ୍—ଏ ବନ ଉଦ୍ୟାନ—
କଣ୍ଟା ପଥର କେତେ ପଡ଼ି ଥାନ ଥାନ ॥
ଫୁଲ ସୁକୁମାରୀ— ଫୁଲପାଦ ତା'ର,—
ପଡ଼ବ ଲେଉଟି, (ସଖି)—ଫୁଟିଲେ ଝୁଣ୍ଟିଲେଟି;
ଆସ, ଆସ, ଫିଙ୍ଗି ଦେବା—ଖୁଣ୍ଟି ଖୁଣ୍ଟାମାନ ॥

[ ଓଲାଇ ଦେଉଁ ଦେଉଁ ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି
ପକାଇଲେ ହଠାତ୍ ଯେମନ୍ତ ]

ସହଚରୀ—ମୋ' ବୌଲେ !—ଚୋର—ଚୋର—
ପୂର୍ଣ୍ଣଚନ୍ଦ୍ର—( ବାହାର ଯିବାକୁ ଏଣେ ତେଣେ
ହେଲେ—କିନ୍ତୁ ଅନ୍ୟ ସହଚରୀମାନେ ବେଢ଼ି
ଯାଇଥିଲେ )

[ ଚନ୍ଦ୍ରମାଲୀ ତୁଳକା ହସ୍ତେ ପ୍ରବେଶ କଲେ
ସେହି ଶବ୍ଦକାରବେ ]

ଚନ୍ଦ୍ରମାଲୀ—କାହିଁ ? କାହିଁ ?
ସହଚରୀ—ଏହି ଗୋ—ଏହି—
ପୂର୍ଣ୍ଣଚନ୍ଦ୍ର—( ଚନ୍ଦ୍ରମାଲୀଙ୍କୁ ଦେଖି, ଚକିତ ବଳ
ଠିଆହୋଇ ରହିଯାଇଥିଲେ )
ଚନ୍ଦ୍ରମାଲୀ—(ପାଖକୁ ଯାଇ, କେଉଁ ଧନର ଚନ୍ଦ୍ରାଭଳ)
କେଉଁଠି ଲୁଚିଥିଲ ଏତେଦିନ, ମନଚୋର ?—
କବ ! କବ !—ପାଇଛି—ପାଇଛି ମୋର
ମାନସ-ମୋହନକୁ !—କଳ୍ପନାର ଚନ୍ଦ୍ରମୋର
— ମୂର୍ତ୍ତିମନ୍ତ କବା—ଜୀବନ୍ତ—ସୁନ୍ଦର !—
( ଅପଲକ ନେତ୍ରରେ ହିଁ ଧୀରେ ଧୀରେ ଛୁଇଁବାକୁ
ଅଗ୍ରସର ହେଉଥିଲେ )

[ କବ ଗାଉ ଗାଉ ପ୍ରବେଶ କଲେ ]

କବ— ଗୀତ

ପାଇଛ ଯେବେ କି, ସହି—ଛୁଅଁ ନା—ଛୁଅଁ ନା—
ହୃଦର ହୃଦେ ରହି, ଦେଖ—ପୂରିବ କାମନା ।

ସହଚରୀଗଣ—
କିପାଇଁ ଡରଗୋ, କବ—ଆମେତ ନୋହୁଁଟି ଛବ—
ଆମହାତୁଁ ଯିବକିସି—ଦେଖ ଗୁଣ ବାନ୍ଧୁ କସି ॥
କବ—( ବାଧାଦେଇ )
ମାନ ମୋ'ର କଥା, ଶଖି—ଛୁଅଁ ନା ଛୁଅଁ ନା ॥
ଚନ୍ଦ୍ରମାଲୀ—( ଶ୍ଳୋକ ଶ୍ଳୋକ ନଥିଲେ )—

[ ବଜ୍ରଧର ପ୍ରବେଶକଲେ ]

ବଜ୍ରଧର—କ'ଣ ସବୁ ଲାଗିଛି ଏଠି ?— କି
ଗୋଳମାଳ ?
ଚନ୍ଦ୍ରମାଲୀ—ବାବା !—କି ସୁନ୍ଦର !—କି ସୁନ୍ଦର !—

ଗୀତ

କବ—ଚନ୍ଦ୍ରପଟେ ଚନ୍ଦ୍ରଅଙ୍କା—
ସେଯେ ମୂର୍ତ୍ତିମନ୍ତ ଛଙ୍କା—
ବଜ୍ରଧର—କବ ! ତଥାପି ଗାନ ? —ମୁଁ ମନାକରିଥିଲି
ନା, ତୁମେ ଯେତେବେଳେ ସେତେବେଳେ
ଗାଇବ ନାହିଁ ?
କବ —ମୁଁ ଯେ କେଳକାଳ ଥୟ ରଖିପାରେ ନାହିଁ,
ରାଜା !
ଚନ୍ଦ୍ରମାଲୀ—ଠିକ୍ ମୋ'ର ଚନ୍ଦ୍ର ଅଙ୍କିଲ ଭଳି, ବାବା ?

[ ଠିକ୍ ସେତକବେଳେ ବାହାରେ ଗୁଡ଼ୁମ୍,
ଗୁଡ଼ୁମ୍ ଅବାଜ ଶୁଣାଗଲା ]

ବଜ୍ରଧର—ପୂର୍ଣ୍ଣଚନ୍ଦ୍ର !
ପୂର୍ଣ୍ଣଚନ୍ଦ୍ର—( ଅଥୟ ହୋଇଉଠିଲେ )
ବଜ୍ରଧର—ଶୁଣୁଚତ ?
ପୂର୍ଣ୍ଣଚନ୍ଦ୍ର—କ'ଣ ?—କାହିଁ ?—କିଛୁନାହିଁତ ?

[ ପୁଣି ଅବାଜ୍ ଶୁଣାଗଲା ]

ପୂର୍ଣ୍ଣଚନ୍ଦ୍ର—ଏ'କି ଶବ୍ଦ ରାଜା ?
ବଜ୍ରଧର—ବିବାହ ସଙ୍କେତ ନୁହେଁ ତୁମର ଅବଶ୍ୟ !
ପୂର୍ଣ୍ଣଚନ୍ଦ୍ର—ହାଃ—ହାଃ—ମରଣ ସଙ୍କେତ ମଙ୍ଗରାଜର
ତ ?—ରାଜା ! ରାଜା ! ଲେଖନୀ, ପତ୍ର ଟିକିଏ—
ବଜ୍ରଧର—ଲେଖିବାକୁ ଚାହ ? କଣ—'ପୁତ୍ରରେ
ଅଛି—ଦୁଇଦିନ ବିଳମ୍ବ ହେବ—'

ପୂର୍ଣ୍ଣଚନ୍ଦ୍ର—'ରାଗୀ ଅସୁସ୍ଥ ହୋଇ ପଡ଼ିଛି—ଜ୍ୱର ଭିତରେ ରହିଛି—କେବେ ଯିବ, ଠିକଣା ନାହିଁ—'

ବଜ୍ରଧର—ତା'ହେଲେ ତ ଆମର ମରଣ ବାଟ ଉଘାଡ଼ି ଦେଉଛ !

ପୂର୍ଣ୍ଣଚନ୍ଦ୍ର—ଠିକ୍ ତ !—ମୁଁ ଯେ କିଛି ଭାବି ଠିକ୍ କରି-ପାରୁ ନାହିଁ, ରାଜା !

ବଜ୍ରଧର—ଭାବିବାକୁ ହେବନାହିଁ, ପୂର୍ଣ୍ଣଚନ୍ଦ୍ର ! ପୂର୍ଣ୍ଣଚନ୍ଦ୍ର ଯେ ଆଜି ରାହୁ ହାତରେ ଖସିପଡ଼ିଛି, ଅପଣାଛାଏଁ—ରାହୁଙ୍କ ସହଜେ ଛାଡ଼ି ଦେଉଛି ! —ମୋ'ର ଯା' ଲେଖାଲେଖି କରିବାର, ମୁଁ କେଉଁ ଫୁଲ ସକାଳୁ କରି, ପଠାଇ ଦେଇ-ସାରିଛି, ବାବା—ଏ' ଆମର ସୈନ୍ୟଙ୍କର ଲୁଟ୍-ତାରାଜ୍ !—

ପୂର୍ଣ୍ଣଚନ୍ଦ୍ର—(ଅପ୍ରତିଭ ହୋଇ ଚାହିଁରହିଲେ କେବଳ)

ବଜ୍ରଧର—ହିଁ, ମା—ଦେଖିଲ ମୂର୍ତ୍ତି ଟିକ—ଦେଖିଲ ମିଳାଇ ଚିତ୍ର ସଙ୍ଗେ—ଠିକ୍ ମିଶୁଛି କି ନାହିଁ ?

ଚିତ୍ରମାଳୀ—ଚିତ୍ରତ ହୁଏରେ, ଚିତ୍ତକୁ ଯେ ମୋ'ର ବଳାଯାଇଛି, ବାବା—

(ଦେଖାଯାଉଥିଲେ ପୂର୍ଣ୍ଣଚନ୍ଦ୍ରଙ୍କ ହାତ ଧରି)

କବି—( ପୂର୍ବ ଗୀତକ୍ରମରେ ଗାଇ ଉଠିଲେ )

ଗୀତ

ହସିବି କି କାନ୍ଦିବି ମୁଁ, ଲାଗୁଛି ମରମେ ଦାଗ—
ଚିତ୍ରପଟେ ଚିତ୍ର ଅଙ୍କା—ସେ ଯେ ମୂର୍ତ୍ତିମନ୍ତ ଛଙ୍କା—

ବଜ୍ରଧର—( ମୁଗ୍ଧ ନୟନରେ ଚାହିଁ ଦେଖୁଥିଲେ, କିନ୍ତୁ ଗୀତରେ 'କାନ୍ଦିବି' ଶବ୍ଦଟା ଶୁଣିଲାମାତ୍ରେ ରାଗିଉଠିଲେ ) କବି ! ଏକି ଅଲକ୍ଷଣା ଗୀତ ତୁମର ?

କବି—'ଲକ୍ଷଣା' କି 'ଅଲକ୍ଷଣା' କବି ତ ବୁଝେ ନାହିଁ, ରାଜା !

ବଜ୍ରଧର—ବୁଝିରଖ ତେବେ—କବିର ସ୍ଥାନ ନାହିଁ ଏ' ରାଜ୍ୟେ ଆଜି !

ଚିତ୍ରମାଳୀ—ମୋର ବି କବିତାରେ ଆଉ ଲୋଡ଼ା ନାହିଁ, ବାବା ! [ ଚାଲିଗଲେ ପୂର୍ଣ୍ଣଚନ୍ଦ୍ରଙ୍କ ଦେଖି ]

କବି— ଗୀତ

ସଚେତକ ଛନ୍ଦରେ ଲୟେ—ଖୋଜିବନାହିଁଟି କେବେ ?
ଛନ୍ଦର ଚିତ୍ରଟି ସେହି—ଭୁଲି ରହିଲ ଏ' ଭାବେ ।

ବଜ୍ରଧର—ନିକୁଳରୁ ନା—

କବି—ହାଃ—ହାଃ—କି ଭୟ ଦେଖାଅ ? ଏହିଭଳି ଡରାଇ, ହରାଇ ଥକିତ ହୋଇ ରହିଛ ପରା ? ଚିତ୍ରମାଳୀର ସଙ୍ଗୀ ନୁହେଁ ମୁଁ, ରାଜା—ଚିତ୍ରର-ସଙ୍ଗୀ, ଚିରକାଳ ତା'ର

ଗୀତ

ଛାଡ଼ିଛି ସେ ଚିତ୍ରଅଙ୍କା—କରିଛି ମୋ ମୁହଁ ବଙ୍କା—
ହସିବି କି କାନ୍ଦିବି ମୁଁ—ଲାଗୁଛି ମରମେ ଦାଗ ॥

[ ଗାଇ ଗାଇ ଚାଲିଗଲେ ]

ବଜ୍ରଧର—କବି ! କବି !—ନା, ନା,—ମାନ ଇଜ୍ଜତ ମୋର ଅମାନିଶା ଭଳି ଗ୍ରାସିଛି ସେ କାଳ !

[ ଏତିକି ବେଳେ ମନ୍ତ୍ରୀ ପ୍ରବେଶ କଲେ ]

ବଜ୍ରଧର—ନହବତ୍—ନହବତ୍—ପୂର୍ଣ୍ଣ ଉତ୍ସବର ପୂର୍ଣ୍ଣ ଆୟୋଜନ—ପୂର୍ଣ୍ଣଚନ୍ଦ୍ର ଆଜି ମୋ'ର ବାହାରେ ଅନ୍ତରେ···

ମନ୍ତ୍ରୀ—ମହିମା—

ବଜ୍ରଧର—ନା, ନା—ପରେ ପରେ ଅନ୍ୟକଥା—ରାଜ୍ୟ ଯଦି ଯାଏ ରସାତଳେ, ସେଇ ଭଲ—ନହବତ୍— ନହବତ୍ — ପୂର୍ଣ୍ଣଉତ୍ସବ — ପୂର୍ଣ୍ଣ ଆୟୋଜନ —

ମନ୍ତ୍ରୀ—( ଆଉ ଅପେକ୍ଷା ନକରି ଚାଲିଗଲେ )

ବଜ୍ରଧର—ବାହାନ୍ତି ପୋଇଲା ପରିବାରୀ ମାନେ ?—କେହିକି ନାହାନ୍ତି ?

[ ଜଣେ ପୋଇଲା ଦୌଡ଼ି ଆସିଲା ]

ପୋଇଲା—ମହିମା !

ବଜ୍ରଧର—କିଏ କଣ ତୁମର ସ୍ୱାମୀଙ୍କୁ ନାହିଁ ?

[ ନହବତ୍ ସେତେବେଳକୁ ବାଜିଉଠିଲାଣି ]

ବଜ୍ରଧର—ଏହି ଶୁଣ, ଶୁଣ—ଶଙ୍ଖ ହୁଳହୁଳି—ମାଙ୍ଗଳିକ——ମାଙ୍ଗଳିକ—

ପୋଇଲା—( ହୁଳହୁଳି ଦେଉଁ ଦେଉଁ ଚାଲିଗଲା )

ବଜ୍ରଧର—( ଭାବଆନନ୍ଦରେ ଗୃହିଁ ) ମୁଁ ବି କରେ ଶୁଭମିଳନର ଯଥା-ଆୟୋଜନ ।

[ ଯାଉଥିଲେ ବାହାରି ]

ବଳାଙ୍ଗୀ—(ଘୋଡ଼ାରୁ ଲମ୍ଫଦେଇ ଯେମନ୍ତ ସାମ୍ନାରେ ଠିଆହେଲେ ଆସି )—ଛୁଡ଼ାହଁ ସଇତାନ୍ !

ବଜ୍ରଧର—( ଆଶ୍ଚର୍ଯ୍ୟ ଓ ଭୟାବସ୍ଥ ଭାବେ ) କି-ଏ —ତୁହି ?

ବଳାଙ୍ଗୀ—ମୁହିଁ 'ବଳାଙ୍ଗୀ'—ମଙ୍ଗରାଜ-ପୌତ୍ରୀ— ଆଗମନ ଏଥି, ଦୂତରୂପେ ବାର୍ତ୍ତା ଘେନି— 'ପ୍ରସ୍ତାବ ତୁମର ହେବ ବ୍ୟର୍ଥ, ରାଜା ଗଲେ ରାଜ୍ୟେ ଫେରି' । ଏହି ପତ୍ର ।—

( ପତ୍ର ବଢ଼ାଇ ଦେଲେ )

ବଜ୍ରଧର—ଏକାବେଳେ ରାଣୀହଂସପୁରେ—( ଗୃହ ଆଡ଼େ ଗୃହିଁ ଥିଲେ ରୁଷ୍ଟଭାବେ )

ବଳାଙ୍ଗୀ—( ମୁରୁକି ମୁରୁକି ହସି ) ଦୁରାଗ୍ରହ । ସେ ଅଧିକାର ଅଛି ମୋର ।—

ବଜ୍ରଧର—କେଉଁ ଅଧିକାର ବଳେ ?

ବଳାଙ୍ଗୀ—ଯେଉଁ ଅଧିକାର ବଳେ, 'ରାଜା' ତାର ରାଣୀହଂସ ପୁରେ ଆଜ—

ବଜ୍ରଧର—ଭାବୀ-ଜାମାତା ସେ ମୋ ର—

ବଳାଙ୍ଗୀ—ଭାବୀ-'ରାଣୀ' ମୁହିଁ ଯେ—ନା—ନା— ରାଜଭକ୍ତ ପ୍ରଜା ମୁହିଁ ଅଟେ ଚିର ତା'ର—ଓଃ ! ବନ୍ଦୀ—ବନ୍ଦୀ ରାଜା ମୋର ସଇତାନର ପୁରେ ।—

( ଖୋଜିବାକୁ ଲାଗିଲେ )

ବଜ୍ରଧର—ହାଃ—ହାଃ—ବୃଥା ଚେଷ୍ଟା, କମଳିନି ! ପୂର୍ଣ୍ଣଚନ୍ଦ୍ର ବନ୍ଦୀ ଆଜ କୁମୁଦିନୀ କୋଳେ—

ବଳାଙ୍ଗୀ—ସଇତାନର କୌଶଳେ ?

ବଜ୍ରଧର—ନା, ନା, ବିଧିର କୌଶଳେ—କହିବ ଏତିକି ପିତାମହେ ତବ ।

( ପତ୍ରଟି ନିକ୍ଷେପ କଲେ ବଳାଙ୍ଗୀ ଉପରକୁ )

( ନେପଥ୍ୟେ ମନ୍ତ୍ରୀ ଛକ୍କଡ଼ି )—ଶତ୍ରୁ—ଶତ୍ରୁ ମହାରାଜ—ମହାଫନ୍ଦବାଜ—

( ପଶିଆସୁଥିଲେ )

ବଜ୍ରଧର—ମୁହିଁ 'ଫନ୍ଦ'ରେ ମହାରାଜ । ହାଃ—ହାଃ —( ଇସାରା କଲେ ଅନ୍ୟମାନଙ୍କୁ ଧରିବାକୁ ଓ ନିଜେ ଆଡ଼େଇ ଯାଉଥିଲେ )

ବଳାଙ୍ଗୀ—( ପିସ୍ତଲ କାଢ଼ି ଆଖିପିଛୁଡ଼ାକେ ଲକ୍ଷ୍ୟକଲେ ରାଜାଙ୍କ ମସ୍ତକକୁ ) ସାବଧାନ ! ଠିଆହୁଅ ଯେ ଯା'ର ସ୍ଥାନେ ।—

ବଜ୍ରଧର—( କିଂକର୍ତ୍ତବ୍ୟ-ବିମୂଢ଼ ହୋଇଗଲେ )

ମନ୍ତ୍ରୀ ଛକ୍କଡ଼ି—( ଅସ୍ତ୍ରୋତ୍ତୋଳନ କରି, ସେହିଭାବେ କାଠପିତୁଳା ପାଲଟିଗଲେ )

ବଳାଙ୍ଗୀ—ଦେଖା, ଦୁରାଗ୍ରହ !—କାହିଁ ରାଜା ମୋ'ର ?

[ ସେତିକିବେଳେ ବରକନ୍ୟା ବେଶରେ ପୂର୍ଣ୍ଣଚନ୍ଦ୍ର ଓ ଶଙ୍ଖମାଳୀ ପିତୃ-ପଦ ବନ୍ଦନା କରିବାକୁ ପ୍ରବେଶ କଲେ—ସହଚରୀମାନଙ୍କର ମୁହୁ ମୁହୁଃ ହୁଳହୁଳି ଓ ଶଙ୍ଖଧ୍ୱନି ଗଗନ ଭେଦ କରି ଉଠୁଥାଏ ]

ବଜ୍ରଧର—ହାଃ—ହାଃ—( ହସିଉଠିଲେ )

ବଳାଙ୍ଗୀ—( କର୍ତ୍ତବ୍ୟ ଭୁଲି, ନିର୍ନିମେଷ ନୟନରେ ଦେଖୁଥିଲେ ଦୃଶ୍ୟଟି; ଟୋପାଏ ଲୁହ ବି ଗଡ଼ିପଡ଼ି ନଥିଲା ଯେ, ତା'ନୁହେଁ—କିନ୍ତୁ ଭାରି ଦମ୍ଭରେ) —ରାଜା !

ପୂର୍ଣ୍ଣଚନ୍ଦ୍ର—ରାଣୀ ! (ଗୃହିଁଦେଲାମାତ୍ରେ, ଧାଇଁଆସିଲେ କେଉଁ ମାୟାଡୋରି ଛିଣ୍ଡାଇ କି ଆଜ ?)

ଶଙ୍ଖମାଳୀ—ମୋହନ ! ( ହଠାତ୍ ଗୋଟାଏ ପ୍ରତିଘାତରେ ଯେମନ୍ତ ମୂର୍ଚ୍ଛିତାହୋଇ ପଡ଼ିଗଲେ ସହଚରୀମାନଙ୍କ ମେଳରେ )

ପୂର୍ଣ୍ଣଚନ୍ଦ୍ର—( ଲେଉଟିଗୃହିଁ ) ମୋହନୀ ! (ଧାଇଁ ଯାଉଥିଲେ ଶଙ୍ଖମାଳୀ ଆଡ଼େ ସେହି ନୂତନ ମୋହବଶେ)

ବଳାଙ୍ଗୀ—ନା—ନା—( ବାଧାଦେଲେ, କର୍ତ୍ତବ୍ୟ ବୋଧରେ )

ବଜ୍ରଧର—(ବଳାଙ୍ଗୀକୁ ଧରିବା ମାନସରେ ଧାଇଁ-ଯାଉଥିଲେ—କିନ୍ତୁ ବଳାଙ୍ଗୀ ଶଙ୍ଖମାଳୀ ଆଡ଼େ ପିସ୍ତଲ ଲକ୍ଷ୍ୟକରିବାରୁ ନିରସ୍ତ ହୋଇଗଲେ)

ପୂର୍ଣ୍ଣଚନ୍ଦ୍ର—ଗ୍ଲଜ୍ଜଦଅ—ଗ୍ଲଡ଼ଦଅ, ରାଣି!—

ବଳାଙ୍ଗୀ—(ଦୃଢ଼ସ୍ୱରେ) ରାଣୀ ହୋଇଥିଲେ ଗ୍ଲଡଦଅନ୍ତି, ରାଜା—କିନ୍ତୁ, ରାଜ-ଭକ୍ତ ପ୍ରଜା ମୁହିଁ—ରାଜ-ସୈନିକ—ଅସିଛି, ରାଜ-ସେନାପତିର ଆଦେଶ ଦେନ!

ପୂର୍ଣ୍ଣଚନ୍ଦ୍ର—ମୁହିଁ ରାଜା—'ରାଜା'ର ଆଦେଶ!—

ବଳାଙ୍ଗୀ—( ସାମରିକ ପ୍ରଥାରେ ଅଭିବାଦନ ପୂର୍ବକ ) —'ରାଜ୍ୟ'ର ଆଦେଶ ପାଳିବ ଅଗ୍ରତେ, ରାଜା!

[ କହୁ କହୁ ଅଜ ଗୋଟିଏ ପିସ୍ତଲ ବାହାରକରି, ଦୁଇଟି ପିସ୍ତଲ ଦାଗୁ ଦାଗୁ, ପଛେଇ ପଛେଇ ଯାଇ, ହଠାତ୍ ଶତସିଂହନୀ ବନ୍ଦମରେ ଯେମନ୍ତ ପୂର୍ଣ୍ଣଚନ୍ଦ୍ରକୁ ଉଠାଇ ଦେଇ ଘୋଡ଼ୀ ଉପରେ ବସିଗଲେ ମାତ୍ରେ ଅପେ, ଘୋଡ଼ୀ ଝପଟିଲା ବାତ୍ୟାଭେଗରେ ]

---

# ତୃତୀୟ ଅଙ୍କ

—ମନ୍ତ୍ରଣାକକ୍ଷ—

[ ରାଣୀ ଓ ଭାନୁ ମଙ୍ଗରାଜ ନିମ୍ନୋକ୍ତ ଭାବେ କଥାବାର୍ତ୍ତା କରୁଥିଲେ ]

ରାଣୀ—ଏତେ ହେଲବାଲ୍ଲ! ଆମର ନାକ କାଟି ଆମକୁଇ ଦାନ!—ଆମର ମାନ-ମହତ ଯେମିତିକା କିଛି ନାହିଁ?—ଅହା! କି ସବୁଗରେ ପତ୍ର ଲେଖା ହୋଇଛି—"ମୋ'ର ଏକମାତ୍ର କେମାମଣି ଚନ୍ଦ୍ରମାଳୀ ସଙ୍ଗେ, ତୁମର ଅସୁଷ୍ଠାନ୍ ରାଜା ପୂର୍ଣ୍ଣଚନ୍ଦ୍ରଙ୍କର ଶୁଭପରିଣୟ ପ୍ରସ୍ତାବ ସ୍ୱୀକାର କଲେ, ମୁଁ ଅଧିକୃତ-ରାଜ୍ୟ ସଙ୍ଗେ, ଆପଣାର ରାଜ୍ୟରୁ ସେତିକି ବଡ଼ ଖଣ୍ଡେ ମିଶାଇ, ଯୌତୁକ ଦେବାକୁ ସାନନ୍ଦେ ପ୍ରସ୍ତୁତ।" ଓଃ, କି ଅପମାନ! —ତମେ ଠିକ୍ କାମ କରିଛ, ସେନାପତେ—ତୈର ତସ୍କରଙ୍କଠୁଁ, ତୈର-ଧନ ଛଡ଼ାଇ ଅଣିଲଭଳି, ଧନକୁ ମୋ'ର ଛଡ଼ାଇଆଣି, କବରଦସ୍ତି। ଉଅସ ଭିତରେ ପଶି—ହିଅଛି ମୋ'ର କାହିଁ? ଏତେବେଳଯାଏ ଅଜ ଆସି ନାହିଁ କାହିଁକି?—ଗୋଲ୍ଦା ଭଳି କେଉଁ କାମରେ ରାଜ୍ୟର, ଲଗିଯାଇଥିବ ନିଶ୍ଚେ—ହଁ, ସେନାପତେ, ମୁଁ ଅଜ ଉପଯୁକ୍ତ କର୍ମଗୁଣିକୁ ତୁମର, ଉପଯୁକ୍ତ ଭାବେ ପୁରସ୍କୃତ କରିବ ବୋଲି ବିଚାରିଛି—

ଭାନୁ—ଅଉ ଗୋଟାଏ କଥା ମୁଁ ବୁଝିଛି, ମଣିମା—ଚନ୍ଦ୍ରମାଳୀ ରୂପ ଗୁଣର ମାଳୀ—ହିଅତ ମୋ'ର କହେ—ଯୁଗ ଯୁଗ ଧରି, ଜପାମାଳୀ କରି ଜପୁଥିଲେ ବି, ଶେଷ ହେବ କି ନାହିଁ, ସନ୍ଦେହ!

ରାଣୀ—ସୁତରାଂ ମୋ'ର ପୂର୍ଣ୍ଣଚନ୍ଦ୍ରର ଲକ୍ଷ୍ୟ କେମାଟିଏ?

ଭାନୁ—ଅନ୍ଧାର ଯେତେବେଳେ—

ରାଣୀ—ପୂର୍ଣ୍ଣଚନ୍ଦ୍ର ସେହି ସୁନ୍ଦରୀର ରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ?

ଭାନୁ—ଏ'ଭଳି 'ପୂର୍ଣ୍ଣଚନ୍ଦ୍ର' ତନୁ—ଝୁରି ଝୁରି କୃଷ୍ଣପକ୍ଷର କଳାକୁ କଳାକୁ ବଳି ଯାଉନାହିଁକି ଦିନୁ ଦିନୁ, ମା—

ରାଣୀ—ସେଇଥିପାଇଁ ତ ଡକାଇଛି ତୁମକୁ—

ଭାନୁ—ମଣିମା ତା'ହେଲେ ସମ୍ମତ—ମୁଁ ବେଗେ ହିତ ଠିକ୍ କରେଁ—ନା, ସେହି ବଳାଙ୍ଗୀକୁ ପଠାଇବି—ସେ ଚାହିଁଲେ, ତାର ଧୃଷ୍ଟତା—ନା, ନା,—ଆମର ଧୃଷ୍ଟତାପାଇଁ, କ୍ଷମା ମାଗିନେବ—ତା'ପର,······ନା, ନା—ମୁଁ ନିଜେ ଯାଏଁ—ଉତ୍ତମରୂପେ ଜାଣନ୍ତି ରାଜା ବଜ୍ରଧର—ଭାନୁ ମଙ୍ଗରାଜହିଁ ରାଜ୍ୟର ମଙ୍ଗଧର···?

ରାଣୀ—ସେହି ମଙ୍ଗଟି ଧରାଇ ଦେଇ, ରାଜ୍ୟର ମାନ୍, ଇଜ୍ଜତ୍ ସବୁ ଭସାଇ ଦେଇ ଅସିବ ନା କ'ଣ, ଶତ୍ରୁର ଗୋଡ଼ତଳେ?—

ଭାନୁ—ସବୁ ଏକଆଡ଼େ—ଅଉ, ରାଜା ପୂର୍ଣ୍ଣଚନ୍ଦ୍ରଙ୍କର ଅମୂଲ୍ୟ ଜୀବନ ଯେ ଏକଆଡ଼େ, ମା—!

ରାଣୀ—ଭାନୁ ମଙ୍ଗରାଜ !

ଭାନୁ—ରାଣୀମା !

ରାଣୀ—କାହିଁ ?—କାହିଁ ତୁମର ସେହି ବଜ୍ର-ନିର୍ଘୋଷରେ ହୁଙ୍କାର ଧ୍ୱନି—ତୁମର ସେହି ବହ୍ନ୍ୟୁଦ୍‌ଗମସ୍ଥ ଚକ୍ଷୁର ଅଗ୍ନି-ସ୍ଫୁଲିଙ୍ଗ—ତୁମର ସେହି ଶତ ସିଂହ ଜିଣି ବଳ,ବିକ୍ରମ ?—ସବୁ, ସବୁ କ'ଣ ଲୁପ୍ତ ହୋଇଛି ଆଜି, ବୟସର କାଳ-କରାଳ-ଗ୍ରାସରେ ?

ଭାନୁ—ବୟସର କାଳ-କରାଳ-ଗ୍ରାସରେ ? ଲୁପ୍ତ-ଭାନୁ ମଙ୍ଗରାଜର ବଳ ବିକ୍ରମ ? ଅସମ୍ଭବ ! ଅସମ୍ଭବ ! ଆଜି ଯଦି ବର୍ଗୀ ପୁନରାକ୍ରମଣ କରେ —ତା'ର ଶତ ସହସ୍ର ଗୁଣ ବଳ-ବିକ୍ରମ ଦେଇ, —ଭାନୁ ମଙ୍ଗରାଜ ନିର୍ଭୟରେ ସମ୍ମୁଖୀନ ହେବ ହସି ହସି;—ତଥାପି, ତଥାପି ଗୋଟାଏ ଶିଶୁର ସାହସ, ବଳ ବି ନାହିଁ ଆଜି ତା'ର, ପ୍ରତିଘାତ କରିବାକୁ ମୃଦୁଆଘାତର ବର୍ଗୀ ଶିଶୁର ।

ରାଣୀ—ଆଶ୍ଚର୍ଯ୍ୟ ! ଆମର ଏହି ସାତଘରିଆ ପଚିଶ ଅଟଳ, ଅଚଳ ଯେଉଁ ମଙ୍ଗରାଜ—ସେ ପୁଣି ଅତସୀଠୁ ବଳି ଏଡ଼େ କଅଁଳ ଦୁର୍ବଳ ?

ଭାନୁ—ଜାଣି ନ ଥିଲି, ମା, ମଣିଷର ସେହି ପାହାଡ଼-କଠିନ ଛାତିର ଅନ୍ତରାଳେ, ଏଡ଼େ ସୁନ୍ଦର-ଶୀତଳ ଝରଣା ଥାଏ ବୋଲି—ତୁମେହି ତ ଖୋଲି ଦେଇଚ, ମା, କେଉଁ ଅମିୟ ପରଶରେ, ହଜିଆରଟି ମୋ ହାତରୁ ଛଡ଼ାଇ ନେଇ ?—କେଉଁ ଅମିତ ତେଜରେ, ମନ୍ତ୍ରଟିଏ ଫୁଙ୍କି—'ଅତ୍ୟାଚାରୀଙ୍କୁ ବଳି ଅତ୍ୟାଚାର କରିଥାଉଁ ସିନା ନିଜ ପ୍ରଜାପ୍ରତି ଆମେ ନୁହେଁ' ?—କହିଲ, କହିଲ, ମା—ସେହି 'ଅତ୍ୟାଚାର' କରିନାହିଁକି ରାଜ୍ୟପ୍ରତି ମୋ'ର—କରିବାକୁ ଯାଉନାହିଁକି ଆଜି ରାଜାପ୍ରତି ମୋ'ର ? କ୍ଷମା—କ୍ଷମା, ମା —ସେହି ରକ୍ତ, କଠିନ ପକ୍ଷୀଙ୍କୁ ଦମନ କରିବାକୁ ପ୍ରାଣପଣେ ଚେଷ୍ଟା କଲେ ବି, କେଉଁ ଦୁର୍ଦ୍ଦମନୀୟ ପ୍ରଭାବ ବଶରେ ତାର ଯେତେକ ରୁଢ଼ାଚରଣ କରି ପକାଇଛି ଆଜି—ବକ୍ରଧରଙ୍କ ପ୍ରସ୍ତାବ ବିରୁଦ୍ଧେ ମୁହିଁ ।

ରାଣୀ—କିନ୍ତୁ ଭାବିକି ପାରୁନାହିଁ—କେଉଁ ଆତ୍ମ-ମର୍ଯ୍ୟାଦାର ପ୍ରେରଣାରେ ମର୍ଯ୍ୟାଦା ଆଜି ରକ୍ଷା କରିଛ ନରସିଂହପୁର ରାଜ୍ୟର—ଆଉ ତା'ର ମହିମା-ମଣ୍ଡିତ ରାଜ-ପରିବାରର ? କହିଲ, ମଙ୍ଗରାଜ—ଗୋଟାଏ କାମୁକ, ଲମ୍ପଟ, କାପୁରୁଷ ଭଳି ଉଦ୍‌ବାହ ବନ୍ଧନରେ ଅବଦ୍ଧ ହେବା କି ଉଚିତ,—ତୁମର ରାଜା,—ସେହି ତ୍ୟାଗୀ, ଚିରବୀରାଭିମାନୀ ରାଣାପ୍ରତାପ, ଭୀମସିଂହ, ପଦ୍ମିନୀ, ବୀ ରାଓ ସମ୍ଭୂତ, ପୂତ ରାଜପୂତ ଜାତିର ମୁକୁଟମଣି ଜୟପୁର ବଂଶାଭିମାନୀ, ପୂର୍ଣ୍ଣଚନ୍ଦ୍ର ପକ୍ଷେ ?

ଭାନୁ—କିନ୍ତୁ, ରାଜାଙ୍କୁ ଯେ ରକ୍ଷା କରିବାକୁ ହେବ, ମା !—ମଦନଧରଙ୍କ ଏକମାତ୍ର ବଂଶଧର—ତୁମର, ଆମର ସାରା ରାଜ୍ୟର ଏକମାତ୍ର ନୟନ ପିତୁଳାକୁ, ମା !—ମା ! ମା ! ତୁଚ୍ଛ ମାନ ମର୍ଯ୍ୟାଦାର ଅଭିମାନ କରି, କେତେ ଯେ ଅମୂଲ୍ୟ ଜାନ୍ ବଳି ଦେଇଚ, ମା !—( କ୍ଷଣିକ ଉନ୍ମାଦନାରେ ) ଏହି ଏହି ମା···ସେହି-ମାନଙ୍କର ଜୀବନ୍ତ କଙ୍କାଳ-ମୂର୍ତ୍ତିଗୁଡ଼ାକ, ଉଃ, ତର୍ଜନୀ ଦେଖାଇ, ଆଖିରେ ମାଡ଼ି ମୋ'ର ଭର୍ତ୍ସିକରି ଦେବାକୁ ଧାଇଁ ଆସୁଛନ୍ତି, ମା—ମର୍ମତନ୍ତ୍ରୀଟାକୁ ଟାଣି, ଛିଣ୍ଡାଇ ଫିଙ୍ଗିଦେବାକୁ, ମୁଖ ବିଚ୍ଛେଦ ଫାଙ୍କା ଲମ୍ବାଉଛନ୍ତି, ମା—ମୋତେ ରଖ, ମା—ମୋତେ—

ରାଣୀ—ମଙ୍ଗରାଜ ! ମଙ୍ଗରାଜ !—

ଭାନୁ—( ଅପ୍ରସ୍ତୁତ ହେଲାଭଳି ) ତୁମେ ଠିକ୍ କହିଚ, ମା—ଦଶ ଦଶବର୍ଷ କାଳ ରାଜ୍ୟଟାକୁ ଯେ ବର୍ଗୀମାନଙ୍କର ଅମାନୁଷୀ ଅତ୍ୟାଚାର, ଅନାଚାରରେ ଦଗ୍ଧୀଭୂତ ହେବାକୁ ଦେଲ,ତାହା ଆମମାନଙ୍କର କେଉଁ ପାଶବିକ ଯୁଦ୍ଧୋନ୍ମାଦନା ଯୋଗୁଁ ସିନା ? ସାମାନ୍ୟ କିଛି ଅର୍ଥଦେଇ, ବିଦାୟ କରିଦେଇଥିଲେତ, ଖୁସିରେ ଚାଲିଯାଇଥା'ନ୍ତେ ଅର୍ଥଲିପ୍ସୁଗଣ—କିନ୍ତୁ, ତା'ନକରି, ଆମେ,—

‘ଯୋଦ୍ଧା’ ‘ସ୍ୱାଧୀନ’ — ‘ଦେଶପ୍ରେମିକ’— ଏହିସବୁ ବୃଥାଶବ୍ଦ ଆଡ଼ମ୍ବରରେ ଅହଙ୍କାରୀହୋଇ, ନିରୀହ ଲୋକଗୁଡ଼ାଙ୍କୁ ମତାଇ, ବୃଥାରେ ଲକ୍ଷ ଲକ୍ଷ ପ୍ରାଣ ନାଶର ଭାଗୀ ହୋଇଛୁ ସିନା— ଈଶ୍ୱରଙ୍କ ସଙ୍ଗେ ଈଶ୍ୱର ହୋଇ ?

ରାଣୀ—ସେନାପତେ ! ମନୁଷ୍ୟର ପଶୁତ୍ୱ-ପ୍ରକାଶକ ଏହି ଯୁଦ୍ଧକୁ ଯେଉଁ ଭଳି ହେୟ ଜ୍ଞାନ କରୁଚ—ଅଧୁନା ଠିକ୍ ସେହିଭଳି ମନୁଷ୍ୟର ମନୁଷ୍ୟତ୍ୱ-ପ୍ରକାଶକ ଯୁଦ୍ଧର ଆୟୋଜନ କରିବା ଉଚିତ ନୁହେଁ କି ?

ଭାନୁ—ଖୁବ୍ ଉଚିତ, ମହାରାଣୀ ।

ରାଣୀ—ତୁମର ରାଜା ପୂର୍ଣ୍ଣଚନ୍ଦ୍ରର ଆଜି ସେହି ଗଠନମୂଳକ ଯୁଦ୍ଧୋପଯୋଗୀ ଶିକ୍ଷା ଓ ସାଧନା ଏକାନ୍ତ ଆବଶ୍ୟକ ହୋଇ ପଡ଼ିଛି—ଆଜି ସେ ବିପଦରେ ସାହାଯ୍ୟ କରିବାକୁ ସହଧର୍ମିଣୀରୂପେ କ୍ଷମ ଏକା, ହୋଇଥାଏ ଯଦି କେହି ତା’ର ?......ସେ ମୋ’ର......

ଭାନୁ—କିଏ ସେ, ମହାରାଣୀ ?—

[ ବଳାଙ୍ଗୀ ବେଗେ ପ୍ରବେଶ କଲେ ଠିକ୍ ସେହିକ୍ଷଣି, ଭାରି ତେଜରେ ]

ରାଣୀ—(କୁଣ୍ଠାଇପକାଇ) ଏହି ବଳାଙ୍ଗୀ ଧନୀ !—ଯା’କୁ ‘ରାଣୀ’ କରିବାର ସଂକଳ୍ପ କରିସାରିଛି ମନେ ମନେ, ପୁରସ୍କାର ଦେବା ଛଳେ, ‘ରାଜା’କୁ ତାର ଉଦ୍ଧାର କରିଆଣିବାକୁ ଗନ୍ଧର୍ବପୁରୀରୁ ଆଜି, ଅପଝାର ବାହୁ, ନା, ନା, ପ୍ରେମବଳେ ଗମ୍ଭୀର, ନିର୍ମଳ !

ବଳାଙ୍ଗୀ—(ଲଜ୍ଜାବନତା ହେଲେ କିନ୍ତୁ ଝାଡ଼ି ଫିଙ୍ଗିଦେଲେ କର୍ତ୍ତବ୍ୟାନୁରୋଧରେ କି ଅଉ ) ମା ! ଭାରି ବିପଦ ।

ରାଣୀ—କି ବିପଦ, ମା ? ତୋର ରାଜାର ତ କୌଣସି ବିପଦ—

ବଳାଙ୍ଗୀ—ଘଟିବ ? ମୁଁ ‘ରା-ଣୀ’—(କି ଭଳି ଅଟକି ଗଲେ )

ରାଣୀ—ବୋଲ, ବୋଲ, ମା—ଅଟକୁ ଥରେ— ସଜଣୀର ଶତମୁକ୍ତା ଝିଅ—ହୃଦୟେ ‘ରାଣୀ’ ତୋର ‘ରାଜା’ର—ମୋ’ର ହୃଦୟର, ‘ଧନମଣି’—(ଚୁମ୍ବନକଲେ )

ଭାନୁ—( କେଉଁ ଅସ୍ପଷ୍ଟ ଗର୍ବରେ ଲୀନ ହେଉଥିଲେ ମଧ୍ୟ ଏ’ ଦୃଶ୍ୟରେ, ହଠାତ୍ ଠେଲି ଉଠିଲେ କେଉଁ ସାମରିକ ଦମ୍ଭରେ )—କି ବିପଦ, ବଳାଙ୍ଗୀ ?

ବଳାଙ୍ଗୀ—( ଉପଯୁକ୍ତ ଶବର ଉପଯୁକ୍ତ ସମ୍ମାନଭଳି ) ଅନୁଗୁଳର ଗୁପ୍ତଚର ଆଜି ରାଜ୍ୟଯାକ, ମାଳ ମାଳ, ସେନାପତେ !—

ରାଣୀ—ସନ୍ଧାନ ନେଇଚୁ ? ଉଦ୍ଦେଶ୍ୟ କିଛି ଜାଣିପାରିଛୁ ?

ବଳାଙ୍ଗୀ—ଯେତେଦୂର ପାରିଛି—‘ରାଜା’ଙ୍କୁ ଆମର ଗ୍ରେପ୍ତାର କରି ନେଇ ଯିବା ପ୍ରଧାନ ଉଦ୍ଦେଶ୍ୟ।

ଭାନୁ—ଗ୍ରେପ୍ତ ?—‘ରାଜାଙ୍କୁ’ ?—ଏତେ ଦୁଃସାହସ !

[ ଅସିନିଷ୍କାସିତ କରିବା ଉଦ୍ଦେଶ୍ୟରେ କଟି ଦେଶରେ ହାତଦେଇ, ନ ପାଇବାରୁ କେଉଁ ଅବିମୃଶ୍ୟକାରିତା ଯୋଗୁଁ ଲଜ୍ଜିତ ହେଲେ ପରି ]

ରାଣୀ—କିଛି ଚିନ୍ତାନାହିଁ, ସେନାପତେ—କୌଣସି ବିପଦର ଆଶଙ୍କା ରହିବ ନାହିଁ ତଳେ,—ମୋ’ର ଯେତେବେଳେ ପୁଅର ରକ୍ଷାକବଚ କରି ଗଳାରେ ଝୁଲଇ ଦେବି ଅବିଳମ୍ବେ ।

ଭାନୁ—(କୁଣ୍ଠା ଯେମିତିକା ଫୁଲ୍ ଫାଟି ପଡ଼ୁଥିଲା )

ବଳାଙ୍ଗୀ—ମୁଁ ସେହି ଗୁପ୍ତଚର ଭିତରୁ ଜଣକୁ ବାନ୍ଧି ଆଣିଛି, ସେନାପତେ !—

ଭାନୁ—କାହିଁ ? ( ମାତ୍ର ଗମନୋଦ୍ୟତ ହେଲେ କେଉଁ ପ୍ରତ୍ୟୟ ଭରେ )

ରାଣୀ—ନା, ଏହି ଗୁପ୍ତାଗାରକୁ ଅଣାଯାଉ, ସେନାପତେ ।

[ବଳାଙ୍ଗୀ ଆଦେଶ ପାଳନ କରିବାକୁ ଚାଲିଗଲେ ]

ଭାନୁ—( ସେହି ପୂର୍ବ ଆତ୍ମଦମନର ପ୍ରତିଘାତରେ ଯେମନ୍ତ ନକହି ରହିପାରିଲେ ନାହିଁ) ମା ! ଆପଣ ଯା’ ମନାସିଚନ୍ତି—ତାହା ଓପାଡ଼ି ଫିଙ୍ଗିଦିଅନ୍ତୁ—

ରାଣୀ—କ’ଣ ଅପଯଶ ଭୟରେ ? ସାମାନ୍ୟ ସାଆନ୍ତ ଝିଅ ସଙ୍ଗେ, ବଂଶାଭିମାନ ଅସାମାନ୍ୟ ରାଜକୁମାରଙ୍କ ପରିଣୟ ସମ୍ପର୍କ ବୋଲି ?

ଭାନୁ—ସମାଜର କୌଣସି କାଏଦା କଟକଣାକୁ ଖଲେଖେଲେ ଭ୍ରୂକ୍ଷେପ କରନ୍ତି ନାହିଁ, ମଣିମା !—ସମସ୍ତ କଳଙ୍କ, ଅପଯଶ ସାନନ୍ଦେ ଭସାଇ ଦିଅନ୍ତି ସେହି ପବିତ୍ର ଅନାବିଲ ପ୍ରେମ-ଯମୁନାରେ—ଯଦି—ଯଦି—

ରାଣୀ—ବଜ୍ରଧରର ବଜ୍ରକୁଁ କାର ଭୟ ନ ଥା'ନ୍ତା ?

ଭାନୁ—ନା, ନା, ମା—ସେହି କୁଟଚକ୍ରୀର କୁଟଚକ୍ରଭୟ ।

ରାଣୀ—ହାଃ ହାଃ—ମଙ୍ଗାଇବ ଅନ୍ୟ ପଡ଼ୋଶୀ ରାଜ୍ୟ —କିମ୍ବା, ରାଜଦ୍ରୋହୀ କରିବ ପ୍ରଜାଗଣେ ରାଜ୍ୟେ ?

ଭାନୁ—ତଥାପି ସ୍ଥିର-ଭାନୁ ହୁଅନ୍ତା ନାହିଁ ଅସ୍ଥିର ।

ରାଣୀ—ତେବେ, ତେବେ (ବିସ୍ମିତା ହୋଇ ଚାହିଁଲେ)

[ ବଳାଙ୍ଗୀ ଅସିହସ୍ତେ ପ୍ରବେଶକଲେ ସନ୍ତ୍ରସ୍ତମନେ ]

ଭାନୁ—କାହିଁ ଗୁପ୍ତଚର ?

ବଳାଙ୍ଗୀ—ସେ ଜଣେ ବାସ୍ତବ କବି, ବାବା—( କିଭଳି ଥଙ୍ଗେଇ ଥଙ୍ଗେଇ କହୁଥିଲେ )

ରାଣୀ—ବଳାଙ୍ଗୀ ! ( ଆନତ ଚକ୍ଷୁ ହେଲେ )

ରାଣୀ—ମୋତେ ଚାହାଁ—···

ବଳାଙ୍ଗୀ—( ଅତିକଷ୍ଟରେ ଯେମନ୍ତ ଚାହିଁଲେ )

ରାଣୀ—ତୋ'ର ବି ଅବନତ ଘଟିଛି ଆଜି ? ମିଛ କହିବାକୁ ଶିଖିଛୁ ?

ବଳାଙ୍ଗୀ—ମିଛ ନୁହେଁ, ମା—ସେ ଜଣେ କବି ।

ରାଣୀ—ଗୁପ୍ତଚର ଯେ ନ ହେବ ?

ବଳାଙ୍ଗୀ—ମୁଁ ସେ ଭଳି ଭୁଲରେ ସନ୍ଦେହ—

ରାଣୀ—ଭୁଲ ଭାଙ୍ଗିଲା—ସନ୍ଦେହ ଘୁଞ୍ଚିଲା—ଆପଣା ବିଚାରରେ ?

ବଳାଙ୍ଗୀ—ରାଜା ଛାଡ଼ି କହିଲେ—

ରାଣୀ—ମୋ'ର ହୁକୁମ ଥିଲା କ'ଣ ?

ବଳାଙ୍ଗୀ—ଏଇଠି ଆଣି, ହାଜର କରିବାକୁ—

ରାଣୀ—ତେବେ, ରାଜାର ହୁକୁମ୍ କ'ଣ ମୋ'ର ହୁକୁମ୍‌କୁ—

ବଳାଙ୍ଗୀ—ମୁଁ ଆପତ୍ତି କରିଥିଲି, ମା—ନା, ନା, ( କିଭଳି ଇତସ୍ତତଃ ହେଲେ )

ରାଣୀ—କୋ କାନମୂଳରେ ରକ୍ତ, ନା, କ'ଣ ? ଏଣିକି ଅଚଳ—ଅଚଳ ମା—

ବଳାଙ୍ଗୀ—( ଅଧିକ ବିଚଳିତା ହୋଇ ) ଖେଣ୍ଡାଟାଏ ପଡ଼ିଯାଇଥିଲା, ମା—

ରାଣୀ—ଖଣ୍ଡାର, ନା କ'ଣ ?

ବଳାଙ୍ଗୀ—ହଁ—ନା'—ହଁ, ହଁ, ଏହି ମୋ'ର ଖଣ୍ଡାଟାର, ମା—

ରାଣୀ—କାହିଁ, ଖଣ୍ଡାତ ତୋ' ହାତରେ ନଥିଲା ସେତେବେଳେ ?—

ବଳାଙ୍ଗୀ—ରାଜାଙ୍କ ହାତରେ ଧରାଇ ଦେଇ ଆସିଥିଲି, ସେହି ନିଘଞ୍ଚିଆ ଝରଣା କୂଳରେ ଏକୁଟିଆ ବସିଥିଲେ ବୋଲି—

ରାଣୀ—ତା'ର ପୁରସ୍କାର ଏହିପରି ?

ବଳାଙ୍ଗୀ—ମୁହିଁ ଦୋଷୀ, ରାଣୀ-ମା—ମୋତେଇ ଦଣ୍ଡଦିଅ —ସେହି କବିର ଗୀତରେ,···( ସତେ ସତେ ଶୁଣିବାକୁ ଲାଗିଲେ କବିର ସେହି ଗୀତଟି···)

"କଳ୍ପନାର ରାଜାମୁହିଁ ସେଯେ ରାଣୀ ମୋ'ର ।
କଳପେ କଳପେ ବନ୍ଧା—ଆମ ପ୍ରୀତି ଡୋର ॥"

ବଳାଙ୍ଗୀ—ହଁ, ରାଜାଙ୍କର ବି ସାଧ୍ୟ ନଥିଲା, ମୋ ମୁଠାରୁ ଖସାଇ ନେବାକୁ ବନ୍ଦୀକୁ—

ରାଣୀ—ଦେଖୁଚତ, ସେନାପତେ—ତୁମର 'ରାଜା'ଙ୍କର ଔଦ୍ଧତ୍ୟ ?

ଭାନୁ—'ଔଦ୍ଧତ୍ୟ' ନୁହେଁ, ମା—ସେହି କୁଟଚକ୍ରିର 'କୁଟଚକ୍ର'ର ପ୍ରତିକ୍ରିୟା ମାତ୍ର ।

ରାଣୀ—'କୁଟଚକ୍ରର ପ୍ରତିକ୍ରିୟା' ହେଉ, ଯା' ହେଉ, ତୁମେ ଏହିକ୍ଷଣି ଯାଅ, କାହିଁ ସେ ଅମଣିଷ ନରାଧମଟା, ବାନ୍ଧି ନେଇଆସ ଶୀଘ୍ର—

ଭାନୁ—ମା ! ଏତେ ଉତଳା ହୁଅନ୍ତୁ ନାହିଁ—ମୁଁ ବୁଝିଛି ସବୁକଥା—

ରାଣୀ—ସେନାପତେ ! ତୁମେ ରାଜବଳର ଅଧିନାୟକ ହୋଇ, ଏତେ ଦୁର୍ବଳ ?—ରାଜବିଧି ଲଙ୍ଘନକାରୀ ପ୍ରତି ଦୟାମାୟା ? ହେଉ ସେରାଜା ରାଜ୍ୟର ଏକମାତ୍ର ଉତ୍ତରାଧିକାରୀ—ମୋ'ର ଗୋଟିକ'ସନ୍ତାନ ?

ଭାନୁ -ଏ'ଭଳି କଠିନ ଆଦେଶ ଦେବା ପୂର୍ବରୁ ବିଚାର ତ କରିବାକୁ ହୁଏ ? ବଳାଙ୍ଗୀ ତ କହୁଚି—ରାଜା ତାକୁ ଛାଡ଼ନ୍ତି ବୋଲି—

ବଳାଙ୍ଗୀ—( କଥା ନ ସରୁଣୁ ) ଖୁବ୍ ଭଲରକମ, ବାବା—ବାସ୍ନା-ବାତୁଲଟାଏ—ଖାଲି ଗୀତ—ହସିଲେ ବି ଗୀତ—କାନ୍ଦିଲେ ବି…( ପୁଣି ଶୁଣୁଥିଲେ ଯେମନ୍ତ ପୂର୍ବ ଗୀତର ଅନୁକ୍ରମରେ )…
"କଳ୍ପନା ଆମର ରାଜ୍ୟ—କଳ୍ପନାହିଁ ଅଇଶ୍ୱର୍ଯ୍ୟ—କଳ୍ପନା କୁଞ୍ଜେ ଗୋ ଖେଳ—ନିତ ସଞ୍ଜ ଭୋର ।"

ବଳାଙ୍ଗୀ—ହଁ, ଅଦ୍ଭୁତ ଶୁଣିଲି, ବଜ୍ରଧର ରାଜା କୁଆଡ଼େ ରାଜ୍ୟରୁ ତା'ଙ୍କୁ ତଡ଼ି ଦେଇଛନ୍ତି—

ରାଣୀ—ତଥାପି, ଏଭଳି ଛଡ଼ାଇ ନେବାଟା ଗିରଫ୍‌ଦାର ଅସାମୀକୁ କଟୁଆଳ ହାତରୁ, କ'ଣ ଠିକ୍ ହୋଇଛି, ତୋର ରାଜାପକ୍ଷେ ?

ଭାନୁ—ମା—ପିଲାମିରେ ପିଲାଟା ସେଭଳି କରି ପକାଇଛି ।

ବଳାଙ୍ଗୀ—ହଁ, ବାବା ! ଖେଳାଳିବେଳେ ଆମେ କେତେ କ'ଣ ଏମିତିକା ଛଡ଼ା ଛଡ଼ି, କଡ଼ା କଡ଼ି, କରିଥାଉଁ …ରାଜା ଠିକ୍ ସେଇଥିପାଇଁ ଭାବି…ନା, ନା, ମା ମୋ'ର ଦୋଷ—ମୁଁ ଗୁରୁତ୍ୱଟା ପରିସ୍ଥିତିର, ବୁଝିବାକୁ ଅବସର ଦେଲି କାହିଁ— ?

ରାଣୀ—ବେଶ୍, ଦୋଷ ସ୍ୱୀକାର କରୁଛୁ ଯଦି, ଏହି ଦଣ୍ଡ ଦିଆଗଲା ତୋତେ—ଏଇ ମୁହୂର୍ତ୍ତେ—ଏଇଠାରେ—ଉଭୟ, ଗୁପ୍ତଚର ଓ ରାଜାକୁ ତୋ'ର, ଚିରଫ୍…ନା, ନା, ଏକାଠି ବାନ୍ଧି, ଓଟାରି, ହାଜର କରିବାକୁ ହେବ ।—

ବଳାଙ୍ଗୀ—ମା…

ରାଣୀ—ବଳାଙ୍ଗୀ !

ବଳାଙ୍ଗୀ—ରାଜାଦେଶ !—ଅକ୍ଷରେ ଅକ୍ଷରେ ପାଳିବି ମଣିମା !—[ ରାଜସମ୍ମାନ ଦେଖାଇ ଚାଲିଗଲେ ]

ରାଣୀ—ଲକ୍ଷ୍ୟ କରୁଚତ, ସେନାପତେ—କି ପ୍ରୀତି-ସୁଧା-ଭରା ହୃଦୟ ମା'ର ମୋ'ର ।

ଭାନୁ—ମା ! ମା ! ଯେଉଁ ଉପାୟରେ ପରସ୍ପରକୁ ସେମାନେ ଘୃଣା କରିବାକୁ ଶିଖିବେ, ସେହି ଉପାୟ କରୁଛୁ ଅହଂ, ମା—…

ରାଣୀ—ତୁମର ମସ୍ତିଷ୍କ ବିକୃତ ହୋଇଛି, ନା କ'ଣ, ମଙ୍ଗରାଜ ? ଏତେ ବଡ଼ ରାଜ୍ୟଟା ଚଳାଇବ କିପରି ସେବେ, ମଙ୍ଗ ଧରି ?

ଭାନୁ—ସେହି ନୌକା ଚଳାଇବା ଉଦ୍ଦେଶ୍ୟରେ ତ କହୁଚି, ରାଣୀମା—

ରାଣୀ—ତୁମେ, ଦେଖୁଚି, ଯୁବକ ପୂର୍ଣ୍ଣଚନ୍ଦ୍ରକୁ ବଳି ପଡ଼ିଲଣି ଭାବପ୍ରବଣତାରେ ?

ଭାନୁ—ଦିନେ ପଡ଼ିଥିଲି, ରାଣୀମା—ଶୋଳରେ ନିଆଁ ଲାଗିଲାଭଳି, ଜଳି ଉଠୁଥିଲି କଥାପଦକର ଚକ୍‌ମକିରେ—ଦାବାନଳ ସୃଷ୍ଟିକରି ଦେଉଥିଲି ଆଖି ପିଛୁଡ଼ାକେ ।—କିନ୍ତୁ, ଆଜି ପ୍ରଶାନ୍ତ ମହାସାଗରକୁ ଜିଣି ନିଷ୍ଠିଲି, ମା—ଗୋଟାଏ ପ୍ରଳୟ ଝଂଝିକାରେ ସୁଦ୍ଧା ସାମାନ୍ୟ ହିଲ୍ଲୋଳଟିଏ ବି ଖେଳିଯିବ କି ନାହିଁ, ସନ୍ଦେହ ।—

ରାଣୀ—ତୁମେ ଚୁହ କ'ଣ ଚେତେ, ବାଡ଼ବାନଳ ପେଟରେ ପୂରାଇ—ସେହି ମାନ, ଇଜ୍ଜତ୍ ଧ୍ୱଂସକାରୀ ଶତ୍ରୁସଙ୍ଗେ ସନ୍ଧି କରିବାକୁ ?—ବୈବାହିକ ସମ୍ବନ୍ଧ ସ୍ଥାପନ କରି ?

ଭାନୁ—ରାଜନୈତିକ ହିସାବରେ ଶ୍ରେୟସ୍କର କି, ନା, ବିଚାରି ଦେଖନ୍ତୁ ଥରେ ।—ଏଣେ ଅନୁକୂଳ ମାଡ଼ି ବସିଛି—ତେଣେ ଦଶପାଞ୍ଚା ଟାଙ୍କି ରହିଚି—ଆମର ବର୍ତ୍ତମାନ ପରିସ୍ଥିତି ଯା'…ଓଃ, ମହାରାଜ ଯେ ଏତେ ଚଞ୍ଚଳ ଗୁଡ଼ି ଗୁଡ଼ାଇ ଚାଲିଯିବେ—ମୋ' ଉପରେ ନିର୍ଭର ।—ପାଣିଛି ଅମୃତିଏ ପିନା ?—ଖସି ପଡ଼ିବ କେତେବେଳେ ଯେ ।—ହଁ, ଅଦ୍ଭୁତ ଦେଖନ୍ତୁ, ମା—ରାଜାଙ୍କର ଯେତେବେଳେ ମନୋନୀତ ହୋଇଚି ପାର୍ଟି—ଏ' ସୁଯୋଗ କଦାପି ତ୍ୟାଗ କରିବା ଉଚିତ ନୁହେଁ ଆମର—

ରାଣୀ—ଯା' କୁହ, ସେନାପତେ ।—ବଳାଙ୍ଗୀକୁ ମୁଁ—

[ ବଳାଙ୍ଗୀ ଓ ପୂର୍ଣ୍ଣଚନ୍ଦ୍ର ପ୍ରବେଶକଲେ ରକ୍ଷୀ ଓ ବନ୍ଦୀରୂପେ—ହଠାତ୍ ପୂର୍ଣ୍ଣଚନ୍ଦ୍ର ବଳାଙ୍ଗୀର କର୍ଣ୍ଣମୂଳ ରକ୍ତ ପୋଛି ଦେବାକୁ ଧାଇଁ ଯାଉଥିଲେ ଲକ୍ଷ୍ମୀର ଛପାଇ, କିନ୍ତୁ ପାରିଲେ ନାହିଁ—ରାଣୀ

ଯେ ଲକ୍ଷକର ମୁହଁ ଚିପି ଚିପି ହସୁ ନ ଥିଲେ, ତା’ ନୁହେଁ ]

ବଳାଙ୍ଗୀ—ଦେଖେଁ, ମା – ଯେଉଁ ବାଘୁଣୀ—

[ ଯାଉଥିଲେ ବାହାର ]

ରାଣୀ—ଯାଉ, ଯାଉ—ଯେଉଁଠାକୁ ଇଚ୍ଛା, ଯାଉ ସେ ପଳାଇ—ମୋ କୋଳକୁ ଆଇଲୁ—ଆଇଲୁ ଆରେ ତୁ ବାଘୁଣୀ—ଛାଡ଼ିବି ନାହିଁ ଲେ—ଛାଡ଼ିବି ନାହିଁ ଲେ ତୋତେ, ମୋ’ର ଧନମଣି ।

ପୂର୍ଣ୍ଣଚନ୍ଦ୍ର –( ରାଗରେ ଥରଥର ହେଉଥିଲେ ) ମୁଁ ବୁଝିପାରୁନାହିଁ –ମୋ ବରୁଦ୍ଧରେ ତୁମେମାନେ କି ଷଡ଼ଯନ୍ତ୍ର ଚଳାଇଚ –ରାଜ୍ୟଶାସ୍ତ୍ର ମିଳି ?

ରାଣୀ—( ଲାଙ୍ଗୁଳାହତ ଫଣୀ ଭଳି ଚାହିଁଲେ )

ପୂର୍ଣ୍ଣଚନ୍ଦ୍ର—ମୁଁ ଜାଣିବାକୁ ଚାହେଁ—ଏ’ ରାଜ୍ୟର ରାଜା କିଏ ? ରାଜା ପୂର୍ଣ୍ଣଚନ୍ଦ୍ର, ନା, ସେନାପତି ଭାନୁମଙ୍ଗରାଜ ?

ଭାନୁ—‘ରାଜା’,—ରାଜା ପୂର୍ଣ୍ଣଚନ୍ଦ୍ର ସତ୍ୟ,—ମାତ୍ର, ‘ରାଜ୍ୟ’—ସେନାପତି ଭାନୁମଙ୍ଗରାଜର ।

ରାଣୀ—ଠିକ୍ ଉତ୍ତର ଦେଇଛ, ମଙ୍ଗରାଜ ।

ପୂର୍ଣ୍ଣଚନ୍ଦ୍ର—ଠକିଛ, ଠକିଛ, ମା । ଏହି ଭଣ୍ଡ, କୁଟଚକ୍ରୀ କୂଟ ମନ୍ତ୍ରଣାରେ ତ ର, ରାଜ୍ୟକୁ ତ ଗ୍ରାସ କରି ସାରିଚ—ଶେଷରେ ଯେ ରାଜାକୁ ଗ୍ରାସ କରିବ, ତା’ର ଗୁପ୍ତ ଅମୋଘ-ବାଣଟି ଏହି ଯିପ୍ର ତୁମର ବକ୍ଷେ ସିନା ।

ରାଣୀ—( ମଙ୍ଗରାଜ ଆଡ଼େ ଚାହିଁ ) ‘ପିଲାମିରେ’, ‘ପିଲାଟା’, ଏହିଭଳି କହି ପକାଉଛୁ, ନା, ମଙ୍ଗରାଜ ? ସେଇଥି ଯଦି, ତିର ଶୁଭକାଙ୍କ୍ଷୀତ ତୁମେ ରାଜପରିବାରର ।—ଚରଣୁବକାର୍ଯରେ ତେବେ ହେଲା କାହିଁକି ? ଝିଅ, ପୁଅ, ମା, ଅଜା, ସମସ୍ତେ ତ ଏକାଠି—ଏକାଠାଇଁ—ହାତଗଣ୍ଠିଟା ପଢ଼ିବାକୁ ତେବେ ଡେରି କାହିଁକି ?

ଭାନୁ—ମା ।—ମତି ବୋଧହୁଏ ତୁମର ଠିକ୍ ନାହିଁ ।

ପୂର୍ଣ୍ଣଚନ୍ଦ୍ର—ବେଠିକ୍ କରନ୍ତି କିଏ, ଭାନୁମଙ୍ଗରାଜ ? ତୋହର ଦୀପ୍ତ ପ୍ରଚଣ୍ଡ ରୌଦ୍ର ନା ?—

ରାଣୀ—ଅରେ, ପଣ୍ଡିତ—ଭାନୁର ଯେଉଁ ଦୀପ୍ତ ପ୍ରଚଣ୍ଡ-ରୌଦ୍ର ଯୋଗୁଁ, ପୂର୍ଣ୍ଣଚନ୍ଦ୍ରର ଏହି ପୂର୍ଣ୍ଣ ଦୀପ୍ତି ନା ଅଛି ?

[ କବି ସହସା ପ୍ରବେଶ କଲେ ]

କବି—କାନ୍ତୁ, କି ବାଚନ, ମା ? ଭାନୁର ନୟନମଣି ସର୍ବେଶ୍ୱରୀ ଧନୀ—ଦିଏନାହିଁ ସୁଖ କେବେ ପୂର୍ଣ୍ଣଚନ୍ଦ୍ରେ ଲବେ ।—ହଁ, ଦେବ ବା କାପରି ?

—ଗୀତ—

ଯେତେ ଶୋଭି ଥିଲେ ଛବି—ଛଚାପଙ୍କଜର,—
ପଙ୍କେ ବୋଲା ଭନୁ ତା’ର—ପଙ୍କ୍ତ ସେ ହାଜର ।

ଭାନୁ—କିଏ ? କିଏ ତୁମେ ଜ୍ଞାନୀ ?

କବି—ମୁଁ ଗୋଟାଏ ବାଘ୍ରା-ବାତୁଳ, ବାବା—

ଭାନୁ—ଜ୍ଞାନର କଥା କାନ୍ତୁ, କହୁଚତ, ବନ୍ଦୁ—ମା, ମା, ଶୁଣିଲୁ ଥରେ—

ରାଣୀ—ଏହି ଯେଉଁ ବାଘ୍ରା-କବି, ନା ? ଗୁପ୍ତଚର—କୁଟଚକ୍ରୀ ଅନୁଗୁଳ ରାଜା ବଜ୍ରଧରର ?

କବି—କୁଟ-କୁଞ୍ଚିତକେଶୀ—ଅନୁଗୁଳ-ସ୍ୱମନସୁହାସୀ—ରାଜକେମା ଶଶିମାଳୀର, ମା ।

( ପୂର୍ବଗୀତ କ୍ରମେ )

—ଗୀତ—

ଚନ୍ଦ୍ରା କୁମୁଦିନୀ ଧନୀ, ଶରଦ ନନ୍ଦିନୀ,
ନୀଳ-ସରେ ଫୁଟେ କିବା—ଚନ୍ଦ୍ରର ମୋହିନୀ ।
ମନେ-ମନେ, ପ୍ରାଣେ-ପ୍ରାଣେ ଗୁନ୍ଥା କି ବାହାର—
ଛିଣ୍ଡାଇବ କେ ସଂସାରେ ଶକ୍ତିଟି କାହାର ॥

ପୂର୍ଣ୍ଣଚନ୍ଦ୍ର—( ଲଜ୍ଜାରେ ମାଟିସଙ୍ଗେ ମିଶିଯାଉଥିଲେ ପରି, ମନେ ମନେ କି ଯେ ବିରକ୍ତ ହୋଇ କବିପ୍ରତି—ମନର ଭାବଟା ଏହିଭଳି ପ୍ରକାଶରେ ଦେବାକୁ କି ଅଛି ? )

ବଳାଙ୍ଗୀ—(କି ଯେ ଅସ୍ୱସ୍ତି ଅନୁଭବ କରି ଉଠୁଥିଲେ—କାନ୍ତୁ ସଙ୍ଗେ ସଙ୍ଗେ ଗୋଟାଏ ପ୍ରଶାନ୍ତ ସ୍ନିଗ୍ଧ ଦୃଷ୍ଟିରେ ଚାହିଁଲେ )

[ ମାଳତୀ ଅଲ୍ପଲାସ୍ୟିତ ବେଶରେ ପ୍ରବେଶ କଲେ ]

ମାଳତୀ—କାନ୍ତୁ, ‘ଛିଣ୍ଡାଇପାରେ’ ‘ସଂସାରେ’—କିଏ—କେ କିଏ ? କାଣ ?

ରାଣୀ—ମାଳତୀ ! ମାଳତୀ !

ମାଳତୀ—ବର୍ଗୀ ! ବର୍ଗୀ, ମା !—

ରାଣୀ—ମାଳତୀ !

ମାଳତୀ—ବର୍ଗୀ ! ବର୍ଗୀ, ମା !—ଗୁରୁଆଡ଼େ ବନ୍ଧୁର ରହସ୍ୟ ଖାଲି—ମାଟି ଖୋଲ ଦେଖ, ବର୍ଗୀ—ଶୂନ୍ୟେ ଗୁହଁି ଦେଖ, ବର୍ଗୀ—ଆଖି ମୁଦିଲେବ, ବର୍ଗୀ !...

[ ନେପଥ୍ୟେ ସେତିକିବେଳେ ତୁରୀ, ଭେରୀ, ଝମକ ବାଜି ଉଠିଲା ]

ମାଳତୀ—ସେହି 'ଶାବେଲା' କାହିଁ ତୁମର ? କିଛି ଚିନ୍ତା ନାହିଁ, ବାବା—ମୋ' ହାତରେ ରହସ୍ୟ, 'ଭାଙ୍କର' ଅସି—ମୁହିଁ ଯେ ପ୍ରହରୀ ତୁମର—( ପୁଣି ନେପଥ୍ୟେ ବାଦ୍ୟ ଶୁଣାଗଲା ) ହାଃ—ହାଃ—ବର୍ଗୀ !—ବର୍ଗୀ !—ମାନ୍ୟ, ମାଳତୀ-ସୁନ୍ଦରୀ ନୁହେଁ ଏଥର, ଦୁର୍ବଳା ଅବଳା ସତୀ !

ରାଣୀ—ଠିଆହୁଅ, ସେନାପତେ—ଅଣିଦିଏଁ—ସେହି ତୁମର, ଗଚ୍ଛିତ ଅସି ! ( ପ୍ରସ୍ଥାନ )

ପୂର୍ଣ୍ଣଚନ୍ଦ୍ର—ଆଦେଶ, ସେନାପତେ—ମୁଁ ବର୍ଗୀ ସଂହାର କରିବି - ସଂହାର ମୂର୍ତ୍ତିରେ, ଶ୍ରୀଚ ପଦାତିକ ରୂପେ ଭବ, ବର୍ଗାବର୍ଗ ନ ମାନି—

ମାଳତୀ—ବଳାଙ୍ଗୀ !—ତୁ ସର୍ବଳାଙ୍ଗୀ କାହିଁକି ?

ବଳାଙ୍ଗୀ—ଅସମ୍ଭବ, ମା—ମୁଁ ରାଜାର ପ୍ରହରୀ—ଯେଣୁ, ତୁମେ ସେନାପତିଙ୍କର !—

[ ସହସା ଦୂତ ପ୍ରବେଶ କଲା ]

ଦୂତ—ସେନାପତେ ! ଦଶପଲ୍ଲୀ ଯୁଦ୍ଧ ଘୋଷଣା କରି, ସଙ୍ଗେ ସଙ୍ଗେ ଦେଶ ଚଢ଼ାଉ କରିଛି !

ପୂର୍ଣ୍ଣଚନ୍ଦ୍ର—ଦଶପଲ୍ଲୀ ?—ନୁହେଁ ବର୍ଗୀ ?

ରାଣୀ—( ପ୍ରବେଶ ପୂର୍ବକ 'ଶାବେଲା' ହସ୍ତେ—ମଙ୍ଗରାଜଆଡ଼େ ଗୁହଁିଲେ ବିସ୍ମୟେ ) ଏ'କଣ ଶୁଣୁଚ —

ଭାନୁ—ଏ' ସେହି କୂଟଚକ୍ରୀ ବଜ୍ରଧରର ଘୂର୍ଣ୍ଣିତ ବଜ୍ରକୂଟ-ଚକ୍ରର ସ୍ଫୁଲିଙ୍ଗୋଦ୍‌ଗୀରଣ ମାତ୍ର, ମା—ହାଃ—ହାଃ - କିଛି ଚିନ୍ତା ନାହିଁ, ମା—

ପୂର୍ଣ୍ଣଚନ୍ଦ୍ର—( କିଭଳି ସ୍ତମ୍ଭିତ ହୋଇ ଉଠିଲେ, ବଜ୍ରଧରଙ୍କର କଥାଗୁଡ଼ିକ ସ୍ମରଣ କରି;—କି ଶ୍ଲେଷ ଦୃଷ୍ଟିରେ ଗୁହଁି ମଙ୍ଗରାଜପ୍ରତି)—ବଜ୍ରଧରର, ନା, ଭାନୁମଙ୍ଗରାଜର ?

ରାଣୀ—ଧର ଏହି 'ଶାବେଲା' ତୁମର, ମଙ୍ଗରାଜ ! କର ଖଣ୍ଡ ଖଣ୍ଡ—କୂଟଚକ୍ରୀର କୁଟଚକ୍ର ଯେଣେ—ଯଥା କରିଥିଲ ଲଣ୍ଡଭଣ୍ଡ ବର୍ଗୀକୁଳ ଦିନେ !

ଭାନୁ—( ଅଣ୍ଟୁମାଡ଼ି ବସି 'ଶାବେଲା' ଗ୍ରହଣ କଲେ )

ରାଣୀ—ମନେ କରିଥିଲି—ଆଉ ଧରାଇବି ନାହିଁ ଏହି 'ଶାବେଲା' ଏ' ଜୀବନେ, ବନ୍ଧୁ—ଶେଷ ଜୀବନଟା କଟାଇବି ଅହିଂସାର ବ୍ରତେ—କରିବି ପ୍ରାୟଶ୍ଚିତ୍ତ ପୂର୍ବ ଅତ୍ୟାଗୁରର ଯେତେ !

ପୂର୍ଣ୍ଣଚନ୍ଦ୍ର—ମା ! ଅତ୍ୟାଗୁର ଦମନର ହେତୁ, ଦେଉଛ 'ଶାବେଲା' ସତେ—କିନ୍ତୁ, ଶ୍ରୀପଣତନ୍ତ୍ର, ଶ୍ରୀପଣ-ଭର ଅତ୍ୟାଗୁର ସିନା ଆସନ୍ଧୁଛି ନିଜପ୍ରତି ନିଜେ !—ମୁଁ ମର୍ମେ ମର୍ମେ ଅନୁଭବ କରି ଆସିଛି, ମା—କଥା ପଡ଼ିଲାରୁ କହୁଅଛି ଏବେ—ନୁହେଁ ରାଜା ବଜ୍ରଧର, କ୍ରୂର କୂଟଚକ୍ରୀ, ଯଥା-ଶକିତ, ଏହି ସ୍ୱାର୍ଥପର, କୂଟ-କୌଶଳୀ ସେନାପତି ଭବ, ଭାନୁମଙ୍ଗରାଜ ମୁଖେ !

ରାଣୀ—ପାଷଣ୍ଡ !—

ଭାନୁ—ଶଙ୍କା ମୋ'ର ଅକ୍ଷରେ ଅକ୍ଷରେ ସତ୍ୟ, ମା—କୂଟଚକ୍ରୀର କୂଟଚକ୍ର ଭେଦିଛି ତା' ଲକ୍ଷ୍ୟ—ନା, ନା—'ଶାବେଲା'-କର ମଙ୍ଗରାଜ ଏବେ—ଖଣ୍ଡ ଖଣ୍ଡ କରିବ ସେ ଚକ୍ର, କୂଟଚକ୍ରୀର ସହିତେ—ହାଃ—ହାଃ—( କେଉଁ ଶ୍ରୀପଣତର ମୂର୍ତ୍ତିରେ ଅଗ୍ରସର ହେଉଥିଲେ—ସମ୍ମୁଖେ ବଳାଙ୍ଗୀକୁ ଦେଖି ପଥର ପାଲଟିଗଲେ କି ଆଉ ? )

ବଳାଙ୍ଗୀ—ବାବା ! ବାଟଚଳି ଦଣ୍ଡକେ ଯାଇ ପହଞ୍ଚିବ କେମିତ, ଭାବି, ଥକ୍‌କାମାରି, ଠିଆ ହୋଇଲେ ନା, କ'ଣ ? ଘୋଡ଼ାଟାକୁ ମୋର ସାଜ ପିନ୍ଧାଇ ନେଇ ଆସେ ତ—( ଚାଲିଗଲେ )

ଭାନୁ—'ରଣମାଳୀ'ର ବାବା ତ, ସେହ୍ନ 'ବଜ୍ରଧର !' ( ଏହ୍ନ ପଦ ଗୁଡ଼ିକ ମର୍ମେ ମର୍ମେ ଯେପରି କହ୍ନ ଉଠିଲେ )—ରାଜା !— ରାଜା ! ସ୍ୱାର୍ଥପର ପ୍ରକୃତରେ ମୁହିଁ—ମା—ମା—ଅତ୍ୟାଗ୍ରହୀ— ଘୋର ଅତ୍ୟାଗ୍ରହୀ ସେନାପତି ତବ— ( ଅସ୍ତ୍ରହତ୍ୟାକରିବାକୁ ଗଲେ ସେହ୍ନ ଅସିରେ ଆପଣାର )

ମାଳତୀ—ହାଃ—ହାଃ—ମୁଁହିଁ ଯେ ରକ୍ଷୀ ତବ, ସେନାପତେ ? ( ଅଟକାଇଲେ )

ରାଣୀ—ସେନାପତେ ! ତୁମେ ରାଜ-ଧର୍ମଗ୍ରହୀ ନା ? ବିନା ରାଜାଦେଶରେ, ଯଥେଚ୍ଛା, ଅସି ଚଳାଇବାକୁ ଉଦ୍ୟତ ?

ପୂର୍ଣ୍ଣଚନ୍ଦ୍ର—ଭାଗ୍ୟେ ରାଜା ଉପରେ ଚଳାଇ ନାହାନ୍ତି, କୁହ ? ମା, ଲଗାମ୍‌ତ ବିଲ୍‌କୁଲ୍ ଢିଲା ଛାଡ଼ିଚ ସେହ୍ନକାନ୍ତି, ଯେତେବେଳେ କି ଉଡ଼ିବାର କ୍ଷମତା ସାମର୍ଥ୍ୟ ଥିଲା ନିଜର !—ବର୍ତ୍ତମାନ ଶୋଚିଲେ ହେବ କ'ଣ ? ଦୁର୍ବଳ ସବାରଙ୍କୁ ଅମାନିଆ ଘୋଡ଼ା ମାନିବ କାହିଁକି ?

ରାଣୀ—ଓଃ ! ( କି ଯେ ବୁଝିନେଇବେ ଗୁହିଁଲେ ପୂର୍ଣ୍ଣଚନ୍ଦ୍ର ପ୍ରତି—କିନ୍ତୁ, କେଉଁ ଗାମ୍ଭୀର୍ଯ୍ୟରେ ଘୋଡ଼ାଇ, କହିଲେ )—ସେନାପତେ ! ବାସ୍ତବିକ କି ଅମାନିଆ ତୁମେ ?—ଶାସନାଧୀନ ନୁହଁ ଏକାନ୍ତ ଏ' ରାଜ୍ୟର ?

ଭାନୁ—କ୍ଷମା, ରାଣୀମା— ପ୍ରଥମ ଭୁଲ୍ ଅଜି, ବୋଧହୁଏ ମଙ୍ଗରାଜର, ଏହ୍ନ ରାଜା ଓ ରାଜ୍ୟପାଇଁ ଉତ୍ସର୍ଗିତ ଜୀବନରେ ତା'ର !—

ରାଣୀ—କିନ୍ତୁ—ଏହ୍ନ ଯେମନ୍ତ ଶେଷ ଭୁଲ୍ ହୁଏ ତୁମର, ମଙ୍ଗରାଜ !—

ଭାନୁ—( କି ଗୋଟାଏ ଦୁର୍ଲକ୍ଷଣ ଦେଖୁ ଦେଖୁ ) ମା, ମା ! ତାହାହିଁ ଆଶୀର୍ବାଦ କରନ୍ତୁ—(ସେହ୍ନ ଦୃଶ୍ୟ ଦର୍ଶନକ୍ରମେ ଥର ଥର ଅସି ଥୋଇ ଦେଲେ )

ରାଣୀ—କାୟମନୋବାକ୍ୟେ······ପ୍ରସ୍ତୁ ଅସି .ତୁମର ଥୋଇ ଦେଲ ଯେ !

ଭାନୁ—ବର୍ଣ୍ଣିପିକା !—ଗୋଟାଏ ବର୍ଣ୍ଣିପିକା ! ( କି ଯେ ବର୍ଣ୍ଣିପିକା ଦେଖୁଥିଲେ ) ଅବ୍ୟାହତ ! ଅବ୍ୟାହତ ମଣିମା, ଏହ୍ନ ପ୍ରିୟତମ ଅସିଧାରଣଙ୍କୁ ବୃଦ୍ଧେ, ପ୍ରିୟତମ ପୁନରକୁ ମୋ'ର ବଳ !

[ ପୁଣି ନେପଥ୍ୟେ ରଣବାଦ୍ୟ ଶୁଣାଗଲା ]

ରାଣୀ—ଏହ୍ନ ସଙ୍କଟରେ ?

ଭାନୁ—( କେଉଁ ଦମ୍ଭରେ ) ନା, ନା, ଭାନୁମଙ୍ଗରାଜ ମୁହିଁ—ମା,—ମା, ଦଅ ଉଲଙ୍ଗକୃପାଣ ଟେକି— ସେହ୍ନ ଭୈରବୀ କରାଳୀ ମୂର୍ତ୍ତିରେ ଅଜି—ଯେଉଁ ମର୍ଦ୍ଦିନୀ ରଣରଙ୍ଗିଣୀମୂର୍ତ୍ତିରେ ଦେଇଥିଲ ଦିନେ, ବର୍ଗୀର ଆକ୍ରମଣ କାଳେ !

ରାଣୀ—'ପ୍ରଗଲା' ଭୀଷଣା ଶୁଣିଥିଲ ମୁହିଁ—ତାହା ଭୀଷଣତର ମୂର୍ତ୍ତିରେ ଦେଉଛି, ମୁଁ ଟେକି—

ଭାନୁ—( ଅସିଧରି ) ମୂର୍ତ୍ତିମନ୍ତ 'ବର୍ଣ୍ଣିପିକା' ଏବେ,— ନାଚିବ ମଙ୍ଗରାଜ—ଖେଦ ଅନୁଗୁଳ, ଦଶପଲ୍ଲା, ଅନଗଡ଼ଙ୍କାତ ଯେତେ—ଗୋଠଛଡ଼ା ହାତୀ ଯେପରି; ଭେଟିବ ଶୀପର୍ଯ୍ୟରେ ଭେଟି—ମୁଣ୍ଡ ବଜ୍ରଧରର, ଶକ୍ତିଧରର—ହାଃ—ହାଃ—ତଥା ସାରା ରାଜନ୍ୟ-ମଣ୍ଡଳୀର—ଗୁଡ଼ି ଗୋଟି ଗୋଟି, ଏହ୍ନ ଶାଣିତ ଫଳକେ—!—

[ ନେପଥ୍ୟେ ପୁଣି ରଣବାଦ୍ୟ ଘନ ଘନ ଶୁଣାଗଲା ]

ଭାନୁ—( ଉନ୍ମାଦଭଳି ଚାଲି ଯାଉଥିଲେ ) ହାଃ— ହାଃ—

ରାଣୀ—ସେନାପତେ !

ଭାନୁ—( ଫେରିଆସି ) ପୁଣି ଭୁଲିଚି, ମା, ପୁଣି— କ୍ଷମା— କ୍ଷମା— ଆଦେଶ, ରାଜା—ଆଦେଶ, ମଣିମା !—

ପୂର୍ଣ୍ଣଚନ୍ଦ୍ର—ଥାଉ, ଥାଉ, ସେବକରେ, ଘୋର ରାଜଭକ୍ତି, ଭଣ୍ଡ !

( ଚାଲିଯାଉଥିଲେ ଅବଜ୍ଞାଭରେ )

ରାଣୀ—ପୂର୍ଣ୍ଣଚନ୍ଦ୍ର !—

ପୂର୍ଣ୍ଣଚନ୍ଦ୍ର—( ଠିଆ ହେଲେ ଅନିଚ୍ଛା ସତ୍ତ୍ୱେ )

ରାଣୀ—ସେନାପତେ ! ଆଦେଶ ମୋ'ର—'ରାଜ୍ୟ'ର ଭବିଷ୍ୟତ କଣ୍ଟକ ଯେତୁ—ଅମଙ୍ଗଳ ଯେତୁ, କର ଆଗେ ଉତ୍ପାଟିତ ତାକୁ—

[ ରୋଷ କଷାୟିତ ନୟନରେ ଚାହିଁଲେ ପୂର୍ଣ୍ଣଚନ୍ଦ୍ରକୁ ]

ଭାନୁ—ମା !—( ବାବା ହୋଇ ଚାହିଁ ରହିଲେ—ଅସି ଖସିପଡ଼ୁଥିଲା ମୁଠାରୁ )

ବଳାଙ୍ଗୀ—( ବେଗେ ପ୍ରବେଶ କଲେ, ଘୋଡ଼ାର ଲଗାମ ଧରି—ଛାଡ଼ିଦେଇ ତରବାରୀ, ଅସି ଟେକି ଦେଇଁ ଦେଇଁ ପିଣ୍ଡୁ-ଭରେ— )

ବଳାଙ୍ଗୀ—ଧର, ଧର, 'ଶାବେଳ'ଟି ତୁମର ବାବା—ରାଜ୍ୟର କଣ୍ଟକ—ପ୍ରକୃତରେ ଏହି ଅମଙ୍ଗଳ ବଳାଙ୍ଗୀଟା—ରାଜାଙ୍କର ଭବିଷ୍ୟତ ପଥେ—ମହାବିଘ୍ନ ଗୋଟା—

[ ଆପଣାର ବୁକୁ ଦେଖାଇଦେଲେ ]

ଭାନୁ—( ପ୍ରଳୟ କମ୍ପନରେ ଥରି ଉଠିଲେ )

( ସମସ୍ତେ ସମସ୍ୱରେ ଚିତ୍କାରକରି ଉଠିଲେ )

ବଳାଙ୍ଗୀ ! ବଳାଙ୍ଗୀ !

—ଯବନିକା—

## ଚତୁର୍ଥ ଅଙ୍କ

—ସେହି ଅନୁକୂଳସରୋଦ୍ୟାନ—

[ ମଣ୍ଡଳ, ଝିଙ୍କିଳ ପଡ଼ନ୍ତୁ—ଚନ୍ଦ୍ରମାଳୀ ମଧ୍ୟ ଠିକ୍ ସେହି ଭଳି ସାଜ ଓ ବେଶରେ ପ୍ରବେଶ କଲେ ]

ଚନ୍ଦ୍ରମାଳୀ—ଏଇଠି···ଏଇଠି ( ଫୁଲ ଗଛଟାକୁ ଛୁଇଁ ପକାଇ ) ଏଥର ଯିବ କୁଆଡ଼େ, ଧନମଣି—ଜାଣୁଛି, ବୁକୁ ଭିତରେ ପୂରାଇ, ଲୁଚାଇ ରଖିବ ନାହିଁ, ନା ?—

[ ସହଚରୀଟିଏ ଧାଇଁ ଆସିଲା ]

ସହଚରୀ—କାହିଁଗଲେ ଜେମାମଣି ?—( ଖୋଜିବାକୁ ଲାଗିଲା )

ଚନ୍ଦ୍ରମାଳୀ—ପୁଣି ହଲ୍ ଚଲ୍ ?—ଛାଡ଼ିଲ ତ ?···

ସହଚରୀ—ଜେମାମଣି···

ଚନ୍ଦ୍ରମାଳୀ—ସାବଧାନ !···ଆଉ ପଦେ ବଢ଼ିଚୁତ··· ଏହି ଦେଖ୍···( ପିସ୍ତଲ ମାରିବାର ଅଭିନୟ କଲେ, ଦୁଇ ହାତରେ ଦୁଇଟା ପିସ୍ତଲ ଧରି ଠିକ୍ ବଳାଙ୍ଗୀ ଯେମନ୍ତ ସେ ଦିନ କରିଥିଲେ )

ସହଚରୀ—ସେ ଭଳି ବାୟା-ବାତୁଳ ହେଲେ କି··· ( ଛଡ଼ାଇ ଆଣିଲେ )

ଚନ୍ଦ୍ରମାଳୀ—ବଳାଙ୍ଗୀ ନୋହୁଁ ତୁ ?···

ସହଚରୀ—ଜେମାମଣି ! ଥୟ ଧରନ୍ତୁ···

ଚନ୍ଦ୍ରମାଳୀ—କେମିତି ଧରିବି ଲୋ ସହି ? ତୁତ ଜାଣୁ, ଦିନ ରାତ ଜଗି ଜଗି ନଖାଇ, ନପିଇ—ନଶୋଇ, ନବସି—କେତେ କଷ୍ଟରେ ମାନସ ଚନ୍ଦ୍ରଟିକୁ ଗଢ଼ିଥିଲି, ମୂର୍ତ୍ତିମନ୍ତ କରି, ବାହୁ ପାଶରେ ବାନ୍ଧିରଖିଥିଲି···ସେହି ଅଲକ୍ଷଣୀଟା, କାହିଁଥିଲା, ଧାଇଁ ଆସି, ଖପ୍‌କିନା, ସଞ୍ଜବୁଣୀ ବାଜ ପକ୍ଷୀ, ଛଡ଼ାଇ ନେଲା ସିନା ଦଣ୍ଡକେ,—ପ୍ରାଣର ମୋହନକୁ ମୋର, ପ୍ରାଣର ପଞ୍ଜରା ଭିତରୁ !···

ସହଚରୀ—ବାବା ଯେ ବ୍ୟସ୍ତ ହେଉଛନ୍ତି···

ଚନ୍ଦ୍ରମାଳୀ—'ବାବା' !—ସତେ ସତେ ଏଡ଼େ ରାଜା ହୋଇ ବାବା—'ସାତ ବୀର' ତାଙ୍କର ଥାଉଁ ଥାଉଁ—ଛାର ଟୋକାଟାକୁ ସାରା କରି ପାରୁ ନାହାନ୍ତି ?···ରାଜ୍ୟଟାର ବୁକୁଉପରେ, ଧୂଳି ଉଡ଼ାଇ, ଘୋଡ଼ା ଦୌଡ଼ାଇ, ଚାଲିଗଲା ବାଘଟା,—ବନ୍ଦୀକୁ ସାମ୍ନାରେ ବସାଇ, ମୋହନକୁ ମୋର ମୋହନ ଛନ୍ଦରେ ଛନ୍ଦୁଛି—?

[ ସେତିକିବେଳେ କବି ଗାଇ ଗାଇ ପ୍ରବେଶ କଲେ ]

"କୁମୁଦବନ୍ଧୁ, ସହି—କେବେ କୁମୁଦିନୀ"

ଚନ୍ଦ୍ରମାଳୀ—କବି—କବି—ଆସିବ ?—ଫେରି ଆସିବ ?—ଯେବେ ଆସିବ ?—କାହିଁ ?—କାହିଁ ଦେଖାଅ—ଦେଖାଅ ପ୍ରାଣର ମୋହନ, ମୋହନ-ପ୍ରାଣକୁ ମୋର—ଏହି କରେ ତୁମର ଧରି

ଆଣିଥିବ କାଳେ ? ଏଇ ବାହାରେ ତୁମର ଛନ୍ଦ—
ଏଇ ଗ୍ରନ୍ଥ ଉପରେ ଶୁଆଇ—( ଘନ ଘନ
ଚୁମ୍ବନ କରିବାକୁ ଲାଗିଲେ ସେଇ ସେଇ
ସ୍ଥାନମାନ )

କବି—ଏମିତିକା ଅଥୟ ହେଲେତ—

ଚନ୍ଦ୍ରମାଳୀ—ଆଜ କ'ଣ ଅଥୟଧରିବ ?—
ଅଥୟଧରିବ ?—

କବି— ଗୀତ

କୁମୁଦ ବନ୍ଧୁଙ୍କ, ବନ୍ଧୁ—କେବେ କୁମୁଦିନୀ
ଛାଡ଼ି, ରହିପାରେ ସୁଖେ—କୋଳେ ସରୋଜିନୀ ?

ଚନ୍ଦ୍ରମାଳୀ—ତା' ହେଲେ ବି, ସେଇ ଗ୍ରହଟାକୁ,—
ବାବା ମୋର ବଜ୍ରଧର,—ବଜ୍ରମାରି, ଟିକି, ଟିକି
କରି କାଟିପକାଉ ନାହାନ୍ତି କାହିଁକି ?

କବି—ଦରକାର ବା କ'ଣ ?—ଗୀତ—
ସ୍ନେହୀକରି, ସୁଧା ସୃଷ୍ଟି, ଅମର ଯେ ଗ୍ରହ—
ସୁଧା, କିନ୍ତୁ ଭରିବାକୁ ନାହିଁ ପେଟ ଅଉ—

ଚନ୍ଦ୍ରମାଳୀ—ହାଃ—ହାଃ—ସତେ ସତେ ?—ନା, ନା,
ପୁଣି ଅନ୍ୟ କେଉଁ ଗ୍ରହ ଯଦି ଜୁଟିଲା ?

କବି—'ଗ୍ରହଣ' ଲାଗିବାର ଡରଭୟ ?

—ଗୀତ—

ଅଛନ୍ତି ସହସ୍ର ଗ୍ରହ ଇନ୍ଦୁଙ୍କୁ ଅବୋରି
ରୋଧିବାକୁ ପଥ ଛଳେ ଅଛି କି ତାହାରି ।

ଚନ୍ଦ୍ରମାଳୀ—ହାୟ ! ଉଅଁସଟାବି ନଥା'ନ୍ତା କି ?—

କବି—ପୁନେଇଟା ତେବେ ଆସନ୍ତା କାହୁଁ ?

ଚନ୍ଦ୍ରମାଳୀ—ତେବେତ ମୁଁ ହସିବି, କି କାନ୍ଦିବି, କିଛି
ଠିକ୍ କରି ପାରୁନାହିଁ ?—

କବି—ତା' ଯଦି ପାରନ୍ତି, ସୁନ୍ଦରି—ଏ' ପୃଥିବୀର
ଲୋକ ହୋଇ ଅଉ ରହନ୍ତି କି ?

ଚନ୍ଦ୍ରମାଳୀ—ଆଉ କ'ଣ ସ୍ୱର୍ଗର ଦେବତା ପାଲଟନ୍ତି ?

କବି—ଦେବତା, କି ରାକ୍ଷସ—ଗନ୍ଧର୍ବ କି କିନ୍ନର
—ତା' କହିପାରୁ ନାହିଁ ଅବଶ୍ୟ—କିନ୍ତୁ, ଯା'
ଆମେ ଅଛୁଁ, ତା'ହୋଇ କେବେ ରହନ୍ତୁ ନାହିଁ,
—ଏ'ଟା ଧ୍ରୁବସତ୍ୟ ।

ଚନ୍ଦ୍ରମାଳୀ—( ଅପଣାକୁ ନିରେଖି ନାରେଖି ) ନା, ନା
…ଏ' ତନୁ ମୋର କେଡ଼େ ସୁନ୍ଦର—କେଡ଼େ
ମନୋହର—ଯାର ଆଶା ଆକାଂକ୍ଷା—ଆହୁରି
କେଡ଼େ ସୁନ୍ଦର, କେଡ଼େ ମନୋହର—…ନା
—ନା—ମୁଁ ଆଉ କିଛି ହୋଇପାରିବି ନାହିଁ—
ଏଇ ପୃଥିବୀର ଲୋକ,—ମଣିଷହିଁ—ଚନ୍ଦ୍ରମାଳୀ,
ହୋଇ ରହିବି—ପୂର୍ଣ୍ଣ କରିବି ବାସନାମୋର,
ପୂର୍ଣ୍ଣଚନ୍ଦ୍ରେ କରି ପୂର୍ଣ୍ଣ ଆଲିଙ୍ଗନ ।
[ ସଖୀମାନେ ଗାଇ ଗାଇ ପ୍ରବେଶକଲେ ]

ସଖୀଗଣ— ଗୀତ

ଆଶା ମୋର ଚନ୍ଦ୍ରତନୁ
ଆଶା ମୋର ଇନ୍ଦ୍ରଧନୁ
ଲିଭିଇ ଦିଅ ନା ମନୁ
ଆଶା ମୋ ଦେଖିଲି ଦିନୁ ॥

ଚନ୍ଦ୍ରମାଳୀ—କୁହ, କୁହ, କବି—ଦୌତ୍ୟ ତୁମର
ସଫଳ ହୋଇଚିତ ?—ଅଟା ମୋର ମେଣ୍ଟିବତ ?

କବି—( ଅନ୍ୟମନସ୍କ ହୋଇଥିଲେ )

ଚନ୍ଦ୍ରମାଳୀ—ଭାବୁଛ କ'ଣ କବି ?

କବି—ଭାବୁଛି, ତୁମେ ତ ତୁଳା, ରଙ୍ଗ ଫିଙ୍ଗଦେଲ
—ଚନ୍ଦଅଙ୍କା ବିଲକୁଲ ଛାଡ଼ି ଦେଲ—ଅଚ୍ଛା—
କଳ୍ପନାର ଦୌଡ଼ଟା କ'ଣ ସେଇ ମୂର୍ତ୍ତିଯାଏ
ଥିଲା ତୁମର ?

ଚନ୍ଦ୍ରମାଳୀ—ସେଇ ମୂର୍ତ୍ତିଟିକୁ ଧରି ବାନ୍ଧି ନ ରଖିବା
ଯାଏ ବୁକୁରେ, ମୁଁ ଯେ କେଣିକି ଆଉ ଭାବିପାରୁ
ନାହିଁ, ବନ୍ଧୁ ?

କବି—କିନ୍ତୁ, ତୁମେ ଯେଉଁ ଭାବେ ସେ ଦିନ ଧରିବାକୁ
ଯାଇଥିଲ,—ସେଥିରେ କ'ଣ କେବେ ହେଲେ
ଧରିପାରିବ, ନା, ଧରିଲେ ବି, ବାନ୍ଧିରଖି
ପାରିବ ?

ଚନ୍ଦ୍ରମାଳୀ—ଠିକ ଶିଖିଚ ପରା ?—ଆଉ ଠକୁଚ ନା ?
ପ୍ରାଣସଙ୍ଗେ ବିଲକୁଲ୍ ମିଶାଇ, ମିଳାଇ ଦେବି
ନାହିଁନା ଏଥର ?

କବି—ତା'ପରେ—?

ଶଙ୍ଖମାଳୀ—ଗା'ପର କଣ, ତୁମେ ଭାବୁଥାଅ, ବାବା ସେହି ଗଛମୂଳେ ବସି ।

ଗୀତ

'ଆଶା ମୋର ଚନ୍ଦ୍ରଧନୁ'

ସଖୀମାନେ—( ଗାଇଉଠିଲେ )

ଗୀତ

ଆଶା ମୋର ଇନ୍ଦ୍ରଧନୁ
ଲଭାଇ ଦିଅନା ମନୁ
ଆଶା ମୋ' ଦେଖିଲା ଦନୁ ।
ଜାଣେନା ଜାଣେନା ମୁହିଁ—
ଶୂନ୍ୟଗିରି ଭାସି କାହିଁ
ହେଉଛି ନବକ ସେହି—
ସ୍ୱରଗ ଅବା ଗୋ ନଇଁ;
ଆଶା, କିନ୍ତୁ ପୂର୍ଣ୍ଣତନୁ—
ନାହିଁଆଶା ତାହା ବିନୁ ।।

ଜବା—( ସେହିଗଛ ମୂଳେ ଭାବୁଥିଲେ ବସି ବସି )

ଶଙ୍ଖମାଳୀ—( ଶଙ୍ଖ ପାଲଟି ଯାଉଥିଲେ, କେଉଁ ଶଙ୍ଖକୁ ଝାଡ଼ି ଝାଡ଼ି )

[ ବଜ୍ରଧର ଶଶବ୍ୟସ୍ତେ ପ୍ରବେଶ କଲେ ]

ବଜ୍ରଧର—ମା !—

ଶଙ୍ଖମାଳୀ—( ସ୍ୱପ୍ନରୁ ଉଠିଲାଭଳି )ବାବା—ବାବା—

[ ଅଣ୍ଡାଳ ଦେଖୁଥିଲେ ଗୃହଜାନ ]

ବଜ୍ରଧର—କ'ଣ ଅଣ୍ଡାଳ ଦେଖୁଛୁ, ମା ?

ଶଙ୍ଖମାଳୀ—କେଉଁଠି—କେଉଁଠି ତୁମେ ଲୁଚାଇ ରଖିଚ, ବାବା ?

ବଜ୍ରଧର—କ'ଣ ?—କ'ଣ, ମା ?

ଶଙ୍ଖମାଳୀ—ଜୁହଜା, ମୁଁ ବାହାର କରିସାରେ ଅଗେ—

ବଜ୍ରଧର—ତୋତେ କ'ଣ ମୁଁ କିଛି ଲୁଚାଏ, ମା ?—ଲୁଚାଇ ରଖି ପାରିବି ନା ଅଗେ ?—

ଶଙ୍ଖମାଳୀ—ତେବେ କାହିଁ ମୋ'ର ଗୃହ ?...

ବଜ୍ରଧର—( ଦୀର୍ଘଶ୍ୱାସ ଛାଡ଼ି ) ଫାଦ ମୋ'ର ଅକାରଣ ହୋଇଛି, ଗୃହ !

ଶଙ୍ଖମାଳୀ—ବୁଝିଚ, ବାବା, ଫାଦ ତୁମର—ଗୃହଟି କ କେବାକ ଫିକର—

ବଜ୍ରଧର—( କପଟ ଆଶ୍ଚର୍ଯ୍ୟ ଭାବେ ) ମା ! ଏ'କଥା ଆଜ ତୋ' ମୁହଁରୁ ଶୁଣିବାକୁ ହେଲା—ହିଅକୁ ଭଣ୍ଡାଇବ ବାପ ?—ଯା' ପାଇଁ ଏତେ କୂଟ-ଚକ୍ର ଖେଳଖେଳ, ମୃଣ୍ଡାଳର 'ଚକ'କୁ ଯାଉଛି ବଳି ?

ଶଙ୍ଖମାଳୀ—ସେହି କୂଟ-ଚକ୍ର କ'ଣ ହିଅ ସଙ୍ଗେ ଖେଳିବାକୁ ମନା, ବାବା ?—

ବଜ୍ରଧର—( ଭଗ୍ନ ଅଷ୍ଟାର୍ଯ୍ୟାନ୍ୱିତ ହୋଇ ) ଏତେ ଅବିଶ୍ୱାସ !

ଶଙ୍ଖମାଳୀ—କହିଲ, ବାବା—ନଜେ ତୁମେ କେବେ, ନିଜକୁ ବିଶ୍ୱାସ କରିଚ କା ?—ନିଜ ସଙ୍ଗେ ନିଜେ, କେତେଭଳି କୂଟ-ଚକ୍ର ଖେଳିନାହିଁ ଭଲା ?

ବଜ୍ରଧର—( ପରାଭବ ସ୍ୱୀକାର କରି ଯେମନ୍ତ ) ତଥାପି—ତୁହି ଯେ ମୋର ପ୍ରାଣର ପ୍ରାଣ—ନିଜଠୁ ଅଧିକ—

ଶଙ୍ଖମାଳୀ—କିନ୍ତୁ ସେହି 'ପ୍ରାଣ', 'ଅଧିକ' ସଙ୍ଗେ ଖେଳିବାର ମୁହୂର୍ତ୍ତଟା ଅସି ପହଁଚିଚି କି ନାହିଁ, ଆଜି—ହେଜି କହିଲ, ବାବା ?—

ବଜ୍ରଧର—( ଗୋଟାଏ ସାଲିସ୍ କରିବା ଉଦ୍ଦେଶ୍ୟରେ ଯେମନ୍ତ ) ମୋତେ ନିସ୍ୱଣ ଦେଖି, କହୁଚୁ କି ଏକଥା ମା ?

ଶଙ୍ଖମାଳୀ—କହିବି ନାହିଁନା ?—ମୋ'ର ବାବାକୁ କ'ଣ ମୁଁ ଚିହ୍ନେ ନାହିଁ ?

ବଜ୍ରଧର—କିନ୍ତୁ, ଚିହ୍ନିବୁ ସେହିଦିନ, ମା—ଯେଉଁଦିନ, ଗୃହଟି ହାତରେ ଆଣି ତୋ'ର ବାନ୍ଧି ଦେବି—...( କେଉଁ କ୍ଷୋଭ ଓ ଉତ୍ତେଜନାରେ ଗୃହିଲ ଯାଉଥିଲେ—ଜବାକୁ ଦେଖି ଠିଆ ହୋଇଗଲେ ଠକ୍ କିନା—ବିଷଧର କାଳ-ସର୍ପକୁ ଦେଖି ଯେମନ୍ତ ଗଛ ବୁଦାମୂଳେ —ସେହି ସିନା ଅଜାତେ ଅମୃତ-ଭାଣ୍ଡରେ ଅଜ୍ଞ ଗରଳ ମିଶାଇ ଦେଉଛି )

ଜବା ! ତୁମେ ?—ପୁଣି ଏଠି ?...ତୁମକୁ ନିର୍ବାସନ କରିଥିଲି କା ?—ନା, ନା, ଏଥର ତୁମକୁ କଡ଼ାଇ ନକରି—...

ଚନ୍ଦ୍ରମାଳୀ—ବାବା !—ମୁଁ ପରା ହିଁଅ ତୁମର ?…ତୁମର ଫିକର ଠିକଏ ଅଣ୍ଟିଥିଲି—କବିଙ୍କୁ ଗୁପ୍ତଚର ଭାବି ପଠାଇଥିଲି—

ବଜ୍ରଧର—ସତେ ? ସତେ ? ( ଚେଙ୍ଗି ଦୃଷ୍ଟିରେ ଚାହିଁ ) କବି ତା' ହେଲେ ଭାରି କାମ୍‌କାର ହୋଇଛନ୍ତି ? କି ବାର୍ତ୍ତା ଆଣିଛ ?

ଚନ୍ଦ୍ରମାଳୀ—( କବିଆଡ଼େ ଚାହିଁଲେ—ନଶୁଣିବାକୁ ହଲାଇଲେ ) କ'ଣ କହୁନା ?—'କୁମୁଦ ବନ୍ଧୁଙ୍କ ?…'

କବି— —ଗୀତ—

କୁମୁଦ ବନ୍ଧୁଙ୍କ, ବନ୍ଧୁ—କେବେ କୁମୁଦିନୀ ।
ଘୁଣ୍ଡି, ରହିପାରେ ସୁଖେ, କୋଳେ ସରୋଜିନୀ ॥

ବଜ୍ରଧର—ମିଥ୍ୟାକଥା—ମିଥ୍ୟାକଥା—କବିର କଳ୍ପନା —ମିଥ୍ୟା ରଚନା—ସେଇଥିପାଇଁତ ତୋ'ର ସଂସର୍ଗରୁ, ରାଜପୁରୀରୁ, ରାଜ୍ୟରୁ ନିର୍ବାସିତ କରିଥିଲି ତାକୁ—ନା, ନା, ଆଜ—ଏ' ଜୀବ-ରାଜ୍ୟରୁ ନିର୍ବାସିତ କରିବ ନିଷ୍ଚେ—ତା' ନ ହେଲେ, ତୋ'ର ଜୀବନଟାକୁ ଅସାର ସ୍ୱପ୍ନରେ ପରିଣତ କରିଦେବ ଅଚିରେ—

ଚନ୍ଦ୍ରମାଳୀ—ନା, ନା, ବାବା, ଅସାର ସ୍ୱପ୍ନ ଦେଖି ନିତ ନିତ ମୁଁ ଅଉ ଜାଇଁ ରହି ପାରୁନାହିଁ, ବାବା—

କବି—କବିର ସ୍ୱପ୍ନ ଯେ ନିତ୍ୟ ସତ୍ୟ, ମହାରାଜ—

ବଜ୍ରଧର—( ଠିକଏ ପ୍ରସନ୍ନ ହୋଇ ଯେମନ୍ତ ) ବେଶ୍, ତୁମେ କହୁଚ, କବି ! —କୁମୁଦବନ୍ଧୁର ଆସ୍ଥି ପ୍ରସୂ—କୁମୁଦିନୀ ସତ, କିନ୍ତୁ, ଭାନୁର ଧାତ୍ରୀ ବୋଲି, ଭାନୁସୁଆଗିନୀ ସରୋଜିନୀକୁ ଆପଣାର କରି ନେବ ନାହିଁ ନା ?

କବି—ଘୁମୁ ଏ'କଥା କହୁଚନ୍ତି—ଏ' ଭଳି କୁଟନୀତଜ୍ଞ ହୋଇ ? ଧାରିଥିଲେ କ'ଣ, ଘୁମୁଁ ଧାତ୍ରୀ ହୋଇ ବହନ୍ତେ ଯତଣେ ?

ବଜ୍ରଧର—ସମସ୍ତେ ତ ଆଉ କୂଟ ରାଜନୀତଜ୍ଞ ବଜ୍ରଧର ନୁହନ୍ତି—ଘୁଡ଼, ଯେଉଁ ଚୋବାଟା ବାଲକୁଲ୍ ଓଲଟିପଡ଼ିଥିଲା—ଅଦ୍ଭୁତ ଶୁଣିଲି ଗୁପ୍ତଚର ମୁହଁରୁ,—ଲଙ୍ଗିନା, ଗଞ୍ଜନା ମଧ୍ୟ ଦେବାକୁ କୁଣ୍ଠିତ ହୋଇ ନଥିଲା ସେହି ବୁଢ଼ାଟାକୁ, ଅଖିଅଗରେ ସମସ୍ତ ଅଧୀନ-ଙ୍କର—ଆଜି ନିଜେ କିନା ଅଧୀନ ହୋଇ ତା'ର,—ତା'ର ଆଦେଶରେ ଉଠୁଚି, ବସୁଚି, —କର ଦେଉଚି ଲଣ୍ଡଭଣ୍ଡ ସାତ-ଗାଆଁ ମୋ'ର—ଦଳ ମଥି ସ୍ୱର୍ଣ୍ଣସ୍ଥଳୀ,—ଦୃପ୍ତ-ସିଂହଶିଶୁ ଯେସନ୍ତେ ।

କବି—ଅଭିମାନ, ରାଜା—ଭାରି ଅଭିମାନ—କୁମୁଦିନୀ ପ୍ରତି କୁମୁଦ ବନ୍ଧୁର ଆଜି !—ସେହି ଅଭିମାନରେ—ସେହି ବ୍ୟଥାରେ—

—ଗୀତ—

ଘୁଣ୍ଡି ଲାଜ, ମାନ—ଧରି ତୀକ୍ଷ୍ଣ କୃପାଣ
ପୋଡ଼ି, ଜାଳି ଦେଉଛି ସରୋଜିନୀ ପ୍ରାଣ ॥

ବଜ୍ରଧର—କ'ଣ ସରୋଜିନୀ ମାଡ଼ି ବସିଛି ବୋଲି ପଥ କୁମୁଦିନୀର ?

କବି—ଠିକ୍ ଠଉରେଇଚନ୍ତି, ମହିମା—

ବଜ୍ରଧର—ଉପାଡ଼ି ଫିଙ୍ଗି ଦେବାର କ'ଣ କ୍ଷମତା ନାହିଁ ତା'ର ?—

କବି—ଭାନୁର 'ଧାତ୍ରୀ' ପରା ?

ବଜ୍ରଧର—ସେଇଥିପାଇଁ ଏହି ଫନ୍ଦୀ ? କଲ୍‌ବଲ୍ କରି ମାରିବାର ଫିକର ସରୋଜିନୀକୁ ? ବାଃ—ବାଃ —ବାଃ—ବେଶ୍, ବେଶ୍ ବେଟା…ଅଚ୍ଛା, ଭାନୁ ମୋ'ର ଏଡ଼େ ଗୁପ୍ତ ଷଡ଼ଯନ୍ତ୍ରଟା ଭେଦିକରି ପାରିଲା—ଦଶପଲ୍ଲୀର ଆକସ୍ମିକ ଆକ୍ରମଣ ଯେମନ୍ତ; —ଆଉ ଘର ଭିତରର ଏଡ଼େ କାଣ୍ଡଟାଏ ଭେଦି ପାରୁ ନାହିଁ ?—ପିଲାଟାର ମୋର ତେବେ ଖୁବ୍ ଅକ୍‌କଲ୍ ଅଛିତ ?—

କବି—ଆଜ୍ଞା, ଏକାବେଳକେ ଯେ ନ ସମୁଝିଛି ବୁଢ଼ାଟା, ତା' ନୁହେଁ…ଯୁଦ୍ଧ କରିବାକୁ ଅସି, ଅସି ଧରି ସୁଦ୍ଧା, ବସି ଚଳାଇ ନାହିଁ କାହିଁକି ?—ନିଜ ଦେହରେ ଶ୍ରେଷ୍ଠ ବସ୍ତୁଟି ଥିଲେବି, କିନ୍ତୁ କାହାର କହକଲେ ଛିପଛିଏ ଚିହ୍ନିଁକି ନା ?

ବଜ୍ରଧର—କ'ଣ କହୁଚ ? ପିଲାଟାତ ମୋର ଭାରି
ବାହାଦୁର—କନ୍ ଫନ୍ଦୀ ଫିକର ଜାଣେ ନାହିଁ !
—ସମୂଳେ ନିର୍ବଂଶ କରି ଦେବାର ମତଲବ୍
ଏବାବେଳକେ ! ଅଚ୍ଛା, ତୁମେ ଏଡ଼େ ଜରୁର
ସମ୍ବାଦଟାଏ ନଦେଇ ମୋତେ, ଚୁପହୋଇ
ରହିଥିଲ ଭଲା କିପରି ?

କବି—ଅଜ୍ଞ, ମୁଁ ଗୋଟାଏ ସମସ୍ୟା ଘେନି, ଭାରି
ହରବରରେ ପଡ଼ିଛି !—

ବଜ୍ରଧର—ଏଣେ ଯେ ପିଲାଟା ମୋର ଭାରି ହରବରରେ
ପଡ଼ିଛି !—ଅଚ୍ଛା, ଅଚ୍ଛା, ତୁମର ସମସ୍ୟାଟା
କ'ଣ ଆଗେ ଶୁଣି, ସମାଧାନ କରି ଦଏଁ ତ···

କବି—ଭାରି ବିଷମ ସମସ୍ୟା, ମଣିମା !—ଧର, କୁମୁଦ
ଆଉ କୁମୁଦ-ବନ୍ଧୁ ମିଳିଗଲେ ପ୍ରାଣେ ପ୍ରାଣେ—
ତା'ପର କ'ଣ ହେବଟି ?

ବଜ୍ରଧର—ହାଃ—ହାଃ—ସଂସାରରେ ଯା' ଘଟିଥାଏ
ନିତପ୍ରତି—

କବି—କ'ଣ ଘଟିଥାଏ, ମହାରାଜ ?

ବଜ୍ରଧର—ସଂସାର କଲେ ବୁଝିବ ନା ?

କବି—ମୁଁ କଣ ସଂସାର ବାହାରେ ?—ତେବେ—
ତେବେ, ମୁଁ ଭିତରେ ପଶିବି, ମଣିମା !

ବଜ୍ରଧର—ମୁଁ ବି ପାଜୀର ସନ୍ଧାନ ପାଇଛି ଯେ !

କବି—ପାଜୀ ?

ବଜ୍ରଧର—ତୁମେଇତ ସନ୍ଧାନ ବତେଇଛ—ପାଜୀର
ମାଲିକକୁ ଢାଳୁ କରିବାର ମନ୍ତ୍ରଟି କହ;—
ଗୋଟିକେ ମୁଁ କରିବି ସଂହାର—ସଙ୍ଗେ, ସଙ୍ଗେ
ବୁଲାଲୀକୁ ତା'ର—

କବି—'ଦେବି ପୁରସ୍କାର' ? ମୋ ଦୌଲେ !—ଦୁହାଇ
—ଦୁହାଇ, ସେତ ମାଇପି ନୁହେଁ—ଅଗ୍ନିର
ଉପରେ ଛାଟିଏ—ଘୁମୁ ତ ଅଙ୍ଗେ ଅଙ୍ଗେ
ଲଦେଇଚନ୍ତି···ଓଃ, ଯଉଁ କସିକରି ବାନ୍ଧିଥିଲି
ସେ ମୋତେ—ଦାଗଟା ଅବ୍‌ତକ୍ ପରି···
(ଆଉଣ୍ଟାର ଦାଗ ଦେଖାଇଥିଲେ)

ବଜ୍ରଧର—( ସଭଯ୍ୟେ ଏଣେ ତେଣେ ଗୃହିଁବାକୁ
ଲାଗିଲେ,—ବିଶେଷତଃ ଉପରକୁ—ସେହି ଦୁର୍ବି
ଦୃଶ୍ୟ ସ୍ମରଣ କରି )

ଶବମାଳୀ—(ଲକ୍ଷକରି) ଉପରକୁ ଗୃହୁଁଚ ଯେ ଏତେ
ଘନ ଘନ ?—ସେ କ'ଣ ଶୂନ୍ୟରେ ଥାଏ,
ବାବା ?

ବଜ୍ରଧର—ଛି, ଛି, ଡରୁଛୁ କି, ମା ? ହଁ, ଦେଖ୍‌ତ,
କବି—ଏଥର ତୁମର ପାଳି—ତୁମେ ବାନ୍ଧନା
ଯାଇ କସି—

କବି—ତା' ଆଗରୁ ପ୍ରାଣକୁ ମୋର ବାନ୍ଧ ଯିବାକୁ
ହେବ, ମଣିମା—ଖଟଖୁରା ଫୁଗ୍ଗରେ, କି ଗୋଲୁ
ବଲା ଖୁଣ୍ଟ ଫୁଣ୍ଟରେ ଇସି···

ବଜ୍ରଧର—ତୁମେ ଭାରି ଡରୁଆ ଦେଖୁଚତ ? ତା'
ହେଲେ ସଂସାର ଭିତରେ ପଶିବ କିପରି ? କିଛି
ଡରଭୟ ନାହିଁ, କବି !—ମୁଁ ରାଜା, ସାଙ୍ଗେ
ସାଙ୍ଗେ ଥିବି ଯେ ! ( ଡରୁ ଯେ ନ ଥିଲେ ଏଣେ
ତେଣେ ଗୃହିଁ, ତା ନୁହେଁ )

କବି—କିନ୍ତୁ ଖଣ୍ଡା ଫଣ୍ଡାତ ଘୁମୁଙ୍କ ହାତରେ ନଥିବ ?

ବଜ୍ରଧର—ଅସ୍ତ୍ର-ଯନ୍ତ୍ରର ପ୍ରଧାନ ପୁରୋଧା ବୋଲି ନା'
କଣ ?—

ଶବମାଳୀ—ଦରକାରବେଳେ ଅସ୍ତ୍ର ଧରିବାତ ଶାସ୍ତ୍ର-
ନିଷିଦ୍ଧ ନୁହେଁ ?

ବଜ୍ରଧର—ଧରିଲେ ଯେ ଚଳାଇବାକୁ ହେବ ତା'ରତ
ପ୍ରମାଣ ନାହିଁ କିଛି ? କ'ଣ କହୁଚ—କବି ?
ଯୋଦ୍ଧା ହୋଇ ଯିବ ଯେତେବେଳେ, ଟେଟେହେରି
ଦେଖାଇବାପାଇଁ ଖଣ୍ଡାଟାଏ ଝୁଲାଇବାତ
ଦରକାର ।

କବି—ମାତ୍ର, ଖଣ୍ଡାଟିର ଟେଟେହେରି ଥିଲେତ ମଣିମା ?

ବଜ୍ରଧର—ହାଃ—ହାଃ—କଳଙ୍କି ଲାଗିବାରତ କଥା ?

କବି—ଘୁମୁଙ୍କର କଳଙ୍କକୁ ବଳ ସିନା ?

ବଜ୍ରଧର—ମୋ'ର କଳଙ୍କ ? କ'ଣ ଖଣ୍ଡା ବୁଲାଇ
ଜାଣେ ନାହିଁ ବୋଲି ?

କବି—ସେ କଳଙ୍କ ସହଜେ ଲିଭିଯାଇ ପାରେ
ମଣିମାଙ୍କର, କିନ୍ତୁ—

ବଜ୍ରଧର—'କିନ୍ତୁ' କ'ଣ ?—

କବି—କଳଙ୍କି ଖଣ୍ଡା ଟିର, ଯେତେ ମାଜିଲେବି, ଏ' ଜନ୍ମରେ ଲିଭିବ କି ନାହିଁ, ସନ୍ଦେହ ।

ବଜ୍ରଧର—ମୋ'ର ଦେହ ଜଗୁଆଳ ଗୁଡ଼ାକ ଖାଇ ନିମକ୍ ହାରାମ, ନିକମ୍ମା ପାଲଟି ଗଲେଣି ତ ?—

କବି—ଅଜ୍ଞା, ଖାଇ ନିମକ ସଚ୍ଚା—କାମ୍‌କା—ଦିନ-ରାତି ପଞ୍ଜି ଗଞ୍ଜେଇ ମଲା—ଭାଙ୍ଗବଟା—

ବଜ୍ରଧର—ସତେ ? ସତେ ? ତୁମକୁ ଆଜଠୁ ଗୋଇନ୍ଦା ମୁଙ୍କରର କଲି—ଧରାଇ ଦେବତ ? —ମୋ'ର ନାଁ' ବୁଡ଼ାଇଲେ ଦେଖିବ !

କବି—ବରଂ ନାଁ କରୁଚନ୍ତି ମଣିମାଙ୍କର—ଅତ ମାନାରେ—ଆପଣାର ଗାଁ-ଗଣ୍ଡା ବୁଡ଼ାଇ ?

ବଜ୍ରଧର—କବି ! ( କିଛି ସମୟ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ, ମନର ଚିନ୍ତା ଭାବ ଗୋପନ ପୂର୍ବକ ମୃଦୁ ମୃଦୁ ହସି ) ଅଚ୍ଛା, ତୁମେ ଆଜଠାରୁ ମୋ'ର ପ୍ରଧାନ ମନ୍ତ୍ରୀ ।

କବି—ମନ୍ତ୍ରୀଟା ଯଦି ନ ପଢ଼ନ୍ତି ସେହି ରାକ୍ଷସୀ ସାଥିରେ, ଏହି ସନ୍ଧିରେ, କିନ୍ତୁ—ଉଃ—

( ଆପଣାର ଦାଗ ଗୁଡ଼ିକ ଦେଖୁଥିଲେ )

[ ସେତିକିବେଳେ ଗୁପ୍ତଚର ପ୍ରବେଶ କଲା ]

ଗୁପ୍ତଚର—ମହାରାଜ ! ଶତ୍ରୁ 'ବୁଢ଼ା ବୁଢ଼ୀ' ଘାଟି ପାର ହୋଇ ଅନୁଗୁଳ ସୀମାନା ଦଖଲ କରି ସାରିଲେଣି···

ବଜ୍ରଧର—ସୈନ୍ୟାଧ୍ୟକ୍ଷ କିଏ ?

ଗୁପ୍ତଚର—ଭାନୁମଙ୍ଗରାଜ ନିଜେ—

ବଜ୍ରଧର—'ସାତବୀର' ମୋ'ର ?—

ଗୁପ୍ତଚର—ରାଜା ପୂର୍ଣ୍ଣଚନ୍ଦ୍ରଙ୍କ ଅଧିକାରରେ ।

ବଜ୍ରଧର—ସାମାନ୍ୟ ପିଲାଟାର ?

ଗୁପ୍ତଚର—ଦଶପଲ୍ଲା-ରାଜ ନିହତ ହେବାରୁ···

ବଜ୍ରଧର—'ଦଶପଲ୍ଲା-ରାଜ ନିହତ' ?

ଗୁପ୍ତଚର—ଦଶପଲ୍ଲା ସୈନ୍ୟ ଘଉଡ଼ି ଯିବାରୁ, ଅଧିକ ଦୁର୍ଦ୍ଧର୍ଷ ହୋଇ ଉଠିଛନ୍ତି ନରସିଂହପୁର ସୈନ୍ୟ-ସାମନ୍ତ—ନରସିଂହପୁର ରାଜାଙ୍କ ଚାଳନାରେ—

ବଜ୍ରଧର—ମୋ'ର ସବୁ ଚାଲାକି ଇତି···—ଦଶପଲ୍ଲା-ରାଜ ନିହତ—ସାତବୀର ନିଅଣ୍ଟ—ଯୁଦ୍ଧ ସ୍ଥଳକୁ ନ ଯାଇ ନିଜେ, ଆଉ ଗତି ନାହିଁ—ମା—

ଚନ୍ଦ୍ରମାଳୀ—ତୁମେ ଯୁଦ୍ଧକୁ ଯିବ ବାବା ?

ବଜ୍ରଧର—ଡର କ'ଣ,—ମା ?

ଚନ୍ଦ୍ରମାଳୀ—ସେ ଦିନର ଡର କ'ଣ—ଏହିଠାରେ—ଏତିକିବେଳେ—ଘୋଡ଼ୀଟାରେ ତୁମର ଗଲାଣି ବାବା ?—ଘୋଡ଼ୀଭଳି ।

ବଜ୍ରଧର—ତୁ ଡରିଲେତ ମୋ'ର ଡର, ମା—ହାଃ—ହାଃ—ଡର ବା ଅଉ କ'ଣ—ଭାନୁ ମଙ୍ଗରାଜ ଯେତେବେଳେ ଅସ୍ତ୍ରଧର ସୁଦ୍ଧା ନିରସ୍ତ୍ର !···ହଁ, ଜାଣିଥାଅ, କବି—ଯଦି କଥା ତୁମର ମିଛ ହୁଏ···

କବି—ସେହି ମୁଣ୍ଡ ହଉଅରଟା ଏହି ମୁଣ୍ଡଟାରେ ପକେଇବେ ନା' କଣ ?

ବଜ୍ରଧର—ଖାଲି ସେତିକି ?···

କବି—ନୂଆ ଧରଟା ବି ପରଖି ଦେଖିବେ ପରା ?—କିନ୍ତୁ ତା'ବି କବୁଲ, ମଣିମା—ଯଦି ସନ୍ଧିଟା ଭାଙ୍ଗୁ ନ ଭାଙ୍ଗନ୍ତି—ମୋ ବୌଲେ !

( ନିଜର ଦାଗଗୁଡ଼ିକ ଦେଖୁଥିଲେ )

ଚନ୍ଦ୍ରମାଳୀ—ବାବା ! ଯୁଦ୍ଧ ଜିଣିଲେ—ଜିଣି, ଆଣିବେ କ'ଣ ?

ବଜ୍ରଧର—ତୋ'ର ଚାନ୍ଦ ପରା ?

ଚନ୍ଦ୍ରମାଳୀ—ନା, ଚାନ୍ଦର···

ବଜ୍ରଧର—ଛି, ଛି, ଏ'କି ଅଲକ୍ଷଣା ଚିନ୍ତା, ମା ? ମୋ'ର ବିଶ୍ୱାସ—ଅକ୍ଷତ, ପୂର୍ଣ୍ଣଦେହରେ ପୂର୍ଣ୍ଣଚନ୍ଦ୍ରକୁ ତୋ'ର ଆଣି ତୋ ହାତରେ ଛାଡ଼ିଦେବି—ମୋ'ର ଜୀବନର ବ୍ରତ ଉଦ୍‌ଯାପନ କରିବି ।

ଚନ୍ଦ୍ରମାଳୀ—'ସାତବୀର'ଙ୍କର ତଲ୍ଲଙ୍ଗ କୃପାଣ ସେ ଭଳି ଅଟଳ ଅଚଳ ବିଶ୍ୱାସ ରଖିଲେତ ?

ବଜ୍ରଧର—ହାଃ—ହାଃ—ମୋ'ର ଗୋପନାଦେଶ, ମା —ମରିବେ ପଛକେ ଗୋଟିଗୋଟି ହୋଇ ସମସ୍ତେ —ମାରିବେ ନାହିଁ କେହି—ଟିପଟିଏ ବି···

ଚନ୍ଦମାଳୀ—ତେବେ, ଲଢ଼ିବାର ଉଦ୍ଦେଶ୍ୟ ?

ବଜ୍ରଧର—ଶୀବନ୍ତ ବାନ୍ଧ ଆଣିବାକୁ ଖାଲି ।

ଚନ୍ଦମାଳୀ—କେଜାଣି, ଲଢ଼ୁ, ଲଢ଼ୁ, ଯୁଦ୍ଧ ନିଶା ଯଦି ଚଢ଼ିଗଲା—ସେମାନେ କ'ଣ ପାରିବେ, ବାବା ?

ବଜ୍ରଧର—ସେହି ପାଇବା ବାଟରେ ପର୍ବତ ପରି ଛିଡ଼ା ହେଲେ, ତା'କୁଇ ଯାଉଛି ତ ଉଖାଡ଼ି ଦେବାକୁ ନଚେତ୍,—ମୃତ୍ୟୁବାଣ ପାଇ ତା'ର ।

ଚନ୍ଦମାଳୀ—ଜୟୀହୁଅ, ବାବା !

ଭବ—( ଆପଣାମନେ ) ବେଶ୍, ଜୟ ହେଲା ?—ମିଳନ ହେଲା ?—ତା'ପର ?

ବଜ୍ରଧର—( କାନପାଖେ ) ପୁଅ, ଝିଅ···

ଭବ—( ଅବାକ୍ ଭାବେ ଚାହିଁଲେ )

ବଜ୍ରଧର—ସମସ୍ୟା ତୁମର ସମାଧାନ ହେଲା ତ, ଭବ ?

( ଟାଣି ନେଇ ଯାଉଥିଲେ )

ଭବ—ମୋ'ର ପୋଥି—ମୋ'ର ପୋଥି—

ବଜ୍ରଧର—ତୋର ବନ୍ଧା ଥାଉ ସେମିତ—ନାହିଁତ, ଛିଣ୍ଡାଇ ପକାଇବେଟି 'ନାଡ଼ପନ୍ଥ' ।

ଭବ—( କାଉଁଳ ବୋଝ ପାଲଟି ଯାଇଥିଲେ )

ବଜ୍ରଧର—( ଭିଡ଼ି ନେଇ ଚାଲିଗଲେ ) ଆସୁଚି, ମା !

ଚନ୍ଦମାଳୀ—( ଅନ୍ୟମନସ୍କଭାବେ ) 'ନାଡ଼ପନ୍ଥ !' 'ପୁଅ ଝିଅ !' ସେ କ'ଣ ସବୁ ? ମୋର ରଙ୍ଗ—ମୋ'ର ତୁଳି—କେଉଁଠେ—କେଉଁଠେ—

[ ସଖୀମାନେ ଚାଲିଗଲେ ]

ଚନ୍ଦମାଳୀ—ମୋ'ର କଳ୍ପନାର ଚନ୍ଦ୍ର, ମାନସ ମୋହନ—ରକ୍ତମାଂସ ଦେହରେ ବର୍ତ୍ତମାନ !—ବକ୍ଷୋଦେଶରେ ଧାରଣ !—ପ୍ରାଣେ, ପ୍ରାଣେ ମିଳନ !—ତା'ପର—ତା'ପର—'ପୁଅଝିଅ' 'ନାଡ଼ୀ ପନ୍ଥ' ?—କ'ଣ ସେ ?—

[ ଜଣେ ସହଚରୀ ରଙ୍ଗ, ତୁଳି ଆଦି ଚନ୍ଦ୍ର-ସରଞ୍ଜାମ ଆଣିଦେଲା—ଚନ୍ଦମାଳୀ ଚନ୍ଦ୍ର ଆଙ୍କିବାକୁ ଲାଗିଲେ—ପଛପଟେ କେତେବେଳେ ଯୋଦ୍ଧ ବେଶରେ ବଳାଙ୍ଗୀ ଆବିର୍ଭୂତ ହୋଇଥିଲେ—ଘୋଡ଼ାଟାକୁ ଲୁଚି ହୋଇ ରହିବାକୁ ଅଦୂରେ ଇସାରାକର ]

ବଳାଙ୍ଗୀ—(କିଛିକ୍ଷଣ ସେହି ଚନ୍ଦ୍ର ଅଙ୍କା ଦେଖୁ ଦେଖୁ) ମ'—ବେଶ୍ ହେଉଥିଲାତ ? ଟେବ୍‌ରେଇ ଦେଲ କାହିଁକି ?

ଚନ୍ଦମାଳୀ—କିଏ ?—କି-ଏ ?—

ବଳାଙ୍ଗୀ—(ହସି ହସି) ଭଉଣୀଟା ପରି ତୁମର—··· !

ଚନ୍ଦମାଳୀ—( ସନ୍ତ୍ରସ୍ତେ ହାତଅଡ଼େ ଅନାଉଥିଲେ )

ବଳାଙ୍ଗୀ—( ପଛଅଡ଼ୁ ଦୁଇହାତ ସାମ୍ନାକୁ ଆଣି, ଦେଖାଇ ) ପିସ୍ତଲକୁ ଡରୁଚ ?

ଚନ୍ଦମାଳୀ—ନା, ନା, ଯେତେ ମାରଣାସ୍ତ୍ର ଥିଲେ ସୁଦ୍ଧା ହାତରେ ତୋ'ର—ମୋ'ରତ ଡରିବାର ନୁହେଁ—ତୋ' ସଙ୍ଗେ ଯେ ଲଢ଼ିବି ମୁଁ ଅଜ—ଅଣ୍ଟାଭିଡ଼ି—ବେଣୀ ମୁକୁଳାଇ—ଦାନ୍ତଘଷି—ଆଖିରେ ଅଙ୍ଗୁଠି ମାଡ଼ି—

ବଳାଙ୍ଗୀ—( ହସି ହସି ) କ'ଣ, ସହଚରୁଣୀ ମଣି ?—

ଚନ୍ଦମାଳୀ—ଜାଣି—ଜାଣି—ହାବୁଡ଼ରେ ପାଇ ସହ-ଚରୁଣୀକୁ ଏହିକ୍ଷଣି !—ଅଟଳ, ହସୁଚ, କ'ଣ ନିଲଠା, ବାବଲୁଲ, ଦାନ୍ତ ନକୁଟି ?—ତୁହି ନା ସେଦିନ ମୋ'ର ଘାଟରେ କାଉ ମାରି—ଉଦ୍‌ଉଦିଆ ଦ'ପହରଟାରେ—ସ୍ୱଜା, ରାଜ୍ୟସାରା ଆଖିରେ ଧୂଳିଦେଇ—ନେଇ ପଳାଇଲୁ ଏହି ଘୋଡ଼ାଟା ଉପରେ ଚଢ଼ି—ପ୍ରାଣର ମୋହନକୁ ମୋ'ର—ପ୍ରାଣରୁ ଫାଳେ ମୋ'ର କାଟି ଲୁଚି ନେଇଗଲୁ ଭଳି ? ଓଃ, ସେହିଦିନୁ ଅଧାପ୍ରାଣଟା ପିନା ଛଟ୍‌ଛଟ୍ କରୁଚି—ନା, ନା—ତୋତେ ଛାଡ଼ିଦେବି ନାହିଁ—ତୋ'ର ଚୁଳ ଗୋଛା ମୁଠାଇ ତୋତେ ନଚାଇବି,—ମନୁ ନଚାଇଲା ଭଳି—ତେବେ ଯାଇଁ—

ବଳାଙ୍ଗୀ—କିନ୍ତୁ, ଯା'ଙ୍କ ପାଇଁ ଏତେ ସବୁ କରିବ—ତା'ଙ୍କର ସଜ ଖବରଟା ?

ଚନ୍ଦମାଳୀ—ଖବର ? ପଠାଇଛନ୍ତି ? ମୋହନ ମୋ'ର ? ତୁମରି ହାତେ ? କି ଖବର ? କି ଭଳି ଅଛନ୍ତି ? ମନେ କରୁଚନ୍ତି ନା ମୋତେ ? ଅନ୍ନ ରୁଚୁଚି ନା ତାଙ୍କୁ ? ତାମ୍ବୁଲ କାଢ଼ି ପକାଉ ନାହାନ୍ତି ତ ? ଅହା ! କି ସବୁଠରେ ବାଢ଼ିଆ

ଖାଇ ସେଦିନ ମୋ' ହାତରେ—କହିଲେ ସୁଆଗଭରେ, ଏହି ଗଣ୍ଡରେ ମୋ'ର ଗଣ୍ଡ ମିଳାଇ (ଅଙ୍ଗୁଳି ବୁଲାଉ ବୁଲାଉ ସେହି ସ୍ଥାନରେ) 'ଏମିତିକା ସୁଖପରି ଦିନେ କାଳେ ପାଇନାହିଁ ମୋହିନୀ ?' ଭଉଣି ! ଭଉଣି !—କେତେ କେତେ କେତେ ଭଲ ବାଉଁଆ ଭଙ୍ଗେ—ଫୁଲହାର ଜଡ଼ାଇ କେତେ ଜାତର ଜୁଡ଼ା ବାନ୍ଧେ—ହଳଦୀ ହକୁଟି ହୁଏ, ଏ' ଦେହର ରଙ୍ଗ ମନକୁ ଯେଣାଏ ନାହିଁ ବୋଲି,—କଜ୍ଜଳପାରେ, ଆଖିର କଳା ଉଜ୍ଜଳାବ ବୋଲି,—ଅଳତା ବୋଳେ, ଏହି ନାଲି ଓଠ, ହାତ ପାପୁଲି, ପାଅତଳି ଅଧିକ ଝଟକିବ ବୋଲି,—ଶେଷେ ଝୀନ ବସନଖଣ୍ଡିକ ପିନ୍ଧି, ମୁକୁରପଟରେ ଆପଣାର ଛବିକୁ ଚୁହିଁ ଦେଖେ ଯେବେ, ସମାଳି ପାରେ ନାହିଁ ପରି—ଧାଇଁ ଯାଏଁ ଫୁଲ ଶେଯକୁ କେଉଁ ଫୁଲ କୋଳକୁ ମେଦେଇ ···କିନ୍ତୁ, ଶୂନ୍ୟ ଦେଖି—ଶୂନ୍ୟେ ଖୋଜି କାହାକୁ—ଲେଉଟି ଅସେ—ବିପଥାଇଲା ଭଳି—ଡକା ପାଡୁ ପାଡୁ—'ପ୍ରାଣର ମୋହନ ମୋର !' 'ପ୍ରାଣର ମୋହନ ମୋର !'—

ବଲାଙ୍ଗୀ—ମୁହଁ ଜୁହାଇ ଦେବ, ଭଉଣି—

ଚନ୍ଦମାଲୀ—ହଁ, ଶୁଣିଲି ମୁଁ—ସେ ବି ନ ପାଇବାକୁ ମୋତେ, 'ଅଭିମାନ'ରେ କୁଆଡ଼େ ଲଢ଼େଇ କରୁଛନ୍ତି ସିଏ ?

ବଲାଙ୍ଗୀ—ଆପଣା-ପର ପରି ଚିଣିବା ବୁଦ୍ଧି ନାହିଁ ତାଙ୍କର, ଭଉଣି ?—

ଚନ୍ଦମାଲୀ—ତୁମର କଷ୍ଟ ଅନିଷ୍ଟ କରି ନାହାନ୍ତି ତ, ଭଉଣି ?

ବଲାଙ୍ଗୀ—ଖ ର୍···

ଚନ୍ଦମାଲୀ—ହଁ, ହଁ, ମୁଁ ଶୁଣିଛି ଗୋ—ଉତରଟାକୁ ତୁମର କୁଆଡ଼େ ଏକାବେଳକେ ଜାଳି, ପୋଡ଼ି, ନାରଖାର କରି ଦେଲେଣି—ଖାଲି, ତୁମର ଜେଜେ ବାପାଙ୍କୁ ଅନାଇ, ଦେହ ମୁଣ୍ଡରେ ଯା' ଅନିଷ୍ଟ କରିପାରୁ ନାହାନ୍ତି ।

ବଲାଙ୍ଗୀ—ସେହି ଅନିଷ୍ଟ ଭୟରେତ ଏବେ, ତୁମର ସାହାଯ୍ୟ ଲୋଡ଼ିବାକୁ ଧାଇଁ ଆସିଛି—

ଚନ୍ଦମାଲୀ—ମୁଁ ତ ଯୁଦ୍ଧ ଫୁଦ୍ଧ ଅଦୌ ଜାଣେ ନାହିଁ, ଭଉଣି ?—

ବଲାଙ୍ଗୀ—'ଯୁଦ୍ଧ ଫୁଦ୍ଧ' ବନ୍ଦକରି ପାରିବତ ?

ଚନ୍ଦମାଲୀ—କ'ଣ ଭିତରେ ପଶି ଯୋଦ୍ଧାଙ୍କର ? ନାହିଁ, ନାହିଁ, ଶ୍ରେଷ୍ଠ ପଦ ବସିଲା ଦିହପାଅରେ ?

ବଲାଙ୍ଗୀ—ଛାଡ଼ କ'ଣ ?

ଚନ୍ଦମାଲୀ—ବାଃ—ବେଶ୍ ପାଠ ଶିଖାଉଛତ ମୋତେ ? ମୋର ଏତେ ଆଶା—ଏତେ, ପ୍ରୀତି, କେଉଁଠି ଉପିଯାଉ ତା' ହେଲେ ? ଚାଲି, ଚାଲି—ମୁଁ ଦେଖେଁ ଅଜି—ମିଳନ ପରେ ଚନ୍ଦଟା କ'ଣ ହେବ ତେଣିକି ?—(ଚନ୍ଦଅଡ଼େ ଗୁହିଁ ଭାବ ବିହ୍ୱଳରେ) କିଏ ସେ ? କିଏ ସେ ? କି ସୁନ୍ଦର—କି ସୁନ୍ଦର ଖେଳ ଖେଳି, ନାଚ ନାଚି, ଗାଇ ଗାଇ ଅସୁଥିଲା ପାଖକୁ, କୋଳକୁ ମୋର···

ବଲାଙ୍ଗୀ—ଆଗୋ ! ମିଳନଟା ହେବା କିପରି, ସେ ବନ୍ଦୋବସ୍ତଟା କରିସାର କି ଆଗେ—କଳ୍ପନା ସ୍ୱର୍ଗରୁ ବାସ୍ତବକୁ ଟିକିଏ ଓହ୍ଲାଇ ଆସ—ଏ' ଯେଉଁ ତୁଅଟିଏ ଅଙ୍କୁଥିଲ ଆଗବଢ଼ି, କେଉଁ ପ୍ରୀତି କଳ୍ପନା ଭେଳରେ—ଲକ୍ଷ ଲକ୍ଷ, କୋଟି କୋଟି ସେ ଭଳି କେତେ ପିଲାଛୁଆ, ଦେଖିବ ଚୁଲ, ଆଖି ସାମନାରେ କରୁଡ଼ି ହୋଇ ଲୋଟି, ଗଡ଼ି ଭୂଇଁରେ ସଢ଼ୁଛନ୍ତି—ରକ୍ତର ଧାର ଯେମନ୍ତ ବୋହି ଯାଉଛି, ଅଜି ଗୋଟାଏ 'ମହାନଦୀ' ସୃଷ୍ଟି କରି··· ଆସ, ଆସ ଭଉଣି—ଯେଉଁ ମାତୃତ୍ୱର କଳ୍ପନା କରି ସୁଖଚନ୍ଦ ଅଙ୍କୁଚ—ତା'ର ଦୁଃଖ ଚନ୍ଦ ଆଖିରେ ଅଜି ଦେଖିବ, ମୋ ସାଥିରେ ଧାଇଁ ଆସ—

ଚନ୍ଦମାଲୀ—ବାଃ ଗୋ—ମୋ'ର ସୁଖ-ଚନ୍ଦଗ୍ରହ, ମୁଁ ଦୁଃଖ ଚନ୍ଦଟାଏ ଦେଖିବାକୁ ଧାଇଁଯିବି କାହିଁକି, ତୁମ ସାଥିରେ ?

ବଲାଙ୍ଗୀ—ତେବେ—ତେବେ ତୁମର ପ୍ରାଣର ମୋହନକୁ ବଞ୍ଚାଇବ ନାହିଁ, ଭଉଣି ?

ଶଙ୍ଖମାଳୀ—'ସାତଖାରଙ୍କୁ' ଡରୁଛ ? କିଛି ଦରକା ନାହିଁ, ଭଉଣୀ—ଟିପଟିଏ ଦେହରେ ଛୁଇଁବେ ନାହିଁ—ଖାଲି ତାଙ୍କୁ—

ବଳାଙ୍ଗୀ—ବାନ୍ଧି ଆଣିବେ ? ସେ 'ସାତଖାର' ଆଉ ତୁମର ନାହିଁ ଭଉଣୀ—ତାଙ୍କୁ ବାନ୍ଧି ଆଣିବାର କ୍ଷମତା ଏକା ତୁମ ଛଡ଼ା ଆଉ କାହାର ନାହିଁ, ଭଉଣୀ—

ଶଙ୍ଖମାଳୀ—ବାପାଙ୍କର ସୁଦ୍ଧା ନାହିଁ ?

ବଳାଙ୍ଗୀ—ନା, ନା—କାହାର ନାହିଁ—ଏ' ଦୁନିଆରେ ଆଉ କାହାର ନାହିଁ—ମୋର ସୁଦ୍ଧା— ( କହୁ କହୁ ରହିଯାଇ ) ଓଲ୍‌ଟି ବାପାଙ୍କର ଯେ କି ଦଶା ହେବ, ଭାବୁଚ କି ଭଉଣୀ ?

ଶଙ୍ଖମାଳୀ—ବାପାଙ୍କୁ କ'ଣ ହାଣି ଦେବ ?--ନା ନା--

ବଳାଙ୍ଗୀ—ଅସମ୍ଭବ ନୁହେଁ, ଭଉଣୀ—ଯେଉଁଭଳି ଅମଣିଷ, ପିଶାଚ ସେ ଅଜା—

ଶଙ୍ଖମାଳୀ—'ଅମଣିଷ'—'ପିଶାଚ'—ସେ କି ଭଳି ? କି ଭଳି ରୂପ ? କି ଭଳି ଭାବ ? ଯେଉଁ ଭଳି ଦେଖିଚ ପୂର୍ଣ୍ଣଚନ୍ଦ୍ରକୁ, ତାକୁ ବଳି ନା କ'ଣ ?

ବଳାଙ୍ଗୀ—ପୂର୍ଣ୍ଣଚନ୍ଦ୍ରର ପ୍ରକୃତ ରୂପ, ଗୁଣ ଯା'— ତାକୁ ବଳିଲେ କ'ଣ ଭଲ ?

ଶଙ୍ଖମାଳୀ—କମିଲେ ବି ନୁହେଁ—

ବଳାଙ୍ଗୀ—ତେବେ ଠିକ୍ ଯା', ସେହିଭାବେ ଯଦି ଆଜି ପାଇବାକୁ ଚାହିଁ ପୂର୍ଣ୍ଣଚନ୍ଦ୍ରକୁ ତୁମର—ଅସ ବାହାର—ଡେରି ନ କରି ସାଥିରେ ମୋ'ର—

ଶଙ୍ଖମାଳୀ—ମୋ'ରତ ଯୁଦ୍ଧ ସାଜ ନାହିଁ—ଅସିଟିଏବି ଧରି ଆସେନାହିଁ ମୋତେ ?

ବଳାଙ୍ଗୀ—( ହସି ହସି ) ତୁମେ ଖାଲି 'ଶିଖଣ୍ଡି' ଭଳି ଯୁଦ୍ଧ ମୁହଁରେ ଠିଆ ହେଲେଇ ହେଲା, ଭଉଣୀ ।

ଶଙ୍ଖମାଳୀ—( ଉପହାସ ଛଳେ ) ଶିଖଣ୍ଡି ଥାଉ ଥାଉ ଶିଖଣ୍ଡି ଭଳିର ପ୍ରୟୋଜନ ?

ବଳାଙ୍ଗୀ—ନା, ନା ଭଉଣୀ ମୁଁ ଯେ ତହିଁରୁ ଅଧିକ— 'ଶିଖଣ୍ଡି'—( ରହିଯାଇ ) ଅସ ଆସ ଭଉଣୀ— ଆଉ ବିଳମ୍ବ କରନାହିଁ......

ଶଙ୍ଖମାଳୀ—ମୋର ତୁଳି, ରଙ୍ଗ ସବୁ ସଙ୍ଗାଡ଼ି ଆଣେନା ?

ବଳାଙ୍ଗୀ—ଲଚ୍ଛେଇର ଶଙ୍ଖ ଅଙ୍କିବ ନା କ'ଣ ?

ଶଙ୍ଖମାଳୀ—ଛାଡ଼ିବାକୁ ଅଛିନା ଏମିତିକା ସୁଯୋଗ-ଟାଏ ? କବି ଥା'ନ୍ତେ କି ସାଙ୍ଗରୁ ?—ମା' ବାପତ ଭଳି ଯେନିଯାଇଛନ୍ତି—ହେ ଗୋ ଭଉଣୀ, ତୁମକୁ ଆଉ ସଉତୁଣୀ ପଣ ସାଧିବାକୁ ହେବ ନାହିଁ—ବାପା ତୁମପାଇଁ ବରପାଣିଟି ଘଟଣା କରିଚନ୍ତି.........

ବଳାଙ୍ଗୀ—ନ କରନ୍ତେ ବା କିପରି—ଯେତେବେଳେ ତୁମେ ମୋ'ର ରାଜାକୁ.........

ଶଙ୍ଖମାଳୀ—ଠିକ୍ ମିଳିଯାଇଚ, ଭଉଣୀ—ଏ' ବି ମୋ'ର ରାଜା ! କଳ୍ପନାର ! ହାଃ—ହାଃ—

ବଳାଙ୍ଗୀ—କିବା ନା ?

ଶଙ୍ଖମାଳୀ—ଭାରି ଡର କିନ୍ତୁ ତୁମକୁ ଭଉଣୀ—ଯଉଁ କସିକରି ହାତଗଣ୍ଠି ପକାଇଥିଲ !

ବଳାଙ୍ଗୀ—ପକାନ୍ତି ନାହିଁ ? କାଳକାଳକୁ ବାନ୍ଧି ରଖିନ୍ତି କିପରି ? ( ଗାଇ ଉଠିଲେ ଉଚ୍ଚସ୍ୱରେ )

"କଳ୍ପନାର ରାଜା ମୁହିଁ—ସେ ଯେ ରାଣୀ ମୋ'ର ।
—କଲପେ, କଲପେ ବନ୍ଧା—ଆମ ପ୍ରୀତି-ଡୋର ॥"

ହାଃ-ହାଃ-ହାଃ—

[ ଭାରି ରଣବାଦ୍ୟ ଓ କୋଳାହଳ ଶୁଣାଗଲା ]

(ନେପଥ୍ୟେ)—ରାଜା, ରାଜାରେ ଲଚ୍ଛେଇ ! ରାଜା ଭାରି ବିପଦରେ ! ଆସ ଯେ ଯା' ପାଅ—ଘେନି ବାହାରି ପଡ଼—

ଶଙ୍ଖମାଳୀ—କ'ଣ ହେବ, ଭଉଣୀ ?

ବଳାଙ୍ଗୀ—ବଳାଙ୍ଗୀର 'ବଳ' ଶଙ୍ଖମାଳୀକୁ ଯେ ପାଇଛି, ଭଉଣୀ ।

[ ଗୋଟାଏ ହାତରେ ଶଙ୍ଖମାଳୀକୁ କୁଣ୍ଢାଇ —ଅନ୍ୟ ହାତରେ ଘୋଡ଼ୀକୁ ଇସାରା କଲେ 'ରାଣୀ' ବୋଲି ଡାକି ]

ଯବନିକା

## ପଞ୍ଚମ ଅଙ୍କ

—ସେହି ଚନ୍ଦ୍ରଗଡ଼-ପାହାଡ଼ତଳ ଦୁର୍ଗ—

[ ସେହି ଗଡ଼ର ବା ଭାଡ଼ର ଖଣ୍ଡ ଖଣ୍ଡ ଦୁର୍ଗ ଅଦ୍ୟାପି ବର୍ତ୍ତମାନ—ଟେକଡ଼ା ପଥର ଉପରେ କ୍ଷତ ବିକ୍ଷତ ଦେହରେ ଭାନୁ ମଙ୍ଗରାଜ ଆସୀନ—ମାଳତୀ କ୍ଷତ ସ୍ଥାନମାନ ଧୋଇ, ପଟି ବାନ୍ଧି ଦେଉଥିଲେ ]

ଭାନୁ—ଉଃ—ଧୂଅ, ବନ୍ଧା ସରୁ ନାହିଁ ନା, କ'ଣ ?

ମାଳତୀ—ଦେହଯାକ ଖଣ୍ଡିଆ ନ ହୋଇ ରହା ଅଛିନା ?

ଭାନୁ—ଅଚ୍ଛା, ମାଳ—ଯେତିକି ଖଣ୍ଡିଆ ଦେଖୁଚ ମୋ' ଦେହରେ—ସେତିକି ଶହଲୋକ କ'ଣ, ପାଇଥିଲେ, ମାରି ସାଫ୍ କରି ଦେଇ ନଥା'ନ୍ତି ଆଜି ?

ମାଳତୀ—ସେତିକି ସହସ୍ର କହୁ ନାହିଁ ଯେ ।

ଭାନୁ—କିନ୍ତୁ, ଶତ, ସହସ୍ର ଗୁଣ ଏହାର, ମାଳତୀ ମୋ'ର ଏକା ମାରି, ପଦାକରି ଦେଇ ନ ଥା'ନ୍ତା କି—ମୁଁ ଯଦି 'ହୁଁ' ବୋଲି, ଖଣ୍ଡାଟି ବାହାର କରି ଖାପରୁ, ଦୌଡ଼ି ଯାଇଥା'ନ୍ତି ଜଣକା ପ୍ରତି କ୍ଷଣେ··· ।

ମାଳତୀ—ସତେ, ସତେ, ବାବା, ବର୍ଗୀ ଆକ୍ରମଣ କଲାବେଳେ, ମୋ'ର ଯଦି ଏହି ସାହସ ଥା'ନ୍ତା କି—

ଭାନୁ—ସାହସ ଲୋକର ବଢ଼େ ନାହିଁ, ମା,—ଯେ ଯାଏ ବଢ଼ିଆ, ଅମୂଲ୍ୟ କିଛି ସେ ହରାଇ ନ ଥାଏ···

ମାଳତୀ—ମାନେ, ଲାଭ ସେଥିରେ ତା'ର ?—

ଭାନୁ—ଲାଭ ନାହିଁ ? ତା'ଠାରୁ ଅଧିକ ଅମୂଲ୍ୟନିଧିର ଯେ ସେ ଅଧିକାରୀ ହୋଇଯାଏ । କହିଲ, ମା, ତୁମେ ଆଜି କାହିଁକି ଏ' ବୃଦ୍ଧର ଜୀବନ-ପ୍ରହରୀ ହୋଇ, କ୍ଷୁଧା ତୃଷା ଭୁଲିଚ ? ନାରୀର ଅଗତ-ପଥେ, ଅଗ୍ରସର ହୋଇ, ବାହାରିଚ ?—ଏକମାତ୍ର ସନ୍ତାନ, ବଂଶର ପ୍ରଦୀପ, ବଳାଙ୍ଗୀକୁ ଅଣି,—ରାଜ୍ୟ ଓ ରାଜାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଦେଇ, ଏତେ ଆନନ୍ଦ ପାଉଚ ?—

ମାଳତୀ—ବର୍ଗୀ ତା' ହେଲେ ଭିତରେ ଭିତରେ କେତେ ଲାଭ ଦେଇ ଯାଇଛି ମୋତେ, ବାବା !

ଭାନୁ—ମୋତେ ବି ଊଣା ଲାଭ ଦେଇ ଯାଇ ନାହିଁତ ? ସେତେବେଳେ ଶିଖିଥିଲି, ଅସ୍ତ୍ର ପ୍ରହାର କରି କିପରି ଆନନ୍ଦ ପାଇବାକୁ ହୁଏ—ଆଜି ଶିଖିଚି, ଅସ୍ତ୍ର ପ୍ରହାର ସହ୍ୟକରି କିପରି ଆନନ୍ଦ ପାଇବାକୁ ହୁଏ ।

ମାଳତୀ—କିନ୍ତୁ—ବିନା ପ୍ରହାରରେ, ତୁମର ରାଜ୍ୟ ଓ ରାଜାର ମୂଳ-କଣ୍ଟକ ଯେ ସହଜେ ଉପୁଡ଼ିବ, ମୋ'ର ବିଶ୍ୱାସ ହେଉ ନାହିଁତ ବାବା ?—

ଭାନୁ—(ସେହି 'କଣ୍ଟକ' ଶବ୍ଦୋଚ୍ଚାରଣରେ କିପରି ଥରି ଉଠିଲେ—ପରେ କହିଲେ ) ବଜ୍ରଧର କ'ଣ ରାଜ୍ୟ ଓ ରାଜାର ମୂଳ-କଣ୍ଟକ ବୋଲି ବିଶ୍ୱାସ ତୁମର, ମା ?—

ମାଳତୀ—ଆଉ କ'ଣ ମୋ'ର ହିଁଅଟା ?

ଭାନୁ—ବଳଙ୍ଗୀ ?—ମୋ'ର ବଳ ।—ନା, ନା—ରାଜାର ବଳ— ରାଜ୍ୟର ବଳ ଯେ ସେ ଅଧୁନା—ଆହା ! କେବେଠି ?—ସତେ, ସତେ, କଣ 'ରାଜା, ରାଣୀ' ରୂପେ···

[ କି ଭଳି ଗୋଟାଏ ଆଶା, ନିରାଶାର ଦ୍ୱନ୍ଦ୍ୱ ଭିତରେ ପଡ଼ିଯାଇଥିଲେ ]

ମାଳତୀ—ତୁମରତ ଶଙ୍କିବାର କାରଣ କିଛି ନାହିଁ ? 'ରାଜା, ରାଣୀ' ସତେ ସତେ ନୁହନ୍ତି କି 'ପୂର୍ଣ୍ଣଚନ୍ଦ୍ର, ବଳଙ୍ଗୀ' ? ମିଶିଯାଇ ନାହାନ୍ତି କି ପ୍ରାଣେ ପ୍ରାଣେ ଦୁହେଁ ?—ଶୀକାର କରି ଖେଳ ବୁଲୁଥିଲେ ସେ ଦିନ ଯେଉଁ ଭଳି, ଆଜି କ'ଣ ଠିକ୍ ସେହି ଭଳି ଲଢ଼େଇରେ ମାତି ଯାଇ ନାହାନ୍ତି—ଦୁଇଜଣ ଦୁଇଟି ଘୋଡ଼ାରେ ଚଢ଼ି, ପାଖାପାଖି ଥାଇଁ ଦିନରାତି ?

ଭାନୁ—ଘୋଡ଼ାର, ଘୋଡ଼ୀର ନାମ ବି ରଖିଚନ୍ତି 'ରାଜା, ରାଣୀ' । ହାଃ ହାଃ—ଶୁଣିଚ ଆଜି ମୁଁ—ହାଁଃ—ହାଃ—( ହସି ହସି ଗଡ଼ିଗଲେ ପରା )

ମାଳତୀ—କହିଲ, କହିଲ—ସତେକି ନୁହନ୍ତି ତୁହେଁ—
ସୁଭଦ୍ରା, ଅର୍ଜୁନ । ଉତ୍ତରା, ଅଭିମନ୍ୟୁ କିବା ।
[ ରାଣୀ ବାଉଳୀ ହୋଇ ପ୍ରବେଶ କଲେ ]

ରାଣୀ—ତୁମେ ଏ'ଠି, ସେନାପତେ ? ବଳାଙ୍ଗୀ କାହିଁ
ମୋ'ର ?

ଭାନୁ—ରାଜାଙ୍କ ଘୋଡ଼ା ତା'ର, କାହିଁ ଆଉ ଥିବ, ମା ?

ରାଣୀ—ନା, ନା—ତୁମେ ଜାଣ ନାହିଁ କିଛୁ—ପୂର୍ଣ୍ଣ
ବାଉଳା ହୋଇ ଯାଇଛି, ଖୋଜି ଖୋଜି ଉଆସର
ଅନ୍ଧ ସନ୍ଧ କୋଣ । ଏଇଥିଣି ଅଇଲାତ ଏଣିକି
ଘୋଡ଼ା ଟପ୍ଟାଇ ।

ଭାନୁ—କାହିଁ ? ଏଠାକୁତ ଆସି ନାହାନ୍ତି ? ମା ! ତୁମେ
କିଛି ଚିନ୍ତା କର ନାହିଁ—ମୁଁ ପ୍ରକୃତ ସମ୍ବାଦ
ସଂଗ୍ରହ କରି, ଜଣାଉଛି ତତକ୍ଷଣେ ।—ରାଜା
ଏହିକ୍ଷଣି ଏଠାକୁ ଆସିବେ, ଗୁପ୍ତ-ପରାମର୍ଶ
କରିବାକୁ—ମୁଁ ଗୁପ୍ତ-ସଙ୍କେତ ପଠାଇଛି—
ବଜ୍ରଧର ଆଜି ବଜ୍ରଅସ୍ତ୍ର ବାନ୍ଧିଛି—ହୁଏତ
'ରାଜା' ନ ହୁଏ 'ରାଜ୍ୟ', ସୂର୍ଯ୍ୟାସ୍ତ ପୂର୍ବରୁ କରିବ
ସେ ଅଧିକାର—

ରାଣୀ—'ରାଜ୍ୟ' ଯାଉ, ଦରକା ନାହିଁ, ଚିନ୍ତା ନାହିଁ,
ସେନାପତେ—କିନ୍ତୁ, ରାଜାକୁ ଦେଇ ନ ପାରେଁ,
ଏ' ମୋ'ର ସଙ୍କଳ୍ପ ଦୃଢ଼—

ଭାନୁ—ସନ୍ଧିଟା ହୋଇଥିଲେ, ଭଲ ହୋଇ ନ ଥାନ୍ତା
କି, ମା ?

ରାଣୀ—'ପୁଅ'କୁ ମୋ'ର ଲାଞ୍ଚ ଦେଇ ?
( ଉପହାସଛଳେ ) କହୁଥିଲପରା ମଙ୍ଗରାଜ,—ପୂର୍ଣ୍ଣ
ମୋ'ର ସେହି ଦୁରାତ୍ମାର ସୁନ୍ଦରୀ କନ୍ୟାର ରୂପ-
ମୋହରେ ଆତ୍ମ-ଜ୍ଞାନ-ଶୂନ୍ୟ ? କିନ୍ତୁ କହିଲ
ଏବେ, ତା'ର ପ୍ରେମ-ସୁଧାରେ ଆତ୍ମ-ଜ୍ଞାନ-ପୂର୍ଣ୍ଣ
ଅଛି ?

ଭାନୁ—ମୁଁ ଗୋଟାଏ ସୁଯୋଗ ପାଇ, ଦୁଇଟା ରାଜ୍ୟ
ଭିତରେ ଅଚ୍ଛେଦ୍ୟ ବନ୍ଧନ ବାନ୍ଧି ଦେବାକୁ
ଚାହୁଁଥିଲି, ମା ।—ତୁମେମାନେ ଚାହିଁଲ, ମା—ଆମର
ପ୍ରଜାହେଉ—ବା, ତାଙ୍କର ପ୍ରଜାହେଉ;
ଅତ୍ୟାଚାରୀ ଅଧମ ହେଉ ବା ସେମାନେ ହେଉନ୍ତୁ,
—ମୋଟ ଉପରେ—ମନୁଷ୍ୟ ଉପରେ ଅତ୍ୟାଚାର
କରୁନାହୁଁ କି,—ଭାଇ ହୋଇ, ଭାଇ ଉପରେ
ନିକର ?—ତୁମେଇତ, ମା, ଏହି ରତ୍ନାକରର
ଉତ୍ପୂର୍ବ୍ଲିଲନ ଦେଇଛ ଆଜ—ଯେତିକି ମୁଁ
ଅନାଇ ଦେଖୁଛି—ଆଖି ମେଲାଇ—ଦୃଷ୍ଟିର ସୀମା
ଯେତେଦୂର ତେତିକି ବଢ଼ି ଚାଲିଛି ।—ଆଜି ମୋ'ର
ମନ କହୁଛି—ସବୁ ଖଣ୍ଡ ଖଣ୍ଡ ରାଜ୍ୟ ଭାଙ୍ଗି ଚୁର
—ଗୋଟାଏ 'ବିଶ୍ୱ-ରାଜ୍ୟ' ଗଢ଼ି ଉଠନ୍ତାକି ? ସବୁ
ସମାଜ ମିଳି ମିଶି ଯାଇ, ଗୋଟାଏ ମାନବ
ସମାଜ ବଢ଼ି ଉଠନ୍ତା କି ?—ସବୁ ସଙ୍କୀର୍ଣ୍ଣତା
ଲିଭି ପୋଛି ଯାଇ, ଗୋଟାଏ ପ୍ରେମର ବନ୍ୟା
ମାଡ଼ି ଆସନ୍ତା କି ?

ରାଣୀ—ଭାନୁମଙ୍ଗରାଜ ! ଏଭଳି ଉଦାସୀନଭାବରେ
ତୁମର ପୂର୍ଣ୍ଣଚନ୍ଦ୍ରର ପୂର୍ଣ୍ଣଜ୍ୟୋତି ଆଜି ଲିଭିବ
ନା କ'ଣ ?—ଜୟପୁରର ମାନ-ଇଜ୍ଜତ୍ ଆଜି
ତଳେ ଲୋଟିବ ନା କ'ଣ ?—ତୁମେଇ ଶପଥ
କରିଥିଲ ନା—ଅସିଟି ମୋ' ହାତରୁ ଧାରଣ
କଲାବେଳେ—'ରାଜ୍ୟ ଓ ରାଜାର କଣ୍ଟକ ଯେହୁ
—ତା'ର ମୁଣ୍ଡ ଅଣି ଭେଟିବ ପଯରେ—ଏହି
ଅସିର ଫଳକେ ଗୁନ୍ଥି ?'

ଭାନୁ—ମା, ମୁଁ ଗୋଟାଏ ଅଧମ ସନ୍ତାନ ତୁମର, ମା !
[ କାଭଳି ନିସ୍ତେଜ ହୋଇ ପଡ଼ୁଥିଲେ—ପୂର୍ଣ୍ଣଚନ୍ଦ୍ର
ପ୍ରବେଶ କଲେ ଘୋଡ଼ା ଟପ୍ଟାଇ ]

ପୂର୍ଣ୍ଣଚନ୍ଦ୍ର—( ପଞ୍ଝାଇ ) ରକ୍ଷାକର—ରକ୍ଷାକର, ମା
—ରକ୍ଷାକର,ସେନାପତେ—ମୁଁ ମହାବିପଦରେ
—ରାଜା ତୁମର ମହାବିପଦରେ !—ହାତଟା
ମୋର ଏକାବେଳକେ ଅଚଳ—ଗୋଡ଼ ବି—
ଘୋଡ଼ାଟା ପଡ଼ୁଛି-ଉଠୁଛି—'ଭାଉ' ଭଳି ଖାଲି ।

ରାଣୀ—କ'ଣ ହେଲା—କ'ଣ ହେଲା ପୁଅର ମୋ'ର ?

ଭାନୁ—ରାଜା ?

ମାଳତୀ—'ବଳାଙ୍ଗୀ' ଲୁଚିଛି ତ ବିପଦ ତୁମର, ରାଜା ?

ପୂର୍ଣ୍ଣଚନ୍ଦ୍ର—ଠିକ୍ ଧରିଛ, ମା—ସମ୍ପଦ ହିଁ ବିପଦ
ମଣିଷର । ମା—ମା, ଖୋଜି ଖୋଜି କେଉଁଠି ନ
ପାଇ—ମଶିଲି ଶତ୍ରୁର ଶିବିରେ—ଭେଟି

ବଜ୍ରଧରେ—ଚମ୍‌କାଇ ବିଜୁଳି—ବଜ୍ରହୁଁ କାରେ ଫଟୁଥିବେ—'କାହିଁ ମୋ ସଙ୍ଗିନୀ—ବଳାଙ୍ଗୀ-ଧନୀ—' ହସି, ହସି ନାରକୀ—ସଙ୍କେତଭଙ୍ଗ ପାର୍ଶ୍ୱରେ, ବାନ୍ଧିବାକୁ ମୋତେ—ବିନାଶି ସକଳେ—ଉଠିବେ ଖଡ଼୍ଗ ମୁହିଁ—ଉଡ଼ାଇବାକୁ ଦୁରାତ୍ମାର ଶିର—ଦେଖିଲି ସମ୍ମୁଖେ ଆଖିର ପଲକେ—ସେଇଁ ଶବ—

ମାଳତୀ—ମୋ'ର ବଳାଙ୍ଗୀର ରକ୍ତ-ଶବ କିବା ?

ପୂର୍ଣ୍ଣଚନ୍ଦ୍ର—ନା, ନା—ସେହି ରକ୍ତାକ୍ତ ଶବମାଳୀର ଜୀବନ୍ତ ଶବ !—ସେହି ରାକ୍ଷସୀ, ରୂପସୀର ନଗ୍ନ-ସ୍ୱପ୍ନମୂର୍ତ୍ତି ! —କିଏ ଅଟ୍ଟହାସ୍ୟ—ମୃଦୁ ମୃଦୁ ଅଧରର ହାସେ !—କେଉଁ ଲାଳନୃତ୍ୟ—ମୃଦୁ ମୃଦୁ ଭଙ୍ଗିର ଅଭ୍ରାସେ !—ଜଳି ଉଠିଲି ମୁହିଁ—ଲିଭିଗଲି ଶେଷ ଶିଖାଭଳି !—ଉଠିଲା ଝଙ୍କାର ଅସି—ମିଳାଇ ଗଲା ସେ କ୍ଷଣେ !—ପଡ଼ିଲି ମୁଁ ମୂର୍ଚ୍ଛାତଳେ—କ'ଣ ହେଲା ତାର ପରେ—କି ଭଳି ବଞ୍ଚିଲି ମୁହିଁ—ନ ପାରଇ ଜାଣି !—ସ୍ୱପ୍ନରେ,—ସ୍ୱପ୍ନରେ ଖାଲି ଦେଖିଛି ପରୀ—ଫୁଲ ସାଜେ ସାଜି, 'ରାଣୀ' ମୋ'ର ଆଜ—ଫୁଲ ସଞ୍ଜେ କୁଞ୍ଜେ, ଖେଳେ ଲୁଚକାଳି ରଙ୍ଗେ—କିନ୍ତୁ, କାହିଁ ? କାହିଁ ? ଖୋଜି ପାଉନାହିଁତ ମୁହିଁ ?—ବାବା—ବାବା—ନିସ୍ତେଜ ହୋଇ ରହିଛ କିପରି ? ଯାଅ—ଯାଅ—କର ସେହି ଯାଦୁକରେ ନାଶ—ସେହି ସେହି ବଳାଙ୍ଗୀକୁ—ରାଣୀକୁ ମୋ'ର—କରିଛି—

ଭାନୁ—'ବିନାଶ'—! ( ଉତ୍ତେଜିତ ହେଲେ )

ରାଣୀ—( ମୂର୍ଚ୍ଛିତା ହୋଇ ପଡ଼ିଲେ )

ମାଳତୀ—( କେଉଁ ସ୍ଥିର-ଦୃଷ୍ଟିରେ ଚାହିଁଥିଲେ )

ପୂର୍ଣ୍ଣଚନ୍ଦ୍ର—କରିଛି 'ସର୍ବନାଶ' ରାଜା ଓ ରାଜ୍ୟର !

ଭାନୁ—ଭାନୁ ମଙ୍ଗରାଜ !—ଭାନୁ ମଙ୍ଗରାଜ !—କିପାଇଁ ବିଳମ୍ବ ଆଉ ?—ଧର ଅସି—କର ପଣ, ମାତୃ ପଦତଳେଇ,—'ରାଜ୍ୟ ଓ ରାଜାର କଣ୍ଟକ ଫିଙ୍ଗିବି ଉପାଡ଼ି' ? ଜ୍ୱଳି ଉଠ ଭାନୁ—ମାଭୈଶ୍ୱରର ପ୍ରଚଣ୍ଡତାପେ—ଦହ, ଦହ ହେ ଖେଳାଇ ଅଗ୍ନିଶିଖା ପ୍ରାନ୍ତରେ, ପ୍ରାନ୍ତରେ—ଧୂ ଧୂ—ଜ୍ୱଳିଉଠୁ ଆକାଶ ପବନ—ନ ପାଏ ଠାବ ଲଭିବେ, ବଜ୍ରଧର କେଉଁଠି ? ହାଃ—ହାଃ—ବୃଦ୍ଧ ଅସି ମୋର—ମେଣ୍ଟାଇବ ଶେଷତୃଷା ତା'ର !—

[ ପ୍ରଚଣ୍ଡ ମୂର୍ତ୍ତିରେ ଅସି ଉତ୍ତୋଳନ ପୂର୍ବକ ଧାଇଁଗଲେ ]

ମାଳତୀ—ମନେ ପଡ଼େ 'ବର୍ଗୀ'ର ସେହି ଖଣ୍ଡ, ଖଣ୍ଡ କରି ଛେଦିବାର ଦୃଶ୍ୟ—ଗଣ୍ଡି, ମୁଣ୍ଡ ବଳାଙ୍ଗୀ-ଜନକର !—କିନ୍ତୁ, କିନ୍ତୁ, ବଳାଙ୍ଗୀ-ଜନନୀ—ନୁହେଁ ଅନ୍ଧ ଉଡ଼ରେ ବନ୍ଦିନୀ !—

( ସେହିଭାବେ ଧାଇଁଲେ )

ରାଣୀ—( ଉଠି, ଚାହିଁ ଚାହିଁ ଚାରିଆଡ଼େ ) ପୂର୍ଣ୍ଣଚନ୍ଦ୍ର !—

( ସ୍ପର୍ଶ କଲେ )

ପୂର୍ଣ୍ଣଚନ୍ଦ୍ର—( କେଉଁ ସ୍ୱପ୍ନାବେଶରେ ଶବମାଳୀକୁ ଦେଖୁଥିଲେ କି ଆଉ—ହଠାତ୍ ଚମକିଉଠି ) ହଁ, ହଁ, 'ପୂର୍ଣ୍ଣଚନ୍ଦ୍ର'—'ପୂର୍ଣ୍ଣଚନ୍ଦ୍ର' ମୁହିଁ, ମା !—ପୂର୍ଣ୍ଣ, ଭାନୁ ଆଜି—ପୂର୍ଣ୍ଣଚନ୍ଦ୍ର ତେଣୁ—ଧୋଇ ମୁଛିଛି ଦେବ, ମା—କଳଙ୍କ-କାଳିମା—ଶୋଣିତେ, ଶୋଣିତେ ସେହି ବଳାଙ୍ଗୀ-ହନ୍ତାର—

( ସେହି ଭାବେ ଧାଇଁ ଯାଉଥିଲେ )

[ ସୁବେଶା ଶବମାଳୀ ସଙ୍ଗେ ବଳାଙ୍ଗୀ ପ୍ରବେଶ କଲେ ]

ବଳାଙ୍ଗୀ—ମା—ମା—( କୁଣ୍ଢାଇ ପକାଇଲେ )

ରାଣୀ—ବଳାଙ୍ଗୀ—ମା, ମୋ'ର—

ବଳାଙ୍ଗୀ—ମା ! ଦେଖିଲ, କେଡ଼େ ସୁନ୍ଦର ଶବଟିଏ—କେଡ଼େ ସୁନ୍ଦର ଆତ୍ମାର ମାଳାଟି, ସଜାଇ ଦେବାକୁ—ପିନ୍ଧାଇ ଦେବାକୁ ଏହି ମୁଦଟି—( ରନ୍ଧ୍ର ମୁଦଆଡ଼େ ଚାହିଁ ଛଳ ଛଳ ହୋଇଗଲେ କି ଅଉ, ହଠାତ୍ ଅପ୍ରସ୍ତୁତ ହୋଇ ) ଭାରି ଅଡ଼ୁଆ ଲାଗୁଛି ଏଇଟା, ମା—ତୁମେ ଘୋଡ଼ାଇ, ବୁକୁ ଭିତରେ ପୂରାଇ ଛପାଇ ରଖନ୍ତ, ମା—ମୁଁ ଦେଖେଁ—ବାବା କେଉଁଆଡ଼େ ଗଲେ ?—ଫେରାଇ ଆଣେ ତାଙ୍କୁ ଆଗେ—

[ ଚାଲି ଯାଉଥିଲେ, ଚନ୍ଦମାଳୀକୁ ରାଣୀଙ୍କ ତୁଳୁଭଉରେ ପୂରାଇ ଦେଇ—ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ନ ଥିଲେ ଏକାବେଳେ, କିମ୍ବା, ଦେଖି, ନ ଦେଖିଲା ଭଳି, ଚାଲି ଯାଉଥିଲେ—କେଉଁ ଅଭିମାନ ଭରେ ]

ପୂର୍ଣ୍ଣଚନ୍ଦ୍ର—( କେଉଁ ଲୁଲୁପଟା ସ୍ୱରରେ ଡାକିଲେ ) 'ରାଣୀ' !—

ବଳାଙ୍ଗୀ—'ରାଜା' !

[ ବଡ଼ୋ ଦେଶରେ ତାଙ୍କର, କରୁଣ ହୋଇ ପଡ଼ିବାକୁ ଯାଉଥିଲେ; କିନ୍ତୁ ରୋକିନେଲେ ଆପଣାକୁ ]

ହଁ, ଚନ୍ଦ-ପ୍ରଭ ମୋ'ର ନଜର ରଖିଥିବ, ରାଜା—ଦେଖେଁ—

[ ଘୋଡ଼ା ତା'ର 'ରାଣୀ'କୁ, ବଳାଙ୍ଗୀ ସାଥିରେ ନ ଦେଖିବାକୁ ହ୍ରେଷାରବ କଲା ]

ବଳାଙ୍ଗୀ—( ଛୁଟି ଯାଉଁ ଯାଉଁ, ସେହି ଘୋଡ଼ାଅଡ଼େ ଚାହିଁ ହଠାତ୍ ଅଟକିଗଲେ; ଦୁଇ ଆଖିରୁ ଦୁଇଧାର ବୋହି ଯାଉଥାଏ—ଫେରିଲେ ) ତୁମର 'ରାଜା'ଟାକୁ ଦେବ କି ଥରେ ?

ପୂର୍ଣ୍ଣଚନ୍ଦ୍ର—'ରାଣୀ'ଟା ତୁମର କାହିଁ ? ଦେଖିଲି, ସେହି ଏକାଗଛରେ ବାନ୍ଧ ଦେଇ ନାହିଁ ବୋଲି ଆଜି, କେମିତିକା ଉତ୍ପାତ କରୁଛି ସେ ?

ବଳାଙ୍ଗୀ—( କିଛି ନ କହି, ମୌନଭାବେ ଘୋଡ଼ାଟା ଫିଟାଇବାକୁ ଲାଗିଲେ ) 'ରାଜା'ରେ ··· ···

ପୂର୍ଣ୍ଣଚନ୍ଦ୍ର—'ରାଣୀ'କୁ ତୁମର ସେହିଠି ବଦଳାଅ ଜଲଦି ବାନ୍ଧଦେଇ ଯିବାକୁ ହେବ, ରାଣି !

ବଳାଙ୍ଗୀ—ଏହି 'ରାଣୀ'ଟିକୁ ମୋର, ଆଜି ବଦଳାଅ, ଏଇଠି ବାନ୍ଧ ଦେଉଛି, ରାଜା !

[ ଚନ୍ଦମାଳୀକୁ ଆଣି ପୂର୍ଣ୍ଣଚନ୍ଦ୍ରଙ୍କ ହାତରେ ଛନ୍ଦିଦେଲେ ଓ ନିଜେ ଘୋଡ଼ା ଉପରେ ଚଢ଼ି ବସିଲେ ]

ଚନ୍ଦମାଳୀ—ଭଉଣୀ ! ବଣ-ଦେବତାର ଚନ୍ଦ ଦେଖାଇବାକୁ ଛଳ, ବଣ-ଜନ୍ତୁର ହାବୁଡ଼ରେ ଘାଉଁ ଚାଲି ଯାଅନାହିଁ, ଭଉଣି !

ବଳାଙ୍ଗୀ—( ଘୋଡ଼ା ଛୁଟାଇ ଯାଉଁ ଯାଉଁ ) ଡରନା, ଭଉଣି ! ସେହି ମଞ୍ଚା ଉପରେ ଚଢ଼ି ବସି, ଜନ୍ତୁଟାକୁ ଶିକାର କର ପକାଅ ନା ବେଗେ !— ମୁଁ ଅଜି ଜନ୍ତୁ ଗୁଡ଼ାକୁ ଖେଦି ଖେଦାକୁ ତୁମର—

ପୂର୍ଣ୍ଣଚନ୍ଦ୍ର—( ଚିତ୍କାର କରି ଉଠିଲେ ) ଜନ୍ତୁ ! ଜନ୍ତୁ ! ଜନ୍ତୁ !

[ ନେପଥ୍ୟ ଦୂରେ ମଙ୍ଗରାଜଙ୍କର ଭୀଷଣ ଚିତ୍କାର ଶୁଣାଗଲା 'ବଜ୍ରଧର ! ବଜ୍ରଧର !' ବଜ୍ରଧରକୁ ବର୍ଛା ଲକ୍ଷ୍ୟକରି ମଙ୍ଗରାଜ ପ୍ରବେଶ କଲେ—ବାଧା ଦେଲା ବଳାଙ୍ଗୀ—ମଙ୍ଗରାଜଙ୍କ ଲକ୍ଷ୍ୟ ଭେଦକଲା ବଳାଙ୍ଗୀର ବକ୍ଷ—ବଳାଙ୍ଗୀ ତଳ ପଡ଼ିଲେ ବଜ୍ରଧରଙ୍କ ବକ୍ଷରେ—'ବାବା ବାବା' ବୋଲି ! ଗୋଟାଏ ସ୍ତବ୍ଧ ନୀରବତା ବିରାଜିବାକୁ ଲାଗିଲା ]

ପୂର୍ଣ୍ଣଚନ୍ଦ୍ର—ରାଣୀ !

ବଳାଙ୍ଗୀ—ରା-ଜା······ ( ମୃତ୍ୟୁ )

ଚନ୍ଦମାଳୀ—ଏ'କି ଚନ୍ଦ ଆଜି ସମ୍ମୁଖେ ମୋହର !

—ଯବନିକା—

# ଚରିତ୍ର ଲିପି

ଅଭୟସିଂହ—ସମ୍ବଲପୁରର ରାଜା
ଅକ୍‌ବର ରାଏ—ସମ୍ବଲପୁରର ମନ୍ତ୍ରୀ
ପୃଥ୍ୱୀସିଂହ—ସମ୍ବଲପୁରର ସେନାପତି
ମଧୁ—ଅକ୍‌ବର ରାଏଙ୍କ ପୁତ୍ର
ଭୋନ୍‌ସଲା—ନାଗପୁରର ଭୋନ୍‌ସଲା
କୁମାର—ନାଗପୁର ଭୋନ୍‌ସଲାଙ୍କ ପୁତ୍ର
ରଘୁଜୀ—ନାଗପୁରର ସେନାପତି
ମାଧବରାଏ—ବିଳାସପୁର ରାଜଭ୍ରାତା
ସୁନ୍ଦରସିଂ—ବିଳାସପୁର ରାଜ-ଭୃତ୍ୟ
୧ମ ସର୍ଦ୍ଦାର, ୨ୟ ସର୍ଦ୍ଦାର, ସାନ୍ତ୍ରୀଗଣ,
ଦୂତ, ପ୍ରହରୀ ।

ଅରୁଣା—ରଘୁଜୀଙ୍କ କନ୍ୟା
ମାଳତୀ—ମାଧବଙ୍କ କନ୍ୟା
ଶକ୍ତି—ଅଭୟସିଂହଙ୍କ କନ୍ୟା
ସଖୀଗଣ—

---

# ସମଲେଶ୍ୱରୀ

## ପ୍ରସ୍ତାବନା

[ ସମ୍ବଲପୁରର ଦୃଶ୍ୟ ]

ଜଲବାଳାଗଣ— ଗୀତ

ଅପାର ଭାରତ-ଭୂଷଣ ଉତ୍କଳ-ମହିମା-ମଣ୍ଡନ
ହେ ମା **ସମଲେଶ୍ୱରୀ** ସମ୍ବଲପୁର-ମୋହନ ।
ଚଣ୍ଡୀ-ଶୈଳ-ମହାନଦୀଜଳ, ତବ ଶ୍ରୀପଦ-ସରୋଜ—
କିବା ଉରଭର, ଖରତର, ଧୋଇଦଏ ଅବିରାମ ।
ଗଭୀରାରଣ୍ୟ ଶୋଭନ୍ତ ଯୂଥ ଯୂଥ ମୃଗ କରି-ବ୍ରଜରେ
ତୁଙ୍ଗ ଗିରିଗୁହା ନିନାଦନ୍ତି ସଦା ସିଂହ ବ୍ୟାଘ୍ର ସ୍ୱରରେ;
ସୁଶ୍ୟାମଳ ସତତ ଜଙ୍ଗଲ, ତୁମ୍ଭର ଧରଣୀ ତଳ
ବେଳା-ବାଲି-କଣା ହୀରା-ହାଟକ-ସ୍ରବଣ ।

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ମହାନଦୀ ବକ୍ଷ—

[କେତେଜ ଗୁଡ଼ିଏ ଯୁଦ୍ଧ-ସାମଗ୍ରୀ ପରିପୂର୍ଣ୍ଣ ଯୁଦ୍ଧତରୀ ପରିବେଷ୍ଟିତ ହୋଇ ଗୋଟିଏ ସୁସଜ୍ଜିତ ତରୀ ଧୀରେ ଧୀରେ ଚାଳିତ ହେଉଥିଲା ]

ରଘୁଜୀ—ଜଲଦି ଚଲାଓ ।

ଲଛମନ୍—କ୍ଷମା କରିବେ, ସାଂତ୍ରେ ! ଭାରି ହଇରାଣିଆ ବାଟ, ଖାଲି ଶ୍ରେଣୀ ପାହାଡ଼ ଗୁଡ଼ାକ—ଡଙ୍ଗା ସବୁ ଧକ୍କା ଲାଗି ଭଳି ଗୁରି ଥର ଓଲଟି ଓଲଟି ରହିଗଲଣି ।

୨ୟ ନାଉକ—ରୋକ୍, ରୋକ୍—ଚଢ଼ି ଯିବ, ଚଢ଼ି-ଯିବ—

ଲଛମନ୍—ହୁସିଆର, ହୁସିଆର—

ନାଉକ—ଜୟ ଶିବଶଙ୍କର ! ( ଭାଉ ଭଡ଼ବା)

ରଘୁଜୀ—ଏ'ତ ଭାରି ଖରାପ ବାଟ ! କାହିଁ, ଆସିବା-ବେଳେ ତ ହଇରାଣିଆ କିଛି ନ ଥିଲା ?

ଲଛମନ୍—ପାଣି ଭରିଥିବାରୁ ଆଉ ଡ଼ଙ୍ଗାସବୁ ସୁଅମୁହାଁ ଥିବାରୁ କିଛି ଜଣା ପଡ଼ୁ ନ ଥିଲା ।

ରଘୁଜୀ—କ'ଣ କରିବା, ଲଛମନ୍—ଏ' ସ୍ଥାନ ଯେ ଆମ୍ଭମାନଙ୍କୁ ଶୀଘ୍ର ତ୍ୟାଗ କରିବାକୁ ହେବ ?

ଅରୁଣା—କାହିଁକି, ବାବା—ଏଠାରେତ ବାଘର ଗର୍ଜନ ଆଉ ଶୁଭୁ ନାହିଁ ?—ସାତକୋଶିଆ ପତ୍ରୀ ଅନେକ ଦୂରେ ରହିଗଲଣି—ଲୁମ୍ଭୀର ଭୟ ଆଉ କାହିଁକି ?

ରଘୁଜି—ଠିକ୍, ମା'ନ ସେମାନଙ୍କଠାରୁ ଗୋଟିଏ ଭୀଷଣତର ହିଂସ୍ରଜନ୍ତୁର ଭୟ ଯେ ଏଠାରେ ଅଛି, ଅଛି ।

ଅରୁଣା—ଏପରି କି ସେ ଜନ୍ତୁ, ବାବା ?—ସିଂହ ?

ରଘୁଜି—ତା'ଠାରୁ ମଧ୍ୟ ହିଂସ୍ରତର ।

ଅରୁଣା—( ସାମାନ୍ୟ ଭୟରେ ) ସିଂହଠାରୁ ହିଂସ୍ରତର ?

ରଘୁଜି—ତୋ'ର ଭୟ ହେଉଚି ?

ଅରୁଣା—ନ ଶୁଣିବାଯାଏ—ତା'ର ପରାକ୍ରମ ନ ଜାଣିବାଯାଏ, ଭୟ ହେବ କାହିଁ ?

ରଘୁଜି—ଜାଣିଲେ ଶୁଣିଲେ, କ'ଣ ଭୟ କରିବୁ ନାହିଁ ?

ଅରୁଣା—ସାଧ୍ୟ ହେଲେ, ଭୟ କରିବି କାହିଁକି ?

ରଘୁଜି—ସେ ଜନ୍ତୁ ସାଧ୍ୟ—ଅସାଧ୍ୟ ମଧ୍ୟ ।

ଅରୁଣା—ଏପରି ସନ୍ଦେହସ୍ଥଳେ ମୁଁ ନିର୍ଭୟା—କୁହ ବାବା, କି ସେ ଜନ୍ତୁ ?

ରଘୁଜି—( ସସ୍ମିତେ ) ସେ ଜନ୍ତୁ ଆମରି ସ୍ୱଜାତି—

ଅରୁଣା—ଆମରି ସ୍ୱଜାତି ।

ରଘୁଜି—ହଁ, ଆମରି ସ୍ୱଜାତି—ମନୁଷ୍ୟ ।

ଅରୁଣା—( ହସି ) ରହସ୍ୟ ରଖ, ବାବା—ମୋର ଭାରି ଉଦ୍‌ବେଗ ବଢ଼ୁଛି—କୁହ, କି ସେ ଜନ୍ତୁ ?

ରଘୁଜି—ରହସ୍ୟ ନୁହେଁ, ମା—ନିରାଟ ସତ୍ୟ । ଭାବି ଦେଖ୍ ମା, ମନୁଷ୍ୟଠାରୁ ମନୁଷ୍ୟର ପ୍ରଧାନ ଅରି ଅନ୍ୟ କେଉଁ ଜନ୍ତୁ ହୋଇ ପାରେ ? ରାବଣର ପ୍ରଧାନ ଅରି କଣ ନର ବାନର ଥିଲେ ?—କଦାପି ନୁହେଁ—ତା'ର ସ୍ୱଜାତି—ତା'ର ଭାଇ ତା'ର ସହୋଦର ! ମନୁଷ୍ୟହିଁ ଜାଣେ ମନୁଷ୍ୟର ଦୁର୍ବଳତା କେଉଁଠାରେ—ମନୁଷ୍ୟର ପ୍ରଧାନ ଅନ୍ତରାୟ କେଉଁ ବିଷୟରେ ? ସୁତରାଂ ହିଂସ୍ରଜନ୍ତୁ ଅପେକ୍ଷା ହିଂସାପରାୟଣ ମନୁଷ୍ୟଠାରୁ ମନୁଷ୍ୟର ଅଧିକତର ଭୟ—ପୁଣି ସିଂହ, ବ୍ୟାଘ୍ର ପ୍ରଭୃତି ହିଂସ୍ରଜନ୍ତୁଗଣ, ଅନ୍ୟମାନେ ଦୃଷ୍ଟିଗୋଚର ଥିବା ପର୍ଯ୍ୟନ୍ତ ବୈରିତା ଆଚରଣ କରିଥା'ନ୍ତି—ଚକ୍ଷୁର ଅନ୍ତରାଳ ହେବା ମାତ୍ରେ, ସେ ଭାବ ସେମାନଙ୍କର ଅନ୍ତର୍ହିତ ହୋଇଯାଏ, କିନ୍ତୁ ଚତୁର ମନୁଷ୍ୟ-ପରି ହିଂସ୍ରଜନ୍ତୁ, ଥରେ ବୈରଭାବ ପୋଷଣ କଲେ, ଜନ୍ମଜନ୍ମାନ୍ତରରେ ସୁଦ୍ଧା ସେ ଭାବ ଲଙ୍ଘିବା ସେମାନଙ୍କ ପକ୍ଷେ ଦୁଃସାଧ୍ୟ ହୋଇ ପଡ଼େ । ଆହୁରି, ବନ୍ଧୁ ବନ୍ଧୁ ମଧ୍ୟରେ ଶତ୍ରୁତା—ଭାଇ, ଭାଇ ମଧ୍ୟରେ ବିବାଦ—ପିତା, ପୁତ୍ର ମଧ୍ୟରେ ଅପ୍ରୀତି—ଅନ୍ୟ କେଉଁ ଜନ୍ତୁମାନଙ୍କ ମଧ୍ୟରେ ଏତେ ଅଧିକ ଲକ୍ଷିତ ହୁଏ, ମା ?

ଅରୁଣା—ତେବେ, କେଉଁ ଗୁଣରେ ମନୁଷ୍ୟ ଆପଣାକୁ ସୃଷ୍ଟିଶ୍ରେଷ୍ଠ ବୋଲି ଗର୍ବ କରେ, ବାବା ?

ରଘୁଜି—ଯେଉଁ ଗୁଣରେ ସେ ତାହା କରେ—ଯେଉଁ ଗୁଣରେ ମନୁଷ୍ୟ ଅଦର୍ଶ ସୃଷ୍ଟି, ସେ ଗୁଣକୁ ସେ ଶୀର୍ଷସ୍ଥାନ ଦେଉଛି କେଉଁଠି—ତାର ଉତ୍କର୍ଷ ସାଧନରେ ମନ ବଳାଉଛି କେଉଁଠି ?

ଅରୁଣା—କି ସେ ଗୁଣ, ବାବା ?

ରଘୁଜି—ବିବେକିତା—ହିତାହିତ ଜ୍ଞାନ ।—ଯାଉ, ଜଲଦି ଚନ୍ଦ୍ରଓ ଲଛମନ ।

ଲଛମନ—ସବୁର୍, ସବୁର୍, ସା'ବ୍—( ମାଝିମାନଙ୍କୁ ) ଧୀରେ ଧୀରେ, ନାଉରିମାନେ ।

ଅରୁଣା—ବାବା ! ଏ' କଣ ଶତ୍ରୁ ରାଜ୍ୟ ?

ରଘୁଜି—ଏ' ଅଧଃପତିତ ମରହଟ୍ଟାର ବର୍ତ୍ତମାନ କାଏ ଶତ୍ରୁ ନୁହେଁ ମା ? ଯେଉଁ ଜାତିର ଉଦ୍ଦେଶ୍ୟ, ଅଧୁନା ବିଳାସିତା—ବୃତ୍ତି, ପରଦ୍ରବ୍ୟ ଲୁଣ୍ଠନ—ସେ ଜାତିର ଶତ୍ରୁ ଯେ ଘରଆଡ଼େ ହେବା ସ୍ୱତଃସିଦ୍ଧ !

ଅରୁଣା—ତୁମେତ ସ୍ୱଜାତିର ଏପରି ଆଚରଣକୁ ଘୃଣାକର ବାବା ।

ରଘୁଜି—ମୁଁ ଘୃଣା କରେ ବୋଲି, ସମସ୍ତ ଜାତି ତ ଆଉ ଘୃଣା କରେ ନାହିଁ ?

ଅରୁଣା—ଭୋନ୍‌ସଲ ତ, ବାବା ! ତୁମରି ମତାବଲମ୍ବୀ ।

ରଘୁଜି—ସେ କେବଳ ମୌଖିକ, ମା—ତେଉଁକ ମଧ୍ୟ ଯେ କାହିଁକି—( ଅରୁଣା ଆଡ଼େ ସସ୍ନେହେ ଚାହିଁ ) ମା, ମା, ସତେ ସତେ ଏଡ଼େ ସୌଭାଗ୍ୟ ହେବ

ତୋ'ର ? ଆଉ ମୋର ସେହି ଉଚ୍ଚାକାଙ୍‌କ୍ଷା—
(ଦୀର୍ଘନିଶ୍ୱାସ ତ୍ୟାଗ କଲେ)

ଅରୁଣା – (ମୁହଁ ବୁଲାଇନେଇ) ଏହି ଯେ ବାବା ! କୁଆ, କୁକ୍କୁଡ଼ା ରାବିଲେଣି, ସକାଳ ହୋଇ ଆସିଲାଣି ପରା !

ରଘୁଜୀ—ଲଛମନ୍ ! ଜଲଦି, ଜଲଦି ଚଲାଓ—

ଲଛମନ୍—ହାତ ଯୋଡ଼ୁଛି ସାଁନ୍ତେ—ତରବର କରିହୁ ନାହିଁ – ଏ ଗୋଟାଏ ଭାରି ଘାଟି !

ରଘୁଜୀ—ଏଠାରେ ବିଳମ୍ବ କରିବା ଯେ ଗୋଟାଏ ଭାରି ଘାଟି ! (ଦୀର୍ଘନିଃଶ୍ୱାସ ତ୍ୟାଗାନ୍ତେ)—କ'ଣ କରୁଛୁ ?

ଅରୁଣା—ଏତେ ବ୍ୟସ୍ତ ହେଉଚ କାହିଁକି, ବାବା ? ଆମେ ତ ଯୁଦ୍ଧ କରିବାକୁ ଆସିନାହୁଁ ?

ରଘୁଜୀ—ଯୁଦ୍ଧର ଯେ ମଞ୍ଜି ପୋତୁଛୁ ! ବିନା ଅନୁମତିରେ ପରରାଜ୍ୟ ଦେଇ ଯୁଦ୍ଧ-ସାମଗ୍ରୀ ଚଲାଇନେବା—ଏଁକି କମ୍ ଅନ୍ୟାୟ ! ମୁଁ ସିନା ଏ' ପର୍ଯ୍ୟନ୍ତ ଜଣେ ପଣ୍ୟବ୍ୟବସାୟୀ ବୋଲି ପରିଚୟ ଦେଇ ଆସୁଛି, ସେଥି ଯୋଗୁଁ ରକ୍ଷା; ମାତ୍ର ଧରାପଡ଼ି ଯାଏଁ ଯଦି—ଛାଡ଼, ମା ! ତୁ ଭିତରକୁ ଯାଇ ଟିକିଏ ଶୋଇ ପଡ଼ିଲୁ—ସାରାରାତି ଜଗିଲୁଣି – ମୁଁ ଦେଖେଁ, ଏ ଭୀଷଣ ଘାଟିଟା କିପରି ଶୀଘ୍ର ପାର ହୋଇ ପଡ଼ିବା !

ଅରୁଣା—ଏପରି ବିପଦବେଳେ ମୋତେ ଶୋଇବାକୁ କିପରି କହୁଚ ବାବା ?—ମୋ ଦ୍ୱାରା କଣ କିଛି ସାହାଯ୍ୟ ହେବନାହିଁ ? ସାମାନ୍ୟ ହେଉ ପଛକେ, ମୋତେ ଯେ କୌଣସି ଗୋଟାଏ କାର୍ଯ୍ୟଭାର ଅର୍ପଣ କର, ବାବା !

ରଘୁଜୀ—(ସସ୍ମିତେ) ତୋତେ ଗୋଟାଏ କି କାର୍ଯ୍ୟ-ଭାର ଅର୍ପଣ କରିବି, ମା ?

ନାବିକଗଣ—ଜୟ ଶିବ ଶଙ୍କର !

ରଘୁଜୀ—ଅସ୍ତେ, ଅସ୍ତେ !

ଲଛମନ୍—ଘାଟି ପାରହୋଇଚୁଁ, ସାଁନ୍ତେ !

ରଘୁଜୀ—ଜୟ ଶିବ ଶଙ୍କର ! ଏଥର ଖୁବ୍ ଜୋର୍‌ସେ, ଲଛମନ୍ ! ଫର୍‌ଚ୍ଚ ଯେ ହୋଇଗଲାଣି !

ଅରୁଣା—ବାବା ! ଦେଖ, ଦେଖ, ତରୁଣ ଅରୁଣ କିରଣ ସ୍ପର୍ଶରେ ଏହି ପଠାଟି କିପରି ଝଲ୍‌ମଲ୍ କରୁଛି ?

ରଘୁଜୀ—ଜଲ୍‌ଦି, ଜଲ୍‌ଦି, ଲଛମନ୍ ! ଏ' ପଠାର ନାମ ଜାଣୁ, ଅରୁ ?

ଅରୁଣା—କି ନାମ, ବାବା ?

ରଘୁଜୀ—ହୀରାକୁଦ !

ଅରୁଣା—ହୀରାକୁଦ ! ଏ' କି କଣ ଗୋଟାଏ ହୀରାର କୁଦ ?

ରଘୁଜୀ—ଗୁଣ ଅନୁସାରେହିଁ ନାମ କରଣ ହୋଇଛି !

ଅରୁଣା—ଏ ରାଜ୍ୟ ତା'ହେଲେ ଭାରି ସମୃଦ୍ଧିଶାଳୀ ହୋଇଥିବ ?

ରଘୁଜୀ—ବୋଲିବାକୁ ଅଛି ! ମାତ୍ର—

ଅରୁଣା—'ମାତ୍ର' କହି, ଚୁପ୍‌ହେଲ ଯେ, ବାବା ?

ରଘୁଜୀ—ଏହାହିଁ ରାଜ୍ୟର କାଳସ୍ୱରୂପ !—ଜଲ୍‌ଦି ଲଛମନ୍ !

ଅରୁଣା—ବାବା ! ବୃକ୍ଷାନ୍ତରାଳରେ ଯେଉଁ ମନ୍ଦିରଟି ଦିଶୁଚି, ସେଇଟି କି ମନ୍ଦିର ?

ରଘୁଜୀ—(ପ୍ରଣାମ କରି) ପ୍ରଣାମ କର, ମା—ଏ' ସେହି ସର୍ବବାଞ୍ଛାକଳ୍ପତରୁ ସମଲେଶ୍ୱରୀଙ୍କ ମନ୍ଦିର !

ଅରୁଣା—କଣ କହୁଚ, ବାବା ? (ପ୍ରଣାମକରି) ମା ସମଲେଶ୍ୱରୀଙ୍କ ମନ୍ଦିର ? ତେବେ କଣ ଏ' ସେହି ଭୁବନବିଖ୍ୟାତ ସମ୍ବଲପୁର ?

ରଘୁଜୀ—ହଁ, ମା—ଜଲ୍‌ଦି ଚଲାଓ, ଲଛମନ୍, ଜଲ୍‌ଦି—

ଅରୁଣା—କି ମହିମାମୟ ଦୃଶ୍ୟ ଏ' ସୁନ୍ଦର, ବାବା ! —ନିମ୍ନସ୍ତରରେ ଖଣ୍ଡ ଶୈଳବିଭୂଷିତା ପୁଣ୍ୟ-ତୋୟା ମହାନଦୀ 'କଲ କଲ' ନାଦରେ କି ଏକ ହୃଦୟସ୍ପନ୍ଦନକାରୀ ମହାସଙ୍ଗୀତ ଗାନ କରୁ କରୁ, ମାତୃଭୂମିର ପାଦମୂଳ କ୍ଷାଳନ ପୂର୍ବକ, 'ତର ତର' ବେଗରେ କେଉଁ ମହାର୍ଣ୍ଣବର ସବକ ସଙ୍ଗମୋଦ୍ଦେଶ୍ୟରେ ପ୍ରଧାବିତ ହେଉଅଛି—ମଧ୍ୟସ୍ତରରେ, ହରିତଫେନ ସୁଶୋଭିତ ସୁବର୍ଣ୍ଣ୍ଣପୂର୍ଣ୍ଣ

ଶ୍ୟାମଳ ବକ୍ଷୋଦେଶେ ପରିବେଷ୍ଟିତ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗସମ ପ୍ରସ୍ତର ସ୍ତୂପ ସଂରକ୍ଷିତ, ମହାମୂଲ୍ୟ ରତ୍ନଭଣ୍ଡାର ବିଶାଳ ସ୍ୱାରକ୍ଷ—କୌସ୍ତୁଭ ଲାଞ୍ଛିତ ଯଥା, ସଗର୍ବେ, ସର୍ବ ସମ୍ମୁଖେ ବିରାଜ କରୁଅଛି ।—ଊର୍ଦ୍ଧ୍ୱସ୍ତରକୁ ନିରୀକ୍ଷଣ କର, ଆକାଶର ନିର୍ମଳ ନୀଳିମା ଭେଦକରି ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ, ସର୍ବ ବିଘ୍ନବିନାଶିନୀ ସମେଲେଶ୍ୱରୀଙ୍କର ପବିତ୍ର ପୂଜାମନ୍ଦିରଧ୍ୱଜାଗ୍ର ଲୋହିତ ବୈଜୟନ୍ତୀ—ଦୁର୍ଗଶିଖରସ୍ଥ ଜୟପତାକା ସହ ବାୟୁଲହରୀରେ ନାନା ରଙ୍ଗେ ଭଙ୍ଗେ ନୃତ୍ୟ କରୁ କରୁ, ଧର୍ମାଗ୍ରଣୀ ହିନ୍ଦୁଜାତିର ଯେମନ୍ତ ଜଗତ୍‌-ବ୍ୟାପୀ ବିଜୟ ଘୋଷଣା କରୁଅଛି—ଅହା ! କି ସୁନ୍ଦର—କି ମନୋହର—କି ପବିତ୍ରତାମୟ ଏ' ସ୍ଥାନ ବାବା ?

[ ବିଭୋର ହୋଇ ରହିଁ ରହିଲେ ]

ରଘୁଜି—ଧନ୍ୟ, ଧନ୍ୟ ଏ' ରାଜ୍ୟ ! ଧନ୍ୟ, ଧନ୍ୟ ଏହାର ଅଧିବାସୀଗଣ ।

ଅରୁଣା—ଏମାନେ ଓଡ଼ିଆ ତ ବାବା ?

ରଘୁଜି—ହଁ, ମା, ଏମାନେ ଓଡ଼ିଆ—ଫୁର୍ତ୍ତିସେ, ଲଛମନ୍ !

ଅରୁଣା—କି ଉନ୍ନତ ଜାତି ଏହି ଓଡ଼ିଆ, ବାବା ! ଯେଉଁମାନଙ୍କର ଶିଳ୍ପଚାତୁର୍ଯ୍ୟ—ରଣପାଣ୍ଡିତ୍ୟ ବୀର୍ଯ୍ୟ ଶୌର୍ଯ୍ୟ—ଶମ୍ଭୁଜଠାରୁ ଶୁଣୁ ଶୁଣୁ ମୁଁ ଅସ୍ତ୍ର-ଜ୍ଞାନ-ଶୂନ୍ୟା ହୋଇ ପଡ଼େ, ଯେଉଁମାନଙ୍କର ଭୁବନବିଜୟୀ ସୁବର୍ଣ୍ଣକେଶରୀ, ପୁରୁଷୋତ୍ତମଦେବ ପ୍ରଭୃତିଙ୍କର ବୀର-କାହାଣୀ ଅଦ୍ୟାପି ମୋର କର୍ଣ୍ଣକୁହରରେ ବିଧ୍ୱନିତ ହେଉଅଛି—ଯେଉଁମାନଙ୍କର ବୀର-ରମଣୀମାନଙ୍କର ସତୀତ୍ୱପ୍ରଭା ଅଦ୍ୟାପି ଜଗତକୁ ଜ୍ୟୋତିର୍ମୟ କରି ରଖିଅଛି—ଦେଖ, ଦେଖ, ବାବା ! ଓଡ଼ିଶାର ସେହି ସୁବର୍ଣ୍ଣ ଯୁଗର ସ୍ମୃତି ମାତ୍ରେ, ମୋର ସର୍ବାଙ୍ଗ କିପରି ରୋମାଞ୍ଚିତ ହୋଇ ଉଠୁଛି ।—ଶମ୍ଭୁଜ ବର୍ଣ୍ଣନା କରୁ କରୁ, ଠିକ୍ ଏହିପରି ରୋମାଞ୍ଚିତ ହୋଇ ଉଠିଥା'ନ୍ତି—ପୁଣି, କି ଏକ ଅପୂର୍ବ ଜାତୀୟ ସଙ୍ଗୀତରେ ଆକାଶ ଅବନୀ ପ୍ରତିଧ୍ୱନିତ କରିଦେଇ, କ୍ଷିପ୍ତ ପ୍ରାୟ ନାଚି ଉଠିଥା'ନ୍ତି !—ବାବା ! ଏହି ପରାକ୍ରାନ୍ତ ଜାତିସଙ୍ଗେ ଆମ୍ଭେମାନେ ପ୍ରତିଦ୍ୱନ୍ଦିତା ଆଚରଣ କଲେ, କେବେ କି ଜୟୀ ହେବୁଁ ?

ରଘୁଜି—ସମ୍ମୁଖ ଯୁଦ୍ଧରେ ଅବଶ୍ୟ ନୁହେଁ—କିନ୍ତୁ କୌଶଳଯୁଦ୍ଧରେ ମରହଟ୍ଟାକୁ ହଟାଇବାକୁ ପୃଥିବୀରେ ଏ' ପର୍ଯ୍ୟନ୍ତ କୌଣସି ଜାତି ଜନ୍ମଗ୍ରହଣ କରିନାହିଁ ।

ଅରୁଣା—ଶମ୍ଭୁଜ ମଧ୍ୟ ଠିକ୍ ସେହି କଥା କହୁଥା'ନ୍ତି ।

ରଘୁଜି—ମାତ୍ର, ମୁଁ ସର୍ବଦା ସମ୍ମୁଖ ଯୁଦ୍ଧପ୍ରିୟ ! ଅଚ୍ଛା, ଅରୁ ! ଶମ୍ଭୁଜି ପ୍ରତି ତୋର କିପରି ସନ୍ଦେହ ହୁଏ ନାହିଁକି ?

ଅରୁଣା—କାହିଁପାଇଁ, ବାବା ?

ରଘୁଜି—ସେ ନିଶ୍ଚୟ ଜଣେ ଛଦ୍ମବେଶୀ ଓଡ଼ିଆ—ତା'ନହେଲେ ମରହଟ୍ଟା ହୋଇ ଓଡ଼ିଆର ଏତେ ପ୍ରଶଂସା କରେ କାହିଁକି ? ଫୁର୍ତ୍ତିସେ, ଲଛମନ୍ !

ଅରୁଣା—ପ୍ରଶଂସନୀୟ ବିଷୟରେ ପ୍ରଶଂସା କରିବାରେ ଆପତ୍ତି କଣ, ବାବା ?

ରଘୁଜି—ତୋତେ ଦେଖୁଚି, ଏକାବେଳେକେ ଭୁଲାଇ ରଖିଛି । ମୋର କିନ୍ତୁ ପୂର୍ଣ୍ଣ ସନ୍ଦେହ ହୁଏ, ଯେପରି କି ସେହି ଜଣେ ଓଡ଼ିଆ ବୀରପୁରୁଷ ମରହଟ୍ଟା କୌଶଳ ଶିଖିବା ନିମନ୍ତେ ଛଦ୍ମବେଶ ଓ ଛଦ୍ମ ନାମରେ ଆମ୍ଭମାନଙ୍କର ପରିବାରଭୁକ୍ତ ହୋଇଛି । ତା' ନହେଲେ, ସେ ଜଣେ ସାଧାରଣ ହୀନ ନିରକ୍ଷର ଯଦି, ତା'ର ଏତେ ପ୍ରତିଭା ଦେଖାଯିବ କିପରି—ଆମ୍ଭମାନଙ୍କର ନାନାବିଧ ଜଟିଳ ରଣ-କୌଶଳ ଏତେ ଅନାୟାସରେ ଆୟତ୍ତ କରିନେବ କିପରି ? ଅଚ୍ଛା, ଏଥର ଫେରିଯାଏଁ—ଆଉ ବିଳମ୍ବ ନୁହେଁ, ଲଛମନ୍ ! ଫୁର୍ତ୍ତିସେ—ଫୁର୍ତ୍ତିସେ—

ଅରୁଣା—ତୁମ୍ଭରିତ ସବୁ ବିଷୟରେ ସନ୍ଦେହ, ବାବା !—ଏ କ'ଣ, ବାବା ? ସାଁ, ସାଁ କରି କାନପାଖ ଦେଇ କ'ଣ ଗୁଡ଼ାଏ ଗଲିଗଲା ?

ଲଛମନ୍—ସର୍ବନାଶ, ସା'ନ୍ତେ—ତୀର, ତୀର !

ଅନ୍ୟ ନାବିକ—ଓହୋ ! ଜାନ୍ ଗିଅ—ଜାନ୍ ଗିଅ ( ପାଣିରେ ପଡ଼ିଗଲା । )

[ ନେପଥ୍ୟେ ଘନ ଘନ ଗୁଳିଗୁଳାର ମଧ୍ୟ ଶବ୍ଦ ହେଲା ]

ରଘୁଜୀ—ସର୍ବନାଶ—ସର୍ବନାଶ—ଏଥର ଧରିପଡ଼ିଲୁଁ—ଶତ୍ରୁ ଆକ୍ରମଣ କରୁଛି—ମା ! ଭିତରକୁ ଯା—ଲଛମନ୍ ! ତୁମ୍ଭେମାନେ ଅନ୍ୟ ସମସ୍ତ ନୌକା ଛାଡ଼ିଦେଇ ଏହାକୁ କେବଳ ରକ୍ଷାକର—ଏଥିରେ ଯେ ମୋର—ମୋର ମା—ମା ! ମା ! ( ଆଲିଙ୍ଗନ କରିବାକୁ ଗଲାବେଳେ )

ଲଛମନ୍—ବାରୁଦ ଡ଼ଙ୍ଗାରେ ନିଆଁ ଲାଗିଛି ସା'ବ୍ରେ !

ଅନ୍ୟ ନାବିକ—ଓହୋ, ଜାନ୍‌ଗିୟା—ଜାନ୍ ଗିୟା ।

ରଘୁଜୀ—ଆଉ ରକ୍ଷାନାହିଁ—ଆଉ ରକ୍ଷାନାହିଁ—ମା ! ମା !

ଅରୁଣା—ବାବା ! ବାବା ! ( ପରସ୍ପରକୁ ଆଲିଙ୍ଗନ କଲେ )

[ ନେପଥ୍ୟେ 'ଚଲାଅ ଗୁଳି, ଚଲାଅ ତୀର' ଶୁଣାଗଲା—ନୌକାସବୁ ବୁଡ଼ବୁଡ଼ ହେଲା—ରଘୁଜୀ ଓ ଅରୁଣା ନଦୀଗର୍ଭେ ପତିତ ହେଲେ—କେତେବେଳେ ଭାସି ଉଠୁଥିଲେ, କେତେବେଳେ ବା ବୁଡ଼ି ଯାଉଥିଲେ ]

ରଘୁଜୀ—ମା !

ଅରୁଣା—ବାବା !

---

## ଦ୍ୱିତୀୟ ଦୃଶ୍ୟ

—ମନ୍ତ୍ରଣା କକ୍ଷ—

[ ଅଭୟସିଂହ ଓ ଆକବରଖାଁ ପ୍ରବେଶ କଲେ ]

ଅଭୟସିଂହ—ସମସ୍ତେ ବୁଡ଼ି ମରିଛନ୍ତି ?

ଆକବରଖାଁ—ସମସ୍ତେ, ମହାରାଜ !

ଅଭୟସିଂହ—ଏପରି ଆଚରଣ ଆମ୍ଭର ନ୍ୟାଯ୍ୟ ହୋଇଛି ତ ?

ଆକବରଖାଁ—ନ୍ୟାଯ୍ୟ ଅନ୍ୟାଯ୍ୟ, ଏ'କଥା ବିଚାର କରିବାର ପ୍ରୟୋଜନ କଣ ?

ଅଭୟସିଂହ—ଯୁଦ୍ଧର କାରଣଟା ଆମର ଆଉ ଉଠିଲା ସିନା ?

ଆକବରଖାଁ—କାହିଁକି ?—ଆମର ବିନା ହୁକୁମରେ, ଆମର ରାଜ୍ୟଦେଇ ଏପରି ଗୁପ୍ତଭାବେ ସୁନ୍ଦମାଲ୍ ଚାଲାଣ ଦେବାଟା କଣ ଅନ୍ୟାଯ୍ୟ ନୁହେଁ ?

ଅଭୟସିଂହ—ତା'ତ ଠିକ୍, ମାତ୍ର ଏପରିଭାବେ ହଠାତ୍ ଆକ୍ରମଣ କରିବା ପୂର୍ବରୁ, ମାଲ୍ ସବୁ ଅଟକ ରଖି, ଇଂରେଜମାନଙ୍କ କୈଫିୟତ୍ ତଲବ୍ କରିବା ଉଚିତ ଥିଲା ତ ।

ଆକବରଖାଁ—କାହିଁକି ? ବର୍ତ୍ତମାନ ମଧ୍ୟ ତାହା କରିବାରେ ବାଧା କଣ ?

ଅଭୟସିଂହ—ମାଲସବୁ ନଷ୍ଟ କରିସାରି ?

ଆକବରଖାଁ—ଆମେ ନଷ୍ଟ କରିଛୁ କାହିଁକି ?—କହିଦେବା, ସେମାନଙ୍କର ଅସାବଧାନତା ଦୋଷରେ ଏପରି ଘଟିଛି ।

ଅଭୟସିଂହ—ପ୍ରମାଣ ?

ଆକବରଖାଁ—ସେମାନେ ଆଗେ ପ୍ରମାଣ କରନ୍ତୁ, ଆମେ ମିଥ୍ୟା କହୁଛୁଁ ବୋଲି !—କହିବାକୁ କି ବାଟ ରଖିଛି, ମହାରାଜ !—ସମସ୍ତ ଆରୋହୀ ଯେ ନଦୀଗର୍ଭସ୍ଥ ।

ଅଭୟସିଂହ—ଅରେ ପୃଥ୍ୱୀସିଂହ ସଙ୍ଗେ ପରାମର୍ଶକରି ଏ' କାର୍ଯ୍ୟ କରିବା କଣ ଉଚିତ ନଥିଲା ?

ଆକବରଖାଁ—ସେଇଟା କାଲିକା ଟୋକା—ସେ କି ପରାମର୍ଶ ଦେବ ?

ଅଭୟସିଂହ—ଏ' କଣ କହୁଚ, ମନ୍ତ୍ରୀ ମହାଶୟ ? ଏ' କଥା ତୁମପରି ମନ୍ତ୍ରୀମୁଖରେ କି କେବେ ଶୋଭାପାଏ ? ଯେତେହେଲେ ସେ ସେନାପତି—ରାଜ୍ୟର ଶୁଭାଶୁଭର ଦାୟିତ୍ୱ ତା'ର ସ୍କନ୍ଧରେ; ସୁତରାଂ ତା' ସଙ୍ଗରେ ପରାମର୍ଶ ନ କରି କୌଣସି କାର୍ଯ୍ୟ କରିବା କି ନ୍ୟାଯ୍ୟ ସଙ୍ଗତ ? ଆଲୋଚନାନ୍ତେ ପରାମର୍ଶ ଗ୍ରାହ୍ୟ କିମ୍ବା ଅଗ୍ରାହ୍ୟ କରାଯାଇଥା'ନ୍ତା ସିନା !

ଆକବରଖାଁ—ଅବଶ୍ୟ, ମହାରାଜ ! ତେବେ—

[ ପୃଥ୍ୱୀସିଂହର ପ୍ରବେଶ ]

ପୃଥ୍ୱୀସିଂହ—ମହାରାଜ ! ଦାସର ଧୃଷ୍ଟତା ମାର୍ଜନା କରି ସ୍ୱଜାର୍ଜିତ ରାଜ-କର୍ମଚାରୀର ନିଦର୍ଶନ ସ୍ୱରୂପ ଏହି ମହାମୂଲ୍ୟ ଶିରସ୍ତ୍ରାଣ ଓ ତରବାରି ଗ୍ରହଣ କରନ୍ତୁ ! ଆଜି ଦାସକୁ ଚିରଦିନ ନିମନ୍ତେ ଏହି ଗୁରୁ-କାର୍ଯ୍ୟଭାରରୁ ଅବ୍ୟାହତି ପ୍ରଦାନ କରନ୍ତୁ— ( ଶିରସ୍ତ୍ରାଣ ଓ ତରବାରି ରାଜାଙ୍କ ଚରଣ ତଳେ ରଖିଦେଲେ )

ଅଭୟସିଂହ—( ଅକବର ଆଡ଼େ ସ୍ପଷ୍ଟ ଦୃଷ୍ଟିପାତ ପୂର୍ବକ ରୁକ୍ଷସ୍ୱରରେ ) ପୃଥ୍ୱୀସିଂହ !

ପୃଥ୍ୱୀସିଂହ—ମହାରାଜ !

ଅଭୟସିଂହ—ଏ' ତୁମ୍ଭର ଆଜି କି ଅବୈଧାଚରଣ ?

ପୃଥ୍ୱୀସିଂହ—ଏହାର ତାତ୍ପର୍ଯ୍ୟ—ମନ୍ତ୍ରୀମହାଶୟ ଉପସ୍ଥିତ ଅଛନ୍ତି, ଉତ୍ତମ ରୂପେ ବୁଝାଇ ଦେବେ ।

ଆକବରଖାଁ—ସଂଯତ ହୁଅ, ସେନାପତେ !

ପୃଥ୍ୱୀସିଂହ—ଏ' ଉପଦେଶ ପ୍ରଦାନ ପୂର୍ବରୁ, ତାହା ଆଗେ ପ୍ରତିପାଳନ କରିବା ଉଚିତ ଥିଲା, ମନ୍ତ୍ରୀମହାଶୟ !

ଅଭୟସିଂହ—ସେନାପତେ !

ପୃଥ୍ୱୀସିଂହ—ଏ' ମୌଖିକ ସମ୍ବୋଧନରେ କି ପ୍ରୟୋଜନ ମହାରାଜ ?

ଅଭୟସିଂହ—ମୌଖିକ !

ପୃଥ୍ୱୀସିଂହ—ମହାରାଜ !—ସାନୁଗ୍ରହ ଆଦେଶ କରିବେ କି—ଏହି ରାଜ୍ୟର ଅସ୍ତ୍ର ଶସ୍ତ୍ର ବିନିଯୋଗାଦି ଯୁଦ୍ଧ ବିଷୟରେ କିଏ ସମ୍ପୂର୍ଣ୍ଣ ଅଧିକାରପ୍ରାପ୍ତ ?

ଅଭୟସିଂହ—ସେନାପତି ପୃଥ୍ୱୀସିଂହ ।

ପୃଥ୍ୱୀସିଂହ—ତା' ହେଲେ, ଅନ୍ୟ କୌଣସି କର୍ମଚାରୀ କ'ଣ ସେନାପତିର ଅଜ୍ଞାତସାରରେ ବା ବିନା-ପରାମର୍ଶରେ, ସେ ବିଷୟରେ ଅଧିକାର ଦାବୀ କରିପାରେ ବା ଆଧିପତ୍ୟ ବିସ୍ତାର କରିପାରେ ?

ଅଭୟସିଂହ—ଅସମ୍ଭବ । ତେବେ ଏପରି କର୍ମଚାରୀ ଅଛନ୍ତି, ବା ଏପରି କ୍ଷମତା ପ୍ରାପ୍ତ ବ୍ୟକ୍ତି ଅଛନ୍ତି, ଯେ କି ସେନାପତିର ବିନା ପରାମର୍ଶରେ ଯୁଦ୍ଧ ଘୋଷଣା କରି ପାରନ୍ତି, କିମ୍ବା ତାହା ସ୍ଥଗିତ ରଖି ପାରନ୍ତି; ମାତ୍ର ଯୁଦ୍ଧ ସମୟରେ, ଯୁଦ୍ଧବେଳେ ନିଜେ ରାଜା ମଧ୍ୟ ସେନାପତିର ଅଧୀନ—ସାମାନ୍ୟ ସୈନିକ ମାତ୍ର ।

ପୃଥ୍ୱୀସିଂହ—ତେବେ ଆଜିକା ଘଟନାରେ ଦାୟୀ କିଏ —ଆମ୍ଭ ଥରେ ବୁଝିବା ହେଉନ୍ତୁ ।

ଅଭୟସିଂହ—ବୁଝିବାକୁ ମୋର ବାକି କିଛି ନାହିଁ, ସେନାପତେ ! ସେହି ବିଷୟ ଯେଉଁ ବର୍ତ୍ତମାନ ତର୍କବିତର୍କ ଚାଲିଥିଲା—ତାଙ୍କର କୈଫିୟତ୍ ମାତ୍ର ଶୁଣିବାକୁ ବାକି—ଏହି ସମୟରେ ତୁମ୍ଭର ଆଗମନ ।—ତୁମ୍ଭର ଆଗମନ ଦେଖି ମୁଁ ଉତ୍ଫୁଲ୍ଲ ହେଉଥିଲି, ଯେହେତୁ ତୁମ୍ଭର ଉପସ୍ଥିତିରେ ଆମ୍ଭର ତର୍କର ମୀମାଂସାଟା ଦ୍ରୁତ ଓ ସହଜରେ ହୋଇଯିବାର କଥା; ମାତ୍ର ଏ' କଣ ଦେଖିଲି ? —ପୃଥ୍ୱୀସିଂହର ଆଜି ଏ'କି ଅଚିନ୍ତିତପୂର୍ବ-ଆଚରଣ ? ଏ'କି ସ୍ୱପ୍ନାତୀତ ଭାବପରିବର୍ତ୍ତନ ?—ପୃଥ୍ୱୀସିଂହ ! ତୁମ୍ଭେ ଯୁବକ ଜାଣି ସୁଦ୍ଧା ତୁମ୍ଭକୁ ଯେ ଏହି ଗୁରୁଭାର ଅର୍ପଣ କରିଥିଲି, ତା'ର କାରଣ ଜାଣ କି ? ତୁମ୍ଭେ ଇତର ଯୁବକ ନୁହଁ ବୋଲି, ଏ' ପର୍ଯ୍ୟନ୍ତ ମୋର ଧ୍ରୁବଧାରଣା ଥିଲା—ତୁମ୍ଭେ ଯୁବକ ସ୍କନ୍ଧରେ ବୃଦ୍ଧର ମସ୍ତିଷ୍କ ଧାରଣ କରିଛ ବୋଲି ଏ' ଯାବତ୍ ମୋର ଦୃଢ଼ ବିଶ୍ୱାସ ଥିଲା । ମାତ୍ର, ଆଜି ଦେଖୁଛି, ସେ ଧାରଣା ସମ୍ପୂର୍ଣ୍ଣ ଭ୍ରାନ୍ତ—ସେ ବିଶ୍ୱାସ ଏକାନ୍ତ ଅମୂଳକ । ଯୁବକ—ଚିରଦିନ ଯୁବକ—ଶିକ୍ଷା ଦୀକ୍ଷା ଦ୍ୱାରା ପ୍ରକୃତିର ପରିବର୍ତ୍ତନ ଅସମ୍ଭବ । —ମନ୍ତ୍ରୀ ମହାଶୟ ! ତୁମ୍ଭେ ସେଦିନ ଠିକ୍ କହିଥିଲ—ବିଶାଳ ସମ୍ବଲପୁର ସାମ୍ରାଜ୍ୟର ସେନାନାୟକ କିନା ଜଣେ ସ୍ୱଳ୍ପମତି, ଅଳ୍ପବୟସ୍କ ଯୁବକ—ସେ ଉକ୍ତି ଯଥାର୍ଥ । ତା' ସଙ୍ଗେ ଆଜି ମୁଁ ଆହୁରି ଯୋଗ କରିଦିଏଁ, କେବଳ ସେତିକି ନୁହେଁ—ଜଣେ ଆତ୍ମସମ୍ମାନଶୂନ୍ୟ ଉଦ୍ଧତ, ଭକ୍ତିହୀନ ଯୁବକ—

ଅକବରଖାଁ—ସ୍ତମ୍ଭିତ ମଣିଷ ଚିତ୍ରବତ୍ଛନ୍ତି ।

ପୃଥ୍ୱୀସିଂହ—ମହାରାଜ ! ଆଜ ଏ' କ'ଣ ଶୁଣାଇଲେ ? ଆଜ ଏ' କି ଆଖ୍ୟା ପ୍ରଦାନ କଲେ ? ମହାରାଜ ! କାହା ପ୍ରସାଦରୁ ଏ' ମୂଢ଼ ଆଜ ମନୁଷ୍ୟପଦବାଚ୍ୟ ହୋଇଛି—କାହା କରୁଣାରୁ ଏ' ଅଧମ ଆଜ ଉଚ୍ଚ ସେନାପତି ପଦରେ ଅଧିରୂଢ଼ ହୋଇଛି ?—ମିନତି କରୁଛି, ମହାରାଜ ! ବାକ୍ୟରେ କିମ୍ବା କାର୍ଯ୍ୟରେ ଯଦି କୌଣସି ତ୍ରୁଟି ଘଟିଥାଏ ତାହା କେବଳ ଅଜ୍ଞାନତାବଶତଃ—ସେହି ଅଜ୍ଞାନତା ମାର୍ଜନା କରି ଅଧମକୁ ଶ୍ରୀଚରଣରେ ସ୍ଥାନ ଦିଅନ୍ତୁ, ମହାରାଜ !

ଅଭୟସିଂହ—ପୃଥ୍ୱୀସିଂହ, ଉଠ ! ମୁଁ ତୁମ୍ଭଙ୍କୁ ମାର୍ଜନା କରୁଛି; କିନ୍ତୁ ବଡ଼ ପରିତାପର ବିଷୟ ଯେ, ତୁମ୍ଭେ ଏତେଦୂର ଜ୍ଞାନୀହୋଇ, ଏତେବଡ଼ ବୀର ହୋଇ—ଏତିକି ଟିକିଏ ଆତ୍ମସଂଯମ ଆଜ ସୁଦ୍ଧା ଅଭ୍ୟାସ କରି ପାରିଲ ନାହିଁ ?—ଅଭିମାନରେ ଜ୍ଞାନଶୂନ୍ୟ ହୋଇ, ଏକାବେଳକେ ରାଜସମ୍ମୁଖରେ, ରାଜା-ପ୍ରଦତ୍ତ ଦାନ ନିକ୍ଷେପ କରିଦେବାକୁ ସାହସ କଲ ?—ଜାଣ ନା କି, ପୃଥ୍ୱୀସିଂହ ! ଏପରି ଆଚରଣ ରାଜା ପ୍ରତି କେତେଦୂର ଅପମାନ-ସୂଚକ—ଆତ୍ମମର୍ଯ୍ୟାଦା ପ୍ରତି କେତେଦୂର କ୍ଷତି-କାରକ ?

ପୃଥ୍ୱୀସିଂହ—ମହାରାଜ ! ଦାସର ଧୃଷ୍ଟତା ମାର୍ଜନା କରନ୍ତୁ !

ଅଭୟସିଂହ—ମନ୍ତ୍ରୀ ମହାଶୟେ ! ପ୍ରକୃତରେ ତୁମ୍ଭେ ଅନ୍ୟାୟ କରିଛ--ସେନାପତିର ବିନା ପରାମର୍ଶରେ ଏପରି ଭାବରେ ଅସ୍ତ୍ର ଶସ୍ତ୍ର ପ୍ରୟୋଗ କରିବା କଦାପି ଉଚିତ ହୋଇନାହିଁ !

ଅକବରଖାଏ—ଏତିକି କ'ଣ ଏ' ଦାସ ଜାଣେ ନାହିଁ, ମହାରାଜ ?

ଅଭୟସିଂହ—ତେବେ ତୁମ୍ଭର ଉଦ୍ଦେଶ୍ୟ ?

ଅକବରଖାଏ—ମୋର ଉଦ୍ଦେଶ୍ୟ ଶୁଣନ୍ତୁ, ମହାରାଜ ! —ମୁଁ ଯେ ସେନାପତି ଅଳ୍ପବୟସ୍କ କିମ୍ବା ଅପରିପକ୍ୱ ବୋଲି, ତାଙ୍କର ପରାମର୍ଶ ଗ୍ରହଣ କରିନାହିଁ, ତାହା ନୁହେଁ; ସେ ସେନାପତି—ତାଙ୍କର କର୍ତ୍ତବ୍ୟ-ସୀମାରେ ହସ୍ତକ୍ଷେପ କରିବାର ଅଧିକାର ଅବଶ୍ୟ ମୋର ନାହିଁ— ଏହା ମଧ୍ୟ ରାଜନୀତି ବିରୁଦ୍ଧ; ତଥାପି ମୁଁ ଏ' ବିରୁଦ୍ଧାଚରଣ କରିଛି, କେବଳ ପ୍ରଭୁଙ୍କ ମଙ୍ଗଳ ସକାଶେ —ଦେଶର ମଙ୍ଗଳ ସକାଶେ !

ଅଭୟସିଂହ—ତେବେ କ'ଣ କେହି ବିଶ୍ୱାସଘାତକତା କରିଛି ?—କିଏ କରିଛି ?—କି ଷଡ଼ଯନ୍ତ୍ର ? ଶୀଘ୍ର ପ୍ରକାଶ କର !—କେହି ଅଛ ? ରକ୍ଷୀ !

( ଥରେ ପୃଥ୍ୱୀସିଂହ ଆଡ଼େ—ଥରେ ଅକବରଖାଏ ଆଡେ—ଥରେ ନେପଥ୍ୟକୁ ଚାହିଁବାକୁ ଲାଗିଲେ )

ଅକବରଖାଏ—ଅସ୍ଥିର ହେବାର କାରଣ ନାହିଁ, ମହାରାଜ !—

ଅଭୟସିଂହ—କୁହ, କୁହ, ଶୀଘ୍ର ପ୍ରକାଶ କର !—କାହିଁ ରକ୍ଷୀ ?

ଅକବରଖାଏ—ପ୍ରଭୁ ଜାଣନ୍ତି ଯେ, ପୃଥ୍ୱୀସିଂହ ମହାରାଣୀଙ୍କ ଯୁଦ୍ଧ-କୌଶଳ ଶିଖିବା ନିମନ୍ତେ ଛଦ୍ମବେଶ ଧାରଣ ପୂର୍ବକ ରଘୁଜୀରାଓଙ୍କ ପରିବାର ମଧ୍ୟରେ ବାସ କରୁଥିଲେ—ଆତ୍ମରକ୍ଷା ନିମନ୍ତେ ସେମାନଙ୍କ ସଙ୍ଗେ ଯେ କିପରି ସୌହାର୍ଦ୍ଦ୍ୟ ଜନ୍ମାଇଥିଲେ, ତାହାର ଆପଣ ତାଙ୍କର ପ୍ରତ୍ୟେକ ପତ୍ରରୁ ଆଭାସ ପାଇଥିବେ— ସେହି କୃତ୍ରିମ ସୌହାର୍ଦ୍ଦ୍ୟ ଯେ ଅକୃତ୍ରିମ ସୌହାର୍ଦ୍ଦ୍ୟରେ ପରିଣତ ହୋଇନାହିଁ, ଏହା କିଏ ନିଶ୍ଚୟ କରି କହିବ ? ସୁତରାଂ ଏପରି ଅବସ୍ଥାରେ ପୃଥ୍ୱୀସିଂହ ସେମାନଙ୍କୁ ଯେ ଛାଡ଼ି ନ ଦେବେ, ଆଶ୍ଚର୍ଯ୍ୟ କ'ଣ ?—ମାନବ ପ୍ରକୃତି ପକ୍ଷେ ବରଂ ଏହା ସ୍ୱାଭାବିକ, ନୁହେଁ କି ?

ଅଭୟସିଂହ—ଠିକ୍ କହିଛ, ମନ୍ତ୍ରୀ ! ସେନାପତେ ! ଏପରିସ୍ଥଳେ ତୁମ୍ଭର ଦୁଃଖିତ ହେବା ବା ଅପମାନ ବୋଧକରିବା କଦାପି ଉଚିତ ନୁହେଁ !

ପୃଥ୍ୱୀସିଂହ—ଅପମାନ ବୋଧ କରିବି ନାହିଁ—ଦୁଃଖିତ ହେବିନାହିଁ, ମହାରାଜ ? ଏହାଠାରୁ ଆଉ କି ଜଘନ୍ୟ ସ୍ଥଳ ହୋଇପାରେ, ଯେଉଁଠାରେ ବୀର, କର୍ତ୍ତବ୍ୟନିଷ୍ଠ-ଭୃତ୍ୟ ଅପମାନ ବୋଧକରିବ ନାହିଁ ବା ଦୁଃଖିତ ହେବନାହିଁ ?—ଯେଉଁ ଭୃତ୍ୟ ପ୍ରଭୁଙ୍କର ବିଶ୍ୱାସଭାଜନ ହେବାକୁ ଅକ୍ଷମ—ଯେଉଁ

ବୀର ନିଜର କର୍ତ୍ତବ୍ୟ ପାଳନରେ ମାୟା-ମମତାର ବଶୀଭୂତ ହୋଇପଡ଼େ—ସେ ବୀରର ବୀରତ୍ୱ କେଉଁଠାରେ ?—ସେ ଭୃତ୍ୟର ମନୁଷ୍ୟତ୍ୱ କେଉଁଠାରେ ?—ଏପରି ହେୟ, ନୀଚପ୍ରାଣ ଧାରଣ କରିବାଠାରୁ ତା'ର ମୃତ୍ୟୁ ଶତଗୁଣେ ଶ୍ରେୟସ୍କର ନୁହେଁ କି ? ଏ' କଠୋର କର୍ତ୍ତବ୍ୟପୂର୍ଣ୍ଣ ମନୁଷ୍ୟ-ଜୀବନ ଯେ କେବଳ ତ୍ୟାଗ-ଭିତ୍ତି ଉପରେ ଗଢ଼ିଛି, ତାହା ଯେ ପାଶୋରି ଯାଏ, ସେ ହିତାହିତଜ୍ଞାନଶୂନ୍ୟ ପଶୁଠାରୁ କେଉଁ ଗୁଣରେ ଶ୍ରେଷ୍ଠ ମହାରାଜ ?—ମନ୍ତ୍ରୀଙ୍କ ବାକ୍ୟଶେଳରେ ଆଜି ଯେଉଁ ବିଷମ ଯନ୍ତ୍ରଣା ଅନୁଭବ କରୁଛନ୍ତି—ଶତ୍ରୁର ଗୁପ୍ତ ଶେଳବିଦ୍ଧ ହୋଇଥିଲେ ବୋଧହୁଏ, ଏତେଦୂର ଅନୁଭବ କରି ନ ଥା'ନ୍ତି । ମିନତି କରୁଛି, ମହାରାଜ ! ଅଧମକୁ ବିଶ୍ୱାସ କରନ୍ତୁ—ତା'ର ଚରିତ୍ରରେ କଦାପି ସନ୍ଦିହାନ ହେଉନ୍ତୁ ନାହିଁ । ସବୁ ସମ୍ପଦ ତା' ଠାରୁ କାଢ଼ି ନିଅନ୍ତୁ ପଛକେ, ଏ' ଅମୂଲ୍ୟ ସମ୍ପଦରୁ ତା'କୁ କଦାପି ବଞ୍ଚିତ କରନ୍ତୁ ନାହିଁ । ଅଦ୍ୟାପି ଯେବେ ଏ' ଅଧମ ପ୍ରତି ତିଳପରିମାଣ ବିଶ୍ୱାସ ଥାଏ, ତେବେ ଶୁଣନ୍ତୁ ମହାରାଜ ! କେବଳ କର୍ତ୍ତବ୍ୟ ନିମନ୍ତେ, ରାଜକାର୍ଯ୍ୟ ତ୍ରୁଟି ଭୟରେ, ଏ' ଦାସ ଯେଉଁ ତ୍ୟାଗ ସ୍ୱୀକାର କରିଛି—ଯେଉଁ ପ୍ରଲୋଭନକୁ ଚିନ୍ତାପଥରୁ ମଧ୍ୟ ବହିଷ୍କୃତ କରିଦେଇଛି, ତାହା ଯୁବକ ପକ୍ଷେ ଅସମ୍ଭବ—ସଂସାରୀ ପକ୍ଷେ ନିତାନ୍ତ ଦୁଃସାଧ୍ୟ ।—ବର୍ତ୍ତମାନ ତାହା ବର୍ଣ୍ଣନା କରି ପ୍ରଗଲ୍‌ଭତା ଦେଖାଇବି ନାହିଁ, ଅବସର ଉପସ୍ଥିତ ହେଲେ, କୁସୁମ ଆପେ ତାର ଶୋଭା ପ୍ରକାଶ କରିବ—ସୌରଭ ବିସ୍ତାର କରିବ ।

ଅଭୟସିଂହ—ସାଧୁ, ସାଧୁ, ପୃଥ୍ୱୀସିଂହ ! ତୁମ୍ଭେ ମୋର ଉପଯୁକ୍ତ କର୍ମଗୁରୁ ।

[ ଶକ୍ତର ପ୍ରବେଶ ]

ଶକ୍ତ—ଏପରିଭାବେ ଭାଇବନ୍ଧୁଙ୍କ ବିନାଶ କରିବା ଦ୍ୱାରା ଯେବେ ଲୋକ ଉପଯୁକ୍ତ ହୁଏ, ଆଉ ସାଧୁବାଦର ପାତ୍ର ହୁଏ, ତେବେ ଦସ୍ୟୁ ତସ୍କରମାନଙ୍କୁ ଘୃଣା କରିବାର ପ୍ରୟୋଜନ କ'ଣ ?

ଅଭୟସିଂହ—ମା, ଶକ୍ତ ଯେ—କଥା କ'ଣ ?

ଶକ୍ତ—ପିତା ! ଆପଣ ରାଜାହୋଇ କ'ଣ ଏହିପରି ଉପଦେଶ ଦେଇଥିଲେ ଯେ ଗୋପନଭାବରେ କେତେଗୁଡ଼ିଏ ନିରୀହ ନୌକା-ଯାତ୍ରୀଙ୍କୁ—ଅସ୍ମମାନଙ୍କର ପ୍ରଜାତିଙ୍କୁ, ନୃଶଂସଭାବେ ବୁଡ଼ାଇ ମାରିପକାଇବାକୁ ?

ଆକ୍‌ବରରାଏ—ସେମାନେ ବିଦେଶୀ, ଜେମାଦେଈ ।

ଶକ୍ତ—ତାହାହେଲେ ଯେ ଅସ୍ମମାନଙ୍କର ଅତିଥି—ପୂଜାର ଯୋଗ୍ୟ ।

ଅଭୟସିଂହ—ସେମାନେ ଶତ୍ରୁ ଯେ ମା ।

ଶକ୍ତ—ଶତ୍ରୁ ଯଦି—ସମ୍ମୁଖ ଯୁଦ୍ଧରେ ବଳକଷାକଷି ନ ହେଲା କାହିଁକି ?

ଆକ୍‌ବରରାଏ—ଚୋରର ସହିତ ଚୋରପରି ଆଚରଣ କରିବାହିଁ ବିଧି ।

ଶକ୍ତ—ତେବେ, ଚୋର ସାଧୁ ମଧ୍ୟରେ ପାର୍ଥକ୍ୟ ରହିଲା କେଉଁଠି ?

ଆକ୍‌ବରରାଏ—ରଣନୀତିର ଅନ୍ତର୍ଗତ ଏହା ଏକପ୍ରକାର କୌଶଳ, ଜେମାଦେଈ ।

ଶକ୍ତ—ନାରୀ ବଧ—ପୁଣି ନିରୀହ ବାଳକାବଧ, କ'ଣ ତୁମ୍ଭର ରଣ-କୌଶଳ, ମନ୍ତ୍ରି ମହାଶୟ !

ଅଭୟସିଂହ—କଦାପି ନୁହେଁ । ଏପରି କ'ଣ ଘଟିଛି ?—କିଏ ଏପରି ଆଦେଶ ଦେଲା ?

ଶକ୍ତ—ଆଜି ତେବେ ଏ' କି ଆଚରଣ ତୁମ୍ଭର, ସେନାପତେ ? କାହାର ଆଦେଶରେ—କେଉଁ ବିଚାରରେ, ତୁମେ ନିଃସହାୟା—ପରମାସୁନ୍ଦରୀ ଗୋଟିଏ ଯୁବତୀକୁ ଜଳମଗ୍ନା କରାଇଦେଲ ?—ହାୟ ! ହାୟ ! ମୁଁ ସ୍ୱଚକ୍ଷୁରେ ଦେଖିଛି, ଅଭାଗିନୀ କେତେ ଯତ୍ନକଲା—କେତେବେଳେ ଗୋଟିଏ ପଟାତନ ଧରି ଭାସି ରହିବାକୁ, କେତେବେଳେ ଗୋଟିଏ ଚୋର ପାହାଡ଼ର ଅଗ୍ରଭାଗ ଧରି ଅଟକି ରହିବାକୁ, କେତେବେଳେ ବା ହାତ ଗୋଡ଼ ଛାଟି ପହଁରିବାକୁ; ମାତ୍ର ସବୁ ଅକାରଣ

ହୋଇଗଲ — ନଦୀର ଖରସ୍ରୋତ ଓ ଗ୍ରୀଷ୍ମ-ଅବର୍ତ୍ତିରେ ପଡ଼ି ଅଗ୍ରଗାମୀ ଢେଉଁଅଡ଼େ ଅନ୍ତର୍ହିତା ହୋଇଗଲା । ହାୟ ! ହାୟ ! ସେ କାତର ଦୃଶ୍ୟ ଅଦ୍ୟାପି ମୋ ଆଖି ଆଗରେ ନାଚୁଛି—ମୋର ହୃଦୟ ତନ୍ତ୍ରୀକୁ ଛିନ୍ନଭିନ୍ନ କରି ଦେଉଛି । ସେନାପତେ ! ତୁମ୍ଭର ବୀରତ୍ୱ ଦେଖି ମୁଁ ଚମତ୍କୃତ ହୋଇଥିଲି—ବୁଦ୍ଧିମତ୍ତା ଦେଖି ମୁଗ୍ଧ ହୋଇଥିଲି, ମାତ୍ର ତୁମ୍ଭର ଏପରି କ୍ରୂରକାର୍ଯ୍ୟ ଯୋଗୁ ତୁମ୍ଭର ମୁଖ ଦର୍ଶନ କରିବାକୁ ମଧ୍ୟ ମୋର ଘୃଣା ବୋଧ ହେଉଛି ।

ଅଭୟସିଂହ— ସେନାପତେ । ଦେଖ, ଦେଖ—ଯଦି ସେ ବାଳକାର ଉଦ୍ଧାର ହୋଇପାରେ— ( ସକ୍ରୋଧେ ) ମନ୍ତ୍ରି !—

ଅକବରଶ୍ରୀ—କ୍ଷମାକରନ୍ତୁ, ମହାରାଜ ! ଏହା ଅଜ୍ଞାତସାରେ ଘଟିଛି—ମୁଁ ଏହିକ୍ଷଣି ଏହାର ପ୍ରତିକାର କରୁଛି । ( ଅକବରଶ୍ରୀଙ୍କ ପ୍ରସ୍ଥାନ )

ଶକ୍ତି—ତୁମ୍ଭେ ଠିଅହୋଇ ରହିଲ ଯେ, ସେନାପତେ ?—ଏଁକି ଭାବ ଅଜ ?— ରାଜାଦେଶସତ୍ତ୍ୱେ ନିଶ୍ଚଳ ନିସ୍ପନ୍ଦ ହୋଇ ଠିଅହୋଇ ରହିଛ, କପରି ?

ଅଭୟସିଂହ—ମା ! ତା'ର କାରଣ ଅଛି—ଏ' କାର୍ଯ୍ୟ ସେନାପତି ଦ୍ୱାରା ଅନୁଷ୍ଠିତ ନୁହେଁ ।

ଶକ୍ତି—ତା' ହେଲେ ତ, ଅଦ୍ଭୁତ ଆଶ୍ଚର୍ଯ୍ୟ ଯେ ଗୋଟିଏ ବାଳିକାର ଏପରି ବିପଦ ଜାଣି ସୁଦ୍ଧା, ପୃଥ୍ୱୀସିଂହପରି ବୀର ଆଜ ନିଶ୍ଚଳ, ନିସ୍ପନ୍ଦଭାବେ ଠିଅହୋଇ ରହିଛି !

ଅଭୟସିଂହ—ପ୍ରକୃତରେ ପୃଥ୍ୱୀ ! ଏପରି ଭାବ ତୁମ୍ଭ ପକ୍ଷେ ଅତୀବ ବିରଳ ! ଯେଉଁ ପୃଥ୍ୱୀସିଂହ ଯୁଦ୍ଧ କ୍ଷେତ୍ରରେ ସୁଦ୍ଧା ସ୍ୱହସ୍ତରେ ଆପଣାର ପାନୀୟ ନେଇ ଶତ୍ରୁର ତୃଷ୍ଣା ନିବାରଣ କରିବାକୁ ଧାଇଁ ଯାଏ—ଅପମାନିତହୋଇ ସୁଦ୍ଧା, ଦୁର୍ବଳ ବୋଲି, ଅପମାନକାରୀକୁ ଆଲିଙ୍ଗନ ପାଶରେ ଆବଦ୍ଧ କରିଦିଏ—ସେ ଆଜ ଏପରି ବିପଦ ଶୁଣି, ଗୋଟିଏ ନିରୀହା ବାଳିକାର ବିପଦ ଜାଣି ସୁଦ୍ଧା, କପରି ନିଶ୍ଚଳ ନିସ୍ପନ୍ଦଭାବେ ଠିଅହୋଇ ରହିଛି । ଅଭିମାନ ତ୍ୟାଗକର, ପୃଥ୍ୱୀ—ଏତେଦୂର ଅଭିମାନ ବୀରପକ୍ଷେ ନିତାନ୍ତ ଅଶୋଭନୀୟ !

ପୃଥ୍ୱୀସିଂହ—( ସ୍ୱଗତ ) ଏ' ଅଭିମାନ ନୁହେଁ, ମହାରାଜ—ଏ' ତ୍ୟାଗ—ଯା'ର ଫଳେ ମାତ୍ର ବ୍ୟଥା ଶୁଣିଲା କ୍ଷଣି, ହୃଦୟ-ତନ୍ତ୍ରୀ ଖଣ୍ଡଖଣ୍ଡ ଛିନ୍ନଭିନ୍ନ ହୋଇ ଯିବାର କଥା—ତା ର ଏପରି ବିପଦ ସ୍ୱଚକ୍ଷୁରେ ଦର୍ଶନ କରି, ପ୍ରାଣାନ୍ତକ ବିପଦ ଜାଣି ସୁଦ୍ଧା, ପୃଥ୍ୱୀସିଂହ କି କେବେ ନିର୍ଜୀବ କାଷ୍ଠ-ପୁତ୍ତଳିକା ତୁଲ୍ୟ ନିଶ୍ଚଳ ନିସ୍ପନ୍ଦ ଭାବେ ଏଠାରେ ଛିଡ଼ାହୋଇ ରହୁଥା'ନ୍ତା ! ସେ ପ୍ରତିବନ୍ଧକ--ମୋର କର୍ତ୍ତବ୍ୟପଥର କଣ୍ଟକ,—ତାର ନିଷ୍କାସନ ଆବଶ୍ୟକ—ତାର ବିନାଶ ସର୍ବଥା ପ୍ରୟୋଜନୀୟ ।

ଅଭୟସିଂହ—ଏତେ ଭାବୁଛ କଣ ସେନାପତେ ? ତୁମ୍ଭେ ପରା କର୍ତ୍ତବ୍ୟପରାୟଣ ବୋଲି ଗର୍ବ କର ? — ଏହିକି ତୁମ୍ଭର କର୍ତ୍ତବ୍ୟ ପରାୟଣତା ?

ପୃଥ୍ୱୀସିଂହ—କାହିଁକି, ମହାରାଜ ?—( ସ୍ୱଗତ ) ମୁଁ କଣ ମୋ'ର କର୍ତ୍ତବ୍ୟ କରୁନାହିଁ—ମୋର କର୍ତ୍ତବ୍ୟପଥ ପରିଷ୍କାର କରିବା କି ମୋର କର୍ତ୍ତବ୍ୟ ନୁହେଁ ? ( ରହି ) ଏ' କଣ ? ଏଁକି ଦଂଶନ ଅନୁଭବ କରୁଛି ! ମୁଁ ଦୁର୍ବଳ ?—କାହିଁକି ? —ଜଣଙ୍କର ପ୍ରାଣ ବିନାଶ କରି ମୋର ପଥ ପରିଷ୍କାର କରୁଛି ବୋଲି ?—ପ୍ରଲୋଭନ ସମ୍ମୁଖରୁ ଲୁଚିରହି ମୋର କାର୍ଯ୍ୟ କରୁଛି ବୋଲି ? ବେଶ୍—ଯେତ କଣ ? ଦୂର—ଦୂର—ଦୂର୍ ଭଣ୍ଡଛ —ପ୍ରଲୋଭନକୁ ଅତିକ୍ରମ କରି, କାର୍ଯ୍ୟ କରିବାହିଁ ପ୍ରକୃତ ବୀରତ୍ୱ—ପ୍ରାଣୀର ପ୍ରାଣ ରକ୍ଷାକରି, ସ୍ୱ-ପଥରେ ଅଗ୍ରସର ହେବାହିଁ ପ୍ରକୃତ କର୍ତ୍ତବ୍ୟପାଳନ । ( ପ୍ରକାଶ୍ୟେ ) ମହାରାଜ ! ମହାରାଜ ! କ୍ଷଣିକ ଦୌର୍ବଲ୍ୟବଶତଃ ମୁଁ କର୍ତ୍ତବ୍ୟ-ଜ୍ଞାନଶୂନ୍ୟ ହୋଇଥିଲି—ମୋତେ କ୍ଷମା କରନ୍ତୁ !—ଦେଖିଁ, କାତର୍ଯ୍ୟାକାରରେ କେତେଦୂର କ୍ଷମ ହେଉଛି । ( ବେଗେ ପ୍ରସ୍ଥାନ )

ଅଭୟସିଂହ—ପୃଥ୍ୱୀସିଂ ଭ୍ରାତ ଅଭିମାନୀ । ଆ, ମା ।

ଶଙ୍କ—ଏପରି କ୍ଷେତ୍ରରେ ମାନ, ଅଭିମାନ ପ୍ରକୃତ ବୀର ପକ୍ଷେ କଦାପି ଶୋଭନୀୟ ନୁହେଁ, ବାବା ।

( ଉଭୟଙ୍କ ପ୍ରସ୍ଥାନ )

[ ବିପରୀତ ଦିଗରୁ ମଧୂର ବେଗେ ପ୍ରବେଶ ]

ମଧୂ—ଜେମାଦେଈ କାହାନ୍ତି ? ଏଠାରେ ମଧ ଦେଖୁନାହିଁ ଯେ—କିପରି ତାଙ୍କୁ ପ୍ରଳୟ ତଥ୍ୟଟା ଶୁଣାଇବି ? ଲୋକେ କହନ୍ତି, ଗୋଟିଏ ଗୋଟିଏ ଯୁଗପରେ ପ୍ରଳୟ ହୁଏ—ପୁରାତନ ସୃଷ୍ଟି ନଷ୍ଟହୋଇ ନୂତନ ସୃଷ୍ଟି ସ୍ଥାପିତ ହୁଏ—ଏ' କିପରି ଅବୈଜ୍ଞାନିକ କଥା ? ଯେଉଁ ବସ୍ତୁ ଥରେ ଅଣୁପରମାଣୁରେ ପରିଣତ ହେଲା, ତାହା ପୁଣି ସ୍ୱେଚ୍ଛାରେ ପୂର୍ବ ଅବସ୍ଥାକୁ ପ୍ରାପ୍ତହେବ କିପରି ? ଉତ୍ତର ହୋଇପାରେ, ନିର୍ମାତାଙ୍କ ଅବସ୍ଥିତିରେ ଏହା ଅସମ୍ଭବ ନୁହେଁ । ମାତ୍ର ନିର୍ମାତାଙ୍କର ଅସ୍ତିତ୍ୱ ସ୍ୱୀକାର କରିବାକୁ ଯିବ କାହିଁକି ? ସମସ୍ତ ବିଷୟ ବିଶ୍ଳେଷଣ କରି ଦେଖିଲେ, ବୈଜ୍ଞାନିକ ନିୟମ ଦ୍ୱାରା ପ୍ରକୃତ ଅବଦ୍ଧ । ଅନ୍ଧ, ଅଜ୍ଞାନ କେବଳ ଈଶ୍ୱର-ଅସ୍ତିତ୍ୱ ବିଶ୍ୱାସ କରିପାରେ—ଜ୍ଞାନୀ, ବୈଜ୍ଞାନିକ କରିବେ କାହିଁକି ? 'ପ୍ରଳୟ, ପ୍ରଳୟ' ବୋଲି ଲୋକେ ଯେପରି ଗୋଟାଏ ଆକାଶ ପାତାଳ କଳ୍ପନା କରନ୍ତି—କିମ୍ବା, ଯେପରି ମିଥ୍ୟା ପୌରାଣିକ ବର୍ଣ୍ଣନାରେ ଆସ୍ଥା ସ୍ଥାପନ କରନ୍ତି, ପ୍ରକୃତରେ କ'ଣ ତାହା ସେହିପରି ? କଦାପି ନୁହେଁ । ଏହୁ ଯେ ଜେମାଦେଈ ! ଶୁଣ, ଶୁଣ—

[ ଶଙ୍କର ପୁନଃ ପ୍ରବେଶ ]

ଶଙ୍କ—କିଏ, ମଧୁଭାଇ ! ଗଲ, ଦେଖିଲ—ସେମାନେ ବୋଧହୁଏ ଉଦ୍ଧାର କରିପାରିଲେ ନାହିଁ ।

ମଧୂ—କେହି ପାରିବ ନାହିଁ, ଜେମାଦେଈ—ପ୍ରକୃତ ଥରେ ନିୟମର ବହିର୍ଭୂତ ହେଲେ, ପୁନରାୟ ତାକୁ ନିୟମାବଦ୍ଧ କରିବା ଅସମ୍ଭବ—ଏହି ତ ପ୍ରଳୟ ।

ଶଙ୍କ—ପ୍ରଳୟର ବ୍ୟାଖ୍ୟା ମୁଁ ତୁମକୁ ପଚାରୁ ନାହିଁ, ମଧୁଭାଇ—ଏହି ନଦୀରେ ଯେଉଁ ପ୍ରଳୟ ଘଟିଛି, ତାହାର ଉଦ୍ଧାର ନିମନ୍ତେ ମିନତି କରୁଛି, ଭାଇ —ଗଲ—ଗଲ—

ମଧୂ—( ସହାସ୍ୟେ ) ଏ'କି ବିଚିତ୍ର ଅନୁରୋଧ, ଜେମାଦେଈ ? ପ୍ରଳୟର ଉଦ୍ଧାର କି କେବେ ସମ୍ଭବ—ତୁମ୍ଭେ ନିଶ୍ଚୟ ପ୍ରଳୟର ଅର୍ଥ ବୁଝିପାରି ନାହଁ—ଶୁଣ—

ଶଙ୍କ—ଥାଉ ତୁମ୍ଭର ପ୍ରଳୟ ବ୍ୟାଖ୍ୟା, ମଧୁଭାଇ । ଦେଖ ଯେ ଗୋଟିଏ ନିରାହା ବାଳିକା ନଦୀ ଗର୍ଭରେ ନିମଜ୍ଜିତା—ଯାଅ, ତାଙ୍କୁ କିପରି ଉଦ୍ଧାର କର ।

ମଧୂ—ଗୋଟିଏ ଜଳମଗ୍ନାର ଉଦ୍ଧାର ନିମନ୍ତେ ଏତେ ଉଦ୍ବିଗ୍ନା କାହିଁକି ଜେମାଦେଈ ? କିଛିକ୍ଷଣ ଅପେକ୍ଷା କରନା, ସେତ ଆପେ ଆପେ ଉଦ୍ଧାର ପାଇବ ।

ଶଙ୍କ—ଆପେ ଆପେ ଉଦ୍ଧାର ପାଇବ ! କିପରି ? କିପରି ?—କୁହ ? କୁହ ?

ମଧୂ—( ସହାସ୍ୟେ ) ଜେମାଦେଈ ! ଏ' ଗୋଟାଏ ଆଶ୍ଚର୍ଯ୍ୟର ବିଷୟ କ'ଣ ? ଏ'ତ ସାମାନ୍ୟ କଥା —ଗଣିତର ପ୍ରଥମ ସୂତ୍ର ପରି, ବିଜ୍ଞାନର ପ୍ରାଥମିକ ତତ୍ତ୍ୱ—ଯେ କୌଣସି ବସ୍ତୁର ପରିମାଣଠାରୁ ସେହି ପରିମାଣ ଜଳ ଗୁରୁତର ହେଲେହିଁ, ପୂର୍ବୋକ୍ତ ବସ୍ତୁ ଭାସି ଉଠେ ।—ସେହିପରି—

ଶଙ୍କ—ମୁଁ ଗଣିତ, ବିଜ୍ଞାନ ବୁଝେ ନାହିଁ—ମୋତେ ସରଳ କଥାରେ ବୁଝାଇ ଦିଅ—କୁହ, ସେ ଉଦ୍ଧାର ପାଇବ ତ ?

ମଧୂ—ଏତିକ ବୁଝି ପାରୁନାହଁ, ଜେମାଦେଈ—ଲାସ୍ ସବୁ ଭାସି ଉଠେ କାହିଁକି ?

ଶଙ୍କ—ମୁଁ କଣ ଲାସ୍ ଉଦ୍ଧାର କରିବାକୁ ତୁମକୁ ଅନୁରୋଧ କରୁଥିଲି ? ନିର୍ବୋଧ ! ଆହା ! ନିରାହା ବାଳିକାଟି—ତାକୁ କ'ଣ ବଞ୍ଚାଇ ପାରିବ ନାହିଁ ?

ମଧୂ—ବଞ୍ଚାଇବେ କିପରି ? ଆମର ମାନବ-ଶରୀର ପକ୍ଷେ ଯେ ଏହାହିଁ ଗୋଟାଏ ପ୍ରଳୟ !

ଶକ୍ତି—ତା'ର କାରଣ ତୁମେହିଁ ମାନବ ।—ଯାଏଁ, ଦେଖେଁ, ସେମାନେ କଣ କଲେ । ( ପ୍ରସ୍ଥାନ )

ମଧୁ—ପ୍ରଳୟର ନୂତନ ବ୍ୟାଖ୍ୟାଟା ଶୁଣିଗଲ ନାହିଁ, ଜେମାଦେଈ !—ମୂର୍ଖବୋଲି ପିନା ଉଡ଼ାଇ ଦେଲ, ପରେ କିନ୍ତୁ ବୁଝିବ ।—ତୁମେ ମୋର ନୂତନ ବ୍ୟାଖ୍ୟାସବୁ ଶୁଣିବାକୁ ଶ୍ରଦ୍ଧା କର ବୋଲି ଅସିଥିଲି,—ହଉ, ଆଜି ନ ଶୁଣିଲ—ଆଉ ଦିନେ ଅସିବି । ହାୟ ! ବିଜ୍ଞାନ ନ ପଢ଼ିଲେ ମାନବ କି ଦୁର୍ବଳମତି ହୁଏ । ନିୟମର ବହିର୍ଭୂତ ହେଲେ ପ୍ରଳୟ ନିଶ୍ଚୟ—ପୁନରୁଦ୍ଧାର ଅସମ୍ଭବ—ସେ ମାନବ ଦେହ ହେଉ ବା ବିଶ୍ୱବ୍ରହ୍ମାଣ୍ଡ ହେଉ; ସୁତରାଂ, ଏଥିରେ ଆଶ୍ଚର୍ଯ୍ୟ ବା ଅକ୍ଷେପର ବିଷୟ କଣ ରହିଲା ? ଯାଉ, ଆଜି ପୁଣି ସୃଷ୍ଟିର କାରଣଟା ନିର୍ଦ୍ଦେଶ କରିବାକୁ ହେବ । ( ପ୍ରସ୍ଥାନ )

[ ଶକ୍ତିର ବେଗେ ପୁନଃ ପ୍ରବେଶ ]

ଶକ୍ତି—ନା, ସେମାନେ ପାରିଲେ ନାହିଁ—ସମସ୍ତେ ଅକୃତକାର୍ଯ୍ୟ ହୋଇ ଫେରି ଆସିଲେ—ହାୟ ! ମନୁଷ୍ୟର ମନୁଷ୍ୟ ପ୍ରତି—ନିଜ ନିଜ ଭାଇ ପ୍ରତି ପୁଣି କି ନିଷ୍ଠୁରତା । ଏ କାତର ଦୃଶ୍ୟଦେଖି, ମନୁଷ୍ୟର ହୃଦୟ ସମ୍ଭାଳି ରହିବା କିପରି !

[ ମଧୁର ପୁନଃ ପ୍ରବେଶ ]

ମଧୁ—ପ୍ରଳୟ ତଥ୍ୟଟା—

ଶକ୍ତି—ପ୍ରଳୟ, ପ୍ରଳୟ କରି ମୋତେ ବିରକ୍ତ କର ନା, ମଧୁଭାଇ—ଶୀଘ୍ର ତୁମ୍ଭେ ଏଠୁ 'ପ୍ରଳୟ' ହେଲ ।

[ ଅକବରଗିଏଙ୍କ ପ୍ରବେଶ ]

ମଧୁ—ପ୍ରଳୟ —( ପିତାଙ୍କୁ ଦେଖି ସଭୟେ ପ୍ରସ୍ଥାନ )

ଅକବରଗିଏ—ହେଲନାହିଁ ଜେମାଦେଈ !

ଶକ୍ତି—ଏତେ ବିଳମ୍ବରେ କି ହୁଏ ? ( ଦୀର୍ଘ ନିଃଶ୍ୱାସ ତ୍ୟାଗାନ୍ତେ ) ଅଚ୍ଛା ମନ୍ତ୍ରୀ କକା ! ମଧୁଭାଇର କିଛି ଯତ୍ନ ନେଉନା କାହିଁକି ? ସେ କ'ଣ ଏହିପରି ପାଗଳ ହୋଇ ସାରା ଜୀବନ ବୁଲୁଥିବ ?—ଏତେ ଗୁଡ଼ାଏ ପଢ଼ି ଶୁଣି କ'ଣ ଏହିପରି ଭୂତ ହୋଇ ରହିଥିବ ?

ଅକବରଗିଏ—ସେ କପାଳ କଥା, ଜେମାଦେଈ—କପାଳକଥା ।—ମଧୁ ଆଜି ମଣିଷ ହୋଇଥିଲେ —( ଦୀର୍ଘ ନିଶ୍ୱାସ ତ୍ୟାଗ କଲେ )

ଶକ୍ତି—ତୁମେ ଚେଷ୍ଟା କର, ମନ୍ତ୍ରୀ କକା—ଔଷଧର ବ୍ୟବସ୍ଥା କର, ନିଶ୍ଚୟ ସେ ଭଲ ହୋଇଯିବ ।—ଅତି ଗୁଡ଼ାଏ ପଢ଼ିବା ଶୁଣିବା ଦ୍ୱାରା ସେପରି ଘଟିଛି—ମୁଁ ମଧ୍ୟ ଯତ୍ନ କରିବି ।—ହାୟ ! ମନୁଷ୍ୟର ଦୁରବସ୍ଥା ଦେଖି, ମନୁଷ୍ୟର ହୃଦୟ ସମ୍ଭାଳି ରହେ କିପରି ? ( ପ୍ରସ୍ଥାନ )

ଅକବରଗିଏ—ମଧୁ ! ମଧୁ ! କି କୁଗ୍ରହରେ ଜନ୍ମ ତୋର ! ଏତେ ପଢ଼ି ଶୁଣି ଶେଷେ ପାଗଳ ହୋଇ ବୁଲିଲୁ ?—କାହିଁ ମନେ କରିଥିଲି, ତୋତେ ସେନାପତି ପଦରେ ପ୍ରତିଷ୍ଠିତ କରି, ରାଜଜେମା ସଙ୍ଗେ ବିବାହ ଦେଇ, ରାଜା କରାଇବି—ମୋର ବଂଶ-ଗୌରବ ଫେରାଇ ଆଣିବି; ମାତ୍ର, ଫଳରେ ଘଟିଲା କ'ଣ, ନା ତୁ ଗୋଟିଏ ବଦ୍ଧ ପାଗଳ ହୋଇ ବୁଲିଲୁ—ମାନ-ମର୍ଯ୍ୟାଦା ସବୁ ତଳେ ପକାଇଲୁ ।—ଏ' କ'ଣ ସତ୍ୟ ? ମୋର ପୁତ୍ର ପାଗଳହୋଇ ବୁଲୁଥିବ, ଆଉ ରାଜ-ପଦରେ ଜଣେ ପଥର ଭଙ୍ଗାଳି ବରିତ ହେବାକୁ ଯିବ ? ମାନ ବୁଦ୍ଧି ସମ୍ପନ୍ନ— ( ହସି ) ଅକବରଗିଏ ଥାଉଁ ଥାଉଁ, ଅସମ୍ଭବ—ଅସମ୍ଭବ । ଗୋଟିଏ ଷଡ଼ଯନ୍ତ୍ର ନିଷ୍ଫଳ ହୋଇଛି ବୋଲି କଣ ଅନ୍ୟ ଉପାୟ ନାହିଁ ?—ଅଭୋନ୍‌ସଲା । ସେ ଏଥର ନିଶ୍ଚୟ ଯୁଦ୍ଧ ଘୋଷଣା କରିବ । ତା'ପର—ତା'ପର—ପ୍ରତିଶୋଧ । ( ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

—ପ୍ରମୋଦ ଉଦ୍ୟାନ—

[ ମାଳତୀ ଗୋଟିଏ ବେଦିକା ଉପରେ ବସି ଗୀତ ଗାଉଥିଲା ]

ମାଳତୀ— —ଗୀତ—

ହେ ସୁନ୍ଦର ! ମନୋହର !
ସୁନ୍ଦର ତୁମେ ଅତି ସୁନ୍ଦର ।
ସୁନ୍ଦର ତବ ଶୋଭେ ଶଶୀ ସୁନ୍ଦର କୁମୁଦିନୀ ହସି
ସୁନ୍ଦର ଗନ୍ଧେ ମୋଦେ ଭରି
ଆକାଶ ଅବନୀ ପ୍ରୀତିଭରି—
ସୁନ୍ଦର ତୁମେ ଅତି ସୁନ୍ଦର ।
ବାହାରେ ଅନ୍ତରେ ନିରନ୍ତର ॥

ମାଳତୀ—( ଚାରିଆଡ଼େ ନିରୀକ୍ଷଣ କରି ) କି ସୁନ୍ଦର ! କି ସୁନ୍ଦର ! ( ହଠାତ୍ ଉଦ୍ୟାନରେ ଗୋଟିଏ ହରିଣୀକୁ ପ୍ରବେଶ କରିବାକୁ ଦେଖି ) ଏ'କଣ ? କି ସୁନ୍ଦର ହରିଣୀଟିଏ ? ଏପରି ବ୍ୟାକୁଳ ଭାବେ ଦୌଡ଼ୁଛି କାହିଁକି ? କିଏ ଗୋଡ଼ାଉଛି । କେଡ଼େ ନିଷ୍ଠୁର ସେ । ଅହା ବିଧାତାର କି ସୁନ୍ଦର ସୃଷ୍ଟି । ଏପରି ସୌନ୍ଦର୍ଯ୍ୟ ପୁଣି ନଷ୍ଟ କରିବାକୁ ଲୋକର ମନ ବଳେ ? ଆ, ଆ—ନା, ନା—ତୁ ପଳା, ପଳା ।

[ କୁମାରର ଧନୁର୍ବାଣ ହସ୍ତେ ପ୍ରବେଶ ]

କୁମାର—ମାଳତି ! ଏଣେ ଗୋଟାଏ ହରିଣୀକୁ ଦୌଡ଼ିଯିବାକୁ ଦେଖିଚ କି ?

ମାଳତୀ—( ସଭୟେ ) କାହିଁ ? ନା'ତ ।

କୁମାର—ହଁ ଦେଖିଚ—କୁହ, କୁହ ।

ମାଳତୀ—ମୁଁତ ବସି ବସି, ମନେ ମନେ ଗୀତ ଗାଉଥିଲି ।

କୁମାର—ତା' ହେଲେ ନିଶ୍ଚୟ ହରିଣୀ ଏଣେ ଆସିଚି । ଯାଏଁ ଦେଖେଁ, ସଞ୍ଜ ହୋଇ ଆସିଲାଣି । ( ପ୍ରସ୍ଥାନୋଦ୍ୟତ ହେଲାବେଳେ ମାଳତୀ ବାଧାଦେଲା )

ମାଳତୀ—କୁମାର !

କୁମାର—କ'ଣ କହିବାର ଅଛି ? ମୁଁ ଏହିକ୍ଷଣି ଫେରିଆସୁଛି । ଦେଖୁ ନାହିଁ, ଶିକାରଟା ଯେ ହାତଛଡ଼ା ହୋଇଯାଉଛି ।

ମାଳତୀ—ସେହି ଶିକାର ସମ୍ବନ୍ଧରେହିଁ ତୁମକୁ କହିବାର ଅଛି ।

କୁମାର—ଶିକାର ହାତକୁ ନ ଆସୁଣୁ ?

ମାଳତୀ—ଏହିତ ଉପଯୁକ୍ତ ସମୟ ।

କୁମାର—ଆଚ୍ଛା, ମୁଁ କବାବ ଦେଉଛି, ଏ' ଶିକାର ଆଜି ତୁମର । ଛାଡ଼ ଏବେ, ମୁଁ ଯାଏଁ ।

ମାଳତୀ—ଏ' ଶିକାର ଯଦି ମୋତେ ଆଜି ଦାନ କରୁଛ କୁମାର ! ତେବେ ଏ' ଶିକାର ଆଜି ମୋତେହିଁ କରିବାକୁ ଦିଅ ।

କୁମାର—ତୁମେ ଆଜି ଶିକାର କରିବ, ମାଳ ?—ବେଶ୍—ବେଶ୍ ତେବେ ନିଅ, ଏହି ମୋର ଧନୁଶର ଦେଉଛି ।

ମାଳତୀ—ମୁଁ ବିନା ଧନୁଶରରେ ଶିକାର କରିବି, କୁମାର !

କୁମାର—ବିନା ଧନୁଶରରେ ଶିକାର ?

ମାଳତୀ—ମୁଁ କରିପାରିବି, କୁମାର—ପୁଣି ଜୀଅନ୍ତା । ଆଶ୍ଚର୍ଯ୍ୟ ହେଉଛ ଯେ ?

କୁମାର—ହାଃ—ହାଃ—ହାଃ, ଏ କଥା ଯେପରି କାହାରି ପାଖରେ ପ୍ରକାଶ ନ କର । ଯାଉଛି ଏବେ, ମାଳ !— ( ପ୍ରସ୍ଥାନୋଦ୍ୟତ )

ମାଳତୀ—ଯିବ କେଉଁଆଡ଼େ ? ମୋ ଜିନିଷରେ ତୁମର ଆଉ କି ଅଧିକାର ? ତାହା କଦାପି ଦାନପତ୍ରର ହୁଏ ନାହିଁ ।

କୁମାର—( ସାଶ୍ଚର୍ଯ୍ୟେ ଚାହିଁ ) ଯାଃ, ସବୁ ଭଣ୍ଡୁର କରିଦେଲ, ମାଳ—ଆଜି କେଡ଼େ ଆମୋଦଟା ଏକାବେଳକେ ମାଟି ହୋଇଗଲା ସିନା—
( ଦୀର୍ଘନିଶ୍ୱାସ ତ୍ୟାଗ )

ମାଳତୀ—ଏହି ନିରୀହ ପଶୁଗୁଡ଼ାକ ମାରି, ତୁମର ଆମୋଦ ? କାହିଁକି, ଈଶ୍ୱରଙ୍କ ଏହି ସୌନ୍ଦର୍ଯ୍ୟ ଅନୁଭବ କର—

କୁମାର—ରୁହ ରୁହ, ଆଗେ ମୁଁ ବିଦାୟ ହୋଇସାରେ, ମାଳ !—ତୁମର ଏହି ସୌନ୍ଦର୍ଯ୍ୟ ବକ୍ତୃତା-ବାଣ ସହିବାର କ୍ଷମତା ମୋର ଆଦୌ ନାହିଁ ।

ମାଳତୀ—ଆଚ୍ଛା, ରାଜକୁମାର । ଏ' ପୃଥିବୀରେ ତୁମେ କ'ଣ କିଛି ହିଁ ସୁନ୍ଦର ଦେଖନାହିଁ ?

କୁମାର—'ସୁନ୍ଦର' ମାନେ—ଯାହା ମନକୁ ଘେନାଏ, ଏହିଯା ତ ?

ମାଳତୀ—ହଁ, ତା ନୁହେଁ ତ'ଣ !

କୁମାର—ତେବେ ମୁଁ ସବୁ ସୁନ୍ଦର ଦେଖେଁ ।

ମାଳତୀ—ତା'ହେଲେ, ଏହି ନିରୀହ ପଶୁଗୁଡ଼ାକୁ ମାରିବାକୁ ଏତେ ଭଲ ପାଅ କାହିଁକି ?

କୁମାର—ମା'ରିବାରେ ମୁଁ ସୁନ୍ଦର ଦେଖେଁ ବୋଲି ।

ମାଳତୀ—ମଲେ ତ ସୌନ୍ଦର୍ଯ୍ୟ ସେମାନଙ୍କର ନଷ୍ଟ ହେଲା ।

କୁମାର—ସୌନ୍ଦର୍ଯ୍ୟ ବଢ଼ିଲା ନା ।

ମାଳତୀ—କିପରି ?

କୁମାର—କାରଣ ତାହା ସୁନ୍ଦର ଭୋଜନ ହୁଏ ।

ମାଳତୀ—କି ପଶୁ-ପ୍ରକୃତି ତୁମ୍ଭର, କୁମାର !

କୁମାର—କାହିଁକି ? ତୁମ୍ଭେ ହୁଏତ ଚକ୍ଷୁ ତୃପ୍ତିରେ ସୌନ୍ଦର୍ଯ୍ୟ ଅନୁଭବ କର—ମୁଁ ନ ହୁଏ ରସନା-ତୃପ୍ତିରେ ସୌନ୍ଦର୍ଯ୍ୟ ଅନୁଭବ କରିଥାଏ ।

ମାଳତୀ—ଆଚ୍ଛା, ତୁମର ସବୁ ସୌନ୍ଦର୍ଯ୍ୟ କ'ଣ ଇନ୍ଦ୍ରିୟ-ତୃପ୍ତିରେ ?

କୁମାର—କ'ଣ କରିବି, ମାଳ !—ମୋତେ ଈଶ୍ୱର କିପରି ଗଢ଼ିଛନ୍ତି କେଜାଣି—ସୁନ୍ଦର ବୋଲି ଗୋଟାଏ ପଦାର୍ଥ, ଯା' ପାଇଁ ପ୍ରେମିକ ପାଗଳ—କବି ପାଗଳ—ଯୋଗୀ ପାଗଳ—ମୋର ଧାରଣାରେ ସୁଦ୍ଧା ଆସିଲାନାହିଁ । ଦେଖିଲ, ଜାଣିତ ମାଳ ! କେତେବେଳେ ତୁମ ସଙ୍ଗେ—କେତେବେଳେ ବା ଅରୁଣାସଙ୍ଗେ ମୋ'ର ବିବାହ ପ୍ରସ୍ତାବ କରୁଛନ୍ତି । ମୋତେ ବୋଧ ହେଉଛି, ତୁମ ଦୁହିଙ୍କ ମଧ୍ୟରେ ବେଶୀ ସୁନ୍ଦରୀ କିଏ, ତାହାହିଁ ସେ ଠିକ୍ କରି ପାରୁ ନାହାନ୍ତି । ମୋତେ ଥରେ ପଚାରନ୍ତେ କି—ମୁଁ ସଫା କହିଦିଅନ୍ତି ପରା;—ଏ'ଜଗତରେ ଯେତେକ ଅସୁନ୍ଦରୀ ଏହି ସ୍ତ୍ରୀ ଜାତି—ବିବାହ ଯଦି ନିତାନ୍ତ କରିବାକୁ ହୁଏ, ତାହାହେଲେ ମୁଁ ଗୋଟାଏ ବଣୁଆ ଭାଲୁ ବିବାହ ନ କରିବି କାହିଁକି ?

ମାଳତୀ—( ହସି ) ବଣୁଆ ଭାଲୁ ବିବାହ କରିବ ?

କୁମାର—'ବିବାହ' ମାନେ ବନ୍ଧନ କରିବା ତ ?

ମାଳତୀ—( ହସି ) କ'ଣ କାହରେ ?

କୁମାର—ଯେଉଁଠାରେ ହେଉ । ବନ୍ଧନ କରିବାକୁ ହେଲେ, ଗୋଟାଏ ଦୁର୍ବଳା ନାରୀକୁ ବନ୍ଧନ କରିବା କି ସୁଖ ?

ମାଳତୀ—ନାରୀ କଣ ବୋଝ ଛଡ଼ା ଆଉ କିଛି ନୁହେଁ ?

କୁମାର—ଲୋକେ କହନ୍ତି, ସହଧର୍ମିଣୀ । ଏ' ଖାଲି କଥାର କଥା । ତୁମେ ଯଦି ଖୁବ୍ ଉତ୍ସାହରେ କେବେ ଯୁଦ୍ଧ କରିବାକୁ ବାହାରିଲ,—ତୁମକୁ ସାହାଯ୍ୟ କରିବା ଦୂରେ ଥାଉ, ପ୍ରଥମେ ହତାଶ-ବାଣୀ ଶୁଣାଇବ କିଏ ନା, ତୁମ୍ଭର ପତ୍ନୀ—ପ୍ରଧାନ ବାଧା ଦେବାକୁ ଧାଇଁ ଆସିବ କିଏ ନା, ତୁମ୍ଭର ଜନନୀ !

ମାଳତୀ—କାହିଁକି ? ନାରୀ କ'ଣ ଉତ୍ସାହ ଦିଏନାହିଁ—ପତି ସକାଶେ ପ୍ରାଣ ଦିଏନାହିଁ ?

କୁମାର—ଦେଲେ, ଦେଲେ ନିରୁପାୟ ହୋଇ ! ଜଗତରେ କୋଟିକେ ଗୋଟିଏ କହିଲେ ଚଳେ ନାହିଁ କି ?—ଅଭ ଦେଖ, ନାରୀମାନେ ସ୍ୱଭାବତଃ ଭୀରୁସ୍ୱଭାବା—ସୁତରାଂ ପୁରୁଷର ସାହସ—ପୁରୁଷର ଦମ୍ଭ, ସେମାନଙ୍କର ଆସିବ କାହୁଁ ?

ମାଳତୀ—ପୁରୁଷର କ'ଣ ଯୁଦ୍ଧ ଛଡ଼ା ଆଉ ମହତ୍ କାର୍ଯ୍ୟ କିଛି ନାହିଁ ?

କୁମାର—ନାହିଁ ବୋଲି କିଏ କହୁଛି ?

ମାଳତୀ—ସେ ସବୁ ମହତ୍ କାର୍ଯ୍ୟରେ କ'ଣ ନାରୀମାନେ ସାହାଯ୍ୟ କରିବାକୁ ସମର୍ଥା ନୁହନ୍ତି ?

କୁମାର—ସମର୍ଥା ନା ?—ଘର ପୋଡ଼ି ଯାଉଥିଲେ, ଆମ ସଙ୍ଗେ ନିଆଁରେ ଝାସ ଦେଇପାରିବେ ? କେହି ଗୋଟାଏ ନଈରେ ଭାସି ଯାଉଥିଲେ, ଆମ ସଙ୍ଗେ ସଙ୍ଗେ ପାଣିକୁ ଡେଇଁ ପାରିବେ ?

ମାଳତୀ—ଏପରି ଦୈହିକ ସାହାଯ୍ୟ ଛଡ଼ା ସ୍ତ୍ରୀ କି ଆଉ କୌଣସି ସାହାଯ୍ୟ କରିପାରେ ନାହିଁ ?

କୁମାର—କେଉଁ ବିଷୟରେ କରିପାରେ, ତୁମେ ବୁଝିବା ଗୋଟାଏ କଷ୍ଟ ଯାଉନାହିଁ —ଅଚ୍ଛା, ମୁଁ ତୁମ୍ଭର ହୋଇ କହି ଯାଉଛି, ଶୁଣ !—ସନ୍ତାନ ଉତ୍ପାଦନରେ ବେଶ ସାହାଯ୍ୟ କରିପାରେ— ସ୍ୱାମୀର ଗଳଗ୍ରହ ହୋଇ, ଉଦର ପୂରଣ କରିବାକୁ ବେଶ୍ ମଜବୁତ—ଦାଣ୍ଡ କଳ ଘରକୁ ଅଣିବାକୁ, ଆଉ ଘର କଳ ଦାଣ୍ଡକୁ ନେବାକୁ ବେଶ୍ ପାରଙ୍ଗମ;—ତୁମକୁ ମୋ ଶ୍ରଣିଟି ମାଳ ! କହିଲ ଭଲ, କେତେ ଜଣ ବାହା ହୋଇ, ଆଉ କୁକୁଡ଼ା ପଲ ପରି ଛୁଅରୁଆ ନେଇ ସୁଖୀ ହୋଇଥା’ନ୍ତି ?

ମାଳତୀ—ଅଚ୍ଛା, ସେବାଭକ୍ତି ରୂପ ସାହାଯ୍ୟ ବିଷୟରେ—

କୁମାର—ବୁଝିଲି, ସେପରି ସାହାଯ୍ୟ ଦରମା ଦେଇ ଗୁକର ରଖିଲେ ତ ଖୁବ୍ ମିଳେ—ବିବାହର ଗୋଟାଏ କି ପ୍ରୟୋଜନ ? ଏହି ଯେ ପିତା ଏଣେ ଆସୁଛନ୍ତି—( ପ୍ରସ୍ଥାନ )

ମାଳତୀ—ଓଃ, କି ନୀରସ, କଠିନ ହୃଦୟ ଏହି କୁମାର !—କିନ୍ତୁ ଦିନେ ନା ଦିନେ ଏହି ନାରୀର ପ୍ରକୃତ ସୌନ୍ଦର୍ଯ୍ୟ ଅନ୍ତରେ ଅନ୍ତରେ ଅନୁଭବ କରିବାକୁ ହେବ ତୁମଙ୍କୁ, କୁମାର ! ପିତା ମଧ୍ୟ ନାରୀଙ୍କୁ ସେହିପରି ହେୟ ଦୃଷ୍ଟିରେ ଦେଖିଥା’ନ୍ତି —ତାଙ୍କ ମତରେ ନାରୀ କେବଳ ବିଳାସର ସାମଗ୍ରୀ—ଏହି ଯେ ପିତା ! ( ପ୍ରସ୍ଥାନ )

[ ଭୋନ୍‌ସଲ୍ଲ ଓ ମାଧବର ପ୍ରବେଶ ]

ଭୋନ୍‌ସଲ୍ଲ—ସଖା ! ଏପରି ତରବର ହେଉଛନ୍ତି କାହିଁକି ?

ମାଧବ—ଆଜକୁ ପ୍ରାୟ ଛଅମାସ ହେଲା—ଆଉ ବେଶୀ ଦିନ ରହିବା କି ଶୋଭାପାଏ ?

ଭୋନ୍‌ସଲ୍ଲ—ମୋତେ ତାହାହେଲେ ନିଶ୍ଚୟ ପର ଭାବୁଛନ୍ତି !

ମାଧବ—ପର ! ଆପଣଙ୍କୁ ଯଦି ପର ଭାବୁଥା’ନ୍ତି, ବନ୍ଧୁ —ସେହି ଗର୍ହିତ କାର୍ଯ୍ୟରେ କି କେବେହେଲେ ମନ ବଳାଇ—ସେହିଦିନୁ—ଓଃ ( ଦୀର୍ଘ ନିଃଶ୍ୱାସ ତ୍ୟାଗ )

ଭୋନ୍‌ସଲ୍ଲ—ଏ କ’ଣ ? ଏପରି ବ୍ୟସ୍ତ ହୋଇ ଉଠିଲେ କାହିଁକି, ସଖା ?

ମାଧବ—ହେଲେ, ହେଲେ—ନା, ନା—ସେ କିଛି ନୁହେଁ—ଅଜି କ’ଣ କିଛି ଆୟୋଜନ ହୋଇ ନାହିଁ, ବନ୍ଧୁ ?

ଭୋନ୍‌ସଲ୍ଲ—ଆଜି ତ ଆୟୋଜନର ଚୂଡ଼ାନ୍ତ— ଏହିଠାକୁ ଅଣାଇଲେ ମନ୍ଦ ହେବ ନାହିଁ—କି ମତ ଆପଣଙ୍କର ?

ମାଧବ—କିଛି ଆପତ୍ତି ନାହିଁ । ବେଶ୍ ସୁରମ୍ୟ ସ୍ଥାନ —ଖୋଲା ଜାଗା—ପ୍ରାଣ ଅହୁରି ଖୋଲିଯିବ !

ଭୋନ୍‌ସଲ୍ଲ—କୋନ୍ ହ୍ୟାୟ ?

[ ଦ୍ୱାରିର ପ୍ରବେଶ ଓ ଅଭିବାଦନ ]

ଭୋନ୍‌ସଲ୍ଲ—ଜଲ୍‌ଦି ହାଜିର କରୋ ।

[ ଦ୍ୱାରିର ପ୍ରସ୍ଥାନ ]

ମାଧବ—ଦେଖନ୍ତୁ, ବନ୍ଧୁ ! ଏଥର ମୋତେ ଅଉ ନିରାଶ କରିବେ ନାହିଁ ।

ଭୋନ୍‌ସଲ୍ଲ—ମୋତେ ଭାରି ଲଜ୍ଜା ହେଉଛି, ବନ୍ଧୁ— ସେ କଥା ଆଉ ବାରମ୍ବାର ପକାନ୍ତୁ ନାହିଁ— ଏଥର କଡ଼ା-କାନ୍ତିରେ ବଦାକ୍ ବୁଝାଇ ଦେବି ।

ମାଧବ—ଆଉ ବିବାହ ବିଷୟ ?

ଭୋନ୍‌ସଲ୍ଲ—( ହସ୍ତଧାରଣ କରି ) ମୁଁ ହାତ ଦେଇଛି ଯେତେବେଳେ, ତେତେବେଳେ କଥା ଅଛି ନା ?

ମାଧବ—ମୁଁ ଶୁଣିଥିଲି ରଘୁଜିର—

ଭୋନ୍‌ସଲ୍ଲ—ହାଃ, ହାଃ, ହାଃ—ଆପଣ କ’ଣ ଏହା ବିଶ୍ୱାସ କରନ୍ତି ? ରଘୁଜି ଜଣେ ସାମାନ୍ୟ କର୍ମଚାରୀ—ତା’ର କନ୍ୟା ସହିତ ନାଗପୁରର ଭୋନ୍‌ସଲ୍ଲ ନଜର ଜ୍ୟେଷ୍ଠ ପୁତ୍ରଙ୍କୁ—ଭାବୀ- ଭୋନ୍‌ସଲ୍ଲଙ୍କୁ—

ମାଧବ—ଅସମ୍ଭବ—ତେବେ—

ଭୋନ୍‌ସଲ୍ଲ—ମନେ କରୁଛନ୍ତି, କୁମାରଙ୍କର ଯଦି ଇଚ୍ଛା ଥାଏ—କୁମାରଙ୍କୁ ଆପଣ କପରି ଭାବନ୍ତି ?

ମାଧବ—ଖୁବ୍ ପିତୃଭକ୍ତ—ସେ କଦାପି ପିତୃ-ଆଜ୍ଞାର ବହିର୍ଭୂତ କାର୍ଯ୍ୟ କରିବେ ନାହିଁ ।

ଭୋନ୍‌ସଲ—ଏହି ଯେ ବାଇଜୀଗଣ—ଆମୋଦ କରନ୍ତୁ—ସ୍ଫୂର୍ତ୍ତି କରନ୍ତୁ—ସବୁ ଚିନ୍ତା ଦୂର କରି ଦିଅନ୍ତୁ ।

ମାଧବ—ଆପଣଙ୍କ ପରି ବନ୍ଧୁ ଥାଉଁ ଥାଉଁ ଏ ସଂସାରରେ ମୋର ଚିନ୍ତା ?—ଉଃ—ନା—କାହିଁ ?

ଭୋନ୍‌ସଲ—ମୁଁ ଆସୁଛି—ଆପଣ ସ୍ଫୂର୍ତ୍ତି କରନ୍ତୁ ।

ମାଧବ—ଆପଣ ରହିବେ ନାହିଁ ?

ଭୋନ୍‌ସଲ—ଆଜି ମୋର ବିଶେଷ କାର୍ଯ୍ୟ ଅଛି—ଆଉ ଦେଖନ୍ତୁ, ଆଜି ମୁଁ ଚାହେଁ ଯେ, ଆପଣ ପୂର୍ଣ୍ଣମାତ୍ରାରେ ଯେପରି ଆମୋଦ କରନ୍ତି ।

ମାଧବ—କୋ ଏକା କି ?

ଭୋନ୍‌ସଲ—ମୁଁ ଜାଣେ—ଏସବୁ ଆମୋଦ, ସାଙ୍ଗ ସୁଖ ନ ହେଲେ ହୁଏ ନାହିଁ; ମାତ୍ର, ମୁଁ ରହିଲେ, ଏମାନେ ପ୍ରାଣ ଖୋଲି ଆନନ୍ଦ ଦେଇ ପାରିବେ କି ?—ଆପଣ ତ ଅନ୍ୟାନ୍ୟ ଦିନ—ମୁଁ ଥିଲେ, କିପରି ସଙ୍କୋଚ ଏମାନେ ପ୍ରକାଶ କରିଥା'ନ୍ତି—ଅନୁଭବ କରିଥିବେ । ଦିଅ—ଢାଳ—ନାଚ—ଗାଅ—ପ୍ରାଣ ଖୋଲି ଆମୋଦ କର ।

ନର୍ତ୍ତକୀଗଣ—ଯେ ଆଜ୍ଞା—

( ଭୋନ୍‌ସଲର ପ୍ରସ୍ଥାନ )

ମାଧବ—କି ଚିନ୍ତା । ଉଃ—ନା—ଢାଳ—ନାଚ—ଗାଅ—

ନର୍ତ୍ତକୀଗଣ— —ଗୀତ—

ଢାଳ, ଢାଳ ପିଆଲି, ରଙ୍ଗିଲି ସରାପ ଭରି ।
ହୋଇ ଲାଲ୍ ଆଁଖି ଦେଖ ଲାଲ୍ ଦୁନିଆ
ଲଳିତ ଲହରେ ମନ ପୂରି ।
ବୀଣୁ ବାଜୁ ସଙ୍ଗୀତ ରଙ୍ଗିଣୀ ରଙ୍ଗେ
ହାସ୍ୟ, ଲାସ୍ୟ, ବିଭ୍ରମ ଭଙ୍ଗେ,
ମୋହନ ଝଙ୍କାରେ ମୂର୍ଚ୍ଛନାରେ
ଧନ, ଜନ, ମନ, ପ୍ରାଣ ନେଉ ହରି ।

[ ମାଧବ ମଦ ପିଉଥିଲେ ଓ ଗୀତ ଶୁଣି, ନାଚ ଦେଖି ଆନନ୍ଦରେ ଅଧୀର ହେଉଥିଲେ, ଶେଷକୁ ମାତାଲ ହୋଇଗଲେ ]

[ ନର୍ତ୍ତକୀଗଣଙ୍କର ପ୍ରସ୍ଥାନ ]

ମାଧବ—ସୁରା ! ପ୍ରକୃତରେ ତୁମ୍ଭେ ସୁଧା—ତୋତେ ପାନ କରୁଥିଲେ, ହୃଦୟରେ କୌଣସି ବେଦନା—ତୀକ୍ଷ୍ଣତମ ହେଲେ ମଧ୍ୟ, ସ୍ଥାନ ପାଇବାକୁ ଅଶକ୍ତ । ନର୍ତ୍ତକୀଗଣ ! ପ୍ରକୃତରେ ତୁମ୍ଭେମାନେ ସ୍ୱର୍ଗର ଅପ୍‌ସରା—ତୁମ୍ଭମାନଙ୍କର ସଙ୍ଗୀତ-ପ୍ରବାହ ଶୁଣୁଥିଲେ, କର୍ଣ୍ଣରେ କୌଣସି ଭର୍ତ୍ସନା ତୀବ୍ରତମ ହେଲେ ମଧ୍ୟ, ପ୍ରବେଶ କରିବାକୁ ଅକ୍ଷମ ।—ଗାଅ—ଗାଅ—ଆଉଥରେ ଗାଅ—ଢାଳ—ଢାଳ—ଆଉଥରେ ଢାଳ । (ଢଳି ପଡ଼ିବା)

[ ଭୋନ୍‌ସଲ ଓ ସୁନ୍ଦର ସିଂହର ପ୍ରବେଶ ]

ଭୋନ୍‌ସଲ—ସୁନ୍ଦର ! ଏହିଥର ଶେଷକର । ( ସୁନ୍ଦର ଅଗ୍ରସର ହେଲା ) ମରହଟ୍ଟାଠାରୁ ପୁରସ୍କାର ନେବୁ, ବିଶ୍ୱାସଘାତକ—ଦେଖ, କିପରି ପୁରସ୍କାର ମରହଟ୍ଟା ଦାନକରେ ।

[ ଅନ୍ତରାଳରେ ରହିବା ]

[ସୁନ୍ଦରସିଂ ଛୁରୀ ଧରି ଧୀରେ ଧୀରେ ଅଗ୍ରସର ହେଲା ]

ସୁନ୍ଦରସିଂ—(ଛୁରୀ ହସ୍ତଚ୍ୟୁତ ହେଲା)—ନା—ପେରି ପାଏଁ—ଏ କାର୍ଯ୍ୟ—

[ ଭୋନ୍‌ସଲର ପ୍ରବେଶ ]

ଭୋନ୍‌ସଲ—ସୁନ୍ଦର ସିଂ !

ସୁନ୍ଦରସିଂ—ମହାରାଜ ! କ୍ଷମା କରନ୍ତୁ ।

ଭୋନ୍‌ସଲ—ସହସ୍ର ସ୍ୱର୍ଣ୍ଣମୁଦ୍ରା ।

ସୁନ୍ଦର ସିଂ—( ଥରେ ମାଧବ ଓ ଥରେ ଛୁରୀଆଡ଼େ ଚାହିଁ ) ନା, ମହାରାଜ । ଲକ୍ଷେ ହେଲେ ମଧ୍ୟ ନୁହେଁ ।

ଭୋନ୍‌ସଲ—ଆଉରି ଏକ ସହସ୍ର—

ସୁନ୍ଦରସିଂ—( ପୁନରାୟ ଚାହିଁ ଓ ଭାବି ) କୋଟିଏ ହେଲେ ମଧ୍ୟ—ପୃଥିବୀର ରାଜ-ମୁକୁଟ ହେଲେ ମଧ୍ୟ ଅସମ୍ଭବ ।

[ ସ୍ୱର୍ଣ୍ଣମୁଦ୍ରାପୂର୍ଣ୍ଣ ଥଳି ଦେଖାଇଲେ ]

ସୁନ୍ଦରସିଂ—( କାକୁଘାଉଫର୍ବକ ) ରକ୍ଷା କରନ୍ତୁ, ମହାରାଜ ! ପ୍ରଲୋଭନଗ୍ରାସରୁ ଏ' ଅଧମକୁ ରକ୍ଷା କରନ୍ତୁ ।

ଭୋନ୍‌ସଲ—( ଉଠାଇ ) ସୁନ୍ଦର ସିଂ ! ଖୁବ ଦେଖ, ଲୋଭର ବଶବର୍ତ୍ତୀ କିଏ ନୁହେଁ ? ତୋ'ର ପ୍ରଭୁ ନିଜେ—ଯା'ର ତୁମ୍ଭ ଆଜୀବନ ସେବା କରି ଆସିଛୁ, ସେ ଆଜି କରୁଛନ୍ତି କ'ଣ ?

ସୁନ୍ଦର ସିଂ—ଜାଣେ, ମହାରାଜ—ଲୋଭହେତୁ ସେ ନରପିଶାଚର କାର୍ଯ୍ୟ କରୁଅଛନ୍ତି ।

ଭୋନ୍‌ସଲ—ପ୍ରଭୁର ପଦାଙ୍କ ଅନୁସରଣରେ ଦାସର ତେବେ ଦୋଷ କଣ ?

ସୁନ୍ଦର ସିଂ—ମହାରାଜ ! ଦାସ କି ମନୁଷ୍ୟ ନୁହେଁ ? ଦାସର କି ବିବେକ ବୁଦ୍ଧି ନାହିଁ ?—ଦାସର କି କର୍ତ୍ତବ୍ୟ କେବଳ, ପ୍ରଭୁଙ୍କୁ ତା'ର ଅନ୍ଧଭାବେ ଅନୁସରଣ କରିବା ? ଖାତରେ ପଡ଼ିବାକୁ ଯାଉଥିଲେ, ଅଧିକ ଧକ୍କାଦେଇ ପେଲିଦେବା ?

ଭୋନ୍‌ସଲ—ଚୁପ୍‌କର, ନରାଧମ ! ତୋର ଉପଦେଶ ଶୁଣିବାକୁ ମୁଁ ଆସି ନାହିଁ—କହ, ଯେଉଁ କାର୍ଯ୍ୟ କରିବାକୁ ଆସିଛୁ, ତାହା କରିବୁ କି ନାହିଁ ?

ସୁନ୍ଦରସିଂ—( ଦୃଢ଼ଭାବେ ) ନା—ନା—ନା—

ଭୋନ୍‌ସଲ—( ପିସ୍ତଲ ବାହାର କରି ) ମର ତେବେ, ନରାଧମ ! ( କୁମାରର ବେଗରେ ପ୍ରବେଶ )

କୁମାର—ପିତା ! ପିତା ! ସର୍ବନାଶ—···ଏ କଣ ?

ଭୋନ୍‌ସଲ—ଏହି ଯେ, କୁମାର—ଠିକ୍ ସମୟରେ ଉପସ୍ଥିତ—ଏହି ଅତତାୟୀ ବିଶ୍ୱାସଘାତକକୁ ଶୀଘ୍ର ବନ୍ଦୀ କର ।

ସୁନ୍ଦର ସିଂ—କିଏ ବିଶ୍ୱାସଘାତକ ? ( କୁମାର ହାତ ଧରିଲେ )

ଭୋନ୍‌ସଲ—ଚୁପକର, ନରାଧମ ! ଉଃ, ଆଜି କି ସର୍ବନାଶ କରିବାକୁ ଯାଉଥିଲା ! ଦେଖ କୁମାର, ମୁଁ ସମୟରେ ଆସି ପହଞ୍ଚି ନ ଥିଲେ, ଏ' ଛୁରୀ ଆଜି ନିଷ୍ଟୟ ବନ୍ଧୁଙ୍କର ସରଳ ହୃଦୟରେ ପ୍ରବିଷ୍ଟ ହୋଇଥା'ନ୍ତା !

ସୁନ୍ଦର ସିଂ—ନରପିଶାଚ !

ଭୋନ୍‌ସଲ—ନେଇଯାଅ ଶୀଘ୍ର ଏଠୁ ବନ୍ଦୀକୁ, କୁମାର ! ଖୁବ୍ ଗୋପନରେ—ବିଶ୍ୱସ୍ତ ରକ୍ଷୀମାନଙ୍କ ତତ୍ତ୍ୱାବଧାନରେ—ନିର୍ଜ୍ଜନ କାରାଗାରରେ ନିକ୍ଷେପ କର ! ବନ୍ଧୁ ବର୍ତ୍ତମାନ ଯେପରି ନିଶ୍ଚିନ୍ତ ଅଛନ୍ତି, ତାଙ୍କୁ ସେହିପରି ରଖିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଅତିଥି ଯେ କୌଣସି ପ୍ରକାରରେ କଷ୍ଟପାଇଲେ, ତାହା ଆମ୍ଭମାନଙ୍କ ପକ୍ଷେ ଭୟଙ୍କର ପାପ ।

ସୁନ୍ଦର ସିଂ—ସାବାସ୍ ଭୋନ୍‌ସଲ ! ଗୁଡ, (ନିଜ ମନେ) କ୍ଷଣିକ ଦୁର୍ବଳତାର ଉପଯୁକ୍ତ ପୁରସ୍କାର ପାଇଛି ! କିନ୍ତୁ ଏପରି ପୁରସ୍କାର କି ଉପଯୁକ୍ତ ହୋଇଛି ? ମୋ'ର ପାପର ପ୍ରାୟଶ୍ଚିତ୍ତ—ପ୍ରଭୁହତ୍ୟାର ଦଣ୍ଡ କି ଏ' ସଂସାରରେ ଅଛି ?

ଭୋନ୍‌ସଲ—ନେଇଯାଅ, ଶୀଘ୍ର ବନ୍ଦୀକୁ କୁମାର ! ( ଛୁରୀ ଦୂରେ ନିକ୍ଷେପ କରି ସ୍ୱଗତ ) ଖୁବ୍ କୌଶଳରେ ଆତ୍ମଗୋପନ କରିଛି ! ସୁନ୍ଦର ସିଂଙ୍କୁ ଏ'ସଂସାରରେ ଆଉ ରଖିବା ଉଚିତ ନୁହେଁ ! ରାଓ ଯଦି ଟେର ପାନ୍ତି—ଦେଖାଯିବ—ଯେତେବେଳେ କାର୍ଯ୍ୟଂ ବାଧୀୟତେ ।

[ ସୁନ୍ଦରସିଂଙ୍କୁ ନେଇ କୁମାରର ପ୍ରସ୍ଥାନ ]

ମାଧବ—ବନ୍ଧୁକଲ କାହିଁକି ? ଚାଲିଓ—ନାରେ—ଗାର୍ଡ଼—ସୁନ୍ଦର ସିଂ !

ଭୋନ୍‌ସଲ—ବନ୍ଧୁ ! ବନ୍ଧୁ ! ଉଠ, ଭିତରକୁ ଯିବ ନାହିଁ ? ଅନେକ ରାତି ଯେ ହୋଇଗଲାଣି !

ମାଧବ—( ଉଠି ) ଏଁ, ବନ୍ଧୁ ! ମୁଁ ଏତେ ଶୋଇପଡ଼ିଥିଲି ?

[ କୁମାରର ପୁନଃ ପ୍ରବେଶ ]

କୁମାର—ଋଷିମାନଙ୍କ ଉକ୍ତାରେ—

ଭୋନ୍‌ସଲ—ଚୁପ୍—( ଇଙ୍ଗିତ କରିବା )

କୁମାର—ପିତଃ ! ସର୍ବନାଶ ଉପସ୍ଥିତ ! ଯୁଦ୍ଧ ମାଲ୍ ସହିତ ଆମ୍ଭର ସମସ୍ତ ନୌକା ବିଧ୍ୱସ୍ତ ହୋଇଛି !

ଭୋନ୍‌ସଲ—କ'ଣ ହୋଇଛି ?

କୁମାର—ସମ୍ବଲପୁର-ରାଜା କର୍ତ୍ତୃକ ସମସ୍ତ ବିଧ୍ୱସ୍ତ ହୋଇଛି ।

ଭୋନ୍‌ସଲ—ବିଧ୍ୱସ୍ତ ?

[ ରଘୁଜୀର ପ୍ରବେଶ ]

ରଘୁଜୀ—ସମସ୍ତ ମହାରାଜ !

ଭୋନ୍‌ସଲ—ଏହି ଯେ ରଘୁଜୀ !

ରଘୁଜୀ—ରଘୁଜୀ ସତ୍ୟ, ମାତ୍ର ଗୋଟାଏ ପ୍ରାଣ-ଶୂନ୍ୟ ଯନ୍ତ୍ର-ଚାଳିତ ଜଡ଼ପିଣ୍ଡ ମାତ୍ର ! ଶମ୍ଭୁଜି କଣ ଏଠାରେ ଅଛି, କୁମାର ?

ଭୋନ୍‌ସଲ—ନିଶ୍ଚୟ ଥିବ—(କୁମାର ଆଡ଼େ ଚାହିଁଲେ)

କୁମାର—ସତେ, ଏ' କେତେଦିନ ହେଲା, କାହିଁ ତାଙ୍କର ଦେଖା ନାହିଁ ତ !

ରଘୁଜୀ—ହାଃ ହାଃ ହାଃ—ଆଉ ମଧ୍ୟ ଦେଖା ପାଇବା ନାହିଁ ! ମୋର ସନ୍ଦେହ ଦୂର ହୋଇଛି—ଧାରଣା ସତ୍ୟ ହୋଇଛି—ନରାଧମ ! ବିଶ୍ୱାସଘାତକ ! ଓଃ ହୋଃ ! ମହାରାଜ !—

ଭୋନ୍‌ସଲ—ଏପରି ଅସ୍ଥିର କାହିଁକି, ରଘୁଜୀ ? ବୀର ତୁମ୍ଭେ, ଧୈର୍ଯ୍ୟଧର—ବୃଥା ସନ୍ଦେହରେ—

ରଘୁଜୀ—ବୃଥା ସନ୍ଦେହ ! ହାଃ ହାଃ ହାଃ, ଏବେ ଏ ପୁରସ୍କାର ଦେଲା କିଏ, ମହାରାଜ ?—

ଭୋନ୍‌ସଲ—ଅନୁସନ୍ଧାନ ନକରି ଏପରି ବୃଥା ସନ୍ଦେହ କରିବା ଅନୁଚିତ—ଆଜି ଯାହା ଘଟିଛି, ତା'ର ପ୍ରତିକାର ଚିନ୍ତାକର !

ରଘୁଜୀ—ପ୍ରତିକାର ? ତା'ର ପ୍ରତିକାର ଯେ ନାହିଁ, ମହାରାଜ !

ଭୋନ୍‌ସଲ—କା'ର ପ୍ରତିକାର ନାହିଁ, ରଘୁଜୀ ?

ରଘୁଜୀ—ସମ୍ପଦ ଗଲେ, ସମ୍ପଦକୁ ଫେରାଇ ଆଣି ପାରାଯାଏ—ମାନ ଗଲେ, ମାନକୁ ପୁନଃ ପ୍ରତିଷ୍ଠିତ କରି ପାରାଯାଏ; ମାତ୍ର ପ୍ରାଣ ଗଲେ ପ୍ରାଣକୁ କି କେବେ ଫେରାଇ ଆଣି ପାରାଯାଏ ?

ଭୋନ୍‌ସଲ—ପ୍ରାଣ ଯାଇଛି—କା'ର ?

ରଘୁଜୀ—ମୋ'ର—ମୋ'ର !

କୁମାର—ଅରୁଣା ନିରୁଦ୍ଦେଶ ବୋଲି ଶୁଣୁଛି, ପିତାଃ !

ଭୋନ୍‌ସଲ—ଅରୁଣା ନିରୁଦ୍ଦେଶ ! କିପରି ? ନା, ନା—ସମ୍ୟକ୍ ସନ୍ଧାନ କରାହୋଇଛି ତ ?

ରଘୁଜୀ—ସେ ଯେ ଜଳଗର୍ଭରେ ଶାୟିତା—ମନୁଷ୍ୟ ସନ୍ଧାନର ବହିର୍ଭୂତା !

ଭୋନ୍‌ସଲ—ବହିର୍ଭୂତା ! ତେବେ କଣ ପ୍ରକୃତରେ ଅରୁଣା ନାହିଁ ? (କପଟଭାବେ ) ଓଃ ହୋଃ, କେତେ ଆଶା କରିଥିଲି—

ରଘୁଜୀ—ଆପଣ ଆଶା କରିଥିଲେ, ମହାରାଜ ! ପୁତ୍ର-ବଧୂ କରିବା ନିମନ୍ତେ—ପିତା ଆଶା କରିଥିଲା; ତା'ର କନ୍ୟା ରାଜ ବଧୂ ହେବ—ମାତ୍ର, ମୋର ଆଶା କ'ଣ ଓ କେତେ ଉଚ୍ଚରେ ଥିଲା, ଜାଣନ୍ତି କି ମହାରାଜ ?

ଭୋନ୍‌ସଲ—ଉନ୍ମାଦ ହୁଅନା, ରଘୁଜୀ !

ରଘୁଜୀ—ଉନ୍ମାଦ ହେବି ନାହିଁ, ମହାରାଜ ? ମୋର ସେହି ଉଚ୍ଚ ଗିରିଶିଖରକୁ ଥରେ ହେଲେ କେବେ ଉନ୍ନେତ୍ରରେ ଚାହିଁ ଦେଖିଛନ୍ତି କି ମହାରାଜ ? କାହାର ସୁବର୍ଣ୍ଣକିରଣ ସେ ସ୍ଥାନଟିକୁ ରଞ୍ଜିତ କରି ରଖିଥିଲା, ତାହା ବାରେ ହେଲେ କେବେ ହୃଦୟଙ୍ଗମ କରିଛନ୍ତି କି, ମହାରାଜ ?

ଭୋନ୍‌ସଲ—ଖୁବ୍ ଜାଣେ, ରଘୁଜୀ ! ମର୍ଯ୍ୟାଦା—ତୁମର ଶୟନେ ସ୍ୱପନେ—ଜୀବନେ, ମରଣେ—ଏକମାତ୍ର ଚିନ୍ତା, ଅଭିଜାତ୍ୟ !

ରଘୁଜୀ—ସେହି ଆଭିଜାତ୍ୟ—ସେହି ମର୍ଯ୍ୟାଦା ଯେ ମୋ'ପକ୍ଷେ କେତେଦୂର ବହୁମୂଲ୍ୟ, ଜାଣନ୍ତି କି ମହାରାଜ ?—ପ୍ରାଣଠାରୁ ବହୁମୂଲ୍ୟ—ଅରୁଣା-ଠାରୁ ମଧ୍ୟ ବହୁମୂଲ୍ୟ !

ଭୋନ୍‌ସଲ—ଏ' ଗୋଟାଏ ତୁମର କି ଅଲୌକିକ ଭାବ, ରଘୁଜୀ ?

ରଘୁଜୀ—ସ୍ପଷ୍ଟ ତେବେ ସମସ୍ତ ଶୁଣିବାକୁ ଚାହାନ୍ତି ?—ଶୁଣନ୍ତୁ, ଏ' ଭାବ ଆଜକୁ କୋଡ଼ିଏ ବର୍ଷ ହେଲା ମୋଠାରେ ଅଧିକାର କରି ବସିଛି, ଯେଉଁଦିନୁ ରାଜମାତା ମୋର ବିବାହ ପ୍ରସ୍ତାବ କରିବାରୁ ମୋର ବଂଶ-ମର୍ଯ୍ୟାଦା ଦେଖି ନାନା ଲୋକେ ନାନା କଥା କୁହା କୁହି ହେବାକୁ ଲାଗିଲେ !—ସ୍ୱାମୀ ! ମୋର ମର୍ଯ୍ୟାଦା ସମ୍ବନ୍ଧେ ଦୃଢ଼ାଭିମତ ଦେବା ସତ୍ତ୍ୱେ, କୌଣସି ରାଜା ତାଙ୍କର

କନ୍ୟା ଦେବାକୁ ରାଜି ହେଲେ ନାହିଁ—ରାଣୀ ପିତା ବଳପୂର୍ବକ ଚନ୍ଦ୍ରପୁର ରାଜକନ୍ୟା ସହିତ ମୋର ବିବାହ ଦେଇଥିଲେ, ତଥାପି, ସେହି ଦିନୁ, ମୁଁ କିଏ ?—ଏଠାକୁ ଆସିଲି କିପରି ?—ମୁଁ କଣ ରାଜ-ସନ୍ତାନ ନୁହେ ?—ଏହିସବୁ ପ୍ରଶ୍ନ ବାରମ୍ବାର ମୋତେ ଦଂଶନ କରିବାକୁ ଲାଗେ । ଏହାର ସମାଧାନ ନିମନ୍ତେ—

ଭୋନ୍‌ସଲ—ରାଜ ସେ ସମସ୍ତ ବର୍ତ୍ତମାନ ।

ରଘୁଜି—ରାଣୀଙ୍କୁ ଅନେକଥର ପ୍ରଶ୍ନ କରି ସୁଦ୍ଧା, ଯେତେବେଳେ ନିଜ ସମ୍ବନ୍ଧେ ସ୍ପଷ୍ଟ କୌଣସି ଉତ୍ତର ନ ପାଇଲି—ଅନ୍ତଃଶଙ୍କାବରେ ମଧ୍ୟ ପ୍ରବେଶ କରିବାର ଅନ୍ୟ କୌଣସି ଉପାୟ ନ ଦେଖିଲି—ସେତେବେଳେ ରାଣୀଙ୍କ ଅଶ୍ୱାସନାରେ ହିଁ ଅନ୍ଧ ହୋଇ ରହିଥିଲି—ଆହୁରି ମଧ୍ୟ ଯଦି କୌଣସି ଗୋଳମାଳ ଥାଏ—ସେ କନ୍ୟା ବିବାହରେ ମୋର ବଂଶ-କଳଙ୍କ ପ୍ରକାଶିତହେବ ଭାବି, ବଳପୂର୍ବକ ଅନ୍ଧକାର ଦେଖୁଥିଲି । ଆଜି କିନ୍ତୁ ( ବ୍ୟଥିତ ଭାବାଭିନୟ )

ଭୋନ୍‌ସଲ—ରାଜ ସେ ସବୁ ରଘୁଜି । ଯେଉଁରୂପେ ମର୍ଯ୍ୟାଦା ବଢ଼ିବ, ମୋର ମଧ୍ୟ କ୍ଷତିପୂରଣ ହେବ, ତା'ର ଉପାୟ ବର୍ତ୍ତମାନ ଚିନ୍ତାକରିବା, ଆସ ।

ରଘୁଜି—ମୋର ମର୍ଯ୍ୟାଦା ବଢ଼ିବ କହି, ମୋତେ ଉପହାସ କରିବାର କି ପ୍ରୟୋଜନ, ମହାରାଜ ? —ଆପଣଙ୍କର କ୍ଷତିପୂରଣ ସକାଶେ ଯେଉଁ ଉପାୟ ଅବଲମ୍ବନ କରିବାକୁ ଆଦେଶ କରିବେ, ଅଧୀନ ପ୍ରସ୍ତୁତ ଅଛି—ଏ' ଜୀବନ ଥିବାଯାଏ, ଏ' ଦେହରେ ରାଣୀଙ୍କର ସମ୍ପୂର୍ଣ୍ଣ ଅଧିକାର ।

ଭୋନ୍‌ସଲ—ରଘୁଜି ।

ରଘୁଜି—ମହାରାଜ !

ଭୋନ୍‌ସଲ—( ଭାବି ) ନା, ବର୍ତ୍ତମାନ ନା—

ରଘୁଜି—ଅନୁନୟ କରୁଛି ମହାରାଜ । ଗୋପନ କରନ୍ତୁ ନାହିଁ ; ମୋର ବଂଶ ସମ୍ବନ୍ଧେ କି କଥା ଆପଣ ଜାଣନ୍ତି, ପ୍ରକାଶ କରି ଦିଅନ୍ତୁ—ହୃଦୟର ଅବେଗ କିଞ୍ଚିତ୍ ହେଲେ ପ୍ରଶମିତ ହେଉ—

ଭୋନ୍‌ସଲ—ଧୈର୍ଯ୍ୟଧର, ସେନାପତି !—ବର୍ତ୍ତମାନ ସୁଦ୍ଧା ସେ ସମୟ ଆସିନାହିଁ ।

ରଘୁଜି—( ଦୀର୍ଘନିଃଶ୍ୱାସ ତ୍ୟାଗକରି ) ଏହିପରି ତ ଚିରଦିନ କହିଆସନ୍ତି, ମହାରାଜ !

ଭୋନ୍‌ସଲ—ଶୁଣିବ ଦିନେ, ରଘୁଜି ! ଶ୍ରମର ପୁରସ୍କାର ଅବଶ୍ୟ ପାଇବ—ବର୍ତ୍ତମାନ କାର୍ଯ୍ୟକର— କାର୍ଯ୍ୟର ସମୟ ଉପସ୍ଥିତ ।

ରଘୁଜି—( ସ୍ୱଗତ ) ଉଃ, କି ବୃଶ୍ଚିକ-ଦଂଶନ । ମର୍ଯ୍ୟାଦା—ମର୍ଯ୍ୟାଦା—ମର୍ଯ୍ୟାଦା !

ଭୋନ୍‌ସଲ—କୁମାର । ରଘୁଜି ସଙ୍ଗେ ତୁମ୍ଭେ ବର୍ତ୍ତମାନ ମନ୍ତ୍ରଣାଗାରକୁ ଯାଅ । ଆଉ ଶମ୍ଭୁଜୀକୁ ସେଠାକୁ ଆସିବାକୁ ଶୀଘ୍ର ଖବର ପଠାଅ ।

ରଘୁଜି—( ଶ୍ଳେଷଭାବେ ) ମ୍ଳେଚ୍ଛ ! ହାଃ ହାଃ ହାଃ— ସେ କ'ଣ ଏଠାରେ ଅଛି ବୋଲି ବିଶ୍ୱାସ କରନ୍ତି, ମହାରାଜ ? ଉଃ ହୋଃ ! ( ଅର୍ଦ୍ଧସ୍ୱଗତ ) ନରାଧମ ! ବିଶ୍ୱାସଘାତକ ! କରିଛୁ କ'ଣ ?— ଅରୁଣା ! ଅରୁଣା !

[ କୁମାର ଓ ରଘୁଜିର ପ୍ରସ୍ଥାନ ]

ଭୋନ୍‌ସଲ—( ସ୍ୱଗତ ) ଉଃ—ଆଜି କି କୌଶଳଟାଏ ମାଟି ହୋଇଗଲା । ବର୍ତ୍ତମାନ ଯେ ଅନ୍ୟ ଗୋଟାଏ ବିପଦ ଆସି ଉପସ୍ଥିତ । ଭୟ କଣ ? ସଖା ମୁଷ୍ଟି ମଧ୍ୟରେ, ରଘୁଜି ଥିବାଯାଏ, ମୁଁ ନିର୍ଭୟ । ( ମାଧବ ପ୍ରତି ) ତୁମ୍ଭେ ମଧ୍ୟ ମନ୍ତ୍ରଣାଗାରକୁ ଚାଲ ।

ମାଧବ—ଶୀଘ୍ର ଚାଲ, ସଖା—ଉଃ । ସଖାଙ୍କର କି ବିପଦ । [ ଉଭୟଙ୍କର ପ୍ରସ୍ଥାନ ]

---

## ଚତୁର୍ଥ ଦୃଶ୍ୟ

—ଅରଣ୍ୟ ପ୍ରଦେଶ—

[ ଦୁଇଜଣ ସାଁନ୍ତାଲ ସୈନ୍ୟଙ୍କ ପ୍ରବେଶ ]

୧ମ ସୈନ୍ୟ—ତୁଇ ହମାର୍ ବାଟ୍ ଦେଇ କେନ୍‌କେ ଯାଉଛୁ ରେ ?

୨ୟ ସୈନ୍ୟ—ତୋ'ର କେନ୍ ବାଟ୍‌ରେ—ଇଠା'ତ ହାମାର୍ ସର୍ଦ୍ଦାରର ବାଟ୍ ।

୧ମ ସୈନ୍ୟ—ହାମାର୍ ସର୍ଦ୍ଦାରେତ ଇ' ଗାଁ'ର ମାଲିକ୍—ଆଉ ଫେର୍ କେନ୍ ସର୍ଦ୍ଦାର ଆଛେତେ ?

୨ୟ ସୈନ୍ୟ—ଜାଣା, ତୋ'ର ସର୍ଦ୍ଦାର ଇ' ଗାଁ'ର ମାଲିକ୍ ? ହାମାର୍ ସର୍ଦ୍ଦାର କେହି ନୁହେଁ ?

୧ମ ସୈନ୍ୟ—ତୋର ସର୍ଦ୍ଦାର, ବୁଢ଼ା ସର୍ଦ୍ଦାରର ଯେନ୍ତା ନଉକର୍ ଥିଲା—ହାମାର ସର୍ଦ୍ଦାରର ସେନ୍ତା ନଉକର୍ ଅଛି ।

୨ୟ ସୈନ୍ୟ—ଜାଣା, ହାମାର ସର୍ଦ୍ଦାର ତୋର ସର୍ଦ୍ଦାରର ନଉକର୍ ?

୧ମ ସୈନ୍ୟ—ହଁ—ନଉକର୍ ।

୨ୟ ସୈନ୍ୟ—ନଉକର୍ ?—ଏତେ ଦମାକ୍ (ଅଟ୍ଟହାସ୍ୟ କରିବା)

୧ମ ସୈନ୍ୟ—ଜୁଛ୍ ପରୱା ନେଇରେ (ସେହିପରି କରିବା)

[ ୨ୟ ସର୍ଦ୍ଦାରର ପ୍ରବେଶ ]

୨ୟସର୍ଦ୍ଦାର—ଜାଣା ହେଲା କିମନ୍—ଝଗଡ଼ା କାଁକରି କରୁଛୁ ?

୨ୟ ସୈନ୍ୟ—ଏ' ସର୍ଦ୍ଦାର । ମୁଇଁ କିଛି ନାହିଁ କରବାର—ଦହରେ ପଡ଼ିକରି ମୋର ସାଙ୍ଗେ ଆଗ ଝଗଡ଼ା କରୁଛେ—କହୁଛେ ତୁଇ ମାଲିକ ନହୁ—ତା'ର ସର୍ଦ୍ଦାର ମାଲିକ୍—ଆଉ ତୁଇ ତାର ତଲେ ନୌକର ।

୨ୟ ସର୍ଦ୍ଦାର—ନଉକର ?—ନଉକରର ଏତେ ଦମାକ୍ । ମୁଇଁ ନଉକର୍ ? କାଟ୍‌ଡାଲେ, କାଟ୍-ଡାଲେ— (ଅଟ୍ଟହାସ୍ୟ)

[ ୧ମ ସର୍ଦ୍ଦାରର ପ୍ରବେଶ ]

୧ମ ସର୍ଦ୍ଦାର—ସମଝାଇ କରି ଫିଲମନ୍ ।

୨ୟ ସର୍ଦ୍ଦାର—ଜୟନ୍ତ । ଏ' ତୋର କେନ୍ତା ଦମାକ—ମୋର ହୁକୁମ୍ କାଁକରି ନାହିଁ ଶୁନୁଛୁ—ଇ'ଗାଁ ଛାଡ଼ି କରି କାଁକରି ନେହି ଯାଉଛୁ ?

୧ମ ସର୍ଦ୍ଦାର—ଭଲ କହୁଛୁ ଫିଲମନ୍—ମୋର ଗାଁ, ମୁଇଁ ଦୁସରାକେ ଦେଇକରି ଗୁଲ୍‌ଜମି ।

୨ୟ ସର୍ଦ୍ଦାର—ହେନ୍ତାହେଲେ ନୌକର୍ ବରାବର୍—ପ୍ରଜା ବରାବର୍, ରହିବାର ଗୁଇ

୧ମ ସର୍ଦ୍ଦାର—ହାଃ, ହାଃ, ହାଃ—ବେଶ୍ ଫିଲମନ୍ । ତୋରକେ ନିଜର ଘରର୍ ମାଲିକ୍ କରି ମୁଁ ତାର ନୌକର ହୋଇ ରହିମି ?

୨ୟ ସର୍ଦ୍ଦାର—ଇ' ଗାଁ'ତ ମୋର ।

୧ମ ସର୍ଦ୍ଦାର—କେନ୍ତାକରି ରେ ? ମୁଇଁତ ବହୁତ ଦିନୁ ସର୍ଦ୍ଦାରର ତଲେ ସର୍ଦ୍ଦାର—ତୁ ନୌକର ।

୨ୟ ସର୍ଦ୍ଦାର—ତୁ କହିଲେ ଜାଣା ହେବ ? ସବୁକୁ ପଚାର ।

୨ୟ ସର୍ଦ୍ଦାର—ପଚାରଲେ କାଏଁ ଲାଭ ? କେତେ ଲୋକ ତୋ'ର ଅଛନ୍ ଦେଖି ଠିକ୍ କର—ବିଚାର କର ।

୨ୟ ସର୍ଦ୍ଦାର—ବିଚାର କରିମି ଜାଣା—ତୁଇ ଯେନ୍ତା ନୌକର ଥିଲୁ, ମୁଇଁ ସେନ୍ତା ନୌକର ଥିଲି—ବୁଢ଼ା ସର୍ଦ୍ଦାରର ତୁ ବି କିଛି ନଥିଲୁ, ମୁଁ ବି କିଛି ନ ଥିଲି ।

୧ମ ସର୍ଦ୍ଦାର—ଠିକ୍ କଥା, ବାକି ମୁଁ ତାର ପୁରନା ନୌକର ଥିଲି—କହତ, ଭାଇ, ତୋତେ କିଏ ଆନିଥିଲା, କିଏ ଖୁଆଇଥିଲା, କିଏ ପାଳିଥିଲା, କିଏ ଶିଖେଇଥିଲା, କିଏ ଏତୁ ଏତେ କରିଥିଲା ?—ସବୁ ଜାଣା ପାରେ ଗଲୁନି ?

୨ୟ ସର୍ଦ୍ଦାର—ପାରିମି କାହିଁକେ ? ତୁଇ ମୋ'ର କିଏ ? ମୁଇଁ ଯେନ୍ତା, ତୁଇ ସେନ୍ତା । ଯେ ବଡ଼ କଲା—ସେ କପାଲ୍—ସେ କପାଲ୍—ସେ କପାଲ୍ ମତେ ମାଲିକ୍ କରିଛେ ।

୧ମ ସର୍ଦ୍ଦାର—କାଣା—ଏଡ଼େ ନିମକ୍‌ହରାମ୍ ତୁଇ ? ଅରେରେ ବଦ୍‌ମାସ୍ । ଏଡ଼େ ଦମାକ୍ ତୋ'ର ? ଅଚ୍ଛା ଆଜ୍ ପରୀକ୍ଷା କରାଯାଉ, ତୋର କପାଲ୍ ବଡ଼ କି, ମୋର ଧରମ ବଡ଼ ? (ଅସ୍ତ୍ରବାହାରକଲେ)

୨ୟ ସର୍ଦ୍ଦାର—ଏ'ତ ଠିକ୍—ପରୀକ୍ଷା ହୋଇଯାଉ—ତା'ର କେନ୍‌ଟା ବଡ଼ ( ଉଭୟେ ଯୁଦ୍ଧରେ ପ୍ରବୃତ୍ତ ହେବାବେଳେ ତ୍ରିଶୂଳ-ଧାରିଣୀ ସନ୍ନ୍ୟାସିନୀର ପ୍ରବେଶ )

ସନ୍ନ୍ୟାସିନୀ—ଶାନ୍ତ ହୁଅ, ଭାଇମାନେ—ଭାଇରେ ଭାଇରେ ଲଢ଼ାଇ !

ସମସ୍ତେ—[ ସାଷ୍ଟାଙ୍ଗେ ତୁହିଁ ଅବନତଶିର ହେବା ]

—ଯବନିକା—

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଅରଣ୍ୟ—

[ ଅରୁଣା ଏକାକିନୀ ଅସୀନା ]

ଅରୁଣା—ବିଚିତ୍ର ବିଧାନ ବିଧିର । କାହିଁ ଦିନେ ତୁଚ୍ଛ, ଅଜ୍ଞାନ ହୋଇ କେଉଁ ମହାଶୂନ୍ୟ ଗର୍ଭରେ ଲୀନ ହେବାକୁ ଯାଉଥିଲି—କାହିଁ ଆଜି ଗୋଟିଏ ଅପରିଚିତ ରାଜ୍ୟର ରାଜ୍ଞୀପଦେ ବରିତା ହୋଇ, ସହସ ସହସ୍ର ଅଜ୍ଞାତକୁଳଶୀଳ ଅସଭ୍ୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରୁଅଛି । କିଏ ସେ ସନ୍ନ୍ୟାସୀ ? ଯେମନ୍ତ କି ମୋତେହିଁ ଉଦ୍ଧାର କରିବା ନିମନ୍ତେ ସେହି ନଦୀ-ତଟରେ ଅବସ୍ଥାନ କରୁଥିଲେ । ହାୟ ! କି ଦୁର୍ଭାଗ୍ୟ ମୋର !—ଜ୍ଞାନଚକ୍ଷୁରୁନ୍ମୀଳନ ହେବାର ଅବ୍ୟବହିତ ପରେହିଁ ସାଧୁତ୍ତମ ଚକ୍ଷୁର୍ଦ୍ୱୟ ମୁଦ୍ରିତ କରିଦେଲେ । ଇଙ୍ଗିତରେ ଏତିକିମାତ୍ର ଜଣାଇ ଦେଇଗଲେ—ଏହି ଗୈରିକବସନ ଯେମନ୍ତ ମୋର ନିତ୍ୟ ପରିଧେୟ ହୁଏ—ଏହି ଭୂର୍ଜପତ୍ର-ଲିଖିତ ଏକଚ୍ଛତ୍ର "ନିର୍ଭୟଂ କର୍ତ୍ତବ୍ୟମନୁସର"—ଯେମନ୍ତ କି ଗଳାରେ ଅମୂଲ୍ୟ ପଦକ କରି ଝୁଲାଇ ରଖେଁ ।—ପ୍ରକୃତରେ ଏ' ସମସ୍ତ ଅଭୟ କବଚ—ଏମାନଙ୍କର ବଳରେ ମୁଁ ନିର୍ଭୟ-ଚିତ୍ତରେ ସ୍ୱଦେଶାଭିମୁଖରେ ଯାତ୍ରା କରିଥିଲି—ନିର୍ଭୟ-ଚିତ୍ତରେ ଅଧୁନା ଦୁର୍ଦ୍ଦମନୀୟ ଅସଭ୍ୟମାନଙ୍କ କଲହାବର୍ତ୍ତିରେ ଆତ୍ମପ୍ରଭାବପ୍ରକାଶ କରି, ସ୍ୱ-କର୍ତ୍ତବ୍ୟ । ନିର୍ଦ୍ଦେଶ କରିବାକୁ କ୍ଷମହୋଇଅଛି—ସ୍ୱ-କର୍ତ୍ତବ୍ୟ । ପ୍ରତିଶୋଧଲିପ୍‌ସୁ ପୁତ୍ରୋନ୍ମତ୍ତ ପିତା ପ୍ରତି ସାମାନ୍ୟ କନ୍ୟାର କର୍ତ୍ତବ୍ୟ—କିଛି କଣ ନାହିଁ ? ଅବଶ୍ୟ ଅଛି—ପୁରୋହିତ ସାହାଯ୍ୟ କରିବାକୁ ଉପଯୁକ୍ତା ନ ହେଲେ ସୁଦ୍ଧା,ସୈନ୍ୟବଳ ଯୋଗାଇବାକୁ କ୍ଷମା ହେବି ତ—ଶତ୍ରୁର ନାନା ଗୁପ୍ତ ସମ୍ବାଦ ପ୍ରଦାନ କରି, ସାମରିକ କାର୍ଯ୍ୟରେ ଯଥେଷ୍ଟ ସୁବିଧା ସାଧନ କରିପାରିବି ତ ?—ଆଜ ଖାଲି ଖାଲି ପିତାଙ୍କ ସଙ୍ଗେ ମିଳିତା ହୋଇ ଗଲଗ୍ରହଳ ହେବାଠାରୁ ଏହା ସହସ୍ରଗୁଣେ ଶ୍ରେୟସ୍କର ନୁହେଁ କି ? ମୋର ଗୋଟାଏ ମହାଭାବନା ଥିଲା, ଏ' ଜଙ୍ଗଲିଆମାନେ ଅଭୟସିଂହଙ୍କର ବିରୁଦ୍ଧାଚରଣରେ ଯେବେ ଅସମ୍ମତ ହୁଅନ୍ତି—ମାତ୍ର ସୁଯୋଗବଶତଃ ୨ୟ ସର୍ଦ୍ଦାରକୁ ଅଭୟସିଂହ ଆଶ୍ରୟ ଦେବାରୁ, ବର୍ତ୍ତମାନ ସେ ଏମାନଙ୍କର ଜାତଶତ୍ରୁ । ଆଉ ଗୋଟିଏ ଭୟ—ଅଭୟସିଂହ ଯଦି ୨ୟ ସର୍ଦ୍ଦାରକୁ ସର୍ଦ୍ଦାର କରିବା ମାନସରେ ଏ' ପ୍ରଦେଶ ଆକ୍ରମଣ କରନ୍ତି ?—ଏପରି ବୈଦେଶିକ ଆକ୍ରମଣ ବେଳେ, ତାହା ଅସମ୍ଭବ—ମାତ୍ର, ଶକ୍ତିବର୍ଦ୍ଧନ-ରୂପାଦି ସ୍ୱାର୍ଥସିଦ୍ଧି ନିମନ୍ତେ ଯଦି ତାହା କରନ୍ତି—ତା ହେଲେ ଉପାୟ କଣ ? ଦେଖାଯିବ—ମା ସମଲେଶ୍ୱରୀ ଅଛନ୍ତି ।

ନେପଥ୍ୟେ—ଜୟ ମା ସମଲେଶ୍ୱରୀଙ୍କର ଜୟ !

ଅରୁଣା—ନିଶ୍ଚୟ ଜୟ ହେବ ।

[ ପ୍ରଥମ ସର୍ଦ୍ଦାରର ପ୍ରବେଶ ]

୧ମ ସର୍ଦ୍ଦାର—ମାଇଜି ! ଦୂତ ତୋ'ର ଫେରିଅସିଲାଣି ।

ଅରୁଣା—ଜଲ୍‌ଦି ଡାକିଦେ, ସର୍ଦ୍ଦାର !

୧ମ ସର୍ଦ୍ଦାର—ଯୋ ହୁକୁମ୍ (ପ୍ରସ୍ଥାନ)

ଅରୁଣା—ପିତଃ ! କେବେ ତୁମ୍ଭର ଚରଣ ବନ୍ଦନା କରିପାରିବି ? ସମ୍ମୁଜ ! ପ୍ରାଣପ୍ରିୟତମ !—ନା, ନା, ଏ' ଦୁର୍ବଳ ପ୍ରବୃତ୍ତି ପୋଷଣ କରିବାକୁ ହୃଦୟରେ ବର୍ତ୍ତମାନ ସ୍ଥାନ ନାହିଁ । ସର୍ବାଗ୍ରେ ମୁଁ ଦେଖାଇବି—ସମ୍ମୁଜ ଯେଉଁ ସମସ୍ତ ବୀର-କାହାଣୀ ନିତ୍ୟ ନିତ୍ୟ ଶୁଣାଉ ଥିଲେ, ଜଣେ ନିଷ୍କର୍ମା ଅଳସଶ୍ରୋତାକୁ ଶୁଣାଇ ନାହାନ୍ତି—ଯେଉଁ ସମସ୍ତ ରଣନୀତି ସମ୍ବନ୍ଧୀୟ ଉପଦେଶ ବେଳେ ବେଳେ ଦାନ କରୁଥିଲେ, ତାହା ଗୋଟିଏ ଅଯୋଗ୍ୟ ଅପାତ୍ରକୁ ଦାନ କରିନାହାନ୍ତି । ପିତା ମଧ୍ୟ ଦେଖନ୍ତୁ, ତାଙ୍କର ସୁଶିକ୍ଷିତ ବୀରପୁତ୍ର-ଲାଭ-ସୁଖ ଭାଗ୍ୟରେ ନଥିଲେ ସୁଦ୍ଧା—ଏହି ଅଶିକ୍ଷିତା କନ୍ୟାଦ୍ୱାରା କିଞ୍ଚିତ୍‌ହେଲେ ସେ ଅଭାବ ପୂରଣ ହୋଇପାରୁଛି କି ନାହିଁ ।

(ନେପଥ୍ୟେ ଦୂତ)—ଜୟ ରାଣୀମାଇଜିକି ଜୟ !

[ ଦୂତର ପ୍ରବେଶ ]

ଅରୁଣା—ଜୟ ମା ସମଲେଶ୍ୱରୀଙ୍କର ଜୟ !

ସମସ୍ତେ—ଜୟ ମା ସମଲେଶ୍ୱରୀଙ୍କର ଜୟ !

ଅରୁଣା—ବଳବନ୍ତ ! କାମ୍ ତୁହାର ହାସିଲ୍ ତ ?

ଦୂତ—ମାଇଜି ! ଏକ୍‌ଟି କାମ ହାସିଲ୍ ହୋଇଛି—ଦୋସ୍‌ରା କାମ୍ ହେଲାନାହିଁ—

ଅରୁଣା—(ଅର୍ଦ୍ଧସ୍ୱଗତ) କେଉଁ କାମ୍ ହେଲା ନାହିଁ ? ପିତା କଣ—

ଦୂତ—ଏଇ ନେ, ମାଇଜି—ଚିଠାଉ ତୋ'ର ଫେରାଇ ନେ ।

ଅରୁଣା—(ଅର୍ଦ୍ଧସ୍ୱଗତ) ଏ' ଯେ ସମ୍ମୁଜ ନାମର ପତ୍ର ! (ପ୍ରକାଶ୍ୟେ) ଏ' ଭାଷାର ମାଲିକ୍‌କୁ ତୁ କଣ ନାହିଁ ପାଇଲୁ ?

ଦୂତ—ନାଇ ମାଇଜି ! ଉନ୍‌କା ପତ୍ତା ନାଇ—କୋନ୍ କୋନ୍ ଅଦମ୍ ବୋଲୁଛନ୍, ଓ ଦୁଷ୍‌ମନ ଅଛେ ।

ଅରୁଣା—(ସ୍ୱଗତ) ଦୁଷ୍‌ମନ୍ ! ପିତାଙ୍କ ସନ୍ଦେହ କଣ ତେବେ ସତ୍ୟ ହୋଇଛି ? ଅସମ୍ଭବ—ସେହି ବୀର ଅକୃତ—ସରଳ ପ୍ରକୃତ କଦାପି କପଟତା ବା ବିଶ୍ୱାସଘାତକତାର ଆଧାର ହୋଇ ନ ପାରେ । (ପ୍ରକାଶ୍ୟେ) ଅଚ୍ଛା, ପିତା ( ଜିହ୍ୱା ଦଂଶନ କରି ) ସେହି ଦୋସ୍‌ରା—

ଦୂତ—ହାଁ, ଦୋସରା ମାଲିକ୍ ତୋର ଚିଠାଉ ପଢ଼ିଲା; ଆଉ, ହାମକୁ ଲୁଣ୍ଠାଇ ପକାଇଲା—ବାଉକା ଉପର୍ ବାତ୍ ପୁଛିନେ ଲାଗିଲା—ଓ କିଆ ପାଗଲା ଅଛନ୍ ମାଇଜି ?

ଅରୁଣା—ହାଁ, ହାଁ, ପାଗ୍‌ଲା ଅଛନ୍ ।

ଦୂତ—ଓ ଖାଲି ପୁଛିନେ ଲାଗିଲା—ବୋଲ୍ ବୋଲ୍ "ମେରି ଜାନ୍—ମେରି କଲିଜା—ମେରି ଅରୁଣା କାହାଁ ?—ମୁଜ୍‌କୁ ବତ୍‌ଲାଓ—ହମ୍ ଧନ୍ ଦୌଲତ୍ ଯୋକୁଛ୍ ମେରା ହେୟ, ଦେଲାଏଙ୍ଗେ—ଖାଲି ମୁଜ୍‌କୁ ବତ୍‌ଲାଓ—କାହାଁ ମେରି ଜାନ୍ ? ଓ ଅଲ୍‌ବତ୍ ମେରା ବେଟିକା ହର୍‌ପ୍—ତୁ କପଟ୍ ମତ୍ କର !"

ଅରୁଣା—ତୁ କାଣା କହିଲୁ ?

ଦୂତ—ହମ୍ ଯେସନ୍ ତୁ ବତାଇ ଥିଲୁ, ତେସନ୍ କହିଲା—"ହାମ୍‌କୁ ମାଫ୍ କିଜିଏ—ଏ' ହାମ୍‌ରା ମାଇଜିକା ଚିଠାଉ—ମାଇଜିକା ମନ, କେଣି-କୁଛ୍ ହାମ୍‌ସେ ନା ପୁଛନା—ହାମ୍ ଚଲା"—ଏତ୍ନା ବୋଲ୍‌କେ—ହାମ୍ ଭାଗିଲା—ଓ କେତ୍‌ନା ଡାକ୍‌ନେ ଲାଗିଲା, ଆଦ୍‌ମି ଦୌଡ଼ାଇଲା—ହାମ୍ ତୋର କଥା ମାଫିକ୍ କାମ୍ ଠିକ୍ କରିଲା ।

ଅରୁଣା—( ସ୍ୱଗତ ) କିଷ୍ଟୁର ସନ୍ତାନକୁ ତୁମ୍ଭର କ୍ଷମାକର, ପିତା ! କର୍ତ୍ତବ୍ୟାନୁରୋଧରେ ଉଭୟ ମଧ୍ୟରେ ଅଜ ଏ' ପ୍ରାଚୀର ଗଠିତ ସିନା ! ( ପ୍ରକାଶ୍ୟେ ) ଲଢ଼ାଇର ହାଲ୍ କିଛି କାଣା ବୁଝିଲୁ ?

ଦୂତ—ହାମ୍ ଏହୁ ଚିଠ୍‌ଠାଭ୍ ଲଗି, ଦୋଦନ୍ ଉହାଁ ଥାକ୍‌ଲି—ଔର ଦେଖ୍‌ଲି—ବହୁତ୍ ଆଦ୍‌ମି ଜମା ହୋଉଛନ୍—ଖୁବ୍ ଜବର ଲଢ଼ାଇ ଲଗ୍‌ବା ।

ଅରୁଣା—ତୋତେ କୋଇ ଦୁଷ୍‌ମନ ବୋଲି ସନ୍ଦେହ କରିଲେ ନାହିଁ ତ ?

ଦୂତ—ଦୁସ୍ମନ୍ ବୋଲ୍‌କେ ସନ୍ଦେହ, ନା ଦେବ୍‌ତା ବୋଲ୍‌କେ ହାମାର୍ ପାଉଁ ଥାମ୍‌ଲା ।

ଅରୁଣା—(ହାସ୍ୟକରି) ତୁ ଦେବ୍‌ତା ହୋଇଗଲୁ ?

ଦୂତ—ମାଇଜି । ଏ' ସବ୍ ଭୋର ଚଲାକି ଅଛନ୍—ଜଠା ଜୁଟ୍ ପିନ୍‌କେ ଯୋଗୀ ସାଜ୍‌ଲା ପର୍, ଉହାଁ କୁଛ୍ ଦଗା ନାହିଁ ଦେଖ୍‌ଲା ।

ଅରୁଣା—ସମ୍ରୁକଙ୍କ କୁଛ୍ ପତ୍ତା ନାହିଁ ମିଲ୍‌ଲା ?

ଦୂତ—ଓ ଦୁଷ୍ମନ୍ ବୋଲ୍‌କେ ସବ୍‌କୋଇକା ମୁହଁ ସେ ଶୁନ୍‌ଲା—ଫେର୍ ଶୁନ୍‌ଲା, ଉନ୍‌କା ବାସ୍ତେ ଏଇ ରଦୁଜି ଉନ୍‌କା ବେଟିକୁ ହରାଇଛନ୍—ଆଉର ପାଟ୍‌ନା ବନ୍ ଯାଇଛନ୍ । ବାପ୍‌ରେ, କ୍ୟା ବଦମାସ୍ ।

ଅରୁଣା—(ସ୍ୱଗତ) ଏହା କଣ ସତ୍ୟ ? ଶମ୍ଭୁଜି ଦୁଷ୍ମନ୍ !—ସେ କି ପ୍ରକୃତରେ ଛଦ୍ମବେଶୀ ଓଡ଼ିଆ—ସମ୍ବଲପୁରର ଗୁପ୍ତଚର ? ନା, ନା—ଏତେ ପ୍ରଭାବ—ଏତେ ଶୌର୍ଯ୍ୟ, ସାମାନ୍ୟ ଗୁପ୍ତଚରଠାରେ ସାଧାରଣତଃ ଅସମ୍ଭବ । ହଁ, ଅନ୍ୟର ମଧ୍ୟ ଛଦ୍ମବେଶୀ ହୋଇଥିଲେ, ଅଳୀକ ଓ ପ୍ରକୃତଗତ ପାର୍ଥକ୍ୟ କେବେହେଁ ଲୁଚି ରହନ୍ତା ନାହିଁ । ପିତାଙ୍କର ସନ୍ଦେହର କାରଣ ତେବେ କଣ ? ମରହଟ୍ଟା ହୋଇ ଓଡ଼ିଆର ପ୍ରଶଂସା କରେ, ଏହା ଯା—ଅନ୍ୟ କୌଣସି ପ୍ରକାର ସନ୍ଦେହ ତ କେବେ ହେଲେ ସେ କରି ନାହାନ୍ତି—"ହୀନ ନାକଷ୍ଟର ଯଦି, ଏତେ ପ୍ରଭାବ ଦେଖାଯିବ କିପରି ?" ଏ' ଗୋଟାଏ ବଡ଼ କଥା କିନ୍ତୁ ନୁହେଁ—ରତ୍ନାକର ଯେ ଦିନେ ବାଲ୍ମୀକିର ପ୍ରତିଭା ପ୍ରକାଶ କରିବ, କିଏ ବିଶ୍ୱାସ କରିଥିଲା ? ଧୂଳିରେ କର୍ଦ୍ଦମାବୃତ ହେଲେ ସୁଦ୍ଧା, ତା'ର ତେଜ ପ୍ରକାଶ କରିବାକୁ କେବେ ଛାଡ଼େ କି ? ତେବେ, ଶମ୍ଭୁଜି କେଉଁଠି ?—ନିରୁଦ୍ଦେଶ କାହିଁକି ?—ମୋର ବିରହରେ ? (ପ୍ରକାଶ୍ୟେ) ଆଚ୍ଛା, କବ୍‌ସେ ସମ୍ରୁକଙ୍କ ପତ୍ତା ନେଇ, କୁଛ୍ ବୁଝିଲୁ ?

ଦୂତ—ନାଇ, ମାଇଜି ।

ଅରୁଣା—ଅଚ୍ଛା, ତୁ ଅଭି ଆ' ।

ଦୂତ—ଯୋ ହୁକୁମ୍, ମାଇଜି । (ପ୍ରସ୍ଥାନ)

ଅରୁଣା—ନିଶ୍ଚୟ ସେ ମୁଁ ଏହି ଦୀନାର ବିରହରେ ନିରୁଦ୍ଦେଶ ହୋଇଛନ୍ତି । ଦୁଷ୍ମନ୍ ବୋଲି ଯେ ରାଜ୍ୟରେ ବ୍ୟକ୍ତ ହୋଇଛି, ଏ' କେବଳ ପିତାଙ୍କର କାଳ୍ପନିକ ସନ୍ଦେହ ପ୍ରରୋଚନାରେ । ହାୟ ! ମନେ ପଡ଼ୁଛି ସେହି ଦିନଟି—ଯେଉଁଦିନ ବିଦେଶ ଯାତ୍ରା କରିବା ପୂର୍ବରୁ ତାଙ୍କ ନିକଟରୁ ବିଦାୟ ନେବାକୁ ଗଲି !—ଦର୍ଶନ ମାତ୍ରେ, 'ଅରୁ' ବୋଲି ଭଗ୍ନସ୍ୱରରେ ଅର୍ଦ୍ଧସମ୍ବୋଧନଟି ଶେଷ ନ କରୁଣୁ, ପ୍ରସାରିତ ସୁଦୀର୍ଘ ବାହୁ-ଯୁଗଳ ଦ୍ୱାରା ମୋତେ ଆଲିଙ୍ଗନ ପାଶରେ ଆବଦ୍ଧ କରିଦେଲେ—ମୁଁ କି ଏକ ଅଭୂତପୂର୍ବ ଆନନ୍ଦ-ସାଗରରେ ଲୁପ୍ତ-ଜ୍ଞାନ ହୋଇଗଲି । କେତେକ୍ଷଣ ଯେ ସେଇଭାବେ ରହିଲି, ତାହା ଏପର୍ଯ୍ୟନ୍ତ ଠିକ୍ କରିପାରୁ ନାହିଁ । ଏତିକି ମାତ୍ର ସ୍ମରଣ ହେଉଅଛି, ବକ୍ଷଃଦେଶରେ ଗୋଟାଏ କି ଭୀଷଣ ଆଘାତ ଅନୁଭବ କରନ୍ତେ, ମୋର ମହାନିଦ୍ରା ତୁଟିଗଲା—ଆଖି ମେଲାଇ ଦେଖେତ, ପ୍ରବଳ ଝଟିକା-ପ୍ରବାହରେ ଯେପରି ତାଙ୍କର ଦେହ-ତରୁ କମ୍ପିତ—ଶିତଧାରାରେ ଯେପରି ସ୍ନିଗ୍ଧ ଗଣ୍ଡଦ୍ୱୟ ଅଶ୍ରୁପ୍ଲାବିତ—ଅଭି ମୋ ଆଡ଼େ ନିର୍ନିମେଷ ଦୃଷ୍ଟିପାତ—ଶୁଷ୍କ ବିଚକ୍ଷୁ ମେଲି ଦିଅନ୍ତେ, ଆଲିଙ୍ଗନ ପାଶ ଗାଢ଼ୁଁ ଗାଢ଼ତର ହେବାକୁ ଲାଗିଲା—ସ୍ପନ୍ଦିତାଧରରେ ମନ୍ଦ ମନ୍ଦ ଏତିକି ମାତ୍ର ସ୍ଫୁରିତ ହେଲା, 'ପ୍ରିୟେ' !—ପ୍ରତିଧ୍ୱନି ସ୍ୱରୂପ ତତ୍‌କ୍ଷଣାତ୍ ଉତ୍‌ଫୁଲ୍ଲ କଣ୍ଠଦେଶରୁ ମୋର ନିର୍ଗତ ହେଲା, 'ପ୍ରାଣେଶ୍ୱର'—ଫଳରେ କଣ ଯେ

ଘଟିବାକୁ ଯାଉଥିଲା, ପରସ୍ପରର କ ଯେ ଆଶା ମେଣ୍ଟାଇବାକୁ ଯାଉଥିଲା—ଅହା ! ସେହି ଚୁମ୍ବନ —ସେହି ଚିର-ବାଞ୍ଛିତ ଅମିୟ-ଚୁମ୍ବନ—ମାତ୍ର, କର୍କଶ ଧ୍ୱନିରେ, ହଠାତ୍ ଦୂର କର୍ଣ୍ଣ ଯୁଗଳରେ ଧ୍ୱନିତ ହୋଇ 'ଅଳ୍ପ' ବୋଲି ସମ୍ବୋଧନ ଉଠିଲା —ନିଶାଗମରେ ଚକ୍ରବାକ-ଚକ୍ରବାକୀ ତୁଲ୍ୟ ଉଭୟେ ହିଁ ଭିନ୍ନ ହୋଇଗଲେ । ହାୟ ! ହାୟ ! ଏହି ରଥାଙ୍ଗଯୁଗଳର ତ ପୁନର୍ମିଳନ ହେବ—ଆମ୍ଭମାନଙ୍କର ମିଳନ କଣ ସେହିଠାରେ ଚିରଦିନପାଇଁ ସମାହିତ ହୋଇଗଲା ?— ଅସମ୍ଭବ, ଯେଉଁଠାରେ ସେ ଥାଆନ୍ତୁ—ଯେତେ ବାଧା-ବିଘ୍ନ ମଧ୍ୟସ୍ଥଳରେ ଥାଉ ନା କାହିଁକି, ପ୍ରେମିକ-ପ୍ରେମିକାର ମିଳନ-ରୋଧ ଅସମ୍ଭବ— ଚୁମ୍ବକାକର୍ଷଣରେ ଯେପରି, ଉଭୟେ ଦିନେ ନା ଦିନେ ମିଳିତ ହେବେଇ ହେବେ । ବର୍ତ୍ତମାନ, ସେ ରଥାଙ୍ଗ ଓ ମନପ୍ରାଣ ନିସ୍ପ୍ରୟୋଜନ— ଉପସ୍ଥିତ-କାର୍ଯ୍ୟରେ ମନୋନିବେଶ କରଣୀୟ ।

[ ପ୍ରସ୍ଥାନୋଦ୍ୟତା ହେବା ସମୟରେ ପ୍ରଥମ ସର୍ଦ୍ଦାରର ପ୍ରବେଶ ]

ସର୍ଦ୍ଦାର—ମାଇଜି !

ଅରୁଣା—କ ଖବର ସର୍ଦ୍ଦାର ?

୧ମ ସର୍ଦ୍ଦାର—ଅଭୟ ସିଂ ହାମ୍ରି ଦେଶ ଚଢ଼ାଉ କରଛନ୍ ।

ଅରୁଣା—କେତ୍‌ନା ଆଦ୍‌ମି ?

୧ମ ସର୍ଦ୍ଦାର—ହାମ୍ ଶୁନ୍‌ଲା, ଦୁଇହଜାରସେ କମ୍ ନେହି ।

[ ଜନୈକ ସାନ୍ତ୍ରାଲର ପ୍ରବେଶ ]

୧ମ ସାନ୍ତ୍ରାଲ—ମାଇଜି ! ଦୁଷ୍ମନ୍ ଦେଖା ଦେଇଛନ୍ତ, ଆଜ ରକ୍ଷା ନାହିଁ—ସର୍ଦ୍ଦାର । ହୁକୁମ୍ ଦେ, ହାମ୍ ସବ୍ ଲଢ଼ାଇକୋ ବାହାର୍‌ବୁ ।

ସର୍ଦ୍ଦାର—ଅସ୍‌ଛେ ମାଇଜି । ଆଶୀର୍ବାଦ କର୍, ଦୁଷ୍ମନ୍‌କା ଶିର ତୋର ପାଉଁରେ ଡାଲି ଦେଇ ପାରୁଁ ।

[ କେତେକ ଜଣ ସୁସଜ୍ଜିତ ସାନ୍ତ୍ରାଲର ପ୍ରବେଶ ]

୨ୟ ସାନ୍ତ୍ରାଲ—ସର୍ଦ୍ଦାର—ଡେର ମତ୍ କର୍ ।

[ ନେପଥ୍ୟେ—କ୍ଷୀଣସ୍ୱରେ ]

'ଜୟ ଅଭୟସିଂହଙ୍କର ଜୟ' !

ସାନ୍ତ୍ରାଲ—ଏଇ ଶୁନ୍ ସର୍ଦ୍ଦାର ! ଦେ ବିଦାୟ, ମାଇଜି !

ସମସ୍ତେ—ଜୟ—ମାଇଜିଙ୍କ ଜୟ—ଜୟ ସମଲେଶ୍ୱରୀଙ୍କ ଜୟ !

[ ଅଭିବାଦନ କରି ପ୍ରସ୍ଥାନୋଦ୍ୟତ ]

ଅରୁଣା—ସର୍ଦ୍ଦାର !

୧ମ ସର୍ଦ୍ଦାର—ମାଇଜି ! ( ସାଶ୍ଚର୍ଯ୍ୟେ ଫେରି ଚାହିଁବା )

୧ମ ସାନ୍ତ୍ରାଲ—ପିଛନ୍‌ସେ କାଁକର ଡାକ୍‌ଲା, ମାଇଜି ?

ଅରୁଣା—ତୁମ୍‌ଲୋକ ସବ୍ କାହିଁ ବାହାର୍‌ଲ ?

ସମସ୍ତେ—ଲଢ଼ାଇକୋ—

ଅରୁଣା—କା'ର ହୁକୁମ୍‌ରେ ?

୧ମ ସାନ୍ତ୍ରାଲ—ମାଇଜିର—

ଅରୁଣା—ହୁକୁମ୍ ନେଇଛ ? ( ସମସ୍ତେ ପରସ୍ପରକୁ ଚାହିଁବା ) ( ନେପଥ୍ୟେ ) ଜୟ ଅଭୟସିଂହଙ୍କର ଜୟ ।

ସମସ୍ତେ—ଏଇ ଶୁନ୍, ଜଲଦି ହୁକୁମ୍ ଦେ !

[ ୩ୟ ସାନ୍ତ୍ରାଲର ବେଗେ ପ୍ରବେଶ ]

୩ୟ ସାନ୍ତ୍ରାଲ—ଆଉ ରକ୍ଷା ନାହିଁ, ମାଇଜି । ଦୁଷ୍ମନ ଗାଉଁକା ଭିତର—ଇଠାନେ ଆସିଲା ବୋଲି ।

ଅରୁଣା—ଆସିବାକୁ ଦିଅ ଭାଇମାନେ—ସର୍ଦ୍ଦାର ! ତୁ ଯା, ଦୁଷ୍ମନ୍‌କୋ ଖାତର୍‌ଦେଇ ଠାନେଲେ ଅସ୍‌ଚା ।

୧ମ ସର୍ଦ୍ଦାର—ଏ' କେସନ୍ ହୁକୁମ୍ ମାଇଜି ?

ସମସ୍ତେ—ଦୁଷ୍ମନ୍‌କୋ ଲେ ଅସ୍‌ବା !—

ଅରୁଣା—ଯା, ବାତ୍ ମତ୍‌କର ।

୧ମ ସର୍ଦ୍ଦାର—ଯୋ ହୁକୁମ ! ( ପ୍ରସ୍ଥାନ )

( ନେପଥ୍ୟେ )—'ଜୟ ଅଭୟସିଂହଙ୍କର ଜୟ !'

[ ସମସ୍ତେ ଥରେ ଗର୍ବଦର୍ପେ ଅସ୍ତ୍ରୋତ୍ତୋଳନ କରିବା, ସଙ୍ଗେ ସଙ୍ଗେ ଅବନମନ ପୂର୍ବକ ଧୀରେ ଧୀରେ ପ୍ରଥମ ସର୍ଦ୍ଦାରକୁ ଅନୁସରଣ କରି ପ୍ରସ୍ଥାନ କରିବା ]

ଅରୁଣା—ଅଭୟସିଂହଙ୍କ ସଙ୍ଗେ ସମ୍ମୁଖ ଯୁଦ୍ଧରେ ପ୍ରବୃତ୍ତ ହେବା ଧୃଷ୍ଟତା ମାତ୍ର— ତା'ହେଲେ କି ଉପାୟ ଏବେ ଅବଲମ୍ବନ କରୁଛୁ ? ଦେଖାଯାଉ —( ଭାବି ) ଏ କ'ଣ ? ମୋର ବାମଚକ୍ଷୁ ନାଚଉଠିଲା କାହିଁକି ? ବାମବାହୁର ମଧ୍ୟ ସ୍ପନ୍ଦନ କି ହେତୁ ? ମା ସମଲେଶ୍ୱରୀ ! ସମଦେ, ବିପଦେ ତୁମ୍ଭେ ହିଁ ଏକମାତ୍ର ଭରସା ।

[ ନେପଥ୍ୟେ ୧ମ ସର୍ଦ୍ଦାର—ଇଠାନେ ମାଇକ ଅଛନ୍, ସର୍ଦ୍ଦାର । ]

ଅରୁଣା—ଦଳପତି ନିଶ୍ଚୟ ଏଣେ ଆସୁଛନ୍ତି— ସଖ୍ୟଭାବେ ଆମନ୍ତ୍ରିତ ହେଲେ ସୁଦ୍ଧା, ସେ ଶତ୍ରୁ—ତାଙ୍କର ମନୋଭାବ ପୁଣି ଏକାବେଳକେ ଅଗୋଚର—ବିଶେଷ ଭୟର କାରଣ ନ ଥିଲେ ମଧ୍ୟ, ହଠାତ୍ ଶତ୍ରୁର ସମ୍ମୁଖୀନ ହେବା ଅପେକ୍ଷା ଅନ୍ତରାଳରୁ ତାଙ୍କର ଗତିବିଧି ଟିକିଏ ନିରୀକ୍ଷଣ କରିବା ଉଚିତ । [ ଅନ୍ତରାଳରେ ଅବସ୍ଥାନ ]

ପୃଥ୍ୱୀସିଂହ—କାହିଁ ତୁମ୍ଭର ମାଇକ, ସର୍ଦ୍ଦାର ?

ଅରୁଣା—( ହଠାତ୍ ଚମକି ) ଏ଼ କିଏ ?

୧ମ ସର୍ଦ୍ଦାର—ହାମ୍, ଏଇଛନ୍ ମାଇଜକେ ଖବର୍ ଦେବା ।

ପୃଥ୍ୱୀସିଂହ—( ଅର୍ଦ୍ଧସ୍ୱଗତ ) କି ଚମତ୍କାର ବ୍ୟବହାର ଏମାନଙ୍କର । ଏଠାକାର ଜଙ୍ଗଲମାନେ ଏତେଦୂର ସଭ୍ୟ—ନିଶ୍ଚୟ ମାଇକ ଏମାନଙ୍କର ଦେବୀ ।

୧ମ ସର୍ଦ୍ଦାର—ହାଁ ସର୍ଦ୍ଦାର, ଦେବୀ । କୁଛୁ ଡର ନାହିଁ—ନିଶ୍ଚିନ୍ତ ହୋଇ ବସ୍‌ବା ।

[ ପୃଥ୍ୱୀସିଂହ ବସିଲେ ]

ହାମ୍ ଅଭି ଅସ୍‌ଛେ— ( ପ୍ରସ୍ଥାନ )

ଅରୁଣା—କିଏ ଏ଼ ? ଆକୃତିରେ ଶମ୍ଭୁଜିଠାରୁ ତ କୌଣସି ପାର୍ଥକ୍ୟ ଦେଖୁନାହିଁ—କଥାର ସ୍ୱର-ମଧ୍ୟ ଠିକ୍ ସେହିପରି—ପିତାଙ୍କର ସନ୍ଦେହ କଣ ତେବେ ସତ୍ୟ ? ଶମ୍ଭୁଜି, ଶତ୍ରୁ ସେନାପତି ପୃଥ୍ୱୀସିଂହ ?—ଶମ୍ଭୁଜି, ସରଳତାର ପ୍ରତିମୂର୍ତ୍ତି ସେହି ଶମ୍ଭୁଜି, ନୁହେଁ ?—ଶମ୍ଭୁଜି, ବୀରର ଅଗ୍ରଣୀ ସେହି ଶମ୍ଭୁଜି ନୁହେଁ ?—ଶମ୍ଭୁଜି, ମୋର ହୃଦୟର ସର୍ବସ୍ୱ ସେହି ଶମ୍ଭୁଜି ନୁହେଁ ? ନା—ନା—ଏ଼ ବୃଥା ଆଶଙ୍କା—ମୋର ଶମ୍ଭୁଜି, ଚିରଦିନ ସେହି ଶମ୍ଭୁଜି ।

[ ଅନ୍ତରାଳରୁ ଅରୁଣାର ପ୍ରବେଶ ]

ଅରୁଣା—ଅଭିବାଦନ, ସେନାପତେ !

ପୃଥ୍ୱୀସିଂହ—ଅଁ-ଅ଼ ( ଚାହିଁରହିବା )

ଅରୁଣା—ଏତେ ଦୃଷ୍ଟିରେ ଚାହିଁରହିଲେ ଯେ, ସେନାପତେ !

ପୃଥ୍ୱୀସିଂହ—କ୍ଷମା କରନ୍ତୁ, ମୋର ଅଭିବାଦନ ଗ୍ରହଣ କରନ୍ତୁ । ( ସ୍ୱଗତ ) ଏ଼ଯେ ଅବିକଳ ତାହାରି ପ୍ରତିମୂର୍ତ୍ତି—ଅରୁଣା ନୁହେଁ ତ ?—ମୋରି ପ୍ରାଣପ୍ରିୟତମା—ଓଃ ହୋଃ—ଏହା କି ସମ୍ଭବ ?

ଅରୁଣା—ସେନାପତେ । ଅନ୍ୟମନସ୍କଭାବେ କଣ ଭାବୁଛନ୍ତି ?

ପୃଥ୍ୱୀ ସିଂହ—ଅରୁଣା—ନା—ନା—

( ଆତ୍ମ ଗୋପନ କରିବା )

ଅରୁଣା—( ଚମକିଉଠି )—ଅରୁଣା । ( ପ୍ରକାଶ୍ୟେ ) କି ନାମ କହିଲେ ?—

ପୃଥ୍ୱୀ ସିଂହ—ଆପଣ କ'ଣ ତାଙ୍କୁ ଚିହ୍ନନ୍ତି ? ଅରୁଣା ବୋଲି—

ଅରୁଣା—( ସ୍ୱଗତ ) ଅରୁଣା ! ଅରୁଣା !—ବୁଝିଲି, ବୁଝିଲି, ଶମ୍ଭୁଜି—ଶତ୍ରୁ । ଶମ୍ଭୁଜି—ଶତ୍ରୁ । ( ଯୁଗପତ୍ କ୍ରୋଧ ଓ ହତାଶ ଭାବାଭିନୟ କରିବା ) ନା—ଆତ୍ମସଂଯମ ଆବଶ୍ୟକ ।

ପୃଥ୍ୱୀସିଂହ—ଅରୁଣା ନାମ ଶୁଣି ଏପରି ଚମକି ଉଠିଲେ କାହିଁକି, ଦେବୀ ?

ଅରୁଣା—ଅରୁଣା ଆପଣଙ୍କର ଭାବି ପ୍ରିୟପାତ୍ରୀ, ନା ?

ପୃଥ୍ୱୀସିଂହ—ଆପଣ ଜାଣିଲେ କିପରି, ଦେବୀ ? କହନ୍ତୁ, କହନ୍ତୁ—ଆପଣ କିଏ ? ଛଦ୍ମବେଶିନୀ—

ଅରୁଣା— ଏପରି ଜାଣିବାଟା ସାଧୁ-ସନ୍ନ୍ୟାସୀମାନଙ୍କ ପକ୍ଷେ ବିଚିତ୍ର କଣ ?

ପୃଥ୍ୱୀ ସିଂହ—ସତ କଥା—ତାହାହେଲେ ଆପଣ ଭବିଷ୍ୟତ୍ କହି ପାରିବେ ନିଶ୍ଚୟ ?

ଅରୁଣା—ଭୂତ, ବର୍ତ୍ତମାନ, ଭବିଷ୍ୟତ—ସମସ୍ତ ଯେ ଆମ୍ଭମାନଙ୍କର ନଖ-ଦର୍ପଣରେ ପ୍ରତିଫଳିତ ।

ପୃଥ୍ୱୀସିଂହ—ତେବେ ଅରୁଣା ମୋର—

ଅରୁଣା—ଜୀବିତା କି ମୃତା, ଏହି ପ୍ରଶ୍ନ ତ ?

ପୃଥ୍ୱୀସିଂହ—ଠିକ୍ ଅନୁମାନ କରିଛନ୍ତି, ଦେବୀ । ଶୀଘ୍ର ଉତ୍ତର ଦେଇ ଉତ୍କଣ୍ଠା ନିବାରଣ କରିବେ କି ?

ଅରୁଣା—ପରେ ଶୁଣିବେ—ଆଗେ କାର୍ଯ୍ୟର କଥା ହେଉ । କହନ୍ତୁ, କେଉଁ କାରଣରୁ ଏହି ନିରୀହ ବଣୁଆ ମାନଙ୍କ ପ୍ରତି ଏ'ପରି ଆକସ୍ମିକ ଆକ୍ରମଣ ?

ପୃଥ୍ୱୀସିଂହ—ଦେବୀ । ଆପଣ ତ୍ରିକାଳଜ୍ଞ—ପୁନରାବୃତ୍ତିରେ କି ଫଳ ? ବର୍ତ୍ତମାନ ପ୍ରାର୍ଥନା ଏତିକି, ସେହି ପ୍ରଶ୍ନଟିର ଉତ୍ତର ଦାନ କରି ବାଧିତ କରନ୍ତୁ ।

ଅରୁଣା—ଆପଣ ନା ରାଜ-କର୍ମଚାରୀ ?

ପୃଥ୍ୱୀସିଂହ—ଦେବୀ । ( ଅଧୋମୁଖ ହେବା )

ଅରୁଣା—ଏହି କି ଆପଣଙ୍କର କର୍ତ୍ତବ୍ୟପରାୟଣତା ? ରାଜ-କାର୍ଯ୍ୟରେ ଅବହେଳା ।

ପୃଥ୍ୱୀସିଂହ—ଦେବୀ । ଆପଣଙ୍କୁ ଅଜଣା କିଛି ନାହିଁ, ତଥାପି ପ୍ରଗଲ୍‌ଭତା ସ୍ୱୀକାର କରି କହୁଛି—ରାଜ-କାର୍ଯ୍ୟରେ ଅବହେଳା କରିଥିଲେ କଣ ଅରୁଣାଲୁ—ପ୍ରାଣପ୍ରିୟତମାକୁ ମୋର, ଚିରଦିନ ପାଇଁ, ନା ନା—କହନ୍ତୁ, କହନ୍ତୁ, ଦେବୀ । ଚରଣ ଧରି ଅନୁନୟ କରି କହୁଛି—ଅରୁଣା ମୋର ଜୀବିତା ଅଛି ତ ?

ଅରୁଣା—ଜୀବିତା ବା ମୃତା, ଉଭୟ ଯେ ତୁମ୍ଭ ପକ୍ଷେ ସମାନ, ସେନାପତେ ।

ପୃଥ୍ୱୀସିଂହ—(ବ୍ୟଥିତଭାବେ) କାହିଁକି, ଦେବୀ ?

ଅରୁଣା—ଭାବିଛ କି ଅରୁଣା ଜୀବିତା ଥିଲେ 'ଵିବାହ'—

ପୃଥ୍ୱୀସିଂହ—'ଵିବାହ'—'ଵିବାହ'—ଏ'ଶବ୍ଦ ଉଚ୍ଚାରଣ କଲେ କାହିଁକି, ଦେବୀ ? ଏତେ ସୌଭାଗ୍ୟ ଏ' ଅଧମର କଳ୍ପନାରେ ଯେ କେବେ ଉଦିତ ହୋଇ ନ ଥିଲା—ଥରେ, ଯେଉଁଦିନ କ୍ଷୀଣ ସୂଚନା ମାତ୍ର ହୋଇଥିଲା, ସେହିଦିନ ଜଳ-ବୁଦ୍‌ବୁଦ ପରି ଜନ୍ମଲାଭ କରିବା ସଙ୍ଗେ ସଙ୍ଗେ ଲୀନ ହୋଇ ଯାଇଥିଲା ।

ଅରୁଣା—ତେବେ ଆଉ ଅରୁଣା ବିଷୟରେ ପ୍ରୟୋଜନ ?

ପୃଥ୍ୱୀସିଂହ—ଥରେ ସାକ୍ଷାତ୍—

ଅରୁଣା—ଆବଶ୍ୟକ ?

ପୃଥ୍ୱୀସିଂହ—ଛଳନା କାହିଁକି, ଦେବୀ ? ଆପଣଙ୍କୁ ଅଜଣା କ'ଣ ?

ଅରୁଣା—ଜୀବିତା ଥିଲେ କ'ଣ ସେ ବିଶ୍ୱାସଘାତକ ସଙ୍ଗେ ସାକ୍ଷାତ୍ କରିବାକୁ ଆକୁଳା ହୁଅନ୍ତା ?

ପୃଥ୍ୱୀସିଂହ—କଦାପି ନୁହେଁ । ମୁଁ ନିଜେ ସାକ୍ଷାତ୍ କରିବାକୁ ବ୍ୟାକୁଳ । ସେହି ସରଳପଣ ଦେବୀ-ପ୍ରତିମା ସଙ୍ଗେ ନିଷ୍ଠୁର ମୁଁ କି ଯେ ପ୍ରବଞ୍ଚନା—କି ଯେ ପ୍ରତାରଣା କରିଛି, ଅଦୃଷ୍ଟର ମଧ୍ୟ ଘଟଣା-ଚକ୍ରରେ କେତେ ଦୂର ଯେ କ'ଣ ଘଟି-ଯାଇଛି, ତାହା ଭାବିଲା ବେଳକୁ ଦେହ ମୋର ରୋମାଞ୍ଚିତ ହେଉଛି । ଥରେ କେବଳ ସାକ୍ଷାତ୍ ଲାଭ ହେଲେ, ସେହି ସମସ୍ତ ପ୍ରକାଶ କରି କ୍ଷମା ଭିକ୍ଷା ମାଗି ନିଅନ୍ତି, ଏତିକି ବାସନା ।

ଅରୁଣା—କ୍ଷମା କି ପାଅନ୍ତି ?

ପୃଥ୍ୱୀସିଂହ—ପାଏଁ, ନ ପାଏଁ—ମୁଁ ଟିକିଏ ଶାନ୍ତି ଲାଭ କରନ୍ତି, ଦେବୀ । ଆପଣଙ୍କୁ ଅଜଣା କ'ଣ ? ଏ' ହୃଦୟରେ ଦବାଗ୍ନିର କି ଯେ ଅନଳ ଜଳୁଛି—କର୍ତ୍ତବ୍ୟଭାର ସଙ୍ଗେ ସଙ୍ଗେ ଏହା ଯେ କି ବିଷମ-ଭାର ହୋଇ ପଡ଼ୁଛି—ଓଃ ହୋଃ ।

ଅରୁଣା—(ସ୍ୱଗତ) ନରାଧମ । ଅଦୃଷ୍ଟର ତୋର ସାଧ ମେଣ୍ଟିବାକୁ ଅଛି—( ପ୍ରକାଶ୍ୟେ ) ବର୍ତ୍ତମାନ ଆଉ ସେ ସବୁ, କୁହ, ତୁମ୍ଭର ଏଠାରେ କି ପ୍ରୟୋଜନ ?

ପୃଥ୍ୱୀସିଂହ—ମୋର ଆଶା କି ପୂର୍ଣ୍ଣ ହେବ ନାହିଁ, ଦେବୀ ?

ଅରୁଣା—କର୍ତ୍ତବ୍ୟ ତୁମ୍ଭର କର, ସେନାପତେ !

ପୃଥ୍ୱୀସିଂହ—(ସ୍ୱଗତ) ଓଃ । ମୁଁ ଯେ ଜାଣି, ଜାଣି ପାରୁ-ନାହିଁ—(ପ୍ରକାଶ୍ୟେ) ଦେବୀ । ଉଦ୍ଦେଶ୍ୟ ଆପଣଙ୍କୁ ଜଣାଅଛି ନିଶ୍ଚୟ ।

ଅରୁଣା—(ସ୍ୱଗତ) ଯାହା ମୁଁ ଭାବୁଛି, ତାହାହିଁ । (ପ୍ରକାଶ୍ୟେ) ତାହିଁ ତୁମ୍ଭର ଅଶ୍ରିତ ବନ୍ଧୁ—ଡାକି ପଠାଅ । ( ନେପଥ୍ୟକୁ ଚାହିଁ ) ସର୍ଦ୍ଦାର ! ( ପୃଥ୍ୱୀ ସିଂହଙ୍କର ପ୍ରସ୍ଥାନ ଓ ପ୍ରଥମ ସର୍ଦ୍ଦାରର ପ୍ରବେଶ ) ଆମ୍ଭର ମୁଖ୍ୟ ମୁଖ୍ୟ ସୈନ୍ୟ ଓ ପ୍ରଜାବୃନ୍ଦଙ୍କୁ ଏଠାକୁ ଡାକିଆଣ ।

ସର୍ଦ୍ଦାର—ଯୋ ହୁକୁମ, ମାଇଜି ! (ପ୍ରସ୍ଥାନ)

ଅରୁଣା—ମା ସମଲେଶ୍ୱରୀ ! ତୁମ୍ଭେହିଁ ଏକମାତ୍ର ଭରସା ! କର୍ତ୍ତବ୍ୟ କରିବାକୁ ଯାଉଛି—ହୃଦୟରେ ଯେପରି ମାୟା-ମମତା ପ୍ରଭୃତି ଦୁର୍ବଳ ପ୍ରବୃତ୍ତିଚୟ ଆଦୌ ସ୍ଥାନ ନ ପାଏ ।—ବିଶ୍ୱାସଘାତକ ! କାମ-ଲାଳସାର ବଶବର୍ତ୍ତୀ ହୋଇ ମୋ ବିଷୟ ଜାଣିବାକୁ ତୁ ବର୍ତ୍ତମାନ ଉଦ୍‌ବିଗ୍ନ ! ତୋର ସେହି ଉଦ୍‌ବିଗ୍ନତା ବଢ଼ାଇ, ତିଳେ ତିଳେ ତୋତେ ଦଗ୍ଧ କରିବି—ଅବଶେଷେ ଏପରି ପ୍ରତିଶୋଧ ନେବି, ଯାହା କି ସ୍ୱପ୍ନରେ କେହି କେବେ ଭାବି-ନାହିଁ—କଳ୍ପନାରେ କେହି କେବେ ସ୍ଥାନ ଦେଇନାହିଁ ।—ସ୍ଥିର—ଏହି ଯେ ସମସ୍ତେ ।

[ ପୃଥ୍ୱୀସିଂହ, ୨ୟ ସର୍ଦ୍ଦାର, ୧ମ ସର୍ଦ୍ଦାର ଏବଂ ପ୍ରଜାଗଣଙ୍କ ପ୍ରବେଶ ]

୨ୟ ସର୍ଦ୍ଦାର—(ସ୍ୱଗତ) ଏ’ କି ହେଲା—ଲଢ଼ାଇ ନାହିଁ କରିଲ ?—(ଅରୁଣାକୁ ଦେଖି) ବାପ୍‌ରେ, କିଅ ତେଜ୍ !

ଅରୁଣା—ଭାଇମାନେ ! ଆଜି ମୋର ଶୁଭଦିନ ଉପସ୍ଥିତ ! ଏତେଦିନେ ଈଶ୍ୱରଙ୍କ କୃପାରୁ ଏହି ମହାଦାୟିତ୍ୱରୁ ମୁକ୍ତିଲାଭ କରିବାକୁ ସମର୍ଥ ହୋଇଛି ।

ସମସ୍ତେ—ଏ’ କି କଥା, ମ’ଇଜି ?

ଅରୁଣା—ଶୁଣିଯାଅ—ଅବଶ୍ୟ ଏହି କେତେଦିନ ତୁମ୍ଭମାନଙ୍କୁ କେତେ କ୍ଳେଶ, କେତେ ଯନ୍ତ୍ରଣା ଦେଇଥିବି; କେତେକ ମୋ ଆଚରଣରେ ସନ୍ତୁଷ୍ଟ —କେତେକ ଅସନ୍ତୁଷ୍ଟ ହୋଇଥିବେ; ମାତ୍ର ଈଶ୍ୱରଙ୍କୁ ସାକ୍ଷ୍ୟ କରି କହୁଛି, ତୁମ୍ଭମାନଙ୍କର ଅଧିଷ୍ଠାତ୍ରୀ ଦେବୀ ସମଲେଶ୍ୱରୀଙ୍କ ନାମୋଚ୍ଚାରଣ କରି କହୁଛି, ଯାହା କିଛି ମୁଁ କରିଛି ବା କରାଇଛି — ସମସ୍ତ ତୁମ୍ଭମାନଙ୍କର ଭଲାର କାମନାରେ । ଆଶାକରେ, ସମସ୍ତେ—କି ମିତ୍ର କି ଶତ୍ରୁ, ସମଭାବରେ—ଉନ୍ମୁକ୍ତ କଣ୍ଠେ ଏହା ସ୍ୱୀକାର କରିବେ ।

ସମସ୍ତେ—ଜରୁର, ଜରୁର, ମାଇଜି ।

ଅରୁଣା—ଆଜି ଯାହା ଇଚ୍ଛା କରିଥିଲି ବା ଆଶା କରିଥିଲି, ତାହା ବିଧି ପୂରଣ କରିବାକୁ ଅବସର ଦେଲେ ନାହିଁ—ତେବେ, ଆନନ୍ଦର ବିଷୟ ଯେ, ଏ’ ସାମାନ୍ୟା ସନ୍ନ୍ୟାସିନୀ ଠାରୁ ଉପଯୁକ୍ତତର କର୍ତ୍ତାଧାର ଜଣେ, ଏଥର ତୁମ୍ଭେମାନେ ପାଇବ ।

ସମସ୍ତେ—ତୋ ଛଡ଼ା ହାମେମାନେ କାହାକୁ ନାଇ ହାଣୁ, ମାଇଜି ।

ଅରୁଣା—ନା ଭାଇମାନେ ! ତୁମ୍ଭେମାନେ ବୁଝି ପାରୁ-ନାହଁ, ଅଭୟସିଂହ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ହେବାର ଶକ୍ତି ତୁମ୍ଭମାନଙ୍କର ନାହିଁ—ତାଙ୍କର ଲୋକବଳ ଓ ଅସ୍ତ୍ରବଳ—କେଉଁ ବିଷୟରେ ତୁମ୍ଭର ତୁଳନା କରାଯାଇ ପାରେ ?

ସମସ୍ତେ—ହୋଏ, ନାହିଁ ହୋଏ—ହାମ୍ଭେମାନେ ଲଢ଼ିବୁ—ତୋ ସକାଶେ ଜାନ୍ ଦେବୁ ।

ଅରୁଣା—ମୁଁ କିନ୍ତୁ ଲଢ଼ାଇ କରିବାକୁ ହୁକୁମ ଦେଇ ନ ପାରେ, ଭାଇମାନେ !—ସେନାପତେ ! ଏହି ମୁଁ ରାଜ-ଚିହ୍ନ ତ୍ୟାଗ କଲି । ତୁମ୍ଭର ସର୍ଦ୍ଦାରଙ୍କୁ କୁହ, ସେ ଆସି ଗ୍ରହଣ କରନ୍ତୁ ।

ପୃଥ୍ୱୀସିଂହ—ଯାଅ, ସର୍ଦ୍ଦାର ।

ସମସ୍ତେ—ହାଁ୍ ଡାଲେ—ହାଁ୍ ଡାଲେ ।

୨ୟ ସର୍ଦ୍ଦାର—( ଗ୍ରହଣକରି ) ଚୁପ୍‌ରହୋ ଭାଇ-ଲୋକ ! ହାମ୍ ଏଥର ସର୍ଦ୍ଦାର—ସବ୍‌ସେ ହାମ୍ ବଡ଼ା—ପୃଥ୍ୱୀସିଂହ ! ହାମ୍ ରାଜଗାଦି ମାଗିଥିଲି—କିନ୍ତୁ, ରଜାକୁ ତୋର ଖବର ଦେବା, ହାମ୍ ରାଜଗାଦିସେ ବଡ଼ା ଗାଦି ପାଇଛେ—( ଅୋଡ଼୍-ଦେଇ ) ଦେ ମାଇଜି ! ତୁହାର ଚରଣମେ ଠାଇଁ ଦେ—ଅର୍ ଦୁଷ୍ଟ ବେଟାକେ ଚୁହା’ର କ୍ଷମା କର ।

ଅରୁଣା—ଜୟ ସମଲେଶ୍ୱରୀଙ୍କର ଜୟ । (ସ୍ୱଗତ) କୌଶଳ ସଫଳ ହୋଇଛି । (ପ୍ରକାଶ୍ୟେ) ଉଠ୍ ସର୍ଦ୍ଦାର । ଆଜ୍‌ସେ ତୁ ହାମାର୍ ବେଟା ।

ସମସ୍ତେ—ଜୟ ସମଲେଶ୍ୱରୀଙ୍କର ଜୟ ।

ଅରୁଣା—ଯାଅ, ଭାଇମାନେ । ଆଜ ଫୂର୍ତ୍ତିର ଦିନ—ଖୁବ୍ ଫୂର୍ତ୍ତି କର, ଆଉ ଅତିଥିର ପରିଚର୍ଯ୍ୟା କର— (ସମସ୍ତଙ୍କର ପ୍ରସ୍ଥାନ)

[ ଦୃଶ୍ୟ ପରିବର୍ତ୍ତିତ ହେବା ଓ ସାଁନ୍ତାଳଗଣ ନୃତ୍ୟଗୀତ କରୁଥିବା ]

—ଗୀତ—

ଆ'ରେ ଭୟା ସବ୍‌କୋଇ ମିଲ୍‌କେ
'ମାଇଜି' ନାମ୍ ଭଜବା ।
ତୁଭି ବେଟା—ହମ୍‌ଭି ବେଟା,
ଝଗଡ଼ା କାଣେ କରବା ?
ମାଇଜି ହାମାର୍ ଭାରି ମେହେର୍ବାନ୍,
ଦୁସ୍ମନ୍ କର୍‌ଲା ବେଟା ସମାନ—
ହାମ୍, ତୁମ୍—ଛେଲିଆ ହୋକେ
ଅପ୍‌ନା ଭିତର୍ ଲଡ଼୍‌ବା
(ଅରେ) ଛୁଃ ଛୁଃ ଭଲା କି ଦଶ୍‌ବା ?
ଫଲମୁଲ୍ ହାମାର ଯୋ କୁଛ୍ ହେ
ବିଲ୍‌କୁଲ୍ ତୁହାର୍, ସବକୁଛ୍‌ଲେ—
(ଖାଲି) ଭାଇ ବୋଲ୍‌କେ —ଛାତି ମିଲାଦେ
ଆପନ୍ ମାନ ବଢ଼୍‌ବା—
(ଅରେ) ମାଇଜି ମାନ୍ ବଢ଼୍‌ବା ॥

[ ପୃଥ୍ୱୀସିଂହ ଓ ଅରୁଣାର ପ୍ରବେଶ ]

ପୃଥ୍ୱୀସିଂହ—ଶତ୍ରୁ ସହିତ ଶତ୍ରୁର ଏପରି ମିଳନରେ କି ଆନନ୍ଦ ଜାତ ହେଉଛି ?

ଅରୁଣା—ତୁମ୍ଭେ ଆନନ୍ଦ ଭୋଗକରୁଛ, ସେନାପତେ —ମାତ୍ର ରାଜା କି ତୁମ୍ଭର ଏପରି ମିଳନରେ ସନ୍ତୁଷ୍ଟ ହେବେ ?

ପୃଥ୍ୱୀସିଂହ—ଆପଣଙ୍କପରି ଦେବୀଙ୍କ ପ୍ରସାଦ ଲାଭ କଲେ, କିଏ ସନ୍ତୁଷ୍ଟ ନ ହେବେ ? ହେ କରୁଣାମୟୀ ! ଏ ଦୀନପ୍ରତି କି—(ଉଦ୍ଧିପିକା)

ଅରୁଣା—ବଦ୍‌ଳିଗଲ ଯେ ?

ପୃଥ୍ୱୀସିଂହ—ଦୟା ହେବ ନାହିଁ ?

ଅରୁଣା—ସେନାପତେ ! ବୀର ହୋଇ ତୁମ୍ଭେ ଏତେ ଅଧୀର !

ପୃଥ୍ୱୀସିଂହ—ଦେବୀ ! ଆପଣଙ୍କୁ ଗୋପନ ବା କ'ଣ ? ମୁଁ କାର୍ଯ୍ୟ କରୁଥାଏ—କର୍ତ୍ତବ୍ୟସ୍ରୋତରେ ଭାସି ଯାଉଥାଏ—କିନ୍ତୁ, ଯେତେବେଳେ ପୂର୍ବସ୍ମୃତି ଜାଗିଉଠେ, ଯେତେବେଳେ ମନେ ପଡ଼ିଯାଏ, ସେହି ସରଳା ବାଳିକାର କି ସର୍ବନାଶ କରିଛି—ସେତେବେଳେ, କି ଯେ ଯନ୍ତ୍ରଣା ଅନୁଭବ କରେ —ତାହା ବର୍ଣ୍ଣନାତୀତ । ବେଳେ ବେଳେ ମନେକରେ, ଏ ପ୍ରାଣ ରଖିବି ନାହିଁ—କର୍ତ୍ତବ୍ୟର କଠିନ ନିଗଡ଼ ଛିନ୍ନ କରିଦେବି !—ଦେବୀ ! ଦେବୀ ! ଯଦି ଥରେ ଦୟା କରି ଅରୁଣାର ବିଷୟ ଜଣାଇ ଦିଅନ୍ତେ, ତା' ହେଲେ ବୋଧହୁଏ, ଏ ଦୁର୍ବହ ଜୀବନ ଶାନ୍ତିରେ ଧାରଣ କରିବାକୁ ସକ୍ଷମ ହୁଅନ୍ତି ।

ଅରୁଣା—ତେବେ—

[ ସମ୍ବଲପୁର-ଦୂତର ବେଗେ ପ୍ରବେଶ ]

ଦୂତ—ସେନାପତେ ! ମରହଟ୍ଟାମାନେ ରାଜ୍ୟ ସୀମାରେ ପ୍ରବିଷ୍ଟ ହୋଇଛନ୍ତି ।

ପୃଥ୍ୱୀସିଂହ—ରାଜ୍ୟ-ସୀମାରେ !

ଦୂତ—ରାଜାଦେଶ, ଶୀଘ୍ର ଏଠାରୁ ପ୍ରତ୍ୟାବର୍ତ୍ତନ କରିବାକୁ ହେବ ।

[ ଅରୁଣାର ଅଲକ୍ଷ୍ୟେ ପ୍ରସ୍ଥାନ ]

ପୃଥ୍ୱୀସିଂହ—ଅଚ୍ଛା, ଯାଅ ଦୂତ—ଶୀଘ୍ର ଭେରୀବାଦନ କର—ସୈନ୍ୟମାନଙ୍କୁ ଏକତ୍ର କରାଅ—ମୁଁ ଆସୁଛି ବୋଲି । ଦେବୀ !—କାହାନ୍ତି ଦେବୀ ? 'ତେବେ' ବୋଲି କଥା ଯେ ଆରମ୍ଭ କରିଥିଲେ—ଏତେଦିନେ 'ଅରୁଣାର ବାର୍ତ୍ତା ଜାଣି ପାରିଲି', ଏହି ଆଶାରେ ହୃଦୟ ଯେ ମୋର ପୂର୍ଣ୍ଣ ହୋଇ ଯାଇଥିଲା—ଦେବୀ ! ପ୍ରସନ୍ନା ହେଉନ୍ତୁ—ଦାସକୁ ସନ୍ଦେହ-ଗ୍ରାସରୁ ରକ୍ଷାକରନ୍ତୁ —କାହାନ୍ତି ? ( ନେପଥ୍ୟେ ଭେରୀ ବାଦନ )

ଓଃ । ଆଉ ଯେ ସମୟ ନାହିଁ । ଦେଖା । ଦେଖା ।
( ପ୍ରସ୍ଥାନୋଦ୍ୟତ )

[ ଦୂତର ବିପରୀତ ଦିଗରୁ ପ୍ରବେଶ ]

ଦୂତ—ପ୍ରସ୍ତୁତ ସେନାପତେ ।

ପୃଥ୍ୱୀସିଂହ—ପ୍ରସ୍ତୁତ ? ଟିକିଏ ମାତ୍ର ଅପେକ୍ଷା । ନା— କର୍ତ୍ତବ୍ୟ !

( ଦୂତ ସହ ବେଗେ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ପ୍ରାନ୍ତର—

[ କୁମାର ଓ ରଘୁଜୀର ପ୍ରବେଶ ]

କୁମାର—ଦେଖା ହେଲା ?

ରଘୁଜୀ – ନା, ଆଉ ଥରେ ମୋତେ ସେହି ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବାକୁ ହେବ ।

କୁମାର—ସେନାପତେ । ନିଶ୍ଚୟ ଆପଣ ପାଗଳ ହୋଇଛନ୍ତି ।

ରଘୁଜୀ—କାହିଁକି, କୁମାର ?

କୁମାର—ଗୋଟାଏ ନାରୀ-କଥାରେ ଏତେ ବିଶ୍ୱାସ ସ୍ଥାପନ କରିଛନ୍ତି ? ସାମାନ୍ୟ ରମଣୀ ଉପରେ ଏତେ ନିର୍ଭର କରିଛନ୍ତି ?

ରଘୁଜୀ—ସେପରି କହନ୍ତୁ ନା, କୁମାର ।—ସେ ସନ୍ନ୍ୟାସିନୀ ।

କୁମାର—ସନ୍ନ୍ୟାସିନୀ ହେଲେ ତ ସେହି ସ୍ତ୍ରୀ—ପୁରୁଷ ନୁହେଁ ତ ?

ରଘୁଜୀ—ଜାଣେନି ନାହିଁ, କୁମାର । ଏହି ସନ୍ନ୍ୟାସିନୀ-ମାନେ କି ଅସାଧ୍ୟ ସାଧନ କରିପାରନ୍ତି—କି ଅସମ୍ଭବ ସମ୍ଭବ କରିପାରନ୍ତି ।

କୁମାର—ହୋଇଥିବ—ଆପଣଙ୍କୁ ଜଣା—ମୁଁ ଜାଣି-ବାକୁ ମଧ୍ୟ ଇଚ୍ଛା କରେ ନାହିଁ ।—ପୁରୁଷ ହୋଇ ଗୋଟାଏ ବିକଳାଙ୍ଗୀର ପ୍ରଶଂସା କରିବି—ଦୁର୍ବଳା ରମଣୀ ଉପରେ ନିର୍ଭର କରିବି ?

ରଘୁଜୀ—ମୁଁ ବର୍ତ୍ତମାନ ଆସୁଛି, କୁମାର । ଆପଣ ବୁଝିଆର ରହନ୍ତୁ—ତାଙ୍କ ସଙ୍ଗେ ଆଜ ଦେଖା ନ ହେଲେ ଯେ, ଘୋର ବିପଦରେ ପଡ଼ିବାକୁ ହେବ । ( ପ୍ରସ୍ଥାନ )

କୁମାର—ସେନାପତିଙ୍କର ମସ୍ତିଷ୍କ ସ୍ଥିର ନାହିଁ—ଗୋଟାଏ ରମଣୀ ଉପରେ ଏତେଦୂର ନିର୍ଭର କରିବା, କନ୍ୟା-ସୁଲଭ ଭୀରୁତା ଭ୍ରମ ଛଡ଼ା ଆଉ କିଛି ନୁହେଁ ।—ଆଚ୍ଛା, ଏହି ସନ୍ନ୍ୟାସିନୀ ଛଦ୍ମ-ବେଶିନୀ ଶତ୍ରୁ ନୁହେଁ ତ ? ମୋର ବର୍ତ୍ତମାନ କାହିଁକି ଟିକିଏ ଟିକିଏ ସନ୍ଦେହ ହେଉଛି—ଓଡ଼ିଶାବାସୀ ହୋଇ, ଓଡ଼ିଆକୁ ସାହାଯ୍ୟ ନ କରି, ବିଦେଶୀକୁ ସାହାଯ୍ୟ ପ୍ରଦାନ କରିବାର କାରଣ କ'ଣ ?—ହୋଇ ପାରେ, ଗୃହ-ଶତ୍ରୁତା । ଆଶ୍ଚର୍ଯ୍ୟ କ'ଣ ?—ଏହା ଯେ ବର୍ତ୍ତମାନ ହିନ୍ଦୁ ଜାତିର ମହାଗତ—ଭାରତର ଶିର ଭୂଷଣ ।

[ ମରହଟ୍ଟା ସୈନ୍ୟର ପ୍ରବେଶ ]

ସୈନିକ—ସେନାପତି ନାହାନ୍ତି, କୁମାରଜୀ ? ଗୃହଗୀ ଉଭରିବାକୁ ବସିଲା—ବର୍ତ୍ତମାନ କି ହୁକୁମ୍ ?

କୁମାର – କଣ କରୁଛ—ସେନାପତିଙ୍କ ଉପରେ ନିର୍ଭର କରିବ ? ଯାହାଙ୍କର ମତିଗତିର ଅବସ୍ଥା ଏପରି ଦେଖୁଛି—ପୁଣି ଯେ ଗୋଟାଏ ସାମାନ୍ୟା ରମଣୀ ଠାରେ ବିଶ୍ୱାସ କରି, ଏତେ ଅଳ୍ପ ଆୟୋଜନରେ—ଏତେ ବଡ଼ ରାଜ ଖଣ୍ଡ ଜୟର ଆଶା ପୋଷଣ କରନ୍ତି, ସେ ବାତୁଳ ଛଡ଼ା ଆଉ କଣ ହୋଇ ପାରନ୍ତି ? କାଲି ପ୍ରଭାତରେ ଯୁଦ୍ଧ —ସୁତରାଂ ନିଶ୍ଚେଷ୍ଟ ଭାବେ ନଦୀର ଏ ପାରିରେ, ଏପରି ସମତଳ ଭୂମିରେ ସୈନ୍ୟ ସମାବେଶ କରି ରହିବା, ମୂର୍ଖତା ମାତ୍ର । ଏହି ଅନ୍ଧକାରାବରଣରେ ଆମ୍ଭଙ୍କୁ ଯେ କୌଣସି ମତେ ନଦୀ ପାରି ହୋଇ ସୁବିଧା ସ୍ଥାନମାନ ଅଧିକାର କରିବାକୁ ହେବ—ନଚେତ୍ ପ୍ରତ୍ୟାବର୍ତ୍ତନହିଁ ଶ୍ରେୟସ୍କର—ପ୍ରତ୍ୟା-ବର୍ତ୍ତନ ।—ଗୁପ୍ତଚର, ସୈନିକ ଫେରିଲେଣି କି ?

ସୈନ୍ୟ—ନା—ଫେରି ନାହିଁ—

କୁମାର—ତୁମ୍ଭେମାନେ ଯାଅ—ପ୍ରସ୍ତୁତ ହୋଇ ରୁହ । ହୁକୁମ ମାତ୍ରେ ଛାଉଣି ଉଠାଇ ନେବାକୁ ଯେପରି ଟିକେ ବିଳମ୍ବ ନ ହୁଏ ।

ସୈନ୍ୟ—ଯୋ ହୁକୁମ୍— ( ପ୍ରସ୍ଥାନ )

କୁମାର—ଶତ୍ରୁମାନେ ମରହଟ୍ଟା କୌଶଳ ସମ୍ପୂର୍ଣ୍ଣ ଅନଭିଜ୍ଞ—ନିଶ୍ଚୟ ସେମାନେ ଆମ୍ଭମାନଙ୍କ କଥାରେ ବିଶ୍ୱାସ କରି ନିଦ୍ରିତ ଓ ନିଶ୍ଚେଷ୍ଟ ଥିବେ—ଯାଏଁ, ଦେଖେଁ କାର୍ଯ୍ୟଗତି ।

( ପ୍ରସ୍ଥାନୋଦ୍ୟତ )

(ନେପଥ୍ୟ)—କାହିଁଗଲେ, କାହିଁଗଲେ—

କୁମାର— ଏ କି କୋଳାହଳ ?

[ ଗୁପ୍ତଚରର ଓ ବନ୍ଦୀ ଭାବେ ଭିଖାରୁଣୀ ରୂପେ ଶଙ୍କରର ପ୍ରବେଶ ]

ଗୁପ୍ତଚର—କୁମାରଜି । ଏ ଜଣେ ଶତ୍ରୁର ଗୁପ୍ତଚର ।

କୁମାର— ଏ ଯେ ନାରୀ !—

ଗୁପ୍ତଚର—ନାରୀମାନେହିଁ ସମ୍ଭବତଃ ଏ' କାର୍ଯ୍ୟ ଏ' ଦେଶରେ କରନ୍ତି ।

କୁମାର—ଅସମ୍ଭବ ନୁହେଁ—କାରଣ ସହଜେ କେହି ସନ୍ଦେହ କରି ପାରିବ ନାହିଁ ।

ଶଙ୍କ—ମିଥ୍ୟା କଥା—

କୁମାର—ତେବେ, ତୁମ୍ଭେ କିଏ ?

ଶଙ୍କ—ମୁଁ ଜଣେ ଦୀନା ଭିଖାରୁଣୀ—

କୁମାର—ଏତେ ରାତିରେ, ଶତ୍ରୁ-ଶିବିର ନିକଟରେ କ'ଣ କରୁଥିଲ ?

ଶଙ୍କ—ଦେଖୁଥିଲି, କେତେ ଲୋକ—

କୁମାର—ସେଥିରେ ତୁମ୍ଭର ପ୍ରୟୋଜନ ?

ଶଙ୍କ—ଏତେ ଲୋକ ସିନା କାଲି କୁକ୍କୁର ଶୃଗାଳର ଭୋଜ୍ୟ ସାମଗ୍ରୀ ହେବେ ।

କୁମାର—ଏ' ଗୋଟାଏ ପାଗଳୀ—ଛାଡ଼ିଦିଅ—

ଶଙ୍କ—ବାସ୍ତବିକ, ପାଗଳୀ ମୁଁ, କୁମାରଜି ।

କୁମାର—ଦିଅ ଦିଅ, ଏହାକୁ କିଛି ଦେଇ ବିଦାୟ କରି ଦିଅ—

ଶଙ୍କ—ଦେବ ?—ଦେବ ?

କୁମାର—ଅଚ୍ଛା, ଏହି ସ୍ୱର୍ଣ୍ଣମୁଦ୍ରାଟି ନିଅ—ଭାଲ୍ ଜୟ ହେଲେ, ଶିବିରକୁ ଆସିବ—ଭଲରକମ ପୁରସ୍କାର ଦେବି ।

[ ମୁଦ୍ରା ଦେବାକୁ ଉଦ୍ୟତ ]

ଶଙ୍କ—ଏ' ପୁରସ୍କାର ମୋର କ'ଣ ହେବ, କୁମାରଜି ? ଏଗୁଡ଼ାକ ଯେ ମୋର ବାଉଁଚଲ ଖପରା—

କୁମାର—ଏ ଏକ ବିଚିତ୍ର ଭିଖାରୁଣୀ !—ତେବେ, ତୁମ୍ଭେ କଣ ମାଗୁଛ ?

ଶଙ୍କ—ମୁଁ ଯା' ମାଗିବି, ଦେଇ ପାରିବ ?

କୁମାର—ଶୀଘ୍ର ମାଗ, ମୋର ବିଳମ୍ବ ହେଉଛି—

ଶଙ୍କ—ମୁଁ ବେଶୀ କିଛି ମାଗୁ ନାହିଁ—କେବଳ ଏହି ନିରୀହ ପ୍ରଜାମାନଙ୍କର ପ୍ରାଣ-ଭିକ୍ଷା ମାଗୁଛି—

କୁମାର—ହାଃ,—ହାଃ—ହାଃ—

ଶଙ୍କ—ଜାଣେ, କୁମାରଜି । ତୁମ୍ଭ ପକ୍ଷେ ତୁଚ୍ଛ ବସ୍ତୁ ।

କୁମାର—କିନ୍ତୁ, ଏହି ତୁଚ୍ଛ ବସ୍ତୁ ଯେଣି ଯେ ମୋର ମହତ୍ କାର୍ଯ୍ୟ ଅନୁଷ୍ଠିତ ।

ଶଙ୍କ—ସେହି କାର୍ଯ୍ୟ ନ କଲେ—

କୁମାର—ନ କଲେ ? ହାଏ, ନାରୀ । ଯୁଦ୍ଧର ମୂଲ୍ୟ ଓ ମହତ୍ତ୍ୱ, ତୁମ୍ଭେ ବୁଝିବ କ'ଣ ?

ଶଙ୍କ—କୁମାରଜି । ଏହି ଯୁଦ୍ଧ—ଯାହାକୁ ଏତେ ମୂଲ୍ୟବାନ ଓ ମହତ୍ ବିବେଚନା କରୁଛନ୍ତି, ତାହା ପାଶବିକତା ଓ ନୃଶଂସତାର ନାମାନ୍ତର ନୁହେଁ କି ?

କୁମାର—( ସ୍ୱଗତ ) ଭଲ ପାଗଳ ହାତୁଡ଼ରେ ପଡ଼ିଲି ମଣିଷ ( ପ୍ରକାଶ୍ୟେ ) ଅଚ୍ଛା, ଆଉ ଦିନେ ଆସିବ, ଭିକାରୁଣୀ । ମୋର ବର୍ତ୍ତମାନ ଭାରି ସମସ୍ୟାଭାବ । ( ପ୍ରସ୍ଥାନୋଦ୍ୟତ )

ଶଙ୍କ—ଟିକିଏ ଛିଡ଼ା ହୁଅ, କୁମାରଜି । ଟିକିଏ ଭାବି ଦେଖ, କୁମାରଜି । ତୁମ୍ଭେ ଯେପରି ମନୁଷ୍ୟ, ଏମାନେ କଣ ସେହିପରି ମନୁଷ୍ୟ ନୁହନ୍ତି ?—ତୁମ୍ଭର ଯେପରି ରକ୍ତମାଂସର ଶରୀର, ଏମାନଙ୍କର କଣ ସେହିପରି ରକ୍ତମାଂସର ଶରୀର ନୁହେଁ ?—ତୁମ୍ଭର ଯେପରି ବୁଦ୍ଧି ବିବେକ ଅଛି, ଏମାନଙ୍କର କଣ ସେପରି ବୁଦ୍ଧି ବିବେକ ନାହିଁ ?—ତେବେ,

ଆପଣା ଆପଣା ମଧ୍ୟରେ, ଭାଇ ଭାଇ ମଧ୍ୟରେ, ବାଦ-ବିସଂବାଦ—ହାଣ-କାଟରେ ପ୍ରୟୋଜନ କଣ ? ବିବେକୀ ମନୁଷ୍ୟ ପକ୍ଷେ କେବେ କି ତାହା ଶୋଭା ଦିଏ ?

କୁମାର—ଅଚ୍ଛା, ଭାବ ଦେଖିବ ଭିକାରୁଣୀ ! ବର୍ତ୍ତମାନ ଅଦୌ ସମୟ ନାହିଁ—ଆଉ ଦିନେ ଆସିବ । (ପ୍ରସ୍ଥାନୋଦ୍ୟତ)

ଶକ୍ତି—ଏ' ମିଥ୍ୟା ସାନ୍ତ୍ୱନା, କୁମାରଜି ! ମୁଁ ଜାଣେ ପୁରୁଷ-ହୃଦୟ ଭାରି କଠିନ ! ଏହି ମୋର ଶେଷ ଭିକ୍ଷା ! ପ୍ରାଣାନ୍ତେ ଆଉ ପୁରୁଷଙ୍କୁ କେବେ ଭିକ୍ଷା ମାଗିବି ନାହିଁ—ଏଥର ନିଜର ଉଦ୍ୟମରେ ଯେତିକି ଉପାର୍ଜ୍ଜନ କରି ପାରିବି, ସେତିକିରେ ହିଁ ଶାନ୍ତି କାମନା କରିବି !

କୁମାର—ହୋଃ—ହୋଃ—ନିଜ ଉଦ୍ୟମରେ ! ନାରୀ ହୋଇ ତୁମେ କି ଉଦ୍ୟମ କରି ପାରିବ ?

ଶକ୍ତି—କାହିଁକି, କୁମାରଜି ? ପୁରୁଷ ହୋଇ ତୁମ୍ଭେମାନେ ଉଦ୍ୟମ କରିପାର—ନାରୀ ହୋଇ ଆମ୍ଭମାନଙ୍କର ଉଦ୍ୟମ ନାହିଁ ? ତୁମ୍ଭେମାନେ ଯଦି ପୁରୁଷ ହୋଇ ଅପରକୁ ପୀଡ଼ନ କରିପାର, ଆମ୍ଭେମାନେ ନାରୀ ହୋଇ ସ୍ୱଚ୍ଛନ୍ଦେ ସେମାନଙ୍କୁ କୋଡ଼ରେ ସ୍ଥାନ ଦେଇପାରୁଁ—ତୁମ୍ଭେମାନେ ଯଦି ବୀର ହୋଇ ନିଜର ଭାଇକୁ ମଧ୍ୟ ହତ୍ୟା କରିପାର, ଆମ୍ଭେମାନେ ଦୁର୍ବଳା ହୋଇ ବିପଦ-ଗ୍ରସ୍ତ ପାଇଁ, ଶତ୍ରୁ ହେଲେ ମଧ୍ୟ, ପ୍ରାଣ ଦେଇପାରୁ—ତୁମ୍ଭେମାନେ ଯଦି ଶିକ୍ଷିତ ହୋଇ ମିତ୍ରକୁ ଶତ୍ରୁ କରିପାର, ଆମ୍ଭେମାନେ ମୂଢ଼ା ହୋଇ ଶତ୍ରୁକୁ ମଧ୍ୟ ମିତ୍ର କରିପାରୁଁ ।

କୁମାର—(ହାସ୍ୟକରି) ଏ' ନାରୀ ଜାତିର ମିଥ୍ୟା ଗର୍ବ ।

ଶକ୍ତି—ମିଥ୍ୟା କି ସତ୍ୟ, ଦିନେ ଏହାର ପରିଚୟ ପାଇବ, କୁମାରଜି !

[ଶକ୍ତିର ବେଗେ ପ୍ରସ୍ଥାନ]

କୁମାର—ବିରାଟ ପାଗଳ !—ଦୂତ ! ଶତ୍ରୁର ସମ୍ବାଦ କଣ ?

ଦୂତ—ଉପଯୁକ୍ତ ଅବସର ଉପସ୍ଥିତ—କାଲି ଯୁଦ୍ଧ ହେବ ଜାଣି ସମସ୍ତେ ନିଶ୍ଚିନ୍ତ । ଆଉ ବିଳମ୍ବ କଲେ ଚଳିବ ନାହିଁ । ସେନାପତି କାହାନ୍ତି ?

କୁମାର—କିଛି ପ୍ରୟୋଜନ ନାହିଁ । ମୁଁ ହୁକୁମ ଦେଉଛି, ଛାଉଣି ଉଠାଇ ନିଅ ।

ଦୂତ—ଯୋ ହୁକୁମ । (ଦୂତର ପ୍ରସ୍ଥାନ)

କୁମାର—ସେନାପତି ବିରକ୍ତ ହୋଇ ପାରନ୍ତି, ମାତ୍ର ପାଗଳର ବିରକ୍ତିର ଚୋଟାଏ ମୂଲ୍ୟ କ'ଣ ? ବର୍ତ୍ତମାନ କାର୍ଯ୍ୟର ସମୟ—ଜଣଙ୍କର ମନୋ-ରଞ୍ଜନ ନିମନ୍ତେ, କାର୍ଯ୍ୟର କ୍ଷତି କରିବା ଅନୁଚିତ । ଯାଏଁ ଦେଖେ କାର୍ଯ୍ୟ କେତେଦୂର କ'ଣ ହେଲା । (ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

—ପ୍ରାନ୍ତରର ଅପର ଦେଶ—

[କୁମାର ଓ ପୃଥ୍ୱୀସିଂହର ବିପରୀତ ଦିଗରୁ ପ୍ରବେଶ]

ପୃଥ୍ୱୀସିଂହ—ସେହିଠାରେ ଛିଡ଼ାହୁଅ, କୁମାର ! ଆଉ ପଦେ ମାତ୍ର ଅଗ୍ରସର ହେବାକୁ ଚେଷ୍ଟା କଲେ, ଜୀବନ ସଂଶୟ ଜ୍ଞାନ କର ।

କୁମାର—(ନେପଥ୍ୟକୁ ଚାହିଁ) ବନ୍ଦ—(ପୃଥ୍ୱୀଆଡ଼େ) କିଏ ତୁମ୍ଭେ, ନିର୍ଭୀକ ଯୁବକ ? ଏତେ ସାହସ ତୁମ୍ଭର—ଏକାକୀ ଏହି ବିପୁଳ ବାହିନୀର ଗତିରୋଧ କରିବାକୁ ଉଦ୍ୟତ ?

ପୃଥ୍ୱୀସିଂହ—ମୋର ସେହିପରି ସାହସ ଅଛି ବୋଲି ।

କୁମାର—ବୃଥାଗର୍ବ ନିଷ୍ପ୍ରୟୋଜନ—ଭଲରେ ପଥ ଛାଡ଼ିଦିଅ, ନଚେତ୍ ଭଗିରଥୀ ସ୍ରୋତରେ, ଗର୍ବୀ ଐରାବତର ଦଶା ଏହିକ୍ଷଣି ଭୋଗ କରିବ ।

ପୃଥ୍ୱୀସିଂହ—ଐରାବତ ଏକାକୀ ଥିଲା, କୁମାର ! ମାତ୍ର ମୁଁ ଯେ ଇଚ୍ଛାମାତ୍ରେ ଶତ ଶତ ଐରାବତ ଏହିକ୍ଷଣି ଉଦ୍ଭାବନ କରି, ସ୍ରୋତର ଗତି ଏକାବେଳକେ ଫେରାଇ ଦେଇ ପାରେ ।

କୁମାର—( ନେପଥ୍ୟେ ) ଅଗ୍ରସର ହୁଅ—

[ ସୈନ୍ୟମାନଙ୍କର ପଦଶବ୍ଦ ଓ ବିପକ୍ଷଙ୍କ ଦଳରେ ଏକ ସଙ୍ଗେ ଶତ କମାଣର ଧ୍ୱନି ]

କୁମାର—ଏ'ଯେ ଏକାଏ ଶତକମାଣର ଶବ୍ଦ ।

( ନେପଥ୍ୟରୁ ଶୁଣି )

ପୃଥ୍ୱୀସିଂହ—ଏକାଏ ସହସ୍ର କମାଣର ଶବ୍ଦ ମଧ୍ୟ ଶୁଣିପାରି ।

[ ସହସ୍ର କମାଣର ସମ-ଧ୍ୱନି ]

କୁମାର—( ଆଶ୍ଚର୍ଯ୍ୟଭାବେ ଶୁଣିବା )

ପୃଥ୍ୱୀସିଂହ—ବିଶ୍ୱାସ ହେଲା, କୁମାର ? ଏଥର ନିରସ୍ତ ହୁଅ । ଯଥାସ୍ଥାନକୁ ଫେରି ଯାଇ, ଅଙ୍ଗୀକାର ପାଳନ କର । ଅଧିକ ଯଦି ବେଶୀ କିଛି ଜାଣିବାକୁ ଚାହଁ, ଏହି ଦେଖ—ଏହି ଦେଖ—ମୁଁ କିଏ ।

କୁମାର—କିଏ ? ଶମ୍ଭୁଜି । ସଖା ।

ପୃଥ୍ୱୀସିଂହ—ନା, ସଖା । ବିଶ୍ୱାସଘାତକ ପୃଥ୍ୱୀସିଂହ ।

କୁମାର—କିଏ କହିଲା, ପୃଥ୍ୱୀସିଂହ ବିଶ୍ୱାସଘାତକ ? ପୃଥ୍ୱୀସିଂହ—ଜଣେ କୌଶଳୀ ବୀର ।

ପୃଥ୍ୱୀସିଂହ—ସଖା ।

କୁମାର—ଆଉ ନୁହେଁ—ସେପରି ସମ୍ବୋଧନରେ କେବଳ ମାୟା ଜନ୍ମିପାରେ । ମୋର ସ୍ମରଣ ନଥିଲା ଯେ, କୌଶଳୀ ବୀର ଶମ୍ଭୁଜି, ଏଠାକାର ସେନା-ନାୟକ ପୃଥ୍ୱୀସିଂହ । ବର୍ତ୍ତମାନ ମୁଁ ଫେରି ଯିବାକୁ ବାଧ—ମାତ୍ର ତତ୍‌ପୂର୍ବରୁ ତୁମ୍ଭଙ୍କୁ ଆଉ ଥରେ ପ୍ରଶଂସା ନ କରି ଫେରି ପାରୁନାହିଁ, ପୃଥ୍ୱୀସିଂହ । ତୁମ୍ଭେ ମରହଟ୍ଟାଠାରୁ ଗୋପନରେ ଯେଉଁ କୌଶଳ ଶିଖି ଆସିଥିଲ, ତାର ଉପଯୁକ୍ତ ପରିଚୟ ଆଜି ଦେଲ । କୌଶଳରେ ମରହଟ୍ଟା ଆଜି ଏହି ପ୍ରଥମଥର ଓଡ଼ିଆ ପାଖରେ ନତଶିର ହେଲା ।

ପୃଥ୍ୱୀସିଂହ—ଖୁବ୍ ମହତ୍‌ହୃଦୟ ତୁମ୍ଭେ, ସଖା—ନା କୁମାର । ଯେହେତୁ ବିଶ୍ୱାସଘାତକ ବୋଲି ମୋତେ ଘୃଣା ନ କରି, ବୀର ବୋଲି ମୁକ୍ତ କଣ୍ଠେ ଆଜି ପ୍ରଶଂସା କରୁଛ । କୁମାର । ସାକ୍ଷାତ୍ ହୋଇଛୁଁ ଯେତେବେଳେ, ଦୁଇଟା ଗୋଟାଏ କଥାବାର୍ତ୍ତାରେ କିଛି ବାଧା ଅଛି କି ?

କୁମାର—ଖୁବ୍ ବାଧା ଅଛି । ପୂର୍ବସ୍ମୃତିବଶତଃ, ସେହି ଘନିଷ୍ଠ ମିତ୍ରତା ମୋହରେ ଯଦି ପରସ୍ପରର ଗୁପ୍ତ-କୌଶଳ କିଛି ଜଣାଜଣି ହୋଇପଡ଼େ ।

ପୃଥ୍ୱୀସିଂହ—ତା' ଠିକ୍, ମାତ୍ର ୧ଟିଏ ମୋର ପ୍ରଶ୍ନ—ଏ' ଦୁଃସାହସ ତ୍ୟାଗକଲେ ମରହଟ୍ଟାମାନଙ୍କ ପକ୍ଷେ ଭଲ ହୁଅନ୍ତା ନାହିଁ କି ?

କୁମାର—ବୀରକୁ ବୀର ଏପରି ପ୍ରଶ୍ନ—

ପୃଥ୍ୱୀସିଂହ—କଦାପି କରି ପାରେ ନାହିଁ, କୁମାର । ମାତ୍ର ମୋତେ ଭୋନ୍‌ସଲାର ଲୋକ, ବାହୁବଳ ଓ ଦଳବଳ ଉତ୍ତମରୂପେ ଜଣା ବୋଲି, ସେପରି ପ୍ରଶ୍ନ କରିବାକୁ ସାହସ କରୁଛି ।

କୁମାର—ନୂତନ କି ଅପ୍ରୀତିକର ହୋଇଛି ତା'ତ—ଏଁ, ମୁଁ କ'ଣ କରୁଛି ?—ତୁମ୍ଭର ସୌଜନ୍ୟ ଓ ସୌହାର୍ଦ୍ଦ୍ୟକୁ ଧନ୍ୟବାଦ—ପୃଥ୍ୱୀସିଂହ । କ୍ଷମାକର—ଆଉ ମୁହୂର୍ତ୍ତେ ସୁଦ୍ଧା ମୁଁ ତୁମ୍ଭ ସଙ୍ଗେ ମିଶି ପାରୁନାହିଁ—ଯୁଦ୍ଧ ଶେଷ ପର୍ଯ୍ୟନ୍ତ ଉଭୟ-ପକ୍ଷରେ ସାକ୍ଷାତ୍ ନ ହେବା ମଧ୍ୟ ବାଞ୍ଛନୀୟ—ବିଦାୟ ।

( ପ୍ରସ୍ଥାନ )

ପୃଥ୍ୱୀସିଂହ—ଏହି କୁମାର, ଯା'ସଙ୍ଗେ ଦଣ୍ଡେ ଦେଖା ନ ହେଲେ, ଯୁଗ ପରି ବୋଧ ହେଉଥିଲା—ଆଜି କଠୋର ରାଜନୀତି କାପଟ୍ୟ ପରସ୍ପର ମଧ୍ୟରେ ସ୍ୱେଚ୍ଛାକୃତ ବିଚ୍ଛେଦ ଜନ୍ମାଇ ଦେଇଛି—ରଘୁଜି କାହାନ୍ତି ? ଏ' ଗହଣରେ ତାଙ୍କୁ ନ ଦେଖିବାର କାରଣ କଣ ? ମୁଁ ତ ଖୁବ୍ ବିଶ୍ୱସ୍ତ ସୂତ୍ରରେ ଅବଗତ ଯେ, ସେ ଆସିଛନ୍ତି—ଓଃ ହୋଃ । କି ସ୍ମୃତି ଉଦିତ ହେଉଛି—ସେହି ରଘୁଜି, ଯା'ଙ୍କୁ ମୁଁ ପିତୃତୁଲ୍ୟ ସମ୍ମାନ କରୁଥିଲି—ଆଜି ତାଙ୍କୁ କି ବିପଦରେ ପକାଇଛି, ଏକମାତ୍ର କନ୍ୟା—ଆକ୍‌ବର । ଆକ୍‌ବର । ତାହାଙ୍କି ଏପରି ଅନ୍ୟାୟ କଲ ? ମୋର ମନୁଷ୍ୟତ୍ୱରେ ଅବିଶ୍ୱାସ ହେବା ଦୂର୍ବଳ, ଥରେ ଅନୁସନ୍ଧାନ ନ କଲ ତାହାଙ୍କି ? ମୁଁ ତ ଲୋକ ନିଯୁକ୍ତ କରିଥିଲି, ରାଜ୍ୟର ଶେଷ ସୀମାରେ ସେମାନେ ପହୁଞ୍ଚିଲାକ୍ଷଣି ମାଲ ଅଟକ ହୋଇଥା'ନ୍ତା—ଅବେସ୍ତାଗଣ ବନ୍ଦୀ ହୋଇ-

ଥା'ନ୍ତେ—ଉତ୍ପରେ ଭୋନ୍‌ସଲ ଅର୍ଥଦଣ୍ଡ ଦେଇଥା'ନ୍ତେ ବା ଯୁଦ୍ଧ ହୋଇଥା'ନ୍ତା—କିନ୍ତୁ ଏ' କଣ ଘଟିଗଲା ? ଯୁଦ୍ଧର କାରଣ ଆମୂର ଅଙ୍କୁ ରଠିଲା ସିନା । ଗୋଟିଏ ନଗଣ୍ୟ ବାଳକାଇ—ପୁଣି ବୃଥା ପ୍ରାଣ—ନା, ନା, ଅରୁଣା ନିଶ୍ଚୟ ଜୀବିତା ଅଛି—ସନ୍ନ୍ୟାସିନୀ ନିଶ୍ଚୟ ସେ ସନ୍ଧାନ ଜାଣନ୍ତି; —କହିଲେ ନାହିଁ କାହିଁକି ? ଆଉଥରେ କିପରି ସାକ୍ଷାତ୍ ହେବ ?—ସନ୍ନ୍ୟାସିନୀ !—କିଏ ସେ ସନ୍ନ୍ୟାସିନୀ ? ଠିକ୍ ତା'ର ପ୍ରତିରୂପ—ଠିକ୍ ତା'ର କଣ୍ଠସ୍ୱର—ସେହି ନୁହେ ତ ? ମୋର ହୃଦୟ କାହିଁକି ଏତେ ଅକୃଷ୍ଟ ହେଉଛି ? ଛିଃ, ଛିଃ—ଏ କି କୁତ୍ସିତ ଲାଲସା ! ଈଶ୍ୱର ! ରକ୍ଷାକରନ୍ତୁ !—ଅରୁଣାକୁ ମୁଁ ଭଲ ପାଉଛି, ସେହି କେବଳ ମୋ ହିଁ ଯେମନ୍ତ ମୋର ଇହକାଳରେ, ପରକାଳରେ ଚିରସଙ୍ଗିନୀ ହୋଇ ରହେ । ଏ' କିଏ ଆସୁଛି ?— ( ଅନ୍ତରାଳକୁ ଯିବା )

[ ରଘୁଜୀର ପ୍ରବେଶ ]

ରଘୁଜୀ—ସନ୍ନ୍ୟାସିନୀ ବିଦ୍ୟୁତ୍ ପ୍ରାୟ ଆସି ବିଦ୍ୟୁତ୍ ପ୍ରାୟ ଚାଲିଗଲେ କାହିଁକି ? ମୋର ହୃଦୟରେ ଯେ କି ବିଦ୍ୟୁତ୍ ଖେଳାଇଦେଇ ଗଲେ, ତା'ତ ସେ ବୁଝିଲେ ନାହିଁ !—ଅରୁଣା—ଅରୁଣା—ପୁଣି ସେ ନାମ କାହିଁକି ? ସେ ସ୍ମୃତି ତ ଚିରଦିନ ପାଇଁ ବିସର୍ଜନ ଦେଇଛି—ତେବେ, ଏ' ମନ୍ଦ-ଜୀବନ ଧରିଛି କିପରି ? କେବଳ ଦୁଇଟି କାରଣରୁ—ପ୍ରଥମ କାରଣ, ଯେ ଆଜନ୍ମ ଏ' ପ୍ରାଣର ଅଧିଷ୍ଠାତା, ତାଙ୍କ ପ୍ରତି କର୍ତ୍ତବ୍ୟ ପାଳନ—ଦ୍ୱିତୀୟ କାରଣ, ଯେଉଁ ବିଷୟ ନ ଜାଣିବା ଯାଏ ମୃତ୍ୟୁରେ ସୁଦ୍ଧା ମୋର ସାନ୍ତ୍ୱନା ନାହିଁ, ସେହି ବିଷୟର ଅବସ୍ଥାର—ମୋର ବଂଶ-ପରିଚୟ, ମୋର ଅଭିଜାତ୍ୟର ପରିଚୟ—ଓଃ ହୋଃ, କେବେ ଜାଣିବି, କେବେ ନିଶ୍ଚିନ୍ତ ହେବି ? ଏହି ବୃତ୍ତାନ୍ତ ଶ୍ରବଣ ମୋର ପ୍ରଧାନ ପୁରସ୍କାର ବୋଲି, ଭୋନ୍‌ସଲ ଗୋପନ କରୁଅଛନ୍ତି—ନିଶ୍ଚୟ ମୋର ଉଚ୍ଚବଂଶରେ ଜନ୍ମ । ତା' ନ ହେଲେ କି ଅରୁଣାକୁ—ଓଃ ହୋଃ, ପୁଣି ସେହି ନାମ କାହିଁକି ? ମନେ-କରିଥିଲି, କିଛି ଗୋଳମାଳ ଥିଲେ, ଏହି ଶିବାହ—ନା, ଆଉ ନା—ଏହି କାର୍ଯ୍ୟାନ୍ତେ ଭୋନ୍‌ସଲଙ୍କୁ ବାଧ୍ୟ କରିବି—ଯଦି ମରିଯାଏଁ—ତେବେ, ତେବେ—ନା, ନା—ମୁଁ ଯେ ମୋର ଜନ୍ମରହସ୍ୟ ନ ଜାଣିବା ଯାଏ, ମରି ପାରିବି-ନାହିଁ—ମରି ପାରିବିନାହିଁ ।

[ ପୃଥ୍ୱୀସିଂହର ପ୍ରବେଶ ]

ପୃଥ୍ୱୀସିଂହ—ସେନାପତେ !

ରଘୁଜୀ—( କିଛିକ୍ଷଣ ଚାହିଁ ) କିଏ ତୁମ୍ଭେ ? ଶମ୍ଭୁ—ନା, ସମ୍ବଲପୁର-ରାଜସେନାପତି ପୃଥ୍ୱୀସିଂହ, ନା ?

ପୃଥ୍ୱୀସିଂହ—କ୍ଷମା କରନ୍ତୁ, ଅଧମ ସନ୍ତାନକୁ—

ରଘୁଜୀ—କ୍ଷମା—ହାଃ, ହାଃ, ହାଃ—ଆଜି ନ ହୋଇ ଆଉଦିନେ ଏହିପରି ନିର୍ଜନ ସାକ୍ଷାତ୍ ହୋଇଥିଲେ, କିପରି କ୍ଷମା କରିଥା'ନ୍ତି, ଜାଣିଥା'ନ୍ତୁ, ବିଶ୍ୱାସ-ଘାତକ !—ଦେଖ୍, ଦେଖ୍ ନରାଧମ ! ତୋର ଯଦି ମନୁଷ୍ୟର ଚକ୍ଷୁ ଥାଏ, ଏ' ବକ୍ଷସ୍ଥଳକୁ ଭେଦ କରି ଦେଉଛି, ଚାହିଁ ଦେଖ୍—ତୋର ହେତୁ କି ପ୍ରଳୟ-ଝଞ୍ଜା ଅଦ୍ୟାପି ସେଠାରେ ବୋହି ଯାଉଛି—ପ୍ରାଣବାୟୁ ବୋହୁଛି ସତ୍ୟ, ଏ' ରକ୍ତମାଂସ ଶରୀର ସେହିପରି ଅଛି ସତ୍ୟ, କିନ୍ତୁ ମୁଁ ଏକ ଯୁଗରୁ ଅନ୍ୟ ଯୁଗକୁ ନୀତ ହୋଇ ଯାଇଛି । ଆଜି ମୋର ମାୟା ନାହିଁ—ମମତା ନାହିଁ—ଶତ୍ରୁ ନାହିଁ—ମିତ୍ର ନାହିଁ—ଯାହା ଏ' ଚକ୍ଷୁରେ ଦେଖୁଛି, ତାହା ମୋର ନୁହେଁ—ଯାହା ଏ' କର୍ଣ୍ଣରେ ଶୁଣୁଛି, ତାହା ମୋର ନୁହେଁ—ଏ' ସଂସାର ଠାରୁ ମୁଁ ଏକାବେଳକେ ସ୍ୱତନ୍ତ୍ର—ଏ' ଯୁଦ୍ଧ କରିବାକୁ ମୁଁ ଆସିନାହିଁ—ଆସିଛି କିଏ ଜାଣୁ ? ଗୋଟିଏ ଯନ୍ତ୍ରଚାଳିତ ଜଡ଼ପିଣ୍ଡ ମାତ୍ର ।

ପୃଥ୍ୱୀସିଂହ—ଓଃ ହୋଃ, କି ନରାଧମ ମୁହିଁ !—ସେନାପତେ ! ସମସ୍ତ ବୃତ୍ତାନ୍ତ ଶୁଣିଲେ ବୋଧ ହୁଏ—

ରଘୁଜୀ—ବିଶ୍ୱାସଘାତକ ବୋଲି ନ କହି, କହିବି, କୌଶଳୀ ବୀର, ଏହି ନା ?

ପୃଥ୍ୱୀସିଂହ—ନା, ସେନାପତେ ! ତାହା ମୁଁ—

ରଘୁଜି—ଥାଉ, ସେ ସବୁ ଶୁଣିବାର ମୋର ପ୍ରୟୋଜନ ବା ଅବସର ନାହିଁ । କୁମାରଠାରୁ ଶୁଣିଲି, ତୁମ୍ଭେ ଏଠାରେ ଅଛ—ସେହି ହେତୁ ମୋର ଆଗମନ । କୁମାର ଅଙ୍ଗୀକାର ଭଙ୍ଗ କରି ଘୋର ଭୁଲ କାମ କରିଥିଲେ—ସେଥି ନିମନ୍ତେ ଯଥେଷ୍ଟ ଲାଞ୍ଛନା ମଧ୍ୟ ପାଇଛନ୍ତି—ତଥାପି, ମୁଁ ତାଙ୍କର ହୋଇ କ୍ଷମା ପ୍ରାର୍ଥନା କରୁଛି ।

ପୃଥ୍ୱୀସିଂହ—ସେନାପତେ ! ସେନାପତେ !

ରଘୁଜି—ତୁମ୍ଭେ ଜାଣିଥିବ, ବୀର ! ମରହଟ୍ଟାମାନେ ସେମାନଙ୍କର ସ୍ୱଭାବ-ସିଦ୍ଧ ମିଥ୍ୟା ଓ ପ୍ରବଞ୍ଚନାତ୍ମକ କୌଶଳ ଅବଲମ୍ବନ କଲେ ସୁଦ୍ଧା, ମୁଁ ନ୍ୟାୟ-ପ୍ରିୟ—ସମ୍ମୁଖ ଯୁଦ୍ଧକୁ ହିଁ ଆଦର କରେ—

ପୃଥ୍ୱୀସିଂହ—ତାହା ଏ ଅଧମକୁ ନୂତନ କରି ବୁଝାଇବା ଅନାବଶ୍ୟକ ।

ରଘୁଜି—କାଲି ପ୍ରଭାତରେ ନିର୍ଦ୍ଦିଷ୍ଟ କାଳ ଉତ୍ତୀର୍ଣ୍ଣ ହେବ—ସୁତରାଂ ଏକପକ୍ଷ ପ୍ରସ୍ତୁତ ନ ଥିଲେ ମଧ୍ୟ, ଅପର ପକ୍ଷ ଆକ୍ରମଣ ବା ପ୍ରତି-ଆକ୍ରମଣ କଲେ ଦୋଷାବହ ହେବ ନାହିଁ—ମାତ୍ର, କୌଣସି ଦୁର୍ଘଟନା-ବଶତଃ ଆମ୍ଭେମାନେ ପ୍ରସ୍ତୁତ ନୋହୁଁ; ଏଣୁ ଆଉ ଦୁଇଦିନ ଯୁଦ୍ଧ ସ୍ଥଗିତ ହେଲେ—

ପୃଥ୍ୱୀସିଂହ—ରାଜା ବୋଧହୁଏ—

ରଘୁଜି—ମୁଁ ଜାଣେ, ମଞ୍ଜୁର କରିବେ ନାହିଁ—ଏ ପ୍ରସ୍ତାବ କରିବାକୁ ମଧ୍ୟ ବହୁ ବିଳମ୍ବ ହୋଇ ଗଲାଣି—ତେବେ—

ପୃଥ୍ୱୀସିଂହ—ଆପଣ ଅନ୍ତ ପ୍ରଭୁଙ୍କଠୁ ଦୂତ ପ୍ରେରଣ କରନ୍ତୁ—ଅବଶ୍ୟ ମୁଁ ଚେଷ୍ଟା କରିବି । ( ସ୍ୱଗତ ) ଯଦି ଏହିପରି କରିବା ଦ୍ୱାରା କିଛି ଉପକାର କରିପାରେ—

ରଘୁଜି—ତୁମ୍ଭଙ୍କୁ ଧନ୍ୟବାଦ—ବର୍ତ୍ତମାନ, ବିଦାୟ—

ପୃଥ୍ୱୀସିଂହ—ବିଦାୟ ! ( ପ୍ରସ୍ଥାନ )

ରଘୁଜି—ସନ୍ନ୍ୟାସିନୀ ଯେପରି କହି ଯାଇଛନ୍ତି, କାଲି ନିଶ୍ଚୟ ସୈନ୍ୟମାନେ ଆସିଯିବେ । ନିତାନ୍ତ ଯେବେ ରାଜା ସନ୍ଧି ନ ହୁଅନ୍ତି, ଯୁଦ୍ଧ କରିବି; ମାତ୍ର ସନ୍ନ୍ୟାସିନୀ ନ ଆସିବା ଯାଏ ମୋର ସାହସ ହେଉ ନାହିଁ କାହିଁକି ? କିଏ ଏହି ସନ୍ନ୍ୟାସିନୀ ? —ବୃଥା ଆଶା ! କାହିଁକି, ପତ୍ରପାଠରେ ଯେଉଁ ଭାବ ଅନୁମାନିକ ଥିଲା—ଦର୍ଶନ ମାତ୍ରେ ଯେ ତାହାହିଁ ସ୍ପଷ୍ଟ ପ୍ରତୀୟମାନ ହେଉଛି ? ସେହି ରୂପ—ସେହି ଆକୃତି—ସେହି ସ୍ୱର—ଅସମ୍ଭବ, ଅସମ୍ଭବ !—ଯାଏଁ, ଦେଖେ, କୁମାର କେଉଁଣେ କଣ କଲେ ? ( ବେଗେ ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

ମାଳତୀ— —ଗୀତ—

ଆହା କି ଆନନ୍ଦ—ଆନନ୍ଦ ଭୁବନ ।
ଆନନ୍ଦେ ନାଚଇ ମୋର ମନ ପ୍ରାଣ ।
ଉଇଁଲେଣି ନଭେ ନବୀନ ତପନ
ଫୁଟିଲେଣି ହରଷେ ସୁଗନ୍ଧ ସୁମନ,
ନାଚେ ଡାଳେ ଡାଳେ ପିକ ଗାଇ ଗାନ
ମଧୁପୀ ମଧୁପ ହରଷିତ ମନ
ଆନନ୍ଦ ଅବନୀ, ଆନନ୍ଦ ଗଗନ,
ଆନନ୍ଦେ ନାଚଇ ଚରାଚର ଗଣ ॥

[ ମାଧବର ପ୍ରବେଶ ]

ମାଧବ—ମା ! ମା ! କହ ତୁ କିଏ ?

ମାଳତୀ—ଏ କି ପ୍ରଶ୍ନ ବାବା ?

ମାଧବ—ଏତେ ବଡ଼ ବିପଦରେ ସୁଦ୍ଧା ଏତେ ପ୍ରଫୁଲ୍ଲ ତୁହି ?

ମାଳତୀ—କାହିଁକି ନ ହେବି ବାବା ? ପରିବର୍ତ୍ତନ ଘଟିବା ଯେ ପ୍ରକୃତିର ନିୟମ ! ଏହି ଦେଖ, ବାବା ! ପ୍ରାଚୀ-ଗଗନ କ୍ରମେ କ୍ରମେ କେତେ ରଙ୍ଗରେ ରଞ୍ଜିତ ହେଉଛି—କୃଷ୍ଣ ଥିଲା, ଲାଲ ହେଲା, ବର୍ତ୍ତମାନ ସ୍ୱର୍ଣ୍ଣବର୍ଣ୍ଣ ଧାରଣ କଲାଣି । କ୍ଷଣକ ପରେ ଶ୍ୱେତ, ଉଜ୍ଜ୍ୱଳ ହୋଇ ଉଠିବ—ରଜନୀର ଅନ୍ଧକାର ଦୂର ହୋଇଯିବ ।

ମାଧବ—ମାତ୍ର, ଏ ହୃଦୟର ଅନ୍ଧକାର ଦୂର ହୋଇ ପାରିବ ନାହିଁ ।

ମାଳତୀ—କାହିଁକି ହୋଇ ନ ପାରିବ, ବାବା ?

ମାଧବ—ଏହି ସୂର୍ଯ୍ୟାଲୋକରେ ?

ମାଳତୀ—ଏ' ତ ଅତି କ୍ଷୀଣାଲୋକ—ପୁଣି ଅସ୍ଥାୟୀ ।

ମାଧବ—ତା'ହେଲେ କ'ଣ, ଏହା ଛଡ଼ା ସ୍ଥାୟୀ ଓ ଉଜ୍ଜ୍ୱଳତର ଅଲୋକ କିଛି ଅଛି ?

ମାଳତୀ—ଅଛି—କିନ୍ତୁ ଏହା ଛଡ଼ା ନୁହେଁ—ସେହି ସମୁଜ୍ଜ୍ୱଳ ଓ ସ୍ଥାୟୀ ଅଲୋକର ଏହା କ୍ଷୀଣ ରଶ୍ମି ମାତ୍ର ।

ମାଧବ—କାହିଁ ସେ ଆଲୋକ, ମା ?

ମାଳତୀ—ସ୍ଥାନ ମୁଁ ଜାଣେ ନାହିଁ, ପିତଃ ! କିନ୍ତୁ କି ଦିବାରେ, କି ଶର୍ବରେ—କି ଜନପଦାରେ, କି ଗିରିଗୁହାରେ—କି ଜଳରେ, କି ସ୍ଥଳରେ ତାର ଅପ୍ରତିହତ ଆନନ୍ଦଦାୟକ ପ୍ରଭା ଅନୁଭବ କରିବାକୁ ମିଳେ ।

ମାଧବ—କାହିଁକି ତେବେ—

[ ସହସା ଗୁଳିଭେଦ ]

ଏ' କି ଭେଦ ! ମରହଟ୍ଟା-ରାଜ୍ୟସୀମା ତ ଅନେକ ଦୂରରେ ରହି ଗଲାଣି । ଏ' ପର୍ଯ୍ୟନ୍ତ କି ଭୋନ୍‌ସଲାର ଲୋକ ଆମ୍ଭମାନଙ୍କର ଅନୁବର୍ତ୍ତୀ ?

ମାଳତୀ—ବାବା ! ସୁନ୍ଦର ଭାଇ ନୁହେଁ ତ ? ଆମ୍ଭମାନଙ୍କୁ ଖୋଜି ଖୋଜି ଏ'ଠି ଆସି ପହୁଞ୍ଚି ନାହିଁ ତ ? ଏ' କେଉଁ ରାଜ୍ୟ, ବାବା ?

ମାଧବ—କିପରି କହିବି, ମା ? ସୁନ୍ଦରସିଂ' କ'ଣ, ତୋର ବିଶ୍ୱାସ ହେଉଛି, ନିଶ୍ଚୟ ଜୟୀ ହେବ ?

ମାଳତୀ—ନିଶ୍ଚୟ ଜୟୀ ହେବ ।

ମାଧବ—ହାୟ ! କାହା ମଙ୍ଗଳେ ବିଗୁରୁ ଏତେ ଯତ୍ନ କରୁଛି ? ( ଦୀର୍ଘ ନିଃଶ୍ୱାସ ) ମୋତେ ବଧ କରିଥିଲେ ବରଂ ଭଲ କରିଥା'ନ୍ତା ।

ମାଳତୀ—ବାବା, ନିଜକୁ ଏପରି ତୁଚ୍ଛ ମନେ କରିବା କି ଉଚିତ ? ଏ' ସଂସାରରେ ସମସ୍ତ ମୂଲ୍ୟବାନ୍ । ସାମାନ୍ୟ ଧୂଳିକଣା, ତାର ମଧ୍ୟ ଯଥେଷ୍ଟ ମୂଲ୍ୟ ଅଛି ।

ମାଧବ—ମାତ୍ର, ଏ' ବିଶ୍ୱାସଘାତକ-ପ୍ରାଣର ମୂଲ୍ୟ କେଉଁଠି ?

ମାଳତୀ—ଆପଣ ବିଶ୍ୱାସଘାତକତା କଲେ କେଉଁଠି, ପିତଃ ? ଆପଣଙ୍କର ସରଳତା ଓ ବିଳାସିତାର ଏହି ପରିଣାମ ସିନା ! ଅଧିକନ୍ତୁ, ବିଶ୍ୱାସଘାତକତା କରିଥିଲେ ମଧ୍ୟ ଏବେ ଭଗ୍ନ ହୋଇ ପଡ଼ିବାର କାରଣ ତ କିଛି ନାହିଁ ? ଦେଖୁ ନାହାଁନ୍ତି, ଈଶ୍ୱର କେଡ଼େ ଦୟାମୟ—ଅଙ୍ଗାରକୁ ମଧ୍ୟ ହୀରା କରିଦଅନ୍ତି । ଯେଉଁ ସୁନ୍ଦର ଭାଇ ଦିନେ ତା'ର ପ୍ରଭୁଙ୍କୁ ହତ୍ୟା କରିବାକୁ ଯାଇଥିଲା, ସେ ଆଜି କରୁଛି କ'ଣ ? କୌଶଳରେ ବନ୍ଦୀଶାଳାରୁ ମୁକ୍ତିଲାଭ କରି ଅସ୍ତ୍ରଚୋପନ ପୂର୍ବକ ଭୋନ୍‌ସଲାର କ୍ରୋଧାନଳରୁ ନିଜକୁ ରକ୍ଷା କରିବା ଦୂରେ ଥାଉ—ପୁଣି ନିଜ ପ୍ରଭୁ ସମ୍ମୁଖରୁ ଲଜ୍ଜା ଓ ସଙ୍କୋଚରେ ଅନ୍ତର ହେବା ଦୂରେ ଥାଉ, ସ୍ୱ-ଉଦ୍ୟମରେ ଭୋନ୍‌ସଲା ଗ୍ରାସରୁ ରାଜ୍ୟ ଉଦ୍ଧାର-କରିବା ନିମନ୍ତେ ଯତ୍ନବାନ—ନିଜର ପ୍ରଭୁଙ୍କୁ ସ୍ୱାଧୀନଭାବେ ପୁନଃ ପ୍ରତିଷ୍ଠିତ କରିବାକୁ ତତ୍‌ପର ! ଈଶ୍ୱର ନିଶ୍ଚୟ ତା'ର ପରିଶ୍ରମ ସାର୍ଥକ କରିବେ । ବାବା ! ସେ ସ୍ଥାନରୁ ଆମର ଚାଲିଆସିବାଟା ଭାରି ଭୁଲ ହୋଇଛି—ସୁନ୍ଦର ଭାଇ ଏ'ଠି ଆମ୍ଭର ସନ୍ଧାନ ପାଇବ କିପରି ?

ମାଧବ—ନ ପାଇବ ବୋଲି ତ ଏଣେ ପଳାଇ ଆସିଛି ।

ମାଳତୀ—ବାବା ! ଏତେ ବିରାଗ କାହିଁକି ? ଆପଣ କ'ଣ ସ୍ୱ-ରାଜ୍ୟକୁ ଫେରିଯିବାକୁ ଚାହାନ୍ତି ନାହିଁ ? ନିଜର ସିଂହାସନ ଭୋଗ କରିବାକୁ ଇଚ୍ଛା କରନ୍ତି ନାହିଁ ?

ମାଧବ—ନିଜର ସିଂହାସନ ! ସ୍ୱ-ରାଜ୍ୟ ! ଓଃ କୋଃ, ମା ! ସେ ସବୁ ମନେ ପକାଇ ଦେନା—ସେଥିରେ ଅନେକ ଗୂଢ଼ ରହସ୍ୟ ନିହିତ !

ମାଳତୀ—ତେବେ କେଉଁଠାକୁ ଯିବେ ?

ମାଧବ—ଏ' ପର୍ଯ୍ୟନ୍ତ ସ୍ଥିର କରି ନାହିଁ—କେବଳ ତୋର ସକାଶେ ଚିନ୍ତିତ, ମା !

ମାଳତୀ—ମୋ ସକାଶେ ଚିନ୍ତିତ କାହିଁକି, ବାବା ? ମୁଁ ଗୃହରେ ବାସ କଲେ ଯେପରି ସୁଖିନୀ—ଅରଣ୍ୟରେ ବାସ କଲେ ମଧ୍ୟ ସେପରି ସୁଖିନୀ । ସ୍ୱର୍ଗରେ ମୋର ଯେଉଁପରି ଆନନ୍ଦ—ନରକରେ ମଧ୍ୟ ସେହିପରି ଆନନ୍ଦ ।

ମାଧବ—ମା ! ମା ! ସେହି ଅନଳରୁ କଣାଏ ଭିକ
ମୋତେ ଦେ, ମା !

ମାଳତୀ—କଣାଏ କାହିଁକି, ବାବା—ପୂର୍ଣ୍ଣ ମାତ୍ରାରେ
ଭୋଗ କରିବାକୁ ମିଳିବ—କେବଳ ରୁଦ୍ଧଦ୍ୱାର
ଉନ୍ମୁକ୍ତ କରି ଦିଅନ୍ତୁ, ସେହି ଆଲୋକର ପବିତ୍ର
ରଶ୍ମି ପ୍ରବେଶ କରିବାକୁ ଦିଅନ୍ତୁ—କ୍ଷଣକେ ଗୃହ
ଶରତ୍‌ଆଲୋକିତ ହୋଇଯିବ !

ମାଧବ—ଠିକ୍ କହୁଛୁ, ମା—ମୋର ଅଜ୍ଞାତସାରେ,
ରୁଦ୍ଧଦ୍ୱାରର ରନ୍ଧ୍ର ଦେଇ ଦେଖକି ଏ' ଆଲୋକ
ପ୍ରବେଶ କରି ପାରୁଛି, ସେଥିରେ କେତେ
ଦୁଃଖାନ୍ଧକାର ଦୂର ହୋଇ ଯାଉଛି । ହାୟ ! କି
ମୂର୍ଖ ମୁଁ, ଏପରି ମୂର୍ତ୍ତିମତୀ ଉଜ୍ଜ୍ୱଳାଲୋକ ସମ୍ମୁଖେ
ପ୍ରଦୀପ୍ତ ଥାଉଁ ଥାଉଁ ଦ୍ୱାର ରୁଦ୍ଧ କରିଦେଇ
ଅନ୍ଧକାରରେ ଦଗ୍‌ଧହୋଇ ହେଉଛି ? ଅନ୍ଧ ପରି ପଥ
ସ୍ଥିର କରି ପାରୁ ନାହିଁ ?

ମାଳତୀ—ପିତଃ ! ଏପରି ଅଯଥା ପ୍ରଶଂସା କରନ୍ତୁ
ନାହିଁ—ଭ୍ରମାନ୍ଧ ହେଉନ୍ତୁ ନାହିଁ !

ମାଧବ—ଭ୍ରମାନ୍ଧ ! ହାଃ ହାଃ ହାଃ—ଏତେଦିନେ
ଆଲୋକ-ରଶ୍ମି ପାଇଛି, ଆଉ ଭ୍ରମାନ୍ଧ ହେବି ?

ମାଳତୀ—ସ୍ଥିର ହେଉନ୍ତୁ, ବାବା !

ମାଧବ—ନା, ମା ! ଆଉ ଅନ୍ଧକାର ମୁଁ ସହ୍ୟ କରି
ପାରୁନାହିଁ—ଏହି ଦ୍ୱାର ଖୋଲି ଦେଉଛି—କିନ୍ତୁ
ମା, ମୋର ଅଭ୍ୟନ୍ତର ଦେଖି ତୁ ଯେପରି
ଚମକିତ ନ ହେଉ—ଆଲୋକରଶ୍ମି ତୋର
ସଙ୍କୁଚିତ କରି ନ ଦେଉ !

ମାଳତୀ—ଏ'କଣ କହୁଛ, ବାବା ? କନ୍ୟା ଯେ
ତୁମ୍ଭର ଚିରଦିନ ସେହି କନ୍ୟା !

ମାଧବ—ଶୁଣ, ମା ! କୋଳାସପୁରର ପ୍ରକୃତ ରାଜା ମୁଁ
ନୁହେଁ—

ମାଳତୀ—(ସାଶ୍ଚର୍ଯ୍ୟେ) ତେବେ, କିଏ ?

ମାଧବ—ମୋ'ର ଜ୍ୟେଷ୍ଠଭ୍ରାତା—

ମାଳତୀ—ସେ ତ ମୃତ !

ମାଧବ—ତାଙ୍କର ପୁତ୍ର ଥିଲା—

ମାଳତୀ—ପୁତ୍ର ଥିଲା ? ତ କଣ ହେଲା ତା'ର ?

ମାଧବ—କି ଦଶା ! ( ଦୀର୍ଘ ନିଶ୍ୱାସ ତ୍ୟାଗ କରିବା )
ଯେତେବେଳେ ତାକୁ ମୋଟେ ଦୁଇବର୍ଷ, ମୋର
ଜ୍ୟେଷ୍ଠଭ୍ରାତା ସ୍ୱର୍ଗାରୋହଣ କଲେ—ରାଣୀ
ସହଗାମିନୀ ହେଲେ—ତେଣୁ ମୁଁ ଅଭିଭାବକ
ହେଲି । ନାମରେ ନ ହେଲେ ସୁଦ୍ଧା, କାର୍ଯ୍ୟରେ
ମୁହିଁ ରାଜା ବୋଲି ରାଜ୍ୟରେ ପରିଚିତ ହେଲି ।—
କେତେବର୍ଷ ଅତୀତ ହୋଇଗଲା—ହଠାତ୍
ଶୁଣିଲି ମରହଟ୍ଟାମାନେ ରାଜ୍ୟ-ଆକ୍ରମଣ କରିଛନ୍ତି ।

ମାଳତୀ—କିଏ ସେହି ? ଭୋନ୍‌ସଲା ନା ?

ମାଧବ—ହଁ, ମା—ତା'ପରେ, ଜ୍ୟେଷ୍ଠ ଭାଇ ଥାଉଁ
ଥାଉଁ, ମୋର ସ୍ୱଭାବ କିଛିଏ ବିକୃତ ହୋଇଥାଏ
—ସୁତରାଂ ତାଙ୍କର ମୃତ୍ୟୁ ପରେ ପୂର୍ଣ୍ଣ ସ୍ୱାଧୀନତା
ପାଇବା ଯୋଗୁଁ, ସେ କେବେଳେ ବିକୃତ
ହୋଇଗଲା । ମୁଁ ଦିବାରାତ୍ର ସୁରା ଓ ବେଶ୍ୟା ସେବା
ଉନ୍ମତ୍ତ ଥାଏ—ରାଜ୍ୟରେ ଯେତେଦୂର ବିଶୃଙ୍ଖଳା
ଘଟିବାର ଘଟିଲା - ଦୁର୍ଗ ଓ ଏକାବେଳକେ
ସୈନ୍ୟଶୂନ୍ୟ କହିଲେ ଚଳେ ନିୟମିତ ବେତନା-
ଭାବରୁ ରାଜ-କର୍ମଚାରୀମାନେ ନାମମାତ୍ର କାର୍ଯ୍ୟ
କରୁଥା'ନ୍ତି—ଏପରି ଅବସ୍ଥାରେ ବୈଦେଶିକା-
କ୍ରମଣରେ କେବଳ ପ୍ରମାଦ ଗଣିବାକୁ ଲାଗିଲି—
କଣ କରିବି ? କିଛି ବୁଝି ନ ପାଇ ସନ୍ଧି କାମନା
ପୂର୍ବକ ମରହଟ୍ଟା ଶିବିରକୁ ଦୂତ ପ୍ରେରଣ କଲି—
ଶତ୍ରୁଦଳପତି—

ମାଳତୀ—ଦଳପତି କିଏସେ ଥିଲେ ?

ମାଧବ—ମୋର ସର୍ବନାଶକାରୀ ସ୍ୱୟଂ ପାପାତ୍ମା
ଭୋନ୍‌ସଲା ।—ଶୁଣ, ମା ! ସେ ଭାରି ଆନନ୍ଦିତ
ହୋଇ ନିଜେ ରାଜଭବନକୁ ଆଗମନ କଲା—
ମୁଁ ଶିଶୁ-ରାଜାକୁ ନେଇ ତା'ର ଚରଣ ତଳେ
ଥୋଇଦେଲି, ଏବଂ ରାଜକୋଷ ଶୂନ୍ୟଥିବା କଥା
ଯଥାର୍ଥ ଶପଥ ଗ୍ରହଣ ପୂର୍ବକ ପ୍ରତ୍ୟାବର୍ତ୍ତନ କରିବାକୁ
ଅନୁରୋଧ କଲି ।

ମାଳତୀ—ସେ କି ଉତ୍ତର ଦେଲେ ?

ମାଧବ—ଧୂର୍ତ୍ତ ଭାରି ଅନୁକମ୍ପା ପ୍ରକାଶ କରି, କିଛି ନ
ନେଇ ଫେରି ଯିବାକୁ ସ୍ୱୀକୃତ ହେଲା—

ସଖ୍ୟଭାବେ ନାନା ଗଳ୍ପରେ, ମୋ ସଙ୍ଗେ କିଛି ଗୋପନ ପରାମର୍ଶ ଅଛି ବୋଲି, ସମସ୍ତଙ୍କୁ ସେ ସ୍ଥାନରୁ ବିଦାୟ କରିଦେଲା ।

ମାଳତୀ—ତା'ପର ?

ମାଧବ—ତା' ପର ଯାହା କହିଲା—ଓଃ ହୋଃ—

ମାଳତୀ—କ'ଣ କହିଲା ?—

ମାଧବ—ତାହା ସ୍ମରଣ କଲାବେଳକୁ ହୃଦୟ-ତନ୍ତ୍ରୀ ମୋର ଛିନ୍ନ ହୋଇ ଯାଉଛି—କହିଲା, 'ଏ ରାଜ୍ୟର କଣ୍ଟକ ଦୂର କରିଦେଲେ ଭଲ ହୁଅନ୍ତା ନାହିଁ କି ?'—ପ୍ରଥମେ ମୋର କର୍ଣ୍ଣକୁ ମୁଁ ବିଶ୍ୱାସ କରିପାରିଲି ନାହିଁ—

ମାଳତୀ—ତା'ପର ?

ମାଧବ—'ତୁମ୍ଭେ ରାଜା ହେବ—ଏହାଠାରୁ ଆଉ ସୌଭାଗ୍ୟର ବିଷୟ କ'ଣ ଅଛି ? ପୁଣି ଦେଖ, କୌଶଳରେ ତୁମ୍ଭର କଣ୍ଟକ ଦୂର କରି ଦେବି—ତୁମ୍ଭ ଉପରେ ସନ୍ଦେହର କୌଣସି କାରଣ ରହିବ ନାହିଁ ।'

ମାଳତୀ—ଓଃ କି ନିଷ୍ଠୁର । ତା' ପର—

ମାଧବ—ମୁଁ ସମ୍ମତ ହେଲି ନାହିଁ—ଯୁକ୍ତି ପ୍ରତ୍ୟାବର୍ତ୍ତିତ ହେଲା—କିନ୍ତୁ, କିଛିଦିନପରେ ପୁଣି ଯୁକ୍ତି ମୋ' ସଙ୍ଗେ ବନ୍ଧୁ ସୌହାର୍ଦ୍ଦ୍ୟ ଜଣାଇ, ନାନାଦି ଉପଢୌକନ ପଠାଇବାକୁ ଲାଗିଲା—ଆଉ ଦୁଇ ତିନି ଥର ନିଜେ ଆସିଲା—ଏ' ବିଷୟରେ ଆଉ କିଛି କହୁ ନ ଥାଏ । ସେ ପାପ-ଚିନ୍ତା କିନ୍ତୁ ମୋ ମସ୍ତିଷ୍କରେ କ୍ରମେ କ୍ରମେ ବୃଦ୍ଧି ପାଉ ଥାଏ—ବେଳେ ବେଳେ ମନେ ହେବାକୁ ଲାଗିଲା—ଜୋନ୍‌ସନ୍ଙ୍କ ପ୍ରସ୍ତାବ ତ ମନ୍ଦ ନୁହେଁ—ରାଜା ହେବି—ଯଥେଚ୍ଛା ଖର୍ଚ୍ଚ କରି ପାରିବି—ଭବିଷ୍ୟତରେ କାହାରିକୁ କୈଫିୟତ୍ ମଧ୍ୟ ଦେବାକୁ ନ ଥିବ ।—ଏହିପରି କିଛିଦିନ ବିତିଗଲା ପରେ ଜୋନ୍‌ସନ୍ ଦିନେ କି ଗୋଟିଏ ଉତ୍ସବ ଉପଲକ୍ଷେ ଆମ୍ଭମାନଙ୍କୁ ସପରିବାରେ ନିମନ୍ତ୍ରଣ କରି ପଠାଇଲା । ମୁଁ ମଧ୍ୟ କୌଣସି ଆପତ୍ତି ନ କରି ସମସ୍ତଙ୍କୁ ନେଇ ତା' ରାଜ୍ୟରେ ଉପସ୍ଥିତ ହେଲି—ସେହିଠାରେ ପାପାତ୍ମା ମୋ ପାପ-ସ୍ୱଭାବର ସୁବିଧା ଗ୍ରହଣ କରି ଏପରି ବଶୀଭୂତ କରି ପକାଇଲା ଯେ, ମୁଁ ତା' କଥାରେ ସ୍ୱୀକୃତ ନ ହୋଇ ଆଉ ରହି ପାରିଲି ନାହିଁ ।

ମାଳତୀ—ଶିଶୁ-ରାଜକୁମାରକୁ ସେ କ'ଣ ହତ୍ୟା କଲା ?

ମାଧବ—ଶୁଣ ତ—ତା'ର ଅନୁରୋଧ ମତେ, ଉତ୍ସବାନ୍ତେ ଶିଶୁ ରାଜପୁତ୍ର ସଙ୍ଗେ ତୋ'ର ମା'କୁ ଛାଡ଼ି ମୁଁ ସ୍ୱଦେଶକୁ ଫେରି ଆସିଲି—

ମାଳତୀ—ମା' କଣ ଏସବୁ ଜାଣିଥିଲେ ?

ମାଧବ—ନା, କିଛି ନା—ଏହିପରି ଭାବରେ ଦୁଇ ତିନି ମାସ ବିତିଗଲା । ଦିନେ ବାର୍ତ୍ତା ଆସିଲା—ଶିଶୁ ରାଜକୁମାର ବସନ୍ତ ରୋଗରେ ଦେହତ୍ୟାଗ କରିଛନ୍ତି ।

ମାଳତୀ— ଏହା କଣ ସତ ? ମା ତ ନିଶ୍ଚୟ ଜାଣିଥିବେ ?

ମାଧବ—ମା ଫେରି ଆସିଲେ, ତାଙ୍କ ପଚାରିବାରୁ ସେ କହିଲେ, ମୃତ୍ୟୁର ୧୫ଦିନ ପୂର୍ବରୁ ସେ ରାଜକୁମାରକୁ ଦେଖି ନାହାନ୍ତି ।

ମାଳତୀ—ନ ଦେଖିବାର କାରଣ ?

ମାଧବ—ବୈଦ୍ୟ ଉପଦେଶ ଦେଇଥିଲେ—ବସନ୍ତ ରୋଗର ଲକ୍ଷଣ ଦେଖା ଯାଉଛି—ଏପରି ସଂକ୍ରାମକ ରୋଗ ନଅର ଭିତରେ ରଖିବା ବିପଦ-ଜନକ—ଶୀଘ୍ର ସ୍ଥାନାନ୍ତରିତ କରିବା ଆବଶ୍ୟକ । ସୁତରାଂ—

ମାଳତୀ—ମୃତ୍ୟୁପରେ ତ ମା ଦେଖିଥିବେ ?

ମାଧବ—ମା ମୃତ୍ୟୁ ଖବର ପାଇ ଏକାବେଳକେ ଅଚେତନ । ଚେତନା ପାଇଲା ବେଳକୁ ଶବ ଚାଲି ଆସିଲା, ସମାଧି ହୋଇ ସାରିଲାଣି ।

ମାଳତୀ—ଏହା କି ସତ୍ୟ ?

ମାଧବ—ସତ୍ୟ କି ମିଥ୍ୟା, ବୁଝିବାକୁ କି ବାକି ଅଛି ମା ? ତା'ପର, ଏ' ଦୁଃସମ୍ବାଦ ମୁହୂର୍ତ୍ତକେ ରାଜ୍ୟରେ ରାଷ୍ଟ୍ର ହୋଇଗଲା । ବୀରବଳଙ୍କ ବୋଲି ମୋର ଜ୍ୟେଷ୍ଠ ଭାଇଙ୍କର ଜଣେ ଭାଇ ଥିଲେ

ବନ୍ଦୀ ଥା'ନ୍ତି । ତାଙ୍କର ଉତ୍ତେଜନାରେ ପ୍ରଜାମାନେ ବିଦ୍ରୋହ ଘଟାଇଲେ । ମାତ୍ର ଭୋନ୍‌ସଲଙ୍କର ପରାକ୍ରମରେ ସମସ୍ତ ପ୍ରଶମିତ ହୋଇଗଲା । ବୀରବଲଜିଙ୍କର ଲାଞ୍ଛନାର ସୀମା ରହିଲା ନାହିଁ । ସେ ସପରିବାରରେ ନିର୍ବାସିତ ହେଲେ । ମୋର ପାପ-ବାସନା ପରିତୃପ୍ତ ହେଲା ସତ୍ୟ—ମୁଁ ନିର୍ବୋଧ, ରାଜ-ସିଂହାସନରେ ପ୍ରତିଷ୍ଠିତ ହେଲି ସତ୍ୟ, ମାତ୍ର ଭୋନ୍‌ସଲା ସବୁ ବିଷୟରେ ଏକାଧିପତ୍ୟ ବିସ୍ତାର କରିବାକୁ ଲାଗିଲେ । ଯେତେବେଳେ ଯାହା ଆବଶ୍ୟକ କରୁଥା'ନ୍ତି, ଆଦେଶ ମାତ୍ରେ ମୁଁ ଯୋଗାଇବାକୁ ବାଧ୍ୟ ହେଉଥାଏ ।

ମାଲତୀ—ତା'ପରେ କ'ଣ ହେଲା ?

ମାଧବ—ଏହିପରି ଭାବେ ପ୍ରାୟ ୨୦ ବର୍ଷ ଅତୀତ ହୋଇଗଲା—ଭୋନ୍‌ସଲା ଏକପ୍ରକାର ରାଜକୋଷ ଓ ଗନ୍ତାଘର ଶୂନ୍ୟ କରିଦେଲେ । ଅଧିକ, ଯାହା ଯେତେବେଳେ ହେଉଥାଏ, ପ୍ରତିଦିନ ଜବରଦସ୍ତି ସମସ୍ତ ଆତ୍ମସାତ୍ କରୁଥାନ୍ତି । ରାଜ୍ୟ ଏକପ୍ରକାର ଲୁଣ୍ଠିତ ହେବାକୁ ଲାଗିଲା—ମୋର ଅବସ୍ଥା ମଧ୍ୟ କ୍ରମେ ଶୋଚନୀୟ ହେବାକୁ ଲାଗିଲା । ଏବଂ ଅଡ଼େ ଇଚ୍ଛାନୁରୂପ ଖର୍ଚ୍ଚ କରିବାକୁ ଅସମର୍ଥ—ପ୍ରଜାଗଣ ମଧ୍ୟ ଅସନ୍ତୁଷ୍ଟ, ତେଣେ ତୋର ମା ଅକାଳେ ସ୍ୱର୍ଗାରୋହଣ କଲେ । ଓଃ ! ତୁ ସେତେବେଳେ ମୋଟେ ଦୁଇବର୍ଷର ଶିଶୁ—ସବୁ ମରି ହଜି ତୁହି ମାତ୍ର ଅବଶିଷ୍ଟ ସନ୍ତାନ ଥାଉ—ତେଣୁ ଶୋକରେ, ଦୁଃଖରେ ମୁଁ ବାଧ୍ୟ ହୋଇ ମରହଟ୍ଟା କବଳରେ ରାଜ୍ୟଭାର ତ୍ୟାଗପୂର୍ବକ, ଭୋନ୍‌ସଲାର ନିର୍ଦ୍ଦିଷ୍ଟ ବୃତ୍ତି ଉପରେ ନିର୍ଭର କରି, ତୋ'ତେ ମୁହିଁ ଗୃହିଁ ଦିନାତିପାତ କରିବାକୁ ଲାଗିଲି । ଏତେ ଦୁଃଖ, ତଥାପି ମୋର ପୂର୍ବଚରିତ୍ର ସଂଶୋଧିତ ହେଲନାହିଁ—ପୂର୍ବକୃତ ପାପ ଓ ଅବସ୍ଥାନ୍ତରର ଶୋଚନୀୟତା ଭୁଲିବା ନିମନ୍ତେ, ଅଧିକତର ସୁରାପାନ କରିବାକୁ ଲାଗିଲି । ତା'ପର—

( ବାହାରିବା )

ମାଲତୀ—ରହିଗଲେ ତାହାଙ୍କ ପିତଃ ?

ମାଧବ—ତା'ପର ଯେଉଁ ଅବସ୍ଥା ଘଟିଲା, ତାହା ବର୍ଣ୍ଣନା କରିବାକୁ ରସନା ମୋର ଅବଶ ହେଉଛି—ହୃଦୟ ବିଦୀର୍ଣ୍ଣ ହେଉଛି । ଭୋନ୍‌ସଲା 'ବନ୍ଧୁ, ବନ୍ଧୁ' ବୋଲି କଥାରେ ଭକ୍ତି ଆଦର କରୁଥା'ନ୍ତି, ମାତ୍ର ଅନ୍ତରରେ ମୋତେ ଉପ୍ୟାନକ ତୁଚ୍ଛ କରିବାକୁ ଲାଗିଲେ । କିଛି ବର୍ଷପରେ ଏପରି ସମୟ ଉପସ୍ଥିତ ହେଲା, ମୁଁ ଏକାବେଳକେ କପର୍ଦ୍ଦକଶୂନ୍ୟ ହୋଇଗଲି—ସମସ୍ତ ଦାସଦାସୀ ଅନିଚ୍ଛା ସତ୍ତ୍ୱେ ମୋତେ ପରିତ୍ୟାଗ କରି ଚାଲି ଗଲେ, କେବଳ ସୁନ୍ଦରସିଂ ମୋର ପ୍ରତିପାଳିତ ବୋଲି ଓ ତା'ର ଗତ୍ୟନ୍ତର ନ ଥାଏ ବୋଲି, ରହିଥାଏ ।

ମାଲତୀ—କାହିଁକି ବାବା ! ପ୍ରତିଶ୍ରୁତ ଅର୍ଥ କଣ ଭୋନ୍‌ସଲ ଦେଉ ନଥାନ୍ତି ?

ମାଧବ—ତା' ହେଉଥିଲେ, ଏତେ ଚିନ୍ତା କ'ଣ ଥିଲା ? ହଁ ଆଜି ଦେବି, କାଲି ଦେବି ବୋଲି ପ୍ରତିନିଧି ନିତ୍ୟ ନିତ୍ୟ ଏହିପରି ଭଣ୍ଡାଉ ଥାଏ । ସୁନ୍ଦରସିଂକୁ ମଧ୍ୟ ତିନି ଚାରିଥର ନାଗପୁର ପଠାଇଲି—ନିଜେ ବି ଗଲି—ହଁ ହଉ ହଉଛି, ଏତେ ତରବର କାହିଁକି—ଏହିପରି କହି କହି ନିରାଶ କରୁଥାଏ । ମୁଁ ମଧ୍ୟ ବେଶୀ ପୀଡ଼ା ପୀଡ଼ି କରୁ ନ ଥାଏ, କାରଣ କୁମାର ସଙ୍ଗେ ତୋର ବିବାହ ହେବା ଆଶାରେ ଆଶାନ୍ୱିତ ଥାଏ । ମାତ୍ର ସେଥର ଆଉ ସହ୍ୟ କରି ନପାରି ସମସ୍ତ ନିଷ୍ପତ୍ତି କରିବା ଉଦ୍ଦେଶ୍ୟରେ, ତୋତେ ସଙ୍ଗରେ ନେଇ ନିଜେ ଉପସ୍ଥିତ ହେଲି । ତା'ପର ଯାହା ଘଟିଲା—ହାୟ ! ସୁନ୍ଦରସିଂ କାହିଁକି ମୋତେ ହତ୍ୟା ନ କଲା—ଏ' ପାପ ଓ ଦୁଃଖର ଜ୍ୱାଳା ଲିଭି ଯାଇଥାନ୍ତା ସିନା ।

ମାଲତୀ—ଛି, ବାବା ! ନିଜକୁ ଏତେ ଧିକ୍କାର ବା ଦୁଃଖରେ ପ୍ରୟୋଜନ କଣ ? ପ୍ରକୃତ ପରି ଆମ୍ଭେମାନେ ଉଦାର, ଗମ୍ଭୀର ଓ ସମଭାବାପନ୍ନ ନ ହେବା କାହିଁକି ? କେତେ ଅବସ୍ଥାର ମଧ୍ୟ ଦେଇ

ପ୍ରକୃତକୁ ଭୁଲିବାକୁ ହୁଏ, ଥରେ ଚିନ୍ତା କରି ଦେଖିଲେ ବାବା ! ସେଥିରେ କି ତାର ପ୍ରଫୁଲ୍ଲତା ତଳେ ହେଲେ ନଷ୍ଟ ହୁଏ ? ଅବଶ୍ୟ ଦିବସର ସୌନ୍ଦର୍ଯ୍ୟ ରାତ୍ରିରେ ନ ଥାଏ—ବସନ୍ତର ସୌନ୍ଦର୍ଯ୍ୟ ନିଦାଘରେ ନ ଥାଏ, ତଥାପି ଶରଦିନ ସେ କ'ଣ ସୌନ୍ଦର୍ଯ୍ୟମୟ ନୁହେଁ—ପ୍ରଫୁଲ୍ଲ ନୁହେଁ ? ଆମ୍ଭେମାନେ ବେଳେବେଳେ ବୁଝି ନ ପାରି ନିଜର ମନର କାଳିମାରେ ସିନା ତାଙ୍କୁ କଳଙ୍କିତ କରିଥାଉ ।

ମାଧବ—ଠିକ୍ କହୁଛୁ ମା ! ଏହିଠାର ତୋର ସେହି ସମୁଜ୍ଜ୍ୱଳ ଆଲୋକ ପୂର୍ଣ୍ଣଭାବେ ପାଇଛି । ପ୍ରଭାତର ଏହି ଆଲୋକ ପୁଣି ଅନ୍ଧକାରରେ ପରିଣତ ହେବ, ମାତ୍ର ତୋର ଏ ଆଲୋକ ଅପରିବର୍ତ୍ତନୀୟ—ମୋର ହୃଦୟ କୁଟୀରକୁ ନିରନ୍ତର ଆଲୋକିତ କରି ରଖିବ ।

ମାଳତୀ—ବାବା ! ଏ କେଉଁ ଦେଶ ?

ମାଧବ—କିପରି ଜାଣିବୁ ମା ? ଅଚ୍ଛା ମା, ତୁ ଏଠି ସାବଧାନ ହୋଇ ବସିଥା, ମୁଁ ବୁଲି ଆସେ ।

ମାଳତୀ—ବାବା ! ସେହି ସ୍ଥାନକୁ ଫେରିଯିବା ଚାଲ—ତା' ନହେଲେ ସୁନ୍ଦର ଭାଇ ଖୋଜି ଖୋଜି ନିଶ୍ଚୟ ହଇରାଣ ହେବ ।

ମାଧବ—ବର୍ତ୍ତମାନ ଖରା ମାଡ଼ି ଆସିଲାଣି, ଯିବା କିପରି ?

ମାଳତୀ—ଅଚ୍ଛା, ତୁମେ ବୁଲି ଆସ ବାବା ! (ମାଧବର ପ୍ରସ୍ଥାନ) କେଉଁ ବ୍ୟକ୍ତି ସଂସାରକୁ ନିନ୍ଦା କରେ ? ଏହାର ମାଧୁରୀ, ଏହାର ସୌନ୍ଦର୍ଯ୍ୟ ଯେ ଅନୁଭବ କରିବାକୁ ଅକ୍ଷମ, ସେ ବିକାରଗ୍ରସ୍ତ ଛଡ଼ା ଆଉ କିଏ ?

ଗୀତ

କାହାର ମୁରଲୀ ଶୁଣିଲି ଶ୍ରବଣେ—
କି ସୁଧା ଢାଳିଲା କହ ଗୋ ପବନେ ।
କି ଭାବେ ମଜାଇ ପ୍ରକୃତି ସୁନ୍ଦରୀ
କି ଗୀତ ଗାଉଛି ଆବେଶେ ନାଚଇ
କାହାପାଇଁ ସଦା ଉଚ୍ଚାଟନ ପ୍ରାଣ
[illegible] ?

[ ମଧୁର ଅଲକ୍ଷ୍ୟେ ପ୍ରବେଶ ]

ମଧୁ—ବେଶ୍ ବେଶ୍—ସଂସାର ସୁନ୍ଦର—ମଧୁର, ମାତ୍ର ଏ କି ପଦାର୍ଥ—ଏହାର ଉତ୍ପତ୍ତି କିପରି—ତା'ର ତତ୍ତ୍ୱ କିଛି କହିପାରିବ ?

ମାଳତୀ—( ଆଶ୍ଚର୍ଯ୍ୟେ ) କିଏ ଆପଣ, ମହାଶୟ ?

ମଧୁ—ମୁଁ କ, ଖ, ଗ, ଯେ କେହି ହୁଏନା କାହିଁକି, ସେଥି ସଙ୍ଗେ ମୋ ପ୍ରଶ୍ନର ସମ୍ବନ୍ଧ କଣ ?

ମାଳତୀ—ମହାଶୟ ! ମୁଁ ଗୋଟିଏ ମୂର୍ଖା, ମୋତେ କି ପ୍ରଶ୍ନ କରୁଛନ୍ତି ?

ମଧୁ—ନା, ନା, ତୁମେଇ ଜାଣ—ସଂସାର ନାମଟି ଯେତେବେଳେ ଉଚ୍ଚାରଣ କରୁଛ, ଆହୁରି କହୁଚ 'ସୁନ୍ଦର ମଧୁର'—ସେତେବେଳେ ତା'ର ଉତ୍ପତ୍ତି ନିଶ୍ଚୟ ତୁମକୁ ଜଣା ।

ମାଳତୀ—ମହାଶୟ ! ଏ କି ବିଚିତ୍ର କଥା ! ମିଷ୍ଟାନ୍ନ ଆସ୍ୱାଦନ କରିବାକୁ ସମସ୍ତେ ଜାଣନ୍ତି, ମାତ୍ର ତିଆରି କରିବାକୁ କି ସମସ୍ତଙ୍କୁ ଜଣା ?

ମଧୁ—ତା, ତା, ହଁ—କେତେକ ପରିମାଣରେ, କେତେକ ପରିମାଣରେ କାହିଁକି ସମ୍ପୂର୍ଣ୍ଣ ସତ୍ୟ କହିବାକୁ ହେବ । ବେଶ, ବେଶ, ତୁମେ ଭାରି ବୁଦ୍ଧିମତୀ—ତୁମେହିଁ ମୋର ଆବିଷ୍କାରତତ୍ତ୍ୱ ଶୁଣିବାକୁ ଏକା ଉପଯୁକ୍ତ ପାତ୍ରୀ । ଆମ୍ଭର ଶିକ୍ଷକମାନେ ଆଗେ ଆଗେ ବେଶ୍ ଶୁଣୁଥିଲେ କିନ୍ତୁ ଆଜିକାଲି କିପରି ମତିଗତି ବିଗିଡ଼ି ଗଲାଣି । ଓଃ, ମୁଁ ଅନେକ ବାଜେ କଥା କହିଗଲି—ମାପ କରିବେ । ଏହି ସଂସାର ସୃଷ୍ଟିତତ୍ତ୍ୱ ବୁଝିବା ବେଶୀ କିଛି କଠିନ ନୁହେଁ । ହଁ, ଏଥିପୂର୍ବେ ଆପଣଙ୍କଠାରୁ ଆଉ ଗୋଟିଏ ବିଷୟ ଜାଣି ରଖିବା ଉଚିତ ।

ମାଳତୀ—( ସ୍ୱଗତ ) କି ସରଳ ହୃଦୟ ! (ପ୍ରକାଶ୍ୟେ) କେଉଁ ବିଷୟ ପଚାରୁଛନ୍ତି ?

ମଧୁ—ଆପଣ ଈଶ୍ୱର ବିଶ୍ୱାସ କରନ୍ତି କି ନା ?

ମାଳତୀ—ଖୁବ୍ ଭଲରେ ।

ମଧୁ—( ହାସ୍ୟକରି ) କେବେ ଦେଖିଛନ୍ତି କି ?

ମାଳତୀ—ସବୁବେଳେ ଦେଖୁଛି ।

ମଧୁ—ମୋତେ ଦେଖାଇ ପାରିବେ ?

ମାଳତୀ—କାହିଁକି ନୁହେଁ ? ମାତ୍ର, ଏ ଚର୍ମଚକ୍ଷୁ ଦ୍ୱାରା ଦେଖିବା ଅସମ୍ଭବ ।

ମଧୁ—( ହସି ) ସମସ୍ତେ ସେହି କଥା କହୁଥାନ୍ତି । ଆପଣ ଭଲା କେଉଁ ଚକ୍ଷୁରେ ଦେଖୁଛନ୍ତି ?

ମାଳତୀ—ତା' ମୁଁ ତ କହିପାରିବି ନାହିଁ ।

ମଧୁ—ଅବଶ୍ୟ ଜ୍ଞାନଦ୍ୱାରା ବୁଝି ପାରୁଥିବେ ?

ମାଳତୀ—ମୁଁ ତ ଅଜ୍ଞାନ ।

ମଧୁ—କିଛି ବିଜ୍ଞାନାଲୋଚନା କରିଛନ୍ତି କି ?

ମାଳତୀ—କହିଲି ତ, ମୁଁ ଅଜ୍ଞାନ ।

ମଧୁ—ଏପରି ଭ୍ରମ ଧାରଣାଟା ତା' ହେଲେ ଆପଣଙ୍କର କରିବା ଅନ୍ୟାୟ ନୁହେଁ କି ?

ମାଳତୀ—ଭ୍ରମ ଧାରଣା ! କାହିଁକି ?

ମଧୁ—ନୁହେଁ ? ଯାହା ଆଖିରେ ଦେଖି ନ ପାରିବେ, ଜ୍ଞାନଦ୍ୱାରା ବୁଝି ନ ପାରିବେ—ତାହା ବିଶ୍ୱାସ କରିବା ଭ୍ରମ ନୁହେଁ ?

ମାଳତୀ—ଆଖି ଓ ଜ୍ଞାନ ଛଡ଼ା, ଅନ୍ୟ କୌଣସି ଉପାୟ କଣ ନାହିଁ ?

ମଧୁ—( ହସି ) ଅନ୍ୟ କି ଉପାୟ ଅଛି ?

ମାଳତୀ—ଜାଣେ ନାହିଁ, କିନ୍ତୁ ଅଛି । ତା' ନ ହେଲେ, ମୁଁ ଅବଶ୍ୟ ଦେଖି ପାରୁ ନାହିଁ—ଜ୍ଞାନ ତ ଆଦୌ ମୋର ନାହିଁ—ତଥାପି ଦେଖୁଛି କିପରି ?—ବୁଝୁଛି କିପରି ?

ମଧୁ—ଏ ଭ୍ରମ, ଭ୍ରମ—ଯଦି ତୁମ୍ଭେ ଏହା ଭ୍ରମ ବୋଲି ସ୍ୱୀକାର କରିବାକୁ ନ ଚାହଁ, ଧରି ନିଅ, ଏ ଭ୍ରମ । ଆସ ଆମ୍ଭେମାନେ ଚକ୍ଷୁ ଓ ଜ୍ଞାନଦ୍ୱାରା ଯାହା ବୁଝି ପାରିବା ବା ଦେଖି ପାରିବା, ତା'ର ଆଲୋଚନା କରିବା ଆସ । ସୃଷ୍ଟି ପୂର୍ବରୁ କ'ଣ ଥିଲା, ଜାଣ ? ମହାଶୂନ୍ୟ—ତା'ପରେ କ୍ରମେ କ୍ରମେ ଅଣୁ ପରମାଣୁ ସଂଯୋଗରେ ଏଇ—

ମାଳତୀ—ଏ'ଠି ପଚାରି ପାରେ କି—ଅଣୁ ପରମାଣୁ କ'ଣ ?

ମଧୁ—ଖୁବ୍ ସୂକ୍ଷ୍ମ ପଦାର୍ଥ ।

ମାଳତୀ—ସେହି ସୂକ୍ଷ୍ମ ପଦାର୍ଥ ଆସିଲା କାହୁଁ ?

ମଧୁ—ଶୂନ୍ୟ ଗର୍ଭରୁ ।

ମାଳତୀ—ତା'ତ ବୁଝିଲି—ମାତ୍ର ସେହି ପଦାର୍ଥ ସବୁ କେହି ନିଶ୍ଚୟ ନିର୍ମାଣ କରିଥିବେ ?

ମଧୁ—ତା' ତା'—( ଭାବିବା )

ମାଳତୀ—ଆଚ୍ଛା, ସଂଯୁକ୍ତ ହେଲା କିପରି ?

ମଧୁ—ପରସ୍ପରର ଆକର୍ଷଣ-ପ୍ରଭାବରୁ ।

ମାଳତୀ—ସେହି ଆକର୍ଷଣ-ପ୍ରଭାବ ଆସିଲା କାହୁଁ ?

ମଧୁ—ହୁଁ—ଆସିଲା କାହୁଁ ? ( ଭାବିବା ) ଓଃ—ସବୁ ଯେ ଗୋଳମାଳ ହୋଇଗଲା—ଦେଖ, ତୁମେ ଟିକିଏ ଆମ ଘରକୁ ଆସିପାରିବ କି ? ନା, ଆଜି ଆଉ ଗାଧୁଆ ହେଉନାହିଁ ।

ମାଳତୀ—ଆପଣ ଯାଆନ୍ତୁ, ଗାଧୋଇ ଆସନ୍ତୁ—ମୁଁ ଏ'ଠାରେ ପିତାଙ୍କୁ ଅପେକ୍ଷା କରିଛି—ସେ ନ ଆସିଲେ ତ ମୁଁ ଯାଇ ନ ପାରେ ।

ମଧୁ—ଅଚ୍ଛା ( ନିଜକୁନେ )—ଅଣୁ ପରମାଣୁ ଆସିଲା କାହୁଁ ? ଆକର୍ଷଣ-ପ୍ରଭାବ ଜନ୍ମିଲା କେଉଁଠାରୁ ? ( ଭାବିବା )—ଦେଖନ୍ତୁ, ଆପଣ ଯିବେ ନାହିଁ କେଉଁ ଆଡ଼େ—ମୁଁ ଆସିଲି ବୋଲି—( କିଛିଦୂର ଯାଇ ପୁଣି ଫେରି ) ଅଚ୍ଛା, ଶୂନ୍ୟ ବିଷୟରେ ଆପଣଙ୍କର କି ଧାରଣା ? ଅଣୁ ପରମାଣୁର ସମଷ୍ଟି ନୁହେଁ କି ?

ମାଳତୀ—ତେବେ ଶୂନ୍ୟ କହୁଛନ୍ତି କାହାକୁ ?

ମଧୁ—ହୁଁ—ଠିକ୍ ତ । ( ପୁଣି ଯାଇ ଓ ଫେରି ) ନା, ଚାଲନ୍ତୁ, ଗାଧୁଆ ଆଉ ହେବ ନାହିଁ ।

ମାଳତୀ—ତା' ହେଲେ ମୁଁ ଯିବିନାହିଁ ।

ମଧୁ—ନା, ନା, ସେପରି କହନ୍ତୁ ନାହିଁ—ଏହି ମୁଁ ଆସୁଛି ବୋଲି । ( ଯିବାବେଳେ ଫେରି ଫେରି ଚାହିଁବା ) ହୁଁ—ହୁଁ—( ପ୍ରସ୍ଥାନ )

ମାଳତୀ—ଫେରି ଫେରି ଚାହୁଁଛନ୍ତି, ଭାଳେ ମୁଁ କେଉଁ ଆଡ଼େ ପଳାଇ ଯାଏଁ—ଓଃ । କି ଜ୍ଞାନ-ଲିପ୍ସା

—କି ସରଳମତି ! ଜାହୁଁ, ପିତା ଏତେବେଳଯାଏ ଯେ ଫେରୁ ନାହାନ୍ତି ? ଟିକିଏ ଯାଇଁ ଦେଖେଁ—
( ପ୍ରସ୍ଥାନୋଦ୍ୟତ ଓ ମଧୁର ପ୍ରବେଶ )

ମଧୁ—ହୋଇଛି, ହୋଇଛି—ଅଣୁ ପରମାଣୁ—ଜହ୍ନୁଁ, ଜହ୍ନୁଁ—ଏହି ମୁଁ ଆସିଲି ବୋଲି—ଆପଣ ଟିକିଏ ଅପେକ୍ଷା କରନ୍ତୁ ।
( ବେଗେ ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

( ଯୋଡ଼ ଦୃଶ୍ୟ )

—ମନ୍ତ୍ରଣା ଭବନ—

[ ଆକବରବାଏ ଓ ମରହଟ୍ଟା ଦୂତର ପ୍ରବେଶ ]

ଆକବରବାଏ—ଆପଣ ଯଦି ଏଥିରେ ରାଜି ହୁଅନ୍ତି—ଦିନେ କ'ଣ, ଛଅ ଦିନ ସ୍ଥଗିତ ରଖିପାରେ ।

ଦୂତ—ତଥାପି, ମୋର ମିଥ୍ୟା କହିବାର ପାରିଶ୍ରମିକଟା ତ ଅଛି ?

ଆକବରବାଏ—ଅଚ୍ଛା, ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବେ ।

ଦୂତ—କଥାରେ ଖାଲି ବିଶ୍ୱାସ କରିବି କିପରି—ପରେ ଯଦି ନ ଦିଅନ୍ତି ?

ଆକବରବାଏ—ଏହି ଅଙ୍ଗୀକାରପତ୍ର ଲେଖି ଦେଉଛି—
( ଶୀଘ୍ରେ କାଗଜରେ ଲେଖିବା )

ଦୂତ—( ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ) ଅଗ୍ରିମ ତ କିଛି ଦରକାର—

ଆକବରବାଏ—ଅଚ୍ଛା, ସଭା-ଗୃହକୁ ଯିବାପୂର୍ବରୁ ଏକଶତ ଦେବି—ବାକୀ ଚାରିଶତ କାର୍ଯ୍ୟ ଶେଷରେ । ନିଅନ୍ତୁ—ଏହି ପତ୍ର ।

ଦୂତ—( ପତ୍ର ଦେଖି, ହସି ଜାମାରେ ରଖିବା ) ହଁ, କ'ଣ କହିବାକୁ ହେବଟି ? ଆଉ ଥରେ—
( ଦ୍ୱାରୀର ପ୍ରବେଶ )

ଦ୍ୱାରୀ—ସଭା-ଗୃହକୁ ସମ୍ରାଟ୍ ଗଲେଣି ।

ଆକବରବାଏ—ଅଚ୍ଛା ଚାଲ—( କର୍ଣ୍ଣେ କର୍ଣ୍ଣେ ଦୂତକୁ କହିବା )

ଦୂତ—ଠିକ୍ ମନେ ରହିଲା—ପଥର ।

ଆକବରବାଏ—ପଥର ନୁହେ—ପୃଥ୍ୱୀ—ଅସ୍ତ୍ରେ, ଅସ୍ତ୍ରେ —ଆପଣ ମନେ ମନେ ଅଭ୍ୟାସ କରି ନିଅନ୍ତୁ—ଏହି ପ୍ରାଚୀରର ମଧ୍ୟ କାନ ଅଛି, ବୁଝି ପାରୁନାହାନ୍ତି ?

ଦୂତ—ଠିକ୍, ଠିକ୍ । ହଁ, କଣଟି—ପଥର ?

ଆକବରବାଏ—ପୃଥ୍ୱୀ, ପୃଥ୍ୱୀ—ଅସ୍ତ୍ରେ, ଅସ୍ତ୍ରେ—ଆସନ୍ତୁ । ( ପ୍ରସ୍ଥାନ କରୁ କରୁ )

ଦୂତ—ହଁ, 'ପଥର, ପଥର' ଅଭ୍ୟାସ କରିବା ।

ଆକବରବାଏ—'ପୃଥ୍ୱୀ, ପୃଥ୍ୱୀ'—

ଦୂତ—'ପଥୀ, ପଥୀ' ।

ଆକବରବାଏ—ଅସ୍ତ୍ରେ, ଅସ୍ତ୍ରେ—( କାନରେ ) ପୃଥ୍ୱୀ-ସିଂହ, ପୃଥ୍ୱୀସିଂହ ।

ଦୂତ—ହଁ, ଏଥର ବୁଝିଲି—ଠିକ୍ ମନେ ରହିଛି—ପଥରସିଂହ ।

ଆକବରବାଏ—ପଥରସିଂ ନୁହେଁ—ପୃଥ୍ୱୀସିଂ, ପୃଥ୍ୱୀସିଂ ।

ଦୂତ—ଏଥର ଆଉ ଭୁଲ୍ ନାହିଁ ।

ଆକବରବାଏ—କ'ଣ କହିଲେ ?

ଦୂତ—ଆପଣ ଯାହା କହିଲେ ।

ଆକବରବାଏ—ଅଚ୍ଛା ସେଠାରେ ମୁଁ ନାମଟି ଥରେ କୌଶଳରେ କହିଦେବି ।

ଦୂତ—ମୁଁ ଠିକ୍ ଧରି ନେବି, ଦେଖିବେ ନାହିଁ । (କାଗଜକୁ ଦେଖି) ପାଞ୍ଚଶ' କିନ୍ତୁ କାର୍ଯ୍ୟ ପରେ—( ପ୍ରସ୍ଥାନ କରୁ କରୁ ) ଯାଃ—ଭୁଲି ଗଲିଣି ।

ଆକବରବାଏ—କଣ ଭୁଲିଗଲେ ?

ଦୂତ—'ପଥର'—ଆପଣ ତ ସେଠି କହିଦେବେ ?—ହଁ, ସେ ଦେଖିବାକୁ କିପରି ଟି ? ନିଶ୍ଚୟ ଆପଣଙ୍କ ପରି ପାଚିଲା ଦାଢ଼ି, ନିଶ ଥିବ ?

ଆକବରବାଏ—ଯୁବକର କଣ—

ଦୂତ—ଓହୋଃ, ଭୁଲି ଯାଇଥିଲି ।

ଆକବରବାଏ—ଆପଣ ପରା ଦୂତର କାର୍ଯ୍ୟ କରନ୍ତି ? ଏତିକି ମନେ ରଖିପାରୁ ନାହାନ୍ତି ?

ଦୂତ—କଣ କରବ ? ଏହ୍ୱ ମୁଦ୍ରା-ମୋହ ସବୁ ଗୋଳମାଳ କର ଦେଉଛ୍ଛ !

[ ଦ୍ୱାରୀର ପ୍ରବେଶ ]

ଦ୍ୱାରୀ—ମନ୍ତ୍ରୀ ମହାଶୟ !

ଅକବରସାଏ—ହଁ,ଚାଲ—ଆସନ୍ତୁ,ଦୂତ ! ( ସ୍ୱଗତ ) ଦେଖାଯାଉ—

ଦୂତ—( ଯାଉ ଯାଉ ) ପଥର—ଝ ହ୍ୱ—ଛାଡ଼, ଦେଖାଯିବ ଚେତେବେଳେ, ଯେମିତ ବୁଦ୍ଧି ହରିବ—ପାଞ୍ଚଶ, ଓହୋଃ !

ଅାକବରସାଏ—( ନେପଥ୍ୟେ ) ଆସନ୍ତୁ—ଶୀଘ୍ର ଆସନ୍ତୁ !

ଦୂତ—ଚାଲନ୍ତୁ—ପାଞ୍ଚଶ ସ୍ୱର୍ଣ୍ଣମୁଦ୍ରା—କନ୍ତୁ କଣଟି ? 'ପଥର'—

( ପ୍ରସ୍ଥାନ )

[ ପଞ୍ଚପରବର୍ତ୍ତିନ—ସଭାଗୃହ । ଅଭୟସିଂହ ଓ ସଭାସଦ୍‌ବର୍ଗ ଆସୀନ ଏବଂ ପୃଥ୍ୱୀସିଂ ଏକ-ପାର୍ଶ୍ୱରେ ଦଣ୍ଡାୟମାନ ]

ଅଭୟସିଂହ—ସେନାପତେ ! ଏ ତୁମ୍ଭର ଭ୍ରମ ଅନ୍ୟାୟ !

ପୃଥ୍ୱୀସିଂହ—ଯୁଦ୍ଧ ନୀତ ମୁଁ ପାଳନ କରଛ୍ଛ, ପ୍ରଭୋ !

ଅଭୟସିଂହ—ଶତ୍ରୁକୁ ଅବସର ଦେଇ ?

ପୃଥ୍ୱୀସିଂହ—ଏ କପରି କଥା, ମହାରାଜ ? ମୁଁ ତନଥର ତୋପ ଧ୍ୱନ କଲ, ତଥାପି ଶତ୍ରୁପକ୍ଷ ନୀରବ । ପରଶେଷରେ ଶତ୍ରୁ ଶିବରରେ ଶୁଭ୍ର ପତାକା ଉଡ୍‌ଡୀୟମାନ ହେବାର ଦେଖି, ନିରସ୍ତ ହେଲ—

ଅଭୟସିଂହ—ଅଦେଶ ଥିଲା କଣ ?

ପୃଥ୍ୱୀସିଂହ—ଅତ ପ୍ରତ୍ୟୁଷରୁ ଯୁଦ୍ଧ ଅରମ୍ଭ କରବାକୁ ।

ଅଭୟସିଂହ—ଯୁଦ୍ଧ ସ୍ଥଗିତ ରଖିବା କ ସେନାପତର ଇଚ୍ଛାଧୀନ ?

ପୃଥ୍ୱୀସିଂହ—କାର୍ଯ୍ୟତଃ ଅରମ୍ଭ ହୋଇ ନ ଥିଲା ।

ଅଭୟସିଂହ—ସେ ଅପରାଧ କାହାର ?

ପୃଥ୍ୱୀସିଂହ—ଗୋଟାଏ ପକ୍ଷ ନିଶ୍ଚେଷ୍ଟ—ଅନ୍ୟ ପକ୍ଷ ଯୁଦ୍ଧ କରବ କପରି ? ସେଥିରେ ପୁଣି ସନ୍ଧି-କାମନା-ସୂଚକ ଶୁଭ୍ର ପତାକା ଉଡ୍‌ଡୀୟମାନ ହେବାର ଦେଖିଲ ।

ଅଭୟସିଂହ—ଏହା କ କୌଣସି ଛଳନା ହୋଇ ନ ପାରେ ? ତୁମ୍ଭେ ମରହଟ୍ଟା କୌଶଳରେ ଏତେ ଅଜ୍ଞ ହୋଇ ସୁଦ୍ଧା, ଏପରି କହୁଛ ?

ପୃଥ୍ୱୀସିଂହ—ତେବେ ଦୂତ ପଠାନ୍ତେ କାହିଁକ ? ନିଶ୍ଚୟ କୌଣସି ପ୍ରସ୍ତାବ ଅଛ୍ଛ ବୋଲ ତ ?

ଅଭୟସିଂହ—ଶେଷ ମୁହୂର୍ତ୍ତରେ—ଯୁଦ୍ଧ ଆରମ୍ଭ ସମୟରେ ଦୂତ ପଠାଇଲେ, ଅମ୍ଭେ ଶୁଣିବା କାହିଁକ ? ପୁଣି ସେମାନେ ଆକ୍ରମଣକାରୀ—ପ୍ରସ୍ତାବ ସେମାନଙ୍କ ଅଡ଼ୁ ଉଠିବ କପରି ? ଧର, ଯେପରି ଯଦ କୌଣସି ସଦୁଦ୍ଦେଶ୍ୟ ଥିଲା, ତାହାହେଲେ ଏତେ ସମୟ ଥାଉଁ ଥାଉଁ ଏ ଶେଷ ମୁହୂର୍ତ୍ତରେ ଦୂତ ପଠାଇଲେ କାହିଁକ ? ନା, ଏଥିରେ ନିଶ୍ଚୟ ତୁମ୍ଭର କୌଣସି ଷଡ଼ଯନ୍ତ୍ର—( ସନ୍ଦେହସୂଚକ ମୁଣ୍ଡ ହଲାଇବା )

ପୃଥ୍ୱୀସିଂହ—ମହାରାଜ ! ଦାସ ପ୍ରତ କଣ କୌଣସି ସନ୍ଦେହ ହେଉଛ୍ଛ ? ତାହା ଯେବେ ହୋଇଥାଏ, ସ୍ପଷ୍ଟଭାବେ ପ୍ରକାଶ କରୁ ନାହାନ୍ତି କାହିଁକ ?

[ ମନ୍ତ୍ରୀର ପ୍ରବେଶ ]

ଅଭୟସିଂହ—ଆସ ମନ୍ତ୍ରି !

ଅକବରସାଏ—ଦାସର ଅଭିବାଦନ ଗ୍ରହଣ କରନ୍ତୁ ।

ଅଭୟସିଂହ—ଦୂତ କାହାନ୍ତି ?

ଅକବରସାଏ—ତାଙ୍କ ଆସିବା ପୂର୍ବରୁ କୌଣସି ଗୋପନ-ପରାମର୍ଶ ନାହିଁତ ?

ଅଭୟସିଂହ—ଆପଣ କେତେଦୂର କ'ଣ—?

ଅକବରସାଏ—ଅଧୀର ହେଉନ୍ତୁ ନାହିଁ—ସମସ୍ତ ଏହିକ୍ଷଣି ଶୁଣିପାରବେ ।

ଅଭୟସିଂହ—ତେବେ, ମୁଁ ଯାହା—

ଅକବରସାଏ—ଆପଣଙ୍କର କୌଣସି ମତ ବର୍ତ୍ତମାନ ବ୍ୟକ୍ତ କରବା ଉଚତ ନୁହେଁ, ମହାରାଜ ! ସ୍ୱାମୀଙ୍କଠାରୁ ନିରପେକ୍ଷ ବିଚାର ସମସ୍ତେ ଆଶା କରନ୍ତି ।

ପୃଥ୍ୱୀସିଂହ—( ସ୍ୱଗତ ) ଏହାର ଅର୍ଥ ତ କଛି ବୁଝି ପାରୁନାହିଁ !

ଆକବରଖାଁ—ସଭାସଦ୍‌ବର୍ଗ ଓ ସେନାପତେ । ଦୂତ ଆସିବା ପୂର୍ବରୁ ଆପଣମାନଙ୍କର ଯଦି କୌଣସି ଗୋପନ ପରାମର୍ଶ ଥାଏ, ତାହା ବର୍ତ୍ତମାନ କରନେଲେ ଭଲ ହୁଅନ୍ତା । ( କିଛିକ୍ଷଣ ସମସ୍ତେ ନୀରବ )

ସଭାସଦ୍‌ଗଣ—ନା, ଆମ୍ଭମାନଙ୍କର କିଛି ନାହିଁ ।

ଆକବରଖାଁ—ଆପଣଙ୍କର କିଛି ଅଛି, ସେନାପତେ ?

ପୃଥ୍ୱୀସିଂହ—( ଗମ୍ଭୀରଭାବେ ) ନା ।

ଆକବରଖାଁ—ଖାମ୍ଭ । ତେବେ କି ଆଦେଶ କରୁଛନ୍ତି ?

ଅଭୟସିଂହ—ଅତରେ ଦୂତକୁ ପ୍ରବେଶ କରାଅ ।

ଆକବରଖାଁ—(ପୃଥ୍ୱୀସିଂହ ଆଡ଼େ ଦୃଷ୍ଟିପାତ ପୂର୍ବକ—ସ୍ୱଗତ ) ଏହିଥର— ( ପ୍ରସ୍ଥାନ )

ଅଭୟସିଂହ—ସଭାସଦ୍‌ଗଣ । ଏ'ପରି ଚତୁର ଓ କର୍ମଠ ମନ୍ତ୍ରୀ, ମୁଁ ଦ୍ୱିତୀୟ କେବେ ଦେଖିନାହିଁ ।

୧ମ ସଭାସଦ୍—ନିଶ୍ଚୟ, ମହାରାଜ—ଆହା । ପୂର୍ବ ମନ୍ତ୍ରୀ ଯେତେବେଳେ ହଠାତ୍ ସ୍ୱର୍ଗାରୋହଣ କଲେ, ଖାମ୍ଭ ତ ଏକାବେଳକେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଇଥିଲେ—

୨ୟ ସଭାସଦ୍—ହୁଅନ୍ତେ ନାହିଁ—ଆମ ଭିତରେ ସେପରି ଯୋଗ୍ୟ ବ୍ୟକ୍ତି କେହି ଥିଲେ ?

ଅଭୟସିଂହ—ମୋ ସୌଭାଗ୍ୟରୁ ସିନା ଏପରି ମନ୍ତ୍ରୀ ଜଣେ ମିଳିଗଲା ।

୧ମ ସଭାସଦ୍—ମହିମା । ଏକା ଖାମ୍ଭଙ୍କର ସୌଭାଗ୍ୟରୁ, ନା ସମସ୍ତ ରାଜ୍ୟର ସୌଭାଗ୍ୟରୁ—

୨ୟ ସଭାସଦ୍—ଠିକ୍ ଭାଇ, ଏପରି ମନ୍ତ୍ରୀ ମିଳିବା କି ସହଜ କଥା ?

୧ମ ସଭାସଦ୍—ନିଶ୍ଚୟ ଦେବ-ପ୍ରେରିତ, ଭାଇ ।

ଅଭୟସିଂହ—ଯଥାର୍ଥ ।

୧ମ ସଭାସଦ୍—ହଜୁର ମହିମା । ( ହାତ ଯୋଡ଼ି ଛିଡ଼ା ହେବା )

ପୃଥ୍ୱୀସିଂହ—(ସ୍ୱଗତ) ଏ ସବୁ କଥାବାର୍ତ୍ତା ? ଭିତରେ ଭିତରେ ନିଶ୍ଚୟ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର ଚାଲିଛି ।

( ନେପଥ୍ୟେ ) ଜୟ, ମହାରାଜ ଅଭୟସିଂହଙ୍କର ଜୟ ।

ଅଭୟସିଂହ—ଏହି ଦୂତ ଆସୁଛି—ଚୁପ୍—

ସଭାସଦ୍‌ଗଣ—( ଆପଣା ଭିତରେ, ଚୁପ୍, ଚୁପ୍ କହି ଆପଣା ଆପଣା ମୁଖ ହସ୍ତଦ୍ୱାରା ଆବୃତ କରି ଗମ୍ଭୀରଭାବେ ବସିବା )

[ ଦୂତ ଓ ଆକବରଖାଁଙ୍କ ପ୍ରବେଶ ]

ଦୂତ—ଦୂତର ଅଭିବାଦନ ଗ୍ରହଣ କରନ୍ତୁ, ମହାରାଜ ।

ଅଭୟସିଂହ—( ଈଷତ୍ ଶିରଶ୍ଚାଳନ ) କୁହ, ତୁମ୍ଭର ସମ୍ବାଦ କଣ ?

ଦୂତ—ମହାରାଜ । ନିର୍ଦ୍ଦିଷ୍ଟ ଦିନ ଆଜି ପ୍ରଭାତରେ ଉତ୍ତୀର୍ଣ୍ଣ ହୋଇଗଲା—ତଥାପି ଆମ୍ଭେମାନେ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ହୋଇ ପାରିନାହୁଁ; ଆଉ ଦିନେ ଅବସର ପାଇଲେ, ହେବାର ସମ୍ପୂର୍ଣ୍ଣ ଆଶା । ଆମ୍ଭେମାନେ ଆକ୍ରମଣକାରୀ—ଆମ୍ଭଆଡ଼ୁ କୌଣସି ପ୍ରସ୍ତାବ ଉଠିବା ଯୁକ୍ତି ସଙ୍ଗତ ନ ହେଲେ ମଧ୍ୟ, ଆମ୍ଭେମାନେ ଜାଣୁ ଯେ ଖାମ୍ଭ ନ୍ୟାୟବାନ—ସର୍ବଦା ନ୍ୟାୟଯୁଦ୍ଧପ୍ରିୟ, ଅଧିକ ମଧ୍ୟ ଆମ୍ଭର ସେନାପତି ବଖ୍ତିଆର ମରହଟ୍ଟା ହେଲେ ସୁଦ୍ଧା, ସର୍ବଦା ସମ୍ମୁଖ ଯୁଦ୍ଧପ୍ରିୟ—ତେଣୁ, ଅନୁରୋଧ ଏହି ଯେ, ଖାମ୍ଭ ଆଉ ଦିନକ ଅବସର ଦେଲେ କୃତାର୍ଥ ମଣିବୁ । ଏହି ସମୟ ମଧ୍ୟରେ ଆମ୍ଭେମାନେ ପ୍ରସ୍ତୁତ ହୋଇପାରୁ ଉତ୍ତମ, ନଚେତ୍ ପ୍ରତ୍ୟାବର୍ତ୍ତନ ହିଁ ସ୍ଥିର ।

ଅଭୟସିଂହ—ଆଚ୍ଛା, ଦୂତ । ଏ' ପ୍ରସ୍ତାବର ମୀମାଂସା ପୂର୍ବରୁ, ମୋର କେତେଗୁଡ଼ିଏ ଜିଜ୍ଞାସା ଅଛି ।

ଦୂତ—ନିର୍ବିଘ୍ନେ ପଚାରି ପାରନ୍ତି—

ଆକବରଖାଁ—( ନିମ୍ନସ୍ୱରରେ ) ପୃଥ୍ୱୀସିଂହ । ଦୂତ ମହାଶୟଙ୍କୁ ଗୋଟିଏ ଆସନ ଦିଅ—

ଦୂତ—( ସ୍ୱଗତ ) ଠିକ୍ ମନେ ରଖିଲି 'ପଥରସିଂ' (ପ୍ରକାଶ୍ୟ ଇଙ୍ଗିତରେ ) ଦରକାର ନାହିଁ—ଥାଉ ।

ଅଭୟସିଂହ—କାଲି ରାତିରେ ତୁମ୍ଭର ଶିବିରକୁ ଆମ୍ଭର କୌଣସି ବ୍ୟକ୍ତି ଯାଇଥିଲା କି ?

ଦୂତ—ହିଁ ।

ଅଭୟସିଂହ—କିଏ ? ନାମ କହି ପାରିବ ?

ଦୂତ—ହିଁ—ପଥରସିଂ

ଅଭୟସିଂହ—(ହସି) ପଥରସିଂ ।

ଆକବରସାଏ—( ଉଚ୍ଚହାସ୍ୟ କରି ) ଏପରି ନାମ କେବେ ଶୁଣିଛ କି, ପୃଥ୍ୱୀସିଂହ !

ଦୂତ—ହଁ, ହଁ, ଏହି ନାମଟି ଯା' ବର୍ତ୍ତମାନ ଏ' ମହାଶୟ କହିଲେ ।

ଅଭୟସିଂହ—ଚିହ୍ନି ପାରିବ ?

ଦୂତ—ଖୁବ୍—

ଅଭୟସିଂହ—ଚିହ୍ନିଲ, କିଏ ?

ଦୂତ—( ସ୍ୱଗତ ) ମନ୍ତ୍ରୀ ମହାଶୟଙ୍କ କୌଶଳରେ ଚିହ୍ନିବାକୁ କଷ୍ଟ କ'ଣ ? ( ପୃଥ୍ୱୀସିଂହ ଆଡ଼େ ଦେଖାଇ ) ଏହି—

ଅଭୟସିଂହ—ଯିବାର କାରଣ କିଛି ଜାଣିଛ କି ?

ଦୂତ—ଖୁବ୍—ଆମ୍ଭର ଦଳପତି ସଙ୍ଗେ ସେ ଚୁପ୍, ଚୁପ୍ କରି କଣ କଥାବାର୍ତ୍ତା କରୁଥିଲେ ।

ପୃଥ୍ୱୀସିଂହ—ମିଥ୍ୟାକଥା—ସାବଧାନ, ନରାଧମ !

ଦୂତ—( ସଭୟେ ) ବାପ୍‌ରେ—

ଅଭୟସିଂହ—ପୃଥ୍ୱୀସିଂହ ! ଏ' ରାଜଦରବାର—ମନେ ରଖିବାକୁ ହେବ !

ପୃଥ୍ୱୀସିଂହ—ଏ' ମିଥ୍ୟାକଥା, ମହାରାଜ !

ଅଭୟସିଂହ—ମିଥ୍ୟା କି ସତ୍ୟ—ତୁମ୍ଭର ବକ୍ତବ୍ୟ ପରେ ଶୁଣିବ । ଦୂତ ! ତୁମ୍ଭେ କିଛି ଶୁଣିଛ କି ?

ଦୂତ—( ସଭୟେ ) ନା ମହାରାଜ ! ପ୍ରଥମେତ—( ଥରେ ପୃଥ୍ୱୀସିଂହ ଓ ଥରେ ଅଭୟସିଂହ ଆଡ଼େ ଚାହିଁ )

ଅଭୟସିଂହ—କଣ ? କହିଯାଅ—କିଛି ଭୟ ନାହିଁ ।

ଦୂତ—ପ୍ରଥମେ ତ ଯିବାମାତ୍ରେ ମୁଦ୍ରା ଝଣ୍ ଝଣ୍—

ପୃଥ୍ୱୀସିଂହ—ଝଟତକର ତୋର ରସନା, ମିଥ୍ୟାବାଦୀ ! ( ଅସି-ନିଷ୍କାସନୋଦ୍ୟତ )

ଦୂତ—( ସଭୟେ ) ମ-ହା-ରା-ଜ !

ଅଭୟସିଂହ—କିଏ ଅଛ ? ବାନ୍ଧ ଏହି ବିଶ୍ୱାସଘାତକକୁ । ମନ୍ତ୍ରି ! ଅସ୍ତ୍ର କାଢ଼ିନିଅ ! ( ବନ୍ଧନଦେଇ ଜନୈକ ସୈନ୍ୟର ପ୍ରବେଶ )

ଆକବରସାଏ—ବାନ୍ଧ—(ସୈନିକ କୁଣ୍ଠିତଭାବେ ବାନ୍ଧିବା ଓ ଆକବରସାଏ ଅସ୍ତ୍ର କାଢ଼ୁକାଢ଼ୁ ସ୍ୱଗତଃ) ମଧୁ ! ଏତେଦିନେ ଭାଗ୍ୟରବି ତୋର ପ୍ରସନ୍ନ ହେଲା !

ପୃଥ୍ୱୀସିଂହ—ମହାରାଜ ! ମୋତେ ବାନ୍ଧନ୍ତୁ, ମାରନ୍ତୁ, ହତ୍ୟା କରନ୍ତୁ ବା ଯାହା ଇଚ୍ଛା ତାହା କରନ୍ତୁ—ମାତ୍ର, ମିଥ୍ୟା ଦୋଷରେ କଦାପି ଦୋଷୀ କରନ୍ତୁ ନାହିଁ ।

ଅଭୟସିଂହ—ସ୍ଥିର ହ' ନରାଧମ ! ତୋ'ର ବକ୍ତବ୍ୟ ମୁଁ ପରେ ଶୁଣିବି—କହ, ଦୂତ ! ତା'ପର କଣ ହେଲା ?

ଦୂତ—( ଇତସ୍ତତଃ ହେବା )

ଆକବରସାଏ—ଗୋପନ ପରାମର୍ଶ ସେ ଜାଣିବେ କିପରି, ମହାରାଜ ? ଯେତିକି ସେ ବର୍ତ୍ତମାନ କହିଗଲେ, ସେତିକି ଯେ ମିଥ୍ୟା ନୁହେଁ, ସେନାପତିଙ୍କ ଆଚରଣରୁ ବେଶ୍ ଜଣା ପଡ଼ୁଛି—ଆହୁରି ମଧ୍ୟ, ଏତିକି କଣ ଯଥେଷ୍ଟ ନୁହେଁ ?

ଅଭୟସିଂହ—ନିଷ୍ଟୁର—ନିଷ୍ଟୁର—ଉଃ କି ବିଶ୍ୱାସ-ଘାତକତା ! ତୋର କିଛି ବକ୍ତବ୍ୟ ଅଛି, ନରାଧମ ? ସତ୍ୟକଥା ପ୍ରକାଶ କର, ନଚେତ୍—

ପୃଥ୍ୱୀସିଂହ—ପ୍ରାଣଦଣ୍ଡ ହେବ—ଏହାହିଁତ ? ଲଘୁ ହେଉ ବା ଗୁରୁ ହେଉ, ସେଥି ସକାଶେ ପୃଥ୍ୱୀସିଂହ ସତ୍ୟ କହିବାକୁ କଦାପି ଭୀତ ନୁହେଁ—ମହାରାଜ ! ଏ' କଥା ସତ୍ୟ ଯେ, କାଲି ରାତରେ ଶତ୍ରୁମାନଙ୍କ ସଙ୍ଗେ ମୋର ସାକ୍ଷାତ୍ ହୋଇଥିଲା !

ଆକବରସାଏ—ଠିକ୍ ମିଳୁଛି କି ନା, ଦେଖନ୍ତୁ ମହାରାଜ ?

(ଅଭୟସିଂହଆଡ଼େ ଚାହିଁ ଆନନ୍ଦ ପ୍ରକାଶ କରିବା)

ଅଭୟସିଂହ—ତା'ପର ?—

ପୃଥ୍ୱୀସିଂହ—ଶତ୍ରୁର ସହିତ ଶତ୍ରୁର ଯେପରି ସାକ୍ଷାତ୍ ହେବା ଉଚିତ୍ ଠିକ୍ ସେହିପରି ଭାବେ ସାକ୍ଷାତ୍ ହୋଇଥିଲା ।

ଅଭୟସିଂହ—ବିସ୍ତୃତଭାବେ ସମସ୍ତ କହିଯା'—

ପୃଥ୍ୱୀସିଂହ—ତେବେ ଶୁଣନ୍ତୁ, ମହାରାଜ ! ଅଙ୍ଗୀକାରବଦ୍ଧ ହୋଇ ଧନକ ପାଇଁ ମରହଟ୍ଟା ଯୁଦ୍ଧ ସ୍ଥଗିତ ରଖିଥିଲି ସତ୍ୟ—ମାତ୍ର ମୋର କିପରି ସେମାନଙ୍କ ପ୍ରତି ସନ୍ଦେହ ହେବାକୁ ଲାଗିଲା—ଯଦିଚ ଭଲ-ରୂପେ ଜାଣେ ଯେ, ମରହଟ୍ଟା ସେନାପତି ଭଦ୍ରଙ୍କ

ଭାବ ସତ୍ୟନଷ୍ଟ,ସ୍ୱ-ଜାତି ଠାରୁ ସ୍ୱ-ଭାବରେ ସମ୍ପୂର୍ଣ୍ଣ—ସ୍ୱତନ୍ତ୍ର ସାବଧାନର ବିନାଶ ନାହିଁ, ଏହି ନୀତି ଅନୁସରଣ କରି—ଶତ୍ରୁ- ଭଟଙ୍କ ପ୍ରତି ତୀବ୍ର ଦୃଷ୍ଟି ରଖିବାକୁ ଲଗିଲି—ଏଣେ ମୋହର ସମସ୍ତ ସୈନିକମାନଙ୍କୁ ଇଙ୍ଗିତ ମାତ୍ରେ କର୍ତ୍ତବ୍ୟ ପାଳନ କରିବାକୁ ଆଦେଶ ଦେଇ ଥାଏଁ—ରଜନୀ ଶେଷ ପ୍ରହରରେ ଉପସ୍ଥିତ ହେଲା, ଏପରି ସମୟରେ ଜଣେ ଅସି—( ହଠାତ୍ ରହିଯିବା )

ଅଭୟସିଂହ—ହଠାତ୍ ତୁନି ହେଲ କାହିଁକି ?

ଅକବରସାଏ—ଆଉ ଶୁଣିବାକୁ କଣ ବାକି ରହିଲା, ମହାରାଜ ? ହୃତ ଆସି ଖବର ଦେଲେ—ଗୁଣମଣି ଶତ୍ରୁ ଶିବିରରେ ଉପସ୍ଥିତ ହେଲେ—

ପୃଥ୍ୱୀସିଂହ—ଶତ୍ରୁର ସମ୍ବାଦ ପାଇ ମୁଁ ଅଗ୍ରସର ହେଲି ଓ ପ୍ରଥମେ ଚେଷ୍ଟା କଲି, ବିନା ଯୁଦ୍ଧରେ ଯଦି ସେମାନେ ପ୍ରତ୍ୟାବର୍ତ୍ତନ କରନ୍ତି !

ଅକବରସାଏ—(ହସିବା) ପିଲା ଭଣ୍ଡାଇବାର ସ୍ଥାନ କଣ ଆଉ କାହିଁ ପାଇଲ ନାହିଁ, ସେନାପତେ ?

ଅଭୟସିଂହ—ମିଥ୍ୟାକଥା ଶୁଣିବାର ଆଉ ଅବସର ବା ବାସନା ନାହିଁ—ନିଶ୍ଚୟ ଏହା ବିଶ୍ୱାସଘାତକତା । ସଭାସଦ୍‌ଗଣ ! ତୁମ୍ଭମାନଙ୍କର ମତ କଣ ?

୧ମ ସଭାସଦ୍—ନିଶ୍ଚୟ ବିଶ୍ୱାସଘାତକତା ।

୨ୟ ସଭାସଦ୍—ଭୀଷଣ—ଭୀଷଣ, ମହାରାଜ ।

ପୃଥ୍ୱୀସିଂହ—(ସ୍ୱଗତ) କି ଷଡ଼ଯନ୍ତ୍ର !—ମୁଁ ଯେ କିଛି ପ୍ରବେଶି ପାରୁନାହିଁ ।

ଅକବରସାଏ—ଏଥି ସଙ୍ଗେ ସଙ୍ଗେ ସନ୍ନ୍ୟାସିନୀକୁ ଛାଡ଼ିଦେବା କିପରି ଥରେ ଯୋଗକରି ଦେଖନ୍ତୁ, ମହାରାଜ !

ଅଭୟସିଂହ—ବାସ୍ତବିକ୍ ।

ଅକବରସାଏ—ଅଧିକ ଶୁଣିଛନ୍ତି, ମହାରାଜ ? ଆମ୍ଭେ-ମାନେ ସିନା ସେନାପତିଙ୍କ ଉପରେ ନିର୍ଭର କରି ନିଶ୍ଚିନ୍ତ ଥିଲୁଁ—ସନ୍ନ୍ୟାସିନୀ ମାଲିକ ହେଲେ କେତେ, ଅନ୍ୟ କେହି ମାଲିକ ହେଲେ କେତେ—ଆମ୍ଭର ଦରବାରମାନେ ସୈନ୍ୟ ସାହାଯ୍ୟ ପାଇଲେ ହେଲା—ବର୍ତ୍ତମାନ ସୈନ୍ୟ ସାହାଯ୍ୟ ତ ଦୂରର କଥା, ସନ୍ନ୍ୟାସିନୀ ଆସି ସସୈନ୍ୟେ ଶତ୍ରୁ ଶିବିରରେ ଉପସ୍ଥିତ ହେଲେଣି ।

ଅଭୟସିଂହ—ସତେ ?

ଅକବରସାଏ—ଗୁପ୍ତଚର ଠାରୁ ବର୍ତ୍ତମାନ ଏହି କଥା ଶୁଣି ଆସୁଛି ।

ପୃଥ୍ୱୀସିଂହ—( ସ୍ୱଗତ ) ଓଃ, ମୁଁ ଯେ ବିଶ୍ୱାସ କରିପାରୁ ନାହିଁ, ସନ୍ନ୍ୟାସିନୀ ଶତ୍ରୁପକ୍ଷୀୟା—ତାଙ୍କର ବକ୍ଷରୁ କିଏ ପ୍ରତ୍ୟୟ ନ ଯିବ ଯେ, ଅଭୟ-ସିଂହଙ୍କୁ ସେ ଭାରି ଭୟ କରନ୍ତି ? ସନ୍ନ୍ୟାସିନୀ କ'ଣ ତେବେ ମାୟାବିନୀ ?

ଅଭୟସିଂହ—ପୃଥ୍ୱୀସିଂହ ! ତୋତେ ବେଶୀ ଆଉ କଣ କହିବି ? ତୁ ଏପରି ବିଶ୍ୱାସଘାତକ ହେବୁ ବୋଲି ସ୍ୱପ୍ନରେ କେବେ ଭାବି ନ ଥିଲି ।—ଜାଣୁ କି, ତୋତେ ମୁଁ କେତେଦୂର ସ୍ନେହ କରୁଥିଲି ? ଯେତେବେଳେ ନିତାନ୍ତ ଶିଶୁ ତୁହି—ଶୃଗାଳ, ଗୃଧ୍ର ପରିବେଷ୍ଟିତ ହୋଇ ଦିନେ ନିଃସହାୟ ଭାବେ ଅରଣ୍ୟରେ ରୋଦନ କରୁଥିଲୁ—ମୁଁ ପାଖଦେଇ ଶିକାର ହୋଇ ଫେରିଲା ବେଳେ, ତୋତେ ମୋର ଅମୂଲ୍ୟ-ଶିକାର ଜ୍ଞାନକରି ସାନନ୍ଦେ ପ୍ରତ୍ୟାବର୍ତ୍ତନ କରିଥିଲି ତେତେ-ବେଳକୁ ଶକ୍ତିର ଜନ୍ମ ହୋଇ ନ ଥାଏ—ରାଣୀ ନିଃସନ୍ତାନ ହେତୁ ଦୁଃଖରେ ଅତି ମ୍ରିୟମାଣ ଥା'ନ୍ତି—ସୁତରାଂ, ଅନାୟାସେ ତୁହି ଏକମାତ୍ର ସାନ୍ତ୍ୱନାର କାରଣ ହୋଇ ଉଠିଲୁ—ପୁତ୍ର ନିର୍ବିଶେଷରେ ସେ ତୋତେ ପାଳିବାକୁ ଲାଗିଲେ—ଫଳତଃ, ତୁ ପରିଚିତ ହେଲୁ, ମୋର ପାଳିତ ପୁତ୍ର—ମହାସମାରୋହରେ, ଯଥା ସମୟରେ ତୋର ବିଦ୍ୟାଶିକ୍ଷା ଆରମ୍ଭ ହେଲା—ରଣନୀତିରେ ବିଶେଷ ପାରଦର୍ଶିତା ଦେଖି, ଯୁଦ୍ଧ ବିଭାଗରେ ତୋତେ ପ୍ରବେଶ କରାଇ ଦେଲି—କ୍ରମେ କ୍ରମେ ସୈନିକ ପଦରୁ ସେନାପତିତ୍ୱ ପ୍ରାପ୍ତ ହେଲୁ—ତୋ'ପରି ଏତେ ଅଳ୍ପ ବୟସରେ, ଏପରି ବିଚକ୍ଷଣ ବୀର ମୁଁ ଅତି ଅଳ୍ପ ଦେଖିଛି—

ଯେପରି ଯୁଦ୍ଧ-ପାଟବ—ସେହିପରି ସାହସ—
ସେହିପରି ତୀକ୍ଷ୍ଣଧୀ ।

ଆକବରରାଏ—ନିଶ୍ଚୟ, ମହାରାଜ—ତା' ନ ହେଲେ
କି ମରହଟ୍ଟାମାନଙ୍କ ମଧ୍ୟରେ ଏପରି ଗୋପନ
ଭାବେ ରହି, ଏତେ ଅଳ୍ପ ସମୟ ମଧ୍ୟରେ,
ସେମାନଙ୍କର ଜଟିଳ ରଣ-କୌଶଳ ସମୂହ ଶିଖି
ଆସି ପାରନ୍ତେ ?

ଅଭୟସିଂହ—କିନ୍ତୁ, ସେଠାରୁ ଫେରି ଆସିବା ଦିନୁ,
ତା'ର ଏପରି ପରିବର୍ତ୍ତନ ଦେଖୁଛି, ମନ୍ତ୍ରି !—
ପୃଥ୍ୱୀ ! ସତ୍ୟ କହ, ଏତେ ରାଜାନୁଗ୍ରହ ସତ୍ତ୍ୱେ—
କୌଣସି ଅଭାବ ନଥିବା ସତ୍ତ୍ୱେ—ତୁ ଏପରି
ବିଶ୍ୱାସଘାତକତା ଆଚରଣ କଲୁ କାହିଁକି ?

ପୃଥ୍ୱୀସିଂହ—( ଅର୍ଦ୍ଧ ସ୍ୱଗତ ) ବିଶ୍ୱାସଘାତକତା, କା'
ସଙ୍ଗେ ମହାରାଜ ? ମୁଁ ଯେ କିଛି ସ୍ଥିର
କରି ପାରୁନାହିଁ—ମୋର ମୁଣ୍ଡ ବର୍ତ୍ତମାନ ଠିକ୍
ନାହିଁ—ମୋତେ କ୍ଷମା କରନ୍ତୁ ।

ଅଭୟସିଂହ—ମନ୍ତ୍ରି ମହାଶୟ ! ବନ୍ଦୀକୁ ବର୍ତ୍ତମାନ
କାରାଗାରକୁ ନେଇଯାଅ—ଯୁଦ୍ଧାନ୍ତେ ବିଚାର
ହେଲେ, ଯାହା ହେବ ।

ଆକବରରାଏ—ସେନାପତି ପଦରେ ତେବେ କାହାକୁ
ସ୍ଥାପନ କରୁଛନ୍ତି, ମହାରାଜ ?

ଅଭୟସିଂହ—କାହାକୁ ଆପଣ ଉପଯୁକ୍ତ ମନେ କରନ୍ତି ?

ଆକବରରାଏ—ମୁଁ ସବୁ ବୁଝିବି—ଆପଣଙ୍କୁ କିଛି
ଭାବିବାକୁ ହେବ ନାହିଁ—

ଅଭୟସିଂହ—ତେବେ କଣ, ମଧୁ କଥା କହୁଛନ୍ତି ?
( ହସିବା )

ଆକବରରାଏ—ତାହାର ଆଉ ମନ୍ତ୍ରର ଗୋଳମାଳ ନାହିଁ,
ମହାରାଜ—ଡକାଇଲେ, ବର୍ତ୍ତମାନ ବେଶ୍ ବୁଝି
ପାରିବେ—ପଢାପଢି ବିଷୟରେ ତ କଥା ନାହିଁ
—ଅସ୍ତ୍ର ଶିକ୍ଷା ମଧ୍ୟ ବେଶ ପାଇଛି—ପରୀକ୍ଷା-
ସ୍ୱରୂପ ଥରେ ସୁବିଧା ଦେଲେ, ଅବଶ୍ୟ—

ଅଭୟସିଂହ—ଅଚ୍ଛା, ତାକୁ ମନ୍ତ୍ରଣା-ଗୃହକୁ ଡାକି
ପଠାଅ—ଦୂତବର, ତୁମ୍ଭେ ମଧ୍ୟ ମନ୍ତ୍ରଣା-ଗୃହକୁ
ଚାଲ—ତୁମ୍ଭର ପ୍ରସ୍ତାବ ବିଷୟରେ ସେଇଠାରେ
ହିଁ ବିଚାର କରାଯିବ ।

ଦୂତ—ଯେ ଆଜ୍ଞା ।

ଅଭୟସିଂହ—ସଭା ତାହା ହେଲେ ବର୍ତ୍ତମାନ ଭଙ୍ଗ
ହେଉ ।

[ ସମସ୍ତେ ପ୍ରସ୍ଥାନୋଦ୍ୟତ ଓ ଶଙ୍କରର ବେଗେ
ପ୍ରବେଶ ]

ଶଙ୍କର—ମହାରାଜ ! ମୁହୂର୍ତ୍ତେ ମାତ୍ର ଅପେକ୍ଷା କରନ୍ତୁ ।

ଅଭୟସିଂହ—ତୁ ଏଠି ଶଙ୍କର ?

ଶଙ୍କର—ବିଶେଷ ପ୍ରୟୋଜନ ଅଛି ବୋଲି—

ଅଭୟସିଂହ—କି ପ୍ରୟୋଜନ ?

ଶଙ୍କର—ପୃଥ୍ୱୀସିଂହ ଦୋଷୀ ନୁହେଁ—

ଅଭୟସିଂହ—କିପରି ?

ଶଙ୍କର—ମୁଁ ନିଜେ କାଲି ଶତ୍ରୁ ଶିବିରକୁ ଯାଇଥିଲି—

ଅଭୟସିଂହ—ତୁ ?

ଶଙ୍କର—ହଁ—

ଅଭୟସିଂହ—ଯିବାର ଅଭିପ୍ରାୟ ?

ଶଙ୍କର—ସେମାନଙ୍କର କୌଣସି ଶୁଶ୍ରୂଷାକାରିଣୀ ଅଛନ୍ତି
କି ନାହିଁ—ଯଦି ନ ଥା'ନ୍ତି, କେତେ ଲୋକ
ସେମାନଙ୍କର—ମୁଁ ଯେଉଁ ଆଶ୍ରମ ତିଆରି କରାଇଛି
ସେଥିରେ ସ୍ଥାନ ହେବ କି ନାହିଁ—ଯଦି ନ
ହୁଏ, କେଉଁ ବ୍ୟବସ୍ଥା କଲେ ସୁବିଧା ହେବ—
ଇତ୍ୟାଦି ଜାଣିବା ନିମନ୍ତେ ।

ଅଭୟସିଂହ—ଏ'ସବୁ ଜାଣିବାକୁ ନିଜେ ଯାଇଥିଲୁ ?

ଶଙ୍କର—ଯିବି ନାହିଁ, ମହାରାଜ ? ଅବଶ୍ୟ, ପୁରୁଷ
ସ୍ୱାର୍ଥପର ଓ କଠିନ-ହୃଦୟ ହୋଇ ନ ଥିଲେ
ଯିବାର ଦରକାର ନଥିଲା ।

ଅଭୟସିଂହ—କଥା ତୋର ବୁଝିପାରିଲି ନାହିଁ, ଶଙ୍କର ?

ଶଙ୍କର—ମନେ କରନ୍ତୁ ସେହିଦିନ, ମହାରାଜ ! ଯେଉଁ-
ଦିନ ଏହି ପବିତ୍ର ମହାନଦୀ ବକ୍ଷରେ ସେହି
ଭୀଷଣ ହତ୍ୟାକାଣ୍ଡ ହୋଇଯାଇଥିଲା—ମୁଁ ଦୁର୍ଗ
ଶିଖରରୁ ନିଜ ଚକ୍ଷୁରେ ଦେଖିଛି, ଶତ ଶତ
ଲୋକ ନଦୀତଟରେ ଅମ୍ଳାନ ବଦନରେ ଠିଆ
ହୋଇ ରହୁଥା'ନ୍ତି—ଅଥଚ ଆରୋହୀଗଣ ଆସନ୍ନ
ମୃତ୍ୟୁ-ଭୟରେ ବିକଟ ଚିତ୍କାର କରୁ କରୁ ନଦୀ-
ଗର୍ଭସ୍ଥ ହେଉଥା'ନ୍ତି । ଶେଷରେ, ସେହି ବାଳକା

—ଦ୍ୱୈଃ । ମୁଁ କେତେ ଲୋକଙ୍କୁ ଡାକିଲି—ଅନୁରୋଧ କଲି—ଯଥେଷ୍ଟ ପୁରସ୍କାର ମଧ୍ୟ ଘୋଷଣା କଲି—କାହାର ହୃଦୟରେ ଦୟାର କ୍ଷୀଣ ରେଖାଟି ପର୍ଯ୍ୟନ୍ତ ଅଙ୍କିତ ହେଲା ନାହିଁ—ସମସ୍ତେ ସମସ୍ୱରରେ କେବଳ ଚିତ୍କାର କରି ପ୍ରତ୍ୟୁତ୍ତର ଦେବାକୁ ଲାଗିଲେ, "କେମାଦେଈ ! ସେମାନେ ଶତ୍ରୁ !"—ତା'ପରେ—

ଅଭୟସିଂହ—ଥାଉ ସେ ସବୁ, ମା !

ଶକ୍ତି—ସେହିଦିନୁ ପ୍ରତିଜ୍ଞା କରିଛି, ପିତଃ—କାହାରିକୁ ଆଉ କିଛି ଅନୁରୋଧ କରିବି ନାହିଁ—ଯାହା କରିବି, ନିଜ ଉଦ୍ୟମରେ !

ଅଭୟସିଂହ—ମା, ମା ! କି କୋମଳ-ହୃଦୟା ତୁହି ! ଶକ୍ତି ନାମ ତୋର ବୃଥା ହେଲା ସିନା ?

ଶକ୍ତି—ମୁଁ ସେଠାରେ ଥିବା ହେତୁ, ପୃଥ୍ୱୀସିଂହ ନିଶ୍ଚୟ ଯୁଦ୍ଧ ଘୋଷଣା କରି ନାହାନ୍ତି—

ଅଭୟସିଂହ—ଏହା କି ସତ୍ୟ, ପୃଥ୍ୱୀ ?

ପୃଥ୍ୱୀସିଂହ—ଯେତେବେଳେ ଜଣେ ଆସି ଖବର ଦେଲା ଯେ, କେମାଦେଈଙ୍କୁ ଶତ୍ରୁମାନେ ଗୁପ୍ତଚର ସନ୍ଦେହରେ ବନ୍ଦୀକରି ନେଇ ଯାଉଛନ୍ତି—

ଅଭୟସିଂହ—ବନ୍ଦୀ କରିଥିଲେ ?

ପୃଥ୍ୱୀସିଂହ—ତତ୍‌କ୍ଷଣାତ୍ ମୁଁ ସସୈନ୍ୟେ, ଗୋପନରେ ଶତ୍ରୁ ଆଡ଼େ ଅଗ୍ରସର ହେଲି—ମାତ୍ର, ପଥରେ କେମାଦେଈଙ୍କୁ ଦେଖି ପଚାରନ୍ତେ, ସେ କହିଲେ, "ଶତ୍ରୁର ଦୋଷ ନାହିଁ"—ଏତିକି ମାତ୍ର—ଆଉ ଯେତେ ପଚାରିଲି, କିଛି କହିଲେ ନାହିଁ । ଶତ୍ରୁମାନେ ଅଙ୍ଗୀକାର ଭଙ୍ଗ କରିଥିବା କାରଣରୁ ମଧ୍ୟ ଯୁଦ୍ଧ କରିଥାନ୍ତି—କିନ୍ତୁ, ହଠାତ୍ କୁମାର ସଙ୍ଗେ ସାକ୍ଷାତ୍ ହେବାରୁ—ଆଉ ସେମାନେ ସ୍ୱେଚ୍ଛାରେ ପ୍ରତ୍ୟାବର୍ତ୍ତନ କରିବାରୁ ନିରସ୍ତ ହେଲି ।

ଆଳବରରାଏ—ଏ' ସମସ୍ତ ବିଶ୍ୱାସଯୋଗ୍ୟ ନୁହେଁ, ମହାରାଜ ।

ଶକ୍ତି—ତେବେ କଣ, ମୁଁ ମିଥ୍ୟାବାଦିନୀ ?

ଆଳବରରାଏ—ମହାରାଜ ! କେମାଦେଈ ଯେପରି କୋମଳ-ହୃଦୟା, ସେଥିରେ ପୃଥ୍ୱୀସିଂହଙ୍କୁ ଦଣ୍ଡ-ଭୋଗରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଏପରି ମିଥ୍ୟା-କୌଶଳ ରଚନା କରିବା ଆଶ୍ଚର୍ଯ୍ୟ କଣ ?

ଅଭୟସିଂହ—ମା !

ଶକ୍ତି—ମୋ ପ୍ରତି ସନ୍ଦେହ କରୁଛନ୍ତି, ପିତଃ ! ଏହି ପ୍ରତାରକର କଥାରେ ବିଶ୍ୱାସ କରି ?

ଅଭୟସିଂହ—ଛି, ମା—ମନ୍ତ୍ରୀ ବୃଦ୍ଧ, ଗୁରୁଜନ, ତାଙ୍କୁ ଏପରି କଥା କି କୁହାଯାଏ ?

ଆଳବରରାଏ—ସର୍ବ ସମ୍ମୁଖରେ—ଦରବାର ଗୃହରେ—ଏତେ ଅପମାନ !

ଶକ୍ତି—ମୋର ଦୋଷ ହୋଇଛି, ମୋତେ କ୍ଷମାକରନ୍ତୁ, ମନ୍ତ୍ରୀମହାଶୟ !—ମହାରାଜ ! ପୃଥ୍ୱୀସିଂହଙ୍କୁ ନିର୍ଦ୍ଦୋଷ ଜ୍ଞାନ କରନ୍ତୁ !

ଆଳବରରାଏ—ମା ! ତୁମେ ଏଠୁଁ ଯାଅ—ଏ' ଭାରି ବିଷମ ସ୍ଥାନ—ରାଜନୀତି ବଡ଼ କଠୋର !

[ ଉତ୍କଳ-ଦୂତର ବେଗେ ପ୍ରବେଶ ]

ଉତ୍କଳ-ଦୂତ—ମହାରାଜ ! ମୁଁ ଦେଖି ଆସିଲି, ଦୁଇଜଣ କପଟବେଶୀ ବୃଦ୍ଧ ଓ ଯୁବତୀ ସଙ୍ଗେ ମଧୁରା'ଙ୍କେ କି ଗୋପନ ପରାମର୍ଶ କରୁଛନ୍ତି—ନିଶ୍ଚୟ ସେମାନେ ଶତ୍ରୁର ଗୁପ୍ତଚର ।

ଆଳବରରାଏ—କେଉଁଠାରେ ?

ଉତ୍କଳ-ଦୂତ—ଆପଣଙ୍କ ଘରେ ।

ଆଳବରରାଏ—ମିଥ୍ୟା କଥା—ମୁଁ ଦେଖି ଆସେ, ମହାରାଜ !

ଅଭୟସିଂହ—ଶୀଘ୍ର, ଶୀଘ୍ର !

ଶକ୍ତି—ନା ମହାରାଜ ! ମନ୍ତ୍ରୀ ମହାଶୟ ଯାଇ ପାରିବେ ନାହିଁ ।

ଅଭୟସିଂହ—କାର୍ଯ୍ୟ ସମୟରେ ଏ'କି ବାଧା ତୋର, ଶକ୍ତି ?

ଶକ୍ତି—ବାଧା କି ସୁବିଧା, ଏହିକ୍ଷଣି ବୁଝି ପାରିବେ ମହାରାଜ !—ଦୂତ ! ସେମାନେ ଗୋପନ ପରାମର୍ଶ ଅବଶ୍ୟ ଗୋପନ-ସ୍ଥାନରେ କରୁଥିବେ—ତୁ ଜାଣିଲୁ କିପରି ?

ଉତ୍କଳ-ଦୂତ—ମନ୍ତ୍ରୀ ମହାଶୟଙ୍କ ଭୃତ୍ୟ ସଙ୍ଗେ ମୋର କୌଣସି ବିଶେଷ ପ୍ରୟୋଜନ ଥିବାରୁ ମୁଁ ତାଙ୍କ ଘରକୁ ଯାଇଥିଲି—ମୁଁ ଜାଣେ, ମନ୍ତ୍ରୀ ମହାଶୟ ବର୍ତ୍ତମାନ ସଭା ଘରେ ଅଛନ୍ତି—ସୁତରାଂ, ଚିତ୍କାର କରି ଭୃତ୍ୟର ନାମ ଧରି ଡାକିବାକୁ ଲାଗିଲି—ସେ ତେଣୁ ଦୌଡ଼ିଆସି "ଚୁପ୍ ଚୁପ୍ କହୁ, ଏକାନ୍ତେ କହିବାକୁ ଲାଗିଲା, "ମଧୁସା'ନ୍ତଙ୍କ ମନା, ଏଠି ପାଟି କରିବାକୁ—ଦୁଇଜଣ କିଏ ଆସିଛନ୍ତି—ସେମାନଙ୍କ ମଧ୍ୟରେ କି ଗୋପନ ପରାମର୍ଶ ଚାଲିଛି"—ମୁଁ ପଚାରିଲି, "କିପରି ଦେଖିବାକୁ ?"—ସେ କହିଲା, "ନିଶ୍ଚୟ ବିଦେଶୀ" —ମୁଁ କୌତୂହଳୀ ହୋଇ ଝରକା ବାଟେ ଭିଁକିମାରି ଯା' ଦେଖିଲି—ଚକ୍ଷୁ ମୋର ସ୍ଥିର ହୋଇଗଲା—

ଶଙ୍କର—କି ପରାମର୍ଶ ହେଉଥିଲା—ଶୁଣିଥିଲ କିଛି ?

ଉତ୍କଳ-ଦୂତ—ମୁଁ ତ ଦେଖି ଦୌଡ଼ି ଆସେ—

ଅକବରଶାହ—ମହାରାଜ ! ଦୂତ କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ କରିବା ଅନୁଚିତ—

ଶଙ୍କର—ମନ୍ତ୍ରୀ କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ କରିବା ହିଁ ଉଚିତ୍—ମନ୍ତ୍ରୀ ମହାଶୟ ! ବଡ଼ ଦୁଃଖର ବିଷୟ ଯେ, ଏ' ବୟସରେ ଏତେ ବିଶ୍ୱାସଘାତକତା—ପୁଣି ସେହି ବିଶ୍ୱାସଘାତକତା ଅପର ମୁଣ୍ଡରେ ଲଦି ଦେଇ, ପାପମାତ୍ରା ଅଧିକତର କରିବା !

ଅକବରଶାହ—ମହାରାଜ ! ଆପଣଙ୍କ ବିଶ୍ୱସ୍ତକର୍ମଚାରୀ ପକ୍ଷେ ଏହାଠାରୁ ଅଉ ବିଶେଷ କି ଅପମାନ ହୋଇପାରେ ?

ଅଭୟସିଂହ—ଶଙ୍କର ! ତୁ ଭାରି ପିଲାମି କରୁଛୁ—ଯା' ଏଠୁଁ, ଚାଲ୍ ?

ଶଙ୍କର—ପିତଃ ! ଦୋଷ କ୍ଷମା କରିବେ—ଅଉ ଟିକିଏ ପିଲାମି କରି ମୁଁ ଏ' ସ୍ଥାନ ଏହିକ୍ଷଣି ତ୍ୟାଗ କରୁଛି ।

ଅଭୟସିଂହ—କିଏ ଅଛ ? ବନ୍ଦୀକର ଏ' ଦୂତକୁ ! ମନ୍ତ୍ରୀ ! ଶୀଘ୍ର ତୁମ୍ଭେ ଯାଅ, ଯଦି ସେମାନେ ପଳାଇ ଯା'ନ୍ତି—

ଅକବରଶାହ—ଯେ ଆଜ୍ଞା ! (ପ୍ରସ୍ଥାନୋଦ୍ୟତ)

ଶଙ୍କର—ଟିକିଏ ଅପେକ୍ଷା କରନ୍ତୁ, ମନ୍ତ୍ରୀ ମହାଶୟ !

ଅଭୟସିଂହ—ଶଙ୍କର !

ଶଙ୍କର—ସଭାସଦ୍‌ଗଣ ! ଆପଣମାନଙ୍କ ମଧ୍ୟରୁ ଜଣେ କେହି ଏଣେ ଆସିବେ କି ? ( ୧ମ ସଭାସଦ୍ ଆସିବା )—ଏହି ଦୂତର ଗାତ୍ର ଅନୁସନ୍ଧାନ କରନ୍ତୁ ।

ଅକବରଶାହ—ମୁଁ ଆସୁଛି ମହାରାଜ — ତେବେ ଯଦି—

ଅଭୟସିଂହ—ଶୀଘ୍ର, ଶୀଘ୍ର—

ଶଙ୍କର—କ୍ଷଣେ ମାତ୍ର—ବେଶୀ ବିଳମ୍ବ ହେବ ନାହିଁ ।

[ ୧ମ ସଭାସଦ୍ ଖଣ୍ଡେ କାଗଜ ଓ ଶହେ ସ୍ୱର୍ଣ୍ଣମୁଦ୍ରା ବାହାର କଲେ ]

ଶଙ୍କର—କି ପତ୍ର—ପାଠ କରନ୍ତୁ ।

୧ମ ସଭାସଦ୍—ମୁଁ ଏତଦ୍ଦ୍ୱାରା ଅଙ୍ଗୀକାର କରୁଛି ଯେ ତୁମ୍ଭେ ମୋର କହିବା ଅନୁଯାୟୀ କାର୍ଯ୍ୟ କରି ପାରିଲେ ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବ, ଏକଶତ ଅଗ୍ରିମ ଦିଆଗଲା । ଶ୍ରୀ ଅକବର ଶାହ—

[ ପତ୍ରଟି ରାଜାଙ୍କ ହାତକୁ ଦେବା ଓ ମୁଦ୍ରା ସବୁ ରାଜାଙ୍କ ନିକଟରେ ଥୋଇଦେବା ]

ଅଭୟସିଂହ—( କ୍ଷଣିକ ନିସ୍ତବ୍ଧତା ଭଙ୍ଗକରି ) ଅକବର ଶାହ ! ( ପତ୍ର ପାଠ )—ଓଃ ! ବିଶ୍ୱାସ ! ବିଶ୍ୱାସ ! ଜଗତରେ କି ତୋର ସ୍ଥାନ ନାହିଁ ? କିଏ ଅଛ, ବାନ୍ଧ ଏହି ବିଶ୍ୱାସଘାତକକୁ—ନା ( ଅଭୟ ସିଂ ଓହ୍ଲାଇ ଆସି ପୃଥ୍ୱୀର ବନ୍ଧନ ମୁକ୍ତ-କରି ) ପୃଥ୍ୱୀସିଂ ! ତୁମ୍ଭେ ନିଜେ ବନ୍ଧନ କର—( ଅକବରକୁ ବନ୍ଧନାନ୍ତର ) ନେଇ ଯାଅ ବନ୍ଦୀମାନଙ୍କୁ, ସେନାପତେ ! ଅଉ ଶୀଘ୍ର ବିଶ୍ୱାସ-ଘାତକର ଗୃହ ବେଷ୍ଟନ କରି ସମସ୍ତଙ୍କୁ ବାନ୍ଧି ଏଠାକୁ ନେଇ ଆସ—

[ ଅଭୟ ଓ ଶକ୍ତି ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ ଓ ଅଭୟ ଗମନ ପଥ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଥିବା ]

ଶକ୍ତି—(ସ୍ୱଗତ) ଭାଗ୍ୟେ ମୁଁ ଅନ୍ତରାଳରୁ ସବୁ ଦେଖିଥିଲି ! ମନେ କରିଥିଲି, ପୃଥ୍ୱୀ ସିଂ ମୁକ୍ତ ହୋଇଥିଲେ, ମନ୍ତ୍ରୀଙ୍କ କଥା ପ୍ରମାଣ କରି ନଥାନ୍ତି; ମାତ୍ର ଏତେଦୂର ଷଡ଼ଯନ୍ତ୍ର ଅସହ୍ୟ । ହାୟ ! କି କୁଟିଳ ପ୍ରକୃତି ଏହି ମାନବ !

ଅଭୟସିଂହ—ମା ! ଜଗତରେ କି ବିଶ୍ୱାସର ସ୍ଥାନ ଅଛି ?

ଶକ୍ତି—ଅଛି, ବାବା !

ଅଭୟସିଂହ—କେଉଁଠାରେ, ମା ?

ଶକ୍ତି—(ଅଙ୍ଗୁଳି ଦେଖାଇ) ଏହି ନିକଟରେ ।

[ ଅଭୟ ମନ୍ତ୍ରମୁଗ୍‌ଧବତ୍ ଚାହିଁ ରହିବା ]

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଯୁଦ୍ଧ କ୍ଷେତ୍ର—

[ ଅରୁଣା ଓ ରଘୁଜି କଥୋପକଥନ କରୁଥିଲେ ]

ଅରୁଣା—ତୁମ୍ଭେ ନା ସେନାପତି ?

ରଘୁଜି—ଭାରି ନିଷ୍ଠୁର ତୁମ୍ଭେ, ସନ୍ନ୍ୟାସିନି !

ଅରୁଣା—ନିଷ୍ଠୁର ଏହି କର୍ତ୍ତବ୍ୟ, ସେନାପତେ !

ରଘୁଜି—ସେହି କର୍ତ୍ତବ୍ୟ ସ୍ମରଣ କରାଇଦେବା ଦ୍ୱାରା ତୁମ୍ଭେ କଣ ନିଷ୍ଠୁରତର ହେଉ ନାହିଁ, ସନ୍ନ୍ୟାସିନି ?

ଅରୁଣା—'ପିତଃ' ! 'ପିତଃ' !—(ରହିଯିବା)

ରଘୁଜି—'ପିତଃ' 'ପିତଃ' ବୋଲି କାହାକୁ ସମ୍ବୋଧନ କରୁ କରୁ ଅର୍ଦ୍ଧପଥରେ ଚୁପ ହୋଇ ରହିଗଲ, ସନ୍ନ୍ୟାସିନି ? ଡାକ, ଡାକ, ଆଉ ଥରେ ସେହି ମଧୁର ନାମ 'ପିତଃ' 'ପିତଃ' ବୋଲି ସମ୍ବୋଧନ କରି—ଓଃ ହୋଃ ! କନ୍ୟା ଯେ ମୋର—ଅଛି ଯେ ମୋର, ଅବିକଳ ସେହି ସ୍ୱରେ—ସେହି ଭଙ୍ଗୀରେ 'ପିତଃ' 'ପିତଃ' ବୋଲି ସମ୍ବୋଧନ କରି, ତପ୍ତ ପ୍ରାଣରେ ମଧୁ ଢାଳି ଦେଉଥିଲା । ଡାକ, ଡାକ, ସନ୍ନ୍ୟାସିନି ! ଆଉ ଥରେ ସେହି ମଧୁର ବୋଲି, 'ପିତଃ' 'ପିତଃ' ବୋଲି ଉଚ୍ଚାରଣ କର—ଶୁଣି ଶୁଷ୍କକର୍ଣ୍ଣ ତୃପ୍ତ ହେଉ, ତପ୍ତପ୍ରାଣ ଶୀତଳ ହେଉ ।

ଅରୁଣା—ଆଚ୍ଛା ସେନାପତେ ! ଆଜିଠାରୁ ତୁମ୍ଭେ ମୋର ପିତା ହେଲ—ମୁଁ ତୁମ୍ଭର କନ୍ୟା—

ରଘୁଜି—'କନ୍ୟା' 'କନ୍ୟା'—ମା ! ଆଉ ମୁଁ ମାତୃହରା ନୁହେଁ । ମା ମୋର ସନ୍ତାନକୁ ଦୟା କରିଛି । ମା ମୋର ଫେରି ଆସିଛି ।

ଅରୁଣା—ଯାଅ ଏବେ, ପିତଃ ! ଯୁଦ୍ଧକାର୍ଯ୍ୟରେ ମନୋନିବେଶ କର ।

ରଘୁଜି—ନିଶ୍ଚୟ ତୁମ୍ଭେ ମୋର ମା—ତା' ନ ହୋଇଥିଲେ କି, ସ୍ୱେଚ୍ଛାରେ ଅନ୍ୟ କେହି ଜଣେ ଅପରିଚିତ ବିଦେଶୀକୁ ଦେଶର ଶତ୍ରୁକୁ ପୁଣି ସୈନ୍ୟ ଓ ଅନ୍ୟାନ୍ୟ ସାମରିକ ସାହାଯ୍ୟ ଦେବା ନିମନ୍ତେ ଏତେଦୂର ଆଗ୍ରହାନ୍ୱିତ ହୋଇଥାନ୍ତା ? ଏତିକି ନୁହେଁ, ନିଜେ ପୁଣି, ଯୁଦ୍ଧ—

ଅରୁଣା—ଯାଅ, ପିତଃ ! ବିଳମ୍ବ ହେଉଛି ।

ରଘୁଜି—ମା ! ଏତେ ଅନୁଗ୍ରହ ଯେତେବେଳେ, ସେହି ପ୍ରଶ୍ନଟିର—

ଅରୁଣା—(ସ୍ୱଗତ) ପିତାଙ୍କର ଏ କି ଅପୂର୍ବ ପ୍ରଶ୍ନ ! (ପ୍ରକାଶ୍ୟେ) ମୁଁ ତ କହୁଛି, କାର୍ଯ୍ୟାନ୍ତେ ତାହାର ଉତ୍ତର ପାଇବ—ଯାଅ ପିତଃ—

ରଘୁଜି—ଶୁଣିଲେ, ଯେ ମା, ଦ୍ୱିଗୁଣ ଉତ୍ସାହରେ କାର୍ଯ୍ୟ କରିବାକୁ ମନ ବଳିବ—ମର୍ଯ୍ୟାଦା—ମର୍ଯ୍ୟାଦା—

ଅରୁଣା—ଦେଖ, ମୋ କଥା ଶୁଣୁ ନାହଁ—ତା' ହେଲେ ମୁଁ ଆଉ 'ପିତଃ' ବୋଲି ସମ୍ବୋଧନ କରିବି ନାହିଁ ।

ରଘୁଜି—ନା, ନା, ମା ! ସେପରି କୁହ ନା ! ଏତେଦିନେ ଯେ ମୁଁ ଗୋଟିଏ ଅବଲମ୍ବନ ପାଇଛି—

ଏତେଦିନେ ଯେ ଟିକିଏ ଅଶ୍ୱାସନା ପାଇଛି ।
ସେ ଯେ ଠିକ୍ ତୁମ୍ଭର—ନା, ନା, ତୁହ ତ ମୋର
କନ୍ୟା—ତୁହ ତ ମୋର ସର୍ବସ୍ୱ ।

ଅରୁଣା—(ସ୍ୱଗତ) ଓଃ । ମୋ ବିଚ୍ଛେଦରେ ପିତାଙ୍କ
ହୃଦୟରେ କି ବେଦନା । ( ପ୍ରକାଶ୍ୟେ ) ପିତଃ ।
ଯାଅନ୍ତୁ—କୁମାର ଯେ ଏକାକୀ ତେଣେ ଯୁଦ୍ଧ
କରୁଛନ୍ତି ।

ରଘୁଜୀ—କରନ୍ତୁ, କରନ୍ତୁ, ମା—ମୁଁ ଟିକିଏ ବିଶ୍ରାମ
ନିଏ । ଏତେଦିନେ ମା-କୋଳ ଫେରି ପାଇଛି
—ଛାଡ଼ିବି କିପରି ?

(ନେପଥ୍ୟେ)—ଜୟ ଅଭୟ ସିଂହଙ୍କର ଜୟ ।

ଅରୁଣା—ଏହି ଶୁଣ, ପିତଃ—ଅସ ଶୀଘ୍ର, ତା' ନ
ହେଲେ, ମୁଁ ନିଜେ ବାହାରିଲି ।

ରଘୁଜୀ—ତୁ କେଉଁଆଡ଼େ ବାହାରିବୁ, ମା ?—ଥରେ
ତୋତେ ସାଙ୍ଗରେ ନେଇ ବଡ଼ ଭୁଲ କରିଥିଲି
—ପୁଣି କଣ ସେହି ଭୁଲ କରିବାକୁ ଯିବି, ମା ?

(ନେପଥ୍ୟେ)—ଜୟ ଅଭୟ ସିଂହଙ୍କର ଜୟ ।

ଅରୁଣା—ଆଉ ନା—(ପ୍ରସ୍ଥାନୋଦ୍ୟତା)

ରଘୁଜୀ—କଦାପି ନୁହେଁ ମା—(ବାଧାଦେବା) ।

[ ଦୂତର ବେଗେ ପ୍ରବେଶ ]

ଦୂତ—ସେନାପତେ । ସର୍ବନାଶ—କୁମାରଜୀ ଅହତ
—ଏହି, ସୈନ୍ୟମାନେ ପଳାଇ ଆସୁଛନ୍ତି ।

ରଘୁଜୀ—ଓଃ—ତା' ହେଲେ ଯେ ଭାରି ବିପଦ । ଆଉ
ତ ଏଠି ରହି ହେବ ନାହିଁ । ଚାଲ, ଚାଲ, ମା—
କେଉଁ ନିରାପଦ ସ୍ଥାନକୁ ଶୀଘ୍ର ପଳାଇ ଯିବା।
ଚାଲ ।

ଅରୁଣା—( ସାଶ୍ଚର୍ଯ୍ୟେ ) କ'ଣ ? କଣ କହିଲ
ସେନାପତେ ? 'ପଳାଇଯିବା' । 'ପଳାଇଯିବା'
—ତୁମ୍ଭେ ସେହି ନିର୍ଭୀକ ବୀର ରଘୁଜୀ ନା—ଯେ
କି କାର୍ଯ୍ୟ କିମ୍ବା ମୃତ୍ୟୁ, ଏହାଛଡ଼ା ତୃତୀୟ କଥା
କେବେ ଜାଣେ ନାହିଁ ? ତୁମ୍ଭେ ସେହି କର୍ତ୍ତବ୍ୟ-
ନିଷ୍ଠ ସେନାପତି ନା—ଯେ କି ପ୍ରାଣ-ପ୍ରିୟତମ
ଏକମାତ୍ର କନ୍ୟାକୁ ହରାଇ ସୁଦ୍ଧା କର୍ତ୍ତବ୍ୟ
ପାଳନରେ ଅଦ୍ୟାପି ଏକନିଷ୍ଠ ? ବର୍ତ୍ତମାନ
ତେବେ ଏ କି ଅବହେଳା ତୁମ୍ଭର—ଏ କି
ଭୀରୁତା ତୁମ୍ଭର, ଗୋଟାଏ ସନ୍ନ୍ୟାସିନୀର ବସ୍ତ୍ରାଞ୍ଚଳ
ଧରି ଆତ୍ମରକ୍ଷା କାମନା କରୁଛ ? ଗୋଟାଏ
ସାମାନ୍ୟା ନାରୀର ମାୟାରେ ମୁଗ୍ଧ ହୋଇ
କର୍ତ୍ତବ୍ୟ ଭୁଲି ଯାଉଛ ? ତେତିକି ନୁହେଁ,
ନିଃସଙ୍କୋଚେ, ସହଜଭାବେ ପୁଣି ଉଚ୍ଚାରଣ
କରି ଉଠୁଛ 'ପଳାଇଯିବା'—'ପଳାଇଯିବା' ।

ରଘୁଜୀ—କେବଳ ତୋ'ରି ସକାଶେ, ମା—ତୋ'ରି
ସକାଶେ । ତୋତେ ଫେରି ପାଇଛି ଯେତେ-
ବେଳେ, ଆଉ ଯେ ଛାଡ଼ି ପାରୁନାହିଁ । ମା । ମା ।
ମୋର ବୀରତ୍ୱ, କର୍ତ୍ତବ୍ୟପରାୟଣତା, ସବୁ ଆଜି
ତୋ'ରି ଠାରେ ଜଳାଞ୍ଜଳି ଦେଇଛି, ମା ।

ଅରୁଣା—ଏପରି ଭୀରୁ କାପୁରୁଷର ମା ହେବାକୁ ମୁଁ
ଲଜ୍ଜା ବୋଧ କରେ—'ମା' ଡାକ ଶୁଣିବାକୁ
ମଧ୍ୟ ଘୃଣା ବୋଧ କରେ । ସେନାପତେ ।
ତୁମ୍ଭେ ଏପରି ଭୀରୁ, ଦୁର୍ବଳ ଜାଣିଥିଲେ, କଦାପି
ମୁଁ ସ୍ୱେଚ୍ଛାରେ ଏତେ ପ୍ରାଣବଳି ଦେବାକୁ ଧାଇଁ
ଆସି ନ ଥାନ୍ତି ।

( ନେପଥ୍ୟେ )—ଆଉ ରକ୍ଷା ନାହିଁ—ଆଉ ରକ୍ଷା
ନାହିଁ ।

ଅରୁଣା—ଚାଲ, ଚାଲ, ସୈନ୍ୟଗଣ । ଏ' କ୍ଷୀଣାଙ୍ଗରେ
ଯେତିକି ବଳ ଅଛି, ସମସ୍ତ ପ୍ରୟୋଗ କରି ଆଜି
ଯୁଦ୍ଧ କରିବ । ( ପ୍ରସ୍ଥାନୋଦ୍ୟତା )

ରଘୁଜୀ—(ବାଧାଦେଇ) ନା, ନା, ମା । ଏ' ପ୍ରାଣ
ଥାଉଁ ଥାଉଁ, ତୋତେ ମୁଁ କଦାପି ଛାଡ଼ି ଦେଇ-
ପାରିବି ନାହିଁ ।

[ ଜନୈକ ସୈନିକର ବେଗେ ପ୍ରବେଶ ]

ସୈନିକ—ସେନାପତେ । ସର୍ବନାଶ ।

ଅରୁଣା—ଛାଡ଼ିଦିଅ, ସେନାପତେ । ( ବଳକାରପୂର୍ବକ
ପ୍ରସ୍ଥାନ )

ରଘୁଜୀ—ମା । ମା । [ ବେଗେ ପ୍ରସ୍ଥାନ ]

[ ଭୋନ୍‌ସଲାର ଛଦ୍ମବେଶେ ପ୍ରବେଶ ]

ଭୋନ୍‌ସଲା—ଆଉ ଗୋଡ଼ାଇ ନାହାନ୍ତି ତ ? ଏ' ଫକିର
ବେଶରେ ନିଶ୍ଚୟ ମୋତେ କେହି ଚିହ୍ନି

ପାରିବେ ନାହିଁ । ସତ୍ୟ, ସତ୍ୟ କଣ ମୋତେ ଫକୀର ହେବାକୁ ହେଲା ?—ତା' ଠାରୁ ସେ ସ୍ଥାନ ନୁହଁ । ଯେଉଁଠାକୁ ଯାଉଛି, ହେଯ୍ କୁକୁରର ପରି ତାଡ଼ିତ ହେଉଛି । କି ଧନୀ କି ଦରିଦ୍ର କି ରାଜା କି ପ୍ରଜା, ସମସ୍ତେ ଧିକ୍କାର କରି, ଅଙ୍ଗୁଳି ନିର୍ଦ୍ଦେଶପୂର୍ବକ କହୁଛନ୍ତି, "ଏହି ସେହି ବିଶ୍ୱାସ-ଘାତକ ଭୋନ୍‌ସଲ—ଏହାର ମରଣ ହିଁ ଶ୍ରେୟସ୍କର ।" ଯୁଦ୍ଧରେ ଯେଉଁ ଭୋନ୍‌ସଲ ଦିନେ ସମସ୍ତଙ୍କର କାଳସ୍ୱରୂପ ଥିଲା, ତା'ର ଏପରି ହେୟ ଜୀବନ ଧାରଣ ଠାରୁ ମୃତ୍ୟୁ ହିଁ ଶ୍ରେୟସ୍କର । ବାହାରେ ଶତ୍ରୁ, ଭିତରେ ମଧ୍ୟ ଶତ୍ରୁ—ମନେ କରିଥିଲି, ସ୍ୱଦେଶବାସିମାନଙ୍କ ସାହାଯ୍ୟରେ ନିଶ୍ଚୟ ବିଳାସପୁରର ବିଦ୍ରୋହ ଦମନ କରି ପାରିବି—ମାତ୍ର କ'ଣ ଦେଖିଲି, ମୁଁ ଯେ ଅଦ୍ୟାପି ବିଶ୍ୱାସ କରି ପାରୁନାହିଁ—ସୁନ୍ଦରସିଂ ନାଗପୁର ଆକ୍ରମଣ କଲା, ଆଉ ପ୍ରଜାମାନେ ଅକୁଣ୍ଠିତ ଚିତ୍ତରେ ତା' ସଙ୍ଗେ ଯୋଗ ଦେଲେ । ଛାଡ଼, ବର୍ତ୍ତମାନ ଏକମାତ୍ର ଭରସା ରଘୁଜୀ ଉପରେ । ସେ ଯଦି ଉଦ୍ଧାର କରେ, ମୁଁ ଯେଉଁ ଭୋନ୍‌ସଲାକୁ ସେହି ଭୋନ୍‌ସଲ—ମୋର ପୂର୍ବ ଗୌରବ ଅଚିରେ ଫେରି ଆସିବ—( ଅନ୍ତରାଳକୁ ଗମନ )

[ ଅଭୟସିଂହ ଓ ପୃଥ୍ୱୀସିଂହର ପ୍ରବେଶ ]

ଅଭୟସିଂହ—ଏତେ ନିକଟରେ ପାଇ ସୁଦ୍ଧା ଛାଡ଼ିଦେଲ, ସେନାପତେ ?

ଭୋନ୍‌ସଲ—( ଅନ୍ତରାଳେ ) କାହାକୁ ?

ପୃଥ୍ୱୀସିଂହ—ଛାର ସନ୍ନ୍ୟାସିନୀଟାକୁ ହତ୍ୟାକରି କି ଫଳ ?

ଭୋନ୍‌ସଲ—( ଅନ୍ତରାଳେ ) ସେହି ସନ୍ନ୍ୟାସିନୀ ବୋଧ ହୁଏ, ଯା କଥା ରଘୁଜୀ କହୁଥିଲେ ।

ଅଭୟସିଂହ—ବନ୍ଦୀ କରି ପାରିଥାନ୍ତ—

ପୃଥ୍ୱୀସିଂହ—ବନ୍ଦୀର ମଧ୍ୟ ଅଯୋଗ୍ୟା ।

ଅଭୟସିଂହ—ଏ' ସମସ୍ତ କି ତୁମ୍ଭର ବିଚାର କରିବା ଉଚିତ ଥିଲା ? ତୁମ୍ଭେ ସୈନ୍ୟାଧ୍ୟକ୍ଷ—ବିଚାରପତି ନୁହଁ ।

ପୃଥ୍ୱୀସିଂହ—( ନୀରବ )

ଅଭୟସିଂହ—ନୀରବ କାହିଁକି ? ଉତ୍ତର ଦିଅ ।

ପୃଥ୍ୱୀସିଂହ—ତା ଜାଣେ, ମହାରାଜ !

ଅଭୟସିଂହ—ଏପରି ଜାଣିବା ସତ୍ତ୍ୱେ ତୁମ୍ଭେ ଛାଡ଼ିଦେଲ କିପରି ?

ପୃଥ୍ୱୀସିଂହ—(ସ୍ୱଗତ) କିପରି ? ଓଃ—ପ୍ରକାଶ କରୁଛି କିପରି ?

ଅଭୟସିଂହ—ଉତ୍ତର ଦିଅ—

ପୃଥ୍ୱୀସିଂହ—ଉତ୍ତର ଯେ ନାହିଁ, ମହାରାଜ—

ଅଭୟସିଂହ—ଏହି କି ତୁମ୍ଭର ସାହସ—ଏହି କି ତୁମ୍ଭର ବୀରତ୍ୱ, ପୃଥ୍ୱୀସିଂହ ? ଯାହାର ସାହସ ଓ ଦମ୍ଭ ଗୋଟାଏ ନାରୀର ମୂର୍ତ୍ତି ଦର୍ଶନରେ ତିରୋହିତ ହୋଇଯାଏ, ଯାହାର ଉତ୍ତୋଳିତ କୃପାଣ ଗୋଟାଏ ନାରୀର ଫୁତ୍କାରରେ ହସ୍ତଚ୍ୟୁତ ହୋଇପଡ଼େ—ତା'ର ପୁଣି ଯୁଦ୍ଧାସ୍ତ୍ରଧାରଣ ଓ ବୀର ବୋଲି ଗର୍ବ କରିବା ଲଜ୍ଜାର ବିଷୟ ନୁହେଁ କି ? ପୃଥ୍ୱୀସିଂହ ! ଏରେ କାପୁରୁଷ ଜୀବନ ଧାରଣ କରିବା ଅପେକ୍ଷା—

ପୃଥ୍ୱୀସିଂହ—ମହାରାଜ ! ମହାରାଜ ! ସେତିକିରେ କ୍ଷାନ୍ତ ହେଉନ୍ତୁ । ଏହି ମୋର ପ୍ରତିଜ୍ଞା ଅଧୁନା—ହୁଏ ସନ୍ନ୍ୟାସିନୀର ନିଧନସାଧନ, ନଚେତ ଏ' ଅଧମ ପୃଥ୍ୱୀର ଅଙ୍ଗଟାରୁ ନାମ ଲୋପସାଧନ ।

( ବେଗେ ପ୍ରସ୍ଥାନ )

ଭୋନ୍‌ସଲ—( ନେପଥ୍ୟେ ସୋଦ୍‌ବେଗେ ) ରଘୁଜୀ ଓ କୁମାରର ସମ୍ବାଦ କଣ ?

ଅଭୟସିଂହ—ଏତେ ବଡ଼ ବୀର, ଅଥଚ ଏଡ଼େ କୋମଳ-ହୃଦୟ । ଏପରି ଲୋକ ଉପରେ ନିର୍ଭର କରାଯିବ କିପରି ? ମା, ଶକ୍ତି ଠିକ୍ କଥା କହୁଛି—ଏ' ଜଗତରେ ନିଜଛଡ଼ା କାହାରିକୁ ବିଶ୍ୱାସ କରିବା ଉଚିତ ନୁହେଁ । ମୁଁ ଆଜି ନିଜେ ଯୁଦ୍ଧରେ

ଉପସ୍ଥିତ ନ ଥିଲେ, କୁମାର ଏତେ ଶୀଘ୍ର କେବେ ନିହତ ହୋଇ ନ ଥାନ୍ତା —

ଭୋନ୍‌ସଲ—( ଅନ୍ତରାଳେ ) କୁମାର ନିହତ । ଓଃ— ହୋଃ—

[ ବନ୍ଦୀଭାବେ ରଘୁଜୀର ପ୍ରବେଶ ]

ରଘୁଜୀ—ଶତ୍ରୁ-ସେନାପତି ରଘୁଜୀ ମଧ୍ୟ ଏତେଶୀଘ୍ର କେବେ ଧୃତ ହୋଇ ନଥାନ୍ତା ।

[ ଭୋନ୍‌ସଲର ପ୍ରବେଶ ]

ଭୋନ୍‌ସଲ—ଶତ୍ରୁ-ରାଜା ଭୋନ୍‌ସଲ ମଧ୍ୟ ଏତେ ଶୀଘ୍ର କେବେ ଆତ୍ମସମର୍ପଣ କରି ନ ଥାନ୍ତା—

ରଘୁଜୀ—( ସ୍ୱଗତଃ ) ଭୋନ୍‌ସଲ । ( ଲଜ୍ଜିତଭାବେ ରହିବା )

ଅଭୟସିଂହ—କିଏ ଆପଣ ?

ଭୋନ୍‌ସଲ—ଚିହ୍ନି ପାରୁ ନାହାନ୍ତି ? ଆପଣଙ୍କର— ଆପଣଙ୍କର କାହିଁକି, ସମସ୍ତ ଜଗତର ପରମଶତ୍ରୁ —ନାଗପୁରର ଭୋନ୍‌ସଲ ।

ଅଭୟସିଂହ—ମିଥ୍ୟା କଥା ।

ଭୋନ୍‌ସଲ—କଥା ମିଥ୍ୟା ନୁହେ, ଏହି ବେଶ ମୋର ମିଥ୍ୟା—ଦେଖନ୍ତୁ । ( ଛଦ୍ମବେଶ ତ୍ୟାଗ )

ଅଭୟସିଂହ—ତଥାପି ଅବିଶ୍ୱାସ—

ଭୋନ୍‌ସଲ—ହେବାର କଥା—ଏପରି କୌଶଳୀ ଦୁର୍ଦ୍ଦାନ୍ତ ଶତ୍ରୁ ସହଜରେ କି କେବେ ଆତ୍ମସମର୍ପଣ କରେ ?

[ ଅପର ପାର୍ଶ୍ୱରୁ ସୁନ୍ଦରସିଂହ ପ୍ରବେଶ ]

ସୁନ୍ଦରସିଂହ—ବିଶ୍ୱାସ କରନ୍ତୁ, ମହାରାଜ । ସିଂହ ବର୍ତ୍ତମାନ ନିଃସହାୟ । ନରାଧମ ଏହି ଆପଣଙ୍କର ଶତ୍ରୁ, ମୋର ମଧ୍ୟ ଶତ୍ରୁ ।

ଭୋନ୍‌ସଲ—ହାଃ ହାଃ ହାଃ—ସମସ୍ତ ଜଗତର— ସମସ୍ତ ଜଗତର ଶତ୍ରୁ, ସୁନ୍ଦରସିଂହ ।

ଅଭୟସିଂହ—ତୁମ୍ଭେ କିଏ ବୀର ?

ସୁନ୍ଦରସିଂହ—ପରିଚୟ ପରେ ପାଇବେ, ମହାରାଜ । ଇଚ୍ଛା କଲେ ମଧ୍ୟ ଦୁରାତ୍ମାଠାରୁ ଶୁଣି ପାରନ୍ତି— ମାତ୍ର, ଆଗେ ବନ୍ଦୀ କରନ୍ତୁ, ମହାରାଜ—ମୁଁ ଟିକିଏ ନିଶ୍ଚିନ୍ତ ହୁଏ ।

ଅଭୟସିଂହ—ଯେ ବ୍ୟକ୍ତି ନିଜେ ନିଜେ ଧରା ଦେଉଛନ୍ତି, ତାଙ୍କୁ ବନ୍ଧନ କରିବାର ପ୍ରୟୋଜନ କଣ ?

ସୁନ୍ଦରସିଂହ—ଧୂର୍ତ୍ତକୁ କଦାପି ବିଶ୍ୱାସ କରନ୍ତୁ ନାହିଁ, ମହାରାଜ ।

ଅଭୟସିଂହ—ଠିକ୍, ଠିକ୍ କହୁଛନ୍ତି, ମହାଶୟ । ଏ' ଜଗତରେ କାହାରିକୁ ବିଶ୍ୱାସ କରିବା ଉଚିତ ନୁହେ ।—ସୈନିକ ! ବନ୍ଦୀକର ଦୁରାତ୍ମାକୁ ।

[ ସୈନିକର ପ୍ରବେଶ ଓ ବନ୍ଦୀ କରିବା ]

ଭୋନ୍‌ସଲ—ଏଥର ସନ୍ତୁଷ୍ଟ ହେଲ ତ, ସୁନ୍ଦରସିଂହ ?

ସୁନ୍ଦରସିଂହ—ହାଃ, ହାଃ, ହାଃ—ଏତିକିରେ ସନ୍ତୁଷ୍ଟ ! ସନ୍ତୁଷ୍ଟ ହେବି ନରାଧମ, ଯେଉଁଦିନ ଏହି ଛୁରିକା ତୋର ରକ୍ତ ପାନ କରିପାରିବ ।

ଭୋନ୍‌ସଲ—ବୃଥା ବିଳମ୍ବରେ ତେବେ କି ପ୍ରୟୋଜନ ? ପାପ-ରକ୍ତ ଦାନ କରିବାକୁ ଯେ ମୁଁ ଭାରି ବ୍ୟାକୁଳ ।

ରଘୁଜୀ—( ସ୍ୱଗତଃ ) ମୋହ ଲାଗିସିନା—ଓଃ । କି ଲଜ୍ଜା !

ସୁନ୍ଦରସିଂହ—ଭାରି ବ୍ୟାକୁଳ । ହାଃ—ହାଃ—ନରାଧମ ! ବିଶ୍ୱାସଘାତକ ! ଏତେଦିନେ କ'ଣ ତୋର ଚକ୍ଷୁ ଖୋଲିଲା ? କିନ୍ତୁ, ମାର୍ଜନା ନାହିଁ ।

ଭୋନ୍‌ସଲ—ଭୁଲ, ଭୁଲ, ସୁନ୍ଦରସିଂହ—ଭୋନ୍‌ସଲ ମାର୍ଜନା-ପ୍ରାର୍ଥୀ ନୁହେଁ—ଭୋନ୍‌ସଲ ମୃତ୍ୟୁ ପ୍ରାର୍ଥୀ !

ସୁନ୍ଦରସିଂହ—ମୃତ୍ୟୁ-ପ୍ରାର୍ଥୀ ? କିନ୍ତୁ ଏ' ପ୍ରାର୍ଥନା ମଧ୍ୟ ତୋର ବର୍ତ୍ତମାନ ପୂର୍ଣ୍ଣ କରିବାକୁ ଅକ୍ଷମ ମୁଁ, ନରାଧମ ! ମୋତେ ଆଗେ ମୋର ପ୍ରଭୁଙ୍କର ସନ୍ଧାନ ନେବାକୁ ହେବ—ଈଶ୍ୱରଙ୍କ କୃପାରୁ ତାଙ୍କୁ ପାଇ ପାରିଲେ, ତୋ'ର ନିଜ ସମ୍ମୁଖରେ, ତାଙ୍କୁ ଯେପରି ଦିନେ ବଧ କରିବାକୁ ମୋତେ ବାଧ୍ୟ କରିଥିଲୁ—ଠିକ୍ ସେହିପରି ବଧ ତୋ'ର, ତାଙ୍କରି ସାକ୍ଷାତରେ—ସ୍ୱ-ହସ୍ତରେ ମୁହିଁ ସାଧନ କରିବି—ତେବେ ଯାଇଁ ମୋର—

ଭୋନ୍‌ସଲ—ନା, ନା, ସୁନ୍ଦର ସିଂହ ! ତା ମୁଁ ସହ୍ୟ କରି ପାରିବି ନାହିଁ । ତୁମ୍ଭେ ହତ୍ୟା କର—ଯେତେ ଯନ୍ତ୍ରଣା ଦେବାକୁ ଇଚ୍ଛାଥାଏ ଯାନଦେ

ଦାଅ, ମାତ୍ର ମାଧବ ସମ୍ମୁଖରେ ମୁଁ ମର ପାରିବି ନାହିଁ । ଓଃ ହୋଃ, କି ଲଜ୍ଜା—ସେ ଯେ କି ଯନ୍ତ୍ରଣା ।

ରଘୁଜି—( ସ୍ୱଗତଃ ) ମୋ'ରି ହେତୁ, ମୋ'ରି ହେତୁ ଏ' ସମସ୍ତ—ଧିକ୍ ଧିକ୍ ମୋତେ—ଆଜି ସେହି ସନ୍ନ୍ୟାସିନୀର କୁହୁକରେ ଭୁଲି ସିନା, ଯୁଦ୍ଧରେ ଏହି ପ୍ରଥମ ଥର ପରାସ୍ତ ହେଲି, ପ୍ରଭୁ ମୋର ଏହି ଦୁର୍ଦ୍ଦଶା ଲାଭ କଲେ ।

ଅଭୟସିଂହ—ମାଧବ କିଏ ?

ସୁନ୍ଦରସିଂହ—ମାଧବରାଏ ମୋର ପ୍ରଭୁ, ମହାରାଜ ।

ଅଭୟସିଂହ—ବଳାସପୁରର—

ସୁନ୍ଦରସିଂହ—ଆଜ୍ଞା ମହାରାଜ । କାହାନ୍ତି ସେ ? ଜାଣନ୍ତି କି ? ଅନୁଗ୍ରହ-ପୂର୍ବକ ଥରେ କହି ଦିଅନ୍ତୁ—ଈଶ୍ୱର ! ତୁମ୍ଭଙ୍କୁ ଧନ୍ୟବାଦ ।

ଅଭୟସିଂହ—ସ୍ଥିରହୁଅ—ମୋ ସଙ୍ଗେ ଆସ । (ସ୍ୱଗତଃ) ତେବେ ବନ୍ଦୀର କଥା ସତ୍ୟ । ଆଉବରଙ୍କୁ ବିନା ଅପରାଧରେ ସିନା—କାହିଁକି ? ତା'ର ତ ଅନ୍ୟ ଅପରାଧ ବିଦ୍ୟମାନ—ସେହି ପତ୍ର—ଦୂତସଙ୍ଗେ ଷଡ଼ଯନ୍ତ୍ର, ନିର୍ଦ୍ଦୋଷକୁ ଦୋଷୀକରିବା—ତେବେ ମଧ୍ୟ ଅପରାଧ ଶୂନ୍ୟ । ( ପ୍ରକାଶ୍ୟେ ) ଘେନିଯାଅ ବନ୍ଦୀଙ୍କୁ, ସୈନିକ ।

( ଅଭୟସିଂହ ଓ ସୁନ୍ଦରସିଂହର ପ୍ରସ୍ଥାନ)

ଭୋନ୍‌ସଲା—ତୁମ୍ଭର ଟିକିଏ ଦୟା ହେଲନାହିଁ, ଅଭୟସିଂ ?—ହତ୍ୟା କରିବାକୁ ଆଦେଶ ଦେଇ ପାରିଲ ନାହିଁ ? ଓ ହୋଃ—ମାଧବ ସମ୍ମୁଖରେ ମୋର ହତ୍ୟା ହେବ—ମାଧବ—ସେହି ଉଚ୍ଛିଷ୍ଟ ଭୋଜୀ ନା ?—ପ୍ରକୃତରେ କି ଏଠାରେ ସେ ଅଛି ? କି ଲଜ୍ଜା । କି ଲଜ୍ଜା ।

ରଘୁଜି—କ୍ଷମା କରନ୍ତୁ ମହାରାଜ । ଆଜି ଏହି ଅଧମ ହେତୁ ସିନା—

ଭୋନ୍‌ସଲା—ତୁମ୍ଭର କି ଦୋଷ, ରଘୁଜି ? ଭାଗ୍ୟ ସବୁଦିନ କାହାର ସମାନ ଯାଏ ନାହିଁ । ଭଲ କଥା ମନେ ପଡ଼ୁଛି, ରଘୁଜି । ଚାଲ ବନ୍ଦୀଶାଳାରେ ତୁମ୍ଭର ପ୍ରକୃତ ପରିଚୟ ଆଜି ଦେବ ।

ରଘୁଜି—ନା, ପ୍ରଭୁ । ଏ' ଗର୍ହିତ ଜୀବନଧାରଣ କରି, ଯେ ବୃତ୍ତାନ୍ତ ଶୁଣିବାକୁ ଆଉ ମୋର ପ୍ରବୃତ୍ତି ନାହିଁ—ସେ ଉତ୍କଣ୍ଠା ମଧ୍ୟ ନାହିଁ । ଓଃ, କିଏ ସେ କୁହୁକିନୀ ? ତା'ର କୁହୁକରେ ସିନା—

ସୈନ୍ୟ—ଚାଲ, ଚାଲ— (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

—ଆଶ୍ରମ—

[ ଶଯ୍ୟୋପରି ଶାନ୍ତି ଓ କୁମାର ଆସୀନ ]

ଶାନ୍ତି—ଘା ଏଥର ପୂରି ଆସିଲାଣି, କୁମାରଜି । ଆଉ ଭୟ ନାହିଁ ।

କୁମାର—ମୋର କିନ୍ତୁ ଭୟ ବଢ଼ୁଛି, ଦୟାମୟି !

ଶାନ୍ତି—ଏପରି ବୃଥା ଆଶଙ୍କା କରିବାର କୌଣସି କାରଣ ନାହିଁ, କୁମାରଜି ।

କୁମାର—ଯଥେଷ୍ଟ ଅଛି, କରୁଣାମୟି । ଏ ସିନା ବାହାରର ଘା, ଶୁଖାଇବା ସହଜ—ମାତ୍ର, ମୋ ଭିତରେ ଯେଉଁ ଘା ସବୁ ମାତି ଉଠିଲାଣି, ତା'ର ଉପାୟ କଣ କରୁଛ, ଦୟାମୟି ? ଅଧିକ ମଧ୍ୟ ଏ' ବାହାରର ଘା ସବୁ ଯେତେ ଚଞ୍ଚଳ ଚଞ୍ଚଳ ଶୁଖି ଆସୁଛି, ଭିତରର ଘା ସବୁ ତେତେ ଚଞ୍ଚଳ ଚଞ୍ଚଳ ମାତି ଉଠୁଛି ।

ଶାନ୍ତି—କୁମାରଜି । ଏ'ତ ଅତି ଆନନ୍ଦର ବିଷୟ ।

କୁମାର—ଆନନ୍ଦର ବିଷୟ !

ଶାନ୍ତି—ନୁହେଁ ? ଆପଣଙ୍କର ଅଭ୍ୟନ୍ତର ଦୂଷିତ ରକ୍ତରେ ପୂର୍ଣ୍ଣ ହୋଇ ସ୍ଥାନେ ସ୍ଥାନେ ବ୍ରଣଯୁକ୍ତ ହୋଇଥିଲା —ଈଶ୍ୱରଙ୍କକୃପାରୁ ଯେତେବେଳେ ସେ ସମସ୍ତ ଘା ହୋଇ, ଦୂଷିତରକ୍ତ ନିର୍ଗମନୋନ୍ମୁଖ ହୋଇଛି, ତେତେବେଳେ ଆଉ ଚିନ୍ତା କଣ ? କୁମାରଜି । ଏଥର ଆପଣ ଦେହ ମନ ଉଭୟରେ ସୁସ୍ଥତା ଲାଭ କରିବେ ।

କୁମାର—ମାତ୍ର ସେ ଘା ସବୁ ଶୁଖିବ କିପରି ? ତା'ର ତ କୌଣସି ଔଷଧ ନାହିଁ—ଯତ୍ନ ମଧ୍ୟ ନିଆଯାଇ ପାରେ ନାହିଁ ।

ଶକ୍ତି—ଖୁବ୍ ମିଳିଯାଇ ପାରେ—ଖୁବ୍ ଔଷଧ ଅଛି ।

କୁମାର—ଅଛି ? କୁହ, କୁହ, ଦୟାମୟି—କି ଔଷଧ ଅଛି ? କି ଯତ୍ନ ମିଳିଯାଇ ପାରେ ? ଏ' ବାହାରର ଯନ୍ତ୍ରଣା ଠାରୁ ଭିତରର ଯନ୍ତ୍ରଣା ଯେ ସହସ୍ର ଗୁଣେ ଅଧିକତର ବୋଧ ହେଉଛି ।

ଶକ୍ତି—ଏପରି ଅସ୍ଥିର ହୁଅନ୍ତୁ ନାହିଁ, କୁମାରଜି । ଆପଣ ଦେହରେ ଆଗେ ସୁସ୍ଥି ଲାଭ କରି ସାରନ୍ତୁ —ମନ ସୁସ୍ଥ ହେବାର ଉପାୟ ପରେ କରାଯିବ ।

କୁମାର—ମୋର କିନ୍ତୁ ବିଶ୍ୱାସ, ଦୟାମୟି । ମନ ସୁସ୍ଥ ହୋଇଗଲେ ହିଁ ଦେହ ଆପେ ଆପେ ସୁସ୍ଥ ହୋଇଯିବ ।

ଶକ୍ତି—କେତେକ ପରିମାଣରେ ତାହା ସତ୍ୟ, ସନ୍ଦେହ ନାହିଁ; ମାତ୍ର ଦେହ ସୁସ୍ଥ ନ ହେଲେ ଯେ ଏ' ଅନ୍ତରର ବ୍ୟାଧିପାଇଁ ଔଷଧ ବା ଯତ୍ନ କରାଯାଇ ପାରିବ ନାହିଁ ।

କୁମାର—ଯଦି ତାହାହିଁ ହୁଏ, ତେବେ ସେ ଅନ୍ତର୍ବ୍ୟାଧିର କି ଔଷଧ ଓ କିପରି ଯତ୍ନ କରାଯାଇ ପାରେ, ଜାଣିଲେ ଟିକିଏ ନିଶ୍ଚିନ୍ତ ହେବି—ଦାରୁଣ ମାନସିକ ଯନ୍ତ୍ରଣା କେତେକ ପରିମାଣରେ ଲଘୁ ହୋଇଯିବ ।

ଶକ୍ତି—ଠିକ୍ କହୁଛନ୍ତି, କୁମାରଜି—ଏ' ସାନ୍ତ୍ୱନା ମଧ୍ୟ ଦୈହିକ ବ୍ୟାଧି ପକ୍ଷେ ଅତ୍ୟନ୍ତ ଉପକାରୀ ହେବ । ଶୁଣନ୍ତୁ, କୁମାରଜି । ଏ' ଅନ୍ତର୍ବ୍ୟାଧିର ଏକମାତ୍ର ପରମ ଔଷଧ ଓ ଯତ୍ନ, ଯାହା ମୁଁ ନିଜଠାରେ ପରୀକ୍ଷା କରି ଦେଖିଛି, 'ସେବା' ଅର୍ଥାତ୍ ନିଃସ୍ୱାର୍ଥ ଭାବେ ନିରାଶ୍ରୟକୁ ଆଶ୍ରୟ ଦାନ — ଦୁଃଖୀର ଦୁଃଖହରଣ — ରୋଗୀର ଶୁଶ୍ରୂଷାକରଣ ।

କୁମାର—ବାସ୍ତବିକ, ଦୟାମୟି । ଏହିପରି 'ସେବା'-ହିଁ ଉପଯୁକ୍ତ ଔଷଧ—ଅବ୍ୟର୍ଥ ଓ ଅମୂଲ୍ୟ ଔଷଧ । ବିନା ମୂଲ୍ୟରେ ପୁଣି ତାହା କିଣିବାକୁ ମିଳେ—ଦୁର୍ଲ୍ଲଭ ମଧ୍ୟ ନୁହେଁ ।

ଶକ୍ତି—ଯଥାର୍ଥ, କୁମାରଜି ।

କୁମାର—ସେ ଗର୍ବ ଆଜି ନାରୀଠାରେ ଖର୍ବ ହୋଇଛି, ଦୟାମୟି ।—ପ୍ରତ୍ୟକ୍ଷ ! କି ବୀର୍ଯ୍ୟ ଦେଖାଉ ତୁମ୍ଭେ ? ଯୁଦ୍ଧରେ ଦୁଇଟା ଗୋଟାଏ ଅସ୍ତ୍ରର କୌଶଳ ଦେଖାଇପାରୁ ବୋଲି, କି ଦୁଇଟା ଗୋଟାଏ ଶତ୍ରୁ ସେନା ନିପାତ କରିପାରୁ ବୋଲି, ତୁମ୍ଭେ ସ୍ଫୀତବକ୍ଷ--ଏହାହିଁ ପୁଣି ତୋର ବୀରତ୍ୱର ପ୍ରଧାନ ନିଦର୍ଶନ ! କିନ୍ତୁ ଏହି ନାରୀ, ଯା'କୁ ଦୁର୍ବଳା ବୋଲି ତୁମ୍ଭେ ହେୟଜ୍ଞାନ କରୁ—ଭୀରୁ ବୋଲି ଜନସମାଜରୁ ତିରସ୍କାର କରି ଦେଉ, କି ବୀର୍ଯ୍ୟ —କି ସାହସ ଦେଖାଏ ସେହି ଯୁଦ୍ଧ କ୍ଷେତ୍ରରେ —ତୃଷାତୁର ଯେତେବେଳେ ପିପାସାକାତର କଣ୍ଠରେ 'ଜଳ' 'ଜଳ' ବୋଲି ଆର୍ତ୍ତନାଦ କରୁଥାଏ, ମୁମୂର୍ଷୁ ଯେତେବେଳେ ପଦଦଳିତ ହୋଇ 'ମଲି' 'ମଲି' ବୋଲି ଚିତ୍କାର-ପୂର୍ବକ ଗଗନ ମେଦିନୀ ବିକମ୍ପିତ କରୁଥାଏ, କିଏ ତେତେବେଳେ ବିପଦକୁ ତୁଚ୍ଛ ଜ୍ଞାନ କରି—ଆପଣାକୁ ବିସ୍ମୃତ ହୋଇ—ଦୁର୍ଭେଦ୍ୟ ଶତ୍ରୁବ୍ୟୂହ ଭେଦ ପୂର୍ବକ, ତୃଷାତୁରର ତୃଷା ନିବାରଣ କରିବାକୁ ଧାଇଁଯାଏ—ମୁମୂର୍ଷୁକୁ ନିଜ କୋଡ଼ରେ ଆଶ୍ରୟ ଦାନ କରେ ?—ସେ, ଏହି ନାରୀ ! ଅହୋ ! କି ମୂର୍ଖ ମୁଁ—ଏହି ଦେବୀତୁଲ୍ୟା ନାରୀଜାତିକୁ ହେୟ ଦୃଷ୍ଟିରେ ଦେଖୁଥିଲି ? ଦେବି ! ଦେବି ! ମୋର ସାଷ୍ଟାଙ୍ଗ—

ଶକ୍ତି—ଛି, ଛି, କୁମାରଜି ! ଭିକାରୁଣୀଟାକୁ—

କୁମାର—ଭିକାରୁଣୀ ! ଆପଣ କଣ ସେହି ଭିକାରୁଣୀ ?

ଶକ୍ତି—ହଁ କୁମାରଜି ! ସେହି ଭିକାରୁଣୀ ।

କୁମାର—ମୋତେ କ୍ଷମା କରନ୍ତୁ, ଦେବୀ—ମୋର ସେହି ଦୁର୍ବ୍ୟବହାର ଯୋଗୁଁ—

ଶକ୍ତି—ଛି, କୁମାରଜି ! ଭିକାରୁଣୀ ମୁଁ—ଭିକାରି ମଣିଷ, ଦୁର୍ବ୍ୟବହାର ସଦ୍‌ବ୍ୟବହାର କିଛି ମନେ ରଖେ ନାହିଁ—ଭିକ ପାଇଲେ ହିଁ ସେ ସନ୍ତୁଷ୍ଟ । ଆଜି ମୋର ଭାରି ଆନନ୍ଦ ଯେ, ଭିକ୍ଷା ପାଇଛି—ସଙ୍ଗେ ସଙ୍ଗେ ଭିକ୍ଷାଦାତାଙ୍କୁ ମଧ୍ୟ ପାଇଛି ।

କୁମାର—( ସ୍ୱଗତଃ ) ମାଳତୀ ! ଏଥର ବୁଝିଲି, ସୌନ୍ଦର୍ଯ୍ୟ ବୋଲି ଗୋଟାଏ ଜିନିଷ ଏ' ସଂସାରରେ ଅଛି—ତା'ର ପ୍ରକୃତ ଆଧାର କିନ୍ତୁ, ଏହି ନାରୀ ! ପୁଣି ସେ ସୌନ୍ଦର୍ଯ୍ୟ ଏ' ଚର୍ମଚକ୍ଷୁର ବହିର୍ଭୂତ—ଇନ୍ଦ୍ରିୟର ଅଗୋଚର ! ଆହା ! ଥରେ ଯେବେ ଦେଖା ହୁଅନ୍ତା—ଦେଖନ୍ତ ତୁମ୍ଭେ, ସେ ଦିନର କୁମାର ଓ ଆଜିକାଲିକାର କୁମାର ମଧ୍ୟରେ କି ପାର୍ଥକ୍ୟ ! ତୁମ୍ଭର ସେହି ଶିକାରୀ କୁମାର ଆଜି ପ୍ରାଣୀହନ୍ତା ନୁହେଁ—ବର୍ତ୍ତମାନ ପ୍ରାଣୀ ସେବାକାରୀ, ପରମ ତ୍ୟାଗୀ । ( ପ୍ରକାଶ୍ୟ ) ମୋତେ କି ଶୁଶ୍ରୂଷା କାର୍ଯ୍ୟରେ, ଆପଣଙ୍କ ସାହାଯ୍ୟ କରିବା ନିମନ୍ତେ, ଦାସ ବୋଲି ଚରଣରେ ସ୍ଥାନ ଦେବେ, ଦେବୀ ?

ଶକ୍ତି—ଛି, ରାଜକୁମାର !

କୁମାର—ନା ଦେବୀ ! ସେପରି ସମ୍ବୋଧନ ଆଉ କରନ୍ତୁ ନାହିଁ—ମୁଁ ଆଉ ରାଜ୍ୟପ୍ରୟାସୀ ବା ପ୍ରାଣୀହନ୍ତା ନୁହେଁ ।

ଶକ୍ତି—ପ୍ରାଣୀହନ୍ତା ହୋଇ ନ ପାର, ମାତ୍ର ରାଜ୍ୟ-ପ୍ରୟାସୀ ନ ହେବ କାହିଁକି ?

କୁମାର—କାହେଁ ହେବ, ଦେବୀ ? ସେ ପ୍ରୟାସ ସଙ୍ଗେ ଯେ ହିଂସା ବିଜଡ଼ିତ ?

ଶକ୍ତି—ହିଂସାକୁ ସ୍ୱଚ୍ଛନ୍ଦେ ସେଥିରୁ ବିଚ୍ଛିନ୍ନ କରିଯାଇ ପାରେ । ରାଜା ହେବାକୁ ଚେଷ୍ଟାକର—ସମସ୍ତ ଧନ-ସମ୍ପଦ ବଳ-ବୀର୍ଯ୍ୟ ଯେପରି ଲୋକନାଶରେ ବ୍ୟୟିତ ହେଉଥିଲା, ସେହିପରି ଲୋକହିତରେ ବ୍ୟୟିତ ହେଉ । ଆଜି ଦେଖ, ଈଶ୍ୱର-ଦତ୍ତ ଧନ ବା ଶକ୍ତି ତ୍ୟାଗ କରିବା ଅନୁଚିତ । କୌଣସି ବ୍ୟକ୍ତିର ଲୋକହିତପ୍ରବୃତ୍ତି ଥିଲେ ମଧ୍ୟ ସାମର୍ଥ୍ୟ ବା ଧନାଭାବରେ କି ସେ ତାହା ଆଶା ଅନୁରୂପ କରିପାରେ ?

କୁମାର—ଆପଣ କହୁଛନ୍ତି କିପରି ?

[ ଦାସୀର ପ୍ରବେଶ ]

ଦାସୀ—କେମାଦେଈ ! ପିତା ଆସୁଛନ୍ତି ।

କୁମାର—( ସ୍ୱଗତ ) ରାଜକୁମାରୀ ଏ' ଦେବୀ !

ଶକ୍ତି—( ଉଠି ) ପିତା ଆସୁଛନ୍ତି, କାହିଁକି ? ଅନେକ ଅନୁରୋଧ ସତ୍ତ୍ୱେ କେବେ ତ ସେ ଏଣେ ଆସନ୍ତି ନାହିଁ । ଚାଲ ମଲ୍ଲି, ଏଠୁଁ ଚାଲ ।

[ ଗମନୋଦ୍ୟତ ବେଳେ ଅଭୟ ସିଂହଙ୍କ ବେଗେ ପ୍ରବେଶ ]

ଅଭୟ ସିଂହ—ଶକ୍ତି !

ଶକ୍ତି—ବାବା !

ଅଭୟ ସିଂହ—ଏହା କଣ ସତ୍ୟ ?

ଶକ୍ତି—କେଉଁ କଥା ବାବା ?

ଅଭୟ ସିଂହ—ତୁ କୁମାରକୁ ଆଶ୍ରୟ ଦେଇଛୁ ।

ଶକ୍ତି—ଆହତଙ୍କୁ, ପିତଃ ।

ଅଭୟସିଂହ—ସେ ଯେ ଶତ୍ରୁ !

ଶକ୍ତି—ଶତ୍ରୁ ମିତ୍ର ଭେଦାଭେଦ ସେବାକାରିଣୀ ଜାଣେ ନାହିଁ, ପିତଃ ।

ଅଭୟସିଂହ—ତୁ ବି ମଧ୍ୟ ବିଶ୍ୱାସଘାତକ ହେଲୁ ?

ଶକ୍ତି—ବିଶ୍ୱାସଘାତକ ! ବିଶ୍ୱାସଘାତକ କିଏ ଥରେ ବିଚାର କରିବେ କି, ମହାରାଜ ? ହାୟ, ହାୟ ! ଏହି ନିରୀହ ପ୍ରଜାଗଣ, ସେମାନଙ୍କର ଧନ ସମ୍ପଦ, ଶକ୍ତି ସାମର୍ଥ୍ୟ, ସମସ୍ତ ଅତି ବିଶ୍ୱାସରେ ରାଜା ନିକଟରେ ଗଚ୍ଛିତ ରଖନ୍ତି—ରାଜା ସେମାନଙ୍କର ହିତ ସାଧନ କରିବେ, ଏହି ଆଶାରେ—ମାତ୍ର, ରାଜା କରନ୍ତି କଣ ? ସେମାନଙ୍କର ସେହି ଅମୂଲ୍ୟ-ସମ୍ପଦ ବ୍ୟୟରେ, ସେହିମାନଙ୍କର ରକ୍ତ କ୍ଷୟ କରନ୍ତି—ଆଜି ସେହି ରକ୍ତ ଶୋଷଣରେ, ନିଜର ଲାଳସା ତୃପ୍ତ କରନ୍ତି ! କହନ୍ତୁ, ମହାରାଜ ! ଏହାଠାରୁ ବିଶ୍ୱାସଘାତକ ଅନ୍ୟ କିଏ ଏ' ସଂସାରରେ ହୋଇପାରେ ?

ଅଭୟସିଂହ—ରାଜନୀତି ବଡ଼ କଠୋର ନୀତି, ଶକ୍ତି ! ତାହା ତୁ ବୁଝି ପାରିବୁ ନାହିଁ, ମା ! ଅଚ୍ଛା, ତୋତେ ମାର୍ଜନା ଦେଲି—କହ, କାହିଁ କୁମାର ?

କୁମାର—ଏହି ଯେ ମହାରାଜ ! ( ସମ୍ମୁଖକୁ ଆସିବା )

ଅଭୟସିଂହ—ତୁମ୍ଭେ ମୋର ବନ୍ଦୀ—ସୈନିକ !

[ ସୈନିକର ପ୍ରବେଶ ]

ବାନ୍ଧ—ନେଇଯା' କାରାଗାରକୁ । ( ବନ୍ଧନ କରିବା )

କୁମାର—(ସକରୁଣେ) ଆସୁଛି, ଦେବୀ—ଏ' ଅଧମ—

ଶକ୍ତି—ଟିକିଏ ରହ, ସୈନିକ—କେତେଦିନ ବନ୍ଦୀ କାରାଗାରରେ ରହିବ, ମହାରାଜ ?

ଅଭୟସିଂହ—ଯେତେଦିନ ବିଚାର ନ ହୋଇଛି ।

ଶକ୍ତି—ବିଚାର କେବେ ହେବ ?

ଅଭୟସିଂହ—ସମସ୍ତେ ତ ବନ୍ଦୀ ହେଲେଣି—ଯୁଦ୍ଧ ଶେଷ ପ୍ରାୟ । ଖୁବ୍ ଶୀଘ୍ର ବିଚାର ହେବ ।

ଶକ୍ତି—ବିଚାରରେ କ'ଣ ଦଣ୍ଡ ହେବ ?

ଅଭୟସିଂହ—ଖୁବ୍ କଠିନ-ଦଣ୍ଡ ସମ୍ଭବତଃ—କାରଣ ଏମାନେ ଅଙ୍କମଣକାରୀ ।

ଶକ୍ତି—କିପରି ଦଣ୍ଡ ଅନୁମାନ କରନ୍ତି ?

ଅଭୟସିଂହ—ତାହା କୁହାଯିବ କିପରି ?

ଶକ୍ତି—କି କଠିନତମ ଦଣ୍ଡ ହୋଇପାରେ ?

ଅଭୟସିଂହ—ପ୍ରାଣଦଣ୍ଡ ।

ଶକ୍ତି—( ସ୍ୱଗତଃ ) ଓଃ—କୁମାରଙ୍କ !—ନା—( ପ୍ରକାଶ୍ୟେ ) ଘେନିଯାଇ ପାର ବନ୍ଦୀଙ୍କୁ, ସୈନିକ ।

ସୈନିକ—ଘେନିଯିବି ବନ୍ଦୀଙ୍କୁ, ମହାରାଜ ?

ଅଭୟସିଂହ—( ସାଶ୍ରୁନେତ୍ରେ ଶକ୍ତି ଆଡ଼କୁ ଚାହିଁବା )

ଶକ୍ତି—କନ୍ୟାକୁ ଆପଣଙ୍କର ବିଦାୟ ଦିଅନ୍ତୁ, ପିତଃ ।

ଅଭୟସିଂହ—( ସଭୟେ ) ବିଦାୟ ! କେଉଁଠାକୁ ଯିବୁ ?

ଶକ୍ତି—ଯେଉଁଠାରେ ରାଜନୀତି କଠୋର ନୁହେଁ—ପ୍ରଜାର ରକ୍ତରେ ରାଜ୍ୟ କଳଙ୍କିତ ହୁଏ ନାହିଁ—ମନୁଷ୍ୟ ମନୁଷ୍ୟକୁ ହିଂସା କରେ ନାହିଁ ।

ଅଭୟସିଂହ—( ସୋଦ୍ବେଗେ ) ଏ' କଣ କହୁଛୁ ମା ?

ଶକ୍ତି—ଆଉ ମାୟା ଜନ୍ମାନ୍ତୁ ନାହିଁ, ପିତଃ । ବିଦାୟ ହେଉଛି— ( ପ୍ରସ୍ଥାନୋଦ୍ୟତା )

କୁମାର—( ସ୍ୱଗତଃ ) ଦେବୀ ! ଦେବୀ !

ଅଭୟସିଂହ—( ବାଧାଦେଇ ଓ ଆଲିଙ୍ଗନ କରି ) ମା, ମା ଶକ୍ତିମୟି ! ଏହି ଶକ୍ତିହୀନ-ପ୍ରାଣକୁ ଶକ୍ତି-ହୀନ କରି କେଉଣେ ଚାଲିଯାଉଛୁ, ମା ? ସନ୍ତାନର ଦୋଷ କ୍ଷମା କର, ମା ! ତୁହି ଯେ ମୋର ଏକମାତ୍ର ଶକ୍ତି—ତୋହରି ହେତୁ ସିନା ଆଜି ମୁଁ ଆତ୍ମ-ନିର୍ଭରିତା ଶିକ୍ଷା କଲି—ଅନାୟାସରେ ଯୁଦ୍ଧ ଜୟ କରିପାରିଲି । ଏହି ଦେଖ, ମା—ତୋହରି ହେତୁ ପୁଣି ଗୋଟିଏ ନୂତନ ରାଜ୍ୟର ସୀମା ଅଦୂରେ ମୁଁ ଦେଖି ପାରୁଛି—ବିଶ୍ୱାସ ହେଉଛି, ତୋ'ର ଶକ୍ତିରେ, ଅଚିରେ ସେ ରାଜ୍ୟ ମଧ୍ୟ ଜୟ କରିପାରିବି । ( କୁମାରଙ୍କୁ ବନ୍ଧନ ମୁକ୍ତ କରିବା ) ଆସ କୁମାର ! ଆଜିଠାରୁ ତୁମ୍ଭେ ମୋର କୁମାର—

କୁମାର—ଦେବୀ ! ଏତେଦିନେ ବୁଝିଲି, ପୁରୁଷ କେବଳ ଜଡ଼ ପିଣ୍ଡ—ଏହି ନାରୀହିଁ ତାର ପ୍ରକୃତ ଶକ୍ତି ।

---

## ତୃତୀୟ ଦୃଶ୍ୟ

—କାରାଗାର—

ମାଳତୀ—ଆହା ! କି ରମଣୀୟ ସ୍ଥାନ ଏହି କାରାଗାର ! ଏହା କ୍ଷଣିକ ବାହ୍ୟ-ସୌନ୍ଦର୍ଯ୍ୟରୁ ବିଚ୍ଛିନ୍ନ ସତ୍ୟ, କିନ୍ତୁ ଅନନ୍ତ ଦିବ୍ୟ ସୌନ୍ଦର୍ଯ୍ୟର ଯେପରି ଭଣ୍ଡାର । ଏହାର ଘନାନ୍ଧକାର ଯେତେବେଳେ ରଜନୀର ଗାଢ଼ ଅନ୍ଧକାରରେ ଆହୁରି ଘନୀଭୂତ ହୋଇ ଆସେ—ଏହାର ନିସ୍ତବ୍ଧତା ଯେତେ-ବେଳେ ରଜନୀର ଘୋର ନିସ୍ତବ୍ଧତାରେ ଆହୁରି ଗମ୍ଭୀର ହୋଇ ଉଠେ—ତେତେବେଳେ, ସେହି ନିସ୍ତବ୍ଧତା ଭେଦ କରି, ସୁଦୂରାଗତ କେଉଁ ବୀଣାର ମୃଦୁ ଝଙ୍କାର ପ୍ରାଣର-ତନ୍ତ୍ରୀକୁ ଯେପରି ଘୋର ଝଙ୍କାରରେ ଝଙ୍କୃତ କରି ଦିଏ; ସେହି ଅନ୍ଧକାର ମଧ୍ୟ ଦେଇ କେଉଁ ସୁସ୍ନିଗ୍ଧୋଜ୍ଜ୍ୱଳ ରଶ୍ମି ହୃଦୟ-କୁଟୀରକୁ ଯେପରି ସମୁଜ୍ଜ୍ୱଳାଲୋକରେ ଉଦ୍ଭାସିତ କରି ଦିଏ ! ଆହା ! ଯେଉଁଠାରେ ଯେତକି କଠିନତା, ସେହିଠାରେ ସେମନ୍ତ ତେତକି କରୁଣା—ଯେଉଁଠାରେ ଯେତକି ବିପଦ, ସେହିଠାରେ ସେମନ୍ତ ତେତକି ସମ୍ପଦ—ସ୍ଥାବରର ଅବାସ ବୋଇଲୁଟଣିରେ—ସ୍ୱଚ୍ଛ

ଝରଣାର ଉଚ୍ଚ ପର୍ବତ ଗାତରେ—କି ଲୀଳା !
—ହେ ଅନନ୍ତ ସୌନ୍ଦର୍ଯ୍ୟମୟ ! କରୁଣାମୟ !
ତୁମ୍ଭଙ୍କୁ କୋଟି କୋଟି ନମସ୍କାର !

ଗୀତ

କାହାର ଆଲୋକେ ଆଲୋକିତ ମମ ହୃଦୟ ଗଗନ ।
କାହାର ସଙ୍ଗୀତେ ଆକୁଳିତ ମମ ପରାଣ ପବନ ।
ତୁହେ ନାହିଁ ମୁହିଁ ଦେଖିବି ନୟନେ
ନୟନ-ସୁଖଦ ପ୍ରକୃତ ଗୀତ
ତୁହେ ନାହିଁ ମୁହିଁ ଶୁଣିବି ଶ୍ରବଣେ
ଶ୍ରବଣ ମଧୁର ପ୍ରକୃତ ଗୀତ;
(ବରଂ) କରିଦିଅ ମୋତେ ବଧିର ଅନ୍ଧ
କାଢ଼ି ନିଅ ମୋର ସବୁ ସ୍ୱଚ୍ଛନ୍ଦ,
ଦେଖିବି ଆଲୋକ, ଶୁଣିବି ସଙ୍ଗୀତ, ଚିର ପରିପୂର୍ଣ୍ଣ ।
[ ମଧୁର ପ୍ରବେଶ ]

ମଧୁ—ତୁମ୍ଭେ ଏଠି ?

ମାଲତୀ—କ’ଣ, ଗୀତ ଶୁଣିବ ?

ମଧୁ—ଅଚ୍ଛା ମାଳତି—ସୃଷ୍ଟି—

ମାଲତୀ—ଦେଖ, ସୃଷ୍ଟି ସୃଷ୍ଟି କହି ମୋତେ ଆଉ ପାଗଳ କରିଦିଅ ନାହିଁ—ମୁଁ ତ ବେଶ ଅଛି, ମଦ୍ଧ ପିଉଛି, ଆନନ୍ଦ ପାଉଛି—ମଦ୍ଧ କିପରି ହୁଏ, କାହୁଁ ଆସେ—ଏ’ସବୁରେ ଏତେ ମୁଣ୍ଡ ଖରାପ କରିବ କାହିଁକି ? ଯଦି ନିତାନ୍ତ ପଚାରିବ, କହିବି, ତାଙ୍କରି କରୁଣା ।

ମଧୁ—ସେହି କଥା ତ କହୁଛି—ଦେଖିଲ, କେତେ ଭୁଲିଯାଏ ରହି ଯାଉଛି—ଆଚ୍ଛା ବେଶ, ସୃଷ୍ଟି ସେହି ଶକ୍ତିର ବିକାଶ—ପ୍ରଳୟ ସେହି ଅନନ୍ତ ଶକ୍ତିର ଅଭାବ—ତେବେ କଣ ସେହି ଶକ୍ତିର ବିନାଶ ହୁଏ ?

ମାଲତୀ—ଅଭାବ ମାନେ କ’ଣ ବିନାଶ ?

ମଧୁ—ତେବେ ଶକ୍ତି ଯାଏ କେଉଁଆଡ଼େ ?

ମାଲତୀ—ଯିବ କେଉଁଆଡ଼େ ? ଶକ୍ତି—ଶକ୍ତି-ଭାବେହିଁ ଥାଏ ।

ମଧୁ—ବିଶ୍ୱାସ କରିବି କିପରି ?

ମାଲତୀ—ଅନ୍ୟରୂପେ ବିକଶିତ ହେବ ଯେତେବେଳେ ।

ମଧୁ—ହୁଁ—ହୁଁ—

ମାଲତୀ—କି, ହେଲା ?—ଏଥର ଗୀତ ଶୁଣିବ ?

ମଧୁ—ଆଚ୍ଛା, ତୁମେ ଏ ସବୁ ଜାଣିଲ କିପରି ? କହୁଛ, କୌଣସି ଶାସ୍ତ୍ର ପଢ଼ିନାହିଁ—କାହାଠାରୁ ଶିଖି ନାହିଁ—ନିଶ୍ଚୟ ମୋତେ ଲୁଚାଉଛ—କୁହ କୁହ, କେଉଁ ଶାସ୍ତ୍ର ପଢ଼ିଲେ ଏ ସବୁ ଜାଣିପାରିବି ?

ମାଲତୀ—କାହିଁକି ? ତୁମେ ଯେଉଁ ସବୁ ଶାସ୍ତ୍ର ପଢ଼ିଛ, ସେଥିରେ ହିଁ ଥିବ ।

ମଧୁ—ଥିବ ବୋଲି କହିଲେ ଚଳିବ ନାହିଁ—ଆଚ୍ଛା, ପଦାର୍ଥବିଜ୍ଞାନରେ କଣ ଏ ସବୁ ଅଛି ?

ମାଲତୀ—ନିଶ୍ଚୟ ଥିବ—କାରଣ ସେହି ଶିବ-ଶକ୍ତି ଅସ୍ୱୀକାର କଲେ କୌଣସି ଶାସ୍ତ୍ର ତିଷ୍ଠି ପାରିବ ନାହିଁ ।

ମଧୁ—ଆମର ବିଜ୍ଞାନ ତ ନମାନି ବେଶ୍ ତିଷ୍ଠି ପାରୁଛି ?

ମାଲତୀ—କଦାପି ନୁହେଁ ।

ମଧୁ—ଅଚ୍ଛା, ଏହି ଧର—ଆମର ବିଜ୍ଞାନ କହେ, ଦୁଇଟି ବସ୍ତୁର ସଂଘର୍ଷଣରେ ଅଗ୍ନିର ଉତ୍ପତ୍ତି ହୁଏ । ଏଥିରେ ଶିବ-ଶକ୍ତିର କି ସମ୍ବନ୍ଧ ରହିଲା ?

ମାଲତୀ—ରହିଲା ନାହିଁ ? ସେହି ଯେ ଅଗ୍ନି, ତାହା କଣ ବସ୍ତୁ ମଧ୍ୟସ୍ଥିତ ପ୍ରଚ୍ଛନ୍ନ ଶକ୍ତିର ବିକାଶ ନୁହେଁ—ଅଗ୍ନିମୟ ଅନନ୍ତ ଶକ୍ତିର ସ୍ଫୁଲିଙ୍ଗ ନୁହେଁ ?

ମଧୁ—( ସାଶ୍ଚର୍ଯ୍ୟେ ଚାହିଁ ରହିବା )

ମାଲତୀ—ଚାହିଁଛ କ’ଣ ?

ମଧୁ—ହୁଁ—ହୁଁ—ପଦାର୍ଥବିଜ୍ଞାନରେ ଅଛି ?

ମାଲତୀ—ସବୁ ଶାସ୍ତ୍ରରେ—ସବୁ କାଳରେ—ସବୁ ସ୍ଥାନରେ ।

ମଧୁ—ହୁଁ—ହୁଁ—ନା—ବିଚାର କରି ଦେଖେଁ—ଅଚ୍ଛା, କାହିଁକି ? ନା—ହୁଁ—ହୁଁ—
[ ଧୀରେ ଧୀରେ ପ୍ରସ୍ଥାନ ]

ମାଳତୀ—ବେଶୀ ପଢ଼ିଲେ କଣ ସାଧାରଣ ବୁଦ୍ଧିର ଏହିପରି ଅଭାବ ଘଟେ ?

[ ମାଧବର ପ୍ରବେଶ ]

ମାଧବ—ଶୁଣିଲୁଣି, ମାଳ ?

ମାଳତୀ—ଆଜ ତ ଭାରି ପ୍ରଫୁଲ୍ଲ ଦେଖୁଛୁ ।

ମାଧବ—ଆଉ ମୋର ତଲେ ସନ୍ଦେହ ନାହିଁ, ମାଳ—ତୋର କଥା ଯଥାର୍ଥ—ଏହି ଦୁଃଖ, କେବଳ ସୁଖ-ଔଷଧର ଉତ୍ପତ୍ତି ସ୍ଥଳ ।

ମାଳତୀ—କଥା କ'ଣ ?

ମାଧବ—ମୋର ଭ୍ରାତୃବନ୍ଧୁ ବୀରବଲ ଜୀବିତ ।

ମାଳତୀ—କିଏ ଏ' ସମ୍ବାଦ ଦେଲା ?

ମାଧବ—ସେ ଯେ ଏହି ସ୍ଥାନରେ ଅଛନ୍ତି ।

ମାଳତୀ—କେଉଁଠି ?

ମାଧବ—ଏହି କାରାଗାରରେ ।

ମାଳତୀ—ସ୍ୱପ୍ନ ଦେଖିଛନ୍ତି ନା କ'ଣ ?

ମାଧବ—ତାଙ୍କଠାରୁ ଯେତେବେଳେ ସମସ୍ତ କାହାଣୀ ଶୁଣୁଥିଲି, ପ୍ରକୃତରେ ସ୍ୱପ୍ନପରି ବୋଧ ହେଉଥିଲା ।

ମାଳତୀ—କିଏ ସେ, ବାବା ?

ମାଧବ—ସେ ଯେ ଏହି ମଧୁର ପିତା—ଏଠାକାର ମନ୍ତ୍ରୀ—ଅକବର ରାଏ ।

[ ଅକବର ରାଏଙ୍କ ପ୍ରବେଶ ]

ଅକବରରାଏ—ଆଉ ସେ ନାମ ଧରି ଡାକ ନା, ବନ୍ଧୁ । ବନ୍ଧୁ ! ମୋର ଆଜ ଭାରି ଆନନ୍ଦ ଯେ, ଶେଷ ଜୀବନରେ ଆତ୍ମୀୟଜନଙ୍କର ଦର୍ଶନ ପାଇ ପାରୁଛି । ଆଉ ଗୋଟିଏ କଥା କହିବାକୁ ଭୁଲି ଯାଇଥିଲି, ବନ୍ଧୁ ! ମୋର କନ୍ୟାକୁ ଯେତେବେଳେ ଜଙ୍ଗଲରେ ହରାଏଁ, ସେତେବେଳେ ତା'ର ଗୋଟିଏ ସଦ୍ୟ-ପ୍ରସୂତ ଶିଶୁ ଥିଲା । ହାୟ ! ହାୟ ! ଅଭାଗୀର ଯେ କି ଦଶା ହେଲା ! ଛାଡ଼, ଦେଖ—ମୋର ଯଦି ପ୍ରାଣଦଣ୍ଡ ହୁଏ, ମଧୁକୁ ଯେପରି ନିଜ ପୁଅ ବୋଲି ଆଶ୍ରୟ ଦିଅ । ଜାଣ ତ, ସେ ଗୋଟିଏ ବଦ୍ଧ ପାଗଳ—ହାୟ, ହାୟ—

[ ମଧୁର ବେଗେ ପ୍ରବେଶ ]

ମଧୁ—ନା, ମୁଁ ଯିବି ନାହିଁ—ମାଳତୀକୁ ଛାଡ଼ି ମୁଁ ମୁହୂର୍ତ୍ତିକ ପାଇଁ ସୁଦ୍ଧା କେଉଁଆଡ଼େ ଯାଇ ପାରିବି ନାହିଁ—

ଅକବରରାଏ—କି ରେ ମଧୁ, କଥା କ'ଣ ?

ମଧୁ—କିଏ ଜଣେ ମୋତେ ଏଠୁଁ ବାହାର କରି ଦେଉଛି—ରାଜାଙ୍କ ହୁକୁମ, ତୁମ୍ଭଙ୍କୁ ଛାଡ଼ି ଦିଆଗଲା—

ଅକବରରାଏ—ଏ'ତ ଭଲ କଥା—

ମଧୁ—ମୁଁ ଯାଇ ପାରିବି ନାହିଁ । ମାଳତୀ ରହିବ—ମୁଁ ଯିବି ?—ମାଳତୀ ! ଠିକ୍ କହୁଛ—ମୁଁ ମଧ ଭାବି ଦେଖିଲି, ସେହି କଥାହିଁ ଠିକ୍—କେଷ୍ଟ ନ ମାନିଲେ କୌଣସି ଶାସ୍ତ୍ର ତିଷ୍ଠି ପାରିବ ନାହିଁ ।—ଆସ ମାଳ, ସାଙ୍ଗ ହୋଇ ଏ'ଥର ପଢ଼ିବା, ତା' ହେଲେ ଅନେକ ନୂଆ ନୂଆ ତତ୍ତ୍ୱ ତୁମେ ଅବିଷ୍କାର କରି ପାରିବ—ବାବା ! ମୋ କଥା କେହି ଶୁଣୁ ନାହାନ୍ତି—ଆପଣ ହୁକୁମ ଦେଲେ, ନିଶ୍ଚୟ ମୋ ବହି ଗୁଡ଼ାକ ଆସିଯା'ନ୍ତା ।

ମାଧବ—( ସ୍ୱଗତଃ ) କି ଜ୍ଞାନ ପିପାସା !

ଅକବରରାଏ—( ମଧୁକୁ ଆଲିଙ୍ଗନ କରି ) ମଧୁ ! ଆଉ ତୋର ପିତାର କି ସେ ହୁକୁମ ଅଛି ? ( ଅର୍ଦ୍ଧ ସ୍ୱଗତ ) ଓହୋ ! ଏ' ସଂସାରରେ ଯେ ତୋର ଜ୍ଞାନାର୍ଜନ ଛଡ଼ା ଆଉ କିଛି ଆକାଙ୍କ୍ଷା ନାହିଁ—ପୁସ୍ତକ ତୋର ଅମୂଲ୍ୟ ସମ୍ପଦ । ହାୟ ! କାହିଁକି ମୁଁ ବୃଥା ଲୋଭରେ ପୃଥ୍ୱୀକୁ କଳଙ୍କିତ କରିବାକୁ ମନ ବଳାଇଥିଲି ?—ତା' ପ୍ରତି କିପରି ଗୋଟାଏ ସ୍ୱାଭାବିକ ଆକର୍ଷଣ ସତ୍ତ୍ୱ ତାର ଏତେହିର ଅନିଷ୍ଟ କରିବାକୁ ବସିଥିଲି ସିନା ?

ମଧୁ—ଏହି ଆସୁଛି ସେ—ମୁଁ ଯିବି ନାହିଁ—ମାଳତି ! ତୁମ୍ଭଙ୍କୁ ଛାଡ଼ି ମୁଁ କେଉଁଆଡ଼େ ଯାଇ ପାରିବି ନାହିଁ—କିଏ ମୋତେ ଏତେ ନୂତନ ତତ୍ତ୍ୱ ଶିଖାଇବ ? ମାଳତି ! ( ମାଳତୀର ଆଶ୍ରୟ ନେବା ଉଦ୍ଦେଶ୍ୟରେ ପାଖକୁ ଯିବା )

[ ରାଜ-କର୍ମଚାରୀର ପ୍ରବେଶ ]

ରାଜ-କର୍ମଚାରୀ—ଏହି ଯେ ମାଧବଜି — ମନ୍ତ୍ରୀ ମହାଶୟ—

ଆକବରରାଏ—ଭୁଲ ହେଲା କାହିଁକି—କି ସେ ପତ୍ର, ଦେଖେଁ ? ( ପତ୍ର ପଢ଼ୁ ପଢ଼ୁ ) ଭାରି ସୁସମ୍ବାଦ ! ତୁମ୍ଭେ ଓ ତୁମ୍ଭର କନ୍ୟା ମୁକ୍ତ—ମଧୁ ମଧ୍ୟ—ଆଉ ବିଳମ୍ବ କର ନାହିଁ ।

ମାଧବ—ତୁମେ—?

ଆକବରରାଏ—ମୋର ନାମ ନାହିଁ—ରହିବ ବା କିପରି ? ମୁଁ ଯେ ଅପରାଧୀ !—ଦେଖ ଭାଇ, ମୋ ସକାଶେ ଚିନ୍ତା କରିବାର କୌଣସି କାରଣ ନାହିଁ । ଯଦି ମୋ ପ୍ରତି ସେହି ପୂର୍ବ ସ୍ନେହ ଥାଏ, ତାଂ ହେଲେ ଭ୍ରାତୃବନ୍ଧୁ ବୋଲି ଏ ଅଧମ କେବଳ ଏତିକି ଉପକାର ଗୁହେ—( ମାଳତୀର ହସ୍ତ ଧରି ମଧୁର ହସ୍ତ ସଙ୍ଗେ ମିଳାଇ ଦେବା ) ଆଶା କରେ, ନିରାଶ କରିବ ନାହିଁ ।

ମାଧବ—ଏହାହିଁ ଯେ ମୋର ମନର ବାସନା ଥିଲା, ବନ୍ଧୁ ! ଉଭୟଙ୍କ ମଧ୍ୟରେ ଯେଉଁ ଘନିଷ୍ଠତା ଜାତ ହୋଇଛି—ସେଥିରେ ଏପରି ବନ୍ଧନହିଁ ସେମାନଙ୍କ ପକ୍ଷେ ଶ୍ରେୟସ୍କର ।

ଆକବରରାଏ—(ମାଳତୀ ଅତେ) ମା ! ମୋର ଏହି ପାଗଳପୁଅଟି ଏକମାତ୍ର ସମ୍ବଳ—ଆଜିଠୁଁ ତୁମରି ହାତରେ ଦେଇ ଗଲି—ତାକୁ ଯେପରି ପାଗଳ ବୋଲି କେବେ ଘୃଣା ନ କର, ମା !—ବାପ !

[ ମଧୁକୁ ଆଲିଙ୍ଗନ କରିବା ]

ମଧୁ—ବାପା ! କାନ୍ଦୁଛ ଯେ ?

ଆକବରରାଏ—କାହିଁ ?—ତୋର ଏପରି ଆନନ୍ଦ ଦିନରେ କାନ୍ଦିବି, ବାପ ? ଆସ ମା ! ଆଜି ଥରେ ତୁମ୍ଭେମାନେ ଏକତ୍ର ଛିଡ଼ା ହୁଅ—ଦେଖି, ନୟନ ମନ ତୃପ୍ତ ହେଉ—ଆଶୀର୍ବାଦ କରେ, ତୁମ୍ଭେମାନେ ଚିରସୁଖୀ ହୁଅ ।

ମାଧବ—ବନ୍ଧୁ ! ବନ୍ଧୁ ! ( ଆକବରଙ୍କୁ ଆଲିଙ୍ଗନ କରିବା )

ଆକବରରାଏ—ଭୁଲି ଯାଅ ସବୁ, ବନ୍ଧୁ—ମୋର ଆଉ କୌଣସି ଦୁଃଖ ନାହିଁ—କେବଳ ଏତିକି ମାତ୍ର ଦୁଃଖ ରହିଗଲା ଯେ, ପ୍ରତିଶୋଧ ନେଇ ପାରିଲି ନାହିଁ । (ମାଳତୀର ସଙ୍ଗେ ପ୍ରସ୍ଥାନ)

ମଧୁ—ମାଳତି ! ମାଳତି ! ମୋତେ ସଙ୍ଗରେ ଘେନି-ଯାଅ—

[ ସୁନ୍ଦର ସିଂହର ପ୍ରବେଶ ]

ସୁନ୍ଦରସିଂହ—ଏହି ଯେ ପ୍ରଭୁ ମୋର ।

ମାଧବ—ସୁନ୍ଦରସିଂ ! ତୁମ୍ଭେ ଏଠି କିପରି ?

ଅକବରରାଏ—ମୋତେ ଚିହ୍ନି ପାରୁଛ, ସୁନ୍ଦରସିଂ ?

ସୁନ୍ଦରସିଂହ—ବୀରବଳ୍ଲଭ ! (ଅଭିବାଦନ କରି) ଆଜି କି ଆନନ୍ଦର ଦିନ ! ବିଜୟପୁର ଆଜି ନିଷ୍କଣ୍ଟକ ହୋଇଛି—ଆପଣମାନଙ୍କର ମଧ୍ୟ ସନ୍ଧାନ ମିଳିଛି —ଶୁଣିଛନ୍ତି କି ? ଭୋନ୍‌ସଲ ଓ ରଘୁଜି ଉଭୟେ ଧୃତ ହୋଇ ବର୍ତ୍ତମାନ କାରାଗାରରେ ଆବଦ୍ଧ ?

ଅକବରରାଏ—କି ଆନନ୍ଦ—ଭାଇ ! ଭାଇ ! ଆଜି ମୋର ଦୁଃଖ ନାହିଁ—ବନ୍ଧୁ-ନିର୍ଯାତନର ପ୍ରତିଶୋଧ ନେଇଛି—ମୋର ମନ୍ତ୍ରତ୍ୱ ସଫଳ ହୋଇଛି ।

ମାଧବ—ଅଚ୍ଛା, କି ଦଣ୍ଡ ହେବ, ଶୁଣିଛ କି ?

ସୁନ୍ଦରସିଂହ—ଦଣ୍ଡ ହେବ କଣ ?—ଦଣ୍ଡ ଯେ ମୋର ହାତରେ । ମୁଁ ପ୍ରତିଜ୍ଞା କରିଛି—ଆପଣଙ୍କର ସମ୍ମୁଖରେ ଦୁରାତ୍ମାର ରକ୍ତ ଶୋଷଣ କରିବି ।

ମାଧବ ଓ ଅକବରରାଏ— ତାହା ମଧ୍ୟ ଉପଯୁକ୍ତ ହେବନାହିଁ ।

[ ଭୋନ୍‌ସଲ ଓ ରଘୁଜିର ପ୍ରବେଶ ]

ଭୋନ୍‌ସଲ—କଦାପି ନୁହେଁ—ଭୋନ୍‌ସଲ ପକ୍ଷେ ଏହା ଅତି ସାମାନ୍ୟ—ଭୋନ୍‌ସଲର ଦଣ୍ଡ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ ।

ସମସ୍ତେ—( ସାଶ୍ଚର୍ଯ୍ୟେ ଚାହିଁ ରହିବା )

ଭୋନ୍‌ସଲ—କୌଣସି ମହାତ୍ମାଙ୍କୁ ହଠାତ୍ ଏଠାରେ ଦେଖି, ଭୀତ ବା ଚମତ୍କୃତ ହେଉଥିବେ—ମାତ୍ର, ତା ହସ୍ତରେ ତରବାରୀ ନାହିଁ କିମ୍ବା ଗୁପ୍ତଛୁରିକା ମଧ୍ୟ ନାହିଁ—(ହାତ ଦେଖାଇବା)

ସୁନ୍ଦରସିଂହ—ତେବେ ପ୍ରୟୋଜନ ?

ଭୋନ୍‌ସଲ—ପ୍ରୟୋଜନ ? ହାଃ ହାଃ ହାଃ—ଭୋନ୍‌ସଲ ଉପରେ ଏତେ ବଡ଼ ପ୍ରତିଶୋଧ ନେବାର ଷଡ଼ଯନ୍ତ୍ର ଚାଲିଛି, ଭୋନ୍‌ସଲ କଣ ଟିକିଏ ହେଲେ ପ୍ରତିକାରର ଚେଷ୍ଟା କରିବ ନାହିଁ ?

ସୁନ୍ଦରସିଂହ—ବୃଥା ଚେଷ୍ଟା—ବୃଥା ଆଶା, ନରାଧମ !

ଭୋନ୍‌ସଲ—ଭୋନ୍‌ସଲ ପରି ଚତୁର କୌଶଳୀ ?

ଅକବରରାଏ—କିନ୍ତୁ କୌଣସି କୌଶଳ ତୋର ଆଉ ସଫଳ ହେବ ନାହିଁ, ନରାଧମ !

ଭୋନ୍‌ସଲ—କିଏ ? ବୀରବଲ୍‌ଜ ! ହାଃ ହାଃ ହାଃ—ମରହଟ୍ଟାକୁ ଅଦ୍ୟାପି ତା' ହେଲେ ତୁମ୍ଭେ ଚିହ୍ନି ପାରିନାହଁ—ଯେଉଁ ଶେଷ ଶସ୍ତ୍ର ସେ ରଖିଛି, ତାହା ଅବ୍ୟର୍ଥ !

ସୁନ୍ଦରସିଂହ—ବୃଥା ଗର୍ବ କରେ ର ପାପିଷ୍ଠ ! ଯଦି କିଛିକ୍ଷଣ ବଞ୍ଚିବାର ଆଶା ଥାଏ, ତା' ହେଲେ ଶୀଘ୍ର ଏଠୁଁ ଚାଲିଯା' ।

ଭୋନ୍‌ସଲ—ସମସ୍ତଙ୍କର କ'ଣ ସେହି ମତ ?

ମାଧବ—ତୋର ମୁଖ ଦର୍ଶନରେ ମଧ୍ୟ ପାପ ଅଛି ।

ଭୋନ୍‌ସଲ—ତେବେ ଯାଉଛି ଏଠୁଁ—ନମସ୍କାର । ଏ' ଋଷିମାନେ ମଧ୍ୟ ମୋତେ ଏଠାରେ ବେଶୀବେଳ ରହି ଦେବେ ନାହିଁ—ରଘୁଜି—ନା, ସୁରେନ୍ଦ୍ର ରାଏ—ନା, ବିଳାସପୁରର ମହାରାଜ ! ଏହି ତୁମ୍ଭରପିତୃବ୍ୟ—ନମସ୍କାର କର ।

( ଭୋନ୍‌ସଲର ପ୍ରସ୍ଥାନ )

ମାଧବ ଓ ଅକବରରାଏ—ରାଜକୁମାର ସୁରେନ୍ଦ୍ର ରାଏ !

ରଘୁଜି—(ସ୍ୱଗତ) ମୁଁ ରାଜକୁମାର !

ମାଧବ—ଭୋନ୍‌ସଲ ! ଭୋନ୍‌ସଲ ! (ପ୍ରସ୍ଥାନ)

ସୁନ୍ଦରସିଂହ—ଏ' ସ୍ୱପ୍ନ—ନା କଣ ?

ଅକବରରାଏ—ମୁଁ ଯେ ବିଶ୍ୱାସ କରିପାରୁନାହିଁ—

[ ଭୋନ୍‌ସଲ ଓ ମାଧବର ପୁନଃ ପ୍ରବେଶ ]

ଭୋନ୍‌ସଲ—କିପରି ଶସ୍ତ୍ର ନିକ୍ଷେପ କରିଛି ? ଶୁଣ—ଶୁଣ, ମୁଁ ଯେତେବଡ଼ ପିଶାଚ ହେଲେ ମଧ୍ୟ, ମାତୃଭକ୍ତ—ମାତାଙ୍କର ଶିଶୁ ପ୍ରତି ଅତ୍ୟଧିକ ସ୍ନେହ ବଶତଃ ତାକୁ ହତ୍ୟାକରି ପାରିଲି ନାହିଁ ।
ମୋର ମଧ୍ୟ ଅଜାଣତରେ କିପରି ମାୟା ଜନ୍ମିଯାଇଥିଲା—ତେବେ, ନିଜ ଉଦ୍ଦେଶ୍ୟ ସାଧନ ନିମନ୍ତେ, ଛଦ୍ମବେଶରେ ତାକୁ ବଢ଼ାଇବାକୁ ଲାଗିଲି—ଏ' କଥାରେ ଯଦି ବିଶ୍ୱାସ ହେଉ ନ ଥାଏ, ତେବେ ଦେଖନ୍ତୁ—( ରଘୁଜିଙ୍କ ଗଳଦେଶ ଦେଖାଇ ) ଏହି ଚିକ୍ କଟା ଦାଗ କି ନା—ଆଉ ଏହି ଯାଉଚାନ୍ତି—

ମାଧବ—ହୋଇଛି, ହୋଇଛି—ଆଉ ପ୍ରମାଣର ପ୍ରୟୋଜନ ନାହିଁ—(ରଘୁଜିଙ୍କୁ ଆଲିଙ୍ଗନ କରି) ବାବା ! ବାବା !

ଅକବରରାଏ—ବାବା ! ବାବା ! ମୁଁ ଯେ ତୁମ୍ଭ ପିତାଙ୍କର ଘନିଷ୍ଠ ବନ୍ଧୁ ଥିଲି ! ( ଆଲିଙ୍ଗନ କରିବା )

ସୁନ୍ଦରସିଂହ—ମୁଁ ଯେ ଆପଣଙ୍କର ଚିରଦାସ ! ( ଅବନତହେବା )

ଭୋନ୍‌ସଲ—ଏବେ ମୁଁ ଆସୁଛି ।

ସୁନ୍ଦରସିଂହ—ଯିବେ କେଉଁଠି ଆଜ୍ଞେ ?—ଦାସକୁ କ୍ଷମା କରନ୍ତୁ ଭୋନ୍‌ସଲ ଜି !

ମାଧବ—ମୋତେ ବନ୍ଧୁ ବୋଲି କ୍ଷମା କର, ଭୋନ୍‌ସଲଜି !

ଅକବରରାଏ—ମୋତେ କଣ କ୍ଷମା କରିବେ ନାହିଁ, ଭୋନ୍‌ସଲ ଜି ?

ରଘୁଜି—( ସ୍ୱଗତଃ ) ହାୟ ! ଆଜି ଏତେ ଆନନ୍ଦ—ତଥାପି ମୁଁ ନିରାନନ୍ଦ ! ଏକେ ମୁଁ ଅରୁଣାହୀନ—ତହିଁରେ ପୁଣି ପରାଜିତ ! ଓଃ କାହିଁ ସେହି ସନ୍ନ୍ୟାସିନୀ ? ଗଲା କେଉଁଠି ଆଜ୍ଞେ ? କୁହୁକିନୀ ସେ—ମୋତେ କି ଯାଦୁ କରିଥିଲା ଯେ, ଯେତେକ୍ଷଣ ତା' ପାଖେ ପାଖେ ଥିଲି, ଅରୁଣାକୁ ମୋର ଯେମନ୍ତ ଏକାବେଳକେ ପାଶୋରି ପକାଇଥିଲି—ତାକୁହିଁ ଅରୁଣା ଭ୍ରମ କରି, ଆଉ ତା'ର 'ପିତା' 'ପିତା' ଡାକ ଶୁଣି ସାନ୍ତ୍ୱ ଅପତ୍ୟ-ସ୍ନେହ ତା'ର ଠାରେ ଯେମନ୍ତ ଢାଳି ଦେଇଥିଲି—ଓଃ ! ତେତିକି ନୁହେଁ ତାର ସମ୍ମୋହନ ଚାହାଣିରେ, କର୍ତ୍ତବ୍ୟ ମୋର ଏକାବେଳେ ଭୁଲିଯାଇଥିଲି ! ରଘୁଜି ଆଜି

ଯୁଦ୍ଧରେ ପରାସ୍ତ—ପ୍ରଭୁ ତାର ଲାଞ୍ଛିତ ଓ ଅବମାନିତ । ଓଃ ହୋଃ—ପ୍ରକୃତ ପରାଜୟ ଲାଭରେ ଯନ୍ତ୍ରଣା ଯେ ମୋର ଦ୍ୱିଗୁଣ ବଢ଼ି ଯାଉଛି ।

ଭୋନ୍‌ସଲ—ଭାବୁଛ କ'ଣ, ରଘୁଜି—ନା, ରାଜକୁମାର—ନା, ମହାରାଜ । ଅତୀତ-କଥା ଭୁଲିଯାଅ—ଆଜ ବୁଢ଼ାଟାକୁ କ୍ଷମା—

ରଘୁଜି—ଭୋନ୍‌ସଲ । ଭୋନ୍‌ସଲ । ଆପଣ ଯେ ମୋର ପିତା ମୁଁ ଯେ ଅଯୋଗ୍ୟ ସନ୍ତାନ—

( ଅବନତ ହେବା )

ଭୋନ୍‌ସଲ—ସନ୍ତାନ ପଦ ଉଚ୍ଚାରଣ କରି ସନ୍ତାନର ସ୍ମୃତି ଉଦ୍ରେକ କରି ଦିଅନା, ରଘୁଜି । ଓଃ—କୁମାର ମୋର ନିହତ ।

[ ଜନୈକ ରାଜ-କର୍ମଚାରୀର ପ୍ରବେଶ ]

ରାଜ-କର୍ମଚାରୀ—ଭୋନ୍‌ସଲଜି, ମାଧବଜି, ମନ୍ତ୍ରୀ ମହାଶୟ ଓ ଆଉ ଯେ ଯେ ମହାଶୟମାନେ ଅଛନ୍ତି, ରାଜାଦେଶରେ ଆଜ ସମସ୍ତେ ମୁକ୍ତ । ଆସନ୍ତୁ, ଏହି ( ଦେଖାଇ ) ଭବନକୁ ସମସ୍ତେ—ସେହିଠାରୁ ରାଜା ନିଜେ ପାଛୋଟି ନେବାକୁ ଆସିବେ ।

ଭୋନ୍‌ସଲ—ମୁକ୍ତି—ଇହିଁରେ ଆଉ କି ସୁଖ ?

ରାଜ-କର୍ମଚାରୀ—ଆପଣ ଜାଣନ୍ତି ନାହିଁ, ଭୋନ୍‌ସଲଜି । କୁମାରଙ୍କ ସଙ୍ଗେ ଆମ୍ଭ ଜେମାଦେଈଙ୍କ ଶୁଭ ପରିଣୟ ହେବାର ଠିକ୍ ହେଉଛି - କେବଳ ଆପଣଙ୍କର ଅନୁମତି ଅପେକ୍ଷା—

ଭୋନ୍‌ସଲ—ଏତେବେଳେକି ବ୍ୟଙ୍ଗ କରିବାର ସମୟ, ମହାଶୟ ?

ରାଜ-କର୍ମଚାରୀ—ବିଶ୍ୱାସ କରନ୍ତୁ—କୁମାରଜି ବେଶ୍ ସୁସ୍ଥ ହୋଇ ଉଠିଛନ୍ତି ।

ଭୋନ୍‌ସଲ—କୁମାର ମୋର ଜୀବିତ—ପୁଣି ତାର ବିବାହ ? କୁମାର କଣ ତେବେ ଆହତ ହୋଇଥିଲେ ?—ଧନ୍ୟ ଈଶ୍ୱର । ଓଃ । ଆଜ କି ଆନନ୍ଦ ।

ଅନ୍ୟ ବନ୍ଦୀଏ—ଏହି ଅପୂର୍ବ ଆନନ୍ଦ, ଏଠାକାର ଅଧିଷ୍ଠାତ୍ରୀ ଦେବୀ ସମଲେଶ୍ୱରୀଙ୍କର କରୁଣା ମାତ୍ର ।

ଭୋନ୍‌ସଲ—ଠିକ୍ ।

ସମସ୍ତେ—ଜୟ କରୁଣାମୟୀ ସମଲେଶ୍ୱରୀଙ୍କର ଜୟ ।

ରଘୁଜି—( ସ୍ୱଗତଃ ) ହାୟ । ଅରୁଣା ଯଦି ଆଜ ଥାନ୍ତା ।

---

## ଚତୁର୍ଥ ଦୃଶ୍ୟ

—ମନ୍ଦିର ନିକଟସ୍ଥ ପଥ—

[ ପୃଥ୍ୱୀସିଂହର ପ୍ରବେଶ ]

ପୃଥ୍ୱୀସିଂହ—କାହିଁ ସନ୍ନ୍ୟାସିନୀ ? ଏଠି ମଧ୍ୟ ଦେଖୁନାହିଁ—ଗଲ କେଉଁଠି ? ସନ୍ନ୍ୟାସିନୀ । ସନ୍ନ୍ୟାସିନୀ । କଏ ତୁମ୍ଭେ ସନ୍ନ୍ୟାସିନୀ ? ହାୟ ମହାରାଜ । ଯଦି ମୋର ହୃଦୟ ଭେଦ ଦେଖିବାର କ୍ଷମତା ଆପଣଙ୍କର ଥାଆନ୍ତା, ତା' ହେଲେ ଦେଖି ପାରନ୍ତେ, ସେଠାରେ ଯେଉଁ ଯୁଦ୍ଧ ଚାଲିଛି, ତା' ତୁଳନାରେ ଏହି ଯୁଦ୍ଧ କେତେ ସାମାନ୍ୟ । ଏକଆଡ଼େ, କାଷ୍ଠ କର୍ତ୍ତବ୍ୟ କଷାଘାତ କରୁଛି, ଆଉ ବୃତ୍ତିଚୟ ଉନ୍ମତ୍ତ ଶ୍ୱାନପରି ଦକ୍‌ବାଦକ୍ ଓ ପରାପର ଜ୍ଞାନଶୂନ୍ୟ ହୋଇ ଆକ୍ରମଣ କରିବାକୁ ଧାବମାନ—ଅନ୍ୟ ଆଡ଼େ, ମଧୁର ଅରୁଣା-ସ୍ମୃତି—ପ୍ରାଣପ୍ରିୟାର-ସ୍ମୃତି ସେହି ସନ୍ନ୍ୟାସିନୀକୁ କି ଭାବେ ଅଣି ଠାରୁଛି—ଯେତକ ତା'ର ଦର୍ଶନ ମାତ୍ରେ ସେହି କ୍ଷୁବ୍ଧ ବୃତ୍ତିଗଣ କ୍ଷଣକେ ସ୍ତବ୍ଧ ହୋଇ ଯାଉଛନ୍ତି । ମୁଁ ଯେ କେଉଁଠି, କଣ କରୁଛି, କିଛି ଜ୍ଞାନ ରହୁନାହିଁ । ସନ୍ନ୍ୟାସିନୀ । ସନ୍ନ୍ୟାସିନୀ । ସତ କୁହ ତୁମ୍ଭେ ଛଦ୍ମବେଶିନୀ—ନା, ମୁଁ ପ୍ରତିଜ୍ଞା କରୁଛି—ଆଜ ସନ୍ନ୍ୟାସିନୀକୁ ଯେ କୌଣସି ମତେ ବନ୍ଦିନୀ କରିବି—ନଚେତ୍ ପୃଥ୍ୱୀର ନାମ ଏ' ଜଗତରୁ ଚିରଦିନ ପାଇଁ ଲୋପ ପାଇଯିବ—କର୍ତ୍ତବ୍ୟ । ତୋ'ର ବିଜୟ ସୁନିଶ୍ଚିତ । ( ବେଗେ ପ୍ରସ୍ଥାନ )

---

## —ଷଷ୍ଠ ପରିବର୍ତ୍ତନ—

[ ସମଲେଶ୍ୱରୀଙ୍କ ମନ୍ଦିର ]

ଅରୁଣା—ଯା ସର୍ଦ୍ଦାର । ବାତ୍ ଶୁନ୍ ।

୨ୟ ସର୍ଦ୍ଦାର—ମାଈଜୀଙ୍କୁ ଛୋଡ଼କେ କାହାଁ ଯାବା ?

ଅରୁଣା—ମାଈଜୀକା ବାତ୍ ଶୁନ୍ ତୁ ସର୍ଦ୍ଦାର—ହାମ୍ ସବ୍ ଆଦ୍‌ମିକେ ଲୁଟାଇ ଦେଇଛ, ହାମ୍ ଆଉର ନାହିଁ ଫିର୍‌ବା—ତୁ ସର୍ଦ୍ଦାର ହବା । ହାୟ ! ବଡ଼ା ସର୍ଦ୍ଦାରକା ବାସ୍ତେ କିଆ ଅଫ୍‌ଶୋଷ ।

୨ୟ ସର୍ଦ୍ଦାର—ଅଫ୍‌ଶୋଷ କାହେ ମାଈଜୀ—ଓ ସରଗ ଯାଇଛନ୍ ।

ଅରୁଣା—ଠିକ୍ ବାତ୍ । ( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଅବ୍ ଆ ।

୨ୟ ସର୍ଦ୍ଦାର—ଆସ୍‌ଛେ ମାଈଜୀ । ତୋର ବାତ୍ ହାମ ଅଲବତ୍ ଶୁନ୍‌ବା । ଅବ୍ ଶୁନ୍ ମାଈଜୀ, ହାମାର୍ ସବ୍ ଠିକ୍ ଭକ୍ତ ଥାକ୍‌ବା ଓ ବେଟାକେ ତୋର ଭିଇ ଜରୁର ମିଲ୍‌ବା—ତୋର ମୁଲ୍‌କ୍ ତୁ ଲୁଟ୍ ନେବା—ଆସ୍‌ଛେ ମାଈଜୀ । ( ପ୍ରଣାମକରି ପ୍ରସ୍ଥାନ )

ଅରୁଣା—କି ସରଳ ପ୍ରକୃତି ଏ’ ଅରଣ୍ୟ-ବାସିଗଣ ! ନା—ମାୟା-ମମତାକୁ ଆଉ ସ୍ଥାନ ଦେବି ନାହିଁ—ଭୟଙ୍କର ଶତ୍ରୁ ଏମାନେ—ଟିକିଏ ପ୍ରଶ୍ରୟ ଦେଲି, ସଙ୍ଗେ ସଙ୍ଗେ ପିତାଙ୍କର ଏ’ ଦୁର୍ଦ୍ଦଶା । ଉଃ ! ଏତେଦିନ ବ୍ୟାପି ସଂଯମାବଲମ୍ବନର କି ଏହି ପରିଣାମ ? କାହିଁକି ମୁଁ ମୁହୂର୍ତ୍ତିକ ପାଇଁ ସୁଦ୍ଧା ଅସଂଯତ ହେଲି ?—କନ୍ୟା ବୋଲି ସମ୍ବୋଧନ କରିବାକୁ ଦେବା ଲୋଭଟିକୁ ସମ୍ଭାଳି ପାରିଲି ନାହିଁ ? ଏହି ସାମାନ୍ୟ ଅପ୍ରୀତିକରତାରେ ମୂର୍ଚ୍ଛା ହୋଇ ସିନା ରଘୁଜିଙ୍କ ପରି ଏତେ ବଡ଼ କର୍ମଠ ବୀର ଆଜି ଏକାବେଳକେ କର୍ତ୍ତବ୍ୟ ଜ୍ଞାନଶୂନ୍ୟ ହୋଇଗଲେ ? ଆଶ୍ଚର୍ଯ୍ୟ—ତାଙ୍କର ଧୀମତ୍ତ୍ୱ, ବୀରତ୍ୱ ଓ ସାହସ କ୍ଷଣକ ସକାଶେ ଯେପରି କେଉଁଆଡ଼େ ଅନ୍ତର୍ହିତ ହୋଇଗଲା—ସେତିକି ନୁହେଁ, ବୀର ମୁଖରେ ପୁଣି ବାରମ୍ବାର ଉଚ୍ଚାରିତ ହେବାକୁ ଲାଗିଲା, ‘ଚାଲ ମା, ଏଠାରୁ ପଳାଇ ଯିବା’—ରଣ କ୍ଷେତ୍ରରୁ ପଳାୟନ, ଏହାଠାରୁ ବଳି ଲଜ୍ଜାର ବିଷୟ ଆଉ କଣ ହୋଇପାରେ ? ଧିକ୍, ଧିକ୍—ଏ’ ଧିକ୍‌କାର, ପିତା ତୁମ୍ଭଙ୍କ ନୁହେଁ—ଏହା ଏହି ଅଯୋଗ୍ୟ ସନ୍ତାନରହିଁ ଏକମାତ୍ର ପ୍ରାପ୍ୟ ! ତୁମ୍ଭର ସନ୍ତାନ-ବତ୍ସଳତାକୁ ବରଂ ଧନ୍ୟ !—କି ବାତ୍ସଲ୍ୟ ! ସ୍ନେହାତିରେକକାରୀ ଯତ୍‌କିଞ୍ଚିତ୍ କାରଣରେ ସୁଦ୍ଧା, ତାହା ପୂର୍ଣ୍ଣଭାବେ ଉଦ୍ଦୀପିତ ହୋଇ ଉଠୁଛି—ପିତା ! ପିତା ! ନା ଆଉ ମୁଁ ଏ ହେୟ ପ୍ରାଣ ବହିବି ନାହିଁ । ପିତା ମୋର ନିର୍ଜିତ, ଲାଞ୍ଛିତ—ପୁଣି କି ଅଭାବନୀୟ ଦୁର୍ଦ୍ଦଶା ଭିତରେ ତାଙ୍କର ନିହତ—ଅସହ୍ୟ—ଅସହ୍ୟ—ହେ ମା ସମଲେଶ୍ୱରି ! ତୁମ୍ଭର ମହିମାରେ ବିଶ୍ୱାସ କରି, ତୁମ୍ଭର କରୁଣାରେ ନିର୍ଭର କରି, ଏତେଦୂର ଅଗ୍ରସର ହୋଇଥିଲି—ଏ’ ପ୍ରାଣ ତୁମ୍ଭର, ମା—ତୁମ୍ଭେହିଁ ନିଅ । ( ଆତ୍ମହତ୍ୟା କରିବାକୁ ଯାଇ ନିବୃତ୍ତ ହେବା ) ନା—ମୋର ପ୍ରତିଜ୍ଞା ଯେ ପୂର୍ଣ୍ଣ ହୋଇନାହିଁ । ପ୍ରତିଶୋଧ—ପ୍ରତିଶୋଧ—କାହିଁ ସେ ନରାଧମ ? ମୁଁ ତ କୌଶଳରେ ଖବର ପଠାଇଥିଲି—( ନେପଥ୍ୟକୁ ଚାହିଁ ) ଏହି ଯେ !—ମୁଁ ପ୍ରତିଜ୍ଞା କରୁଛି, ଜୟ ହେଉ ବା ପରାଜୟ ହେଉ, ଅବଶେଷେ ଆତ୍ମ ପରିଚୟ ଦେବି—ସଙ୍ଗେ ସଙ୍ଗେ ଏ’ ସମର୍ପିତ ପ୍ରାଣର ବିଲୋପ ସାଧନ କରିବି । ହାଃ, ହାଃ, ହାଃ—କିପରି ପ୍ରତିଶୋଧ ! କିପରି ପ୍ରତିଶୋଧ !

[ଉନ୍ମୁକ୍ତାସ୍ତ୍ର ହସ୍ତେ ବେଗେ ପୃଥ୍ୱୀସିଂହର ପ୍ରବେଶ]

ପୃଥ୍ୱୀସିଂହ—( ସବେଗେ ) କାହିଁ ସନ୍ନ୍ୟାସିନୀ ?

( ସନ୍ନ୍ୟାସିନୀର ପ୍ରବେଶ )

ସନ୍ନ୍ୟାସିନୀ—ଏହି ଯେ ସମ୍ମୁଖେ ତୋର, ନରାଧମ !

ପୃଥ୍ୱୀସିଂହ—( ମୁହୂର୍ତ୍ତକର ରହିଯିବା )

ସନ୍ନ୍ୟାସିନୀ—ଛିଡ଼ା ହେଲ ଯେ ? ବନ୍ଦୀ କର ମୋତେ—ଏହି ମୁଁ ଆତ୍ମ-ସମର୍ପଣ କରୁଛି ।

ପୃଥ୍ୱୀସିଂହ—ବନ୍ଦୀ ? ଆପଣଙ୍କୁ ?

ସନ୍ନ୍ୟାସିନୀ—ଏହି କି ତୁମ୍ଭର ରାଜକାର୍ଯ୍ୟ-ପାଳନ ?
ପୃଥ୍ୱୀସିଂହ—(ଅସି ନିକ୍ଷେପ କରି) ଦେବୀ ! ଦେବୀ ! କହନ୍ତୁ, କହନ୍ତୁ—କିଏ ଆପଣ, ଅନ୍ତର ମଧ୍ୟରେ ଏକ ଘନୀଭୂତ ଅଗ୍ନିବୃତ୍ତି ଜଗାଇ ଦେଇ, ଚକ୍ଷୁ ସମ୍ମୁଖରେ ଏପରି ଜାଗ୍ରତ-ଶକ୍ତି ପ୍ରକାଶ କରୁଛନ୍ତି ? କହନ୍ତୁ ! କହନ୍ତୁ ! ଛଦ୍ମବେଶିନୀ—ଓଃ, ଏହା କି ସମ୍ଭବ ?
ସନ୍ନ୍ୟାସିନୀ—ଅସମ୍ଭବ କାହିଁକି ?
ପୃଥ୍ୱୀସିଂହ—ତେବେ କଣ, ଆପଣ ?
ସନ୍ନ୍ୟାସିନୀ—ଅରୁଣାର କୌଣସି ଲକ୍ଷଣ କଣ ମୋ ଠାରେ ଦେଖୁଛ ?
ପୃଥ୍ୱୀସିଂହ—ଆପଣ ଭବ ନାର୍ଦ୍ଦଯ୍ୟା, ଦେବୀ !
ସନ୍ନ୍ୟାସିନୀ—ଆଜ ତୁମ୍ଭେ ଭବ ସଦୟ ! ସେହି ହେତୁ ସନ୍ନ୍ୟାସିନୀଙ୍କୁ ବଧ କରିବାକୁ ଏତେ ବ୍ୟଗ୍ର-ଭାବେ ଧାଇଁ ଆସିଛ ।
ପୃଥ୍ୱୀସିଂହ—କଣ କରିବି—କର୍ତ୍ତବ୍ୟ-ତାଡ଼ନାରେ, ଦେବୀ ! ନା, ନା—ତା'ର ନିଷ୍ଠୁର ଆଦେଶ ଆଜ ମୁଁ ଶୁଣି ପାରିବି ନାହିଁ—ଆଜ ମୁଁ ମାନି ପାରିବି ନାହିଁ ! ଦେବୀ ! ଦେବୀ ! ଶୁଣାନ୍ତୁ—ଶୁଣାନ୍ତୁ ! ଅରୁଣା ମୋର—ଓଃ, ଏହା କି ସମ୍ଭବ ?
ସନ୍ନ୍ୟାସିନୀ—ନିଶ୍ଚୟ ସମ୍ଭବ ! ଅରୁଣା ଜୀବିତା !
ପୃଥ୍ୱୀସିଂହ—ଜୀ-ବି-ତା—
ସନ୍ନ୍ୟାସିନୀ—ଦେଖିବାକୁ ଚାହଁ ?
ପୃଥ୍ୱୀସିଂହ—ଦେଖି ପାରିବି ମଧ୍ୟ ? ଅରୁଣା ଜୀବିତା ? ଅରୁଣା ପ୍ରାଣରେ ଅଛି ?
ସନ୍ନ୍ୟାସିନୀ—ଅଦୂରରେ ଅଛି ।
ପୃଥ୍ୱୀସିଂହ—ଅଦୂରରେ ? ଅରୁଣା ମୋର ଏହିଠାରେ ? ଅରୁଣା—ଅରୁଣା !

[ ବ୍ୟଗ୍ରଭାବେ ଇତସ୍ତତଃ ଚାହିଁବା ]

ସନ୍ନ୍ୟାସିନୀ—ମୁଁ ଲୁଚାଇ ରଖିଛି । ନ ଦେଖାଇଲେ, ଦେଖିପାରିବା ଅସମ୍ଭବ ।
ପୃଥ୍ୱୀସିଂହ—(ପଦପ୍ରାନ୍ତେ ପଡ଼ି) ଦୟାକର—ଦୟାକର, ଦେବୀ ! କୁହ, କୁହ—କାହିଁ ? କାହିଁ, ହୃଦୟ-ପ୍ରତିମା ମୋର ? କାହିଁ ? କାହିଁ ଅରୁଣା ମୋର ?
ସନ୍ନ୍ୟାସିନୀ—ଏଟେ ପ୍ରତିଜ୍ଞା କର ।
ପୃଥ୍ୱୀସିଂହ—ପ୍ରତିଜ୍ଞା ! କି ପ୍ରତିଜ୍ଞା, କୁହ, କୁହ—ଅରୁଣା ପାଇଁ ଯେ କୌଣସି ପ୍ରତିଜ୍ଞା କରିବାକୁ ମୁଁ ପ୍ରସ୍ତୁତ—କେବଳ ଥରେ ଦେଖାଅ—ଦେଖାଅ, ଅରୁଣାକୁ ମୋର—
ସନ୍ନ୍ୟାସିନୀ—ସ୍ଥିର ହୁଅ—ସେପରି ଅସ୍ଥିର ହେଲେ—
ପୃଥ୍ୱୀସିଂହ—ଆଚ୍ଛା, ଦେବୀ ! ସ୍ଥିର ହେଉଛି ! କି ଆଦେଶ କରୁଛନ୍ତି—ଶୀଘ୍ର କରନ୍ତୁ !
ସନ୍ନ୍ୟାସିନୀ—ମୋତେ ପୁରସ୍କାର ଦେବାକୁ ହେବ !
ପୃଥ୍ୱୀସିଂହ—ପୁରସ୍କାର—ଦେବୀଙ୍କୁ ପୁଣି କି ପୁରସ୍କାର ? ରହସ୍ୟ ରଖନ୍ତୁ, ଦେବୀ—ଦୟା କରନ୍ତୁ, ଅରୁଣାକୁ ମୋର—
ସନ୍ନ୍ୟାସିନୀ—ରହସ୍ୟ ନୁହେଁ—ଯାହା ମାଗିବି ଦେବାକୁ ହେବ ।
ପୃଥ୍ୱୀସିଂହ—ତେବେ ଯା' ଆଦେଶ କରିବେ, ଦେବୀ ! ଅକ୍ଷରେ ପାଳନ କରିବାକୁ ପ୍ରସ୍ତୁତ ଅଛି—କେବଳ, ଅରୁଣା—ଅରୁଣା—
ସନ୍ନ୍ୟାସିନୀ—ଏହି ତ୍ରିଶୂଳ ଧର ।
ପୃଥ୍ୱୀସିଂହ—(ଚାହିଁ ରହିବା)
ସନ୍ନ୍ୟାସିନୀ—ଧର—(ପୃଥ୍ୱୀ ଧରିବା) ମୋତେ ହତ୍ୟା କରିବାକୁ ହେବ ।
ପୃଥ୍ୱୀସିଂହ—ହତ୍ୟା ! (ତ୍ରିଶୂଳ ନିକ୍ଷେପ କରି)
ସନ୍ନ୍ୟାସିନୀ—ତା'ହେଲେ ଅରୁଣାକୁ ଦେଖିବାର ଇଚ୍ଛା ନାହିଁ ?
ପୃଥ୍ୱୀସିଂହ—କିନ୍ତୁ, ସନ୍ନ୍ୟାସିନୀଙ୍କୁ ହତ୍ୟା !
ସନ୍ନ୍ୟାସିନୀ—ମୁଁ ଯେ ଶତ୍ରୁ ! ମୋତେ ବନ୍ଦୀ କରିବାକୁ ଆସିଥିଲ ପରା ?
ପୃଥ୍ୱୀସିଂହ—(ସଲଜ୍ଜେ ଅବନତ ହେବା)
ସନ୍ନ୍ୟାସିନୀ—ଅରୁଣାର ଆଶା—
ପୃଥ୍ୱୀସିଂହ—(ଉଠି) ଦେବୀ ! ଦେବୀ ! ଯେବେ ରକ୍ତପାତ ହିଁ ଅରୁଣା-ଦର୍ଶନର ଏକମାତ୍ର ଉପାୟ ହୁଏ, ତେବେ ନିଜର ରକ୍ତପାତରେ କ'ଣ ସେ ଉଦ୍ଦେଶ୍ୟ ସାଧିତ ହେବ ନାହିଁ, ଦେବୀ ?

ସନ୍ନ୍ୟାସିନୀ—(ସ୍ୱଗତଃ) 'ନିଜ ରକ୍ତପାତରେ' । (ପ୍ରକାଶ୍ୟେ) କରି ପାରିବ ?

ପୃଥ୍ୱୀସିଂହ—ଅବଶ୍ୟ ପାରିବି, ଦେବୀ—ଅରୁଣୀ ପାଇଁ—(ଅସି ନିଷ୍କୋଷିତ କରିବା )

ସନ୍ନ୍ୟାସିନୀ—କଥା ନୁହେଁ, ସେନାପତେ !

ପୃଥ୍ୱୀସିଂହ—ଏ' ହୃଦୟର କଥା, ଦେବୀ ! ଅରୁଣୀକୁ ସମ୍ମୁଖରେ ପାଇ ମରଣରେ ସୁଖ ଯେ କି ମୂଲ୍ୟ ଅଛି—ତା ପୃଥ୍ୱୀସିଂହ ଛଡ଼ା ଅନ୍ୟ କେହି ବୁଝି ପାରିବ ନାହିଁ ।

ସନ୍ନ୍ୟାସିନୀ—ମିଥ୍ୟାକଥା—ଏତେ ଯଦି ଭଲ ପାଉ-ଥାଅ, ତେବେ ସେପରି ପ୍ରିୟତମା ପ୍ରତି ଏପରି ବିଶ୍ୱାସଘାତକତା କରିବାକୁ ମନ ବଳାଇଲ କିପରି ?

ପୃଥ୍ୱୀସିଂହ—ଆପଣ ପରା ସର୍ବଦର୍ଶୀ ? ଘଟଣା ଚକ୍ରରେ ଯା' ଘଟି ଯାଇଛି, ତାହା ନିଶ୍ଚୟ ଆପଣଙ୍କୁ ଜଣା, ଦେବୀ—ନିଶ୍ଚୟ ତାହା ଆପଣ ଅରୁଣୀକୁ ମଧ୍ୟ କହିଥିବେ—ଯଦି କହି ନ ଥାନ୍ତି, ନିଜେ ଆଜି ସମସ୍ତ ପ୍ରକାଶ କରିବି—ଯଦି ଦୋଷ ହୋଇ-ଥାଏ—କ୍ଷମା ପ୍ରାର୍ଥନା—

ସନ୍ନ୍ୟାସିନୀ—କ୍ଷମା କି ପାଇବ ?

ପୃଥ୍ୱୀସିଂହ—କ୍ଷମା ପାଏ ନ ପାଏ, ହୃଦୟର ଏତିକିଏ ଭୀଷଣ ଜ୍ୱାଳା, ଅନ୍ତତଃ ଲିଭିଯିବ—ଆଉ ମୁଁ ଆନନ୍ଦରେ ଅରୁଣୀର ସୁମଧୁର ନାମ ଜପୁ ଜପୁ ଅରୁଣୀର ମୁଖ ଦେଖୁ ଦେଖୁ, ଆତ୍ମ ବିସର୍ଜନ କରି ପାରିବି !—ଆଉ ବିଳମ୍ବ ସହ୍ୟ ହେଉ ନାହିଁ—କହନ୍ତୁ—କହନ୍ତୁ—କାହିଁ ଅରୁଣୀ ମୋର ? ଏହି ମୁଁ ପ୍ରସ୍ତୁତ—( ନିଷ୍କୋଷିତ ଅସି ବକ୍ଷଦେଶେ ଧାରଣ କରିବା )

ସନ୍ନ୍ୟାସିନୀ—(ପ୍ରକାଶ୍ୟେ) ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ( ଛଦ୍ମବେଶ ଉନ୍ମୁକ୍ତ କରୁ କରୁ )

ପୃଥ୍ୱୀସିଂହ—ପ୍ରିୟେ ! ପ୍ରିୟେ !

( ଉଭୟେ ଆଲିଙ୍ଗନ ପାଶରେ ଆବଦ୍ଧ ହେବା)

[ ରଘୁଜୀର ପ୍ରବେଶ ]

ରଘୁଜୀ—ଅସମ୍ଭବ—ଅସମ୍ଭବ—ଏ ଅରୁଣୀ-ହୀନ ପ୍ରାଣରେ, ବିବାହ ଉତ୍ସବରେ ଯୋଗଦେବା, ଅସମ୍ଭବ—ମା ସମଲେଶ୍ୱରି !—

ଅରୁଣୀ—ବାବା ! ବାବା !

ରଘୁଜୀ—କିଏ ?

ଅରୁଣୀ—ବାବା ! ବାବା !

ରଘୁଜୀ—ଏଁ ! ମୁଁ କାହାକୁ ଦେଖୁଛି ?

ଅରୁଣୀ—ବାବା ! ( ଆଲିଙ୍ଗନ କରିବା )

ରଘୁଜୀ—ମା ! ମା ( ଆଲିଙ୍ଗନାନ୍ତେ କିଛିକ୍ଷଣ ପରେ ) —ଆଜି କି ସୌଭାଗ୍ୟ !—ମା ସମଲେଶ୍ୱରି ! ତୁମ୍ଭଙ୍କୁ ଭର୍ତ୍ସନା କରିବାକୁ ଆସିଥିଲି—ଏଥର କିନ୍ତୁ ଚିହ୍ନିଲି ମା, ତୁମ୍ଭେ ପ୍ରତ୍ୟକ୍ଷ ଦେବୀ—ଅଧମ ସନ୍ତାନକୁ କ୍ଷମା କର, ମା ! ( ପ୍ରଣାମ କରିବା )

ପୃଥ୍ୱୀସିଂହ—କ୍ଷମା କରନ୍ତୁ—(ରଘୁଜୀ ପଦେ ଅବନତ ହେବା )

ରଘୁଜୀ—ଉଠ, ବାବା—ମୁଁ ସମସ୍ତ ଶୁଣିଛି—ତୁମ୍ଭର କୌଣସି ଦୋଷ ନାହିଁ ।

ଆକବରଖାଁ—( ପ୍ରବେଶକରି ) ନାତି ! ନାତି !

(ପୃଥ୍ୱୀକୁ ଆଲିଙ୍ଗନ କରିବା ଓ ପୃଥ୍ୱୀସିଂହର ଆଶ୍ଚର୍ଯ୍ୟ ପ୍ରକାଶ )

[ ଅଭୟସିଂହର ପ୍ରବେଶ ]

ଅଭୟସିଂହ—ପୃଥ୍ୱୀ ! ଆଶ୍ଚର୍ଯ୍ୟର କାରଣ କିଛି ନାହିଁ—ତୁମ୍ଭେହିଁ ଆକବରଖାଁ ବା ବୀରବଲଜୀଙ୍କର ପୌତ୍ର । ବୀରବଲଜୀ ନିର୍ବାସିତ ହୋଇ ୭।୮ ବର୍ଷକାଳ ଦେଶୁଁ ଦେଶାନ୍ତରରେ ଭ୍ରମଣ କରୁ କରୁ ଅରଣ୍ୟ ପଥ ଦେଇ ଯେତେବେଳେ ଏ' ରାଜ୍ୟକୁ ଆସୁଥିଲେ, ସେତେବେଳେ ହଠାତ୍ ଦସ୍ୟୁମାନେ ଆକ୍ରମଣ କରି ଅଳଙ୍କାରାଦି ଲୋଭରେ ମାତାଙ୍କୁ ତୁମ୍ଭର ଧରିନେଇ ଯାଆନ୍ତି—ତୁମ୍ଭେ ମାତୃକୋଳରେ ସେତେବେଳେ ନିତାନ୍ତ ଶିଶୁ ଥିଲ—ତା'ପରେ ବୋଧ ହୁଏ ଦୁରାତ୍ମାମାନେ ସେହି ସ୍ଥାନରେ—ଯେଉଁଠାରୁ ମୁଁ ପାଇ ଆଣିଥିଲି—ତୁମ୍ଭଙ୍କ ନିକ୍ଷେପ କରି, ଅଭାଗୀର ସର୍ବନାଶ କରି ଚାଲିଯାଆନ୍ତି !

ଆକବରଖାଁ—ଆଉ ସେ ଯରୁ ବର୍ତ୍ତନା କରି ପୀଡ଼ା ଦିଅନ୍ତୁ ନାହିଁ, ମହାରାଜ !

ପୃଥ୍ୱୀସିଂହ—ଅଜା ! ଅଜା ! ମୋତେ କ୍ଷମା କରନ୍ତୁ ।

ଆକବରସାଏ—(ଆଲିଙ୍ଗନ କରି) ଓଃ ! କି ଆହ୍ଲାଦ—ପୁଣି କି ଆନନ୍ଦ ।

ରଘୁଜୀ—ମହାରାଜ ! ଭାଇ ! ଏହି ମୋର ସେହି ହାରାନିଧି—ଆଶୀର୍ବାଦ ଭିକ୍ଷା କର, ମା । ( ଅରୁଣା ପ୍ରଣାମ କରିବା )

ଅରୁଣା—ସନ୍ନ୍ୟାସିନୀକୁ କ୍ଷମା କରନ୍ତୁ, ମହାରାଜ ।

ଅଭୟସିଂହ—ତୁମ୍ଭେ ସନ୍ନ୍ୟାସିନୀ ? ବେଶ୍, ତେବେ, ତୁମ୍ଭେ ମୋ ବନ୍ଦିନୀ - ତୁମ୍ଭର ଦଣ୍ଡ—ଚିରପୁଷ୍ପିତା ହୁଅ ।

[ ଭୋନ୍‌ସଲଙ୍କର ପ୍ରବେଶ ]

ଭୋନ୍‌ସଲ—ଏହି ସେ ରଘୁଜୀ—ନା—

ରଘୁଜୀ—ନା, ମହାରାଜ ! ମୋତେ ସେହି ରଘୁଜୀ ବୋଲି ସମ୍ବୋଧନ କରନ୍ତୁ ।

ଭୋନ୍‌ସଲ—( ଅରୁଣା ଚରଣ ବନ୍ଦନା କରିବା ) ଏ' କିଏ ? ମୁଁ ଯେ ବିଶ୍ୱାସ କରିପାରୁ ନାହିଁ, ରଘୁଜୀ ! ଏହା କଣ ସତ୍ୟ ? ଅରୁଣା—

ରଘୁଜୀ—ମହାରାଜ ! ସମସ୍ତ ଆପଣଙ୍କରହିଁ ଦୟା ।

ଭୋନ୍‌ସଲ—ନା ରଘୁଜୀ ! ଏ' ସମସ୍ତ ଏହି ପ୍ରତ୍ୟକ୍ଷ-ଦେବୀ ସମଲେଶ୍ୱରୀଙ୍କର କୂଟଚକ୍ର—ସନ୍ତାନମାନଙ୍କୁ ମିଳିତ କରିବେ ବୋଲି, ଏହି ଷଡ଼ଯନ୍ତ୍ର ଲଗାଇଥିଲେ ।

ଅଭୟସିଂହ—ଠିକ୍, ବନ୍ଧୁ !

ସମସ୍ତେ—ଜୟ ମା ସମଲେଶ୍ୱରୀଙ୍କର ଜୟ ।

[ ମାଧବ ଓ ସୁନ୍ଦରସିଂହର ପ୍ରବେଶ ]

ମାଧବ—ଏହି ସେ ସୁରେନ୍ଦ୍ର—

ରଘୁଜୀ—ବାବା ! ବାବା ! ଆଜ କି ଆନନ୍ଦ ! (ଅରୁଣାପ୍ରତି) ମା ! ଅଜାଙ୍କୁ ନମସ୍କାର କର ।

ଅରୁଣା—ଅଜା ! ( ଅଶ୍ରୁଧାରା ପ୍ରକାଶ କରିବା ଓ ପ୍ରଣାମ କରିବା )

ମାଧବ—ମୁଁ ତୋ'ର ଭାରି ଦୁଷ୍ଟ ଅଜା, ଅରୁ ! ( ଆଲିଙ୍ଗନ କରିବା )

[ ସଖୀଗଣ ପରିବେଷ୍ଟିତ ହୋଇ ମଧୁ ମାଳତୀ ଓ ଶକ୍ତି କୁମାରଙ୍କ ପ୍ରବେଶ ଓ ପ୍ରଣାମ କରିବା ]

ଅଭୟସିଂହ—ଏହି ଯେ ନବଦମ୍ପତିଗଣ—ଯୁଗଳେ ଯୁଗଳେ ଉପସ୍ଥିତ !

ଅରୁଣା—( ମାଳତୀକୁ ଦେଖି ) ସହି ! ସହି ( ନିକଟକୁ ଯିବା )

ମାଳତୀ—ଏ' ଯେ ସହି—( ଆଲିଙ୍ଗନ କରି, ସସ୍ମିତେ ) ମୁଁ ଯେ ତୋ'ର ପିଉସୀ, ଅରୁ !

କୁମାର—( ସ୍ୱଗତଃ ) ଅରୁଣା—( ଅଶ୍ରୁଧାରା ଲୁଚେଇବା )

ଅରୁଣା—ପ୍ରଣାମ ଗ୍ରହଣ କର, କୁମାରଜୀ—ମୁଁ ଯେ ସେହି ସନ୍ନ୍ୟାସିନୀ !

କୁମାର—ହଁ—ଏତେ ଚାତୁରୀ ତୁମ୍ଭଙ୍କୁ ଆସେ, ଅରୁଣା ?

ଅଭୟସିଂହ—ମା' ଶକ୍ତି ! ଏହି ତୋ'ର ସେହି ନିମନ୍ତ୍ରିତା ନିରାହା ବାଳିକା !

ଶକ୍ତି—ଏହି ? ଈଶ୍ୱର ! ତୁମ୍ଭଙ୍କୁ ଧନ୍ୟବାଦ—

ମଧୁ—ନା, କେମାଦେଈ ! ମୋତେ ଆଗେ ଧନ୍ୟବାଦ ଦେବାକୁ ଦିଅ—ଈଶ୍ୱର ! ତୁମ୍ଭଙ୍କୁ ଶତ ଶତକୋଟି ଧନ୍ୟବାଦ—ଏଥର ବୁଝିଲି, ତୁମ୍ଭେ ପ୍ରକୃତରେ ଅଛ !

କୁମାର—ତେତିକି ନୁହେଁ, ଭାଇ—ସେ ପ୍ରକୃତରେ ସୌନ୍ଦର୍ଯ୍ୟର ଭଣ୍ଡାର ଓ ଆନନ୍ଦର ସାଗର !

ଭୋନ୍‌ସଲ—ମାଧବରାଏ ! ଆଉ ବିଳମ୍ବ କାହିଁକି ? ( ସସ୍ମିତେ, ଅରୁଣା ଓ ପୃଥ୍ୱୀକୁ ଦେଖାଇ ) ପ୍ରେମିକ ପ୍ରେମିକା ମନରେ କି କଷ୍ଟ ଦେବା ଉଚିତ ?

ମାଧବ—ପ୍ରେମିକର କଷ୍ଟ କିଏ ମୋଚନ କରିବ, କିନ୍ତୁ—ପ୍ରେମିକାର କଷ୍ଟ ମୋଚନ କରିବାକୁ, ମୁଁ ପ୍ରସ୍ତୁତ ଅଛି ।

ଭୋନ୍‌ସଲ—କାହିଁକି, ମୁଁ କଣ ନାହିଁ ? ତୁମର ଯେପରି ଦାବି, ମୋ'ରବି ତ ସେହିପରି ଦାବି ।

ଆକ୍‌ବରସାଏ—ମୋ'ର ଦାବି ମଧ କିଛି କମ ନୁହେଁ ।

ଅଭୟସିଂହ—ଏ'ପରି ଦ୍ୱନ୍ଦ୍ୱସ୍ଥଳେ—ମୁଁ ତେବେ ମୀମାଂସା କରିଦିଏଁ—(ଅରୁଣାର ହସ୍ତ ସହିତ ପୃଥ୍ୱୀସିଂହର ହସ୍ତ ମିଳିତ କରିଦେବା )

ସମସ୍ତେ—ଜୟ ମା ସମଲେଶ୍ୱରୀଙ୍କର ଜୟ !

ଅଭୟସିଂହ—ଗାଅ ବନ୍ଦୀମାନେ

ବନ୍ଦୀମାନେ— —ଗୀତ—

ଆଜି ମିଳନର ଆନନ୍ଦ ସ୍ରୋତେ ଭାସି ଯାଅ,
ଆତ୍ମ-ପର-ଭେଦ- ଜ୍ଞାନ, ଅକାରଣ, ଭୁଲିଯାଅ ।
ବିଶ୍ୱ ବ୍ୟାପି ହଉ ଏକ ତାନେ
କି ମଧୁର, ଧୀରେ ଧୀରେ ସମୀରଣେ
(ସେହି) ମିଳନ ସଙ୍ଗୀତ—ମୋହନ ମନ୍ଦ୍ର ସ୍ୱରେ ଗାଅ ।
ତୁମ୍ଭେ ମୋର—ମୁହିଁ ତୁମ୍ଭର
ନାହିଁ ଆଜ ପରାପର
ସେହିଭାବେ ହଜ—ମହାଭାବେ ମଜି ଯାଅ ।

ସମସ୍ତେ—ଜୟ ମା ସମଲେଶ୍ୱରୀଙ୍କର ଜୟ !
( ଅବନତ ମସ୍ତକ ହେବା )

ଯ-ବ-ନି-କା

---

# ମୁଖବନ୍ଧ

ଶ୍ରୀ ଅଶ୍ୱିନୀକୁମାର ଘୋଷ ଓଡ଼ିଆ ନାଟ୍ୟକାର ରୂପେ ଉତ୍କଳର ପ୍ରତିପଲ୍ଲୀରେ ସୁପରିଚିତ । ତାଙ୍କ ରଚିତ 'କପିଳେନ୍ଦ୍ର ଦେବ' ନାଟକ ଖଣ୍ଡି ପଢ଼ିବାର ସୁବିଧା ପାଇ ଆଦ୍ୟୋପାନ୍ତ ପଢ଼ିଅଛି । ନାଟକରେ ଉତ୍କଳର ଗୋଟିଏ ଇତିହାସ-ପ୍ରସିଦ୍ଧ ରାଜାଙ୍କର ଅଭ୍ୟୁଦୟ ବିଷୟ ବ୍ୟକ୍ତ ହୋଇଅଛି । ଭାନୁ ଗଙ୍ଗଙ୍କ ମୃତ୍ୟୁ ଓ କପିଳେନ୍ଦ୍ର ଦେବଙ୍କର ସିଂହାସନ ଆରୋହଣ ଏହି ନାଟକର କଥା-ବସ୍ତୁ । କପିଳେନ୍ଦ୍ର ଦେବ ସାମାନ୍ୟ ଅବସ୍ଥାରୁ, 'କପିଳା'ରୁ ଓଡ଼ିଶାର ମହାରାଜା ରୂପେ ଖ୍ୟାତ ହୋଇଥିଲେ । ଏଣୁ ତାଙ୍କ ଜୀବନର ନାଟକୀୟ ପରିବର୍ତ୍ତନ ମଧ୍ୟରେ କଥା-ବସ୍ତୁର ଅଭାବ କେବେହେଁ ରହିବ ନାହିଁ, ଏହା ସ୍ୱାଭାବିକ; ନାଟ୍ୟକାର ମଧ୍ୟ ଏହି ନାଟକୀୟ ପରିବର୍ତ୍ତନକୁ ଆଧୁନିକ ଉତ୍କଳୀୟମାନଙ୍କ ସମ୍ମୁଖରେ ବ୍ୟାଖ୍ୟାତ କରିବାକୁ ପ୍ରୟାସ କରି ଅଛନ୍ତି । ତାଙ୍କର ପ୍ରୟାସ କେତେଦୂର ସଫଳ ହୋଇଅଛି ତାହା ପାଠକ ମାନଙ୍କର ବିଚାର୍ଯ୍ୟ ।

ନାଟକର ସାଫଲ୍ୟ ଅନେକାଂଶରେ ନିର୍ଭର କରେ ଅଭିନୟ ଉପରେ । ନାଟକ କେବଳ ପାଠ କରିବା ନିମନ୍ତେ ଉଦ୍ଦିଷ୍ଟ ନୁହେଁ । ଲୋକେ ତାର ଅଭିନୟ ଦେଖି ଚକ୍ଷୁ ଓ କର୍ଣ୍ଣ ଦ୍ୱାରା ରସଗ୍ରହଣ କରିବେ ଏହାହିଁ ନାଟ୍ୟକାର ସର୍ବଦା ଆଶାକରେ । ଅଶ୍ୱିନୀକୁମାର ବହୁବର୍ଷ ଓଡ଼ିଶାର ଗୋଟିଏ ଲବ୍ଧ-ପ୍ରତିଷ୍ଠ ପେଶାଦାର ନାଟ୍ୟଦଳ ସହିତ ସମ୍ପୃକ୍ତ ଥିଲେ, ଏଣୁ ନାଟକର ମଞ୍ଚରୂପକୁ ସର୍ବାଙ୍ଗସୁନ୍ଦର କରିବା ନିମନ୍ତେ ସେ ଯେ ବିଶେଷ ଚେଷ୍ଟା କରିଥିବେ, ଏଥିରେ ସନ୍ଦେହ ନାହିଁ । ବରଂ ଅନେକ ସମୟରେ ନାଟ୍ୟଦଳ ସହିତ ସମ୍ପର୍କ ଥିବାରେ ପୁସ୍ତକର ନାଟ୍ୟ-ରୂପ ଉପରେ ଦୃଷ୍ଟିନିବଦ୍ଧ ଥିବାରୁ ପାଠ୍ୟ ରୂପ ବ୍ୟାହତ ହୁଏ ଏହାହିଁ ସ୍ୱାଭାବିକ । ଏହି ପୁସ୍ତକରେ ସାନ୍ତାଳ ନାଚ, ନାଗବାଲି ନାଚ, ଢୋଦମାର ଓ ଗଧିଆର ଭୂମିକା ଏହିପରି ନାଟ୍ୟରୂପର ପାରିପାଟ୍ୟ ନିମନ୍ତେ କଳ୍ପିତ । ଏହାଦ୍ୱାରା ଅନେକ ସମୟରେ ଆଖ୍ୟାୟିକାର ମାଧୁର୍ଯ୍ୟ ନଷ୍ଟ ହୋଇଅଛି, କଥା ବସ୍ତୁର ଅଗ୍ରଗତିରେ ବାଧା ଜାତ ହୋଇଅଛି, କିନ୍ତୁ ଦର୍ଶକମାନଙ୍କ ମନ ଦୃଶ୍ୟ ବସ୍ତୁ ପ୍ରତି ଆକୃଷ୍ଟ କରିବାର ଚେଷ୍ଟା ହୋଇଅଛି ।

ନାଟକର କଥାବସ୍ତୁ ମଧ୍ୟରେ ଚମତ୍କାରିତାର ଅଭାବ ନାହିଁ । ଏକଦିଗରେ କପିଳେନ୍ଦ୍ର ଦେବଙ୍କର ଅପ୍ରତିହତ ଅଭ୍ୟୁଦୟ, ଅନ୍ୟଦିଗରେ ଭାନୁଗଙ୍ଗଙ୍କର ସମ୍ଭାବିତ ପରିଣତି, ଏକଦିଗରେ ଚନ୍ଦ୍ରର ବିବାହ ଓ ଅନ୍ୟ ଦିଗରେ ନାଟକର ଶେଷ ଭାଗରେ କଥା-ବସ୍ତୁର ପରିବର୍ତ୍ତନ; ଏକଦିଗରେ କଳାଡାକୁର ଉତ୍ଥାନ ଜନିତ ଭୀତି, ଅନ୍ୟ ଦିଗରେ ନାଟକରେ ପ୍ରେମ ରସର ଉଦ୍ଭବ ଜନିତ ମାଧୁର୍ଯ୍ୟ ଏହିସବୁ ଦ୍ୱାରା ନାଟକଟି ଚମତ୍କାରିତାରେ ସମୃଦ୍ଧ ହୋଇଅଛି । ଯାହା ସମ୍ଭାବିତ ତାହା ପରିବର୍ତ୍ତିରେ ଅଭାବନୀୟ ପରିଣତିର ଅବକାଶ ଥିଲେ ନାଟକ ଯଥାଯଥ ଭାବରେ ଦର୍ଶକମାନଙ୍କ ମନକୁ ଅଭିଭୂତ କରିବାକୁ ସମର୍ଥ ହୁଏ । ଏହି ନାଟକରେ ଏଭଳି ପରିଣତିର ବାହୁଲ୍ୟ ଥିବାରୁ ଏହା ନାଟ୍ୟରୂପରେ ସଫଳ ହେବାର ସମ୍ଭାବନା ସମଧିକ ।

ଭାନୁଗଙ୍ଗ ଓ କପିଳେନ୍ଦ୍ର ଦେବଙ୍କ ମଧ୍ୟରେ ବିରୋଧ ଏହି ନାଟକରେ ପ୍ରଧାନ ଉପଜୀବ୍ୟ ବିଷୟ । ଏଣୁ ଏକଦିଗରେ ଭାନୁଗଙ୍ଗଙ୍କୁ ପାଗଳ ରୂପରେ କଳ୍ପିତ କରାଯାଇ ଅଛି, ଅନ୍ୟଦିଗରେ କପିଳେନ୍ଦ୍ରଙ୍କର ସାମାନ୍ୟ ଅବସ୍ଥାରୁ ରାଜପଦରେ ଉନ୍ନତିର ସୋପାନ ଗୁଡ଼ିକ ମଧ୍ୟ ଯଥା-ଭାବରେ ସନ୍ନିବେଶ ହୋଇଅଛି । ଅକଟା ଅବଟା ଭାନୁ ଐତିହାସିକ ଚରିତ୍ର ହୁଅନ୍ତୁ ବା ନ ହୁଅନ୍ତୁ ତାଙ୍କର ମସ୍ତିଷ୍କ ବିକୃତ ଜନିତ ଦୋଷର

ସୁବିଧା ଗ୍ରହଣ କରି ନାଟ୍ୟକାର ଭାନୁ ଗଙ୍ଗଙ୍କର ପରିଣତି ବିଷୟରେ ଆମ୍ଭମାନଙ୍କୁ ସଚେତ କରି ଅଛନ୍ତି । ପୁଣି 'କାଶିଆ କପିଳାର ଭେଟ' କିମ୍ବଦନ୍ତୀ ମୂଳକ ଐତିହାସିକ ଆଖ୍ୟାନ, ତାହାର ମଧ୍ୟ ସୁବିଧା ଗ୍ରହଣ କରି ନାଟ୍ୟକାର ଗୋଟିଏ ସହାୟକ ଚରିତ୍ର ରଚିତ କରିଅଛନ୍ତି, ଏହାଦ୍ୱାରା କିମ୍ବଦନ୍ତୀ ମୂଳକ ଉପାଖ୍ୟାନ-ମାନଙ୍କର ଯାଥାର୍ଥ୍ୟ ପ୍ରତିପାଦିତ ହୋଇ ନାଟକର କଥା ବସ୍ତୁକୁ ସର୍ବଜନଗ୍ରାହ୍ୟ କରି ପାରିଅଛି ।

ନାଟକ ଐତିହାସିକ କଥା ବସ୍ତୁ ଉପରେ ପ୍ରତିଷ୍ଠିତ ହେଲେହେଁ ଇତିହାସ ନୁହେଁ । କିମ୍ବଦନ୍ତୀର ଐତିହାସିକ ମୂଲ୍ୟ ଥିଲେହେଁ ତାହା ମଧ୍ୟ ଇତିହାସ ନୁହେଁ । ଅନ୍ୟ ଦିଗରେ ନାଟକ ଅତୀତ ଇତିହାସ ସହିତ ସମ୍ପୃକ୍ତ ଥିଲେହେଁ, ବର୍ତ୍ତମାନ ଚଳିତ ଐତିହାସିକ କଥା ସହିତ ତାହାର ସମ୍ପର୍କ ମଧ୍ୟ ସୁପ୍ରତିଷ୍ଠିତ । ନାଟ୍ୟକାର କପିଳେନ୍ଦ୍ର ଦେବଙ୍କର ସିଂହାସନ ଆରୋହଣକୁ ଭିତ୍ତି କରି ଆଧୁନିକ ଗଣତନ୍ତ୍ର ସ୍ୱୀକୃତ ଜନମତର ଅଭିବ୍ୟକ୍ତି ରଚିତ କରି ଅଛନ୍ତି । ନାଟକର ଏହି ଅଂଶ ଇତିହାସ ବା କିମ୍ବଦନ୍ତୀରୁ ଭିନ୍ନ କିନ୍ତୁ ବର୍ତ୍ତମାନ ସହିତ ସମ୍ପୃକ୍ତ । ଏପରି ସମନ୍ୱୟ କରିବା ଦ୍ୱାରା ନାଟକର ଉତ୍କର୍ଷ ସାଧିତ ହୋଇଅଛି କି ନାହିଁ ତାହା ପାଠକମାନଙ୍କର ବିଚାର୍ଯ୍ୟ । ତେବେ ନାଟକ ବା ନାଟ୍ୟସାହିତ୍ୟ ଏକଦିଗରେ ବର୍ତ୍ତମାନ ବା ଅତୀତକୁ ଏଡ଼ି ଦେଇ ପାରିବ ନାହିଁ, ଅନ୍ୟ ଦିଗରେ ଭବିଷ୍ୟତ୍ ରସ ଗ୍ରହଣରେ ମଧ୍ୟ ବାଧା ଜାତ କରିବ ନାହିଁ ଏହାହିଁ ସର୍ବବାଦି ସମ୍ମତ । ଏଦିଗରୁ ଏ ବିଷୟଟିକୁ ବିଚାର କରିବା ଉଚିତ ।

ମୋଟ ଉପରେ କପିଳେନ୍ଦ୍ର ଦେବ ଅଭିନୟ ନିମନ୍ତେ ଲିଖିତ ଐତିହାସିକ କଥାବସ୍ତୁର ନାଟ୍ୟରୂପ । ଲେଖକ ଲବ୍ଧପ୍ରତିଷ୍ଠ ନାଟ୍ୟକାର ଓ ମଞ୍ଚ ସହିତ ଘନିଷ୍ଠଭାବରେ ସମ୍ପୃକ୍ତ, ଏଣୁ ନାଟକଟିର ଦୋଷଗୁଣ ଅଭିନୟ ଦ୍ୱାରା ବିଚାର କରିବାହିଁ ସ୍ୱାଭାବିକ ।

କଟକ
୧୬ । ୨ । ୫୩ } ଶ୍ରୀ ଗିରିଜାଶଙ୍କର ରାଏ

# ଆତ୍ମକଥା

ଆନ୍ତର୍ଜାତିକ ପରିପ୍ରେକ୍ଷୀରେ ସାଧାରଣତନ୍ତ୍ର-ଭାରତ ଆତ୍ମ-ଚେତନଶୀଳ ଓ ଆତ୍ମ-ନିର୍ଭରଶୀଳ ହେବ, ଏଥିପାଇଁ ବଳିଷ୍ଠ ସମାଜ-ସଂଗଠନର ଏକାନ୍ତ ପ୍ରୟୋଜନ । ଏହି ବଳିଷ୍ଠତା ନିର୍ଭର କରେ ତା'ର ମୂଳ-ଦୁଆ ଉପରେ । ଜାତୀୟ ଐତିହ୍ୟ, ଦୃଷ୍ଟି, ସଭ୍ୟତାଦିରୁ ଉକ୍ତ ମୂଳଦୁଆର ମାଲ ମଶଲା ପ୍ରଧାନତଃ ସଂଗ୍ରହ କରିବାକୁ ହେବ, ଏଥିରେ କାହାର ଦ୍ୱିରୁକ୍ତି ଥାଇ ନ ପାରେ । ସୁତରାଂ, ଅତୀତ-ପରମ୍ପରାର ଅନ୍ତର୍ନିହିତ ମୂଳତତ୍ତ୍ୱଟି କ'ଣ, ତାହା ଅବଧାରଣ କରି, ହୃଦୟଙ୍ଗମ କରିବା ସର୍ବାଦୌ ବାଞ୍ଛନୀୟ । ଏହି ମୂଳ ତତ୍ତ୍ୱଟି ଯେ ସେବା, ବିଶେଷତଃ କୃଷି ଓ ଗୋ-ସେବା, ଏହା ବିଶିଷ୍ଟ ଚିନ୍ତା-ନାୟକମାନଙ୍କର ପ୍ରାଜ୍ଞୋକ୍ତିରେ କେବଳ ଆବଦ୍ଧ ନୁହେଁ, ଆମର ସାଧାରଣ ବୁଦ୍ଧି ଓ ଦୈନନ୍ଦିନ ଜୀବନ ଯାପନରେ ମଧ୍ୟ ଏଥିର ତାତ୍ପର୍ଯ୍ୟ ଅଧିଗମ୍ୟ । ଆମର ଜନତା ଏହି ଭାବଧାରାରେ ଅନୁପ୍ରାଣିତ ହେବେ, ଏଥିପାଇଁ ପ୍ରାଚୀନ ଉତ୍କଳର ଗୋଟିଏ ସନ୍ଧି-କ୍ଷଣକୁ ଆଶ୍ରୟ କରି, ଏହି 'କପିଳେନ୍ଦ୍ରଦେବ' ନାଟକ ରଚନାରେ ବ୍ରତୀ ହୋଇଛି । ସୂର୍ଯ୍ୟବଂଶ-ପ୍ରତିଷ୍ଠାତା କପିଳେନ୍ଦ୍ରଦେବଙ୍କର ବହୁମୁଖୀ-ଅଭିଯାନ, ତଥା ବୃହତ୍ତର ଓ ଗୌରବ ସମୃଦ୍ଧ ଉତ୍କଳରାଜ୍ୟପ୍ରତିଷ୍ଠା ଇତିହାସ-ପ୍ରସିଦ୍ଧ । ସେହି ବିଶିଷ୍ଟ ଜନନାୟକ ତାଙ୍କର ଗମ୍ଭୀର ତମସାଚ୍ଛନ୍ନ ବାଲ୍ୟଜୀବନାକାଶରେ ମଧ୍ୟ ପ୍ରଖର-ପ୍ରତିଭା-ଭାସ୍ୱରୋଦୟର ସୂଚନା ଦେଇଥିଲେ, ତାହା ବାଢ଼ିବାର ଯଥେଷ୍ଟ ସୁଯୋଗ ପାଇଛି ଏହି ନାଟକରେ ।... ଅଭୀଷ୍ଟ ସାଧନରେ କେତେଦୂର କୃତକାର୍ଯ୍ୟ ହୋଇଛି, ତାହା ପାଠକ, ତଥା ଦର୍ଶକବର୍ଗଙ୍କର ବିଚାର-ସାପେକ୍ଷ ।

ନାଟକଟିର ଐତିହାସିକ ଉପାଦାନ ✓ଜଗବନ୍ଧୁ ସିଂହଙ୍କର ପ୍ରାଚୀନ ଉତ୍କଳରୁ ମୁଖ୍ୟତଃ ସଂଗୃହୀତ ହୋଇଥିବାରୁ, ସେହି ମହାତ୍ମାଙ୍କର ସ୍ମୃତି ବେଦୀତଳେ ମୋ'ର ସଭକ୍ତି ପ୍ରଣତି ନିବେଦନ କରୁଛି ।

ଏହି ନାଟକଟି ପାଣ୍ଡୁଲିପି ଥିବା ଅବସ୍ଥାରେ 'ଅଭିଷେକ' ନାମରେ ପରିଚିତ ହୋଇ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ କର୍ତ୍ତୃକ କଟକ-ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । ସେଥିପାଇଁ ପ୍ରୋପ୍ରାଇଟର ଶ୍ରୀ ଲିଙ୍ଗରାଜ ନନ୍ଦ ଓ ପରିଚାଳକ ଶ୍ରୀ ସାମୁଏଲ୍ ସାହୁ ( ବାବ )ଙ୍କୁ କୃତଜ୍ଞତା ଜଣାଉଛି ।

ଅହୁରି ଜଣାଇବାର କଥା, ବର୍ତ୍ତମାନର ମୁଦ୍ରିତ 'କପିଳେନ୍ଦ୍ର ଦେବ' ପାଣ୍ଡୁଲିପିର 'ଅଭିଷେକ'ର ପ୍ରତିରୂପ ନୁହେଁ, ବରଂ ଏହା ପଙ୍କରୁ ଜାତ ପଙ୍କଜ କହିଲେ, ଅତ୍ୟୁକ୍ତି ହେବ ନାହିଁ ।

ପରିଶେଷରେ ଭୂତପୂର୍ବ କଲେଜ ଅଧ୍ୟକ୍ଷ, ଶିକ୍ଷାବ୍ରତୀ, ଏବଂ ବିଶିଷ୍ଟ ନାଟ୍ୟ ସାହିତ୍ୟ-ସମାଲୋଚକ ଶ୍ରୀ ଗିରିଜା-ଶଙ୍କର ରାଏ ସ୍ୱତଃପ୍ରବୃତ୍ତ ହୋଇ ନାଟକଟିର ମୁଖବନ୍ଧ ଲେଖିଦେଇ ଥିବାରୁ, ମୁଁ ତାଙ୍କଠାରେ ଚିରକୃତଜ୍ଞତା ପାଶରେ ଆବଦ୍ଧ । ଇତି ।

**ଅଶ୍ୱିନୀ**

## —ଚରିତ୍ରଲିପି—

ଭାନୁଦେବ ବା ଅକଟା ଅବଟା ଭାନୁ — ଉତ୍କଳର ରାଜା ଓ ଗଙ୍ଗବଂଶର ଶେଷ ନୃପତି
ବାହିନୀ-ପତି — ଗଙ୍ଗବଂଶର ପାତ୍ର
କୋହ୍ମାସିଂ — ଗଙ୍ଗବଂଶର ସେନାପତି
କପିଳା ( ପରେ କପିଳେନ୍ଦ୍ରଦେବ ) — ଉତ୍କଳର ସୂର୍ଯ୍ୟବଂଶର ପ୍ରତିଷ୍ଠାତା
କାଶୀଆ — କପିଳେନ୍ଦ୍ର ଦେବଙ୍କ ସହଚର
ନିଧିଶର୍ମା — ଜଣେ ବ୍ରାହ୍ମଣ-ସାହୁକାର
ଗଧିଆ — ନିଧିଶର୍ମାଙ୍କ ଶ୍ୟାଳକ
ବୃଦ୍ଧ — ଜଣେ ଭାଗ୍ୟ-ବିପର୍ଯ୍ୟସ୍ତ ସାଧବ
ଗୁରଣ, ସୈନ୍ୟଗଣ, ଦସ୍ୟୁଚର, ରକ୍ଷୀ ଇତ୍ୟାଦି ।
ମହାରାଣୀ — ଉତ୍କଳର ମହାରାଣୀ [ଭାନୁ ଦେବଙ୍କର ମହିଷୀ]
ସୂର୍ଯ୍ୟମଣି — କପିଳା-ଜନନୀ
ଚନ୍ଦୁଣି [ଚନ୍ଦ୍ରାବତୀ] — ବୃଦ୍ଧ ସାଧବର ନାତୁଣୀ [ କପିଳା-ପ୍ରଣୟିନୀ ]
ରୁଥି — ନିଧିଶର୍ମାର ପତ୍ନୀ ।
ନାଚ୍‌ବାଲି, ମାଳକନ୍ୟାଳୀଗଣ, ପରିଚାରିକା ଇତ୍ୟାଦି ।

# କପିଳେନ୍ଦ୍ରଦେବ

---

## ପ୍ରଥମାର୍ଦ୍ଧ

### —ଏକ—

[ ଦୃଶ୍ୟୋଦ୍ଘାଟନ ପୂର୍ବରୁ ନହବତ୍, କାହାଳୀ ପ୍ରଭୃତିର ଘନ ଘନ ଧ୍ୱନି ଶୁଣାଗଲା । ସେଥିରୁ ମହୋତ୍ସବର ଗୋଟାଏ ଧୂମ୍ ଧାମ୍ ବେଶ୍ ସୂଚିତ ହେଉଥିଲା । ଯବନିକା ଅପସାରଣ ସଙ୍ଗେ ସଙ୍ଗେ ସେହି ଧ୍ୱନି କ୍ରମେ ମିଳାଇ ଯିବାକୁ ଲାଗିଲା । ଦୃଶ୍ୟ ଦେଖାଗଲା—ସହର ତଳି ଗ୍ରାମର ପ୍ରାନ୍ତବର୍ତ୍ତୀ ଗୋଟିଏ ଜୀର୍ଣ୍ଣ କୁଟୀର । ସମ୍ମୁଖ ଦ୍ୱାରଟିରେ ତାଟି କବାଟ । ତାହା ଆଉଜା ହୋଇଥିଲା । ବାଡ଼ିସଖାଳ । କୁହୁଡ଼ି ଭରିଥିଲା । ସେଥିଯୋଗୁଁ ସବୁ କିଛି ଅସ୍ପଷ୍ଟ ଦେଖାଯାଉଥିଲା । ସ୍ୱପ୍ନପରି ରହସ୍ୟମୟ ମନେ ହେଉଥିଲା । ଜଣେ ଭାଟ ଗାଇ ଗାଇ ପ୍ରବେଶ କଲା । ]

ଭାଟ— ଗୀତ

ଉଇଁଅଛେ ନଭେ ଭାନୁ···
ଉଇଁବେ ଜଙ୍ଗଲେ 'ଭାନୁ' ।
ଗଜପତି, ଗୌଡ଼େଶ୍ୱର,···
ଗଙ୍ଗବଂଶ-ନୃପ ସୂନୁ ॥
କାହିଁ ସେ ଚୂଡ଼ଙ୍ଗ ଅଜ,
କୀର୍ତ୍ତି ଯା' ମାଦଳା-ପାଞ୍ଜି ?
କାହିଁ ସେ ଅନଙ୍ଗ ଦେବ,
ଖଞ୍ଜିଲେ ଯେ ନୀତି, ପର୍ବ ?
କାହିଁ ସେ ନରସିଂହ,
କୋଣାର୍କ-ସ୍ଥପତି-ସିଂହ ?
ଭୟ ନାହିଁ, ଭୟ ନାହିଁ
ଜାଗ୍ରତ ସଦା ସେ', ଭାଇ;
ଭୟ, ଭ୍ରାନ୍ତି ତେଜ ମନୁ,
ତେଜିବ କୋଟିଏ ଭାନୁ ॥

[ ଉକ୍ତ ଗୀତାନୁକ୍ରମରେ, ସେହି ତାଟି ଆଡ଼େଇ ଦେଇ, କପିଳା ତା'ର ରୁଗ୍ଣା ଜନନୀ ସୂର୍ଯ୍ୟମଣିକୁ ଘେନି ଧୀରେ ଧୀରେ ପ୍ରବେଶ କଲା । ଦାଣ୍ଡ-ପିଣ୍ଡାର ଗୋଟାଏ ପଟେ, ଯେଉଁଠି ଘରର ପାରିଆ ଖମ୍ବଟିଏ, ତା'ରି ମୂଳକୁ, କପିଳା ତା'ର ଜନନୀକୁ ଘେନିଯାଇ, ସେହି ଖମ୍ବକୁ ଆଉଜାଇ ବସାଇ ଦେଲା, ଓ ପାଦ ମକୁଳିବାକୁ ଲାଗିଲା । ଭାଟ ଗାଇ ଗାଇ ଚାଲିଗଲା; ହେଲେ, ଗୀତର ରେଶ୍ ଚାଲିଯାଇ ନ ଥାଏ । ହଠାତ୍ ସୂର୍ଯ୍ୟମଣି ଯେଉଁ ଭାବାବେଶ ଭାଷାରେ ବ୍ୟକ୍ତ କରି ଉଠିଲେ ଏହିପରି—]

ସୂର୍ଯ୍ୟମଣି—"ଭୟ ଭ୍ରାନ୍ତି ତେଜ ମନୁ, ତେଜିବ କୋଟିଏ ଭାନୁ ।"

କପିଳା—( ଚମକିପଡ଼ି କହିଲା ) ମା !···

ସୂର୍ଯ୍ୟମଣି—( ଅନାଇ ଦେଇ ) କପିଳା···

କପିଳା—ଏ' କି ଗୀତ, ମା ? ତୁମେ ଏମିତି···

ସୂର୍ଯ୍ୟମଣି—( ସସ୍ମିତେ ) ଆରେ, ଆଜପରା ଅଭିଷେକ ।

କପିଳା—ତା'ତ ଜାଣେ, ମା—ଆହୁରି ଏ' ଗୀତର ଭାବ କ'ଣ, ତା'ବି ଜାଣେ ।

ସୂର୍ଯ୍ୟମଣି—କି ଭାବ ଜାଣୁ ତୁ ଭଲ ?

କପିଳା—ଏହି ଉତ୍କଳ ଦିନେ ଥିଲା ଯବନ-ଗ୍ରାସଗ୍ରସ୍ତ । ସେହି ଗ୍ରାସରୁ ମୁକ୍ତ କଲେ ତା'କୁ ଯଯାତି-କେଶରୀ । ସେହିଦିନୁ ପ୍ରତିଷ୍ଠିତ ହେଲା କେଶରୀ ବଂଶ । ସେହି ବଂଶର ଅବସାନ ଘଟିଲା ଦିନେ ଝିଅଲ୍ ରଜା ସୁବର୍ଣ୍ଣ କେଶରୀଙ୍କ ଯୋଗୁଁ । ଗଙ୍ଗବଂଶର ଅଭ୍ୟୁଦୟ ହେଲା । ମୂଳଦୁଆ ପକେଇଲେ ଚୋଡ଼ଗଙ୍ଗଦେବ । ତାଙ୍କର ପୌରୁଷ ଓ ସୁକୃତ ଫଳରେ, ସେହି ବଂଶରେ ଜନ୍ମ ଗ୍ରହଣ କଲେ ଅନଙ୍ଗ, ନରସିଂହ ପ୍ରଭୃତି ମହାମନୀଷୀମାନେ । ସେମାନଙ୍କର ଧାରାବାହିକ କଳା-କୃଷ୍ଟି-ଚର୍ଚ୍ଚା, ତଥା ବହୁମୁଖୀ ସାଧନା ଉତ୍କଳକୁ ଧନ୍ୟ କରିଚି; ଉତ୍କଳ ଆଜି 'ଉତ୍କଳ', ଅର୍ଥାତ୍ 'ଉତ୍କୃଷ୍ଟ-କଳା'—ସ୍ୱ ନାମର ଏହି ଭୋର୍ଥ ସାର୍ଥକ କରିଚି ।

ସୂର୍ଯ୍ୟମଣି—ସେହି ସ୍ୱ-ନାମ-ଧନ୍ୟ ଉତ୍କଳରେ ଆଜି ଅଭିଷେକ । ସିଂହାସନରେ ବସିବେ ଯେଉଁ ନୃପତି, ସେ ହେଉଚନ୍ତି ସେହି ଯଶ କାନ୍ତିମଣ୍ଡିତ ଗଙ୍ଗବଂଶର ସ୍ୱର୍ଗୀୟ 'ମତ-ଭାନୁ'-ପୁତ୍ର—'ଭାନୁଦେବ' ।

କପିଳା—ତାଙ୍କର ସମ୍ବର୍ଦ୍ଧନା ପାଇଁ, ଗୁରୁଣୀର ଏହି ସ୍ତୁତିଗୀତ, ଏଉ ଗୁରୁଆଡ଼େ ଆନନ୍ଦ ଉତ୍ସବ,—ଏ' କଥା ଯେ କେହି କହିବ, ଜନନୀ । ହେଲେ—

ସୂର୍ଯ୍ୟମଣି—'ହେଲେ ?'

କପିଳା—ମା । ତୁମେଇ ସଦାବେଳେ ଏ' ଆଖିର ଲୁହ, ସେ ଆଖିରେ ପୋଛୁ, କହୁଥାଅ—ଆମର ଘର ନାହିଁ, ଦ୍ୱାର ନାହିଁ—ଯେଉଁ କୁଡ଼ିଆଟିରେ ମଥାଗୁଞ୍ଜି ରହୁଥାଏଁ, ତା'ବି ଆମର ବୋଲିବାକୁ ନୁହେଁ—ରାଜା, ପ୍ରଜା କେହି ଆମକୁ ଚିହ୍ନନ୍ତି ନାହିଁ—ଦୁନିଆର ବାହାର ଆମେ,—ଏହି ଭାବେ, ଏହି ଗାଁର ବାହାରେ ପଡ଼ିଛେଁ—

ସୂର୍ଯ୍ୟମଣି—ବା ବା—

କପିଳା—ଏତେ ଦୁଃଖ, କଷ୍ଟ—ଏତେ ଗ୍ଲାନିମାନି—ଏତେ ଦେହ, ମନର ତାପ—ସବୁ ଆଜି ଏହି ସ୍ତୁତିଗୀତର କି ଗୋଟାଏ ଆବେଦନ-ପ୍ରଭାବରେ ଯେମିତି କ୍ଷଣକପାଇଁ ପାଶୋରି ପକାଇଲି, ଠିକ୍ ଏହିପରି ମୋର ମନେ ହେଲା, ମା ।

ସୂର୍ଯ୍ୟମଣି—ବା ବା—

କପିଳା—ଖାଲି ସେତିକି ନୁହେଁ, ମା—ଗୁରୁଣୀର ଏହି ସ୍ତୁତି-ଗୀତ ଯେମିତି ତୁମର କେଉଁ ସୁପ୍ତ-ବାସନାକୁ କରିଚି ଜାଗ୍ରତ—ନା, ନା, ରାଜପ୍ରାସାଦର ମୁକୁଟ-ଉତ୍ସବ ଯେମିତି ଆମର ଏହି କୁଡ଼ିଆ ଘରେ ଆଜି ଅନୁଷ୍ଠିତ—ଠିକ୍ ଏହିପରି ଗୋଟାଏ ପୁଲକର ସଙ୍କେତ ତୁମର ଆଖିରେ, ମୁଖରେ ଫୁଟିଉଠିଥିଲା,—ଦେଖିଚ, ମା ।

ସୂର୍ଯ୍ୟମଣି—ଦେଖିଚୁ ? ହାଃ—ହାଃ—

କପିଳା—ମା', ତୁମେ ହସୁଚ ? ( ଦୀର୍ଘଶ୍ୱାସ ତ୍ୟାଗକରି ) ଅଜାଣ୍ଡି ଯୁଗେ ବିତିଗଲା । ଯେହେତୁ ଉଠିବା ତୁମର ଦୁର୍ଘଟ । ଖାଲି ତୁମ-କଥା ଏଠି ନ ପାରି, ନିତି ସଞ୍ଜ, ସକାଳେ ଏଇଠେଇଁ ଆଣି ବସେଇବାର କଥା । ଉଦୟ ଅସ୍ତରେ ସୂର୍ଯ୍ୟଦେବଙ୍କୁ ଥରେ ପ୍ରଣାମ କରିବ, ଏଇଥି ପାଇଁ । ହେଲେ, ତୁମର ସେହି ନିତ୍ୟ ଦେବାରାଧନାର କୌଣସି ପ୍ରତିକ୍ରିୟା ତୁମ ମୁହଁରେ ଫୁଟିଚି, ତା'ତ କେବେଁ ହେଲେ ଦେଖି ନାହିଁ, ମା ।

ସୂର୍ଯ୍ୟମଣି—( ସସ୍ମିତେ ) ଆଉ, ଆଜି ?

କପିଳା—ଆଜି ଯା' ଦେଖିଚି, ତା' ଅଲୌକିକ । ତୁମ ମୁହଁରୁ ଅନ୍ନପୂର୍ଣ୍ଣାର ଲାବଣ୍ୟ-ବର୍ଣ୍ଣନା ଅନେକଥର ଶୁଣିଚି, ମା—ହେଲେ, ଆଜି ସେହି 'ଅନ୍ନପୂର୍ଣ୍ଣା'ର ଲାବଣ୍ୟ ତୁମ ମୁହଁରେ ଫୁଟି ଫାଟି ପଡ଼ୁଚି, ଏଇକଥା ଦେଖିଚି, ମା ।

ସୂର୍ଯ୍ୟମଣି—ତା'ହେଲେ ତ, 'ଜୟଶ୍ରୀକ୍ରାନ୍ତ ତେଜ ମନ୍ତ୍ର, ତେଜର କୋଟିଏ ଭାନୁ', ଏହି ସ୍ତୁତି-ଗୀତର ସାର-ବାଣୀଟି ତୋ'ର ବଂଶ ଦେବତା ଏକଲା ମୋ' କାନେ କାନେ ଖାଲି କହି ଯାଉଚନ୍ତି

ପ୍ରକାଶ୍ୟ କଣ୍ଠରେ, ଶୁଭ ପ୍ରାତଃର ଶୁଭବାର୍ତ୍ତା ପରି ସାରା-ଭୁବନଅକୁ, ଦେଖୁଚି ।

କପିଳା—ମୋ'ର 'ବଂଶ-ଦେବତା' ? ସେ କିଏ, ମା ?

ସୂର୍ଯ୍ୟମଣି—ଏହି ତମସାହାରୀ—ଦିବାକର,—ସୂର୍ଯ୍ୟ-ଦେବ । (ପ୍ରଣାମ କଲେ)

କପିଳା—(ପ୍ରଣାମ କରିସାରି) ସୂର୍ଯ୍ୟ-ଦେବ ମୋ'ର ବଂଶ-ଦେବତା ! ଯେଉଁ ବଂଶକୁ ଧନ୍ୟ କରିଛନ୍ତି ଶ୍ରୀରାମ, ହରିଶ୍ଚନ୍ଦ୍ର, ସେହି ବଂଶରେ ମୋ'ର ଜନ୍ମ ?

ସୂର୍ଯ୍ୟମଣି—ହଁରେ ବାପ—ଯେଉଁ ସୂର୍ଯ୍ୟବଂଶୀମାନଙ୍କର କୀର୍ତ୍ତିଗାଥା ବଖାଣିବାକୁ ରଚିତ ଅଛି ରାମାୟଣ, ମହାଭାରତ,—ସେହି ସୂର୍ଯ୍ୟବଂଶୀ ତୁହି ।

କପିଳା—ମା—

ସୂର୍ଯ୍ୟମଣି—ବିଶ୍ୱାସ ହେଉ ନାହିଁ ?—

କପିଳା—ଏତେ ଦିନ ଯାଏ ମୋର ବଂଶ-ପରିଚୟ ମୁଁ ପାଇ ନଥିଲି—ମୋର ଅପରାଧ, ମା ?

ସୂର୍ଯ୍ୟମଣି—ଅପରାଧ ତୋ'ର ନୁହେଁରେ, ବାପ, ଅପରାଧ ମୋର—ତୋର ବଂଶଦେବତାଙ୍କ ପ୍ରତି ମୋର ଗୋଟାଏ ଦୁର୍ଜ୍ଜୟ ଅଭିମାନ ।

କପିଳା—ତା'ର କାରଣ, ମା ?

ସୂର୍ଯ୍ୟମଣି—(ଦୀର୍ଘଶ୍ୱାସ ତ୍ୟାଗପୂର୍ବକ) ଅକାଳେ ତୋ'ର ପିତା ସ୍ୱର୍ଗକୁ ଚାଲିଗଲେ—ମୋ'ର କପାଳ ପୋଡ଼ିଲା—ମୁଁ ନିରାଶ୍ରୀ ହେଲି—ତୋତେଇ ସମ୍ବଳ କରି, ତୋ'ର ବଦନ ଚାହିଁ, ତୋର ବଂଶ-ଦେବତାଙ୍କୁ ଆଶା କଲି—ମାତ୍ର, ଆଶାୟୀର ଦେବତା ଆଶା ଦେବେ କ'ଣ, ମୋତେ ପ୍ରତିଦିନ ତାପରେ ଯେମିତି ଅହରହ ଜାଳିପୋଡ଼ି ଦେବାକୁ ଲାଗିଲେ; କଟା-ଘାରେ ଚୂନ ଲେପିଲାଭଳି ଗୋଟାଏ ଜ୍ୱାଳା ଅନୁଭବ କରୁ କରୁ ମୁଁ ଦିନୁଦିନ ଅସହଣି ହୋଇ ଉଠିଲି । ହେଲେ···

କପିଳା—ହେଲେ ?—

ସୂର୍ଯ୍ୟମଣି—ସେହି ନିଷ୍ଠୁର ଦେବତା ଆଜି ଯେମିତି ପ୍ରସନ୍ନ ହୋଇଛନ୍ତି; ମୋ'ର ମାନ, ଅଭିମାନ ଗୋଟିଏ ସୂକ୍ଷ୍ମ ଇଙ୍ଗିତ ଦ୍ୱାରା ତୁଟାଇ ଦେଇ, ତା' ଯେମିତି ମାଟିରେ ମିଶାଇ ଦେଇଛନ୍ତି ।

କପିଳା—କି ଇଙ୍ଗିତ ଦ୍ୱାରା, ଜନନୀ ?

ସୂର୍ଯ୍ୟମଣି—ଉଜ୍ଜ୍ୱଳ ଆଜି ଘଡ଼ି-ସନ୍ଧି କ୍ଷଣରେ ଉପସ୍ଥିତ,—

କପିଳା—ଅର୍ଥାତ୍ ?

ସୂର୍ଯ୍ୟମଣି—ଗଙ୍ଗବଂଶର ରାଜୁତି ଚାରିଶ' ବର୍ଷ ଅତିକ୍ରମ କରିଛି—ତା'ର ବର୍ତ୍ତମାନ ଜୀର୍ଣ୍ଣ ଅବସ୍ଥା—ଜୀବନୀ-ଶକ୍ତି ମଉଳି ଆସିଲାଣି—ଜୀବନ-କାଳ ପୂରିବା ଉପରେ—ତେଣୁ, ଉଜ୍ଜ୍ୱଳ ନବ କଳେବର ଲୋଡ଼େ—ନବପ୍ରାଣରେ ଉଦ୍‌ବୁଦ୍ଧ ହେବାକୁ ଉଚ୍ଛନ୍ନ—ଏବଂ ତା'ର ସେହି ଉତ୍କଣ୍ଠ-ଆଶା ମେଣ୍ଟାଇବ ଗୋଟିଏ ନୂତନ ରାଜ-ବଂଶ ।

କପିଳା—ସେହି ଆଶାୟୀ ରାଜ-ବଂଶର ପରିଚୟ, ମା ?

ସୂର୍ଯ୍ୟମଣି—ସୂର୍ଯ୍ୟ-ବଂଶ ।

କପିଳା—ମୋ'ର ସୂର୍ଯ୍ୟ-ବଂଶ ?—

ସୂର୍ଯ୍ୟମଣି—ହଁ—ତୋ'ର ସୂର୍ଯ୍ୟବଂଶ—ଆଉ ତା'ର ପ୍ରତିଷ୍ଠାତା ହେବ—

କପିଳ—କିଏ ମା ?

ସୂର୍ଯ୍ୟମଣି—ତୁହି ।—

କପିଳା—ମୁହିଁ ?—

ସୂର୍ଯ୍ୟମଣି—ହଁ, ମୋର ଏହି କପିଳା ହେବ ଦିନେ 'ରାଜା କପିଳେନ୍ଦ୍ରଦେବ' ।

କପିଳା—(ନିର୍ବାକ୍‌ଭାବରେ ଚାହିଁ ରହିଲା)

ସୂର୍ଯ୍ୟମଣି—ଆଉ ମୁହିଁ ସୂର୍ଯ୍ୟମଣି ହେବି 'ରାଜ-ମାତା' !!

[ଠିକ୍ ସେହି ସମୟରେ ସୂର୍ଯ୍ୟଦେବ ପ୍ରଖର ହୋଇ ଉଠିଲେ ଏବଂ ଉଭୟଙ୍କ ବଦନ ମଣ୍ଡଳକୁ ପ୍ରଖର ଜ୍ୟୋତରେ ଉଦ୍ଭାସିତ କରିଦେଲେ । ଚାରିଆଡ଼ର ନୀରବ ସ୍ତବ୍ଧତାକୁ ଭାଙ୍ଗି ପୁଣି ଯେମିତି ହୁଂକାର ଉଠିଲା ଓ ବାୟୁ ମଣ୍ଡଳକୁ ହିଲ୍ଲୋଳିତ କରି ଖେଳିଗଲା ।

"ଭୟ ନାହିଁ, ଭୟ ନାହିଁ—
ଜାଗ୍ରତ ସଦା ସେ', ଭାଇ;
ଭୟଭ୍ରାନ୍ତି ତେଜି ମନୁ,
ତେଜିବ କୋଟିଏ ଭାନୁ" ।

କପିଳା—( ସଭୟେ )—ମା, ତୁମେ ଏ'ଠୁଁ ଗୃଲ ଗ ?

ସୂର୍ଯ୍ୟମଣି—ଭୟ କରୁଛୁ ?—

କପିଳା—ହଁ, ମା—

ସୂର୍ଯ୍ୟମଣି—ହାଃ-ହାଃ-ହାଃ-

କପିଳା—ମା'ଙ୍କୁ ମୋର ନିଶ୍ଚେ ଭୂତ ଲଗିଛି—।

ସୂର୍ଯ୍ୟମଣି—( ଅଦ୍ଭୁତ ଦୃଷ୍ଟିରେ ଗୃହିଁଲେ )

କପିଳା—ମା—ମା—

ସୂର୍ଯ୍ୟମଣି—ଛୁଅଁ ନା, ତୁ ଗୋଟାଏ ନିପଟ ଭୂତ !—

କପିଳା—ବୁଝିଚି, ମା, ତୁମର ମନର କଥା,—'ମୁଁ ସୂର୍ଯ୍ୟ-ବଂଶୀ, ସତ, ହେଲେ ମୋ'ର ସୂର୍ଯ୍ୟ-ତେଜ କାହିଁ ?'

ସୂର୍ଯ୍ୟମଣି—'ସୂର୍ଯ୍ୟ-ତେଜ କାହିଁ' ?—ହାଃ-ହାଃ-ହାଃ—

କପିଳା—( ଦୀର୍ଘଶ୍ୱାସ ତ୍ୟାଗପୂର୍ବକ ) ଏହି ଜୀର୍ଣ୍ଣ-କୁଟୀର, ଶୀର୍ଣ୍ଣ-ଶରୀର, ଦୀର୍ଣ୍ଣ-ଜୀବନ ତା'ର ଜୀବନ୍ତ ସାକ୍ଷୀ, ଜନନୀ ।

ସୂର୍ଯ୍ୟମଣି—ଅରେ, ମୂର୍ଖ—'ରାମାୟଣ', 'ମହାଭାରତ'ର ତତ୍ତ୍ୱ କଥା ତୁ ବିଲ୍‌କୁଲ୍ ପାଶୋରି ପକାଇଛୁ ଗ ?—କର୍ମ-ଦୋଷରୁ ପରା ରାମଚନ୍ଦ୍ର ବନବାସୀ ହୋଇଥିଲେ—କର୍ମଦୋଷରୁ ପରା ହରିଶ୍ଚନ୍ଦ୍ର ମଶାଣି ଜଗିଥିଲେ ?

କପିଳା—( ଉତ୍ତେଜିତ ଭାବରେ ) ଆହୁରି, ମା, ଜାଣେ—ସେହି ଦୁଷ୍ଟ-କର୍ମ ସଙ୍ଗେ ଲଢ଼ି, ରାମ-ରାଜ୍ୟ ସ୍ଥାପନ କରିଥିଲେ ରାଜା-ରାମଚନ୍ଦ୍ର ଆପଣା କର୍ମ-ବଳରେ ।—ସେହି କର୍ମ-ବଳକୁ ଅସ୍ତ୍ର-ବଳ ମଣି, ରାଜା-ହରିଶ୍ଚନ୍ଦ୍ର ସଦେହେ ସ୍ୱର୍ଗାରୋହଣ କରିଥିଲେ ଆପଣା ପ୍ରଜାପାଟଙ୍କ ପଛୁଆରରେ ଘେନି ।

ସୂର୍ଯ୍ୟମଣି—ଏହିପରି କର୍ମ-ବଳର ଅଧିକାରୀ ଯେଉଁ ସୂର୍ଯ୍ୟ-ବଂଶ, ତା'ର ବଂଶଧର ତୁହି । ତୁ କ'ଣ ସେହିପରି କର୍ମ-ବଳକୁ ଏକମାତ୍ର ବଳ ଜ୍ଞାନ କରି ତୋ'ର ସୂର୍ଯ୍ୟ-ବଂଶ'ର ଗରିମା ଅକ୍ଷୁର୍ଣ୍ଣ ରଖିବୁ ନି, ବାପ ?

କପିଳା—( ମାତୃ ଚରଣ ସ୍ପର୍ଶ କରି ) ମା, ଦୋଷ କ୍ଷମା କର । କୁହତ, କି ବ୍ୟାଧି ତୁମର ?—କି ରୋଗ ତୁମକୁ ଘାରି, ଏମିତ ଜୀର୍ଣ୍ଣ, ଶୀର୍ଣ୍ଣ, ଦୀର୍ଣ୍ଣ କରି ପକେଇଛି, ମା ?—ମୋ'ର ମନ ଆଜି ମୋତେ ଫିଟେଇ କହୁଚି, ଏ' ଶରୀର-ବ୍ୟାଧି ତୁମର ଅସଲ ବ୍ୟାଧି ନୁହେଁ,—ଅସଲ ବ୍ୟାଧି ଯାହା, ତାହା ତୁମର ମନର । ତୁମେ କେଉଁ କଥା ପେଟରେ ପୂରେଇ ରଖି, ନିଶ୍ଚେ ଏତେ ସରୁ ହୋଇଚ, ମା !—ଆହୁରି ତା' ଯେ କହିବ, ସେ କେବଳ ମୋ'ରି ସକାଶେ,—ପୁତ୍ର ସ୍ନେହରେ ଅନ୍ଧ ହୋଇ, ମା !

ସୂର୍ଯ୍ୟମଣି—( ବିକଳ ଭାବରେ ) ଅନ୍ଧହୋଇ ରହିଥିବାରେ କାଳକାଳକୁ, ବାପ !—ଗୃଲ ଗ, ବାପ, ଘର ଭିତରକୁ ଗୃଲ ଗ,—କେମିତକା ଅଲକ୍ଷଣା ଦିନଟା ଆଜି—କିଏ ଜାଣେ—ତା'ର ଅଲକ୍ଷଣା ଛାଇଟା ଆଖି ଆଗରେ ଯେମିତ ଜଳ ଜଳ ଦେଖୁଚି—ତୁ ଗୃଲ ଗ ଭିତରକୁ—ଘରର ସବୁ ଦ୍ୱାର ମୁଁ ରୁଦ୍ଧ ବନ୍ଦକରି ଦେବି—ଅନ୍ଧାର ଘନେଇ ଆସିବ—ଅନ୍ଧାର ଘରର ମାଣିକ ତୁ—ମୋର ଅନ୍ଧାର ଘରେ ଆହୁରି ଝଟକି ଜଳି ଉଠିବୁ—

କପିଳା—ମା, ମା—

ସୂର୍ଯ୍ୟମଣି—କାହିଁ ?—କାହିଁରେ ତୁ ?—( ଅଣ୍ଡାଳି ) ଏ ବାହାରର ଆଲୁଅରେ ତୋତେ କାହିଁ ପାଉନି, ବାପ—କପିଳା—କପିଳା—

କପିଳା—( କୁଣ୍ଢାଇ ପକାଇ ) ମା !—ଅତିସ୍ନେହରେ ଅନ୍ଧହୋଇ, ଆତ୍ମଘାତି ହୁଅ ନାହିଁ, ମା—ପୁତ୍ରର କଲ୍ୟାଣରେ, ମାତାର କଲ୍ୟାଣ,—ଏଇ କଥା ସିନା ଜାଣେ ମାତୃଜାତି ଏ' ସଂସାରରେ । ତୁମେ ଆଜି ସେହି ମାତୃତ୍ୱର ଉଦ୍‌ବୋଧନ ଶୁଣିବ ମୋ'ର ମୁକ୍ତସଙ୍ଗୀତରେ । ତା'ର ଉଦ୍‌ବୋଧନା ଦେଇଛ ମୋତେ । କେଉଁ ଅଜ୍ଞାନ-ତିମିରରେ ଅନ୍ଧ ହୋଇ, ବର୍ତ୍ତମାନ ମୋତେ ସେହି ଆଲୋକରୁ ବଞ୍ଚିତ କର ନାହିଁ, ମାତା ? କୁହ ତୁମର ବ୍ୟାଧି-କଥା ।

ସୂର୍ଯ୍ୟମଣି—କେବଳ, କେବେ ଶୁଣ୍,—ବ୍ୟାଧି ମୋ'ର—ତୋ'ର ପିତୃ-ଋଣ ?—

କପିଳା—ପିତୃ-ଋଣ ?—

ସୂର୍ଯ୍ୟମଣି—ହଁ, ବହୁତ ଦିନ ତଳର କଥା । ତୁ ବଢ଼ୁଥିଲୁ ସେତେବେଳେ । ଯେଉଁ ଦେଶରେ ଜନ୍ମ ତୋ'ର ସେଠାରେ ଅକାଳ ପଡ଼ିଲା । ତୋ'ର ପିତା ଏମେ ସର୍ବସ୍ୱାନ୍ତ ହେଲେ,—ଶେଷକୁ ଋଣ କଲେ । ଋଣମାନ ବଢ଼ି ଗୁଲା—ସାହୁକାରର ତାଗାଦା ମାଡ଼ା ଗୁଡ଼ିକ—ଦାଉ ସହି ନପାରି,—

କପିଳା—ଦେଶ ଛାଡ଼ିଲେ ?—

ସୂର୍ଯ୍ୟମଣି—ସୂର୍ଯ୍ୟ-ବଂଶାଭିମାନୀ ପିତା ତୋ'ର ମାନ ତଳେ ପକାଇବେ ନାହିଁ, ଅଥଚ ଋଣ ପରିଶୋଧ କରିବେ,—ସେଇ କଥାକୁ—

କପିଳା—ଅଭିଯାନରେ ବାହାରିଲେ ପରା ?

ସୂର୍ଯ୍ୟମଣି—ହଁ, 'ଅଭିଯାନ'—'ଅଭିଯାନ'ହିଁ କହିବ । ଆମେ ବୋଧ ହୁଏ ତାଙ୍କର ସେହି 'ଅଭିଯାନ'ର ଜୟ-ଯାତ୍ରା-ପଥରେ ଗୋଡ଼ର ସାଙ୍କୋଳି ହେଲୁ ବୋଲି, ଏହି ଜଙ୍ଗଲ-ରାଜ୍ୟରେ ଗୋଡ଼ ଦେଉଥିଲୁ, ନ ଦେଉଣୁ—ଦିନେ, ମାୟା-ବନ୍ଧ କାଟି ଦେଇ, ପିଲା କୁଟୁମ୍ବକୁ କନ୍ଦାଇ, ଭସାଇ ଦେଇ, ଅଗ୍ରଗାମୀ ଦିବାକରଙ୍କ ଦିବ୍ୟ ରଥରେ ଚଢ଼ି ଦିଗନ୍ତ ସେପାରି କେଉଁ ମହାପଥରେ ଅଦୃଶ୍ୟ ହୋଇଗଲେ ସିନା !

କପିଳା—ତା' ନୁହେଁ, ମା—ଏହି ଜଙ୍ଗଲ-ରାଜ୍ୟହିଁ ଥିଲା ପିତାଙ୍କର ଅଭିଯାନର ଶେଷ ଲକ୍ଷ୍ୟ । ଲକ୍ଷ୍ୟ ସ୍ଥଳରେ ଆମକୁ ପହଞ୍ଚାଇ ଦେଇ, ମୋତେ ସେହି ରାଜ୍ୟର ରାଜ-ଉତ୍ତରାଧିକାରୀ କରି, ପିତୃ-କର୍ତ୍ତବ୍ୟ ପିତା ଶେଷ କରିଛନ୍ତି । ସେହି ସୂତ୍ରରେ ପିତୃ-ଋଣ ପରିଶୋଧ କରିବ, ତା'ରସ୍ପଷ୍ଟ ଆଭାସ ଦେବାକୁ ବଂଶ-ଦେବତା ଆଜି ସ୍ୱର୍ଗୀୟ ପିତାଙ୍କରଆଶୀର୍ବାଦ ବାର୍ତ୍ତା ବହନ କରି ଆଣିଥିଲେ ପରା ।

ସୂର୍ଯ୍ୟମଣି—ସ୍ୱପ୍ନ—ସ୍ୱପ୍ନ—

କପିଳା—ହେଲେ, ମୋ'ର ଜନନୀର ସ୍ୱପ୍ନ !—

ସୂର୍ଯ୍ୟମଣି—ବାବା—

କପିଳା—ବାଧାଦିଅ ନାହିଁ, ମା—ମୋତେ କର୍ମ-ରଥରେ ଚଢ଼ାଇଦିଅ, କର୍ମ-ପଥରେ ଆଗେଇ ଦିଅ,—ମାତୃ-ସ୍ୱପ୍ନ ସଫଳ ହେବ, ପିତୃଋଣ ପରିଶୋଧ ହେବ ।

ସୂର୍ଯ୍ୟମଣି—ହେଲେ ତୁ ଆଉ ଟିକିଏ ବଡ଼ ହ', ବାପ—କର୍ମକୁ ଯୋଗ୍ୟ ହ', ବାପ—

କପିଳା—ହାଃ-ହାଃ— (ହସିବାକୁ ଲାଗିଲା)

ସୂର୍ଯ୍ୟମଣି—କପିଳା—

କପିଳା—ପୁଅ ବୁଢ଼ା ହୋଇ ମରିବାକୁ ବସିଲେ ବି, ମା'ଆଖିରେ କଅଁଳିଆ ଛୁଆଟି;—ନୁହେଁକି, ମା ?

ସୂର୍ଯ୍ୟମଣି—କପିଳା— !

କପିଳା—ମା, ତୁମେ ବୀର-ଜନନୀ !—ମୋ' ଠଁ ବୟସରେ ସାନ ଧ୍ରୁବ, ପ୍ରହ୍ଲାଦ, ସେମାନେ ଘୋର ତପସ୍ୟା କରି ବୈକୁଣ୍ଠରୁ ସ୍ୱୟଂ ନାରାୟଣଙ୍କୁ ଓଟାରି ଟାଣି ଆଣିଥିଲେ ଏ'ଧରାବକ୍ଷକୁ; ମୋ'ରି ବୟସର ଅଭିମନ୍ୟୁ—ସେ ବି ଏକାକୀ ଲଢ଼ି ଦ୍ରୋଣ, କର୍ଣ୍ଣ ପ୍ରଭୃତି ସପ୍ତରଥୀଙ୍କୁ ବିବ୍ରତ କରି ପକାଇଥିଲେ; ସେଦିନ କୋଣାର୍କ-ଦେଉଳ-ତୋଳା କଥା କହୁ, କହୁ, ତୁମେଇତ ବୁକୁଫୁଲାଇ କହୁଥିଲ ମୋତେ—'ମା ହେବତ, ଧର୍ମାପଦ ପୁଅର ମା ହେବ !'—

ସୂର୍ଯ୍ୟମଣି—ବା—ବା—

କପିଳା—ଅସ୍ଥିର ହୁଅନାହିଁ, ମା—କୁହ, ନିଃସଙ୍କୋଚରେ, ପିତାଙ୍କର ଋଣ କେତେ ?—ଆଉ, ସେ ସାହୁକାର କିଏ ?

[ ଠିକ୍ ସେହି ସମୟରେ ଶ୍ରୀଧର ଶର୍ମା ପ୍ରବେଶ କଲେ । କାଖରେ ତାଳପତ୍ର ବିଡ଼ା । ଚନ୍ଦ୍ରମୁଣ୍ଡା । ଗାଲରେ ଚମ ଧୁଡ଼ୁକା । ଆଖିରେ ଲେଞ୍ଜିରି ବୋହି ପଡ଼ୁଚି । ]

ଶ୍ରୀଧର—ସାହୁକାର ?—ଶ୍ରୀଧର ଶର୍ମା । ଆଉ, ଋଣ କେତେ ?—( ତାଳପତ୍ର ବିଡ଼ା ଲେଉଟାଇ ଲେଉଟାଇ ଦେଖିବାକୁ ଲାଗିଲେ )

[ ଏହି ସମୟରେ ଗଧିଆବାଘ ପରି 'ଗଧିଆ' ପ୍ରବେଶ କଲା । ମଥାରେ ବୋଝେ ବାଳ । ଉକୁଣୀ ଝୁଣ୍ଡାପଡୁଛି । ସେ ପାଚିଲା ପିଜୁଳିଟାଏ ଚୋବାଉ-ଥାଏ, ଯେତେ ଖାଉ ନ ଥାଏ, ସେତେ ସେ ନଷ୍ଟ କରୁଥାଏ । ]

ଗଧିଆ—ବଡ଼ା ଖୋଲିବ, ତେବେ ଯା ଋଣ କେତେ କହିବ—ହେଃ

ନଧିଗ୍ରାମ—ଗଧିଆ !—

ଗଧିଆ—ଆଃ, ବଡ଼ା ତୁମର ବାଘ ଥୋଇ ଦାଉଡ଼ ନଧିଆ-ଭେଣେଇ—ମୁହେଁ ମୁହେଁ ତ ହସାବ !—ତୁମେ ଖୁଡ଼ୀ, ମା ପୁଅ ଦୁହେଁ,—ଏ' ତୁମ ଦୁହିଙ୍କ ମଥା ଏକାଠି କଲେ, ସେଥିରେ ଉକୁଣୀ ଯେତେ, ତୁମର ଋଣ ସେତକି—( ନିଜ ମଥାରୁ ଉକୁଣୀ ବାହାର କରି ମାରିବାକୁ ଲାଗିଲା । )

ନଧିଗ୍ରାମ—ଗଧିଆ—

ଗଧିଆ—ତୁମର ଉକୁଣୀ ମାରିବ ? ରହ ମୁଣ୍ଡରୁ—

ନଧିଗ୍ରାମ—ବାହାରୁଚୁ ନା ଏଠୁଁ—ଯେଉଁଠିକି ଗଲୁ,—

ଗଧିଆ—ଟିକିପରି ଲାଗିଥିବ—ଅପାର ହୁକୁମ୍, ହାଁ—( ଉକୁଣୀମାରି ହୁକୁମର ଜୋର ଜଣାଇ ଦେଲା )

ନଧିଗ୍ରାମ—ପୁଣି ?—ହାଁ, ଟିକିଏ ସଭାର କରତ, ମା—ଋଣ କେତେ, ଗୋଜା ଦେଖି, କଡ଼ାକାନ୍ତିରେ କହି ଦେଉଚି ।

ସୂର୍ଯ୍ୟମଣି—ଦେଖିବାକୁ ଆଉ ହ'ବ ନାହିଁ, ଗୋସେଇଁ —ପିଲାଟି ଠିକ୍ କହୁଚି—ଆମର ଋଣ ଅକଳନ୍ତି । ତେବେ,—

ନଧିଗ୍ରାମ—ମୁଁ ଯେ ତୁମର ସାଉକାର, ସ୍ମାର ରହିଛି, ଏଇଥି ତ ? ( ଗୋଜା ଖୋଜୁଥାଏ )

ସୂର୍ଯ୍ୟମଣି—( ନୀରବ ରହିଲା )

ଗଧିଆ—ତୁମର କେମିତକା ଅକଲ୍ଟି, ଭେଣେଇ ? ଏଇ ଅକଲ୍ ଘେନି ସାଉକାରି କରୁଛ ତ ?

ନଧିଗ୍ରାମ—ତୋ ଗୋଡ଼ତଳେ ପଡ଼ୁଚି, ଗଧିଆ—ତୁ ହକ୍ କରନା; ଏଇଠି ଦିନ ସରିବ, ନା ଆଉ ଭାଗାହା ଅଛି ? ( ବଡ଼ା ଓଲଟାଉ ଥାଏ )

ଗଧିଆ—ତୁମେ ଯେମିତି ଖଞ୍ଜ ଲଗେଇଲଣି, ଭେଣେଇ ସେଥିରେ ତ ଦିନ ପୁରିବ । ଖାତକମାନେ ଋଣ ନେଲାବେଳକୁ ମହାଜନଙ୍କୁ ଚାହିଁଥାନ୍ତି ବେଶ୍, ଦେଲାବେଳକୁ ଚାହିଁ ପାରନ୍ତି ନାହିଁ ଅଦୌ ।

ସୂର୍ଯ୍ୟମଣି—ଦେଖ, ବାବା, ଯେଉଁମାନେ ଏ'କଥା କରିଥାନ୍ତି, ସେମାନଙ୍କର ମତଲବ୍ ଥାଏ ଦୋସରା ।

ନଧିଗ୍ରାମ—ହାଁ, ମା 'ଠକିବା' ସେମାନଙ୍କର ମତଲବ୍ । ଆଉ, ତୁମେତ ହେଲ ସୂର୍ଯ୍ୟବଂଶୀ ଘରର ବୋହୂ—

ଗଧିଆ—ସୁତରାଂ, ତୁମର ସୂର୍ଯ୍ୟବଂଶୀ ସ୍ୱାମୀଙ୍କର 'ବଚନ'ହିଁ ହେଲା ସାର 'ଗୋଜା' ।

ନଧିଗ୍ରାମ—ଗଧିଆ !

ଗଧିଆ—ଦେଖ, ଭେଣେଇ—ଏ' କାହିଁ ଭଲ କଥା ନୁହେଁ !—ତୁମ୍ଭେ ସଦାବେଳେ 'ଗଧିଆ, ଗଧିଆ' ବୋଲି ଡାକି, ଘରକଥା ପଦାରେ ପକେଇବ ନାହିଁ । ମୁଁ ଅଇଛି କା 'ସାଉକାରଙ୍କ' ଶଳା ମାମଲତକାର—ମାନକୁ ଜଗି କଥା କହିବ । 'ଅଧମାନ୍ନ' କଥା ପଡ଼ୁଚି—ହାଁ !

କପିଳା—'ଅଧମାନ୍ନ' !—ଓଃ—ମା !—

ସୂର୍ଯ୍ୟମଣି—ସାଉକାର ଗୋସେଇଁ !—ତୁମେ ନିଶ୍ଚୟ ମୋ'ର ସ୍ୱାମୀଙ୍କର ପରମ ବନ୍ଧୁ, ଏ'କଥା ମୋ'ର ମନ କହୁଚି । ଦେଟୁରନ୍ତ ମୋ'ର ହାଲ୍ କାହିଁରେ କ'ଣ—ଯଦି ତୁମେ ମୋ'ର ସ୍ୱାମୀଙ୍କର ପରାମର୍ଶ ଘେନି ହେଉ, କି, ତୁମେ ନିଜେ ପରାମର୍ଶ ବାଢ଼ି, ହେଉ—ସାଉକାରଙ୍କ ଦାଉରୁ ମୋତେ ବଞ୍ଚେଇବାର ଅଭିପ୍ରାୟ କରିଥାଅ, ତେବେ ସ୍ୱାମୀଙ୍କ ଋଣ ମୁଁ ସୁଝିବି କିପରି, ସେଇଉପାୟ ବତେଇ ଦେଇ, ମୋତେ ଋଣ ମୁକ୍ତ କରି, ଅନୁଗ୍ରହ କର ।

ଗଧିଆ—ଅନୁଗ୍ରହ ?—ଦେଖ, ଭେଣେଇ—ଏ' କାରବାର-କଥା, ଦାନଖଇରାତ କଥା ନୁହଁ । ୧୫ ବର୍ଷକାଳ ସଭାର କରଛ । କଣାକଉଡ଼ିଟିଏ ବି ଅସୁଲ୍ ପଡ଼ି ନାହିଁ । ବର୍ତ୍ତମାନ ସୁଧ-ଅସଲ

ଭରଣୀକୁ ଦାମୁଣ୍ଡିଏ ଏପାଖ ସେପାଖ କରୁଛ ତ, ଘରେ ହୁଙ୍କୁଳେଇ ଲାଗିଯିବ, ହାଁ—

ନିଧିରାମ—ଗଧିଆ—

ଗଧିଆ—ସେ ଅଖି ଆଉ କା'କୁ ଦେଖେଇବ, ମୋତେ ନୁହେଁ—ଏବେ ଅପା ତୁମର ତୃତୀୟପକ୍ଷ,—ଦ୍ୱିତୀୟେ ମୁଁ ତା'ର ଖେଳବସରିଆ ଭାଇଟିଏ, ମିଆଁଲ ରଖିଥିବ । ସୁତରାଂ, ମୋର ପଦେ କଥାରେ, ରଞ୍ଜିକରେ ନିଆଁ ଲାଗିଲାଭଳି, ଅପା ନିଜେନିଜି ହେବାକୁ ବେଶୀବେଳ ଲାଗିବ ନାହିଁଟି ।

ନିଧିରାମ—ଗଧିଆ !—

ଗଧିଆ—ଫେଣ୍—ହଉ, ବେଶ୍—ନାଏ 'ଗଧିଆ', ନାଏ 'ବାଘ', ଦୁନିଆ ଅଜ ଦେଖୁ !—ଦେଖ, ଖାତ-କାଣୀ । ତୁମେ ଶରବ୍ରୀତ ଗୁହତ,ଦଣ୍ଡାବାଟ ପଡ଼ିଛି, ସିଧା ସିଧା ସେହି ବାଟେ ଆମ ଘରକୁ ଚାଲିଯିବ, ଝୁଣ୍ଟୁଣିମୁଠା ଧରି ମୋ' ଅପା ଧାଇଁ ଆସିବ ସତ, ହେଲେ ଡରିବ ନି, ପେଟପୂରେଇ ଖାଇବାକୁ ଦ'ବ, ହାଁ; ଆଉ ନିଜର ଖାନଦାନକୁ ଜଗି, ଋଣ ପରିଶୋଧ କରିବ ତ, ସ୍ଥିର ଚିତ୍ତରେ, ଧୀର ମସ୍ତରେ ତୁମର ଧନ ସମ୍ପଦ ଯା'ଅଛି, ଦାଖଲ କରିଦିଅ ଏଇଲାଗେ, ଏଇକ୍ଷଣି ।

ସୂର୍ଯ୍ୟମଣି—ମୋ'ର ଧନ ସମ୍ପଦ ?—

ଗଧିଆ—ହଁ ତୁମରି । ଦେଖ, ଯାଏଁ ଯାଏଁ କାଢ଼ି ନ ଦେଲେ, ମିଛେ ମିଛେ ଅପଦସ୍ଥ ହେବ ସିନା—ଏ' ମୋ'ର ଭେଣେଇ, ମୁହଁରେ କଅଁଳକୁହା, ପେଟରେ ପେଟରେ ଚୁରି ଦଅଟି—ଆସିଛୁ ଯେତେବେଳେ, ସେତେବେଳେ ଟିକେ ଭଲ ରକ୍ତ ନ ଶୋଷି ଯାଉନୁ ।

ନିଧିରାମ—ଗଧିଆ !—ତୁମେ ଏ' ଚଣ୍ଡାଳଟାର କଥା ଶୁଣିବ ନି' ମା !—

ସୂର୍ଯ୍ୟମଣି—ହେଉଲ, ମୋ'ର କି ସମ୍ପଦ ଅଛି, କାଢି ଦେବି, ବ୍ରାହ୍ମଣ ?

ଗଧିଆ—କହୁ ଦେଉନ ସଫା ସଫା, ଭେଣେଇ !—ପାଞ୍ଚିର କଥା ପେଟରେ ପୂରେଇ, ସଦାବେଳେ ଯେଉଁ କପ୍ରାପତ୍ତି ଉଦଖେଳ ହୋଉଥାଅ, ସେଥିକେ ଲୋକଙ୍କ ଖାଲି ସନ୍ତାଇ, ଦହଗଞ୍ଜ କରୁଥାଅ ସିନା !—ଶୁଣ, ମୁଁ କହୁ ଦେଉଚି ତୁମର ସମ୍ପଦ ଖବର । ତୁମେ ହେଲ ସୂର୍ଯ୍ୟ-ବଂଶୀ !—ରାଜା ଦଶରଥଙ୍କର ଯେମିତି ସମ୍ପଦ ଥଲେ, ରାମଚନ୍ଦ୍ର—ରାଜା ହରିଶ୍ଚନ୍ଦ୍ରଙ୍କର ଯେମିତି ଥିଲେ, ବୋହୂଡାଏ—ତୁମର ସ୍ୱାମୀର ମଧ୍ୟ ସେମିତ,—

କପିଳା—'କପିଳା' !—

ସୂର୍ଯ୍ୟମଣି—ବାବା—ବାବା—

କପିଳା—ଜୁହ, ସାଉକାରେ । ମୁଁ ଯଦି ଆପଣଙ୍କର ଦାସତ୍ୱ ସ୍ୱୀକାର କରେଁ, ତେବେ ମୋ'ର ପିତା ଋଣ-ମୁକ୍ତ ହେବ ତ ?—

ନିଧିରାମ—ହେବେ ।

କପିଳା—ମା—

ସୂର୍ଯ୍ୟମଣି—( କୁଣ୍ଢାଇ ପକେଇ )—ବାବା—ବାବା—ବ୍ରାହ୍ମଣ, ଏଇ ସମ୍ପତ୍ତିକୁ କ'ଣ ଲୋଭେଇ, ତୁମେ ଋଣ ଦାନ କରିଥିଲ ?

ନିଧିରାମ—ଅଶ୍ରୁର, ଋଣ ଅନାଦାୟକୁ ଏଇ ବନ୍ଧକୀ ସମ୍ପତ୍ତିରୁ ତାହା ସମ୍ପୂର୍ଣ୍ଣ ଅଦାୟ ପାଇବି, ଏଇ କଥା ସଫା କହି ଯାଇଥିଲେ ତୁମର ସ୍ୱାମୀ ।

ଗଧିଆ—ସେଇଥି ପାଇଁତ ତୁମର ଆଉ ଯେତେ ଯିଏ ସା'ଉ-ମହାଜନ ଥିଲେ, ସମସ୍ତଙ୍କ ଫଳେ ପ୍ରତ୍ୟେ ବୋଧବାଧ କରିଦେଇ, ନିଶ୍ଚିନ୍ତରେ ଏକୁଟିଆ ତୁମର ମହାଯମ ହୋଇ ଟାକ ବସିଥିଲେ ମୋର ଏହି ସାଉକାର-ଭେଣେଇଟି ।

ନିଧିରାମ—ଗଧିଆ !—

ଗଧିଆ—ଜୁହ, ମୁଁ କଣ୍ଡ ମିଛ କହୁଚି ? ତା'ପର, ଦେଣାଦାର, ଆଉ ସାଉକାର—ପେଟ ସଫା-ରଖିବା ନିଜ ନିଜ ଭିତରେ ଦରକାର । ମା ! ସାଉକାର ସତାର କରିଥିଲେ, ତା'ର କାରଣ ତ ତୁମେ ସମୁଳ ପାରୁଥିବ ଦେଣଦାର ହୋଇ, ମୁଁ ଆଉ ବେଶୀ କ'ଣ କହିବି ?—ଯା ହେଉ, ଭେଟଣେଇ—ତୁମର ଭାଗ୍ୟ କପାଳ ତେଜ ଯେ, ସମ୍ପତ୍ତି ବରବାଦ୍ ହୋଇ ଯାଇନି,—ଦନ୍ତ ଦନ୍ତ କଡ଼ି ପୁଣ୍ଡି ଫୋଳ ଲଜାକୁ ଝପିଛ । ଦେଖ

ଜଗିବାକୁ ମଜ୍‌ବୁତିଆ ଗାମୁଛ ଖୋଜୁଥିଲୁ, ଲମ୍ବେଇଲ୍ ଠେଙ୍ଗାଟିଏ ମିଳିଲା ।

କପିଳା—ବିଦାୟ, ଜନନୀ !

ସୂର୍ଯ୍ୟମଣି—ବାବା—

[ ଧୀରେ ଧୀରେ କପିଳା ବିଦାୟ ନେଲା ]

ଗଧିଆ—ହଁ, ଫୁର୍ତ୍ତି, ଫୁର୍ତ୍ତି ଆ, ଠେଙ୍ଗା—ଆଃ, ଭେଣେଇ, ତୁମେ କେମିତିକା ମଣିଷ ହେ ?—ଗୃଜରଅ ଥାଉ ଥାଉ, ସେ ପେଥି-ବାଡ଼ାଟା କାହିଁ କାଖରେ ଯାକିଛ ତ ? ଗୃଜର ମୁଣ୍ଡରେ ଥୁଅ—ନେ, ଧ,' ଠେଙ୍ଗା—

କପିଳା—( ଧରୁ ଧରୁ ଖସିପଡ଼ିଲା )

ଗଧିଆ—କରେ, ହାତ ତୋ'ର ଛୁଟି ପଡ଼ିଛି କରେ ?

କପିଳା—( ଧରିଲା )

ଗଧିଆ—ମଥାରେ ଥୋ'—

କପିଳା—( ରଖିଲା ବେଳେ, ପୁଣି ତାହା ଖସି ତଳେ ପଡ଼ିଗଲା )

ଗଧିଆ—ଆଃ, ମୁଣ୍ଡେଇ ବି ଜାଣୁ ନା ?—ଦେବି ଯେ ଜାବୁଡ଼ାଏ କସି—ନେ,' ଏମିତି କରି ଥୋ' ( ମଥାରେ ବାଡ଼ାଟା କସ୍ତୁଡ଼ି, ଥୋଇଦେଲା )—ମୁଠା କସିକରି ଧରି ହାତପାପୁଲିରେ ।

ସୂର୍ଯ୍ୟମଣି—ବ୍ରାହ୍ମଣ—

ନାଥୁରାମ—ଗଧିଆ—

ଗଧିଆ—ଦବଦ ଦେଖେଇବ ପଛେ ସେମିତି—ଆସତ, କାହିଁରେ କ'ଣ ତାଗାଦା ଡେଣେ ପଡ଼ି ରହିଛି—ଅ'ରେ, ଠେଙ୍ଗା ଖପ୍ ଖପ୍ ଗୋଡ଼ ପକେଇ । ( ନାଥୁକୁ ଭିଡ଼ନେଇ ଗଧିଆ ଚାଲିଗଲା 'ଗଧିଆ'ର ଖପ୍‌ଖପ୍ ଚାଲିରେ )

କପିଳା—( ଅନୁଗମନ କରିବାକୁ ଲାଗିଲା )

ସୂର୍ଯ୍ୟମଣି—ବାବା—( ପାଖକୁ ଧାଇଁଆସି ଅଧମାଳ ହୋଇ ପଡ଼ିଲା )

କପିଳା—ଛି, ମା, ତୁମେ କାନ୍ଦୁଛ ? ଅନୁକୂଳ ବେଳେ ବାଧା ଦେଉଛ ? ତୁମେ ପରା ସ୍ୱପ୍ନ ଦେଖିଛ,—ମୁଁ ରାଜ୍ୟ-ଭାର ମୁଣ୍ଡେଇବି;—ଏ' ତା'ର ସୂଚନା, ତା'ର ଆୟୋଜନ, ମା—

---

[ ବର୍ଷକ ଉତ୍ତାରେ ]

—ଦୁଇ—

—ଉତ୍କଳରାଜା ଭାନୁଦେବଙ୍କର କକ୍ଷ—

[ ପାତ୍ର—'ବାହିନୀପତି' ଓ ସେନାପତି—'କୋଦମା ସିଂ' ନିମ୍ନସ୍ୱରରେ ଗପସପ କରୁ, କରୁ ପ୍ରବେଶ କଲେ । ]

ବାହିନୀପତି—ଦେଖ, ଏ' ରାଜ-କକ୍ଷ । ବେଶ୍ କାଇଦା! କଟକଣାରେ ଠିଆ ହେବ,—କାଇଦା କଟକଣାରେ କଥା କହିବ ।

କୋଦମା ସିଂ—ପରୀକ୍ଷା ନାଆ ତୁମର ଯଥା-ତାଲିମ ଆଉ ଶିକ୍ଷାର ।

ବାହିନୀପତି—( ଉଚ୍ଚସ୍ୱରେ ) ଆୟୋଜନ ସମ୍ପୂର୍ଣ୍ଣ ତ, ସେନାପତି ?

କୋଦମା ସିଂ—ସମ୍ପୂର୍ଣ୍ଣ, ପାତ୍ର ସାଆନ୍ତେ ।

[ ଠିକ୍ ସେହି ସମୟରେ ଭାନୁଦେବ ପ୍ରବେଶ କଲେ । ବେଶଭୂଷାରେ ଆଡ଼ମ୍ବର ନ ଥିଲା । ରାଜମୁକୁଟ ଧାରଣ କରି ନ ଥିଲେ । ହାତରେ ଥିଲା ମାଦଳାପାଞ୍ଜି, ତାହା ପଢ଼ୁ ପଢ଼ୁ ଆସୁଥିଲେ । ତାଙ୍କର ଢଙ୍ଗ ଢାଙ୍ଗ ଅଧା-ପାଗଳ ପରି । ହେଲେ, ଅସଂଲଗ୍ନ କଥା ଭାଷାରେ ସଂଲଗ୍ନ ଭାବର ବ୍ୟଞ୍ଜନା ଫୁଟିଉଠୁଥିଲା ]

ଭାନୁଦେବ—'ସମ୍ପୂର୍ଣ୍ଣ' ? କିଏ କହିଲା ? ମୋ' ପିତା-'ମତ୍ତଭାନୁ' । ଏହି ମତ୍ତଭାନୁଙ୍କର ରାଜୁତି ଶେଷଯାଏ, ଉଭୟ କେଶରୀ ଓ ଗଙ୍ଗ ବଂଶର ଆନୁକ୍ରମିକ ଇତିହାସ ଯେଉଁ ପାଞ୍ଜିରେ ଲିପିବଦ୍ଧ, ସେହି 'ମାଦଳା ପାଞ୍ଜି' ତ ମୋ'ର ହାତରେ ।

ତୁମେ ଅଧ୍ୟାୟ ଅଧ୍ୟାୟ, ପରିଚ୍ଛେଦ ପରିଚ୍ଛେଦ, ପୃଷ୍ଠା ପୃଷ୍ଠା ଲେଉଟାଇ ଦେଖ, କେଉଁ ରାଜାର ଇତି-ବୃତ୍ତ ଯଦି 'ସମ୍ପୂର୍ଣ୍ଣ' ଏଥିରୁ ମିଳିବ ?—

ବାହିନୀପତି—ଆଜ୍ଞା,—

ଭାନୁଦେବ—ତର୍କ କରିବ ପଛେ, ଆଗେ ଶୁଣିସାର ।—ଆହେ, 'ରାଜା' କହିଲେ ଯେ, ମୋ'ର ପରି ଜଣେ ବ୍ୟକ୍ତି ବିଶେଷକୁ କେବଳ ବୁଝାଇବ, ତା' ନୁହେଁ । ରାଜାର ପରିଚୟ ସଙ୍ଗେ ସଙ୍ଗେ, ରାଜ୍ୟର ପରିଚୟ ଏଥିରୁ ମିଳିବା ବାଞ୍ଛନୀୟ; ତା' ନ ହେଲେ, ଏ' ପାଞ୍ଜିକୁ 'ସମ୍ପୂର୍ଣ୍ଣ' କହିବ କେମିତି ? ସୁତରାଂ, 'ସମ୍ପୂର୍ଣ୍ଣ'—ଏ' ପଦକୁ କେଉଁ ଯୁକ୍ତି ବଳରେ ତୁମେ ଉଚ୍ଚାରଣ କଲ ଯେ ?—

ବାହିନୀପତି—ଆଜ୍ଞା,···

ଭାନୁଦେବ—କୁହ, କୁହ, ସଂକୋଚ କାହିଁକି ?··· ଅଭୟ ଦେଉଛି, ନିର୍ଭୟରେ କୁହ ।

ବାହିନୀପତି—ଆଜ୍ଞା,—ଆମ ଭିତରେ ପାଞ୍ଜି-କଥା ତ ପଡ଼ି ନ ଥିଲା ?—

ଭାନୁଦେବ—ଆଉ ?

ବାହିନୀପତି—ଆଜି ପ୍ରଭୁଙ୍କର ସ୍ୱ-ନକ୍ଷତ୍ର-ଦିବସ,—ସେହି ଉପଲକ୍ଷରେ ଯେଉଁ ଉତ୍ସବ ହେବ,—

ଭାନୁଦେବ—ତା'ର ଆୟୋଜନ 'ସମ୍ପୂର୍ଣ୍ଣ' ? (ଉଚ୍ଚହାସ୍ୟାନନ୍ତର) ଏହି କଥା ପ୍ରଭୁଙ୍କରେ ଜଣା କରେଇବ, ସେଇଥିପାଇଁ 'ପ୍ରଭୁ'ଙ୍କ ସାକ୍ଷାତକୁ ଆଗମନ ?

ବାହିନୀପତି—ମହିମା !—

ଭାନୁଦେବ—ବେଶ୍, ଆୟୋଜନ ତ ସମ୍ପୂର୍ଣ୍ଣ, ମାତ୍ର 'ଉତ୍ସବ' ହେବ କି ନା ଆଦୌ, ଏ' ବିଷୟରେ 'ମହିମା'ଙ୍କର ମତ ଲୋଡ଼ି, ମହିମାଙ୍କ ପ୍ରଭୁ-ଚିଠାଉ ଗ୍ରହଣ କରିଥିଲ ତ ?

ବାହିନୀପତି ଓ କୋଦମା ସିଂ—(ପରସ୍ପର ପ୍ରତି ଚକାଚକି ହେଲେ)

ଭାନୁଦେବ—ଦିଅ, କଇଫିଅତ୍ ଦିଅ । ନାହିଁତ, 'ଚେଉଟ, ଯେଉଁ ବାଟେ ଆସିଥିଲ, ସେହିବାଟେ ଲେଉଟ' ।—ଯାଅ

ବାହିନୀପତି ଓ କୋଦମା ସିଂ—(ଯଥା ସମ୍ମାନ ପ୍ରଦର୍ଶନ ପୂର୍ବକ ଗୁଲିଯାଉଥିଲେ)

ଭାନୁଦେବ—ଠିଆ ହୁଅତ । ରାଜାମାନେ ବଂଶପରମ୍ପରା ଏ' ଉତ୍ସବ ପାଳିଥା'ନ୍ତି—ଏ'କଥା ଏ' ପାଞ୍ଜିରେ ଉଲ୍ଲେଖ ଅଛି, ନା ? (ପାଞ୍ଜି ଓଲ୍ଟାଇବାକୁ ଲାଗିଲେ)

ବାହିନୀପତି—(ଡରି ଡରି କହିଲା) ପ୍ରଜାମାନେ ପୁରୁଷ ପରମ୍ପରା ଏ' ଉତ୍ସବକୁ ରାଜ୍ୟର ଉତ୍ସବ ମଣି, ଘରେ ଘରେ ପାଳିଥା'ନ୍ତି, ଏ'କଥା ଚଳିଆସୁଛି, ମହିମା ।

ଭାନୁଦେବ—କ'ଣ କ'ଣ, କହିଲ ତୁମେ, ବାହିନୀପତି ?—ଆଉ ଥରେ କୁହତ ?—'ଘରେ ଘରେ ପାଳିଥା'ନ୍ତି' । 'ରାଜ୍ୟର ଉତ୍ସବ ମଣି' ।

ବାହିନୀପତି—ମହିମା ।

ଭାନୁଦେବ—ରାଜାର ଏହି ସ୍ୱ-ନକ୍ଷତ୍ର ଉତ୍ସବ ?

ବାହିନୀପତି—ପ୍ରଜାର ଯେମିତି ସ୍ୱକୀୟ-ଉତ୍ସବ, ଠିକ୍ ଏହିପରି ମଣି, ପ୍ରଭୁ ।

ଭାନୁଦେବ—ତେବେତ 'ରାଜା' କହିଲେ, ତା'ର 'ରାଜ୍ୟ'କୁବି ବୁଝିବ ସେହି ସଙ୍ଗେ ।—ମାଦଳା-ପାଞ୍ଜି ସ୍ୱୟଂସମ୍ପୂର୍ଣ୍ଣ କହିବାକୁ ହେବ ।

ବାହିନୀପତି—'ରାଜା' ଆଉ 'ରାଜ୍ୟ' ଅଭିନ୍ନ, ମହିମା ।

ଭାନୁଦେବ—ତୁମର, ତୁମର ମତ, ସେନାପତି ?

ବାହିନୀପତି—ମୋ'ର ମଧ୍ୟ ସେହି ମତ, ମହିମା ।

ଭାନୁଦେବ—'ସ୍ୱର୍ଣ୍ଣିର ସାକ୍ଷୀ ମାତାଳ' ।—ହାଃ-ହାଃ-ହାଃ—

ବାହିନୀପତି—(ସଭୟେ କମ୍ପି ଉଠିଲା)

ଭାନୁଦେବ—ଭୟନାହିଁ—ମୁଁ ତୁମ ଉପରେ ଭାରି ସନ୍ତୁଷ୍ଟ, ବାହିନୀପତି ।

ବାହିନୀପତି—ପ୍ରଭୁ, ମହିମା ।

ଭାନୁଦେବ—ଆଜି ମୋ'ର ସ୍ୱ-ନକ୍ଷତ୍ର-ଦିବସ, ନା ?

ବାହିନୀପତି—ମହିମା ।

ଭାନୁଦେବ—ଏହି ଦିବସରେ ରାଜାମାନେ ଯାହାପ୍ରତି ସନ୍ତୁଷ୍ଟ ହୋଇଥା'ନ୍ତି, ତାହାକୁ ଉପାଧି-ଭୂଷିତ କରିଥା'ନ୍ତି, କେମିତି ?

ବାହିନୀପତି—( ନୀରବ )

ଭାନୁଦେବ—ମୁଁ ସେହି ପ୍ରଥା ମାନି, ତୁମକୁ ଗୋଟିଏ ଉପାଧି ଦେବି ?

ବାହିନୀପତି—( ଯଥା ସମ୍ମାନ ଜଣାଇଲା )

ଭାନୁଦେବ—ତୁମର ପିତାମହଙ୍କର କି ନାମ ଥିଲା ?

ବାହିନୀପତି—ଶିଖରେଶ୍ୱର ବାହିନୀପତି ।

ଭାନୁଦେବ—ଉଁ ହୁଁ—ପାଞ୍ଜିର ଏହି ପୃଷ୍ଠାଟି ପଢ଼ି, ଦେଖିତ ।

ବାହିନୀପତି—( ସାଗ୍ରହେ ପଢ଼ିବାକୁ ଲାଗିଲା )

ଭାନୁଦେବ—କେଉଁ ରାଜାଙ୍କର ପାନ ଥିଲେ ସେ ?

ବାହିନୀପତି—ରାଜା 'ବଳୀଭାନୁ'ଙ୍କର ।

ଭାନୁଦେବ—ମୋ'ର ପ୍ରପିତାମହ ସେହି ବଳୀ-ଭାନୁ । —ଏ' କ'ଣ ?—ପଢ଼ୁ ପଢ଼ୁ, ମୁଖ ତୁମର ଏମିତି ପାଣ୍ଡୁର, ବିବର୍ଣ୍ଣ ହୋଇଗଲା ଯେ ।

ବାହିନୀପତି—( ମଥା ଅବନତ କଲା )

ଭାନୁଦେବ—ପଢ଼—ତୁମର ସହକର୍ମୀ 'କୋଦମାସିଂ' ଯେ ଶୁଣିବାକୁ ଭାରି ବ୍ୟାକୁଳ ।—ଅଚ୍ଛା, ନ ପଢ଼ିବତ, ସାର ମର୍ମ ଯା', ତା ଠିକେ ଠିକେ କହି, ଶୁଣାଇଦିଅ । କୁହ ? ରାଜାର ହୁକୁମ୍ ।—

ବାହିନୀପତି—( ମଥା ନତ କରି କହିବାକୁ ଲାଗିଲା ) ଶିଖରେଶ୍ୱର ବାହିନୀପତି ଚନ୍ଦ୍ର ଚୋରି କରିଥିଲେ; ସେଥିପାଇଁ, ସେ 'ଚନ୍ଦ୍ର ଚୋର ବାହିନୀପତି' ଏହି ଉପାଧି ଲାଭ କରିଥିଲେ ।

ଭାନୁଦେବ—ଆଜି ମୁଁ ତୁମକୁ କି ଉପାଧି ଦେବି, ଜାଣ ?—ମୋ'ଆଡ଼େ ଚାହାଁ, ଦୃଷ୍ଟିନିବଦ୍ଧ କର—

ବାହିନୀପତି—( ଚାହାଁଇଲା )

ଭାନୁଦେବ—'ଚୋରଚନ୍ଦ୍ର ବାହିନୀପତି' ।

ବାହିନୀପତି—ମହାରାଜ ।—

ଭାନୁଦେବ—କାରଣ ଶୁଣିବ ?—ଭାତ-ହାଣ୍ଡିରୁ ଭାତଟିଏ ଚାପିଲେ, ଯେମିତି ହାଣ୍ଡିର ଖବର ଯଣାଯାଏ, ମୋ'ର ପ୍ରଜାମାନଙ୍କର ଖବର ସେମିତି ବୁଝାଯିବ, ସାହୁକାର ନିଧିରାମକୁ ଚାପିଲେ; ଆଉ ମୋ'ର ଦରବାରର ଖବର ସେମିତି ବୁଝାଯିବ, ପାନ ସାଆନ୍ତ ବାହିନୀପତିଙ୍କୁ ଚାପିଲେ । ହାଃ ହାଃ ହାଃ । ଦେଖ, ନିଧିରାମ ଗୋଟାଏ ଚୋର । ତୁମେ ସେହି ଚୋରକୁ ବାଟ ଦେଖାଇଥାଅ ଚନ୍ଦ୍ରପରି ରାତି ଅନ୍ଧାରରେ, ସୁତରାଂ ତୁମେ 'ଚୋରଚନ୍ଦ୍ର' ।

ବାହିନୀପତି—ମହାରାଜ ।— ( ନତଜାନୁ ହେଲେ )

କୋଦ୍‌ମାସିଂ—( ତାହା ଅନୁସରଣ କଲା )

ଭାନୁଦେବ—ଠିଆହୁଅ । ଶୁଣ, ଦୁହେଁ ପାନ, ଆଉ ସେନାପତି ।—ଆଜିର ସ୍ୱ-ନକ୍ଷତ୍ର-ଉତ୍ସବ, ମୋ'ର ଅଭିଷେକୋତ୍ସବକୁ ବଳି ଅନୁଷ୍ଠିତ ହେଉଛି, ଚୋର-ନିଧିରାମର ଅର୍ଥରେ' ତଥା ଚୋରଚନ୍ଦ୍ର ବାହିନୀପତିର ଯତ୍ନରେ । ମୁଁ ସେହି ଚୋର, ଏହି ଉପାଧିରେ ଆପଣଙ୍କୁ ଭୂଷିତ କରିବାକୁ ଚାହେଁ ନା—ଉତ୍ସବ ବନ୍ଦକର । ଶୀଘ୍ର ଏ'ଠୁଁ ବିଦାୟ ହୁଅ ।

( ମାଦଳାପାଞ୍ଜି ଲେଉଟାଇବାକୁ ଲାଗିଲେ )

ବାହିନୀପତି ଓ କୋଦ୍‌ମାସିଂ—( ଅପମାନ ବୋଧକୁ କୌଣସିମତେ ସମ୍ଭାଳି ବିଦାୟ ଦେଇ ଚାଲି ଯାଉଥିଲେ । )

ଭାନୁଦେବ—ହଁ, ଚୋରଚନ୍ଦ୍ର ।—

ବାହିନୀପତି ଓ କୋଦ୍‌ମାସିଂ—( ଠିଆ ହେଲେ ସଙ୍କେ ଚତ୍ୱରରେ )

ଭାନୁଦେବ—ତୁମେ କହୁଥିଲ ନା, ଲୋଭନ ନିଧିରାମ ବିପୁଳ ଅର୍ଥ ତ୍ୟାଗର ବିନିମୟରେ ଗୋଟିଏ ନିଃସ୍ୱ ବିଧବାକୁ ଋଣଦାୟରୁ ମୁକ୍ତକରି ଦେଇଥିଲେ ?

ବାହିନୀପତି—ଖାଲି ସେତିକି ନୁହେଁ ପଣିମା— ବିଧବାର ଏକମାତ୍ର ପୁତ୍ର ସନ୍ତାନକୁ ଖୁଆଇ ପିଆଇ ମଣିଷ କରି ଠିଆ କରିବେ, ଯେ ଭାର ମଧ୍ୟ ଗ୍ରହଣ କରିଥିଲେ ସ୍ୱତଃପ୍ରବୃତ୍ତ ହୋଇ ।

ଭାନୁଦେବ—ଓ, ବିଧବାଟି ହେଉଥିପାଇଁ ଅତି ଅନାଦରେ ଉର୍ଦ୍ଧ୍ୱଶ୍ୱାସ ହୋଇ ପ୍ରାଣତ୍ୟାଗ କରିଥିଲା, ନା ?— ଶୁଣ, ମୁଁ ବର୍ତ୍ତମାନ ବେଶ୍ ବୁଝିପାରୁଛି,—ପିଲାଟି ଅସାଧାରଣ ମାତୃଭକ୍ତ । ଏକ ହିସାବରେ ପିତୃ-ଋଣ]

ଶୋଧ କରିବ, ଅନ୍ୟାଦରରେ ନିଜ ଜନନୀକୁ ଋଣ-ଚିନ୍ତା-ମୁକ୍ତ କରିବ, ଏଥିପାଇଁ ଆପଣା ଜୀବନକୁ ବିପନ୍ନ କରି, ଗୋଟାଏ ରକ୍ତଶୋଷୀ କବଳରେ ମଧ୍ୟ ନିଜକୁ ଟେକି ଦେବାକୁ କୁଣ୍ଠିତ ହୋଇ ନାହିଁ...। ହଁ, ସେ ପିଲାଟି ଜୀବିତ ଅଛିତ ?

ବାହିନୀପତି—ସ୍ୱଚ୍ଛନ୍ଦରେ ଅଛି, ମଣିମା ।

ଭାନୁଦେବ—ମାନେ ?

ବାହିନୀପତି—ଦିନବେଳେ ନିର୍ଦ୍ଧିଷ୍ଟମଙ୍କର ଗୋଠ ଜଗୁଛି ଘାସ ଛେଲୁଛି, ଆଉ ରାତିରେ...

ଭାନୁଦେବ—ମଶା-ମାଛି ତଳୁଡ଼େଇ ଗୁହାଳ ଜଗୁଛି,—କେମିତ ? ହାଃ ହାଃ ହାଃ...

ବାହିନୀପତି—( ନୀରବ )

ଭାନୁଦେବ—କିନ୍ତୁ, ଦେଖିବ ଶ୍ରୀରଚନ୍ଦ୍ର—ଯିଏ ଆଜ ଗାଈ ଚରାଉଛି ସେହି ହୁଏତ ଦିନେ ମଣିଷ ଚରାଇବ—ହଁ, ଏହି ରାଜଧାନୀକୁ ଆସି, ରାଜ-ପ୍ରାସାଦରେ ରହି, ରାଜମର୍ଯ୍ୟାଦା ଯେ ନ ପାରିବ, ତାହା ମଧ୍ୟ ନୁହେଁ...।

ବାହିନୀପତି—( ଆଶ୍ଚର୍ଯ୍ୟ ଭାବରେ ଗୁହିଁରହିଲେ )

ଭାନୁଦେବ—ଆଶ୍ଚର୍ଯ୍ୟ ହେଉଚ ? ମୋ'ର ବଂଶ ଇତି-ହାସରେ ଯାହା ଘଟିଚି, ତାକୁଇ ନଜର ଦେଇ, କହୁଚି, ଶୁଣ । ଗଙ୍ଗ-ବଂଶର ପ୍ରତିଷ୍ଠାତା ଚୋଡ଼-ଗଙ୍ଗ ଦେବ । ସେ ଥିଲେ ପରମ ମାତୃଭକ୍ତ । ସମଗ୍ର ନାରୀଜାତିକୁ ମାତୃତ୍ୱର ପ୍ରତୀକ ବୋଲି ମଣୁଥିଲେ । ସେଥିପାଇଁ, ଘର ଲୁଗାଆ-ଧୋବଣୀ ଟାଏ—ତା'ର ବୋଲି ସେ ବେଦର ଗାର କରି ମାନୁଥିଲେ । ତା'ଙ୍କର ଏହି ଗୁଣ, ମନ୍ତ୍ରୀ ବାସୁ-ଦେବ, ସୁବର୍ଣ୍ଣ କେଶରୀ କର୍ତ୍ତୃକ ଅବମାନିତ ଓ ନିର୍ବାସିତ ହୋଇ ଧୋବଣୀଘରେ ବାସ କରୁଥିଲା ବେଳେ, ପର୍ଯ୍ୟବେକ୍ଷଣ କରିଥିଲେ, ଏବଂ ମନେ ମନେ ତାଙ୍କୁ ଦେଶ-ମାତୃକାର ପ୍ରଧାନ ପୁରୋଧା ପଦରେ ବରଣ କରି, ଦେଶାକ୍ରମଣ ସୂତ୍ରରେ ଉତ୍କଳକୁ ଘେନି ଆସିଥିଲେ ।—ବର୍ତ୍ତମାନ ତୁମେ ମୋ' କର୍ତ୍ତୃକ ଅପମାନିତ ହୋଇଚ, ବାହିନୀପତି ...ସୁତରାଂ, ତୁମେ ମଧ୍ୟ ଗୋପନ ସୂତ୍ରରେ ଦିନେ ସେହି ମାତୃଭକ୍ତ ସନ୍ତାନଟିକୁ ଘେନିଆସି, ଏହି ଉତ୍କଳ-ସିଂହାସନରେ ବସାଇବ, ଉତ୍କଳର ଐତିହାସିକ ପରମ୍ପରା ରକ୍ଷା କରିବ ସନ୍ଦେହ ନାହିଁ ।

ବାହିନୀପତି—ମ-ହା—

ଭାନୁଦେବ—ହଁ, ଏ ମୋ'ର ଅନୁମାନିକ ତଥ୍ୟ ନୁହେଁ,—ଗବେଷଣା ପ୍ରସୂତ ପ୍ରାମାଣିକ ସତ୍ୟ । ମୁଁ ସଦମ୍ଭେ କହୁଚି, ତୁମେ ଯାଇ ପରୀକ୍ଷା କରି ଦେଖ,—ସେହି ଶିଶୁଟି ସାଧାରଣ ଗୋପାଳ ବାଳକ ନୁହେଁ, କୌଣସି ଅସାଧାରଣ କ୍ଷତ୍ରିୟ ସନ୍ତାନ ।

ବାହିନୀପତି—କିନ୍ତୁ, ମହାରାଜ, ଏହି ରାଜଭକ୍ତ ଦାସାନୁଦାସ କଦାଚାଳେ ରାଜ-ଦ୍ରୋହୀ ହେବ, ଏ' ଧାରଣା...

ଭାନୁଦେବ—କିଏ ଜନ୍ମାଇ ଦେଇଛି ?—ହାଃ ... ହାଃ...ହଃ...ସେ ଆଉ କେହି ନୁହେଁ, ପାନ-ସା'ନ୍ତେ ଏହି ମାଦଳା ପାଞ୍ଜି,—ଏଥିରେ ସଂକଳିତ ଉତ୍କଳର ଜାତୀୟ ଜୀବନ ବିକାଶର ଧାରାବାହିକ ତଥ୍ୟ ।—ହଁ, ଦେଖ, ତୁମମାନଙ୍କର କୌଣସି ଭୟ ନାହିଁ, ମୁଁ ରାଜଦ୍ରୋହୀକୁ ଶାସନ କରିବି ବଜ୍ର ମୁଷ୍ଟିରେ, କିନ୍ତୁ ନିର୍ବାସନ କରିବି ନାହିଁ କଦାପି; କାରଣ, ଅପରିଣାମ ଦର୍ଶୀ ସୁବର୍ଣ୍ଣ କେଶରୀ ଯେଉଁ ଭୁଲ କରିଥିଲେ, ତା'ର ପୁନରାବୃତ୍ତି କରି ପରିଣାମରେ ମୋ'ର ବଂଶ-ନିପାତ ଦୋଷର ଭାଗୀ ହେବି ନାହିଁ ।—ହେଉ, ଆସନ୍ତ ରାଜ୍ୟର ଉତ୍କଳ ରତ୍ନ ନୁହେଁ, ମୋ'ର ଯୋଡ଼ ମାଣିକ୍ୟ ।

[ ନମସ୍କାର କରି ବାଟ ଦେଖାଇ ଦେଲେ ]

ବାହିନୀପତି—( କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଯାଉଁ ଯାଉଁ, ଫେରି ଠିଆ ହୋଇ )—ଜୟ ମହାରାଜ ଭାନୁଦେବଙ୍କର ଜୟ !

କୋଦଣ୍ଡସିଂ—( ସେଥିରେ ଯୋଗ ଦେଇଥିଲେ )

[ ଉଭୟଙ୍କର ପ୍ରସ୍ଥାନ ]

ଭାନୁଦେବ—ଜୟ-ଜୟକାର ।...ଜୟ-ଜୟକାରର ଅନ୍ତରାଳରେ ରହିଥାଏ ଗୋଟାଏ ପ୍ରଚ୍ଛନ୍ନ ବିଦ୍ରୋହର ହୁଙ୍କାର ସିନା । ...ହାଃ...ହାଃ... ହାଃ...

[ ରାଣୀ ପ୍ରବେଶ କଲେ । ତାଙ୍କ ମଥାରେ ଥିଲା ମୁକୁଟ ]

ରାଣୀ—ହସୁଚତ ବେଶ୍—ତୁମର ମତଲବ୍ କ'ଣ କୁହତ ?

ଭାନୁଦେବ—ମତଲବ୍ ଅତି ମହତ୍ ।

ରାଣୀ—ମାନ ମହତ ତଳେ ପକେଇବ ?

ଭାନୁଦେବ—ଉଁ ହୁଁ, ଆକାଶକୁ ଉଡ଼େଇବ—

ରାଣୀ—ଟାହୁଲ୍ କରିବ ପଛେ ?—କୁହତ, କେଉଁ ବାପ ଗୋସବାପା ଅମଳର ଖଞ୍ଜା ନୀତି, ତା'କୁ ଭାଙ୍ଗିଲ; କେଉଁ କାଳର ଦାସୀ-ପୋଇଲଙ୍କ ସେବା ବାଧ୍ୟ, ତା'କୁ ଉଠାଇଲ; ରାଜ-ମର୍ଯ୍ୟାଦାର ନିଦର୍ଶନ ବୋଲି ଯେଉଁ ରାଜ-ମୁକୁଟ, ତାକୁ ବି ଓହ୍ଲାଇ ଥୋଇ ଦେଲ । ଏଥିରେ ମାନ ମହତ ତୁମର ବଢ଼ିଲା, ନା ଛୁଟିଲା ?—

ଭାନୁଦେବ—ଏ' ପ୍ରଶ୍ନର ଉତ୍ତର ତୁମେଇ ଦେବ, ରାଣୀ, ଯେଉଁ ଦିନ ତୁମର ଦେହର ଏହି ଅଳଙ୍କାର ଆଉ ମଥାର ମୁକୁଟଟି ଓହ୍ଲାଇ ଥୋଇ ଦେବ ।

ରାଣୀ—ହିଁ, ଆହୁରି ମଧ୍ୟ କହିବ, ଯେଉଁ ଦିନ ଖିଦା-ଶାଳରେ ପଶି, ଖଦି ହେବ, ଆଉ ତୁମର ମଣୋହି ପାଇଁ ତିଅଣ ରାନ୍ଧିବ ।

ଭାନୁଦେବ—ହିଁ ତ 'ମଟଫୁଲ୍'ର ତିଅଣ, ଯା'କୁ ଖାଇବାକୁ ମୁଁ ଭାରି ସୁଖ ପାଏଁ—

ରାଣୀ—ରନ୍ଧା ହେବ ଅକଟା ।

ଭାନୁଦେବ—କଯାଇବ ?

ରାଣୀ—ଅବଟା ବେସରରେ ।

ଭାନୁଦେବ—ଆଉ ବାଢ଼ିବ ?

ରାଣୀ—ତୁମରି ଏହି ମାଦଳା-ପାଞ୍ଜି-ଗୋଷ୍ଠର ଗୋଟାଏ ପତ୍ରରେ ।

ଭାନୁଦେବ—ତା' ହେଲେତ କାଳକାଳକୁ ମୋ'ର ଗୋଟାଏ କୀର୍ତ୍ତି-କାହାଣୀ ରହିଯିବ, ତୁମର ଜରିଆରେ—ହାଃ-ହାଃ-ହାଃ—

ରାଣୀ—ଆହୁରି ହସୁଚତ ?

ଭାନୁଦେବ—ସତେ, ରାଣୀ...ମୋ'ର ଏହି ସୃଷ୍ଟି ଛଡ଼ା ଭୋଜ୍ୟସାମଗ୍ରୀ ଓ ରାନ୍ଧଣା ପରିପାଟିକୁ ମୂଳଦୁଆ କରି ମୋ' ନାମ ହେବ,—'ଅକଟା-ଅବଟା-ଭାନୁ' । ପଞ୍ଜିଆ—ତଡ଼ାଉ କରଣେ ସେହି ନାମ ପରିଚୟ ଲେଖି ରଖିବେ ଏହି ମାଦଳା ପାଞ୍ଜିରେ । ଅନାଗତ ଭବିଷ୍ୟତ ମୋତେ ଅଭିନନ୍ଦନ ଜଣାଇବେ ସେହି ନାମ ସମ୍ବୋଧନରେ । ...ହାଃ... ହାଃ...ହାଃ...

ରାଣୀ—ଏତେ ଅଳ୍ପକୁ ନା ତୁମେ ?...କ'ଣ କହନ୍ତି ପୁଣି...?

[ ମୁହଁ ମୋଡ଼ି ଦେଇ ଚାଲି ଯାଉଥିଲେ ]

ଭାନୁଦେବ—(ବାଧାଦେଇ) ଉଁ ହୁଁ...ଆଜି ଗୋଟାଏ ଶୁଭଦିନ ..ଏମିତି ଦିନରେ, ପାଟିର କଥା ପେଟରେ ପୂରେଇରଖି, ଚାଲିଯିବା ଉଚିତ ନୁହେଁ ।—କୁହ, କୁହ, ନିସଙ୍କୋଚରେ ତୁମର କହିବା କଥା କୁହ, ରାଣୀ ।

ରାଣୀ—( ଗୋଟାଏ ଉଚ୍ଛ୍ୱାସରେ ) ଅଚ୍ଛା, ତୁମର କ'ଣ କାନ ଥାଇ, କାନ ନାହିଁ...ଆଖି ଥାଇ, ଆଖି ନାହିଁ...?

ଭାନୁଦେବ—କେଉଁ ବିଷୟକୁ ଲକ୍ଷ୍ୟକରି, ଏ'ପରି କହୁଚ ଯେ...?

ରାଣୀ—ତୁମରି ପିତାଙ୍କ ବିଷୟକୁ...।

ଭାନୁଦେବ—ଓ, ମୋ'ର ପିତା 'ମତ-ଭାନୁ' ଥିଲେ ବଦ୍ଧ ପାଗଳ ।—ଏଇକଥା ପାଞ୍ଜିରେ ଉଲ୍ଲିଖିତ, ମୁଁ ଆଖିରେ ଦେଖୁଚି...ଲୋକେ ମଧ୍ୟ ଏହା କୁହାକୁହି ହୋଇଥାନ୍ତି, ମୁଁ କାନରେ ଶୁଣୁଚି... ଏଇମ୍ଭାତ ? ହାଃ ..ହାଃ...ହାଃ...

ରାଣୀ—ତଥାପି ହସୁଚତ ?...ହେଲେ, ପାଗଳ—ରାଜାର ପୁଅ, ପାଗଳ—ଏ'କଥା ପ୍ରଚାର ହେବାକୁ ଆଉ କେତେ ବେଳ, କୁହତ ?—

ଭାନୁଦେବ—ଆଉ ବେଶୀ ବେଳ ନୁହେଁ…
ଯେତେବେଳେ ମୋ'ର ପାଟରାଣୀ ତୁମେ, ତୁମ
ମନରେ ଏ'କଥା ଉଙ୍କି ହେଲାଣି—

ରାଣୀ—ମାନେ ?

ଭାନୁଦେବ—ମାନେ ଅତି ସରଳ । ଆଜକୁ ମୋ'ର
ରାଜ୍ୟାଭିଷେକ ଠିକ୍ ବର୍ଷେ ପୂର୍ଣ୍ଣ ହୋଇଛି ।
ମାତ୍ର ଅଭିଷେକର ବହୁପୂର୍ବରୁ ତ ତୁମେ
ହୋଇଚ ମୋ'ର ସହଧର୍ମିଣୀ ।

ରାଣୀ—ତା'ପର…

ଭାନୁଦେବ—ସେ ସମୟରେ ଏମିତ ଧାରଣା କେବେ
ମୋ' ସମ୍ବନ୍ଧେ ତୁମର ଜନ୍ମିଥିଲା କି ?

ରାଣୀ—ନା ।

ଭାନୁଦେବ—ଅଭିଷେକ ଅନ୍ତେ ଆମେ ରାଜା, ରାଣୀ
ହେଲୁ,—ଐଶ୍ୱର୍ଯ୍ୟ-ମଦିରାର ପ୍ରବଳ ସ୍ରୋତରେ
ଭାସି ଚାଲିଲୁ—ଆତ୍ମହରା ହୋଇଗଲୁ—ହଠାତ୍
ଦିନେ କେଉଁ ଅଜ୍ଞାତ ଲଗ୍ନର ଗୋଟାଏ ଭୀଷଣ
ଧକ୍କାରେ ସୁଖସ୍ୱପ୍ନ ଯେମିତ ଭାଙ୍ଗି ଛତରଛାଲ
ହୋଇଗଲା…

ରାଣୀ—ଆଉ ତା'ର ପ୍ରତିଘାତରେ…

ଭାନୁଦେବ—'ହସେ ମିଚ୍', 'ହସେ ମିଚ୍',—ଏହାପରି
ବାଉଳା ଚାଉଳା ବକିବାକୁ ଲାଗିଲି, କେମିତ ?
—ହାଃ…ହାଃ…ହାଃ…

ରାଣୀ—ପରିହାସ ନୁହେଁ ? ସେହି ବାଉଳା ଚାଉଳା
ତୁମର ଆଜର ସ୍ୱାଭାବିକ ଦିନରେ ଯେମିତ
ଚରମରେ ଉପସ୍ଥିତ, ଏଇ କଥା ମୁଁ କହିବି,
ମହାରାଜ;—

ଭାନୁଦେବ—ଅର୍ଥାତ୍, ମୁଁ ଗୋଟିଏ ବଦ୍ଧପାଗଳ !!—
ହାଃ…ହାଃ…ହାଃ

ରାଣୀ—(ସାନୁନୟ ଭାବରେ) ଏହି ଧାରଣାର ପାତ୍ର
ହୋଇଚ କି ନା ସେ-ସମ୍ବନ୍ଧେ ତୁମର ଅତି
ଏକାନ୍ତ ଅତି ବିଶ୍ୱାସୀ ଯେଉଁମାନେ, ସେହି
ମାନଙ୍କୁ ଥରେ ପଚାରି ବୁଝ ତ ମହାରାଜ ?—

ଭାନୁଦେବ—ହେଲେ, ତୁମଠାରୁ ମୋ'ର ଏ' ଜଗତରେ
ବେଶୀ ବିଶ୍ୱାସୀ, ବେଶୀ ଏକାନ୍ତ କେହି ଅଛି ତ,
ରାଣି ?—

ରାଣୀ—ରାଜା !—(ଗଦଗଦ କଣ୍ଠରେ କହିଲେ)

ଭାନୁଦେବ—ଅସ୍ଥିରତା ହିଁ ତ ଅନ୍ତର୍ବେଦନାର
ପରିଚୟକ !—ଏହାପରି ଅସ୍ଥିର ଭାବଯୋଗୁଁ
ତୁମେ ମୋ ପ୍ରକୃତିର ବିଚାର କରି ପାରୁ ନ,
ଏଇକଥା ମୁଁ ଆଜି ଖୋଲି କହିବି, ରାଣି !

ରାଣୀ—ଖୋଲା କଥାରେ ମୋତେ ବୁଝାଇ ଦିଅ,
ରାଜା !—

ରାଣୀ—ଅଚ୍ଛା, ରାଣୀ—ଯିଏ ପାଗଳ, ସେ ନିଜକୁ
କେବେ 'ପାଗଳ' ବୋଲି କହିଥାଏ ? କିମ୍ବା,
'ପାଗଳତ୍ୱ'ର ପରିଚୟ ଦେବ ବୋଲି, କେବେ
ପାଗଳାମି କରିଥାଏ ?…

ରାଣୀ—ତା' ହେଲେ, ପାଗଳାମି କ'ଣ ତୁମର
ଗୋଟାଏ ଢଙ୍ଗ ?—

ଭାନୁଦେବ—ଊହୁଁ ପ୍ରକୃତିଗତ ଅଙ୍ଗ, ରାଣି !

ରାଣୀ—ନା, ନା, ନା—ତୁମେ ପାଗଳ ନୁହଁ,
ପାଗଳ ମୁଁ—ପାଗଳ ଏହି ଦୁନିଆ ।

ଭାନୁଦେବ—ହାଯ୍, ମୋ'ର ପିତାଙ୍କୁ 'ପାଗଳ' ଏହି
ଆଖ୍ୟା ଦେବା ପୂର୍ବରୁ ଦୁନିଆ ଯଦି ଏହାପରି
ସ୍ୱୀକାରୋକ୍ତି କରିଥାନ୍ତା, ରାଣି !—

ରାଣୀ—ମୋତେ କ୍ଷମା କର, ରାଜା !—

ଭାନୁଦେବ—ମୁଁ ବରଂ କ୍ଷମାପ୍ରାର୍ଥୀ, ରାଣି ! (ଦୀର୍ଘଶ୍ୱାସ
ତ୍ୟାଗ ପୂର୍ବକ) ମୋ'ର ପିତା ଥିଲେ ଅର୍ଥହୀନ
ପ୍ରଳାପୀ, ବଦ୍ଧ 'ପାଗଳ',—ଦୁନିଆର ଏହି
ଅଭିମତକୁ ସମର୍ଥନ କରି, ମୁଁ ମଧ୍ୟ ହୋଇଥିଲି
ପିତୃଦ୍ରୋହୀ, ରାଜଦ୍ରୋହୀ;—କିନ୍ତୁ, ମୋ'ର ଭ୍ରମ
ତୁଟିଗଲା, ବାର୍ଦ୍ଧକ୍ୟରେ ଅଭିଭୂତ ହୋଇ ପଡ଼ିଲି,
ନା, ନା, ମୁଁ ପାଗଳ, ଉନ୍ମାଦ ହୋଇଗଲି
ସେହିଦିନ, ଯେଉଁ ଦିନ…

ରାଣୀ—କ'ଣ ?

ଭାନୁଦେବ—ପିତାଙ୍କର ଏହି ରୁଦ୍ଧ ଗନ୍ତାଘରର ଦ୍ୱାର
ଉନ୍ମୁକ୍ତ କରିଦେଲି !—ତୁମକୁ ମଧ୍ୟ ଏ'ଗୁପ୍ତାଗାର
କଥା କହି ନାହିଁ, ଗୁପ୍ତଧନର ସମ୍ଭାର ଦେଖାଇ
ନାହିଁ; ତା'ର କାରଣ,—ଆଜ ଶୁଭ ଦିନରେ,

ସାରା ବିଶ୍ୱ ସମ୍ମୁଖରେ ଶୁଭ ଉଦ୍‌ବୋଧନ କରିବ, ଏଇଥି ଲାଗି—

[ ଭାନୁଦେବ ଉକ୍ତ କକ୍ଷର ଦ୍ୱାର ସ୍ପର୍ଶକଲେ । ତାହା ଖୋଲିଯିବାରୁ ଯାହା ଦେଖାଗଲା, ତାହା ଗୋଟିଏ ଶିଳ୍ପପ୍ରଦର୍ଶନୀ ବିଶେଷ । ଉତ୍କଳର ଯାବତୀୟ ଶ୍ରେଷ୍ଠ ଓ ଶିଳ୍ପକଳାର ନିଦର୍ଶନ, ରୂପାଦର୍ଶ ଆକାରରେ ସେଠାରେ ସଂରକ୍ଷିତ । ଗିରି, ବନ, ନଦ, ନଦୀ ପ୍ରଭୃତି ଉତ୍କଳର ପ୍ରାକୃତିକ ବୈଚିତ୍ର୍ୟରୁ ଆରମ୍ଭ କରି, କୋଣାର୍କ, ପୁରୀ, ଭୁବନେଶ୍ୱର ପ୍ରଭୃତିର ସ୍ଥାପତ୍ୟ ଓ କାରୁ କଳା, ତଥା ଅନ୍ୟାନ୍ୟ ଶିଳ୍ପ-ନୈପୁଣ୍ୟ ଶୋଭାର ଅନ୍ତ ନ ଥିଲା । ମୋଟଉପରେ ପ୍ରଦର୍ଶିତ ଦୃଶ୍ୟଟି କ୍ଷୁଦ୍ରାୟତନରେ ପ୍ରାକ୍ତନ ସେହି ବିଶାଳ ଓ ଉଜ୍ଜ୍ୱଳ ଆ-ଗଙ୍ଗା ଗୋଦାବରୀ-ଉତ୍କଳଖଣ୍ଡ, ଏହାପରି ଭ୍ରମଜାତ ହେବ । ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରପ୍ରସ୍ତ ରୂପର ପାଦଦେଶରେ ଗୋଟିଏ ସୁମଣ୍ଡିତ ଆସନ; ତା' ଉପରେ ଉତ୍କଳ-ରାଜମୁକୁଟ ଅବସ୍ଥାପିତ । ]

ଭାନୁଦେବ—ଦେଖୁଛ ?

ରାଣୀ—ଦେଖୁଛି ।

ଭାନୁଦେବ—କ'ଣ ?

ରାଣୀ—ମୋର ଜନ୍ମଭୂମି ଉତ୍କଳ । ତା'ର ପୂର୍ଣ୍ଣାଙ୍ଗ ବିକାଶର ଗୋଟିଏ ପ୍ରତିରୂପ ।...

ଭାନୁଦେବ—ହୁଁ ।

ରାଣୀ—ପୁରୀର ବଡ଼ ଦେଉଳ । ଭୁବନେଶ୍ୱରର ଶିବାଳୟ । କୋଣାର୍କର ଅର୍କ-ମନ୍ଦିର ; ଯାଜପୁରର ବିରଜା-ପୀଠ ।—

ଭାନୁଦେବ—ଖଣ୍ଡଗିରିର ଅଗଣିତ ଗୁମ୍ଫା । ଉଦୟଗିରିର ଖୋଦିତ ଶିଳ୍ପ । ଧଉଳିର ଶିଳା-ଲିପି... ତଥା, ଆହୁରି କେତେ କ'ଣ ?...

ରାଣୀ—ଆମ ଶିଳ୍ପୀର କାରିଗରି...ଜାତିର କୃତୀତ୍ୱ, ରାଜା ।

ଭାନୁଦେବ—ସେହି କୃତିତ୍ୱ ସଂକ୍ରାନ୍ତ ନାନା ଚିନ୍ତାର ଘାତ ପ୍ରତିଘାତ ଫଳରେ ମୁଁ ଉନ୍ମାଦ ହୋଇ ଯାଉଛି, ରାଣୀ ।

ରାଣୀ—ଅର୍ଥାତ୍ ?

ଭାନୁଦେବ—ବିଶ୍ୱ-ଶିଳ୍ପୀ, ତାଙ୍କର ବିଚ୍ଛୁରିତ ବିଶ୍ୱଶିଳ୍ପର ସମସ୍ତ ସୁଷମାକୁ ଦିନେ ଚୁଣ୍ଡେଇ, ପଣସ୍ତ କରି ଆଣି, ଏହି ଉତ୍କଳ ଭୂମିରେ ଅଜାଡ଼ି ଦେଲେ । ନୈସର୍ଗିକ ସୌନ୍ଦର୍ଯ୍ୟର ହାଟ ବଜାର ବସିଗଲା ଠାବେ, ଠାବେ । କେଉଁଠି 'ରୁଦ୍ର'ର କ୍ଷିପ୍ରତାଣ୍ଡବର ବିପର୍ଯ୍ୟୟ, କେଉଁଠି 'ମଧୁର'ର ଶାନ୍ତ ସୌମ୍ୟ ଛବି, କେଉଁଠି ବା ଉଭୟର ସମ୍ମିଶ୍ରଣଜନିତ ଗୋଟାଏ ଲଳିତ ଗାମ୍ଭୀର୍ଯ୍ୟ । ଉତ୍କଳର ଏହି ଅନୁପମ, ଅଦ୍ଭୁତ ଛବିଳତା ବିଶ୍ୱବାସୀଙ୍କ କଲା ବିସ୍ମିତ, ବିମୁଗ୍ଧ । ମାତ୍ର,ସେହି ସ୍ଥଳେ, ମୋର ଉତ୍କଳୀୟ ଭାଇମାନେ, ନିସର୍ଗର ସେହି ମହନୀୟ ବୈଚିତ୍ର୍ୟ ସନ୍ଦର୍ଶନରେ ହୋଇଗଲେ ଈର୍ଷାନ୍ୱିତ, ବିଶ୍ୱପତିଙ୍କ ସଙ୍ଗେ ପଟ ପକାଇବାକୁ ହୋଇ ଉଠିଲେ ବିକ୍ଷୁବ୍ଧ । ନୈସର୍ଗିକ ପ୍ରତିଭାକୁ ସ୍ଫୂର୍ତ୍ତି କରିଲେ, ଏଥିପାଇଁ ଯେମିତି ଦେଶ-ମାତୃକା 'ଜନନୀ'ର ଅଙ୍ଗେ ଅଙ୍ଗେ, ବିବିଧ ରୁଚିରେ, ସୁଚିରବିବିଧ ନୈପୁଣ୍ୟରେ ଅଳଙ୍କାର ମାନ ଖଞ୍ଜି, ସମଗ୍ର ଶିଳ୍ପ ଗୋଷ୍ଠିର ପ୍ରତିଭା ସ୍ୱରୂପ ଶିଳ୍ପପ୍ରତିଭାର ଅମର ଅବଦାନ ବାଢ଼ି ଦେଲେ ସ୍ତମ୍ଭିତ, ଉଦ୍‌ଭ୍ରାନ୍ତ ବିଶ୍ୱ-ଜଗତକୁ ।

ରାଣୀ—ଏଥି ସଙ୍ଗେ ଆହୁରି ହେଉ ପାଞ୍ଚି ଦେଖ, ରାଜା—ଉତ୍କଳର ଦେଶପ୍ରେମିକତା, ଉତ୍କଳର ଆଧ୍ୟାତ୍ମିକତା, ତଥା ବୀରତ୍ୱର ଇତିକଥା;—ସର୍ବଧର୍ମ ସମନ୍ୱୟର ପ୍ରତୀକ ଯେଉଁ ଦାରୁବ୍ରହ୍ମ, ତା'ର ପ୍ରତିଷ୍ଠା କରି, ସୌଭ୍ରାତୃତ୍ୱର ତୀର୍ଥକ୍ଷେତ୍ର ସ୍ଥାପନ କରିବାକୁ ପଥ ଦେଖାଇଛି,—ଏହି ଉତ୍କଳ !—ଆତ୍ମକୃଷ୍ଟିର ପରିଚୟ ଦେବାକୁ, ଭାବଧାରାର ସୂକ୍ଷ୍ମ ବିକାଶ କ୍ଷେତ୍ରରେ ନାନା ଲଳିତ କଳାର ଉଦ୍‌ଭାବନ, ତଥା ନିଜର

କାଟାପୁଡ଼ା ସଂପାଦିବାକୁ ଭାସ୍କର ସୃଷ୍ଟ ଶିଳ୍ପ-
ବିନ୍ୟାସରେ ନାନା ଛନ୍ଦ, ବନ୍ଧ, ରାଗ, ରାଗିଣୀର
ଭିଆଣୀ ସୃଷ୍ଟି କରିଛି—ମିଳନ କେବେ କହିବ
ଆମର ଏହି ଉତ୍କଳକୁ !

ଭାନୁଦେବ—ହେଲେ, ସେହି ଧ୍ରୁବତାର ପ୍ରଖରତା
ଆଜି କାହିଁ ?—

ରାଣୀ—ଭୁଲିଗଲ, ଏହିଭଳି ଆକ୍ଷେପ କରି କରି, ତୁମର
ପିତା ପାଗଳ ହୋଇ ଯାଇଥିଲେ,—ଏଇ
କଥାହିଁ ତୁମେ ଇଙ୍ଗିତ କରୁଛ, ରାଜା !

ରାଜା—ରାଣୀ–ଯେଉଁ ଜାତିର ଏହି କୀର୍ତ୍ତି, ସେହି
ଜାତି ଆଜି ଅନ୍ଧକାର ଅନ୍ଧକୂପରେ ପଡ଼ୁଛି,—
ବିଶ୍ୱ-ଦରବାରର ଗୋଟିଏ ଅନ୍ଧାର କୋଣରେ
ଗୋଡ଼ଭାଙ୍ଗି ଠିଆହୋଇଛି,—'ଭିକ୍ଷାଂଦେହି
ଭିକ୍ଷାଂଦେହି' ବୋଲି, ହାତ ଅଞ୍ଜୁଳା କରି,
ଆଖିର ପାଣି ଆଖିରେ ମାରି ରହୁଛି;—ଖାଲି
ସେତିକି ନୁହେଁ, ଏହି ଉତ୍କଳୀୟ ଆଜି 'ହୀନମତି',
'କ୍ଷୀଣଶକ୍ତି', 'ଭୀରୁ-କାପୁରୁଷ' ଏହିପରି
ବିଶେଷଣରେ ବିଶେଷିତ ! ଓଃ, ଏହି କଥା ଭାବିଲା
ବେଳକୁ, କିଏ ମତି ସ୍ଥିର ରଖି ପାରିବ, କୁହତ,
ରାଣୀ ! କିଏ କହିବ, ଏହି ଉତ୍କଳୀୟ ସେହି
ମହାମହିମ କେଶରୀ—ଗଙ୍ଗବଂଶସେବିତ ଉତ୍କଳର
ଦାୟାଦ ?—ମୋ'ର ପିତା ସିନା ସେହି-
ଗୌରବୋଜ୍ଜ୍ୱଳ ଅତୀତର ପରିପ୍ରେକ୍ଷୀରେ
ବର୍ତ୍ତମାନର ଏହି ନିଷ୍ପ୍ରଭତାକୁ ପର୍ଯ୍ୟବେକ୍ଷଣ କରି,
ଗୋଟାଏ ଦୁର୍ବାର ଶୋଚନା ଓ ଦୁଶ୍ଚିନ୍ତାରେ
ଉନ୍ମାଦ ହୋଇ ଯାଇଥିଲେ !—

ରାଣୀ—ରାଜା !—ଏ' ପ୍ରସଙ୍ଗରେ 'ନିୟମର' ନିୟନ୍ତ୍ରଣକୁ
ଭୁଲିଗଲେ ତ ଚଳିବ ନି !

ରାଜା—ଅର୍ଥାତ୍ ?

ରାଣୀ—ପ୍ରକୃତିର ଯେଉଁ ନିୟମ ମାନି ଆକାଶରେ
ସୂର୍ଯ୍ୟ ଉଏଁ, ପ୍ରଭାତ ହୁଏ, ଦିବସ ବଢ଼େ,
ମଧ୍ୟାହ୍ନର ପ୍ରତାପ ଦେଖାଦିଏ, ଅବଶେଷେ
ମ୍ଳାନପ୍ରଭ ହୋଇ ସେହି ମାର୍ତ୍ତଣ୍ଡ ଅସ୍ତାଚଳ
ଶିଖରରେ ଢଳିପଡ଼େ—ଆଉ ଧରାବକ୍ଷରେ
ଘୋଟି ଆସେ ଗୋଟାଏ ନିସ୍ତବ୍ଧ ନିଷ୍ପ୍ରାଣତା,
ସୁସୁପ୍ତି,·· ଠିକ୍ ସେହି ନିୟମ ମାନି···

ରାଜା—ଯଥାର୍ଥ କହିଛ, ରାଣୀ—ସେହି ଦୁର୍ଲଙ୍ଘନୀୟ
ନିୟମର ବଶବର୍ତ୍ତୀ ହୋଇ,— ଉତ୍କଳ ସେଦିନରୁ
ଆଜି ଦୀର୍ଘ ଦୁଇଶ' ବର୍ଷ ପରକ୍ରମାନ୍ତେ, ଅସ୍ତାଚଳ
ଶିଖରଦେଶରେ—ଉତ୍କଳ ବକ୍ଷରେ ସେଥିପାଇଁ
ନିସ୍ତବ୍ଧ ନିଷ୍ପ୍ରାଣତା, ଏହି ସୁସୁପ୍ତି !

( ଦୀର୍ଘ ଶ୍ୱାସ ତ୍ୟାଗ )

ରାଣୀ—ତଥାପି, ରାଜା !—

ରାଜା—ରାଣୀ—

ରାଣୀ—ଭୁଲି ଯାଅନା, ରାଜା ! ଏହିସାର ତଥ୍ୟ
ଯେ, ଅତୀତ ଆଉ ଭବିଷ୍ୟତ ଏହି
ଦୁଇର ଯୋଗସୂତ୍ର ବର୍ତ୍ତମାନ ! ଅତୀତର
ପଟଭୂମିକାରେ, ବର୍ତ୍ତମାନ କର୍ମ ସାଧନାହିଁ
ଭବିଷ୍ୟତର ରଙ୍ଗିନ ସ୍ୱପ୍ନକୁ ବାସ୍ତବ କରିବାକୁ
ଭାଜନ ;···ସୁତରାଂ, ହେ ବୀର ପ୍ରତିନିଧି ରାଜା
ତୁମେ···ସଜାଗ ହୁଅ, ରାଜ୍ୟ-ସମ୍ଭାରର ପ୍ରତୀକ
ଏହି ରାଜମୁକୁଟ ଧାରଣ କର ! ରାଜ୍ୟରେ ଉତ୍ପ୍ରେରଣା
ହେଉ, 'ବର୍ତ୍ତମାନ' କର୍ମ ମନ୍ତ୍ର ହୋଇଉଠୁ,
ଭାରତର ଶାସନ ତାଙ୍କ ଆଦର୍ଶ ଯେଉଁ ପ୍ରଜା-
ପ୍ରୀତି, ତା'ର ମାନ ଅକ୍ଷୁର୍ଣ୍ଣ ରହୁ !

( ମୁକୁଟ ଧାରଣ କରାଇ ଦେଲେ )

—ତିନି—

—ନଗରର ପ୍ରାନ୍ତବର୍ତ୍ତୀ ପ୍ରାନ୍ତର—

[ କପିଳ ଖୁରୁପିଟିଏ ଧରି, ପ୍ରବେଶ କଲା । ତା'
ସଙ୍ଗେ ଥିଲା ଜଣେ ବୃଦ୍ଧ-ଭିକାରୀ ତାର ମଳିନ
ବେଶ । ]

କପିଳ—ମାନ-ଅପମାନ ? ମାନ ଯା'ର ନାହିଁ, ବୃଦ୍ଧ !
ତା'ର ପୁଣି ଅପମାନ ?

ବୃଦ୍ଧ—ସଣିଷ ଦେଖି ଧରି ତୁମେ ଅସଣିଷ ଭଳି କଥା
କହୁଚତ, ଯୁବକ ? ମୁଁ ଯେତେ ଭିକାରୀଟାଏ !

ମୋତେ ପଦେ କେହି ଡେରି କରି କହିବତ, ମୁଁ ତା'ଙ୍କୁ ଦ'ପଦ ବେଶ୍ କରି ଶୁଣାଇ ଦେବି, ଅଜ ତୁମେତ···

କପିଳା—ଭେରିଅ,—ତରୁଣ ଯୁବକ ! ( ଶ୍ଳେଷପୂର୍ଣ୍ଣ-ହସ ହସି) କିନ୍ତୁ,ସେହି ଯୁବ-ଶକ୍ତିର ସ୍ପର୍ଦ୍ଧା ଅଜ—ସେ ପରିର ମଜ୍‌ବୁତଆ ନଜ଼କର !—ମ୍ମନବାର ଅନୁରକ୍ତ ଗୋଲାମ !—ମୁଁ ଶୁଣିଚ, ବୃଦ୍ଧ—ଗଣ୍ଡାରମ ଏତେ ପୁରୁ ଓ ଶକ୍ତ ଯେ, ଗୁଳି ବ ତା'ଙ୍କୁ ଭେଦବ ନାହିଁ; ମାତ୍ର ମଣିଷର ଗୋଲାମି ଚଣ୍ଡା-ଚମକୁ ବଳି ପୁରୁ ଓ ଶକ୍ତ, ଗୋଲ୍ଲ ଲକ୍ଷ୍ମି ଲେବ, ଗୋଲାମ୍‌ର ମନକୁ ଭେଦବ ନାହିଁ ।

ବୃଦ୍ଧ—ତଥାପି, ଯୁବକ—ଗଣ୍ଡା-ଚମ ଯେମିତ ଗଣ୍ଡାର ସହଜାତ, ମଣିଷର ଗୋଲାମିତ ମଣିଷର ସେମିତ ସହଜାତ ନୁହେଁ ।

କପିଳା—ତା' ମୁଁ ଜାଣେ, ବୃଦ୍ଧ । ସେଇଥିପାଇଁ ତ ବେଳେ ବେଳେ ଖପି ଉଠେ !—ସ୍ୱେଚ୍ଛାରେ ବହିତ ଏହି ଗୋଲାମି-ଖୋଳକୁ ଓଟାରି, ଫିଙ୍ଗି ଦେବାକୁ ମନ ଜବେଇ ଖଟେଇ ହୁଏ ! କିନ୍ତୁ···

ବୃଦ୍ଧ—'କିନ୍ତୁ' ପୁଣି କ'ଣ ?—ତୁମେ ଯୁବା—ତୁମ ଧମନୀରେ ଉଷ୍ଣରକ୍ତ ପ୍ରବାହିତ—ଆଖି ଆଗରେ କର୍ମ-କ୍ଷେତ୍ର ପ୍ରସାରିତ—ଅଜ ତୁମେ ନିଃଶେଷିତ, ନିଷ୍କର୍ମୀବୃଦ୍ଧଟି ପରି ମୁଠାଏ ଭାତଟେକା ଅନ୍ନପାଇଁ, ଜଣକର ଓଳତଳେ ପଡ଼ି ରହିଥିବ, ତା'ର ଗୋଠ ଜଗୁଥିବ,—ଅର୍ଥାତ୍, ଗୋଇଠା ମାରି ରକ୍ତ ଶୋଷୁଥିବ, ତୁମେ ଅମ୍ଳାନ ବଦନରେ ତାହା ଚାଳି ଦେଉଥିବ—ଏହା ଯୁକ୍ତିଯୁକ୍ତତ ? ତୁମର ଯୁବା-ପଦକୁ ଯୋଗ୍ୟତ ?

କପିଳା—( ଚକ୍ଷୁ-ତାରକା ଦ୍ୱୟ ଗୋଟାଏ ଅସ୍ୱାଭାବିକ ଦୀପ୍ତିରେ ଉଦ୍ଭାସିତ ହେଲା, ମାତ୍ର ତାହା ସଙ୍ଗେ ସଙ୍ଗେ ନିସ୍ତେଜ, ମ୍ଳାନ ହୋଇ ଅଶ୍ରୁଧାରରେ ପ୍ଲାବିତ ହୋଇଗଲା । )

ବୃଦ୍ଧ—କଥାଟା ତୁମକୁ ଭାରି ବାଧିଲା ପରି ?—

କପିଳା—ହାଃ-ହାଃ-ହାଃ—ତୁମେ କହୁଚ କ'ଣ, ବୃଦ୍ଧ ?—ମୋତେ ବାଧିବ 'କଥା' ?—ଅଜକୁ ଠିକ୍ ବର୍ଷକ ତଳର କଥା, ଯେଉଁରେ ଲଭିଥିଲି କଥା—ମାତୃ-ଜନନୀ ମୋ'ର, ପୁତ୍ର ବିଚ୍ଛେଦରେ, କାନ୍ଦ କାନ୍ଦ ହାଲିଆ ହୋଇଚ, ଅକ୍ଷୁଣୀ ପାଲଟି ଯାଇଚ, ଖିଅପିଆ ଗ୍ରସ୍ତଚ, ଶେଷରେ ପ୍ରାଣ ପର୍ଯ୍ୟନ୍ତ ମୁଲ୍ୟ ଦେଇଛନ୍ତି;—ତଥାପି ମୁଁ,—ପରର ଚାକର, ପ୍ରଭୁଭକ୍ତ ଗୋଲାମ୍ ଏହି ମୂକ୍ତିକୁ ସାରମଣି—ଅନ୍ତିମ ଶଯ୍ୟାରେ ଶାୟିତା ମାତୃ-ପାର୍ଶ୍ୱରେ ଥାଇ, ସେବା କରିବା, ଟୋପାଏ ଲୁହ ଗଡ଼େଇବା,—ସନ୍ତାନର ଜନ୍ମଗତ ଏହି ସର୍ବନିମ୍ନ ଅଧିକାରରୁ ମଧ୍ୟ ଆପଣାକୁ ବଞ୍ଚିତ କରିଛି; ସେତିକି ନୁହେଁ, ସୁସ୍ଥ ସବଳ କାୟା ଘେନି ବଞ୍ଚି ରହିଚ, ଅଦ୍ୟାପି ବୁକୁ ଫୁଲାଇ ଗୋଲାମି କରୁଛି !—ସୁତରାଂ, ଅକଥ୍ୟ ମାତୃ-ଶୋକର ଯନ୍ତ୍ରଣା ଯା'ଙ୍କୁ ବାଧି ନାହିଁ, ତାକୁ ବାଧିବ ମୁହଁର ପଦେ କଥା ?—ହାଃ-ହାଃ-ହାଃ—

ବୃଦ୍ଧ—ଯୁବକ—

କପିଳା—ଦେଖ, ଦେଖ, ବୃଦ୍ଧ—ଥରେ ଏହି ଦେହଟାକୁ ଟିପିକରି ଦେଖ, କେମିତ ନିଗେଡ଼ା, ନୀରସିଆ,—ବିଲ୍‌କୁଲ୍ ଶୁଖିଲା କାଠ ପାଲଟି ଯାଇଛି !—ଗୋଲାମି କେବଳ ମନରୁ ଖାଲି ସରସତା କାଢ଼ି ନିଏ ନାହିଁ, ଦେହଟାକୁ ମଧ୍ୟ କରି ପକାଏ ନୀରସ, ନିସ୍ତେଜ, ପଙ୍ଗୁ !

ବୃଦ୍ଧ—ଏଭଳି ଆତ୍ମ-ନିର୍ଯାତନର ହେତୁ, ଯୁବକ ?···

କପିଳା—ପିତୃ ଋଣ—ପିତୃ-ସତ୍ୟ !—ହଁ, ହଁ, ତୁମେ ଯ ଅତ, ତୁମେ ଏଠୁଁ ଚାଲିଯାଅତ, ବୃଦ୍ଧ !—ତୁମେ ଜଣେ ସାମାନ୍ୟ ଭିକ୍ଷୁକ—ସୂର୍ଯ୍ୟବଂଶୀୟ ଅଭିଜାତ୍ୟର ଅସାମାନ୍ୟତା ତୁମେ ବୁଝିବ କାହୁଁ ?—ଯାଅ, ଯାଅ—ଆଃ, ଠିଆ ହୋଇ ରହିଲତ ପୁଣି ?—ଭିକତ ପାଇଲ, ଅନ୍ୟ ଦ୍ୱାର ଦେଖିବ—ଆଁ କରି ଠିଆ ହୋଇ ରହିଲେତ ଏ'ଠି, ପେଟ ପୂରିଯିବନି ?

ବୃଦ୍ଧ—ବାବା !—(ଦରଦଭରା କଣ୍ଠରେ ଡାକିଲେ)

କପିଳା—ନା, ନା, ସେମିତି କଥା ନ କହ, ଡାକିବ ନି,—ମାୟା ଲଗେଇବନି !—ମାୟାବୀର ମାୟା-ରୂପରେ ଜାନକୀ ଭୁଲି ଥିଲେ,—ମାୟାବୀର ମାୟା-ଖେଳରେ ଶ୍ରୀରାମ ହଟହଟା ହୋ'ଇଥିଲେ;—ତୁମେ ସେହିପରି ମାୟାବୀ—ଅସିଚ, ମାୟା-ଦବଦରେ ମୋତେ କଳବଳ କରିବ, ଭୁଲେଇବ !—ହଇହୋ, ତୁମର କି ଦରକାର, ତୁମେ ମୋ' ଘର-କଥା, ମୋର ମୁନିବର ଘର କଥା ପଗ୍ଭରିବ ?—ମୋ'ର ଘରେ ନିଆଁ ଲାଗିଲା,—ମୋର ମୁନିବ ମୋତେ ମାଇଲେ. ଧଇଲେ,—ତୁମର ସେଥିରେ କ'ଣ ?—ଜାଣି ରଖ, ବୁଢ଼ା ! ମୁଁ କପିଳା—କପିଳ ମୁନିର ତେଜ ମୋ' ଧମନୀରେ । ଯଅ···ତୁମେ ତୁମ କର୍ମ କର—ମୁଁ ମୋ' କର୍ମ କରେଁ—( ଚାଲିଗଲା ଦମ୍ଭ ଭରେ )

ବୃଦ୍ଧ—( ନିର୍ବାକ୍ ଭାବରେ ଚାହିଁ ରହିଲା ଗମନପଥକୁ )

[ ସେତିକିବେଳେ ବୁଢ଼ାର ନାତୁଣୀ ଚନ୍ଦ୍ରୀ ପ୍ରବେଶ କଲା କାନ୍ଦ କାନ୍ଦ ହୋଇ ]

ଚନ୍ଦ୍ରୀ—ଅଜା···

ବୃଦ୍ଧ—ଚନ୍ଦ୍ରୀ ?—କ'ଣ କଲେ ?···ଗେଣ୍ଡାଏତ ଚଢ଼େଇଲୁ,—ପୁଣି ନାକ ସୁଁ ସୁଁ କାହିଁକି ? କ'ଣ କହନ୍ତି ?—ଏ'ମହରରା କାନ୍ଦାରକୁ ତୁମର ଚୋଲ ସବୁ ଯେମିତି ଆହୁରି ଫାମ୍ପି ଯାଉଛି, ଉଠୁଛି !—

ଚନ୍ଦ୍ରୀ—ତା' କହିବ ନି କ'ଣ ?—ତୁମର ଯେମିତି ଖମ୍ବ-ଅଜା ବୁଢ଼ାମଣା—

ବୃଦ୍ଧ—ଖମ୍ବ-ଅଜା ବୁଢ଼ାମଣା ?—ହଇଲେ, ମୋ' ବୁଢ଼ାମଣା,—ଖମ୍ବ-ଅଜା ?—

ଚନ୍ଦ୍ରୀ—ନୁହେଁ ?—ସେହି ଛତରୀ ତେଲଠା କ'ଣ ଚଣ୍ଡାଏ ଗୋବରଥିଲି,—ଅମର ବଢିଲ ଗୃହିଣୀ ଦେଖି, ସେଇଥିରୁ ପୋଷେ ତୁମ ଅଣ୍ଟିରେ ପୋଷେ ମୋ' ଅଣ୍ଟିରେ ଦେଇଦେଲା···ଦେଲେ, ସେହି ପୋଷକରେ ତୁମ ପେଟ ପୁରିବତ ?—

ବୃଦ୍ଧ—ହଉ, ହଉ, ଯଉଁ ଗଣ୍ଡାକ ସେ ମୋତେ ଅଜାଡ଼ି ଦେଇଛି, ତା'ବି ନେ, ପେଟରେ ପୂରିଲେ, ସ୍ୱର୍ଗୀ ! ହେଲେ,—

ଚନ୍ଦ୍ରୀ—ସେଇ 'ଢୋଲ'କୁ ତୁମର ନିନ୍ଦିବା ନି, ଏଇ କଥାଟ ?—

ବୃଦ୍ଧ—ପୁଣି ଢୋଲ କହୁଛୁ ?—

ଚନ୍ଦ୍ରୀ—ନାହିଁ, କହିବି, ତୁମର 'ଟେଲ ବସରିଆ'···

ବୃଦ୍ଧ—'ଟେଲ୍‌ବସରିଆ ନାଗ'ଟ !—ହଉ—ସେଇକଥା ତୋ' ମଥା ଛୁଇଁ କହୁଛି !

ଚନ୍ଦ୍ରୀ—( ଚଣ୍ଡୋଦେଶ ଉକ୍ତାଭ ହୋଇଗଲା । ତାହା ଯେ ଡ଼ାଇବା ଉଦ୍ଦେଶ୍ୟରେ ଅଭିମାନଭରା କଣ୍ଠରେ କହିଲା ) ତା' କହିବ ନି କାହିଁକି ?—ବେଶୀ ଟେଲ୍‌ବସରିଆ ବୋଲିତ ମୋତେ ଦେଇଛି ଏତିକ···ଅଜା. ତୁମକୁ ଦେଇଛି ଏତେ !—ଭାରି ଦାଆଟାଏ ! ହଇ ଗୋ, ଅଜା, ବାପାପରି ମୋ'ର ଥିଲେ ସାଧବଘର ପୁଅ ?—ତମ୍ଲୁକକୁ ଲଙ୍କାରେ ଚଲିକା ଯାଏ, କଉଁ ବନ୍ଦର ଭଲ ତାଙ୍କ ସଙ୍ଗେ ବୁଲି ବୁଲି ନ ଦେଖିଚ, କୁହତ ?···

ବୃଦ୍ଧ—(ସ୍ମୃତିର ଦଂଶନରେ) ଚନ୍ଦ୍ରୀ···

ଚନ୍ଦ୍ରୀ—( କହିଯାଉଥାଏ ଆଙ୍ଗୁଠିରେ ଗଣି ଗଣି)—ସୁବର୍ଣ୍ଣରେଖା, ନରେଖା, ବାଲେଶ୍ୱର, ଚୂଡ଼ାମଣି, ଧାମରା, ପିପିଲି·· କେତେ ଗଣିବି, କୁହତ ?

ବୃଦ୍ଧ—ଚନ୍ଦ୍ରୀ···ଚନ୍ଦ୍ରୀ···

ଚନ୍ଦ୍ରୀ—ହଁ, ଅଜା,—ସେଥିରୁକର ସୁନ୍ଦର ଜଳ-ଯାତ୍ରା-କଥା ମୋ' ଜଳ ଜଳ ଆଖି ଆଗରେ ଦିଶି ଯାଉଛି,—ଯଉଁଥିରୁକ ବାପା ଜାହାଜ, ବାଲି ଏହିସବୁ ଦ୍ୱୀପ ଅଡ଼କୁ ବୋଇତ ନେଇ ଯାଇ ଥିଲେ; ଅମ ଏଠୁଁ ହାତଦାନ୍ତ, ସିଙ୍ଗ, ରେଶମ୍ କେତେ କ'ଣ ବେପାର ନେଇଥା'ନ୍ତି; ମୁଁ ଏକୁଟିଆ ସାଙ୍ଗରେ ଥାଏ; ସଂମାହିନ ସାଗରର ଅତଟିଭ ତେଜ ସେପାରି ଅଜଣା ମୁଲକର ଅଜଣାଙ୍କ ଭିତରେ ଏକୁଟିଆଟି ରହି, କେମିତି ଦିନ ଗୁଜରାଣ କରିବ, ଏକୁଆ ଭାଳି ଭାଳି, ମନ

ଘର ଧରୁଥାଏ,…ହେଲେ, ସେଠି ପହଞ୍ଚି, ଦେଖେଇ—ଏତେ ଓଡ଼ିଆ ସେ ସବୁ ଜାଗାରେ ଘରଦ୍ୱାର କରି ରହିଚନ୍ତି ଯେ, ମୋତେ ପରି ଅଦେଶୀ ବିଦେଶୀ ବୋଲି ଜଣାଗଲା ନାହିଁ ।

ବୃଦ୍ଧ—ଓଡ଼ିଆ ଆମର କେଉଁଠି କେଉଁଠି ବାଣିଜ୍ୟ ହୋଇ ନାହାନ୍ତି ? କେଉଁ ଦେଶବିଦେଶରେ ଉପନିବେଶ ସ୍ଥାପନ କରି, ରହି ନାହାନ୍ତି ? ଔପନିବେଶିକତା ହିଁ ତ ବୋଇତଆଳି ଜାତିର ଲକ୍ଷଣ । —ହଁ,ଥାଉ ସେ ସବୁକଥା, ହିଅ—

ଚନ୍ଦ୍ରସ୍ୱା—ଓଁହୁଁ ଅହୁରି ଶୁଣିବ, ଆମେ ଯେଉଁଦିନ ବାଣିଜ୍ୟସାରି, କେତେ ଭଲ ଭଲ ଲୁଗା, ଅସ୍ତ୍ର-ଅଳଙ୍କାରମାନ ବୋଇତ ଭର୍ତ୍ତି କରି ଆଣି, ଭାଙ୍କଟପୁରର ସେହି 'ବୋଇତ କୁଦ'ଠାରେ ପହଞ୍ଚିଲେଁ,… ସେଦିନ ବୋଇତ ବନ୍ଦେଇବାକୁ ଆସି, କି ଦେଖିବ ବୋହୂ ଝିଅଙ୍କ ଗହଳି,— କି ଶୁଣିବ ଶଙ୍ଖ ହୁଳ ହୁଳି,—କେତେ ବେଳ କାହିଁ କାହିଁ ଯାତ୍ରୀ ଆସି ଗଦା ହେଲେ ଯେ, —ଯେମିତି ଦେବଗ୍ରାମର 'ମାଘ ସପ୍ତମୀ' ଭିଡ଼ ଯାଉଚି ଲାଗିଗଲା—।

ଚନ୍ଦ୍ରସ୍ୱା—ତୋତେ ନେହୁରା ହେଉଚି, ଝିଅ, ସେ ସବୁ କଥା ଆଉ ମନେ ପକାନା…

ଚନ୍ଦ୍ରସ୍ୱା – ହେଲେ, ମୁଁ ତ ସମ୍ଭାଳି ହୋଇ ରହି ପାରୁନି । ମୋ'ର ମନକୁ ଆଜି ଉକୁଟେଇଛି ତୁମର ଏହି ଚେଲ୍ ବୟସିଆ ନାତୁଣୀ ଦିଅପଣୀ-ଢଙ୍କଣୀଟା । ଦିଅପଣି ? ସାଧୁଟା ବୋଇତ ବୋହେଇ ଚେଗାର ମେଘର ପରି ଆସିଥିଲେ ବାପା… ସେଇଥିରୁ ବୋଇତେ ଟଙ୍କ ଯେଉଁମାନେ ଫରମାସ କରିଥିଲେ, ଯେଉଁମାନେ କରି ନ ଥିଲେ, ସମସ୍ତଙ୍କୁ ସେମିତି ମାଗଣା ବାଣ୍ଟି ଦେଇ ଥିଲେ,—ମୋ'ର ଶରଧା ପଣିକୁ ସିନା ? (ଦୀର୍ଘଶ୍ୱାସ ଛାଡ଼ି) ସବୁଦିନତ କାହାର ସମାନ ଯାଏ ନାହିଁ—ଆମର କର୍ମ ପଡ଼ିଲା—ଦାମୋଦର ନଈର ଭଙ୍ଗା ଗୁଡ଼ରେ ବୋଇତ ବୁଡ଼ିଲା—ସାତ-ମହାଜନ ଦେଣାକୁ ଭିଟାମାଟି ଉଚ୍ଛନ୍ନ ହେଲା— ବାପାଙ୍କ ଛାତି ଫାଟିଗଲା—ସୁନାର ସଂସାର ଚୂନା ହେଲା—ତଥାପି, ଆଶ୍ଚର୍ଯ୍ୟ, ତୁମେ ରହିଲ ଅତୁଟା, ଭଙ୍ଗା ବୋଇତର ଅଭଙ୍ଗା-ମାସ୍ତୁଲ ଦଣ୍ଡିଟିପରି ଠିଆ !—କେବଳ ମୋ'ର ସ୍ନେହ-ରଜ୍ଜୁରେ ଟାଣିହୋଇ ସିନା ?—ହେଲେ, ଧନ୍ଦା କରିବାକୁ ହେବତ, ଜୀଇଁବାକୁ ହେବତ ?—ତୁମେ ବୁଢ଼ା, —ଅଲଅଲ ନାତୁଣୀ ମୁଁ ସବୁକେ ତ ହାତ-ଗୋଡ଼ଗାଇ 'ସୁଭଦ୍ରା'—ସୁତରାଂ ଅନ୍ୟ ଉପାୟ ନ ଦେଖି,—ଭିକ୍ଷାକୁ ଉପଜୀବିକା କଲ, ପୁଣି ଟହଳ ଯେଉଁଠାରେ ନିଜ ମାନମହତ୍ତ୍ୱ ଯିବ, ଏ'କଥାକୁ ଜାଗି, ବାହାରିପଡ଼ିଲ ପଦାକୁ, ଅସିଲ ଏହି ଅଚିହ୍ନା ଗାଁଇକୁ— ।(ଦୀର୍ଘଶ୍ୱାସ ତ୍ୟାଗ ପୂର୍ବକ) ନାହିଁ ତ, ଆମକୁ ଦିଅ ପଣ ଦେଖେଇ ହଉଚି ?—ନ ଦେଖିଲା ପୁଅ ଦେଖି, ନା କଇଁଛ କାଢ଼ି କି ଦେବ ।

ବୃଦ୍ଧ—ହଇଲୋ, ଇସିଁକି—ମୋ' ନାତିର ଦିଅପଣକୁ ନିନ୍ଦୁଚୁତ ? ଆଜି ଏତେ ଉଚ୍ଛବଟାଏ !—ସହର ଯେମିତି ଦୁଲୁକୁଚି !—ଲଡ଼ୁ, ପୁରି, ମାଲପୁଆ-ବାସନାରେ ପବନ ମହକୁଚି !—ହେଲେ, 'ବେଲ ପାଚିଲେ, କାଉର କି ଯାଏ', ଏହିଭଳି ଦଶା ଆମର ଗ୍ରହଦୋଷରେ, ତା' ନିଜ ଆଖିରେ ଦେଖି ଅଇଲୁତ ?—ଅହୁରି ବି ଆମେ କଙ୍ଗାଳ, ଭିକାରିଗା ବୋଲି, ରାଜା-ଲୋକେ କଟୁଥିଲ ଲାଗେଇ, ଆମକୁ ସହର ଫାଦାପାର କରି ନ ଦେବାଯାଏ ଡର ଯାଉନି ନାହିଁ, ତା' ଅଙ୍ଗେ ଅଙ୍ଗେ ଲିଭେଇଚୁ ? ଏତେ ସବୁ ହୋଇ, କହିଚୁ ସେକଥା ଅହୁରି ? ଝିଅଲୋ ! ତେଲିଆ ମୁଣ୍ଡରେ ତେଲ ଢଳା ହୁଏ, ଲୁଖିଲାକୁ କେହି ପଚାରନ୍ତି ନାହିଁ, କେହି ପଚାରନ୍ତି ନାହିଁ ।

ଚନ୍ଦ୍ରସ୍ୱା—ନ ପଚାରନ୍ତୁ…ତେଲିଆଙ୍କ ମାନ ତେଲିଆଙ୍କ ଠେଇଁ ଥାଉ । ହେଃ ଆମେ ଲୁଖିଲା ଲୋଖିଲା ହେଲୁ ବୋଲି, ଆମର ଖାନଦାନ ଖୁଆଇ, ଛକଲା ହେବୁ ତ ?—ସେଇଥି ପାଇଁ ତ ଆପଣା ଲକ୍ଷ୍ମୀଙ୍କୁ ରାଣ୍ଡି, ଏହି ବାସ ଘଉଆ— ପାଖକୁ

ସିଧା ସିଧା ବାହାରି ଆଇଲୁ ।…ନଈରୁ ପାଣି ପେଟେ ପେଟେ ପିଇ, ଫେରୁଛେଁ, ଏତିକିବେଳେ ଭେଟିଲୁ ଗୋଟାଏ ଶାଳୁଆରଜାଙ୍କୁ, ଦୁଇଁଦ ଉପରେ ଗାଦି ମାଡ଼ିବସିଛି ଭାରି ଅଡ଼ାରେ ।…ସେତେବେଳେ ଦାନକରି ଯାଉଥିଲେ ଲକ୍ଷ ଦୁର୍ଗ ଉହାଡ଼ରେ ଲୁହିଁ ରହିଥାଏ ରଜାଟି ଡେଣିକି ସୁନାର ହଲଦରେ ସୁନାର ସପନ ଦେଖିଲା ଭଳି । ହଠାତ୍ ନଜର ପଡ଼ିଗଲା ଆମ ଉପରେ,— ଡାକିଲା ପାଖକୁ,—ଅଜାଡ଼ି ଦେଲା ଆପଣା ଅଣ୍ଟିର ସର୍ବସ୍ୱ, ଅମରି ଛୁଣ୍ଡା କାନି ପଣତରେ । —ଦାତାପଣ୍ଠ ! ସତେକି ରଜା ହରିଶ୍ଚନ୍ଦ୍ର !—

ବୃଦ୍ଧ—ପୁଣି ବାଦ୍ରୁପ ।…କହନ୍ତି, ନାତୁଣୀ—'ଲୁଣିଲା ମୁଣ୍ଡ' ସିନା 'ଲୁଣିଲା ମୁଣ୍ଡ'କୁ ଚାହିଁଥାଏ ।

ଚନ୍ଦ୍ରସ୍ରୀ—ହେଲେ, 'ଶୁଖିଲା ଢୋଲ'ଟି 'ଶୁଖିଲା ଢୋଲ'କୁ ଚାହିଁଲା ନାହିଁ, ଅଜା—

ବୃଦ୍ଧ—ହଇଲେ, ବେଇମାନ…ଢୋଲ-କଥା ମୁଁ ଚାହିଁଲି ନାହିଁ,—ଏ'କଥା ତୁ ଆହୁରି କହୁହଉଚୁ, ଢୋଲ ?—

ଚନ୍ଦ୍ରସ୍ରୀ—ବେଶ୍‌ତ,—ସୁନା ଭାଇଟି ପରି ଚୁପ୍‌ଚୁପ୍ ଅଜାଡ଼ି ଦଅନ୍ତ ତୁମ ଗଣ୍ଠିକ ଏ' ଅଣ୍ଟିରେ… ( ଅଣ୍ଟି ଦେଖାଇଲା )

ବୃଦ୍ଧ—( ଅଜାଡ଼ି ଦେବାକୁ ଯାଉଥିଲା ଟମଟମ ଭାବ ଘେନି )

[ କପିଳା ଗାଣ୍ଡୁଆଟାଏ କାଖରେ ଯାକି ଠିକ୍ ସେହି ସମୟରେ ପ୍ରବେଶ କଲା ]

କପିଳା—ରୁହ, ଅଜା…ଦେବନି—ସେତକବି ସେ ଅଜାଡ଼ି ଦେବ ଏଇଲୁଣି ମୋ'ର ଏହି ଘାସ ଗାଣ୍ଡୁଆରେ ।…ଦେଖନ୍ତ, ତା' ଗଣ୍ଠିକ ସେ କରିଛି କ'ଣ ?—

[ ଗାଣ୍ଡୁଆଟା ଅଣେଇକରି ଦେଖାଇଲା । ସେଥିରେ ଅଳ୍ପ ଗଣ୍ଡେ ମୁଢ଼ି ଥିବାର ଦେଖାଗଲା ]

ଚନ୍ଦ୍ରସ୍ରୀ—( ସେତେବେଳକୁ ଲାଜରେ ସଢ଼ି, ପଳାଇ ଯାଇଥିଲା କୁଡ଼ାର ପଛପଟକୁ; ଏବଂ ସେଠାରେ ଠିଆହୋଇ ବୁଢ଼ାର ବାଲକେଶ୍ୱରକସାଇଁକୁ ଥିଲା । )

ବୃଦ୍ଧ—( ଥରେ କପିଳା ଆଡ଼େ ଲୁହିଁଲା, ତା'ପରେ ଗଦଗଦ କଣ୍ଠରେ ଡାକିଲା—) ଚନ୍ଦ୍ରସ୍ରୀ…!

ଚନ୍ଦ୍ରସ୍ରୀ—ଅଜା…( ବୃଦ୍ଧର ମୁହଁକୁ ଉଙ୍କେଇବାକୁ ଯାଇ, କେଉଁ ସରମର ଗୋଟାଏ ଧକ୍କାରେ ଉଙ୍କେଇ ନ ପାରି, ମୁହଁ ତଳକୁ କଲା )

ବୃଦ୍ଧ—( ଚନ୍ଦ୍ରସ୍ରୀର ଚିବୁକ ଧରି, ତା' ମୁହଁକୁ ଅଟେଇ ରହିଲା…ପ୍ରତିକ୍ରିୟା-ସ୍ୱରୂପ, ବୃଦ୍ଧର ଲୋଚନରୁ ଲୁହ ଟପ ଟପ ଗଡ଼ି ପଡ଼ିବାର ଦେଖାଗଲା )

ଚନ୍ଦ୍ରସ୍ରୀ—( ଅସମ୍ଭାଳ ବୋଧ କରିବାକୁ ଲାଗିଲା )

ବୃଦ୍ଧ—( ଭଗ୍ନ କଣ୍ଠରେ କହିବାକୁ ଲାଗିଲା ଏଥର ) ଚନ୍ଦ୍ରସ୍ରୀ !…କପିଳା ଦେବତା !…ଦେବତା-ପ୍ରୀତି ଭାରି ଦଗା ଦଅନ୍ତି, ଭାରି ଦଗା ଦଅ…

ଚନ୍ଦ୍ରସ୍ରୀ—( ଉଚ୍ଛୁଳା କଣ୍ଠରେ ) ଅ-ଜା…

ବୃଦ୍ଧ—ନା, ଚନ୍ଦ୍ରସ୍ରୀ…( ଚନ୍ଦ୍ରସ୍ରୀକୁ ଭଙ୍ଗଦେଇ ଗୁଲିଗଲା ।

କପିଳା—( ଭାବାବେଗରେ ) ଚ-ନ୍ଦ୍ର-ସ୍ରୀ ( କାହାରି ଅନୁସରଣ ପୂର୍ବକ ଧାଇଁଗଲା । )

---

—ଚାରି—

—ବହିଃ ପ୍ରାଙ୍ଗଣ—

[ ଏଥର ଉତ୍ସବର ସଙ୍କେତ ଓ କୋଳାହଳ ସ୍ପଷ୍ଟ ଜଣାଗଲା । ଶଳାସବ୍ୟସନାଦିର ଅନ୍ତ ନ ଥିଲା । କୋଦ୍‌ମା ସିଂ ମତୁଆଳ ହୋଇ, ସୁରା-ପାନ ହସ୍ତରେ ପ୍ରବେଶ କଲା । ସାଙ୍ଗରେ ଥିଲା ଜଣେ ମାହାରୀ ନର୍ତ୍ତକୀ ଓ ତା'ର ନର୍ତ୍ତନ ସାଥି ଜଣେ ବାଦକ ।

କୋଦ୍‌ମା ସିଂ—ଚଳାଅ ଚଳାଅ—ବନ୍ଦକଲ କାହିଁକି ? …'ସୁରା' ସଙ୍ଗେ 'ସୁରଙ୍ଗ' ଗା'ନ୍—ଯେମିତି ଯୋଡ଼ା ସଙ୍ଗେ ଗୋରୁ ଦାନ୍—ହାଃ-ହାଃ-ହାଃ ( ପାନ କରିସାରି ) ଆଃ ପୁଣି ଲୁହିଁ ଠିଆ ହୋଇଗଲ ? ନାଚ, ଗାଅ—

ବାଦକ—ଏହ୍ନ ପଦାଂଟାଢେ—
କୋଦ୍‌ମା ସିଂ—ମୋ'ର ହୁକୁମ୍—!

[ ବାଦକ ଏଥର ବାଧ୍ୟ ହୋଇ, ବଜାଇଲା ଓ ନର୍ତ୍ତକୀ ନାଚିଲା...ନର୍ତ୍ତନାନ୍ତେ... ]

କୋଦ୍‌ମା ସିଂ—ହେ, ନାଚ୍‌ବାଲ୍ !—
ବାଦକ—ସା'ନ୍ତେ !—
କୋଦ୍‌ମା ସିଂ—ଧେତ୍—'ନାଚ୍‌ବାଲୀ' !—ତୁମେ ନୁହଁ !—
ନର୍ତ୍ତକୀ—ମଣିମା !—ସା'ନ୍ତେ !—
କୋଦ୍‌ମା ସିଂ—ଆଃ—'ମଣିମା' କହୁବ,—'ସା'ନ୍ତେ' ପୁଣି ଯୋଖୁଚ କାହିଁକି ?
କୋଦ୍‌ମା ସିଂ—ମୁଁ ତୁମ ଉପରେ ଭାରି ଖୁସୀ !
ନର୍ତ୍ତକୀ—ମଣିମା—
କୋଦ୍‌ମା ସିଂ—ହଁ,...ଧରତ ଏ'ପାନ—
ନର୍ତ୍ତକୀ—( ପାନ ଧାରଣ କଲା )
କୋଦ୍‌ମା ସିଂ—ତୁମେ କିଏ ?—
ନର୍ତ୍ତକୀ—ନାଚ୍‌ବାଲୀ ।
କୋଦ୍‌ମା ସିଂ—ଧେତ୍, ତୁମେ ମୋ'ର ପାନ ଧାରଣ କରିଚ,—ତୁମେ ମୋ'ର 'ପାନ' !...
ନର୍ତ୍ତକୀ—( ଲେଲଜ୍ଜା ହୋଇ ଚାହିଁଲା )
କୋଦ୍‌ମା ସିଂ—ହଁ, ଆଉ ମୁଁ ତୁମର ?
ନର୍ତ୍ତକୀ—'ମଣିମା' ।
କୋଦ୍‌ମା ସିଂ—ସାବାସ୍ !...ଅଚ୍ଛା, ଆଜ କି ଦିବସ ?—
ନର୍ତ୍ତକୀ—'ସ୍ୱନକ୍ଷତ୍ର-ଦିବସ' !—
କୋଦ୍‌ମା ସିଂ—ବାଃ—ବାଃ—ହଁ,—ଏହ୍ନ ସ୍ୱନକ୍ଷତ୍ର ଦିବସରେ ରଜାମାନେ ଯାହାଙ୍କ ପ୍ରତି ସନ୍ତୁଷ୍ଟ, ସେମାନଙ୍କୁ ଉପାଧି ଭୂଷିତ କରିଥାନ୍ତି; ମୁଁ ସେହ୍ନ ପ୍ରଥା ମାନି, ତୁମକୁ ଗୋଟାଏ ଉପାଧି ପ୍ରଦାନ କରିବି ।
ନର୍ତ୍ତକୀ—ଗୁମ୍ଭ, ମଣିମା !—
କୋଦ୍‌ମା ସିଂ—ଉଁ ହୁଁ—ହେଲା ନାହିଁ—ତୁମେ ଆଦୌ ପାଟି ଫିଟାଇ ନକହି ଏମିତି ହୃଇଥାଇ, ମଥା ପୋତି ଠିଆ ହେବ—( ପୂର୍ବ ଦୃଶ୍ୟରେ ବାହୁନୀ ପତି ଯେମିତି କରିଥିଲେ, ଠିକ୍ ସେହ୍ନ ଭଙ୍ଗୀ ଦେଖାଇଲା ) ଦେଖେଁ, ଠିଆ ହୁଅତ ?...
ନର୍ତ୍ତକୀ—( ସେମିତି କଲା, କିନ୍ତୁ ହସି ପକେଇଲା )
କୋଦ୍‌ମା ସିଂ—ଆଃ, ମୂର୍କୁଲା ହସ ନୁହେଁ—ମୁରୁକି ମୁରୁକି ହସିବ ।
ନର୍ତ୍ତକୀ—( ମୁରୁକି ମୁରୁକି ହସିଲା )
କୋଦ୍‌ମା ସିଂ—ହଁ, ଠିକ୍ ହୋଇଚି !...ବାଦକ !—
ବାଦକ—ମଣିମା—
କୋଦ୍‌ମା ସିଂ—( ବାଦକପ୍ରତି ) ତୁମେହେଲ 'ସେନା-ପତି'...ପାହଙ୍କର ଏହ୍ନପଟେ ଠିଆହେବ; ଆଃ, ସେମିତି 'ନୁଆନଟପାଠଲୀମୁକୁଟ' ଭଙ୍ଗରେ ନୁହେ, ସିଧା ସଳଖ !

[ ବାକେ ସେ ଯେମିତି କେଉଁ ପାଖେ ଠିଆ ହୋଇଥିଲା ପୂର୍ବ ଦୃଶ୍ୟରେ, ଠିକ୍ ସେହ୍ନପରି ଠିଆ କରାଇଦେଲା । ]

କୋଦ୍‌ମା ସିଂ—ବେଶ୍...(ନର୍ତ୍ତକୀପ୍ରତି ) ତୁମର ପିତା-ମହଙ୍କର କି ନାମ ଥିଲା, ପାନ ?—
ନର୍ତ୍ତକୀ—( ହସି ପକାଇଲା )
ବାଦକ—( ବାହୁନୀପତିର ଆଗମନ ପଥକୁ ଚାହିଁ ) ବାହୁନୀପତି...
କୋଦ୍‌ମା ସିଂ—( ବାଧାଦେଇ ) ଆଃ...ତୁମେ ଭୁଲ୍ କରିଚ !...'ବାହୁନୀପତି' ନୁହେଁ,—'ଶିଖରେଶ୍ୱର ବାହୁନୀପତି'...( ନର୍ତ୍ତକୀପ୍ରତି ) କୁହ, କୁହ, ସେଇନାମ କୁହ,...'ରଜାର ହୁକୁମ୍' !—

[ ବାହୁନୀପତି ଠିକ୍ ସେତିକିବେଳେ ପ୍ରବେଶ କଲେ ଓ ନର୍ତ୍ତକୀ, ବାଦକ ପ୍ରଭୁଙ୍କୁ ଚାଲିଯିବାକୁ ଇଙ୍ଗିତ କଲେ । ସେମାନେ ଚାଲିଗଲେ ]

ବାହୁନୀପତି—ତୁମେ ମାତାଲାମି କରୁଛ ତ ?
କୋଦ୍‌ମା ସିଂ—ତୁମେଇ ତ ମାତାଲ୍ କରିଛ ମୋତେ, ବନ୍ଧୁ !—ଯେଉଁ ରାଜ୍ୟ-ଲାଳସାର ଅସ୍‌ମାନ-ସୁରା କାନେ କାନେ ଢାଳି ଦେଇଛ, ତା'ର ତୀବ୍ର ମାଦକତାରେ ତ ମଗଜ ହୋଇଗଲା ମଜ୍‌ଗୁଲ୍ !—

ଏହି ସୁରା ଆଉ ନର୍ତ୍ତକୀ, ସେହି ଗୁଲଜାର୍ ଶରାବ ଇଷରତ୍ ଗୋଲାପୀ ଆଭାସ ସିନା ! ହାଃ-ହାଃ-ହାଃ—

ବାହିନୀପତି—ସେନାପତି—

ବୋଦ୍‌ମା ସିଂ—ନା, ନା, ମୁଁ 'ମଣିମା'···'ସ୍ମୃତି'··· 'ରକ୍ଷା' !—ସୁରା···ନର୍ତ୍ତକୀ—(ମାତାଲ ପରି ଟଳି ଟଳି ଚାଲି ଯାଉଁ ଯାଉଁ, ଫେରି ଠିଆହୋଇ ) ହଁ, ଦେଖ, ସୌରଚନ୍ଦ୍ର···ଚନ୍ଦ୍ରର ଜବଅାରେ ରାହୁ ଭାନୁକୁ ଗ୍ରାସ କରିଥାଏ, ସୁତରାଂ ମୁଁ ଅପଣାକୁ 'ସୌର ରାହୁ', ଏହି ପଦବୀରେ ଆଜିଠାରୁ ଭୂଷିତ କଲି !···ହାଃ···ହାଃ···ହାଃ··· (ଚାଲିଗଲା)

ବାହିନୀପତି—ପୃଥିବୀର କବଅାରେ ରାହୁ ଚନ୍ଦ୍ରକୁ ମଧ୍ୟ ଗ୍ରାସ କରିଥାଏ·· ସୁତରାଂ, ପୃଥିବୀରକ୍ତେ ବାସନା ଯେନ, ଏ ରାହୁସଖା ମୋତେ ଗ୍ରାସ କରିବ ନାହିଁତ ଶେଷକୁ !

---

—ପାଞ୍ଚ—

—ନନ୍ଦିଗ୍ରାମ-ସାହୁକାରର ଗୃହ—

[ ଗୃହର ସେହି ପଟ ଦେଖାଯାଉ ଥିଲା, ଯେଉଁପଟେ ତା'ର ଗୁହାଳ ।—ଗୁହାଳ ପଦାରରେ କପିଳା ଶୋଇଥିଲା । ଗୁହାଳ ଭିତରେ ଗାଈ, ଗୋରୁମାନେ ହମ୍ବାଳି ଛାଡୁଥିଲେ । ବ୍ରତ ପାହି ଆସୁଥାଏ । କପିଳା ରାତସାରା କ ଗୁଡ଼ାଏ ସ୍ୱପ୍ନ ଦେଖି, ଅଚେତା ହୋଇ ନିଦେଇ ପଡ଼ିଥିଲା ସଖୀଲ ପଦାରକୁ । ତା'ଯେ ପାଖରେ ନାନା ସୁସ୍ୱାଦୁ ମିଷ୍ଟାନ୍ନ ଭର୍ତ୍ତି ଗୋଟିଏ ପଥରଠୁଙ୍କା ଥୁଅ ହୋଇଥାଏ । ଭାଟର କଣ୍ଠସ୍ୱର ଶୁଣାଗଲା । କପିଳାର ନିଦ ଗୁଡ଼ିଙ୍କିନା ଭାଙ୍ଗିଗଲା ]

କପିଳା—( ପୂର୍ବ ଭାବାବେଗରେ ଚିତ୍କାର କରିଉଠିଲା ) ଚନ୍ଦ୍ରସ୍ରା···( ତା'ପରେ ନିଦବଲବଲ ଆଖି ମଳୁଲା, ପାରିପାର୍ଶ୍ୱିକ ଅବସ୍ଥା ପୁନଃ ପୁନଃ ସନ୍ଦର୍ଶନ, ଓ ବାସ୍ତବତା ଉପଲବ୍ଧି କରି, ଭାଟର ଗୀତ ଶୁଣିବାକୁ ଲାଗିଲା ଓ ଠୁଙ୍କାଟି ଧରି, ଧୀରେ ଧୀରେ ଭାଟନିକଟକୁ ଅଗ୍ରସରମ ନହେଲା । )

ଭାଟ—( ସେତେବେଳକୁ ପ୍ରବେଶ କରିସାରି, ଗାଉଥାଏ— )

ଗୀତ

ଜାଗ···ଜାଗ···ଜାଗ·· ଜାଗ ।
ଉଇଁଲଣି ନଭେ ରବି···ହେବ ପ୍ରାଚୀ ଭାଗ ॥
ଜୀବନ ବେଳାର ତୁମେ ତରୁଣ ତପନ,—
ପ୍ରଖର କିରଣ ତବ, ନାଶିବ ତମିର;
ନିଦ୍ରାରେ ଅଚେତ,—ଏ'କି ବିପରୀତ ?—
ଉଠ, ଜାଗ···ଉଇଁଲଣି ରବି ପ୍ରାଚୀ ଭାଗ ॥

କପିଳା—ଏ'ଠୁଙ୍କାଟି ଧରିଛ···

ଭଗାରି—( କର୍ବାକ ଭାବରେ ତା' ମୁହଁକୁ ଅନାଇ ରହିଲା )

କପିଳା—କାଲିଠୁଁ କଣ୍ଟେ ତୁମେ କିଛି ଖାଇନ ?—

ଭଗାରି—ଅଜକ ତନିଦିନ ହେଲା ଉପବାସୀ, ଦାତା ···ହେଲେ,—

କପିଳା—ମୁଁ···ମୁଁ···ମୋ' କଥା ପଚାରୁଛ ତ ?— ମୋ'ର ପେଟ ଭର୍ତ୍ତି, ବାପା !···ଏ' ଗୁଡ଼ାକ ବଳକା···ଫୋପାଡ଼ି ଦେଇଥାନ୍ତି ସିନା !—

ଭଗାରି—ନା, ନା, ତୁମର ଚେହେରା ଦେଖି, ତା'ତ ମନେ ହେଉନ ଅଦୌ ।

କପିଳା—( ହସିବାକୁ ଚେଷ୍ଟାକରି ) ଚେହେରା କାହିଁକି ପଡ଼ି ଯାଇଛି ଟିକିଏ, ଏଇଯାତ ?— ତା···ତା···

ଭଗାରି—ଉଁ ହୁଁ···ତୁମେ ବର୍ଷେ ହେଲା ଯେମିତି କିଛି ଖାଇନ, କା'କଥା ସଦାବେଳେ ଭାବୁଚ,— ତୁମର ଚେହେରା ଦେଖି, ଟିକ୍ ସେଇକଥା ମନେ ହେଉଚି; ଅଧିକ, ଅଖିପତାରେ ଯେମିତି କେଉଁ ପ୍ରିୟା-ପ୍ରୀତିର ଗୋଟାଏ ବିରହ-ମଧୁର

ସ୍ୱପ୍ନ ବର୍ତ୍ତିମାନ ସୁଦ୍ଧା ଜଡ଼ହୋଇ ରହିଛି, ଠିକ୍ ଯେଉଁପରି ମନକୁ ଫାନ୍ଦୁଛି । (ଗୀତ ଭଙ୍ଗୀରେ)

"ଦ୍ୱିଜରାଜ ମୁଖୀ ହେଲା କି ବିମୁଖୀ ?—
ଘଟିଲା ପ୍ରମାଦ, ସଖି;
ବଢ଼ଇ ଅଗନ ବରଜ ନନ୍ଦନ
ହୃଦୟା ଶଶିକୁ ଲକ୍ଷି ।"

କପିଳା—( ବିମନା ହୋଇଥିଲା, ତା'ପର ଭିଖାରୀକୁ ଲକ୍ଷ୍ୟକରି ) ତୁମେ ନେବତ ନିଅ, ନାହିଁତ, ଗୁଲ୍‌ପାଅ ଏଠୁଁ ।

ଭିଖାରୀ—ଏତେ ବିରକ୍ତ କାହିଁକି, ବାପ ? ମୁଁ ତ ତୁମକୁ କିଛି ମାଗିବାକୁ ଆସି ନ ଥିଲି ।

କପିଳା—( ଅପ୍ରସ୍ତୁତ ହୋଇ, ମନକୁ ମନ ) ମୁଁ ଯାଚିଗୁଞ୍ଜ ଦେଇଥିଲି ଚନ୍ଦୁରୀକୁ, ସେଇଥିପାଇଁ କ'ଣ ମୋ'ର ଦାନ ସେ ମୋତେ ସେମିତିକରି ଫେରାଇ ଦେଇଥିଲା ?

ଭିଖାରୀ—ମନରେ କଷ୍ଟ କଲ ?—ହଉ, ଦିଅ, ଦିଅ, ···ଖୁସି ମନରେ ମୁଁ ନେବି, ବାପ—

କପିଳା—( ଦୀର୍ଘଶ୍ୱାସ ତ୍ୟାଗାନ୍ତେ ) ଓଃ···ଚନ୍ଦୁରୀ ଯଦି ଏମିତି ଖୁସି ମନରେ ମାଗିନେବାକୁ ଧାଇଁ ଆସନ୍ତା ଏବେକ୍ଷଣି ।···

ଭିଖାରୀ—'ଚନ୍ଦୁରୀ' । ସେ କିଏ ?—

କପିଳା—(ସ୍ମିତ ବଦନରେ ) ସେ···ସେ···(ହଠାତ୍ ଗମ୍ଭୀର ଭାବରେ) ତୁମେ କିଏ ?—ତୁମର ସେ ଖବରରେ ପ୍ରୟୋଜନ କ'ଣ ? ତୁମେ ଭିଖାରୀ ମଣିଷ—ବାର ଦ୍ୱାରୀ—ଭିଖ ନେବ ତ, ନିଅ, ନାହିଁତ ବାଟ ଦେଖ ।

ଭିଖାରୀ—(ସ୍ମିତ ଭାବରେ) ଯେତେ ଜଳଖିଆ ଠୁଙ୍ଗା- ନୁହେଁ, ପ୍ରୀତି-ଠୁଙ୍ଗା···ପ୍ରୀତି-ଚିନ୍ତାମଣି ହୃଦ ଉକୁଡ଼ା କରି ବାଢ଼ି ରଖିଛନ୍ତି ଦୁନିଆର ଦୀନତମ ପ୍ରୀତି-ଭିଖାରୁଣୀ ଶ୍ରୀମତୀଙ୍କ ଲାଗି, ମୁଁ ସେଥିରେ ଅଧିକାରୀ ହେବାକୁ ଭାଜନତ ?

କପିଳା—ଭିଖାରୀ ?—

ଭିଖାରୀ—ଭିଖାରୀ ମୁଁ ନୁହେଁ, ବାପ—ହଁ, ମୁଁ ଭାବର ଭିଖାରୀ 'ଭାଟ'—'ଚୁରଣି'—

କପିଳା—ଓ, ତୁମେ ସେହି ଚୁରଣି, ଅଭଟେଙ୍କ ଦିନ ଯା'କୁ ଦେଖିଥିଲି, ପାହାନ୍ତ ପହରର ଗୋଟାଏ ଅନ୍ଧାର ଆଲୁଅର ଲୁଚକାଳି ଭିତରେ ?

ଭିଖାରୀ—ହଁ ସହରତଳି ସେହି ପାଠ ଆରପାର ଦଣ୍ଡାବାଟରେ ରାଜ-ସ୍ତୁତି ଗାଉ ଗାଉ ଯାଉଥିଲି, ଦେଖିଥିବ ।

କପିଳା—ହେଲେ, ସେତେବେଳେ ତ ତୁମର ଚେହେରା ଥିଲା ଦୋହରା···ଦୋହରା ଦେହ··· ଚିକ୍କଣ ଗାଲପାଟି···ବେଶରେ ମଧ ଥିଲା ବେଶ୍ ପରିପାଟି ।

ଭିଖାରୀ—ସମୟର ଚକ୍ର-ଗତି ଯେମିତି, ଅବସ୍ଥାର ପରିବର୍ତ୍ତନ···ଉତ୍ଥାନ ପତନ । କାଲିର କଥାରୁ ବୁଝିଥିବ, ବାପ—ନଗରରେ ଏତେ ଉତ୍ସବ··· ଧୂମ୍-ଧାମ୍···ନଗରବାହାରେ, ଲୋକେ 'ହା ଅନ୍ନ, ହା ଅନ୍ନ' ବୋଲି ଡହଳ ବିକଳ, ଉଚ୍ଛନ ସିନା !

କପିଳା—ଥାଉ, ଚୁରଣି···ସେ-କଥା ଆଉ ମନେ ପକାଇଦିଅ ନା···( ଦୀର୍ଘଶ୍ୱାସ ତ୍ୟାଗ ପୂର୍ବକ ) ଜାଣେ ନା, ସେହି ନିରନ୍ନ ଉପବାସୀ ବୁଢ଼ାଟି, ଆଉ, ତା'ର ନାତୁଣୀଟି,···ସେ ଦୁହିଙ୍କର ଦଶା କ'ଣ ହେଲା ?—ମୁଁ ଯାଏଁ, ମୁଁ ଯାଏଁ···ତୁମେ ଜାଣିଅଛ ?

ଭିଖାରୀ—ଅଧୀର ହେବନି ବାପ, ମୁଁ ନେବି, ସେହି- ଦିନ ନେବି, ଯେଉଁଦିନ ତୁମେ ରାଜଗାଦିରେ ରାଜା ହୋଇ ବସିବ, ଆଉ ରାଜାର ଭୋଗ୍ୟ 'ରାଜ-ଭୋଗ' ବାଢ଼ି ଦେବ ପ୍ରଜାଙ୍କୁ ( ଆଶୀର୍ବାଦ କଲା )

କପିଳା—( ନିର୍ବାକ୍ ଭାବରେ ଚାହିଁ ରହିଲା )

ଭିଖାରୀ—ଆଶ୍ଚର୍ଯ୍ୟ ହେବ ନି, ବାପ ! କାଲ ଆସୁଛି ···କାଲ କ୍ରମେ ଏହି ମଳି-ମୁଣ୍ଡିଆ ହେବ ଦେଶରେ ଅସଲ ମୁଣ୍ଡ···ରାଜଗାଦି ହେବ ରାଜ୍ୟର, ରାଜାର ନୁହେଁ !···( ଚାଲିଗଲା ଗାଉ ଗାଉ ପ୍ରଥମ ଗୀତର ସେହି ଚରଣଟି 'ଭସୁନାହିଁ' 'ଡସୁନାହିଁ' ଇତ୍ୟାଦି )

କପିଳା—( ଅଭ୍ୟନ୍ତର ହୃଦୟର ସେହି ମାତୃ-ବାଣୀ ସୁସ୍ପଷ୍ଟ ଶୁଣିବାକୁ ଲାଗିଲା ଯେମିତ )

( ମାତୃ-ବାଣୀ )—"ହଁ, ମୋ'ର କପିଳା ହେବ ରାଜା-କପିଳେନ୍ଦ୍ର ଦେବ···ଆଉ ମୁହିଁ ସୂର୍ଯ୍ୟମଣି, ହେବି ରାଜ-ମାତା ।।"

କପିଳା—ମା—ମା—( ଠୁଙ୍ଗାଟି ହାତରୁ ଖସିପଡ଼ିଲା ।)

[ ଗଧିଆ ଠିକ୍ ସେହି ସମୟରେ ପଶି ଆସି, ଠିଆ ହୋଇଥିଲା ]

ଗଧିଆ—କ'ଣ କାରେ, କପିଳା ?—'ମା, ମା' ବୋଲି ଏମିତ ପାଟିତୁଣ୍ଡ କରି ଉଠିଲୁ ଯେ—!

କପିଳା—କସୁର ହେଇଚ, ଗୋସେଇଁ—ମେଲାଣି ଦିଅ,···ଗୋଠ-ବେଳ ଗଡ଼ି ଗଲାଣି··· ।

ଗଧିଆ—କାରେ, ତୋ'ମଥା ବିଗିଡ଼ିଚ କାରେ ?—ଆକାଶର ଚିନ୍ଦୁରା ଲିଭିନି···ଘାସ, ପତରରୁ କାକର ଝଡ଼ିନି···କହୁଚୁ ଗୋଠ-ବେଳ ଗଡ଼ି ଗଲାଣି ?—ତୋ'ର ହେଇଚ କ'ଣ, କହତ ?

କପିଳା—ଗୁହାଳ ଗୋଟାକର ପାଇଟି ପଡ଼ିଚ, ଗୋସେଇଁ ସା'ନ୍ତେ— (ଗମନୋଦ୍ୟତ )

ଗଧିଆ—କପିଳା !—

କପିଳା—ସା'ନ୍ତେ !

ଗଧିଆ—ଯେତ୍ରୁ କଣ କରଚୁ, କହତ ? କାଲି ରାଜାଘରୁ ଅମାଲୁ, କାକରା, ଘିଅପିଠା କେତେ କ'ଣ ଭେଣ୍ଡେଇ ଝୋକେଇ ଝୋକେଇ, ବୋଝା ବୋଝା ଯେମା ଆସିଥିଲା ଯେ, ମୁଁ ଅପାଲୁ କହି, ନିଜ ନାଁ କରି, ଭଲ ଭଲ ଚିଜ ସେଥିରୁବାଛି, ତୋ'ର ପାଇଁ ଏଇ ଠୁଙ୍ଗାଟିରେ ବାଢ଼ି ରଖିଥିଲି;···ବଖତ ଭଣ୍ଡି ତୋତେ ଅଣି, ଦେଇ ଯାଇଥିଲି;···ଆଉ ତୁ ସେଥିରେ ଚିପ ବି ଲଗେଇନୁ ? ହଇରେ, ଠୁଙ୍ଗାଟା ଯାକ ଜଳଖିଆ ମାଟିରେ ବୁଣି ଦେଇଚୁତ ?

କପିଳା—ସା'ନ୍ତେ, ମୁଁ ଗୋଟେଇ ନଉଚି···ମୋର କସୁର ହୋଇଚ ।

ଗଧିଆ—'କସୁର', 'କସୁର'···ତା ହବନି···ତୁ ଏଇ-କ୍ଷଣି ଏ'ସବୁ ମୋ'ର ଆଗରେ ସାରିବୁ, ତା'ପର ଯାଇ ଯଉଁ କଥା ।

କପିଳା—ସା'ନ୍ତେ ! ତୁମେ ନିଶ୍ଚିନ୍ତ ଥାଅ—ମୁଁ ବାସି-ପାଇଟି ସାରିଦେଇ, ବାସି ମୁହଁଟା ପଖାଳିପକେଇ ଏ'ଗୁଡ଼ାକ ନିଶ୍ଚୟ ସାରିଦେବି ।

ଗଧିଆ—ହୁଁ, ସ୍ୱାର ଅର୍ଥ, ମୁଁ ତୋତେ ବଳାଉଚି ···ହଇରେ, 'ବୋପାଗ୍ରାଣ, ଢେକିଗିଲ' ତ ?

କପିଳା—ଏ'କି କଥା, ସାନ୍ତେ ? ପୋଡ଼ାପେଟ··· ଏହିପେଟ ଲାଗି ଯେତେ ନାଟ···ତାରି ତେଳୁଲି ଘାଟ ସମାଳି ନପାରି ପୁଅ ଗର୍ଭଧାରଣୀଙ୍କୁ ବି ଗର୍ଭ-ସାର୍ କରିଦିଏ···ଅଜା ତା'ର ଅଲିଅଳ ନାତୁଣୀକୁ ବି ଜଳପାନ କରିପକାଏ···( ଗୋଟାଏ ଉଚ୍ଛ୍ୱସିତ ଅଟ୍ଟହାସ୍ୟ ସମ୍ବରଣ ପୂର୍ବକ ) ଗୋସେଇଁ, ଗୋସେଇଁ ! ମୁଁ ପାଇଟିକୁ ଯିବି···ଉଚ୍ଛୁର ହେଲାଣି ···ଓଃ···( ଚାଲିଯାଉଥିଲା ଜୁହାର ହୋଇ )

ଗଧିଆ—କପିଳା—

କପିଳା—ସା'ନ୍ତେ—

ଗଧିଆ—ଏଣିକି ଅ'···ତୋ ପେଟକଥା କ'ଣ ଫିଟେଇ କହତ ?—ଦାନା ପେଟକୁ ଯାଉନି···ରାତରେ ନିଦ ନାହିଁ···ବୋଉକୁ ସ୍ୱପନରୁ କରେ ? ଉଁହୁଁ, ତା'ତ ନୁହେଁ—ହଇରେ, କଉଣସି ଭଲ ଟୋକୀ ଫୋକୀ ହାବୁଡ଼ରେ ପଡ଼ିଛୁ କରେ ?

କପିଳା—ନା'ତ···( କହିପକେଇ ଢୋକ ଚାପି ଅଟକି ଗଲା )

ଗଧିଆ—କପିଳା !—ମୁଁ ଜାଣେ, ତୁ କେବେ ମିଛ କହୁନୁ—ସତ, ସତ କହ—ମୋତେ ବାଁଆରନା ।

କପିଳା—ସା'ନ୍ତେ,—ମୋତେ ଅଟକ କରନ—ଅନେକ ଧନ୍ଦା ମୋ'ର—ଗୁହାଳ ପୋଛିବି—ଘାସ ଛାଡ଼ିବି— ( ଚାଲି ଯାଉଥିଲା )

ଗଧିଆ—ଠିଆ ହ'—ତୁ ଡାଳେ ଡାଳେ ଗଲେ ମୁଁ ପତ୍ରେ ପତ୍ରେ ଚାଲୁଛି—

କପିଳା—( ମଥାପୋତି ଠିଆହେଲା )

ଗଧିଆ—ମଥା ଟେକ—ମୋ' ଆଡ଼େ ଚାହାଁ—

କପିଳା—( ଚାହିଁଲା )

ଗଧିଆ—ତୁ ଜାଣୁ, ରାତରେ ମୋତେ ନିଦ ନ ଆଏ ।

କପିଳା—କାଣେ ।
ଗଧିଆ—କାହିଁକି ?
କପିଳା—ଚୋର ଧରିବାକୁ ।
ଗଧିଆ—କାଲି ରାତିରେ ଗୋଟାଏ ଜବ୍‌ବର ଚୋର ଧରିଛି ।
କପିଳା—କେଉଁଠି, ସାଂନ୍ତେ ?...
ଗଧିଆ—ଏହି ଗୁହାଳଘରେ ।
କପିଳା—ଗୁହାଳଘରେ ?
ଗଧିଆ—ଏହି ଘର ପଦାରେ, ତୋ'ର ଶୋଇଲା ଶେଯରେ ।
କପିଳା—ମୋ' ଶୋଇଲା ଶେଯରେ ?...
ଗଧିଆ—ଚୋର ଧରାପଡ଼ିଛି ... ହେଲେ, ମାଲ୍ ଚୋରିକରିପାରି ?
କପିଳା—ମାଲ୍ କି ମାଲ୍ ସାଂନ୍ତେ ?
ଗଧିଆ—ସାଉକାରର— ଟଙ୍କା-ଧନ— ମାନେ, ଆମ କପିଳାର ସଫା-ମନ ।
କପିଳା—ସାଂନ୍ତେ !—
ଗଧିଆ—ସଫା ସଫା କହ, କପିଳା—ନିଦବାଉଳାରେ 'ଚନ୍ଦୁରା' 'ଚନ୍ଦୁରା' ବୋଲି ଡକାପାରି, ଯେଉଁ ଚନ୍ଦୁରା ପାଇଁ କାହିଁରେ କ'ଣ କଲ୍‌ବଲ, ସେ 'ଚନ୍ଦ୍ରମାଟି' କିଏ ?—
କପିଳା—ସାଉକାରେ, ମୁଁ ସ୍ୱୀକାରକରୁଛି, ତୁମର ଋଣ ସୁଝିବାକୁ; ମୋତେ ଚାକର ପରି ଦେଖିବ, ମୋ'ପ୍ରତି ଖାତକପରି ବେଭାର କରିବ ।
ଗଧିଆ—ସୁନ୍ଦରୀ, ଖାତକର ଅନ୍ତର ଖବରରେ ସାଉକାରର ଲୋଡ଼ା ନାହିଁ, ଏଇଯାଉ ?
କପିଳା—ସାଉକାରକୁ ବିକିଛି ଏ'ଗତର—
ଗଧିଆ—ଅନ୍ତର ନୁହେଁ ?...ହଃ...ହାଃ...ହାଃ... ଅରେ, ଯେଉଁ ସାଉକାର ଖାତକର ଅନ୍ତରକୁ ଅକ୍ତିଆରକରି, ଆପଣା ଖୁସିଖିଆଲ ମୁତାବକ୍ ତା'କୁ ଖେଳାଇ ନ ପାରିଲା, ତା'ର ସର୍ବସ୍ୱ ଶୋଷି ତାକୁ ସାରଶୂନ୍ୟ କରି ନ ପାରିଲା, ସେ ସାଉକାର ପୁଣି 'ସାଉକାର',—ଏହି ପଦକୁ ଯୋଗାଡ଼ ?—

କପିଳା—ରାକ୍ଷସ ...।
ଗଧିଆ—ଉଁହୁଁ, ମଣିଷ ।
କପିଳା—ମଣିଷର ରକ୍ତ ମଣିଷ ଶୋଷିବ,—ଅସମ୍ଭବ ।
ଗଧିଆ—ସମ୍ଭବ । ମଣିଷର ଏହାହିଁତ ବାହାଦୁରୀ— ଦେଖ, କପିଳା—ତୁ କିଛି ଦଙ୍ଗା କରନା—ସେ ହିଅଟି କିଏ, କହିଦେଇ ଦେବୁ'...ନଚେତ୍ ତା' ସଙ୍ଗେ ତୋ'ର ବାହା ଥାଆ କରେଇ ଦେବି... ତୁ ତା'କୁ ନେଇ, ସୁଖରେ ଘର ବାନ୍ଧିବୁ...ହଁ, ଆହୁରି ପଇଡ଼ା ଗ୍ଲେଇଁ ନମ୍ବର ଖାଉଛି, ହିଅଟିର ବାପାବୋଉ ଯଦି ନାରାଜ ହେଉଥା'ନ୍ତି, ସେଥିକି ବି ପର୍ବାଏ ନାହିଁ...ଜାଣୁ ତ, ରାଜା ଆଉ ରାଜକର୍ମଚାରୀ ଆମରି ଅକ୍ତିଆରରେ...ଏହି ମୁଠା ଭିତରେ... ।
କପିଳା—ମୁଁ କ'ଣ ଶୁଣୁଛି ଠିଆ ହୋଇ ?—ଯାଏଁ, ଗାଈ ବାଛୁରୀ ଭେଣେ ହମ୍ବାଳି ଛାଡ଼ିଲେଣି ।
ଗଧିଆ—ଶୁଣ, କପିଳା...ମୁଁ ହୁକୁମ ନ ଦେବାଯାଏ, ତୁ ଗୋଠକୁ ଯାଇ ପାରିବୁନି, କି ଏ' ଗୁହାଳରୁ ଗୋଡ଼ ବି କାଢ଼ି ପାରିବୁ ନି...ସାବଧାନ ।
କପିଳା—(ତୀବ୍ର ଦୃଷ୍ଟିରେ ଚାହିଁ ରହିଲା ଗଧିଆ ଆଡ଼େ)
ଗଧିଆ—ସେମିତି ଆଖିତରାଟି ଚାହୁଁଛୁ ଯେ, କିଏ ମୁଁ ଜାଣୁତ ?—ସାଉକାର ଭେଣେଇର ମାମଲତ୍‌କାର ଶ୍ୟାଳକ...ହେଃ...ହେଃ...ହେ...
କପିଳା—ମାମଲତ୍‌କାର ତ ଯେତିକି ତଣ୍ଟି ଚିପା ଏ' ଦୁନିଆରେ—( ଚାଲିଗଲା ଗୋଟାଏ ଧଡ଼ସରେ )
ଗଧିଆ—( କପିଳାର ଗମନ ପଥକୁ କିଛିକ୍ଷଣ ନିରୀକ୍ଷଣାନ୍ତର ) ଅପା...ଅପା...

[ ବୁଧି ପ୍ରବେଶ କଲା । ଦେହରେ ବୋଟେ ଚଦ୍ଦରଣା । ହାତରେ ଝାଡ଼ୁମୁଠା । ଠକ୍ ଝାଡ଼ଖଣ୍ଡି-ଠାକୁରାଣୀ ପରି ଦିଶୁଥାଏ ]

ବୁଧି—କ'ଣ କରେ, ଗଧି ?—
ଗଧିଆ—ଦଫା ଆମର ରଫା, ଅପା—( ମଥାରେ ହାତ ରଖି ହତାଶ ଭାବରେ ବସିପଡ଼ିଲା )
ବୁଧି—ଏଁ—

ଗଧିଆ—( ଦୀର୍ଘଶ୍ୱାସ ଛାଡ଼ି ) କପିଳା ଆମକୁ ଫାଙ୍କିବ—

ବୁଧି—ଅରେ, ତୁ କହୁଚୁ କ'ଣ ? ସେ ଆଇଲା ଦିନୁ, ଲକ୍ଷ୍ମୀ ଆମକୁ ବରଦାୟୀ—ଗୁହାଳଭରି ଗୋରୁ—ଅମାରଭର୍ତ୍ତି ଧାନ—ତୁ ଏ'କ କଥା କହୁଚୁ ରେ ?—

ଗଧିଆ—ସେ ରୋଗେଇଚି, ଅପା !

ବୁଧି—ରୋଗେଇଚି ? କି ରୋଗରେ ?—

ଗଧିଆ—ଯଉଁ ରୋଗ ଭେଣେଇକୁ ବେଳେ ବେଳେ ଘୋଟିଥାଏ ।

ବୁଧି—ମାନେ ?

ଗଧିଆ—ଗାଧୁଆ ତୁଠକୁ ଗଲା ଆଇଲା ବାଟରେ ପରଘର ଝିଅ, ବୋହୂ ଭୁଆସୁଣୀଙ୍କୁ ଦେଖି…

ବୁଧି—ହୁଁ…

ଗଧିଆ—ଯେମିତ କପିଳାର ଘାସପଡ଼ିଆ ମଝିଁ,ହୁଙ୍କାପଟେ କଉଁ ମାଛି ବାଳୁକୁ ଦେଖିକରି ହେଉ, କି ବାଉଁଶ ବୁଦା ତଳେ କଉଁ ପଡର ସାଉଁଳିକୁ ଦେଖିକରି, ହେଉ…

ବୁଧି—ହେଉଚି ? ହେଲେ, ସେଥିକି ଭାବେଣି କ'ଣ ? ସେଇ ନାଡ଼ିଛୁଣିଆ ଘରଭଙ୍ଗା ରୋଗ ଛଡ଼େଇବା ମନ୍ତ୍ରଯନ୍ତ୍ର ତ ମୋ'ଠେଇଁ ।

ଗଧିଆ—ତା ଜାଣେ ବୋଲିତ, ତୋତେ ଡାକି, ତୋ'ସଙ୍ଗେ ମସୁଦା କରୁଚି ।

ବୁଧି—ମସୁଦା ଆଉ କ'ଣରେ ?…ଶୁଣିଲୁନା, ଘାନେ ଅଟେ ଦେଇ ଏଇ ହାଣ୍ଡିରେ, ରୋଗଟା ହାଣ୍ଡି ଦେଇ ଆସେଁ ।

ଗଧିଆ—ଅପା…(ହସିଲା)

ବୁଧି—କିରେ, ହସିଲୁ ଯେ !—

ଗଧିଆ—ଏମିତ କାହାଣେ ହାଣ୍ଡିରେ ବ ରୋଗର ବଡ ମରବନି !

ବୁଧି—( ଅଣ୍ଟାରେ ଲୁଗା ଭିଡ଼ି ) ମରବ ନି ?— ଅରେ, ଏଇ ହାଣ୍ଡି ଖଣ୍ଡିକ ଉଣ୍ଡେଇଲା ବେଳକୁ ମଣ୍ଡା, ତୋ' ଭେଣେଇ ଯାଇ, ଘୂମ କନ୍ଦରେ ପଡ଼ଶ, କି ଶଠ ତଳେ ଲୁଚେ, ଦେଖିବୁ ?

ଗଧିଆ—ଏଇ ହାଣ୍ଡି ଯୋଗୁଁ,ନା, ହାଣ୍ଡିହସ୍ତା ଯୋଗୁଁ ?

ବୁଧି—କ'ଣ କହିଲୁ ?…ମୁଁ ହାଣ୍ଡି-ଖଣ୍ଡି ?…

ଗଧିଆ—ହାଣ୍ଡିଖଣ୍ଡି ହୋ, ହାଣ୍ଡିଖଣ୍ଡି ହୋ, ତୋରପର ଖଣ୍ଡିଏ ଖଣ୍ଡି ଦେ'ତ କପିଳାକୁ ବେଗେ—

ବୁଧି—ମୋ'ର ଗରଜ ? (ବାହୁନି) ଆରେ ମୋ' ଗଧିରେ…ଗୋଟିଏ ବୋଲି ତୁ ମୋ' ଭାଇର ଆରେ ମୋ ଗଧିରେ ! କେବେ ତୋ' ହାତକୁ ଦ'ହାତ କରି, ବାପ ବଂଶ ଉଜଳ ରଖିବୁ କି, ଆରେ ମୋ' ଗଧିରେ…

ଗଧିଆ—ଆଃ, ଗଧିଆଣୀ ମିଳିଚାଲିତ, ଅପା ?

ବୁଧି—କ'ଣ ? ଧନ ଥିଲେ, ବାଘୁଣୀ ମିଳିବ— ଗଧିଆଣୀତ ଛାର !—ଅଳ୍ପ ଅସ୍ତୁ କି ସେ ଲୁଞ୍ଚୁଣିଖିଆ…ତୋ' ବାହାକଥା ପକେଇଲା ବେଳକୁ କେମିତ ଶୁଙ୍ଘି ଅପଣ କରି. ମୋତେ ଭଣ୍ଡିଚି ସଦାବେଳେ…ତା' ଧନ ଚୋଟରେ ଯଦି ନିଆଁ ଲଗେଇ ନ ଦେଇଚି, ତେବେ ମୋ' ନାଁ ବୁଧି ନୁହେଁ ।

ଗଧିଆ—ଅପା—ବେଶୀ ନୁହେଁ,ଅଞ୍ଜୁଳା ଏ ଖାଲି ସେଇ ଯଖ-ଧନରୁ ଆଣି ମୋତେ ଦିଅ କରେଇଦେଉ, ଦେଖିବୁ, କେମିତ ଚନ୍ଦ୍ରବଦନୀ-ଝିଅଟିଏ ଯୋଗାଡ଼ ହେଉଚି, କି, ନା !

ବୁଧି—ସତେ, ସତେ, ଗଧି…

ଗଧିଆ—( ଭିତରକୁ ଚାହିଁ ) ଅପା…ଭେଣେଇ !… ଛାଡ଼, ଛାଡ଼,…ଚାଡ଼, ସଚିଳରୁନଟି ? ତା' ହେଲେ, ସବୁ ଫସି ଯିବଟି ।

ବୁଧି—ଠିକ୍ କହିଚୁ— ମୁଁ ଚିଡ଼ିଲେ ବରଂ ସେ ଗଉଁ ଧରିବ—ଛାଡ଼ିଲେ, ଦୁନିଆ ଅନ୍ଧାର ଦେଖିବ,— ଫଖୋଳିବାକୁ ଧାଇଁ ଆସିବ—

ଗଧିଆ—ସେତକି ବେଳେ ତୁ ଅଡ଼ିଲୁଖା ଦେଇ, ମୁହଁ ଆଡ଼େଇ ନେବୁତ—

ବୁଧି— ଦେହ ପଦ ପଲ୍ଲବମୁଦାର'' ଏକାଦେଲଲେ— ହୋଃ-ହୋଃ-ହୋଃ—

ଗଧିଆ—ଚୁପ୍, ଚୁପ୍—ଛାଡ଼, ଛାଡ଼

ବୁଧି—( ଗଧିଆକୁ କୁଣ୍ଢାଇ, ବାହୁନିଲା ) ଆରେ, ମୋ ଗଧିରେ, ତୋ ପାଇଁ ମୁଁ କି ବୁଦ୍ଧି କରିବିରେ, ଆରେ ମୋ ଗଧିରେ···

ଗଧିଆ—ଆଖିରେତ ଟୋପେ ହେଲେ ଲୁହ ନାହିଁ, ତା'କୁ ଆଉ ବୁଦ୍ଧି କର—

ବୁଧି—( ଛେପ ଲଗାଇ ଦୁଇ ଆଖିରେ ) କେମିତ ? ଟପ ଟପ ଲୁହ ହେଲାତ ?—

ଗଧିଆ—ଏଟେଣି କାନ୍ଦଣା ଯେ ବନ୍ଦ ହେଲା !—

ବୁଧି—( ଖୁବ୍ ପାଟିତୁଣ୍ଡ କରି କାନ୍ଦ ) ଆରେ ମୋ ଗଧିରେ···

ଗଧିଆ—( ସମତାଳ ରଖି ) ଅଲୋ' ମୋ' ବୁଧି ଅପାଲୋ—

[ ଠିକ୍ ସେହି ସମୟରେ ଚନ୍ଦ୍ରଶ୍ରୀର ଅଜା ସେହି ବୁଢ଼ା ପ୍ରବେଶ କଲା । ସେ କେମିତ ବାଘ୍ୟା ବାଉଳା ପାଲଟି ଯାଇଥାଏ ]

ବୃଦ୍ଧ—ତୁମେ କାନ୍ଦୁଚତ ?—ତୁମର ଝିଅକୁ ବି ହରଣଚାଲ କରି ନେଇ ଯାଇଛନ୍ତି ?—

ବୁଧି—ଅଲୋ, ଏ' ନଅଁ ଲଗାଟା କିଏ ଲୋ—( ଗଧିଆକୁ ଜାବୁଡ଼ି ଧରିଲା )

ଗଧିଆ—(ଅପ୍ରତିଭ ଭାବରେ ଚୁହିଁ, ବୁଧିକୁ ଟାଣି ନେଇ ଚାଲିଗଲା )

ବୃଦ୍ଧ—ହାଃ-ହାଃ-ହାଃ—ଏମିତ ଚାଲି ନ ଯିବା ଛଡ଼ା ଉପାୟ କ'ଣ ?—ସେ ରାଜକର୍ମଚାରୀ—ସେନାପତି—ଯେତେ ଯା' ଜୁଲମ କରୁ, ତା'କୁ ସାତଖୁଣ୍ ମାଫି । ହେଲେ, ମୁଁ ମାଫ କରିବି କାହିଁକି ?—ରାଜ-ତକ୍ତମାତଲେ ସେ ଯେମିତ ମଣିଷ, ପ୍ରଜା-ଭେକ ତଳେ ମୁଁ ବି ସେମିତ ମଣିଷ ।—ଚନ୍ଦ୍ରଶ୍ରୀ—ଚନ୍ଦ୍ରଶ୍ରୀ—ସିଂହଳ ଉପକୂଳରେ, ଜଳଦସ୍ୟୁ କବଳରୁ ନିଜେ ଯେମିତ ଆତ୍ମରକ୍ଷା କରିଥିଲୁ ଦିନେ, ସେମିତ ଆଜି ସ୍ଥଳ-ଦସ୍ୟୁ କୋଦଣ୍ଡ କବଳରୁ କ'ଣ ଆପଣାକୁ ମୁକୁଳାଇ ପାରିବୁ ନି ?—ତୁ ସାଧବ-ଘରଝିଅ—ତୋ'ର ଅକଲ ଅଛି—ସାହସ ଅଛି···ତୁ ପାରିବୁ, ତୁ ପାରିବୁ···ମୁଁ ସେଇ ହୁଙ୍କାଠେଇଁ, ତୋର ବାଲ୍ୟଅରକା'ର ଗାଦିଠେଇଁ, ତୋରି ଅପେକ୍ଷା କରି ବସି ରହିଲି···ତୁ ବେଗେ ଆ, ଚନ୍ଦ୍ରଶ୍ରୀ···

[ ଚାଲିଗଲା ପାଗଳପରି ]

[ କପିଳା ହଠାତ୍ ଗୁହାଳ ଭିତରୁ ଧାଇଁ ଆସିଲା । କପିଳା ଯେମିତ ସେ-କପିଳା ହୋଇ ଆଉ ନାହିଁ । ତା'ର ଚେହେରା ବିଲ୍‌କୁଲ ବଦଳି ଯାଇଥାଏ । ସେଥିରେ ଗୋଟାଏ ଅସ୍ୱାଭାବିକ ଭାବ ବେଶ୍ ଫୁଟି ଉଠିଥାଏ ]

କପିଳା—'ଚନ୍ଦ୍ରଶ୍ରୀ' —'ଚନ୍ଦ୍ରଶ୍ରୀ' ବୋଲି ଜଣାଶୁଣା କଣ୍ଠରେ କିଏ ଯେମିତ ହଠାତ୍ ଡାକିବାର ଶୁଣିଲି—ନାଃ, ଏ' ମୋର ମତିଭ୍ରମ, ମନର ଖିଆଲ—

[ କାଶିଆ ସେହି ଗୁହାଳ ଭିତରୁ ବାହାରି ଆସିଲା । ତା'ର ଲଫଙ୍ଗା-ବେଶ, ଲଫଙ୍ଗା-ଭାବ ।]

କାଶିଆ—କି ବେ, ଦୋସ୍ତ—କଥାଟା ଗପୁଥିଲୁ, ଛାଆଁ ଲାଗିଲା ମାଟର୍ଗ ଉଠି ଆସିଲୁ—କଥା କ'ଣ ?

କପିଳା—କାଶିଆ ଭାଇ, ତୁ ଯା'ଡା···ଏଠୁଁ ଗୋଡ଼ କାଢ଼ିବି, ସେ ଜୁ'ଉ ମୋ'ର ଅଜା ନାହିଁ, ଶୁଣିଲୁ ।

କାଶିଆ—ହେଲେ, ଗୋଡ଼ରେତ ତୋ'ର ବେଡ଼ିଫେଡ଼ି କିଛି ଦେଖୁନି ? ଆବେ, ଦୋସ୍ତ । କଥା ପଡ଼ିଲାରୁ କହୁଚି, ଶୁଣ—ଥରେ ଗୋଟାଏ ଡକାଇତିରେ ମୁଁ ଧରା ପଡ଼ିଥାଏ—ପୁରୁଣା ଦାଗୀ ବୋଲି, ଗୋଡ଼ରେ ବେଡ଼ି ପଡ଼ିଲା—ହେଲେ, ମାସ ଗୋଟାଏ ବିତଚି କି ନାହିଁ ଅନ୍ଧାର ଖୋପ ଭିତରେ,ଦିନେ ଯେମିତ ଫାଙ୍କବାଟେ ମୁହଁ ଟେକି ଅନେଇ ଦେଇଚି ଏଇ ନେଳିଆ ଆକାଶକୁ, ଆଉ କି ଶୁଆ ଶିକୁଳି ମାନେ ?—ଶିକୁଳିଟାକୁ ଠିକି ଠିକି କରି ଛୁଟେଇ ପକେଇ, ପଞ୍ଜୁରି ଭାଙ୍ଗି, ଏକଦମ୍ ଉଡ଼ି ଛୁ'ଟ ତା'ର ମୁକୁଳା ବାଇଜଙ୍କୁ । ହାଃ-ହାଃ ହାଃ ।

କପିଳା—ହେଲେ, ଭାଇ—ମୁଁ ତ 'ଋଣ'ର ଶିକୁଳିରେ ଛନ୍ଦା—'ସତ୍ୟ'ର ପଞ୍ଜୁରିରେ ବନ୍ଦୀ ।

କାଶିଆ—ଅବେ, ଦୋସ୍ତ—'ଋଣ' ବୋଲି, ଦିନରାତି ଭାଳି ମରୁଛୁ ଯେ—'ଋଣ' ଗୋଟାଏ କି ଚିଜ ଭଲା ?—ମୋ' ବାପା ବି ଋଣ କରିଥିଲା । ଧାଡ଼ି-ହୋଇ ମରିଗଲା । ପୁଣି ଓ୍ୱାରସ୍ ମୁଁ, ସାହୁକାର ଗୋଡ଼େଇଁ ଆସିଲା ତାଗାଦାକୁ···ହେଲେ, ମୁଁ କ'ଣ କଲି, ଜାଣୁ ଭାଇ ? ଟୋଲାକୁ ଥୋପିରେ ଥୋପିରେ ଖାଇ, ସୁଧ-ମୂଳ ଅଦାୟକୁ ବିଦାୟ କରିଦେଲି !—ଅଦ୍ଭୁତ କି ଇଲମ୍ ବତେଇ ଦେଲି, ଶୁଣିବୁ ?—ସାହୁକାର ଧନ ଦେଇ ଥିଲା, କାରଣ ତା'ର ଧନ ଥିଲା । ଖାତକ ଧନ ନେଇ ଥିଲା, କାରଣ ତା'ର ଧନ ନ ଥିଲା । ହେଲେ, ଧନୀ-ସାହୁକାର ବି ମଣିଷ, ନିର୍ଧନୀ-ଖାତକ ବି ମଣିଷ । ଏ' ଦୁନିଆରେ ସାହୁକାର ବି ବଞ୍ଚିବ, ଖାତକ ବି ବଞ୍ଚିବ । ଏଇ ବଞ୍ଚିବା କଥାଟା ଯେତେବେଳେ ମୂଳ, ସେତେବେଳେ ଜଣେ ହେଲଟି ବେଲି ଯେ ଆଉ ଜଣକୁ ପ୍ରାଣରେ ମାରିଦେବ ନ'ବ, ସ୍ତା କଉଁ ଶାସ୍ତ୍ରରେ ଲେଖିଛି, କୁହ ତ ?

କପିଳା—କାଶିଆ ଭାଇ !···

କାଶିଆ—ଅବେ, ଦୋସ୍ତ—'ଋଣ' ଗୋଟାଏ ଫାନ୍ଦା ଅବାଜ—ଲୋକକୁ ଫାନ୍ଦରେ ପକେଇବାକୁ, ମାମଲତ୍‌କାରଅଙ୍କ ଯେତିକି ଫନ୍ଦ ।

କପିଳା—ତେବେ 'ସତ୍ୟ' ବୋଲି ଗୋଟାଏ ଧର୍ମଅଛି ତ, ଭାଇ ?

କାଶିଆ—'ସତଅ' ?—'ଧରମ' ?—ହାଃ···ହାଃ··· ହାଃ···ଅବେ, ଦୋସ୍ତ···ଯେଉଁ 'ସତଅ'କୁ ଏତେ ଅବୁଝା ପଡ଼ିରୁ—ତୋ'ର ସୁରୁଯବଂଶୀ ରାମଟା ସେଇ 'ସତଅ'କୁ ମାନି ଯେମିତି ବନକୁ ଯାଇଥିଲା, ସେଇ ସତଅକୁ ସେମିତି ମୂଳରୁ ପୋଛି ଦେଇ ସୀତାଅଠାକୁରାଣୀକୁ ବନକୁ ପଠାଇ ଦେଇ ଥିଲାତ ? (ସୀତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରୁ କରୁ) ଓଃ, ଠାକୁରାଣୀର ଦୁଃଖ କଥା ମନେପଡ଼ି-ଗଲେ, ମନଟା ଯା' ହୁଏ, ଶଳା, କହିବି କ'ଣ ·· ଯେମିତି ଘଣ୍ଟି ଚକଟି ହୁଏ ଠାକୁରାଣୀ ପାଇଁ, ସେମିତି ରକତ ଗୁଳିଲ ଗୋଟେଇ ହୁଏ ପରା ତୋ'ର ରାମା-ଠାକୁରଟାକୁ ଅନେଇ ।

କପିଳା—ହେଲେ, ଭାଇ, ଠାକୁରେ ଯା' କରିଥିଲେ, ତା' ଦଶ ଓ ଦେଶପାଇଁ !···ଏଇ ଦେଶ ଆମ ସଭିଙ୍କର ମା । ଏଇଦେଶ-ମା ଲାଗି, ଭାଇଜାତ ହୁରେ ଆପଣା ବାପ-ମାକୁ ବି ଆମେ ବଳି ଦେବୁଁ !···ରାଜନୀତି କୁହ, ଧର୍ମନୀତି କୁହ, ସମାଜ ନୀତି କୁହ—ଆମର ନୀତି ଶିକ୍ଷାର ଏଇ ହେଲା ମୂଳମନ୍ତ୍ର । ସେଇ ମନ୍ତ୍ରଟି ମୋ' ମା ମୋ' କାନେ କାନେ ଶିଖେଇ, କହୁ ଯାଇଛି, ଭାଇ ।

କାଶିଆ—ତା'ଯଦି, ତେବେ ସେଇ ଦେଶ ମା ଉପରେ କେତେ ଅତଅଚାର, ଅନଅଚାର ଚାଲିଥାଉ, ଆଉ ତୁ ଏଣେ ଆପଣା ସୁଆର୍ଥ ଘେନି, ଅପରର ଫାଁଙ୍କା କୁହାକୁ ବଡ଼ କରି ମଣି, ଗୋଟାଏ ରକତଶୋଷା ରାକ୍ଷାସର ଗୋଡ଼କୁ ଚାଟି, ପଡ଼ିଥା' । (ବ୍ୟଙ୍ଗସ୍ୱରେ) କି ନା···ସାଧୁ, ସଚ୍ଚୋଟ, ଦୁନିଆର ବାହାର !—

କପିଳା—କାଶିଆ ଭାଇ—!

କାଶିଆ—ହଁରେ ହଁ, ଦୋସ୍ତ—ମୁଁ ଧନ ଚୋରିକରେ ସତ, ହେଲେ, ତୋ'ଭଳି କଥା ଚୋରି କରେ ନା ।

କପିଳା—ମାନେ ?

କାଶିଆ—ମନକୁ ପଚାର—ତୁ ତୋର ଗୋଟାଏ କେଉଁ ପେଟର କଥା ମୋ'ଠିଁ ଅଛପାଏ ଲୁଚେଇ ରଖିଛୁ କି ନା ?—

କପିଳା—(ଇତସ୍ତତଃ ହୋଇ, ତା'ପର ସ୍ୱୀକାର କରି)—ହଁ, ଲୁଚେଇଛି, ଭାଇ !

କାଶିଆ—ବାସ୍ ସେତିକି ! ଆଉ ବେଶୀ ଶୁଣିବାର ଦରକାର ନାହିଁ । (ହସି ହସି) ଦେଖିଲୁତ, କେମିତି ଚୋର, ଚୋରକୁ ଚିହ୍ନେ ?—ଅବେ, ଏମିତି କରି ଟିକିଏ କବୁଲେଇ ଦେଖିବୁ ତ, ଦେଖିବୁ—ଗୋଟା ଦୁନିଆଟା ଗୋଟାଏ ଚୋରର ଅଡ୍ଡାଖାନା । ହେଲେ, ଦୋସ୍ତ—

କପିଳା—(ଲଜ୍ଜାରେ ଅବନତ ହୋଇଥିଲା—ଅନାଇ) କଣ ?—

କାଶିଆ—ଏ' ଦୁନିଆ-ଅଡ୍‌ଡା ଖାନାରେ ଯେତେ ଗ୍ରେବ ଅଛନ୍ତି, ସବୁରିଙ୍କୁ ବଳ ଗୋଟାଏ ଭଲ ଗ୍ରେବ, ଯାଙ୍କୁ ମୁଁ ଅଦୌ ପସନ୍ଦ କରେନା—

କପିଳା—(ବିରକ୍ତ ଅଧର ସହ ନେତ୍ର ବିସ୍ଫାରିତ କଲା)

କାଶିଆ—ନାସି-ଗ୍ରେବ ।

କପିଳା—'ନାସି-ଗ୍ରେବ' !—(ଗୋଟାଏ ସୂକ୍ଷ୍ମ-ବ୍ୟଙ୍ଗିକର ଦଂଶନ ଯେପରି ଅନୁଭବକରି, ଜ୍ୱାଳାରେ ଶିହରି ଉଠିଲି ।)

କାଶିଆ—( ଶ୍ଳେଷପୂର୍ଣ୍ଣ ହାସ୍ୟରୋଳର ଧାରା ଛୁଟାଇ ) ଦେଶରେ ଅତଅଗ୍ରବ, ଅନାଗ୍ରବ ଏହିମାନଙ୍କ ଯୋଗୁ—ଏହିମାନେ ହେଲେ ଅସଲ ଡାକୁ !—କାଲିର ଗୋଟାଏ ଘଟଣା—ମୋ'ରି ଅଖି-ସମ୍ମୁଖରେ ଘଟିଯାଇଛି—ତା'ର ସପନରେ, ରାତିରେ ନିଦ ନାହିଁ—ଲୋ, ସପନଦେଖିରେ, ଲେଟା ମୋତେ ଅଖେଇ ଠୋ ଠୋ କରି ହସି ଉଠିଛି ଯେମିତି,—ଲୋଟାଙ୍କୁ ଭିଡ଼ୁଅଣି, ତା'ର ତୋଟି ଏମିତି ଚିପିଦେବି କ'ଣ···

( କପିଳାର ତଣ୍ଟି ଚିପି ଦେବିଲା )

କପିଳା—ହାଁ, ହାଁ (ମୁକୁଳାଇ) ଆରେ କିଏ ସେ, କଥାଟା କ'ଣ ଆଗେ କହ ?

କାଶିଆ—ତୁ ଠିକିଏ ହେମନ୍ତ ଦେଲେ, ଦୋସ୍ତ··· ଶୁଣ··ଅବେ, ଏଇ ମୁହଁ-ସଞ୍ଜଟାରେ କାଲି··· ତାଡ଼ିଖାଇ, ମାତାଲ ହେଇ ଅସୁଥିଲି ନଈ ଦାଢ଼େ ଦାଢ଼େ, ଗୀତ ଗାଇ ଗାଇ···ଲୋ, ଦେଖେଁତ ଷୋଳବର୍ଷ ଉମରର ଗୋଟାଏ ଯବାନ୍ ଟୋକା···ତା' ମୁହଁ, ଗୋଡ଼ହାତ ବନ୍ଧା··· ଲୋଏ,—ସେହି କୋଦମ ଅଉ ତା'ର ଦାଁଟା କଗୁଆଳ,—ଟେକି, ନେଇ ଯାଉଥିଲେ—ଲୋ, ମୁଁ ଠିକିଏ ବେ-ଅକ୍‌ଲିଆର ଥିଲି ବୋଲି, ନାହିଁତ —

କପିଳା—ସେ ଟୋକା କିଏ ?—ତା ନାଁ···?

କାଶିଆ—ବଳିଆଙ୍କୁ ସନ୍ଧାନ ଲଗେଇ, ଖବର ଅଣେଇଛି,—ତା'ନାଁ 'ଚନ୍ଦୁଗ୍ରି' ।

କପିଳା—'ଚନ୍ଦୁଗ୍ରି' ।

କାଶିଆ—ଅବେ, ତାକୁ ଚହ୍ନୁ କିରେ ?—

କପିଳା—ତୁ ଅଛ, ଦୋସ୍ତ ।

କାଶିଆ—ହାଃ ହାଃ-ହାଃ—ସେଇଥି ତ ଗୃହ ।··· କେତି ? କେତେ ଅଟକାଇବ କାନୁଆଙ୍କୁ, ଅଦମିଙ୍କୁ ନୁହେଁ।···

[ କପିଳା କାଶିଆକୁ ଭଙ୍କ ଦେଇ ଗୃହାଗଲା । ବିପରୀତ ଦିଗରୁ ନିଧିରାମ ନାମ୍ନୁଳ ଭାବରେ ହକାରି ହକାରି ପ୍ରବେଶ କଲା କ୍ଷିପ୍ର ଗତିରେ । ତା'ର ହାତରେ ମୋହର ଭର୍ତ୍ତି ଗୋଟାଏ ଥଳି ଥାଏ । ]

ନିଧିରାମ—କପିଳା — କପିଳ — ରଜା-ଘରି-ମଣ୍ଟା ଅଢ଼ାରୁ ଫିଟିଛିରେ—ଗୁହାଳ ସମ୍ଭାଳ, ଗୁହାଳ ସମ୍ଭାଳ—

[ ଠିକ ସେହି ସମୟରେ, ସେହି ଦିଗରୁ ଚନ୍ଦୁଗ୍ରି ପ୍ରବେଶ କଲା । ତା'ର ଆଲୁଳାୟିତ କେଶ ଓ ବିସ୍ରସ୍ତବେଶ ]

ଚନ୍ଦୁଗ୍ରି—( ବୃଦ୍ଧ ଆଡ଼େ ନ ଗୃହିଁ, କି ଗୃହିଁ ଚହ୍ନି ନପାରି ) ଅଜା·· ଅଜା···କେତେ ମୁସ୍କିଲରେ ଖସି ଆସିଥିଲି···ପୁଣି ପିଛୁ ଧରିଛି—ମେତେ ବଞ୍ଚାଅ···ନରଖାଦକ, ଜାଣିଶୁଣି ଖାଦକ, ତା' କବଳରୁ ରକ୍ଷା ଅଛୁ—ନରରକ୍ଷକ, ରକ୍ଷକ ନାମରେ ଭକ୍ଷକ, ତା କବଳରୁ ଅଦୌ ରକ୍ଷା ନାହିଁ—

ନିଧିରାମ—ଆଃ···କ'ଣ ଏଣୁତେଣୁ ବକୁଚୁ, ତୁ ଅଦୌ ଡରନା, ହିଁ-ଅ···ଷଣ୍ଟା ଯେତେ ମାରଣା ହେଲେ ବି, କପିଳା ତା'କୁ କାବୁଡାକେ ସିଧ କରି ଦ'ବ—ଆଖିରେ ଦେଖିବୁ ରହିଥା !— କପିଳା—କପିଳା—

ଚନ୍ଦ୍ରଗ୍ରି—'କପିଳା' !—ତୁମେ କିଏ ?—

ନିଧିରାମ—ମୁଁ—ମୁଁ—

ଚନ୍ଦ୍ରସ୍ଵା—ହେଉ, ହେଉ ସେଇ ପାପଶ୍ରେଷ୍ଠା ବନ୍ଧ୍ୟାକୁ ଟେକାଉଛ ମସ୍ତଷ୍ଟାକୁ, ଅଶ୍ରାଳ ଭୁଲୁଛ ତା' ଶିକ୍ଷାବଳକୁ···ତୁମେ ଯିଏ ହୁଅ, ମୋ' ଅଜା ଭଲ; ତୁମେ ମୋ' ଅଜା···

( କାଶୀରାମକୁ ଜଡ଼େଇ ଧରନ୍ତି )

[ ଛୁରୀ-ହସ୍ତେ ବୁଧିର ପ୍ରବେଶ ]

ବୁଧି—ହୁଁ, 'ଅଜା' ? 'ଅଜା ନାତୁଣୀ' ରହସ୍ୟ ? ସବାଶ ଇ—  ( ଛୁରୀ ଉଞ୍ଚାଇ ଧାଇଁଗଲା )

ଚନ୍ଦ୍ରସ୍ଵା—( ପାହାଚ ଏଡ଼େ ଖସି ପଳାଇ ଗଲା ହୁଡ଼କୁ )

କାଶୀରାମ—ହାଁ, ହାଁ, କରୁଛୁ କ'ଣ ?

ବୁଧି—କ'ଣ ?—ଗୃହସ୍ଥକୁ ଧାଉଛୁ ପ୍ରୀତ କାମୁକୀ-ବତ—ଗୃହିଣୀ ସେଥିକି କରୁଛୁ ବ୍ୟବସ୍ଥା,—ଏଣେ, ଚନ୍ଦନାଥ ଗାଲରେ ବୃଦ୍ଧଗୃଧ୍ରତା—ତେଣେ, ଚେଗୀର ରୋଗବସ୍ତୁ; ମନ୍ତ୍ରପନ୍ତ ?—ଫୁଟନ୍ତି—ଏହି ଯେମିତ ଘର-ପ୍ରୀତି ଜମାଏ—ସେମିତ ପର-ପ୍ରୀତି ଛଡ଼ାଏ—ବାହାରିଗଲା ?—ହାଁ, ସେଠି ପୁଣି ଅଣ୍ଡି, ଅଣ୍ଡି-ଖାଇବ···

( ଧାଇଁଗଲା )

[ ଗଧି ସେତେବେଳକୁ ପ୍ରବେଶ କରି ସାହିଥାଏ, ଓ ଚନ୍ଦ୍ରସ୍ଵାକୁ ଅଙ୍ଗୁଳି କରି ଠିଆ ହୋଇଥାଏ ]

ଗଧିଆ—( ବୁଧିର କାନେ କାନେ ) ସେ ପରା ସେଇ—ତୁ ଯା'ପାଇଁ ହାଣ୍ଡି ପାଇଁ !

ବୁଧି—ହଇରେ, ତୁ କହୁଚୁ କ'ଣ ?—ସ୍ନେହ ମୋ' ଗଧିର—

ଗଧିଆ—'ରଣ୍ଡୀଆଣୀ' ! ତୁ ତା'କୁ ବେଗେ ଧର ଭିତରକୁ ନେଇ ଯା'ତ—ଗୃହି ଦେଖ, କିଏ ଧାଇଁଛି ଏଣେ ?—

ବୁଧି—ଏଁ, ସ୍ନେହ କୋଦମା ! ମୋ' ବୋଉଲେ ! —ଗୁଲଅତ, ହିଅ···( ଚନ୍ଦ୍ରସ୍ଵାକୁ ନେଇ ଗୁଳ-ଗଲା, ଲୁଗା ପଣତରେ ଘୋଡ଼ାଇ ଘୋଡ଼ାଇ )

କାଶୀରାମ—(ଅବାକ୍ ହୋଇ ଯାଇଥାଏ) କଥା କ'ଣ, ଗଧି ?—ସ୍ନେହି କିଏ କି ?—କୋଦମାଟା ଫୁଟଛିଟ ଏମିତ, କ'ଣ ତାକୁ ଗିରଫ କରିବ ବୋଲି ?

ଗଧିଆ—ହଁ ହଁ ତୁମକୁ !—

କାଶୀରାମ—ମୋତେ ? ଅରେ, ତୁ କହୁଚୁ କ'ଣ, ଗଧି ?—ମୋର ଅପରାଧ ?—

ଗଧିଆ—ତୁମେ ହିଅଟିକୁ ଅଶ୍ରା ଦେଇଚ, ବାଘ ମୁହଁରୁ ଆହାର ଛଡ଼େଇ ନେଇଚ !—

କାଶୀରାମ—ଗଧି !—ହେଲେ, ମୁଁ ତ ହିଅଟିକୁ···

ଗଧିଆ—ଚିହ୍ନାନା, ଅଶ୍ରା ଦେଇନ', ଏଇକଥା କହିବ —ହେଲେ, ସେ ମାନିବଟି ?—ତା'ର ରାଜୁତ୍ଵ କ୍ଷମତା ଅଛି ବଳେ ପଡ଼ି ଘରେ ପଶି, ଯେତେବେଳେ ଶାନତଲାସ ଲଗେଇ ଦ'ବ, ସେତେବେଳେ ହାଲ୍ ଯା'ହେବ, ତା' ବୁଝି ପାରୁଛତ ?

କାଶୀରାମ—ତା'ହେଲେ, ଉପାୟ ?

ଗଧିଆ—ଉପାୟ,—ସେଇ ଚୋଡ଼ାଟି !···

କାଶୀରାମ—ମୋହର ଚୋଡ଼ାଟି !—ଅବେ ତୁ କହୁଚୁ କ'ଣ ?—ରାଜା ଉତ୍ସବ ବନ୍ଦ କରିଦ୍ଲେ—ରାଣୀମା ହୁକୁମ୍ କଲେ, ଉତ୍ସବ ହେଲା—ରାଣୀମାଙ୍କ ହୁକୁମ୍ ଏଣିକି ଜାରି—ତା'ର ବଳରେ ମୁଁ ଅଜ ସାତକାଠର ପାଉଣା ଗଣ୍ଡାକ ସୁରୁଖରୁରେ ଆଦାୟ ପାଇଛି, ବନାତଣ୍ଡରେ ପୁରି ଚୋଡ଼ାଟି ନେଇ ଅସିଛି—'ମାତୃ ହୃଦୟର ଶାସନ, ପ୍ରୀତିର ଶାସନ'—ରାଜାଙ୍କର ଉକ୍ତି—ତା'ର ଫଳରେ ନାଗରିକର ପ୍ରୀତି ଆଦର ପାଇଛି—ହେଲେ—ଅ'ତ ଗଧି, କଅରକୁ—ରାଜାଙ୍କ ନାଁରେ ପାତ୍ର-ମନ୍ତ୍ରୀ ଯେଉଁ ମନମୁଖି ରାଜ୍ୟଶାସନ ଚଳାଇ ଥିଲେ, ତା' ଆଉ ନାହିଁ—ବର୍ତ୍ତମାନ ରାଣୀମାଙ୍କ ରାଜୁତ—

ଗଧିଆ—ହେଇଥିପାଇଁତ ଅଧୁର ଡର—ନାଗ-ରାଜୁତ—ନାଗ ଦେନ, ମାନଲ—ନାହିଁ ନାହିଁ, ତୁମର ନାଗ ଟଙ୍କଣା ବଦଖୋଇ ଦେନ, କଥା ଜଟିଳତ, ସର୍ବନାଶ—ତୁମର ମହାଜନ ଚଳଅସ୍ତିରେ···

ନିଧିରାମ—ଆଁ ତ ଲାଗିବ ।—ଧନ ଯାଉ, ପତିଆରା ଥାଉ ।—

(ଘୋଡ଼ା ଧରାଇ ଦେଲା)

ଗଧିଆ—ହଁ, ଆଉ ଗୋଟିଏ କଥା, ଦେଖେଇ— ସେଇ ଝିଅଟିକୁ ନେଇ ଘରେ ଉତ୍ପାତ ଲଗେଇବନି ଟି—

ନିଧିରାମ—ଏ'କଥା ଆଉ ତୋତେ ତାଗିଦ୍ କରି ଦେବାକୁ ହେବନି—ମହାଜନଙ୍କୁ ଖାଲି ଛେପ ପକାନ୍ତି, କିନ୍ତୁ ମହାଜନପତିଆରାକୁ ମଥା ନୁଆଁଇ ଥାନ୍ତି—

[ନିଧିରାମ ଚାଲିଗଲା ଓ ବିପରୀତ ଦିଗରୁ କୋଦ୍ମା ସିଂ ଧଇଁସଇଁ ହୋଇ ଏକାକୀ ପ୍ରବେଶ କଲା]

କୋଦ୍ମା ସିଂ—କ'ଣ କହୁଚୁରେ, ବାହ୍ମୁଣୀ-ଟୋକା ?—ତୋ'ର କଥାମୁତାବକ୍ତ ଏକୁଟିଆ ଛଇଲ୍—କାହିଁ ନିକାଲ୍ ଟୋକୀକୁ ?

ଗଧିଆ—(ମୋହର-ଥଳି ପିଟେଇ, ଅଜାଡ଼ି, ଗଣିବା ବାହାନାରେ, ସେଗୁଡ଼ାକ ଝଣ ଝଣ କରିବାରେ ଲାଗିଥାଏ)

କୋଦମା ସିଂ—କାରେ, ଟୋକା—? ମୋ'କଥା କା'ନକୁ ଯାଉନି କିରେ ?—ମୁଁ ଠିଆ ହୋଇ ରହିଥିବି ତ ?

ଗଧିଆ—ଏଁ, ସେନାପତି-ସା'ନ୍ତେ !—କେତେ-ବେଳେ ? ଟିକିଏ ସବୁର କରିବା ହେବେ— ଟୋକୀର ଏ' ଧନ ଗଣ୍ଡାକ ଗଣି ନିଏ କି···

କୋଦମା ସିଂ—ଟୋକୀର ଧନ ?—

ଗଧିଆ—ସା'ନ୍ତେ, ଆମ ବୁଢ଼ାଙ୍କ ମଢରେ, ଟୋକୀଟିକୁ ନେଇ, ଯେତେବେଳେ ଭଡ଼ାଓଟରା—

କୋଦମା ସିଂ—ସେତେବେଳେ ଜଣେ ନ'ବ 'ଧନ', ଆଉ ଜଣେ, 'ଜନ'—ବାଃ—ବା—ଟବଣ୍ ଫଇସଲତ ।

ଗଧିଆ—ଆଜ୍ଞା, ରଫାରୁ ଜଫା ନାହିଁ ପରା ।—ହଉ, ମୁଁ ତେବେ ଟୋକୀଟାକୁ ନେଇ ଅତେଁ କି···

କୋଦମା ସିଂ—ହେଃ—ଟୋକୀ ?—ବୁଦ୍ଧୁକ୍ !··· ଧନ ଥିଲେ, ଢେର୍ ଢେର୍ ଜନ ମିଳିବେ—

(ଘୋଡ଼ାଟା ଧରିଲା)

ଗଧିଆ—ହଉ ମୋ' ଭାଗ୍ୟ ।—

କୋଦ୍ମା ସିଂ—ମୋ' ଭାଗ୍ୟ ?

ଗଧିଆ—ରାଜ-ଲକ୍ଷଣ ।

କୋଦ୍ମା ସିଂ—ତୁ ଦେଖି ପାରୁଚୁ ?

ଗଧିଆ—ଜଗତ ଦେଖୁନ୍ତି ।

କୋଦ୍ମା ସିଂ—ସତେ ?

ଗଧିଆ—ଜଳ—ଜଳ—!—ଏଇଠରେ, ସୁରା ସେବନ—ଦୁଇରେ, ନାରୀ-ଧର୍ଷଣ—ତିନିରେ, ଅର୍ଥ-ଶୋଷଣ—

କୋଦ୍ମା ସିଂ—(ପରମ ମନରେ) ଗୁରୁରେ, ରାଜହତ୍ୟା, ଆଉ ରାଜସିଂହାସନ—ଏଁ ଏଁ—କ'ଣ, କ'ଣ କହୁଥିଲୁରେ ତୁ ବାହ୍ମୁଣୀ ଟୋକା ?

ଗଧିଆ—ସେ ମୁଁ କହୁଥିଲି କ'ଣ କି,—ରାଣୀ ହୁଅନ୍ତା ଏହି ଛତରଖାଇଟା—ତା'ର ଏତେ ଭାଗ୍ୟ ହେବ !

କୋଦ୍ମା ସିଂ—ତା'କୁ ସେଇକଥା ଟିକିଏ ସମ୍ଝେଇ ଦେଉଚ—

ଗଧିଆ—ଖାଲି ଦେଖନ୍ତୁ, ଗୁରୁ ?—ଏଇ ଗୁହାଳ ପୋଛେଇ, ଗୋରୁ ଗୁହାଳର ଲେଉଣ୍ଡି ଯଦି ତା'କୁ ବନେଇ ନ ଦେଇଚି, ତେବେ ଏ'ଗଧିଆ ନାଁରେ ଗଧ,—ହଁ, ଗୋଟିଏ ପୋଷିବେ, ମଣିମା !—

କୋଦ୍ମା ସିଂ—ଅରେ, ବାଃ- ବାଃ—ସାବାସ୍ ଗଧି, ସାବାସ— (ଗଧିର ପିଠିରେ ଦଲ୍କୁପିଆ ଗୁମ୍ପୁଡ଼ାଟାଏ କସି ଦେଇ ଚାଲିଗଲା)

ଗଧିଆ—(ଆପଣା ପିଠି ଆଉଁସୁ ଆଉଁସୁ) ଓହୋ ହୋ—ଗଧଟି ଏଡେ—ଗଧ ବୁଦ୍ଧିରେ କେଡେ ଘାଏଁ ଗୁମ୍ପୁଡ଼ାଟା କସିଦେଇ ଗଲା ହୋ ।—

[ ଆଗପଛ ହୋଇ ଚନ୍ଦ୍ରଶ୍ରୀ, ଓ ବୁଧି ଦ୍ରୁତ
ବେଗରେ ପ୍ରବେଶ କଲେ ]

ବୁଧି—ଧ’—ଧ’ର, ରଘୁ—

ରଘୁଆ—(ବାଟ ଓଗାଳିଲା )

ଚନ୍ଦ୍ରଶ୍ରୀ—ଛାଡ଼ିଦିଅ ବାଟ—ତୁମେ ବ୍ରାହ୍ମଣ ନା, ଚାଣ୍ଡାଳ ?—ଅଶ୍ରାଦେବା ନାଁ’ରେ ମୋତେ ବଳି ଦେବନି— ?

ରଘୁଆ—ହେଃ—ହେଃ—ମୋ’ର ଚାଷି କ’ଣ ? ତୁମେ ନାରୀ—ନରର ବଳି ହେବାକୁ ତୁମର ଜନ୍ମ ?—

ଚନ୍ଦ୍ରଶ୍ରୀ—ରାକ୍ଷସ !—

ରଘୁଆ—ହେଲେ, ରାକ୍ଷସୀର ଲକ୍ଷଣତ କିଛି ଦେଖା ନାହିଁ ତୁମଠେଇଁ—ହେଃ—ହେଃ—ଅପା—
[ ଅଙ୍ଗୁଳିଠାରେ ଚାଲିଯିବାର ଇଙ୍ଗିତ କଲା ]

ଚନ୍ଦ୍ରଶ୍ରୀ—ହୁଁ—ମେ ତେ ଏକୁଟିଆ ପାଇ, ( ବୁଧିର ଲୁଗା କାନିକୁ ଦୃଢ଼ ମୁଷ୍ଟିରେ ଧାରଣ କଲା )

ରଘୁଆ—( ଗୁହାଳ ଆଡ଼କୁ ତକେଇ, ଡାକିଲା ) କପିଳା !

ଚନ୍ଦ୍ରଶ୍ରୀ—‘କପିଳା’ !—( ହସ୍ତ ଶିଥିଳ ହୋଇଗଲା )

ବୁଧି—( ରଘୁଆକୁ ଠାରିଦେଇ, ଖୁସି ମନରେ ଖସି ଚାଲିଗଲା )

ରଘୁଆ—ହଁ, ସେଇ ଗାଈଆଳ ଟୋକା ‘କପିଳା’—ତାକୁଇ ତୋ’ର ଜୋଟ ବାନ୍ଧି ଦେବା । କେମିତି ? ହେଃ—ହେଃ—ହେ—

ଚନ୍ଦ୍ରଶ୍ରୀ—ତୁମେ କିଏ ? କପଟ କରିବନି—ପରିଚୟ ଦିଅ—ମୋତେ କ୍ଷମା—

ରଘୁଆ—( ଏଣେତେଣେ ଚାହିଁ ) ତୁମ୍ଭ କରନା’, ଥୟଧର । ଶୁଣ, ଭଉଣୀ—ତୁମେ ଯେ କପିଳାକୁ ଭଲପାଅ, ଏ କଥା ମୋତେ ଆଦୌ ଅଛପା ନୁହେଁ, ଅନ୍ୟଆଡେ କପିଳା ଯେ ତୁମକୁ ଭଲପାଏ, ଏ’କଥାବି ମୁଁ ପଚାରିଲେଇଁ, ନାୟୁମଣାଇ କହୁଛି—ହେଲେ, ଯେତେବେଳ ଯାଏ ଯୋଗାଯୋଗ ନ ଘଟିଛି, ତୁମ ଦୁହିଙ୍କୁ ନ ମିଳେଇଛି, ସେତେବେଳଯାଏ ଆମାର ଲୋକ ଭେଣେଇ ଅଉ ସଭା ଅପା,—ଏ’ ଦୁହିଙ୍କୁ ଦେଖେଇବା ଲାଗି, ତୁମେ ହେବ ମୋର ଯା’, ତା’ର ବୁଝି ପାରୁଥିବ ବେଶ୍—ହାଃ-ହାଃ-ହାଃ—

ଚନ୍ଦ୍ରଶ୍ରୀ—ବୁଝିଛି, ଦେବତା···( ନମସ୍କାର କଲା )

ରଘୁଆ—( ନେପଥ୍ୟକୁ ଚାହିଁଦେଇ ) ଭେଣେଇ ତ—ହିଁ, ହିଁ, ଉଠବନି—ସେମିତ ଗୋଡ଼ଧୂଳି ନେଉ-ଥାଅ—ମୁଁ ତୁମର ମଥାରେ ହାତ ରଖି—( ଆଶୀର୍ବାଦର ଅଭିନୟ କଲା )

ନିଧିରାମ—ହଁ, ଦୁହିଙ୍କ ଭିତରେ ଏତେ କଥା !··· ଘରେ ଯା’ କହୁଥିଲେ, ଏ’ ଗୋଟାଏ ମଜା ! —ମାଗଣାରେ କନିଆ !—ମାଗଣାରେ ବାହା ! —ଅରେ ଗଲ କୁଆଡ଼େସବୁ ?—ହୁଳହୁଳି ଦିଅ—ଶଙ୍ଖ ବଜାଅ—ରଘୁ ଅପା—ରଘୁ-ଅପା —( ଡାକୁ ଡାକୁ ଚାଲିଗଲା )

[ ନେପଥ୍ୟେ ହୁଳହୁଳି ଓ ଶଙ୍ଖଧ୍ୱନି ଶୁଣାଗଲା ]

(ନେପଥ୍ୟେ—ବୁଧି)—ରଘୁ, ବୋହୂ ମଣିକୁ ଘେନି, ଭିତରକୁ ଆ’ସ !

ରଘୁଆ—ଚାଲ, ବୋହୂମଣି—

ଚନ୍ଦ୍ରଶ୍ରୀ—( ହସି ପକାଉଥିଲା— )

ରଘୁଆ—( କାନେ କାନେ ) ହସିବ ନି—ହାତଧରି —ମଥା ପୋତ ଦିଅ—ଅଶ୍ରୁ ଭିଜିଦିଅ—ହୁଁ, ଚଉଠି ରାତିର ରଉଟିକି ସକେ କନିଅଛି ଭଲ !

ଚନ୍ଦ୍ରଶ୍ରୀ—( ଲାଜସରମରେ ଧରି ପାରୁ ନଥାଏ )

ରଘୁଆ—ଉଁ ହୁଁ—ତା’କି ହୁଏ ?—( ଓଢ଼ଣା ଟାଣି-ଦେଇ, ହାତ ଧରି, ଘେନି ଚାଲିଗଲା )

[ ଇତି ମଧ୍ୟରେ କପିଳା ଅସହଣି ହୋଇ ଉଠିଥାଏ । ତା’ର ନଜର ପଡ଼ିଗଲା ହଠାତ୍ ଗୁହାଳର ଓଳିକୁ । ସେଠା କାମଡା ସନ୍ଧରେ ଟୁକୁରିପିଟା ଖୋସା ହୋଇଥିଲା । ତା’କୁ ଟାଣି ଆଣି, ଦୃଢ଼-ମୁଷ୍ଟିରେ ଧାରଣ କଲା ।—କିଛିଦୂର ଧାଇଁଗଲା ସେମାନଙ୍କର ଗମନ ପଥକୁ ଅନୁସରଣ କରି—ମାତ୍ର, ନିରସ୍ତ ହେଲା କି ଗୋଟାଏ ଧକ୍କାରେ ଯେମିତି—ତା’ପରେ ମନକୁ ମନ କହିବାକୁ ଲାଗିଲା ]

କପିଳା—ନାଃ—'ଚନ୍ଦୁଆ' ?—ସେ ମୋର କିଏ ? ମୁଁ ବା ତା'ର କିଏ ?—ହେଲେ, ଚନ୍ଦୁଆ ତ—

( ନେପଥ୍ୟେ—ବୃଦ୍ଧର କଣ୍ଠସ୍ୱର )—ନା, ଚନ୍ଦୁଆ,—କପିଳା ଦେବତା—ଦେବତା-ପ୍ରୀତ ଭାବ ଦଗାଦଅରେ, ଭାବ ଦଗାଦଅ—

କପିଳା—ଆଜ ରାକ୍ଷସ-ପ୍ରୀତ ?—ଭାବ ସୁଆଦଅରେ, ଭାବ ସୁଆଦଅ—ହାଃ-ହାଃ-ହାଃ-ହାଃ—

[ କାଣିଆ ପ୍ରବେଶ କଲା ]

କାଣିଆ—ଆବେ, ମୋ'ର ଚନ୍ଦୁଆ ନାଆଁକୁ ପାଇ ଏତେ ଖୁସିତ ?—ହସି ହସି, ପେଟ ଫାଟି ଯିବରେ—ମର ଯିବୁରେ ମରିଯିବୁ—

କପିଳା—ତୋର ଚନ୍ଦୁଆ ନାଆଁ !—ଚନ୍ଦୁଆ ନାଆଁ !—

[ ବୀଭତ୍ସ ମୂର୍ତ୍ତି ଧାରଣ ପୂର୍ବକ ହାତ ତାଟ୍ଟୁରେ ଖୁରୁପିଟା ପକେଇବାକୁ ଲାଗିଲା ଯେମିତ ]

କାଣିଆ—ଦୋସ୍ତ୍—ଦୋସ୍ତ୍—

( ବିଶ୍ରାମ )

---

# ଦ୍ୱିତୀୟାର୍ଦ୍ଧ

—ଏକ—

[ କପିଳା ବର୍ତ୍ତମାନ କଳା-ଡାକୁ,—ଏହି ନାମରେ ପରିଚିତ । ବଣର ଘନଗହଳ ମଧ୍ୟରେ ଗୋଟିଏ ପାହାଡ଼ର ଖୋଲ । ସେହି ପ୍ରଶସ୍ତ ଖୋଲ ଭିତରେ ଅଡ୍ଡା ଜମେଇଛି କପିଳା । ଆହା ଖାନାଟି ଅନ୍ଧାରିଆ କାହିଁରେ କ'ଣ । କେବଳ ଗୋଟିଏ ପ୍ରଦୀପ-ଶିଖାର ସ୍ତିମିତ ଆଲୋକ ସେହି ଗାଢ଼ ଅନ୍ଧାର ଯେତିକି ପାତଳ କରି ପାରିଛି !—ସାଜ ସରଞ୍ଜାମ କହିଲେ, କାନ୍ଥ ବାଡ଼ରେ ଝୁଲୁଥିବା ବର୍ଚ୍ଛା, ସାବଳ, ଲାଠି, ସୋଟା ପ୍ରଭୃତି ଅସ୍ତ୍ରଶସ୍ତ୍ରମାନ, ତଥା କେତେ ଗୁଡ଼ିଏ ନର କଙ୍କାଳ, ଏଇସ୍ତା ବୁଝିବାକୁ ହେବ । ଗୋଟାଏ କରପଟରେ ସ୍ତୂପୀକୃତ ରତ୍ନାଳଙ୍କାର, ବସ୍ତ୍ର, ଖାଦ୍ୟଶସ୍ୟ ପ୍ରଭୃତି ସଞ୍ଚିତ ଦେଖାଯାଉଥାଏ । ଦଳପତି ହେଲେ ମଧ୍ୟ କପିଳା ଗୋଟିଏ ଅତି ସାଧାରଣ ଓ ଜୀର୍ଣ୍ଣ ଖଟିଆ ଉପରେ ବସିଥାଏ । ହାତରେ ସେଇ ଖୁରୁପିଟା । ଚେହେରାରେ ବୀଭତ୍ସତା ପରିସ୍ଫୁଟ । ପ୍ରବେଶ ପଥର ଦୁଇପଟରେ ଦୁଇଟା ବିକଟାଳ ବର୍ଚ୍ଛାଧାରୀ ପ୍ରହରୀ । ଭିତରପଟେ ଜଣେ ଦେହରକ୍ଷୀ ଗୋଟାଏ ଖଡ୍ଗ କାନ୍ଧରେ ପକେଇ ଠିଆ । ଅନ୍ୟଜଣେ ପାର୍ଶ୍ୱଚର କପିଳାକୁ ଖପରରେ ମଦ ଯୋଗାଉଥାଏ । କପିଳାକୁ ଗୁଡ଼ି, ସୁଦୂର ପ୍ରାନ୍ତରେ ଉଚ୍ଚ ବେଦୀଟିଏ । ତା'ର ଉପରେ କାଳୀଙ୍କର କରାଳ ମୂର୍ତ୍ତି ସ୍ଥାପିତ ।—ଦୃଶ୍ୟ ଦେଖାଯିବା ପୂର୍ବରୁ, ଗୋଟାଏ ଅବାସ୍ତବ ହଲ୍ଲା ଓ ବିକଟ ଅଟ୍ଟହାସ୍ୟର ରୋଳ ଶୁଣାଗଲା । ]

କପିଳା—ହାଃ ହାଃ-ହାଃ-ହାଃ—ମଦ—ମଦ—ଅଙ୍ଗୁର ମଦ—ଅଙ୍ଗୁର ମଦ -( ଖୁରୁପିଟା ଫିଙ୍ଗି ଦେଲା ଯେପାଖ ଗୋଟାଏ ପ୍ରାନ୍ତକୁ )

୧ମ ପାର୍ଶ୍ୱଚର—( ମଦ-ପୂର୍ଣ୍ଣ ଖପରଟି ହାତକୁ ବଢ଼ାଇଦେଲା )

କପିଳା—ଆଃ, ଏଇ ଖପରରେ ! କେତେ ଖାଇବ ଏଥିରେ ? ମାଠିଆ, ମାଠିଆ—ପିମ୍ପା, ପିମ୍ପା—ପାଟିର ଏଇ ଖୋଳରେ ଢାଳିଦିଅ, ଦେଖିବ, ଏଇ ପେଟର କେଉଁ ଅତଳ ଗହ୍ୱରରେ ତା' ତଳେଇ ଯିବ—ହାଃ-ହାଃ-ହାଃ—

୧ମ ପାର୍ଶ୍ୱଚର—( ମଦପିମ୍ପା ଭିତରକୁ ନିରେଖି ଦେଖିଲା, ଅନେଇଲା, ଶେଷକୁ ଶୂନ୍ୟ ଦେଖି, କରୁଣ ଦୃଷ୍ଟିରେ ସର୍ଦ୍ଦାର ଆଡ଼େ ଚାହିଁ ଠିଆହେଲା । )

କପିଳା—ଆଃ, ଠିଆହେଲୁ ଯେ !—ଖଡ୍‌ଗଧାସ୍ୱ !—

୨ୟ ପାର୍ଶ୍ୱଚର—( ସମୀପରେ ଆସି ଠିଆ ହେଲା )

୧ମ ପାର୍ଶ୍ୱଚର—( ସଭୟରେ ) ସର୍ଦ୍ଦାର !—

କପିଳା—କି ସର୍ଦ୍ଦାର ?

୧ମ ପାର୍ଶ୍ୱଚର—'କଳା-ସର୍ଦ୍ଦାର' ।

କପିଳା—କି ନାମରେ ତୁମଅ ମୋତେ ଅଭିନନ୍ଦନ ଜଣାଇଛ ?

୧ମ ପାର୍ଶ୍ୱଚର—'କଳା-ଡାକୁ' ।

କପିଳା—ସେହି 'କଳାଡାକୁ', ଆଉ 'କଳା ସର୍ଦ୍ଦାର', ତା'ର ହୁକୁମ କି ଭଲ ?

୧ମ ପାର୍ଶ୍ୱଚର—କାଳର ଅଭିଶାପକୁ ବଳ ।

କପିଳା—ତଥାପି ତୁ ତା'ହେଃଠି ଦେଇ ଠିଆ ହୋଇଚୁ ଭ ?

୧ମ ପାର୍ଶ୍ୱଚର—ପିମ୍ପା ଖାଲି, ସର୍ଦ୍ଦାର ।

କପିଳା—ତୁମଅଂଠା କ'ଣ ଖାଲି ?

୧ମ ପାର୍ଶ୍ୱଚର—( ସଭୟରେ ) ମିଛ ନୁହେଁ ସର୍ଦ୍ଦାର ।

କପିଳା—ବଞ୍ଚାଡଳ କ'ଣ ରସ-ଶୂନ୍ୟ ?

୧ମ ପାର୍ଶ୍ୱଚର—( ଭୟ ଭୟରେ ) ଅଜ୍ଞାନେ—

କପିଳା—ଅଜ୍ଞାନ ?—ହାଃ-ହାଃ-ହାଃ-ହାଃ—ବସାଡଳ ରସ ଶୂନ୍ୟ !—ଅଜ୍ଞାନ ଅଜ୍ଞାନ !—ତୁମଅ ବିଲ୍‌କୁଲ୍ ଶୂନ୍ୟ !—ତଥାପି ମୋ'ର କ୍ଷୁଧା ତୃଷା ଅପୂର୍ଣ୍ଣ—

( କାଳୀମୂର୍ତ୍ତି ନିକଟକୁ ଧାଇଁଗଲେ )

ପାର୍ଶ୍ୱଚରଗଣ—( ଯଥା ସମ୍ମାନ ପ୍ରଦର୍ଶନ ପୂର୍ବକ ପ୍ରସ୍ଥାନ କଲେ )

କପିଳା—ହଇଲେ, ରାକ୍ଷସୀ—ରାକ୍ଷସୀ-ଲାଳସାତ ଦେଇଛୁ—ରାକ୍ଷସ-ଉଦରତ ଦେଇଛୁ—ହେଲେ, ସେଇ ଉଦର ଭର୍ତ୍ତି ହେବ, ସେଭଳି ଭୋଜନ କାହିଁ ?—ସେଇ ଲାଳସା ମେଣ୍ଟିବ, ସେଭଳି ପାନୀୟ କାହିଁ ?—ଦସ୍ୟୁଚୁତ ?—ମୋର ପ୍ରଶ୍ନର ଜବାବ ନଦେଇ, ପରିହାସ ? ଚନ୍ଦୁନା, ମୁଁ କିଏ ?—'କଳା ଦସ୍ୟୁ' !—ଯାଉ ଗୃହତ୍ରସ୍ତ-କଳା, ତୋ'ର ସ୍ୱରୂପ-କଳାକୁ ନିନ୍ଦା କରିଦେଇଛି ଫିକା, ପାଣ୍ଡୁର—ହାଃ-ହାଃ-ହାଃ ପୁଣି, ଦେଖାଉଚ ?—ଆଜି ଅମାବସ୍ୟା—ବଳି ପଡ଼ିବାର ଦିନ—ବଳି ମୁଁ ଦେବି—ତୋତେଇ—ତୋର ଖଡ଼୍‌ଗରେ—ଆଉ ସେହି ବଳିର ରକ୍ତ ମାଂସ—ମେଣ୍ଟାଇବ ଏହି ରକ୍ତ-ମାଂସ-ଦେହର କ୍ଷୁଧା-ତୃଷା !...କେମିତି ମଧୁଦ୍ୱା ପାଣିଚଲେ, ଖଡ଼୍‌ଗ-ଖର୍ପର ଧାରିଣୀ ?—ତୋରଖେଳା, ଆଜି ତୋ'ହିଠାରେ ଖେଳିବି—( ବଡ଼୍ଗପାଣିକି ଅଟ୍ଟହାସ୍ୟ କରିବାକୁ ଯିବା ସମୟରେ ଚାହିଁକା ହୋଇ ଦେଖିଲା—ଗୁହାର ନାଟକୀୟ ଦୃଶ୍ୟ ପରିବର୍ତ୍ତି, ସ୍ୱର୍ଗର ରମଣୀୟ ଦୃଶ୍ୟ—ପଥର ବେଦୀ ଉପରେ ଦଣ୍ଡାୟମାନା କାଳୀ-କରାଳୀ ମୂର୍ତ୍ତି ପରିବର୍ତ୍ତେ କ୍ଷୀଣଚନ୍ଦ୍ରର ବକ୍ଷ ଦୋଳରେ ସମାସୀନା ବମର୍ଣୀୟ ରମଣୀ ମୂର୍ତ୍ତି—ସ୍ମିତ ଅଧରରେ ଧୀରେ ଧୀରେ ଓହ୍ଲାଇ ଆସି, ମଧୁର କଣ୍ଠରେ କହିଲା )

ରମଣୀ—ପାରିବଚ ?

କପିଳା—( ସଚକିତରେ ) କିଏ ?—କିଏ ତୁମେ ?,

ରମଣୀ—ସ୍ଥିର-ମନରେ, ସ୍ଥିର-ଛବି ପ୍ରତିଫଳିତ କର, ସ୍ଥିର-ଦୃଷ୍ଟିରେ ଅନାଇ ଦେଖ !—

କପିଳା—ଚନ୍ଦୁନା— ( ଧରିବାକୁ ଗଲେ )

ରମଣୀ—( ମାୟା-ମୃଗ ନୃତ୍ୟପରି ଦୂରେଇ ଦୂରେଇ ଦ୍ୱାରଦେଶ ପର୍ଯ୍ୟନ୍ତ ଗଲା )

କପିଳା—ଚନ୍ଦୁନା—( ତୃଷ୍ଣାତୁରପରି ବ୍ୟାକୁଳ ହୋଇ କୁଣ୍ଢାଇବାକୁ ଗଲେ, ମାତ୍ର ଛାୟାକୁ କୁଣ୍ଢାଇଲାପରି ଆପଣା ଭରସାମ୍ୟ ସମ୍ଭାଳି ନପାରି ପଡ଼ିଯାଉଥିଲେ—ସେତିକି ବେଳେ ଉକ୍ତ ରମଣୀ ପରିବର୍ତ୍ତେ କାଶିଆ ଫେରିଆସି ଠିଆ ହୋଇଥିଲା—ସେ କପିଳାକୁ ଧରିପକାଇଲା—ସ୍ୱପ୍ନମୟ ଦୃଶ୍ୟଟି ସଙ୍ଗେ ସଙ୍ଗେ ପୂର୍ବର ଭୀଷଣ ଦୃଶ୍ୟରେ ରୂପାନ୍ତରିତ ହୋଇ ଯାଇଥାଏ )

କାଶିଆ—ଚନ୍ଦୁନା !—ଚନ୍ଦୁନା କାହିଁରେ ?

କପିଳା—( ସ୍ୱପ୍ନାବିଳ ଆଖିକୁ ମଳି ନିର୍ମଳ ଦୃଷ୍ଟିରେ ଚାହିଁ ) କାଶିଆ !

କାଶିଆ—ଅବେ, ନିଜଅଡ଼କୁ ଥରେ ଅନା—ଗୁହଁଦେଖ—'ଚନ୍ଦୁନା, ଚନ୍ଦୁନା' ବୋଲି, ଶଳାଟା କେମିତି ବେ-ହାଲ୍ ହୋଇ ଗଲଣି !—ଅବେ, କହ, ଦିବ ?—ଦୋକାନଟାକୁ ଠେକି, ଧେତ ଅପିବ ?

କପିଳା—କାଶିଆ !—( ଆଖି ତରାଟି ଚୁହିଁଲା )

କାଶିଆ—ଖୁର୍ର୍—ଜାଣେରେ, ଜାଣେ—ତୁ ମୋ'ର ଖାମିଦ—ମୁଁ ତୋ'ର ନଉକର—ହେଲେ, କପିଳାର ଭଲମନ୍ଦକୁ ମୁଁ ଦୋସ୍ତ 'କାଶିଆ'—ତା'ର ଗୋଲାମ ନଉକର ନୁହେଁ !

କପିଳା—ଦୋସ୍ତ—( ହାତଧରି ପକେଇଲା )

କାଶିଆ—ଦୋସ୍ତ—(ହାତ ମିଳାଇଲା ନାହିଁ କେବଳ, ତାହା ଦୃଢ଼ୁ ଦୃଢ଼ତର ମୁଷ୍ଟିରେ ଧାରଣ କରିବାକୁ ଲାଗିଲା )

କପିଳା—ଆଃ—ହାତଟାକୁ ଏତେ କଷିକରି ମୁଠାଉଚୁତ ? ଓ, ମୁଁ ନିଜୋରିଆ ହୋଇ ଯାଇଛି ପଡ଼ୁଛି ବୋଲି, ଡରୁଚୁକିରେ ? ନାରେ ନା, ଡରିବୁନି—ମୁଁ ସେହି କଳା-ଡାକୁ !—ମୋ'ର ଡାକୁଗିରିର କାଲ-ନମୂନାତ ଆଖି ଆଗରେ ଥୁଆ !

[ ନର-କଙ୍କାଳ ପ୍ରତି ଦୃଷ୍ଟି ଆକର୍ଷଣ କଲା ]

କାଶିଆ—ନମୂନା ? ଏଇ ନରକଙ୍କାଳ ଗୁଡ଼ାକତ ?

କପିଳା—( ସଦମ୍ଭେ ) ହଁତ !

କାଶିଆ—ହଃ-ହାଃ-ହାଃ—ଆରେ, ଏ' ଗୁଡ଼ାକତ ନାସ୍ତି-ଚୋରଙ୍କ ନରକଙ୍କାଳ,—ଯଉଁଗୁଡ଼ାକୁ ବାନ୍ଧି ଆଣି, ମା'ଙ୍କ ଆଗରେ ମୁଁ ବଳି ଦିଆ କରେଇ ଥାଏଁ—ତୁ ସେଗୁଡ଼ାକ ସାଇତି, ଏମିତି ସଜେଇ ରଖି ଦେଇଚୁ ଏ'ଠି—ଅଇଛୁକା ତା'କୁଇ ଦେଖେଇ, ନିଜର ଦମ୍ଭପଣ ଦେଖେଇ ହଉଚୁତ ?

କପିଳା—କାହିଁକି ସାଇତି, ସଜେଇ ରଖି ଦେଇଚି ଏ'ଠି, ଜାଣୁଚ ? —ଆମ ଦଳ ଭିତରେ କେହି ଯେମିତ ନାସ୍ତି-ଗ୍ରେଇ ନ କରିବେ, ସେଇ କଥାକୁ ଡରାଇ ଏଇଥି !

କାଶିଆ—ହେଲେ, ଏଇ ଡରାଣିକୁ ନିଜେ ଦଳପତିର ଡରତ ବେଶୀ !

କପିଳା—ମୋ'ର ?

କାଶିଆ—ହଁରେ ହଁ, ତୋ'ର···ଦଳର ଲୋକେ ଡରିବେ, ସେଥିପାଇଁ ପଦାଥାନରେ ଗଛ ବୁଛରେ ଝାଙ୍ଗି ରଖିବାର କଥା, ତା'ନ କରି, ଆପଣା ଖୋପ୍ ଭିତରେ, ସଦାବେଳେ ନଜର୍ ପଡ଼ୁଥିବ,—ଏମିତ ଭାବରେ ସେଇ ହାଡ଼ କଣ୍ଢା ଗୁଡ଼ାକ କାନ୍ଥବାଡ଼ରେ ଝୁଲେଇ ରଖିବାର କାରଣ ?

କପିଳା—କାଶିଆ—

କାଶିଆ—କପିଳା !—ଆମେ ଦଳ ଗଢ଼ିଚୁଁ—ମା'ର ବେଦୀତଳେ ବସି, ଜଣ ଜଣ କରି, ଆପଣା ବାହାକାଟି, ରକତ ବାହାର କରିଚୁ—ମା'ର ଚରଣ ବେଲପତରେ ଘେନି, ସେଥିରେ ରକତ ବୋଳା ହରପରେ ଲେଖି ଦେଇଚୁ,—ନାସ୍ତି-ନାତ ଅମର ମା-ଭକ୍ତଣୀ—ଜନ-ସେବା ଆମ-ଜୀବନର ପୂଜା-ବରତ !

କପିଳା—ଏହି ଦୃଢ଼-ସଂକଳ୍ପ ଦଳଟିରେତ ଆମେ ଆଜି ଦୁର୍ଦ୍ଧର୍ଷ—ଦୁନିଆ ଆମକୁ ଡର ଥରହର !

କାଶିଆ—ହେଲେ, ଆମର ଏମିତ ଦୁର୍ଧରଷ ଦଳକୁ ଭାଙ୍ଗିବ ଆମର ଦଳପତି ନିଜେ ସିନା !—

କପିଳା—କାଶିଆ—( ଉତ୍ତେଜିତ ସ୍ୱରେ )

କାଶିଆ—ହଁରେ, ହଁ—ଯେଉଁ କଳା-ଡାକୁ ଆଜି ହୋଇଚି ଧନୀ-ଦୁନିଆର ଆତଙ୍କ, ଦୀନ-ଦୁନିଆର ରଙ୍କ-ପଣରି; ସେହି ଦିନେ ଅକୁହା ଅଯୁକ୍ତ, ହଁ ମୁଁ ବାଜି ଲଗେଇ କହୁଚି, ଆପଣା ନାଁରେ, ଆପଣା ଦଳ ନାଁରେ, ବୋଲିବ ମେଖାଏ କାଳି, କରି—

କପିଳ—କରି ? ( ଅଧିକ ଉତ୍ତେଜିତ ହୋଇ ଉଠିଥିଲା )

କାଶିଆ—'ନାସ୍ତି-ଗ୍ରେଇ' !—

କପିଳା—'ନାସ୍ତି-ଗ୍ରେଇ' ?—( ଅଧିକ ହୋଇ-ଉଠିଲା )

କାଶିଆ—ଅଲବତ୍···ଦଳ ଭିତରୁ ଅଗତିରେ ଯଦି କେହି ସେଇ ନିକୁଛିଆ କାମ କରିବତ, ଦଳର ନୀତି ଭାଙ୍ଗିବତ, ତେବେ ସେ, ତୁଇ !···ତା'ର ଲକ୍ଷଣ, ଆଜିକି ମାସେ ହେଲା, ତୋ ଚଳି-ଚଳଣିରୁ ବେଶ୍ ସମଝି ପାରୁଚି !—

କପିଳା—( ହତାଶ ଭାବରେ ) ଦୋସ୍ତ !—

କାଶିଆ—ଭାଙ୍ଗି ପଡ଼ନା, ଦୋସ୍ତ, ଶୁଣି,—ମୁଁ ଯା' କହୁଚି, ତା' ତୋ' ହିତକୁ, ତୋ'ର ଦଳର ହିତକୁ,···ତୁ ଆଖିବୁଜି ସେଇଆ କରିବୁ !

କପିଳା—କହ, ଭାଇ ?—

କାଶିଆ—ମୋତେ ହୁକୁମ୍ ଦେ,—ନାହିଁତ, ତୁ ନିଜେ ଯା—ଗଧିଆ ବେଳରେ ତୋ'ର ଏଇ ଖୁର-ଦାଢୁଆ ଖୁରପିଣ୍ଟା ଚଲେଇ ଦେ—ଆଉ ମୋ' ତଳ୍ପୂର୍-ନାଗୀଙ୍କୁ, ସ୍ତଷାସର ଖାପ୍‌ଚନ୍ଦ୍ର ଭଧୁରେଇ, ତୋ'ର ସେଇ କଳା-ମଚମଚିଆ ଘୋଡ଼ାରେ ବସେଇ, ଗୁଲୁରେ ପୁରେଇ, ଝପଟେଇ, ଯେନ-ଅ'ଡ଼...

କପିଳା—( ସ୍ୱପ୍ନରେ ଯେମିତି ବିଭୋର ହୋଇ ଯାଇ-ଥାଏ...ହଠାତ୍ ) ଏଁ, କ'ଣ କହୁଲୁ, ଦୋସ୍ତ ? 'ନାଗ୍ନା-ଗ୍ୟେବ୍' କରିବାକୁ ପରାମର୍ଶ ଦେଉ ?

କାଶିଆ—ଅବେ, ଦେଖୁଛି ଯେବେ ପରର ଭୂଅସ୍ତୁରୀ, ତା' ହେଲେ ପରନାରୀ-କଥା ଦିନରାତି ଭାଲି ଭାଲି ମରିବା ତୋ'ର ଦରକାର ?—

କପିଳା—କାଶିଆ—ଭାଇ—ଦୋସ୍ତ—କହ, କହ, କ'ଣ କଲେ, ଏ ଚିନ୍ତା ରୋଗ ମୋତେ ଛାଡ଼ିବ ?

କାଶିଆ—ଅବେ, ସେ ହେଲା ନାରୀ-ଚିନ୍ତାରୋଗ । ବିଷମ ରୋଗ । ସ୍ୱାର ବିଷ ଉତକଟ ନୁହେଁ, ମଧୁରିଆ; ଯା'କୁ ଧରେ, ତା'କୁ ଚଟ୍‌କରି ମାରେନି, ଭୁଆଁ ବୁଲେଇ ବୁଲେଇ କଲବଲ କରି ମାରେ । ତେବେ ଚିନ୍ତା ନାହିଁ, ଭାଇ, ବିଷକୁ ବିଷ ନାଶ କରେ, ବିଷବଇଦ ମୋତେ ବତେଇଛନ୍ତି ।

କପିଳା—ମାନେ ?

କାଶିଆ—ମାନେ ପରିଷ୍କାର । ତୋତେ ନାରୀ-ରୋଗ ଘୋଟିଚି, ନାରୀଟିଏ ଆସିବ, ନାରୀ-ରୋଗ ଛାଡ଼େଇବ ।

କପିଳା—ବୁଝିପାରିଲି ନି ତୋ' କଥା, ଭାଇ ।

କାଶିଆ—ଅବେ, ଦୋସ୍ତ, ରୋଗୀ କେବେ ତା' ରୋଗ କଥା ସମ୍‌ଝିଲାଣି ? ରୋଗୀର ରୋଗ ସମ୍‌ଝିବ ବଇଦ—ହଁ, ଆଁଇ—ତୁ, ତୋ' ଖଟିଆରେ ବେଶ୍ ଅଡ଼ା ଜମେଇ, ବସ୍‌ତ—

( କପିଳାକୁ ବସାଇଲା )

ନାଚ୍‌ବାଲୀ !

[ ନର୍ତ୍ତକୀ ପ୍ରବେଶ କଲା । ତା'ର ବେଶଭୂଷା ଚମତ୍କାର । ]

କପିଳା—କାଶିଆ !—

କାଶିଆ—ଚୁପ୍—ରୋଗର ଔଷଧ—ଦଇବ—ଦଇବ ମିଳି ଯାଇଚି ।

କପିଳା—( ନାଚ୍‌ବାଲୀକୁ ଦେଖୁ ଦେଖୁ ) ଭାରି ବଢ଼ିଆ ତ !—

କାଶିଆ—ଭାରି ବଢ଼ିଆ ବି ଗାଇବ, ଭାରି ବଢ଼ିଆ ବି ନାଚିବ ( ନର୍ତ୍ତକୀକୁ ସଙ୍କେତରେ ଆଦେଶ ଜଣାଇ ଗୁଲିଗଲା । )

କପିଳା—( ମୁଗ୍‌ଧ ନେତ୍ରରେ ଗୁହିଁ ରହିଥାଏ )

ନାଚ୍‌ବାଲୀ—( ଗାଇଲା, ଓ ନାନା ଅଙ୍ଗଭଙ୍ଗି କରି ନାଚିବାକୁ ଲାଗିଲା । )

ଗୀତ

ଉଦାସୀରେ, କି ଆଶାଦେ ରହିଚ ମଗନ ।
ପଲକେ, ପଲକେ ବିତି ଯାଏ ଏ'ଯୌବନ ॥
ଅଙ୍ଗନାର ଭରା-ଅଙ୍ଗ  ଭରି ସରସିର ନୀର;
ଅଧର-ସୁଷମା ଉହିଁ  ଫୁଟିଆ ସରସିଜ ଧୀର;
ମଧୁପ-ଚଞ୍ଚଳ ଯେଣୁ ପୁରୁଷର ମନ,—
ପ୍ରୀତି-ମଧୁ ଛାଡ଼ି କେବେ ରହେକି ମଗନ ॥

[ ଗୀତ ମଧ୍ୟରେ କେତେବେଳେ, କପିଳାର ଅଲକ୍ଷେ, ଆପଣାର ବସ୍ତ୍ରାବରଣର ଅନ୍ତରାଳରୁ କ୍ଷୁଦ୍ରାଧ୍ୟିତନର ଅତି ମନୋରମ ସୁରାପାତ୍ରଟିଏ ବାହାର କରିଅଣି, ତାହା କପିଳା ସମ୍ମୁଖରେ ଧାରଣା କଲା, ଓ ହାସ୍ୟଲାସ୍ୟର ଚୂଡ଼ାନ୍ତ ପ୍ରଦର୍ଶନ କରୁ କରୁ, ପାତ୍ରର ଘୋଡଣି ଖୋଲି ଦେଇ ଠିଆ ହୋଇଗଲା ପ୍ରସ୍ତର ମୂର୍ତ୍ତିର ଗୋଟିଏ ସୁନ୍ଦର ଭଙ୍ଗିମାରେ । ]

କପିଳା—ସୁରା ?—ବାଃ—ବାଃ—ଚମତ୍କାର—ଚରଣ ଛନ୍ଦରେ ସୁରା—ନିବିଧ ବନ୍ଧରେ ସୁରା—କଣ୍ଠ ତରଙ୍ଗରେ ସୁରା—ଓଷ୍ଠାଧରରେ ସୁରା—ଭ୍ରୂଭଙ୍ଗିରେ ସୁରା—ଅପାଙ୍ଗ-ଗୃହାଣୀରେ ସୁରା—ସବୁରିକୁ ବଲି, କରପଲ୍ଲବରେ ସୁରା—ସୁରା—ମୁଁ

ପାନ କରିବି—ଆକଣ୍ଠ ପାନ କରିବି—( ପାତ୍ର ଧାରଣ ପୂର୍ବକ ) ପ୍ରେତ ସୁରା ନୁହେଁ, ସୁରା-ଅସ୍ଥିର ଚଳ ଚଳ ଯୌବନ-ରସ-ତରଙ୍ଗ ( ପାନୋଦ୍ୟତ ହେବାକାଳୀନ ହଠାତ୍ ନିରସ୍ତ ହୋଇ ) ହଁ, ତୁମର ନାମ, ସୁନ୍ଦରୀ ?

ନାଚ୍‌ବାଲୀ—'ମୋହିନୀ ।'

କପିଳା—'ମୋହିନୀ'—( କେମିତି ଗୋଟାଏ ଖଟ୍‌କା ଲାଗିବାରୁ ଅଟକି ଯାଇ ପରେ ) ଆଚ୍ଛା, ତୁମେ ସମୁଦ୍ର-ମନ୍ଥନ-କଥା ଜାଣ ?

ନାଚ୍‌ବାଲୀ—ଜାଣେ ।

କପିଳା—ସେଥିରୁ ବାହାରିଥିଲା କ'ଣ ?—

ନାଚ୍‌ବାଲୀ—ବିଷ, ଅମୃତ ଦୁଇ ।

କପିଳା—ବିଷ ପାନ କରିଥିଲେ ?

ନାଚ୍‌ବାଲୀ—ନୀଳକଣ୍ଠ ।

କପିଳା—ଅମୃତ ଲାଭ କରିଥିଲେ ?

ନାଚ୍‌ବାଲୀ—ଅସୁର ।

କପିଳା—ସୁରମାନେ ସେହି ଅମୃତ ହସ୍ତଗତ କରିଥିଲେ କି ଉପାୟରେ ?—

ନାଚ୍‌ବାଲୀ—ନାରାୟଣଙ୍କ ଦୟାରେ ।

କପିଳା—ଦୟାରେ ନୁହେଁ, 'ଦରିଆରେ' କହିବ । ନାରାୟଣ 'ମୋହିନୀ' ମୂର୍ତ୍ତି ଧାରଣ କରିଥିଲେ । ସେହି ମାୟାରୂପରେ ଅସୁରଙ୍କୁ ମୋହାବିଷ୍ଟ କରି, ଅମୃତ ଭାଣ୍ଡ ଚୋରି କରିଥିଲେ ।

ନାଚ୍‌ବାଲୀ—ହେଲେ, ମୁଁ ତ 'ମାୟା, ବା ନକଲି ମୋହିନୀ' ନୁହେଁ—ମୁଁ

କପିଳା—ଅସଲ୍-ମୋହିନୀ ।

ନାଚବାଲୀ—ହଁ ।

କପିଳା—'ଅସଲ୍-ମୋହିନୀ' ।—ହାଃ-ହାଃ-ହାଃ—ତା' ହେଲେତ ତୁମେ ଅସଲ-ଚୋର—ମୋର ହୃଦୟ-ଭଣ୍ଡାରର ଅସଲ ଅମୃତ-ଭାଣ୍ଡ ଚୋରି କରିବ, ସେଇଥିପାଇଁ ଆସିଚ-ହାଃ-ହାଃ-ହାଃ—

ନାଚ୍‌ବାଲୀ—( ସଶଙ୍କ ଭାବରେ ଚଞ୍ଚଳ ହୋଇ ଉଠିଲା )

କପିଳା—ଡରିବ ନି, ମୋହିନୀ—ଦଳପତି ରୋଗମୁକ୍ତ ହେବ, ବଞ୍ଚିବ, ତାର ଦଳ ବଞ୍ଚି ବର୍ତ୍ତି ରହିବ,—ଏଥିପାଇଁ ଏହି ସୁଧା-ସେବନ ଆବଶ୍ୟକ—ତା' ମୁଁ ନିଃସଙ୍କୋଚରେ କରିବି—ନିଡରରେ—

( ପାନୋଦ୍ୟତ )

[ ଠିକ୍ ସେହି ସମୟରେ କାଶିଆ ପ୍ରବେଶ କଲା ]

କାସିଆ—ଛୁଇଁବୁ ନି, ଦୋସ୍ତ—ବିଷ—ବିଶ୍ୱାସରେ ବିଷ ଦେଇଚି—ଅସଲରେ ଏ'ଯେ ତୋତେ ମାରିବାକୁ ଆସିଥିଲା, ଧରାପଡ଼ି ଯାଇଚି—ହଇଲୋ ତୁମ-ଜାତି ଏମିତିକା ନା ?—

କପିଳା—( ବିଦ୍ରୂପ କଣ୍ଠରେ ) 'ଯା' ପାଇଁ ଦେଉଁ ଚୁରି, ସେଇ ଦିଏ ଛୁରି' ।—ହାଃ-ହାଃ-ହାଃ-ହଁ, କଥା କ'ଣ, କାଶିଆ ?—( ପାତ୍ର ଥୋଇ-ଦେଲା )

କାଶିଆ—ଆବେ, ଘେନି ଆ'ତ ବନ୍ଦୀକୁ ।

[ ଜଣେ ଘାତକ ବନ୍ଦୀକୁ ଘେନି ପ୍ରବେଶ କଲା ]

କପିଳା—କିଏ ତୁ ?

ବନ୍ଦୀ—ମୁଁ—ମୁଁ—

କାଶୀଆ—କହ ସଫା ସଫା ।

ବନ୍ଦୀ—( ଭୟେ ଭୟେ ) ରାଜାଙ୍କ ଗୁପ୍ତଚର,—

କପିଳା—ଆଉ ଏ' ? ( ମୋହିନୀକୁ ଦେଖାଇ ପଗ୍ଚରିଲା )

ବନ୍ଦୀ—ଏଇ ଗୁପ୍ତଚର, ସା'ନ୍ତେ—ମୁଁ ନୁହେଁ—ମୁଁ—

ନାଚ୍‌ବାଲୀ—ହଇରେ, କାଠେଇଖିଆ—ଧରା ପଡ଼ିଲା-ବେଳକୁ, ମୁଁ ଗୁପ୍ତଚର—ଆଉ ଏ' ଗୁପ୍ତଧନ ଭୋଗ କଲାବେଳକୁ, ହେଇଥା'ନ୍ତୁ ତୁ 'ଗୁପ୍ତଚର' —ଡାକୁ-ମଣିମା । ମୁଁ ସଫା କହିବି—ମୋ'ର ପେସା ଯା', ମୁଁ ସେଇଆ କରିଚି—

ବନ୍ଦୀ—ଡାକୁ-ଜାମୁ । ମୁଁ ବି ସଫା କହିବି,—ମୋ'ର ପେସା ଯା', ମୁଁ ବି ସେଇଆ କରିଚି—

କପିଳା—ତେବେ ମୋ'ର ପେସା ଯା', ମୁଁବି ସେ'ୟା କରିବି । ଅଭନ-ଦୁନିଆରେ ଅଭ୍ନ ଅସି କୋଷ-ବଦ୍ଧ ଥାଇ, ଅପରାଧୀକୁ ପ୍ରଶୟ ଦିଏ, ପରକ୍ଷଣରେ କୋଷ ମୁକ୍ତ ହୋଇ ଅପରାଧୀର ଶାସ୍ତି ବିଧାନ

କରେ, ମାନ, ଡାକୁ-ହୁନଅରେ ଡାକୁଖଣ୍ଡା ମା-ହାତରେ ଓଲଗ୍ନ ଖଡ୍‌ଗ ଭଳି ସଦାବେଳେ ଜାଗ୍ରତ—ଅପରାଧକୁ ପ୍ରଶ୍ରୟ ଦିଏ ନା, କି ଅପରାଧୀର ଶାସ୍ତି ବିଧାନ କରେନା, କେବଳ ତା'ର ସିଦ୍ଧି-ପଥରେ ଯିଏ କଣ୍ଟକ ହୋଇ ଠିଆ ହୁଏ, ତା'କୁଇ ମୂଳପୋଛ କରି ଦେଇଥାଏ । ତୁମେ ତୁହେଁ ସେହି କଣ୍ଟକ । ସୁତରାଂ—ନା—ଘାତକ ! ଘେନ ଯା' ଏ' ଦୁଇଟା ଆଉନ ହୁନଂଆଂ କୁକ୍କୁର କୁକ୍କୁରୀକୁ—ମୃତ୍ୟୁ ଖଣ୍ଡା ଧାରରେ ନୁହେଁ, ମୃତ୍ୟୁ ବିଷ ଧାରରେ—

[ ଘାତକ ବନ୍ଦୀ ଓ ନାଚ୍‌ବାଲୀ ସହ ବିଷ-ଭାଣ୍ଡ ଘେନି ଚାଲିଗଲା । ]

କପିଳା—ବଗୁର ଠିକ୍ ହୋଇଗଲା କାଶିଆ ?—

କାଶିଆ—ହେଲେ, ନାଗୀଟାକୁ—

କପିଳା—ହାଃ-ହାଃ-ହାଃ—ନରଘାତୀ ଏହି ନରୀ, ଏ' କଥା ଆଗିରେ ଦେଖି ହୁଦା, ତା'ପାଇଁ ତୋ'ର ପ୍ରାଣ କାନ୍ଦୁଛି ?—

କାଶିଆ—( କାଳୀମୂର୍ତ୍ତି ଅଡ଼କୁ ଅନାଇ ) ଆବେ, ସଦାବେଳେ କାନ୍ଦୁ ଥିବରେ—ନାରୀ-ଜାତି ବୋଇଲେ ମୋ'ର ଏଇ ମା—କେତେବେଳେ ସେ ନଙ୍ଗଳାମୁକୁଳା—କେତେବେଳେ ସାରଦା ମଙ୍ଗଳା—ହଁ, ଛାଡ଼ ସେ କଥା—ବର୍ତ୍ତମାନ ଗୋଟିଏ ଭାରୀ ଜରୁରୀ ଖବର ।

କପିଳା—କି ଖବର ?

କାଶିଆ—'ହରିଣ ପୁର' ବନ୍ଦରରେ ଆଜ ଗୋଟାଏ ବିଦେଶୀ ବଡ଼ ବୋଇତ ଭିଡ଼ି ସେଠାରେ ଲଙ୍ଗର ପକେଇ ରହିଛି ।

କପିଳା—କେଉଁ ଦେଶର ?

କାଶୀଆ—'ଚୀନା ରାଇଜ'ର ।

କପିଳା—କି କି ମାଲ୍ ବୋଝେଇ ଥିବାର ଅନୁମାନ ?

କାଶୀଆ—ଅନୁମାନ ନୁହେଁ—ଆଖିର ଦେଖା—ଚୀନା-ବାସନ, ଚୀନା କୁଣ୍ଡେଇ, ଚୀନା-ଫାନସ—, ଏଇପରି କେତେ କ'ଣ ?

କପିଳା—ତା'ର ମାନେ, ଯେତେ ସବୁ ଠକେଇ ଚିଜ ।

କାଶିଆ—ଯା ଆଜ ପଗୁରିବାକୁ ?

କପିଳା—ଏଇ ଗୁଡ଼ାକ ଲୁଟିବାଟା ?—ହେଲେ, ଠକିବା ଯିନା ।

କାଶିଆ—ଆରେ, ଆମେ ଯେ ଲୁଟୁ, ଆମର ମତଲବ୍ ?

କପିଳା—ଅଭାବୀଙ୍କୁ ଧନ ଯୋଗେଇବୁଁ, ଏଇଥି ପାଇଁ ।

କାଶିଆ—ପେଟକୁ ମୁଠେ ଦାନା, ଆଉ ଅଣ୍ଟାକୁ ଖଣ୍ଡେ କନା—ଏତିକିତ ନିକୁଛରେ ସଭିଙ୍କର ଦରକାର—

କପିଳା—ସେଇଥିପାଇଁ—ସାମାନ୍ୟ ଧନ ଗୁଜରାଣ ପାଇଁ ଲୋକେ ଯେମିତି ସାହୁମହାଜନ ଘରଲୋଡ଼ି, ଅର୍ଥିକ ଜୀବନର ଗୋଟାଏ ହରି-କାଠରେ ପଡ଼ି, ଶୁଖି, ସଡ଼ି ନ ମରିବେ, ଏଇ କଥାକୁ ଆମର ଯେତକ ବ୍ୟବସ୍ଥା ।

କାଶିଆ—ଯେମିତି ଦେଖୁଚି, ସେଇ ବେବସ୍ଥାକୁ ମାଟି କରିଦ'ବ ଏଇ ବିଦେଶୀ-ସଉଦାଗରଟା ।

କପିଳା—କେମିତି ?—

କାଶିଆ—ଜାଣୁଚ, ଆଜି କାଲି ରାଜୁତି କା'ର ?

କପିଳା—ବାହୁବଳୀପତିର ବୋଲିବାକୁ ହେବ—ପ୍ରକୃତରେ ସେ ରାଣୀମା'ଙ୍କ ସୂତେ ସୂତେ ଏମିତି ଅକ୍ତିଅର କରିନେବ, ଆଉ ମୁଠା ଭିତରେ ପୂରେଇ ରଖିବ, ଅଦୌ ବିଶ୍ୱାସ ନ ଥିଲା—

କାଶିଆ—ସେଇ ଶଳା ଫିସାଦଅଟା ଭିତରେ ଭିତରେ ଏଇ ବିଦେଶୀ ସଉଦାଗର ସଙ୍ଗେ ସଟବନ୍ଧ, ବଖରାର ବନ୍ଦୋବସ୍ତ କରି ବ୍ରତମାନ ଦେଶକୁ ଉଚ୍ଛନ୍ନ କରିବାକୁ ବସିଲଣି ।

କପିଳା—କେମିତ, ଶୁଣେ ?

କାଶିଆ—ବିଦେଶୀର ସେଇ ସବୁ ଠକେଇ ମାଲମତା ଦରଅରେ ଦେଶକୁ ଠକି ।

କପିଳା—ମାନେ ? ବିଦେଶୀ ପ୍ରତିବଦଳରେ ଘେନିଯିବ ଦେଶର ଯେତକ ଦରକାରି ମାଲ୍ ?

କାଶିଆ—ଦେଶର ଦାନା-କନା—ଆଉ କିଛି ନୁହେଁ ।

କପିଳା—ବେଶ୍ ତ, ବିଦେଶୀ-ଶଙ୍କ ଗୁଡ଼ାକ ଲୁଟି, ବରବାଦ୍ କରି ଦେବା ।

କାଶିଆ—ହେଲେ, ଦେଶର ଇଜ୍ଜତ ମରିବ ନି ସେଥିରେ ।

କପିଳା—ହୁଁ—ଉପାୟ ?

କାଶିଆ—ଅବେ, 'ହରିହର ପୁର' ତ, ଜାଣୁ, ଭଦ୍ରଙ୍କର ବେପଣୁ ଯେଗା—କେହି ଯେମିତ ଖଣ୍ଡେ ଲୁଗା ନ ଛାଡ଼ନ୍ତି, ସେଇ କଠକଣା ସେ'ଠି କେମିତ ଜାରିହେବ, ସେଇକାମ କରିବା ଦରକାର ।

କପିଳା—'ଦାନା' ବିଷୟରେ ?

କାଶିଆ—ଖୋର୍ଦ୍ଧା-ଗୁମ୍ଫାକୁ ଖାଲାସ୍ କରିଦବାକୁ କେତେ ବେଳ ।

କପିଳା—ଆହୁରି, ଲୁଣ ରପ୍ତାନି ଜାଗା ଚିଲିକା—ସେ ଅଞ୍ଚଳକୁ ମଧ୍ୟ ତୁରନ୍ତ ଯିବା ଦରକାର ।

[ ଗୁପ୍ତଚରର ବେଗେ ପ୍ରବେଶ ]

ଗୁପ୍ତଚର—ସର୍ଦ୍ଦାର !—

କପିଳା—ଗୁପ୍ତଚର ?

ଗୁପ୍ତଚର—( ଅଭିବାଦନ ପୂର୍ବକ ) ଭାରି ଜରୁରି ଖବର—

କପିଳା—ବେଶ୍—( ଜଣାଇବାକୁ ଇଙ୍ଗିତ କଲା )

ଗୁପ୍ତଚର—ଯେଉଁ ସଉଦାଗର ଆସିଚି, ସେ ବାଦ୍‌ଶାପତ୍ତ ଜରିଆରେ ରାଣୀମାଙ୍କୁ ଭଲେ ଚୀନା-ରେଶମ-ଶାଢ଼ୀ ଭେଟି ଚଢ଼େଇ, ସେଇ ସୂତ୍ରରେ ଆପଣା କାମ ବାଗେଇ ନେଇଚି ।

କପିଳା—ଅର୍ଥାତ୍ ?

ଗୁପ୍ତଚର—ଯେତେ ଇଚ୍ଛା ସେତେ କଞ୍ଚା ମାଲ, ବେଶୀତ ଗୁଡ଼ଲ, ଲୁଗା-ପଟା,—ଏ'ସବୁ ରପ୍ତାନିର ଖଣ୍ଡେ ଛାଡ଼-ପତ୍ର, ରାଜାଙ୍କ ସନ୍ତକରେ, ହାତ କରିଚି—ଆହୁରି—

କପିଳା—'ଆହୁରି କ'ଣ ?'

ଗୁପ୍ତଚର—ଅଜ ରାତାରାତି ହରିହରପୁର ମୁକାମକୁ ଥୋକେ, ଆଉ ଖୋର୍ଦ୍ଧା ମୁକାମକୁ ଥୋକେ ସେଇ ସଉଦାଗରର ବେପାରି ଯେଉଁ ରବାନା ହେବେ, ବନ୍ଦୋବସ୍ତ ହୋଇ ସାରିଚି ।

କପିଳା—ସମସ୍ତେ ସଉଦାଗରର ଲୋକ ତ ?

ଗୁପ୍ତଚର—ଦେଶର ଦେଶଦ୍ରୋହୀ ଦଲାଲ ତ ସେଥି ଭିତରେ ପନ୍ଦରପଣ, ସର୍ଦ୍ଦାର !

କପିଳା—ଏହି ସତ୍ୟାନାଶିଆ ଦଳକୁ ଆଗେ ସଫା କରିବା ଦରକାର—( ଦୀର୍ଘଶ୍ୱାସ ତ୍ୟାଗ ପୂର୍ବକ ) କାଶିଆ ଭାଇ !—ଦେଶର ବିକାଳି ମାନେ କ'ଣ ଅନ୍ଧ ?—ବୁଝିବେ ନି ଏ'କଥା ?—ତୁଚ୍ଛା ମାଟି-କାଗଜ ବଦଳରେ, ଛାଡ଼ି ଦେବେ ଦାନା, କନାପଟା ?

କାଶିଆ—ଅବେ, ତୋ'ରତ ଗୋଲାମି କରି କରି ଧନ କଟିଚି—ବେଉସା କଥା ବୁଝିବୁ କ'ଣ ?

କପିଳା—ମାନେ ?

କାଶିଆ—ମାନେ—ବିକାଳି ଜାଣେ ଯେ,—ଦାନା, କନାରେ ସେ ଯେଉଁ ଲାଭ ଉଠେଇବ, ତା'ର ତା'ର ଦଶ ଗୁଣ ଲାଭ ଉଠେଇବ ଏଇ ମାଟି ଆଉ କାଗଜ ବିକି ।

କପିଳା—ହୁଁ—ହେଲେ, କିଣାଳି ଯେବେ ଅରାଜି ହେବେ, ତେବେ ?

କାଶିଆ—ଅବେ, ଏଥିକି ଗୁଡ଼ିଏ ଏକମନ, ଏକପ୍ରାଣ, ଏକାଠି ହେବାର ଦରକାର—କିଣାଳିଙ୍କର ତା' ଯଦି ଥାନ୍ତା, ତେବେ ଆମକୁ ଆଜ ଏମିତି ତାଙ୍କୁ ସାଜି, ମଥା ଉପରେ ଅଇନ ଖଣ୍ଡାକୁ ଝୁଲେଇ ଜଙ୍ଗଲରେ ଲୁଚି, ଅଡ଼ା ଜମେଇ, ଘାରିଗ ହେବାକୁ ପଡ଼ୁ ନ ଥା'ନ୍ତା ରେ ଦାନବନ୍ତ ।

[ ଅଦୂରରେ ଗୋଟାଏ କୋଳାହଳ ଶୁଣାଗଲା ]

କାଶିଆ—କି ଗୋଳମାଳ ? ( ଚଳିଚଳି )

[ ସନ୍ତ୍ରୀର ବିପର୍ଯ୍ୟସ୍ତ ଦଶରୁ ବେଗେ ପ୍ରବେଶ ]

ସନ୍ତ୍ରୀ—ରଜାଘରର ଘୋଡ଼-ସବାର, ସର୍ଦ୍ଦାର !

କପିଳା—ହାଃ-ହାଃ-ହାଃ—ମୁଁ ବି କଳା-ଡାକୁ—ଦସ୍ୟୁ- ସର୍ଦ୍ଦାର !—

[ ବର୍ଚ୍ଛାଟାଏ ଘେନିଆସି, ଧାରଣ ପୂର୍ବକ ...ନୋଦ୍ୟତ

[ ସବେଗେ କାଶିଆ ପୁଣି ପ୍ରବେଶ କଲା ]

କାଶିଆ—ଚୁପ୍—ହୁସିଆର—ତୁ ଯା', ସନ୍ଧୀ, ଦଳର ସମସ୍ତଙ୍କୁ ହୁସିଆର କରିଦେ,—ଯେ ଯେଉଁଠି ପାରିବେ,—ଗଛ-ବୁଛର ଉହାଡ଼ରେ, କି ପାହାଡ଼-ପର୍ବତର ଅନ୍ଧ-କନ୍ଦରେ ଲୁଚି ଛପି ଯିବେ—ଜଙ୍ଗଲ୍ ଛାଡ଼ି, ପଦା ଥାନକୁ ଯିବାର ଉପାୟ ନାହିଁ—ରତି ରତି ଦିନ ବହିଚି—ହଁ, କେହି ଯେମିତ ପାଟିତୁଣ୍ଡ ନ କରନ୍ତି, ନିଶାଣ ଦେଖେଇ, ଠାରଠୁରରେ ଜଣାଇ ଦେ—ସାବଧାନ ।

ସନ୍ଧୀ—( ଯଥା ସମ୍ମାନ ଜଣାଇ ଚାଲିଗଲା )

କପିଳା—କଥା କ'ଣ ?

କାଶିଆ—ଅବେ, ସେଇଯଉଁ ରାଜାଘର ଗୁପତଚର ଦିଟା,—ମାଇପିଟା ଆଉ ମିଣିପଟା,—ଏ'ଠାକୁ ଆସିଥିଲେ,—ସେ ଦି'ଟା ଫେରି ନ ଯିବାରୁ, ରଜା-ଘର-ସିପେଇ ଗୁଡ଼ାକ ଖୋଜା ଲଗେଇ, ଜଙ୍ଗଲ୍ ତମାମ ବନ୍ଧାଳି ମନ୍ଥାଳି, ଖେଦ ପକଉଛନ୍ତି —ହଁ, ଏ' ଗୁହା ଚଉହଦ ପାଖକୁ ମାଡ଼ି ଆସିଲେ ବୋଲି ।

କପିଳା—ବେଶ୍ ତ, ମୁହାଁମୁହିଁ ହେବା ଏଥର—ଅସ୍ତ୍ରରେ, ଅସ୍ତ୍ରରେ ବଳ ପରୀକ୍ଷା ହୋଇଯିବ ।

କାଶିଆ—ତୋର କେମିତିପଣ କୁରୁଳ ଉଠୁଚି କିରେ ? —ଜାଣୁ ତୁ, ଏ'କଥା ପାଶୋରି ପକଉଚୁତ ?—ଅବେ, ହଜାର ହଜାର ସିପେଇ —ଗୁଳି ଗୋଳା ବନ୍ଧୁକ—ଯା' ବର୍ଚ୍ଛାଟା ଥୋଇଦେ, ଦୀପ ଲିଭେଇଦେ, ସୁଡ଼ଙ୍ଗ ମୁହଁ ପଥରକୁ ଟେକି ବସିଥା—ହୁସିଆର—ମୁଁ ବାହାର ଖବର ଦେଖେଁଯାଇଁ—

କପିଳା—ନା, ନା, ମୋତେ ଯିବାକୁ ଦେ'—ମୁଁ ସର୍ଦ୍ଦାର ।

କାଶିଆ—ଅବେ, ସର୍ଦ୍ଦାରର ଜାନ୍ ଥିବାଯାଏ ଦଳର ଜାନ୍— ( ଚାଲିଗଲା )

କପିଳା—( ଅମର୍ଷ ଭାବରେ ବର୍ଚ୍ଛାଟା ଥୋଇଦେଇ, ଆଲୁଅ ଲିଭାଇବାକୁ ଗଲା )

[ ଚୁପଚାପ ଦଟେକୁ ବଟିଆ ପ୍ରବେଶ କଲା ]

କପିଳା—କିଏ ?—( ବର୍ଚ୍ଛାଟା ଆଣିବାକୁ ଯାଉଥିଲା )

ବଟିଆ—ମୁଁ ବଟିଆ—

କପିଳା—ବଟିଆ ?—( ପାଖକୁ ଧାଇଁ ଆସି ) ତୋର ପହରା ଯେଗା ଛାଡ଼ି, ହଠାତ୍ ଏଠି ? ସାଉକାର-ଘର କେହି ଚଢ଼ାଉ କରିଚି କିରେ ?

ବଟିଆ—ସର୍ଦ୍ଦାର । ବଟିଆ ତୋ'ର ବସ୍ତା-ଲୋକ—କାଶିଆ ଭାଇ ଯା'ନ ଜାଣେ, ସେ ଜାଣେ—ସେଥିପାଇଁ ତୋ'ର ଜୀବନ-ଫହୁଅ ଜଗି ରହିଲା ଭଳି, ସାଉକାର ଘର ପହରା ଦେଉଚି—କା'ର ଏଡ଼େ ଛାତି, ତା' ଛାତିରେ କାତି ନ ବସଇ, ସେ'ଠି ପହଁରିଯାଏବ ହୁଁ କେଇବ ।

କପିଳା—ତେବେ ଖବର ? ଚଉଧୁରୀ ସା'ନ୍ତାଣୀ ଆଉ ନୂଆ ସାଉକାର ଗଧିଆ-ସା'ନ୍ତ ନିଷ୍କପଟ ମନରେ କୁମାର-କୁମାରୀ ବ୍ରତ ପାଳୁଛନ୍ତି, ଏହି ଅଳ କରି ବେଶ୍ ମଉଜ ମଜଲିସ୍‌ରେ ଅଛନ୍ତି, ଏଇ ଖବରତ ?

ବଟିଆ—ନା, ସର୍ଦ୍ଦାର ।

କପିଳା—ଓ ସେମାନେ ସେହି ବ୍ରତ ପାରଣା ସାରି, ଏବେ ସଫା ବେଦୀରେ ବସିବାକୁ ତିଆରି, ଏଇ ଖବର, ନା ?

ବଟିଆ—ନା, ସର୍ଦ୍ଦାର—

କପିଳା—ହୋଃ—ହୋଃ—ହୋଃ—ବୁଝିଚି—ମୁଁ ଜୀବିତ ଥିବା ଯାଏ, ସେମାନେ ହାତଗଣ୍ଠି ପଡ଼ିଲାପରେ ମଧ୍ୟ ନିଦକ, ନିଶ୍ଚିନ୍ତ ହୋଇ ଦାମ୍ପତ୍ୟ ସୁଖ ଉପଭୋଗ କରି ପାରିବେ ନି, ଏହି କଥା ଆଶଙ୍କା କରି, ପ୍ରଣୟ-ପ୍ରତିଦ୍ୱନ୍ଦ୍ୱୀ ସାଉକାର ପ୍ରଣୟ-କଣ୍ଟକ-ନିର୍ମୂଳ କରିବା ଉଦ୍ଦେଶ୍ୟରେ ରଜାଘରକୁ ରଣେରେ, ରଣେରେ ଛନ୍ଦ, ଅକ୍ତିଆର କରି, ମୋତେ ଗୋପନ-ବିଷପ୍ରୟୋଗରେ ମାରିବାର ଫିକର କରିଥିଲା—ମାତ୍ର, ତା ବିଫଳ ହେବାରୁ ବର୍ତ୍ତମାନ ହଜାର ହଜାର ସିପେହି, ଆଉ ଗୁଳି ଗୋଳା ବନ୍ଧୁକ ଦେଇ ଆସିଚି, ମୋ ଦଳକୁ ନିର୍ମୂଳ କରିବ, ମୋତେ ବାନ୍ଧି ନେଇଯିବ,—ଏଇ ଖବରତ ?

ବଟିଆ—ନା, ସର୍ଦ୍ଦାର—ସାଉକାର ଘର କାଲଠୁଁ ଫାଙ୍କା ହୋଇଯିବ,—ଏଇ ଖବର ।

କପିଳା—ଫାଙ୍କା ?

ବଟିଆ—କପ୍ରା କପ୍ରି ଉଡ଼ିଗଲେ,ପଞ୍ଜୁରୀ ଯେମିତ ଫାଙ୍କା ହୋଇଯାଏ ଠିକ୍ ସେମିତ, ସର୍ଦ୍ଦାର—

କପିଳା—ଛଅଁାଟ ଆଖିକୁ ଫାଙ୍କିଦେଇ ପଳେଇ ବଞ୍ଚିବ କପ୍ରା କପ୍ରି ?—ହାଃ-ହାଃ-ହାଃ—

ବଟିଆ—ବୋଇଉ ଉଆର, ସର୍ଦ୍ଦାର ··ଏକାବେଳକେ ଦରଆ ପାର ।—

କପିଳା—କଳା·ଡାକୁ ବ ଡଆର—ମୋ'ର କଳା-ଘୋଡ଼ା—

ବଟିଆ—( ଚୁଲିଗଲା )

[ ନେପଥ୍ୟ ଭୀଷଣ କୋଳାହଳ ଶୁଣାଗଲା ]

ବଟିଆ—( ବ୍ୟସ୍ତ ତ୍ରସ୍ତ ଭାବରେ ଫେରି ଆସି ) ଭାରୀ ଗୋଳମାଳ, ସର୍ଦ୍ଦାର,

କପିଳା—'ଗୋଳମାଳ' !—ହାଃ-ହାଃ-ହାଃ—ଅରେ, ସାରା ଦୁନିଆଟା ଗୋଳମାଳ, ଓଲଟ୍ ପାଲଟ୍ ହୋଇ ଗଲେ ବ ପରୱାୟ ନାହିଁ—ମୋ'ର ଶିକାର –ଶିକାର—

ବଟିଆ—କାଗିଆ ଭାରି ଅକଟ, ସର୍ଦ୍ଦାର ।

କପିଳା—ସ୍ୱୟଂ ମୃତ୍ୟୁ-ରାଜର ଅକଟ ବ ମୋତେ ରୋକି ପାରବ ନି—ମୋ'ର କଳା ଘୋଡ଼ା—କଳା ଘୋଡ଼ା—

ବଟିଆ—( ଚୁଲିଗଲା )

କପିଳା—( କାଳୀମୂର୍ତ୍ତି ଆଡ଼କୁ ଚାହିଁ ) ମା—ମା—ରକ୍ତଲାଳସୀମା ମୋ'ର - ଆଜ ରକ୍ତରେ ଯେ ତୋ'ର ଭାରୀ ମନ ବଳାଚ, ଏ'କଥା ମୁଁ ଜାଣେଁ—କଛି ଚନ୍ତା ନାହିଁ, ମା—ରକ୍ତରେ, ରକ୍ତରେ ତୋର ଖପର ଆଜ ଭରି ଦେବ ମା, ରୂପସୀ ମୋହନୀର ରକ୍ତ ଦେଇଛି,—ଏବେ ମାନସ-ମୋହନୀର ରକ୍ତ—ହାଃ-ହାଃ-ହାଃ—(ଖୁର୍ପି ଟା ଧାରଣ କର ନରୀକ୍ଷଣ କରୁ କରୁ ଦୀର୍ଘଶ୍ୱାସ ତ୍ୟାଗ ପୂର୍ବକ) ଏହ ସେହ ଖୁର୍ପି, ଯା'ର ପ୍ରତ ସ୍ପର୍ଶରେ ଅଦ୍ୟାପି ଖେଳ ବୁଲୁଚ ଚନ୍ଦ୍ରସୀ-ହୃଦୟର ପ୍ରୀତ-ତରଙ୍ଗ—ସେହ ପରମ-ପ୍ରୀତ ଆଜ ପର-ପ୍ରୀତରେ ରୂପାନ୍ତରିତ—ତା'ର ପ୍ରତ-ଘାତରେ ମୁଁ ଆଜ କପିଳା ନୁହେଁ, ହୋଇଚ କଳା-ଡାକୁ ।—ସୁତରାଂ ସେଇ ଖୁର୍ପିହିଁ ହେବ ଚନ୍ଦ୍ରସୀ-ପ୍ରୀତ ବଳ ଦେବାର ଉପଯୁକ୍ତ ଖଡ୍ଗ ।—ହଁ, ଏହ ଖଡ୍ଗ ମୁଁ ଶାଣିତ କରବ ଶାଣଦିଆ-ପଥରରେ ନୁହେଁ, ସେଦନ ଗୋଧୂଳି-ଲଗ୍ନର ଉଲ୍ଲଗ୍ନ ଚନ୍ଦ୍ରସୀ-ପ୍ରୀତର ସ୍ମୃତ-ଚୁମ୍ବନରେ ।

( ସଶବ୍ଦେ ଚୁମ୍ବନ କଲା )

---

ଦୃଶ୍ୟ

—ସାଉକାରର ଘର ସମ୍ମୁଖ—

[ ଚନ୍ଦ୍ରସୀ ମାଟିର ଉଜୁଳା ଦୀପଟିଏ ଧରି, ଗାଉ ଗାଉ ପ୍ରବେଶ କଲା । ସେ ଯେଉଁ ଗୀତଟି ଗାଉଥିଲା, ସେଥିରେ କପିଳାର ଚୁମ୍ବନର ପ୍ରତଚୁମ୍ବନ ଭାବ ସ୍ପଷ୍ଟ ଫୁଟି ଉଠିଥାଏ । ]

ଚନ୍ଦ୍ରସୀ— ଗୀତ

କାର ମଧୁର ଚୁମ୍ବନ ହୃଦୟର ପରତେ ଜାଗେ ।
ଆଦରେ ଅଧରୁ ମୋ'ର ପ୍ରତଚୁମ୍ବନ ସେ ମାଗେ ॥
ଏ'ଦୀପ-ଅନଳ-ଶିଖା—
ତାହାର ଚୁମ୍ବନ-ରେଖା;
ପ୍ରତ-ଚୁମ୍ବନେ ଯେତେକ
ଉଜ୍ଜ୍ୱଳ ଉଜ୍ଜ୍ୱଳ ଲେଖା ।
ତଥାପି ବାଉଳୀ ମୁହିଁ—ବାଉଳ- ପବନ ମାର୍ଗେ;
ଦୋହଲଇ ଦୀପ-ଶିଖା—ଲିଭିଯିବ, ମନେ ଜାଗେ ॥

[ ଚୁଲିଗଲା, ତଥାପି ଗୀତର ରେଶ୍ ଲିଭିଯାଇ ନ ଥାଏ ]

---

## ଦଶ

### —ସାଉକାରର ଗୁହାଳ-ଘର—

[ ଆଗରୁ ନୂଆଣିଆ ଗୃହଳଅ ବର୍ତ୍ତିମାନ ମଥାଟେକି ସୁନ୍ଦର ହୋଇ ଠିଆ । ଭକ୍ତି ଗୀତ ଗାଉ ଗାଉ ଚନ୍ଦ୍ରଶ୍ରୀ ପ୍ରବେଶ କଲା । ଦରଜା ବନ୍ଦଥିଲା, ତାହା ଖୋଲି ଦେଲା । ଗୋରୁଟିଏ ଦେଖାଗଲା—ବେଶ୍ ହୃଷ୍ଟପୁଷ୍ଟ, ଚିକଣ ଚୃକଣ । ଗୋ-ସେବାରେ ଅପେକ୍ଷାକୃତ ନିଷ୍ଠା ଓ ଯତ୍ନ ଯେ ବୃଦ୍ଧି ପାଇଛି, ଏହାର ସ୍ପଷ୍ଟ ଲକ୍ଷଣ ଜଣା ପଡୁଥାଏ । ଚନ୍ଦ୍ରଶ୍ରୀ ଘର ଭିତରର ଚଉପଟକୁ ଦୀପ-ଶିଖା ବୁଲାଇ ଦେଖାଇ, ଦୀପଟି ଦ୍ୱାରବନ୍ଧ ଚଉକାଠ ଉପରେ ଥୋଇଦେଲା, ଓ ଯଥା-ନିୟମରେ ପ୍ରଣିପାତ ଜଣାଇଲା । ତା’ପରେ ଧୀରେ ଧୀରେ ଗୋରୁଟିର ପାଖକୁ ଯାଇ ତା’ର ବେକ-କମ୍ବଳ ଦୋହଲାଇବାକୁ ଲାଗିଲା ଧୀର କର ସଞ୍ଚାଳନରେ ]

ଚନ୍ଦ୍ରଶ୍ରୀ—ମୋ’ କପିଳାରେ ।—( କହୁ କହୁ ଗଣ୍ଡଦେଶରେ ଗାଢ଼ ଚୁମ୍ବନଟିଏ ସ୍ଥାପନ କଲା )

[ ସେତେବେଳକୁ କପିଳା ପ୍ରବେଶ କରି ସାରିଥାଏ । ମୁଖ କଳା ପଟିରେ ଅର୍ଦ୍ଧାବୃତ । ହାତରେ ଖୁରପି । ]

କପିଳା—( ଅଲକ୍ଷରେ ଥାଇ ଚନ୍ଦ୍ରଶ୍ରୀର କ୍ରିୟା-କଳାପ ଲକ୍ଷ୍ୟ କରୁ କରୁ, ଠିକ୍ ଚୁମ୍ବନାନ୍ତେ ହସି ଉଠିଲା— ) ହାଃ-ହାଃ-ହା—‘କପିଳା’ ।

ଚନ୍ଦ୍ରଶ୍ରୀ—( ଅଗଣାକୁ ଧାଇଁ ଆସି, ଚତୁର୍ଦ୍ଦିଗ ନିରୀକ୍ଷଣାନ୍ତେ ) କିଏ ?—କିଏ ଏମିତି ବିକୃତ କଣ୍ଠରେ ହସି ଉଠିଲା ?—‘କପିଳା’ ବୋଲି ଧ୍ୱନିର ପ୍ରତିଧ୍ୱନି କରି, ମୋତେ ବିଦ୍ରୂପ କଲା ?

କପିଳା—( ଲୁଚି-ଛପି ଯାଇଥାଏ )

[ ବିପରୀତ ଦିଗରୁ ବୁଧି ନିମ୍ନୋକ୍ତ ଭାବରେ କହୁ କହୁ ପ୍ରବେଶ କଲା । ବୁଧିର ଦେହରେ ପୂର୍ବର ସେ ଅଳଙ୍କାର ପତ୍ର ଆଉ ନାହିଁ । ସେ ବିଧବା । ବୟସ ଗୁଣରେ ନ ହେଲେ ମଧ୍ୟ, ଅବସ୍ଥା ଗୁଣରେ ଯେ ସେ ପୁଚ୍ଛୁଣା-ପୁରୁଖା ଘରଣୀ ପାଲଟି ଯାଇଛି, ଏହା ତା’ର ଗୁଲିଚଳଣି, କଥା ଭାଷାରୁ ବେଶ୍ ସୂଚିତ ହେଉଥାଏ । ]

ବୁଧି—ଭୋର ସାନ, ଭଉଣୀ ।

ଚନ୍ଦ୍ରଶ୍ରୀ—( ଲାଜେଇଲା )

ବୁଧି—ଅଲୋ !—ମନ ଆଉ ପବନ—ଏ’ ଦୁହେଁ ସମାନ ଅମାଣିଆ ଘୋଡ଼ା—ହେଲେ, ପବନକୁ ରୋକି ହେବ, ମନକୁ ଆଦୌ ନୁହେଁ ।

ଚନ୍ଦ୍ରଶ୍ରୀ—ବଦ୍ଧୁତ ପାଇଛି—ବାଟ ଭୁଲିଛି—

ବୁଧି—ତେବେ ଏତେ ବାଟ ପରିଶ୍ରମ କରି ଏ’ତୀର୍ଥ ସ୍ଥାନକୁ ଧାଇଁ ଆସିଲୁ କାହିଁକି ଯେ ?

ଚନ୍ଦ୍ରଶ୍ରୀ—ତୀର୍ଥ ସ୍ଥାନ ?

ବୁଧି—ଗୋ-ସ୍ଥାନ ।

ଚନ୍ଦ୍ରଶ୍ରୀ—ମହାତୀର୍ଥ କହିବ—ଗୋ-ଜାତି ଆମ ଜାତିର ଅର୍ଥ ସମ୍ପଦ—ଗୋ-ସେବା ଆମ ସମାଜର ଧର୍ମ କର୍ମ—ଗୋ-ପ୍ରୀତି ଆମ ଆଧ୍ୟାତ୍ମିକ ପ୍ରାଣର ଗତି ମୁକ୍ତି !—ହଁ, ଏଇ କଥା ବୁଝିଥିଲେ ନିଧି-ଭେଟଣେଇ— ଏଇ କଥା—( ଅଟକିଗଲା )

ବୁଧି—ସଙ୍କୋଚ କାହିଁକି ?—ଏଇ କଥା ବୁଝିଥିଲା କପିଳା—ଏଇ କଥା ଯେ ଚନ୍ଦ୍ରଶ୍ରୀ ବୁଝିବ, ଏଥିରେ ଆଉ ଆଶ୍ଚର୍ଯ୍ୟ କଣ ?—

ଚନ୍ଦ୍ରଶ୍ରୀ—ଯାଃ—

ବୁଧି—ଅଲୋ ହଁଅ, ମୁଁ ସାଉକାର-ଘର ବୋହୂମ—ବଇଦ ରୋଗୀର ନାଡ଼ୀ ଚିପେ—ସାଉକାର ଖାଉକର ମନ ଚିପେ—ଆଉ—ଏ’ପବିତ୍ର ସ୍ଥାନରେ ଠିଆହୋଇଛୁ, ପବିତ୍ର ମନରେ ମୋ’ର ପ୍ରଶ୍ନର ଉତ୍ତର ଦେ’ତ ?

ଚନ୍ଦ୍ରଶ୍ରୀ—ଅପା !—

ବୁଧି—ବୋଇତ ପ୍ରସ୍ତୁତ—ଦୁହେଁ ମିଳି ଦରିଆ-ପାରି ଯିବ—ଯାତ୍ରା ଶୁଭ ହେଉ, ଏହୁ ଆଶୀର୍ବାଦ ଲୋଡ଼ୁଛ—ହେଲେ, ତହିଁ ପୂର୍ବରୁ ମୁଁ ଜାଣିବାକୁ ଚାହେ ତୁମର ଓଷା-ବ୍ରତ ବଢ଼ିଗଲା ?

ଚନ୍ଦ୍ରଶ୍ରୀ—କହିଲି ତ ଅପା, ମୋ’ର ବ୍ରତ ସେହିଦିନ ବଢ଼ିବ, ଯେଉଁଦିନ ଏ’ ଦୁନିଆର ପ୍ରତ୍ୟେକ ଲୋକ ମୋ’ ବ୍ରତରେ ବ୍ରତୀ ହେବେ ।

ବୁଦ୍ଧ—ତା' କ'ଣ ହେବାକୁ ଆଉ ବାକି ଅଛି ?—
ତୁ ଗୁହଥିଲୁ କେମିତି ଲୋକେ ଆପଣା ଗୋଡ଼ରେ ଠିଆ ହେବେ, ଭଲ ଖଣ୍ଡେ ପିନ୍ଧିବେ, ଭଲଗଣ୍ଡେ ଖାଇବେ, ସାଉ ଘର ଦେ'ଣା ସୁରୁଖୁରୁରେ ସୁଝିବେ; ସେଇ କଥାକୁ ଗୋଟିଏ ନିଖୁଣ ନମୁନା ବାଢ଼ିବୁ, ଏଇଥିପାଇଁ ଆମ-ଘର-ଖାତକମାନଙ୍କୁ ଡକେଇ, କା'କୁ ଗାଈ-ଗୋରୁ, କା'କୁ ଜମି-ବାଡ଼ି, କା'କୁ ବେପାର-ବଣିଜର ମୂଳଧନ,—ଏହିପରି ଯା'କୁ ଯେମିତି, ସେମିତି ବ୍ୟବସ୍ଥା ଖଞ୍ଜି, ଉପାର୍ଜନର ବାଟ ବତେଇ ଦେଲୁ,—ଆହୁରି ଲୋକେ ଯୁଗ ସଙ୍ଗେ ପାହୁଲ ପକେଇ ଚାଲିବେ ବୋଲି, ମଝିରେ ମଝିରେ ତୁ ନିଜେ ସେମାନଙ୍କ ଘରକୁ ଯାଇ, ନାନା ଶିକ୍ଷା ଦୀକ୍ଷା ଦେଇ, ଦେଶ ବିଦେଶର କାହାଣୀ-ଗପ କହି, କିଛି କିଛି ପାଠ-ଶାଠବି ପଢ଼େଇ, ସେମାନଙ୍କର ଆଖି ଖୋଲି ଦେଲୁ; ଯାହାର ଫଳରେ ଆମର ତାଗାଦା ନାହିଁ, ଅଥଚ ଖାତକମାନେ ଓଲଟା ଆମକୁ ତାଗାଦା କରି, ଋଣ ସୁଝି ଦେଇ ଯାଉଚନ୍ତି; ସାଉ-ଖାତକ ଭିତରେ, ଇତର-ଭଦ୍ର ଭିତରେ ଭାବ ପ୍ରୀତିର ଗୋଟାଏ ନୂଆ ଢେଉ ଯେମିତି ଖେଳି ଯାଉଚି ! —କହତ ଯାହାଠାରୁ ଆଉ ବେଶୀ କ'ଣ ହୁଅନ୍ତା ଯେ ?

ଚନ୍ଦ୍ରଶ୍ରୀ—ମୋତେ ଅନୁକୂଳ ମାନ !—ଏଇପରି ଭାବ-ପ୍ରୀତିର ନୂଆ ଢେଉ ପ୍ରତି ରାଜା-ପ୍ରଜା ଭିତରେ, ପ୍ରତି ଜାତି-ବିଜାତି ଭିତରେ, ପ୍ରତି ଦେଶ-ବିଦେଶ ଭିତରେ ଯେଉଁ ଦିନ ଖେଳି ଯିବ, ସେଇ ଦିନ ମୋ'ର ବ୍ରତ ବଢ଼ିବ, ଅପା !

ବୁଦ୍ଧ—ଜାଣେ, ସେଇ କଥାକୁ ତୁମର ସାତର-ପାରିଧି; ହେଲେ—

ଚନ୍ଦ୍ରଶ୍ରୀ—ହେଲେ ?

ବୁଦ୍ଧ—ମୋ'ର ଆଶୀର୍ବାଦ ତୁମେ ପାଇବନି ।

ଚନ୍ଦ୍ରଶ୍ରୀ—ଅପା !—

ବୁଦ୍ଧ—ମୋ'ର ଶାଣ୍ଟି କଥା—ସ୍ମୁଡ଼ିଆ ତଲେ ବାହା-ବେଦୀରେ ଆଶୀର୍ବାଦ ପାଇବ, ତେବେ ଯାଇ ସାଗର କୂଳେ ବୋଇତ-ଉପରେ ଆଶୀର୍ବାଦ କରିବି । (ପ୍ରସ୍ଥାନୋଦ୍ୟତ)

ଚନ୍ଦ୍ରଶ୍ରୀ—(ବାଟ ଓଗାଳି, ଗଦ ଗଦ କଣ୍ଠରେ) ଅପା, ତୁମେ ଯଦି ମୋ' ମନ ଚିହ୍ନି ଥାଅ, ମୋ'ର ଦାମ୍ପଣ ରୁଚି ଥାଅ, ତେବେ—

ବୁଦ୍ଧ—ବାହାଥିଆ ପାଇଁ ଜଟର ଧରିଚ କାହିଁକି, ଏଇଯ୍ୟାତ ?—

ଚନ୍ଦ୍ରଶ୍ରୀ—(ମଥା ପୋତି ଦେଲା)

ବୁଦ୍ଧ—(ବୁକୁ ଉପରକୁ ଭିଡ଼ିନେଇ ଚନ୍ଦ୍ରଶ୍ରୀକୁ) ଆଲୋ ଭଉଣି, ତୋର ମନ ବାଉଳି, ଏ' କଥାକୁ ଜଗର ଲଗେଇଚି, ତା ନୁହେଁମ—ଜୀବନର ପଥ ବଡ଼ ବନ୍ଧୁର—ଜଣକୁ ଜୀବନର ବନ୍ଧୁ କରି ନ ନେଲେ, ତୋ'ର ଜୀବନର ବ୍ରତ ପଣ୍ଡ ହେବାର ପଦେ ପଦେ ଆଶଙ୍କା ।

ଚନ୍ଦ୍ରଶ୍ରୀ—ମୋ'ର ଆତ୍ମ-ବିଶ୍ୱାସକୁ କ'ଣ ତେବେ ସନ୍ଦେହ କରୁଛ, ଅପା ?

ବୁଦ୍ଧ—ଆଦୌ ନୁହେଁ—ଆତ୍ମ-ବିଶ୍ୱାସର ପରିଚୟ ତୁ ତ ଦୁନିଆକୁ ବାଢ଼ି ଦେଇଚୁ ଅଲିଭା ଅକ୍ଷରରେ ।

ଚନ୍ଦ୍ରଶ୍ରୀ—(ଅତି ପ୍ରଶଂସାରେ ଯେମିତି ଲାଜକୁଳି ଲତା ପାଲଟିଗଲା)

ବୁଦ୍ଧ—ଜାଣେନା କିଅ, କାହିଁକି, ହେଲେ ମୋ'ର ପ୍ରାଣରୁ ଅଧିକ ଭୟ ସେଇ କଳା-ଡାକୁଟାକୁ ।

ଚନ୍ଦ୍ରଶ୍ରୀ—(ଶ୍ଳେଷଭାବରେ) କଳା-ଡାକୁ ! ସେ'ଟା ମୋର କରିବ କଣ ? (ହସିବାକୁ ଲାଗିଲା)

ବୁଦ୍ଧ—ଉଁ ହୁଁ ଖେଳବସର କଥା ନୁହେଁ, ଭଉଣି !

ଚନ୍ଦ୍ରଶ୍ରୀ—ତୁମେତ ଜାଣ ଅପା,—କଳା-ଡାକୁ, ଡାକୁହୋଇ ସୁଦ୍ଧା ନାରୀ-ଜାତି ପ୍ରତି ଯେଉଁ ସମ୍ମାନ ଦେଖେଇ ଥାଏ, ତା' ଆମର ସଭ୍ୟ ସମାଜରେ ମଧ୍ୟ ବିରଳ ।

ବୁଦ୍ଧ—ତଥାପି, ସେଇ କଳା ଡାକୁର କାଳ-ନଜରଟା ଯେମିତି ତୋ'ଠେଇଁ ନିବଦ୍ଧ,—ଏଇଟିକି ମୁଁ ଆଇନାରେ ଦେଖିଲା ଭଳି ସଫା ଦେଖିପାରୁଛି ।

ଚନ୍ଦ୍ରଶ୍ରୀ—( ସସ୍ମିତେ ) ବୁଝିଛି, ଅପା—କଳା-ଡାକୁ ଏ' ରାଇଜରେ ଉପଦ୍ରବ ଆରମ୍ଭ କଲାଦିନୁ ଶ୍ରେଷ୍ଠ, ବଡ଼ ଏମିତି ମହାଜନଘର ନାହିଁ, ଯେଉଁଠି ସେ ଉଚ୍ଛେଇତ ନ କରିଛି, କେବଳ ମାତ୍ର ଆମର ଘରକୁ ଛାଡ଼ିଦେଇ;—ସେଇ କାରଣରୁ ଏ' କଥା କହୁଚ ନିଶ୍ଚେ ।

ବୁଧି—ଠିକ୍ ସେହି କାରଣରୁ, ଭଉଣି ।

ଚନ୍ଦ୍ରଶ୍ରୀ—( ଅଧିକତର ସ୍ମିତ ଭାବରେ ) ହେଲେ, ତୁମେତ ଜାଣ, ଅପା—କଳା-ଡାକୁ ତା ଗୀତରେ ଯେମିତି ଦେଶର ସୁଖ ଦୁଃଖ ବୁଝୁଚି, ଆମେ ଆମ ଗୀତରେ ସେମିତି ଦେଶର ସୁଖ ଦୁଃଖ ବୁଝୁଥାଉଁ । ଦୁହିଁଙ୍କର ଲକ୍ଷ୍ୟ ଯେତେବେଳେ ଏକ, ସେତେବେଳେ ସେ ଯେ ଆମକୁ ଦରଦ ଦେଖେଇବ, ଏଥିରେ ଆଉ ଆଶ୍ଚର୍ଯ୍ୟ କଣ ?

[ ଗଧିଆ ଠିକ୍ ସେହି ସମୟରେ ପ୍ରବେଶ କଲା । ତାର ବେଶ ଭୂଷା ପରିବର୍ତ୍ତିତ । ପୂର୍ବର ଉଲୁଣୀ-ମୁଣ୍ଡିଆ-ଗଧିଆ ହୋଇ ସେ ଆଉ ନାହିଁ । ]

ଗଧିଆ—ତଥାପି ସେ ଡାକୁ—ରାକ୍ଷସ—ପ୍ରବୃତ୍ତିର ଦାସ ।—

ବୁଧି—ଅନ୍ତର, ରାକ୍ଷସର ଆଗ୍ରହ ଯଜ୍ଞ-ହବିରେ ଯେତେ ଥାଏ, ଅନ୍ୟ-ହବିରେ ସେତେ ନ ଥାଏ ।

ଗଧିଆ—କାରଣ ? ତାହା ଶୁଦ୍ଧ, ନିର୍ମଳ—ପବିତ୍ରକୁ ଅପବିତ୍ର କରିବା ହିଁ ତ ରାକ୍ଷସର ଧର୍ମ—ରାଜ-କୁମାରୀ, କୁମାରୀ ଥିବାଯୋଗୁଁ ସିନା ଶୁଦ୍ଧାନ୍ତପୁରରୁ ଘେନିଆସି, ତା'କୁ ପାଷାଣପୁରୀରେ ବନ୍ଦୀକରି ରଖି ଦେଇଥିଲା ରାକ୍ଷସ !

ବୁଧି—କହୁଚୁତ ଓଲଟାକୁ ସେଇକଥା ବୁଝେଇ, ସମୁଝେଇ—ମୁଁ ଯାଏଁ, ମୋ'ର ପୂଜାବେଳ ତେଣେ ଗଡ଼ିଯାଉଛି । ( ଚାଲିଗଲା )

ଚନ୍ଦ୍ରଶ୍ରୀ—ତୁମ ଦୁହିଁଙ୍କର ମତଲବ କଣ, କୁହତ ?

ଗଧିଆ—ମତ୍ଲବ ଆଉ କ'ଣ,—ବୁଝି ପାରୁ ନଥିବ ଯେ—

ଚନ୍ଦ୍ରଶ୍ରୀ—ହୁଁ, ମୋ'ର ଶବାହ ?

ଗଧିଆ—( ମୃଦୁ ମୃଦୁ ହସି ଆପଣାର ବେଶଭୂଷାପ୍ରତି ଦୃଷ୍ଟି ଆକର୍ଷଣ କରୁ କରୁ ) ଅପସନ୍ଦ ହେବନି ନିଶ୍ଚେ । ଧୂଳି ମଳି ଆଉ ଅଛି ? ସେ ସବୁତ ତୁମର ପରଶ—ଗୁଣିଆ ହାତର କାଞ୍ଜିର ପରଶ ।

ଚନ୍ଦ୍ରଶ୍ରୀ—ଛି, ଛି—ତୁମର ମନର ମଇଳା ଏ'ଯାଏ ଛିଡ଼ିନି ? ଆମେ ଦୁହେଁ ଭାଇ, ଭଉଣୀ—ଏ' ତୁମର ବଚନ ନା ?

ଗଧିଆ—ହେଲେ, ତା' ଭାଙ୍ଗିବାକୁ କେତେବେଳ ? ସୂର୍ଯ୍ୟବଂଶୀ କପିଳା,—ସେ ଯେତେବେଳେ ତାର ବଚନ ଭାଙ୍ଗିପାରିଲା—ସେତେବେଳେ—

କପିଳା—( ଅର୍ଦ୍ଧଦୃଶ୍ୟ ଭାବରେ ଥାଇ ) ଉଃ —

ଗଧିଆ—କିଏ—

ଚନ୍ଦ୍ରଶ୍ରୀ—( ଗଦ ଗଦ କଣ୍ଠରେ ) ଭାଇ—କ୍ଷମା—

ଗଧିଆ—( ବ୍ୟଙ୍ଗ ଭାବରେ ) କ୍ଷମା ?—କଦାପି ନୁହେଁ—ରାକ୍ଷସଟାକୁ ଖୋଜି, ବାନ୍ଧି ଆଣିବି—ରାକ୍ଷସୀ ସଙ୍ଗେ ଯୋଚି, ଛନ୍ଦ ଦେବି—ତା'ପର ହେବ ବିଗ୍ରହ—ଦେବି ଦଣ୍ଡ—କଠୋର ଦଣ୍ଡ—ଆଶୀର୍ବାଦ ।

( ଚାଲିଯାଉ ଥିଲେ )

ଚନ୍ଦ୍ରଶ୍ରୀ—( ନିର୍ବାକ ହୋଇଯାଇ ଥାଏ )

ଗଧିଆ—( ଫେରି ) ହଁ, ଭଉଣୀ—କାଲି ଅପା ଗୋଟିଏ ଭାରି ମଜାର କଥା କହୁଥିଲେ, ତା' ତୁମକୁ ଏ ଯାଏ କହିନି—

ଚନ୍ଦ୍ରଶ୍ରୀ—କି କଥା ଯେ ?

ଗଧିଆ—ଏ' ଜୀବନ ଖେଳାରେ ଯେଉଁଠି ଭାବ-ପ୍ରୀତିର ନିବିଡ଼ତା, ସେ'ଠି ଯଦି ହଠାତ୍ ଶ୍ରେଷ୍ଠ ପଡ଼େ, ତେବେ ତା'ରି ଫଳରେ ବ୍ୟକ୍ତି ବିଶେଷ ହୁଏତ ନର-ଦେବତା ପାଲଟି ଯାଇଥାଏ, ନୁହେଁତ—

ଚନ୍ଦ୍ରଶ୍ରୀ—ନର-ପିଶାଚ ।—ତେବେ କ'ଣ କପିଳା ଆମ ଦୁହିଁଙ୍କର ପ୍ରୀତିଖେଳାକୁ ଭୁଲ ବୁଝି,—

ଗଧିଆ—'କଳା-ଡ଼ାକୁ' ? ଆଶ୍ଚର୍ଯ୍ୟ ନୁହେଁ । ଅତିରିକ୍ତ ଶାସନ, ସଙ୍ଗ ଦୋଷ, ମାତାଧିକ ସନ୍ଦେହରୁ

ଗୋଟିଏ ସରଳମତି ତରୁଣକୁ ବିପଥଗାମୀ କରିବା ପକ୍ଷେ ଯଥେଷ୍ଟ ଉପାଦାନ । ଏହିପରି ଧାରଣା ଅନୁକୂଳରେ ଆହୁରି ମଧ୍ୟ ପ୍ରମାଣ—

ଚନ୍ଦ୍ରସ୍ମି—କ'ଣ ?

ଟଧିଆ—କଳା-ଡାକୁର ପରସ୍ପରବିରୋଧୀ କାର୍ଯ୍ୟ-କଳାପ । ଅବସ୍ଥାବିପର୍ଯ୍ୟୟ ମାନବମନର ଭାବଧାରା ପରିବର୍ତ୍ତିତ କରିପାରେ ସତ, କିନ୍ତୁ ତା'ର ସ୍ୱଭାବକୁ କଦାପି ସ୍ପର୍ଶ କରି ପାରେନା ।

ଚନ୍ଦ୍ରସ୍ମି—ତଥାପି, ଈର୍ଷା ସ୍ୱଭାବ ସୁନ୍ଦର ହୃଦୟକୁ ମଧ୍ୟ ହତ୍ୟାଅପରାଧରେ କଳୁଷିତ କରି ଥାଏ ।

ଟଧିଆ—ସୁତରାଂ ଈର୍ଷାର ବସ୍ତୁ ଯେଉଁ ଗୃହରେ ବିଦ୍ୟମାନ, ତା'କୁ ଉପଦ୍ରବ-ମୁକ୍ତ ରଖିବ ଈର୍ଷାତୁର ପ୍ରଣୟୀ, ଅସମ୍ଭବ—ସେଥିରସ୍ପଷ୍ଟ ଯେ ତା'ର ଆକ୍ରମଣ-ପୂର୍ବ-ଅଟ୍ଟହାସ ନୁହେଁ, କିଏ କହିବ ।

କପିଳା—( ଅଟ୍ଟହାସ୍ୟର ଗୋଟାଏ କ୍ଷୀଣ ଧ୍ୱନି ଶୁଣାଗଲା )

ଚନ୍ଦ୍ରସ୍ମି—କିଏ ?

ଟଧିଆ— କପିଳା-ସ୍ନୁତ, ଭଉଣୀ—

ଚନ୍ଦ୍ରସ୍ମି—ସେହି ସ୍ନୁତ ମୁଁ—( ଘୃଣାର ଆତିଶଯ୍ୟ ଯୋଗୁଁ ନିଜକୁ ଆଉ ବ୍ୟକ୍ତ କରି ପାରିଲା ନାହିଁ । )

ଟଧିଆ—ଛି, ନିଜକୁ ପାଶୋରି ପକାଉଛ, ଭଉଣୀ ? —ପୂଜାରୀ ଦେବତାର ଅର୍ଚ୍ଚନା କରେ ଦାନବକୁ ପ୍ରତ୍ୟାଖ୍ୟାନ କରେ—ମାତ୍ର, ସେବାକାରୀ ଉଭୟ ଦେବତା ଓ ଦାନବକୁ ସମାନ ମର୍ଯ୍ୟାଦା ଦାନ କରେ— ( ଚାଲିଗଲା )

ଚନ୍ଦ୍ରସ୍ମି—ଭାଇ—( ଅନୁସରଣ କରୁଥିଲା )

[କପିଳା ପ୍ରବେଶ କଲା । କଳା-ଡାକୁର ବେଶ ଓ ଭାବ । ଆତ୍ମ-ଗୋପନ ଉଦ୍ଦେଶ୍ୟରେ, ତାହା ଉତ୍କଟ କରିବାର ଯଥେଷ୍ଟ ପ୍ରୟାସ କରିଥାଏ । ମାତ୍ର, ହସ୍ତନ୍ଥିତ ଖୁରପିଟା ଅତି ସାବଧାନତାକୁ ଉପେକ୍ଷା କରି, ଅସାବଧାନତାର ପ୍ରତି ପ୍ରତୀକ-ରୂପେ ଆତ୍ମ-ପ୍ରକାଶ କରି ରହିଥାଏ । ]

କପିଳା—ଠିଆ ହୁଅ ।

ଚନ୍ଦ୍ରସ୍ମି—କିଏ ?—

କପିଳା—ହାଃ-ହାଃ-ହାଃ-ହାଃ—

ଚନ୍ଦ୍ରସ୍ମି— କଳା-ଡାକୁ ?···( କିଛିକ୍ଷଣାନ୍ତର ମୃଦୁ ମୃଦୁ ହସି ) ଅଟ୍ଟହାସ୍ୟତ ଅଛି, ହ୍ରେସାରବ କାହିଁ ?···

କପିଳା—କାହିଁ ।—

[ ନେପଥ୍ୟେ ହ୍ରେସାରବ ଶୁଣା ଗଲା ]

ଶୁଣିଲତ ?···କଳାଘୋଡ଼ାରେ ଚଢ଼ିବ ?

ଚନ୍ଦ୍ରସ୍ମି—ଅବଶ୍ୟ ।

କପିଳା—କେଉଁଠାକୁ ଯିବ, ଜାଣ ?

ଚନ୍ଦ୍ରସ୍ମି—କଳା-ଡାକୁର ଗୁହାକୁ ।

କପିଳା—ଉଁ ହୁଁ—କାଳ-ନାଗର ଗହ୍ୱରକୁ ।

ଚନ୍ଦ୍ରସ୍ମି—ଜାଣେ ।

କପିଳା—କାଳ-କୂଟର ବାଷ୍ପ ସେ'ଠା ବାୟୁମଣ୍ଡଳରେ ।

ଚନ୍ଦ୍ରସ୍ମି—ତା'ବି ଜାଣେ ।

କପିଳା—ଭୟ ନାହିଁ ତୁମର ?

ଚନ୍ଦ୍ରସ୍ମି—ନା ।

କପିଳା—ଅଛା ?

ଚନ୍ଦ୍ରସ୍ମି—ନା ।

କପିଳା—ଓ, ଧରାଇ ଦେବ ମୋତେ ?

ଚନ୍ଦ୍ରସ୍ମି—ନା ।

କପିଳା—ତେବେ ?—

ଚନ୍ଦ୍ରସ୍ମି—ଧରାଇ ଦେବି ତୁମର ଭୁଲ୍ ।

କପିଳା—( ନୀରବ )

ଚନ୍ଦ୍ରସ୍ମି—ହଁ, ଡାକୁର ଭୁଲ—ଆଇନ-ଦୁନିଆ ଯେତେବେଳେ ନୀତି-ନିୟମ-ଶୃଙ୍ଖଳାର ବ୍ୟବସ୍ଥା ଖଞ୍ଜି, ସେହି ସୂତ୍ରରେ ଜନସମାଜକୁ ଆତ୍ମବଳରେ ବଳୀୟାନ୍ କରି ଜୀବନର ଜୟ-ଯାତ୍ରା-ପଥରେ ଆଗେଇ ନେଇ ଚାଲିଛି, ସେତେବେଳେ ତୁମେ, ଡାକୁ-ଦୁନିଆ, ଘଟାଉଛ ବିପ୍ଳବ—ପରସ୍ୱାପ-ହରଣ ପୂର୍ବକ ନିଃସ୍ୱ ମଧ୍ୟରେ ତାହା ବିତରଣ କରି ଦେବା ଫଳରେ ସମାଜର ନିର୍ମାଣ-ଗ୍ରନ୍ଥି କରି ଦେଉଛ ଶିଥିଳ, ତଥା ବ୍ୟକ୍ତିବିଶେଷକୁ କରି ପକାଉଛ କର୍ମପଙ୍ଗୁ, ପରମୁଖାପେକ୍ଷୀ,

ଆତ୍ମବିଶ୍ୱାସହୀନ, ଦୁର୍ବଳ; ରାଜ୍ୟଶାସନସଂକ୍ରାନ୍ତ ଦୁର୍ନୀତି-ପରାୟଣତା ନିବାରଣ ହେତୁ ଯେଉଁ ବର୍ବର ନୀତି ଅବଲମ୍ବନ କରିଛ, ସେଥିରେ ରାଜ୍ୟସାରା ଅରାଜକତାର ବୀଜହିଁ କେବଳ ବପନ କରି ଦେଇଛ; ଆତୁର ରକ୍ଷଣଶୀଳତାକୁ ଅଦମ ପ୍ରବୃତ୍ତି ଯେପରି ଅତି ମାତ୍ରାରେ ପ୍ରଶ୍ରୟ ଦେବା ଫଳରେ, ବିଶ୍ୱ-ସଭ୍ୟତାର ଅଗ୍ରଗତି ବିକାଶ ଯେଉଁ ମାନବତା, ସେଥିରେ ଘଟାଇଛ ପ୍ରମାଦ—ସ୍ୱଦେଶକୁ ସେଥିରୁ ବିଚ୍ଛିନ୍ନ କରି କରୁଛ ବିପନ୍ନ।

କପିଳା—ହେଲେ, ତୁମେ ନାରୀ—ସେ'ଠାକୁ ଯାଇ କରିବ କଣ ?

ଚନ୍ଦ୍ରୁରୀ—ପୁରୁଷର ଭୁଲ ସୁଧାରିବି। ତୁମେ ଧ୍ୱଂସ—ମୁଁ ସୃଷ୍ଟି। ତୁମେ ହିଂସା—ମୁଁ ଅହିଂସା। ତୁମେ ଔଦ୍ଧତ୍ୟ—ମୁଁ ସଂଯମ। ତୁମେ ବିପ୍ଳବ—ମୁଁ ଶାନ୍ତି।

କପିଳା—ହେଲେ, ତୁମେ ଭୁଲ କରୁଛ,—ଜାଣିନା, ମୁଁ କିଏ ?

ଚନ୍ଦ୍ରୁରୀ—ଜାଣେ, ତୁମେ ନିଜକୁ ଭୁଲିଥିଲେ ମଧ୍ୟ, ତୁମର ଜୀବନର ସଙ୍ଗୀନି ଏହି ଖୁର୍ପିକୁ ତୁମେ ଭୁଲିନ।

କପିଳା—( ବିସ୍ମିତ ହୋଇ ଚୁହିଁଲା ଖୁର୍ପିଆଡ଼କୁ—ତା'ପରେ କହିଲା ) ତଥାପି ତୁମେ ଜାଣିନା,—ଏ'ଖୁର୍ପି ମୁଁ ଆଜି ଆଣିଥିଲି କେଉଁ ଉଦ୍ଦେଶ୍ୟରେ ?...

ଚନ୍ଦ୍ରୁରୀ—( ଗୋରୁଟିକୁ ଦେଖାଇ ) ନିଶ୍ଚୟ କପିଳା ତା'ର ଏହି ପ୍ରାଣପିଅର କାଳିଅଟିକୁ ଦୁବ ଘାସ ଛେଲି ଦେବ, ଏଇଥିପାଇଁ।—ଚନ୍ଦ୍ରୁରୀ ହେତେ ଭଲ ଭଲ ଚିଜ ଖୁଆଇଲେବି, ତୋଳିର ମନ ବୁଝେ ନାହିଁ, ତୋଳି ପୁରେ ନାହିଁ—( ଗାଈଟିର ପାଖକୁ ଧାଇଁ ଯାଇ ) ଅଲୋ, 'କପିଳା'—ତୋ'ର କପିଳା ଆସିଛନ୍ତି—କହ, ଏଥର ତୋ'ର ଚନ୍ଦ୍ରୁରୀର ଲୁଚିବ ? ଊଁ-ହୁଁ, କପିଳା ଗୁହାଳର ଖବର ବୁଝିଲେ, ଚନ୍ଦ୍ରୁରୀ ଗୁହାର ଖବର ବୁଝିବ ପରା ?

କପିଳା—ଓଃ—ମୁଁ ଏ'ଠି ଠିଆ ହୋଇ ଦେଖୁଛି କ'ଣ ?—ମୁଁ ଯେ କାମ-ପଙ୍କର ଗୋଟାଏ ସ୍ୱାର୍ଥ-କୀଟ...ତ୍ୟାଗ-ପ୍ରୀତିର ଏ' ମାନସ-ସରୋବରର ହଂସ ହେବି କିପରି ?—ମୁଁ ପଳାଏଁ—ମୁଁ ପଳାଏ—( କିନ୍ତୁ ଖୁର୍ପଟାକୁ ଫିଙ୍ଗି ଦେଇ ଚାଲିଗଲା ଓ ଅଶ୍ୱର ଖୁର-ଶବ୍ଦ ଶୁଣାଗଲା )

ଚନ୍ଦ୍ରୁରୀ—( ହତାଶ ହୃଚ୍ଛେଦର ଦୀର୍ଘଶ୍ୱାସ ଛାଡ଼ି ପଦାକୁ ଆସି ) ହଁ, ଆସନ୍ତି, ତୁମର ଗୁହାଳ—( ଚାରିଆଡ଼େ ଚାହିଁ )—ଏଁ କେହି ତ ନାହିଁ—ତେବେ କ'ଣ ମୁଁ ସ୍ୱପ୍ନ ଦେଖୁଥିଲି ?—ଏହିତ ଖୁର୍ପିଟା—( ଉଠାଇ ନେଇ ) କପିଳା—କପିଳା—

[ କେଉଁ ଭାବାବେଗରେ ଖୁର୍ପିଟାକୁ ବୁକୁ ମଧ୍ୟରେ ଦୃଢ଼ ଭାବରେ ଚାପି ରଖିଲା, କିନ୍ତୁ ବୁକୁ ଭିତରର କୋହ ଆଦୌ ଚାପି ରଖି ପାରିଲା ନାହିଁ। ଅଶ୍ରୁର ପ୍ରବଳ ଉଚ୍ଛ୍ୱାସ ଗଣ୍ଡପ୍ରଲମ୍ବୁ ଧାରରେ ଗଣ୍ଡଦେଶ ପ୍ଳାବିତ କରି ବୋହି ଚାଲିଗଲା ]

---

ଚାର

—ଭାନୁଦେବଙ୍କ କକ୍ଷ—

[ ବାହାର ପଟେ, ଦୂରେ, ଗୋଟାଏ, ହାଉଳି ଆଉ ମଝିରେ ମଝିରେ ଗୋଳା-ଗୁଳିର ଶବ୍ଦ ଶୁଣା ଯାଉଥାଏ। କୋଦମାସିଂ ପରିଚାରିକା-ପଦାର ଲୁଗା ପଣତ ଧରି, ଥରୁ ଥରୁ ପ୍ରବେଶ କଲା। ]

ପରିଚାରିକା—ଛି, ଛି ଛି ଏଇ ଚୁଳ-ଗୋଳାର ଶବ୍ଦକୁ ଏତେ ଡର୍ଛ ?—ଯେମିତ ନିତି ଫୁଟୁଚି, ଡାଳ-ଫଟକା—କଂସାରି-ଘର ପାଖକୁ କୁଦା ଡାଉଁ ଡାଉଁ!—

କୋଦମାସିଂ—ହେଲେ—

ପଦ୍ମଗୁରବକା—'ହେଲେ' କ'ଣବା ?—ତୁମେ ଏତେ କୋଧାଃଠାଏ—ମରଗଲେ କେଜାଣି, ଛଅ ମାସ ବାଲୁଅ କୁକୁରକୁ ଆହାର ଯୋଗେଇବ— ତହିଁରେ ସେନାପତି—ଗୁଳି ଗୋଳା ନେଇ କାରବାର—ଗୋଟାଏ ଅଧେ ଫୁଟୁଚି କି ନାହିଁ, ପିଲେଙ୍ଗି ପାଣି ?

କୋଦ୍ମାସିଂ—ଅଲୋ, ଏ' ଗୁଳି-ଗୋଳାକୁ ଡରୁନଲୋ, ରେମି !

ପଦ୍ମଗୁରବକା—ତେବେ ?—

କୋଦ୍ମାସିଂ—ସେ-ଇ, ସେ-ଇ 'କଳା-ଡାକୁଟାକୁ' —ମୋ' ବୋଉଲୋ—କହିଲା ବେଳକୁ, ଦେହ ଶୀତେଇ ଉଠୁଚି, କଲିଜା ଥର ଯାଉଚି, ଦାନ୍ତ ଠକ ଠକ ବାଜୁଚି—

( ଲୁଗାପଣତକୁ ଅଦ୍ଭୁତ ମୁଠେଇ ଧରିଲା )

ପଦ୍ମଗୁରବକା—ହଇହେ, ସେଇ 'କଳ-ଡାକୁଟା'କୁ ଧରିବା ପାଇଁ ପରା ତୁମର ଏତେ ସିଦ୍ଧି ଗୁଳିଚି ?—ତୁମେ ତା' ସଙ୍ଗେ ଲଢ଼ୁଚ ?

କୋଦ୍ମାସିଂ—ହେଲେ, ସେ ଯେ ଲଢ଼ୁଚି !—

ପଦ୍ମଗୁରବକା—ତା' ହେଲେ ଯିଏ ନ ଲଢ଼ିବ, ତା'ର ପାଇଁକି ଖଞ୍ଜା ତୁମର ଗୁଳି-ଗୋଳା, ଏଇମ୍ପାତ ?

କୋଦ୍ମାସିଂ—ସେ଼ କଠିନ ରାଜ-ନୀତି କଥା— ତୁ ଆଦୌ ସମୁଜ ପାରିବୁନି ଲୋ, ରେମି— ତୋତେ ଯା' କହୁଚି, ତୁ ସେଇଆ କରତ !

ପଦ୍ମଗୁରବକା—ବେଶ୍, କ'ଣ କରିବାକୁ କହୁଚ ଯେ ?

କୋଦ୍ମାସିଂ—( ଗେଲେଇ ) ତୋ'ର ସେଇ ଓଢ଼ଣୀଟା—

ପଦ୍ମଗୁରବକା—ଓଡାର ଦେବି ? ତୁମେ ଓଢ଼ଣା ତଳେ ମୁହଁ ଲୁଚେଇବ ?—ଆଉ ଏ'ଗହଣା ତକ ? ମୁକୁଟ, ଲୁହ, ଖୋଲି ଦେବି, ତୁମ ଦେହରେ ନାଇବ—

କୋଦ୍ମା ସିଂ—ହେଃ-ହେଃ-ତା' ହେଲେ ତ, ଦେଖିବୁ ଦିନ ବଖତର ଘୋଡ଼ା ରାତରେ ଅପ୍‌ସରା ପାଲଟିଲାଭଳି, ଠିକ୍ ଏମିତ ନଖୁଣ ଭୁଆସୁଣୀଟିଏ ପାଲଟି ଜିବି—

( ଅଦ୍ଭୁତ ଭଙ୍ଗ ଦେଖାଇଲା )

ପଦ୍ମଗୁରବକା—ହେଲେ, ଏଇ ମୁଛ, ଗାଲମୁଛ, ତା'ର କି ବେବସ୍ଥା କରିବ ଯେ ?

କୋଦ୍ମା ସିଂ—ଘୋଡ଼ଆ ଥିବ ନାହିଁତ, ଡାକୁଟା ଦେଖି ପକାଏ ଯଦି, ତେବେ ସଫା କହି ଦେବି,—ମୁଁ ଅଣ୍ଡିରି-ରାଣୀ !

ପଦ୍ମଗୁରବକା—ତା'ହେଲେତ ତାକୁ ଭେଟଣା ହୋଇ, ଏକାବେଳକେ ଚାଉ୍ପାଉ୍...

କୋଦମାସିଂ—ଅଭ ମୁଁ ବି ସହାର ନ କରି, ଠିଆ ହୋଇଯିବି ତା ଗ୍ଲତ ଉପରେ ସାତେ ସାତ୍—

( ଜିଭ କାମୁଡ଼ି କାଳୀ ମୂର୍ତ୍ତିର ଅଭିନୟ କଲା )

[ ସେତିକି ବେଳେ ଗୋଟାଏ ତୋପର ଅବାଜ ଶୁଣାଗଲା ]

କୋଦ୍ମାସିଂ—ରେମି—

ପଦ୍ମଗୁରବକା—ଆଚ୍ଛା ଡାକୁଟ, ଜଙ୍ଗଲରେ, ତୁମେତ ନଅରରେ—ଏ'ଠି ଥାଇ, ତାକୁ ଏତେ ଡର ଯେ ?

କୋଦ୍ମାସିଂ—ଅଲେ, ସେ ପବନ, ପବନ—କଉଁ ଫାଁକ ବାଟେ ପଶି, ବିଜୁଳି ଧାଡକାରେ ଏଠି ଆସି ହାଜର ହୋଇଯିବ, ତୁ ଆଦୌ ଠଉରେଇ ପାରିବୁନି ଲୋ, ରେମି—ହାଁ !

ପଦ୍ମଗୁରବକା—ବେଶ୍‌ତ, ତୁମର କମରପଟିରେ ହଡଅର —ଏମିତ ଅଗ୍ନେନକ୍ ଭଡ଼ଅଣି, ବସେଇ ଦ'ବ ଗ୍ରେଟେ—( ଖାପରୁ ଖଣ୍ଡାଟା କାଢ଼ିଆଣିଲା )

କୋଦ୍ମାସିଂ—ହାଁ, ହାଁ—ରେମି—ମୋ' ବେକରେ ବସେଇ ଦ'ବୁ ନା', କଣ ?

ପଦ୍ମଗୁରବକା—ଦଅନ୍ତି ଯେ—ହେଲେ, ହାତଟା ଗନ୍ଧେଇବ ।

କୋଦ୍ମାସିଂ—ହୁଁ—ଗନ୍ଧଆ ଚିଜ, ଗନ୍ଧଆ ଯେଗାରେ ଥୋଇ ଦେବାହିଁ ଭଲ ।

ପଦ୍ମଗୁରବକା—ଛି, ଛି, ଏ' ପୁଣି ଖଣ୍ଡେଇବ !—

( ଖଣ୍ଡାଟା ଖାପରେ ପୂରାଇ ଦେଲା )

କୋଦ୍ମାସିଂ—ଏଁ ଏଁ କ'ଣ, କ'ଣ କହିଲୁ ?— ମୋ'ର ଖାନ୍‌ଦାନରେ ଅଁ ଚ ?—ମୁଁ ଯେ-ସେ ଖଣ୍ଡେଇବ ଘର ପିଲା ନୁହେଁ, ରେମି—ସେମିତ

ଜୁନିଅର ଘରର ପିଲା ବୋଲି, ମୁଁ ଅଜ
ସେନାପତି—ଜାଣୁ, ମୋ' ବାପାନାଁ କ'ଣ ?
—ମୋ' ଗୋସା-ବାପା ନାଁ ?—

ପରଶୁରକା—ଥାଉ, ଥାଉ, 'ମୋ ନାଶ ନାହିଁ, ମୋ'
ବଳିଆ ଭାଇର ନାଶ' । ହଉ ହଉ—ସେଇ
ମନ୍ଦିରସି-ଖଣ୍ଡା ପଡୁଛି, ସେଥିରେ କଳଙ୍କି ଲାଗୁ
ପଛେ, ଯେମିତି କଳଙ୍କ ନ ଲାଗେ,—ଏତିକି
ହେଲେ ଜାଗିଥିବତ ଓଡ଼ିଆ ପୁଅ ହୋଇ ।

କୋଦ୍‌ମାସିଂ—ହେଃ-ହେଃ-ହେଃ—ସେତିକି ଜଗିତ
ବୋଲିତ ମୁଁ ଲଢ଼େନା ।—ନାହିଁତ ଗୋଟାଏ
ବୋଲି ଡାକୁ, ତାକୁ ଧଡ଼ଡ଼େଇବା ପାଇଁ
ସରକାରୀ-ବାରୁଦ୍‌ଖାନା ଗୋଟାକ ଉଜାଡ଼ ।

ପରଶୁରକା—ଅଚ୍ଛା, କେଇଟା ଲୋକରେ, ଡାକୁଟା
ତୁମର ଦୋରବସ୍ତ ମିନା ଖିଅ, ଡାଲମି-ଆଟ-
ଫଉଜକୁ ହଟେଇ ଦଉଚି,—ବାବା କଥା ।

କୋଦ୍‌ମାସିଂ—ରେମି, ସେ ହଟହଟା କଥା ଆଉ କହନା
— ଆମର ଲୋକେତ ଆମକୁ ହୋଇଚନ୍ତି ଭାଳ
—'ଘରର ଶତ୍ରୁ ବିଭୀଷଣ' ।

ପରଶୁରକା—ଠିକ୍ ହେଇଚି—ଯେମିତି ଦେଶକୁ
ସନ୍ତେଇଚ, ଦେଶର ରକ୍ତ ଶୋଷିଚ, ମଣିଷକୁ
ହତାଦାର କରିଚ,—ଏବେ ତା'ର ପ୍ରତିଫଳ
ପାଅ—ମଜା ବୁଝ ।

କୋଦ୍‌ମାସିଂ—ଅଲୋ, ସେଇ ଫସାଦଅ ପାଜି
ଯୋଗୁଁ ତ ଏତେ ନାଟ !

ପରଶୁରକା—ହେଃ—ଆଉ ତୁମେ ନାଟର କାଠ-
କୁଣ୍ଢେଇ ହୋଇ, ତା'ର ସୂତା ଝିଅକରେ
ନାଚୁଥାଅ—

କୋଦ୍‌ମାସିଂ—ଖାଲି ତୋ'ର ଲାଗି, ରେମି, ତୋ'ର
ଲାଗି ।

ପରଶୁରକା—ହାୟ, ହାୟ !—ହଇହେ, ମୋର
ଲାଗି ?—

କୋଦ୍‌ମାସିଂ—ମୁଁ 'ରାଜା' ହେଲେ ତ—

ପରଶୁରକା—ମୁଁ ହେବି 'ରାଣୀ' ?—

କୋଦ୍‌ମାସିଂ—ହେଃ-ହେଃ-ହେଃ—

ପରଶୁରକା—ଚୁପ୍, ଚୁପ୍—ଏ ମହାରାଣୀ-ମଣିମାଙ୍କର
ଖାସ୍ ମନ୍ତ୍ରଣାକକ୍ଷ,—ଏ'କଥା ଭୁଲି ଯିବନି—
ସହଳ ସହଳ କହି ପକାଅଛ, ଯା' କହିବାର—

କୋଦ୍‌ମାସିଂ—ହେଃ-ହେଃ କଥା କହୁ ନାହିଁ,
ରେମି—ଏଇ କଳା-ଡାକୁଟା ମାଇପି ଜାତିକୁ
ମା'ଭଉଣୀ-ଆଖିରେ ଦେଖିଥାଏ—

ପରଶୁରକା—ସୁତରାଂ, ତୁମକୁ ବି ସେଇ ଆଖିରେ
ଦେଖିବ, ସେଥିପାଇଁ ତୁମେ ସାଜିବ—

କୋଦ୍‌ମାସିଂ—ଗୋଟାପଣେ ରେମି' !—

[ ଅତି ନିକଟରେ ଗୋଟାଏ କୋଳାହଳ
ଶୁଣାଗଲା ]

ଆଲୋ ମୋ ବୋଉ ଲୋ—ଅଇଲା ଲୋ କଳା-
ଡାକୁ—

ପରଶୁରକା—(ଭିତର ଗଡରେ ଯାଉଥିଲା ବାହାର )

କୋଦ୍‌ମାସିଂ—ମୋତେ ଛାଡ଼ି ଯା'ନାଲୋ, ରେମି—
( ଧରିବାକୁ ଗଲା । ରେମି ଖସି ପଳେଇଲା,
ହେଲେ ତା' ଓଢ଼ଣୀଟା କୋଦ୍‌ମା ହାତରେ
ରହିଗଲା । )

[ ବାହିନୀପତି ପ୍ରବେଶ କଲା ]

କୋଦ୍‌ମାସିଂ—( ନ ଚିହ୍ନେଇ ) ଅଇଲା ତ—( ସେଇ
ଓଢ଼ଣୀଟା ମଥାରେ ଦେଇ ) ମୁଁ—ମୁଁ—
କୋଦମା ସିଂ ନୁହେଁ—'ଅବଳା-ବାଳା'—
ମୋ' ନାଁ ରେମୀ—ମୋ' ଆଡେ ନଜର
ପକେଇବନି, କଳା-ଡାକୁ-ସାନ୍ତେ—ମୁଁ ଭାରି
କୋମଳ-ବୟସୀ—ସେଇ ବଂଶ-ବୁଡ଼ା-'ପାଜି'
ମିଣିପଟ! ମୋତେ ତା'ର ଏଇ ନିର୍ଲୋଳା 'ଯେଗା-
ଘର'କୁ ଫୁସଲେଇ ଘେନି ଆସିଚି—ମୋ'ର
ମହତ ରଖ—ତା'କୁ ଧରି ନିଅ—କାଳୀଙ୍କ
ଠେଇଁ ବଳି ଦିଅ—ସେଇକି ଗୋଟାକର ରକ୍ତ
ତା'ଠୁ ବାହାରିବ,—ହଉ, ମୁଁ ଆସୁଚି—ରାତି
ବେଳ—ତୁମେ ନବଯୁବା, ମୁଁ ନବଯୁବତୀ—
ଏକାଠି ଦେଖିଲେ, ଲୋକେ କେତେ କ'ଣ
ଟାହୁଲି କରିବେ—ସେଥିରେ ତୁମକୁ ଯେତିକି

ନନ୍ଦା, ମୋତେବି ସେତିକି—ହଉ, ମୁଁ ମେଲଣି ନଉଚି—

[ ସ୍ତ୍ରୀ-ଭଙ୍ଗିରେ ଚାଲି, ଚାଲି ଯାଉଥିଲା ]

ବାହ୍ନୀପତି—କୋଦ୍‌ମାସିଂ !

କୋଦ୍‌ମାସିଂ—ଏଁ—ପାଣ୍ଡି-ସା'ନ୍ତେ ?—ହେଃ-ହେଃ—କଳା-ଡାକୁ ?

ବାହ୍ନୀପତି—ଧରା ପଡ଼ିଚି—ହଁ, ସେହି ସଙ୍ଗେ ତୁମର ଅଯୋଗ୍ୟତା ମଧ୍ୟ ।

କୋଦ୍‌ମାସିଂ—ହେଃ-ହେଃ-ହେଃ—ଏହି ଅଯୋଗ୍ୟତା ତ ମୋର ଯୋଗ୍ୟତା—ରାଜ-ଲକ୍ଷଣ—ତୁମେଇ କହୁଚ, ତୁମେଇ ବଢ଼େଇଚ ।

ବାହ୍ନୀପତି—( କୂଟ ଅଭିସନ୍ଧି ଗୋପନ ପୂର୍ବକ ) ହାଃ-ହାଃ-ହାଃ—ତା' ନ ହେଲେ କି ଆମର ଭାଇ—'ଧର-ଲକ୍ଷଣ' !—ହଁ, ଦେଖ, ହୁସିଆର ରାଜା ବଡ଼ ଦେଉଳରେ—ସେ'ଠୁ ଯେମିତି ଖସି ନ ପଳାନ୍ତି ।

କୋଦ୍‌ମାସିଂ—ସେ ବାଟ କ'ଣ ଆଉ ରଖିଚ, ପଣ୍ଡି-ଭାଇ ?—ଏବେ, ରାଜା ମଉନ-ବ୍ରତୀ, ଏଇ ଗୁଜବ ରଟେଇ ଦେଉଳ ଶୋଧ-ଡଙ୍କା ଲଗେଇ ରଖିଚ ଦିନରାତି—ଦ୍ୱିତୀୟେ, ବେଢ଼ା-ଚାରିପଟ ଘେରି ଗୁପ୍ତ-ଜଗୁଆଲି ପଲ୍ ପଲ୍—

ବାହ୍ନୀପତି—ତଥାପି—

କୋଦ୍‌ମାସିଂ—ସାବଧାନର ବିନାଶ ନାହିଁ—ହେଃ-ହେଃ-ହେଃ—ହେଲେ, ଡାକୁ ବିଷୟରେ ତୁମେ ହୁସିଆରତ, ଭାଇ ।

ବାହ୍ନୀପତି—ଅଚ୍ଛା, ଡାକୁଟାକୁ ତୁମର ଏତେ ଡର କାହିଁକି ଯେ ?

କୋଦ୍‌ମାସିଂ—ସେ ଯେ ନାରୀ-ରକ୍ଷଣୀଙ୍କର ରକ୍ତ-ରଙ୍କା !—

ବାହ୍ନୀପତି—ବର୍ତ୍ତମାନତ ବନ୍ଦୀ, ଆଉ ଡର ଭୟ କ'ଣ ?

କୋଦ୍‌ମାସିଂ—ବୋଲେ ସେ ତାଜା-ରକ୍ତ-ଖିଆ ବାଘ—ସଜ-ଧୂଆଁଙ୍କ ଗନ୍ଧବାସନା ପାଇଲାପରି, ଯନ୍ତା ଭାଙ୍ଗି ଶିକାରକୁ ଝାଁପିବ !—

[ ଜନୈକ ଦୂତର ପ୍ରବେଶ ]

ବାହ୍ନୀପତି—ଝାଁପିବ କୁକୁରକୁ, ଶିଆଳକୁ ନୁହେଁ—ହାଃ—( ହଠାତ୍ ଦୂତକୁ ଦେଖି, ଆତ୍ମ ସଂବରଣ କଲା ଓ କୋଦ୍‌ମାସିଂକୁ ଚାଲିଯିବାକୁ ଇଙ୍ଗିତ କଲା )

କୋଦ୍‌ମାସିଂ—( ସ୍ଥାନ ତ୍ୟାଗ କଲା )

ବାହ୍ନୀପତି—ହଁ, କି ଖବର, ଦୂତ ?—

ଦୂତ—ଯିଏ ଧରା ପଡ଼ିଚି, ସେ କଳା-ଡାକୁ ନୁହେଁ ।

ବାହ୍ନୀପତି—କେବେ ?

ଦୂତ—କଳା-ଡାକୁର ଅନୁଚର ।

ବାହ୍ନୀପତି—ନାମ ?

ଦୂତ—କାଶିଆ ।

ବାହ୍ନୀପତି—ସେହି ତ ଅସଲ ଡାକୁ—ହୁସିଆର, ଯେମିତି ବେଡ଼ି ଭାଙ୍ଗି ନ ପଳାଏ ।

ଦୂତ—ମଣିମା—( ଯଥା ଅଭିବାଦନ ଜଣାଇ ଚାଲିଗଲା )

ବାହ୍ନୀପତି—'ମଣିମା' ! ନା, ଅଦ୍ୟାପି ନିଶ୍ଚିନ୍ତ ନୁହେଁ—ସର୍ବାଗ୍ରେ କଳା-ଡାକୁ—( ଚାଲି ଯାଉଥିଲା )

[ ମହାରାଣୀ ବିପରୀତ ଦିଗରୁ ପ୍ରବେଶ କଲେ ]

ରାଣୀ—ବାହ୍ନୀପତି !

ବାହ୍ନୀପତି—ମହାରାଣୀ !

ରାଣୀ—କାଶିଆକୁ ମୁକ୍ତ କରିଦିଅ ।

ବାହ୍ନୀପତି—ଅଭିପ୍ରାୟ ?

ରାଣୀ—ମନ୍ତ୍ରୀ ! ତୁମେଇନା ମୋତେ ପରାମର୍ଶ ଦେଇ-ଥିଲ, ରାଜାର ବଳ ନୁହେଁ ରାଜ୍ୟର ବଳ ?

ବାହ୍ନୀପତି—ଦେଇଥିଲି ।

ରାଣୀ—ଏହି ବଳର ପ୍ରଧାନ ଉପାଦାନ—

ବାହ୍ନୀପତି—ଅର୍ଥ, ସୈନ୍ୟ ଓ କୌଟିଲ୍ୟ—ଏହା ମଧ୍ୟ ମୁହିଁ ବତାଇ ଥିଲି ।

ରାଣୀ—ସକାର ରାଜକୋଷ ସ୍ଫୀତ ହେବ, ଅର୍ଥର ବିଭବ ବଢ଼ିବ,—ଏଥିପାଇଁ, ଧନୀ ଦରିଦ୍ର ନିର୍ବିଶେଷରେ, ପ୍ରଜାର ସ୍ୱାର୍ଥ-ଶୋଷଣ କରିଛ—ନୁହେଁ କି ?

ବାହ୍ନୀପତି—କରିଛି ।

ରାଣୀ—ରାଜାର ସାମରିକ-ଶକ୍ତି ବୃଦ୍ଧି ପାଇବ, ରକ୍ଷା-ବ୍ୟୂହ ଦୁର୍ଭେଦ୍ୟ ହେବ,—ଏଥିପାଇଁ ରାଜ୍ୟର ନିତ୍ୟ-ପ୍ରୟୋଜନୀୟ ଶିଳ୍ପ ଯାହା, ତାହା ଉପେକ୍ଷା କରି, ଦେଇଛ ସାମରିକ ଶିଳ୍ପ ଉତ୍ପାଦନକୁ ପ୍ରାଧାନ୍ୟ !

ବାହୁନୀପତି—ଦେଇଛୁ ।

ରାଣୀ—ରାଜା ତା'ର ରାଜତାନ୍ତ୍ରିକ ଶାସନ ଅଟୁଟ ରଖିବ, ଗୋଟାଏ ଦୃଢ଼ ଭିତ୍ତି ଉପରେ ତାକୁ ଠିଆ କରିବ,—ଏଥିପାଇଁ ପ୍ରୟୋଜନ ଭେଦ-ନୀତି; ସେହି ନୀତିର କୂଟ ଜାଲ ଅଳ ରାଜ୍ୟସାରା ବିଛେଇ ଦେଇ ନାହିଁକି ?

ବାହୁନୀପତି—ଦେଇଛୁ ।

ରାଣୀ—ତେବେ, ଆଜ କାହିଁକି ଘରେ ଘରେ ହାହାକାର,—ରାଜ୍ୟର ଚାରିଆଡ଼େ ବିଶୃଙ୍ଖଳା,—ପ୍ରକାଶ୍ୟରେ ପ୍ରଜା-ବିଦ୍ରୋହ ? ସବୁରି ଉପରେ, ଡାକୁଟାଏ, ତାକୁଇ ଦଳପତି କରି, ଆମରି ପ୍ରଜା ଆମରି ସୈନ୍ୟ-ବିରୁଦ୍ଧରେ ଲଢ଼ୁଛନ୍ତି—ଲଜ୍ଜାର କଥା—ଏଥିରେ ରାଜ-କର୍ମଚାରୀଙ୍କ ନିନ୍ଦା, ରାଜାଙ୍କୁ ନିନ୍ଦା, ରାଜ-ବଂଶକୁ ନିନ୍ଦା—ମୁଁ ଜୀବିତ ଥାଉଁ ଥାଉଁ, ଗଙ୍ଗ ବଂଶର ଅଧଃପତନ ଘଟିବ, ପବିତ୍ର ନାମରେ କଳଙ୍କ ଲାଗିବ, ଏହା କଦାପି ହେବାକୁ ଦେବି ନାହିଁ,—ଆଜିର ଏହି ବିପ୍ଳବ, ଡାକୁ ଦୁନିଆର ଅଭ୍ୟୁତ୍ଥାନ,—ଏଥି ସକାଶେ ମୁଖ୍ୟତଃଦାୟୀ ଆଇନ-ଦୁନିଆର ପ୍ରତିକ୍ରିୟାଶୀଳ ନୀତି, ଏହା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରିବି, ନା, ନା, ଦୁନିଆ ଫଟାଇ ଘୋଷଣା କରିବି !

ବାହୁନୀପତି—ସୁତରାଂ—?

ରାଣୀ—ମୋ'ର ଅନୁରୋଧ, ବାହୁନୀପତି, ବନ୍ଦୀ-ଛାଗିଆକୁ ମୁକ୍ତ କରିଦିଅ, କଳା-ଡାକୁ ସଙ୍ଗେ ସନ୍ଧିର ବ୍ୟବସ୍ଥା କର—ତା'ର ଧ୍ୱଂସ-ଶକ୍ତିକୁ ଗଠନ-ଶକ୍ତିରେ ରୂପାନ୍ତରିତ କର—

ବାହୁନୀପତି—ଆଉ ମହାରାଜଙ୍କୁ ?—

ରାଣୀ—ଅବିଳମ୍ବେ ଫେରାଇ ଆଣ—ଅଜ ମହାରାଜାଙ୍କର ଉକ୍ତି, 'ଉତ୍କଳର ଜାତୀୟ ଇତିହାସ, ଆଧ୍ୟାତ୍ମିକତାର ଇତିହାସ'—ଏହାକୁ ରାଜ-ନୀତିର ମୂଳସୂତ୍ର କର, ଜନ ସମାଜକୁ 'ଆତ୍ମ-ବତ୍ ସର୍ବଭୂତେଷୁ',—ଏହି ମନ୍ତ୍ରରେ ଅନୁପ୍ରାଣିତ କର, ରାଜା-ପ୍ରଜା ମଧ୍ୟରେ ଆତ୍ମୀୟଭାବ ପ୍ରତିଷ୍ଠା କର—ଦେଶ-ପ୍ରୀତିକୁ ରାଜ୍ୟ ରକ୍ଷାର ରକ୍ଷା-କବଚ କର ।

ବାହୁନୀପତି—ଚମତ୍କାର—ହାଃ-ହାଃ-ହାଃ—

ରାଣୀ—ବାହୁନୀପତି !—ଏହା ମହାରାଣୀର ଆଦେଶ !

ବାହୁନୀପତି—'ମହାରାଣୀର ଆଦେଶ'-ହାଃ-ହାଃ-ହାଃ—

ରାଣୀ—ବାହୁନୀପତି !

ବାହୁନୀପତି—ଏ'କେଉଁ କକ୍ଷ, ଥରେ ସ୍ମରଣ କରିବା ହେବେ କି, ମହାରାଣୀ ପଣିମା ?

ରାଣୀ—ସେହି କକ୍ଷ, ଯେଉଁଠାରେ ଦିନେ ମୁଁ ନିଜ ହାତରେ ମହାରାଜାଙ୍କୁ କରିଥିଲି ରାଜମୁକୁଟ ପରିଶୋଭିତ ।

ବାହୁନୀପତି—ସେହି କକ୍ଷ, ଯେଉଁଠାରେ ଦିନେ ମହାରାଜା ମୋତେ 'ଗୌରଚନ୍ଦ୍ର' ଉପାଧିରେ କରିଥିଲେ ଭୂଷିତ ।

ରାଣୀ—( ଆପଣା ଖିଆଲରେ ଥାଇ ) ଗଙ୍ଗବଂଶର ପ୍ରତିଷ୍ଠା ଅକ୍ଷୁର୍ଣ୍ଣ ରହିବ, ଏଥିପାଇଁ ମୁଁ ମହାରାଜାଙ୍କ ମତ-ବାଦ ବିରୁଦ୍ଧରେ କରିଥିଲି ବିଦ୍ରୋହ ।

ବାହୁନୀପତି—ଗଙ୍ଗବଂଶର ଧ୍ୱଂସ ତ୍ୱରାନ୍ୱିତ, ଅନିର୍ବାର୍ଯ୍ୟ ହେବ, ଏଇଥିପାଇଁ ମୁଁ ମହାରାଣୀଙ୍କ ବିଦ୍ରୋହ-ଅଗ୍ନିରେ ଯୋଗ ଇଥିଲି ଇନ୍ଧନ ।

ରାଣୀ—ମହାରାଜା ବିନା ବିରୋଧରେ, ଶାସନଭାର ମୋତେ ଅର୍ପଣ କଲେ, ହେଲେ ଉଦାସୀ—ଅବଶେଷେ, କାଳେ ପ୍ରତିବନ୍ଧକ ହେବେ, ଏହି ଭୟରେ ରାଜ-ପୁରୀ କଲେ ପରିତ୍ୟାଗ—

ବାହୁନୀପତି—ଆହୁରି, ରାଜ୍ୟର କଲ୍ୟାଣ ଉଦ୍ଦେଶ୍ୟରେ, ଗବେଷଣାଗାର ଖୋଲି, ବଡ଼ ଦେଉଳରେ ପଡ଼ିଛନ୍ତି ଗୁହାରେ—ମାତ୍ର, ମୋ'ର କୌଶଳରେ, ବର୍ତ୍ତମାନ ସେହିଠାରେ ନଜର ବନ୍ଦୀ—

ରାଣୀ—ବାହୁନୀପତି !

ବାହୁବଳୀପତ୍ତ—ମହାରାଜା ବନ୍ଦୀ ଗବେଷଣା କକ୍ଷରେ—
  ଆଉ ମହାରାଣୀ—
ରାଣୀ—ବନ୍ଦୀ ମନ୍ତ୍ରଣା କକ୍ଷରେ ?—
ବାହୁବଳୀପତ୍ତ—( ହସି ହସି ) ନା, ଏହ ବାହୁବଳୀପୁର କୁଷ୍ଠମଧ୍ୟରେ ।
ରାଣୀ—ବାହାବଳୀପତ୍ତ—!
ବାହୁବଳୀପତ୍ତ—ହାଃ-ହାଃ-ହାଃ-ହାଃ—

[ ଧାରଣ କରିବାକୁ ଅଗ୍ରସର ହେଲା ]

ରାଣୀ—ମହାରାଜ—

( ଇତସ୍ତତଃ ହେଲେ )

[ ଯଥା ସମୟରେ କାଶିଆ ପ୍ରବେଶକଲା, ତା'ର ଉଭୟ ମଣିବନ୍ଧରୁ ବନ୍ଧନ-ଶିକୁଳିର ଅଂଶ ଝୁଲୁଥାଏ ]

କାଶିଆ—ସାବଧାନ !—
ବାହୁବଳୀପତ୍ତ—କାଶିଆ !—
କାଶିଆ—ନାହିଁରେ, ନାଗ-ଡାକୁର ଯମ !—
ବାହୁବଳୀପତ୍ତ—ବାନ—ବାନ—
କାଶିଆ—ଫୁଃ—( ବୃଦ୍ଧାଙ୍ଗୁଷ୍ଠ ପ୍ରଦର୍ଶନ )—ଅବେ, ଶୁଣ, କାଶିଆ ହାଲିଆ ହୋଇ ପଡ଼ିଥିଲା, ତା'ର କଳା-ଡାକୁ କଥା ଭୁଲି ଯାଇ, ସେଇଥିପାଇଁ ତା'କୁ ବାନ୍ଧି ପକାଇଥିଲୁ—ଇ-ଲଗେ ତା'ର କଳା-ଡାକୁ ଫାଦାପାର, ତୁମ ଏକ୍‌ଟିଆର ବାହାରେ ଖବର ମିଳାଚି—କିଏ ଅଛ କାଶିଆକୁ ରୋକିବ ଏ' ଦୁନିଆରେ ? ଦେଖିବେ, ଏଡା ଟିକାକେ ତା'ର ଲୁହା ଶିକୁଳିଟା ଦ'ଖଣ୍ଡ—ହଁ, ଥରେ ଯେତେବେଳେ ଦେଖାଦେଲି ହୋଇଚେ, ସେତେବେଳେ ତୁ ଯେମିତ ପ୍ରଜାଙ୍କ ଉପରେ ଫେର୍ ଜୁଲମ୍ ନ କରୁ, ସେଇ କଥା ତୋତେ ତାକିଦ୍ କରିଦେଇ ଯିବି, ଏଇ କଥାକୁ ସ୍ପଷ୍ଟ ଆସିଥିଲି ଏଠାକୁ; ହେଲେ, ତୋର ଏମିତ ନାଗ୍ ଜୁଲମ୍ ଆଖିରେ ଦେଖି, ମୁଁ ତ ବରଦାସ୍ତ କରି ପାରୁନି'ରେ—( ହିଂସ୍ର ଭାବ ଫୁଟି ଉଠିଲା, ବିକଟ ଶବ୍ଦରେ ସେ ବାହୁବଳୀପତ୍ତର ଚୁଳି ଗୋଛାକୁ ମୁଠାକରି ଧରିଲା )

ବାହୁବଳୀପତ୍ତ—ମହାରାଣୀ—
କାଶିଆ—ଅବେ, ଚାଲ୍—

[ ବାହୁବଳୀ ପତ୍ତକୁ ଘେନି, ଯାଉ ଯାଉ, ଫେରିଲା ]

ହଁ, ଶୁଣିତ ମହାରାଣୀ—ଏ' ରାଇଜର ମା—ରାଇଜର ସମସ୍ତେ ତୋ'ର ପିଲାକବିଲା—ତୁ ସେମାନଙ୍କୁ ଖୋଇବୁ ପେଇବୁ, ବଢ଼େଇବୁ, କୁଢ଼େଇବୁ, ମଣିଷକରି ଠିଆକରିବୁ—ହେଲେ, ତୁ ଏଇ କାନ କୁହା, ଘର-ଭୁଡ଼ା କଥାଟାରେ ପଡ଼ି, ପିଲାଙ୍କ ଆଡ଼କୁ ଚକେଇନୁ' ବୋଲି, ସେମାନେ କେମିତ ଉଚ୍ଛିଣ୍ଟିଆ ବୁଦ୍ଧି ଧରିଚନ୍ତି, ତୋ'ର ହାତଆର ତୋ'ର ଆଡେ ମୁହାଁଇ ଠିଆ—ଏ' ଖଞ୍ଜାକୁ ଅନା, ଥୋକେ, ମୋ'ର ଗୋଟାଏ ଫୁଟୁକା ଇଶାରାକୁ ଉଆସ ଚଢ଼ଉ କରିବାକୁ ତିଆର—ସାବଧାନ—ହଁ, ରଜାକୁ ତ ଦେଖିଲୁ ନି'—ତୁଇ ତାକୁ ମନେଇ, ପିଲା ଛୁଆଙ୍କ ଖବର ବୁଝିବୁ, ମା—

ବାହୁବଳୀପତ୍ତ—ମୋତେ ଛାଡ଼ିଦିଅ—ମୁଁ ଛୁଆଙ୍କ ଖବର ଏଣିକି—
କାଶିଆ—ଚାଲ୍—ଚାଲ୍—
ବାହୁବଳୀପତ୍ତ—ମା—ମା—( କାତର ଦୃଷ୍ଟିରେ ମହାରାଣୀଙ୍କ ଆଡ଼େ ଚାହାଁଇବାକୁ ଲାଗିଲା )
କାଶିଆ—( ଟେଣାଟାଣି ଘେନି ଚାଲିଗଲା । )
ମହାରାଣୀ—( ଅଧର ସ୍ଫୁରିତ ହେଲା । କିଛି କହି-ପାରିଲେ ନାହିଁ । )

[ ବିପରୀତ ଦିଗରୁ ଚନ୍ଦ୍ରଶ୍ରୀ ପ୍ରବେଶ କଲା ]

ଚନ୍ଦ୍ରଶ୍ରୀ—'ମାତୃ-ହୃଦୟର ଶାସନ,—ପ୍ରୀତିର ଶାସନ,' ରାଜାଙ୍କର ଏହି ଉକ୍ତି କ'ଣ ବ୍ୟର୍ଥ ହେବ, ଜନନୀ ?
ମହାରାଣୀ—( ଉଚ୍ଛୁଳା କଣ୍ଠରେ ) ଚନ୍ଦ୍ରାବତୀ ?—କାଶି—!

[ କାଶିଆ ବାହୁବଳୀପତ୍ତକୁ ଘେନି ପୁନଃ ପ୍ରବେଶ କଲା । ମାତ୍ର ଚନ୍ଦ୍ରଶ୍ରୀ ଚାଲିଯାଇଥାଏ ]

କାଶିଆ—ମୋତେ ?
ମହାରାଣୀ—ପାନକୁ—

ଢାଗିଆ—ଶୂଳରେ ଚଢ଼େଇବ ; ନା ଗଛର ଡ଼'ଳାଳ ନୁଆଁଇ ଆଣି, ଗୋଡ଼ ଡ଼'ହା ଛନ୍ଦ, ଛାଡ଼ିବ ; ନା ମାଟିରେ ଅଧା ପୋତି, କୁକୁର ଶିଆଳ ଲଗେଇବ ; ନା ଏଇ ତତଲା ଖୋକଲା ଗହ୍ୱର ଭିତରକୁ ଫିଙ୍ଗିବ ?—କହ, କି ଦଣ୍ଡ ଦେବ ?

ମହାରାଣୀ—ମୃତ୍ୟୁ—

ଢାଗିଆ—ଯାବେ ଯା', ମା'ର ଦରଶନ ପା'—ଗୋଡ଼ତଳେ ପଡ଼—ମୁଣ୍ଡିଆ ମା'ର—

ବାହ୍ମଣୀପତି—ମା—ମା—

[ ଲମ୍ବ ଶମ୍ବ ହୋଇ ଭୂମିଷ୍ଠ ହେଲା ]

---

## ( ପାଞ୍ଚ )

—କପିଳାର ଭଙ୍ଗା କୁଡ଼ିଆ ଘର—

[ ଘରଟା ଭାଙ୍ଗିରୁଜି କୁଦ ପାଲଟି ଯାଇଛି, ଏବଂ ମଝିରେ ହୁଁକାଟିଏ ମଥା ଟେକି ଠିଆ ହୋଇଛି । ପୃଷ୍ଠପଟ ଅରମା-ବଣବୁଦାରେ ଭର୍ତ୍ତି । କପିଳାର ବର୍ତ୍ତମାନକାଳୀନ ବେଶ ଓ ଭାବ ପରିବର୍ତ୍ତିତ ଦୃଶ୍ୟ ସଙ୍ଗେ ଯଥା-ସାମଞ୍ଜସ୍ୟ ରକ୍ଷା କରିଛି,—ଏ'କଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ସେହି ହୁଁକା ତଳେ ବସିଛି । ମା'ର ଚରଣ ତଳେ କି ଆଜି, ଏହିପରି ତାର ଭାବ । ]

କପିଳା—ଲୌହ ଯେତେ ନିକଟବର୍ତ୍ତୀ ହୁଏ, ଚୁମ୍ବକର ଆକର୍ଷଣ ସେତେ ପ୍ରବଳ ହୁଏ ; ମାତ୍ର, ସନ୍ତାନ ଯେତେ ଦୂରେଇ ଦୂରେଇ ଯାଏ, ମାତାର ଆକର୍ଷଣ ସେତେ ପ୍ରବଳ ପ୍ରବଳତର ହୋଇଥାଏ ; ମୁଁ ଆଜି ସେହି ଆକର୍ଷଣ ବଳରେ କେଉଁ ସୁଦୂର ପ୍ରାନ୍ତରୁ ଉଚ୍ଛନ୍ନ ହୋଇ ଏହି ମାତୃ-ସ୍ଥାନକୁ ଧାଇଁ ଆସିଛି,—ମନେ ପଡ଼ୁଛି—ସେଦିନ ସକାଳେ, ଅଭିଷେକ ଦିନ, ମୋ'ର ମା'କୁ ଏଇଠି ଆଣି, ବସେଇ ଥିଲି—ସୂର୍ଯ୍ୟ ଏମିତି ଉଇଁ ଆସୁଥିଲେ, ମା ତାଙ୍କୁ ପ୍ରଣାମ କଲେ, ମୋ'ର ବଂଶ-ପରମ୍ପରା ବାଢ଼ିଲେ, ଆଜି, ପିତୃବଂଶ ତାଙ୍କର ଅସଲ ବ୍ୟାଧି, ଭୁଲୁଫଟା କଣ୍ଠରେ ଏହି ମର୍ମ ବ୍ୟଥା ଫିଟେଇ କହିଲେ—ସୁଯୋଗ ଉପସ୍ଥିତ ହେଲା—ମୁଁ ସତ୍ୟ-କର୍ଣ୍ଣ—ବ୍ରାହ୍ମଣର ଗୋଠ ଜଗିଲି—ସତ୍ୟ-ନିଷ୍ଠା ଥିଲା ମୋ'ର ଜୀବନର ପରମ ବ୍ରତ—ଏକମାତ୍ର ଆନନ୍ଦ—ମାତ୍ର, କି ଲକ୍ଷଣରେ—ଓଃ—

[ ଅଭିଭୂତ ହୋଇଗଲା । ଏହି ସମୟରେ ଦୂରେ ମାଦଳ-ଧ୍ୱନି ଶୁଣାଗଲା । ସାନ୍ତାଳ, ସାନ୍ତାଳୀଗଣ ବଣ-ଜାତ ଦ୍ରବ୍ୟମାନ ମୁଣ୍ଡାଇ ଗାଇ ଗାଇ ପ୍ରବେଶ କଲେ । ]

ଗୀତ

ମହୁଲ ନିଶାରେ ଆଜି
ନୋହୁଁ ମଜ୍‌ଗୁଲ୍, ମଜ୍‌ଗୁଲ୍ ।
ଲାଗିଲା ଜୀବନ ଡେଉ,
ଦୋଲେ ମନ ଦୋଦୁଲ୍, ଦୋଦୁଲ୍ ।
ଜାଙ୍ଗୁଲ୍ ଜାଙ୍ଗୁଲ୍ ସ୍ୱର୍ଗ—ଦେଖା ଦେଇନାହିଁ ଭାଇ;
ଜଙ୍ଗଲର ପୁଅ ଝିଅ ଆମେ, ଉଠିବା ଗୋ ମାତି;
ନୋହୁଁ ଜନ୍ତୁ ଜାନୁଆର୍—
ଶକ୍ତ ମଣିଷ ନିର୍ଭୁଲ୍ ।
ଆଲୁଅର ଦେଶେ ଯାଇଁ
ଭାଙ୍ଗିବା ସବୁହିଁ ଭୁଲ୍ ॥

[ ଚାଲିଗଲେ ]

କପିଳା—ଅନ୍ଧାର-ଘରର ପୁଅ ଝିଅ ଏ'ମାନେ—କେଉଁ ଆଲୋକର ସନ୍ଧାନ ପାଇ, କର୍ମ-ସଙ୍ଗୀତର ମୂର୍ଚ୍ଛନାରେ, ଜୀବନ-ପଥର ଅଭିଯାତ୍ରୀ—ଆଜି, ମୁଁ ଆଲୋକର ସନ୍ତାନ—କେଉଁ ଭ୍ରମାବର୍ତ୍ତରେ ପଡ଼ି, ନୈରାଶ୍ୟ-ଜଡ଼ତାର ଅନ୍ଧକୂପରେ ନିମଜ୍ଜମାନ—ମା, ମା, ମୋତେ ଆଲୋକ ଦେଖା ମା—ଉଦ୍ଧାର କର, ମା—

[ ଉତ୍ତେଜନାର ପ୍ରତଘାତରେ ଅନ୍ଧାର ନିସ୍ତେଜ ହୋଇଗଲା, ଓ ହୁଁକାଟିକୁ କୁଣ୍ଢାଇ ତଳେ ଲାଦେଇ ପଡ଼ିଲା କିଛିକ୍ଷଣ ପରେ ଗୋଟିଏ ସାପ ସେହି ହୁଁକାଭିତରୁ ବାହାରି, ଫଣା ଟାଡ଼ି, କପିଳା ମୁଣ୍ଡ ଉପରେ ଛତ୍ର ଟେକି ରହିଲା ଏହି

ସମସ୍ତରେ କୋଦ୍‌ମାସିଂ ପ୍ରବେଶ କଲା । ତା’
ହାତରେ ସେହି ପୂର୍ବ-ଓଢ଼ଣୀଟା ଥାଏ । ]

କୋଦ୍‌ମାସିଂ—ଅଚ୍ଛା ହରବର-କଥା—କ କମିସ୍ତା କଲା ସେଇ ଲାଗିଅ-ଡାକୁଟା,—ମହାରାଣୀ ‘ପୁଅ ପୁଅ’ ବୋଲି, ଯେମିତ ବାୟାବାଉଳି, ରାଇଜ ସାରା ଟେଲେ ‘ମା, ମା’ ବୋଲି, ସେମିତ ବ୍ୟାକୁଳ ।—ହେଲେ, ଅକଲ ସଲାମିଟା ଦେବାକୁ ପଡ଼ିଲା ମୋତେ—ରାଜାର ହୁକୁମ୍, ରାଜ୍ୟର ହୁକୁମ୍—ମୁଁ ଖୋଜି ବାହାର କରିବି କଲା-ଡାକୁଟାକୁ ।—କାହିଁ କଲା ରାଜ-ଲକ୍ଷଣ, ଆଉ କାହିଁ ହେବାକୁ ଯାଉଛି ‘ପିଠା-ରାକ୍ଷସ’ର ଭକ୍ଷଣ ।—ତେବେ, ଲଢ଼ିବି—ଏ’ ଖଣ୍ଡାରେ ନୁହେଁ, ଏଇ ଖଣ୍ଡୁଆରେ—‘ବୁଦ୍ଧିର୍ଯସ୍ୟ, ବଳଂତସ୍ୟ’—ହଁ, ଯେତେ କୁରଙ୍ଗ ଶାସନ—ଖୋଜେ ଡେଇଁଲେ, ଘନ ଜଙ୍ଗଲ—ଏଇଠି ସଜ-ବାଜ-କାମଟା ତା’ହେଲେ ବଢ଼େଇଦିଏଁ—କଥାରେ କହୁଚି ପରା, ‘ହାତେ ମାପି, ଗୃହଣେ ଗୃଲିବ’—ହେଃ-ହେଃ—

( ଓଢ଼ଣୀଟା ମଥାରେ ଦେଇ, ସ୍ତ୍ରୀ-ସୁଲଭ ଅଙ୍ଗ ଭଙ୍ଗି କଲାବେଳେ ହଠାତ୍ ନଜର ପଡ଼ିଗଲା ସାପ ଉପରେ )—ଅଲେ ମୋ’ ବୋଉଲୋ—କେଡ଼େ ଗୋଖର ସାପଟାଏ ଲୋ ) ପଳାଇ ଯାଉଁ ଯାଉଁ,ଫେର ଠିଆହେଲା ) ଉଁ ହଁ—ମୋ’ ଆଖି ସାମ୍‌ନାରେ, ଲୋକଟାକୁ କାମୁଡ଼ିଦେବ ସାପ—ଅଥଚ, ମୁଁ ଖଣ୍ଡାଏତପୁଅ—( ଗୋଟାଏ ଉତ୍ତେଜନାରେ ଖଣ୍ଡାଟା ବାହାର କଲା । ସାପ ଆଡ଼େ ଧାଇଁଲା । ସାପଟା ଲହ ଲହ ହୋଇ ପଳାଇ ଯାଉଥିଲା । ମାତ୍ର, କୋଦ୍‌ମା ଛାଡ଼ିଲା ନାହିଁ, ଚୋଟେ ବସେଇ ତାକୁ ଦୁଗର କରି ଦେଲା ଏବଂ ସେହି ରକ୍ତ-ଦର୍ଶନରେ ସେ ଆରକ୍ତ ହୋଇ ଉଠିଲା ) ହାଃ-ହାଃ-ହାଃ—

କପିଳା—( ଚେଇଁଉଠିଲା ) କିଏ ?—

କୋଦ୍‌ମାସିଂ—ମୁଁ ଖଣ୍ଡାଏତ୍—!—ମୁଁ ଖଣ୍ଡାୟତ୍ ।—

କପିଳା—( ନିକଟକୁ ଧାଇଁ ଆସିଲା ଅପ୍ରସ୍ତୁତ ଭାବରେ )

କୋଦ୍‌ମାସିଂ—ହୁସିଆର୍—ଦେଖୁଚ ମୋ’ ହାତରେ କ’ଣ ?—

କପିଳା—ଖଣ୍ଡା ।

କୋଦ୍‌ମାସିଂ—ଏଇ ଚୋଟକେ ଦି’ଖଣ୍ଡ କରି ଦେଇଚି, ଚାହିଁ ଦେଖ ।

କପିଳା—ବିଷାକ୍ତ-ଗୋଖୁର ସାପଟାଏତ !—

କୋଦ୍‌ମାସିଂ—ତୁମର ମଥାଉପରେ ଫଣାଟାକି, ଛତଟେକି ଠିଆହୋଇ ଥିଲା, ଜାଣ ?

କପିଳା—( ମୁରୁକି ମୁରୁକି ହସି ) ତା’ହେଲେତ, ମୁଁ ରାଜା ହେବି । ଏଯେ ରାଜ-ଲକ୍ଷଣ ।—

କୋଦମାସି—ହୁ-ସ୍—ସେ-ଅଲକ୍ଷଣୀ ପଦକୁ ଆଦୌ ମନ କରନି, ଭାଇ—ଯା’ର ଯା’ ଧର୍ମ, ତା’ର ତା’ ପାଳିବା ଉଚିତ—ଭାଇ, କୁହତ—ମୁଁ ଖଣ୍ଡାଏତ୍ କି ନା, ଖଣ୍ଡାଏତର କାମ କରୁଛି କି ନା ?

କପିଳା—ପ୍ରାଣ ରକ୍ଷା କରିବାତ ଖଣ୍ଡାଏତର ଧର୍ମ, ଭାଇ !

କୋଦ୍‌ମାସିଂ—ହେଲେ, ଭଇ—

କପିଳା—କ’ଣ ?

କୋଦ୍‌ମାସିଂ—ଏହି ଖଣ୍ଡାରେ ଜଣକର ପ୍ରାଣରକ୍ଷା କରିଚି, ଏହି ଖଣ୍ଡାରେ ପୁଣି ଜଣକର ପ୍ରାଣ ନେବାକୁ ଯାଉଚି ।

କପିଳା—ଅବଶ୍ୟ ସେ ଜଣକ ଦୁଷ୍ମନ୍ ହୋଇଥିବ ।

କୋଦ୍‌ମାସିଂ—ଦୁଷ୍ମନ୍ ବୋଲି ଦୁଷ୍ମନ୍—( କାନପାଖେ ଚୁପ୍ ଚୁପ୍ ) କଲା-ଡାକୁ ।

କପିଳା—( ହସିବାକୁ ଲାଗିଲା )

କୋଦ୍‌ମାସିଂ—ତୁମେ ହସୁଚତ ?—ସେ ସହଜ ଜନ୍ତୁ ନୁହେଁ ।

କପିଳା—ଧରିବା ମଧ୍ୟ ସହଜ ନୁହେଁ ।

କୋଦ୍‌ମାସିଂ—ଅସହଜବି ନୁହେଁ ।

କପିଳା—କେମିତ ?

କୋଦ୍‌ମାସିଂ—ହୁଏତ ହତ୍ୟା, ନୁହେଁତ ମିତା !

କପିଳା—ମାନେ ?

କୋଦ୍‌ମାସିଂ—( ଦେଖାଇ ) ଏକ ହାତରେ ହିଂସାର ଅସ୍ତ୍ର, ଅନ୍ୟ ହାତରେ ଅହିଂସା ମନ୍ତ୍ର ।

କପିଳା—ମନ୍ତ୍ର ?

କୋଦ୍‌ମାସିଂ— ଗ୍ଲମ୍‌-ଶଟାଜ୍ ।

କପିଳା—ଦେଖେଁ ?

କୋଦ୍‌ମାସିଂ—ଉଁ ହୁଁ—ହିଁ, ଦେଖିଲେବ ସମୁଜ୍ଜ ପାଣ୍ଡବନ୍, ଭାଇ—କ ଠାର କେତାଣି— 'କାଲ୍‌ଠାର କାଲ୍‌ମାକୁ ଜଣା'—

କପିଳା—ତଥାପି—

କୋଦ୍‌ମାସିଂ—ହାତକୁ ଦେବାନ—ଦୂରେଇ ଠିଆ ହୁଅ —ବେଶ୍, ଶଟାଜ୍‌ର ବାହାର ପଟେ, ଲେଖା ?

କପିଳା—'କଲା-ଡାକୁ' ।

କୋଦ୍‌ମାସିଂ—ଭିତର ପଟେ ?

କପିଳା—'ମା' ।

କୋଦ୍‌ମାସିଂ—ତଲେ ସନ୍ତକ ? —ମହାଟ୍‌ଣୀ ମଣିମାଙ୍କର, ପଢ଼ି ଦେଖ—

କପିଳା—( ଚିନ୍ତାଲୁତ ଭାବରେ ) 'ଡାକୁ—ମା'— ବୁଝିଛି—ଅତି ଆଦରରେ ମା ସନ୍ତାନକୁ 'ଡାକୁ' ବୋଲି ସମ୍ବୋଧନ କରଥାଏ,—ଯେମ୍ଭେ ସେଇସ୍ଥା ।

କୋଦ୍‌ମାସିଂ—କ'ଣ ଭାବୁଚ ଯେ ?

କପିଳା—ଏଁ—( ମାନ, ଦୁର୍ବଳଭାବ କମରେ ) 'ଆଇନ୍‌-ଦୁନିଆ' ଆଉ 'ଡାକୁ-ଦୁନିଆ,'—ସ୍ୱାର ବ୍ୟବଧାନକୁ ଯୁକ୍ତ କରବ ପ୍ରୀତି-ସୂତ୍ର—ସେହି ସୂତ୍ରରେ ମାନବତାର ହେବ କମବକାଶ— ଫଳରେ, ଗଢ଼ି ଠିଆ ହେବ ମାନବ-ଦୁନିଆ,— ଏହି ତଲବ-ଶଟାଜ୍ ତା'ର ସାଙ୍କେତିକ ଅହ୍ୱାନ ମାନ, ସନ୍ତାନ୍ ପ୍ରତି ମାତାର—ମା—ମା—

କୋଦ୍‌ମାସିଂ—ବାଃ—ବେଷ୍ଟ—ତୁମେ କଲା-ଡାକୁ ପାଲଟି ଗଲ୍ ନା କ'ଣ ?

କପିଳା—( ଘନ ଘନ ଅଟ୍ଟହାସ୍ୟ ) ହାଃ-ହାଃ-ହାଃ-ହାଃ—

କୋଦ୍‌ମାସିଂ—( ସଭୟେ ) କ-ଲା-ଡା-କୁ— ( ପଳାୟନୋଦ୍ୟତ)

[ ନେପଥ୍ୟେ, ଚପଶ୍ଚାତ ଦଗରୁ ଅଶ୍ୱର ଘନ ଘନ ହ୍ରେଷାରବ—କୋଦ୍‌ମାସିଂ କେଉଁ-ବାଟେ ପଳାଇବ, କଛି ଠିକ୍ କର ନପାର, ଥରବାକୁ ଲାଗିଲା ବରଡା ପତ୍ରପର ]

---

( ଛଅ )

—ସେହି ଗ୍ରହାଳ ଘର ସମ୍ମୁଖ—

[ ଦ୍ୱାର ବନ୍ଦ ଥାଏ । କାଶିଆ ଓ ଚନ୍ଦୁଗ୍ରା ଚପସପ କଥା କହୁ କହୁ ପ୍ରବେଶ କଲେ । ]

ଚନ୍ଦୁଗ୍ରା—ତା'ପର—

କାଶିଅ—ଶଳା-ବାହୁନୀପଣ ଭାଇଟା ନା ?

ଚନ୍ଦୁଗ୍ରା—( ହସିଲ୍ )

କାଶିଆ—ହସିଲ୍ ଯେ ?—ମୁଁ ପୁଣି ତୁଣ୍ଡ ହୁଡ଼ିଲ୍ ନା କଣ ?

ଚନ୍ଦୁଗ୍ରା—'ଶଳା' ଆଉ କହିବନ, ଭାଇ—

କାଶିଆ—( ଦୁଇ, ଗୃବ ଚଟକଣି ଖାଇ ) ଛି, ଛି, ଛି, ଛି,—ବଦ୍ ଖୋଇଟା କେମିତି ଗ୍ଲଡ଼ବ ଯେ—

ଚନ୍ଦୁଗ୍ରା—ଚନ୍ତା ନାହିଁ, ଭାଇ—ଏମିତି ସବୁ ବଦ୍-ଖୋଇ, ଗୋଲାମି-ଅଭ୍ୟାସର ଫଳ—ସେହି ଗୋଲାମିକୁ ଏବେ ଛଡ଼ ଶିଖିଲଣି, ଖୋଇ ବ ଅସ୍ତେ ଅସ୍ତେ ଛଡ଼ ହୋଇ ଯିବ ଯେ ।—

କାଶିଆ—ଆଃ—କି ମନଖୁସିଆ କଥା କହୁଚୁ, ଭଉଣୀ ! ତା ନହେଲେ କି ତୁ ସାଧବଘର ଝିଅ ? ହେଃ, କପିଳାଟା ଆମକୁ କେଉଁଦନ ଏମିତ କଥା ବତେଇଚ ନା ? କପିଳା ସିଂହ କଥା ସତ,— ହେଲେ, କ'ଣ ହେବ, ବଣର ସିଂହ ଜଲ୍ମାରେ ବଢ଼ିଚ । ପଦ-ବୋଲରେ ଯା'ର ଦନ ସରଚ, ତା'ର ନଜର ବୁଧି ଆସିବ କାହୁଁ ? ହଁ, ତୁ

ଏମିତି ମହିରେ ମହିରେ ମୋ'ର ବେହେଡା-ଗିରିଟା ଧରେଇ ଦଉଥିବୁଟି, ଭଉଣି ।

ଚନ୍ଦୁସ୍ୱା—ଅଚ୍ଛା—

କାଶିଅ—ତା'ପର, ହଁ,—ବାହ୍ମନୀଠୁ ଭାଇ, ଦେଶର ଧାନ, ଗୁଡ଼ଳ ଆଉ ଲୁଗାପଟା ଛାଡ଼ କଥାକୁ ଚୀନା-ସଉଦାଗରଟାକୁ ଯଉଁ ଗୁମ୍ମ-ଚିଟାଉଦାଅ କଟେଇଥିଲା, ତା' ସାଙ୍ଗେ ସାଉ ବନ୍ଦ୍ କରି ଦେଇ, ଧାନ-ଗୁଡ଼ଳ, ଲୁଗା-ପଟା ଓଗେର ଯା' କିଛି ମାଲ ଲଦା ସରି ଥିଲା ବିଦେଶୀ ବୋଇତରେ, ତା' ଜବତ୍ କରି, ନିଜ ମୁକାବଲାରେ ନିଲାମ କରେଇ ଦେଇଚି—ଅଦ୍ଭୁତବ—

ଚନ୍ଦୁସ୍ୱା—ଅଦ୍ଭୁତ ବ ?

କାଶିଅ—ବିଦେଶୀ-ସଉଦାଗରଟାକୁ ତା' ବୋଲି ଅପମାନ କରିନି—ବରଂ ଖାତିରକରି ପାଖରେ ବସେଇ, ଦେଶର ହାଲ୍‌ଚାଲ୍ ଭଲକରି ସମୁଝେଇ, ଯଉଁ ସଉଦା ସେ ଆଣି ଥିଲା, ତା' ବଦଳରେ ଦେଶର ଆଉ ଆଉ ବଳକା ଜିନିସପାତରୁ ବାଛି ନ'ବାକୁ କହି, ଗୋଟାଏ ପିଲାମିଶାର ବାଟ ଯେ ଖଞ୍ଜି ନ ଦେଇଚି, ତା'ବ ନୁହେଁ ।

ଚନ୍ଦୁସ୍ୱା—ଅଚ୍ଛା, ପାଦଙ୍କୁ ଛାଡ଼ିଦେବା ଫଳରେ ପ୍ରଜାଏ ଅଡ଼ି ବସିଥିଲେ, ମେଲ ବାନ୍ଧିଥିଲେ ; ହେଲେ, ସେମାନେ ଅଉ ଗଣ୍ଡଗୋଳ କରୁ ନାହାନ୍ତି ତ ?

କାଶିଅ—'ଗଣ୍ଡଗୋଳ' ? ସଭିଏ ଏବେ ଖୁସି ଯେ, ଶଳାଟାକୁ, ଥୁକୁଲ, ଥୁକୁଲ୍ ; ଭାଇଟାକୁ କାନ୍ଧରେ ବସେଇ, ହେଣ୍ଡିମାରି, ପାଟି ତୁଣ୍ଡରେ ବଡ଼ ଦାଣ୍ଡ ଫଟେଇ. ଆଜ ସାଇ-ଯାତ ଲଗେଇ ଦେଇଛନ୍ତି ।

ଚନ୍ଦୁସ୍ୱା—ବଡ଼-ଦେଉଳରେତ ଆଜ ରାଜା-ରାଣୀ ଭେଟ; ସେଇଠାକୁ ଭେଟି କରି ଦେଜ ଯିବେ ପାଦଙ୍କୁ, ଏଇ ମତ୍‌ଲବ୍ ପରା ?

[ ସେତିକିବେଳେ ଗୋଟାଏ କୋଳାହଳ ଓ ପରେ ପରେ ଘୋଡ଼ାର ଟାପୁଶବ୍ଦ ସ୍ପଷ୍ଟ ଶୁଣାଗଲା ]

କାଶିଅ—ସେଇତ କଳା-ଘୋଡ଼ାର ଟାପୁ !—(ନମସ୍କାର କରି) କପିଳାତ ?—ମୁଁ କ'ଣ କହିଥିଲି, ଭଉଣୀ ?—ତୋ'ରବୋଇତର ଦରବାରେଣୀ ଯନ୍ତ୍ରର କଣ୍ଠା ପରି ମୋ'ର ଦୋସ୍ତର ମନ—ଗୋଟାଏ ଦଗକୁ ଥିର-ଲକ୍ଷିଅ—ସେଇ ଲକ୍ଷିଅ-ଚିଜ ମୋ'ର ଏଇ ଚନ୍ଦୁସ୍ୱାମୀଜୀ—ଯେତେ ଯୁଅଡ଼େ ଯାଉ, ଏ'ପଟ ସେପଟ ହେଉନା କାହିଁକି, ଠିକ୍ ଫେରି ଆସିବ ତା'ର ଠିକଣା ଥାନକୁ—ଚନ୍ଦୁସ୍ୱାମୀଙ୍କ—ତୋ'ର କପିଳା—ମୋ'ର କପିଳା—ତୋ'ର—

[ ସେତେବେଳକୁ ଚନ୍ଦୁସ୍ୱା ଖିଞ୍ଚରେ ଖସି ଚାଲିଯାଇ ଥାଏ—ଗଧିଅ ପଶି ଆସିଥାଏ—ସୁତରାଂ, ତା'କୁ କୁଣ୍ଢାଇ ପକାଇ କହେ ନାଚଗଲା—ହଠାତ୍ ଦେଖିପକାଇ ଗମ୍ଭୀର ଭାବରେ ଫେରି ଫେରି, ଚୁହିଁ, ଚାଲିଯାଉଥିଲା—ଗଧିଅ ଠିଆହୋଇ ମୁରୁକି ମୁରୁକି ହସୁଥାଏ,—ତା'ପର କୁଣ୍ଢାଇ ପକାଇଲା ଗୋଟାଏ ଅବେଗରେ, 'ଭାଇ' ବୋଲି ଡାକି । ]

---

## ( ସାତ )

### —ବଡ଼ଦେଉଳ—

[ ବେଢ଼ା-ଭିତର ମୁକ୍ତି-ମଣ୍ଡପରେ ମହାରାଣୀ ଠିଆ ହୋଇଥିଲେ । କପିଳା ଏକ ଦୃଷ୍ଟିରେ ମହାରାଣୀଙ୍କ ଚୁହିଁ ରହିଥାଏ । ]

ରାଣୀ—ତୁମେ ଏତେ ନିରେଖି ନିରେଖି ମୋ' ମୁହଁକୁ ଚୁହିଁ, କ'ଣ ଦେଖୁଚ, କୁହତ ?

କପିଳା—ଦେଖୁଚି ମାତୃ-ମୂର୍ତ୍ତି ।

ରାଣୀ—ମାତୃ-ଭକ୍ତ ସନ୍ତାନ ମାତୃ-ରୂପ ଦର୍ଶନ କରିବ ସର୍ବଦ, ଏଥିରେ ଆଉ ନୂତନତ୍ୱ କ'ଣ ?

କପିଳା—ମା—( ବିନସ୍ର ବଦନତ ହେଲା )

ରାଣୀ—ବତ୍ସ !—ତୁମେ ମାତୃ-ଭକ୍ତିକୁ ମୂଳ-ମନ୍ତ୍ର କରି, ଜୀବନର ପ୍ରଥମ ପର୍ବ ଅତିବାହିତ କରିଛ ଗୋ-ସେବାରେ—ଜୀବନର ଦ୍ୱିତୀୟ ପର୍ବରେ, ସେହି ମନ୍ତ୍ର-ସାଧନାପଥ ହେଲା ବ୍ୟାହତ, ତଥାପି ତୁମେ

ମାତୃ-ଭକ୍ତିର ଅଲକ୍ଷ୍ୟ ଉଦ୍ଦୀପନାରେ, କୁଣ୍ଠିତ ସମାବେଶକୁ ଅତିକ୍ରମକରି, ବ୍ରତୀ ହୋଇଥିଲି ଦେଶର ସେବାରେ;—ଆଜଠାରୁ ଆରମ୍ଭ ଜୀବନର ତୃତୀୟ ପର୍ବ,—ଯେଉଁ ମାତୃ-ଭକ୍ତିର ଦିବ୍ୟ ଚେତନା ଜାଗ୍ରତ କରିଛି ମାତୃ-ଜନମୀର ବିଶ୍ୱ-ରୂପ ତୁମର ବାହାରେ ଅନ୍ତରେ, ତାହା ତୁମେ ଲଗାଇବ ଦେଶର ସେବାରେ, ବିଶ୍ୱର ସେବାରେ, ତଥା ସମଗ୍ର ମାନବ ଜାତିର ସେବାରେ ।

କପିଳା—ମା—ମା—( ଷର୍ବିସୁ ସୁଲଭ ଗୋଷ୍ଠୀଏ ଉତ୍ତେଜନାରେ ଉତ୍‌କ୍ଷିପ୍ତ ହୋଇ ଉଠିଲା ଓ ଶୁଣିବାକୁ ଲାଗିଲା ଉତ୍କର୍ଣ୍ଣ ହୋଇ—)

( ନେପଥ୍ୟ—ସୂର୍ଯ୍ୟମଣି )—ତୁ କପିଳା ନୋହୁଁ—‘ରାଜା କପିଳେନ୍ଦ୍ର ଦେବ’ ।

କପିଳା—( ଦମ୍ଭଭରେ ) ମୁଁ—ହଁ, ରାଜା କପିଳେନ୍ଦ୍ର ଦେବ ।

ରାଣୀ—ହଁ, ତୁମେଇ ରାଜା କପିଳେନ୍ଦ୍ର ଦେବ !—

କପିଳା—( ଅପ୍ରତିଭ ହୋଇ ରାଣୀଙ୍କ ଆଡ଼େ ଚାହିଁଲା )

ରାଣୀ—ଆଉ, ମୁହିଁ ରାଜ-ମାତା !—

[ ରାଜଗୁରୁ ପ୍ରବେଶ କଲେ ]

ରାଜଗୁରୁ—ଜନନୀ !

ରାଣୀ—ଗୁରୁଦେବ ?

ରାଜଗୁରୁ—ଆଜ ମହାପ୍ରଭୁ ରାଜ-ବେଶ ଧାରଣ କରିବେ, ଆମ୍ଭକୁ ଆଜ୍ଞା ହୋଇଥିଲା—ମାତ୍ର, ସେବକମାନେ କହନ୍ତି—

ରାଣୀ—କ'ଣ ?

ରାଜଗୁରୁ—ମହାରାଣୀ ଆମର ଯଶୋମତୀ—ଜଗନ୍ନାଥ ଆଜ ଗୋପାଳ ବେଶରେ ଜଗତକୁ ଦେଖା-ଦେବେ,—ଏହାହିଁ ସମୀଚୀନ ହେବ—।

ରାଣୀ—ଗୁ-ରୁ-ଦେ-ବ ( ଆଖି ଛଳଛଳ ହୋଇଗଲା ) ବେଶ୍—ତାଙ୍କର ଏହି ‘ଗୋପାଳ’ଟିର କି ବେଶ-ପରିପାଟି ହେବ,—ତା'ର ପରିକଳ୍ପନା ଓ ଭାର ମଧ୍ୟ ସେମାନଙ୍କଠାରେହିଁ ନ୍ୟସ୍ତ ।—ଗୁରୁଦେବଙ୍କ ଅନୁସରଣ କର, ବତ୍ସ !

କପିଳା—( ସଂକୋଚ ବୋଧ କରୁଥିଲା )

ରାଣୀ—ଅବାଧ ହେବନି ? ଯଶୋମତୀଙ୍କ ହୃଦୟ ଯେମିତି ଲବଣୀ-କୋମଳ, ସେମିତି ବଜ୍ର-କଠିନ ଥିଲା—ଯେ ସେହି କଠିନ ମାତୃ-ଆଦେଶ ।

କପିଳା—( ଦ୍ୱିରୁକ୍ତି କରି ପାରିଲା ନାହିଁ । ରାଜଗୁରୁଙ୍କ ସଙ୍ଗେ ପ୍ରସ୍ଥାନ କଲା )

[ ବିପରୀତ ଦିଗରୁ ଭାନୁଦେବ ପ୍ରବେଶ କଲେ । ଭକ୍ତ-ସାଧକର ବେଶ । ହାତରେ ମାଦଳା ପାଞ୍ଜି । ]

ଭାନୁଦେବ—‘ମାତୃ-ଆଦେଶ’, ଏହି କଥା ଶୁଣିବାର ଯେମିତି ମନେ ହେଲା, ମହାରାଣୀ ।

ରାଣୀ—‘ମାତୃ-ହୃଦୟର ଶାସନ, ପ୍ରୀତିର ଶାସନ’ ଏହିକଥା କହି ମାତୃତ୍ୱର ଉଦ୍‌ବୋଧନ କରିଥିଲ ତୁମେ, ମହାରାଜ—ମାତୃତ୍ୱ ପ୍ରତିଷ୍ଠା କରିବ, ଆଶୀର୍ବାଦ କର ।

ଭାନୁଦେବ—ବେଶ୍‌ତ, ସେହି ପ୍ରସଙ୍ଗରେ ଯେଉଁ ଐତିହ୍ୟର ଉଲ୍ଲେଖ ଅଛି ଏହି ମାଦଳା ପାଞ୍ଜିରେ ତାହା ଅନୁସରଣ କଲେଇ ହେଲା ।

ରାଣୀ—କି ଐତିହ୍ୟ, ମହାରାଜ ?

ଭାନୁଦେବ—ହଁ—ଏହି ବଡ ଦେଉଳରେ ଦାରୁ-ବ୍ରହ୍ମ ପ୍ରତିଷ୍ଠା କରିଥିଲେ—

ରାଣୀ—ରାଜା-ଇନ୍ଦ୍ରଦ୍ୟୁମ୍ନ ।

ଭାନୁଦେବ—ପ୍ରତିଷ୍ଠା ପରେ, ବିଗ୍ରହଠାରେ ବର ପ୍ରାର୍ଥନା କରିଥିଲେ—

ରାଣୀ—ରାଜବଂଶ ନିର୍ବଂଶ ହେଉ, ଏହି ବର ।

ଭାନୁଦେବ—ତାତ୍‌ପର୍ଯ୍ୟ ?

ରାଣୀ—ସର୍ବସାଧାରଣର ପ୍ରତିଷ୍ଠାନ, ସର୍ବସାଧାରଣ ହୋଇ ରହିବ କାଳକାଳକୁ, ଏହି ତାତ୍‌ପର୍ଯ୍ୟ ।

ଭାନୁଦେବ—ସ୍ୱତଃ—

ରାଣୀ—ମହାରାଜା ତ୍ୟାଗୀ,—ଅନୁରୂପ ଆଦର୍ଶରେ ଅନୁପ୍ରାଣିତ ହେବେ, ଏହା ସ୍ୱାଭାବିକ—ମାତ୍ର—

ଭାନୁଦେବ—‘ମାତ୍ର’ ?

ରାଣୀ—‘କୁ-ସନ୍ତାନ ଯଦ୍ୟପି ହୁଏ, କୁ-ମାତା କଦାପି ନୁହେଁ’—ଭେଗୀର ଏହି ସ୍ୱଭାବସିଦ୍ଧ ଆଦର୍ଶ ମୋ'ର ମାତୃ-ହୃଦୟକୁ କରିଛି ଆଲୋଡ଼ିତ—

ତା'ର ଉତ୍ତେଜନାରେ ମୁଁ ଏପରି ଗୋଟିଏ ସନ୍ତାନର ଜନନୀ ହେବାକୁ ବ୍ୟାକୁଳ,—

ଭାନୁଦେବ—ଯା'ର ଏ'ସଂସାର-ଦୁନିଆରେ ଥଳ ନାହିଁ, କି କୁଳ ନାହିଁ—ପରିଚୟ ?

ରାଣୀ—ଚଳା-ଡାକୁ ।

ଭାନୁଦେବ ( ସାଶ୍ଚର୍ଯ୍ୟ ) ଚଳା-ଡାକୁ ।—ବୁଝିଛି—କୁ-ସନ୍ତାନକୁ ସୁ-ସନ୍ତାନରେ ପରିଣତ କରିବ,—ମାତୃତ୍ୱର ଉତ୍କର୍ଷ ବାଢ଼ିବ—ଗୋଟାଏ ପରମ୍ପରା ସୃଷ୍ଟି କରିବ,—ଏହାହିଁ ତୁମର ଲକ୍ଷ୍ୟ, କର୍ମ-ଜୀବନର ଜୟଯାତ୍ରା ପଥରେ ।—ରାଣୀ—

ରାଣୀ—ହେଲେ, ଏଥିରେ ମୋ'ର କୃତିତ୍ୱ କିଛି ନାହିଁ, ମହାରାଜ—ମାତୃ-ଭକ୍ତ ସନ୍ତାନ, କେଉଁ ମୁହୂର୍ତ୍ତି ବଶରେ ହୋଇଥିଲା ଛନ୍ନମତି—ବର୍ତ୍ତମାନ ଚୁଛିନ୍ନମତି ଘେନି, ଫେରି ଆସିଛି ସ୍ୱ-ଗୃହକୁ, ତା'ର ମାତୃ-କୋଳକୁ, ଏତିକି ମାତ୍ର ।

ଭାନୁଦେବ—ମାତୃ-ଭକ୍ତ ସନ୍ତାନ ?

ରାଣୀ—କପିଳା—

ଭାନୁଦେବ—( ସ୍ମରଣ କରିବାକୁ ଲାଗିଲେ ) କପିଳା ?

[ ବାହିନୀପତି ଅତି ସାଧାରଣ ନାଗରିକ ବେଶରେ ପ୍ରବେଶ କଲେ ]

ବାହିନୀପତି—ଗାୟକ କପିଳା—ଯା'ର ଅନୁପମ ମାତୃ-ଭକ୍ତି ଓ ସତ୍ୟ ନିଷ୍ଠାର ପ୍ରଶଂସାରେ ଶତମୁଖ ହୋଇ, ଆପଣ ଭବିଷ୍ୟତ୍ ବାଣୀ କରିଥିଲେ ଦିନେ, ଯେ—

ଭାନୁଦେବ—ବାହିନୀ ପତି—।

ବାହିନୀପତି—ମୋର 'ଗୌରଚନ୍ଦ୍ର' ଉପାଧିଟି ସେହି ନାମ ଅଦ୍ୟରେ ଯୋଗକରି, ମୋତେ ଡାକିବା ହେବେ, ମଣିମା ।—

ଭାନୁଦେବ—( ହସିଲେ )

ବାହିନୀପତି—ବିଦ୍ରୂପ କରୁଛି, ତା' ନୁହେଁ, ମଣିମା—ଆପଣ ମୋତେ 'ଗୌର-ଚନ୍ଦ୍ର' ଉପାଧି ଦାନ କରିଥିଲେ, ଏବଂ ତାହା ଯେ ମୋ'ର ଅନ୍ତର୍ଦୃଷ୍ଟି ଖୋଲି ଦେବାର ସଙ୍କେତ ମାତ୍ର, ଏ' କଥା ମୁଁ ବର୍ତ୍ତମାନ ମର୍ମେ ମର୍ମେ ଉପଲବ୍ଧି କରି, ଆପଣଙ୍କର ଦୂର-ଦୃଷ୍ଟିକୁ କେବଳ ପ୍ରଶଂସା ନ କରି ରହିପାରୁ ନାହିଁ, ମଣିମା ।

ଭାନୁଦେବ—ବନ୍ଧୁ, ମୁଁ ଠିକ୍ ସେହି ଉଦ୍ଦେଶ୍ୟରେ ଉପାଧି ଦାନ କରିଥିଲି, ତାହା ନୁହେଁ ।—ତେବେ, ତୁମର ଏହିପରି ଆତ୍ମୋପଲବ୍ଧି ଜଗତକୁ ଏହି ଶିକ୍ଷା ଦେବ ଯେ 'ନିନ୍ଦା', 'ପ୍ରଶଂସା'—'ଭଲ', 'ମନ୍ଦ' ଉଭୟକୁହିଁ ଜଗତ୍-ପିତାଙ୍କର ଦାନ ଓ ଶୁଭେଚ୍ଛା ବୋଲି ଗ୍ରହଣ କରି ନେବା ମାନବର ଧର୍ମ, ଓ କର୍ତ୍ତବ୍ୟ ।

[ ନେପଥ୍ୟେ—କୋଳାହଳ ଶୁଣାଗଲା ]

ଏ'କି କୋଳାହଳ ?—

[ କପିଳା ଯଥା ରାଜ-ବେଶରେ ପ୍ରବେଶ କଲା ]

କିଏ ?—

ରାଣୀ—ଏହି ସେହି ମାତୃ-ଭକ୍ତ ସନ୍ତାନ, ମହାରାଜ ।—

[ କପିଳା ଯଥା ଅଭିବାଦନ ଜଣାଇଲା ସମସ୍ତଙ୍କୁ ]

ରାଣୀ—ମୋ'ର ସନ୍ତାନ—( ଧାରଣ କରିବାକୁ ଉଦ୍ୟତ ହେଲେ )

ଭାନୁଦେବ—କ୍ଷାନ୍ତହୁଅ, ମହାରାଣୀ ।—

ରାଣୀ—ମହାରାଜ ।—

ଭାନୁଦେବ—( ମୁକ୍ତିମଣ୍ଡପ ଆଡ଼କୁ ଚାହିଁ )—ଏହି ମଣ୍ଡପର ପରିଚୟ ?

ରାଣୀ—ମୁକ୍ତି-ମଣ୍ଡପ ।

ଭାନୁଦେବ—ଆମର ମୁକ୍ତି-କାମୀ ପୂର୍ବ-ପୁରୁଷମାନେ ଏହାକୁ ତିଆରି କରି ଯାଇଛନ୍ତି । ଏହି ମୁକ୍ତି-ମଣ୍ଡପରେ ବସିଥାଏ ପଣ୍ଡିତମାନଙ୍କର ସଭା । ଧର୍ମ ଓ ସମାଜର ନୀତିଗତ ଚର୍ଚ୍ଚା ଓ ସିଦ୍ଧାନ୍ତ ନିଷ୍ପତ୍ତି ହୋଇ ଥାଏ ଏହିଠାରେ । ମାତ୍ର, ମୁଁ ସ୍ୱପ୍ନ ଦେଖିଛି,—ସମଗ୍ର ମାନବ ଜାତି, ଦିନେ ମୁକ୍ତିର ଆସ୍ୱାଦ ପାଇବ—ମୁକ୍ତି ପାଇଁ ସଂଗ୍ରାମ କରିବ—ମୁକ୍ତି ହାସଲ କରିବ, ଆଉ ଯୌଥ ମନୋବୃତ୍ତି ଘେନି, ରାଜ-ନୀତି ଚର୍ଚ୍ଚା କରିବ ଅଙ୍ଗାଙ୍ଗୀ ଭାବରେ ଧର୍ମ ଓ ସମାଜ ନୀତି ସଙ୍ଗେ, ଏହିଭଳି ମୁକ୍ତସ୍ଥାନ ମୁକ୍ତି-ମଣ୍ଡପରେ, ଅବାଧ

ରାଜ ସଭା ଗୃହରେ ନୁହେଁ । ସୁତରାଂ, ଏହି ଗଣତାନ୍ତ୍ରିକ ଯୁଗର ସ୍ୱପ୍ନ ଦ୍ରଷ୍ଟିଏ, ତୁମେ ଆଜି ଯାହା କରିବାକୁ ମନାସିଛ, ସେଥିରେ ଦଶର ଓ ଦେଶର ସମର୍ଥନ ସବୁର ଆଗେ ଅପରିହାର୍ଯ୍ୟ ।

ବାହିନୀପତି—ଦେଶ ଓ ଦଶର ପ୍ରତିନିଧି ରୂପେ ମୁଁ ଏହା ସମର୍ଥନ କରୁଛି, ମହାରାଜ ।

ଭାନୁଦେବ—ତୁମର ସମର୍ଥନ ଗ୍ରହଣର ଅଯୋଗ୍ୟ—ଯେହେତୁ ତୁମେ ଜଣେ ରାଜ-କର୍ମଚାରୀ—ପ୍ରତିନିଧିତ୍ୱ କରିବ, ସେ ଅଧିକାର ସୁଦ୍ଧା ତୁମର ନାହିଁ ।

[ ଗଧିଆ ପ୍ରବେଶ କଲା ଯଥା ସମୟରେ । ତା'ର ଥିଲା ସାଧବର ଯୋଗ୍ୟ ପରିଧାନ ]

ଗଧିଆ—ଯଥାର୍ଥ, ମହାରାଜ—ଆଜ୍ଞାରେ, ସମଗ୍ର ଦେଶବାସୀ ଠୁଳ ହୋଇ, ସମସ୍ୱରରେ ସମର୍ଥନ କଲେ ମଧ୍ୟ, ମୋ'ର ବିନା ଅନୁମୋଦନରେ, ତାହା ପଣ୍ଡ ହୋଇଯିବ, ଏହା ମୁଁ ସଦମ୍ଭେ କହିବି ।

ଭାନୁଦେବ—ତୁମେ—?

ଗଧିଆ—( କଣ କହିବାକୁ ଯାଉଥିଲା )

କପିଳା—ମହାରାଜ !—ଏ'ମହାଶୟ ମୋ'ର ସାଉକାର; ମୁଁ ତାଙ୍କର ଖାତକ—ଋଣି ମୋ'ର—

ଗଧିଆ—ଅକଳନ୍ତି—ସେହି ଋଣ ପରିଶୋଧ କରିବ, ଏଥିପାଇଁ ମୋ'ନିକଟରେ ଥିଲା ଚିର ଦାସତ୍ୱରେ ଅବଦ୍ଧ—ମୋ'ର ବୋଝ ମୁଣ୍ଡାଉଥିଲା—ମୋ'ର ଗୋରୁ ଚରାଉଥିଲା,—ହଠାତ୍ ଦିନେ, ଅକୁହା ଅଯୋଗ୍ୟ, ଚଡ଼ା କାଟି ଛୁ ।

କପିଳା—ସତ୍ୟକଥା, ମହାରାଜ ।

ରାଣୀ—(ସକ୍ରୋଧେ) ସାଉକାରେ ! ଯଦି ଏହା ସତ୍ୟ ହୁଏ, ତେବେ ଲୋକେ ଯା' କହୁଥାନ୍ତି,—'ମହାଜନ ନୁହେଁ, ମହାଯମ', ଏ' ଉକ୍ତି ମଧ୍ୟ ସତ୍ୟ, ତୁମଠାରେ ସମ୍ପୂର୍ଣ୍ଣ ପ୍ରଯୁଜ୍ୟ ।

ଭାନୁଦେବ—ସ୍ଥିର ହୁଅ, ରାଣୀ—ଦୋଷଗୁଣ ନିର୍ଦ୍ଧାରଣରେ ଜଣେମାତ୍ର ପ୍ରଜାର ସ୍ୱାର୍ଥରେହିଁ, ରାଜାର ସ୍ୱାର୍ଥ ।

ଗଧିଆ—ମହାରାଜ ଧର୍ମାବତାର !—ଜଣେ ମାତ୍ର ପ୍ରଜା—ସ୍ଥିର ଧୋବଣୀଟାଏ—ମିଛେ ମିଛେ ଗୋଟାଏ ଅପବାଦ ଦେଲା, ଆଉ ରାଜା—ରାମଚନ୍ଦ୍ର, ବିନା ପ୍ରତିବାଦରେ, ବିନା ବିଚାରରେ, ସେହି ଅପବାଦକୁହିଁ ନିରଙ୍କୁଶ ପ୍ରମାଣ ମଣି, ସୀତାପରି ସତୀଙ୍କୁ ତ୍ୟାଗ କରିଥିଲେ !—ହେଃ—ହେଃ—ଆଉ ମୁଁତ ବ୍ରାହ୍ମଣ—ପିଲା—ମୋ'ର ରହିଚି ହକ୍ ଦାବି ।

ରାଣୀ—ତୁମେ ବ୍ରାହ୍ମଣ, ନା ଚଣ୍ଡାଳ !—

ଭାନୁଦେବ—ଭୁଲିଯାଅନା ନିଜକୁ, ରାଣୀ !—ବ୍ରାହ୍ମଣ—ତୁମେ ସାଉକାର—ସେ ଖାତକ—ଖାତକ ଯେତେବେଳେ ଅଭିଯୋଗ ସ୍ୱୀକାର କରୁଛି, ସେତେବେଳେ ତୁମେ ଦୁହେଁ ଭୁଝା ବୁଝି ହୁଅ—ଆସ ବାହାର, ରାଣୀ ।

ଗଧିଆ—ତା'ତ ହେବନି ମହାରାଜ ! ଯେଉଁ ଖାତକ, ସ୍ୱଭାବତଃ ପ୍ରବଞ୍ଚକ ହେଉ ବା ନ ହେଉ, ସାଉକାର ଆଖିରେ ଧୂଳି ଦେଇ, ଥରେ ପ୍ରତାରଣା କରିଛି, ତା'କୁ ପୁଣି ବାନ୍ଧିବାକୁ ହେଲେ, ମହାରାଜା ଓ ମହାରାଣୀଙ୍କ ପରି ମାତବର-ସାକ୍ଷୀର ସାକ୍ଷାତରେହିଁ ସେହି ବନ୍ଧନ-ବ୍ୟବସ୍ଥା ହେବା ବାଞ୍ଛନୀୟ ।

ଭାନୁଦେବ—ଯଥାର୍ଥ ।

ରାଣୀ—ଓଃ—

ଗଧିଆ—( ଯାଇ, ନେପଥ୍ୟକୁ ହାତ ବଢ଼ାଇ ) ଦିଅତ ବୋଝଟା, ଭାଇମାନେ— ( ରାଜ-ମୁକୁଟ ଗ୍ରହଣ କରି, ତାହା କପିଳା ମଥାରେ ସ୍ଥାପନକଲା )

ସମସ୍ତେ—ବ୍ରାହ୍ମଣ !—ବ୍ରାହ୍ମଣ !—

ଗଧିଆ—ଦୁନିଆର ଋଣ ଶୋଧିଲାଚି, ଆଜି ତୁମେ ଦୁନିଆର ବୋଝ ମୁଣ୍ଡାଇବ—ଥିଲ ଗୋଷ୍ଠ-ପାଳ ହେବ ରାଜ୍ୟ-ପାଳ— !

କପିଳା—( ମଥା ନୁଆଁଇବାକୁ ଯାଉଥିଲା )

ଗଧିଆ—( ବାଧାଦେଇ ) ନା, ନା—ତୁମେ ମଥା ନୁଆଁଇବ ନାହିଁ, ଭାଇ—ଦେଶର ସବୁ ଭାଇ

ମିଲ, ତୁମକୁ ଆମେ ବଡ଼ ଭାଇର ଆସନ ଦେଇ ଥାଏଁ—ତୁମେ ଆମର ଅଗ୍ରଜ—ଏ' ତୁମର ଅଭିଷେକ ।

ଭାନୁଦେବ—ଅଜର ଏହି ଅଭିଷେକ ପ୍ରସଙ୍ଗରେ, ମୁଁ ଗଙ୍ଗବଂଶର ଶେଷ ନୃପତିରୂପେ ଘୋଷଣା କରୁଛି, ଯେଉଁ ପୂର୍ଣ୍ଣ ଗଣତାନ୍ତ୍ରିକଯୁଗକୁ ଦେଶ ଆଗେଇ ଆଣିବାକୁ ଉନ୍ମୁଖ, ତା'ର ବରଣ ଡାଲି ସଜାଉନ୍ତୁ ରାଜା-କପିଳେନ୍ଦ୍ରଦେବ ।—ପାଞ୍ଜିଆ—ଉଡ଼ାଉ କରଣେ—ମାଦଳା ପାଞ୍ଜିରେ ନୂଆ ପନ ଯୋଖିବାକୁ ହେବ—ନୂଆ ଅଧ୍ୟାୟ ଫିଟାଇବାକୁ ହେବ—( ପାଟଳେ ପଶି ପ୍ରସ୍ଥାନ କଲେ )

ରାଧୁଆ—ମା—

ରାଣୀ—କୁହ—

ରାଧୁଆ—ରାଣୀ ନ ଥାଇ, ରାଜାର ଅଭିଷେକ ଯେମିତି ଅପୂର୍ଣ୍ଣ, ସେମିତି ଅଯୁଦର ମା !

ରାଣୀ—( ହସି ) ଅବଶ୍ୟ—ଆଶୀର୍ବାଦ କର, ବ୍ରାହ୍ମଣ, ଏ'ଅଭିଳାଷ ତୁମର ଅଚିରେ ପୂର୍ଣ୍ଣ ହେଉ ।

ରାଧୁଆ—ଆଜ୍ଞା ହେଲେ, ଏହିକ୍ଷଣି ତାହା ପୂର୍ଣ୍ଣ ହେବ, ଜନନୀ—

ରାଣୀ—ଏହିକ୍ଷଣି !—

ରାଧୁଆ—ଘେନି ଆସେତ, ଅପା !—

[ ବରାଭରଣା ଚନ୍ଦ୍ରାକୁ ଘେନି, ରୁଧି ପ୍ରବେଶ କଲା ]

ରାଣୀ—( ଚନ୍ଦ୍ରାକୁ ଦେଖି ) ଏଁ—ଏ'ତ ମୋ'ର 'ଚନ୍ଦ୍ରାବତୀ' ! ସୂର୍ଯ୍ୟକୁ, ଚନ୍ଦ୍ର—ହେଲେ ସୂର୍ଯ୍ୟର ବିଭାଲୋକଟଳେ ଚନ୍ଦ୍ର ଅଦୃଶ୍ୟ ହେଲାଭଳି, ମୋ'ର ସ୍ମୃତିରେ ଅଗୋଚର ହୋଇ ରହିଥିଲା ସିନା !—

[ କପିଳା ଓ ଚନ୍ଦ୍ରାକୁ ମିଳାଇ ଦେଲେ ]

ରୁଧି—ବିନା ଯୌତୁକରେତ କନ୍ୟା ଦାନ ସାର୍ଥକ ହୁଏନା; ତେଣୁ ଯତ୍ କିଞ୍ଚିତ୍ ଉପଟୌକନ ଗ୍ରହଣ କରି, କୃତାର୍ଥ କରିବା ହେବେ, ମଣିମା ।

ରାଣୀ—'ମଣିମା' ନୁହେଁ, 'ସମ୍ଭୁଣୀ'—

( କୁଣ୍ଢାଇ ପକାଇଲେ )

ରାଧୁଆ—( ଭିତରକୁ ଯାଇ, ଦୁଇଟା ମୋହର-ଥଳି ଆଣି ସେତେବେଳକୁ ଥୋଇ ଦେଇଥିଲା )

ଲକ୍ଷେ, ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ଦୁଇଟି ଥଳିରେ । ଏଥିରୁ ଗୋଟିଏ ଟାଙ୍ଗିଙ୍କର ଝାଲ ରୁହାଧନ । ଉଡ଼େଶିଇ ସ୍ୱର୍ଗାରୋହଣ ବେଳେ କହିଯାଇ ଥିଲେ ଯେ,—ବ୍ୟବସାୟ କ୍ଷେତ୍ରରେ, ଶ୍ରମିକର ଶ୍ରମ, ଧନିକର ଧନପରି ଲଗ୍ନ-ମୂଳ-ଧନର ଗୋଟିଏ ବଶିଷ୍ଟ ଅଂଶ । ମୁଁ ସେହି ପନ୍ଥାଅବ କରି, ପାଇଛି ରଖିଥିଲି ଏହି ଧନ; ତାହା ଶ୍ରମିକର ଦେୟ ପିତୃକ-ଋଣ ପରିଶୋଧ ବାଦେ, ଶ୍ରମିକର ପ୍ରାପ୍ୟ ମୁନାଫାଅଂଶ ମାତ୍ର... ହିସାବ ମଧ୍ୟ ସେହି ଥଳିରେ ରଖା ହୋଇଛି । ଆସତ, ଭଉଣୀ—ବୋଉତ ତେଣେ ଆମରି ଅପେକ୍ଷାରେ ଠିଆ—( ରୁଧିର ହାତଧରି ବାହାରି ଯିବାର ଉପକ୍ରମ )

କପିଳା—ଭାଇ—

ଚନ୍ଦ୍ରା—ଭାଇ—ଭାଇ—

ରାଧୁଆ—'ଆଉ ମାୟା କଟେଇବନି', ଭାଇ ଭଉଣୀ, —କନ୍ୟା-ଦାନ ପରେ ଆଉତ ଜଳ ଗ୍ରହଣ କରିବେନି ଅପା ଏ'ରାଜ୍ୟ ସୀମା ଭିତରେ—

( ବ୍ୟାକୁଳ ଭାବରେ ରୁଧିକୁ ଟାଣି ଘେନି ଚାଲିଗଲା )

[ କିଛିକ୍ଷଣ ଗୋଟାଏ ଗଭୀର ନୀରବତା ବିରାଜ କରିବାକୁ ଲାଗିଲା ]

ବାହିନୀପତି—( ହଠାତ୍ ଚିତ୍କାର କରି ଉଠିଲା )

ଚୋର—ଚୋ—          ( ଭିତରକୁ ଚାଲିଗଲା )

[ ଅବାକ୍ ଭାବରେ ସମସ୍ତେ ରହିଲେ ସମସ୍ତେ ସେହି ଅଡ଼େ—କିଛିକ୍ଷଣ ପରେ, ବାହିନୀପତି ଢାଙ୍ଗିଅର ଚୁଳମୁଠା ଧରି, ତାକୁ ଟାଣି ଓଟାରି ଘେନି ଆସିଲା । ]

ଢାଙ୍ଗିଆ—ଛାଡ଼ିଦେ—ଛାଡ଼ିଦେ

ବାହିନୀପତି—ଛାଡ଼ି ଦେଲିତ ?—ମନେ କର ସେଦିନ କଥା—!—

ରାଣୀ—କଥା କ'ଣ ବାହୁନୀପତି ?

ବାହୁନୀପତି—ଯେ ସେହି ଭାଗିଆ-ଡାକୁ, ମା-ମଣିମା —ଆସିଥିଲା ଡାକୁ ମତଲବରେ,—ଲୁଚିଛପି, ଆମର ଆନନ୍ଦ ଉତ୍ସବ ଦେଖିବ, ଲୁଚିଛପି, ତା ଲୁଟିକରି ନେବ, ପଳେଇବ ।—

ଭାଗିଆ—ଆବେ—ଓବ୍ବୋ ହୋ—ମୁଁ ଯେ ମୋ'ର ବହିଖୋଇ ଛାଡ଼ି ପଳୁନି—ଏଇଟା ମୋ' ରାଜାକୁ ସେଥିକି ନନ୍ଦା—ମୋ ରାଣୀକୁ ସେଥିକି ନନ୍ଦା—ମୋତେ ଛାଡ଼ିଦେ, ଭାଇ—ମୁଁ ପଳାଏଁ —ମୁଁ ପଳାଏଁ—

ରାଣୀ—ଛି, ବାପ । ( ବାଧା ଦେଲେ )

କପିଳା—ଦୋସ୍ତ—ଦୋସ୍ତ—( ଦୃଢ଼ାଲିଙ୍ଗନ କଲା )

ରାଣୀ—ବାହୁନୀପତି—ଉତ୍ସବ ଆୟୋଜନ କର—

[ କପିଳା ଓ ଚନ୍ଦ୍ରଶ୍ରୀ ବ୍ୟତୀତ ସମସ୍ତେ ପ୍ରସ୍ଥାନ କଲେ ]

କପିଳା—ତୁମେ ଚନ୍ଦ୍ରାବତୀ ?

ଚନ୍ଦ୍ରଶ୍ରୀ—ଉହୁଁ, ରାଣୀ ଚନ୍ଦ୍ରାବତୀ—ତୁମେ ପରି ରାଜା କପିଳେନ୍ଦ୍ରଦେବ )

[ ଠିକ୍ ସେହି ସମୟରେ ଗୁରଣ ପ୍ରବେଶ କଲା ]

ଗୁରଣ—ମହାରାଜାଙ୍କର ଜୟ ହେଉ ।

କପିଳା—ଗୁରଣ ?—

ଗୁରଣ—ଗୁରଣକୁ ଭକ୍ଷା ଯାଉଥିଲେ, ସ୍ମରଣ ଥିବ, ମହାରାଜ ।—

କପିଳା—ଆହୁରି କହିଥିଲି, ସ୍ମରଣ ହେଉଛି, ତୁମେ ନେବ ସେତିକିବେଳେ, ଯେତେବେଳେ ରାଜାର ଭୋଗ୍ୟ 'ରାଜଭୋଗ' ବିତରଣ କରି ଦେବ ପ୍ରଜାଙ୍କୁ ; ତୁମେ ଗ୍ରହଣ କରିଛ, ମହାଭାଗ—

( ରାଜମୁକୁଟ ଓଟାରି ଗୁରଣକୁ ଅର୍ପଣ କଲା )

ଗୁରଣ—( ସସ୍ମିତେ ) ଏକଲା ମୋ'ର ନୁହେଁ, ରାଜ୍ୟର ଏହି ସମ୍ପତ୍ତି; ରାଜଭଣ୍ଡାରରେ ରହିଛି ରହିବ, ରାଜ୍ୟର ପ୍ରତିନିଧିଙ୍କ ଜିମ୍ମାରେ— ରାଜାଙ୍କର ଜୟ ହେଉ ।—

[ ମଣ୍ଡପ ଉପରେ ସ୍ଥାପନ କଲା, ଓ ଗୀତ ଗାଇ ଗାଇ ଚାଲିଗଲା ]

ଗୀତ

ଭୟ ନାହିଁ, ଭୟ ନାହିଁ
ଜାଗ୍ରତ ସଦା ସେ, ଭାଇ;
ଭୟ ଭ୍ରାନ୍ତି ତେଜ ମନୁ—
ଡେଜିବ କୋଟିଏ ଭାନୁ !

ଚନ୍ଦ୍ରଶ୍ରୀ—ହୁଁ—ତା'ପରେ ?

କପିଳା—ଦାସ ହେଲିବ ।

ଚନ୍ଦ୍ରଶ୍ରୀ—ଅଭିମାନରେ ନୁହେଁତ ?

କପିଳା—ଅତି ସମ୍ମାନରେ—

ଚନ୍ଦ୍ରଶ୍ରୀ—ବେଶ୍—( ପଣତ ଉହାଡରୁ ଖୁରୁପିଟା ବାହାର କରି ଦେଲା )

କପିଳା—ଚନ୍ଦ୍ରଶ୍ରୀ—( ଗୋଟାଏ ଉଚ୍ଛୁଳା ଆବେଗରେ ଚନ୍ଦ୍ରଶ୍ରୀର ହାତ ମୁଠାଇ ଧରିଲା—ତା'ପରେ ଖୁରୁପିଟି ଧାରଣ କରି, ସଗର୍ବେ ମୁକୁଟ ପାର୍ଶ୍ୱରେ ସ୍ଥାପନ କଲା ।

[ ସେହି ସମୟରେ ଆରତି ଘଣ୍ଟା ବାଜିବାର ଶୁଣାଗଲା । ଉଭୟେ ନତମସ୍ତକ ହେଲେ । ]

—ଯ ବ ନି କା—

# ଧାଈଙ୍କ-ପୁଅ

—ଐତିହାସିକ ନାଟକ—

# ଆଭାସ

ଗତାନୁଗତିକ ନିୟମ ଛନ୍ଦରେ ନାଟକଟିକୁ ଅନୁଧ୍ୟାନ କରିବାକୁ ଗଲେ, ଟିକିଏ ହତାଶ ହେବାକୁ ପଡ଼ିବ ପରା !—'ଫୁଲ୍'ଟିକୁ ଯଦି 'ଫୁଲଛନ୍ଦ'ରେଇ ନାଚିବାକୁ ଛାଡ଼ି ଦିଆଯାଏ—ଭଅଁରମାନଙ୍କୁ 'ଗୁଣୁ ଗୁଣୁ' ସ୍ୱରରେ ଆପଣା ଆପଣାର ଭାବ ବ୍ୟକ୍ତ କରିବାକୁ ଛାଡ଼ି ଦିଆଯାଏ, ତେବେ ଏହି ନାଟକଟି ଅପାର ଆନନ୍ଦ ଦେବ ବୋଲି, ମୋ'ର ବିଶ୍ୱାସ।

'ଫୁଲ୍' ଅପଟମାନଙ୍କର ସେହି 'ଫୁଲ୍'ଟିଏ—ପୂର୍ଣ୍ଣ ଯୌବନରେ, ଫୁଲ୍ଲ ମନରେ, ତେଙ୍ଗ ଉପରେ ଆପଣା 'ଛନ୍ଦ'ରେ ଚଳି ଚଳି ନାଚୁଛି !

'ଧନୁଆ' ( ପାଇକ ପ୍ରଜା )—'ଅନଙ୍ଗ' (କ୍ଷତ୍ରିୟ-ରାଜା )—ଦୁଇଜଣ ସେହି 'ଫୁଲ୍'-ଗନ୍ଧ-ପ୍ରାଣ ଦୁଇଟି ଭଅଁର—ପ୍ରତିଦ୍ୱନ୍ଦୀ !—ବିଚିତ୍ର ସେମାନଙ୍କର 'ଦ୍ୱିଭ-ସମର'-ତାଣ୍ଡବ !—ଯେ ତାଳେ ତାଳେ, ଫାଙ୍କେ ଫାଙ୍କେ ଲୟରେ ପାହୁଲ ପକାଉଚି—ଅଥଚ ଅପୂର୍ବ ସମନ୍ୱୟର ସୃଷ୍ଟି ହୋଇଛି । ।

ଅଲକ୍ଷ୍ୟେ ଏଣେ, ଫାଙ୍କେ ଫାଙ୍କେ ଥାଇ, କେତେବେଳେ ଯେ ମହା ପ୍ରତିଦ୍ୱନ୍ଦୀ ସେହି ଫାଙ୍କ ବୁଝି, ଫୁଲଟିକୁ ନେଇ, ଛୁ !—ପ୍ରେମିକ ଯୁଗଳ ହତାଶ ନ ହୋଇ ବରଂ ଅଭିଯାନ କଲେ ଏଥର ଅଣ୍ଟା ଭିଡ଼ି, ଏକଜୁଟ୍‌ରେ, ଏକପ୍ରାଣରେ, ସେହି 'ମହାଦୁଷ୍ମନ୍'ର ସନ୍ଧାନରେ !—

'ରାଜା'—ଯୁଦ୍ଧଘୋଷଣା କଲେ, ଅସି ଦେଖାଇ ! —'ପାଇକ'—ତେଇଁ ପଡ଼ିଲା ବର୍ଚ୍ଛା ଉଞ୍ଚାଇ—! !

କଟକ
ଜାନୁୟାରୀ, ୧୯୩୭ ଲେଖକ

---

# ଚରିତ୍ରଲିପି

ଅନଙ୍ଗଭୀମଦେବ—ଓଡ଼ିଶାର ରାଜା
ପଞ୍ଚକୋଡ଼ି—ଓଡ଼ିଶାର ରାଜ-ମନ୍ତ୍ରୀ
ବାଜପେୟୀ—ଓଡ଼ିଶାର ରାଜ-କବି
ରାଜଗୁରୁ—ଓଡ଼ିଶାର ରାଜ-ଗୁରୁ
ଲକ୍ଷ୍ମଣସେନ—ବଙ୍ଗଳାର ରାଜା
ନିର୍ମଳା—ବଙ୍ଗଳାର ରାଜ-କନ୍ୟା
ସିରାଜ—ପଠାଣ ସେନାପତି
ଭୀମ ସର୍ଦ୍ଦାର—ପାଇକ ସର୍ଦ୍ଦାର
ଫୁଲ୍—ପାଇକ ସର୍ଦ୍ଦାର-କନ୍ୟା
ହିମନ୍—ସର୍ଦ୍ଦାରର ଭୃତ୍ୟ
ଧନୁଆ—ଜଣେ ପାଇକ
ପାଇକଗଣ, ପାଇକାଣିଗଣ, ମାହାରିଗଣ

---

# ପାଇକ ପୁଅ

## ଊଷା

—ଖୋର୍ଦ୍ଧାର ପାଇକ ପଲ୍ଲୀ—

—ଭୀମ ସର୍ଦ୍ଦାରର ଘର ସମ୍ମୁଖ—

[ ନିଶାର ଶେଷ ଯାମ—ନୀରବ, ନିସ୍ତବ୍ଧ-ଗୃହଦୀପ ସ୍ତିମିତ ହେଲେଣି, ମେଘୁଆ ଯୋଗୁ ଉଆଁସି ରାତକୁ ବଳାଇଛି—ହଠାତ୍ ସେହି ଘୋର ନିସ୍ତବ୍ଧତା ଓ ଅନ୍ଧକାର ଭେଦ କରି କିଏ ଜଣେ ଧାଇଁ ଆସିଲା—ଶିକାରୀର ବେଶ ]

ଆଗନ୍ତୁକ—ସର୍ଦ୍ଦାର—ସର୍ଦ୍ଦାର—

( ନେପଥ୍ୟେ )—ଭଯୁନାହିଁ—ବାଘଟା—

ଆଗନ୍ତୁକ—'ମରିଛି' ?

( ନେପଥ୍ୟେ )—( ଉତ୍ତର ନାହିଁ )

ଆଗନ୍ତୁକ—'ମରିଛି' ?

( ନେପଥ୍ୟେ )—( ତଥାପି ଉତ୍ତର ନାହିଁ )

ଆଗନ୍ତୁକ—କିଏ ?—ସର୍ଦ୍ଦାର ?—

( ନେପଥ୍ୟେ )—( ତଥାପି ନୀରବ )

ଆଗନ୍ତୁକ—ଉତ୍ତର ଦିଅ—

( ନେପଥ୍ୟେ )—( ତଥାପି କୌଣସି ଶବ୍ଦ ନାହିଁ )

ଆଗନ୍ତୁକ—ଉତ୍ତର ?—ଉତ୍ତର ?—ରାଜା—

[ ଠିକ୍ ସେତିକିବେଳେ ଦ୍ୱାର ଖୋଲି ସର୍ଦ୍ଦାରର ଝିଅ, 'ଫୁଲ' ଦେଖା ଦେଲା—ବର୍ତ୍ତିକା-ହସ୍ତେ—ସଜ-ଫୁଟିଲା ଫୁଲଟି କି ଆଜ ପାଖୁଡ଼ା ମେଲାଇ, ଶିଶିର ଝରି ଅରୁଣ ପରେଶ । ]

ଫୁଲ—'ରାଜା' !—କାହିଁ ? କଣ ହୋଇଛି ?—

ଆଗନ୍ତୁକ—( ମୁଗ୍ଧନେତ୍ରରେ ଚାହିଁ ରହିଥାଏ )

ଫୁଲ—କଣ ଆଖିପାଟି ଏତେ ନିଠେଇ ନିଠେଇ ଦେଖୁଛ ରେ ?—

ଆଗନ୍ତୁକ—ହଁ—ନା—

ଫୁଲ—ମଲି !—'ହଁ'—'ନା'—ଏ' କେମିତିକା ମ ?—ଭୂତ ଜଳକା କିରେ ?

ଆଗନ୍ତୁକ—'ଜଳକା' ହୋଇଛି, ସୁନ୍ଦରି—ତୁମର ଏହି—

ଫୁଲ—ଆଲୁଅଟାରେ ?—

ଆଗନ୍ତୁକ—ହଁ, ହଁ, ଆଲୁଅଟାରେ, ସୁନ୍ଦରି—ତୁମର—
( ଆବେଗଟା ସମ୍ଭାଳି ନେଲା )

ଫୁଲ—ବେଶ୍ ତ, ଲିଭେଇ ଦିଏ ନା ? ( ଲିଭାଇବାକୁ ଯାଇ )—କାହିଁକି ମ ?—ଭିତରେ ଥୋଇ ଦେଇ ଆସେ ନା ?—(ଥୋଇ ଦେବାକୁ ଗଲା)

ଆଗନ୍ତୁକ—ଏହି ଦୀପର ଆଲୁଅକୁ ପିନା !—ତା' ବୋଲି, ଏ' ରୂପର ଆଲୁଅକୁ କି ମୁହୂର୍ତ୍ତକ ପାଇଁ କେବେ ହେଲେ ଲିଭାଇ ଦେଇ ପାରିବ, ନା କେଉଁଠି ଥୋଇ ଦେଇ ଆସି ପାରିବ, ସୁନ୍ଦରୀ ?—

ଫୁଲ—( ଫେରି ଆସି, କିଛି ଦୂରରେ ) ହେଲା ?

ଆଗନ୍ତୁକ—ଓଃ, ଏ' ଯେ ଶହେଗୁଣ ବଢ଼ି ଉଠିଲା !—ଶତଚନ୍ଦ୍ର ଏକା ସଙ୍ଗେ—ଫୁଲ କିବା ବଦନ ମଣ୍ଡଳେ ?

ଫୁଲ—ତୁ କାହିଁରେ ?—ମୋତେ କିଛି ଦିଶୁ ନାହିଁରେ ? —ଅଚ୍ଛା, ତୁ କଣ ରାଜାର ନଉକର ?

ଆଗନ୍ତୁକ—( ମୁହୂର୍ତ୍ତେ ବିଳମ୍ବ ନ କରି ସାଗ୍ରହେ କହିଲା) ହଁ—ହଁ—

ଫୁଲ୍—ରାଜା କଣ ଭାଡ଼ରେ ନାହିଁ ?—କୁଆଡ଼େ ଗଲା ?—ଡର ନାହିଁ—ସର୍ଦ୍ଦାର ପାଖେ ପାଖେ ଥିବ ନଚେଁ—!

ଆଗନ୍ତୁକ—( ସବିସ୍ମୟେ ଓ ସାଗ୍ରହେ ) ଏ' କଣ ଗ୍ରାମ ସର୍ଦ୍ଦାରର—

ଫୁଲ୍—ଆରେ ଗ୍ରାମ ସର୍ଦ୍ଦାରର ଘର ଚିହ୍ନୁନା ?—ତୁ କଣ ଏ'ଠା ଲୋକ ନୋହୁଁକିରେ ?—ମୁଁ ପରା ଝିଅ—'ଫୁଲ୍' !—

ଆଗନ୍ତୁକ—( ମୃଦୁ ମୃଦୁ ହସି ) ସର୍ଦ୍ଦାର ଏମିତିକା 'ଫୁଲଟିକୁ' ଏକୁଟିଆଟା ଘରେ—?

ଫୁଲ୍—ଡର କ'ଣ ରେ ?

ଆଗନ୍ତୁକ—( କପଟ ଅପ୍ରସ୍ତୁତ ହୋଇ ) ନାହିଁ ଯେ—ଯେଉଁ ବାଘର ଗୋଳମାଳ !—

ଫୁଲ୍—ସେ'ଠା ଜଙ୍ଗଲରେ ନା ? ହଁ, ମଣିଷ ଗୋଳମାଳ କଥା କହୁଛୁତ, ମାନୁଛି—ସେ'ଠା ଘରେତ ବେଶୀ—

ଆଗନ୍ତୁକ—( ଗୋଟାଏ ଗୁରୁତ ପାହାଚ ଖାଇଲେ କି ଆଜି ! )

ଫୁଲ୍—ତୁଠା ଡରୁଚୁ କିରେ ?—ବେଶ୍, ମୋ' ପାଖକୁ ଲାଗିଆ'ନା—( ପ୍ରାୟ ଲାଗିଗଲା )

ଆଗନ୍ତୁକ—ସୁନ୍ଦର ! ସୁନ୍ଦର ! ମୁଁ ଯଦି ସେହି 'ମଣିଷ' ହୁଏଁ—( ତେଉଁ ଅତଙ୍କରେ ଯେତେବେଳେ ଦୂରକୁ ଘୁଞ୍ଚିଗଲେ )

ଫୁଲ୍—ଊଁ ହୁଁ—

ଆଗନ୍ତୁକ—କାହିଁକି ?—କାହିଁକି ନ ହୋଇ ପାରେ, ସୁନ୍ଦର ?— କଣ ଦେଖି ମୋ'ର—

ଫୁଲ୍—ଆରେ, ତୁଠା ଯେ ରାଜାର ନୌକର !—

ଆଗନ୍ତୁକ—'ରାଜାର ନୌକର' ବୋଲି କଣି ଏତେ ବିଶ୍ୱାସ ମୋତେ, ସୁନ୍ଦର ?

ଫୁଲ୍—କରିବି ନାହିଁ ?—ରାଜା ତୋତେ ବିଶ୍ୱାସ କରୁଛି—ତମର ଉପରେ ଏ'ତେ ବିଶ୍ୱାସ ଭର, ରାଜ୍ୟଟା ତା'ର ବିଲକୁଲ୍ ଛାଡ଼ି ଦେଇଛି—ଆଉ ମୁଁ—

ଆଗନ୍ତୁକ—ମୋର ଭୁଲ, ସୁନ୍ଦର—( ଅବନତ ହେବାକୁ ଯାଉଥିଲେ ପରା )

ଫୁଲ୍—ଅରେ ! 'ରାଜା' ନାମ ଶୁଣି ନ ଥିଲେ—ମୁଁ ଭୁଲରେ ବି ଦ୍ୱାରଟା ଆଗେଖୋଲି ଥା'ନ୍ତି ନା ?—

ଆଗନ୍ତୁକ—ତୁମେ. ଦେଖୁଛି, ରାଜାଙ୍କୁ ଭାରି ଭଲ ପାଅଛ—

ଫୁଲ୍—'ରାଜା'ଙ୍କୁ କିଏ ଭଲ ନ ପାଏ ରେ ?—

ଆଗନ୍ତୁକ—ଦୋଷ ମୋର କ୍ଷମା କର, ସୁନ୍ଦର । ( ସତେ ସତେ ଏଥର ଅବନତ ହୋଇ ପଡ଼ିଲେ )

ଫୁଲ୍—( ହସି ଉଠିଲା ) ଆରେ କି ଦୋଷ ରେ ?

ଆଗନ୍ତୁକ—( ଭାରି ଅପ୍ରସ୍ତୁତ ବୋଧକରି, ତୋଳ ଚାପି ) —ଟିକିଏ ପାଣି କି—?

ଫୁଲ୍—ଭଲ ଟରପାଣି ଅଛି !—ଆମ ବଉଳ ଗାଈ କ୍ଷୀର ବି ଅଛି !—ଭିତରକୁ ଆସ୍ ନା ?—

ଆଗନ୍ତୁକ—( କଣ ଯେ ଭାବୁଥିଲେ କିଣ୍ଟଳ ହୋଇ )

ଫୁଲ୍—ଆଲୁଅକୁ ଡରୁଚୁ କିରେ ?—କିଛି ଭାବନା କରନା—କିଛି ଭୟ କରନା—ମୁଁ ହାତ ଧରି, ଆସ୍ତେ ଆସ୍ତେ ନେଇଯିବି ଯେ—( ହାତଟା ଧରି ପକାଇଲା )

ଆଗନ୍ତୁକ—( କି ଗୋଟାଏ ବିଦ୍ୟୁତ୍ ଭମ୍ପନରେ ଥରିବାକୁ ଲାଗିଲେ )

ଫୁଲ୍—( ହସି କରି ) ଛି—(କେଉଁ ଅପାଙ୍ଗେ ଗୁହିଁ, ଶତ-ଗାଣ୍ଡୀବର ଏକାସଙ୍ଗେ ହାଣି ବାଣବିଦ୍ଧ-ଶିକାରଭଳି ଯୋଗାଡ଼ି ନେଇ ଯାଇଥିଲା କି ଆଜି !)

[ ଏହି ସମୟରେ ଜଣେ ଯୁବକ—'ଧନୁଆ' —ଧାଇଁ ଆସୁ ଆସୁ, ଏହି ଦୃଶ୍ୟ ଦେଖି ପକାଇ ଥକ୍କା ମାରି ଠିଆ ହୋଇ ଗଲା ]

ଧନୁଆ—ସେହି ବାଟୋଇଟା ନା କଣ ?—ଫୁଲ୍ ଯେ ତା'ହାତ ମୁଠାଇଛି—ହସି ହସି, କଥା କହୁଛି—

[ ସେହି ସମୟରେ ଦ୍ୱାରଟା ଖୋଲି, ସେମାନେ ପଶିଲା ବେଳକୁ ଦୀପର ଆଲୁଅଟା ଆସି ଧନୁଆ ଉପରେ ପଡ଼ିବାରୁ ଦେଖାଗଲା—ରକ୍ତରେ ଯେମିତିକା ସେ ଗାଧୋଇଛି—ସେହି ସଦ୍ୟ ରକ୍ତର ଉତ୍ତେଜନାରେ ଉତ୍କ୍ଷିପ୍ତ ହୋଇ,

ଅସୁର ରକ୍ତ ଲାଳସାରେ ଯେମନ୍ତ ଦ୍ୱାର ଆଡ଼େ ଧାଇଁଗଲା—କିନ୍ତୁ ଦ୍ୱାରଟା ତତ୍‌କ୍ଷଣାତ୍ ଧଡ଼୍‌କିନା ବନ୍ଦ ହୋଇ ଯିବାରୁ ତା ଏକିନା ମୁଣ୍ଡପିଟି ହୋଇ ରହିଗଲା ]

ଧନୁଆ—ଓଃ—ବାଘଟାକୁ ନ ମାରି, ବାଘର ଶିକାରଟାକୁ ଖଣ୍ଡ ଖଣ୍ଡ କରି କାଟି,—ସେହି ବାଘର ଲାଳ-ଦର୍-ଦର୍ ମୁହଁକୁ—ଖଣ୍ଡ ଖଣ୍ଡ କରି, ଫୋପାଡ଼ ଦେବା ଉଚିତ ଥିଲା ମୋର !

[ ପୁଣି ଦ୍ୱାରପାଖକୁ ତଡ଼ିହୋଇ ଯାଇ, ଦ୍ୱାରଟା ଭାଙ୍ଗିବାକୁ ଖୁବ୍ ଜୋରରେ 'ମୁଠା' ଉଠାଇଲା ବେଳକୁ ଶୁଣିଲା ]

( ନେପଥ୍ୟ ଫୁଲ )—ତୁ ଜାଦକ୍ ହୋଇ ବସ୍‌ନା, ସେହି ଖଟିଆ ଉପରେ—

ଧନୁଆ—( ଏତିକି ଶୁଣିବା ମାତ୍ରେ, କେମିତିକା ସେହିଭଳି ନିସ୍ତବ୍ଧ ହୋଇ ରହିଗଲା ପରି )

( ନେପଥ୍ୟ ଫୁଲ )—ହଁ, ଏତେବେଳକୁ ଯାଇ ହେଲା ସିନା—( କି ଖିଆଲରେ, ସେହି ଜାଣେ—ମାତ୍ର ମନ ଫୁଲିଣିଆ ଆନନ୍ଦରେ ଯେମନ୍ତ ଗାଇବାକୁ ଶୁଣା ଯାଉଥାଏ ଏହିଭଳି )

ଗୀତ

"ଏତେ ବେଳକୁ ହେ ମୁଗ୍ଧ ଦାଗିଲ କି ଆଜ
ପଥବଣା ହୋଇଲ କି ବ୍ରଜ ଯୁବରାଜ !
*　　*　　*　　*
ତୁମ୍ଭ ଆସିବା ସମୟ　　ଜାଣି ହୋଇ ତୋଷମୟ
ଜଗି ବସିଥିଲି କୁଞ୍ଜେ, ସାଜ ଫୁଲସାଜ !"

[ ସେହି ଗୀତ ସଙ୍ଗେ ସଙ୍ଗେ, ଧନୁଆର 'ମୁଠା' ଶିଥିଳ ହୋଇଗଲା—ସେ ବସି ପଡ଼ିଲା—କିନ୍ତୁ ଗୀତର ଶେଷପଦଟାରେ ଉତ୍ତେଜିତ ହୋଇ ଉଠେଠିଆ ହେଲା ]

ଧନୁଆ—ନା, ନା,—ଏ' ମୋ'ର ଫୁଲର କଣ୍ଠ—ଫୁଲର ଗୀତ—ଫୁଲଟିପରି ସୁନ୍ଦର—ଫୁଲଟିପରି ମଧୁର୍—ମୋ'ର ମନ ମୋତେ ବାଯୁଚି—

( ନେପଥ୍ୟ ଫୁଲ )—ମାଣ୍ଡିଟା ମୁଣ୍ଡିଲେ—

ଧନୁଆ—ତେବେ—ତେବେ—( ଅଧୀର ହୋଇ ଉଠି ଦ୍ୱାରେ ଧକ୍କା ଦେବାର ଉପକ୍ରମ କରିବା—ସାଙ୍ଗେ ସାଙ୍ଗେ ନିରସ୍ତ ହୋଇ ) ନା, ନା, ଫୁଲ ଠିକ୍ କାମ କରୁଚି—ଛି, ଛି ମୋର ଏତେବେଳେ, ଏମିତିକା ଭାବେ ଦେଖା ଦେବାଟା ଠିକ୍ କି ?—( କିଛି ଦୂର ଚାଲିଗଲା ମଧ୍ୟ )

(ନେପଥ୍ୟ ଫୁଲ)—( ହସି ଉଠିଲା କିର୍ କିର୍ ହୋଇ)

ଧନୁଆ—ଅସହ୍ୟ ! ଅସହ୍ୟ—( ବୋଲି, କି ଗୋଟାଏ ଢଂଗରେ ଯେହୋ ହିଂସ୍ର-ପଶୁ ଭଳି ଧାଇଁ ଆସିଲା—କିନ୍ତୁ ପର ମୁହୂର୍ତ୍ତରେ ହସି ଉଠିଲା—) ହାଃ—ହାଃ—ମୁଁ ବି ହସିବି—ଫୁଲର କୁଣିଆର ପ୍ରାଣ ବଞ୍ଚାଇ ପାରିଚି ବୋଲି ! —ବାଘଟାକୁ ଏକଦମ୍ ବିଲ ମଝିକୁ ଟାଣି ଆଣି, ବାଡ଼ିତଳେ ଶୁଆଇ ଦେଇଚି—ଠିକ୍ ଫୁଲର ଗଳି ଅଳିଆ ବାଟରେ—ଯେମିତିକା କି ସେ ଗୁହିଁଦେଲା ମାତ୍ରେ ଛାନିଆ ହୋଇଯିବ—ହାଃ—ହାଃ—କାଲି ବନତଳେ ଦେଖାହେଲେ ଯାଇ, କଥାବାର୍ତ୍ତା ସିନା !—କାହିଁକି ମ ?—ସର୍ଦ୍ଦାର ଘରେ ଅଛି ଯେ ଏତେଭିତର—ଏହି ମୁଁ କାଉ କା' ନ କରୁଣୁ ଆସି ହାଜର ହେଉ ନାହିଁକି ?—ଅଚ୍ଛା, ଝିମନ୍‌ଟାକୁତ ଦେଖୁ ନାହିଁ !—ସେ ଯେ ଏତେବେଳେ ଏମିତିକା ଗରହୁସିଆର ହୋଇ ଶୋଇଥିବ, ମନେ ହେଉନାହିଁ—ତେବେ ସର୍ଦ୍ଦାର କଣ ଏତେ ବେକୁବ୍—ଝିମନଟାକୁ ବି ସାଙ୍ଗରେ ବାନ୍ଧିଲା—ଭୁଆସୁଣୀ ଝିଅଟାକୁ ଏକା—ନା, ଥରେ ବୁଝି ଯିବାକି—ଲୋକଟା କିଏ—କି ମତଲବ୍‌ରେ—ଅବିଶ୍ୱାସ—ଫୁଲକୁ ମୋର— ! ହାଃ-ହାଃ—

[ ଗୋଟାଏ ଫୁତ୍‌କାରରେ ଯେମନ୍ତ ସନ୍ଦେହ ବାଷ୍ପଟାକୁ ଉଡ଼ାଇ ଦେଇ ଧନୁଆ ପ୍ରାଣପଣେ, ନସଠଁ ପଳାଇ ଯାଉଥିଲା—ଝିମନ୍ ପଛପଟୁ ଧାଇଁ ଆସି ଅଟକାଇଲା ]

ଝିମନ୍—କିଏ ? ଧନୁଆ ନା ?

ଧନୁଆ— ଝିମନ୍ !—ତୁ କୁଆଡ଼େ ଯାଇଥିଲୁ କି ?

ହିମନ୍—( ବାହାର ଝାଳ ମାରୁ ମାରୁ) ଭାରି ମଣିଷଟାଏ ଯା' ହେଉ !

ଧନୁଆ—କାହିଁକି ?—କଣ—କଣ ହୋଇଚିରେ ?

ହିମନ୍—ବୁଢ଼ାଟାକୁ ଖୋଜେଇ ଖୋଜେଇ, ଖୋଜି ତା'ର ଯୋଉଠିରି କରେଇ ସାରି, କହୁଚି କିନା—

ଧନୁଆ—କାହିଁକି ରେ ?—ତୁ ତ ଜାଣୁ, ମୁଁ ବା'ବନ ହେଲି ଗାଁରେ ନାହିଁ—ଆଜି ଆସିବି ବୋଲି ତ—

ହିମନ୍—କିଛି ଠିକ୍ ନ ଥିଲା ଯେ—କିନ୍ତୁ ଠିକ୍ ତ ?—ଆମର ଫୁଲ ଠାକୁରାଣୀଙ୍କ ଠିକ୍ 'ମାଳିକା' ଜଣା. ବାବୁ—ମଲି ଆଜି ଘଟିରୁଟରେ ନାହିଁ, ଏ' ବାସନାଟା ଠିକଣାଠି ଠିକ୍ ଉଡ଼ିଯିବଣି !

ଧନୁଆ—ସତେ ସତେ ?—ଫୁଲ ଠାକୁରାଣୀ ପଠାଇ-ଥିଲେ ମୋତେ ଖୋଜିବା ପାଇଁ ?—ଫୁଲ—ଫୁଲମୋର—

ହିମନ୍—ହଁ, ହଁ, ରେ—ଏତେବେଳକେ ଗୀରଫ୍ କରି ଧରି ଆଣିବା ପାଇଁ !

ଧନୁଆ—ଏତେ ରାତିରେ !—କାହିଁକି ? କାହିଁକି ?

ହିମନ୍—ତୁମେଇ ବା ଏତେ ରାତିରେ ଏଠି କାହିଁକି ?—ସେ 'ପଟଳ'—'ଚଢ଼ା ଉତ୍ତର'—ତୁମ୍ଭଦୁହିଁଙ୍କ ଜଣା, ବାବୁ—

ଧନୁଆ—ମୋ' ମନେ ମନେ, ତୁ ବି ଶିକାରକୁ ଯାଉଚୁ ବୋଲି—ଛାଡ଼—ଅଚ୍ଛା, ହିମନ୍ ତୋର କେମିତିକା ଅକ୍କଲରେ, ବୁଢ଼ାଟି ହେଲାଣି, ଏକା କେମିତିକା ଛାଡ଼ିଦେଇ-ଏତେ ରାତି ବିକାଳରେ—ନାହିଁ ନାହିଁ, ଯାଦ—( ସେହି ଘରଆଡେ କାନ ଡେରିଲା )

ହିମନ୍—ସେ ଭୟ କରନା—ସେ ଭୟ କରନା—ଏ' ତୋର ବୁଢ଼ାଟା ସିନା ପଦାକୁ ଯାଇଥିଲାରେ, ଘର ଭିତରେ ଯେ ସେହି ଷଣ୍ଢ ହିମନ୍‌ଟା ରହିଚି—ଦଣ୍ଡା ଧରି ଦିନରାତି ପହରା ଦେଉଚି !—ହାଃ—ହାଃ—ଆରେ ଧନୁଆ ତୁ କଣ ଦୋସର ଗାଁକୁ ଯାଇ, ଦୋସରି ପାଲଟି ଯାଇଚୁ କିରେ ?

ଧନୁଆ—ଓ—ତୁ କମାବତ ଖାଇବା ପାଇଁ ଡାକି ଯାଇଥିଲୁ, ନା ?—ଅଜଡ଼ା'କୁ ନମ୍ଭା କରୁଚୁ କିରେ ?—ଲୋକଟି କିଏ କି ? ( କାନଡେରି ) କାହିଁ, ଆଉତ କିଛି ସୋର ଶବ୍ଦନାହିଁ—

ହିମନ୍—'ଲୋକ' ?—'ନମ୍ଭା' ?—

ଧନୁଆ—ଏଁ !—ତୁ ଶିକାରୁ ଛୁଡ଼ି ପଡ଼ିଲୁ ଯେ !

ହିମନ—ସର୍ଦ୍ଦାରର ଘରେ 'ଲୋକ' !—'ନମ୍ଭା' ! ପୁଣି ସେ ନାହାନ୍ତି—ତୁ ବାପୁ ହୋଇଗଲୁଣି କିରେ ?—ବାଘ ଘରେ ମିର୍ଗ ନାଟ !—ନିଜ କଥା କଣ ପାଶୋରି ପକାଇଲୁଣି ଏତେ ଚଞ୍ଚଳ ?—ତୁ 'ଧନୁଆ' ନୋହୁଁ କିରେ ?—ଏଁ ଏଁ ଏଁ—ଏମିତିକା ଥରୁଚୁ ଯେ !—

ଧନୁଆ—( କାହାର ଗୋଟାଏ ଅପ୍ରାକୃତିକ ସ୍ପନ୍ଦନରେ କମ୍ପୁଥିଲା—ହଠାତ୍ କାଠର ଦୃଢ଼ ହୋଇ ) କିଛି ନାହିଁ, ଭାଇ—

( କହିଦେଇ, ବାହାରି ଯାଉଥିଲା )

[ ଠିକ୍ ସେତିକି ବେଳେ ଦ୍ୱାର ଖୋଲିଗଲା—ଆଲୁଅରେ ଦେଖାଗଲା—ଫୁଲ ଆଉ ସେହି ଆଗନ୍ତୁକ—ହସି ହସି କେତେ କଣ କଥାବାର୍ତ୍ତା ହେଉଚନ୍ତି—ହିମନ୍ ଗୋଟାଏ ଅସ୍ପଷ୍ଟ ଚିତ୍କାର କରି ଧାଇଁ ଯିବାକୁ ଆଗଭର ହେଲା—କିନ୍ତୁ ଧନୁଆ ଟାଣିନେଲା—ଗୋଟାଏ ଅନ୍ଧାରିଆ ସ୍ଥାନରେ ଦୁହେଁ ଠିଆ ହେଲେ ]

ଆଗନ୍ତୁକ—(ସେହି ସୌନ୍ଦର୍ଯ୍ୟ-ମୋହ-ନିଶାଟା ମାତାଲ କରି ଦେଇଥିଲା ପରି—ପଡ଼ିଯାଉଥାନ୍ତା ଟଳି ଟଳି, ଫୁଲ ଅଟକାଇ ନ ଥିଲେ )

ଫୁଲ—ହାଁ, ହାଁ—ବାଟକୁ ଅନାଇ ଚାଲ—ବାଟକୁ—( ହାତଟା ଧରି ପକାଇ ତଳକୁ ଓହ୍ଲାଇ ଦେଲା ) ସଖାଳିଟା ହୋଇଥିଲେ ଭଲ ହୋଇ-ଥାନ୍ତା—କଣ ହେବ—ତୁ ତ ଆଲୁଅଜଳକା—( ମୃଦୁସ୍ୱରରେ ଆପଣା ମନେ ) ହିମନ୍‌ଟା ବି ଏତେ-ବେଳ ଯାଏ—ଗଲା ଯେ ଗଲା—ଯେଉଁଠି ଲୁଚିଲା—ସେଇଠି ପରି ମଲା—

ଆଗନ୍ତୁକ—( କେଉଁ ମଧୁ-ଚୁମ୍ବନ ଲାଳସାରେ ଉନ୍ମତ୍ତ ଓଠଟି ସେହି ମଧୁଭରା ଗଣ୍ଡ ପାଖକୁ ଉଡ଼ି ଉଡ଼ି ଯାଉଥିଲା, ସୁଯୋଗ ପାଇ ପରି )

ଫୁଲ୍—( ହଠାତ୍ ମୁହଁ ଦେଇ, ଗଣ୍ଡଟାକୁ ଅଳ୍ପ ଫୁଲାଇ, ବଢ଼ାଇ ଦେଇ ଦେଇ )—କଣ ?—କଣ ?—

ଆଗନ୍ତୁକ—( 'ସ୍ୱେଦ'ରେ ଭିଜି, ଥରି ଥରି କହିଲେ ପରି, କାନେ କାନେ )—ହଁ ଦେଖ—ଏହି ମୁଦିଟା ଦେଇ ଯାଉଛି—( ମୁଦିଟା କାଢ଼ି ତତ୍‌କ୍ଷଣାତ୍ ହାତରେ ଧଇଲେ )—ଏହାକୁ ସିଂହଦ୍ୱାରରେ ଦେଖାଇଲେ, ରାଜାଙ୍କ ସଙ୍ଗେ ଯେ କୌଣସି ବେଳେ ଅନାୟାସେ ଦେଖା ହୋଇପାରିବ—ହଁ, କୌଣସି ବିଶ୍ୱାସୀ ଲୋକ ହାତରେ ପଠାଇଲେ ମଧ୍ୟ, ରାଜା ନିଜେ ଆସି—( ଆତ୍ମ ସମ୍ବରଣ କରିନେଲେ ପରି )

ଫୁଲ୍—କହିଲୁ କହିଲୁ ଏବେ, ରାଜା ମୋର କେତେ ଭଲ—

ଆଗନ୍ତୁକ—( କେଉଁ ଗଭୀର ଉଚ୍ଛ୍ୱାସରେ କହି ପକାଇଲେ ପରି ) ସୁନ୍ଦରୀ !—ସୁନ୍ଦରୀ !—( ପୁଣି ଆତ୍ମ ସଂଯମ କରିନେଲେ ) ହଁ, ମୁଁ ଆସୁଛି—ଦେଖ, ସେହି ବାଘଟା କିଏ ମାରିଛି, ରାଜାକୁ ଖବର ଦେବାକୁ ଯେମିତକା—

ଫୁଲ୍—ତୁ କିଛି ଚିନ୍ତା କର ନା'ରେ—ରାଜାର କାମ ମୁଁ ଅଦୌ ପାଶୋରିବି ନାହିଁରେ—

ଆଗନ୍ତୁକ—ଆସୁଛି ତେବେ, ସୁନ୍ଦରୀ—( କି ମୁଗ୍ଧ ଦୃଷ୍ଟିରେ ଯେ ତଥାପି ମୁହଁ ଠିଆ ଠିଆ ହେଉଥାନ୍ତି )

ଫୁଲ୍—( ପାଖକୁ ଦୌଡ଼ିଯାଇ ) ବାଃ, ବେଶ୍ ଲୋକତ—ତୁ'ଟା ଯା ମୋତେ ମନେ ରଖିବୁ ନା—'ତୁଳସୀ ଦୁଇ ପତରୁ ବାସିଲାଣି'—

ଆଗନ୍ତୁକ—କାହିଁକି ? କାହିଁକି ?—ଏପରି କାହିଁକି କହିଲ, ସୁନ୍ଦରୀ ?

ଫୁଲ୍—'ମୁଦି' ପରି ତୋର—

ଆଗନ୍ତୁକ—ଦୋଷ ହୋଇଛି—କ୍ଷମା କର, ସୁନ୍ଦରୀ—

ଫୁଲ୍—ଅଃ—ଖାଲି 'ଦୋଷ'—'ଦୋଷ'—ଆରେ କାମଟା କରିବ, କଥା ମାଗିବ—ଦୋଷ ହେବାକୁ ଯିବ କିଆଁ ?

ଆଗନ୍ତୁକ—( ମୁଦିଟା ଦେବାକୁ ଗଲେ ) ଦେଖ, ଖୁବ୍ ହୁସିଆରରେ—

ଫୁଲ୍—ମୋ' କାମରୁ କଣ ଭୁଲି ପାରୁ ନାହଁରେ—ତୋ ଭଳି କେତେଗଣ୍ଡା ଚେଙ୍ଗ୍ରାକୁ, ଫୁଲ୍ ଏ ହାଟରେ କିଣି ସେ ହାଟରେ ବିକି ଦେଇ ପାରେ, ଜାଣୁ ?—ହାଃ—ହାଃ—( ହସି ହସି ଆଙ୍ଗୁଠି ବଢ଼ାଇ ଦେଲା )

ଆଗନ୍ତୁକ—ଏଁ—( ବୋଲି, ପଛଘୁଞ୍ଚା ଦେବେ କଣ, ଅଧିକ କେଉଁ ଆକର୍ଷଣରେ ଭଡ଼ହୋଇ ଥରି ଥରି ପିନ୍ଧାଇବାକୁ ଲାଗିଲେ )

ଝିମନ୍—ଧ—ନୁ—( ବୋଲି, ପାଟିକରି ଉଠୁଥିଲା )

ଧନୁଆ—( ପାଟିଟା ଚିପି ଧଇଲା )

ଫୁଲ୍—ସକାଳ ହୋଇ ଆସିବାରୁ ଜାଲ୍ ଜାଲ୍ ଦେଖୁଚୁ କିରେ ?

ଝିମନ୍—ଛାଡ଼ିଦେ—ଛାଡ଼ିଦେ—

ଧନୁଆ—ଭାରିଟା ପରି—କଥା ଶୁଣ—

ଆଗନ୍ତୁକ—( ଅସ୍ପଷ୍ଟ ହେବାରେ, କନ୍, କନ୍ ହୋଇ ସେହିଆଡେ ଯେ ମୁହଁ ନ ଥିଲା, ତା' ନୁହେଁ )

ଫୁଲ୍—( କେଉଁ ପୁଲକ ଦୃଷ୍ଟିରେ କେଉଁ 'ଫୁଲ୍‌ଶେଯ'। ସ୍ୱପ୍ନ ଯେମନ୍ତ ଦେଖୁ ଦେଖୁ ଅନମନ ହୋଇଥିଲା—ମୁଦିଟା ପିନ୍ଧି ସାରିବାର ଅନେକ ପରେ ଯାଇ କହି ଉଠିଲା—) ଯା, ଯା—ଜଲଦି ଯା—ସକାଳ ହୋଇ ଆସୁଛି—କିଛି ଡର ନାହିଁରେ ?—କେଉଁଠୁ କେମିତି ଗୋଟାଏ କେନ୍ଦୁଆ ଆସି ଯଇଥିବ ନା—ହାତରେ ତ ତୋର ବର୍ଚ୍ଛାଟାଏ ବହିଚ—ଡର କଣ—ଯା ଯା, ଗଲୁ ଗଲୁ, ସକାଳ ହୋଇ ଆସିଲାଣି—ତୋତେ ପେଣ୍—

ଧନୁଆ—ଓଃ—( ଟିକିଏ ଶିଥିଳ-ମୁଷ୍ଟି ହୋଇଗଲା)

ଅଗନ୍ତୁକ—( ସେହି ସଖାଳ କଥାରେ, ଧନ ଦୃପହରର ଆଲୁଅ ଦେଖି ଯେମନ୍ତ ମୁହଁ ଘୋଡ଼ାଇ ଗ୍ରେରପର ପଳାଇଲା )

ଝିମନ୍—( ଖସିଯାଇ ) ଧର—ଧର—

ଧନୁଆ – ନା—ନା—( ପୁଣି ଝିମନ୍‌କୁ ଧରିଲା )

ଫୁଲ୍—( ତେତେବେଳକୁ, ପୁଣି ସେହି ସ୍ୱପ୍ନ-ମୋହରେ ସ୍ୱାଭୋର ହୋଇ, କେଉଁ ସ୍ୱପ୍ନ-କୁମାରୀ ଭଳି, ସ୍ୱପ୍ନ-ପୁରୀରେ ମିଳାଇ ଯାଇଥାଏ ସିନା—ଅବଶ୍ୟ କବାଟଟାକୁ ବନ୍ଦକରି ଦେଇଥାଏ, କେଉଁ ଉତ୍ତର ହାଓ୍ୱା ପଶିବା ଡରରେ ନା କଣ ? )

ଝିମନ୍—ଏ କି କାଣ୍ଡ, ଭାଇ—ତୁ ବା ସହିଲୁ କେମିତି ?

ଧନୁଆ—ହାଃ—ହାଃ—ଅରେ ଓଲ୍—ଫୁଲ୍ ସିନା ମୋ'ର—ଧନୁଆ ଯେ ଫୁଲର ହେବ, ତା'ର କି ମାନେ ଅଛି ?—( ଏତିକ କହିଦେବା ପରେ ପରେ, ଆଉ ରହି ନ ପାରି ଅନ୍ଧାର ଦେଇ ଏକାବେଳକେ ଭାଗେ )

ଝିମନ୍—ଓଁହୁଁ—ଭାଇ—ଭାଇ—

ଫୁଲ୍—( ଦ୍ୱାର ଫିଟାଇ ଧାଇଁ ଆସିଲା କଡ଼ସଗରେ ) 'ଧନୁଆ' ! କାହିଁ ? କାହିଁ ?—କିଏ ?—ଝିମନ୍ ?

[ ତେତେବେଳକୁ ବେଶ୍ ଫର୍ଚ୍ଚା ହୋଇଯାଇ ଥାଏ ]

ଝିମନ୍—( କେଉଁ ଅବେଗରେ ଛୁଟିଆସି ) ଭାକ୍ ଭାକ୍, ବହିନ୍—କଣ କଲୁ ତୁ ?—ସେ ଯେ ଆପେ ଆପେ ଆସିଥିଲା—ମୋତେ ଡାକିବାକୁ ହାକିବାକୁ ସୁଦ୍ଧା ହୋଇ ନାହିଁ—

ଫୁଲ୍—କାହିଁ ତେବେ ? କୁଆଡ଼େ ଗଲା ବାହାରି—?

ଝିମନ୍—ଆଲୋ ତାହାଣି ବାହାର କରିଦେଇ କହୁଚୁ, କୁଆଡ଼େ ଗଲା ବାହାରି—?

ଫୁଲ୍—କେତେବେଳେ ମ ?

ଝିମନ୍—ବେଳ ଭାଳ କି ଆଉ ତୋତେ ମାଲୁମ ଥିଲା କେ ?—

ଫୁଲ୍—କଣ ତୁ ବକୁଚ, ଝିମନ୍—ମୁଁ 'ବାହାର କରି ଦେଇଚି' ?

ଝିମନ୍—ତା' ହୋଇଥିଲେ ତ ଭଲ ହୋଇଥାନ୍ତା—

ଫୁଲ୍—ତୋତେ ମତୁଲ କଣଟା ଝାଁକଚି କିରେ—?

ଝିମନ୍—ଯୌବନ କଣଟା ତୋତେ ଝାଁକଚି କି ନା, କହିଲୁ ?—

ଫୁଲ୍—ମୁହଁ ସମାଳି କଥା କହ—

ଝିମନ୍—ତା' କହିବୁ ନାହିଁ କଣ—କିନ୍ତୁ, ବହିନ୍ ! ସାମ୍‌ନାରେ ଦେଖି ନ ଥିଲେ ଯଉଁ କଥା ଥିଲା—ଛି, ଛି—ତୋ'ର ଧନୁଆ ପୁଣି ଯା' କହିଗଲା ଭୁନ ଭୁନ କରି କାନେ କାନେ ମୋର—!

ଫୁଲ୍—( ମୃଦୁ ମୃଦୁ ହସି ) କଣ—କଣ କହି-ଗଲାଟି ?—

ଝିମନ୍—ହସୁଚୁ ତୁ ଆହୁରି !—ସର୍ଦ୍ଦାର ଶୁଣିଲେ, —କାଉ ଭାଇମାନେ ଜାଣିଲେ,—କି କାଣ୍ଡଟାଏ—

ଫୁଲ୍—ଆରେ, ମୁଁ ଜାଣେ ନା ଆଗେ—ଶୁଣେ ନା ଆଗେ—

ଝିମନ୍—ଛି, ଛି, ଦେଡ଼େ ବେହିଆ ତୁ ପାଲଟି, ଗଲୁଣି, ବହିନ୍—ଗୋଟାଏ ରାତିକ ଭିତରେ—ଏହି ମୁଁ ଗୋଡ଼ କାଢ଼ୁଣୁ ନ କାଢ଼ୁଣୁ !—ଭଲିଲ୍, କହିଲୁ, ତୋର କଉଁ କଥାଟା କେତେବେଳେ ନ କରିଚି ଭଲା—ସର୍ଦ୍ଦାର ଧନୁଆକୁ ହୁର ହୁର, ମାର ମାର କଲେ ବି, ତୋ'ର ପାଇଁ ଧନୁଆକୁ ଭାଇଠୁଁ, ବେଶୀ କରି ନାହିଁକି ?—ଆହୁରି କହିଲୁ କହିଲୁ—ତା'ପରି କିଏ ଜଣେ, ଏ ଗାଁରେ ଅଛି—ଏହି ସାତଖଣ୍ଡ ଗାଁରେ—ସାରା ପାଇକ କୁଳରେ ?—

ଫୁଲ୍—( ହସି, ହସି ) ହୋଃ, ହୋଃ—ସେଇଥି ପାଇଁ ପରା ପାଇକ କୁଳରେ ତା'କୁ ଥଳ ମିଳୁ ନାହିଁ, —ନାରେ ?—

ଝିମନ୍—କିନ୍ତୁ, ତୁ ଯେ, ରାତସି—ଥଳ ଦେବା ବାହାନାରେ, ଗ୍ରେର ବାଟରେ ନେଇ ମାଡ଼-ଦେଲୁ ଏକାବେଳକେ !

ଫୁଲ—( ଈଷତ୍ ଭ୍ରୂକୁଞ୍ଚନ କରି ) ସେ'ଟା ମୋ'
ଦୋଷ—ନା ?—ମଝାଳ. ବାଲି ଯେ କ
ଚହ୍ଲିବ—ଗୋଡ଼ ଠିକ୍ ନ ପଡ଼େଇବ—ମୁଁ କଣ
କରିବି, କହିଲଟରେ ?

ହିମନ୍—ଅଛା, ବଗା, ସେ ତୋର ହାତ ଧରି—
ଚୋଟେଇ ଗୁହିଁ—କାଠ ଅକାଠ ଭୁଲି, ଗୁଲି
ନ ଥିଲ କି ?—ତୁହିତ ଆଜ କାଟି ଦେଲୁ—
ପେଲି ଦେଲୁ—ଡାକୁ, ହାକୁ, ଆଖିରେ ଜିଅଁ
ଖୁଣ୍ଟା ଚେଞ୍ଜି ।—କାହିଁକି, ସଫା କହିଦେଲେତ
ହୋଇଥାନ୍ତା—ତୁ ସରମରେ ନ କହି ପାରୁ ନ
ଥିଲେ ତ, ମୋ'ର ଦ୍ୱାରା ଖବର ପଠାଇ ଦେଇ
ପାରୁ ଥାନ୍ତୁ—"ତୋର ମୋର ଏଣିକି ଆଉ
ବନୁ ନାହିଁ—ଆମର ଯେତକି ହେଲ
ସେତକି—"—ଏମିତକା ଛଳ କରି, ମୋତେ
ଡାକିବାକୁ ପଠାଇ ଦେଇ, ଭିତରେ, ଭିତରେ
ଏ'କି କାଣ୍ଡଟାଏ—।—କିଏ ?—କିଏ ସେ
ବଦ୍‌ମାସ୍ ।—କହିଲୁ, କହିଲୁ ଥରେ ମୁଁ ଯାଇ
ତା'କୁ ଟୋଟା ସୁଦ୍ଧା ଭଣ୍ଡା ଗୁେଞ୍ଚାଇ—

ଫୁଲ—( ହସି ହସି ) ଆରେ ଅରେ, ସେହି କଥା
ଧନୁଆ କହୁଥିଲ କରେ ?—ହୋଃ—ହୋଃ—

ହିମନ୍—ପୁଣି, ହସ ।—ଅଲୋ, ଜିଲଠା ।—ସେ
କହିବ କଣ ?—ସାରା ଦୁନିଆ ଯେ କହୁଚି ।
—ତୋର ମନକୁ ତୁ ଥରେ ପଚୁରିନି—?

ଫୁଲ—( ଚେହ୍ଲାଇ ଚେଚେହ୍ଲାଇ ) ତେବେ କି ହିମନ୍
ଏ କଥା ବିଶ୍ୱାସ କରିବ ନା— ?—

ହିମନ୍—କରିବ ନାହିଁ ?—ଆଖିରେ ଦେଖି ସୁଦ୍ଧା ?
—ଯା'ବା ନ କରନ୍ତି—ଧନୁଆ ଏ ଗାଁରେ
ନାହିଁ, ଜାଣୁଚୁ, ଶୁଣୁଚୁ—ତେବେକି ଏତେ
ଜଗର କାହିଁକି ?—"ଯା, ଯା"—ହେଲ,
ସ୍ୱତ ଅଧଟାରେ ଡକାଇବାର କି ଜରୁର ଥିଲ
ଫଲ—ମଶିପଶିଆ ବାଘଟା ମାରୁଚ, ଏ' କଥା
ଫେଣି—।

ଫୁଲ—ଭଲକଥା, ହିମନ୍—କହି ମାରୁଲୁ, କିଏ
ସେହି ବାଘଟାକୁ ମାରିଚି—ଖୁବ୍ ବକ୍‌ସିସ୍
ମିଳିବ—ରାଜାଙ୍କ ପାଖରୁ—'ରାଜାର' ସେହି
ଲୋକଟି କହୁ ଯାଇଚି ରେ—

ହିମନ୍—'ରାଜାର ଲୋକ' ।—

ଫୁଲ—(ସାଗ୍ରହେ) ଏହି ଦେଖ୍‌ନା—( ମୁଦିଟା
ଦେଖାଇଲା )

ହିମନ୍—ନା, ନା—ମୋତେ ଦେଖାନା—ମୁଁ ଦେଖି
ପାରିବି ନାହିଁ—ଦେଖି ମୁଁ, ବରଦାସ୍ତ କରି
ପାରିବି ନାହିଁ ।

( ଛଟିପିଟି ହୋଇ ପଳାଇଗଲା )

ଫୁଲ—ହିମନ୍—ହିମନ୍—( ହସି ହସି ଡାକୁ ଡାକୁ
ଖଣ୍ଡେ ବାଟ ଗୋଡ଼ାଇ ଗଲା )

[ ସର୍ଦ୍ଦାର ବିପରୀତ ଦିଗରୁ ଅସ୍ତବ୍ୟସ୍ତ
ହୋଇ ପ୍ରବେଶ କଲେ ]

ସର୍ଦ୍ଦାର—କାହିଁ, କାହିଁ, ହିମନ୍ ?—ଫୁଲି—ଫୁଲି—
ଡାକ୍, ଡାକ୍—ଆଜି ଯେ ତୋ'ର
ବାହାଘର—।

ଫୁଲ—( ବିସ୍ମୟରେ ଅବାକ୍ ହୋଇ ଗୁହିଁ, ସଙ୍ଗେ
ସଙ୍ଗେ ଲଜ୍ଜାରେ ମୁଖ ଅବନତ କଲା )

ସର୍ଦ୍ଦାର—ଆରେ ସରମ କଣରେ ?—ଖୁବ୍ ଭଲ
ବର ।—ଭାରି ଷଣ୍ଢ, ଭେଣ୍ଡା—ଲଢାଇ କରି
ଆଉ ଲଢାଇରେ, ଗଜପତିଙ୍କଠଉଁ 'ମଙ୍ଗରାଜ'
ଉପାଧି ପାଇଚି ।—ଦୁଇବାଟି 'ହେଉା' ବି
ପାଇଚି ।

ଫୁଲ—( ପଳାଇ ଯାଉଥିଲା )

ସର୍ଦ୍ଦାର—ନା, ନା, ଶୁଣ ଶୁଣ—ଏଣିକି ତୁ ବଡ଼
ହେଲୁ—ସେସବୁ ପିଲ ଢଙ୍ଗ ଛାଡ଼ ଦେ—
ଧନୁଆଟାର କଣ ଅଛି ଭଲ ?—ନା ଅଛି ଥଳ ?
—ନା ଅଛି କୁଳ ?—କହିଲୁ, ମା—ଭୁଲି
କୁକୁରଟାଏ, ତୋ ବାପ ସାମନାରେ ଠିଆ
ହେବାକୁ ଲାଏକ୍ ଆରେ ନା ?—ଯେଉଁ ବାପ
କି ଟୋ'ର ଗଜପତିଙ୍କ 'ଅଙ୍ଗଲଗି' ହେଉଚି ।

ଫୁଲ—ବାପା ! ବାପା ! ତୁ ଯା' ପାଇଁ ଡରୁଚୁ, ତା'
ଯଦି, ତା'ର ହୋଇଯାଏ—

ସର୍ଦ୍ଦାର—ଅଲୋ ମା, ତୁ କ'ଣ ବାଘୁଣୀ ହେଲୁ ? —ଏ' କେବେ ହେଲାଣି,—ନଈ କେବେ ଉଠାଣି ବହୁଲାଣି—?

ଫୁଲ—କାହୁଁ, ଉଜାଣିର ବହେ—।

[ ଝିମନ୍ ଅନନ୍ଦରେ ଉନ୍ମତ୍ତ ହୋଇ ପ୍ରବେଶ କଲା ]

ଝିମନ୍—ସର୍ଦ୍ଦାର—ସର୍ଦ୍ଦାର— ଶିକାରକୁ ଯାଇ, ଭଲ୍ବର ଶିକାରଟାଏ କରି ଅଣିବୁରେ—ଆଉ ଡେରି କରନା—ଡେରି କରନା—ତୁ କାହାରି କଥା ଶୁଣ୍ ନା—

[ ଦୂରେ ମାଦଳ ଧ୍ୱନି ଶୁଣା ଗଲା ]

ଝିମନ୍—ମୁଁ ଲଛମନ୍‌ଠୁଁ ଯାହୁଁ ଶୁଣିଛି—ଆଜି କି ଥୟ ହୋଇ ରହୁଚ—ଘର ଘର—ଜଣ ଜଣ କରି ପଚ୍ଚି—ନିମନ୍ତ୍ରା କରି ଦେଇ ଆସିଛି—

ଫୁଲ—( ଲେଢେବେଳକୁ ଘର ଭିତରକୁ ପଶି ଗଲାଣି —କି ଯେ ଭାବ ସଂଗୋପନ କରୁ କରୁ, ତା' ସେହି ଜାଣେ )

ସର୍ଦ୍ଦାର—ତୋ' ମନକୁ ମାନୁଚ, ଝିମନ୍—

ଝିମନ୍—ମୁହିଁତ ମନା କରୁଥିଲି ରେ ।—ମୁହିଁ ଏବେ ବାଲପଚି, କହୁଚ ପରା,—ଭଲ କାମ କରିବୁ— ଦାହାକରେ ଗୋଟାଏ କାମ—

ସର୍ଦ୍ଦାର—ଅରେ, ଟୋକାଟାକୁ ଦେଖିଛ, ଲୋଭେଇ ଗଲା—କେମିତ ହାତ ପକେଇବ ବୋଲିତ ଉର ସହୁଲା ନାହିଁ,—ଗୁମୁଙ୍କ ଭିଡ଼ରେ ପଡ଼ି ଛାଡ଼ିଦେଇ ଅନାହୁଥା ପର—କାଲି ରାତ ଅଧଠୁ ଗୁମୁଙ୍କ ସଙ୍ଗେ ମୋ'ର ଭେଟ ଅଛି ନା?—ଝିମନ୍, ଜଲଦି ସବୁ ଠିକ୍ ଠାକ୍ କର—ନାହିଁ, ନାହିଁ, ଭଲବ୍ ପଡ଼େ ଯଦି ମୁସ୍କିଲ—

ଝିମନ୍—ହଃ, ଭସିଗଲା—ଆମରି ଫୁଲ୍ ଅଗେ ନା— ଗୁମୁ—

ସର୍ଦ୍ଦାର—ହିଁ, ଦେଖୁ, ତୋ'ର ଫୁଲ୍‌କୁ ଅରେ—

ଝିମନ୍—ସେ ଅଲବତ୍ ସମ୍‌ଝିବ—ଅଲବତ୍ ମଙ୍ଗିବ —ତୁ କଛି ଦକା କର୍‌ନା—ଂ ଛି ଭାବ୍‌ନା କର୍‌ନା—ମୁଁ ଏ'ଠା କାମ, ସବୁ ତୁଲେଇ ନେଉଚି—ତୁ ଗଲୁ, ଗୁଚଣ୍ଡ ବରକୁ ଦେଖି ଅଇଲୁ—ହାତରୁ ଖସି ଗଲେ ଫେଣ୍ ମୁସ୍କିଲ୍—

ସର୍ଦ୍ଦାର—ଠିକ୍ କହୁଚୁ—ଠିକ୍ କହୁଚୁ, ଝିମନ୍—

( ବେଗେ ପ୍ରସ୍ଥାନ କଲା )

ଝିମନ୍—( ଅତି ଅନନ୍ଦରେ କି କଣ, କପରି ବାଉଲା ହୋଇ ଏ'ଠା ସେ'ଠା କରୁ କରୁ, ଦ ଶିଅଲରେ 'ଡା—ଡା—ଡାରେ—' ଗାଉ ଗାଉ ଗୋଟାଏ ଅଡ଼େ ଚାଲିଗଲା )

[ କାତ ଭାଇମାନେ ଆସି ପହଞ୍ଚି ଗଲେ--- ବେଶ୍ ସଜବାଜ ହୋଇ—ମାଦଳ ଓ ଅନ୍ୟାନ୍ୟ ବାଦ୍ୟମାନ ଘେନି ]

—ଗୀତ—

ପାଇକାଣୀ—ଏ' ନୁହେଁ ଖେଳଘର—'ବାହାଘର'

ପାଇକ—( ହସି ହସି ) ଲେଟଦେ କି ଲେଜା କାଣ୍ଡରେ ?

ପାଇକାଣୀ—କେତେ ତୁ କରୁ ଟାହୁଲ—
ଦ'ଟା ମୁଣ୍ଡ କାଟୁ ବୋଲ୍—

ପାଇକ—( ହାଃ-ହାଃ-ହାଃ— )
କହୁତୁ ମୁଣ୍ଡ ସମାଳି—
ନୁହେଁ କି ମୁହିଁ ବୀର !

ପାଇକାଣୀ—କାହୁଁ, ଯେବେ ଦେବି ହାଂଣି—
ନୟନେ ନୟନେ ଟାଣି—

ପାଇକ— କାବୁ କରି ନେବୁ, ଜାନ—
ପାଇଁ ଲାଗି ମୁହିଁ ତୋ'ର !

ପାଇକ ଓ ପାଇକାଣୀଗଣ—
ବେଶ୍ ହେଲା—ବେଶ୍ ହେଲା—
ମିଶି ଗଲା—ଦୁଇ ଭେଳା !

[ ଝିମନ୍ ଉରବର ହୋଇ ପ୍ରବେଶ କଲା— କାମଭିତରେ କରିଚି କଣନା— ଅଣ୍ଟୁଏ କାଦୁଅରେ ପଶି, ନାଡ଼, କାଢ଼ି କରି ଗୋଟାଏ ପଦ୍ମଫୁଲ ଦେଇ ଆସିଛି ]

ଝିମନ୍—ଏତେ ଡେରି ।—ବେଶ୍ ବେଶ୍, ତୁମେମାନେ ଆଜ ଖାଲି ଖାଲି ବସି ରହ ନାହିଁ—ଖୁବ୍ ବଜାଅ,

ଗାଅ, ନାଚ, ଫୁର୍ତ୍ତିକର—ଏଇ ଯେ ପୋକା,—ପୋକା ତୁମମାନଙ୍କୁ ଅଉ ପାଇଲ ନାହିଁ—ନେଲ ନେଲ, ହାର କରଦେଲ, ଠିକ୍ ଯେମିତିକା ଫୁଲ୍—ନା, ନା, ତୁମେ ଗଲ ଗଲ୍, ବେଗେ ଜନଅଙ୍କୁ ସଜ ବାଜ କର ଯେନ ଆସିଲ—( ବସି ପଡ଼ି, ନିଜେ ହାର ଗୁନ୍ଥୁ ଗୁନ୍ଥୁ—ସେମାନେ ଚାଲି ଯାଉଥିଲେ, ତାଙ୍କ ) ହଁ, ଫୁଲର କଣ୍ଡ କଥା ଶୁଣିବ ନାହିଁଟି—ତା'ର କୌଣସି ମନା ମାନିବ ନାହିଁଟି—( ସେହିପରି ଗୁନ୍ଥୁ ଗୁନ୍ଥୁ ) ଆରେ, ଅରେ—ମୁଁ କହୁଛ କଣ—ଯାଏଁ, ଯାଏଁ ମହୁଲମଦ ଯେନ ଅସେଁ—ବାହା, ସମ୍ବର ଦ'ଟା ଉଡ଼୍କା ମାରିଆଣେ—(ବାଦ୍ୟକାରଙ୍କ ଉପରେ ଦୃଷ୍ଟି ପଡ଼ିବାରୁ)—ମ, ତୁମେମାନେ ଠିଆହୋଇ ଜଥା ଶୁଣୁଚ ନା—ବଜାଅ—ବଜାଅ ନା—ଯେଉଁ କାମଟା ମୁଁ ନିଜେ ନ ଦେଖିଲି, ନ କଲି, ତା' ଅଉ ହବାର କୁ ନାହିଁ ପରା—( ଠିଆ ହୋଇ ଦେଖିବା ପାଇଁ, କାମ ଠିକ୍ ଠାକ୍ ହେଉଚ କ ନାହିଁ—ପସନ୍ଦ ହେଲ ନାହିଁ, ନିଜେ ମାଦଳ ବଜାଇଗଲ ଥୋଡ଼ାଏ )—ନିଅ, ନିଅ—ନେଲ, ମୋର ଢେର କାମ—

[ସମସ୍ତେ ଗୋଟାଏ ହଲ୍ଲା କର ଗୀତ ବାଦ୍ୟର ଉଦ୍‌ଯୋଗ କଲେ—ପୋକାଜୋକାଙ୍କୁ ଭିତରକୁ ଯିବାକୁ ହେଲନାହିଁ—ଫୁଲ୍ ଅପେ ଆପେ ଢଉଡ଼ି, ସାମୁକା, ଝୋଦ ଗହଣାରେ ବେଶ ହୋଇ ଅସି, ଦେଖିଲ; ସମସ୍ତେ ସବିସ୍ମୟେ ଗ୍ରହିଁଲେ ]

ଫୁଲ୍—କେମିତକା ସାଜଚରେ, ଝିମନ୍—ତୋ' ମନକୁ ଆଗେ ପେନୁଚକ ନାହିଁ, କହିଲୁ ?—

ଝିମନ୍—( କଣ୍ଡକାଳ ଗୋଟାଏ ଯୁଗପତ୍ ହର୍ଷ ବିଷାଦରେ କେମିତକା କଥା କହି ନ ପାର, ମଜନ ଭାବେ ପଲାଇ ବସିଲା ପରା, ଦକ୍‌ଡ଼ଦକ୍ ଜ୍ଞାନଶୂନ୍ୟ ହୋଇ— )

ଫୁଲ୍—ହାଃ-ହାଃ-ବଜା—ବଜା—ଗା'—ଗା'—

ସମସ୍ତେ—( ମାଦଳ ବଜାଇ ଗାଇବାକୁ ଓ ନାଚିବାକୁ ଲାଗିଲେ )

—ଗୀତ—

ପାଇକ ଓ ପାଇକାଣୀଗଣ :—

ଅସ ମିଳମିଶି କର ଘର ।
ଗୋଟେ ଜନଅଙ୍କୁ ଗୋଟେ ବର ॥

ପାଇକାଣୀ:—ଆମେ ଦେବା ହୁଳହୁଳି—
ପାଇକ:— ଆମେ ଫୁଟାଇବା ତୁଳି ।
ପାଇକାଣୀ:—ନାଚିବା ଯେ ଢଳ ଢଳ—
ପାଇକ:— ବଜାଇବା ଭଲ ଭଲ ।

ପାଇକ ଓ ପାଇକାଣୀଗଣ :—

ତାଦ୍ରମ୍—ତାଦ୍ରମ୍—ତାଥିୟା—ତାଥିୟା
ସି—ସି—ଲ୍ଲ—ଲ୍ଲ—ଆମେ ନାଚି ନର ॥

ଫୁଲ୍—ନାଃ, କଣ୍ଡ ହେଉ ନାହିଁ—ଆହୁର ଜୋରରେ ବଜା—ଆହୁର ଜୋରେ ଗା—ଆହୁର ଜୋରେ ନାଚ—ରହ, ରହ—ମୁଁ ବି ନାଚିବିରେ—ମୁଁ ବି ଗାଇବିରେ—

ସମସ୍ତେ—ଏଁ—ଏଁ—

ଫୁଲ୍—ବାଃ—ବାଃ ରେ—ମୋ' ବାହାରେ ମୁଁ ହସିବି ନାହିଁ—ମୁଁ ଗାଇବି ନାହିଁ—ମୁଁ ନାଚିବି ନାହିଁ—?
( ଗାଇଲ, ନାଚିଲ, ଅତି ହାଲ୍‌କା ଭାବରେ—କିନ୍ତୁ ଅନ୍ତରଟା ଭରଭର ହଉଥାଏ କେଉଁ ଲୋତକ ଭାରରେ । )

ଫୁଲ୍— —ଗୀତ—

ଫୁଲ ନାଚେ—ଫୁଲ୍ ଛନ୍ଦେ
ଅନାଏ କ ଭଲ୍ ମନ୍ଦେ ॥
ଫୁଲ୍, ଫୁଲ୍, ଉଠେ ମଧୁ
ଗୁଣୁଗୁଣେ ଭଁ'-ର ବନ୍ଧୁ !—
ଆମେ ପିଇ—ଆପେ ମଜେ—
ଥାଉ ନା ସେ ତା'ର ଛନ୍ଦେ ॥

ସମସ୍ତେ—( ତଟସ୍ଥ ହୋଇ ଗ୍ରହିଁଥିଲେ )

ଫୁଲ୍—( ଗାଉ ଗାଉ କ୍ରମେ କ୍ରମେ ବାକ୍‌ରୁଦ୍ଧ ହୋଇ ଆସୁଥିଲା ପରା )

[ ଏହି ସମୟରେ ଦୂରେ ବାଦ୍ୟ ଶବ୍ଦ ଶୁଣାଗଲା ]

ଫୁଲ୍—( ଭିତରର ଉଚ୍ଛ୍ୱସିତ କୋହଟାକୁ ସବଳେ ଚୁପିବା ପାଇଁ, ସଜୋରରେ ଚିତ୍କାର କରିବାକୁ ଲାଗିଲା କି ଆଉ ) ଅରେ ବଜାରେ—ବଜାରେ —ବର ବାଜା ଶୁଭିଲାଣି—କନ୍ୟା ବାଜା—କନ୍ୟା ବାଜା—( ନ ସମ୍ଭାଳି ପାରି, ଅପେ 'ଏକାକେହି' ହୋଇ ପରା, ବଜାଇ ନାଚିବାକୁ ଲାଗିଲା, ଗାଇ ଗାଇ ପୁଣି ସେହି ଗୀତର ପଦ୍‌ଟି ପଦଟି, ଆପଣାର ଏକାନ୍ତ ଅଜ୍ଞାତସାରେ )

[ ସମସ୍ତେ ବ୍ୟସ୍ତ ହୋଇ ଖୋଜା କରିବେ, ଖୋଜି ବାଟ ପାଉ ନ ଥିଲା ବେଳେ, ସର୍ଦ୍ଦାର ସବେଗେ ଧାଇଁ ଆସିଲେ—ସଙ୍ଗେ ସଙ୍ଗେ ହିମନ୍ ମଧ୍ୟ ]

ସର୍ଦ୍ଦାର—ବନ୍ଦକର—ବନ୍ଦକର—ଏ' ବର ବାଜା ନୁହେଁ—ଯୁଦ୍ଧର ବାଜା—ପଠାଣ ଦେଶ ଚଢ଼ାଉ କରିଛି !—ଏହିକ୍ଷଣି—ଏହି ମୁହୂର୍ତ୍ତେ—ଆମ୍ଭମାନଙ୍କୁ ଯୁଦ୍ଧଯାତ୍ରା କରିବାକୁ ହେବ—ଯାଅ—ଯାଅ—ଯେ ଯା'ର ହାତ ହତିଆର ନେଇ, ଶୀଘ୍ର ଆସି, ଦୁର୍ଗଠେଇଁ ରୁଣ୍ଡହୁଅ—

[ ଖୁବ୍ ଜୋରରେ ଏଥର ଯୁଦ୍ଧ ବାଜା ବାଜି ଉଠିଲା ଓ ପାଇକମାନେ ଛିନ୍‌ଛତର୍ ହୋଇ ପଳାଇ ଗଲେ ]

ଫୁଲ୍—ବାବା—ବାବା—(କୁଣ୍ଢାଇ ପକାଇ, କାନ୍ଦି ପକାଇଲା ପରା—ବାହା ବନ୍ଦ ହେବାରୁ ଅତି ଆନନ୍ଦରେ ନା କଣ ? )

ହିମନ୍—କଣ କହୁଛିବରେ, ସର୍ଦ୍ଦାର— ?

ସର୍ଦ୍ଦାର—ମୋ'ର ଫୁଲ୍‌ର ଇଚ୍ଛା ଯା'—ତୋ ବହିନ୍‌ର ଇଚ୍ଛା ଯା'—ତା'ହିଁ କରି ଯିବରେ—

ହିମନ୍—ସର୍ଦ୍ଦାର—ସର୍ଦ୍ଦାର—

ସର୍ଦ୍ଦାର—ତା ନ ହେଲେ ଯେ ଏ ଦୁଡ଼ୁ ଗୁଡ଼ୁ ମନ ନେଇ ମୁଁ ଯୁଦ୍ଧ କରି ପାରିବି ନାହିଁରେ—

ଫୁଲ୍—ବାବା ! ବାବା !—(ଅଧିକ ଜୋରରେ କୁଣ୍ଢାଇ, କାନ୍ଦି ଭସାଇ ଦେଲା ଏଥର )

ସର୍ଦ୍ଦାର—ଯା', ଯା', ହିମନ୍—ତୁ ଜଲ୍‌ଦି ଯା—

ହିମନ୍—କିନ୍ତୁ ସେ ରାଜି ହେଲେତ !—

ଫୁଲ୍—( ଚମକି ପଡ଼ି, କି ବ୍ୟାକୁଳ ଦୃଷ୍ଟିରେ ଯେ ଚାହିଁଲା ହିମନ୍ ଆଡ଼େ )

[ ଧନୁଆ ଯୋଦ୍ଧୃ ବେଶରେ ଆସି, ସେହିକ୍ଷଣି, ସେହିଠାରେ, ଉପସ୍ଥିତ ହେଲା—ସମସ୍ତେ ଯୁଗପତ୍ ଆନନ୍ଦ ଓ ବିସ୍ମୟରେ ନିର୍ବାକ ହୋଇ ଗଲେ ]

ଧନୁଆ—ଅବଶ୍ୟ ରାଜି ହେବ—ଏଭଳି ସୁଯୋଗ କି—କିନ୍ତୁ, କିନ୍ତୁ—(ଫୁଲ୍ଆଡ଼େ ଚାହିଁଲା କେଉଁ ବିକଳ ଦୃଷ୍ଟିରେ ନା କଣ ? )

ଫୁଲ୍—( ମୁହଁ ବୁଲାଇ ନେଇ, ଚାଲି ଯାଉଥିଲା ମାନଭରେ କି ଅଉ ? )

ସର୍ଦ୍ଦାର—ମା—ମା—( ଧରିଆଣି ଦୁହିଁଙ୍କର ହାତ ମିଳାଇ ଦେଲା )

ଧନୁଆ—( କେଉଁ ଦ୍ୱନ୍ଦରେ ଟିକିଏ ଇତସ୍ତତଃ ହୋଇ ଉଠିଲା )

[ ପୁଣି ଘନ ଘନ ସେହି ଯୁଦ୍ଧ-ବାଦ୍ୟ ବାଜି-ବାକୁ ଲାଗିଲା ]

ଧନୁଆ—( ସଦମ୍ଭେ ଏଥର ଠିଆହେଲା, ମୁଖରେ ପୁଲକ ଭାବ ମଧ୍ୟ ଜଗାଇବାକୁ ଚେଷ୍ଟାକରି )

ସର୍ଦ୍ଦାର—ଅଉ ଡେରି ନୁହେଁରେ—ଏତ 'ଘୁମୁ' ବାଜାର 'ତଲବ୍' ନୁହେଁ—ଏ' ଯେ ଅମର ରାଜ୍ୟର 'ତଲବ'—ଦିଅ ଦିଅ, ଜଲ୍‌ଦି ମୁଦିଟା ବଦଳାଇ କାମଟା ଶେଷ କରି ଦିଅ—ହେ' ମା—( ଫୁଲ୍‌ର ହାତ ଟେକି ଧରିଲା )

ଧନୁଆ—( ରାତିକାର ସେହି ମୁଦିଟା ଦେଖି, ଟୋଟାଏ ହିଂସାରେ ଓ ଘୃଣାରେ ପଚେଇ ଗଲା କି ଅଉ ? )

ଫୁଲ୍—( ସେହି ମୁଦିଆଡ଼େ ଓ ପିତାଙ୍କ ଆଡ଼େ ଚାହିଁ ଦେଇ, ଆପଣାର ସ୍ୱଭାବ ସୁଲଭ ଚପଳତାରେ ହସି ଉଠୁଥିଲା—କିନ୍ତୁ ସଙ୍ଗେ ସଙ୍ଗେ ହିମନର କଥାଟା ଭାବିନେଇ, ଓ ଧନୁଆର ଅଚରଣଟା ଲକ୍ଷ୍ୟ କରି, କେମିତିକା ଦମି ଗଲା—ଓଃ, ମୁଦି ସହିତ ଆଙ୍ଗୁଠିଟା ଛିଡ଼ି ପଡ଼ିଲା ନାହିଁ କାହିଁକି ?)

ସର୍ଦ୍ଦାର—ଫୁଲ୍—ଫୁଲ୍—ଏ ମୁଦି ତୁ—(ଫୁଲ୍‌ର ଭାବ ଗତିକ ଦେଖି କି ଟୋଟାଏ ସନ୍ଦେହରେ ଯେମନ୍ତ ଉଦ୍‌ବିଗ୍ନ ହୋଇ ଉଠିଲେ )

ଧନୁଆ—ହାଃ—ହାଃ—( ବୋଲି, ଗୋଟାଏ ପୈଶାଚିକ ଆନନ୍ଦରେ ଯେମନ୍ତ ଉନ୍ମତ୍ତ ହୋଇ ଉଠିଲା )

ଫୁଲି—( କଣବା କହୁଥାନ୍ତା, କିନ୍ତୁ ଧନୁଆ ଆଡ଼େ ଚାହିଁ ଦେଇତ ଚକ୍ଷୁଗନ୍ୟ ହୋଇଗଲା ଏକାବେଳକେ )

[ ପୁଣି ନେପଥ୍ୟେ ଯୁଦ୍ଧ ବାଦ୍ୟ ଶୁଣାଗଲା ଘନ ଘନ ]

ଧନୁଆ—ନା, ନା,—ଯୁଦ୍ଧ—ଯୁଦ୍ଧ—

( ନିଜେ ଛାଡ଼ିଆଣି ମୁଦ୍ରାଟା ଫୁଲିର ଅଙ୍ଗୁଠିରୁ, ସଦମ୍ଭେ ଫିଙ୍ଗି ପକାଇଲା ଓ ଫୁଲିକୁ ନିଜର ମୁଦ୍ରାଟା ପିନ୍ଧାଇ ଦେବାକୁ ଗଲା ସାଗ୍ରହେ—କିନ୍ତୁ, ହଠାତ୍ କେଉଁ ଧକ୍କାରେ ତା' ନ କରି ତା' ହାତରେ ଗୁଞ୍ଜି ଦେଲା )—ତୋ'ର ଯେମିତି ଜା ଇଚ୍ଛାରେ—( ହସି ହସି କହିଲା ସତ, ମାତ୍ର ଫୁଲିଆଡ଼େ ଆଦୌ ଚାହିଁ ପାରିଲା ନାହିଁ—ଅଗ୍ନିନିଶ୍ୱାସି ହୋଇ ପଳାଇ ଗଲା କି ଅଉ— )

ସର୍ଦ୍ଦାର—( ବିସ୍ମୟାବିଷ୍ଟ ହୋଇ ଯାଇଥାଏ )

ସୈମନ—ଧନୁ—ଧନୁ—( ଡାକୁ ଡାକୁ ଗୋଡ଼ାଇଗଲା )

ସର୍ଦ୍ଦାର—ମୋର ଧନୁ!—ମୋର ବର୍ଚ୍ଛା!—

( ଫୁଲିଆଡେ ଆଦୌ ଲକ୍ଷ୍ୟ ନ କରି, ସ୍ୱାର ଭାଙ୍ଗି ଯେମନ୍ତ ଘରଭିତରେ ପଶିଗଲେ )

[ ଯୁଦ୍ଧର ଗୋଟାଏ ଭୀଷଣ ହେଳ-ଗହଳ ସୂଚକ ବାଦ୍ୟ ବାଜି ଉଠିଲା ଏଥର ]

ଫୁଲି—ହାଃ—ହାଃ—( ଗୋଟାଏ ଅବଜ୍ଞାରେ ଯେପରି ବୃନ୍ତଚ୍ୟୁତ, ବିସର୍ଜିତ, ଝରା ଫୁଲଟି ପରି ଚକା ଭଉଁରି ଖେଳିବାକୁ ଲାଗିଲା—କିନ୍ତୁ ସଙ୍ଗେ ସଙ୍ଗେ ଅପଣାକୁ ଟେକି ରଖିବାକୁ ଲାଗିଲା କି ଅବା, ଗାଇ ସେହି ଗୀତର ପ୍ରଥମ ଚରଣଟି, ଆପଣାର ଛନ୍ଦରେ, ଧରି ସାଦରେ ସେହି ମୁଦିଟି ପାଖୁ ଚୁମ୍ବନ କରିବା ଭଙ୍ଗିରେ )

'ଫୁଟିଲି ନାଚେ—ଫୁଲ ଛନ୍ଦେ'

---

# ମଧ୍ୟାହ୍ନ

—ବାରବାଟୀ-କଟକ—

[ କଟକ ବାରବାଟୀ ସଭାଗୃହ ଆଜି ବିଶେଷ ଭାବେ ସୁସଜ୍ଜିତ, ବିଜୟୋତ୍ସବ ଉପଲକ୍ଷେ—ଯଥାବିଧି ଆୟୋଜନର ତ୍ରୁଟି ନାହିଁ—ଚାରିଆଡ଼େ ବିବିଧ ନହବତର ସୁମଧୁର ଧ୍ୱନି ଖେଳି ଆସି, ଦୀନ ହୀନ ପ୍ରଜାଠାରୁ ଆରମ୍ଭ କରି ରାଜା ପର୍ଯ୍ୟନ୍ତ, ପ୍ରତି ଉତ୍କଳବାସୀକୁ କେଉଁ ନବୋତ୍ସାହ ଓ ନବ ଜାଗରଣରେ ଉନ୍ମତ୍ତ କରି ଦେଇଛି ]

[ ସମୁଚ୍ଚ ମଣ୍ଡପ ଉପରେ ରାଜ-ସିଂହାସନ—ତା'କୁ ବେଷ୍ଟନ କରି ଖଣ୍ଡାଖଣ୍ଡି ମୂଲ୍ୟବାନ୍ ଆସନ ସ୍ଥାପିତ—ଅଦୂରେ, ନିମ୍ନସ୍ତରରେ,—ଦକ୍ଷିଣେ ପ୍ରଧାନ ମନ୍ତ୍ରୀ ଓ ସେନାପତି "ପଞ୍ଚଜ୍ୟୋତିଷ"—ବାମେ ପ୍ରଧାନ ଶିଳ୍ପୀ ଓ କବି 'ବାଜପେୟୀ' ଆସୀନ—ଅପରାପର ଆସନମାନ ଯଥା ପଦବୀ ଅନୁସାରେ ରାଜସ୍ୱ ସଚିବ ଓ ରାଜଗୁରୁ "ଦାମୋଦର ବଡ଼ପଣ୍ଡା" ଏବଂ କେତେକ ସାମନ୍ତ ରାଜା—ମାନଙ୍କ ଦ୍ୱାରା ଭୂଷିତ ]

[ ସାମାନ୍ୟ ପରେ, ରାଜାଗମନ ସୂଚକ ବାଦ୍ୟବାଜି ଉଠିଲା—ସଗୌରବେ ରାଜା ଅନଙ୍ଗ ଭୀମଦେବ, ବଙ୍ଗଳାର ରାଜା ଲକ୍ଷ୍ମଣ ସେନ୍ ଓ ତାଙ୍କର କୁମାରୀ କନ୍ୟା 'ନିର୍ମଳା' ପ୍ରବେଶ କରି ଆସନ ଗ୍ରହଣ କଲେ ]

[ ମାହାରୀଗଣ ନୃତ୍ୟସହ ଯଥାବିଧି ବନ୍ଦାପନା କରି ଚାଲିଗଲେ ]

— ଗୀତ—

ଆଜି, ହସୁଚି ଭୁବନ—ହସୁଚି ଗଗନ—
ହସୁଚି ଜଗତ ସାରା ।
ହୃଦେ, ହୃଦେ ଫୁଟି—ପଡ଼ୁଚି ଉଛୁଳି—
ବିଜୟ ସଙ୍ଗୀତ ଧାରା ॥

ଅରାତି-ବ୍ରାତ ପାହୁଚି ଭୀତ
ତବ କର-କରବାଳେ ଚାହିଁ
ଝଲକେ, ଝଲକେ, ଛୁରିତ ବଦନ
ବହଇ ପୁଲକ ଧାରା ॥
ହେ ଗଜପତି ! ଜଗତ ଖ୍ୟାତି—
ଜାତି, ନିଜାତି ଗାଉ ସେ ମାତି—
ସ୍ୱାଧୀନ ଉତ୍କଳ—ରହୁ ଗୋ ସ୍ୱାଧୀନ—
ସ୍ୱାଧୀନ ଚିନ୍ତାର ଧାରା ।

[ ରାଜଗୁରୁ ଉଠି ଠିଆହେଲେ ଓ ନମ୍ରୋକ୍ତି ଭାବେ କହିଲେ, ଅନ୍ୟାନ୍ୟ ସଭାସଦ ଓ ସାମନ୍ତ ନରପତିମାନେ ମଧ୍ୟ ଠିଆ ହେଲେ ]

ରାଜଗୁରୁ—ମହାରାଜ ! ଆଜି ସଭାର ନିର୍ଦ୍ଧାରଣ ମତେ, ଆପଣଙ୍କର ଅଶେଷ ଗୁଣମଣ୍ଡିତ ପ୍ରଜାମଣ୍ଡଳୀ, ଏହି ସାମାନ୍ୟ 'ପଦବୀ' ଭୂଷଣରେ, ଆପଣଙ୍କର ଗୁଣ କୀର୍ତ୍ତନ କରିବାକୁ ମନ ବଳାଇଛି—ଆପଣଙ୍କର ଆଦେଶ ହେଲେ—

ଅନଙ୍ଗଭୀମ—( ହସି ହସି ଶିର ସଞ୍ଚାଳନ କଲେ )

ରାଜଗୁରୁ—ପଦବୀଟି ଏହି—( ପାଠ କଲେ )
"ବୀର ଶ୍ରୀଗଜପତି ଗୌଡ଼େଶ୍ୱର—ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱରାଧିବୀର ଭୂତ ଭୈରବ ଦେବସାଧ—ଶାସନୋତ୍କୀର୍ଣ୍ଣ ରାଉତରାୟ ଅତୁଳ ବଳ ପରାକ୍ରମ ସଂଗ୍ରାମ ସହସ୍ରବାହୁ କ୍ଷତ୍ରିୟକୁଳ-ଧୂମକେତୁ"

ସମସ୍ତେ—( ସମସ୍ୱରେ ) ଜୟ ! "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର"ଙ୍କ ଜୟ !

[ ରାଜଗୁରୁ ସେହି ପଦବୀ ଲିଖିତ ତାଳପତ୍ରଟି ଗୋଟିଏ ସୁନ୍ଦର ଚାରୁକସୀ କାମ କରା ରୌପ୍ୟ ପାତ୍ରରେ ଥୋଇ, ଅର୍ପଣ କଲେ ଓ ଯଥାରୀତି-ବିଧିରେ ଚନ୍ଦନାଦି ଦ୍ୱାରା ଚର୍ଚ୍ଚିତ କରି, ଆପଣା ସ୍ଥାନକୁ ଫେରି ଆସି ଉପବେଶନ କଲେ ]

ଅନଙ୍ଗଭୀମ—ଆଜି ଆପଣମାନେ ରାଜଭକ୍ତି ପ୍ରଣୋଦିତ ହୋଇ, ଏହା ଉପହାର ଛଳରେ ହୃଦୟର ସ୍ନେହରତ୍ନ ପ୍ରଦେଶରୁ ଯେଉଁ ଅମୂଲ୍ୟ ରତ୍ନଟି ପ୍ରଦାନ କଲେ, ତାହା ସେହି ଉପହାର ଛଳରେହିଁ, ମୁଁ କାହିଁକି—ଯୁଗେ ଯୁଗେ ଏଣିକି ଉତ୍କଳରେ—ଏହି ସିଂହାସନ, ବଂଶ ପରମ୍ପରା ଶିରୋଭୂଷଣ ରୂପେ ଗ୍ରହଣ କରି, ତା'ର ବଳରେ ଆପଣାକୁ ଓ ଆପଣାର ଜାତିକୁ ଉତ୍ତରୋତ୍ତର ଉନ୍ନତିର ସୋପାନରେ ଅଧିରୋହଣ କରାଇ, ଅମର କରି ତୋଳିବ !—ଏତିକି କୃତଜ୍ଞତା ଜ୍ଞାପନ କରି, ଆପଣମାନଙ୍କର ଦାନ ସାନନ୍ଦେ ଗ୍ରହଣ କରି, ଆପଣାକୁ ଧନ୍ୟ ମଣୁଛି !

ସମସ୍ତେ—ଜୟ ! ବୀର ଶ୍ରୀ ଗଜପତି'ଙ୍କ ଜୟ !

ଲକ୍ଷ୍ମଣସେନ୍—ମୋ'ର ସୌଭାଗ୍ୟ ବୋଲିବାକୁ ହେବ ଯେ, ମୁଁ ଆଜି ଉତ୍କଳର ଅତିଥି—!

ଅନଙ୍ଗଭୀମ—ନା, ନା ଅତିଥି ବୋଲନ୍ତୁ—ଏ'ତ ଆମର ସୌଭାଗ୍ୟ ଯେ ଏପରି ମହାନ୍ ଅତିଥି ଆଜି ଉତ୍କଳର ଦୀନ କୁଟୀରେ !

ଲକ୍ଷ୍ମଣସେନ୍—'ଦୀନ କୁଟୀରେ', ଏ'କଥା ଅକ୍ଷରେ ଅକ୍ଷରେ ସତ୍ୟ, ମହାରାଜ—! ଏହି 'ଦୀନ'—'କୁଟୀର' ଯୋଗୁଁ ସମ୍ଭବ ସିନା ଆଜି,—ଉତ୍କଳର ରାଜଧାନୀ କଟକରେ,—ଏହି ନବନିର୍ମିତ ବିଶାଳ, ସୁଦୃଢ଼ ଦୁର୍ଗ—'ବାରବାଟୀ' !—ଅସୀମ ସିନ୍ଧୁ-ତଟେ ନୀଳାଚଳ ଶିଖରେ, ସମଗ୍ର ହିନ୍ଦୁ ଜାତିର,' 'ଅସୀମ'ର ସେହି ସର୍ବଶ୍ରେଷ୍ଠ ଉପାସନା ମନ୍ଦିର—'ବଡ଼ଦେଉଳ' !—କେତେକ ନୁହେଁ, ଏହି ଦୀନ ହୀନତା ଯୋଗୁଁ ସିନା ଆପଣଙ୍କର, ଦୀନହୀନ ପ୍ରଜାର ଘରେ ଘରେ ଆଜି ରୌପ୍ୟ ସୁବର୍ଣ୍ଣର 'ମାଡ଼', 'ମାଡ଼',—ଶସ୍ତ୍ର ଶିଳ୍ପ ବିଦ୍ୟାର ପାରିବାର—ଶୌର୍ଯ୍ୟ ବୀର୍ଯ୍ୟର ପରମ ସମ୍ଭାର !

ଅନଙ୍ଗଭୀମ—( ମୃଦୁ ମୃଦୁ ହସି ) ସବୁ ଏହି କବି 'ରାଜପେଯ୍ସୀ' ଆଉ ମନ୍ତ୍ରୀ 'ପଞ୍ଚଜ୍ୟୋତିଷ'ଙ୍କ ହେତୁରୁ ବନ୍ଧୋ !

ପଞ୍ଚଜ୍ୟୋତିଷ—ମାତ୍ର, ମହାରାଜ ଆପଣଙ୍କର ନିପୁଣ ହସ୍ତରେ ଆମ୍ଭେମାନେ ଯନ୍ତ୍ର 'କାଣ୍ଡାରୀ' ନୋହୁଁ କି ?—ଏହି ଯେ ସୁଦୃଢ଼ 'ବାରବାଟୀ-କଟକ' ସ୍ଥାପିତ ଆଜି, ଉତ୍କଳର ରାଜଧାନୀକଲ୍ପେ, ଠିକ୍ କେନ୍ଦ୍ରଟିପରି, ପରିଧିକାରି ବୃହଆଡ଼େ,—ଚୌଦୁଆର

ଉତ୍ତରେ—ପଶ୍ଚିମେ, ବଡ଼ାନାଶୀ— ଦକ୍ଷିଣେ ସାରଙ୍ଗଗଡ଼ — ବଙ୍ଗପୋସାଗର, ପୂର୍ବେ,— କା'ର ବୁଦ୍ଧିବଳରେ, ମହାରାଜ ।—ଏହି ଯେ ଦୁର୍ଦ୍ଧର୍ଷ ପଠାନ ବାହିନୀ ଆଜି ସମ୍ମୁଖଯୁଦ୍ଧରେ ଆପଣାକୁ ପରାସ୍ତ ମଣି, ଉତ୍କଳର ସୀମା ଛାଡ଼ି ପଳାଇଛି, କା'ର କୌଶଳ ପ୍ରଭାବରେ, ମହାରାଜ? —

ବାଜପେୟୀ—ତାହିଁ ସଙ୍ଗେ ସଙ୍ଗେ କୁହ, ମନ୍ତ୍ରି—ଆଜି ଯେ ମାନବର ପରମ ଶତ୍ରୁ, ଅଜ୍ଞାନ-ଅନ୍ଧକାର, କେଉଁ ସୁଦୂର ପର୍ଣ୍ଣ, ଗୁମ୍ଫା, କୁଟୀରରେ ମଧ୍ୟ ଆତ୍ମଗୋପନ କରିବାକୁ ଅକ୍ଷମ ହୋଇଛି, ଗ୍ରାମୁଙ୍କର ବିଦ୍ୟାନୁରାଗ ଓ ବିଚକ୍ଷଣତା ପ୍ରଭାବରେ ନୁହେଁ କି ?—ହେଉକି ନୁହେଁ, ଏହି ଯେ କେଉଁ ଯୁଗରୁ ପରିତ୍ୟକ୍ତ, ଧ୍ୱଂସ-ମାତ୍ର-ଅବଶିଷ୍ଟ, ଶ୍ରୀ ମନ୍ଦିରର ସଂସ୍କାର ଓ ପ୍ରତିଷ୍ଠା ସାଧନ—ସଙ୍ଗେ ସଙ୍ଗେ ସେବା ବିଧିର ଶୃଙ୍ଖଳା କଲେ, 'ଛତିଶା ନିଯୋଗ'ର ପରିକଳ୍ପନା ଓ ବ୍ୟବସ୍ଥା—ଗ୍ରାମୁଙ୍କର ଧର୍ମନିଷ୍ଠତା ଓ ସୁଦୂର ଦୃଷ୍ଟିର ପରିଚାୟକ ନୁହେଁ କି ?

ଲକ୍ଷ୍ମଣସେନ୍—ମୁଁ ମଧ୍ୟ ଏଠି ନ କହି ରହିପାରୁ ନାହିଁ, ସଭାସଦ୍ ଗଣ—ଆଜି ଯଦି କେହି ବିଦେଶୀ 'ମନୁଷ୍ୟତ୍ୱ'ର ପୂର୍ଣ୍ଣ-ବିକାଶ ଓ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ଉଦ୍ଦେଶ୍ୟରେ ବ୍ୟାକୁଳ ହୋଇ ଉଠେ, ତା'କୁ ଏହି ଉତ୍କଳକୁହିଁ ଆସିବା ଉଚିତ— ଉତ୍କଳର ଏହି ନରପତିଙ୍କ କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କରିବା ଆବଶ୍ୟକ—ଆଜି ମୁଁ, ମୋ'ର କଥାରୁ କହୁଛି, ମହୋଦୟଗଣ—ଆଶ୍ରିତ ନିମନ୍ତେ ଆଶ୍ରୟଦାତା ଯେ ଏତେଦୂର ସ୍ୱାର୍ଥବଳି ଦେଇ ପାରେ, ଏ'ପରି ଅକୁଣ୍ଠ ମନରେ—ଏ'ପରି ଆନନ୍ଦ ହୃଦୟରେ,—ତା'ର ପରିକଳ୍ପନା ସୁଦ୍ଧା ମୁଁ କରିବାକୁ ଅକ୍ଷମ ।—ମୋ'ର ଭ୍ରମ ହୁଏ, ଏହି ଅନଙ୍ଗଭୀମଦେବ ମାନବ, ନା ଦେବତା ।

ଅନଙ୍ଗଭୀମ—ଦେଖନ୍ତୁ, ମହାରାଜ ଏ'ଗୁଡ଼ାକ ଖାଲି ବୃଥା ପ୍ରଶଂସା— କାର୍ଯ୍ୟ, କାରଣ'ର ସମ୍ବନ୍ଧ ଭଳି, ଏହା ଯେ ନିତ୍ୟ ନୈମିତ୍ତିକ—ଅବଶ୍ୟମ୍ଭାବୀ । କୁହ, ବନ୍ଧୋ—ପରସ୍ପରର ବିନା ସହଯୋଗ ବା ସହାନୁଭୂତିରେ କେବେ କୌଣସି କାର୍ଯ୍ୟ ହେଇଛି, ନା ହେବାର ସମ୍ଭବ ?— ଆଜି ରାଜା ଲକ୍ଷ୍ମଣସେନ୍ ସିନା ତାଙ୍କର ମହତ୍ ପ୍ରାଣସ୍ପର୍ଶରେ ମହତ୍ ପ୍ରାଣର ଉଦ୍‌ବୋଧନ କରନ୍ତି, ଏହି କ୍ଷୁଦ୍ର ବକ୍ଷ ଦେଖନ୍ତେ ।— ବାଜପେୟୀଙ୍କ ଶିଳ୍ପଚାତୁରୀ ଓ କବିତ୍ୱ —ପଣ୍ଡିତଜ୍ୟୋତିଷଙ୍କ ସମରପଟୁତା ଓ ରାଜନୀତି-ପାରଦର୍ଶିତା, ସେହି ସେହି କ୍ଷେତ୍ରର ସ୍ଫୁରଣ ମାତ୍ର କରିଛି ସିନା, ଏହି ଦୁର୍ବଳ ଓ ଅନ୍ଧର ମାନସ ପଟରେ !'

ଲକ୍ଷ୍ମଣସେନ୍—ଏହି ତ ଉଦାରତା ।—'ଜୟ ଶ୍ରୀ'—

ସମସ୍ତେ—ଜୟ 'ଶ୍ରୀ ବୀର ଗଜପତି—'

[ ନିର୍ମଳା ଭାବ ଅଧୀରା ହୋଇ ଉଠିଥିଲେ— ଆଉ ରହି ପାରିଲେ ନାହିଁ ]

ନିର୍ମଳା—( ବାଧାଦେଇ ) କ୍ଷମା କରନ୍ତୁ, ଏଧ୍ୟକ୍ଷଗଣ —କ୍ଷମା କରନ୍ତୁ, ପିତା—ମାର୍ଜନା—ଏହି ଜୟ ଗାନରେ ମୁଁ ହିକିଏ ଅନ୍ତରାୟ ହେଲି ବୋଲି— ! —ମହାଶୟଗଣ । ଆଜି ଏ ଯେଉଁ ବିଜୟ ଗୌରବରେ ସ୍ଫୀତବକ୍ଷ ହୋଇ, ଆପଣମାନେ ପରସ୍ପର ମଧ୍ୟରେ ବାହାଦୁରିଟା ଭାଗ ବଣ୍ଟା ବଣ୍ଟି, କଡ଼ାକଡ଼ି ହେଉଚନ୍ତି—ପ୍ରକୃତରେ ପାଇବାକୁ କିଏ ହକ୍‌ଦାର, ଥରେ ଚିନ୍ତାକରି ଦେଖିଛନ୍ତି କି ?—ଆଜି ଏ' ଯେଉଁ ସୁରମ୍ୟ ଅଟ୍ଟାଳିକା ଆମ୍ଭମାନଙ୍କର ନୟନ ମନ ସାର୍ଥକ କରୁଛି— ଆମ୍ଭମାନଙ୍କ ପରବର୍ତ୍ତୀ ବଂଶକୁ ଗୌରବମୟ ଇତିହାସକୁ ଘେନି ଯାଉଛି,—ତାହା ବଳରେ— କେଉଁ ତ୍ୟାଗ ଭିତ୍ତି ଉପରେ ଆଜି ସଂଗଠିତ ହେବାରୁ,—ତାହା ଥରେ ଅନ୍ତର୍ଦୃଷ୍ଟି ଦେଇ ଚାହିଁ ଦେଖିଛନ୍ତି କି ?—ଆପଣମାନେ ହୁକୁମ ଦେଇଛନ୍ତି—ସେମାନେ 'ମଲ୍' 'ପଲ୍' ହୋଇ, ଆପଣଙ୍କ ଗୋଡ଼ ତଳକୁ ମାଡ଼ି ଆସି, ଠୁଳ ହୋଇଛନ୍ତି;—ଆପଣ ଇଙ୍ଗିତ କରିଛନ୍ତି, ସେମାନେ ବାଟଘାଟ ନ ମାନି, 'ରାଜା' 'ରାଜା' ବୋଲି ଆନନ୍ଦରେ ଡେଇଁ ପଡ଼ିଛନ୍ତି—ଆପଣ-ମାନେ ଆଜି ବିଜୟୋତ୍ସବରେ ବିଳାସୋନ୍ମତ୍ତ

ହୋଇ ଆନନ୍ଦୋତ୍ସବ କରୁଥିଲେ—ସେମାନେ,
କେହିବା ଶୁଶ୍ରୂଷା-ଗାରେ—କେହି ବା ଅଦ୍ୟାପି
ସେହି ଭୀଷଣ ଶ୍ମଶାନ କ୍ଷେତ୍ରେ—କେହିବା ଏହି
ମୁହୂର୍ତ୍ତେ ବୈରୀଙ୍କର ଘାତକର ଖଡ୍ଗ ତଳେ,
ଅସହ୍ୟ ଯନ୍ତ୍ରଣା—ନା, ନା—ହସି ହସି, ଅଜି
ସ୍ଥଳ୍‌ଚନ୍ଦ୍ର ଅକାତରେ, ମୁକ୍ତ ଯାତ୍ରୀଦଳ, ତୀର୍ଥେ
ତୀର୍ଥେ, ଧର୍ମସ୍ନାତ ବେଶ କରି, କେଉଁ ଚିନ୍ମୟ
ଧାମକୁ, କେଉଁ ଦୁର୍ଲ୍ଲଭ ଅମୃତ ପାନ କରୁଛନ୍ତି—
ନା, ନା, ଅକାତରେ ସେହି ଅମୃତର ନିର୍ଝର ଅଜି
ଖୋଲିଦେଇ, କ୍ଷୁଧାର୍ତ୍ତ, ତୃଷାର୍ତ୍ତ, ବିଶ୍ୱବାସୀଙ୍କୁ
ତା'ର ଅସ୍ୱାଦ ଦେଇ ଦେଇ, କେଉଁ ଅମୃତମୟ
ସଙ୍ଗୀତ ପ୍ରବାହରେ—

—ଗୀତ—

"ରଜା—ରଜା—ରଜା—"

[ ଗାଇବା ମାତ୍ରେ, ସେହି ଗାନର ପ୍ରତିଧ୍ୱନି ରୂପେ
ଯେମନ୍ତ ଶୁଣିବାକୁ ଲାଗିଲେ ସେହି ଗାନଟି ଅତି
ନିକଟେ ]

ଅନଙ୍ଗଭୀମ—(ଉତ୍‌କ୍ଷିପ୍ତ ହୋଇ) ବନ୍ଦ କଲ କାହିଁକି ?
ଗାଅ, ଗାଅ, ନିର୍ମଳା—

ନିର୍ମଳା—ନା ନା, ମହାରାଜ—ସେଉଁମାନଙ୍କର ଗାନ
—ସେହିମାନଙ୍କ ନିଜ ମୁହଁରୁ,—ନିଜ ପ୍ରାଣରୁ,
ଥରେ ଶୁଣନ୍ତୁ, ମହାରାଜ—
[ ନେପଥ୍ୟେ ଅନତି ଦୂରେ ସତେ ସତେ
ଶୁଣାଗଲା ଏଥର ]

—ଗୀତ—

"ରଜା—ରଜା—ରଜା—"

ନିର୍ମଳା—ଏହି ଶୁଣନ୍ତୁ, ଶୁଣନ୍ତୁ, ମହାରାଜ—
ଶୁଣୁଛି ସେମାନେ ଅଜି ନନ୍ଦନ କାନନକୁ ଚାଲି ଯାଉଛନ୍ତି
—ବୋହି ଯାଏ ଉହିଁ କାହା—ଶତ ଶତ
ମନ୍ଦାକିନୀ ମିଳନର ଧାରା—।
[ ସେହି ଧାରାରେ ମିଶି ଯିବାକୁ ଉଚ୍ଛଳ ହୋଇ
ଧାଇଁଗଲେ କି ଅଜି ? ]

ଅନଙ୍ଗଭୀମ—କାହିଁ, କାହିଁ, ସେହି 'ଧାରା' ?—
ବୋହିଯାଉ, ବୁହାଇଦିଅ ଗୋ ବିଶ୍ୱବ୍ୟାପୀ ଅଜି,
ଡାକ, ଡାକ ଭଉଣି—ଆହୁରି ପାଖକୁ ଡାକ—
ଏହି ଦରବାର ଭିତରକୁ ଡାକ—ନା ନା, ଏହି
ମଣ୍ଡପ ଉପରକୁ—ମୋର ଏହି ସିଂହାସନକୁ ।—
ମୋ' କାନେକାନେ—ମୋ ବକ୍ଷେବକ୍ଷେ—ମୋ'
ପ୍ରାଣେପ୍ରାଣେ, ଅଜି ମିଶିଯାଉ, ମିଳାଇ ଯାଉ,
ଗାଅନ୍ତୁ ସେମାନେ—ତାଳ ଦିଅନ୍ତୁ ଗୋ,
ଅବିରଳ—ସେହି ଚିର ସୁନ୍ଦର ଧାରା—। ( ଦ୍ୱାର
ନିକଟକୁ ଦୌଡ଼ିଗଲେ—ଅବେଗରେ ସମ୍ଭାଳି ନ
ପାରି ଯେମନ୍ତ ) ଏହି—ଏହି ଯେ— ।
( କି ଉଜ୍ଜ୍ୱଳ ଦୃଷ୍ଟିରେ ଯେ ଗୁହିଁ ରହିଥିଲେ )

[ ନେପଥ୍ୟର ସେହି ସଙ୍ଗୀତ କ୍ରମେ ନିକଟବର୍ତ୍ତୀ
ଓ ସୁସ୍ପଷ୍ଟ ହୋଇ ଆସୁଥିଲା—ପ୍ରବେଶ କଲେ
ପାଇକମାନେ—କା'ର ହାତ କଟି ଯାଇଛି—
କା'ର ଗୋଡ଼ କଟି ଯାଇଛି—କିଏ ବଧିର, କିଏ
ବା ମୂକ, ଏହିଭଳି—ନିର୍ମଳା ମଧ୍ୟ ସେମାନଙ୍କ
ସଙ୍ଗେ ମିଶି ଗାଉଥିଲେ; ତାଙ୍କ ସ୍କନ୍ଧେ ଭର
ଦେଇ ଖଞ୍ଜ ଓ ଅନ୍ଧ ଥନୁଆ ]

ଅନଙ୍ଗଭୀମ—( ହଠାତ୍ ସେହି ପାଇକମାନଙ୍କର
ଦର୍ଶନରେ, ସେହି 'ପାଇକପଲ୍ଲୀ' ମୃତ୍ୟୁର ଦଂଶନଟା
ଯେ ଥରେ ଅନୁଭବ କରି ଥରି ନ ଉଠିଲେ, ତା
ନୁହେଁ—କିନ୍ତୁ, ଅନ୍ୟଭାବେ ଅଧିକ ଅତ୍ମ-
ଜ୍ଞାନଶୂନ୍ୟ ହୋଇଥିବା ଯୋଗୁଁ, ବୁଝି ନ ପାରି
ନିଶ୍ଚଳ ନିସ୍ପନ୍ଦଭାବେ ସେମାନଙ୍କ ଗୀତ
ଶୁଣୁଥିଲେ )

—ଗୀତ—

'ରଜା—ରଜା—ରଜା—'
ବଜାରେ ପାଇକ ବାଜା—
ଝମ୍, ଝମ୍—ଝମାଝମ୍—
ବାଜୁରେ ମାଦଳ ଗମାଗମ୍ ।

ବାଜୁଛିଙ୍ଗା – ବାଜୁ କାହାଳୀ—
ପ୍ରାଣେ ପ୍ରାଣେ ଉଠୁ ଉଚ୍ଛୁଳି
'ରାଜା —ରାଜା—ରାଜା—'
କର୍ କର୍—କରୁ କର୍
କାଟ୍‌ରେ ଅରାତି ପଲ୍ଟନ୍
ନାହିଁ ଦୟା—ନାହିଁ ମାୟା—
ଦେଇଛୁ ସମର୍ପି କାୟା
'ରାଜା—ରାଜା—ରାଜା—'

[ ଗୀତାନ୍ତେ ପଠାଣ ସେନାପତି ସିରାଜ୍ ପ୍ରବେଶ କଲେ—ଯେତେହେଲେ ଯୁଦ୍ଧୋନ୍ମତ୍ତ ବୀର ଭଳି, ଶତ୍ରୁଙ୍କୁ 'ଚମକ୍' ଲଗାଇ ଦେଇ ]

ସିରାଜ୍—ଅସମ୍ଭବ—ଅସମ୍ଭବ, ମହାରାଜ—ଏ' ପ୍ରଲୋଭନ ସମ୍ମୁଖରେ ଆପଣାଙ୍କୁ ବାନ୍ଧି ରଖିବା ।—ଶତ୍ରୁର ଅସ୍ତ୍ରମୁଖ ସହ୍ୟ କରି ପାରିବି ନାହିଁ ବୋଲି, ପାର୍ଶ୍ୱ କାଟିରେ, ଦ୍ୱାର ରୁଦ୍ଧକରି ଆପଣାଙ୍କୁ ଅବରୁଦ୍ଧ କରି ରଖିଥିଲି, ଆପଣା ଇଚ୍ଛାରେ—କିନ୍ତୁ, ଆଉ ପାରିଲି ନାହିଁ—ଯେତେବେଳେ ଯାଏ ଆପଣମାନେ ଆପଣା ଆପଣାର ପ୍ରଶଂସାରେ ଅଧୀର ହୋଇ ଉଠୁଥିଲେ, ଗୋଟାଏ ଗର୍ବରେ, ଉଲ୍ଲାସରେ ମୁଁ ଅଧୀରହୋଇ ଉଠୁଥାଏ—ଗୋଟାଏ ମହାନନ୍ଦ, କୌତୂହଳରେ —କିନ୍ତୁ, ବର୍ତ୍ତମାନ ଏହି ଦେବୀଙ୍କ ହୃଦୟୋଦ୍‌ଘାଟନରେ—ସବୁଙ୍କ ସବୁଙ୍କ ଏହି ବୀର ଯୋଦ୍ଧା-ମାନଙ୍କର ପ୍ରାଣମୟ ସଙ୍ଗୀତ-ସୁଧା ପ୍ଳାବନରେ ଅସହ୍ୟ ହୋଇ ଧାଇଁ ଆସିଲି,—ଗୋଟାଏ 'ବୀର'ର ଅହଙ୍କାରରେ—'ବୀର'ର ସମ୍ମ-ଭମାନରେ ।—ଆଜି ଯାହା ସତ୍ୟକଥା କହିବାକୁ ହୁଏ, ମହାରାଜ—ବୀରତ୍ୱର ପ୍ରଶଂସା କରିବାକୁ ହୁଏ—ତେବେ ଶତ୍ରୁ ହୋଇ, ବିଦେଶୀ ହୋଇ, ଏତିକି ମୁକ୍ତ କଣ୍ଠେ ସ୍ୱୀକାର କରୁଛି ମହାରାଜ— ଆଜି ପଞ୍ଚଜ୍ୟୋତିଷଙ୍କ ସମସ୍ତ କୂଟକୌଶଳ —ବାଜପେୟିଙ୍କ ସମସ୍ତ କବି ପ୍ରତିଭା—ସୀମାନ୍ତ ରାଜାମାନଙ୍କ ବନ୍ଧୁତ୍ୱଦାନ୍ୟତା—ସର୍ବୋପରି ପ୍ରବଳ ପରାକ୍ରାନ୍ତ ଉତ୍କଳାଧୀଶ ଗଜପତି ଅନଙ୍ଗ ଭୀମଦେବଙ୍କ ପ୍ରତାପାଗ୍ନିଶିଖା—ସମସ୍ତ ତୁଚ୍ଛ କରିଛି କୋଥାରରେ, ଏହି ରାଜଭକ୍ତ, ଉଦାର, ତୀକ୍ଷ୍ଣବୁଦ୍ଧି, କୌଶଳି ଓଡ଼ ପାଇକ ଜାତି !—ମହାରାଜ !—ଆପଣ—ଆପଣ କାହିଁକି—ସମଗ୍ର ସଭାସଦ୍‌ଗଣ—ଏପରି କଣ ବିଦେଶୀୟ ମହାରାଜ ଲକ୍ଷ୍ମଣ ସେନ୍ ମଧ୍ୟ ମନେ କରିଥିବେ, ଏହି ବାରବାଟୀ ଦୁର୍ଗହିଁ, ଉତ୍କଳର ପ୍ରଧାନ ସ୍ତମ୍ଭ ସ୍ୱରୂପ—କିନ୍ତୁ ତାହା ଭ୍ରମ—ପ୍ରକୃତ ସ୍ତମ୍ଭ ଯଦି, ଉତ୍କଳର—ଉତ୍କଳର କାହିଁକି—ସମସ୍ତ ଉତ୍କଳ ଜାତିର କେହି ହୋଇଥାଏ,—ତେବେ ଏହି 'ଓଡ଼ ପାଇକ' ଜାତି !—ମହାରାଜ ! ସଭାସଦ୍-ବର୍ଗ ! ଆପଣମାନେ ନିଜକୁ ଉତ୍କଳୀୟ, ଆପଣାର ଦେଶକୁ ଉତ୍କଳ ବୋଲି ଗର୍ବ କରି ପାରନ୍ତି କିନ୍ତୁ ଆମ୍ଭେମାନେ ଗର୍ବ କରିବୁଁ—ପ୍ରଚାର କରି ବୁଲିବୁଁ—ବୀରଜାତି, ଏହି 'ଓଡ଼ିଆ' !—ସେମାନଙ୍କର ଦେଶର ନାମ—'ଓଡ଼ିଶା' !!

ଅନଙ୍ଗଭୀମ—'ଓଡ଼ିଶା' !—ସେହି ନାମରେହିଁ ଆଜିଠୁଁ ପରିଚିତ ହେବ ସମଗ୍ର ସାମ୍ରାଜ୍ୟ ମୋ'ର !—'ଓଡ଼ିଆ' !—ସେହି ନାମରେହିଁ ଆଜିଠୁଁ ଆପଣାଙ୍କୁ ଓ ଆପଣାର ଜାତିକୁ ପରିଚୟ ଦେଇ ଗର୍ବ କରିବି, ମୁଁ !—ଆସ, ଆସ ଭାଇମାନେ ମୋର—ଆଜି ତୁମ୍ଭମାନଙ୍କୁ ଜଣ ଜଣ କରି, ଆଲିଙ୍ଗନ କରି—ତୁମର ସ୍ପର୍ଶରେ—ତୁମରି ଭେଦରେ ମୁଁ ନବ ଜାଗରଣ ଲଭିବାରେ ।—ଭୁଲିଯାଅ ଦୂରେ 'ସ୍ପୃଶ୍ୟ-ଅସ୍ପୃଶ୍ୟ' ଭାବ—ଭୁଲିଯାଅ ଦୂରେ 'ଉଚ୍ଚ-ନୀଚ' ଭାବ—ଭୁଲିଯାଅ ଦୂରେ 'ରାଜା ପ୍ରଜା' ଭାବ—

( ଅନଙ୍ଗଭୀମଦେବ ପ୍ରତ୍ୟେକଙ୍କୁ ଆଲିଙ୍ଗନ କଲେ )

ସିରାଜ୍ – ତେବେ 'ଶତ୍ରୁ-ମିତ୍ର' ଭାବ ଆଉ ରହିବ କାହିଁକି, ମହାରାଜ ?

ଅନଙ୍ଗଭୀମ—କଦାପି ନୁହେଁ—ଉଚିତ ମଧ୍ୟ ନୁହେଁ —
( ସେନାପତିଙ୍କୁ ଦୃଢ଼ାଲିଙ୍ଗନ କଲେ )

ସିରାଜ୍—ଅସନ୍ତୁ, ମହାରାଜ —

ଲକ୍ଷ୍ମଣସେନ—(ସୋଲ୍ଲାସେ ଆଲିଙ୍ଗନ କରି)
ଏହି ତ 'ମାନବ ନୀତି' !—

ନିର୍ମଳା—ଜୀବର ଅପୂର୍ବ ଶକ୍ତି !—ଜାତିର ଶକ୍ତି !—ଦେଶର ଶକ୍ତି !—ଆଜି ଏକାଠାଇଁ—ଭାଇ, ଭାଇ !—'ଓଡ଼ିଆ-ବଙ୍ଗାଳି' !—'ହିନ୍ଦୁ-ମୁସଲମାନ' !

(ସଙ୍ଗେ ସଙ୍ଗେ ମହାନନ୍ଦ ହୋଇ କେଉଁ ଉଚ୍ଛ୍ୱାସରେ ସେ ଗାଇଲେ)

[ଅନଙ୍ଗଭୀମଦେବ, ଲକ୍ଷ୍ମଣସେନ୍ ମଧ୍ୟସ୍ଥଳେ ସିଂହାସନକୁ ସ୍ଥାପନ କରି, କେଉଁ ଦିବ୍ୟ ଦୃଷ୍ଟିରେ ସେ ଗୃହଁ ବହି, ଶୁଣୁଥିଲେ]

—ଗୀତ—

ନିର୍ମଳା— କେ ବୋଲେ ଆମେ, ଭାଇ—
'ଭାଇ, ଭାଇ' - ଠାଇଁ, ଠାଇଁ'—
ଲଗାଉଛୁ କଳିଦ୍ୱନ୍ଦ—ଏହି ଯେତେ ବୁଦ୍ଧି ମନ୍ଦ;—
ଆସିଛରେ ଦିନ—ହୋଇଚୁଁ ଏକମନ
'ବଙ୍ଗ-ଓଡ଼ିଶା—ହିନ୍ଦୁ-ମୁସଲମାନ୍' ॥

ସଙ୍ଗେ —ଜୟ 'ବଙ୍ଗ ଓଡ଼ିଶା' 'ହିନ୍ଦୁ ମୁସଲମାନ୍' ।
ଜୟ ପ୍ରବୁଦ୍ଧ ଭାରତ—ଶୁଦ୍ଧ ହିନ୍ଦୁସ୍ଥାନ ॥

ନିର୍ମଳା— ଯେତେ ଯା' ଭେଦ, ଭାଇ—
ଆମର ଭିଆଣ ସେହି—
ଆମର ବାହାର କଣ୍ଟା—ଆମରି ଭିତର ତଣ୍ଟା—
ଫିଙ୍ଗି ଦେବରେ ଝଣି—ଭଙ୍ଗି ଅଣ୍ଟାମାନ
'ବଙ୍ଗ-ଓଡ଼ିଶା'—'ହିନ୍ଦୁ-ମୁସଲମାନ' ॥

ପାଇକଗଣ—ଜୟ 'ବଙ୍ଗ-ଓଡ଼ିଶା' 'ହିନ୍ଦୁ-ମୁସଲମାନ' ।
ଜୟ ପ୍ରବୁଦ୍ଧ ଭାରତ—ଶୁଦ୍ଧ ହିନ୍ଦୁସ୍ଥାନ ॥

ସମସ୍ତେ—ଜୟ ବଙ୍ଗ-ଓଡ଼ିଶାର ଜୟ !—
ଜୟ ହିନ୍ଦୁ-ମୁସଲମାନର ଜୟ !—
ଜୟ ବିଶ୍ୱ-ମାନବଜାତିର ଜୟ ।

ଅନଙ୍ଗଭୀମ—ଏବେ, ଆସ ଭାଇମାନେ ! ଏହି ନବ ମିଳନରେ—ମିଳନୋତ୍ସବର ସାର୍ଥକତା କରିବା, ଆସ !—

[ସମସ୍ତେ ଅଭିବାଦନ କରି, ପ୍ରସ୍ଥାନ କଲେ—ନିର୍ମଳା ମଧ୍ୟ ପାଇକମାନଙ୍କୁ ଘେନି ଗମନୋଦ୍ୟତା ହେଉଥିଲେ]

ଅନଙ୍ଗଭୀମ—ନା ନା, ତୁମମାନଙ୍କୁ ଆଜି ଥରେ ଥରେ, ଆଲିଙ୍ଗନ ନକରି ମୁଁ ଛଡ଼ାଇ ଛାଡ଼ି ଦେବି ନାହିଁ— ତୁମେମାନେହିଁ ଯେ ମୋ'ର ପ୍ରକୃତ ବିଜୟସ୍ତମ୍ଭ !—ଆଉ, ସେହି ତୁମେମାନେହିଁ ମୋ'ର ଦ୍ୱାରି ମେଣ୍ଟକି ଅନାଦୃତ—ଅଚ୍ୟାଗୃହିତ ଥିଲ । (କଣ୍ଠ କଣ୍ଠ କରି ପୁଣି ଆଲିଙ୍ଗନ କଲେ)

ଧନୁଆ—ଭଉଣି ! ଏହି କି ଆମମାନଙ୍କର ରାଜା !—

ନିର୍ମଳା—ରାଜା ନୁହେଁରେ, ଭାଇ— ଦେବତା !

ଅନଙ୍ଗଭୀମ—ନା, ନା, ଭାଇ—ତୁମମାନଙ୍କ ସେବାକାରୀ ମାତ୍ର ।

[ଦୃଢ଼ଭାବେ ଆଲିଙ୍ଗନ କଲେ ।

ଧନୁଆ—ଆଃ—ଏମିତକା ରାଜାର ପ୍ରଜା ହୋଇ ସୁଛୁ ଥିଲା !—ପାଇକ ହୋଇ ସ୍ଥିତ କୁଟୁରୁ ଥିଲା'—ଭଉଣୀ—ଭଉଣି—ଥରେ ହାତ ବୁଲାଇ ଦେବ ଦେଲକୁ ମୋ'ର—

ଅନଙ୍ଗଭୀମ—ଛି, ଛି, ଭାଇଠାରେ ଗୋଟାଏ ସଙ୍କୋଚ କଣ, ଭାଇ ?—ଦେଖ୍ ନା, ତୋ'ର ଯେଉଁପରି ମନ—ହାତ ବୁଲାଇ—(ଧନୁଆର ହାତଟା ଧରି ଆପଣାର ବୁକୁ ଉପରେ ବୁଲାଇ, ବୁଲାଇ—) —ଏଁ—ଏଁ—ଏ' କେଉଁ—(ମୁଦ ସହିତ ଧନୁଆର ଆଙ୍ଗୁଠିଟାକୁ ଜାପୁଡ଼ି ଧରିଲେ)

ଧନୁଆ—ମହାରାଜ—(ଆତଙ୍କରେ ଯେପରି ଶିହରି ଉଠିଲା)

ଅନଙ୍ଗଭୀମ—(ସେତେବେଳକୁ କେଉଁ ସ୍ମୃତିର ସ୍ରୋତରେ ଉଜାଣି ଭାସି, କେଉଁ ଆଡ଼େ, କେଉଁଠି ଦୂରକୁ ସେ ଚାଲିଗଲେଣି)

ନିର୍ମଳା—ମହାରାଜ !—

ଅନଙ୍ଗଭୀମ—ଶ୍ରେଷ୍ଠ !—ଖଣ୍ଡ !—ବାଦ୍‌ଶାହ୍ !—

ସମସ୍ତେ—(ଥରି ଉଠିଲେ)

ଅନଙ୍ଗଭୀମ—ନିର୍ମଳା ! ଏହି ଖଣ୍ଡ ପାଇକ ମୁଣ୍ଡାକରି ଏତେ ପ୍ରଶଂସା କରି, ରାଜମର୍ଯ୍ୟାଦା ଆମ୍ଭମାନଙ୍କର ଆଜି ତଳେ ଲୋଟାଇଦେଇ ଥିଲା !—

ନିର୍ମଳା—ସେହି 'ମୁଦି' କଥାଟା ନା ?

ଅନଙ୍ଗଭୀମ—( କେଉଁ ଗୁପ୍ତକଥା ପ୍ରକାଶ ଭୟରେ ଯେମନ୍ତ ଶିହରି ଉଠିଲେ—) ହଁ, ହଁ, କହିଲ, ଭଉଣି—ଏପରି ହୀରା ମୁଦି କି ସ୍ୱର୍ଗ ପାଇକଟାଏ ସାତଜନ୍ମରେ କେବେ ହେଲେ ଦେଖି ଥାଇ ପାରେ ?—ହାତରେ ନାଇଁ, କେମିତିକା ପୁଣି, ଛୁଇଁ ଦେଖ ନା ! ( କହୁ କହୁ, ଗୋଟାଏ ହାସ୍ୟରେ ଯେପରି କାଳି ବୋଳୁଥିଲେ, )

[ ଅନ୍ୟପାଇକମାନେ—'ଏହିଟା ଠିକ୍ ହେଇଛି'—ଏହିପରି କେତେ କଣ ଆପଣା ଆପଣା ଭିତରେ ଠାର୍ ଠୁର୍‌ରେ କଥାବାର୍ତ୍ତା ହେଉଥିଲେ ]

[ ଧନୁଆ ଯେମନ୍ତ ନିଶ୍ଚଳ ପ୍ରସ୍ତର ମୂର୍ତ୍ତି ପାଲଟି ଯାଇଥାଏ—ସେହି ଅଚଳ ନୟନରେ କଣ ଯେ ସ୍ଥିର ଦୃଷ୍ଟିରେ ଦେଖୁଥାଏ, ତା' ସେଇ ଜାଣେ ! କେତେବେଳକେ ଆଖିରୁ ଦୁଇଟୋପା ଲୁହ କେବଳ, ଢଳ ଢଳ ସୁବର୍ଣ୍ଣ ମୁକ୍ତା ବିନ୍ଦୁ ଭଳି ଗଡ଼ି ପଡ଼ିଲା ]

ନିର୍ମଳା—ମହାରାଜ ! ସେ ବାଟମୁହଁରେ ମୁଁ ଅନେକ ଥର ଅନେକ ଭାବେ ଚେଷ୍ଟା କରିଛି—ଉତ୍ତରରେ, ଦେଖିଛି ଖାଲି—ଏହିପରି ମୌନମୂର୍ତ୍ତି !—ଅଧିକ ଜୋରଜାର୍ କଲେ—ଏହିପରି ଦୁଇଟୋପା ଲୁହ ମାତ୍ର ସାର !

ଅନଙ୍ଗଭୀମ—( ହସି ଉଠିଲେ ) ଏହିତ ଖାନ୍ଦାନର ସାର ଲକ୍ଷଣ !—ବିରୁଦ୍ଧକୁ ଅଭିଭୂତ କରିବା ପାଇଁ, ଯାହା ସେ ସଚରାଚର କରିଥାଏ,—ଦୁଇଟି ଉପାୟ—'ମୌନାବଲମ୍ବନ'—ଆଉ 'ଲୁହ-ବିସର୍ଜ୍ଜନ' !—ହାଃ-ହାଃ-ହାଃ—

[ ଏହିପରି ଅଦ୍ଭୁତ ହସ ଓ କଥାଛନ୍ଦରେ, ନିର୍ମଳା ପ୍ରଭୃତି ସମସ୍ତେ କିପରି ବିସ୍ମୟାଭିଭୂତ ହୋଇଗଲେ—କିନ୍ତୁ ଧନୁଆଟା ଆନନ୍ଦରେ କିପରି ଅଧୀର ହୋଇ ଉଠିଲା ]

ଧନୁଆ—ଭଉଣି ! ଭଉଣି ! ଆଜି ମୋ'ର ସୁଦିନ ଆସିଛିରେ !—ଆଜି ମୋ'ର ରାଜାକୁ ପାଇଛି !—ଆଜି ମୋ'ର 'ବିଗୁରଙ୍କ'କୁ ପାଇଛି !—ଖାଲି ତା'ର କିଛି କଥା ଅଉ ଗୋପନ ରଖିଛି ନା ?—କିନ୍ତୁ, ଧର୍ମାବତାର—ଏ ଭାରି ଗୁପ୍ତ କଥା—

ଅନଙ୍ଗଭୀମ—'ଗୁପ୍ତ' !—( ସତେ ସତେ କେଉଁ ଗୁପ୍ତ କଥାର ଦଂଶନଟା ଅନୁଭବ କରିବାକୁ ଲାଗିଲେ ପରି )

ଧନୁଆ—ଭାରି ଗୁପ୍ତ କଥା, ମହାରାଜ—ଗୁପ୍ତରେ—ନା, ନା, ଛାତି ଫାଟିଗଲେ ବି ଯା' କାଢ଼ି ହେବ ନାହିଁ—କେବଳ ଆମ୍ଭ, ରାଜା—ରାଜାକୁ ବିଶ୍ୱାସରେ—

ଅନଙ୍ଗଭୀମ—'ରାଜାକୁ ବିଶ୍ୱାସ' !—( ସେହି 'ବିଶ୍ୱାସ'ର ସ୍ମୃତିଟା, ନିଆଁ ମାଡ଼ିଲା ଭଳି ନଗୁଇ ଦେଲା ପରି । )

ଧନୁଆ—ହଁ, ହଁ, ମହାରାଜ—କେବଳ ରାଜାକୁଇ ପାଇକ ପ୍ରଜା ତା'ର ବିଶ୍ୱାସ କରିପାରେ !—କେବଳ ତା'ର ରାଜା ପାଇଁ, ଅନ୍ଧହୋଇ, ପ୍ରାଣ ତ ଛାର—( କିପରି ଗୋଟାଏ ଉତ୍ତେଜନାରେ ବାକ୍‌ରୁଦ୍ଧ ହୋଇ ଗଲା ପରି—କିନ୍ତୁ, ସଙ୍ଗେ ସଙ୍ଗେ ଆତ୍ମସଂଯମ କଲେ ମଧ୍ୟ, କହିବାକୁ ଲାଗିଲା ଏହିଭଳି )—ହଁ, ମହାରାଜ—ତା'ର ପ୍ରାଣର ପ୍ରାଣକୁ ବି ହସି ହସି 'ଛାଡ଼ପତ୍ର' ଦେଇ ନ ଥାଏ କି ?—

ଅନଙ୍ଗଭୀମ—( ବ୍ୟଙ୍ଗୋକ୍ତି ବୋଧରେ ଯେ ଗୋଟାଏ ମର୍ମାଘାତ ଅନୁଭବ ନ କଲେ ତା' ନୁହେଁ—ତଥାପି ଲାଲସାର ସୁଅରେ ଭାସି ଚାଲିଥିଲେ ପରି )—କହ, କହ, ପାଇକ—ତୁ କିଏ ?—ତୁ କ'ଣ—?—( କେଉଁ ଆବେଗଟା ସମ୍ଭାଳି ନ ପାରି, ଧନୁଆକୁ ଧରି ପକାଇଲେ—ଏକରକମ୍ କୁଣ୍ଢାଇଲା ଭଳି )

ଧନୁଆ—( କେଉଁ ଦମ୍ଭରେ ବାଧା ଦେଇ—) ନା, ମହାରାଜ—ଟିକିଏ ବି ଉତ୍ତରର ଆଶା ରଖିବେ ନାହିଁ—ଯେ ଯାଏ, ମୋ'ର ରାଜା, ଆଉ ଏକ

ଅଜି ପାଇକ ଛଡ଼ା, ଏ' ଥାନରେ, ସ୍ଥିର ପିମ୍ପୁଡ଼ିଟାଏ ବି ଅଛି—

ଅନଙ୍ଗଶ୍ରୀ—( ଆପଣାର ଢେଉଡ଼ ମାରାତ୍ମକ ଭୁଲଟା ଯେମନ୍ତ ଉପଲବ୍ଧି କରି, କହି ଉଠିଲେ )— ଠିକ୍—ଠିକ୍ କହୁଚୁ—( ଅପର ସମସ୍ତଙ୍କୁ ଚାଲି ଯିବାକୁ ଇଙ୍ଗିତ କଲେ )

[ ସମସ୍ତେ ପ୍ରସ୍ଥାନ କଲେ—ନିର୍ମଳା ଯେ କି ଗୋଟାଏ ରହସ୍ୟ ସନ୍ଦେହରେ, ତାହା ଭେଦ କରିବାକୁ ଉଚ୍ଛନ୍ନ ହୋଇଉଠି ନ ଥିଲେ, ତାହା ନୁହେଁ ]

ଅନଙ୍ଗଶ୍ରୀ—କହ, କହ, ଏଥର—

ଧନୁଆ—ସ୍ୱାମୀ ଭାରି ଅଥୟ—

ଅନଙ୍ଗଦେବ—ହଁ, ହଁ,—ମୁଁ ଭାରି 'ଅଥୟ' ହୋଇଚି—ଭାରି—

ଧନୁଆ—ଏମିତିକା ଅଥୟ ହେଲେ, ଥୟ ମନରେ ଶୁଣିବେ କେମିତି—ଵିଚାର କରିବେ କେମିତି—

ଅନଙ୍ଗଶ୍ରୀ—( କେଉଁ ଆତ୍ମଗ୍ଲାନିଟା ଅନୁଭବ କରିବାରୁ, ଆତ୍ମସମ୍ବରଣ କରିବାକୁ ଚେଷ୍ଟା କରି) ହୁଁ—କହ, ଏଥର ପାଇକ—ମୁଁ ଖୁବ୍ 'ଥୟମନ' ହୋଇଚି—

ଧନୁଆ—ନାହିଁ, ମଣିମା !—ସ୍ୱାମୀ ସେତେ 'ପହଡ଼' ସାର ନ ଉଠିଲେ କି—'ଶ୍ରୀଅଙ୍ଗ'କୁ ଉଣା ତ 'ବାଧକ' ହୋଇ ନାହିଁ, ଆଜିଭାର ଏତେ 'ନିଛୁଟି'ଟାରେ— !

ଅନଙ୍ଗଶ୍ରୀ—( ଆଉ ଅଧିକ ଆତ୍ମସମ୍ବରଣ କରି ପାରୁ ନ ଥିଲେ ପରି )

ଧନୁଆ—କିଛି ଚକା କରିବେ ନାହିଁ, ମଣିମା!—ପାଇକ ସ୍ୱାମୀଙ୍କର, ଏଇଠି, ଏଇପରି, ଠିକ୍ 'ଖୁଣ୍ଟ' ଭଳି ଠିଆହୋଇ ରହିଥିବ, ଯେପାଏ ସ୍ୱାମୀଙ୍କ 'ସବାର' ପୁଣି ବାଜେ ନ କରିଚି—କିମ୍ବା ସ୍ୱାମୀଙ୍କର ଅନ୍ୟ 'ହୁକୁମ୍' ଜାରି ନ ହୋଇଚି ! —(ଠିକ୍ ସାମରିକ ପ୍ରଥାରେ ଠିଆହେଲା )

ଅନଙ୍ଗଶ୍ରୀ—ନା, ନା, ପାଇକ—ଶୀଘ୍ର କହ—ଶୀଘ୍ର କହ—ଆଉ ଯେ ମୁଁ ସମ୍ଭାଳି ହୋଇ, ରହି ପାରୁନାହିଁ—ସେ କିପରି ଅଛି ?—କଣ କହି ପଠାଇଚି ?—ମୋତେ ଯିବାକୁ ?—ସତେ ଯେତେ ମୁଁ ତା' କଥା ପାଶୋରି ପକାଇଚି—ଓଃ, ସେ ଯେ—(ଅନର୍ଗଳ ବକି ଚାଲିଲେ ଭଳି କହି ଯାଉଥିଲେ )

ଧନୁଆ—( ବାଧା ଦେଇ, ଅତି ସହଜସ୍ୱରରେ) ମଣିମା ! କା' କଥା ପଚାରୁଚନ୍ତି, ସ୍ୱାମୀ?—ଏମିତିକା କଥାତ କିଛି—

ଅନଙ୍ଗଶ୍ରୀ—ତୁ ଜାଣୁନା ? ତେବେ, ତେବେବେ, ପାଜି—ତୁ କଣ ଗୋଳ କରୁ ଏତେ ସମୟଟା—
( ଆପଣା କୋଷରୁ ଖଡ଼ଗଟାଏ ବାହାର କରୁଥିଲେ )

ଧନୁଆ—ହାଃ-ହାଃ—ଉଚିତ କରି, ମହାରାଜ—ଦାନ୍ଦ' ପହରେ—ଜାଲ୍, ଜାଲ୍ ଆଖି ଗୁଡ଼ାକ ଉପରେ—! ( ସେହି 'ମୂର୍ଦ୍ଦ'ର ଉଚ୍ଚାରଣରେ ପରି, କେଉଁ ମୁହୂର୍ତ୍ତର ଉତ୍ତେଜନାରେ ଯେମନ୍ତ କହିଗଲା ଏହାପରି )

[ ଧନୁଆର ସେହି କଥା ଭଙ୍ଗିରେ କି ଗୋଟାଏ ପ୍ରବଳ ଶକ୍ତି ଯେତେବେଳେ ଖେଳି ବୁଲୁଥିଲା —ତାହା ଜ୍ଞାତସାରେ ହେଉ, ବା ଅଜ୍ଞାତସାରେ ହେଉ,—ରାଜା ନିଜେ ଅନୁଭବ କଲେ, ଅସି ତାଙ୍କର ପୁଣି କୋଷବଦ୍ଧ ହୋଇଗଲା ]

ଧନୁଆ—( କହୁ କହୁ, ଅଟକି ଯାଇ ଆପଣାକୁ ସଂଯତ କରି ନେଇ ବିନୟ ଭାବେ କହିଲା )—ନା, ନା, କ୍ଷମା କରିବେ, ମଣିମା—ମୁଁ ସବୁ ଖୋଲି କହୁଚି—ସ୍ୱାମୀ ଯେତେବେଳେ କେଉଁ କଥା ସନ୍ଦେହ କରି, ଏତେ ଉଚ୍ଛନ୍ନ, ଆଉ କ୍ରୋଧ କରିବାଟା ଠିକ୍ ନୁହେଁ—ମୁଁ ପରି ମୋ'ର କଥାରୁ—( ଅଟକି ଯାଇ, ସେହିପରି ହସି ଉଠିଲା ପରି, ଫୁଟ୍କିରେ ସନ୍ଦେହ ରାଶିଟାକୁ ଉଡ଼ାଇ ଦେଲା ଭଳି ସେଦିନ, ଏବଂ କହିଗଲା ସଙ୍ଗେସଙ୍ଗେ) ହଁ, ମହାରାଜ—'ସେ ଦିନ—' (କେଉଁ ଉଚ୍ଛ୍ୱସିତ

କୋଦଣ୍ଡାକୁ ଚୁପି ଯାଇ ) 'ଅଲ୍ଲଅଟା' ପଢ଼ିଛ
ପରା, ମହାରାଜ—( କହିବା ସଙ୍ଗେ ସଙ୍ଗେ, କି
ଯେ ଈର୍ଷା, କ୍ରୋଧ ଓ ବ୍ୟାକୁଳତାର ମିଶ୍ରିତ ଭାବ
ଫୁଟି ବାହାରୁ ଥାଏ )

ଅନଙ୍ଗଭୀମ—'ଅଲ୍ଲଅ' ।—'ଅଲ୍ଲଅ' !—
[ ସେହି ପୂର୍ବସ୍ମୃତିରେ ଏକାନ୍ତ ଅଧୀର ହୋଇ
ପଡ଼ିଲେ ]

ଧନୁଅ—ହଁ, ହଁ,—ଅଲ୍ଲଅ—ଅଲ୍ଲଅ—'ଅଲ୍ଲଅ'ରେ
ଯେ କି 'ଅନ୍ଧାର'— ! ( ଶେଷ ପଦଟା କହୁଣୁ
ନ କହୁଣୁ, ସ୍ୱରଟା ଆପଣା ଛନ୍ଦରେ ବଦଳାଇ
ନେଇ ପରା)—ଏ'ଭଳି ଅନ୍ଧାରିଆ କଥା କିନା ?
—ଅନ୍ଧାରରେ ହେବାର ଠିକ୍—

ଅନଙ୍ଗଭୀମ—'ଅନ୍ଧାର'—!

ଧନୁଅ—ସ୍ୱାମୀଙ୍କୁ ଭାରି 'ବାଧା' ହେବ, ଜାଣୁଛି—
କିନ୍ତୁ, ମହିମା ମୁଁ ନାଚୁର—

ଅନଙ୍ଗଭୀମ—ନା, ନା—ମୁଁ ସେହି ଅନ୍ଧାର ଚାହେଁ—
ଅନ୍ଧାରରେ ଯେ ମୁଁ ଅଲ୍ଲଅ ଦେଖିଛି—ଅନ୍ଧାର
—ଅନ୍ଧାର—( ଦ୍ୱାର ସବୁ ସେଇ ମୁହୂର୍ତ୍ତେ
ଲଗାଇ ଅନ୍ଧାର କରିଦେଲେ )

ଧନୁଅ—ସ୍ୱାମୀ ଦ୍ୱାର ବନ୍ଦ କରିଦେଇ ଯେଉଁଭଳି
ଅନ୍ଧାର କରିଦେଲେ, ଠିକ୍ ସେହି ଭଳି ଅନ୍ଧାର
ସେ ଦିନ ହୋଇଥାଏ—ପୁନେଇ ହେଲେ ବି—
ମେଘୁଆ ଯୋଗୁଁ ଜହ୍ନସବୁ ବଳି ଯାଇଥାଏ
ପରା—

ଅନଙ୍ଗଭୀମ—ତେବେ—ତେ— ( କପଟ ଭୟ-
ବ୍ୟାକୁଳ ହୋଇ ଉଠିଲେ )

ଧନୁଅ—ନା, 'ତେବେ'ବି ମୋ'ର ଡର ଭୟ ନଥାଏ
—ଆକାଶରେ ଚାନ୍ଦ ସିନା, ତରାଟିଆ ଥିଲେ ବି,
ସେଇ ସାମାନ୍ୟ ମେଘଯୋଗୁଁ କିରଣ ଦେଇପାରୁ
ନ ଥାଏ—କିନ୍ତୁ ମୋ'ର ଚାନ୍ଦ ଯେ—କେଉଁ
ଅନ୍ଧାରିଆ ଘରକୋଣେ ଲୁଚି ରହି ସୁଦ୍ଧା, ଶତହଟା
ତରାଟିଆ ଚାନ୍ଦର ଚାନ୍ଦନୀ ପରି ମୋ' ବାହାରେ
ଭିତରେ ଭରି ଦେଇଥାଏ ।—ମୋ'ର ଗୋଟାଏ
ଭାରି ଅଷ୍ଟ ଥାଏ, ମହାରାଜ—ଦୁନିଆରେ
ଏମିତିକା ମେଘନାହିଁ, କି ଏମିତିକା ଚାନ୍ଦୁନାହିଁ,
ଯେ କି ଆମ ଦୁହିଙ୍କ କେତେବେଳେ ଦଣ୍ଡିକ
ପାଇଁ—ଟେଲିବସରରେ—ଭୁଲିଯିବ ବି—(ଅଟକି
ଗଲା, ଟୋପାଏ ଲୁହ ବି ଅଟକିଗଲା )

ଅନଙ୍ଗଭୀମ—( କପଟ ନିର୍ବାକ୍ ହୋଇଯାଇଥାନ୍ତି )

ଧନୁଅ—( ପୋଛି ପକାଇ ) ହଁ କଣ କହୁଥିଲି—ମୁଁ
ସେଦିନ ଗାଁରେ ନ ଥାଏ—ହଠାତ୍ ମନଟା
କେମିତିକା ଉଚ୍ଛନ୍ନ ହୋଇ ଉଠିଲା—ଖବର ବି
ପାଇଲି, ସର୍ଦ୍ଦାର ରାଜାଙ୍କ ସଙ୍ଗେ ଶୀକାରକୁ ଯାଇଛି
—ଆଉ କି ସମାଳି ହୋଇ ରହିପାରେ ?—
ଦୁଇଦିନ ଦେଖା ହୋଇ ନ ଥାଏ ଯେ ଦୁଇଯୁଗ
ଭଳି ଲାଗୁଥାଏ—ତା' ଉପରେ ଏମିତିକା
ସୁବିଧା—ଛାଡ଼ିବାକୁ ଅଛି ନା ?—କେତେ
କ'ଣ ଯେ ଗପସପ ହେବା—ଖେଳିବା—
ହସିବା—ନାଚିବା—ଶିକାର୍‌ରେ—ସେ ନି
ନିଶ୍ଚେ ଚାହିଁ ବସିଥିବ—ଏହିଭଳି ଉଲୁସିଆ
ମନରେ—ବଣ-ଜଙ୍ଗଲ — ପାହାଡ଼-ପର୍ବତ—
ଅନ୍ଧାର-ବର୍ଷା—କିଛି ନ ମାନି—ସେହି ମୋ'ର
ଚାନ୍ଦର ଚାନ୍ଦନୀରେ, ବାଟ କାଢ଼ି କାଢ଼ିକା, ଧଇଁ
ସଇଁ ହୋଇ ଆସି, ଶେଷ ମୁଣ୍ଡଟାରେ ଚାନ୍ଦକୁ
ମୋ'ର ହାତ ବଢ଼ାଇବାକୁ ଯିବି କି ନା,—
କାହୁଁ ଗୋଟାଏ ବାଘ—

ଅନଙ୍ଗଭୀମ—'ବାଘ' ।—( ଚିତ୍କାର କରି ଉଠିଲେ )

ଧନୁଅ—( କେଉଁ 'ବାଘ'କୁ ଲକ୍ଷ୍ୟକରି ଯେ ଫୁଲି ଫୁଲି
ଉଠୁଥିଲା, ତା' ସେଇ ଜାଣେ—ସେଇ ଲକ୍ଷ୍ୟର
କ୍ରମରେ କହିଗଲା ପରି )—ସ୍ୱାମୀ ଜୀବନ ଭରି
କେବେ ଆଖିରେ ଦେଖି ନ ଥିବେ ।—ମୋ'
ଭଳିଆ ବେପର୍ବା ପାଇକ ଦେଖି ପରି—ହାଃ-
ହାଃ—( ଗୋଟାଏ ଅଟ୍ଟହାସ୍ୟର ଢେଉ ଯେମନ୍ତ
ଉଚ୍ଛୁଳି ଉଠିଲା )

ଅନଙ୍ଗଭୀମ—କ'ଣ ହେଲା ?—
( କି ଯେ ଅଧୀର ହେଉଥାନ୍ତି )

ଧନୁଅ—ହଁ, ସେଇ ଘୁର ବାଘଟା ନା ?—ଗୋଡ଼ାଇ ଥିଲି କଟକୁ—ନା, ନା, ଯା'କୁ ଗୋଡ଼ାଇଥିଲି, ମଣିମା—ସେ ଅଉ କେହି ନୁହେଁ—'ମୁଦ'ର ମାଲିକ—ଅଉ ଅଉ, ଫାଁକ୍ କର ଦେବାକୁ, କେଉଁ ସପନର ଡୋରିକୁ ଅମର, ସେହି 'ମେଘ'—ସେହି 'ରାହୁ'—। ( ଅବର୍ଣ୍ଣନୀୟ ସେହି ବ୍ୟଥାଭରା ଉତ୍ତେଜନା । )

ଅନଙ୍ଗଭୀମ—( କେଉଁ ଝଞ୍ଜାଟା ଅନ୍ତରାଳେ ଥାଇ ମୃଦୁ ମୃଦୁ ହସି ପରି )—ଅଉ ଭୁଲ ସେଇ ବାଘଟା ଶିକାର କର—

ଧନୁଅ—ଭାରି ଭୁଲ କାମ କରଚି, ମହାରାଜ—( ସତେକି ସେଇ ଭୁଲଟା ସେଇକ୍ଷଣି ସୁଧୁରାଇ ନେବାକୁ ଗଲା )

ଅନଙ୍ଗଭୀମ—ଠିକ୍ କହୁଚୁ—ସେହି ବାଘ ବଦଳରେ ବାଟୋଇଟାକୁ ଶିକାର କରିବା—( ସମାନେ ସମାନ ହୋଇ ଉଠୁଥିଲେ ପରି)

ଧନୁଅ—( ସମ୍ଭାଳି ନେଇ ଆପଣାକୁ ) ଅନୁଚିତ ହୋଇଥାନ୍ତା, ମହାରାଜ !—ମୁଁ ଠିକ୍ କାମ କରିଚି !—( ରହିଯାଇ କିଛିକ୍ଷଣ ଟୋଟାଏ ଧ୍ୟାନରେ, ହସି ହସି କହିବାକୁ ଲାଗିଲା, ସେଇ ଧ୍ୟାନ କମରେ ପରି )—ଆଜି ମୁଁ ବଞ୍ଚି ରହିଚି—ଯୁଦ୍ଧରେ ବି ପ୍ରାଣ ବାହାରି ଯାଇ ନାହିଁ ମୋ'ର—ଅଳ୍ପ ହୋଇ ବି ସଫା ଦେଖି ପାରୁଚି—ଥରେ ଭେଟିବି ବୋଲି—ବାଟରେ ପାଇବି ବୋଲି—ସେହି ବାଟୋଇଟାକୁ !—ଏହି ପଠାଣ ସେନାପତି, ମହାରାଜ—ଯେ କି ଏଇ ଦଶା କରିଚି ମୋ'ର,—ଚୋଟାଏ ଅକସରେ—ଯୁଦ୍ଧଟା ଲାଗୁଣୁ ନ ଲାଗୁଣୁ, ସର୍ଦ୍ଦାରର କେମିତିକା ମତିଭ୍ରମ ଯୋଗୁଁ କି କଣ, ଯେମିତିକା ସେ ଶତ୍ରୁ ଫେରିଭ ଭିତରେ ପଶି ଯାଇଚି, ମୁହିଁ ଏକୁଟିଆ ପଶିଯାଇ, ସେନାପତିଟାକୁ ସାମ୍ନା ସାମନି ହଟାଇ, ଘଉଡ଼ାଇ ଦେଇଥିଲି ବୋଲି—× × ପ୍ରାଣରେ କିନ୍ତୁ ମାରି ପାରିଲି କି ?—ନାନା ଫିକର କରି ସୁଦ୍ଧା !—ହଃ, ହାଃ—ଚହ୍ନି ପାରିଲି ନାହିଁ ସିନା ସେତେବେଳେ ସଭାରେ ସେ—କିନ୍ତୁ, ମୁଁ ଚହ୍ନିପାରି ମୁରୁକି ମୁରୁକି ହସିଚି ପରି—× × ×—ହଁ, ମହାରାଜ—ଯୁଦ୍ଧ ଶେଷ ହେଉଣୁ ନ ହେଉଣୁ, ଖୁବ୍ ସାବଧାନରେ, ଆପଣାକୁ ଛପି ଛପି ରଖିଚି—ଆପଣାର ବଳଟା ଛପିଛପି ରଖିଚି—ଖାଲି ସେହି ଦୁଷ୍ମନଟା ସାଙ୍ଗେ କେମିତି ଦିନେ ମୁହାଁମୁହିଁରେ, ଦୁଇବଳରେ, ବଳ କଷାକଷି ହେବ ବୋଲି— ।

ଅନଙ୍ଗଭୀମ—( ଅଉ ସହି ନ ପାରି କି କଣ ଧନୁଅର ହାତରେ ହାତ ମିଶାଇ ମୃଦୁ ମୃଦୁ ହସି ) ଏହି ମୁଁ ହାତରେ ହାତ ମିଶାଉଚି—ଅଚିରକାଳେ ତୋ'ର ଦୁଷ୍ମନକୁ ତୁ ଠିକ୍ 'ପଡ଼ିଅରେ' ଠିକ୍ ଭେଟିବୁ । ( କେଉଁ ବୀର ଦର୍ପରେ ଯେ ହାତଟା ଛଡ଼ାଇ ନେବାକୁ ଯାଉଥିଲେ )

ଧନୁଅ—ଏହିତ ମୋ'ର 'ରଜା' !—ମୋ'ର 'ବାପୁରକ !'—( କିନ୍ତୁ, ସେହି ଯେ ଦୁଷ୍ମନ—ତା'ର ହାତରେ ଯେ ହାତ ମିଶାଇଚି, କେଉଁ ଦ୍ୱୈତ ସମରର ପାଇଁ, ଏହି କଥାରେହିଁ ଯେମନ୍ତ ମାତି ଉଠି, ଆହୁରି ଜୋରରେ ଚାପି ଧରିଲା ରାଜାଙ୍କର ହାତକୁ, ବିଲ୍‌କୁଲ୍ ଭୁଲିଯାଇ 'ରାଜା' 'ପ୍ରଜା' ଭାବ ଯେତିକି ପାଇଁ )

× × × ×

—ବଳକଷାକଷିଟା ଲାଗି ଲୋକ ଅଉ—
ସେଇକ୍ଷଣି—ସେଇ ବୀର
'ପ୍ରେମିକେ—ପ୍ରେମିକେ'

## ଷଷ୍ଠ୍ୟ।

—ଖୋର୍ଦ୍ଧାର ସେହି ପାଇକ ପଲ୍ଲୀ—

[ ସେହି ଗ୍ରାମ ସର୍ଦ୍ଦାରର ଘର—କିନ୍ତୁ, ବଣ ଜଙ୍ଗଲରେ ଭର୍ତ୍ତି—ଦ୍ୱାର ମୁହଁରେ ବ ବୁଦା ଗୁଡ଼ାକ—ଗୁଳଞ୍ଚ ଠାଏ ଠାଏ ଉଠିଥିବା ଯାଇଛି —ପୁନେଇର ଗୁଢ ଭରା ଜ୍ୟୋତ୍ସ୍ନା ତାର ନିଗାଡ଼ ଦେଉଛି ସେହିଠା'ରେ କି ଅଛ ? ]

[ ନେପଥ୍ୟ 'ଫୁଲ୍' ଗାଇବାର ଯେନ୍ତ୍ର ଶୁଣାଗଲା —ସେହି ଦଳକାର ସେହି ଗୀତର ଘୋଷା ପଦଟି — ସେହିଭଳି କୌତୁକ ଭଙ୍ଗିରେ ପରା— ରହି ରହି—ପଦକର ଅର୍ଥେ, ତଦନ୍ତେ— କେତେବେଳେ ହୁଟଛି—କେତେବେଳେ ନିକଟେ —କିଛି ଥପୁ ନ ଥାଏ ]

—ଗୀତ—

"ଏତେ ବେଳକୁ ହେ ମୁଖ ଦିଶିଲା କି ଆଜ।
ପଥବଣା ହୋଇଲ କି ବ୍ରଜଯୁବରାଜ ॥"

[ ଧନୁଆ ସେହି ଗୀତକୁ କାନ ଡେରି ଡେରିକା ଲୁଚକାଳି ଖେଳାଳି ଭଳି, ଏଣେ ତେଣେ ହୋଇ,—ଅନୁସରଣ କରି, ଧାଇଁ, ଧାଇଁକା ବୁଲୁ ଥାଏ—କେଉଁ ପୂର୍ବ 'ଲୁଚକାଳି' ଖେଳର ଖିଆଲରେ କି ଅଛ ? ]

[ ଗୀତଟି ଠକ୍‌କିନା କାହିଁର ବନ୍ଦ ହୋଇଗଲା— ଧନୁଆ ଗୋଟାଏ ଗଛକୁ ସେହିପରି ଠକ୍‌କିନା ହାବୁଡ଼ି ଯାଇ, କୁଣ୍ଢାଇ ପକାଇ, ରହିଗଲାପରା— ]

ଧନୁଆ—ଆଜ ଯିବୁ କୁଆଡ଼େ ?—ଏଁ, ଏଁ—ଏହି ତ ସେହି ଗଛଟା। ଫୁଲର ଫୁଲ ଗଛଟା।— ଫୁଲର ଘର ପାଖରେ ଯେ ଆସି ଏକା- ବେଳକେ।—ଫୁଲି, ଫୁଲି—ମୋ'ର ଆଖି ନାହିଁ ବୋଲି ପରା ଭଣ୍ଡାଇବାକୁ ଆସିଥିଲୁ— ନା ?—( ହସି ହସି ) 'ସୁନ୍ଦର ଝୋପି' ଖେଳ କଥା ପଡ଼ିଲା ଭଲ ଥରେ—ଆଉ, ଯେତେ ଯେ ଝୋପି ମାରନ୍ତୁ, ତୋ' 'ଝୋପି' ବାରିବାକୁ କି ବେଳକାଳ ଲାଗେ ?—ଅଣ୍ଡାଳି ଅଣ୍ଡାଳି, କେମିତିକା ଜାପୁଟି ଧରି ପକାଏଁ ?—ଏହି ଗଛ ଅଢୁଆଳରେ—ଏମିତି—(ଫୁଲ୍ ଜାଣିରେ ଫୁଲର ସେହି ଗଛଟାକୁ ଜାପୁଡ଼ି ଧରିଲା କି ଅଛ ? )

[ ବିଦେଶୀ ସେ ଦଳକା ସେହି ଶିକାରୀ ବେଶରେ—କିନ୍ତୁ ପାଗଟାର ଶେଷ ପରସ୍ତ ତଥାପି ବାନ୍ଧି ବାନ୍ଧି, ଡରବର ହୋଇ ପ୍ରବେଶ କରି ଏକୁଟିଆ ]

ବିଦେଶୀ – କେମିତିକା ମଣିଷ ତୁମେ ?—ଏହି ବଣ ଜଙ୍ଗଲରେ—ଏକୁଟିଆଟା—

ଧନୁଆ—ହୋଃ—ହୋଃ ମୁଁ ଯେ ଏଇଥିରେ ମଣିଷ।—

ବିଦେଶୀ—( ଆପଣାର ଭୂମିକା ଅନୁଯାୟୀ ଅଭିନୟ କରିବା ଯେ ଉଚିତ, ଉପଲବ୍ଧି କରି, ଜାଣିବା ଦାଂନେ କଲେ ପରା )

ଧନୁଆ—କଣ କରିବ, ଭାଇ—ଫଳିଟା ଯେତେ- ବେଳେ, ଏମିତିକା 'ଲୁଚକାଳି' ଖେଳିବାକୁ ଝିଙ୍କା ଉଠିଗଲା—ହଁ, ତୁମେ ଯାଣିବ ସେ ସବୁ କାହୁଁ,—ଆମର ସାଙ୍ଗ ହୋଇ ଖେଳିବା କଥା—ସାଙ୍ଗହୋଇ ଗାଇବା କଥା —ସାଙ୍ଗହୋଇ ନାଚିବା କଥା;—ଅଦ୍ଭୁତ, ସର୍ଦ୍ଦାର ଯଉଁ ଯଉଁ ଦଳ ଘରେ ନ ଥାଏଁଟି— କଣ କହିବ ସେହି ସେହି ଦଳକାର ମଜଲ କଥା, ଭାଇ—କେତେ ରାତି ରାତି ପରା—ଏହି ଅଗ୍ନାଗ୍ନ ବଣ ଭିତରେ—ଜୀବ ଜନ୍ତୁଙ୍କ କୁହାଟ ଭିତରେ—

[ ନେପଥ୍ୟ ପଲ୍ଲୀର ଗୋଟାଏ କେଉଁ କୋଣରୁ ପାଇକ-କୁମାରୀ ମାନଙ୍କର ଖେ ଧ୍ୱନି ଓ ହୁଳହୁଳି ଶୁଣାଗଲା— ମଝିରେ ମଝିରେ କୁଆଁର ପୁନେଇର ଗୀତ ମଧ୍ୟ, ସମବେତ କଣ୍ଠରେ— ]

ଗୀତ

"କୁଅଁର ପୁନେଇ ଜହ୍ନ,
ପଡ଼ିଥାଏ ଘନ ଘନ ।
କେଶରୀ ପେଡ଼ିଙ୍କ ମନ—
ରଙ୍ଗତା ପେଡ଼ିଙ୍କ ମନ ଗୋ—
ଫୁଲ ବଉଳ ବେଣୀ ।"

ଧନୁଆ—ହଁ, ଆଜି କ'ଣ କୁଅଁର ପୁନେଇ — (ଅତୀତର କେଉଁକଥା ସ୍ମରଣ କରି ଉନ୍ମନା ହୋଇ ଉଠିଲା ପରି)—ଜହ୍ନଟା ଖୁବ୍ ପଡ଼ିଛି, ନା, ଭାଇ !—

ବିଦେଶୀ—ଜହ୍ନ ବୋଲି ଜହ୍ନ—ଦେହଟା ପୁନେଇ. ନା, ନା, କୁଅଁର ପୁନେଇ ଜହ୍ନର ରୂପେଲି-ମଦଟା ଯେମିତିକା ଗୁଆଁଇ, ଇଚ୍ଛା ହେଉଛି ଏକାବେଳକେ—କିନ୍ତୁ, ତେବେବି—ତେବେ ବି—

ଧନୁଆ—(ହସିଉଠି) ଦେହଟା ଉଆଁସକୁ ବଳି ଉଆଁସିଆ ପରି—ନା ?—ଠିକ୍ ସେହି ଦିନକା ଭଳି, ନା ?—(କି ଗୋଟାଏ ଈର୍ଷାରେ ଥରି ନ ଉଠିଲା ତା ନୁହେଁ)

ବିଦେଶୀ—(କେଉଁ ଆବେଗଟା ସମ୍ଭାଳିବାକୁ ଯଥାସାଧ୍ୟ ଚେଷ୍ଟା ଯେ ନ କଲେ ତାହା ନୁହେଁ)

[ଠିକ୍ ସେତିକିବେଳେ ଘର ଭିତରୁ ଏଥର ଗୀତର ଆର ପଦଟି ଶୁଣାଗଲା ପରି—ସେହିଭଳି, ଫୁଲର କଣ୍ଠ ସ୍ୱରରେ ]

ଗୀତ

"ତୁମ୍ଭ ଆସିବା ସମୟ ।
ଜାଣି ହୋଇ ତୋଷମୟ ॥"

ଧନୁଆ—ଶୁଣୁଛ—ଶୁଣୁଛ ତ ଫୁଲର ସେହି ମନଫୁଲଣିଆ ଗୀତ—ମନକୁ ଫଲେଇ ଦିଏ ନାହିଁକି ?—

ବିଦେଶୀ—(ବୁକୁଟା ଫାଟିବା ଉପରେ ହେଲା କି ଆଜି)

ଧନୁଆ—ହାଃ—ହାଃ—ତୁମେ ସିନା 'ଜାନ୍ ବାହାନ' ଉପରେ ଖୁବ୍ ଜାଗତିଆରେ ଥାଇ ବି ବାଟଯାକ ବାଘ ଗର୍ଜ୍ଜନ ଶୁଣି, ଥମି ଯାଇଛ, ଛପି ରହିଛ, ଡରିହରି ମରିଛ—କିନ୍ତୁ, ମୁଁ ମୋ'ର ଫୁଲର 'ମହକ'ରେ ପରି ବଣା ହୋଇ, ଅବାଟରେ ବି ବାଟ କାଢ଼ି, ଧାଇଁଛି—ତୁମେ ସିନା ଏମିତିକା ପୁନେଇରେ ବି ଉଆଁସ ଦେଖୁଛ—କିନ୍ତୁ ମୁଁ, ମୋର 'ଫୁଲ'କୁ ଚାହିଁ ଚିର 'ଉଆଁସ'ରେ ବି ଚିର 'ପୁନେଇ' ଦେଖୁଛି—।

ବିଦେଶୀ—(ଚଞ୍ଚଳ ହୋଇ ବୁକୁଟା ଏଥର ଫାଟିଗଲା ପରି—ହାତଟା ଧରି ପକାଇ ଚ୍ଛାଷଣ ଉଚ୍ଛ୍ୱାସରେ କହି ଉଠିଲେ)—ବିଦାୟ, ବିଦାୟ, ବନ୍ଧୁ !—

ଧନୁଆ—ଖବରଦାର !—(ମୁଠାକରି ଧଇଲା, ଠିକ୍ ଜଣେ ରାଜକର୍ମଚାରୀ ପାଇକ ଭଳି)

ବିଦେଶୀ—(ଦମ୍ଭରେ)—ମାଫ୍ କର ଭୁଲ ମୋର, ପାଇକ—ମୁଁ ଯେ ତୁମର ବନ୍ଦୀ—।

ଧନୁଆ—ହାଃ, ହାଃ, ମୋ'ର ନୁହଁରେ—ମୋ'ର ନୁହେଁ—ମୋ'ର 'ଫୁଲ'ର—ମୋ'ର—ଏଁ—ଏଁ—ଏ' କାହାର ହାତ—?—କାହାର—!

ବିଦେଶୀ—(ହାତଟା ଛଡ଼ାଇ ନେଲେ ଛଟ୍‌କରି ପରି)

ଧନୁଆ—ରାଜା—ରାଜା —!

ବିଦେଶୀ—'ରାଜା' ଏ'ଠି କାହୁଁ ଆସିବରେ ?

ଧନୁଆ—(ଟିକିଏ ରହିଯାଇ) ଆଜି ଦେଖି ଭଣ୍ଡାଉଛ କି, ରା-?—ନା, ନା, 'ରାଜା' ମୋ'ର ଠିକ୍ 'ହିରୁରଙ୍କ'ରେ—ରାଜା ମୋର କେବେ ଭଣ୍ଡାଇବ ନାହିଁ—ଆଚ୍ଛା, ତୁମେ କଣ ମୋ'ର ରାଜାର କିଛି—?

ବିଦେଶୀ—ନା, ନା, ଭା-ଇ—(କି ଯେ କଶାଘାତରେ ବ୍ୟଥିତ ହୋଇ ଉଠୁଥିଲେ)

ଧନୁଆ—ଏମିତିକା ଛକ୍କିଛ ଯେ !—ଭାଇଠାରେ—

ବିଦେଶୀ—(ହଠାତ୍ ଏହିପରି ଉତ୍ତର ଦେବାକୁ ବାଟ ଦିଶିବାରୁ) ହଁ, ଭାଇ, ତୁମର ସବୁକଥା ତୁମେ ଖୋଲି କରି ନ କହିଲେ ମୋତେ, ମୁଁ କାହିଁକି କିଛି—(କିନ୍ତୁ କି ଯେ ଯାତନା ଅନୁଭବ

କଲେ, ଧନୁଆ ନିମ୍ନୋକ୍ତ ଭାବେ ବାଧା ଦେଇ କହିବାରୁ )

ଧନୁଆ—ମୋ'ର ଭୁଲ୍—ମୋ'ର ଭୁଲ, ଭାଇ—ମୁଁ ତୁମକୁ ଏ ଯାଏ ସବୁ କହି ନାହିଁ—ଆହା ! ତୁମର ସାଙ୍ଗ ସୁଙ୍ଗ ମୋତେ ବେଶ୍ ଲାଗିଛି ପରା —ଆହୁରି, ଏହିକ୍ଷଣି ବି ହାତେ ହାତେ ପରଖି ନେଉଛି ଟିକି, ଟିପି ଟାପି—ତୁମଠାରେ ମୋର ପୂରା ବିଶ୍ଵାସ—ପୂରା—ମୋର ଫୁଲ କଣ୍ଢେଇ ସେ 'ବିଦେଶୀ'କୁ ବିଶ୍ଵାସ କରି ପାରେବରେ ?—

ବିଦେଶୀ—'ବିଶ୍ଵାସ'—। ( ଅସ୍ଫୁଟ ସ୍ଵରେ ଗମ୍ଭୀର ଉଚ୍ଛ୍ଵାସରେ କହି ଉଠିଲେ ପରା )

ଧନୁଆ—ଅଚ୍ଛା, ଭାଇ—ତୁମର ପୁଣି ନ ଆସିବାଟା—ଦେଖା ନ ଦେବାଟା—ଖବର ବି ଥରେ ନ ନେବାଟା, ଭଲ କାମ ହୋଇଛି କି ?—ଏହି ମୁଁ—ଏତେ ଲଢ଼େଇର ଦାଉରେ ବି ଯେତେ-ବେଳେ ଟିକିଏ ଫୁରସତ୍ ପାଉଛି, ମୁହଁ ଫିଟାଇବାକୁ—ଯେତେବେଳେ ଯେ କେହି ପାଇକଙ୍କୁ, ଯେଉଁ ଦଳରେ ହେଉ ନା କାହିଁକି, ନୂଆ ଆମଦାନୀ ହେବାକୁ ଦେଖିଛି—ଚିହ୍ନା ହେଉ, ଅଚିହ୍ନା ହେଉ—ଅସ୍ତବ୍ୟସ୍ତ କରି ପକାଉଛି ପରା, ଜାଣିବାକୁ, ଏହି ଖବର ଟିକକ —ସେହି ବିଦେଶୀଟା 'ଯା, ଆସ' କରୁଛି କି ନାହିଁ—ଠିକ୍ ଖବର କିଛି ନ ପାଇବାରୁ କି କଣି, ମୋ ମନଟା ଖାଲି ଛଟପଟ ହଉଥାଏ—ଫୁଲି ଯେମିତିକା ବିଦେଶୀକୁ ତା'ର ଅନାଇ ଅନାଇ, ଦଲୁ ଦଲୁ ମଉଳି ଯାଉଛି—ଜାଣିଛି, ବନ୍ଧୁ— —ଫୁଲି ମୋର କେତେ ଆପଣାର—କେତେ ମୁଁ ଭାବୁ—?

ବିଦେଶୀ—( ଦୀର୍ଘଶ୍ଵାସ ତ୍ୟାଗକରି ) ତା' ହେଲେ, ଏ' କେମିତିକା କଥା କହୁଛ ତୁମେ, ଭାଇ— ଫେଣ୍ଟ 'ଯା, ଆସ' କରିବାଟା—

ଧନୁଆ—ଏଁ—ଉଚିତ ନୁହେଁ ।—ତୁମେ କହୁଛ ? —ନା, ନା, ତୁମର ଏ' ମନର କଥା ନୁହେଁ— ଛି, ତୁମ ଭଳି ଭଲ ଲୋକର, ମୁହଁରେ ଗୋଟାଏ କଥା, ପେଟରେ ଗୋଟାଏ କଥା, ସାଜେ କି ?— ଏ'ଟା ମୁଁ ବାଜି ଲଗାଇ କହିପାରେ, ଏହା କେବେ ତୁମର ଭିତର କଥା ନୁହେଁ—ଦେଖ, ଭାଇ—ସତକଥା କହିବାକୁ ଏତେ ଡର କାହିଁ —କହିଦେଉ ନାହଁ, ଯୁଦ୍ଧ ଗୋଳମାଳରେ ପାଶୋରି ପକାଇଥିଲ—ନା, ନା, ଡେବେବି, ତେବେବି, ଫୁଲକୁ ମୋ'ର ଏପରି ପାଶୋରି ପକାଇବାଟା—ଫୁଲଠାରେ ମୋର ଏମିତିକା ବିଶ୍ଵାସଘାତକିଆ କାମ କରିବାଟା ତଲେ ବି ବରଦାସ୍ତ କରି ହେବ ନାହିଁ ରେ !—ସେହି ପଠାଣ ସେନାପତିଟା, ଜାଣି, ଭାଇ—ମୋର ଆଖି ଫୁଟାଇ ଦେଇଛି, ଏତେ ଘରି ମୋ'ର କରିଛି, ତେବେ ବି ମୁଁ ପାଟିବୁଜି, ସବୁ ସହି ରହିଛି—ଖାଲି ମୋର ଦମ୍, ମୋ'ର ବଳର ବାଜେ ଖର୍ଚ୍ଚ ହେବା ଡରରେ !—ଓଃ, ଏହି ଦାଗଲବାଜିର ଦଣ୍ଡ ଦେବାଟା, ଫୁଲିର ହାତରେ ନ ଥାଇ, ଥାନ୍ତା ଯଦି ମୋ' ହାତରେ ଆଜି— ତା'ହେଲେ, ମୁଁ ଯା' ଦିଅନ୍ତି—ଯା' କରନ୍ତି × × × ×—ଜାଣୁନାହିଁ କେତେ ବଳ, କେତେ ଦମ୍ ମୁଁ ଶୁଙ୍ଗିଆ ଭଳି ଗଣ୍ଠିଧନ କରି ରଖିଛି—ସବୁ ସବୁ, ଏକା ଫୁଙ୍କରେ, ଫଳଡ ଭଳି ଉଡ଼ାଇ ଦିଅନ୍ତି ପରା—ତୋ'ର— ତୋ'ର ଠାରେ ଆଜି—ସେହି କଳୁ କଳୁ ଆଖି ଦୁଇଟାକୁ ଆଙ୍ଗୁଠି ଟେକି ଆଣି—ଆଉ, ସେହି ଧୀଟ ରୋଟ ରୋଟ ଆଙ୍ଗୁଳି ଦି'ଟା ଓପାଡ଼ି—( ଆଉ କହି ପାରିଲା ନାହିଁ, ଏତେ-ଦୂର କ୍ରୁଦ୍ଧ ହୋଇ ଉଠିଥିଲା ଗୋଟାଏ ଘୃଣାରେ )

ବିଦେଶୀ—( ସେହି ଅବସ୍ଥାଟାକୁ ସହଜେ ଯେମନ୍ତ ହଜମ୍ କରି ନ ପାରି ) ବଣୁଆ ଲୋକଙ୍କ କଥା ପରା—

ଧନୁଆ—ହାଃ, ହାଃ—ଗଜୁଡ଼ା କାହୁଁ ବୁଝିବେରେ ! —ତା' ହେଲେ ତ 'ଫୁଲ ଧନୁଆ'କୁ ଦଣ୍ଡକେ ଚିହ୍ନି ନିଅନ୍ତ !—ମନେ କରିଛ କି ତୁମେ ଫୁଲି

ହାତରେ ମୁଦିଟା ପିନ୍ଧାଇ ଦେଲି ବୋଲି, ଫୁଲି ମୋ'ର କେହି ନୁହେଁ ?—ହଁ, ଅଙ୍ଗୁରି ମୁଦିଟା ସେଦିନ ତା' ହାତରୁ ସେମିତିକା ଭାବେ ମୁଁ କାଢ଼ି ନେଇଗଲି ବୋଲି, ଫୁଲିର କେହି ନାହିଁ ?

ସ୍ୱଦେଶୀ—( କି ଗୋଟାଏ ଧିକ୍କାର ମର୍ମେ ମର୍ମେ ଅନୁଭବ କରି )—ଛି ଛି, ବାହା ହୋଇଚ ଯା'କୁ—ତାକୁ ନେଇ, ଏମିତିକା ଥଟ୍ଟା ପରିହାସ କରିବାଟା—

ଧନୁଆ—ବାହା !— ହାଃ, ହାଃ—ପାଇକଘରେ ଦୁଇଥର ବାହା ହୁଏ ନାହିଁରେ—ଦୁଇଥର ହୁଏ ନାହିଁ !—ପାଇକର ଜବାନ୍ ଥରେ—ପାଇକର କାମ ବି ଥରେ !—

ସ୍ୱଦେଶୀ—( କେଉଁ ବିସ୍ମୟ ଓ ଘୃଣାରେ ବୋଧହୁଏ) —ତେବେ କଣ ଫୁଲି ତୋ'ର ସର୍ଦ୍ଦାର ନଜାଣି ଆଗରୁ ଅଛି କା'କୁ—

ଧନୁଆ—ଖବରଦ୍ଦାର—ଏ' କଥା ବି ପାଶୋରି ଗଲୁଣି !—ହାଃ, ହାଃ, ପାଶୋରିବାର ଉପାୟ ରଖିଚି କିରେ—ଜକ୍ ଜକ୍ ହୋଇ ମାଲିଟା ମୋ ଆଙ୍ଗୁଠିରେ ଯେ ସାବୁଦ୍ ହୋଇ ରହିଚି, ଦଗାବାଜ୍ !—

ସ୍ୱଦେଶୀ—( ଶିହରି ଉଠିଲେ ଏତେଦୂର ଯେ କିଛିକ୍ଷଣ କଥା କହି ପାରିଲେ ନାହିଁ ପରି )—ନା, ନା—ମୋ'ତେ ବିଶ୍ୱାସ କର, ଭାଇ—ମୁଁ ସେହି ସୁନ୍ଦରୀର ଅପରୂପ ରୂପ ଲାବଣ୍ୟରେ—ନା, ନା, ଅଲୌକିକ ବିଶ୍ୱାସ, ରାଜ-ପ୍ରୀତିରେ ମୁଗ୍ଧ ହୋଇ, ମୁଦିଟା ମୋର—ନା, ନା, ହଇ, ସେଇ ରାଜ-ମୁଦିଟା ଯାଚି କରି, ଗୋଟାଏ ସ୍ମୃତି ଚିହ୍ନ ମାନ ଦେଇ ଆସିଥିଲି—ହଁ, ଏଇ କଥା କହୁ ଯେ ଏହାରି ବଳରେ ମୋ'—( ଟୋକି ଚପିଯାଇ ) ହଁ, ମୋ' ଜରିଆରେ, କିମ୍ବା ନିଜେ ବି, ସମ୍ରାଟଙ୍କଠାରେ ତା'ର ଇଚ୍ଛା ଯା', ସେ ଅନାୟାସେ ପୂର୍ଣ୍ଣକରି ପାରିବ !—

ଧନୁଆ—( ହସି ହସି )—'ଅନାୟାସେ', 'ପୂର୍ଣ୍ଣ' କରିଚାଡ, ସେଇ 'ଇଚ୍ଛା', 'ତା'ର', 'ମୋ'ର ଜରିଆରେ', 'ସମ୍ରାଟଙ୍କଠାରେ', 'ଇହାରି ବଳ'ରେ !—( ମୁଦିଟା ଦେଖାଇଲା ବେହିଆଙ୍କ ଭଳି କି ଅଛି )

ସ୍ୱଦେଶୀ— ( କେଉଁ ଉତ୍ତେଜନାରେ ) ନା, ନା, ତୋ'ର ଫୁଲିକୁ ଭୁ ଅପବୌଚିନ୍ତୁ ନା—ଏପରି ଖରାପ ମତଲବ ତା'ର—ଅସମ୍ଭବ—ଅସମ୍ଭବ—

ଧନୁଆ—ଖବର୍ଦ୍ଦାର—ସେ ଭଣ୍ଡାଭଣ୍ଡି କଥା ମୁଁ ଶୁଣିବାକୁ ଚାହେଁ ନାହିଁ—ଅରେ, 'ଖରାପ' ହେଉ, 'ଭଲ' ହେଉ, ପାଇକର ମତଲବ୍ ହେଉଚି ମତଲବ୍—ଅଲ୍‌ବତ୍ ହେବଇ ହେବ—ଜାନ୍, ମାନ୍ କଲେ ବି—

ସ୍ୱଦେଶୀ—ତୁମେଇ ପରା କହୁଥିଲ, ଭାଇ—ସର୍ଦ୍ଦାର ବାହାଦେବାକୁ ରାଜିହୋଇ, ମୁଦିବଦଳରେ କାମଟା ସାରିଦେବାକୁ କହିଲାରୁ, ତୁମେ ହସି ହସି ଝିଅ ହାତରୁ ତା'ଙ୍କର, ମୁଦିଟା—

ଧନୁଆ—ଭାରି, ଭାରି ଖୁସିରେ କାଢ଼ି ନେଇଥିଲି, ଭାଇ—ଜୋର କଟ—ଜବରଦସ୍ତି କରି—ଡକାଇତି କରି—ଉପାୟ, ଉପାୟ ନ ଦେଖି—ତୁମେଇ କୁହନା, କଣ କରିଥାନ୍ତି ? ଯୁଦ୍ଧକୁ ଡକରା ପଡ଼ିଲାଣି—ମୁହୂର୍ତ୍ତେ ସମୟ ନାହିଁ—ଦଳରେ କେହି ମିଶାଉ ନାହାନ୍ତି—ମିଶାଇ ବି ଦେବେ ନାହିଁ—ଘର, ଦ୍ୱାର—ରଜା, ରାଜ୍ୟ ଜଞ୍ଜାଳ—ଛାରଖାର ହୋଇ ଗଲେ ବି !—କାରଣ, କାରଣ, ମୋ'ର 'କୂଳ' ନାହିଁ—'ଥଳ' ନାହିଁ— ! କିନ୍ତୁ, ଭାଇ—ଏଣେ 'ରାଜା'ର କାମ—ଅଉ, ମୁଁ ପାଇକ ପିଲା ! !

ସ୍ୱଦେଶୀ—ବନ୍ଧୁ—ବନ୍ଧୁ— ( ଆଲିଙ୍ଗନ କରି ପକାଇଲେ )

[ ଦୂରେ ପଲ୍ଲୀ ବାହାରେ 'ବରୁଣେଇ ପାହାଡ଼'ରେ ପ୍ରତି ଧ୍ୱନିତ ହୋଇ ଭାସି ଆସିଲା, ଠିକ୍ ସେତିକି ବେଳେ, ପାଇକ ମାନଙ୍କର ସମବେତ କଣ୍ଠରେ, ମାଦଳ ଧ୍ୱନିରେ ଖେଳ ଖେଳ କେଉଁ ଉଚ୍ଛ୍ୱସିତ ସଙ୍ଗୀତର ଧାରା]

—ଗୀତ—

'ଭାଇ' ବୋଲ ଆଜି 'ପ୍ରଜା' ଦେଇଚରେ ବଳି ।
'ଭାଇ' ବୋଲ ଆଜି 'ରାଜା' ନେଇଛରେ ତୋଳି ॥
ବନ୍ଧେ, ବନ୍ଧେ—ପ୍ରାଣେ, ପ୍ରାଣେ—
କେଉଁ ପ୍ରୀତି ଢାଳି ।
'ରାଜା-ପ୍ରଜା' କାଳେକାଳେ ଯାଇଛୁ ତ ମିଳି ॥
ଧନ୍ୟ, ଧନ୍ୟ 'ଓଡ଼ିଶା' । ଧନ୍ୟ 'ଖୋର୍ଧା'ମୋ'ର ।
ଧନ୍ୟ 'ବରୁଣେଇ' ଗୋ । ଧନ୍ୟ 'ପାଇକ-ପଲ୍ଲୀ' ॥

ସ୍ୱଦେଶୀ—( କେଉଁ ଗଦ୍‌ଗଦ କଣ୍ଠେ )—କିନ୍ତୁ, ବନ୍ଧୁ—ତୁମର କୁଳାଗୃହ ମଣ୍ଡେ, ସେହିତ ତୁମର ବାହାଘର— ।

ଧନୁଆ—( କେଉଁ ଉତ୍ତେଜନାରେ )—'କୁଳାଗୃହ' —'କୁଳାଗୃହ'—ହାଃ, ହାଃ—ସେଭଳି ରକ୍ତ ଗରମରେ—ଝକ୍ ଝକ୍ ଫୁଟୁଥିଲେ ବି, କୁଳାଗୃହ ତଳେ ମୁଁ ନଷ୍ଟ କରି ନାହିଁ, ଭାଇ—ଫୁଲକୁ ମୋ'ର ଭସାଇ ଦେଇନାହିଁ, କୁଳବାହାରେ —। ( କେଉଁ ଗର୍ବଭରେ )—ହିଁ, ଫୁଲ ବି ମୋର—ପାଇକ ଝିଅ କି ନା—ସେ କଥାଟା ପଦେ, ପଦେ, ଜଗି ରହିଥିଲା ପରା—ମୁଦିଟା ମୁଁ ପିନ୍ଧାଇ ଦେବାକୁ ଗଲାବେଳେ ଯେଉଁ ଭାବେ ଅଙ୍ଗୁଳିଟାକୁ ତା'ର ସେ ରେଙ୍କ, ସମାଳି ନେଇଥିଲା—ହାଃ, ହାଃ—ତୁମେଇ ଦେଖି ଦେଖିନା, ତୁମର କଥାରୁ, ବନ୍ଧୁ—ତୁମକୁ ସେଦିନ ରାତରେ ସେ ଯେପରି ହସି, ହସି, ଚମ୍ପା କଢ଼ଟିପରି ଅଙ୍ଗୁଳିଟି ତା'ର ବଢ଼ାଇ ଦେଇଥିଲା —ଆଉ ତୁମେ ଥରି ଥରି, ତୁମର ଏହି ମୁଦିଟି ଖସାଇ ପିନ୍ଧାଇ ଦେଇଥିଲ—ସେମିତିକା କି ମୋ ବେଳକୁ—ଅସମ୍ଭବ—ଅସମ୍ଭବ—ପାଇକର ଜାନ୍ ଗଲେବି, ସେ କେବେ ତା'ର ଝାଣ ଛାଡ଼ିବ ନାହିଁ ।—ମାନ ଛାଡ଼ିବ ନାହିଁ ।—

ସ୍ୱଦେଶୀ—ଭାଇ—ତୋର ଫୁଲ ପ୍ରତି ଏତେ ପ୍ରେମ, ଏତେ ସ୍ନେହ ତୋ'ର, ଏଇ ଟିକିକ କଥା ପାଇଁ କୁଆଡ଼େ ଉଡ଼ଗଲା ଏକାତନେ ?—

ଧନୁଆ—ହାଃ—ହାଃ—କ'ଣ ତୁମେ କହୁଚ, ଭାଇ ? —ଉଡ଼ି ଯାଇଚି, ନା ଭରି ଉଠିଚି ।—ମୋ' କାମ ଦାମରୁ, କଥା ବାଣିରୁ, କଣ କିଛି ଚିହ୍ନିବ ପାରୁନାହିଁ ?—ଅରେ ଫୁଲର ଭଲରେ ସିନା ମୋର ଭଲ ।—ଫୁଲର ସୁଖରେ ସିନା ମୋର ସୁଖ ।—ଫୁଲ ପରା ମୋର ।—

ସ୍ୱଦେଶୀ—ତୁମେ ତେବେ ତା'ର ନ ହେବ କାହିଁକି ?

ଧନୁଆ—କଣ ଜବରଦସ୍ତି କରି । ସେଁଟା ଭାର ଦେଲ ।—ଦେଲ ବା ହେବାକୁ ଯିବ କାହିଁକି ?— ତୁମେଇ କହନା—ତୁମଭଳି 'ବର' ପାଇ କେତେ ସୁଖ ତା'ର—କେତେ ସୁଖ ତା' ଘରର —ତା' ଜାତର—ଆଉ ଆଉ, ତା'ର ପିଲାଦିନର ସାଙ୍ଗ ସାଥି 'ଧନୁଆ'ଟାର ?— କହିଲ କହିଲ, ମୁଁ କଣ କେତେବେଳେ ହେଲେ ଏଭଳି ସୁଖ, ତା'କୁ—

[ ନେପଥ୍ୟେ ଫୁଲର କେଉଁ ବାଣୀ-ଝଣା କଣ୍ଠ ସ୍ୱରେ ପୁଣି ଦେମନ୍ତ ଶୁଣାଗଲା, ପୂର୍ବ ଗୀତର ଶେଷ ପାଦଟି, କେଉଁ ବ୍ୟାକୁଳତା ସୃଷ୍ଟି କରି ]

—ଗୀତ—

"ଜଗି ବସିଥିଲି କୁଞ୍ଜେ ସାଜ ଫୁଲ ଶେଯ"

ଧନୁଆ—ଏହି ଶୁଣ, ଶୁଣ, ବନ୍ଧୁ—କି ମଧୁର କଣ୍ଠରେ ଗାଉଚି ଫୁଲ ମୋ'ର—କେଡ଼େ ଅକୁଳ ପ୍ରାଣରେ 'ଜଗି ବସିଚି କୁଞ୍ଜେ' ସେ—'ସାଜ ଫୁଲ ଶେଯ'—ଅସ, ଆସ ବନ୍ଧୁ—( ଅନ୍ତରାଳବାକୁ ଲାଗିଲା )

ସ୍ୱଦେଶୀ—( ପଥର ପାଲଟି ଯାଇଥିଲେ ପରି— ମୁହଁଟା ଅଡ଼େ ନଜର ପଡ଼ନ୍ତେ କି କ'ଣ )—

'ମୁଦି'—'ମୁଦି' ମୋର—( ବୋଲି, ପ୍ରାଣର କେଉଁ ମହାଉଚ୍ଛ୍ୱାସରେ ଧନୁଆ ହାତରୁ କାଢ଼ି ନେବାକୁ ଧାଇଁଗଲେ )

ଧନୁଆ—( ହସି ହସି ମୁଦିଟା ଲୁଚାଇ ଦେଇ ) ତା' ହବ ନାହିଁ—ତା' ହବ ନାହିଁ—ଯା'ର ମୁଦି ତା'କୁ ଫେରା କରି ଦେବା ପିନା, ଜିମ୍ମାଦାର ପାଇକ ମୁଁ—ଏକାବେଳକେ ମୁଦିର ଆସାମୀ ସହତେ—। ( ମୁଷ୍ଟି ଅଣ୍ଡାଳିବାକୁ ଲାଗିଲା )

ବିଦେଶୀ—( କେଉଁ ପ୍ରତିଘାତରେ କି କ'ଣ ପଳାଇ ବାହାରିଲେ ପରି )

ଧନୁଆ—ବନ୍ଧୁ !—ବନ୍ଧୁ !—ଏଁ—ଏଁ—କାହିଁ ? —କାହିଁ ?—ପଳାଇ ଗଲା ନା କ'ଣ ?—ବନ୍ଦୀ – ବନ୍ଦୀ— ଫୁଲି— ଫୁଲି— ହିମନ୍— ହିମନ୍—( ଶିକାର ଛଡ଼ା ଅନ୍ଧ ବାଘ ଭଳି ଚୁଲିଁଟାକୁ ସେମିତିକା ଚପିଚାପି ଦେଇ, ଦ୍ୱାରଆଡେ ଧାଇଁ ଗଲା କେଉଁ ସାହାଯ୍ୟ ଲୋଡ଼ି) —ହିମନ୍—ହିମନ୍—

[ ହିମନ୍ ଦ୍ୱାର ଫିଟାଇ ଠିଆ ହେଲା—ହିମନ୍ ନା ହିମନ୍‌ର ପ୍ରେତାତ୍ମା ]

ଧନୁଆ—କିଏ ?—ହିମନ୍ – ହିମନ୍— !—ଯ—ଯା —ଜଲଦି—ଜଲଦି—ସେହି ବିଦେଶୀଟା— ଫୁଲିର—ବନ୍ଦୀ କରି ଆଣିଥିଲି—ଭୁରକାମାରି ଖସି ପଳେଇଛି—ଧର୍—ଧର୍—ବାନ୍ଧ୍ – ବାନ୍ଧ୍ —ମାର୍ କସି—ହାତ ଗୋଡ଼ ଛନ୍ଦ—ପିଟ୍ ପିଟ୍—ମୁଁ ଆଦୌ ମନା କରିବି ନାହିଁ— ଭଲଲୋକ ନୁହେଁ ସେ—ହାରି ଦଗଲବାଜ୍— ତାକୁ ମୋଟେ ବିଶ୍ୱାସ ନାହିଁ—ଓଃ—ଅଣି ଦିଟା ମୋର ଥାନ୍ତାକି – ଯା'—ଯା' ବେଗେ—ଫୁଲି ଶୋଇଛି ?—କିଛି ଡରନାହିଁ—ମୁଁ ଜଗି ଠିଆ ହେଉଛି—ନା, ନା, ଫୁଲିକୁ ହଲାଇ, ଉଠାଇ ଦେ—ସେ ତା'ର ବିଦେଶୀକୁ ଭଲ କରି ଚିହ୍ନେ —ନିଶ୍ଚୟ ସେ ତା'ର ଗୁହାଣୀ ଛଟକରେ— କାହିଁ ଲ ପରଶରେ—କଥା ଫାନ୍ଦରେ—କାବୁ କରି

ସେନି ଆସିବ—କଥା କହୁନାହୁଁ ଯେ, ହାଇ— ଚୁହିଁ ଦେଖ—ଭଲ କରି—ମୁଁ ଯେ ତୋର ଧନୁଆ —ଗୁମ୍ଫଙ୍କ ଦୟାରେ—ଏଇ ମୁଦି ବଳରେ— ତୋ'ର ବହନ୍‌ର—ମୋ'ର ଫୁଲିର ଇଚ୍ଛା ପୂରିଲ ଗଦେ—! ( କାନ୍ଦ ପକାଇଲା ପରି )

ହିମନ୍—ହାଃ-ହାଃ-ହାଃ-ହାଃ—( ସେ ଯେ କି ଅଟ୍ଟହାସ୍ୟ )—'ପୂରାଇଚୁ'—'ଇଚ୍ଛା'—'ଫୁଲି'ର —ଏଇ 'ମୁଦିବଳ'ରେ ?—'ଗୁମ୍ଫଙ୍କ ଦୟା'ରେ ? —ଚୁକ୍ତି କରି ?—ବଡ଼ ଲୋକ ହୋଇ ?— 'ଥଲକୂଳ' ମିଳିଲା ତ ?—ହାଃ—ହାଃ— ( ଅଟ୍ଟହାସ୍ୟ କରି ଉଠିଲା )

ଧନୁଆ—ହିମନ୍ – ହିମନ୍—ନା, ନା, ତୁ ହିମନ୍ ନୋହୁଁ—ତୁ ମାୟା-ହିମନ୍—କହ, ସତ କହ—ନାହିଁ ତ—( ବର୍ଚ୍ଛୀଟା ଉଞ୍ଚାଇଲା )

ହିମନ୍—ହାଃ—ହାଃ—( ପୂର୍ବାପେକ୍ଷା ବେଶୀ ଜୋରରେ ହସି ଉଠିଲା )

ଧନୁଆ—( ଯୋଦ୍ଧାର ଏଡ଼େ ପାଷାଣ ହୃଦୟ, ଏଡ଼େ ବଜ୍ର ମୁଷ୍ଟି—ଶିଥିଳ ହୋଇଗଲା, ଥରି ଉଠିଲା ପରି )

ହିମନ୍—ତୋ'ରି ପାଇଁ ପିନା ସେହି ମୁଦି ପିନ୍ଧିବା । —ହସି, ହସି, ପାଇକ-କୁଳ-ନିୟମକୁ ଡେଇଁବା —କିନ୍ତୁ, ଏ' କେମିତିକା କଥା, ଭଲ—'ଯା'ଲାଗି କରେ ଚୋରି—ସେହି ବୋଲେ ଚୋର' !— ହାଃ, ହାଃ ହେଲାଣି, ହେଲା—ବେଶ୍ ମୁଖରେ ଅଛୁତ, ଧନୁଆ !—ହଁ, ସମସ୍ତେ ସୁଖରେ ରହିଲେଇ, ମୋ'ର 'ଫୁଲିରାଣୀ'ର ସୁଖ । !—

[ ନେପଥ୍ୟେ ଘରର ପଛପଟ ତୋଟାରୁ ଶୁଣାଗଲା ଫୁଲି ଯେମିତି ନାଚୁଛି, ଗାଇ ତା'ର ସେହି ସାଧାରି ଫୁଲି ଗୀତଟି କେଉଁ ପରସ କଣ୍ଠେ ଓ ମନେ ]

—ଗୀତ—

"ଫୁଲି ନାଚେ—ଫୁଲି ଛନ୍ଦେ—"

ଧନୁଆ—( କେଉଁ ଆବେଶରେ ନାଚିବାକୁ ଲାଗିଲା, ଠିକ୍ ମଧୁଚିଆସି ଭଅଁରଟି ପରି. କେଉଁ ଅଜ୍ଞାତ

ସ୍ବଗତରେ ଭ୍ରମିଯାଇ—ଗାଇ ଉଠିଲ ସେହ୍ବ ଅବେଗରେ, ଠିକ୍ ବୈଦ୍ଭିତ ସଙ୍ଗୀତ ଭଳି )

—ଗୀତ—

"ଗୁଣୁ, ଗୁଣେ ଭଅଁର ବନ୍ଧୁ
( ଗା, ଗା,) ଫୁଲ୍, ଫୁଲ୍ ଉଠେ ମଧୁ—"

( ଅବେଶଟା ଭାଙ୍ଗି ଯିବାରୁ, କେଉଁ ଆବେଗରେ ପରି )—। ଫୁଲ୍—ଫୁଲ୍—( ଘର ଭିତରକୁ ଧାଇଁ ଯାଉଥିଲ )

ହିମନ୍—ଖବର୍ଦ୍ଦାର !—( କବାଟ ଲଗାଇ ଦେଇ ଧଡ଼ କରି )

ଧନୁଅ—( ସେହି ଧନକା ଭଳି ମୁଣ୍ଡଟା ପିଟି ହେଇ-ଗଲ ଭାଏ କରି )—ହିମନ୍ !—ଫୁଲ୍ !—ଫୁଲ୍ !—( କପରି ନାଟ୍ରକ ଭବେ ଦ୍ବାରେ କରାଘାତ କରୁ କରୁ )—ଫିଟାଇ, ପଶିବାକୁ ଦେଇ, ପୁଣି ବନ୍ଦ କରି ଦେ ନା, ଫୁଲ୍—ଫିଟା—ଫିଟା, ଫୁଲ୍—ଆଜ୍ କି ମୋ'ର ସେ ତେଜ ଅଛି ?—ସେ ତାକତ୍ ଅଛି ?—ସବୁ. ସବୁ ହରି ନେଇଚ, ତୋ'ର ସେହି ମଳ ବୁଢ଼ାଟା—ହିମନ୍‌ଟା—ସେଇ ଆକଟ କରି ଏବେ, ଜୋର କରି ଲଗାଇ ଦେଇ କବାଟଟା, ମଜା ଦେଖୁଚ ପରି—ଫିଟା, ଫିଟା, ତୁ ଫୁଲ୍—ଆଜ ଯେ ମୁଁ ସମ୍ଭାଳି ପାରୁ ନାହିଁ—

[ ଠିକ୍ ଏତିକି ବେଳେ ସିନ୍ଦୁରା ଫାଟିଗଲ—ଙ୍ଘର, ଙ୍ଘରଣା ସବୁ ଫିଟିଗଲ—ପ୍ରକୃତି ରାଣୀ ଭଙ୍ଗି ମୋଡ଼ି ହୋଇ ଚେଇଁ ଉଠିଲେ ପରି ]

ଧନୁଅ—( କି ଗୋଟାଏ ନବ ତେଜରେ ଯେପରି ତେଜି ଉଠି, ଦ୍ବାରଟା ଉପରେ ଗୋଟା ସୁଦ୍ଧା ଓଜାଡ଼ି ହୋଇ ପଡ଼ିବାକୁ ଗଲ, କେଉଁ ଉଚ୍ଚାଟରେ ଡାକୁ ଡାକୁ )—ଫୁଲ୍—ଫୁଲ୍ ମୋ'ର—! !

[ କାହାଳୀ ବାଜି ଉଠିଲ—ମହାରାଜ ଓ ନିର୍ମଳା ପ୍ରବେଶ କଲେ—ମହାରାଜାଙ୍କୁ ଅତ୍ୟନ୍ତ ଗାମ୍ଭୀର୍ଯ୍ୟରେ କପରି ମଣ୍ଡିତ ହେବାକୁ ଦେଖା ଯାଉଥାଏ ]

ଧନୁଅ—( ଛୁଟିଆସି )—ରାଜା ! ରାଜା ! —( ଅଟକି ଯାଇ ) ମୁଁ ସ୍ବପ୍ନ ଦେଖୁ ନାହିଁ ତ ?—ଲୁହ କି ଏ—ଲୁହ କି ଏ—କାହିଁ ସେହି ବିଦେଶୀ, ରାଜା—ତା'କୁ ବାନ୍ଧି ଆଣିଚ କି ?—ମୁକୁଳାଇ ଦିଅ—ମୁକୁଳାଇ ଦିଅ, ରାଜା—ବିଦେଶୀ ଅମର ଭାରି ଭଲ୍‌ଲୋକ ଭାରି ଭଲ୍ ମନ ତା'ର—ଫୁଲ୍ ଯେ ମୋ'ର, ସେହିପରି ଭଲ ମନଟିଏ, ଭଲ୍ ଲୋକ ବୋଲି, ଭଲ୍ କାମ କରିଥିଲ—ମୁହିଁ ଖରାପ ଲୋକ—ଖରାପ ମନରେ, ଭାରି ଖରାପ କାମ କରିଚ । ମୋତେ ଦଣ୍ଡ ଦିଅ—ଯେଉଁ ଦଣ୍ଡ ଇଚ୍ଛା, ରାଜା—ନା, ନା, ସେହି ବିଦେଶୀ ହାତରେ—ମୋ'ର ଫୁଲ୍ ସାମ୍‌ନାରେ !—ହଁ, ଏହି ମୁଦଟା, ସେହି ବିଦେଶୀକୁ, ରାଜା—( କାଢ଼ି ପକାଇ ଦେବାକୁ ଯାଉଥିଲ )—କେତେଥର କେତେ ନେହୁରା ହେଇ ମେ ମାଗିଚି—ଫେରାଇ ଦେଇ ନାହିଁ—

ରାଜା—ହାଃ—ହାଃ—( ଗୋଟାଏ ଅଟ୍ଟହାସ୍ୟ ସେହି ଗାମ୍ଭୀର୍ଯ୍ୟ ଭେଦ କରି ଉଚ୍ଛୁଳି ପଡ଼ୁଥିଲ କି ଅଜ )

ନିର୍ମଳା—ମହାରାଜ—( ବୋଲି, ଶାସନ କଲେ କି ଅଜ—କହିଲେ ସଙ୍ଗେ ସଙ୍ଗେ ଧନୁଅକୁ ସ୍ପର୍ଶ କରି )—ତୋ'ର ଜମ୍ପା'ରେ ଥାଉ ନା, ଭାଇ—( ମିଳାଇ ଦେଲେ ଯଥା ସ୍ଥାନରେ, ଦୀର୍ଘଶ୍ବାସ ଛାଡ଼ି ପରି )

ଧନୁଅ—ଭଉଣି !—ତୁମେ ବି ଏଠି, ଭଉଣି ?—ନା, ନା—ମୋତେ ଛୁଅଁ ନା, ଛୁଅଁ ନା—ମୋ'ର ରାଜାର ସେହି କଥା ଗୁଡ଼ାକ ବର୍ଣ୍ଣେ, ବର୍ଣ୍ଣେ ଠିକ୍, ଭଉଣି—ମୁଁ ସେହି 'ଗୈର'—'ଖଣ୍ଡ'—'ବଦ୍‌ମାସ'—!

ରାଜା—ହାଃ—ହାଃ—ମୁଁ ବି 'ବଗୁରକ'—ମୁଁ—( ବୋଲି, ଚିତ୍କାର କରି ଉଠୁଥିଲେ ପରି )

ନିର୍ମଳା—( ବାଧା ଦେଇ ଓ ସେହିପରି ଶାସନ କରି ରଜାଙ୍କୁ, କହିଲେ ହସି ହସି ଧନୁଅକୁ ଧରି )—କିଛି ଚିନ୍ତା ନାହିଁ, ଭାଇ—'ରାଜା, ପ୍ରଜା' ଉଭୟେ ସମାନ—ସେହି 'ବିଦେଶୀ' ଆଉ କେହି ନୁହେଁ, ଭାଇ—ତୋ'ର 'ରାଜା'—।

ଧନୁଆ—'ରାଜା'—'ରାଜା' ମୋର—( ରାଜାଙ୍କ ଚରଣ ତଳେ ଲୋଟିଯାଇ ପଡ଼ିଲା )

ରାଜା—( ଲେଉଁ ଗମ୍ଭୀର ଭାବେ )—ହୁଁ—ମୁଁ 'ରାଜା'—!

ଧନୁଆ—ଫୁଲ୍ !—ଫୁଲ୍ !—ଧାଇଁଆ—ଧାଇଁଆ—ଫେମନ୍ !—ଫେମନ୍ !—ଦ୍ୱାର ଖୋଲ୍ ଦେ—ଖୋଲ୍ ଦେ—ଦେଖ, ଦେଖ ରୁହିଁ—କିଏ ଅଜ ତୋର' ଭଙ୍ଗା କୁଡ଼ିଆ ଦୁଆରେ—( ଦ୍ୱାରେ କବାଟ ଫିଟେଇବାକୁ ଧାଇଁ ଯାଉଥିଲା )

ନିର୍ମଳା—( ଧରି ପକାଇ, କହିଲେ ଭରା ହୃଦୟରେ ପରି ) ଆଜ ତେଣେ କାହିଁକି, ଭାଇ ?—( ହସିବାକୁ ଚେଷ୍ଟା କରି )—ଏଣେ ଖରା ମାଡ଼ି ଆସୁଚି !

ଧନୁଆ—ହାଃ—ହାଃ—ମୁଁ ଅଜ କେଉଁଣେ ଯିବି, ଭଉଣି—ମୋର ଫୁଲକୁ ଛାଡ଼ି—ଫୁଲ—ଫୁଲ—( ଡାକୁ ଡାକୁ, ଧାଇଁ ଯାଉଥିଲା ଦ୍ୱାର ଆଡ଼େ ପ୍ରବଳ ଆବେଗରେ )

ନିର୍ମଳା—( ଧନୁଆର ଏପରି ବିକଳତା ଓ ରାଜାଙ୍କର ଜଡ଼ତା ଦେଖି ଦୋଧାଇରେ ପଡ଼ିଗଲେ ପରି—କିନ୍ତୁ, କେଉଁ ପ୍ରତ୍ୟୁତ୍ପନ୍ନମତି ବଳରେ କହି ଉଠିଲେ କି ଆଜ ହସି ହସି )—ଫୁଲକି ପରି ମୁଁ ନେଇ, ସବାରିରେ ବସାଇ ଦେଇ ସାରିଲିଣି—

ଧନୁଆ—( ଅବାକ୍ ହୋଇ ରହିଲା )

ନିର୍ମଳା—( କାନେ କାନେ ) ରାଜା କହିଲେ, କଟକରେ ଦୁହେଁ ଦେଖା ଦେଖି, ମେଳା ମେଳି ହେବ !

ଧନୁଆ—( ଗୁରୁଅଣ୍ଡୁ ଘୋଟି ଆସୁଥିବା ଘନଘଟାକୁ ଉଡ଼ାଇ ଦେଇ, କେଉଁ ବିଶ୍ୱାସ ବଳରେ ଦେଉଁ ଉଠିଲା ଆନନ୍ଦରେ କି ଅଉ )—ମୋ'ର 'ରାଜା' କହିଲେ !—ମୋ'ର 'ରାଜା' କହିଲେ !—ମୁଁ ମାନିବି—ମୁଁ ମାନିବି—ଅବଶ୍ୟ ମାନିବି—କିନ୍ତୁ, ଭଉଣି—

ନିର୍ମଳା—କ'ଣ, ଭାଇ—

ଧନୁଆ—( ଦୀର୍ଘଶ୍ୱାସ ଛାଡ଼ି )—ଗୋଟାଏ କଥା ମୁଁ ମାନି ପାରିବି ନାହିଁ—

ନିର୍ମଳା—କେଉଁ କଥା—?

ଧନୁଆ—ଏଇ ମୁହଁଟା ଅଉ—( ପ୍ରାଣ ପଣେ ଯାକିବାକୁ ଲାଗିଲା )

ରାଜା—( କି ଯେ ଶୂନ୍ୟ ଦୃଷ୍ଟିରେ ରହିଁଲେ ସେଇ ମୁହଁ ଆଡ଼େ )

ନିର୍ମଳା—କିଏ ମାଗୁଚି ତୋତେ, ଭାଇ ?—( କିନ୍ତୁ ବୁକୁଟା ଫାଟି ଯାଉଥିଲା ପରି )

ଧନୁଆ—ମାଟିବା ତ ଦୂରେ—ଏ' ଜାନ୍ ଗଲେ ବି ଛାଡ଼ି ପାରିବି ନାହିଁ ମୁଁ—ଭଉଣି—ଭଉଣି—ମାରି ବଳରେ ଯିନା ଏତେ ବଳ ମୋର—'ରାଜା' ଆଜ 'ପ୍ରଜା'ର ଦୁଆରେ—!

ରାଜା—( ସ୍ଥିର ନ ଥାଇ ପାରି )—ନା, ନା, ରେ—'ଦୁଆର' ଡାଡ଼ି ଅଜ, 'ପ୍ରଜା'ର ଘର ଭିତରେ—'ପ୍ରଜା'ର ପଞ୍ଜରା ଭିତରେ—

ଧନୁଆ—ଦେଖ, ଦେଖ, ଭଉଣି—'ରାଜା' ମୋର କେଡ଼େ ଦୟାଳୁ—ଅଜ, ମୁଁ ହୁଣ୍ଡା ପାଇକଟାଏ କେଡେ ସଜା ଦେଉଚି—ରାଜା—ରାଜା ମୋ'ର ( କେଉଁ ଭକ୍ତି ଓ ପ୍ରୀତିରେ ଯେ ଉନ୍ମତ୍ତ ହୋଇ, ଜାନୁପାତ ପୂର୍ବକ ରାଜାଙ୍କର ହାତ ନେଇ, ବାର, ବାର, ଆପଣାର ଓଠରେ, ମୁହଁରେ, ମସ୍ତକରେ ବୁଲାଇବାକୁ ଲାଗିଲା )

ରାଜା—କହିଲ, ନିର୍ମଳା—ଏମିତିକା 'ସଜା'ର ମଜା, ରାଜା ଛଡ଼ା ଅଉ କିଏ ଭୋଗ କରି ପାରେ ?

ନିର୍ମଳା—( କାପରି ଚମକି ଉଠି )—ଆସ, ଆସ ଚାଲ—ଦେଖିଲ, କେଡ଼େ କଳା ବଉଦଟାଏ—

ଧନୁଆ—( ଅନ୍ତରରେ ଯେମନ୍ତ ସେଇ ବଉଦର କାଳିମାଟା ଅନୁଭବ କରି, ଉଠି ଆସି ) ଏଡ଼େ ସୁନ୍ଦର ସଞ୍ଜାଳଟାରେ ବଉଦ !—ମୁଁ ଉଡ଼ାଇ ଦେଉଚି—"ଦେବି ତୋତେ ମୁଢ଼ି—ମେଘ ଯା' ଉଡ଼ି"—( ଚୋଟାଏ ଫୁଙ୍କ ଦେଲା )

ନିର୍ମଳା—ଓଃ, ଏ' ଯେ ଅନ୍ଧାର କରି ଆସିଲାଣି—!

ଧନୁଅ—( ମୃଦୁ ମୃଦୁ ହସି, ନିର୍ମଳାର କାନେ
କାନେ—ମାନିଲ ନାହିଁ ?—କିନ୍ତୁ ଦେଖିବ,
ଫୁଲ୍ ମୋ'ର, ଏହି ମନ୍ତ୍ର ବଳରେ, ଫୁଙ୍କି ଠିକ୍
ଉଡ଼ାଇ ଦେବ ପରା ଏଇକ୍ଷଣି—କେଡ଼େ କେଡ଼େ
କଳାହାଣ୍ଡିଆ ବଉଦ ସେ— ( ମୁହଁଟା ଅନ୍ଧାର
କାନ ପାଖକୁ ନେଇ )—ଅଚ୍ଛା, ଭଉଣି !—
ଫୁଲ୍ ମୋ'ର, ମୁହଁଟା କଳାହାଣ୍ଡିଆ କରି
ନାହିଁ ତ ?

[ ଠିକ୍ ସେତିକି ବେଳେ ଅକାଶଟା କଳା
ବଉଦରେ ଘୋଡ଼ିହୋଇ ଅସିଲା—ତୋଫାନ
ବି ମାଡ଼ି ଅସିଲା—ବିଜୁଳି ଘଡ଼ଘଡ଼ି ମାତି ଉଠିଲା ]

ଧନୁଅ—( ଠିକ୍ ସେହି ଭଳି ବିଭୀଷିକା ମର୍ମେ ମର୍ମେ
ଅନୁଭବ କରୁ କରୁ )—ଫୁଲ୍ ମୋ'ର ଉତ୍ତର
—ଏଁ—ଏଁ—ଫୁଲ୍ ମୋ'ର କାହିଁ ଗଲା ସେ—!

[ ଠିକ୍ ସେତିକିବେଳେ ଦୂରେ ଶୁଣାଗଲା—
ଫୁଲର କଣ୍ଠ ଭଳି, କିନ୍ତୁ କି ମର୍ମଭେଦୀ-
ମହାକାଳର ସେହି ବିଭୀଷିକା ଭେଦକରି ]

—ଗୀତ—

"କାହିଁ—କେତେ ଦୂରେ, ସଖା—
କର ଗୋ ଚୁମ୍ବନ—
ହସି, ରସି—ଫୁଲ୍ ମନେ—
ଫୁଲ୍ ଜୀବ-ଧନ—"

ଧନୁଅ—ଫୁଲ୍—ଫୁଲ୍—( ଧାଇଁବାକୁ ଗଲା, କିନ୍ତୁ
ଧାଇଁ ନ ପାରି, ପଡ଼ିଗଲା )

ରାଜା—( ପ୍ରତିଧ୍ୱନି କରି ଉଠିଲେ ପରା, ଅନ୍ଧ-ଜ୍ଞାନ-
ଶୂନ୍ୟ ହୋଇ )—'ଫୁଲ୍'—'ଫୁଲ୍'—( ଧାଇଁ
ଯାଉଥିଲେ )

ନିର୍ମଳା— ( ଅଟକାଇ ନେଲେ )

ରାଜା— ( କପାଳ ଭାଙ୍ଗି ପଡ଼ିଲେ ପରା )

[ ସେତେବେଳକୁ ଘନଘନ ବିଜୁଳି ଓ
ଘଡ଼ଘଡ଼ି ଶୁଣାଗଲା—ନା, ନା, ଏ ଯେ
ମହାକାଳର ଅଟ୍ଟହାସ୍ୟ—**ପ୍ରେମିକ ଯୁଗଳଙ୍କୁ**
ଲକ୍ଷ୍ୟକରି କି ଅଉ—ନିର୍ମଳା ତାହାକୁ କପାଳ
ଭାବେ ସମାଳିବ, କିଛି ଠିକ୍ କରି ପାରୁ ନ ଥାଏ
ପରା ]

ଧନୁଅ—( ଉଠିବାକୁ ଚେଷ୍ଟା କରି, କେଉଁ ଉନ୍ମାଦ
ଭଳି, କିନ୍ତୁ ନ ପାରି )—ଆଃ—ଅଚ୍ଛା ବାଘ-
ଅମୁଡ଼ାଟା ଏତେବେଳେ କାଳ ହେଲା !—

ରାଜା—'ବାଘ-ଅମୁଡ଼ା' ନୁହେଁ, ଭାଇ—'ରାଜା-
ଅମୁଡ଼ା'—ତୋ'ର ରାଜାର 'ଅମୁଡ଼ା'—(କି ଯେ
ଉନ୍ମାଦ ଭାବେ ଧନୁଅକୁ ଦୃଢ଼ଭାବେ ଅଲିଙ୍ଗନ
କରି ଉଠାଇ ନେଲେ ବକ୍ଷେ )

ଧନୁଅ—ରାଜା—ରା—( କିନ୍ତୁ, କପାଳ ତୋ'ଟଣାରେ
ପଡ଼ି ମୁଦଟା ଅଙ୍ଗୁଳିରେ ବୁଲାଇ ବୁଲାଇ, ନିଶ୍ଚଳ
ମୂର୍ତ୍ତି ପାଲଟି ଯିବାକୁ ଲାଗିଲା ପରା )

ନିର୍ମଳା—( ଭାରି ବ୍ୟାକୁଳ ଭାବେ ଅକାଶକୁ ଦେଖାଇ )
—ରାଜା—ରାଜା—ଦେଖନ୍ତୁ ଚାହିଁ ଏଣେ, କି
ଭୀଷଣ ମୂର୍ତ୍ତିରେ—

ରାଜା—( ଲମ୍ଫ ଦେଇ, କେଉଁ ଗମ୍ଭୀର ନିର୍ଘୋଷରେ )
ହଁ—ମୁଁ ରାଜା !

[ କ୍ଷଣ-କରେ ଅପଣାର ତରବାରୀଟା କୋଷମୁକ୍ତ
କଲେ, ଉର୍ଦ୍ଧ୍ୱକୁ ଚାହିଁ, କେଉଁ ଯୁଦ୍ଧ ଘୋଷଣା
କରି ପରା । ନେପଥ୍ୟେ ଅପେକ୍ଷା କରୁଥିବା
ରାଜାନୁଚରମାନେ, 'ଜୟ' କରିବାର ସଙ୍କେତ
ମନେ କରି କୋଳାହଳ କଲେ କି ଅଉ—ବାଜା
ମଧ୍ୟ ବାଜି ଉଠିଲା—ନିର୍ମଳା ଧନୁଅର ହାତ
ଧରି, ଚଳାଇବାକୁ ଚଳେ ]

ଧନୁଅ—( ଆପଣାକୁ ଛଡ଼ାଇ ନେଇ, ରାଜାଙ୍କର ଅନ୍ତର
ମର୍ମ କଥା ଜାଣିପାରି ଯେମନ୍ତ, ସେହି ଯୁଦ୍ଧରେ
ଅଗ୍ରସର ହେଲା, ବର୍ଚ୍ଛା ଉଞ୍ଚାଇ, ସମସ୍ତ ଗଚ୍ଛିତ
ବଳ ଏଥର ପ୍ରୟୋଗ କରି କି ଅଉ)—ଭୟ ନାହିଁ,
ରାଜା !—ସେହି 'ଦୁଷ୍ମନ୍'—'ବିଦେଶୀ'ର ସନ୍ଧାନ
ମୁଁ ପାଇଛି !—ହାଃ—ହାଃ—କେତେ ଦିନ
ଛପି ରହିବ ?—କାହିଁ ରହିବ ?—ମୁଁ ଯେ
**"ପାଇକପୁଅ !"**

## —ଚରିତ୍ର ଲିପି—

ସାହାଜାହାନ୍—ଭାରତ-ସମ୍ରାଟ

ତାଜ୍—ବୋଗ୍‌ଦାଦ୍‌ର କୌଣସି କୁମ୍ଭକାର-ପାଳିତା,
ପରେ 'ମମତାଜ୍' ନାମରେ ଭାରତ-ସାମ୍ରାଜ୍ଞୀ ।

ସିରାଜ୍—ବୋଗ୍‌ଦାଦ୍‌ର ଜଣେ କୁମ୍ଭକାର ଯୁବକ ଓ
ତାଜ୍‌ର ବାଲ୍ୟ ସହଚର ।

ସଲିମ୍—ବୋଗ୍‌ଦାଦ୍‌ର ଧନାଢ୍ୟ ଯୁବକ ଓ ସିରାଜ୍‌ର
ବନ୍ଧୁ ।

ରହିମ୍—ବୋଗ୍‌ଦାଦ୍‌ର ଜଣେ ଫକ୍‌କଡ଼ ଓ ସିରାଜ୍‌ର
ବନ୍ଧୁ ।

ପ୍ରୌଢ଼ା—ସିରାଜର ଜନନୀ ।

ଅମିନା—ବୋଗଦାଦ୍‌ର ଜଣେ ଲୁବ୍ଧା ଯୁବତୀ—
ପରେ, ପ୍ରଧାନାସଖୀ-ନର୍ତ୍ତକୀ—ଶେଷେ 'ମସ୍ୱାସୁମ୍'
ନାମରେ ବେଗମ୍ ମହଲ୍‌ର ପ୍ରଧାନା ବାନ୍ଦୀ ।

ସଉଦାଗର—'ତାଜ'-ବିକ୍ରୟକାରୀ ।

ଉଷ୍ଟ୍ରକ, ଖୋଜାଗଣ, ବାନ୍ଦୀଗଣ ଇତ୍ୟାଦି ।

---

# ତାଜମହଲ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ବୋଗ୍‌ଦାଦର ପଲ୍ଲୀ କୁଟୀର—

[ ଘଞ୍ଚ ଖେଜୁରକୁଞ୍ଜବେଷ୍ଟିତ—ସାମ୍‌ନାକୁ ମେଲା-ଘର—ଅନ୍ଦରକୁ ଜୀର୍ଣ୍ଣପର୍ଦ୍ଦାନସିନ୍ ଗୋଟିଏ ଦ୍ୱାର, ଡୁରଛଡ଼ା, ଅରକୋଣକୁ ଦୋକାନଟିଏ—ନୂଆ ନୂଆ ହାଣ୍ଡି ମାଠିଆରେ ଭର୍ତ୍ତି—ସାମାନ୍ୟ ଫାଙ୍କ୍‌ରେ ଚଟାଣଉପରେ ନୂଆ ଖେଜୁର୍ ଚଟେଇଟିଏ ପାର ବସିଚ, ମଳିନବସନା, ମଳିନବେଶା ବାଳିକାଟିଏ —ସ୍ଫୁଟନୋନ୍ମୁଖଯୌବନା—ମାଟିର ପଶରା ସଙ୍ଗେ ସଙ୍ଗେ ରୂପର ପଶରା ମେଲାଇ ଦେଇ ।—

ଅଜି ଇଦ୍—ଗୃହଅଡ଼େ ଅନନ୍ଦ—କେବଳ ଏହ୍ସ ସ୍ଥାନଟି ଯେପର ବାଦ୍—ନିରାନନ୍ଦର ଗାଢ଼ଛାୟା କୁଟୀରବାସିନୀର ମୁଖମଣ୍ଡଳ ଗ୍ରାସକର, ସମସ୍ତ କୁଟୀର ଓ ଅଖପାଖ ଯେପର୍ହେ ଗ୍ରାସକର ଦେଇଚ—ତଥାପି ଉଦ୍‌ଗତ-ଯୌବନର ଲାବଣ୍ୟଟା ଫୁଟି ବାହାରୁଚ—ପାର୍ବଣର ଆନନ୍ଦଟା ଛୁଇଁ ନ ଛୁଇଁଲାପର ଦଶୁଚ—ଅଜ କୁଞ୍ଜର ଅଙ୍କାବଙ୍କା ପଥଦେଇ ଖେଳ ଖେଳ ଅସୁଥିବା ପ୍ରଭାତର ଗୋଲାପୀ ରଶ୍ମିରେ କେଉଁ ଶରଦାଶାର ଅଲେଖଟା ଯେପର୍ହେ ନିବଦ୍ଧ ଦୃଷ୍ଟିକୁ ତା'ର ଝଲମଲ୍ କର ରଖିଚ—ସେ ଗାଉଥିଲା—ବୁଲ୍‌ବୁଲ୍ କଣ୍ଠରେ—କିନ୍ତୁ ଜାଣେନା, କି ଗୀତ—ଗୋଟାଏ କେଉଁ ଗୋଲାପୀ ନିଶାରେ ଯେମିତକା ଅଧେ ଜ୍ଞାନ ହଜାଇ ଦେଇ—]

—ଗୀତ—

ନୀରବସାଥି କଏ ଗୋ ନିତ ଦୁଆରେ ମୋର<br>
ନିରେଖି ଗୃହେଁ ।<br>
ସଞ୍ଜ, ସକାଳେ ଆପଣା ଭୋଳେ, ଅଜଣା ସ୍ୱରେ<br>
କି ଗୀତ ଥାଏ ॥<br>
ଚମକି ଉଠେ ସ୍ୱପନେ—<br>
ଅମକି ଗୃହେଁ ମୁଁ ଜାଗରଣେ—<br>
ବୁଝି ନ ପାରେ, ଅଙ୍ଗ ଶିହରେ, ମଦିରା ଗନ୍ଧେ,<br>
ଅତନୁ ମୋହେ ॥<br>
ସକାଢ଼ି ରଖେ ମୁଁ ନୂଆ ବିପଣି—<br>
ଚକିତେ ଗୃହିଁ ରହେ ସରଣୀ—<br>
ମୁଲ୍ ନ କରେ, ସରମେ ମରେ, ଚକିତେ ଗୃହିଁ,<br>
ଆଖି ଫେରାଏ ॥

[ ଦ୍ୱାରର ପର୍ଦ୍ଦାଟି ଠେଲ୍ ଗୋଟିଏ ପ୍ରୌଢ଼ାର ମୁଖ ଦେଖାଗଲା—ଦାରିଦ୍ର୍ୟର ନିଷ୍ଠୁର କଶାଘାତରେ ଯେପର୍ହେ ଜର୍ଜ୍ଜରିତ—ନୈରାଶ୍ୟର ସମସ୍ତ ରେଖା ସ୍ତରେସ୍ତରେ ଯେପର୍ହେ ସୁସ୍ପଷ୍ଟାଙ୍କିତ—ପ୍ରୌଢ଼ାଟି ଥରେ ଦୋକାନଅଡ଼େ, ଥରେ ବାହାରକୁ କେଉଁମରୁଦୃଷ୍ଟିରେ ଗୃହିଁଲା, ଖୋଦାଙ୍କ ଉଦ୍ଦେଶ୍ୟରେ କେତେଥର ଉଠିବସି ନମାଜ୍ କଲା—ପୁଣି ଗୃହଅଡ଼େ ଗୃହିଁ, ନୈସ୍ୱଶ୍ୟରେ ଆତ୍ମଗୋପନ କରୁଥିଲା, ମାତ୍ର ଅବଶ୍ୱାସିନୀ ବାସନାର ଅପାତମଧୁର ତାଡ଼ନାରେ, ଫାଶୀକାଠରେ ଝୁଲିବାକୁ ଠିଆ ହେଲଣି, ଏକଥା ମର୍ମେ ମର୍ମେ ଅନୁଭବ କର ସୁଦ୍ଧା, ଫେର୍, ଧାଇଁ ଆସି ପରୁରଲ ନିର୍ମ୍ମୋକ୍ତ ସ୍ୱରେ—ତାଙ୍କର

ତେତେବେଳକୁ ଗାନ ବନ୍ଦ ହୋଇଗଲାଣି, କିନ୍ତୁ ଚେଷ୍ଟା ଚେଷ୍ ଖେଳ ଚୁଲିଥାଏ—ଅଚେଷ୍ଟା ଭଙ୍ଗି ନ ଥାଏ— ]

ପ୍ରୌଢ଼ା—ଖବରଦାର—

ଛାଜ୍—ଚମକି ଉଠିଲା ଏହି 'ଖବରଦାର' ଶବ୍ଦରେ; ଏହା ତା'ର ମର୍ମର କେଉଁ ଗୁପ୍ତଦ୍ୱାର ଖୋଲି ଦେଇ, ଗୁପ୍ତଧନାଗାର ସର୍ବସମକ୍ଷେ ପ୍ରକାଶ କରି ଦେଲା ଯେପରି )

ପ୍ରୌଢ଼ା—କେହି ଆସି ନାହାଁ, ଛାଜୁ ?

[ ବେକର ଦୌଡ଼ା କାଟିଦେଇ, ଖଲ୍ଲାସର ହୁକୁମ ହେବ ପରି, ଏହି ଆଶାରେ କି ଯେ ସେ ସ୍ଥିର କରୁଣ ଗୃହାଣୀ । ]

ଛାଜ୍—ନା—( ଏତିକି କହିବାକୁ ଯୁଗେ ଲାଗିଗଲା ଯେପରି—ଏବେ ଲଜ୍ଜା, ସଙ୍କୋଚରେ ଭାଷା ବାହାରୁ ନ ଥିଲା, ଯୌବନର ପ୍ରଥମ ନିଶାଟା ଯେ ଆଜ ଛାକୁ ଧରିଚି, ଏହା ଉପଲବ୍ଧି କରିବାକୁ ବୋଧହୁଏ—ତେଣେ ମା'ର ନିର୍ମମ ମତୃଗୃହାଣୀ ତା' ହୃଦୟର ସମସ୍ତ ଉଚ୍ଛ୍ୱାସଟା ଉଚ୍ଛ୍ୱାରିତ କରି ଦେଇ, କଣ୍ଠଦେଶ ପ୍ଲାବିତ କରି ଦେଇଥିଲା ଏକାବେଳକେ )

ପ୍ରୌଢ଼ା—ହା ! ଆଲ୍ଲା—( ଏହି ଉକ୍ତି ସଙ୍ଗେ ସଙ୍ଗେ, ସମସ୍ତ ଶ୍ୱାସଟା ଯେପରି ପ୍ରଳୟୋଚ୍ଛ୍ୱାସରେ, ବିକୃତ ମୁଖଭଙ୍ଗୀ କରାଇ, ବାହାରି ଉଡ଼ିଗଲା—କି ଯେ ଅଦ୍ଭୁତ କମ୍ପନ, ଗର୍ଜନ, ଅଲ୍ଲାର ଅସ୍ଥାନକୁ ଦୋହଲାଇ ଦେଲା ପରି—ପ୍ରାଣଶୂନ୍ୟ ଜଡ଼ ପିଣ୍ଡଟାକୁ ବୋହିନେଇ, ପବନଜାର ପରି ପାରେ ଚାଲିଗଲା କି ସେ ଆଜ । )

ଛାଜ୍—ଆଜ ଇଦ୍—( ସେହିଆଡ଼େ ତୀକ୍ଷ୍ଣ ତୀକ୍ଷ୍ଣତର ଦୃଷ୍ଟିରେ ଚାହିଁ ରହିଥିଲା—ହଠାତ୍ ମୋହ ଯବନିକା ଯେପରି ଭେଦ କରିପାରି, ଏହିପରି ଉକ୍ତିକରି ଉଠିଲା, ଓ ବାସ୍ତବିକତାଟା ସମ୍ପୂର୍ଣ୍ଣ ଉପଲବ୍ଧି କରୁ କରୁ ନିଜର ବସନ ଭୂଷଣ ଆଡ଼େ ଠିକ୍ 'ଚକ୍ଷୀ' ପରି ଅଖି ବୁଲାଇବାକୁ ଲାଗିଗଲା )

—ଖୋଦା—(—ଆପଣାର ସମସ୍ତ ବାସନା ମା'ର ବାସନାରେ ସାମିଲ୍ କରିଦେଲା ପରି—ଆଉ ସେହି କୁଞ୍ଜର ଫାଙ୍କରେ ଯେତିକି ଟିକିଏ ନୀଳିମା ଦେଖା ଯାଉଥିଲା, ସେହିଆଡ଼େ କେଉଁ ପ୍ରାର୍ଥନା ପୂର୍ଣ୍ଣ ଦୃଷ୍ଟିରେ ଓ ହୃଦୟରେ ଚାହିଁ ରହିଲା । )

[ ହଠାତ୍ ଦୈବବାଣୀ ପରି ଅଦୂରେ ଆନନ୍ଦକୋଳାହଳ ଶୁଣାଗଲା—ମଝେ ମଝେ ମିଶ୍ରିତ ସଙ୍ଗୀତର ମୂର୍ଚ୍ଛନା— ]

ଛାଜ୍—ଖୋଦା, ଖୋଦା—( ସତେକି ଖବରଦାର-ମାନଙ୍କର କୋଳାହଳ ! ଦୁନିଆସାରା ଯେତେ ଗୀବ ଗର୍ଜିବ ଅଛନ୍ତି, ଖୋଦା କଣ ପଠାଇ ଦେଇଛନ୍ତି, ଲୁଣ୍ଠକରି ଆଜି, ଦୋକାନ ତା'ର ଲୁଟ୍‌କରି ନେବାକୁ ?—"କଣ କରିବ ?—କେମିତିକା ଖବରଦାରମାନଙ୍କୁ ସଂଖୋଳିବ ?—ମାଲ୍ ପସନ୍ଦ ହେବତ ?—ଏତିକି ମାଲ୍ ଅଣ୍ଟିବତ ?—ମା କାହିଁ ?—ଗଲା କେଉଁଠି ?—ଏକା ସମାଳିବୁ କିପରି ?—ପାଜିଟା—ଠିକଟା ବେଳରେକରି ନାହିଁ ।"—ଏହିପରି ବିରକ୍ତି, ଔତ୍ସୁକ୍ୟ ଓ ଆନନ୍ଦରେ ପାଗଳପ୍ରାୟ ହେବାକୁ ଲାଗିଲା )

ପୌଢ଼ା—ସାବଧାନ, ଛାଜୁ—ଖବରଦାର ଯେମିତିକା ଏଥର—

[ ପିଣ୍ଡପ୍ରାର୍ଥୀ ଆତ୍ମା ପରି ସୂକ୍ଷ୍ମ ଦେହରେ ଯେପରି ଦୌଡ଼ିଆସି ଏହିପରି ଧମକାଇ ଧମକାଇ 'ଏଥର' ଶବ୍ଦଟା ଉଚ୍ଚାରଣ ମାତ୍ରକେ ଖବରଦାର ଯେ ଆଦୌ ଆସି ନାହିଁ, ଏ'କଥା ସ୍ମରଣ କରି ଓ ବାଳିକାର ସରଳ, ସାବେଗ, ସହୃଦୟ ଚାହାଣୀ ଅବଲୋକନ ମାତ୍ରକେ, କଥାଟା ସମ୍ପୂର୍ଣ୍ଣ କରି ନ ପାରି, ସେହି ଧମକର ଆଘାତଟା ମର୍ମେ ମର୍ମେ ନିଜେ ଅନୁଭବ କରୁ କରୁ, ପର୍ଦ୍ଦାର ଅନ୍ଧକାରରେ ପୁଣି ମିଶିଗଲା ଯେମନ୍ତ ]

ଛାଜ୍—( ଏହି ଉକ୍ତିରେ କି ଯେ ଯାତନା ଅନୁଭବ କରିବାକୁ ଲାଗିଲା ମର୍ମେ ମର୍ମେ—ଠିକ୍ ପିଣ୍ଡଦାତା

ସନ୍ତାନ ଫଳ—ଯାହା ଭଲେ ସେ ଅନୁଭବ କରି ନ ଥାନ୍ତା, ବାକ୍ୟଟି ସମାପନ କରି, ମା ତା'ର ଯେ ସମସ୍ତ ବଳଙ୍କ ପଣରେ ଅଜ ତା' ଉପରେ ଓଜାଡ଼ି ଦେଇ, ଆପଣାର ମୁକ୍ତଦ୍ୱାର ଅପେ ଉନ୍ମୁକ୍ତ କରି ପାରିଥାନ୍ତା—କ'ଣ କହିବ କହିବ ହୋଇ ସ୍ଫୁରିତାଧରରେ କେବଳ ରହିଗଲା, ଯେ ଏଥିରେ ତା'ର ମା'ର ଅମୁକ୍ତ ଅସ୍ମା ଅନ୍ତରର ଯାତନା ଓ ଅପମାନ ଭୋଗକରେ, ଏହି ଭୟରେ—କେବଳ ଆଖିର ଦୁଇକୋଣରୁ ଦୁଇବିନ୍ଦୁ ତପ୍ତ-ଅଶ୍ରୁ ଟପି ଭଲେ ପଡ଼ିଗଲା ସିନା । )—ମା !—ମା !—( ପୌଢ଼ାଟି ଉକ୍ତଭାବେ ଅନ୍ତର୍ହିତ ହେବା ସଙ୍ଗେ ସଙ୍ଗେ କେଉଁ ଉଚ୍ଛ୍ୱାସରେ ଏହି ଅଧର ଯୋଡ଼ିକ ଦେପର ଆପେ ଅପେ ଉଚ୍ଛୁଳ ଉଠିଲା ଅନ୍ତରର କେଉଁ ଗଭୀରତମ ତଳରୁ )

[ ସେହି କୋଳାହଳ କମେ ଯେତିକି ନିକଟବର୍ତ୍ତୀ ହେଉଥାଏ ତାଜୁ ଓ ପ୍ରୌଢ଼ାର ଆଶା, ଔତ୍ସୁକ୍ୟ ସେତିକି ବଢ଼ି ଯାଉଥାଏ—କିନ୍ତୁ, ହାୟ ! କୋଳାହଳଟି କୁଟୀରର ପାଖ ଦେଇ, ଧସି ହୋଇ ଯେମନ୍ତ କମେ ଦୂରେ ଦୂରେ ମିଳାଇ ଯିବାକୁ ଲାଗିଲା—ଆଶାପ୍ରୀମାନଙ୍କର ଆଶା ଭରସା ମଧ୍ୟ ସେହିପରି ମିଳାଇ ଯିବାରୁ, ପ୍ରୌଢ଼ାର ଘନ ଘନ ଶ୍ୱାସରେ ଛାତିଟା ଯେମିତିକା ଉଠୁଥିଲା, ପଡ଼ୁଥିଲା ଏବଂ ତାଜୁର ଗୋଲାପୀ ଅଧର କେଉଁ ଆଡ଼େ ଉଡ଼ି ଉଡ଼ି ଫିକା ପଡ଼ି ଯାଉଥିଲା—ସୌଭାଗ୍ୟକୁ କୁଞ୍ଚିର ସେହି ଅଙ୍କା ବଙ୍କା ବାଟରେ ଦୁଇଜଣ ଲଫଙ୍ଗା—ରେଶମୀ ଲୁଙ୍ଗି, ସାଟିନ୍ ସଦରିଆ ପିନ୍ଧା—ବେକରେ ରଙ୍ଗିନ୍ ରୁମାଲ ବନ୍ଧା—ମୁଣ୍ଡରେ ଜରିର ଟୋପିର ବାହାର୍—ଅତର ଖୁସ୍‌ବୋରେ ଦେହଟା ଭର୍—କେତେ କଣ ଖୁସ୍‌ଗପ୍—ହସ—ଥଟ୍ଟା—ବାଟଯାକ ଭୁଣି ଭୁଣିକା ଯେମିତିକା ଆସି ଦୋକାନ ସାମନାରେ ହାଜର ହେଲେ—ତାଜୁ କେଉଁ ଅଗ୍ରହାତିଶଯ୍ୟରେ, ଖରିଦ୍ଦାର ବୋଧରେ, ଦୋକାନର ସର୍ବସ୍ୱ ସଙ୍ଗେ ସଙ୍ଗେ ଆପଣାର ସର୍ବସ୍ୱର ଅଗ୍ର ଅର୍ପଣ କରିବାକୁ ପ୍ରସ୍ତୁତ, ଏହିଭାବେ ଆଦର ଅଭ୍ୟର୍ଥନା ଦେଖାଇବାକୁ ଲାଗିଗଲା—ପ୍ରୌଢ଼ା ମଧ୍ୟ କେଉଁ ଆନନ୍ଦୋ-ଦ୍ବେଗରେ ଅନ୍ଧକାରରୁ ଧାଇଁ ଆସିଲା—ସେହି ଲଫଙ୍ଗା ଦୁଇଟା, ଏଡ଼େ ନିର୍ଲଜ, ସଇତାନ୍—ତଥାପି ସେମାନେ କୁଣ୍ଠିତ ହୋଇ କ୍ଷଣକାଳ ଠିଆ ହୋଇଗଲେ, ଏ'ପରି ଅଭୂତପୂର୍ବ ଆଚରଣ ଦେଖି । ]

ସଲିମ୍—( ତା' ମନରେ ହେଲା, ଯେ ଏ'ଟା ହାଣ୍ଡି ମାଠିଆ ଦୋକାନ ନ ହୋଇ, ଅନ୍ୟ କୌଣସି ମନୋହର ଦୋକାନ ହୋଇଥା'ନ୍ତା—ନା, ନା, ଜିନିସ ନେଉ ବା ନ ନେଉ, ଏ' ଯେ ତା'ର ସାଙ୍ଗ ସିରାଜର ଦୋକାନ ନ ହୋଇ ଥା'ନ୍ତା, ତା' ହେଲେ ପରା ସେଠି କିନା, ଗୋଟାଏ କ'ଣ, ଦୁଇଟା କ'ଣ, ପକେଟ୍‌ଟା ପରା ସେଇଠି ଓଜାଡ଼ି, ଖାଲିକରି ଦିଅନ୍ତା—ବିନମ୍ରରେ ଦେଖନ୍ତା, ଯା'ର ଅଭାବ ସେ ପୀଡ଼ିତ ମର୍ମରେ ଦେଖୁଥିଲା—ବିଶେଷତଃ ତାଜୁର ମୁହଁରେ—)

ରହିମ୍—( ଭାରି ପାଜି—କାହାରି ବିପଦରେ ସୁଦ୍ଧା ସହାନୁଭୂତି ପ୍ରକାଶ କରିବା ଦୂରେ ଥାଉ, ବ୍ୟଙ୍ଗ କରିବାକୁ ବରଂ ମଜା ପାଏ—ତାଜୁର ମୁହଁ ପାଖକୁ ମୁହଁଟା ବଢ଼ାଇ ଦେଇ, ଭୁନି ଭୁନି କରି, ହସି ହସି, କହିଲା—) ଏମିତିକା ନୂଆ, ବଢ଼ିଆ, ପସନ୍ଦିଆ ଖରିଦ୍ଦାର କେବେ ଦେଖିଛୁ ତାଜୁ—?

ତାଜ୍—( ଉଦ୍‌ଗତ ଯୌବନର ମୋହଟା ଯେ ଅଗତ ଯୁବକର ସନ୍ଦର୍ଶନରେ ବା ସଂସର୍ଗରେ ଘନୀଭୂତ ହୋଇ ଅଜ୍ଞାତସାରେ ତାକୁ ଅଭିଭୂତ କରି ନଥିଲା, ତା ନୁହେଁ—ଏ'ପରି କ'ଣ—( +,— ) ଭାବେ ପରସ୍ପର ଆକୃଷ୍ଟ ହେଉଥିଲେ—ହୋଇ,' ମିଳି-ଯାଇଥାନ୍ତେ ପରା, ବାଧା ନ ଦେଇଥାନ୍ତା ଯେ ଭାବ ପ୍ରକାଶକ ରହିମ୍‌ର ମୁଖରେ—ବିଶେଷତଃ ସେହି 'ଖରିଦ୍ଦାର' ଶବ୍ଦର ଉଚ୍ଚାରଣଟି—ଏ ସ୍ନେ

ଗୋପନେ ଗୋପନେ ମିଳିବାର କଥା—କଥା, ଭାଷା ଗୋଟାଏ ପ୍ରତିବନ୍ଧକ ନୁହେଁ କି ?—ସୁତରାଂ ଲଜ୍ଜାରେ, ଘୃଣାରେ ମୁହଁ ବୁଲାଇ ନେଲା )

ପ୍ରୌଢ଼ା—କ'ଣ, କ'ଣ ନେବୁ, ବାପ—ଦେ, ଦେ, ଛାଜୁ—କହ, କହ, ନାହିଁତ ମୁଁ—ଏହି ହାଣ୍ଡିଟା ?—ସିଗ୍ରାଲ୍ ଗଢ଼ିତ, ଛାଜୁ ରଙ୍ଗେଇତ—ଏହି କୁଣ୍ଡଟା ?—ଛାଜୁ ଗଢ଼ିତ, ସିଗ୍ରାଲ ରଙ୍ଗେଇତ—ସେହି ଘଡ଼ଟା—ମାଠିଆଟା—( ଏବେ ଅପ୍ରକୃତିସ୍ଥ—ତହିଁରେ 'ଖରିଦ୍ଦାର' ଶବ୍ଦ—କି ଯେ ଆଗ୍ରହ—ଆନନ୍ଦ—ଏ ଗୁଡ଼ାକ ଯେ ଲଫଙ୍ଗା, ବଜାର ଝାଡ଼ୁ, ଘର ଖବର ଆଦୌ ରଖନ୍ତି ନାହିଁ, ଏକଥା ଏତାବେଳକେ ପାଶୋର ଯାଇଥିଲା—ସୁତରାଂ କେତେ ଯେ ହାଣ୍ଡି ମାଠିଆ ଆଣି ଗଦେଇ ଦେଉଥାଏ— )

ରହିମ୍—ସେହି 'ଗ-ଡ଼ି-ଲ' ବାଲାର ଦାମ୍—କେ—ତେ— ? ( ପଛଆଡ଼ୁ ଛାଜୁର କାନମୂଳେ ଅନୁଚ୍ଚସ୍ୱରେ ଏହିପରି କହୁ କହୁ, ତା'ର ପରିହିତ ବସନର ଅଞ୍ଚଳଟା ଝିଙ୍କି ଦେଇ, ଦୌଡ଼ ଭାଗେ—)

ସଲିମ୍—( ହାଁ କରି ଚାହିଁ ରହିଥାଏ—ରହିମ୍ ସାଙ୍ଗେ ସାଙ୍ଗେ ଟାଣି ନେଇ ନ ଯାଇଥିଲେ, ରକ୍ଷା ନ ଥିଲା—)

ଛାଜୁ—( ଠିକ୍ କ୍ରୁଦ୍ଧସର୍ପିଣୀପରି ଫଁ କରି ଫଣା ବିସ୍ତାର କରି, ତେଜି ଉଠିଥିଲା ଯେ । )

ପ୍ରୌଢ଼ା—'ଗଢ଼ିଲବାଲା' ଛାଜୁ ବାଛି ଦେବ ?—ହଉ, ହଉ—ଦେ, ଛାଜୁ—ତୁହି ବାଛି ଦେ—ତୋ'ର ଖରିଦ୍ଦାର—ପଛପଟ କରି ଗୋଟାଏ ହାଣ୍ଡି କି ମାଠିଆ କ'ଣ କାଢ଼ୁଥିଲା—'ଗଢ଼ିଲବାଲା' ଶବ୍ଦଟା କାନରେ ବାଜିବା ମାତ୍ରେ, ଏହିପରି କହୁ କହୁ ଆନନ୍ଦରେ ଅଧୀର ହୋଇ ଫେରି ଚାହିଁ ଦେଖେନା—ପୂର୍ଣ୍ଣିମା ପରବର୍ତ୍ତେ ଘୋର ଅମାବସ୍ୟା !—ବିଶ୍ୱାସ ହେଉ ନ ଥିଲା ପରି, ଯେଣୁ ଆଖି ମଳମଳ ଚାହୁଁ ଥିଲା )

ଛାଜ୍—ମା !—ମା !—( କ୍ରୋଧ ଓ କ୍ରନ୍ଦନର ଅପୂର୍ବ ଦ୍ୱନ୍ଦ୍ୱରେ ମୁଖ, ସ୍ୱର ଓ ଭାବ ବିକୃତ ହୋଇଗଲା ପରି !— )

ପ୍ରୌଢ଼ା—ଖରିଦ୍ଦାର !—ଖରିଦ୍ଦାର !—ଖରିଦ୍ଦାର !—

ଛାଜ୍—ମା !—ମା !— ( କାନ୍ଦ ଭସାଇ ଦେଲା କି ଆଜ )

ପ୍ରୌଢ଼ା—କାହିଁ ?—କାହିଁ, ମୋ'ର ଖରିଦ୍ଦାର—ଆଣି—ଆଣି—ବାହାର କର—ବାହାର କର—ଏଁ—କାହିଁ, କାହିଁ, ଖରିଦ୍ଦାର—କଣ କହିଲୁ ତୁ ଟୋକି—କୁଆଡ଼େ ଗଲେ ସେମାନେ—ଯା, ଯା, ହାଜିମକାଦ—ଏହି ମୁହୂର୍ତ୍ତେ—ଫେରାଇଆଣ—ଫେରାଇ—ହଁ, ହଁ, ମୋ କାନରେ ବାଜିତ—ମୁଁ ଠିକ୍ ଶୁଣିଛି—ଦାମ୍, ଦାମ୍ ସେମାନେ ପଚାରୁ ଥିଲେ—ତୁ କ'ଣ କହିଲୁ—କେତେ ଦାମ୍ କହିଲୁ—ଚଢ଼ାଦାମ୍ କହିଲୁ ନା କଣ ?—କାହିଁକି ମୂଲକଲୁ ?—ଡାକ୍, ଡାକ୍—ମୁଁ ମୂଲେ ମୂଲେ ଦେବି—ଲୋକ୍‌ସାନ୍ କରିଦେବି—ଖରିଦ୍ଦାର !—ଖରିଦ୍ଦାର !—ଖରିଦ୍ଦାର !—( ପାଗଳ ପ୍ରାୟ ହେବାକୁ ଲାଗିଲା—ଏପରି କଣ ଛାଜୁର ବେକରେ ହାତଦେଇ, ଡ଼ାକି ଆଣିବାକୁ ବାଧକଲା ଯେମନ୍ତ— )

ଛାଜ୍—ଖରିଦ୍ଦାର ନାହିଁ, ମା—ଖରିଦ୍ଦାର ନାହିଁ—ଦୁନିଆଟା ଆଜ ଖରିଦ୍ଦାର ଶୂନ୍ୟ—ଖୋଦା—( ଅନ୍ତରକଳରେ ଏହିପରି କହିବାକୁ ଲାଗିଲା—ସଙ୍ଗେ ସଙ୍ଗେ ଖୋଦାଙ୍କୁ ସର୍ବବିଧ ଦୋଷରେ ଦାୟୀ କଲା ବୋଧହୁଏ । )

ପ୍ରୌଢ଼ା—ହାଃ-ହାଃ-ହାଃ—ମୋ'ର ଭରା ଦୋ'କାନ—ନୂଆ ଦୋକାନ—ଖରିଦ୍ଦାର ନାହିଁ !—ଆଜି ଇଦ୍ !—ଇଦ୍ ପାଇଁ—ରାତ ନାହିଁ, ଦିନ ନାହିଁ—ନ ଖାଇ, ନ ପିଇ—ଚଢ଼ି ଭଉିକର ବସିଛି—ବହନ କରିବି—ମୁଠା ମୁଠା ବିକ୍ରୀ କରିବି—ବର୍ଷକେ ଦିନେ—ନୂଆ ଖାଇବି, ନୂଆଇବି—ଆମୋଦ, ଆହ୍ଲାଦ—ମଜଲିସ୍—କେତେକ'ଣ ?—ଖରିଦ୍ଦାର ନାହିଁ ?—ନା, ନା,

ଖୋଦା ମେହେର୍ବାନ୍—ଦୂର, ଦୂରକଣ ଖବରଦାର ପଠାଇ ଦେଇଥିଲେ—ଖବରଦାର ପର ଖବରଦାର —ସୁନ୍ଦର ସୁନ୍ଦର ସାଟିଣର ପୋଷାକ— ରଂ-ବେରଂର ଟୋପି—ଅତରର ଖୁସ୍‌ବୋଅ୍ଟା ଅବ୍‌ତକ୍ ମୋ ନାକରେ ଲାଗି ରହିଛି !— ଭାଲୁଅ, ଚୋପ୍ରା—ଅଙ୍ଗୁର, ବେଦାନା— କେତେ କ'ଣ ଖାନା, ପିନା—ଜଳାଓ୍ କର, ଦଲ୍‌ଦାର ହୋଇ ଆସିଥିଲେ—ତୁ ହାରାମ୍‌ଜାଦ —ଚିହ୍ନିପାରିଲୁ ନାହିଁ—ବେକୁବ କର ଉଠାଇ ଦେଲୁ—ତଡ଼ାଦାମ କହ—ଛୋକ୍ରୀ—ଛୋକ୍ରୀ ତୁ—କି ଜାଣୁ ଦାମ୍ ଦସ୍ତୁର କର—ବଡ଼ଲୋକ ସେମାନେ—ଦାମରୁ କେତେ ବେଶୀ ଦେଇ ଥାନ୍ତେ, କେତେ—ଯଦି, ଯଦି ତୁ ଟିକିଏ ହସିହସି ବସେଇ ପାରିଥାନ୍ତୁ—ବସେଇ ରସେଇ ମନେଇ ପାରିଥାନ୍ତୁ—(ଅନୁରୂପ କେତେ କଣ ଯେ ଏହିପରି ଅନର୍ଗଳ ବକି ଯାଇଥାନ୍ତା—ଯଦି ହଠାତ୍ ବାଧା ପଡ଼ି ନ ଥାନ୍ତା, ଛାଜର କନ୍ଦ୍ରୋକ୍ତିରେ—)

ଛାଜ୍—ମା ! ମା ! ସେମାନେ ଯେ ସିରାଜର ସାଙ୍ଗ— (ଆଉ ସମ୍ଭାଳି ପାରିଲା ନାହିଁ ପରି—ସିରାଜ ପ୍ରତି ଗୋଟାଏ କେଉଁ ଘୃଣାରେ କି ବିରକ୍ତିରେ ଏତେ ହିଁ ଉଦ୍‌ବେଗ ହୋଇ ଉଠିଥିଲା—! )

ପ୍ରୌଢ଼ା—ମୋ'ର ସିରାଜର ସାଙ୍ଗ ?—ବେଶ୍‌ତ— ବେଶ୍‌ତ—( ଆଗ୍ରହଟା ଯେପରି ଅତୁଳ ବଢ଼ି ଉଠିଲା )

ଛାଜ୍—ବଜାର !—ବଜାର !—ତୁଚ୍ଛା ଲଫଙ୍ଗା, ବଜାର ଗୁଣ୍ଡାଏ !—ଆସିଥିଲେ ଖାଲି ବଜାର ଗିର—ଲଫଙ୍ଗାଗିର—( ଅତ୍ୟନ୍ତ କ୍ରୋଧରେ, ଘୃଣାରେ,ଯେପରି ଆଉ କଥା କହି ପାରିଲା ନାହିଁ )

ପ୍ରୌଢ଼ା—ହୁଁ—(ବାହାରର ଝଡ଼ଟା ଥମିଗଲା ସତ, କିନ୍ତୁ ଭିତରର ଝଡ଼ଟା ଠିକ୍ ସେହି ପରିମାଣରେ କି ତତୋଽଧିକ ବଢ଼ି ଉଠିଲା ପରି, ଯଦିଚ ସେ ପ୍ରାଣପଣେ ଗୁମୁରୁଥାଏ, ଯେତେବେଳେ ସେ ଉପଲବ୍ଧି କଲା, କି ଭ୍ରମରେ; କେତେଦୂର କ'ଣ କରି ପକାଇଛି; ପରିଶେଷରେ କେଉଁ ଶୂନ୍ୟଦୃଷ୍ଟିରେ ଶୂନ୍ୟଗଗନକୁ ଚାହିଁଲା ଥରେ—ନିର୍ବିକାର 'ଶୂନ୍ୟ'-ମୂଲ୍ୟରେ ଯେପରି ! )

ଛାଜ୍—(ମା'ର ଏପରିମୁଖଭାବଦର୍ଶନରେ ଟିକିଏ ଶଙ୍କିତା ହେଲା କିପରି ! )

[ଅନତିବିଲମ୍ବେ ସଲିମ୍ ପୁଣି ଗୋପନେ ଗୋପନେ ଆସି ଛାଜୁ ପାଖରେ ଠିଆହେଲା ରହିମ୍‌ଟା ପଛେ ପଛେ ଆସି, ଦ୍ୱାରରେ ଗୋଟାଏ ଗଛର ଅନ୍ତରାଳରେ ଲୁଚି ରହିଥାଏ ।

ସଲିମ୍—ସିରାଜ୍ କାହିଁ, ଛାଜୁ ?—( ଅତି ମୋଲାଏମ ସ୍ୱରରେପଚାରିଲା )

ଛାଜ୍—(ବୋଧ ହୁଏ ଶୁଣିପାରି ନ ଥିଲା )

ପ୍ରୌଢ଼ା—'ସିରାଜ୍' ! 'ସିରାଜ୍' !

[ ସେହି ଗୁପ୍ତ ଝଡ଼ଟା ଯେ କି ଭୀଷଣଭାବେ ଏହିପରି ଝଲକରେ ଫାଁକ୍ ପାଇ ଆତ୍ମପ୍ରକାଶ କଲା, ଜଣେ ସେ ସେଇଥିରେ ଯେମିତି କୁଞ୍ଚାଖଣ୍ଡପରି ଉଡ଼ିଆସି, ସଲିମ୍‌ର ସଦର୍‌ଏଟାକୁ ମୁଠା କରି ଧରି, ତର୍ଜି ଚାହିଁଲା—ମନେହେଲା ତା'ର—ଖୋଦାର ଦୂତ ଏହି ସଲିମ୍—ପୁଣି ଆସିଛି ପରିହାସ କରିବାକୁ ! ]

ସଲିମ୍—( ତଟସ୍ଥ ହୋଇ ଚାହିଁ ରହିଥାଏ )

ରହିମ୍—( କାଣ୍ଡଟା ଦେଖି, ଦୌଡ଼ି ଏକଦମ୍ ପାର )

ପ୍ରୌଢ଼ା—ହାଃ-ହାଃ-ହାଃ—( ହସି ଉଠିଲା କେଉଁ ଭୀଷଣ ଚିତ୍କାର କରି )

ସଲିମ୍—ମାଉସି !—ମାଉସି !—( ପ୍ରାଣର ଭୟରେ ହଠାତ୍ ଏହିପରି ଡାକ ଡାକି ଉଠିଲା କି ଆଉ )

ପ୍ରୌଢ଼ା—ଅଛା !—ବଜାରଗିରି !—

ସଲିମ୍—ଆଜ ଯେ ଇଦ୍, ମାଉସି !—

ପ୍ରୌଢ଼ା—ଇଦ୍ ! ଇଦ୍ !—ହାଃ, ହାଃ, ହାଃ—ଇଦ୍ ଅମୀରର !—ଫକୀରର କି ଇଦ୍ ରେ ?—

ସଲିମ୍—ମାଉସି ! ତୁମେ ଆଜ—

ପ୍ରୌଢ଼ା—ପଇସା !—ପଇସା !—ପଇସା !—

[ ଏହି ସମୟରେ ନେପଥ୍ୟେ 'ଅଜାନ୍'— ନମାଜର ଡ଼ାକ, ଶୁଣାଗଲା ]

(ନେପଥ୍ୟେ)—'ନମାଜ୍' — 'ନମାଜ୍' — 'ନମାଜ୍'

ସଲିମ୍—( ଆପଣାକୁ ଛଡ଼ାଇ ନେଇ ବେଗେ ପଳାଇଗଲା )

ପ୍ରୌଢ଼ା—( କିଛିକ୍ଷଣ ଅବାକ୍ ହୋଇ ରହିଁ ରହିଲା ) ନମାଜ୍ !—ନମାଜ୍ !—( ପରେ ଚିତ୍କାର କରି ଉଠିଲା )

ତାଜ୍—ମା—( ସେତିକିବେଳେ ଆତୁର ତଥ୍ୟ କହିବାକୁ ଲାଗିଲା, ମା'ର ଏହିପରି ଆକସ୍ମିକ ଭାବାନ୍ତର ଲକ୍ଷ୍ୟକରି )

ପ୍ରୌଢ଼ା—ବଜାରଗିରି ନୁହେଁରେ, ମା—'ନମାଜ୍'—'ନମାଜ୍'——ସିରାଜ୍‌କୁ—ବଚ୍ଚୁକୁ ତାଙ୍କର ଡାକ ଅସିଥିଲେ—'ନମାଜ୍', 'ନମାଜ୍' ପାଇଁ—ଆଉ ମୁଁ, ମା' ହୋଇ, କେଉଁ ସାହାରେ ପୁଅକୁ ମୋର, ବଜାରକୁ ପଠାଇ ଦେଇଚି—ବୋହ ମୁଣ୍ଡରେ ଦେଇ—ପେଟ ବିକଳରେ !—ନା, ନା, ପଇସା ଲୋଭରେ—ଅଜ ଇଦରେ ପୂଜି କରିବା ଲାଳସାରେ—ମୁସଲମାନୀ ମୁଁ !—ମୁସଲମାନୀ ମୁଁ ! ଖୋଦା !—ଖୋଦା !—ଖୋଦା !—

( ଖୋଦାଙ୍କ ଆହ୍ୱାନ ଭଳି ଯେପରି ଆପଣାକୁ ଲୋଟାଇ ଦେଲା, ଦୁମ୍‌ଦୁମ୍ କରାଘାତରେ ଆପଣାର ବକ୍ଷଦେଶ ଗୁଡ଼ୁଡ଼ାଇ ପକାଇ ଦେଉଁ ଦେଉଁ— )

ତାଜ୍—ମା—ମା—( ଟେକି ଧରିଲା—ଖୋଦାଙ୍କୁ ଏପରି ଆତ୍ମସମର୍ପଣରେ ପ୍ରଭାବାନ୍ୱିତ ହୋଇ ନା କଣ ? )

ପ୍ରୌଢ଼ା—ଆ,—ଆ,—ତାଜ୍—( ନମାଜ୍ କରିବାକୁ, ସେହିକ୍ଷଣି, ସେହିଠାରେ ବସିଗଲା )

ତାଜ୍—( ନମାଜ୍‌ରେ ଯୋଗଦେଲା ସତ—କିନ୍ତୁ କୁଞ୍ଜଆଡ଼ୁ ଦୃଷ୍ଟିଟା ଆଦୌ ଫେରାଇ କରି ପାରୁ ନ ଥିଲା )

ପ୍ରୌଢ଼ା—ଖୋଦା !—ଖୋଦା !—( ମୁଦ୍ରିତ ନୟନରେ କେଉଁ ଆବେଗରେ ସେ ଡାକୁଥାଏ )

ତାଜ୍—ଏହି ଯେ ସିରାଜ ଭାଇ, ମା—ଟୋକେଇ ଖାଲି—ଟୋକେଇ ଖାଲି—ଖୋଦା—ଖୋଦା—(କି ଯେ ଆନନ୍ଦରେ ଡେଇଁ ଉଠିଲା !—ହିଁ, ଏ' ଖୋଦାନାମଟା ସେ ଉଚ୍ଚାରଣ କଲା, କୌଣସି ଭକ୍ତିରେ ନୁହେଁ । )

ପ୍ରୌଢ଼ା—( ଆପଣାକୁ ଫେରାଇ କରିବା ଉଦ୍ଦେଶ୍ୟରେ କି କ'ଣ ଧ୍ୟାନ ଦୁଇଟା ସେତିକି ଆତୁର, ଚଳନ୍ତିରେ ଅଙ୍ଗୁଳିରେ ବୁଜି ଧରିଥାଏ )

[ ସିରାଜ ପ୍ରବେଶ କଲା, ସେହି କୁଞ୍ଜ ବାଟେ—ଗୋଟିଏ ହାତରେ ବଇଁଶୀ—ଗୋଟାଏ ହାତ, କାନ୍ଧରେ ଢେଉଥିବା ଖାଲି ଟୋକେଇ ଭିତରେ—ଖାଲି ଦର ଦର ବୋଧ ହେଉଛି—ଲଫଙ୍ଗାବେଶ—ମଇଳା ଲୁଙ୍ଗୀ—ମଇଳା ଜାମା—ଠାଏ ଠାଏ ଛିଣ୍ଡିବ ଯାଇଛି—ବେକରେ କେଉଁ ଦିନର ଚନ୍ଦ୍ରିଆ ସିଲ୍‌କ ରୁମାଲଟାଏ—ମୁହଁଟା ଭାରି କେଲ୍ ଓ ଚମ୍ ଚମ୍ ଦେଖା ଯାଉଥାଏ ! ]

ସିରାଜ୍—ମା—( ଅଧେ କହୁ କହୁ ଅଧେ ତୋଳୁ ଚେଲୁ କପଡ଼ ବନ୍ଧିଗଲା—କ'ଣ ଗୋଟାଏ ଉତ୍ସାହ ବୋଧକରୁଏ କରିଥାନ୍ତା, କିନ୍ତୁ ମା'କୁ ନମାଜରେ ଦେଖି, ତାପରେ ଅନେକ ଅଂଶ ସେହି ଟୋକେଇଟାକୁ ତଳରେ କାଢ଼ି ଦେବାରେ ବ୍ୟସ୍ତ ହୋଇଗଲା ସତ । )

ତାଜ୍—ଅଉ ସେଇଟା—( ବଇଁଶୀ ଆଡ଼େ ଇଙ୍ଗିତ କରି ବ୍ୟଙ୍ଗ-ଭାବରେ ଏହିପରି କହିଲା )

ସିରାଜ୍—( ହୁଙ୍କାର କଲାନାହିଁ—ବା' କରିଥାନ୍ତା, ଯଦି ପ୍ରୌଢ଼ା ବାଧାଦେଇ ନ ଥାନ୍ତା ନିମ୍ନେକ୍ତ ଭାବେ—କିନ୍ତୁ ସେଟା ଯେ ଗର ଗର, ଜୋଛିଲା ନିଆଁ ଭଳି ଚେଜ ଉଠି ନ ଥାଏ, ତା' ନୁହେଁ )

ପ୍ରୌଢ଼ା—କଣ—କଣ—( ନମାଜରେ ମଗ୍ନଥାଇ ସୁଦ୍ଧା ସେହି ଅର୍ଦ୍ଧୋଚ୍ଚାରିତ 'ମା' ଡାକରେ ଭଗ୍ନଧ୍ୟାନ ହୋଇଥିଲା—କିନ୍ତୁ ସେ କୌଣସିମତେ ନମାଜ୍‌ଟା ସାରିବା କଥାତ ସାରିଦେଲା ଚଳିଲୁହୁଁ )

ସିରାଜ୍—ରହିମ୍‌କୁ ଗାଳିଦେଲି କାହିଁକି, ମା ?

ପ୍ରୌଢ଼ା—ଗାଳି ?—କେତେବେଳେ ?—କା'କୁ ?

( କପଟ ବିସ୍ମୟ ବ୍ୟଥିତା ହେଲା )

ତାଜ୍—ବେଶ୍ କରିଚି—

ସିରାଜ୍—( ବଇଁଶୀରେ ମାରିବାକୁ ଉଞ୍ଚାଇଲା )

ତାଜ୍— ହୁଁ—ଦେଉଚି ଟୁହ୍ଣୀରେ ମୁହଁାଇ, ରହିଥା—
( ମାବ ସେହି କଳ୍ପିତ ନିଅଁ ଯେମନ୍ତ ଆଖିରେ, ଗଣ୍ଡରେ, ଓଠରେ ଇଳ ଉଠେଲା ଧପ୍‌ଭର—ଆଉ ସେ ବର୍ଛିଶିଟା ଧଇଲା ଖପ୍‌କରି—କିନ୍ତୁ ସିରାଜ୍ ଛଡ଼ାଇ ନେଲା ଛଟ୍ କରି )

ସିରାଜ୍—ସେହି ମୋର ଦୋସ୍ତ—ରହିମ୍, ସଲିମ୍,—

ପ୍ରୌଢ଼ା—କାହାନ୍ତି, କାହାନ୍ତି ପୁଅମାନେ ?—
ଡାକ୍, ଡାକ୍, ବେଟା—ସେମାନେ ଯେ ତୋତେ ଡାକି ଅସିଥିଲେ—ସାଙ୍ଗହୋଇ ନମାଜ୍ କରି-ବାକୁ—ଇଦ୍‌ରେ ଆଜି - ଦେଖା ହୋଇଥିଲା ?
—ନମାଜ୍ କରିଚି ?—ସାଙ୍ଗହୋଇ ?

ସିରାଜ—ଅଲବତ୍—( ମାଏ ମା ମୁହଁକୁ ଚାହିଁ ରହିଥାଏ, ପୂର୍ବ ଭାବେ, ପୂର୍ବ ପ୍ରଶ୍ନର ଉତ୍ତର ପାଇଁ— )

ତାଜ୍—( ସିରାଜର ଅଣ୍ଟା ଖୋ'କି ଖୋଜି ଦେଖୁଥାଏ—ଅନ୍ୟଭାବେ ଚରିସ୍ତ କରିବା ଅଭିପ୍ରାୟରେ ନା କଣ ? )

ପ୍ରୌଢ଼ା—ଖୋଦା ! ଖୋଦା !—ଆଜି ଇଦ୍‌ପର୍ବ ଦିନରେ—ଏହିପରି ବେଶରେ ମିନା ପୁଅ ମୋ'ର ନମାଜ୍—( ଲୁହ ପୋଛୁ ପୋଛୁ ଅନ୍ଦରକୁ ଚାଲି ଯାଉଥିଲା )

ସିରାଜ—ଭୁଲିଚି, ଭୁଲିଚି, ମା କୈଫିୟତ ତୋ'ର—କିନ୍ତୁ ରହିମ୍—ସଲିମ୍—ଦୁନିଆର ସବ୍-କୋଇ, କି ତୋ'ର ବେଟା ନୁହେଁ, ମା— ?
( ଅବ୍ୟକ୍ତ, ବା ଅନୁଚ୍ଚସ୍ୱରରେ ଏହିପରି କହି ଉଠିଲା, କେଉଁ ଗମ୍ଭୀର ଉଚ୍ଛ୍ୱାସରେ—ଆଖିଦି'ଟା ମଧ୍ୟ ଛଳ, ଛଳ ହୋଇଗଲା ପରି— )

ପ୍ରୌଢ଼ା—( ଥରେ ଫେରି ଚାହିଁଲା କେଉଁ ଅବେଦନର ସ୍ପର୍ଶରେ କି ଆଉ ?—କଥାଟା କ'ଣ ସିରାଜ କହିଲା, ଠିକ୍ ନ ଶୁଣିଲେ ମଧ୍ୟ, ମର୍ମଟା ଯେ ଅଜ୍ଞାତ ସାରେ ତା'ର ମର୍ମକୁ ସ୍ପର୍ଶ କରିଚି, ସେହି ସାବେଗ ପ୍ରସନ୍ନ ଦୃଷ୍ଟିରୁ ବେଶ୍ ଜଣାଗଲା )

ତାଜ୍—ବେଶ୍ କେତେ ବାକିଲ ଏବେ ?—
ଟୋପେଇଭ ଖାଲି ଦେଖୁଚି—

ପ୍ରୌଢ଼ା—( ଯା'ବା ଚାଲି ଯାଉଥିଲା, ଏହି କଥାଟା ଶୁଣିବା ମାତ୍ରେ କେଉଁ ପ୍ରଲୋଭନର ଅକର୍ଷଣରେ ଠିଆ ହୋଇଗଲା )

ସିରାଜ୍—ମା ! ମା !—ତୋମ୍ଭମାନଙ୍କୁ ଯେ ଅଜି ନିମନ୍ତ୍ରଣ କରିଚି, ମା—( ଏହିପରି ଅତି ଆତୁର ଭାବେ ମା' ପାଖକୁ ଦୌଡ଼ିଗଲା, ପାଷାଣୀ ମା'ର ପାଷାଣ ବୁକୁରେ ଦୟାର ଉଦ୍ରେକ୍ କରାଇବା ଉଦ୍ଦେଶ୍ୟରେ ଯେମିତିକା )

ପ୍ରୌଢ଼ା—ଏ'ଚ ଖୁସିର କଥା—ନିମନ୍ତ୍ରଣ କ'ଣରେ —ସେମାନେ ଯେ ମୋ'ର ବେଟା—
ଜବରଦସ୍ତି—

ସିରାଜ୍—ମା—ମା—( ବୋଲି, ସମ୍ଭାଳି ନ ପାରି, ନିଜକୁ ଧିକ୍‌କାର କରୁ କରୁ ଯେମନ୍ତ, ମା'କୁ ତା'ର କୁଣ୍ଢାଇ ପକାଇଲା—ଆଉ ଗାଢ଼ୁଁ ଗାଢ଼ତର ଆଲିଙ୍ଗନ କରିବାକୁ ଲାଗିଲା—ମା ଯେ ଦୟାର ପ୍ରତିମୂର୍ତ୍ତି, ଏହି କଥାଟା ଭ୍ରାନ୍ତ ଚିତ୍ତରେ ସମ୍ପୂର୍ଣ୍ଣ ଉପଲବ୍ଧି କରି, ଆତ୍ମ-ତୃପ୍ତି ଲାଭୋଦ୍ଦେଶ୍ୟରେ ପରି )

ତାଜ୍—ଏବେ ଯେ ଅଣ୍ଟା ବିଲ୍‌କୁଲ୍ ଖାଲି—

ପ୍ରୌଢ଼ା—ସବୁର୍—ସବୁର—( ହସି ହସି ତାଜ୍‌ର ପିଠି ଚାପୁଡ଼ାଇବାକୁ ଲାଗିଲା ଓ ସିରାଜ ଆଡ଼େ କେଉଁ ଲୋଲୁପ ଦୃଷ୍ଟିରେ ଚାହିଁ ରହିଲା )

ତାଜ୍—ଦିନ କେତେ ହେଲାଣି—ଦୁଇ ଦୁଇଟା ଘଣ୍ଟା—ନଉତ—ନଉତ ( ସିରାଜକୁ ଖଟେଇ ହେଲାଭଳି ଶେଷ ପଦ ଗୁଡ଼ିକ ଏହିପରି କହିବାକୁ ଲାଗିଲା )

ସିରାଜ୍—ବେଶ୍ ତ—ତୋ ଜମାକୁ କାହୁଁ ନାହୁଁ ?
( ଆହତ ଶିକାରୀ ପଶୁପରି ତାଜ୍‌କୁ ଲକ୍ଷ୍ୟକରି ଧାଇଁ ଆସିଲା )

ତାଜ୍—ଆଉ ତୋ'ର କମା ?—ସରାପ ପାଣିରେ ଉଡ଼ି—

ସିରାଜ୍—ଉଡ଼ିବାରତ କଥା—ଅଜି ଯେ ଇଦ୍— ଅଲ୍ଲାର ନିଅଣ୍ଟ ବଖତକୁ—( ତାଜ୍‌ର ପୁଞ୍ଜି ପାଞ୍ଜିକୁ ଇସାରା କଲା )

ଛାକ୍—ମା !—ମା !—( କେଉଁ ବିକଳରେ ମା' ଆଡ଼େ ଚାହିଁ ନାଲିଶ ଦାଏର କଲା ଯେମନ୍ତ )

ପ୍ରୌଢ଼ା—ଅରେ, ବାପ—ଆଜି ପଇସାଟିଏ ବି ଦୋକାନରେ ବିକିନି—(ଅବସ୍ଥାର କଶାଘାତରେ ନ କାନ୍ଦି ଯେମନ୍ତ ଆଉ ରହି ପାରିଲା ନାହିଁ—କିନ୍ତୁ ସଙ୍ଗେ ସଙ୍ଗେ ମାତୃତ୍ୱର ଦଂଶନରେ ସେଠି ମଧ୍ୟ ରହି ପାରିଲା ନାହିଁ )

ଛାକ୍—ସବୁ ଉଡ଼େଇ ଦେଇ ଆସିଲୁ ଏକାବେଳକେ—ଟିକିଏ ବି ମନେ କଲୁ ନାହିଁ ଘର କଥା—ନିମନ୍ତ୍ରଣ ଯେ କରି ଆସିଲୁ ଦୋସ୍ତମାନଙ୍କୁ, ଖୁଆଇବୁ କଣ କହିଲୁ ?

ସିରାଜ୍—ମା ଯା' ଦେବରେ, ଛାକୁ—ମୋର ଦୋସ୍ତଙ୍କୁ କଣ ତୁ ଅବ୍‌ତକ୍ ଚିହ୍ନିଲୁ ନାହିଁ ?—

ଛାକ୍—ଚିହ୍ନିଚି—ଖୁବ୍ ଚିହ୍ନିଚିରେ—ବଜାରଗିରିରେ ଏକ୍‌ଶେଷ—! ( କହୁ କହୁ, ମୁଖଟା ତା'ର ଲାଲ ହୋଇ ଉଠିଲା—ବାକ୍ ମଧ୍ୟ ରୁଦ୍ଧ ହେଲା )

ସିରାଜ୍—( ହସିବ କି ରାଗିବ, କିଛି ଠିକ୍ କରିପାରିଲା ନାହିଁ—କେଉଁ ଅପୂର୍ବ ସୌନ୍ଦର୍ଯ୍ୟ ଦର୍ଶନରେ ସମସ୍ତ ଇନ୍ଦ୍ରିୟ ହଠାତ୍ ଏତେ ମୁଗ୍ଧ ହୋଇ ଯାଇଥିବାରୁ ବୋଧହୁଏ )

[ ଏହି ସମୟରେ କାହୁଁ ଜଣେ ଭିକ୍ଷୁକ ଆସି କାଳପୁରୁଷର ଛାୟା ପରି ସହସା ଉପସ୍ଥିତ ହେଲା ]

ଭିକ୍ଷୁକ—ବଡ଼େ ମିଆଁ—ବଡ଼େ ବାବୁ—(ସଲାମ କଲା)

ଛାକ୍—( କେଉଁ ଲଜ୍ଜାରେ ମାଟିରେ ମିଶିଗଲା ପରି )

ସିରାଜ୍—ହୋଃ—ହୋଃ—( ବକ୍ର ଦୃଷ୍ଟିରେ ଭିକ୍ଷୁକକୁ ଲକ୍ଷ୍ୟ କରି ଏହିପରି ହସି ଉଠିଲା—ତାଚ୍ଛିଲ୍ୟ ଭାବେ ନା ମୋହାନ୍ଧ ଭାବେ ? )

ଭିକ୍ଷୁକ—ବହୁତ୍ ଦୂର୍‌ସେ ଆତେହେଁ—ବଡ଼ା ଗରିବ—ପାଞ୍ଚ ପାଞ୍ଚଠୋ ଲେଡ଼କା ଲେଡ଼କି—ଆପ୍ ଖୁବ୍ ମେହେରବାନ୍—ବହୁତ ଖଏରାତ୍ କରତେହୋ, ମେରା ସାଥ୍‌କା ଆଦ୍‌ମି ସବ୍ ଉହିଁ ଖଡ଼ାରହେହେଁ—ଖୁସିସେ ଦୁଆ କର୍‌ତେହେଁ—ଆପ୍ ଜିନ୍ଦା ରହେ—ଖୋଦା ଆପ୍‌କା ଭଲା କରେ—!

ସିରାଜ୍—( ନିଜର ଅଣ୍ଟା ଦେଖୁଥାଏ—ଥରେ ଛାକ୍ ଆଡ଼େ ଚାହୁଁଥାଏ—ଥରେ ଥରେ ପର୍ଦ୍ଦାଆଡ଼େ ମଧ୍ୟ ଚାହୁଁଥାଏ— )

ଛାକ୍—( ଲଜ୍ଜାଟାକୁ ବିରକ୍ତିରେ କୌଣସି ମତେ ମାଡ଼ିଦେଇ, ଦୋକାନରେ ଆସି ବସି ଯାଇଥାଏ )

ଭିକ୍ଷୁକ—ଆପ୍ ବଡ଼ା ମେହେରବାନ୍—କୁଛ ଦୁନିଆମେ ଦୋସ୍‌ରା ନେହିଁ—ଖୁସିସେ ମୋ ଆପ୍‌କା ଦିଲ୍—

ସିରାଜ୍—ଛାକୁ—ଛାକୁ—( କି ବ୍ୟଥା ଯେ ଅନୁଭବ କରିବାକୁ ଲାଗିଲା—ଜାଣେ ସେ, ଛାକ୍ ମୁଠାରେ ଧରି ଥିଲେ ବି କେବେ ଦେବ ନାହିଁ, ମରିଗଲେ ବି ତଥାପି କେଉଁ ବିକଳରେ ଏହିପରି ଡାକି ଉଠିଲା ପରି )

ଛାକ୍—( ଘୃଣା ଓ ବିରକ୍ତି ସତ୍ତ୍ୱେ ଥରେ ନ ଚାହିଁ ରହି ପାରିଲା ନାହିଁ, ମାତ୍ର ସଙ୍ଗେ ସଙ୍ଗେ, ମୁହଁ ବୁଲାଇ ସେହି କୁଞ୍ଜଆଡ଼େ ଚାହିଁ ରହିଲା ଗରିବାଙ୍କ ଉଦ୍ଦେଶ୍ୟରେ ବୋଧହୁଏ—ମନେ ମନେ କି କାପରି ଗୋଟାଏ ଆଶଙ୍କା କରିବାକୁ ଲାଗିଲା—ସକାଳୁ ବିକିନି ନ ହେଉଣୁ, ଭିକାରୀଟାଏ—ଅଦ୍ଭୁତ ଚମକି ଉଠିଲା ସେହି ଆଶଙ୍କାର ପ୍ରତିଛ ରୂପେ ନୀଳିମାରେ ଅକସ୍ମାତ୍ କଳାବଉଦ ଖଣ୍ଡେ ଭାସି ଯିବାକୁ ଦେଖି—ଉଜ୍ଜ୍ୱଳ ପ୍ରଭାତଟା କିପରି ମ୍ଳାନ ହୋଇ ଗଲା ଯେପରି )

ସିରାଜ୍—'ମା'—( ବୋଲି, କେଉଁ ଆଶାରେ ଦୌଡ଼ି ଯାଉ ଯାଉ ସେହି ଜୀର୍ଣ୍ଣ ପର୍ଦ୍ଦା ଦର୍ଶନରେ ଅଭାବର ସ୍ମୃତିରେ କି କଣ, ହତାଶ ହୋଇ ପର୍ଦ୍ଦା ପାଖରୁ ଫେରି ଆସିଲା—ଚାହିଁଲା ସେହି ଭିକ୍ଷୁକର ଦାରିଦ୍ର୍ୟ ନିପୀଡ଼ିତ ଦୃଷ୍ଟିକୁ—ସମବେଦନାର ଉଚ୍ଛ୍ୱାସ ମାତ୍ର ଦାନ କରିବାକୁ ଗଲା କି ଆଉ—ଏତିକି ସମ୍ବଳ ଅବଶିଷ୍ଟ ଯା କିଛି ତା'ର ଥିଲା ସିନା—କିନ୍ତୁ, କିନ୍ତୁ, ଏଥିରେତ ପେଟର ଜ୍ୱାଳା ଲିଭେ ନାହିଁ—କେଉଁ ଫୁର୍ତ୍ତିରେ ଆପେ ନାଚି, କୁଦି ବୁଲୁଚି ବୋଲି ସିନା— )

ପ୍ରୌଢ଼ା—ମୋତେ ଡାକୁଥିଲ, ବାପ—କାହିଁକି କାହିଁକି—( କାନରେ ନ ଶୁଣିଲେ ମଧ, ମର୍ମରେ ବାଳକାଟିର କି ବ୍ୟାକୁଳତାରେ ଯେ ଧାଇଁ ଆସିଲା—ସେହି ଭିକ୍ଷୁକ ଆଡ଼େ ଚାହିଁ, ହଠାତ୍ ବିସ୍ମୟରେ ଓ କେଉଁ ଅଜଣା ଅନାଗତ ଭୟରେ ଅବାକ୍ ହୋଇଗଲା )

ସିରାଜ୍—ମା !—ମା !— ବୋଲି ଡାକୁଛି ଧାଇଁ—ସବୁ ବିପଦରେ ଯେମିତି 'ମା' ଏକମାତ୍ର ଆଶ୍ରୟ ସିନା—କି ଯେ ଦରଦ ଦରଦ ହୋଇ ଲାଗୁ ବୋଧ ହୁଏ ଯାଉଥାଏ— )

ପ୍ରୌଢ଼ା—( କେଉଁ ଆବେଗଭରରେ ଯେ ବକ୍ଷ ଭିତରେ ଲୁଚାଇ ରଖିବାକୁ ଯତ୍ନ କଲା ! )

ଭିକ୍ଷୁକ—ବୁଢ଼ୀଆ ମା !—ହାମ୍ ଫକୀର୍ ଆଦ୍‌ମି——ବହୁତ୍—ଦୂରସେ—

ପ୍ରୌଢ଼ା—ଏଇଥିପାଇଁ ଏତେ ବ୍ୟସ୍ତ, ବାପ—( ଅନ୍ୟ କେତେ କଥା କ'ଣ ମନେ କରି, ବା କିଛି ସମଝି ନ ପାରି, ବ୍ୟସ୍ତ ହୋଇ ଉଠିଥିଲା—ମାତ୍ର, ଏ ଜଣେ ଫକୀର, ମାଗି ଆସିଛି, ଜାଣି ଆଶ୍ୱସ୍ତା ହେଲା )

ସିରାଜ୍—କିଛି ନାହିଁ ତା'ର, ମା—ପାଞ୍ଚ ମାଞ୍ଚିଆ ପିଲାଟିଏ—ବହୁତ ଦୂରରୁ ଆସିଛି—ଖୋଜି ଖୋଜି ଘରକୁ ଆମର ଆସି, ମାଗୁଛି—ସାଥି-ମାନଙ୍କ ମୁହଁରୁ ଶୁଣି—

ଭିକ୍ଷୁକ—ବହୁତ୍ ବାଦ୍‌ସା ଆଦ୍‌ମି ଖଇରାତ୍ କରତେ ହେଁ—ବଡ଼ିଆ ବଡ଼ିଆ ଚିଜ୍ ଦିଲାତେ ହେଁ—ମଗର୍ ଆପ୍‌କା ବେଟା ଯୋ ଦିଲ୍‌ସେ ଦିଆ ଆଜ—ଯୋ ଖୁସିସେ—

ପ୍ରୌଢ଼ା—ଗରିବ ସିନା ଗରିବର ଦିଲ୍ ଚିହ୍ନେରେ, ବାପ—( କହୁ କହୁ ଆପଣାର ଲୁଗା କାନିରୁ ରୁପାର ମୁଦ୍ରାଟିଏ ଓ ଅବଶିଷ୍ଟ ଯା କିଛି ଡେକରେ ବା କାନରେ ଥିଲା, କାଢ଼ି ଆନନ୍ଦରେ ଭିକ୍ଷୁକକୁ ଦାନ କରିଦେଲା )

ଭିକ୍ଷୁକ—ଖୋଦା ଆପ୍‌ଲୋଗଙ୍କା ଭଲାଈ କରେ—ତରକ୍କି ତାଲାରଖେ—ବାଲବଚ୍ଚା ଜିନ୍ଦା ରହେ—

[ ଖୁସିରେ ଚାଲିଗଲା—ମାତ୍ର ତାଜ୍ ଆଡ଼େ ଯେ କିପରି ଗୋଟାଏ କୁଟିଳ ଓ ଲୋଲୁପ ଦୃଷ୍ଟିପାତ ନ କରିଗଲା, ତା' ନୁହେଁ ]

ପ୍ରୌଢ଼ା—( କି ଯେ ଉଜ୍ଜ୍ୱଳ ଦୃଷ୍ଟିରେ ସେହି ଭିକ୍ଷୁକର ମୁହଁକୁ ଚାହିଁ, ସାଡେସାତ୍ ଉର୍ଦ୍ଧ୍ୱ ନୀଳିମାକୁ ଚାହିଁ ରହିଲା କେଉଁ ପୂର୍ଣ୍ଣ ହୃଦୟରେ )

ସିରାଜ୍—( ମା'ର ମୁଖରେ ଆଜି କେଉଁ ସ୍ୱର୍ଗୀୟ ଆଭା ଖେଳି ଯିବାକୁ ଦେଖିଲା—ନିଜକୁ ଧନ୍ୟ ଓ ପବିତ୍ର ମନେ କରିବାକୁ ଲାଗିଲା, ସେହି ଆଭା ସ୍ପର୍ଶରେ ଯେମନ୍ତ )

ତାଜ୍—( ଏ ଦୃଶ୍ୟ ତା'ର ମନକୁ ଯେ ସାମାନ୍ୟ ହେଲେ ବି ଭେଦ ନ ଥିଲା ତାହା ନୁହେଁ )

ପ୍ରୌଢ଼ା—( ଚାଲି ଯିବାକୁ ବସିଲା )

ସିରାଜ୍—( ଅତି ଭାବାବେଶରେ ମୂକ ହୋଇ ଯାଇଥିଲା ନା କଣ ? )

ତାଜ୍—ମା !—ମା !—ଦିନ ଯେ ପହରେ ହେବାକୁ ବସିଲାଣି—ଅତିଥି ସତ୍କାରରତ ଏ'ଯାଏ କିଛି ବନ୍ଦୋବସ୍ତ ହେଲାନାହିଁ—ଏଇ ନେ ନା, ମା ମୋ'ର ଗୋଟାଏ ଦାମୀ ଗହଣା—ବନ୍ଧା ପକାଇ—

ପ୍ରୌଢ଼ା—ନାରେ, ବେଟି—ମା ସେହି ଖୋଦା ଛଡ଼ା ଅନ୍ୟ କାହାରଠାରୁ ସନ୍ତାନ ପାଇଁ ତାର ଖାଦ୍ୟ ଧାର କରେ ନାହିଁ । ( ସ୍ନେହାଗରେ ଚୁମ୍ବନ କରି ପବନ ପରି ଚାଲିଗଲା )

[ ଉଭୟେ ସିରାଜ୍ ଓ ତାଜ୍ କି ଗୋଟାଏ ମନ୍ତ୍ରରେ ଯେପରି ମୁଗ୍‌ଧ ହୋଇ, ମା' ଚାଲିଯିବା ଅନ୍ତେ ମଧ ସେହି ଆଡ଼େ ଏକ ଦୃଷ୍ଟିରେ ଚାହିଁ ରହିଥାନ୍ତି—ମୋହଟା କଟିଗଲା କାଳର ପ୍ରବାହରେ—ପରସ୍ପର ପ୍ରତି ସେମାନେ ଚାହିଁଲେ କେଉଁ ସମସ୍ପନ୍ଦନରେ—ବିସ୍ମିତାଭା ଦେଖାଗଲା, ଅଧର ଓ ଆଖିର କୋଣେ କୋଣେ—ଉଦ୍‌ଗତ ପ୍ରେମର କୂପେ କୂପେ ]

ସିରାଜ୍—ତାଜୁ—ନା, ନା—ବିବି—ବିବି—

ତାଜ୍—( 'ତାଜୁ' ଡାକରେ କେଡ଼େ ଭାର, ଭାର ହୋଇ ଆଖି ଦିଟା ଉଠିଥିଲା—'ବବ' ଡାକରେ, ଅଦୌ ସେ ଅନାଇ ପାରିଲା ନାହିଁ—କିନ୍ତୁ ଭିତରଟା ଯେ କାପର ଛନ ଛନ ହୋଇ ଉଠିଲା, ତାହା ସେହି ଏକା ଜାଣେ କିନା )

ସିରାଜ୍—ମୁହଁ ଫେରାଇଲେ ହ'ବ କଣ ?—ଧରାତ ପଡ଼ିଗଲୁଣି—

ତାଜ୍—କ'ଣ ଧରାପଡ଼ି ଗଲଣି ?

ସିରାଜ—ଏହି ମୋର 'ବବ' ବୋଲି—

ତାଜ୍—ବା—ବା—( ସିରାଜର ବେଶଭୂଷା ପ୍ରତି କପଟ ଶ୍ଳେଷ ଭାବେ ଆଖି ବୁଲାଇବାକୁ ଲାଗିଲା )

ସିରାଜ୍—ଏମିତିକା ମଇଳା, ମେଲଛୁଆଟାଏ—ଛିଣ୍ଡା, କୋତରା ଲୁଙ୍ଗି ଜାମା—ଏଉଲ, ସେଉଲ ଚିହ୍ନି କଳିବା ମୁସ୍କିଲ—

ତାଜ୍—ଠିକ୍‌ତ—ଆପଣାର ପେଟ ପୋଷିବାର କ୍ଷମତା ନାହିଁ ଯା'ର—ତାର ପୁଣି 'ବବ' କରିବାକୁ ସଖ୍—

ସିରାଜ୍—'ବବ' ଯଦି ସଖ୍ କରି 'ମିଆଁ' କରେ—( କିନ୍ତୁ କିନ୍ତୁ ହଠାତ୍ ବଇଁଶୀଟାରେ ଗୋଟାଏ କେଉଁ ଅବ୍ୟକ୍ତ ଆନନ୍ଦର ଝଙ୍କାର ଯେପରି ଖେଳାଇ ଦେଲା, ଯାହା କି ଅନ୍ୟ କେଉଁ ଭାବେ ପ୍ରକାଶକରି ପାରି ନଥାନ୍ତା )

ତାଜ୍—ଯା, ଯା, ସେମିତିକା ସୌଖିନ୍ ବବ ପାଖକୁ ଯା—ଯେ କି ସଖ୍‌କରି ତୋ'ର ସେହି ଫୋକରା ବଇଁଶୀ ଶୁଣେ—

ସିରାଜ—ଖାଲି ଶୁଣେ ନାହିଁରେ—ନାଚେ—ନାଚେ —ଶୁଣ, ଶୁଣ, ତାଜୁ—ଆଜି ନୂଆ ଦିନରେ—ମୋ ବଇଁଶୀରେ କେମିତିକା ନୂଆ ସୁର ଖେଳି ବୁଲୁଛି—ନୂଆ ଗୀତ ମାତି ଉଠୁଛି—

ଗୀତ

( ଅହା ! ) ଦିଲ୍‌କା ରୋଶ୍‌ନି—ପିଆରି ମେରି—
ଅନ୍ଦର୍ ମେ ବନାୟା ମହଲ୍ ତେରି ॥
'ମହବତ୍' କିଆ ଦୌଲତ୍‌ଖାନା—
ଖାନାପିନା ତୋ—'ଗାନା, ବଜାନା'
କିଆ ପିନା ?—କାହେ ଘାବ୍‌ରାନା ?—
'ଆସ୍‌ମାନ୍' ମେରା ରଂ-ରଙ୍ଗେଲି ॥
ବଞ୍ଚ୍‌ନା, ମର୍‌ନା ତୋ ଏ'କ ବାତ୍—
ଦୁନିଆସେ ହମାରା କିଆ ବାତ୍ ?—
ଓଠୋମେ ଓଠୋ ମିଲ୍ ଗଇ ଯବ୍
ଜାନ୍‌ମେ ଜାନ୍ ତେରି ମେରି ॥

( ବଂଶୀ ବଜାଇ ବଜାଇ ଗାଇବାକୁ ଲାଗିଲା )

ତାଜ୍—ଯାଏଁ, ଯାଏଁ ମୁଁ—ଟେଣେ ମା—( ସିରାଜ୍ ଗାଇଲା ବେଳେ ଏହାପରି କିନ୍ତୁ କିନ୍ତୁ, ସେହି ଗୀତର ମୋହନ ମାଧୁରୀରେ ଅଟକି ରହିଗଲା—ହୃଦୟଟା ନାଚି ଉଠିଲା—ସଙ୍ଗେ ସଙ୍ଗେ ଗୋଡ଼ ମଧ )

ସିରାଜ୍—( ଅଦ୍ଭୁତ ଉନ୍ମତ୍ତ ଭାବେ ବଜାଇବାକୁ ଲାଗିଲା—ଅବଚେତ୍ୟେ ଯୋଗ ଦେଲା ତାଜ୍ ସଙ୍ଗେ ନୃତ୍ୟରେ—ସେ ଯେ କି ଆବେଶ ! )

[ ଏହି ସମୟରେ ସେହି ଖେଜୁରି କୁଞ୍ଜର ଗୋଟାଏ ଫାଙ୍କରେ ଦରବେଶ୍ ପରି ଜଣକୁ ଏହି ନୃତ୍ୟସୁଖ ଅନୁଭବ କରିବାକୁ ଦେଖା ଗଲା—ମୁଖରେ ଲାଲସାର କି ହାସ୍ୟ ଲାସ୍ୟ !—ସଙ୍ଗରେ ଆଉ ଜଣେ କିଏ—ସେହି ଭିକ୍ଷୁକଟା ନା—?]

ତାଜ୍—ଛାଡ଼୍—ଛାଡ଼୍—( ଆବେଗ୍‌ଟା ହଠାତ୍ ଭାଙ୍ଗି ଯିବାରୁ କି କଣ, ଲଜ୍ଜାର ଗୋଟାଏ ଅସହ୍ୟ ତାଡନାବୋଧରେ ଏହିପରି ଅଥୟ ହୋଇ ଉଠିଲା ପରି )

ସିରାଜ୍—ନା, ନା, ବବ—ବବ ମୋ'ର—( ଆବଦ୍ଧ କରି ରଖିବାକୁ ଲାଗିଲା )

ଦରବେଶ୍—ହୋଃ—ହୋଃ—ହୋଃ— ( ଏହି ବିଦ୍ରୂପାତ୍ମକ ହାସ୍ୟଟା ଯେମିତିକା ଆଉ ଲୁଚି ରହି ନ ପାରି ଉଦ୍‌ଗାର କରି ପକାଇଲା—ମାନ ଆପେ ଚମକି ଉଠିଲେ ଆପଣାର ସେହି ହାସ୍ୟ ରୋଳରେ—କେଉଁ ଭୟରେ ଚୋରପରି ଲୁଚିଗଲା ଗଛ ଅଢୁଆଳରେ )

ସିରାଜ୍ ଓ ତାଜ୍—( ଚମକିତ ହୋଇ ସେହି ଆଡେ ଚାହିଁଲେ )

ସିରାଜ୍—କେହି ନାହିଁରେ !—ଥିଲେ ବା ଗ୍ରସିଗଲେ କଣ ?—ସମସ୍ତେ ଦେଖିଲୁ—ଦୁନିଆ ଦେଖୁ—ଖୋଲ ଦେ—କହ ଦେ—'ତୁହି ମୋ'ର' ।—'ମୁହିଁ ତୋ'ର' ।।—( କୁଣ୍ଢାଇ ପକାଇ ଏକୀଭୂତ ହେବାକୁ ତତ୍ପର )

ତାଜ୍—କ'ଣ କୋର ଜବରଦସ୍ତି କରୁଛ—?
( ଛଡ଼ାଇ ନେଲା )

ସିରାଜ୍—ମୁଁ କରୁଇ ନାହିଁରେ—କରାଇଛୁ ତୁହି—ତୋ'ର ବାପ୍—ତୋ'ର ଦଲ୍—

ତାଜ୍—ଭାର ଜମ୍ବୁଦ୍ଵୀପ.ଏ କିନା—?

ସିରାଜ୍—ତେବେ—ତେବେ—ତାଜ୍ ଅଲ କା'ର ଖୁସିପାଇଁ ଖଫାରୀ କରିବାକୁ ଧାଇଁ ଯାଇଥିଲରେ—।

ତାଜ୍—( ଛନ୍କରି ଭିତରେ ଠାଆ ହେଲା )

ସିରାଜ—ତା'ର—ତା'ର—?

ତାଜ୍—'ମିଆଁର'—( ଉତ୍ତରଟା ଯେତେବେଳେ ଅଜ୍ଞାତମାରେ ବାହାରି ପଡ଼ିଲା କେଉଁ ସମୟରେ ବଳା ହୃଦୟ ବାଣାଳୁ—ମାତ୍ର ଲଜ୍ଜାର ଅବଧି ରହିଲା ନାହିଁ—ମୁହିଁ ନତ ହୋଇଗଲା )

ସିରାଜ—ବୋଲ୍, ବୋଲ୍—ଦଲ୍‌ର କଥା, ଜାନ୍‌ର କଥା ଖୋଲି,—

ତାଜ୍—ଏହି କମ୍‌ବଖ୍ତର ଖୁସିପାଇଁ—ନୁହେଁରେ, ଓଲ୍—ତାର ଦଲ୍‌ର ଖୁସିପାଇଁ—ତାର—( କଥାଟା କହିଲା ନିଜର ଲଜ୍ଜା ବା ଦୁର୍ବଳତାଟା ଘୋଡ଼ାଇବା ପାଇଁ—କିନ୍ତୁ ଫଳରେ ଅଧିକତର ଅନୁଭବ କଲା ପରି )

ସିରାଜ୍—ଦଲ୍ -ଦଲ୍--ଦଲ୍‌ର ଖୁସିପାଇଁ—ଦଲ୍‌କା—ହାଃ,—ହାଃ—'ଦିଲ୍‌କା ଖୋଶନା ପିଆରୀ ମେରି' ( କହୁ କହୁ, ଉନ୍ମତ୍ତ ପ୍ରାୟ ହୋଇ ଗାଇଲା, ନାଚିଲା ମଧ୍ୟ, କିନ୍ତୁ ଏଥିରେ କେବଳ ଏଥରକ ସନ୍ତୁଷ୍ଟ ଥାଇ ନପାରି କୁଣ୍ଢାଇ ପକାଇ ଚୁମ୍ବନ କରିବାକୁ ଗଲା )

ତାଜ୍—( ଭିତରେ ଭିତରେ ଯେ ଜନ୍ମିତ ହୋଇ ଉଠି ନ ଥିଲା ତାହା ନୁହେଁ—ତଥାପି କେଉଁ ସ୍ଵଭାବ-ସୁଲଭ ଅଭିମାନର କାଠିନ୍ୟରେ କାଷ୍ଠୁର ହୋଇ ପାରଥାନ୍ତା, ମାତ୍ର ସେହି ଦୁର୍ବଳତାଟାର ଆଧିକ୍ୟ ଯୋଗୁଁ, ଅଥବା ପ୍ରବୃତ୍ତିର ଦୁର୍ଦମନୀୟ ପ୍ରଭାବଯୋଗୁଁ ମେରୁଦଣ୍ଡ ଏକାବେଳକେ ଭାଙ୍ଗି ପଡ଼ିଥିଲା—ସୁତରାଂ ଆବେଶରେ ଆଖି ଦୁଇଟା ଯେତେବେଳେ ଅଧବୁଜା ହୋଇ ଆସିଥିଲା, ବାହାରର ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ାକ ଶିଥିଳ ହୋଇ ଯାଇଥିଲା )
[ ଠିକ୍ ଚୁମ୍ବନ ବେଳରେ ପ୍ରୌଢ଼ା ଜନ୍ମୋନ୍ମତ୍ତ ଭାବେ ଡାକୁ ଡାକୁ ପରଦାଠେଲି ପ୍ରବେଶ କଲା ]

ପ୍ରୌଢ଼ା—ତାଜ୍ । ତାଜ୍ ।—ସିରାଜ୍ । ସିରାଜ୍ ।—ଭାରି ଖୁସିର ଖବର—ଭାରି ଖୁସିର ଦିନ—ଖୋଦା ମେହେରବାନି କରିଛନ୍ତି—ଛଡ଼ି ଫାଙ୍କର—

ତାଜ୍—( ଲଜ୍ଜାରେ ହେଉ ବା କୌଣସି ଭୟରେ ହେଉ ଅନାଇ ପାରିଲା ନାହିଁ—ନାହିଁତ, ଏ ଯେଉଁ ଖୁସିର ଖବର, ତେଇଁ ନାଚ ଉଠିଥାନ୍ତା ପରି —)

ସିରାଜ୍—କ'ଣ—କ'ଣ ମା ?—( ନିର୍ଲଜ୍ଜ, ବେହିଆ ଟାଏ—ମା ନିକଟକୁ ଧାଇଁ ଆସିଲା, କୌଣସି ସଙ୍କୋଚ ନ ମାନି )

ପ୍ରୌଢ଼ା—ଆମିନା ଖବର ଦେଇଗଲା—

ସିରାଜ୍—ଆମିନା !—( ଘୃଣାରେ କେମିତିକା ନାସା ଓ ଭ୍ରୂ କୁଞ୍ଚିତ କରି ଦେଲା )

ତାଜ୍—( କେମିତିକା ଚମକି ଉଠିଲା )

ପ୍ରୌଢ଼ା—ହଁ—କିଏ ଜଣେ ସୌଦାଗର ଆସିଚନ୍ତି—ବହୁତ ଜମାଯୁତ୍—ଘୋଡ଼ା ଓଟ ଅନେକ—ଏହି ଦୋକାନଟା ଯାକ ହାଣ୍ଡି ମାଠିଆ ହେଲେବି ଅଣ୍ଟିବ ନାହିଁ—

ସିରାଜ୍—କାହିଁ ?—କାହିଁ ?—କେଉଁଠି, ମା ?—ମୁଁ ଯାଏଁ, ବେଗେ—

ପ୍ରୌଢ଼ା—ଯିବାକୁ ହବନାହିଁ ରେ—ଆମିନା ଶବ ମେହେରବାନି କରି ବାଟ ଦେଖାଇ ଦେଇଚନ୍ତି

—ଲୋକବାଙ୍କ ସାଥିରେ ଯେମିତି ଅଧେ ସୌଦାଗର ସାହେବ ଏଣେ ଆସୁଚନ୍ତି—

ସିରାଜ୍—କେବାଣି—ସେ ଗଣ୍ଡିଟା କଥାରେ ବିଶ୍ୱାସ କଣ—କାଜେ ଯାଏଁ—ନିଜେ—

ପ୍ରୌଢ଼ା—ରହ, ରହ, ଦେଖା—ଷୈରଙ୍କର୍ ଗ୍ଲାସଟା ପିଇଦେଇ—( ଗୁଳିଗଲା ଦ୍ରୁତ ବେଗେ )

ସିରାଜ୍—ତାଜ୍, ତାଜ୍ !—ତୁ ଦୋକାନଟା ଭଲ ରକମ ସଜାଡ଼, ଖୁବ୍‌ସୁରତ୍ କର—ଦେଖ୍, ଦେଖ୍—ହୁସିଆରଟି—ଆପଣାର ଦୋକାନଟା —( କାନେ କାନେ ହସି ହସି କହିଲା )

ତାଜ୍—( ଠାସ୍ କରି ଗୁଏ ଚାପୁଡ଼ାଏ ଦେଲା—କିନ୍ତୁ ସ୍ପର୍ଶଘାତ୍ଟା ମର୍ମେ ମର୍ମେ ଯେମନ୍ତ ଅନୁଭବ କରିବାକୁ ଲାଗିଲା )

ସିରାଜ୍—ହାଃ, ହାଃ, ହାଃ—( ହସି ହସି, ଚନ୍ଦନ ଲେପନର ସୁଖ ଯେହ୍ନେ ଅନୁଭବ କରୁ କରୁ, ଆପଣାର ଗାଲର ସେହି ଅଘାତ ସ୍ଥାନଟାରେ ମୃଦୁ ମୃଦୁ କରାଘାତ କରୁ କରୁ, କୁଞ୍ଜଆଡ଼େ ଦୌଡ଼ି ପଳାଇ ଗଲା )

ତାଜ୍—( ଏ'ପରି ଚପେଟାଘାତରେ ଯେହ୍ନେ ମର୍ମେ ମର୍ମେ ହାତୁଡ଼ି ପିଟାର ଅଘାତ ଓ ଯନ୍ତ୍ରଣା ଅନୁଭବ କରିବାକୁ ଲାଗିଲା )

[ ପ୍ରୌଢ଼ା ଦୁଇଗ୍ଲାସ ସରବତ୍ ଘେନି ପ୍ରବେଶ କଲା ଅତି ଉଲ୍ଲାସଭରେ ]

ପ୍ରୌଢ଼ା—ସିରାଜ୍ କାହିଁ ?—ଗୁଳିଗଲା—ଚଗଲା —ନେ, ନେ, ତାଜ୍ ତୋ'ର—

ତାଜ୍—ଅଜ୍, ମା ଶୋଷ ମୋର ଅଦୌ—ଏହି ଯେ, ମା—ସେହି ସୌଦାଗର—( ନିଜ ସ୍ଥାନରେ ବସିଗଲା—ସ୍ପଷ୍ଟଭରେ କିନ୍ତୁ କେହି ସ୍ପଷ୍ଟ ଦେଖାଯାଇ ନ ଥିଲେ )

[ ପ୍ରୌଢ଼ା ଭିତରକୁ ପଳାଇଗଲା—ପର୍ଦ୍ଦା-ନସୀନ୍ କନା—]

[ ବହୁତ ଅବସା କରିବାପରେ କେତେ-ବେଳକେ ସଉଦାଗର ସାହେବ ସେହି କୁଞ୍ଜବାଟେ ଅସିବାର ଦେଖାଗଲେ—ସାଙ୍ଗରେ ସିରାଜ୍—ଖୋସ୍‌ଗପ କରି କରିକା ଯେମିତିକା ଗଡ଼ି ଯାଉଥାଏ—ସଉଦାଗରଟା ତାଜକୁ, ଦୂରରୁ ଶିକାରକୁ ନଜର କଲା ଭଳି. ଲକ୍ଷକରି ଯେତେ ଯେତେ ପାଖକୁ ଆସୁଥାଏ, ତେତେ ତେତେ ତାଜ୍ ଠିକ୍ ତୋଟିଏ ମୁନ.ରେ କ୍ରମେ କ୍ରମେ ଭୁଷି ହେଲାଭଳି, ଲଜ୍ଜା ଓ ଭୟର କି ଯେ ଭୀଷଣତା ଅନୁଭବ କରୁଥାଏ—ଅସହ୍ୟ ବୋଧ ହେଉ, ଦୌଡ଼ି ପଳାଇ ବଞ୍ଚି ଥାନ୍ତା, ପର୍ଦ୍ଦାର ଟିକିଏ ଫାଙ୍କରେ ଦେଖା ଯାଉଥିବା ମା'ର ଉବା ଉବା ଅଗ୍ନିପୋଡ଼ାକ ଯଦି ପ୍ରଜ୍ଜ୍ୱଳିତ ଶଲାକା ପରି ବାଟ ଓଗାଳି ନ ଥାନ୍ତା—ସେ ବସିଲା ଭଳି କାକୁସ୍ଥ ହୋଇ—ଖବରଦାର ସଉଦାଗର ସାହେବ ଯେ ଅସି ପହଞ୍ଚି ଗଲେଣି, କପଟ କ'ଣ କରିବାକୁ, କହିବାକୁ ହେବ, ସବୁ ଅଦବ୍ କାଏଦା ତା'ର ଗୋଳମାଳ ହୋଇଗଲା କେମିତିକା—ଏମିତିଭାବ ଦେଖି କ୍ଷଣକାଳ ପାଇଁ ସିରାଜଟା ବି ଥମ୍ ହୋଇ ରହିଗଲା । ]

ସିରାଜ୍—ତାଜ୍—କ'ଣ କରୁଚୁ ତୁ ?—ଖବରଦାର—।

ତାଜ୍—ହିଁ—( କଣ ଟିକିଏ ଖାଲି ହଲ୍‌ଚଲ୍ ହେଲା —ବହୁତ କଷ୍ଟରେ ଖବରଦାର ଆଡ଼େ ଗୁହିଁବାକୁ ଚେଷ୍ଟା କଲ ସୁଦ୍ଧା, ଗୁହିଁ ପାରିଲା ନାହିଁ )

ସିରାଜ୍—ତୋ ହାତ କଣ କାଣ୍ଡ ହୋଇଚ—ଆଇସ୍ୟେ, ସାହେବ—ଫର୍ ମାଇସ୍ୟେ—କୋନ୍ ଚିଜ୍—କୋନ୍ ଦୋ—( ସଉଦାଗର କାଣ୍ଡ ଫର୍ମାସ କରୁଣ୍ଡୁ ନ କରୁଣ୍ଡୁ କାଢ଼ିବାକୁ ତିଆର ହୋଇଗଲା)

ସଉଦାଗର—ହାଁ, ଦେଖିଲାଓ ଥୋଡ଼ାଭର ଭଲ ଭଲ ଚିଜ୍—( ଅନ୍ୟମନସ୍କ ଭାବେ ସିରାଜ ଆଡେ ଥରେ ମାତ୍ର ଗୁହିଁ, ଏହିପରି କହିଦେଇ, ତାଜ୍ ଆଡ଼େ ପୁଣି ପୂର୍ଣ୍ଣ ଦୃଷ୍ଟିରେ ଗୁହିଁ ରହିଲା—କି ଅପରୂପ ସୌନ୍ଦର୍ଯ୍ୟ !—ମାତ୍ର, ସଉଦାଗରୀ ହିସାବରେ ଉପଭୋଗ କରୁଥାଏ )

ତାଜ୍—(ସେହି ଲୋଲୁପ ଦୃଷ୍ଟିରେ ଗୋଟାଙ୍ଗାଳ ହୋଇ, ପର୍ଦ୍ଦାଆଡେ ଆଶ୍ରୟକାମନା ପୂର୍ବକ ଗୁହିଁଲା ବୋଧହୁଏ । )

ସୌଦା—ତାଜ୍—( ଅଦ୍ଭୁତ ସଂକୋଚରେ ସୁଦ୍ଧା ଏହିପରି ଶାସନ ନ କରି ରହିପାରିଲା ନାହିଁ—ଏକୋ ଦମ୍ ଖବରଦାର ଜଣେ !—ଜୀବନରେ କେବେ ପାଇ ନଥିବେ—ପାଇବେ ନାହିଁ ପରା ! )

ସିରାଜ୍—( ଗୁଡ଼ାଏ ହାର୍ଣ୍ଡ'ମାଠିଆ ଆଣି ସାମ୍ନାରେ ଗଦେଇ ଦେଲାଣି ତେତେବେଳକୁ—କେତେଟା ବ ଭାଙ୍ଗି ଖପରା କରି ସାରିଲାଣି—ମୁଣ୍ଡର ଝାଳଟା ପୋଛୁ ପୋଛୁ, ହଠାତ୍ ସଉଦାଗରଙ୍କୁ ତାଜ୍‌ର ମୁଖସୌନ୍ଦର୍ଯ୍ୟ-ଦର୍ଶନଲୋଲୁପ ଦେଖି, କେଉଁ ଅଜଣା ଭୟରେ ଶିହରି ଉଠିଲା ଯେମନ୍ତ, ମାତ୍ର ସଙ୍ଗେ ସଙ୍ଗେ ଗୋଟାଏ ଉପହାସରେ ଉଡ଼ାଇ ଦେଇ, ତାଜ୍‌କୁ ଚୁହିଁ ହସି, ହସି ଗଡ଼ିଗଲା ପରା )

ତାଜ୍—( ବିବର୍ଣ୍ଣଭାବେ ସିରାଜ ଆଡ଼େ ଚୁହିଁ, ଭଙ୍ଗା ଖପରା ଗୋଟାଇବାକୁ ଲାଗିଗଲା )

ସିରାଜ୍—ଦେଖିଯେ, ଦେଖିଯେ, ସାହେବ—ଅଚ୍ଛା କରିବେ—କଅ ଖୁବ୍‌ସୁରତ୍—ବୋଦ୍‌ଦଦ୍-ଭର୍‌ମେ ଦେଖ୍‌ନେକା ଲାଏକ ଚିଜ୍—(ତାଜର ମୁହଁଟାକୁ ବେହିୟାଙ୍କଭଳି ଆପଣା ହାତରେ ବୁଲାଇ ଧରି ଦେଖାଇଲା )

ତାଜ୍—( ବିରକ୍ତି, ଘୃଣା ଓ କ୍ରୋଧରେ ଜଳିପୋଡ଼ି ଚଲି ପରା—ଆଜି ସରମରେ ବନ୍ସି କଣ୍ଠାରେ ମାଛ ଲାଗିଲା ଭଳି ଛଟପଟ ହେବାକୁ ଲାଗିଲା )

ସୌଦାଗର—ସ୍ଲେଭ୍ ଦୋ—ସ୍ଲେଭ୍ ଦୋ—ବେଟିକା ହାଉସ ଉଦ୍ଲେନେ ମାଁଙ୍ଗତେଥେ—ଦୋ, ଦୋ, ବେଟି ଯୋ ତେରି ଦିଲ୍—ନେହିଁ, ନେହିଁ—ନୁଜ୍‌କୋ ଦେଖ୍‌ନେ—ହାଁ, ଏ'ଠୋ ସବ୍‌ସେ ବଢ଼ିଆ—କୋନ୍ ଉସ୍କାର କସୁ—ସୁସି ବଙ୍ଗଳା କାରିଗିରି—( ସିରାଜର ଏହିପରି ଅଶିଷ୍ଟତାପୂର୍ଣ୍ଣ ଆଚରଣରେ ଭାରି କ୍ଷିତ ହେବାକୁ ଲାଗିଲା—ପକ୍କା ବ୍ୟବସାୟୀ ହେଲେ ମଧ୍ୟ ଏତେ ବ୍ରସ୍ତ ହୋଇ ପଡ଼ିଥିଲା ଯେ, କଥାର ସାମଞ୍ଜସ୍ୟ ରଖିପାରୁ ନ ଥିଲା—ଭଲଭଲ 'ଚିଜ' ଭିତରୁ ବାଛି ବାଛି ଖପରାଟାଏ ବି ଧରି ପ୍ରଶଂସା କରିବାକୁ ଦେଖାଗଲା )

ସିରାଜ୍—ଓ'ଠୋ କୁଛ୍‌ନେହିଁ ସାହେବ—ଏ'ଠୋ ଦେଖିଯେ ଜେରା—ତାଜ୍‌କା କାରିଗିରି—

ସଉଦାଗର—ବହୁତ୍ ବଢ଼ିଆ—ବହୁତ୍—ଯେସି ସୁରତ୍—ନେହିଁ, ନେହିଁ—ଥଣ୍ଡାପାନି—[ ପ୍ରଶଂସା କରି ଆପଣାର ଦୁର୍ବଳତାଟାକୁ ଘୋଡ଼ାଇବାକୁ ଚେଷ୍ଟାକଲେ ମଧ୍ୟ, ସେହିପରି ଭ୍ରମସଂଶୋଧନ ହେତୁ କଲିଜାଟା, ସଦ୍ୟ 'ହଲାଲ' ଯୋଗୁଁ ଯେମିତିକା ଛଟ୍ ଛଟ୍ କରି ଉଠିଲା—ତହିଁରେ କଣ୍ଠର ଶୁଷ୍କତା ଏତେଦୂର ସେ ଅନୁଭବ କରିବାକୁ ଲାଗିଲା ଯେ ପ୍ରାଣ ବିକଳରେ ଏହିପରି ନ ମାଗି ରହିପାରିଲା ନାହିଁ ପରା—କହିବା ପରେ ପରେ କିନ୍ତୁ, ଆପଣାର ଦୁର୍ବଳତାଟା ଯେ ପ୍ରକାଶିତ ହୋଇଗଲା—ଏ'ଟା ସେ ଜାଣି ନ ପାରିଲା ତା' ନୁହେଁ ]

ସିରାଜ୍—ସରବତ୍ ! ସରବତ୍ !—ନା, ନା—ଯା, ଯା ତାଜ୍—ତୋ'ର ଉଆର ଗିଲାସେ ସରବତ୍ ସାହେବଙ୍କୁ ଦିଅ—ବହୁତ୍ ବଢ଼ିଆ ସରବତ୍ ତାଜ୍ ତିଆରି କରନେ—( ପ୍ରଥମେ ଯିବାକୁ ଉଦ୍ୟତ ହୋଇ ଏହିପରି କହୁ କହୁ ଅଡୁ ଗଲା ନାହିଁ )

ସୌଦାଗର—ବହୁତ୍ ଖୁସିକା ବାତ୍, ବହୁତ୍ ଅଚ୍ଛି ବାତ୍—( ଗୋଟାଏ ବିଷମ ଘାଟି ପାର ହୋଇଛି, ଏହି ଆଶ୍ୱାସନାରେ ନିଃଶ୍ୱାସ ମାରି ବଞ୍ଚିଲା କି ଆଉ ? )

ତାଜ୍—( ସିରାଜ୍ ଆଡ଼େ କଟୁ କଟାକ୍ଷ ପାତ ପୂର୍ବକ କୌଣସିମତେ ସେଠୁ ପଳାଇ ବଞ୍ଚିଲା ଯେମିତିକା )

ସୌଦାଗର—( ସିରାଜର ଭୟରେ ଏଥର ଟେରେଇ ଟେରେଇ ଚୁହୁଁଥାଏ—ମାତ୍ର ପକ୍କା ସୌଦାଗରୀ ହିସାବରେ—ସର୍ବାଙ୍ଗ ପ୍ରତ୍ୟଙ୍ଗ ନିରୀକ୍ଷଣ ପୂର୍ବକ)

ସିରାଜ୍—କ୍ୟା ଦେଖତେ ହୋ, ସାହେବ—ସ୍ଲେକ୍‌ଟିକା ଦିମାଗ୍ ବଢ଼ଗୟା—

**ସୌଦାଗର**—ହାଁ, ଟଙ୍କା ଦାନ୍ ?—( ଅତର୍କିତ ଭାବେ କି କେଉଁ ମୋହ ବଶରେ ଏତକ କହିଦେଇ, କି ଯେ ଅପ୍ରସ୍ତୁତ—ନା, ନା, ଶଙ୍କିତ ହେବାକୁ ଲାଗିଲା )

ସିରାଜ୍—କୋନ୍, କୋନ୍ ଟଙ୍କା—?

ସୌଦାଗର—( ଆହୁରି ଅପ୍ରସ୍ତୁତ ହେବା ଭୟରେ କି କେଉଁ ଅନଭିପ୍ରେତଶଙ୍କାରେ କିଛି ନ କହିପାରି ଯେମନ୍ତ, ଥଳିଟାଏ ସେଇଠି ଓଟାଳି ଦେଲା, ଝଣ୍‌ଝଣ୍ କରି—ଖାଲି ସୁନାର ମୋହର ଗୁଡ଼ାକ —ନା, ନା, ସାଙ୍ଗେ ସଙ୍ଗେ ଅପଣାର ଦିଲ୍‌ଟାକୁ ଓଟାଳି ଦେଲା—କେଉଁ ଦିଲ୍‌ଲଗି କଥା ଗୁଡ଼ାକ )

ସିରାଜ୍—( ଅବାକ୍ ହୋଇ ଚାହିଁ ରହିଥାଏ )

[ ଏହି ସମୟରେ ତାଜ୍ କେତେ ଠେଲା-ଠେଲିରେ ଯେମିତିକା ଅସ୍ତେ ଆସ୍ତେ ଗୋଡ଼ ପକାଇ ପକାଇକା, ବେଦୀକୁ ଚାଲିଥିବା 'କନ୍ୟା'ଟିପରି, ଗିଲାସେ ସରବତ୍ ଧରି ପହଞ୍ଚିଗଲା ]

ତାଜ୍—( ସେଇ ସୁବର୍ଣ୍ଣ ମୁଦ୍ରାର ଗଦା ଆଡ଼େ ନଜର ପଡ଼ନ୍ତେ, ସେଇ ସ୍ମିତ ବିରକ୍ତ ମୁଖରେ ମଧ୍ୟ ଆନନ୍ଦର ଢେଉ ଖେଳିଗଲା—ଲଜ୍ଜା ସରମର ପର୍ଦ୍ଦା ମିଳାଇ ନାହିଁ ପରି—)

ସୌଦାଗର—( ଏହି ଅବସରରେ ତାଜର ସଙ୍କୋଚ ଶୂନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ଗୁଡ଼ିକ ପୁଙ୍ଖାନୁପୁଙ୍ଖରୂପେ ଦିଲ୍‌ଭରି ନିରୀକ୍ଷଣ କରିବାକୁ ଲାଗିଲା )

ତାଜ୍—( ହଠାତ୍ ସେଇ ରୂପା ଲଜ୍ଜାସରମର ଗୋଟାଏ ଦଂଶନ ଅନୁଭବ କରନ୍ତେ, ସରବତ୍ ଗ୍ଲାସଟା ସିରାଜର ହାତରେ ଧରାଇ ଦେଇ ଯାଉଥିଲା ବାହାରି—କିନ୍ତୁ ନିମ୍ନୋକ୍ତ ସିରାଜର କାଣ୍ଡଟା ଦେଖିଲା ମାତ୍ରେ ଠିଆହୋଇ ଗଲା )

ସିରାଜ୍—( ଢକ୍, ଢକ୍ କରି ସାଙ୍ଗେ ସାଙ୍ଗେ ପିଇ-ଦେଲା—ଏତେଟା ଅନ୍ୟମନସ୍କ ଯେ କେବଳ ହୋଇଥିଲା, ତା' ନୁହେଁ—କେଉଁ ବଦ୍‌ହଜମ୍ ଜନିତ ଶୋଷଟା ପ୍ରାଣଟାକୁ ଅକ୍ରାନ୍ତକରି ପକାଇ ଥିଲା ମଧ୍ୟ ।)

ତାଜ୍—କ'ଣ କଲୁ ? କ'ଣ—

ସିରାଜ୍—ଏଁ—ଏଁ—ମାଫ୍ କରିଏ—ମାଫ୍ କରିଏ, ସାହେବ—ଯା ଯା, ତାଜୁ ଆଉ ଗିଲାସେ—

ତାଜ୍—( ଚାଲି ଯାଉଥିଲା ବିରକ୍ତି ପରିବର୍ତ୍ତେ ବରଂ ଆମୋଦ ଭରେ—ସବୁ ସଙ୍କୋଚ ଫିଙ୍ଗିଦେଇ—)

ସୌଦାଗର—ନେହିଁ, ନେହିଁ, କୁଛ୍ ଜରୁରତ୍ ନେହିଁ—ହାମ୍ ଅଭ୍‌ଯା'କେ ନୌକର ଭେଜ୍ ଦେତେ ହେଁ—ମାଲ୍, ତାଜ୍—( ଏହି ଶେଷପଦ ଗୁଡ଼ିକ କହୁକହୁ, କି ଲାଳସାପୂର୍ଣ୍ଣ ନେତ୍ରରେ ଯେ ତାଜ ଆଡ଼େ ଚାହୁଁ ଥାଏ )

ସିରାଜ୍—ଦେଖ୍ ଦେଖ୍, ତାଜୁ—ଶହ ଶହ ମୋହର ଏକାବେଳକେ—ଦୋକାନ, ଘରବାଡ଼ି ଆମର ବିକିଲେବି, ଏହାର ଭାଗିଏ—

ତାଜ୍—( ସିରାଜ୍‌ର କାନ୍ଧ ଗୋପନରେ ଚିପିବାକୁ ଲାଗିଲା, ଭ୍ରୁକୁଞ୍ଚନ ପୂର୍ବକ )

ସୌଦାଗର—ହାଁ, ହାଁ, ବୋଲ୍ ତ, ବେଟି—ହାମ୍ ଖୁସିସେ ଯବ୍—( ହସି ହସି କହିବାକୁ ଲାଗିଲା )

ତାଜ୍—ହଁ, ସାହେବ ଯଦି ଖୁସିରେ—( ଲଜ୍ଜାତ ମୁଣ୍ଡଖାଇ, ଏତକ ନ କହିବା ଯାଏ ସ୍ଥିରହୋଇ ରହି ପାରିଲା ନାହିଁ ତ ପରି—ସିରାଜ୍ ଯେମିତିକା ଖେଁଖିଆଲିକ, ଯଦି ଫେରାଇ ଦିଏ, ଏହି ଡରରେ ନା କ'ଣ ? )

ସିରାଜ୍—ଖୁସି—ଖୁସି—ବେଶ୍—ବେଶ୍—ମୋର ବି ଖୁସି—ଖୁସିର ଠିକା, ଖୁସିରେ ଭିଜୁ—ସାହେବ ! ସାହେବ ! ମେହେରବାନି କର୍‌କେ ଇହିଁ ଅଜ୍ ଖା'ନା—ପି'ନା—ମଜା ଉଡ଼ାନା—ସବ୍‌କୋ, ଯୋ ହୋଇ ସାଥକା ଆଦ୍‌ମୀ ଆପକା ହେଁ, ସାଥମେ ଲେ ଆନା--ଔର ବି ଯିସ୍‌କୋ ଖୁସି ଲେଆନା-- ନେହିଁ ନେହିଁ—ଦୁନିଆଭର୍ ସବ୍‌କୋ ଲେଆନା —ଖୁସି—ଖୁସି—ଖୁସି—( ଖୁସିର ଅତିମାତ୍ରାରେ ଖୁସିର ସେହି ଉଚ୍ଛ୍ୱଳିତ ଭାବ କଥାରେ ଆଉ ବୋଧହୁଏ ପ୍ରକାଶ କରି ନ ପାରି, ବଇଁଶୀର ସାହାଯ୍ୟ ନେଲା କି ଅଉ ? )

ସୌଦାଗର—ଅଚ୍ଛି ବାତ୍—ହାମ୍ ଆଏଙ୍ଗେ, ଅଔର ଦୋନୋ, ତନୋ ସାଥମେ ଲଏଙ୍ଗେ—ଯେତ୍ନା ଖୁସି ଖିଲାଓ—ଯେତ୍ନା ଖୁସି ପିଲାଓ—ମଜ୍‌ଜ୍ ମଜ୍‌ଲିସ୍ ଯୋ କୁଛ୍ ଦିଲ୍ କରେ—'ଖୁସି'—'ଖୁସି'—

ଭାଜ୍—( ଏଥିରେ ଅଦୌ ଖୁସି ହେଉ ନ ଥାଏ—ଥାନ ବ ଛାଡ଼ି ଯାଇ ପାରୁ ନ ଥାଏ—କଣ ସେହି ମୋହରର ମୋହ ଯୋଗୁଁ ? )

ସିରାଜ୍—କିଆବାତ୍—କିଆବାତ୍ —( ଆନନ୍ଦରେ ଅଧୀର ହୋଇ ଏଥର, ବଇଁଶୀ ବାଇବାଇ, କ'ଣ ଗୁଡ଼ାଏ ଗାଇ ନାଚି ଚାଲି ଯେ । )

ସୌଦାଗର—ବାଃ, ତୁମ୍‌ତୋ ଅଚ୍ଛା ଗାନା—ନାଚନାଭି ଜାନ୍‌ତେ ହୋ—( ଏଥର ଦୃଷ୍ଟିଟା ଭା'ର ବେଶୀ ଭାଗ ସିରାଜ୍ ଉପରେ—କ'ଣ ଗୋଟାଏ ସଉଦାଗରୀ ଫନ୍ଦିର ମନେମନେ ଫାନ୍ଦୁଥିଲା ପରି )

ସିରାଜ୍—ମେରି ବାବା, ହାମ୍ ସେ ଜ୍ୟାଦା—( କହୁ କହୁ ଭାଜ୍‌କୁ ଠାରି, ତମାସା କରି, ସେହି କଥାଟା ପୁଣି ସୁରକରି ଗାଇଲା, ବଜାଇଲା ମନ୍ତ—କି ଉନ୍ମତ୍ତଭାବରେ ଯେ । )

ସୌଦାଗର—ବହୁତ୍ ଖୁସି—ବହୁତ୍ ଖୁସି—ମଜ୍‌ଲିସ୍ ଲଗାଓ—ମଜ୍‌ଲିସ ଜମାଓ—ହାମ୍ ଅଭି ଦୋକାନ୍ ଛୋଡ଼ନେକୁ—ନେହିଁ, ନେହିଁ—ମାଲ୍ ଲେନେକୋ—ଯୋ'କୁଛ—

ସିରାଜ୍—ଯୋ କୁଛ କିଆ ?—ସଭତୋ ଆପକା ! —ଦୋକାନ—ଘର, ବାଡ଼ି ଯୋ କୁଛ ହାମରି —ଛୋଡ଼୍ ସେକ୍‌ତେ ହେଁ—ଖୁସିସେ—ଦିଲ୍‌ସେ —ଆପ୍ ଭାରି ମେହେର ବାନ୍—ଆପ୍—( ଆଉ କହି ନ ପାରି, ସଉଦାଗରଙ୍କ ଗୋଡ଼ ଦି'ଟା ଧରିପକାଇ ଚୁମ୍ବନ କଲା କେଉଁ କୃତଜ୍ଞତା ବୋଧରେ ଯେମନ୍ତ )

ସୌଦାଗର—ଅଚ୍ଛା, ଅଚ୍ଛା—( ବୋଲି, ସିରାଜ୍‌କୁ ଉଠାଇ, ଲୁଣ୍ଠାଇ ମୁଣ୍ଡାଇ, ପିଠିରେ ଚାପୁଡ଼ାଇ, ଚାପୁଡ଼ାଇ ଭାଜ୍ ଆଡ଼େ କେଉଁ ପ୍ରସନ୍ନ ଦୃଷ୍ଟିରେ ଚାହୁଁ ଚାହୁଁ—ବୋଧହୁଏ 'ମାଲ୍'ଟା ଅତି ସହଜେ ହସ୍ତଗତହେଲା, ଏହି ବୋଧରେ—ପ୍ରସନ୍ନ ଚିତ୍ତରେ ଚାଲିଗଲା )

ଭାଜ୍—( ପଳାଇ ଯାଉଥିଲା, ଗୋଟାଏ କେଉଁ ଶିକାରୀର ଗନ୍ଧପାଇ ଯେମନ୍ତ )

ସିରାଜ୍—ଭାଜ୍—ଭାଜ୍;—ମା—ମା—

[ ପ୍ରୌଢ଼ା ଆନନ୍ଦର ବେଗ ଯେମନ୍ତ ଆଉ ସମ୍ଭାଳି ନ ପାରି, ଧାଇଁ ଆସି ଛଣାଣପରି ସେହି ମୋହରର ଗଦାଟା ମାଡ଼ିବସି, ଅଞ୍ଜୁଳା ଅଞ୍ଜୁଳା କରି ମୋହର ଗୁଡ଼ାକ ଟେକି ଛାଡ଼ିବାକୁ ଲାଗିଲା—ସେହି ଧ୍ୱନିରେ ସିରାଜ୍ ଓ ଭାଜ୍ ଯେପରି ଆତ୍ମଜ୍ଞାନଶୂନ୍ୟ ହୋଇଗଲେ—ଖୋଦାଙ୍କ କେଉଁ ବିସ୍ମୃତିର ଅତଳ ଗର୍ଭରେ ଲୀନ କରିଦେଲେ ପରି ସମସ୍ତେ ।]

ପ୍ରୌଢ଼ା—ପଲାଉ—କାଲିଆ—କୁର୍ମା;—ବାଦାମ୍—କସ୍‌ମିସ୍—ପେସ୍ତା—ଖାଓ, ଖିଲାଓ—ପିଓ, ପିଲାଓ—ଅଓ, ଅଓ—ଫୁର୍ତ୍ତି—ଫୁର୍ତ୍ତି—ଫୁର୍ତ୍ତି—( ସେହି ମୋହର ଗୁଡ଼ାକ ଅଣ୍ଟିରେ ପୂରାଇ, ଯାକି ନେଇ, ପଳାଇ ଚାଲି )

ସିରାଜ୍—ହାଃ, ହାଃ, ହାଃ—( ଭାଜ୍ ଆଡ଼େ କେତେ-ବେଳଯାଏ ଅପଲକ ନେତ୍ରେ ଚାହିଁ ରହି, କିଛି କହି ନ ପାରି, ଏହାପରି ହସି ଉଠିଲା କେବଳ )

ଭାଜ୍—ହୁଃ, ହୁଃ, ହୁଃ—( ଠିକ୍ ତଦ୍ରୂପ ପ୍ରତ୍ୟୁତ୍ତର ଦେଲା )

ସିରାଜ୍—ବିବି—ବିବି ମୋ'ର ।—ଅହା । ବିବି ମୋ'ର ପଶିବ ବାହାର୍—ସାଟିନ୍ ଘାଗରା—ରେଶମୀ କାଞ୍ଚୁଲା—ଉଢ଼ାଇ, ଯେବେଁ ଚାଲିବ ପିନ୍ଧି—ଗୋଲାପୀ ଗୋଡ଼ରେ ଜରିର ·ପଯ୍‌ଜାର୍—ହାଃ-ହାଃ-ହାଃ—

ଭାଜ୍—ମିଆଁ ମୋର ଧିନ୍‌କଧିନା—ନାଚିବ କିନା —କାନଟା ଧା'ର ଏମ୍ତି ମୋଡ଼ି—ନାକଟା ଭା'ର ଏମ୍ତି ଫୋଡ଼ି—କରିଦେବି ଦୁନିଆ ପାରି —ହୁଃ—ହୁଃ – ହୁଃ—

ସିରାଜ୍—ଦୁନିଆ ପା—ର ?—ଉହୁଁ—( ଗମ୍ଭୀର ହୋଇଗଲା କାପର )

ତାଜ୍—'ପାର'ତ ହେବା ଦରେ, ରେ—( ତରଳତା କମିଗଲା ଯେମନ୍ତ )

ସିରାଜ୍—ଏକଲା କଭ୍ ନେହିଁରେ—

ତାଜ୍—ଅଲବତ୍ ନେହିଁ—ଦୋ କଲ୍—ଦୋକଲ୍ !—ଦୋକଲ୍ ହସି—ଦୋକଲ୍ ନାଚ—ଦୋକଲ୍ ଦୁନିଆ ହେବା ପା—ର—( ସିରାଜ୍‌କୁ କୁଣ୍ଢାଇ ପକାଇଲା )

ସିରାଜ୍—( ଅତି ଆନନ୍ଦରେ ତାଜ୍‌କୁ କିଛିକ୍ଷଣ ଚାହିଁ ରହିଲା—ଅବଶେଷେ କି ଅବେଶରେ ସେ କୁଣ୍ଢାଇଲା ! )

ତାଜ୍—( କି ଗୋଟାଏ ବିଦ୍ୟୁତ୍‌ଚମକ ଖେଳିଗଲା ମର୍ମେମର୍ମେ—ଆଜ୍ ସେହି ମର୍ମର କେଉଁ ମର୍ମକଥା ମର୍ମସଙ୍ଗୀର ମର୍ମକୁ କହିବା ଲାଳସାରେ ଯେତେହେ, ଧୀରେ ଧୀରେ ସିରାଜ୍ ଧରିଥିବା ବଇଁଶୀଟା ମୁହଁ ପାଖକୁ ତା'ର ଉଠାଇ ଦେଲା—ସିରାଜ୍ ବାଇଲା—କିନ୍ତୁ ଆପଣା ହେଲେବେପରି—ଆଖିରେ ଆଖି ମିଶିଗଲା—ପ୍ରାଣରେ ପ୍ରାଣ—ଭୁବନ ମୁଗ୍ଧ ହୋଇ ଦେଖିବାକୁ ଲାଗିଲା କି ମାଧୁରି ଯେ ! )

[ ସଉଦାଗର ସାହେବ ଇତି ମଧ୍ୟରେ କେତେବେଳେ ଯେ ସଭୃତ୍ୟ ଆସି ଦ୍ୱାରରେ ଠିଆହୋଇ ରଙ୍ଗଟା ଦେଖୁଥିଲେ, ମୃଦୁ ମୃଦୁ ହସି ହଠାତ୍ 'ହୋଃ, ହୋଃ' କରି ହସି ଉଠିଲେ—ପ୍ରେମିକ ଯୁଗଳର ମିଳନପଥରେ ହଠାତ୍ ସ-ଦୂତ କାଳପୁରୁଷ ଠିଆ ହୋଇ ହସି ଉଠିଲା କି ଆଜ୍ ?—ଠିକ୍ ଏହିପରି ଭାବେ ଚମକି ଉଠି, ସିରାଜ୍ ଓ ତାଜ୍ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଗଲେ ଓ ସେହି ସଉଦାଗର ଆଡ଼େ କେମିତିକା ସନ୍ଦିଗ୍ଧ ନୟନରେ ଚାହିଁବାକୁ ଲାଗିଲେ—ମାତ୍ର ବେଶୀକ୍ଷଣ ନୁହେଁ—]

ସିରାଜ୍—ଆଇୟେ—ଆଇୟେ, ସାହେବ—ଲେ ଯାଓ—ଲେ ଯାଓ—ଲୁଟ୍ କରକେ—ହାଡ୍ଡୁ ଡୁଡ୍‌କେ—ସବ୍ ଆପକା—ହାମ୍ ବି ଆପକା—ଓ ବି ଆପକା—ଯୋକୁଛ୍ ହୈ—( ଦୋକାନ ଭାଙ୍ଗି ଦେବାକୁ ଯେମନ୍ତ ନିଜେ ଆଗଭର ହେଲା )

ତାଜ୍—( ସେତେବେଳକୁ ସେ'ଠି ଆଉ ନଥିଲା—ଲଜ୍ଜାରେ, ଭୟରେ ସଙ୍କୁଚିତ ହୋଇ ଅନ୍ଦରରେ ପଶି ଯାଇଥିଲା ପରି )

ଭୃତ୍ୟଗଣ—( ସୌଦାଗରଙ୍କ ଇଙ୍ଗିତରେ ଦୋକାନ ପରିଷ୍କାର କରିବାକୁ ଲାଗିଗଲେଣି )

ସୌଦାଗର—( ଏହିଅବସରରେ ଏକାନ୍ତକୁ ଯାଇ କୁଞ୍ଜର ଅନ୍ତରାଳରେ, ଜଣେ ବୋରଖାପିନ୍ଧା କା'ସଙ୍ଗେ କଥାବାର୍ତ୍ତା କରୁଥିଲା, ଅବଶ୍ୟ ନୀରବ ଭାଷାରେ )

ବୋରଖା—( କାନେ କାନେ କ'ଣ କହୁଥାଏ )

ସିରାଜ୍—କିଏ—କିଏ ସେ ?—ଆମିନା ବିବି ନା ?—( ହଠାତ୍ ନଜର ପଡ଼ିବାରୁ ପାଖକୁ ଦୌଡ଼ିଆସିଲା, ଏହିପରି କହୁ କହୁ )

ଆମିନା—( ସଭୟେ ବୋରଖାଟାକୁ ଟାଣି ଦେଇ, ଘୋଡ଼େଇ ହେଉ ହେଉ, ପଳାଇ ଯାଉଥିଲା ପରି )

ସୌଦାଗର—( 'ତର୍କା' ଭାବେ କେମିତିକା ସେଠୁଁ ପଳାଇ ଆସି, ଦୋକାନର କାର୍ଯ୍ୟ ତତ୍ତ୍ୱାବଧାନ କରିବାକୁ ଲାଗିଲା ପରି )

ସିରାଜ୍—ଡର ନାହିଁ—ଡର ନାହିଁ, ଆମିନାବିବି—ସେଲାମ୍—ସେଲାମ୍—ଗୁଣ୍ଡାର ସର୍ଦ୍ଦାର ସିରାଜ—ଅଜି ତୋ'ର ଗୋଲାମ୍—ତୁ ଦଲିଲ୍—ନା, ନା ମେହେର୍ବାନ—ମେ ହର୍ବାନ କରିଛୁ—ଛପର ଫାଡ଼ିକରି ଦଆଇଚୁ—ଆମକୁ ଅସ୍‌ମାନରେ ଚଢ଼ାଇଚୁ—

ଆମିନା—ଖୋଦା ମେହେର୍ବାନ୍—( ବୋରଖାଟା ଖୋଲି ଫିଙ୍ଗି ଦେଇ ହସି ହସି କହିଲା )

ସିରାଜ୍—ନା, ନା, ଆମିନା ମେହେର୍ବାନ୍—ଆମିନା—ଆ, ଆ, ଆମିନା—ଅଜି ଖୁସିର ଦିନ୍—ଖୁସି—ଖୁସି—ଖୁସ୍ କରଦେବି—ସେହି ସରାପ ପିଅଇ,—ସିରାଜ ପିଅଇ,—ତା' ତୋ'ଠୁ ଜବରଦସ୍ତ ଛଡ଼ାଇ ନେଇ,—ସାଙ୍ଗମାନଙ୍କୁ

ତୋ'ର କାନମୋଡ଼ା—ନାକଘଷା କରିବି, ଗୁଡ଼ଥାଉଁ—ଅ, ଅ—ଆଜି ତୁ ବୋଉଲ—ବୋଉଲ — ପିଆ— ପିଆ — ଦୋକାନ—ଦୋକାନ—ପାର କରିଦେବୁ—ଗାଧୋଇବୁ—ମଜ୍‌ଗୁଲ୍ ହୋଇ ନାଚିବୁ—ରଙ୍ଗର ଝରଣା ଖୋଲି ଦେବୁ—ସୌଦାଗର ସାହେବ୍—ସିରାଜ୍—ସଲମ୍—ରହମ୍—ସାରା ବୋଦ୍‌ଦାଦ୍—ନା, ନା ସାରା ଦୁନିଆ ଅଜ, ଗୁଲ୍‌ଜାର୍—ଗୁଲ୍‌ଜାର୍, ହୋଇ ଭାସିଯିବ, ତୋ'ର ଗୁଣର ଗାନ କରୁ କରୁ—ତୋ'ର ରୂପର ତାରିଫ୍—

[ ପଛପଟେ ଅଜ ଗୋଟାଏ ଗଛ ଆଢ଼ୁଆଳରେ ଅନେକ ବେଳୁ ଆସି ତାଜ୍ ଦୋକାନଭଙ୍ଗା ଦେଖୁଥାଏ—ଦର୍‌ଦର୍ ହୋଇ ଦୁଇ ଆଖିରୁ ଦୁଇଧାର ଲୁହ ଗଙ୍ଗା-ଯମୁନାର ଧାର ପରି ବୋହି ଯାଉଥାଏ—ହଠାତ୍ ସିରାଜ୍‌ର ପାଖକୁ ଛୁଟି ଆସିଲା—କେଉଁ ରହସ୍ୟମୟ ମାନବ ପ୍ରକୃତିର ତାଡ଼ନାରେ କି ସିରାଜର କାଣ୍ଡ କାରଖାନାରେ କାପରି ଉତ୍ତ୍ୟକ୍ତ ହୋଇ, ତା ସମ୍ୟକ୍ ନିର୍ଣ୍ଣୟ କରିବା କଠିନ୍ ]

ତାଜ୍—ସିରାଜ୍—ସିରାଜ୍—ତୁ କ'ଣ କାଣ୍ଡଜ୍ଞାନ ହଜାଇ ଦେଲୁଣି ?—( ସିରାଜର୍ ହାତକୁ ମୁଠାକରି ଚୁପିଧରି, ଆମିନା ଆଡ଼େ କଟ୍‌ମଟ୍ କରି ଚାହିଁଲା )

ଆମିନା—( ସେହି ଚାହାଣି ସହି ନ ପାରି ପଳାଇଗଲା କି ଅଜ )

ସିରାଜ୍—ହଁ, ହଁରେ ହଜାଇ ଦେଲିଣି—ତୋ'ର ପାଇଁ—ତୋତେଇ ପେଷୁଆଜ୍ ପିନ୍ଧାଇ—ଗଡ଼ୁଆରେ ସଜାଇ—ଶବ ଭଳି ପାରିବ ବୋଲି—ନା, ନା ବେଗମ୍—ବେଗମ୍—କହ, କହତ, ଆମିନା—( ଆମିନାକୁ ନ ଦେଖି ) ତୁଇ କହନା—ଏଥର ମୁଁ ତୋ'ର ଲାୟକ୍—ଏଁ—ଏଁ—କାହିଁକି ଯେ—

ତାଜ୍—ମୋ'ର ଦିଲ୍—ମୋର ଖୁସି—( ସେହି ଦୋକାନ ଅଡ଼େ ଚାହିଁଥାଏ—ଲୁହ ସେହିପରି ଝର୍ ଝର୍ ବୋହି ଯାଉଥାଏ—ମାନେ, ଏହିତକ କହିବା ମାତ୍ରକେ, କେଉଁ ଧକ୍‌କାରେ, ବା ଦଂଶନରେ ଯେ କି ଗତିରେ ଓ ଭାବରେ ପଳାଇଗଲା )

ସିରାଜ୍—( ସେହି ଦୋକାନ ଆଡ଼େ ଥରେ ଚାହିଁଲା )

ସୌଦାଗର—ଜଲ୍‌ଦି ଚୋଡ଼ୋ—ଜଲ୍‌ଦି କରୋ—

ସିରାଜ୍—ତାଜ୍—ତାଜ୍—ବୁଝିଚ, ବୁଝିଚ—ତୋ'ର ଏତେ ସାଧର ଦୋକାନ—ସୌଦାଗର ସାହେବ୍—ସୌଦାଗର ସାହେବ୍—ମାଫ୍ କରିଏ—ବଡ଼ା ଗରିବ ଆଦମି—ବଡ଼ା ଗରିବ୍—ଇସ୍ ମାଫିକ୍—( ହାତଧରି ପକାଇଲା)

ସୌଦାଗର—ବହୁତ୍ ଅଚ୍ଛା—ଔର ଏକଣୋ—

[ ତତ୍‌କ୍ଷଣାତ୍ ହାତରେ ଅଉ ଗୋଟାଏ ମୋହର ଥଳି ଗୁଞ୍ଜିଦେଲା ]

ଚଲ୍ୱଓ—ଚଲ୍ଓ—ଜଲ୍‌ଦି—ଜଲ୍‌ଦି—

ସିରାଜ୍—( 'ହାଁ' କରି କିଛିକ୍ଷଣ ଚାହିଁ ରହି, ଇତସ୍ତତଃ ହେଲାବେଳେ, ଶୁଣିଲା—)

( ନେପଥ୍ୟ, ପ୍ରୌଢ଼ା - କୁମ୍‌ଟା ଯେ ପୋଡ଼ିଗଲା—କୁଆଡ଼େ ଗଲୁମ ?—

(ନେପଥ୍ୟ, ତାଜ୍)—ଫଲତ ଚୁଡ଼ିଲା ପରି ଧୋଇବାକୁ ଯାଇଥିଲି—

[ ଆମିନା କେତେବେଳେ ଯେ ଆସି ଅତି ମନୋହର ବେଶରେ ସିରାଜ୍‌ର ପାଖରେ ଠିଆ ହେଲାଣି, ବଡ଼ ଭଙ୍ଗିରେ କମେ କମେ ବାହୁପାଶ ପିନ୍ଧାଇ—]

ଆମିନା—ଜଲ୍‌ଦି ମଜ୍‌ଲିସ କମେଇଲେ ହବନା ?—

ସିରାଜ୍—ଠିକ୍ କହୁଚୁ, ଆମିନା !—ଦାମ୍ ବ ନେଇ ସାରିଚି ! ଖୁବ୍ ବେଶୀ !—ଖୁବ୍ ଚଢ଼ା ! !—ହାଃ,-ହାଃ,-ହାଃ—( ଏହିପରି ଅଟ୍ଟହାସ୍ୟରେ ନିଜକୁ ନିଜେ ଯେମନ୍ତ ବିଦ୍ରୂପ କରୁ କରୁ ଛୁଟିଯାଇ ମୋହର ଥଳିଟା କୁଣ୍ଢାଇ, ମୁଣ୍ଡାଇ ନେଇ, ଅନ୍ଦରରେ ଝଣାତ୍ କରି କଚାଡ଼ି ଦେଇ ଆସିଲା ତତ୍‌କ୍ଷଣାତ୍, ମାଓ ତାଜ୍‌ର ସାକ୍ଷାତରେ, ସେମାନଙ୍କର ସେହି ଫୁର୍ତ୍ତିରେ ଇନ୍ଧନ

ଯୋଗାଇବା ଉଦ୍ଦେଶ୍ୟରେ ବୋଧହୁଏ—ଅଭ୍ୟ ଅତି ଆଗ୍ରହ ସହକାରେ ଭୃତ୍ୟମାନଙ୍କ ସଙ୍ଗେ ଜଣେ ହୋଇ ଦୋକାନ ଭାଙ୍ଗିବାରେ ଲାଗିଗଲା )

ସୌଦାଗର—ହୋଃ-ହୋଃ-ହୋଃ—(ହସି ଉଠିଲା—ସମ୍ଭାଳି ନ ପାରି—)

ଅମିନା—ଚୁପ୍—ଚୁପ୍—

[ ସିରାଜ୍ ଛୁଟି ଆସିଲା ସାମ୍ନାକୁ ଅହେତ ବ୍ୟାଘ୍ରପରି—ଏ ଯେ ସେହିପରି ହସ, କିଛିକ୍ଷଣ ଆଗେ ଯା' ଶୁଣି ଚମକି ଉଠିଥିଲା, ତାକୁ ସଙ୍ଗେ ଗୀତ ଗାଇ ନାଚିଲା ବେଳେ—ସୁତରାଂ କ୍ରୋଧରେ ଉତ୍କ୍ଷିପ୍ତ ହୋଇ ଉଠିଲା, ସେହି ହାସ୍ୟକାରୀର ସନ୍ଧାନରେ—ସୌଦାଗରଙ୍କୁ ହାସ୍ୟକାରୀ ଦେଖି, ବିସ୍ମୟ ଓ ପ୍ରତିହିଂସା ଲିପ୍ସାରେ ଅଭିଭୂତ ହୋଇଗଲା—ଅହୁରି ପାଖକୁ ଆସି, ତାକୁ ନିରୀକ୍ଷଣ କରନ୍ତେ, କେଉଁ ଅନାଗତ ବିଭୀଷିକାର ଛାୟା ଦର୍ଶନରେ ଯେମନ୍ତ ଶିହରି ଉଠିବାକୁ ଲାଗିଲା । । । ]

———

## —ଦ୍ୱିତୀୟ ଦୃଶ୍ୟ—

[ ସୌଦାଗର ସାହେବଙ୍କ ସୌଜନ୍ୟରେ ମେଲାଟି ସତରଞ୍ଜି, ଗାଲିଚ୍ଛାଦରେ ଭଲରକମ ସଜାହୋଇଛି—ଦୁଇ ତିନି ଜଣ ଅନୁଚର ସଙ୍ଗେ ସୌଦାଗର ସାହେବ ବେଶ୍ ଦାମୀ ପୋଷାକ ପିନ୍ଧି, ଆସର ଜମେଇ ବସିଛନ୍ତି—କେତେବେଳେ ତକିଆ ଠେସି, ଅଲ୍‌ବୋଲା-ହୁକ୍‌କାରେ ଧୂମ୍ର ସେବନ କରୁଛନ୍ତି, କେତେବେଳେ ବା ନଳଟା ଛାଡ଼ିଦେଇ, ନାଚଗୀତର ତାରିଫ୍ କରୁଛନ୍ତି—ସିରାଜ୍ ମଧ୍ୟ ଦାମୀ ପୋଷାକରୁ ବଞ୍ଚିତ ନୁହେଁ—ଏବେ ଶହ ଶହ ସ୍ୱର୍ଣ୍ଣମୁଦ୍ରାର ମୋହ, ପୋଷାକର ଜାକ୍‌ଜମକ୍—ତହିଁ ଉପରେ ବର୍ତ୍ତମାନ ସୁରା ଓ ବେଶ୍ୟାର ସଳଗରମ—ମୁଣ୍ଡଟା ଏକଦମ୍ ବେଠିକଣା ହୋଇଯାଇଛି ?

ଅମିନା ନାନା ଢଙ୍ଗରେ ଗାଉଛି—ନାନା ଢଙ୍ଗରେ ନାଚୁଛି—ନାନା ଭଙ୍ଗୀରେ ସୁରାପାତ୍ର ଯୋଗାଉଛି—କିନ୍ତୁ ଦୃଷ୍ଟିଟା ତା'ର ସିରାଜ୍ ଉପରେ ବେଶୀ—ଏବେ ତା'ର କେତେ କାଳର ଲାଳସା, ତହିଁରେ ସୌଦାଗର ସାହେବ ଇନ୍ଧନ ଯୋଗାଉଛନ୍ତି, ଇଙ୍ଗିତରେ—ଗୋଟାଏ ପାତ୍ର ନିଃଶେଷ ନକରୁଣୁ, ଅନ୍ୟପାତ୍ର ନେଇ ହାଜର କରି ଦେଉଛି—ସିରାଜ୍ ଯେତେବେଳେ ଅକଣ୍ଠ ପିଇ କ୍ଲାନ୍ତ ହୋଇ ପଡ଼ିଲା, ଧରିବାର କ୍ଷମତାବି ରହିଲା ନାହିଁ, ଅମିନା ନିମ୍ନୋକ୍ତ ଗୋଟାଏ ଖୁବ୍ ରସରସିଆ ଗୀତ ଗାଇ, ଅଙ୍ଗ ଭଙ୍ଗି କରି, ଆଖି-ଭ୍ରୂ ନଚାଇ, ନିଜେ ଅତି ସୁଆଗଭରେ ଆଉ ଗୋଟାଏ ପୂର୍ଣ୍ଣଗ୍ଲାସ ପିଆଇ ଦେଲା—ସଙ୍ଗେ ସଙ୍ଗେ ହସି ଉଠିଲା ଗୋଟାଏ ଦୁର୍ଗ ଦଖଲ ଚିତ୍‌କାରରେ—କେଉଁ କାଳକାଳାନ୍ତ ଯୁଗର ବାସନାଟା ତା'ର ତୃପ୍ତ ହୋଇଛି ବୋଲି ନା କଣ ?— ]

—ଗୀତ—

ଆଜି ମଜ୍‌ଲିସ୍‌ର ମରସୁମ୍ ସରାବ ଦେବି ମୁଁ ଢାଳି,
ଆଜି, ଗୁଲ୍‌ବାଗରେ ଦିଲ୍ ଦୁଆର ବନ୍ଦ
ଦେବି ମୁଁ ଖୋଲି ।
ଅଙ୍ଗୁର୍ ବାଗେ ବୁଲ୍ ବୁଲ୍ ଗାଏ ଆପଣା ଭୁଲି,
ଫୁଲ-ସିରାଜ ମାତାଲ ହୋଇ ଭ୍ରମରୀ ପଡ଼େ ଢଳି;
ତବ ଓଷ୍ଠ ମଦିରା ପିଇ ହେବି ଅଧୀରା
ଜୀବନ ସାରା ହେ ପ୍ରିୟ କେତେ ଯାଇଛି ଛଳି ।

[ ଏହି ହସ ଶୁଣି, ସିରାଜ୍ କାହାର ଦଂଶନରେ ଥରେ ମାତ୍ର ଅମିନା ଆଡ଼େ ବୋକାପରି ଗୁହିଁଲା—ଅମିନା ସେହି ଦୃଷ୍ଟିରେ ଭୟ କଲେ ମଧ୍ୟ, ବର୍ତ୍ତମାନ କାବୁକରି ପାରିଛି ବୋଲି, ଅହୁରି ହସିବାକୁ ଲାଗିଲା—ସିରାଜ୍ ବି ଏଥର ହସିଲା, କେଉଁ ମନ୍ତ୍ର ମୁଗ୍ଧପରି—ସବୁ ବାଡ଼ ଭାଙ୍ଗି ପିଙ୍ଗି ଦେଲା—ଅମିନା ସଙ୍ଗେ ଗାଇଲା—ନାଚିଲା ମଧ୍ୟ ]

ସିରାଜ୍—ଏ'କଣ୍ଡ ହେଲନାହିଁ— ଲୁଚ୍‌ନେହିଁ—
  ଲୁଚ୍‌ନେହିଁ—

ସୌଦାଗର—( ତକିଆରେ ଠେସି ବସିଥିଲା, ଏ' କଥା ଶୁଣିବା ମାତ୍ରେ, ଉଠି ବସିଲା, ନଳଟା ମୁହଁରୁ କାଢ଼ିଦେଇ ଗୋଟାଏ ତୀକ୍ଷ୍ଣ ଦୃଷ୍ଟିରେ ସିରାଜ୍ ଆଡ଼େ ଚାହିଁଲା—)

ସିରାଜ୍—ଆଃ—ତାଜ୍‌ବିବ ଯବ୍—

ସୌଦାଗର—ସେଠ୍‌ଜି—ସେଠ୍‌ଜି—ଆପ୍ ତୋ ଆପକା ବିବିକା ନାଚ୍, ଗାନା ଦେଖ୍‌ଲିନେକା ବାତ୍—

ସିରାଜ୍—ହାମ୍ ବୋଲ୍‌ଥି ?—ଜବାନ୍ ଦିଇଥି ?—

ସୌଦାଗର—ଯୁଦ୍‌ ଦିଓ—ଆପ୍ ଇମାନ୍‌ଦାର୍—

ସିରାଜ୍—'ଇମାନ୍‌ଦାର୍' !—'ଇମାନ୍‌ଦାର୍' !—ହାଃ-ହାଃ-ହାଃ—ଦେଖୋ, ଦେଖୋ, ସାହେବ କଏସି 'ଇମାନ୍‌ଦାର୍' ହାମ୍—( କହୁ କହୁ ପାଗଳ ପରି ଦେହଟା ଉଠାଇ ଦେଇ ଯିବ କି ନା—)

[—ଦେଖାଗଲା, ତାଜ୍ କେଉଁ ଅବେରେ ଗାଉଛି, ନାଚୁଛି ଦେହ ଅନ୍ତରାଳେ—ବୋଧହୁଏ ପୂର୍ବୋକ୍ତ ବାଦ୍ୟ, ନୃତ୍ୟ, ଗୀତର ରେଶ୍‌ଟା ଏ ଯାଏ ଖେଳ ବୁଲୁଛି ତା' ଭିତରେ ଭିତରେ—କଣ୍ଠସ୍ୱରରୁ ବେଶ୍ ବୁଝା ଯାଉଥାଏ, ସେ ବି ଅତିରିକ୍ତ ସୁରା ପାନ କରିଛି—ଏହି ସମୟରେ ଅମିନା ସୌଦାଗରଙ୍କ କାନେ କାନେ କଣ ଫୁସ୍ ଫୁସ୍ କରି କହିବାକୁ ଛାଡ଼ୁ ନ ଥାଏ ]

ସିରାଜ୍—ଅଓ, ଅଓ, ମେରି ବିବି—ମେରି ଜାନ୍—ବଜାଓ — ବଜାଓ — ଦେଖୋ, ଦେଖୋ, ସାହେବ—କୈସି 'ଇମାନ୍‌ଦାର୍' ହାମ୍—କୈସି 'ଇମାନ୍‌ଦାର୍'—ବିବି ମେରି—

[ ବାଦ୍ୟ ଯେଉଁ ପାଗଳ ହୋଇ ଯେପରି ବାଜି ଉଠିଲା ଅମିନାର ଇଙ୍ଗିତରେ ]

[ ସେହି ବାଦ୍ୟ ସଙ୍ଗେ ସଙ୍ଗେ ଆପେ ପର୍ଦ୍ଦା ଠେଲି ତାଜ୍ ଚଳି ଚଳି, ନାଚି ନାଚି, ବାହାରି ଆସିଲା—ବେଶଭୂଷାର ଆଦୌ ପରିପାଟି ନାହିଁ—ଭାରି ଜବରଦସ୍ତିରେ କି କଣ, ସଫା ଖଣ୍ଡେ ଯା' ପିନ୍ଧିଛି—କିନ୍ତୁ ଏହି ବସନ-ଭୂଷଣର ବିରଳତା ଯୋଗୁଁ ସୌନ୍ଦର୍ଯ୍ୟଟା ଯେପରି ଫୁଟି ବାହାରୁଛି—ସେହି ନଗ୍ନ ସୌନ୍ଦର୍ଯ୍ୟ ଦର୍ଶନରେ ବ୍ରହ୍ମମୟ ବିଶ୍ୱଟା ପରି କ୍ଷଣକାଳ ମାତାଲ ହୋଇଗଲା—କି କଥା ଉନ୍ମତ୍ତ ସିରାଜର, ବ୍ୟବସାୟୀ ସୌଦାଗରର, କାମୁକା ଅମିନାର]

[ ବାଦ୍ୟ ଏଥର କ୍ରମେ କ୍ରମେ ଧୀର ମଧୁର ସ୍ୱରରେ ବାଜିବାକୁ ଲାଗିଲା—ସିରାଜ୍ ଓ ତାଜ୍ କେଉଁ ଅବେରେ ମିଶି ଏକ ହୋଇ ଯାଇ ନୃତ୍ୟ ଗୀତ କରୁ ଥାନ୍ତି—ଏ କଥା ଅବଶ୍ୟ ଖିଆଲ ନ ଥିଲା ସେମାନଙ୍କର ତେତେବେଳେ, ସୌଦାଗର ସାହେବଙ୍କୁ ଦେଖାଇବେ ବୋଲି, ଏହିପରି ନାଚୁଛନ୍ତି ବା ଗାଉଛନ୍ତି ]

ସୌଦାଗର—ବାଃ—ବାଃ—( କ୍ଷଣକାଳ ପାଇଁ ଯେପରି ନିଜର ବ୍ୟବସାୟ ଭାବଟାକୁ ପାଶୋରି ପକାଇଲା ସେହି ଅପୂର୍ବ ନୃତ୍ୟ ଓ ଭାବ ଦର୍ଶନରେ )

ଅମିନା—( ଈର୍ଷାରେ ଯେପରି ଜଳି ପୋଡ଼ି ମରୁଥାଏ କିନ୍ତୁ ସଙ୍ଗେ ସଙ୍ଗେ କି ଗୋଟାଏ ଆତ୍ମ-ତୃପ୍ତିରେ କୌଣସିମତେ ଧୈର୍ଯ୍ୟ ଧରି ରହିଥାଏ, ସୌଦାଗରଙ୍କ ଆଡ଼େ ଚାହିଁ, କେଉଁ ଭରସାରେ, କି କଳପାରେ । )

ସୌଦାଗର—ବାଃ, ବେଟି—( ମଜଗୁଲ୍ ହୋଇ ଯାଇଥାଏ )

ଅମିନା—( କାନ ମୂଳରେ କଣ କହିଲା )

ସୌଦାଗର—ବାଃ—ବାଃ—( ଶୁଣି ପାରି ନ ଥିଲା ବୋଧହୁଏ )

ଅମିନା—କି ?···ଏକଦମ୍ ମଜଗୁଲ୍— !

ସୌଦାଗର—ଖୁବ୍ ବଢ଼ିଆ—ବଢ଼ିଆ—ମେରେ ଜନ୍ଦେଗିଭର୍ ଏସି ଯୋଡ଼—( ନିଜର ଅଜ୍ଞାତ ସାରେ ନିଜର ହୀରାର ହାରଟା କାଢ଼ି ପକାଇ,

ଯାଉଥିଲେ ଉଭୟଙ୍କୁ ଚିରଦିନ ପାଇଁ 'ଯୋଡ଼'-କରି ବାନ୍ଧିଦେବା ଉଦ୍ଦେଶ୍ୟରେ ଯେପରି )

ଅମିନା—ସାହେବ ! ସାହେବ ! ( ହାତ ଧରି ହଲେଇ ଦେଇ କେଉଁ କଟୁ କଟାକ୍ଷ କରି )

ସୌଦାଗର—( ଅମିନା ଆଡ଼େ ଚାହିଁ ଦେଖିଲା, ସେହି ହିଂସ୍ର ପଶୁର ଭାବ—ଶିକାରଟାକୁ ସାମନାରେ ପାଇଥାଏ ଯେତେବେଳେ—ଚମକି ଉଠିଲା—ସଙ୍ଗେ ସଙ୍ଗେ ଆପଣାର ସୁପ୍ତ ହିଂସ୍ର ଭାବ ବା ଲାଲସାଟା ଜାଗିଉଠିଲା କ୍ଷୁଧାର୍ତ୍ତର କ୍ଷୁଧାବେଦନା କି ଗୋଟାଏ କେଉଁରେ ଯେପରି )

ଅମିନା—( ଅଧୁର ଭଙ୍ଗୀମରେଇ ଚାହୁଁଥାଏ )

ସୌଦାଗର—ହୋଃ-ହୋଃ-ହୋଃ—( ହସିଉଠିଲା—ଆପଣାର ଅବସାଦଟାକୁ ବିଲ୍‌କୁଲ୍ ଉଡ଼ାଦେଇ, ସେହି ହିଂସ୍ର ଭାବଟାକୁ ସମ୍ପୂର୍ଣ୍ଣ ଜଗାଇ, ଉତ୍‌କ୍ଷିପ୍ତ କରିବା ଉଦ୍ଦେଶ୍ୟରେ ନା କଣ ?—କି ଯେ ଲୋଲୁପ ଦୃଷ୍ଟିରେ ସିରାଜ୍ ଓ ତାଜ୍ ପ୍ରତି ଚାହିଁବାକୁ ଲାଗିଲା । )

ଅମିନା—ଚୁପ୍, ଚୁପ୍—

[ ସେତେବେଳକୁ ତାଜ୍, ସିରାଜ୍ ଦୁହେଁ ନାଚି ନାଚି ସୌଦାଗର ସାହେବଙ୍କ ପାଖରେ ହୋଇଥାନ୍ତି—ଏହି ହାସ୍ୟଧ୍ୱନିରେ ସିରାଜ୍‌ର ହେଉ କି ନ ହେଉ, ତାଜ୍‌ର ଆବେଶଟା ଭାଙ୍ଗି ଗଲା ପରି—ତାଜ୍ ଚାହିଁ ଦେଖିଲା ସୌଦାଗରଙ୍କୁ—ତା'ର ସେହି ଗୋଲାପୀ ଆଖିକୁ ନିମିଷକେ କିଏ ଯେପରି ଉଡ଼ାଇ ନେଇଗଲା—କେଉଁ ଆତଙ୍କରେ ଯେ ସେ ଚିତ୍କାର କରି ଡେଇଁ ଉଠିଲା ]

ତାଜ୍—ସିରାଜ୍ ! ସିରାଜ୍ ! (ସିରାଜ୍‌କୁ କୁଣ୍ଢାଇ ପକାଇ, ଏକଦମ୍ ବେହୁସ୍ ନା କଣ ? )

ସିରାଜ୍—ଲାର୍ଡ—ଲାର୍ଡ ମଦ—ଫୁର୍ତ୍ତି—ଫୁର୍ତ୍ତି—ନାଚ୍ରେ, ନାଚ୍ରେ, ଗାଓ ବଜାଓ—ହାଃ-ହାଃ—

[ ପୁଣି ବାଜା ବାଜିବାକୁ ଲାଗିଲା—ଅମିନା ଗ୍ଲାସ ଗ୍ଲାସ—ନା, ନା, ବୋତଲ ବୋତଲ୍ ନେଇ ହାଜର କରିଦେଲା ଓ ଢାଳିବାକୁ ଲାଗିଲା ]

ତାଜ୍—କ'ଣ କରୁଚୁରେ—ଚାଲ୍ ଚାଲ୍—(ବୋତଲଟା ଫିଙ୍ଗିଦେଇ, ସିରାଜ୍‌କୁ ଘୋଷାଡ଼ି ନେଇ ଚାଲି-ଯିବାକୁ ଚେଷ୍ଟା କଲା,—କେଉଁ ନରକ ପୁରୀରୁ ଉଦ୍ଧାର କରିବା ମାନସରେ ନା କଣ ? )

ସିରାଜ୍—ଅଃ—କ'ଣ କରୁଚୁ, ତାଜ୍—ଆମର ମେହେରବାନ୍ ସୌଦାଗର ସାହେବ ଇମାନ୍‌ଦାର ଆମକୁ କଣ—

ତାଜ୍—ଚାଲ୍, ଚାଲ୍ ( କ୍ରୋଧ ଓ ଘୃଣାରେ ଯେପରି ଠେଲି ଦେଇ ଚାଲିଯିବାକୁ ଉଦ୍ୟତ ହେଲା )

ସିରାଜ୍—ଛି, ଝିରଜାନ୍—ମୁଁ ପରି ଜବାବ୍ ଦେଇଚି—ତୋ'ର ନାଚ୍, ଗାନା—ଏହି ମଜ୍‌ଲିସ୍‌ରେ—

ତାଜ୍—ଓଃ—( ଲଜ୍ଜାରେ ଯେପରି ମରିଗଲା ଏକା-ବେଳକେ—ଚାଲିବାକୁ ଯାଇ, ଚାଲି ପାରିଲା ନାହିଁ ପରି—)

ସୌଦାଗର—ଲଜ୍ଜା—ଲଜ୍ଜା—ମେହେରବାନ କରିକେ—( ସେହି ହୀରାର ହାରଟା ତାଜ୍‌ର ବେକରେ ପିନ୍ଧାଇ ଦେବାକୁ ବାଟ ଓଗାଳିଲା )

ସିରାଜ୍—ଦେଖ୍, ଦେଖ୍—କେଡ଼େ ମେହେରବାନ୍ ସାହେବ ଆମର—( ମୁଗ୍ଧ ଦୃଷ୍ଟିରେ ଦେଖୁଥାଏ, ସେହି ହାରକୁ କି ସୌଦାଗରଙ୍କୁ, ସେହି ଜାଣେ ଏକା )

ତାଜ୍—( ଏଥର ଅତି ଉତ୍ତେଜନାରେ ଲଜ୍ଜାର ଗଣ୍ଡିକୁ ଅତିକ୍ରମ କରି, 'ମରିୟା' ହୋଇ ଶତ ଖଣ୍ଡେ ଯେପରି ସେହି ହାରଟାକୁ ଛିଣ୍ଡାଇ ଟିକି ଟିକି କରି ଅଧେ ସୌଦାଗର ଅଧେ ସିରାଜ୍ ଉପରେ ପକାଇ ଦେଇ ଧାଇଁଗଲା ପରଦା ଆଡ଼େ ଟଳି ଟଳି— )

ସିରାଜ୍—ତାଜ୍—ତାଜ୍—( ବିରକ୍ତିଭରେ ଡୋଡ଼ାଇ ଗଲା )

ତାଜ୍—ମା'ଲୋ—( କେଉଁ ଦୁର୍ବଳତା ବଶତଃ, ସାମାନ୍ୟ ଟିକିଏ ଦୃଷ୍ଟି ପକାଇ ବାରୁ,—ଏହି

ବାହାର ଝୁଣ୍ଟିବା ଠାରୁ, ଭିତରେ ଯେ ବେଶୀ ଝୁଣ୍ଟି ନ ପକାଇ ଥିଲା ତା' ନୁହେଁ,—ତଳେ ଗଛକାଟିଲା ଭଳି ପଡ଼ି ଅଜ୍ଞାନ ହେଲା )

ସମସ୍ତେ—ହାଁ—ହାଁ—( ବୋଲି, ପାଖକୁ ଦୌଡ଼ି ଗଲେ )

ସିରାଜ୍—ଠିକ୍ ହୋଇଛି—ହାତେ ହାତେ ଫଳ ପାଇଛି—ସାହେବଙ୍କୁ — ଅତିଥିଙ୍କୁ— ଅପମାନ କରିବାର—( ଅତି ମିନତି ପୂର୍ଣ୍ଣ ଦୃଷ୍ଟିରେ ସୌଦାଗରଙ୍କୁ ଚାହିଁଲା )

ସୌଦାଗର—କୁଛ୍ ନେହିଁ—ମେରେ ଖିଲ୍‌ମେ କୁଛ ସକ୍ ନେହିଁ, ସେଠ୍‌ଜୀ—ଅମିନା ବିବି !—ଖୁବ୍ ହୁସିଆରସେ ଅନ୍ଦର ଲେ ଯାଇଏ—

ଅମିନା—( ସିରାଜ ଆଡ଼େ ନଜର କରିଇ ସୌଦାଗରଙ୍କୁ କଣ ଇଙ୍ଗିତ କଲା )

ସୌଦାଗର—ଆଇଏ, ଆଇଏ, ସାହେବ—ମଜ୍‌ଲିସ୍ ଥଣ୍ଡା ହୋ ଯାତା—

ସିରାଜ୍—ଜେରା ସେ—( କେଉଁ ଗୋପନ ଖେଳାଘାତ ଯେପରି ସେ ଅନୁଭବ କରିବାକୁ ଲାଗିଲାଣି, ଟିକିଏ ଚିନ୍ତା କରିବାର ଅବସର ପାଇ ବୋଧ ହୁଏ )

[ କିନ୍ତୁ ଅମିନା ଓ ସୌଦାଗରଙ୍କ ଗୁପ୍ତ ପରାମର୍ଶ ଅନୁସାରେ ଅନୁଚରମାନେ ଧୀରେ ଧୀରେ ସେଠୁ ବାହାରିଗଲେ—ଅମିନା ଅସି ତାଜ୍‌କୁ ଖୁବ ସହାନୁଭୂତି ଦେଖାଇ ଉଠାଇବା ଉଦ୍ଦେଶ୍ୟରେ ଠିଆ ହେଲାଣି—କିନ୍ତୁ ଛୁଇଁ ଛୁଇଁ ନ ଥାଏ, ସିରାଜର ଭୟରେ ]

ସୌଦାଗର—ଲିଜିଏ ଏକ୍ ପିଆଲା, ସେଠ୍‌ଜୀ—( କେଉଁ ଅଗ୍ରହରେ ଦେଉଥିଲେ )

ସିରାଜ୍—( ମନା କରିବା ଉଦ୍ଦେଶ୍ୟରେ ଚାହିଁଲା )

ସୌଦାଗର—ମେହେରବାନି କର୍‌କେ—

ସିରାଜ୍—ଦୋ, ଦୋ, ସାହେବ—ଯେତ୍‌ନା ଖୁସି—ଜାଲ୍‌ଦି, ଜାଲ୍‌ଦି—ପିଁପା, ପିଁପା — ମଜ୍‌ଲିସ୍—ଫୁର୍ତ୍ତି, ଫୁର୍ତ୍ତି—ମେରେ ମଇମନ୍—ମଇମନ୍—ମଇମନ୍—( ସେହି ଗ୍ଲାସଟା ଧରି ପିଇ ଦେଲା ) ଔର୍—ଔର୍—( ଏହି ଅବସରରେ ଅମିନା ତାଜ୍‌କୁ ଭିତରକୁ ନେବା ଉଦ୍ଦେଶ୍ୟରେ ଉଠାଇଥିଲା )

ସିରାଜ୍—ସଏତାନୀ !—ଏତେ ସାହସ ! ବିବିକୁ ମୋର ଛୁଇଁବୁ ?—ତାଜ୍‌କୁ ?—ତୋର ସେହି ଘୃଣ୍ୟ ଜଘନ୍ୟ—(କିନ୍ତୁ ପରମୁହୂର୍ତ୍ତେ ହସିଦେଲା ) —ହଃ—ହାଃ—ହାଃ—( ସତେ ସତେ ଏଡ଼େ ବଡ଼ କୋଧଟା ହାସ୍ୟରେ ଯେପରି କେଉଁ ଆଡ଼େ ଉଡ଼ିଗଲା )

ସୌଦାଗର—( ଆଉ ଏକଗ୍ଲାସ ଆଣିଦେଲେ )

ସିରାଜ୍—( ପିଇଦେଲା ଚକ୍ ଚକ୍ କରି )

ଅମିନା—( ଭୟ ଭୟରେ ତାଜ୍‌କୁ ଓହ୍ଲାଇ ଶୁଆଇ ଦେଉଥିଲା )

ସିରାଜ୍—ନେଇଯା—ନେଇଯା, ଅମିନାବିବି—ଶୁଆଇ ଦେ—ସେଇଠା ଘର ଲଜୁକା—ହଁ, ଟିକିଏ ବୁଝାଇ—(ତାଜ୍‌ର ଗାଲ୍‌ରେ ଟିକିଏ ଟିପ ମାରି-ଦେଲା ମାତାଲ ହସ୍ତରେ )

ଅମିନା—( ଖପ୍‌କିନା ଝାଁପି ନେଇ ଏକଦମ୍ ଘରେ )

ସିରାଜ୍—ଜଲ୍‌ଦି, ଆ—ଜଲଦି ଆ, ତୁ ଅମିନା—ମଜ୍‌ଲିସ୍ ଥଣ୍ଡା ପଡ଼ି ଯାଉଛି !—ଫୁର୍ତ୍ତି—ଫୁର୍ତ୍ତି ବଜାଓ ବଜାଓ—

ସୌଦାଗର—( ପୁଣି ଗ୍ଲାସେ ଆଣିଦେଲେ )

[ ବାଜା ବି ବାଜିଲା କାଣ୍ଡ ଜ୍ଞାନ ହରାଇ ଦେଇ ]

ସିରାଜ୍—ସେଲାମ୍—ସେଲାମ୍ ଆପ୍ ବଡ଼ା ମେହେର୍‌ବାନ୍ ସାହେବ ହୋ—ଏହି ଗୋଲାମ୍‌କା ତସଲିମ୍ ଲିଜିଏ—( ସେଲାମ୍ କରି ସେହି ଗ୍ଲାସଟା ପିଇ-ଦେଲା ଚକ୍ ଚକ୍ କରି )

ସୌଦାଗର—ଚଲାଓ—ଚଲାଓ—ଫୁର୍ତ୍ତି—ଫୁର୍ତ୍ତି—

ସିରାଜ୍—ମଦ୍—ମଦ୍—ମଦ୍—

[ ସଉଦାଗର ସାହେବ, ଯେତେ ମଦ ବୋତଲ ଅବଶିଷ୍ଟ ଥିଲା, ଆଣି ସିରାଜ୍ ସାମ୍‌ନାରେ ଜମାକରି ଦେଲେ—ସିରାଜ୍ ଚକ୍ ଚକ୍, କରି

ବୋତଲକୁ ବୋତଲ ପିଇ ଏକା ବେଳକେ ବେହୁସ ହୋଇଗଲା—ସେଇଠି ଚିତ୍‌ପଟାଂ ]

ଅମିନା—( ପର୍ଦ୍ଦାର ଅଧା ବାହାରେ ଦେଖାଦେଇ ସଉଦାଗରଙ୍କୁ ଇଙ୍ଗିତ କଲା )

ସୌଦାଗର—( ପାଖକୁ ଆସିବାକୁ ଇଙ୍ଗିତ କଲା )

[ ଉଭୟେ ଲୁପ୍ତଜ୍ଞାନ ସିରାଜ୍‌କୁ ପରୀକ୍ଷା କରି ଦେଖିଲେ—ଅମିନା ଆଉ ଗ୍ଲାସେ ମଦ ଆଣି ବକ୍ଷୋଦେଶରୁ କ'ଣ ଗୁଣ୍ଡ ବାହାର କରି ସେଥିରେ ମିଶାଇ ଦେଇ, ସିରାଜ୍‌କୁ ଜୋର ଜବରଦସ୍ତି କରି ପିଆଇ ଦେଲା ]

ସୌଦାଗର—ଖବର୍ ?—

ଅମିନା—ଅଚ୍ଛେ—ଅଚ୍ଛେ—( ହାତ ବଢ଼ାଇ ଦେଲା )

ସୌଦାଗର—( ଅମିନାର ହାତ ଧରିଲା )

ଅମିନା—( ସଉଦାଗରର ମୁହଁକୁ ଚାହିଁ ହସିଲା କେଉଁ ଆଶାରେ )

ସୌଦାଗର—( ତାର ପ୍ରତିଧ୍ୱନି ଦେଲା, ସେହି ହସରେ, କିନ୍ତୁ ଅନ୍ୟ କେଉଁ ଆଶାରେ )

[ ପର୍ଦ୍ଦାର ଅନ୍ତରାଳେ ଉଭୟେ ଅନ୍ତର୍ଦ୍ଧାନ ହେଲେ ଧୀରପଦ କ୍ଷେପରେ ]

[ ଏତେ ବଡ଼ ହଲ୍ଲାପରେ ଗୋଟାଏ ଭାରି ନିସ୍ତବ୍ଧତା ବିରାଜ କରିବାକୁ ଲାଗିଲା—ଚୁପ୍ ଚୁପ୍—ହଠାତ୍ ସେହି କୁଟୀର ପଛପଟୁ 'ଖଟ୍—ଖଟ୍' ଶବ୍ଦ ଶୁଣାଗଲା– ଘୋଡ଼ାର ଟାପୁ ଭଳି—୩।୪ ଟାର ଏକା ସଙ୍ଗେ—କିଛିକ୍ଷଣ ପରେ ପୁଣି ସେହିପରି ଶବ୍ଦ ଶୁଣାଗଲା—ଏବଂ କ୍ରମେ କେଉଁଠି ମିଳାଇ ଗଲା ପରି ଜଣାଗଲା—ଇତିମଧ୍ୟେ ସିରାଜ୍ ଯେ ଥରେ, ଅଧେ ଚିତ୍କାର କରି ଉଠି ବସି ନ ଥିଲା ତା' ନୁହେଁ ]

ସିରାଜ୍—ଡାକ୍—ଡାକ୍—ମୋ'ର ବାବା—ମୋର ଜାନ୍—( ସେହି ଶେଷ ଟାପୁର ଶବ୍ଦ ସଙ୍ଗେ ସଙ୍ଗେ ଭୀଷଣ ବ୍ୟାକୁଳ ଚିତ୍କାର କରି ଉଠିବସି, ଠିଆ ହୋଇ, ଅଲିଙ୍ଗନ ଓ ଚମ୍ବନର ଅଭିନୟ କରୁ କରୁ ଛିନ୍ନ-ଦ୍ରୁମପରି ପଡ଼ିଗଲା—ସବେଉଁ ଦେହର ସମସ୍ତ ଶକ୍ତି କିଏ କାଢ଼ି ନେଇ ପଳାଇ ଗଲା )

[ ପୁଣି ନିସ୍ତବ୍ଧତା ବିରାଜ କରିବାକୁ ଲାଗିଲା – ଆହୁରି ଘୋରତର ଭାବେ ]

[ ନେପଥ୍ୟେ, ମେଳଘରକୁ ଲାଗି ଆଉ ଏକ ବଖରାରୁ ଶୁଣାଗଲା କମ୍ପୋକ୍ତି ଭାବେ ]

ପ୍ରୌଢ଼ା—ନଅଶ ଅଠାନବେ—ନଅଶ ଅନେଶତ୍—ଏକ ହଜାର—ହାଃ, ହାଃ, ହାଃ—ଏଁ, ଏଁ, ଆହୁରି ଗୋଟାଏ ଥଳି—ବାଃ—ବାଃ—(ସେହି ଥଳିଟା ଓଜାଡ଼ିବାକୁ ଲାଗିଲା—ଏତେ ଦୂରକୁ ଉଠାଇ ଯେ ମୋହରର ଝଣ୍ ଝଣି ଶବ୍ଦରେ ଘରଟା ଯେପରି ଝଣ୍ ଝଣ୍ ହୋଇ ଉଠିଲା )—ଆଃ—କି ମିଠା ଅବାଜ୍—( ଏହି 'ଜ୍'ଟା ଉଚ୍ଚାରଣ କରିବା ମାତ୍ରେ କେଉଁ ରୁଦ୍ଧପ୍ରାୟ ଦ୍ୱାରର ଗୁବଟା ଯେପରି ଖଟ୍ କରି କିଏ ମୋଡ଼ି ଦେଲା) ଡାକ୍—( ବୋଲି, ଚିତ୍କାର କରି ଡେଇଁ ଉଠିଲା ଓ ନେପଥ୍ୟେ ରୁଦ୍ଧ କବାଟରେ 'ଦୁମ୍ ଦୁମ୍' କରାଘାତ କରିବାକୁ ଲାଗିଲା )—ଦ୍ୱାରବନ୍ଦ୍ !—ବାହାରୁ କିଏ !—କାହିଁକି ? କାହିଁକି ? ( ଭୟରେ ଯେପରି ବିହ୍ୱଳ ହୋଇ ପଡ଼ିଲା ) ଅମିନା !—ଅମିନା !—ଖୋଲ୍—ଖୋଲ୍—ନେ, ନେ ଫେରାଇ ନେ—ତୋ'ର ମୋହର ବସ୍ତା ତୁ ଫେରାଇ ନେ—ମୁଁ ଗଣି ପାରିବି ନାହିଁଲୋ—ଜଗି ପାରିବି ନାହିଁଲୋ—ତୁ ତୋ'ର ଗଣି, ଜିମ୍ମା କରି ନେ—ମୁଁ ମୋ'ର ଡାକୁକୁ – ଚୌକି—। ( ଦୁମ୍, ଦୁମ୍ କରି କବାଟରେ ପୁଣି ବାଡ଼େଇବାକୁ ଲାଗିଲା ) ଅମିନା !—ଅମିନା !—କାହିଁ ?—କାହିଁ ?—ସିରାଜ୍ !—ସିରାଜ୍ !—ଏତେ ହଲ୍ଲା ଚାଲିଥିଲା, ସବୁ ଯେ ଚୁପ୍ ଚୁପ୍—ସିରାଜ୍ !—ସିରାଜ୍ !—ସେ କ'ଣ ବେହୁସ ?—ସଉଦାଗର ସାହେବ ? ଅମିନା—ଅମିନା—ସଉଦାଗର ସାହେବ—ସଉଦା—( ଦୁମ୍, ଦୁମ୍ କରି ପୁଣି ବାଡ଼େଇ ଭାଙ୍ଗିବାକୁ ଲାଗିଲା ) ଏଁ—ଏଁ—ତେବେ କ'ଣ—ତେବେ କ'ଣ ଏଣ୍ଟି ପୁନାର

ଗଦାରେ ବସାଇ ଦେଇ,—ମୋହର ବସ୍ତାରେ ଭଣ୍ଡାଇ,—( ମୋହର ଗୁଡ଼ାକ ଘରଯାକ ବୁଣି ଦେବାର ଢେ ବେଶ୍ ସ୍ପଷ୍ଟ ହୋଇଗଲା ) ଢାକ୍—ଢାକ୍ —ଡାକ୍ —( ଇବାଠଁଟା ଗୋଟାଏ ଧକ୍କାରେ ଯେମନ୍ତ ଏଥର ଭାଙ୍ଗି ଦେଲା ଓ ଏ ଘର ସେ ଘର—'ଧଡ଼, ଧାଡ଼'—'ଦ୍ରୁମ୍, ଦାମ୍', କରି ଖୋଜି ବୁଲିବାକୁ ଲାଗିଲା ଚିତ୍କାର କରୁ କରୁ ସେହି ନାମ ଧରି ) ଡାକ୍—ଡାକ୍—ଡାକ୍—

ସିରାଜ୍—ଏହି ଖେଳିଁଛି—ଏହି ଧରିଛି—ଡାକ୍ ଛେଡ଼ି—ଡାକ୍ ଛେଡ଼ି—ନାହିଁ ନାହିଁ କଲେ ହେବ କିସ ଧନମଣି ? ରହମ୍, ସଲମ୍ ସାର୍ଘି—ବୁଢ଼ୀକୁ ଖେଳିବା ଆଗରୁ, ମୁଁ ଖେଳିଁଛି—ବୁଢ଼ୀ-କନ୍ଥା, ନା ?—କି ବୁଢ଼ୀ ?—ବାଃ—ବାଃ—ମୋର ଜର୍ —ମୋର—ଅଚ୍ଛା, ଅଚ୍ଛା, ଘୁଞ୍ଚି-ଦେବି—ଘୁଞ୍ଚି ଦେବି—କାନ୍ଦାଲୁଣି ଟେଟେଇ-ବେଲେ—ଗୋଟିଏ କଥାରେ କାନୁ ରାଜାହେଲେ, ସାଙ୍ଗ—ସେମିତିକା ମୁହଁ ବୁଲେଇନେଲେ ଚଳିବ କି ?—ମୁହଁ ଫିଟାଇ ସମସ୍ତଙ୍କ ସାମନାରେ ପାଟି-କରି କହିବାକୁ ହ'ବ ।—କଣ ?—ଖାଲି ଏତକିମ—"ବି—ବି—" ହାଃ—ହାଃ—ହାଃ—( ଏହିପରି ଗୋଟାଏ କି ଖେୟାଲରେ କହି କହିବା ଖେଳ ବୁଲୁଥାଏ )

[ ପର୍ଦ୍ଦାଠେଲି କିମ୍ଭୁତ କିମାକାର ମୂର୍ତ୍ତିରେ ପ୍ରୌଢ଼ାକୁ ଆବିର୍ଭୂତ ହେବାର ଦେଖାଗଲା—ଠିକ୍ କାହାଣୀର ପୁଅ ଖାଇ ଡାହାଣୀ ଭଳି—ସଦ୍ୟ ଯେମନ୍ତ ପାଗଳ ହୋଇଛି, ଖାଇକରି ନିଜର ସନ୍ତାନକୁ—ପରର ସନ୍ତାନ ଜ୍ଞାନରେ ]

ପ୍ରୌଢ଼ା—( ଠିଆହେଲା ସିରାଜଆଡ଼େ ଆଖିମାଡ଼ି, ପ୍ରସ୍ତର ମୂର୍ତ୍ତିଟି ପରି )

ସିରାଜ୍—ଅରେ ଗଦରାଜକୁ ହୋଇପାରିବୁ ରେ ?—ଆଜି ଏଇ ଇଦ୍‌ରେ—ସାଙ୍ଗମାନଙ୍କ ସାମ୍ନାରେ—ମିଛ କି କହିପାରିବୁ ରେ ? ମୋ' କଥା ? ହୋଃ—ହୋଃ—ହୋଃ— ଦେଖିନା— ଦେଖିନା—କଲିଜା ଫାଁକକରି ଦେଉଚି, ଦେଖିନା—ସେହି ଗୋଟାଏ କଥା ମୋ'ର—

ଗୀତ

"ଦିଲ୍‌କି ରୋସ୍‌ନି ପିଅସ୍ତି ମେରି—
ଅନ୍ଦର୍‌ମେ ବନାୟା ମହଲ୍ ତେରି—"

ପ୍ରୌଢ଼ା—ସିରାଜ୍ !—ସିରାଜ୍ !—ବେଟା !—ବେଟା ! ନା—ନା—( ହଠାତ୍ ଜଳସ୍ତମ୍ଭ ପରି ଭାଙ୍ଗିଯାଇ ଢେଉଁ ଆବେଗରେ କୁଣ୍ଢାଇ ପକାଇବାକୁ ଧାଇଁ ଯାଉ ଯାଉ ଫେରିଗଲା—ଘରଭିତରୁ ଗୋଟାଏ ମାଉଁସ-କୁଟା-ଗୁପଡ଼ଟା ଘେନି ଆସି ହାତରେ ତା'ର ଗୁଞ୍ଜିଦେବାକୁ ଲାଗିଲା ) ଦେ, ଦେ, ବେଟା—ଏହି ଡାହାଣୀ ମା'ର କଲିଜାଟା ଆଗେ ଫାଁକ୍ କରି ଦେ—ତୋର ବାବୁକୁ—ଡାକ୍‌କୁ—ସେ ଯେ ଗୋଟା ସୁବା—ଜାଥନ୍ତା—ଗିଳି ଦେଇଚି—ଏହି କଲିଜା ପାଖରେ ଅଟକି ରହିଚି—ଶୁଣ୍—ଶୁଣ୍—'ମା, ମା—ସିରାଜ୍, ସିରାଜ୍' ବୋଲି ଅବ୍ରତ୍ ଡାକ ପାରୁଛି—ଦୁମ୍, ଦୁମ୍, କରି ଛାତିକୁ ମୋର ବାଡ଼ଉଛି—ଦେ, ଦେ, ଜଲ୍‌ଦି ଫାଡ଼ି—ଦୁଇଫାଳ କରି ଦେ—ଜଲ୍‌ଦି—ଜଲ୍‌ଦି—ହଁ, ପେଟ ଭିତରକୁ ଗଳିଯାଏ ଯଦି—ମୁସ୍କିଲ୍—ମୁସ୍କିଲ୍—( ସେହି ଗୁପଡ଼ଟା ଧରାଇ ଦେଇ, ବକ୍ଷୋଦେଶ ଦେଖାଇ ସିରାଜ ସାମ୍ନାରେ ବସି ପଡ଼ିଲା )

ସିରାଜ୍—ହାଃ—ହାଃ—ହାଃ— ଏ'ଟା କଣ ହେବରେ—ବୋତଲ୍—ବୋତଲ୍—( ନିକ୍ଷେପ କରି-ଦେଲା ଦୂରକୁ )

ପ୍ରୌଢ଼ା—ବୋତଲ୍—ବୋତଲ୍—ଓ, ସରାପ ନ ପିଇଲେ—ଜୋର, ତାକତ୍ ନ ହେଲେ—( ସରାପ ବୋତଲ ଆଣି ହାତରେ ଧରାଇଦେଲା )

ସିରାଜ୍—ଆଃ—ନେ, ନେ—ପିଇ, ପିଇ—ଭାରି ମିଠା—ଭାରି ନିଶା—( ଟୋକେ ପିଇ, ପୁଣି ବୋତଲଟା ମା ହାତକୁ ବଢ଼ାଇଦେଲା )

ପ୍ରୌଢ଼ା—ହୁଁ—ହୁଁ—ଦେ, ଦେ—ମୋର ବ ଡାକର୍ —ଜୋର୍—( ନେଇ ପିଇବାକୁ ଲାଗିଗଲା ଢକ୍, ଢକ୍ କରି )

ସିରାଜ୍—ଡାକ୍—ଡାକ୍—ଆଃ, କେଉଁ ଅଡ଼େ ଯେ—

ପ୍ରୌଢ଼ା—'ଡାକ୍'। ( ଭିତରେ କା ଅବାକ୍ ଯେ କରି ଉଠିଲା, ତା'ର ପ୍ରତିଧ୍ୱନି ସିନା ଏହି ଉଚ୍ଚାରଣ —ବୋତଲ୍‌ଟା ଦୁମ୍‌କରି ଖସି ପଡ଼ିଲା )

ସିରାଜ୍—ଆମିନା !—ଆମିନା !—ଆଁ'ମ—

ପ୍ରୌଢ଼ା—'ଆମିନା !—' ( ସର୍ବଶରୀରଟା କମ୍ପି ଉଠିଲା ଏବଂ କା କୋଟାଏ ଅଗ୍ନିଶିଖା ଆଖିରୁ ଯେମନ୍ତ ଉଦ୍‌ଗୀରିତ ହେବାକୁ ଲାଗିଲା )

ସିରାଜ୍—ନା'ର୍‌ନା—

ପ୍ରୌଢ଼ା—ହାଃ—ହାଃ—ହାଃ—( ରଣରଙ୍ଗିଣୀମୂର୍ତ୍ତିରେ ଆଟପ କରି ନାଚିଯାଇ, ତୁରନ୍ତ ଯେନି ସେହି କୁଞ୍ଜର ବାଟେ ବାଟେ ଉନ୍ମାଦିନୀ ପରି ଦୌଡ଼ି ପଳାଇଲା )

ସିରାଜ୍—ଏଇଟା କିଏ ଲୋ ?—ଆଃ, କେମିତିକା ବେମେଲ୍, ବେସୁରା ଟାଏ କରିଦେଇ ଚାଲିଗଲା —ଗା'—ଗା'ରୁ, ଆମିନା—ତୋର ସେହି— ଏଃ—ଆଖିଟା ଖୋଲି ଖୋଲି ଯାଉଚି କାହିଁକି ମ ?—ଭିତରଟା ଖାଲି ଖାଲି ଲାଗୁଚି ଯେ— ଦେ, ଦେ—ଗ୍ଲାସେ ଅରେ ଦେଲୁ,—ଦେ— ଦେମ ଜଲ୍‌ଦି—ହେଇ—ଏକ—ଦୁଇ— ତିନ୍—ଯାଃ—ଫାଁକ୍ ଏଁ, ଏଁ, ସବୁ ଯେ ଫାଁକ୍ ସଉଦାଗର ସାହେବ—ସଉଦାଗର—ଏଁ, ଏଁ, ସଉଦାଗର ସାହେବ କାହାନ୍ତି ?—ଏଁ, ଏଁ— କିଏ ଆସିଥିଲା ସେ—ମା ?—କଣି, କଣ କହୁଥିଲା—ମା—ମା—( ପର୍ଦ୍ଦାର ଅନ୍ତରାଳକୁ ଦ୍ରୁତପଦେ ଚାଲିଗଲା )

( ନେପଥ୍ୟେ, ସିରାଜ )—ମା—ମା—ତାଜୁ—ତା— ଏଁ—ଏଁ—ଘରଯାକ ସୁନାର ମୋହର ଗୁଡ଼ାକ ବୁଣି ଦେଇଛି କିଏ ?—ଖୋଦା କଣ ଛପର ଫାଡ଼ିକରି ଆଜି ଖାଲି ଢାଳୁଚନ୍ତି—ତାଜୁ— ତାଜୁ—ମା—ମା—ଦୌଡ଼ଆ—ଦୌଡ଼ଆ— ଦେଖ୍, ଦେଖ୍—ମୋହର !—ମୋହର ! (ସେହି ମୋହର ଗୁଡ଼ାକ ଝଣ୍ ଝଣ୍ କରି ଗୋଟାଇବାରେ ଓ ଥଳିରେ ପୂରେଇବାରେ ଲାଗିଗଲା )

[ କିଛିକ୍ଷଣ ପରେ ପୁଣି ଶୁଣାଗଲା ସିରାଜର ସେହି ଭୀତ ବିହ୍ୱଳ ଚିତ୍କାର— ]

ସିରାଜ—ମା—ମା—ତାଜୁ ତାଜୁ—ତାଜୁ କାହିଁ— ମା କାହିଁ ?—ଆମିନା ଗଲି ଟା ?—ସଉଦାଗର —?—ରହ, ରହ—ମୁଁ ମୁଣ୍ଡରେ ଟିକିଏ ପାଣି ଦିଏଁ ଆଗେ—

[ ସିରାଜ ମୁଣ୍ଡରେ ପାଣି ଦେଇଥିଲା ଯେ, ଦାର, ଦାର ହୋଇ ବୋହି ଯାଉଥିଲା—ସେ ତୋଡ଼ା ଉପରେ ତୋଡ଼ାମାନ ଥୋଇ, ଯାକୁ ଧରି ହସି ହସି,— ସେ ଏକ ଅଦ୍ଭୁତ ହାସ୍ୟ, ପ୍ରବେଶ କଲା ]

ସିରାଜ୍—ଛି—ଛି—ସଉଦାଗର ସାହେବ କମ୍ପା ରଖାଇଦେଇ ଯାଇଥିଲେ ଯେ—ଦେଖ ମା'ର କାଣ୍ଡି—ତାଜୁର ଖାଲି କଥା ଶୁଣୁଛି—କାନ୍ଦି, ସିନ୍ଦୁକରେ ବନ୍ଦକରି, ତାଲାଦେଇ ରଖନ୍ତି, ନା ଘରଯାକ ଛିନ୍‌ଛତର—ଖେଳା ମେଳା— ଦେଖୁଚନା—କବାଟ ଠାବ ମେଲା—ଚୁଲ୍ଲି ଠାବ ଏମିତିକା ଜଳୁଚି ଯେ, ହୁ, ହୁ କରି—କୁଆଡ଼େ ଗଲେ 'ମା, ଝିଏ',—ସାଙ୍ଗ ସୁଦ୍ଧା ହୋଇ— ମୋତେ ଟିକିଏ କୁହା ପୋଛୁ ବ ନାହିଁ— ଆଚ୍ଛା ସଉଦାଗର ସାହେବ—ମୋର ମାଉଲାମି, ଅଭଦ୍ରତା ଦେଖି ବିରକ୍ତରେ ଉଠି, ଚାଲିଗଲେ ନା କଣ ?—ତେବେ କଣ ମା, ତାଜୁ ଆମିନାକୁ ସାଙ୍ଗରେ ନେଇ ସଙ୍ଖୋଳି, ଫେରାଇ ଆଣିବାକୁ ଧାଇଁ ଯାଇଛନ୍ତି—ଛି, ଛି—ମୁଁଟା କଣ ? ସରାପ ଖାଇ, ସବୁ ଖାଇ ବସିଚି—ନା, ନା, ଏ ନୁହେ ନୁହେ ମୋହରର ମୋହ—ଯୌବନର ମୋହ— ତାଜୁ, ତାଜୁକୁ ମୋର ଖୁସି କରିବାର ମୋହ !—କିନ୍ତୁ, କିନ୍ତୁ ତାଜୁତ ମୋ'ର ବିଲ୍‌କୁଲ୍ ଖୁସି ନୁହେଁ—ଏ' ସବୁରେ ସେ ଯେ ଚୁହେ ସେହି ଗରିବ ଦୋକାନଟି—ଶୁଣିବାକୁ, ସେହି ଗରିବର ବଇଁଶୀଟି—ଆସନ୍ତୁ, ଅସନ୍ତୁ

ସେମାନେ—ପୋଷାକ-ପୋଷାକ— ମୋହର-
ମୋହର—ସବୁ ଫେରାଇ ଦେବ—ଯେତେ
ଯା' ସେ ଦେଇଛନ୍ତି, ଖର୍ଚ୍ଚ ହୋଇଥିଲେ ବି,
ସଲିମ୍‌ଠାରୁ—ମୁଁ କରିଛି କଣ ?—ସଲିମ୍
ରହିମ୍‌କୁଡ଼, ଏତେ ଭାଇଟାଏ, କହିବାକୁ ଧାଇଁ
ଯାଇନାହିଁ—ଏଁ, ଏଁ—ନିମ୍‌ତା କରିଥିଲି ଯେ,
କାହିଁକି ଏ' ମାଏ ଆଇଲେ ନାହିଁ, ବୁଝିବାକୁ
ବି—ମୋହ—ମୋହ—ସେହି ମୋହ ଭାଙ୍ଗିବ
—ଆଜି—ଏହିକ୍ଷଣି—ଭର୍ଚ୍ଚ କରି ଆଣି;—
ସୁଧ ଦେବାକୁ ପଡ଼ିଲେବି, ପର୍ୱା ନାହିଁ—
ଶୁଝିବା କଥା—ହାଃ—ହାଃ—ଦୋକାନ କରିବି
—ସବୁ ମଜ୍ଜଳ, ଫଉଜ ଛାଡ଼ିଦେବି—ମାଁ,
ମୁଁ, ଛାଜୁ, ତିନିଜଣ ଯାଇ ମିଶି, ଦିନରାତି,
ଦଣ୍ଡେବି ଫୁରସତ୍ ନ ନେଇ, ନିଶ୍ୱାସ ନ ମାରି,
ଖଟିବୁ—ଗଢ଼ିବୁ—ହାଣ୍ଡି, ମାଠିଆ, ଘଢ଼ରେ
ଦୁନିଆଟା ଭର୍ତ୍ତି କରିଦେବୁ—

[ ଏହିପରି କହୁଥିଲା ବେଳେ ଆଣିଥିବା ଛୋଡ଼ାସବୁ ଏକାଠି କରି ଟେବଲ ଥୋଇ, ମୁହଁ ସବୁ ଭଲକରି ବାନ୍ଧି ଦେଉଥିଲା ଓ ଯନୃସହକାରେ ସଉଦାଗରଙ୍କ ତକିଆ ପାଖରେ ସଜାଡ଼ି ରଖୁଥିଲା ]

[ ଏହି ସମୟରେ ସଲିମ୍ ଆସି ପହଁଚିଗଲା;—ତା'ର ଅନ୍ତର ପ୍ରଦେଶରେ—ଏକ ଆଡ଼େ ବିରକ୍ତି, ଘୃଣା—ଅନ୍ୟଆଡ଼େ ସ୍ନେହ, ଅନୁରାଗ —ଏହିପରି ଦୁଇଦଳର ଭୀଷଣ ଦ୍ୱନ୍ଦ ଚାଲିଥାଏ —ମୁଖର ମୁହୁର୍ମୁହୁ ଭାବ ପରିବର୍ତ୍ତନ ଓ ବାକ୍ ସ୍ଫୁରଣର ଅକ୍ଷମତାରୁ ତାହା ବେଶ୍ ଫୁଟି ବାହାରୁ ଥାଏ—ସେ ଆସି ଠିଆହେଲା ସତ, କିନ୍ତୁ ଦୋହଲୁ ଥାଏ କିପରି ! ]

ସିରାଜ୍—କିଏ ?—ସଲିମ୍ ଭାଇ !—(ନିକଟକୁ ଡେଇଁ ଆସିଲା)—ତୋ'ର ବି ନିଶା ହୋଇଚି—ବାଃ—ବାଃ—ଛି ଭାଇ—ଏତେ ଡେରି କରିବାକୁ ହୁଏ ନା ? ରହିମ୍‌ଟା କାହିଁ ? ସେଟା ଭାରି ଖେଚଡ଼ା—ମା' ଉପରେ ରାଗିକରି ବାବୁ ଆସି ନାହାନ୍ତି ପରା !—ମାଠେଇଁ ଗୋଟାଏ ଗୋସ୍‌ସା—ତୁହି କହନି, ଭାଇ—ଏଁ, ତୁ ମନ ଏମିତିକା ଓଣା—ଅରେ ଦୋସ୍ତ ! ବଢ଼ିଆ ଖବରଦାର ଇଜ୍ଜତରେ—ବଢ଼ିଆ ଖାନା—ବଢ଼ିଆ ପିନା—ନେନା ଗ୍ଲାସେ ପିଇ ଦେଖ୍ ନା—ଆମିନା ଥିଲେ ପିନା —ଅରେ ଦୋସ୍ତ—ଆମିନା ରାଣ୍ଡିଟା ଆଜ ଭାରି ମଉଜ୍ କରାଇଚରେ — ମଜ୍‌ଲିସ୍‌ଟାକୁ — ଏକଦମ୍ ସରଗରମ୍ କରି ରଖିଥିଲା ପରା—ଟିକିଏ ସମାଲ, ଏଭଲେ ଆସି ଯାଉନାହିଁ କି ସେ—ରହ, ରହ—ମୁଁ ଆଗେ ଦେଇ ଆସେ ଗ୍ଲାସେ—( ଯାଉଁ ଯାଉଁ )—ଦୋସ୍ତ—ଦୋସ୍ତ—ଦେଖିନା ଖୋଲ୍ ଖୋଲ୍—ଖାଲି ଛୋଡ଼ା-ଛୋଡ଼ା—ମୋହର-ମୋହର—ମୋହର — ( ଗ୍ଲାସେ ଆଣିବାକୁ ଗଲାବେଳେ ଛୋଡ଼ାଆଡ଼େ ନଜର ପଡ଼ିଲା—ସେ ଗୁଡ଼ାକ ଗୋଟା ଗୋଟା କରି ସଲିମ୍ ଆଡ଼େ ଫୋପାଡ଼ିବାକୁ ଲାଗିଲା )

ସଲିମ୍—ଭାଇ !—ଭାଇ !—( ଧାଇଁ ଯାଇ କୋଉଁ ଉଚ୍ଛ୍ୱାସରେ କୁଣ୍ଢାଇଲା )

ସିରାଜ୍—କିନ୍ତୁ, ଭାଇ ଛାଜୁ ଆଉ ସେ ମୋହର ଗୁଡ଼ାକ—ହଁ ଭାଇ—

ସଲିମ୍—କାହିଁ ଛାଜୁ ? ଛାଜୁ କାହିଁ ଆମର, ଭାଇ—?

ସିରାଜ୍—ଆସୁଚି, ଆସୁଚିରେ— ଏହିକ୍ଷଣି— କ'ଣ, କରିବ, ଦୋସ୍ତ—ସରାପଟା ପିଇ ମାତାଲ ହେବାରୁ, ସଉଦାଗର ସାହେବ ଗୋସ୍‌ସାରେ—( ସଲିମ୍‌ର ମୁହଁରେ ମୁହଁ ଲଗାଇଦେଲା ଏକଦମ୍ )

ସଲିମ୍—( ବିରକ୍ତି ଓ ଘୃଣାରେ ମୁହଁ ବୁଲାଇ ନେଲା )

ସିରାଜ୍—ତୁ ଭାରି ଚଟୁଚୁ ? ମୁଁ କ'ଣ ଏଭା ଆମର ପ୍ରତିଜ୍ଞା ଭୁଲିଗଲେରେ—ଇଦ୍‌ରେ ସରାପ୍ ପିଇବା ନାହିଁ ବୋଲି ?—ଅରେ ଏମ୍‌ତିକା ବଢ଼ିଆ ଦିନରେ ଏମ୍‌ତିକା ବଢ଼ିଆ ମଉଜି କି—ଦେଖ୍, ଦେଖିନା, ଭାଇ— କେମିତିକା ବଢ଼ିଆ ମାଲ୍—ଅରେ—

ସଲିମ୍—ଛି, ଛି, ମିଥ୍ୟା—ଜାଲ୍—ଜୁଆଚ୍ଚୋର୍—ସବୁ ଏକାଦିନକେ, ଏକା ସଙ୍ଗେ ହାସଲ କରି ପକାଇଚ୍ଛୁ ତୁ ?

ସିରାଜ୍—ଓ, ତୁ ପିଇନାହୁଁ ? ରହିମ୍ ବି ନୁହେଁ ? ଆମ ଦଳର କେହି ନୁହେଁ ? ମୁହିଁ ଏକା ହୁଡ଼ିଚି—ମାଫ୍‌କର—ମାଫ୍‌କର, ଭାଇ—ଏହି ମୋହର ମୋହରେ ମୁଁ ସବୁ ପାଶୋରି ପକାଇଚି—

ସଲିମ୍—ଖୋଦା ( କାନ୍ଦି ପକାଇଲା )

ସିରାଜ୍—'ଖୋଦା'—'ଖୋଦା'—'ଖୋଦା'ଙ୍କୁ ବି ପାଶୋରି ପକାଇଚି ରେ—ଭାଇ ! ଭାଇ !—କାଲେ ଦିନେ, କେବେ ପଇସାଟାଏ ବି ମାଗିନାହିଁ—କିନ୍ତୁ ଆଜି ଟୋଡ଼ା ଟୋଡ଼ା ମାଗୁଚି—ରକ୍ଷାକର—ରକ୍ଷା—ତୁ ନ କଲେ—

( ହାତ ଧରିପକାଇଲା )

ସଲିମ୍—ଛେଡ଼ି !—କୁକ୍‌କୁର !—ଅହ୍ମକ୍ ଛେଡ଼ ! ଓଃ, ଘର ଟଙ୍କା ଛେଡ଼ରେ ତୁ ଆଜି—

( ଫିଙ୍ଗିଦେଲା )

ସିରାଜ୍—ତାଜୁ ପାଇଁ—ତାଜୁ ପାଇଁ ମାଗୁଚିରେ—ସଉଦାଗର ସାହେବଙ୍କୁ ସବୁ ଫେରାଇ ଦେବି—ଯା' ସେ ଦେଇଚନ୍ତି—ଯା'ସେ ମାଗିବେ—

ସଲିମ୍—ଦେବୁ ? ଦେବୁ ? ଫେରାଇ ଦେବୁ ?—ସତ କହୁଚୁ—କଥା ଦେ—ଜବାନ୍ ଦେ—

( ହାତ ବଢ଼ାଇଲା )

ସିରାଜ୍—( ହସି ହସି ହାତରେ ହାତ ମିଶାଇଲା )

ସଲିମ୍—ଭାଇ ! ଭାଇ !— ( କୁଣ୍ଢାଇ ପକାଇଲା )
ହଁ—କେତେ ନେଇଚୁ, ଭାଇ ? କେତେ ଦେବୁ ? କେତେ ତୋ'ର ଦରକାର ? ରହ, ରହ, ମୋର ଯା' କିଛି ଅଛି—ମୁଁ ସବୁ ପୋଛି ପାଛି ଘେନିଆସେ ଆଗେ—

( ଗମନୋଦ୍ୟତ ହେଲା )

ସିରାଜ୍—ଟିକିଏ ରହ, ତାଜୁଟା ଫେରି ଆସୁନା—ହିସାବ କରି— ( ଅଟକାଇ ଥିଲା )

[ ଏହି ସମୟରେ ମୂର୍ଚ୍ଛିତା ପ୍ରୌଢ଼ାକୁ ଧାରଣ କରି, ଜଣେ ଖଣ୍ଡା ଯୁବକ ପ୍ରବେଶ କଲା ଓ ତଳେ ଶୁଆଇ ଦେଲା ]

ସିରାଜ୍—ଏ କ'ଣ ?—ଏ କ'ଣ, ନଫର ?—ମା—ମା—ସଲିମ୍, ଭାଇ !—ମା'କୁ ନଜର ରଖିଥା—ମୁଁ ପାଣି ଘେନି ଆସେଁ—ନାଗାଟା ବୋଧହୁଏ ଭାରି ଜୋର୍‌ରେ ଟାଙ୍କି—

( ଦୌଡ଼ି ପଳାଇଲା )

ଯୁବକ—ପଳାଇ ଗଲେ, ସାହେବ—

( ଥକ୍କାମାରି ବସି ପଡ଼ିଲା )

ସଲିମ୍—ସମସ୍ତେ ? ତାଜୁକୁ—ତାଜୁକୁ ଆମର କୌଣସି ମତେ—

ଯୁବକ—ଘୋଡ଼ାରେ ବି ଦୌଡ଼ି ଧରି ପାରିଲୁ ନାହିଁ, ସାହେବ—

ସଲିମ୍—ଖୋଦା !— ( ବସିପଡ଼ିଲା )

ଯୁବକ—ତୁଆଟା ରହିଲା—ଖୁବ୍ କାଢ଼ି ନେଇଚି—ଆପଣ ଥିବୁ ଧରନ୍ତୁ—ଅବ୍‌ଭକ୍—

ସଲିମ୍—ଆଶା ଅଛି ?—ଜୋର ଜୁଲୁମ୍—ନ କରି, ବୁଝାଇ ସୁଝାଇ ସଉଦାଗର ସାହେବଙ୍କୁ ଘେନି ଆସ, ଭାଇ—ଯା, ଯା, ମୋ ନାଁ କରି, ତାଙ୍କୁ କହ—ତାଙ୍କର କିଛି କସୁର ନାହିଁ—ମୁଁ ସବୁ ଟଙ୍କା ଦେବାକୁ ତିଆରି—ଯେତେ ସେ ଦେଇଚନ୍ତି—ଯେତେ ସେ ମାଗିବେ—ତାଜୁ—ତାଜୁ—ଖାଲି ଆମର ତାଜୁ—ବୋଉଦାଦ୍‌ର ତାଜୁ—ହଁ, ଆମିନାକୁ ବି ବୋଧ ଦେ—କେହି କିଛି ଜୁଲୁମ୍ କରିବେ ନାହିଁ, ମୁଁ ଜବାବ୍ ଦେଉଛି, ବରଂ ମୁଁ ବକ୍‌ସିସ୍ ଦେବି, ନା, ନା, ମୁଁ ନିଜେ ଯାଏଁ—ନିଜେ—

( ପାଗଳପରି ଚାଲିଯିବାକୁ ତିଆର ହେଲା )

ଯୁବକ—ଆପଣ ଯା'ନ୍ତୁ ନାହିଁ, ସାହେବ—ଏଠି ନ ରହିଲେ—

ସଲିମ୍—ହଁ, ହଁ—ଯା'—ଯା'—ଜଲ୍‌ଦି ଯା'—ତାଜୁ—ତାଜୁ—

[ ସିରାଜ ଜଳପାନ ଘେନି ପ୍ରବେଶ କଲା ]

ସିରାଜ୍—କ'ଣ ହୋଇଚି ତାଜୁର ? ସେ ବି ଖୁବ୍ ପିଇଥିଲା ଆଜି—ତୁ ଟିକେ ମା'କୁ ଦେଖୁଥା, ଭାଇ—ମୁଁ ଯାଏଁ, ତାକୁ—କିଛି ଡର ନାହିଁ—

ଅମିନା ହୁସିଆର—ସଉଦାଗର ସାହେବ ବ
ଭଲ ମଣିଷ । ଦେଖ୍ ନା—ଏତେ ଏତେ ଟଙ୍କା
ତୋଡ଼ା ମା'ର କିସ୍ତାରେ ଛାଡ଼ି ଯାଇଚନ୍ତି—
ମୋର ମାଉଲିମିରେ ଗୋସ୍ସା ହେଇ ସିନା
( କହୁ କହୁ ପାଣି ମୁହଁରେ ଛୁଆଁ ଦେଉଥାଏ )

ସଲିମ୍—ସିରାଜ୍—ସିରାଜ୍— ( ବାହାପଲାବନ୍ତ )

ସିରାଜ୍—ମୋ'ର କସୁର—ମୋର, କସୁର ଭାଇ—
ମୋର ବେକୁବରେ ସବୁ ଆଜ ଲଣ୍ଡଭଣ୍ଡ—ସତେ
ସତେ, ଭାଇ,—ଆମେ ଆଜ କେତେ କଣ
ଭାବଥିଲୁ · ତାଜୁକୁ ନେଇ କେତେ କ'ଣ
ନବରଙ୍ଗ କରବୁ ବୋଲି ପାଣ୍ଡୁଥିଲୁ ଯେ—ତା'ର
ପାଣୋର ପକାଇଥିଲ—ଅରେ ଶୁଣିଲୁ ପରୁ—
କହୁଥିଲ ଦେତେବେଳେ 'ଖୋଦାଙ୍କ' ର—ଏହି
ନାକ କାନ ମୋଡ଼ୁଚ—ଆଉ ଘେଉଁ ଚ—ହିଁ,
ହିଁ,—ସେହି ଅମିନା ରାଣ୍ଡୀର କାରସାଦ ସବୁ—
ଅସୁ ସେ ରାଣ୍ଡୀ,—କୋରଡ଼ା ପିଟା କର ଯେବେ
କି—ଅଚ୍ଛା, ଭାଇ, ଭାଇ—ଏତେ ଗୁଡ଼ାଏ
ମୋହର—( ଥରେ ସେହି ମେହର ଦୋ
ଅଡ଼େ, ଥରେ ମା ଅଡ଼େ, ଥରେ ସଉଦାଗର,
ଅମିନା ଓ ତାଜ୍‌ର ଅନୁପସ୍ଥିତ କଥା ଏବଂ
ତାହିଁସଙ୍ଗେ ମଦ ବୋତଲ ଓ ଅପଣା କଥା ମଧ୍ୟ
ଭାବଗଲା ) ହାଃ—ହାଃ—ହାଃ—(କି ଗୋଟାଏ
ଅତଙ୍କ ଦୂର କରଦେବା ଉଦ୍ଦେଶ୍ୟରେ ଏହିପରି
ହସି ଉଠିଲା )

ସଲିମ୍—ତେବେ କଣ, ଭାଇ ? ତୁ—ତୁ—କିଛି ନ
ଜାଣି—ଏ' କାଣ୍ଡ—

ସିରାଜ୍—ତା ନୁହେ କ'ଣ ? ମୁଁ ଟିକିଏ ମାତାଲ
ହୋଇ ପଡ଼ିବାରୁ—ସଉଦାଗର ସାହେବ
ଗୋସ୍ସା·ହୋଇ ଗୁଲିଗଲେ ପରା—ଅମିନାକୁ
ନେଇ, ମା ଆଉ ତାଜୁ ସଙ୍ଗୋଳ, ଫେରାଇ
ଅଣିବାକୁ—

ସଲିମ୍—ଏଇୟା—ଏଇୟା ତୁ ଜାଣୁ ତେବେ,
ସିରାଜ୍—ଖୋଦା—!

ସିରାଜ୍—ତାହିଁକିରେ ?—ତୁ ମନେ କରୁଚୁ କ'ଣ
ମୋ ସଙ୍ଗେ ଗୁଣ୍ଡାମି ?—ହାଃ—ହାଃ—ହାଃ—
ଗୁଣ୍ଡା ସଙ୍ଗେ—।

ସଲିମ୍—ଭାଇ ! ଭାଇ ! ଦିନ ଦୁଇପହରରେ ଯେ
ଗୁଣ୍ଡାର ଆଖିଆଗେ—ଗୁଣ୍ଡାର ହାତ ମୁଠାରୁ—
ଗୁଣ୍ଡାର ପ୍ରାଣ ସର୍ବସ୍ୱ—ତାଜୁକୁ ଆମର ଅଜା
ଲୁଟି—

ସିରାଜ୍—'ଲୁଟି' ( ଚିତ୍କାର କରି ଉଠିଲା ଅକସ୍ମାତ—
ଗୋଟିଏ ବଜ୍ରପାତ ଅନୁଭବ କରି ଯେପରି )

ପ୍ରୌଢ଼ା—'ଲୁଟି' । ସେ କହିଲା—?—( ଏହି ଶବ୍ଦଟା
ତା'ର କାନରେ ପଶି ତା'ର ଜ୍ଞାନ ସଞ୍ଚାର କରାଇ
ଦେଲା କି ଆଉ ଏହିପରି ବକୁଥ ଥିବେ ? )

ସିରାଜ୍—ଏହି ସଲିମ୍, ମା ଅଛି—ହିଃ—ହିଃ—
( ହସି ହସି କହିଲେ ସୁଦ୍ଧା ଦେଉଁ ଅସହ୍ୟ
ବୋଧରେ ସଲିମ୍‌ର କାଁଦଟା ଧରି ପରସ୍ପେ ତାକୁ
ହଲାଇ ଦେଲା )

ସଲିମ୍—ଭାଇ !—( କୋହଟା ଉଚ୍ଛୁଳି ପଡ଼ିଲା ପରା )

ପ୍ରୌଢ଼ା—ଥଛି—ଥଛି ! ହାଃ ହାଃ—ଟିକିଏ ସବୁର
କରନା—ମୁଁ ମୁଠା ମୁଠା କରି—ଅଞ୍ଜୁଳା
ଅଞ୍ଜୁଳା କରି—ତୋଡ଼ା ତୋଡ଼ା କରି—( କହୁ
କହୁ ଘର ଭିତରକୁ ଛୁଟିଗଲା )

ସିରାଜ୍— ( କାଠପିତୁଳା ପାଲଟି ଯାଇଥାଏ )

ସଲିମ୍—ମା—ମା—ସିରାଜ୍—ସିରାଜ୍—( ଅନୁ-
ଧାବନ କଲା )

ସିରାଜ—ଲୁଟି !—ତାଜୁ—( ଏହିପରି କହିଲାବେଳେ
ସେହି ଛୁରିଟା ଅଡେ ହଠାତ୍ ନଜର ପଡ଼ିଗଲା
ପରା—ଛୁରିଟାଏ ଯେନି ଆସି ଧାରଟା ପରୀକ୍ଷା
କଲା—ସନ୍ତୁଷ୍ଟ ହୋଇ ପକେଇବାକୁ ବସିଗଲା )
[ ପ୍ରୌଢ଼ା କାନ୍ଦୁ କାନ୍ଦୁ ସଲିମ୍‌କୁ ଅବଲମ୍ବନ କରି
ପ୍ରବେଶ କଲା ]

ପ୍ରୌଢ଼ା—ମୋ'ର ସବୁ ମୋହର କିଏ ନେଇଗଲା
ରେ—ମୁଁ ଯେ ତାଜୁକୁ ବାନ୍ଧିବରି—

ସିରାଜ—( 'ବାନ୍ଧୀ' ଶୁଣି ଚକିତେ ଗୁହିଁଲା—ଛୁରି-
ଟାକୁ କ୍ଷଣକାଳ ପାଇଁ ଚପିଦେଲା )

ପ୍ରୌଢ଼ା—ଘରଟାରେ ଘଟେ ମୋହର ଗଦେଇ ଦେଇଥିଲି ରେ—

ସିରାଜ୍—( କେଉଁ ଅନ୍ୟମନସ୍କଭାବରେ ସେହି ଚୁଙ୍ଗୁଡ଼ା ଅଙ୍ଗୁର ଯୋରେ ପକେଇବାକୁ ଲାଗିଲା )

ସଲିମ୍—ସିରାଜ୍—ସିରାଜ୍—

ସିରାଜ୍—ହାଃ— ହାଃ—ହାଃ— 'ମୋହର' !— 'ବାକୀ' !—

( କି ବୀଭତ୍ସହାସ୍ୟରେ ଯେ ହସିଉଠିଲା ଆଉ ଧାଇଁ ଆସିଲା, ସତେକି ଚୁଙ୍ଗୁଡ଼ାରେ ଭୁଷିଦେବ ନା କଣ ? )

ପ୍ରୌଢ଼ା—ଦେ, ଦେ ବେଟା—ଜଲଦି ଭୁଷିଦେ— ମୁହିଁ ବାକୀ କରୁଛିରେ !—ନଗଦ !—ଝଣ୍ ଝଣ୍— ତୋଡ଼ା ତୋଡ଼ା ଗୋଟି ଗୋଟି କରି ଗଣି ନେଇତରେ !—ମୋହର ଖାଲି ସୁନାର ମୋହର !—

ସିରାଜ୍—ସୁନାପୁଅ ବି ତୋର ସାଇତା ରଖିଚି ଯେ— ରଖିବନାହିଁ, ମା—ଏ' ପରା ଡାକୁବାକା ଧନ— ନେ, ନେ, ମା—ଗୋଟି ଗୋଟି କରି ପୁଣି ଗଣି ନେ—( କହୁ କହୁ ଚୁଙ୍ଗୁଡ଼ା ଧକାଇ ଦେଇ ତୋଡ଼ା ତୋଡ଼ା ଆଣି ମା'ର ଗୋଡ଼ ଉପରେ ଢାଳିଦେବାକୁ ଲାଗିଲା )

ଆଃ—କେମିତିକା ମିଠା ଅବାଜ୍—ନୁହେଁ, ମା ?—

ପ୍ରୌଢ଼ା—ଉଃ—ଉଃ—( ଜଳନ୍ତା ଅଙ୍ଗାର ସ୍ପର୍ଶର ଜ୍ୱାଳା ଯେମନ୍ତ ଅନୁଭବ କରୁ କରୁ ଏକାବେଳକେ ହତଜ୍ଞାନ ହୋଇପଡ଼ିଗଲା )

ସିରାଜ୍—ହାଃ—ହାଃ—ହାଃ— ଗଣ୍, ଗଣ୍, ମା— ଶୋଇପଡ଼ିଲେ ଏତେବେଳେ ଚଳିବ କି —?

ସଲିମ୍—ପାଣି—ପାଣି—( ପାଣିର ସନ୍ଧାନରେ ବ୍ୟସ୍ତହୋଇ ଚଳି ଅଥଚ ସେଇଠି ପାଣିଭରା ଢାଳଟାଏ ରହିଥାଏ )

[ ଏହି ସମୟରେ ରହିମ୍ ସଉଦାଗର ସାହେବଙ୍କୁ, ତାଙ୍କର ମୁଣ୍ଡର ପଗଡ଼ିରେ ତାଙ୍କର ହାତ ଦି'ଟାକୁ ବାନ୍ଧି, ଘୋଷାଡ଼ି, ଘୋଷାଡ଼ିକା ଆଣି, ସିରାଜର ଗୋଡ଼ତଳେ ପକାଇଦେଲା— ଗୋଟାଏ ନିଶ୍ୱାସ ଛାଡ଼ିଲା, ଯେମିତିକା କି ବହୁତ ରାତି ଅନେକ ପରିମାଣରେ ସ୍ଫୂର୍ତ୍ତି ପାଇଛି ସେ ଉଭୟେ ରକ୍ତାକ୍ତ ହୋଇଥାନ୍ତି—ରହିମ୍‌ର ଲୁଙ୍ଗି, ଜାମା ଛିଣ୍ଡି ଖଣ୍ଡ ଖଣ୍ଡ ହୋଇଯାଇଥାଏ ]

ରହିମ୍—ନେ'ରେ ସଉଦାଗର ଦୋସ୍ତକୁ ତୋ'ର— ( କହୁ କହୁ ମୁଣ୍ଡର ରକ୍ତ ପୋଛିଦେବାକୁ ଲାଗିଲା, କିନ୍ତୁ ତାହା ମୁହଁ ତମାମ୍ ବୋଲି ହୋଇଗଲା—ଆଖିରେ ବି ଭଲ ଦେଖିପାରୁ ନ ଥାଏ )

ସିରାଜ—ଆସେ—ଆସେ—ସାହେବ— ବନ୍ଦେଗି— ବନ୍ଦେଗି—( ଚୁଙ୍ଗୁଡ଼ାକୁ ଉଠାଇ ନେଇ ଖେଳିବାକୁ ଲାଗିଲା ) ହାଃ—ହାଃ—ହାଃ—

ସୌଦାଗର—( ଭୟରେ ଆଖିଦୁଟା ବାହାର ପଡ଼ିଲା ପରି )

ସଲିମ୍—ତାକୁ ଆମର କାହିଁ, ରହିମ୍—ତାକୁ ଆମର—( କି ଯେ ଔତ୍ସୁକ୍ୟ )

ରହିମ୍—ଭୟ ନାହିଁରେ—ଆମର ଏହି ଦୋସ୍ତଙ୍କର ମେହେର୍ବାନିରେ—ଆମିନା ବିବିଙ୍କର ହେପାଜତ୍‌ରେ, ଖୁବ୍ ଭଲରେ—ହାଃ, ହାଃ, ହାଃ—

ସିରାଜ୍—'ଆମିନା' !

ସଲିମ୍—ଭାଇ, ଏତେବେଳେ କି ଥଟ୍ଟା ତାମସା—?—

ସିରାଜ୍—ହାଁ—ହାଁ—ଆମିନା—ଆମିନା, ରହିମ୍ !— କାହିଁ, ଜଲଦି ଦେଖି ଆ—ଦେଖିଆ—ବୁଝିକଣି ଏକାଠି ନ ହେଲେ ଯେ ମଜାଟା—ହାଃ— ହାଃ—ହାଃ—'ମଜ୍‌ଲିସ୍‌ଟା ଜମୁନାହିଁ'—ନୁହେଁ, ସାହେବ ?—( ସଉଦାଗରଙ୍କୁ ପ୍ରାୟ ଭୁଷି ଦେବାକୁ ଛାତିରେ ଚୁଙ୍ଗୁଡ଼ା ଲଗାଇଥିଲା—ଏହି ଆମିନାର ନାମରେ କାଢ଼ି ଆଣି ଏହିପରି କହିବାକୁ ଲାଗିଲା )

ସୌଦାଗର—( ପ୍ରାୟ ଲୁପ୍ତଜ୍ଞାନ ହୋଇ ପଡ଼ିଥିଲା )

ସଲିମ୍—ଯା, ଯା, ରହିମ୍—

ରହିମ୍—ମାଫ୍ କିଜିଏ ସାହେବ୍—ମାଫ୍ କିଜିଏ, ସେଠ୍ ସାହେବ୍—ସିରାଜ୍ ସିରାଜ୍—ସେଠ୍ ସାହେବ୍—ସବୁ ହୁକୁମ ତାମିଲ କରିବାକୁ ଏ'ନଫର ରାଜି—କିନ୍ତୁ ସେହି ରଣ୍ଡୀଟା ବେଳକୁ ଏକଦମ୍ ଗରରାଜି—ଏ' ଗର୍ଦ୍ଦାନା ଗଲେବି—

ସଲିମ୍—ତେବେ କାହିଁ, କାହିଁ ସେ ସମ୍ଭାଜୀ, ରହିମ୍—ତାକୁ କ'ଣ ?—

ରହିମ୍—ମ, ମୁଁ ଭଣି ସର୍ବଜ୍ଞ-ପାଠ ପଢ଼ିଛି—ନାସ୍ତେ କେଉଁ ବାଲିପାହାଡ଼ ତଳେ, କଣ ଅନ୍ଧାରିଆ ଦେଖି—କୋଣ ଭୂଆଁସିଣୀଟି ଭଳି, ବାବା ସାହେବା ଅମେର—ଆହା, କହି ଯାଉଥିବେ, ଏତେ ଲୋକ ଚହଳ-ପହଳରେ—( ଆଖିଦଟା ମରୁଥିଲା—ପରିଷ୍କାର ଦେଖି ପାରୁ ନ ଥାଏ ବୋଲି—)

ସଲିମ୍—ତାକୁ କୁ ଖୋଜି ବାହାର କରି ପାରିଲ ନାହିଁ ?—ତାକୁ କୁ ଅମର—ସମସ୍ତେ ଭଣି ଘେରିଆସିଲେଣି ?—ସଲିମ୍ କାହିଁ ?—

ରହିମ୍—କେଜାଣି, ବାବୁ—ଏତେ କୈଫିୟତ୍ ମୁଁ ଦେଇ ପାରିବି ନାହିଁ—ମୁଁ ଯେତିକି ଭରି ନେଇଥିଲି କରିଚି କି ନାହିଁ, ଦେଖ୍—ଅରେ, ଗୁହିଁବୁ କ'ଣରେ ?—ଦେ'ନା ଅଟେ ସେହି ଅଖି ଦ'ଟା ତାଡ଼ି—

ସିରାଜ୍—ଅଖି—ଅଖି—( ମହା ଉଲ୍ଲାସରେ ତାହାହିଁ କରିବାକୁ ଯାଉଥିଲା )

ସୌଦାଗରେ—(କଥା ସ୍ଫୁରୁ ନ ଥିଲା, ମାତ୍ର ଅଖି ତଡ଼ା ଯିବା ଅଟକାରେ କି ଯେ ସେ ଉପୁବାହୁଳ ଗୁହାଣୀ )

ସଲିମ୍—ଖୋଦା—ଖୋଦା—( ଏଣେ ନରହତ୍ୟା—ତେଣେ ତାଜୁର ହତ୍ୟା—ଉଭୟ ଦ୍ୱନ୍ଦରେ ଖୋଦାଙ୍କୁ ଯେପରି ଆତ୍ମସମର୍ପଣ କଲା )

ରହିମ୍—ସେହି ଅଖିରେ ମାଲ୍ ପସନ୍ଦ କରି—ଥୋଡ଼ା ଥୋଡ଼ା ମୋହର ଲୁଅଡ଼େ ଗଣି, ତାଲି ଦେଇଚନ୍ତି ଖରିଦାର ସାହେବ—ହାଃ—ହାଃ—

ଅମିନା ବିବିଙ୍କ ସାକ୍ଷାତରେ ।—( ହସି ଉଠିଲା ବ୍ୟଙ୍ଗକରି )

ସିରାଜ୍—ମା—ମା—( ଛୁରୀଟା ପକାଇ ଦେଇ, ମା'କୁ ତା'ର ପଚାରିବାକୁ ଧାଇଁଗଲା କି ଅଉ ? ) ସତ କହୁଚୁ, ମା—ବଞ୍ଚି ଅଛିଚୁ ?—ତାଜୁକୁ ?—ଧନ ନେଇ ? ଏହି ମୋହର ନେଇ ?—( ସତ୍ତ୍ୱଦ ଗରୁଟା ଝିଙ୍କିଏ ସାହସପାଇ ଉଠି ବସିଲା )

ସଲିମ୍—ଛି, ଭାଇ—( ସିରାଜ୍‌କୁ ଟାଣି ଅଣିଲା )

ରହିମ୍—ଏଁ—ଏ ଯେ ସତେ ସତେ ମୋହରର ପାହାଡ଼ ! ( ଭଲକରି ଅଖିମଳି ମଳି ଦେଖି, ସଲିମ୍ ଅଡ଼େ ଗୁହିଁଲା—ତା'ର ଏତେ ଲଘୁ ସ୍ୱଭାବରେ ମଧ୍ୟ କେତେଡ଼ ଗୁରୁତ୍ୱ ଦେଖା ଗଲା ) —ସିରାଜ—ସିରାଜ—(କ୍ରୋଧରେ ଅଧର ଦଂଶନ କରିବାକୁ ଲାଗିଲା )

ସଲିମ୍—ଭାଇ ! ଏକଥା ତୁ ବିଶ୍ୱାସ—( ତା'ର ସ୍କନ୍ଧରେ ହସ୍ତାର୍ପଣ କଲା )

ରହିମ୍—( ସଲିମ୍ ଅଡ଼େ ଗୁହିଁ, ତା'ର କଥାରେ ବିଶ୍ୱାସ କରି ନରମ ହେଲା ପରି )

ସୌଦାଗର—ଦେଖିଯେ—ଦେଖିଯେ ଜି, ରସିଦ୍—( ଗୋଟାଏ ଚମଡ଼ା କାଢ଼ି ଦେଖାଇଲା ଅତି ଭୟ, ଭୟରେ )

ସିରାଜ୍—ରସିଦ୍—ରସିଦ୍—( କାଢ଼ିଆଣି ଦେଖିବାକୁ ଲାଗିଲା )

ସୌଦାଗର—ପଞ୍ଚାଶ ରୁପିଆ ଲିଆ ହୁଆହେ—

ସିରାଜ୍—ହାଃ—ହାଃ—( ସେହି ଚମଡ଼ାଟା କେଉଁ ଉନ୍ମାଦଭାବେ ଚୁମ୍ବନ କରିବାକୁ ଲାଗିଲା )

ରହିମ୍—ଜାଲ୍—ଜାଲ୍—ଜବରଦସ୍ତି—ଜବରଦସ୍ତି—

ସିରାଜ୍—( ରହିମ୍ ଅଡ଼େ କେଉଁ ଦୃଷ୍ଟିରେ ଗୁହିଁଲା )

ସଲିମ୍—( ସେହି ମୋହର ଗୁଡ଼ାକ ପରୀକ୍ଷା କରିବାକୁ ଧାଇଁଗଲା )

ରହିମ୍—ଦେ, ଦେ, ସିରାଜ୍ ଫାଡ଼ ଦେ—ଛୁରୀଟା ମୋତେ ଛାଡ଼ ଦେ—ମୁଁ ତାଡ଼ିଦିଏଁ ସେହି ଅଖି

ଘୋଡ଼ାଙ୍କ ଆଗେ—( ଛୁରୀଖଣ୍ଡାଖେଳିଅସି ସୌଦାଗର ସାହେବଙ୍କୁ ଧଇଲ )

ସୌଦାଗର—ସେଠ୍‌ଜି—ସେଠ୍‌ଜି—

ସିରାଜ୍—ହାଃ—ହାଃ—ହାଃ — ସେଟ୍ — ସେଠ୍— ( ଫାଡ଼ିଦେବାକୁ ଯାଇ, ରହିଗଲ ) ନା, ଭାଇ— ମୋ'ର ଅଖି ଦ'ଟା ଆଗେ ଛାଡ଼ିଦେ— ଭଲକାଟା ମୋ'ର ଫାଡ଼ି ଦେ—

ରହିମ୍—ସିରାଜ୍—( ପୁଣି କ୍ରୁଦ୍ଧ ହୋଇ ଉଠିଲ )

ସିରାଜ୍—ଭଣ କରବ, ଭାଇ—ମା' ଯେ ଉଚିତ ମୂଲ୍ୟ ନେଇ, ମ ଲବଙ୍ଗୀ କଉଚନ୍ତି !—ଅଜ ଇଦ୍‌ରେ !— ଖୋଦାଙ୍କ ଦନରେ !—

ସୌଦାଗର—ଖୋଦା !—

ସଲମ୍—ଉଚିତ ମୂଲ୍ୟ !—ଉଚିତ ମୂଲ୍ୟ !—ହା'ଃ, ହାଃ—ମେକି—ମେକି — ନକଲି — ନକଲି- ମୋହର—( ମୋହର ଗୁଡ଼ାକ ନେଇ ସଉଦାଗର ସାମ୍ନାରେ ବଜାଇ ବଜାଇ ଦେଖାଇବାକୁ ଲଗିଲ )

ରହିମ୍—( କଣଯେ କହିବ, ସ୍ଥିରକର ନପାରି କୋଧରେ ଅଧର ଦଂଶନ କରୁଥିଲ )

ସଲମ୍—ନକଲି ମୋହର !—ନକଲି ମୋହର !— ( କେଉଁ ଆନନ୍ଦଭରେ ସିରାଜ ଓ ରହିମ୍‌କୁ ଦେଖାଇବାରେ ଲଗିଥାଏ )

ସିରାଜ୍—( କେଉଁ ଅଶାର ଅଲୋକରେ ଉତ୍‌ଫୁଲ୍ଲ ହୋଇ ଉଠୁଥିଲ )

ସୌଦାଗର—ସେଠ୍‌ଜି—ଦସ୍ତୁର ମାଫକ୍—ମାଇଜି ଅପ୍‌କା—( ଭୟରେ ଥରୁ ଥରୁ, ତୋଳ ଚପି ଚପି କହୁଥିଲ )

ସିରାଜ—'ମାଇଜି' !—ମା—ମା—( ମା ଅଡ଼କୁ ଦୌଡ଼ିଯାଇ, କଣ ଭାବି, ସେହି ଜାଗେ, ଫେରି ଅସି, ସଉଦାଗରଙ୍କ ବନ୍ଧନ ମୁକ୍ତ କରିଦେଲ ) ଅଇୟେ, ସାହେବ୍—ସଲମ୍—ସଲମ୍—

[ ସୌଦାଗର ସାହେବ୍ ସେଲମ କରୁ କରୁ ପ୍ରସ୍ଥାନ କରୁଥିଲ ]

ରହିମ୍—ଖଡ଼ାରହୋ, ସମ୍ଭାନ—ସିରାଜ୍—

ସିରାଜ୍—ଇନାମଦାର୍ ଦୋକାନୀ ଅମେ, ଭାଇ ! ଇମାନ୍ ରଖାଟର—ମା ମୋ'ର ଦେଖି କରି—ଗଣି କରି —ଠଗି, ଠଣି ବଜାଇକରି ନେଇଚି, ଭାଇ— ( ହାତ ଧରି ପକାଇଲ, ଲୁହ ଧାର ବୋହି ଯାଉଥାଏ )

ସଲମ୍—ସଉଦାଗର ସାହେବ ! ଏହି ମେକି ମୋହର ବଦଲରେ—ମୁଁ ଯଦି ଅସଲ୍ ମୋହର ଦଏ— ଯେତେ ଦେଇଚ – ନା, ନା—ଏହାର ଦୁଇଗୁଣ, ତନିଗୁଣ, ନା, ନା—ଯେତେ ଇଚ୍ଛା—ଯାହା ମାଗିବ ତୁମେ—

ସିରାଜ୍—ଭାଇ ! ଭାଇ ! ( କି ଗୋଟାଏ କୃତଜ୍ଞତା ବୋଧ ଓ ଆନନ୍ଦାତିଶଯ୍ୟରେ ଝର୍ ଝର୍ କରି କାନ୍ଦି ପକା'ଇଲ )

ସୌଦାଗର—( ଏ' ଗୋଟାଏ ଦାଉଁ, ଚଟି କଲେ ଯ.' ପାଇବ ଏ'ମାନେ ଯା' ଦେବାକୁ କହୁଚନ୍ତି ତା' ତୁଳନାରେ କିଛୁ ନୁହେଁ—ସୁତରାଂ କେତେ ଭ'ଣ ଯେ ଅକାଶ ପାତାଳ ଭାବିବାକୁ ଲଗିଲ, ଲଲସାର ଚିହ୍ନ ଗୁଡ଼ିକ କିନ୍ତୁ ବେଶ୍ ସ୍ପଷ୍ଟ ମୁଖରେ ଦେଖା ଯାଉଥାଏ )

ରହିମ୍—ଅଲବତ୍ ରାଜୀ ହୋନେ ହୋଗା—

ସୌଦାଗର—(ହଠାତ୍ ଏତିକିରେ କାପରି ଗୋଟାଏ ଅଶଙ୍କା କଲ—ଠକ ସମସ୍ତଙ୍କୁ ଠକ ମନେକରେ କିନା—ତଥାପି ଲୋଭଟା ଛାଡ଼ିପାରୁ ନ ଥାଏ )

ସଲମ୍—ବୋଲ୍, ବୋଲ୍, ସାହେବ—

ସୌଦାଗର—କିଆ ବୋଲ୍‌ତେ ହୋ, ସେଠ୍‌ଜି— ବାରବାର ତୋ ଅପ୍‌ସେ—ହାମ୍‌ସେ—(ଅବଶ୍ୟ ଏ' କଥାଟା ସେ କହିଲ ସିରାଜଠୁଁ ଜବାବ୍ ପାଇଲେ ନିର୍ଭୟରେ ଦାଉଁଟା ମାରି ପାରିବ ବୋଲି )

ସିରାଜ୍—ନେହିଁ—ନେହିଁ—ମା'ସେ—ମା'ସେ— ( କି ଅଭିମାନରେ ଯେ ଏତିକି ସେ କହିଲ )

[ ନେପଥ୍ୟେ ଧୁମ୍, ଧୁମ୍ ଢୋ ଶୁଣାଗଲ ଓ ତାକୁର 'ମା' 'ମା' ଡାକ ଶୁଣାଗଲ—ସମସ୍ତେ ଅଧୀର ହୋଇ ଉଠିଲେ ]

ସଲିମ୍—( ଉଦ୍‌ଗ୍ରୀବ ହୋଇ ନେପଥ୍ୟକୁ ଚାହିଁ ରହିଲା—କି ଯେ ଅନନ୍ତର ଢେଉ ଖେଳିଯାଉ ଥାଏ, ଅନ୍ତରେ, ବାହାରେ )

ସରିଭ୍—ମା—ମା—ବୋଲ୍—ବୋଲ ସଲିମ୍—ରହିମ୍—ଗାଁବାଲାମାନେ ତାଜ୍‌କୁ ଅମର ଫେରାଇ ଆଣିଚନ୍ତି—ସଉଦାଗର ସାହେବ—ଖବରଦାର ସାହେବ ରାଜି ହୋଇଚନ୍ତି—ଫେରାଇ ଦେବାକୁ—ତୁଇ ଖାଲି ତୋର ଜବାନ୍ ଫେରାଇ ନେଲେ ହେଲା—( କି ବିକଳରେ ଯେ ଅଳି କରିବାକୁ ଲାଗିଲା )

ସଲିମ୍—ମା—ମା—ହିଁ, ଦେଖ, ଭାଇ—ମା'ର ଏ'ପରି ବେହେତ୍ ଅବସ୍ଥାରେ, ବେଶୀ ଜିଗର ଲଗାଇବାଟା ଭଲ କି ?—ମା'ର ହୋଇ,—ତୁଇତ ସନ୍ତାନ—ମାଲିକ୍—କହିଲେ ହେଲା ନାହିଁ କି ? ( ପ୍ରୌଢ଼ାର ପ୍ରକୃତ ଅବସ୍ଥା ଉପଲବ୍‌ଧି କରି, ଗୋଟାଏ ଉତ୍‌କଣ୍ଠିତ-ବୁଦ୍ଧିବିକଳରେ ସିରାଜ୍‌ର କାନେ କାନେ ଏହାପରି କହିଲା )

ସିରାଜ୍—ବୋଲେ, ସଉଦାଗର ସାହେବ—କିଅ ମାଙ୍ଗଛେ ହୋ—

[ ନେପଥ୍ୟେ କୋଳାହଳ ଘନ ଘନ ଶୁଣାଗଲା ଓ ଜଣେ ଯୁବକ ଦୌଡ଼ି ଆସିଲା ]

ଯୁବକ—ଅମିନାଟା ଧରା ପଡ଼ିଚ—ତାଜ୍‌ଟାକୁ ଧରିଚି ଏମିତକା ଜଡ଼େଇ—ସତେକି ଯାବ ପଞ୍ଝ ପାଇଚି-ପରି—ଏହ—ଏହ ଆସୁଚନ୍ତି—

[ ରହିମ୍ କ୍ରୋଧରେ ଜ୍ଞାନଶୂନ୍ୟ ହୋଇ ଦୌଡ଼ି ଯାଉଥିଲା, ମାତ୍ର ସେହି ଯୁବକ ତା'କୁ ବାଧା ଦେଇ, ଅଟକାଇଲା ]

ସିରାଜ୍—ବୋଲେ—ବୋଲେ, ସାହେବ—ତାଜ୍—ତାଜ୍—

ସୌଦାଗର—( କପର ଏ'ପାଖ, ସେପାଖ ହେବାକୁ ଲାଗିଲା, ଅମିନାର ଏପରି ଢଙ୍ଗ ଦେଖି ତା'ର ଭିତରେ )

ସଲିମ୍—ତାଜ୍—ତାଜ୍ ଅମର—ବୋଲେ, ବୋଲେ—

ରହିମ୍—ଆଜ ମୁଁ ମୋର ପ୍ରତିଜ୍ଞା ରଖି ପାରିଲି ନାହିଁ ଅମିନା — ଅମିନା — ସପୃତାନୀ — ମୋ'ର ହାତରେ ଆଜି ତୋ'ର—

ସୌଦାଗର—( ଦୋଘାଇରେ ପଡ଼ି ଏଥର ସେ ସତ ସତ ନିଜର ପ୍ରାଣ ରକ୍ଷାର ଉପାୟ ଖୋଜି ବୁଲିବାକୁ ଲାଗିଲା )

ଯୁବକ—କିଛି ଦରକାର ନାହିଁ, ଭାଇ—ସୁରଖୁରରେ କାମଟା ହାସଲ ହୋଇ ଯାଉ ନା—ସେତ ରାଜିରେ କହୁଚି, ସିରାଜର ମା କହିଲେଇ—ଖୁସିରେ ସେ—

ସୌଦାଗର—( ଏଥିରେ ଯେମନ୍ତ ଗୋଟାଏ ଉପାୟ ଖୋଜି ପାଇଲା )

ସିରାଜ୍—ମୁଁ ତ ମାଲିକ୍—କାହିଁ ସେ—ଖାଲି କହିବ ନାହିଁ—ଖୁସାମଦ୍ କରି କହିବ—ଓଠ ଧରି କହିବ—ହାତ ଧରି କହିବ—ଗୋଡ଼ରେ ଧରି କହିବ—

ସୌଦାଗର—ମତ୍‌ଲବ୍ ସମଜ୍‌ନା, ସେଠ୍‌ଜି—ଆପ୍ ଇମାନ୍‌ଦାର ଆଦ୍‌ମି—ଇମାନ୍‌ଦାର ବେଟା ହୋ—ମା'କା ଇମାନ୍ ଇସି ମାଫିକ୍—

ସିରାଜ୍—( ସୌଦାଗରଙ୍କ ଆଡେ ଚାହିଁଲା ବୋକାପରି )

(ନେପଥ୍ୟେ ତାଜ୍)—ମା—ମା—( ଅତି ନିକଟରେ ଶୁଣାଗଲା )

ସିରାଜ୍—ସାହେବ—ସାହେବ—( ଗୋଡ଼ ଦଟା ଧରି ପକାଇଲା—)

ସୌଦାଗର—ହାମ୍ କିଅ କରେଙ୍ଗେ, ସେଠ୍‌ଜି—ମାହୋ ଆପ୍‌କୁ—

ସିରାଜ୍—ମା—ମା—( ମା ଉପରେ କଚୁଡ଼ି ପଡ଼ିଲା )

ରହିମ୍—( ସଉଦାଗରର ବେକଫଣ୍ଡା ଧରି ହଲାଇବାକୁ ଲାଗିଲା )

ସୌଦାଗର—ମର୍‌ଗିଆ—ମର୍‌ଗିଆ—ଆପ୍‌କି ବାସ୍ତେ, ସେଠ୍‌ଜି—ଆପ୍‌କି ବାସ୍ତେ—

ସିରାଜ୍—ଭାଇ—ଭାଇ ( ଏକ ଅଦ୍ଭୁତ ମୁଖଭଙ୍ଗି ଓ ଚାହାଣି ଦେଖାଗଲା )

ରହିମ୍—ବେଶ୍ ବୁଝା ବୁଝି ହୁଅ ତୁମେମାନେ—ଅ, ସଲିମ୍—( କିଛି ଦୂର ଟାଣି ନେଇଗଲା )

ସିରାଜ୍—ଯାଅନା, ଯାଅନା, ଛାଡ଼, ଭାଇମାନେ—
ଇମାନ୍—ମା'ର ଇମାନ୍—

[ ତାଜ୍ ଦୌଡ଼ି ଆସିଲା ଅତି କାତର ଭାବେ ଡାକୁ ଡାକୁ ]

ତାଜ୍—ମା—ମା—

ସିରାଜ୍—ତାଜ୍—ତାଜ୍—( କୁଣ୍ଢାଇବାକୁ ଯାଇ, କେଉଁ ଧକ୍କାରେ ଯେ ଫେରି ଆସିଲା )

[ ଆମିନାଙ୍କ ବ୍ୟାଘ୍ରୀପରି ଦୌଡ଼ି ଆସି ତେଡ଼ିକି ଦେଲେ ତାଜ୍‌କୁ ଝାଁପିନେଲା— ତା'ର ଦେହ ରକ୍ତାକ୍ତ—ବାଳଗୁଡ଼ାକ ମୁକୁଳା— ବେଶଭୂଷା ଛିନ୍ନଭିନ୍ନ—ମୁଖରେ ପୈଶାଚିକ ଭାବ ]

ତାଜ୍—ସିରାଜ୍—ସିରାଜ୍—( ବାକଳରେ ଗୁହିଁ ରହିଥାଏ )

ସିରାଜ୍—( କାଠପରି ଠିଆ ହୋଇଥାଏ )

[ ନେପଥ୍ୟେ କୋଳାହଳ ଓ ଧୁମ୍ ଧାମ୍ ଶବ୍ଦ ଶୁଣା ଯାଉଥାଏ ]

ଆମିନା—କିଆ ଦେଖ୍‌ତେ ହୋ ସାହେବ—ଶୀକାର ହାମ୍‌ସେ ଭାଗେଗା—ହାଃ—ହାଃ—ହାଃ— ଚଲ୍‌ଯେ—ଚଲ୍‌ଯେ—କୁଛ୍ ଡ଼ରୋ ମତ୍— ( ରକ୍ତ ପୋଛି ଦେଉଥାଏ ଓ ଉତ୍ତେଜିତ ହୋଇ ଉଠୁଥାଏ )

ସୌଦାଗର—ଯେମ୍ସେ—( ରହିବାକୁ ଇଙ୍ଗିତ କରି ଗୁଲିଚଳା କେଉଁ ଉଦ୍ଦେଶ୍ୟରେ )

[ ସଲିମ୍, ରହିମ୍ ପ୍ରଭୃତି ଦୂରେ ଠିଆ ହୋଇ ଭାରି ଅସହ୍ୟ ବୋଧ କରୁଥିଲେ— ]

ଆମିନା—( ସେହିମାନଙ୍କ ପ୍ରତି କି ଯେ ଶ୍ଳେଷଭାବେ ଦୃଷ୍ଟିପାତ କରୁଥାଏ ଓ ତାଜ୍‌କୁ ଚୁପି ଚୁପି ଧରୁଥାଏ )

ତାଜ୍—ବୃଥା, ବୃଥା ଆଶା, ସିରାଜ୍—ମା କେବେ କଥା କହିବେ ନାହିଁ—ମା ଥରେବି ଚାହିଁବେ ନାହିଁ—ମୋଠି ଟିକିଏ ଦରଦଥିଲେ କି ଆଜି ସେ ମୋତେ ହାଣ୍ଡି, ମାଟିଆ ଭଳି ବାଣ୍ଟି କରି —ମା—ମା—ଏତେ ସ୍ନେହ କି ତୋ'ର—

ସିରାଜ୍—( ଅନ୍ଧାରି ଯେମିତିକା କଠୋର ହେଉଥାଏ )

ତାଜ୍—ତୁ କଥା କହ—ତୁ କଥା କହ, ସିରାଜ୍— ଯେ ଯାହା କହୁ, ମୁଁ ଜାଣେ, ତୁ ନ ଜାଣି ଏ କାଣ୍ଡ ଘଟିଛି—ନେ, ନେ, ମୋତେ ଛଡ଼ାଇ ନେ— ରଖାକର— ରଖାକର—ଦେଖ୍, ଦେଖ୍, କେତେ ଜୋରେ ଚୁପି ଚୁପି ଧରୁଛି ରାକ୍ଷସୀଟା —ଉଃ—ଉଃ—

ସିରାଜ୍—( ପାଷାଣକୁ ବଳି ଯାଇଥାଏ )

ତାଜ୍—ଏଁ—ଏଁ—କଥା କହୁନୁ ନାହିଁ, ସିରାଜ୍ ? ତୁ ପରା 'ବବ' କରୁ ବୋଲି, ମୋତେ କେତେ ଆଦର, କେତେ ସ୍ନେହ—ନା, ସବୁ ମିଛ ?—ସବୁ ଭଣ୍ଡାମି ?—ନା, ନା, ମୁଁ ବିଶ୍ୱାସ କରିବି ନାହିଁ—କରି ପାରିବି ନାହିଁରେ— ଡାକ୍, ଡାକ୍, ସେହି 'ବବ' 'ବବ', ବୋଲି, ଡାକ୍—ବଜା, ବଜା, ତୋର ସେହି ପ୍ରାଣର ବଇଁଶୀଟା ବଜା—ଗା', ଗା', ଆଜିକାର ତୋର ସେହି ନୂଆ ଗୀତଟି—'ଦିଲ୍‌କାରେଶ୍‌ମୀ ପିଆର ମେରି'—ଗା', ଗା', ମୁଁ ବି ଗାଇବି— ମୁଁ ବି ନାଚିବି—ତୋ ସଙ୍ଗେ—ଏକାସଙ୍ଗେ— ଲଜ୍ଜା ସରମ ଛାଡ଼ି ଦେଇ—ଏହି ସଲିମ୍ ରହିମ୍ ସଙ୍ଗୀମାନେ ପରି ତୋ'ର ଆସି ଠିଆ ହେଲେଣି— ଭୁଲି ଯାଅ ଭୁଲି ଯାଅ, ଭାଇମାନେ—ମୁଁ ଯାହା, କିଛି କହୁଥିବି—କରୁଥିବି—ଏମିତିକା କ'ଣ ହୁଏ ନାହିଁ—ଆଜି କ'ଣ ନୂଆ—ନୂଆ, ହେ, ଆଜି ନୂଆ-ଦିନ—ଆଜି ଇଦ୍— ଯେମିତିକା ସଜାଇ ଦେବ—ମୁଁ ସାଜିବି— ଖେଳାଇବ ଖେଳିବି—କ'ଣ ଗୁଲିସ୍ତାନର ପରୀ କରି ମୋତେ, ଖେଳିବ ବୋଲି ପରା, ଲୁଚେଇ ଲୁଚେଇ କାଲି ପରାମର୍ଶ କରୁଥିଲ—ମୋ' କାନରେ ପଡ଼ି ନାହିଁ, ନା ? ଅ, ଅ, ସିରାଜ୍— ଯଲଦି ଉଠିଆ—ମୁଁ ଠିକ୍ ବୁଲ୍‌ବୁଲ୍ ପରି ଗାଇବି—ଗୋଲାପଟି ପରି ହସିବି—ପରୀ ଭଳି ନାଚିବି ।

ସଲିମ୍— ତାଜ୍— ତାଜ୍ — ସିରାଜ୍— ସିରାଜ୍—
( ଦୌଡ଼ା ଦୌଡ଼ି କରିବାକୁ ଲାଗିଲା—
ଥରେ ସିରାଜ୍ ଆଡ଼େ, ଥରେ ତାଜ୍ ଆଡ଼େ )

ସିରାଜ୍—ଇମାନ୍—ଇମାନ୍—ମା'ର ଇମାନ୍—

ତାଜ୍—'ମା'ର ଇମାନ୍'— ! ( ଚିତ୍କାର କରି ଉଠି, ଢଳି ପଡ଼ିଲା ଆମିନା ଉପରେ କେଉଁ ପ୍ରତିଘାତରେ )

ସଲିମ୍—ତାଜୁ—ତାଜୁ—ସିରାଜ୍—ସିରାଜ୍—(ମିଳାଇ ଦେବାକୁ ନ ପାରି ଯେମନ୍ତ ହତାଶ ହୋଇ ହତଜ୍ଞାନ ହୋଇଗଲା )

ରହିମ୍—ଅସହ୍ୟ—ଅସହ୍ୟ—( ତାଜୁକୁ ଛଡ଼ାଇ ଆଣିବାକୁ ଯାଇ, ସଲିମ୍‌କୁ ଧରିବାକୁ ବାଧ୍ୟ ହେଲା )

[ ନେପଥ୍ୟେ ସୌଦାଗର ସାହେବଙ୍କର ହର୍ଷ ଧ୍ୱନି ସଙ୍ଗେ ସଙ୍ଗେ ଘୋଡ଼ାର ଟାପୁ ଶୁଣାଗଲା ଏବଂ ସେ ଛୁଟିଆସି ଇଙ୍ଗିତ କଲେ ]

ଆମିନା—ସେଲାମ୍, ରହିମ୍ ସାହେବ—ସେଲାମ, ସଲିମ୍ ମୌଲାନାଜି—ସେଲାମ୍, ସିରାଜ୍ ସେଠ୍‌ଜି—( ବିଦ୍ରୂପାତ୍ମକ ଅଙ୍ଗଭଙ୍ଗି କରୁ କରୁ ପ୍ରସ୍ଥାନ କଲା )

ତାଜ୍—ମା—ମା—ସିରାଜ୍—ସିରାଜ୍—( ଏହାପରେ କହି ଉଠିଲେ କେଉଁ ଅନ୍ତରାତ୍ମା ତା'ର ଶେଷ ବିଦାୟ ପୂର୍ବରୁ କି ଆଉ ?—ସମ୍ପୂର୍ଣ୍ଣ ଅଜ୍ଞାତସାରରେ ! )

ରହିମ୍—(ରହିମ୍‌ର ଏତେ ତେଜ କେଉଁଆଡ଼େ ଉଡ଼ିଗଲା—ଠିଆ ହେବାର ଶକ୍ତି ସୁଦ୍ଧା ରହିଲା ନାହିଁ— )

[ କଣ୍ଟକଷଣି ଗୋଟାଏ ନିସ୍ତବ୍ଧତା ବିରାଜ କରିବାକୁ ଲାଗିଲା ]

ସିରାଜ୍—ତା—ଜ୍—( ବୋଲି, ବାହାରର ଗୁପ୍ତଟା ହଠାତ୍ ଖୋଲି ଦିବାକୁ କି କଣି, ସେହି ପ୍ରତିଘାତର ତାଡ଼ନାରେ ତାଜ୍‌ର ଗମନ ପଥ ଆଡ଼େ ଧାଇଁଗଲା—ତୀବ୍ରବେଗେ — )

ରହିମ୍— ହାଃ—ହାଃ—ହାଃ—( ହସି ଉଠିଲା ଗୋଟାଏ ବିଦ୍ରୂପାତ୍ମକ ହାସ୍ୟ କରି )

ସିରାଜ୍—ଓଃ—ଭାଇ ! ଭାଇ !—( ରହିମ୍‌କୁ ଜାପୁଡ଼ି ଧରିଲା. ଫେରିଆସି—ଭରା ହୃଦୟଟା ତା'ର ଗୋଟାଏ ଧକ୍କାରେ ଫାଟି ଅଜସ୍ର ଧାରାରେ ଆଖି ପଥେ ଝରିବାକୁ ଲାଗିଲା ପରା )

ରହିମ୍—ନା, ନା— 'ଇମାନ୍' —'ଇମାନ୍'— ( ଉପେକ୍ଷା କରି, ସଲିମ୍‌କୁ ନେଇ ପଳାଇଗଲା )

ସିରାଜ୍—( ହତାଶ ଭାବେ ଉପର ଚାହିଁ ରହିଲା ) ମା—ମା—( ବୋଲି ଦୃଢ଼ାଲିଙ୍ଗନ କରି ଧରିଲା—କିନ୍ତୁ, ହାୟ, ମା'ର ଛାଡ଼ି ଗଲାଣି ଚିରକାଳ ପାଇଁ )

[ ଏହି ସମୟରେ 'ଠୋ' 'ଠା' ଶବ୍ଦରେ ଅଟ୍ଟହାସ୍ୟ କରି ଯେମନ୍ତ କୁଡ଼ିଆଟା ଜଳି ଉଠିଲା ! ]

ସିରାଜ୍—( ଯେଉଁ ଶବ୍ଦରେ, ସେହିଆଡ଼େ ଚାହିଁଲା ଥରେ ସଚକିତେ । )

[ କେଉଁ ନୈରାଶ୍ୟରେ ତାଜୁର ଗମନ ପଥକୁ ଚାହିଁଲା ଥରେ—କାନ ଡେରିଲା କ'ଣ ଶୁଣିବା ଆଶାରେ ; କିନ୍ତୁ ଶୁଣିଲା ଖାଲି ଗୋଟାଏ 'ହୁ', 'ହୁ' ଶବ୍ଦ ]

ସିରାଜ୍—ହାଃ—ହାଃ—ହାଃ—ହାଃ—( ହୃଦୟଟା ତା'ର ସେହିପରି ଜଳି ଉଠିଲା—କାନଟା ବଧିର ହୋଇଗଲା—ଆଖିରେ ଟୋପାଏବି ପାଣି ନାହିଁ—ଧୁ-ଧୁ—ନିଦାଘ ମରୁପରି ଶୂନ୍ୟ—ମହାଶୂନ୍ୟ । !— )

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ଆଗ୍ରା ରାଜପ୍ରାସାଦ—

ମମ୍‌ତାଜ୍ ବେଗମଙ୍କ ବିଳାସ କକ୍ଷ— ଆଜି ଅତି ମାନ୍ଦରେ ସଜ୍ଜିତ—ବାଦାହର ଦଶମ ବାର୍ଷିକ ଉତ୍ସବ ଉପଲକ୍ଷେ !— ପ୍ରଭାତ ନ ହେଉଣୁ ବାହାରେ ଯେଉଁ ନହବତ୍ ବାଜି ଉଠି, ନଗରବାସୀଙ୍କ ହୃଦ୍ ଫୁଲ୍ଲିତ କରିଛି —ତା'ର ସୁଦୂରାଗତ ଝଙ୍କାର କକ୍ଷଟିରେ ଗୋଟାଏ ଗୃଢ଼ାଳସ୍ୟ ଜନ୍ମାଇ ଦେଉଛି । ସଦ୍ୟସମାପ୍ତବେଶା ସହଚରୀଗଣ—କେହି କେହି ବା ସମାପ୍ତିର ଶେଷ ସ୍ପର୍ଶଟା ଦେଉ ଦେଉ, ନାନାବିଧ ବାଦ୍ୟଯନ୍ତ୍ର ଧରି, ଧୀର ପଦ କ୍ଷେପରେ, ଅତି ସନ୍ତର୍ପଣରେ, କକ୍ଷର ନାନା ଦିଗରୁ ଆସି, ସମ୍ମୁଖସ୍ଥ ମଣ୍ଡପର ସୋପାନର ପ୍ରତ୍ୟେକ ପାବଛର ଦୁଇପାର୍ଶ୍ୱ ଯଥା ନିୟମରେ ଅଳଙ୍କୃତ କଲେ— ଟୁଂ ଟାଂକରି ବାଦ୍ୟସ୍ୱର ମିଳାଇ ନେଇ କେଉଁ ସଙ୍କେତକୁ ସୋତ୍ସୁକ ପ୍ରତୀକ୍ଷା କରିବାକୁ ଲାଗିଲେ । ହଠାତ୍ 'ଦୁମ୍' କରି ବାହାରେ ଗୋଟାଏ ତୋପଧ୍ୱନି ହେଲା—ସଙ୍ଗେ ସଙ୍ଗେ ଅନ୍ତରାଳରୁ ହାତ ଘଣ୍ଟାଟାଏ ବାଜି ଉଠିଲା—ସୁ-ସ୍ୱରେ ଗୋଟାଏ ସମବେତ ସଙ୍ଗୀତ କକ୍ଷଟିକୁ ଝଂକୃତ କରିଦେଲା—ଅନନ୍ତର ମଣ୍ଡପର ପଶ୍ଚାତ୍ ଭାଗର ଯବନିକାଟି ଅପସାରିତ ହୋଇଗଲା—ଦେଖାଗଲା, ଗୋଟାଏ ଅଧିକତର ମନୋରମ କକ୍ଷ— କିଛିକ୍ଷଣ ପରେ ଧୀରେ ଧୀରେ ପ୍ରବେଶ କଲେ —ଯଥା ରାଜ ନିୟମରେ, ପରିଚାରିକା ପରିବେଷ୍ଟିତ **ସାଜାହାନ ଓ ମମତାଜ**— ସେମାନଙ୍କ ପରିହିତ ପରିଚ୍ଛଦର ଛଟାରେ ପ୍ରଭାତର ଛଟା କେଉଁଆଡ଼େ ମଳିନ ହୋଇଗଲା ପରି !—ସେମାନେ ସେହି ମଣ୍ଡପସ୍ଥ ଦୁଇଖଣ୍ଡ ପାଖାପାଖି ଥିଆ ହୋଇଥିବା ସିଂହାସନରେ ଉପବେଶନ କଲେ—ପରିଚାରିକାମାନେ ଯଥା-ସ୍ଥାନରେ, ଯଥା-ନିୟମରେ ଠିଆହୋଇ ଆପଣା ଆପଣାର କର୍ତ୍ତବ୍ୟ ପାଳନ କରିବାକୁ ଲାଗିଲେ— ବାଦ୍ୟକାରିଣୀମାନେ ଅତି ମୃଦୁ ମୃଦୁ ବଜାଉଥିଲେ —ଯେମନ୍ତ କି କୌଣସି ସଙ୍କେତକୁ ଅପେକ୍ଷା କରୁଥାନ୍ତି— ]

ସାଜାହାନ—( ଆଖି ବୁଲାଇ ବୁଲାଇ ଆଖପାଖର ସାଜସଜ୍ଜା ଦେଖିବାକୁ ଲାଗିଲେ— ) ଅନ୍ଦର ମହଲର ଏ ଜାକ୍‌ଜମକ୍ କିନ୍ତୁ—( ହଠାତ୍ ଅଉ କଣ କହିବାକୁ ଯାଇ ରହିଗଲେ— )

ବେଗମ୍—( କେଉଁ ନୂତନର ଆଶଙ୍କା କରି ସୋତ୍ସୁକେ ଓ ସଭୟେ ବାଦ୍‌ସାଙ୍କ ଆଡ଼େ ଚାହିଁଲେ— )

ସାଜାହାନ୍—ତୁମର ଅନ୍ଦରର ଜାକ୍‌ଜମକ୍‌କୁ ଛୁଇଁ ପାରିନାହିଁ—(କହି ଦେଇ ହସି ହସି ଅସ୍ଥିର ହେଲେ — )

ବେଗମ୍—କ'ଣ ଗୋଟାଏ ଇଙ୍ଗିତ ଲକ୍ଷ୍ୟ କଲେ ମଧ୍ୟ, ଆତ୍ମ-ପ୍ରସାଦ ବା ଆତ୍ମ-ପ୍ରଶଂସାର ଗୋଟାଏ ଜୁଆରରେ କିପରି ଭାସିଗଲେ— )

[ ବାଦ୍ୟ କାରିଣୀମାନେ ମଧ୍ୟ, ଖୁବ୍ ଝଙ୍କାର ଦେଇ ଠିକ୍ ସେତିକି ବେଳେ ବଜାଇବାକୁ ଲାଗିଲେ —ବେଗମଙ୍କ ଭାବେଙ୍ଗିତରୁ ନିତ୍ୟ ସଙ୍ଗିନୀମାନେ ତାଙ୍କର ମତ୍‌ଲବ୍‌ଟା ବୁଝି ପାରିବାକୁ ବୋଧହୁଏ— ]

ବେଗମ୍—( ଭାବି ଉତ୍‌ଫୁଲ୍ଲ ହେବାକୁ ଲାଗିଲେ )

ବାଦ୍‌ସା—, କିନ୍ତୁ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ—) ସେହି ଏକ ଟଣାସୁର—ଖେୟାଲ୍— ଦଶବର୍ଷ ଆଗେ ଯା'—ଦେଖ—( ଆଉ କଣ କହିବାକୁ ଯାଇ, ପୁଣି ସେହିପରି ଅଟକି ରହିଗଲେ ବେଗମଙ୍କୁ ଚାହିଁ— )

[ ବାଦ୍ୟ ପ୍ରାୟ ଥମି ଆସିଥିଲା, ବାଦ୍‌ସାଙ୍କ ଅଟକିବା ସଙ୍ଗେ ସଙ୍ଗେ ]

ବେଗମ୍—( ଏହିପରି ଉକ୍ତିରେ କି ଗୋଟାଏ ଆଶଙ୍କା ଓ ଉଦ୍‌ବେଗ ଅନୁଭବ କରି, ଯେହେ କମ୍ପୁଥିଲେ । )

ବାଦ୍‌ସା—ମୋ'ର ନିତ୍ୟ-ନୂତନ-ପ୍ରୟାସୀ ନର୍ତ୍ତକୀର
ନୂତନ ଛନ୍ଦୋପଯୋଗୀ ହେବ କି ନା,
ସେହିକଥା—ଏହି ଦେଖ ନା—ନର୍ତ୍ତକୀ !—

ବେଗମ୍—( କିଛି ଅନୁକୂଳ ପାଇଲେ ନାହିଁ ଏପରି ଉତ୍ତରରେ—ଭାବିବାକୁ ଅବସର ମଧ୍ୟ ପାଇଲେ ନାହିଁ—ତଥାପି ଆତ୍ମଗର୍ବର ତୃପ୍ତିରେଖା ଗୁଡ଼ିକ ସ୍ପଷ୍ଟ ଦେଖା ଦେଉଥିଲା, ଆଖିରେ, ମୁଖରେ । )

[ ଏଥର ନେପଥ୍ୟେ ଅନ୍ୟବାଦ୍ୟ ବାଜି-ଉଠିଲା—ଟିକିଏ ବିଦ୍ୟୁତ୍ ଚମକ୍ ଭଳି ସମସ୍ତଙ୍କ ଚକ୍ଷୁକୁ ଝଲସାଇ ଦେଇ କେଉଁ ଅପ୍‌ସରାଟିଏ ଇନ୍ଦ୍ରପୁରୀରୁ ତଳେ ଖସି ପଡ଼ିଲା କି ଆଉ ?—ନିମିଷକେ ନୃତ୍ୟ ସ୍ଥାନ ପ୍ରଦର୍ଶନ ପୂର୍ବକ ଘେରି, ଫେରି, ଫେରି ବସି—ନାନା ଅଙ୍ଗଭଙ୍ଗି ପୂର୍ବକ ବୋଗ୍‌ଦାଦୀ ନାଚ ନାଚିବାକୁ ଲାଗିଲା, କିନ୍ତୁ ମୁଖଟି ସେହିପରି ଆବୃତ ଥାଏ, ଗୋଟିଏ ଫିନ୍-ଫିନ୍ ବେନାମି ଓଢ଼ଣୀରେ—ତାହା ଦେଖି, ଦେଖି ନ ଥାଏ—ଫୁଟି ଫୁଟି ନଥାଏ—ନୃତ୍ୟର ଦ୍ରୁତତା ଯୋଗୁଁ, ଗୋଟାଏ ଉତ୍ଫୁଲ୍ଲ ଗୋଲାପୀ ରଙ୍ଗ ଯେମନ୍ତେ ବିଚ୍ଛୁରିତ ହୋଇ ଚତୁର୍ଦ୍ଦିଗ ଆଲୋକିତ କରି ଖେଳି ବୁଲୁଥାଏ—। ]

ସାଜାହାନ୍—( ବେଗମଙ୍କ ଆଡେ ସସ୍ମିତେ ଚାହିଁଲେ )

ବେଗମ୍—( ମନ ପ୍ରାଣ ତାଳ ନୃତ୍ୟ ଉପଭୋଗ କରୁଥିଲେ—କିନ୍ତୁ ସଙ୍ଗେ ସଙ୍ଗେ ବିସ୍ମୟ ଓ ଔତ୍ସୁକ୍ୟର ଅବଧି ନ ଥାଏ ପରା )

ସାଜାହାନ୍—କିପରି ?—( କାନ ପାଖକୁ ମୁହଁ ଲଗାଇ ପଚାରିଲେ )

ବେଗମ୍—ପୁରାତନ—ଅତି ପୁରାତନ—( କହି ପକାଇ, କିପରି ଅପ୍ରସ୍ତୁତ ବୋଧ କଲେ—ବାଦ୍‌ସାଙ୍କ ମୁହଁ, ହସିବାକୁ ଚେଷ୍ଟା କଲେ—ହସି ପାରିଲେ ନାହିଁ କି ମୁହଁ ଫେରିଲେ ନାହିଁ—ମୁହଁ ତଳକୁ ପୋତି ଦେଲେ, କେଉଁ ଦୂର ସୁଦୂର ମର୍ମର ଗଭୀରତମ ପ୍ରଦେଶରେ ଅନୁଭବ କରୁ କରୁ )

ସାଜାହାନ୍—ତେବେ ତୁମର ନର୍ତ୍ତକୀ ଏଥର—
( କା'କୁ କଣ ଇଙ୍ଗିତ କରି, ଉଠିବାକୁ ଯାଉଥିଲେ )

[ ଏହି ସମୟରେ ନର୍ତ୍ତକୀ ହଠାତ୍ ସୁର ବଦଳାଇ ବୋଗ୍‌ଦାଦର ଗୋଟିଏ ଅତି ସାଧାରଣ ନର୍ତ୍ତନ ନାଚିବାକୁ ଲାଗିଲା—ଅତି ଗାଉଁଲି ଗୀତଟିରୁ ପଦେ ମାତ୍ର ଗାଇ ]

—ଗୀତ—

ବସୋରା ଗୋଲାପ ମେରା—ବୋଗ୍‌ଦାଦୀ ଖେଜୁର୍—
ଅଙ୍ଗୁର୍, ସରାପ୍ ସେବ୍—ଦିଲ୍‌କା ଭର୍‌ପୁର୍
ଆସ୍‌ମାନ୍ କି ଗୃଦ୍
ଦୁନିଆ କି ଫାଦ୍
ବୁଲ୍ ବୁଲ୍ ଢଡ଼ତାଲଙ୍ଗା—କି ଆମକଗୁଲ୍ ॥

ବେଗମ୍—ବାଃ— ବାଃ—ଏ' ଯେ ମୋ'ର—ନିଜର—ରକ୍ତର—ପ୍ରାଣର—( ପ୍ରାୟ ଆସନ ଛାଡ଼ି ଠିଆ ହେଲେ—ନିଜେ ନାଚିବାକୁ, ଗାଇବାକୁ କି ଆଉ—)

ସାଜାହାନ୍—ଛି, ଛି, ଏହି ଅତି—ଅତି ପୁରାତନ—( କିନ୍ତୁ ମୁରୁକି ମୁରୁକି ହସୁଥିଲେ ପରା )

ବେଗମ୍—ଖୁବ୍, ଖୁବ୍ ନୂତନ—ନୂତନ—ଭାରି ସୁନ୍ଦର—ଭାରି ସୁନ୍ଦର—( ବୋଲି ବସି ପଡ଼ିଲେ—ବୋଧହୁଏ ବାଦ୍‌ସା କିଛି କହି ନ ଥିଲେ, ଉଠି ପଡ଼ିଥାନ୍ତେ, ନାଚିଥାନ୍ତେ କୌଣସି ବାଧା ବନ୍ଧ ନ ମାନି—)

[ ନୃତ୍ୟ ଗୀତ ସେହିପରି ଚାଲିଥାଏ—]

ବେଗମ୍—ମୁଁ ଯେ କେଉଁ ମୁକ୍ତ ଗଗନରେ !—କେଉଁ ମୁକ୍ତ ହାଓ୍ୱାରେ ! ସେହି ଏହି—ସୁନ୍ଦର, ଘଞ୍ଚ ଖେଜୁର କୁଞ୍ଜ—ପ୍ରଭାତୀ ହିଲ୍ଲୋଳରେ ମୋତେ ଶଙ୍କେତ କରି ଡାକୁଚି !—ଏହି—ଏହି—ସେହି ସୁନ୍ଦର—ସୁନ୍ଦର ପକ୍ଷୀ କୁଟୀର— ପ୍ରଭାତୀ ଆଲୋକରେ ମନ୍ଦ ମନ୍ଦ ହସି ଅଣ୍ଟି ଠାରୁଚି !—( ଏହିପରି ଆପଣା ମନେ କହୁ କହୁ କି ମନୋହର ଭାବାବେଶରେ ପ୍ରାୟ ଲୁପ୍ତ-ଜ୍ଞାନ ହୋଇଗଲେ )

ସାଜାହାନ—( ସହସା ନର୍ତ୍ତକୀକୁ ଚାଲି ଯିବାକୁ ଇଙ୍ଗିତ କଲେ, ନର୍ତ୍ତକୀ ଚାଲିଗଲା, କିନ୍ତୁ ହଠାତ୍ ନୁହେଁ —ବାଜା ମଧ୍ୟ ବନ୍ଦ ହେଲା—କିନ୍ତୁ ରେଶ୍‌ଟା ଲାଗି ରହିଥାଏ )

ବେଗମ୍—( ତଥାପି ସେହି ନର୍ତ୍ତନ ଯେମନ୍ତ ଦେଖୁଥିଲେ ଓ ବାଦ୍ୟ ଶୁଣୁଥିଲେ )

ସାଜାହାନ—( ବେଗମ୍ ଆଡ଼େ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ )

ବେଗମ୍—ଚାହିଁ ?—କାହିଁ ?—ଆଉ ଥରେ—(କିନ୍ତୁ କେଉଁ ମାଧୁରୀଟାଏ ଯେ ଉପଭୋଗ କରୁ ନ ଥିଲେ, ତା ନୁହେଁ )

ଆଉ ଥରେ—ଚାହିଁ ସେ ?—ନର୍ତ୍ତକୀ—ନର୍ତ୍ତକୀ—( କାପରି ଧ୍ୟାନ ଭଙ୍ଗ ହେବାରୁ, ଆଖି ମଳି ମଳି ଚାରିଆଡ଼େ ଚାହିଁ, ଏହାପରି ଚିତ୍କାର କରୁ କରୁ ସାଜାହାନ୍ ଆଡ଼େ ଚକାଇ ଦେଇ, ଦମିଗଲେ )

ସାଜାହାନ—ହାଃ—ହାଃ—ହାଃ—( ହସି ଉଠିଲେ )

ବେଗମ୍—( ବିସ୍ମୟରେ ଓ ସରମରେ ଯେପରି ଅଭିଭୂତା ହୋଇ ପଡ଼ିଲେ )

ସାଜାହାନ—ସେହି 'ସୁନ୍ଦର', 'ନୂତନ' ଆଉ ରହିବ କି—ପୁନରାବୃତ୍ତିରେ ?—

ବେଗମ୍—( ଚାହିଁବାକୁ ଚେଷ୍ଟା କରି ସୁଦ୍ଧା ଚାହିଁ ନ ପାରି ଆହୁରି ସରମରେ ଯେପରି ମରିଗଲେ )

ସାଜାହାନ—ବୁଝିଛ !—'ନୂତନ', 'ସୁନ୍ଦର' ଯେତେ ରହେ ନାହିଁ—ବିବାହର ଦଶବର୍ଷ ପରେ ମଧ୍ୟ ଏତେ ଉତ୍ସବ କାହିଁକି ? ବର୍ଷକୁ ବର୍ଷ ପୁଣି ବେଶୀ ଜାକ୍‌ଜମକରେ—ଏହି ଅଫ୍‌ସୋଷ, ନା ?—

ବେଗମ୍—ଅଫ୍‌ସୋଷ—ସେହି ସୁନ୍ଦର ମୁଖଟି ନର୍ତ୍ତକୀର ଦେଖି ପାରିଲି ନାହିଁ ବୋଲି—ସୁନ୍ଦର ନୃତ୍ୟ ପାଇଁ ତା'କୁ ବକ୍‌ସିସ୍—( କଥାରେ ହେଉ, ସମୟରେ ହେଉ, ଟୋଟାଏ କିଛି ଫାଁକ୍ ପାଇବାରୁ ବୋଧହୁଏ ଆପଣାକୁ ସଂଯତ କରି ନେଇ ଏହାପରି କହି ପାରିଲେ )

ସାଜାହାନ—ଦେଶ୍—ଦେଉନା—ନର୍ତ୍ତକୀର ମାଲିକ୍‌ତ ପାଇବାକୁ ହକ୍‌ଦାର—!

ବେଗମ୍—କିନ୍ତୁ ମୁଖଟି ?—( 'ମାଲିକ' କଥାଟାରେ ଗୋଟାଏ ଅଘାତ ଅନୁଭବ କରିବାର ସ୍ୱାଭାବିକ, କିନ୍ତୁ ମୁଖରେ କିଛି ସ୍ପଷ୍ଟ ଫୁଟି ଉଠିଲା ନାହିଁ, କାରଣ ହୁଏତ ବୟସର ଗାମ୍ଭୀର୍ଯ୍ୟ ହେତୁ କିମ୍ବା ଆପଣାର ଦମ୍ଭ ହେତୁ ହୋଇପାରେ—ବରଂ ହସି ହସି ସେହିପରି କହିଲେ )

ସାଜାହାନ—ମୋ'ଠାରୁ ବେଶୀ ସୁନ୍ଦର—ନା, ଖୁବ୍‌ସୁରତ୍ ?

ବେଗମ୍—( କା'ର ଖୁବ୍‌ସୁରତ୍ ଛାୟାମୂର୍ତ୍ତିଟା ହଠାତ୍ ଆଖି ସାମ୍‌ନାରେ ଦେଖି ସଙ୍କୁଚିତା ହୋଇଗଲେ ପରି—ମାତ୍ର ଆପଣାକୁ ସଯତ କରିନେଇ ହସି ହସି କ'ଣ କହିବାକୁ ଯାଉଥିଲେ କିନ୍ତୁ କଥା ଖୋଜି ପାଉ ନ ଥିଲେ )

ସାଜାହାନ—ନା, ନା, ଥାଉ ଥାଉ—ଆଉ କଥା କହିବାକୁ ଦେବି ନାହିଁ—ଏ' ହିନ୍ଦୁସ୍ଥାନ—ହିନ୍ଦୁସ୍ଥାନର ପ୍ରବଚନଟା ସାର୍ଥକ ହୋଇଛି—'ମୌନଂ ସମ୍ମତି ଲକ୍ଷଣଂ'—

ବେଗମ୍—ବେଶ୍‌ତ—( ଉଲ୍ଲସିତ ହୋଇ ଉଠିଲେ, ଅଭିମାନାରେ—ଖାଲି ଯେ ଆପଣାର ମୌନତାଟା ଏହିପରି ଭାବେ ସମାଧାନ ହୋଇଗଲା ଅନୁକୂଳଭାବେ, ସେତିକି ନୁହେଁ, ଉତ୍ତରଟା ମଧ୍ୟ ସୁଲଭ ହୋଇଗଲା, ବୋଲି ବୋଧହୁଏ—)

ସାଜାହାନ—ବକ୍‌ସିସ୍—

[ ସହଚରୀମାନେ ସେତେବେଳେ ସେଠାରେ ରହିବାଟା ଅନୁଚିତ ବୁଝିପାରି ଧୀରେ ଧୀରେ ଗୋଡ଼ ଟିପି ଟିପି ଚାଲି ଯାଇଥିଲେ ]

[ ନେପଥ୍ୟ ଶିଶୁଟିଏ—କୁଆଁ—କୁଆଁ —କାନ୍ଦି ଉଠିଲା—ସେହି ବକ୍‌ସିସ୍ ଦେବା ଛଳରେ ନା କଣ ? ]

ବେଗମ୍—( ବାଦ୍‌ସାଙ୍କ ମୁହଁକୁ ଚାହିଁ ମୁରୁକି ମୁରୁକି ହସିଲେ ଓ କ'ଣ ପଚାରିବାକୁ ଇଙ୍ଗିତ କଲେ, କେବଳ ଆଖିଦ୍ୱାରା )

ବାଦ୍‌ସା—ନା, ନା, ତୁମର—ତୁମର ସେହି—ସେହି—ମନ୍ମନୋଭତ—ଉଚ୍ଛଳିତ—ଦୁର୍ଲଭ—

—ନୂତନ—ନୂତନ ଅଧର ସୁଧା—(ବେଗମଙ୍କର ସେହି ରକ୍ତୋଚ୍ଛଳିତ ଗଣ୍ଡ ଓ ସ୍ନିଗ୍ଧାଧର ପାନ କରିବାକୁ ବ୍ୟାକୁଳ ହେଉଥିଲେ, କେଉଁ ଯୁଗଯୁଗାନ୍ତରର ଆକାଂକ୍ଷିତ ନୂତନର ସନ୍ଧାନ ପାଇ ଯେମନ୍ତ—ସଙ୍ଗେ ସଙ୍ଗେ କେଉଁ ଆବେଗଟରେ ହାତ ମଧ୍ୟ ଅତକୋରେ ଚୁପି ଧଇଲେ, ସତେକି ଶିଶୁର ସେହି କ୍ରନ୍ଦନରେ କେଉଁ କ୍ରନ୍ଦନର ସୂଚନା ପାଇ )

[ ଏହି ସମୟରେ ପରିଚାରିକା ଶିଶୁଟିକୁ କୋଡ଼ରେ ନେଇ ଆସି ବେଗମଙ୍କ କୋଳେ ଦେଲା ]

ବେଗମ୍—ବା-ଦ୍-ସା—( ବାଦ୍‌ସାଙ୍କ ଏପରି ଉକ୍ତିରେ ଆଶଙ୍କା ଯେ ଛଳଛଳ ହୋଇ ଉଠି ନ ଥିଲା, ତାହା ନୁହେଁ—କୋଉଠି ଏ କୋଉଠି ଏ ଲୁହ ମଧ୍ୟ ଗଡ଼ିଆସୁଥିଲା—ବର୍ତ୍ତମାନ ସେହି ଶିଶୁଟି ଦେଇ, ଯେମନ୍ତ ଭୁଲାଇବାକୁ ଓ ନିଜେ ଭୁଲିବାକୁ ଚେଷ୍ଟାକଲେ )

ବାଦ୍‌ସା—'ବାଦ୍‌ସା' !—'ବାଦ୍‌ସା' !—( କେଉଁ ଉତ୍ତେଜନାରେ କହି ଉଠିଲେ, ଯେମନ୍ତ ସେହି କେତେଯୁଗର ତୃଷା ନିଶ୍ୱାସଟାଏ ଯାହା—ଅବଜ୍ଞା-ଭରେ ଉପେକ୍ଷାକରିବାକୁ ଯିବେ କ'ଣ, କେଉଁ ପ୍ରତିଘାତରେ ଯେଉଁଠି, ଅତି ସାଗ୍ରହେ ଶିଶୁଟିକୁ କୋଳ କରିବାକୁ ଲାଗିଲେ—କି ଅଭୁତ ଭାବରେ !

ବେଗମ୍—ପ୍ରିୟତମ !—ପ୍ରିୟତମ !—କସୁର—( ଆତ୍ମସମର୍ପଣ କରିବାକୁ ଲାଗିଲେ, ଉମଲିବଧି କରି କେଉଁ ଆତ୍ମଦୁର୍ବଳତା ! )

ବାଦ୍‌ସା—'କସୁର୍'—( ପରିହାସ ଛଳରେ କହି-ଉଠିଲେ, ଆତ୍ମଗୋପନୋଦ୍ଦେଶ୍ୟରେ କେଜାଣି ବା ଅଭିମାନରେ କେଜାଣି )

ବେଗମ୍—ତେବେ—ତେବେ କ'ଣ ମୋ'ର ଭଲ ପାଇବାକୁ—( ସେହି 'ଦୁର୍ବଳତା'କୁ ଦମନ ନ କରି ପାରିବାରୁ ପରିହାସଟା ମର୍ମକୁ ଏତେ କୋରରେ ଆଘାତ କଲା ଯେ ମର୍ମକଥାଟା ଶୁଖିଲା ବାହାରି ପଡ଼ିଲା ଯେମନ୍ତ—)

ବାଦ୍‌ସା—ସନ୍ଦେହ ?—( ଯେଉଁ ଭାବରେ କହିଥାନ୍ତୁ ନା କାହିଁକି, କି ଗୋଟାଏ ଈର୍ଷାର ସ୍ପର୍ଶ ଯେ ଅନୁଭବ ନ କଲେ ତା' ନୁହେଁ । )

ପୁତ୍ରଗଣ—ମା !—ମା !—( ଏହି ସମୟରେ ଛଅଗୋଟି ରାଜପୁତ୍ର ଧାଇଁ ଆସି ମାକୁ ଘେରି ଗଲେ )

ବେଗମ୍—( ସେମାନଙ୍କୁ କୁଣ୍ଡେଇଧରି କେଉଁ ଦୃଢ଼ତା ବ୍ୟଞ୍ଜକ ଦୃଷ୍ଟିରେ ବାଦ୍‌ସାଙ୍କ ଆଡ଼େ ଚାହିଁବାକୁ ଲାଗିଲେ—)

ବାଦ୍‌ସା—ହଁ, ହଁ—ତଥାପି ସନ୍ଦେହ କରେ—( ଉଠି ଠିଆହେଲେ ସେହି ଈର୍ଷାର କଶାଘାତରେ—ନା, ନା, କିଛିଦୂର ବଡ଼ାଇତ ହୋଇଗଲେ ମଧ୍ୟ) ଚାରି ଚାରିଗୋଟି କୁମାର ସନ୍ତାନ—ପାଇସୁଦ୍ଧା—ନା, ନା—ସନ୍ତାନର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ସନ୍ଦେହର ମାତ୍ରାଟା ଯେ ମୋ'ର ବଢ଼ି ଚାଲିଛି—(କହି ଯାଉଥିଲେ ) ସୁନ୍ଦର—ସୁନ୍ଦରୀ—( ବୋଲି, କେଉଁ ପ୍ରତ୍ୟାଘାତରେ କି କ'ଣ ହଠାତ୍ ଧାଇଁଆସି ଚୁମ୍ବନ ଉପରେ ଚୁମ୍ବନ ଦେଇ ଦେଇ ମମ୍‌ତାଜଙ୍କୁ ବ୍ୟତିବ୍ୟସ୍ତ କରି ପକାଇ ମଣ୍ଡପ ଛାଡ଼ି ସରସର ସାମ୍‌ନାକୁ ଚାଲିଯିବାକୁ ଲାଗିଲେ—ପୁତ୍ରମାନଙ୍କୁ କୋଳେ, କାଖେ କରି—ଅଧିକ କୌତୁକସର ଭଙ୍ଗୀରେ ପୁତ୍ରଙ୍କୁ କଚ୍ଛ କଚ୍ଛ— )

ବେଗମ୍—( ଭୟ ବିରକ୍ତି ଓ ରହସ୍ୟ-ଭେଦାକ୍ଷମତା-ବଶତଃ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଥିଲେ )

[ ଘନ ଘନ ତୋପର ଧ୍ୱନି ଓ "ଜୟ ଜୟ ବାଦ୍‌ସା, ବେଗମଙ୍କର ଜୟ"—"ବାଦ୍‌ସା ବେଗମ୍ ଜିନ୍ଦାବାଦ୍" ପ୍ରଭୃତି କୋଳାହଳରେ ପ୍ରାସାଦର ବାହାରଟା କମ୍ପି ଉଠିଲା—କିଛିକ୍ଷଣ ପରେ ସମସ୍ତ ନିସ୍ତବ୍ଧ କଣାଗଲା ]

[ ବେଗମଙ୍କୁ ସେହିପରି ମୌନଭାବରେ ବସି
ରହିବାର ଦେଖି ସହଚରୀମାନେ ବାଦ୍ୟଯନ୍ତ୍ରରେ
ସୁର୍ ଦେଇ, ପୁଣି ବଜାଇବାକୁ ଲାଗିଲେ ]

ବେଗମ୍—'ସୁନ୍ଦର' ! 'ସୁନ୍ଦର' ! ନାଃ, ନାଃ—କାହିଁ
—କାହିଁ, ସେ ନର୍ତ୍ତକୀ ?—କେମିତିକା ଦେଖି-
ବାକୁ ?—କିଏ ଦେଖିଛି ?—କିଏ ଜାଣେ ?—
ମୋଠାରୁ କି—? ( ଅଇନାଆଡ଼େ ନଜରଟା
ପଡ଼ିବାରୁ ନିଜର ଛବି ଦେଖି ଚୌଙ୍କିଲେ,
ଆପଣାର ସୌନ୍ଦର୍ଯ୍ୟଟା ବଢ଼ାଇବା ଉଦ୍ଦେଶ୍ୟରେ
ପରି—ଆପଣାକେଶବିନ୍ୟାସରେ ଅଳ୍ପ ତ୍ରୁଟି
ଦୂର କରିବାକୁ ଯାଇ, ତ୍ରୁଟି ଉପରେ ତ୍ରୁଟି
ଯେମନ୍ତ ଆବିଷ୍କାର କରିବାକୁ ଲାଗିଲେ—
ଅବଶେଷରେ ସମସ୍ତ ତ୍ରୁଟିମୟ କହିଦେଲେ—
ବିରକ୍ତିରେ ମୁଖଟା ଆପଣାର ବଦଳାଇ ଓ କୁଞ୍ଚିତ
କରି, କି ଗୋଟାଏ ଘୃଣା ଓ ଲଜ୍ଜାରେ ସହଚରୀ
ମାନଙ୍କ ପାଖକୁ ଧାଇଁ ଆସିଲେ )

[ ସହଚରୀମାନେ ଭୟଭୟରେ ପରସ୍ପରକୁ
କେବଳ ଚୁଁ-ଚୁଁ ହେବାକୁ ଲାଗିଲେ ]

ବେଗମ୍—ବାଦ୍‌ସାଙ୍କର କ'ଣ ପ୍ରିୟ ନର୍ତ୍ତକୀ
ସେ ?—ଭାରି ପ୍ରିୟ ?—ଭାରି ପ୍ରିୟ ? ( କେହି
କିଛି ନ କହିବାରୁ ) ଯାଅ ଯାଅ—
ନିକଲେ—ନିକଲେ—କିଛି ଜାଣି ନାହିଁ
ତୁମେମାନେ—ବେଗମଙ୍କ ହୃଦୟର କୌଣ-
ସୁର୍ !—ନା, ନା 'ସୁନ୍ଦର' 'ସୁନ୍ଦର'
ବୋଲିଛ ପାଗଳ ହୋଇ, ବାଦ୍‌ସା—ନା—
ନା—'ପ୍ରିୟତମ'—ନା— ନା—'ପ୍ରାଣେଶ୍ୱର'—
କ'ଣ ବୋଲି ସମ୍ବୋଧନ କରିବି—( ହସି,
ପୁଣି ସେହି ମୁକୁର ନିକଟ ଧାଇଁ ଯାଇ,
ସେହି ବେଶ, ସେହି ରୂପ, ଦେଖି ମୁଗ୍ଧା
ନିଜେ ଯେମନ୍ତ ନିଜକୁ ପ୍ରଶଂସା କରୁଥିଲେ
ଓ ମୁଗ୍ଧ ହେଉଥିଲେ ଏଥର )—ମୋ'ର
ଗଣ୍ଡରେ ଛୁଇଁଲେ-ଛୁଇଁଲେ, ପଲେ ପଲେ,
ଚୁମ୍ବନ ପରେ ଚୁମ୍ବନ ଯେ ଲେପନ କରୁ
କରୁ—ସନ୍ତାନମାନଙ୍କ ମୋ'ର, ପ୍ରେମର
ଅବଦାନଗୁଡ଼ିକୁ, କୋଳେ-କାଖେ କରୁ—ନା,
ନା—ପ୍ରେମେ ପ୍ରେମେ ଛନ୍ଦ-ବାନ୍ଧ, ପ୍ରେମ ବନ୍ଧନକୁ
ପରସ୍ପରର ଦୃଢ଼ରୁ ଦୃଢ଼ତର,—( ନିଜ ଗଣ୍ଡସ୍ଥଳେ
ମୃଦୁ ମୃଦୁ କରସଞ୍ଚାଳନ କରୁଥିଲେ )
—ଟିକି—ଟିକି—ଭାଷାରେ ଯେ ବ୍ୟକ୍ତ
କରନ୍ତି—ମୁଁ ଶୁଣେ ମୋ'ର—ପିଲାମାନଙ୍କ
ସଉତରେ—( ହଠାତ୍ ଏପରି ଭାବ ପରିବର୍ତ୍ତ-
ନରେ କାହିଁର ଉଦ୍ଭ୍ରାନ୍ତତା ଅନୁଭବ କରୁ କରୁ
ଘରର ଏପାଖ ସେପାଖ ହେବାକୁ ଲାଗିଲେ )
'ତଥାପି ସନ୍ଦେହ'—'ଗୃହ ଗୃହେଟି କୁମାର
ସନ୍ତାନ ପାଇ ମୁଗ୍ଧା'—ନା—ନା—ଆହୁରି
'ସନ୍ତାନର ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ
ସନ୍ଦେହର ମାତ୍ରାଟା ଯେ'—ସନ୍ଦେହ —
ସନ୍ଦେହ ?—ଭଲ ପାଇବାକୁ ଯୋଗ ?—ସେ
ଅଗଣ୍ୟ କୀର୍ତ୍ତିଦାୟୀର—ଉଦାର, ସୁନ୍ଦର, ପ୍ରେମିକ,
ସାରା ହିନ୍ଦୁସ୍ଥାନର ଏକ ଛତ୍ରାଧିପତି ମୋଗଲ
ବାଦ୍‌ସା—ସାଜାହାନ ପ୍ରତି ?—ହଁ—ହଁ—
ହଁ—ବାଦ୍‌ସା !—ବାଦ୍‌ସା !!—ନିଶ୍ଚୟ ତୁମେ
ଭୁଲିଛ—କେଉଁ ସୁନ୍ଦରୀ—ମୋଠାରୁ ସୁନ୍ଦରୀ—
ତରୁଣୀ—ମନକୁ ତୁମର ଅଧିକାର କରିଛି—
(ରହିଯାଇ) ସେହି—ସେହି—ନର୍ତ୍ତକୀ ସେ !—
ମତିଆ—ମତିଆ—( ମତିଆ ଧାଇଁ ଆସିଲା—ସେ
ବେଗମଙ୍କ ପାର୍ଶ୍ୱସହଚରୀ )
ଖୁବ୍ ସୁନ୍ଦରୀ ସେ—ନା ?—ଖୁବ୍ ଯୁବତୀ—?

ମତିଆ—କିଏ, ବେଗମ ସାହେବ ?—( ବଲ୍ ବଲ୍
ହୋଇ ଚୁହିଁ ରହିଥାଏ )

ବେଗମ୍—ଜାଣୁନା ତୁ—କିଏ ସେ ? ବେଶ୍,
ସନ୍ଧାନ ନେଇ ପାରିବୁ—? ଦେଖି ଆସି
ପାରିବୁ ?—ନା, ନା, ଡାକି ଆଣିବାକୁ ହେବ—
ମୁଁ ନିଜେ ଦେଖିବି—ଖୁବ୍ ନିରେଖି-ନାରେଖି—
ଏହା ଅଇନା ସାମନାରେ ଦୁଇଜଣ ଠିଆହେବା
—ପାଖାପାଖି—ମୁହଁକୁ ମୁହଁ ମିଳାଇ—ଆଖିକୁ
ଆଖି—ପଟାକୁ ପଟା—

ମଉଅ—( କିଛି ସମଜି ନ ପାରି ଖାଲି ବୋକାପରି ଚୁହିଁ ରହିଥାଏ )

ବେଗମ୍—ଯା, ଯା—ତୁ ଜଲଦି ଯା—ଆଜି—ଏହିକ୍ଷଣି—

ମଉଅ—( କ'ଣ ପଚାରିବାକୁ ଯାଉଥିଲା )

ବେଗମ୍—ବକ୍‌ସିସ୍ ?—ଖୁବ୍—ଖୁବ୍ ପାଇବୁ—ଯା—ଯା—ଆଉ ଡେରି—( ଏକ ପ୍ରକାର ଠେଲି ଦେଲେ )

ମଉଅ—( ତଥାପି ଠିଆ ହୋଇଥିଲା )

ବେଗମ୍—ବେଟ୍, ବେଶ୍, ନେ ନା ଆଗନ୍ତୁର୍—ପଡ଼େ ଯଦି—' ନିଜର ହାରଟା ହାଣି ଛିଣ୍ଡାଇ ଆଣି, ଫୋପାଡ଼ି ଦେଲେ ମଉଅ ପାଖକୁ )

ମଉଅ—ବେଗମ୍ ସାହେବ—ବେଗ—( ଛିନ୍ନ ହାରଟା ଗୋଟାଇବାକୁ ଲାଗିଗଲା )

ବେଗମ୍—ପୁଣି, ଉଜର ?—ଅପଟ୍ ? ( ଇତସ୍ତତଃ ହୋଇ କଣ ଗୋଟାଏ ଇସାରା କଲେ, ମୁଦୁ ମୁଦୁ ଛାଲ ମାରି—ହଠାତ୍ ଜଣେ ଗ୍ରୀଷ୍ମଣାକୃତ ଖୋକା ଦେଖାଗଲା—'ଅଗ୍ରତ୍ନ-ପ୍ରଦୀପ'ର ଦୈତ୍ୟ-ଭଳି )

ଖୋକା—( 'ଧ' କହିବା ମାତ୍ରେ, କିମ୍ବା କେଉଁ ସଙ୍କେତ କରିବା ମାତ୍ରେ, ଡାହାଳ କୁକ୍‌କୁରପରି ଶିକାରଟାକୁ ଝୁଣି ଛାଡ଼ିଦେବ ପରି ଏହି ଭାବେ ଠିଆ ହୋଇ ହୁକୁମର ଅପେକ୍ଷା କରିବାକୁ ଲାଗିଲା—)

ମଉଅ—( ହାରଟା ଉଠାଇ ନେଇ କ'ଣ ପଚାରିବାକୁ ଧାଇଁ ଯାଉନ୍ତେ, ଖୋକାଟାକୁ, ଆଉ ତା'ର ମୁଖ ଭାବ ସଙ୍ଗେ ସଙ୍ଗେ ବେଗମଙ୍କ ଗୃହାଣୀ, ଦେଖି, ଶିହରି ଉଠିଲା )

ବେଗମ୍—ହାଃ—ହାଃ—ବେଗମ୍‌ଙ୍କ ହୁକୁମ୍—। (ସ୍ଥିର ଦୃଷ୍ଟିରେ ଚୁହିଁ ରହିଲେ )

ମଉଅ—( ଆଉ କଥା ନାହିଁ, ଯିବାକୁ ବାଧ୍ୟ ହେଲା—ହୁକୁମ୍ ତାମିଲ୍ କରିବାକୁ—କିନ୍ତୁ କା'ର ସନ୍ଧାନ କରିବାକୁ ହୁକୁମ୍, ବଦ୍‌ନ୍‌ସିବ୍‌ଟା ଜାଣିଲା ନାହିଁ—।

ଖୋକା—( ମଉଅ ଚାଲିଗଲା—ତଥାପି ସେ ଛିଡ଼ା ହୋଇଥାଏ )

ବେଗମ୍—ନିକ୍‌ଲୋ—ଭାଗୋ—କୁତ୍ତା—ଗଧା—ଖଅର—( ମଉଅ ଆଡ଼େ ଉତ୍‌ଫୁଲ୍ଲ ନୟନରେ ଚୁହିଁଥିଲେ—ଖୋକା ଆଡେ ନଜର ପଡ଼ିବାରୁ ଏମିତି କହି ଉଠିଲେ—ଏବଂ ଗୋଡ଼ାଇ ଗଲେ ପରସ୍ତେ )

ଖୋକା—( ଟଙ୍କେଇଁ ବାଟେ କେମିତି ଦୌଡ଼ି ପଳାଇବ ବୋଲି, ଅପ୍ପ କରି ପାରିଲା ନାହିଁ—)

ବେଗମ—( ହଠାତ୍ ସେହି ବିରକ୍ତ ପୂର୍ଣ୍ଣ ଚେହେରାଟା ନିଜର, ଗୋଟାଏ ସାମ୍‌ନା-ଅଇନାରେ ପ୍ରତିଫଳିତ ଦେଖିଲା ମାତ୍ରେ, ଦୌଡ଼ିଗଲେ—୩୦ ପ୍ରସାରଣୀ କରି ହସିଲେ,—ମନ ମାନିଲା ନାହିଁ—ହସ କମାଇଲେ,—ତଥାପି ମାନିଲା ନାହିଁ—ମୁହଁଟା ଗମ୍ଭୀର କରି ଦେଖିଲେ,—ପସନ୍ଦ ହେଲାନାହିଁ—ଅନେକ ଏହିଭଳି ସାଧ ସାଧନା ପରେ ଯେତେବେଳେ, 'ହେଉଁ ଗଲୁ ଚତ୍ତୁ ମାଙ୍କଡ଼' ସାର ହେଲା ପରି—କିନ୍ତୁ ଗୋଟାଏ ଦମାକ୍‌ରେ କହିଲେ—) ମୋଁଠୁଁ ସୁନ୍ଦରୀ ? ମୁଁ ଭଲପାଏ ନାହିଁ ? ବାଦ୍‌ସାହ୍—? ହାଃ—ହାଃ—ହାଃ—( ଏହିପରି ହସି ଉଠିଲେ, ଜୋର କରି ଗୋଟାଏ ବର୍ଦ୍ଧମାନ ଉଚ୍ଛ୍ୱାସର ବେଗକୁ ଦମନ କରିବାକୁ ଯାଇ, ନ ପାରି—ସ୍ୱଭାବ ନିଷ୍ପ୍ରଭ ହୋଇ ପଡ଼ିଲେ, ହସୁ ହସୁ ସେହି ବେପରୋଚ୍ଛ୍ୱାସର ଛାଡ଼ନାରେ ଏକାବେଳକେ ଯବନିକାର ପରପାରେ କି ଆଉ ? )

[ ପହରୀଗୁଡ଼ିକ ଧାଇଁ ଅସିଲେ, କିନ୍ତୁ ଭୟ-ଭୟରେ ଅତି ଧୀରେ ଧୀରେ ପଛଆଡ଼େ ଅନୁସରଣ କଲେ ]

ନେପଥ୍ୟେ ଶୁଣାଗଲା—ଅତି ଦୂରେ—କ୍ଷୀଣସ୍ୱରେ—ବଂଶୀର ସ୍ୱନ—ଭଙ୍ଗା ଭଙ୍ଗା—"ଦିଲ୍‌ବା ରେସ୍‌କ ପିଅରି ମୋହି—ଅନ୍ଦରମେ

ବନାଯ୍ୟା ମହଲ୍ଲ ଭେଉର”—ଏହି ପଦକ ମାତ୍ର— ]

[ ସ୍ୱପ୍ନୋତ୍‌ଥିତବତ୍ ବେଗମ୍‌ପର୍ଦ୍ଦା ଠେଲି ଧାଇଁଆସିଲେ]

ବେଗମ୍—କାହିଁ ? କାହିଁ ? କ'ଣ ଗାଉଥିଲ ? (ମୁଣ୍ଡର ବେଣୀଟା ଶିଥିଳ ହୋଇ ଯାଇଥାଏ, କାଁଚଲିଟା ଅଧେ ଖସି ଝୁଲୁଥାଏ, ଆଖିର ଭାବରେ କି ଯେ ଉଦ୍‌ବେଗ, ସତେକି ଅପ୍ରତ୍ୟାଶିତ, ପ୍ରାଣପ୍ରିୟତମ ଆଜି ଅତିଥିରୂପେ ଦ୍ୱାରେ !—ନା, ନା, ଅନ୍ତରର ଅର୍ଗଳଟା ଖୋଲି ଭିତରେ ହସି ହସି ପଶି ଆସୁଚି ଆପେ ଆପେ—ଓଃ, ଅଦ୍ୟାପି ଯେ ଆଖିର ବାହାରେ—ଚୁମ୍ବନର ବନ୍ଧୁହୁବେ !)

[ ଆଜି ଜଣେ ପରଗୃହିକା ପ୍ରବେଶ କଲା—ମତିଆ ନୁହେଁ—ସେ ସେଠି ଥାଇ ସୁଦ୍ଧା ଭୟ ଭୟରେ ଅସୁ ନ ଥାଏ ]

ପରଗୃହିକ—କେହି ତ ନାହିଁ—( ଗୃହଆଡ଼େ ଖୋଜି ଖୋଜି ଦେଖିବାକୁ ଲାଗିଲା)

ବେଗମ୍—ହଁ—ହଁ—ମୁଁ ଶୁଣିଚି—ଠିକ୍ ସେହି ଗୀତ—ସେହି ରାଗିଣୀ—ସେହି ସ୍ୱର—ଅବିକଳ ସେହି କଣ୍ଠ—ଏହି—ଏହି—ପୁଣି—( ଯେମନ୍ତ ପୁଣି କ'ଣ ଶୁଣିବାକୁ ଲାଗିଲେ )

ପରଗୃହିକା—ବେଗମ୍—(ଭୟରେ ଉଚ୍ଚାରଣ କରି ଉଠିଲା ଏହିପରି )

ବେଗମ୍—ଚୁପ୍, ଚୁପ୍—ଶୁଣ୍, ଶୁଣ୍—(ପ୍ରକୃତରେ କେଉଁଠି କିଛି ବାଜି ନ ଥିଲା—କିନ୍ତୁ ଅଖିବୁଜି ମୁଗ୍‌ଧ ହୋଇ ଶୁଣୁଥିଲେ )

[ ପରଗୃହିକାଟା ଅଜ୍ଞାତସାରେ ଧୀରେ ଧୀରେ ଅତ୍ମଗୋପନ କଲା—କାଳେ, ମତିଆପରି ଯଦି ତାକୁ ଧରିବାରେ ପଡ଼ିବାକୁ ହୁଏ, ଏହି ଡରରେ ବୋଧହୁଏ ]

ବେଗମ୍—କାହିଁ ? କାହିଁ ?—ଧର, ଧର—ସେହି, ସେହି—ଲମ୍ପଟ, ଲମ୍ପଟୀ—ଶଠ, ଦସ୍ୟୁ—( କାହାକୁ ଲକ୍ଷ୍ୟ କରି ଯେ ଧାଇଁଗଲେ )

[ ମତିଆ ଅଗତ୍ୟା ଧାଇଁ ଅସିଲା ବାଧ ହୋଇ, କେହି ପରଗୃହିକା ନ ଅସିବାରୁ ଠିକ୍ ସାମ୍‌ନାକୁ ]

ମତିଆ—ବେଗମ୍—( କେବଳ କୁର୍ଣ୍ଣିସ୍ ଉପରେ କୁର୍ଣ୍ଣିସ୍ କରିବାକୁ ଲାଗିଲା )

ବେଗମ୍—ମୋତି—ମୋତି—( ଅତି ସାଗ୍ରହେ ଅଲିଙ୍ଗନ କଲେ )

ମତିଆ—ବେ-ଗ-ମ୍—( କି ଗୋଟାଏ ଭୂମିକମ୍ପର ସ୍ପର୍ଶ ଯେପରି ଅନୁଭବ କରୁଥିଲା, ସେହି ଆଲିଙ୍ଗନରେ )

ବେଗମ୍—କହ, କହତ, ମୋତି—ଆଉଥରେ ଥରେ—ଗୋଟି ଗୋଟି କରି—ତୋ'ର ହୃଦୟସ୍ଥାନର—ସେହି—ଶ୍ୟାମ-ଦଗାଦାରର କଥା—ଭଲ କଥା—ଭାରି ମିଠା ଲଗେ—ଅହା କେମିତକା ମୋହନ-ମୁରଲୀ ବଜାଇ, ରାଇ କିଶୋରୀକୁ ବାମେ ଯେନି—ଏହି—ଯମୁନାର ପୁଳିନେ ପୁଳିନେ—କୁଞ୍ଜେ କୁଞ୍ଜେ ସ୍ୱପନେ—

ମତିଆ—ବେଗମ୍ ସାହେବା—ବେଗ—( ଏ'ପାଖ ସେ ପାଖ ଅନେଇବାକୁ ଲାଗିଲା ! )

ବେଗମ୍—କାହାକୁ ଡରୁଚୁ ମୋତି ?—ଅଜି ମୋ'ର ଦିଲ୍ ଯେ, ବୁଲୁ ଭାଙ୍ଗି—ପଞ୍ଜରା ଡାଙ୍ଗି, ଉଡ଼ୁକି ପଡ଼ୁଚି !—ଖାଲି ବାଦ୍‌ସା କାହିଁକି—ସାରା ଦୁନିଆକୁ ଗାଇ ଗାଇ ଶୁଣାଇବା ପରି—“ଅହା ! ମୁଁ ସେହି କଳଙ୍କିନୀ ରାଈ କିଶୋରୀ ହୁଅନ୍ତି କି ?” ( ପୁଣି ବଂଶୀର ଧ୍ୱନି ଶୁଣାଗଲା ଅସ୍ପଷ୍ଟ ଭାବେ ) —ଏହି ଶୁଣ୍—ଶୁଣ୍—କେଡ଼େ ଆତୁରେ ଡାକୁଚି—କେଡ଼େ ବିକଳରେ—ଆଉ ଘରେ ଠାଇଁ ଦେଲା ନାହିଁ, ମନ୍ଦଭାଗିନୀ—( ଉନ୍ମାଦିନୀ ଭଳି ସତେ ସତେ ଅନ୍ଦର ଛାଡ଼ି ବାହାରି ଯାଉଥିଲେ କି ଅଉ ? )

ମତିଆ—କିଏ ? କିଏ ?—କାହିଁ ?—କାହିଁ ?—( ବାଧା ଦେବାକୁ ଧାଇଁଗଲା )

ବେଗମ୍—ନା, ନା, ନିକଟେ—ଏହିତ ସେହି କାଳିଆ-ଯମୁନା—ସେହି କାଳିଆ-ପାଣି—ସେହି କାଳିଆ-କୁଞ୍ଜ—ସେହି କାଳିଆ-ମୋହନ—ମୋହନ ବଇଁଶୀରେ ଖାଲି—“ରାଧା-ରାଧା” ବୋଲି ଡାକୁଚି—ଆଜି—

ଆଜି ମୁଁ ମାନ, ଅଭିମାନ କରି—(ବାଧା ଏଡ଼ାଇ ଚାଲି ଯାଉଥିଲେ—ଯେମନ୍ତ କି ସେହି ବଂଶୀର ଆକର୍ଷଣରେ )

[ ଏହି ସମୟରେ ବାଦ୍‌ସାଙ୍କ ଆଗମନ ସୂଚକ ଘନ ଘନ ତୋପର ଧ୍ୱନି ହେବାକୁ ଲାଗିଲା— ଏବଂ ବିବିଧ ବାଦ୍ୟ ଧ୍ୱନିର ଗୋଳମାଳରେ ବଂଶୀର ତାନଟା ଏକାବେଳକେ ଚାପା ପଡ଼ିଗଲା ]

ବେଗମ୍—ସିଏ—ସିଏ—( ବୋଲି, ମଞ୍ଚଅର କୋଳରେ ଭାଙ୍ଗି ପଡ଼ିଲେ, ଗୋଟାଏ ହୃତଘାତରେ, ଉଚ୍ଛ୍ୱାସର ଆବେଗଟାକୁ ସମ୍ଭାଳିବାକୁ ଯାଇ, ଏହି ଧ୍ୱନିରେ ଆତ୍ମଜ୍ଞାନ ଲାଭ କରିବାରୁ—ମାନ ବାନ୍ଧକୁ ବନ୍ଦ କରି ଜଳ ଝରିଲା ଭଳି, ଆଖିରୁ ଝରି ଝରି ଲୁହ ଗଡ଼ି ଯାଉଥିବାରୁ, ଆପଣାକୁ ସଂଯତ କରି ଧୀରେ ଧୀରେ ଉଠିବାକୁ କ୍ଷମ ହେଲେ— )

[ ମହା ସମାରୋହରେ କୁମାରଗଣ ସହ ବାଦ୍‌ସା ପ୍ରବେଶ କଲେ—ସାଙ୍ଗେ ସାଙ୍ଗେ ବାହାରର ବାଦ୍ୟ ଓ ଗୋଳମାଳ ବନ୍ଦ ହୋଇଗଲା ]

ପୁତ୍ରଗଣ—ମା—ମା—( ବୋଲି, ମା'କୁ ଅସ୍ତବ୍ୟସ୍ତ କରି ଦେଲେ—କ'ଣ ଗୋଟାଏ ଅଳି କରୁ କରୁ—)

ବେଗମ୍—କ'ଣ—କ'ଣରେ, ବାପ—( ଚୁମ୍ବନ ଉପରେ ଚୁମ୍ବନ ଦେଇ ଦେଇ ସେମାନଙ୍କୁ ଅସ୍ତବ୍ୟସ୍ତ କରିବାକୁ ଲାଗିଲେ—ବୋଧ ହୁଏ ହୃଦୟର ସ୍ରୋତଟାକୁ ଠିକ୍ ବିପରୀତ ଦିଗେ ଚାଳିତ କରିବାର ପ୍ରୟାସରେ )—ଯାଅ, ଯାଅ, ବାହାରେ ଖେଳିବ, ଯାଅ—( ବୋଧ ହୁଏ ଏ'ଟା ପୁତ୍ରଗଣଙ୍କୁ ଲକ୍ଷ୍ୟକରି ଅନ୍ୟୋକ୍ତି ମାତ୍ର— ଯେ ହେତୁ ସ୍ରୋତଟା ନ ଫେରିଲେ ମଧ୍ୟ, ନିରୋଧ କରି ପାରିଥିଲେ ଯେ— ଏଥିରେ ସନ୍ଦେହ ନାହିଁ—)

ସାଜାହାନ—( ଅଦୂରେ ଅତି ସୂକ୍ଷ୍ମ ଦୃଷ୍ଟିରେ ବେଗମ୍‌ଙ୍କ କ୍ରିୟାକଳାପ ପର୍ଯ୍ୟବେକ୍ଷଣ କରୁଥିଲେ )

ପୁତ୍ରଗଣ—ଅମକୁ ଦେଇ ନାହିଁ, ମା—

ବେଗମ୍— କ'ଣ ଦେଇ ନାହିଁ ?—

ସାଜାହାନ— ଗୋଟାଏ ମାଟିର ଘଡ଼ି --

ବେଗମ୍—ମାଟିର ଘଡ଼ିଟାଏ ?—ହାଃ—ହାଃ—
( ଗୋଟାଏ କେଉଁ ଦଂଶନ ଅନୁଭବ କରିବାରୁ କି କଣ, ଟିକିଏ ରହିଯାଇ, ବେଖାତିର ଭାବେ ହସି ଉଠିଲେ ସେ )

ସାଜାହାନ—କିନ୍ତୁ ଭାରି ଆଦର କରି ବୋଗ୍‌ଦାଦର—

ବେଗମ୍—'ବୋଗ୍‌ଦାଦ୍'—( ଚିତ୍କାର କରି ଉଠିଲେ )

ସାଜାହାନ—ହଁ, ବୋଗ୍‌ଦାଦର ଜଣେ ଫକୀର—

ବେଗମ୍—'ଫକୀର'—( କାପରି ଉଦ୍‌ବିଗ୍ନ ହୋଇ ଶୁଣୁଥିଲେ, କିନ୍ତୁ 'ଫକୀର' ଶୁଣି ମୃଦୁ ମୃଦୁ ହସିଲେ ସେହି ହେଟି ଆବୃତ୍ତି କରି—ମାତ୍ର ଅନ୍ତରାଳରେ ଗୋଟାଏ ଘନ କୃଷ୍ଣ-ମେଘ ଅନ୍ତର୍ଦେଶକୁ ଅଚ୍ଛନ୍ନ କରି ଦେଉଥାଏ—)

ସାଜାହାନ୍—ରାଜ-ଦମ୍ପତିଙ୍କୁ ଉପହାର ଦେଇଚନ୍ତି— ( ମୃଦୁ ମୃଦୁ ହସିଲେ )

ବେଗମ୍—'ଉପହାର'— । ( ହଠାତ୍ ସେହି ଅନ୍ଧକାରରେ ତା'ର ମୂର୍ତ୍ତିଟା ବିଦ୍ୟୁତ୍ ଚମକିଲା ଦେଖି, ଚମକି ଉଠିଲେ ପରି )

ପୁତ୍ରଗଣ—ମା, ମା—( ମା'ର ମୁଖ ଆଡ଼େ ସେହି ଘଡ଼ି ପାଇଁ ବ୍ୟାକୁଳ ଦୃଷ୍ଟିରେ ଚାହିଁଥିଲେ— ହଠାତ୍ ଭାବ ପରିବର୍ତ୍ତନ ଦେଖି ଡରିଗଲେ କି ଅବା ? )

ବେଗମ୍—ବେଶ୍ ତ, ପିଲାମାନେଇ ଭୋଗ କରନ୍ତୁ ନା ?—( ପିଲାମାନଙ୍କୁ ଲକ୍ଷ୍ୟ କରି କୁଣ୍ଢାଇ ପକାଇ ଚୁମା ଖାଇ ଖାଇ, ବାଦ୍‌ସାଙ୍କ ଆଡ଼େ ଚାହିଁ ହସି ହସି କହିଲେ—କିନ୍ତୁ ଅନ୍ତରେ ଅନ୍ତରେ ଯେ କି ବିପ୍ଳବ ଚାଲିଥାଏ—ଯେପରି ଖଣ୍ଡପ୍ରଳୟ—ଆଖିରୁ ବେଶ୍ ଜଣା ପଡ଼ୁଥିଲା )

ସାଜାହାନ—ତୁମର ବୋଧହୁଏ ଭାରି କଷ୍ଟ—

ବେଗମ —କଷ୍ଟ ?—କଷ୍ଟ ?—କାହିଁ ?— କାହିଁ ?—
( ଅତ୍ୟଧିକ ଭାବେ ହସିବାକୁ ଚେଷ୍ଟା କଲେ—

କିନ୍ତୁ ତା'ର ଓଲଟା ଫଳ ଫଳିଲା—ଅଜ୍ଞାତସାରେ ଲୁହର ମୁକ୍ତାଧାର ଗଳିଲା—ମୁହଁ ବୁଲାଇ ନେଇ ପୋଛିବାକୁ ଲାଗିଲେ, ଅତି ଲଜ୍ଜାରେ, କିନ୍ତୁ ପୋଛି ବନ୍ଦ କରି ପାରିଲେ ନାହିଁ ପରି )

ଯୁବରାଣୀ—ମା—ମା—( ଦୁଷ୍ଟାମି କରି ଯେମନ୍ତ ସେହି ଭାବଟା ସବୁ ସମୟେ ଦୂରେଇ କରି ଦେଲେ—ଏହି 'ମା' 'ମା' ଡାକରେ ଓ ମା'ଙ୍କୁ ଟଣାଟଣି କରିବାରେ; ମୁହଁ ଦେଖାଇବା ପାଇଁ )

ସାଜାହାନ—ମୋତି !—ନେଇ ଯା ପିଲାମାନଙ୍କୁ—ଆଜି 'ଘଡ଼ି'ଟା ଆଣି ସେମାନଙ୍କୁ ଖେଳିବାକୁ ଦେ—ହଁ, ସାବଧାନ, ଯେମିତିକା ନ ଭାଙ୍ଗନ୍ତି—( ଗୋଟାଏ ଗୁପ୍ତ ନିଶ୍ୱାସ ଯେ ଅନ୍ତର ନ ଲୁଚିଲେ ତା' ନୁହେଁ )

ଯୁବରାଣୀ—ବାଃ—ବାଃ—( ନାଚିଗଲେ ଆନନ୍ଦରେ )

[ ମତିଆ ବିଲିପିଲା ପୁଅମାନଙ୍କୁ ନେଇ ଚାଲିଗଲା—ଅନ୍ତର, ଯେ ଯେଉଁଠି ଥିଲେ ମଧ୍ୟ ଚାଲିଗଲେ ]

ସାଜାହାନ—ନାଁ, ମୁକ୍ତା-ସୁନା ରୂପା, ନେଇ ଖେଳୁଛନ୍ତି କି, ନା—ମାଟିର ଘଡ଼ିଟା ସାମାନ୍ୟ ହେଲେବି ସେମାନଙ୍କୁ ଦୁର୍ଲ୍ଲଭ ପରି—( ଏହିପରି କହି ଭୁଲାଇବାକୁ ଚେଷ୍ଟା କଲେ ଯେମନ୍ତ )

ବେଗମ୍—'ଦୁର୍ଲ୍ଲଭ' ? 'ମାଟିର ଘଡ଼ି' ? 'ବୋଗଦାଦର' ? 'ଫକୀର' ? ନା—ଫକୀର ବେଶୀ ? 'ଉପହାର' ଦେଇଛି ? କିଏ କହି ଦେଇଛି ? କାହିଁ ସେ ? କିପରି ଦେଖିବାକୁ ? ହାତରେ ବଇଁଶୀଟାଏ ?—( ସେହି ପ୍ଲାବନରେ ହୃଦୟଟା ଏତେ ଭଡ଼ି ହୋଇ ଯାଇଥିଲା ଯେ, ଏକାବେଳକେ ଭୁଲି ଯାଇଥିଲେ, ଏପରି ପ୍ରଶ୍ନ ଆପଣାର ସ୍ୱାମୀଙ୍କୁ ସେ କରୁଛନ୍ତି )

ସାଜାହାନ—ଭୁଲିଯାଅ ନା—ଭୁଲିଯାଅ ନା, ପ୍ରିୟେ !—ଆଜି ଯେ ଆମର ବିବାହର ବାର୍ଷିକ ଦିନ—( କି ଯେ କାତର ଭାବେ କହି ଉଠିଲେ )

ବେଗମ୍—ପ୍ରା-ଣେ—ନା, ନା—ପ୍ର-ଭୋ—ନା, ନା—( ବୋଲି କୁଣ୍ଢାଇବାକୁ ଧାଇଁ ଆସି, ରହି ଗଲେ ଓ ଖାଲି ଅନାଇବାକୁ ଲାଗିଲେ )

ସାଜାହାନ—ମୋତେ କ୍ଷମା କର, ପ୍ରେୟସି—ଆଜି—ଅତୀତ କଥା ଜଗାଇ, ନାନା ଅପ୍ରିୟ କଥା କହି, ତୁମ ମନରେ ବହୁତ କଷ୍ଟ ଦେଇଛି—ତା'ର ପ୍ରତିଘାତଟା କଣାଦାଗ ପରି ବୋଧ ହେବାରୁ, ଅଧଃପୂରେ ସବୁ ଛାଡ଼ି ଚାଲି ଆସିଲି ସିନା—ମୋତେ କ୍ଷମା କର—ସାନ୍ତ୍ୱନା ଦିଅ, ପ୍ରିୟତମେ—( ହାତଟା ଧରି ପକାଇଲେ—କି ମିନତି ପୂର୍ଣ୍ଣ ଦୃଷ୍ଟିରେ ଚାହିଁ )

ବେଗମ୍—ମୁଁ ଯେ ତୁମର ଦାସୀଟାଏ—( ବୋଲି ନତଜାନୁ ହେଲେ )

ସାଜାହାନ—( ହାତକୁ ଘୁଞ୍ଚାଇଲେ ଉପେକ୍ଷା ଭରେ ଯେମନ୍ତ ଆଉ ଅନର୍ଗଳ କହି ଯିବାକୁ ଲାଗିଲେ, କେଉଁ ଉଚ୍ଛ୍ୱାସରେ, କିନ୍ତୁ ସ୍ନେହ ଜଡ଼ିତ ଭାବ ଓ କଣ୍ଠରେ ) ଏହିପରି—ଏହିପରି ଆଚରଣରେ କେବଳ, ମୋ'ର ହୃଦୟକୁ ଦିନୁ ଦିନ ବିଦ୍ରୋହୀ କରି ତୋଳିଛ ସିନା, ପ୍ରେୟସି ! କଥା କଥାକରେ ସେହି 'ପ୍ରାଣେଶ୍ୱର', 'ପ୍ରଭୋ', 'ଦାସୀ', 'ବାଦ୍‌ସା', 'କସୁର୍', ଶହେଗୁଣ୍ଡାଙ୍କ ରୂପବ୍ୟବସାୟୀ ବଳି, 'ପ୍ରଣୟ'ର ଧର୍ମରୁ ମୋତେ ବଞ୍ଚିତ କରିଛ ସିନା !—ମୁଁ ମଧ୍ୟ ପ୍ରଣୟୀ ହୋଇ, ତୁମର ମନୋରଞ୍ଜନ ପାଇଁ—ତୁମକୁ ବ୍ୟଥା ଦେବା ଭୟରେ କେବଳ—'ସୁନ୍ଦରି' 'ସୁନ୍ଦରି' ବୋଲି—ସମ୍ବୋଧନ କରି, ହେୟ କାମୁକ ଭଳି ଚୁମ୍ବନ କରି 'ଭୋକ ଦାନ୍ତରେ ଚାଟି ଖାଇ କାମୁଡ଼ିଛି' ସିନା !—ସେହି ଯେ ସେତେବେଳେ ଉଠିଗଲି—କେତେ କଷ୍ଟରେ—କେତେ ଦୁଃଖରେ—ଯଦି, ଯଦି ବୁଝି ଆନ୍ତ ଥରେ—ବୁଝନ୍ତ ଏବେ—

ବେଗମ୍—ପ୍ରେମମୟ—ପ୍ରେମମୟ—

( ଆଲିଙ୍ଗନ କରିବାକୁ ଧାଇଁ ଗଲେ )

ସାଜାହାନ—ନା, ନା—ଏ ଆଲିଙ୍ଗନ ପ୍ରେମର ଆଲିଙ୍ଗନ ନୁହେଁ—

ବେଗମ୍—ସନ୍ଦେହ ?—ସନ୍ଦେହ ?—ତଥାପି—

ସାଜାହାନ—ହଁ, ହଁ,—ଉଠାପି କରେ ପ୍ରଣୟୀ ମୁଁ—
ଖର, କର. ସନ୍ଦେହ ମୋ'ର ମୋଚନ କର,
ପ୍ରେୟସି !—ଆଜିଲୁ ବାଇବର୍ଷ ଯାବତ୍ ମୁଁ
ପ୍ରେମାକୁଳ ଚିତ୍ତ ର ପ୍ରେମର ମନ୍ଦାକିନୀ ଖୋଜି
ଖୋଜି ବୁଲିଛି—ଅମ୍ବରେ ପ୍ରାନ୍ତରେ-ପ୍ରାନ୍ତରେ—
ଶିଖରେ-ଶିଖରେ—କନ୍ଦରେ-କନ୍ଦରେ — କିନ୍ତୁ,
ଦେଖିଛି କ'ଣ, ଜାଣ—ମରୀଚିକା - ମରୀଚିକା
—ଧୁ-ଧୁ—ମରୁପ୍ରାନ୍ତର !—ସେହି ପ୍ରାନ୍ତରେ-
ପ୍ରାନ୍ତରେ ଦୌଡ଼ି-ଦୌଡ଼ି, ଶୁଷ୍କକଣ୍ଠ ମୋର
ଅନ୍ତର ଶୁଷ୍କ ହୋଇ ନଦୀ—ଡାକ ଡାକି
ଶୀର୍ଣ୍ଣତାକୁ ମୋର ପାଟି ଚର୍ମସାର ହୋଇ
ଯାଇଛି !—

ବେଗମ୍—( କେବଳ ନିର୍ବାକ୍ ହୋଇ ଶୁଣୁଥିଲେ )

ସାଜାହାନ—ଲୁହ—ଲୁହ. ହୃଦେଶ୍ୱରି !—କେଉଁ
ନର୍ଦ୍ଦୀର ଅନ୍ତରାଳରେ—କେଉଁ ପାତାଳର
ଗହ୍ୱରତମ ପ୍ରଦେଶରେ, ଲୁଚିଛ ରହିଛି—ସେହି
ପ୍ରେମର ଅମୃତଧାରା—ଯା'ର କଟିକାଏ
ଆସ୍ୱାଦନ ପାଇଁ—ଦୁନିଆର ବାଦ୍‌ସା—ଆଜି
ଦୀନ-ଫକୀର ତୁମର ଦୁଆରେ—?—

ବେଗମ୍—ବିଶ୍ୱାସ କର—ବିଶ୍ୱାସ କର, ପ୍ରେମମୟ—
ନାରୀର ଦେବତା ଯା' ତା' ଅଜାଡ଼ିରେ ସେ ଦାନ
କରି ଦେଇଛି—( ଅତି ଦମ୍ଭରେ କହିଲେ ସତ,
କିନ୍ତୁ କି ଦୁର୍ବଳତାହିଁ ଅନୁଭବ କରୁଥିଲେ
ସେ ! )

ସାଜାହାନ—ନା, ନା, ଯା' ଦେଇଛ, ତା'ର
ଲକ୍ଷକୋଟି ଗୁଣ ଯେ ଅଦ୍ୟାପି ଲୁଚୁଇ ରଖିଛ,
ପ୍ରେୟସି !—ମୁଁ ଆଖି ଭରି ଦେଖିଛି, ବିଶ୍ୱ-
ମୋହନ ରୂପର ଅନନ୍ତ ବାରିଧି, କିନ୍ତୁ ମୁଁ ଚୁମ୍ବନ
କରିଛି, ସେହି ସୁନ୍ଦର ମସୃଣ ଗଣ୍ଡଦେଶରେ
ବାଲୁବେଲାଭୂମି !—ସେହି ଢଳ ଢଳ ଲୀଳାୟିତ
'ଅଧର' ପରେ ଲବଣାକ୍ତ ସଲିଳର ଭଣ୍ଡାର !—
ହୃଦୟକୁ ହୃଦୟରେ ମିଶାଇବାକୁ ଧାଇଁ ଯାଇଛି,
ପ୍ରାଣକୁ ପ୍ରାଣରେ ମିଳାଇବାକୁ ବ୍ୟାକୁଳ ହୋଇ
ଉଠିଛି—କିନ୍ତୁ. କେଉଁ ନିର୍ମମ ନିଷ୍ଠୁର ଶୈଳର

ଆଘାତରେ ସିନା ଧକ୍କା ଖାଇ ଓଲଟି ପଡ଼ିଛି—
କେଉଁ ଆଡ଼େ—କେତେ ଦୂରରେ !

ବେଗମ୍—ଏ' କ'ଣ—ଏ କ'ଣ, କହୁଛ— ( କି ଯେ
ବିସ୍ମୟାନ୍ୱିତ ହୋଇ ବାଦ୍‌ସାଙ୍କୁ ଗୁହିଁଲେ
ଓ ଚାହିଁବାକୁ ଲାଗିଲେ )

ସାଜାହାନ—ସବୁ ଦେଖ—ଏବେ ଦେଖ.
ପ୍ରେମ୍ମତମେ—ଶଠ, ପ୍ରବଞ୍ଚନା, ତୁମେ ପଦେ ପଦେ,
ପଲେ ପଲେ, ପ୍ରଣୟୀ ସଙ୍ଗେ ତୁମର କରିଛ କି
ନା ? ମୁଁ ଚୁମ୍ବନ କରିବାକୁ ଧାଇଁ ଗଲେ, ତୁମେ
ତୁମର ଗଣ୍ଡ-ସ୍ଥଳଟି ଥିର କରି ବଢ଼ାଇ ଦିଅ
ନାହିଁ କି ?—ମୁଁ ଆଲିଙ୍ଗନ କରିବାକୁ ପ୍ରସାରଣ
କଲେ, ତୁମେ ବିନା ଓଜରରେ ଉପରେ ଆସି
ପଡ଼ ନାହିଁକି ? ମୁଁ ହସାଇ ତୁହାଇ ତୁମର ମାଳଟି
କାଢ଼ି ନେଇ ଗୁଲିଗଲେ, ତୁମେ ବିନା
ଅଭିମାନରେ ମୋ' ପଛେ ପଛେ ଗୋଡ଼ାଇ
ଯାଅ ନାହିଁକି —

ବେଗମ୍—ବାଦ୍‌ସା—ବାଦ୍—( କେଉଁ ଅସହ୍ୟ
ଲଜ୍ଜାରେ ଓ କଷ୍ଟରେ ଯେପରି କାନ୍ଦ ପକାଇ,
ପଳାଇ ଗଲେ )

ସାଜାହାନ—ସେହି 'ବାଦ୍‌ସା'—'ବାଦ୍‌ସା'—ହାଃ
—ହାଃ—ହାଃ— ( ଚୋରକୁ ଯେପରି
ଏବେ ପଦେ ଗିରଫ କରି ପାରିଚନ୍ତି, ଏହି ଜ୍ଞାନରେ,
ଏହାପରି ହସି ଉଠିଲେ ଓ ଅନୁଧାବନ କଲେ )

[ ଗୋଟାଏ ମାରବଡ଼ା ବିଗ୍ରହ କରିବାକୁ
ଲାଗିଲି—କିଛିକ୍ଷଣ ପରେ ବେଗମ୍ ସେହି ଘରକୁ
ଧୀର ଧୀରେ ଧୀରେ ପ୍ରବେଶ କଲେ ]

ବେଗମ୍—କିଏ ?—କିଏ ସେହି ଫକୀର ?—ବାଦ୍‌ସା
!—ବାଦ୍‌ସା !—ଏ ଯେ ତା'ରି—ତା'ରି ଓଅର
—ମୋର ଭୁଲରେ, ମୋ'ର ଅଙ୍କା ଛବି
—ପ୍ରାଣ ପ୍ରିୟର—ଇଦ୍ ଦିନର— ତରୁଣ
ଅରୁଣର ପ୍ରଥମ ଚୁମ୍ବନ ବୋଳା—ସେହି
ଖେଜୁର କୁଞ୍ଜ ଦୃଶ୍ୟ !—ଫକୀର ?—ଫକୀର ?
—ନା, ନା, ଫକୀରବେଶୀ ସେହି ମୋ'ର
—ସେହି ବଇଁଶୀରେ ତା'ର—ମୋହନ

ବର୍ଷିଣୀବେ, ଆଜ —( କହୁ କହୁ, ଅତ୍ୟଧିକ ଆନନ୍ଦରେ ଅଧୀର ହୋଇ ଯେପରି, ଘଡ଼ିଟିକୁ କି ଆବେଗରେ ଯେ ଚୁମ୍ବନ କରିବାକୁ ଯାଉଥିଲେ )

[ ହଠାତ୍ ହସି ହସି ବାଦ୍‌ସା ପ୍ରବେଶ କଲେ ]

ବାଦ୍‌ସା—ଏହି ଯେ ଘଡ଼ିଟି—ବେଗମଙ୍କ ହାତରେ —ମୁଁ ପିଲାମାନଙ୍କୁ ମିଛେ ମିଛେ ଗାଳି ମାଡ ପର୍ଯ୍ୟନ୍ତ, ଦେଇ ଆସିଲି ସିନା —

ବେଗମ୍—ହଁ — ସେମାନେ ଅଜ୍ଞ କି ଖେଳରେ ମାତି ଯାଇଥିଲେ —ମୁଁ ଲୁଚାଇ କରି ନେଇ ଆସିଛି ପରା—କାଳେ ଭାଙ୍ଗି ଦିଅନ୍ତି—ଭଲ କରି ନାହିଁ କି ?—( ହସି ହସି ଏହିପରି ଛଳନାର ଆଶ୍ରୟ ନେବାକୁ ଲାଗିଲେ )

ବାଦ୍‌ସା—ପଚାରିବାକୁ ଅଛି ?—ମୋ'ରତ ବିଶ୍ୱାସ ହୋଇ ଯାଇଥିଲା—ଭାଙ୍ଗି ଦେଇଥିବେ ବୋଲି— ( ହାତ ବଢ଼ାଇଲେ ନେବାକୁ )

ବେଗମ୍—ଏ' ମାଟିର ଘଡ଼ିଟା—?

ବାଦ୍‌ସା—ହଁ—ହଁ— ( ହସି ହସି )

ବେଗମ୍—ଥାଉ ଏହି—( ଉତ୍କଣ୍ଠାରେ ବୁକୁରେ ଚାପି ଧରୁଥିଲେ )

ବାଦ୍‌ସା—ବାଦ୍‌ସା ଯେ ମୁଁ !—ଥାଉ ଏହି ମାଟିର ଘଡ଼ି କଣି, ଥାଉ ଭଙ୍ଗା ଖପରି ଠାଏବି ଭୋଗ ଦଖଲ କରିବାକୁ ଚାହେଁ—( ହାତ ଆହୁରି ବଢ଼ାଇଲେ )

ବେଗମ୍—( କେଉଁ ଭୟରେ ଯେପରି, ପ୍ରାଣାନ୍ତ କଷ୍ଟ ସତ୍ତ୍ୱେ, ଥରି ଥରିକା ଦେବାକୁ ଗଲେ )

ବାଦ୍‌ସା —( ସୋଲ୍ଲାସେ ହାତ ଆହୁରି ବଢ଼ାଇଲେ ନେବାକୁ, କେଉଁ ସ୍ୱପ୍ନ ଲାଳସାରେ—କିଏ ଜାଣେ ହେଲେ ବା ଗ୍ରାସ କରିଦେବେ ପରା, ଏହିପରି ଭାବେ ବେଗମଙ୍କୁ ଚାହିଁ ଚାହିଁ )

[ ଫଳ ହେଲା—ଘଡ଼ିଟା ବେଗମ୍ ଦେଇ ପାରିଲେ ନାହିଁ, କି ବାଦ୍‌ସାବି —ନେଇ ପାରିଲେ ନାହିଁ— ]

ବେଗମ୍—ମୋ'ର—ମୋ'ର—( କହୁ କହୁ, ପ୍ରାଣର କେଉଁ ଆବେଗ ଓ ଆକୁଳତାରେ ଯେପରି ବିଶ୍ୱ-ବ୍ରହ୍ମାଣ୍ଡ ଭୁଲି ଯାଇ ସେହି ଚୂର୍ଣ୍ଣ ଖଣ୍ଡ ଗୁଡ଼ିକ ଧାରଣ କରି ହୃଦୟ ମଧ୍ୟରେ ଲୁଚାଇ ଲୁଚାଇ କେଉଁ ଦୁର୍ବଳତାରେ ଯେପରି ହତଜ୍ଞାନ ହୋଇ ପଡ଼ିଗଲେ )

ବାଦ୍‌ସା—ହାଃ—ହାଃ—ହାଃ--ମହାନନ୍ଦ—ମହାନନ୍ଦ —ଗାଅ—ଗାଅ—ନାଚ—ନାଚ —ଫୁର୍ତ୍ତି — ଫୁର୍ତ୍ତି—! ( ବେଗମ୍ ପ୍ରତି ଭ୍ରୂକ୍ଷେପ ତ କଲେ ନାହିଁ—ବରଂ ବହୁକାଳରୁଦ୍ଧ ଗୋଟାଏ ପୈଶାଚିକ ଆନନ୍ଦରେ ଏହିପରି ନାଚି ଉଠିଲେ )

[ ବାଦ୍ୟ, ନାଚ, ଗୀତ ଯାହା କିଛି ଫୁର୍ତ୍ତି ଉଦ୍ଦେଶ୍ୟରେ, ସଖୀମାନେ ପ୍ରବେଶ କରି, ଯଥା-ସାଧ୍ୟ ପ୍ରୟାସ କଲେ, ହୁକୁମ୍ ତାମିଲ୍ କରିବାକୁ— ତାହା କେବଳ ବ୍ୟଙ୍ଗମିଶ୍ରିତ କରୁଣ୍ୟରେ ପରିଣତ ହୋଇଗଲା—ବାଦ୍‌ସା ନିଜେ ମଧ୍ୟ ସେଇଟା ଯେ ଅନୁଭବ ନ କଲେ ତା' ନୁହେଁ ]

ବାଦ୍‌ସା—( କେଉଁ ବ୍ୟାକୁଳ ଦୃଷ୍ଟିରେ ବେଗମଙ୍କୁ ଚାହିଁ ଥିଲେ—ନର୍ତ୍ତକୀଗଣଙ୍କୁ ଅତି ବିରକ୍ତ ଭାବେ ଫେରି ଚାହିଁ ଚାଲିଯିବାକୁ ଇଙ୍ଗିତ କଲେ—ନର୍ତ୍ତକୀଗଣ ଚାଲିଗଲା ପରେ, ଅତି କାତର ଭାବେ ବେଗମଙ୍କ ଆଡ଼େ ଅଗ୍ରସର ହେଲେ )

ବେଗମ୍—ବାଦ୍‌ସା—( ଚକ୍ଷୁରୁନ୍ମୀଳନ କରି କେଉଁ ମିନତିପୂର୍ଣ୍ଣ ଦୃଷ୍ଟିରେ ଟିକି ଅତ୍ୟାଗ୍ରହୀ ବିଜ-ସନ୍ତୁଟିଖ ନିସ୍ପୃହ ପ୍ରକାଟିପରି ଚାହିଁ ରହିଲେ କି ଆଜ ? )

ବାଦ୍‌ସା—ବେଗମ୍—( ବହୁପାଇ, ବାଷ୍ପପାଷ୍ପକଣ୍ଠରେ ସମ୍ବୋଧନଟା କରି ଉଠିଲେ ସତ, କିନ୍ତୁ ହୃଦୟଟା ଭରି ଉଠୁଥିଲା—ବେଗମଙ୍କ ମୁଖ ଦର୍ଶନରେ, କି କେଉଁ ଅତୀତର ଅନୁଧ୍ୟାନରେ )

ବେଗମ୍—ସତେ, ସତେ କ'ଣ ଦୁଃଖିନୀର କୁଡ଼ିଆଟି — ଭିଟାଟି— ମାଟିଟି ପର୍ଯ୍ୟନ୍ତ ତାଡ଼ିକରି ନେବ—?

ବାଦ୍‌ସା—ମୃତ୍ତିକି ପର୍ଯ୍ୟନ୍ତ !—

ବେଗମ୍—କ'ଣ ନାହିଁ ତୁମର, ବାଦ୍‌ସା—

ବାଦ୍‌ସା—ଅଛି, ଅଛି ମୋ'ପରି ବାଦ୍‌ସାର—ଯା' ନାହିଁ କୁବେର ଭଣ୍ଡାରେ—ଯା' ନାହିଁ

ଅମରାବତୀରେ—ଯାହା ନାହିଁ ମହଲର ଅନ୍ତଃପୁରେ—। ( କେଉଁ ମୁଗ୍ଧ ଦୃଷ୍ଟିରେ ଯେ ଚାହିଁ ରହିଲେ )

ବେଗମ୍—ତେବେ—ତେବେ—( ଉଠି ବସିଲେ )

ବାଦ୍‌ସା—ତେବେ ବି—ତେବେ ବି ମୁଁ—ହୀନ, ହୀନ—ଭାରି ଦୁଃଖୀ, କାଙ୍ଗାଳ—( କେଉଁ ଅଭିମାନରେ କାନ୍ଧ ପକାଇ ପ୍ରସ୍ଥାନୋଦ୍ୟତ ହେଲେ ପରା )

ବେଗମ୍—ପ୍ରାଣେଶ୍ୱର !—ପ୍ରାଣେଶ୍ୱର !—ପ୍ରେମମୟ !—ଏତେ ପ୍ରେମ !—ଏତେ ଅନୁଗ୍ରହ !—( କହୁ କହୁ ବାଦସାଙ୍କ ଆଡ଼େ ଦୌଡ଼ି ଯାଉଥିଲେ )

ବାଦ୍‌ସା—'ଅନୁଗ୍ରହ' !—ସେହି 'ଅନୁଗ୍ରହ' କର ତୁମେ ତୁମର ପ୍ରେମର ଭିଖାରିକୁ, ପ୍ରେମମୟି—! ( କି ଯେ କାତର ପ୍ରାର୍ଥନା କରିବାକୁ ଲାଗିଲେ )

ବେଗମ୍—( ହଠାତ୍ କେଉଁ ମୁହୂର୍ତ୍ତର ଉତ୍ତେଜନାରେ ଯେପରି—ବୋଧହୁଏ ଅତୀତର ସେହି ଇଦ୍ ଦିନରେ ତୁଚ୍ଛ ବୋଲି ଉପେକ୍ଷିତ ହୋଇଥିଲା, ଯେଉଁ ପ୍ରେମ ତାହା ଯେ ଦୁନିଆର ବାଦ୍‌ସାଙ୍କର କେତେ ଦୂର ଆକାଙ୍କ୍ଷିତ, ଏହି ଗର୍ବରେ—ଫେରି ଆସି, କି କ୍ରୋଧରେ, ଘୃଣାରେ, ଅଭିମାନରେ ଯେ ଘଡ଼ିଟାର ସେହି ଭଗ୍ନଖଣ୍ଡ ଗୁଡ଼ିକ ଦଳି, ମଥି ଧୂଳିରେ ମିଶାଇ ଦେବାକୁ ଲାଗିଲେ ! )

ବାଦ୍‌ସା—ହଁ—ହଁ—ଏହିପରି—ଏହିପରି ଅନୁଗ୍ରହ ଗୃହେ ମୁହିଁ—ଖୋଦାଙ୍କ ମେହେର୍‌ବାନୀରେ ମୁହୂର୍ତ୍ତଟା ପଡ଼ି, ଖଣ୍ଡ, ଖଣ୍ଡ ହୋଇଛି—ତୁମେ ଏହିପରି ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଇ, ଆଗ୍ରାର ମାଟିରେ ମିଶାଇ, ଧୂଳିରେ ଉଡ଼ାଇ ଦିଅ, ପ୍ରେମମୟି—ବାଦ୍‌ସା ମୁଁ—ଭୋଗୀ ମୁଁ—ମୋତେ ପୂର୍ଣ୍ଣ 'ତୁମକୁ'—ପୂର୍ଣ୍ଣାନନ୍ଦକୁ ଭୋଗ କରିବାକୁ ଦିଅ— ( ବେଗମଙ୍କୁ କୁଣ୍ଢାଇ ନେଇ ଯାଇ ମଣ୍ଡପ ଉପରେ ଏକାସନେ ବସିଲେ ଦୁହେଁ—ବାଦ୍ୟ ମହୋଲ୍ଲାସରେ ତତ୍‌କ୍ଷଣାତ୍ ନେପଥ୍ୟ ବାଜି ଉଠିଲା— )

ବାଦ୍‌ସା—ନର୍ତ୍ତକୀ !—ନର୍ତ୍ତକୀ !—

ବେଗମ୍—ହଁ, ହଁ,—ସେହି ନର୍ତ୍ତକୀ—ସେହି—( ଠିକ୍ ଚେତକିବେଳେ ବାହାରେ, ଗୋଟାଏ ବଜ୍ରଦ ନିର୍ମଳ ଆକାଶରେ, ମୁକ୍ତ ଦିବାକର ଉପରଦେଇ ଯେଉଁ ଭାବେ ଭାସିଗଲା—ଭିତରେ, ଗୋଟାଏ ରହସ୍ୟ-ବଜ୍ରଦ ଠିକ୍ ସେହି ଭାବେ ବେଗମଙ୍କ ମନ ଉପର ଦେଇ, ଭାସିଗଲା— )

ବାଦ୍‌ସା—ହଁ—ସେହି ନର୍ତ୍ତକୀ !—କହିଲ, କହିଲ—ଆଜି ଆମର ପ୍ରକୃତ ବାସର ନୁହେଁ କି ? ( ଅତି ସହଜ ସ୍ୱରେ କାନେ କାନେ କହିଲେ )

ବେଗମ୍—( ମର୍ମକୁ ଯେମନ୍ତ ଉଲ୍ଲସାଇ ଦେଲା—କେତେ ଯୁଗର ଉଦାସ, ଉପବାସକ୍ଳିଷ୍ଟ ଅଧର, କେଉଁ ଭୋଗ ଲାଳସାରେ ଯେପରି ସ୍ୱାମୀର ଲୋଭନୀୟ ଚଣ୍ଡଦେଶକୁ ଲକ୍ଷ୍ୟ କରି, ନାଚି ଉଠିଲା—କିନ୍ତୁ ନବବଧୂର ଲଜ୍ଜା କାହୁଁ ଧାଇଁ ଆସି, ଠିକ୍ ଚେତକିବେଳେ ଜଳାକବାଟି ବାଟେ ଉହୁଁକି ଚାହିଁ ହସି ହସି ଗଡ଼ିଗଲା—ତାହିଁ ସଙ୍ଗେ ସଙ୍ଗେ ସେହି ଘଡ଼ିଟା ଦଳି ମଥି ଦେବାର ସୁପ୍ତ ପ୍ରତିଘାତଟା ସମସ୍ତ କାଣି ତା'ର ବିଷଜ୍ୱାଳା ରନ୍ଧ୍ରେ-ରନ୍ଧ୍ରେ ଯେମନ୍ତ ଗ୍ରାଡ଼ିବାକୁ ଲାଗିଲା—ଆଉ ଆସନକୁ ଧାଉଁକାନା ଉଠି ନ ଯାଇ ରହି ପାରିଲେ ନାହିଁ ପରା )

ବାଦ୍‌ସା—ନା, ନା—ଅଚ୍ଛା, ତୁମର ଯେପରି ଅଭିରୁଚି—( ଆଗ୍ରହ ସହକାରେ ବରଂ ବସାଇ ଦେଲେ )

[ ତେତେବେଳକୁ ନର୍ତ୍ତକୀ ସେହିପରି ଓଢ଼ଣାରେ ମୁହଁ ଘୋଡ଼ାଇ ଆସି, ନାଚିବାକୁ ଲାଗିଲାଣି—ହିନ୍ଦୁସ୍ଥାନୀ କାଏଦାରେ ଏଥର ]

ବେଗମ୍—( କେଉଁ ଜ୍ୱାଳାରେ ଯେ ବେଳେ ବେଳେ ମୁଖ ବିକୃତ କରି ଉଠୁଥିଲେ—ନର୍ତ୍ତକୀକୁ ଚିହ୍ନିବାର ସେ ଏତେ ଆଗ୍ରହ ଆଦୌ ନ ଥିଲା ପରା, ଯଦିଓ ନୃତ୍ୟ ଦେଖୁଥିଲେ ଅନ୍ୟମନସ୍କ ଭାବେ )

ବାଦ୍‌ସା—କି ? ଏ ହିନ୍ଦୁସ୍ଥାନୀ ନାଚ ପସନ୍ଦ ହେଉ ନାହିଁ ପରା ?

ବେଗମ୍—କାହିଁକି ନ ହେବ !—ଏହା ସେ ଠିକ୍ ତୁମର ରାଜଦଣ୍ଡପରି !

ବାଦ୍‌ସା – ଓଁ ହୁଁ —ଠିକ୍ ତୁମର ଏହି ପଥର ବସା ହାରଟାପର—

ବେଗମ୍—କାହିଁକି ? ପଥର ତଳେ କି ଝର ନ ଥାଏ ?

ବାଦ୍‌ସା—କିନ୍ତୁ ତାଙ୍କୁ ଆବିଷ୍କାର କରିବା କି—?

ବେଗମ୍—ସହଜ ନୁହେଁ ?—ତୁମ୍ଭର ପ୍ରେମିକର କରସ୍ପର୍ଶରେ ଯେ ହିମାଳୟପର୍ବତ ଅଟଳ ନୁହେଁ—

ବାଦ୍‌ସା—ସଚଳ ହୋଇ ଉଠେ, ସତ—ଗ୍ରାନିଟ୍, ଚୂନା ବି ହୋଇଯାଏ, ସତ—କିନ୍ତୁ, କେବେ ବି, ପ୍ରେମର ଝରଣାଟି ଉଚ୍ଛୁଳେ କି ?—ତାଙ୍କୁ ଉଚ୍ଛୁଳାଇବ କିଏ, ଅପେ ଅପେ ନ ଉଚ୍ଛୁଳିଲେ ?—ଗୁପ୍ତ ଗଙ୍ଗାପରି, କେଉଁଠି ଲୁଚି ଲୁଚି ଯାଉଥାଏ ପିଳା—ଖୋଜୁଥାଅ—ଖୋଜୁଥାଅ—ଦୁନିଆଟା ଛାଡ଼ିଲେ ବି, ସନ୍ଧାନ ମିଳିବ ନା ଆଉ—?

ବେଗମ୍—( ଏ କଥାରେ କ୍ଷାନାଟା ଯେ କି ପରିମାଣରେ ବଢ଼ି ଉଠେଲା, ତାହାର ଅଳ ସ୍ଫୁରିଲା କାହିଁ ଅଧରରେ ବୋଧହୁଏ—ତଥାପି ପ୍ରାଣପଣେ ତାହା ଚେଷ୍ଟା କଲେ ଗୁପ୍ତି ରଖିବାକୁ )

[ ନର୍ତ୍ତକୀ ଏଥର ବି ନାଚିବାକୁ ଲାଗିଲା—ରାଧିକାଙ୍କର ଅଭିସାରର ନୃତ୍ୟ—ତାଇ ପଦେ ମାତ୍ର—"ବଜାଉଛିରେ, ସଖି କାହିଁ। ଗଧୁବନ। —ବଜାଉଛି ବାଁଶରୀ ମୋରେ ଶ୍ୟାମଧନ" ]

ବେଗମ୍—ମୋର ମର୍ମକଥା କିଏ କହି ଦେଉଛି— ( ଏହାପରେ କହି, ଆପଣାର ମର୍ମଜ୍ୱାଳା କାମୃର ଉଦ୍‌ଗାର କରି ପକାଇଲେ କି ଆଜ ?)

ବାଦ୍‌ସା—( କି ଯେ ଈର୍ଷାନ୍ୱିତ ହେଉଥାନ୍ତି ବେଗମଙ୍କ ସେହି ମର୍ମକଥା ମୁଖରେ ପରିସ୍ଫୁଟ ହେବାକୁ )

[ ନର୍ତ୍ତକୀ ସେତେବେଳକୁ ନାଚି ନାଚି ବେଗମଙ୍କ ନିକଟକୁ ଆସିଥାଏ ]

ବେଗମ୍—ଅମିନା !—( ଆଉ ସମ୍ଭାଳି ନ ପାରି, ନର୍ତ୍ତକୀର ଓଢ଼ଣୀ କାଢ଼ିଦେଲେ, ଓ ଏହି ପଦରେ ଉଚ୍ଚାରଣ ସଙ୍ଗେ ସଙ୍ଗେ ପୂର୍ବ ସ୍ମୃତିଟା ଜୀବନ୍ତ ଯେଉଁକେ ଅମିନା ମୁଖରେ ଦେଖିବାକୁ ଲାଗିଲେ ଅଦ୍ୟପ୍ରାନ୍ତ )

ବାଦ୍‌ସା—ବ୍ରିଦିଦଅ ଗାଙ୍ଗିଦେଅ ସନ୍ତ୍ରମୂଢ଼—ଭୁଲିଯାଅ ଭୁଲିଯାଅ—ଯେତେ ପୂର୍ବକଥା—

ବେଗମ୍—ଅମିନା ?—ଅମିନା ?—ନା, ନା—ତୋ ନାଁ ଆଜିଠୁ 'ମହବୁବ୍'—ମହବୁବ୍ । ତୁ ଏହି ମହଲ୍‌ରୁ ମୋ'ର ବେଗମର ପ୍ରଧାନ ନର୍ତ୍ତକୀ—ଏହି ନେ—( କେଉଁ ପ୍ରତିଶୋଧ କାମନାରେ, କି ଜାତକୁ ଶାସନ କରିବା ଅଭିପ୍ରାୟରେ, କି ତାହାକୁ ମିଳିତ ଗୋଟାଏ କେଉଁ ଉପଦେଶ୍ୟରେ, ଏହାପରେ କଣ୍ଠରୁ ହାର ଗୋଟାଏ ଦାନ କଲେ )

ଅମିନା—( ଚୁମ୍ବନ କରିବା ସଙ୍ଗେ ସଙ୍ଗେ କୁର୍ନିସ କରି କରି ପୁଣି ନାଚିବାକୁ ଲାଗିଲା—ଏଥର ନେଇ ଚାଲିଲା ଗୋଟାଏ ରାଧାକୃଷ୍ଣଙ୍କ ମିଳନ ଗୀତ—)

—ଗୀତ—

ଅଳି ମିଳିଚଲି ଶ୍ୟାମ-ଶ୍ୟାମପିଆରୀ ।
ଶ୍ୟାମ ଧରିଛି ବଂଶୀ—ବଜାଉଛି ପିଆରୀ ॥

ବେଗମ୍—( ମର୍ମେ ମର୍ମେ ପୁଣି ସେହି ପୂର୍ବବଂଶୀ-ସ୍ୱନ ଯେମନ୍ତ ଶୁଣିବାକୁ ଲାଗିଲେ )

ବାଦ୍‌ସା—( ଆନନ୍ଦିତ ହେଉଥିଲେ, ମନେ କରି, ଏ ମିଳନ-ଗୀତ ଆପଣାକୁ ଲକ୍ଷ୍ୟ କରି ଗୀତ ହେଉଛି ପରା—)

ବେଗମ୍—କାହିଁ ?—କାହିଁ ?—( ସେହି ସଙ୍ଗୀତର ଅର୍ଥ, ଲୟ ଓ ତାନ ସଙ୍ଗେ ସଙ୍ଗେ ଧାଇଁ ଯିବାକୁ ଉଦ୍ୟତ ହେଲେ, କାହାକୁ ଯେମନ୍ତ ସ୍ପଷ୍ଟ ଆଖି ଆଗେ ଲକ୍ଷ୍ୟ କରି—)

ବାଦ୍‌ସା—ଏହି—ଏହି—ଯେ—( ସମ୍ମୁଖରେ ଠିଆ ହୋଇ, ଅତି ହର୍ଷଭରରେ ଆପଣାକୁ ଅର୍ପଣ କଲେ )

ବେଗମ୍—ବାଦ୍‌ସା—! ( ବୋଲି, ଭୀଷଣ ଚିତ୍କାର କରି ବାଦ୍‌ସାଙ୍କ ଉପରେ ଝମ୍ପଦେଇ ପଡ଼ିଲେ କି ଆଉ—ଅର୍ଦ୍ଧଜ୍ଞାନଶୂନ୍ୟ ହୋଇ ! )

ବାଦ୍‌ସା—'ବାଦ୍‌ସା'—। ( କେଉଁ ବିରକ୍ତିରେ ଦୂରେ ପେଲି ଦେଲେ ପରି )

ବେଗମ୍—ନା, ନା, ମୋତେ ଦୂରକରି ଦିଅ ନାହିଁ—ମୋ'ର ସବୁ ସ୍ମୃତି ଫେରାଇ, ଫିଙ୍ଗି ଦୂର କରିଦିଅ—ମୋତେ ତୁମର କରିନିଅ—ତୁମର— ( ଏହିପରି କହୁ କହୁ ମୁଣ୍ଡି କୁଣ୍ଡାଇ ପକାଇଲେ )

ବାଦ୍‌ସା—ମମ୍‌ତାଜ୍—ମମ୍‌ତାଜ୍—( କି ଭଳି ଭାବେ ଏହିପରି ସମ୍ବୋଧନ କରୁ କରୁ ସେ ଭୂଇଁ ମଝିରେ ବୁଲାଇ ଦୌଡ଼ାଇ ରଖିବାକୁ ଲାଗିଲେ )

---

## ଦ୍ୱିତୀୟ ଦୃଶ୍ୟ

—ବେଗମ୍ ମହଲର ଏକାଂଶ—

[ ସେହି ଚନ୍ଦ୍ରବଦନର ଗୋଧୂଳି—ଅସ୍ତକାଳୀନ ଲୋହିତ ସୂର୍ଯ୍ୟ ଆକାଶରେ ବିଦାୟ କରୁଥାନ୍ତି—ଗୃହୀଁ ଗୃହୀଁ, ଜ୍ୟୋତିର୍ମୟ ନାନା ଖଣ୍ଡ ବିଖଣ୍ଡ ଦେଖାଇ ଲୀନ ହୋଇଗଲେ—ତଥାପି କେହିତ ଅଭ୍ର ଗଗନେ, ଭୁବନେ ବିଚ୍ଛୁରିତ ହୋଇ ଯମୁନାର କାଳୀପାଣିରୁ ମଧୁରକାନ୍ତି-ରେ ରଞ୍ଜିତ କରୁଥାଏ—ଧୀବର ବିହଙ୍ଗର କୋଳାହଳ ପରେ, ଗୋଟାଏ ନୀରବତା ବିରାଜ କରୁଥାଏ । ସନ୍ଧ୍ୟାକାଳୀନ ସମସ୍ତ ଉତ୍ସବାୟୋଜନ ପ୍ରସ୍ତୁତ—ଏବେ ପୁଣି ନାନାବିଧ ଅଲୋକୋତ୍ସବ—ସହରର କେଉଁ କେଉଁ ଠାରେ ଓ ରାଜପ୍ରାସାଦର କେତେକ ଅଂଶମାନଙ୍କରେ ଆଲୋକ ଲାଗିଗଲାଣି, କିନ୍ତୁ ବେଗମ୍ ମହଲରେ, ଯେଉଁଠି ଆଗେ ଲାଗିବାର କଥା, ଅଦ୍ୟାପି ଲାଗି ନାହିଁ—ତେବେ, ସମସ୍ତ ପ୍ରସ୍ତୁତ—କେବଳ ବେଗମଙ୍କ କେଉଁ ସଙ୍କେତକୁ ଅପେକ୍ଷା—ବେଗମ୍ ସଜ୍ଜିତା ହୋଇ, ନବୋଢ଼ା କନ୍ୟାଟି ଭଳି ବସିଥିଲେ ଏବଂ—କି ଲଜ୍ଜାରେ, ସେହି ଯମୁନାଆଡ଼େ ଯେ ଗୃହୀଁ ରହିଥିଲେ ।—ସ୍ୱଚ୍ଛବେଶରୁ ଜଣାପଡୁ ଥିଲା, ଯେଉଁ ବଣର ତାନ ଯେତେବେଳେ ଯମୁନାର ମୃଦୁ ହିଲ୍ଲୋଳରେ ନାଚି-ନାଚି ମନ୍ଦ ସମୀରଣର ଶୀତଳ ସଞ୍ଚାଳନରେ ଭାସି ଭାସି ଆସି ମର୍ମକୁ ଦୋହଲାଇ କରିଦେଉ—ପାଶରେ ମସ୍ତୁମ୍—ତା'ର ସାଜ ଆଜ ବେଗମଙ୍କ ସାଜକୁ ବଳି ଯାଇଛି—କିପରି ଭାବେ, ତା'କୁ ଦେଖାଇବ ଯେ ଠିକ୍‌ କରି ପାରୁ ନଥିଲା—ଭାବି ଏ'ପାଖ, ସେ'ପାଖ ହେଉଥାଏ—କେତେବେଳେ ଯେ କି ଭାବ ମୁଖରେ ଫୁଟି ଉଠୁଥାଏ, ବୁଝିବା ଦୁଷ୍କର ।— ]

ମସ୍ତୁମ—ଆଜ କେତେବେଳ ଏଠି ଠିଆହେଉ—ଏଁ—( ଜିହ୍ୱା ଦଂଶନ ପୂର୍ବକ ଅତି ଭୟେ ଭୟେ ଚାହିଁଲା ବେଗମ୍‌ଙ୍କଆଡେ, କିନ୍ତୁ ସେ ଶୁଣି ନାହାନ୍ତି, ବୁଝିପାରି, ମନେ ମନେ ଯେପରି ଚିକ୍କଣି ଖାଇବାକୁ ଲାଗିଲା— ) ବେଗମ୍ ସାହେବ !—ସବୁ ତରଫରେତ ଆଲୁଅ ଲାଗି ଗଲାଣି—( ମର୍ଯ୍ୟାଦାକୁ ଜାଗି କରି ଯେମନ୍ତ କହିବାକୁ ଲାଗିଲା, ଅଭଦ୍ରତ ମର୍ଯ୍ୟାଦା ହାବ ଭାବରେ ଦେଖାଇ ଦେଉଛି )

ବେଗମ୍—( ସେହିପରି ଲଜ୍ଜାରେ ଗୃହିଁଥାନ୍ତି )

ମସ୍ତୁମ—ଏଥର ଆଲୁଅ ଲାଗିବାର ହୁକୁମ ସାଦର୍ ହେଉ—( ଖୁବ୍ ବନେଇ ବନେଇ କହିବାକୁ ଲାଗିଲା ସେହି ମର୍ଯ୍ୟାଦା ରକ୍ଷା କରିବା ଉଦ୍ଦେଶ୍ୟରେ )

ବେଗମ୍—କାହିଁ ?—କାହିଁ ?—ଆଉତ—( କାନ ଡେରିଲେ ) ନା, ନା, ଅତ ଶୁଭୁନାହିଁତ—ଆଉ—ସବୁ ଗୋଳମାଳ—ସବୁ—

ମସ୍ତୁମ—କ'ଣ, ହଜୁର ?—କ'ଣ, ବେଗମ୍ ସାହେବ ? ( ଅତି ବିନମ୍ରଭାବେ ଠିଆହେଲା )

ବେଗମ୍—ତୋ'ର ମୁଣ୍ଡ—ଗଣ୍ଡି—( ବିରକ୍ତ ହୋଇ ଉଠିଲେ )

ମସ୍ତୁମ—ଗୋଲାପ ପାଣି—ଗୋଲାପ—ନା, ନା, ଅତର୍—ଦିଲଖୁସ୍—ଦିଲ୍‌ବାହାର୍—ସବୁ 'ବାହାର୍' 'ଅବାହାର୍'—ଜଲ୍‌ଦି—ଜଲ୍‌ଦି—

[ ଉତ୍‌କ୍ଷଣାତ୍ ପରଗୃହକାମାନେ ନାନା ଖୁସ୍‌ବୋଇ ନାନାରଙ୍ଗ ବୋତଲମାନ ନେଇ ଆସିଲେ ]

ବେଗମ୍—ଏସବୁ କାହିଁକି ?—କଣ ହେବ—?

ମସ୍ତ୍ୟୁମ—ହୁଜୁରଙ୍କ ମୁଣ୍ଡଟା—

ବେଗମ୍—ହାଃ-ହାଃ-ହାଃ—ଗୋଲମାଲ ହୋଇଚି —ଗୋଲମାଲ—ବାଦ୍‌ସା କ କ'ଣ ସେହି କଥା—

ମସ୍ତ୍ୟୁମ—ସେଇଥି ପାଇଁତ ତୋ—( କି ଯେ ଭ୍ରମ ପୁଣି କରି ପକାଇଲା—ଓଃ, ଆଜି ଯେ ହଠାତ୍ କେଉଁ ଜୀବନ୍ତ ଲୋଭରେ ଓ ଭବିଷ୍ୟତ୍ ଆଶାରେ ମୁଣ୍ଡଟା ଗୋଲମାଲ ହୋଇଯାଇଚି—

ବେଗମ୍—ଆଣ—ଆଣ—ସବୁ ଆଣ—ମୁଁ ଓଜାଡ଼ିବି —ଗାଧୋଇବି—ବୁଡ଼ିବି—( ସବୁ ମୁଣ୍ଡରେ ଓଜାଡ଼ି ଦେଲେ ବୋଧ ହୁଏ )

ମସ୍ତ୍ୟୁମ—ସେଇଥି ପାଇଁତ 'ହଜୁର୍'ଙ୍କ 'ସାହେବାଙ୍କ' 'ଶବାର ସାଙ୍ଗେ ସାଙ୍ଗେ 'ବାଦଲୁ' ମୋତାଏନ୍ କରନ୍ତୁ—( ନିଜର ଭ୍ରମ ସଂଶୋଧନ ଉଦ୍ଦେଶ୍ୟରେ ଯେପରି ଏହିପରି କହୁଥିଲା )

ବେଗମ୍—( ମୁରୁକି ମୁରୁକି ହସୁଥିଲେ )

ମସ୍ତ୍ୟୁମ—( ଭେଉଁକି ଭୟରେ ଅଡ଼ଷ୍ଟ ହେଉଥିଲା )

ବେଗମ୍—ଉଠାଓ—ଲେଜାଓ—ଭାଗୋ—(ଧରିଥିବା ବୋତଲଟା କଚାଡ଼ି ଦେଲେ ଓ ସମସ୍ତ ନେଇ ଚାଲିଯିବାକୁ ଅତିକ୍ରୋଧଭରେ ଯେପରି ପରଗୃହକାଙ୍କୁ ହୁକୁମ୍ କଲେ )

ମସ୍ତ୍ୟୁମ—( ସେହି କୃତ୍ରିମ କ୍ରୋଧରେ, ତା'ର ନିର୍ମିତ ଆକାଶସୌଧଟା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା କି ଆଉ ?—ମୁଖର ଖଣ୍ଡ ଖଣ୍ଡ, ପ୍ରକାର ପ୍ରକାର, ନୈରାଶ୍ୟଭାବରେ ତାହାହିଁ ଯେପରି ସୂଚିତ ହେଉଥିଲା )

[ ପରଗୃହକାମାନେ ଚାଲିଗଲେ ]

ବେଗମ୍—ଅମିନା—ଅମିନା—( କି ଆବେଗରେ ଜଡ଼ାଇ ଧରି, କି ବିକଳରେ ଯେ କାନ୍ଦି ପକାଇଲେ )

ମସ୍ତ୍ୟୁମ—( ଘନ କୁଜ୍‌ଝଟିକା କଟିଯାଇ ହଠାତ୍ ପ୍ରଖର ତେଜଟା ପ୍ରକାଶ ପାଇବାରୁ ତାହା ସମ୍ଭାଳି ନ ପାରି ଯେପରି ଆଖିଦି'ଟା ମଳିବାକୁ ଲାଗିଲା, ଦୃଷ୍ଟିଟା ଆହୁରି ପ୍ରଖରତର କରିବା ଉଦ୍ଦେଶ୍ୟରେ ବୋଧହୁଏ )

ବେଗମ୍—ତୁହି—ତୁହି ତ ମୋର ନାଡ଼ି ନକ୍ଷତ୍ର ସବୁ ଜାଣୁ—କହିଲୁ—କହିଲୁ—ମୁଁ କ'ଣ ମୋର ସବୁ ସ୍ମୃତି ଓପାଡ଼ି ଫିଙ୍ଗି ଦେଇ ନାହିଁ—? ( ଗଦ୍‌ଗଦ୍ ହୋଇ ଯେପରି କାନ୍ଦିବାକୁ ଲାଗିଲେ )

ମସ୍ତ୍ୟୁମ—ଖୁବ୍—ଖୁବ୍—ତେବେ ବି — ହବନାହିଁ ନା ?—ଯେତେବେଳେ, ଦିନେ ତ—ଘର କରୁଥିଲେ, କେତେବେଳେ କ'ଣ—ସେ'ଟା— ( ଏଥରକ ସାହସ ପାଇ ଯେ ଖାଲି ଦମ୍ଭ ଧର ଉଠିଥିଲା, ତା' ନୁହେଁ—ତା'ର ପ୍ରକୃତଟା ଧଧ ରେଇ ଉଠିଥିଲା ଅତି ଆନନ୍ଦରେ ସୁଯୋଗ ପାଇ )

ବେଗମ୍—ଅମିନା—ଅମିନା—ମୁଁ କ'ଣ ତା'କୁ ଆପଣାର କରି ନ ଥିଲି—ସର୍ବସ୍ୱ ଦେଇ ମୋ'ର, ତାକୁ ଖୁବ୍ ଭଲପାଇ ନ ଥିଲି—? ସେ ଖାଇଲେ, ଖାଉଥିଲି—ନାଚିଲେ, ନାଚୁଥିଲି — କାନ୍ଦିଲେ, କାନ୍ଦୁଥିଲି—ଓଃ—କି ନିର୍ମମ-ପାଷାଣ ସେ—ଗୋଟାଏ ହଡ଼ା-ଗୋରୁପରି ମୋତେ ବନ୍ଦୀ କରିଦେଲା ସିନା—ସାମାନ୍ୟ ଟଙ୍କା ଲୋଭରେ—ଯଦି ବା ମା'ର 'ଇମାନ୍' ପାଇଁ କରିଥାଏ—ଏତେ କାନ୍ଦିଲି—ଲୁହରେ ମେଦିନୀ ତିନ୍ତାଇ ଦେଲି—ଟିକିଏ ବି କଲିଜା ତା'ର ଥରିଲା ନାହିଁ—ଟିକିଏ ବି ଦରଦ ପ୍ରାଣକୁ ତା'ର ଛୁଇଁଲା ନାହିଁ—ଗୋଟାଏ ଗନ୍ଧିଆ ଫଡ଼ା ମଡ଼ା ପରି ଘରୁ ତଡ଼ି ଦେଲା—ଶୁଣିଚୁ, ଶୁଣିଚୁ ତ ସେହି ଅଟ୍ଟହାସ୍ୟ—ହାଃ—ହାଃ—ଭଡ଼ ଭଡ଼ ଶବ୍ଦରେ ଯେତେବେଳେ ମୋ'ର ରୁଦ୍ଧ ଦ୍ୱାର ଖୋଲି, ମୋତେ ତଡ଼ାଇ ଦେଲା—ସେହି ମରୁବାଟେ—ମୁଁ ଘୋଡ଼ାରୁ ତଳକୁ ଡେଇଁ

ପଢ଼ିଲି—ତୋତେ ଧକ୍କା ଦେଇ, 'ସିରାଜ—ସିରାଜ' ବୋଲି—

ମସ୍ୟୁମ୍—ଆଉ ସେ ଗୁଡ଼ାକ କାହିଁକି ?—( କିନ୍ତୁ ମନେ ମନେ ଭାରି ଖୁସି ହେଉଥାଏ, ସିରାଜର ଗର୍ବ ଚୂର୍ଣ୍ଣ କରିଛି ବୋଲି )

ବେଗମ୍—ନା, ନା, ଅନେକ୍ଷଣ ପରେ ମୋ' ଭିତରେ ଭିତରେ କ'ଣ ଗୋଟାଏ ଯେମିତିକା ଦିନ ରାତି ଖାଲି ଫୁଟୁଛି—ବାଟ ଖୋଜି ବୁଲୁଛି—ପଦାକୁ ବାହାରି ଆସିବାକୁ—ଆଉ ସେ ରୁମି ରଖି ପାରୁନାହିଁ—ଥରେ ଯଦି—ଥରେ ଯଦି—

ମସ୍ୟୁମ୍—( ଏହି ଶେଷ ପଦ ଗୁଡ଼ିକ ଶୁଣି ହଠାତ୍ ଚମକି ଉଠି, କପର ତୀବ୍ର ଦୃଷ୍ଟିରେ ଗୃହିଁଲା—ଠିକ୍ ଶୀକାରାନ୍ୱେଷୀ ସର୍ପପରି )

ବେଗମ୍—ହିଁ—ହିଁ—ଥରେ—ଥରେ ଯଦି ପା'ନ୍ତି ତା'କୁ—( ଅତି କୋଧରେ ଯେମନ୍ତ ସେ ଜଳି ଯାଉଥିଲେ )

ମସ୍ୟୁମ୍—ଏହି ଗ୍ଲବ କଥାଟାଏ ?—ମୋର କହ୍ନମତ କ'ଣ ?—

ବେଗମ୍—ଜାଣେ, ଜାଣେ, ଅମିନା—ସେଇଥି—ସେଇଥି ପାଇଁତ ତୋତେ କହୁଛି—ଆଜି—ଦଶବର୍ଷ—ନା, ନା, ଦଶଯୁଗ ପରେ ବି !—ଅମିନା—ଅମିନା—କିଏ ସେ ସଉଦାଗର ତୋତେ ଦେଇଥିଲେ—କିଏ ବା ବାଦ୍‌ସା ତୋତେ ଦେଇଚନ୍ତି—ମୋତେ ଠବ ଆଣି-ଦେବାକୁ ?—ମୁଁ ଯା' ଦିଅନ୍ତି—ଯା' କୌଣସି ବେଗମ୍ କେବେହେଲେ ଦାନ କରି ପାରି ନ ଥିବ—ଯା' ତୋ'ପରି ବାନ୍ଦୀ କେବେହେଲେ ଆଶା ବି କରି ନ ଥିବ—କ'ଣ—କ'ଣ ତୋତେ—ଦିଅନ୍ତି—ଜାଣିଚୁ ?—ଶୁଣିଚୁ ?—ତୋତେ—

ମସ୍ୟୁମ୍—'ବେଗମ୍'—( ପ୍ରଲୋଭନର ଉତ୍ତେଜନାରେ ଆପଣାର ମନୋଭାବଟା ଏହିପରି ବ୍ୟକ୍ତ କରି ପକାଇଲା )

ବେଗମ୍—ହଁ—ହଁ—'ବେଗମ୍'—'ବେଗମ୍'—ସେହି ବେଗମ୍'-ପଦ—ଯଦି ତା'ର ସନ୍ଧାନ—ନା, ନା, ତାକୁ ଧରି ଆଣୁ—ମୋ' ସାମନାକୁ—ମୋ'—ମୋ'—( ଏତେ ଉତ୍ତେଜନାରେ କଥା କହି ପାରିଲା ନାହିଁ ସତ, କିନ୍ତୁ ପୂର୍ବ୍ବଅଗ୍ନେୟ ଗିରିରୁ ତରଳ ଧାତୁପରି ଉଷ୍ଣ ଲୋତକ ଧାର ଯେମନ୍ତ ବୋହି ଯିବାକୁ ଲାଗିଲା )

ମସ୍ୟୁମ—( କି ଗୋଟାଏ ଆଶଙ୍କାରେ ଦୋହଲିଲେ ମଧ୍ୟ, ଆଶାର ଦମ୍ଭରେ ଠିଆ ହୋଇଥିଲା )

[ ନେପଥ୍ୟେ ହଠାତ୍ ବଂଶୀର ଧ୍ୱନି ଖୁବ୍ ସୁସ୍ପଷ୍ଟଭାବେ ଶୁଣାଗଲା—"ଅନ୍ଦର୍‌ମେ ବନାୟା ମହଲ୍ ତେରେ—" ]

ବେଗମ୍—ଏହି—ଏହି—ସେହି ବଂଶୀର ତାନ୍—ସେହି ମୋହନ ଝାଙ୍କ୍—ମୋ'ର ମରମ ଗାନ୍—( କି ଅକର୍ଷଣରେ ଯେପରି ଆହୁ ବିହ୍ୱଳ ହୋଇ ଉନ୍ମାଦିନୀ ପରି ଧାଇଁଗଲେ )

ମସ୍ୟୁମ—ବେଗମ୍ ସାହେବା—ବେଗ—( ଧରି ପକାଇଲେ )

ବେଗମ୍—ଏହି—ଏହି—ଏଣେ ଯେ—ଏଣେ ଯେ—ଝିଭ ନିକଟରେ—ଅତି— ? କିଏ—କିଏ ?—( ସିରାଜକୁ ଯେମିତି ଯେମିତି ସତେ ମୁହୂର୍ତ୍ତିକ ପାଇଁ ବାହାରେ ସେହି ବଂଶୀବାଦକ ମୂର୍ତ୍ତିରେ ଦେଖିଲେ, କିନ୍ତୁ ଅସ୍ପଷ୍ଟଭାବେ ) ସୁର୍‌ମା—ସୁର୍‌ମା—( ଦୃଷ୍ଟିର ସମସ୍ତ ଶକ୍ତି ପ୍ରୟୋଗ କରି ଚାହିଁବାକୁ ଲାଗିଲେ )

[ ଗୋଟିଏ ବାନ୍ଦୀ ତତ୍‌କ୍ଷଣାତ୍ ଗୋଟିଏ ରୌପ୍ୟ ପାତ୍ରରେ ସୁର୍‌ମା ଗୁଣ୍ଡା ଆଣି ଠିଆହେଲା ]

ମସ୍ୟୁମ—ଅଲ୍‌ଖେଲି-ପିନ୍ଧିଲା ଭଳି ଜଣାପଡ଼ୁଛି—ଫକୀର ହେବ ପରା—

ବେଗମ୍—ଫକୀର !—ନା, ନା—( ସୁର୍‌ମା ପାତ୍ରରୁ ସୁର୍‌ମା ନେଇ ପିନ୍ଧିବାକୁ ଲାଗିଲେ—)

ମସ୍ୟୁମ—କୌଣସି ପରଦେଶୀ ସ୍ତ୍ରୀ ନିଶ୍ଚୟ—ହିନ୍ଦୁସ୍ଥାନକୁ ନୂତନ ଆସିଚି ପରା—ବିଶେଷରେ

ଏହି ଅଗ୍ରାକୁ – ତା' ନ ହେଲେ କି ବେଗମ୍ ମହଲ ପାଖେ ଏମିତିକା ବଇଁଶୀ ବଜାଇବାକୁ —

ବେଗମ୍—କାହିଁ—କାହିଁ—ଅଜ ତ ଶୁଭୁ ନାହିଁ— ( ଶୁଣିବାକୁ ଓ ଦେଖିବାକୁ କେତେ ଚେଷ୍ଟାକଲେ ) ଏହି ଯେ—ଏହି ଯେ ପ୍ରେ— ( କି ଆଗ୍ରହରେ ଗୁହିଁ ରହିଥିଲେ )

ମଶ୍ୱାସ୍ୱମ୍—ବେଗମ୍ ମହଲ କି ନା—ନିଶ୍ଚେ ସିପାଇ ତାଙ୍କର ଢଙ୍କ ଦେଇଥିବ—ଅଜବୋଲ ରକ୍ଷା ପାଇଗଲା ବିଚାରେ—ନାହିଁତ କୋରଡ଼ାରେ, କୋରଡ଼ାରେ, ଏତେବେଳକୁ ଛାଲ ଓଡାରି ସରନ୍ତାଣି ।

ବେଗମ୍—ବେଶ୍, ବେଶ୍, ଏମିତିକା ସୁଯୋଗରେ ଥାଇ, ଡାକି ଅଣି ପାରିବୁ ?—ଯା', ଯା'— ଡାକିଅଣ—ଡାକିଅଣ—ସେ ବଇଁଶୀ ବାଇବ-- ମୁଁ ଗାଇବି !—ସେ ଗାଇବ—ମୁଁ ନାଚିବି !— ଯା, ଯା—ଏହି ଗୁଲିଗଲା ସେ—ଗଲା— ଗଲା— ( ଡେଇଁ ପଡ଼ିଲା ଭଳି ହେଲା )

ମଶ୍ୱାସ୍ୱମ୍—ଥଯୁ ଧର—( ଜଲ୍ଦୀ ଦଂନେପୂର୍ବକ ରହିଗଲେ ) ଥଯୁ ଧରନ୍ତୁ, ବେଗମ୍ ସାହେବା— ଏହି ଯେ ସେ ଅଲ୍‌ଖେଲଟା ଓଡାରି— ବାଲିରେ ପାରଦେଇ—ଗୋଡ଼, ହାତ, ମୁହଁ, ଧୋଇଅସି, ନମାଜ୍—

ବେଗମ—'ନମାଜ୍'—'ନମାଜ୍' ମୁଁ ବି ନମାଜ୍ କରିବି —( ସେହିପରି ସେଇଠି ନତଜାନୁ ହୋଇ ତା' ଉଦ୍ଦେଶ୍ୟରେ କେଜାଣି ନମାଜ୍‌ରେ ଅତ୍ମବିସ୍ମୃତା ହେଲେ )

ମଶ୍ୱାସ୍ୱମ—ଏହିକ୍ଷଣି ପରା ନମାଜ୍—( କହୁ କହୁ ରହିଗଲା—ବେଗମଙ୍କ ଏଁପରି ପ୍ରଶ୍ନ କରିବାଟା ବାନ୍ଦୀପକ୍ଷେ ଅନଧିକାର ଚର୍ଚ୍ଚା—ପୁଣି ନମାଜ୍‌ଙ୍କାରକୁ କରିବା, ଧର୍ମ-ଦୃଷ୍ଟିରେ ଘୋରତର ଅନ୍ୟାୟ—ଏହାର ପ୍ରାୟଶ୍ଚିତ୍ତସ୍ୱରୂପ ଚଟକଣି ଖାଇଲା )

( ନେପଥ୍ୟେ ବାଦ୍‌ସା )—ମମତାଜ୍ !—

ମଶ୍ୱାସ୍ୱମ—ବେଗମ୍ ସାହେବ — ବେଗମ୍ — ( ଏତେଟା ଧର୍ମଜ୍ଞାନ, ସବୁ ଲୁପ୍ତ ହୋଇଗଲା ବାଦ୍‌ସାଙ୍କ ଦେଖିଲା ମାତ୍ରେ—ମାତ୍ର ଗୋଟାଏ କନ୍‌କନ୍ ଭାବ ଦେଖାଗଲେ ମଧ୍ୟ, ଟିକିଏ ସ୍ମିତଭାବ ମଧ୍ୟେ ମଧ୍ୟେ ଦେଖା ଯାଉଥିଲା, ବୋଧହୁଏ ସେହି 'ବେଗମ୍' ସ୍ମୃତିରେ ପଡ଼ି )

ବେଗମ୍—( ସେହିପରି ଅତ୍ମବିସ୍ମୃତା ଥିଲେ— ତାଙ୍କର ମୁଖଭାଗରେ ବ ୧୦ର୍ଷ ପୂର୍ବେ ଇଦ୍-ଦିନର ଦେଇଁ ମଧୁରସ୍ମୃତି ଯେପରି ଖେଳିଖେଳି ବୁଲୁଥାଏ )

[ ଠିକ୍ ଏତିକିବେଳେ ଅନ୍ଦର ମହଲର ଆଲୁଅ ଧପ୍ ଧପ୍ କରି ଜଳଉଠିଲା ଅନ୍ତରର ଜ୍ୟୋତ୍ସ୍ନା ସହିତ ପ୍ରତିଦ୍ୱନ୍ଦିତା କରିବା ଅଭିପ୍ରାୟରେ କି ଅଉ ?—]

[ ସାଜାହାନ ଅତି ସାଗ୍ରହେ ପ୍ରବେଶ କଲେ ]

ସାଜାହାନ—ମମ୍‌ତାଜ୍ !—

ବେଗମ୍—( କି ଗୋଟାଏ ଫୁଲ୍ଲାରରେ ଅନ୍ତରର ସମସ୍ତ ଆଲୁଅ ଲିଭିଗଲା ଭଳି, ମୁଖର ମ୍ଳାନତାରୁ ଜଣାଗଲା— )

ସାଜାହାନ—ଓଃ—ନମାଜ୍ କରୁଛନ୍ତି ?—ଏତେ-ବେଳେ ?—( କିପରି ବିସ୍ମିତ, ବିବର୍ଣ୍ଣ ଓ ଚିନ୍ତିତ ହୋଇ ମଶ୍ୱାସ୍ୱାମଙ୍କୁ ଇଙ୍ଗିତରେ ସମ୍ବୋଧନ କରି, ଟିକିଏ ଅନ୍ତରାଳକୁ ଘେନି ଗଲେ )

ମଶ୍ୱାସ୍ୱମ—( ବାଦ୍‌ସା ଅସିଲା ବେଳୁଁ, କେବଳ କୁର୍ଣ୍ଣିସ କରିବାରେ ବ୍ୟସ୍ତଥାଏ—ଅଜ ଏପରି ଏତେ ଆଦବ୍‌କାୟଦା ଦେଖି, ବାଦ୍‌ସା ଯେ ହସି ନ ଥିଲେ, ତା' ନୁହେଁ )

ସାଜାହାନ—ବେଗମ୍ ସାହେବଙ୍କ ତବିୟତ୍—

ମଶ୍ୱାସ୍ୱମ—( ଅଜ୍ କଣ ଯେମନ୍ତ କହିବାକୁ ଯାଉଥିଲା —କାର ପ୍ରଲୋଭନରେ ) ଅଛି—ଅଛି— ( କିଏ ଯେମନ୍ତ କୁହାଟ ଦେଲା ଗୋଟାଏ ଧମକ୍‌ରେ — କିନ୍ତୁ ଦୁହିଙ୍କ ଅନ୍ତର୍ଦ୍ୱନ୍ଦରେ କିପରି ଇତସ୍ତତଃ ହେବାରଟା ବେଶ୍ ଜଣା ପଡ଼ୁଥିଲା—ଥରେ ବାହାରେ ଥରେ ବେଗମ୍

ଅଡ଼େ—ଏହାପରେ କି ଗୋଟାଏ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଗୃହିଁବା ଭଙ୍ଗିରେ )

ସାଜାହାନ—( ଟିକିଏ ହସିଲେ ଖାଲି—ସେ ଭଳି ସଙ୍କେତରେ କୌଣସି ଅର୍ଥ ନ ଦେଇ )
ସେମିତକା ଭୁଲ୍ ବକାଟକା—

ମସ୍‌ଜିଦ—ଭୁଲ୍ କି ସତ—( ତା'ର ଉତ୍ତେଜନାରେ କହି ପକାଇଲା ସତ, କିନ୍ତୁ ସାହାସ ଅଣ୍ଟୁ ନାହିଁ ପରି ) ନା, ନା, ଭୁଲ୍—ଭୁଲ୍—( ପ୍ରଶ୍ନ କ'ଣ, ଉତ୍ତର ସେ ଦଉଚି କ'ଣ ଏହାପରେ ଗୋଟାଏ ବାଉଳା ଗୃଡ଼ଲାରେ ଉପାଳଟା ତା'ର ଏକାବେଳକେ ଙ୍ଗିକେଇ ମାଉଥିଲା ପରି )

ସାଜାହାନ—କ'ଣ ହୋଇଚି ?—ଏତେ ଡର—

ମସ୍‌ଜିଦ୍—ବାଦ୍‌ସା—ବାଦ୍‌ସା—ବନ୍ଦୀକୁ—( କେଉଁ ଡରରେ ଯେମନ୍ତ ସବୁ ପ୍ରକାଶ କରି ଦେବାକୁ ଯାଉଥିଲା—)

[ ଏହି ସମୟରେ ସେହି ବାଂଶୀ ପୁଣି ବାଜି ଉଠିଲା ]

ବେଗମ୍—ବାଜଚି—ବାଜଚି ପୁଣି—ଏହି—ଏହି—ଅନ୍ଧାର—ଅନ୍ଧାର—ଅମିନା—ଅମିନା—ଡାକ୍—ଡାକ୍—ଅଲ୍ଲା—ଅଲ୍ଲା—ବାଦ୍‌ସା ! !—( ସମ୍ମୁଖେ ବାଦ୍‌ସାଙ୍କୁ ଦେଖି ସ୍ତମ୍ଭୀଭୂତା ହୋଇଗଲେ )

[ ମସ୍‌ଜିଦ୍ ସେତେବେଳକୁ କେଉଁଆଡ଼େ ପଳାଇ ବଞ୍ଚିଲାଣି ]

ବାଦ୍‌ସା—'ବା—ଦ୍—ସା'—( ଟିକିଏ ଶ୍ଳେଷପୂର୍ଣ୍ଣ ହସ ଯେ ନ ହସିଲେ, ତା' ନୁହେଁ, କିନ୍ତୁ ସଙ୍ଗେ ସଙ୍ଗେ—'ମୋତେ ତୁମର କରିନାଅ'—ଏହି ଅନୁରୋଧର ସାର୍ଥକତାଟା ଅନୁଭବ କରି ପରି, ଅନୁତପ୍ତ ହୋଇ, ସହାନୁଭୂତିପୂର୍ଣ୍ଣ ଦୃଷ୍ଟିରେ ଗୃହିଁଲେ )

ବେଗମ୍—ସାଜାହା—ନ୍ ସାଜାହାନ୍—( କୁହାଇ ପକାଇଲେ )

ବାଦ୍‌ସା—କେଉଁ ବାଜଣା ଶୁଣି—ତା'କୁ ଦେଖି ତେଣେ—ଏତେ ଚିତ୍କାର କରୁ—( ଅତ୍ୟଧିକ ସହାନୁଭୂତି ପ୍ରକାଶ କରିବାକୁ ଲାଗିଲେ—ବୋଧ-ହୁଏ ନିଜର ନିରୁତା ଉପଲବ୍ଧି କରିବାରୁ )

ବେଗମ୍—( କ'ଣ ଉତ୍ତର ଦେବେ କିଛି ଠିକ୍ କରି ପାରୁ ନ ଥିଲେ—ହଠାତ୍ ମୁଖ ଭଙ୍ଗିରୁ ଜଣାଗଲା ଯେମନ୍ତ ସମସ୍ତ ପ୍ରକାଶ କରିଦେବେ ପରି—କି ସେ ବିକଳ ଗୃହାଣୀ—ମୁଖଭାବ—ହୃଦ୍‌କମ୍ପ—ସର୍ବାଙ୍ଗର ଧର୍ଷଣ !—ପୃଥିବୀଟା ଯେଉଁଠି କେଉଁ ତଳକୁ ତଳକୁ ଘୁଞ୍ଚି ଯାଉଥିଲା କି ଆଉ—ଯେଉଁ ଭବେ ସେ ବାଦ୍‌ସାଙ୍କ ଆଲିଙ୍ଗନ ପାଶରୁ ତଳକୁ ତଳକୁ ଖସି ପଡ଼ୁଥିଲେ )

ସାଜାହାନ—ମମ୍‌ତାଜ୍ ! ମମ୍‌ତାଜ ଏତେ ଅଧୀର—ଅଥଚ୍—ଏହି ବାଜଣା ଶୁଣି ? ଏ'ତ ଆମର ନହବତ୍ ବାଜଣା—ରୋଜ୍ ସଞ୍ଜ, ସକାଳେ ବାଜୁଚି—ରୋଜ୍ ଶୁଣୁଚ—

ବେଗମ୍—କେମିତକା ବେକୁବ୍ ବନାଇଚି ତୁମକୁ—ଆଜି ଉତ୍ସବ ଦିନରେ—ବିବାହର ସ୍ମରଣୋତ୍ସବ-ଦିନରେ—ବାଜା ବାଜୁନି, ଶୁଣ—'ଦୁମ୍‌କାଦୁମ୍'—'ଦୁମ୍‌କାଦୁମ୍'—ପେଁ-ପେଁ—ଆହା—ହା—( କି ଗୋଟାଏ ମିଥ୍ୟାର ଆଶ୍ରୟରେ ଆପଣାକୁ ଉଦ୍ଧାର କରି ନେଲେ ସତ—କିନ୍ତୁ ଭିତରେ ଭିତରେ ଠିକ୍ ସେହିଭଳି 'ଦୁମ୍‌କାଦୁମ୍' ବାଜୁଥାଏ, ଆଉ କାନ ପାଖରେ କା'ର ସେହି କର୍କଶ ପେଁ-ପେଁ ସ୍ୱର ଲାଗି ରହିଥାଏ ବାଦ୍‌ସାଙ୍କ ପରାକ୍ରମ କରି ପାରିଛନ୍ତି ବୋଲି, ହସୁଥାନ୍ତି—କିନ୍ତୁ ସେଥିରେ କରୁଣତାର ଅଧିକତର ବିକାଶ କେବଳ ହେଉଥାଏ—)

ସାଜାହାନ୍—( ଏକଥା ଗୁଡ଼ାକ ଯେ ଅତି ସହଜରେ ବିଶ୍ୱାସ କଲେ, ତା' ନୁହେଁ—ସନ୍ଦେହ ଯେ ଖେଳି ନ ବୁଲିଲା, ତା' ନୁହେଁ—କିନ୍ତୁ ସବୁ ଛାପିଗଲା ଆପଣାର ହୃଦୟ ଲାଳସାର ସୁଅରେ—ଯା'ର ପରବଶ ହୋଇ ଆଜି ସେ ଜଣକୁ ବିକୃତ ମସ୍ତିଷ୍କ କରିଚନ୍ତି ବୋଲି, କହିଲେ ଚଳେ—ସୁତରାଂ

କହିଲେ ଏହାପରେ, ଅତି ସହଜ ସ୍ୱରେ—) ମୋ'ର
ମମ୍‌ତାଜ୍ ପାଇଁ ଯେଉଁ ବାଜଣା ଓ ଗାଉଣାର
ବନ୍ଦୋବସ୍ତ ହୋଇଛି—ତା'ତ ଅଜ ବାହାରେ
ନୁହେଁ—( କି ଯେ ଲୁବ୍ଧ ବତ୍ସଳ ଦୃଷ୍ଟିରେ
ଚାହିଁବାକୁ ଲାଗିଲେ )

ବେଗମ୍—ସାଜାହାନ୍—(ବୋଲି, କୁଣ୍ଢାଇ ପକାଇଲେ,
ଏହି କଥାରେ ପରିତୃପ୍ତ ହୋଇ, କି ସେହି ଦୃଷ୍ଟିରେ
ଆକୃଷ୍ଟ ହୋଇ—ସେ ଜାଣନ୍ତି )

ସାଜାହାନ୍—( ସେ ମଧ୍ୟ ଦୃଢ଼ ଭାବେ କୁଣ୍ଢାଇଲେ—
ଘାତର ସମାନ ପ୍ରତିଘାତରେ ସ୍ୱୈରତା ଅଣିବାର
ଉଦ୍ଦେଶ୍ୟରେ କି ଅନ୍ୟ ?—ପୁଣି ଏହା ଦୁର୍ଲ୍ଲଭ
ଆନନ୍ଦାମୃତ ଯେମନ୍ତ ଏହି ପ୍ରଥମ ଥର ପାନ
କରୁଛନ୍ତି—ଗୋଟାଏ ଯୁଗର ବିରହ ପରେ,
ଏହାପରେ ଭାବ ମଧ୍ୟ ପ୍ରକାଶ କଲେ )

[ ବାହାରେ ଘନ ଘନ ତୋପର ଧ୍ୱନି ହେଲା
ଠିକ୍ ସେତିକି ବେଳେ—ଏହି ଅପୂର୍ବ ମିଳନର
ପ୍ରତୀକ ଭାବେ ନା କ'ଣ ?— ]

ବେଗମ୍—ପ୍ରିୟତମ—ଏ ଦରବାର ପୋଷାକ କଣ୍ଟୁ
ହୋଇ ନାହିଁ—ମୁଁ ନିଜ ହାତରେ ସଜାଇ
ଦେବି—( ବାଦ୍‌ସା ଅଡ଼େ ଚାହିଁ, ହସି ହସି, ଅତି
ସହଜ ସ୍ୱରେ କହିଲେ )

ସାଜାହାନ—ମୁଁ ବି ଦରବାରରେ—ନିଜ ମୁହଁରେ,
ଘୋଷଣା କରିଦେବି—'ଅଜି ବାଦ୍‌ସାଙ୍କର
ପ୍ରକୃତ ବିବାହୋତ୍ସବ'— ! ( ବେଗମ୍ ଅଡ଼େ
ଚାହିଁ ଅନୁରୂପ ସ୍ୱରେ ଓ ଭାବେ ଯେପରି କହି
ଉଠିଲେ )

ବେଗମ୍—ବା—ଦ୍—( ବିବାହ ଦିନର ସ୍ମୃତିଟାର
ଦଂଶନରେ ଏହାପରେ କିଛି କହି ଅଟକି ଗଲେ
ପରି )

ବାଦ୍‌ସା—ନା, ନା—'ସାଜାହାନ'—'ସାଜାହାନ'—
( କା'ର ଉପରେ ଯେମନ୍ତ ଟେକି ନେଇ ପଳାଇ
ଗଲେ )

---

## ତୃତୀୟ ଦୃଶ୍ୟ

—ଉତ୍ସବ ମଣ୍ଡପ—

[ ଅଲୋକୋତ୍ସବର ଅନେକ ବର୍ଣ୍ଣରେ
ଅନ୍ଧାର କେଉଁଅଡ଼େ ଭାସି ଯାଉଛି—ନାନାଦି
ଅଗ୍ନିକ୍ରୀଡ଼ାର ଶବ୍ଦ ଶୁଣା ଯାଉଛି—ବିବିଧ
ବାଦ୍ୟର ସମିଶ୍ରଣରେ ଗୋଟିଏ ଅପୂର୍ବ ସଙ୍ଗୀତର
ସୃଷ୍ଟି ହୋଇଛି—ଭିତରେ ଘଣ୍ଟା ହଠାତ୍ ବାଜି
ଉଠିଲା—ଲାଲ୍, ନୀଳ ପ୍ରଭୃତି ନାନାରଙ୍ଗର
ଆଲୋକ ଜଳି ଉଠିଲା—'ତାର' ବାଦ୍ୟଯନ୍ତ୍ରର
ଝଙ୍କାରରେ କଟଠି ଦୂରିଗଲା—କେତେ ରଙ୍ଗର
ପୋଷାକ ପିନ୍ଧି, ନର୍ତ୍ତକୀଗଣ ନାନା ଢଙ୍ଗଭଙ୍ଗରେ
ଆସିବାକୁ ଲାଗିଲେ—ଖୁବ୍ ବଢ଼ିଆ, ଜରିର
ଝଲ୍‌ମଲ୍ ପେଶ୍‌ୱାଜ ପିନ୍ଧି, ମସ୍ୟୁମ୍ ହସି ହସି,
ଧୀର ଛନ୍ଦରେ, ନାଚିଲା ଭଙ୍ଗୀରେ ପ୍ରବେଶ କଲା—
ନର୍ତ୍ତକୀଗଣ ବେଗମ୍‌ଙ୍କୁ ଅଧିକତର ଉତ୍ସୁକରେ
କୁର୍ଣ୍ଣିସ୍ କରି ସମ୍ମାନ ଦେଖାଇବାକୁ ଲାଗିଲେ— ]

ମସ୍ୟୁମ—ବେଗମ୍ ସାହେବାଙ୍କ ହୁକୁମ୍—ମନ ଇଚ୍ଛା
ପୂର୍ତ୍ତି କର—ନାଚ—ଗାଅ—

ସମସ୍ତେ—କେୟାବାତ୍—କେୟାବାତ୍ !—ବେଗମ୍
ସାହେବାଉ ଆ-ପ୍-ଇ— ( କହୁ କହୁ
ହଠାତ୍ ଯେମନ୍ତ ଦମିଗଲେ )

ମସ୍ୟୁମ—( ସାଶ୍ଚର୍ଯ୍ୟେ ଚାହିଁ, ଉଲ୍ଲାସରେ ଯେମନ୍ତ
ଭରି ଉଠିଲା )

ସମସ୍ତେ—ଆପଣ ତ ଆମର ହର୍ତ୍ତାକର୍ତ୍ତା—ଆପଣ ତ
ଆମର—( ଏହାପରେ କହୁ କହୁ ମସ୍ୟୁମକୁ ଟେକି
ନେଇ ଏକରକମ ସେହି ମଣ୍ଡପ ଉପରେ ବେଗମ-
ଆସନରେ ବସାଇଦେଲେ—କୁର୍ଣ୍ଣିସ୍ କଲେ—
ସରାପ୍ ଦେଲେ—ଗାଇଲେ—ନାଚିଲେ— )

ମସ୍ୟୁମ—( ପ୍ରଥମେ ପ୍ରଥମେ ବେଗମ୍-ଆସନରେ
ବସିବାକୁ କିପରି ଭୀତ ଓ ସଙ୍କୁଚିତ ହେଉଥିଲା—
କିନ୍ତୁ କ୍ରମେ କ୍ରମେ କେଉଁ ଉଚ୍ଚାଭିଳାଷ ବା
ଈର୍ଷାର ତାଡ଼ନାରେ ଏବଂ ସିରାଜି ସରାପ୍ ସଙ୍ଗେ
ସଙ୍ଗେ ଗାନର ମାଦକତା ଓ ଉତ୍ତେଜନାରେ,
ବେଶ୍ ଦମ୍ଭହୋଇ ବସିଲା—ନିଜର ବେଶଭୂଷା

ଅଙ୍ଗେ ଗ୍ରହିଁବ ଓ ରେହେବାଂକୁ ସାମ୍ନା ସବନାରେ ଦେଖି, ବେଶ୍ ଗମ୍ଭୀର କରଦେଲ ମଧ୍ୟ)
ସିରାଜ—ସିରାଜ—

[ ଜଣେ ଏକଗ୍ଲାସ୍ ସିରାଜ ଆଣି ଠିଆହେଲ ]

ମସ୍ତାସୁମ—ବେଗମ୍ ସାହେବ୍‌କା ହୁକୁମ୍—ଏକଗ୍ଲାସ୍ ବୋଲ୍‌ତେନେସେ—

ସମସ୍ତେ—ଦଶଗ୍ଲାସ୍—ବିଶ୍‌ଗ୍ଲାସ୍—ଶ', ଶ'ଗ୍ଲାସ୍—
( କୁର୍ଣ୍ଣିସ୍ କରୁ କରୁ ଗ୍ଲାସ୍ ପରେ ଗ୍ଲାସ୍ ସିରାଜ ଆଣି ବେଗମଙ୍କ ସାମ୍ନାରେ ହାଜର କରି, ଉପ୍ପର ଅଭିନୟ କରୁ କରୁ, ଠିଆ-ହେଲେ )

ମସ୍ତାସୁମ—ହାଃ-ହାଃ-ହାଃ—( ଗ୍ଲାସ୍ ପରେ ଗ୍ଲାସ୍ ପିଇ ପିଇ ଉଚ୍ଚହାସ୍ୟ କରି ଉଠିଲ )
ବୋଲ୍‌ଓ କନ୍ଦିଅଲ୍ କୋ—ବାଟୋ ବଣ୍ଡୀଟୋ —ଲେଆଓ ଗ୍ଲେଡ୍‌ସ୍ଟୋ—

ସମସ୍ତେ—ହୋଃ-ହୋଃ-ହୋଃ—( କରି ହସି ଉଠିଲେ, ଯେମିତକା ଆଉ ସମ୍ଭାଳି ନପାରି )

ମସ୍ତାସୁମ—କି ? ମୁଁ ବେଗମ୍ !—ମୋତେ ବେଗାଣର୍—
( କହୁ କହୁ ଉଠି ଆସିବ କଣା, ପଡ଼ିଲ ସେ । )

ସମସ୍ତେ—ହାଁ, ହାଁ, ହାଁ—ବେଗମ୍ ଅମର—ବେଗମ୍—( ଧରି ପକା'ଇଲେ ଓ ଟେକି ଧରି ଗାଇବାକୁ ଲାଗିଲେ )

ମସ୍ତାସୁମ—( କଣାରେ ଯେମନ୍ତ ତଳ ପଡ଼ିଥିଲ )

[ ଗୀତ ବଢ଼ିବା ସଙ୍ଗେ ସଙ୍ଗେ ଏହାପରି ସିରାଜ, ସରାପ—ହାସ, ପରିହାସ ବଢ଼ି ଚାଲିବାରୁ ଉତ୍ସବଟା ଗୋଟିଏ ହଲ୍ଲାରେ ପରିଣତ ହେଲା—ଖୋଜା ମାନେ ମଧ୍ୟ ଆସି ଯୋଗଦେଲେ—ସବୁ ଦନର କଣାଗୋଟୁ—ଖୋଲପାଇ ଯା ତା' କରିବାକୁ ଲାଗିଲେ ପରି—ତଳେ ଯେଉଁ ଟୋପାକ ମଦ ପଡ଼ିଥିଲା, ତା'ର ଜିଭ ଲଗାଇ ଚାଟିନେବାକୁ ଛାଡ଼ିଲେ ନାହିଁ ]

[ ହଠାତ୍ ଶ୍ଳଥବସନା—ଅଲୁଳାୟିତକେଶା ବେଗମ୍ ସାହେବା ପର୍ଦ୍ଦାଠେଲି ବେଗେ ପ୍ରବେଶ କଲେ ]

ବେଗମ୍—ଏତେ ହଲ୍ଲା ! ଏତେ ଗୋଳମାଳ ! କୈଫିୟତ୍ — କୈଫିୟତ୍ — ମସ୍ତାସୁମ୍ — ମସ୍ତାସୁମ୍
( ମସ୍ତାସୁମ୍ ଭୂତପରି ଯେମନ୍ତ ଛୁଟି ଆସିଲ )
[ ଅନ୍ୟ ସମସ୍ତେ କୁର୍ଣ୍ଣିସ୍ କରୁ କରୁ ଅନ୍ତରାଳକୁ ଚାଲିଗଲେ ]

ବେଗମ୍—ଲିଭାଇ ଦେ—ଲିଭାଇ ଦେ—ଗୋଟି ଗୋଟି କରି—ସବୁ ଆଲୁଅ—ସବୁ—ଅନ୍ଧାର !—ଅନ୍ଧାର !—

[ ମସ୍ତାସୁମ ଚାଲିଗଲା ଓ ସଙ୍ଗେ ସଙ୍ଗେ ଭିତରର ସମସ୍ତ ଆଲୁଅ ଲିଭିଗଲା, କେବଳ ଗୋଟିଏ ସ୍ତିମିତ ଆଲୁଅ ଛଡ଼ା—ମାତ୍ର, ବାହାରର ଆଲୁଅ ଦେଖି ବେଗମ୍ ଛୁଟିଗଲେ ]

ବେଗମ୍—ସାଜାହାନ !—ସାଜାହାନ !—ତୁମର କ'ଣ ବାଦ୍‌ସାହି ଲୋପ ପାଇଛି ?—କାହିଁ ?—ବାହାରେତ କିଛି ବନ୍ଦ ହୋଇନାହିଁ—ମୋ ନାଁରେ ହୁକୁମ କର—ମମତାଜ୍ ନାଁରେ ପରୱାନା ଜାହିର କର—ବନ୍ଦ—ବନ୍ଦ—ସବୁ ବଜା ବନ୍ଦ—ସବୁ ଆଲୁଅ ବନ୍ଦ—ମସ୍ତାସୁମ—ମସ୍ତାସୁମ—

[ ମସ୍ତାସୁମ୍ ପୁଣି ବେଗେ ପ୍ରବେଶ କଲା ]

ବେଗମ୍—ବନ୍ଦ କର—ବନ୍ଦ କର—ଯେତେ ବତ୍ତିଅଛି —ସବୁ—ଗୋଟି ଗୋଟି କରି—ବାହାରର କିଛି ଅନ୍ଦରରେ ପଶିବ ନାହିଁ—ଦିନର ଆଲୁଅ ନୁହେଁ —ଚନ୍ଦ୍ରର କିରଣ ବି ନୁହେଁ—ନା, ନା, ଯମୁନାର ପବନସୁଦ୍ଧା ନୁହେଁ—( ଏହି ଶେଷ ପଦୋଚ୍ଚାରଣରେ କାପରି ଶିଥିଳ ହୋଇ ପଡ଼ୁଥିଲେ ପରି )

[ ବାଦ୍‌ସା ସବେଗରେ ପ୍ରବେଶ କଲେ ଓ ମସ୍ତାସୁମ ପଳାଇଗଲା ]

ବାଦ୍‌ସା—ଏ'ଠି ତୁମେ, ମମତାଜ୍ । ଦେଖ, ଦେଖ —ହୁକୁମ ତୁମର ଅକ୍ଷରେ ଅକ୍ଷରେ ତାମିଲ୍ ହୋଇଛି କି ନାହିଁ ?

[ ପ୍ରକୃତରେ ସେତେବେଳକୁ ସମସ୍ତ ଅନ୍ଧକାର ହୋଇଗଲାଣି ଓ ବାଜା ବନ୍ଦହୋଇ ଯିବାରୁ ଗୋଟାଏ ନିସ୍ତବ୍ଧତା ବିରାଜ କଲାଣି ]

ବେଗମ୍—ହୋଇଛ !—ହୋଇଛ !—ଏତେ ଭଲ-
ପାଅ ନା, ତୁମେ ମୋତେ ? ମୁଁ କ'ଣ ଠିକ୍ ସେହି-
ପରି ଭଲପାଏ ନାହିଁ ତୁମକୁ ? ହାଃ-ହାଃ-
ହାଃ—କହିଲ, କହିଲ—ବାସ୍ତବ କୌଣସି ସମ୍ପର୍କ
କି, ଅଶ୍ରୁ ମାନାବରେ ଘୁଞ୍ଚା, ମୋ'ର ରକ୍ଷିବା ଉଚିତ
—ତୁମର ଯେ ମୁଁ ସବୁ—ତୁମକୁଇ ଯେ ଗୋଟାଏ
ଯାକ ଦେଇଗ କରିବାକୁ ଦେବା—ଏ' କ'ଣ ?
ତଥାପି ଅଲ୍ପଅ ?—ଲଭ୍ୟଅ—ଲଭ୍ୟଅ—
କୌଣସିଠାରେ—କୌଣସି ନଭୃତ କଣରେ
ଘୁଞ୍ଚା—ବର୍ତ୍ତିକାଟିଏ ମିଞ୍ଜି ମିଞ୍ଜି ବ ଜଳବ
ନାହିଁ—ଅନ୍ଧାର—ଅନ୍ଧାର—ଘୁର୍ବ ଅନ୍ଧାର—
ବାହାରେ, ଅନ୍ଦରେ ସମାନ ଅନ୍ଧାର—।

ବାଦ୍‌ସା—ସବୁ ଅନ୍ଧାର କରିଦେବାଟା—

ବେଗମ୍—ପ୍ରଣୟୀ ପକ୍ଷେ ଉଚିତ ନୁହେଁ କି,
ସାଜାହାନ ?—

ବାଦ୍‌ସା—ଠିକ୍—ଠିକ୍—( ଇଙ୍ଗିତ କଲେ ଓ ସମସ୍ତ
ଗାଢ଼ ଅନ୍ଧାରରେ ପରିଣତ ହୋଇଗଲା )

ବେଗମ୍—ଓଃ—ଶ୍ୱାସ ଯେ ମୋ'ର—
( ମୂର୍ଚ୍ଛିତ ହୋଇ ପଡ଼ିଗଲେ ପରି )

ବାଦ୍‌ସା—ମମତାଜ୍—ମମତାଜ୍—
( ବୋଲି, ଦେଉଁ ଅନ୍ଧକୂପରୁ ରକ୍ଷା କରିବା
ମାନସରେ ବେଗେ ପଳାଇଲେ କି ଅଡ଼ ? )

[ ଘୋର ନିସ୍ତବ୍ଧତା ବିରାଜ କରିବାକୁ ଲାଗିଲା
—କିନ୍ତୁ ଗୋଟାଏ କାତରତା ଓ ଅବସନ୍ନତା
ଯେପରି ଆଚ୍ଛନ୍ନ କରିଥାଏ—ବିଶେଷତଃ ବାଦ୍‌-
ସାଙ୍କ ଏହି କାତରତାରେ ]

[ କିଛିକ୍ଷଣ ପରେ ଖୁବ୍ ଅସ୍ପଷ୍ଟରୁ କ୍ରମେ
କ୍ରମେ ସ୍ପଷ୍ଟତର ଭାବେ ଥରି ଥରି ବଂଶୀର ଗୋଟିଏ
କରୁଣ ଆହ୍ୱାନା ଜ୍ୱଳନ୍ତ ରଶ୍ମି ପରି ଆସି, ଉପସ୍ଥିତ
ହେଲା—ପର୍ଦ୍ଦାଭେଦ କରି ଭିତରେ ପ୍ରବେଶ କଲା
—ପର୍ଦ୍ଦାର ଫାଙ୍କରେ ଦେଖାଗଲା, ସେହି ରଶ୍ମିଟି
ନବଦମ୍ପତି ପରି ସ୍ୱାମୀ ସଙ୍ଗେ ଏକଶଯ୍ୟାରେ,
ଫୁଲଶଯ୍ୟାରେ କି ଅଛି, ଶାୟିତା ମମତାଜର
ଭୁରୁକୁ ସ୍ପର୍ଶକଲା, ନା, ନା ଭେଦ କରି ମର୍ମକୁ
ସ୍ପର୍ଶକଲା ପରି—ସେ ଚମକି, ଉଠି ବସିଲେ ]

ମମତାଜ୍—ଏହି—ଏହି—ଡାକୁଛ — ଡାକୁଛ —
( କପଟ ବାହ୍ୟ-ଜ୍ଞାନଶୂନ୍ୟା ଦସ୍ତୁଅନ୍ତ—ସେହି
ରଶ୍ମିର ଆକର୍ଷଣରେ ଯେପରି ଓହ୍ଲାଇ ଆସି, ପଲଙ୍କ
ପାଖେ ଠିଆ ହେଲେ )

ସାଜାହାନ—ମମତାଜ୍—( ବୋଲି, ତେଉଁ ଆବେଗ
ଓ ଆକୁଳତାରେ ଥରେ ମାଜି ଡାକି ଉଠି, ସେହି
ନାଦ୍‌ଭାବସ୍ଥାରେହିଁ କର ଲେଉଟାଇଲେ ଏବଂ
ବେଗମଙ୍କୁ ଆଲିଙ୍ଗନ କଲେ ବୋଲି ଭାବି,
ତକିଆଟାକୁ ତାଙ୍କର କାପୁଚି କୋଳକୁ ଅଙ୍କେଇ
ନେଲେ କି ଅଡ଼ )

ମମତାଜ୍—( ହଠାତ୍ ଏପରି ଆହ୍ୱାନରେ ମୁହଁ ବୁଲାଇ
ସାଜାହାନ ଅଡ଼େ ଚାହିଁଲେ ଥରେ, କିନ୍ତୁ
ନିର୍ବିକାରଭାବେ—ତତ୍ପର ପଦକ୍ଷେପ କଲେ,
ତାଳେ ତାଳେ, ସେହି ରଶ୍ମି ରେଖାକୁ ଅନୁସରଣ
କରି ଉଇକା—ଯାଉଁ ଯାଉଁ ଆପଣାର ବୋଉଖୋଟା
ଫୁଲ୍ ଥିବାର ଦେଖି, କି ହାରୁଛ ଯାଇ କାଢ଼ି-
ଆଣି, ପିନ୍ଧି ପକାଇଲେ ଓ ଦ୍ୱାରବନ୍ଧ ପର୍ଦ୍ଦା ପର୍ଯ୍ୟନ୍ତ
ଆସିଗଲେ )

[ ନେପଥ୍ୟେ ଅନ୍ଦରରୁ ଶୁଣାଗଲା—'ମା—
ମା—କୁଅଁ—କୁଅଁ'— ]

ମମତାଜ—( ତେଉଁ ଆକର୍ଷଣରେ ଯେମିତତା ଠକ୍
କିନା ରହିଯାଇ, ସେହି ଘରଅଡ଼େ ଚାହିଁଲେ
ଥରେ, ବଦାସ୍ୟ-ଯାନୀ ଭଳି—କିନ୍ତୁ ନିର୍ଜୀବ
ପିଚ୍ଛୁଳାଟି ପରି—ପୁଣି ଗନ୍ତବ୍ୟ ପଥ ଅନୁସରଣ
କଲେ ସେହି ତାଳେ ତାଳେ )

[ ପର୍ଦ୍ଦାର ଏ'ପାଖରେ, ହଠାତ୍ ମଗ୍ନସ୍ୱପ୍ନ
ମାତାଲ ହୋଇ ଆପଣା ମନରେ କ'ଣ ଗୁଡ଼ାଏ
ଏଣୁ ତେଣୁ ବକୁ ବକୁ ଗାଢ଼ ଗାଢ଼ ହସିହସିକା
ପ୍ରବେଶ କଲା—ମମତାଜର ମୂର୍ତ୍ତି ମଧ୍ୟ ଠିକ୍
ପାଖାପାଖି ହୋଇ ଯାଉଥିଲା ]

ମସ୍ସୁମ—ଭୋନ୍‌ହେସ୍ତ ?—( କେଉଁ ଖେୟାଲରେ କହୁ—ସେହୁ ଖେୟାଲରେ ଯେମନ୍ତ ଭାସିଗଲା )

ମମତାଜ—( ସେହି ଧଡ଼ସ୍‌ରେ ଟିକିଏ ଯେ ଥମି, ତା ପାଖେଇ ନ ଗଲେ, ତା’ ନୁହେଁ )

ମସ୍ସୁମ—ବେଗମ୍ — ବେଗମ୍ — ହାଃ-ହାଃ-ହାଃ- —( କହୁ କହୁ ସେହି ଖେୟାଲରେଇ ଭାସି-ଚାଲିଗଲା )

ମମତାଜ—( ଟିକିଏ ଥରି ଉଠିଲେ ପରି—ଏହି ‘ବେଗମ’, ପଦରେ ଆପଣାକୁ ସମ୍ବୋଧନ ମନେ କରି କି କ’ଣ ?—ପୁଣି ଚାଲିବାକୁ ଲାଗିଲେ ଓ ଅବତରଣ-ସୋପାନ ପାଖେ ଆସି ପହଞ୍ଚିଲେ )

[ ହଠାତ୍ କଣାରେ ବେହୁସ୍ ଦୁଇଜଣ ଖୋଜା ପ୍ରହରୀ କେଉଁ ଅଜ୍ଞ ଦୂରଖଣ୍ଡ କଳା କଳା ମେଘ ଭଳି ଅପସାରିତ ଦରଜରୁ ଧାଇଁ ଆସି ସଙ୍ଘର୍ଷଣୋନ୍ମୁଖୀ ହେଲେ ପରି ]

ଖୋଜାଗଣ— ଖଡ଼ାବହୋ —( ବିଦ୍ୟୁଦ୍‌ଚମକରେ ଖଡ୍‌ଗକୁ ଖଡ୍‌ଗରେ ମିଶାଇ ଗର୍ଜି ଉଠିଲେ କି ଥଉ )

ମମତାଜ—( କପଟ ଶଙ୍କିତା ହୋଇ କ୍ଷଣେକ ଠିଆ ନ ହେଲେ ଯେ ତା ନୁହେଁ, କିନ୍ତୁ ସେହି ଖଡ୍‌ଗ ଖିଲ୍ଲଣ ତଳଦେଇ ଚାଲି ଗଲେ, ଅବଲୀଳାରେ )

[ ଖୋଜାଗଣଙ୍କ ଶିଥିଳମୁଷ୍ଟିରୁ ଖଡ୍‌ଗ ତଳେ ପଡ଼ିଗଲା—ସେହି ‘ଝଣାତ୍’ ଶବ୍ଦରେ ଚମକି ଉଠି ତଟମଟ ହୋଇ ପରସ୍ପରକୁ ଚାହିଁଲେ ଓ ଅଟ୍ଟହାସ୍ୟ କରି ଉଠିଲେ, ବୋଧହୁଏ ସେମାନେ ଯେ କେତେ ସତର୍କ ଏହି ଜ୍ଞାନଟା ଆପଣା ଆପଣା ମନେ ବଦ୍ଧମୂଳ ହେବାରୁ—]

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

—ରାଜପ୍ରାସାଦ—

[ ଏଣେ ଯାମିନୀ ଓ ପ୍ରଭାତର ପରସ୍ପର ବିଦାୟ ଚୁମ୍ବନର **ଅନ୍ତରାଳରେ**, ତେଣେ ଭାରି ଚହଳ ପଡ଼ିଗଲାଣି—ବେଗମ୍ ମହଲରେ—ସାରା ରାଜ-ପ୍ରାସାଦରେ;—ବେଗମ୍ ରାତିର କେତେବେଳେ ଯେ ଓ୍ୟାସର ବାହାରେ ଆସି ଅଜ୍ଞାନ ହୋଇ ପଡ଼ିଥିଲେ, କାହାରିକୁ ଗୋଚର ନାହିଁ—ଖୋଜା ଓ ପରିଚାରିକାମାନେ ଆତଙ୍କରେ ମୃତପ୍ରାୟ—ବେଗମଙ୍କ ଶୟନକକ୍ଷରେ ବେଗମ୍ ସେହିପରି ଅଜ୍ଞାନାବସ୍ଥାରେ ଅଦ୍ୟାପି ଶାୟିତା—ତନୟୁବ, କେତେବେଳେ ‘ମା—ମା’—କେତେବେଳେ ବା ‘କଥାକହ’ ବୋଲି, ମା’ର ଓଠ ସ୍ପର୍ଶ କରୁଛନ୍ତି—ଆଖି ପତାରେ ହାତ ବୁଲାଇ ଦେଉଛନ୍ତି—ଗଣ୍ଡସ୍ଥଳ ଚୁମ୍ବନ କରୁଛନ୍ତି—ଚତୁର୍ଥଟି ‘କୁଆଁ-କୁଆଁ’ ରବରେ ବେଳେ-ବେଳେ ମର୍ମର କଥା ମର୍ମକୁ କହି ଦେଉଥାଏ ପରି—ସାଜାହାନ ବେଳକୁବେଳ ଅଧିକତର ଗମ୍ଭୀର ମୂର୍ତ୍ତି ଧାରଣ କରୁଥାନ୍ତି—ପ୍ରସ୍ତର ପାଲଟି ଗଲେ ନା କ’ଣ ?—ଆଖିପତା ଯେ ବିଲ୍‌କୁଲ୍ ପଡ଼ିବାକୁ ନାହିଁ—ଠିକ୍ ସେତିକିବେଳେ ମସ୍ସୁମ ଔଷଧ ନେଇ ପ୍ରବେଶ କଲା—]

ମସ୍ସୁମ—ଦ-ବେ-ଇ—( କି ଜୀବନମୂର୍ଚ୍ଛାରେ ଯେ ପଦଟି ଉଚ୍ଚାରଣ କଲା )

ସାଜାହାନ—ହାଃ-ହାଃ-ହାଃ— ଦବେଇ—( ସେହି ଅଦ୍ଭୁତ ହାସ୍ୟରେ ପିଲାମାନେ ଶିହରି ଉଠିଲେ ଓ ମସ୍ସୁମ ହାତରୁ ପୁଡ଼ିଆଟି ତଳେ ପଡ଼ିଗଲା—)

[ କିଛିକାଳ ସମସ୍ତେ ନିର୍ବାକ, ନିସ୍ତବ୍ଧ ହୋଇ ବାଦସାଙ୍କୁ ଚାହିଁ ରହିଲେ ]

ସାଜାହାନ—ଶୁଣ—( ଅତି ସହଜ ସ୍ୱରେ, କିନ୍ତୁ ଗମ୍ଭୀର ଭାବେ ମସ୍ୱାସୁମକୁ ପାଖକୁ ଡାକିଲେ )

ମସ୍ୱାସୁମ—ବାଦ୍‌ସା ! ବାଦ୍‌ସା ! ଯେ ଦଣ୍ଡଦେବେ ଦଅନ୍ତୁ—ପ୍ରକୃତରେ ବେଗମ୍ ସାହେବ୍ କପର ବାହାରକୁ ଗଲେ, ମୁଁ ଆଦୌ ଜାଣେ ନାହିଁ—( ପଡ଼ିଗଲା ଲମ୍ବ ଖମ୍ବ ହୋଇ ଚରଣ ତଳେ )

ସାଜାହାନ—ଉଠ୍—ଉଠ୍ ତୁ, ମସ୍ୱାସୁମ—ଯା—ଯା—କହିଦେ ଉଜୀର ସାହେବଙ୍କୁ—ଖୋଜାମାନଙ୍କୁ ମୁକ୍ତ କରିଦେବେ—ମୁଁ—ବାଦ୍‌ସା—ସାଜାହାନ—ପାଖରେ ଥାଇ ଯେତେବେଳେ—

ମସ୍ୱାସୁମ—( ଯିବ କି ରହିବ କିଛି ଠିକ୍ କରି ପାରୁ ନ ଥିଲା ପରି ଗୋଟାଏ ଉଦ୍‌ବେଗରେ—ଏ ଯେ କଳ୍ପନାତୀତ ହୁକୁମ—)

ସ ଜାହାନ—ହଁ, ମସ୍ୱାସୁମ—ସଞ୍ଜବେଳେ କିଏ ମୋତେ ଦେଖାଇଥିଲା ଟି—ବେଗମ୍ ସାହେବ କାହାକୁ ଡକାଇବା କଥା ଯେମିତକି—

ମସ୍ୱାସୁମ—ଜାହାଁପନା—ଜାହାଁପନା—ଜଣେ ଫକୀର—ବଇଁଶୀ ବଜାଇ—( ଅଭୟ ପାଇ ଯେ ଖାଲି ଏତକ କହି ଉଠିଲା ତା' ନୁହେଁ, କପରି ବଳ ପାଇ ମାତି ଉଠିଲା ପରି ଆପଣା ସ୍ୱଭାବ ଯେମ )

ସାଜାହାନ—ଫକୀର !—ଫକୀର !—ବୋଗଦାଦ୍‌ର ସେହି ଫକୀରଟା ନା ?—ଯେ କି ମାଟିର ଘଣ୍ଟାଏ—? ଠିକ୍ କହୁଚ—ଠିକ୍ କହୁଚ—କାହିଁ ?—କାହିଁ, ସେ ଫକୀର ?—ସେହି, ସଞ୍ଜବେଳେ ତା' ହେଲେ ବଇଁଶୀ ବଜାଇ—ନିଶ୍ଚୟ—ନିଶ୍ଚୟ ସେ ଯାଦୁକର—ସେ କୁହୁକ ଜାଣେ—

ମସ୍ୱାସୁମ—ଜାହାଁପନା—ଜାହାଁପନା—ନିଶ୍ଚୟ ସେ ସିରାଜ୍—( ଲାଳସାର କେଉଁ ପୂର୍ଣ୍ଣ ଆବେଗରେ କହି ପକାଇଲା ଏହିପରି )

ସାଜାହାନ—'ସିରାଜ'—'ସିରାଜ' !—

ମସ୍ୱାସୁମ—ସେହି ପାପଣ୍ଡଟାକୁ ଧରି ଆଣିଲେ—ମୋତେ ପୁରସ୍କାର ଦେବେ ବୋଲି—

ସାଜାହାନ—ଓହୋ ! ନାଚର ପାଖକୁ ଦୂତୀ ପଠାଉଥିଲେ ତେବେ—ହୋଃ-ହୋଃ—ଏ' ଯେ ହିନ୍ଦୁସ୍ଥାନ !—ତହିଁରେ ଏହି ସ୍ଥାନଟି ନାଗରଙ୍କ ଲୀଳାକୁଞ୍ଜ କି ନା !—

ମସ୍ୱାସୁମ—ଜାହାଁପନା—ପାପଣ୍ଡଟାକୁ ଶାସ୍ତିଦେବା କଥା, କିନ୍ତୁ—( ଅନ୍ତରର ଅନ୍ୟରୂପ ଭାବଟା ଯେ ଆଖିରେ, ମୁଖରେ ବ୍ୟକ୍ତହୋଇ ନ ପଡ଼ୁଥିଲା, ତା' ନୁହେଁ )

ସାଜାହାନ—ଶାସ୍ତି ! ଶାସ୍ତି ! ହୋଃ-ହୋଃ-ହୋଃ—କପରି ଶାସ୍ତି ? ଜାଣୁ କି ?—ବୋଳକୁ ଭିଡ଼ିଆଣି—ବାହୁ ପାଶରେ ଖୁବ୍ କସିକରି ବାନ୍ଧି—ଅଧର ଦଂଶନରେ—

ମସ୍ୱାସୁମ—କିନ୍ତୁ, ଜାହାଁପନା ! ଜାହାଁପନା ! ସେହି ଘଣ୍ଟା ମଲଦଲ ଦେବାର କଥା, ସିରାଜର ତଥାର ଜାଣି ସୁଦ୍ଧା;—ରତ୍ନଚୂଡ଼ାକ ନିବୁଜ କରି ଲୁଚାଇବାର କଥା—ଆଉ, ଆଉ, ମୋର 'ନାଁ'ଟାକୁ ବଦଳାଇବାର—( ଏ ନକଲ୍ କି ଅସଲ୍ ଖୁବ୍ ପକ୍‌କା ଜହୁରି ପକ୍ଷେ ମଧ ଚିହ୍ନିବା ମୁସ୍କିଲ ପରି )

ସାଜାହାନ—ହାଃ-ହାଃ-ହାଃ—ଏ' ଯେ 'ମହା-ବିରହ'ର 'ମହା-ଅଭିମାନ' ! ଯମୁନାର କାଳିଆ ପାଣି—ମୁଣ୍ଡର କାଳିଆ କେଶ—ଆଖିର କାଳିଆ ଡୋଳା ଯୋଡ଼ାକ ବି ତ୍ୟାଗ କରିବାକୁ ମାନିନୀ ତଆର ହୋଇ ନ ଥିଲେ କି ?

ମସ୍ୱାସୁମ୍—ସେ ସିନା ତ୍ୟାଗ କରିବାକୁ ତଆର ହୋଇଥିଲେ, ଜାହାଁପନା—ଏ'କଣ ତ୍ୟାଗ ପ୍ରକୃତରେ କରି ନ ଥିଲେ ?—ଦେଖନ୍ତୁ—ଦେଖନ୍ତୁ, ଅଦ୍ୟାପି ମୁହିଁ, ପ୍ରଭଗୋଟ-ଲପ୍‌ସାଟା, ସେହି କୁଞ୍ଚିତ ଭ୍ରୂଯୁଗଳରେ—ସେହି ଦଂଶିତ ଅଧରରେ—ସ୍ପଷ୍ଟ ଅଙ୍କିତ ରହିଚି କି ନାହିଁ ? ( ଏ' ଇଙ୍ଗିତ ନା ପରୀକ୍ଷା )

ସାଜାହାନ—ଯା, ଯା, ତୁ ମସ୍ୱାସୁମ୍—ନା, ନା, ଅମିନା—ଅମିନା — ଧରିଆଣ— ଧରିଆଣ— ସେହି ସିରାଜକୁ — ଶେଷ — ଶେଷ-ସ୍ମୃତି

ତା'ର ।—ସବୁ, ସବୁ ସ୍ମୃତି ସେ ପେ ଓପାଡ଼ି ଫିଙ୍ଗି ଦେବାକୁ ମୋତେ କହୁଥିଲା, କୁଣ୍ଢାଇ ପକାଇ ମୋତେ ସଂପୂର୍ଣ୍ଣ ହୃଦୟ-ସର୍ବସ୍ୱ ତା'ର ଭୋଗ କରିବାକୁ ଦେବ ବୋଲି ?—ବାଃ-ବାଃ-ବାଃ—ହିନ୍ଦୁସ୍ଥାନକୁ ଦେଖାଇବି ଅଜ—ନା, ନା, ସାରା ବିଶ୍ୱକୁ ଦେଖାଇବି—କିପରି ତ୍ୟାଗ କରିପାରେ ମମ୍‌ତାଜ୍ ମୋ'ର—କିପରି ଭୋଗ କରିପାରେ ସାଜାହାନ ମୁହିଁ—ସାଜାହାନ—ସାଜାହାନ—ଆନନ୍ଦ କର—ଆନନ୍ଦ କର—ଯା'—ଯା'ତୁ ମସ୍ସୁମ—ନା, ନା, ଅମିନା—ଯା, ଯା, ତୋର ସେହି ପାଷଣ୍ଡ'ଟାକୁ ଧରିଅଣ—ଇନାମ୍ ।—ଇନାମ୍ ।—ଖୁବ୍ ଇନାମ୍—

ମସ୍ସୁମ—( କିଛି ବୁଝି ନ ପାରି ଥକ୍‌କାମାରି ଯାଇଥିଲା )

ସାଜାହାନ—ତୋତେ ବେଗମ୍ କରିଦେବି—ବେଗମ୍—ବେଗମ୍—

ମସ୍ସୁମ—ବାଦ୍‌ସା—ବା-ଦ୍—( ସ୍ୱର୍ଗରୁ ପଡ଼ିଲା ଭଳି ବାଦ୍‌ସାଙ୍କ ଗୋଡ଼ତଳେ ପଡ଼ିଗଲା ପରି )

ସାଜାହାନ—ହଠ୍—ହଠ୍—ଯା—ଯା—ତୁହି ଏକା ପାରିବୁ—ତୁହି ଏକା ଆଣି ପାରିବୁ—ତୋ'ର ଜାତର ଲୋକେ ଜାଣନ୍ତି ସିନା ପୀରତି କରି ମଜାଇ ବାକୁ, ସଙ୍ଗେ ସଙ୍ଗେ ଚୋଟିଏ ଖଞ୍ଜରେ କେତେବେଳେ କାଟିଦେଇ ଗଡ଼ାଇବାକୁ—

ମସ୍ସୁମ—( ଚମକି ଉଠିଲା )

ସାଜାହାନ—ହଁ, କହୁଥିଲି କ'ଣ କି, ତୁ ନ ହୋଇଥିଲେ କି ଏପରି କପୋଟି ମୁଁ ଆଜ ପାଇ—ଆନନ୍ଦରେ—( ମମତାଜ ଆଡ଼େ ଚୁହିଁଥିଲେ )

ମସ୍ସୁମ—( ଥରିବାକୁ ଲାଗିଲା ପରି )

ସାଜାହାନ—କପୋତ । କପୋତ । ଯା—ଯା'ତୁ—ଏହିକ୍ଷଣି—ଏହିକ୍ଷଣି—କପୋତକୁ ଶିକୁଳିରେ ବାନ୍ଧି ଘେନି ଆ—ମୁଁ କପୋତୀକୁ ଜୀଆଇ—ଖୁଆଇ—ହଁ—ହଁ—ଦବେଇ କାହିଁ ?—ଦବେଇ ?—ଦବେଇ ?—

ମସ୍ସୁମ—( ଦେବ କି ନାହିଁ ଠିକ୍ କରି ପାରୁ ନ ଥାଏ ପରି )

ସାଜାହାନ—( ମୃଦୁ ମୃଦୁ ହସି ) ଦେ, ଦେ—ନ ବଞ୍ଚିଲେ—ମଜା ହେବ କେମିତି ?—

ମସ୍ସୁମ—ଠିକ୍—ଠିକ୍ କହୁଚନ୍ତି, ଜାହାଁପନା—( ସେହି ଔଷଧକୁ ବାହାରେ ଫିଙ୍ଗିଦେଲା ଓ ଜେବ୍‌ରୁ ଅନ୍ୟ ଔଷଧ ବାହାର କରି ଦେଲା )

ସାଜାହାନ—ସେହି କଥାତ—ଅମିନା ନର୍ତ୍ତକୀ ସିନା ହଷ ଦଏ—ଅମିନା ବେଗମ୍ କି—?

ମସ୍ସୁମ—ସବୁର—ସବୁର, ବାଦ୍‌ସା—ମୁଁ ଆଗେ ସେହି ପାଷଣ୍ଡଟାକୁ—( ଚାଲି ଯାଉଥିଲା )

ସାଜାହାନ—ଜଲ୍‌ଦି—ଜଲ୍‌ଦି, ବେଗମ୍ ସାହେବା—( କ'ଣ ଇଙ୍ଗିତ କଲେ କେଜାଣି, ତେଣୁ ଅନ୍ଧକାରର ପ୍ରତିମୂର୍ତ୍ତି ଅନ୍ଧକାର ପରି ଖୋଜାଟାଏ ଆସି ଅମିନାକୁ ବାନ୍ଧି ପକାଇଲା ଆପାଦ ମସ୍ତକ )

ମସ୍ସୁମ—ବାଦ୍‌ସା—ବାଦ୍‌ସା—

ସାଜାହାନ — ହାଃ - ହାଃ - ହାଃ — ବେଗ୍‌ମ — ବେଗମ୍—ଜଲ୍‌ଦି—ଜଲ୍‌ଦି—ବୋଗ୍‌ଦାଦ୍—ବୋଗ୍‌ଦାଦ୍—ସିରାଜ୍—ସିରାଜ୍—ଆଜି ଇଦ୍—ଇଦ୍—

[ ଖୋଜା ମସ୍ସୁମକୁ ଘେନି ଚାଲିଗଲା ]

ମମ୍‌ତାଜ—ଆଜି 'ଇଦ୍' । ( ବୋଲି ହଠାତ୍ ଚଞ୍ଚଳାଇ ଯେମନ୍ତ ଉଠି ବସିଲେ ଏକାବେଳକେ, ସେହି 'ଇଦ୍'ର ଉଚ୍ଚାରଣରେ ନା କଣ ? )

ସାଜାହାନ—ମମ୍‌ତାଜ୍—ମମ୍‌ତାଜ୍—( ସାଗ୍ରହେ ଡାକିଲେ, ସମସ୍ତ ବିଶ୍ୱ ଭୁଲିଯାଇ ଯେମନ୍ତ )

ମମ୍‌ତାଜ୍—'ଖବରଦାର'—'ଖବରଦାର'—( ଠିକ୍ ସେହିପରି ପାଟିକରି ଉଠିଲେ, ମା ଯେଉଁପରି କହି ଉଠିଥିଲା ସେହି ଇଦ୍ ଦିନରେ )

ସାଜାହାନ—ମମ୍‌ତାଜ୍—ମମତାଜ୍—

ମମ୍‌ତାଜ୍—ସିରାଜ୍—ସିରାଜ୍—ମା—ମା—( ସେହି ଦିନପରି, କି ଯେ କାତର ଭାବେ ଡାକିବାକୁ ଲାଗିଲେ, ଅମିନା କବଳରୁ ମୁକ୍ତି ପ୍ରାର୍ଥନା କରି )

ସାକାହାନ—କିଛି ଭୟ ନାହିଁ, ମମ୍ ତାଜ୍—( ସେହି ସ୍ମୃତି ଓପାଡ଼ ଫିଙ୍ଗିଦେବା କଥା ମନେ କରି, ଅଭୟ ଦେଲେ ଯେମନ୍ତ )

ମମ୍ ତାଜ୍—'ଇମାନ୍' । 'ଇମାନ୍' । ( କେଉଁ ଦମ୍ଭରେ ଯେମନ୍ତ ଏହିପରି କହି ଉଠିଲେ, ତା'କୁ ଲକ୍ଷ୍ୟକରି )

ସାକାହାନ—ମୁହିଁ ବଶିବା — ମୁହିଁ ( ପ୍ରତିଦ୍ୱନ୍ଦୀକୁ ଭେଟିବାକୁ ବଦ୍ଧପରିକର ହେଲେ ପରି )

ମମ୍ ତାଜ୍—ତୁମେ ?—ବାଦ୍ ସା ?—ହାଃ-ହାଃ-

ସାକାହାନ—ଓଃ—ସେହି ସ୍ୱପ୍ନସୀତା କ'ଣ ଛାଡ଼, ଛାଡ଼ ନାହିଁ ? ଯାଇ, ଯାଇ ନାହିଁ ? କଲ୍‌ଦି—କଲ୍‌ଦି ନିକାଲୋ—ନିକାଲୋ—ଜାନ୍‌ସେ—ଦୁନିଆସେ—( ଦୌଡ଼ଗଲେ ଦ୍ୱାରଆଡ଼େ—ଫେରିଆସି ) ଶୁଅ, ଶୁଅ ତୁମେ ବେଗମ୍—ନା, ନା, ମମ୍ ତାଜ୍—ନିଶ୍ଚିନ୍ତ ହୋଇ—ମୁଁ ବାଦ୍ ସା—ନା ନା, ସାକାହାନ୍—ସାକାହାନ୍—ନିଜେ ଯାଇ, ଯେଉଁଠି ଥାଉ, ଯେଉଁ ଭାବେ ଥାଉ, ହାତ ଓଠ ଧରି, ସିଂହଙ୍କୁ ଚୁମିବି—ନା, ନା ପ୍ରିୟତମ, ପ୍ରାଣର ବନ୍ଧୁକୁ ମୋ'ର—ଲୁଣ୍ଠାଇ-ମୁଣ୍ଠାଇ ଯେନ ଆସି, ମିଳାଇ ଦେବା—ମିଶାଇ—( କି ଯେ ସେ ମିଶ୍ରିତ ଭାବ, ତାହା ତାଙ୍କରି ଗୋଚର ସିନା )

ମମ୍‌ତାଜ୍—ଏହି—ଏହି ଯେ ବଇଁଶୀ ନାଗୁଛୁ—ପୁଣି ବଜାଇବ—ପୁଣି ଟାଣିବ—ପୁଣି ସେହିପରି—ଗ୍ୟେର । ଗ୍ୟେର !—ଦଗାଦାର । ଦଗାଦାର ।—ଖଣ୍ଡ । ଖଣ୍ଡ ସେ !—ମୋତେ ଧର—ଧର—ଜାପୁଚ୍ଛି—ଜାପୁଚ୍ଛି, ବାଦ୍ ସା — ପିଲା—ପିଲା—( ସାକାହାନ ଓ ପିଲାମାନଙ୍କୁ ଜାପୁଡ଼ି ଧଇଲେ—କିନ୍ତୁ କେଉଁ ସ୍ଥିର ଦୃଷ୍ଟିରେ ଯେ-ତାହାକୁ ଚାହିଁ ରହିଲେ; ଆଖିର ପତା ପଡୁ ନଥିଲା କି, ତୋଳା ବି ଚାଲୁ ନଥିଲା )

ସାକାହାନ—ମମତାଜ୍—ମମତାଜ୍—( କେଉଁ ଉଚ୍ଛ୍ୱାସରେ ଯେ ଏହିପରି ଉଚ୍ଚାରଣ କରୁ କରୁ ଓ ଘନ ଘନ ଚୁମ୍ବନ କରୁ କରୁ ହୃଦୟ ବିଦୀର୍ଣ୍ଣ କରି, କେଉଁ ମନ୍ଦାକିନୀ ଧାରା ଛୁଟାଇ ଦେଲେ—)

ପିଲାମାନେ—'ମ'—ମା—(ଡାକୁ ଡାକୁ ଲୋଟାଇ ପଡ଼ିଲେପରି )

---

## ଦ୍ୱିତୀୟ ଦୃଶ୍ୟ

—ଗୋପପଲ୍ଲୀର ଗୋଟିଏ ପଲ୍ଲୀ କୁଟୀର—

[ ଫକୀର କିପରି ଶ୍ରାନ୍ତକ୍ଲାନ୍ତ ଓ ବିମନା ହୋଇ ବସିଥିଲେ—ତାହାକୁ ଯେ ଅନାଇ, ସେହି କ୍ଷଣେ—ସାମନାରେ ସ୍ତୂପୀକୃତ ହାଣ୍ଡି ମାଠିଆ ଶିକିପ୍ରେ—କେଉଁଟା ଟଳିଡ—କେଉଁଟା ଅର୍ଦ୍ଧ ଟଳିଡ—କେଉଁଟା ବା ଆଦୌ ହୋଇ ନାହିଁ—ପାଖରେ ରଙ୍ଗ, ତୁଳୀ ଆଦି ସରଞ୍ଜାମ—ବଇଁଶୀଟି ହାତରୁ କେତେବେଳେ ଯେ ଯାଇ ଖସି ତଳେ ପଡ଼ିଛି—କୁଡ଼ିଟିଏ ପିଠି ଅଙ୍ଗିଁ ଦେଉଥିଲା, କିନ୍ତୁ ପ୍ରଭାତର ଅସ୍ପଷ୍ଟାଲୋକରେ, ତାର ସ୍ୱରୂପ ଅସ୍ପଷ୍ଟ ଜଣାଯାଉଥିଲା ପରି —]

ବୁଢ଼ୀ—ଅ, ଅ, ବାପ ଘର ଭିତରକୁ ଅ—ଟିକିଏ ଶୋଇପଡ଼—ଦିନ ରାତି କାମ କରି କରି ଅଣ୍ଟା ପିଠି ଲଗି ଯିବଣି—ଅଜ ଦେହି ନାଅଁଲଟା ବଇଁଶୀଟା ଫୁଙ୍କି ଫୁଙ୍କି ମୁଣ୍ଡ କ'ଣ—

ଫକୀର—ବଇଁଶୀ—ବଇଁଶୀ—ପୁଣି ସେ ବଜାଇବାକୁ କହୁଛି—ବଜାଇଲେ, ପୁଣି ସେ ଆସିବ—ପୁଣି ସେହିପରି ଗାଇବ - ସେହିପରି ନାଚିବ—

ବୁଢ଼ୀ—ଆହା, ଆଖି ଥାଉ, ଆଖି ନାହିଁ—ଅଳ ଇଦ୍—ଇଦ୍ ପରି ଦିନରେ—( ଉଠାଇ ଦେଲା ବଂଶୀଟା )

ଫକୀର—ଇଦ୍ । ଇଦ୍ । ( କେଉଁ ଉତ୍ତେଜନା ଯେ ଦେଖାଗଲା )

ବୁଢ଼ା—ହଁରେ, ବାପ—ଅହା ! କି ସୁନ୍ଦର ସୁନ୍ଦର ଘଣ୍ଟି ମାଟିଅ ଖେଳଣା ଗଢ଼ିଚୁ—ରଙ୍ଗେଇଚୁ—ଏତେ ଗୁଡ଼ାଏ ମାଲ୍—କୁଆଡେ ଦଣ୍ଡକେ ପରି ଖତମ୍ ହୋଇଯିବ—ହଁକା, ମୋହର ଖାଲି ଝଣ୍ ଝଣ୍ ହୋଇ—

ଫକୀର—'ଝଣ୍-ଝଣ୍'—'ମୋହର' ।—'ମୋହର'—( ହାଃ-ହାଃ-ହାଃ-କରି ଉଚ୍ଚ ହାସ୍ୟ କରିବାକୁ ଯାଇ ଅଟକି ଗଲା ଏବଂ ମୃଦୁ ମୃଦୁ ହସି ବଜାଇବାକୁ ଅନେକ ଚେଷ୍ଟା କଲା; କିନ୍ତୁ ପାରିଲା ନାହିଁ—ହୁଏ ତ ତା'ର ଶକ୍ତି ନାହିଁ—କିମ୍ବା ପୂର୍ବ-ସ୍ମୃତି-ବଶତଃ ମନଟା-ବିଚଳିତ ହୋଇ ପଡ଼ିଥିଲା ) ଏ' କ'ଣ ?—ଏ କ'ଣ ?—ବାହିଁ ?—କାହିଁ ?—ଆଉତ ବାଜୁନାହିଁ, ମା —

ବୁଢ଼ା—କେତେ ତୁ ବଜାଇଲୁଣି, କହିଲୁ ଆଗେ—ବଜାଇ ବଜାଇ ଥକି ପଡ଼ିଲୁ ନାହିଁ ?—

ଫକୀର—ଥକି ପଡ଼ିବି—ଥକି ପଡ଼ିବି—ତା' ହେବ ନାହିଁ—ତା' ହେବ ନାହିଁ, ମା—ଦୁନିଆ-ଓଲଟିଗଲେ ବି ନୁହେଁ—ଉଃ—ଆଜି ଯେ ଇଦ୍-ଇଦ୍-ଇଦ୍-( ପୁଣି ବଜାଇବାକୁ ଘନ ଘନ ଚେଷ୍ଟା କଲା )

ବୁଢ଼ା—ଏତେ ଦମ୍ କାହୁଁ ଆସିବରେ, ବାପ ?—( ପିଠିରେ ହାତ ବୁଲାଇ ଦେବାକୁ ଲାଗିଲା ଅତି ସ୍ନେହଭରେ )

ଫକୀର—ଦମ୍ ନାହିଁ ମୋର—ଦମ୍ ନାହିଁ ?—ମା, ମା, ତେବେ ଆଉତ ସେ ଆସିବ ନାହିଁ—ଆସିବ ନାହିଁ—ମୁଁ ଯେ କେତେ ସରାଗରେ—କେତେ ଆବେଗରେ, ଡାକୁଥିଲି, ମା—ସେ ଆସିଥିଲା—କେତେ ରଙ୍ଗେ ନାଚିଥିଲା ମୋ' ସଙ୍ଗେ-ସବୁ ପାଶୋରି ଯାଇ—ମାନ-ଅଭିମାନ ସବୁ ଭୁଲିଯାଇ ! କେଉଁ ରାଜାର ଘରଣୀ ସେ—ଲଜ୍ଜା-ସରମ—ପଦ-ମର୍ଯ୍ୟାଦା—ସବୁ ପିଙ୍ଗି ଦେଇ !—ଫକୀରଟା ମୁଁ, ମୋର ହାତରେ ହାତ ଛନ୍ଦି—ଦେହରେ ଦେହ ମିଶାଇ—ପ୍ରାଣରେ ପ୍ରାଣ ମିଳାଇ—ମୋ'ର ଏହି ବଇଁଶୀଟା ବାଉଥିଲା, ମା—ମୋ'ର ନା' ଧରି—ଠିକ୍ ମୁଁ ଯେମିତି ତା' ନା' ଧରି ଡାକୁଥାଏ—କିନ୍ତୁ, କିନ୍ତୁ, ମା, ମୁଁ କପଟ ଲମ୍ପଟ, ଦଗାବାଜି—ତାକୁ ମଜାଇ-କଢ଼ାଇ, ମୁଣ୍ଡରେ ଚଢ଼ାଇ, ପୁଣି ଅକୂଳେ ଭସାଇ ଦେଲି, ମା—ସେହି—ସେହି 'ମା'ର ଇମାନ୍' ଛଳରେ—ଆପଣାର 'ଇମାନ' ଅହଂକାରରେ । ନୁହେଁ, ମା ? ହେଲି ଧିମାକରେ ହସି ଉଠିଲି ସିନା—'ହୋଃ-ହୋଃ' କରି—ସେ ବି କେଉଁ ଅଭିମାନରେ—କେଉଁଠି ସେ ଗୁଡ଼ି ଚାଲିଗଲା ।—ଆହା ! ପ୍ରାଣର କେତେ ଗୋପନ-କଥା ଗୋପନରେ କହିଥିଲି ତା'କୁ ମା—ସେ ବି ନୀରବ-ଭାଷାରେ, ଆଖିର କୋଣେ କୋଣେ କେତେ କଥା କହିଥିଲା ପ୍ରତ୍ୟୁତ୍ତରରେ—ନା, ନା—ମୁଁ ଖୋଲା-ଭାଷରେ—ଖୋଲା-ପ୍ରାଣରେ କହିଥିଲି ଦିନେ ଶୁଣାଇ ଶୁଣାଇ—ନାଚିଥିଲି ତା' ଆଗେ ଗାଇ ଗାଇ—"ଦିଲକା ବେଗମ୍—ପିଆରି ମୋର—ଅନ୍ଦର ମେ ବନାୟା—ମହଲ୍ ତେରା—"—ଏହି ଇଦ୍ ଦିନରେ, ମା, ଏହି ଇଦ୍—ଇଦ୍—

ବୁଢ଼ା—ତୁମ ହଁ—ତୁମ ହଁ, ବାପ—ମା ମରିଗଲା—ଘର ପୋଡ଼ିଗଲା—ଶାଙ୍ଗମାନେ ପାଖ ପୂରାଇ ଦେଲେ ନାହିଁ—ଟାଁ ବାଲା ହୁରି ହୁରି, ମାରି ମାରି କରି ତଡ଼ିଦେଲେ—ଉଃ—ଶେଷକୁ ବିଧାତାଟା ବି ଭଗାଇ ଥିଲା ଯେ, ଆଖି ଦି'ଟା ବି—

ଫକୀର—କାଢ଼ି ନେଇ ନାହିଁ, ମା—ଅନ୍ଧ କରିନାହିଁ—ଅନ୍ଧ କରିଥାନ୍ତା, ଆଜି ଯଦି ବାହାରର ସବୁ ଦେଖି ପାରୁଥାନ୍ତି—ମା—ମା—ଦେଖିଲା, ମା—କେତେ ସୁନ୍ଦର ମହଲ ତା' ପାଇଁ ଆଜି ମୁଁ ଭିତରେ ଭିତରେ ଗଢ଼ି ରଖିଚି—ଖାଲି ତା'କୁ ଆଣି ବସାଇ ପାରିଲେଇ'ହେଲା—ସେଇଥି ପାଇଁ ତ ଦିନ ନାହିଁ—ରାତି ନାହିଁ—ବଇଁଶୀ ବଜାଇ ବଜାଇ ବୁଲୁଚି—ଦୁନିଆସାରା ଖୋଜି ଖୋଜି ବୁଲୁଚି—ଏଇଠି ସେ ଅଛି, ମା—ଆଜି ତା'କୁ ଆଣିଥିଲି, ମା—ଏହି ଦଣ୍ଡକ ଆଗେ—ମୋ'ର ମୂର୍ଚ୍ଛା ପଶିଆରେ—ମୋ'ର ଠିକ ପଶିଆରେ

ପଳାଇଛନ୍ତି, ମା— ପଳାଇଛନ୍ତି —କିନ୍ତୁ—ମା, ମା—
ପୁଣି ବଜାଇବାକୁ କହୁଛ—ବଜାଇଲେ ଆସିବ,
ମା—ଆଜି ଯେ ଇଦ୍—ପୁଣି ସେ ଶୁଣିବ—
ଗାଇବ—ନାଚିବ—( ପୁଣି ବଂଶୀ ବଜାଇବାକୁ
ଚେଷ୍ଟାକଲା ) ଆଉ ତ ବାଜୁ ନାହିଁ—ଆଉ ତ—
( ତେତେବେଳକୁ କ୍ଷୀଣାଲୋକ ସାମାନ୍ୟ ଉଜ୍ଜ୍ୱଳ
ହୋଇ ଆସିଲାଣି, ବୁଢ଼ା ବ ଫକୀରଟିର ଦେହ, ମୁଣ୍ଡ
ଓ ଆଖିରେ ହାତ ବୁଲାଇ ଦେଇ କେଉଁ ଆଡ଼େ
ଚାଲି ଯାଇଥିଲା—ଅନ୍ତର୍ଦ୍ଧାନ ହୋଇଗଲା ନା
କଣ ?) ଏ' କଣ ? ଏ' କଣ ହେଲା ମା—ମୋ'ର
ଆଖିକୁ ଯେ ଦିଶୁଛି, ମା—ସତେ, ସତେ ଆଜି
ଇଦ୍—ଇଦ୍‌ରେ ଖୋଦା ମେହେର୍ବାନି
କରିଚନ୍ତି—ମା ! ମା !—କାହିଁ ?—କେହି ତ
ନାହିଁ ? ମୋତେ କେଉଁଠି ଛାଡ଼ିଦେଇ ଗଲ,
ମା— ? ଏ କେଉଁ ଦେଶ ମା ?—ଏଠି ଯେ
ନଈ ବୋହି ଯାଉଛି—କି ସୁନ୍ଦର ପାଣି—
ଏ'କି ପ୍ରେମର ନଈ ! ମୋ' ଭିତରଟା ଖାଁ, ଖାଁ
କରି ଉଠିଲା କାହିଁକି ? ମୋ' ବଇଁଶୀ—
( ବଜାଇବାକୁ ଚେଷ୍ଟା କଲେ, କିନ୍ତୁ
ବାଜିଲା ନାହିଁ ) ଏଁ—ଏଁ—ଏହି, ଏହି ଯେ
ବଇଁଶୀର ସ୍ୱରଟା ନୀଳ ଆକାଶକୁ ଉଡ଼ି ଉଡ଼ି
ପଳାଇ ଯାଉଛି—ମୋ'ର ଭିତରର ରସ
ଶୁଢ଼ାଇ ଇଢ଼ି ବାହାରେ ବୁହାଇ ଦେଲା
କିଏ ?—ମୋ'ର ମହଲ୍ ! ମୋର ମହଲ୍ !
ଏ' କ'ଣ ?—ଖଣ୍ଡ ଖଣ୍ଡ କରି ଭାଙ୍ଗି, ଚୂରି ଏଣେ
ତେଣେ ବିଛାଡ଼ି ଦେଲା କିଏ ? ନା, ନା—ତା'
ହବ ନାହିଁ—ତା' ହବ ନାହିଁ—ମୁଁ ଭାଙ୍ଗି
ଆଣିବି—ଭାଙ୍ଗି ଆଣିବି—ମୋ'ର ତୁଳି—
ମୋ'ର ରଙ୍ଗ—ମୋ'ର ବଇଁଶୀ—ଆଜି ଇଦ୍—
ଇଦ୍—ଇଦ୍—

—ଗୀତ—

'ଦିଲ୍ କା ଶୋଗମା ! ପିଅର ମେଇ' ଇତ୍ୟାଦି—
[ ସେହି ଗୀତଟି ଗାଇ ଗାଉ ଫକୀର ଯା' ଯେଉଁଠି
ପାଇଲା ଛିଣ୍ଡେଇ କୁଣ୍ଡେଇ ନେଇ କି ମହା
ଆବେଗରେ ଓ ଆବେଷରେ ଗୋଟିଏ ଭଳସୀ
ଉପରେ ଚିତ୍ର ଅଙ୍କନ କରିବାକୁ ଲାଗିଗଲେ
କ୍ରମେ କ୍ରମେ ଧ୍ୟାନସ୍ଥ ହେଲେ—ସେ କେଉଁ
ସମ୍ମୋହନ ଦୃଷ୍ଟି—କେଉଁ ଅସୀମ ସୌନ୍ଦର୍ଯ୍ୟ
ଯେଉଁଥି ଉପଭୋଗ କରୁଚନ୍ତି !—ଆଖିର ଛଳଛଳ
ଓ ଉଜ୍ଜ୍ୱଳ ଚାହାଣୀରୁ ଜଣାଗଲା—ହୃଦୟଟା
ଯେମିତିକା ଭରି ଭରି ଉଠୁଛି—ଗାନଟା ଥମି
ଯିବାରୁ ବଇଁଶୀଟା ଆପେ ଆପେ ବାଜି ଉଠିଲା
କି ଅଉ—ସେହି ମଧୁର ଧ୍ୱନୀରେ—ନା, ନା—
ଅନ୍ତର ମଟୁରିତରେ !—ଯା' ସେ କେବେ
ଅଣି ପାରିନାହିଁ, ନିଜେ ବଜାଇ !—ଏ' ତାର
ଦିବ୍ୟମୂର୍ତ୍ତି—ଛାୟା ନା କାୟା—ଏ' ଯେ
ମମ୍‌ତାଜ୍‌ର ମୂର୍ତ୍ତି— ନା, ନା, ମମ୍‌ତାଜ୍‌ର ନୁହେଁତ
—ମୁକ୍ତ-ପ୍ରେମର ମୁକ୍ତ-ପ୍ରତିମୂର୍ତ୍ତି କି ଅଉ—କି
ଉଜ୍ଜ୍ୱଳ—ଧୀରେ ଧୀରେ ସେହି ତାଳେ ତାଳେ
ଆସି, ଭଙ୍ଗା କୁଡ଼ିଆ ଦ୍ୱାରେ ଠିଆ ହେଲା—
କଳ୍ପନାଣି ନାହିଁଲା ବୋଧହୁଏ—କିନ୍ତୁ ଏତେ
କୋମଳ ସେ ସବୁ ଯେ, ଧାରଣାତୀତ—ଅନ୍ତର
ଅଗ୍ରସର ହେଲା—ଚିତ୍ରକରର ସେହି ଚିତ୍ର ପଟଟିକୁ
ଦେଖାଇ ସମ୍ମୋହନ ଭଙ୍ଗିରେ ଚାହିଁ, ହସି ହସି
ପଚାରିଲା—'ଏ' ତା'ର ମହଲ, ସିରାଜ୍ ?' ]

ଫକୀର—ମୋ'ର ତାଜମହଲ ପରି—( କହୁ କହୁ
ଫକୀରର ହାତରୁ ତୁଳୀଟି ଖସି ପଡ଼ିଲା—
ପରସ୍ପରର କେତେ ଯୁଗର ଉଦାସ, ପିପାସିତ
ଓଷ୍ଠ ସ୍ୱତଃ ନିବଦ୍ଧ ହୋଇଗଲା—ଦେଉଁ—
କେଉଁ ସ୍ୱର୍ଗୀୟ ମିଳନରେ—! )

[ ବୁଢ଼ାର ଛାୟା ମୂର୍ତ୍ତିଟି ଠିକ୍ ସେତିକି-
ବେଳେ ଅଦୂରେ ଆଶୀର୍ବାଦ ସୂଚକ ହସ୍ତେଙ୍ଗିତ
କରିବାକୁ ଦେଖାଗଲା ଯେମନ୍ତ—କିନ୍ତୁ ପ୍ରଭାତର
ସ୍ୱଚ୍ଛାଲୋକରେ ଦେଖାଗଲା କୌଣସି ମୂର୍ତ୍ତି
ନାହିଁ—କେବଳ ଫକୀରଟି ସେହି ଚିତ୍ରଟିକୁ
ଚୁମ୍ବନ କରିବା ଭଙ୍ଗୀରେ ବହିଛି — ]

[ ସେହି ସମୟରେ ଅଦୂରେ ରାଜପ୍ରାସାଦରୁ
କରୁଣ ସ୍ୱର ଭାସି ଆସିବାକୁ ଲାଗିଲା—
" ମମ୍‌ତାଜ — ମମ୍‌ତାଜ " — ସାଜାହାନଙ୍କ
ହୃଦୟର କେଉଁ ଗଭୀରତମ କନ୍ଦରୋତ୍‌ଥିତ ବିଳାପ
ଧ୍ୱନି ପରି—ଯା'ର ସ୍ପନ୍ଦନ ଅଦ୍ୟାପି ଚାଲିଛି ]

## ଉତ୍ସର୍ଗ

ଯାହାଙ୍କର ପ୍ରେରଣାରେ ଲିଖିତ
ସେହି ନାଟ୍ୟକଳାଭିଜ୍ଞ ନାଟକରସିକ
**ନୀଳଗିରି-ଅଧୀଶ**
**ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ମର୍ଦ୍ଦରାଜ**
**ହରି ଚନ୍ଦନଙ୍କ କରକମଳରେ**
ସେହି ପ୍ରେରଣାର ଫଳମାନ
ଉପହାର ଦେଲି ।

ବିନୀତ
**ଲେଖକ**

## ଭୂମିକା

ଏହି ନାଟକଟିର କଥାବସ୍ତୁ ନୀଳଗିରିର ଦଳିଲପତ୍ରରୁ
ସଂଗୃହୀତ । ତେବେ ନାଟକୀୟ ଛଟା ବଜାୟ
ରଖିବାକୁ ଯାଇ, କେତେଗୁଡ଼ିଏ କାଳ୍ପନିକ
ଚରିତ୍ରର ଅବତାରଣା କରିବାକୁ ପଡ଼ିଛି ।
ସେଥିରେ ପ୍ରକୃତ ଚରିତ୍ର ମାନଙ୍କର
ମର୍ଯ୍ୟାଦା କ୍ଷୁଣ୍ଣ ନ ହୋଇ ବରଂ ବୃଦ୍ଧି
ପାଇଛି ବୋଲି ମୋ'ର ବିଶ୍ୱାସ ।
**ଏ'ଭଳି ବ୍ୟତିକ୍ରମ ଯୋଗୁଁ**
**ମୁଁ ଐ ତି ହା ସି କ ଙ୍କ**
ଠାରେ କ୍ଷମା ପ୍ରାର୍ଥନା
**କ ରୁ ଅ ଛି ।**
। ଇତି ।

**ଶ୍ରୀପଞ୍ଚମୀ**
୧୩୪୬ } **ଅଶ୍ୱିନୀ**

## ଚରିତ୍ରଲିପି

| | |
|---|---|
| ପୁରୁଷୋତ୍ତମ ଦେବ | ଓଡ଼ିଶାର ସମ୍ରାଟ୍ |
| ହରିହର ଭଞ୍ଜ | ମୟୂରଭଞ୍ଜ-ରାଜ |
| ନୀଳକଣ୍ଠ | ମୟୂରଭଞ୍ଜ ଯୁବରାଜ |
| ଜନାର୍ଦ୍ଦନ ଭୁଜଙ୍ଗ | ନୀଳଗିରି-ରାଜ |
| ଜଗନ୍ନାଥ | ନୀଳଗିରି ଯୁବରାଜ |
| ବସନ୍ତ | ନୀଳଗିରି ପୌତ୍ର |
| କଳସୀ ଦେଈ | ପୁରୁଷୋତ୍ତମଦେବଙ୍କ ଭଗ୍ନୀ |
| କନକ ସୁନ୍ଦରୀ | ଜନାର୍ଦ୍ଦନଙ୍କ ପାଳିତା |

ଭଞ୍ଜ ସୈନ୍ୟଗଣ, ଭୁଜଙ୍ଗ ସୈନ୍ୟଗଣ, ସଖୀଗଣ
ଇତ୍ୟାଦି,

# ଭଞ୍ଜ ଭୂଜଙ୍ଗ

## ଏକ

— ଚୈତ୍ର ପୂର୍ଣ୍ଣିମା —

[ ମୟୁରଭଞ୍ଜଗଡ଼ ଉତ୍ସବରେ ଉତ୍ଫୁଲ୍ଲ ପଡ଼ୁଛି— ବିଶେଷରେ ନୀଳଗିରିର ଭୁଜଙ୍ଗ ଯୁବରାଜ ଜଗନ୍ନାଥ ବିରାଟ ଏଥର ବନ୍ଦୀକୃତ ହୋଇ— ଭଞ୍ଜରାଜା ହରିହର ଭଞ୍ଜ, ଆପଣାର ପୁତ୍ର,— ନୀଳକଣ୍ଠ ଭଞ୍ଜଙ୍କ ସହିତ,—ସୁସଜ୍ଜିତ ଚନ୍ଦ୍ରାତପ ତଳେ, ସମୁଚ୍ଚ ମଣ୍ଡପ ଉପରେ, ମହାସମାରୋହରେ ପାତ୍ର ମନ୍ତ୍ରୀ ପରିବେଷ୍ଟିତ ହୋଇ, ପାଇକମାନଙ୍କର ନାନା କ୍ରୀଡ଼ା-ରଙ୍ଗ ଓ ଅସ୍ତ୍ର ପ୍ରତିଯୋଗିତା ଉପଭୋଗ କରୁଥିଲେ ]

ହରିହର—( ହଠାତ୍ ବାଧା ଦେଇ କହି ଉଠିଲେ ) ଓଃ—ଏ' ଅତି ସାଧାରଣ ଖେଳ !—ଏଥିରେ ମନ ବୋଧ ହେଉ ନାହିଁ—

ନୀଳକଣ୍ଠ—(ସାଗ୍ରହେ) ତେବେ କ'ଣ ଅସାଧାରଣ କିଛି, ପିତା···( କହୁ କହୁ, ପାଇକମାନଙ୍କ ମଧ୍ୟରେ ଆଖି ବୁଲାଇବାକୁ ଲାଗିଲେ,— ଅବଶେଷେ, ନେପଥ୍ୟ ଆଡ଼େ ଚାହିଁ, ତାହା ପ୍ରତି ସ୍ଥିରଦୃଷ୍ଟି ହୋଇ ରହିଲେ )

ହରିହର—( ହସି ହସି ) ସେହି 'ସାଧାରଣ' ପାଇକଗୁଡ଼ାକ ଭିତରେ, 'ଅସାଧାରଣ କିଛି' ଦେଖାଇବାର ପାତ୍ର ସନ୍ଧାନ କରୁଛ, ନୀଳକଣ୍ଠ ?—

[ ଜଣେ ଯୁବକ ସଦମ୍ଭେ ଛାତି ଫୁଲାଇ ପଶି ଆସିଲା—ଦେଖିବାକୁ ଭାରି ରୂପବାନ୍, ବଳବାନ୍ —ବୟସ ଅନ୍ଦାଜ୍, ୨୨।୨୩ ହେବ ]

ନୀଳକଣ୍ଠ—( ଅତୀବ ଆଗ୍ରହସହକାରେ ) ଏହି ଉପଯୁକ୍ତ 'ପାତ୍ର', ପିତା···ଯେ କି···

ହରିହର—ନା, ନା, ମୁଁ କଦାପି ବିଶ୍ୱାସ କରେ ନାହିଁ !—ତୁମେ, ଭଞ୍ଜ-ଯୁବରାଜ, ପାରିବ,— ଦେଖାଅ, ଶିଖାଅ କିଛି—ଅଚ୍ଛା, ଏହି ଆଖି ସାମନାରେ, ଯେଉଁ ଫଳଟା ଝୁଲୁଛି ଗଛଅଗରେ ମୁଁ ସେହିଟା ଉଡ଼ାଇ ଦେବାକୁ ଚାହେଁ—

ନୀଳକଣ୍ଠ—ଏ' ତ ଅତି ସାମାନ୍ୟ କଥା, ମହାରାଜ··· ( ଧନୁରେ ତୀର ଯୋଜନା କଲେ )

ହରିହର—( ଭାରି ଗର୍ବଭରେ ସମସ୍ତଙ୍କ ଉପରେ ଆଖି ବୁଲାଇ ଗଲେ—ପ୍ରତିଯୋଗିତାରେ ଆମନ୍ତ୍ରଣ କରି କି ଅଛ ? )···

ଯୁବକ—( କେଉଁ ବୀରଦର୍ପରେ )—ମୁଁ ଯଦି ଉଡ଼ାଇ ଦିଏଁ···

ନୀଳକଣ୍ଠ—କଥାରେ ନୁହେଁ ଖାଲି ?···

ଯୁବକ—କାର୍ଯ୍ୟରେ ଅବଶ୍ୟ—

[ ନୀଳକଣ୍ଠ ତୀର ପ୍ରେରଣ କଲେ—କିନ୍ତୁ, ତୀରଟି ଫଳଟାକୁ ସ୍ପର୍ଶ କରିବା ପୂର୍ବରୁ, ଯୁବକର ନିକ୍ଷିପ୍ତ ତୀରାଘାତରେ ଭୂପତିତ ହେଲା— ପାଇକମାନେ ଆତ୍ମଜ୍ଞାନ-ଶୂନ୍ୟ ହୋଇ, କରତାଳି ଦେଇ, ନାଚି ଉଠିଲେ—ନୀଳକଣ୍ଠ ସାଦରେ ଆଲିଙ୍ଗନ କରିବାକୁ ଧାଇଁ ଯାଉଥିଲେ ଯୁବକକୁ —ମାତ୍ର, ହରିହର ଏତେ ଦୂର ଅପମାନିତ ଓ ଈର୍ଷାନ୍ୱିତ ହୋଇ ଉଠିଥିଲେ ଯେ, ଆସନ ଛାଡ଼ି, ଧାଇଁଆସିଲେ ସେହି ଯୁବକ ପ୍ରତି, ଆପଣାର କୋଷମୁକ୍ତ ଅସି ଉତ୍ତୋଳନ ପୂର୍ବକ, ନୀଳ କଣ୍ଠକୁ ଦୂରେ ଠେଲି-ପେଲି ଦେଇ—]

ହରିହର—ମୋତେ,—ମୋ'ର ପୁତ୍ରକୁ, ବନ୍ଦୀ କରିବୁ ତୁହି ?—

ଯୁବକ—ଅବଶ୍ୟ,—ମହାରାଜ !—

ହରିହର—ଏତେ ସ୍ପର୍ଦ୍ଧା ତୋ'ର—? ( ଅସିରେ ଆଘାତ କରିବାକୁ ଉଦ୍ୟତ ହେଲେ )

ନୀଳକଣ୍ଠ—( ଅଧୀର ହୋଇ ଉଠୁଥିଲେ, ଅସି ଛାଡ଼ି ନେବାକୁ )

ଯୁବକ—( ଧୂଳି ଦେଖାଇ ) ଗ୍ରାମୁଙ୍କର ପାଇକ ପ୍ରଜା ମୁଁ !—

ହରିହର—( ଅସି ଫିଙ୍ଗି ଦେଇ, କୁଣ୍ଢାଇବାକୁ ଧାଇଁ ଗଲେ )

ଯୁବକ—ନା, ନା—( ହଟିଗଲା )

ହରିହର—ତା ହେବ ନାହିଁ—ତା' ହେବ ନାହିଁ—'ମହାରାଜା' ଉପଯୁକ୍ତ ହେବ ଆଜ ତୋ'ର—!—

ଯୁବକ—( ଅବନତ ହୋଇ ) 'ଉପଯୁକ୍ତ' ପ୍ରଜା ସିନା ମଣନ୍ତି ଆପଣାକୁ—ନିଷ୍ଠୁର, ଘୃଣିତ ଶତ୍ରୁ-ରାଜା ଯଦି,—

ହରିହର—'ଫିଙ୍ଗି ଅସି ଏହିଭଳି, କୁଣ୍ଢାଇବାକୁ ଧାଇଁ ଆସନ୍ତା ଅଜ' ?—

ଯୁବକ—( ସବିନୟେ )—ଗ୍ରାମୁଙ୍କର ମହିମା ବଢ଼ନ୍ତା ନାହିଁ କି ? ଏହି ଗ୍ରାମର ପାଇକ ଆପଣାର ଶିକ୍ଷା, ଦୀକ୍ଷା ଓ ଆପଣାକୁ ଧନ୍ୟ ମଣନ୍ତା ନାହିଁ କି ?

ହରିହର—ଠିକ୍, ଠିକ୍, ପାଇକ ମୋ'ର !—ବନ୍ଦୀ-ରାଜା !—(ପୁନରୁପବେଶନ କଲେ )

ସେନାପତି—( ଆଜ୍ଞା ପ୍ରତିପାଳନ କରିବାକୁ ସ୍ଥାନ ତ୍ୟାଗ କଲେ )

ହରିହର—ପାଇକଗଣ !—ତୁମ୍ଭେମାନେ ରଣକ୍ଷେତ୍ରରେ ରଣଚାତୁରୀ ଦେଖାଇ, ଶତ୍ରୁଜୟ ପୂର୍ବକ, ଶତ୍ରୁର ଦେହ ଯେଉଁ ଭଳି ବନ୍ଦୀ କରିଛ—ଠିକ୍ ସେହିଭଳି, ଶତ୍ରୁର ହୃଦୟକୁ ଆଜ ବନ୍ଦୀ କର, —ଶତ୍ରୁର ମନ ମୋହି, ନାନା ନୃତ୍ୟରଙ୍ଗ ଦେଖାଇ, ଏହି ରଙ୍ଗକ୍ଷେତ୍ରରେ ହିଁ !

ପାଇକଗଣ—( ନୃତ୍ୟଭଙ୍ଗିରେ ଯଥାସମ୍ମାନ ପ୍ରଦର୍ଶନ କଲେ )

ହରିହର—ଯୁବକ !— ତୁମର ନାମ ?—

ଯୁବକ—( ହଠାତ୍ କହି ପକାଇଲା -କି ଅବା )—ବସନ୍ତ—

ହରିହର—'ବସନ୍ତ ରାଉତ' ?—'ଭୁଜଙ୍ଗ' ?—'ମାନ୍ଧାତା' ?—ହାଃ-ହାଃ—ବନ୍ଦୀ ଭୁଜଙ୍ଗ-ରାଜ ଜଗନ୍ନାଥର ପୁତ୍ର ?—ଅଥବା ଜନାର୍ଦ୍ଦନ ଭୁଜଙ୍ଗର ପୌତ୍ର ?—ହାଃ-ହାଃ—( ଏହି ଭଳି ଶ୍ଳେଷବାକ୍ୟରେ କହୁ କହୁ, ହସି ହସି ଗଡ଼ିଗଲେ ଯେମନ୍ତ )

[ ଠିକ୍ ସେତିକି ବେଳେ ପ୍ରହରୀ ପରିବେଷ୍ଟିତ ଶୃଙ୍ଖଳାବଦ୍ଧ ଭୁଜଙ୍ଗ-ରାଜ୍ ଜଗନ୍ନାଥ ରାଉତ ପ୍ରବେଶ କଲେ ]

ହରିହର—( ସେହି ଶ୍ଳେଷ ସ୍ୱରର ଅନୁକ୍ରମରେ ) ଏହି ଯେ !—ସୁ ଗତ !—ସ୍ୱାଗତ !—ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥ ରାଉତ ଭୁଜଙ୍ଗ ମାନ୍ଧାତା—!—

ଜଗନ୍ନାଥ—ଭଞ୍ଜ-ରାଜ !—

ହରିହର—ଖୋଲି ଦିଅ—ଖୋଲି ଦିଅ—ଆସନ୍ତୁ—ଆସନ୍ତୁ—

ଜଗନ୍ନାଥ—ସେ ଭଳି ଶ୍ଳେଷୋକ୍ତିରେ ଖୋଚା, ମାରିବାଠାରୁ ତପ୍ତଶଳାକାରେ ବରଂ···

ହରିହର—ଆଃ—ଶୁଣି ମାରିବା ଯେ ମୋ'ର ପ୍ରକୃତି !—ଖଣ୍ଡାରେ ହେଉ, ନଖରେ ହେଉ, ବା 'ହେଡା'ର କର୍କଶ ସ୍ୱରରେ ହେଉ !—ହାଃ—ହାଃ—

ଜଗନ୍ନାଥ—ମୟୂରଭଞ୍ଜ ରାଜ୍ !—

ହରିହର—ଉପଲବ୍ଧି କରୁଛନ୍ତି ତ ପ୍ରଭୁବର୍ଷା, ଭୁଜଙ୍ଗ-ରାଜ୍ ?—

ଜଗନ୍ନାଥ—( ଫଣା ବିସ୍ତାରକର ଉଠିଲେ ଯେମନ୍ତ; ମାତ୍ର ସଙ୍ଗେ ସଙ୍ଗେ ନତମସ୍ତକ ହେଲେ )—

ହରିହର—ଆସନ୍ତୁ—ଆସନ୍ତୁ—ଉପବେଶନ କରନ୍ତୁ—ନା, ନା ଏହି ମଣ୍ଡପ ଉପରେ—ସମାନ ଆସନରେ, ମୋ ନିକଟରେ—( ନିଜେ ସମାଦର ପୂର୍ବକ ଘେନିଗଲେ ଯେମନ୍ତ )

ଜଗନ୍ନାଥ—ଭଞ୍ଜ-ଭୁଜଙ୍ଗର ମିତ୍ରତା ?—

ହରିହର—କେବେ କି ସମ୍ଭବ ?

ଜଗନ୍ନାଥ—ତେବେ…ତେବେ କ'ଣ ଶିକାରକୁ ଧ୍ୱଂସ କରିବା ପୂର୍ବରୁ, ଶିକାରକୁ ଖେଳାଇବା ମାନସରେ… ?

ହରିହର—ଶିକାରକୁ ଖେଳ ଦେଖାଇବା ମାନସରେ ?

ଜଗନ୍ନାଥ—ସ୍ଥିର ଏହି ଶ୍ରେଣୀ, ବିଳାସୀ ଭଞ୍ଜ-ମୟୂରର ?

ହରିହର—ସ୍ଥିର ଏହି ବଣୁଆ ଅନୁଚରଙ୍କର ।

ଜଗନ୍ନାଥ—ବର୍ଣ୍ଣ୍ୟ-ପଶୁ-ନୃତ୍ୟ ?

ହରିହର—ସଭ୍ୟ ଅନୁକରଣ କରି ଯାହା, ମଣୁଛନ୍ତି ଧନ୍ୟ, ଧନ୍ୟ ଏବେ ।—( ଇଙ୍ଗିତକଲେ )

[ ନୃତ୍ୟ ଆରମ୍ଭ ହେଲା—ପାଇକ ମାନେ ନାନା ନୃତ୍ୟ କୌଶଳ ଦେଖାଇଲା ପରେ, ସେହି ଯୁବକଟି, ଅସ୍ତ୍ର ଶସ୍ତ୍ର ସଜ୍ଜିତ ହୋଇଥାଇ, ନାନା ଅସ୍ତ୍ରକ୍ରୀଡ଼ା ଦେଖାଇବାକୁ ଲାଗିଲା ]

ଜଗନ୍ନାଥ—( ଭେଙ୍କି ଉତ୍ତେଜନାରେ ଆତ୍ମଜ୍ଞାନ-ଶୂନ୍ୟ ହୋଇ, ସେହି ଯୁବକ ପ୍ରତି ତୀକ୍ଷ୍ଣ ଦୃଷ୍ଟିରେ ଲକ୍ଷ୍ୟ ରଖି, ଉଠିଗଲେ ଧୀରେ ଧୀରେ )

ସେନାପତି ପ୍ରଭାତ—( ଉତ୍ତେଜିତ ହୋଇ ଉଠିଥିଲେ ବନ୍ଦୀର ଏଁଭଳି ଆଚରଣରେ—କିନ୍ତୁ, ନିରସ୍ତ ହେଲେ, ହରିହରଙ୍କ ଇଙ୍ଗିତରେ )—

ଜଗନ୍ନାଥ—କିଏ ତୁମ୍ଭେ ?

ଯୁବକ—( ଏକ ଏକ ଇଙ୍ଗିତପୂର୍ଣ୍ଣ ସ୍ଥିର ଦୃଷ୍ଟିରେ ଚାହିଁ ରହିଲା )

ହରିହର—( ନୀରବତା ଭଙ୍ଗ କରି, ହସି ହସି କହି ଉଠିଲେ ) 'ବସନ୍ତ ବିରାଟ' ।—'ଭୁଜଙ୍ଗ' ।—'ମାନ୍ଧାତା' ।…'ବନ୍ଦୀ ଭୁଜଙ୍ଗ-ରାଜ ଜଗନ୍ନାଥର ପୁତ୍ର' ।…'ଅଥର୍ବ ଜନାର୍ଦ୍ଦନ ଭୁଜଙ୍ଗର ପୌତ୍ର' ।—

ଜଗନ୍ନାଥ—( ଉତ୍ତେଜନାରେ ) ସେଇପ୍ରା ଯଦି ପ୍ରକୃତରେ ହୋଇଥାଏ ଭଞ୍ଜ-ରାଜ ?—

ଯୁବକ—( ଗୋପନରେ ସ୍ପର୍ଶ କଲା, ବାଧା ଦେବା ଉଦ୍ଦେଶ୍ୟରେ )

ଜଗନ୍ନାଥ—( ଚେତା ପଶିଲାଭଳି ) ନା—ନା—

ହରିହର—'ନା, ନା'- କାହିଁକି ?—…ଏଥିରେ ତ ମୋ'ର ଅତୁଳ ଆନନ୍ଦ—…ପିତା ବନ୍ଦୀ ରାଜ-କାରାଗାରେ, ରାଜ-ବନ୍ଦୀ ରୂପେ ।…ପୁତ୍ର ବନ୍ଦୀ ରାଜସଭାରେ, ରାଜବନ୍ଦୀ—ଭାଟ-ସମ୍ମାନଭିକ୍ଷୁ ରୂପେ ।—

ଯୁବକ—( ଶ୍ଳେଷଟା ସହି ନପାରି ଯେମନ୍ତ )…'ସମ୍ମାନଭିକ୍ଷୁ' ।—'ଭାଟ' ।—'ରାଜ-ବନ୍ଦୀ' ।…ସେହି 'ରାଜ-ବନ୍ଦୀ'ର 'ବନ୍ଧଭଙ୍ଗା' କୌଶଳେ,—ଦେଖ, ରାଜ-ବନ୍ଦୀ ମୁକ୍ତ ଆଜି, ସ୍ୱୟଂ ରକ୍ଷୀ-ରାଜ-ମୁଖେ ।—

ହରିହର—ଅର୍ବାଚୀନ ।—ଏହି ବ୍ୟୂହଭେଦେ କ୍ଷମ ହେବୁକି, ଅଭିମନ୍ୟୁଙ୍କୁ ବଳି ?—ହାଃ-ହାଃ—

ଯୁବକ—ସପ୍ତ ସପ୍ତି ରଥ ଏହି ଅଛନ୍ତି ତ ଘେରି—ଦେଖନ୍ତୁ ହେ ବଳ…।

[ ଅପୂର୍ବ କୌଶଳରେ ବ୍ୟୂହଭେଦ ପୂର୍ବକ, ଜଗନ୍ନାଥଙ୍କୁ ଘେନି ଯୁବକ ପ୍ରସ୍ଥାନ କଲା—ରଥମାନେ ଗୋଡ଼ାଇଲେ ]

ହରିହର—ନୀଳକଣ୍ଠ ।—ଚାହିଁ ଦେଖୁଛ କ'ଣ ?—ବନ୍ଦୀ—ବନ୍ଦୀ—

ନୀଳକଣ୍ଠ—ପିତା ।—

ହରିହର—ନୀଳକଣ୍ଠ ।—

ନୀଳକଣ୍ଠ—ପଳାଇବାକୁ ଦିଅନ୍ତୁ, ପିତା ଯଦି ପଳାଉ-ଛନ୍ତି ଭୟେ—

ହରିହର—ଶତ୍ରୁ—ଶତ୍ରୁ ନୀଳକଣ୍ଠ—ଜନ୍ମ-ଶତ୍ରୁ ।

ନୀଳକଣ୍ଠ—ଜନ୍ମ-ଭ୍ରାତା, ପିତା ?

ହରିହର—ପରମ—ପରମ-ଶତ୍ରୁ, ତେଣୁ ।

ନୀଳକଣ୍ଠ—'ବୈମାତ୍ରେୟ' ବୋଲି, କ'ଣ ଏତେ ସ୍ଥିର, ହେୟ, ଘୃଣ୍ୟ, ପିତା ?—

ହରିହର—ଏକ ମା'ର ସନ୍ତାନ—ରାବଣ, ବିଭୀଷଣ ।—ତଥାପି ବିଭୀଷଣଙ୍କୁ ବଳି ଏତେ ହେୟ, ଘୃଣ୍ୟ, ମାରାତ୍ମକ-ଶତ୍ରୁ, କିଏଟି ଅଗ୍ରଜର ତା'ର ?—ଆଉ, ଏତ ବିମାତାର ସନ୍ତାନ ।

ନୀଳକଣ୍ଠ—ଅଚ୍ଛା, ବାବା—ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ—ତିନିଜଣ ତ, ଶ୍ରୀରାମଚନ୍ଦ୍ରଙ୍କର ବାଲ୍ୟକାଳ ବୈମାତ୍ରେୟ ଥିଲେ ?—

ହରହର—ଆଃ—ଏମାନେ ତ ଆଉ 'ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ' ନୁହନ୍ତି ?—

ନୀଳକଣ୍ଠ—ଆମେଇବା 'ଶ୍ରୀରାମଚନ୍ଦ୍ର' ନହେବା କାହିଁକି ?—

ହରହର—ନୀଳକଣ୍ଠ !—

ନୀଳକଣ୍ଠ—ପିତା !—

ହରହର—ପିତାଦେଶ ପାଳନ କରିବୁ, ନା, ପିତାଙ୍କୁ··· ?

ନୀଳକଣ୍ଠ—ଉପଦେଶ ଦେବ, ପୁତ୍ର ?—ପିତାଙ୍କୁ ତା'ର ?

ହରହର—ତେବେ··· ?

ନୀଳକଣ୍ଠ—ସ୍ନେହାନ୍ଧ, ଏକଦର୍ଶୀ ପିତା ମୋ'ର···

ହରହର—ବାଟ ଭୁଲି ଗଲୁଣି ?—

ନୀଳକଣ୍ଠ—ଅବାଟରେ ବାଟ କାଢ଼ି ଚାଲିଛି !

ହରହର—ଏକମାତ୍ର ସନ୍ତାନର ଭବିଷ୍ୟତ ଦୃଷ୍ଟିରେ ନୁହେଁକି ?—

ନୀଳକଣ୍ଠ—କୋଟି କୋଟି ସନ୍ତାନଙ୍କୁ ଶତ୍ରୁ ତିଆରି କରି ?—

ହରହର—କୋଟି କୋଟି ରକ୍ତର ନଦୀ ତିଆରି କରି !

ନୀଳକଣ୍ଠ—କ୍ଷମା ପିତା—ସେ'ଭଳି ରକ୍ତ-ପ୍ଲାବିତ-ରାଜ୍ୟ ଭୋଗରେ ମୋର ତୃପ୍ତି ନାହିଁ—!—

ହରହର—ଆଃ—ଦନ୍ତୁ, ଦନ୍ତୁ ତୋତେ ଭାରି ଅବାଧ ଦେଖୁଛି ତ ?

ନୀଳକଣ୍ଠ—ପିତା !—ବାଧ ହେବାକୁ କହେଲେ, ରକ୍ତ-ନଦୀରେ ଯଦି ସନ୍ତରଣ କରିବାକୁ ହୁଏ—ମୁଁ ଚାହେଁ, ସର୍ବସ୍ୱ ବିସର୍ଜନ ଦେଇ ବନଚାରୀ ହେବାକୁ !—

ହରହର—ମୁସ୍କିଲ—ଏ' କୁରୁକ୍ଷେତ୍ରରେ, ଯୁଦ୍ଧ ଆରମ୍ଭରୁ, ମୋତେ ଗୀତାଟାଏ ରଚନା କରି ଶୁଣାଇବାକୁ ଚାହିଁଲୁ, ଦେଖୁଛି !—

[ ସେନାପତି ବେଗେ ପ୍ରବେଶ କଲେ ]

ସେନାପତି—ମହାରାଜ ! ( ଲଜ୍ଜାବନତ ହେଲେ )

ହରହର—ବନ୍ଦୀ ପଳାଇଛି ତ ?

ସେନାପତି—( ତୁନି ହୋଇ ରହିଲେ )

ହରହର—ଏଥିରେ ଆଉ ଲଜ୍ଜା କ'ଣ ?—ଆମର ବଳ, କୌଶଳ ଶିକ୍ଷି, ଆମକୁଇ ଯେ ଅତର୍କିତ ଭାବେ ଆକ୍ରମଣ ପୂର୍ବକ, ପରାସ୍ତ କରି, ଚମ୍ପଟ ଦେବ ଦିନେ, ଏହାତ ସ୍ୱାଭାବିକ ?··· ଆମେ ପିନା ଦୟାର ସାଗର, ଯେ, ମୃତ-ପ୍ରାୟ ମଣି, ଶତ୍ରୁକୁ ତୋଳିଆଣି, କୋଳରେ ଶୁଆଇ, ଗାଁରେ ସେଙ୍କ, ଦୁଧ ପିଆଇ, ବଞ୍ଚାଇଥିଲୁ ଭୁଜଙ୍ଗକୁ—କିନ୍ତୁ, ଭୁଜଙ୍ଗ ତା'ର ସ୍ୱଭାବ ବିକାଶ କରିବ ନାହିଁନା ?—ଟିକିଏ ତେଜ ପାଇଲାକ୍ଷଣି ?—ବିଶେଷ କରିବା, ପ୍ରଥମ ପରୀକ୍ଷା କରିବ ତ ସେ, ଗୋପନରେ, ଅତି ସାବଧାନରେ, ତା'ର ସେହି ରକ୍ଷାକାରୀର ଶୁଭ୍ର ମସ୍ତକରେ !—

ନୀଳକଣ୍ଠ—ପିତା !—ତାହାହିଁ କରି ଯଦି ବିଶ୍ୱାସଘାତକ କୃତଘ୍ନ ହୋଇଥା'ନ୍ତା ଆଜି—ଶୋଚନା ନଥାନ୍ତା,—ମୋର ଦୟାର ପ୍ରତିଦାନ,—ବିଶ୍ୱାସରେ ବିଷ,—ସାନନ୍ଦେ ଗ୍ରହଣ କରି ପରି ଆପଣା ମସ୍ତକରେ, ତୃପ୍ତହୋଇ—ରହିଥା'ନ୍ତି,—ସେହିଭଳି ଗୋପନରେ, ସାବଧାନରେ, ମର୍ମର ବେଦନା ମର୍ମରେ ମାରି !—

ହରହର—ଆରେ ପୁଅ,—ଖୁବ୍ ରକ୍ଷା, ଯେ ଭୁଜଙ୍ଗ ତା'ର ଅସ୍ୱାସ୍ଥ୍ୟ ଶିକାରରେ ସନ୍ତୁଷ୍ଟ ହୋଇ, ପଳାଇଛି !—

ନୀଳକଣ୍ଠ—ସେତିକି ଲେଖିସାରିରେ ଯା'ହେଉ ଚିରକାଳ ନିଶ୍ଚିନ୍ତ ଆମେ, ବାବା !—

ହରହର—'ନିଶ୍ଚିନ୍ତ' !—ସେଇ 'ନିଶ୍ଚିନ୍ତ' କ୍ଷଣକାଳ ପାଇଁ କେବେ ରହିବ, ନୀଳକଣ୍ଠ ?—ଆମେ କୌଣସିପ୍ରକାର ଗଣ୍ଡଗୋଳ,ବା ଅକ୍ରମଣନକଲେ ମଧ ଏଣିକି, ଭୁଜଙ୍ଗ, ତା'ର ସ୍ୱଭାବସୁଲଭ ଅହଙ୍କାର ଭୁଲି, କଦାପି ସ୍ଥିର ରହିପାରିବ କି ?—ଆମର ତ ଏଥର ପ୍ରତିମୁହୂର୍ତ୍ତି ଆଶଙ୍କା, କେତେବେଳେ ଯେ, କେଉଁ ରନ୍ଧ୍ରବାଟେ ପଶି, ଧ୍ୱଂସ କରିଦେବ ସମୂଳେ;—ସମସ୍ତ ଗୁମର୍ ଆମର ଫାଙ୍କି ହୋଇଯାଇଛି, ତା'ଠାରେ କେତେବେଳେ !—

ନୀଳକଣ୍ଠ—( ଉତ୍ତେଜିତ ସ୍ୱରେ ) ପିତା !—ଆପଣ କ'ଣ ମୟୂରଭଞ୍ଜ-ରାଜ ନୁହନ୍ତି ?—ମୁଁ କ'ଣ ସେହି ଭଞ୍ଜ-ମୟୂରର ବଂଶଧର ନୁହେଁ ?—କେଳି କଳାପ ମେଲାଇ, ବାଙ୍କ ଚୂଡ଼ା ଦୋହଲାଇ, ଘନକୃଷ୍ଣ କୋଳେ—ଦାମିନୀ ଚମକେ ଅନେ ନୃତ୍ୟନେ, ଯେଉଁଭଳି ନାଚିପାରେ;—ଠିକ୍ ସେହିଭଳି କ'ଣ ନାଚି ପାରେନାହିଁ କେତେ ରଙ୍ଗେ, ଅଙ୍ଗେ, ନଖର ନାନାଭଙ୍ଗେ, ଭୁଜଙ୍ଗକୁ ବାଗରେ ପାଇ, ବକ୍ଷରେ ତା'ର ପାହୁଲ ପକାଇ, —ଅସରେ ଗିରିବନ କମ୍ପାଇ—?

ହରିହର—କିନ୍ତୁ, ଭୁଲିଯାଇ ନଥିଲୁ କି ?—

ନୀଳକଣ୍ଠ—ପିତା !—ପିତା !—ସତେ, ସତେ କି ଗୋଟାଏ ସମ୍ମୋହନ ଦୃଷ୍ଟିରେ ତା'ର ଆକୃଷ୍ଟ ହୋଇ,—ରସନାର କି ଗୋଟାଏ ମଧୁର ରସରେ ତା'ର ଭାସିଯାଇ,—'ଭାଇ' ବୋଲି ସମାଦରି କରି, ଆଲିଙ୍ଗନ କରି ରହିଥିଲି ସିନା !—ଏ' ହୃଦୟର ହୃଦୟର କେଉଁ ଗୁପ୍ତ ଗର୍ଭାଗାରେ ପୂରାଇ ଆଶ୍ରୟ ଦେଇ ପକାଇଥିଲି ସିନା !—

ହରିହର—ଆଜି, ସେହି ଭୁଜଙ୍ଗ ସେ କରିଛି କ'ଣ— ତୋ'ର ଏହି ଅନ୍ଧରଦୃଷ୍ଟି—ଅପରିପକ୍ୱ ମସ୍ତିଷ୍କର ସୁଯୋଗ ନେଇ ?—ଆତ୍ମ ପ୍ରକାଶ କରିଛି ସିନା— ଘାରିଦେଇ ଭିତରଟାକୁ ତୋର,—ଘାଣ୍ଟିଦେଇ ସମଗ୍ର ସାମ୍ରାଜ୍ୟଟାକୁ ମୋର !—ନା, ନା, ବିଷାକ୍ତ ସ୍ନେହ-ଗୁଳିଭଳି ଆଜି, ଧ୍ୱଂସ ମୁଖେ କ୍ଷିପ୍ର କରି ଭଞ୍ଜବଂଶ ଗୋଟା ! !—

ନୀଳକଣ୍ଠ—ପିତା !—ଆଦେଶ କରନ୍ତୁ—ଏ ଧ୍ୱଂସ ଧୂମକେତୁ, ଅଚିରେ ମୁଁ କରିବ ବିଧ୍ୱଂସ !

ହରିହର—ପାରିବୁ ?—

ନୀଳକଣ୍ଠ—ଅବଶ୍ୟ ପାରିବ, ପିତା ! ଅସ୍ୱାଧାରଣ ଶକ୍ତି ଯେ ଯାଏ ଅଛି ଏ' ବାହୁରେ !

ହରିହର—ଶିଥିଳ ହୋଇପଡ଼େ ଯଦି ?

ନୀଳକଣ୍ଠ—ଜୀବନ ଥିବାଯାଏ, ଅସମ୍ଭବ, ପିତା !—

ହରିହର—ତା'ପରେ, କିନ୍ତୁ— ?

ନୀଳକଣ୍ଠ—( ଗୃହିଁବହିଲେ ଅବାକ୍ ହୋଇ )— ପି-ତା—

ହରିହର—ଶୁଣ, ନୀଳକଣ୍ଠ—ତୁ 'ନୀଳକଣ୍ଠ' !— ତୋ'ର ନାମ ବାଛି ବାଛି ମୁଁ ଦେଇଅଛି ରଖିଛି !—ଯେଉଁ ଗରଳ ପାନ କରିବାକୁ କୌଣସି ଦେବତା ଅଗ୍ରସର ହେଲେନାହିଁ ଦିନେ, ସେହି ଗରଳ, ସାନନ୍ଦେ କଣ୍ଠଦେଶରେ ଧାରଣ କରି ନୀଳକଣ୍ଠ, ଜଗତକୁ ଧ୍ୱଂସ ମୁଖରୁ ରକ୍ଷାକଲେ···ଆଜି ସେହିଭଳି, ଅବିଶ୍ୱାସ-ବିଷକୁ ହୃଦ୍‌ଦେଶରେ ଧାରଣ କରି, ତୋର ଜଗତକୁ ତୁହି ରକ୍ଷାକର, ନୀଳକଣ୍ଠ ! ଯେ ପର୍ଯ୍ୟନ୍ତ ସେହି ଧାରଣ-ଶକ୍ତି ଥିବ ତୋ'ର—ଧାରଣ କରୁଥିବେ ପୁରୁଷାନୁକ୍ରମେ ଭଞ୍ଜ-ରାଜବଂଶଧର,—ସେପର୍ଯ୍ୟନ୍ତ, ରାଜ୍ୟ ତୋ'ର ଧ୍ୱଂସ ମୁଖରୁ ବଞ୍ଚିଥିବ,—ପୁରୁଷ ପରମ୍ପରା ଭୋଗୁଥିବେ ସାନନ୍ଦେ ଏହି ମୟୂର-ସିଂହାସନ !—

ନୀଳକଣ୍ଠ—ପିତା !—ଆଜଠୁଁ ମୁଁ ମୋ'ର 'ନୀଳକଣ୍ଠ' ନାମ ସାର୍ଥକ କରିବି, ପିତା !—'ଅବିଶ୍ୱାସ'— 'ଅବିଶ୍ୱାସ' !—( ପିତାଙ୍କର ପାଦ ସ୍ପର୍ଶ କରି ପ୍ରତିଜ୍ଞା କଲେ )

ହରିହର—ଆଶୀର୍ବାଦ କରେ ମୁହିଁ—ସେହି ବିଷ-ବୀଜ, କ୍ରମେ ଅଙ୍କୁର,—ତରୁରେ, ପରିଣତ ହୋଇ,— ଫୁଲ ଫଳ ଭାରରେ, ଏହିଭଳି ନଇଁପଡ଼ୁ !— ( ଆଶୀର୍ବାଦ ପୂର୍ବକ ଚାଲିଗଲେ )

ନୀଳକଣ୍ଠ—( ସେହିଆଡ଼େ ଚାହିଁ,—ଅସ୍ୱୀକାର ପୂର୍ବକ ) ଶକ୍ତ !—ଶକ୍ତ !—( ବିପରୀତ ଦିଗେ ପ୍ରସ୍ଥାନୋଦ୍ୟତ ହେଉଥିବେଳେ— ) !

ବସନ୍ତ—( ସେହି ଦିଗରୁ ହସି ହସି ପ୍ରବେଶ କଲେ )—ଭାଇ !—ଭାଇ !—'ବସନ୍ତ'ର ଶୋଭା—'ବସନ୍ତ'ର କୁହୁ ତାନ କ'ଣ ଓପାଡ଼ି ଫିଙ୍ଗି ଦେବ ନାହିଁ କ୍ଷଣକେ, ସେହି ଅବିଶ୍ୱାସ-ବିଷ-ତରୁକୁ ହୃଦେଶରୁ ତବ ?—ନାଚିବ ନାହିଁ ନୀଳକଣ୍ଠ ଉନ୍ମାଦେ, ପିଇ ଆକଣ୍ଠ ସେହି 'ବସନ୍ତ'-ମାଧୁରୀ ?—

ନୀଳକଣ୍ଠ—(ହଠାତ୍ ପେଲି ଦେଇ) ନା, ନା—ତୁ ଅଟୁ କାଳ-ଭୁଜଙ୍ଗ।—ନାନା ମାୟା ଜାଣୁ ତୁହି।—'ପସ୍ପରିତେ' କରିବାକୁ ନାଶ, ଆସିଥିଲୁ ସଦ୍ମଫଳେ କରଣି ପ୍ରବେଶ।—ଭୁଲି ନାହିଁ ଏବେ ଅଦ୍ୟ, ସେ ମୋହନ ବେଶେ।—ମଦନଭସ୍ମ କରିବାରେ ନଟେଷ—ଉଦ୍‌ଗାର ଗରଳର-ଧାର—ରୋଷାଗ୍ନି ଛଳେ।—

ବସନ୍ତ—ଭାଇ।—'ବସନ୍ତ' ତ ନିତ୍ୟ ସହଚର ତବ,—ବାସନ୍ତୀ ଯେବେ କି ପ୍ରାଣର ପ୍ରାଣ 'ନୀଳକଣ୍ଠ'ଙ୍କର?—ଭୁଲନା, ଭୁଲନା, ଭାଇ ସେ ପ୍ରୀତି-ମାଧୁର୍ଯ୍ୟ—ଭୁଜଙ୍ଗ ବୋଲି ନ ଦଅ ଫିଙ୍ଗି, ପଦାଘାତ କରି।—ସେହି ଭୁଜଙ୍ଗ କି ନୁହେଁ—ଶୀକର ଭୂଷଣ—ଶିରର ଭୂଷଣ ତଥା, ଦେବଦେବଙ୍କର?—ତୁମ୍ଭେ ନୀଳକଣ୍ଠ—ଭାଇ ମୋ'ର—କରି ନ ଥିଲ କି ଏହି ବସନ୍ତ ଭୁଜଙ୍ଗେ—ଶିବ ହୃଦୟ-ଭୂଷଣ?—

ନୀଳକଣ୍ଠ—ତେତୋଽଧିକ କରିଥିଲି, ଭାଇ—ମଣି ତୋତେ ପ୍ରାଣର ସୋଦର।—ଧ୍ୟାନସ୍ଥାନ ବେଶେ ଦେଖା ଦେଲୁ ଯେବେ—ଜାଣେ ନା ମୁଁ, କେଉଁ ପ୍ରେମ ଆକର୍ଷଣେ, ଭଡ଼ିଲୁ ତୁ ପ୍ରାଣେ—ଇଚ୍ଛା ତୋ'ର ପୂରାଇବା ଆଶେ,—ଦୂରାଇଲି ପାରିକର ମେଖଳ,—ଲଙ୍ଘି ଯେତେ ଶାସନ ବିଧାନ;—ପରିଚୟ ମିଳିଲା ଯେ କାଳେ, ରହିଲି ସତର୍କ,—କାଳେ ଅନାସ୍ଥା ଭଅଏ ବ୍ୟକ୍ତ ହେବେ ଯେବେ—ଆଜ ଏ' ଉତ୍ସବେ—ତୈଜପୂର୍ଣ୍ଣିମା ଉତ୍ସବେ—ପୂର୍ଣ୍ଣ ହୃଦ ମୋ'ର—ଉତ୍ସବେ ଉନ୍ମତ୍ତ ପ୍ରାଣ—ଦେଖି ତୋ'ର ଶିକ୍ଷାର ପୂର୍ଣ୍ଣତା।—ସେହି ଅମାନୁଷୀ ପ୍ରତିଭା।—ପିତା ଯେବେ ହିଂସାବଶେ, ଉନ୍ମୁକ୍ତ ଅସି କରେ, ଧାଇଁଲେ ଉନ୍ମାଦେ—ଉଠିଲି ଅଧୀର ହୋଇ—ନେଇ ଅସ୍ତ୍ର କାଢ଼ି, ଘଟିଲେ ପ୍ରମାଦ—ଭାବୁ, ଧୈର୍ଯ୍ୟଚ୍ୟୁତ ହେଲା ମୋର—

ବସନ୍ତ—ଏଣୁ କାର ପିତାଙ୍କୁ ମୋ'ର, ଘଳାରିଲ ବୋଲି?—ଗୁପ୍ତ-କୌଶଳର ବଳେ?

ନୀଳକଣ୍ଠ—ନା, ନା—ଗୁପ୍ତକୌଶଳୀ ବଳୀ, ମୁକ୍ତ ହେଲ ବୋଲି?—ଗୁପ୍ତ ରଖିଥିଲି ଜା'କୁ—ଗୁପ୍ତ-ଧନୁ ଅଧିକଷ୍ଟ ମଣି,—ଗୁପ୍ତାଗାରେ ଅଣି;—ଗୁପ୍ତ ରଖିଥାନ୍ତି, ଅଣାବନ ପରି।—

ବସନ୍ତ—ଭାଇ—ଭାଇ—ଅପିଣ ତ ଫେର—ରଖନା ଯେଉଁଠାରେ—ଯେଉଁ ଭଳି ଇଚ୍ଛା ତବ।—

ନୀଳକଣ୍ଠ—ଅଁ—ଅଁ; ଭାଇ—ଐଷ ମୁଁ—(ଆଲିଙ୍ଗନ କରିବାକୁ ଯାଉଥିଲେ)

[ସେତିକିବେଳେ ତୈନୋତ୍ସବବାଦ୍ୟ ବାଜି ଉଠିଲା]

ନୀଳକଣ୍ଠ—ନା, ନା, ତୁ ଭୁଜଙ୍ଗ।—ଅବିଶ୍ୱାସୀ।—ବିଶ୍ୱାସର ଛଳେ, ରାଜ୍ୟର-ଶତ୍ରୁ ନେଇଛୁ ତୋର ଅସି;—ପୁଣି ଆସିଅଛୁ—କେଉଁ ଛଳେ—ରାଜା, ଓ ରାଜ୍ୟ ଦେବୁରେ ଧ୍ୱଂସି।—

ବସନ୍ତ—ଭାଇ।—ଶତ୍ରୁ ନୁହେଁ କଦା ପିତୃବ୍ୟ ନିଜର।—

ନୀଳକଣ୍ଠ—ହାଃ-ହାଃ—ପିତା ପୁତ୍ରେ ଯେବେ ରଣ—ଭାରତେ, ସ୍ୱମାତୃଣେ,—କି ଛାର ତୁମ୍ଭେ ଆମ୍ଭେ?—

ବସନ୍ତ—'ଛାର' ହେବା କପାଁ, ଭାଇ—'ସାର' ଯେ ମଣି?—

ନୀଳକଣ୍ଠ—ଯୁକ୍ତିର ନାହିଁଟି ସ୍ଥାନ—ପ୍ରକୃତ-ବିଧାନେ। ... ପ୍ରକୃତ-ବିଧାନେ,— ଶତ୍ରୁବୈରୀ ତୁହି, ମୋ'ର।—ତୋ'ର ପିତା, ମୋ'ର ପିତାର।।—ଭକ୍ଷ୍ୟ, ଭୁଜଙ୍ଗର।।।

ବସନ୍ତ—ତଥାପି, ପ୍ରକୃତର ପ୍ରକୃତ ତଥ୍ୟ ନୁହେଁ କି ରହସ୍ୟ ଘେରି?

ନୀଳକଣ୍ଠ—ନାହିଁ ମୋ'ର ବୁଝିବା—କ୍ଷଣେ ହେଉ, ଅକ୍ଷଣେ ହେଉ—ଦେଖେଁ ପ୍ରତ୍ୟକ୍ଷ ମୁହିଁ—ଶତ୍ରୁ—ଜାତ-ଶତ୍ରୁ—ଚିର-ଶତ୍ରୁ ତୁହି ମୋ'ର।

ବସନ୍ତ—ବଦାମ୍—ବଦାମ୍, ଆଉ—ଚରଦନ ପାଇଁ ।—

( ଗୁଳି ଯାଉଥିଲେ ଭରି ଗୁଳିରେ ବଦାମ୍ ଦେଲା)

ନୀଳକଣ୍ଠ—'ବଦାମ୍' ?—ବନାମ୍ବରେ ?—ବନା-ପରୀକ୍ଷାରେ ?—

ବସନ୍ତ—( ନିର୍ବାକ୍ ଭାବେ ଗୁହିଁଲେ )

ନୀଳକଣ୍ଠ—ସେହି ଶରଘାତ, ଶରେ ତୋ'ର—ବନ୍ଧୁର ଯେ ଏବେ, ନରାଧମ—ଶିରେ-ଶିରେ, ମର୍ମେ-ମର୍ମେ, ମୋ'ର ।—...

ବସନ୍ତ—ଆଉ ।—

ନୀଳକଣ୍ଠ—'ଭୁଜଙ୍ଗ' ନୋହୁଁକରେ ତୁହି ?—

ବସନ୍ତ—'ଭୁଜଙ୍ଗ' ନୁହେଁ, ମୁହିଁ ?—

ନୀଳକଣ୍ଠ—'ଭଞ୍ଜ-ମୟୂର'—ଜନ୍ମଶତ୍ରୁ ତୋ'ର ।—ଘୁଉଦେବ ବେଦ୍ରୋ,—ଆଜିରେ ଭୁଜଙ୍ଗ ତୁ ମନେ ?— ( ଅସ୍ତ୍ର ବାହାର କଲେ )

ବସନ୍ତ—'ଭୁଜଙ୍ଗ' ବି ନୁହେଁ ପରାଙ୍ମୁଖ ରଣେ ।— ( ଅସି କୋଷ ମୁକ୍ତ କଲେ )

[ ସେତିକିବେଳେ ସେହି ଚୈନ-ବାଦ୍ୟ ଘନ ଘନ ଘନ ବାଜି ଉଠିଲା—ଦ୍ୱନ୍ଦ୍ୱଯୁଦ୍ଧ ଘୋରତର ଚାଲିଲା—ଯେପ୍ରେ କି ବନ୍ୟ ମୟୂର, ଭୁଜଙ୍ଗର ଯୁଦ୍ଧ—ଗୋଟାଏ ରଣ କୋଳାହଳ ଗୃହଆଡ଼େ ଉଚ୍ଛୁଳି ପଡ଼ିଲା—ହେ, ହେ, ରେ, ରେ ଶବ୍ଦରେ—ଦ୍ୱାରେ ହରହର ପ୍ରବେଶ ପୂର୍ବକ ହସି ଉଠିଲେ ସର୍ବୋଚ୍ଚସ୍ୱରରେ ]

---

—ଦୁଇ—

—ନୀଳଗିରି ଗଡ଼ର ପ୍ରାସାଦ କକ୍ଷ—

[ ଜନାର୍ଦ୍ଦନ ଭୁଜଙ୍ଗ, ତାଙ୍କର ନାତୁଣୀସମା କନକକୁମାରୀ ସଙ୍ଗେ, ତରବାରୀ ଦେଇ, ଦ୍ୱନ୍ଦ୍ୱଯୁଦ୍ଧ କ୍ରୀଡ଼ାରେ ମତ୍ତ ଥିଲେ ]

କନକ—( ହାତତାଳି ଦେଇ ) ହାରିଗଲ—ହାରିଗଲ, ଅଜା—

ଜନାର୍ଦ୍ଦନ—ଆଃ—ଏହି ତ ମୋର ଜିତାପଟ୍ଟ, କୁନ ।—

କନକ—କେମିତି ?—ତରବାଲଟା ଭାଙ୍ଗି, ଦୁଖଣ୍ଡ ହୋଇ ତଳେ ପଡ଼ିଗଲା—ବୁଢ଼ା ହେଉଛ କନା, 'ଜିତାପଟ୍ଟ' ?—ଜାଣି ଅଇଛ କି ମନେ କଲ —

ଜନାର୍ଦ୍ଦନ—"ବେକଣ୍ଠୀଟା ଦୁଖଣ୍ଡ କରିଦେଇ ପାରେ —ଏହି ତରବାଲରେ" ?—

କନକ—ହଁ—ଠିକ୍ ସେଇୟା ତ ?

ଜନାର୍ଦ୍ଦନ—ଓଁ ହୁଁ—ଠିକ୍ ଏଇଟା ପଦାରେ । ଭିତର କଥା—"ଏହି ତରବାଲଟା'କୁ ଦୁଖଣ୍ଡ କରି ଫିଙ୍ଗିଦେଇ, ବେକଣ୍ଠୀଟାକୁ ଜାପୁଡି ଧରି, ଓହଳି ପଡ଼ନ୍ତି କି ?"

କନକ—ଓହଳି ପଡିଲେ,···ସତ୍ତୀ ଭଳି ମିଶିପଟାଏ ଦିଶୁଚ ଏବା ?

ଜନାର୍ଦ୍ଦନ—ଓହଳି, ଦେଖିଲେ ହବନା ?—

କନକ—ଆସ୍ତ ·· ( ବୋଲି, ମୁହଁମୋଡ଼ି ଚାଲି-ଯାଉଥିଲା )

ଜନାର୍ଦ୍ଦନ—( ବାଟଓଗାଳି ) ଯେତେବେଳକା ଭାମ ସେତେବେଳେ କଲେ, ହ'ବନା ?—

କନକ—କାହିଁକି ?—ବର୍ତ୍ତମାନ ଶୁଖିଲା ନଈରେ ଜୁଆର ମାଡ଼ିଚ କି ?

ଜନାର୍ଦ୍ଦନ—ଏହି କନକ ଯୁବତୀର ପୂର୍ଣ୍ଣ-ଯୌବନୋଦୟରେ ପରି ?—

କନକ—କ'ଣ ଯୁବତୀ ଠାରେ ହାରି ?—

ଜନାର୍ଦ୍ଦନ—ଯୁବତୀ ମନକୁ ଜିଣି—।

କନକ—'ମୁଣ୍ଡ ନାହିଁ, ମୁଣ୍ଡ ବଥଉଚି'—।

ଜନାର୍ଦ୍ଦନ—'ମୁଣ୍ଡ' କ'ଣ 'ମନ'ର ଥାଏ କି ?—କିନ୍ତୁ 'ବଥା'ଟା,—ଚିରକାଳ ଅସମାଳ ପରି ।—

କନକ—ବୁଢ଼ାଦିନେ···କ'ଣ ଉଦନ୍ତି ପୁଣି ?—

ଜନାର୍ଦ୍ଦନ—'ପ୍ରେମ ଜେଉଛି'—ଏଇ କଥାତ ?—କିନ୍ତୁ, ତୁମର ଡାଲି ଭରି ଅର୍ଘ୍ୟ ଅଘ୍ରାଣରେ ନୁହେଁ କି ?—

କନକ—ମଲ୍ଲମ, ମୋ'ର ଆଉ ଗରଜ ନାହିଁ ?—ଯୁଆଙ୍କରପାଇଁ ଅର୍ଘ୍ୟ ଡାଲି ସଜାଡ଼ିବାରେ ଲାଗିଛି ଖାଲି ଦିନରାତି ?—

ଜନାର୍ଦ୍ଦନ—ଲାଗିଛି କ'ଣ ଗୋ ?—ସକାଳୁ, ଥୋଇ ଦେଇଛ ନା ?—ନବୀନ ବସନ୍ତର ଆଗମନକୁ ଅନାଇ ?—

କନକ—( ଚମକି, ସରମରେ ରଙ୍ଗା ପଡ଼ିଗଲେ କି ଅଜା ? )

ଜନାର୍ଦ୍ଦନ—କି ?...'ବସନ୍ତ'ର ସ୍ନେହ ପରଶ ଲାଗି ଦେହଟିକ ଜଡ଼ିଲା ନା କଣ ?—ଏକାବେଳକେ ଲାଲଗୁଲାଲ ..?—

କନକ—ସତେ, ଅଜା—ବସନ୍ତ ଭାଇର ଖବର କ'ଣ ?

ଜନାର୍ଦ୍ଦନ—ଚୁପ୍—ଚୁପ୍—ଚୋରଟା ଛପି, ଛପି କେତେବେଳେ ଯେ, ଆସି ବେଢ଼ିଯିବ !... ଦେଖ, ତୁମିଅର ଥିବୁଟି—...ଦେଖା ଦେବୁ ନାହିଁଟି !...

କନକ—ଏ' କେମିତିକା କଥା, ଅଜା ?—

ଜନାର୍ଦ୍ଦନ—କଥାଟା ପସନ୍ଦ ହେଉନାହିଁ ?...
( ଦର୍ପଣଟା ଆଣି ମୁହଁ ସାମନାରେ ଧରିଲେ )

କନକ—ଏ'ତ ମୋ'ର ପ୍ରତିଚ୍ଛବି ! ( ମୁଗ୍ଧ ନୟନରେ ଦେଖୁଥିଲେ ଆପଣା ଛବିକୁ )

ଜନାର୍ଦ୍ଦନ—ପସନ୍ଦ ହେଉଛି ତ ?—

କନକ—( ହସି ) ନ ହେବ କାହିଁକି ?—( ତୃପ୍ତିଭରା ଦୃଷ୍ଟିରେ ପୁଣି ଚାହିଁ ଦେଖୁଥିଲେ )

ଜନାର୍ଦ୍ଦନ—ଛବିବାଲା ନିଜେ ଯେତେବେଳେ ଏଡେଟା ମଜ୍‌ଗୁଲ—

କନକ—( ଫିଙ୍ଗିଦେଇ ଦର୍ପଣଟା )...ମୁଁ ତ ଆଉ ଛକାଳୀ ନୁହେଁ...?—

ଜନାର୍ଦ୍ଦନ—କିଣାଲୀ କ'ଣ ଛାଡ଼ି ଦେବ ସହଜେ, ବସିଛନ୍ତି ?—ଯାଚକର ନଦେଲେ, ଲୁଟିକରି ନେଇ ପଳାଇବେ ନାହିଁ ନା ?

କନକ—ଏ' ଅସି-ଖେଳ ତେବେ, ଶିଖିବାରେ, ଫଳ ?

ଜନାର୍ଦ୍ଦନ—କିନ୍ତୁ ଗୁରୁ-ଦକ୍ଷିଣା ଦାଖଲ ନକଲା ଯାଏ, ଶିଷ୍ୟର ଖେଳରେ ବି ଅଧିକାର ନ ଥାଏଟି ?...ଫଳରେ ତ ବହୁଦୂରେ—!

କନକ—ଅଜୁର ଦକ୍ଷିଣା କେତେ ?—( ଭଗ୍ନଅସି ଆଡ଼େ ଦୃଷ୍ଟି ଆକର୍ଷଣ କଲେ )

ଜନାର୍ଦ୍ଦନ—( କୁଣ୍ଡ଼ାଇ ପକାଇ ) 'ଦକ୍ଷିଣା' ମୋ'ର ପୂର୍ଣ୍ଣହେବ ସେହିଦିନ, କୁନ—ଯେଉଁଦିନ ଏହି ନରମା ଦକ୍ଷିଣ ହାତଟି ତୋ'ର—ମିଳାଇ ମିଶାଇଦେବ ସେହି କଠିଣ ଦକ୍ଷିଣ ହାତରେ, ତା'ର—ସାରା ଦୀର୍ଘଜୀବନ ବ୍ୟାପି ଏକ ଲକ୍ଷ ମୋର—! ( ଘନ ଘନ ମସ୍ତକ ଆଘ୍ରାଣ କରିବାକୁ ଲାଗିଲେ )

[ ସହସା ଜଗନ୍ନାଥବରଗଡ଼ ପ୍ରବେଶ କଲେ ସମୁଦ୍‌ବେଗେ ]

କନକ—( ଆପଣାକୁ ଛଡ଼ାଇ ନେଇ, ତରବାରୀଟା ଫିଙ୍ଗିଦେଇ, ଛୁଟି ପଳାଉ ଥିଲେ )

ଜନାର୍ଦ୍ଦନ—ଆଃ—ତୋ'ର ଶଶୁର ଯେ !—ଲଜ୍ଜା କାହିଁକି ? ଜଗନ୍ନାଥ !—ମୋ'ର ଶ୍ରମ ସାର୍ଥକ ହୋଇଛି !—ଶିଷ୍ୟା ମୋ'ର ଠିକ୍ ନାଁ' ରଖିବ ! —ଶତ୍ରୁଜୀ ବରଗଡ଼କୁ ଶକ୍ତେ ଥାଉ ନୁଆଁଇବାକୁ ହେବ ଏଥର—ଦେଖିଲ ନମୁନା—( ଭଗ୍ନ ଅସି ଉତ୍ତୋଳନ ପୂର୍ବକ ସଗର୍ବେ ଦେଖାଇଲେ ) ହାଃ-ହାଃ—ମୋ'ର ଧୃତ ପଗ୍ ଅଜ ନାଶି ଦେଇଛି ଠୋକ !—ଦ୍ୱି'ଖଣ୍ଡ କରି !—ଗୋଟିକରେ !—

ଜଗନ୍ନାଥ—ପିତା !—

ଜନାର୍ଦ୍ଦନ—ଏଁ—ତୁମ ଆଖିରେ ଲୁହ ଯେ !—

ଜଗନ୍ନାଥ—ଲୁହ ଯେ ବାହାରୁନାହିଁ,—ଆଶ୍ଚର୍ଯ୍ୟ, ପିତା—

ଜନାର୍ଦ୍ଦନ—ବସନ୍ତ କ'ଣ ତେବେ ପରାଜିତ ?—ବନ୍ଦୀକୃତ ?—

ଜଗନ୍ନାଥ—'ବନ୍ଦୀ'ର ବନ୍ଧନର ବାହାରେ, ଏକାବେଳକେ, ପିତା !—

ଜନାର୍ଦ୍ଦନ—( ସ୍ଥିର ଓ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଲେ କିଛିକ୍ଷଣ )

ଜଗନ୍ନାଥ—ପି-ତା !—

ଜନାର୍ଦ୍ଦନ—ହାଃ-ହାଃ—

ଜଗନ୍ନାଥ—ପିତା !—ପିତା !—

ଜନାର୍ଦ୍ଦନ— ଅସମ୍ଭବ— ଅସମ୍ଭବ — ମୁଁ ଯେ ବଜ୍ରେଶ୍ୱରୀଙ୍କୁ ଜାଣିବି ବୋଲି, 'ଉଦ୍‌ଯୋଗ ପର୍ବ' ଶେଷ କରି 'ସ୍ତ୍ରୀପର୍ବ'କୁ ଉଦ୍‌ଗ୍ରୀବରେ ଚାହିଁ ଠିଆ ହୋଇରହିଛି !—କୁନ ! —କୁନ !—

ଜଗନ୍ନାଥ—ପିତା—ପିତା—

ଜନାର୍ଦ୍ଦନ—ଚୁପ୍

[ କନକ ବାଉଳା ଆଉଳା ହୋଇ କପରୁ ଧାଇଁ ଆସିଲେ ]

ଜନାର୍ଦ୍ଦନ—ଆଃ—ଏ' କି ଭାବ ତୋ'ର ?— ଭଞ୍ଜବିଜୟୀ ଭୁଜଙ୍ଗ ଯେ ଫେରି ଆସୁଚି,— ବିଜୟ ଡଙ୍କା ବଜାଇ,—ବିଜୟନିଶାଣ ଉଡ଼ାଇ !—କାହିଁ, କାହିଁ ତୋ'ର ସେହି ରଣ-ରଙ୍ଗ ବା ମୂର୍ତ୍ତି ?— ଯା', ଯା', ବେଗେ ସଜବାଜ ହୋଇ ଧାଇଁଆ'—ହଁ, ସେହି ତରଉଆଲଟା ତୋ'ର କାହିଁ, ଯେଉଁଥିରେ, ଏହି ତରଉଆଲଟାକୁ ମୋ'ର ଭାଙ୍ଗି, ଦୁ'ଖଣ୍ଡ କରି ଦେଇଚୁ,—ଗୋଟାଏ ଚୋଟରେ !—ଦେଖ୍, ଯେଉଁ ଖେଳ-କସରତ୍, ପେଞ୍ଚ-ପାଞ୍ଚ ଶିଖାଇଚି, କାମରେ ଲଗାଇବାକୁ ତ୍ରୁଟି କରିବୁ ନାହିଁଟି ?— ଦେଖିନେବି, ସିକେତେବା ଭଞ୍ଜ-ବିଜୟୀ ଭୁଜଙ୍ଗ ସେ, ତା'ର ଉଜ୍ଜ୍ୱଳ ମହିକୁ ଫିଙ୍ଗି ନଦେବ ଦୂରେ, ନାସ୍ତ୍ରୀ ରମଣୀ,—ମୋର କନକର କାରଣ ଜାଲରେ ଝୁଲିସି ଯାଇ ଯଦେଣେ ?—

କନକ—( ସାମରିକ ପ୍ରଥାରେ ଅଭିବାଦନ କରି ଚାଲିଯାଉଥିଲେ )

ଜନାର୍ଦ୍ଦନ—ହଁ—ସେହି ଚାରଣୀଗଣ ତୋର ?— ଗାଇ ଗାଇ, ଆଗେ ଆଗେ ପଥ କଢ଼ାଇବେ ଯେମନ୍ତ— ?

କନକ—ଯଥା ଆଜ୍ଞା—

ଜନାର୍ଦ୍ଦନ—ମୋର ସେହି ଚିଢ଼ଟି—?—

କନକ—(ପୁନରଭିବାଦନ ପୂର୍ବକ ପ୍ରସ୍ଥାନ କରୁଥିଲେ)

ଜନାର୍ଦ୍ଦନ—ମ'—ମ'— ( କ'ଣ ଯେମନ୍ତ ଭୁଲିଚନ୍ତି ବୋଲି ଚାଲିଗଲେ ବଣାହୋଇ )

ଜଗନ୍ନାଥ—କନକ—ତୁମ୍ଭେ ବି କ'ଣ ବାସ୍ତ୍ରାଣୀ ହେଲ ?—ଶୁଣିନାହିଁ···?

କନକ—ଶୁଣିଲି ବୋଲିଭ, ଆଜିର 'ବାସ୍ତ୍ରାଣୀ' ହେଉଚି, ପିତା······କୌତୁକ ପରି, ନେଞ୍ଚି ଖେଳ ଖେଳିବାକୁ ଯାଉଥିଲି ଭଞ୍ଜ-ବିଜୟୀ ସଙ୍ଗେ,—ପ୍ରାଣାନ୍ତକ ଜାଣି ଏବେ, ସେହି ଖେଳ ଯେ ଦୁଇଗୁଣ ଉତ୍ସାହରେ ଖେଳିବାକୁ ଚାଉଚି, ବିଜୟୀ ଭଞ୍ଜ ସଙ୍ଗେ !—( ଆଶୀର୍ବାଦ ଭିକ୍ଷାପୂର୍ବକ ଚରଣଧୂଳି ନେଇ ପ୍ରସ୍ଥାନ କଲେ )

ଜଗନ୍ନାଥ—ବସନ୍ତ !—ବସନ୍ତ !—ମୁଁ ତ ସହି, ପଚି ମରିଥା'ନ୍ତି ସେହି କାରାଗାରରେ !—କାହିଁକି ଭଲି ଉଦ୍ଧାର କଲୁ ମୋତେ ?—କଲୁ ଯଦି, ଧରା ଦେଲୁ ଆପଣାକୁ କେଉଁ ଅକାଳରେ— ଜାଣି, ଶୁଣି, ଭ୍ରାତୃବିରୋଧ !—ବୈମାତେୟ ଭ୍ରାତୃଦ୍ରୋହ, ପୁରୁଷ, ପୁରୁଷବ୍ୟାପୀ !—ଓଃ,— ଧିକ୍, ଧିକ୍—ଏ' ଜୀବନ ଧରିଚି ଯାହା, ମୃତର ଜୀବନ ବିନିମୟେ ।

ଜନାର୍ଦ୍ଦନ—( ବାସନ୍ତୀଙ୍କର ଖ୍ରେଷ୍ଟିଆ ପାଗଡ଼ିଟା ଚଦରଟାଏ ଧରି ପ୍ରବେଶ କଲେ )—କୁନ !— କୁନ !—ଏହିତ ଜଗନ୍ନାଥ—ଦେବଟି— ଦେବଟି, ବାପ—ପାଗଟା ଭଲ କରି ଉଡ଼ି, ବାନ୍ଧି ଦେବଟି—ଟିକେ୍ ଏକୁଶିଆଦିନ ନାତି ମୁଣ୍ଡରେ ଯେମିତିକା,—ନିଜେ, ମୁଁ — ( ଜଗନ୍ନାଥଙ୍କ ହାତରେ ଦେଲେ )

ଜଗନ୍ନାଥ—ବାବା !—ବାବା !—

ଜନାର୍ଦ୍ଦନ—ଆଃ—ତୁମର ଖାଲି ସବୁଥିରେ ମଠ-ମଠ—( କାଢ଼ିନେବାକୁ ଗଲେ )

ଜଗନ୍ନାଥ—( ବୁକୁରେ ଚାପୁଡ଼ି ଧରି, ଛଳ ଛଳ ଦୃଷ୍ଟିରେ ଚାହିଁଲେ କେବଳ )

ଜନାର୍ଦ୍ଦନ—ନା, ନା—ତା' ହବ ନାହିଁ—ଏ' ଜନମ ମୁଁ କାହାରିକି ଦେଇ ପାରିବି ନାହିଁ— ପ୍ରାଣ ଗଲେ ସୁଦ୍ଧା ! ଏ' ଯେ ବାସନ୍ତୀ ପାଗଟି ମୋ'ର ବସନ୍ତର !—ବାସନ୍ତୀ ଦେବୀଙ୍କ ସାକ୍ଷାତରେ, ଏକୁଶିଆଦିନ ତା'ର, ନିଜ

ହାତରେ ମୁଁ, ବାନ୍ଧ ଦେଇଥିଲି, ଖୁବ୍ କଷିକରି,
ଭିଡ଼ିକରି, ବଙ୍କଟକ, ଖୁଦୁରୁଅ ମଥାଟିରେ ତାର
—ଅଇଚ୍ଛୁକା ପିନା ସେଇକ ବ କରିବାକୁ ବହପ
ଖଟୁ ନାହିଁ, କି ବୁଦ୍ଧି ଅଣ୍ଟୁ ନାହିଁ—ହିଁ, ହିଁ,
ଦେବଟି ତୁମେ—ଖୁବ୍ ଭିଡ଼ି, କଷି—ତୁମେ
ପଗ୍ ଦେଖିଅ, ବୁଦ୍ଧିଅ—ତୁମର ଏହି ପୁଅଟାର
ମୁଣ୍ଡରେ ମ—

ଜଗନ୍ନାଥ—ବାବା !—( କାନ୍ଦ, ଲେଟିଗଲେ )

ଜନାର୍ଦ୍ଦନ—ନା, ନା, ଜଗ—ଯେତେ ଅଳି କଲେ
ମୁନ୍ଦା, ପିତାର ଅଧିକାର ଦାବି କଲେ ମୁନ୍ଦା—
ଏ' ଜନସରେ ଅଧିକାର ତୋ'ର ନାହିଁ !—
ଗାଜ୍ୟଟା ମୁଁ ଛାଡ଼ି ଦେଇଚ ତୋ' ହାତରେ
ବୋଲି, ଯାକୁ ବ ଛାଡ଼ି ଦେଇଚ, ନା କ'ଣ ?
—କେତେ ଯତ୍ନରେ ମୁଁ ସାଇତ ରଖିଚ,—
ପ୍ରାଣର ଗଣ୍ଠିଧନ କରି—ଯୋଗାଡ଼ିଲେ କେବେ
—ପିତନ୍ତ୍ର ବୋଲି ଖାଲି—··· ( ଅପେ ଅପେ
ମୁଣ୍ଡରେ ବାନ୍ଧିବାକୁ ଯା' ତା' କରି )

[ ନେପଥ୍ୟେ ଅଦୂରରେ ରଣ-ବାଦ୍ୟ
ଶୁଣାଗଲା ]

ଜନାର୍ଦ୍ଦନ—ଜଗନ୍ନାଥ !—ଶୋଇଚ କ'ଣ ?—
ଶୁଣୁ ନାହିଁ ବାଦ୍ୟଧ୍ୱନି ?—ଯାଅ, ଯାଅ, ବୀର—
ଭଞ୍ଜବିଜୟୀ ବସନ୍ତ ଭୁଜଙ୍ଗଙ୍କୁ ପଛୁଆରେ ନେଇ
ଆସିବ, ଯାଅ—ମୁଁ ଫାଟକ ଜଗି ଠିଆ
ହେଉଚି—

ଜଗନ୍ନାଥ—ଏ' କି ରଣବାଦ୍ୟ ?—ମୁଁ ତ କଚ୍ଛ ସମୁଜ
ପାରୁନାହିଁ ?—

ଜନାର୍ଦ୍ଦନ—ସମୁଜ ପାରୁ ନାହିଁ ?—ମୋ'ର ବିଜୟୀ
ବସନ୍ତ ବୀରଙ୍କର ବିଜୟ ଭେରୀ, ସମୁଜ ପାରୁ-
ନାହିଁ ?—

ଜଗନ୍ନାଥ—ବା—ବା—

ଜନାର୍ଦ୍ଦନ—ବିଶ୍ୱାସ ହେଉ ନାହିଁ ?

[ ହଠାତ୍ ରଣବାଦ୍ୟ ଘୋରତର ଶୁଣାଗଲା
ଏଥର ]

ଜଗନ୍ନାଥ—ତୁମର 'ବିଶ୍ୱାସ' ସାର୍ଥକ ହେଉ, ପିତା—
( ଚାଲିଗଲେ )

ଜନାର୍ଦ୍ଦନ—ହିଁ, ତରବାଲଟା ମୋ'ର—( ବିପରୀତ
ଦିଗେ ପ୍ରସ୍ଥାନ କଲେ )

[ ରଣବାଦ୍ୟ ଡୁବାଇ ଚାରଣୀମାନଙ୍କ ଗୀତ
ଶୁଣାଗଲା—ଧୀରେ ଧୀରେ ଚାରଣୀ ଗଣସହ,
ତରବାରି ହସ୍ତେ ଯୋଦ୍ଧୃ ବେଶରେ କନକ
ପ୍ରବେଶ କଲେ ]

ଚାରଣୀଗଣ— ଗୀତ

ଅମେ ବୀରରମଣୀ—ବୀରଜନନୀ ।
ବୀର-ପ୍ରସୂ ଅଭି କହିବା ଧରଣୀ ॥
ବୀର ବିଜୟୀ ଭେରୀ ବଜାଇ—
ଆସିଲ ଗର୍ବେ ଡରାଇ ସର୍ବେ—
ଡରିବା ଅମେ କି ଗୋ ବୀରରମଣୀ ॥
ଶତ୍ରୁ ହେଉ ସେ ହେଉ ବା ମିତ୍ର
ସମାନ ସେ'ତ ବୀରର ଷେତ୍ର—
ଯୁଝିବା ସମ୍ମୁଖେ, କି ଭ୍ରାତା ଭଗିନୀ ॥

[ ଜନାର୍ଦ୍ଦନ ଖଣ୍ଡେ ଗେଞ୍ଜିଅ, କାଠର ନାଲି
ତରବାରି ଧରି ପ୍ରବେଶ କଲେ— ]

ଜନାର୍ଦ୍ଦନ—ବେଶ୍, ବେଶ୍—ଅସିଚ, ରଣରଙ୍ଗିନୀ ?
—ଅସିଚ, ଯୋଗିଣୀ, ଡାକିଣୀମାନେ ?—···
ଗାଅ-ଗାଅ—ନାଚ-ନାଚ ତ 'ତାଥେଇ',
··· 'ଖଳ-ଖଳ', ଅଟ୍ଟହାସେ ଥରେ ଥରାଇ
ଦିଅତ ମେଦିନୀ—ବାଜେ, ବିଜୟ-ଛନ୍ଦ ଶିରେ,
—ବିଜୟୀ ବସନ୍ତ, ଦ୍ୱାରେ !—

କନକ—ନା, ନା—ଏ' ଯେ ରୌଦ୍ର ନିଦାଘ,
ଦ୍ୱାରେ !—···ଝଞ୍ଜା-କ୍ଷିପ୍ର-ଘନଘଟା ଶିରେ !—

ଜନାର୍ଦ୍ଦନ—ତୁମ୍ଭେ କମା, ରୁଦ୍ରାଣି ?—'କଡ଼, କଡ଼'
ନାଦେ କମ୍ପଇ ମେଦିନୀ—···ଶୋଭେ
ଏକହସ୍ତେ ଢାଲ, ଖଡ୍ଗ, ବକ୍ର-କୃପାଣ—ଅନ୍ୟ-
ହସ୍ତେ ନରମୁଣ୍ଡ, କଦମ୍ବା ବୁଦ୍ଧି ଖଣି !

[ ପୁଣି ବାଦ୍ୟ ଶୁଣାଗଲା ନିକଟେ ]

କନକ—···ନିର୍ଭୟା ଅଭୟା ଏବେ···ପରେ ମୁହିଁ
ରଣେ···( ଚାଲି ଯାଉଥିଲେ )

ଜନାର୍ଦ୍ଦନ—( ବ୍ୟାକୁଳ ଭାବେ ଯେମନ୍ତ )—ଭୁଜଙ୍ଗେ
ନେବନାହିଁ ସଙ୍ଗେ ?—

କନକ—କୁହିଁଠି—ହେଲେ ପ୍ରୟୋଜନ—ଉଦ୍‌ଗାରିବ ବିଷ ?—କିନ୍ତୁ…

ଜନାର୍ଦ୍ଦନ—'ଅଥର୍ବ, ବିଷଦ୍ମାନ ପର୍ବ' ?—…ଦେଖିଲି, ଦେଖିଲି, ଗୃହିଁ—ନୂଆ ବିଷଦାନ୍ତ ମୋ'ର, ଗଜବନ୍ଧି, କି ନାହିଁ—ମୋର ବସନ୍ତର ଏହି ନାଲିଆ ଖଣ୍ଡାଟି ଧରନ୍ତି ମାନେ ?—ମୁଣ୍ଡରେ ସେହି ବାସନ୍ତୀ ପାଗଟି ତା'ର ଜଡ଼ାଇଲି ମାନେ ?—

କନକ—ଏ ମହାଯାତ୍ରାରେ—

ଜନାର୍ଦ୍ଦନ—ସାଥି କରିବ ନାହିଁ ମୋତେ ?——ଏକଲା ମହା ମାହେନ୍ଦ୍ର ଯୋଗରେ ?—ମହା ବାରୁଣୀ ବୁଡ଼ଟା ଏକା ଏକା ମାରିଦେବ ପିନା ?—ତୁମେଇତ ଜାଣିପିଅଣୀ ?—

କନକ—'ପିଅଣୀ ପଣ' ଆଉ ରହିଲା କେଉଁଠି ମୋ'ର, ଅଜା ?—

ଜନାର୍ଦ୍ଦନ—ଜାହିଁକି ଜଗିଛୁ ବୋଲି ମୁଁ କାଳ-କାଳ ?—ଓଃ, ଏଡ଼କି ତୁ ପାଷାଣୀ ?—ଘିଉରୁ, ଖାପରଖାଇ, ତୋ'ର କାଳ-ନୃତ୍ୟରେ ହେବ ମୁଁ ଭାଗୀ ?—ଭୁଜଙ୍ଗ-ଧର ମହାକାଳ ସମ, ଲୋଟି ଚରଣ ତଳେ ତୋ'ର ?—

କନକ—ନା, ନା,—ସେହି ମହାକାଳ ଭୁଜଙ୍ଗ-ଧର ବକ୍ଷେ କି ମହାବେଦନା—ତାହାହିଁ ଭଲ, ଫଟତ ଚରଣ,—ଦଂଶିତ ରସନା ମୋ'ର !—

ଜନାର୍ଦ୍ଦନ—ହାଃ-ହାଃ—ମହାକାଳର ଅଂଶ ଯେଉଁ କାଳୀ—ତା'ର ଭୁଲେଣି ମହାକାଳ ପାଇଁ ?—ତୁହି ପର, ଜଞ୍ଜାଳ, ସହଚରୀ ନାତୀ ?—ଚାହିଁଲି ନାହିଁ ଅନ୍ତର ମୋହର ?—

କନକ—କ୍ଷୁଦ୍ର ମୁହିଁ—ବିରାଟ ଯେ ତୁମ୍ଭେ !—

ଜନାର୍ଦ୍ଦନ—ଆଃ—କ୍ଷୁଦ୍ର ଯେନା ଯେ ବିରାଟ !—ଅଲୋ, କାଳୀ-କରାଳୀ !—ବିରାଟ-ଭୁଜଙ୍ଗ ଅଜ, ଅସୁରି ଭଞ୍ଜ-ମୟୂରେ ଜଣି—ସେହି 'ଖୁନ୍'-ଚଢ଼ା ଆଖିରେ ଯଦି, ନ ଚାହିଁ ତୋତେ, ପିଙ୍ଗିଦେଲି ହୃଦରେ, ସେହି ପୂର୍ବ-ଅବଜ୍ଞା ଭରେ;—କିଏ ଭଲ ଅଛି ମାଜଜନ ତୋ'ର—ପିଠିରେ ପଡ଼ିବ—ଏହି ବୁଢ଼ା-ଭୁଜଙ୍ଗର ଛଡ଼ା ?—ଦଂଶି ସାଧିମତେ ନେବ ପ୍ରତିହିଂସା ?— (ଥରୁଥିଲେ ଯେମନ୍ତ)

କନକ—ଅଜା !—(ବୋଲି, ଲୋଟି ପଡ଼ିବାକୁ ଯାଉଥିଲେ)

[ ଖୁବ୍ ନିକଟେ ବାଦ୍ୟ ଧ୍ୱନି ଶୁଣାଗଲା ]

ଜନାର୍ଦ୍ଦନ—(ଫଟତ ହୋଇ)-ଏହି ଶୁଣ୍—ଶୁଣ୍—ଅତି ନିକଟେ—ହଁ ଅଗ୍ରସର—ଗାଇ, 'ମାଭୈଃ-ମାଭୈଃ'—

[ ଗୃହିଣୀଗଣ ଆରମ୍ଭ କଲେ ଗାଇବାକୁ ]

ଗୀତ

'ମା ଭୈ'—'ମା ଭୈ'—
ବାଜରେ ଶିଙ୍ଗା—ରହି, ରହି—

[ ଜଗନ୍ନାଥ ଉତ୍‌ଫୁଲ୍ଲ ବଦନରେ ପ୍ରବେଶ କଲେ ]

ଜଗନ୍ନାଥ—ଅଗ୍ରସରର ଆଉ ପ୍ରୟୋଜନ ନାହିଁ !—ବସନ୍ତ ଭୁଜଙ୍ଗ ମୋ'ର, ଜଣି ଭଞ୍ଜ-ମୟୂରେ—ଉପଗତ ଦ୍ୱାରେ ।

ଜନାର୍ଦ୍ଦନ—(ଅଦ୍ଭୁତ ଉତ୍ସାହରେ) ଗାଅ—ଗାଅ—ବନ୍ଦକଲ କାହିଁକି ?—ଅଗ୍ରସର ହୁଅ—ଅଦ୍ଭୁତ ବେଗରେ,—ବନ୍ଦ୍ୟ ଗତିରେ, ବାସନ୍ତ !—

× × × ×

କାହାର ଆମେତ ନ ମାନିବା ମନା—
'ଯୁଦ୍ଧଂ, ଯୁଦ୍ଧଂ ଦେହି' ହୋଇଚୁ ଯେ ବଣା;
ଗୁଲିରେ ଆଗଭର ହୋଇ ।
ମାଭୈ—ମାଭୈ—ବାଜରେ ଶିଙ୍ଗା ରହି, ରହି ॥
ଜଣିବା ହାରିବା ଜିଇଁବା ମରିବା—
ସମର ପ୍ରାଙ୍ଗଣେ, ସମାନ ମଣିବା
ଆମୋଦ୍, ଯୁଦ୍ଧ—ଯୁଦ୍ଧ ସେହି ।
ମାଭୈ—ମାଭୈ—ବାଜରେ ଶିଙ୍ଗା ରହି, ରହି ॥

କନକ—(କାପରି ଶିଥିଳ ହୋଇ ପଡ଼ୁଥିଲେ)

ଜନାର୍ଦ୍ଦନ—ଧର—ଧର ତୋ'ର ଖଡ଼୍‌ଗ, ଖର୍ପର, ମହାମାୟୀ—ଅସୁର—ଅସୁର ସେ—ଅସୁର ବିଜୟୋନ୍ମାଦେ, ଜଣି ସୁରପୁରୀ !—

କନକ—( ଲଙ୍କାରେ ଯେମନ୍ତ ସଢ଼ିଯାଇ ସ୍ଥାନ ତ୍ୟାଗ କରୁଥିଲେ )

ଜନାର୍ଦ୍ଦନ—( ଉଦ୍ଧଅଶି ) ଏ'କି ଲଜ୍ଜା ତୋ'ର କେ, ଅଳଜୁକା—ତୁହି ପରା ଅସୁର-ମର୍ଦ୍ଦିନୀ—ଉଲ୍ଲଙ୍ଗିନୀ ବାମା !—ଛି, ଛି, ଏତେ ସାଜ-ସଜ୍ଜା କରି—ଢାକ-ଢୋଲ ପିଟି,—ଚଣ୍ଡି-ଗ୍ରାମୁଣ୍ଡାଙ୍କୁ ବାନ୍ଧି—ଶେଷେ କି ନା, ବିସର୍ଜନ ?—ଶତ୍ରୁକୁ ନ ଭେଟିଣୁ ?—

କନକ—ପିତା—ପିତା—( ଜଗନ୍ନାଥଙ୍କ ଚରଣ ଭିକ୍ଷା କଲେ ପରି )

ଜଗନ୍ନାଥ—ମୋ'ର କି ଗୁରୁ, ମା ? ( ଆନନ୍ଦାଶ୍ରୁରେ ଭାସି ଗୁଲିଗଲେ କି ଅଉ )

ଜନାର୍ଦ୍ଦନ—ଶୀଘ୍ର, ଶୀଘ୍ର, ଜଗନ୍ନାଥ—ରସଦ, ବାରୁଦର ଯଥାଯଥ ଅଯୋଜନ ଶୀଘ୍ର କର—ମୁଁ ଛାଡ଼ ଦେଉନାହିଁ କେବେଁ—ନ ଦେଖିବା ଯାଏ, ବିଜୟୀ ବୀରର କେତେ କରାମତ ?—ସମ୍ମୁଖ ସଂଗ୍ରାମେ ?—ମୋ'ର ରଣରଙ୍ଗିନୀ ବିଜୟୀଙ୍କ ସହିତେ ?

କନକ—କ୍ଷମା—କ୍ଷମା—ରଣେ ମୋ'ର ନାହିଁ କ୍ରେ, ତିଳ ପରିମାଣେ !

ଜନାର୍ଦ୍ଦନ—'ସନ୍ଧ' ଭଲ, କ୍ଲେମପୁି ଅଛି କେଉଁ ପରିମାଣେ ?

[ ବସନ୍ତବେଶୀ ନୀଳକଣ୍ଠ ହସି ହସି ପ୍ରବେଶ କଲେ ]

ନୀଳକଣ୍ଠ—ଗୋଟା ହିମାଳୟ ନ ହେବ ପ୍ରମାଣେ !—

କନକ—( ଗୁରଣୀଗଣସହ ସ୍ଥାନତ୍ୟାଗ କଲେ, ନାସ୍ତି ସୁଲଭ, ଲଜ୍ଜାରେ )

ନୀଳକଣ୍ଠ—ହାଃ ହାଃ—ଏହି ପରି— ( କେଉଁ ଆକର୍ଷଣରେ ଯେହ୍ନେ ଅକୃଷ୍ଟ ହୋଇ ଅନୁ-ଧାବନ କରୁଥିଲେ )

ଜନାର୍ଦ୍ଦନ—( ମଧ୍ୟବର୍ତ୍ତୀ ହୋଇ )—ହାଃ-ହାଃ—ଏତେ ସାହସ !—ମନେ କରୁଛୁ, ବିଜୟି—ବିନା ଆୟାସେ—ନିଷ୍କଣ୍ଟକେ, ଲୁଣ୍ଠିବୁ ଏହି ସୁମନ-ସୁହାସୀ—ଅଃ ତୁ, ଏହି ପ୍ରତିଦ୍ୱନ୍ଦୀ ସାହସୀ ?—

ନୀଳକଣ୍ଠ—( କିଛିକି ଅପ୍ରସ୍ତୁତ ହୋଇ ରହିଗଲେ ମଝି, ଖୋଜି ଲେଉଁଲେ ପରି ସେହି ସୁନ୍ଦରୀକୁ )

ଜନାର୍ଦ୍ଦନ—ଦେଖ୍, ଦେଖ୍‌ରେ ପ୍ରଙ୍ଗବ—କେମନ୍ତ ସେ ପଳାଏ ହିଙ୍ଗାସି—ଚୁପ୍ ଚୁପ୍ ଗୁହିଁ, ମୃଦୁହାସି !

ନୀଳକଣ୍ଠ—( ପୁଣି ଅନୁଧାବନୋଦ୍ୟତ ହେଲେ କି ଅଉ କେଉଁ ମୋହାକର୍ଷଣରେ ? )

ଜନାର୍ଦ୍ଦନ—ସାବଧାନ !—

ନୀଳକଣ୍ଠ—ଅବଧାନ, ବୃଦ୍ଧ—ନୁହେଁ ମୁହିଁ ବସନ୍ତ-ଭୁଜଙ୍ଗ—!

ଜନାର୍ଦ୍ଦନ—ତେବେ – ତେବେ ତମା'ର 'ବସନ୍ତ-ଭୁଜଙ୍ଗ' ବେଶୀ ?—

ନୀଳକଣ୍ଠ—ନା, ନା—ନୁହେଁ 'ବସନ୍ତ-ଭୁଜଙ୍ଗ-ବେଶୀ' !—ମୁହିଁ ନୀଳକଣ୍ଠ ଭଞ୍ଜ-କୁଳ-ଶଶି !—ଭୁଜଙ୍ଗ ମଥିଣି—ମଥାମଣି, ଦେଖ ଗୁହିଁ, ପିନ୍ଧିଅଛି କସି !—

ଜନାର୍ଦ୍ଦନ—ଏହିତ ମୋ'ର ଗର୍ବ, ଭାଇ !—କନକ !—କନକ !—ଜଗନ୍ନାଥ !—ଜଗନ୍ନାଥ ! ଆସ, ଆସ ଧାଇଁ,—ନୀଳଗିରିବାସୀ ଯେତେ ସନ୍ତାନ ସନ୍ତତ !—ଛାଡ଼ ଧନୁର୍ବାଣ—ସଜାଅ ବରଣର ଡାଲି—ବଜାଅ ଶଙ୍ଖ ଘଣ୍ଟା—ବର୍ଷିଦିଅ ଲାଜ-ସୁମନ—ଆଜି ଅସିଛି ଭଞ୍ଜ-କୁଳ-କେତନ—ବୀର ନୀଳକଣ୍ଠ—ତମା'ର—ଜଡ଼ାଇ କେଉନ—ଫୁଲର ଛାତି—ବିଜୟୀ ବସନ୍ତର ବିଜୟ ଗୀରତି !—

ନୀଳକଣ୍ଠ—ସେହି ବିଜୟୀ-ଡାହାଣୀତ ଅଛୁର ଶୁଣି ନାହିଁ, ଅଜା !—

ଜନାର୍ଦ୍ଦନ—ବୋଲ୍, ବୋଲ୍ ଭାଇ—ଶୁଣିବାକୁ ଯେ ଭାସି ଉଛୁଳ ମୁହିଁ !—( ଅଶ୍ରୁଧାର ରୋଧ କରିପାରୁ ନ ଥିଲେ ପରି )

ନୀଳକଣ୍ଠ—ତହୁଁ ବଳି ଉଚ୍ଛନ୍ନ ଯେ ଭାଗ୍ୟ ମୁହିଁ—
କେମନ୍ତେ ଉଦ୍‌ଘାଟିବି, ଅକଣ୍ଟକର ଦୁଃଖ
କାହାଣୀ ସେହି—ସେଥିପାଇଁ ତ ଦୁଃଖଶ୍ୱାସେ
ଅସିଛି ମୁଁ ଧାଇଁ—!

ଜନାର୍ଦ୍ଦନ—ସତେ ?—ସତେ ?—ଏତେ ମାୟା-
ଦରଦ ତୋ'ର—ଏହି ବୁଢ଼ା ମଲ୍ଲ ଭୁଜଙ୍ଗ
ଠେଇଁ ?

ନୀଳକଣ୍ଠ—ଶୁଣ, ଶୁଣ, ଝଜା—ଲାଗିଲା ଘୋର ସମର
ଯେବେ, ଭଞ୍ଜ-ଭୁଜଙ୍ଗର ମଧ୍ୟ—ଭୁଜଙ୍ଗମେ
ଘେରିଲା ଯେବେ ମୟୂରଭଞ୍ଜ-ଗଡ଼ !—ବିସ୍ମିତ
ବୀରମଣ୍ଡଳୀ, ଦେଖି ଅଦ୍ଭୁତ କୌଶଳ !—
କେବେ ଜଣେ ଭୁଜଙ୍ଗ, ଛନ୍ଦ କାଳପାଶେ—
କେବେ ଭଞ୍ଜ-ମୟୂର, ବିଦାରଣି ବସେ—
କେବେ ଅବା ସମବଳେ, କୋଳାକୋଳି
ଛୁଟନ୍ତି—

ଜନାର୍ଦ୍ଦନ—(ଏକଉଁ ଅଗ୍ରହରେ)—ମେଣ୍ଟିଲା ନାହିଁକି
ସେହି ଭାବେ, 'ଭାଇ-ଭାଇ' କଲି ?

ନୀଳକଣ୍ଠ—ମେଣ୍ଟିଥା'ନ୍ତା ସେହି ଭାବେ ସେହି ଦିନ,
ସେହିକ୍ଷଣି ପରା,—'ଅବିଶ୍ୱାସ', 'ଅବିଶ୍ୱାସ'
ବୋଲି ତାଳ କେଉଁ ଟେଳର ଧାରା, କାଢ଼ି,
ଡଙ୍କ ଦେଇ ନ ଥା'ନ୍ତେ ଯେବେ, ପିତା, ଜଡ଼ିତ
ଭୁଜଙ୍ଗେ—ଶତେକ, ସ୍ୱକରେ, କେଉଁ ଉଦ୍ଧତ
ସୈନ୍ୟତରଙ୍ଗ ସଙ୍କୁଳେ—!

ଜନାର୍ଦ୍ଦନ—ପ୍ରାଣର ଭୟେ ?—ସେହି ଭୁଜଙ୍ଗ-
ବିଷଦଂଶାକୁ ?—ହାଃ-ହାଃ—ପଣ୍ଡ ତା'ର
ମିଳାଇ ନାହିଁ ପରା ଆଜ ?—

ନୀଳକଣ୍ଠ—ଏବେକି ମିଳାଇ—ବାଜିଛ ଯେତେକି, ଏହି
ମସ୍ତକେ ମୋହର !...ହଁ, ପିନ୍ଧାଇଣି ସାଦରେ
ମଥାମଣି ସେହି,—କହିଲେ ପିତା, ଗମ୍ଭୀର
ନିର୍ଘୋଷେ—"ଯାଅ, ବୀର—ଭୁଜଙ୍ଗର ଦନ୍ତାଘାତ
ଅଦ୍ୟାପି ଜ୍ୱଳନ୍ତ !"

ଜନାର୍ଦ୍ଦନ—ବେଶ୍—କର୍ ଉତ୍ପାଟିତ, ବୀର
ହନୁମନ୍ତ ?

[ କନକ ବନ୍ଧୁକ ଦେଖାଇ ପ୍ରବେଶ କଲେ ]

କନକ—ତହିଁ ପୂର୍ବେ ଶପଥିତ କରସାରେ ମୁହିଁ !

ନୀଳକଣ୍ଠ—( ଚାହିଁ ରହିଲେ ନିବଦ୍ଧ ଦୃଷ୍ଟିରେ ସେହି
ସୁନ୍ଦରୀ ପ୍ରତି )

କନକ—( ଲକ୍ଷ୍ୟ ସ୍ଥିର ରଖି ପାରୁନଥିଲେ କି ଆଉ )

ଜନାର୍ଦ୍ଦନ—( କନକର କାନ ପାଖେ )
'ବିଜୟୀ-ବସନ୍ତ' ବିଜୟୀ ନୀଳକଣ୍ଠ ପରା ?—

କନକ—ପରମ ଶତ୍ରୁ ତେଣୁ ମୋ'ର—! ( ବନ୍ଧୁକ
ଟିପିବାକୁ ଯାଉଥିଲେ )

ଜନାର୍ଦ୍ଦନ—( ହସି ) ଅପୂର୍ବ ଅଟଇ ଯେ ତୋ'ର !—

କନକ—( ସ୍ଥାଣୁ ପାଲଟିଗଲେ କି ଆଉ, ଜନାର୍ଦ୍ଦନ
ଅଡ଼େ ଚାହିଁ )

[ ସେତିକିବେଳେ ଜଗନ୍ନାଥ ଋଷିଗଣ
ସହ ପ୍ରବେଶ କଲେ ]

ଜଗନ୍ନାଥ—ବିଶ୍ୱାସଘାତକ !—ପୁତ୍ରହନ୍ତା !—

ଜନାର୍ଦ୍ଦନ—ପୁତ୍ରହନ୍ତା ଅଧିକ ସେ' ଯେ ତୋ'ର !—

ଜଗନ୍ନାଥ—ପ୍ରଧାନ ଶତ୍ରୁ ଯେ ଭୁଜଙ୍ଗର !—

କନକ—ନ ଛାଡ଼ିବ କ୍ଷଣେ, ଭୁଜଙ୍ଗେମୀ ମୁହିଁ !—( ପୁଣି
ବନ୍ଧୁକ ଉତ୍ତୋଳନ କରୁଥିଲେ )

ଜନାର୍ଦ୍ଦନ—ଅଃ—ଏ' ନଳୀରେ କି ଛଡ଼ାଇ ରଖି
ପାରିବ—ଆଉ ନଳୀଟି ନ ଧରିଲେ—ନ
ବାଇଲେ ?—ତେବେ ସିନା ଦେଖିବ, ଅଳ—
ଏହି ଭଞ୍ଜ-ମୟୂର ଶିଶୁର ଖେଳ ?—କେମିତିକା
ନାଚିବ ସେ, ଫୁଲେଇ ଚୂଡ଼ାଟି ଦୋହଲାଇ—
ଅଧହସା ଗୁଚ୍ଛ ଚନ୍ଦ୍ରକାଟି ମେଲାଇ;—ଆଉ
ଦରଫଟା କେକା ସ୍ୱରେ, ଚିରି, ବନ ଉଷାଇ—

[ ସେତିକିବେଳେ ନେପଥ୍ୟ ଭାରି କୋଳା-
ହଳ ଶୁଣାଗଲା, ଗୃହଦାହର ]

ଜଗନ୍ନାଥ—ଏହି କି ଭଞ୍ଜ-ମୟୂର-ଶିଶୁର ଖେଳ,
ପିତା ?—

ସମସ୍ତେ—( ଉତ୍ତେଜିତ ହୋଇ ଉଠିଲେ, ଯିବାକୁ
ବାହାରି )

ନୀଳକଣ୍ଠ—( ତରବାରି ଦେଖାଇ )—ନ ଛାଡ଼ିବ
ବାଟ—! ହାଃ-ହାଃ—ନ ଭୁଲିବ—ନ ଭୁଲିବ

ଉଠିଲେ !—'ଅବିଶ୍ୱାସୀ'—ଘୋର 'ଅବିଶ୍ୱାସୀ' ଏହି ଭୁଜଙ୍ଗର କୁଳ !—

ଜନାର୍ଦ୍ଦନ—( ରକ୍ଷିଗଣଙ୍କୁ ଦେଖାଇ ) ଚାଲ୍ ଚାଲ୍, ପଳାଇ, ଭାଇ—ଏତେଟା ଆତ୍ମବିଶ୍ୱାସ—

ନୀଳକଣ୍ଠ—ଭଞ୍ଜ-ମୟୂର ମୁହିଁ !—ନୁହେଁ ଜ୍ଞାନଶକ୍ତି—ଆତ୍ମ-ପ୍ରବଞ୍ଚକ—ଯଥା ଭୁଜଙ୍ଗ ବସନ୍ତ !—ଏହି ଦେଖ ଦେଖ, ଘରେ ଘରେ ଲାଗିଲାଣି ଅଗ୍ନି !—ଶୁଣ ଶୁଣ, କନ୍ଦନର ରୋଳ, ସୈନ୍ୟ କୋଳାହଳେ ଜାଣି !—

ଜଗନ୍ନାଥ—( ସୈନ୍ୟଗଣଙ୍କ ପ୍ରତି ) ହାଣ—ହାଣି-ପକାଅ ବେଗେ—

ନୀଳକଣ୍ଠ—ହାଃ-ହାଃ—ରୁହଂ, ରୁହଂ ଶକ୍ତି ମୋ'ର, ଆଖିର ପଲକେ— ! ( ଇଙ୍ଗିତ କଲେ—ସଙ୍ଗେ ସଙ୍ଗେ ଭୁଜଙ୍ଗ-ବେଶୀ ରକ୍ଷୀମାନେ, ଭଞ୍ଜ-ସୈନ୍ୟ-ରୂପେ ଦେଖାଦେଲେ,—ପ୍ରତ୍ୟେକ ଭୁଜଙ୍ଗର ଦୁଇପାଖେ ଦୁଇଜଣ ଲେଖାଏଁ ଠିଆହେଲେ ଅସ୍ତ୍ର ଦେଖାଇ )

ଜନାର୍ଦ୍ଦନ—ହାଃ-ହାଃ—ଏହି ପରା 'ଆତ୍ମବିଶ୍ୱାସ' ତୋ'ର, ଭାଇ ?—ଆତ୍ମଶକ୍ତି ?—

ନୀଳକଣ୍ଠ—ଅଧିକ ଦେଖିବାକୁ ଚାହଁ, ବନ୍ଧୁ ?—ଦୁଃଖର ବାର୍ତ୍ତା—ପରିଣତ ତାହାର ମୃତ୍ୟୁରେ ଏକାନ୍ତ !—

ଜନାର୍ଦ୍ଦନ—ସେହିଠାରୁ ଆରମ୍ଭ ଶକ୍ତି ଭୁଜଙ୍ଗର, ଜାଣ !—ମୋ'ର ଭକ୍ତସ୍ତ୍ରୀ ବସନ୍ତ, ସେହି ଶକ୍ତି ଯିନା କରୁଛି ସଞ୍ଚୟ, ଭାଇ ।

ନୀଳକଣ୍ଠ—ଜୀବିତ ବସନ୍ତ ?—

ଅନ୍ୟ ସମସ୍ତେ—( ଅବାକ୍ ହୋଇ ଯାଇଥିଲେ )

ଜନାର୍ଦ୍ଦନ—ବିଶ୍ୱାସ ହେଉନାହିଁ ପରା ?—

( ଚିବୁକ ଧରି ହଲାଇଲେ )

ନୀଳକଣ୍ଠ—( ଘୁଞ୍ଚିଯାଇ ଦୂରେ ) ହାଃ-ହାଃ—'ବିଶ୍ୱାସ' !—ଅବିଶ୍ୱାସୀ, ମାୟାବୀ ଭୁଜଙ୍ଗ ମହୀଧର ଠାରେ ? ( ଅସି ଉତ୍ତୋଳନ କଲେ ଯଥାଶକ୍ତି ବେଗରେ )

ଜନାର୍ଦ୍ଦନ—ହାଃ-ହାଃ 'ସତ୍ତା'—ଶାନ୍ତି—ଭଞ୍ଜ-ମୟୂର ଶିଶୁ କିଏ ? ( ଅବଲୀଳାରେ ତୋଳିନେଲେ ଆପଣାର ବିଶାଳ ବୁକୁ ଉପରକୁ )

ନୀଳକଣ୍ଠ—( ମୟୂର ଶିଶୁଟିକୁ ଆମୁଡ଼ିବାକୁ, ଖୁମ୍ପିବାକୁ, ଲାଗିଲେ )

ଜନାର୍ଦ୍ଦନ—( ଚେତନର ଆନନ୍ଦ ଅନୁଭବ କରୁଥିଲେ )

ଅପର ସମସ୍ତେ—( କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଚାହିଁ ରହିଲେ )

---

## ଷୋଡ଼ଶ ଦୃଶ୍ୟ

—ଯୁଦ୍ଧକ୍ଷେତ୍ର—

[ ଗଭୀର ନିଶିଥିନୀ ।···ଯୁଦ୍ଧକ୍ଷେତ୍ର ଶ୍ମଶାନକୁ ବଦଳିଯାଇଛି···ଚାରିଆଡ଼େ ଶବରାଶି ଓ ଛିନ୍ନ ନାନା ଅସ୍ତ୍ରଶସ୍ତ୍ର ବିଛୁଡ଼ି ହୋଇ ପଡ଼ି ରହିଛି—···ନିକଟରେ ଗୋଟାଏ ଖରସ୍ରୋତାନଦୀ··· ସେତୁବନ୍ଧା—ସେହି ସେତୁର ଅଦୂରବର୍ତ୍ତୀ ଗୋଟାଏ ଗଛର ଅନ୍ତରାଳରେ, କମାଣକୁ ଜଗି ରହିଥିଲେ କନକ— ]

କନକ—ଉଃ—ଆଖିଟା ଖାଲି ମାଡ଼ି ମାଡ଼ି ପଡ଼ୁଛି !—କରେଁ କ'ଣ ?—( ନାନା ଉପାୟରେ ଜଗି ରହିବାକୁ ଉଦ୍ୟମ କରୁଥିଲେ )

ଜଗନ୍ନାଥ—(ପ୍ରବେଶ ଦୁର୍ବଳ)—ଜୁଇଁଅଛ ତ, ମା ?—

କନକ—ଖୁବ୍ ଜୁଇଁଅଛି, ବାବା !—ଯେଉଁ ଭାର ଦେଇଛନ୍ତି ମୋତେ, ସେଥିପାଇଁ ଆଦୌ ଦଣ୍ଡା, ବା ଚିନ୍ତା କରିବେ ନାହିଁ, ବାବା ।

ଜଗନ୍ନାଥ—ଗୋଟାଏ ଭଲ ଖବର ସମ୍ବାଦ, ମା··· ପୁରୁଷୋତ୍ତମଦେବ ଆମମାନଙ୍କୁ ସୈନ୍ୟ ସାହାଯ୍ୟ ପଠାଇଛନ୍ତି—

କନକ—କ'ଣ କହୁଛନ୍ତି, ବାବା ?—

ଜଗନ୍ନାଥ—ହଁ—

କନକ—ସାହାଯ୍ୟ କ'ଣ ଲୋଡ଼ିଥିଲେ, ବାବା ?—

ଜଗନ୍ନାଥ—ଏ' ଅଯାଚିତ ସୈନ୍ୟ ସାହାଯ୍ୟ, ମା !—

କନକ—କାହିଁକି ?—

ଜଗନ୍ନାଥ—ଜଗନ୍ନାଥଙ୍କ କରୁଣା !—…ହଁ, ଶୁଣ ଅଗ୍ରଜ, ମା…ସୈନ୍ୟାଧ୍ୟକ୍ଷ ଜଣେ ଯୁବକ—ଦୂତ ପଠାଇ, ଅଗତ୍ୟା ନିଯୁକ୍ତ କରାଇ ନେଇଛନ୍ତି, ତାଙ୍କ ସଙ୍ଗେ ଆମେ କେହି କେବେ ଦେଖା ସାକ୍ଷାତ୍ ସୁଦ୍ଧା କରି ପାରିବା ନାହିଁ—

କନକ—ଯାର ଅର୍ଥ ?—ଯୁଦ୍ଧକାର୍ଯ୍ୟ ଚଳିବ କିପରି ?—

ଜଗନ୍ନାଥ—ଆମର ଯାହା କିଛି ସୈନ୍ୟବଳ, ରସଦବାରୁଦ ଅଛି, ତାଙ୍କର ଜିମ୍ମାରେ ଛାଡ଼ି ଦେଇ, ନିଶ୍ଚିନ୍ତ ରହିବାକୁ କହି ପଠାଇଛନ୍ତି !—

କନକ—ଅର୍ଥାତ୍, ସେ ସେନାପତି—ତାଙ୍କର ନିର୍ଦ୍ଦେଶ ମତେ ଯୁଦ୍ଧ ଚାଲିବ—ଆପଣି ରାଜି ହୋଇଛନ୍ତି ?—

ଜଗନ୍ନାଥ—ବାବା ମଧ !—ବାବା ଯୁକ୍ତିରେ !—ବାବା ଆହୁରି କ'ଣ କହୁଛନ୍ତି, ଜାଣ ?—

କନକ—କ'ଣ ? କ'ଣ ?—

ଜଗନ୍ନାଥ—'ମୋ'ର 'ବସନ୍ତ-ବରିଷ୍ଠ' ସେ' !—'ବରିଷ୍ଠ-ବିଜୟୀ' ! 'ବଣ୍ଠ-ବିଜୟୀ' !

କନକ—ସାବଧାନ, ବାବା—ଇନ୍ଦ୍ରଜାଲର କୁହୁକ ଭଳି, ପାଲଟି ନ ଯାଏ ଆଖିପିଛୁଡ଼ାକେ ପୁଣି ?—

ଜଗନ୍ନାଥ—ଗୁପ୍ତବେଶୀ ଶତ୍ରୁ ବୋଲି, ସନ୍ଦେହ ?—…ଏ' ଗୁପ୍ତବେଶ—ତା, ଗୁପ୍ତ ବଳରେ ଆଉ କି ପ୍ରୟୋଜନ, ମା, ଶତ୍ରୁର ?— ଆମର ଆଉ ବାକି କ'ଣ ଅଛି ଧ୍ୱଂସ କରିବାକୁ—ଏହି ଦୁଇଗୋଟି ପ୍ରାଣଛଡ଼ା— ?

କନକ—ତଥାପି, ଅଜ୍ଞାତ ଜୀବନ ?—କିନ୍ତୁ ତ ମାତ୍ର ହୋଇ ନାହିଁ ?—ଆପଣ ଯାହା ଇଚ୍ଛା ତାହା କରନ୍ତୁ, ମୁଁ ଏହି ଘାଟିଟା ଆଉ କାହାରିକୁ ଛାଡ଼ିଦେଇ ନାହିଁ,—କି, ଏ' ଥାନ ଛାଡ଼ି, କାହିଁ ମୁହୂର୍ତ୍ତକପାଇଁ ସୁଦ୍ଧା ବାହାରିଯାଇ ନାହିଁ ?—କହିଲ, ବାବା, ଏହି ମେଳୁଟି ପାର ହୋଇ ପାରିଲେ—ନାଟିଟି ଆମର, ଷଣ୍ଢକେ ଚିପିଦେବ ନାହିଁ କି ଶତ୍ରୁ ?

ଜଗନ୍ନାଥ—କିନ୍ତୁ, ସାବଧାନ—ଶତ୍ରୁକୁ ଚିପିବାକୁ ଯାଇ, ମିତ୍ରକୁ ଯେମିତିକା ଚିପି ନବସୁ ?

କନକ—ଏତେ ରେହୁସିଆର ମୋତେ ମନେ କରୁଛ ନା, ବାବା ?—

ଜଗନ୍ନାଥ—ଦେଖେଁ, ଶତ୍ରୁର ସନ୍ଧାନ କ'ଣ ?—ନିଶ୍ଚେ ଯେ ସେମାନେ,—ଯୁଦ୍ଧ ଜଣିଛନ୍ତି ବୋଲି,—ଆମର ଆଉ ଶକ୍ତି ନାହିଁ ଭୁଇଁ,—ଅନୁକିଛି ଥିବେ—ଏଥିରେ ସନ୍ଦେହ ନାହିଁ। (ଚାଲିଗଲେ )

କନକ—ମୋତେ ଖୁବ ହୁସିଆରରେ ରହିବାକୁ ହେବ—ଅନ୍ତତଃ ରାତିଟା ପାହିବାଯାଏ—( ହାଇ ଉପରେ ହାଇ ଖାଲି ମାରିବାକୁ ଲାଗିଲେ )—ସତେ କ'ଣ ମୋ'ର 'ବସନ୍ତଜ୍ୱର' ? (ହସି) —ଅଜାଙ୍କର ଯେତକି ଆଜଗୁବ ଖେୟାଲ ?—ନା, ନା, ବସି ପାରିବିନାହିଁ—ଖାଡ଼ା ପହରା !—ଖାଡ଼ା ପହରା !…

[ ଖୁବ୍ ହୁସିଆରରେ ଠିଆ ପହରା ଦେଉଁ ଦେଉଁ କେତେବେଳେ ଯେ କମାଣଟାକୁ ଆଉଜାଇ ଦେଇ ପଡ଼ିଛନ୍ତି, ବିଶେଷତଃ ଜ୍ୱରର ହାଓ୍ୟା ଲାଗିବାରୁ, ଜଣାନାହିଁ — ବରଂ ସ୍ୱପ୍ନ ଦେଖୁଥିଲେ,—ଏକଆଡ଼େ ବସନ୍ତ, ଅନ୍ୟଆଡ଼େ ନୀଳକଣ୍ଠ, ସେତୁ ବଦଳରେ ସେତୁ ଚନ୍ଦ୍ରରୂପିଣୀ କନକକୁ ଯେମନ୍ତ ଦଖଲ କରିବାରେ ବ୍ୟସ୍ତ—ନୀଳକଣ୍ଠ ବସନ୍ତକୁ ପରାଜିତ କରି, ସେତୁକୁ ସମ୍ପୂର୍ଣ୍ଣ କବଳରେ ଆଣି, ଜୟୋଲ୍ଲାସରେ ଯେମନ୍ତ ମାତି ଉଠିଲେ— ]

କନକ—ଅସମ୍ଭବ—ଅସ… ( ବୋଲି ବୋଲି, ସେହି ସ୍ୱପ୍ନଦୃଷ୍ଟ ଶତ୍ରୁକୁ ଯେମନ୍ତ ତୋପରେ ଉଡ଼ାଇ ଦେବା ଉଦ୍ଦେଶ୍ୟରେ ତୋପ ଦାଗିବାକୁ ଯାଉଥିଲେ, ଉନ୍ମାଦିନୀ ଭଳି )—ଏଁ, ଏଁ— ମୁଁ କରୁଛି କ'ଣ ?—

[ ହଠାତ୍ ଭୋରର ଅସ୍ପଷ୍ଟ ଆଲୋକରେ ଦେଖାଗଲା, ସେତୁର ଅପର ପାର୍ଶ୍ୱରେ,

ଭେଡେଗୃହଁଏ ସୈନ୍ୟ ଅଗ୍ରସର ହେଉଚନ୍ତି 'ବସନ୍ତର' ଅଧିନାୟକତ୍ୱରେ—]

କନକ—ନା, ନା,—ସ୍ୱପ୍ନତ ନୁହେଁ !—···ଶତ୍ରୁ—ଶତ୍ରୁ—( ତୋପ ସେହିଆଡ଼େ ମୁହାଁଇ, ଦଳପତିଙ୍କ ଲକ୍ଷକରି ଦାଗିବାକୁ ଯାଉଥିଲେ )

[ ଜଗନ୍ନାଥ ଉଚ୍ଛନ୍ନ ହୋଇ ଧାଇଁ ଆସି କାଣ୍ଡ କାରଖାନାଟା ଦେଖି ସ୍ତମ୍ଭୀଭୂତ ହୋଇ ଯାଇଥିଲେ,—ହଠାତ୍ ଜଳସ୍ତମ୍ଭ ଭଳି ଗର୍ଜି ପଡ଼ି, ଉଚ୍ଛ୍ୱାସରେ କହି ଉଠିଲେ,—]

ଜଗନ୍ନାଥ—କ'ଣ କରୁଛୁ ତୁ, ସର୍ବନାଶି ?··· ଏହିଆଡ଼େ ଯେ ଶତ୍ରୁ !···( ପ୍ରାଣପଣେ ଯେମନ୍ତ ଚେଷ୍ଟାକରି, ତୋପର ମୁହଁ ବୁଲାଇଦେଲେ )

କନକ—ଘୁରାଅ—ଘୁରାଅ, ବାବା—ମୁହିଁ—ମୁହିଁ—

ଜଗନ୍ନାଥ— ଏହି— ଏହି — ନୀଳକଣ୍ଠ !—ନୀଳକଣ୍ଠ !—

କନକ—( ସେହି ନାମୋଚ୍ଚାରଣରେ ଓ ଦର୍ଶନରେ ଯେମନ୍ତ ଅନ୍ୟ କେଉଁ ମହାସ୍ୱପ୍ନାବସ୍ଥାଗ୍ରବେ )··· ମୋ'ର ଶତ୍ରୁ !···ପରମ ଶତ୍ରୁ ! !···( ତୋପ ଦାଗିଦେଲେ, ସତ, କିନ୍ତୁ···) ବାବା —( ବୋଲି, କେଉଁ ଭୀଷଣ ପ୍ରତିଘାତରେ ଯେମନ୍ତ ଜଗନ୍ନାଥଙ୍କ ବୁକୁରେ ଛିଟିକି ପଡ଼ିଲେ )

[ ତେଣେ ଦେଖାଗଲା—ତୋପର ଗୋଲାଟା, କନକର ଦୁର୍ଭାଗ୍ୟ କମେ ହେଉ, କି ଲକ୍ଷ୍ୟ ଠିକ୍ ରଖି ପାରି ନ ଥିବା ଯୋଗୁଁ ହେଉ, ଲକ୍ଷ୍ୟ ଭେଦ ନ କରି, ସେତୁର ମଧ୍ୟଭାଗଟା ଉଡ଼ାଇ ନେଇ ଯାଇଥିଲା···ସୈନ୍ୟମାନେ ଇତସ୍ତତଃ ବିକ୍ଷିପ୍ତ ହୋଇ ଯାଇଥିଲେ···ନୀଳକଣ୍ଠ ଓ ବସନ୍ତ, ଭଗ୍ନ ସେତୁର ଦୁଇ ମୁହାଣ୍ଡା ଧରି, ଓହଳି ପଡ଼ିଥିଲେ ଦୁଇଦିଗେ ]

---

—ତିନି—

—ଓଡ଼ିଶା-ରାଜ-ଦରବାର—

[ ରାଜା ପୁରୁଷୋତ୍ତମ ଦେବ ସିଂହାସନୋପରି ଆସୀନ—ଭଞ୍ଜରାଜ ହରିହର ଓ ଯୁବରାଜ ନୀଳକଣ୍ଠ, ରାଜ-ଅତିଥି ରୂପେ, ସମାନ ଆସନରେ ଉପବିଷ୍ଟ ···ଦେହ ରକ୍ଷୀ ରୂପେ ବସନ୍ତ-ତରାଟ, ପୁରୁଷୋତ୍ତମ ଦେବଙ୍କ ପାର୍ଶ୍ୱେ ଦଣ୍ଡାୟମାନ—ମାହାରୀ ନର୍ତ୍ତକୀଟିଏ, ନାନା ଅଙ୍ଗଭଙ୍ଗିରେ ନର୍ତ୍ତନ କରି ସାରି ଗଲେ—]

[ ନର୍ତ୍ତକୀଗଣ ଗାଇ ଗାଇ ପ୍ରବେଶ କଲେ ]

—ଗୀତ—

ନର୍ତ୍ତକୀଗଣ—

କେତେ ଭଙ୍ଗ ନାରୁ ଆମେ<br>
କେତେ ରଙ୍ଗେ ଗାଇ—<br>
ମନ ଭୃଙ୍ଗେ ମଜ୍ଜିବାକୁ<br>
ନାଚି, ସଙ୍ଗେ ଗାଇ ॥<br>
କଢ଼ି, ଉଡ଼ି ସାରା ଦିନ<br>
କରି ମଧୁ ଆହରଣ,<br>
ଫୁଲପଡ଼େ ମଧୁଚକ୍ରେ<br>
ହୋଇ ଯେବେ ଅବସନ୍ନ;—<br>
ତୋଳି ଦେଉଁ ନୂଆ ପ୍ରାଣେ<br>
ଆମେ, ନାଚି, ଗାଇ ॥

ପୁରୁଷୋତ୍ତମ—( ହରିହର ପ୍ରତି ) ଶୁଣିଛ, ଆପଣ ଭାରି ନର୍ତ୍ତନ ପ୍ରିୟ !

ହରିହର—କର୍ତ୍ତନ ପରେ ପରେ ଭାରି ଉପଭୋଗ୍ୟ ନୁହେଁ କି ?

ପୁରୁଷୋତ୍ତମ—( ବସନ୍ତ ଆଡ଼େ ) କ'ଣ କହୁଚ ହେ, ଯୁବକ ?

ହରିହର ଓ ନୀଳକଣ୍ଠ—( ଟୁହାଁ ଟୁହିଁ ହୋଇ, ଚମକି ଉଠିଲେ )

ପୁରୁଷୋତ୍ତମ—ଚମକିବାର କଥାତ, ରାଜ—ବାଟରେ ଏ ପ୍ରାଣୀଟି—ଯାଙ୍କ ପ୍ରାଣରେ, କର୍ତ୍ତନ ଛଡ଼ା

ନର୍ତ୍ତନ ପାଇଁ, ଟିକିଏ ହେଲେ ଅବସର ଖୋଜି ଥା'ନ୍ତେ ଯଦି ସିଧା:ତା ! ···ଏହି ମୁହୂର୍ତ୍ତେ, କା'ର କପାଳ ଯେ ଫାଟୁଥିବ ତେବେ, କିଏ ଜାଣେ ···!

ହରିହର—ଯୁବକର, ଏହି ତ ଧର୍ମ !—

ପୁରୁଷୋତ୍ତମ—ପ୍ରକୃତରେ, ବନ୍ଧୁ—ଯୁବକଟିର ଏହି ଧର୍ମାଚରଣ ଯୋଗୁଁ, ଆଜି ବାହୁ-ବିଜୟ-ଗୌରବ-ଟୀକା ପିନ୍ଧା, ଏହି ଭାଲପଟେ ମୋ'ର !—

ନୀଳକଣ୍ଠ—( ହଠାତ୍ ବସନ୍ତ ନିକଟକୁ ଉଠିଗଲେ )

ହରିହର—( ହସି ହସି ) ଯୁବକେ-ଯୁବକେ ଆକର୍ଷଣ ପରି ?

ପୁରୁଷୋତ୍ତମ—ନା, ନା—ବାରେ-ବାରେ ମିଳନର ଧାରା । ··· କର ଭାବ ଅନ୍ତରାଳେ ଯାଇ ··· ନ ହେବେ ଅନ୍ତରାୟ କେହି !···

[ ବସନ୍ତ ଓ ନୀଳକଣ୍ଠ କେଉଁ ଦିନର ପରିଚିତ ଦୁଇ ବନ୍ଧୁ, ବା ଦୁଇଟି ଯମଜ ଭଳି ମିଳାମିଶି ଚାଲିଗଲେ ସ୍ଥାନାନ୍ତରକୁ ]

ହରିହର—ଏହି ପରି ସେହି ବୀର···ଭଞ୍ଜ-ଭୁଜଙ୍ଗବର୍ଟେ, ଭୁଜଙ୍ଗର ହୋଇଥିଲେ ସାହାପକ୍ଷ ଯେତୁ ?—

ପୁରୁଷୋତ୍ତମ—( ହସି ହସି ) ସତ୍ୟପାଶେ ବନ୍ଧ ହୋଇ ନ ଥିଲେ ମୁହିଁ—ସ୍ୱପକ୍ଷ ତୁମ୍ଭର କେବେଁ, ହୋଇ ନଥା'ନ୍ତି, ବନ୍ଧୁ !—

ହରିହର—'ସତ୍ୟ-ପାଶେ' ?—

ପୁରୁଷୋତ୍ତମ—'ସତ୍ୟ-ପାଶେ' ଠିକ୍ ନୁହେଁ—ତେବେ, କଥା ଏହି—କାଞ୍ଚି ଅଭିଯାନରେ, ପ୍ରଥମ ଥର୍‌କାରେ, ଏତେଟା ହତୋତ୍ସାହ ହୋଇ ପଡ଼ିଥିଲି ଯେ, ଆତ୍ମହତ୍ୟା ବୋଧହୁଏ କରି ପକାଇ ଥା'ନ୍ତି ମନକଷ୍ଟରେ, ଯଦି ଜଗନ୍ନାଥଙ୍କ ଦୂତ ଭଳି, ଏହି ବୀର ବାଳକଟି, ସହସା ଆବିର୍ଭୂତ ହୋଇ ସମ୍ମୁଖେ ମୋ'ର, ଶୁଣାଇ ନ ଥା'ନ୍ତା ଅଭୟ ବାଣୀ—ଆକାଶ ବାଣୀ ସମ—ଆଉ, ଅକାଳେ, ଛିନ୍ନବିଚ୍ଛିନ୍ନ ସୈନ୍ୟଗଣଙ୍କୁ ମୋ'ର ଶିକ୍ଷିତ କରି ନୂତନ ଦୀକ୍ଷାରେ, ଯାହା କରି ନଥା'ନ୍ତା ପୁନରଭିଯାନେ, ସେହି କାଞ୍ଚି ଅଭିମୁଖେ ?···

ହରିହର—ଅବଶ୍ୟ, ଏ' ଭଳି ଗୋଟାଏ ଦୁଃସାଧ୍ୟ ବିଜୟର ପୁରସ୍କାର ସ୍ୱରୂପ···

ପୁରୁଷୋତ୍ତମ—( ହସି ହସି···ତୁମର ବିରୁଦ୍ଧେ ସୈନ୍ୟ ଚାଳନା ?···ସେଇଟାଇ ଯେ ତା'ର ଅଭୀପ୍ସିତ ପୁରସ୍କାର ଥିଲା, ତା' କଦାପି ନୁହେଁ, ବନ୍ଧୁ;—ଆଉ ଦେଖ, ତୁମ ଭିତରେ ତ ଭ୍ରାତୃ ବିରୋଧ, ଗୃହ ବିବାଦ—ସେଥିରେ ତା'ର କି ସମ୍ପର୍କ ?—ଖାଲି ଯୁଦ୍ଧ ନିଶା—ଯୁଦ୍ଧ ନିଶା, ବନ୍ଧୁ—ଦେଖିଛ ତ ସେହି କାଠପଥର ମୂର୍ତ୍ତିଟି ତା'ର—ସାରା ଜୀବନଟା ଯୁଦ୍ଧ କରିବାକୁ ଯେମନ୍ତ ତଥର !—

ହରିହର—ତେବେ—ଭୁଜଙ୍ଗ ପକ୍ଷ ବାଛି ନେବାର କାରଣଟା ?—

ପୁରୁଷୋତ୍ତମ—କିଛି ନୁହେଁ—କିଛି ନୁହେଁ, ଭାଇ—ସେହିପକ୍ଷ ହୁଏ ତ ଆଗଭୁର ଆମନ୍ତ୍ରଣ କରି ପକାଇଥିବ !—

ହରିହର—ଆମ୍ଭଙ୍କର ଅଜ୍ଞାତସାରେ କ'ଣ··· ?—

ପୁରୁଷୋତ୍ତମ—ମୁଁ ଗୋଟାଏ କି ଉଚ୍ଛ୍ୱାସରେ କହି ପକାଇଥିଲି ଦିନେ, ବନ୍ଧୁ—ରାଜାଦେଶକୁ ଅପେକ୍ଷା ନକରି, ସେ ଯଥାଇଚ୍ଛା, ଯେତେ ଇଚ୍ଛା, ସୈନ୍ୟ ଚାଳନା କରିପାରେ, ଯାହାର-ତାହାର ବିରୁଦ୍ଧରେ ହେଉ—ମୋ'ର ଯେତେହିଁର ଘନିଷ୍ଠ ସମ୍ପର୍କୀୟ ହେଲେ ମଧ୍ୟ, ବାଧା ନାହିଁ !

ହରିହର—ବେଶ୍ ତ—ଏବେ ନିଜେ ମୁଁ ଆସିଛି,—ସେହିଭଳି ଆମନ୍ତ୍ରଣ କରିବାକୁ, ମହାରାଜଙ୍କ ଗୋଚରରେ—!

ପୁରୁଷୋତ୍ତମ—କୌଣସି ଦ୍ୱିଧା ବୋଧ କରିବ ନାହିଁ ସେ, ପକ୍ଷାପକ୍ଷ ବିଚାରି,—ଯୁଦ୍ଧ ଖାଲି ସିଧା ସିଧା କରିବାକୁ ମିଳିଲେ, ହେଲା—

[ ଏହି ସମୟରେ ରାଜଜେମା କଳାବତୀ ଦେବୀ ହଠାତ୍ ପଶି ଆସୁ ଆସୁ, କେଉଁ କାର୍ଯ୍ୟୋପଲକ୍ଷେ,—ବାହୁଡ଼ି ଗଲେ ଅପରିଚିତମାନଙ୍କୁ ଦେଖିବାକୁ— ]

ପୁରୁଷୋତ୍ତମ—ଏହି ମୋର ଭଗିନୀ—( ହଠାତ୍ କ'ଣ ମନରେ ଜାଗିବାରୁ )—ଅଚ୍ଛା, ବନ୍ଧୁ—ମୁଁ ନିଜେ ଯଦି ଆମନ୍ତ୍ରଣ ତୁମର ରକ୍ଷା କରେ—

ହରିହର—କୃତଜ୍ଞତା ଜଣାଇବା ଛଡ଼ା, ଯୁମୁଣ୍ଡ ଦେଯ୍ ଅଛି···

ପୁରୁଷୋତ୍ତମ—ଅଃ, ସେଭଳି ଶୁଙ୍ଖିଲା କଥା ଦି' ପଦ ଶୁଣି, ଲାଭ ମୋ'ର ?

ହରିହର—ତେବେ ଆଦେଶ ଯାହା, ପାଳିବି ଅକ୍ଷରେ—

ପୁରୁଷୋତ୍ତମ—'ଆଦେଶ' ନୁହେଁ,—'ଅନୁରୋଧ'—'ଆମନ୍ତ୍ରଣ' ସେହି ଭଳି ତୁମଠାରେ ମୋ'ର, ଭାଇ !—

ହରିହର—ଏତେ ଅନୁଗ୍ରହ ?—

ପୁରୁଷୋତ୍ତମ—ଏହି ଯେ ଯୁବକ ଦୁହେଁ ଅମୃତଚନ୍ଦ୍ର—ହସି-ଖେଳି-ଗଢ଼—ଆସନ୍ତୁ, ସେହି କଥେ—
( ଖୁବ୍ ଆତ୍ମୀୟ ଭାବେ ଯେନ୍ତାଗଲେ ଭିତରକୁ )

[ ବିପରୀତ ଦିଗରୁ ନୀଳକଣ୍ଠ ଓ ବସନ୍ତ ଭାରି ଖୁସିରେ ଗପ କରୁ କରୁ ପ୍ରବେଶ କଲେ ]

ନୀଳକଣ୍ଠ—ହଁ, ତା' ନା' 'କନକ' !—ସେହି ବୁଢ଼ା ଭୁଜଙ୍ଗଟାର ଭାରି ଚେହ୍ଲା ନାତୁଣୀ !—ଖୁବ୍ ଠାଣିମାଣି ଶିଖିଚି, ଭାଇ—ମୋତେ ପରା କାବୁ କରି ପକାଇଥିଲା—?—

ବସନ୍ତ—କ'ଣ କହୁଚ ?—ଏଡ଼େ କୌଶଳୀ, ବୀର ହୋଇ, ସାମାନ୍ୟ ଗୋଟାଏ 'ଟୋକୀ'ର 'ଠାଣି-ମାଣି' ରେ କାବୁ ହୋଇଗଲ ନା ତୁମେ ?—

ନୀଳକଣ୍ଠ—ନିଜେ ଥରେ ପରଖି ଦେଖିଥା'ନ୍ତ, କି କହନ୍ତ ?—

ବସନ୍ତ—ଏହି ସେ ଦିନ ତ ଲଢ଼େଇ କରିବାକୁ ଯାଇଥିଲି, କାଳିର ପରି, ନିଜେ ମୁଁ—କାହିଁ···?

ନୀଳକଣ୍ଠ—ଆଃ—ଏହି 'ନୀଳକଣ୍ଠ' ସାଜି, ଯାଇଥିଲେ ହୋଇଥାନ୍ତା କି ?—ତୁମେ ତ 'ରୂପ-ବସନ୍ତ'କୁ ବଳି ଯାଇଥିଲ ଏକାବେଳକେ ?

ବସନ୍ତ—ତେବେ ତ ମୋ'ର ଅଧିକ ଜିତିବାର କଥା—ମୋ'ଠେଇଁ ଟୋକୀ କାବୁ ହୋଇ ଯାଇଥିବ ନିଶ୍ଚେ—ମୋ'ର ରୂପ-ମାଧୁରୀରେ ଭୁଲି—?

ନୀଳକଣ୍ଠ—ମାତ୍ର ସେଥିରେ ତୁମର ବାହାଦୁରୀଟା ଅଛି ରହିଲା କ'ଣ ?···ଟୋକୀର ରୂପ-ମାଧୁରୀତ ତୁମେ ଆଉ ଭୋଗ କରିପାରିଲ ନାହିଁ ?—

ବସନ୍ତ—ଆଉ ଯେତିକି କରିଚ, ତୁମେ ?

ନୀଳକଣ୍ଠ—ନୁହେଁତ କ'ଣ ?··କହୁଚି ଯେ ଅନୁ-ଯତ୍ନ ?—ମୁଁ ପରା ଆଜନ୍ମ-ରସ-ବୈରୀ ତା'ର ? ··

ବସନ୍ତ—ସେଇଥି ପାଇଁ ଭୋଗରେ ତୁମେ ରସଅଧିକାରୀ, ନା ?—ହୋଃ-ହୋଃ—

ନୀଳକଣ୍ଠ—କହିଲି, ଭାଇ—ମହିଷମର୍ଦ୍ଦିନୀର ରୂପ-ମାଧୁରୀ, ମହିଷାସୁର ଯେଉଁଭଳି ପିଇ, ଭୋଳ ହୋଇଥିଲା···

ବସନ୍ତ—ସେହିଭଳି କେଉଁ। ବା ଖାଇଥିଲା···?

ନୀଳକଣ୍ଠ—ଆଃ—ସେ ଯେ ଭୁବନମୋହିନୀର ମୋହନ-କେଉଁ।, ଭାଇ ?—

ବସନ୍ତ—ଛି, ଛି,—ଏଡ଼େ ବଡ଼ ବୀର ହୋଇ, ଏତକି ଟିକିଏ ଆତ୍ମସଂଯମ ଯା' ତୁମଠେଇଁ ନାହିଁ ?—

ନୀଳକଣ୍ଠ—ମୋ'ର 'ଆତ୍ମସଂଯମ' ?—ହାଃ-ହାଃ—···କିନ୍ତୁ—କିନ୍ତୁ ମୁଁ ବିଲ୍‌କୁଲ୍ ହରାଇ ପକାଇଥିଲି, ଭାଇ—ଯେଉଁ ମୁହୂର୍ତ୍ତେ ଶୁଣିଲି, ସୁନ୍ଦରୀ ସେହି,—ବାଗ୍-ଦତ୍ତା !—'ବସନ୍ତ' ଭାଇ'ର !!

ବସନ୍ତ—ଅସଭ୍ୟ !—ବର୍ବର !—

ନୀଳକଣ୍ଠ—ଠିକ୍-ଠିକ୍ ଏହିଭଳି ଭର୍ତ୍ସନା କରି, ତେଡ଼ି ଆସିଥିଲା ମୋତେ ସୁନ୍ଦରୀ,—କହିଲାରୁ ମୁଁ ଟିକିଏ ପରିହାସ କରି—"ବସନ୍ତ, ଲତାକୁ ମଣ୍ଡି ଦିଏ ସତ,—କିନ୍ତୁ ଭିତରଟାକୁ ତା'ର ବେଗରେ ଜାଳି ନାରଖାର କରି ଦିଏ ନାହିଁକି ? ଆଉ, ମୁଁ ନୀଳକଣ୍ଠ—ଧ୍ୱଂସର ପ୍ରତିମୂର୍ତ୍ତି, ସତ—କିନ୍ତୁ 'ସତୀ'ର ଶିର-ହୃଦୟ-ମଣ୍ଡନ ନୁହେଁ କି"—

ବସନ୍ତ—ତା'ପରେ ?—ତା'ପରେ ?—ଅପାଙ୍ଗ ଟାଣିଦେଇ ସୁନ୍ଦରୀ, ତୀକ୍ଷ୍ଣ ଶର ବର୍ଷି ବର୍ଷି, ଲୁଚି ଯାଇଥିବ ନିଶ୍ଚେ କେଉଁ କବାଟ ଓହାଡ଼ରେ ?

ନୀଳକଣ୍ଠ—ତୁମର ଏହି ଓଡ଼ିଶାରେ, ଅଜଣାଏ ସେହି ଓଡ଼ିଆ ଢଙ୍ଗ,—କାଣ୍ଡର ବେଭାର ବୁଝିଲଚ ନା କ'ଣ ?

ବସନ୍ତ—ତେବେ କ'ଣ ନୂଆ ଢଙ୍ଗରେ,—ଅଗ ବଢ଼ି, —ନଳରେ ଗୁଳି ଲକ୍ଷ୍ୟଦେଇ ଗଲେ, ନା କଣ ?—

ନୀଳକଣ୍ଠ—ସେ'ଭଳି 'ହାତ-ନିଶାଣ' ତୁମର ବି ନ ଥିବ ପରା ।

ବସନ୍ତ—ଜନକର !—'ହାତ-ନିଶାଣ' !!

( ହସୁ ହସୁ ଛାତି ଫାମୁଡ଼ିଲେ )

ନୀଳକଣ୍ଠ—ଛାତି ଫାମୁଡ଼ିବାର କଥାତ, ଭାଇ—କାହିଁ ଦେଖନ୍ତ ସେ ସବୁ, ମିଛ ହେଉ ? ଜନ୍ମ-ଶତ୍ରୁ ହୋଇଥିଲେ ମୋର ପର, ଦେଖନ୍ତ ସିନା, କି ସେ ବୀରାଙ୍ଗନା ମୂର୍ତ୍ତି !—କି ସେ ସୌନ୍ଦର୍ଯ୍ୟ, ମୂର୍ତ୍ତିମନ୍ତ ଶୋଭା !!—

ବସନ୍ତ—ସତେ—ସତେ—?

ନୀଳକଣ୍ଠ—'ସତ୍ୟ'ଟା ଥରେ ପରଖି ଦେଲନା— ଆମର ହୋଇ ଏଥର ଲଢ଼ି ?

ବସନ୍ତ—( ହଠାତ୍ ଉତ୍ତର ଯୋଗାଇଲା ନାହିଁ )

ନୀଳକଣ୍ଠ—ଅହେ !—ସତ କ'ଣ ?—ତୁମେ ତ ଆଉ 'ବସନ୍ତ ବିରାଟ ଭୁଜଙ୍ଗ' ନୁହଁ, ଯେ—

ବସନ୍ତ—ଅଚ୍ଛା, ମୋତେ କ'ଣ 'ବସନ୍ତ ବିରାଟ ଭୁଜଙ୍ଗ' ବୋଲି ସନ୍ଦେହ ହୁଏ ନାହିଁ, ଭାଇ ?—

( ଛଦ୍ମବେଶ ସ୍ୱଳ୍ପୋନ୍ମୋଚନ କଲେ )

ନୀଳକଣ୍ଠ—ସେହି ବିଶ୍ୱାସରେ ତ ସେଦିନ,—ସେହି ଭଗ୍ନସେତୁ ଦୁର୍ଘଟଣା ପରେ ପରେ, ପୁଣି ଯେତେବେଳେ ଯୁଦ୍ଧକ୍ଷେତ୍ରରେ ଭେଟାଭେଟି ହେଉ ଦୁହେଁ, ଦୃଷ୍ଟି ପଡ଼ିଲା ମାତ୍ରେ, ମୁଁ ଚିତ୍କାର କରି ଡେଇଁ ଉଠୁଥିଲି—"ବାବା !—ଏ ନିଶ୍ଚୟ ବସନ୍ତ-ଭାଇ" ।

ବସନ୍ତ—ଅବିଶ୍ୱାସ କାହିଁକି କଲେ ?

ନୀଳକଣ୍ଠ—ବାବା ଯେ ବିଶ୍ୱାସ କରନ୍ତି ନାହିଁ !—

ବସନ୍ତ—ପ୍ରକୃତରେ, ମୁଁ ସେହି 'ବସନ୍ତ ଭାଇ' ତୁମର, ଭାଇ !—( ଛଦ୍ମବେଶ ପୂର୍ଣ୍ଣଭାବେ ଉନ୍ମୋଚନ କରି ଫିଙ୍ଗିଦେଲେ ହଠେ )

ନୀଳକଣ୍ଠ—(ଆପାଦ ମସ୍ତକ ନିରୀକ୍ଷଣ ପୂର୍ବକ, ଚିନ୍ତାକରି, ଅବଶେଷେ ) ନା—ନା—ନା—

ବସନ୍ତ—ବିଶ୍ୱାସ କର, ଭାଇ—ଘାତକର ଖଡ୍ଗ ମୋ'ତେ ସ୍ପର୍ଶ କରି ନାହିଁ—...

ନୀଳକଣ୍ଠ—ନା—ନା—ବିଶ୍ୱାସ କରିପାରେ ନାହିଁ— ତଥାପି ନୁହେଁ,—ସେହି ଘାତକର ଖଡ୍ଗଘାତରେ, ଏହି ମୁଣ୍ଡ ମୋ'ର ଯଦି ଦ୍ୱିଖଣ୍ଡ ହୋଇଯାଏ, ସାକ୍ଷାତେ ତୁମରି !—

ବସନ୍ତ—ଏହି ମୋତେ ସ୍ପର୍ଶ କରି, ଆଲିଙ୍ଗନ କରି, ଦେଖନା ଥରେ, ଭାଇ !

ନୀଳକଣ୍ଠ—'ବନ୍ଧୁ' ମଣି କେଉଁ ଆକର୍ଷଣରେ, ଆଳାପ କରିବାକୁ ଧାଇଁ ଆସିଥିଲି ବୋଲି, ଏହି ପ୍ରତିଶୋଧ ନା ତା'ର ?—ପିତାପୁତ୍ର ପ୍ରାଣରେ ଅବିଶ୍ୱାସ ଜନ୍ମାଇବାକୁ ତଆର ?—ମାୟାବୀ !— ବିଶ୍ୱାସଘାତକ !—( ଚାଲି ଯାଉଥିଲେ ଅବଜ୍ଞାଭରେ )

ବସନ୍ତ—( ବାଟ ଓଗାଳି ) ଭାଇ !—ଭାଇ !—

ନୀଳକଣ୍ଠ—ନା—ନା—( ବୋଲି, ଦ୍ରୁତ ଗତିରେ ଯେମନ୍ତ କେଉଁ ମୋହକୁ ଏଡ଼ାଇ, ପଳାଇ ବଞ୍ଚିଲେ ବିପରୀତ ଦିଗେ )

ବସନ୍ତ—( ଗୋଡ଼ାଇ ଯାଉଁ ଯାଉଁ, ଅଟକି ରହିଯାଇ ) —ନା, ନା—ମୁଁ 'ଭଞ୍ଜ'କୁଳର ଚିରଶତ୍ରୁ 'ଭୁଜଙ୍ଗ' —ଛଦ୍ମବେଶୀ ତସ୍କର ବେଶେ ! ( ଛଦ୍ମବେଶ ପୁନର୍ଧାରଣ କରୁ କରୁ ଚାଲିଗଲେ ଅନ୍ୟ ଦିଗେ )

[ ନୀଳକଣ୍ଠ ଓ ହରିହର ପ୍ରବେଶ କଲେ କଥାବାର୍ତ୍ତା କରୁ କରୁ ]

ନୀଳକଣ୍ଠ—ଏତେ ଦମ୍ଭ !—ମୋତେ ଭୁଲାଇବାକୁ ଚେଷ୍ଟା !—

ହରିହର—କ'ଣ ବସନ୍ତ ବିରାଟ' ବୋଲି, ପରିଚୟ ଦେଲା ?—

ନୀଳକଣ୍ଠ—ଏକାବେଳକେ ବେଶ ଓଡ଼ାରି ?— ଅବିକଳ ତା'ର ରୂପ !—ତା'ର ଠାଣିମାଣି !—

ହରିହର—ନିଶ୍ଚେ ସେ ତଳ ଗୁପ୍ତ ଦେଇଛି ଢାଙ୍କି ଶୁଣି—

ନୀଳକଣ୍ଠ—ତେବେ କ'ଣ ତୁମର ବିଶ୍ୱାସ, ପିତା—

ହରିହର—ହଁ, ହଁ—ଦୃଢ଼ ବିଶ୍ୱାସ—ସେହି 'ବସନ୍ତ ବିରାଟ'—କାଳ-ଭୁଜଙ୍ଗ—ଭଞ୍ଜକୁଳର ଶିରଶତ୍ରୁ !—

ନୀଳକଣ୍ଠ—ତେବେ ତ ଠିକ୍ ପରିଚୟ ସେ—ପିତା ପିତା···(କି ଭଳି,ଗୋଟାଏ 'ବିଶ୍ୱାସ' 'ଅବିଶ୍ୱାସ' ମଧ୍ୟରେ ଦ୍ୱନ୍ଦ ଅନୁଭବ କରିବାକୁ ଲାଗିଲେ ଯେମନ୍ତ )

ହରିହର—'ବିଶ୍ୱାସ'ର ପରିଣାମ ଦେଖିଲୁ ତ ଅପରେ-ଅପରେ ? —ଆପଣାର ବିଶ୍ୱସ୍ତ କର୍ମଚାରୀଠାରେ ସୁଦ୍ଧା ? —ଶିଖ୍-ଶିଖ୍, ବାପ, ଏ' ଜଗତରେ କାହାରିକୁ ବିଶ୍ୱାସ କରିବା ଠିକ୍ ନୁହେଁ !—ଏହି ଆପଣାକୁ ସୁଦ୍ଧା !—( ଶେଷ ବାକ୍ୟଟା କହି ଉଠିଲେ, ଆପଣା ଗ୍ଳାନିରେ ଢୁଲ୍‌-ଢୁଲ୍ କରିଯାଇ କଟୁ-କଟୁ—ମର୍ମେ·ମର୍ମେ ଅନୁଭବ କରନ୍ତେ, ନିଜ ହାତରେ ନ ମାରିପାରିବା କଥାଟା ପରି )

ନୀଳକଣ୍ଠ—ଆପଣାର ପିତାକୁ ସୁଦ୍ଧା ?—

ହରିହର—( କେବଳ ସ୍ଥିରଦୃଷ୍ଟିରେ ଚାହିଁରହି, କହିବାକୁ ଲାଗିଲେ ପୁଣିଥରେ ଭଗ୍ନ-ସ୍ୱରରେ)—ପିତା ତୋ'ର ତ ଅନାୟାସରେ ମାରିଦେଇ ପାରିଥାନ୍ତା ପିଲାଟାକୁ,—ଗଳାଟିପି,—ହାତ ମୁଠାରେ ପାଇଥିଲା ଯେଉଁ ଭଳି ସେ'ଦିନ !—ତଥାପି—ତଥାପି—

ନୀଳକଣ୍ଠ—ପିତା !—ପିତା !—

[ ପୁରୁଷୋତ୍ତମ ଦେବ ଶଶବ୍ୟସ୍ତେ ପ୍ରବେଶ କଲେ ]

ପୁରୁଷୋତ୍ତମ—ମୁଁ ପ୍ରସ୍ତୁତ, ବନ୍ଧୁ—

ହରିହର—କାଳ ବିଳମ୍ବରେ ତେବେ ଆଉ କି ପ୍ରୟୋଜନ—ହାଃ-ହାଃ— ( କିନ୍ତୁ ଆପଣାର ଉଲ୍ଲସିତ ପ୍ରତିହିଂସା ଭାବଟା ରୋଧ ପୂର୍ବକ ) ଶୁଭକାର୍ଯ୍ୟଟା ଆଜି ସଫଳ ହୋଇ ଯାଉ ନା ?—ଏହି ମୁହୂର୍ତ୍ତେ ?—

ପୁରୁଷୋତ୍ତମ—ଏହି ମୁହୂର୍ତ୍ତେ ?—'ଆଜି' ?—

ହରିହର—'ସର୍ବମଙ୍ଗଳ ଜଗନ୍ନାଥ' ମହାରାଜା !—

ପୁରୁଷୋତ୍ତମ—ହଁ-ହଁ—ମୋ'ର ମଧ୍ୟ ଅପତ୍ତି କରିବା ଠିକ୍ ନୁହେଁ, ବନ୍ଧୁ,—ଶୀଘ୍ର-ଶୀଘ୍ର—ପାଣି !—ମନ୍ତ୍ରୀ !—ଦେବକୀ !—ରାଜଗୁରୁ !—(ଅସ୍ତବ୍ୟସ୍ତ ହୋଇ ବାହାରିଗଲେ )

ନୀଳକଣ୍ଠ—ମହାରାଜାଙ୍କ ସଙ୍ଗେ ସେହି 'ମହାଦ୍ଧ' ବସିବାର ମହୋତ୍ସବର ଆୟୋଜନ ନା, କ'ଣ ବାବା ?—

ହରିହର—ନା, ନା—ତୋ'ର 'ମହାଦ୍ଧ' ଉଠାର ମହୋତ୍ସବର ଆୟୋଜନ, ବାପ—ସଙ୍ଗେ ସଙ୍ଗେ 'ଶୁଭ-ବିବାହ'ର ବି !—

ନୀଳକଣ୍ଠ—ମୋ'ର ବିବାହ ?—

ହରିହର— ହଁ-ହଁ, ତୋ'ର — ରାଜଜେମାଙ୍କ ସଙ୍ଗେ !—

ନୀଳକଣ୍ଠ—ବାବା !—ଆପଣ କ'ଣ ଜବାବ୍ ଦେଇ ସାରିଛନ୍ତି ?—

ହରିହର—ମନେ କରିଛୁ, ବାପ—ମୁଁ କନ୍ୟାର ରୂପ-ଗୁଣ ନ ଦେଖି, ମୂର୍ଖଆଉ ନ ବିଚାରି,—

ନୀଳକଣ୍ଠ—ମୁଁ ଯେ ବିବାହ କରିବି ଏକାନ୍ତ, ଏ'କଥା ଜଣେକହେଲେ ବିଚାରି କି ?

ହରିହର—ନୀଳକଣ୍ଠ !—

ନୀଳକଣ୍ଠ—ପିତା !—

ହରିହର—ପୁଣି କ'ଣ ତୁହି ନୋହୁଁ ମୋ'ର ?

ନୀଳକଣ୍ଠ—ତୁମରି ରକ୍ତ ତ, ପ୍ରତି ଶିରେ-ଶିରେ—ପ୍ରତି ଲୋମକୂପେ, ପିତା !

ହରିହର—ଏ' ଭେଦ-ବୁଦ୍ଧି ତେବେ କାହିଁକି ?—

ନୀଳକଣ୍ଠ—ତୁମେଇତ ଦେଇଚ ଏ'ବୁଦ୍ଧି, ବାବା,—ପ୍ରତି ଚିନ୍ତାରେ, ପ୍ରତି କଥାରେ, ପ୍ରତି କାର୍ଯ୍ୟରେ ? ଏହି 'ଭଞ୍ଜ, ଭୁଜଙ୍ଗ' ଆମେ, ଏକ ପିତାର ସନ୍ତାନ ନୋହୁଁ କି ?—ଏକା ରକ୍ତ ଅଦ୍ୟାପି ପ୍ରବାହିତ ନୁହେଁ କି ଉଭୟଙ୍କ ଧମନୀରେ ? —କେବଳ ବିମାତୃ-ଗର୍ଭ-ଜାତ ବୋଲି, ପରସ୍ପର ମଧ୍ୟେ ଯେତିକି ଶତ୍ରୁତା—ଜନ୍ମ-ଶତ୍ରୁତା ସିନା ଆଜି !—ଆଜ ତୁମେ,

ଜୀବନର ବ୍ରତ, ସାର କରିଛ, ପିତା—କେମନ୍ତେ
କରିବ ନାଶ—ଛଳେ ହେଉ, ବଳେ ହେଉ,—
ସେହି ଭ୍ରାତୃବଂଶ ନିଜର !—ପିତା !—
ମହାରାଜ କଣ ସମ୍ମତ ହୋଇଛନ୍ତି ସେହି ବୀର-
'ଯୁବକ'ଙ୍କୁ ଅମ ସାଥିରେ ପଠାଇବାକୁ ?—

ହରିହର—ଏକାବେଳକେ ବାନ୍ଧି, ପିଞ୍ଜରାବଦ୍ଧ କରି,
ବିବାହ ଯୌତୁକ ରୂପେ ।

ନୀଳକଣ୍ଠ—ପିତା !—( କୋଷବଦ୍ଧ ଅସିରେ ହସ୍ତାର୍ପଣ
କଲେ )

ହରିହର—ମୋ'ର ବିରୁଦ୍ଧାଚରଣ ?—

ନୀଳକଣ୍ଠ—ଆଶ୍ଚର୍ଯ୍ୟ ବା କ'ଣ ?—

[ ପୁରୁଷୋତ୍ତମ ଦେବ ହସି ହସି ପ୍ରବେଶ
କଲେ, ନୀଳକଣ୍ଠର ବାକ୍ୟରେ ବାକ୍ୟ ମିଶାଇ,
ହରିହର ପ୍ରତି କହୁ କହୁ ]

ପୁରୁଷୋତ୍ତମ—ବିଶ୍ୱାସର ସ୍ଥାନ ସେତେବେଳେ ଏ'
ଜଗତରେ ନାହିଁ, ବନ୍ଧୁ ?

ହରିହର—ସୋତେ କ'ଣ ତେବେ ଅବିଶ୍ୱାସ,
ମହାରାଜ ?—

ପୁରୁଷୋତ୍ତମ—'ବିଶ୍ୱାସ' ବା, କରିବି କେମିତି,—
'ଅବିଶ୍ୱାସ'ର ସାଧକ ଯେତେବେଳେ ଚିରକାଳ
ଆପଣ ?—

ହରିହର—( କପଟ ବିମୂଢ଼ ହୋଇଗଲେ )

ନୀଳକଣ୍ଠ—ମୋ'ର ପିତା ଯେତେବେଳେ ଜବାବ୍
ଦେଇଛନ୍ତି, ଆପଣ ନିଶ୍ଚିନ୍ତ ରହିଥାନ୍ତୁ,
ମହାରାଜ !—

ପୁରୁଷୋତ୍ତମ—ଏଭଳି ଜବାବ୍ ଉପରେ ଜବାବ୍‌ଦାରେ
ମଧ ନିଶ୍ଚିନ୍ତ ହୋଇପାରୁ ନାହିଁ, ଭାଇ—ସେ
ପର୍ଯ୍ୟନ୍ତ ହାତଗଣ୍ଠି ନ ପଡ଼ୁଛି ବରକନ୍ୟାର ?—
ତୁମର ପିତାଙ୍କର କଥାବାର୍ତ୍ତା ପ୍ରକୃତରେ ମର୍ମକୁ
ଭେଦୁଛି ମୋର !—ବିଶ୍ୱାସରେ ଯା'କୁ ମୁଁ
ଦେହରକ୍ଷୀ କରିଚି, ସେ ଯେ ଅଣି ପିଚ୍ଛୁଡ଼ାକେ,
କାଳ-ସର୍ପ ହୋଇ ନ ଦଂଶିବ କିଏ
ଜାଣିଛି ?—ଏହି ଦେଖ ନା ମୁଁ ଗୋଟାଏ କେଉଁ
ଉତ୍କଳନାରେ, କେଉଁ ଅପୂର୍ବକାରଟାଏ
ଉଦ୍‌ଗାର ପକାଇଥିଲି ବୋଲି, କେଉଁ
କୁଲକ୍ଷଣରେ,—ସେହି ସ୍ୱପ୍ନଟା ଧରି, ଏହି
ଅଜ୍ଞାତକୁଳଶୀଳ ଯୁବକର କାଣ୍ଡ କାରଖାନାଟା
ଏବେ !—ମୋ'ର ଭଗ୍ନୀ ପ୍ରତି—ଗଜପତି
ରାଜକେମାଙ୍କ ପ୍ରତି—ପାପଦୃଷ୍ଟି !—ବଶୀକରଣର
ମନ୍ତ୍ରପ୍ରୟୋଗ !!—

ନୀଳକଣ୍ଠ—ତେବେ—ତେବେ କ'ଣ ବସନ୍ତ
ଭାଇ—?

ପୁରୁଷୋତ୍ତମ—କହତ, ଭାଇ—ଯେତେ ବୀର ହେଲେ
ମଧ, ସ୍ଥିର ସୀପାଇଠୁଁ ଅଧିକା ସେ କେଉଁ
ଗୁଣରେ ? ତାର ଏଭଳି ଅସ୍ପର୍ଦ୍ଧା କି ମାର୍ଜନୀୟ
ହେବେ ?—

ନୀଳକଣ୍ଠ—ମହାରାଜ !—ପିତା !—( କେଉଁ ଦ୍ୱନ୍ଦ୍ୱ
ମଧରେ ପଡ଼ି, ଉଦ୍‌ଭ୍ରାନ୍ତ ଭଳି ସ୍ଥାନ ତ୍ୟାଗ
କଲେ)

ହରିହର—ଯୁବକର ମନ ତ ?—କେତେବେଳେ
କ'ଣ ?—ଯେତେ ଚଞ୍ଚଳ ପାରନ୍ତି, ମହାରାଜ—

ପୁରୁଷୋତ୍ତମ—ହଁ, ହଁ,—ଛଦ୍ମବେଶେଇ କାମ !—
(ଟାଣି ନେଇଗଲେ ହରିହରଙ୍କୁ)

× × ×

[ ବିବାହୋତ୍ସବର ନହବତ ଧ୍ୱନି ଓ ନାନା
କୋଳାହଳ ଶୁଣାଗଲା ]

---

## ପଟ ପରିବର୍ତ୍ତନ

—ଶୁଦ୍ଧାନ୍ତଃପୁର—

[ ରାଜଭଗ୍ନୀ କଲ୍ୟାଣୀ ଦେଈଙ୍କୁ ନାନା ଅଳଙ୍କାର
ପ୍ରଭୃତିରେ ମଣ୍ଡନ କରୁ କରୁ ସହଚରୀମାନେ
ଗାଉଥିଲେ । ]

ଗୀତ

ସହଚରୀଗଣ—

ହେ ରାଜକୁମାରୀ !
କିପାଇଁ ଗୋ ମନ ଭାରି ?
ଖଞ୍ଜି ଦେବୁଁ ବନ୍ଦୀ ଭାରି ।

୧ମ ସହଚରୀ—ବର ଅଙ୍ଗ ଉବ—

ଅଗୋ, ବରାଙ୍ଗନା !—

ଝଲକବ ଯେବେ— ବରହେବ ବଣା;

୨ୟ ସହଚରୀ—ଟିପଟିଏ (ଖାଲି) ଦଅ ମାର

( ମୁକୁରଟିଏ ଅଣିଦେଲେ )

[ ୨ୟ ସହଚରୀ ବ୍ୟତୀତ ସମସ୍ତେ ଚାଲିଗଲେ ]

କଲସ—(ମୁକୁରରେ ଆପଣାକୁ ଦେଖି)—ବାଃ ବେଶ୍ ଖୋଞ୍ଜି ଗଲ ?

ସହଚରୀ—ଖଞ୍ଜନାକ୍ଷୀଙ୍କ ମନଟା ତ ଅଛି—

କଲସ—'ରଞ୍ଜି ପାରିନାହିଁ' ?—କିଏ କହିଲା ?—

ସହଚରୀ—ତୁମର ଆଖି ?—ତୁମର ଭାଷା ?—

ଗୀତ

ଆଖି ଗୋ ଅନ୍ତର ଦ୍ୱାର ।

ଭାଷାଟି ଅର୍ଗଳ ତା'ର ॥

ଭରା ମନ—ଭରା ପ୍ରାଣ—

ରୋଧ ଯେତେ କର ଟାଣ—

ଛଳଛଳ ଫାଙ୍କେ ତେଣେ

ଝଲଉଠେ ବ୍ୟଥାଭାର ॥

କଲସ—ଅସମ୍ଭବ—

ସହଚରୀ—ଏହି ଦମ୍ଭ ଯୋଗୁଁ ତ ଅନ୍ତର ଫୁଟି ବାହାରୁଛି, ଅନ୍ତରର କଥାଟି, ସହି !—

କଲସ—ସହି ! ସହି !—ସତେ-ସତେ, ଆଉ ଥରେ ଯାଇ, ଇନ୍ଦ-ଦନ୍ଦ ଖୋଜ, ବୁଝି ଆସିପାରିବ କି, ଅନ୍ତର-ଚୋରଙ୍କର ଅନ୍ତର-କଥାଟି ମୋର ?—ଏହି ଶେଷଥରକ ପାଇଁ ?—ସେ ଶେଷ ମୁହୂର୍ତ୍ତକ ପାଇଁ ?—

ସହଚରୀ—ନା-ନା, ସହି—ସେ ଦଗାବାଜ ପାଖକୁ ମୋତେ ଆଉ ପଠାଅ ନାହିଁ ।—ମୁଁ ଯିବିନାହିଁ—ଏଡ଼େ କଥାଟାଏ ହେବାକୁ ଯାଉଛି—ଟିକିଏ ହେଲେ ମନରେ ଦୁଃଖ ଥା'ନ୍ତା ତା'ର ?—ଯେତିକି ନେହୁରା ହୋଇ ମୁଁ କହୁଥାଏଟି ସହି, ଆମର ଦୁଃଖର କଥାଟି—ସେତିକି ଠୋ ଠୋ ହୋଇ, ହସି ହସି ଗଡ଼ି ଯାଉଥାଏ ପରା ଦଗଲ୍‌ବାଜଟା—ଯା'-ତା' ଗୁଡ଼ାଏ ବକୁ-ବକୁ—ହାତରେ ମୋ'ର ସେତେବେଳେ ଝାଡ଼ୁଟାଏ ଥା'ନ୍ତା ଯଦି—

କଲସ—ସହି ! ସହି !—ଗୋଟାଏ ଦୁଃସାହସିକ କାମ କରିବାକୁ ମନ ଡେଇଁ ଉଠୁଛି—ଜୀବନରେ ଏହି ପ୍ରଥମ—ଏହି ଶେଷ ପରା ?—

ସହଚରୀ—କ'ଣ-କ'ଣ ସହି ?— ହତ୍ୟା କରିବ, ନା କ'ଣ ?— ସେଭଳି ଚୋରକୁ ଟିକି-ଟିକି କରି କାଟିଲେବି ଆପଣା ହାତରେ,—ଟିକିଏ ହୋଇ ଦୋଷ କଟିବ ନାହିଁ ପରା ?—

କଲସ—( ମୃଦୁହସି ) ବେଶ୍ ତ—ତୁମେ ଯେଉଁ ଅଙ୍ଗାଟା ଯୋଡ଼ି ହୋଇ, ଲୁଚଛପି ନିତ, ତାଙ୍କଘରକୁ ଯା' ଆସ କର, ମୋତେ ସେହି ଅଙ୍ଗାଟା—

ସହଚରୀ—ଏ' ଆଉ ଗୋଟାଏ ବେଶୀ କଥା କ'ଣ ?

କଲସ—ହଁ, ତୁମର ବୋଲିଟା ବି ଶିଖାଇ ଦେବ ନା—?

ସହଚରୀ—ମୋ'ର ଚାଲିଟା ବି ?—ଛି, ଛି—ଏହି ତ ଅମର ପ୍ରତି-ନିତର 'କଣ୍ଠ'-ବେଳ, ସହି—ଶିଖିଲ ନେବ,—ନା କୁସ୍ତିଟା ?—

କଲସ—ଖାଲି ଏହି ଚୁଟୁଟା, ସହି !—ଚୁଟୁଟା—!

( ଆପଣାର ଭରା ଚୁଟୁଟା ଆଉ ସମ୍ଭାଳି ପାରିଲେ ନାହିଁ )

× × ×

[ ପୁଣି ସେହି ବିବାହ-ବାଦ୍ୟ ଘନ-ଘନ ଶୁଣାଗଲା ]

---

ପଟ ପରିବର୍ତ୍ତନ

—କକ୍ଷ—

[ ବିବାହୋତ୍ସବର ଅନ୍ତରାଳେ—ଗୋଟିଏ ନିର୍ଜନ, ସ୍ତିମିତୋଜ୍ଜ୍ୱଳ କକ୍ଷରେ, ବସନ୍ତ ଓ କଲସୀ ଦେବୀ କଥାବାର୍ତ୍ତା କରୁଥିଲେ—ବସନ୍ତ, ଆପଣାର ଜାତୀୟ ଭୁଜଙ୍ଗୋଚିତ ବେଶଭୂଷାରେ ଆପଣାକୁ ଭୂଷିତ କରିସାରି, ପାଗଡ଼ି

ଭାବ ଥିଲେ—କଳସୀ ଦେଖା, ସେହି ଅଙ୍ଗ
ଯୋଡ଼ିହୋଇ ତାଙ୍କର ସହ୍ୱାର ଅନୁକରଣରେ,
ଠିଆ ହୋଇଥା'ନ୍ତି ପଞ୍ଚପଃରେ ]

କଲସୀ—( ଆବେଗ ଦମନକର ବହୁ କଷ୍ଟରେ )
ଏ'ଭଲି ବେଶ ଆପଣଙ୍କର ନୂଆ ଦେଖୁଛି ତ ?

ବସନ୍ତ—ନୂଆଦିନେ, ସହ୍ୱାଙ୍କର ତୁମର,—ସବୁ ନୂଆ ହେବା ଠିକ୍ ନୁହେଁ କି ?—

କଲସୀ—କିନ୍ତୁ, ସହ୍ୱା ମୋ'ର ଯେଉଁ ପୁରୁଣାକୁ ସେହି ପୁରୁଣା !

ବସନ୍ତ—ମୁଁ ମାନିବ ନାହିଁକି ?···ଏହି, ତୁମେ ତ ଜଣେ ସାମାନ୍ୟ ସହଚରୀ—ମାତ୍ର, ତୁମର ସ୍ୱର ଏମିତିକା ବଦଳିଗ ନାହିଁକି ? ଭାଷା, ଭାବ, ଛନ୍ଦ, ସବୁ ଯେମିତିକା ନୂଆ ?—ବେଶଭୂଷା ବି ?—ହାଃ-ହାଃ—( କେବେଳ ରୁହିଁ ) ମ'—ନିତିକା ଭଲ, କାଳିଆ ଅଙ୍ଗଟାକୁ ଓଡ଼ାର, ଝୁଲର ଦେଇନାହିଁ ଯେ ଅଲଗୁଣିରେ,—ଘୋଡ଼ାଘାଡ଼ି ହୋଇ,—ଅଧୁର ଭଡ଼ଭାଡ଼, ଠିଆ ହୋଇ ରହୁଚ ?—ଏମିତିକା କନକନ ହେଉଚ ନାହିଁକି ମ ?—ଗୁେରଣୀଭଳି ? ଏତିକିବେଳୁଁ ପର କରିଦେଲ, ନା କଣ ?—

କଲସୀ—( ଭଗ୍ନକଣ୍ଠରେ ) ପର ?—···ନିଜର ଆଉ ମୋର କିଏ ଅଛି, ବନ୍ଧୁ ?—

ବସନ୍ତ—ବାଃ ବେଶ୍ ତ···—ସହ୍ୱାଙ୍କର ଓଢ଼ଣୀଟା ଗୁଡ଼ାଇଦେଇ, ନିଜେ ଏଥର ବେଲକାଳ ଭଙ୍ଗି, ମୁଦେଇ ପାଲଟିଲ ନା କ'ଣ ?—

କଲସୀ—'ମୁଦେଇ' ନୁହେଁ, ବନ୍ଧୁ—'ମୁଦାଲି' ?—

ବସନ୍ତ—ସବୁବର୍—ମୋ'ର 'ହାକିମି' କରିବାକୁ ବର୍ତ୍ତମାନ ଫୁରସତ୍ ନାହିଁ !

କଲସୀ—ଏତେ ଜରୁରୀ କାହିଁପାଇଁ ଯେ ?

ବସନ୍ତ—ଲଗ୍ନ ଆଉ କେତେ ଡେରି କି ?—ମାଲୁମ୍ ସିନା ତୁମକୁ ନାହିଁ,—କି ତୁମର ସହ୍ୱାଙ୍କୁ ନାହିଁ ?—

କଲସୀ—ହାଃ-ହାଃ—'ଯା'ର ବାହା ତା'ର ମନେ ନାହିଁ—ସାହି ପଡ଼ୋଶୀଙ୍କୁ ନିଦ ନାହିଁ !'—

ବସନ୍ତ—ହେଲାନାହିଁ ଗୋ, ହେଲାନାହିଁ—କହିଲ ଭଲ, ଏଇ 'ବାହା'ରେ, ମୋର ଯେତେଟା ସ୍ୱାର୍ଥ,—ତୁମର ସହ୍ୱାଙ୍କର ଆଗେ ତେତେଟା ଅଛି ନା ?—

କଲସୀ—ଅହା !—ମୋ'ର ସହ୍ୱା ତ ଖାଲି ଯୁଆଡ଼ିଇ ଝୁରି ମରୁଚନ୍ତି ଦିନ ରାତି !—

ବସନ୍ତ—ଓଁ ହୁଁ !—ମୋତେ ଭାରି ଚୁଚୁନାହିଁ ନା ?—

କଲସୀ—'ଖଣ୍ଡିଆ କାନ୍ଥ' ଖାଲି ଭୁଷିବାକୁ ମନ କରୁଥିବ ପରା ?—

ବସନ୍ତ—'ଖଣ୍ଡ କାନ୍ଥ', ଗୋ ଖଣ୍ଡ କାନ୍ଥ ?—ଏହି ନଅର ଗୋଟାକ ଯାକର ?—

କଲସୀ—ସେଇଥିପାଇଁକି, ଏତେ ସଜବାଜ—ହସଖେଳ, ନା କ'ଣ ?—

ବସନ୍ତ—ଆଉ କ'ଣ ଭାବ ମରନ୍ତି, ନା କୌପିନୀ ପିନ୍ଧି, ବାବାଜି ସାଜନ୍ତି, ଏ' ଶୁଭଦିନେ ?—

କଲସୀ—ଏ' କଣ ତେବେ ତୁମର 'ବର' ବେଶ ?—

ବସନ୍ତ—'ବୀର' ବେଶ !—

କଲସୀ—ଲଢ଼େଇ ଫଢ଼େଇ କରିବ ନା, କ'ଣ ?—

ବସନ୍ତ—କେତେବେଳେ ଭଲ ବିରାମ ଥାଏ ମୋ'ର ?—

କଲସୀ—ଶୋଇଲା ବସିଲା ବେଳେ ବି କରୁଥାଅ ନା କ'ଣ ?

ବସନ୍ତ—ସେତେବେଳେ ତ ବେଶୀ !

କଲସୀ—ଶତ୍ରୁଦଳ ସେହି ଗରହୁସିଆର ବେଳକାଳ ଭଙ୍ଗି, ଚଢ଼ାଉ କରିବାକୁ ସୁଯୋଗ ପାଇଥାନ୍ତି ପରା, ବେଶୀ ?—

ବସନ୍ତ—( ହସି ହସି ) ତୁମର ସହ୍ୱା ତ ଦଳପତି ?

କଲସୀ—ବଳ ଯେ ଏଣେ ବଢ଼ିବାକୁ ବସିଲାଣି ଆଉ ଜଣକ ସାଥିରେ, ଖିଆଲ ଅଛି ତ ?

ବସନ୍ତ—ସେଇଥିପାଇଁ ତ ଏତେ କଧାକସି···(ହାତରୁ 'ସାପ' ଚିହ୍ନିତ ଶିରୋନାମାଟି ଖସିପଡ଼ିଲା ) ଦେବଟି—ଦେବଟି ଟିକିଏ ଉଠାଇ—ପାଗଟା ଖୋଲିଯାଉଚି—

କଲସ୍—( ଅତି ସନ୍ତର୍ପଣରେ ଉଠାଇ ଦେଉଥିଲେ )

ବସନ୍ତ—( ଶିରୋନାମାଟାକୁ ଧରି, ଅପଣା ମନେ ) ମୋତେ ବିଶ୍ୱାସ କରି ପାରୁନାହଁ 'ଭୁଜଙ୍ଗ' ବୋଲି, ଭଞ୍ଜ ମୟୂରଟା ?—ଏଥର ?—

( ଶିରୋନାମା ଲଗାଇଦେଲେ ଯଥାସ୍ଥାନରେ )

କଲସ୍—( ଭୁଜଙ୍ଗ ଚିହ୍ନିଦେଇ ) ଏ' କି ଚିହ୍ନ ? ତେବେ—ତେବେ···'ବସନ୍ତ ବିରାଟ ଭୁଜଙ୍ଗ' ଆପଣ ?—

ବସନ୍ତ—ଚୁପ୍···କିଏ—?—କିଏ ତୁମେ ?—

କଲସ୍—ରକ୍ଷାକର—ରକ୍ଷାକର ଦାସୀକୁ ତୁମର ?—

ବସନ୍ତ—ଜେମାଦେଈ !···—

କଲସ୍—ନା, ନା—'କଲସ୍ ଦେଈ'—'କଲସ୍ଦେଈ', ବୋଲି ଡାକ ମୋତେ, ବନ୍ଧୁ—···ଛଦ୍ମବେଶ ଯେତେବେଳେ ତ୍ୟାଗ କରିଛ, ବନ୍ଧୁ— ଛଦ୍ମଭାବ ଧାରଣରେ ଆଉ କି ପ୍ରୟୋଜନ ?— ମୋତେ ନିଜର କରିନିଅ—ପ୍ରାଣର କରିନିଅ, ବନ୍ଧୁ—!

ବସନ୍ତ—ନା, ନା—ମୁଁ ତ ପରସ୍ୱାପହାରୀ— ବିଶ୍ୱାସଘାତକ ହୋଇ ପାରିବି ନାହିଁ କେବେଁ— ପ୍ରାଣ ଥାଉଁ ଥାଉଁ— !

କଲସ୍—ତେବେ ଏତେ 'ନିଜସ୍ୱ' ତୁମର ଯେହ୍ନୁ,— ତା'ଠାରେ 'ବିଶ୍ୱାସ' ରଖି ପାରିବ ତ, ବନ୍ଧୁ ?—

ବସନ୍ତ—ହାଃ-ହାଃ—ସେଇଥିପାଇଁତ ଏହି ବେଶଭୂଷା ମୋ'ର ଆଜ, ସୁନ୍ଦରୀ !—ବସନ୍ତ ଭୁଜଙ୍ଗ ମୁହିଁ—କାର୍ଯ୍ୟରେ ଦେଖାଇବି ଆଜି—କାଞ୍ଚି-ବିଜୟୀ, ଆ-ଗଙ୍ଗା-ଗୋଦାବରୀ ସାମ୍ରାଜ୍ୟର ଏକଛତ୍ର-ସମ୍ରାଟ୍ ଶ୍ରୀ ପୁରୁଷୋତ୍ତମ ଦେବଙ୍କ ସମକକ୍ଷ କି ନୁହେଁ ମୁହିଁ ବଂଶମର୍ଯ୍ୟାଦାରେ,—ଯଥା ସୀରଙ୍କବେ !

କଲସ୍—···କ'ଣ ହତ୍ୟାକରି ଭଞ୍ଜ ପ୍ରତିଦ୍ୱନ୍ଦ୍ୱୀ—?

ବସନ୍ତ—ବନ୍ଦୀକରି ଅପଣାକୁ—ପିଞ୍ଜରା ବନ୍ଧକର ଏ' ଦେହଟାକୁ—ବିବାହ ଯୌତୁକରୂପେ ଚଳାଇ ଜୀବନଟାକୁ—ଗହଣରେ କଲସର ମୋ'ର— ନା, ନା ରାଜନନ୍ଦନୀଙ୍କ !—ଆଜ ଅଶ୍ୱସ୍ତୁ ଦାନର ପ୍ରତିଦାନ ରୂପେ, ପୂର୍ବମନସ୍କାମ, ମୋ'ର ମହାପ୍ରଭୁ ଶ୍ରୀ ପୁରୁଷୋତ୍ତମ ଦେବଙ୍କର !!

କଲସ୍—ଏ କି ରହସ୍ୟ ? —ପ୍ରା-ଣେ—

( ସଂଜ୍ଞାଶୂନ୍ୟ ହୋଇ ପଡ଼ିଲେ ପରା )

ବସନ୍ତ—( ଧାରଣ କରିନେଲେ ବକ୍ଷଦେଶରେ ) ପ୍ରା—ଣେ—

[ ନେପଥ୍ୟେ ଖୁବ୍ ଶୋରଗୋଳ ଓ 'ବର'-ବାଜାର ଧୂମ୍ ଶୁଣାଗଲା ]

ବସନ୍ତ—( ଚମକି ପଡ଼ି )—ଜେ-ମା-ଦେ-ଈ !

( ସସମ୍ଭ୍ରମେ ଅନ୍ତର କରି ଦେଉଥିଲେ )

[ 'ବର'-ବେଶୀ ନୀଳକଣ୍ଠ ପ୍ରବେଶ କଲେ ଗ୍ଲଟଟାଏ ଧରି ]

ନୀଳକଣ୍ଠ—ନା—'କଲସ ଦେଈ' !—'ପ୍ରାଣ-ପ୍ରିୟତମା' ତୁମର, ଭାଇ !—ନିଅ, ନିଅ ଭାଇ— ଧର ଏହି ଗ୍ଲଟ—ବେଗେ ଦିଅ ଫୁଟାଇ ମୋ'ର 'ବର-ଅଶ୍ୱ' !—

[ ଗ୍ଲଟଟି ଧରାଇଦେଲେ—·········

× × × ×

---

—ଦୃଶ୍ୟ—

—ଗଡ଼ଜାତର ଗୋଟିଏ ପର୍ବତ ଝରଣା—

[ ଝାଙ୍କୁଡ଼ା ଗଛର କାଣ୍ଡଟାଏ ଓହଳି ପଡ଼ିଛି— କଲସ୍ ଦେଈ ସାଧାରଣ ପାର୍ବତୀୟ ବେଶରେ, କଳସିଟିଏ, ସେହି ଝରଣା ସ୍ରୋତରେ ନଚୁଉ ନଚୁଉ ଗାଉଥିଲେ ଅପଣାମନେ ]

—ଗୀତ—

କଲସ୍—

କେ ଖୋଲି ଦେଲା ଗୋ ଅଜ—
ସ୍ୱର୍ଗର ଏ'ଛୁଇ ଦ୍ୱାର !
ଝରଗୁଲେ ଅବିରତ—
କେଉଁ ମୁକ୍ତ ପାରାବାର !

କି ସଙ୍ଗୀତ ଗାଏ ସେହୁ—
ଲୁଚି ଲୁଚି ତାନେ ମୋହୁ
କି ଭଙ୍ଗୀମାରେ ନାଚଇ—
ମୃଦୁ ତରଙ୍ଗ ଖେଳାଇ;
କି ଲୁହିବ ପାଷାଣ ଏ'—
ଲୁକୁଦରୀ ସୁଧା ତା'ର—
ଭୁବନ-ଜୀବନ-ଧାରା—
କେଉଁ ସୁଦୂର ଝଙ୍କାର ॥

( କନକ ବନ୍ଧୁକଟାଏ ଧରି ଧାଇଁ ଆସିଲେ )

କନକ—ବାଃ—…ତୁମେ ଏ'ଠି ?—ମୁଁ ମନେ କଲି, କେହି ସେଠାଟାଏ ଟାଣି ନେଲା—?—

କଲସୀ—( ଚଟ୍‌ପଟ୍ କଳସିଟା ଗୁଡ଼ାଇବାକୁ ଯାଉଥିଲେ )

କନକ—( ଧରିପକାଇ ) କି ଗୋ ?—ଏତେ ସାହସ ତୁମର କେଉଁ ଦିନୁ ମ ?

କଲସୀ—ମ'—ପାଣିମାଠିଆଏ ନଈରୁ କାଖେଇ ନେଇ ଯିବାକୁ ସାହସ ନାହିଁ ନା କ'ଣ ?

କନକ—'ମାଠିଆ'ଟିତ ଆଉ ନିଜର ନୁହେଁ ?

କଲସୀ—'ନାଁ'ତ କିଛି ଲେଖା-ଖୋଳା ନାହିଁ ?

କନକ—'ନାଁ'ତ ବେଶ୍ ପକାଇବାକୁ ଶିଖିଲଣି ଦିନୁ-ଦିନୁ, ଦେଖୁଚି !…( କଳସିଟା ଜବରଦସ୍ତି କାଢ଼ି ନେବାକୁ ଗଲେ )

କଲସୀ—ମୁଁ ତ କେବେ ଛାଡ଼ିବି ନାହିଁ—ତୁମେ ସବୁଦିନ ପାଣି ନେଉଥିବ—ମୁଁ ଦେଖିବି—…

କନକ—ଚୋରିକରି—ଧରାପଡ଼ି—ପୁଣି ଜବର୍ଦ୍ଦସ୍ତି ? —( ହିଁକା ହିଁକି କରୁ କରୁ )…ଦେଖୁଚତ, ହଁ, ମୋ ହାତରେ… ?

କଲସୀ—ଡରିବାର ଲୋକ ଡରିବ ନା ?—

କନକ—ଡରୁଆଙ୍କର ମୁହଁଟାଣ ପରା !—

କଲସୀ—ତୁମର ସାହସିଆପଣ ମୋତେ ଅଛପା କି ? —ବାଗରେ ପାଇ, ଆଖି ଆଗରେ, ଡୋଳାରେ ଡୋଳା ମିଳାଇ—ଛାଡ଼ିଦେଲ ପରା,— ଏହି ଭଳି ବନ୍ଧୁକଟା ଧରି, ଭୁଆଁଇ, ଘୋଡ଼ାଟା ଟିପିଲ କେଳକୁ ?

କନକ—ଆଖିରେ ଦେଖିଥିବ…?

କଲସୀ—ଆଖିରେତ ଦେଖୁଚି ?

କନକ—ଛି, ଛି,—ସେ ଯେ ଚିରବୈରି ମୋ'ର ! ଭଞ୍ଜ-ଭୁଜଙ୍ଗର !

କଲସୀ—ବେଶ୍‌ତ, ଲୁଚିଦେଲ ନାହିଁ ସଟାଂ—ବୈରିତା ଦୂରିଯାଇଥାନ୍ତା ପଟାଂ ?

[ ଜନାର୍ଦ୍ଦନ ଆପଣାକୁ ଡାଳପତ୍ର ଓ ଫଳ ଫୁଲରେ ମଣ୍ଡି, ଧାଇଁ ଆସିଲେ ]

ଜନାର୍ଦ୍ଦନ—ଧଟାଂ—ମଟାଂ—ଭଟାଂ—…

କନକ—ଅଜା—ଅଜା—…

ଜନାର୍ଦ୍ଦନ—ଖଜା—ଖଜା—…ହଁ, ସାଫ୍ ପଚୁଛନ୍ତି ଅଜା—ବାହା ହେବୁ କି ନାହିଁ ?

କଲସୀ—ତଡ଼ାଲି ହୁଅନାହିଁ ତୁମେ, ଅଜା— ?

ଜନାର୍ଦ୍ଦନ—ତାଳି ବାଦ କରି ନାଚେ, ଅଲକ୍ଷଣି ?

କନକ—କା'କୁ କ'ଣ କହୁଚ, ଅଜା ?

ଜନାର୍ଦ୍ଦନ—ଅଲୋ, ସେହି ଡାହାଣୀକୁ ଲୋ ? ରକ୍ତ-ଶୋଷି ପିଟାକୁ ଦେଖ ଯେତ୍ତୁ ଥେଇ-ଥେଇ… !

କଲସୀ—ତୁମେ ଅଜା—ଦଣ୍ଡ ଦେଉନାହିଁ ?—

ଜନାର୍ଦ୍ଦନ—ଖାଲି ଦଣ୍ଡ ?—ଫାଡ଼ିବି—ଫୁକିବି ଆହୁରି, ସବୁଖାଇ ?—

କଲସୀ—ଏହି ଦଣ୍ଡେ କରିବାର ଯା', କରି ଦେଲେତ, 'ଦଣ୍ଡନାଟ' ଛାଡ଼ ଯା'ନ୍ତା ବିଲ୍‌କୁଲ୍—… ( ଅବନତା ହୋଇ ପଦଧୂଳି ନେବାକୁ ଗଲେ )

ଜନାର୍ଦ୍ଦନ—( ଘୁଞ୍ଚିଯାଇ ) ବାଃ ଲୋ, ଅମଙ୍ଗଳ—ବାହାଘରଟା କେମିତି ମୋ'ର ନ ହେଉ, ଏହି ମତଲବ ତୋର ?—

କଲସୀ—'ବାହାଘର' ଯା' ସଙ୍ଗେ ହେବାର, ତା' ସଙ୍ଗେ ସିନା… ?

ଜନାର୍ଦ୍ଦନ—'ବରକନିଆ'ରେ ତ ବାହାଘର—ଏତେ ବୋହୂ-ଭୁଆସୁଣୀ ଲୋଡ଼ା କେବେ କାହିଁକି ?—

କଲସୀ—ଫେଁ ଫୁକିବାକୁ ?—ହୁଳହୁଳି ଦେବାକୁ ?—…ହେଲେ, ଏ ଅମଙ୍ଗଳଟାର,

ସେଭଳି 'ମଙ୍ଗଳକୃତ୍ୟ'ରେ ରହିବା କ'ଣ
'ମଙ୍ଗଳ' ଅଛି ?

ଜନାର୍ଦ୍ଦନ—ବେଶ୍ ପାଠ ପଢ଼ାଉଚୁ ତ ମୋତେ !—
ଅଲେ, ସତ୍ୟାନାଶି—'ଅ-ମଙ୍ଗଳିଅ' ବର ମୁଁ—
...'ଅ-ମଙ୍ଗୁଳା' ଜନନୀ ମୋର—'ଅ-ମଙ୍ଗଳ'
ଉଠାଣ୍ଡ ନ ହେଲେ, 'ଅମଙ୍ଗଳ-କୃତ୍ୟ'ଟା ମୋ'ର
କେମିତକା ବର୍ତ୍ତିବ ଭଲ, କହିଲୁ—...?

କନକ—...ଅସୁଥାଅ, ଭଉଣି—ମୁଁ ପାଣିଘେନି
ଗୁଲିଲି—

ଜନାର୍ଦ୍ଦନ—( ବାଟଓଗାଳି ) ଅଭ ମୁଁ, ଅଭାଗିଲୁ
ଅନାଇ ଅନାଇ ବଇଁଶୀ ବାଇ ବାଇ, ମରୁଥାଏ
ଧନବନ୍ତ—

କନକ—'ଶିଞ୍ଜିନ କଣି କଣି', ଗଲ କଶୋରୀ ନାଚବ
କ'ଣ ଅଭ ଯେ'ଠି ସେ'ଠି—...

ଜନାର୍ଦ୍ଦନ—ରୁହଁଶ—ରୁହିଶ— କେଳି-କୁଞ୍ଜକୁ
ଯିବାର ସଙ୍କେତ ନବ କଶୋରଙ୍କ ?—
କାନୁ—...

କଲସୀ—ବାଟ ?—ଦେଖାଇବାକୁ ରହିବ ପରି
ତଳାଟ,—ପ୍ରିୟୁଦଶି ଲଳିତା ସୁନ୍ଦରୀ ମୁହିଁ—...
( କନକ ଅଡ଼େ ଚାହିଁଲେ ପରିହାସ ଦୃଷ୍ଟିରେ )

କନକ—ହେଲେ, 'କଶୋରତ' କୁମାରୀ ନ ଥିଲେ,
ସହି ? ( ନାଯନ୍ଦ ଖସିଲଭଳି ଖସିଗଲେ )

ଜନାର୍ଦ୍ଦନ—'କୁମାରୀ' !—'କୁମାରୀ' !...—
ଗୁଲି—ଗୁଲି—ମୋତେ... ( ଅପଣାର
ବେଶଭୂଷା ଟାଣି ଓଟାର ଛୁଣ୍ଡାଉ ଛୁଣ୍ଡାଉ
ଅନୁଧାବନ କଲେ, ଗୁଡ଼ ଯାଉଥିବା ବନ୍ଧୁକଟା
ଧରି )

କଲସୀ—ଅଛା—ଅଛା—...ନା, ନା—( ସେହି
ଝରଣାରେ ଝରିପଡ଼ିବାକୁ ଯାଉଥିଲେ )

[ ବଣୁଆ ବେଶରେ ବସନ୍ତ ହଠାତ୍
ଆବିର୍ଭୂତ ହୋଇ ସେହି ବୃକ୍ଷ ଶାଖାରେ ଓହଳି
ପଡ଼ିଲେ କାଣ୍ଡଟା ଧରି ଏକ ହାତରେ—ଅନ୍ୟ
ହାତରେ କଲସିଦେଈଙ୍କର ଚୂଳ ଗୋଛକ
ମୁଠାଇ ପକାଇଲେ ]

ବସନ୍ତ—ହାଃ-ହାଃ-ହାଃ—

କଲସୀ—ଉଃ, ଗୁଡ଼-ଗୁଡ଼—...( ଛଡ଼ାଇ ନେଇ
ଅପଣାକୁ ପଳାଇବାକୁ ଯାଉଥିଲେ )

ବସନ୍ତ—( ଭିଡ଼ିଆଣି ) ଆହା !—କେଉଁ ଅଭିମାନରେ
କଳିର ଫୁଲଟି ମୋ'ର ହୃଦ୍ ହ୍ରଦ ପଡ଼ିବାକୁ
ବସିଥିଲୁ ଟି ?

କଲସୀ—ଅଭ କ'ଣ, ସବୁଦିନ ଲୁଚି-ଫୁଟି, ବେଣ୍ଟରେ
ଅଟକି ରହିଥା'ନ୍ତା କି ?

ବସନ୍ତ—ଫଳକୁ ପରି ଅଣା ?—ହାଃ-ହାଃ—

କଲସୀ—( ଖାଲି ଅଭିମାନରେ ଏଥର ମୁହଁ ଫେରାଇ
ନେଉଥିଲେ )

ବସନ୍ତ—ଦେଖେଁ, ଦେଖେଁ, କି ପୋଡ଼ ଅଛି
ବାଧର ?—

କଲସୀ—ଦଉ କରନା, କହୁଚି,—ହୁଁ !

ବସନ୍ତ—ତୁମେଇ ବା ଅନ୍ୟକୁ କର କାହିଁକି ?

କଲସୀ—କାହିଁ ?—କା'କୁ ?—କେତେବେଳେ ?—

ବସନ୍ତ—ଏଇ ଏତେବେଳେ ?—ମୋତେ ?—
ଏଇଠି ?—...

କଲସୀ—( କେମିତକା ଫିକାଶିଆ ଦିଶିଲେ )

ବସନ୍ତ—ହୈରେ !—ମୁଁ ପରି ବାରମ୍ବାର
ମନାକରୁଚି—ପାହାଡ଼ ଜଙ୍ଗଲ କଥା ତୁମେ
ଆଦୌ ଜାଣ ନାହିଁ—ଏକୁଟିଆଟା କେବେହେଲେ
ଆସିବ ନାହିଁ ?—ଗୋଡ଼ଟା ଏଇ ପିଚୁଲା ପଥର
ଉପରେ ପିଚୁଲି ଯାଇଥିଲେ ଯେମିତକା, କେଉଁ
ରସାତଳେ ଯାଇ ଯେ ଉଠି ଥା'ନ୍ତ, ଆମକୁ ଇ
ଉଠାଇ ବସାଇ ମାରୁଥା'ନ୍ତ ପିନା ?—ତୁନକୁ
ସାଙ୍ଗରେ ଆଣିଲ ନାହିଁ ?—ତୁନ କାହିଁ ?—

କଲସୀ—...ଗାଡ ଖୋଜୁଚି !—

ବସନ୍ତ—ମୋ' ବାପ ରେ !—ଏମିତକା ଫଁ, ଫଁ
କାହିଁକି ?—

କଲସୀ—'ଡମ୍' ନୁହେଁ ଅଭ ?

ବସନ୍ତ—ସେଥିପାଇଁତ 'କଲସୀ' ଲଟାରେ ଥାଇଁ ?

କଲସୀ—ବଫ ଝାଡ଼ିବାକୁ ପିନା ?—

ବସନ୍ତ—'ଲହା ଝାଡ଼ିଛି' ପରି ?

କଲସ—ବିଷଧରକୁ ବିଶ୍ୱାସ ?—
ବସନ୍ତ—ତେବେ 'ବାରୁଦଖାନା'ର ପୋଷାଗୁଡ଼ାକବେ, ସେମିତିକା କାଉଡ଼ମ୍ବରଅ ବାହାଘରଟା, ମନଲାଗି ହେଲା ନାହିଁ, ନା କଣ ?—···ଶୂର୍ କାକ୍ଜମର୍, ଅଡ଼ମ୍ବରଅ ଗୃହ ପରା ?
କଲସ—ନ ଗୃହବ କାହିଁକ ?—ମୁଁ, ଲକ୍ଷେ ରାଜାର ମହୁଡ଼ମଣି—ଜାଣ୍ଟବିଜୟୀ ଶ୍ରୀ ପୁରୁଷୋତ୍ତମ ଦେବଙ୍କର 'ସାତ ଭାଇରେ ଚମ୍ପାଟିଏ'—ଲଗିଛପି, ଏମିତିକା ବାହାହେବ କାହିଁକ ?—
ବସନ୍ତ—ସେଇଥିପାଇଁ ବେଢେଇଗଡ଼ରୁ ତରବର, ଝିଙ୍କାଳ ହୋଇ ଧାଇଁ ଅସିଲ ନା କଁଣ ?—ସେହୁ କାଉଡ଼ମ୍ବରଅ ଚକୁଅ ଚଢୋଇ ପ୍ରାଣଟା ସୁଖ ଲଗିଲା ନାହିଁ ବୋଲ ?—
କଲସ—ତେମିତିକା କଥା କହ ହେ ତୁମେ ?—ଅମେ ହେଲ, ସମତଲ ଭୂଇଁର ଲୋକ—ଅମକୁ ମାଲୁଅ କାରଖାନା ଗୁଡ଼ାକ ସୁଖ ଲଗିବ କାହିଁକ ?—
ବସନ୍ତ—କାହୁଁ, କହଲ—ଅମର ଅସମତଲ, ମାଲୁଅ ଅଞ୍ଚଲ ଲୋକଙ୍କ ଭିତରେ ଯେମିତିକା ସମାନ ଭାବ—ସେମିତିକା ତୁମର 'ସମତଲ ଭୁଇଁ'ରେ ଲୋକଙ୍କ ଭିତରେ ଅଛି ନା ଅଗେ ?
କଲସ—ଅମେ ଅସଭ୍ୟ ବର୍ବର ହେଲେ ତ ?
ବସନ୍ତ—ବାହାରେ ଗୋଟାଏ, ଭିତରେ ଗୋଟାଏ କାହୁ କେବେଁ ନୋହୁଁ ?—
କଲସ—ସେଥିପାଇଁ ତ ଜଣକୁ ସନ୍ଥାଇ, ଅଉ ଜଣକୁ ବାହା······
ବସନ୍ତ—କଲସ··· ।                    ( କାପୁଚି ଧରଲେ )
କଲସ—ନା, ନା—ମୋତେ ଛାଡ଼ଦଅ—ମୁଁ ଏହୁ ଝରଣାର ପୂଅରେ, ଝର-ଭାସି, ଗୃଲଯାଏଁ, ଝସ-ଫୁଲଟି ପର···
ବସନ୍ତ—ଝରବାକୁ ଦେଲେ ତ ?—

[ କୁନ ସେତେବେଳେ ତରବର ହୋଇ, ଭଲସି ଢାଙ୍ଗରେ, ପଶି ଅସୁ ଅସୁ, ସେଭଳି ଅବସ୍ଥାରେ ସେମାନଙ୍କୁ ଦେଖି ପଳାଉଥିଲେ ]

ବସନ୍ତ—କୁନ—କୁନ—
କଲସ—ଛି-ଛି—ଲାଜ ସରମ ବି ଟିକିଏ ହୋଇ ନାହିଁ ?—ଛାଡ଼ଦଅ ନା ?—
ବସନ୍ତ—ନା-ନା—ନାଲଣ୍ଟା ବଗୁର ହୋଇଯାଉ ଅଗେ ସବୁସବୁ ।—      ( କୁନକୁ ଇଙ୍ଗିତ କଲେ ଅସିବାକୁ )
କଲସ—କି ନାଲଣ୍ ମ ? କଣ ?—ତୁମର ମୁଣ୍ଡ ବିଗିଡ଼ିଛି କି ?—ଅଃ—ଛାଡ଼ଦଅ ନା ?—

[ କନକ ବାଧ ହୋଇ ପ୍ରବେଶ କଲେ, ମୁଣ୍ଡ ନୁଆଁଇ ]

ବସନ୍ତ—ପାଖକୁ ଅ'—ଶୁଣ୍—ସତ କହ କହଲ, କୁନ—ମୁଁ କଣ ସନ୍ଥାଇଛି ତୋତେ—ବାହାକର ଏହୁ···
କନକ—ସତେ, ଭାଇ—ବାହାକର ଏହୁ କଲସ ଫୁଲଟିକୁ ?
କଲସ—ଫିଙ୍ଗି ଦେଉନାହଁ ହରକୁ—ଭାଇ ଭଉଣୀ ଦୁହେଁ ଏବେ ମିଳି ?—
କନକ—ମଳି-ଦଳି, ଫିଙ୍ଗି ଦିଅନ୍ତୁ ଯେ,—ହେଲେ, କଲସ ପିଡାରେ ପସ୍ ଅମର ଭାସି ସଉକ ।
କଲସ—'କଲସ' ସଙ୍ଗେ 'କାଙ୍କଡ' ?—
କନକ—ମାଙ୍କଡ଼ ବି ତ ବାଛି ଅଲଗା କରଦେବ ?—
କଲସ—ତେବେ ?—ଯା' ସଙ୍ଗେ, ଯା' ଖାପିବ—ସେଇଠା କରବା—
କନକ—ଠିକ୍ ଯେ—ଅମେ ଜାଣୁ ପରା,—ଫୁଲ୍', ମଉଜ୍, ମଜ୍‌ଲସ୍—
କଲସ—ସମାନ ନ ହେଲେ କି ସମ୍ଭବ ?
କନକ—ଠିକ୍ ଓଲଟା, ଭଉଣି ?—ସମ୍ଭବ ଏକାସିନା, 'ଜଗୁ-ମାଗୁ,'       ଭିତରେ—'ଘୃଣା-ପ୍ରୀତି' ଭିତରେ—'କଠିନ-କୋମଳ' ଭିତରେ ?—
କଲସ—ଓ ହୋ !—ତେବେ କଁଣ 'କୁନ', 'କଣ୍ଟ'ର 'ଫୁଟ୍'ଟା 'ଘୃଣା-ପ୍ରୀତି' ଭିତରେ, ସହୁ ?—
କନକ—ଧେତ୍···( ବୋଲି ଅଡ଼େଇ ଗୃଲିଗଲେ )
ବସନ୍ତ—ଦେଖ୍‌ତ—'କଲ', 'ବସ'ର ?···—'ଜଗୁ-ମାଗୁ' ନା, 'କଠିନ-କୋମଳ' ଭିତରେ ?
କଲସ—( ଜାନମୂଳେ )—ଦୁଇଟା ଭିତରେ ଗୋ !—

ବସନ୍ତ—ତୁଳ ଗାଲରେ ଡେବେ······ ।
( ଚୁମ୍ବ ଖାଇବାକୁ ଗଲାବେଳେ··· )
କନକ—( କଳସୀ ଉଠାଇ ଠୁଳ୍ହିଦେଲେ )
ବସନ୍ତ—( କେଉଁ ଲଜ୍ଜାରେ ଆଉ ବନ୍ଧ ପାରିଲେ ନାହିଁ )
କଲସୀ—( ସେହିଭଳି ବିପରୀତ ଦିଗେ ପଳାଇଲେ )
କନକ—( ସେହି ମିଳନ ଦୃଶ୍ୟରେ, କି ଗୋଟାଏ ତଡ଼ିତ୍ ପ୍ରବାହ ଅଙ୍ଗେ-ଅଙ୍ଗେ ଅନୁଭବ କରିବାରୁ, କଳସୀଟି କାଖରୁ ଖସିପଡ଼ି, ଖର ସ୍ରୋତରେ ଭାସି ଚାଲିଯିବାକୁ ଲାଗିଲା···କିଛିକ୍ଷଣ ପରେ — )···
କଳସୀ—କଳସୀ ମୋ'ର ।—
[ ଜନାର୍ଦ୍ଦନ କେଉଁଠୁ ଧାଇଁ ଆସିଲେ—ହାତରେ ବଣ ଫଳ-ଫୁଲ ଗୁଡ଼ାଏ ଧରିଥିଲେ—ସେହି ତାଳ ପତ୍ରର ବେଶଭୂଷାର ଚିହ୍ନାଂଶ ଅଦ୍ୟାପି ବର୍ତ୍ତମାନ ଥାଏ··· ]
ଜନାର୍ଦ୍ଦନ—କ'ଣହେଲା ? କଣ'ହେଲା ? ( ଫଳ-ଫୁଲ ପକାଇଦେଇ ) ମୁଁ ଉଧୁରି ଆଣୁଛି । ମୁଁ—( ପାଣିରେ ଡେଇଁବାକୁ ତତ୍ପର ହେଲେ )
କନକ—ଯାଉ, ଯାଉ ଭାସି—···ଭାରି ଜଳସଟାଏ ତ ।— ( ବାଧାଦେଲେ )
ଜନାର୍ଦ୍ଦନ—ଭାରି—ଖୁବ୍ ଭାରି ଜଳସ ତୋ'ର ଲୋ, ଡାହାଣି !—ବୁଡ଼ିଗଲେ ରଖାଅଛୁ ନା—?···
( ଛଡ଼ାଉଥିଲେ ଆପଣାକୁ )
କନକ—ନାହିଁ, ନାହିଁ ଅଜା—ତା'ପାଇଁ ଏତେ ଉଚ୍ଛନ୍ନ ହୁଅ ନାହିଁ—କେଉଁ କାଳର ଫଟା ଦଦରାଟାଏ···
ଜନାର୍ଦ୍ଦନ—ହାଃ-ହାଃ—ତୁ କ'ଣ ବୁଝିବୁ ଲୋ, ସେହି ମୋ' 'କନକର' ଦଦରା ଫଟା-କଳସୀର ଗୁଣ ?—···ଏହାର ଭଙ୍ଗା ଖପରର ଗୁଣ୍ଡ ଟିକକ ସଙ୍ଗେ,—ସବୁ ସମତୁଲ ହେବ ନା ଲକ୍ଷେଟା, ସେହି ଭଳି, ଗୋଟା, ଖାଣ୍ଟି, କନକ କଳସୀ ଏକାଠି ମିଳି ?—···କାହିଁ ?—କାହିଁ ଗଲା—···ଛାଡ଼ି ଦେ, ଛାଡ଼ି ଦେ ମୋତେ—···
କନକ—ମୁଁ କ'ଣ ପହଁରି ଜାଣେନାହିଁ ଅଜା ?—ମନ କରିଥିଲେ, ମୁଁ କ'ଣ ଉଧୁରିଆଣି ପାରି ନଥାନ୍ତି ?
ଜନାର୍ଦ୍ଦନ—ନ ଆଣିଲୁ କାହିଁକି ତେବେ, ରାକ୍ଷସି ? ମୋତେଇ ବା ଏମିତିକା ଅଟକାଅଟକି କାହିଁକି ?—···ନା-ନା, ତୋର ମତଲବ ଖରାପ୍···ଛାଡ଼ି ଦେ—ଛାଡ଼ିଦେ···ମୁଁ ଯେନ-ଆସେଁ,—ଉଧୁରି ଯେନଆସେଁ, କଳସୀଟି ମୋ'ର !—···'କନକ'ର କଳସୀଟି ମୋର···।
କନକ—ଅଜା !—ତୁମେ ବାୟା ହେଲ ନା କ'ଣ ?—ଏ' ଖର ସୁଅରେ ତା'ର ଆଉ ପତ୍ତମିଳିବ ନା ?—
ଜନାର୍ଦ୍ଦନ—ପତ୍ତ ମିଳିବନାହିଁ ?—'କନକ'ର କଳସୀର ?—ଜନାର୍ଦ୍ଦନକୁ ?—( ଆପଣାକୁ ଛଡ଼ାଇନେଲେ )
[ ଧାଇଁ ଗଲାବେଳେ ଜଗନ୍ନାଥଙ୍କୁ ହାବୁଡ଼ିଲେ ]
ଜନାର୍ଦ୍ଦନ—ଶୁଣୁଚ, ଜଗନ୍ନାଥ ?—କ'ଣ କହୁଚି ଏହି ଝିଲଟା ?—ପତ୍ତ ମିଳିବନାହିଁ ?—କଳସୀର ?—କନକର ?—ଲୁଲଟା !—ଭସାଇ ଦେଇ, କୁଳ-କଳସୀଟି ଆପଣାର—·· ( କନକ ଆଡ଼େ ଠୁଳ୍ହି )—ଓହୋ !—ଭାରି ଅଭିମାନରେ, ବାଗୁରି—ଭାରି କ୍ଷୋଭରେ—।···କହିଲ-କହିଲ, ଜଗନ୍ନାଥ···ମୋ'ର କ'ଣ ଦମ୍ଭ ନାହିଁ ?—ମୋ'ର କ'ଣ ତାକତ୍ ନାହିଁ ?—···ମୁଁ କ'ଣ ମୋ'ର 'କନକ'ର କଳସୀଟି ଉଧୁରି ଆଣି,—ତା' କୋଳରେ ଦେଇ, ତା'ର କୁଳମାନ ରକ୍ଷି ପାରିବିନାହିଁ ?—ହାଃ-ହାଃ—ବସନ୍ତ ମନେ-ମନେ, ଭାରି ଜାଣେ, ଭାରି ବୀରାଟ ପୁରୁଷ···।···ଆଣିବଟି ସେହି ନାଲି ତରଙ୍ଗ୍ୟାଲଟା !—ସେହି ବାସନ୍ତି ପାଗଟା !—···ନା-ନା,—ତୁମେ କେହି ଖୋଜି ପାଇବ ନାହିଁ ?—ଆଣି ପାରିବନାହିଁ ?—
ଜଗନ୍ନାଥ—ବାବା !—ଆଉ କ'ଣ ସନ୍ଧାନ ପାଇବ ସେହି କଳସିଟାର ?—କେତେବେଳୁ ଯେ—
ଜନାର୍ଦ୍ଦନ—ଯୁଗ-ଯୁଗ, କଳ୍ପ-କଳ୍ପ, ବାଟଯାଉନା—ବ୍ରହ୍ମାଣ୍ଡର ଥରପାରକୁ ଭାସି ଚାଲିଯାଉନା—

ତଥାପି ଜନାର୍ଦ୍ଦନର ହାତମୁଠାରେ—ହାତ-ମୁଠାରେ—ହାଃ-ହାଃ—( ଗୁଳିଗଲେ ଦମ୍ଭ ଧରି )

ଜଗନ୍ନାଥ—( ଦୀର୍ଘ ନିଶ୍ୱାସ ଛାଡ଼ି ) କନକ !—

କିନକ—ବାବା !—

ଜଗନ୍ନାଥ—ଠିଆ ହେଲୁ ଯେ—ବାବାଙ୍କ ସଙ୍ଗେ···?—

କନକ—ନା, ବାବା—ମୁଁ ଯିବିନାହିଁ,—କି ଦେଖାବି ଅଉ ଦେବିନାହିଁ !—

ଜଗନ୍ନାଥ—ଏ’କି କଥା ତୋ’ର ?—ଏତେବେଳେ କି ମାନ ଅଭିମାନ ସାଜେ, ମା ?—

କନକ—ଦେଖୁନାହାନ୍ତି,—ବାବା !—ମୋତେ ଦେଖିଲେଇ, ଖାଲି ଏଣୁତେଣୁ ବକା-ଚକା !—( ବ୍ୟସ୍ତଭାବେ ଗୁଳିଗଲେ )

ଜଗନ୍ନାଥ—ଘରେ—···ବାହାରେ ସମାନ ଦକା !—( ଗୋଟାଏ ପଥର ଉପରେ ବସିପଡ଼ି ଆକାଶ ପାତାଳ ଭାବିବାକୁ ଲାଗିଲେ )

[ ବସନ୍ତ ବେଗେ ପ୍ରବେଶ କଲେ ]

ବସନ୍ତ—( ଅଇଣ୍ଠା ହାତରେ )—ବାବା—ବାବା—

ଜଗନ୍ନାଥ—ମ’, ଦରଣିଆ ହୋଇ ଉଠି ଆସିଲୁ ନା କ’ଣ ?

ବସନ୍ତ—ତୁମ ସଙ୍ଗେ ଖାଇବି ବୋଲି, ବାବା ! ଆଜି, ଠିକ୍ ହାବୁଡ଼ରେ ପଡ଼ିଛ—କେବେଁ ଭଣ୍ଡାଇ ପାରିବ ନାହିଁ ।

ଜଗନ୍ନାଥ—ତୋ’ ବାବା ସଙ୍ଗେ ଖାଇଲୁ ଭଲି କି ଚିଜ ଅଛି ଯେ··· ?

ବସନ୍ତ—ବାଃ, ତୁମର ବାବା ତ ଯା’ ଖା’ନ୍ତି, ମୁଁ କ’ଣ ଦେଖି ନାହିଁ ? ଦୁଧ ଟିକିଏ, କି, ବଣର ଫଳ ମୂଳରୁ ଫାଳେ-ଚଉଠେ !—···ସେଇଥିରୁ କଣିକାଏ ନ ପାଇବା ଯାଏ, କିମ୍ବା ଖେଚଡ଼ି ପସିଛରେ ନାହିଁ ତୁମକୁ, ବାବା ?—

ଜଗନ୍ନାଥ—ବାବା ମୋ’ର !—ଧନ ମୋ’ର !—କୁଣ୍ଢାଇ ପକାଇ—···ସେହି ବଣ ଫଳ ମୂଳ ଆହାର-ବି, ଶତ୍ରୁର ଏଣିକି ସହ୍ୟ ହେଉ ନାହିଁ, ବାବା !—

ବସନ୍ତ—( ହସି ହସି ) ହେଉ ନାହିଁ ?—

ଜଗନ୍ନାଥ—ପୁନରାକ୍ରମଣ କରୁଛି ବୋଲି, ଗୁପ୍ତଚର ସମ୍ବାଦ ଦେଇଗଲା ଏହିକ୍ଷଣି ।

ବସନ୍ତ—ବଙ୍ଗ-ସେନା ତ ?—

ଜଗନ୍ନାଥ—ନା, ନା—ଉତ୍କଳ ମିଳିତ ସେନା !—

ବସନ୍ତ—ସେନାପତି···—ନୀଳକଣ୍ଠ ତ ?—

ଜଗନ୍ନାଥ—ପୁରୁଷୋତ୍ତମଦେବ ସ୍ୱୟଂ !—

ବସନ୍ତ—ଭାରି ଲଜ୍ଜା ପାଇ ଫେରି ଯିବାକୁ ପଡ଼ିବ କାଞ୍ଚିବିଜୟୀ ଗଜପତିଙ୍କୁ,—ନା, ବାବା ?—

ଜଗନ୍ନାଥ—କ’ଣ ଆମର ଗଡ଼ ନାହିଁ, କି ସୈନ୍ୟ ନାହିଁ ବୋଲି ?—

ବସନ୍ତ—ବଣରେ ଶୀକାର କରିବାକୁ ଜନ୍ତୁଜନ୍ତା ବି ଗୋଟାଏ ନାହିଁ ବୋଲି !—

ଜଗନ୍ନାଥ—( ଭଗ୍ନକଣ୍ଠରେ ) ମାନେ, ତୁହି ତ ଅଛୁ, ବାବା ?

ବସନ୍ତ—ମୁଁ ତ ଅସ୍ତ୍ର ବିସର୍ଜନ କରିଛି, ବନ୍ଧୁକାନ୍ତ !

ଜଗନ୍ନାଥ—ସେଇଥି ପାଇଁ ତ ତୁ ଆଜି ଅଜେୟ ! ଏହି ଶୁଣ୍—ଶୁଣ୍—ତୋ’ର ଗୀତ ଆଜି ବ୍ୟାପ୍ତ ଆକାଶେ, ପବନେ—ପ୍ରାନ୍ତରେ, ଭୂଧରେ—ଅନ୍ଧାର ଗୁପ୍ତ-ଗୁହାର କନ୍ଦରେ-କନ୍ଦରେ—··· ନା-ନା, ଜନ କୋଳାହଳ, ସାନ୍ତାଳର ଅନ୍ତରେ-ଅନ୍ତରେ—

× × ×

[ ସେତିକିବେଳେ କନ୍ଧ କନ୍ଧୁଣୀମାନେ ଉଠି ଉଠି ଯାଉଥିଲେ ପର୍ବତ ଶିଖରକୁ, ଗାଉ ଗାଉ ]

—ଗୀତ—

ଅହିଂସା !— ଅହିଂସା !—
ଜୀବନେ-ମରଣେ— ସେହି ଆମ ଦଶା ।
ଧରିବା ନାହିଁଟି ଅସ୍ତ୍ର—
ସହିବା ଫିଙ୍ଗିଲେ ଶସ୍ତ୍ର;
ପୃଥିବୀ ସନ୍ତାନ, ଆମେ—ପୃଥିବୀର ମାନ, କାହେ
ବଢ଼ାଇବା ଗୁଳି—‘ସର୍ବଂ ସହା’ ଦଶା ।

ଉଠ-ଉଠ, ଗୁଲ୍ ଦ୍ରୁତ—
ଲଙ୍ଘି ପାହାଡ଼ ପର୍ବତ;
ଆସୁ ସିଂହ, ବ୍ୟାଘ୍ର ଧାଇଁ—
କରବା ଗୋ ସର୍ବେ ଭୁଲ
ଊର୍ଦ୍ଧ୍ୱ-ପଥଯାତ୍ରୀ—ଊର୍ଦ୍ଧ୍ୱ ଆମ ଦଶା ।

ବସନ୍ତ—ଆଉ ତେବେ ଭୟ କ'ଣ, ବାବା—ସାରା ବିଶ୍ୱଟା ଆଜ ମୋ ବିରୁଦ୍ଧେ ଅସ୍ତ୍ରୋତ୍ତୋଳନ କଲେବି ?—

ଜଗନ୍ନାଥ—ସ୍ୱୟଂ ବିଶ୍ୱନାଥ ବିଶ୍ୱଧ୍ୱଂସୀ ତ୍ରିଶୂଳ ଉତ୍ତୋଳନ କଲେବି···

ବସନ୍ତ—'ଜିଣିବା ମୋତେ ଅସମ୍ଭବ' ।—ଠିକ ଏହି ଭାବଟି, ଏହି ବିଶ୍ୱାସଟି ମୋ' ମନରେ କ୍ରମେ ଦୃଢ଼ୀଭୂତ ହେଉଛି, ବାବା, ଯେତେକ୍ଷଣ ମୁଁ ଆପଣାକୁ ବିସର୍ଜନ କରିପାରୁଛି ଦିନୁ ଦିନୁ ।।

ଜଗନ୍ନାଥ—ତଥାପି, ଦେହର ଧର୍ମ······

ବସନ୍ତ—"ଗୋଟାଏ ସୀମାର ଅତିରିକ୍ତ କଷ୍ଟ କରିବାକୁ ଅକ୍ଷମ" ଏହି କଥାତ ?—

ଜଗନ୍ନାଥ—ମୋ'ରତ ବିଶ୍ୱାସ ।—

ବସନ୍ତ—କିନ୍ତୁ, କା'ର କର-ସ୍ପର୍ଶରେ ଯେପରି, ବାବା ସେହି କ୍ଷୀଣ ବିଶ୍ୱାସ ମୋ'ର କାହିଁ ଅନ୍ତର୍ହିତ ହୋଇଯାଉଛି, କେଉଁ ଦୃଢ଼ଅସ୍ମି-ବିଶ୍ୱାସର ବଳେ—କେଉଁ କଠୋର ସାଧନାର ଫଳେ । ବେଳେ ବେଳେ, ଏହି ଶିଳାଖଣ୍ଡ ଉପରେ ଯେବେ ତଳପଡ଼େ. ସାରାଦିନ ଖଟି-ଖଟି—ମୁଁ ଦେଖେଁ—କେଉଁ ଗମ୍ଭୀର ନିଶାର କୋଳେ ଅଣାର ଦିବ୍ୟ ରଶ୍ମି ରେଖାଟିଏ ।—ମୁଁ ଯେମନ୍ତ ଏହି ଦେହ ଚକ୍ରବାଳର କେଉଁ ଅନ୍ତରାଳେ ?—ଏହି ଦୈହିକ ଧର୍ମ-ଗଣ୍ଡିର କେଉଁ ଦୂର-ଦୂରାନ୍ତରେ ?—ଅନନ୍ତ ମୋ'ର ଜୀବନର ଧାରା ।···ଅସୀମ ମୋ'ର ମାନୁଷୀ-ଶକ୍ତି ।—

[ ଠିକ୍ ସେତିକିବେଳେ କନକ ଉନ୍ମାଦିନୀ ଭଳି ଧାଇଁ ଆସିଲେ ]

କନକ—ଏଠା କାହିଁ, ଭାଇ ?—ଗୃହଅଡ଼େ ଖୋଜି-ଖୋଜି ଥକି ଗଲିଣି—କାହିଁତ ପାଉନାହିଁ ?—

ଜଗନ୍ନାଥ—ଏଁ—ଏଁ—···କ'ଣ ହେବ, ବସନ୍ତ ?—
ଆଉ ଯେ ମୁଣ୍ଡ ଟାକର ଶିଗିଡ଼ୁଥିବା କ୍ଷସ ।—

ବସନ୍ତ—( କେଉଁ ଦମ୍ଭରେ )—ଆଃ—'ନଈ ନ ଦେଖୁଣୁ ଲଙ୍ଗଳା'—( ଅବହେଳାରେ ଓହଳି ପଡ଼ିଥିବା ଗଛର ଡାଳଟାକୁ ଧରି, ଲୁଦା ମାରି ଗଛ ଉପରେ ଚଢ଼ି, ଗୁହାଁରେ ଏଣେ ତେଣେ)

[ ନୀଳକଣ୍ଠ ସେହି କଳସିଟା ନେଇ ପ୍ରବେଶ କଲେ ବେଗେ ]

ନୀଳକଣ୍ଠ—( ଥଟ୍ଟାରେ ) ସାବାସ୍ ବୀର···।—ଛି, ଛି, କେମିତିକା ଅକ୍କଲଟି ତୁମର ?—ଦାଦା କି ତ ଅଛନ୍ତି ? ଟିକିଏ ଜଗି ରଖି ପାରିଲ ନାହିଁ ?—ଏହି କଳସିଟା ପାଇଁ ନଈକୁ କେଉଁଠି ପଡ଼ିଥିଲେତ ?—ଭାଗ୍ୟେ, ମୁଁ ହାଲୁଡ଼ି କୋପେ ବାଟ ପହଁରି, ଆଣି ଦେବାରୁ, ରକ୍ଷା ।···

କନକ—( ମୁଗ୍ଧ ନେତ୍ରରେ ଗୁହାଁ ରହିଥିଲେ—ଗୁହଁରଷ୍ଟୁ 'ମେଳ ହୁଅନ୍ତେ, ଦୃଷ୍ଟି ପଳାଉଥିଲେ )

ଜଗନ୍ନାଥ—( କନକପ୍ରତି ) ପିଣ୍ଡାଖଣ୍ଡେ ଆଣିବାକୁ ଯାଉଚୁ କି, ମା—ହଁ' ହଁ'—ଜଲଦି—ଜଲଦି—ଓଦା ଲାଗାରେ ପୁଅଟା···

ନୀଳକଣ୍ଠ—( ବାଟଓଗାଳ ) କଳସିଟା ଧରିଲି ଅଗେ—ମୁଁ ଖଲ୍ଲାସ ପାଏଁ ।—ଅଢାଙ୍କର ତୁମର ଭଡ଼ା ହୁକୁମ୍—ମୁହିଁ ଜମା କରି ଦେବି ନାକେ, ତୁମକୁ ।—

କନକ—( ଲଜ୍ଜା ସରମ ଛାଡ଼ି କହିଲ ) ନା-ନା, ନେବି ମୁହିଁ କାଢ଼ି ।—ହତଭାଗର ତୋତେ—ଭଞ୍ଜ-ମୟୂର-ସୁନ୍ଦରେ ।—

ନୀଳକଣ୍ଠ—ହାଃ-ହାଃ—ତୁମେଇ ତ ଲକ୍ଷ୍ୟ ମୋ'ର, ଭୁଜଙ୍ଗିନୀ-ସୁନ୍ଦରୀ,—ଅଭିଯାନେ ଏହି ?—ଶିଲ୍ପମାର ନେବିପରି,—ନଚେତ୍, ଥଣ୍ଡେ କିଛି ?—

ଜଗନ୍ନାଥ—ପାପିଷ୍ଠ !—ନରାଧମ !—

ବସନ୍ତ—( ଡେଇଁପଡ଼ି ତଳକୁ ) ଧୈର୍ଯ୍ୟ ମୋ'ର ତୁଟିଛି ବାବା—ବିଶ୍ୱାସ ମୋ'ର ଉନ୍ମୂଳିତ କ୍ଷଣକେ—ଅସ୍ତ୍ର !—ଅସ୍ତ୍ର !—

ନୀଳକଣ୍ଠ—ହାଃ-ହାଃ—ଅରେ ଭଣ୍ଡ ନାରସ୍ତ
ସନ୍ନ୍ୟାସି !—···ଏ'ତ ନୁହେଁ କିଛି —···
ନେବ ମୁହିଁ ଏହି ନାରୀ—ଦେବ ଘର ଘୋଡ଼ା
ସହିସର କରେ—ରାଜା ଶ୍ରୀ ପୁରୁଷୋତ୍ତମ ହେବେ
ତୃପ୍ତ ତହିଁ—ବନ୍ଦୀ ମୁକ୍ତ ପିତାଙ୍କୁ ମୋ'ର,
କରିଦେବେ କ୍ଷଣେ !

ଜଗନ୍ନାଥ—ଶୁଣରେ, ଚଣ୍ଡାଳ-ଚର !—ଥାଉଁ
ଏ'ଜୀବନ ନୁହେଁ ସାଧ, ଭାର୍ଯ୍ୟା ତୋ'ର ଯଥା
ଖରୁଅଛୁ ମନେ !—ବନ୍ଧୁକ—ବନ୍ଧୁକ— !

କନକ—ଦେଉଅଛି ଅଣି, ପିତା !—( ଗୁଳିଗଲେ )

ବସନ୍ତ—ନା-ନା, ଭଉଣି—( ଅଟକାଉଥିଲେ ) ମିଳ
ସେ ଅମ୍ବର, ବାବା ଶମ୍ଭୁର ଗୋପନ ବେଶେ—
ଗୁପ୍ତ-ବାର୍ତ୍ତା ଦେଇ ! ନାଅ, ବାବା—ନିଅ କୋଳେ
ଟୋଳ—ଦେ, ଖାଇ—ଦେ ଅଲିଙ୍ଗନ—ଅଣ-
ଅଣ, ଲୁନ ବେଗେ, ପାଦ୍ୟ, ଅର୍ଘ୍ୟଥାଳି—

ନୀଳକଣ୍ଠ—ଓଃ, ମୁଁ କରିଛି କ'ଣ—କରିଛି କ'ଣ ?—

ବସନ୍ତ—ଖାଇ—ଖାଇ—

ନୀଳକଣ୍ଠ—ନା-ନା, ରଣେ, ରଣସ୍ଥଳେ ପୁଣି ଭେଟା-
ଭେଟି ଖାଇ !—

[ ଏକଡ଼ଗରୁ ଜନାର୍ଦ୍ଦନ ଧାଇଁ ଅସିଲେ,
ସେହି ବାସନ୍ତୀ ପାଗ ପିନ୍ଧି, ଲାଲ୍ ତରଓ୍ୱାଲଟି
ଧରି ]

ଜନାର୍ଦ୍ଦନ—ହାଃ-ହାଃ—ପିତୁ ଭାହିଁରେ, ବିଶ୍ୱାସ-
ଘାତକ ?

[ ବିପରୀତ ଦଗରୁ କଲସ ଦେବୀ କନକକୁ
ଘେନି, ପ୍ରବେଶ କଲେ, 'ଘୁଟ'ଟା ଲଗାକାନ
ତଳେ ଲୁଚୁଇ ]

କଲସ—ପିତୃଦ୍ରୋହୀ !—ରାଜଦ୍ରୋହୀ !—ଏହିପରି
ତୋ'ର କର୍ତ୍ତବ୍ୟପାଳନ ?—ଘୋଡ଼ା ସହିସର
କରେ ଅବଶ୍ୟ ଦେବୁ 'ଏ ନାରୀ !'

ନୀଳକଣ୍ଠ—( ଅବାକ୍ ହୋଇ ଗୁହିଁ ରହିଲେ )

କଲସ—ଏ' ହୁକୁମ୍, ମୋର,—ରାଜ-ଛତ୍ରାଧି—
ମହାରାଜା, ଶ୍ରୀ ପୁରୁଷୋତ୍ତମ ଦେବ-ଭଗ୍ନୀ—କଲସ
ରହିଛି !—

ଜନାର୍ଦ୍ଦନ—କଲସିଟି କଥା କହି ନ ଦେଇ—
ଗୁମୁଣ୍ଡାକୁ ମୋ'ର, ଗୁଳି ଯାଉ ଭାହିଁରେ ତୁହି,
ଭୋଳା ଦିଗମ୍ବର ?—ଅରେ, ମୁଁ ବାଞ୍ଛା କଲେ,
ହେବ କ'ଣ ?···—ସାରା ଭୁବନଅଟା ବ ?—
ମୋର କନକ ରୂପାସୀ ପାର୍ବତୀର ବାଞ୍ଛିତ—
ସେହି ଶ୍ମଶାନ ବାସୀ ନୀଳକଣ୍ଠ ପିନା ! ଅଉ
ନୀଳକଣ୍ଠର ବି, ସେହିଭଳି ବାଞ୍ଛିତା, କନକ-
ସୁନ୍ଦରୀ ଯେ ନୁହେଁ, କିଏ ଜାଣିଛି !

ନୀଳକଣ୍ଠ—ଅଜା !—

କଲସ—ଚୁପ୍—ପାଟି ଫାଟି କିଛି ନ କହ, ଏହି
ଘୁଟଟି ତୁମର ଧରିଲି, ଘୋଡ଼ା ସହିସ !···ଅଉ,
ରାଜାଦେଶ ପାଳନ କଲି ଅକ୍ଷରେ-ଅକ୍ଷରେ !···
( କନକର କର ଧରାଇଦେଲେ )

କନକ—ଭଉଣି !···

ବସନ୍ତ—( କେଉଁ ଉଚ୍ଛ୍ୱସିତ କଣ୍ଠରେ )—ଘୋଡ଼'—
ଘୋଡ଼ା···ତୁମର ସେହି 'ବରଅଶ୍ୱ',—ରକ୍ଷିତ
ମୁଁ ଖରୀ ଯତ୍ନେ, ଖୁଆଇ ପିଆଇ—( ଅଣିବାକୁ
ଧାଇଁ ଯାଉଥିଲେ )

ଜନାର୍ଦ୍ଦନ—ଅଃ—ଏହି ଧରନା ଲଗାମ, ସହିସ—
ମୁଁ ଯେ ପାରୁ ନାହିଁ ସମାଳି—ଓଃ, ଉଡ଼ବାକୁ
ଘୋଡ଼ା—ଖରୀ ଉଡ଼ାଉଡ଼······

[ ଲଗାମଟା ଧରାଇ ଦେଇଁ ଦେଇଁ, ଥରି
ପଡ଼ିଗଲେ କ ଅଉ ନବଦମ୍ପତିଙ୍କ କୋଳେ ]

---

## ପାଞ୍ଚ

— ପ୍ରାଙ୍ଗଣ—

[ ଅନେକବର୍ଷ ପରେ—ଆଜ ସେହି ଟୈକୋ-
ସ୍ତବ—ମୟୂରଭଞ୍ଜ ରାଜ-ପ୍ରାସାଦର ପ୍ରଶସ୍ତ
ପ୍ରାଙ୍ଗଣର ବାହାରେ, ଉତ୍ସବର କୋଳାହଳ ଓ
ବାଦ୍ୟଧ୍ୱନି ବେଶ୍ ଶୁଣା ଯାଉଥାଏ···କିଛି
କ୍ଷଣପରେ, ମହାରାଜା ବେଶରେ ନୀଳକଣ୍ଠ, ଓ
ମହାରାଣୀ ବେଶରେ କନକ ସୁନ୍ଦରୀ ପ୍ରବେଶ
କଲେ, ମହା ସମାରୋହରେ···କ୍ଷଣକାଳପରି

ଏମନ୍ତ ନିସ୍ତବ୍ଧ ଜଣାଗଲା—ଯେମନ୍ତ ଗୋଟାଏ
ଝଡ଼ ଉଠିବାର ପୂର୍ବଲକ୍ଷଣ—ମହାରାଜାଙ୍କର
ଇଙ୍ଗିତ ମାତ୍ରେ, ଉଗ୍ରବଟା ଉଲ୍କା ଉଠିବ ପରି ]

କନକ—ଏତେ ଅପ୍ରୟୋଜନ—ସବୁ ଅକାରଣ
ପିନା !—

ନୀଳକଣ୍ଠ—ନିମନ୍ତ୍ରଣ କ'ଣ ଆମର ଗ୍ରହଣ କରିବେ
ନାହିଁ ବୋଲି, ତୁମର ବିଶ୍ୱାସ ?—

କନକ—ତୁମର ସେହିଭଳି ସନ୍ଦେହ ହେଉଛି, ନା
କ'ଣ ? ଅବିଶ୍ୱାସୀ ପରି ?—

ନୀଳକଣ୍ଠ—ତୁମେ ଏମିତିକା ପରମ ବିଶ୍ୱାସୀ ଅଜାର
ଗେହ୍ଲାନାତୁଣୀ ହୋଇ, ଚଞ୍ଚଳ ହେଉଛ
ଯେତେବେଳେ···

କନକ—ନ ହୋଇ ଗତିଅଛି ନା ?—ଏଭଳି
ଅବିଶ୍ୱାସୀ ନାତିର ପାଲରେ ପଡ଼ି ?

ନୀଳକଣ୍ଠ—ପଡ଼ିଛି ବୋଲି,—ରକ୍ଷା !—ନାହିଁତ,
ଭୁଜଙ୍ଗର ଦଂଶନରେ ଏତେବେଳକୁ···

କନକ—ଭୁଜଙ୍ଗ ଧରିଙ୍କ ବିଷ ତ କିଛି କମ୍ ନୁହେଁ ?

ନୀଳକଣ୍ଠ—କିନ୍ତୁ, କଣ୍ଠ ଦେଶରେ ଧାରଣ କରି
ନୀଳକଣ୍ଠ, ବ୍ରହ୍ମାଣ୍ଡକୁ ବିଷଗ୍ରାସରୁ ରକ୍ଷାକରି
ନାହାନ୍ତି କି ଅମୃତ ଆସ୍ୱାଦନ ଦେଇ, ଅମରକରି
ରଖିନାହାନ୍ତି କି ଦେବଗଣଙ୍କୁ ?

କନକ—( ମୃଦୁହସି ) ଦେବୀ ପିନା ତୁଟିବ ଦେବଙ୍କ
ଦାଉ,—ମୁଁ ଯାବ ଦେବଦାସୀ ହୋଇ ତୁଟିବି
କାହିଁ ?—

[ ଏହି ସମୟରେ ଦ୍ୱାର ଦେଶରେ ଭାରି
ଗଣ୍ଡଗୋଳ ଶୁଣାଗଲା—ଦ୍ୱାରପାଳ ଧଇଁ ସଇଁ
ହୋଇ ଧାଇଁ ଆସିଲା ]

ଦ୍ୱାରପାଳ—ମହିମା !—ଦୁଇଜଣ ପାଇକ ପାଇକାଣୀ
ଭାରି ହୁଲ୍ଲତ ଲଗେଇଛନ୍ତି,—ପେଲିପଶି ନଅର
ଭିତରେ ପଶିବାକୁ ତିଆର !—

କନକ—ହତିଆର କ'ଣ କାହାର ହାତରେ ନାହିଁ ?

ନୀଳକଣ୍ଠ—ହତିଆର କେହି ଧରିଛନ୍ତି, ନା କ'ଣ ?

ଦ୍ୱାରପାଳ—ପ୍ରଭୁଙ୍କ ହୁକୁମରେ, ହତିଆର ଖାନା ତ
କେଉଁ ଦିନୁ ତାଲା, ଜବତମୁଦ୍ରା !—

ନୀଳକଣ୍ଠ—ସାବଧାନ !—···କେହି ଯେମନ୍ତ ଟିପଟିଏ
ନ ଲଗାନ୍ତି ଦେହରେ,—ନବାଗତ ବିଦେଶୀ
ଆଗନ୍ତୁକ ମାନଙ୍କର !

ଦ୍ୱାରପାଳ—( ଅଭିବାଦନପୂର୍ବକ ପ୍ରସ୍ଥାନ କଲା )

କନକ—ତୁମେ, ଦେଖୁଛ, ଭାଇଙ୍କ କପରେ ଟିକ୍‌କା
ଚଢ଼ାଇଲି—

ନୀଳକଣ୍ଠ—ହାଃ-ହାଃ— ଏ' ପରି 'ଚନ୍ଦ୍ର-ଭୁଜଙ୍ଗ'
ଭିତରେ ଟକ୍‌କର !

ଦ୍ୱାରପାଳ—( ପୁଣି ପ୍ରବେଶ ପୂର୍ବକ ) ମହିମା !—
ପାଇକ ପାଇକାଣୀର ଲହଡ଼ି ଯେମିତିକା
ମାଡ଼ିଆସୁଛି !—କେଉଁଠାରୁ ?—କିଛି ଜଣାପଡ଼ୁ
ନାହିଁ ?—

କନକ—କନକ—ସ୍ଥିର ହୋଇ ଭାବୁଛ କ'ଣ ?—
ଦ୍ୱାରପାଳ !—ମନ୍ତ୍ରୀ, ସେନାପତି ?—ହତିଆର-
ଖାନା ତାଲା ଜବତମୁଦ୍ରା ଯଦି, ଭାଙ୍ଗିବାକୁ କି
ତୁମର ହାତ ଗୋଡ଼ ନାହିଁ ?

ଦ୍ୱାରପାଳ—ମହିମା !

ନୀଳକଣ୍ଠ—ଚୁପ୍—

[ ନେପଥ୍ୟେ ଭାରି କୋଳାହଳ ଶୁଣାଗଲା ]

କନକ—ଶୁଣ—ଶୁଣ—ହୁକୁମ ମୋ'ର—ଭାଙ୍ଗ—
ଭାଙ୍ଗି ଖଣ୍ଡ ଖଣ୍ଡ କର ଅସ୍ତ୍ରାଗାର—ଧର,
ଧରଅସ୍ତ୍ର, ଯେ ଯାହା ପାଅ—ରୋଧ—ରୋଧ
ବେଗେ ଶତ୍ରୁର ପ୍ରବାହ !

[ ସାଧାରଣ ପାଇକ ପାଇକାଣୀ ବେଶରେ
ବସନ୍ତ ଓ କଲସି ଦେବୀ ପ୍ରବେଶ କଲେ ]

କଲସି—ହାଃ-ହାଃ-ଶତ୍ରୁ ନିରସ୍ତ୍ର ପରି, କାଳୀ-
କରାଳୀ ?—

ନୀଳକଣ୍ଠ—ଭୟ ? ନାହିଁ, ନୁଅବୋଉ—ମହାକାଳ
ଠିକ୍ ବେଳକାଳ ଠଉରେଇ, ପଡ଼ନ୍ତା ଯେ
ଗୋଡ଼ତଳେ ଶରଣପଟାଂ ହୋଇ ?

କନକ—ଯାହାହେଉ, କଥା ତୁମର ଜଣାଗଲା ଯେ,
କଲସି ଫୁଲ୍—···( ହାତଧରି ଭିଡ଼ି ନେଲେ
ଘରଭିତରକୁ )

ବସନ୍ତ—କେମିତିକା ଅସଭ୍ୟ ବର୍ବରଟା ହେ !

ନୀଳକଣ୍ଠ—ଆପଣାର ସାଜ ପୋଷାକ ଅଡ଼କୁ ଚାହିଁ, ଲୁହା ହେଉଛନ୍ତି ?

ବସନ୍ତ—ଆପଣଙ୍କର ଚମକିଆ—ଝଗଝଗିଆ ସାଜ ପୋଷାକ ଭିତରର ମଣିଷଟାକୁ ଚାହିଁ ?

ନୀଳକଣ୍ଠ—ମାନେ, ସଭ୍ୟତାଟା ଆପଣଙ୍କର ବେଶ୍ ଜଣା ପଡ଼ିଲା ଯେ,—

ବସନ୍ତ—ଯାନ୍-ବାହାନ୍ ଲେଉଟାଇ ଦେବାରୁ ?

ନୀଳକଣ୍ଠ—ନିମନ୍ତ୍ରଣ କାଗଜକୁ ଯଥେଚ୍ଛା ଗାଳି ମନ୍ଦ କରି ଘଉଡ଼ାଇ ଦେବାରୁ ବି ?

ବସନ୍ତ—ଆପଣ ବା କେମିତିକା ସଭ୍ୟ ଭବ୍ୟ ?—ଆଗକୁ ନିମନ୍ତ୍ରଣ କରି ପଠାଉଛ, ପରକୁ ନିମନ୍ତ୍ରଣ କଲାଭଳି ?—ଯାନ୍-ବାହାନ୍ ପଠାଇ ଦେଲ ଯେ,—କେଉଁ ଅକ୍କଲରେ ଭଲା ? 'ସମୁଦ୍ରକୁ ଶଙ୍ଖେ ପାଣି'—ଅଚ୍ଛା—ମୋତେ କ'ଣ ଏମିତିକା ବେଅକ୍କଲିଆର ମନେ କରିଥିଲ, ଯେ— ?

କନକ—( ଦୌଡ଼ି ଆସି ଉଠନ୍ତୁ ) ହେଁ ହେ, ଶୁଣୁଚ ନା ?—ଏମାନେ କୁଆଡ଼େ ଚାଲି, ଏ' ଯୋଜନେ ବାଟ ଆସିଛନ୍ତି ।—

ବସନ୍ତ—ହେଲେ, ହଟିଗଲୁ, ଭଉଣି ?—

କନକ—'ହଟ' କରି, ନୂଆ ବଉକୁ ହଟର-ହଟର କରି ବାଟ ଚଲେଇବାର କହୁଛୁଟା ?—

କଳ୍ପି ( ପ୍ରବେଶ ପୂର୍ବକ )—ମୁଁ ତ, ଆପେ, ଖୁସିରେ ଚାଲି-ଚାଲି ଆସିଛି, ଭଉଣି ।—ମୋର ପିଲ୍ଲ-କବାଳଙ୍କ ଗହଣରେ ?

କନକ—ତା'ତ ହେଲା, ଏ' ଗୋଡ଼ତଳ ଯେ ଏବେ ଫୁଟି ଫୁଲି, ଫଗ୍ସ ହେଲା—କଷ୍ଟଟା କା'ର ?—

କଳ୍ପି—ତୁମର ତ ?···କିଏ ଆଉ ସେବିବ କି ?—ଦିନ ରାତି ବସି-ବସି, ତେଲ ମାଲିସ କରିବ କି ?

ନୀଳକଣ୍ଠ—ହେଲା ?···'ଟିକ୍କା'ଟା ଏବେ ଓଲଟି ଆମ ଉପରେ ଚଢ଼ିଲା ?—

କନକ—ହେଲେ, ଟକ୍କରିତ ଏହି ବାଜିକରେ କିଛି ଛାଡ଼ି ଯାଉ ନାହିଁ ?—( କଲସି ଦେବୀଙ୍କ ଓଟାର ଚୋପଡ଼ିଲେ )

ନୀଳକଣ୍ଠ—ଆସ ଆସିଲ ଉଆସ ଭିତରକୁ···

ବସନ୍ତ—ଭାଇ । ସେତକ କ୍ଷମା କରିବ···ପିତାଙ୍କ ରୋଗ-ଶଯ୍ୟାରେ ମୁଁ ଚରଣ ସ୍ପର୍ଶ କରି ପ୍ରତିଜ୍ଞା କରିଛି—ଉଆସରେ ତ ଦୂରରେ କୌଣସି କୁଡ଼ିଆରେ ସୁଦ୍ଧା ଆଶ୍ରୟ ନେବି ନାହିଁ, ଯେ ଯାଏ ଜଣେ ସୁଦ୍ଧା ପ୍ରଜା ମୋ'ର ଆଶ୍ରୟ ବିହୀନ—କୁଡ଼ିଆର ବାହାରେ ।

ନୀଳକଣ୍ଠ—ପିତା—ଦେଖ, ଦେଖ—ତୁମର ନିଷ୍ଠୁର ଅବିଶ୍ୱାସର, କି ବିଷମୟ ପରିଣାମ ଆଜି !

ବସନ୍ତ—କିନ୍ତୁ, ସେହି ବିଷଯୋଗୁଁ ପିନା, ତୁମେ ମଣିଷ ଆଜି ।—ଅମୃତ ବର୍ଷିବ ଭାଇ । ଧ୍ୱଂସ ତ ସୃଷ୍ଟିର ବୀଜ ? ଛାଡ଼—ଭାଇ, ଆଜି ପରା ଆସିଛି ମୁହିଁ—ତୁମର ଭ୍ରାତୃ ପ୍ରେମରେ ଭୋଳ ହୋଇ—ପ୍ରଜାକୁଳ ଘେନି—ମନ, ପ୍ରାଣ ଖୋଲି, ଆମୋଦ ପ୍ରମୋଦ କରିବ ବୋଲି, ଭାଇରେ-ଭାଇରେ ମିଳି ।···ତେଣୁ, ଅମୃତ ନଢାଳି, ବିଷର ମୁଣା କରୁଚ ଖାଲି ?—ଛି-ଛି, ଡାକ-ଡାକ, ପାଇକଗଣେ—ରାଜ୍ୟ ସାରା ପ୍ରଜାଗଣେ—ଆଜିର ଚୈତ୍ରୋତ୍ସବ,—ହେଉ ମହୋତ୍ସବ,—ମହୋତ୍ସବେ ନାଚନ୍ତୁ ସର୍ବେ ।—

ନୀଳକଣ୍ଠ—ବଜାଅ-ବଜାଅ ମର୍ଦ୍ଦଳ—ଚଳ ଚଳ ନାଚ—ଭାଇରେ-ଭାଇରେ ମିଳି । ( ବସନ୍ତକୁ ଆଲିଙ୍ଗନ କଲେ )

[ ଭଞ୍ଜ-ଭୁଜଙ୍ଗ—ପାଇକମାନେ ନାନା ନୃତ୍ୟ ଦେଖାଇ, ଶେଷକୁ ସେହି 'ମୟୂର-ଭୁଜଙ୍ଗ' ନୃତ୍ୟ ଦେଖାଇଲେ ]

ବସନ୍ତ—( ଉଠିଯାଇ ) ନା ନା—ଏ ନୃତ୍ୟ—ଭଞ୍ଜ-ଭୁଜଙ୍ଗର କଳା, ଆଜି ନାଚ ଦୁହେଁ ମିଳି ।—( ମିଳନ କରାଇଦେଲେ ମୟୂର-ଭୁଜଙ୍ଗର ନୃତ୍ୟ-କଳା ମଧ୍ୟରେ ଦେଇ )

[ ପୁରୁଷୋତ୍ତମ ଦେବ ସହସା ପ୍ରବେଶ କଲେ ସାଧାରଣ ବେଶରେ ]

ପୁରୁଷୋତ୍ତମ—ଖାଲି ନୃତ୍ୟରେ ନୁହେଁ,—କଥାରେ ନୁହେଁ—କାର୍ଯ୍ୟରେ ମଧ୍ୟ ସେହି ମିଳନ ବାଞ୍ଛନୀୟ ।

ବସନ୍ତ ଓ ନୀଳକଣ୍ଠ—ମହାରାଜ ।—

କଲସ—( କନକ କୋଳରେ ମୁହଁ ଲୁଚାଇଲେ, ଅଭିମାନରେ କି ଦୁଃଖରେ, ତାକୁଇ ଜଣା )

ବସନ୍ତ—( ଗୋଟାଏ କୋଣକୁ ଘୁଞ୍ଚିଯାଇଥିଲେ )

ପୁରୁଷୋତ୍ତମ—ଚିହ୍ନି ଦେଖୁଚ କ'ଣ ?—ମୁଁ ଯେ ଅନିମନ୍ତ୍ରିତ ଅତିଥି ଆଜ, ତୁମର ଦ୍ୱାରେ ।

ନୀଳକଣ୍ଠ—ମହାରାଜ ।—(ଯଥା-ସମ୍ମାନ ଦେଖାଇବାକୁ ଗଲେ )

ପୁରୁଷୋତ୍ତମ—( ବାଧାଦେଇ ) ଆଃ, ମୁଁ ଯେ ରାଜା-ମହାରାଜାଙ୍କଠାରୁ ବେଶୀ ପୂଜା, ସମାଦର ପାଇବି ବୋଲି, ଉପସ୍ଥିତ ଆଜ ଅନିମନ୍ତ୍ରିତ ଭାବେ ତୁମର ଦ୍ୱାରେ ।

ନୀଳକଣ୍ଠ—ଏତେ ସୌଭାଗ୍ୟ ମୋର ଅଛି, ଯେ···

ପୁରୁଷୋତ୍ତମ—ସୌଭାଗ୍ୟଟା ତୁମର, ନା ମୋ'ର, ବନ୍ଧୁ ?—ଏଭଳି ଅକୃତ୍ରିମ ସୌହାର୍ଦ୍ଦ୍ୟ-ସୁଖ, ପୂର୍ଣ୍ଣ ମାତ୍ରାରେ ଭୋଗ କରିବାର ସୁଯୋଗ ମିଳିଛି ଯେତେବେଳେ ଏହି ପୂର୍ଣ୍ଣିମା ତିଥିରେ ଅଜି ?··· କଲସ !—ତୁମେ ଏ'ଭଳି ମିଳନୋତ୍ସବ ଦିନରେ, କାନ୍ଦୁଛ ନା ?—

କଲସ—ଭାଇ !···( କେଉଁ ଉଚ୍ଛ୍ୱାସରେ ଭାଇଙ୍କ ଚରଣ ତଳେ ଅଜାଡ଼ି ହୋଇ ପଡ଼ିଲେ )

ପୁରୁଷୋତ୍ତମ—ଛି, ଭଉଣି—ଭାଉଣି—ଭାଇ ଯଦି ଅଜାଣତରେ କିଛି ଗୋଟାଏ ଭୁଲ୍ କାମ କରି ପକାଇଥାଏ, ତା' କ'ଣ ଧରାଯାଏ ?···( କନକ ପ୍ରତି ) ତୁମେ ସେ'ଠି ଯେ, ଭଉଣି—···ତମାତେ କ'ଣ 'ଭାଇ' ବୋଲି ଘେନା କରିବ ନାହିଁ, ଭଉଣି ?

[ କନକ ଚରଣ ରେଣୁ ନେଇ, ବୋଲି ହୋଇ, କେଉଁ ଲଜ୍ଜା ଓ ଆବେଗରେ ଭିତରକୁ ଚାଲିଗଲେ ]

ପୁରୁଷୋତ୍ତମ—ଛି,—ଉଠ, କଲସ—( କଲସକୁ ଉଠାଇଲେ )

କଲସ—ତୁହ ଆଗେ—ଦୋଷ ମୋର କ୍ଷମା କରିଛ କି ନାହିଁ—?

ପୁରୁଷୋତ୍ତମ—ଅଦୋଷୀ ନୁହେଁ—ଅଦୋଷୀ ନୁହେ କେ ଗର୍ଦ୍ଦାଖୋର ( ଚିବୁକଧରି ହସିଦେଲେ )

କଲସ—କନକ !—କନକ !—( ବୋଲି କେଉଁ ବିରି ହୃଦୟରେ ସ୍ଥାନ ତ୍ୟାଗ କଲେ )

ବସନ୍ତ—ମହାରାଜ । ମୋ'ର—( ନିକଟକୁ ଆସି ସମ୍ମାନ ଦେଖାଇଲେ )

ପୁରୁଷୋତ୍ତମ—ଆଃ—ପୁଣି ସେହି 'ମହାରାଜ'·· ମୁଁ କ'ଣ 'ମହାରାଜ' ଭାବେ ଆସିଛି, ଭାଇ ?···ମୋର ପାତ୍ରମନ୍ତ୍ରୀ—ଛତ୍ରୀ ଚମର—ଯାନବାହାନ—ସୈନ୍ୟ ସାମନ୍ତ—କିଛି କ'ଣ ପାଖରେ ଦେଖୁଚ, ବନ୍ଧୁ ?—ମୁଁ ପରା ଅନିମନ୍ତ୍ରିତ ଅତିଥି ହୋଇ ଆସିଛି ଆଜି—ତୁମମାନଙ୍କର ମନ୍ଦିର-ଦ୍ୱାରେ— ମହୋତ୍ସବର ବାସନାଟା ପାଇ ?—ଦ୍ୱାର ଯଦି, ଦୟା କରି ନ ଖୋଲିବ—ଆପଣା କପାଳ ଠୁକି,ଲେଉଟି ଯିବି ସିନା ବାଟେ-ବାଟେ··· !

ବସନ୍ତ—ମୋ'ର ଅପରାଧ !—ମୋ'ର ଧୃଷ୍ଟତା ସିନା —ମୁଁ ଯଦି ଦମାକ୍ ନକରି,—ବଂଶ-ପରମ୍ପରାଟା ଯୋଡ଼ ଇ ନ ଥାନ୍ତି,—ଜଣାଇଥାନ୍ତି ପ୍ରଭୁଙ୍କଠାରେ,—ଗୁଣ୍ଡାପରେ—ଏତେ ସବୁପରା—

ପୁରୁଷୋତ୍ତମ—ଏ' ନାଟକର ପରିକଳ୍ପନାଟା ତେବେ ହୋଇଥାନ୍ତା କିପରି ଭଲ ?—ଭାଇ !—ଆମେ ପରା ନାଟୁଆ ନଟବରଙ୍କ ସେବକ ?—ଯେତିକି ନାଟ ସୁନ୍ଦର ଲଗାଇବାକୁ ସୁଖ ପା'ନ୍ତି ସିନା ସେହି ବଙ୍କାଠାକୁରେ—ଆପଣାର କ୍ରୀଡ଼ା-କିଙ୍କରଙ୍କଠାରେ ?

ନୀଳକଣ୍ଠ—ଗୋଟାଏ ଭାରି ଦୁଃଖ ରହିଗଲା ଯେ, ଏ ପୁଣ୍ୟ-ଧାମରେ ପୁଣ୍ୟ-ଉତ୍ସର୍ଗରେ ରହି ସୁଦ୍ଧା, ପିତା ମୋର ଶେଷ ନିଶ୍ୱାସ ଯାଏ, ଅବିଶ୍ୱାସ ବିଷରେ ଜା' ଜାର ହେଲେ !—

ପୁରୁଷୋତ୍ତମ—ସେହି ବିଷରେ ତ ପୁଣ୍ୟଧାମର ଅଧିକାରକୁ ସୁଦ୍ଧା କଳବଳ କରି ପକାଇଥିଲେ । ···—କିନ୍ତୁ, ବିଷ-ବୃକ୍ଷରେ ଯେ ଅମୃତ ଫଳେ,

ତା'ର ଜ୍ୱଳନ୍ତ ନିଦର୍ଶନ-ମୂର୍ତ୍ତି ଆଜି ଆଗେ ମୋ'ର ।

ନୀଳକଣ୍ଠ—ନା, ନା, ବୃକ୍ଷଟି ଯେ ଅନ୍ତରେ-ଅନ୍ତରେ ଅମୃତର ଭଣ୍ଡାର—ତା'ର ସନ୍ତାନ ମାନବ, ଭୁଲାଇରେ, ଏହି କ୍ଷୁଦ୍ର ଅପରିପକ୍ୱ ଫଳଟି ସିନା !

ବସନ୍ତ—ସତେ, ଭାଇ—କ୍ଷୀରର ଫଳ ଯଦି ବିଷ ହୋଇଥା'ନ୍ତା, ଜନକର ଦଶାଟା କ'ଣ ହୋଇଥା'ନ୍ତା କି ?

ପୁରୁଷୋତ୍ତମ—ତେବେ, ଏ' କଥା ଠିକ୍,—ଗୋଟାଏ ବଣୁଆ ଶବର ହାତରେ କେବେ ପଡ଼ି ନ ଥାନ୍ତା ? ...—ଭାଇ ! ମୁଁ ଗୋଟାଏ ଭାସ୍ୱ ଅଣ୍ଡା ବାନ୍ଧି ଆସିଥିଲି, ମୋତେ ଏ' ଭଳି ସାଧାରଣ ବେଶରେ ଦେଖି, ସମସ୍ତେ ଅବାକ୍ ହୋଇଯିବେ —କିନ୍ତୁ, ଗର୍ବ ମୋ'ର ଚୂର୍ଣ୍ଣ ହୋଇଛି—ମୁଁ ଉପଲବ୍ଧି କରୁଛି,—ଅଣୁମାତ୍ରାରେ ସୁଦ୍ଧା ମୁଁ କିଛି ବିସର୍ଜନ କରି ନାହିଁ—କରିବାକୁ କ୍ଷମ ସୁଦ୍ଧା ହୋଇ ନାହିଁ !—

ବସନ୍ତ—ମହାରାଜ !—...ନା, ନା, ଭାଇ !—ଏ' ଭଳି ସନ୍ନ୍ୟାସଧର୍ମାଚରଣ ଦେଖି ଆପଣଙ୍କର, ଆମେ ବରଂ ଦୁଃଖିତ—କାରଣ, ପ୍ରଜାପିତ-ଧର୍ମ-ନାୟକ ଆପଣଙ୍କର ତ 'ରୁଦ୍ରାକ୍ଷ'ବ୍ରତ ଧାରଣର କୌଣସି ପ୍ରୟୋଜନ ନାହିଁ ।

ପୁରୁଷୋତ୍ତମ—ଅଭିବ ପଢ଼ିଛି ବୋଲି, ଯେ 'ଆପଣଙ୍କ'ର କେବଳ ପ୍ରୟୋଜନ, ତା' ମୁଁ ମାନିବି କାହିଁକି ?—...'ବ୍ରତ', 'ବ୍ରତ' ହିସାବରେ,—ସବୁ କାଳରେ, ସବୁ ପରିସ୍ଥିତିରେ, ସମସ୍ତଙ୍କର ଗ୍ରହଣୀୟ ପାଳନୀୟ !—... ବରଂ ଧନୀ, ବଳୀ, ସୁଖୀ ଯେଉଁମାନେ, ସେହିମାନଙ୍କର ରୁକ୍ଷତା ସାଧନ, ତ୍ୟାଗ-ବ୍ରତ ପାଳନ, ସର୍ବାଦୌ କର୍ତ୍ତବ୍ୟ !—କାରଣ ସେହିମାନଙ୍କ ପକ୍ଷେ ଆଧ୍ୟାତ୍ମିକ ସଫଳତା ଲବ୍ଧ କରିବା ଯେତକ କଷ୍ଟସାଧ୍ୟ ସିନା ?—...ପ୍ରକୃତରେ ଭାଇ, ବାଣ୍ଡବିଜୟ-ଟୀକା ଯେଉଁ ଦିନେ ତୁମର ଶିରରୁ ଅପସାରିତ କରିବି ବୋଲି ପ୍ରସ୍ତାବ ହେଲା, ସେହି ଅବସରରେ,—ଯେତେ ଗର୍ବ ଅନୁଭବ କରି ନ ଥିଲି,—ଆଜି ତତୋଽଧିକ ଗର୍ବ ଅନୁଭବ କରୁଛି, ଏହି ବାଣ୍ଡ-ବିଜୟାଭିଯାନରେ, ତୁମର ତ୍ୟାଗାଦର୍ଶ ଦେଖି !...—ଆଜି ସେହି ବିଜୟ-ସ୍ତମ୍ଭର ଭିତ୍ତି ସ୍ଥାପନା ହେଉ, ଏହି ଶିବାଳୟରେ, ତୁମ ଦୁଇ ଭାଇଙ୍କ ମଧ୍ୟରେ ମିତ୍ରତା ସ୍ଥାପନରେ ! —ପରସ୍ପରର ଚିରନ୍ତନ ଭଞ୍ଜ-ଭୁଜଙ୍ଗଙ୍କ ମଧ୍ୟରେ, ମମତା ବନ୍ଧନରେ !—...ହଁ, ଦୁଇଟି 'ନିୟମପତ୍ର' ସ୍ୱାକ୍ଷର କରିବାକୁ ହେବ, ଉଭୟଙ୍କର ସମ୍ମତି ଥାଇ, ଏହି ସର୍ତ୍ତେ, ଯେ, କେବେ କାହାର ବଂଶରେ, ଉତ୍ତରାଧିକାରୀ ଅବଶେଷ ହେଲେ, ପରସ୍ପର ମଧ୍ୟରେ କେବଳ ଆଦାନ ପ୍ରଦାନ ଚାଲିବ !...—ଆସ, ଶୁଭସ୍ୟ ଶୀଘ୍ରଂ !—

କନକ—( ତା'ର ସେହି କଳସୀଟିରେ ଜଳ ନେଇ ପ୍ରବେଶ କଲେ ) ଅତିଥି ସତ୍କାରଟା ଆଗେ ସରୁ ! ( ଚରଣ ପ୍ରକ୍ଷାଳନ କରିବାକୁ ଗଲେ )

ପୁରୁଷୋତ୍ତମ—ଆଗେ ଯେଉଁମାନେ ଆସିଚନ୍ତି, ସେମାନଙ୍କର ସତ୍କାର—...

କନକ—ସେମାନେ ନିମନ୍ତ୍ରିତ ପରା ?—

ପୁରୁଷୋତ୍ତମ—( ହସି-ହସି )—ମୁଁ 'ଅନିମନ୍ତ୍ରିତ' ବୋଲି, ମୋ'ର ଆଗେ ହେବା ଦରକାର, ନା ?—...

କନକ—( ଗୋଡ଼ ଧୋଇ ଦେବାକୁ ଲାଗିଲେ )—

ପୁରୁଷୋତ୍ତମ—( ବାଧାଦେଇ ) ଦେଖେଁ-ଦେଖେଁ, ଏ' କେଉଁ କଳସୀଟି ?—ନୀଳକଣ୍ଠ !—ତୁମେ ମୁଁଳୁ ପାଇଲ କାହୁଁ ?

ନୀଳକଣ୍ଠ—( ହସି-ହସି ) ସ୍ୱର୍ଗୀୟ ଜନାର୍ଦ୍ଦନ ଭୁଜଙ୍ଗଙ୍କର, ଏ' ଭାରି ବିଶିଷ୍ଟ ଯୌତୁକ !—

ବସନ୍ତ—କୌତୁକଭରା କନ୍ଥ, ଭାରି, ଭାଇ !—

କଲସ—( ବାହାର ଅସି ) ଦେଖିତ,—ଖୋଲି, ନିଗାଡ଼ି ଦେଉନାହିଁ ସାଥି-ସାଥି ?—...ଭାଇ ! ଏହି କୁଳ-କଳସୀଟି, କିଶୋରୀ ଅମର ଭଗ୍ନି ଅଭିମାନରେ, ପାହାଡ଼ିଆ ଯମୁନା-ସୁଅରେ ଭସାଇ ଦେଇଥିଲେ ଯେ ଦିନେ—ଭାଗ୍ୟକୁ, ଏହି

ମୟୂର-ଚୂଳ, କିଶୋର-କାନ୍ଧ, ଖୁବ୍ ନାକବୁଡ଼ ହୋଇ ଉଡ଼ାଉଥିବ ଆଣି, ଗଉରକିଶୋରୀଙ୍କର ମାନଭଞ୍ଜନ କରିଥିଲେ, ଭାଗରେ ଦେଇ;— ଆହା !—କଳିଙ୍ଗିଣୀର କୁଳ ବି ଉଦ୍ଧାର କରିଥିଲେ !—

ପୁରୁଷୋତ୍ତମ—ଥଟ୍ଟା ନୁହେଁ, ଭଉଣି—ଏହି କଳସିଟି ସତେ ସତେ ଆମର କୁଳ-କଳସୀ—ଗ୍ରହ ଅମୂଲ୍ୟ-ନିଧି—ପିଉସୀଙ୍କ ମୋ'ର ଯୌତୁକ ଦିଆ ହୋଇଥିଲା—...ଏହି କଳସିଧାରିଣୀ ଆଉ କେହି ନୁହେ, ଗ୍ରହ—ନିଶ୍ଚେ ମୋ'ର ପିଉସୀ ଝିଅ ଭଉଣୀ ! ...( କନକକୁ ଉଠାଇ ମୁଣ୍ଡରେ ଆଘ୍ରାଣ କରିବାକୁ ଲାଗିଲେ )

ବସନ୍ତ—ଉଭାଙ୍କଠଁ ଶୁଣିଛି ମୁଁ—ଥରେ ରଥଯାତ୍ରା ବେଳେ, ଜଣେ ଶବରପ୍ରଜା, ଜଗନ୍ନାଥ ସଡ଼କରେ ମରି ପଡ଼ିଥିବା ଖୁବ୍ ଖାନ୍‌ଦାନିଆ ଘରର ମାଇପି ଲୋକଙ୍କୁ, ସଦ୍ୟଜାତ କୁନକୁ ଗୋଟେଇ ଆଣି, ବାବାଙ୍କୁ ଦେଇଥିଲା, ଏହି କଳସି ଭିତରେ ପୂରାଇ...!

କଳସ—( କନକ ପ୍ରତି) କି ଗୋ କଳସୀ-ସୁନ୍ଦରୀ ?—

କନକ—( ଲାଜରେ ମୁହଁ ଘୋଡ଼ାଇଲେ )

ପୁରୁଷୋତ୍ତମ—( କନକ ପ୍ରତି ) ତୁମେ କହୁନା—ନିଜେତ ଗ୍ରହ !—କଳସ ଲଟାମୂଳେ ଜନ୍ମ ବୋଲି,...

କନକ—...'କଳସ-ସୁନ୍ଦରୀ' ?...ହୋଃ ହୋଃ—

କଳସ—ଯାଃ—ତୁମର ସେହି ଖୁଣ୍ଟାଣିଆ ପ୍ରକୃତି ଆଉ ଛାଡ଼ିଲନାହିଁ,—ଏତେ ବୟସଟାଏ ହୋଇ ?—

ପୁରୁଷୋତ୍ତମ—ପ୍ରକୃତି ଛାଡ଼ି ପୁରୁଷକି କେବେ ରହିପାରେ ?—ତହିଁରେ ମୁଁ ତ ପୁରୁଷୋତ୍ତମ ।—

ବସନ୍ତ—ଗ୍ରହ !—ଦେଖିଲ, ଆମର ଏହି 'ଭୁଜଙ୍ଗ' ସନ୍ତକ ଉପରେ ମୁଁ ବସାଇ ଦେଇଛି କ'ଣ ?—

( ଆପଣାର ମୁଦିଟା ଦେଖାଇଲେ )

ପୁରୁଷୋତ୍ତମ—ହୋଃ ହୋଃ—'କଳସ' ଫଳିଟିଏ ନା କ'ଣ ?—

ନୀଳକଣ୍ଠ—( କନକର କାନେ କାନେ ) ଆମର ମୟୂର ସନ୍ତକର ଚୂଡ଼ା ଉପରେ, 'କଳସୀ'ଟିଏ ବସାଇଦେବା କି ?—

କନକ—ସହି ପାରିଲେତ ?—

କଳସ—ସମ୍ଭାଙ୍କର 'ଭୁଜଙ୍ଗ' ସାହା ହେବନାହିଁ ନା ?—ମିଶିବସିଲେଣି ସାପ, ମୟୂର ଯେତେ-ବେଳେ ?—

ପୁରୁଷୋତ୍ତମ—ଦୁଇ ଭଉଣୀଙ୍କର ଏମିତିକା ଝିଙ୍କା-ଓଟରେ ଯେ, ଗ୍ରହଙ୍କର ଗୋଡ଼ଧୂଆ ଡାମ ଫାଁଭ୍ !—

କନକ—( ଚରଣ ଧୋଇ ଦେବାକୁ ଲାଗିଲେ )

କଳସ—( ଆପଣା ଲୁଗାକାନିରେ ଗୋଡ଼ ମଞ୍ଜିବାକୁ ଲାଗିଲେ )

ପୁରୁଷୋତ୍ତମ - ଭଉଣୀରେ-ଭଉଣୀରେ ଏହିତ କାମ ?—ଏହିତ ଘର ବାନ୍ଧିବାର ଫିକର ? ଆପଣା ଆପଣା ଭିତରେ କାମଟା ଏହିଭଳି ଭାଗ ବାଣ୍ଟିଆ କରିନେବାରେ ?

ନୀଳକଣ୍ଠ ଓ ବସନ୍ତ—( ଅବନତ ହେବାକୁ ଯାଉଥିଲେ କେଉଁ ଭକ୍ତି ଭରେ )

ପୁରୁଷୋତ୍ତମ—ନା, ନା—ତୁମେ ଦୁହେଁ ଯେ ଦୁଇଗ୍ରହ ମୋ'ର—ଦୁଇ ବାହୁ—

ଭଜ-ଭୁଜଙ୍ଗ

---

# ଭୁବନେଶ୍ୱର

—ଐତିହ୍ୟ-ମୂଳକ-ନାଟକ—

# ଭୂମିକା

ସ୍ୱାଧୀନ ଉତ୍କଳର ନୂତନ ରାଜଧାନୀ ଆଜି ଭୁବନେଶ୍ୱରର ଶୈଳ-ଶଯ୍ୟାରେ ରଚିତ ଓ ପ୍ରତିଷ୍ଠିତ । ଏକଦିଗରେ ଖଣ୍ଡଗିରି ଉଦୟଗିରି, ଅନ୍ୟ ଦିଗରେ ଏକାମ୍ରକାନନର ଐତିହ୍ୟଧାରୀ ଲିଙ୍ଗରାଜ ମନ୍ଦିର— ଅର୍ଥାତ୍ ଅତୀତ ସ୍ୱାଧୀନ ଉତ୍କଳର ପୁରାତନ ରାଜଧାନୀ । ଆଜିର ସ୍ଥାପତ୍ୟର ନିଦର୍ଶନ ସ୍ୱରୂପ ନବ ନବ ପରିକଳ୍ପନାରୁ ରୂପାୟିତ କରି ବିବିଧ ଧରଣର ଅଟ୍ଟାଳିକାମାନ ନୂତନ ରାଜଧାନୀକୁ କରିଛି ବିମଣ୍ଡିତ । ପୁରାତନ ରାଜଧାନୀର ଭାସ୍କର୍ଯ୍ୟ ଓ ସ୍ଥପତି ଶିଳ୍ପ ହୁଏତ ନବ୍ୟ-ଭବ୍ୟ ଦୃଷ୍ଟିରେ ହୋଇଛି ମ୍ଳାନ । କର୍ମ-ଜୀବନର କୋଳାହଳ ମୁଖରିତ ନୂତନ ରାଜଧାନୀର ତୁଳନାରେ ମୂକ ସେହି ପୁରାତନ । ତାହାର ତାହାର ନିକଟରେ ବିରାଟ ଶ୍ମଶାନ ତୁଲ୍ୟ ପ୍ରତୀୟମାନ୍ ଅନ୍ତର୍ନିହିତ ପରିପ୍ରେକ୍ଷିରେ ଅଧୁନାତନ ଜୀବନ ଧାରାର ସାମୂହିକ ବିକାଶର ପ୍ରାଣ-କେନ୍ଦ୍ର, ଏହି ନୂତନ ରାଜଧାନୀ । ନୂତନ ପ୍ରେରଣାରେ ରାଜ୍ୟବାସୀଙ୍କୁ କରିଚି ଉଦ୍‌ବୋଧିତ ।...ଦେଶ ବିଦେଶରୁ ନାନା ପର୍ଯ୍ୟଟକ ଏଠାରେ ହେଉଛନ୍ତି ଲୁଣ୍ଠ—ସେଥିରେ ଆମେ ବିଶ୍ୱବାସୀ, ଏହି ଗର୍ବରେ ସେମାନଙ୍କର ସାନ୍ନିଧ୍ୟକୁ କରୁଁଛେ ଅଭିନନ୍ଦିତ ତଥା ସେମାନଙ୍କର କଳା-କୃଷ୍ଟି, ସଂସ୍କୃତି, ଶିକ୍ଷା, ଦୀକ୍ଷା, ଦୈବାନୁଗ୍ରହ ତୁଲ୍ୟ ଦୃଷ୍ଟି ମନରେ ଗ୍ରହଣ କରୁଥାଏଁ । ଯଦି କୌଣସି ଟୁରିଷ୍ଟ (ପର୍ଯ୍ୟଟକ) ଉତ୍କଳର ଐତିହ୍ୟ-ଗତ ସ୍ୱକୀୟତା ଓ ଜାତୀୟତା ସୂଚକ କଳାଶିଳ୍ପ ସମ୍ବନ୍ଧରେ ଆଗ୍ରହ ପ୍ରକାଶ କଲ୍, ତେବେ ତା'କୁ ପରିତୃପ୍ତ କରିବାର ଚେଷ୍ଟା କରିଥାଉଁ କେତେକ ଭାସ୍କର୍ଯ୍ୟ-ଶିଳ୍ପର ଖଣ୍ଡ ନମୁନା ଓ ସ୍ମୃତି ବନକ-ଶୋଭା ଦେଖାଇ ମାତ୍ର । ଇତିହାସ ଜାଣିବାକୁ ଚାହିଁଲେ, ଆମେ ହୋଇଯାଉଁ ବିମୂଢ଼ । ନିଜର ଇତିହାସ ନିଜେ ଜାଣିଲେତ କହିବୁଁ । ତେବେ କେତେକ କିମ୍ବଦନ୍ତୀର ଆଶ୍ରୟ ନେଇ, ସେହି ଟୁରିଷ୍ଟକୁ ଯାହା କହିଥାଉଁ ସେଥିରେ ସେ ଆମର ଜାତୀୟ-ଚେତନାର ଗଭୀରତା ମାପିନେଇ, ମେଲାଣି ଗ୍ରହଣ କରିଥାଏ । ଏଥିରେ କ'ଣ ଆମର ବିବେକ ଲଜ୍ଜିତ ହୋଇ ନ ଥାଏ ?

ହୁଏତ ଆମେ ଲଜ୍ଜିତ ହୋଇଛୁଁ କିନ୍ତୁ ସେ ଲଜ୍ଜାର କିଛିହିଁ ମୂଲ୍ୟ ନାହିଁ । ଆମେ କର୍ତ୍ତୃତ୍ୱାଭିମାନୀ, ପ୍ରଗତିଶୀଳ, ଏହି ଭଙ୍ଗା ଭାସ୍କର୍ଯ୍ୟ-ଶିଳ୍ପଗୁଡ଼ିକ ଆହୁରି ଭାଙ୍ଗି ଚୂର୍ଣ୍ଣ ଧୂଳିକଣାରେ ମିଶିଯିବ । ଏ' କଳାର ମୂଲ୍ୟାୟନ କ'ଣ ? କିନ୍ତୁ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଜାଣେ ଏଥିର ପ୍ରକୃତ ମୂଲ୍ୟ; ସେଥିପାଇଁ ରେଣୁ-ରେଣୁ ଧୂଳି ନେଇ ଯାଇ ଗବେଷଣାଗାରରେ ପରୀକ୍ଷା କରି ଦେଖୁଚି, ଆଜି ଆମେ ସଭ୍ୟ ବୋଲାଉ ଥାଏଁ, କିନ୍ତୁ ଏଥିରେ ମୂଳ-ବୀଜ ନିହିତ ରହିଚି ଯେଉଁ ଆଦିମତା ବର୍ବରତା ଅସଭ୍ୟତାରେ, ତାହାହିଁ ସେ ସମ୍ୟକ ଜାଣିବାକୁ, ଉପଲବ୍ଧି କରିବାକୁ ଉଦ୍‌ଗ୍ରୀବ । ନଦୀ ଯେତେ ସ୍ରୋତସ୍ୱତୀ ଓ ପ୍ରଖରପ୍ରବାହିନୀ ହେଉ, ତା'ର ମୂଳଉତ୍ସ ଯଦି କ୍ଷୟିଷ୍ଣୁଶୀଳ ନ ଥାଏ, ଦିନେ ନା ଦିନେ ନଦୀ ଶୁଖିଯାଇ ମରୁ ମରୀଚିକା ମଧ୍ୟରେ କାହିଁ ହଜିଯିବ । ଆଜିର ଜ୍ଞାନ-ବିଜ୍ଞାନ ଯୁଗରେ ମାନବ-ଜୀବନଧାରାର ଏହି ମୂଳତତ୍ତ୍ୱ ଉପଲବ୍ଧି କରିଛି, ସେହି କାରଣରୁ ମାନବ-ସମାଜର ଅନୁସନ୍ଧାନ ଓ ଗବେଷଣା-ବେଷଣରେ ଏତେ ଯତ୍ନଶୀଳ ।

ଆମେ ଯେଉଁ ଶିଳ୍ପ-ପ୍ରତିଭାର ଅଧୁନା ଗର୍ବ କରୁଥାଏଁ, ଯେଉଁ ଶିକ୍ଷା-ଦୀକ୍ଷା, କୃଷ୍ଟି-ସଂସ୍କୃତି, ଜ୍ଞାନ-ବିଜ୍ଞାନର ଗାରିମା ଦେଖି ବାହାସ୍ଫୋଟ ମାରୁଥାଏଁ,

ତା'ର ସତ୍ତା କେଉଁଠି, ତାହାକୁ ଆଶ୍ରୟକରି ଏଥିର ବିକାଶ, ପରିପ୍ରକାଶ, ସେହି ସୃଷ୍ଟି ବା ମୂଳତତ୍ତ୍ୱ ବିଷୟରେ ସମ୍ପୂର୍ଣ୍ଣ ଚେତନଶୀଳ ହେବା କ'ଣ ଆମର ଭବିତବ୍ୟ ନୁହେଁ ? ଆଶାକରେ, କେହି ଏହା ଅସ୍ୱୀକାର କରିବ ନାହିଁ ।

ଯଦି ଏହା ଅବିସମ୍ବାଦିତ ସତ୍ୟ ହୁଏ, ତେବେ ପୁରାଣ, ଉପପୁରାଣ ଆଦିକୁ କଦାପି ଉପେକ୍ଷା କରି ପାରିବୁ ନାହିଁ । ହୁଏତ ଏହି ଶାସ୍ତ୍ର ଗୁଡ଼ିକ ଭିତରେ ବହୁ କଳ୍ପନା-ବିଳାସ ଥାଇପାରେ, କିନ୍ତୁ ବାସ୍ତବ-ଦର୍ଶନରୁ ଉଦ୍ଭୂତ ହୋଇଛି ସ୍ୱପ୍ନ-ଦର୍ଶନ, ଏବଂ ସେହି ସ୍ୱପ୍ନ-ଦର୍ଶନ ରୂପାନ୍ତରିତ ହୋଇଛି କଳାର ବାସ୍ତବ-ଶିଳ୍ପରେ । ହୁଏତ ସାଧାରଣ ଚକ୍ଷୁରେ ସେହି ଶିଳ୍ପ-ଗୁଡ଼ିକ କିମ୍ଭୂତ କିମାକାର ମନେ ହୋଇ ପାରେ, କିନ୍ତୁ ପ୍ରକୃତ-ଶିଳ୍ପୀର ଅନ୍ତର୍ଭେଦୀ ଦୃଷ୍ଟି ସମକ୍ଷରେ ସେଗୁଡ଼ିକ ତାତ୍ପର୍ଯ୍ୟ-ପୂର୍ଣ୍ଣ, ମହା-କାବ୍ୟ ଓ ଜୀବନ-ଧର୍ମୀ ।

ସୁପ୍ରସିଦ୍ଧ ଔପନ୍ୟାସିକ ମିସେସ୍ ପର୍ଲବକ୍ ସମ୍ପ୍ରତି ଭାରତ ଭ୍ରମଣରେ ଆସିଛନ୍ତି ।...ଉଦ୍ଦେଶ୍ୟ, ତିବ୍ବତ ଶରଣାର୍ଥୀଙ୍କ ସଙ୍ଗେ ମିଶି ସେମାନଙ୍କର ସୁଖ-ଦୁଃଖ, ଆଶା-ଆକାଙ୍‌କ୍ଷାର ଗୋଟିଏ ସାକ୍ଷାତ୍ ତାଥ୍ୟିକ ଚିତ୍ର ଗ୍ରହଣ କରିବେ, ଏବଂ ଉପାଦାନ ସଂଗୃହୀତ ହେବ, ତାକୁଇ ମୂଳଧନ କରି କେତେକ ଛୋଟ ଛୋଟ ଗଳ୍ପ ସେ ଲେଖିବେ । ଅତଏବ ସାରବାନ୍ ( Substantial ) କିଛି ଲେଖିବା ଆଗରୁ ଲେଖକ, ବା ଲେଖିକା ପକ୍ଷେ ତଥ୍ୟ-ସଂଗ୍ରହ ସର୍ବାଦୌ କାମ୍ୟ ଓ କରଣୀୟ ।...

ଏହି ସମୟରେ କେତେକ ସାମ୍ବାଦିକ ତାଙ୍କୁ ଭେଟିଥିଲେ ଓ ଆଧୁନିକ ଲେଖକ ସମକ୍ଷରେ ସମସ୍ୟା କ'ଣ, ସେ ବିଷୟରେ ଏକ ପ୍ରଶ୍ନ ପଚାରିଥିଲେ । ତାଙ୍କର ଉତ୍ତରଟି ଅତ୍ୟନ୍ତ ମନୋଜ୍ଞ ଓ ତାତ୍ପର୍ଯ୍ୟ ପୂର୍ଣ୍ଣ ଥିଲା । ସେ କହିଥିଲେ, ବସ୍ତୁ-ବିଜ୍ଞାନ ଏତେ ଦ୍ରୁତଗତିରେ ଆଗେଇ ଚାଲିଛି ଯେ, ବସ୍ତୁ-ଜଗତର ପରିବର୍ତ୍ତନଶୀଳତା ଅତ୍ୟନ୍ତ ଦ୍ରୁତସମ୍ପନ୍ନ ପରିଲକ୍ଷିତ ହେଉଛି; ସୁତରାଂ କୌଣସି ବିଜ୍ଞାନ ସମ୍ବନ୍ଧ ବିଷୟକୁ ଉପଜୀବ୍ୟ କରି ଲେଖିବା ବେଳକୁ ସେଥିର ଯେଉଁ ପରିପକ୍ୱ ଧାରଣା ଆବଶ୍ୟକ, ତାହା ଆଦୌ ସମ୍ଭବ ନୁହେଁ, କାରଣ ସେପରି ବିଷୟ ଏକାବେଳେ ବ୍ୟବହାର ଶୂନ୍ୟ ( obsolete ) ହୋଇ ପଡ଼ୁଛି । ଏହି କାରଣରୁ, 'ବ୍ରଡ୍‌ୱେର' ଥିଏଟରମାନ ପ୍ରମାଦର ସମ୍ମୁଖୀନ ହୋଇଛନ୍ତି । ଲେଖକମାନେ ଗୋଟା ଏ ପ୍ରତ୍ୟାବର୍ତ୍ତନର ମନୋବୃତ୍ତି ( a sense of retreat ) ଧାରଣା କରିବାର ଦେଖାଯାଉଛି । ଏହା ଅତି ଖାଣ୍ଟି ସତ୍ୟ । ଲେଖକ ମାତ୍ରକେ ଏଥିର ମର୍ମ ମର୍ମେ-ମର୍ମେ ଅନୁଭବ କରିବେ ।

ବାସ୍ତବ-ଦୁନିଆର କଥା ଛାଡ଼ିଦିଆଯାଉ, ଆମର ନୂତନ ରାଜଧାନୀର କଥାହିଁ ଧରାଯାଉ... ( ଅସମାପ୍ତ )

× × ×

ଏହିଠାରେହିଁ ଲେଖା ରହିଯାଇଛି ଅସମାପ୍ତ । ଯାହା ବ୍ୟକ୍ତ କରିବାର ଥିଲା, ନାଟ୍ୟକାର ଅଶ୍ୱିନୀକୁମାର ତାହା ସମ୍ପୂର୍ଣ୍ଣ କରିବାର ଅବକାଶ ପାଇପାରିଲେ ନାହିଁ । ମାତ୍ର ଭୂମିକାଟି ସମ୍ପୂର୍ଣ୍ଣ କରିବାର ଦୁର୍ବାର ଆକାଂକ୍ଷା ଜଣାପଡ଼ୁଥିଲା ସେହିଦିନ ଯେଉଁଦିନ ତାଙ୍କୁ ଓଡ଼ିଶାର ଶ୍ରେଷ୍ଠ ନାଟ୍ୟ-ସ୍ରଷ୍ଟା ରୂପେ 'ମଞ୍ଚଶ୍ରୀ' ଉପାଧିରେ ଭୂଷିତ କରାଯାଇଥିଲା । ଶରୀରର ଅସୁସ୍ଥତା ହେତୁ ସମ୍ମିଳନୀରେ ଯୋଗ ଦେଇ ନ ପାରିବାରୁ ଅନୁଷ୍ଠାନର କର୍ମକର୍ତ୍ତାଗଣ ତାଙ୍କର ବାସଭବନକୁ ଆସି ତାଙ୍କୁ ଯଥାରୀତି ଅଭିନନ୍ଦିତ କରିବାରୁ ସେ ଆନନ୍ଦରେ ଅଭିଭୂତ ହୋଇ ପଡ଼ିଥିଲେ । ଶରୀରର ସମସ୍ତ ଗ୍ଲାନି ଯେପରି ମୁହୂର୍ତ୍ତକ ଭିତରେ ଅନ୍ତର୍ହିତ ହୋଇଯାଇଥିଲା । କର୍ମକର୍ତ୍ତାମାନଙ୍କ ମଧ୍ୟରୁ ପ୍ରଶ୍ନହେବାରୁ, ସେ 'ଭୁବନେଶ୍ୱର' ତାଙ୍କର ଶେଷ ନାଟ୍ୟ-ରଚନା ବୋଲି ପ୍ରକାଶ କରିଥିଲେ । ଆହୁରି କହିଥିଲେ ଯେ, 'ଭୁବନେଶ୍ୱର'କୁ ରାଜଧାନୀ କରିବାରେ ଜନ ବିଶେଷଙ୍କ କୃତିତ୍ୱ ଓ ସାଧନା ରହିଛି କହିଲେ ଠିକ୍ ହେବ ନାହିଁ କାରଣ ଏହା ମୂଳରେ ରହିଛି ଅତୀତର ବିରାଟ ଐତିହ୍ୟ-ମଣ୍ଡିତ ପରିକଳ୍ପନାର ଇଙ୍ଗିତ

ବା ନିର୍ଦ୍ଦେଶ । 'ରାଜଧାନୀ' ଅନ୍ୟ କେଉଁଠାରେ ହେବା ଅସମ୍ଭବ ଥିଲା । ତାଙ୍କର ଏହି ଧାରଣାକୁ ସେ 'ଭୁବନେଶ୍ୱର' ନାଟକରେ ପ୍ରତିପାଦିତ କରିଛନ୍ତି ଏବଂ ପାଠକଙ୍କୁ ଅଧିକ ସରଳ ଭାବେ ବୁଝାଇବା ପାଇଁ ଏହି ଅଗ୍ରଲେଖାର ପ୍ରୟୋଜନ ବୋଧ କରିଥିଲେ । ମାତ୍ର ତାହା ସମ୍ଭବ ହୋଇ ପାରିଲା ନାହିଁ ।

୧୯୬୨ ଏପ୍ରିଲ୍ ତା ୧୫ ରିଖରେ 'ମଞ୍ଚଶ୍ରୀ' ଉପାଧିଭୂଷିତ ହେବା ପରେ ପରେ ତାଙ୍କର ଅସୁସ୍ଥତା ବଢ଼ିଉଠେ ଏବଂ ତାଙ୍କୁ ତା ୨୪ ରିଖ ସକାଳେ ହାସପାତାଲକୁ ସ୍ଥାନାନ୍ତରିତ କରାଯାଏ । ସେଠାରେ ମଧ୍ୟ ଅବସ୍ଥାର ଖୁବ ଅବନତ ଘଟେ । ମେ ମାସ ୧୯ ତାରିଖ ସକାଳ ଘ ୬-୧୫ ମିନିଟରେ ସେ ତାଙ୍କର ପରିବାର, ଆତ୍ମୀୟ ସ୍ୱଜନ, ଛାତ୍ର-ଛାତ୍ରୀ ଓ ଅଗଣିତ ପାଠକ ପାଠିକାଙ୍କୁ ଶୋକାଭିଭୂତ କରି ଚିରବିଶ୍ରାମ ପାଇଁ ଇହଧାମରୁ ବିଦାୟ ନିଅନ୍ତି ।

ଓଡ଼ିଶାର ଯୁଗ-ସ୍ରଷ୍ଟା-ନାଟ୍ୟକାରଙ୍କର କଲମ ମୂନରୁ ଆଉ ନାଟ୍ୟ-ସୃଷ୍ଟି ହେବନାହିଁ—ଭାବିଲା ବେଳକୁ ଅଶ୍ରୁ ସମ୍ବରଣ ସମ୍ଭବ ହୁଏନା । ଓଡ଼ିଆ ନାଟ୍ୟ-ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କର ଦାନ ଚିରଦିନ ଓଡ଼ିଶାବାସୀଙ୍କ ସ୍ମରଣୀୟ ହୋଇ ରହିବ ।

କଟକ
ମେ ୧୯୬୨

ବିନୀତ
ପ୍ରକାଶକ

# ଉତ୍ସର୍ଗ

ମୋର ଜନ୍ମଭୂମିର ସ୍ମରଣେ—

ଅଶ୍ୱିନୀ

## — ଚରିତ୍ର ଲିପି —

### — ଶିବ —

ଯଯାତି—ଉତ୍କଳାଧିପତି
ବିଚକ୍ଷଣ—ଉତ୍କଳ ରାଜ-ମନ୍ତ୍ରୀ
ବାହୁବଳୀନ୍ଦ୍ର—ଉତ୍କଳ ରାଜ-ସେନାପତି
କାଶିରାଜ—କାଶୀ—ବାରାଣସୀର ରାଜା
ଲିଙ୍ଗରାଜ—ବାରାଣସୀ ରାଜ-ପୁତ୍ର
ଶିଳ୍ପୀ—ଏକାମ୍ରର ବୃଦ୍ଧ-ଶିଳ୍ପୀ
ହରପଣ୍ଡା—ଛଦ୍ମବେଶୀ ଅନନ୍ତ ବାସୁଦେବ
ମଦନ, ପୂଜାପଣ୍ଡା, ଶିଳ୍ପୀଗଣ, ପାଇକଗଣ, କାର୍ତ୍ତିଉଦାସ
ଇତ୍ୟାଦି

### — ପାର୍ବତୀ —

ଭୁବନେଶ୍ୱରୀ—ଏକାମ୍ର ଦେବତା
ରାଣୀ—ଯଯାତି-ପତ୍ନୀ
ଗୌରୀ—ଯଯାତି-କନ୍ୟା
ରତି—ମଦନ-ପତ୍ନୀ
ସୌରୀ—ଗୌରୀର ସହଚରୀ
ଅନ୍ୟାନ୍ୟ ସହଚରୀ ଗଣ, ଇତ୍ୟାଦି ।

# ଭୁବନେଶ୍ୱର

—ଏକ—

## ଆବାହନ

[ ଯବନିକା ଅପସାରିତ ହେଲା ଅସ୍ପଷ୍ଟାଲୋକରେ ଝାପ୍‌ସା ଦେଖାଗଲା ତିନିଗୋଟି ପାହାଡ଼ର ଦୃଶ୍ୟ—ଖଣ୍ଡଗିରି, ଉଦୟଗିରି ଓ ଧଉଳି। ସେହି ଲୁହେଲିକା ଭେଦ କରି ଦରଦୀ-କଣ୍ଠରେ ଭାସି ଆସୁଥାଏ ସଙ୍ଗୀତଟିଏ ଏହିପରି—]

—ଗୀତ—

କଥା କୁହ, କଥା କୁହ···—ହେ ମୂକ ପାଷାଣ।
ସେହି ଶିଳ୍ପୀ-କଥା, ଯା'ର ଏ ଶିଳ୍ପ- ଭିଆଣ॥
ଯେତେ କଥା ଲେଖିଛି ସେ
ଏ ପାଷାଣ ଫଳକେ
ସୂକ୍ଷ୍ମଭାବେ ବହୁ, ସୂକ୍ଷ୍ମ-ଲେଖନୀ-ବଦନକେ,
ତା'ର ମର୍ମ-କଥା,—କାତରପ୍ରାଣ କଥା
ଶୁଣାଅ, ଚେତାଅ ଜାତି;—ନିର୍ଜୀବ-ପାଷାଣ॥

[ ସଙ୍ଗୀତାନୁକ୍ରମରେ, ଆଲୋକ ସ୍ପଷ୍ଟ, ସ୍ପଷ୍ଟତର ହେବାକୁ ଲାଗିଲା ଏବଂ ଦେଖାଗଲା ଏଥର—ପର୍ବତମାଳାର ସାନୁ-ଦେଶରେ ଠିଆ ହୋଇଛି ବୃଦ୍ଧ ଶିଳ୍ପୀଟିଏ—ପ୍ରସ୍ତରବତ୍ ଅନିମେଷ ଦୃଷ୍ଟିରେ ଚାହିଁ ରହିଛି ସେହି ପର୍ବତମାଳା ଆଡ଼କୁ—]

ଅବାହକ—( ରଙ୍ଗମଞ୍ଚର ଏକ ପାର୍ଶ୍ୱରେ ଠିଆ ହୋଇ, ଶିଳ୍ପୀର ମୂକଭାବକୁ ଭାଷା ଦେଇ ଏହିପରି, ··· ଖଣ୍ଡଗିରି, ··· ଉଦୟଗିରି ··· ଧଉଳି।··· ଏହି ଖଣ୍ଡଗିରି···ତିନିଗୋଟି ଗୁମ୍ଫା ଦ୍ୱାର,···ପ୍ରତିଟିରେ ଋଷଭ-ଦେବ, ଅଜିତ-ଦେବ, ସମ୍ଭବ-ନାଥ,—ଏହିପରି ନାନା ନାମରେ ନାନା ମୂର୍ତ୍ତି ଖୋଦିତ···ଏସବୁଦିକୁ ବଳି ବୌଦ୍ଧ ଓ ଜୈନ ଧର୍ମର ଯେଉଁ ମୂଳ-ମନ୍ତ୍ର ଅହିଂସା, ସେଇଥିରେ ଯେପରି ପ୍ରତ୍ୟେକଟି ପ୍ରାଣବନ୍ତ···ଶିଳ୍ପୀ-ପ୍ରାଣରେ ଖଣ୍ଡଗିରିର ଏହି ଅଖଣ୍ଡ-ପ୍ରଭାବ ଅକଳନ୍ତ···ଧଉଳି।—ସିଂହଳ-ପ୍ରୟାଣବାଟରେ ବୁଦ୍ଧଦେବଙ୍କ ବୁଦ୍ଧ-ଦାନ୍ତ ଯାଇ ପଥଶ୍ରମବଶରେ ବିଶ୍ରାମ ଲାଭ କରିଥିଲା ଦିନେ···ସେଥିପାଇଁ ଧଉଳି ସଦା ପୁଣ୍ୟବନ୍ତ··· ଫଳରେ, ଶିଳ୍ପୀ-ମନର ଶିଳ୍ପ-ଫଳକରେ ତାହା ଫଳିତ ପୁଣ୍ୟ-ତୀର୍ଥ ସିନା।···(କିଛିକ୍ଷଣ ବିସ୍ମୟ-ସ୍ତବ୍ଧ ହୋଇ ରହିଲେ, ତା'ପରେ କହିବାକୁ ଲାଗିଲେ—) ଉଦୟଗିରି।··· ଅରୁଣୋଦୟର ପ୍ରଥମ-ରଶ୍ମି-ସ୍ନାତ ଉଦୟାଚଳ ସେ··· ଉତ୍କଳୀୟ ଶିଳ୍ପ କଳା-ବିକାଶର ଆଦ୍ୟପୀଠ।··· ଏହି ଭବ୍ୟ-ସ୍ତୁତିର ମଧୁମୟ ଗୁଞ୍ଜନ ଅଦ୍ୟାପି ନବ-ନବ ମନୋରଞ୍ଜନରେ ଶିଳ୍ପୀର ହୃଦୟକନ୍ଦର ସ୍ପନ୍ଦିତ କରୁଛି···ସେଥିପାଇଁ ଶିଳ୍ପୀ ବ୍ୟଗ୍ର, ଉଚ୍ଛଳ···ଶିଳ୍ପୀ ଉନ୍ମାଦ······।।

[ ଉନ୍ମାଦ ପରି ଶିଳ୍ପୀ ଧାଇଁ ଆସିଲା ସେହି ସ୍ଥାନକୁ ଯେଉଁଠାରେ ସେ ମଦନର ଭାସ୍କରମୂର୍ତ୍ତି ଗଢ଼ି ଠିଆ କରିଥିଲା; ଗଦ ଗଦ ଭାବରେ ମୂର୍ତ୍ତିକୁ ଅନାଇ ରହିଲା, ଓ ସେହି ଭାବରେ ଶିଳାୟିତ ହୋଇ ନିଜେ ଶିଳା-ମୂର୍ତ୍ତି ପାଲଟି ଗଲା ଯେପରି ]

ଅବାହକ—( ଶିଳ୍ପୀର ସେହି ଭାବକୁ ଭାଷା ଦେଇ ଏହିପରି—) ଶିଳ୍ପୀମାନେ ବଂଶ ପରମ୍ପରା ଯେଉଁ ଶିଳ୍ପ-ଶକ୍ତିକୁ ରୂପରେଖ ଦେଇ ଶିଳ୍ପର ହାଟ ବସାଇ ଯାଇଛନ୍ତି ଏହି ଏକାମ୍ରକାନନରେ, ସେହି ପୂର୍ବ-ସୁରଙ୍ଗ ଶକ୍ତି-ଧାରା ଅକ୍ଷୁର୍ଣ୍ଣ ରହିବ, ଏଥିପାଇଁ ଶିଳ୍ପ-ଅରାଧନାରେ ବ୍ୟସ୍ତ ଏହି କଉର-

ସାଧକଟି । ହାୟ, ଅଜ୍ଞ ଶିଳ୍ପୀମାନେ ଅଜ୍ଞ ଶିଳ୍ପୀ ହୋଇ ନାହାନ୍ତି, କାରଣ ଶିଳ୍ପର ଆଦର ନାହିଁ, ଶିଳ୍ପର ପ୍ରାଣ କେହି ବୁଝନ୍ତି ନାହିଁ । ସେମାନେ ଶିଳ୍ପଚର୍ଚ୍ଚା ଛାଡ଼ି, ପେଟ ଜାଳରେ କିଏ ଆଜି କେଉଁଠି ଦୂର ବିଦେଶରେ ମୋଟ ବୋହୁଛି କିଏ ସ୍ୱଦେଶରେ ପଡ଼ିରହି ମାଟି ତାଡ଼ୁଛି—କିଏ ବା ଯୋଗୀ-ଭିକାରି ସାଜି ଭିକ ମୁଠାକ ଲାଗି ବାରଦ୍ୱାରି ।···ମାତ୍ର, ଆମର ଏହି ଶିଳ୍ପୀଟି ଭୋକ ଶୋଷ ଭୁଲି, ଘରଦ୍ୱାର-ଗୋଷ୍ଠି-ସମାଜ ଛାଡ଼ି, ଝଡ଼-ଝଞ୍ଜାର ମାଡ଼କୁ ଖାତିର ନ କରି, ପଡ଼ି ରହିଛି ଏକନ୍ତ ଭାବେ ଏହି ଶିଳ୍ପ-ମେଳାର ପରିବେଶକୁ ଆଶ୍ରୟ କରି ।—ଯାର ଅର୍ଥ ?—ଅସ୍ମ-ବନମୟର ଅବିଚ୍ଛିନ୍ନ ସାଧନା ପ୍ରବାହରେ ସେ ବଞ୍ଚାଇ ରଖିଛି ଅସ୍ମ-ଗୋଷ୍ଠି ଶିଳ୍ପ ସାଧକ ଶିଳ୍ପୀ-ଜାତିର ଶିଳ୍ପଧାରା । ସେ ଗଢ଼ିଛି ତା'ର ନିଖୁଣ ଯତ୍ନ ମନନରେ ମଦନର ମୂର୍ତ୍ତିଟିଏ··· ତା'ର କାରଣ ମଦନ ଆଜି ଭସ୍ମୀଭୂତ, ସେଥିପାଇଁ ସେ ହୋଇଛି ଶିଳ୍ପୀର ରହସ୍ୟଭରା କଳ୍ପନା-ବସ୍ତୁ···ଅରୂପ, ଅରୂପକୁ ରୂପଦେବାର ପ୍ରବୃତ୍ତି ଶିଳ୍ପୀର ଗୋଟାଏ ସହଜାତ ଧର୍ମ । ଦେଖ, ଦେଖ—କି ଉତ୍କଣ୍ଠା ଶିଳ୍ପୀର······ କି ବ୍ୟାକୁଳ ସେ······ । ( ନିଜେ ଯେମିତି ଅସହଣି ହୋଇ ଭୁଲିଗଲେ )

ଶିଳ୍ପୀ—( ଗଦ ଗଦ କଣ୍ଠରେ ) କଥା କହ, କହ, ରତିପତି-ମଦନ···

[ ଠିକ୍ ସେହି ସମୟରେ ଅଦୂରେ ବାଦ୍ୟଧ୍ୱନି ଶୁଣାଗଲା···ଧାଇଁ ଆସିଲା ଶିଳ୍ପୀ-ବାଳକଟିଏ··· ତା'ର ନାମ ଶିଳ୍ପୀ ରଖିଛି, 'ରତି' । ]

ରତି—ପାଷାଣ ତୁମର କଥା କହୁଛି ବାପା···

ଶିଳ୍ପୀ—କହୁଛି ?······କେତେବେଳେ ? କେଉଁଠି, ରତି ?··· [ ନେପଥ୍ୟେ ବାଦ୍ୟ ଧ୍ୱନି ]

ରତି—ଏହି ଶୁଣୁ ନ ଧ୍ୱନି ?

ଶିଳ୍ପୀ—ହାଃ-ହାଃ-ହାଃ ( ଅଟ୍ଟହାସ୍ୟ କରି ଉଠିଲା )

ରତି—( ଗମ୍ଭୀର ସ୍ୱରରେ ) ସେୟ ଯେ-ସେ ଧ୍ୱନି ନୁହଁ, ବାପା—ଡାହାଳୀ, ତୁରୀ, ଭେରୀ, ପଖାଉଜ ଆଦିର କେତେ କ'ଣ ବାଜାର ମିଶ୍ରଧ୍ୱନି··· ମଣିମା ବିଜେ କରୁଛନ୍ତି···।

ଶିଳ୍ପୀ—ମଣିମା ବିଜେ କରୁଛନ୍ତି ତାଙ୍କର ଉଦ୍ଦେଶ ଯେନ, ରାଜ୍ୟ-ଅଭିଯାନରେ···ସେଥିରେ ମୋର କ'ଣ ? ମନ ରଖାକୁ ହୁଏତ ଶଙ୍ଖାଣୀ-ବସ୍ତିରେ ଥରେ ପାଦ ପକେଇବେ—ଶଙ୍ଖାଣୀକୁଳ ଶଙ୍ଖାଣ ଦ୍ରବ୍ୟ ତ ନୁହେଁ, ଲାଭ, ଭଖାରୁ ପରିବା ଆଣି ଭେଟି ଚଢ଼ାଇବେ ଆପଣା ପେଟ ପାଟଣା କଥା ଜଣା କରାଇବେ—ରାଜା ହସି ହସି ଗୁହାରିର ବ୍ୟବସ୍ଥା କରିବେ ବୋଲି ପ୍ରତିଶ୍ରୁତି ଦେବେ—ବାଟ କାଟିବେ—ସେଥିରେ ଶିଳ୍ପୀର କ'ଣ ?

ରତି—କିଛିନାହିଁ ? ଏଥିରେ ଶଙ୍ଖାଣୀ-କୁଳର ମାନ ମହତ ରହିବ ତ ?

ଶିଳ୍ପୀ—'ମାନ-ମହତ' ! ହାଃ···ହାଃ···ହାଃ···

ରତି—ହସିବନି, ବାପା···ଯେଉଁ ଶଙ୍ଖାଣୀମାନେ କୁଳବେଉସାକୁ ନିନ୍ଦି, ପର ଧନ୍ଦାରେ ମାତି ରହିଥିଲେ ଏତେକାଳ, ସେମାନଙ୍କ ଭିତରେ ଗୋଟାଏ ଭ୍ରଲେଣି ପଡ଼ିଯାଇଛି ଅଇଚ୍ଛା ।

ଶିଳ୍ପୀ—ଭ୍ରଲେଣି ?

ରତି—ସଭିଏ କହୁଚନ୍ତି,—ଆମେ ଶଙ୍ଖାଣୀ—ଆମେ ଶିଳ୍ପୀ—ଆମର ଏ' ଜାତୀୟାଣ ପରିଚୟ ମଣିମାଙ୍କୁ କି ସୂତ୍ରରେ ଜଣା କରାଇବା···ଖାଲି ହାଁ' ବା ସାଙ୍ଗିଆ ଛଡ଼ା ତ କାମର ନମୁନା ଆମର କିଛି ନାହିଁ ?

ଶିଳ୍ପୀ—କ'ମଣର ମଦନ ।···

[ ମଦନ ମୂର୍ତ୍ତି ପ୍ରତି ଚାହିଁ ରହିଲେ ଏକ ଭାବାବେଗ-ପୂର୍ଣ୍ଣ ଦୃଷ୍ଟିରେ···ଟମ-ଟପ ହୋଇ ଲୁହ ଗଡ଼ିଯାଉଥାଏ ଦୁଇଗଣ୍ଡ ବାହି । ]

[ ପୁଣି ବାଦ୍ୟଧ୍ୱନି ଶୁଣାଗଲା ]

ଶିଳ୍ପୀ—( ସମ୍ଭ୍ରାନ୍ତଭାବରେ ଠିଆହୋଇ ) ମୋ ଶିଳ୍ପ-ଦେବତା କହୁଚନ୍ତି, କଥା କହୁଛି···ମୁଁ ନିଜେ

**ମିବ, ରାଜାଙ୍କ ମଙ୍ଗୋଳ ଏହି ସ୍ଥାନକୁ ଘେନିଆସିବ, ଆଉ ମୋ'ର ଆଜୀବନ-ସାଧନାର ଏହି ସିଦ୍ଧି-ବସ୍ତୁଟିକୁ ଶ୍ରୀକରରେ ଅର୍ପିଦେଇ କହିବ,—ଚନ୍ଦାଣୀ-ଜାତି ମରିନାହିଁ । ଚନ୍ଦାଣୀ-ଜାତି ମରିନାହିଁ ।।**

[ ଗୋଟାଏ ଉତ୍ସବରେ ଶିଳ୍ପୀ ବାଳକାଟିକୁ ସାଥିରେ ଘେନି, ଚାଲିଗଲେ ]

× × ×

**ଆବାହକ—( ପ୍ରବେଶ ପୂର୍ବକ ) ଷଷ୍ଠ-ଶତାବ୍ଦିର କଥା—ଉଣା-ଅଧିକ ଦେଢ଼ ହଜାର ବର୍ଷ ତଳର କଥା,—କେଶରୀବଂଶର ରାଜୁତି ସେତେବେଳେ ଉତ୍କଳରେ—ରାଜଧାନୀ ଥିଲା ଯାଜପୁର ମୁକାମ । ବର୍ତ୍ତମାନ ଯେଉଁ ରାଜା ସିଂହାସନାସୀନ ଓ ସ୍ୱରାଜ୍ୟ ପର୍ଯ୍ୟଟନକ୍ରମେ ଏହି ଏକାମ୍ରକାନନରେ ଉପସ୍ଥିତ, ସେହି ନୃପତିଙ୍କର ନାମ 'ଯଯାତିକେଶରୀ' —କେଶରୀ-କୁଳର ଭୂଷଣ କହିଲେ, ଅତ୍ୟୁକ୍ତି ନୁହେଁ । ଏହି ନରପତି ସିଂହାସନ ଅଧିରୋହଣ କରିବା ପୂର୍ବେ, ଉତ୍କଳ-ରାଜ୍ୟ ମୋଗଲ ପଠାଣଙ୍କର ମୁହୁର୍ମୁହୁ ଆକ୍ରମଣ ଫଳରେ ବିପର୍ଯ୍ୟସ୍ତ ଓ ଖଣ୍ଡବିଖଣ୍ଡ ହୋଇପଡ଼ିଥିଲା, ଏକପ୍ରକାର ସ୍ୱାଧୀନତା ହରାଇ ପକେଇଥିଲା । ମାତ୍ର ଯଯାତି ରାଜାହେବାର ଦୁଇ ବର୍ଷ ମଧ୍ୟରେ ମାତୃଭୂମିକୁ ପ୍ରବଳ ବିଦେଶୀ-କବଳରୁ ମୁକ୍ତ କରିଥିଲେ, ଦେଶକୁ ପୂର୍ଣ୍ଣାଙ୍ଗ କରି ଠିଆ କରାଇଥିଲେ, ତଥା ସ୍ୱାଧୀନ-ସାମ୍ରାଜ୍ୟର ବିସ୍ତାର ଘଟାଇଥିଲେ । ଏତିକରେ ସେ କ୍ଷାନ୍ତ ହୋଇନଥିଲେ,—ଆତ୍ମ ରକ୍ଷାର ସୁଦୃଢ଼ ବ୍ୟବସ୍ଥାପାଇଁ, ସେ ଦେଶର ଏକପ୍ରାନ୍ତ ତାମ୍ରଲିପ୍ତ ବା ତମ୍ଲୁକ୍‌ଠାରୁ ଆରମ୍ଭ କରି ଅପର ପ୍ରାନ୍ତ ରାଜମହେନ୍ଦ୍ରୀ ପର୍ଯ୍ୟନ୍ତ ଦୁର୍ଗ ଓ ଗଡ଼ ଛାଉଣି କରିଦେଇଥିଲେ; ବିପୁଳ ସ୍ଥାୟୀ ଓ ଅସ୍ଥାୟୀ ସୈନ୍ୟ ସମାବେଶ ଖଞ୍ଜିଥିଲେ; ଏକା କୋଟରହାଙ୍ଗଠାରେ ରଖାଯାଇଛି ସାତ ହଜାର ଅଶ୍ୱାରୋହୀ ଓ ଦୁଇଲକ୍ଷ ପାଇକ । ଅଧିକ,**

ଜାତି-ବର୍ଣ୍ଣ ନିର୍ବିଶେଷରେ ଲୋକେ ସାମରିକ ଭାବାପନ୍ନ ହେବେ, ଏଥିପାଇଁ ଗ୍ରାମଗୁଡ଼ିକର ନାମକରଣ କରିଥିଲେ ବୀରକେଶରୀ ପୁର, ବୀର ହରେକୃଷ୍ଣ ପୁର ଇତ୍ୟାଦି; ଏ'ବାଦେ ରାଉତ, ସାମନ୍ତରାୟ, ସିଂହ, ରଣସିଂହାଦି ଉପାଧି ବିତରଣ କରିଥିଲେ ଆଉ ସଙ୍ଗେ ସଙ୍ଗେ ଭରଣ ପୋଷଣ ପାଇଁ ଜାଗିର-ଜମି ବିତରଣ କରିବାରେ ମଧ୍ୟ କାର୍ପଣ୍ୟ କରି ନଥିଲେ ।

ଦେଶରେ ଶାସନ-ଶୃଙ୍ଖଳା ସ୍ଥାପନ ପାଇଁ ଛାମୁ-ଚିଟାଉ ପ୍ରେରଣ ଦ୍ୱାରା ଜମିଦାର, ତାଲୁକ୍‌ଦାର, ଆମିଲ ପ୍ରଭୃତିଙ୍କୁ ଯଥେଷ୍ଟ ସାବଧାନ କରିଦିଆ ଯାଇଥିଲା ଯେ, ପ୍ରତ୍ୟେକ ପ୍ରଜାର ଗୁହାରି ସଦର କଚେରିରେ ଯେମିତି ହାଜର ହୁଏ, ସେଥିର ବ୍ୟବସ୍ଥା ଓ ଦାୟିତ୍ୱଭାର ସେମାନଙ୍କ ଉପରେ ନ୍ୟସ୍ତ ।

ଦେଶର ଅର୍ଥାଗମ ଦୃଷ୍ଟିରୁ, ସାଧବମାନେ ବୋଇତ ଚଳାଚଳରେ ଯେମିତି ହଇରାଣ ନ ହୁଅନ୍ତି, ସେଥିପାଇଁ ପିପିଲି, ଧାମରା, ବାଲେଶ୍ୱର ପ୍ରଭୃତିରେ ଥିବା ବଡ଼, ବଡ଼ ବନ୍ଦରର ବାର୍ଷିକ ମରାମତି ବ୍ୟବସ୍ଥା ଖଞ୍ଜିଥିଲେ ଓ ସୁବର୍ଣ୍ଣ ରେଖା, ହରିଶପୁର, କୁଶଭଦ୍ରା ପ୍ରଭୃତିରେ ବନ୍ଦରମାନ ନୂଆ କରି ମଧ୍ୟ ସ୍ଥାପନ କରିଥିଲେ...

[ ହଠାତ୍ ଚାହିଁ ଦେଲେ ନେପଥ୍ୟକୁ ]

ଏହିତ ଯଯାତି ସ୍ୱୟଂ !...ସଙ୍ଗେ ମନ୍ତ୍ରୀ 'ବିଚକ୍ଷଣ' ଓ ସେନାପତି 'ବାହୁବଳୀନ୍ଦ୍ର'...ଶିଳ୍ପୀ ଗଲେ କୁଆଡ଼େ ?... ( ପ୍ରସ୍ଥାନ )

[ ଯଯାତି, ବିଚକ୍ଷଣ ଓ ବାହୁ ବଳୀନ୍ଦ୍ର ପ୍ରବେଶ କଲେ ]

ଯଯାତି—ଆମର ରାଜସ୍ୱ ବର୍ତ୍ତମାନ କେତେ ?...କି ପରିମାଣରେ ବଢ଼ି ଠିଆହୋଇଛି ?

ବିଚକ୍ଷଣ—ଉଣା-ଅଧିକ କୋଡ଼ିଏ ଲକ୍ଷ ସୁବର୍ଣ୍ଣ-ମୁଦ୍ରା ମଣିମା ।

ଯଯାତି—ଅନ୍ୟାନ୍ୟ କର ଓ ଶୁଳ୍କ ବାବଦ୍ ପ୍ରାପ୍ୟ ଛଡ଼ାଇ ?

ଶରଚ୍ଚନ୍ଦ୍ର—ପ୍ରଭୁ !

ଯଯାତି—ତଥାପି ନାଅଣ୍ଟ । ଦୈନିକ ବଳବୃଦ୍ଧି ପରିପ୍ରେକ୍ଷିରେ ଅର୍ଥର ବୃଦ୍ଧିର ପ୍ରୟୋଜନ, ମନ୍ତ୍ରି !

ଶରଚ୍ଚନ୍ଦ୍ର—ସେହି କାରଣରୁ ତ ପ୍ରଭୁଙ୍କୁ ଏକାନ୍ତ-କାନନକୁ ଅଣାଇଛି, ତା'ର କେନ୍ଦ୍ର ସ୍ଥଳରେ ବିରାଜମାନ କରାଇଛି ।

ଯଯାତି—ଏହି କେନ୍ଦ୍ର ସ୍ଥାନର ନାମ ?

ଶରଚ୍ଚନ୍ଦ୍ର—ଖଣ୍ଡଗିରି ।

ଯଯାତି—ଓ, ଏହି ସେହି ବିଶ୍ୱ-ବିଖ୍ୟାତ ଖଣ୍ଡ-ଗିରି ! ...ଚଳିଷ୍ଟା ପଥରର କୁନ୍ଦ ମାନ !!...

ଶରଚ୍ଚନ୍ଦ୍ର—ହେଲେ ଏହି ପଥର କୁନ୍ଦ-ଚଳିଷ୍ଟାକୁ ଆଶ୍ରୟକରି ଯେଉଁ ପଥୁରିଆଗୁଡ଼ାକ କେଉଁ ମାନ୍ଧାତା-ଅମଳରୁ ଭୁଲ୍ଲାକୁ ଜାଗିର ଖାଇ ଆସୁଛନ୍ତି, ସେମାନଙ୍କର ଘନ-ବସ୍ତି, ସେ-ପ୍ରତି ପ୍ରଭୁଙ୍କର ଥରେ ଦୃଷ୍ଟିପଡୁ—କେମିତି ବାସ୍ତବକୁ ତୁଚ୍ଛ କରି ନାପରବାୟ, ମଣିମା !

ଯଯାତି—ବାହାବଳୀନ୍ଦ୍ର !

ବାହାବଳୀନ୍ଦ୍ର—ମଣିମା !

ଯଯାତି—ଯେଉଁ କେନ୍ଦ୍ର-ଦୁର୍ଗ-ସ୍ଥାପନରେ କଥା କହୁଥିଲ, ସେହି ଦୁର୍ଗର ନିର୍ମାଣ ଏହି ସ୍ଥାନରେ ହେବ ସ୍ଥିର କଲ ।

ବାହାବଳୀନ୍ଦ୍ର—ହେଲେ...

ଯଯାତି—ଓ, ଏହି ପଥର କୁନ୍ଦ ଚଳିଷ୍ଟା ଭାଙ୍ଗିବାକୁ ହେବ ଏଇଯା ତ ?

ଶରଚ୍ଚନ୍ଦ୍ର—ସେହି ସଙ୍ଗେ ପଥୁରିଆ ବସ୍ତିକୁ ବି...

ଯଯାତି—ଉଖାଡ଼ିବାକୁ ହେବ...କ୍ଷତି କ'ଣ ?

ଶରଚ୍ଚନ୍ଦ୍ର—କ୍ଷତି ? ବରଂ ଲାଭ ଅଛି, ମଣିମା... ପୁରୁଣା କୁନ୍ଦ ଚଳିଷ୍ଟାକୁ ଭାଙ୍ଗି ଯେଉଁ ପଥର ବାହାରିବ, ସେଥିରେ ଦୁର୍ଗ ତିଆରିକୁ ଯଥେଷ୍ଟ ଉପାଦାନ ମିଳିବ, ଆଉ ପୋଲ୍ଲଖିଆ ପଥୁରିଆ-ଗୁଡ଼ାକୁ ତଡ଼ି ଯେଉଁ ଜମି ଖାସ୍ ଦଖଲକୁ ଆସିବ ସେଥିରେ ରାଜକୋଷ ବୃଦ୍ଧିକୁ ଯଥେଷ୍ଟ ଅର୍ଥ ମିଳିବ ।

ଯଯାତି—ଶରଚ୍ଚନ୍ଦ୍ର ପରାମର୍ଶ । କ'ଣ କହୁଚ, ସେନାପତେ ?

ବାହାବଳୀନ୍ଦ୍ର—କୁନଅଦ ଆଉ ପରମ୍ପରାକୁ ଉଚ୍ଛେଦ ମଣିମା !

ଶରଚ୍ଚନ୍ଦ୍ର—'ପରମ୍ପରା' !...'କୁନଅଦ' !...ସେ ଗୋଟାଏ ପରବର୍ତ୍ତୀ କାଳକୁ ଲୋକ-ଭଗାଣ ଧପ୍ପାବାଜି ମଣିମା...ଏଥିର ପ୍ରମାଣ ଗୁମ୍ଫାଭିତରକୁ ଯାଇ ଥରେ ନିଜ ଆଖିରେ ଦେଖିଲେହିଁ ବୁଝିବେ, ପ୍ରଭୁ ।

ଯଯାତି—ମୁଁ ଦେଖିବି । ( ପ୍ରଥମେ ଖଣ୍ଡଗିରିର ଅଭ୍ୟନ୍ତରଭାଗ ଦେଖିବାକୁ ଲାଗଲେ ) କି ଅନ୍ଧାର !...

ଶରଚ୍ଚନ୍ଦ୍ର—ଅନ୍ଧାରପଟର ରୂପଗୁଡ଼ାକ ଥରେ ଭଲକରି ଦେଖିବା ହେବେ, ପ୍ରଭୁ...ସେଗୁଡ଼ାକ ନା ମଣିଷର ନା କୌଣସି ଜୀବଜନ୍ତୁର । କସ୍ତୁତ କିମାକାର...!!

ଯଯାତି—ଠିକ୍ କହୁଚ ।

ଶରଚ୍ଚନ୍ଦ୍ର—ବାପ-ଗୋସା-ବାମାଙ୍କର କୃତର-ସ୍ୱାକ୍ଷର ବୋଲି, ସେହି ନିଷ୍କର୍ମୀ ପଥୁରିଆଗୁଡ଼ାଙ୍କର କି ଅକ୍ଷରକ ଉମାକ୍ ବଖାଣିବ...!...ବୋଡ଼ା-ଲଙ୍ଗଳ୍ଡି ଛୁଇଁ ଛୁଇଁ ଜଣେ ଅଧେ ପଥୁରିଆ ବାପ ଅଜାଙ୍କ ଯେଉଁ ବେଉସାରେ ମାତି ରହିଚନ୍ତି, ତା'ର ନମୂନା ଦେଖିବେ ?...ଏଇ ଦେଖନ୍ତୁ ପ୍ରଭୁ । ( ମଦନର ମୂର୍ତ୍ତି ଦେଖାଇଲେ ) ( ବିଦ୍ରୂପକଣ୍ଠରେ ) ଲୋକେ କହନ୍ତି ଏ ଶାର କେଶରୀ-ଅମଳର କୃତ୍ତି...!!

ଯଯାତି—ଏ'ଭଳ ଶାର ! ଫୁଲର ଧନୁ, ଫୁଲର ଶର ...ଫୁଲର ସାଜ୍ଞ, ଫୁଲର ମୁକୁଟ...ଭାଙ୍ଗ, ଭାଙ୍ଗ, ଶୀଘ୍ର ଭାଙ୍ଗ...ବିଳାସ-ବ୍ୟସନର ଏମିତି ନମୂନା ବାଡ଼ି, ସ୍ୱାଧୀନ ଦେଶଟାକୁ ମୋର ବିଲକୁଲ୍ ନାବ୍‌ଖାର୍ କରଦେବେ !...ଭାଙ୍ଗ, ଏୟାକୁ ଶୀଘ୍ର ଭାଙ୍ଗ ।

ଶରଚ୍ଚନ୍ଦ୍ର—ପ୍ରଭୁଙ୍କ ଆଦେଶ । ତୁହି ଠିଆହୋଇଚ କ'ଣ ଭାଙ୍ଗ...? ( ଭାଙ୍ଗିବାକୁ ଅଗ୍ରସର ହେଲେ )

ଶିଳ୍ପୀ—( ନେପଥ୍ୟେ ) ସାବଧାନ !···

ଯଯାତି—( ବ୍ୟସ୍ତସ୍ତ ବିସ୍ମୟାବୃତ ନେତ୍ରରେ ଚାହିଁ ରହିଲେ ସେହି ଦିଗକୁ )

ଶିଳ୍ପୀ—( ସଦମ୍ଭ ପଦକ୍ଷେପରେ ପ୍ରବେଶ ପୂର୍ବକ ) ସେହି ମୂର୍ତ୍ତି ଗାତ୍ରରେ ଟିପର ସାମାନ୍ୟ ସ୍ପର୍ଶ ଲଗେଇଛ ତ, ମୁଁ ରାଜା ରାଜ-କର୍ମଗୁରୁ—ତାହା'ର ମାନ ମହତ ତଳେ ସୁଦ୍ଧା ବଜାୟ ରଖିବ ନା । ଫୁଲର କୋମଳତା ତଳେ ଥାଏ ବଜ୍ରର କାଠିନ୍ୟ ଏ ପ୍ରକୃତିର ଦାନ, ମାନବର ଖିଆଲ-ଖେଳଣା ନୁହେଁ—ସାବଧାନ !

ଯଯାତି—କିଏ ତୁମ୍ଭେ ?

ଶିଳ୍ପୀ—ମୁଁ ଜାଣେ ଶିଳ୍ପୀ, ମହାରାଜ !

ଯଯାତି—ଭାରି ଦମାକ୍, କାହାରରେ କଥା କହୁଚ ତ ?

ଶିଳ୍ପୀ—କାରଣ, ମୁଁ ଶିଳ୍ପୀ ।

ଯଯାତି—ତୁମର ଏ ମୂର୍ତ୍ତି ଭାଙ୍ଗିଚୂରି ପକାଇବାକୁ ହେବ, ନିଜେ ଭାଙ୍ଗିବ, ନିଜ ହାତରେ, ମୋ'ରି ସମକ୍ଷରେ !

ଶିଳ୍ପୀ—ପ୍ରାଣ ଥାଉଁ ଥାଉଁ ନୁହେଁ !!

ଯଯାତି—ଗୋଟାଏ ବ୍ୟଭିଚାରର ଚରମ ନଗ୍ନ-ମୂର୍ତ୍ତି ।

ଶିଳ୍ପୀ—ପଞ୍ଚତତ୍ତ୍ୱର ଦିବ୍ୟ-ସୌମ୍ୟ-ମୂର୍ତ୍ତି ।

ଯଯାତି—ଦୁନିଆର ଦୃଷ୍ଟିରେ ନୁହେଁ ।

ଶିଳ୍ପୀ—ଶିଳ୍ପୀର ଦୃଷ୍ଟିରେ ଅବଶ୍ୟ ।

ଯଯାତି—ଜାଣ ଶିଳ୍ପୀ, କାହାସଙ୍ଗେ ତୁମେ କଥା କହୁଚ ?

ଶିଳ୍ପୀ—ମହାରାଜ ଯଯାତି କେଶରୀଙ୍କ ସଙ୍ଗେ ।

ଯଯାତି—ସେହି ଯଯାତି କେଶରୀଙ୍କ ଆଦେଶ—

ଶିଳ୍ପୀ—ମୂର୍ତ୍ତି ଭାଙ୍ଗିବ ?—ଅସମ୍ଭବ ! କଥାରେ ଅଛି, —ହାକିମ ନଡ଼ବଡ଼ ହୋଇପାରେ, କିନ୍ତୁ ତା'ର ହୁକୁମ୍, ନଡ଼ବଡ଼ ହୋଇ ପାରେ ନା ଅନ୍ତତଃ ଏହି ଦୃଷ୍ଟିରୁ···ମହାରାଜା ଯଯାତି ନିଜର ବଂଶାନୁଗତ ରାଜ-ସନନ୍ଦକୁ ସ୍ଥାନ ଦେବେ ନିଜର ଆଦେଶ ଉପରେ ।

ଯଯାତି—'ରାଜ-ସନନ୍ଦ' !···ମୁଁ ରାଜ-ଆଖିରେ ଦେଖିବି ।

ଶିଳ୍ପୀ—ରାଜ୍ୟର ଆଖି-ଆଗରେ ଥିଆ ମହିମା···
( ଶିଳା-ଲିପି ପ୍ରତି ଦୃଷ୍ଟି ଆକର୍ଷଣ କଲା )

ଯଯାତି—ଏଥିର ଲିପି ଅପାଠ୍ୟ, ଅର୍ଥ ଅବୋଧ ।

ଶିଳ୍ପୀ—ଶାସ୍ତ୍ରର-ଯନ୍ତ୍ର ଦ୍ୱାରା ଆମ୍ଭ ଦେଶ ସ୍ୱାଧୀନ କରିଛନ୍ତି···ଏବେ ଅଗ୍ନି-ଯନ୍ତ୍ରରେ ବନ୍ଦୀ ହେଉଛନ୍ତି, ଏହି ସନନ୍ଦର ଲିପି ଆପେ ଆପେ ପଢ଼ି ହୋଇ ଯିବ, ଅର୍ଥ ଅବୁଝା ରହିବନି, ପରାର୍ଥର ପ୍ରେରଣା ଆମ୍ଭ ଲାଭ କରିବେ, ଦେଶକୁ ଅନୁପ୍ରେରଣା ଦେବେ ଲବ୍ଧ ସ୍ୱାଧୀନତା ପରମ ଅର୍ଥରେ ବିଶ୍ୱ ଶାନ୍ତିର ଦ୍ୱାର ଖୋଲିଦେବ ।

ଯଯାତି—ଗୋଟାଏ ଉନ୍ମାଦ !···

ବିଚକ୍ଷଣ—ଉନ୍ମାଦର ଅଧମ ମହିମା···ବାହାବଳୀନ୍ଦ୍ର ମୁଗ୍ଧ ନେତ୍ରରେ ଚାହିଁ ଠିଆ ହେଇଚ କ'ଣ ? ଶୀଘ୍ର ଘାଉଡ଼ାଅ···

ଯଯାତି—କେବଳ, ସେତିକି ନୁହେଁ···କାହାଳୀ ବଜାଅ, ଶିଙ୍ଘା ଫୁଙ୍କ···ଲକ୍ଷବର୍ତ୍ତୀ ଦୁର୍ଗମାନଙ୍କରେ ଯେତେ ଧାନୁକୀ, ବାଣୁଆ, ଫରିକାର ଅଛନ୍ତି, ଏହିଠାରେ ଆଣି ଜୁଣ୍ଡ କରିଅ···ଆଉ ତୁମ୍ଭେ ମହାମନ୍ତ୍ରୀ ଏଇକ୍ଷଣି ଗ୍ରାମ-ଚିଟାଉ ଗ୍ରାମେ ଗ୍ରାମେ ପଠାଇ ଦିଅ—ସବୁ ବର୍ତ୍ତିର ପ୍ରଜାମାନେ ଯେମିତି କୋଡ଼, କାଙ୍କ, ସାବଳ ଆଦି ନେଇ ଏହିଠାରେ ସୂର୍ଯ୍ୟାସ୍ତ ପୂର୍ବରୁ ହାଜର ହେବେ···ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ଦେଖିବ,—ଦେଶ ଓ ଜାତିର ଅଗ୍ରଗତି-ପଥରେ ମୁଣ୍ଡଟେକି ଠିଆ ହୋଇଛି ଏ ଯେଉଁ ଉଲଙ୍ଗା ପଥର ଜୁଦ, ତାହା ମୂଳପୋଛ ହୋଇଛି ! ମାଟି ସଙ୍ଗେ ମାଟି ହୋଇ ଯାଇଛି···ସେହି ମାଟି-ଶଯ୍ୟାରେ ଯଯାତି-କେଶରୀ ନବ-ପରିକଳ୍ପିତ କେନ୍ଦ୍ର-ଦୁର୍ଗର ଭିତ୍ତି ନିଜ ହସ୍ତରେ ଶାୟିତ କରିବ, ନିଜ ଆଖିରେ ପରିକଳ୍ପନାର ବାସ୍ତବ ରୂପ ଦେଖିବ···

( ପ୍ରସ୍ଥାନ )

ବାଚସ୍ପତି—ଯଥା-ଆଦେଶ, ମହିମା ··· ଆସ, ସେନାପତି ।

[ ବାଚସ୍ପତି ଓ ବାହାବଳୀନ୍ଦ୍ରର ପ୍ରସ୍ଥାନ ]

ଶିଳ୍ପୀ—( ପାହାଡ଼ ଶୃଙ୍ଗ ନିକଟକୁ ଧାଇଁଗଲେ ଓ ବାହୁ ପ୍ରସାରଣ ପୂର୍ବକ ଯେମିତି ଏକର ଲୁଣ୍ଠେଇ ପକାଇଲେ ) ହେ ଧଉଳ, ଖଣ୍ଡଗିରି, ଉଦୟଗିରି— କୃଷ୍ଟି-ସଂସ୍କୃତି-ଶିକ୍ଷାର ମୂକ ସାକ୍ଷୀ ତୁମେ !— ଇଙ୍ଗିତ ଦିଅ, ଆଦେଶ କର, କି ଉପାୟରେ ତୁମମାନଙ୍କୁ ରକ୍ଷା କରିବି ? ତୁମେଇ ତ ଏହି ଜାତିର ବେଦ, ପୁରାଣ ଇତିହାସ । ତୁମରି କନ୍ଦରେ-କନ୍ଦରେ ସଞ୍ଚିତ ଜାତିର ଶକ୍ତି, ନିହିତ ଜାତିର କଳା-କୃଷ୍ଟି, ପ୍ରବାହିତ ଜାତୀୟ ସ୍ୱକୀୟତାର ଧାରା । ତୁମେଇ ତ ଦେଶ ଓ ଜାତିର ଦୀପ-ଦଣ୍ଡୀ, ଆଜ ରକ୍ଷା-କବଚ ।— କେମିତି ତୁମକୁ ରକ୍ଷାକରିବି !···ଧାଇଁ ଆସ, ଭାଇମାନେ । ଶିଳ୍ପୀ ବୋଲି ଦେଇଁ ପରିଚୟ ଦେଇ ମହିମାଠାରେ ନିଜେ ଧନ୍ୟ ମଣିବାକୁ ଅଜ ସମସ୍ତେ ପାଗଳ ସେହି ପରିଚୟର ମୂଳଦୁଆ ସମୂଳେ ଉଚ୍ଛେଦ କରିବାକୁ ଅଜ ଉଦ୍ୟତ ତୁମରି ମହିମା···ଆସ, ଧାଇଁ ଆସ···

[ ରତ୍ତର ବେଗେ ପ୍ରବେଶ ]

ରତ୍ତ—କେହି ଅସିବେ ନି, ବାପା···

ଶିଳ୍ପୀ—ମାନେ ?

ରତ୍ତ—ପାଇକର ବର୍ଚ୍ଛା, ତୀରନ୍ଦାଜର ତୀରକୁ ଡର କେହି କେହି ଘର-କଣରେ ପଶିଲେଣି···

ଶିଳ୍ପୀ—ଅଭ ଫିସାଦିଆ ମନ୍ତ୍ରୀଠାରୁ ହାତଗୁଞ୍ଜା ପାଇ, କେହି କେହି ପାଇକ ଦଳରେ ମିଶିଲେଣି !— ହାଃ-ହାଃ-ହାଃ-ହାଃ—

ରତ୍ତ—ବାପା···ବାପା···

ଶିଳ୍ପୀ—ଭୟ ନାହିଁ, ଭୟ ନାହିଁ, ବତ୍ସ ! ଅସ୍ତୁ ରାଜ-ରୋଷ ସହସ୍ର-କପିଳ ତେଜକୁ ବଳି, ଡରିବ ନାହିଁ ଶିଳ୍ପୀ ସେହି ରୋଷ-ବହ୍ନି ରୋଧିବ ବୃଦ୍ଧ-ଶିଳ୍ପୀ ଏକା—ଧ୍ୱଂସମୁଖରୁ ଜାତିର ଏହି ରକ୍ଷା-କବଚକୁ କରିବ ରକ୍ଷା !!

[ ପାହାଡ଼ ଟଟୋଟିକୁ ଅଗୁଳେଇ ଠିଆ ହେଲେ ]

ବାଚସ୍ପତି—( ନେପଥ୍ୟ ) ଭାଙ୍ଗ···ଭାଙ୍ଗ···

ରତ୍ତ—ଓଃ ··( ବିହ୍ୱଳ ଭାବରେ ଚାଲିଗଲା )

[ ଏକଅାଡ଼ୁ ପାଇକଗଣ ସହ ବାହାବଳୀନ୍ଦ୍ର ଓ ଅନ୍ୟଆଡ଼ୁ ସାବଳ, ମୁଷଳଧାରୀ ଜନତାସହ ବାଚସ୍ପତି ପ୍ରବେଶ କଲେ ]

ବାଚସ୍ପତି—( ଜନତାପ୍ରତି ) ଭାଙ୍ଗ···ଭାଙ୍ଗ···ଅଗ୍ରସର ହୁଅ ।

ଶିଳ୍ପୀ—ଅସମ୍ଭବ···ଅସମ୍ଭବ···

ବାଚସ୍ପତି—ଆଦେଶ, ଆଦେଶ, ସେନାପତି ।

ବାହାବଳୀନ୍ଦ୍ର—ଚଳାଅ ତୀର—ଚଳାଅ ବର୍ଚ୍ଛା···

[ ଧାନୁକୀମାନେ ଶରଯୋଜନାକରି ଧନୁ ଉତ୍ତୋଳନ କଲେ ।—ସେହି ସମୟରେ ଖଣ୍ଡଗିରି ଶିଖର ଦେଶରେ ମହାରାଣୀ ଆବିର୍ଭୂତା ହେଲେ ]

ମହାରାଣୀ—ବନ୍ଦକର ।

ବାଚସ୍ପତି ଓ ବାହାବଳୀନ୍ଦ୍ର—ମହାରାଣୀ-ମହିମା··· ।
( ଅବନତ ହେଲେ )

ରାଣୀ—ତ୍ୟାଗକର ଏ' ସ୍ଥାନ ତ୍ୱରା—

[ ସମସ୍ତେ ଚାଲିଗଲେ ଓ ମହାରାଣୀ ଓହ୍ଲାଇ ଅସିଲେ ସେହି ସ୍ଥାନକୁ, ଯେଉଁଠାରେ ଶିଳ୍ପୀ ଠିଆ ହୋଇଥିଲେ ]

ଆସ ଶିଳ୍ପୀ···

[ ମଧ୍ୟ ପଥରେ ଯଯାତି ନିମ୍ନୋକ୍ତ ଭାବରେ କହୁ କହୁ ବାଟ ଓଗାଳି ଠିଆହେଲେ । ]

ଯଯାତି—ଧୀରେ, ରାଣୀ···!!···

ରାଣୀ—( ମିନତି ଭରା କଣ୍ଠରେ ) ରାଜା-ରାଜା—ଏ' ନୃଶଂସତା ତ୍ୟାଗ କର···ଦେଖ ଦେଖ, ସ୍ୱ-ଦେଶପାଇଁ ଯୁଦ୍ଧ କଲ, ଯୁଦ୍ଧରେ ଜୟୀ ହେଲ, ହେଲେ ଯୁଦ୍ଧର ବଡ଼ୀଷିକା ତୁମକୁ ଘାରି ପକେଇଲା, ତୁମେ ସେଥିରୁ କେମିତି ମୁକୁଳିବ, ସେଥିପାଇଁ ପୁରୁଷୋତ୍ତମ ଗଲ···ସମୁଦ୍ର-ସ୍ନାନ କଲ···ଲୋକ ମୁଖରୁ ଶୁଣିଲି, ଠାକୁରମାନେ

ସମ୍ବଲପୁରରେ 'ପାତାଳୀ' ହୋଇଚନ୍ତି···ନାଜେ ଧାଇଁଗଲି ସେ'ଠାକୁ···ବରଗଛ ମୂଳ ତାଡ଼ି, ପରମେଶ୍ୱରଙ୍କୁ ଉଦ୍ଧାର କଲି···ସ୍ୱ-ଶିଖରରେ ବହନ କରି ସ୍ୱସ୍ଥାନକୁ ଘେନି ଆସିଲି···ବଡ଼ ଦେଉଳ ସଂସ୍କାର କଲି···ବଡ଼ ଆଡ଼ମ୍ବରରେ ରନ୍ନ-ସିଂହାସନରେ ବିଜେ କରାଇଲି ।

ଯଯାତି—( ଦୁର୍ବିସ୍ମୃତିର ଆବେଗରେ ) ଅନ୍ନଦ୍ୱାର 'ଠାକୁରମାନେ' ଭୋଗ-ଲାଗି ହେଲେ··· ମହାପ୍ରସାଦର ସ୍ତୂପ ଠିଆହେଲା ଦେଉଳର ସମାନ ହାତମାପରେ ଅଠର୍ନିଶ୍ ହାତ ହଇ ।— ଏ'ସବୁ କରିଥିଲି ସେଦିନ ତୁମରି ପରାମର୍ଶରେ, ରାଣୀ ।

ରାଣୀ—ମୋ'ରି, ପରାମର୍ଶ ଆଜି···ଏ' ଅହିଂସା-ପୀଠରେ ହିଂସା-ଖେଳାର ହେଉ ଅବସାନ, ରାଜା···

ଯଯାତି—ତଥାସ୍ତୁ । ଆଉ ବାକୀ ଚାହିଁକି—ତୃତୀୟ ବରଟି ଏବେ ପ୍ରାର୍ଥନା କର ।

ରାଣୀ—ରାଜା···

ଯଯାତି—ତୁମେ ଭୁଲିଚ, ମୁଁ ଭୁଲିନାହିଁ, ରାଣୀ···ସୁଦୂର ଅତୀତର କଥା । ଯୁଦ୍ଧର ଉନ୍ମାଦନା ଥିଲା ମୋ'ର ପ୍ରାଣେର ଉନ୍ମାଦନା···ଥରେ କୌଣସି ସାଂଘାତିକ ଯୁଦ୍ଧରୁ ମୁମୂର୍ଷ ଅବସ୍ଥାରେ ଫେରିଥିଲି··· ଦେହସାରା କ୍ଷତ-ବିକ୍ଷତ···ଘା'ର ଦୁର୍ଗନ୍ଧ··· କେହି ପାଖ ପଶିଲେ ନାହିଁ···ମାତ୍ର ତୁମରି ସେବା-ଯତ୍ନ ମୋତେ କରିଥିଲା ନିରାମୟ···ମୁଁ ହୋଇଥିଲି ସନ୍ତୁଷ୍ଟ ସ୍ୱତଃ-ପ୍ରବୃତ୍ତ ହୋଇ ଦଶରଥଙ୍କ ପରି ତିନିଗୋଟି ବର ଦେବି ବୋଲି ସତ୍ୟ କରିଥିଲି···ଦୁଇ ଗୋଟି ଦେଇ ସାରିଛି, ଏବେ ତୃତୀୟଟି···

ରାଣୀ—ରାଜା···ରାଜା···

ଯଯାତି—ସଙ୍କୋଚର ପ୍ରୟୋଜନ ନାହିଁ, ରାଣୀ···ଏହା ଦାକ୍ଷିଣ୍ୟର ପରିପ୍ରଶ୍ନ ନୁହେଁ···ଯଯାତି ଜାଣେ,—ସତ୍ୟ-ରକ୍ଷା ତା'ର ରାଜ-ଧର୍ମ—ରାଜ୍ୟ ଯାଉ, ଅବା ଥାଉ, ସତ୍ୟ ପାଳନୀୟ ।···ଯାହାକୁ ସତ୍ୟଦାନ କରାଯାଇଛି—ତା'ର ମନେ ଥାଉ, ଅବା ନଥାଉ—ସେ ମାଗୁ ଅବା ନମାଗୁ··· ମୋର ରାଜକର୍ତ୍ତବ୍ୟ, କରଣୀୟ । ତୁମର ତୃତୀୟ ପ୍ରାର୍ଥନା ଯାହା, ତାହା ତୁମରି ସ୍ଫୁରିତାଧରରେ ଧ୍ୱନିତ, ରାଣୀ !

ରାଣୀ—ରାଜା···

ଯଯାତି—ଆସ, ଶିଳ୍ପୀ···ଆଜିଠାରୁ ତୁମେ ରାଜ-ଶିଳ୍ପୀ—( ନିଜର ଉତ୍ତରୀୟ ଶିଳ୍ପୀର ମଥାରେ ଜଡ଼ାଇ ଦେଲେ ନିଜେ ) ଆଜି ତୁମକୁ ରାଜ ନିର୍ଦ୍ଦେଶ—ଏପରି ଗୋଟିଏ ଶିଳ୍ପ-ସ୍ତମ୍ଭ ତୁମେ ଗଢ଼ି ଠିଆ କରିବ ଏହି ପୁରାଣ-ପ୍ରସିଦ୍ଧ ଏକାମ୍ର-କାନନରେ ଯା'ର ଶୈଳିକ ଗୁରୁତ୍ୱ (ଖଣ୍ଡଗିରିକୁ ଦେଖାଇ) ଏହି ଐତିହାସିକ 'ରାଜ-ସନ୍ଧି'ର ଐତିହ୍ୟ କେବଳ ରକ୍ଷା କରିବ ନାହିଁ, ଯୁଗର ଶିଳ୍ପ ଇତିହାସରେ ଏକ ଅମର ସ୍ୱାକ୍ଷର ବାଡ଼ିଦେବ ମଧ୍ୟ ।

ଶିଳ୍ପୀ—ମହାରାଜ···

ଯଯାତି—(ଶିଳ୍ପୀକୁ ଆପଣାର ପ୍ରଶସ୍ତ ବକ୍ଷଦେଶକୁ ଟାଣି ନେଲେ ଓ ଗାଢ଼ ଭାବରେ ଆଲିଙ୍ଗନ କଲେ )

ରାଣୀ—( ଆଖିରୁ ଲୋତକ ଟପ ଟପ ହୋଇ ଝରି ପଡ଼ିଲା । )

---

—ଦୁଇ—

## ପରିକଳ୍ପନା

### ( କ )

ଅନ୍ତର୍ଯବନିକା ଅପସାରିତ ହେଲା··· କଳାପର୍ଦ୍ଦା ଦେଖାଗଲା ।···ଅବାହକ ପ୍ରବେଶ କଲେ ଓ କହିବାକୁ ଲାଗିଲେ— ]

ଅବାହକ—ପୂର୍ବ ଘଟଣାର ଏକ ବର୍ଷ ପରେ ।— ମହାରାଣୀ ଯାଜପୁର ଫେରିଯିବାକୁ ଆଉ ମନ କଲେ ନାହିଁ । ମହାରାଣୀ ଗର୍ଭବତୀ ଥିଲେ;

ସେହିକାରଣ ଗର୍ଭବତୀର ଦୋହ୍ୟ-ବାସନା ମହାରାଜା ଉପେକ୍ଷା କଲେ ନାହିଁ ।...ଉପରନ୍ତୁ ପରମ ଉତ୍ସାହରେ, ଏକାମ୍ରକୁ ସ୍ୱାଧୀନ-ଉତ୍କଳର ରାଜଧାନୀରେ ପରିଣତ କରିବାର ବ୍ୟବସ୍ଥା କଲେ...ଏବଂ ତାହା ଗୋଟିଏ ଆଦର୍ଶ କଳା-ମଣ୍ଡପ ହୋଇ ଉଠିବ, ଏଥିର ଉଦ୍‌ଯୋଗ କରିବାକୁ ଲାଗିଲେ ।—ଏକାମ୍ରର, ଯେଉଁ ପଟରେ ନଗର ତୋଳାଇଲେ ତାହା 'ସିଦ୍ଧାରଣ୍ୟ' ନାମରେ ଖ୍ୟାତ । ଏ'ଠାରେ ଚିର-ବସନ୍ତ ବିରାଜମାନ । ବିଚିତ୍ର ହୋଇ ଖେଳା ଚାଲିଛି ଯେମିତ ନୀଳ-ପୀତ ହରିତ୍ ଶୋଭାକୁ ପଟଭୂମିକା କରି । ରାଣୀ-ହଂସପୁର । ତତ୍‌ସଂଲଗ୍ନ ଗୋଟିଏ ପ୍ରାକୃତିକ ଉପବନ । ତା'ର ନାମ ମହାରାଣୀଙ୍କ ସମ୍ମତି କ୍ରମେ ମହାରାଜା ରଖିଛନ୍ତି 'ରାଜା-ରାଣୀ' କୁଞ୍ଜ । ସେ କୁଞ୍ଜର ଶୋଭା ବଢ଼ାଇ ଏଣେ ଏ' କିଏ ଧାଇଁଚି ?—( ନିରୀକ୍ଷଣକରି ) 'ରତି' ତ ?...ଓଃ ଆଜି ବେଶର ପରିପାଟି କହିଲେ, ନ ସରେ...

[ ଚାଲିଗଲେ । ବିପରୀତ ଦିଗରୁ ରତି ପ୍ରବେଶ କଲେ ।...ଆହା ମନୋହର ତା'ର ବେଶ ଭୂଷା । ]

ରତି—ମହାରାଣୀ ପୂର୍ଣ୍ଣ-ଗର୍ଭବତୀ...ମୋ'ର କଳା-ରଚନା ହେଉ ପୂର୍ଣ୍ଣାଙ୍ଗ ଆଜି—( ନିଜର ବେଶଭୂଷା ପ୍ରତି ଲକ୍ଷ୍ୟ କରୁ କରୁ ଅଗ୍ରସରମାନ ହେଲେ )

ମଦନ—( ବାଟ ଓଗାଳି ଠିଆ ହୋଇ ଥିଲେ । )

ରତି—( ଅଟକି ଗଲେ )—କିଏ ତୁମେ ?—ଗନ୍ଧର୍ବ, ନା କାମ୍ୟ ?...ନିତି-ନିତି 'ରଜା-ରାଣୀ' କୁଞ୍ଜକୁ ଗଲା ବାଟରେ ଏହିପରି ବାଟ ଓଗାଳି ଠିଆହୁଅ । ...କାହିଁକି ? କି ମିନତି ତୁମର ? କଥା କୁହ... ତୁମର ମିନତି ଆଜି ଭରିବ...ମୋ'ର ଅଦେୟ ଆଜି କିଛି ନାହିଁ ।

ମଦନ—( ଗଦ୍‌ଗଦ କଣ୍ଠରେ ) ରତି !

ରତି—ଏ'କି ଜାଦୁକର-କଣ୍ଠ ।—ମନଦୋହଲା ଭାବ ।—ତୁମେ କିଏ—?—କିଏ ତୁମେ ?...

ମଦନ—ମୁଁ ମଦନ ।

ରତି—'ମଦନ' । ( ବିସ୍ମୟରେ ହତବାକ୍ ହେଲେ )

ମଦନ—ବିଶ୍ୱାସ କର ।...ନିରେଖି ଦେଖ...

[ ଆବରଣ ଉନ୍ମୋଚନ କଲେ । ମଦନ ଦେଖା ଦେଲେ ଶିଳ୍ପୀ-କଳ୍ପିତ ପୂର୍ଣ୍ଣ ଶୋଭା-ସମ୍ଭାର ନେଇ ]

ରତି—ତୁ—ମେ—ତ ?

ମଦନ—ତଥାପି ପ୍ରଶ୍ନ ? ଶୁଣ, ମଦନ-ଭସ୍ମ ପରେ ମୁଁ ହୋଇଥିଲି ଅନଙ୍ଗ—ଅଙ୍ଗର ପରିକଳ୍ପନା ଥିଲା କେବଳ କବିର କଳ୍ପନା, ଆଉ ଶିଳ୍ପୀର ସାଧନା-ବସ୍ତୁ...ମାତ୍ର ଆଜି ରତିର ଆରାଧନା କରିଛି ମୋତେ ପ୍ରାଣବନ୍ତ—ପୂର୍ଣ୍ଣାଙ୍ଗ...ରତି...ରତି...

ରତି—ଛୁଅଁନା...ମୋ'ର ଶିଳ୍ପୀ-ପିତାର ମଦନ-ମୂର୍ତ୍ତି ଅଦୃଶ୍ୟ ହୋଇଛି...ତୁମେଇ ତା'ହେଲେ...

ମଦନ—ସନ୍ଦେହ କରୁଛ ? ନା, ନା, ମୁଁ ହିଁ ଶିଳ୍ପୀ-ମନର ଜୀବନ୍ତ ପ୍ରକାଶ । ତୁମେ ଶିଳ୍ପୀର ମାନସୀ-କନ୍ୟା ।...ତୁମରି ଦୁଃଖରେ ସେ ହୋଇଥିଲେ କାତର ।...ମୋ'ର ଅର୍ଦ୍ଧାଙ୍ଗିନୀ ତୁମେ । ଅର୍ଦ୍ଧାଙ୍ଗର ପରିପୂରକକୁ ଦେଇ, ଗଢ଼ିଥିଲେ ମୋ'ର ପ୍ରସ୍ତର-ମୂର୍ତ୍ତି ।...ଗଠନାନ୍ତେ ମୂକ-ମୂର୍ତ୍ତି ମୁହଁରେ ଦିନେ ଭାଷା ଫୁଟାଇବାକୁ ହୋଇଥିଲେ ବ୍ୟାକୁଳ । ମୂକ-ମୂର୍ତ୍ତିର ମୂକ-ଭାଷା କେହି ନ ଶୁଣନ୍ତି, ତୁମେ ଶୁଣିଥିଲ—ପରମ-ପ୍ରୀତି ଗୁଣରେ । ଆଜି......

ରତି—ପ୍ରତାରଣା... ଘୋର ପ୍ରତାରଣା...

ମଦନ—ପ୍ରତାରଣା ନୁହେଁ, ରତି—ଆଜି ଅବିନଶ୍ୱର ପ୍ରୀତିର ଅବତାରଣା...ତୁମେ ନାଚିବ, ମୁଁ ନାଚିବି...ତୁମେ ଗାଇବ, ମୁଁ ଗାଇବି...କେତେ ଯୁଗ ପରେ ଆଜି । ଗାଅ, ଗାଅ ରତି କଣ୍ଠେ କଣ୍ଠ ମିଳାଇ ଛନ୍ଦେ ଛନ୍ଦେ ମିଶାଇ—"ଧୀରେ, ଧୀରେ ବୋହୁ ଅ'..."

[ ଦୃଶ୍ୟ ପରିବର୍ତ୍ତିତ ହେଲା । ଦେଖାଗଲା ପୂର୍ବ ବର୍ଣ୍ଣିତ ସେହି 'ରାଜା-ରାଣୀ' କୁଞ୍ଜ ।···ମହାରାଣୀ ଦୋଳିରେ ଅର୍ଦ୍ଧସୁପ୍ତା ବସ୍ଥାରେ ଥାଇ, ଦୋହଲୁ ଥିଲେ ।···ରତି ପୂର୍ବୋକ୍ତ ଗୀତାନୁକ୍ରମରେ ଗାଇଲେ "···ମହୁଆ ବା' ।" ତା'ପର ପଦଗୁଡ଼ିକ କେତେବେଳେ ରତି କେତେବେଳେ ମଦନ ( ଅନ୍ତରାଳରେ ଥାଇ ) ଗାଉଥିଲେ । ପ୍ରକୃତରେ ମଦନହିଁ ଗାଉଥିଲେ,—ରତି ଧ୍ୱନିର ପ୍ରତିଧ୍ୱନି କରୁଥିଲେ ମାତ୍ର··· ଗୀତଟି ଏହିପରି,—]

—ଗୀତ—

ଧୀରେ, ଧୀରେ ତୁ ବହି ଆ'—ଆ'···ମହୁଆ ବାଆ ।
ଫୁଲେ, ଫୁଲେ ଚୁମି ଗନ୍ଧ ଘେନି ଆ'—ଆ' ଆ' ॥
ତୋ' ଯୋଗୁଁ ବିରହୀ—ବିରହ ଅପାର,—
ଫେଇ ରଖିଛତ କୁଞ୍ଜର ଦୁଆର;
ନ ଦେବୁରେ ଦେଖା—
ଛପି, ଛପି, ତୁ ଆ'—ଆ' ଆ' ।
ଚୁପୁ, ଚୁପୁ କଥା
କାନେ କହି ଯାଆ—ଆ' ଆ' ॥

ରତି—( ସେହି ଗୀତରେ ଆତ୍ମ-ହରା ହୋଇ ନାଚୁଥିଲେ···କେତେବେଳେ ଯେ ମଦନ ଆସି ସହ-ନୃତ୍ୟ ଆରମ୍ଭ କରି ଦେଇଥିଲା, ତାହା ରତିଙ୍କୁ ଅଗୋଚର,···ଆବେଶ ଭାଙ୍ଗିଗଲା, ଯେତେବେଳେ ସ୍ୱପ୍ନରୁ ଉଠିଲା ଭଳି ମହାରାଣୀ ଅଗ୍ନିନଙ୍କ ଚିତ୍କାର କରି, ଡାକିଲେ— ]

ମହାରାଣୀ—ରତି ।···( ଆଖି ମଳି-ମଳି ଏଣେ ତେଣେ ଗୁହିଁ ଦେଖୁଥିଲେ )

ରତି—( ରହିଗଲେ ଗୋଟାଏ ଭଙ୍ଗିରେ;···ମଦନଙ୍କୁ ସମ୍ମୁଖରେ ଦେଖି, ଲଜ୍ଜା ଓ କ୍ରୋଧରେ ହତବାକ୍ ହୋଇଗଲେ । )

ମଦନ—( ଅପରାଧୀ ଭଳି ପଳାଇବାକୁ ବାଟ ପାଇଲେ ନାହିଁ । ତଥାପି ମିନତିଭରା କଣ୍ଠରେ କହୁଥିଲେ— ) ମୁଁ ଅନଙ୍ଗ, ରତି···କେହି ଦେଖି ପାରିବେନି···ଡର ନାହିଁ ।

ମହାରାଣୀ—( ରତି ଅଡ଼େ ଦୃଷ୍ଟିନିବଦ୍ଧ କରି ଡାକିଲେ ) ରତି ।···

ରତି—ମଣିମା ।

ମହାରାଣୀ—ସତ କହ,···କିଏ ସେ ?···କାହା ସଙ୍ଗେ ନାଚୁଥିଲୁ ଅଇ ?

ରତି—ମଣିମା ।···

ମହାରାଣୀ—ଅଲୋ ସରମ କ'ଣ ?···ଡର କାହିଁକି ? ମଦନ ସଙ୍ଗେ ରତି ନାଚିବ···ପତି ସଙ୍ଗେ ସତୀ···ଏହାହିଁତ ଜୀବନ-ସୁଧାର ପୂର୍ଣ୍ଣ ପାତ୍ର ।

ରତି—ରାଣୀ ମା···(ମହାରାଣୀଙ୍କ ପାଦ ଧାରଣ କଲେ)

ମହାରାଣୀ—ମଦନର ସେହି ଶିଳ୍ପ-ମୂର୍ତ୍ତି ଗ୍ରେସ୍ତ ଦେଖି, ତୋ'ର ଶିଳ୍ପୀ-ପିତା କହୁଥିଲେ ଆଜ— 'ମଦନକୁ ଗ୍ରେସ୍ତ କରିଛି ରତି'—ଅଇଛିକା ମୁଁ ବି ସେଇତା ଆଖିରେ ଦେଖିଲି, ବିଶ୍ୱାସ··· କହତ—

ରତି—ମା—( ଅଜାଡ଼ି ହୋଇ ପଡ଼ିଲେ ଚରଣ ତଳେ )

ମହାରାଣୀ—ଛି-ଛି···ଉଠ,···ଯା'ତ, ଦେଖ— ପୁରାଣ-ପଣ୍ଡା କାହିଁ ? ପୁରାଣ ପଢ଼ା ହେବ, କ'ଣ ବେଳ ଗଡ଼ିଗଲେ ?

[ ବନ୍ଧନରୁ ମୁକ୍ତମାଇଲା ଭଳି ପଳାଇ ଗଲା । ଠିକ୍ ସେହି ସମୟରେ ପୁରାଣପଣ୍ଡା ପୁରାଣପୋଥି ଘେନି ପ୍ରବେଶ କଲେ ]

ମହାରାଣୀ—ଆସନ୍ତୁ, ଆସନ୍ତୁ ପଣ୍ଡେ···( ଉଠିବାକୁ ଚେଷ୍ଟା କଲେ )

ରତି—( ପ୍ରବେଶ ପୂର୍ବକ ) ଅଧୀର ହେବେନି, ମଣିମା —( ଧାରଣ କଲେ )

[ ଦୁଇ ଦିଗରେ ଦୁଇଟି ବେଦୀ,···ଗୋଟିକରେ—ପୂଜା-ପଣ୍ଡା ବସିଲେ, ଅନ୍ୟଟିରେ ମହାରାଣୀ ଉପବେସନ କଲେ, ଅନ୍ୟ ପରିଚୁରୀମାନେ ଯଥା ନିର୍ଦ୍ଦିଷ୍ଟ ସ୍ଥାନରେ ଆସନ ଗ୍ରହଣ କଲେ ]

ପଣ୍ଡା—( ପୋଥି ଫିଟାଇବାର ଉପକ୍ରମ କଲେ )

[ ଏହି ସମୟରେ ହରପଣ୍ଡା ପ୍ରବେଶ କଲେ... ବାମନାବତାର କହିଲେ, ଅତ୍ୟୁକ୍ତି ହେବ ନାହିଁ—ସ୍କନ୍ଦ-ପୁରାଣର ବୋଝ ତାଙ୍କ ମୁଣ୍ଡରେ )

ହର—( ଥୋଇଦେଇ, ପୋଥିର ମଇଳା ଝାଡ଼ୁ ଝାଡ଼ୁ କହିବାକୁ ଲାଗିଲା ) ବାଃ, ବେଶ୍, ନନା—ଅସଲ୍ ପୋଥିକି ସଙ୍ଗାରେ ଥୋଇ, ଏଁକ ପୋଥି ଶୁଣାଉଛ ଯେ ନାତ ?...ମୁଁ ଅଜ ମାମୁଦଙ୍କୁ ଫେର ଦେଖେ ତ—

ପଣ୍ଡା—ସେ-ପୋଥି-ପାହାଡ଼ ତୋତେ ଏଁଠିକି ଆଣିବାକୁ କିଏ କହିଲା ? ହନୁମାନ !—

ହର—କିନ୍ତୁ ବିଶଲ୍ୟକରଣୀ ଆଣିଛୁ, ହାଁ ! ଅହେ, ନନା...ସେ୍ତ ପୋଥି ଆଣିବନାତ ପୋଥି ଶୁଣାଇବ ଯେତେକେମାନଙ୍କୁ ଲେମ୍ବୁ-ଲୁଣ ?

ମହାରାଣୀ—ଏ' ଶ୍ରେଷ୍ଠ କନାଟି କିଏ, ପଣ୍ଡେ ?

ହର—ମୁଁ ହର ପଣ୍ଡା ( ପଣ୍ଡାକୁ କଥା କହିବାର ଅବସର ନ ଦେଇ )

ମହାରାଣୀ—ବେଶ୍ ନାଁ'ଟିତ...( ପୂଜା ପଣ୍ଡା ପ୍ରତି ) ତୁମର ସେ—?

ହର—'ପୁଅ' !...

ପଣ୍ଡା—ହଁ, ପୋଷା-ପୁଅ !—

ହର—'ଗୁଣ୍ଡା-ଚୁଅ' ନୁହେଁ, ହାଁ !

ପଣ୍ଡା—ହରିଅ !

ହର—ଘର-କଥା ପଦାରେ ପକେଇଲ ବୋଲି ତମ୍‌ତମ୍—?

ମହାରାଣୀ—ଅହେ, ଶ୍ରେଷ୍ଠ-ପଣ୍ଡେ...ସେ୍ତ କ'ଣ—ତୁମ ଘର ନୁହେଁ ।

ହର—ତୁମେ କହୁଚ ଯେତେବେଳେ—

ପଣ୍ଡା—କିରେ, ମଣିମା କହୁଥାନ୍ତୁ ?

ହର—ଘରେ କ'ଣ 'ମା'କୁ 'ମଣିମା' ବୋଲି କହନ୍ତି ?

ମହାରାଣୀ—କେମିତ ଜାଇଲି ବଡ଼-ପଣ୍ଡେ !...ଅଚ୍ଛା ତୁମେ ବସ, ହରପଣ୍ଡେ...

ହର—ଓଁ ହୁଁ...'ହର' ।

ମହାରାଣୀ—ମୋ'ର ଭୁଲ୍ ! ସେ୍ତ ସାକ୍ଷାତ 'ନର-ହର' !...ଜଡପଣ୍ଡେ, ଅଜ ପୁରାଣ-ବୋଝ ଥାଉ,...ଏକାମ୍ର-ପୁରାଣର ଗପ ଶୁଣ—ଅଚ୍ଛା, ଏ' ବନର ନାମ 'ଏକାମ୍ର' ହେଲା କାହିଁକି ?

ହର—ଏକାମର ?

ମହାରାଣୀ—( ହସିଲେ )

ହର—ମୋ'ର ଟିକିଏ ତୁଣ୍ଡ ଖସେ, ମା...

ମହାରାଣୀ—ତୁଣ୍ଡ ଲାଗେ ବୋଲିତ ମା ପୁଅକୁ ଏତେ ସୁଖପାଏ !...ଅଚ୍ଛା, ତୁମେ 'ଏକାମର'—କଥା ଜାଣ ?

ହର—ଭଲ ପୁରାଣ-କଥା ନ ଜାଣେ ?

ମହାରାଣୀ—( ହସି ) ସତେ ? କି, କି ପୁରାଣ ପଢ଼ିଚ ଯେ—?

ହର—ମୁଁ କ'ଣ ପାଠ ପଢ଼ିଚି ?...ତେବେ ଅଠର ଖଣ୍ଡ ଯାକର ପାଠ ମୋ ଅଯତରେ,...ପଦମ, ବାମ୍‌ନୁ, ବରହମ, ଅସକନ୍ଦ...

ମହାରାଣୀ—( ହସି ) ହେଲା ଯେ ! ଅଚ୍ଛା, ଅଠର ଖଣ୍ଡ ଭିତରୁ, କେଉଁଟି ସାର ?

ହର—ଅସାର କେଉ ନୁହେଁ, ମା !

ମହାରାଣୀ—ତେବେ ବେଶୀ କମ୍ ଅଛିତ ?

ହର—ବେଶୀ କମ୍ ଅଛି ବୋଲିତ ସଂସାର ଚାଲିଛି !

ମହାରାଣୀ—( ଅବାକ୍ ଦୃଷ୍ଟିରେ ଚାହାଁଇଲେ, ତା'ପର ହସି ହସି କହିଲେ ) ତୁମେ କା'କୁ ଭଲ ପାଅ ?

ହର—( ତତ୍‌କ୍ଷଣାତ୍ କହିଲେ ) ଅସକନ୍ଦକୁ, ମା—

ମହାରାଣୀ—( ହସି ) କଣ ବଡ଼ ବୋଲି ?

ହର—ଶ୍ରେଷ୍ଠ ପରା ମୁଁ !

ମହାରାଣୀ—ଯେମିତ ନନ୍ଦଘରର ଟିକି ପିଲାଟି... ବଡ଼ଙ୍କ ଠାରେ ତା'ର ଯେତକି ଅଦୋଳ; ଅଚ୍ଛା ତୁମର ସେଇ ବଡ଼ ପୁରାଣରେ ଏକାମ୍ର-କଥା ଅଛି ?

ହର—ଏକାମର କଥା ନାହିଁ ?...ନନା ଦନେ ପଢ଼ୁଥିଲେ, ମୁଁ କାନେଇ କାନେଇ ଶୁଣିଚି ।

ପଣ୍ଡା—କ'ଣ ଶୁଣିଚୁ, ମଣିମା ଆଗେ କହ !

ହର—ଦକ୍ଷିଣା ମିଳିବତ ?

ମହାରାଣୀ—( ହସି ) ମିଳିବ !...ଦକ୍ଷିଣା ନ ଦେଲେ, ପୁରାଣ-ଶୁଣାର ଫଳ ମିଳେନା ପରା ।

ହରି—ତା ହେଲେ, ବସେଁ—( ଉପବେଶନ କଲେ ପୁରାଣ-ପଣ୍ଡା ପାଖରେ )—ବହୁଦିନ ତଳେ; ଏଇ ଜଙ୍ଗଲରେ ଗୋଟିଏ ଆମ୍ବଗଛ ଥିଲା । ଗଛଟି ଯେମିତ ଉଚ୍ଚ, ସେମିତ ମୋଟା ।··· ଆଠକାଳ ବାରମାସ ସେଥିରେ ବଉଳ ଧରେ, ଫଳ ଫୁଟେ, ଆମ୍ବ ପାଚେ···ହେଲେ, ସେଇ ଆମ୍ବର ଏମିତି ଅବଗୁଣ ଯେ, ତା'କୁ ଯିଏ ଖାଉଥିଲା, ସେ ଆମ୍ବ-ଗରମି-ଝାଡ଼ା-ବାନ୍ତିରେ—

ପଣ୍ଡା—( କାନଧରି ) ହରିରେ ପାଷଣ୍ଡ···ତୋତେ ଏଇକଥା ମୁଁ ଶୁଣେଇଛି···?

ହରି—( ଗଦଗଦ ସ୍ୱରେ ) 'ସଂସାରକୁ ଡରଯାଉଥିଲା' ଏ'କଥା କହିନ ?

ମହାରାଣୀ—ଠିକ୍ ତ । ଡରିବାକୁ ହେଲେ, ଗୋଟିଏ କଛୁ ରୋଗ-ବେମାରି ତ ଚାହିଁ ?

ହରି—ତା' ହେଲେ ଶୁଣନ୍ତୁ, ମା—ଆମ୍ବ ଖାଇ ଯିଏ ମରିବ, ତା'କୁ ଆଉ କ ରୋଗ-ବେମାରି ଧରିବ ?

ପଣ୍ଡା—ହରିଆ !···

ହରି—ମୁଁ ଗଲି ମା···ମୋତେ ବେଳ ନାହିଁ···ସେଇ ଜାତ୍ରି-ଯେଜମାନଟା କେଉଁକାଳୁ ଆସି ଧାରଣ ଦେଇଥିବ ଲୁଣ୍ଡଆରେ—ମୋ'ଠୁ ହରି କଥା ଶୁଣିବାକୁ ତା'ର ଭାରି ଶରଧା । ଏକାମ୍ରକୁ ଅନନ୍ତ-ବାସୁଦେବ·· କେମିତ ଆସିଲେ, ସେଇ କଥା, ମୁଁ ଗଲି—

ମହାରାଣୀ—ହେଲେ, ଗୋସେଇଁ,—ଦକ୍ଷିଣା ମିଳିବ ତ ?

ହରି—ସେ, କଥା ଅଗରୁ ଛିଣ୍ଡେଇ ଦେଇଛି ମା ।

ପଣ୍ଡା—(ଅତି ସାଗ୍ରହେ କାନେ କାନେ )କେତେରେ ?

ହରି—କେତେ ?···ଗୋଟିଏ ସିଂହ ଛୁଆ— ।

( ଚାଲିଗଲେ )

ପଣ୍ଡା—( ସିଂହାବଲୋକନରେ ଅନାଇ ରହିଲେ ହରି-ପ୍ରତି )

ମହାରାଣୀ—ଠିକ୍ କହିଚେ ଜାତ୍ରି ଯେଜେମାନ—ଶିକାର ବେଉସା···ଆଉ କି ଦକ୍ଷିଣା ଦେବ ? ଅଚ୍ଛା, ପଣ୍ଡେ—'ଏକାମ୍ରକୁ ତ ଉତ୍କଳ-ବାରଣସୀ ବୋଲି, ତହିଁରୁ···ସେ ଶିବଙ୍କ ପୀଠ-ସ୍ଥାନ—ଏ'ଠି ଅନନ୍ତ-ବାସୁଦେବ ଆସିଲେ କିପରି ?

ପଣ୍ଡା—ଏକଆଡ଼େ ସୃଷ୍ଟି ଓ ସ୍ଥିତି, ଅନ୍ୟଆଡ଼େ ଧ୍ୱଂସ ଓ ପ୍ରଳୟ—କେହି କାହାରିକୁ ଛାଡ଼ି ନୁହେଁ, ରହିପାରିବେନା—ସେହିପରି ବିଷ୍ଣୁ ଓ ଶିବଙ୍କୁ ଏକାତ୍ମ ଜ୍ଞାନ କରିବ ।

ରାଣୀ—ବୁଝିଲି···ଅନନ୍ତ-ବାସୁଦେବ କ'ଣ ଶିବଙ୍କ ଆଗରୁ ବିଜେ କରିଥିଲେ ଏ ପୁଣ୍ୟ-ଧାମକୁ ?

ପଣ୍ଡା—ମହିମା ।

ରାଣୀ—କିପରି ?

ପଣ୍ଡା—ପୁରାଣ ଘାଣ୍ଟି ମୁଁ ଯେଉଁ ତଥ୍ୟ ଜାଣିଛି ତାହା ଏହିପରି—ସ୍ୱର୍ଗରେ ଇନ୍ଦ୍ର ଅନନ୍ତ-ବାସୁଦେବଙ୍କ ଶିଳା-ପୂଜା କରୁଥିଲେ । ମେଘନାଦ ଇନ୍ଦ୍ରଙ୍କୁ ଜିଣି, ସେହି ଶିଳା ଆଣିଥିଲେ ।

ରାଣୀ—ତା' ପର—

ପଣ୍ଡା—ବିଭୀଷଣ ସେହି ଶିଳା ରାମଚନ୍ଦ୍ରଙ୍କୁ ଭେଟି-ଥିଲେ ।···ରାମଚନ୍ଦ୍ର ସୀତାଙ୍କୁ ଉଦ୍ଧାର କରି, ଅଯୋଧ୍ୟାକୁ ଫେରିଲାବେଳେ, ସାଗରକୁ ତାହା ପୁରସ୍କାର ଦେଇଥିଲେ ।

ରାଣୀ—ତା'ପର···?

ପଣ୍ଡା—ସେହି ଚୈତନ୍ୟମୟୀ ଶିଳା ବସୁଦେବଙ୍କ କାରା-ପ୍ରକୋଷ୍ଠରେ ଶ୍ରୀକୃଷ୍ଣଙ୍କ ମୋହନ-ରୂପ ଧାରଣ କରି ଅବତୀର୍ଣ୍ଣ ହେଲେ ।

ରାଣୀ—ସତେ ?

ପଣ୍ଡା—ବସୁଦେବ ସେହି ମୂର୍ତ୍ତି ଦେଖି ତନ୍ମୟ ହୋଇଗଲେ—କଂସର ଡରରେ ସେହି ମୂର୍ତ୍ତିକୁ ବକ୍ଷରେ ଧାରଣ ପୂର୍ବକ ଯମୁନା ପାର ହେଉଥିଲା ବେଳେ, ମୋହନ-ରୂପକୁ ପ୍ରକାଶ ରଖି, ଅପ୍ରକାଶ୍ୟ କୁଟସ୍ଥ ଚୈତନ୍ୟ-ରୂପୀ-ଶିଳା ଅଦୃଶ୍ୟ ହୋଇଗଲେ ।

ରାଣୀ—ତା'ପର···?

ପଣ୍ଡା—ଚନ୍ଦ୍ରଚୂଡ଼ଙ୍କ ଖିଆଲ—ପୁଣି ଗଡ଼ଗଡ଼ାଇ ଭାବରେ ଗଡ଼ି-ଗଡ଼ି ଆସି ଗନ୍ଧବତୀ ନଦୀର ଉପକୂଳରେ

ଦେଖାଦେଲେ ଓ ଏହି ଏକାମ୍ର-କୁଞ୍ଜରେ ବିରାଜମାନ ହେଲେ ।

ରାଣୀ—ଭାରି ସୁନ୍ଦର ତ ! ଯାହା ତାତ୍ପର୍ଯ୍ୟ ରହିଚି; ସେହି ସୃଷ୍ଟି-ସ୍ଥିତି ସେମିତି ନିଶ୍ଚୟ ।

ପଣ୍ଡା—ଗବେଷଣାର ବିଷୟ ।

ରାଣୀ—ତା'ପର ଆସିଲେ ନଷ୍ଟରାଜ—କିପରି ?

ପଣ୍ଡା—ସେହି ଉପାଖ୍ୟାନର ବର୍ଣ୍ଣନା ସ୍କନ୍ଦ ପୁରାଣରେ ଏକପ୍ରକାର ଓ ଶିବ ପୁରାଣରେ ଅନ୍ୟପ୍ରକାର ରହିଛି ।

ରାଣୀ—ତେବେ କେଉଁ ପୁରାଣକୁ ବିଶ୍ୱାସ କରିବ ସେ ?

ପଣ୍ଡା—ଉଦ୍ୟାନର ଜଳ-ମାଟି ଏକ, ଉଦ୍ୟାନର ବିକଶିତ ଶୋଭା ଅନେକ—ଯେଉଁ ଉପବନ-ଗୃହ ଯାହା ପସନ୍ଦ କରିବ ।

ରାଣୀ—ବୁଝିଲି,—ମନର ବୈଶିଷ୍ଟ୍ୟ ଯେମିତି କାହାର ପ୍ରତିଭା—ସେହି ପ୍ରତିଭାର ବିଭିନ୍ନ ପ୍ରକାଶର ଅନ୍ତରାଳରେ ରହିଛି ଯାହାର ଅଭିନ୍ନ ସତ୍ତା—ତାହାହିଁ 'ସତ୍ୟ' ନାମରେ ପରିଚିତ ।

ପଣ୍ଡା—ଆଜ୍ଞା, ମହିମା !

ରାଣୀ—ବେଶ୍, ଯେଉଁ ପୁରାଣକୁ ତୁମେ ବିଶ୍ୱାସ କର, ଶ୍ରଦ୍ଧାକର, ସେହି ପୁରାଣକୁ କୁହ—

ପଣ୍ଡା—ଶିବପୁରାଣ ବର୍ଣ୍ଣିତ ଉପାଖ୍ୟାନ କହୁଛି ମହିମା !

ରାଣୀ—ବେଶ୍ତ ।

ପଣ୍ଡା—( ଯଥା-ଉପବେଶନ ପୂର୍ବକ କହିବାକୁ ଲାଗିଲେ ) କାଶୀଧାମ···ନିଭୃତ ପ୍ରଦେଶ—ଅଦୂରରେ ଶୁକ୍ଳା-ଜହ୍ନର କ୍ଷୀଣକଟି ସଂଲଗ୍ନ ଗୌରୀ-ଶୃଙ୍ଗ ପରିଦୃଶ୍ୟ ମାନ । ଅର୍ଦ୍ଧ-ଭୋଳ ହୋଇ ଭୋଳାନାଥ ଗପି ଯାଉଥିଲେ—ତୁଳାପରି ଅଙ୍କଲଗ୍ନ ଭାବରେ ଯେପରି । ଦେବୀ ଅବଶ୍ୟ ସଂଲଗ୍ନ ଭାବରେ ସାର ଗ୍ରହଣ କରୁଥିଲେ—ହଠାତ୍ କି ଖିଆଲ ହେଲା, ଦେବୀ ସମ୍ବୋଧନ କରି ଉଠିଲେ ଏହିପରି—

[ ପଟପରିବର୍ତ୍ତନ । ବର୍ଣ୍ଣିତ ଦୃଶ୍ୟ ଦେଖାଗଲା ।]

ପାର୍ବତୀ—ପ୍ରଭୁ ।

ଶିବ—ଦେବୀ !···

ପାର୍ବତୀ—ଗୋଟିଏ କଥା କେତେଦିନୁ ପଚାରିବି-ପଚାରିବି ହୋଇ, ପଚାରି ପାରୁନି ।

ଶିବ—କେଉଁ କଥା ସେ ?

ପାର୍ବତୀ—ତୁମେ ମଝିରେ ମଝିରେ ଏ କାଶୀଧାମ ଛାଡ଼ି, କେଉଁଠାକୁ ଯାଅ ? ମାସେ ମାସେ କାଳ ବିତେଇ ଦେଇ ଆସ ?

ଶିବ—ସେ ଅତି ରମଣୀୟ, ଗୋପନୀୟ ସ୍ଥାନ ଦେବୀ ।

ପାର୍ବତୀ—କାଶୀଧାମଠୁ ବଳି ରମଣୀୟ ?

ଶିବ—କୈଳାସ-ଶିଖରଠୁ ବଳି ଆଦରଣୀୟ ।

ପାର୍ବତୀ—ଏଭଳି ଗୋପନୀୟ ସ୍ଥାନ···କେଉଁଠାରେ ସେ ?

ଶିବ—ଉତ୍କଳ-ଧାମରେ···ଏକାମ୍ର-କାନନ ନାମରେ ପରିଚିତ । ଛଅଋତୁର ମେଳ ସେହିଠାରେ ଦେଖିବ,···କୁବେର ତାର ସ୍ୱର୍ଣ୍ଣ-ଭଣ୍ଡାରରୁ, ଆଉ ବରୁଣ ତା'ର ସାଗର-ଗର୍ଭରୁ ସବୁ ରତ୍ନ ଆଣି ଯେମିତି ଅଜାଡ଼ି ଦେଇଛନ୍ତି ସେହିଠାରେ । ହିମାଳୟର ଯେତିକି ଶୋଭା ସମ୍ପଦ, ତାହା ଯେଉଁଠି ଠୁଳ, କହିଲେ, ବେଶୀ କହା ନୁହେଁ । ଆଜି-ଆଜି ତୁମେ ସେହି ଦ୍ୱିତୀୟ ବାରାଣସୀ-କଥା ମନେ ପକାଇ ଦେଇ ମୋତେ ବିଚଳିତ କରନା—ମୋ'ର କାମ ଭଣ୍ଡୁର କର ଦଅନା···

ପାର୍ବତୀ—କି କାମ ସେ ?

ଶିବ—କାଶୀରାଜ ମୋତେ ସ୍ମରଣ କରୁଛି···ହିମାଳୟ ସେ-ପଟେ ଅଭିଯାନ ଚଳାଉଛି···ସେଠୁଁ ସେ ଫେରିଲେ, ତୁମକୁ ଦିନେ ନେଇଯିବି··· ନନ୍ଦୀ !—

[ ନନ୍ଦୀର ପ୍ରବେଶ ]

ନନ୍ଦୀ—ଭୂତ ନାଥ !···

ଶିବ—ବଳଦ ପ୍ରସ୍ତୁତ ?

ନନ୍ଦୀ—ପ୍ରସ୍ତୁତ···

ଶିବ—ଭୂତ-ପ୍ରେତ ଗଣ ?···

ନନ୍ଦୀ—ପ୍ରସ୍ତୁତ···

ଶିବ—ଅପୂର୍ବ, ଦେବୀ ··( ଗୁଳ୍‌ଗଲେ ଶିଙ୍ଘା ଓ ତ୍ରିଶୂଳ ଘେନି )

ପାର୍ବତୀ—ଏହି ସୁଯୋଗ···ମୁଁ ଏକୁଟିଆ ଯାଇ ଥରେ ଦେଖି ଆସେଁ,···ସ୍ଥାନର ସୌନ୍ଦର୍ଯ୍ୟ ଭୁଲାଇଛି ଭୋଳାନାଥଙ୍କୁ, ନା କୌଣସି ରୂପସୀର ରୂପ-ମାଧୁରୀ ? ବିଜୟା ! ( ବିଜୟାର ପ୍ରବେଶ )

ବିଜୟା—ଠାକୁରାଣୀ !···

ପାର୍ବତୀ—ମୋ'ର ସିଂହବାହନ !—

ବିଜୟା—ଚଣ୍ଡୀ-ଚାମୁଣ୍ଡା ?

ପାର୍ବତୀ—ନା···

ବିଜୟା—( ଠିଆ ହୋଇ ରହିଲେ )

ପାର୍ବତୀ—ଯାଅ··· । ( ଉଭୟେ ବିପରୀତ ଦିଗରେ ପ୍ରସ୍ଥାନ କଲେ )

× × ×

ରାଣୀ—ତା'ପର···?

ପଣ୍ଡା—ଦେବୀ 'ଏକାମ୍ର-ବନ'କୁ ଯାଇ କିମିତକେ ହାଜର ହେଲେ ?

ରାଣୀ—ସିଂହ-ବାହିନୀ ଏକା ? ତା'ପର—

ପଣ୍ଡା—( କହିବାକୁ ଲଗିଲେ ) କାଳେ, ଜନ୍ତୁଟା ଜାନ୍ତବ-ପ୍ରକୃତିର ଅଧୀନ ହୋଇ ଦେବୀଙ୍କର ସ୍ୱଚ୍ଛନ୍ଦ କାନନ ବିହାରରେ ପ୍ରତିବନ୍ଧକ ଘଟାଇବ, ଏହି ଆଶଙ୍କାରେ ତାକୁ ବିଦାୟ କରିଦେଲେ···

ରାଣୀ—ସ୍ଥାନର ମୋହ ତାଙ୍କୁ ଟାଣିଥିବ ନିଶ୍ଚୟ !

ପଣ୍ଡା—ସ୍ୱା ଆଜ ପଚାରିବାକୁ ( ଗୀତ କଣ୍ଠରେ )

ଦେଖି ସେ-କାନନ-ମାୟା
ମୋହି ଗଲେ ମହାମାୟା
ଆଶ୍ରା କଲେ ତରୁ ଛାୟା
ଧରି ବନଦେବୀ-କାୟା ।
ଅବଗାହି ସର-ଜଳେ
ରଚି ବାସ ପୁଷ୍ପଜାଲେ
ଅଳଙ୍କାର ଖଞ୍ଜି ଫୁଲେ
ଭୁଞ୍ଜି ନିତି ଫଳ-ମୂଳେ;
ମୃଗୀ-ମୟୂରୀଙ୍କ ତୁଲେ
କରି ଭାବ-ପ୍ରୀତି ହେଲେ
ନାଚି କୁଦି ଶିଖେ-ଶିଖେ
ନେଲେ ଦିନ ମହାସୁଖେ;

× × ×

ପାର୍ବତୀ—( ଉକ୍ତ ଗୀତର ଭାବ କ୍ରମେ ଅଭିନୟ କରୁଥିଲେ, ଶେଷେ ଗୋଟିଏ ପର୍ବତ ଶିଖର ଦେଶରେ ଥକ୍‌କାମାରି ବସିପଡ଼ିଲେ ଓ ଭେଳେକା-ଦୃଷ୍ଟିରେ ନିରୀକ୍ଷଣ କରିବାକୁ ଲାଗିଲେ; କ୍ରମେ ଅନ୍ଧକାର ଘନେଇ ଆସିଲା )

× × ×

ପଣ୍ଡା—କିଛିଦିନ ବିତିଗଲା ହସରେ ଖେଳରେ ମାତି —ଦିନେ ହଠାତ୍—

ରାଣୀ—କ'ଣ ହେଲା ?

ପଣ୍ଡା—ଦେବୀ ପର୍ବତ-ଚୂଡ଼ାରେ ଠିଆହୋଇଛନ୍ତି, ସୂର୍ଯ୍ୟ ଅସ୍ତୋନ୍ମୁଖ—ଏମିତି ସମୟରେ ତଳ-ଦେଶକୁ ଅନାଇ ଦେଖିଲେ—ଦେଖନ୍ତି···

ରାଣୀ—କ'ଣ ?

ପଣ୍ଡା—ପର୍ବତର ସାନୁ ଦେଶରେ ପଲେ ଗାଈ ଚେଉଁଥିଲେ, ଗୋଟିଏ ଶିଳାଖଣ୍ଡ ଭେଟିଲେ, ତା'ଉପରେ ଗୋଟିକ ପରେ ଗୋଟିଏ, ନିଜ-ନିଜର ଦୁଧ ବୁହାଇ ଦେଲେ, ସେହି ଶିଳାଟିକୁ ଦୁଗ୍ଧ ପ୍ଳାବିତ କରି ତାହା ଗାଧୋଇ ଦେଲେ ଓ ଗୋଷ୍ଠ ବାହୁଡ଼ା ପଥ ଧରିଲେ ।

ରାଣୀ—ଏଁ !

ପଣ୍ଡା—ଦିନେ ନୁହେଁ; ଅଧେନୁହେଁ ଏମିତିକା ନିତିପ୍ରତି ଘଟିବାର ଦେଖି, ସେ ଯେ ଶିବ-ଲିଙ୍ଗ, ଶିବଙ୍କ ସ୍ଥାନ, ଆଉ ଏଗୁଡ଼ିକ ଶିବଙ୍କ ଗାଈ-ଗୋରୁ, ଏଥିରେ ଦେବୀଙ୍କର ଆଦୌ ସନ୍ଦେହ ରହିଲା ନାହିଁ···

ରାଣୀ—ଆହୁରି ଶିବଙ୍କ କଥା ମନେ ପଡ଼ିଥିବ ନିଶ୍ଚୟ— ?

ପଣ୍ଡା—ସେଇଠୁଣି ମହାମାୟାଙ୍କ ମାୟା-ମୋହ ଛଟିଗଲା···ହୋଇଗଲେ ସେ ବାୟାଣୀ,··· ଗୋପାଳୁଣୀ···ଭିଖାରୁଣୀ,···ଦିନରାତି ଅଧା ପଡ଼ି ରହିଲେ ଶିଳା ସ୍ଥାନରେ ଅଖିଆ-ଅପିଆ, ଆଖି-ପାଣିରେ ଭସାଇ ଦେଉଥାନ୍ତି, ଶିବ-ଅସ୍ଥାନ ଗୋଟିକୁ, ଆଉ ଶିବ-ଲିଙ୍ଗ ପ୍ରତି ଧ୍ୟାନ-ଦୃଷ୍ଟିରଖି, ମନର ବେଦନା ଜଣାଉଥା'ନ୍ତି,—

× × ×

[ ପାହାଡ଼ ତଳ-ଦୃଶ୍ୟ···ଶିବଙ୍କ ଅସ୍ଥାନ ଓ ଲିଙ୍ଗ ]

ପାର୍ବତୀ—( ଦରଦୀ-କଣ୍ଠରେ ଗାଉଥିଲେ ଲିଙ୍ଗକୁ ଅନାଇ )

ଗୀତ

ଅହେ ଉମାକାନ୍ତ !···
ଉମାର ଦରଶ ଯୌବନ ସତ ?
ନିକାଞ୍ଚନ ପଡ଼ି, ନାଇଁ ଭୁଲେ ସେତ
ଅତୀବ ଏକାନ୍ତ ॥
ସତୀ-ଦେହ କାନ୍ଧେ ବହି
ମଥି ଥିଲ ଦିନେ ମହୀ ··
ସେହି ସତୀ କାନ୍ଦେ ଆଜ
ରହିବ ପାଷାଣ ସାଜି,—
ଏ'ଭାବ କେମନ୍ତ ?
ନୀଳକଣ୍ଠ-ନାମ କର କଳଙ୍କିତ;—
( ଅହେ ଉମାକାନ୍ତ ! )

× × ×

ରାଣୀ—ତା'ପର ?

ପଣ୍ଡା—ଦିନକର, ସତୀ ଏହିପରି କାନ୍ଦୁଥିଲା ବେଳେ, ଦୁଇଟା ରାକ୍ଷସ—

ରାଣୀ—ରାକ୍ଷସ !

ପଣ୍ଡା—'କାଞ୍ଚି' ଓ 'ବାସ'·····ବଣ ଭିତରୁ ବାହାରି···

× × ×

[ପୁଣି ସେହି ସାନୁ-ଦେଶର ଦୃଶ୍ୟ ଦେଖାଗଲା···ପାର୍ବତୀଦେବୀ ଶିବଲିଙ୍ଗ ପ୍ରତି ନିବଦ୍ଧ-ଦୃଷ୍ଟି ଥାଇ ଧ୍ୟାନ ମଗ୍ନଥିଲେ—କାଞ୍ଚି ଓ ବାସ ଦେବୀ ପ୍ରତି ଲୋଲୁପ ଦୃଷ୍ଟି ନିକ୍ଷେପ କଲେ—ରାକ୍ଷସି-ଗର୍ଜନ ଗ୍ରହିଲେ । ଭୂଧର ଥର ଥରିଲା···କାନନ ପ୍ରକମ୍ପିତ ହେଲା—ଠାକୁରାଣୀଙ୍କ ଧ୍ୟାନଭଗ୍ନ ହେଲା । ସେ ରାକ୍ଷସ ଦୁଇଟାକୁ ଦେଖି, ଆଖି ଖୋସି ଦେଲେ, ଭୟରେ ଥର ହରିଲେ··· 'ପ୍ରଭୁ'-'ପ୍ରଭୁ' ବୋଲି ତୁହାଇ-ତୁହାଇ ଡାକିଲେ, ଶିବ-ଲିଙ୍ଗ ଠାରେ ପଶି ଜାପୁଟି ଧରିଲେ; ଚେତା ବୁଡ଼ି ଯାଇଥିଲା !···ଲିଙ୍ଗ ଦେହରୁ ତୈଜ-ସତ୍ତ୍ୱର ଦିବ୍ୟଜ୍ୟୋତି ନିର୍ଗତ ହେଲା···ବନ-ସ୍ଥଳୀକୁ ଜାଳି ପୋଡ଼ି ଦେଲା ଭଳି ଜ୍ୟୋତିଷ୍ଟା··· ସେହି ପ୍ରଖର ତେଜ ରାକ୍ଷସ ଦୁଇଟା ସହ୍ୟକରି ପାରିଲେ ନାହିଁ···ପଳାଇ ଗଲେ । ମଙ୍ଗଳମୟ ଶିବ ଅବିର୍ଭୂତ ହେଲେ ଉଲଙ୍ଗ ବାଘାମ୍ବର-ବେଶ ନୁହେଁ, କି କୋପନ-ଅଧର ନୁହେଁ, କି ହାତରେ ବିଷାଣ-ସିଂହା ନାହିଁ···ମନୋହର ଗୋପାଳର-ବେଶ, ଅଧରରେ ମଧୁର ହସ, ହାତରେ ମୋହନ ବଂଶୀ ]

ଶିବ—ସତୀ !···

ପାର୍ବତୀ—( ବିସ୍ମାରିତ ନେତ୍ରରେ କାନ୍ତୁପଣ ତକାଇ ରହିଲେ ) କିଏ ?···କିଏ ତୁମେ ?···

ଶିବ—( ମୃଦୁହସା-ହସର ଅଧର କୋଣରେ ମୁରଲୀ ବାଇଲେ )

ପାର୍ବତୀ—( ପ୍ରଚ୍ଛନ୍ନତା ଭେଦ କଲେ, ଉଚ୍ଛୁଳା କଣ୍ଠରେ ଡାକିଲେ ) ପତି !—

ଶିବ—ସତୀ !···

ପାର୍ବତୀ—ଏ' ପ୍ରଚ୍ଛନ୍ନ ବେଶର କି ପ୍ରୟୋଜନ ?···

ଶିବ—ଅଜ୍ଞାନ ଭାବ ଛାଡ଼ି ନିଜ ଅଙ୍ଗବାସ ପ୍ରତି ଲକ୍ଷ କର !

ପାର୍ବତୀ—ଏ' ମୋ'ର ଗୋପାଳୁଣୀ ବେଶ—ତୁମର ଭରଣୀ, ଦେବ ।

ଶିବ—ସ୍ଥାନର ମାହାତ୍ମ୍ୟ । ତଥାପି ଗୋପାଳ-ବେଶକୁ ମୁଁ ଏ'ଠାରେ ସୁଖପାଏ···ଏହି ଭାବରେ ମୁଁ

ଏ'ଠାରେ ବିହାର କରିଥାଏ···ଛାଡ଼, କାମର କଥା କହ ।

ପାର୍ବତୀ—କି କାମ ?

ଶିବ—ଏ' ରାକ୍ଷସ ଦୁଇଟା ମୋ'ର ଗାଈ-ପଲକୁ ଅଧା କରି ଦେଲେଣି···ଦିନ କେଇଟାରେ ନିଃଶେଷ କରିଦେବେ ।

ପାର୍ବତୀ—( ହସିଲେ )

ଶିବ—ହସିଲ ଯେ ।

ପାର୍ବତୀ—ତ୍ରିଶୂଳୀଙ୍କ ମୁଖରେ ଏ'କଥା ଶୋଭା ପାଏନା ।

ଶିବ—ତ୍ରିଶୂଳ କାହିଁ ?···( ବଇଁଶୀ ଦେଖାଇଲେ )

ପାର୍ବତୀ -ଅହ୍ୱାନ କରିବାକୁ ଡେରିହେବକି ?

ଶିବ—ଅହ୍ୱାନର ଜୁ ଥିଲେତ··· ।

ପାର୍ବତୀ—ଶକ୍ତି-ଧର ।

ଶିବ—ଶକ୍ତିମୟୀ···ତୁମେ ଜାଣନା, ସେଥିପାଇଁ ଏପରି କହୁଚ ।

ପାର୍ବତୀ—ସେପରି ସମ୍ବୋଧନରେ ମୁଁ ବର୍ତ୍ତମାନ ଅଯୋଗ୍ୟା—ଠିକ୍ ଏହିପରି ଅନୁଭବ କରୁଛି··· କଥା କ'ଣ, କୁହତ ?

ଶିବ—ଅନନ୍ତ-ବାସୁଦେବ ସ୍ୱୟଂ ଏ'ଠାରେ 'ଶିଳା'-ରୂପେ ବିରାଜମାନ, ତାଙ୍କର ଶିଳା-ଭୂତ ନିର୍ଦ୍ଦେଶ ମୋତେ ମାନି ଚାଲିବାକୁ ହେବତ ?

ପାର୍ବତୀ—କି ତାଙ୍କର ନିର୍ଦ୍ଦେଶ··· ?

ଶିବ—ଅନନ୍ତ-ପ୍ରେମ ।

ପାର୍ବତୀ—ଆଜ୍ ମୁଁ ଆଚରିବି ଅନନ୍ତ-ହିଂସା । ଏହାହିଁ ତୁମର ଅଭିସନ୍ଧି ?—

ଶିବ—( ହସିଲେ ) ତୁମେ ମହାମାୟୀ···ମହାମାୟୀ ମା, ତା'ର ଦୁରନ୍ତ ସନ୍ତାନକୁ ଶାସ୍ତି ଦେବ ଏଥିରେ ହିଂସା କାହିଁ ?···ଯୁଗେ ଯୁଗେ ଯାହା କରିଆସିଛ, ସେହିକଥା ସ୍ମରଣ କର । ସାତ୍ତ୍ୱିକ ଭାବର ଅଭ୍ୟୁଦୟ ହେତୁ ରାବଣକୁ ନିଜ ଚକ୍ରାଙ୍ଗରେ ଧାରଣ କରିଥିଲ···ଅନ୍ୟପକ୍ଷେ ରଜୋଗୁଣର ପ୍ରଭାବ ଅକ୍ଷମଣୀୟ ହେବାରୁ ମହିଷାସୁରକୁ ନିଧନ କରିଥିଲ···

ପାର୍ବତୀ—ମହାଦେବ···( ଅବନତା ହୋଇଥିଲେ )

ଶିବ—ଓଁହୁଁ, ଏ' ମିଳନର ପୀଠସ୍ଥାନ—ଏଠାରେ ସବୁ ସାଧାରଣ—ତୁମେ ଗୋପୀ, ମୁଁ ଗୋପାଳ । ( ବକ୍ଷକୁ ଟାଣିନେଲେ )

× × ×

ରାଣୀ—ଭାରି ସୁନ୍ଦରତ···( ଅକସ୍ମାତ୍ ପ୍ରସବ ବେଦନା ଅନୁଭବ କରନ୍ତେ ) ରତ୍ନା···

ପଣ୍ଡା—ରତି···ରତି··· ।

[ ଦୃଶ୍ୟ ପରିବର୍ତ୍ତିତ ହେଲା ]

---

( ଖ )

[ ରାଣୀହଂସପୁରର ପଶ୍ଚାଦେଶ—ରାଣୀ-ପ୍ରାଚୀରର ପୃଷ୍ଠଭାଗ ]

ମଦନ—ରତି···ରତି··· ( ଡାକୁ ଡାକୁ ପ୍ରବେଶ କଲେ )

ରତି—( ପ୍ରାଚୀର ଦ୍ୱାର ଫେଇ ଛୁଟିଆସିଲେ ହରଣୀର କୁଦାରେ—ଅତି ଆନନ୍ଦରେ ଗଦଗଦ ହୋଇ ) ···ମଦନ !···

ମଦନ—ବଦନ ଯେ କଦନକୁ ବଳୁଛି···ଖବର କ'ଣ ?

ରତି—ଖୁସିର ଖବର···।

ମଦନ—ପୁଅଟିଏ ?

ରତି—ହିଁଅଟିଏ !···

ମଦନ—ହିଁଅ···( ବିଷଣ୍ଣ ଦେଖାଗଲେ )

ରତି—ଅଙ୍ଗ ହରାଇ ସୁଦ୍ଧା, ତୁମର ସେହି ପୂର୍ବଢଙ୍ଗ !···

ମଦନ—ମାନେ—?

ରତି—ହିଁ ଅମାନେ ଆଜ ପରାସ୍ତ ନୁହନ୍ତି,—ପଞ୍ଚବାଣର ଦମ୍ଭ ଚୁହଁାଯାଉଛି, ପଞ୍ଚବାଣ ଧାରୀର ଭସ୍ମ-ରାଶିରେ ହିଁ ଅମାନେ ଏବେ ଅସ୍ତ୍ର-ଶସ୍ତ୍ରରେ ଅସ୍ଥା ରଖି, ଅସ୍ତ୍ର-ଦମ୍ଭରେ ଠିଆହେଲେଣି !—

ମଦନ—ହୁଁ ।

ରତି—'ହୁଁ' ମାରିବା ପରେ, ତୁମେ ଆଗେ ଯାଅତ, ···ରାଜାଙ୍କୁ ଶୁଭସନ୍ଦେଶ ଦେବ । ସେମ୍ଭ ନିଶ୍ଚେ ଶିଳ୍ପୀ-ବସ୍ତିରେ ଥିବେ,···ଶିଳ୍ପୀ-ଶାଳାରେ···

ମଦନ—ମୋତେ ପଠାଉଚ ଯେ,···ମୁଁ ପରା ଅଙ୍ଗହୀନ 'ଅନଙ୍ଗ' ।

ରତି—'ଅନଙ୍ଗ'କୁ କେହି ଦେଖିବନି, ତା'ର ଇଙ୍ଗିତ ବୁଝିବ ଏଇଥିପାଇଁତ ଅନଙ୍ଗଦେବ ଅଧିକ ପ୍ରଭାବଶାଳୀ ।

ମଦନ—ଯା'ହେଉ, ଭାରି ମଜା ହେବ ଏଥର··· ଦୈବ-ବାଣୀ ଶୁଣିଲାଭଳି ରାଜା ଅବା ବାଉଳା ହୋଇଯିବେ ।

[ ଚାଲିଯାଉଥିଲେ ]

ରତି—ଅଧିକ ଶୁଣିଚ, ମଦନ···

ମଦନ—କ'ଣ ?···

ରତି—ଝିଅଟିର ନାମ ମହାଦେଈ ରଶ୍ମିଚନ୍ଦ୍ର—

ମଦନ—'ପାର୍ବତୀ' ? 'ଶିବ-ପାର୍ବତୀ'ଙ୍କ କଥା ଶୁଣୁ ଶୁଣୁ ଝିଅଟିର ଜନ୍ମ ବୋଲି ?

ରତି—( ଅଳ୍ପ ବିରକ୍ତ ଭାବରେ ) ପାର୍ବତୀ ନୁହେଁ 'ଗୌରୀ' ।

ମଦନ—ଓ, ଏହି 'ଗୌରୀ'—ନାଁକୁ ରତିର ଯେତିକି ଡର !—କିନ୍ତୁ ଜାଣିଥାଅ, କାହାଣି-କାହାଣି ହର-ଗୌରୀ ମିଳନକୁ ବି ଏଥର ଅଜ ମଦନର ଡର-ଭୟ ନାହିଁ···କାରଣ ସେ···

ରତି—'ଅନଙ୍ଗ' ( ହସିଲେ )

ମଦନ—ର-ତି···

[ ପୂର୍ଣ୍ଣ କରି ପାରିଲା ନାହିଁ, କାରଣ ସେ ଦେହୀ ନୁହେଁ । ଏକଆଡ଼େ ପ୍ରବଳ ଲିପ୍ସା, ଅନ୍ୟଆଡ଼େ ସମ୍ପୂର୍ଣ୍ଣ ଅକ୍ଷମତା—ଏହି ଦ୍ୱନ୍ଦ୍ୱମଧ୍ୟରେ ଦମ୍ପତିଙ୍କର ଛଟାଛଟି, ଅକଥନୀୟ ବେଦନାରେ ପରିବେଶଟି ଭରିଦେଲା ]

( ଗ )

[ ଦୃଶ୍ୟଃ—ଶିଳ୍ପୀର ଚିତ୍ରଶାଳା । ପରିକଳ୍ପିତ ଯେଉଁ ଯେଉଁ ଚିତ୍ର ପ୍ରସଙ୍ଗରେ ରାଜା ଓ ଶିଳ୍ପୀ ଆଲୋଚନା କରୁଥିଲେ ସେଗୁଡ଼ିକ ବିଶେଷ ଭାବରେ ପ୍ରଦର୍ଶିତ ହୋଇଥାଏ । କେତେକ ଭାସ୍କର ମୂର୍ତ୍ତି ମଧ୍ୟ ସେଠାରେ ଯେ ନ ଥିବ, ତାହାନୁହେଁ ···ସୁଦୂର-ନିନାଦିତ ଶଙ୍ଖ-ଘଣ୍ଟାର ମୃଦୁ ଧ୍ୱନି ଭାସି ଆସୁଥାଏ । ]

ଶିଳ୍ପୀ—ଦୈବ-ବାଣୀ ନୁହେଁ, ରାଜା···ସତ୍ୟ ସମ୍ବାଦ ···ଏହି ଶୁଣନ୍ତୁ,—ମାଙ୍ଗଳିକ ଶଙ୍ଖ-ଘଣ୍ଟାର ଧ୍ୱନି ପ୍ରତିଧ୍ୱନି 'ଏକାମ୍ର' କମାର ଉଲ୍ଲାସର ଲହରୀ ବିସ୍ତାରି ଦେଉଚି ( ଉଲ୍ଲସିତ ଭାବରେ ) ନବଜାତକ ରାଜ-କନ୍ୟା···ନାମ ଗୌରୀ···

ରାଜା—ଶିଳ୍ପୀ···

ଶିଳ୍ପୀ—ରାଜା···

ରାଜା—ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଅଚିରେ ତୁଲାଇବି, ଏଥିପାଇଁ ଶିଳ୍ପୀର ଚେତନା ଘେନି ଶିଳ୍ପଶାଳାକୁ ଆଗମନ; ପୁଣି ବ୍ୟକ୍ତିଗତ ଆନନ୍ଦ ସମ୍ବାଦ—ଏଥିରେ ଅଧୀର ହୋଇ ରାଜକାର୍ଯ୍ୟରେ ଅବହେଳା କରିବି, ଅସମ୍ଭବ ··· ବରଂ ଅନୁପ୍ରେରଣା ପାଇବି, ସାଗ୍ରହେ ରାଜ-କାର୍ଯ୍ୟ କରିବି ଦମ୍ପତି । ହଁ, ତୁମର କର୍ତ୍ତବ୍ୟରେ ଅଗ୍ରସର ହୁଅ ଶିଳ୍ପୀ ।

ଶିଳ୍ପୀ—( ଅପ୍ରସ୍ତୁତ ହୋଇ ଯାଇଥିଲେ, ସପ୍ରଶଂସ ଦୃଷ୍ଟିରେ ଗୋଟିଏ ଚିତ୍ର-ପଟ ଅଡ଼କୁ ଅନାଇ କହିଲେ ) ଏହିଟି କେନ୍ଦ୍ର-ଦେଉଳର ଚିତ୍ର-ରୂପ ।

ରାଜା—ଶିଳ୍ପ ଜାତିର ଜୀବନ-କେନ୍ଦ୍ର । ଶିଳ୍ପ ଐତିହ୍ୟକୁ ବଞ୍ଚାଇ ରଖେ, ଭବିଷ୍ୟତକୁ ସ୍ପନ୍ଦିତ କରେ । ଶିଳ୍ପ ଜୀବନକୁ ପ୍ରତିଫଳିତ କରେ, ଜୀବନକୁ ନୂତନ ଇଙ୍ଗିତ ଦିଏ । ଶିଳ୍ପ ବିକାଶଧର୍ମୀ, ଶିଳ୍ପ ପ୍ରଭାମୟ, ଶିଳ୍ପ ନିତ୍ୟ-ଯୌବନ । ଏହାପରି ନନ୍ଦନ-ତତ୍ତ୍ୱ ଗମ୍ଭୀର ଶିଳ୍ପର ରୂପରେ କଳ୍ପନା କରିଚ,—କୁହ, ଶିଳ୍ପୀ ।

ଶିଳ୍ପୀ—( ଉପ୍ତ-ନୟନରେ ଗୋଟିଏ ଚିତ୍ରପ୍ରତି ଦୃଷ୍ଟି ଆକର୍ଷଣ କରି, କହିଲେ—( ଦେଉଳର ଅଙ୍ଗ-ଶୋଭା ବର୍ଦ୍ଧନ ନିମନ୍ତେ, ଯେଉଁ ଚିତ୍ର ଗୁଡ଼ିକୁ ଭାସ୍କର-ରୂପ ଦେବା କଳ୍ପନା କରିଛୁ, ସେଥିମଧ୍ୟରୁ ଏହିଟି ଅନ୍ୟତମ ।

ରାଜା—( ନିରୀକ୍ଷଣ କରିଥିଲେ, କହିଲେ ) ଯେତ ଅତି ସାଧାରଣ ଶ୍ରେଣୀର ଚିତ୍ର—ଗୋଟିଏ ଯୁବତୀ-ଝିଅ ସୁଣୀ ।

ଶିଳ୍ପୀ—ଖାଣ୍ଟି ଓଡ଼ିଆଣୀ, ମହିମା !

ରାଜା—( ଜାତୀୟ ଗର୍ବ ଅନୁଭବ କଲେ ) ଖଡ଼ୁ, ପାହୁଡ଼, ନୋଥ, ଗୁଣା, ବସଣୀ,—କେତେ କ'ଣ ନାଇଚତ ।

ଶିଳ୍ପୀ—ଖାଣ୍ଟି, ଓଡ଼ିଆ-ଗହଣା, ପ୍ରଭୁ ।

ରାଜା—ଜୁଡ଼ାର ପରିପାଟିତ ବେଶ୍ ।

ଶିଳ୍ପୀ—ବେଣୀ ପାରିବାର ନମୁନା ବିଶେଷ ସା'ନ୍ତେ ।

ରାଜା—( ଅନ୍ୟ ଚିତ୍ର ଦେଖି ) ଯେ ଗୋଟିଏ କୁମାରୀ-ଝିଅ—ଠିଅହୋଇ ଲେଖୁଛି ।

ଶିଳ୍ପୀ—ଓଡ଼ିଆ-ଘର ଝିଅ ଲେଖା-ପଢ଼ା ଶିଖୁଥିଲେ, ରଙ୍ଗ-ତୂଳରେ ଛବି ଆଙ୍କୁଥିଲେ, ଯେ ତା'ର ଗୋଟିଏ ଚିତ୍ର ।

ରାଜା—( ଅନ୍ୟ ଅନ୍ୟ ଚିତ୍ର ଦେଖି ) ଏ' ଚିତ୍ରଗୁଡ଼ିକ ? ଜଣେ ଖଟରେ ବସିଛି, ଜଣେ ବ୍ୟଜନ କରୁଛି, ଜଣେ ଚାମର ଡାକୁଛି, ଜଣେ ଛତା ଧରିଛି, ଜଣେ ତାମ୍ବୁଲ ସେବା କରୁଛି, ଆହୁରି କେତେକଣ ।

ଶିଳ୍ପୀ—ଓଡ଼ିଆ ଘରର ଚଳନ, ଓଡ଼ିଆ-ସଂସ୍କୃତି—ତା'ର କେତେକ ନମୁନା ମାତ୍ର ମହିମା ।

ରାଜା—( ଅନ୍ୟ ଚିତ୍ର ଦେଖି ) ବାଃ···ବୀର ଓଡ଼ିଆର ସମର-ସମ୍ଭାର—ଖଣ୍ଡା, ତରବାରି, ଭାଲ, ଢାଲ, କାଣ୍ଡ, ଶର—କେତେ କ'ଣ ଏ'ଚିତ୍ରରେ ଠୁଳ ?

ଶିଳ୍ପୀ—( ଅପର ଚିତ୍ର ଦେଖାଇ ) ଏଣେ ଦେଖନ୍ତୁ,—ସମାଜର ମର୍ଯ୍ୟାଦା, ଆଉ ଯୋଗ୍ୟ ଯୋଗ ରକ୍ଷାପାଇଁ ଓଡ଼ିଆ ଯେଉଁ ସବୁବିଧ ଉଦ୍ଭାବନ କରିଛି ଯାନ୍ ବାହାନ୍ ବ୍ୟବହାର କରିଛି, ତାର ଚିତ୍ର-ରୂପ— ପାଲିଙ୍କି, ସବାରି, ହାତୀ, ଘୋଡ଼ା···

ରାଜା—ବାଃ···ତହିଁ ସଙ୍ଗେ ଜଳଯାନର ଚିତ୍ର ମଧ୍ୟ । ଓଡ଼ିଆଜାତି ଯେ ବୋଇତଆଳ ଜାତି, ଏ'କଥା କେହି କେବେ ଅସ୍ୱୀକାର କରିବେ ନାହିଁ ଶିଳ୍ପି ।

ଶିଳ୍ପୀ—ବୋଇତର ପ୍ରକାର ଭେଦ ଅଛି, ଥରେ ମହିମାଙ୍କ ଦୃଷ୍ଟିପଡ଼ୁ । ହାତୀ-ବୋଇତ, ଯେଉଁ-ଥିରେ ହାତୀ ଚାଲାଣ ହୁଏ; ମାଲ-ବୋଇତ, ଯେଉଁଥିରେ ମାଲ-ପତ୍ର ବୁହା ହୁଏ; ପ୍ରମୋଦ-ବୋଇତ, ଯେଉଁଥିରେ ରାଜାମାନେ ସାଗର-ବିହାର କରିଥା'ନ୍ତି—

ରାଜା—ବାଃ···ବାଃ···ଏହି ଚିତ୍ରଗୁଡ଼ିକ ଯେତେ-ବେଳେ ଭାସ୍କର-ଶିଳ୍ପୀର ନିପୁଣ ବନକରେ ଲେଖାହେବ, ଆଉ ଖଞ୍ଜା ହେବ ଛନ୍ଦେ ଛନ୍ଦେ ଦେଉଳର ପୃଷ୍ଠଭୂମିସାରା, ସେତେବେଳେ ଓଡ଼ିଆ-ଜାତିର ଶିକ୍ଷା, କୃଷ୍ଟି, ସମାଜ ଓ ସଭ୍ୟତାର ମୂର୍ତ୍ତି ଇତିହାସ ଲେଖା ହୋଇଯିବ ଶିଳ୍ପ-ସ୍ତମ୍ଭର ପୃଷ୍ଠାରେ-ପୃଷ୍ଠାରେ — ହଁ, ଧାରାବାହିକ ମାନବସଭ୍ୟତାର ବିଶ୍ୱ-ଇତିହାସରେ ଓଡ଼ିଆର ଏହି ପ୍ରାଚୀନତା ଯେ ଗୋଟିଏ ବିଶିଷ୍ଟ ଅଧ୍ୟାୟ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ।

ଶିଳ୍ପୀ—ଏଣେ ଦେଖନ୍ତୁ, ମହାରାଜ···( ଯଥା ଚିତ୍ର ଦେଖାଇଲେ )

ରାଜା—ଯେତ ପୁରାଣ ବର୍ଣ୍ଣିତ ଦେବ-ଦେବୀଙ୍କର ଚିତ୍ର !—ବାସ୍ତବ-ଜୀବନ ସଙ୍ଗେ ଏଥିର ସମ୍ପର୍କ ନାହିଁ, ଶିଳ୍ପୀ ।

ଶିଳ୍ପୀ—ଘନିଷ୍ଠ ସମ୍ପର୍କ ଅଛି ମହିମା—ଜୀବନ-ସଂଗ୍ରାମରେ ମାନବ ଯେତେବେଳେ କ୍ଷତ-ବିକ୍ଷତ ଦେହରେ ଆପଣାକୁ ଅସହାୟ ବୋଧ କରିବ, ସେତେବେଳେ ଏହି ପୁରାଣ ବର୍ଣ୍ଣିତ ଦେବ-ଦେବୀ-ଦର୍ଶନ ଓ ଧ୍ୟାନ ଆଣି ଦେବ ନୂତନ ବଳ, କରିବ ନୂତନ ପ୍ରାଣର ସଞ୍ଚାର । ଭବିଷ୍ୟତର ଉଦ୍ଦାମ ମାନବ କଭାବରେ ଅଛୁଳ ହେବ,

ସ୍ୱର୍ଗଶିଳ୍ପୀ କଳ୍ପନା ବିଳାସ ବୋଲି ତୁଚ୍ଛ କରିବ, କିନ୍ତୁ ସ୍ୱର୍ଗର ଆଦର୍ଶ ହିଁ ଅଙ୍କାଉସାରେ ସେ ଗ୍ରହଣ କରିବ ।

ରାଜା—ବେଶ୍ ଏ' ଗୁଡ଼ିକ ରହୁବ ଶିଳ୍ପ-ସ୍ତମ୍ଭର ଅନ୍ତରାଳରେ ।

ଶିଳ୍ପୀ—ଖୋଦିତ ହେବ ଜଗମୋହନ ଓ ପୂଜା-ବେଦୀର ଗାତ୍ରରେ ।

ରାଜା—ଦିଅଠ ଚିତ୍ରଟି, ମହାରାଣୀଙ୍କୁ ଦେଖାଇବି—ମହାରାଣୀ କେତେ ଖୁସି ହେବେ; କାରଣ ଦେବ-ଦେବୀର ତତ୍ତ୍ୱ ସେ ଭଲ ବୁଝନ୍ତି ।

( ଆଗ୍ରହ ସହକାରେ ଚିତ୍ରଟି ଧାରଣ କଲେ )

ଶିଳ୍ପୀ—(ଆନନ୍ଦରେ ଓଷ୍ଠାଧାର ବିସ୍ଫାରିତ ହୋଇଥିବ)

[ ରତ୍ନ ବିପର୍ଯ୍ୟସ୍ତ ଭାବରେ ପ୍ରବେଶ କଲେ ]

ରତ୍ନ—ମଣିମା !

ରାଜା—ରତ୍ନ ?···ତୋର ରାଣୀ-ମଣିମା ମୋ ଉପରେ ଭାରି ରାଗିଥିବେ ମୁଁ ଜାଣେ । ହେଲେ, ରାଣୀ-ହଂସପୁରରେ ଗୌରୀଦେବୀ ବିଜେ କରିଛନ୍ତି,··· ଦେବୀ-ଦର୍ଶନ କରିବି, ଉପଯୁକ୍ତ ଦର୍ଶନୀ ଘେନି । ଦେଖିଲି, ଏ'ତେକି ଦର୍ଶନ-ଲଟି ହେବାକୁ ଯୋଗାଏ କି ନା !

ରତ୍ନ—ମଣିମା'ଙ୍କ ଗୌରୀ ଆଉ ନାହିଁ ।

ରାଜା—ବାଃ ଆବାହନ ସଙ୍ଗେ-ସଙ୍ଗେ ଦେବୀ ବିସର୍ଜନ ! ହାଃ···ହାଃ···ହାଃ···ହାଃ

[ ତୁମୂଳ ହର୍ଷଧ୍ୱନି ମଧ୍ୟରେ ଚିତ୍ରଟି ହସ୍ତ-ଚ୍ୟୁତ ହୋଇ ଭୂ-ଲୁଣ୍ଠିତ ହେଲା ]

ରତ୍ନ—ମଣିମା !···

ରାଜା—ଓ, ମୁଁ ଅସ୍ଥିର ହୋଇ ପଡ଼ୁଚି ! ରାଜା-ଯଯାତି-କେଶରୀର ଧୈର୍ଯ୍ୟ ଚ୍ୟୁତ । ଚାଲ, ଚାଲ ରତ୍ନ ···ତୁମର ରାଣୀ-ମଣିମାଙ୍କୁ ପ୍ରବୋଧ ଦେଇ ମୁଁ କହିବି,—କଳ୍ପନାର ଗୌରୀ କଳ୍ପନାରେ ମିଳାଇ ଯାଇଛି ଘନ ଆକାଶର ବିଦ୍ୟୁତ୍ ଚମକ ଭଳି, ବାସ୍ତବ ଜଗତକୁ ଏହା ଅଭାସ ବାଢ଼ିଚି, ଯେ ପ୍ରତ୍ୟକ୍ଷ ଦୁନିଆରେ କେତେ-କେତେ ଗୌରୀ ଅଛି ମାତୃ-ହସ୍ତ, ଅଧାର-ଘନା, ରାସ୍ତାରେ, ଘାଟରେ ଲୁଚ-ଲୁଚ—ତୁମେ ମହାରାଣୀ, ମହା-ମାତୃତାର ଛବି ଘେନି, ଯେ ହ ଅସଂଖ୍ୟ ଗୌରୀଙ୍କୁ ଆପଣା ବୁକୁରେ ସ୍ଥାନ ଦେବ, ଆଶ୍ରା ଦେବ, ଆଉ ଭଅଁ ସ-ଅଧରରେ ସ୍ନେହ-ଜନ୍ମର ଆନନ୍ଦ ଫୁଟାଇବ । ଚାଲିତ, ଶୀଘ୍ର···

[ ରତ୍ନ ଚାଲିଗଲେ, ମହାରାଜା ଅନୁସରଣ କରୁଥିଲେ, ଏହି ସମୟରେ ବିପରୀତ ଦିଗରୁ ଅଶ୍ୱ-ଖୁର-ଶବ୍ଦ ଶୁଣାଗଲା, ଓ ବାହାବଳୀନ୍ଦ୍ର ଗୋଟିଏ ଜରୁରି ସମ୍ବାଦ ଘେନି ପ୍ରବେଶ କରି ଓ ଡାକିଲେ,— ]

ବାହାବଳୀନ୍ଦ୍ର—ମହାରାଜ !···

ରାଜା—( ଫେରି ଚାହାଇଲେ ) ବାହାବଳୀନ୍ଦ୍ର !··· ତୁମେ ହଠାତ୍ ଏ' ସ୍ଥାନରେ ?

ବାହାବଳୀନ୍ଦ୍ର—ଯାଜପୁର ମୁକାମରୁ ଜରୁରି ସମ୍ବାଦ ଆସିଛି ।

ରାଜା—କ'ଣ ?

ବାହାବଳୀନ୍ଦ୍ର—ଶତ୍ରୁ ଆକ୍ରମଣ କରିଛି !···

ରାଜା—ମୋଗଲ୍ ତ ?

ବାହାବଳୀନ୍ଦ୍ର—କାଶୀ-ରାଜ !···

ରାଜା—ମୋର ପ୍ରତିବେଶୀ ? ସ୍ୱଦେଶ ବାସୀ—? ହାଃ-ହାଃ-ହାଃ-ହାଃ···

ବାହାବଳୀନ୍ଦ୍ର—ବିଷମ-ଶତ୍ରୁ ମଣିମା—

ରାଜା—ଅଥଚ ଆମେ ବିଦେଶୀକୁ, ବିଜାତିକୁ ଘୃଣା କରିଥାଉଁ, ଜାତି-ଶତ୍ରୁ ବୋଲି ?···ନା, ନା ଏ'ସବୁ ଅତି ସାଧାରଣ-ଚିନ୍ତା !···ଏ'ଭଳି ଚିନ୍ତା-ଧାରାରେ ଯଯାତି ଆପଣାକୁ କଦାପି ଭସାଇ ଦେବ ନାହିଁ । ଆମେ ବିଶ୍ୱ-ବାସୀ···ବିଶ୍ୱ-ସମାଜ ଗଠନରେ ପ୍ରୟାସୀ···ମାନବ ମଧ୍ୟରେ ରହିଲା ବିଦ୍ୱେଷର ବର୍ବରତା···ମାନବତାର ସ୍ପର୍ଶ ଦେଇ ତାହା ଉଖାଡ଼ିବାକୁ ହେବ । ଶିଳ୍ପି, ତୁମର ପରିକଳ୍ପିତ ଶିଳ୍ପ-ସମାବେଶର କେନ୍ଦ୍ର-ମନ୍ଦିର,

ହେବ ମୋର ବାସ୍ତବର ପ୍ରୀତି-ସମାବେଶର କେନ୍ଦ୍ର-ମନ୍ଦିର । ତୁମେ ତତ୍ପର ହୁଅ, ମନ୍ଦିର ଠିଆ କର, ମୁଁ ଗଲି ଦେବତାର ପ୍ରୀତି-ଆବାହନେ । ଚାଲ, ସେନାପତେ—କାଶୀରାଜ ଆଜି ଜଗାଇବ ରକ୍ତ, ହାଣିବ ଯଯାତି-ବକ୍ଷେ ଯାବତୀୟ ଅସ୍ତ୍ର… ନାହିଁ ଶୋଚନା—ନେବ ଟାଣି ଜର୍ଜରିତ ବକ୍ଷେ, 'ହରି-ହରି' ବୋଲି ସାନନ୍ଦ ହୃଦୟେ ।

---

—ତନ—

# ସ୍ୱପ୍ନ ( ବିକାଶ )

## (କ)

—ଯାଜପୁର-ରାଜପ୍ରସାଦ ।—

[ ଦୃଶ୍ୟ:—ମହାରାଣୀଙ୍କ ବିଳାସ-କକ୍ଷ । ଯଯାତି ଆଜି ହଠାତ୍ ସେହି କକ୍ଷରେ ଅତ୍ୟନ୍ତ ଚିନ୍ତିତ ମନରେ ପଦ-ଚାରଣ କରିବାକୁ ଦେଖାଯାଉ-ଥିଲେ ]

**ଆବାହକ**—( ନେପଥ୍ୟ ଥାଇ ) ପୂର୍ବ ଘଟଣାର ଷୋଳବର୍ଷ ପରେ ।

**ଯଯାତି**—( କ୍ଷଣକାଳ ପରେ ) ମୁଁ ଯାଜପୁର-ରାଜପ୍ରାସାଦରେ…ମହାରାଣୀ ଏକାମ୍ର-କୁଞ୍ଜରେ… ଦୀର୍ଘ ଷୋଳବର୍ଷର ବ୍ୟବଧାନ ।…କିଏ ଅଛି ?—

( ପରିଚାରିକାର ପ୍ରବେଶ ) ବିଚକ୍ଷଣ ।…

( ପରିଚାରିକାର ପ୍ରସ୍ଥାନ ସଙ୍ଗେ ସଙ୍ଗେ ବିଚକ୍ଷଣର ପ୍ରବେଶ ) ଓ,…ତୁମେ ଅଛ ?…

**ବିଚକ୍ଷଣ**—ଆଦେଶର ଅପେକ୍ଷାରେ ଥିଲି ମହାରାଜ ।

**ଯଯାତି**—ଶୁଣ,—ମହାରାଣୀ ସ୍ମରଣ କରିଛନ୍ତି… ଏକାମ୍ର-ଯାତ୍ରାର ଶୀଘ୍ର ଆୟୋଜନ କର ।

**ବିଚକ୍ଷଣ**—( ଇତସ୍ତତଃ ହେଲେ )

**ଯଯାତି**—କିଛି କହିବାର ଅଛି ?

ବିଚକ୍ଷଣ—ମହାରାଜାଙ୍କ ଖିଆଲ ଥିବ,…ଷୋଳବର୍ଷ ପୂର୍ବେ କାଶୀ-ରାଜ ଯେତେବେଳେ ଉତ୍କଳ-ଅଭିଯାନରେ ଆସିଥିଲେ, ସେତେବେଳେ ଉତ୍କଳ-ଆକ୍ରମଣ ତାଙ୍କର ଲକ୍ଷ୍ୟ-ବସ୍ତୁ ନଥିଲା ।

ଯଯାତି—ଉତ୍କଳର ବଳ-ବୁଝିବା ଥିଲା ପ୍ରଧାନ ଲକ୍ଷ୍ୟ-ବସ୍ତୁ, ଏଥିରେ ଆଦୌ ସନ୍ଦେହ ନାହିଁ । କାରଣ, ମୋ'ର ପ୍ରସ୍ତାବିତ 'ଯୁଦ୍ଧ-ତ୍ୟାଗ'-ନୀତିକୁ ସେ ସେ ଏତେ ସହଜରେ ମାନିନେବେ ସେତେ-ବେଳେ, ଏଥିରେ ବରଂ ମୋ'ର ବିସ୍ମୟର ସୀମା ରହି ନ ଥିଲା ।

ବିଚକ୍ଷଣ—ବର୍ତ୍ତମାନ ସେହି ବିଶ୍ୱାସ-ଘାତକ ବିଶ୍ୱାସର ସୁଯୋଗ ନେଉଛି,—କେମିତି ବ୍ୟାପକ-ଆକ୍ରମଣର ଗୂଢ଼ ଅଭିସନ୍ଧି ସଫଳ କରିବ—ସେଥିପାଇଁ ଅତି ଗୋପନରେ ଏହି ଦୀର୍ଘ-ବ୍ୟବଧାନକୁ କାମରେ ଲଗାଇ ଦେଇଛି,—ତା' !—

ଯଯାତି—ତା' ମଧ୍ୟ ମୋତେ ଅଜ୍ଞାତ ନୁହେଁ, ମନ୍ତ୍ରୀ ! ମୁଁ ଜାଣେ,—କାଶୀରାଜ ହିଂସାର ସାଧକ…ସେହି ହେତୁ, କଳିଯାଇଛି ଉତ୍କଳର ଶକ୍ତି କେବଳ ସ୍ଥୂଳ-ଦୃଷ୍ଟିରେ…ସେହି ଶକ୍ତି ମଧ୍ୟ ଅଦମନୀୟ ଜାଣି, ମାତି ଯାଇଛି ଶକ୍ତିଶାଳୀ ମାରଣାସ୍ତ୍ର ତିଆରିରେ ଆଉ ଅଧିକତର ସୈନ୍ୟ-ସଂଗ୍ରହରେ ।

ବିଚକ୍ଷଣ—ଯେଉଁ ସ୍ଥଳେ ଆମେ କରୁଥାଏଁ…

ଯଯାତି—( ମୃଦୁହସି ) ସୈନ୍ୟ-ସଂଖ୍ୟା-ହ୍ରାସ ?… ମାରଣାସ୍ତ୍ର-ତ୍ୟାଗ ?

ବିଚକ୍ଷଣ—ମହାରାଜ ।

ଯଯାତି—ଥରେ ସୂକ୍ଷ୍ମ-ଦୃଷ୍ଟିରେ ହେଜ ଦେଖ, ମନ୍ତ୍ରି…ଆସୁରିକ ବଳ ଜାତିର ପ୍ରକୃତ ବଳ ନୁହେଁ । ଦେଶର ଶକ୍ତି ଲୁଚି ରହିଥାଏ ଦଶର ମନରେ,—ବିକାଶର ଧାରରେ ସେହି ଶକ୍ତିର ପ୍ରକାଶ,…ବିକାଶର ମୂଳ-ଉତ୍ସ ନିହିତ ମାନବ-ପ୍ରୀତିରେ, … ମାନବ-ପ୍ରୀତି ଉତ୍ସରିତ ହେବ, ଘରେ-ଘରେ—ଏଥିପାଇଁ ଯେଉଁ ଶିକ୍ଷା ଓ ଅନୁଷ୍ଠାନର ପ୍ରୟୋଜନ, ତା'ର ପ୍ରଚେଷ୍ଟାରେ ତ

ଲଗାଇ ଦେଇଛନ୍ତି ଏହି ଦୀର୍ଘ-ବ୍ୟବଧାନ । ବର୍ତ୍ତମାନ ମୁଁ ରାଜଧାନୀକୁ ଗୃହଲି—ପ୍ରୀତିର କେନ୍ଦ୍ର-ଦୁର୍ଗ-ଅପୂର୍ଣ୍ଣ ରହିଛି । ଏ'ଠାର ଦାୟିତ୍ୱ ତୁମ ଉପରେ ନ୍ୟସ୍ତ···ମୋ'ର ନୀତି ଓ ଆଦର୍ଶ ଯେପରି ଅକ୍ଷୁଣ୍ଣ ଥାଏ, ସେଥିପ୍ରତି ଜାଗ୍ରତ ଥିବ ।

ବଚକ୍ଷଣ—ଯାଜପୁର-ମୁକାମରେ ସେହି କେନ୍ଦ୍ର-ଦୁର୍ଗ ନିର୍ମାଣ କରାଇଥିଲେତ କେନ୍ଦ୍ରର କାର୍ଯ୍ୟକରନ୍ତା, କିନ୍ତୁ···

ଯଯାତି—ଆପତ୍ତି ଅଛି, ମନ୍ତ୍ରି । ଯେଉଁ କେନ୍ଦ୍ର-ଦୁର୍ଗ-ଗଠନରେ ମୁଁ ପ୍ରୟାସୀ, ତାହା ହେବ ପ୍ରୀତିରଦୁର୍ଗ, ପ୍ରୀତି-ଦୁର୍ଗ ପ୍ରୀତିର କେନ୍ଦ୍ର-ସ୍ଥଳେ, ପ୍ରୀତିର ବାତାବରଣ ତଳେ ହେବା ବାଞ୍ଛନୀୟ, ଏକାମ୍ରର ସେ ପ୍ରସିଦ୍ଧି ରହିଛି । ଏହି ଏକାମ୍ରରେ, ଧ୍ୱଂସର, ତାଣ୍ଡବ-ସିଦ୍ଧ ନିର୍ମୂଳୀହୋଇଥିଲେ ପ୍ରେମର କଙ୍କାଳ, ମୋହନ ବଂଶୀଧାରୀ । ଏହିଠାରେ ହିଂସାର ଚଣ୍ଡାଶୋକ ହୋଇଥିଲେ ଅହିଂସାର ସାଧକ, ବୋଲକଥିଲେ ଧର୍ମାଶୋକ; ଶିଳାବର୍ଗରେ-ଗାତେ ମାନବଜାତିର ସେହି ପ୍ରୀତି-ମନ୍ତ୍ର ଉତ୍କୀର୍ଣ୍ଣ କିନ୍ତୁ, କୁତ୍ସୁର ଛନ୍ଦେ-ଛନ୍ଦେ, ତାହା ଅନୁରଣିତ ।

ବଚକ୍ଷଣ—ହେଲେ, କାଶୀ-ଯୁବରାଜ ଦୈବ ବଳରେ ଯେମିତ ଦଳୀଗ୍ରାନ୍,—ଶୁଣିଛି-ମହାରାଜ···

ଯଯାତି—କେମିତ ?

ବଚକ୍ଷଣ—ଆଜକୁ ୨୪।୨୫ ବର୍ଷ ତଳର କଥା । କାଶୀରାଜ ହିମାଳୟର ଉତ୍ତରପଥ ଅଭିଯାନରୁ ଫେରୁଥିଲେ; ଗୌରୀ-ଶୃଙ୍ଗ ପାଦଦେଶରେ ବିଶ୍ରାମ କରିବାକୁ ଗଲେ, ଦେଖିଲେ,— ସେ'ଠାରେ ଗୋଟିଏ ଘନ-ବୁଦା, ତା' ଭିତରୁ ନାଗସାପଟିଏ ଫଣା ଟେକି ରହିଚି, ଆଉ ସେହି ଫଣାର ଛତଚଳେ, କଅଁଳିଆ ପିଲାଟିଏ ଶୋଇଛି । ପ୍ରଥମେ ଆତଙ୍କିତ ହେଲେ, ତା'ପର କୌତୂହଳରେ ରାଜା ସେହି ଆଡ଼କୁ ଆଗେଇଲେ, ସାପଟି ବଣ-ବୁଦା ଭିତରେ କେଉଁଠି ଅଦୃଶ୍ୟ ହୋଇଗଲା ।

ଯଯାତି—ହୃଷ୍ଟମନରେ ରାଜା ସେହି ଶିଶୁଟିକୁ ଉଠାଇ ନେଲେ କୋଳକୁ, ପୁତ୍ର-ନିର୍ବିଶେଷରେ ପାଳନ କଲେ—

ବଚକ୍ଷଣ—ନାମକରଣ କଲେ—'ଇନ୍ଦ୍ରଜିତ' ।

ଯଯାତି—( ନାମ ଶୁଣି ହଠାତ୍ ଚମକି ପଡ଼ିବାର ଦେଖାଗଲା )

ବଚକ୍ଷଣ—ଶୁଣିଛି ଅଦ୍ଭୁତ,—କାଶୀରାଜ ସେହି ଶିଶୁଟିକୁ ଯେଉଁଦିନ ଲାଭ କରନ୍ତି, ସେଦିନ କାଶୀ, ଆଉ ତା'ପାଖ-ଆଖ ଅଞ୍ଚଳ ପ୍ରବଳ ଭୂମି-କମ୍ପରେ ହୋଇଥିଲା କମ୍ପମାନ—

ଯଯାତି—ଏ'ଙ୍କ ସ୍ମୃତି ? ଏ'ଙ୍କ ହୃତ୍କମ୍ପ ।··· ଗୌରୀ···ଗୌରୀ···

———

( ଖ )

[ ଦୃଶ୍ୟ:—କଳାପର୍ଦ୍ଦାର ପଟଭୂମି । ରତି ଉଦାସୀ ବେଶରେ ପ୍ରବେଶ କଲେ, ଦରଦୀ କଣ୍ଠରେ ଗାଉ ଗାଉ ]

ରତି—ଗୀତ—

ଗୌରୀ ନାହିଁ···ଗୌରୀ ନାହିଁ···ଗୌରୀ ନାହିଁ ।
ମେନକା-ଦୁଲଣୀ ସେ ରହିବ କାହିଁ ।
ମାୟାର କୁହୁକେ ଭୁଲି,
ବନେ ଆସିଥିଲା ଭୁଲି;—
କାନ୍ଦିଲା ଜନନୀ ତୁହାଇ, ତୁହାଇ,—
ହିମ-ପିତା ଘେଣ୍ଟ ନେଲାତ ଲୁଣ୍ଠାଇ ।
[ ମହାରାଣୀ ପ୍ରବେଶ କଲେ···ତାଙ୍କର ମଧ୍ୟ ଉଦାସୀ ତପସ୍ୱିନୀବେଶ । ]

ରାଣୀ—ରତି ।···

ରତି—ରାଣୀ-ମା ।

ରାଣୀ—ତୁ ମନେ କରିଛୁ କ'ଣ, କହିତ ?

ରତି—ମା ।—

ରାଣୀ—ଗୌରୀ ମୋ'ର ନାହିଁ ?···

ରତି—ମା ।—ଷୋଳବର୍ଷ ହେଲା ଆଜକୁ,···ତୁମେ ଭୋକ ଶୋଷ ଭୁଲିଛ, ରାଜାଙ୍କୁ ଭୁଲିଛ, ଝିଅଟିଏ ଦେଖିଲେ 'ଗୌରୀ' ବୋଲି ଡାକୁଛ, କୋଳକୁ ନେଇ ବୁକରେ ବୁକରେ ତା'ର ନରମଗାଲ

ଭର ଦେଇଛ, ମା'-ପ୍ରାଣ ଶୀତଳ କରୁଛ...
ସେହି ଗୌରୀ-ଝିଅମାନଙ୍କୁ ଦେଖେଇ। ଗୌରୀ-
କଥା ମନରୁ ପୋଛି ପକାଅ, ମା।

ରାଣୀ—ଅଳେ, ଗର୍ବୀଖାଇ ତୁ କହୁଚୁ କ'ଣ ?
ଗୌରୀ-ଝିଅ ମାନଙ୍କ ମେଳରେ ଥାଇ, ମୋର
ଗୌରୀ ଥିଲା ଏଡ଼େଟିଏ ଏଡ଼େ ହୋଇଛି। ମା
ଯେ କିନପୂନା...ତା'ର ଦୁଇ ଆଖିକୁ ଧୂଳି
ଦେବ ସିନା, ଭୁଖାସୁ ଅଖିକୁ କ'ଣ ଏଡ଼ି
ପାରିବ ? ଅନ୍ତରର ଦୃଷ୍ଟିକୁ ? ଗୌରୀକୁ ମୋର
ଥିଲା ଷୋଳ ପୂରିଛି...ଗୌରୀ ମୋ'ର ଆଜି
ଷୋଡ଼ଶୀ—ରୂପସୀ...। ଗୌରୀ...ଗୌରୀ...
( ଧାବମାନ ହେଉଥିଲେ )

ରତ—ମା...ଝରମା-ବନ୍ଦ, ସେ-ଆଡ଼କୁ...

ରାଣୀ—ଅଃ 'ବଣ-ଜଙ୍ଗଲ' ।...ସେଇ ସେହି 'ରାଜା-
ରାଣୀ'-କୁଞ୍ଜ ମୋ'ର...ସେହି ଦୋଳା ମୋ'ର
ଦେଖ୍, ଦେଖିଲେ, ବତ...ଗୌରୀ ମୋ'ର
ଝୁଲଣି ଦୋଳରେ ବସି କି ସୁନ୍ଦର ଝୁଲୁଚି—
ଅଉ ସାଥିର ଗୌରୀମାନେ ତାକୁ ଝୁଲଉଛନ୍ତି—
ଗୌରୀ...ଗୌରୀ...( ଅଗ୍ରସର ହେଲେ...ନିଜେ
ଆବେଗରେ ଗାଇଉଠିଲେ )—

[ ପଟ ପରିବର୍ତ୍ତନ ]

---

( ଗ )

[ ଦୃଶ୍ୟ:—'ରାଜା-ରାଣୀ'-କୁଞ୍ଜ । ଗୌରୀ
ଦୋଳରେ ବସି ଝୁଲୁଥିଲା । ଅନ୍ୟ ସମବୟସୀ
ଝିଅମାନେ ଦୋଳାଉଥିଲେ ଓ ଗାଉଥିଲେ,—]

ଗୀତ

ଝିଅମାନେ—ଝୁଲ, ଝୁଲ, ଗୌରୀ—ଝୁଲ, ଝୁଲ, ଝୁଲ ।
ଅଧର-ସୁଷମାରେ ଫୁଲ, ଫୁଲ, ଫୁଲ ॥
ଡେମେ-ଡେମେ ନାଚେ ଫୁଲ,—
ଅଳି କରେ ଅଳି-କୁଳ;
ଗୁଣୁ-ଗୁଣୁ ଗାଏ ଗାନ,—
ସମୀରଣ ଦିଏ ତାନ
ଉଠୁ ଛନ୍ଦେ ତାନ, ଫୁଲ, ଫୁଲ, ଫୁଲ ।
ପ୍ରୀତି-ଝୁଲ-ମନ୍ଦେ ଝୁଲ, ଝୁଲ, ଝୁଲ ॥

ରାଣୀ—( ସୁହୃଦ୍‌ଗତ-ଭୁଲୁଫଟା କଣ୍ଠରେ ଡାକିବାକୁ
ଲାଗିଲେ ଭୁହାଇ-ଭୁହାଇ... ) ଗୌରୀ...
ଗୌରୀ...ଗୌରୀ

[ ପଟ ପରିବର୍ତ୍ତନ ]

---

( ଘ )

[ ଦୃଶ୍ୟ:—ଅରମା ବଣ ଜଙ୍ଗଲ ।...'ରାଜା-
ରାଣୀ'-କୁଞ୍ଜର ସେ-ଶୋଭା ଆଉ ନାହିଁ । ]

ରାଣୀ—( ପୂର୍ବାବେଗରେ ଡାକୁ ଡାକୁ ଧାଇଁଗଲେ
ସେଠାକୁ )

ରତ—ମା—ମା—। ( ସେ ଦ୍ରୁତରେ ଅନୁସରଣ
କରୁଥିଲେ, ଧରି ଆକଟ କଲେ)

[ ଠିକ୍ ସେହି ମୁହୂର୍ତ୍ତରେ ମହାରାଜା ପ୍ରବେଶ
କଲେ ]

ରତ—ମ...ଣି...ମା...( ବିସ୍ମୟ-ବିସ୍ଫାରିତ ନେତ୍ରରେ
ଚାହିଁ, କଣ୍ଠରେ ଜଣାଇ ଚାଲିଗଲେ )

ରାଣୀ—( ରାଜାଙ୍କୁ ନିରୀକ୍ଷଣ କଲେ ସ୍ୱପ୍ନ-ଦୋଳା
ଦୃଷ୍ଟିରେ, କହିଲେ ସ୍ୱପ୍ନ-ଭଙ୍ଗା କଣ୍ଠରେ ) ରାଜା ?

ରାଜା—ରାଣୀ !...( ନିକଟେଇ ଆସିଲେ )

ରାଣୀ—ତୁମେ ଆସିଛ ? ମୋ'ର ଡାକ ଶୁଣିଛ ?
ତୁମର ରାଜ-କାର୍ଯ୍ୟରେ ମୁଁ ବାଧା ଦେଇ ନାହିଁ ତ ?

ରାଜା—ତୁମେ ଅସୁସ୍ଥ...ଡଅସକୁ ଚାଲିଚ...

ରାଣୀ—ମୁଁ ସୁସ୍ଥ...ଭାରି ସୁସ୍ଥ, ରାଜା...ସଗହଣେ
ରାଜପଥ ପରିକ୍ରମା ବେଳେ ରାଜ୍ୟର ଗୌରୀ-
ଝିଅମାନେ ନିଶ୍ଚୟ ବଢ଼େଇ ଥିବେ—ଉଜ୍ଜ୍ୱଳ
ଡାହିଲ ଝିଅମାନଙ୍କ ସ୍ୱାସ୍ଥ୍ୟପ୍ରତି ଅବଶ୍ୟ ଦୃଷ୍ଟି
ପଡ଼ିଥିବ—ସେଇଥିରୁ ବୁଝିବ ମା'ର ସ୍ୱାସ୍ଥ୍ୟର
ଲକ୍ଷଣ । ହଁ, ଆମର ଗୌରୀକୁ ଏବେ ଷୋଳ;
ରାଜୁଅ ଝିଅ; ଘରେ ରଖିବା ଠିକ୍ ହେବତ ?
...ସେବି ତ ଗୋଟାଏ ସଂସାରର ଧର୍ମ—
ରାଜକାର୍ଯ୍ୟର ଅଙ୍ଗ ।...

ରାଜା—ତୁମେ ଡିଆସକୁ ଚାଲିଲ ଆଗେ ।

ରାଣୀ—ଗୌରୀ···ଗୌରୀ···ଅଲେ, ନନା'ମ···

ରାଜା—ରାଣୀ···

ରାଣୀ—ଦେଖ, ତୁମେ ଥରେ ଡାକ ଝିଅଟାକୁ··· ଏବେ, ଯୁବା-ଝିଅ···ଯେ ପିତାକୁ ଜନ୍ମରୁ ଦେଖିନି, ସରମେଇବ···ଲାଜେଇବ, ଏଥିରେ ଅଉ ଆଶ୍ଚର୍ଯ୍ୟ କ'ଣ ?

ରାଜା—ରା—ଣୀ···( ରାଣୀଙ୍କୁ ଅବେଗ-ଆପ୍ଲୁତ ଅନ୍ତରରେ ଧାରଣ କଲେ )

ରାଣୀ—ରା—ଜା···( କହି ନପାରି, ଅଜାଡ଼ି ହୋଇ ପଡ଼ିଲେ ରାଜାଙ୍କ ପ୍ରଶସ୍ତ ବୁକୁ-ଦେଶରେ )

[ ଦୁହିଁଙ୍କ ଆଖିରୁ ଟପ-ଟପ ଗଡ଼ି ପଡ଼ିବାକୁ ଲାଗିଲା ତପ୍ତ ଅଶ୍ରୁର ଅବିରଳ ଧାରା ]

[ ପଟ ପରିବର୍ତ୍ତନ ]

---

( ଙ )

[ ଦୃଶ୍ୟଃ—କଲ୍ୟାପର୍ଦ୍ଦା । ଏକଅଡ଼ୁ ରତି ଓ ଅନ୍ୟଅଡ଼ୁ ମଦନ ପ୍ରବେଶ କଲେ; ଏହାପରେ ବାଗ୍‌ବିତଣ୍ଡା କରୁ କରୁ ]

ରତି—ମରିଛୁ ।

ମଦନ—ବଞ୍ଚିଛୁ ।

ରତି—ବଞ୍ଚିପାରେ ନା ।

ମଦନ—ମରି ପାରେ ନା ।

ରତି—ଅଲବତ୍ ମରିଛୁ ।

ମଦନ—ଅବଲତ୍ ବଞ୍ଚିଛୁ ।

ରତି—ମୁଁ କହୁଚି ଗୌରୀ-କଥା ।

ମଦନ—ମୁଁ ବି କହୁଚି ଗୌରୀ-କଥା ।

ରତି—ବେଶ୍, ବାଜି ।

ମଦନ—ମୁଁ ବି ରାଜି । ( ହାତରେ ହାତ ମିଳାଇଲେ ଦୁହେଁ )

ରତି—ବଞ୍ଚିଛୁ—ପ୍ରମାଣ ?···

ମଦନ—ପ୍ରମାଣ;—ତୁମେ ଓ ମୁଁ ।

ରତି—ମାନେ ?

ମଦନ—ବି-ଦେହୀ ମଦନ, ରତି ଆଖିରେ ସ-ଦେହୀ ମଦନ ନୁହେଁକି ?

ରତି—ତେବେ ତ ଗୌରୀ ସ୍ୱପ୍ନ ନୁହେଁ···

ମଦନ—ଦୁନିଆ-ଆଖିକୁ ଯା' ସ୍ୱପ୍ନ; ତା' କବି, ଶିଳ୍ପୀ, ଆଉ ଦରଦୀ-ଆଖିକୁ ନିରାଟ ସତ୍ୟ । ଶୁଣ···ତୁମେ ତ ଜାଣ;—ଏକାମ୍ର-ତରୁର ଶର୍ଜନ କୋରଡ଼ରେ ମୁଁ ବସା ବାନ୍ଧିଛି । ଦିନର ଆଲୁଅ ଲିଭ ଲିଭ ଆସିଲା ବେଳେ ମୁଁ ବାହାରେ—ଆଲୁଅ-ଛାଇର ଲୁଚକାଳି ଖେଳ ଜମେ—ସେତିକି ବେଳେ ହଁ ପ୍ରସା ଦୁନିଆର ଦେବ-ଦେବୀମାନେ ସେହି ତରୁମୂଳେ ରୁଣ୍ଡ ହୁଅନ୍ତି—ବି-ଦେହୀଙ୍କ ସଭା ବସେ···ମୁଁ ବି ଯାଇ ବୈଠକରେ ଯୋଗଦିଏ । ଏମିତି ବେଳେ ତୁମେ ହଠାତ୍ ଆଜି ମୋତେ ସୁମରଣା କଲ କିଆଁ କ'ଣ ?

ରତି—ନାଗୁର ବୋଲ୍—

ମଦନ—କ'ଣ ଶୁଣେ ?

ରତି—ଏ' ତେଇଶଦିନ ହେଲା; ମହ ରାଣୀ ହଇରାଣ—ଗୌରୀକୁ ଖୋଜି-ଖୋଜି ପାଉ ନ ଥିଲେ । ଏକାମ୍ର-ଦେବୀ ଭୁବନେଶ୍ୱରୀ ଆଜି ରାତିପାହାନ୍ତା ସ୍ୱପ୍ନେଇଛନ୍ତି, ଗୌରୀର ସନ୍ଧାନ ବତେଇଛନ୍ତି; ଆଉ ପୂଜା ମାଗିଛନ୍ତି—ମୋ'ର ଉପରେ ରାଣୀ-ମା ସେଇ ଭାର ଲଦିଛନ୍ତି । ଘଡ଼ି-ସନ୍ଧିବେଳେ ତ ଠାକୁରାଣୀମାନେ ଜାଗ୍ରତ ହୁଅନ୍ତି ପୂଜା ନିଅନ୍ତି—

ମଦନ—ତା' ଜାଣେ···

ରତି—ଏବେ କରେ କ'ଣ ?—ବିନ୍ଦୁସାଗରର ନିଛାଟିଆ ପଟେ ତାଙ୍କର ରହଣି—ତୁମେ ସାଥି ନ ହେଲେ, ସେଠାକୁ ଏକା ଯିବାକୁ ମୋର ବହପ ଘଟୁନି ।

ମଦନ—ତା' ବେଶ୍—(ହଠାତ୍ ଗୁହିଁଦେଇ) ରତି ! ଏବେ ଦେଖିଛ କେଉଁମାନେ···

ରକ୍ତ—ରାଜା, ରାଣୀ ନୁହେଁ । ଚାଲ, ଚାଲ...
( ଭୟରେ ଥର ଥର ହୋଇ ପ୍ରସ୍ଥାନ କଲେ ରାଜସଭା ଦ୍ୱାରରେ )

× × ×

ରାଣୀ—ତୁମେ କହୁଥିଲ,—କାଶୀରାଜା ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛନ୍ତି, ଆଜକୁ ଷୋଳବର୍ଷ ହେଲା । ...ଯା'ର କାରଣ ?

ରାଜା—(ହସି) ଅତି ସାଧାରଣ ।... ଆମର ଦେଶ ଆକ୍ରମଣ କରିବେ, ଏଇଥିପାଇଁ ।

ରାଣୀ—ତୁମେ ତାଙ୍କର ଦେଶ ଆକ୍ରମଣ କରିବ, ଏଥିପାଇଁ ନୁହେଁ କାହିଁକି ?

ରାଜା—ମୁଁ ତ 'ଯୁଦ୍ଧ ତ୍ୟାଗ'-ପ୍ରସ୍ତାବ ବାଢ଼ିଥିଲି ।

ରାଣୀ—ସେହି ପ୍ରସ୍ତାବ ତଳେ-ତଳେ ଯେ ତୁମର ଗୂଢ଼ ଅଭିସନ୍ଧି ଲୁଚି ରହି ନ ଥିଲା, ବା ନାହିଁ, କିଏ କହିବ ?

ରାଜା—ହେଲେ, ଆମର ରାଜ୍ୟ-ସୀମା ବରାବର ସୈନ୍ୟ-ସମାବେଶ...ଯା'ର ଅଭିପ୍ରାୟ ?

ରାଣୀ—ଆତ୍ମ-ରକ୍ଷା ।

ରାଜା—ଏଇୟା ତୁମର ଆତ୍ମ-ବିଶ୍ୱାସ ?

ରାଣୀ—ଯାହାକୁ ବଳ ଆତ୍ମ-ବିଶ୍ୱାସ ମୋର କ'ଣ ଜାଣ ?

ରାଜା—କ'ଣ ?

ରାଣୀ—କାଶୀର ଯୁବରାଜ,—ସ୍ୱୟମ୍ଭୂ ଲିଙ୍ଗରାଜ ।... ଅନୁଷ୍ଠିତ ଉତ୍କଳ-ଅଭିଯାନର ନାୟକ—ଲକ୍ଷ୍ୟ-ବସ୍ତୁ ରାଜଧାନୀ—ଯାଜପୁର-ମୁକାମ ନୁହେଁ, ଲକ୍ଷ୍ୟ-ବସ୍ତୁ ଦ୍ୱିତୀୟ-ବାରଣସୀ-ଏକାମ୍ରକାନନ... ଆସୁଛନ୍ତି ଶିଙ୍ଗା, ଡମ୍ବରୁ ବଜାଇ, ଆସୁଛନ୍ତି ଭୂତ-ପ୍ରେତ ଗହଣରେ...ଶୁଭ-ଶଙ୍ଖ, ହୁଳହୁଳି ପରିବର୍ତ୍ତେ 'ହରହର ବୋମ୍‌ବୋମ୍‌' ଧ୍ୱନି କମ୍ପାଇବ ମେଦିନୀ-ଅମ୍ବର ହସ୍ତଦାନରେ ଲିଙ୍ଗରାଜ ଗୌରୀର କୁମାରୀବ୍ରତ କରିବେ ଉଦ୍‌ଯାପନ ।

ରାଜା—ଏ' ଗୁଡ଼ାକ ତୁମର ମଥାର ବିକୃତି !

ରାଣୀ—କିନ୍ତୁ, ତୁମପରି ବୁଦ୍ଧିର ବିକୃତି ନୁହେଁ ।

ରାଜା—ମୋ'ର ?

ରାଣୀ—ଥରେ ମନେ କରତ, ଶତ୍ରୁର ଆକ୍ରମଣ ବାର୍ତ୍ତା ପାଇ ଯାଜପୁର ଧାଇଁଗଲାବେଳେ, କି ଶପଥ ଗ୍ରହଣ କରିଥିଲ ?

ରାଜା—( ସ୍ମରଣ କରିବାକୁ ଲାଗିଲେ—ଶପଥର ଶେଷ ପଦଗୁଡ଼ିକ । ପ୍ରତିଧ୍ୱନିତ ହେବାକୁ ଲାଗିଲା ଏହିପରି—) "କାଶୀରାଜ ଆଜ ଉଦ୍‌ଗୀରିବ ବିଷ, ହାଣିବ ଯଯାତି-ବକ୍ଷେ ଯାବତୀୟ ବସ୍ତୁ... ନାହିଁ ଶୋଚନା...ନେବି ଟାଣି ଜର୍ଜରିତ ବକ୍ଷେ, 'ଭାଇ-ଭାଇ' ବୋଲି, ସାନନ୍ଦ ହୃଦୟେ ।"

ରାଣୀ—ଯୁଦ୍ଧର ଦାମାମା ବାଜିଲା ପରେ ଏହି ସଂକଳ୍ପ ତୁମର ମନରେ ଅବିଚଳ ଥିଲା ତ, ରାଜା ?

ରାଜା—ନିଶ୍ଚୟ...( ଦୃଢ଼ କଣ୍ଠରେ କହିଲେ ମଧ୍ୟ, ଗୋଟିଏ ସନ୍ଦେହରେ ମନର ଆକାଶ କୋଣ ଅନ୍ଧାରିବାକୁ ଲାଗିଲେ )

ରାଣୀ—( ସେହି ଭାବ ଲକ୍ଷ୍ୟ କଲେ, ମୃଦୁ ହସି କହିଲେ )—ମାନୁଛି, ରାଜା...ତୁମେ ଏହି ଦୀର୍ଘକାଳ ଯାବତ୍ ଅହିଂସାର ଆଦର୍ଶକୁ ତ୍ୟାଗ କରିନାହଁ, ତା'କୁ ରୂପ-ରେଖ ଦେବ, ଏଥିପାଇଁ ଯତ୍ନର ତ୍ରୁଟି କରିନାହଁ...ତଥାପି ତୁମର ମନର ଗହ୍ୱର ତଳେ ଅହିଂସାର ବିଷଧର କୁଣ୍ଡଳୀକୃତ ଥାଇ, ଦଂଶନର ସୁଯୋଗ ଖୋଜି ବୁଲୁଛି କିନା, ଥରେ ହେଜ ପାଖୁ ଦେଖତ, ରାଜା ?

ରାଜା—ରା-ଣୀ...

ରାଣୀ—ତୁମେ ଅସ୍ୱୀକାର କରିପାରିବ ନାହିଁ, ରାଜା...!...ଅହିଂସାର ଆଦର୍ଶ ଯଦି ତୁମର ଜୀବନର ଆଦର୍ଶ ହୁଏ, ଅହିଂସାର ମନ୍ତ୍ର ଯଦି ତୁମର ସାଧନାର ମୂଳ ମନ୍ତ୍ର ହୁଏ, ଆଉ ଅହିଂସାର କେନ୍ଦ୍ର-ଦୁର୍ଗ ନିର୍ମାଣ କରିବ ଅହିଂସାର କେନ୍ଦ୍ରସ୍ଥଳୀ ଏହି ଏକାମ୍ର-କାନନରେ,—ଏହାହିଁ ଯଦି ତୁମର ନିର୍ମଳ ମନର ଦୃଢ଼ ସଂକଳ୍ପ ହୋଇଥାଏ, ତେବେ ହିଂସା, ଭୟ, ସନ୍ଦେହ—ଏହିସବୁ ମାନସିକ ଗ୍ଲାନି କାହିଁକି, ରାଜା ? ଆସୁ କାଶୀରାଜ ତା'ର ଯାବତୀୟ ଅସୁର-ବଳ ଘେନି,

ଅମ୍ଭ ଲିଙ୍ଗରାଜ ଧ୍ୱଂସର ପ୍ରଳୟ-ତାଣ୍ଡବ ନାଚ,—ଲିଙ୍ଗରାଜ ତୁମର ସ୍ନେହର ଧନ, କାଶୀରାଜ ତୁମର ଭାଇଠୁ ଅଧିକ,—ଏହିଭାବେ ବରନେବ ଦୁହେଁ—ଖୋଲିଦେବ ଯେଉଁସ୍ନେହ ବିଶ୍ୱ ସାରା ମାନବିକତାର ପ୍ରୀତି-ନିର୍ଝରଣୀ।...

ରାଜା—ରାଣୀ !...ରାଣୀ !...ଆଉ ବିଳମ୍ବ ନୁହେଁ। କାଲି ମୁଁ ଦେଶେ-ଦେଶେ ନିମନ୍ତ୍ରଣ ପଠାଇବି... କାଶୀରାଜଙ୍କୁ ପ୍ରଧାନ ଅତିଥି ପଦରେ ବରଣ କରି, ସେମାନେ ଆସିବେ...ଏକାମ୍ରରେ ପ୍ରୀତି-ବୈଠକ ବସିବ...ମୋ'ର ପରିକଳ୍ପିତ ପ୍ରୀତି-ଦୁର୍ଗର ଭିତ୍ତି ପଡ଼ିବ।

ରାଣୀ—( ଭାରି ଉତ୍ସାହରେ ) ମୋ'ର ଗୌରୀ ନାଁରେ ଯେଉଁ ଶୁଭ-ସ୍ୱପ୍ନ ଦେଖିଛ, ତା' ସଫଳ ହେବ। ଗୌରୀ ମୋ'ର ଘର କରିବ—'ହର-ଗୌରୀ'-ପ୍ରୀତି ତୁମର ପ୍ରୀତି-ଦୁର୍ଗର ପ୍ରତିଷ୍ଠା କରିବ।...

ରାଜା—କୁହ, ରାଣୀ,...ଗୌରୀ ନାଁରେ କି ସ୍ୱପ୍ନ ଦେଖିଛ ? ତା' ଜାଣିଲେ କାର୍ଯ୍ୟକ୍ଷେତ୍ରରେ ମୁଁ ଆହୁରି ବଳ ପାଇବି—ତୁମେ ମୋର ସ୍ୱପ୍ନ-ପାପର ଗୁପ୍ତ-ସନ୍ଧାନ ଦେଇଛ ପତିକୁ ଅଧଃପତନରୁ ରକ୍ଷା କରିଛ, ସହଧର୍ମିଣୀର ଆଦର୍ଶ ବାଢ଼ିଛ। କୁହ-କୁହ ମୋ'ର ଗୌରୀ-କଥା କୁହ—

ରାଣୀ—( ଭାବ ବିହ୍ୱଳ ହୋଇ ମନକୁ ମନ କହିଲେ ) —ଗୌରୀ !...ତୋ'ର ଜନ୍ମଦାତା...ତୋ'ର ପାଇଁ ଆଜି ଉଚ୍ଛନ୍ନ !...ତୋ'ର କଥା...( ଆତ୍ମ ସମ୍ବରଣ କରି ) ବସନ୍ତ—ତୁମର ଗୌରୀ-କଥା ଶୁଣିବ ପରା ?

[ ସେ'ଠାରେ ପଥରଟିଏ ପଡ଼ିଥିଲା। ଦୁହେଁ ସେହି ପଥର ଉପରେ ଆସନ ଗ୍ରହଣ କଲେ ]

ରାଜା—କୁହ—

ରାଣୀ—ଶୁଣିଚତ...ଦିନର ଆଲୁଅରେ ଗୌରୀ କାହିଁ ଉଭେଇଯିବ, ଗୋଧୂଳିର ମଧୁର ଲଗ୍ନରେ ସେ ଦେଖାଦେବ !...କେତେ ଗୌରୀ ଯେ ତା' ଗହଣରେ ଥିବେ,କଳି ହେବନାହିଁ। ଏହି 'ରାଜା-ରାଣୀ'-କୁଞ୍ଜରେ ଗୌରୀର ଯେତିକି ଆନ୍ଦୋଳ, ଏହିଠାରେ ସେମାନେ ଖେଳରେ ମାତିବେ—ମୁଁ ଦିନେ-ଦିନେ ଅସହଣୀ ହୋଇ 'ଗୌରୀ' 'ଗୌରୀ' ବୋଲି ଧରିବାକୁ ଦୌଡ଼ଯାଏଁ, ସେ ସାଙ୍ଗ-ସାଥି ମେଳ ଯେନି ପଳାଇବ। ସେଥିପାଇଁ ଠାଏଁ ଲୁଚି ଛପି ବସି ସେମାନଙ୍କର ଖେଳ-କୌତୁକ ଦେଖେଁ।..ଗୌରୀ ଦୋଳରେ ବସିବ, ଆଉ ସମବୟସୀମାନେ କେତେ ରଙ୍ଗରେ, ଗୀତ ଗାଇ ଝୁଲାଇବେ।...ଆହୁରି 'କଣ୍ଢାମାଛ, ଭଣ୍-ଭଣ୍', 'ବାଲେଇ ମ ଟି ସଣ୍-ସଣ୍', 'ସୂତ୍ର ଟୋପି ଝୁର୍-ଝାର୍'—ଏହିପରି କେତେ ଢଙ୍ଗର ଖେଳ ଖେଳିବେ · ରାତି ବଢ଼ିଗଲେ ସବୁ ଶୂନ୍ ଶାନ୍ ..ତା'ପରେ...

( ବହିଗଲେ )

ରାଜା—କ'ଣ ହେଲା ?

ରାଣୀ—ଦିନେ ଲୁଚକାଳି ଖେଳୁଥିଲେ, ଫୁଲ ସଞ୍ଜର ଝାପ୍‌ସା ଆଲୁଅରେ—ହଠାତ୍ ଗୌରୀ ମେଳ ଛାଡ଼ି ଲୁଅଡ଼େ ଅଦୃଶ୍ୟ ହୋଇଗଲା—ପତ୍ତା ମିଳିଲା ନାହିଁ...ରାତି-ସାରା ମୋ'ର ନି ଦ ହେଲା ନାହିଁ—ଭୁବନେଶ୍ୱରୀଙ୍କ ଠାରେ ଧ୍ୟାନ ଲଗାଇଲି, ପୂଜା ମନାସିଲି—ଅଧିଷ୍ଠାତ୍ରୀ-ଦେବୀ ପ୍ରସନ୍ନା ହେଲେ, ମୋତେ ସ୍ୱପ୍ନରେ ଦେଖାଇଲେ—

ରାଜା—କ'ଣ ?...

[ ପଟ୍ଟ ପରିବର୍ତ୍ତନ ]

---

( ଚ )

[ ଦୃଶ୍ୟଃ—ବିନ୍ଦୁସାଗର। ଗୌରୀ ଠିଆ ହୋଇଥିଲେ ଅବାକାବା ହୋଇ। ଭୟ ଚକିତା ଏଣୀ ପରି ଏଣୀ-ନୟନା ଏଣେ ତେଣେ ଚଞ୍ଚଳ ଦୃଷ୍ଟିପାତ କରୁଥିଲେ—କହିଲା ସାତଙ୍କେ। ]

ଗୌରୀ—ସେ ମୁଁ କେଉଁଠି ?

[ ଭୁବନେଶ୍ୱରୀ ଗୋପାଳୁଣୀ ବେଶରେ, ଦହି ପଶରା ମୁଣ୍ଡାଇ, ସେଠାରେ ହଠାତ୍ ଉପସ୍ଥିତ ହେଲେ ]

ଭୁବନେଶ୍ୱରୀ—ଜାଣନା ?—ସେଇ ପରି ବିନ୍ଦୁସାଗର ।

[ ଠିକ୍ ସେତିକିବେଳେ ସାଗର ଆରପାରରୁ ଭାସି ଆସିଲା କୁଳୁଫଟା କଣ୍ଠ ସ୍ୱରରେ ବ୍ୟଥାଭରା ସଙ୍ଗୀତଟିଏ...]

—ଗୀତ—

ହେ, ବିନ୍ଦୁସାଗର ଧୀର ।
ବିନ୍ଦୁ-ବିନ୍ଦୁ କରି ଧରିଛକି ଅଶ୍ରୁନୀର ॥

ଗୌରୀ—କିଏ କାନ୍ଦୁଛି, ଗୋପାଳୁଣୀ ?

ଭୁବନେଶ୍ୱରୀ—ତୁମରି ସ୍ମୃତି...

ଗୌରୀ—ମୋ'ର ସ୍ମୃତି ?...

ଭୁବନେଶ୍ୱରୀ—ହଁ,—ଅତୀତ ମୃତ ଜୀବାତ୍ମାର ଆସକ୍ତି ଏହା ତା'ର ବ୍ୟଥିତ ଅଭିବ୍ୟକ୍ତି ।

ଗୌରୀ—ମାନେ ?

ଭୁବନେଶ୍ୱରୀ—ମାନବ ଯେତେବେଳେ ସ୍ଥୂଳ ଭାଷାଦ୍ୱାରା ଅନ୍ତରର ଗମ୍ଭୀରତମ ବେଦନା ପ୍ରକାଶ କରିବାକୁ ଅକ୍ଷମ, ସେତେବେଳେ ସେ ସାହାଯ୍ୟ ନେଇଥାଏ ସୂକ୍ଷ୍ମ-କଳେବରର...କଳେବରର ସୃଷ୍ଟି-ତତ୍ତ୍ୱ, ଦେହର କୃଷ୍ଟି-ଗହ୍ୱରରେ ନିହିତ । ପୁଣି...

ଗୌରୀ—ପୁଣି ?—

ଭୁବନେଶ୍ୱରୀ—ମାନବ ମନର ବିଚିତ୍ର ଧାରା ଏହି ସ୍ମୃତିକୁ ଦେଇଛି ବିଚିତ୍ର ଔପାଖ୍ୟାନିକ ରୂପ ।

ଗୌରୀ—କିପରି ?

ଭୁବନେଶ୍ୱରୀ—ଗୋଟିଏ ଉପାଖ୍ୟାନ କହେ, ଦେବୀ ଯେତେବେଳେ କୃତ୍ତି ଓ ବାସ,—ଏହି ଦୁଇ ଦାନବକୁ ଦଳି, କ୍ଳାନ୍ତ ହୋଇ ପଡ଼ିଲେ, ଆଉ 'ଜଳ'-'ଜଳ' ବୋଲି ଶୋଷରେ ଅଧୀର ହେଲେ, ସେତେବେଳେ ଦେବ ନାନା ସ୍ଥାନ ଅନୁସନ୍ଧାନ କରି ସୁଦ୍ଧା ଜଳର ସନ୍ଧାନ ପାଇଲେ ନାହିଁ—ସୁତରାଂ ପ୍ରଚଣ୍ଡ କ୍ରୋଧରେ ଦିକ୍‌ଶୂନ୍ୟ ହୋଇ, ପୃଥିବୀର ଏହି ସ୍ଥାନଟିକୁ ତ୍ରିଶୂଳ-ବିଦ୍ଧ କଲେ । ଜଳର ଧାରା ଉଚ୍ଛୁଳିଲା, ଦେବୀ ତୃଷ୍ଣା ମେଣ୍ଟାଇଲେ—ମାତ୍ର ଷତସ୍ଥାନ ରହିଗଲା । ଦେବୀ ମା-ଧରିତ୍ରୀର ଏ'ଭଳି ଦୁର୍ଦ୍ଦଶାରେ ଦରଦୀ ହୋଇ, ଦରଦର ଅଶ୍ରୁ ଝରିଦେଲେ...

ବିନ୍ଦୁସାଗର ସେହି ଅଶ୍ରୁନୀରର ଆଧାର, ତୋର ଦର୍ଶନ ଆଜି ଦେବୀଙ୍କୁ କରୁଛି ଅଧୀର...।—ଏହି କରୁଣ ସଙ୍ଗୀତ ତା'ର ସଙ୍କେତ । ଅନ୍ୟ ଉପାଖ୍ୟାନ କହେ—

ଗୌରୀ—କ'ଣ ?—

ଭୁବନେଶ୍ୱରୀ—ଠାକୁରାଣୀ ଭୋଳା-ଦିଗମ୍ବରଙ୍କ ମୁଖରୁ ଏହି ଦ୍ୱିତୀୟ ବାରାଣସୀ-ଏକାମ୍ରର ବାରମ୍ବାର ପ୍ରଶଂସା ଶୁଣି, କୌତୂହଳରେ ଯେତେ ନୁହେଁ, ସପତ୍ନୀ-ସୁଲଭ ଈର୍ଷାରେ ତେତେ ଅଧୀରା ହୋଇ, ଅଳୁହା-ଅପୁଷ୍ଟ ଏ'ଠାକୁ ଧାଇଁ ଆସିଥିଲେ ।...ସନ୍ଦେହ ତୁଟିଲା, କୌତୁକ ବଢ଼ିଲା—ପିତାଙ୍କୁ ସ୍ମରଣା କଲେ । ପତି ଅପ୍ରସନ୍ନ ରହିଲେ—ତେଣୁ ନିଜକୁ ଧିକ୍କୃତ କରି, ଗୋପାଳୁଣୀ ବେଶ ପରିଗ୍ରହ କରି, ପତିର ଆରାଧନାରେ ଦିନ ରାତି ବିତାଇ ଦେଲେ । ଯେଉଁ ବିରହ-ତାପରେ ଦଗ୍ଧ ହୋଇ, ବେଦନାର ଅଶ୍ରୁ ଢାଳିଦେଲେ, ସେଥିରେ ପ୍ରସ୍ତୁତ ହେଲା ଏହି ବିନ୍ଦୁସାଗର । ଯାହାର କଲ୍ଲୋଳ ବେଦନା-ମଗ୍ନ ସ୍ମୃତିର ବିଳାପ-ଧ୍ୱନି ।...

ଗୌରୀ—( କିପରି ଅନ୍ୟମନସ୍କା ହୋଇ ଯାଇଥିଲେ । ସଙ୍ଗୀତର କରୁଣ ରେଶ୍ ଭାସି ଆସୁଥିଲା । )

ଭୁବନେଶ୍ୱରୀ—( ସ୍ମିତ ଅଧରରେ ) କାହାଣୀ ବିଭିନ୍ନ ହେଲେବି, ମୂଳ-ସୂତ୍ରଟି ଅଭିନ୍ନ...ଏହି ବିନ୍ଦୁସାଗର 'ପ୍ରୀତିର ସାଗର'—ନୁହେଁ, ଗୌରୀ ?

ଗୌରୀ—ତୁମେ ମୋତେ ଚିହ୍ନ ?...ତୁମେ କିଏ ?

ଭୁବନେଶ୍ୱରୀ—ମୁଁ ଦହିବାଲୀ—ଦହିବାଲୀ ଦୁନିଆରେ କାହାକୁ ନ ଚିହ୍ନେ ?

ଗୌରୀ—ତୁମ ନାମ ?

ଭୁବନେଶ୍ୱରୀ—ଭୁବନେଶ୍ୱରୀ ।

ଗୌରୀ—ବାଃ—ବେଶ୍ ନାମଟି ? ତେବେ 'ଭୁବନେଶ୍ୱର'...

ଭୁବନେଶ୍ୱରୀ—ମୋ' ଗେରସ୍ତ ନାଁ'...

ଗୌରୀ—ଠିକ୍ ଠକିବେଇଚ...କେମିତି ?...

ଭୁବନେଶ୍ୱରୀ—ତୁମେ ତ ମୋତେ ଭଲ ପାଅନା···

ଗୌରୀ—ମୁଁ ତ ତୁମକୁ ଚିହ୍ନେ ନା···'ଦେଖିନି' କେବେ—

ଭୁବନେଶ୍ୱରୀ—ହେଲେ, ମୋ'ଦାଦାକୁ ଦେଖିଥିବ,—ଚିହ୍ନିଥିବ—

ଗୌରୀ—ଏ' ଦୁନିଆରେ ତୁମେତ ଏକା ଦାଦାବାଲୀ ନୁହଁ ?

ଭୁବନେଶ୍ୱରୀ—ବେଶ୍, ଖୋଜି ଦେଖ—

ଗୌରୀ—ଠିକଏ ଖୋଜି, ଲାଭ ?

ଭୁବନେଶ୍ୱରୀ—ତେବେ କ'ଣ କହୁଚ ଯେ ?

ଗୌରୀ—ତୁମ ସଙ୍ଗେ ମିତ ବସିବି, ତା'ହେଲେ—

ଭୁବନେଶ୍ୱରୀ—( ଅଳ୍ପ ହସି ) ନିତ ଖୋଜୁଥିବ ମୋ' ଦାଦା ।—ଅଚ୍ଛା, ବେଶ୍,—କା ମିତ ବସିବା, କୁହ ?

ଗୌରୀ—'ଦାଦା' ।

ଭୁବନେଶ୍ୱରୀ—'ଦାଦା' ।—( ହସିବାକୁ ଲାଗିଲେ )

( ନେପଥ୍ୟେ 'ସତ୍ୟସ୍ୱ'— ) ଗୌରୀ-ଗୌରୀ—

ଗୌରୀ—ଶୁଣୁଛତ ଡାକ ?—

ଭୁବନେଶ୍ୱରୀ—ତୁମର କେହି ଖେଳ-ସାଥି ହେବ ପରା— ।

ଗୌରୀ—ଖୋଜି-ଖୋଜି ଏଇଠି ଆସି ହାଜର—ଗୋଟାଏ ଭାରି ମଜା ହେବ, ଦାଦା—ଯଦି,···

ଭୁବନେଶ୍ୱରୀ—କ'ଣ ?

ଗୌରୀ—ତୁମେ ମୋ'ର ବେଶ, ଆଉ ମୁଁ ତୁମର ବେଶ—ଏହାପରି ବଦଳ କରୁ ।

ଭୁବନେଶ୍ୱରୀ—ଛି !

ଗୌରୀ—ତା' ହବନି···ମୋର ଦାଦା ମିଠା କା ଖଟା, ତା' ସାଙ୍ଗେ ସାଙ୍ଗେ ପରଖି ନେବ,—ହଁ···

ଭୁବନେଶ୍ୱରୀ—ଦାଦା···ଦାଦା···( ଟାଣି ନେଇଗଲେ )

[ ପଟ ପରିବର୍ତ୍ତନ ]

---

( ଛ )

[ ଦୃଶ୍ୟ:—ଅରଣ୍ୟପଥ । ଗୌରୀ ସାଥି,—'ସତ୍ୟସ୍ୱ' ଖୋଜି-ଖୋଜି ପ୍ରବେଶ କଲେ । ]

ସତ୍ୟସ୍ୱ—ଏ' ନିଘଞ୍ଚିଅ-ଜଙ୍ଗଲ ପଟେ ଏ'ଗୁଡ଼ାକ କିଏ ଲୋ, ମା···ସନ୍ନ୍ୟାସୀ-ବେଶରେ କାଶୀରାଜାର ଲୋକ-ବାକ ନୁହେଁ ତ ? ଏକାମ୍ର,—ଦୁର୍ଗାପୁ ବାରାଣସୀ,···ସେଥିପାଇଁ କାଶୀରାଜାର ପୂର୍ବ ଦାବି ଏହି ଅଞ୍ଚଳରେ,··· ଭଲରେ-ଭଲରେ ଛାଡ଼ିଦେଲେ ଭଲ, ନାହିଁତ ଯୁଦ୍ଧ;—ଏହି ବାର୍ତ୍ତା ନେଇ ଦୂତ ଆସିଥିବା ଦିନେ, ଶୁଣିଚି···ହେଲେ ଆଶ୍ଚର୍ଯ୍ୟ,—ଏଥିରେ ଆମ-ରାଜାଙ୍କର ଭ୍ରୂକ୍ଷେପ ନାହିଁ ପେଟକି ବଢ଼ିଛି, ରାଣୀ-ମଣିମାଙ୍କର ଆନନ୍ଦ ସେତିକି, କହିଲେ ନ ସରେ ? ରାଣୀ-ମା କହୁଛନ୍ତି,—"ଶଙ୍ଖ, ଘଣ୍ଟା ସଜାଡ଼ି ରଖ,—ସ୍ୱୟମ୍ଭୁ ଲିଙ୍ଗରାଜ ବିଜେ କରିବେ—ତୁମର ଗୌରୀ-ଜେମାର 'ବର'···" ସେଇଥିପାଇଁତ ଦେଉଳ-କାମ ଜନାଘନା ଚାଲିଥିଲା···ଅଟି ଚୂଳ ବସିଲା, ଦେଉଳ-ଗଢ଼ା ସରିଲା । ଏଇତ ପଥୁରିଆ ମାନେ ଘରକୁ ଲେଉଟୁଛନ୍ତି ଗୋଟାଏ ବିଜୟ ଉଲ୍ଲାସରେ··· ଗୌରୀ···ଗୌରୀ··· ( ପ୍ରସ୍ଥାନ )

[ ପଟ ପରିବର୍ତ୍ତନ ]

[ ବିପରୀତ ଦିଗରୁ ପଥୁରିଆ ମାନେ ଗାଇ-ଗାଇ ପ୍ରବେଶ କଲେ···କାମର ଯନ୍ତ୍ର-ପାତି ସେମାନଙ୍କ ହାତରେ···ମନ୍ଦିରଟି ଦେଖା ଯାଉଥାଏ ଅଦୂରରେ—ଗୀତ-ସ୍ୱପ୍ନର ସମାବେଶ ପରି । ]

ପଥୁରିଆଗଣ— —ଗୀତ—

ବଡ଼ କାଳ ତୁହି···ବଡ଼ ମନ ହୋଇ,
ଗଢ଼ିଲୁ ଦେଉଳ···ବଡ଼ ନାମ ଦେଇ ।
ବଡ଼ ଦାଉ ତହିଁ···ଆସିବାରେ ଧାଇଁ,
ବଡ଼ଙ୍କ ଡୋହର କରିବାର ପାଇଁ ॥

ତୋ'ର ଗୌରବ-ବନ୍ଦନା ଅନ୍ତକ କାହାର ?
ତୋ'ର କାହାଣୀ-ଗୁରୁତ୍ୱ ବଖାଣି କେ ପାର ।
ଅବର ବୋଇତେ···ଦେଖେଣ, ଦେଖେଣ ଭୁଲ୍,
ବୋଇତାଳ ବଡ଼ ବୋଲାଉଛୁରେ, ଭାଇ ।
ଭିଡ଼ି ପଶି ଏବେ—ବଢ଼ି ଗଲ୍ ଭବେ,
ଦୁଃଖ କସ ତୋ'ର···ଦୁଃଖେ ଗଢ଼ା ତୁହି ॥

[ ସେମାନେ ଚାଲିଗଲେ । ସ୍ୱପ୍ନ-ଦୃଶ୍ୟ ଉଭେଇଗଲା···ଯଥା-ଦୃଶ୍ୟ ଦେଖାଗଲା । ]

[ ବିପରୀତ ଦିଗରୁ ଲିଙ୍ଗରାଜ ପ୍ରବେଶ କଲେ । ତାଙ୍କର ବେଶଭୂଷା ଓ ଭାବରେ ତ୍ରିଶୂଳୀର ଲକ୍ଷଣ ପରିସ୍ଫୁଟ । ଏଣେ ତେଣେ ଚାହୁଁ ଚାହୁଁ ବିଚକ୍ଷଣ ପ୍ରବେଶ କଲେ । ···ସେ ଆପଣାକୁ ପ୍ରଚ୍ଛନ୍ନ ରଖିବାରେ ଯତ୍ନଶୀଳ ଥାଏ । ]

ଲିଙ୍ଗରାଜ—ସ୍ୱୈରପଥ କନ-କନ କାହିଁକି, ବିଭୀଷଣ ? ବିଭୀଷଣ ତ ସ୍ୱୈର ନ ଥିଲେ,—ଗୃହଭେଦ ବତାଇଥିଲେ ସଫା-ସଫା ରାବଣର ଜାଣିନଥିବେ । ରାବଣ'ର—

ବିଚକ୍ଷଣ—ତା' କହିଲ ଯେ, ବାପ—କାହିଁ ବିଭୀଷଣ ? ଆଉ କାହିଁ ବିଚକ୍ଷଣ—?

ଲିଙ୍ଗରାଜ—ସେ-କଥା ଠିକ୍—କାରଣ, ବିଭୀଷଣ ଠିଆ ହୋଇଥିଲେ ଅନ୍ୟାୟର ବିରୁଦ୍ଧରେ ।—ଆଉ ବିଚକ୍ଷଣ ଠିଆ ଅନ୍ନ-ଦାତା-ବିରୁଦ୍ଧରେ ।

ବିଚକ୍ଷଣ—ଯୁ-ବ-ରାଜ ।

ଲିଙ୍ଗରାଜ—ମୁଁ ଜାଣେ, ତୁମେ ମଧ କହିବ,—ଏକାମ୍ର-ବାରାଣସୀରେ ଜନ୍ମ-ଗତ ଅଧିକାର ରହିଚି କାଶୀରାଜଙ୍କ । ସେହି ଅଧିକାରରୁ ବଞ୍ଚିତ କରି, ଉତ୍କଳର ରାଜାମାନେ ବଂଶ-ପରମ୍ପରା ଯେଉଁ ଅନ୍ୟାୟ ଆଚରଣ କରି ଆସିଛନ୍ତି ତା'ର ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛି ବିଚକ୍ଷଣ ।—

ବିଚକ୍ଷଣ—କୁହନ୍ତୁ, କୁହନ୍ତୁତ—କି ଘୋର ଅନ୍ୟାୟ !

ଲିଙ୍ଗରାଜ—ହେଲେ ଏ' କ୍ଷେତ୍ରରେ ତୁମର,—ନ୍ୟାୟ-ଅନ୍ୟାୟର ପ୍ରଶ୍ନ ଆଦୌ ଉଠିପାରେ ନା,—ଯେହେତୁ ବିଭୀଷଣର ବିଦ୍ରୋହ ଥିଲା ସମ୍ପୂର୍ଣ୍ଣ ସ୍ୱାର୍ଥଗନ୍ଧ-ହୀନ—ଆଉ ବିଚକ୍ଷଣର ବିଦ୍ରୋହ,—ସ୍ୱାର୍ଥର ଉତ୍କଟ ପୂତି-ଗନ୍ଧରେ ପରିପୂର୍ଣ୍ଣ ।

ବିଚକ୍ଷଣ—ତେବେ—ମୁଁ—ମୁଁ ମେଲାଣି ନେଉଛି, ଯୁବ-ରାଜ—ତ୍ରୁଟି —ତ୍ରୁଟି —( ଚାଲିଯିବାର ଉପକ୍ରମ କଲେ )

ଲିଙ୍ଗରାଜ—'ତ୍ରୁଟି' !—ହାଃ-ହାଃ-ହାଃ—ତ୍ରୁଟି—ତ୍ରୁଟି ଯେ ତୁମର ଏହି ମୁଠା ଭିତରେ, ଦେଶ-ଦ୍ରୋହୀ !

ବିଚକ୍ଷଣ—ଯୁବରାଜ—! ( ଲେଉଟିଆସି, ପଦାବନତ ପ୍ରାୟ ହେଲେ )

ଲିଙ୍ଗରାଜ—ହଁ ତୁମର କଥା ହେଉ—କାଶୀରାଜ ଏକାମ୍ର ଜିଣିବ—ବିଚକ୍ଷଣ ଉତ୍କଳ ରାଜ-ଗାଦି ପାଇବ···

ବିଚକ୍ଷଣ—( ବାରମ୍ବାର ଅଭିବାଦନ ଜଣାଇବାକୁ ଲାଗିଲେ )

ଲିଙ୍ଗରାଜ—ହଁ, ତୁମେ କହୁଥିଲ,—ଓଡ଼ିଆ ଜାତିର ପ୍ରାଣ ପ୍ରବାହ ବହିଚି ଓଡ଼ିଆର ସେହି ଶିଳ୍ପ-ସ୍ତମ୍ଭର ଶିରା-ପ୍ରଶିରାରେ, ପ୍ରତି ଧମନୀରେ ।

ବିଚକ୍ଷଣ—ଶିଳ୍ପର ଧ୍ୱଂସରେହିଁ ଓଡ଼ିଆ-ଜାତିର ଧ୍ୱଂସ—ଏ' ଜାତିର

ଲିଙ୍ଗରାଜ—ତୁମର-କଥା···ବେଶ୍, ତା' ହିଁ କଲେଇ ହେଲା । କାରଣ, ଶିଳ୍ପୀ ବୋଲି ଓଡ଼ିଆ ଗର୍ବକରେ ଓ ବିଶ୍ୱ ସମ୍ମୁଖରେ ସେହି ସ୍ୱକୀୟତାର ପରିଚୟ ଦିଏ ।

ବିଚକ୍ଷଣ—ହେଲେ, ଯେତେ ସହଜ ବିଚାରୁଛନ୍ତି, ସେତେ ସହଜ ନୁହେଁ, ଯୁବରାଜ···ଏହି କାମ ଅତି ଗୋପନରେ କରିବାକୁ ହେବ ।

ଲିଙ୍ଗରାଜ—କାରଣ ?···

[ ଗୋପାଳର ଛଦ୍ମ-ବେଶରେ କାଶୀରାଜ ପ୍ରବେଶ କଲେ]

କାଶୀରାଜ—କାରଣ, ଏହି ଶିଳ୍ପୀ-ଜାତି, ରକ୍ତ-ବୀଜରଜାତି,···ଶରୀର ଧ୍ୱଂସରେ ଏ' ଜାତିର ଧ୍ୱଂସନାହିଁ···ଅଛି ଶିଳ୍ପୀ-ଭାବଧାରାର ଧ୍ୱଂସରେ—ତାର ପ୍ରତୀକ ଏହି କୀର୍ତ୍ତି-ସ୍ତମ୍ଭ—ତା'ହିଁ ଅନୁ-

ପ୍ରେରଣା ଦେଉଥିବ କାଳକାଳକୁ । ଏମିତ କ'ଣ ଉତ୍ତମ୍ୟତର ଜଡ଼ବାଦତାର ମୋହ ମଧ ବାଧା ଦେଇ ପାରିବ ନାହିଁ—ସେହି ପ୍ରାଣ-ସ୍ତମ୍ଭ ଧ୍ୱଂସ କରିବାକୁ ହେବ—ଅତି ସଂଗୋପନରେ । ଦେଖତ, ମୋ'ର ଏହି ଗୋପନ-ବେଶ ଗୋପନ-କାମର ଉପଯୋଗୀ ହୋଇଚି କିନା—

ବିଚକ୍ଷଣ— ଏହି ପରି ଗୋପାଳ ବେଶରେ, ଶିବ-ପାର୍ବତୀ ଦିନେ ବିହାର କରିଥିଲେ ଏହି ଏକାମ୍ର-ବନରେ, ଏବଂ ସେହି ବେଶରେହିଁ, 'କୃତ୍ତି' ଆଉ 'ବାସ'— ଏହି ଦୁଇଟା ରାକ୍ଷସଙ୍କୁ ବିନାଶ କରିଥିଲେ, ପୁରାଣରେ ଅଛି ।

କାଶୀରାଜ— ପୁରାଣ କଥା ପୁଣି ଆମେ ବାଡ଼ିଦେବା— ଏହି ବେଶରେ ହିଁ, ଏଥର, ଏକାମ୍ର-ଗ୍ରାସୀ ରାକ୍ଷସର ବିନାଶ କରିବ ମୋ'ର ଲିଙ୍ଗରାଜ ।

ଲିଙ୍ଗରାଜ— ପି-ତା—!…

କାଶୀରାଜ,— ମୁଁ ଜାଣେ, ମୋ'ର ଲିଙ୍ଗରାଜ ଅଖିଳ-ଭୋଳାନାଥ । ହେଲେ, କ୍ଷେତ୍ର-ବିଶେଷରେ ସ୍ୱୟମ୍ଭୁ-ଶିବ-ଭୋଳାନାଥ ମଧ ତ୍ରିଶୂଳ ଛାଡ଼ି, ପାଞ୍ଚଣ ଧରିଥିଲେ; ସିଂହ-ଡମ୍ବରୁ ଛାଡ଼ି, ବଂଶୀ ବଜାଇଥିଲେ; ସଂହାରର ସିଧା-ସଳଖ ବାଟ ଛାଡ଼ି, କୁଟୀଳ-ପଥ ଅନୁସରିଥିଲେ । ଏହି ଏକାମ୍ର ସେହି କ୍ଷେତ୍ର-ବିଶେଷ । ସ୍ଥାନ ସେହି ଐତିହ୍ୟ ଅଛି ।…ତୁମେ ତା'ର ଅନ୍ୟଥା କଲେ, ଆମର ବିଜୟ ଅସମ୍ଭବ । ମନେରଖିବ, ଏହା ଦ୍ୱିତୀୟ-ବାରାଣସୀ— ଏହି ସ୍ଥାନ ଉପରେ କାଶୀ ରାଜର ପୂର୍ଣ୍ଣ ଅଧିକାର ।

ଲିଙ୍ଗରାଜ— ଯଥା ଆଜ୍ଞା, ମହାରାଜ ।

[ ଚାଲିଗଲେ ]

କାଶୀରାଜ— ବିଚକ୍ଷଣ !…

ବିଚକ୍ଷଣ— ମହାରାଜ ! 

କାଶୀରାଜ— ( ବିଦ୍ରୂପ ସ୍ୱରରେ ) ତୁମର ମହାରାଜାଙ୍କ ଷୋଳବର୍ଷ-ତପସ୍ୟାର ଫଳ,— ଏହି ପ୍ରୀତି-ଦୁର୍ଗ ଆଜି ସେପ୍ରତର ମଶାଣି-ପଦାରେ ପରିଣତ ହେବନି ?

ବିଚକ୍ଷଣ— ( ଥରିଉଠିଲେ ଏହି 'ପ୍ରୀତି-ଦୁର୍ଗ' ନାମରେ )

କାଶୀରାଜ— ତୁମେ ଏମିତି ଥରି ଉଠିଲ, ମନ୍ତ୍ରୀ !… ରାଜ-ପ୍ରୀତି ଉଚ୍ଛୁଳ ପଡ଼ିଲା ପରା…?

ବିଚକ୍ଷଣ— ନା, ନା…ମୋ'ର ଗୋଟାଏ ଭାରି ଆଶଙ୍କା ହେଉଚି, କାଶୀ-ରାଜ !…

କାଶୀରାଜ— ବିଚକ୍ଷଣ ପରି ବିଚକ୍ଷଣ-ରାଜନୀତିଜ୍ଞର ଆଶଙ୍କା ?

ବିଚକ୍ଷଣ— ଏହି ପ୍ରୀତି-ଦୁର୍ଗ ଭାଙ୍ଗିବାକୁ ଯାଇ, ପ୍ରୀତିର ଗାଢ଼-ପରଶରେ କେହି ଯେମିତି ବନ୍ଦୀ ହୋଇ ନ ଯା'ନ୍ତି—!

କାଶୀରାଜ— ( ବିଦ୍ରୂପ ସ୍ୱରରେ ଅବଶ୍ୟ ) ବନ୍ଧୁ-ପ୍ରୀତିର ଗାଢ଼-ଆଲିଙ୍ଗନ ବନ୍ଧୁଙ୍କୁ ଅଟେ ଦିଅନ୍ତ…

( କୁଣ୍ଢାଇ ପକାଇଲେ ବିଚକ୍ଷଣଙ୍କୁ )

[ ପଟ ପରିବର୍ତ୍ତନ ]

---

( ଜ )

[ ଦୃଶ୍ୟ:— ମନ୍ଦିର । ଗୌରୀ ଭୁବନେଶ୍ୱରୀ ଗୋପାଳୁଣୀ-ବେଶ ଧାରଣ କରି, ଦହି-ପଶରା ମୁଣ୍ଡାଇ, ଗାଉ ଗାଉ ପ୍ରବେଶ କଲେ ]

ଗୌରୀ— ଗୀତ

ଅସ ଧାଇଁ…ନେବ ଦହି…
ସରିଗଲେ ନ ପାଇବ କାହିଁ ।
ଏହି ମୋ'ର ଦହି ଗୁଣ—
କହିଲେ ନ ସରେ ପୁଣି,—
ସରିଗଲେ ହେଜୁଥିବ ଭାଇ ।
( ଅସ ଧାଇଁ…ନେବ ଦହି । )
ପ୍ରୀତିର-ଲହଣୀ ଭରା—ପ୍ରୀତି-ଦହିର ପଶରା…
ସ୍ୱାଦେ, ପ୍ରୀତି-ଅଛୁଟ ଛଡ଼ାଇ;
( ଅସ ଧାଇଁ…ନେବ ଦହି । )

[ ଲିଙ୍ଗରାଜ ଗୋପାଳ ବେଶରେ ପ୍ରବେଶକଲେ ମନ୍ଦିର ଭିତରୁ—ହାତରେ ଥିଲା ତାଙ୍କର ବଂଶୀ ।

କଣ୍ଠସ୍ୱର ଗୀତ ଶୁଣିଲା ପରେ ହେଲେ ଜବ ବରେଶ୍ୱର ଓ ବଂଶୀ-ବାଦନ କଲେ ଗୀତ ସଙ୍ଗେ ସୁର-ତାଳ-ଲୟ ମିଳାଇ ]

ଗୌରୀ—( ଝିଅାଲ ପଚାରିବାରୁ ) ତୁମେ କିଏ ?

ଲିଙ୍ଗରାଜ—ମୁଁ···ମୁଁ···ଗୀତର ସମଜଦାର ।···ଏଇ ଦେଖନ୍ତୁ ବଇଁଶୀ ।

ଗୌରୀ—ତୁମେ ବଇଁଶୀ ବଜାଇଥିଲ ମୋ' ଗୀତକୁ ଅନୁସରି ?

ଲିଙ୍ଗରାଜ—ନା, ନା,···ମୁଁ ତ ନୁହେଁ ··

ଗୌରୀ—ତେବେ ?—ଏଇ ପବନ ?

ଲିଙ୍ଗରାଜ—ହଁ, ହଁ—ଏଇ ପବନ ।···ତୁମର ଗୀତକୁ ସେ ଚେତ ଖେଳାଉଥିଲା···

ଗୌରୀ—ଆଉ ସେଇ ଚେତ ତୁମର ବଇଁଶୀର ରନ୍ଧ୍ର-ରନ୍ଧ୍ରେ, ପଶୁଥିଲା, ଆଉ ବଇଁଶୀ ଭିତରେ ସୁର ଖେଳାଉଥିଲା—

ଲିଙ୍ଗରାଜ—ହଁ, ଏଇ ବୁକୁର ରନ୍ଧ୍ରେ-ରନ୍ଧ୍ରେ ପଶି, ପ୍ରାଣର ସୁରକୁ ବି ।

ଗୌରୀ—ହଉ, ଏଣିକି···

[ ପୁଣି ଗୀତ ଗାଇ ଚାଲିଯିବାର ଉପକ୍ରମ ]

ଲିଙ୍ଗରାଜ—( ବାଟ ଓଗାଳି ) ଦହି ଦିଅ ।

ଗୌରୀ—ଅଣ୍ଟାରେ କଉଡ଼ି ଅଛିତ ?

ଲିଙ୍ଗରାଜ—ମିଠା, କି ଖଟା ଚାଖିଲେତ ଯାଇଁ କଥା ।

ଗୌରୀ—ତା' ହ'ବନି, ରଜା-ପୁଅ 'ଥୁଅ, ଗୋଡ଼ ଧୁଅ' ।

ଲିଙ୍ଗରାଜ—ଦେଖ ଗଉଡୁଣୀ,—ତୁମେ ଗାଁ-ବାଲାଙ୍କୁ ଠକ ବୋଲି, ମୋତେ ଠକିବ,—ଏ'କଥା ହରଗିଜ୍ ହ'ବନି ।

ଗୌରୀ—( ନିରେଖି ଚାହିଁ ) ତୁମେ ଗଉଡ଼-ପୁଅ !··· ଏ' ଖିଆଲତ ମୋ'ର ନ ଥିଲା ।

ଲିଙ୍ଗରାଜ—ବେଶ୍ ଦିଅ ।

ଗୌରୀ—ଏଇ ପଚୁ-ସଢ଼ା ଦହିତ ?···

ଲିଙ୍ଗରାଜ—କୁଆଁରୀ ଦହିବାଲୀତ ଆଉ ପଚୁ-ସଢ଼ା ନୁହେଁ—( ହାତ ପତେଇଲେ )

ଗୌରୀ—( କେମିତି ଲାଜେଇଲେ )

ଲିଙ୍ଗରାଜ—ଦିଅ—( ଅଣ୍ଟୁମାଡ଼ି ବସିଲେ ଗୌରୀ ସମ୍ମୁଖରେ )

ଗୌରୀ—( ଦହି ଦେବାକୁ ଲାଗିଲେ )

ଲିଙ୍ଗରାଜ—( ଅଞ୍ଜୁଳା ଅଞ୍ଜୁଳା କରି ପିଇବାକୁ ଲାଗିଲେ )

[ ଠିକ୍ ସେତିକିବେଳେ ପ୍ରବଳ ନିନାଦରେ ଆରତି ଘଣ୍ଟା ଓ ଶଙ୍ଖ ବାଜି ଉଠିଲା ଠାକୁର-ଦେଉଳରେ ]

ଗୌରୀ—ଠାକୁରଙ୍କ ଆରତି-ଘଣ୍ଟା—ମୁଁ ପଳାଏଁ—

ଲିଙ୍ଗରାଜ—ଦହିର ଦାମ ?—

ଗୌରୀ—ଛି-ଛି—ଆମେ ପରା ଏକା ଜାତି ଗୋପାଳ-ଘରର ଝିଅ-ପୁଅ ।

ଲିଙ୍ଗରାଜ—ହେଲେ, ଦିଅ-ନିଅର ଗୋଟାଏ ରୀତି ଅଛି ତ ?—

ଗୌରୀ—ହେଉ କ'ଣ ଦେବ, ଦିଅ—ମୁଁ ଆଉ ଠିଆହୋଇ ପାରୁନି ।

ଲିଙ୍ଗରାଜ—ବେଶ୍, ଆଖି ବୁଜ—ହାତ ବଢ଼ାଅ—

ଗୌରୀ—(ଆଖିବୁଜି ହାତ ବଢ଼ାଇଲେ )

ଲିଙ୍ଗରାଜ—( ନିଜର ହୀରା-ମୁଦିଟି ପିନ୍ଧାଇ ଦେଲେ ଗୌରୀର ଅଙ୍ଗୁଳିରେ )

ଗୌରୀ—( ଆଖି ଖୋଲି, ଦେଖି ) ଏଁ—ସେତ ହୀରା-ମୁଦି—ନିଜ ଅଙ୍ଗୁଳିର—( ପ୍ରୀତି-ବିହ୍ୱଳ-ଦୃଷ୍ଟିରେ )

ଲିଙ୍ଗରାଜ—ତୁମର ଏହି ପ୍ରୀତି-ଦୁର୍ଗକୁ ସାକ୍ଷୀ ମାନି ପିନ୍ଧାଇ ଦେଉଛି ହଁ ତୁମର ନାମ ?

ଗୌରୀ—ମୋ'ର ନାମ 'ଗୌ···' ( ବୋଲି କହିବାକୁଯାଇ କହିପକାଇଲେ ) ଭୁବନେଶ୍ୱରୀ

ଲିଙ୍ଗରାଜ—( ସକୌତୁକେ ) ମୋ'ର ନାମ ବି ଭୁବନେଶ୍ୱର ।···ନା, ନା ମୋ' ନାମ···

ଭାଣୀରାଜ—( ନେପଥ୍ୟେ )—ଲିଙ୍ଗରାଜ···

ଲିଙ୍ଗରାଜ—ପିତା···( ବୋଲି ଚାଲିଗଲେ ଯେଉଁଆଡୁ ଡାକ ଆସୁଥିଲା )

ଗୌରୀ—'ଲିଙ୍ଗରାଜ' !—ମୁଁ 'ଗୌରୀ'…( ହଠାତ୍ ଦ୍ରୁତ ପ୍ରସ୍ଥାନ )

[ ଲିଙ୍ଗରାଜ ଓ କାଶୀରାଜ ପ୍ରବେଶ କଲେ ]

କାଶୀରାଜ—ଆଜ ଶୁକ୍ଳା-ପଞ୍ଚମୀ; ପଞ୍ଚମୀ-ଚନ୍ଦ୍ର ଖସି ପଡ଼ିବା ସଙ୍ଗେ ସଙ୍ଗେ କାମ ଆରମ୍ଭ କରିବ…

ଲିଙ୍ଗରାଜ—( ଦେଉଳ ଆଡ଼େ ଚାହିଁ ଠିଆ ହେଲେ )

କାଶୀରାଜ—କୌଣସି ଡରଭୟ ନାହିଁ…ଆମ କାମରେ କେହି ବାଧା ଦେଇ ପାରିବେ ନାହିଁ,… ସବୁଠାରୁ ଭୟ ଯେଉଁ ଶିଳ୍ପୀମାନଙ୍କୁ, ସେମାନେ ମଧ୍ୟ ହୁଁ, ଚୁଁ କରିପାରିବେ ନାହିଁ । ଚନ୍ଦ୍ରସେଣ, ବାହାବଳୀନ୍ଦ୍ରକୁ ପଠେଇ ନେଇଛୁ…ସୈନ୍ୟମାନଙ୍କୁ ଅଭ୍ୟାର କରିଛୁ…ଘାଟିଯାଗାମାନ ଜଗାଇ ଦେଇଛୁ—ରାଜପୁରୀ, ଘେରାଉ କରିଛୁ—ଶିଳ୍ପୀ-ପଲ୍ଲୀ ଅବରୋଧ କରିଛୁ…

ଲିଙ୍ଗରାଜ—ପିତା !…

କାଶୀରାଜ—ଭୟ ମଜବୁତ୍ ତଥାପି ?…ହେଲେ ସେଥିପାଇଁ ହାତ-ହତିଆର ଓ ଲୋକବଳ ଯଥେଷ୍ଟ ଆମର ଅଛି…ହଁ, ଦେଖ, ପ୍ରଭାତ ପୂର୍ବରୁ ଯେମିତି ଏ ଦେଉଳର ଚିହ୍ନ-ବର୍ଣ୍ଣ ନ ଥାଏ—ଚନ୍ଦ୍ରସେଣର ଏହି ପରାମର୍ଶ ।

ଲିଙ୍ଗରାଜ—ପିତା !—ଲିଙ୍ଗରାଜ ଇଚ୍ଛାକଲେ, ଏହି ଦେଉଳ ଏହିକ୍ଷଣି ମାଟିସଙ୍ଗେ ମିଶାଇ ଦେବ, ମାତ୍ର…

କାଶୀରାଜ—ମାତ୍ର ?

ଲିଙ୍ଗରାଜ—ଏହି ଦେଉଳ ଭାଙ୍ଗିବା ତ ଦୂରେ, କେହି ଏଥିରେ ଟିପଚୁଞ୍ଚା ଲଗେଇବ,…ଯାଏ ବରଦାସ୍ତ କରିବନାହିଁ ଲିଙ୍ଗରାଜ । ( ଦେଉଳକୁ ଆଗୁଳି ଠିଆ ହେଲେ ଯେମିତି )

କାଶୀରାଜ—ଲିଙ୍ଗରାଜ !—ତୁମେ ଏ କ'ଣ କହୁଚ ? …ତେବେ ଚନ୍ଦ୍ରସେଣ ଯା' କହୁଥିଲେ… ( ଚନ୍ଦ୍ରସେଣରକଣ୍ଠ-ସ୍ୱର ) "ଏହିପ୍ରୀତି-ଦୁର୍ଗ ଭାଙ୍ଗିବାକୁ ଯାଇ, ପ୍ରୀତି-ପରଶର ପ୍ରୀତି-ଜୁଆରରେ ଯେମିତି କେହି ଭାସି ନ ଯାଏ"—( ଠିକ୍ ପରେ ପରେ ଚନ୍ଦ୍ରସେଣ ପ୍ରବେଶ କଲେ )

କାଶୀରାଜ—ଚନ୍ଦ୍ରସେଣ ତୁମ କଥା ସତ ହେବତ— ଲିଙ୍ଗରାଜ ବର୍ତ୍ତମାନ—

ଚନ୍ଦ୍ରସେଣ—ଶୁଣିଛି ସବୁ—ମହାରାଜ !…ଏହି ଏକାମ୍ର ଗୋଟାଏ ମାୟାପୁରୀ,—ଯାର ମାୟା ମୁଗ୍ଧ କରିଥିଲା ଦିନେ ମହା-ମାୟାଙ୍କୁ; ପୁରାଣରେ ଅଛି;—ଯାର ମାୟା-ସ୍ୱପ୍ନ ଦେଖି, ଚଣ୍ଡାଶୋକ ହୋଇଥିଲେ ଧର୍ମାଶୋକ, ଇତିହାସରେ ଅଛି;— ଆଉ, ଆଜ ବାସ୍ତବ-ଦର୍ଶୀ ଲିଙ୍ଗରାଜ, ଏକାମ୍ରର ସେହି ଅବାସ୍ତବ-କଥାକୁ ସତ୍ୟ ବୋଲି ପ୍ରମାଣ କରି,—ଯୁଦ୍ଧକ୍ଳୀବ, ଶାନ୍ତ ବିମୁଖ କୁସଂସ୍କାର-ଅନ୍ଧଜନ ଯଯାତି କେଶରୀର ଆଦର୍ଶ ବାଢ଼ିବ,— ଏହା ଯୁକ୍ତିଯୁକ୍ତ ହେବତ ?…

ଲିଙ୍ଗରାଜ—ପିତା ମୋତେ ଜାଗ୍ରତରେ କିଛି ସମୟ ଭାବିବାର ଅବସର ଦିଅନ୍ତୁ—

କାଶୀରାଜ—ଉତ୍ତମ କଥା—ଏ ଯୁକ୍ତିର ଯୁଗ— ଯୁକ୍ତିଦ୍ୱାରା ମନକୁ ଆଲୋକିତ କରି, କୁସଂସ୍କାର ଦୂରକର । ଆସ, ମନ୍ତ୍ରୀ—ଏଠାକୁ ବର୍ତ୍ତମାନ କେହି ଯେମିତି ନ ଆସନ୍ତି, ସେଥିପରି ସାବଧାନ କରିଦିଅ ସମସ୍ତଙ୍କୁ । ( ଚାଲିଗଲେ ଦୁହେଁ )

ଲିଙ୍ଗରାଜ—( ଦେଉଳର ଆଖେ ପାଖେ ପଡ଼ିଥିବା ପଥର ମଧ୍ୟରୁ ଗୋଟିକରେ ଆସନ ଗ୍ରହଣ କରି, ଚିନ୍ତାମଗ୍ନ ହେଲେ—) ସ୍ୱପ୍ନ କ'ଣ ସଦାବେଳେ ମିଥ୍ୟା ?—ବାସ୍ତବ କ'ଣ ସଦାବେଳେ ସତ୍ୟ ?—

[ ଠିକ୍ ସେହି ସମୟରେ ଭୁବନେଶ୍ୱରୀ ନିଜର ସ୍ୱାଭାବିକ ଗୋପାଳୁଣୀ-ବେଶରେ ପ୍ରବେଶକଲେ ]

ଭୁବନେଶ୍ୱରୀ—ଗୌରୀର ଚେହେରା, ଗୌରୀର କଣ୍ଠ ସଙ୍ଗେ ମୋ'ର ଏତେ ମେଳ ଯେ,…ଗୌରୀର ସାଙ୍ଗ-ସାଥିମାନେ ସୁଦ୍ଧା ମୋ' କଥାକୁ ବିଶ୍ୱାସ କଲେନି । ଗୌରୀ କେଉଁଆଡ଼େ ପଳେଇ ଯାଇ ନ ଥିଲେ, କି କାଣ୍ଡଟାଏ ଯେ ଘଟି ଯାଇଥା'ନ୍ତା— ଯାଉ, ଗ୍ରାମ-ଦେବତା ମୁଁ—ଗାଁ-ଭୁଲ ମୋ'ର ସହିଲା—କେମିତି ମାନେ-ମାନେ ଭଙ୍ଗା-ଦେଉଳ-

ଖଣ୍ଡି କି ଧରିଥିଲି, ଭାମ । ( ଟଳମଳ ହୋଇ ଗୁଲି ଯାଉଥିଲେ )

ଲିଙ୍ଗରାଜ—କିଏ ?—ଭୁବନେଶ୍ୱରୀ ?—

ଭୁବନେଶ୍ୱରୀ—ମୋତେ ?

ଲିଙ୍ଗରାଜ—ହଁ ତୁମକୁ···ତୁମକୁ, ଭୁବନେଶ୍ୱରୀ···

ଭୁବନେଶ୍ୱରୀ—ଦହି ଆଉ ନାହିଁତ—

ଲିଙ୍ଗରାଜ—ଦହି ?—ହାଃ-ହାଃ-ହାଃ—ପେଉଁ ଅନଙ୍ଗର ଦହନ-ଜ୍ୱାଳାରେ ମୋତେ ଦହି ଦେଇ ଯାଇଛ ଭୁବନେଶ୍ୱରୀ—

ଭୁବନେଶ୍ୱରୀ—ତୁମେ କିଏ କୁହତ ?

ଲିଙ୍ଗରାଜ—ଏତେ ଚଞ୍ଚଳ ପାଶୋରି ପକାଇଲଣି ତୁମର ଭୁବନେଶ୍ୱରକୁ ?

ଭୁବନେଶ୍ୱରୀ—'ଭୁବନେଶ୍ୱର' !—

ଲିଙ୍ଗରାଜ—ଦୋଷ କ୍ଷମା କରିବ, ଭୁବନେଶ୍ୱରୀ—ମୋ'ର ପ୍ରକୃତ ନାମ 'ଲିଙ୍ଗରାଜ'—ତୁମର 'ଭୁବନେଶ୍ୱରୀ' ନାମ ସଙ୍ଗେ 'ଭୁବନେଶ୍ୱର' ନାମ ଖାପଖାଇଛି, ଏଇଥିପାଇଁ କୋଉଠାଏ କୌତୁକରେ ସେହିପରି ଡାକିଥିଲି ।

ଭୁବନେଶ୍ୱରୀ—( ସନ୍ଦିଗ୍ଧ ନୟନରେ ଗୁହିଁ ରହିଥିଲେ)

ଲିଙ୍ଗରାଜ—ତୁମେ ମୋତେ ସନ୍ଦେହ କରୁଛ ?—ମୁଁ ତୁମର ସେହି ଗୋପାଳ, ଭୁବନେଶ୍ୱରୀ—ତୁମେ ଗୀତ ଗାଉଥିଲ, ମୁଁ ବଇଁଶୀ ବାଉଥିଲି—ତୁମେ ଦହି ଦେଉଥିଲ, ମୁଁ ମୁହଁ ପିଲାଇ ଥିଲି—ଭୁଲିଗଲ ଏତେ ଚଞ୍ଚଳ ? ଅଭିମାନ-ମୁହଁ କ'ଣ ଫାଡ଼ି ପକାଇଲ ?

ଭୁବନେଶ୍ୱରୀ—'ଭୁବନେଶ୍ୱର' ଫେରିଛନ୍ତି 'ଲିଙ୍ଗରାଜ' ନାମରେ ଏକାମ୍ର କାନନ ଆଜି ଦ୍ୱିତୀୟ-ବାରାଣସୀ-ଧାମ—କି ଆନନ୍ଦ । ଗୌରୀ—ଗୌରୀ— ( ଗୁଲିଗଲେ )

ଲିଙ୍ଗରାଜ—ଭୁବନେଶ୍ୱରୀ—ଭୁବନେଶ୍ୱରୀ—(ଧରିବାକୁ ଯାଇ ଭୁପତିତ ହେଲେ—ତା'ପରେ ଉଠୁ-ଉଠୁ ଧୀରେ—) ସ୍ୱପ୍ନ—ସ୍ୱପ୍ନ—ଗାଢ଼ସ୍ୱପ୍ନ !···ବରକ୍ଷଣ ଠିକ୍ କହିଥିଲେ,—'ଏକାମ୍ର ମାୟା-ପୁରୀ'—ଏଠା ଠିକ୍ କହିଚନ୍ତି,—ଏ କଳ୍ପନାର ଯୁଗନୁହେଁ—ବାସ୍ତବର—ମୁଁ ବାସ୍ତବର ଖେଳ ଖେଳିବି—ମୁଁ ଲିଙ୍ଗରାଜ—ମୋ'ର ଶିଙ୍ଗା !—ମୋ'ର ଡମ୍ବରୁ— ! ! ( ଶିଙ୍ଗା ଓ ଡମ୍ବରୁ ବାଜିଉଠିଲା । ଗୋପାଳ ବେଶ ଧୂର୍ଜଟୀ ବେଶରେ ପରିଣତ ହୋଇଗଲା— ) ମୋ'ର ଭୂତ-ପ୍ରେତ— !

[ ଭୂତ-ପ୍ରେତ ଗଣ ଧାଇଁ ଆସିଲେ 'ହର-ହର ଶଙ୍କର'-ନିନାଦିତ କଣ୍ଠରେ ଠିଆ ହେଲେ ଲିଙ୍ଗରାଜଙ୍କ ଚଉପଟେ ବେଢ଼ି ଇଙ୍ଗିତକୁ ଅପେକ୍ଷା କରି । ଠିକ୍ ସେତିକିବେଳେ ପ୍ରବେଶ କଲେ ହରପଣ୍ଡା ସେ ଛଦ୍ମବେଶୀ 'ଅନନ୍ତ-ବାସୁଦେବ' ]

ହରି—ଲିଙ୍ଗରାଜ !— ( ଭୂତ-ପ୍ରେତ ଗଣ ଛତ୍ରଭଙ୍ଗ ହୋଇ ଯେ ଯୁଆଡ଼େ ପଳାଇଲେ )

ଲିଙ୍ଗରାଜ— ତୁମେ କିଏ ?

ହରି—ଆହୁରି ପଚାରୁଛ ? ତୁମର ଅନୁଚର ଗଣଙ୍କର ଆଚରଣ ଦେଖି ସୁଦ୍ଧା, ଚିହ୍ନିବାକୁ ଅକ୍ଷମ ? ( ଛଦ୍ମବେଶ ତ୍ୟାଗ କଲେ )

ଲିଙ୍ଗରାଜ—'ଅନନ୍ତ-ବାସୁଦେବ' !— ( ବ୍ୟଙ୍ଗ ଭାବରେ କହିଲେ )

ହରି—ଅନନ୍ତ-ବାସୁଦେବଙ୍କର ବାସଭୂମି ଏଣିକି ଏକାମ୍ର-କାନନ କଥା ଭୁଲିଯିବନି, ଭୂତ-ନାଥ— !

ଲିଙ୍ଗରାଜ—ହାଃ-ହାଃ-ହାଃ—ତୁମେ ମାୟାବୀ—ତୁମେ ମୂର୍ତ୍ତି ମାନ ସ୍ୱପ୍ନ—ମାୟାର ମିଥ୍ୟା-ପ୍ରଭାବରେ ତୁମେ ଭୂତ-ପ୍ରେତକୁ ତଡ଼ିଛ ବୋଲି, ଭୂତନାଥକୁ ତଡ଼ିବ,—ଅସମ୍ଭବ—ଅସମ୍ଭବ—ଭୂତନାଥ ଧ୍ୱଂସର ଅବତାର—ଭୂତନାଥ ଆଜି କରିବ ସୃଷ୍ଟିର ସଂହାର—ପାଶୁପତ—ପାଶୁପତ—( ପ୍ରଳୟ ନର୍ତ୍ତନରେ ଉଦ୍‌ଯୋଗୀ ହେଲେ )

[ ଘନ ଘନ ବିଜୁଳି ଚମକ ଓ ଗର୍ଜନ ସହକାରେ ପାଶୁପତ ଦେଉଳାଭିମୁଖେ ଧାବିତ ହେବାର ଦେଖାଗଲା ]

ହର—( ମୃଦୁ ମୃଦୁ ହସିଲେ ଓ ଅଙ୍ଗୁଳି ସଙ୍କେତ କଲେ—ବିପରୀତ ଦିଗରୁ ଚଣ୍ଡୀ ଧାବିତ ହେଲା )

[ ଉଭୟ ପାଶୁପତ ଓ ଚଣ୍ଡୀ ମଧ୍ୟରେ ସଂଘର୍ଷ ପରିବର୍ତ୍ତେ ଦେଖାଗଲା ପ୍ରେମାଲିଙ୍ଗନ ]

ଲିଙ୍ଗରାଜ—ଏ ଯେ କି ଅଦ୍ଭୁତ ଦୃଶ୍ୟ !—

ହର—( ମୃଦୁ ହସି ) ଏକାମ୍ରର ମାହାତ୍ମ୍ୟ !—

ଲିଙ୍ଗରାଜ—ଚଣ୍ଡୀ ଆଜି କୁଣ୍ଢାଇଲା ପାଶୁପତ !—

ହର—ଚଣ୍ଡୀ-ଧାମ ତେଣୁ କୁଣ୍ଢାଇବ ପାଶୁପତ-ଧାମ !—

[ ଉଭୟେ ଆଲିଙ୍ଗନ ପାଶରେ ଆବଦ୍ଧ ହେଲେ—ଶୂନ୍ୟରୁ ପୁଷ୍ପ-ବୃଷ୍ଟି ହେବାକୁ ଲାଗିଲା ଘନ ଘନ ଘଣ୍ଟା ଓ ଶଙ୍ଖ-ଧ୍ୱନି ଗଗନ, ପବନ ମୁଖରିତ କଲା । ]

---

—ଗୂର—

## ସ୍ୱପ୍ନ ( ପରିଣତି )

### ( କ )

[ ଦୃଶ୍ୟଃ—ସେହି କଳା-ପର୍ଦ୍ଦା ଓ ସ୍ଥାନ ଯେଉଁଠାରେ ମହାରାଣୀ ବସି ମହାରାଜାଙ୍କ ସ୍ୱପ୍ନ-କାହାଣୀ ଶୁଣାଉଥିଲେ । ସୁଦୂର ଫାଟି ଆସିଲା, ଏକାମ୍ର-ବାସୀ ପକ୍ଷୀ-କୂଜନର ସମବେତ ତାନ ଶୁଣାଗଲା ]

ରାଜା—ତା'ପର—ତା'ପର—

ରାଣୀ—ଭାରି ଶୋଷ—ନ-ତ—।

ରାଜା—ରାତି କାହିଁ ? ରାତି ପାହି ଆସିଲାଣି—ହାତଧର ଉଆସକୁ ଚାଲ, ମୁଁ ଜଳ ଦେବି—

ରାଣୀ—ତୁମେ ବସ, କଥା ଶେଷ କରିବାକୁ ଦିଅ ।

ରାଜା—ଜଳ ପିଇବ ପରା ?

ରାଣୀ—ଦରକାର ନାହିଁ—ଶୋଷ ମରିଗଲାଣି—ଶୁଣ,—

ରାଜା—କୁହ—

ରାଣୀ—ମୋ'ର ପାହାନ୍ତା-ସ୍ୱପ୍ନର ସେହି ମିଳନ ମଧୁ ଯାମିନୀ ଠିକ୍ ଏହିପରି ପାହି ଆସିଲା—ତାହାକୁ ଅନାଇ ଦିଅନ୍ତ—

[ ପଟ୍ଟ ପରିବର୍ତ୍ତନ ]

---

### ( ଖ )

[ ଦୃଶ୍ୟଃ—ରାଜ-କକ୍ଷ । ସମ୍ମୁଖରେ ଉନ୍ମୁକ୍ତ ପ୍ରଶସ୍ତ-ଗବାକ୍ଷ ଦ୍ୱାର ଦେଇ ମନ୍ଦିର-ଦୃଶ୍ୟ ସ୍ପଷ୍ଟ ଦେଖାଯାଉଥିଲା । ସାଧାରଣ ରାଜ-ବେଶରେ କାଶୀରାଜ ଠିଆ ହୋଇ ତାହା ନିରୀକ୍ଷଣ କରୁଥିଲେ ]

ଯଯାତି—( ଅତି ସାଧାରଣ ବେଶରେ ପ୍ରବେଶ ପୂର୍ବକ କହିଲେ ) କ'ଣ ଦେଖୁଛ, କାଶୀରାଜ ?

କାଶୀରାଜ—ଉତ୍କଳ-ରାଜଙ୍କ କୀର୍ତ୍ତି-ସ୍ତମ୍ଭ···ଯଯାତିର 'ପ୍ରୀତି-ଦୁର୍ଗ' ।

ଯଯାତି—'ପ୍ରୀତି-ଦୁର୍ଗ' କହି ଆଉ ଲଜ୍ଜା ଦେବନାହିଁ, ଭାଇ ।

କାଶୀରାଜ—ମାନେ ?

ଯଯାତି—ଏହି 'ଦୁର୍ଗ'—ର ଉହାଡ଼ରେ ଯେ ଗୋଟାଏ ହିଂସାର କୀଟ ଲୁଚି ରହିଛି, ତା' ଯେମିତି ମୁଁ ଆଜି ମର୍ମେ-ମର୍ମେ ଅନୁଭବ କରୁଛି···

କାଶୀରାଜ—ତେବେ, ଏହାର ନାମକରଣ କରିବ··· ?

ଯଯାତି—ପ୍ରୀତି-ମନ୍ଦିର !···

କାଶୀରାଜ—ହିଂସା-ଅହିଂସାର ପ୍ରୀତି,—ତା'ର ମନ୍ଦିର···ସୁନ୍ଦର···ସୁନ୍ଦର···ହଁ, ମହାରାଣୀଙ୍କର ମତ କ'ଣ ବୁଝିଲ ?

ଯଯାତି—କ'ଣ ମହାରାଣୀଙ୍କ ଭାଷାରେ କହିବ ?

କାଶୀରାଜ—ବେଶ୍ ତ···

ଯଯାତି—"କାଶୀର ଯୁବରାଜ ସ୍ୱୟଂ ଲିଙ୍ଗରାଜ··· ଉତ୍କଳ-ଅଭିଯାନର ନାୟକ···ଯାଜପୁର ମୁକାମ କଟକର ଲକ୍ଷ୍ୟବସ୍ତୁ ନୁହେଁ, ଲକ୍ଷ୍ୟବସ୍ତୁ ଏକାମ୍ର-କାନନ । ଅସ୍ତ୍ରଚଳନ୍ତି ଭୂତ-ପ୍ରେତ ଫେଣ···ଶିଙ୍ଗା

ଡମ୍ବରୁ ବଜାଇ,···ସାଡମ୍ବରେ ମୋ’ର ଗୌରୀର କୁମାରୀ-ବ୍ରତ କରିବେ, ଉଦ୍‌ଯାପନ ।”

କାଶୀରାଜ—ସ୍ୱରୂପାରେ ହେଲେ, କିନ୍ତୁ ମହାରାଣୀଙ୍କର ସରସ କଣ୍ଠରେ ନୁହେଁ । ( ଉଭୟେ ବେଶ୍ ଗୋଟାଏ ସରସତା ଉପଭୋଗ କଲେ )

[ ପ୍ରତ୍ୟାହାରୀ ପ୍ରବେଶ କଲା ]

ପ୍ରତ୍ୟାହାରୀ—ବନ୍ଦୀ, ମଣିମା···

କାଶୀରାଜ—ହଁ, ସେମାନଙ୍କୁ ଏ’ ସ୍ଥାନକୁ ।

ପ୍ରତ୍ୟାହାରୀ ( ଯଥା ସମ୍ମାନ ଦେଖାଇ ପ୍ରସ୍ଥାନ କଲା )

[ ଉଭୟ ବଟୁକେଶ୍ୱର ଓ ବାହାବଳୀନ୍ଦ୍ର ପ୍ରବେଶ କଲେ ଶୃଙ୍ଖଳିତ ଓ ପ୍ରହରୀ ବେଷ୍ଟିତ ହୋଇ ]

ଯଯାତି—ଶୃଙ୍ଖଳିତ କାହିଁକି ?

କାଶୀରାଜ—ଅପରାଧୀ ବୋଲି ।

ଯଯାତି—ତେବେତ ଅପରାଧର ବିଗ୍ରହ ସବୁଛି··· ।

କାଶୀରାଜ—ଯଥାର୍ଥ, ବଟୁକଙ୍କ ଶୃଙ୍ଖଳ ଅପସାରଣ କର, ପ୍ରହରୀ !

ପ୍ରହରୀ—( ଶୃଙ୍ଖଳ—ଅପସାରଣ କଲା )

ଯଯାତି—ସେମାନେ ଏ’ଠାକୁ ସେହି ଶିକୁଳି ।

ପ୍ରହରୀ—( ସେହି ଆଦେଶ ପାଳନ କଲା )

କାଶୀରାଜ—( ସ୍ୱବୋଧନରୁ ହୋଇ ) ଠିକ୍ ଆଦେଶ ହୋଇଛି, ବଟୁକଙ୍କ···ଏହି ଦୁଇଜଣଙ୍କୁ ପ୍ରଲୋଭିତ କରିଛି ମୁଁ···ସୁତରାଂ ଏହି ବନ୍ଧନ-ଶିକୁଳି ମୋ’ର ପ୍ରାପ୍ୟ···ପିନ୍ଧାଅ ମୋତେ, ପ୍ରହରୀ । ( ହସ୍ତ ବଢ଼ାଇ ଦେଲେ )

ଯଯାତି—ଆଃ ଯଯାତି ବଟୁକଙ୍କ,—ଏ’କଥା ଭୁଲିଯିବନି, କାଶୀରାଜ !

କାଶୀରାଜ—ଭୁଲ ହୋଇଛି, ବଟୁକଙ୍କ !

ଯଯାତି—( ଯଥା ସ୍ଥାନରେ ଉପବେଶନ କରିବାକୁ ସଙ୍କେତ ଦେଲେ )

କାଶୀରାଜ—( ଉପବେଶନ କଲେ )

ଯଯାତି—ମୋ’ ବିଚାରରେ,—ଏହି ଶୃଙ୍ଖଳ-ଭୂଷଣ ଶୋଭା ପାଇବ ଯାହାଙ୍କ ହାତରେ, ସେ ହେଉଛନ୍ତି ନିଜେ ବଟୁକଙ୍କ—ରାଜା ଯଯାତି ।

କାଶୀରାଜ—‘ଯଯାତି’ !···

ଯଯାତି—ହଁ—‘ଯଯାତି’ । କାରଣ, ଯଯାତି ରାଜା । ଯଯାତିର ରାଜତ୍ୱରେ ରାଜ୍ୟରେ ଘଟିଛି ଶାସନ-ଶୃଙ୍ଖଳାର ଅବନତି । ଏଥିପାଇଁ ଦାୟୀ ରାଜା, ଅନ୍ୟ କେହି ନୁହେଁ । ରାମ-ରାଜ୍ୟରେ ଶିଶୁର ଅକାଳ-ମୃତ୍ୟୁ ଘଟିଥିଲା । ଏହି ଅପମୃତ୍ୟୁ ପାଇଁ, ବ୍ରାହ୍ମଣ-ପିତା ଦାୟୀ କରିଥିଲେ ରାଜା-ରାମଚନ୍ଦ୍ରଙ୍କୁ, ଭାଗ୍ୟ-ବିଧାତାଙ୍କୁ ନୁହେଁ ।

କାଶୀରାଜ—ରାଜା···

ଯଯାତି—ବିଶ୍ୱରୂପତି-ରାମଚନ୍ଦ୍ର ବ୍ରାହ୍ମଣର ଏହି ଅଭିଯୋଗ ଖୁସିମନରେ ଗ୍ରହଣ କରିଥିଲେ, ରାଜା-ରାମଚନ୍ଦ୍ରଙ୍କୁ ଅପରାଧୀ ସାବ୍ୟସ୍ତ କରି, ଅପରାଧର କାରଣ ତନ୍ନ ତନ୍ନ କରି ଅନୁସନ୍ଧାନ ଫଳରେ ଜାଣିଥିଲେ,—ରାଜ-କାର୍ଯ୍ୟରେ ରାଜାର ଅବହେଳା; —ଏହି ସୁଯୋଗ ନେଇ, ନୀତିର ବିଭ୍ରାଟ ଘଟାଇ, ଶୂଦ୍ରକ-ମୁନି ଯେଉଁ ତପସ୍ୟା କରୁଥିଲେ, ସେହି ଅନାଚାର ଯୋଗୁଁ ଘଟିଥିଲା ବ୍ରାହ୍ମଣ-ଶିଶୁର ଅକାଳମୃତ୍ୟୁ । ସୁତରାଂ ରାଜ-ଶାସନରେ ଅବହେଳା ଯୋଗୁଁ ରାଜ୍ୟରେ ଅକାଳ-ମୃତ୍ୟୁ,—ବ୍ରାହ୍ମଣର ଏହି ଅଭିଯୋଗ ପ୍ରମାଣିତ ସତ୍ୟ; ତେଣୁ, ସେହି ଅବହେଳା-ଜନିତ ଅପରାଧର ପ୍ରାୟଶ୍ଚିତ୍ତ ଆବଶ୍ୟକ,—ରଘୁବଂଶ-ରାମଚନ୍ଦ୍ରର ଏହି ବିଚାର-ଦେଶ ଗ୍ରହଣ କରିଥିଲେ, ରାଜା-ରାମଚନ୍ଦ୍ର ନିଜେ । କୁଠାର ହସ୍ତରେ ଘାତକର କାର୍ଯ୍ୟାନୁଷ୍ଠାନ କରି-ଥିଲେ, ଶମ୍ବୁକର ଶିରଚ୍ଛେଦନ କରିଥିଲେ—ପରିଣାମରେ ବ୍ରାହ୍ମଣ-ଶିଶୁ ଜୀବନ ଫେରି ପାଇ-ଥିଲା···ରାଜ୍ୟରେ ଶୃଙ୍ଖଳା ଫେରି ଆସିଥିଲା ।

କାଶୀରାଜ—ଅଦ୍ଭୁତ !···

ଯଯାତି—ଆହୁରି ଅଦ୍ଭୁତ ଅପରାଧ-ତତ୍ତ୍ୱର ଆବିଷ୍କାର ! ମାନବତା-ପ୍ରଦର୍ଶନରେ ରାଜାର ତ୍ରୁଟି । ଯା’ର ବିଷମୟ ଫଳ ସ୍ୱରୂପ ରାଜ୍ୟ-ସୀମାରେ ରାଜ-ପ୍ରଜା, ତଥା ମାନବ ଦୁନିଆରେ ମାନବ-ମାନବ ମଧ୍ୟରେ ଯେତିକି ଅପ୍ରୀତି । ···ଅଙ୍କ ଶାସନ-ଶୃଙ୍ଖଳାରେ ଯଦି ଅବନତି ଘଟିଥାଏ,

ତେବେ ଏଥିପାଇଁ ଦାୟୀ ଶାସନ ଦଣ୍ଡଧାରୀ ରାଜା, ଅନ୍ୟ କେହି ନୁହେଁ ।

କାଶୀରାଜ—ରା—ଜା ।

ଯଯାତି—ସେହି କ୍ରୁଟି-ଜନିତ ଅପରାଧର ପ୍ରାୟଶ୍ଚିତ୍ତ କରିବ ଆଜି ଧର୍ମାଧିକରଣ ସ୍ୱୟଂ ।

କାଶୀରାଜ—କ'ଣ ଏହି ଶୃଙ୍ଖଳ ଧାରଣ କରି ?

ଯଯାତି—( ସସ୍ମିତେ ) ନା, ଶୃଙ୍ଖଳିତ କରି ବାହୁ-ପାଶେ ରାଜ୍ୟର, ମାନବ ଜଗତର ଦୁଇଟି ଘୃଣ୍ୟ-ତମ ଜନ—ଜଣେ ଏହି ଯାବତୀୟ ଦୁର୍ନୀତି-ମନ୍ତ୍ରଣାର ଉଦ୍ଭାବକ ଏହି ବିଚକ୍ଷଣ, ଅନ୍ୟ ଜଣେ ଅନୁ-ଧାବକ ଏହି ବାହାବଳୀନ୍ଦ୍ର ।

( ବିଚକ୍ଷଣ ଓ ବାହାବଳୀନ୍ଦ୍ରକୁ ଆଲିଙ୍ଗନ କଲେ । ସମସ୍ତଙ୍କ ଆଖି ଛଳ-ଛଳ ଦେଖାଗଲା )

ହଁ, ମୋ'ରତ ଖିଆଲ ନାହିଁ । ଗଲ ଗଲ ମନ୍ତ୍ରୀ, ସେନାପତି—ଉତ୍ସବର ଆୟୋଜନ କେତେଦୂର କ'ଣ ହେଲା, ଦେଖିବ—

ବିଚକ୍ଷଣ ଓ ବାହାବଳୀନ୍ଦ୍ର—( ଅବାକାବା ହୋଇ ଚକାଇବହିଲେ )

ଯଯାତି—ଆଃ, ମନେ ନାହିଁ ତୁମର,—ଆଜିପରା କେମାଦେଇର ମଙ୍ଗଳକୃତ୍ୟ ?

କାଶୀରାଜ—ଆ-ଜ ।

ଯଯାତି—ହଁ, ଆଜ । ଏ ଦିନ ଧରା ଯାଉଛି ଗୌରୀ-ପିତାର ନିର୍ଦ୍ଦେଶରେ ନୁହେଁ,—ଗୌରୀ-ମାତାର ଆଦେଶରେ ।

[ ପଟ ପରିବର୍ତ୍ତନ ]

---

## ( ଗ )

[ ଦୃଶ୍ୟଃ—ଅରଣ୍ୟ । ଦୂରେ ବିବାହ-ନହବତ୍ ବାଜୁଥିଲା । ବିବାହ-ସାଜ-ସଜ୍ଜାରେ ସଜ୍ଜିତା ଗୌରୀ ପ୍ରବେଶ କଲେ । ଅର୍ଦ୍ଧ-ଉନ୍ମାଦିନୀ ପରି ମନେ ହେଉଥିଲା । ]

ଗୌରୀ—ବିବାହ-ନହବତ !—ଗୌରୀର ବିବାହ ! …ହେଲେ, ଏହି ମାଙ୍ଗଳିକ ଧ୍ୱନିରେ ଧ୍ୱନିତ ହେଉଛି ଗୋପାଙ୍ଗନାର ବିରହ ବେଦନା । କୃଷ୍ଣ ଅଶ୍ରୁତ ଗୋପାଳର ବିରହ ବଂଶୀର କ୍ରନ୍ଦନ-କନ୍ଦନ ଧ୍ୱନି…ଗୋପାଳ !…ଗୋପାଳ—

( ଉନ୍ମାଦିନୀ ପରି ଝାଡ଼ ଜଙ୍ଗଲ ନ ମାନି, ଖୋଜି ବୁଲିବାକୁ ଲାଗିଲେ )

[ ଅନତି ଦୂରରେ ସୌରୀ ପ୍ରବେଶ କଲେ ଗୌରୀର ଏହି ଉନ୍ମାଦ ଭାବକୁ କୌତୁକରେ ଗାଇବାକୁ ଲାଗିଲେ ।

ସୌରୀ— ଗୀତ

କାହିଁ ମୋ' ମୁରଲୀ-ଧର
ନେହାନନ୍ଦ ପଞ୍ଚର ।
ଏହି କୁଞ୍ଜେ ଥିବେ ପରା ।
ଭଲ ଯୋଗେ ପଡ଼ୁ ନାକ,
ଗଲି ମୁଁ ତ ବାହୁଡ଼ାକ,—
ଝିକାଇ ପ୍ରାଣ-ପଞ୍ଜରା;
ଏହି କୁଞ୍ଜେ ଥିବେ ପରା ।

ଗୌରୀ—( ଧାଇଁ ଆସି ନିକଟକୁ ) ସୌରୀ ।

ସୌରୀ—ଜି ହୁଁ 'ଲଲିତେ' ।

ଗୌରୀ—ସହି !…ତୋ'ର କ'ଣ ଟିକିଏ ହୋଇ ଅଛି ନାହିଁ ? ଦୟା-ମାୟା ନାହିଁ ?

ସୌରୀ—ରହିବ କେମିତି ?

ଗୀତ

'ଖରାପ ତୁ ହେଲୁରେ
ଖେଳା-ମେଳା ଖଞ୍ଜନାଖି କି ସାହସ କଲୁରେ ।'

ଗୌରୀ—ସହି ଠିକ୍ କହୁଚୁ, ମିଛ ନୁହେଁ,—ମୁଁ ଖରାପ ହୋଇଛି ।

ସୌରୀ—ସେଥିପାଇଁ ଦୁଃଖ ନ ଥିଲା…ହେଲେ,…

ଗୌରୀ—'ହେଲେ' ?

ସୌରୀ—( ପୂର୍ବ ଗୀତର ଅନୁକ୍ରମରେ )
'ଖର୍ବ ହୋଇ ସୁରତରୁ—କୁସୁମ ବାଛିଲୁରେ
ଖେଦ-ବୀଜ ନିଜ ହୃଦ-କେଦାରେ ବୁଣିଲୁରେ ।'

ଗୌରୀ—ଠିକ୍ କହୁଚୁ, ସହି— ମୁଁ 'ଖର୍ବ',—ସେ 'ସୁରତରୁ' ।

ସୌରି—ଖାଲି ସେତିକି—? ( ପୂର୍ବର ଅନୁକ୍ରମରେ )
‘ଖିଆଲି ପରି କି ଧନ ମନରେ ଭୁଲାଇଲରେ
ଖେଳିବାର ନୋହି କଳାନାଗକୁ ଗୁଡ଼ାଇଲରେ ।’

ଗୌରୀ—‘କଳା-ନାଗଟି’ ଦଂଶିଛି ।···ଏବେ ଉପାୟ ?

ସୌରୀ—ଉପାୟ ? ( ଗୀତସ୍ୱରେ )
‘ଗଲାଣିତ ଗଲା କଥାରେ ସଙ୍ଗାତ
ଗଲାଣିତ ଗଲା କଥା ।’

ଗୌରୀ—ନା, ନା—ମୋ’ ଗୋପାଳକୁ ମୁଁ ପାଶୋରି ପାରିବି ନାହିଁ ।

ସୌରୀ—ତେବେ ମର । ( ଗୀତସ୍ୱରେ )
ପ୍ରେମ-ପ୍ରୀତି ଦଗା-ଦଆରେ—
ନୁହଇ ଛୁରୀ ସେ—ଛୁରୀ ପୁଣି, ଶାଣ-ଦଆରେ ॥

ଗୌରୀ—ସେହି ଶାଣ-ଦଆ ପ୍ରୀତି-ଛୁରୀକୁ ବରିନେବି ବରଂ ଏ’ ବିବାହ ମୁଁ କରି ପାରିବିନି—କରି ପାରିବିନି—

ସୌରୀ—ସହି ! ମୁଁ କ’ଣ ତୁମ-ମନ-କଥା ଜାଣେନା ? ହେଲେ ନିରୁପାୟ । ଏ’ ବିବାହ ଆଜି ଗୌରୀ କରିବ···ନିଜ-ସୁଖପାଇଁ ନୁହେଁ,—ରାଜ୍ୟ-ସାରା-ଯେତେ ଗୌରୀ-ଭଉଣୀ ଅଛନ୍ତି, ସେମାନଙ୍କ ସୁଖକୁ ବଡ଼ ମଣି !

ଗୌରୀ—( କେଉଁ ବିକଳ-ଭାବରେ ) ଗୋ-ପା-ଳ···
( ସୌରୀ କୋଳରେ ଅଜାଡ଼ି ହୋଇ ପଡ଼ିଲେ )
[ ଧୀରେ-ଧୀରେ ଉଭୟଙ୍କ ପ୍ରସ୍ଥାନ ]
[ ବିପରୀତ ଦଗରୁ ଉନ୍ମାଦ ଭାବରେ ଲଙ୍ଗରାଜ ପ୍ରବେଶ କଲେ । ତାଙ୍କର ବରାଭରଣ ଥିଲା ସେତେବେଳେ ]

ଲଙ୍ଗରାଜ—‘ଗୋପାଳ’ !—ଏହି ନାମରେ ମୋତେ ସେ ଡାକନ୍ତି—ମୁଁ ଶୁଣିଛି······
[ ନେପଥ୍ୟ-ଗୀତ ]
ମୋତେ ଡାକୁଛ···ଡାକୁଛ, ଡାକୁଛ ।
ଗହନ-ବିପିନେ, ତୁହାଇ ଡାକୁଛ ।
ବହେ ଝଞ୍ଜା···ଗର୍ଜେ ଘନ···
ଝଟକେ ବହ୍ନି ନିଘନ;
ନାହିଁ ଭୟ·········ଯିବି ଅୟ,—
ମୁହିଁ ତୁମରି ତୁମେତ ଜାଣିଛ ॥

ଲଙ୍ଗରାଜ—( ବଣଗୋଟାକ ଖୋଜି ମଥି ଦେଉଥିଲେ ······ଗୀତ ଶେଷରେ ) ଗୋ-ପା-ଳ-ଣୀ—
[ ବିସ୍ମସ୍ତ ପଦକ୍ଷେପରେ ଚାଲି ଯାଉଥିଲେ, ଏହି ସମୟରେ କାଶୀ-ରାଜ ପ୍ରବେଶ କଲେ । ]

କାଶୀରାଜ—ଲଙ୍ଗରାଜ !···

ଲଙ୍ଗରାଜ—ପିତା !···

କାଶୀରାଜ—ତୁମର କ’ଣ ହୋଇଛି କୁହତ ?··· ଅଧିବାସ-ବେଦୀରୁ ଏମିତ ହଠାତ୍ ଉଠିଆସିଲ ?

ଲଙ୍ଗରାଜ—ଭୁଲ ହୋଇଛି !···ଏ’ ଭୁଲ ମୁଁ ସୁଧାରିବି—ବିବାହ ମୁଁ କରିବି···ହିଂସା-ଅହିଂସା-ଭାବ ରାଜ୍ୟର ଏହି ଦୁଇଟି ପରସ୍ପର ବିରୋଧୀ ଶକ୍ତି ଗୁନ୍ଥା ହେବ ପ୍ରୀତି-ସୂତରେ,—ତାହା ମୁଁ କରିବି···କରିବି··· ( ଚାଲିଗଲେ )

କାଶୀରାଜ—ଲଙ୍ଗରାଜ !···( ଅନୁସରଣ କଲେ )
[ଭୁବନେଶ୍ୱରୀ ଦେବୀ-ବେଶରେ ପ୍ରବେଶ କଲେ]

ଭୁବନେଶ୍ୱରୀ—ମୁଁ ବ୍ରହ୍ମମୟୀ !···ନିଜ ମାୟାରେ ନିଜେ ମୁଗ୍‌ଧ ହୋଇ, ଗୋପାଳ-ଗୋପାଳୁଣୀର ମିଳନ ପଥରେ କଣ୍ଟା ପକାଇଛି ସିନା !··· ଉଦ୍ଧାରୁଛି କେମିତ ?···ରତି ତ ଆଜି ଧ୍ୱଂସ-ମୁଖୀ···ମଦନ ଗଲା କୁଆଡ଼େ ? ( ପ୍ରସ୍ଥାନ )
[ ରତି ପ୍ରତିଶୋଧ ଲାଳସୀ ପିଶାଚୁଣୀ ପରି ପ୍ରବେଶ କଲା ]

ରତି—ପ୍ରତିଶୋଧ !···ପ୍ରତିଶୋଧ !···ମଦନ ଭସ୍ମର ମୁଁ ପ୍ରତିଶୋଧ ନେବି । ‘ହର-ଗୌରୀ’ର ବିବାହ ହେଉ, କ୍ଷତି ନାହିଁ,—କିନ୍ତୁ ‘ଗୋପାଳ-ଗୋପାଳୁଣୀ’ର ପ୍ରଣୟ ମୁଁ ସହିପାରିବି ନାହିଁ—ବିଦେହୀ-ଦରିଆରେ ଏହି ପ୍ରଣୟ-ମୁଦି ମୁଁ ହସ୍ତଗତ କରିଛି,—ଏହା ମୁଁ ସାଇତି ରଖିବି, ପ୍ରଣୟୀ-ଯୁଗଳକୁ ତିଳତିଳ କରି ମାରିବି··· ହାଃ-ହାଃ-ହାଃ···( ପ୍ରସ୍ଥାନୋଦ୍ୟତା )

ଶିଳ୍ପୀ—( ବିପରୀତ ଦଗରୁ ଦ୍ରୁତ ପ୍ରବେଶ କଲେ ଓ ବାଟ ଓଗାଳିଲେ ) ରତି !···ଏ’ ତୋ’ର କି ଭାବ ?···ଦୁନିଆ ଆଜି ଯାହା ଚାହୁଁଛି, ତା’ର ଦୁଷ୍କର୍ମ ତୁ ଆଜି କରିବାକୁ ଯାଉଛୁ ତ ?

ରତି—କରିବାକୁ ଯାଉଛ କ'ଣ ?···କରିଛ !···
ମଦନ-ଭସ୍ମର ପ୍ରତିଶୋଧ—ମଦନ-ଭସ୍ମର
ପ୍ରତିଶୋଧ !— ( ଅଙ୍ଗୁଳି ଦେଖାଇଲେ )

ଶିଳ୍ପୀ—ମଦନ ଥିଲା ଅନଙ୍ଗ, ତାକୁ କରିଥିଲି ପୂର୍ଣ୍ଣାଙ୍ଗ
ତାହାପାଇଁ ?

ରତି—ରତିର ସୁଖ ପାଇଁ···

ଶିଳ୍ପୀ—ତେବେ ଆଜ ଏ'କି ଆଚରଣ ତୋ'ର ?···
ଏ'କି ବ୍ୟଭିଚାର ?

ରତି—ଯଦି ରତି ଆଜ ବ୍ୟଭିଚାରିଣୀ ହୋଇଥାଏ,
ସେଥିପାଇଁ ଦାୟୀ ତୁମେ !···

ଶିଳ୍ପୀ—ମୁଁ ?

ରତି—ହଁ, ତୁମେ···ତୁମେ ଶିଳ୍ପୀ···ରତିର
ମନୋରଞ୍ଜନ ପାଇଁ ବିଦେହୀକୁ ଦେଲ ଦେହ-
ଦାନ । ଅନଙ୍ଗକୁ କ'ଲ ପୂର୍ଣ୍ଣାଙ୍ଗ···ରତି
ପାଇଲା ଅଙ୍ଗର ସାନ୍ନିଧ୍ୟ···ଯେଉଁ କାମଲିପ୍ସା
ଏତେଦିନଯାଏ କୁଣ୍ଡଳୀକୃତ ହୋଇ ରହିଥିଲା
ରତି ମଧ୍ୟରେ, ତାହା ଫଣା ଟେକି ଗର୍ଜି ଉଠିଲା ।
ଯେଉଁ ଈର୍ଷାନଳ ଭସ୍ମାଚ୍ଛାଦିତ ହୋଇ ରହିଥିଲା,
ତାହା ବହ୍ନିମାନ ଶିଖା ଧାରଣ କରି ପ୍ରଜ୍ୱଳି
ଉଠିଲା । ଯେଉଁ ପ୍ରତିଶୋଧ-ଚେତନା ମନର
କେଉଁ ଅତଳ ତଳେ ବିଲୀନ ହୋଇ ଯାଇଥିଲା,
ତାହା ଆଜ ଚେତି ଉଠିଛି, ଗଗନ ସ୍ପର୍ଶ କରିଛି,
ପୁଚ୍ଛବହୁଳ-ଧୂମକେତୁ ପରି ରତିକୁ କରିଛି
ବିଗ୍ରହିତାମୟୀ···ପ୍ରତିଶୋଧ । ପ୍ରତିଶୋଧ !···

ଶିଳ୍ପୀ—( କ୍ଷଣକାଳ ପାଇଁ ଅପ୍ରତିଭ ହୋଇଯାଇଥିଲେ,
ତା'ପର ) ରତି···ରତି···

[ ମଦନ ବାପରୀତ ଦିଗରୁ ପ୍ରବେଶ କଲା···
ଅନୁଶୋଚନାର ଭାବ ତା'ର ବଦନ ମଣ୍ଡଳରେ
ପରିସ୍ଫୁଟିତ ]

ମଦନ—ମୁଁ ଭୁଲ କରିଛି···ଭୁଲ କରିଛି···ପତ୍ନୀର
ମୋହ ମୋତେ ଭୁଲାଇ ଦେଇଛି । ପାର୍ବତୀଙ୍କ
ତପସ୍ୟା ନିର୍ମମ ଶିବଙ୍କୁ ଟଳାଇ ପାରି ନ ଥିଲା—
ଦେବୀ ବ୍ୟର୍ଥ-ମନୋରଥ ହୋଇଥିଲେ, ମୋ'ର
ଅବ୍ୟର୍ଥ ପୁଷ୍ପଧନୁର ସାହାଯ୍ୟ ନେଇଥିଲେ । ମୁଁ
ନାରୀର ବ୍ୟଥା ସହ୍ୟ କରି ପାରି ନ ଥିଲି,
ରତିର କଥା ଆଦୌ ମନରେ ସ୍ଥାନ ଦେଇ ନ
ଥିଲି, ପୁଷ୍ପଶର ତ୍ୟାଗ କରିଥିଲି, ଶିବଙ୍କ କାଠିନ୍ୟ
ଭଗ୍ନ କରିଥିଲି, ଶିବପାର୍ବତୀର ମିଳନ ଘଟାଇଥିଲି,
ହସି-ହସି ଶିବ-କୋପାନଳର ବକ୍ଷ-ଛଟା
ବରଣ କରି ନେଇଥିଲି···କିନ୍ତୁ, ଆଜ ପତ୍ନୀ-
ସୁଅଁଗିଆ ହୋଇ ଏ କ'ଣ କରିଛି···ପ୍ରଣୟ-ମୁଗ୍ଧ
ଯେଉଁପରି କୌଶଳରେ ହସ୍ତଗତ କରି, ସ୍ତ୍ରୀର
ହସ୍ତପେଠ କରିଛି, ଠିକ୍ ସେହି କୌଶଳ କରି
ରତିର ହସ୍ତଚ୍ୟୁତ କରିବି, ଯଥାସ୍ଥାନରେ ତାହା
ସ୍ଥାପନ କରିଦେବି । ନାରୀ ପ୍ରତି ନାରୀ ନିର୍ଦ୍ଦୟୀ
ହୋଇପାରେ, କିନ୍ତୁ ପୁରୁଷ କଦାପି ତା' ହୋଇ
ପାରିବ ନାହିଁ···( ଚାଲି ଯାଉଥିଲା )

ଶିଳ୍ପୀ—( ବିପରୀତ ଦିଗରୁ, ହୋଧାନ୍ୱିତ କଣ୍ଠରେ )
ମଦନ···ମଦନ···

ମଦନ—( ଫେରି ଚାହିଁ ) ଏ'ଠି ନୁହେଁ, ଶିଳ୍ପୀ—
ଶିଳ୍ପାଗାରେ ପୁଣି ଭେଟିବି ମଦନ । ( ପ୍ରସ୍ଥାନ )

[ ପଟ ପରିବର୍ତ୍ତନ ]

---

( ଘ )

[ ଦୃଶ୍ୟ:—ଚଉଠି-ଘରର ମହା ସମାରୋହ ।
ଫୁଲ-ଶେଯରେ ଫୁଲ-ପଲଙ୍କ—ବର-ବଧୂ ଫୁଲ-
ଭରଣର ଯଥା-ମଣ୍ଡନରେ ଶୋଭିତ ହୋଇ
ପାଖା-ପାଖି ବସିଥିଲେ, କିନ୍ତୁ, ଉଭୟର ମନ
ଆଦୌ ପାଖାପାଖି ନ ଥିଲା । ପରସ୍ପରର
ବିପରୀତାଭିମୁଖୀ ବଦନ ଓ ଗୃହାଣୀ ସେଥିର
ପରିଚୟ ଦାଉଥିଲା । ହୃଦ୍‌ଗତ ଉତ୍ସବର ଲହରୀ
ଭାସି ଭାସି ଆସୁଥିଲା, କିନ୍ତୁ ତାହାର ମନକୁ
ଆନନ୍ଦିତ କରିବା ଦୂରେ ଥାଉ, ସ୍ପର୍ଶ କରି ପାରୁ
ନ ଥିଲା !···ଗୌରୀ ବାରମ୍ବାର ନିରୀକ୍ଷଣ
କରୁଥିଲା ସେହି ଅଙ୍ଗୁଳିଟି, ଯହିଁରେ ସାଙ୍କେତିକ
ଅଙ୍ଗୁରୀଟି ଧାରଣ କରିଥିଲା—ଆଉ ଲଙ୍ଗରାଜ
ସ୍ୱପ୍ନାଳୁ ନୟନରେ ଗୋପାଳୁଣୀର ଅନୁସନ୍ଧାନ-

କ୍ରୁଟି ଥିବାର ଜଣା ଯାଉଥିଲା ।…ଏତିକିବେଳେ ହଠାତ୍ କକ୍ଷର ଆଲୋକ ଲିଭିଗଲା, ଗୋଟାଏ ବିଦ୍ୟୁତ୍ ଝଲକ ଗାଢ଼-ଅନ୍ଧକାର ଭେଦକରି ପଶିଆସିଲା, ଗୌରୀର କର ପଲ୍ଲବକୁ ସ୍ପର୍ଶକରି ଗୁଲିଗଲା—କକ୍ଷଟି ପୂର୍ବପରି ଆଲୋକିତ ଦେଖାଗଲା… ]

[ ଉଭୟେ ଏହି ଅଲୌକିକ ଘଟଣାରେ ଅଭିଭୂତ ହୋଇ ଯାଇଥିଲେ…ସେହି ଭାବରେ ପରସ୍ପରକୁ ଚାହାଁଇଲେ । ]

ଗୌରୀ—( ନିଜର ଅଙ୍ଗୁଳି ନିରୀକ୍ଷଣ କରି ) ଏହିତ ସେହି ରତ୍ନ-ମୁଦ୍ରା ।…ମୋ'ର ଅଙ୍ଗୁଳିରେ !

ଲିଙ୍ଗରାଜ—ମୋ'ର 'ଅଭିଜ୍ଞାନ-ମୁଦ୍ରା' ।…ଗୌରୀ ସାଜିଥିଲା ଗୋପ-ରୁଣୀ !

ଗୌରୀ—ଗୋପାଳ ।…( ଲିଙ୍ଗରାଜ ଉପରେ ଢଳି ପଡ଼ିଲେ )

ଲିଙ୍ଗରାଜ—( ପ୍ରେମର କଠିନ ବାହୁ ପାଶରେ ଆବଦ୍ଧ କଲେ )

[ ବାହାରୁ ଭାସି ଆସୁଥିଲା ବଂଶୀର ମଧୁର ଧ୍ୱନି ]…

[ ପଟ୍ଟ ପରିବର୍ତ୍ତନ ]

---

( ଙ )

[ ଦୃଶ୍ୟଃ—ପୂର୍ବର ସେହି ସୁସଜ୍ଜିତ କକ୍ଷ । ରାତି ପାହି ଆସିଥିଲା ।…ପକ୍ଷୀ-କୂଜନର ସମବେତ ତାନ କକ୍ଷଟିକୁ ମୁଖରିତ କରିଥିଲା । ଫୁଲ ମଉଳି ଯାଇଥିଲା । ବର-ବଧୂର ମଉଳା ମନ ଆଉ ନ ଥିଲା । ଉଭୟେ ଅଳସ ଭାଙ୍ଗୁଥିଲେ । ଫାପସା-ଆଲୋକ । ସେହି ଆଲୋକ ମଧ୍ୟରେ ଆବିର୍ଭୂତା ହେଲେ ଆଲୋକମୟୀ ଭଗବତୀ ।…ଦେବୀର ଦିବ୍ୟ-ଭାବ ଓ ପରିପାଟି । ]

ଗୌରୀ—( ଆଖି ମଳି ଉଠାଇଲେ, ଚିହ୍ନିଲେ ) ଭୁବନେଶ୍ୱରୀ ।…

ଲିଙ୍ଗରାଜ—ଭୁବନେଶ୍ୱରୀ ଯେଉଁ ମିଳନ ପିଠର ଅଧିଷ୍ଠାତ୍ରୀ—ସେହି ସାମ୍ୟ-ମୈତ୍ରୀ-ଶାନ୍ତିର ଶିଳ୍ପ-ପୀଠ ହେଉ ଭୁବନେଶ୍ୱର ନାମରେ ଜଗତ୍-ବିଖ୍ୟାତ । ( ଅବନତ ହେଲେ )

[ ଭୁବନେଶ୍ୱରୀ ପ୍ରସନ୍ନା ହେଲେ, ଆଶୀର୍ବାଦର ସୂଚନା ଦେଇ ଦିବସର ଆଲୋକରେ ମିଶିଗଲେ ]

[ ପଟ୍ଟ ପରିବର୍ତ୍ତନ ]

---

( ଚ )

[ ଦୃଶ୍ୟଃ—କଳାପର୍ବ । ସେହି ଶିଳା-ଅସ୍ଥାନ । ଯେଉଁଠାରେ ରାଣୀ ସ୍ୱପ୍ନ-କଥା କହୁଥିଲେ, ଆଉ ରାଜା ବାସ୍ତବ-ଘଟଣା ପରିଶ୍ରବଣ କରୁଥିଲେ ।…ଦିବସର ପାହାନ୍ତି ଆଲୋକରେ ଦେଖାଗଲା ରାଣୀ ରାଜାଙ୍କ କୋଳରେ ଢଳି ପଡ଼ିଛନ୍ତି, ଆଉ ଶୂନ୍ୟ ଦୃଷ୍ଟିରେ ଶୂନ୍ୟ ରସିନ୍ଦୂର-ବୋଳା ଆକାଶକୁ ଅନାଇ ରହିଛନ୍ତି । ]

ଯଯାତି—ତା'ପରେ…

ରାଣୀ—( ନୀରବ )

ଯଯାତି—ରାଣୀ…ରାଣୀ…( ରାଣୀଙ୍କର ଶିରୋଦେଶ ଧରି ହଲାଇଲେ )

ରାଣୀ—( ଚକ୍ଷୁ ମୁଦ୍ରିତ କଲେ, ଗ୍ରୀବା ଭଙ୍ଗକରି ଶରୀର ଲୋଟାଇ ଦେଲେ )

ଯଯାତି—ରା-ଣୀ…( କୋହଭ ଫୁଲୁଫାଟା ଚିତ୍କାର କରି ଉଠିଲେ ।—ତା'ପରେ ଆତ୍ମ-ସମ୍ବରଣ କରି ଅଟ୍ଟହାସ୍ୟ କଲେ ଏହାପରେ—) ବୁଝିଲି ରାଣୀ—ତୁମେ ସ୍ୱପ୍ନର କଥା କହୁକହୁ ସ୍ୱପ୍ନ-ପୁରୀକୁ ଗୁଲିଗଲ—ବେଶ୍…

[ ରାଣୀଙ୍କ ଶିରୋଦେଶ ନିଜ କୋଳରୁ ଅପସାରଣ କଲେ, ଶିଳା-ଶଯ୍ୟାରେ ଶାୟିତ କରିଦେଲେ—ତା'ପରେ ଆତ୍ମ-ଦମ୍ଭରେ କହିବାକୁ ଲାଗିଲେ… ]

ମୁଁ ଗଢ଼ିଲି ଶିଳ୍ପଶାଳାକୁ···ତୁମେ ଦେଖିଥିଲ ସ୍ୱପ୍ନ···ତୁମର ସେହି ସ୍ୱପ୍ନ-ଛବିକୁ ରୂପାୟିତ କରିବ ଶିଳ୍ପୀର ଚପଳ-ତୁଳୀରେ···

[ ପଟ୍ଟପରିବର୍ତ୍ତନ ]

(ଛ)

[ ଦୃଶ୍ୟ :—ଶିଳ୍ପଶାଳା ।···ଆଲୋକ-ଅନ୍ଧକାରର ସମ୍ମିଶ୍ରଣ ଗୋଟାଏ ରୋମାଞ୍ଚ-ପରିବେଶ ସୃଷ୍ଟିକରିଥାଏ···ମଦନ-ମୂର୍ତ୍ତି ପୂର୍ବବତ୍ ଯଥାସ୍ଥାନରେ ଠିଆ···ଶିଳ୍ପୀ ତାହା ଖଣ୍ଡ ଖଣ୍ଡ କରି ଭାଙ୍ଗି ପକାଉଥାଏ···ଅଟ୍ଟହାସ୍ୟରେ ଘର୍‌ଦ୍ୱାର୍ ପ୍ରକମ୍ପିତ ହୋଇ ଉଠୁଥାଏ ।··· ଅନ୍ୟାନ୍ୟ ଶିଳ୍ପସମ୍ଭାର ଓ ଚିତ୍ରଗୁଡ଼ିକ ଇତସ୍ତତଃ ବିକ୍ଷିପ୍ତ ହୋଇଥାଏ··· ]

ଶିଳ୍ପୀ—ହାଃ···ହାଃ···ହାଃ···ମୁହିଁ ସୃଷ୍ଟି କରିଥିଲି, ମୁହିଁ ଧ୍ୱଂସ କରିବି ।

ଯଯାତି—ଶିଳ୍ପୀ···ଶିଳ୍ପୀ···( ଏହିପରି ଡାକୁ ଡାକୁ ପ୍ରବେଶ କଲେ)

ଶିଳ୍ପୀ—ରାଜା !···

ଯଯାତି—ଏ କି ସଂହାର-ମୂର୍ତ୍ତି ତୁମର ।

ଶିଳ୍ପୀ—ଏହି ଅନଙ୍ଗ-କନ୍ଦର୍ପ-ମୂର୍ତ୍ତି ଥିଲା ଶିଳ୍ପୀର ନିର୍ମଳ ଶିଳ୍ପ-ପ୍ରତିଭାର ପୂର୍ଣ୍ଣାଙ୍ଗ ବିକାଶ···କିନ୍ତୁ, ଏହାର ମଳିନ . ପ୍ରଭାବ ଜାତୀୟ-ଜୀବନକୁ କରିବ କଳୁଷିତ, ଦେଶର କଲ୍ୟାଣ ଓ ଅଗ୍ରଗତି-ଉପରେ ରଚିବ ଆବର୍ଜନାର ସ୍ତୂପ, ଏହି ଆଶଙ୍କା-ପ୍ରକାଶ ଯଥାର୍ଥ କରିଥିଲ, ରାଜା—ଭାଙ୍ଗି ପକାଇବାକୁ ଆଦେଶ କରିଥିଲ । ମୁଁ ସେହି ଆଶଙ୍କାର ସୁସ୍ପଷ୍ଟ-ପ୍ରମାଣ ପାଇଛି, ତୁମ୍ଭଙ୍କର ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିଛି··· ।

ଯଯାତି—( ପରିକଳ୍ପନାର ନିଦର୍ଶନ ଗୁଡ଼ିକୁ ବିକ୍ଷିପ୍ତ ଅବସ୍ଥାରେ ନିରୀକ୍ଷଣ କରି— ) ପରିକଳ୍ପନା-ରୂପାୟନର ଆଦର୍ଶ-ସମ୍ଭାର !···ଏଭଳି କ୍ଷିପ୍ତ-ବିକ୍ଷିପ୍ତ କରିବାର କାରଣ ?···

ଶିଳ୍ପୀ—ଶିଳ୍ପ-ମାଧ୍ୟମରେ ଜାତୀୟ ବୈଶିଷ୍ଟ୍ୟ ବାଢ଼ିବାକୁ ଯାଇ ଜାତୀୟ ସଂକୀର୍ଣ୍ଣତାକୁ ଅନୁପ୍ରବେଶ କରିବାର ସୁଯୋଗ ଦେଉଛି କି, ନା ଉକ୍ତ ଶିଳ୍ପ ପରିକଳ୍ପନା ମଧ୍ୟରେ ତାହାହିଁ ତନ୍ନ ତନ୍ନ କରି ପରୀକ୍ଷା କରି ଦେଖୁଥିଲି, ମହାରାଜ ।

ଯଯାତି—ଧନ୍ୟ ତୁମର ଆତ୍ମ-ପରୀକ୍ଷା—ତୁମେହିଁ ପ୍ରକୃତ ଶିଳ୍ପୀ !—ଶିଳ୍ପ ସାର୍ବଜନୀନ, ଶିଳ୍ପ ଉଦାରତା-ବ୍ୟଞ୍ଜକ, ଶିଳ୍ପ କଲ୍ୟାଣମୟ !—ଆସ ଶିଳ୍ପୀ ଆମେ ଶିଳ୍ପର ଏହି ନନ୍ଦନ-ତତ୍ତ୍ୱପ୍ରତି ଚିର-ଜାଗ୍ରତ ଥାଇ ପରିକଳ୍ପନାର ପୁନରାଲୋଚନାରେ ବ୍ରତୀ ହେବା···ଶିଳ୍ପୀ···ଶିଳ୍ପୀ—

ଶିଳ୍ପୀ—( ଶିଳ୍ପ-ସମ୍ଭାରକୁ କୁଣ୍ଢାଇ ମହାନନ୍ଦରେ ଅଭିଭୂତ ହୋଇ ଯାଇଥିଲେ ।··· )

ଯଯାତି—( କିଂ-କର୍ତ୍ତବ୍ୟ-ବିମୂଢ଼ ପାଲଟି ଗଲେ, ମୂକ ଶିଳା-ମୂର୍ତ୍ତିବତ୍ ଦେଖାଗଲେ । )

[ ଗୋଟିଏ ଶୋକାବହ-ଆହାହ-ସଙ୍ଗୀତ ମଧ୍ୟରେ ଦୃଶ୍ୟ ପରିବର୍ତ୍ତନ ହେବ···)

[ ପଟ୍ଟ-ପରିବର୍ତ୍ତନ ]

(ଜ)

[ ଦୃଶ୍ୟଃ—ସ୍ତିମିତ ଆଲୋକରେ ଦେଖାଯାଉଥିଲା ପୁରାତନ ଓ ନୂତନ ରାଜଧାନୀର ମୁହାଁମୁହିଁ ସମାବେଶ ।—ଉଭୟ ସ୍ଥାପତ୍ୟ ଶୋଭା ମିଶି ଗୋଟାଏ ରହସ୍ୟମୟ-ଲୋକ ସୃଷ୍ଟି କରିଥିଲା । ଆବାହକ ପ୍ରବେଶ କଲେ, ଏବଂ ଆବେଗଭରା କଣ୍ଠରେ ପ୍ରକାଶ କଲେ— ]

ଆବାହକ—ଶିଳ୍ପୀ ଚାଲିଗଲେ, ଯଯାତି ମଧ୍ୟ ବଞ୍ଚି ରହିଲେ ନାହିଁ । କାଳ-କ୍ରମେ, ଉତ୍ତର-ସାଧକ ଲଲାଟେନ୍ଦୁ କେଶରୀ, ପୂର୍ବ-ସୂରୀ ଯଯାତିଙ୍କ ଶିଳ୍ପ-ବାସନା ଚରିତାର୍ଥ କଲେ···ବିବିଧ ଶିଳ୍ପ-କଳା ଓ ସ୍ଥାପତ୍ୟର ଅଳକା-ପୁରୀ ଗଢ଼ାଇ ଆସିଲେ ଏକାମ୍ର-କାନନରେ···ପୌରାଣିକ 'ଭୁବନେଶ୍ୱର୍'

ନାମକରଣ, ଐତିହାସିକ ଭୁବନେଶ୍ୱର ଧାମରେ ରୂପ ପରିଗ୍ରହ କଲା ।...କେଶରୀ, ଗଙ୍ଗ, ସୂର୍ଯ୍ୟ, ପଠାଣ, ମୋଗଲ, ମରହଟ୍ଟା—ଏହିପରି ପର୍ଯ୍ୟାୟକ୍ରମରେ ରାଜୁତି କଲାପରେ ଉତ୍କଳ ବ୍ରିଟିଶ-କବଳିତ ହେଲା । ବ୍ରିଟିଶ୍ ରାଜତ୍ୱ ଶେଷହେଲା, ସଂଯୁକ୍ତ ଭାରତ ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହେଲା ।...ଯେଉଁ ଅହିଂସା-ନୀତି ଅବଲମ୍ବନ କରି ମହାତ୍ମାଙ୍କ ହିଂସାର ଦାନବକୁ କରିଥିଲେ ପରାଭୂତ, ସେହି ଐତିହ୍ୟ ସ୍ମରଣ କରି, ସ୍ୱାଧୀନ-ଭାରତର ଅଙ୍ଗ-ରାଜ୍ୟ ସ୍ୱରୂପ ଉତ୍କଳ ଏହି ନୂତନ ରାଜଧାନୀ ସ୍ଥାପନ କରିଛନ୍ତି ଏହି ଭୁବନେଶ୍ୱରରେ । ...ସ୍ଥାପତ୍ୟ-ଇତିହାସର ପ୍ରାଣ-ପ୍ରତିଷ୍ଠାପକ-ସ୍ରଷ୍ଟା; ମୂକ-ସ୍ରଷ୍ଟା ପ୍ରାଣ କରିଛନ୍ତି ତୃପ୍ତି ନବଙ୍କ—ନବୀନ ଓ ପୁରାତନ ମଧ୍ୟରେ ଏକାତ୍ମ-ବୋଧ ଘଟିବ, ଏଥିପାଇଁ ଡାକୁଛି ସ୍ତବ-ସମ୍ବଳିତ କଣ୍ଠରେ—ଅବଶ୍ୟ ଅନ୍ଧକାର ମଧ୍ୟରେ ଅତୀତର ଅଦୃଶ୍ୟ ହୋଇ ଯାଇଥିଲେ—"କଥା କୁହ, କଥା କୁହ ହେ ମୂକ ପାଷାଣ...ଇତ୍ୟାଦି"

[ ଧୀରେ ଧୀରେ ଟେକେ ଯବନିକା ନାହିଁ ଅଭିଜ୍ଞ ]

